# ବ୍ରହ୍ମସୂତ୍ର ଶାଙ୍କରଭାଷ୍ୟର ଅଧିକରଣ ସୂଚୀପତ୍ର

## ପ୍ରଥମ ଅଧ୍ୟାୟ ପ୍ରଥମ ପାଦ



## ପ୍ରଥମ ଅଧ୍ୟାୟ ଦ୍ୱିତୀୟ ପାଦ



## ପ୍ରଥମ ଅଧ୍ୟାୟ ତୃତୀୟ ପାଦ



## ପ୍ରଥମ ଅଧ୍ୟାୟ ଚତୁର୍ଥ ପାଦ

## ଦ୍ୱିତୀୟ ଅଧ୍ୟାୟ ପ୍ରଥମ ପାଦ



## ଦ୍ୱିତୀୟ ଅଧ୍ୟାୟ ଦ୍ୱିତୀୟ ପାଦ



## ଦ୍ୱିତୀୟ ଅଧ୍ୟାୟ ତୃତୀୟ ପାଦ



## ଦ୍ୱିତୀୟ ଅଧ୍ୟାୟ ଚତୁର୍ଥ ପାଦ

# ବ୍ରହ୍ମସୂତ୍ର ଅଧିକରଣର ଅନୁକ୍ରମଣିକା

## ତୃତୀୟ ଅଧ୍ୟାୟ ପ୍ରଥମ ପାଦ



## ତୃତୀୟ ଅଧ୍ୟାୟ ଦ୍ୱିତୀୟ ପାଦ



## ତୃତୀୟ ଅଧ୍ୟାୟ ତୃତୀୟ ପାଦ

## ତୃତୀୟ ଅଧ୍ୟାୟ ଚତୁର୍ଥ ପାଦ



## ଚତୁର୍ଥ ଅଧ୍ୟାୟ ପ୍ରଥମ ପାଦ

## ଚତୁର୍ଥ ଅଧ୍ୟାୟ ଚତୁର୍ଥ ପାଦ





# ବ୍ୟାସକୃତ ବ୍ରହ୍ମସୂତ୍ର ବର୍ଣ୍ଣାନୁକ୍ରମଣିକା

## ବ୍ରହ୍ମସୂତ୍ର ଅଧିକରଣର ଅନୁକ୍ରମଣିକା

# ବ୍ୟାସକୃତ ବ୍ରହ୍ମସୂତ୍ରର ବର୍ଣ୍ଣାନୁକ୍ରମଣିକା

# ବ୍ରହ୍ମସୂତ୍ର ଅଧିକରଣର ଉପକ୍ରମଣିକା

◆◆◆

ବେଦବ୍ୟାସ ବିରଚିତ

# ବ୍ରହ୍ମସୂତ୍ର

# ଶାଙ୍କରଭାଷ୍ୟ

ପଣ୍ଡିତ ମାର୍କଣ୍ଡ ଦାସ

## ପ୍ରଥମ ଖଣ୍ଡ

ପ୍ରକାଶକ ଓ ପ୍ରାପ୍ତିସ୍ଥାନ




ଧର୍ମଗ୍ରନ୍ଥ ଷ୍ଟୋର

ପ୍ରତିଷ୍ଠାତା - ଶ୍ରୀ ବିଦ୍ୟାଧର ସାହୁ

ପରିଚାଳକ : ଶ୍ରୀ ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୨

ଫୋନ୍ ନଂ- (୦୬୭୧) ୨୫୦୮୨୯୬

ମୂଲ୍ୟ : ପାଞ୍ଚଶହ ପଚାଶ ଟଙ୍କା ମାତ୍ର (ବନ୍ଧେଇ ସହ)

ବେଦବ୍ୟାସ ବିରଚିତ

# ବ୍ରହ୍ମସୂତ୍ର ଶାଙ୍କରଭାଷ୍ୟ (ପ୍ରଥମ ଭାଗ)


ଲେଖକ :

**ପଣ୍ଡିତ ମାର୍କଣ୍ଡ ଦାସ**

କୁଆପୁଟ, ହଳଦିଆ, ଜି : ପୁରୀ



*ପ୍ରକାଶକ :*

**ଧର୍ମଗ୍ରନ୍ଥ ଷ୍ଟୋର**

ଅଲିଶା ବଜାର, କଟକ-୨

ନୂତନ ମୁଦ୍ରଣ -୨୦୧୪

*ଅକ୍ଷର ସଜ୍ଜା :*

ଲିଜା ଡି.ଟି.ପି ସେଣ୍ଟର

ବିଡ଼ାନାସୀ, କଟକ

*ମୁଦ୍ରାକର :*

ବିଶ୍ୱବିଦ୍ୟା ପ୍ରେସ୍

ଅଲିଶା ବଜାର କଟକ-୨

ମୁଲ୍ୟ : ପାଞ୍ଚଶହ ପଚାଶ ଟଙ୍କା ମାତ୍ର (ବନ୍ଧେଇ ସହ)

# ମୁଖବନ୍ଧ

ଭାରତୀୟ ସଂସ୍କୃତି ପୃଥିବୀର ଏକ ପ୍ରାକ୍ତନ ସଂସ୍କୃତି । ଏହାର ଐତିହ୍ୟ ଓ ପରମ୍ପରା ଅଦ୍ୟାବଧି ସଂଜୀବିତ ହୋଇ ରହିଛି କେବଳ କେତୋଟି ସତ୍ୟତା, ପ୍ରାମାଣିକତା, ପବିତ୍ରତା ପ୍ରଭୃତିକୁ ଆଧାର କରି । ତାହାର ପ୍ରମାଣଭୂତ ତତ୍ତ୍ୱ ହିଁ ଭାରତୀୟ ଦର୍ଶନଶାସ୍ତ୍ର ରୂପେ ସମଗ୍ର ପୃଥିବୀ ପୃଷ୍ଠରେ ପ୍ରସିଦ୍ଧି ଲାଭ କରିଛି । କିନ୍ତୁ ସାଂପ୍ରତିକ ଭାରତୀୟ ଦର୍ଶନଶାସ୍ତ୍ରକୁ ଦୃଷ୍ଟିପାତକରି ପୁରାତନ ଦର୍ଶନଶାସ୍ତ୍ର ଉପରେ ସିଂହାବଲୋକନ କଲେ ଉଭୟ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଅନୁଭୂତ ହୁଏ । ଯାହାହେଉ ସତ୍ୟ ଉପରେ ପର୍ଯ୍ୟବେସିତ ଏହି ଦର୍ଶନଶାସ୍ତ୍ର ଭାରତର ସଂସ୍କୃତି, ଧର୍ମ ଓ ଅଖଣ୍ଡତାକୁ ରକ୍ଷାକରି ପୃଥିବୀକୁ ଯୁଗ ଯୁଗ ବ୍ୟାପୀ ଗୋଟିଏ ଗୋଟିଏ ନୂତନ ଦିଗନ୍ତ ପ୍ରଦର୍ଶନ କରି ଆସୁଅଛି, ଏଥିରେ କୌଣସି ସନ୍ଦେହ ନାହିଁ । ତେଣୁ ମନୁସ୍ମୃତିରେ କୁହାଯାଇଅଛି -

ଏତଦ୍ଦେଶ ପ୍ରସୂତସ୍ୟ, ଚାଗ୍ରଜ ପୂର୍ବଜନ୍ମନଃ ।
ତାନ୍‌ତାନପି ଶିକ୍ଷେରନ, ପୃଥିବ୍ୟାଃ ସର୍ବେ ମାନବାଃ ॥

ଅର୍ଥାତ୍ ଏହି ପୁଣ୍ୟଭୂମି ଭାରତ ବର୍ଷରେ ଜନ୍ମ ଗ୍ରହଣ କରୁଥିବା ହୀୟାନ ବ୍ୟକ୍ତିମାନଙ୍କର ଅଖଣ୍ଡ ବ୍ୟକ୍ତିତ୍ୱ ବଳରେ ପୃଥିବୀର ଜନସମାଜ ପ୍ରଭାବିତ ହୋଇ ତାହାର ଧର୍ମ ଓ ସଂସ୍କୃତିକୁ ଲାଭ କରିବେ ।

ଏହି ଆମ୍ଭ ଦର୍ଶନଶାସ୍ତ୍ରକୁ ନାସ୍ତିକ ଦର୍ଶନ ଓ ଆସ୍ତିକ ଦର୍ଶନ ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଏ । ନାସ୍ତିକ ଦର୍ଶନ ମଧ୍ୟ ତିତି ଭାଗରେ ବିଭକ୍ତ ଯଥା - ଚାର୍ବାକ୍ ଦର୍ଶନ, ଜୈନଦର୍ଶନ ଓ ବୌଦ୍ଧ ଦର୍ଶନ । ସେହିଭଳି ଆସ୍ତିକ ଦର୍ଶନ ଛଅ ଭାଗରେ ବିଭକ୍ତ ହୋଇଥିବାରୁ ଏହା ଷଡ଼୍‌ଦର୍ଶନ ନାମରେ ନାମିତ । ଯଥା - ସାଂଖ୍ୟ, ଯୋଗ, ନ୍ୟାୟ ବୈଶେଷିକ, ମୀମାଂସା ଓ ବେଦାନ୍ତ । ଚାର୍ବାକ୍ ଦର୍ଶନର ପ୍ରଣେତା ବୃହସ୍ପତି, ଜୈନଦର୍ଶନର ମହାବୀର ଜୀନ, ବୌଦ୍ଧଦର୍ଶନର ବୁଦ୍ଧଦେବ ଅଟନ୍ତି । ସେହିପରି ଆସ୍ତିକଦର୍ଶନରେ କପିଳ ମହର୍ଷି ସାଂଖ୍ୟ ଦର୍ଶନ, ଯୋଗାଚାର୍ଯ୍ୟ ପତଞ୍ଜଳି ଯୋଗଦର୍ଶନ, ଅକ୍ଷପାଦ ଗୌତମ ନ୍ୟାୟଦର୍ଶନ, ମହର୍ଷି କଣାଦ ବେଶେଷିକ ଦର୍ଶନ,

ଜୈମିନୀ ମୀମାଂସା ଦର୍ଶନ ଏବଂ ବ୍ୟାସଦେବ ସ୍ୱୟଂ ବେଦାନ୍ତ ଦର୍ଶନର ସୂତ୍ରାବଳୀକୁ ରଚନା କରି ତନ୍ମଧ୍ୟରେ ବେଦ, ଉପନିଷଦ୍ ପ୍ରଭୃତି ବୈଦିକ ଗ୍ରନ୍ଥଗୁଡ଼ିକୁ ଆଧାର କରି ନିଜ ନିଜ ମତକୁ ଉପସ୍ଥାପନା କରିଛନ୍ତି ।

ପ୍ରତ୍ୟେକ ଦର୍ଶନକୁ ଆଧାର କରି ବହୁତ ବିଦ୍ୱାନ୍‌ମାନେ ସେମାନଙ୍କର ପାଣ୍ଡିତ୍ୟ ପ୍ରଦର୍ଶନ କରି ଭାଷ୍ୟ, ଉପଭାଷ୍ୟ, ବ୍ୟାଖ୍ୟା ପ୍ରଭୃତି ରଚନା କରିଥିବାର ପ୍ରମାଣ ଓ ଗ୍ରନ୍ଥ ଉପଲବ୍ଧ ହୁଏ । ସେହିପରି ବ୍ୟାସଦେବ ପ୍ରଣୀତ ବେଦାନ୍ତ ସୂତ୍ରକୁ କେତେକ କ୍ରାନ୍ତିକାରୀ ପଣ୍ଡିତମାନେ ନିଜ ନିଜ ମତରେ ପ୍ରମାଣିତ କରିଛନ୍ତି । ତାହା ସଂକ୍ଷିପ୍ତରେ ନିମ୍ନମତେ ପ୍ରଦତ୍ତ କରାଗଲା ।

| | ନାମ | ଭାଷ୍ୟନାମ | ସଂପ୍ରଦାୟ |
|---|---|---|---|
| ୧। | ଶଙ୍କରାଚାର୍ଯ୍ୟ | ଶାରୀରିକ ଭାଷ୍ୟ | ଅଦ୍ୱୈତବାଦ |
| ୨। | ଭାସ୍କରାଚାର୍ଯ୍ୟ | ଭାସ୍କର ଭାଷ୍ୟ | ଭେଦାଭେଦ ବାଦ |
| ୩। | ରାମାନୁଜାଚାର୍ଯ୍ୟ | ଶ୍ରୀଭାଷ୍ୟ | ବିଶିଷ୍ଟା ଦ୍ୱୈତବାଦ |
| ୪। | ମଧ୍ୱାଚାର୍ଯ୍ୟ | ପୂର୍ଣ୍ଣପ୍ରଜ୍ଞାଭାଷ୍ୟ | ଦ୍ୱୈତବାଦ |
| ୫। | ନିମ୍ବାର୍କାଚାର୍ଯ୍ୟ | ବେଦାନ୍ତ ପାରିଜାତଭାଷ୍ୟ | ଦ୍ୱୈତାଦ୍ୱୈତବାଦ |
| ୬। | ଶ୍ରୀକଣ୍ଠାଚାର୍ଯ୍ୟ | ଶୈବଭାଷ୍ୟ | ଶୈବବିଶିଷ୍ଟା ଦ୍ୱୈତବାଦ |
| ୭। | ଶ୍ରୀପତି | ଶ୍ରୀକରଭାଷ୍ୟ | ବୀରଶୈବବିଶିଷ୍ଟା ଦ୍ୱୈତବାଦ |
| ୮। | ବଲ୍ଲଭାଚାର୍ଯ୍ୟ | ଅଣୁଭାଷ୍ୟ | ଶୁଦ୍ଧା ଦ୍ୱୈତବାଦ |
| ୯। | ବିଜ୍ଞାନ ଭିକ୍ଷୁ | ବିଜ୍ଞାନମୃତ | ଅବିଭାଗା ଦ୍ୱୈତବାଦ |
| ୧୦। | ବଳଦେବାଚାର୍ଯ୍ୟ | ଗୋବିନ୍ଦଭାଷ୍ୟ | ଅଚିନ୍ତ୍ୟଭେଦାଭେଦ |

ଉପଯୁକ୍ତ ସଂପ୍ରଦାୟ ମଧ୍ୟରୁ ସର୍ବଶ୍ରେଷ୍ଠ ଭାଷ୍ୟକାର ଶ୍ରୀ ମଚ୍ଛଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତବାଦ ଉପରେ ଆଧାରିତ ଭାଷ୍ୟକୁ ଶାରୀରିକ ଭାଷ୍ୟ କହନ୍ତି । ଶରୀର ଅର୍ଥାତ୍ ଆତ୍ମା । ଯେଉଁ ଭାଷ୍ୟରେ ଆତ୍ମା ବିଷୟରେ ଆଲୋଚନ କରାଯାଇଛି, ତାହାକୁ ଶାରୀରିକ ଭାଷ୍ୟ କୁହାଯାଏ । ତାହା ପ୍ରସଙ୍ଗକ୍ରମେ ସଂକ୍ଷେପରେ କୁହାଯିବ ।

ଭାଷ୍ୟକାର ଶଙ୍କରାଚାର୍ଯ୍ୟଙ୍କର ଆଗାଧ ପାଣ୍ଡିତ୍ୟ ଓ ଐଶ୍ୱରିକ ଶକ୍ତି ବଳରେ ଆହେ ତମତ ଅନ୍ୟମାନଙ୍କର ମତ ଅପେକ୍ଷା ବଳବତ୍ତର ହୋଇ ଉଠିଥିଲା । ଶଙ୍କରଙ୍କର ସମୟ ସପ୍ତମ ଶତାବ୍ଦୀର ଅନ୍ତିମ ଭାଗ ବୋଲି ସମସ୍ତ ଐତିହାସିକମାନଙ୍କର ଅଭିମତ ।

ସାଧାରଣତଃ ତାଙ୍କର କୃତିନିଚୟ ତିନି ଭାଗରେ ବିଭକ୍ତ । ଯଥା - (୧) ଭାଷ୍ୟଗ୍ରନ୍ଥ, (୨) ସ୍ତୋତ୍ରଗ୍ରନ୍ଥ, (୩) ପ୍ରକରଣ ଗ୍ରନ୍ଥ । ଭାଷ୍ୟଗ୍ରନ୍ଥ ମଧ୍ୟ ଭାଗ ଦ୍ୱୟରେ ବିଭାଜିତ । ପ୍ରଥମଟି ପ୍ରସ୍ଥାନ ତ୍ରୟଭାଷ୍ୟ, ଅପରଟି ଅନ୍ୟାନ୍ୟ ଗ୍ରନ୍ଥ । ପ୍ରସ୍ଥାନ ଅର୍ଥାତ୍ ମାର୍ଗ । ପ୍ରସ୍ଥାନତ୍ରୟୀ ଅର୍ଥାତ୍ ଶ୍ରୁତି ଓ ଉପନିଷଦ୍, ସ୍ମୃତି ଓ ଗୀତା, ସୂତ୍ର ଅର୍ଥାତ୍ ମାର୍ଗ ବେଦାନ୍ତ ସୂତ୍ର । ତାଙ୍କର କୃତି ୧୨ଟି ଉପନିଷଦ୍‌ଭାଷ୍ୟ, ଗୀତାର ଭାଷ୍ୟ ଓ ବ୍ରହ୍ମ ସୂତ୍ରର ଭାଷ୍ୟ । ଏତଦ୍‌ବ୍ୟତୀତ ବିଷ୍ଣୁସହସ୍ର ନାମ ସମେତ ୩୭ ଗୋଟି ପ୍ରକ୍ଷିପ୍ତ ଭାଷ୍ୟ ରଚନା କରି ଅମର ହୋଇଛନ୍ତି । ସେହିପରି ଶଙ୍କରାଚାର୍ଯ୍ୟ ବହୁ ଦେବତାଙ୍କୁ ଆରାଧନା କରି ସ୍ତୋତ୍ର ରଚନା କରିଛନ୍ତି । ଗଣେଶ ସ୍ତୋତ୍ର ୪ଟି, ଶିବ ସ୍ତୋତ୍ର ୨୦ଟି, ଶକ୍ତି ସ୍ତୋତ୍ର ୨୨ଟି, ବିଷ୍ଣୁସ୍ତୋତ୍ର ୧୫ଟି, ଯୁଗଳ ଦେବତା ସ୍ତୋତ୍ର ୫ଟି, ନଦୀ ତୀର୍ଥ ବିଷୟକ ସ୍ତୋତ୍ର ୮ଟି ଏବଂ ଅନ୍ୟାନ୍ୟ ବିବିଧ ସ୍ତୋତ୍ର ୧୪ଟି ଉପଲବ୍ଧ ହୁଏ । ତଦ୍‌ବତ୍ ଅଦ୍ୱୈତବାଦର ତତ୍ତ୍ୱଗୁଡ଼ିକୁ ଉପସ୍ଥାପନା କରିବା ପାଇଁ ପ୍ରକରଣ ଗ୍ରନ୍ଥରେ ୩୯ଟି ପୁସ୍ତକ ରଚନା କରିଛନ୍ତି । 'ସୌନ୍ଦର୍ଯ୍ୟ ଲହରୀ' ଓ ପ୍ରପଞ୍ଚସାର' ନାମକ ଦୁଇଟି ଗ୍ରନ୍ଥ ମଧ୍ୟ ତନ୍ତ୍ର ଗ୍ରନ୍ଥ ଭାବେ ପ୍ରସିଦ୍ଧି ଲାଭ କରିଅଛି ।

ଶାରୀରିକ ଭାଷ୍ୟ ଚାରୋଟି ଅଧ୍ୟାୟରେ ବିଭକ୍ତ । ପ୍ରତ୍ୟେକ ଅଧ୍ୟାୟରେ ଚାରୋଟି ପାଦ । ପ୍ରତ୍ୟେକ ପାଦରେ କେତୋଟି ଅଧିକରଣ ରହିଛି । ଗୋଟିଏ ଅଧିକରଣରେ ଏକ ବା ତତୋଽଧିକ ସୂତ୍ର ସନ୍ନିହିତ । ସର୍ବମୋଟରେ ଚାରୋଟି ଅଧ୍ୟାୟ, ୧୬ଟି ପାଦ ରହିଛି । ଏହାର ସୂତ୍ର ସଂଖ୍ୟା ୫୫୫ ଓ ଅଧିକରଣ ସଂଖ୍ୟା ୧୯୧ । ପ୍ରତ୍ୟେକ ଅଧ୍ୟାୟର ବିଶଦ ବିବରଣୀ ନିମ୍ନରେ ପ୍ରଦତ୍ତ କରାଗଲା ।

| ଅଧ୍ୟାୟ | ପ୍ରଥମପାଦ | | ଦ୍ୱିତୀୟପାଦ | | ତୃତୀୟପାଦ | | ଚତୁର୍ଥପାଦ | | ମୋଟ | |
|---|---|---|---|---|---|---|---|---|---|---|
| ସଂଖ୍ୟା | ସୂତ୍ର | ଅଧିକରଣ | ସୂତ୍ର | ଅଧିକରଣ | ସୂତ୍ର | ଅଧିକରଣ | ସୂତ୍ର | ଅଧିକରଣ | ସୂତ୍ର | ଅଧିକରଣ |
| ୧ମ | ୩୧ | ୧୧ | ୩୨ | ୭ | ୪୩ | ୧୩ | ୨୮ | ୮ | ୧୩୪ | ୩୯ |
| ୨ୟ | ୩୭ | ୧୩ | ୪୫ | ୮ | ୫୩ | ୧୭ | ୨୨ | ୯ | ୧୫୭ | ୪୭ |
| ୩ୟ | ୨୭ | ୬ | ୪୧ | ୮ | ୬୬ | ୩୬ | ୫୨ | ୧୭ | ୧୮୬ | ୬୭ |
| ୪ର୍ଥ | ୧୯ | ୧୪ | ୨୧ | ୧୧ | ୧୬ | ୬ | ୨୨ | ୭ | ୭୮ | ୩୮ |
| ମୋଟ | ୧୧୪ | ୪୪ | ୧୩୯ | ୩୪ | ୧୭୭ | ୭୨ | ୧୨୪ | ୪୧ | ୫୫୫ | ୧୯୧ |

ଏହାର ପ୍ରଥମ ଅଧ୍ୟାୟକୁ ସମନ୍ୱୟାଧ୍ୟାୟ, ଦ୍ୱିତୀୟ ଅଧ୍ୟାୟକୁ ଅବିରୋଧ, ତୃତୀୟ ଅଧ୍ୟାୟକୁ ସାଧନ ଓ ଚତୁର୍ଥ ଅଧ୍ୟାୟକୁ ଫଳ ଅଧ୍ୟାୟ ରୂପେ ନାମିତ ହୋଇଛି । ତେଣୁ ବୈୟାସକି ନ୍ୟାୟମାଳାକାର ଶ୍ରୀ ଭାରତୀ ତୀର୍ଥ ମୁନି ବେଦାନ୍ତ ସୂତ୍ର ଓ ଭାଷ୍ୟ ପ୍ରକରଣକୁ ଶ୍ଳୋକାକାରରେ ବର୍ଣ୍ଣନା କରିଛନ୍ତି ।

ଶାସ୍ତ୍ରଂ ବ୍ରହ୍ମବିଚାରାଖ୍ୟମଧ୍ୟାୟଃ ସ୍ୟୁଶ୍ଚତୁର୍ବିଧାଃ ।
ସମନ୍ୱୟ ବିରୋଧୌଦ୍ୱୌ, ସାଧନଂ ଚଫଳ ତଥା ॥୧॥

ସମନ୍ୱୟେ ସ୍ୱଷ୍ଟଲିଙ୍ଗମ୍ ସ୍ୱଷ୍ଟଦ୍ୱେଃ ପ୍ୟୁପାସ୍ୟଗମ୍ ।
ଜ୍ଞେୟଗଂ ପଦମାତ୍ରଞ୍ଚ, ଚିନ୍ତ୍ୟଂ ପାଦେଷ୍ୱନୁକ୍ରମାତ୍ ॥୨॥

ଦ୍ୱିତୀୟେ ସ୍ମୃତି ତର୍କାଭ୍ୟାମବିରୋଧୋଽନ୍ୟଦୁଷ୍ଟତା ।
ଭୂତଭୋକ୍ତୃ ଶ୍ରୁତେର୍ଲିଙ୍ଗ ଶ୍ରୁତେରପ୍ୟ ବିରୁଦ୍ଧତା ॥୩॥

ତୃତୀୟେ ବିରତିସ୍ତତ୍ତ୍ୱମ୍, ପଦାର୍ଥ ପରିଶୋଧନମ୍ ।
ଗୁଣୋପସଂହୃତିର୍ଜ୍ଞାନ ରହିରଭଗାଦିସାଧନମ୍ ॥୪॥

ଚତୁର୍ଥେ ଜୀବତୋ ମୁକ୍ତିରୁତ୍କ୍ରାନ୍ତି ଗତିରୁତ୍ତରା ।
ବ୍ରହ୍ମପ୍ରାପ୍ତି ବ୍ରହ୍ମଲୋକାବିତି ପଦାର୍ଥ ସଂଗ୍ରହଃ ॥୫॥

ପ୍ରଥମ ଅଧ୍ୟାୟର ପ୍ରଥମ ପାଦରେ ସ୍ଫୁଟଲିଙ୍ଗ ବାକ୍ୟଗୁଡ଼ିକର ବିଚାର କରାଯାଇଛି । କେତେକ ଶ୍ରୁତି ବାକ୍ୟରେ ବ୍ରହ୍ମର ଅବୟବାତ୍ମକ ଆତ୍ମ ସ୍ୱରୂପକୁ ପ୍ରତ୍ୟକ୍ଷୀଭୂତ ଭାବେ ଗୃହୀତ ହୋଇଛି । ସେଗୁଡ଼ିକୁ ଯଥା ରୀତିରେ ପ୍ରମାଣ କରାଯାଇଅଛି । ଯଥା - 'ଯତୋ ଇମାନି ଭୂତାନି ଜାୟନ୍ତେ, ଯେନ ଜାତେନ ଜୀବନ୍ତି- ଇତ୍ୟାଦି ବାକ୍ୟରେ ବ୍ରହ୍ମର ଲିଙ୍ଗ (ଚିହ୍ନ ବା ସ୍ୱରୂପ) ଗୁଡ଼ିକୁ ଇନ୍ଦ୍ରିୟ ଗ୍ରାହ୍ୟ ରୂପରେ ପ୍ରତିପାଦିତ ହୋଇଛି । ଦ୍ୱିତୀୟ ପାଦରେ ଅସ୍ପଷ୍ଟ ବ୍ରହ୍ମଲିଙ୍ଗ ବାକ୍ୟଗୁଡ଼ିକ ଉପାସ୍ୟ ରୂପରେ ପ୍ରଦତ୍ତ କରାଯାଏ, ଅର୍ଥାତ୍ କେତେକ ବାକ୍ୟରେ ବହୁତ ପଦାର୍ଥକୁ ବ୍ରହ୍ମ ପ୍ରାମାଣ୍ୟପରକ ରୂପେ ପ୍ରମାଣ କରି ପରବର୍ତ୍ତୀ ଅବସ୍ଥାରେ ବ୍ରହ୍ମର ଲିଙ୍ଗପରକ କରାଯାଇଛି । ପରନ୍ତୁ ଏହି ବାକ୍ୟରେ ସମସ୍ତଙ୍କୁ ବ୍ରହ୍ମର ଅଙ୍ଗୀଭୂତ କରି ଶେଷରେ ବ୍ରହ୍ମର ତତ୍ସଂପର୍କୀୟ ପଦର୍ଥର ମୂଳଭୂତ ବୋଲି କୁହାଯାଏ । 'ମନୋ ବ୍ରହ୍ମେତ୍ୟୁପାସୀତ'

ଏହି ଛାନ୍ଦୋଗ୍ୟୋପନିଷଦ୍ ବାକ୍ୟରେ ମନୋମୟକୁ ବ୍ରହ୍ମକହ ରୂପେ ପ୍ରମାଣ କରେ । ପୁନଶ୍ଚ 'ମନୋମୟଃ ପ୍ରାଣଶରୀରୋ ଭାରୂପଃ' ବାକ୍ୟରେ ନୋମୟକୁ ପ୍ରାଣଶରୀର ବୋଲି ପ୍ରମାଣିତ କରେ । ଏହିପରି ମତଦ୍ୱୟ ସ୍ଥଳରେ ଅନ୍ୟ ଶ୍ରୁତି ବାକ୍ୟକୁ ପ୍ରମାଣ ବାକ୍ୟ ରୂପେ ଉଦାହରଣ କରି ବ୍ରହ୍ମ ପରକ ରୂପେ ସ୍ୱୀକାର କରାଗଲା । ଏହିପରି ଶତ୍ୟାଧିକ ଶ୍ରୁତି ବାକ୍ୟର ସନ୍ଦିହାନ ଅର୍ଥକୁ ସମାଧାନ କରାଯାଇଛିଅଛି । ତୃତୀୟ ପାଦରେ ଦ୍ୱିତୀୟ ପାଦର ଅସ୍ପଷ୍ଟ ବ୍ରହ୍ମଲିଙ୍ଗ ବାକ୍ୟକୁ ସମାଧାନ କରି ସେଗୁଡ଼ିକୁ ଜ୍ଞେୟ ବ୍ରହ୍ମ ବିଷୟ ରୂପେ ବିଚାର କରାଯାଇଅଛି ପ୍ରଥମେ ଅସ୍ପଷ୍ଟ ବ୍ରହ୍ମଲିଙ୍ଗ ପରକ ଶ୍ରୁତି ବାକ୍ୟକୁ ବ୍ରହ୍ମର ଲିଙ୍ଗ ବାକ୍ୟ ରୂପେ ପ୍ରମାଣ କରାଯାଇଥିବାରୁ ସେହି ବ୍ରହ୍ମରୂପ ଜ୍ଞେୟର କିପରି ଅର୍ଥ ପରକ ହୋଇଛି, ତାହାକୁ ସବିଶଦ ଭାବେ ଉଲ୍ଲେଖ କରାଯାଇଅଛି । ଚତୁର୍ଥ ପାଦରେ ସାଂଖ୍ୟ ସଂପ୍ରଦାୟ ବିଚାର ହୋଇଛି । ସାଂଖ୍ୟମାନେ ଅବ୍ୟକ୍ତ (ପ୍ରକୃତି)କୁ ଅଜା ଅର୍ଥାତ୍ 'ନ ଜାୟତେ ଇତି ଅଜା' (ଯାହା ଅନ୍ୟ କାହାଠାରୁ ଜନ୍ମଲାଭ କରିନାହିଁ) ବୋଲି ପ୍ରମାଣ କରନ୍ତି । ପୁନଶ୍ଚ ପ୍ରକୃତିର ପ୍ରସବ ଧର୍ମତ୍ୱକୁ ସ୍ୱୀକାର କରାଯାଏ । ପ୍ରକୃତିରୁ ଜନ୍ମ ନେଇଥିବା ପଦାର୍ଥ (ବୁଦ୍ଧି, ଅହଙ୍କାର ପ୍ରକୃତି)କୁ ପ୍ରଧାନ ବିଷୟ ରୂପେ ସ୍ୱୀକାର କରାଯାଏ । ଏହିସବୁ ପ୍ରଧାନ କାରଣବାଦକୁ ଶଙ୍କରାଚାର୍ଯ୍ୟ ଖଣ୍ଡନ କରି ାହାକୁ ଶ୍ରୁତି ପ୍ରମାଣ ବଳରେ ବ୍ରହ୍ମରେ ସମନ୍ୱୟ କରିଛନ୍ତି ।

ଦ୍ୱିତୀୟ ଅଧ୍ୟାୟକୁ 'ଅବିରୋଧୋଧ୍ୟାୟ' ବୋଲି କୁହାଯାଏ । ପ୍ରଧାନତଃ ନ୍ୟାୟମତକୁ ଆଲୋଚନା କରି ତାହାର ମୂଳୋତ୍ପାଟନ କରି ବ୍ରହ୍ମ ବିଷୟକ ପ୍ରମାଣ ଏଠାରେ ଆଲୋଚିତ ହୋଇଛି । ଏହାର ପ୍ରଥମ ପାଦରେ ସାଂଖ୍ୟ, ଯୋଗ, କଣାଦ ଦର୍ଶନର ମତଗୁଡ଼ିକୁ ତର୍କ ମାଧ୍ୟମରେ ଖଣ୍ଡନ କରାଯାଇଛି । ସାଂଖ୍ୟର ପରିଣାମବାଦ, ଯାହାକି ପୁରୁଷ ଓ ପ୍ରକୃତିର ତତ୍ତ୍ୱ ଉପରେ ପର୍ଯ୍ୟବେସିତ, ତାହାର ଅପ୍ରାମାଣିକତାକୁ ପ୍ରତ୍ୟକ୍ଷଭାବେ ପ୍ରମାଣ କରି ଶେଷରେ ବୈଶେଷିକର ପରମାଣୁ କାରଣବାଦକୁ ନିରାଶ କରିଛନ୍ତି । ସାଂଖ୍ୟ ମତରେ ଯେପରି ଗାଈ ତା'ର ବତ୍ସାକୁ ଦେଖିବା ମାତ୍ରେ କୌଣସି କାରଣ ନଥାଇ ଅକାରଣ ଭାବେ କ୍ଷୀର ପ୍ରସ୍ରବଣ କରେ, ସେହିପରି ପ୍ରକୃତିଠାରୁ ସମୁତ୍ପନ୍ନ ହେଉଥିବା ଅନ୍ୟ ତତ୍ତ୍ୱଗୁଡ଼ିକ କୌଣସି କାରଣ ବା ପ୍ରବୃତ୍ତି ନ ରହି ମଧ୍ୟ ସ୍ୱତଃପ୍ରବୃତ୍ତି ଭାବେ ଉତ୍ପନ୍ନ ହୁଏ । କିନ୍ତୁ କାରଣ ବିନା କାର୍ଯ୍ୟୋତ୍ପତ୍ତି ସୀକାର କଲେ ସାଂଖ୍ୟର ସତ୍କାର୍ଯ୍ୟ ବାଦ ଅସତ୍କାର୍ଯ୍ୟ ରୂପେ ପ୍ରମାଣିତତ ହେବ । ଏହିପରି ଅନ୍ୟ

ମତଗୁଡ଼ିକ ତର୍କ ଦ୍ୱାରା ଖଣ୍ଡିତ ହେବାରୁ ଏହାକୁ 'ତର୍କପାଦ' କହନ୍ତି । ତୃତୀୟ ପାଦରେ ପଞ୍ଚମହାଭୂତାତ୍ମକ ଜୀବର ବିରୋଧ ଖଣ୍ଡନ କରାଯାଏ । ପଞ୍ଚମହାଭୂତଗୁଡ଼ିକ ବ୍ରହ୍ମରୁ ଉତ୍ପନ୍ନ ପ୍ରକୃତି ବିକାରର ଅବ୍ୟତିରେକ ନ୍ୟାୟରେ ଆକାଶାଦି ପଞ୍ଚଭୂତଙ୍କୁ ବ୍ରହ୍ମର ଯୋନିର ରୂପେ ପ୍ରମାଣ ପ୍ରଭୃତି ଆଲୋଚନା ବିଶଦଭାବେ ହୋଇଛି । ତତ୍‌ସଙ୍ଗେ ସଙ୍ଗେ ଜୀବ ପରମାତ୍ମାର ଆଭାସ ମାତ୍ର ଓ କର୍ମ ଫଳରେ ପାରସ୍ପରିକ ସମ୍ପନ୍ଧ ବିଷୟ ଏହାର ଆଲୋଚ୍ୟ ବିଷୟ । ଚତୁର୍ଥ ପାଦରେ ଲିଙ୍ଗ ଶରୀର ବିଷୟକ ଶ୍ରୁତିବାକ୍ୟର ଯାହା ବିରୋଧ ପୂର୍ବରୁ ହୋଇଥିଲା, ତାହାକୁ ଖଣ୍ଡନ କରି ଲିଙ୍ଗ ଶରୀରର ପ୍ରାମାଣ୍ୟକୁ ପ୍ରଦର୍ଶନ କରାଯାଇଛି । ପ୍ରାଣର ବ୍ରହ୍ମ ବିକାରର, ବାକ୍, ପ୍ରାଣ ଓ ମନର ତେଜ ଓ ଅନ୍ନମୟ ପରି ପ୍ରାଣରେ ମୁଖ୍ୟତ୍ୱ ପ୍ରତିପାଦନ, ପ୍ରାଣର ସୂକ୍ଷ୍ମତ୍ୱ, ପରିଛିନ୍ନ ଓ ବ୍ରହ୍ମ ବିକାରତ୍ୱ ଏହି ପାଦର ମୁଖ୍ୟ ଆଲୋଚ୍ୟ ବିଷୟ ।

ତୃତୀୟ ଅଧ୍ୟାୟ ବ୍ରହ୍ମ ସାଧନ ବିଷୟର ମୁଖ୍ୟ ପ୍ରକରଣ । ଏହାର ଗତ୍ୟାଗତିଚିନ୍ତା ଓ ବୈରାଗ୍ୟ ନିରୂପଣ ହିଁ ପ୍ରଧାନ ବଇଷୟ । ଏହାର ପ୍ରଥମ ପାଦରେ ପୂର୍ବ ଶରୀରରେ ଆତ୍ମା ଅବସ୍ଥାନ କରିବା ସମୟରେ ପୂର୍ବାର୍ଜିତ କର୍ମଫଳ ଗୁଡ଼ିକ ସଂସ୍କାର ରୂପେ ରହିଯାଇଥାଏ । ପରବର୍ତ୍ତୀ ଅବସ୍ଥାରେ ଆତ୍ମାର ଘଟାନ୍ତର ପରେ ପରେ ଶରୀରରେ ତାହ ପ୍ରଭାବ ପଡ଼େ । ତେଣୁ ଏହାକୁ କୁହାଯାଏ ଗତ୍ୟାଗତିଚିନ୍ତା । ଏହାଦ୍ୱାରା ମନୁଷ୍ୟ କିପରି ନରକସ୍ୱର୍ଗ୍ୟାଦି ପାଏ, ତାହା ସମ୍ୟକଭାବେ ବର୍ଣ୍ଣନା କରାଯାଇଛି । ଦ୍ୱିତୀୟ ପାଦରେ ତତ୍ ଓ ତ୍ୱଂପଦାର୍ଥର ପରିଶୋଧନ ବିଷୟରେ ପ୍ରଧାନତଃ ବିଚାର କରାଯାଇଅଛି । ସ୍ୱପ୍ନ ଦର୍ଶନର ମାୟାଗୁଣ ବିଷୟରେ ବର୍ଣ୍ଣନା କରି ଦେହେନ୍ଦ୍ରିୟ ଯୋଗରୁ ଜୀବର ଜ୍ଞାନୈଶ୍ୱର୍ଯ୍ୟ ତିରୋଭାବ କୁହାଯାଇଛି । ତାପରେ ତତ୍ ଓ ତ୍ୱଂପଦର ଆଲୋଚନା କରି ପୂର୍ବପକ୍ଷର ଏକାଦଶ ସୂତ୍ରଠାରୁ ଅଣତିରିଶ ସୂତ୍ର ପର୍ଯ୍ୟନ୍ତ ଆଲୋଚନା କରାଯାଇଥିବା ତତ୍ତ୍ୱରୁ ଖଣ୍ଡନ କରାଯାଇଅଛି । ତୀୟ ପାଦ ହେଉଛି ପରାପର ବ୍ରହ୍ମବିଦ୍ୟାର ଗୁଣ ଓ ଉପସଂହାର ବିଷୟକ । ନାମ ରୂପ ଭେଦରେ ତାହାର ଏକ ବିଧ୍ୟାକୁ ସ୍ୱୀକାର କରାଯାଏ । ପ୍ରାରବ୍ଧବିପାକ ରୂପକର୍ମର କ୍ଷୟଦ୍ୱାରା ମୋକ୍ଷପ୍ରାପ୍ତି ହୁଏ ବୋଲି ବୈଦାନ୍ତିକମାନଙ୍କର ମତ । ଚତୁର୍ଥପାଦରେ ନିର୍ଗୁଣ ବଦ୍ୟାର ଅନ୍ତରଙ୍ଗ ଓ ବହିରଙ୍ଗର ବିଚାର ହୋଇଛି । ବେଦ ଓ ଉପନିଷଦାନୁସାରେ ଆତ୍ମଜ୍ଞାନର କ୍ରିୟାନୁପ୍ରବେଶ ବ୍ୟତିରେକେ ପୁରୁଷାର୍ଥହେତୁତ୍ୱ ଉତ୍ପନ୍ନ ହୁଏ । ଏହା ପାଇଁ ଯଜ୍ଞାଦି

ବହିରଙ୍ଗ ଶମଦମାଦି ଅନ୍ତରଙ୍ଗ ଆଶ୍ରମ କର୍ମଦ୍ୱାରା ବିଦ୍ୟା ଉତ୍ପତ୍ତି ହୁଏ । ଆଶ୍ରମ କର୍ମ ଅନୁଷ୍ଠାନ କଲେ ମୁମୁକ୍ଷୁମାନେ ନିଜର ଗନ୍ତବ୍ୟ ସ୍ଥଳକୁ ପ୍ରାପ୍ତ ହୁଅନ୍ତି ।

ସାଧନ ବିଷୟ ଆଲୋଚନା ପରିସମାପ୍ତି ପରେ ଚତୁର୍ଥ ଅଧ୍ୟାୟରେ ଫଳଶ୍ରୁତି ବିଷୟରେ କୁହାଯାଇଅଛି । ଏହାର ପ୍ରଥମ ପାଦରେ ଜୀବନ୍ମୁକ୍ତ ନିରୂପଣ କରାଯାଏ । ନିର୍ବିଶେଷ ବ୍ରହ୍ମରେ ପ୍ରସାର ସମୁତ୍ପନ୍ନ ହେବା ବିଷୟରେ ଅନାବୃତ୍ତି ହୋଇଛି । ଉଦ୍‌ଗୀଥାଦିରେ ଆଦିତ୍ୟାଦିମତକୁ ଉପସ୍ଥାପନା କରି ଆସୀନାଧିକରଣରେ ଉପାସନା ଦ୍ୱାରା ଆସୀନ ନିୟମ ବ୍ୟାଖ୍ୟାନ କରାଯାଇଛି । ଅନାରବ୍ଧ କାର୍ଯ୍ୟର ସୁକୃତ ଓ ଦୁଷ୍କୃତ ବିଦ୍ୟାର ସାମର୍ଥ୍ୟରୁ କ୍ଷୟ, ଅଗ୍ନିହୋତ୍ରାଦିର ନିତ୍ୟତା ଓ ଆରବ୍ଧ କର୍ମକ୍ଷୟ ହେଲେ ସାଧକର କୈବଲ୍ୟ ପ୍ରାପ୍ତ ବିଷୟରେ ନିଗଦିତ ହୋଇଛି । ଦ୍ୱିତୀୟ ପାଦରେ ଉତ୍କ୍ରାନ୍ତି ଗତିର ନିରୂପଣ କରାଯାଇଅଛି । ବାଗାଦି ପଞ୍ଚେନ୍ଦ୍ରିୟର ଉପଶମ, ମନର ପ୍ରାଣର ଲୟ, ପ୍ରାଣର ବିଜ୍ଞାନାତ୍ମାରେ ବୃତ୍ତିଲୟ ପ୍ରଭୃତି ଆଲୋଚ୍ୟ ବିଷୟ ଅଟେ । ଇନ୍ଦ୍ରିୟ ଗୁଡ଼ିକ ପରଂବ୍ରହ୍ମାରେ ପ୍ରଳୟ ହୁଏ । ତୃତୀୟ ପାଦରେ ସଗୁଣ ବିଧ୍ୟାବାନ୍‌ର ମୃତ୍ୟୁ ପରେ ଉତ୍ତର ମାର୍ଗକୁ ପ୍ରାନ୍ତ ହେବା ବଇଷୟ ହେଉଛି ମୁକ୍ୟ ବିଷୟ । ଅର୍ଚ୍ଚିରାଦିମାର୍ଗଦ୍ୱାରା ସଗୁଣ ଓ ଅପରଂବ୍ରହ୍ମ ଗତିକୁ 'କାର୍ଯ୍ୟ' କୁହାଯାଏ । କିନ୍ତୁ ବରଂବ୍ରହ୍ମଗତି କରିବା ବିଷୟରେ ଜୈମିନିଙ୍କର ମତ । ଏହାକୁ ତିନୋଟି ସୂତ୍ରରେ ଖଣ୍ଡନ କରାଯାଇଅଛି । ଚତୁର୍ଥ ପାଦରେ ବ୍ରହ୍ମ ପ୍ରାପ୍ତି ଏବଂ ବ୍ରହ୍ମଲୋକର ସ୍ଥିତି ନିରୂପଣ ବିଷୟରେ କୁହାଯାଇଅଛି । ବ୍ରହ୍ମରେ ସଂପୂର୍ଣ୍ଣତଃ ଅଭିନ୍ନଭାବେ ସଙ୍ଗମରୁ ମୁକ୍ତି କୁହାଯାଏ । ବ୍ୟବହାରିକ ମତରେ ଲୋକସିଦ୍ଧ ଓ ଅତ୍ୟନ୍ତ ଭାବେ ଅନବସ୍ଥିତିକୁ ମଧ୍ୟ 'ମୁକ୍ତି' ବୋଲି ବାଦରାୟଣଙ୍କ ମତ ।

ଏହି ପୁସ୍ତକର ପ୍ରକାଶନ ପାଇଁ ମୋର ଉତ୍ସାହ କିଛି ନୁହେଁ । ଏକ କେବଳ ପ୍ରଚୋଦନା ମାତ୍ର । ଏହି ବ୍ରହ୍ମ ସୂତ୍ରର ଭାଷ୍ୟକୁ ଅନୁବାଦ କରିବା ପାଇଁ ବଦ୍ଧ ପରିକର ହେଲେ ମଧ୍ୟ ଆର୍ଥିକ ସଙ୍କଟ ସଂପାଦନ ପାଇଁ ଏକ ବୃହତ୍ ସମସ୍ୟା । ପ୍ରଥମେ ଶ୍ରୀ ସଦାଶିବ କେନ୍ଦ୍ରିୟ ସଂସ୍କୃତ ବିଦ୍ୟାପୀଠ, ପୁରୀର ନ୍ୟାୟ ପ୍ରାଧ୍ୟାପକ ମଦୀୟ ଆଚାର୍ଯ୍ୟ ପଣ୍ଡିତ ରାଧାରମଣ ଦାସ ମହାରାଜଙ୍କର ଉତ୍ସାହ ଓ ପ୍ରେରଣା ସର୍ବଦା ମୋର ମନୋବଳ ଦୃଢ଼ କରିଥିବାରୁ ତାଙ୍କୁ ପାଖରେ ବର୍ସବାରନ୍ତଃକରଣରେ ପ୍ରଣିପାତ କରୁଛି । ଏହି ଗ୍ରନ୍ଥ ପ୍ରଣୟନ ନିମିତ୍ତ ପଣ୍ଡିତ ନୀଳମଣି ମିଶ୍ର ରାଜ୍ୟ ସଂଗ୍ରହାଳୟର ଭୂତପୂର୍ବ କ୍ୟୁରେଟର

ଏବଂ ଅଧ୍ୟାପକ ଭଗବାନ ପ୍ରକାଶ ଏହି ଦୁଇଜଣ ବ୍ୟକ୍ତି ପ୍ରଥମେ ମତାମତ ଦେଇଥିଲେ । କିନ୍ତୁ କେତେକ ଅନିବାର୍ଯ୍ୟ ପରିସ୍ଥିତି ଯୋଗୁଁ ପ୍ରକାଶନ କାର୍ଯ୍ୟ ବିଳମ୍ବ ହୋଇଅଛି । ଯାହା ହେଉ ଉକ୍ତ ଦୁଇଜଣ ମହାନ୍ ବ୍ୟକ୍ତିଙ୍କର ନିକଟରେ ମୁଁ ଚିରକୃତଜ୍ଞ । ମୋର ମୁଦ୍ରଣ ବିଷୟରେ ଧାରଣା ଖୁବ୍ କମ୍ । ତେଣୁ ପ୍ରତ୍ୟେକ ବିଷୟରେ ଧର୍ମଗ୍ରନ୍ତ ଷ୍ଟୋରର ଅଧିକାରୀ, ଉଦାରଚେତା ଶ୍ରୀଯୁକ୍ତ ବିଦ୍ୟାଧର ସାହୁଙ୍କ ସାହାଯ୍ୟ, ପରାମର୍ଶ ତଥା ଦିଗ୍‌ଦର୍ଶନ ମୋର କାର୍ଯ୍ୟକୁ ବଳିଷ୍ଠ କରିଥିବାରୁ ସେହି ମହାଶୟ ମୋର ଧର୍ନବାଦାହ । ଶେଷରେ ଜେ.କେ. ପ୍ରିଣ୍ଟର୍ସର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ସରୋଜ କୁମାର ପଣ୍ଡା ସ୍ୱଳ୍ପ ସମୟ ମଧ୍ୟରେ ମୁଦ୍ରଣ କାର୍ଯ୍ୟକୁ ସମାପ୍ତ କରିଥିବାରୁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ଏହି ପୁସ୍ତକଟି ଆଉ କିଛି ଅଧିକ ବିବରଣୀ, ବ୍ୟାଖ୍ୟା ଇତ୍ୟାଦି ଆବଶ୍ୟକ କରେ, କିନ୍ତୁ ପୁସ୍ତକର କଳେବର ବୃଦ୍ଧି ଭୟରୁ ଅଧିକ କିଛି ଉଲ୍ଲେଖ କରାଯାଇନାହିଁ । ପାଠକମାନଙ୍କୁ ବିଶେଷ ଅନୁରୋଧ ଯେ ଅଳ୍ପ ସମୟ ମଧ୍ୟରେ ଗ୍ରନ୍ଥର ମୁଦ୍ରଣ କାର୍ଯ୍ୟ ସମାପ୍ତ ହୋଇଥିବାରୁ ଏହାର ମୁଦ୍ରଣଗତ ଆଂଶିକ ଭ୍ରମ ନିଶ୍ଚିତ ଭାବେ ରହିପାରେ । ସେଗୁଡ଼ିକୁ ପାଠକମାନେ ଦୟାକରି ଅବଗତ ରାଇଲେ ପରବର୍ତ୍ତୀ ସମୟରେ ତାହା ଯଥାସାଧ୍ୟ ସଂଶୋଧନରେ ସାହାଯ୍ୟ କରିବ ।

ରାମ୍‌ନବମୀ
୧୪-୪-୮୯

ଅଳମତି ବିସ୍ତରେଣ
**ପଣ୍ଡିତ ମାର୍କଣ୍ଡ ଦାସ**

# ବ୍ରହ୍ମ ସୂତ୍ର

## (ଶାଙ୍କରଭାଷ୍ୟ ସହିତ)



## समन्वयाध्याय: प्रथम: ॥

## ସମନ୍ୱୟାଧ୍ୟାୟଃ ପ୍ରଥମଃ

## उपोद्घात:

### ଉପୋଦ୍‌ଘାତ

**(୧) ମୂଳ** - (କ) ଯୁଷ୍ମଦସ୍ମତ୍‌ପ୍ରତ୍ୟୟଗୋଚରୟୋର୍ବିଷୟବିଷୟ ଣୋସ୍ତମଃ- ପ୍ରକାଶବିଦ୍ ବିରୁଦ୍ଧସ୍ୱଭାବୟୋରିତରେତରଭାବାନୁପପତ୍ତୌ ସିଦ୍ଧାୟାଂ ତଦ୍‌ଧର୍ମାଣାମପି ସୁତରାମିତରେତରଭାବାନୁପପତ୍ତିଃ ଇତ୍ୟତୋଽସ୍ମତ୍‌ପ୍ରତ୍ୟୟଗୋଚରେ ବିଷୟିଣି ଚିଦାତ୍ମକେ ଯୁଷ୍ମତ୍‌ପ୍ରତ୍ୟୟଗୋଚରସ୍ୟ ବିଷୟସ୍ୟ ତଦ୍‌ଧର୍ମାଣାଂ ଚାଧ୍ୟାସଃ । (ଖ) ତଦ୍‌ବିପର୍ଯ୍ୟୟେଣ ବିଷୟିଣସ୍ତଦ୍‌ଧର୍ମାଣାଞ୍ଚ ବିଷୟେଽଧ୍ୟାସୋ ମିଥ୍ୟେତି ଭବିତୁଂ ଯୁକ୍ତମ୍ । ତଥାପ୍ୟନ୍ୟୋନ୍ୟସ୍ମିନ୍ନ- ନ୍ୟୋନ୍ୟାତ୍ମକତାମନ୍ୟୋନ୍ୟଧର୍ମାଂଶ୍ଚାଧ୍ୟସ୍ୟେତରେ-ତରାବିବେକେନାତ୍ୟନ୍ତବିବିକ୍ତ- ୟୋର୍ଧର୍ମଧର୍ମିଣୋର୍ମିଥ୍ୟାଜ୍ଞାନନିମିତ୍ତଃ ସତ୍ୟାନୃତେ ମିଥୁନୀକୃତ୍ୟ 'ଅହମିଦଂ', 'ମମେଦ' ମିତି ନୈସର୍ଗିକୋ ଲୋକବ୍ୟବହାରଃ ।

**(୧) ଭାଷାନ୍ତର** - (କ) ଅନ୍ଧକାର ଓ ଆଲୋକର ବିରୁଦ୍ଧ ଓ ସମାନଭାବ ସମୁତ୍ପନ୍ନ ହେବାଭଳି ତୁମ୍ଭେ ଓ ମୁଁ - ଏହି ଦୁଇଜଣଙ୍କର ଜଣାପଡୁଥିବା ବିଷୟ ଓ ବିଷୟୀର ଇତରେତରଭାବ ବା ତାଦାତ୍ମ୍ୟ ପ୍ରତୀତି ଅର୍ଥାତ୍ ସମାନ ଭଳି ଜଣାପଡୁଥିବା ଜ୍ଞାନ ସିଦ୍ଧ ହୁଅନ୍ତେ ସେହି ସେହି ପଦାର୍ଥ ନିଷ୍ଠ ଧର୍ମମାନଙ୍କର ସ୍ୱଭାବତଃ ତାଦାତ୍ମ୍ୟ ପ୍ରତୀତି ହୁଏ; ସେହିଭଳି ଅସ୍ମଦୀୟ ଜ୍ଞାନସ୍ୱରୂପ ହୋଇଥିବା ଚୈତନ୍ୟ ସ୍ୱରୂପ ବିଷୟୀରେ ଯୁଷ୍ମଦୀୟଜ୍ଞାନର ବିଷୟ ସଂପର୍କୀୟ ବିଷୟ ଓ ଏହାର ଧର୍ମ ଆରୋପକୁ ହିଁ ଅଧ୍ୟାସ କୁହାଯାଏ ।

(ଖ) କିନ୍ତୁ ସେହି ଅଧ୍ୟାସର ବିନାଶ ଦ୍ୱାରା ବିଷୟ ଓ ବିଷୟୀ ଦ୍ୱାରା ଜାତ ହେଉଥିବା ଆରୋପ ହିଁ ମିଥ୍ୟା ବୋଲି କହିବା ଠିକ୍ । (ଅତଏବ ସାଂସାରିକ କ୍ଷେତ୍ରରେ 'ମୁଁ', 'ସେ', ଇତ୍ୟାଦି ଶବ୍ଦଗୁଡ଼ିକର ନିରର୍ଥକତାକୁ ନିଷେଧ କରିବା ପାଇଁ କୁହାଯାଇଛି-) ଅତ୍ୟନ୍ତ ଭିନ୍ନ ହୋଇଥିବା ଧର୍ମ ଓ ଧର୍ମୀଗୁଡ଼ିକର ପୃଥଗଜ୍ଞାନ ନ ହେବାର କାରଣ-ପ୍ରଥମବସ୍ତୁର ଦ୍ୱିତୀୟ ବସ୍ତୁ ଉପରେ ପରସ୍ପର ସ୍ୱରୂପ ତଥା ଗୋଟିକର ଅନ୍ୟ ଧର୍ମ ଉପରେ ଆରୋପ କରି ସତ୍ୟ ଓ ମିଥ୍ୟାର ମିଶ୍ରଣ କରାଇ 'ମମେଦଂ', 'ଅହମିଦଂ' (ମୋର ଏହା, ମୁଁ ଏହି) ଇତ୍ୟାଦି ପରମାର୍ଥିକ ଜ୍ଞାନର ମଧ୍ୟ ସଂସାରରେ ବ୍ୟବହାର ହେବାର ଦେଖାଯାଏ ।

(୨) ମୂଳ - (କ) ଆହ - କୋଽୟମଧ୍ୟାସୋ ନାମେତି । ଉଚ୍ୟତେ - ସ୍ମୃତି - ରୂପ ପରତ୍ର ପୂର୍ବଦୃଷ୍ଟାବଭାସଃ । (ଖ) ତଂ କେଚିତ୍-ଅନ୍ୟତ୍ରାନ୍ୟଧର୍ମାଧ୍ୟାସ ଇତି ବଦନ୍ତି । (ଗ) କେଚିତ୍ତୁଯତ୍ର ଯଦଧ୍ୟାସସ୍ତଦ୍ ବିବେକାଗ୍ରହନିବନ୍ଧନୋ ଭ୍ରମ ଇତି । (ଘ) ଅନ୍ୟେ ତୁ ଯତ୍ର ଯଦଧ୍ୟାସସ୍ତସ୍ୟୈବ ବିପରୀତଧର୍ମତ୍ୱକଳ୍ପନାମାଚ-କ୍ଷତେ ଇତି । ସର୍ବଥାପି ତ୍ୱନ୍ୟସ୍ୟାନ୍ୟଧର୍ମାଂବଭାସତାଂ ନ ବ୍ୟଭିଚରତି । ତଥା-ଚ ଲୋକେଽନୁଭବଃ-ଶୁକ୍ତିକା ହି ରଜତବଦବଭାସତେ, ଏକଶ୍ଚନ୍ଦ୍ରଃ ସ-ଦ୍ୱିତୀୟବଦିତି ।

**(୨) ଭାଷାର- (କ) ଅତଏବ କୁହାଯାଇଛି** - ଏହି ଅଧ୍ୟାସର ଅର୍ଥ କଣ ? ଏହାର ସମାଧାନ ପୂର୍ବକୁ କୁହାଯାଇଛି - ପୂର୍ବରୁ ଦେଖାଯାଇଥିବା ସ୍ମୃତି ରୂପ ଜ୍ଞାନର ଅନ୍ୟ ସ୍ଥାନରେ ପ୍ରତୀତି ।

(ଖ) ତାହାକୁ ମଧ୍ୟ କେତେକ (ବିଜ୍ଞାନବାଦୀ ଓ ଶୂନ୍ୟବାଦୀମାନେ) ଅନ୍ୟ ବସ୍ତୁରେ ଅନ୍ୟ ଧର୍ମଗୁଡ଼ିକର ଆରୋପକୁ ଅଧ୍ୟାସ ବୋଲି କହନ୍ତି ।

(ଗ) କେତେକ (ମୀମାଂସକ ପ୍ରଭାକର ସଂପ୍ରଦାୟମାନେ) ମତରେ-ଯାହାଠାରେ ଯାହାର ଅଧ୍ୟାସ, ତାହାର ଭେଦାଗ୍ରହନିମିତ୍ତଭ୍ରମମାତ୍ର ।

(ଘ) ପୁନଶ୍ଚ କେତେକ (ନୈୟାୟିକ) କହନ୍ତି-ଯେଉଁ ସ୍ଥାନରେ ଯାହାର ଅଧ୍ୟାସ ହୁଏ, ତାହାର ବିପରୀତ ଧର୍ମ କଳ୍ପନା କରାଯାଏ । ଅତଏବ ସଦାବେଳେ କୌଣସି ପଦାର୍ଥ ଉପରେ ଅନ୍ୟ ବସ୍ତୁନିଷ୍ଠ ଗୁଣଗୁଡ଼ିକର ଆରୋପ ହେଲେ ଏହା ବ୍ୟଭିଚାର ହୁଏ ନାହିଁ । ସଂସାରରେ ଗୋଟିଏ ଚନ୍ଦ୍ରର ପ୍ରତିବିମ୍ବ ଦ୍ୱାରା ଦୁଇଟି ରୂପରେ ଦେଖାଯିବା ଭଳି ଶୁକ୍ତିକା ହି ରଜତ ଭଳି ଦେଖାଯାଏ । ଏହା ସାର୍ବଜନୀନ ଅନୁଭବ ମାତ୍ର ।

(୩) ମୂଳ - (କ) କଥଂ ପୁନଃ ପ୍ରତ୍ୟଗାତ୍ମନ୍ୟବିଷୟେଽଧ୍ୟାସୋ ବିଷୟତ-ଦ୍ଧର୍ମାଣାମ୍ ? ସର୍ବୋ ହି ପୁରୋଽବସ୍ଥିତେ ବିଷୟେ ବିଷୟାନ୍ତରମଧ୍ୟ-ସ୍ୟତି,

ଯୁଷ୍ମତ୍‌ପ୍ରତ୍ୟୟାପେତସ୍ୟ ଚ ପ୍ରତ୍ୟାଗାତ୍ମନୋଽବିଷୟତ୍ୱଂ ବ୍ରବୀଷି ? (ଖ) ଉଚ୍ୟତେ- ନ ତାବଦୟମେକାନ୍ତେନାବିଷୟଃ ଅସ୍ମତ୍‌ପ୍ରତ୍ୟୟବିଷୟତ୍ୱାତ୍ ଅପରୋକ୍ଷତ୍ୱାଚ୍ଚ ପ୍ରତ୍ୟାଗାତ୍ମପ୍ରସିଦ୍ଧେଃ (ଗ) ନ ଚାୟମସ୍ତି ନିୟମଃ-ପୁରୋଽବସ୍ଥିତ ଏବ ବିଷୟେ ବିଷୟାନ୍ତରମଧ୍ୟବସିତମିତି, ଅପରୋକ୍ଷେଽପି ହ୍ୟାକାଶେ ବାଲାସ୍ତଲମଳିନ-ତାଦ୍ୟଧ୍ୟସ୍ୟନ୍ତି । ଏବମବିରୁଦ୍ଧଃ ପ୍ରତ୍ୟଗାତ୍ମନ୍ୟପ୍ୟନାତ୍ମାଧ୍ୟାସଃ । (ଘ) ତମେତମେବଂଲକ୍ଷଣମଧ୍ୟାସଂ ପଣ୍ଡିତା ଅବିଦ୍ୟେତି ମନ୍ୟନ୍ତେ, ତଦ୍-ବିବେକେନ ଚ ବସ୍ତୁସ୍ୱରୂପାବଧାରଣଂ ବିଦ୍ୟାମାହୁଃ ।

(୩) ଭାଷାନ୍ତର- (କ) ବିଷୟଶୂନ୍ୟ (ରୂପ-ରସ-ଗନ୍ଧ-ସ୍ପର୍ଶ-ଶବ୍ଦ ରହିତ) ପ୍ରତ୍ୟଗାତ୍ମା (ଚିଦାତ୍ମା)ରେ ବିଷୟ ଓ ତାହାର ଧର୍ମଗୁଡ଼ିକର ଅଧ୍ୟାସ କିପରି ହୁଏ ? ସମସ୍ତେ ଇନ୍ଦ୍ରିୟଯୁକ୍ତ ବିଷୟରେ ଅନ୍ୟ ଇନ୍ଦ୍ରିୟ ସଂଯୁକ୍ତ ବିଷୟର ଅଧ୍ୟାସ କରନ୍ତି, ତେଣୁ ଯୁଷ୍ମତ୍‌ଜ୍ଞାନ ବିରହିତ ଚିଦାତ୍ମାର ସଂପୂର୍ଣ୍ଣତଃ ବିଷୟରହିତ ଗୁଣ ଅଛି କି ?

(ଖ) ଅତଏବ କୁହାଯାଇଛି - ହଁ ଏହା ଅସ୍ମଦ୍‌ଜ୍ଞାନର ବିଷୟ ଅପରୋକ୍ଷ ଓ ଚିଦାତ୍ମା ରୂପରେ ପ୍ରସିଦ୍ଧ ହେତୁ ଏହା ସଂପୂର୍ଣ୍ଣତଃ ବିଷୟ ନୁହେଁ ।

(ଗ) ଇନ୍ଦ୍ରିୟ ସଂଯୁକ୍ତ ବିଷୟରେ ବିଷ ବ୍ୟତିରିକ୍ତ ଅନ୍ୟ କାହାର ଅଧ୍ୟାସ ନ ହେବାର କୌଣସି ମଧ୍ୟ ନିୟମ ନାହିଁ, କାରଣ-ଅପ୍ରତ୍ୟକ୍ଷ ଆକାଶରେ ଲୋକମାନେ ଆକାଶର ତଳ ଓ ମଳୀନତା ଇତ୍ୟାଦି ଗୁଣକୁ ଆକାଶର ଗୁଣ ଭାବରେ ଆରୋପ କରିଥାଆନ୍ତି । ସେହିଭଳି ମଧ୍ୟ ଚିଦାତ୍ମାରେ ବିଷୟର ଅଧ୍ୟାସ ଓ ଏହା ଅର୍ଥାତ୍ ଚିଦାତ୍ମାରେ ଅନାତ୍ମାର ଅଧ୍ୟାସ- ଏହି ଦୁଇ ପ୍ରକାର ଅଧ୍ୟାସକୁ ପଣ୍ଡିତମାନେ ଅଧ୍ୟାସ ବୋଲି କହନ୍ତି । କିନ୍ତୁ ବିବେକ ଦ୍ୱାରା କୌଣସି ପଦାର୍ଥର ସ୍ୱନିରୂପଣ କରିବା ହିଁ ବିଦ୍ୟା ଅଟେ ।

(୪) ମୂଳ - (କ) ତତ୍ରୈବଂ ସତି ଯତ୍ର ଯଦଧ୍ୟାସଃ, ତତ୍‌କୃତେନ ଦୋଷେଣ ଗୁଣେନ ବାଽଣୁମାତ୍ରେଣାପି ସ ନ ସମ୍ବଧ୍ୟତେ, ତମେତମବିଦ୍ୟାଖ୍ୟମାତ୍ମାନା-ତ୍ମାନୋରିତରେତରାଧ୍ୟାସଂ ପୁରସ୍କୃତ୍ୟଃ ସର୍ବେ ପ୍ରମାଣପ୍ରମେୟବ୍ୟବହାରାଃ ଲୌକିକାଃ ବୈଦୀକାଶ୍ଚ ପ୍ରବୃତ୍ତାଃ ସର୍ବାଣି ଚ ଶାସ୍ତ୍ରାଣି ବିଧିପ୍ରତିଷେଧ ମୋକ୍ଷପରାଣି । (ଖ) କଥଂ ପୁନରବିଦ୍ୟାବଦ୍‌ବିଷୟାଣି, ପ୍ରତ୍ୟକ୍ଷାଦୀନି ପ୍ରମାଣାନି ଶାସ୍ତ୍ରାଣି ଚେତି ? (ଗ) ଉଚ୍ୟତେ-ଦେହେନ୍ଦ୍ରିୟାଦିଷ୍ୱହଂ ମମାଭିମାନରହିତସ୍ୟ ପ୍ରମାତୃତ୍ୱାନୁପପତ୍ତୌ ପ୍ରମାଣପ୍ରବୃତ୍ତ୍ୟନୁପପତ୍ତେଃ । ନହୀନ୍ଦ୍ରିୟାଣ୍ୟନୁପାଦାୟ ପ୍ରତ୍ୟକ୍ଷାଦିବ୍ୟବହାରଃ ସମ୍ଭବତି । ନଚାଧିଷ୍ଠାନମନ୍ତରେଣେନ୍ଦ୍ରିୟାଣାଂ ବ୍ୟବହାରଃ ସମ୍ଭବତି । ନ ଚାନଧ୍ୟସ୍ତାତ୍ମଭାବେନ ଦେହେନ କଶ୍ଚିଦ୍ ବ୍ୟାପ୍ରିୟତେ । ନ ଚ



ପ୍ରମାତୃତ୍ୱମନ୍ତରେଣ ପ୍ରମାଣପ୍ରବୃତ୍ତିରସ୍ତି । ତସ୍ମାଦବିଦ୍ୟାବଦ୍ ବିଷୟାଣ୍ୟେବ ପ୍ରତ୍ୟକ୍ଷାଦୀନି ପ୍ରମାଣାନି ଶାସ୍ତ୍ରାଣି ।

(୪) ଭାଷାନ୍ତର- (କ) ଯେଉଁଠାରେ ଯାହାର ଅଧ୍ୟାସ ହୁଏ, ତତ୍‌କୃତ ଦୋଷ ଦ୍ୱାରା ଅଥବା ଗୁଣ ଦ୍ୱାରା ଅଥବା ଅଣୁମାତ୍ରାରେ ମଧ୍ୟ ଏହା ସହିତ ସମ୍ବନ୍ଧ ନଥାଏ । ଅତଏବ ଏହି ପ୍ରକାର ଅବିଦ୍ୟାକୁ ଏବଂ ଆତ୍ମା ଓ ଅନାତ୍ମାର ପରସ୍ପର ଅଧ୍ୟାସକୁ ସମ୍ମୁଖରେ ରଖି ସମସ୍ତ ଲୌକିକ ଓ ବୈଦିକର ପ୍ରମାଣ, ପ୍ରମେୟ ପ୍ରଭୃତି ବ୍ୟବହୃତ ହୁଅନ୍ତି ।

(ଖ) ଶଙ୍କା - ତା'ହେଲେ ଅବିଦ୍ୟାପୂର୍ଣ୍ଣ ବିଷୟ, ପ୍ରତ୍ୟକ୍ଷ, ଅନୁମାନ ପ୍ରଭୃତି ପ୍ରମାଣଗୁଡ଼ିକ ଓ ଶାସ୍ତ୍ରଗୁଡ଼ିକ କେଉଁ ସ୍ଥାନରେ ପ୍ରୟୋଗ କରିବା ଉଚିତ୍ ?

(ଗ) ସମାଧାନ - ଦେହ ଇନ୍ଦ୍ରିୟଗୁଡ଼ିକରେ ରହିଥିବା 'ମୁଁ ଓ ମୋର' ଇତ୍ୟାଦି ଅଭିମାନ ଗୁଣ ରହିତ ଆତ୍ମାର ପ୍ରମାତୃତ୍ୱଗୁଣ ଉତ୍ପନ୍ନ ନ ହେଲେ କୌଣସି ପଦାର୍ଥର ପ୍ରମାଣ ପାଇଁ ଆବଶ୍ୟକୀୟ ପ୍ରବୃତ୍ତି ଉତ୍ପତ୍ତି ହୁଏ ନାହିଁ । କାରଣ-କୌଣସି ପଦାର୍ଥର ପ୍ରମାଣ ପାଇଁ ଇନ୍ଦ୍ରିୟ ବ୍ୟତିରକ୍ତି ଅନ୍ୟ କୌଣସି ପଦାର୍ଥ ଦ୍ୱାରା ପ୍ରତ୍ୟକ୍ଷାଦି ପ୍ରମାଣ ହେବା ଅସମ୍ଭବ । ପୁନଶ୍ଚ, ଅଧିଷ୍ଠାନ (ଶରୀର) ବିନା ଇନ୍ଦ୍ରିୟମାନଙ୍କର କାର୍ଯ୍ୟ ସମ୍ଭବ ନୁହେଁ । ଆଉ ପୁଣି ଆତ୍ମା ରହିତ ଦେହ ଦ୍ୱାରା କୌଣସି କାର୍ଯ୍ୟ ସମ୍ଭବ ନୁହେଁ । ଅତଃ ସ୍ପଷ୍ଟ ଭାବରେ ପ୍ରମାଣିତ ଯେ- ଇନ୍ଦ୍ରିୟ, ଶରୀର, ଆତ୍ମା ଇତ୍ୟାଦି ଉପାଦାନ ନଥିଲେ ଅସଙ୍ଗ ଆତ୍ମାର ପ୍ରମାତୃତ୍ୱ ଉତ୍ପନ୍ନ ହେବା ଅସମ୍ଭବ ଏବଂ ପ୍ରମାତୃତ୍ୱ ବିନା ପ୍ରମାଣ ନିମିତ୍ତ ପ୍ରବୃତ୍ତି ନ ଥାଏ । ସେହିହେତୁ ବିଷୟ, ପ୍ରତ୍ୟକ୍ଷାଦି ପ୍ରମାଣ ଓ ଶାସ୍ତ୍ରଗୁଡ଼ିକ ଅବିଦ୍ୟାକୁ ଆଶ୍ରୟ କରନ୍ତି ।

(୫) ମୂଳ- (କ) ପଶ୍ୱାଦିଭିଶ୍ଚାଭିବିଶେଷାତ୍ । ଯଥା ହି ପଶ୍ୱାଦୟଃ ଶବ୍ଦାଦିଭିଃ ଶ୍ରୋତ୍ରାଦୀନାଂ ସମ୍ବନ୍ଧେ ସତି ଶବ୍ଦାଦିବିଜ୍ଞାନେ ପ୍ରତିକୂଳେ ଜାତେ ତତୋ ନିବର୍ତ୍ତନ୍ତେ । ଅନୁକୂଳେ ଚ ପ୍ରବର୍ତ୍ତନ୍ତେ । ଯଥା ଦଣ୍ଡୋଦ୍ୟତକରଂ ପୁରୁଷମଭିମୁଖମୁପଲଭ୍ୟ ମାଂ ହନ୍ତୁମୟମିଚ୍ଛତୀତି ପଳାୟିତୁମାରମ୍ଭନ୍ତେ, ହରିତତୃଣ ପୂର୍ଣ୍ଣପାଣିମୁପଲଭ୍ୟ ତଂ ପ୍ରତ୍ୟଭିମୁଖୀଭବନ୍ତି । (ଖ) ଏବଂ ପୁରୁଷା ଅପି ବ୍ୟୁତ୍ପନ୍ନଚିତ୍ତାଃ କ୍ରୂରଦୃଷ୍ଟୀନାକ୍ରୋଶତଃ ଖଡ୍‌ଗୋଦ୍ୟାତକରାନ୍ ବଳବତ ଉପଲଭ୍ୟ ତତୋ ନିବର୍ତ୍ତନ୍ତେ, ତଦ୍‌ବିପରୀତାନ୍ ପ୍ରତି ପ୍ରବର୍ତ୍ତନ୍ତେ, ଅତଃ ସମାନଃ ପଶ୍ୱାଦିଭିଃ ପୁରୁଷାଣାଂ ପ୍ରମାଣପ୍ରମେୟବ୍ୟବହାରଃ । (ଗ) ପଶ୍ୱାଦୀନାଞ୍ଚ ପ୍ରସିଦ୍ଧୋଽବିବେକପୁରଃସରଃ ପ୍ରତ୍ୟକ୍ଷାଦିବ୍ୟବହାରଃ । ତତ୍ ସମାନ୍ୟ ଦର୍ଶନାଦ୍ ବ୍ୟୁତ୍ପତ୍ତିମତାମପି ପୁରୁଷାଣାଂ ପ୍ରତ୍ୟକ୍ଷାଦିବ୍ୟବହାରସ୍ତତ୍‌କାଳଃ ସମାନ ଇତି ନିଶ୍ଚୀୟତେ ।

(୫) ଭାଷାନ୍ତର - (କ) ପଶୁମାନଙ୍କଠାରୁ ମନୁଷ୍ୟମାନଙ୍କର ଅଧିକ କିଛି ବିଶେଷତ୍ୱ ନାହିଁ । ଯେପରି ଶବ୍ଦଗୁଡ଼ିକ ଶ୍ରୋତ୍ରେନ୍ଦ୍ରିୟ ଦ୍ୱାରା ଗୃହୀତ ହୁଅନ୍ତେ ଶବ୍ଦ ବିଜ୍ଞାନ ସେମାନଙ୍କର ପ୍ରତିକୂଳ ହୁଅନ୍ତେ ପଶୁମାନେ ତାହା ଜାଣି ନିବୃତ୍ତ ହୁଅନ୍ତି ଓ ଶବ୍ଦବିଜ୍ଞାନ ଅନୁକୂଳ ହୁଅନ୍ତେ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । ଯଥା-ଯଷ୍ଟି ଉଠାଉଥିବା ପୁରୁଷ ମୋ ପାଖକୁ ଆସୁଥିବା ଦେଖି 'ମୋତେ ସେ ମାରିବାକୁ ଇଚ୍ଛା କରୁଛି' ବୋଲି ଜାଣି ପଳାଇଯାଆନ୍ତି ଅଥବା ହସ୍ତରେ ସବୁଜ ତୃଣ ଧରିଥିବା ପୁରୁଷକୁ ଦେଖି ତା ପାଖକୁ ଆସନ୍ତି ।

(ଖ) ସେହିପରି ମଧ୍ୟ ବୁଦ୍ଧିଜୀବୀମାନେ ଲୋଲୁପ ଦୃଷ୍ଟି ପକାଉଥିବା ଓ ଅସ୍ତ୍ରଶସ୍ତ୍ରାଦି ଉପରକୁ ଉଠାଉଥିବା ଲୋକକୁ ଦେଖି ସେଠାରୁ ନିବୃତ୍ତ ହୁଅନ୍ତି । ଅଥବା ତାର ବିପରୀତ (ସରଳ, ବିନମ୍ର ଇତ୍ୟାଦି) ଗୁଣ ଦେଖି ତା'ପ୍ରତି ନିବୃତ୍ତ ହୁଅନ୍ତି । ତେଣୁ ପଶୁମାନଙ୍କ ସହ ପୁରୁଷମାନଙ୍କର ପ୍ରମାଣ ପ୍ରମେୟାଦି ବ୍ୟବହାର ଜ୍ଞାନ ସମାନ ଅଟେ ।

(ଗ) ପୁଣି ପଶୁମାନଙ୍କର ମଧ୍ୟ ଅବିବେକ-ପୂର୍ବ ପ୍ରତ୍ୟକ୍ଷାଦି ବ୍ୟବହାରରେ ସମାନତା ରହିଛି । ତେଣୁ ଏହି ପ୍ରକାର ସମାନତା ଦୃଷ୍ଟିରୁ ସଜ୍ଜନମାନଙ୍କର ପ୍ରତ୍ୟକ୍ଷାଦି ବ୍ୟବହାର ଓ ବ୍ୟବହାରକାଳ ମଧ୍ୟ ପଶୁମାନଙ୍କ ସହ ବହୁ କ୍ଷେତ୍ରରେ ସମାନ ଅଟେ ।

(୬) ମୂଳ - (କ) ଶାସ୍ତ୍ରୀୟେ ତୁ ବ୍ୟବହାରରେ ଯଦ୍ୟପି ବୁଦ୍ଧିପୂର୍ବକାରୀ ନାବିଦିତ୍ୱାତ୍ମନଃ ପରଲୋକସମ୍ବନ୍ଧମଧିକ୍ରିୟତେ, ତଥାପି ନ ବେଦାନ୍ତବେଦ୍ୟମ୍ ଅଶନାୟାଦ୍ୟତୀତମ୍, ଅପେତବ୍ରହ୍ମକ୍ଷେତ୍ରାଦିଭେଦମ୍, ଅସଂସାର୍ଯ୍ୟାତ୍ମତତ୍ତ୍ୱମଧି-କାରେଽପେକ୍ଷ୍ୟତେ, ଅନୁପଯୋଗାଦଧିକାର ବିରୋଧାଚ୍ଚ । (ଖ) ପ୍ରାକ୍ ଚ ତଥାଭୂତାତ୍ମବିଜ୍ଞାନାତ୍ ପ୍ରବର୍ତ୍ତମାନଂ ଶାସ୍ତ୍ରମବିଦ୍ୟାବଦ୍‌ବିଷୟତ୍ୱଂ ନାତିବର୍ତ୍ତତେ । ତଥାହି- 'ବ୍ରାହ୍ମଣୋ ଯଜେତ' ଇତ୍ୟାଦୀନି ଶାସ୍ତ୍ରାଣ୍ୟାତ୍ମନି ବର୍ଣ୍ଣାଶ୍ରମବୟୋବସ୍ଥାଦିବି-ଶେଷାଧ୍ୟାସମାଶ୍ରିତ୍ୟ ପ୍ରବର୍ତ୍ତନ୍ତେ ।

(୬) ଭାଷାନ୍ତର - (କ) ଶାସ୍ତ୍ର ବ୍ୟବହାରରେ ଶରୀର ଭିନ୍ନ ଆତ୍ମାର ସ୍ୱର୍ଗାଦି ବିଷୟ ଅଥବା ପରଲୋକ ବିଷୟରେ ବିଶେଷ ସମ୍ବନ୍ଧ ବା ଜ୍ଞାନ ନାହିଁ । ତଥାପି ଏହି ଆତ୍ମା ହେଉଛି-ଉପନିଷଦ୍‌ବେତ୍ତା, ଭକ୍ଷଣାଦି କର୍ମଶୂନ୍ୟ, ବ୍ରାହ୍ମଣ କ୍ଷତ୍ରିୟାଦି ଜାତିଶୂନ୍ୟ, ଅସଂସାରୀ ଇତ୍ୟାଦି । ଏଠାରେ ଆତ୍ମତତ୍ତ୍ୱର ଉପଯୋଗ ନ ଥିବାରୁ ଏବଂ ଅଧିକାର ବିରୋଧ ହେତୁ ଏହା ଆତ୍ମତତ୍ତ୍ୱକୁ ଅପେକ୍ଷା କରେ ନାହିଁ ।



(ଖ) ପ୍ରଥମେ ପଣ୍ଡିତ ଲୋକ ଯଥାଯୋଗ୍ୟ ଆତ୍ମବିଜ୍ଞାନଯୁକ୍ତ ହେବାରୁ ପ୍ରବର୍ତ୍ତମାନ ଶାସ୍ତ୍ର ଅବିଦ୍ୟାଭଳି ବିଷୟକୁ ଲଙ୍ଘନ କରେ ନାହିଁ । ଯଥା- 'ବ୍ରାହ୍ମଣ ଯାଗ କରେ' ଏହି ବାକ୍ୟନିଷ୍ଠ ଶାସ୍ତ୍ର ଆତ୍ମାରେ ରହିଥିବାରୁ ବର୍ଣ୍ଣ, ଆଶ୍ରମ, ବୟସ, ଅବସ୍ଥା ପ୍ରଭୃତି ବିଶେଷ ଅଧ୍ୟାସକୁ ଆଶ୍ରୟ ନେଇ ଚଳେ ବା ପ୍ରବୃତ୍ତ ହୁଏ ।

(୭) ମୂଳ- (କ) ଅଧ୍ୟାସୋ ନାମ ଅତସ୍ମିଁସ୍ତଦ୍‌ବୁଦ୍ଧିରିତ୍ୟବୋଚମଃ । ତଦ୍ୟଥା ପୁତ୍ରଭାର୍ଯ୍ୟାଦିଷୁ ବିକଳେଷୁ ସକଳେଷୁ ବା ଅହମେବ ବିକଳଃ ସକଳୋ ବେତି ବାହ୍ୟଧର୍ମାନାତ୍ମନ୍ୟଧ୍ୟସତି ତଥା ଦେହଧର୍ମାନ୍ ସ୍ଥୂଳୋଽହଂ, କୃଶୋଽହଂ, ଗୌରୋଽହଂ ତିଷ୍ଠାମି, ଗଚ୍ଛାମି, ଲଙ୍ଘାମି ଚେତି । ତଥେନ୍ଦ୍ରିୟଧର୍ମାନ୍ ମୂକଃ, କଣାଃ, କ୍ଳୀବଃ, ବଧିରଃ, ଅନ୍ଧୋଽହମିତି । ତଥାନ୍ତଃକରଣଧର୍ମାନ୍-କାମ-ସଂକଳ୍ପବିଚିକି-ତ୍ସାଧ୍ୟବସାୟାଦୀନ୍ । (ଖ) ଏବମହଂ ପ୍ରତ୍ୟୟିନମଶେଷସ୍ୱପ୍ରଚରସାକ୍ଷିଣି ପ୍ରତ୍ୟଗାତ୍ମଧ୍ୟସ୍ୟ ତଂ ଚ ପ୍ରତ୍ୟଗାତ୍ମନଂ ସର୍ବସାକ୍ଷିଣଂ ତଦ୍‌ବିପର୍ଯ୍ୟୟେଣାନ୍ତଃ-କରଣାଦିଷ୍ୱଧ୍ୟସ୍ୟତି । ଏବାୟମନାଦିରନନ୍ତୋ ନୈସର୍ଗିକୋଽଧ୍ୟସୋ ମିଥ୍ୟାପ୍ରତ୍ୟୟରୂପଃ କର୍ତ୍ତୃତ୍ୱଭୋକ୍ତୃତ୍ୱ ପ୍ରବର୍ତ୍ତକଃ, ସର୍ବଲୋକପ୍ରତ୍ୟକ୍ଷଃ । (ଗ) ଅସ୍ୟାନର୍ଥହେତୋଃ ପ୍ରହାଣାୟ ଆତ୍ମୈକତ୍ୱବିଦ୍ୟାପ୍ରତିପତ୍ତୟେ ସର୍ବେ ବେଦାନ୍ତା ଆରଭ୍ୟନ୍ତେ । ଯଥା ଚାୟମର୍ଥଃ ସର୍ବେଷାଂ ବେଦାନ୍ତାନାଂ ତଥା ବୟମସ୍ୟାଂ ଶାରୀରିକମୀମାଂସାୟାଂ ପ୍ରଦର୍ଶୟିଷ୍ୟାମଃ ।

**(୭) ଭାଷାନ୍ତର** - (କ) ଅଧ୍ୟାସ ଅର୍ଥାତ୍ ଏହି ସ୍ଥାନରେ ତାହାର ବୁଦ୍ଧି ବୋଲି ଆମ୍ଭେ ଆଗରୁ ତାହା କହିଅଛୁ । ଯେପରି ସ୍ତ୍ରୀ ଓ ପୁତ୍ରମାନଙ୍କର କୌଣସି ପୂର୍ଣ୍ଣ ବା ଅପୂର୍ଣ୍ଣ ହେଲେ ମୁଁ ପୂର୍ଣ୍ଣ ବା ଅପୂର୍ଣ୍ଣ ବୋଲି କହି ବାହ୍ୟଧର୍ମଗୁଡ଼ିକୁ ନିଜ ଆତ୍ମାରେ ଅଧ୍ୟାସ କରେ, ସେହିଭଳି ଦେହଧର୍ମଗୁଡ଼ିକୁ ମୁଁ ମୋଟା, ପାତଳା, ଗୌର ଯାଉଛି ଅତିକ୍ରମ କରୁଛି ଇତ୍ୟାଦି ଆତ୍ମାରେ ଅଧ୍ୟାସ କରାଯାଉଛି । ପୁନଶ୍ଚ ଇନ୍ଦ୍ରିୟ ଧର୍ମଗୁଡ଼ିକୁ ମୂକ, କଣା, ନପୁସଂକ, ବଧିର, ଅନ୍ଧ ଇତ୍ୟାଦି ଏବଂ ଅନ୍ତଃକରଣ ଧର୍ମଗୁଡ଼ିକୁ କାମ, ସଂକଳ୍ପ, ବିଚିକିତ୍ସା, ଅଧ୍ୟବସାୟ ପ୍ରଭୃତି ଆତ୍ମାରେ ଅଧ୍ୟାସ କରାଯାଉଛି ।

(ଖ) ସେପରି ମଧ୍ୟ ଅହଂବୃତ୍ତି କରୁଥିବା ଅନ୍ତଃକରଣ ତାହାର ସମସ୍ତ ବୃତ୍ତି ପାଇଁ ସାକ୍ଷୀଭୂତ ପ୍ରତ୍ୟାଗାତ୍ମା ଉପରେ ଅଧ୍ୟାସ କରି ସେହି ପ୍ରତ୍ୟଗାତ୍ମାକୁ ତାହାର ବିପରୀତ ଗୁଣ ଦ୍ୱାରା ଅନ୍ତଃକରଣାଦିମାନଙ୍କରେ ଅଧ୍ୟାସ କରେ । ତେଣୁ ସେହି ଅନାଦି, ଅନନ୍ତ, ନୈସର୍ଗିକ, ଅଧ୍ୟାସିତ ହୋଇ ମିଥ୍ୟା ଜ୍ଞାନରୂପ, କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ପ୍ରବର୍ତ୍ତକ, ସର୍ବଲୋକ ପ୍ରତ୍ୟକ୍ଷ ହୁଏ ।

(ଗ) ଏହି ଅଧ୍ୟାସର ଅନର୍ଥହେତୁ (ମୂଲ୍ୟହୀନ କାରଣ)କୁ ସଂପୂର୍ଣ୍ଣ ଭାବରେ ନଷ୍ଟ କରିବା ପାଇଁ ସମଗ୍ର ଉପନିଷଦ୍‌ଶାସ୍ତ୍ର ବା ବେଦାନ୍ତ ଶାସ୍ତ୍ର ଆରମ୍ଭ ହୋଇଅଛି । ଯେଉଁ ପ୍ରକାରରେ କି ସବୁ ବେଦାନ୍ତ ଶାସ୍ତ୍ର ପାଇଁ ବ୍ରହ୍ମାତ୍ମୈକତ୍ୱ ପ୍ରୟୋଜନ ଅଟେ ଏବଂ ଆମ୍ଭେମାନେ ଶାରୀରିକ ମୀମାଂସ ଶାସ୍ତ୍ରରେ ଏହା ଆଲୋଚନା କରି ଦେଖାଇବୁ ।

## प्रथमाध्याये प्रथम : पादः

## ପ୍ରଥମାଧ୍ୟାୟ - ପ୍ରଥମ ପାଦ

## १ जिज्ञासाधिकरणम् । सू० १

## ୧ ଜିଜ୍ଞାସାଧିକରଣମ୍

(୮) ମୂଳ-(କ) ବେଦାନ୍ତମୀମାଂସାଶାସ୍ତ୍ରସ୍ୟ ବ୍ୟାଚିଖ୍ୟାସିତସ୍ୟେଦମାଦିମଂ ସୂତ୍ରମ୍-

**अथातो ब्रह्मजिज्ञासा ॥२॥**

(୮) (ଖ) **ଅଥାତୋ ବ୍ରହ୍ମଜିଜ୍ଞାସା - ୧।୧।୧**

(ଗ) ତତ୍ର ଅଥଶବ୍ଦ ଆନନ୍ତର୍ଯ୍ୟାର୍ଥଃ ପରିଗୃହ୍ୟତେ, ନାଧିକାରାର୍ଥଃ ବ୍ରହ୍ମଜିଜ୍ଞାସାୟା ଅନଧିକାରାତ୍ । ମଙ୍ଗଳସ୍ୟ ଚ ବାକ୍ୟାର୍ଥେ ସମନ୍ୱୟା-ଭାବାତ୍ ଅର୍ଥାନ୍ତରପ୍ରଯୁକ୍ତ ଏବ ହ୍ୟଥଶବ୍ଦଃ ଶ୍ରୁତ୍ୟା ମଙ୍ଗଳପ୍ରୟୋଜନୋ ଭବତି । ପୂର୍ବପ୍ରକୃତାପେକ୍ଷାୟାଶ୍ଚ ଫଳତଃ ଆନନ୍ତର୍ଯ୍ୟବ୍ୟତିରେକାତ୍ ।

(୮) **ଭାଷାନ୍ତର** - (କ) ବ୍ୟାଖ୍ୟା ନ କରିବାକୁ ଇଚ୍ଛାକରି ବେଦାନ୍ତମୀମାଂସା ଶାସ୍ତ୍ରର ଏହି ହେଉଛି ପ୍ରଥମ ସୂତ୍ର-

(ଖ) ଅଥ-ଏହାପରେ, ଅତଃ-ଏହି କାରଣରୁ ବ୍ରହ୍ମ ଜିଜ୍ଞାସା-ବ୍ରହ୍ମଜିଜ୍ଞାସା କରିବା ଉଚିତ୍ । ୧।୧।୧।

(ଗ) ସେଠାରେ ଅଥଶବ୍ଦ ହିଁ ପରବର୍ତ୍ତୀ ଅର୍ଥ ରୂପରେ ଗ୍ରହଣ କରାଯାଇଛି । କିନ୍ତୁ ଅଧିକାରରୂପ ନୁହେଁ । କାରଣ-ବ୍ରହ୍ମ ଜିଜ୍ଞାସା ପାଇଁ ଆରମ୍ଭ ବା ଅଧିକାର କରାଯାଏ ନାହିଁ । ପୁନଶ୍ଚ ମଙ୍ଗଳାତ୍ମକବାକ୍ୟରେ ଅଥଶବ୍ଦ ଯୁକ୍ତିଯୁକ୍ତ ନୁହେଁ । ଅଥଶବ୍ଦ ଅନ୍ୟ ଅର୍ଥକୁ ବୁଝାଏ । ଅଥଶବ୍ଦ ଶୁଣିବା ଦ୍ୱାରା ମଙ୍ଗଳରୂପକ ପ୍ରୟୋଜନ ହେବା ଉଚିତ୍ । କିନ୍ତୁ ଅତୀତ ଓ ବର୍ତ୍ତମାନ ଶବ୍ଦ ସହ ଅଥଶବ୍ଦ ସମନ୍ୱୟ ହେବାରୁ ଅନାନନ୍ତର୍ଯ୍ୟ (ପରବର୍ତ୍ତୀ ସମୟ)ର ସହ ଅର୍ଥ କଲେ କିଛି ଭେଦପ୍ରକାଶ ହୁଏ ନାହିଁ । ତେଣୁ ଅଥଶବ୍ଦ ପରବର୍ତ୍ତୀ ଅର୍ଥକୁ ବୁଝାଏ, କିନ୍ତୁ ମଙ୍ଗଳାର୍ଥକକୁ ନୁହେଁ ।

(୯) ମୂଳ-(କ) ସତି ଚାନନ୍ତର୍ଯ୍ୟାର୍ଥତ୍ୱେ ଯଥା ଧର୍ମଜିଜ୍ଞାସା ପରିବୃତଂ ବେଦାଧନଂ ନିୟମେନାପେକ୍ଷତେ, ଏବଂ ବ୍ରହ୍ମଜିଜ୍ଞାସାପି ଯତ୍ପୂର୍ବବୃତଂ ନିୟମେନାପେକ୍ଷତେ । ତଦ୍‌ବକ୍ତବ୍ୟମ୍ । ସ୍ୱାଧ୍ୟାୟାଧ୍ୟୟନାନନ୍ତର୍ଯ୍ୟଂ ତୁ ସମାନମ୍ । (ଖ) ନନ୍ୱିହ କର୍ମାବବୋଧାନନ୍ତର୍ଯ୍ୟବିଶେଷଃ । ନ ଧର୍ମଜିଜ୍ଞାସାୟାଃ ପ୍ରାଗପ୍ୟଧୀତବେଦାନ୍ତସ୍ୟ ବ୍ରହ୍ମଜିଜ୍ଞାସୋପପତ୍ତେଃ । ଯଥା ଚ ହୃଦୟାଦ୍ୟବଦାନାନା-ମାନନ୍ତର୍ଯ୍ୟନିୟମଃ, କ୍ରମସ୍ୟ ବିବକ୍ଷିତତ୍ୱାନ୍ନ ତଥେହ କ୍ରମୋ ବିବକ୍ଷିତଃ, ଶେଷ- ଶେଷିତ୍ୱେଽଧିକୃତାଧିକାରେ ବା



ପ୍ରମାଣାଭାବାତ୍ ଧର୍ମଜିଜ୍ଞାସୟୋଃ ଫଳଜିଜ୍ଞାସ୍ୟ ଭେଦାଚ୍ଚ । (ଗ) ଅଭ୍ୟୁଦୟଫଳଂ ଧର୍ମଜ୍ଞାନଂ, ତଚ୍ଚାନୁଷ୍ଠାନାପେକ୍ଷମ୍ । ନିଃଶ୍ରେୟସଫଳଂ ତୁ ବ୍ରହ୍ମବିଜ୍ଞାନଂ ନ ଚାନୁଷ୍ଠାନାନ୍ତରାପେକ୍ଷମ୍ ।

**(୯) ଭାଷାନ୍ତର** - (କ) ଅଥଶବ୍ଦ ଆନନ୍ତର୍ଯ୍ୟ ହେଲେ ମଧ୍ୟ ଯେପରି ଧର୍ମ ଜିଜ୍ଞାସାର ପୂର୍ବରୁ କାରଣଭୂତ ବେଦାଧ୍ୟୟନକୁ ଅପେକ୍ଷା କରେ, ସେହିପରି ବ୍ରହ୍ମଜିଜ୍ଞାସାର ପୂର୍ବରୁ ଯେଉଁ ବସ୍ତୁଗୁଡ଼ିକୁ ଅପେକ୍ଷା କରାଯାଏ, ତାହା କହିବା ଉଚିତ୍ । ସ୍ୱାଧ୍ୟାୟ ଅଧ୍ୟୟନ ପରେ ବ୍ରହ୍ମଜିଜ୍ଞାସା ବା ଧର୍ମ କରାଯିବା ଉଚିତ୍ ।

**(ଖ)- ପ୍ରଶ୍ନ** - କର୍ମଜ୍ଞାନର ପରେ ପରେ ବ୍ରହ୍ମଜିଜ୍ଞାସା କରିବା ଉଚିତ୍ କି ?

**ସମାଧାନ** - ନୁହେଁ । ଉପନିଷଦ୍‌କୁ ଅଧ୍ୟୟନ କରିସାରିଥିବା ପୁରୁଷ ଧର୍ମଜିଜ୍ଞାସା ନ କରି ବ୍ରହ୍ମଜିଜ୍ଞାସା କରିପାରେ (ଅର୍ଥାତ୍- ବେଦବେଦାଙ୍ଗରେ ଦକ୍ଷତା ଅର୍ଜନ କରିଥିବା ପୁରୁଷ ବ୍ରହ୍ମକୁ ଜାଣିବାରେ ସମର୍ଥ ହୋଇପାରେ) । କାରଣ-ବେଦାଙ୍ଗ ସନ୍ନିହିତ ଜ୍ଞାନଦ୍ୱାରା ଧର୍ମଜ୍ଞାନ ସ୍ୱତଃପ୍ରବୃତ୍ତ ଭାବରେ ଜାଗ୍ରତ ହୁଏ । ଯେପରି (''ହୃଦୟସ୍ୟାଗ୍ରେ ବଦତି, ଅର୍ଥ ଜିହ୍ୱାୟ, ଅଥବକ୍ଷସଃ'' (ତୈତରୀୟ ସଂହିତା) । ଅର୍ଥାତ୍ ପଶୁର ହୃଦୟକୁ ପରେ ଜିହ୍ୱା ଓ ବକ୍ଷକୁ ଛେଦନ କରାଯାଏ । ଏହିପରି ଅଗ୍ନିଷୋମୀୟ ପଶୁ ଯାଗରେ ପଶୁର ଛେଦନ କାର୍ଯ୍ୟ ସମ୍ପାଦିତ ହୁଏ ।) ହୃଦୟକୁ ଅବଦାନ (ଛେଦନ) ସମୟରେ ଅନନ୍ତର୍ଯ୍ୟକ୍ରମର ନିୟମ ଅଛି । କାହାପରେ କଣ କରିବା ଉଚିତ୍, ଏହି ପ୍ରକାର କ୍ରମ କୁହାଗଲେ ମଧ୍ୟ ଏହି ବ୍ରହ୍ମଜିଜ୍ଞାସା ସ୍ଥାନରେ ଆନନ୍ତର୍ଯ୍ୟକ୍ରମ କୁହାଯାଇନାହିଁ । କାରଣ-ବ୍ରହ୍ମଜିଜ୍ଞାସା ସମୟରେ ଅଙ୍ଗାଙ୍ଗିଭାବ ବା ଅଧିକୃତ୍ୟାଧିକାରଭାବ ସ୍ୱୀକାର କରିବାରେ କୌଣସି ପ୍ରମାଣ ନାହିଁ ଓ ଧର୍ମଜିଜ୍ଞାସା ଓ ବ୍ରହ୍ମଜିଜ୍ଞାସା ମଧ୍ୟରେ ଫଳ ଓ ଜିଜ୍ଞାସା ଭେଦ ରହିଛି ।

(ଗ) ଧର୍ମଜ୍ଞାନ ହେଉଛି ଉନ୍ନତିର ଫଳ, ଏହା କୌଣସି ଅନୁଷ୍ଠାନ ବା କାର୍ଯ୍ୟକୁ ନିର୍ଭର କରେ, କିନ୍ତୁ ବ୍ରହ୍ମଜ୍ଞାନ ମୋକ୍ଷପରକ ଏବଂ ଏହା ଅନ୍ୟ କୌଣସି ଅନୁଷ୍ଠାନକୁ ଅପେକ୍ଷା କରେ ନାହିଁ ।

(୧୦) ମୂଳ- (କ) ଭବ୍ୟଶ୍ଚଧର୍ମୋ ଜିଜ୍ଞାସ୍ୟୋ ନ ଜ୍ଞାନକାଳେଽସ୍ତି, ପୁରୁଷ ବ୍ୟାପାରତନ୍ତ୍ରତ୍ୱାତ୍ । ଇହ ତୁ ଭୂତଂ ବ୍ରହ୍ମ ଜିଜ୍ଞାସ୍ୟ ନିତ୍ୟତ୍ୱାଚ୍ଚ ପୁରୁଷବ୍ୟାପାରତନ୍ତ୍ରତ୍ୱାତ୍, ଚୋଦନାପ୍ରବୃତ୍ତିଭେଦାଚ୍ଚ । (ଖ) ଯା ହି ଚୋଦନା ଧର୍ମସ୍ୟ ଲକ୍ଷଣଂ ସା ସ୍ୱବିଷୟେ ନିଯୁଞ୍ଜାନୈବ ପୁରୁଷମବବୋଧୟତି । ବ୍ରହ୍ମଚୋଦନା ତୁ ପୁରୁଷମବବୋଧୟତ୍ୟେବ କେବଳମ୍, ଅବବୋଧସ୍ୟ ଚୋଦନାଜନ୍ୟତ୍ୱାନ୍ନ ପୁରୁଷୋଽବବୋଧେ ନିଯୁଜ୍ୟତେ ।

(ଗ) ଯଥାଽକ୍ଷାର୍ଥସନ୍ନିକର୍ଷେଣାର୍ଥାବବୋଧେ, ତଦ୍‌ବତ୍ । ତସ୍ମାତ୍ କିମପି ବକ୍ତବ୍ୟମ୍ ଯଦନନ୍ତରଂ ବ୍ରହ୍ମଜିଜ୍ଞାସୋପଦିଶ୍ୟତେ ଇତି ।

**(୧୦) ଭାଷାନ୍ତର** - (କ) ଭବ୍ୟ (ସାଧ୍ୟ), ଜିଜ୍ଞାସା ହେଉଥିବା ଧର୍ମଜ୍ଞାନ କାଳରେ ନଥାଏ । କାରଣ-ଏହା ପୁରୁଷ କାର୍ଯ୍ୟର ଅଧୀନ ଅଟେ । କିନ୍ତୁ ଏଠାରେ ବ୍ରହ୍ମମିମାଂସା ଶାସ୍ତ୍ର ପୂର୍ବରୁ ସିଦ୍ଧ ହୋଇଥିବା ବ୍ରହ୍ମ ଜିଜ୍ଞାସ୍ୟ ଅଟେ । କାରଣ-ଏହା ନିତ୍ୟ ଯୋଗୁଁ ପୁରୁଷ ବ୍ୟାପାରର ଅଧୀନ ହୁଏ ନାହିଁ ।

(ଖ) ଚୋଦନା (ପ୍ରେରଣା ବା ବୋଧକ ପ୍ରମାଣ)ର ସହ ପ୍ରବୃତ୍ତିଭେଦରେ ଜିଜ୍ଞାସ୍ୟର ଭେଦ ଅଛି । ଯେଉଁ ଚୋଦନା ବା ବିଧି ଧର୍ମର ଲକ୍ଷଣ, ସେ ନିଜ ବିଷୟରେ ବୁଝାଉଥିଲେ ମଧ୍ୟ ଅନ୍ୟ ପୁରୁଷକୁ ବୁଝାଏ । କିନ୍ତୁ ବ୍ରହ୍ମର ବିଧି କେବଳ ପୁରୁଷକୁ ବୁଝାଏ । (ନିଜକୁ ନୁହେଁ) ବ୍ରହ୍ମକୁ ବୁଝାଉଥିବା ବିଧିର କୌଣସି ଜନ୍ୟ (କାରଣ ବା ଉତ୍ପତ୍ତିସ୍ଥଳ) ନଥିବାରୁ ଏହା ପୁରୁଷକୁ ବୁଝାଇବାରେ ସାହାଯ୍ୟ କରେ ନାହିଁ ।

(ଗ) ଯେପରି ଇନ୍ଦ୍ରିୟ ବିଷୟର ସନ୍ନିକର୍ଷ ଦ୍ୱାରା କୌଣସି ଅର୍ଥକୁ ବୁଝାଏ, ସେପରି ଏକ ସାଧାରଣ ହେତୁ କହିବା ଆବଶ୍ୟକ । ତେଣୁ କ'ଣ କହିବା ଦରକାର ? ଯାହାପରେ ବ୍ରହ୍ମଜିଜ୍ଞାସା ଉପଦେଶ ଦିଆଯାଇପାରିବ ।

(୧୧) ମୂଳ- (କ) ଉଚ୍ୟତେ ନିତ୍ୟାନିତ୍ୟବସ୍ତୁବିବେକଃ, ଇହାମୁତ୍ରାର୍ଥଭୋଗ ବିରାଗଃ, ଶମଦମାଦିସାଧନସମ୍ପତ୍, ମୁମୁକ୍ଷୁତ୍ୱଞ୍ଚ । ତେଷୁ ହି ସତ୍ସୁ ପ୍ରାଗପି ଧର୍ମଜିଜ୍ଞାସାୟା ଊର୍ଦ୍ଧ୍ୱଞ୍ଚ ଶକ୍ୟତେ ବ୍ରହ୍ମଂଜିଜ୍ଞାସିତୁଂ ଜ୍ଞାତୁଂ ଚ, ନ ବିପର୍ଯ୍ୟୟେ । ତସ୍ମାଦଥଶବ୍ଦେନ ଯଥୋକ୍ତସାଧନସଂପତ୍ତ୍ୟାନନ୍ତର୍ଯ୍ୟମୁପଦିଶ୍ୟତେ । (ଖ) ଅତଃ ଶବ୍ଦୋ ହେତ୍ୱର୍ଥଃ । ଯସ୍ମାଦ୍‌ବେଦ ଏବାଗ୍ନିହୋତ୍ରାଦୀନାଂ ଶ୍ରେୟଃସାଧନାନାମନିତ୍ୟଫଳତାଂ ଦର୍ଶୟତି- 'ତଦ୍ୟଥେହ କର୍ମଚିତୋ ଲୋକୋ କ୍ଷୀୟତେ' (ଛା୮।୧।୯) ଇତ୍ୟାଦିଃ । ତଥା ବ୍ରହ୍ମବିଜ୍ଞାନାଦପି ପରଂ ପୁରୁଷାର୍ଥଂ ଦର୍ଶୟତି-'ବ୍ରହ୍ମବିଦାପ୍ନୋତି ପରମ୍' (ତୈ ୨।୧) ଇତ୍ୟାଦିଃ । ତସ୍ମାଦ୍ୟଥୋକ୍ତ ସାଧନସଂପତ୍ତ୍ୟନନ୍ତରଂ ବ୍ରହ୍ମଜିଜ୍ଞାସା କର୍ତ୍ତବ୍ୟା ।

**(୧୧) ଭାଷାନ୍ତର** - (କ) କୁହାଯାଇଛି- ନିତ୍ୟାନିତ୍ୟବସ୍ତୁ ବିବେକ, ଇହାମୁତ୍ରାର୍ଥ ଭୋଗବିରାଗ, ଶମଦମାଦି ସାଧନ ସଂପତ୍ ଓ ମୁକ୍ଷୁକ୍ଷୁତ୍ୱ-ଏହି ଚାରୋଟି ସାଧନା ହୋଇସାରିଲା ପରେ ଧର୍ମଜିଜ୍ଞାସାର ପୂର୍ବରୁ ବା ପରେ ବ୍ରହ୍ମଜିଜ୍ଞାସା କରିବା ପାଇଁ ଇଚ୍ଛା ହୁଏ, କିନ୍ତୁ ସାଧନ ଚତୁଷ୍ଟୟର ପୂର୍ବରୁ ନୁହେଁ । ସେହିହେତୁ ଅଥଶବ୍ଦ



ଦ୍ୱାରା ପୂର୍ବୋକ୍ତ ସାଧନ ସଂଷତ୍ତ୍ୟାଦି ଚତୁଷ୍ଟୟର ଅଧିକାରୀ ହେଲାପରେ ଉପଦେଶ ଦେବା ଉଚିତ୍ ।

(ଖ) ଅତଃଶବ୍ଦ ହେତ୍ୱର୍ଥକ ଅଟେ । ଯେହେତୁ ବେଦ ମଧ୍ୟ ଅଗ୍ନିହୋତ୍ର ଯଜ୍ଞଦ୍ୱାରା ଶ୍ରେୟସାଧନଭୂତ-ଅନିତ୍ୟ ଫଳକୁ ଦେଖାଏ । 'ଯାହାଦ୍ୱାରା ଏହି (ଅଗ୍ନିହୋତ୍ର)ଠାରେ କର୍ମଦ୍ୱାରା ଉପାର୍ଜ୍ଜିତ ପଦାର୍ଥ କ୍ଷୟ ହୁଏ' ଇତ୍ୟାଦି । ପୁନଶ୍ଚ ବ୍ରହ୍ମବିଜ୍ଞାନ ଦ୍ୱାରା ପରମ ପୁରୁଷାର୍ଥ ମିଳେ । 'ବ୍ରହ୍ମଜ୍ଞ ପୁରୁଷ ମୋକ୍ଷସ୍ୱରୂପ ବ୍ରହ୍ମକୁ ପାଏ' ଇତ୍ୟାଦି । ସେହିହେତୁ ପୂର୍ବକଥିତ ସାଧନ ସଂପତ୍ତିକୁ ଅର୍ଜନ କଲାପରେ ବ୍ରହ୍ମଜିଜ୍ଞାସା କରିବା ଉଚିତ୍ ।

(୧୨) ମୂଳ - (କ) ବ୍ରହ୍ମଣୋ ଜିଜ୍ଞାସା ବ୍ରହ୍ମଜିଜ୍ଞାସା । ବ୍ରହ୍ମ ଚ ବକ୍ଷ୍ୟମାଣଲକ୍ଷଣଂ 'ଜନ୍ମାଦ୍ୟସ୍ୟ ଯତଃ' ଇତି । ଅତଏବ 'ବ୍ରହ୍ମ' ଶବ୍ଦସ୍ୟ ଜାତ୍ୟାଦ୍ୟର୍ଥାନ୍ତରମାଶଂକିତବ୍ୟମ୍ । 'ବ୍ରହ୍ମଣ' ଇତି କର୍ମଣି ଷଷ୍ଠୀ, ନ ଶେଷେ, ଜିଜ୍ଞାସ୍ୟା ପେକ୍ଷତ୍ୱାଜ୍ଜିଜ୍ଞାସାୟାଃ, ଜିଜ୍ଞାସ୍ୟାନ୍ତରାନିର୍ଦ୍ଦେଶାଚ୍ଚ । (ଖ) ନନୁ ଶେଷେ ଷଷ୍ଠୀପରିଗ୍ରହେଽପି ବ୍ରହ୍ମଣୋ ଜିଜ୍ଞାସାକର୍ମତ୍ୱଂ ନ ବିରୁଧ୍ୟତେ, ସମ୍ବନ୍ଧସାମାନ୍ୟସ୍ୟ ବିଶେଷନିଷ୍ଠତ୍ୱାତ୍ । ଏବମପି ପ୍ରତ୍ୟକ୍ଷଂ ବ୍ରହ୍ମଣଃ କର୍ମତ୍ୱମୁତ୍ସୃଜ୍ୟ ସାମାନ୍ୟ ଦ୍ୱାରେଣ ପରୋକ୍ଷଂ କର୍ମତ୍ୱଂ କଳ୍ପୟତୋ ବ୍ୟର୍ଥଃ ପ୍ରୟାସଃ ସ୍ୟାତ୍ ।

**(୧୨) ଭାଷାନ୍ତର-** (କ) ବ୍ରହ୍ମର ଜିଜ୍ଞାସା ବ୍ରହ୍ମଜିଜ୍ଞାସା । 'ଜନ୍ମାଦ୍ୟସ୍ୟ ଯତଃ' ଏହି ସୂତ୍ରରେ ବକ୍ଷ୍ୟମାଣଲକ୍ଷଣକାରୀ ବ୍ରହ୍ମ । ତେଣୁ ବ୍ରହ୍ମଶବ୍ଦର ଜାତିଗୁଣ, ଇତ୍ୟାଦି ଅନ୍ୟାର୍ଥ ବିଷୟରେ ଶଙ୍କା କରିବା ଉଚିତ୍ ନୁହେଁ । 'ବ୍ରହ୍ମଣ' ଶବ୍ଦରେ କର୍ମରେ ଷଷ୍ଠୀ, ଶେଷେ ଷଷ୍ଠୀ ନୁହେଁ । କାରଣ-ଜିଜ୍ଞାସ୍ୟ ଜିଜ୍ଞାସାକୁ ଅପେକ୍ଷା କରେ । ଜିଜ୍ଞାସ୍ୟ ବ୍ୟତିରିକ୍ତ ସେ ଅନ୍ୟ କାହାକୁ ଅପେକ୍ଷା କରେ ନାହିଁ ।

(ଖ) **ପୂର୍ବପକ୍ଷ** - 'ଶେଷେଷଷ୍ଠୀ' ଏହି ଭାବ ସ୍ୱୀକାର କଲେ ବ୍ରହ୍ମର ଜିଜ୍ଞାସା କର୍ମତ୍ୱର ବିରୋଧ ହୁଏ ନାହିଁ । କାରଣ- ସମ୍ବନ୍ଧ ସାମାନ୍ୟ ବିଶେଷରେ ରହେ । ସେପରି ମଧ୍ୟ ବ୍ରହ୍ମ ପ୍ରତ୍ୟକ୍ଷ କର୍ମତ୍ୱକୁ ପରିତ୍ୟାଗ କରି ସାମାନ୍ୟ ସମ୍ବନ୍ଧ ଦ୍ୱାରା ପରୋକ୍ଷ କର୍ମତ୍ୱକୁ କଳ୍ପନା କରିବା ବ୍ୟର୍ଥମାତ୍ର ।

(୧୩) ମୂଳ - (କ) ନ ବ୍ୟର୍ଥଃ, ବ୍ରହ୍ମାଶ୍ରିତାଶେଷବିଚାରପ୍ରତିଜ୍ଞାନାର୍ଥତ୍ୱାଦିତିଚେନ୍ନ, ପ୍ରଧାନପରିଗ୍ରହେ ତଦପେକ୍ଷିତାନାମର୍ଥାକ୍ଷିପ୍ତତ୍ୱାତ୍ । ବ୍ରହ୍ମହି ଜ୍ଞାନେନାପ୍ତୁମିଷ୍ଟତମତ୍ୱାତ୍ ପ୍ରଧାନମ୍ । ତସ୍ମିନ୍ ପ୍ରଧାନେ ଜିଜ୍ଞାସା କର୍ମଣି ପରିଗୃହୀତେ ଯୈଃ ଜିଜ୍ଞାସିତୈର୍ବିନା ବ୍ରହ୍ମଂ ଜିଜ୍ଞାସିତଂ ନ ଭବତି ତାନ୍ୟର୍ଥାକ୍ଷିପ୍ତାନ୍ୟେ ବେତିନ ପୃଥକ୍ ସୂତ୍ରୟିତବ୍ୟାନି । (ଖ) ଯଥା 'ରାଜାସୌ ଗଚ୍ଛତୀତ୍ୟୁକ୍ତେ ସପରିବାରସ୍ୟ ରାଜ୍ଞୋ ଗମନମୁକ୍ତଂ ଭବତି, ତଦ୍‌ବତ୍ । ଶ୍ରୁତ୍ୟନୁଗମାଚ୍ଚ ।

'ଯତେ ବା ଇମାନି ଭୂତାନି ଜାୟନ୍ତେ' (ତୈତି ୩।୧) ଇତ୍ୟାଦ୍ୟାଃ ଶ୍ରୁତୟଃ, 'ତଦ୍‌ବିଜିଜ୍ଞାସସ୍ୱ ତଦ୍‌ବ୍ରହ୍ମ' (ତୈତ ୩।୧) ଇତି ପ୍ରତକ୍ଷମେବ ବ୍ରହ୍ମଣୋ ଜିଜ୍ଞାସା କର୍ମତ୍ୱଂ ଦର୍ଶୟତି । ତଚ୍ଚକର୍ମଣି ଷଷ୍ଠୀପରିଗ୍ରହେ ସୂତ୍ରେଣାନୁଗତଂ ଭବତି । ତସ୍ମାଦ୍ ବ୍ରହ୍ମଣୋ ଇତି କର୍ମଣି ଷଷ୍ଠୀ ।

**(୧୩) ଭାଷାନ୍ତର-** (କ) ଏହା ଠିକ୍ ନୁହେଁ, ବ୍ରହ୍ମକୁ ଆଶ୍ରୟ କରିଥିବା ସମସ୍ତ ପଦାର୍ଥଗୁଡ଼ିକର ବିଚାର ପ୍ରତିଜ୍ଞା ପାଇଁ ନୁହେଁ । କାରଣ-ପ୍ରଧାନ ବସ୍ତୁର ଗ୍ରହଣ ହେଲେ ତାହାକୁ ଅପେକ୍ଷା କରିଥିବା ସମସ୍ତ ପଦାର୍ଥର ଗ୍ରହଣ ହୁଏ । ବ୍ରହ୍ମ ହିଁ ଜ୍ଞାନଦ୍ୱାରା ପାଇବା ପାଇଁ ଯୋଗ୍ୟ ହେତୁ ଏହା ହିଁ ମୁଖ୍ୟ । ସେହି ମୁଖ୍ୟକୁ ଜିଜ୍ଞାସା କର୍ମରୂପରେ ଗ୍ରହଣ କରିବା ଲାଗି ଯେଉଁ ଜିଜ୍ଞାସା ଦ୍ୱାରା ଗୃହୀତ ହେଲା, ତାହା ପୃଥକ୍ ରୂପରେ ସୂତ୍ରିତ ହେଲା ନାହିଁ ।

(ଖ) ଉଦାହରଣସ୍ୱରୂପ- ରାଜା ଯାଉଛନ୍ତି, ଏହା କହିବା ମାତ୍ରକେ ପରିବାର ସହ ରାଜାଙ୍କର ଗମନ ବୋଲି ବୁଝାଏ । ବେଦାଦିପନ୍ଥା ଦ୍ୱାରା ମଧ୍ୟ କର୍ମଣି ଷଷ୍ଠୀ ହୁଏ । 'ଯାହାଠାରୁ ସକଳ ପ୍ରାଣୀଜଗତ୍ ଜନ୍ମ' ଏହି ପ୍ରଥମ ବେଦବାକ୍ୟ 'ତାହାକୁ ବ୍ରହ୍ମ ବୋଲି ଜାଣ' ଇତି ପ୍ରତ୍ୟକ୍ଷବ୍ରହ୍ମର ଜିଜ୍ଞାସା କର୍ମତ୍ୱକୁ ବେଦବାକ୍ୟ ଦେଖାଏ । ତାହାକୁ କର୍ମଣିଷଷ୍ଠୀ ନିୟମ ରୂପରେ ଗ୍ରହଣ କଲେ ବେଦବାକ୍ୟ ସହ ଅନୁଗମନ ହୁଏ, ତେଣୁ ଏହି ସ୍ଥାନରେ କର୍ମଣିଷଷ୍ଠୀ ।

(୧୪) ମୂଳ- (କ) ଜ୍ଞାତୁମିଚ୍ଛା ଜିଜ୍ଞାସା । ଅବଗତିପର୍ଯ୍ୟନ୍ତଂ ଜ୍ଞାନଂ ସନ୍‌ବାଚ୍ୟାୟା ଇଚ୍ଛାୟାଃ କର୍ମ ଫଳବିଷୟତ୍ୱାଦିଚ୍ଛାୟାଃ । ଜ୍ଞାନେନ ହି ପ୍ରମାଣେନା-ବଗନ୍ତୁମିଷ୍ଟଂ ବ୍ରହ୍ମ । ବ୍ରହ୍ମାବଗତିର୍ହି ପୁରୁଷାର୍ଥଃ ନିଃ ଶେଷସଂସାରବୀଜାବିଦ୍ୟାଦ୍ୟନର୍ଥା-ନିବର୍ହଣାତ୍ । ତସ୍ମାଦ୍ ବ୍ରହ୍ମ ବିଜିଜ୍ଞାସିତବ୍ୟମ୍ ।

**(୧୪) ଭାଷାନ୍ତର-** (କ) ଜାଣିବାକୁ ଇଚ୍ଛା ଜିଜ୍ଞାସା । ବ୍ରହ୍ମସାକ୍ଷାତ୍କାର ପର୍ଯ୍ୟନ୍ତ ଜ୍ଞାନଥିଲେ ପ୍ରତ୍ୟୟବାଚ୍ୟ ଇଚ୍ଛାର କର୍ମ ହୁଏ । କାରଣ-ଇଚ୍ଛା ଫଳର ବିଷୟକ । ଜ୍ଞାନରୂପ ପ୍ରମାଣ ଦ୍ୱାରା ବ୍ରହ୍ମ ଜାଣିବା ପାଇଁ ଯୋଗ୍ୟ । ବ୍ରହ୍ମ ସାକ୍ଷାତ୍କାର ହିଁ ମୋକ୍ଷ । କାରଣ-ଏହା ସମଗ୍ର ସଂସାରର ବୀଜସ୍ୱରୂପ । ଅବିଦ୍ୟା ଅନର୍ଥ ଇତ୍ୟାଦିର ନିବୃତ୍ତ ହୁଏ । ତେଣୁ ବ୍ରହ୍ମକୁ ଜାଣିବା ଉଚିତ୍ ।

(୧୫) ମୂଳ- (କ) ତତ୍‌ପୁନର୍ବ୍ରହ୍ମ ପ୍ରସିଦ୍ଧମପ୍ରସିଦ୍ଧଂ ବା ସ୍ୟାତ୍ । ଯଦି ପ୍ରସିଦ୍ଧଂ ନ ଜିଜ୍ଞାସିତବ୍ୟମ୍ । ଅଥାଽପ୍ରସିଦ୍ଧଂ ନୈବଂ ଶକ୍ୟଂ ଜିଜ୍ଞାସିତୁମିତି । (ଖ) ଉଚ୍ୟତେ-ଅସ୍ତି ତାବଦ୍‌ବ୍ରହ୍ମ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବ ସର୍ବଜ୍ଞଂ ସର୍ବଶକ୍ତିସମନ୍ୱିତମ୍,



ବ୍ରହ୍ମଶବ୍ଦସ୍ୟ ହି ବ୍ୟୁତ୍ପାଦ୍ୟମାନସ୍ୟ ନିତ୍ୟଶୁଦ୍ଧତ୍ୱାଦୟୋଽର୍ଥାଃ ପ୍ରତୀୟନ୍ତେ । ବୃହତେର୍ଧାତୁତାରର୍ଥାନୁଗମାତ୍ । ସର୍ବାସ୍ୟାତ୍ମତ୍ୱାଚ୍ଚ ବ୍ରହ୍ମାସ୍ତିତ୍ୱପ୍ରସିଦ୍ଧିଃ ସ୍ୟାତ୍ ସର୍ବୋ ଲୋକୋ ନାହମସ୍ମୀତି ପ୍ରତୀୟାତ୍ । ଆତ୍ମା ଚ ବ୍ରହ୍ମ ।

**(୧୫) ଭାଷାନ୍ତର -ଶଙ୍କା-**(କ) ତାହେଲେ ବ୍ରହ୍ମ ପ୍ରସିଦ୍ଧ କି ଅପ୍ରସିଦ୍ଧ । ଯଦି ପ୍ରସିଦ୍ଧ, ତେବେ ତାହା ଜାଣିବା କଥା ନୁହେଁ । ଯଦି ଅପ୍ରସିଦ୍ଧ, ତେବେ ଜାଣିବା ପାଇଁ ଅସମର୍ଥ ।

(ଖ) **ସମାଧାନ** - ନିତ୍ୟ-ଶୁଦ୍ଧ-ମୁକ୍ତ ସ୍ୱଭାବାତ୍ମକ-ସର୍ବଜ୍ଞ-ସର୍ବଶକ୍ତି ସମନ୍ୱିତ ହେଉଛି ବ୍ରହ୍ମ। ବୃହତ୍‌ଧାତୁରୁ ଏହି ଶବ୍ଦ ନିଷ୍ପତ୍ତି ହେତୁ ବ୍ୟୁତ୍ପତ୍ତିସିଦ୍ଧ ବ୍ରହ୍ମଶବ୍ଦ ଦ୍ୱାରା ବ୍ରହ୍ମ ଶବ୍ଦର ନିତ୍ୟତ୍ୱ, ଶୁଦ୍ଧତ୍ୱାଦିଗୁଣ ଜଣାଯାଏ । ସମସ୍ତଙ୍କର ଆତ୍ମା ଥିବାରୁ ତଦ୍ଦ୍ୱାରା ବ୍ରହ୍ମ ଜଣାପଡ଼େ । ଯଦି ଆତ୍ମାର ପ୍ରସିଦ୍ଧ ନଥା'ନ୍ତା, ତେବେ ସମସ୍ତେ 'ମୁଁ ନାହିଁ', ବୋଲି ଜ୍ଞାନ କରନ୍ତେ । ତେଣୁ ଆତ୍ମା ହିଁ ବ୍ରହ୍ମ ।

(୧୬) ମୂଳ - (କ) ଯଦି ତର୍ହି ଲୋକେ ବ୍ରହ୍ମାତ୍ମତ୍ୱେନ ପ୍ରସିଦ୍ଧମସ୍ତି । ତତୋ ଜ୍ଞାନମେବେତ୍ୟଜିଜ୍ଞାସତ୍ୱଂ ପୁନରାପନ୍ନମ୍ ନ ତଦ୍‌ବିଶେଷଂ ପ୍ରତି ବିପ୍ରତିପତ୍ତେଃ । ଦେହମାତ୍ର ଚୈତନ୍ୟବିଶିଷ୍ଟମାତ୍ମେତି ପ୍ରାକୃତଜନା ଲୌକାୟତିକାଶ୍ଚ ପ୍ରତିପନ୍ନାଃ । ଇନ୍ଦ୍ରିୟାଣ୍ୟେବ ଚେତନାନ୍ୟାତ୍ମେତ୍ୟପରେ । ମନ ଇତ୍ୟନ୍ୟେ । ବିଜ୍ଞାନମାତ୍ରଂ କ୍ଷଣିକମିତ୍ୟେକେ । ଶୂନ୍ୟମିତ୍ୟପରେ । ଅସ୍ତି 'ଦେହାଦିବ୍ୟତିରିକ୍ତଃ ସଂସାରୀ କର୍ତ୍ତା ଭୋକ୍ତେତ୍ୟପରେ । ଭୋକ୍ତୈବ କେବଳଂ ନ କର୍ତ୍ତେତ୍ୟେକେ । ଅସ୍ତି ତଦ୍‌ବ୍ୟତିରିକ୍ତ ଈଶ୍ୱରଃ ସର୍ବଜ୍ଞଃ ସର୍ବଶକ୍ତିରିତି କେଚିତ୍ । ଆତ୍ମା ଭୋକ୍ତୁରିତ୍ୟପରେ ଏବଂ ବହବୋ ବିପ୍ରତିପନ୍ନାଃ ଯୁକ୍ତିବାକ୍ୟତଦାଭାସସମାଶ୍ରୟାଃ ସନ୍ତଃ (ଖ) ତତ୍ରାବିଚାର୍ଯ୍ୟଂ ଯତ୍‌କିଞ୍ଚିତ୍ ପ୍ରତିପଦ୍ୟମାନୋ ନିଃଶ୍ରେୟସାତ୍ ପ୍ରତିହନ୍ୟେତାନର୍ଥଂ ଚେୟାତ୍ । ତସ୍ମାଦ୍ ବ୍ରହ୍ମଜିଜ୍ଞା-ସୋପନ୍ୟାସମୁଖେନ ବେଦାନ୍ତବାକ୍ୟମୀମାଂସା ତଦବିରୋଧିତର୍କୋପକରାଣା ନିଃ ଶ୍ରେୟସପ୍ରୟୋଜନା ପ୍ରସ୍ତୂୟତେ ।

**(୧୬) ଭାଷାନ୍ତର-**(କ) ଯଦ୍ୟପି ସଂସାରରେ ବ୍ରହ୍ମ ଆତ୍ମା ରୂପରେ ପ୍ରସିଦ୍ଧ, ତେବେ ବ୍ରହ୍ମରେ ଅଜିଜ୍ଞାସ୍ୟତ୍ୱ କିପରି ହେଲା ? ତେଣୁ ବହୁ ବିବାଦ ହେତୁ ଏହିଭଳି ଯୁକ୍ତି ଠିକ୍ ନୁହେଁ । ପ୍ରାକୃତଜନ ଓ ଚାର୍ବାକ୍‌ମାନେ ଚୈତନ୍ୟ ବିଶିଷ୍ଟ ଦେହମାତ୍ର ଆତ୍ମା ବୋଲି କହନ୍ତି । ପରନ୍ତୁ ଚୈତନ୍ୟ ଇନ୍ଦ୍ରିୟଗୁଡ଼ିକର ଆତ୍ମା ବୋଲି ଅନ୍ୟମାନେ କହନ୍ତି । ଅନ୍ୟମାନେ ମନ ବୋଲି କହନ୍ତି । ବିଜ୍ଞାନମାତ୍ର କ୍ଷଣିକ ବୋଲି କେତେକଙ୍କ ମତ ।

କେତେକ ଶୂନ୍ୟ ବୋଲି କହନ୍ତି । କେତେକ ଦେହାଦିରହିତ ସଂସାରୀ କର୍ତ୍ତା ହିଁ ଭୋକ୍ତା ବୋଲି କହନ୍ତି । ଭୋକ୍ତା କେବଳ କର୍ତ୍ତା ନୁହେଁ ବୋଲି ଅନ୍ୟମାନେ କହନ୍ତି । ପୁନଶ୍ଚ ଏମାନଙ୍କ ବ୍ୟତିରିକ୍ତ ଈଶ୍ୱର ସର୍ବଜ୍ଞ ସର୍ବଶକ୍ତି ବୋଲି ଅନ୍ୟମତ । ଆତ୍ମା ହିଁ ଭୋକ୍ତା ବୋଲି କେତେକଙ୍କ ମତ । ଏହିଭଳି ବହୁତ ଯୁକ୍ତି ବାକ୍ୟ, ତଦାଭାସକୁ ଆଶ୍ରୟ କରି ଅନେକ ମତଭେଦ ଦେଖାଯାଏ ।

(ଖ) ସେମାନେ କିଛି ବିଚାର ନ କରି ଯେକୌଣସି ମତକୁ ଆଶ୍ରୟ କରି ମୋକ୍ଷଠାରୁ ବଞ୍ଚିତ ହୁଅନ୍ତି ଏବଂ ତାହା ସହିତ ମଧ୍ୟ ଅନର୍ଥଗୁଡ଼ିଏ ମିଳେ । ସେହି ହେତୁ 'ବ୍ରହ୍ମଜିଜ୍ଞାସା କରିବା କଥା' ଏହିପରି ନିଶ୍ଚିତ ହୁଅନ୍ତେ ତାହାର ଅବିରୋଧ ତର୍କସାଧନ ରୂପ, ମୋକ୍ଷାନୁକୂଳ, ବେଦାନ୍ତବାକ୍ୟ ମୀମାଂସାଗୁଡ଼ିକ ପ୍ରସ୍ତୁତ କରାଯାଉଛି ।

## २ जन्माद्यधिकरणम् । सू० २

## ୨ ଜନ୍ମାଦ୍ୟଧିକରଣମ୍

(୧) ମୂଳ-(କ) ବ୍ରହ୍ମ ଜିଜ୍ଞାସିତବ୍ୟମିତ୍ୟୁକ୍ତମ୍ । କିଂ ଲକ୍ଷଣଂ ପୁନସ୍ତଦ୍‌ବ୍ରହ୍ମେତ୍ୟତ ଆହ ଭଗବାନ୍ ସୂତ୍ରକାରଃ ।

(୧) ଭାଷାନ୍ତର - (କ) ବ୍ରହ୍ମକୁ ଜାଣିବା ଉଚିତ ବୋଲି ପୂର୍ବରୁ କୁହାଯାଇଛି । ସେହି ବ୍ରହ୍ମର ଏଠାରେ କେଉଁ ପ୍ରକାର ଲକ୍ଷଣ ହେବା କଥା ? ଏହାପାଇଁ ସୂତ୍ରକାର କହିଛନ୍ତି ।

(ଖ) ଯତଃ- ଯାହାଠାରୁ, ଅସ୍ୟ-ଏହି ସଂସାରର, ଜନ୍ମାଦି-ଜନ୍ମସ୍ଥିତି, ପ୍ରଳୟ ।୧।୧।୨

### जन्माद्यस्य यत: ॥ २ ॥

### ଜନ୍ମାଦ୍ୟସ୍ୟ ଯତଃ । (୧।୧।୨)

(୨) ମୂଳ-(କ) ଜନ୍ମୋତ୍ପତ୍ତିରାଦିରସ୍ୟେତି ତଦ୍‌ଗୁଣାସଂବିଜ୍ଞାନୋ ବହୁବ୍ରୀହିଃ । ଜନ୍ମସ୍ଥିତଭଂଗଂ ସମାସାର୍ଥଃ । ଜନ୍ମନଷ୍ଟାଦିତ୍ୱଂ ଶ୍ରୁତିନିର୍ଦ୍ଦେଶାପେକ୍ଷଂ ବସ୍ତୁବୃତ୍ତାପେକ୍ଷଂ ଚ । ଶ୍ରୁତିନିର୍ଦ୍ଦେଶସ୍ତାବତ୍- 'ଯତୋ ବା ଇମାନି ଭୂତାନି ଜାୟନ୍ତେ', (ତୈତି ୩।୧) ଇତ୍ୟସ୍ମିନ୍ ବାକ୍ୟେ ଜନ୍ମସ୍ଥିତିପ୍ରଳୟାନାଂ କ୍ରମଦର୍ଶନାତ୍ । ବସ୍ତୁବୃତ୍ତମପି ଜନ୍ମନା ଲବ୍‌ଧସତ୍ତାକସ୍ୟ



ଧର୍ମିଣଃ ସ୍ଥିତିପ୍ରଳୟସମ୍ଭବାତ୍ । ଅସ୍ୟେତି ପ୍ରତ୍ୟକ୍ଷାଦିସନିଧାପିତସ୍ୟ ଧର୍ମିଣଃ ଇଦମା ନିର୍ଦ୍ଦେଶଃ । ଷଷ୍ଠୀ ଜନ୍ମାଦିଧର୍ମସମ୍ବନ୍ଧାର୍ଥା । ଯତ ଇତି କାରଣନିର୍ଦ୍ଦେଶଃ ।

(୨) ଭାଷାନ୍ତର- (କ) ଜନ୍ମ ଅର୍ଥାତ୍ ଉତ୍ପତ୍ତି ପ୍ରଥମେ ଯାହାର ଏହି ତଦ୍‌ଗୁଣ ସଂବିଜ୍ଞାନ ବହୁବ୍ରୀହି । ଜନ୍ମ, ସ୍ଥିତି, ଲୟ ହେଉଛି ସମାସର ଅର୍ଥ । ଶ୍ରୁତି-ନିର୍ଦ୍ଦେଶ ଓ ବସ୍ତୁସ୍ଥିତିର ଅପେକ୍ଷା ଉତ୍ପତ୍ତି ପ୍ରଥମେ ହେଉଛି । 'ଯାହାଠାରୁ ଏହି ପ୍ରାଣୀମାନେ ଜାତ ହେଉଛନ୍ତି'- ଏହି ବେଦବାକ୍ୟାନୁସାରେ ଜନ୍ମ, ସ୍ଥିତି ଓ ଲୟଗୁଡ଼ିକର କ୍ରମ ଦେଖାଯାଉଛି । ବସ୍ତୁସ୍ଥିତିରେ ମଧ୍ୟ ସମାନ କ୍ରମ ଦେଖାଯାଏ । ଯଥା-ଜନ୍ମ ହେବା ଦ୍ୱାରା ଜୀବସତ୍ତା ପାଇଥିବା ଗୋଟିଏ ପଦାର୍ଥର ସ୍ଥିତି ଓ ପ୍ରଳୟ ସମ୍ଭବ ହୁଏ । 'ଅସ୍ୟ' ଶବ୍ଦ ଦ୍ୱାରା ସିଦ୍ଧ ଓ ପ୍ରତ୍ୟକ୍ଷୀଭୂତଧର୍ମୀ (ପଦାର୍ଥ)ର ଇଦଂଶବ୍ଦ ଦ୍ୱାରା ନିର୍ଦ୍ଦେଶ ହୁଏ । ଷଷ୍ଠୀ ବିଭକ୍ତି ଜନ୍ମାଦିଧର୍ମର ସମ୍ବନ୍ଧସ୍ୱରୂପ 'ଯତଃ' ଶବ୍ଦ କାରଣକୁ ନିର୍ଦ୍ଦେଶ କରେ ।

(୩) ମୂଳ- (କ) ଅସ୍ୟ ଜଗତୋ ନାମରୁପାଭ୍ୟାଂ ବ୍ୟାକୃତସ୍ୟାନେକକର୍ତ୍ତୃ-ଭୋକ୍ତୃ ସଂଯୁକ୍ତସ୍ୟ ପ୍ରତିନିୟତଦେଶକାଳନିମିତ୍ତକ୍ରିୟାଫଳାଶ୍ରୟସ୍ୟ ମନସାପ୍ୟଚିନ୍ତ୍ୟ-ରଚନାରୂପସ୍ୟ ଜନ୍ମସ୍ଥିତିଭଂଗଂ ଯତଃ ସର୍ବଜ୍ଞାତ୍ ସର୍ବଶକ୍ତେଃ କାରଣାଦ୍ ଭବତି, ତଦ୍‌ବ୍ରହ୍ମେତି ବାକ୍ୟଶେଷଃ । ଅନ୍ୟେଷାମପି ଭାବବିକାରାଣାଂ ତ୍ରିଷ୍ୱେବାନ୍ତର୍ଭାବ ଇତି ଜନ୍ମସ୍ଥିତିନାଶାନାମିହ ଗ୍ରହଣମ୍ । (ଖ) ଯାସ୍କପରିପଠିତାନାଂ ତୁ 'ଜାୟତେଽସ୍ତି' ଇତ୍ୟାଦିନା ଗ୍ରହଣେ ତେଷାଂ ଜଗତଃ ସ୍ଥିତିକାଳେ ସମ୍ଭାବ୍ୟମାନତ୍ୱାନ୍ମୂଳକାରଣା-ଦୁତ୍ପତ୍ତିସ୍ଥିତିନାଶା ଜଗତୋ ନ ଗ୍ରହୀତାଃ ସ୍ୟୁରିତ୍ୟାଶଙ୍କ୍ୟେତ, ତସ୍ମାତ୍ ଶଙ୍କୀତି ଯୋତ୍ପତ୍ତିର୍ବ୍ରହ୍ମଣସ୍ତତ୍ରୈବ ସ୍ଥିତିଃ ପ୍ରଳୟଶ୍ଚ ତ ଏବ ଗୃହ୍ୟନ୍ତେ ।

(୩) ଭାଷାଂତର- (କ) ନାମ ଓ ରୂପଦ୍ୱାରା ବିକୃତ ବା କଦାକାର ହେଉଥିବା, ଅନେକ କର୍ତ୍ତା ଓ ଭୋକ୍ତାଙ୍କ ସହ ସଂଯୁକ୍ତ ହୋଇଥିବା, ସର୍ବଦା ଦେଶ, କାଳ ଓ ନିମିତ୍ତ (କାରଣ) ଦ୍ୱାରା କ୍ରିୟା ଫଳରେ ଆଶ୍ରୟ ହୋଇଥିବା, ମନରେ ଅଚିନ୍ତ୍ୟ ରଚନା ରୂପ କରୁଥିବା ଏହି ସଂସାରର ଉତ୍ପତ୍ତି, ସ୍ଥିତି ଓ ଲୟ ଯେଉଁ ସର୍ବଜ୍ଞ ଶକ୍ତିମାନ୍ କାରଣଠାରୁ ଉତ୍ପନ୍ନ, ତାହା ହିଁ ବ୍ରହ୍ମ- ଏହା ହିଁ ମୂଳମାତ୍ର । ଅନ୍ୟ ଭାବ ବିକାରମାନଙ୍କର ଉତ୍ପତ୍ତି, ସ୍ଥିତି ଓ ଲୟ- ଏହି ତିନୋଟି ତତ୍ତ୍ୱରେ ଅନ୍ତର୍ଗତ ହେବାରୁ ଏହି ଜନ୍ମ, ସ୍ଥିତି ଓ ପ୍ରଳୟମାନଙ୍କୁ ଗ୍ରହଣ କରାଯାଇଛି ।

(ଖ) ଯାସ୍କମୁନିଙ୍କର ପଠିତ 'ଜାୟତେଽସ୍ତି ବିପରିଣମତେ, ବର୍ଦ୍ଧତେଽପକ୍ଷୀୟତେ, ବିନଶ୍ୟତି (ନିରୁକ୍ତ ୧।୧।୩) ଇତ୍ୟାଦି ଷଟ୍‌ତତ୍ତ୍ୱକୁ ଗ୍ରହଣ କଲେ ସେହି ଷଟ୍‌ତତ୍ତ୍ୱରେ ସଂସାରର ଜନ୍ମସ୍ଥିତିରେ ସମ୍ଭବ ହେତୁ ମୂଳକାରଣ (ବ୍ରହ୍ମ)ରୁ ସଂସାରର ଜନ୍ମ-ସ୍ଥିତି- ନାଶ

ଗୃହୀତ ହୋଇନପାରେ ବୋଲି ଶଙ୍କା ମଧ କରିବା ଉଚିତ୍ ନୁହେଁ । କାରଣ- ଯାହାର ବ୍ରହ୍ମଠାରୁ ଉତ୍ପତ୍ତି, ତାହାର ସ୍ଥିତି ଓ ପ୍ରଳୟ ମଧ ଗ୍ରହଣ କରାଯାଏ ।

(୪) ମୂଳ- (କ) ନ ଯଥୋକ୍ତ ବିଶେଷଣସ୍ୟ ଜଗତୋ ଯଥୋକ୍ତବିଶେଷଣ-ମୀଶ୍ୱରଂ ମୁକ୍ତ୍ୱାନ୍ୟତଃ ପ୍ରଧାନାଦଚେତନାତ୍, ଅଣୁଭ୍ୟୋଽଭାବାତ୍ ସଂସାରିଣୋ ବା ଉତ୍ପତ୍ତ୍ୟାଦି ସମ୍ଭାବୟିତୁଂ ଶକ୍ୟମ୍ । ନ ଚ ସ୍ୱଭାବତଃ, ବିଶିଷ୍ଟଦେଶକାଳନିମିତ୍ତାନାମି-ହୋପାଦାନାତ୍ । (ଖ) ଏତଦେବାନୁମାନଂ ସାଂସାରିବ୍ୟତିରିକ୍ତେଶ୍ୱରାସ୍ତିତ୍ୱାଦିସାଧନଂ ମନ୍ୟନ୍ତ ଈଶ୍ୱରକାରଣିନଃ । ନନ୍ୱେହାପି ତଦେବୋପନ୍ୟସ୍ତଂ ଜନ୍ମାଦିସୂତ୍ରେ । (ଗ) ନ, ବେଦାନ୍ତବାକ୍ୟକୁସୁମଗ୍ରନ୍ଥନାର୍ଥତ୍ୱାତ୍ ସୂତ୍ରାଣାମ୍ । ବେଦାନ୍ତବାକ୍ୟାନି ହି ସୂତ୍ରୈରୁ-ଦାହୃତ୍ୟ ବିଋର୍ଯ୍ୟନ୍ତେ । ବାକ୍ୟାର୍ଥବିଋରଣାଧବସାନନିର୍ବୃତ୍ତା ହି ବ୍ରହ୍ମାବଗତିଃ, ନାନୁମାନାଦିପ୍ରମାଣାନ୍ତରନିର୍ବୃତ୍ତା ।

(୪) ଭାଷାନ୍ତର- (କ) ପୂର୍ବକଥିତ-ବିଶେଷଣଯୁକ୍ତ ସଂସାରର ଯଥୋଚିତ ବିଶେଷଣ-ଯୁକ୍ତ-ଈଶ୍ୱରକୁ ଛାଡ଼ି ଅଚେତନ ପ୍ରଧାନରୁ, ଅଥବା ଅଣୁଗଣର ଅଭାବରୁ ସଂସାରର ଉତ୍ପତ୍ତ୍ୟାଦି ସମ୍ଭାବନା କରିବା ଅନୁଚିତ । ସ୍ୱଭାବତଃ ବିଶିଷ୍ଟ ଦେଶ କାଳ ନିମିତ୍ତ ଗୁଡ଼ିକର ଉପାଦାନକାରଣରୁ ମଧ ଅସମ୍ଭବ ।

(ଖ) ଜଗତର ନିମିତ୍ତ କାରଣରୂପରେ ସ୍ୱୀକାର କରୁଥିବା ନୈୟାୟିକମାନେ ଜୀବଭିନ୍ନ ଈଶ୍ୱରର ଅସ୍ତିତ୍ୱ ଇତ୍ୟାଦିକୁ ସାଧନରୂପରେ ଗ୍ରହଣ କରନ୍ତି । ତେବେ ଜନ୍ମାଦି ସୂତ୍ର ଦ୍ୱାରା କଣ ସଂସାର ଅନୁମାନ ପ୍ରମାଣ ଦ୍ୱାରା ନ୍ୟସ୍ତ ଅଛି କି ?

(ଗ) ତାହା ନୁହେଁ, ସୂତ୍ର ଗୁଡ଼ିକର ବେଦାନ୍ତବାକ୍ୟ ସମୂହ ଫୁଲଗୁନ୍ଥା ହେଲାଭଳି ଗୁନ୍ଥା ହୋଇଛି । ଏହି ବାକ୍ୟଗୁଡ଼ିକ ମଧ ସୂତ୍ରଦ୍ୱାରା ଉଦାହରଣ ମାଧମରେ ବିଋର କରାଯାଇଛି । ବାକ୍ୟାର୍ଥ ବିଋର ଦ୍ୱାରା ତାତ୍ପର୍ଯ୍ୟ ନିର୍ଣ୍ଣୟ ହେଲେ ବ୍ରହ୍ମାବଗତି ହୁଏ । କିନ୍ତୁ ଅନୁମାନ ପ୍ରମାଣ ଦ୍ୱାରା ଏହା ନିଷ୍ପନ୍ନ ହୁଏ ନାହିଁ ।

(୫) ମୂଳ- (କ) ସତ୍ସୁ ତୁ ବେଦାନ୍ତବାକ୍ୟେଷୁ ଜଗତୋ ଜନ୍ମାଦିକାରଣବାଦିଷୁ ତଦର୍ଥଗ୍ରହଣଦାର୍ଢ୍ୟାନୁମାନମପି ବେଦାନ୍ତବାକ୍ୟବିରୋଧି ପ୍ରମାଣଂ ଭବନ୍ନ ନିବାର୍ଯ୍ୟତେ, ଶ୍ରୁତ୍ୟୈବ ଚ ସହାୟତ୍ୱେନ ତର୍କସ୍ୟାଭ୍ୟୁପେତତ୍ୱାତ୍ । (ଖ) ତଥାହି-'ଶ୍ରୋତବ୍ୟଃ, ମନ୍ତବ୍ୟଃ' (ବୃହ ୨।୪।୫) ଇତି ଶ୍ରୁତିଃ, 'ପଣ୍ଡିତୋ ମେଧାବୀ ଗନ୍ଧାରାନେବୋପସଂପଦ୍ୟେତୈବମେ ବେହାଋର୍ଯ୍ୟବାନ୍-ପୁରୁଷୋ ବେଦ' (ଛା ୬।୧୪।୨) ଇତି ଚ ପୁରୁଷବୁଦ୍ଧିସାହାଯ୍ୟମାତ୍ମନୋ ଦର୍ଶୟତି । (ଗ) ନ



ଧର୍ମଜିଜ୍ଞାସାୟାମବି ଶ୍ରୁତ୍ୟାଦୟଃ ଏବଂ ପ୍ରମାଣଂ ବ୍ରହ୍ମଜିଜ୍ଞାସାୟାମ୍ । କିନ୍ତୁ ଶ୍ରୁତ୍ୟାଦୟୋଽନୁଭବାଦୟଶ୍ଚ ଯଥାସମ୍ଭବମିହ ପ୍ରମାଣମ୍, ଅନୁଭବାବସାନ ତ୍ୱାଦ୍‌ଭୂତବସ୍ତୁବିଷୟତ୍ୱାଚ୍ଚ ବ୍ରହ୍ମଜ୍ଞାନସ୍ୟ । (ଘ) କର୍ତ୍ତବ୍ୟେ ହି ବିଷୟେ ନାନୁଭବାପେକ୍ଷାସ୍ତୀତି ଶ୍ରୁତ୍ୟାଦୀନାମେବ ପ୍ରାମାଣ୍ୟଂ ସ୍ୟାତ୍, ପୁରୁଷାଧୀନାତ୍ମଲାଭତ୍ୱାଚ୍ଚ କର୍ତ୍ତବ୍ୟସ୍ୟ । (ଙ) କର୍ତ୍ତୁମକର୍ତ୍ତୁମନ୍ୟଥାକର୍ତ୍ତୁମନ୍ୟଥା ବା କର୍ତ୍ତୁଂ ଶକ୍ୟଂ ଲୌକିକ ବୈଦିକଞ୍ଚ କର୍ମ, ଯଥାଶ୍ୱେନ ଗଚ୍ଛତି, ପଦ୍‌ଭ୍ୟାମନ୍ୟଥା ବା, ନ ବା ଗଚ୍ଛତୀତି ।

(୫) ଭାଷାନ୍ତର- (କ) ଜନ୍ମାଦିସୂତ୍ରକୁ ଜଗତର କାରଣ ରୂପରେ ପ୍ରତିପାଦନ୍ କରୁଥିବା ବେଦାନ୍ତ ବାକ୍ୟଗୁଡ଼ିକ ଥିଲେ ମଧ୍ୟ ଏହି ଅର୍ଥ ଗ୍ରହଣର ଦୃଢ଼ତାନିମିତ୍ତ ବେଦାନ୍ତ ବାକ୍ୟଗୁଡ଼ିକର ଅବିରୋଧୀ ଅନୁମାନ ପ୍ରମାଣ ଯଦି ହୁଅନ୍ତି, ତେବେ ସେଗୁଡ଼ିକ ମଧ୍ୟ ଗ୍ରହଣ କରାଯିବ, କାରଣ-ବେଦବାକ୍ୟର ସହାୟତାରେ ତର୍କ, ଅନୁମାନ ପ୍ରଭୃତି ଗ୍ରହଣ କରିଯା'ନ୍ତି ।

(ଖ) ଯଥା 'ଶ୍ରୋତବ୍ୟଃ ମନ୍ତବ୍ୟଃ', ଇତ୍ୟାଦି ଶ୍ରୁତିବାକ୍ୟ 'ପଣ୍ଡିତ, ଜ୍ଞାନୀ, ଗାନ୍ଧାର ଦେଶକୁ ପାଏ, ସେ ଆଚାର୍ଯ୍ୟବାନ୍ ପୁରୁଷ ସମସ୍ତ କଥା ଜାଣେ' ଇତ୍ୟାଦି ପୁରୁଷ ବୁଦ୍ଧି ସହାୟକ ହୋଇ ଆତ୍ମାକୁ ଦେଖାଏ ।

(ଗ) ଧର୍ମଜିଜ୍ଞାସା ସଦୃଶ ବେଦଗୁଡ଼ିକ କେବଳ ବ୍ରହ୍ମଜିଜ୍ଞାସା ପାଇଁ କାରଣ ନୁହଁନ୍ତି, ଶ୍ରୁତି ଇତ୍ୟାଦି ମଧ୍ୟ ଯଥାସମ୍ଭବ ପ୍ରମାଣରୂପରେ ଗୃହୀତ ହୁଅନ୍ତି । ଏହି ବ୍ରହ୍ମଜ୍ଞାନର ସିଦ୍ଧବସ୍ତୁ ବିଷୟ ଓ ବ୍ରହ୍ମସାକ୍ଷାତ୍‌କାର ପର୍ଯ୍ୟନ୍ତ ଏହିମାନେ ଗ୍ରହଣ ଯୋଗ୍ୟ ।

(ଘ) କର୍ତ୍ତବ୍ୟ ବିଷୟରେ ଅନୁଭବକୁ ଅପେକ୍ଷା କରାଯାଏ ନାହିଁ । ଏଠାରେ ଅତିରିକ୍ତ ଧର୍ମାର୍ଜନ ପୁରୁଷାଧୀନ ହେତୁ ଶ୍ରୁତି ହିଁ କେବଳ ପ୍ରାମାଣ୍ୟ ।

(ଙ) ଅତଏବ ଲୌକିକ ଓ ବୈଦିକ କର୍ମ କରିବା ଅଥବା ନ କରିବା, ଅଥବା, ସଂପୂର୍ଣ୍ଣ ନ କରିବା ଇତ୍ୟାଦି ପୁରୁଷାଧୀନ ଅଟେ । ଉଦାହରଣସ୍ୱରୂପ- ଘୋଡ଼ାରେ ଯାଉଛି, ପାଦରେ ଯାଉଛି ଅଥବା ନ ଯାଉଛି ଇତ୍ୟାଦି ।

(୬) ମୂଳ- (କ) ତଥା 'ଅହୋରାତ୍ରଂ ଷୋଡ଼ଶିନଂ ଗୃହ୍ଣାତି', 'ନାତିରାତ୍ରେ ଷୋଡ଼ଶିନଂ ଗୃହ୍ଣାତି', 'ଉଦିତେ ଜୁହୋତି', 'ଅନୁଦିତେ ଜୁହୋତି', ଇତିବିଧିପ୍ରତିଷେ-ଧାଶ୍ଚାତ୍ରାର୍ଥବନ୍ତଃ ସ୍ୟୁଃ । ବିକଳ୍ପୋତ୍ସର୍ଗାପବାଦାଶ୍ଚ । (ଖ) ନ ତୁ ବସ୍ତ୍ୱେବଂ ନୈବମସ୍ତି ବା ବିକଳ୍ପତେ । ବିକଳ୍ପନାସ୍ତୁ ପୁରୁଷବୁଦ୍ଧ୍ୟପେକ୍ଷା । ନ ବସ୍ତୁଯାଥାତ୍ମ୍ୟଜ୍ଞାନଂ ପୁରୁଷବୁଦ୍ଧ୍ୟପେକ୍ଷମ୍ । କିଂ ତର୍ହି ବସ୍ତୁତନ୍ତ୍ରମେବ ତତ୍ ?

(ଗ) ନହି ସ୍ଥାଣାବେକସ୍ମିନ୍ ସ୍ଥାଣୁର୍ବା ପୁରୁଷୋଽନ୍ୟୋ ବେତି ତତ୍ତ୍ୱଜ୍ଞାନଂ ଭବତି । ତତ୍ର ପୁରୁଷୋଽନ୍ୟୋ ବେତି ତତ୍ତ୍ୱଜ୍ଞାନଂ ଭବତି । (ଘ) ତତ୍ର ପୁରୁଷୋଽନ୍ୟୋବେତି ମିଥ୍ୟାଜ୍ଞାନମ୍ । ସ୍ଥାଣୋରେବେତି ତତ୍ତ୍ୱଜ୍ଞାନଂ ବସ୍ତୁତନ୍ତ୍ରତ୍ୱାତ୍ । ଏବଂ ଭୂତବସ୍ତୁବିଷୟାଣାଂ ପ୍ରାମାଣ୍ୟଂ ବସ୍ତୁତନ୍ତ୍ରମ୍ ।

(୬) ଭାଷାନ୍ତର- (କ) 'ଅହୋରାତ୍ରିରେ ଷୋଡ଼ଶୀକୁ ଗ୍ରହଣ କରେ', 'ଅତିରାତ୍ରିରେ ଷୋଡ଼ଶୀକୁ ଗ୍ରହଣ କରେ ନାହିଁ, 'ସୂର୍ଯ୍ୟୋଦୟ ପରେ ଅଗ୍ନିହୋତ୍ର କରାଯାଏ', 'ସୂର୍ଯ୍ୟୋଦୟପୂର୍ବରୁ ଅଗ୍ନିହୋତ୍ର କରାଯାଏ', - ଏହିଭଳି ବିଧି ଓ ପ୍ରତିଷେଧ ଯୁକ୍ତ ହୋଇପାରନ୍ତି । ଅଥବା ବିକଳ୍ପ, ତ୍ୟାଗ, ଅପବାଦ ମଧ୍ୟ ହୋଇପାରନ୍ତି ।

(ଖ) ଏହିଭଳି ପଦାର୍ଥ ନାହିଁ ବୋଲି ବିକଳ୍ପଜ୍ଞାନ ସମ୍ଭବ ନୁହେଁ । ବିକଳ୍ପଜ୍ଞାନ ପୁରୁଷ ଉପରେ ନିର୍ଭର କରେ । ତାହେଲେ ବସ୍ତୁତନ୍ତ୍ର କ'ଣ ?

(ଗ) କୌଣସି ସ୍ଥାଣୁସ୍ଥାନରେ ସ୍ଥାଣୁ କି ପୁରୁଷଭିନ୍ନ ଅନ୍ୟକିଛି ଅଛି ବୋଲି କୌଣସି ତତ୍ତ୍ୱଜ୍ଞାନ ନାହିଁ । କିନ୍ତୁ ସେଠାରେ ପୁରୁଷଭିନ୍ନ ଅନ୍ୟକିଛି ତତ୍ତ୍ୱଜ୍ଞାନ ଅଛି ।

(ଘ) ପୁନଶ୍ଚ ପୁରୁଷ ଭିନ୍ନ ଅନ୍ୟକିଛି ମିଥ୍ୟାଜ୍ଞାନ ଅଛି । ଏହା ସ୍ଥାଣୁ ବୋଲି ଯେଉଁ ତତ୍ତ୍ୱଜ୍ଞାନ ସିଦ୍ଧ ହୁଏ, ତାହାହିଁ ବସ୍ତୁତନ୍ତ୍ର ଦ୍ୱାରା ସମ୍ଭବ । ସିଦ୍ଧବସ୍ତୁ ବିଷୟକ ଜ୍ଞାନ ହେଉଛି ବସ୍ତୁତନ୍ତ୍ର ପ୍ରାମାଣ୍ୟ । (ସେଠାରେ ବ୍ରହ୍ମଜ୍ଞାନ ରହି ମଧ୍ୟ ତାହା ବସ୍ତୁର ଅଧୀନ । କାରଣ- ତାହା ସିଦ୍ଧବସ୍ତୁ)

(୭) ମୂଳ-(କ) ନନୁ ଭୂତବସ୍ତୁତ୍ୱଂ ବ୍ରହ୍ମଣଃ ପ୍ରାମାଣାନ୍ତରବିଷତ୍ୱମେବେତି ବେଦାନ୍ତ ବାକ୍ୟ ବିଚାରଣାନର୍ଥକୈବ ପ୍ରାପ୍ତା । (ଖ) ନ, ଇନ୍ଦ୍ରିୟାବିଷୟତ୍ୱେନ ସମ୍ବନ୍ଧାଗ୍ରହାତ୍ । ସ୍ୱାଭାବତୋ ବିଷୟବିଷୟିଣୀନ୍ଦ୍ରିୟାଣି ନ ବ୍ରହ୍ମବିଷୟାଣି । (ଗ) ସତିହୀନ୍ଦ୍ରିୟବିଷୟତ୍ୱେ ବ୍ରହ୍ମଣ ଇଦଂ ବ୍ରହ୍ମଣା ସମ୍ବନ୍ଧଂ କାର୍ଯ୍ୟମିତି ଗୃହ୍ୟତେ । (ଘ) କାର୍ଯ୍ୟମାତ୍ରମେବ ତୁ ଗୃହ୍ୟମାଣଂ କିଂ ବ୍ରହ୍ମଣା ସମ୍ବନ୍ଧଂ କିମନ୍ୟେନ କେନଚିଦ୍ ବା ସମ୍ବନ୍ଧମିତି ନ ଶକ୍ୟଂ ନିଶ୍ଚେତୁମ୍ । (ଙ) ତସ୍ମାଜ୍ଜନ୍ମାଦିସୂତ୍ରଂ ନାନୁମାନୋପନ୍ୟାସାର୍ଥମ୍ । କି ତହିଁ ? ବେଦାନ୍ତବାକ୍ୟପ୍ରଦର୍ଶନାର୍ଥମ୍ ।

(୭) ଭାଷାନ୍ତର-ଶଙ୍କା- (କ) ସିଦ୍ଧବସ୍ତୁଗୁଡ଼ିକର ପ୍ରମାଣ ଯୁକ୍ତିଯୁକ୍ତ ହେଲେ ବ୍ରହ୍ମ ଅନ୍ୟପ୍ରମାଣ ଦ୍ୱାରା ବିଷୟ ହୁଏ । କିନ୍ତୁ ଏହାଦ୍ୱାରା ବେଦାନ୍ତ ବାକ୍ୟ ଗୁଡ଼ିକର ବିଚାର ଅର୍ଥହୀନ କି ?



ସମାଧାନ - (ଖ) ନୁହେଁ, ବ୍ରହ୍ମ ଇନ୍ଦ୍ରିୟ ବିଷୟ ନୁହେଁ । ଅତଃ ପ୍ରକୃତରେ ଇନ୍ଦ୍ରିୟ ବିଷୟମାନଙ୍କର ବିଷୟକ ହୁଏ । କିନ୍ତୁ ବ୍ରହ୍ମ ବିଷୟକ ନୁହେଁ ।

(ଗ) ବ୍ରହ୍ମ ଇନ୍ଦ୍ରିୟର ବିଷୟ ହେଲେ ଜଗତର ସମସ୍ତ କାର୍ଯ୍ୟରୂପ ବ୍ରହ୍ମ ସହିତ ସମ୍ବନ୍ଧ ହେବ । ଏହା ସୁନିଶ୍ଚିତ ।

(ଘ) ବ୍ରହ୍ମ ସହ କାର୍ଯ୍ୟମାତ୍ର ଅର୍ଥାତ୍ ଜଗତ୍‌ରୂପ ଇନ୍ଦ୍ରିୟ ଦ୍ୱାରା ଗୃହୀତ ହେଲେ ବ୍ରହ୍ମସହ ତାହାର ସମ୍ବନ୍ଧ ଅଥବା ଅନ୍ୟ କାହାଦ୍ୱାରା ସମ୍ବନ୍ଧ ହେବ ବୋଲି ଏହା ସ୍ଥିର ଭାବରେ କହିହେବ ନାହିଁ ।

(ଙ) ସେହି ହେତୁ ଜନ୍ମାଦିସୂତ୍ର ଅନୁମାନ ଦ୍ୱାରା ସ୍ଥାପନା ହେବା ଅସମ୍ଭବ । କିନ୍ତୁ ବେଦାନ୍ତ ବାକ୍ୟକୁ ଦେଖାଇବାରେ ସମର୍ଥ ହେବ ।

(୮) ମୂଳ- (କ) କିଂ ପୁନରେତଦ୍‌ବେଦାନ୍ତବାକ୍ୟାନାଂ ଯତ୍‌ସୂତ୍ରେଣେହ ଲିଲକ୍ଷୟିଷିତୁମ୍ ? (ଖ) ଭୃଗୁର୍ବୈ ବାରୁଣି ବରୁଣ ପିତରମୁପସସାର, ଅଧୀହି ଭଗବୋ ବ୍ରହ୍ମେତି'- ଇତ୍ୟୁପକ୍ରମ୍ୟାହ-'ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି, ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି, ତଦ୍‌ବିଜିଜ୍ଞାସସ୍ୱ', (ତୈତି ୩।୧) (ଗ) ତସ୍ୟ ଚ ନିର୍ଣ୍ଣୟବାକ୍ୟମ୍-'ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ, ଆନନ୍ଦେନ ଜାତାନି ଜୀବନ୍ତି, ଆନନ୍ଦଂ ପ୍ରୟନ୍ତ୍ୟଭିସଂବିଶନ୍ତି', (ତୈତି ୩।୬) ଅନ୍ୟାନ୍ୟପ୍ୟେବଂ ଜାତୀୟକାନି ବାକ୍ୟାନି ନିତ୍ୟଶୁଦ୍ଧବୁଦ୍ଧମୁକ୍ତସ୍ୱଭାବସର୍ବଜ୍ଞ-ସ୍ୱରୂପକାରଣବିଷୟାଣ୍ୟୁଦାହର୍ତ୍ତବ୍ୟାନି ।

(୮) ଭାଷାନ୍ତର- (କ) ଏହା କଣ ବେଦାନ୍ତବାକ୍ୟ, ଯେଉଁଗୁଡ଼ିକ ଏଠାରେ ଲକ୍ଷଣରୂପରେ ବିଚାର କରାଯିବ କି ?

(ଖ) ବାରୁଣି ଭୃଗୁ, ନିଜପିତା ବରୁଣଙ୍କ ସମୀପକୁ ଗଲେ ଏବଂ କହିଲେ- ହେ ଭଗବାନ୍ ! ମୋତେ ବ୍ରହ୍ମ ପଢ଼ାଅ'- ଏହିଠାରୁ ଆରମ୍ଭ କରି କୁହାଗଲା ଯେ- 'ଯାହାଠାରୁ ସମସ୍ତ ଭୂତଭୌତିକ ଉତ୍ପନ୍ନ ହେଉଛନ୍ତି, ଯାହାଦ୍ୱାରା ଜୀବନଲାଭ କରୁଛନ୍ତି, ଯାହାଠାରେ ଲୟ ହୋଇ ପ୍ରବେଶ କରନ୍ତି, ତାହା ବ୍ରହ୍ମ ବୋଲି ଜାଣ ।

(ଗ) ତାହାର ନିର୍ଣ୍ଣୟ ବାକ୍ୟ ହେଉଛି- ଆନନ୍ଦଦ୍ୱାରା ପ୍ରାଣୀମାନେ ଜାତହୁଅନ୍ତି, ଜାତହୋଇ ଆନନ୍ଦରେ କାଳଯାପନ କରନ୍ତି- ଏହିଭଳି ଅନେକପ୍ରକାର ବାକ୍ୟନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ, ସ୍ୱଭାବ ଓ ସର୍ବଜ୍ଞସ୍ୱରୂପ, କାରଣ ବିଷୟରେ ଉଦାହରଣ ଦିଅନ୍ତି ।

## ३ शास्त्रयोनित्वाधिकरणम् ॥ सू० ३ ॥

## ୩-ଶାସ୍ତ୍ରଯୋନିତ୍ୱାଧିକରଣମ୍

(୧) ମୂଳ- (କ) ଜଗତ୍‌କାରଣ ପ୍ରଦର୍ଶନେନ ସର୍ବଜ୍ଞ ବ୍ରହ୍ମୋତ୍କ୍ଷେପିତଂ ତଦେବ ଦ୍ରଢୟନ୍ନାହ-

**(୧) ଭାଷାନ୍ତର** - (କ) ସଂସାରର କାରଣ ଦେଖାଇ ସର୍ବଜ୍ଞ ବ୍ରହ୍ମକୁ ପ୍ରତିପାଦନ କରି ତାହାକୁ ସବଳ କରୁଛି-

**शास्त्रयोनित्वात् ॥३॥**

**ଶାସ୍ତ୍ରଯୋନିତ୍ୱାତ୍ ।୧।୧।୩।**

**ଶାସ୍ତ୍ରଯୋନିତ୍ୱାତ୍**- ସବୁ ଶାସ୍ତ୍ରର ଉତ୍ପତ୍ତି ସ୍ଥଳ ହିଁ ବ୍ରହ୍ମ ।୧।୧।୩

(୨) ମୂଳ- (କ) ମହତଃ ଋଗ୍‌ବେଦାଦେଃ ଶାସ୍ତ୍ରସ୍ୟାନେକବିଦ୍ୟାସ୍ଥାନୋ-ପବୃଂହିତସ୍ୟ ପ୍ରଦୀପବତ୍ ସର୍ବାର୍ଥାବିଦ୍ୟୋତିନଃ ସର୍ବଜ୍ଞକଳ୍ପସ୍ୟ ଯୋନିଃ କାରଣଂ ବ୍ରହ୍ମ । (ଖ) ନ ହୀଦୃଶସ୍ୟ ଶାସ୍ତ୍ରସ୍ୟର୍ଗ୍ବେଦାଦିଲକ୍ଷଣସ୍ୟ ସର୍ବଜ୍ଞଜ୍ଞାନାନ୍ୱିତସ୍ୟ ତସ୍ୟ ସର୍ବଜ୍ଞାଜ୍ଜନ୍ୟଃ ସମ୍ଭବୋଽସ୍ତି । (ଗ) ଯଦ୍‌ବଦ୍‌ବିସ୍ତାରାର୍ଥଂ ଶାସ୍ତ୍ରଂ ଯସ୍ମାତ୍ ପୁରୁଷବିଶେଷାତ୍ ସମ୍ଭବତି, ଯଥା ବ୍ୟାକରଣାଦି ପାଣିନ୍ୟାଦେର୍ଜ୍ଞେୟୈକ-ଦେଶାର୍ଥମପି । ସ ତତୋଽପ୍ୟଧିକତର ବିଜ୍ଞାନ ଇତି ପ୍ରସିଦ୍ଧଂ ଲୋକେ । (ଘ) କିମୁ ବକ୍ତବ୍ୟମନେକଶାଖାଭେଦଭିନ୍ନସ୍ୟ ଦେବ୍ତିର୍ଯଙ୍ ମନୁଷ୍ୟବର୍ଣ୍ଣାଶ୍ରମାଦିପ୍ରବିଭାଗ-ହେତୋର୍ଋଗ୍‌ବେଦାଦ୍ୟାଖ୍ୟସ୍ୟ ସର୍ବଜ୍ଞାନାକାରସ୍ୟାପ୍ରୟ-ତ୍ନେନୈବ ଲୀଳା ନ୍ୟାୟେନ ପୁରୁଷବଦ୍ୟସ୍ମାନ୍ ମହତୋ ଭୂତାଦ୍ୟୋନେଃ ସମ୍ଭବଃ । (ଙ) ଅସ୍ୟ ମହତୋ ଭୂତସ୍ୟ ନିଶ୍ୱସିତମେତଦ୍ୟଦୃଗ୍‌ବେଦଃ, (ବୃହ ୨।୪।୧୦) ଇତ୍ୟାଦିଶ୍ରୁତେଃ, ତସ୍ୟ ମହତୋ ଭୂତସ୍ୟ ନିରତିଶୟଂ ସର୍ବଜ୍ଞତ୍ୱଂ ସର୍ବଶକ୍ତିମତ୍ୱଞ୍ଚେତି ପ୍ରଥମବର୍ଣ୍ଣକମ୍ ।

**(୨) ଭାଷାନ୍ତର**- (କ) ଯେପରି ଦୀପ ସବୁ ସ୍ଥାନକୁ ସମାନ ଆଲୋକ ପ୍ରଦାନ କରେ, ସେପରି ଅନେକ ବିଦ୍ୟା ସଂଯୁକ୍ତ ଦୀପ୍ତିମାନ୍, ସର୍ବଜ୍ଞସଦୃଶ ଯେଉଁ ଋଗ୍‌ବେଦ ପ୍ରଭୃତି ଅଛନ୍ତି, ସେମାନଙ୍କର କାରଣ (ଉତ୍ପତ୍ତି ସ୍ଥଳ) ବ୍ରହ୍ମ ।

(ଖ) ଏହି ସର୍ବଜ୍ଞାନ ଓ ଗୁଣ ସମନ୍ୱିତ ଋଗ୍‌ବେଦାଦି ଲକ୍ଷ୍ମଣ ଶାସ୍ତ୍ରର ଉତ୍ପତ୍ତି ବ୍ରହ୍ମବ୍ୟତିତ ଅନ୍ୟ କିଛି ହୋଇ ନପାରେ ।



(ଗ) ଯେପରି ପାଣିନୀ ମୁନିଙ୍କର ବ୍ୟାକରଣ ଶାସ୍ତ୍ର ବ୍ୟାକରଣ ଶାସ୍ତ୍ରର ଅଂଶବିଶେଷ, ସେପରି ବିସ୍ତାର ଶାସ୍ତ୍ରଠାରୁ ବ୍ରହ୍ମ ଉତ୍କୃଷ୍ଟତର । ଅର୍ଥାତ୍ ଏମାନେ ବ୍ରହ୍ମର ଅଂଶ ବିଶେଷ ।

(ଘ) ଯେପରି ଅନେକ ଶାଖା ଭେଦରେ ଭିନ୍ନ ଦେବତା, ମନୁଷ୍ୟ, ପଶୁ, ବର୍ଣ୍ଣ, ଆଶ୍ରମାଦି ପ୍ରଭୃତି ବିଭାଗର ଭଣ୍ଡାର, ସେପରି ଋଗ୍‌ବେଦ ଇତ୍ୟାଦି ଲୀଳାନ୍ୟାୟରେ ପୁରୁଷର ନିଃଶ୍ୱାସପରି । ଏହା ବିରାଟ ପ୍ରାଣୀଠାରୁ ଉଦ୍‌ଭବ ।

(ଙ) ଯଥା- ଏହି ବିରାଟ ପ୍ରାଣୀର ଋଗ୍‌ବେଦ ନିଃଶ୍ୱାସ ସ୍ୱରୂପ', ଏହି ବେଦବାକ୍ୟ ଦ୍ୱାରା ବିରାଟ ବ୍ରହ୍ମର ନିରତିଶୟତ୍ୱ ସର୍ବଜ୍ଞତ୍ୱ, ସର୍ବଶକ୍ତିମତ୍ୱ, ପ୍ରଭୃତି ପ୍ରକାଶ ପାଉଛି ।

(୩) **ମୂଳ-** (କ) ଅଥବା ଯଥୋକ୍ତମୃଗ୍‌ବେଦାଦି ଶାସ୍ତ୍ରଂ ଯୋନିଃ କାରଣଂ ପ୍ରମାଣମସ୍ୟ ବ୍ରହ୍ମଣୋ ଯଥାବତ୍‌ସ୍ୱରୂପାଧିଗମେ । (ଖ) ଶାସ୍ତ୍ରାଦେବ ପ୍ରମାଣାଜ୍ଜଗତୋ ଜନ୍ମାଦିକାରଣଂ ବ୍ରହ୍ମାଧିଗମ୍ୟତ ଇତ୍ୟଭିପ୍ରାୟଃ । (ଗ) ଶାସ୍ତ୍ରମୁଦାହୃତଂ ପୂର୍ବସୂତ୍ରେ-'ଯତୋ ବା ଇମାନି ଭୂତାନି ଜାୟନ୍ତେ' ଇତ୍ୟାଦି । କିମର୍ଥଂ ତର୍ହୀଦଂ ସୂତ୍ରମ୍ ? ଯାବତା ପୂର୍ବସୂତ୍ର ଏବୈବଂଜାତୀୟକଂ ଶାସ୍ତ୍ରମୁଦାହ୍ରତା ଶାସ୍ତ୍ରଯୋନିତ୍ୱଂ ବ୍ରହ୍ମଣୋ ଦର୍ଶିତମ୍ । (ଘ) ଉଚ୍ୟତେ- ତତ୍ର ପୂର୍ବସୂତ୍ରାକ୍ଷରେଣ ସ୍ପଷ୍ଟଂ ଶାସ୍ତ୍ରସ୍ୟାନୁପାଦାନାଜ୍ଜନ୍ମାଦି କେବଳମନୁମାନମୁପନ୍ୟସ୍ତମିତ୍ୟାଶଙ୍କ୍ୟେତ, ତାମାଶଙ୍କା ନିବର୍ତ୍ତୟିତୁମିଦଂ ସୂତ୍ରଂ ପ୍ରବର୍ତ୍ତତେ ଶାସ୍ତ୍ରଯୋନିତ୍ୱାଦିତି ।

(୩) **ଭାଷାନ୍ତର-** (କ) ଅଥବା ପୂର୍ବୋକ୍ତ ଋଗ୍ ବେଦାଦିଶାସ୍ତ୍ର, ଏହାର ଶାସ୍ତ୍ରଯୋନି ବା କାରଣ ବ୍ରହ୍ମ ବିଷୟ, ବ୍ରହ୍ମର ସ୍ୱରୂପ ବିଷୟ-ଏହିପରି ଆଲୋଚନାରୁ ଜଣାଯାଏ ।

(ଖ) ସଂସାରର ଉତ୍ପତ୍ତିସ୍ଥଳ ବ୍ରହ୍ମ ବୋଲି ଶାସ୍ତ୍ରୀୟପ୍ରମାଣରୁ ଜଣାପଡ଼େ ।

(ଗ) ସଂସାର ତାହାଠାରୁ ଉତ୍ପନ୍ନ, ତାହାଠାରେ ସ୍ଥିତି ପ୍ରଭୃତି ବାକ୍ୟ ଶାସ୍ତ୍ରରେ କୁହାଯାଇଛି । ସେଗୁଡ଼ିକ ଏପରି କାହିଁକି କୁହାଯାଇଛି ? ବ୍ରହ୍ମର ଶାସ୍ତ୍ରଯୋନିତ୍ୱ କାହିଁକି ପ୍ରମାଣିତ ?

(ଘ) **ସମାଧାନ-** ସେଠାରେ ପୂର୍ବ ସୂତ୍ରର ଅର୍ଥଦ୍ୱାରା ଶାସ୍ତ୍ରର ସ୍ପଷ୍ଟତା କରାଯାଇ ନାହିଁ । ଏଥିପାଇଁ ସଂସାରର କେବଳ ଜନ୍ମାଦି ଅନୁମାନ ରୂପରେ ଆଶଙ୍କା ହେବାରୁ ଏହାର ନିବୃତ୍ତ ପାଇଁ ଶାସ୍ତ୍ର ଯୋନିସୂତ୍ର ପ୍ରବୃତ୍ତ ଅଟେ ।

## समन्वयाधिकरणम् । सू०४

## ୪-ସମନ୍ୱୟାଧିକରଣ

(୧) ମୂଳ- (କ) କଥଂ ପୁନର୍ବ୍ରହ୍ମଣଃ ଶାସ୍ତ୍ରପ୍ରମାଣକତ୍ୱମୁଚ୍ୟତେ । ଯାବତା 'ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାଦାନର୍ଥକ୍ୟମତଦର୍ଥାନାମ୍', (ଜୈ.ସୂ (୧।୨।୧) ଇତି କ୍ରିୟାପରତ୍ୱଶାସ୍ତ୍ରସ୍ୟ ପ୍ରଦର୍ଶିତମ୍ । (ଖ) ଅତୋ ବେଦାନ୍ତବାକ୍ୟାନାମାନର୍ଥକ୍ୟମ୍, ଅକ୍ରିୟାର୍ଥତ୍ୱାତ୍, କର୍ତ୍ତୃଦେବତାଦି ପ୍ରକାଶନାର୍ଥତ୍ୱେନ ବା କ୍ରିୟାବିଧିଶେଷତ୍ୱମ୍, ଉପାସନାଦିକ୍ରିୟାନ୍ତର ବିଧାନାର୍ଥତ୍ୱଂ ବା । (ଗ) ନ ହି ପରିନିଷ୍ଠିତବସ୍ତୁପ୍ରତିପାଦନଂ ସମ୍ଭବତି, ପ୍ରତ୍ୟକ୍ଷାଦିବିଷୟତ୍ୱାତ୍ ପରିନିଷ୍ଠିତବସ୍ତୁନଃ, ତତ୍ପ୍ରତିପାଦନେ ଚ ହେୟୋପାଦେୟରହିତେ ପୁରୁଷାର୍ଥାଭାବାତ୍ । (ଘ) ଅତଏବ 'ସୋଽରୋଦୀତ୍' ଇତ୍ୟେବମାଦୀନାମାନର୍ଥକ୍ୟଂ ମା ଭୂଦିତି 'ବିଧିନା ତ୍ୱେକବାକ୍ୟତ୍ୱାତ୍ ସ୍ତୁତ୍ୟର୍ଥେନ ବିଧୀନାଂ ସ୍ୟୁଃ,' (ଜୈ.ସୂ ୧।୨।୭) ଇତି ସ୍ତାବକତ୍ୱେନାର୍ଥବତ୍ତ୍ୱମୁକ୍ତମ୍ । (ଙ)) ନ କ୍ୱଚିଦପି ବେଦବାକ୍ୟାନାଂ ବିଧିସଂସ୍ପର୍ଶମନ୍ତରେଣାର୍ଥବତ୍ତା ଇଷ୍ଟୋପପନ୍ନା ଚ ।

(୧) **ଭାଷାନ୍ତର**- (କ) ବ୍ରହ୍ମର ଶାସ୍ତ୍ରହିଁ ପ୍ରମାଣ- ଏହି କିପରି ସମ୍ଭବ ? ଯେ ପର୍ଯ୍ୟନ୍ତ ବେଦକ୍ରିୟାର୍ଥକ ଅଟେ । କାରଣ-କ୍ରିୟାଠାରୁ ଭିନ୍ନସିଦ୍ଧବସ୍ତୁ ପ୍ରତିପାଦକ ବେଦବାକ୍ୟ ଅନର୍ଥକ ଅର୍ଥାତ୍ ପ୍ରୟୋଜନହୀନ । ତେଣୁ ଶାସ୍ତ୍ରର କ୍ରିୟାପରତ୍ୱ ନିଶ୍ଚିତ ଭାବରେ ଅଛି ।

(ଖ) ଅତଃ ବେଦାନ୍ତ ବାକ୍ୟ ଗୁଡ଼ିକ କ୍ରିୟାହୀନ ହେବା ଦ୍ୱାରା ଅର୍ଥହୀନ ମଧ୍ୟ ହୁଅନ୍ତି । ଅଥବା କର୍ତ୍ତା ଓ ଦେବତାମାନଙ୍କର ପ୍ରକାଶରୂପ ପ୍ରୟୋଜନ ଦ୍ୱାରା ବେଦାନ୍ତବାକ୍ୟ କ୍ରିୟାବିଧିର ଅଙ୍ଗ ଅଥବା ଉପାସନାଦି ଅନ୍ୟକ୍ରିୟାର ବିଧାନ ନିମିତ୍ତ ପ୍ରଯୁଜ୍ୟ ।

(ଗ) ପୁନଶ୍ଚ ସିଦ୍ଧବସ୍ତୁମାନଙ୍କର ପ୍ରତ୍ୟକ୍ଷାଦି ବିଷୟ ଏବଂ ଏହାପାଇଁ ତ୍ୟାଗରୂପକ ଉପାଦେୟହୀନ ପ୍ରମାଣରେ ପୁରୁଷର ଅଭାବହେତୁ ସିଦ୍ଧବସ୍ତୁମାନଙ୍କର ପ୍ରମାଣ ହେବା ସମ୍ଭବପର ନୁହେଁ ।

(ଘ) ଅତଏବ 'ସେ କାନ୍ଦୁଅଛି' ପ୍ରଭୃତି ବାକ୍ୟ ମଧ୍ୟ ଅର୍ଥହୀନ ନୁହେଁ । ବିଧିବାକ୍ୟ ସହିତ ଅର୍ଥବାଦବାକ୍ୟର 'ଅର୍ଥବାଦବାକ୍ୟ ସହିତ ବିଧିର ସ୍ତୁତିହେତୁ ଏକବାକ୍ୟତା ଅଟେ'- ଏହି ପ୍ରକାର ସ୍ତୁତିପରକ ହେବାଦ୍ୱାରା ସାର୍ଥକ ମନ୍ତ୍ରଗୁଡ଼ିକର କ୍ରିୟା ଓ ତାର ସାଧନ ଉକ୍ତହେବାରୁ କର୍ମସହ ସମ୍ବନ୍ଧ କୁହାଗଲା ।

(ଙ) ତେଣୁ ପ୍ରମାଣିତ ହେଲା ଯେ- କୌଣସିଠାରେ ବେଦବାକ୍ୟ ଗୁଡ଼ିକ ବିଧିବାକ୍ୟର ସହାୟତା ବିନା ଅର୍ଥଯୁକ୍ତ ହୁଅନ୍ତି ନାହିଁ ।



## तत्तु समन्वयात् ॥ ४ ॥

## (୧) ତତ୍ତୁସମନ୍ୱୟାତ୍ ୧।୧।୪

(୨) ତତ୍-ତାହା, ତୁ-ହିଁ, ସମନ୍ୱୟାତ୍-ସମନ୍ୱୟ ହୋଇଯିବାରୁ ।

(୩) ମୂଳ-(କ) ତୁଶବ୍ଦଃ ପୂର୍ବପକ୍ଷବ୍ୟାବୃତ୍ତ୍ୟର୍ଥଃ । (ଖ) ତଦ୍‌ବ୍ରହ୍ମ ସର୍ବଜ୍ଞ, ସର୍ବଶକ୍ତିଜଗଦୁତ୍ପତ୍ତିସ୍ଥିତିଲୟକାରଣଂ ବେଦାନ୍ତଶାସ୍ତ୍ରାଦେବାବଗମ୍ୟତେ । କଥମ୍ ? ସମନ୍ୱୟାତ୍ । (ଗ) ସର୍ବେଷୁ ହି ବେଦାନ୍ତେଷୁ ବାକ୍ୟାନି ତାତ୍ପର୍ଯ୍ୟେଣୈ ସ୍ୟୋର୍ଥସ୍ୟ ପ୍ରତିପାଦକତ୍ୱେନ ସମନୁଗତାନି । 'ସଦେବ ସୋମ୍ୟେଦମଗ୍ର ଆସୀତ୍, 'ଏକମେବାଦ୍ୱିତୀୟମ୍' (ଛା ୬।୨।୧), 'ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍' (ଐତ ୨।୧।୧।୧), 'ତଦେତଦ୍‌ବ୍ରହ୍ମାପୂର୍ବମନପରମମନନ୍ତରମବାହ୍ୟମ୍', 'ଅୟମାତ୍ମା । ବ୍ରହ୍ମ ସର୍ବାନୁଭୂଃ' (ବୃହ ୨।୫।୨୬), 'ବ୍ରହ୍ମୈବେଦମମୃତଂ ପୁରସ୍ତାତ୍' (ମୁଣ୍ଡ ୨।୧।୧୧), ଇତ୍ୟାଦୀନି । (ଘ) ନ ଚ ତଦ୍‌ଗତାନାଂ ପଦାନାଂ ବ୍ରହ୍ମସ୍ୱରୂପବିଷୟେ ନିଶ୍ଚିତେ ସମନ୍ୱୟେଽବଗମ୍ୟମାନେଽର୍ଥାନ୍ତରକଳ୍ପନାଃ ଯୁକ୍ତାଃ ଶ୍ରୁତହାନ୍ୟଶ୍ରୁତକଳ୍ପନାପ୍ରସଂଗାତ୍ । (ଙ) ନ ଚ ତେଷାଂ କର୍ତ୍ତୃତ୍ୱସ୍ୱରୂପପ୍ରତିପାଦନ-ପରତାବସୀୟତେ, 'ତତ୍‌କେନଙ୍କ ପଶ୍ୟେତ୍' (ବୃହ ୨।୪।୧୩) ଇତ୍ୟାଦିକ୍ରିୟା-କାରଫଳନିରାକରଣଶ୍ରୁତେଃ । (ଚ) ନ ଚ ପରିନିଷ୍ଠିତ ବସ୍ତୁସ୍ୱରୂପତ୍ୱେଽପି ପ୍ରତ୍ୟକ୍ଷାଦିବିଷୟତ୍ୱଂ ବ୍ରହ୍ମଣଃ 'ତତ୍ତ୍ୱମସି' (ଛା ୬।୮।୭) ଇତି ବ୍ରହ୍ମାତ୍ମଭାବସ୍ୟ ଶାସ୍ତ୍ରମନ୍ତରେଣାନବଗମ୍ୟମାନତ୍ୱାତ୍ ।

**(୩) ଭାଷାତଂର-** (କ) ତୁଶବ୍ଦ ପକ୍ଷର ନିରାକରଣ ନିମିତ୍ତ ।

(ଖ) ସେହି ବ୍ରହ୍ମ ସର୍ବଜ୍ଞ, ସର୍ବଶକ୍ତିମାନ୍, ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟର କାରଣ ବୋଲି ବେଦାନ୍ତ ବାକ୍ୟରୁ ଜଣାପଡ଼େ ।

(ଗ) ଯେହେତୁ ସମସ୍ତ ବେଦାନ୍ତ ବାକ୍ୟଗୁଡ଼ିକ ତାତ୍ପର୍ଯ୍ୟ ଓ ଅର୍ଥଦ୍ୱାରା ପ୍ରତିପାଦିତ ରୂପରେ ସମନ୍ୱିତ ହେଉଛନ୍ତି । ଯଥା- 'ହେ ସୋମ୍ୟ ! ପ୍ରଥମେ ଉତ୍ପତ୍ତିର ପୂର୍ବରୁ ଏକମାତ୍ର ଅଦ୍ୱିତୀୟ ସତ୍ ଆତ୍ମା ଥିଲା', 'ଏହି (ମାୟାଯୁକ୍ତ) ସେହି (ମାୟାରହିତ) ବ୍ରହ୍ମ କାରଣରହିତ, କାର୍ଯ୍ୟରହିତ, ବିଜାତୀୟଦ୍ରବ୍ୟରହିତ ଓ ଅଦ୍ୱିତୀୟ', 'ଏହି ଆତ୍ମା ସମସ୍ତଙ୍କୁ ଅନୁଭବ କରେ-ଏହା ବ୍ରହ୍ମ ଅଟେ ।' 'ଏହି ଅମୃତମୟ ବ୍ରହ୍ମ ପ୍ରଥମେ ଥିଲା', ଇତ୍ୟାଦି ବାକ୍ୟଗୁଡ଼ିକ । (ବେଦାନ୍ତବାକ୍ୟରେ ସମନ୍ୱିତ ହେବାରୁ ବ୍ରହ୍ମଠାରୁ ସଂସାର ଉତ୍ପନ୍ନ)

(ଘ) କାରଣ-ବେଦର ଅର୍ଥ କରିବାରେ ଠିକ୍ ପ୍ରସଙ୍ଗ ଆସୁଥିବାରୁ ଏଠାରେ ଅର୍ଥାନ୍ତର (ଅନ୍ୟାର୍ଥ) କଳ୍ପନା ଯୁକ୍ତିଯୁକ୍ତ ନୁହେଁ । କାରଣ-ଏହିପରି ସ୍ୱୀକାର କଲେ ଶ୍ରୁତ (ଶ୍ରୁତିପ୍ରତିପାଦିତ ବ୍ରହ୍ମ ଅର୍ଥର ହାନି ଓ ଅଶ୍ରୁତି-ଶ୍ରୁତି ଅପ୍ରତିପାଦିତ ଯାଗାଦିକ୍ରିୟା) ଅର୍ଥର କଳ୍ପନା କରିବାକୁ ପଡ଼େ ।

(ଙ) 'କାହାଦ୍ୱାରା କିଏ ଦେଖାଯାଏ' ଏହି ବାକ୍ୟଦ୍ୱାରା କ୍ରିୟା, କାରକଫଳର ନିଷେଧ ହେଉଥିବାରୁ କର୍ତ୍ତୃତ୍ୱସ୍ୱରୂପପ୍ରତିପାଦନର କିନ୍ତୁ ଅବସାନ ହୁଏ ନାହିଁ ।

(ଚ) ସିଦ୍ଧବସ୍ତୁସ୍ୱରୂପ ହେଲେ ବ୍ରହ୍ମପ୍ରତ୍ୟକ୍ଷାଦି ପ୍ରମାଣର ବିଷୟତ୍ୱ ହୁଏ ନାହିଁ, କାରଣ ବ୍ରହ୍ମର ଉପଦେଶ ସର୍ବଦା ସଫଳ ଓ 'ତତ୍ତ୍ୱମସି' ଏହି ବ୍ରହ୍ମାତ୍ମଭାବ ଶାସ୍ତ୍ର ବିନା ଅବଗତ ହୁଏ ନାହିଁ ।

(୪) ମୂଳ- (କ) ଯତ୍ତୁ- ହେୟୋପାଦେୟରହିତତ୍ୱାଦୁପଦେଶାନର୍ଥକ୍ୟମିତି, ନୈଷୋ ଦୋଷଃ, ହେୟୋପାଦେୟଶୂନ୍ୟ ବ୍ରହ୍ମାତ୍ମତାବଗମାଦେବ ସର୍ବକ୍ଲେଶଗ୍ରହଣାତ୍ ପୁରୁଷାର୍ଥସିଦ୍ଧେଃ । ଦେବତାଦି ପ୍ରତିପାଦନସ୍ୟ ତୁ ସ୍ୱବାକ୍ୟଗଣେପାସନାର୍ଥତ୍ୱେଽପି ନ କଶ୍ଚିଦ୍‌ବିରୋଧଃ । (ଖ) ନ ତୁ ତଥା ବ୍ରହ୍ମଣ ଉପାସନାବିଧିଶେଷତ୍ୱଂ ସମ୍ଭବତି, ଏକତ୍ୱେ ହେୟୋପାଦେୟଶୂନ୍ୟ ତୟା କ୍ରିୟାକାରକାଦିଦ୍ୱୈତବିଜ୍ଞାନୋପମ-ଦୋପପତ୍ତେଃ । ନ ହ୍ୟେକତ୍ୱବିଜ୍ଞାନେନୋନ୍ମଥିତସ୍ୟ ଦ୍ୱୈତବିଜ୍ଞାନସ୍ୟ ପୁନ ସମ୍ଭବୋଽସ୍ତି, ଯେନୋପାସନାବିଧିଶେଷତ୍ୱଂ ବ୍ରହ୍ମଣଃ ପ୍ରତିପଦ୍ୟତେ । (ଗ) ଯଦ୍ୟପ୍ୟନ୍ୟତ୍ର ବେଦବାକ୍ୟାନାଂ ନ ବିଧିସଂସ୍ପର୍ଶମନ୍ତରେଣ ପ୍ରମାଣତ୍ୱଂ ଦୃଷ୍ଟମ୍, ତଥାପ୍ୟାତ୍ମବିଜ୍ଞାନସ୍ୟ ଫଳପର୍ଯ୍ୟନ୍ତ-ତ୍ୱାଚ୍ଚ ତଦ୍‌ବିଷୟସ୍ୟ ଶାସ୍ତ୍ରସ୍ୟ ପ୍ରାମାଣ୍ୟଂ ଶକ୍ୟଂ ପ୍ରତ୍ୟାଖ୍ୟାତୁମ । (ଘ) ନ ଘନୁମାନଗମ୍ୟଂ ଶାସ୍ତ୍ରପ୍ରାମାଣ୍ୟଂ, ଯେନାନ୍ୟତ୍ର ଦୃଷ୍ଟଂ ନିଦର୍ଶନମପେକ୍ଷେତ । ତସ୍ମାତ୍ ସିଦ୍ଧଂ ବ୍ରହ୍ମଣଃ ଶାସ୍ତ୍ରପ୍ରମାଣକତ୍ୱମ୍ ।

**(୪) ଭାଷା-ଶଙ୍କା-**(କ) ହେୟ (ତ୍ୟାଜ୍ୟବସ୍ତୁ), ଉପାଦେୟ (ଗ୍ରହଣୀୟ) ବିହୀନ ବ୍ରହ୍ମାତ୍ମଭାବ ଅବଗତ ହେଲେ ସବୁଦୁଃଖ ଗୁଡ଼ିକର ନିବୃତ୍ତି ଓ ପରମପୁରୁଷାର୍ଥ ସିଦ୍ଧ ହୁଏ । ଏହାଦ୍ୱାରା ହେୟୋ ପାଦେୟରହିତ କାରଣରୁ ବ୍ରହ୍ମର ଉପଦେଶ ନିଷ୍ଫଳ ହୁଏ- ଏହି ପ୍ରକାର ଯାହା କୁହାଯାଇଛି ତାହା ବ୍ୟର୍ଥ ନୁହେଁ, ଦେବତାଦି ପ୍ରତିପାଦକବାକ୍ୟ ବେଦାନ୍ତବାକ୍ୟଗତ ଉପାସନା ପରକ ହେଲେ କାହାରି ବିରୋଧ ହୁଏନାହିଁ ।

(ଖ) କିନ୍ତୁ ଏହି ପ୍ରକାର ବ୍ରହ୍ମର ଉପାସନା ବିଧିର ଅଙ୍ଗ ହୋଇଥାଏ । ଏକତ୍ୱଜ୍ଞାନ ଜାତହେଲେ ବ୍ରହ୍ମ ହେୟୋପାଦେୟ ନ ହେଲେ କ୍ରିୟା, କାରକାଦି ଦ୍ୱୈତବିଜ୍ଞାନର



ବାଧା ଜାତ ହୁଏ ନାହିଁ, କାରଣ-ଏକତ୍ୱ ବିଜ୍ଞାନଦ୍ୱାରା ହାନି ହୁଏ ଓ ଦ୍ୱୈତଜ୍ଞାନର ସମ୍ଭବ ହୁଏ ନାହିଁ । ଯଦ୍ୱାରା ବ୍ରହ୍ମ ଉପାସନାବିଧିର ଅଙ୍ଗରୂପରେ ଗୃହୀତ ହୁଏ ।

(ଗ) ଯଦ୍ୟପି ବେଦାନ୍ତଭିନ୍ନ ଅନ୍ୟଶାସ୍ତ୍ରମାନଙ୍କରେ ଅର୍ଥବାଦ ଇତ୍ୟାଦି ବେଦବାକ୍ୟମାନଙ୍କର ବିଧିସହ ସମ୍ବନ୍ଧ ବିନା ପ୍ରମାଣତା ପ୍ରଦର୍ଶନ ହୁଏ ନାହିଁ, ତଥାପି ଆତ୍ମଜ୍ଞାନକୁ ଆତ୍ମସାକ୍ଷାତ୍କାରଫଳ ପର୍ଯ୍ୟନ୍ତ ସ୍ୱୀକାର କଲେ ବ୍ରହ୍ମବିଷୟକ -ଶାସ୍ତ୍ରର ପ୍ରମାଣତା ଖଣ୍ଡନ ହୁଏନାହିଁ ।

(ଘ) କିନ୍ତୁ ଶାସ୍ତ୍ରପ୍ରାମାଣ୍ୟ ଅନୁମାନଗମ୍ୟ ନୁହେଁ । ଯଦ୍ୱାରା ଅନ୍ୟତ୍ର ପ୍ରତ୍ୟକ୍ଷଜ୍ଞାନକୁ ଅପେକ୍ଷା କରେ । ସେହିହେତୁ ବ୍ରହ୍ମଶାସ୍ତ୍ର ପ୍ରମାଣକ ସିଦ୍ଧ ଅଟେ ।

(୫) ମୂଳ- (କ) ଅତ୍ରାପରେ ପ୍ରତ୍ୟବତିଷ୍ଠନ୍ତେ-ଯଦ୍ୟପି ଶାସ୍ତ୍ରପ୍ରମାଣକଂ ବ୍ରହ୍ମ, ତଥାପି ପ୍ରତିପତ୍ତିବିଧିବିଷୟତୟୈବ ଶାସ୍ତ୍ରେଣ ବ୍ରହ୍ମସମର୍ପ୍ୟତେ । (ଖ) ଯଥା-ଯୂପାହବନୀୟାଦୀନ୍ୟଲୌକିକନ୍ୟପି ବିଧିଶେଷତୟା ଶାସ୍ତ୍ରେଣ ସମର୍ପ୍ୟତେ । ତଦ୍ ବତ୍ । ପ୍ରବୃତ୍ତିନିବୃତ୍ତିପ୍ରୟୋଜନତ୍ୱାଚ୍ଛାସ୍ତସ୍ୟ ।

**ଭାଷାନ୍ତର** - (କ) କେତେକ ବୃତ୍ତିକାର ପୂର୍ବପାକ୍ଷିକ କହନ୍ତି-ଯଦ୍ୟପି ବ୍ରହ୍ମ ଶାସ୍ତ୍ରପ୍ରମାଣକ, ତଥାପି ପ୍ରତିପତ୍ତି (ଉପାସନା) ବିଧିର ବିଷୟ ରୂପରେ ଶାସ୍ତ୍ରଦ୍ୱାରା ବ୍ରହ୍ମବୋଧ ହୁଏ ।

(ଖ) ଯେପରି ଯୂପ (ଯଜ୍ଞରେ ଆବଶ୍ୟକୀୟ କାଠଖୁଣ୍ଟ) ଅହବନୀୟ ଇତ୍ୟାଦି ଅଲୌକିକ ପଦାର୍ଥଗୁଡ଼ିକର ମଧ୍ୟ ବିଧିର ଅଙ୍ଗ ରୂପଦ୍ୱାରା ଶାସ୍ତ୍ର ବ୍ରହ୍ମକୁ ବୁଝାଏ । ଏହା କିପରି ସମ୍ଭବ ହୁଏ ? ଶାସ୍ତ୍ରର ପ୍ରବୃତ୍ତି ଓ ନିବୃତ୍ତିର ପ୍ରୟୋଜନ ଦ୍ୱାରା ସମ୍ଭବ ହୁଏ ।

(୬) ମୂଳ-(କ) ତଥାହି ଶାସ୍ତ୍ରତାତ୍ପର୍ଯ୍ୟବିଦ ଆହୁଃ - 'ଦୃଷ୍ଟୋ ହି ତସ୍ୟାର୍ଥଃ କର୍ମାବବୋଧନମ୍' (ଜୈ.ସୂ ୧।୧।୧) ଇତି । ଚୋଦନେତି କ୍ରିୟାୟାଃ ପ୍ରବର୍ତ୍ତକଂ ବଚନମ୍ ତସ୍ୟଜ୍ଞାନମୁପଦେଶଃ' (ଜୈ.ସୂ ୧।୧।୫), 'ତଦ୍‌ଭୂତାନାଂ କ୍ରିୟାର୍ଥେନ ସମାମ୍ନାୟଃ' (ଜୈ.ସୂ ୧।୧।୫), 'ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାଦାନର୍ଥକ୍ୟମତଦର୍ଥାନାମ୍' (ଜୈ.ସୂ ୧।୨।୧)ଇତି । (ଖ) ଅତଃ ପୁରୁଷଂ କ୍ୱଚିଦ୍‌ବିଷୟ ବିଶେଷେ ପ୍ରବର୍ତ୍ତୟତ୍ କୁତଶ୍ଚିଦ୍ ବିଷୟ ବିଶେଷାନ୍ ନିବର୍ତ୍ତୟଚ୍ଚାର୍ଥବଚ୍ଛାସ୍ତ୍ରମ୍ । (ଗ) ତଚ୍ଛେଷତୟା ଚାନ୍ୟଦୁପଯୁକ୍ତମ୍ । ତତ୍‌ସାମାନ୍ୟାଦ୍ ବେଦାନ୍ତାନାମପି ତଥୈବାର୍ତ୍ଥବତ୍ତ୍ୱଂ ସ୍ୟାତ୍ ।

(୬) ଭାଷାନ୍ତର- (କ) ତାପରେ କେତେକ ଶାସ୍ତ୍ରଜ୍ଞ କହନ୍ତି - 'କର୍ମର ଜ୍ଞାନ କରିବାହିଁ ଶାସ୍ତ୍ରଦୃଷ୍ଟଫଳ ଅଟେ', 'କ୍ରିୟାର ପ୍ରବର୍ତ୍ତକବଚନ ହିଁ ଚୋଦନା, ଧର୍ମର ଜ୍ଞାପକ ଅପୌରୁଷେୟ ବିଧିବାକ୍ୟ', 'ବେଦସିଦ୍ଧ ଅର୍ଥର ବାଚକ ପଦମାନଙ୍କର କ୍ରିୟା ବାଚକପଦ ସହିତ ଉଚ୍ଚାରଣ କରିବା ଉଚିତ', 'ବେଦ କ୍ରିୟାର୍ଥକ ଅଟେ, ଅତଏବ କ୍ରିୟାଦ୍ୱାରା ଭିନ୍ନସିଦ୍ଧ ଅର୍ଥପ୍ରତିପାଦକ, ବେଦବାକ୍ୟ ନିଷ୍ଫଳ ଅଟେ ।'

(ଖ) ତେଣୁ ପୁରୁଷକୁ କୌଣସି ଏକ ବିଷୟରେ ପ୍ରବୃତ୍ତ ବା ନିବୃତ୍ତ କରିବା ଶାସ୍ତ୍ରର ସାର୍ଥକ ଅଟେ ।

(ଗ) ଦ୍ୱିତୀୟବାକ୍ୟ ଏହାର ଅଙ୍ଗଭୂତ ହୋଇ ଉପଯୁକ୍ତ ହୁଏ । ଏହା ସହିତ ସମାନତା ହେଲେ ବେଦାନ୍ତବାକ୍ୟ ମଧ୍ୟ ଏହି ପ୍ରକାର ସାର୍ଥକ ହୁଏ ।

(୭) ମୂଳ- (କ) ସତିହି ବିଧିପରତ୍ୱେ ଯଥା ସ୍ୱର୍ଗାଦିକାମସ୍ୟାଗ୍ନିହୋତ୍ରା-ଦିସାଧନଂ ବିଧୀୟତ ଏବମମୃତତ୍ୱକାମସ୍ୟ ବ୍ରହ୍ମଜ୍ଞାନଂ ବିଧୀୟତ ଇତି ଯୁକ୍ତମ୍ । (ଖ) ନନ୍ୱିହ ଜିଜ୍ଞାସ୍ୟ ବୈଲକ୍ଷଣ୍ୟମୁକ୍ତଂ କର୍ମକାଣ୍ଡେ ଭବ୍ୟୋଧର୍ମୋ ଜିଜ୍ଞାସ୍ୟଃ, ଇହତୁ ଭୂତଂ ନିତ୍ୟନିବୃତ୍ତଂ ବ୍ରହ୍ମଜିଜ୍ଞାସ୍ୟମିତି ତତ୍ର ଧର୍ମଜ୍ଞାନଫଳାଦନୁଷ୍ଠାନ । ପେକ୍ଷାଦ୍ ବିଲକ୍ଷଣଂ ବ୍ରହ୍ମଜ୍ଞାନଂ ଭବିତୁମର୍ହତି । (ଗ) ନାର୍ହତ୍ୟେବ ଭବିତୁମ୍ । କାର୍ଯ୍ୟବିଧିପ୍ରଯୁକ୍ତ ସ୍ୟୈବ ବ୍ରହ୍ମଣଃ ପ୍ରତିପାଦ୍ୟମାନତ୍ୱାତ୍ । 'ଆତ୍ମା ବାଽରେ ଦ୍ରଷ୍ଟବ୍ୟଃ' (ବୃହ ୨।୪।୫) ଇତି । ''ଯଃ ଆତ୍ମାଽପହପାପ୍ମା ସୋଽନ୍ୱେଷ୍ଟବ୍ୟଃ, ସ ବିଜିଜ୍ଞାସିତବ୍ୟଃ'' (ଛା ୮।୭।୯), 'ଆତ୍ମେତ୍ୟେବୋପାସୀତ', (ବୃହ ୯।୪।୭), ଆତ୍ମାନମେବ ଲୋକମୁପାସୀତ' (ବୃହ ୯।୬।୮୫), 'ବ୍ରହ୍ମ ବେଦ ବ୍ରହ୍ମୈବ ଭବତି' (ମୁଣ୍ଡ ୨।୨ ୯) (ଘ) ଇତ୍ୟାଦିବିଧାନେଷ୍ଟୁ ସସ୍ତୁ କୋଽସାବାତ୍ମା, କିଂ ତଦ୍‌ବ୍ରହ୍ମ ? ଇତ୍ୟାକାଂଙ୍କ୍ଷାୟାଂ ତତ୍‌ସ୍ୱରୂପସମର୍ପଣେନ ସର୍ବେ ବେଦାନ୍ତା ଉପଯୁକ୍ତାଃ- 'ନିତ୍ୟଃ ସର୍ବଗତୋ, ନିତ୍ୟତୃପ୍ତୋ, ନିତ୍ୟଶୁଦ୍ଧବୁଦ୍ଧମୁକ୍ତସ୍ୱଭାବୋ ବିଜ୍ଞାନମାନନ୍ଦଂ ବ୍ରହ୍ମ' ଇତ୍ୟେବମାଦୟଃ ।

(୭) ଭାଷାନ୍ତର- (କ) ବିଧିପରକ ବ୍ରହ୍ମହେଲେ ଯେପରି ସ୍ୱର୍ଗାଦି କାର୍ଯ୍ୟ ପାଇଁ ଅଗ୍ନି ହୋତ୍ରାଦିକାରଣରୂପରେ ବିଧାନ କରାଯାଏ, ସେପରି ମଧ୍ୟ ଅମୃତକାମ ପାଇଁ ବ୍ରହ୍ମଜ୍ଞାନକୁ କାରଣ ରୂପରେ କୁହାଯାଇଛି ।

(ଖ) ପୂର୍ବପକ୍ଷ - ଜିଜ୍ଞାସ୍ୟର ବୈଲକ୍ଷଣ୍ୟ (ଭେଦ୍)କୁ କୁହାଯାଇଛି ଯେ- କର୍ମକାଣ୍ଡରେ ଧର୍ମଜିଜ୍ଞାସ୍ୟ ସାଧ୍ୟ ହୁଏ, କିନ୍ତୁ ଜ୍ଞାନକାଣ୍ଡରେ ସର୍ବଦା ନିବୃତ୍ତ ହୁଏ । ନିତ୍ୟ



ବ୍ରହ୍ମଜିଜ୍ଞାସ୍ୟ ଓ ଏହି ଅନୁଷ୍ଠାନକୁ ଅପେକ୍ଷା କରୁଥିବା ଧର୍ମଫଳଦ୍ୱାରା ବ୍ରହ୍ମଜ୍ଞାନର ଫଳ ବିଲକ୍ଷଣ ହୋଇଯାଏ ।

(ଗ) **ଉତ୍ତରପକ୍ଷ-** ଏହା ନୁହେଁ । କାରଣ-କର୍ମବିଧିରେ ପ୍ରଯୁକ୍ତ ହୋଇ ବ୍ରହ୍ମ ପ୍ରତିପଦ୍ୟମାନ ହୁଏ । ଯଥା- 'ଆତ୍ମାକୁ ସାକ୍ଷାତ୍କାର କରିବା ଉଚିତ୍', 'ଆତ୍ମା ପାପରହିତ, ଏହାକୁ ଅନୁସନ୍ଧାନ କରିବା ଉଚିତ, ଏହା ମଧ୍ୟ ଜିଜ୍ଞାସ୍ୟ', 'ଆତ୍ମାକୁ ଉପାସନା କରିବା ଉଚିତ', 'ଜ୍ଞାନସ୍ୱରୂପ ଆତ୍ମାର ଉପାସନା କରିବା ଉଚିତ୍', 'ବ୍ରହ୍ମକୁ ଜାଣିଥିବା ବ୍ୟକ୍ତି ବ୍ରହ୍ମ ହୁଏ' ଏହିଭଳି ଆକାଂକ୍ଷାରେ 'ଆତ୍ମା କିଏ', ସେ କ'ଣ ବ୍ରହ୍ମ ?

(ଘ) ଇତ୍ୟାଦି ଜିଜ୍ଞାସାରେ ତାହାର ସ୍ୱରୂପନିରୂପଣ କରିବା ପାଇଁ ବ୍ରହ୍ମ ନିତ୍ୟ, ସର୍ବଜ୍ଞ, ସର୍ବଗତ, ନିତ୍ୟସୁପ୍ତ, ନିତ୍ୟ-ଶୁଦ୍ଧ-ମୁକ୍ତସ୍ୱଭାବ, ବିଜ୍ଞାନ, ଆନନ୍ଦରୂପ ଇତ୍ୟାଦି ବେଦାନ୍ତାବକ୍ୟ ଗୁଡ଼ିକ ପ୍ରଯୁକ୍ତ ହୁଅନ୍ତି ।

(୮) ମୂଳ- (କ) ତଦୁପାସନାଚ୍ଚ ଶାସ୍ତ୍ରଦୃଷ୍ଟୋଽଦୃଷ୍ଟୋ ମୋକ୍ଷଃ ଫଳଂ ଭବିଷ୍ୟତୀତି । କର୍ତ୍ତବ୍ୟବିଧ୍ୟନନୁପ୍ରବେଶେ ବସ୍ତୁମାତ୍ରକଥନେ ହାନୋପାଦାନ-ସମ୍ଭବାତ୍ 'ସପ୍ତଦ୍ୱୀପା ବସୁମତୀ', 'ରାଜାସୌ ଗଚ୍ଛତି' ଇତ୍ୟାଦିବାକ୍ୟବଦ୍ ବେଦାନ୍ତ-ବାକ୍ୟାନାମାନର୍ଥକ୍ୟମେବ ସ୍ୟାତ୍ । (ଖ) ନନୁ ବସ୍ତୁମାତ୍ରକଥନେଽପି 'ରଜ୍ଜୁରିୟଂ ନାୟଂ ସର୍ପଃ' ଇତ୍ୟାଦୌ ଭ୍ରାନ୍ତିଜନିତଭୀତିନିବର୍ତ୍ତନେନାର୍ଥବତ୍ତ୍ୱଂ ଦୃଷ୍ଟମ୍, ତଥେହାପ୍ୟସଂସାର୍ଯ୍ୟାତ୍ମବସ୍ତୁକଥନେନ ସଂସାରିତ୍ୱଭ୍ରାନ୍ତିନିବର୍ତ୍ତନେନାର୍ଥବତ୍ତ୍ୱଂ ସ୍ୟାତ୍ । ସ୍ୟାଦେତଦେବମ୍ । (ଗ) ଯଦି ରଜ୍ଜୁସ୍ୱରୂପଶ୍ରବଣ ଇବ ସର୍ପଭ୍ରାନ୍ତିଃ, ସଂସାରିତ୍ୱଭ୍ରାନ୍ତିର୍ବ୍ରହ୍ମସ୍ୱରୂପଶ୍ରବଣମାତ୍ରେଣ ନିବର୍ତ୍ତେତ । (ଘ) ନ ତୁ ନିବର୍ତ୍ତତେ, ଶ୍ରୁତଶ୍ରବଣୋଽପି ଯଥାପୂର୍ବଂ ସୁଖଦୁଃଖାଦିସଂସାରିଧର୍ମଦର୍ଶନାତ୍, 'ଶ୍ରୋତବ୍ୟୋ, ମନ୍ତବ୍ୟୋ, ନିଦିଧ୍ୟାସିତବ୍ୟଃ (ଛା ୨।୪।୫) ଇତି ଚ ଶ୍ରବଣୋତରକାଳଯୋର୍ମନନ-ନିଦିଧ୍ୟାସନୟୋର୍ବିଧିଦର୍ଶନାତ୍ । (ଙ) ତସ୍ମାତ୍ ପ୍ରତିପତ୍ତିବିଧିବିଷୟତୟୈବ ଶାସ୍ତ୍ରପ୍ର-ମାଣକଂ ବ୍ରହ୍ମାଭ୍ୟୁପଗନ୍ତବ୍ୟମିତି ।

(୮) **ଭାଷାନ୍ତର- ପୂର୍ବପକ୍ଷ-** (କ) ଏହି ଉପାସନାରୁ ଶାସ୍ତ୍ରବୋଧଅଦୃଷ୍ଟ ମୋକ୍ଷରୂପଫଳ ହୁଏ । ଯଦ୍ୟପି ବେଦାନ୍ତବାକ୍ୟ କର୍ତ୍ତବ୍ୟ ବିଧିର ସହିତ ଅସମ୍ବନ୍ଧ ହୋଇ ବସ୍ତୁମାତ୍ରକଥନରେ ହାନୋପାଦନର ଅସମ୍ଭବ ହୁଏ ତେବେ 'ସପ୍ତଦ୍ୱୀପ ବିଶିଷ୍ଟ ପୃଥିବୀ' 'ରାଜା ଯାଉଛି' ଇତ୍ୟାଦି ବାକ୍ୟପରି ବେଦାନ୍ତବାକ୍ୟଗୁଡ଼ିକ ନିରର୍ଥକ ହୋଇପାରେ ।

(ଖ) ଶଙ୍କା- କିନ୍ତୁ 'ଏହା ରଜ୍ଜୁସର୍ପ ନୁହେଁ' ଇତ୍ୟାଦି ମିଥ୍ୟା ଜ୍ଞାନଜନିତ ଭୟର ନିବୃତ୍ତି ଦ୍ୱାରା ବାକ୍ୟରେ ଅର୍ଥବତ୍ତା (ସାର୍ଥକତା) ମଧ୍ୟ ଅଛି, ସେପରି ଏହି ପ୍ରସଙ୍ଗରେ ଏହି

ପ୍ରକାର ଅସଂସାରୀ ଆତ୍ମପଦାର୍ଥ କହିବାଦ୍ୱାରା ସଂସାରିତ୍ୱଭ୍ରାନ୍ତିର ନିବୃତ୍ତ ହୋଇ ସାର୍ଥକତା ହୁଏ ।

(ଗ) ରଜ୍ଜୁ ସ୍ୱରୂପ ଶ୍ରବଣମାତ୍ରକେ ସର୍ପଜ୍ଞାନ ହି ମିଥ୍ୟା ହେଲାପରି ସଂସାରର ମିଥ୍ୟା, ମାୟା, ଇତ୍ୟାଦି ବସ୍ତୁସ୍ୱରୂପ ଶ୍ରବଣ ହେବା ସଙ୍ଗେ ସଙ୍ଗେ ବାଧିତ ହୋଇପାରେ ।

(ଘ) ସେପରି କିନ୍ତୁ ବ୍ରହ୍ମଜ୍ଞାନ ଶ୍ରବଣ କରୁଥିବା ବ୍ୟକ୍ତିଠାରେ ପୂର୍ବଭଳି ସୁଖଦୁଃଖାଦି ସଂସାରଧର୍ମ ଦେଖାଗଲେ ମଧ୍ୟ ଏହା ନିବୃତ୍ତ ହୁଏ ନାହିଁ । କାରଣ- 'ଶ୍ରୋତବ୍ୟ, ମନ୍ତବ୍ୟ ନିଦିଧ୍ୟାସିତବ୍ୟ' ଇତ୍ୟାଦି ବାକ୍ୟ ଦ୍ୱାରା ଶ୍ରବଣର ପରବର୍ତ୍ତୀ କାଳରେ ମନନ ଓ ନିଦିଧ୍ୟାସନ ବିଧିଦ୍ୱୟ ଦେଖାଯାଆନ୍ତି ।

(ଙ) ସେହି ହେତୁ ଉପାସନା ବିଧିର ବିଷୟଦ୍ୱାରା ବ୍ରହ୍ମଶାସ୍ତ୍ର ପ୍ରମାଣକ ହୁଏ ।

(୯) ମୂଳ- (କ) ଅତ୍ରାଭିଧୀୟତେ-ନ, କର୍ମ-ବ୍ରହ୍ମବିଦ୍ୟାଫଳୟୋଃ ବୈଲକ୍ଷଣ୍ୟମ୍ । ଶାରୀରଂ ବାଚିକଂ ମାନସଞ୍ଚ କର୍ମ ଶ୍ରୁତିସ୍ମୃତିସିଦ୍ଧଂ ଧର୍ମାଖ୍ୟମ୍ ଯଦ୍‌ବିଷୟା ଜିଜ୍ଞାସା, 'ଅଥାତୋ ଧର୍ମଜିଜ୍ଞାସା', (ଜୈ.ସୂ ୧।୧।୧) ଇତି ସୂତ୍ରିତା । (ଖ) ଅଧର୍ମୋଽପି ହିଂସାଦିଃ ପ୍ରତିଷେଧଚୋଦନାଲକ୍ଷଣତ୍ୱାଜ୍ଜିଜ୍ଞାସ୍ୟଃ ପରିହାରାୟ । ତୟୋଶ୍ଚୋଦନାଲକ୍ଷଣ-ୟୋରର୍ଥାନର୍ଥୟୋ ଧର୍ମାଧର୍ମୟୋଃ ଫଳେ ପ୍ରତ୍ୟକ୍ଷେ ସୁଖଦୁଃଖେ ଶରୀରବାଙ୍‌ମନା-ଚୈବୋପଭୁଜ୍ୟମାନେ ବିଷୟେନ୍ଦ୍ରିୟସଂୟୋଗଜନ୍ୟେ ବ୍ରହ୍ମାଦିଷୁ ସ୍ଥାବରାନ୍ତେଷୁ ପ୍ରସିଦ୍ଧେଃ ।

**(୯) ଭାଷାନ୍ତର-ଉତ୍ତରପକ୍ଷ-** (କ) ପୂର୍ବୋକ୍ତପକ୍ଷ ଯୁକ୍ତିଯୁକ୍ତ ନୁହେଁ, କାରଣ- କର୍ମ ଓ ବ୍ରହ୍ମବିଦ୍ୟାର ଫଳ ମଧ୍ୟରେ ପାର୍ଥକ୍ୟ ଦେଖାଯାଏ, ବେଦ ଓ ଧର୍ମଶାସ୍ତ୍ରରେ ଶାରୀର, ବାଚିକ ଓ ମାନସିକ ରୂପରେ କର୍ମତ୍ରୟକୁ ଧର୍ମ ବୋଲି ସ୍ୱୀକାର କରାଯାଇଛି । ଯେଉଁ ବିଷୟ ଜିଜ୍ଞାସ୍ୟ, ତାହା 'ଅଥାତୋ ଧର୍ମଜିଜ୍ଞାସା' ସୂତ୍ରଦ୍ୱାରା କୁହାଯାଇଛି ।

(ଖ) ଅଧର୍ମ ଓ ହିଂସାର ମଧ୍ୟ ପ୍ରତିଷେଧ ଚୋଦନା ରୂପରେ ଅଧର୍ମଶବ୍ଦ ଜିଜ୍ଞାସ୍ୟ ଅଟେ ଏବଂ ଏହି ଚୋଦନାତ୍ମକ ଅର୍ଥ ଓ ଅନର୍ଥରୂପ ଧର୍ମ ଅଧର୍ମ ଶରୀର ବାକ୍ ଓ ମନଦ୍ୱାରା ଉପଭୁଜ୍ୟମାନ ତଥା ବିଷୟେନ୍ଦ୍ରିୟସଂୟୋଗରେ ଜନ୍ୟ ପ୍ରତ୍ୟକ୍ଷ, ସୁଖଦୁଃଖରୂପ ଫଳ ବ୍ରହ୍ମଠାରୁ ସ୍ଥାବର ପର୍ଯ୍ୟନ୍ତ ସମସ୍ତଙ୍କଠାରେ ପ୍ରସିଦ୍ଧ ।

(୧୦) ମୂଳ- (କ) ମନୁଷ୍ୟତ୍ୱାଦାରଭ୍ୟ ବ୍ରହ୍ମାନ୍ତେଷୁ ଦେହବତ୍ସୁ ସୁଖ-ତାରତମ୍ୟ ମନୁଶ୍ରୂୟତେ, ତତଶ୍ଚ ତଦ୍‌ଧେତୋର୍ଧର୍ମସ୍ୟ ତାରତମ୍ୟଂ ଗମ୍ୟତେ । (ଖ) ଧର୍ମତାରତମ୍ୟାଦଧିକାରି ତାରତମ୍ୟମ୍ । ପ୍ରସିଦ୍ଧଂ ଚାର୍ଥିତ୍ୱସାମର୍ଥ୍ୟାଦି କୃତମଧିକା-ରିତାରତମ୍ୟମ୍ । (ଗ) ତଥା ଚ



ଯାଗାଦ୍ୟନୁଷ୍ଠାୟିନାମେବ ବିଦ୍ୟାସମାଧି ବିଶେଷାଦୁତ୍ତରେଣ ଯଥା ଗମନମ୍, କେବଳୈରିଷ୍ଟାପୂର୍ତ୍ତଦତ୍ତସାଧନୈର୍ଧୂମାଦିକ୍ରମେଣ ଦକ୍ଷିଣେନ ପଥା ଗମନମ୍, ତତ୍ରାପି ସୁଖତାରତମ୍ୟଂ ତତ୍ ସାଧନତାରତମ୍ୟଞ୍ଚ ଶାସ୍ତ୍ରାତ୍ 'ଯାବତ୍ ସଂପାତମୁଷିତ୍ୱା (ଛା ୫।୧୦।୫) ଇତ୍ୟସ୍ମାଦ୍ ଗମ୍ୟତେ ।

**(୧୦) ଭାଷାନ୍ତର-** (କ) ମନୁଷ୍ୟଠାରୁ ଆରମ୍ଭକରି ବ୍ରହ୍ମାପର୍ଯ୍ୟନ୍ତ ଶରୀରଧାରୀ ପାଖରେ ସୁଖର ତାରତମ୍ୟ ଶ୍ରୁତିଦ୍ୱାରା ଜଣାପଡ଼େ । ତାପରେ ତାହାଠାରୁ ସୁଖସାଧନ ଭୂତଧର୍ମର ତାରତମ୍ୟ ବୋଧଗମ୍ୟ ହୁଏ ।

(ଖ) ଧର୍ମର ତାରତମ୍ୟ ହେଲେ ଅଧିକାରୀର ତାରତମ୍ୟ ହୁଏ । (ଫଳକାମନା ଓ ଦ୍ରବ୍ୟ ରୂପ ସାମର୍ଥ୍ୟାଦି କାରଣଗୁଡ଼ିକର ତାରତମ୍ୟ ଦେଖାଦେଲେ ଅଧିକାରୀର ମଧ୍ୟ ତାରତମ୍ୟ ହୁଏ)

(ଗ) ଯଥା- ଯାଗାଦିକର୍ମ କରୁଥିବା ବ୍ୟକ୍ତି ଉପାସନାରୂପସମାଧି-ବିଶେଷବଳରେ ଉତ୍ତର ପଥକୁ ଯାଏ, ଏବଂ ଇଷ୍ଟ, ପୂର୍ତ୍ତ ଓ ଦତ୍ତରୂପ ସାଧନଦ୍ୱାରା ସିଦ୍ଧପୁରୁଷ ଧୂମାଦି କ୍ରମରେ ଦକ୍ଷିଣମାର୍ଗକୁ ଯାଏ । ତନ୍ମଧ୍ୟରେ ମୃତ୍ୟୁର ତାରତମ୍ୟ ଦେଖାଯାଏ । ଏହି ତାରତମ୍ୟ 'ଯାବତ୍ ସଂପାତ ମୁଷିତ୍ୱା (ଏହି କର୍ମର କ୍ଷୟହେବା ପର୍ଯ୍ୟନ୍ତ) ବୋଲି ଶାସ୍ତ୍ରପ୍ରମାଣଦ୍ୱାରା ଜଣାପଡ଼େ ।

(୧୧) ମୂଳ- (କ) ମନୁଷ୍ୟାଦିଷୁ ନାରକସ୍ଥାବରାନ୍ତେଷୁ ସୁଖଲବଶ୍ଚୋଦନାଲକ୍ଷଣଧର୍ମସାଧ୍ୟ ଏବେତି ଗମ୍ୟତେ ତାରତମ୍ୟେନ ବର୍ତ୍ତମାନଃ । (ଖ) ତଥୋର୍ଦ୍ଧ୍ୱଗତେଷ୍ୱଧୋଗତେଷୁ ଚ ଦେହବସୁ ଦୁଃଖତାରତମ୍ୟଦର୍ଶନାତ୍ତଦ୍ହେତୋରଧର୍ମସ୍ୟ ପ୍ରତିଷେଧଚୋଦନାଲକ୍ଷଣସ୍ୟ ତଦନୁଷ୍ଠାୟିନାଂ ଚ ତାରତମ୍ୟଂ ଗମ୍ୟତେ । (ଗ) ଏବମବିଦ୍ୟାଦି ଦୋଷବତାଂ ଧର୍ମାଧର୍ମତାରତମ୍ୟନିମିତ୍ତଂ ଶରୀରୋପାଦାନପୂର୍ବକଂ ସୁଖଦୁଃଖତାରତମ୍ୟମନିତ୍ୟଂ ସଂସାର ରୂପଂ ଶ୍ରୁତି-ସ୍ମୃତି-ନ୍ୟାୟ-ପ୍ରସିଦ୍ଧମ୍ । (ଘ) ତଥା ଚ ଶ୍ରୁତିଃ "ନ ହବୈ ସଶରୀରସ୍ୟ ସତଃ ପ୍ରିୟାପ୍ରିୟୟୋରପହତିରସ୍ତି" । (ଛା ୮।୧୨।୧) ଇତି ଯଥା- ବର୍ଣ୍ଣିତଂ ସଂସାରରୂପମନୁବଦତି ।

**(୧୧) ଭାଷାନ୍ତର-** (କ) ଏହି ପ୍ରକାର ମନୁଷ୍ୟଠାରୁ ଆରମ୍ଭ କରି ନାରକୀୟ ସ୍ଥାବର ପର୍ଯ୍ୟନ୍ତ ଜୀବମାନଙ୍କର ତାରତମ୍ୟ ଦ୍ୱାରା ବର୍ତ୍ତମାନ ସୁଖଲବ ଚୋଦନାତ୍ମକ ଧର୍ମଦ୍ୱାରା ଏହା ଜଣାପଡ଼େ ।

(ଖ) ସେହି ପ୍ରକାର ଊର୍ଦ୍ଧ୍ୱଗତ ଏବଂ ଅଧୋଗତ ଦେହଧାରୀ ଜୀବଠାରେ ସୁଖଦୁଃଖ ତାରତମ୍ୟ ଦେଖିବା ଦ୍ୱାରା ଏହା ହେତୁଭୂତ ପ୍ରତିଷେଧ ଚୋଦନାତ୍ମକ ଅଧର୍ମର ଏବଂ ଏହାର ଅନୁଷ୍ଠାନ କରୁଥିବା ବ୍ୟକ୍ତିର ତାରତମ୍ୟ, ମଧ୍ୟ ଜଣାପଡ଼େ ।

(ଗ) ଅବିଦ୍ୟାଦିଦୋଷ ବିଶିଷ୍ଟ ଜୀବର ତଥା ଧର୍ମ ଓ ଅଧର୍ମର ତାରତମ୍ୟ ହେତୁ ଶରୀରଗ୍ରହଣ-ପୂର୍ବକ ସୁଖ ଦୁଃଖର ତାରତମ୍ୟ ଅନିତ୍ୟ ସଂସାରରୂପ ବିଷୟ, ବେଦଧର୍ମଶାସ୍ତ୍ର ଓ ନ୍ୟାୟଶାସ୍ତ୍ରରେ ପ୍ରସିଦ୍ଧ ।

(ଘ) ଯଥା ଶ୍ରୁତି - ନିଃସନ୍ଦେହ ଏହି ସଶରୀର ଆତ୍ମାର ସୁଖ ଓ ଦୁଃଖ ବିନାଶ ହୁଏ ନାହିଁ, ଏହିପ୍ରକାର ସଂସାରରୂପକୁ ଶ୍ରୁତିଶାସ୍ତ୍ର ବର୍ଣ୍ଣନା କରିଛି ।

(୧୨) ମୂଳ- (କ) 'ଅଶରୀରଂ ବାବ ସନ୍ତଂ ନ ପ୍ରିୟାପ୍ରିୟେ ସ୍ପୃଶତ' (ଛା୮।୧୨।୧) ଇତି ପ୍ରିୟାପ୍ରିୟସ୍ପର୍ଶନପ୍ରତିଷେଧାଚ୍ଚୋଦନାଲକ୍ଷଣଧର୍ମକାର୍ଯ୍ୟତ୍ୱଂ ମୋକ୍ଷାଖ୍ୟସ୍ୟାଶରୀରତ୍ୱସ୍ୟ ପ୍ରତିଷିଧ୍ୟତ ଇତି ଗମ୍ୟତେ । (ଖ) ଧର୍ମକାର୍ଯ୍ୟତ୍ୱେ ହି ପ୍ରିୟାପ୍ରିୟସ୍ପର୍ଶ ନ ପ୍ରତିଷେଧୋ ନୋପପଦ୍ୟତେ (ଗ) ଅଶରୀରତ୍ୱମେବ ଧର୍ମକାର୍ଯ୍ୟମିତି ଚେନ୍ନ ତସ୍ୟ ସ୍ୱାଭାବିକତ୍ୱାତ୍ ।

ଅଶରୀରଂ ଶରୀରେଷ୍ୱ ନବସ୍ଥେଷ୍ୱବସ୍ଥିତମ୍ ।
ମହାନ୍ତଂ ବିଭୂମାତ୍ମାନଂ ମତ୍ୱାଧୀରୋ ନଶୋଚନ୍ତି ॥

(ଘ) 'ହ୍ୟମ୍ନା ଶୁଭ୍ରଃ' (ମୁଣ୍ଡ ୨।୧।୨), 'ଅସଙ୍ଗୋ ହ୍ୟୟଂ ପୁରୁଷଃ' (ବୃହ ୪।୩।୧୫) ଇତ୍ୟାଦିଶ୍ରୁତୟଃ । (ଙ) ଅତଃ ଏବାନୁଷ୍ଠେୟକର୍ମଫଲଲକ୍ଷଣଂ ମୋକ୍ଷାଖ୍ୟମଶରୀରତ୍ୱଂ ନିତ୍ୟମିତି ସିଦ୍ଧମ୍ ।

**(୧୨) ଭାଷାନ୍ତର** - (କ) ଦେହାଦି ଅଭିମାନ ରହିତ ଆତ୍ମାକୁ ମିଥ୍ୟାଦେହ ସଂପର୍କୀୟ ସୁଖ ଦୁଃଖ ସ୍ପର୍ଶ କରେ ନାହିଁ- ଏହି ବେଦବାକ୍ୟ ଦ୍ୱାରା ପ୍ରିୟ ଓ ଅପ୍ରିୟ ସମ୍ବନ୍ଧରେ ପ୍ରତିଷେଧ ଦ୍ୱାରା ମୋକ୍ଷ ନାମକ ଶରୀର ରହିତ ଅବସ୍ଥା ଚୋଦନାତ୍ମକଧର୍ମର କାର୍ଯ୍ୟ ହୁଏ, ଏବଂ ଏହାର ପ୍ରତିଷେଧ ମଧ୍ୟ କରାଯାଏ ।

(ଖ) ମୋକ୍ଷକୁ ଧର୍ମର କାର୍ଯ୍ୟରୂପରେ ସ୍ୱୀକାର କଲେ ମୋକ୍ଷରେ ପ୍ରିୟାପ୍ରିୟ ସ୍ପର୍ଶର ପ୍ରତିଷେଧ ଅନୁପପନ୍ନ ହେବ ।

(ଗ) ପୁନଶ୍ଚ ଏହା ମଧ୍ୟ ଧର୍ମର କାର୍ଯ୍ୟ ବୋଲି କହିବା ଠିକ୍ ନୁହେଁ, କାରଣ- ଏହା ସ୍ୱାଭାବିକ । ଯଥା- 'ଯେଉଁ ଦେବତା ଶରୀରରେ ଶରୀର ରହିତ, ତଥା ଅନିତ୍ୟରେ ନିତ୍ୟସ୍ୱରୂପ, ସେହି ମହାନ୍ ସର୍ବବ୍ୟାପକ ଆତ୍ମାକୁ ବ୍ରହ୍ମ ବୋଲି ଜାଣି ବିଦ୍ୱାନ ଦୁଃଖକରେ ନାହିଁ' ।



(ଘ) 'ପ୍ରାଣହୀନ ମନହୀନ ଶୁଦ୍ଧ ଆତ୍ମା', 'ଏହି ମହାପୁରୁଷ ଅସଙ୍ଗ' ଇତ୍ୟାଦି ଶ୍ରୁତିରୁ ବ୍ରହ୍ମର ଅଶରୀରତ୍ୱ ସ୍ୱଭାବ ଜଣାପଡ଼େ ।

(ଙ) ଅତଏବ ଅନୁଷ୍ଠେୟ କର୍ମଫଳ ଦ୍ୱାରା ବିଲକ୍ଷଣ ମୋକ୍ଷ ନାମକ ଅଶରୀରତ୍ୱ ନିତ୍ୟରୂପରେ ସିଦ୍ଧ ହୁଏ ।

(୧୩) ମୂଳ- (କ) ତତ୍ର କିଞ୍ଚିତ୍ ପରିଣାମି ନିତ୍ୟଂ ଯସ୍ମିନ୍ ବିକ୍ରିୟମାଣେଽପି ତଦେବେଦମିତି ବୁଦ୍ଧିର୍ନ ବିହନ୍ୟତେ । ଯଥା ପୃଥିବ୍ୟାଦି ଜଗନ୍ନିତ୍ୟତ୍ୱବାଦିନାମ୍ । ଯଥା ବା ସାଂଖ୍ୟାନାଃ ଗୁଣାଃ ।

**(୧୩) ଭାଷାନ୍ତର-** (କ) ସେଠାରେ କିଛି ପରିଣାମିନିତ୍ୟ ଅଛି, ଯେଉଁଠାରେ ଏହା ବିକୃତ ହେଲେ ମଧ୍ୟ 'ସେ ସେହିପରି ରହେ' ବୋଲି ପ୍ରତିଜ୍ଞାରୂପ ବୁଦ୍ଧିର ନାଶ ହୁଏ ନାହିଁ । ସଂସାରକୁ ନିତ୍ୟରୂପରେ ସ୍ୱୀକାର କରୁଥିବା ଲୋକମାନଙ୍କ ମତରେ ପୃଥିବୀ ପରିଣାମି ଓ ନିତ୍ୟ ଅଟେ । କିନ୍ତୁ ସାଂଖ୍ୟତରେ ଗୁଣପରିଣାମୀ ନିତ୍ୟ ।

(୧୪) ମୂଳ- (କ) ଇଦଂ ତୁ ପାରମାର୍ଥିକମ୍, କୂଟପସ୍ଥନିତ୍ୟଂ ବ୍ୟୋମବତ୍ସର୍ବବ୍ୟାପି, ସର୍ବବିକ୍ରିୟାରହିତଂ, ନିତ୍ୟତୃପ୍ତମ୍, ନିରବୟବମ୍, ସ୍ୱଂୟଜ୍ୟୋତିଃସ୍ୱଭାବମ୍ । ଯତ୍ର ଧର୍ମାଧେର୍ମୌସହ କାର୍ଯ୍ୟେଣ କାଳତ୍ରୟଞ୍ଚ ନୋପାବର୍ତ୍ତତେ, ତଦେତଦଶରୀରତ୍ୱଂ ମୋକ୍ଷାଖ୍ୟମ୍ । (ଖ) 'ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାଦନ୍ୟତ୍ରାସ୍ମାତ୍କୃତାକୃତାତ୍ । ଅନ୍ୟତ୍ର ଭୂତାଚ୍ଚ ଭବ୍ୟାଚ୍ଚ' (କଂ ୨।୧୪) ଇତ୍ୟାଦିଶ୍ରୁତିଭ୍ୟଃ । (ଗ) ଅତ୍ରସ୍ତଦ୍‌ବ୍ରହ୍ମ ଯସ୍ୟେୟଂ ଜିଜ୍ଞାସା ପ୍ରସ୍ତୁତା, ତଦ୍ୟପି କର୍ତ୍ତବ୍ୟଶେଷତ୍ୱେନୋପଦିଶ୍ୟେତ, ତେନ ଚ କର୍ତ୍ତ୍ୟବ୍ୟେନ ସାଧଷ୍ଟେନ୍‌ମୋକ୍ଷୋଽଭ୍ୟୁପଗମ୍ୟେତ, ଅନିତ୍ୟ ଏବ ସ୍ୟାତ୍ । (ଘ) ତତ୍ରୈବ ସତି ଯଥୋକ୍ତକର୍ମଫଳେଷ୍ୱେବ ତାରତମ୍ୟାବସ୍ଥିତେଷ୍ୱନିତ୍ୟେଷ୍ମ କଶ୍ଚିଦତିଶୟୋ ମୋକ୍ଷ ଇତି ପ୍ରସଜ୍ୟେତ । (ଙ) ନିତ୍ୟଶ୍ଚ ମୋକ୍ଷଃ ସର୍ବୈର୍ମୋକ୍ଷବାଦିଭିରଭ୍ୟୁପଗମ୍ୟତେ, ଅତୋ ନ କର୍ତ୍ତବ୍ୟଶେଷତ୍ୱେନ ବ୍ରହ୍ମୋପଦେଶୋ ଯୁକ୍ତଃ । (ଚ) ଅପି ଚ 'ବ୍ରହ୍ମ ବେଦ ବ୍ରହ୍ମୈବ ଭବତି' (ମୁଣ୍ଡ ୩।୨।୯), 'କ୍ଷୀୟନ୍ତେ ଚସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ' (ମୁଣ୍ଡ ୬।୨।୮), 'ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍, ନ ବିଭେତି କୁତଶ୍ଚନ' (ତୈତି ୨।୯), (ଛ) 'ଅଭୟଂ ବୈ ଜନକ ପ୍ରାପ୍ତୋଽସି' (ବୃହ-୪।୨।୪) ତଦାତ୍ମାନମେବାବେଦେଦଂ ବ୍ରହ୍ମାସ୍ମୀତି ତସ୍ମାତ୍ ତତ୍‌ସର୍ବମଭବତ୍' (ବାଜସେନୟି-ବ୍ରାହ୍ମଣୋପ-୧।୪।୧୦) (ଜ) ତତ୍ର କୋ

ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତ' (ଈଶୋ-୭) ଇତେବମାଦ୍ୟାଃ ଶ୍ରୁତୟୋ ବ୍ରହ୍ମବିଦ୍ୟାନନ୍ତରଂ ମୋକ୍ଷଂ ଦର୍ଶୟନ୍ତ୍ୟୋ ମଧ୍ୟେ କାର୍ଯ୍ୟାନ୍ତରଂ ବାରୟନ୍ତି ।

(୧୪) ଭାଷାନ୍ତର - (କ) ପରନ୍ତୁ ଏହି ବ୍ରହ୍ମ ପାରମାର୍ଥିକ, କୂଟସ୍ଥ, ନିତ୍ୟ, ଆକାଶପରି ସର୍ବବ୍ୟାପକ, ବିକ୍ରିୟାହୀନ, ସର୍ବଦାତୃପ୍ତ, ନିରବୟବ, ଏବଂ ସ୍ୱୟଂ ପ୍ରକାଶ ସ୍ୱରୂପ । ଯେଉଁଠାରେ ପରମାତ୍ମାରେ ଧର୍ମାଧର୍ମ, ସୁଖଦୁଃଖ, କାର୍ଯ୍ୟ ସହ କାଳକ୍ରୟରେ ସମ୍ବନ୍ଧ ରଖେନାହିଁ, ସେଠାରେ ଶରୀର ହିଁ ମୋକ୍ଷସ୍ୱରୂପ ।

(ଖ) ଯଥା- ସେହି (ଜୀବାତ୍ମା) ଧର୍ମାଧର୍ମ, କାର୍ଯ୍ୟକାରଣ, ଅତୀତ ଓ ଭବିଷ୍ୟତଠାରୁ ଭିନ୍ନ ଅଟେ ।

(ଗ) ଯାହାର କି ଜିଜ୍ଞାସା ପ୍ରସ୍ତୁତ କରାଯାଇଛି । ଯଦି ବ୍ରହ୍ମକାର୍ଯ୍ୟକୁ ଅଙ୍ଗରୂପ ଦ୍ୱାରା ଉପଦେଶ ଦିଆଯାଏ ଏବଂ ଏହି କାର୍ଯ୍ୟଦ୍ୱାରା ମୋକ୍ଷସାଧ ସ୍ୱୀକୃତ ହୁଏ । ତେବେ ଏହା ଅନିତ୍ୟ ହେବ ।

(ଘ) ମୋକ୍ଷର ଅନିତ୍ୟ ସିଦ୍ଧ ହେଲେ ତାରତମ୍ୟ ଦ୍ୱାରା ବର୍ତ୍ତମାନ ଯଥୋକ୍ତ ଅନିତ୍ୟ ହେବ ଓ କର୍ମଫଳ ବ୍ୟତୀତ ଅନ୍ୟ କୌଣସି ମୋକ୍ଷରୂପରେ ସ୍ୱୀକାର କରିବାକୁ ପଡ଼ିପାରେ ।

(ଙ) କିନ୍ତୁ ମୋକ୍ଷ ବାଦୀମାନେ ମୋକ୍ଷକୁ ନିତ୍ୟ ବୋଲି ସ୍ୱୀକାର କରନ୍ତି । ଅତଃ କାରଣ କାର୍ଯ୍ୟର ଅଙ୍ଗ ରୂପରେ ବ୍ରହ୍ମର ଉପଦେଶ ଉପଯୁକ୍ତ ନୁହେଁ ।

(ଚ) ପୁନଶ୍ଚ 'ବ୍ରହ୍ମଜ୍ଞ ବ୍ରହ୍ମ ହୁଏ' । 'ବରାବର ବ୍ରହ୍ମର ସାକ୍ଷାତ୍କାର ହେଲେ ସାଂସାରିକକର୍ମର କ୍ଷୟ ହୁଏ' । 'ବ୍ରହ୍ମସୁଖକୁ ଜାଣିଥିବା ବ୍ୟକ୍ତି କାହାକୁ ଭୟ କରେ ନାହିଁ ।

(ଛ) 'ହେ ଜନକ ! ତୁ ନିଶ୍ଚୟ ବ୍ରହ୍ମକୁ ପାଇବୁ' । 'ମୁଁ ବ୍ରହ୍ମବୋଲି ଏହି ଆତ୍ମାକୁ ଜାଣ, ତାହାଠାରୁ ସମସ୍ତେ ଜାତ' । ସେ ବ୍ରହ୍ମଜ୍ଞ ମୋହ ଓ ଶୋକକୁ ଏକରୂପରେ ଦେଖେ', ଇତ୍ୟାଦି ଶ୍ରୁତିବାକ୍ୟ ଗୁଡ଼ିକ ବ୍ରହ୍ମଜ୍ଞାନ ପରେ ମୋକ୍ଷ ଦେଖାଇ ବ୍ରହ୍ମଜ୍ଞାନ ଓ ମୋକ୍ଷ ମଧ୍ୟରେ କାର୍ଯ୍ୟାନ୍ତର ନିଷେଧ ଦେଖାଉଛନ୍ତି ।

(୧୫)ମୂଳ-(କ) ତଥା 'ତଦ୍ଧୈତତ୍ପଶ୍ୟନ୍ନୃଷିର୍ବାମଦେବଃ ପ୍ରତିପେଦେଽହଂ ମନୁରଭବଂ ସୂର୍ଯଶ୍ଚ' (ବୃହ ୧।୪।୧୦) ଇତି ବ୍ରହ୍ମଦର୍ଶନସର୍ବାତ୍ମଭାବୟୋର୍ମଧ୍ୟେ କର୍ତ୍ତବ୍ୟାନ୍ତରବାରଣାୟୋଦାହାର୍ଯ୍ୟମ୍ । (ଖ) ଯଥା-ତିଷ୍ଠନ୍ ଗାୟତୀତି ତିଷ୍ଠତିଗାୟ-ତ୍ୟୋର୍ମଧ୍ୟେ ତତ୍କର୍ତ୍ତୃକକାର୍ଯ୍ୟାନ୍ତରଂ ନାସ୍ତୀତି ଗମ୍ୟତେ । ତ୍ୱଂ ହି ନଃପିତା ଯୋଽସ୍ମାକମବିଦ୍ୟାୟାଃ ପରଂ ପାରଂ ତାରୟସି, (ପ୍ରଶ୍ନ ୬।୮) (ଗ) 'ଶ୍ରୁତହ୍ୟେବ ମେ



ଭଗବଦ୍‌ଦୃଶେଭ୍ୟସ୍ତରତି ଶୋକାମତ୍ମବଦ୍‌ିତି ସୋଽହଂ ଭଗବଃ ଶୋଚାମି ତଂ ମା ଭଗବଚ୍ଛୋକସ୍ୟ ପାରଂ ତାରୟତୁ' (ଛା ୭।୯।୩) 'ତସ୍ମୈମୃଦିତ କଷାୟାୟ ତମସଃ ପାରଂ ଦର୍ଶୟତି ଭଗବନ୍‌ସନତ୍‌କୁମାରଃ', (ଛା ୭।୨୬।୨) (ଘ) ଇତି ଚୈବମାଦ୍ୟାଃ ଶ୍ରୁତୟୋ ମୋକ୍ଷପ୍ରତିବନ୍ଧନି ବୃତ୍ତିମାତ୍ରମେବାତ୍ମଜ୍ଞାନସ୍ୟଫଳଂଦର୍ଶୟନ୍ତି ।

**(୧୫) ଭାଷାନ୍ତର** - (କ) ସେହି ପ୍ରକାର 'ସେ ବ୍ରହ୍ମ ମୁଁ ପ୍ରତ୍ୟଗାତ୍ମା ଅଟେ' । ଏହିପ୍ରକାର ଜ୍ଞାନଲାଭ କରି ମୁନୀନ୍ଦ୍ର ବାମଦେବ ଶୁଦ୍ଧ ବ୍ରହ୍ମସ୍ୱରୂପ ହେଲେ ଓ କହିଲେ 'ମୁଁ ମନୁ ଓ ସୂର୍ଯ୍ୟ'- ଏହି ବେଦବାକ୍ୟକୁ ବ୍ରହ୍ମ ଦର୍ଶନ ଓ ସର୍ବାତ୍ମଭାବର ମଧ୍ୟଦେଶରେ ଅନ୍ୟ କର୍ତ୍ତବ୍ୟର ନିଷେଧ କରିବା ପାଇଁ ଉଦାହରଣ-ରୂପରେ ଜାଣିବା ଉଚିତ୍ ।

(ଖ) ଯଥା-ଠିଆ ହୋଇ ସେ ଗୀତା ବୋଲୁଛି- ଏହି ସ୍ଥଳରେ ଦଣ୍ଡାୟମାନ ଓ ଗାୟନକ୍ରିୟା ମଧ୍ୟରେ ତତ୍ କର୍ତ୍ତୃକ ଅନ୍ୟକାର୍ଯ୍ୟ ହୁଏ ନାହିଁ ବୋଲି ଜଣାପଡ଼େ । 'ତୁମ୍ଭେ ଆମ୍ଭମାନଙ୍କର ପିତା ଅଟ' ଯେ କି ଆମ୍ଭଙ୍କୁ ଅବିଦ୍ୟାର ଅନ୍ୟକୂଳକୁ ପହଞ୍ଚାଇ ଦିଅନ୍ତି'' ।

(ଗ) 'ମୁଁ ଭଗବାନ ସଦୃଶ ଆପଣଙ୍କୁ ଜାଣିଛ ଯେ-ଆପଣ ଅବିଦ୍ୟାକୁ ପାରି କରନ୍ତି ଏବଂ ହେ ଭଗବାନ ! ମୁଁ ଶୋକ କରୁଛି । ଯାହାଦ୍ୱାରା କି ମୋତେ ଆପଣ ଶୋକ ନଦୀରୁ ପାର କରନ୍ତୁ - ଏହା ନାରଦ କହିଲେ । ଭଗବାନ୍ ସନତ୍‌କୁମାର ଏହି ଦଗ୍‌ଧପାପ ନାରଦଙ୍କୁ ଅଜ୍ଞାନରୂପୀ ଅନ୍ଧକାରଠାରୁ ପାର କରିବା ପାଇଁ ପଥ ଦେଖାଇଲେ ।''

(ଘ) ଏହି ପ୍ରକାର ବେଦ ମୋକ୍ଷ ପ୍ରତିବନ୍ଧକର ନିବୃତ୍ତିମାତ୍ର । ଆତ୍ମଜ୍ଞାନର ଫଳ ବୋଲି ପ୍ରମାଣିତ କରେ ।

(୧୬) ମୂଳ - (କ) ତଥା ଚାର୍ଯ୍ୟପ୍ରଣୀତଂ ନ୍ୟାୟୋପବୃହିତଂ ସୂତ୍ରମ୍- 'ଦୁଃଖଜନ୍ମପ୍ରବୃତ୍ତିଦୋଷମିଥ୍ୟାଜ୍ଞାନାନାମୁତ୍ତରୋତ୍ତରାପାୟେ ତଦନନ୍ତରାପାୟା-ଦପବର୍ଗଃ' (ନ୍ୟା. ସୂ ୧।୧।୨) ଇତି । ମିଥ୍ୟାଜ୍ଞାନାପାୟଶ୍ଚ ବ୍ରହ୍ମାତ୍ମୈକତ୍ୱବିଜ୍ଞାନାଦ୍ ଭବତି । (ଖ) ନ ଚେଦଂ ବ୍ରହ୍ମାତ୍ମୈକତ୍ୱବିଜ୍ଞାନଂ ସଦ୍ରୂପମ୍, ଯଥା- 'ଅନନ୍ତଂ ବୈ ମନୋଽନନ୍ତା ବିଶ୍ୱଦେବା ଅନନ୍ତମେବ ସ ତେନ ଲୋକଂ ଜୟତି' (ବୃହ ୩।୧।୯) ଇତି । (ଗ) ନ ଚାଧ୍ୟାସସ୍ୱରୂପମ୍, ଯଥା- 'ମନୋ ବ୍ରହ୍ମେତ୍ୟୁପାସୀତ' (ଛା ୩।୧୮।୧), 'ଅଦିତ୍ୟୋ ବ୍ରହେତ୍ୟାଦେଶଃ' (ଛା ୩।୧୯।୧) ଇତି ଚ ମନୋ ଆଦିତ୍ୟାଦିଷୁ ବ୍ରହ୍ମଦୃଷ୍ଟ୍ୟଧ୍ୟାସଃ ।

**(୧୬) ଭାଷାନ୍ତର**- (କ) ସେପରି ମଧ୍ୟ ଗୌତମାଚାର୍ଯ୍ୟପ୍ରଣୀତ ନ୍ୟାୟ ସୂତ୍ରରେ 'ଦୁଃଖ, ଜନ୍ମ, ପ୍ରବୃତ୍ତି, ଦୋଷ ଓ ମିଥ୍ୟା ଜ୍ଞାନମାନଙ୍କର ପରବର୍ତ୍ତୀ କାର୍ଯ୍ୟର

ନାଶ ହେବା ଦ୍ୱାରା ଅପବର୍ଗ ପ୍ରାପ୍ତ ହୁଏ ଏବଂ ମିଥ୍ୟାଜ୍ଞାନର ହାନି ବ୍ରହ୍ମାତ୍ମୈକତ୍ୱଠାରୁ ଉତ୍ପନ୍ନ ହୁଏ ।

(ଖ) ଏହି ବ୍ରହ୍ମାତ୍ମୈକତ୍ୱ ବିଜ୍ଞାନ ସଦ୍ରୂପ ନୁହେଁ, ଯେପରିକି 'ମନ ଅନନ୍ତ ଓ ବିଶ୍ୱଦେବ ମଧ୍ୟ ଅନନ୍ତ, ସେ ସଂସାରକୁ ଜୟ କରେ' ।

(ଗ) କିନ୍ତୁ ଏହା ଅସାଧ ରୂପ ନୁହେଁ । ଯେପରିକି - 'ମନ ବ୍ରହ୍ମ, ଏହାକୁ ଉପାସନା କର' । 'ଆଦିତ୍ୟ ବ୍ରହ୍ମ ଏହା ଆଦେଶ ଅଟେ' । ଏହି ପ୍ରକାର ମନ ଓ ଆଦିତ୍ୟ ମଧ୍ୟରେ ବ୍ରହ୍ମଦୃଷ୍ଟି ଅଧ୍ୟାସରୂପ ଅଟେ ।

(୧୭) ମୂଳ- (କ) ନାପି ବିଶିଷ୍ଟକ୍ରିୟାଯୋଗନିମିତ୍ତଂ, 'ବାୟୁର୍ବାବ ସର୍ବଗଃ' (ଛା ୪।୩।୧), 'ପ୍ରାଣର୍ବାବ ସର୍ବଗଃ' (ଛା ୪।୩।୩) ଇତିବତ୍ । ନା ପ୍ୟାଦ୍ୟା ବେକ୍ଷଣାଦିକର୍ମବତ୍କର୍ମାଂଶସଂସ୍କାରରୂପମ୍ । (ଖ) ସମ୍ପଦାଦିରୂପେହି ବ୍ରହ୍ମାତ୍ମୈକତ୍ୱ-ବିଜ୍ଞାନେଽଭ୍ୟୁପଗମ୍ୟମାନେ 'ତତ୍ତ୍ୱମସି,' (ଛା ୬।୮।୭), 'ଅହଂ ବ୍ରହ୍ମାସି' (ବୃ ୧।୪।୧୦), 'ଅୟମାତ୍ମା ବ୍ରହ୍ମ' (ବୃ ୧।୫।୧୯) ଇତ୍ୟେବମାଦୀନାଂ ବାକ୍ୟାନାଂ ବ୍ରହ୍ମାତ୍ମୈକତ୍ୱବସ୍ତୁପ୍ରତିପାଦନପରଃ ପଦସମନ୍ୱୟଃ ପୀଡ୍ୟେତ । (ଗ) 'ଭିଦ୍ୟତେ ହୃଦୟଗ୍ରନ୍ଥିଃଛିଦ୍ୟନ୍ତେ ସର୍ବ ସଂଶୟାଃ' (ମୁଣ୍ଡ-୨।୨।୮) ଇତି ଚୈବମାଦିନ୍ୟ ବିଦ୍ୟାନିବୃତ୍ତି ଫଳଶ୍ରବଣାନ୍ୟୁପରୁଧ୍ୟେରନ୍ । (ଘ) ବ୍ରହ୍ମ ଦେବ ବ୍ରହ୍ମୈବ ଭବତି' (ମୁଣ୍ଡ ୩।୨।୯) ଇତି ଚୈବମାଦୀନି ତଦ୍ଭାବାପତ୍ତିବଚନାନି ସଂପଦାଦିପକ୍ଷେ ନ ସାମଞ୍ଜସ୍ୟେନୋପପଦ୍ୟେରନ୍ । ତସ୍ମାତ୍ ସଂପଦାଦିରୂପଂ ବ୍ରହ୍ମାତ୍ମୈକତ୍ୱବିଜ୍ଞାନମ୍, (ଙ) ଅତୋ ନ ପୁରୁଷବ୍ୟାପାରତନ୍ତ୍ର । ବ୍ରହ୍ମାବିଦ୍ୟା । କିଂ ତର୍ହି ? ପ୍ରତ୍ୟକ୍ଷାଦିପ୍ରମାଣବିଷୟବସ୍ତୁ ଜ୍ଞାନବଦ୍ ବସ୍ତୁତନ୍ତ୍ରା । ଏବଂ ଭୂତସ୍ୟ ବ୍ରହ୍ମଣସ୍ତଜ୍ଜ୍ଞାନସ୍ୟ ଚ କୟାଚିଦ୍ୟୁକ୍ତ୍ୟା ଶକ୍ୟଃ କାର୍ଯ୍ୟାନୁପ୍ରବେଶଃ କଳ୍ପୟିତୁମ୍ ।

**(୧୭) ଭାଷାଂତର-** (କ) 'ବାୟୁ ସର୍ବଗ', 'ପ୍ରାଣସର୍ବଗ' ଏହିପରି ସମାନ ବିଶିଷ୍ଟ କ୍ରିୟା ସମ୍ବନ୍ଧ ନିମିତ୍ତକ ଅଟେ । ଆଜ୍ୟାବେକ୍ଷଣ କର୍ମଭଳି କର୍ମାଙ୍ଗର ସଂସ୍କାର ରୂପ ହୁଏ ନାହିଁ ।

(ଖ) କାରଣ- ବ୍ରହ୍ମାତ୍ମୈକତ୍ୱ ବିଜ୍ଞାନକୁ ସଂପଦାଦି ରୂପ ସଦୃଶ ସ୍ୱୀକାର କଲେ 'ତତ୍ତ୍ୱମସି', 'ଅହଂ ବ୍ରହ୍ମାସ୍ମି', 'ଅୟମାତ୍ମା ବ୍ରହ୍ମ', ଇତ୍ୟାଦି ଶ୍ରୁତି ବାକ୍ୟଗୁଡ଼ିକର ବ୍ରହ୍ମାତ୍ମୈକତ୍ୱବସ୍ତୁ ପ୍ରତିପାଦନ ପରକ ପଦ ସମନ୍ୱୟ ବାଧିତ ହେବ ।

(ଗ) 'ବ୍ରହ୍ମସାକ୍ଷାତ୍କାର ପରେ ହୃଦୟର ସମସ୍ତ ଗ୍ରନ୍ଥ ଭେଦ କରି ସବୁ ସଂଶୟଗୁଡ଼ିକ ଛେଦ କରେ'- ଏହି ପ୍ରକାର ଅଜ୍ଞାନ ନିବୃତ୍ତି ରୂପ ଫଳବୋଧକ ଶ୍ରୁତିବାକ୍ୟ ପ୍ରାୟଶଃ ବାଧିତ ହୁଏ ।



(ଘ) 'ବ୍ରହ୍ମକୁ ଜାଣିଲେ ବ୍ରହ୍ମ ଭଳି ହୁଏ' । ଏହି ବେଦାବକ୍ୟଗୁଡ଼ିକ ବ୍ରହ୍ମଭାବ ପ୍ରାପ୍ତି-ପ୍ରତିପାଦକ ଶ୍ରୁତିବାକ୍ୟ ସଂପଦାଦି ପକ୍ଷରେ ମୁଖ୍ୟ ରୂପରେ ଗୃହୀତ ହୁଅନ୍ତି ନାହିଁ । ତେଣୁ ବ୍ରହ୍ମାତ୍ମୈକତ୍ୱଜ୍ଞାନ ସଂପଦାଦି ରୂପ ନୁହେଁ ।

(ଙ) ବ୍ରହ୍ମବିଦ୍ୟା ପୁରୁଷ ବ୍ୟାପାରର ଅଧୀନ ନୁହେଁ । ତାହେଲେ ଏହା କଣ ? ଏହା ପ୍ରତ୍ୟକ୍ଷାଦି ପ୍ରମାଣ ଦ୍ୱାରା ସିଦ୍ଧ ହେଉଥିବା ବିଷୟବସ୍ତୁ ଜ୍ଞାନ ପରି ବସ୍ତୁତନ୍ତ୍ର ଅଟେ । ତେଣୁ ଏହି ପ୍ରକାର ବ୍ରହ୍ମ ଓ ତତ୍ ସମ୍ବନ୍ଧୀୟ ଜ୍ଞାନର କୌଣସି ଯୁକ୍ତି ଦ୍ୱାରା କାର୍ଯ୍ୟ ସହ ସମ୍ବନ୍ଧ କଳ୍ପନା କରିହୁଏ ନାହିଁ ।

(୧୮) ମୂଳ-(କ) ନ ଚ ବିଦିକ୍ରିୟାକର୍ମତ୍ୱେନ କାର୍ଯ୍ୟାନୁପ୍ରବେଶୋ ବ୍ରହ୍ମଣଃ, 'ଅନ୍ୟଦେବ ତଦ୍‌ବିଦିତାଦଥୋ ଅବିଦିତଦଧି' (କେନ ୧।୩) ଇତି ବିଦିକ୍ରିୟାକର୍ମତ୍ୱପ୍ରତିଷେଧାତ୍ । 'ଯେନେଦଂ ସର୍ବଂ ବିଜାନାତି ତଂ କେନ ବିଜାନୀ ୟାତ୍' (ବୃହ ୨।୪।୧୩) ଇତି ଚ । (ଖ) ତଥୋପାସ୍ତିକ୍ରିୟାକର୍ମତ୍ୱପ୍ରତିଷେଧୋଽପି ଭବତି- 'ଯଦ୍ ବାଚାନଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ' ଇତ୍ୟବିଷୟତ୍ୱଂ ବ୍ରହ୍ମଣଃ ଉପନ୍ୟସ୍ୟ, ତଦେବ ବ୍ରହ୍ମତ୍ୱଂ ବିଦ୍ଧି ନେଦଂ ଯଦିମୁପାସତେ । (କେନ ୧।୪) ଇତି ।

**(୧୮) ଭାଷାଂତର-** (କ) ବିଦି (ଜାଣିବା) କ୍ରିୟାର କର୍ମ ରୂପରେ କାର୍ଯ୍ୟ ସହ ବ୍ରହ୍ମର ସମ୍ବନ୍ଧ ହୁଏ ନାହିଁ । କାରଣ- ଏହା ବିଦିତ (କାର୍ଯ୍ୟ)ଠାରୁ ଅନ୍ୟ ଓ ଅବିଦିତ (କାରଣ)ଠାରୁ ଭିନ୍ନ ଅଟେ । 'ଯାହାଦ୍ୱାରା ସବୁ ଜଣାପଡ଼େ, ତାହାକୁ କାହାଦ୍ୱାରା ଜାଣିବା'- ଏହି ପ୍ରକାର ବେଦବାକ୍ୟ ଦ୍ୱାରା ବ୍ରହ୍ମଠାରେ ବିଦିକ୍ରିୟା କର୍ମର ପ୍ରତିଷେଧ ହେଉଛି ।

(ଖ) 'ଯାହା ବାଣୀ ଦ୍ୱାରା ପ୍ରକାଶିତ ହୁଏ ନାହିଁ, କିନ୍ତୁ ଯାହାଦ୍ୱାରା ବାଣୀ ପ୍ରକାଶିତ ହୁଏ'- ଏହି ପ୍ରକାର ବ୍ରହ୍ମକୁ ଇନ୍ଦ୍ରିୟମାନଙ୍କର ଅବିଷୟତ୍ୱ କହି 'ସେହି ବ୍ରହ୍ମକୁ ତୁମେ ଜାଣ । ତାହାକୁ ଉପାସନା କରାଯାଏ ନାହିଁ, ଏହି ପ୍ରକାର ଶ୍ରୁତି ଦ୍ୱାରା ବ୍ରହ୍ମଠାରେ ଉପାସନା କ୍ରିୟା ସ୍ୱୀକାର କରାଯାଇ ନାହିଁ ।

(୧୯) ମୂଳ- (କ) ଅବିଷୟତ୍ୱେ ବ୍ରହ୍ମଣଃ ଶାସ୍ତ୍ରଯୋନିତ୍ୱାନୁପପତ୍ତିରିତି ଚେତ୍ ନ, ଅବିଦ୍ୟାକଳ୍ପିତଭେଦନିବୃତ୍ତିପରତ୍ୱାଚ୍ଛାସ୍ତ୍ରସ୍ୟ । (ଖ) ନହି ଶାସ୍ତ୍ରମିଦଂତୟା ବିଷୟଭୂତଂ ବ୍ରହ୍ମ ପ୍ରତିପିପାଦୟିଷତି । କିଂ ତର୍ହି ? ପ୍ରତ୍ୟଗାତ୍ମତ୍ୱେନାବିଷୟତୟା ପ୍ରତିପାଦୟଦବିଦ୍ୟାକଳ୍ପିତଂ ବେଦ୍ୟ-ବେଦିତୃ-ବେଦନାଦିଭେ-ଦମପନୟତି । (ଗ) ତଥା ଚ ଶାସ୍ତ୍ରମ୍-

ଯସ୍ୟାଽମତଂ ତସ୍ୟମତମ୍, ମତଂ ଯସ୍ୟ ନ ବେଦଃ ସଃ ।
ଅବିଜ୍ଞାତଂ ବିଜାନତାମ୍, ବିଜ୍ଞାନମବିଜାନତାମ୍ । (କେନ ୨।୩)

(ଘ) 'ନ ଦୃଷ୍ଟେ ଦୃଷ୍ଟାରଂ ପଶ୍ୟେଃ, ନ ବିଜ୍ଞାତେର୍ବିଜ୍ଞାତାରଂ ବିଜାନୀୟାଃ' (ବୃହ ୩।୪।୨) ଇତି ଚୈବମାଦି । ଅତୋଽବିଦ୍ୟାକଳ୍ପିତସଂସାରିତ୍ୱନିବର୍ତ୍ତନେନ ନିତ୍ୟମୁକ୍ତାତ୍ମସ୍ୱରୂପସମର୍ପଣାନ୍ନ ମୋକ୍ଷସ୍ୟାନିତ୍ୟତ୍ୱଦୋଷଃ ।

**(୧୯) ଭାଷାଂତର** - (କ) ଯଦି ଆମ୍ଭେ ବ୍ରହ୍ମର ଇନ୍ଦ୍ରିୟ ଅବିଷୟତ୍ୱ ହେତୁ ଏହା ଶାସ୍ତ୍ର ପ୍ରତି ପ୍ରମାଣକ ନୁହେଁ ବୋଲି ଠିକ୍ ହେବ ନାହିଁ । କାରଣ-ଶାସ୍ତ୍ର ଅବିଦ୍ୟାକଳ୍ପିତ ଭେଦ ନିବୃତ୍ତି ପାଇଁ ଅଛି ।

(ଖ) ଶାସ୍ତ୍ର ଇଦଂ ରୂପରେ ବିଷୟ-ଭୂତ ବ୍ରହ୍ମର ପ୍ରତିପାଦନ କରିବା ପାଇଁ ଇଚ୍ଛେ ନାହିଁ, ତେବେ ଏହା କ'ଣ ? କିନ୍ତୁ ବ୍ରହ୍ମ ପ୍ରତ୍ୟଗାତ୍ମ ରୂପରେ ଅବିଷୟ ହୋଇ ପ୍ରତିପାଦନ କରିବାକୁ ଯାଉଥିବା ଅବିଦ୍ୟା କଳ୍ପିତ ବେଦ୍ୟ (ଜ୍ଞେୟ), ବେଦିତୃ (ଜ୍ଞାତା), ବେଦନା (ଜ୍ଞାନ) ଆଦିର ଭେଦ ନିବୃତ୍ତି କରେ । ଯଥା ଶାସ୍ତ୍ରାନୁସାରେ "ଯାହା ଅପ୍ରାମାଣ୍ୟ, ତାହା ପ୍ରାମାଣ୍ୟ । ଯାହା ପ୍ରାମାଣ୍ୟ, ତାହା ଅପ୍ରାମାଣ୍ୟ । ଅଜ୍ଞେୟକୁ ଜାଣିବା ଉଚିତ୍, ଜ୍ଞେୟକୁ ଜାଣିବା ଉଚିତ୍ ନୁହେଁ" ।

(ଘ) ସାକ୍ଷୀଭୂତ ଆତ୍ମାକୁ ଚକ୍ଷୁ ଇନ୍ଦ୍ରିୟ ଦ୍ୱାରା ଦେଖି ହୁଏ ନାହିଁ, ବୁଦ୍ଧିବୃତ୍ତିର ସାକ୍ଷୀକୁ ବୁଦ୍ଧିବୃତ୍ତି ଦ୍ୱାରା ଜାଣି ହୁଏ ନାହିଁ । ତେଣୁ ଅବିଦ୍ୟା କଳ୍ପିତ ସଂସାରିତ୍ୱକୁ ବାରଣ କରି ନିତ୍ୟ ମୁକ୍ତ ଆତ୍ମାର ଯଥାର୍ଥରୂପ ସମର୍ପଣ ହେବାରୁ ମୋକ୍ଷରେ ଅନିତ୍ୟତ୍ୱ ଦୋଷ ନାହିଁ ।

(୨୦) ମୂଳ-(କ) ଯସ୍ୟ ତୁତ୍ପାଦ୍ୟୋ ମୋକ୍ଷସ୍ତସ୍ୟ ମାନସଂ ବାଚିକଂ କାୟିକଂ ବା କାର୍ଯ୍ୟମପେକ୍ଷତ ଇତିଯୁକ୍ତମ୍ । ତଥା ବିକାର୍ଯ୍ୟତ୍ୱେ ଚ ତୟୋଃ ପକ୍ଷୟୋର୍ମୋକ୍ଷସ୍ୟ ଧ୍ରୁବମନିତ୍ୟତ୍ୱମ୍ । (ଖ) ନ ହି ଦଧ୍ୟାଦି ବିକାର୍ଯ୍ୟଂ ଉତ୍ପାଦ୍ୟଂ ବା ଘଟାଦିର୍ନିତ୍ୟଂ ଦୃଷ୍ଟଂ ଲୋକେ । ନ ଚାପ୍ୟତ୍ୱେନାପି କାର୍ଯ୍ୟାପେକ୍ଷା ସ୍ୱାତ୍ମସ୍ୱରୂପତ୍ୱେ ସତ୍ୟନାପ୍ୟତ୍ୱାତ୍ । (ଗ) ସ୍ୱରୂପବ୍ୟତିରିକ୍ତତ୍ୱେଽପି ବ୍ରହ୍ମଣୋ ନାପ୍ୟତ୍ୱମ୍ ସର୍ବଗତତ୍ୱେନ ନିତ୍ୟାପ୍ତସ୍ୱରୂପତ୍ୱାତ୍ ସର୍ବେଣ ବ୍ରହ୍ମଣଃ, ଆକାଶସ୍ୟେବ ।

**(୨୦) ଭାଷାଂତର** - (କ) ଯାହା ମତରେ ମୋକ୍ଷ ଉତ୍ପାଦ୍ୟ, ସେମାନଙ୍କର ମତରେ ମୋକ୍ଷ ମାନସିକ, ବାଚିକ, କାୟିକ କାର୍ଯ୍ୟ ରୂପରେ ଗୃହୀତ । ତଥା ବିକାର୍ଯ୍ୟତ୍ୱ ପକ୍ଷରେ ଏବଂ ଏହି ଦୁଇଟି ପକ୍ଷରେ ମୋକ୍ଷର ଅନିତ୍ୟତ୍ୱ ଅନିଶ୍ଚିତ ଅଟେ ।



(ଖ) ସଂସାରରେ ବିକାର୍ଯ୍ୟ ଦଧି ଓ ଉତ୍ପାଦ୍ୟ ଘଟାଦିରେ ନିତ୍ୟତ୍ୱ ଦେଖାଯାଏ ନାହିଁ । କିନ୍ତୁ ବ୍ରହ୍ମଜ୍ଞାନ ହୋଇସାରିଲା ପରେ ସେ ନିଜେ ଆତ୍ମରୂପ ହେବାରୁ କୌଣସି କାର୍ଯ୍ୟକୁ ଅପେକ୍ଷା କରେ ନାହିଁ ।

(ଗ) ବ୍ରହ୍ମକୁ ଆତ୍ମାର ଭିନ୍ନ ରୂପରେ ସ୍ୱୀକାର କଲେ ମଧ୍ୟ ବଳବତ୍ତର ପ୍ରମାଣ ଏହା ହେବନାହିଁ । କାରଣ- ଆକାଶ ସଦୃଶ ବ୍ରହ୍ମ ସର୍ବବ୍ୟାପକ, ନିତ୍ୟ ଓ ଆପ୍ତସ୍ୱରୂପ ।

(୨୧) ମୂଳ- (କ) ନାପି ସଂସ୍କାର୍ଯ୍ୟୋ ମୋକ୍ଷଃ ଯେନ ବ୍ୟାପାରମପେକ୍ଷେତ । (ଖ) ସଂସ୍କାରୋ ହି ନାମ ସଂସ୍କାର୍ଯ୍ୟସ୍ୟ ଗୁଣଧାନେନ ବା ସ୍ୟାଦୋଷାପନୟନେ ବା ? (ଗ) ନ ତାବଦ୍‌ଗୁଣାଧାନେନ ସମ୍ଭବତି, ଅନାଧେୟାତିଶୟବ୍ରହ୍ମସ୍ୱରୂପତ୍ୱାନ୍‌ମୋକ୍ଷସ୍ୟ । ନାପି ଦୋଷାପନୟନେନ, ନିତ୍ୟଶୁଦ୍ଧବ୍ରହ୍ମସ୍ୱରୂପତ୍ୱାନ୍‌ମୋକ୍ଷସ୍ୟ । (ଘ) ସ୍ୱାତ୍ମଧର୍ମ ଏବ ସଂସ୍ଥିରୋଭୂତୋ ମୋକ୍ଷଃ କ୍ରିୟୟାତ୍ମନି ସଂସ୍କ୍ରିୟମାଣେଽଭିବ୍ୟଜ୍ୟତେ, ଯଥାଽଽଦର୍ଶେ ନିଘର୍ଷଣକ୍ରିୟୟା ସଂସ୍କ୍ରିୟମାଣେ ଭାସ୍କରତ୍ୱଂ ଧର୍ମ ଇତି ଚେତ୍ - (ଙ) ନ କ୍ରିୟାଶ୍ରୟତ୍ୱାନୁ-ପପତ୍ତେରାତ୍ମନଃ । (ଚ) ଯଦାଶ୍ରୟା କ୍ରିୟା ତମବିକୁର୍ବତୀ ନୈବାତ୍ମାନଂ ଲଭତେ (ଛ) ଯଦ୍ୟାତ୍ମା ସ୍ୱାଶ୍ରକ୍ରିୟୟା ବିକ୍ରିୟେତ, ଅନିତ୍ୟତ୍ୱମାତ୍ମନଃ ପ୍ରସଜ୍ୟେତ । 'ଅବିକାର୍ଯ୍ୟୋଽୟମୁଚ୍ୟତେ' (ଭ.ଗୀ ୨।୨୫) ଇତି ଚୈବମାଦୀନି ବାକ୍ୟାନି ବାଧ୍ୟେରନ୍ । (ଜ) ତଚ୍ଚାନିଷ୍ଟମ୍ । ତସ୍ମାନ୍ନ ସ୍ୱାଶ୍ରୟା କ୍ରିୟାଽଽତ୍ମନଃ ସମ୍ଭବତି । (ଝ) ଅନ୍ୟାଶ୍ରୟାସ୍ତୁ କ୍ରିୟାୟା ଅବିଷୟତ୍ୱାନ୍ନ ତୟାଽଽତ୍ମନ ସଂସ୍କ୍ରିୟତେ ।

**(୨୧) ଭାଷାଂତର-** (କ) ମୋକ୍ଷ ସଂସ୍କାର୍ଯ୍ୟ ନୁହେଁ । ଯାହାଦ୍ୱାରା ସେ ବ୍ୟାପାରକୁ ଅପେକ୍ଷା କରିବ ।

(ଖ) ସଂସ୍କାର ପଦାର୍ଥରେ ବିଶେଷଗୁଣ ନେବା ଅଥବା ଦୋଷକୁ ପରାହତ କରିବା ପାଇଁ ସଂସ୍କାର କଣ ଆବଶ୍ୟକ ?

(ଗ) ମୋକ୍ଷରେ ଗୁଣାଧାନ (ବିଶେଷଗୁଣ ଗ୍ରହଣ କରିବା) ଦ୍ୱାରା ସଂସ୍କାର ସମ୍ଭବ ହୁଏ ନାହିଁ । କାରଣ-ମୋକ୍ଷ ଆଧେୟାତିଶୟ, ବିହୀନ ବ୍ରହ୍ମସ୍ୱରୂପ ଅଟେ । ଦୋଷାପନୟନରେ ମଧ୍ୟ ଏହା ସଂସ୍କୃତ ହେବା ସମ୍ଭବ ନୁହେଁ । କାରଣ-ମୋକ୍ଷ ନିତ୍ୟ, ଶୁଦ୍ଧ, ଓ ବ୍ରହ୍ମସ୍ୱରୂପ ଅଟେ ।

(ଘ) ଯଦି କୁହାଯାଏ ଯେ- ଯେପରି ଦର୍ପଣ ସ୍ୱଚ୍ଛ ହେଲେ ମଧ୍ୟ ଘଷିହୋଇ ନିଜେ ଭାସ୍କରତ୍ୱ ଧର୍ମଦ୍ୱାରା ଅଭିବ୍ୟକ୍ତ ହୁଏ, ସେପରି ଉପାସନା କ୍ରିୟା ଦ୍ୱାରା ଆତ୍ମା

ସଂସ୍କୃତ ହେଲେ ମଧ୍ୟ ଏହା ଅବିଦ୍ୟା ବିମଳ ଦ୍ୱାରା ତିରୋହିତ ହୋଇ ନିଜେ ମୋକ୍ଷ ରୂପ ଧର୍ମ ଦ୍ୱାରା ଅଭିବ୍ୟକ୍ତ ହୁଏ ।

(ଙ) ଏହା କିନ୍ତୁ ଠିକ୍ ନୁହେଁ କାରଣ । - ଆତ୍ମାରେ କ୍ରିୟାର ଆଗ୍ରହ ଉପପନ୍ନ ନୁହେଁ ।

(ଚ) ଯେଉଁ ଆଶ୍ରୟରେ କ୍ରିୟା ରହେ ତାହାକୁ ବୃତି ନ କରି ସେ ନିଜେ ନିଜ ସ୍ୱରୂପକୁ ପାଇପାରେ ନାହିଁ ।

(ଛ) ଯଦି ଆତ୍ମା ସ୍ୱାଶ୍ରିତ କ୍ରିୟାଦ୍ୱାରା ବିକୃତ ହୋଇପାରେ, ତେବେ ଆତ୍ମାରେ ଅନିତ୍ୟତ୍ୱ ପ୍ରସକ୍ତ ହେବ । 'ଅବିକାର୍ଯ୍ୟୋଽୟ ମୁଚ୍ୟତେ' (ଏହି ଆତ୍ମାକୁ ଅବିକାର୍ଯ୍ୟ କୁହାଯାଏ) ଇତ୍ୟାଦି ବାକ୍ୟ ବାଧିତ ହେବେ ।

(ଜ) ଏହା ଠିକ୍ ନୁହେଁ । ତେଣୁ ଆତ୍ମାରେ ସ୍ୱାଶକ୍ରିୟାର ସମ୍ଭବ ହୁଏ ନାହିଁ ।

(ଝ) ଅନ୍ୟ ପଦାର୍ଥ ଆଶ୍ରୟ କ୍ରିୟାର ଆତ୍ମା ବିଷୟ ସମ୍ବନ୍ଧୀ ନୁହେଁ । ତେଣୁ ତାହାଦ୍ୱାରା ଆତ୍ମା ସଂସ୍କୃତ ହୋଇପାରେ ନାହିଁ ।

(୨୨) ମୂଳ- (କ) ନନୁଦେହାଶ୍ରୟୟା ସ୍ନାନାଚମନ ଯଜ୍ଞୋପବୀତଧାରଣାଦି-କୟା କ୍ରିୟୟା ଦେହୀ ସଂସ୍କ୍ରିୟମାଣୋ ଦୃଷ୍ଟଃ । ନ ଦେହାଦିସଂହତସୌବାବିଦ୍ୟାଗୃହୀ-ତସ୍ୟାତ୍ମନଃ ସଂସ୍କ୍ରିୟମାଣତ୍ୱାତ୍ । (ଖ) ପ୍ରତ୍ୟକ୍ଷଂ ହି ସ୍ନାନାଚମନାଦେର୍ଦେହସମବାୟିତ୍ୱମ୍ । ତୟା ଦେହାଶ୍ରୟୟା ତତ୍ସଂହତ ଏବ କଶ୍ଚିଦବିଦ୍ୟୟାତ୍ମତ୍ୱେନ ପରିଗୃହୀତଃ ସଂସ୍କ୍ରିୟତ ଇତି ଯୁକ୍ତମ୍ । (ଗ) ଯଥା- ଦେହାଶ୍ରୟଚିକିତ୍ସାନିମିତ୍ତେନ ଧାତୁସାମ୍ୟେନ ତତ୍ସଂହତସ୍ୟ ତଦଭିମାନିନ ଆରୋଗ୍ୟଫଳମ୍ । 'ଅହମରୋଗଃ' ଇତି ଯତ୍ର ବୁଦ୍ଧିରୁତ୍ପଦ୍ୟତେ, ଏବଂ ସ୍ନାନାଚମନଯଜ୍ଞୋପବୀତାଦିନା 'ଅହଂ ଶୁଦ୍ଧଃ ସଂସ୍କୃତ' ଇତି ଯତ୍ର ବୁଦ୍ଧିରୁତ୍ପଦ୍ୟତେ । (ଘ) ସ ଏବ ଦେହେନ ସଂସ୍କୃତ ଏବଂ । ତେନୈବ ହ୍ୟହଂ କର୍ତ୍ତ୍ରହଂ-ପ୍ରତ୍ୟୟବିଷୟେଣ ପ୍ରତ୍ୟୟିନା ସର୍ବା କ୍ରିୟା ନିବର୍ତ୍ତ୍ୟନ୍ତେ, ତତ୍ଫଳଞ୍ଚ ସ ଏବ ଅଶ୍ନାତି । 'ତୟୋରନ୍ୟଃ ପିପ୍ପଳଂ ସ୍ୱାଦବତ୍ତ୍ୟନଶ୍ନନ୍ନନ୍ୟୋଽଭିଋକଶୀତି', (ମୁଣ୍ଡ ୩।୧।୧) ଇତି ମନ୍ତ୍ରବର୍ଣ୍ଣାତ୍ । 'ଆତ୍ମେନ୍ଦ୍ରିୟମନୋଯୁକ୍ତଂଭୋକ୍ତେତ୍ୟାହୁର୍ମନୀଷିଣଃ (କଠ-୩।୧।୩୪) ଇତି ଚ । (ଙ) ତଥା ଚଁଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ, ସର୍ବବ୍ୟାପୀ ସର୍ବ ଭୂତାନ୍ତରାତ୍ମା । କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ, ସାକ୍ଷୀ ଚେତା କେବଳୋ ନିର୍ଗୁଣଶ୍ଚ' (ଶ୍ୱେତାଶ୍ୱେତରୋ ୬।୧୧)



ଇତି । ' ସ ପର୍ଯ୍ୟଗାଚ୍ଛୁକ୍ରମକାୟମ-ବ୍ରଣମସ୍ନାବିରଁ ଶୁଦ୍ଧମପାପବିଦ୍ଧମ୍,' (ଈଶ-୮) ଇତିଚେତୌ ମନ୍ତ୍ରାବନାଧେୟାତିଶୟତାଂ ନିତ୍ୟଶୁଦ୍ଧତାଞ୍ଚ ବ୍ରହ୍ମଣୋ ଦର୍ଶୟତଃ ବ୍ରହ୍ମଭାବାଶ୍ଚ ମୋକ୍ଷଃ । ତସ୍ମାନ୍ନ ସଂସ୍କାର୍ଯ୍ୟୋଽପି ମୋକ୍ଷଃ । (ଚ) ଅତୋଽନ୍ୟନ୍ ମୋକ୍ଷଂ ପ୍ରତି କ୍ରିୟାନୁପ୍ରବେଶଦ୍ୱାରଂ ନ ଶକ୍ୟଂ କେନଚିଦ୍ଦର୍ଶୟିତୁମ୍ । (ଛ) ତସ୍ମାଜ୍ଜ୍ଞାନମେକଂ ମୁକ୍ତ୍ୱା କ୍ରିୟାୟା ଗନ୍ଧମାତ୍ରସ୍ୟାନୁ ପ୍ରବେଶ ଇହ ନୋପପଦ୍ୟତେ ।

**(୨୨) ଭାଷାଂତର-** (କ) ପରନ୍ତୁ ଦେହାଶ୍ରୟ ସ୍ନାନ, ଆଚମନ ଯଜ୍ଞୋପବୀତ ଧାରଣାଦି କ୍ରିୟା ଦ୍ୱାରା ଆତ୍ମା ସଂସ୍କୃତ ହୁଏ କି ? ନୁହେଁ, ଦେହାଦି ସଂଘାତଯୁକ୍ତ ଅବିଦ୍ୟାରେ ପ୍ରତିବିମ୍ବିତ ଆତ୍ମାର ସଂସ୍କାର ହୁଏ ।

(ଖ) ସ୍ନାନ, ଆଚମନାଦି କ୍ରିୟାର ସମ୍ବନ୍ଧ ଦେହ ସହିତ ପ୍ରତ୍ୟକ୍ଷ ଭାବରେ ହୁଏ । ଯେଉଁ ଅବିଦ୍ୟା ଦ୍ୱାରା ଦେହାଦି ସଂଘାତକୁ ଆତ୍ମା ରୂପରେ ଗୃହୀତ ହୁଏ; ତାହାର ସେହି ଦେହାଶ୍ରିତ କର୍ମଦ୍ୱାରା ସଂସ୍କୃତ ହେବା ହିଁ ଠିକ୍ ।

(ଗ) ଯେପରି ଶରୀରାଶ୍ରିତ ଚିକିତ୍ସା ନିମିତ୍ତ ଧାତୁର ସମତା ଦ୍ୱାରା ଯେଉଁ ଦେହାଭିମାନୀ ଆତ୍ମାରେ 'ମୁଁ ଅରୋଗ' ଏହି ପ୍ରକାର ବୁଦ୍ଧି ଉତ୍ପନ୍ନ ହୁଏ ଓ ଦେହ ସହିତ ସମ୍ପର୍କ ରଖି ଶରୀରରେ 'ମୁଁ ମୋର' ଏହି ପ୍ରକାର ଅଭିମାନ ରଖି ଆରୋଗ୍ୟ ଫଳ ପାଏ, ସେପରି ସ୍ନାନ, ଆଚମନ, ଯଜ୍ଞୋପବୀତ ଦ୍ୱାରା ମୁଁ ଶୁଦ୍ଧ ଓ ସଂସ୍କୃତ ଅଟେ – ଏହି ବୁଦ୍ଧି ଉତ୍ପନ୍ନ ହୁଏ ।

(ଘ) ଏହା ଦେହ ସହିତ ସମ୍ବନ୍ଧ ହେଲେ 'ଏଥିରେ ଜଣେ ସ୍ୱାଦିଷ୍ଟଫଳ ଭୋଗ କରି ସାକ୍ଷୀ ରୂପରେ ରହେ' । 'ଇନ୍ଦ୍ରିୟ, ଶରୀର ଓ ମନୋଯୁକ୍ତ ଆତ୍ମାକୁ ଜ୍ଞାନୀମାନେ ଭୋକ୍ତା' ବୋଲି କହନ୍ତି ୀ 'ଏହାଦ୍ୱାରା ଅହଂ ପ୍ରତୀତିର ବିଷୟଭୂତ-ପ୍ରତ୍ୟୟୀ-ଅହଂକର୍ତ୍ତା-ଠାରୁ ସଂପୂର୍ଣ୍ଣ କ୍ରିୟାରେ ଶୁଦ୍ଧ ହୋଇ ଏଠାରେ ଫଳଭୋଗ କରେ ।

(ଙ) ପୁନଶ୍ଚ 'ସମସ୍ତ ଜୀବାତ୍ମାରେ ଏକ, ସ୍ୱପ୍ରକାଶ, ମୂତ, ସର୍ବବ୍ୟାପକ, ସମସ୍ତ ପ୍ରାଣୀମାନଙ୍କର ଅନ୍ତରାତ୍ମା, କର୍ମର ଅଧିଷ୍ଠାତା, ସମସ୍ତଙ୍କର ବିଶ୍ରାମଗୃହ, ସାକ୍ଷୀ, ନିର୍ଗୁଣ, ଶୁଦ୍ଧ ଆତ୍ମା ଅଟେ' । ଏହି ଆତ୍ମା ସର୍ବଗତ ଶୁଦ୍ଧ, ଅଶରୀରୀ, ଅକ୍ଷତ, ସ୍ନାୟୁବିହୀନ, ସ୍ଥୁଳ, ଶରୀରହୀନ ଓ ଅପାପହତ ଅଟେ । ଏହି ଦୁଇଟି ମନ୍ତ୍ର ବ୍ରହ୍ମରେ ଅନାଧେୟତାତିଶୟତା ଓ ନିତ୍ୟଶୁଦ୍ଧତା ଦେଖାଏ । ତେଣୁ ବ୍ରହ୍ମଭାବ ମୋକ୍ଷ ଅଟେ ।

(ଚ) କିନ୍ତୁ ସଂସ୍କାର୍ଯ୍ୟ ମୋକ୍ଷ ନୁହେଁ, ଏହି କାରଣ ମୋକ୍ଷ ପ୍ରତି ଉତ୍ପତ୍ତି, ବିକୃତି, ଆପ୍ତି (ପ୍ରାପ୍ତି) ଓ ସଂସ୍କୃତି ଭିନ୍ନ କ୍ରିୟା ସମ୍ବନ୍ଧର ଦ୍ୱାର କେହି ନୁହେଁ ।

(ଛ) ତେଣୁ ମୋକ୍ଷରେ କେବଳ ଜ୍ଞାନକୁ ଛାଡ଼ି କ୍ରିୟାର ଲେଶମାତ୍ର ସମ୍ବନ୍ଧ ଉପପନ୍ନ ହୁଏ ନାହିଁ ।

(୨୩) ମୂଳ- (କ) ନନୁ ଜ୍ଞାନଂ ନାମ ମାନସୀ କ୍ରିୟା । ନ ବୈଲକ୍ଷଣାତ୍ । କ୍ରିୟା ହି ନାମ ସା, ଯତ୍ର ବସ୍ତୁସ୍ୱରୂପନିରପେକ୍ଷୈବ ଚୋଦ୍ୟତେ । ପୁରୁଷଚିତ୍ତବ୍ୟାପାରାଧୀନା ଚ । (ଖ) ଯଥା 'ଯସ୍ୟୈଦେବତାୟୈ ହବିର୍ଗୃହୀତଂ ସ୍ୟାତ୍, ତାଂ ମନସା ଧ୍ୟାୟେଦ୍‌ବଷଟ୍ କରିଷ୍ୟନ୍' ଇତି, 'ସଂଧ୍ୟା ମନସା ଧ୍ୟାୟେତ୍' (ଐ.ବ୍ର ।୩।୮।୧) ଇତିଚୈବମାଦିଷୁ । ଧ୍ୟାନଂ ଚିନ୍ତନଂ ଯଦ୍ୟପି ମାନସମ୍, ତଥାପି ପୁରୁଷେଣ କର୍ତ୍ତୁମକର୍ତ୍ତୁମନ୍ୟଥା ବା କର୍ତ୍ତୁଂ ଶକ୍ୟମ୍, ପୁରୁଷତନ୍ତ୍ରତ୍ୱାତ୍ । (ଗ) ଜ୍ଞାନଂ ତୁ ପ୍ରମାଣଜନ୍ୟମ୍ । ପ୍ରମାଣଞ୍ଚ ଯଥାଭୂତବସ୍ତୁବିଷୟମ୍; ଅତୋ ଜ୍ଞାନଂ କର୍ତ୍ତୁମ କର୍ତ୍ତୁମନ୍ୟଥା କର୍ତ୍ତୁମଶକ୍ୟମ୍ କେବଳଂ ବସ୍ତୁତନ୍ତ୍ରମେବ ତତ୍ । (ଘ) ନ ଚୋଦନାତନ୍ତ୍ରମ୍ । ନାପି ପୁରୁଷତନ୍ତ୍ରମ୍ । ତସ୍ମାନ୍ମାନସତ୍ୱେଽପି ଜ୍ଞାନସ୍ୟ ମହଦ୍‌ବୈଲକ୍ଷଣ୍ୟମ୍ ।

**(୨୩) ଭାଷାଂତର-** (କ) ଜ୍ଞାନ କଣ ମାନସୀ କ୍ରିୟାର ନାମ ? ଏହା ନୁହେଁ । କାରଣ-ଜ୍ଞାନ ତାହାଠାରୁ ବିଲକ୍ଷଣ ଅଟେ । ବସ୍ତୁ ସ୍ୱରୂପର ଅପେକ୍ଷା ବିନା ଯେଉଁଠାରେ ଯାହାର ବିଧାନ ହୁଏ, ତାହା କ୍ରିୟା ଓ ପୁରୁଷ ସଂକଳ୍ପର ଅଧୀନ ହୁଏ ।

(ଖ) ଯଥା- 'ଯେଉଁ ଦେବତା ପାଇଁ ଅଧ୍ୱର୍ଯ୍ୟ ଦ୍ୱାରା ହବିର ଗ୍ରହଣ ହୋଇପାରେ, ସେହି ସମୟରେ ବଷଟ୍ ଶବ୍ଦର ଉଚ୍ଚାରଣ ହୁଏ ଏବଂ ମନରେ ଧ୍ୟାନ ମଧ୍ୟ କରାଯାଏ ।' ଇତ୍ୟାଦି ଶ୍ରୁତିବାକ୍ୟରେ ଧ୍ୟାନ ଓ ଚିନ୍ତନ ଯଦ୍ୟପି ମାନସୀ କ୍ରିୟା ହୁଏ, ତଥାପି ପୁରୁଷର ଅଧୀନ ହେତୁ ପୁରୁଷ ଦ୍ୱାରା କରିବା ଅଥବା ନ କରିବା କିମ୍ବା ଅନ୍ୟଥା ପ୍ରକାରରେ କରିବା ଯୋଗ୍ୟ ହୁଏ ।

(ଗ) ଜ୍ଞାନ ହିଁ ପ୍ରମାଣଜନ୍ୟ । ପ୍ରମାଣ ହେଉଛି - ଯଥାର୍ଥ ବସ୍ତୁ ବିଷୟକ । ଅତଏବ ଜ୍ଞାନ ସିଦ୍ଧ, ଅସିଦ୍ଧ ବା ଅନ୍ୟ ପ୍ରକାର ସିଦ୍ଧ ହେବା ପାଇଁ ଅଯୋଗ୍ୟ । କାରଣ-ଏହା କେବଳ ବସ୍ତୁର ଅଧୀନ ।

(ଘ) କିନ୍ତୁ ବିଧିର ଅଥବା ପୁରୁଷର ଅଧୀନ ନୁହେଁ । ତେଣୁ ଏହା ମାନସିକ ହେଲେ ମଧ୍ୟ ଜ୍ଞାନଠାରୁ ଖୁବ୍ ପାର୍ଥକ୍ୟ ଅଟେ ।

(୨୪) ମୂଳ-(କ) ଯଥା ଚ 'ପୁରୁଷୋ ବାବ ଗୌତମାଗ୍ନିଃ', ଯୋଷା ବାବ ଗୌତମାଗ୍ନିଃ', (ଛା ୫।୭।୧,୮।୧) ଇତ୍ୟତ୍ର ଯୋଷିତ୍‌ପୁରୁଷଯୋର୍ଗ୍ନିବୁଦ୍ଧିର୍ମାନସୀ ଭବତି । କେବଳଚୋଦନାଜନ୍ୟ ତ୍ୱାତ୍କ୍ରିୟୈବ ସ ପୁରୁଷତନ୍ତ୍ରା ଚ ଯା ତୁ ପ୍ରସିଦ୍ଧେଽଗ୍ନାବଗ୍ନିବୁଦ୍ଧିଃ, ନ ସା ଚୋଦନାତନ୍ତ୍ରା । ନାପି ପୁରୁଷତନ୍ତ୍ରା । (ଖ) କିଂ ତର୍ହି ? ପ୍ରତ୍ୟକ୍ଷବିଷୟବସ୍ତୁତନ୍ତ୍ରୈବେତି



ଜ୍ଞାନମେବୈତନ୍ନକ୍ରିୟା । ଏବଂ ସର୍ବପ୍ରମାଣବିଷୟବସ୍ତୁଷୁ ବେଦିତବ୍ୟମ୍ । ତତ୍ରୈବ ସତି ଯଥାଭୂତବ୍ରମହ୍ମାତ୍ମବିଷୟମପି ଜ୍ଞାନଂ ନ ଚୋଦନାତନ୍ତ୍ରମ୍ ।

**(୨୪) ଭାଷାଂତର** - (କ) ଯେପରି 'ହେ ଗୌତମ ! ପୁରୁଷ ଅଗ୍ନି ସ୍ତ୍ରୀ ମଧ୍ୟ ଅଗ୍ନି । ଏହି ସ୍ତ୍ରୀ ଓ ପୁରୁଷମାନଙ୍କ ମଧ୍ୟରେ ଅଗ୍ନିବୁଦ୍ଧି ମାନସିକ ଅଟେ । କେବଳ ବୁଦ୍ଧିଜନ୍ୟ ହେତୁ ଏହି କ୍ରିୟା ପୁରୁଷତନ୍ତ୍ରା, କିନ୍ତୁ ଲୋକ ପ୍ରସିଦ୍ଧ ଅଗ୍ନିରେ ବିଦ୍ୟମାନ ଅଗ୍ନି ବିଧିର ଅଧୀନ ନୁହେଁ ଅଥବା ପୁରୁଷର ଅଧୀନ ନୁହେଁ ।

(ଖ) ତାହେଲେ କଣ କଣ ? ପ୍ରତ୍ୟକ୍ଷ ବିଷୟର ଅଧୀନ । ଅତଃ ଏହା ଜ୍ଞାନ । କିନ୍ତୁ କ୍ରିୟା ନୁହେଁ । ଏହିପରି ସମସ୍ତ ପ୍ରମାଣ ବିଷୟକ ବସ୍ତୁରେ ମଧ୍ୟ ଜାଣିବା ଉଚିତ ।

**(୨୫) ମୂଳ**-(କ) ତଦ୍‌ବିଷୟେ ଲିଙ୍‌ଦୟଃ ଶ୍ରୂୟମାଣା ଅପ୍ୟଗ୍ନିଯୋଜ୍ୟ-ବିଷୟତ୍ୱାତ୍ କୁଣ୍ଠୀଭବନ୍ତି । ଉପଲାଦିଷୁ ପ୍ରଯୁକ୍ତକ୍ଷୁରତୈକ୍ଷ୍ଣ୍ୟାଦିବତ୍ ଅହେୟାନୁପାଦେୟ-ବସ୍ତୁବିଷୟତ୍ୱାତ୍ । (ଖ) କିମର୍ଥାନି ତର୍ହି ? 'ଆତ୍ମା ବାରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟଃ' (ବୃହ ୨।୪।୫) ଇତ୍ୟାଦୀନି ବିଧିଚ୍ଛାୟାନି ବଚନାନି ? ସ୍ୱାଭାବିକପ୍ରବୃତ୍ତି ବିଷୟବିମୁଖୀକରଣାର୍ଥାନୀତି ବ୍ରୂମଃ । ଯୋ ହି ବହିର୍ମୁଖଃ ପ୍ରବର୍ତ୍ତତେ ପୁରୁଷଃ 'ଇଷ୍ଟମେ ଭୂୟାଦନିଷ୍ଟଂ ମା ଭୂତ୍' ଇତି । ନ ଚ ତତ୍ରାତ୍ୟନ୍ତିକଂ ପୁରୁଷାର୍ଥଂ ଲଭତେ (ଗ) ତମାତ୍ୟନ୍ତିକପୁରୁଷାର୍ଥବାଞ୍ଛିନଂ ସ୍ୱାଭାବିକ କାର୍ଯ୍ୟକରଣସଂଘାତପ୍ରବୃତ୍ତି ଗୋଚରାଦ୍ ବିମୁଖୀକୃତ୍ୟ ପ୍ରତ୍ୟଗାତ୍ମସ୍ରୋତସ୍ତୟା ପ୍ରବର୍ତ୍ତୟନ୍ତି - 'ଆତ୍ମା ବାରେ ଦ୍ରଷ୍ଟବ୍ୟଃ' ଇତ୍ୟାଦୀନି ।

**(୨୫) ଭାଷାଂତର** - (କ) ଯଦ୍ୟପି ଜ୍ଞାନ ବିଷୟରେ ଲିଂଙ୍, ଲୋଟାଦି ବିଧି ପ୍ରତ୍ୟୟ ଶ୍ରୂୟମାଣ ଅଟେ । କିନ୍ତୁ ଯେପରି ପ୍ରସ୍ତରାଦିରେ ତୀକ୍ଷ୍ମ ଧାରଥିବା କ୍ଷୁର ଘଷିଲେ ତାହାର ତୀକ୍ଷ୍ଣତ୍ୱ ନଷ୍ଟ ହୋଇଯାଏ, ସେହିପରି ଉକ୍ତ ବିଧି ପ୍ରତ୍ୟୟ ମଧ୍ୟ ଅନିଯୋଜ୍ୟ ବିଷୟକ ହେତୁ ପୁରୁଷ ପ୍ରବୃତ୍ତିରେ ସମର୍ଥ ହୁଅନ୍ତି ନାହିଁ । କାରଣ- ଏହା ଅହେୟାନୁପାଦେୟ - ବସ୍ତୁ ବିଷୟକ ଅଟେ ।

(ଖ) ଅତଃ 'ଆତ୍ମା ବାରେ ଦ୍ରଷ୍ଟବ୍ୟଃ' ଇତ୍ୟାଦି ବିଧିତୁଲ୍ୟ ବାକ୍ୟ କାହାପାଇଁ ପ୍ରୟୋଜନ ? ତେଣୁ କୁହାଯାଇଛି- ବିଷୟରେ ମନୁଷ୍ୟର ଯେଉଁ ସ୍ୱାଭାବିକ ପ୍ରବୃତ୍ତି ହୁଏ, ତାହାର ପରାଙ୍‌ମୁଖ ପାଇଁ ଯେଉଁ ପୁରୁଷ ବାହ୍ୟ ବିଷୟରେ 'ଇଷ୍ଟବସ୍ତୁ ମୋତେ ପ୍ରାପ୍ତ ହେଉ, ଅନିଷ୍ଟ ନ ହେଉ' ବୋଲି ଭାବନା କରେ, ସେ ଏହି ବିଷୟରେ ଆତ୍ୟନ୍ତିକ ପୁରୁଷାର୍ଥ ପାଏ ନାହିଁ ।

(ଗ) ଏହି ଆତ୍ୟନ୍ତିକ ପୁରୁଷାର୍ଥର ଅଭିଳାଷକୁ 'ଆତ୍ମାବାରେ ଦ୍ରଷ୍ଟବ୍ୟ' ଇତ୍ୟାଦି ବାକ୍ୟ, କାର୍ଯ୍ୟ (ଶରୀର) କରଣ (ଇନ୍ଦ୍ରିୟ) ସମୁଦାୟକୁ ସ୍ୱାଭାବିକ ପ୍ରବୃତ୍ତିର ବିଷୟ ଶବ୍ଦାଦିଠାରୁ ନିବୃତ୍ତ କରି ଅନ୍ତରାତ୍ମାର ଚିତ୍ତବୃତ୍ତିକୁ ପ୍ରବାହ ରୂପରେ ପ୍ରବୃତ୍ତ କରେ ।

(୨୬) ମୂଳ- (କ) ତସ୍ୟାତ୍ମାନ୍ୱେଷଣାୟ ପ୍ରବୃତ୍ତସ୍ୟାହେୟାନୁପାଦେୟଂ ଚାତ୍ମତତ୍ତ୍ୱମୁଦିଶ୍ୟତେ । 'ଇଦଂ ସର୍ବଂ ଯଦୟମାତ୍ମା' (ବୃହ ୨।୪।୬), 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ ତତ୍କେନ କଂ ବିଜାନୀୟାତ୍, ବିଜ୍ଞାତାରମରେ କେନ ବିଜାନୀୟାତ୍', (ବୃ ୪।୫।୧୫), 'ଅୟମାତ୍ମା ବ୍ରହ୍ମ' (ବୃହ ୨।୫।୧୯) ଇତ୍ୟାଦିଭିଃ । (ଖ) ଯଦପ୍ୟକର୍ତ୍ତବ୍ୟପ୍ରଧାନମାତ୍ମଜ୍ଞାନଂ ହାନୋପାଦାୟାୟ ବା ନ ଭବତୀତି ତଥୈବେତ୍ୟଭ୍ୟୁପଗମ୍ୟତେ - ଅଳଙ୍କାରେ ହ୍ୟୟମସ୍ମାକଂ ଯଦ୍‌ବ୍ରହ୍ମାତ୍ମାବଗତୌ ସତ୍ୟାଂ ସର୍ବକର୍ତ୍ତବ୍ୟତାହାନିଃ କୃତକୃତ୍ୟତା ଚେତି । (ଗ) ତଥା ଚ ଶ୍ରୁତିଃ - 'ଆତ୍ମାନଂ ଯଦ୍‌ବିଜାନୀୟାଦୟମସ୍ମୀତି ପୁରୁଷଃ । କିମିଚ୍ଛନ୍‌କସ୍ୟ କାମାୟ ଶରୀରମନୁସଂଜ୍ୱରେନ୍' (ବୃହ ୪।୪।୧୨) ଇତି । 'ଏତଦ୍‌ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ', (ଭ.ଗୀ ୧୫।୨୦) ଇତି ସ୍ମୃତିଃ । ତସ୍ମାନ୍ନ ପ୍ରତିପତ୍ତି ବିଧିବିଷୟତୟା ବ୍ରହ୍ମଣଃ ସମର୍ପଣମ୍ ।

**(୨୬) ଭାଷାଂତର** - (କ) ସେହି ଆତ୍ମାସ୍ୱରୂପକୁ ଅନ୍ୱେଷଣ କରିବା ପାଇଁ ଏହି ପୁରୁଷକୁ 'ସେହି ସବୁ ଆତ୍ମା' । କିନ୍ତୁ 'ଯେଉଁ ତତ୍ତ୍ୱଜ୍ଞାନାବସ୍ଥାରେ ଏହା ପାଇଁ ଏହା ସବୁ ଆତ୍ମା ହେଲେ ସେଠାରେ କାହାକୁ ଦେଖିପାରେ, କିଏ କାହାକୁ ଜାଣେ । ଆରେ ! ଏହି ବିଜ୍ଞାତା କାହାଦ୍ୱାରା ଜଣାପଡ଼େ' । ଏହି ଆତ୍ମା ବ୍ରହ୍ମ' ଇତ୍ୟାଦି ଶ୍ରୁତିଠାରୁ ହେୟ ଓ ଉପାଦେୟରହିତ ଆତ୍ମାତତ୍ତ୍ୱର ଉପଦେଶ ମିଳେ ।

(ଖ) ଯଦ୍ୟପି ଅକର୍ତ୍ତବ୍ୟ - ପ୍ରଧାନ ରୂପକ ଆତ୍ମଜ୍ଞାନ କାହାକୁ ଗ୍ରହଣ କରିବାକୁ ହୁଏ ନାହିଁ, ତଥାପି ଆମ୍ଭେମାନେ ଏହାକୁ ଏହି ପ୍ରକାରରେ ସ୍ୱୀକାର କରୁଁ ଯେ - ଏହା ବେଦାନ୍ତବିଦ୍‌ମାନଙ୍କ ପାଇଁ ଅଳଙ୍କାର ଯାହାକି ପ୍ରତ୍ୟଗାତ୍ମଭିନ୍ନ ବ୍ରହ୍ମର ଐକ୍ୟଜ୍ଞାନ ହେଲେ ସବୁ କର୍ତ୍ତବ୍ୟର ହାନି ଓ କୃତକୃତ୍ୟତା ହୁଏ ।

(ଗ) ଏହି ବିଷୟରେ ବେଦପ୍ରମାଣ - 'ଯଦି ପୁରୁଷ ସ୍ୱୟଂ ପ୍ରକାଶ ଆତ୍ମାକୁ 'ମୁଁ ସେ ଅଟେ' ଏହି ପ୍ରକାର ବିଶେଷ ରୂପ ଦ୍ୱାରା ଜାଣିପାରେ, ତେବେ କୌଣସି ଫଳ ପାଇଁ ଇଚ୍ଛା କରିହୁଏ ଏବଂ କୌଣସି କାମନା ଦ୍ୱାରା ଶରୀର ପଶ୍ଚାଦ୍‌ଭାଗରେ ସ୍ୱୟଂ ସନ୍ତପ୍ତ ହୁଏ । ସ୍ମୃତିପ୍ରମାଣ - 'ହେ ଅର୍ଜ୍ଜୁନ ! ଗୁହ୍ୟତମତତ୍ତ୍ୱକୁ ଜାଣି ପୁରୁଷ ଜ୍ଞାନୀ ଓ କୃତକୃତ୍ୟ ହୁଏ' । ସେହି କାରଣରୁ ବେଦାନ୍ତବାକ୍ୟ ଉପାସନା ବିଧିର ବିଷୟ ରୂପରେ ବ୍ରହ୍ମଜ୍ଞାନ କରେ ନାହିଁ ।



(୨୭) ମୂଳ- (କ) ଯଦ୍ୟପି କେଚିଦାହୁଃ – 'ପ୍ରବୃତ୍ତିନିବୃତ୍ତିବିଧିତତ୍‌ଶେଷବ୍ୟ- ତିରେକେଣ କେବଳବସ୍ତୁବାଦୀ ବେଦଭାଗୋ ନାସ୍ତି' ଇତି-ତନ୍ନ ଔପନି-ଷଦସ୍ୟ ପୁରୁଷସ୍ୟାନନ୍ୟଶେଷତ୍ୱାତ୍ । (ଖ) ଯୋଽସାବୁପନିଷସ୍ତ୍ୱେ ବାଧିଗତଃ ପୁରୁଷୋଽସଂସାରୀ ବ୍ରହ୍ମ, ଉତ୍ପଦ୍ୟାଦିଚତୁର୍ବିଧଦ୍ରବ୍ୟବିଲକ୍ଷଣଃ ସ୍ୱପ୍ରକରଣସ୍ଥୋଽ-ନନ୍ୟଶେଷଃ । (ଗ) ନାସୌ ନାସ୍ତି ନାଧିଗମ୍ୟତ ଇତି ବା ଶକ୍ୟଂ ବେଦିତୁମ୍ । 'ସ ଏଷ ନେତି ନେତ୍ୟାତ୍ମା', (ବୃହ ୩।୯।୨୬) ଇତ୍ୟାତ୍ମଶବ୍ଦାତ୍ । ଆତ୍ମନଶ୍ଚ ପ୍ରତ୍ୟାଖ୍ୟାତୁମଶକ୍ୟତ୍ୱାତ୍, ଯ ଏବ ନିରାକର୍ତ୍ତା ତସ୍ୟୈବାତ୍ମତ୍ୱାତ୍ ।

**(୨୭) ଭାଷାଂତର** – (କ) ଶଙ୍କା-ପ୍ରବୃତ୍ତି ବିଧି ଏବଂ ଏହାର ଅଙ୍ଗଠାରୁ ଭିନ୍ନ କେବଳ ସିଦ୍ଧବସ୍ତୁର ପ୍ରତିପାଦକ ବେଦବାକ୍ୟ ନୁହେଁ ବୋଲି କେତେକଙ୍କ ମତ । କିନ୍ତୁ ଏହା ଠିକ୍ ନୁହେଁ । କାରଣ-ଉପନିଷଦ ପ୍ରତିପାଦ୍ୟପୁରୁଷ ଅନ୍ୟର ଶେଷ (ଅଙ୍ଗ) ନୁହେଁ ।

(ଖ) ଯେଉଁ ଲୋକ ଉପନିଷଦ୍ ପଠନ ଦ୍ୱାରା ଅସଂସାରୀ ବ୍ରହ୍ମ ହୁଏ, ସେ ଉତ୍ପତ୍ତ୍ୟାଦି ଚାରି ପ୍ରକାର ଦ୍ରବ୍ୟଦ୍ୱାରା ବିଲକ୍ଷଣ, ସ୍ୱପ୍ରକରଣରେ ସ୍ଥିତଃ ଓ ଅନାନ୍ୟ ଶେଷ ହୁଏ ।

(ଗ) **ସମାଧାନ** – ଏହା ନାହିଁ ଏହା ଜଣାପଡୁନାହିଁ ଇତ୍ୟାଦି ବୋଲି କହିହେବ ନାହିଁ । 'ଯାହା ନାହିଁ, ଯାହା ନାହିଁ, ତାହା ଆତ୍ମା ଅଟେ' ଏହି ପ୍ରକାର ଶ୍ରୁତିବାକ୍ୟରେ ଆତ୍ମଶବ୍ଦ ଅଛି । ତେଣୁ ଆତ୍ମାର ନିଷେଧ କରାଯାଏ ନାହିଁ । କାରଣ- ତାହାଠାରେ ଆତ୍ମତ୍ୱ ଅଛି ।

(୨୮) ମୂଳ- (କ) ନନ୍ୱାତ୍ମାଽହଂପ୍ରତ୍ୟୟବିଷୟତ୍ୱାଦୁପନିଷସ୍ତ୍ୱେବ ବିଜ୍ଞାୟତ ଇତ୍ୟନୁପପନ୍ନମ୍ । ନ, ତତ୍‌ସାକ୍ଷିତ୍ୱେନ ପ୍ରଯୁକ୍ତତ୍ୱାତ୍ । (ଖ) ନହ୍ୟହଂପ୍ରତ୍ୟୟବିଷୟକର୍ତ୍ତୃ ବ୍ୟତିରେକେଣ ତତ୍‌ସାକ୍ଷୀ, ସର୍ବଭୂତସ୍ଥଃ, ସମ, ଏକଃ, କୂଟସ୍ଥଃ, ବିଧିକାଣ୍ଡେ ତର୍କସମୟେ ବା କେନଚିଦଧିଗତଃ ସର୍ବସ୍ୟାତ୍ମା, (ଗ) ଅତଃ ସ ନ କେନଚିତ୍ ପ୍ରତ୍ୟାଖ୍ୟାତୁଂ ଶକ୍ୟୋ ବିଧିଶେଷତ୍ୱଂ ବା ନେତୁମ୍ ।

**(୨୮) ଭାଷାଂତର** – ଆତ୍ମାରେ 'ମୁଁ' ରୂପକ ପ୍ରସିଦ୍ଧ ଲୋକ ପ୍ରତୀତିର ବିଷୟ ହେଲେ କେବଳ ଉପନିଷଦ୍‌ବାଣୀ ଦ୍ୱାରା ଜଣାପଡ଼େ ବୋଲି କହିବା ଠିକ୍ ନୁହେଁ । କାରଣ- ଆତ୍ମା 'ମୁଁ' ରୂପକ ଲୋକପ୍ରତୀତିର ସାକ୍ଷୀ, କିନ୍ତୁ ବିଷୟ ନୁହେଁ ।

(ଖ) 'ମୁଁ' ରୂପକ ଲୋକପ୍ରତୀତି ବିଷୟକ ଲୋକପ୍ରସିଦ୍ଧ କର୍ତ୍ତାଠାରୁ ଭିନ୍ନ । ଏହାର ସାକ୍ଷୀ ସବୁପ୍ରାଣରେ ରହିଥିବା ସମାନ, ଏକ, କୂଟସ୍ଥ, ନିତ୍ୟ, ସମସ୍ତ ଆତ୍ମାର ପୁରୁଷ ଅଟେ । ଏହି ବିଧିକାଣ୍ଡ ବା ତର୍କଶାସ୍ତ୍ର ମାଧମରେ କାହାଦ୍ୱାରା ଜଣାପଡ଼େ ନାହିଁ ।

(ଗ) ଏତଦ୍ଧାରା ଏହାର କୌଣସି ବ୍ୟକ୍ତି ନିଷେଧ କରେ ନାହିଁ ବା କିଏ ବିଧି ଅଙ୍ଗସ୍ୱରୂପ ଦ୍ୱାରା ଗ୍ରହଣ କରେ ନାହିଁ ।

(୨୯) ମୂଳ- (କ) ଆତ୍ମତ୍ୱାଦେବ ଚ ସର୍ବେଷାଂ ନ ହେୟୋ ନାପ୍ୟୁପାଦେୟଃ । ସର୍ବଂ ହି ବିନଶ୍ୟଦ୍‌ବିକାରଜାତଂ ପୁରୁଷାନ୍ତଂ ବିନଶ୍ୟତି । ପୁରୁଷୋ ବିନାଶହେତ୍ୱଭାବାଦବିନାଶୀ ବିକ୍ରିୟାହେତ୍ୱଭାବାଚ୍ଚ କୂଟସ୍ଥନିତ୍ୟଃ । ଅତ ଏବ ନିତ୍ୟଶୁଦ୍ଧବୁଦ୍ଧମୁକ୍ତସ୍ୱଭାବଃ । (ଖ) ତସ୍ମାତ୍ 'ପୁରୁଷାନ୍ନ ପରଂ କିଞ୍ଚିତ୍ସା କାଷ୍ଠା ସା ପରା ଗତିଃ (କଠ ୧।୩।୧୧), 'ତଂ ତ୍ୱୌପନିଷଦଂ ପୁରୁଷଂ ପୃଚ୍ଛାମି,' (ବୃହ ୩।୯।୨୬) ଇତି ଚୌପନିଷଦତ୍ୱବିଶେଷଣଂ ପୁରୁଷ ସ୍ୟୋପନିଷତ୍ସୁ ପ୍ରାଧାନ୍ୟେନ ପ୍ରକାଶ୍ୟମାନତ୍ୱମୁ-ପପଦ୍ୟତେ । ଅତୋ ଭୂତବସ୍ତୁପରୋ ବେଦଭାଗୋ ନାସ୍ତୀତି ବଚନଂ ସାହସମାତ୍ରମ୍ ।

**(୨୯) ଭାଷାଂତର** - (କ) ଏ ସବୁର ଆତ୍ମା ଅଛି । ତେଣୁ ଏହା ହେୟ ନୁହେଁ ବା ଉପାଦେୟ ନୁହେଁ । ଏହାର ସବୁ ନଷ୍ଟ ହେଲେ ବିକାରଜନ୍ୟ ସମୁଦାୟ ପୁରୁଷ ପର୍ଯ୍ୟନ୍ତ ନଷ୍ଟ ହୁଏ । ବିନାଶ ହେତୁର ଅଭାବରେ ଆତ୍ମା କୂଟସ୍ଥନିତ୍ୟ ହୁଏ । ଅତଏବ ନିତ୍ୟ ଶୁଦ୍ଧ ବୁଦ୍ଧ ମୁକ୍ତ ସ୍ୱଭାବ ଆତ୍ମା ଅଟେ ।

(ଖ) ସେହିହେତୁ 'ପୁରୁଷବ୍ୟତିରିକ୍ତ ଅନ୍ୟ କାହାପାଖରେ ନାହିଁ । ଏହା ସୂକ୍ଷ୍ମତର ଓ ପରାଗତି' । 'ସେହି ଉପନିଷଦ ରୂପ ପୁରୁଷକୁ ପଚାରୁଅଛି' ଏହି ଶ୍ରୁତିବାକ୍ୟରେ ମୁଖ୍ୟ ରୂପ ଦ୍ୱାରା ଜ୍ଞାନଗମ୍ୟ ହେଲେ ଉପପନ୍ନ ହୁଏ । ଏହାପାଇଁ ସିଦ୍ଧବସ୍ତୁ ବିଷୟକ ବେଦଭାଗ ନୁହେଁ - ଏହା କହିବା ସାହସମାତ୍ର ।

(୩୦) ମୂଳ - (କ) ଯଦପି ଶାସ୍ତ୍ରତାତ୍ପର୍ଯ୍ୟବିଦାମନୁକ୍ରମଣମ୍ 'ଦୃଷ୍ଟୋ ହି ତସ୍ୟାର୍ଥଃ କର୍ମାବବୋଧନମ୍' ଇତ୍ୟେବମାଦି । ତଦ୍‌ଧର୍ମଜିଜ୍ଞାସାବିଷୟତ୍ୱାଦ୍ ବିଧିପ୍ରତି-ଷେଧଶାସ୍ତ୍ରାଭିପ୍ରାୟଂ ଦ୍ରଷ୍ଟବ୍ୟମ୍ । (ଖ) ଅପି ଚ 'ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାଦାନର୍ଥକ୍ୟ-ମତଦର୍ଥାନାମ୍' ଇତ୍ୟେତଦେକାନ୍ତେନାଭ୍ୟୁପଗଚ୍ଛତାଂ ଭୂତୋ ପଦେଶାନର୍ଥକ୍ୟପ୍ରସଙ୍ଗଃ । (ଗ) ପ୍ରବୃତ୍ତିନିବୃତ୍ତିବିଧିତଚ୍ଛେଷବ୍ୟତିରେକେଣ ଭୂତଂଚେଦ୍‌ବସ୍ତୁପଦିଶତି ଭବ୍ୟାର୍ଥତ୍ୱେନ, କଟସ୍ଥ-ନିତ୍ୟଂଭୂତଂ ନୋପଦିଶତୀତି କୋ ହେତୁଃ ? ନହି ଭୂତମୁପଦିଶ୍ୟମାନଂ କ୍ରିୟା ଭବତି ।



**(୩୦) ଭାଷାଂତର-** (କ) ଯଦି 'କର୍ମର ଜ୍ଞାନ କରିବା ହିଁ ଏହା ପ୍ରତ୍ୟକ୍ଷ ବା ଦୃଷ୍ଟ ପ୍ରଯୋଜନ ଅଟେ' ବୋଲି ତାତ୍ପର୍ଯ୍ୟଜ୍ଞମାନଙ୍କର କହିବା ଠିକ୍ ହୁଏ, ତେବେ ଧର୍ମଜିଜ୍ଞାସାକୁ ବିଷୟ ରୂପରେ ଗ୍ରହଣ ଓ ବିଧି ଏବଂ ପ୍ରତିଷେଧଶାସ୍ତ୍ରର ଜ୍ଞାନ ହେବା ଉଚିତ୍ ।

(ଖ) ପୁନଶ୍ଚ 'ବେଦ କ୍ରିୟାର୍ଥକ ଅଟେ ଏବଂ ଅକ୍ରିୟାର୍ଥକ ବେଦବାକ୍ୟ ନିଷ୍ଫଳ ଅଟେ' ଏହି ଅବ୍ୟଭିଚାରୀ ନିୟମକୁ ସ୍ୱୀକାର କରୁଥିବା ମୀମାଂସକମାନଙ୍କ ମତରେ- ସିଦ୍ଧବସ୍ତୁର ପ୍ରତିପାଦକ ବେଦବାକ୍ୟ ମଧ୍ୟ ନିଷ୍ଫଳ ହୋଇପାରେ' ।

(ଗ) ଯଦି କୁହାଯାଏ- ଶାସ୍ତ୍ର ପ୍ରବୃତ୍ତିବିଧି ଓ ନିବୃତ୍ତିବିଧି ଏବଂ ଏହାର ଅଙ୍ଗ ଦ୍ୱାରା ଅତିରିକ୍ତ ସିଦ୍ଧବସ୍ତୁର ଉପଦେଶ ଧର୍ମପାଇଁ ଅଛି । କୂଟସ୍ଥ-ନିତ୍ୟ-ସିଦ୍ଧବସ୍ତୁର ଉପଦେଶ ଦିଆଯାଏ ନାହିଁ - ଏହା କାହିଁକି ? କାରଣ ଉପଦିଶ୍ୟମାନ ସିଦ୍ଧବସ୍ତୁ କେବଳ ଉପଦେଶ ଦ୍ୱାରା କ୍ରିୟାଜାତ ହୁଏ ନାହିଁ ।

(୩୧) ମୂଳ- (କ) ଅକ୍ରିୟାତ୍ୱେଽପି ଭୂତସ୍ୟ କ୍ରିୟାସାଧନତ୍ୱାତ୍ କ୍ରିୟାର୍ଥମେବ ଭୂତୋପଦେଶ ଇତିଚେତ୍-ନୈଷୋ ଦୋଷଃ । କ୍ରିୟାର୍ଥତ୍ୱେଽପି କ୍ରିୟାନିବର୍ତ୍ତନଶକ୍ତିମଦ୍-ବସ୍ତୂପଦିଷ୍ଟମେବ । (ଖ) କ୍ରିୟାର୍ଥତ୍ୱଂ ତୁ ପ୍ରଯୋଜନଂ ତସ୍ୟ । ନ ଚୈତାବତା ବସ୍ତ୍ୱନୁପଦିଷ୍ଟଂ ଭବତି । (ଗ) ଯଦି ନୋପୋଦିଷ୍ଟଂ କିଂ ତବ ତେନ ସ୍ୟାଦିତି ? (ଘ) (ଉଚ୍ୟତେ-) ଅନବଗତାତ୍ମବସ୍ତୂପଦେଶଶ୍ଚ ତଥୈବ ଭବିତୁମର୍ହତି । ତଦବଗତ୍ୟା ମିଥ୍ୟାଜ୍ଞାନସ୍ୟ ସଂସାରହେତୋର୍ନିବୃତ୍ତିଃ ପ୍ରଯୋଜନଂ କ୍ରିୟତ ଇତ୍ୟବଶିଷ୍ଟମର୍ଥବତ୍ତ୍ୱଂ କ୍ରିୟାସାଧନବସ୍ତୂପଦେଶେନ ।

**(୩୧) ଭାଷାଂତର-** (କ) ସିଦ୍ଧବସ୍ତୁ ଉତ୍ତମକ୍ରିୟା ନହେଲେ ମଧ୍ୟ କ୍ରିୟା ନିଷ୍ପତ୍ତିର ସାଧନ ହେବା ଦ୍ୱାରା ସିଦ୍ଧବସ୍ତୁର ଉପଦେଶ କ୍ରିୟାନିମିତ୍ତ ହୋଇଥାଏ । ଏହିଭଳି ଯଦି କୁହାଯାଏ ତେବେ ଏହା ଯୁକ୍ତି ସଙ୍ଗତ ନୁହେଁ । କାରଣ-ସିଦ୍ଧବସ୍ତୁ କ୍ରିୟା ନିମିତ୍ତ ହେଲେ କ୍ରିୟୋତ୍ପାଦନ ଶକ୍ତି ବିଶିଷ୍ଟ ବସ୍ତୁ ଉପଦିଷ୍ଟ ହୁଏ ।

(ଖ) କ୍ରିୟାର୍ଥତ୍ୱ ହିଁ ଏହାର ପ୍ରଯୋଜନ ଅର୍ଥାତ୍ କ୍ରିୟାକୁ ନିଷ୍ପନ୍ନ କରିବା ହିଁ ସିଦ୍ଧବସ୍ତୁର ପ୍ରଯୋଜନ ଅଟେ । ଏହା କ୍ରିୟାର୍ଥକ ହେଲେ ମଧ୍ୟ ସିଦ୍ଧବସ୍ତୁ ଅନୁପଦିଷ୍ଟ ହୁଏ ନାହିଁ ।

(ଗ) ପୂର୍ବପକ୍ଷ - ଯଦି ସିଦ୍ଧବସ୍ତୁର ଉପଦିଷ୍ଟ ହୁଏ, ତାହେଲେ ତୁମର ଲାଭ କଣ ? ସିଦ୍ଧାନ୍ତ-ସମାନ ବିଶିଷ୍ଟ ପ୍ରମାଣ ଦ୍ୱାରା ଅଜ୍ଞାତ ବ୍ରହ୍ମାତ୍ମବସ୍ତୁର ଶାସ୍ତ୍ରରେ ଉପଦେଶ

ଦେବା ହିଁ ବିଧେୟ । ଏହି ଜ୍ଞାନ ଦ୍ୱାରା ସଂସାରର ହେତୁ ଭୂତ ମିଥ୍ୟା ଜ୍ଞାନର ନିବୃତ୍ତି ପ୍ରୟୋଜନ ହୁଏ । ଏହାର କାରଣ-କ୍ରିୟାର ସାଧନ ଭୂତସିଦ୍ଧ ବସ୍ତୁର ଉପଦେଶ ଭଳି ଆତ୍ମାର ଉପଦେଶ ସାର୍ଥକ ଅଟେ ।

(୩୨) ମୂଳ- (କ) ଅପି ଚ 'ବ୍ରାହ୍ମଣୋ ନ ହନ୍ତବ୍ୟଃ' ଇତି ଚୈବମାଦ୍ୟା ନିବୃତ୍ତିରୁପଦିଶ୍ୟତେ । ନ ଚ ସା କ୍ରିୟା । ନାପି କ୍ରିୟାସାଧନମ୍ । (ଖ) ଅକ୍ରିୟାର୍ଥାନାମୁପଦେଶୋଽନର୍ଥକଶ୍ଚେତ୍ 'ବ୍ରାହ୍ମଣୋ ନ ହନ୍ତବ୍ୟ'ଃ ଇତ୍ୟାଦିନିବୃତ୍ତ୍ୟୁପଦେଶାନାମାନର୍ଥକ୍ୟଂ ପ୍ରାପ୍ତମ୍ । (ଗ) ନ ଚ୍ଚନିଷ୍ଟମ୍ । ନ ଚ ସ୍ୱଭାବପ୍ରାପ୍ତହନ୍ତ୍ୟର୍ଥାନୁରାଗେଣ ନଞଂଶକ୍ୟପ୍ରାପ୍ତକ୍ରିୟାର୍ଥତ୍ୱଂ କଳ୍ପୟିତୁଂ ହନନକ୍ରିୟାନିବୃତ୍ତ୍ୟୋଦାସୀନ୍ୟବ୍ୟତିରେକେଣ । (ଘ) ନଞଶ୍ଚୈଷସ୍ୱାଭାବତୋ ଯତ୍ସ୍ୱସମ୍ବନ୍ଧିନୋଽଭାବଂ ବୋଧୟତୀତି ।

**(୩୨) ଭାଷାଂତର-** (କ) ପୁନଶ୍ଚ 'ବ୍ରାହ୍ମଣକୁ ହିଂସା କରିବା ଉଚିତ ନୁହେଁ' ଇତ୍ୟାଦି ବେଦବାକ୍ୟରେ ନିବୃତ୍ତିର ଉପଦେଶ ଦିଆଯାଇଛି । କିନ୍ତୁ ତାହା କ୍ରିୟା ନୁହେଁ, କି କ୍ରିୟାସାଧନ ମଧ୍ୟ ନୁହେଁ ।

(ଖ) ଯଦି କ୍ରିୟାକୁ କହୁନଥିବା ବାକ୍ୟ ଅନର୍ଥକ ହୁଏ, ତେବେ ବ୍ରାହ୍ମଣୋ ନ ହନ୍ତବ୍ୟଃ' ଇତ୍ୟାଦି ନିବୃତ୍ତିପରକ ଉପଦେଶ ବ୍ୟର୍ଥ ହେବ ।

(ଗ) କିନ୍ତୁ ଏହା ଯଥାର୍ଥ ନୁହେଁ । ନଞର ସ୍ୱଭାବତଃ ହନନକ୍ରିୟା ସହିତ ସମ୍ବନ୍ଧ ହେଲେ ଅଥବା ହନନ କ୍ରିୟାଦ୍ୱାରା ନିବୃତ୍ତ ହେଲେ ସୁଦ୍ଧା ବି ଔଦାସିନ୍ୟର ଅତିରିକ୍ତ ଅପ୍ରାପ୍ତକ୍ରିୟାର କଳ୍ପନା କରାଯାଏ ନାହିଁ ।

(ଘ) ନଞ୍ଜର ଏହା ସ୍ୱଭାବ ଯେ - ସେ କୌଣସି ସମ୍ବନ୍ଧ ପଦାର୍ଥର ଅଭାବ କରାଏ ।

(୩୩) ମୂଳ- (କ) ଅଭାବବୁଦ୍ଧିଶ୍ଚୌଦାସୀନ୍ୟକାରଣମ୍ । ସା ଚ ଦଗ୍ଧେନ୍ଧନାଗ୍ନିବତ୍ ସ୍ୱଂୟମେବୋପ ଶାମ୍ୟତି । ତସ୍ମାତ୍ ପ୍ରସକ୍ତକ୍ରିୟାନିବୃତ୍ତ୍ୟୌଦାସୀନ୍ୟ-ମେବ 'ବ୍ରାହ୍ମଣୋ ନ ହନ୍ତବ୍ୟଃ' ଇତ୍ୟାଦିଷୁ ପ୍ରତିଷେଧାର୍ଥଂ ମନ୍ୟାମହେ, ଅନ୍ୟତ୍ର ପ୍ରଜାପତିବ୍ରତାଦିଭ୍ୟଃ । (ଖ) ତସ୍ମାତ୍ପୁରୁଷାର୍ଥାନୁପଯୋଗ୍ୟୁପାଖ୍ୟାନାଦିଭୂତାର୍ଥବାଦ-ବିଷୟମାନର୍ଥକ୍ୟାଭିଧାନଂ ଦ୍ରଷ୍ଟବ୍ୟମ୍ ।

**(୩୩) ଭାଷାଂତର-** (କ) ଅଭାବଜ୍ଞାନ କେବଳ ଉଦାସୀନତାର କାରଣ । ସେ ଦଗ୍ଧେନ୍ଧନ ଅଗ୍ନି ସଦୃଶ ସ୍ୱଂୟ ଶାନ୍ତ ହୋଇଯାଏ । ଏହି କାରଣ ପ୍ରଜାପତି ବ୍ରତାଦିର



ବ୍ୟତିରିକ୍ତ 'ବ୍ରାହ୍ମଣୋ ନ ହନ୍ତବ୍ୟଃ' ଇତ୍ୟାଦି ସ୍ଥଳରେ ରାଗଜନିତହନନ କ୍ରିୟାଠାରୁ ନିବୃତ୍ତ ହେଲେ ଔଦାସୀନ୍ୟ ହିଁ ନଞ୍ ପ୍ରତିଷେଧର ଅର୍ଥ ରୂପରେ ଆମ୍ଭେ ସ୍ୱୀକାର କରୁ ।

(ଖ) ସେହି ହେତୁ ପୁରୁଷାର୍ଥର ଅନୁପଯୋଗୀ ଉପାଖ୍ୟାନଗୁଡ଼ିକ ଭୂତାର୍ଥବାଦ ବିଷୟକ ଆନର୍ଥକ ଅଭିଧାନକୁ ଆମ୍ଭେ ଜାଣିବା ଉଚିତ୍ ।

(୩୪) ମୂଳ- (କ) ଯଦପ୍ୟୁକ୍ତମ୍- କର୍ତ୍ତବ୍ୟବିଧ୍ୟନୁପ୍ରବେଶମନ୍ତରେଣ ବସ୍ତୁମାତ୍ର-ମୁଚ୍ୟମାନମାନର୍ଥକଂ ସ୍ୟାତ୍, 'ସପ୍ତଦ୍ୱୀପା ବସୁମତୀ' ଇତ୍ୟାଦିବଦିତ ତତ୍ ପରିହୃତମ୍, 'ରଜ୍ଜୁରିୟଂ ନାୟଂ ସର୍ପଃ' ଇତି ବସ୍ତୁମାତ୍ରକଥନେଽପି ପ୍ରୟୋଜନସ୍ୟ ଦୃଷ୍ଟତ୍ୱାତ୍ । (ଖ) ନନୁ ଶ୍ରୁତବ୍ରହ୍ମଣୋଽପି ଯଥାପୂର୍ବଂ ସଂସାରିତ୍ୱଦର୍ଶନାତ୍ ନ ରଜ୍ଜୁସ୍ୱରୂପକଥନବଦର୍ଥବ-ତ୍ୱମିତ୍ୟୁକ୍ତମ୍ । (ଗ) ଅତ୍ରୋଚ୍ୟତେ-ନାବଗତବ୍ରହ୍ମାତ୍ମଭାବସ୍ୟ ଯଥାପୂର୍ବଂ ସଂସାରିତ୍ୱଂ ଶକ୍ୟଂ ଦର୍ଶୟିତୁମ୍ । ବେଦପ୍ରମାଣଜନିତ ବ୍ରହ୍ମାତ୍ମଭାବବିରୋଧାତ୍ । (ଘ) ନହି ଶରୀରାଦ୍ୟାତ୍ମାଭିମାନିନୋ ଦୁଃଖଭୟାଦିମତ୍ୱଂ ଦୃଷ୍ଟମିତି ତସ୍ୟୈବ ବେଦପ୍ରମାଣଜନିତ ବ୍ରହ୍ମାତ୍ମା ବଗମେ ତଦଭିମାନ ନିବୃତ୍ତୌ ତଦେବ ମିଥ୍ୟାଜ୍ଞାନନିମିତ୍ତଂ ଦୁଃଖଭୟାଦିମତ୍ୱଂ ଭବତୀତି ଶକ୍ୟଂ କଳ୍ପୟିତୁମ୍ ।

**(୩୪) ଭାଷାଂତର** - (କ) ପ୍ରଥମେ କୁହାଗଲା କି - କର୍ତ୍ତବ୍ୟ ବିଧି ସହିତ ସମ୍ବନ୍ଧ ନ କହିଥିବା ବସ୍ତୁମାତ୍ର 'ସପ୍ତଦ୍ୱୀପଯୁକ୍ତ ପୃଥିବୀ' ଇତ୍ୟାଦି ବାକ୍ୟ ଭଳି ଅନର୍ଥକ ହୋଇପାରେ । 'ଏହା ଦଉଡ଼ି, ସର୍ପ ନୁହେଁ' ଏହି ପ୍ରକାର ବସ୍ତୁମାତ୍ର କଥନରେ ଭୟାଦିର ନିବୃତ୍ତିରୂପ ପ୍ରୟୋଜନ ଦେଖାଯାଏ । ଏହି ପ୍ରକାର କହି ପରିହାର (ନିଷେଧ) କରାଯାଏ ।

(ଖ) ଶଙ୍କା- ପରନ୍ତୁ ଶୁଣାଯାଇଥିବା ବ୍ରହ୍ମ ଉପରେ ପୂର୍ବରୁ ସମାନ ସଂସାରିତ୍ୱ ଦେଖାଯାଇଥିବା ହେତୁ ରଜ୍ଜୁ ସ୍ୱରୂପ ପ୍ରମାଣ ଭଳି ସମାନ ପ୍ରମାଣ କରିବା ସାର୍ଥକ ହୁଏ ନାହିଁ କି ?

(ଗ) ସମାଧାନ- ତେଣୁ କୁହାଯାଇଛି - 'ମୁଁ ବ୍ରହ୍ମ ଅଟେ' ଏହି ପ୍ରକାର ଜ୍ଞାନ ବ୍ରହ୍ମାତ୍ମଭାବଜ୍ଞଠାରେ ପ୍ରଥମେ ସମାନ ସଂସାରିତ୍ୱ ଦେଖାଯାଏ ନାହିଁ । କାରଣ- ବେଦପ୍ରମାଣଜନିତ - ବ୍ରହ୍ମାତ୍ମଭାବ ସହ ଏହା ବିରୋଧ ଅଛି ।

(ଘ) ଉଦାହରଣ ସ୍ୱରୂପ - ଅନାତ୍ମଶରୀରାଦିସ୍ୱରୂପ - ଆତ୍ମବୁଦ୍ଧି ସ୍ୱରୂପ ପୁରୁଷଠାରେ ଦୁଃଖ ଓ ଭୟ ଦେଖାଯାଏ । କିନ୍ତୁ ବେଦଜନିତ ବ୍ରହ୍ମାତ୍ମଭାବ ରୂପକ ଜ୍ଞାନ ଉତ୍ପନ୍ନ ହେଲେ ଓ ଦେହାତ୍ମବୁଦ୍ଧିର ବାଧାପ୍ରାପ୍ତ ହେଲେ ଏହି ଦୁଃଖ ଭୟାଦି ମିଥ୍ୟାଜ୍ଞାନ ପରି ଆତ୍ମବିତ୍ ହୁଏ ବୋଲି କହିବାରେ ଯଥାର୍ଥତା ନାହିଁ ।

(୩୫) ମୂଳ- (କ) ନହି ଧନିନୋ ଗୃହସ୍ଥସ୍ୟ ଧନାଭିମାନିନୋ ଧନାପହାରନିମିତ୍ତଂ ଦୁଃଖଂ ଦୃଷ୍ଟମିତି ତସ୍ୟୈବ ପ୍ରବ୍ରଜିତସ୍ୟ ଧନାଭିମାନରହିତସ୍ୟ ତଦେବ ଧନାପହାରନିମିତ୍ତଂ ଦୁଃଖଂ ଭବତି । ନ ଚ କୁଣ୍ଡଳିନଃ କୁଣ୍ଡଳିତ୍ୱାଭିମାନନିମିତ୍ତଂ ସୁଖଂ ଦୃଷ୍ଟମିତି ତସ୍ୟୈବ କୁଣ୍ଡଳବିଯୁକ୍ତସ୍ୟ କୁଣ୍ଡଳିତ୍ୱାଭିମାନରହିତସ୍ୟ ତଦେବ କୁଣ୍ଡଳିତ୍ୱାଭିମାନ ନିମିତ୍ତଂ ସୁଖଂଭବତି । ତଦୁକ୍ତଂ ଶ୍ରୁତ୍ୟା-'ଅଶରୀରଂ ବାବସନ୍ତଂ ନ ପ୍ରିୟାପ୍ରିୟେ ସ୍ପୃଶତ (ଛା ୧୮।୧୨।୧) ଇତି ।

**(୩୫) ଭାଷାଂତର** - ଦ୍ୱିତୀୟ ଉଦାହରଣ - କୌଣସି ଧନଦ୍ୱାରା ଗର୍ବ ଅନୁଭବ କରୁଥିବା ଗୃହସ୍ଥ-ଧନୀଲୋକର ଧନଚୋରି ହେଲେ ଦୁଃଖ ହୁଏ । କିନ୍ତୁ ସନ୍ନ୍ୟାସ ଧର୍ମ ଗ୍ରହଣ କରି ଧନାଭିମାନ ବିହୀନ ଲୋକର ଧନଚୋରି ହେଲେ ଦୁଃଖ ହୁଏ ନାହିଁ ।

(ଖ) ତୃତୀୟ ଉଦାହରଣ - କୁଣ୍ଡଳ ପିନ୍ଧିଥିବା ଲୋକକୁ କୁଣ୍ଡଳ ପିନ୍ଧିବା ଦ୍ୱାରା ଗର୍ବ ଅନୁଭବ ହୁଏ । କିନ୍ତୁ କୁଣ୍ଡଳବିଯୁକ୍ତ କୁଣ୍ଡଳତ୍ୱାଭିମାନର ହିତପୁରୁଷକୁ ସେହିପରି ସୁଖ ଅନୁଭବ ହୁଏ ନାହିଁ । ଯାହାକି ବେଦବାକ୍ୟରେ ''ଶରୀରରହିତ ଆତ୍ମାକୁ ସୁଖ ଓ ଦୁଃଖ ସ୍ପର୍ଶ କରେ ନାହିଁ ।''

(୩୬) ମୂଳ-(କ) ଶରୀରେ ପାତିତେଽଶରୀରତ୍ୱଂ ସ୍ୟାତ୍, ନ ଜୀବତୀତି ଚେତ୍ (ଖ) ନ, ସଶରୀରତ୍ୱସ୍ୟ ମିଥ୍ୟା ଜ୍ଞାନନିମିତ୍ତ୍ୱାତ୍ । ନ ହ୍ୟାତ୍ମନଃ ଶରୀରାତ୍ମାଭିମାନ-ଲକ୍ଷଣଂ ମିଥ୍ୟାଜ୍ଞାନଂ ମୁକ୍ତ୍ୱାନ୍ୟତଃ ସଶରୀରତ୍ୱଂ ଶକ୍ୟଂ କଳ୍ପୟିତୁମ୍ । ନିତ୍ୟମଶରୀରତ୍ୱମକର୍ମନିମିତ୍ତତ୍ୱାଦିତ୍ୟବୋଚମଃ । (ଗ) ତତ୍କୃତଧର୍ମାନିମିତ୍ତଂ ସଶରୀରତ୍ୱମିତିଚେନ୍ନ, (ଘ) ସଶରୀରସମ୍ବନ୍ଧସ୍ୟାସିଦ୍ଧତ୍ୱାତ୍ ଧର୍ମାଧର୍ମୟୋରାତ୍ମକୃତତ୍ୱା-ସିଦ୍ଧେଃ । (ଙ) ଶରୀରସମ୍ବନ୍ଧସ୍ୟ ଧର୍ମାଧର୍ମୟୋସ୍ତତ୍କୃତସ୍ୟ ଚେତରେତରାଶ୍ରୟତ୍ୱପ୍ରସ-ଙ୍ଗାନ୍ଧପରମ୍ପରେଷାଽନାଦିକଳ୍ପନା ।

**(୩୬) ଭାଷାଂତର** - (କ) ଯଦି କୁହାଯାଏ - ଶରୀର ପାତ ହେଲେ ଅଶରୀରତ୍ୱ ହୁଏ କିମ୍ବା ଜୀବିତ ହୋଇ ରହେ ନାହିଁ ।

(ଖ) ଏହା ସମ୍ପୂର୍ଣ୍ଣତଃ ଭୁଲ । କାରଣ- ସଶରୀରତ୍ୱ ମିଥ୍ୟାଜ୍ଞାନ ନିମିତ୍ତକ ଅଟେ । 'ଶରୀର ଆତ୍ମା ଅଟେ । ଏହି ଅଭିମାନ ରୂପ ମିଥ୍ୟାଜ୍ଞାନକୁ ଛାଡ଼ି ଅନ୍ୟ କୌଣସି କାରଣ ଦ୍ୱାରା ଆତ୍ମାରେ ସଶରୀରତ୍ୱର କଳ୍ପନା ସମ୍ଭବ ନୁହେଁ । କର୍ମଦ୍ୱାରା ଏହା ଉତ୍ପନ୍ନ ନହେବାରୁ ଅଶରୀରତ୍ୱ ନିତ୍ୟ ଅଟେ । ଏହା ଆମ୍ଭେ ପ୍ରଥମେ କହିଅଛୁ ।



(ଗ) ଯଦି କହିବା- 'ଆତ୍ମକୃତ ଧର୍ମାଧର୍ମ ନିମିତ୍ତକ ଆତ୍ମାରେ ସଶରୀରତ୍ୱ ଅଛି'- ଏହା ମଧ୍ୟ ଅଯୌକ୍ତିକ ।

(ଘ) କାରଣ- ଆତ୍ମାର ଶରୀର ସହିତ ସମ୍ବନ୍ଧ ହିଁ ଅସିଦ୍ଧ । ଏହାଦ୍ୱାରା ଧର୍ମାଧର୍ମରେ ଆତ୍ମକୃତତ୍ୱ ମଧ୍ୟ ଅସିଦ୍ଧ ହୁଏ । ଆତ୍ମାର ଶରୀର ସହିତ ସମ୍ବନ୍ଧ ହେଲେ ଧର୍ମାଧର୍ମ ଉତ୍ପତ୍ତି ହୁଅନ୍ତି ।

(ଙ) ଆତ୍ମାକୃତ ଧର୍ମାଧର୍ମ ଉତ୍ପନ୍ନ ହେଲେ ଆତ୍ମାର ଶରୀର ସହ ସମ୍ବନ୍ଧ ହୁଏ । ଏହି ପ୍ରକାର ଅନ୍ୟୋନ୍ୟାଶ୍ରୟ ଦୋଷର ପ୍ରସକ୍ତ ଦେଖାଯାଏ । ତେଣୁ ଏହି ଦୁଇଟିର କାର୍ଯ୍ୟକାରଣଭାବ ଅନାଦି ଅଟେ । ଏହି ଅନାଦିତ୍ୱକଳ୍ପନା ମଧ୍ୟ ଅନ୍ଧ ପରମ୍ପରା ଅଟେ ।

(୩୭) ମୂଳ - (କ) କ୍ରିୟାସମବାୟାଭାବାଚ୍ଚାତ୍ମନଃ କର୍ତ୍ତୃତ୍ୱାନୁପପତ୍ତେଃ । (ଖ) ସନ୍ନିଧାନମାତ୍ରେଣ ରାଜପ୍ରଭୃତୀନାଂ ଦୃଷ୍ଟଂ କର୍ତ୍ତୃତ୍ୱମିତି ଚେତ୍ - (ଗ) ନ, ଧନଦାନାଦ୍ୟୁପାର୍ଜିତଭୃତ୍ୟସମ୍ବନ୍ଧିତ୍ୱାତ୍ ତେଷାଂ କର୍ତ୍ତୃତ୍ୱୋପପତ୍ତେଃ । (ଘ) ନ ତ୍ୱାତ୍ମନୋ ଧନଦାନାଦିବଚ୍ଛରୀରାଦିଭିଃ ସ୍ୱସ୍ୱାମିସମ୍ବନ୍ଧନିମିତ୍ତଂ କିଞ୍ଚିଚ୍ଛକ୍ୟଂ କଳ୍ପୟିତୁମ୍ । ମିଥ୍ୟାଭିମାନିନସ୍ତୁ ପ୍ରତ୍ୟକ୍ଷଃ ସମ୍ବନ୍ଧହେତୁଃ । ଏତେନ ଯଜମାନତ୍ୱମାତ୍ମନୋ ବ୍ୟାଖ୍ୟାତମ୍ ।

**(୩୭) ଭାଷାଂତର-** (କ) କ୍ରିୟା ସମ୍ବନ୍ଧ ସହ ଅଭାବ ହେଲେ ଆତ୍ମା କର୍ତ୍ତା ହୋଇପାରେ ନାହିଁ ।

(ଖ) ଯଦି କୁହାଯାଏ- ସେବକମାନଙ୍କର ସାନ୍ନିଧ ମାତ୍ରକେ ରାଜାମାନଙ୍କର କର୍ତ୍ତୃତ୍ୱ ଦେଖାଯାଏ ।

(ଗ) ତାହା ଠିକ୍ ନୁହେଁ । କାରଣ-ଧନଦାନାଦି ଉପାୟ ଦ୍ୱାରା ସମ୍ପାଦିତ ସେବକମାନଙ୍କର ସହ ସମ୍ବନ୍ଧ ସ୍ଥାପିତ ହେବାରୁ ଆତ୍ମାର କର୍ତ୍ତୃତ୍ୱ ଉପପତ୍ତି ହୁଏ ।

(ଘ) ପରନ୍ତୁ ଆତ୍ମାରେ ଶରୀରାଦି ସହ ଧନାଦି ସମାନସ୍ୱ ସ୍ୱସ୍ୱାମିଭାବ ସମ୍ବନ୍ଧ କାରଣ କିଛି କଳ୍ପନା କରାଯାଏ । କିନ୍ତୁ ମିଥ୍ୟାଭିମାନ ହେଉଛି ସମ୍ବନ୍ଧର ହେତୁ ପ୍ରତ୍ୟକ୍ଷ । ଏହାଦ୍ୱାରା କର୍ତ୍ତା ପାଖରେ ଯଜମାନତ୍ୱାଦି ପ୍ରତିପାଦନ ହେବ ।

(୩୮) ମୂଳ- (କ) ଅତ୍ରାହୁଃ-ଦେହାଦିବ୍ୟତିରିକ୍ତସ୍ୟାତ୍ମନଃ ଆତ୍ମୀୟେ ଦେହାଦାବଭିମାନିନୋ ଗୌଣୋ ନ ମିଥ୍ୟେତି ଚେତ୍, (ଖ) ନ, ପ୍ରସିଦ୍ଧବସ୍ତୁଭେଦସ୍ୟ ଗୌଣତ୍ୱମୁଖ୍ୟତ୍ୱପ୍ରସିଦ୍ଧେଃ । (ଗ) ଯସ୍ୟ ହି ପ୍ରସିଦ୍ଧୋ ବସ୍ତୁଭେଦଃ ଯଥା କେସରାଦିମାନାକୃତିବିଶେଷୋ-ଽନ୍ୱୟବ୍ୟତିରେକାଭ୍ୟାଂ ସିଂହଶବ୍ଦପ୍ରତ୍ୟୟଭାଙ୍‌ମୁଖ୍ୟୋଽନ୍ୟଃ

ପ୍ରସିଦ୍ଧଃ ତତଶ୍ଚାନ୍ୟଃ ପୁରୁଷଃ ପ୍ରାୟିକଃ କୌର୍ଯ୍ୟଶୌର୍ଯ୍ୟାଦିଭିଃ ସିଂହଗୁଣଃ ସମ୍ପନ୍ନଃ ପ୍ରସିଦ୍ଧଃ, (ଘ) ତସ୍ୟ ପୁରୁଷେ ସିଂହଶବ୍ଦପ୍ରତ୍ୟୟୌ ଗୌଣୌ ଭବତୋ ନାପ୍ରସିଦ୍ଧବସ୍ତୁଭେଦସ୍ୟ । ତସ୍ୟ ତ୍ୱାନ୍ୟତ୍ରାନ୍ୟଶବ୍ଦପ୍ରତ୍ୟୟୌ ଭ୍ରାନ୍ତିନିମିତ୍ତାବେବ ଭବତୋ ନ ଗୌଣୌ ।

(୩୮) ଭାଷାଂତର - (କ) ଏଠାରେ ପ୍ରଭାକର କହନ୍ତି - ଶରୀରାଦି ବ୍ୟତିରିକ୍ତ ଆତ୍ମାର ନିଜ ଦେହରେ 'ମୁଁ', 'ମୋର', ଯେଉଁ ଅଭିମାନ ଗୌଣ ଅଛି ତାହା ମିଥ୍ୟା ନୁହେଁ ।

(ଖ) ଏହି ପ୍ରମାଣରେ କୌଣସି ପ୍ରମାଣିକତା ନାହିଁ । କାରଣ- ଯେଉଁଲୋକ ବସ୍ତୁଭେଦ ଜାଣିଛି, ସେ ଗୌଣ ଓ ମୁଖ୍ୟଜ୍ଞାନ କରିପାରିବ ।

(ଗ) ଯାହାକୁ ଦୁଇଟି ବସ୍ତୁର ଭେଦଜ୍ଞାନ ଜଣାଅଛି, ଯେପରି ଅନ୍ୱୟବ୍ୟତିରେକ ଦ୍ୱାରା ସିଂହଶବ୍ଦ କହିଲେ ସିଂହଜ୍ଞାନର ବିଷୟକ କେଶରାଦିଯୁକ୍ତ ବିଶେଷାକୃତି ସହ ପୁରୁଷାକୃତି ସିଂହଶବ୍ଦ ପ୍ରସିଦ୍ଧ ଏବଂ ଏତଦ୍‌ଭିନ୍ନ ପ୍ରାୟ ସିଂହର କ୍ରୂରତା ଏବଂ ଶୂରତ୍ୱାଦି ଗୁଣଗୁଡ଼ିକୁ ପୁରୁଷ ଜାଣେ ।

(ଘ) ପରନ୍ତୁ ଯାହାକୁ ବସ୍ତୁଭେଦ ଜଣାନାହିଁ, ତାହାକୁ କିଛି ଜଣାପଡ଼େ ନାହିଁ । ଏହାକୁ ଅନ୍ୟ ଅର୍ଥରେ ଅନ୍ୟଶବ୍ଦ ଏବଂ ଜ୍ଞାନ ମିଥ୍ୟା ଦ୍ୱାରା ସିଦ୍ଧ, କିନ୍ତୁ ଏହା ଗୌଣ ନୁହେଁ ।

(୩୯) ମୂଳ- (କ) ଯଥା ମନ୍ଦାନ୍ଧକାରେ ସ୍ଥାଣୁରୟମିତ୍ୟଗୃହ୍ୟମାଣବିଶେଷେ ପୁରୁଷଶବ୍ଦପ୍ରତ୍ୟୟୌ ସ୍ଥାଣୁବିଶେଷୌ ଯଥା ବା ଶୁକ୍ତିକାୟାମକସ୍ମାଦ୍‌ରଜତମିତି ନିଶ୍ଚିତୌ ଶବ୍ଦପ୍ରତ୍ୟୟୌ, ତଦ୍‌ବଦ୍‌ଦେହାଦି ସଂଘାତେଽହମିତି ନିରୂପଚରେଣ ଶବ୍ଦପ୍ରତ୍ୟୟାବାତ୍ମା-ନାତ୍ମାବିବେକେନୋତ୍ପାଦ୍ୟମାନୌ କଥଂ ଗୌଣୌ ଶକ୍ୟୌ ବଦିତୁମ୍ ? (ଖ) ଆତ୍ମାନାତ୍ମବିବେକେନାପି ପଣ୍ଡିତାନାମଜାବିପାଳାନାମିବାବିକ୍ତୌ ଶବ୍ଦପ୍ରତ୍ୟୟୌ ଭବତଃ । (ଗ) ତସ୍ମାଦ୍ଦେହାଦିବ୍ୟତିରିକ୍ତାତ୍ମାସ୍ତିତ୍ୱବାଦିନାଂ ଦେହାଦାବହଂପ୍ରତ୍ୟୟୋ ମିଥ୍ୟୈବ, ନ ଗୌଣଃ । ତସ୍ମାନ୍‌ମିଥ୍ୟାପ୍ରତ୍ୟୟନିମିତ୍ତତ୍ୱାତ୍ ସଶରୀରତ୍ୱସ୍ୟ ସିଦ୍ଧଂ ଜୀବିତୋଽପି ବିଦୁଷୋଽଶରୀରତ୍ୱମ୍ ।

(୩୯) ଭାଷାଂତର - (କ) ଯେପରିକି ଅଳ୍ପ ଅନ୍ଧକାର ମଧ୍ୟରେ 'ଏହି ସ୍ଥାଣୁ ଅଟେ' ଏହି ବିଶେଷପ୍ରକାର ଜ୍ଞାନ ଗ୍ରହଣ ହୋଇ ନ ପାରି ପୁରୁଷଶବ୍ଦ ଓ ଜ୍ଞାନ ସ୍ଥାଣୁରେ ହୁଏ ଏବଂ ଶୁକ୍ତିରେ ମଧ୍ୟ ଅକସ୍ମାତ୍ ରଜତଜ୍ଞାନ ନିଶ୍ଚିତ ହୁଏ । ସେହିପରି ମଧ୍ୟ ଦେହାଦି



ସଂଘାତରେ ରହିଥିବା 'ମୁଁ' ଶବ୍ଦ ଓ ଜ୍ଞାନ, ଆତ୍ମା ଓ ଅନାତ୍ମାର ବିବେକ ନ ହେବାରୁ ଉତ୍ପନ୍ନ ହୁଏ । ତାହେଲେ ମଧ୍ୟ ଏହା ଗୌଣଶବ୍ଦ କହିଲେ କିପରି ହୁଏ ।

(ଖ) ଆତ୍ମା ଓ ଅନାତ୍ମାକୁ ଜାଣିଥିବା ପଣ୍ଡିତଙ୍କୁ ମେଣ୍ଢା ଓ ଛେଳିପାଳକ ସଦୃଶ ଦେହାଦିରେ ଅପୃଥକ୍ ରୂପରେ ଶବ୍ଦ ପ୍ରୟୋଗ ଓ ଜ୍ଞାନ ଭ୍ରାନ୍ତି ଦ୍ୱାରା ଉତ୍ପନ୍ନ ହେବା ଜଣାପଡ଼େ ।

(ଗ) ତେଣୁ ଆତ୍ମାକୁ ଦେହାଦିଭିନ୍ନ ବୋଲି ସ୍ୱୀକାର କରୁଥିବା ଲୋକର ଦେହାଦିରେ ଅହଂପ୍ରତ୍ୟୟ ମିଥ୍ୟା ହୁଏ । କିନ୍ତୁ ଗୌଣ ନୁହେଁ । ଏହାଦ୍ୱାରା ସଶରୀରତ୍ୱ ମିଥ୍ୟାଜ୍ଞାନ ଦ୍ୱାରା ଉତ୍ପନ୍ନ ହୁଏ ଓ ଜ୍ଞାନ ହେଲା ପରେ ଜୀବିତାବସ୍ଥାରେ ଆତ୍ମବିତ୍‌କୁ ଅଶରୀରତ୍ୱ ପ୍ରାପ୍ତ ହୁଏ ।

(୪୦) ମୂଳ-(କ) ତଥା ଚ ବ୍ରହ୍ମବିଦ୍‌ବିଷୟା ଶ୍ରୁତିଃ- 'ତଦ୍ୟଥାଽହିନିର୍ଲ୍ୱ-ୟନୀବଲ୍ମୀକେ ମୃତା ପ୍ରାଣୋ ବ୍ରହ୍ମୈବ ତେଜ ଏବ' (ବୃହ ୪।୪।୭) ଇତି । 'ସ ଚକ୍ଷୁଷ୍କଚକ୍ଷୁରିବ ସ କର୍ଣ୍ଣୋଽକର୍ଣ୍ଣ ଇବ ସବାଚାବାଗିବ ସମନା ଅମନାଇବ ସ ପ୍ରାଣୋଽପ୍ରାଣ ଇବ' ଇତି ଚ । (ଖ) ସ୍ମୃତିରପି ଚ – ସ୍ଥିତପ୍ରଜ୍ଞସ୍ୟ କା ଭାଷା', (ଭ.ଗୀ ୧।୫୪) ଇତ୍ୟାଦି ସ୍ଥିତପ୍ରଜ୍ଞଲକ୍ଷଣାନ୍ୟାଚକ୍ଷାଣା ବିଦୁଷଃ ସର୍ବପ୍ରବୃତ୍ତ୍ୟସମ୍ବନ୍ଧଂ ଦର୍ଶୟତି । ତସ୍ମାନ୍ନା-ବଗତବ୍ରହ୍ମାତ୍ମଭାବସ୍ୟ ଯଥାପୂର୍ବଂ ସଂସାରିତ୍ୱମ୍ । ଯସ୍ୟ ତୁ ଯଥାପୂର୍ବଂ ସଂସାରିତ୍ୱଂ ନାସାବଗତବ୍ରହ୍ମାତ୍ମଭାବ ଇତ୍ୟନବଦ୍ୟମ୍ ।

(୪୦) ଭାଷାଂତର- (କ) ଏହିପରି ବ୍ରହ୍ମବିଷୟକ ବେଦପ୍ରମାଣ 'ସାପର କାତି ଯେପରି ଉଇହୁଙ୍କା ଉପରେ ସର୍ପଦ୍ୱାରା ପରିତ୍ୟକ୍ତ ହୋଇ ମଲାପରି ପଡ଼ିଥାଏ, ସେହିପରି ବିଦ୍ୱାନ୍ ଯେ କି ଅଭିମାନ ତ୍ୟାଗ କରିଛି, ଯାହାର ଶରୀର ପଡ଼ିଥାଏ ଏବଂ ଶରୀରରେ ଥିବା ଆତ୍ମା ଅଶରୀର ଅଟେ । ଏହା ଅମୃତ, ପ୍ରାଣ, ବ୍ରହ୍ମ ଏବଂ ସ୍ୱୟଂପ୍ରକାଶ ଅଟେ' । ଏବଂ ଏହି ବସ୍ତୁତଃ 'ଏହା ନେତ୍ରହୀନ ହୋଇ ନେତ୍ରସମାନ, କର୍ଣ୍ଣହୀନ ହୋଇ କର୍ଣ୍ଣସମାନ, ବାଣୀହୀନ ହୋଇ ବାଣୀ ସମାନ, ମନହୀନ ହୋଇ ମନ ସମାନ, ପ୍ରାଣହୀନ ହୋଇ ପ୍ରାଣସମାନ, ଏହି ଆତ୍ମା' । ସ୍ମୃତିପ୍ରମାଣ – 'ସ୍ଥିତପ୍ରଜ୍ଞର ସଂଜ୍ଞା କ'ଣ ? ଏହିପ୍ରକାର ସ୍ଥିତପ୍ରଜ୍ଞର ଲକ୍ଷଣକୁ କହୁଥିବା ବିଦ୍ୱାନମାନଙ୍କର ସବୁ ପ୍ରବୃତ୍ତିମାନଙ୍କ ସହ ସମ୍ବନ୍ଧ ରହେ ନାହିଁ । ତେଣୁ ବ୍ରହ୍ମାତ୍ମଭାବକୁ ଜାଣିଥିବା ପଣ୍ଡିତ ସଂସାରୀ ସମାନ ରହେ, (କିନ୍ତୁ ସେ ଅସଂସାରୀ) ଯେ ପୂର୍ବରୁ ସଂସାରୀ ସମାନ, ସେ ବ୍ରହ୍ମାତ୍ମଭାବକୁ ଜାଣେନାହିଁ ।

(୪୧) ମୂଳ-(କ) ଯତ୍ପୁନରୁକ୍ତଂ ଶ୍ରବଣାତ୍ପରାଚୀନୟୋର୍ମନନନିଦିଧ୍ୟାସନୟୋର୍ଦର୍ଶନାଦ୍ ବିଧିଶେଷତ୍ୱଂ ବ୍ରହ୍ମଣୋ ନ ସ୍ୱରୂପପର୍ଯ୍ୟବସାୟିତ୍ୱମିତି । (ଖ) ନ, ଅନବଗତ୍ୟର୍ଥତ୍ୱାନ୍ମନନନିଦିଧ୍ୟାସନୟୋଃ । (ଗ) ଯଦି ହ୍ୟବଗତଂ ବ୍ରହ୍ମାନ୍ୟତ୍ର ବିନିଯୁଜ୍ୟେତ ଭବେତ୍ତଦା ବିଧିଶେଷତ୍ୱମ୍ । (ଘ) ନ ତୁ ତଦସ୍ତି, ମନନନିଦିଧ୍ୟାସ-ନୟୋରପି ଶ୍ରବଣବଦବଗତ୍ୟର୍ଥତ୍ୱାତ୍ । ତସ୍ମାନ୍ନ ପ୍ରତିପତ୍ତିବିଧିବିଷୟତୟା ଶାସ୍ତ୍ରପ୍ରମାଣକଂ ବେଦାନ୍ତବାକ୍ୟ ସମନ୍ୱୟାଦିତି ସିଦ୍ଧମ୍ ।

**(୪୧) ଭାଷାଂତର-** (କ) ପୂର୍ବପକ୍ଷ-ଶ୍ରବଣ ପରେ ମନନ ଓ ନିଦିଧ୍ୟାସନ ଦେଖାଯିବାରୁ ବ୍ରହ୍ମବିଧିର ଅଙ୍ଗ ହୁଏ । କିନ୍ତୁ ସ୍ୱରୂପ ପର୍ଯ୍ୟବସାୟୀ ନୁହେଁ ।

(ଖ) ସମାଧାନ - ନୁହେଁ, କାରଣ-ଶ୍ରବଣ ସଦୃଶ ମନନ ଓ ନିଦିଧ୍ୟାସନ ମଧ୍ୟ ବ୍ରହ୍ମର ସାକ୍ଷାତ୍କାର ପାଇଁ ଆବଶ୍ୟକ ।

(ଗ) ଯଦି ଜ୍ଞାତ ବ୍ରହ୍ମ କୌଣସି କର୍ମ ସହ ବିନିଯୋଗ ଅଛି, ତେବେ ତାହା ବିଧିର ଅଙ୍ଗ ହେବ ।

(ଘ) କିନ୍ତୁ ଏହା ଅସମ୍ଭବ । କାରଣ-ବେଦାନ୍ତ ବାକ୍ୟର ଶ୍ରବଣ ବିନା ବ୍ରହ୍ମ ଅଜ୍ଞାତ ହୁଏ । ଶ୍ରବଣ ଭଳି ମନନ ଓ ନିଦିଧ୍ୟାସନ ବ୍ରହ୍ମଜ୍ଞାନ ପାଇଁ ଆବଶ୍ୟକ । ତେଣୁ ଉପାସନା ବିଧିର ବିଷୟତା ରୂପଦ୍ୱାରା ବ୍ରହ୍ମଶାସ୍ତ୍ର ପ୍ରମାଣକ ହେବା ଅସମ୍ଭବ । ଅତଃ ବେଦାନ୍ତ ବାକ୍ୟଗୁଡ଼ିକର ସମନ୍ୱୟ ହେତୁ ବ୍ରହ୍ମ ସ୍ୱତନ୍ତ୍ର ଶାସ୍ତ୍ର ପ୍ରମାଣକ ।

(୪୨) ମୂଳ- (କ) ଏବଞ୍ଚ ସତି 'ଅଥାତୋ ବ୍ରହ୍ମଜିଜ୍ଞାସା' ଇତି ତଦ୍ବିଷୟଃ ପୃଥଗ୍ଶାସ୍ତ୍ରାରମ୍ଭ ଉପପଦ୍ୟତେ । ପ୍ରତିପତ୍ତିବିଧିପରତ୍ୱେ ହି 'ଅଥାତୋ ଧର୍ମଜିଜ୍ଞାସା' ଇତ୍ୟେବାରବ୍ଧତ୍ୱାନ୍ନ ପୃଥଗ୍ଶାସ୍ତ୍ରମାରଭ୍ୟେତ । (ଖ) ଆରଭ୍ୟମାଣଂ ଚୈବମାରଭ୍ୟେତ - 'ଅଥାତଃ ପରିଶିଷ୍ଟଧର୍ମଜିଜ୍ଞାସା' ଇତି । 'ଅଥାତଃ କ୍ରତ୍ୱର୍ଥପୁରୁଷାର୍ଥୟୋର୍ଜିଜ୍ଞାସା', (ଜୈ.ସୂ ୪।୧।୧) ଇତିବତ୍ । ବ୍ରହ୍ମାତ୍ମୈକ୍ୟାବଗତିସ୍ତ୍ୱପ୍ରତିଜ୍ଞାତେତି ତଦର୍ଥୋ ଯୁକ୍ତଃ ଶାସ୍ତ୍ରାରମ୍ଭଃ- 'ଅଥାତୋ ବ୍ରହ୍ମଜିଜ୍ଞାସା' ଇତି । (ଗ) ତସ୍ମାଦହଂ ବ୍ରହ୍ମାସ୍ମୀତ୍ୟେତଦବସାନା ଏବ ସର୍ବେ ବିଧୟଃ ସର୍ବାଣି ଚେତରାଣି ପ୍ରମାଣାନି । ନ ହ୍ୟହେୟାନୁପାଦେୟା ଦ୍ୱୈତାତ୍ମାବଗତୌ ନିର୍ବିଶେଷାଣ୍ୟପ୍ରମାତୃକାଣି ଚ ପ୍ରମାଣାନି ଭବିତୁମର୍ହନ୍ତୀତି । (ଘ) ଅପି ଚାହୁଃ-

ଗୌଣମିଥ୍ୟାତ୍ମନୋଽସତ୍ତ୍ୱେ, ପୁତ୍ରଦେହାଦିବାଧନାତ୍ ।
ସଦ୍ବ୍ରହ୍ମାତ୍ମାହମିତ୍ୟେବଂ, ବାଧେ କାର୍ଯ୍ୟଂ କଥଂ ଭବେତ୍ ॥୧॥



ଅନ୍ୱେଷ୍ଟବ୍ୟାତ୍ମବିଜ୍ଞାନାତ୍, ପ୍ରାକ୍‌ପ୍ରମାତୃତ୍ୱମାତ୍ମନଃ ।
ଅନ୍ୱେଷ୍ଟବ୍ୟଃସ୍ୟାତ୍ ପ୍ରମାତୈବ, ପାପ୍ମଦୋଷାଦିବର୍ଜିତଃ ॥୨॥

ଦେହାତ୍ମପ୍ରତ୍ୟୟୋ ଯଦ୍‌ବତ୍, ପ୍ରମାଣତ୍ୱେନ କଳ୍ପିତଃ ।
ଲୌକିକଂ ତଦ୍‌ବଦେବେଦଂ, ପ୍ରମାଣଂ ତ୍ୱାଽଽତ୍ମନିଶ୍ଚୟାତ୍ ॥୩॥

**(୪୨)ଭାଷାଂତର-** (କ) ତେଣୁ 'ଅଥାତୋ ବ୍ରହ୍ମଜିଜ୍ଞାସା' ଏହି ପ୍ରକାର ବ୍ରହ୍ମ ବିଷୟକ ପୃଥରାଶାସ୍ତ୍ରର ଆରମ୍ଭ ହେବା ଉଚିତ୍ । ବେଦାନ୍ତ ଯଦି ଉପାସନା ବିଧିପରକ ହୁଏ, 'ଅଥାତୋ ଧର୍ମଜିଜ୍ଞାସା' ରପୂକ ମୀଂମାସା ସୂତ୍ରରେ ମଧ୍ୟ ଆରମ୍ଭ ହେବା ହେତୁ ଅନ୍ୟଶାସ୍ତ୍ର ଆରମ୍ଭ ହୁଏ ନାହିଁ ।

(ଖ) କାରଣ- ଆରମ୍ଭ ସୂତ୍ରରେ 'ଏହାଠାରୁ ଅବଶିଷ୍ଟ ଧର୍ମଜିଜ୍ଞାସ୍ୟ', 'ଏହାପରେ କ୍ରତ୍ୱର୍ଥ ଓ ପୁରୁଷାର୍ଥକୁ ଜାଣିବା କଥା' । ଏହି ପ୍ରକାର ବ୍ରହ୍ମାତ୍ମୈକତ୍ୱ ଏକ ବୋଲି ଏକ ଅର୍ଥ ହେବା ଉଚିତ୍ । ତେଣୁ ଶାସ୍ତ୍ରାରମ୍ଭରେ 'ଅଥାତୋ ବ୍ରହ୍ମଜିଜ୍ଞାସା' ବୋଲି କୁହାଯାଇଛି ।

(ଗ) ସେହିହେତୁ 'ମୁଁ ବ୍ରହ୍ମ' ବୋଲି ଏ ପର୍ଯ୍ୟନ୍ତ ବିଧିଗୁଡ଼ିକ ପ୍ରମାଣ । କିନ୍ତୁ ହେୟ, ଉପାଦେୟ ଓ ଅଦ୍ୱୈତାତ୍ମକୁ ଜାଣିବା ପାଇଁ ନିର୍ବିଷୟ ପ୍ରମାଣହୀନ କିଛି ନାହିଁ ।

(ଘ) ତେଣୁ କୁହାଯାଇଛି- ଗୌଣ ଓ ମିଥ୍ୟା ଭେଦରେ ଏହା ଦୁଇପ୍ରକାର । ପୁତ୍ର ଓ ସ୍ତ୍ରୀ ପାଖରେ 'ମୋର ଅଭିମାନ ହିଁ ଗୌଣ', କାରଣ-

୧- ଏହି ଦୁଇଜଣଙ୍କର ଭେଦ ଅଛି । କିନ୍ତୁ ଏହି ଦୁଇପ୍ରକାର ଅଭିମାନ ବାଧିତ ହେଲେ ବିଧି ଓ ନିଷେଧାଦି ବ୍ୟବହାର କିପରି ହେବ ।

୨- ଯେଉଁ ଆତ୍ମା ଆତ୍ମଜ୍ଞାନ ଦ୍ୱାରା ଚିଦ୍ରୂପ ଆତ୍ମାରେ ପ୍ରମାତୃ ରହେ, ସେହି ପାପ ଓ ଦୋଷହୀନ ପ୍ରମାଣକୁ ଅନ୍ୱେଷଣ କର ।

୩- ଦେହାତ୍ମପ୍ରତ୍ୟକ୍ଷଦ୍ୱାରା ପ୍ରମାଣ କଳ୍ପନା କରାଯାଏ । ସେହି ପ୍ରକାର ପ୍ରତ୍ୟକ୍ଷାଦି ଲୌକିକ ପ୍ରମାଣ ମଧ୍ୟ ଆତ୍ମସାକ୍ଷାତ୍‌କାର ପର୍ଯ୍ୟନ୍ତ ପ୍ରମାଣ ହୁଅନ୍ତି ।

## ५ ईक्षेत्याधिकरणम् । सू० ५-११

## ଈକ୍ଷେତ୍ୟାଧିକରଣ-ସୂ ୫-୧୧

(୧) ମୂଳ-(କ) ଏବଂ ତାବଦ୍‌ବେଦାନ୍ତବାକ୍ୟାନାଂ ବ୍ରହ୍ମାତ୍ମାବଗତିପ୍ରୟୋ-ଜନାନାଂ ବ୍ରହ୍ମାତ୍ମନି ତାତ୍ପର୍ଯ୍ୟେଣ ସମନ୍ୱିତାନାମନ୍ତରେଣାପି କାର୍ଯ୍ୟାନୁପ୍ରବେଶଂ ବ୍ରହ୍ମଣି ପର୍ଯ୍ୟବସାନମୁକ୍ତମ୍ । ବ୍ରହ୍ମ ଚ ସର୍ବଜ୍ଞଂ ସର୍ବଶକ୍ତିଜଗଦୁତ୍ପତ୍ତିସ୍ଥିତିନାଶ-କାରଣମିତ୍ୟୁକ୍ତମ୍ ।

(ଖ) ସାଂଖ୍ୟାଦୟସ୍ତୁ ପରିନିଷ୍ଠିତଂ ବସ୍ତୁ ପ୍ରମାଣାନ୍ତରଗମ୍ୟମେବେତି ମନ୍ୟମାନାଃ ପ୍ରଧାନାଦୀନି କାରଣାନ୍ତରାଣ୍ୟନୁମିମାନାସ୍ତତ୍‌ପରତୟୈବ ବେଦାନ୍ତବାକ୍ୟାନି ଯୋଜୟନ୍ତି । (ଗ) ସର୍ବେଷ୍ୱେବ ବେଦାନ୍ତବାକ୍ୟେଷୁ ସୃଷ୍ଟିବିଷୟେଷ୍ୱନୁମାନେନୈବ କାର୍ଯ୍ୟେଣ କାରଣଂ ଲିଲକ୍ଷୟିଷିତମ୍ । ପ୍ରଧାନପୁରୁଷସଂଯୋଗା ନିତ୍ୟାନୁମେୟା ଇତି ସାଂଖ୍ୟାଃ ମନ୍ୟନ୍ତେ ।

**(୧) ଭାଷାଂତର-** (କ) ଏପରିକି ବେଦାନ୍ତବାକ୍ୟର କାର୍ଯ୍ୟ ସହିତ ସମ୍ବନ୍ଧ ନ ହୋଇ ମଧ୍ୟ ଏକ ଅଦ୍ୱିତୀୟ ବ୍ରହ୍ମରେ ପର୍ଯ୍ୟବସାନ ହୁଏ । ସେହି ବାକ୍ୟଗୁଡ଼ିକର ପ୍ରୟୋଜନ ହେଉଛି- 'ଏହି ଆତ୍ମା ବ୍ରହ୍ମ ଅଟେ', ଏହିପ୍ରକାର ପରୋକ୍ଷଜ୍ଞାନ କରିବା ଏବଂ ବ୍ରହ୍ମାତ୍ମରେ ତାତ୍ପର୍ଯ୍ୟ ଦ୍ୱାରା ସମନ୍ୱିତ କରାଇବା । ବେଦରେ ତେଣୁ କୁହାଯାଇଛି- ଏହି ସର୍ବଜ୍ଞ, ସର୍ବଶକ୍ତିମାନ୍, ବ୍ରହ୍ମସଂସାରର ଉତ୍ପତ୍ତି, ସ୍ଥିତି ଓ ଲୟର କାରଣ ଅଟେ ।

(ଖ) କିନ୍ତୁ ସାଂଖ୍ୟମାନେ ଏହିଭଳି ସ୍ୱୀକାର କରନ୍ତି ଯେ- ସିଦ୍ଧବସ୍ତୁ ଅନ୍ୟ ପ୍ରମାଣ ଦ୍ୱାରା ପ୍ରମାଣିତ ହୁଏ ଓ ପ୍ରଧାନାଦି ଅନ୍ୟକାରଣର ଅନୁମାନ କରି ପ୍ରଧାନାଦିପରତ୍ୱ ଦ୍ୱାରା ବେଦାନ୍ତଗୁଡ଼ିକ ସମନ୍ୱିତ କରାଏ ।

(ଗ) ସୃଷ୍ଟି ବିଷୟକ ସମସ୍ତ ବେଦାନ୍ତବାକ୍ୟଗୁଡ଼ିକରେ ଅନୁମାନ କରି କାର୍ଯ୍ୟଦ୍ୱାରା କାରଣର ଲକ୍ଷଣ ନିର୍ମାଣ କରିବା ପାଇଁ ଚେଷ୍ଟା କରିଛନ୍ତି ଏବଂ ସାଂଖ୍ୟମାନେ ଏହିଭଳି ସ୍ୱୀକାର କରିଛନ୍ତି କି-ପ୍ରଧାନ ପୁରୁଷର ସଂଯୋଗ ନିତ୍ୟ ଓ ଅନୁମେୟ ଅଟେ ।

(୨) ମୂଳ-(କ) କାଣାଦାସ୍ତ୍ୱେତେଭ୍ୟ ଏବ ବାକ୍ୟେଭ୍ୟଃ ଈଶ୍ୱରଂ ନିମିତ୍ତକାରଣମନୁମିମତେ, ଅଣୁଂଶ୍ଚ ସମବାୟିକାରଣମ୍ । (ଖ) ଏବମନ୍ୟୋଽପି ତାର୍କିକା ବାକ୍ୟାଭାସଯୁକ୍ତ୍ୟାଭାସାବଷ୍ଟମ୍ଭାଃ ପୂର୍ବପକ୍ଷବାଦିନଂ ଇହୋତ୍ତିଷ୍ଠନ୍ତେ । ତତ୍ର ପଦବାକ୍ୟପ୍ରମାଣଜ୍ଞେନାଚାର୍ଯ୍ୟେଣ ବେଦାନ୍ତ ବାକ୍ୟନାଂ ବ୍ରହ୍ମାତ୍ମାବଗତିପରତ୍ୱଦର୍ଶନାୟ ବାକ୍ୟାଭାସଯୁକ୍ତ୍ୟାଭାସବିପ୍ରତିପତ୍ତୟଃ ପୂର୍ବପକ୍ଷୀକୃତ୍ୟ ନିରାକ୍ରିୟନ୍ତେ ।

**(୨) ଭାଷାଂତର-** (କ) କଣାଦମତାନୁୟାୟିମାନେ ବାକ୍ୟଦ୍ୱାରା ଅନୁମାନ କରନ୍ତି ଯେ- ଈଶ୍ୱର ସୃଷ୍ଟିର ନିମିତ୍ତ କାରଣ ଏବଂ ଅଣୁ ସମବାୟି କାରଣ ଅଟେ ।

(ଖ) ଏହି ପ୍ରକାର ଅନ୍ୟ ତାର୍କିକମାନେ ମଧ ବାକ୍ୟାଭ୍ୟାସ ଓ ଯୁକ୍ତ୍ୟାଭାସର ଅବଲମ୍ବନରେ ଅଦ୍ୱୈତମତର ପୂର୍ବପକ୍ଷ ଭାବରେ ଦେଖାଦେଇଛନ୍ତି । ସେଠାରେ ମଧ



ବେଦାନ୍ତ ବାକ୍ୟଗୁଡ଼ିକୁ ବ୍ରହ୍ମାତ୍ମାବଗତି ନିମିତ୍ତ ବେଦାନ୍ତିମାନେ ବାକ୍ୟାଭାସ ଓ ଯୁକ୍ତ୍ୟାଭାସଦ୍ୱାରା ପ୍ରତିଷ୍ଠିତ ନୈୟାୟିକମାନଙ୍କୁ ପଦବାକ୍ୟ ପ୍ରମାଣ ଶାସ୍ତ୍ରଦ୍ୱାରା ଖଣ୍ଡନ କରିଛନ୍ତି ।

(୩) ମୂଳ- (କ) ତତ୍ର ସାଂଖ୍ୟାଃ ପ୍ରଧାନଂ ତ୍ରିଗୁଣମଚେତନଂ ଜଗତଃ କାରଣମିତି ମନ୍ୟମାନା ଆହୁଃ-ଯାନି ବେଦାନ୍ତବାକ୍ୟାନି ସର୍ବଜ୍ଞସ୍ୟ ସର୍ବଶକ୍ତେର୍ବ୍ରହ୍ମଣୋ ଜଗତ୍ କାରଣତ୍ୱଂ ପ୍ରଦର୍ଶୟନ୍ତୀତ୍ୟବୋଚସ୍ତାନି ପ୍ରଧାନକାରଣପକ୍ଷେଽପି ଯୋଜୟିତୁଂ ଶକ୍ୟନ୍ତେ । (ଖ) ସର୍ବଶକ୍ତିମତ୍ୱଂ ତାବତ୍‌ପ୍ରଧାନସ୍ୟାପି ସ୍ୱବିକାରବିଷୟମୁପ-ପଦ୍ୟତେ । ଏବଂ ସର୍ବଜ୍ଞତ୍ୱମୁପପଦ୍ୟତେ ।

**(୩) ଭାଷାଂତର** - (କ) ତ୍ରିଗୁଣାତ୍ମକ, ଅଚେତନ ପ୍ରଧାନ ସଂସାରର କାରଣ ରୂପରେ ସ୍ୱୀକାର କରୁଥିବା ସଂଖ୍ୟାଚାର୍ଯ୍ୟମାନେ କହନ୍ତି ଯେ- ଯେଉଁ ବେଦାନ୍ତବାକ୍ୟଗୁଡ଼ିକ ସର୍ବଜ୍ଞ, ସର୍ବଶକ୍ତିମାନ୍, ବ୍ରହ୍ମରେ ସଂସାର କାରଣ ତାକୁ ଦେଖାଇଛନ୍ତି ।

(ଖ) ତାହା ପ୍ରଧାନ କାରଣ ପକ୍ଷରେ ମଧ୍ୟ ସଂଯୋଜନା କରାଯାଇପାରେ। ପ୍ରଧାନର ସର୍ବଶକ୍ତିମତ୍ୱ ମଧ୍ୟ ନିଜ ବିକାରକୁ ପ୍ରତିପାଦିତ କରାଏ । ଏହି ପ୍ରକାର ସର୍ବଜ୍ଞତ୍ୱ ମଧ୍ୟ ପ୍ରମାଣଦ୍ୱାରା ସ୍ଥାପନ କରାଯାଏ ।

(୪) ମୂଳ-(କ) କଥମ୍ ? ଯତ୍ତୁ ଜ୍ଞାନଂ ମନ୍ୟସେ, ସଃ ସତ୍ତ୍ୱଧର୍ମଃ 'ସତ୍ତ୍ୱାତ୍ ସଂଜାୟତେ ଜ୍ଞାନମ୍', (ଗୀ ୧୪।୧୭) ଇତି ସ୍ମୃତେଃ । ତେନ ଚ ସତ୍ତ୍ୱଧର୍ମେଣ ଜ୍ଞାନେନ କାର୍ଯ୍ୟକରଣବନ୍ତଃ ପୁରୁଷାଃ ସର୍ବଜ୍ଞାଃ ଯୋଗିନଃ ପ୍ରସିଦ୍ଧାଃ । (ଖ) ସତ୍ତ୍ୱସ୍ୟ ହି ନିରତିଶୟୋତ୍କର୍ଷେ ସର୍ବଜ୍ଞତ୍ୱଂ ପ୍ରସିଦ୍ଧମ୍ । ନ କେବଲସ୍ୟାକାର୍ଯ୍ୟକାରଣସ୍ୟ ପୁରୁଷୋପଲବ୍ଧିମାତ୍ରସ୍ୟ ସର୍ବଜ୍ଞତ୍ୱଂ କିଞ୍ଚିତ୍‌ଜ୍ଞତ୍ୱଂ ବା କଳ୍ପୟିତୁଂ ଶକ୍ୟମ୍ ।

**(୪) ଭାଷାଂତର-** (କ) ପ୍ରଧାନ ସର୍ବଜ୍ଞ କିପରି ହୁଏ ? ଯାହାକୁ ତୁମେ ଜ୍ଞାନ ବୋଲି କହୁଛ, ତାହା ସତ୍ତ୍ୱଗୁଣର ଧର୍ମ, କାରଣ-ସତ୍ତ୍ୱଗୁଣ ଦ୍ୱାରା ଜ୍ଞାନ ଉତ୍ପନ୍ନ ହୁଏ', ଇତି ଗୀତାବାକ୍ୟ । ଏହା ସତ୍ତ୍ୱଗୁଣ ରୂପଜ୍ଞାନ ଦ୍ୱାରା କାର୍ଯ୍ୟ (ଶରୀର), କରଣ (ଇନ୍ଦ୍ରିୟ) ଯୁକ୍ତ ପୁରୁଷ ଯୋଗୀ ସର୍ବଜ୍ଞ ପ୍ରସିଦ୍ଧ ହୁଏ ।

(ଖ) ସତ୍ତ୍ୱର ନିରତିଶୟ ଉତ୍କର୍ଷ ହେଲେ ସର୍ବଜ୍ଞତ୍ୱ ପ୍ରସିଦ୍ଧ ହୁଏ । ଦେହ ଓ ଇନ୍ଦ୍ରିୟ ରହିତ କେବଳ ଜ୍ଞାନସ୍ୱରୂପ ପୁରୁଷଠାରେ ସର୍ବଜ୍ଞତ୍ୱ କିମ୍ବା ଅଳ୍ପଜ୍ଞତ୍ୱ ପ୍ରସିଦ୍ଧ ମଧ୍ୟ ହୋଇଥାଏ ।

(୫) ମୂଳ- (କ) ତ୍ରିଗୁଣତ୍ୱାତ୍ତୁ ପ୍ରଧାନସ୍ୟ ସର୍ବଜ୍ଞାନକାରଣଭୂତଂ ସତ୍ତ୍ୱଂ ପ୍ରଧାନାବସ୍ଥାୟାମପି ବିଦ୍ୟତ ଇତି ପ୍ରଧାନସ୍ୟାଚେତନସ୍ୟୈବ ସତଃ ସର୍ବଜ୍ଞତ୍ୱ-ମୁଚର୍ଯ୍ୟତେ ବେଦାନ୍ତବାକ୍ୟେଷୁ । (ଖ) ଅବଶ୍ୟଞ୍ଚ ତ୍ୱୟାପି ସର୍ବଜ୍ଞଂ ବ୍ରହ୍ମାଭ୍ୟୁପଗଚ୍ଛତା ସର୍ବଜ୍ଞାନଶକ୍ତିମତ୍ତ୍ୱେନୈବ ସର୍ବଜ୍ଞତ୍ୱମୁପଗନ୍ତବ୍ୟମ୍ । ନ ହି ସର୍ବଦା ସର୍ବବିଷୟଂ ଜ୍ଞାନଂ କୁର୍ବଦେବ ବ୍ରହ୍ମବର୍ତ୍ତତେ ।

**(୫) ଭାଷାଂତର-** (କ) ପ୍ରଧାନ ତ୍ରିଗୁଣାତ୍ମକ ହେତୁ ଏହାର ସମସ୍ତ ଜ୍ଞାନର କାରଣଭୂତ ସତ୍ତ୍ୱଗୁଣ ପ୍ରଧାନ ଅବସ୍ଥାରେ ରହେ । ତେଣୁ ଏହି କାରଣ ଅଚେତନ ହେଲେ ମଧ୍ୟ ପ୍ରଧାନର ବେଦାନ୍ତବାକ୍ୟରେ ସର୍ବଜ୍ଞତ୍ୱ ଉପଚରିତ ହୁଏ । ଅର୍ଥାତ୍‌ଗୁଣ ବୃତ୍ତିରେ ପ୍ରତିପାଦିତ ହୁଏ ।

(ଖ) ଅବଶ୍ୟ ସର୍ବଜ୍ଞ ବ୍ରହ୍ମ ବୋଲି ସ୍ୱୀକାର କରୁଥିବା ତୁମ୍ଭେମାନେ ମଧ୍ୟ ବ୍ରହ୍ମ ସର୍ବଜ୍ଞାନ ଶକ୍ତିମାନ୍ ହେଲେ ବ୍ରହ୍ମରେ ସର୍ବଜ୍ଞତ୍ୱ ସ୍ୱୀକାର କରିବା ଉଚିତ୍ । କାରଣ- ବ୍ରହ୍ମ ସର୍ବଦା ସବୁ ବିଷୟଙ୍କୁ ଜ୍ଞାନ କରି ରହେ ନାହିଁ ।

(୬) ମୂଳ-(କ) ତଥାହି-ଜ୍ଞାନସ୍ୟ ନିତ୍ୟତ୍ୱେ ଜ୍ଞାନକ୍ରିୟାଂ ପ୍ରତି ସ୍ୱାତନ୍ତ୍ର୍ୟଂ ବ୍ରହ୍ମଣୋ ହୀୟତେ । ଅଥାନିତ୍ୟଂ ତଦିତି ଜ୍ଞାନକ୍ରିୟାୟାଃ ଉପରମେତାପି ବ୍ରହ୍ମ, ତଦା ସର୍ବଜ୍ଞାନଶକ୍ତିମତ୍ତ୍ୱେନୈବ ସର୍ବଜ୍ଞତ୍ୱମାପଯତି । (ଖ) ଅପି ଚ ପ୍ରାଗୁତ୍ପତ୍ତେଃ ସର୍ବକାରଣଶୂନ୍ୟଂ ବ୍ରହ୍ମେଷ୍ୟତେ ତ୍ୱୟା । ନ ଚ ଜ୍ଞାନସାଧନାନାଂ ଶରୀରେନ୍ଦ୍ରିୟାଦୀନାମଭାବେ ଜ୍ଞାନୋତ୍ପତ୍ତିଃ କସ୍ୟଚିଦୁପପନ୍ନା । (ଗ) ଅପି ଚ ପ୍ରଧାନସ୍ୟାନେକାତ୍ମକସ୍ୟ ପରିଣାମସମ୍ଭବାତ୍ କାରଣତ୍ୱୋପପତ୍ତିର୍ମୃଦା ଦିବତ୍ ନାସଂହତସ୍ୟୈକାତ୍ମକସ୍ୟ ବ୍ରହ୍ମଣ ଇତ୍ୟେବଂ ପ୍ରାପ୍ତ ଇଦଂ ସୂତ୍ରମାରଭ୍ୟତେ ।

**(୬) ଭାଷାଂତର-** (କ) ଯଦି ଜ୍ଞାନ ନିତ୍ୟ, ତାହାହେଲେ ଜ୍ଞାନ କ୍ରିୟା ପ୍ରତି ବ୍ରହ୍ମର ସ୍ୱତନ୍ତତା ନଷ୍ଟ ହେବ । ଅନିତ୍ୟ ହେଲେ ଜ୍ଞାନକ୍ରିୟା ନ ରହିଲେ ମଧ୍ୟ କେତେବେଳେ ଏହା ଉପଚରିତ ହେବ । ତେଣୁ ଏହା ସିଦ୍ଧ ଯେ- ସର୍ବଜ୍ଞାନ ସର୍ବଶକ୍ତିମତ୍ତ୍ୱ ଦ୍ୱାରା ବ୍ରହ୍ମରେ ମଧ୍ୟ ସର୍ବଜ୍ଞତ୍ୱ ପ୍ରାପ୍ତ ହୁଏ ।

(ଖ) ପୁନଶ୍ଚ ଯଦି ଉତ୍ପତ୍ତିର ପୂର୍ବରୁ ତୁମେ ବ୍ରହ୍ମକୁ ସର୍ବସଂସାର ରହିତ ହିସାବରେ ସ୍ୱୀକାର କଲେ ଜ୍ଞାନର ସାଧନଶରୀର, ଇନ୍ଦ୍ରିୟ ଅଭାବରେ ଜ୍ଞାନର ଉତ୍ପତ୍ତି କୌଣସି ମତରେ ଠିକ୍ ହୁଏ ନାହିଁ ।



(ଗ) ପୁନଶ୍ଚ ସତ୍ତ୍ୱ, ରଜ, ତମ-ଏହି ଗୁଣଭେଦରେ ଅନେକାତ୍ମକପ୍ରଧାନର ପରିଣାମ ସମ୍ଭବ ହୁଏ, ଅତଏବ ଏହି ମୃତ୍ତିକାଦି ସମାନ କାରଣ ହୁଏ । ପରନ୍ତୁ ସଂଘାତରହିତ ଅସଙ୍ଗ ଅଦ୍ୱିତୀୟ ବ୍ରହ୍ମ ନୁହେଁ । ଏହିପ୍ରକାର ପୂର୍ବପକ୍ଷ ପ୍ରାପ୍ତ ହୋଇ ଏହି ସୂତ୍ର ଆରମ୍ଭ କରାଯାଇଛି ।

## ईक्षतेर्नाशब्दम् ॥ ५ ॥

## (୭) ଈକ୍ଷତେର୍ନାଶବ୍ଦମ୍ ୧।୧।୫

**ଈକ୍ଷତେଃ-** ଜଗତର କାରଣ ଈକ୍ଷଣ କର୍ତ୍ତା ହେଲେ ମଧ୍ୟ ଜଡ଼ ପ୍ରଧାନରେ ଈକ୍ଷଣକର୍ତ୍ତୃତ୍ୱ ହୁଏ ନାହିଁ । ତେଣୁ ଅଶବ୍ଦମ୍-ବେଦ ଅପ୍ରତିପାଦିତ ହେବାର କାରଣ ପ୍ରଧାନ ଜଗତର କାରଣ ହୁଏ ନାହିଁ ।

(୮) ମୂଳ- (କ) ନ ସାଂଖ୍ୟପରିକଳ୍ପିତମଚେତନଂ ପ୍ରଧାନଂ ଜଗତଃ କାରଣଂ ଶକ୍ୟଂ ବେଦାନ୍ତେଷ୍ୱାଶ୍ରୟିତୁମ୍ । ଅଶବ୍ଦଂ ହି ତତ୍ । (ଖ) କଥମଶବ୍ଦତ୍ୱମ୍ ? ଈକ୍ଷତେଃ- ଈକ୍ଷତୃତ୍ୱଶ୍ରବଣାତ୍ କାରଣସ୍ୟ । କଥମ୍ ? ଏବଂ ହି ଶ୍ରୂୟତେ (ଗ) ତଦେବଂ ସୋମ୍ୟେଦମଗ୍ର ଆସୀଦେକାମେବାଦ୍ୱିତୀୟମ୍', (ଛା ୮।୨।୧) ଇତ୍ୟୁପକ୍ରମ୍ୟ 'ତଦୈକ୍ଷତ ବହୁସ୍ୟାଂ ପ୍ରଜାୟେୟେତି ତତ୍ତେଜୋଽସୃଜତ, (ଛା୮।୨।୩) ଇତି । (ଘ) ତତ୍ରେଦଂ ଶବ୍ଦବାଚ୍ୟଂ ନାମରୂପବ୍ୟାକୃତଂ ଜଗତ୍ପ୍ରାଗୁତ୍ପତ୍ତେଃ ସଦାତ୍ମନାବଧାର୍ଯ୍ୟ ତସ୍ୟୈବ ପ୍ରକୃତସ୍ୟ ସଚ୍ଛବ୍ଦବାଚ୍ୟସ୍ୟେକ୍ଷଣପୂର୍ବକଂ ତେଜଃ ପ୍ରଭୃତେଃ ସ୍ରଷ୍ଟୃତ୍ୱଂ ଦର୍ଶୟତି ।

**(୮) ଭାଷାଂତର-** (କ) ସାଂଖ୍ୟପରିକଳ୍ପିତ ଅଚେତନ ପ୍ରଧାନ ଜଗତର କାରଣ ବେଦାନ୍ତଶାସ୍ତ୍ରରେ ସ୍ୱୀକାର କରାଯାଇନାହିଁ । କାରଣ- ଏହା ବେଦପ୍ରସିଦ୍ଧ ନୁହେଁ ।

(ଖ) ବେଦପ୍ରସିଦ୍ଧ କାହିଁକି ନୁହେଁ ବୋଲି କୁହାଯାଇଛି, ତାହେଲେ ଏହି କାରଣରେ ଈକ୍ଷଣକର୍ତ୍ତୃତ୍ୱ ଶୁଣାଯାଏ ।

(ଗ) ଯଥା- 'ହେ ପ୍ରିୟଦର୍ଶନ । ଆରମ୍ଭରେ ଏକମାତ୍ର ଏହି ଅଦ୍ୱିତୀୟ ସତ୍ ଥିଲା' । ଏହିଠାରୁ ଆରମ୍ଭ କରି 'ଏହା ଦ୍ୱାରା ଈକ୍ଷଣ କରାଗଲା କି ମୁଁ ଅନେକ ହେବି । ଏହି ପ୍ରକାର ଦେଖି ତେଜକୁ ସୃଷ୍ଟି କଲା' ।

(ଘ) ସେଠାରେ 'ଇଦଂ' ଶବ୍ଦବାଚ୍ୟ ନାମରୂପରେ ଅଭିବ୍ୟକ୍ତ ଜଗତର ଉତ୍ପତ୍ତିର ପୂର୍ବରୁ ସତ୍‌ରୂପରେ ଠିକ୍ କରି ପ୍ରକୃତସତ୍ ଶବ୍ଦବାଚ୍ୟ ବ୍ରହ୍ମରେ ଈକ୍ଷଣ ପୂର୍ବକ ତେଜ ଆଦିର ସ୍ରଷ୍ଟୃତ୍ୱ ଦେଖାଯାଏ ।

(୯) ମୂଳ- (କ) ତଥାନ୍ୟତ୍ର- 'ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍ । ନାନ୍ୟତ୍ କିଞ୍ଚନ୍ ମିଷତ୍ । ସ ଈକ୍ଷତ ଲୋକାନ୍ନୁ ସୃଜା ଇତି । ସ ଇମାଁଲ୍ଲୋକାନସୃଜତ', (ଐତ୯।୯।୯) ଇତୀକ୍ଷାପୂର୍ବିକାମେବ ସୃଷ୍ଟିମାଚଷ୍ଟେ । (ଖ) କ୍ୱଚିଚ୍ଚ ଷୋଡ଼ଶକଳଂ ପୁରୁଷଂ ପ୍ରସ୍ତୁତ୍ୟାହ- 'ସ ଈକ୍ଷାଞ୍ଚକ୍ରେ। ପ୍ରାଣମସୃଜତ' (ପ୍ରଶ୍ନ ୭-୩) ଇତି । ଈକ୍ଷତେରିତି ଚ ଧାତ୍ୱର୍ଥଦ୍ୱେ ନିର୍ଦେଶୋଽଭିପ୍ରେତଃ ଯଜେତରିତିବତ୍ । ନ ଧାତୁନିର୍ଦେଶଃ । (ଗ) ତେନ-

ଯଃ ସର୍ବଜ୍ଞଃ ସର୍ବବିଦ୍ୟସ୍ୟ ଜ୍ଞାନମୟଂ ତପଃ
ତସ୍ମାଦେତଦ୍‌ବ୍ରହ୍ମନାମ ରୂପମନ୍ନଞ୍ଚ ଜାୟତେ ॥ ମୁଣ୍ଡ (୧।୧।୯)

ଇତ୍ୟେବମାଦିନ୍ୟପି ସର୍ବଜ୍ଞେଶ୍ୱରକାରଣପରାଣି ବାକ୍ୟାନୁଦାହର୍ତ୍ତବ୍ୟାନି ।

**(୯) ଭାଷାଂତର-** (କ) ଏହି ପ୍ରକାର ଅନ୍ୟସ୍ଥାନରେ ମଧ୍ୟ ଆରମ୍ଭରେ 'ଆତ୍ମା ଏକମାତ୍ର ଥିଲା, ଏହାର ସେବାପାଇଁ ଅନ୍ୟ କୌଣସି ସ୍ୱତନ୍ତ୍ରବସ୍ତୁ ନ ଥିଲା, ସେ ସଂସାର ରଚନା ପାଇଁ ଇଚ୍ଛା କଲା, ଏହାପରେ ଲୋକମାନେ ସୃଷ୍ଟି ହେଲେ' । ତେଣୁ ଏହି ପ୍ରକାର ବେଦକୁ ଈକ୍ଷଣ ପୂର୍ବକ ସୃଷ୍ଟି କୁହାଯାଏ ।

(ଖ) ପୁନର୍ବାର କେତେକ ସ୍ଥାନରେ ଷୋଡ଼ଶକଳା ପୁରୁଷକୁ ପ୍ରସ୍ତୁତ କରି କୁହାଯାଇଛି- 'ଏହି ଦେଖିଲା, ସେ ପ୍ରାଣକୁ ସୃଷ୍ଟି କଲା' । 'ଯଜତି' ଧାତୁସଦୃଶ ଈକ୍ଷତିଦ୍ୱାରା ମଧ୍ୟ ଅର୍ଥ ନିର୍ଦ୍ଦେଶ କରାଯାଇଛି । ଧାତୁମାତ୍ରର ନିର୍ଦ୍ଦେଶ ନୁହେଁ ।

(ଗ) ଏହା ଦ୍ୱାରା- 'ଯେଉଁ ସର୍ବଜ୍ଞ, ସର୍ବବିତ୍, ଯାହାର ଜ୍ଞାନମୟ ହି ତପ । ଯାହାଦ୍ୱାରା ହିରଣ୍ୟଗର୍ଭ ନାମ, ରୂପ ଓ ଅନ୍ନ ଉତ୍ପନ୍ନ ହୁଏ' । ଇତ୍ୟାଦି ସର୍ବଜ୍ଞ ଈଶ୍ୱର କାରଣପୁରକବାକ୍ୟ ମଧ୍ୟ ଉଦାହରଣ ରୂପରେ ଦିଆଯାଇଛି ।

(୧୦) ମୂଳ- (କ) ଯଦୁକ୍ତଂ ସତ୍ତ୍ୱଧର୍ମେଣ ଜ୍ଞାନେନ ସର୍ବଜ୍ଞଂ ପ୍ରଧାନଂ ଭବିଷ୍ୟତୀତି । ତନ୍ନୋପପଦ୍ୟତେ । ନହି ପ୍ରଧାନାବସ୍ଥାୟାଂ ଗୁଣସାମ୍ୟାତ୍ ସତ୍ତ୍ୱଧର୍ମେ ଜ୍ଞାନଂ ସମ୍ଭବତି । (ଖ) ନନୂକ୍ତଂ ସର୍ବଜ୍ଞାନଶକ୍ତିମତ୍ତ୍ୱେନ ସର୍ବଜ୍ଞଂ ଭବିଷ୍ୟତୀତି । ତଦପି ନୋପପଦ୍ୟତେ । ଯଦି ଗୁଣସାମ୍ୟେ ସତି ସତ୍ତ୍ୱବ୍ୟାପାରାଶ୍ରୟାଂ ଜ୍ଞାନଶକ୍ତିମାଶ୍ରିତ୍ୟ ସର୍ବଜ୍ଞଂ ପ୍ରଧାନମୁଚ୍ୟେତ, କାମଂ ରଜସ୍ତମୋ ବ୍ୟାପାଶ୍ରୟାମପି ଜ୍ଞାନପ୍ରତିବନ୍ଧକ ଶକ୍ତିମାଶ୍ରିତ୍ୟ କିଞ୍ଚିତ୍ ଜ୍ଞତ୍ୱମୁଚ୍ୟେତ । (ଗ) ଅପି ଚ ନାସାକ୍ଷିକା ସତ୍ତ୍ୱବୃତ୍ତିର୍ଜାନାତିନାଽଭି-ଧୀୟତେ । ନ ଋଚେତନସ୍ୟ ପ୍ରଧାନସ୍ୟ ସାକ୍ଷିତ୍ୱମସ୍ତି । ତସ୍ମାଦନୁପପନ୍ନଂ ପ୍ରଧାନସ୍ୟ ସର୍ବଜ୍ଞତ୍ୱମ୍ । (ଘ) ଯୋଗିନାନ୍ତୁ ଚେତନତ୍ୱାତ୍ ସତ୍ତ୍ୱୋତ୍କର୍ଷନିମିତ୍ତଂ ସର୍ବଜ୍ଞତ୍ୱମୁପପନ୍ନମିତ୍ୟୁ- ଦାହରଣମ୍ ।

**(୧୦) ଭାଷାଂତର-** (କ) ଶଙ୍କା-ପ୍ରଧାନ ଜ୍ଞାନର ଶକ୍ତିମତ୍ତ୍ୱ ହେଲେ ସର୍ବଜ୍ଞ କିପରି ହୁଏ ବୋଲି ଯାହା କୁହାଯାଇଛି, ସମାଧାନ- ତାହା ଠିକ୍ ନୁହେଁ । ପ୍ରଧାନ (କାରଣ)ର ଗୁଣଦ୍ୱାରା ଏହା ସମାନ ହେଲେ ସତ୍ତ୍ୱଧର୍ମଜ୍ଞାନ ଉତ୍ପତ୍ତି ହୁଏ ।

(ଖ) ଶଙ୍କା- ପ୍ରଧାନ ସର୍ବଜ୍ଞାନ ଶକ୍ତିମତ୍ତ୍ୱ ହେତୁ ସର୍ବଜ୍ଞ ହୋଇପାରେ । ସମାଧାନ- ଗୁଣସାମ୍ୟ ହେଲେ ସତ୍ତ୍ୱଗୁଣବ୍ୟାପାଶ୍ରୟ ଜ୍ଞାନ ଶକ୍ତିକୁ ନିର୍ଭର କରି ପ୍ରଧାନ ହିଁ ସର୍ବଜ୍ଞ ହେଉ । କାମ, ରଜ, ତମ ଗୁଣକୁ ବ୍ୟାପାଶ୍ରୟ ଜ୍ଞାନ ପ୍ରତିବନ୍ଧକ ଶକ୍ତିର ଆଶ୍ରୟ କରି ପ୍ରଧାନକୁ ଅଳ୍ପଜ୍ଞ କୁହାଯାଇପାରେ ।

(ଗ) ପୁନଶ୍ଚ ସାକ୍ଷୀରହିତ ସତ୍ତ୍ୱଗୁଣର ବୃତ୍ତିର 'ଜ୍ଞା' ଧାତୁ ଦ୍ୱାରା ବିଧାନ କରାଯାଇ ନାହିଁ । ଅଚେତନ ପ୍ରଧାନ ସାକ୍ଷୀ ନୁହେଁ । ତେଣୁ ପ୍ରଧାନର ସର୍ବଜ୍ଞତ୍ୱ ଅନୁପପନ୍ନ ଅଟେ ।

(ଘ) ଯୋଗୀମାନେ ଚେତନ ହେତୁ ସତ୍ତ୍ୱଗୁଣର ଉତ୍କର୍ଷର କାରଣ ସର୍ବଜ୍ଞତ୍ୱ ଠିକ୍ ଅଟେ । ତେଣୁ ଏଠାରେ ଉଦାହରଣଟି ଯୁକ୍ତି ସଙ୍ଗତ ନୁହେଁ ।

(୧୧) ମୂଳ- (କ) ଅଥପୁନଃ ସାକ୍ଷିନିମିତ୍ତମୀକ୍ଷିତୃତ୍ୱଂ ପ୍ରଧାନସ୍ୟ କଲ୍ପ୍ୟେତ, ଯଥାଗ୍ନିନିମିତ୍ତମୟଃପିଣ୍ଡାଦେର୍ଦଗ୍ଧୃତ୍ୱମ୍, ତଥା ସତି ଯନ୍ନିମିତ୍ତମୀକ୍ଷିତୃତ୍ୱଂ ପ୍ରଧାନସ୍ୟ ତଦେବ ସର୍ବଜ୍ଞଂ ମୁଖ୍ୟଂ ବ୍ରହ୍ମ ଜଗତଃ କାରଣମିତି ଯୁକ୍ତମ୍ । (ଖ) ଯତ୍ ପୁନରୁକ୍ତଂ ବ୍ରହ୍ମଣୋଽପି ନ ମୁଖ୍ୟଂ ସର୍ବଂଗ୍ୟତ୍ୱମୁପପଦ୍ୟତେ, ନିତ୍ୟଜ୍ଞାନକ୍ରିୟତ୍ୱେ ଜ୍ଞାନକ୍ରିୟାଂ ପ୍ରତି ସ୍ୱାତନ୍ତ୍ର୍ୟାସମ୍ଭବାଦିତି । (ଗ) ଅତ୍ରୋଚ୍ୟତେ-ଇଦଂ ତାବଦ୍ଭବାନ୍ପ୍ରଷ୍ଟବ୍ୟଃ । କଥଂ ନିତ୍ୟଜ୍ଞାନକ୍ରିୟତ୍ୱେ ସର୍ବଂଗ୍ୟତ୍ୱହାନିରିତି । ଯସ୍ୟ ହି ସର୍ବବିଷୟାବଭାସକ୍ଷମଂ ଜ୍ଞାନଂ ନିତ୍ୟମସ୍ତି, ସୋଽସର୍ବଜ୍ଞ ଇତି ବିପ୍ରତିଷିଦ୍ଧମ୍ । ଅନିତ୍ୟେ ହି ଜ୍ଞାନସ୍ୟ କଦାଚିଜ୍ଜାନାତି କଦାଚିନ୍ନ ଜାନାତୀତ୍ୟସର୍ବଜ୍ଞତ୍ୱମପି ସ୍ୟାତ୍, ନାସୌ ଜ୍ଞାନନିତ୍ୟତ୍ୱେ ଦୋଷୋଽସ୍ତି ।

**(୧୧) ଭାଷାଂତର-** (କ) ଯେଉଁଭଳି ଲୁହାପିଣ୍ଡରେ ଦଗ୍ଧତା ଅଗ୍ନିସଂଯୋଗ ଦ୍ୱାରା ସମ୍ଭବ ହୁଏ । ସେହିଭଳି ପ୍ରଧାନରେ ଈକ୍ଷିତୃତ୍ୱ ସାକ୍ଷୀ ନିମିତ୍ତକ ହୁଏ । ଏହିଭଳି ପ୍ରମାଣିତ କଲେ ପ୍ରଧାନର ଯେଉଁ ଈକ୍ଷିତୃତ୍ୱ ତାହାହିଁ ସର୍ବଜ୍ଞ ମୁଖ୍ୟ ସଂସାରର କାରଣ ଅଟେ ।

(ଖ) ଯାହା ପୁଣି କୁହାଯାଇଛି- ବ୍ରହ୍ମର ମୁଖ୍ୟସର୍ବଜ୍ଞତ୍ୱ ଉତ୍ପନ୍ନ ହୁଏ ନାହିଁ । ବ୍ରହ୍ମର ନିତ୍ୟଜ୍ଞାନକ୍ରିୟା ହେଲେ ଜ୍ଞାନକ୍ରିୟା ପ୍ରତି ଏହା ସ୍ୱତନ୍ତ୍ରତା ସମ୍ଭବ ନୁହେଁ ।

(ଗ) ତେଣୁ କୁହାଯାଇଛି ଯେ- ପ୍ରଥମେ ସେମାନଙ୍କୁ ପଚାରାଯାଉ ଯେ- ବ୍ରହ୍ମର ନିତ୍ୟଜ୍ଞାନକ୍ରିୟାକୁ ସ୍ୱୀକାର କଲେ କିପରି ସର୍ବଜ୍ଞତ୍ୱ ହାନି ହୁଏ ? ଯେଉଁ ବ୍ରହ୍ମର ପ୍ରକାଶ କରିବାର ସାମର୍ଥ୍ୟ ଅଛି ଏବଂ ଯାହାର ଜ୍ଞାନ ନିତ୍ୟ, ସେ ପୁଣି ଅସର୍ବଜ୍ଞ ହେବା ହିଁ ପରସ୍ପର ବିରୁଦ୍ଧ ଭାଷଣ । ଏହାକୁ ଅନିତ୍ୟ ବୋଲି ସ୍ୱୀକାର କଲେ 'କେତେବେଳେ ଜାଣେ, ନ ଜାଣେ' ଏପରି ଅସର୍ବଜ୍ଞତ୍ୱଜ୍ଞାନ ହୋଇପାରେ, ତେଣୁ ଜ୍ଞାନର ନିତ୍ୟତ୍ୱପକ୍ଷ ସ୍ୱୀକାର କଲେ କିଛି ଦୋଷ ହୁଏ ନାହିଁ ।

(୧୨) ମୂଳ- (କ) ଜ୍ଞାନନିତ୍ୟତ୍ୱେ ଜ୍ଞାନବିଷୟଃ ସ୍ୱାତନ୍ତ୍ରବ୍ୟପଦେଶୋ ନୋପପଦ୍ୟତେ ଇତି ଚେନ୍ନ ପ୍ରତତୌଷ୍ଣପ୍ରକାଶେଽପି ସବିତରି ଦହତି ପ୍ରକାଶୟତୀତି ସ୍ୱାତନ୍ତ୍ରବ୍ୟପଦେଶଦର୍ଶନାତ୍ । (ଖ) ନନୁ ସବିତୁର୍ଦାହ୍ୟପ୍ରକାଶ୍ୟ ସଂଯୋଗେ ସତି ଦହତି ପ୍ରକାଶୟତୀତି ବ୍ୟପଦେଶଃ ସ୍ୟାତ୍, ନ ତୁ ବ୍ରହ୍ମଣଃ ପ୍ରାଗୁତ୍ପତ୍ତେର୍ଜ୍ଞାନକର୍ମସଂଯୋଗୋଽସ୍ତୀତି ବିଷମୋ ଦୃଷ୍ଟାନ୍ତଃ । (ଗ) ନ, ଅସତ୍ୟପି କର୍ମଣି ସବିତା ପ୍ରକାଶୟତ ଇତି କର୍ତ୍ତୃତ୍ୱବ୍ୟପଦେଶଦର୍ଶନାତ୍ । ଏବମସତ୍ୟପି ଜ୍ଞାନକର୍ମଣି ବ୍ରହ୍ମଣଃ 'ତଦୈକ୍ଷତ' (ଛା ୬।୨।୩) ଇତି କର୍ତ୍ତୃତ୍ୱ ବ୍ୟପଦେଶୋପପତ୍ତେର୍ନ ବୈଷମ୍ୟମ୍ । କର୍ମାପେକ୍ଷାୟାଂ ତୁ ବ୍ରହ୍ମଣୀକ୍ଷିତୃତ୍ୱ-ଶ୍ରୁତୟଃ ସୁତରାମୁପପନ୍ନାଃ ।

**(୧୨)** ଭାଷାଂତର- (କ) ଜ୍ଞାନକୁ ନିତ୍ୟ ରୂପରେ ସ୍ୱୀକାର କଲେ ଜ୍ଞାନବିଷୟକ ବ୍ରହ୍ମରେ ସ୍ୱାତନ୍ତ୍ର୍ୟ ବ୍ୟପଦେଶ ହୁଏ ନାହିଁ ବୋଲି କହିବା ଠିକ୍ ନୁହେଁ, କାରଣ- ନିରନ୍ତର ସ୍ଥାୟି ଉଷ୍ଣତା ଓ ପ୍ରକାଶ ଦ୍ୱାରା ଯୁକ୍ତ ହୋଇଥିବା ସୂର୍ଯ୍ୟ ସ୍ୱତନ୍ତ୍ରଭାବରେ ପ୍ରକାଶ ପାଏ । ଏହି ପ୍ରକାରର ସ୍ୱତନ୍ତ୍ରଶବ୍ଦ ବ୍ୟବହାର କରାଯାଏ ।

(ଖ) ଯଦି କହିବ-ସୂର୍ଯ୍ୟର ଦାହ୍ୟ ଓ ପ୍ରାକାଶ୍ୟ ପଦାର୍ଥ ସହିତ ସଂଯୋଗ ହେଲେ ଜଳେ ଓ ପ୍ରକାଶ କରେ, ତାହେଲେ ଜଗତ ଉତ୍ପତ୍ତି ପୂର୍ବରୁ ବ୍ରହ୍ମଜ୍ଞାନର କର୍ମସହିତ ସଂପର୍କ ନାହିଁ ବୋଲି କହିବା ବିସଦୃଶ ଦୃଷ୍ଟାନ୍ତ ।

(ଗ) ତେଣୁ ଏହା ମଧ୍ୟ ଅଯୌକ୍ତିକ । କାରଣ- କର୍ମ ନଥାଇ 'ସୂର୍ଯ୍ୟ ପ୍ରକାଶ କରେ' ଏହି ବାକ୍ୟରେ ସୂର୍ଯ୍ୟଠାରେ କର୍ତ୍ତୃତ୍ୱ ବ୍ୟପଦେଶ ଦେଖାଯାଏ । ସେହିଭଳି ମଧ୍ୟ ଜ୍ଞାନକର୍ମ ନଥାଇ 'ତଦୈକ୍ଷତ' ଏହି ବାକ୍ୟ ଦ୍ୱାରା ବ୍ରହ୍ମର କର୍ତ୍ତୃତ୍ୱ ବ୍ୟପଦେଶ ଦେଖାଯିବାରୁ କୌଣସି ବିଷମତା ଜଣାପଡ଼େ ନାହିଁ । କର୍ମର ଅପେକ୍ଷା ବ୍ରହ୍ମଠାରେ ଈକ୍ଷଣକର୍ତ୍ତୃତ୍ୱ-ପ୍ରତିପାଦକ ବାକ୍ୟଗୁଡ଼ିକ ସ୍ୱଭାବତଃ ଉପପନ୍ନ ହୁଅନ୍ତି ।

(୧୩) ମୂଳ-(କ) କିଂ ପୁନସ୍ତତ୍କର୍ମ, ପ୍ରାଗୁତ୍ପତ୍ତେରୀଶ୍ୱରଂଜ୍ଞାନସ୍ୟ ବିଷୟୋ ଭବତୀତି ? (ଖ) ତତ୍ତ୍ୱାନ୍ୟତ୍ୱାଭ୍ୟାମନିର୍ବଚନୀୟେ ନାମରୂପେ ଅବ୍ୟାକୃତେ ବ୍ୟାଚିକୀର୍ଷିତେ ଇତି ବ୍ରୂମଃ । (ଗ) ଯତ୍ପ୍ରସାଦାଦ୍ଧି ଯୋଗିନାମପ୍ୟତୀତାନାଗତବିଷୟଂ ପ୍ରତ୍ୟକ୍ଷଂ ଜ୍ଞାନମିଚ୍ଛନ୍ତି ଯୋଗଶାସ୍ତ୍ର ବିଦଃ, କିମୁବକ୍ତବ୍ୟଂ ତସ୍ୟ ତସ୍ୟ ନିତ୍ୟସିଦ୍ଧସ୍ୟେଶ୍ୱରସ୍ୟ ସୃଷ୍ଟିସ୍ଥିତିସଂହୃତ ବିଷୟଂ ନିତ୍ୟଜ୍ଞାନଂ ଭବତୀତି । (ଘ) ଯଦପ୍ୟୁକ୍ତଂ ପ୍ରାଗୁତ୍ପତ୍ତେର୍ବ୍ରହ୍ମଣଃ ଶରୀରାଦିସମ୍ବନ୍ଧମନ୍ତରେଣେ କ୍ଷିତୃତ୍ୱମନୁପପନ୍ନମିତି, ନ ତଚ୍ଚୋଦ୍ୟମବତରତି ।, ସବିତୃପ୍ରକାଶବଦ୍ ବ୍ରହ୍ମଣୋ ଜ୍ଞାନସ୍ୱରୂପନିତ୍ୟତ୍ୱେ ଜ୍ଞାନସାଧନାପେକ୍ଷାନୁପପତ୍ତେଃ । (ଙ) ଅପି ଚଽବିଦ୍ୟାଦିମତଃ ସଂସାରିଣଃ ଶରୀରାଦ୍ୟପେକ୍ଷା ଜ୍ଞାନୋତ୍ପତ୍ତିଃ ସ୍ୟାତ୍, ନ ଜ୍ଞାନପ୍ରତିବନ୍ଧକାରଣରହିତସ୍ୟେଶ୍ୱରସ୍ୟ । ମନ୍ତ୍ରୌ ଚେମାବୀଶ୍ୱରସ୍ୟ ଶରୀରାଦ୍ୟ ନପେକ୍ଷତାମନବରଣଜ୍ଞାନତାଂ ଚ ଦର୍ଶୟତଃ-

(ଚ) ନ ତସ୍ୟ କାର୍ଯ୍ୟଂ କରଣଞ୍ଚ ବିଦ୍ୟତେ,
ନ ତତ୍ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ ।
ପରାଽସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ,
ସ୍ୱାଭାବିକୀ ଜ୍ଞାନବଳକ୍ରିୟା ଚ ॥ (ଶ୍ୱେତା ୬।୮)

(ଛ) ଅପାଣିପାଦୋ ଜବନୋ ଗ୍ରହୀତା,
ପଶ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା,
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ॥ (ଶ୍ୱେତା ୩।୯) ଇତି ଚ ।

**(୧୩) ଭାଷାଂତର** - (କ) ଯାହାର ଉତ୍ପତ୍ତି ପୂର୍ବରୁ ଈଶ୍ୱରଜ୍ଞାନ ଜଣାପଡ଼େ, ତାହାର କର୍ମ କଣ ?

(ଖ) ଯାହା ସତ୍ ଓ ଅସତ୍ ଦ୍ୱାରା ବିଲକ୍ଷଣ ଓ ଅନୀର୍ବଚନୀୟ, ସ୍ୱଂୟ ଅବ୍ୟାକୃତ (ଅବ୍ୟକ୍ତ) ହୋଇ ମଧ୍ୟ ଅନ୍ୟକୁ ବ୍ୟାକୃତ କରିବା ପାଇଁ କାମନା କରେ, ତାହା ହିଁ ନାମ, ରୂପସ୍ୱରୂପ କର୍ମବୋଲି ଆମ୍ଭେ କହୁ ।

(ଗ) କିନ୍ତୁ ଯୋଗଶାସ୍ତ୍ର ବିତ୍ମାନେ କହନ୍ତି ଯେ- ଯେଉଁ ଈଶ୍ୱରର ଅନୁଗ୍ରହରୁ ଯୋଗୀପୁରୁଷମାନଙ୍କୁ ଅତୀତ ଓ ଭବିଷ୍ୟତ ବିଷୟ ଗୁଡ଼ିକ ପ୍ରତ୍ୟେକ୍ଷଭାବରେ ଜଣାପଡ଼େ, ତାହା ନିତ୍ୟ, ସ୍ୱୟଂସିଦ୍ଧ, ଈଶ୍ୱର ସୃଷ୍ଟି, ସ୍ଥିତି ତଥା ସଂହାର ବିଷୟକ ଜ୍ଞାନ ନିତ୍ୟ ହୁଏ, ଏହି ବିଷୟ ପୁନର୍ବାର କହିବା କି ଆବଶ୍ୟକ ?

(ଘ) ଯଦି କୁହାଯାଏ- ଉତ୍ପତ୍ତିର ପୂର୍ବରୁ ଶରୀରାଦି ସହିତ ସମ୍ବନ୍ଧ ନ ଥାଇ ବ୍ରହ୍ମର ଈକ୍ଷଣକର୍ତ୍ତୃତ୍ୱ ଜାତ ହୁଏ ନାହିଁ । ତାହେଲେ ଏହି ପ୍ରକାର ଆକ୍ଷେପର ଅବକାଶ ନାହିଁ । କାରଣ-ବ୍ରହ୍ମର ଜ୍ଞାନସ୍ୱରୂପ ସୂର୍ଯ୍ୟର ପ୍ରକାଶ ଭଳି ନିତ୍ୟ ଅଟେ । ତେଣୁ ଏହି ଜ୍ଞାନନିମିତ୍ତ ସାଧନ ଅପେକ୍ଷା କରେନାହିଁ ।

(ଙ) କିନ୍ତୁ ଅବିଦ୍ୟାଯୁକ୍ତସଂସାରୀକୁ ଶରୀରାଦି ଅପେକ୍ଷା କରେ, ପରନ୍ତୁ ଜ୍ଞାନପ୍ରତିବନ୍ଧକ କାରଣବିହୀନଈଶ୍ୱରକୁ ଶରୀରାଦି ଅପେକ୍ଷା କରେ ନାହିଁ । କାରଣ- ନିମ୍ନଲିଖିତ ମନ୍ତ୍ରଦ୍ୱୟ ଈଶ୍ୱରକୁ ଶରୀରାଦିର ଅନପେକ୍ଷତା ଓ ଅନାବରଣଜ୍ଞାନତା ଦେଖାଉଛନ୍ତି । ଯଥା-

(ଚ) ''ଏହି ପରମାତ୍ମାର କାର୍ଯ୍ୟ (ଶରୀର), କରଣ (ଇନ୍ଦ୍ରିୟ) ନାହିଁ । କିନ୍ତୁ ଏହାର ସମାନ ବା ଅଧିକ କୌଣସି କାର୍ଯ୍ୟ ଦେଖାଯାଏ ନାହିଁ । ଏହି ଈଶ୍ୱରର ମାୟାରୂପ ପରାଶକ୍ତି ଦ୍ୱାରା ଜ୍ଞାନ, ବଳ, କ୍ରିୟା ଭେଦରେ ବିଭିନ୍ନ ରୂପର ବର୍ଣ୍ଣନା ବେଦରେ ଜଣାପଡ଼େ ।'

(ଛ) 'ଏହାର ହାତପାଦ୍ ନ ଥାଇ ସୁଦ୍ଧା ଅତି ଶୀଘ୍ର ଏବଂ ଗ୍ରହୀତା । ଆଖି ଓ କାନ ନଥାଇ ଦେଖେ ଓ ଶୁଣେ । ସେ ଜାଣେ, କିନ୍ତୁ ତାହାର ଜ୍ଞାପକ କିଏ ନାହିଁ ତାହାକୁ ମହାପୁରୁଷ ଓ ଅଗ୍ର ବୋଲି କହନ୍ତି' ।

(୧୪) ମୂଳ-(କ) ନନୁ ନାସ୍ତି ତାବଜ୍ଜ୍ଞାନ ପ୍ରତିବନ୍ଧକାରଣବାନୀଶ୍ୱରାଦନ୍ୟଃ ସଂସାରୀ । 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା ନାନ୍ୟୋଽତୋଽସ୍ତି ବିଜ୍ଞାତା' (ବୃହ-୩।୭।୨୩) ଇତିଶ୍ରୁତେଃ । ତତ୍ର କିମିଦମୁଚ୍ୟତେ-ସଂସାରିଣଃ ଶରୀରାଦ୍ୟପେକ୍ଷା ଜ୍ଞାନୋତ୍ପତ୍ତିର୍ନେ-ଶ୍ୱରସ୍ୟେତି ? (ଖ) ଅତ୍ରୋଚ୍ୟତେ- ସତ୍ୟମ୍ ନେଶ୍ୱରାଦନ୍ୟଃ ସଂସାରୀ, ତଥାପି ଦେହାଦିସଂଘାତୋପାଧିସମ୍ବନ୍ଧ ଇଷ୍ୟତ ଏବ, ଘଟକରକ ଗରିଗୁହାଦ୍ୟୁପାଧିସମ୍ବନ୍ଧ ଏବ ବ୍ୟୋମ୍ନଃ । ତତ୍କୃତଶ୍ଚ ଶବ୍ଦପ୍ରତ୍ୟୟ ବ୍ୟବହାରୋ ଲୋକସ୍ୟ ଦୃଷ୍ଟୋ ଘଟଚ୍ଛିଦ୍ରଂ କରକାଚ୍ଛି ଦ୍ରମିତ୍ୟାଦିରାକାଶାବ୍ୟତିରେକେଽପି, ତତ୍କୃତା ଚାକାଶେ ଘଟାକାଶାଦିଭେଦମିଥ୍ୟା- ବୁଦ୍ଧିର୍ଦୃଷ୍ଟା । ତଥେହାପି ଦେହାଦିସଂଘାତୋପାଧିସମ୍ବନ୍ଧବିବେକକୃତେଶ୍ୱରସଂସାରିଭେଦ- ମିଥ୍ୟାବୁଦ୍ଧିଃ ।

(୧୪) ଭାଷାଂତର- (କ) କିନ୍ତୁ ଈଶ୍ୱର-ବ୍ୟତିରିକ୍ତ, ଜ୍ଞାନଭିନ୍ନପ୍ରତିବନ୍ଧକ, କାରଣାତ୍ମକ କୌଣସି କାରଣ ନାହିଁ, କାରଣ- ''ଏହାଠାରୁ ଅନ୍ୟ କୌଣସି ଦ୍ରଷ୍ଟା ବା ବିଜ୍ଞାତା ନାହିଁ । ଏହି ବେଦବାକ୍ୟ । ତାହେଲେ ଜ୍ଞାନୋତ୍ପତ୍ତି ପାଇଁ ଜୀବର ଶରୀରାଦି ଅପେକ୍ଷା ଯୋଗ୍ୟ, କିନ୍ତୁ ଈଶ୍ୱର ଶରୀରକୁ ଅପେକ୍ଷା କରେ ନାହିଁ ବୋଲି କୁହାଯାଇଛି କିପରି ?



(ଖ) ସମାଧାନ- ଏହା ସତ୍ୟ ଅଟେ, କାରଣ-ଈଶ୍ୱରଭିନ୍ନ ଅନ୍ୟସଂସାରୀ ନାହିଁ । କିନ୍ତୁ ଯେପରି ଘଟ, କମଣ୍ଡଳୁ, ପର୍ବତଗହ୍ୱରସମୂହର ଉପାଧି ସହିତ ଆକାଶର ସମ୍ବନ୍ଧ ଅଛି, ଯେପରି ଆକାଶାଦି ଭିନ୍ନ ନ ହୋଇ ଉପାଧିସମ୍ବନ୍ଧରେ ଘଟାକାଶ, କରକାଦି ଶବ୍ଦବ୍ୟବହାର ସଂସାରରେ ଦେଖାଯାଏ ଏବଂ ଉପାଧି ସମ୍ବନ୍ଧକୃତ ଘଟାକାଶାଦି ଭେଦରୂପ ଓ ମିଥ୍ୟାବୁଦ୍ଧି ଆକାଶରେ ଦେଖାଯାଏ, ସେହିପରି ମଧ୍ୟ ଦେହାଦିସଂଘାତରୂପ ଉପାଧିରହିତ ଅବିବେକ ଦ୍ୱାରା ଉତ୍ପନ୍ନ ହେଉଥିବା ଈଶ୍ୱର ଏବଂ ସଂସାରର ଭେଦରୂପ ମିଥ୍ୟାବୁଦ୍ଧି ଦେଖାଯାଏ ।

(୧୫) ମୂଳ- (କ) ଦୃଶ୍ୟତେ ଚାତ୍ମନ ଏବ ସତୋ ଦେହାଦିସଂଘାତେଽନାତ୍ମନ୍ୟାତ୍ମତ୍ୱାଭିନିବେଶୋ ମିଥ୍ୟାବୁଦ୍ଧି ମାତ୍ରେଣ ପୂର୍ବପୂର୍ବେଣ । ସତି ଚୈବଂ ସଂସାରିତ୍ୱେ ଦେହାଦ୍ୟପେକ୍ଷମୀକ୍ଷିତୃତ୍ୱମୁପପନ୍ନଂ ସଂସାରିଣଃ । (ଖ) ଯଦପ୍ୟୁକ୍ତଂ ପ୍ରଧାନସ୍ୟାନେକାତ୍ମକତ୍ୱାନ୍ମୃଦାଦିବତ୍କାରଣତ୍ୱୋପପତ୍ତିର୍ନାସଂହତସ୍ୟ ବ୍ରହ୍ମଣ ଇତି । (ଗ) ଯଥାତୁ ତର୍କେଣାପି ବ୍ରହ୍ମଣ ଏବ କାରଣତ୍ୱଂନିର୍ବୋ ଢୁଂ ଶକ୍ୟତେ, ନ ପ୍ରଧାନାଦୀନାଂ ତଥା ପ୍ରପଞ୍ଚୟିଷ୍ୟତି- 'ନ ବିଲକ୍ଷଣତ୍ୱାଦସ୍ୟ' (ବ୍ର ୨।୧।୪) ଇତ୍ୟେବମାଦିନା ।

**(୧୫) ଭାଷାନ୍ତର-** (କ) ସଂଘାତଦ୍ୱାରା ଅତିରିକ୍ତ ଆତ୍ମାର ଦେହାଦି ସଂଘାତରୂପ ଅନ୍ୟାତ୍ମା ଅପଦାର୍ଥରେ ଆତ୍ମତ୍ୱର ଅଭିନିବେଶ ପୂର୍ବ ପୂର୍ବ ମିଥ୍ୟା ବୁଦ୍ଧି ଦ୍ୱାରା ଦେଖାଯାଏ ଏବଂ ଏହି ପ୍ରକାର ସଂସାରିତ୍ୱର ସିଦ୍ଧ ହେଲେ ମଧ୍ୟ ସଂସାରିଠାରେ ଦେହାଦିକୁ ଅପେକ୍ଷା କରିଥିବା ଈକ୍ଷିତୃତ୍ୱ ଯୁକ୍ତ ଅଟେ ।

(ଖ) ପୂର୍ବରୁ ଯାହା କୁହାଯାଇଛି- ମୃତ୍ତିକାଦି ସମାନ ଅନେକାତ୍ମକ ହେଲେ ପ୍ରଧାନ ଜଗତର କାରଣ ହୋଇପାରେ; କିନ୍ତୁ ଏକାକୀ ବ୍ରହ୍ମ ରହିପାରେ ନାହିଁ । ପ୍ରଧାନ ବେଦବାକ୍ୟ ଦ୍ୱାରା ପ୍ରତିପାଦିତ ହୁଏ ନାହିଁ; କିନ୍ତୁ ଏହାଦ୍ୱାରା ନିରାକୃତ ହୁଏ ।

(ଗ) ଯେଉଁ ଯୁକ୍ତିଦ୍ୱାରା ବ୍ରହ୍ମ ଜଗତର କାରଣ; କିନ୍ତୁ ପ୍ରଧାନ କାରଣ ନୁହେଁ, ତାହାସବୁ 'ନ ବିଲକ୍ଷଣତ୍ୱାଦସ୍ୟ' ଏହି ସୂତ୍ରଦ୍ୱାରା ବିସ୍ତାର ପୂର୍ବକ କୁହାଯିବ ।

(୧) ମୂଳ-(କ) ଅତ୍ରାହ-ଯଦୁକ୍ତଂ ନାଚେତନଂ ପ୍ରଧାନଂ ଜଗତ୍ କାରଣମ୍, ଈକ୍ଷିତୃତ୍ୱଶ୍ରବଣାଦିତି, ତଦନ୍ୟଥାପ୍ୟୁପପଦ୍ୟତେ, ଅଚେତନେଽପି ଚେତନବଦୁପଚାରଦର୍ଶନାତ୍ । (ଖ) ଯଥା ପ୍ରତ୍ୟାସନ୍ନପତନତାଂ ନଦ୍ୟାଃ କୂଳସ୍ୟାଲକ୍ଷ୍ୟ କୂଳଂ ପିପତିଷତୀତ୍ୟଚେତନେଽପି କୂଳେ ଚେତନବଦୁପଚାରୋ ଦୃଷ୍ଟଃ, ତଦ୍ୱଦଚେତନେଽପି ପ୍ରଧାନେ ପ୍ରତ୍ୟାସନ୍ନସର୍ଗେ ଚେତନବଦୁପଚାରୋ ଭବିଷ୍ୟତ । (ଗ) 'ତଦୈକ୍ଷତ' ଇତି ।

ଯଥାଲୋକେ କଶ୍ଚିଚ୍ଚେତନଃ ସ୍ନା ତ୍ୱା ଭୁକ୍ତ୍ୱା ଚାପରାହ୍ଣେ ଗ୍ରାମଂ ରଥେନ ଗମିଷ୍ୟାମୀତୀକ୍ଷିତୃତ୍ୱାନନ୍ତରଂ ତଥୈବ ନିୟମେନ ପ୍ରବର୍ତ୍ତତେ, ତଥା ପ୍ରଧାନମପି ମହଦାଦ୍ୟା କାରେଣ ନିୟମେନ ପ୍ରବର୍ତ୍ତତେ, ଯସ୍ମାଚ୍ଚେତନବଦୁପଚର୍ଯ୍ୟତେ । (ଘ) କସ୍ମାତ୍‌ପୁନଃ କାରଣାଦ୍‌ବିହାୟ ମୁଖ୍ୟମୀକ୍ଷିତୃ ତ୍ୱ ମୌପଚାରିକଂ କଳ୍ପ୍ୟତେ ? 'ତତ୍ତେଜ ଐକ୍ଷତ', 'ଆପ ଏବ ଐକ୍ଷନ୍ତ' (ଛା ୬।୨।୩,୪) ଇତି ଚେତନୟୋରପ୍ୟପ୍ତେଜସୋଶ୍ଚେତ-ନବଦୁପଚାରଦର୍ଶନାତ୍ । (ଙ) ତସ୍ମାତ୍ ସତ୍ କର୍ତ୍ତୃକମପୀକ୍ଷଣମୌପଚାରିକମିତି ଗମ୍ୟତେ- 'ଉପଚାରପ୍ରାୟେ ବଚନାତ୍' ଇତି । ଏବଂ ପ୍ରାପ୍ତେଇଦଂ ସୂତ୍ରମାରଭ୍ୟତେ ।

**(୧) ଭାଷାଂତର-** ପୂର୍ବପକ୍ଷ -(କ) ପୂର୍ବକୁ କୁହାଯାଇଛି ଯେ- କାରଣ (ବ୍ରହ୍ମ)ରେ ଈକ୍ଷିତୃତ୍ୱ ଶ୍ରବଣ ହେଲେ ଅଚେତନ ପ୍ରଧାନ ଜଗତର କାରଣ ହୁଏ ନାହିଁ । ତାହା ଅନ୍ୟ ପ୍ରକାରରେ ସମ୍ଭବ ହୋଇପାରେ । କାରଣ-ଅଚେତନରେ ଗୌଣବୃତ୍ତି ଦ୍ୱାରା ଚେତନ ଭଳି ବ୍ୟବହାର ଦେଖାଯାଏ ।

(ଖ) ଉଦାହରଣ ସ୍ୱରୂପ- ଯେପରି ନଦୀର ତଟ ପ୍ରଦେଶ ନଦୀରେ ଭାସିଯିବା ଦେଖି ଅଚେତନ ତଟ ପ୍ରଦେଶରେ ଚେତନ ପଦାର୍ଥ ଭଳି ବ୍ୟବହାର କରାଯାଏ, ସେପରି ଅଚେତନ ପଦାର୍ଥଠାରେ ସୃଜନଶକ୍ତି ଆସିଲେ ଚେତନ ଭଳି ବ୍ୟବହାର ହେବ ।

(ଗ) ଯଥା- 'ତଦୈକ୍ଷତ' ସୂତ୍ରଦ୍ୱାରା ବର୍ଣ୍ଣିତ । ଯେପରି ସଂସାରରେ କୌଣସି ଜୀବ ସ୍ନାନ କରି ଖାଇ ଅପରାହ୍ଣରେ ଗ୍ରାମକୁ ଯାଏ, ସେହିପରି ଈକ୍ଷଣପରେ ତାଦୃଶ ନିୟମରେ ପ୍ରବୃତ୍ତ ହୁଏ । ସେହି ପ୍ରକାର ପ୍ରଧାନ ମଧ୍ୟ ମହଦାଦି ଆକାର ଦ୍ୱାରା ସ୍ୱଭାବତଃ ପ୍ରବୃତ୍ତ ହୁଏ । ତେଣୁ ଏଠାରେ ଚେତନର ଉପଚାର କରାଯାଏ ।

(ଘ) କିନ୍ତୁ ପ୍ରଧାନଠାରେ ମୁଖ୍ୟ ଈକ୍ଷିତୃତ୍ୱକୁ ପରିତ୍ୟାଗ କରି ଗୌଣକଳ୍ପନା କାହିଁକି କରାଗଲା ? ଯଦି ତୁମେ କୁହ ଯେ- 'ତେଜଦ୍ୱାରା ଦେଖାଗଲା' 'ଜଳଦ୍ୱାରା ଦେଖାଗଲା' ଏହି ପ୍ରକାର ଅଚେତନ ତେଜ ଓ ଜଳଠାରେ ଚେତନ ସଦୃଶ ଚେତନ ଉପଚାର କରାଯାଏ ।

(ଙ) ତେଣୁ ତାହା ସକର୍ତ୍ତୃକ ଈକ୍ଷଣ ମଧ୍ୟ ଔପଚାରିକ ଭଳି ଜଣାପଡ଼େ । କାରଣ- ଉପଚାର ପ୍ରଚୁର ପ୍ରକରଣରେ 'ଉପଚାରପ୍ରାୟେ ବଚନାତ୍' ସୂତ୍ର ଅଛି । ଅର୍ଥାତ୍- ଯେଉଁ ପ୍ରକରଣରେ ଗୌଣ ଅର୍ଥ ଅଛି, ସେଠାରେ ଈକ୍ଷଣ ହିଁ ଗୌଣ ଅଟେ । ଏପରି ସ୍ଥଳରେ ସୂତ୍ର ଆରମ୍ଭ କରାଯାଇଛି-



**गौणश्चेन्नात्मशब्दात् ॥ ६ ॥**

## (୨) ଗୌଣଶ୍ଚେନ୍ନାତ୍ମଶବ୍ଦାତ୍ ୧।୧।୬

ଗୌଣଃ ଚେତନ-ପ୍ରଧାନଠାରେ ଈକ୍ଷିତୃତ୍ୱଶବ୍ଦ ଗୌଣ ନୁହେଁ, ଆତ୍ମଶବ୍ଦାତ୍ - କାରଣ- 'ଏତଦାତ୍ମ୍ୟମ୍' ଏହି ବେଦବାକ୍ୟରେ ଜଗତ୍ କାରଣଠାରେ ଆତ୍ମଶବ୍ଦର ପ୍ରୟୋଗ କରାଯାଇଛି । ତେଣୁ ଚେତନ ହିଁ ଜଗତର କାରଣ ଅଟେ ।

(୩) ମୂଳ- (କ) ଯଦୁକ୍ତଂ ପ୍ରଧାନମଚେତନଂ ସଚ୍ଛବ୍ଦବାଚ୍ୟଂ ତସ୍ମିନ୍ନୌପଚାରିକ ଈକ୍ଷତିଃ, ଅପ୍ତେଜସୋରେବେତି । ତଦସତ୍, କସ୍ମାତ୍ ? (ଖ) ଆତ୍ମଶବ୍ଦାତ୍ । 'ସଦେବ ସୋମ୍ୟେଦମଗ୍ର ଆସୀତ୍', ଇତ୍ୟୁପକ୍ରମ୍ୟ 'ତଦୈକ୍ଷତ ତତ୍ତେଜୋଽସୃଜତ' (ଛାନ୍ଦୋ ୬।୨।୧,୩) ଇତି ଚ ତେଜୋଽବନ୍ନାନାଂ ସୃଷ୍ଟିମୁକ୍ତ୍ୱା ତଦେବଂ ପ୍ରକୃତଂ ସଦୀକ୍ଷିତୃ, ତାନି ଚ ତେଜୋଽବନ୍ନାନି, ଦେବତାଶବ୍ଦେନ ପରାମୃଶ୍ୟାହ- 'ସେୟଂ ଦେବତୈକ୍ଷତ ହନ୍ତାହମିମାସ୍ତିସ୍ରୋ ଦେବତା ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣି', (ଛା ୬।୩।୨) ଇତି । (ଗ) ତତ୍ର ଯଦି ପ୍ରଧାନମଚେତନଂ ଗୁଣବୃତ୍ତ୍ୟେକ୍ଷିତୃ କଲ୍ପ୍ୟେତ, ତଦେବ ପ୍ରକୃତିତ୍ୱାତ୍ସେୟଂ ଦେବତେତି ପରାମୃଶ୍ୟେତି ନ ତଦା ଜୀବାତ୍ମଶବ୍ଦେନାଭିଦଧ୍ୟାତ୍ ।

**(୩) ଭାଷାଂତର-** (କ) ପୂର୍ବକଥିତାନୁସାରେ -ପ୍ରଧାନ ହେଉଛି -ଅଚେତନ, ସତ୍‌ଶବ୍ଦବାଚ୍ୟ, ତାହାଠାରେ ଜଳ ଓ ତେଜ ଇତ୍ୟାଦି 'ଈକ୍ଷ' ଧାତୁର ପ୍ରୟୋଗ ଔପଚାରିକ ଅଟେ । କିନ୍ତୁ ଏହା ସତ୍ୟ ନୁହେଁ । କାହିଁକି ?

(ଖ) ଆତ୍ମଶବ୍ଦ ପ୍ରୟୋଗ ହେତୁ ।

'ହେ ସୌମ୍ୟ ! ପ୍ରାଗବସ୍ଥାରେ କେବଳ ସତ୍ ଥିଲା,' ଏହି ବାକ୍ୟଠାରୁ ଆରମ୍ଭ କରି 'ସେ ଦେଖିଲା ସେ ତେଜ ଉତ୍ପନ୍ନ କଲା' ଏହି ପ୍ରକାର ତେଜ, ଜଳ, ଅନ୍ନର ସୃଷ୍ଟି କହି ଏହି ଈକ୍ଷିତା ପ୍ରକୃତରେ ସତ୍ ଓ ତାହାର ତେଜ, ଜଳ ଓ ଅନ୍ନ ଇତ୍ୟାଦି ଦେବତା ଶବ୍ଦରେ ପରାମର୍ଶ କରି କହିଲା- 'ଏହି ନାମଧେୟ ଦେବତା ପ୍ରଭୃତି ଜୀବାତ୍ମା ରୂପରେ ଏହି ଦେବତାତ୍ରୟଠାରେ ପ୍ରବେଶ କରି ନାମ ଓ ରୂପକୁ ଅଭିବ୍ୟକ୍ତ କରିବା ଦେଖେ' ବୋଲି କୁହାଯାଇଛି ।

(ଗ) ସେଠାରେ ଯଦି ଅଚେତନ ପ୍ରଧାନକୁ ଗୌଣ ବୃତ୍ତି ଦ୍ୱାରା ଈକ୍ଷଣ କର୍ତ୍ତା ରୂପରେ ସ୍ୱୀକାର କରାଯାଏ, ତାହାଲେ ତାହା ପ୍ରକୃତ ହେତୁ 'ସେୟଂ ଦେବତା' ଏହି ବାକ୍ୟର ପରାମର୍ଶ ହୋଇପାରେ । ତେଣୁ ଦେବତା ଜୀବାତ୍ମା ଶବ୍ଦଦ୍ୱାରା ଅଭିଧାନ ହୁଏ ନାହିଁ ।

(୪) ମୂଳ- (କ) ଜୀବୋ ନାମ ଚେତନଃ ଶରୀରାଧ୍ୟକ୍ଷଃ ପ୍ରାଣାନାଂ ଧାରୟିତା, ତତ୍‌ପ୍ରସିଦ୍ଧେ ନିର୍ବଚନାଚ୍ଚ । (ଖ) ସ କଥମଚେତନସ୍ୟ ପ୍ରଧାନସ୍ୟାତ୍ମା ଭବେତ୍ ? ଆତ୍ମା ହି ନାମ ସ୍ୱରୂପମ୍ । ନାଚେତନସ୍ୟ ପ୍ରଧାନସ୍ୟ ଚେତନୋ ଜୀବଃ ସ୍ୱରୂପଂ ଭବିତୁମର୍ହତି । ଅଥ ତୁ ଚେତନଂ ବ୍ରହ୍ମ ମୁଖ୍ୟମୀକ୍ଷିତୃ ପରଗୃହ୍ୟତେ । (ଗ) ତସ୍ୟ ଜୀବବିଷୟଃ ଆତ୍ମଶବ୍ଦପ୍ରୟୋଗଃ ଉପପଦ୍ୟତେ । ତଥା 'ସ ଯ ଏଷୋଽଣିମୈତଦାତ୍ମ୍ୟମିଦଂ ସର୍ବଂ ତତ୍‌ସତ୍ୟଂ ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ' (ଛା ୬।୧୪।୩) ଇତ୍ୟତ୍ର 'ସ ଆତ୍ମା' ଇତି ପ୍ରକୃତଂ ସଦଣିମାନମାତ୍ମାନମାତ୍ମ ଶବ୍ଦେନୋପଦିଶ୍ୟ 'ତତ୍ତ୍ୱମସିଶ୍ୱେତକେତୋ' ଇତି ଚେତନସ୍ୟ ଶ୍ୱେତକେତୋରାତ୍ମତ୍ୱେନୋପଦିଶତି । (ଘ) ଅପ୍ତେଜସୋସ୍ତୁ ବିଷୟତ୍ୱାଦଚେତନତ୍ୱମ୍, ନାମରୂପବ୍ୟାକରଣାଦୌ ଚ ପ୍ରଯୋଜ୍ୟ ତ୍ୱେନୈବ ନିର୍ଦ୍ଦେଶାତ୍ । (ଙ) ନ ଚାତ୍ମଶବ୍ଦବତ୍ କିଞ୍ଚନ୍ ମୁଖ୍ୟତ୍ୱେ କାରଣମସ୍ତୀତି ଯୁକ୍ତଂ କୂଳବଦ୍‌ଗୌଣତ୍ୱମୀକ୍ଷିତୃତ୍ୱସ୍ୟ । ତୟୋରପି ଚ ସଦଧିଷ୍ଠିତତ୍ୱାପେକ୍ଷମେବେ-କ୍ଷତୃତ୍ୱମ୍ । ସତସ୍ତ୍ୱାତ୍ମାଶବ୍ଦତ୍ୱାନ୍ନ ଗୌଣମିକ୍ଷିତୃତ୍ୱମିତ୍ୟୁକ୍ତମ୍ ।

(୪) **ଭାଷାଂତର-** (କ) ଜୀବ ହିଁ ଚେତନ ଶରୀରାଧ୍ୟକ୍ଷ, ଏବଂ ପ୍ରାଣକୁ ଧାରଣ କରିଛି । ସେ ଲୋକ ପ୍ରସିଦ୍ଧ ଏବଂ ଅନିର୍ବଚନୀୟ ।

(ଖ) ସେ ଚେତନ ଆତ୍ମା କିପରି ଅଚେତନ ପ୍ରଧାନର ଆତ୍ମା ହୋଇପାରେ ? ଆତ୍ମାନାମ ସ୍ୱରୂପ । ଚେତନଜୀବ ଅଚେତନ ପ୍ରଧାନର ସ୍ୱରୂପ ହୁଏ ନାହିଁ । ତେଣୁ ଚେତନ ବ୍ରହ୍ମ ହେଉଛି ମୁଖ୍ୟ ଓ ଈକ୍ଷିତୃ ।

(ଗ) ତାହାର ଜୀବ ବିଷୟକ ଆତ୍ମାଶବ୍ଦର ପ୍ରୟୋଗ ଠିକ୍ ଅଟେ । ଯେପରି 'ହେ ଶ୍ୱେତକେତୁ ଏହା ସଦ୍‌ରୂପ, ଅତି ସୂକ୍ଷ୍ମ, ଏତଦ୍ରୂପ ସବୁ ସତ୍ୟ ଆତ୍ମା ଅଟେ, ଯାହାକି ତୁ ନିଜେ'- ଏହି ପ୍ରକାର ବେଦବାକ୍ୟରେ ଚେତନଶ୍ୱେତକେତୁକୁ ଆତ୍ମଶବ୍ଦଦ୍ୱାରା ଉପଦେଶ କରୁଛି ।

(ଘ) ଜଳ ଓ ତେଜରେ ଏହା ବିଷୟତା ହେବାରୁ ଏହା ଅଚେତନ, ନାମରୂପକୁ ସୃଷ୍ଟି କରିବାରେ ଜଳ ଓ ତେଜର ପ୍ରଯୋଜ୍ୟ ରୂପରେ ନିର୍ଦ୍ଦେଶ ହୁଏ ।

(ଙ) କିନ୍ତୁ ଆତ୍ମଶବ୍ଦ ଭଳି ଜଳ ଓ ତେଜର ଈକ୍ଷିତୃତ୍ୱ ନଦୀତଟ ମୃତ୍ତିକା ଭଳି ଗୌଣ ଅଟେ । ଏହି ଦୁଇଟିର ଈକ୍ଷିତୃତ୍ୱ ଲକ୍ଷଣାବୃତ୍ତିଦ୍ୱାରା ସଦ୍‌ରୂପ ଅଧିଷ୍ଠାନକୁ ଅପେକ୍ଷା କରେ । ତେଣୁ ଆତ୍ମଶବ୍ଦର ପ୍ରୟୋଗର କାରଣ ସତ୍‌ର ଈକ୍ଷିତୃତ୍ୱ ଗୌଣ ନୁହେଁ ।

(୧) ମୂଳ-(କ) ଅଥୋଚ୍ୟତେ-ଅଚେତନେଽପି ପ୍ରଧାନେ ଭବତ୍ୟାତ୍ମଶବ୍ଦଃ ଆତ୍ମନଃ ସର୍ବାର୍ଥକାରିତ୍ୱାତ୍ । ଯଥା ରାଜ୍ଞଃ ସର୍ବାର୍ଥକାରିଣି ଭୃତ୍ୟେ ଭବତ୍ୟାତ୍ମଶବ୍ଦୋ ମମାତ୍ମା ଭଦ୍ରସେନ ଇତି । (ଖ) ପ୍ରଧାନଂ ହି ପୁରୁଷସ୍ୟାତ୍ମନୋ ଭୋଗାପବର୍ଗୌ କୁର୍ବଦୁ ପକରୋତି, ରାଜ୍ଞ ଏବ ଭୃତ୍ୟଃ ସନ୍ଧିବିଗ୍ରହାଦିଷୁ ବର୍ତ୍ତମାନଃ ଅଥୈବୈକ ଏବାତ୍ମଶବ୍ଦଶ୍ଚେତନାଚେତନ-ବିଷୟୋ ଭବିଷ୍ୟତି ଭୂତାତ୍ମେନ୍ଦ୍ରିୟାତ୍ମେତି ଚ ପ୍ରୟୋଗଦର୍ଶନାତ୍ । ଯଥୈକ ଏବ ଜ୍ୟୋତିଃଶବ୍ଦଃ କ୍ରତୁଜ୍ୱଳନବିଷୟଃ । (ଗ) ତତ୍ର କୁତ ଏତ ଦାତ୍ମଶବ୍ଦାଦୀକ୍ଷତେରଗୌଣତ୍ୱମିତି । ଅତଃ ଉତ୍ତରଂ ପଠତି-

**(୧) ଭାଷାଂତର-** (କ) ଶଙ୍କା-ଯଦି କୁହାଯାଏ-ଯେପରି ରାଜାଙ୍କର ସମସ୍ତ କାର୍ଯ୍ୟ ସଫଳ କରୁଥିବା ଭୃତ୍ୟମାନଙ୍କର ପାଖରେ 'ଭଦ୍ରସେନ ମୋର ଆତ୍ମା' ଏହି ପ୍ରକାର ଆତ୍ମଶବ୍ଦର ପ୍ରୟୋଗ ହୁଏ । ସେହିପରି ଅଚେତନପ୍ରଧାନଠାରେ ଆତ୍ମଶବ୍ଦର ପ୍ରୟୋଗ ହୁଏ, କାରଣ-ଆତ୍ମାର ସର୍ବକାର୍ଯ୍ୟ ସିଦ୍ଧ ନିମିତ୍ତ ପ୍ରଧାନ ଆବଶ୍ୟକ ।

(ଖ) ଯେପରି ରାଜାଙ୍କର ସର୍ବବିଗ୍ରହାଦି କାର୍ଯ୍ୟରେ ଭୃତ୍ୟ ଉପସ୍ଥିତ ରହେ । ସେପରି ପୁରୁଷ ଓ ଆତ୍ମାର ଭୋଗ ଓ ଅପବର୍ଗ କରିବା ପାଇଁ ପ୍ରଧାନ ଉପକାର କରେ ଅଥବା ଯେପରି ଜ୍ୟୋତିଃଶବ୍ଦ ଅଗ୍ନି ଓ ଯଜ୍ଞଶବ୍ଦରେ ପ୍ରଯୁଜ୍ୟ ହୁଏ, ସେପରି ଆତ୍ମଶବ୍ଦ ଚେତନ ଓ ଅଚେତନ ବସ୍ତୁରେ ପ୍ରଯୁକ୍ତ ହୁଏ । କାରଣ-ଭୂତାତ୍ମା, ଇନ୍ଦ୍ରିୟାତ୍ମା ବୋଲି ପ୍ରୟୋଗ କରିବାର ଦେଖାଯାଏ ।

(ଗ) ତେଣୁ କେବଳ ଆତ୍ମଶବ୍ଦର ପ୍ରୟୋଗଦ୍ୱାରା ଈକ୍ଷତି (କ୍ରିୟା) ଶବ୍ଦ କିପରି ମୁଖ୍ୟ ବୋଲି ସ୍ୱୀକାର କରାହେଉଛି । ତାହାର ଉତ୍ତର ହେଉଛି ।

**तन्निष्ठस्य मोक्षोपदेशात् ॥ ७ ॥**

## (୨) ତନ୍ନିଷ୍ଠସ୍ୟ ମୋକ୍ଷୋପଦେଶାତ୍ ୧।୧।୭

ତନ୍ନିଷ୍ଠସ୍ୟ-ସତ୍ ପଦାର୍ଥରେ ରହିଥିବା ଚେତନ ପୁରୁଷ ନିମିତ୍ତ, ମୋକ୍ଷୋପଦେଶାତ୍ ମୋକ୍ଷର ଉପଦେଶ ଦିଆଯାଇଛି ।

(୩) ମୂଳ-(କ) ନ ପ୍ରଧାନମଚେତନମାତ୍ମଶବ୍ଦାଲମ୍ବନଂ ଭବିତୁମର୍ହତି, 'ସ ଆତ୍ମା' ଇତି ପ୍ରକୃତଂ ସଦଣିମାନାଦାୟ 'ତତ୍ତ୍ୱମସି ଶ୍ୱେତକେତୋ', (ଛା ୬।୮।୭), ଚେତସ୍ୟ ଶ୍ୱେତକେତୋର୍ମୋକ୍ଷୟ ତବ୍ୟସ୍ୟ ତନ୍ନିଷ୍ଠାମୁପଦିଶ୍ୟ 'ଆଚାର୍ଯ୍ୟବାନ୍ ପୁରୁଷୋ ବେଦ, ତସ୍ୟ ତାବଦେବ ଚିରଂ ଯାବନ୍ ବିମୋକ୍ଷେଽଥ ସମ୍ପତ୍ସ୍ୟେ', (ଛା ୬।୨୪।୨) ଇତି ମୋକ୍ଷୋପଦେଶାତ୍ । (ଖ) ଯଦି ହ୍ୟଚେତନଂ ପ୍ରଧାନଂ ସଚ୍ଛବ୍ଦବାଚ୍ୟଂ ତଦସୀତି

ଗ୍ରାହୟେନ୍ ମୁମୁକ୍ଷୁଂ ଚେତନଂ ସନ୍ତମଚେତ ନୋ଼ଽସୀତି, ତଦା ବିପରୀତବାଦିଶାସ୍ତ୍ରଂ ପୁରୁଷସ୍ୟାନଥାୟେତ୍ୟପ୍ରମାଣଂ ସ୍ୟାତ୍ । ନ ତୁ ନିର୍ଦୋଷଶାସ୍ତ୍ରମପ୍ରମାଣଂ କଳ୍ପୟିତୁଂ ପୁକ୍ତମ୍ । (ଗ) ଯଦି ଝଜ୍ଞସ୍ୟ ସତୋ ମୁମୁକ୍ଷୋରଚେତନମନାତ୍ମାନମାମେ ତ୍ୟୁପଦିଶେତ୍ପ୍ରମାଣଭୂତଂ ଶାସ୍ତ୍ରମ୍; ସ ଶ୍ରଦ୍ଧାଧାନ ତୟାନ୍ଧଗୋଲକାଙ୍ଗୁଳନ୍ୟାୟେନ ତଦାତ୍ମଦୃଷ୍ଟି ନ ପରିତ୍ୟଜେତ୍ । (ଘ) ତଦ୍‌ବ୍ୟତିରିକ୍ତଂ ଝତ୍ମାନଂ ନ ପ୍ରତିପଦ୍ୟେତ, ତଥା ସତି ପୁରୁଷାର୍ଥାତ୍ ବିହନ୍ୟେତାନର୍ଥଂ ନ ରଚ୍ଛେତ୍ ।

**(୩) ଭାଷାଂତର-** (କ) ଅଚେତନ ପ୍ରଧାନ ଆତ୍ମଶବ୍ଦର ଆଲମ୍ବନ ହୋଇପାରେ ନାହିଁ । କାରଣ- 'ସେ ଆତ୍ମା' ଏହି ପ୍ରକାର ପ୍ରକୃତ ସତ୍‌ସୂକ୍ଷ୍ମକୁ ନେଇ 'ତତ୍ତ୍ୱମସି ଶ୍ୱେତକେତୁ' ଏହି ପ୍ରକାର ଶ୍ରୁତିବାକ୍ୟ ମୋକ୍ଷପରକ ଚେତନ ଶ୍ୱେତକେତୁକୁ 'ତୁମେ ସତ୍‌ସ୍ୱରୂପ' ଏହି ପ୍ରକାର ଉପଦେଶ ଦେଇ 'ଆଚାର୍ଯ୍ୟବାନ୍ ପୁରୁଷ ସଦ୍ରୂପ ବ୍ରହ୍ମକୁ ଜାଣେ, ଏହି ଆତ୍ମନିଷ୍ଠ ପୁରୁଷ ମୁକ୍ତ ହେଲେ ଏତେ ସମୟ ବିଳମ୍ବ ହୁଏ ଯେ ଯେପର୍ଯ୍ୟନ୍ତ ଏହି ଦେହମୁକ୍ତ ହୋଇନଥିବ, ସେ ପର୍ଯ୍ୟନ୍ତ ଏହି ସତ୍‌ସଂପନ୍ନ ହୋଇଥିବ' ଏହି ପ୍ରକାର ମୋକ୍ଷୋପଦେଶ ଦିଆଗଲା ।

(ଖ) ଯଦି ଅଚେତନ ପ୍ରଧାନକୁ ସତ୍ ଶବ୍ଦବାଚ୍ୟ ବୋଲି କୁହାଯାଏ; ତେବେ ଶାସ୍ତ୍ର ଚେତନ ମୁମୁକ୍ଷୁକୁ 'ଅଚେତନ ତୁମେ' ବୋଲି ଗ୍ରହଣ କରିବ । ଏହାଦ୍ୱାରା ଶାସ୍ତ୍ର ଅପ୍ରମାଣିକ ବୋଲି ଆପତ୍ତି ହୋଇପାରେ । ପରନ୍ତୁ ଏହି ପ୍ରକାର ନିର୍ଦୋଷଶାସ୍ତ୍ରରେ ଅପ୍ରମାଣତ୍ୱର କଳ୍ପନା ଠିକ୍ ନୁହେଁ ।

(ଗ) ଯଦି ପ୍ରମାଣ ଭୂତଶାସ୍ତ୍ର ଅଜ୍ଞମୁମୁକ୍ଷୁକୁ 'ଅଚେତନ ଅନାତ୍ମା ପଦାର୍ଥକୁ ଆତ୍ମା ବୋଲି ଉପଦେଶ ଦେଇପାରେ, ତାହେଲେ ଅନ୍ଧଗୋଳକାଙ୍ଗୁଳନ୍ୟାୟରେ ଶ୍ରଦ୍ଧାବାନ୍ ପୁରୁଷ ଏହି ଉପଦେଶଦ୍ୱାରା ଅନାତ୍ମ ପଦାର୍ଥରେ ସ୍ପଷ୍ଟ ଆତ୍ମ ଦୃଷ୍ଟିକୁ କଦାପି ତ୍ୟାଗ କରିପାର ନାହିଁ ।

(ଘ) ଅନାତ୍ମପଦାର୍ଥ ଭିନ୍ନ ଆତ୍ମାକୁ ସ୍ପର୍ଶ କରେ ନାହିଁ । ଏହିପ୍ରକାର ଏହି ପୁରୁଷ ନିଜେ ପରମପୁରୁଷାର୍ଥଠାରୁ ଦୂରେଇ ଯାଏ ଏବଂ ଅନର୍ଥକ ପ୍ରାପ୍ତ କରେ ।

(୪) ମୂଳ-(କ) ତସ୍ମାଦ୍ୟଥା ସ୍ୱର୍ଗାଦ୍ୟର୍ଥିନୋଽଗ୍ନିହୋତ୍ରାଦିସାଧନଂ ଯଥାଭୂତମୁପଦିଶତି । ତଥା ମୁମୁକ୍ଷୋରପି 'ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ' ଇତି ଯଥାଭୂତମେବାତ୍ମାନମୁପଦିଶତୀତି ଯୁକ୍ତମ୍ । (ଖ) ଏବଞ୍ଚ ସତି ତପ୍ତପରଶୁଗ୍ରହଣମୋ-କ୍ଷଦୃଷ୍ଟାନ୍ତେନ ସତ୍ୟାଭିସନ୍ଧସ୍ୟ ମୋକ୍ଷୋପଦେଶ ଉପପଦ୍ୟତେ, ଅନ୍ୟଥା ସଦାତ୍ମତ-ତ୍ତ୍ୱୋପଦେଶେ 'ଅହମୁକ୍‌ଥମସ୍ମୀତି ବିଦ୍ୟାତ୍' (ଐ.ଆ ୨।୧।୨୬) ଇତିବତ୍ ସଂପନ୍ମାତ୍ରମିଦମନିତ୍ୟଫଳଂ ସ୍ୟାତ୍ । ତତ୍ର



ମୋକ୍ଷୋପଦେଶୋ ନୋପପଦ୍ୟେତ । ତସ୍ମାନ୍ନ ସଦଣିମନ୍ୟାତ୍ମଶବ୍ଦସ୍ୟ ଗୌଣତ୍ୱମ୍ । (ଗ) ଭୃତ୍ୟେଷୁ ସ୍ୱାମୀଭୃତ୍ୟଭେଦସ୍ୟ ପ୍ରତ୍ୟକ୍ଷତ୍ୱାଦୁପପନ୍ନୋ ଗୌଣ ଆତ୍ମଶବ୍ଦୋ ମମାତ୍ମା ଭଦ୍ରସେନ ଇତି । ଅପି ଚ କ୍ୱଚିଦ୍‌ଗୌଣଶବ୍ଦୋ ଦୃଷ୍ଟ ଇତି ନୈତାବତା ଶବ୍ଦପ୍ରମାଣକେଽର୍ଥେଗୌଣୀ କଳ୍ପନା ଯୋଗ୍ୟା, ସର୍ବତ୍ରାନାଶ୍ୱାସପ୍ରସଙ୍ଗାତ୍ । (ଘ) ଯଭୂକ୍ତମ୍-ଚେତନା-ଚେତନୟୋଃ ସାଧାରଣ ଆତ୍ମଶବ୍ଦଃ କ୍ରତୁଜ୍ୱଳୟୋରିବ ଜ୍ୟୋତିଃଶବ୍ଦ. ଇତି, ତନ୍ନ ଅନେକପଦାର୍ଥତ୍ୱ-ସ୍ୟାନ୍ୟାର୍ଯ୍ୟତ୍ୱାତ୍ । ତସ୍ମାଚ୍ଚେତନବିଷୟ ଏବ ମୁଖ୍ୟ ଆତ୍ମଶବ୍ଦଶ୍ଚେତନତ୍ୱୋ ପଚାରାଦ୍‌ଭୂତାଦିଷୁ ପ୍ରଯୁଜ୍ୟତେ ଭୂତାତ୍ମେନ୍ଦ୍ରିୟାତ୍ମେତି ଚ । (ଙ) ସାଧାରଣତ୍ୱେଽପ୍ୟାତ୍ମସ୍ୟ ନ ପ୍ରକରଣମୁପପଦମ୍ବା କିଞ୍ଚିନ୍ନିଶ୍ଚାୟକମନ୍ତରେଣାନ୍ୟ-ତରବୃତ୍ତିତାଂ ନିର୍ଦ୍ଧାରୟିତୁଂ ଶକ୍ୟତେ ।

**(୪) ଭାଷାଂତର-** (କ) ସେହି ହେତୁ ସ୍ୱର୍ଗକୁ ପାଇବାକୁ ଇଚ୍ଛୁକ ଯେପରି ଅଗ୍ନିହୋତ୍ରାଦି ଉପଯୁକ୍ତ ସାଧନଗୁଡ଼ିକୁ ଶାସ୍ତ୍ର ଉପଦେଶ ଦିଏ, ସେହିପରି ମୁମୁକ୍ଷୁ ନିମିତ୍ତ 'ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ !' ଏହିପରି ଯଥାର୍ଥ୍ୟଜ୍ଞାନ ଆତ୍ମାକୁ ଉପଦେଶ ଦିଏ ।

(ଖ) ଏହିପରି ମଧ୍ୟ ତପ୍ତଫାର୍ଶାକୁ ସ୍ପର୍ଶକରି ସତ୍ୟନିଷ୍ଠ ପୁରୁଷ ଯେପରି ଚୋରି କାର୍ଯ୍ୟରୁ ରକ୍ଷା ପାଏ, ସେହିପରି ମଧ୍ୟ ସତ୍ୟନିଷ୍ଠ ମୁମୁକ୍ଷୁ ମଧ୍ୟ ଶାସ୍ତ୍ରର ମୋକ୍ଷୋପଦେଶ ପ୍ରତିଷ୍ଠା କରେ । ନୋଚେତ୍ ସଦାତ୍ମତତ୍ତ୍ୱୋପଦେଶକୁ ଗୌଣରୂପରେ ଗ୍ରହଣ କଲେ 'ଅହମୁକ୍‌ଥ' ଅର୍ଥାତ୍ ମୁଁ ପ୍ରାଣ, ଏହାଜାଣ' ଏହିପ୍ରକାର କେବଳ ସମ୍ପଦ୍ ରୂପ ଓ ଅନିତ୍ୟଫଳ ହୋଇପାରେ । ଏହାପାଇଁ ପରମସୂକ୍ଷ୍ମ ସତ୍‌ରେ ଆତ୍ମଶବ୍ଦ ଗୌଣ ନୁହେଁ ।

(ଗ) 'ଭଦ୍ରସେନ ମୋର ଆତ୍ମା ଅଟେ'- ଏଠାରେ ସେବକ ନିମିତ୍ତ ଆତ୍ମଶବ୍ଦ ଗୌଣ କହିବା ଠିକ୍ । କାରଣ-ଏଠାରେ ସ୍ୱାମୀ ଓ ସେବକର ପ୍ରଭେଦ ପ୍ରତ୍ୟକ୍ଷଜ୍ଞାନ ହେଉଛି । ଯଦି କୌଣସିଠାରେ ଗୌଣଶବ୍ଦ ଦେଖାଯାଏ, ତାହେଲେ ଅଧିକମାତ୍ରାରେ ଶବ୍ଦ ପ୍ରାମାଣିକ ଅର୍ଥରେ କଳ୍ପନା କରିବା ଉଚିତ୍ ନୁହେଁ ।

(ଘ) ଯେପରି ଜ୍ୟୋତିଃଶବ୍ଦ ଯାଗ ଓ ଅଗ୍ନିରେ ସାଧାରଣ, ସେପରି ଆତ୍ମଶବ୍ଦ ଚେତନ ଓ ଅଚେତନ ମଧ୍ୟରେ ସାଧାରଣ ନୁହେଁ । କାରଣ-ଏକଶବ୍ଦର ଅନେକ ଅର୍ଥ କଳ୍ପନା ଅନୁଚିତ ଅଟେ । ଏହାଦ୍ୱାରା ଚେତନ ବିଷୟକ ଆତ୍ମଶବ୍ଦ ମୁଖ୍ୟ ଅଟେ ଏବଂ ଭୂତାଦିରେ ଯେଉଁ ଭୂତାତ୍ମା ଇନ୍ଦ୍ରିୟାତ୍ମା ଇତ୍ୟାଦି ଆତ୍ମଶବ୍ଦର ପ୍ରୟୋଗ ହୁଏ । ତାହାହିଁ ଚେତନର ଉପଚାରରେ ସମ୍ଭବ ।

(ଙ) ଯଦି ଆତ୍ମଶବ୍ଦ ଚେତନ ଓ ଅଚେତନ ମଧ୍ୟରେ ସାଧାରଣରୂପରେ ଗ୍ରହଣ

କରାଯାଏ । ତେବେ ପ୍ରକରଣ ଅଥବା ଉପପଦ କୌଣସି ଏକ ନିଶ୍ଚାୟକ ବିନା କୌଣସି ଦୁଇ ଅର୍ଥରେ ଆତ୍ମଶବ୍ଦ ପ୍ରଯୁକ୍ତ ହେବା ନିଶ୍ଚୟ ହୋଇପାରେ ନାହିଁ ।

(୫) ମୂଳ-(କ) ନ ଗତ୍ରାଚେତନସ୍ୟ ନିଶ୍ଚାୟକଂ କିଞ୍ଚିତ୍ କରଣମସ୍ତି, ପ୍ରକୃତଂ ତୁ ସଦୀକ୍ଷିତୃ, ସନ୍ନିହିତଶ୍ଚେତନଃ ଶ୍ୱେତକେତୁଃ । ନ ହି ଚେତନସ୍ୟ ଶ୍ୱେତକେତୋଶ୍ଚେତନ ଆତ୍ମା ସମ୍ଭବତୀ ତ୍ୟବୋଗମଃ । (ଖ) ତସ୍ମାଚ୍ଚେତନ ବିଷୟ ଇହାତ୍ମଶବ୍ଦ ଇତି ନିଶ୍ଚୀୟତେ । ଜ୍ୟୋତିଃ ଶବ୍ଦୋଽପି ଲୌକିକେନ ପ୍ରୟୋଗେଣ ଜ୍ୱଳନ ଏବ ରୂଢ଼ଃ, ଅର୍ଥବାଦକଳ୍ପିତେନ ତୁ ଜ୍ୱଳନସାଦୃଶ୍ୟେନ କ୍ରତୌ ପ୍ରବୃତ୍ତ ଇତ୍ୟଦୃଷ୍ଟାନ୍ତଃ । (ଗ) ଅଥବା-ପୂର୍ବସୂତ୍ର ଏବାତ୍ମଶବ୍ଦଂ ନିରସ୍ତ ସମସ୍ତ ଗୌଣତ୍ୱସାଧାରଣତ୍ୱଶଙ୍କତୟା ବ୍ୟାଖ୍ୟାୟ ତତଃ ସ୍ୱତନ୍ତ୍ର ଏବ ପ୍ରଧାନକାରଣ ନିରାକରଣ ହେତୁବ୍ୟାଖ୍ୟେୟଃ 'ତନ୍ନିଷ୍ଠସ୍ୟ ମୋକ୍ଷୋପଦେଶାତ୍' ଇତି । ତସ୍ମାନ୍ନାଚେତନ ପ୍ରଧାନ ସଚ୍ଛବ୍ଦବାଚ୍ୟମ୍ ॥

**(୫) ଭାଷାଂତର** (କ) ଅଚେତନ ପଦାର୍ଥର ନିଶ୍ଚାୟକ ହେତୁ ନାହିଁ । ପ୍ରକୃତରେ ସତ୍ ଭକ୍ଷିତୃ, ସତ୍ ହିଁ ସନ୍ନିକର୍ଷ ଚେତନ ଶ୍ୱେତକେତୁ । ଅଚେତନ ପଦାର୍ଥ ଚେତନ ଶ୍ୱେତକେତୁର ଆତ୍ମା ହୋଇ ନପାରେ ବୋଲି ଆମ୍ଭର ମତ ।

(ଖ) ସେହିହେତୁ ଚେତନବିଷୟକ ଏଠାରେ ଆତ୍ମଶବ୍ଦ ବୋଲି ନିଶ୍ଚିତ ଜ୍ଞାନ । ଜ୍ୟୋତିଃଶବ୍ଦ ମଧ୍ୟ ଲୌକିକ ପ୍ରୟୋଗ ଦ୍ୱାରା ଅଗ୍ନିରେ ମୁଖ୍ୟ, କିନ୍ତୁ ଅର୍ଥବାଦଦ୍ୱାରା କଳ୍ପିତ ଅଗ୍ନି ସାଦୃଶ୍ୟ ଯାଗରେ ପ୍ରବୃତ୍ତ ହୁଏ । ତେଣୁ ଏହା ବିଷମ ଦୃଷ୍ଟାନ୍ତ ।

(ଗ) ଅଥବା ପୂର୍ବସୂତ୍ରରେ ଆତ୍ମଶବ୍ଦର ଗୌଣତ୍ୱ ସାଧାରଣତ୍ୱବିଷୟକଶଙ୍କା ନିରାକରଣ କରି ବ୍ୟାଖ୍ୟାନ କରାଗଲା । ଏହାପାଇଁ 'ତନ୍ନିଷ୍ଠସ୍ୟ ମୋକ୍ଷୋପଦେଶାତ୍' ସୂତ୍ରଟି ପ୍ରଧାନକାରଣବାଦର ନିରାକରଣ ପାଇଁ ସ୍ୱତନ୍ତ୍ର ସୂତ୍ର । ଏହା ବ୍ୟାଖ୍ୟାନ ଯୋଗ୍ୟ । ଏହାଦ୍ୱାରା ଅଚେତନ ପ୍ରଧାନ ସତ୍ଶବ୍ଦବାଚ୍ୟ ନୁହେଁ । -

**हेयत्वावचनाच्च ॥ ८ ॥**

## (୬) ହେୟତ୍ୱା ବଚନାଚ୍ଚ ॥ ୧ । ୧ । ୮

ପ୍ରଧାନ ସତ୍ଶବ୍ଦର ବାଚ୍ୟାର୍ଥ କାହିଁକି ହେବ ନାହିଁ ? କାରଣ ହେୟତ୍ୱନିଷେଧ - ବଚନ, ଅବଚନାତ୍, ଚ-କୁହାଯାଇନଥିବା ହେତୁ ॥

(୭) ମୂଳ-(କ) ଯଦ୍ୟନାତ୍ମୈବ ପ୍ରଧାନଂ ସତ୍ଶବ୍ଦବାଚ୍ୟଂ 'ସ ଆତ୍ମା ତତ୍ତ୍ୱମସି' (ଛା ୬।୮।୭) ଇତୀହୋପଦିଷ୍ଟଂ ସ୍ୟାତ୍ । ସ ତଦୁପଦେଶଶ୍ରବଣା-ହନାତ୍ମଜ୍ଞତୟା ତନ୍ନିଷ୍ଠୋ ମା ଭୂଦିତି ମୁଖ୍ୟମାତ୍ମାନମୁପଦିକ୍ଷୁସ୍ତସ୍ୟ ହେୟତ୍ୱଂବ୍ରୂୟାତ୍ । (ଖ) ଯଥାଽରୁନ୍ଧତୀଂ

ଦର୍ଶୟିଷୁସ୍ତତ୍ ସମୀପସ୍ଥାଂ ସ୍ଥୂଳାଂ ତାରାମମୁଖ୍ୟାଂ ପ୍ରଥମମରୁନ୍ଧତୀତି ଗ୍ରାହୟିତ୍ୱା ତାଂ ପ୍ରତ୍ୟାଖ୍ୟାୟ ପଶ୍ଚାଦରୁନ୍ଧତୀମେବ ଗ୍ରାହୟତି, ତଦ୍‌ବନ୍ନାୟମାତ୍ମେତି ବ୍ରୂୟାତ୍ । (ଗ) ନ ଚୈବମବୋଚତ୍ । ସନ୍ମାତ୍ରାତ୍ମାବଗତିନିଷ୍ଠୈବ ହି ଷଷ୍ଠପ୍ରପାଠକପରିସମାପ୍ତିର୍ଦୃଶ୍ୟତେ ।

**(୭) ଭାଷାଂତର-** (କ) ଯଦି ଅନାତ୍ମା ପ୍ରଧାନ କେବଳ ସତ୍ ଶବ୍ଦବାଚ୍ୟ ହୁଏ ତାହାଲେ 'ସ ଆତ୍ମା ତତ୍ତ୍ୱମସି' ଏହି ବେଦବାକ୍ୟରେ ଏହା ଉପଦିଷ୍ଟ ହୋଇପାରେ ଏହି ଉପଦେଶକୁ ଶୁଣି ଅନାତ୍ମଜ୍ଞ ହେଲେ ମଧ ଶ୍ୱେତକେତୁ ଆତ୍ମନିଷ୍ଠ ହୁଏ ନାହିଁ । ତେଣୁ ମୁଖ୍ୟାତ୍ମାର ଉପଦେଶକୁ ଏହିଭଳି ବ୍ୟାଖ୍ୟାନ କରୁଥିବା ଆଚାର୍ଯ୍ୟ ଅନାତ୍ମାର ହେୟତାକୁ କହିପାରେ ।

(ଖ) ଯେପରି ଅରୁନ୍ଧତୀତାରାକୁ ଦେଖାଉଥିବା ପୁରୁଷ ତାହା ପାଖରେ ଥିବା ବୃହତ୍ ଗୌଣକୁ ତାରାକୁ ପ୍ରଥମେ ଦେଖାଇ ତାକୁ ମନା କରି ପରେ ଅରୁନ୍ଧତୀକୁ ଦେଖାଏ, ସେହିପରି ଏହା ପ୍ରଧାନ ଆତ୍ମା ନୁହେଁ ବୋଲି କୁହାଯାଏ ।

(ଗ) କିନ୍ତୁ ଏହିଭଳି କୁହାଯାଏ ନାହିଁ । କେବଳ ସଦ୍ରୂପ ଆତ୍ମାର ଜ୍ଞାନନିଷ୍ଠ କରିବା ପାଇଁ ଷଷ୍ଠ ଅଧ୍ୟାୟର ସମାପ୍ତି ଦେଖାଯାଏ ।

(୮) ମୂଳ- (କ) ଚ ଶବ୍ଦଃ ପ୍ରତିଜ୍ଞାବିରୋଧାଭ୍ୟୁଚ୍ଚୟପ୍ରଦର୍ଶନାର୍ଥଃ । ସତ୍ୟପି ହେୟତ୍ୱବଚନେ ପ୍ରତିଜ୍ଞାବିରୋଧଃ ପ୍ରସଜ୍ୟେତ । କାରଣବିଜ୍ଞାନାଦ୍ଧି ସର୍ବଂ ବିଜ୍ଞାତମିତି ପ୍ରତିଜ୍ଞାତମ୍ । (ଖ) 'ଉତ ତମାଦେଶମପ୍ରାକ୍ଷୋ ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମିତି କଥଂ ଭଗବଃ ଆଦେଶୋ ଭବତୀତି ଯଥା ସୋମ୍ୟୈକେନ ମୃତ୍ ପିଣ୍ଡେନ ସର୍ବଂ ମୃନ୍ମୟ ବିଜ୍ଞାତଂ ସ୍ୟାଦ୍‌ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତିକେତ୍ୟେବ ସତ୍ୟମ୍, ଏବଂ ସୌମ୍ୟ ସ ଆଦେଶୋ ଭବତି' । (ଛା ୬।୧।୧।୩) ଇତି ବାକ୍ୟୋପକ୍ରମେ ଶ୍ରବଣାତ୍ । (ଗ) ନ ଚ ସଚ୍ଛବ୍ଦବାଚ୍ୟେ ପ୍ରଧାନେ ଭୋଗ୍ୟବର୍ଗ-କାରଣେ ହେୟତ୍ୱେନାହେୟତ୍ୱେନ ବା ବିଜ୍ଞାତେ ଭୋକ୍ତୃବର୍ଗୋ ବିଜ୍ଞାତୋ ଭବତି । ଅପ୍ରଧାନବିକାରତ୍ୱାଦ୍ ଭୋକ୍ତୃବର୍ଗସ୍ୟ ତସ୍ମାନ୍ନ ପ୍ରଧାନଂ ସଚ୍ଛବ୍ଦବାଚ୍ୟମ୍ ।

**(୮) ଭାଷାଂତର-** (କ) ଶବ୍ଦ ପ୍ରତିଜ୍ଞା ବିରୋଧର ସଂଗ୍ରହନିମିତ୍ତ । ଯଦି ପ୍ରଧାନ ହେୟ ହୁଏ, ତେବେ ପ୍ରତିଜ୍ଞାର ବିରୋଧ ପ୍ରସକ୍ତ ହୁଏ । କାରଣ-କାରଣ ବିଜ୍ଞାନ ଦ୍ୱାରା ସମସ୍ତଜ୍ଞାନ ସମ୍ଭବ ହୁଏ ।

(ଖ) ଯେପରି 'ଉଦ୍ଦାଳକ 'ତୁମକୁ ଆଚାର୍ଯ୍ୟ କହୁଅଛନ୍ତି କି ଯେ ଯାହାଦ୍ୱାରା ଅଶ୍ରୁତ, ତାହାହିଁ ଶ୍ରୁତ, ଅମତ ମତ ହୁଏ, ଅବିଜ୍ଞାତ ବିଶେଷରୂପରେ ଜଣାପଡ଼େ ? ଶ୍ୱେତକେତୁ ହେ ଭଗବନ୍-ଆଦେଶ କିପରି ହୁଏ ? ଉଦ୍ଦାଳକ-ହେ ସୌମ୍ୟ, ଯେଉଁ

ଘଟାଦିର କାରଣଭୂତ ମୃତ୍‌ପିଣ୍ଡର ଜ୍ଞାନ ହେଲେ ସମସ୍ତମୃଣ୍ମୟ ପଦାର୍ଥର ଜ୍ଞାନ ହୁଏ, ବିକାର କେବଳ ବାଣୀର ଆଶ୍ରୟଭୂତ ନାମମାତ୍ର ଅଟେ । ମୃତ୍ତିକା ହିଁ ସତ୍ୟ ଅଟେ । ହେ ସୋମ୍ୟ ଏହା ହିଁ ଆଦେଶ ।'' ଏହି ପ୍ରକାର ବାକ୍ୟୋପକ୍ରମ ଶୁଣାଯାଏ ।

(ଗ) ସମସ୍ତ ଭୋଗ୍ୟପଦାର୍ଥମାନଙ୍କର କାରଣଭୂତସତ୍‌ଶବ୍ଦବାଚ୍ୟ ପ୍ରଧାନର ହେୟତ୍ୱ ଓ ଅହେୟତ୍ୱର ଜ୍ଞାନ ହେଲେ ମଧ୍ୟ ଭୋକ୍ତୃବର୍ଗର ଜ୍ଞାନ ହୁଏ ନାହିଁ । କାରଣ-ଭୋକ୍ତୃବର୍ଗ ପ୍ରଧାନର ବିକାର ନୁହେଁ । ତେଣୁ ପ୍ରଧାନ ସତ୍‌ଶବ୍ଦବାଚ୍ୟ ହୁଏ ନାହିଁ ॥୮॥

## स्वाप्यत्वात् ॥ ९ ॥

## (୧) ସ୍ୱାପ୍ୟତ୍ୱାତ୍ ୧।୧।୯

କେଉଁ କାରଣ ଯୋଗୁଁ ପ୍ରଧାନ ସତ୍‌ଶବ୍ଦବାଚ୍ୟ ନୁହେଁ । କାରଣ- ସ୍ୱାପ୍ୟତ୍ୱାତ୍- ସୁଷୁପ୍ତି ସମୟରେ ଜୀବ ସତ୍‌ଶବ୍ଦବାଚ୍ୟ ବ୍ରହ୍ମରେ ଲୀନ ହେବା ହେତୁ ।

(୨) ମୂଳ- (କ) ତଦେବ ସଛବ୍ଦବାଚ୍ୟଂ କାରଣଂ ପ୍ରକୃତ୍ୟଶ୍ରୂୟତେ- 'ଯତ୍ରୈତତ୍‌ପୁରୁଷଃ ସ୍ୱପିତି ନାମ ସତା ସୋମ୍ୟ ତଦା ସମ୍ପନ୍ନୋ ଭବତି ସ୍ୱୟମପୀତୋ ଭବତି ତସ୍ମାଦେନଂ ସ୍ୱପିତୀତ୍ୟାଚକ୍ଷତେ ସ୍ୱଂ ହ୍ୟପୀତୋ ଭବତି, (ଛା ୬।୮।୧) ଇତି । ଏଷା ଶ୍ରୁତି ସ୍ୱପୀତୀତ୍ୟେତତ୍‌ପୁରୁଷସ୍ୟ ଲୋକପ୍ରସିଦ୍ଧଂ ନାମ ନିର୍ବକ୍ତି । (ଖ) ସ୍ୱଶବ୍ଦେନୋହାତ୍ମୋଚ୍ୟତେ ଯଃ ପ୍ରକୃତଃ ସ୍ୱଶବ୍ଦବାଚ୍ୟସ୍ତମୀପୀତୋ ଭବତ୍ୟପିଗତୋ ଭବତୀତ୍ୟଥଃ । (ଗ) ଅପିପୂର୍ବସ୍ୟୈତେର୍ଲୟାଥତ୍ୱଂ ପ୍ରସିଦ୍ଧମ୍ । ପ୍ରଭାବାପ୍ୟୟାବିତ୍ୟୁ-ତ୍ପତ୍ତିପ୍ରଳୟୟୋଃ ପ୍ରୟୋଗଦର୍ଶନାତ୍ ।

(୨) ଭାଷାଂତର- (କ) ଏହି ସତ୍‌ଶବ୍ଦବାଚ୍ୟ କାରଣକୁ ପ୍ରସ୍ତୁତ କରି ବେଦ କହେ- 'ଯେଉଁ ସୁଷୁପ୍ତି ଅବସ୍ଥାରେ ପୁରୁଷ ଶୋଇରହେ, ହେ ସୋମ୍ୟ! ସେହି ସଦ୍ରୂପର ସହିତ ଏହା ଏକରୂପ ହୋଇ ରହେ ଅର୍ଥାତ୍ ନିଜେ ସ୍ୱରୂପକୁ ପ୍ରାପ୍ତ ହୁଏ । ଏହି ଅବସ୍ଥାକୁ ସ୍ୱପିତି କହନ୍ତି । କାରଣ-ନିଜେ ନିଜଠାରେ ଲୀନ ହୁଏ ।' ଏହି ପ୍ରକାର ଶ୍ରୁତି ପୁରୁଷର ସ୍ୱପିତି ସଂସାର ପ୍ରସିଦ୍ଧ ବୋଲି କୁହାଯାଇଛି ।

(ଖ) ସ୍ୱଶବ୍ଦହିଁ ଆତ୍ମାକୁ ବୁଝାଏ । ଯାହା ପ୍ରକୃତ ଓ ସତ୍‌ଶବ୍ଦବାଚ୍ୟ, ତାହାଠାରେ ଜୀବ ଲୀନ ହୁଏ ।

(ଗ) ଅପିଶବ୍ଦ ପୂର୍ବକ ଈଣ୍ଧାତୁର ଲୟାର୍ଥ ହିଁ ବ୍ୟାକରଣରେ ପ୍ରସିଦ୍ଧ । କାରଣ- ପ୍ରଭବ ଓ ଅପି ଏହି ଦୁଇଟି ଶବ୍ଦ ଉତ୍ପତ୍ତି ଓ ପ୍ରଳୟ ଅର୍ଥରେ ପ୍ରୟୋଗ ହେବାର ଜଣାଯାଏ ।



(୩) ମୂଳ- (କ) ମନୋପ୍ରଚରୋପାଧିବିଶେଷାସସୂଦ୍ଧାଦିନ୍ଦ୍ରିୟାର୍ଥାନ୍ ଗୃହ୍ଣଁସ୍ତଦ୍ ବିଶେଷାପନ୍ନୋ ଜୀବୋଜାଗର୍ତ୍ତି । ତଦ୍‌ବାସନାବିଶିଷ୍ଟଃ ସ୍ୱପ୍ନାନ୍‌ପଶ୍ୟନ୍‌ମନଃଶବ୍ଦବାଚ୍ୟୋ ଭବତି । (ଖ) ସ ଉପାଧିଦ୍ୱୟୋପରମେ ସୁଷୁପ୍ତାବସ୍ଥାୟାମୁପାଧିକୃତବିଶେଷାଭାବା-ତ୍ସ୍ୱାତ୍ମନି ପ୍ରଲୀନ ଇବେତି 'ସ୍ୱ ହ୍ୟପୀତୋ ଭବତି' ଇତ୍ୟୁଚ୍ୟତେ ।

**(୩) ଭାଷାଂତର-** (କ) ମନର ପ୍ରଚର ଇନ୍ଦ୍ରିୟ ଦ୍ୱାରା ଅନ୍ତଃକରଣର ପରିଣାମ ବୃତ୍ତିରୂପ-ଉପାଧିବିଶେଷର ସମ୍ବନ୍ଧ ହେଲେ ବିଷୟ ଗୁଡ଼ିକୁ ଗ୍ରହଣ କରେ ଏବଂ ଏହା ସହିତ ଐକ୍ୟର ଭ୍ରାନ୍ତିକୁ ପ୍ରାପ୍ତ ହେଉଥିବା ଜୀବ ଜାଗ୍ରତ ହୁଏ । ଜାଗ୍ରତ ଅବସ୍ଥାରେ ଅନୁଭୂତ ବିଷୟ ଗୁଡ଼ିକର ବାସନା ଦ୍ୱାରା ସଂଯୁକ୍ତ ହୋଇ ସ୍ୱପ୍ନ ଦେଖେ । ଏହା ମନ ଶବ୍ଦବାକ୍ୟ କହନ୍ତି ।

(ଖ) ସେହି ଉପାଧି ଦୁଇଟିର ବିଲୟ ହେଲେ ସୁଷୁପ୍ତି ଅବସ୍ଥାରେ ଉପାଧିଜନ୍ୟ ବିଶେଷର ଅଭାବ ଦ୍ୱାରା ସେ ନିଜେ ନିଜରୂପରେ ବିଲୀନ ହୁଏ । ତେଣୁ ସେ ନିଜକୁ ପ୍ରାପ୍ତ ହୁଏ ବୋଲି କୁହାଯାଇଛି ।

(୪) ମୂଳ- (କ) ଯଥା ହୃଦୟଶବ୍ଦନିର୍ବଚନଂ ଶ୍ରୁତ୍ୟା ଦର୍ଶିତମ୍ । 'ସ ବା ଏଷ ଆତ୍ମା ହୃଦି ତସ୍ୟୈତଦେବ ନିରୁକ୍ତଂ ହୃଦୟମିତି ତସ୍ମାଦ୍ଧୃଦୟମିତି' (ଛା ୮।୩।୩) ଇତି । ଯଥା ବାଽଶନୋୟୋଦନ୍ୟାଶବ୍ଦପ୍ରବୃତ୍ତିମୂଳଂ ଦର୍ଶୟତି ଶ୍ରୁତିଃ । 'ଆପ ଏବ ତଦଶିତଂ ନୟନ୍ତେ, ତେଜ ଏବ ତତ୍‌ପୀତଂ ନୟତେ' (ଛା ୬।୮।୩,୫) ଇତି । (ଖ) ଏବଂ ସ୍ୱୟମାତ୍ମନଂ ସଚ୍ଛବ୍ଦବାଚ୍ୟମପୀତୋ ଭବତୀତୀମମର୍ଥଂ ସ୍ୱପିତିନାମନିର୍ବ-ଚନେନ ଦର୍ଶୟତି । ନ ଚ ଚେତନ ଆତ୍ମାଽଚେତନଂ ପ୍ରଧାନଂ ସ୍ୱରୂପତ୍ୱେନ ପ୍ରତିପଦ୍ୟେତ । (ଗ) ଯଦି ପୁନଃ ପ୍ରଧାନମେବାତ୍ମୀୟତ୍ୱାତ୍ ସ୍ୱଶବ୍ଦେନୈବୋଚ୍ୟେତ, ଏବମପି ଚେତନୋଽଚେତନମପ୍ୟେତୀତି ବିରୁଦ୍ଧମାପଦ୍ୟେତ । (ଘ) ଶ୍ରୁତ୍ୟନ୍ତରଞ୍ଚ-'ପ୍ରାଜ୍ଞେନାତ୍ମନା ସପରିଷ୍ୱକ୍ତୋ ନ ବାହ୍ୟଂ କିଞ୍ଚନ ବେଦ ନାନ୍ତରମ୍' (ବୃହ୍ମ ୪।୩।୨୧) ଇତି ସୁଷୁପ୍ତାବସ୍ଥାୟାଂ ଚେତନେଽପ୍ୟୟଂ ସଚ୍ଛବ୍ଦବାଚ୍ୟଂଜଗତଃ କାରଣଂ ନ ପ୍ରଧାନମ୍ ।

(୪) ଭାଷାଂତର- (କ) ହୃଦୟଶବ୍ଦର ନିର୍ବଚନ ବେଦରେ ଦେଖାଯାଏ । ଯଥା 'ଏହି ସେହିଆତ୍ମା ହୃଦୟରେ ରହେ । ହୃଦି ଅୟଂ ହୃଦୟଂ' ବୋଲି କୁହାଯାଇଛି । ଏହାହିଁ ହୃଦୟଶବ୍ଦର ନିରୁକ୍ତ' ସେହି ହେତୁ ଏହି ଆତ୍ମାକୁ ହୃଦୟ କହନ୍ତି । ସେହିପରି ମଧ୍ୟ ଅଶନାୟା ଓ ଉଦନ୍ୟା ଏହି ଶବ୍ଦ ଦୁଇଟିର ପ୍ରବୃତ୍ତି ମୂଳଶ୍ରୁତିରେ ଦେଖାଯାଏ । ଯଥାଃ

'ମନୁଷ୍ୟ ଖାଦ୍ୟକୁ ହଜମ କରି ଜଳରୂପରେ ଗ୍ରହଣ କରେ । ଜଳକୁ ତେଜରୂପରେ ଗ୍ରହଣ କରେ' ।

(ଖ) ଏହିପରି ସତ୍‌ଶବ୍ଦବାଚ୍ୟ ସ୍ୱରୂପରେ ଲୀନ ହୁଏ । ଏହି ପ୍ରକାର ଅର୍ଥକୁ ଶ୍ରୁତିଶାସ୍ତ୍ର ସ୍ୱପିତିନିର୍ବଚନ ରୂପରେ ଗ୍ରହଣ କରିଛି । କିନ୍ତୁ ଚେତନ ଆତ୍ମା ଅଚେତନ ପ୍ରଧାନକୁ ଅଭେଦ ରୂପରେ ପାଏ ନାହିଁ ।

(ଗ) ଯଦି ପ୍ରଧାନ ନିଜଶରୀର ଲୀନ ହୁଏ ବୋଲି କହିବ, ତେବେ ଚେତନ ଅଚେତନରେ ଲୀନ ହୋଇପାରେ । କିନ୍ତୁ ଏହା ପରସ୍ପର ବିରୁଦ୍ଧ ଅଟେ ।

(ଘ) ଯଥା ବେଦରେ 'ପ୍ରାଜ୍ଞ ଆତ୍ମାର ସହିତ ଐକ୍ୟ ହେଲେ ସେ କୌଣସି ବାହ୍ୟବସ୍ତୁ ଅଥବା ଅନ୍ୟବସ୍ତୁକୁ ଜାଣିପାରେ ନାହିଁ ।' ଏହି ପ୍ରକାର ସୁଷୁପ୍ତି ଅବସ୍ଥାରେ ଚେତନରେ ଜୀବର ବିଲୟ ଦେଖାଯାଏ । ଅତଏବ ଯେଉଁଠାରେ ସମସ୍ତ ଚେତନର ଲୟହୁଏ, ସେଠାରେ ଚେତନ ସତ୍‌ଶବ୍ଦବାଚ୍ୟ ଓ ଜଗତର କାରଣ ପ୍ରଧାନ କଦାପି ହେବା ସମ୍ଭବ ନୁହେଁ ॥୯॥

## गतिसामान्यात् ॥ १० ॥

## (୧) ଗତିସାମାନ୍ୟାତ୍ ୧।୧।୧୦

କେଉଁ କାରଣ ହେତୁ ପ୍ରଧାନ ଜଗତର କାରଣ ନୁହେଁ ? ଗତିସାମାନ୍ୟାତ୍ କାରଣ ଓ ଜ୍ଞାନ ସମାନ ହେତୁ ।

(୨) ମୂଳ-(କ) ଯଦି ତାର୍କିକସମୟ ଇବ ବେଦାନ୍ତେଷ୍ୱପି ଭିନ୍ନାଃ କାରଣାବଗତି-ରଭବିଷ୍ୟତ୍କ୍ୱଚିଚ୍ଚେତନଂ ବ୍ରହ୍ମଜଗତଃ କାରଣମ୍, କ୍ୱଚିଦଚେତନଂ ପ୍ରଧାନମ୍, କ୍ୱଚିଦନ୍ୟଦେବେତି, ତତଃ କଦାଚିତ୍ ପ୍ରଧାନକାରଣବାଦାନୁରୋଧେନାପୀକ୍ଷ୍ୟତ୍ୟା ଦିଶ୍ରବଣମବକଳ୍ପୟିଷ୍ୟତ । (ଖ) ନ ତ୍ୱେତଦସ୍ତି ସମାନୈବ ହି ସର୍ବେଷୁ ବେଦାନ୍ତେଷୁ ଚେତନକାରଣାବଗତିଃ 'ଯଥାଽଗ୍ନେର୍ଜ୍ୱଳତଃ ସର୍ବା ଦିଶୋ ବିସ୍ଫୁଲିଙ୍ଗା ବିପ୍ରତିଷ୍ଠେରନ୍ନେବ ମେବୈତସ୍ମାଦାତ୍ମନଃ ସର୍ବେ ପ୍ରାଣାଃ ଯଥାୟତନଂ ବିପ୍ରତିଷ୍ଠନ୍ତେ, ପ୍ରାଣେଭ୍ୟୋ ଦେବା, ଦେବେଭ୍ୟୋ ଲୋକାଃ,' (କୌ ୩।୩) ଇତି । 'ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ,' (ତୈ ୨।୧) ଇତି । 'ଆତ୍ମନଃ ଏଷୋ ପ୍ରାଣୋ ଜାୟତେ' (ପ୍ର ୩।୩) ଇତି ଚାତ୍ମନଃ କାରଣତ୍ୱଂ ଦର୍ଶୟନ୍ତି ସର୍ବେ ବେଦାନ୍ତାଃ । ଆତ୍ମଶବ୍ଦଶ୍ଚ ଚେତନବଚନ ଇତ୍ୟବୋଚାମଃ । (ଗ) ମହଚ୍ଚ ପ୍ରାମାଣ୍ୟକାରଣମେତଦ୍ୟଦ-ବେଦାନ୍ତବାକ୍ୟାନାଂ

ଚେତନକାରଣତ୍ୱେ ସମାନଗତିତ୍ୱମ୍, ଚକ୍ଷୁ ରାଦୀନାମିବ ରୂପାଦିଷୁ । ଅତୋ ଗତିସାମାନ୍ୟାତ୍ ସର୍ବଜ୍ଞଂ ବ୍ରହ୍ମ ଜଗତଃ କାରଣମ୍ ।

**(୨) ଭାଷାଂତର-** (କ) ଯଦି ତାର୍କିକ ସିଦ୍ଧାନ୍ତ ଗ୍ରହଣ ସଦୃଶ ବେଦାନ୍ତ ବାକ୍ୟରେ ଭିନ୍ନ ଭିନ୍ନ କାରଣ ଜ୍ଞାନ ହେଲେ କେତେବେଳେ ଚେତନ ବ୍ରହ୍ମ, କେତେବେଳେ ଅଚେତନ ପ୍ରଧାନ, ଅଥବା ଅନ୍ୟ କୌଣସି ପରମାଣୁ ଇତ୍ୟାଦି ଜଗତର କାରଣ ହେବ, ତାହେଲେ ପ୍ରଧାନ କାରଣ ବାଦର ଅନୁରୋଧରେ ପ୍ରଧାନଠାରେ ମଧ ଈକ୍ଷତି ଶବ୍ଦ କଳ୍ପନା ହୋଇପାରେ ।

(ଖ) କିନ୍ତୁ ଏହା ସମ୍ଭବ ନୁହେଁ, କାରଣ-ବେଦାନ୍ତଶାସ୍ତ୍ରରେ କାରଣ ଓ ଜ୍ଞାନ ସମାନ । ଯଥା : 'ପ୍ରଜ୍ୱଳିତାଗ୍ନି ଦ୍ୱାରା ସର୍ବଦିଗ ଆଲୋକିତ ହୁଏ, ସେପରି ଆତ୍ମାଦ୍ୱାରା ସବୁପ୍ରାଣ (ଇନ୍ଦ୍ରିୟ) ଯଥାଯଥା ସ୍ଥାନରେ ଉତ୍ପନ୍ନ ହୁଅନ୍ତି, ତଦ୍ଦ୍ୱାରା ତଦୁପକାରକ ସୂର୍ଯ୍ୟ ଓ ଦେବତା ପ୍ରକଟ ହୁଏ ଓ ଦେବଲୋକ ଉତ୍ପନ୍ନ ହୁଏ', 'ଏହି ସଦ୍ରୂପ ଆତ୍ମାରୁ ଆକାଶ ଉତ୍ପନ୍ନ ହୁଏ ।' 'ଆତ୍ମାଠାରୁ ପ୍ରାଣଜାତ ହୁଏ ।' ଇତ୍ୟାଦି ଆତ୍ମାର କାରଣତ୍ୱକୁ ଉପନିଷଦ୍‌ଗୁଡ଼ିକ ଜଣାଇ ଦିଅନ୍ତି । ତେଣୁ ଆତ୍ମଶବ୍ଦ ଚେତନ ବାଚକ ବୋଲି ଆମ୍ଭେ କହୁ ।

(ଗ) ଯେପରି ଚକ୍ଷୁ ଆଦି ଇନ୍ଦ୍ରିୟମାନଙ୍କଠାରେ ରୂପ ବିଷୟକ ଜ୍ଞାନାଦି ସମାନ, ସେପରି ବେଦାନ୍ତ ବାକ୍ୟରେ ଚେତନ କାରଣତ୍ୱରେ ସମାନ ଜ୍ଞାନ ଜାତ ହୁଏ । ଏହି ପ୍ରକାର ପ୍ରାମାଣ୍ୟ ହେଲେ ମହତ୍ କାରଣ ହୁଏ ଏବଂ ଏହି କାରଣ ଗତି ସାମାନ୍ୟ ହେତୁ ସର୍ବଜ୍ଞ ବ୍ରହ୍ମ ଜଗତର କାରଣ ହୁଏ ।

## ଶ୍ରୁତତ୍ୱାଚ୍ଚ ॥ ୧୧ ॥

## (୧) ଶ୍ରୁତତ୍ୱାଚ୍ଚ ୧।୧।୧୧

କିପରି ବ୍ରହ୍ମ ସର୍ବଜ୍ଞ ବ୍ରହ୍ମ ଜଗତର କାରଣ ? ଶ୍ରୁତତ୍ୱାତ୍ ଚ-ବେଦପ୍ରମାଣ ରୂପକ କାରଣରୁ ସର୍ବଜ୍ଞ ବ୍ରହ୍ମ ଜଗତର କାରଣ ଅଟେ ।

(୨) ମୂଳ - (କ) ସ୍ୱଶବ୍ଦେନୈବ ଚ ସର୍ବଜ୍ଞ ଈଶ୍ୱରୋ ଜଗତଃ କାରଣମିତି ଶ୍ରୂୟତେ ଶ୍ୱେତାଶ୍ୱେତରାଣାଂ ମନ୍ତ୍ରୋପନିଷଦ ସର୍ବଜ୍ଞମୀଶ୍ୱରଂ ପ୍ରକୃତ୍ୟ- 'ସ କାରଣଂ କାରଣାଧିପାଧିପୋ ନ ଚାସ୍ୟ କ୍ୱଚିଜ୍ଜନିତା ନ ଚାଧିପଃ' (ଶ୍ୱେ ୬।୯) ଇତି । (ଖ) ତସ୍ମାତ୍ ସର୍ବଜ୍ଞଂ ବ୍ରହ୍ମ ଜଗତଃ କାରଣମ୍, ନାଚେତନଂ ପ୍ରଧାନମନ୍ୟଦ୍‌ବେତି ସିଦ୍ଧମ୍ ।

**(୨) ଭାଷାଂତର-** (କ) ଏହା ସ୍ୱଶବ୍ଦ (ଈଶ୍ୱରବାଚକ ଶବ୍ଦ) ଦ୍ୱାରା ବେଦ କହେ । କାରଣ -ଶ୍ୱେତାଶ୍ୱେତର ମନ୍ତ୍ରୋପନିଷଦରେ ସର୍ବଜ୍ଞ ଈଶ୍ୱରକୁ ପ୍ରସ୍ତୁତ କରି 'ଏହି ସର୍ବଜ୍ଞ ପରମେଶ୍ୱର

ସମସ୍ତଙ୍କର କାରଣ ଏବଂ ଇନ୍ଦ୍ରିୟାଧିଷ୍ଠାତା ଜୀବର ସ୍ୱାମୀ ଅଟେ । ଏହାର ପରମେଶ୍ୱରରୂପକ ଜନକ ଅପେକ୍ଷା ଅନ୍ୟ କୌଣସି ସ୍ୱାମୀ ନାହିଁ । ଏହି କଥା କହୁଛି ।

(ଖ) ଅତଃ ସର୍ବଜ୍ଞ ବ୍ରହ୍ମ ଜଗତର କାରଣ ଅଟେ କିନ୍ତୁ ଅଚେତନ ପ୍ରଧାନ ଅଥବା ଅନ୍ୟ କୌଣସି ପରମାଣୁ ମଧ୍ୟ ଜଗତର ଜନକ ନୁହଁନ୍ତି ।

## आमन्दमयाधिकरणम् । सू० १२ - १३

## ଆନନ୍ଦମୟାଧିକରଣ-ସୂ-୧୨।୧୯

(୧) ମୂଳ-(କ) 'ଜନ୍ମାଦ୍ୟସ୍ୟ ଯତଃ' ଇତ୍ୟାରଭ୍ୟ 'ଶ୍ରୁତତ୍ୱାଚ୍ଚ' ଇତ୍ୟେବମନ୍ତୈଃ ସୂତ୍ରୈର୍ଯାନ୍ୟୁଦାହୃତାନି ବେଦାନ୍ତବାକ୍ୟାନି, ତେଷାଂ ସର୍ବଜ୍ଞଃ ସର୍ବଶକ୍ତିରୀଶ୍ୱରୋ ଜଗତୋ ଜନ୍ମସ୍ଥିତିଲୟକାରଣମିତ୍ୟେତସ୍ୟାର୍ଥସ୍ୟ ପ୍ରତିପାଦକତ୍ୱଂ ନ୍ୟାୟପୂର୍ବକଂ ପ୍ରତିପାଦିତମ୍ । (ଖ) ଗତିସାମାନ୍ୟୋପନ୍ୟାସେନ ଚ ସର୍ବେ ବେଦା-ନ୍ତଶ୍ଚେତନକାରଣବାଦିନ ଇତି ବ୍ୟାଖ୍ୟାତମ୍- ଅତଃ ପରସ୍ୟ ଗ୍ରନ୍ଥସ୍ୟ କିମୁତ୍ ଥାନମିତି ।

**(୧) ଭାଷାଂତର-** (କ) 'ଜନ୍ମାଦ୍ୟସ୍ୟ ଯତଃ' ଏହି ସୂତ୍ରଠାରୁ 'ଶ୍ରୁତତ୍ୱାଚ୍ଚ' ଏହି ସୂତ୍ରପର୍ଯ୍ୟନ୍ତ ଉଦାହରଣ ଦିଆଯାଇଥିବା ବେଦାନ୍ତ-ବାକ୍ୟଗୁଡ଼ିକ ସର୍ବଜ୍ଞ, ସର୍ବଶକ୍ତି, ଈଶ୍ୱର ଜଗତର ଜନ୍ମ, ସ୍ଥିତି ଓ ଲୟର କାରଣ ବିଷୟରେ ଅର୍ଥ ପ୍ରତିପାଦକତ୍ୱ ନ୍ୟାୟତଃ ଅଟନ୍ତି ।

(ଖ) 'ଗତି ସାମାନ୍ୟାତ୍' ଏହି ସୂତ୍ରର ବିଶଦୀକରଣ ଦ୍ୱାରା ବେଦାନ୍ତ-ଶାସ୍ତ୍ରଃମାନେ ଚେତନକାରଣବାଦୀ ରୂପରେ ଗୃହୀତ । ତାହେଲେ ଏହାପରେ ଅନ୍ୟ ଗ୍ରନ୍ଥଗୁଡ଼ିକର ଆରମ୍ଭ ହେବାପାଇଁ କ'ଣ ଆବଶ୍ୟକତା ରହିଛି ?

(୨) ମୂଳ- (କ) ଉଚ୍ୟତେ-ଦ୍ୱିରୂପଂ ହି ବ୍ରହ୍ମାବଗମ୍ୟତେ, ନାମରୂପବିକା- ରଭେଦୋପାଧିବିଶିଷ୍ଟଂ, ତଦ୍ୱିପରୀତଞ୍ଚ ସର୍ବୋପାଧିବିବର୍ଜିତମ୍ । (ଖ) 'ଯତ୍ର ହି ଦ୍ୱୈତମେବ ଭବତି, ତଦିତର ଇତରଂ ପଶ୍ୟତି, ଯତ୍ର ତ୍ୱସ୍ୟ ସର୍ବମାତ୍ମୈବା ଭୂତ୍ତତ୍ କେନ କଂ ପଶ୍ୟେତ୍' (ବୃହ ୪।୫।୧୫) । (ଗ) ଯତ୍ର ନାନ୍ୟତ୍ର ପଶ୍ୟତି, ନାନ୍ୟଚ୍ଛୃଣୋତି, ନାନ୍ୟଦ୍ ବିଜାନାତି ସ ଭୂମାଽଥ ତଦମୃତମଥ ଯଦଳ୍ପଂ ତନ୍ମର୍ତ୍ତ୍ୟମ୍,' (ଛା ୭।୨୪।୧) (ଘ) 'ସର୍ବାଣି ରୂପାଣି ବିଚିନ୍ତ୍ୟଧୀରୋ ନାମାନି କୃତ୍ୱାଽଭିବଦନ୍ୟଦାସ୍ତେ', (ତୈ ୩।୧୨।୭) (ଙ) 'ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଂଜନମ୍ । ଅମୃତସ୍ୟ ପରଂ ସେତୁଂ ଦଗ୍ଧେନ୍ଧନମିବାନଳମ୍ (ଶ୍ୱେ ୬।୨୯) 'ନେତି ନେତି' (ବୃହ ୨।୩।୬) 'ଅସ୍ଥୂଳମନଣୁଃ' (ବୃ ୩।୮।୮) ଇତି । (ଚ)

 

ନ୍ୟୂନମନ୍ୟତ୍ ସ୍ଥାନଂ ସଂପୂର୍ଣ୍ଣମନ୍ୟତ୍ ଇତି ଚୈବ ସହସ୍ରଶୋ ବିଦ୍ୟାବିଦ୍ୟାବିଷୟଭେଦେନ ବ୍ରହ୍ମଣୋ ଦ୍ୱିରୂପତାଂ ଦର୍ଶୟନ୍ତି ବେଦାନ୍ତବାକ୍ୟାନି ।

(୨) ଭାଷାଂତର- (କ) କୁହାଯାଇଛି- ବ୍ରହ୍ମ ଦୁଇ ପ୍ରକାର । ନାମ ରୂପ ବିକାର ବିଶେଷ ଉପାଧିଯୁକ୍ତ ଓ ଏହାର ବିପରୀତ ଉପାଧି ରହିତ ।

(ଖ) ଯଥା- 'ଯେଉଁ ଅବିଦ୍ୟା ଅବସ୍ଥାରେ ଦ୍ୱୈତ ହୁଏ, ତେବେ ଜଣେ ଜଣକୁ ଦେଖିପାରେ, କିନ୍ତୁ ଯେଉଁ ବିଦ୍ୟା ଅବସ୍ଥାରେ ସମସ୍ତ-ପଦାର୍ଥ ଆତ୍ମା ହୋଇଗଲେ, ଏହି ସମୟରେ କାହାଦ୍ୱାରା କିଏ ଦେଖାହୁଏ ?

(ଗ) 'ବ୍ୟାପକ ଆନନ୍ଦ ସ୍ୱରୂପ ଆତ୍ମାରେ ଯାହାରହି, ବିଦ୍ୱାନ୍ ନିଜ ବ୍ୟତୀତ ଅନ୍ୟ କିଛି ଦେଖେ ନାହିଁ, ଶୁଣେ ନାହିଁ, ଜାଣେ ନାହିଁ, ତାହା ଭୂମା, ବ୍ୟାପକ ଓ ବ୍ରହ୍ମ ଅଟେ, ଯିଏ ନିଜଠାରୁ ଭିନ୍ନ କିଛି ଦେଖେ, ଶୁଣେ ତାହା ବ୍ୟାପ୍ୟ ଅଟେ । ଯେ ଭୂମା, ସେ ଅମୃତ । ଯେ ବ୍ୟାପ୍ୟ, ସେ ମର୍ତ୍ତ୍ୟ ମରଣଶୀଳ ।'

(ଘ) 'ଯେଉଁ ପରମେଶ୍ୱର ସମସ୍ତ ଦେବ ମାନବାଦି ଶରୀରମାନଙ୍କୁ ଉତ୍ପନ୍ନ କରି ଏହି ଦେବତା, ଏହି ମନୁଷ୍ୟ ଇତ୍ୟାଦି ନାମରଖି ଏହି ନାମକୁ ନିଜେ ବ୍ୟବହାର କରେ ।'

(ଙ) 'କଳାରହିତ, ଅବୟବ ରହିତ, ନିଷ୍କ୍ରିୟ, ଶାନ୍ତ, ରୋଗାଦିଦୋଷରହିତ, ନିର୍ଲେପ, ପାପରହିତ, ଅମୃତର ଉତ୍କୃଷ୍ଟ, ସେତୁ, ଯାହାର ଇନ୍ଧନ ଜଳ, ସେ ଆତ୍ମା', 'ଏହା ନୁହେଁ, ଏହା ନୁହେଁ ।'

(ଚ) 'ଏହା ସ୍ଥୁଳ ନୁହେଁ କି ସୂକ୍ଷ୍ମ ନୁହେଁ । ଯାହା ଅଳ୍ପସ୍ଥାନ, ଅନ୍ୟଟି ସଂପୂର୍ଣ୍ଣ ବ୍ୟାପକ' ଏହିପ୍ରକାର ହଜାର ହଜାର ବିଦ୍ୟା ଓ ଅବିଦ୍ୟା ବିଷୟ ଭେଦରେ ବ୍ରହ୍ମର ଦୁଇ ପ୍ରକାରକୁ ବେଦାନ୍ତବାକ୍ୟ ଗୁଡ଼ିକ ଦେଖାଉଛନ୍ତି ।

(୩) ମୂଳ-(କ) ତତ୍ରାବିଦ୍ୟାବସ୍ଥାୟାଂ ବ୍ରହ୍ମଣ ଉପାସ୍ୟୋପାସକାଦିଲକ୍ଷଣଃ ସର୍ବୋ ବ୍ୟବହାରଃ । ତତ୍ର କାନିଚିଦ୍ ବ୍ରହ୍ମଣ ଉପାସନାନ୍ୟଭ୍ୟୁଦୟାର୍ଥାନି, କାନିଚିତ୍କ୍ରମମୁକ୍ତ୍ୟର୍ଥାନି, କାନିଚିତ୍ କର୍ମସମୃଦ୍ଧ୍ୟର୍ଥାନି । ତେଷାଂ ଗୁଣବିଶେଷୋପାଧିଭେଦେନ ଭେଦଃ । (ଖ) ଏକ ଏବ ତୁ ପର ଆତ୍ମେଶ୍ୱରସ୍ତୈସ୍ତୈ-ର୍ଗୁଣବିଶେଷୈର୍ବିଶିଷ୍ଟ ଉପାସ୍ୟ ଯଦ୍ୟପି ଭବତି, ତଥାପି ଯଥା-ଗୁଣୋପନ୍ୟାସନମେବ ଫଳାନି ଭିଦ୍ୟନ୍ତେ । (ଗ) 'ତଂ ଯଥା ଯଥୋପାସତେ ତଦେବ ଭବତି' ଇତି ଶ୍ରୁତେଃ । 'ଯଥାକ୍ରତୁରସ୍ମିଂଲ୍ଲୋକେ ପୁରୁଷୋ ଭବତି, ତଥେତଃ ପ୍ରେତ୍ୟଃ ଭବତି' (ଛା ୩।୨୪।୧) ଇତି ଚ । (ଘ) ସ୍ମୃତେଶ୍ଚ-

ଯଂ ଯଂ ବାପି ସ୍ମରନ୍ନିତ୍ୟଂ ତ୍ୟଜତ୍ୟନ୍ତେ କଳେବରମ୍ ।
ତଂ ତମେବୈତି କୌନ୍ତେୟ, ସଦା ତଦ୍‌ଭାବଭାବିତଃ ॥ (ଭ ଗୀ ୮।୬)

(୩) ଭାଷାନ୍ତର- (କ) ସେଠାରେ ଅବିଦ୍ୟାବସ୍ଥାରେ ବ୍ରହ୍ମର ଉପାସ୍ୟ ଓ ଉପାସକାଦି ଲକ୍ଷଣ ବ୍ୟବହାର କରାଯାଏ । ବ୍ରହ୍ମର ଉପାସନା କୌଣସି ସ୍ଥାନରେ ଅଭ୍ୟୁଦୟ ପାଇଁ କ୍ରମମୁକ୍ତି ପାଇଁ କୌଣସି ସ୍ଥାନରେ ମଧ୍ୟ କର୍ମ ସମୃଦ୍ଧ ପାଇଁ କରାଯାଏ । ତେଣୁ ଗୁଣବିଶେଷରେ ଓ ଉପାଧି ଭେଦରେ ଏହାର ପରସ୍ପର ଭେଦ ଅଛି ।

(ଖ) ଯଦ୍ୟପି କେତେଗୁଡ଼ିଏ ଗୁଣବିଶେଷ ଦ୍ୱାରା ବିଶିଷ୍ଟ ପରମାତ୍ମା ଉପାସ୍ୟ ହୁଏ, ତଥାପି ସେହି ସେହି ଗୁଣର ଉପାସନା ଦ୍ୱାରା ତଦନୁରୂପ ଫଳ ମିଳେ ।

(ଗ) ଯଥା- 'ଯିଏ ଯେଉଁ ରୂପରେ ଉପାସନା କରେ, ସେ ସେହି ରୂପରେ ପାଏ'- ଏହି ପ୍ରକାର ବେଦ କହେ । 'ଯେଉଁ ପୁରୁଷ ଅଧ୍ୟବ୍ୟବସାୟକ, ସେ ଶରୀରତ୍ୟାଗ କଲେ ମଧ୍ୟ ଜାଣିପାରେ' ।

(ଘ) ପୁନଶ୍ଚ ଧର୍ମଶାସ୍ତ୍ରର- 'ହେ କୌନ୍ତେୟ । ମନୁଷ୍ୟ ଯାହାର ଭାବକୁ ସ୍ମରଣ କରେ, ସେ ଅନ୍ତ କାଳରେ ଶରୀର ତ୍ୟାଗ କଲେ ମଧ୍ୟ ଭାବୁକ ସେହି ପୁରୁଷର ଭାବକୁ ପାଏ' ?

(୪) ମୂଳ- (କ) ଯଦ୍ୟପ୍ୟେକ ଆତ୍ମା ସର୍ବଭୂତେଷୁ ସ୍ଥାବରଜଙ୍ଗମେଷୁ ଗୂଢ଼ଃ, ତଥାପି ଚିତ୍ତୋପାଧିବିଶେଷତାରତମ୍ୟାଦାତ୍ମନଃ କୂଟସ୍ଥନିତ୍ୟସ୍ୟୈକରୂପସ୍ୟାପ୍ୟୁତ୍ତରୋ-ତ୍ତରମାବିଷ୍କୃତ୍ୟେ ତାରତମ୍ୟମୈଶ୍ୱର୍ଯ୍ୟଶକ୍ତିବିଶେଷୈଃ ଶ୍ରୂୟତେ (ଖ) 'ତସ୍ୟ ଯ ଆତ୍ମାନମବିସ୍ତରାଂ ବେଦ', (ଐ.ଆ ୨।୩।୨।୨) ଇତ୍ୟତ୍ର । ସ୍ମୃତାବପି-'ଯଦ୍‌ବଦ୍ ବିଭୂତିମତ୍‌ସର୍ବଂ ଶ୍ରୀମଦୂର୍ଜିତମେବ ବା । ତତ୍ତଦେବାବଗଚ୍ଛତ୍ୱଂ ମମ ତେଜୋଽଂଶସମ୍ଭବମ୍ (ଗୀ ୨୦।୪୧) ଇତି । (ଗ) ଯତ୍ର ଯତ୍ର ବିଭୂତ୍ୟାଦ୍ୟବିଶୟଃ ସଃ ସ ଈଶ୍ୱର ଇତ୍ୟୁପାସ୍ୟତୟା ଚୋଦ୍ୟତେ । ଏବମିହାପ୍ୟାଦିତ୍ୟମଣ୍ଡଳେ ହିରଣ୍ମୟଃ ପୁରୁଷଃ ସର୍ବପାପ୍ମୋଦୟଲିଙ୍ଗାତ୍ ପରଃ ଏବେତି ବକ୍ଷ୍ୟତି । (ଘ) ଏବଂ ଆକାଶସ୍ତଲ୍ଲିଙ୍ଗାତ୍' (ବ୍ର.ସୂ ୧।୨।୨୨) ଇତ୍ୟାଦିଷୁ ଦ୍ରଷ୍ଟବ୍ୟମ୍ । (ଙ) ଏବଂ ସଦ୍ୟୋମୁକ୍ତିକାରଣମପ୍ୟାତ୍ମଜ୍ଞା-ନମୁପାଧିବିଶିଷ୍ଟଦ୍ୱାରେଣ ଉପଦିଶ୍ୟମାନମପ୍ୟବିବକ୍ଷିତୋପାଧିସମ୍ବନ୍ଧବିଶେଷଂ ପରାପର ବିଷୟତ୍ୱେନ ସନ୍ଦିହ୍ୟମାନଂ ବାକ୍ୟଗତି ପର୍ଯ୍ୟାଲୋଚନୟା ନିର୍ଣ୍ଣେତବ୍ୟଂ ଭବତି । (ଚ) ଯଥା- ଇହୈବ



ତାବତ୍ 'ଆନନ୍ଦମୟୋଽଭାସ୍ୟାତ୍ ଇତି ॥ ଏବମେକମପି ବ୍ରହ୍ମାପେକ୍ଷିତୋପାଧିସମ୍ବନ୍ଧଂ ନିରସ୍ତୋପାଧିସମ୍ବନ୍ଧଂ ଚୋପାସ୍ୟତ୍ୱେନ ଜ୍ଞେୟତ୍ୱେନ ଚ ବେଦାନ୍ତେଷୂପଦିଶ୍ୟତ ଇତି ପ୍ରଦର୍ଶୟିତୁଂ ପରୋ ଗ୍ରନ୍ଥ ଆରଭ୍ୟତେ । (ଛ) ଯଚ୍ଚ 'ଗତିସାମାନ୍ୟାତ୍' ଇତ୍ୟଚେତନକାରଣ-ନିରାକରଣମୁକ୍ତମ୍ । ତଦପି ବାକ୍ୟାନ୍ତରାଣି ବ୍ରହ୍ମବିଷୟାଣି ବ୍ୟାଚକ୍ଷଣେନ ବ୍ରହ୍ମବିପରୀତ କାରଣନିଷେଧେନ ପ୍ରପଞ୍ଚ୍ୟତେ-

(୪) **ଭାଷାନ୍ତର-** (କ) ଯଦି ଏକ ଆତ୍ମା ଜଡ଼ ଓ ଚେତନ ସମସ୍ତଙ୍କ ପାଖରେ ଲିପ୍ତ ଆକାରରେ ରହିଅଛି । ତଥାପି ଚିତ୍ତରୂପୀ ଉପାଧି ବିଶେଷର ତାରତମ୍ୟ ଦ୍ୱାରା ଉତ୍ତରୋତ୍ତର ଅଭିବ୍ୟକ୍ତ, କୂଟସ୍ଥ, ନିତ, ଏକରୂପ ଆତ୍ମାର ଐଶ୍ୱର୍ଯ୍ୟ ଶକ୍ତି ବିଶେଷ ଦ୍ୱାରା ତାରତମ୍ୟ ବେଦରେ ଶୁଣାଯାଏ ।

(ଖ) ଯଥା- 'ପୁରୁଷ ଶରୀରର ଆତ୍ମାକୁ ଭଲଭାବରେ ଜାଣ' । ଗୀତାରେ ମଧ- 'ହେ ଅର୍ଜ୍ଜୁନ ! ଯେଉଁ ଯେଉଁ ଐଶ୍ୱର୍ଯ୍ୟଶାଳୀ କାନ୍ତି ଯୁକ୍ତ ଉତ୍କୃଷ୍ଟ ପଦାର୍ଥ ଗୁଡ଼ିକ ଅଛନ୍ତି, ସେ ସବୁ ମୋର ତେଜାଂଶଠାରୁ ଜାତ ହୋଇଛନ୍ତି ବୋଲି ତୁମେ ଜାଣ' ।

(ଗ) ତେଣୁ ଯେଉଁ ଯେଉଁ ବିଭୂତିମାନଙ୍କର ଅତିଶୟତା ରହିଛି, ସେମାନେ ଈଶ୍ୱର ।

(ଘ) ଏହିଭଳି ଉଦାସ୍ୟ ରୂପଦ୍ୱାରା ବିଧାନ କରାଯାଏ ।

(ଘ) ଏହିପରି ଯେଉଁ ସୂତ୍ରରେ ଆଦିତ୍ୟ ମଣ୍ଡଳରେ ହିରଣ୍ମୟ ପୁରୁଷରୂପରେ ବର୍ଣ୍ଣନା କରାଯାଇଛି 'ସେ ସମସ୍ତ କଳୁଷରହିତ ହେଲେ ପରମାତ୍ମା ହୁଏ ବୋଲି ଜାଣିବା ଉଚିତ୍' ।

(ଙ) ବିଦେହମୁକ୍ତିର କାରଣ ଆତ୍ମଜ୍ଞାନ ବିଶେଷ ଉପାଧି ଦ୍ୱାରା ଉପଦେଶ ଦେଲା ପରେ ଓ ଉପାଧି ସମ୍ବନ୍ଧ ବିଶେଷ ବିବକ୍ଷିତ ନ ହେଲେ ପରବିଷୟକ ହୁଏ ଅଥବା ଅପର ବିଷୟକ ହୁଏ - ଏହି ପ୍ରକାର ସନ୍ଦେହର ମୀମାଂସା ଜାଣିବା ଉଚିତ୍ ।

(ଚ) ଯେପରି କି 'ଆନନ୍ଦମୟୋଽଭ୍ୟାସାତ୍' ଏହି ସୂତ୍ରରେ ଏକ ବ୍ରହ୍ମ ଉପାଧି ସମ୍ବନ୍ଧକୁ ଅପେକ୍ଷା କରି ଉପାସ୍ୟ ରୂପରେ ଏବଂ ଉପାଧି ସମ୍ବନ୍ଧରହିତ ଜ୍ଞେୟ ରୂପରେ ବେଦାନ୍ତବାକ୍ୟରେ ଉପଦିଷ୍ଟ ହେଉଛି ।

(ଛ) ଏହା କରିବା ପାଇଁ ଅଗ୍ରିମ ଗ୍ରନ୍ଥ ଆରମ୍ଭ କରାଯାଉଅଛି । 'ଗତିସାମାନ୍ୟାତ୍' ସୂତ୍ରରେ ବ୍ରହ୍ମ କାରଣ ବିଷୟକ ଜ୍ଞାନ ସମାନ ଓ ଯେଉଁ ଅଚେତନ କାରଣର ନିରାକରଣ କରାଗଲା, ତାହାର ବ୍ରହ୍ମ ବିଷୟକ ଅନ୍ୟ ବାକ୍ୟମାନଙ୍କୁ କହିବା ପାଇଁ ଇଚ୍ଛା କରି ସୂତ୍ରକାର ବ୍ରହ୍ମଭିନ୍ନକାରଣର ନିଷେଧ ଦ୍ୱାରା କହୁଛନ୍ତି ।

## आनन्दमयोऽभ्यासात् ॥ १२ ॥

## (୫) ଆନନ୍ଦମୟୋଽଭ୍ୟାସାତ୍ ୧।୧।୧୨

ଆନନ୍ଦମୟଃ- 'ଅନ୍ୟୋଽନ୍ତର ଆତ୍ମାଽନନ୍ଦମୟଃ' ଏହି ଶ୍ରୁତିରେ ଆନନ୍ଦମୟ ପରମାତ୍ମା । ଜୀବ ନୁହେଁ । ଅଭ୍ୟାସ୍ୟାତ୍ କାରଣ-ଆନନ୍ଦଶବ୍ଦ ବ୍ରହ୍ମପାଇଁ ଅନେକଥର କୁହାଯାଇଛି ।

(୬) ମୂଳ- (କ) ତୈତରୀୟକେଽନ୍ନମୟଂ ପ୍ରାଣମୟଂ ମନୋମୟଂ ବିଜ୍ଞାନମୟଂ ଚାନୁକ୍ରମ୍ୟାମ୍ନାୟତେ-'ତସ୍ମାଦ୍ ବା ଏତସ୍ମାଦ୍ ବିଜ୍ଞାନମୟାତ୍ । ଅନ୍ୟୋଽନ୍ତର ଆତ୍ମାନନ୍ଦମୟଃ' (ତୈ ୨।୫) ଇତି । (ଖ) ତତ୍ରସଂଶୟଃକିମିହାନନ୍ଦ-ମୟଶବ୍ଦେନ ପରମେବ ବ୍ରହ୍ମୋଚ୍ୟତେ, ଯତ୍ ପ୍ରକୃତମ୍-'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' (ତୈ ୨।୧) ଇତି କିମ୍ଵାଽନ୍ନମୟାଦିବଦ୍ବ୍ରହ୍ମଣୋଽର୍ଥାନ୍ତରମିତି । କିଂ ତାବତ୍ପ୍ରାପ୍ତମ୍ ?

(୬) ଭାଷାଂତର- (କ) ତୈତରୀୟ ଉପନିଷଦରେ ଅନ୍ନମୟ, ପ୍ରାଣମୟ, ମନୋମୟ ଓ ବିଜ୍ଞାନମୟକୁ ଆତ୍ମାରୂପରେ ଉପକ୍ରମ କରି ବିଜ୍ଞାନମୟଠାରୁ ଭିନ୍ନ ଆତ୍ମା ଆନନ୍ଦମୟ ବୋଲି କୁହାଯାଇଛି ।

(ଖ) କିନ୍ତୁ ସେଠାରେ ସନ୍ଦେହ ଯେ- ଆନନ୍ଦମୟଶବ୍ଦଦ୍ଵାରା ପରଂବ୍ରହ୍ମଙ୍କୁ କହୁଛି । ଯେଭଳି 'ସତ୍ୟଂ ଜ୍ଞାନମନନ୍ତ ବ୍ରହ୍ମ କୁହାଯାଇଛି, ଅଥବା ଅନ୍ନମୟାଦିସଦୃଶ ଏହା ବ୍ରହ୍ମଠାରୁ ଭିନ୍ନ ପଦାର୍ଥ । ଏହା କଣ ହେବ ?

(୭) ମୂଳ- (କ) ବ୍ରହ୍ମଣୋଽର୍ଥାନ୍ତରମମୁଖ୍ୟ ଆତ୍ମାନନ୍ଦମୟଃ ସ୍ୟାତ୍ । କସ୍ମାତ୍ ? ଅନ୍ନମୟାଦ୍ୟମୁଖ୍ୟାତ୍ମପ୍ରବାହପତିତତ୍ଵାତ୍ । (ଖ) ଅଥାପି ସ୍ୟାତ୍ସର୍ବାନ୍ତରତ୍ଵାଦାନନ୍ଦମୟୋ ମୁଖ୍ୟୋ ଏବାତ୍ମେତି ନ ସ୍ୟାତ୍ ପ୍ରିୟାଦ୍ୟବୟବଯୋଗାଚ୍ଛରୀରତ୍ୱଶ୍ରବଣାଚ୍ଚ । (ଗ) ମୁଖ୍ୟଶ୍ଚେଦାତ୍ମାନନ୍ଦମୟଃ ସ୍ୟାତ୍ । ନ ପ୍ରିୟାଦିସଂସ୍ପର୍ଶଃ ସ୍ୟାତ୍ । ଇହ ତୁ 'ତସ୍ୟ ପ୍ରିୟମେବ ଶିରଃ' ଇତ୍ୟାଦି ଶ୍ରୂୟତେ । ଶାରୀରତ୍ୱଞ୍ଚ ଶ୍ରୂୟତେ-ତସ୍ୟୈବ ଏବ ଶାରୀରଂ ଆତ୍ମା ଯଃ ପୂର୍ବସ୍ୟ' ଇତି । (ଘ) ତସ୍ୟ ପୂର୍ବସ୍ୟ ବିଜ୍ଞାନମୟସ୍ୟୈଷଃ ଏବ ଆତ୍ମା ଯ ଏଷ ଆନନ୍ଦମୟଃ ଇତ୍ୟର୍ଥଃ । ନ ଚ ସଶରୀରସ୍ୟ ସତଃ ପ୍ରିୟାପ୍ରିୟସଂସ୍ପର୍ଶୌ ବାରୟିତୁଂ ଶକ୍ୟଃ । ତସ୍ମାତ୍ ସଂସାର୍ଯ୍ୟେବାନନ୍ଦମୟ ଆତ୍ମେତ୍ୟବ ପ୍ରାପ୍ତେ-

(୭) ଭାଷାଂତର- ପୂର୍ବପକ୍ଷ-(କ) ଆନନ୍ଦମୟ ବ୍ରହ୍ମଠାରୁ ଭିନ୍ନପଦାର୍ଥ ଅମୁଖ୍ୟ ଆତ୍ମା ହେବା ଉଚିତ୍ । କାରଣ-ଅନ୍ନମୟାଦି ଅମୁଖ୍ୟାତ୍ମାର ପ୍ରବାହ ବା ପରମ୍ପରାରେ ପଠିତ ହେଉଛି ।



(ଖ) ପରନ୍ତୁ ଏହା ସବୁଠାରୁ ପୃଥକ୍ ହେଲେ ଆନନ୍ଦମୟ ମଧ୍ୟ ମୁଖ୍ୟ ଆତ୍ମା ହୁଏ ନାହିଁ । କାରଣ-ଏଥିରେ ପ୍ରିୟା ବୟାବାଦିର ଯାଗ ତଥା ଶାରୀରତ୍ୱର ଶ୍ରବଣ ହୁଏ ।

(ଗ) ଆନନ୍ଦମୟ ଯଦି ମୁଖ୍ୟାତ୍ମା ହୁଏ, ତେବେ ଏହା ସହିତ ପ୍ରିୟାଦିର ସମ୍ବନ୍ଧ ହୁଏ ନାହିଁ । କିନ୍ତୁ ଏହାର ପ୍ରିୟଶିର ଅଛି' । ଇତି ବେଦବାକ୍ୟ ।

(ଘ) ଶାରୀରତ୍ୱ ମଧ୍ୟ ଅଛି । ଯଥା 'ଯେ ଆନନ୍ଦମୟ, ତାହାର ପୂର୍ବଶାରୀର ଆତ୍ମା' । ଏହା ପୂର୍ବପୂର୍ବବିଜ୍ଞାନମୟର ଶାରୀର ଆତ୍ମା, ଯେକି ଆନନ୍ଦମୟ । ପୁଣି ଏହା ସଶରୀର ହେଲେ ପ୍ରିୟ ଓ ଅପ୍ରିୟର ସମ୍ବନ୍ଧ ନିବାରଣ ହୁଏ ନାହିଁ । ତେଣୁ ଆନନ୍ଦମୟ ସଂସାରୀ ଓ ଜୀବାତ୍ମା ।

(୮) ମୂଳ-(କ) ଇଦମୁଚ୍ୟତେ-'ଆନନ୍ଦମୟୋଽଭ୍ୟାସାତ୍' । ପର ଏବାତ୍ମାଽଽନନ୍ଦମୟୋ ଭବିତୁମର୍ହତି । କୁତଃ ? ଅଭ୍ୟାସାତ୍, (ଖ) ପରସ୍ମିନ୍ନେବ ହ୍ୟାତ୍ମନ୍ୟାନନ୍ଦଶବ୍ଦୋ ବହୁକୃତ୍ୱୋଽଭ୍ୟସ୍ୟତେ ।,ଆନନ୍ଦମୟଂ ପ୍ରସ୍ତୁତ୍ୟ 'ରସୋ ବୈ ସଃ' (ତୈ ୨।୬) ଇତି ତସ୍ୟୈବ ରସତ୍ୱମୁଚ୍ଚକ୍ତ୍ୱାଚ୍ୟତେ । (ଗ) 'ରସ ହ୍ୟେବାୟଂ ଲବ୍ଧ୍ୱା ଆନନ୍ଦୀଭବତି' ଇତି । (ଘ) 'କୋ ହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍ । ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍, ଏଷ ହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍ । ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍, ଏଷ ହ୍ୟେବାନନ୍ଦମୟେତୀତି' (ତୈ ୨।୭) । (ଙ) 'ସୈବାନନ୍ଦସ୍ୟ ମୀମାଂସା ଭବତି', 'ଏତମାନନ୍ଦମୟମାତ୍ମାନମୁପସଂକ୍ରାମତି' । 'ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତି କୁତଶ୍ଚନ' (ତୈ ତି ୨।୮।୬) ଇତି ଚ । (ଚ) ଶ୍ରୁତ୍ୟନ୍ତରେ ଚ 'ବିଜ୍ଞାନମାନନ୍ଦଂ ବ୍ରହ୍ମ' (ବୃହ ୩।୯।୨୮) ଇତି ଚ । (ଚ) ଶ୍ରୁତ୍ୟନ୍ତରେ ଚ 'ବିଜ୍ଞାନମାନନ୍ଦଂ ବ୍ରହ୍ମ' (ଦୃହ ୩।୯।୨୮) ଇତି ବ୍ରହଣ୍ୟେବାନନ୍ଦଶବ୍ଦୋ ଦୃଷ୍ଟଃ । ଏବମାନନ୍ଦଶବ୍ଦସ୍ୟ ବହୁକୃତ୍ୱୋ ବ୍ରହ୍ମଣ୍ୟଭ୍ୟାସାଦାନନ୍ଦମୟ ଆତ୍ମାବ୍ରହ୍ମେତି ଗମ୍ୟତେ ।

(୮) ଭାଷାନ୍ତର-ସମାଧାନ-(କ) କୁହାଯାଇଛି 'ଆନନ୍ଦମୟୋଽଭ୍ୟାସାତ୍' । ପରମାତ୍ମା ଆନନ୍ଦମୟ ହୋଇପାରେ । କିପରି ? ଅଭ୍ୟାସାତ୍ ।

(ଖ) ପରମାତ୍ମାଠାରେ ବହୁବାର ଆନନ୍ଦଶବ୍ଦ ଉଚ୍ଚାରଣ କରାଯାଇଛି । ଆନନ୍ଦମୟକୁ ପ୍ରସ୍ତୁତ କରି ।

(ଗ) 'ରସ ବୈବ୍ରହ୍ମ' ଏହି ବାକ୍ୟରେ ବ୍ରହ୍ମର ରସତ୍ୱକୁ ପ୍ରତିପାଦନ କରି 'ପୁରୁଷ ରସକୁ ପାଇ ଆନନ୍ଦ ହୁଏ' ବୋଲି କହୁଛି ।

(ଘ) ପୁନଶ୍ଚ ଯଦି ଆକାଶ ହୃଦୟାକାଶରେ ରହିଥିବା ଆନନ୍ଦରୂପ ଆତ୍ମା ନ ହୁଏ, ତେବେ କିଏ ଅପାନବ୍ୟାପାର (ନିଃଶ୍ୱାସ) କରିପାରେ କରିପାରେ ଏବଂ କିଏ ପ୍ରାଣବ୍ୟାପାର (ଉଚ୍ଛ୍ୱାସ) କରିପାରେ । ତେଣୁ 'ଆତ୍ମା ସମସ୍ତଙ୍କୁ ଆନନ୍ଦ ଦେଇପାରେ' । ଏହା ଆନନ୍ଦର

ବିଗ୍ରହ' । 'ବିଦ୍ୱାନ ଏହି ଆନନ୍ଦକୁ ପାଏ', 'ବ୍ରହ୍ମର ଆନନ୍ଦ ଜାଣିଥିବା ବ୍ୟକ୍ତି କାହାକୁ ଭୟ କରେ ନାହିଁ', 'ଆନନ୍ଦ ବ୍ରହ୍ମ ବୋଲିଜାଣ' !

(ଙ) ପୁନଶ୍ଚ 'ବିଜ୍ଞାନ ଆନନ୍ଦ ବ୍ରହ୍ମ' ଇତି ବ୍ରହ୍ମଠାରେ ଆନନ୍ଦଶବ୍ଦ ଜଣାଯାଏ । ଏହିପରି ଆନନ୍ଦଶବ୍ଦର ବହୁଥର ବ୍ରହ୍ମରେ ଆବୃତ୍ତି ହେତୁ ଆନନ୍ଦମୟାତ୍ମା ବ୍ରହ୍ମ ବୋଲି ଜଣାପଡ଼େ ।

(୯) ମୂଳ-(କ) ଯଦୁକ୍ତ ମନ୍ନମୟାଦ୍ୟସୁଖ୍ୟାତ୍ମପ୍ରବାହପତିତତ୍ୱାଦାନନ୍ଦମୟସ୍ୟା-ପ୍ୟମୁଖ୍ୟତ୍ୱମିତି, ନାସୌ ଦୋଷୋ, 'ଆନନ୍ଦମୟସ୍ୟ ସର୍ବାନ୍ତରତ୍ୱାତ୍ (ଖ) ମୁଖ୍ୟମେବ ହ୍ୟାତ୍ମାନମୁପଦିଦିକ୍ଷୁ ଶାସ୍ତ୍ରଂ ଲୋକବୁଦ୍ଧିମନୁସରତ୍, ଅନ୍ନମୟଂ ଶରୀରମାତ୍ମାନ ମତ୍ୟନ୍ତମୂଢାନାମାତ୍ମତ୍ୱେନ ପ୍ରସିଦ୍ଧମନୁଦ୍ୟ ମୂଷାନିଷିକ୍ତଦ୍ରୂତତାମ୍ରାଦିପ୍ରତିମାବତ୍ତତୋଽନ୍ତରଂ ତତୋଽନ୍ତରମିତ୍ୟେବଂ ପୂର୍ବେଣ ପୂର୍ବେଣ ସମାନମୁତ୍ତରମୁତ୍ତରମନାତ୍ମନାମାତ୍ମେତି ଗ୍ରାହୟତ୍, ପ୍ରତିପତ୍ତିସୌକର୍ଯ୍ୟାପେକ୍ଷୟା ସର୍ବାନ୍ତରମୁଖ୍ୟମାନନ୍ଦମୟାତ୍ମାନମୁପଦିଦେଶେତି ଶ୍ଲିଷ୍ଟତରମ୍ । (ଗ) ଯଥାଽରୁନ୍ଧତୀନିଦର୍ଶନେ ବହୁଷ୍ୱପି ତାରାସ୍ୱମୁଖ୍ୟାମରୁନ୍ଧତୀଷୁ ଦର୍ଶିତାସୁ ଯାଽନ୍ତ୍ୟା ପ୍ରଦର୍ଶ୍ୟତେ ସା ମୁଖ୍ୟୈବାରୁନ୍ଧତୀ ଭବତି, ଏବମିହାପ୍ୟାନନ୍ଦମୟସ୍ୟ ସର୍ବାନ୍ତରତ୍ୱାନ୍ମୁଖ୍ୟମାତ୍ମତ୍ୱମ୍ । (ଘ) ଯତ୍ତୁ ବ୍ରୁଷେପ୍ରିୟାଦୀନାଂ ଶିରସ୍ତ୍ୱାଦିକଳ୍ପନାଽନୁପପନ୍ନା ମୁଖସ୍ୟାତ୍ମନ ଇତି, ଅତୀତାନନ୍ତରୋପାଧିଜନିତା ସା ନ ସ୍ୱାଭାବିକୀତ୍ୟଦୋଷଃ । (ଚ) ଶାରୀରତ୍ୱମତ୍ୟାନନ୍ଦମୟସ୍ୟାନ୍ନମୟାଦିଶରୀରପରମ୍ପରୟା ପ୍ରଦର୍ଶ୍ୟମାନତ୍ୱାତ୍, ନ ପୁନଃ ସାକ୍ଷାଦେବ ଶାରୀରତ୍ୱଂ ସଂସାରିବତ୍ ତସ୍ମାଦାନନ୍ଦମୟଃ ପର ଏବାତ୍ମା ।

**(୯) ଭାଷାଂତର-** (କ) ଯାହା କୁହାଯାଇଛି ଯେ- ଅନ୍ନମୟାଦି ଅମୁଖ୍ୟାତ୍ମାର ପ୍ରବାହରେ ପଡ଼ିଲେ ଆନନ୍ଦମୟ ମଧ୍ୟ ଆମୁଖ୍ୟାତ୍ମା ହୁଏ । ଏଥିରେ ଦୋଷନାହିଁ । କାରଣ- ଆନନ୍ଦମୟ ସମସ୍ତମାୟାଦି ମଧ୍ୟରେ ଅବସ୍ଥିତ ।

(ଖ) ମୁଖ୍ୟାତ୍ମାର ଉପଦେଶ ଦେଉଥିବା ଶାସ୍ତ୍ର ଲୋକବୁଦ୍ଧିକୁ ଅନୁସରଣ କରି ଅତ୍ୟନ୍ତମୂଢ ପୁରୁଷ ପାଖରେ ଆତ୍ମରୂପରେ ଅନାତ୍ମା ଅନ୍ନମୟ ଶରୀରର ଅନୁବାଦ କରି ଛାଞ୍ଚରେ ଥିବା ଦ୍ରବୀଭୂତ ତାମ୍ରାଦିର ପ୍ରତିମାସଦୃଶ ଏହା ଅଭ୍ୟନ୍ତର, ଏହାର ଅଭ୍ୟନ୍ତର ପୂର୍ବପୂର୍ବର ପରପର ଆତ୍ମାକୁ ଗ୍ରହଣ କରି ପ୍ରତିପତ୍ତିସାଙ୍କର୍ଯ୍ୟ ଅପେକ୍ଷା ପରବର୍ତ୍ତୀ ମୁଖ୍ୟ ଆନନ୍ଦମୟ ଆତ୍ମାକୁ ଉପଦେଶ ଦିଏ । ଏହାହିଁ ସର୍ବଦା ଠିକ୍ ।

(ଗ) ଯେପରିକି ଅରୁନ୍ଧତୀ ତାରକାଦର୍ଶନ ଦୃଷ୍ଟାନ୍ତରେ ବହୁତ ଗୌଣତାରାମାନଙ୍କୁ ଅରୁନ୍ଧତୀ ରୂପରେ ଦେଖାଇ ପରିଶେଷରେ ମୁଖ୍ୟ ଅରୁନ୍ଧତୀ ତାରାକୁ ଦେଖାଇ ଦିଆଯାଏ,

ସେହିପରି ଏଠାରେ ମଧ୍ୟ ଆନନ୍ଦମୟ ସମସ୍ତଙ୍କଠାରେ ସନ୍ନିବେଶିତ ହେତୁ ଏହାହିଁ ମୁଖ୍ୟ ଆତ୍ମତ୍ୱ ।

(ଘ) ଯାହାକି କୁହାଯାଇଛି- ମୁଖ୍ୟାତ୍ମାର ପ୍ରିୟାପ୍ରିୟମାନଙ୍କର ମସ୍ତକାଦିକଳ୍ପନା ଅଯୁକ୍ତ କହିବା ଠିକ୍ । କାରଣଆନନ୍ଦମୟର ପୂର୍ବରୁ ଓ ମନୋମୟର ପରେ ବିଜ୍ଞାନମୟ ଉପାଧିଦ୍ୱାରା ଏହା କଳ୍ପନା ହେବା ସ୍ୱାଭାବିକ ନୁହେଁ ।

(ଙ) ଆନନ୍ଦମୟର ଶାରୀରତ୍ୱ ମଧ୍ୟ ଅନ୍ନମୟାଦି ଶରୀର ପରମ୍ପରା ଦ୍ୱାରା ଦେଖାଯାଏ । ସଂସାରୀର ସଦୃଶ ଏହାର ସାକ୍ଷାତ୍ ଶରୀରତ୍ୱ ନାହିଁ । ତେଣୁ ଆନନ୍ଦମୟ ହିଁ ପରମାତ୍ମା ଅଟେ ।

## विकारशब्दान्नेतिचेन्न प्राचुर्यात् ॥ १३ ॥

## (୧) ବିକାରଶବ୍ଦାନ୍ନେତି ଚେନ୍ନ ପ୍ରାଚୁର୍ଯ୍ୟାତ୍ ୧।୧।୧୩

ବିକାରଶବ୍ଦାତ୍-'ଆନନ୍ଦମୟ' ଏହି ଶବ୍ଦରେ ମୟଟ୍ ପ୍ରତ୍ୟୟ ବିକାରାର୍ଥକବାଚକ । ନ-ତେଣୁ ବ୍ରହ୍ମ ଆନନ୍ଦମୟ ଶବ୍ଦାର୍ଥପରକ ନୁହେଁ । ଇତିଚେତ୍ ନ-ଏହା ଯଦି କହିବା, ତଥାପି ଠିକ୍ ନୁହେଁ । କାରଣ-ପ୍ରାଚୁର୍ଯ୍ୟାତ୍-ପ୍ରାଚୁର୍ଯ୍ୟାର୍ଥରେ ମୟଟ୍ ପ୍ରତ୍ୟୟ ବିଧାନ କଲେ ଆନନ୍ଦମୟ ପରମାତ୍ମା ପରକ ହୋଇପାରିବ ।

(୨) ମୂଳ-(କ) ଅତ୍ରାହ-ନାନନ୍ଦମୟଃ ପର ଆତ୍ମା ଭବିତୁମର୍ହତି । କସ୍ମାତ୍ ? ବିକାରଶର୍ବ୍ଦାତ୍ । ପ୍ରକୃତିବଚନାଦୟମନ୍ୟଃଶବ୍ଦୋ ବିକାରବଚନଃ ସମଧିଗତଃ ଆନନ୍ଦମୟ ଇତି ମୟଟୋ ବିକାରାର୍ଥତ୍ୱାତ୍ । ତସ୍ମାଦନ୍ନମୟାଦିଶବ୍ଦବଦ୍‌ବିକାରବିଷୟ ଏବାନନ୍ଦମୟଶବ୍ଦ ଇତି ଚେତ୍ । (ଖ) ନ, ପ୍ରାଚୁର୍ଯ୍ୟାର୍ଥେଽପି ମୟଟଃ ସ୍ମରଣାତ୍ । 'ତତ୍ ପ୍ରକୃତବଚନେ ମୟଟ୍' ଇତି ହି ପ୍ରଚୁରତାୟାମପି ମୟଟ୍ ସ୍ମର୍ଯ୍ୟତେ । ଯଥା 'ଅନ୍ନମୟୋ ଯଜ୍ଞଃ' ଇତ୍ୟନ୍ନପ୍ରଚୁର ଉଚ୍ୟତେ । ଏବମାନନ୍ଦପ୍ରଚୁରଂ ବ୍ରହ୍ମାନନ୍ଦମୟ ଉଚ୍ୟତେ । (ଗ) ଆନନ୍ଦପ୍ରଚୁରତ୍ୱଞ୍ଚ ବ୍ରହ୍ମଣୋ ମନୁଷ୍ୟତ୍ୱାଦାରଭ୍ୟୋତ୍ତରସ୍ମିନ୍ନୁତ୍ତରସ୍ମିନ୍ ସ୍ଥାନେ ଶତଗୁଣ ଆନ୍ଦେଇତ୍ୟୁକ୍ତ୍ୱା ବ୍ରହ୍ମାନନ୍ଦସ୍ୟ ନିରତିଶୟତ୍ୱାବଧାରଣାତ୍ । ତସ୍ମାତ୍ ପ୍ରାଚୁର୍ଯ୍ୟାର୍ଥେ ମୟଟ୍ ।

(୨) ଭାଷାଂତର- (କ) ତେଣୁ କୁହାଯାଇଛି ଯେ- ଆନନ୍ଦମୟ ପରମାତ୍ମା ହୋଇପାରେ ନାହିଁ । କାରଣ-ବିକାରଶବ୍ଦ ହେତୁ । ତେଣୁ ଆନନ୍ଦଶବ୍ଦଠାରୁ ପ୍ରକୃତି ବଚନ ଭିନ୍ନ ଏବ ଶବ୍ଦ ବିକାରବାଚକ । କାରଣ-ଆନନ୍ଦମୟଶବ୍ଦରେ ମୟଟ୍ ବିକାରାର୍ଥକ ।

ତେଣୁ ଅନ୍ନମୟାଦି ଶବ୍ଦଭଳି ଆନନ୍ଦମୟଶବ୍ଦ ବିକାରାର୍ଥକ ଅଟେ । ଏହା ତୁମେ ଯଦି କୁହ- ତେବେ କସ୍ମିନ୍‌କାଳେ ଠିକ୍ ହେବନାହିଁ ।

(ଖ) କାରଣ- ପ୍ରାଚୁର୍ଯ୍ୟାର୍ଥରେ ମଧ୍ୟ ମୟଟ୍ ପ୍ରତ୍ୟୟ ହୁଏ । 'ପ୍ରକୃତି ବାଚକ ଶବ୍ଦ ଦ୍ୱାରା ମୟଟ୍ ପ୍ରତ୍ୟୟ ହୁଏ ବୋଲି ପ୍ରାଣିନୀୟ ସୂତ୍ର ଦ୍ୱାରା ମଧ୍ୟ ଏହା ପ୍ରମାଣିତ । ଯଥା 'ଅନ୍ନମୟୋ ଯଜ୍ଞଃ' ବୋଲି ଏହି ବାକ୍ୟରେ ଅନ୍ନ ପ୍ରଚୁର କୁହାଯାଇଛି । ତଥା ଆନନ୍ଦ ପ୍ରାଚୁରାର୍ଥରେ ବ୍ରହ୍ମାନନ୍ଦମୟ କୁହାଯାଇଅଛି ।

(ଗ) ବ୍ରହ୍ମର ପ୍ରଚୁର ହିଁ ମନୁଷ୍ୟଠାରୁ ଆରମ୍ଭ କରି ଉତ୍ତରୋତ୍ତର ସ୍ଥାନରେ ଶହ ଶହ ଗୁଣରେ ଆନନ୍ଦ ଅଛି ବୋଲି କହି ବ୍ରହ୍ମାନନ୍ଦର ଆଧିକ୍ୟକୁ ପ୍ରତିପାଦନ କରୁଛି । ଅତଃ ପ୍ରାଚୁର୍ଯ୍ୟାର୍ଥେ ମୟଟ୍ ପ୍ରତ୍ୟୟ ହୋଇଅଛି ।

## तद्धेतुव्यपदेशाच्च ॥ १४ ॥

## (୧) ତଦ୍ଧେତୁ ବ୍ୟପଦେଶାତ୍ ୧।୧।୧୪

ତଦ୍ଧେତୁବ୍ୟପଦେଶାତ୍- 'ଏଷଃ ହ୍ୟେବାନନ୍ଦୟତି' ଏହି ଶ୍ରୁତିରେ ସମସ୍ତ ଜୀବମାନଙ୍କର ଆନନ୍ଦର ପ୍ରତି ବ୍ରହ୍ମ ହିଁ କାରଣ ବୋଲି କୁହାଯାଇଛି । ତେଣୁ ଆନନ୍ଦମୟ ହିଁ ପରମାତ୍ମା ।

(୨)ମୂଳ- (କ) ଇତଶ୍ଚ ପ୍ରାଚୁର୍ଯ୍ୟାର୍ଥେ ମୟଟ୍, ଯସ୍ମାଦାନନ୍ଦହେତୁତ୍ୱଂ ବ୍ରହ୍ମଣୋ ବ ପଦିଶତି ଶ୍ରୁତିଃ- 'ଏଷଃ ଆନନ୍ଦୟାତି', ଇତି । ଆନନ୍ଦୟତୀତ୍ୟର୍ଥଃ । ଯଃ ହ୍ୟନ୍ୟାନନ୍ଦୟତି ସ ପ୍ରଚୁରରାନନ୍ଦ ଇତି ପ୍ରସିଦ୍ଧଂ ଭବତି । (ଖ) ଯଥା ଲୋକେ ଯୋଽନ୍ୟେଷାଂ ଧନିକତ୍ୱମାପାଦୟତି, ସ ପ୍ରଚୁରଧନ ଇତି ଗମ୍ୟତେ, ତଦ୍‌ବତ୍ । ଯସ୍ମାତ୍ ପ୍ରାଚୁର୍ଯ୍ୟାଽପି ମୟଟଃ ସମ୍ଭବାଦାନନ୍ଦମୟଃ ପର ଏବାତ୍ମା ।

(୨) ଭାଷାଂତର- (କ) ତେଣୁ ପ୍ରାଚୁର୍ଯ୍ୟାର୍ଥେ ମୟଟ ପ୍ରତ୍ୟୟ କରାଯାଇଛି । ଯେହେତୁ ବେଦ ବ୍ରହ୍ମର ଆନନ୍ଦ ହେତୁତ୍ୱ କହୁଅଛି- 'ଏହାହିଁ ଆନନ୍ଦ ଦିଏ' । 'ଆନନ୍ଦାୟତି' ଅର୍ଥ ଆନନ୍ଦୟତି । ଯେ କି ଅପରକୁ ଆନନ୍ଦ ଦିଏ ସେ ପ୍ରଚୁରାନନ୍ଦ ବୋଲି ଜଣାପଡ଼େ ।

(ଖ) ଯଥା-ସଂସାରରେ ଯିଏ ଅନ୍ୟ ନିର୍ଦ୍ଧନ ପୁରୁଷକୁ ଧନୀ କରିଦିଏ, ସେ ହିଁ ପ୍ରଚୁର ଧନଶାଳୀ ବୋଲି ଜଣାପଡ଼େ; ସେହିପରି ପ୍ରାଚୁର୍ଯ୍ୟାର୍ଥେ ମୟଟ୍ ପ୍ରତ୍ୟୟର ସମ୍ଭବ ହେତୁ ଆନନ୍ଦହିଁ ଆତ୍ମା ବୋଲି ଜଣାପଡ଼େ ।



## मान्त्रवर्णिकमेव च गीयते ॥ १५ ॥

## (୧) ମାନ୍ତ୍ର ବର୍ଣ୍ଣିକମେବ ଚ ଗୀୟତେ ୧।୧।୧୫

ମାନ୍ତ୍ରବର୍ଣ୍ଣିକମେବ ଚ- 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଏହି ମନ୍ତ୍ରରେ ନିର୍ଦ୍ଧାରିତ ବ୍ରହ୍ମର, ଗୀୟତେ- 'ଅନ୍ୟୋଽନ୍ତର ଆତ୍ମାନନ୍ଦମୟତ' ଏହି ବ୍ରାହ୍ମଣ ବାକ୍ୟରେ କୁହାଯାଇଛି । କାରଣ- ସେ ପ୍ରକୃତ ଅଟେ, ତେଣୁ ଆନନ୍ଦମୟ ପରମାତ୍ମା ଅଟେ ।

(୨) ମୂଳ- (କ) ଇତଶ୍ଚାନନ୍ଦମୟଃ ପର ଏବ ଆତ୍ମା । ଯସ୍ମାତ୍ । ବ୍ରହ୍ମବିଦା-ମାପ୍ନୋତି ପରମ୍', ଇତ୍ୟୁପକ୍ରମ୍ୟ 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' (ତୈ ୧।୧) ଇତ୍ୟସ୍ମିନ୍ମନ୍ତ୍ରେ ଯତ୍ ପ୍ରକୃତଂ ବ୍ରହ୍ମ ସତ୍ୟଜ୍ଞାନାନନ୍ତବିଶେଷଣୈର୍ନିର୍ଦ୍ଧାରିତମ୍, ଯସ୍ମାଦା-କାଶାଦିକ୍ରମେଣ ସ୍ଥାବରଜଙ୍ଗମାନି ଭୂତାନ୍ୟଜାୟନ୍ତ । (ଖ) ଯଚ୍ଚ ଭୂତାନି ସୃଷ୍ଟ୍ୱା ତାନ୍ୟନୁପ୍ରବିଶ୍ୟ ଗୁହାୟାମବସ୍ଥିତଂ ସର୍ବାନ୍ତରଂ ଯସ୍ୟ ବିଜ୍ଞାନାୟ 'ଅନ୍ୟୋଽନ୍ତର ଆତ୍ମାଽନ୍ୟୋଽନ୍ତର ଆତ୍ମା', ଇତି ପ୍ରକ୍ରାନ୍ତମ୍ । ତନ୍ମାନ୍ତ୍ରବାର୍ଣ୍ଣିକମେବ ବ୍ରହ୍ମେହ ଗୀୟତେ, 'ଅନ୍ୟୋନ୍ତର ଆତ୍ମଶନନ୍ଦମୟଃ' (ତୈ ୨।୫) ଇତି । (ଗ) ମନ୍ତ୍ରବ୍ରାହ୍ମଣୟୋଶ୍ଚୈକାର୍ଥତ୍ୱଂ ଯୁକ୍ତମ୍, ଅବିରୋଧାତ୍ । ଅନ୍ୟଥା ହି ପ୍ରକୃତହାନା ପ୍ରକୃତପ୍ରକ୍ରିୟେ ସ୍ୟାତାମ୍ । ନ ଚାନ୍ନମୟାଦିଭ୍ୟ ଇବାନନ୍ଦମୟାଦନ୍ୟୋଽନ୍ତର ଆତ୍ମାଽଭିଧୀୟତେ । (ଘ) ଏତନ୍ନିଷ୍ଠୈବ ଚ 'ସୈଷା ଭାର୍ଗବୀ ବାରୁଣୀ ବିଦ୍ୟା', (ତୈ ୩।୬) । ତସ୍ମାଦାନନ୍ଦମୟଃ ପର ଏବାତ୍ମା ।

**(୨) ଭାଷାଂତର-** (କ) ଆନନ୍ଦମୟ ପରମାତ୍ମ । କାରଣ- 'ବ୍ରହ୍ମବିତ୍ ପରଂବ୍ରହ୍ମକୁ ଜାଣେ' ଏହିଠାରୁ ଆରମ୍ଭ କରି 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଏହି ମନ୍ତ୍ର ପର୍ଯ୍ୟନ୍ତ ସତ୍ୟ, ଜ୍ଞାନ, ଅନନ୍ତ ଇତ୍ୟାଦି ବିଶେଷଣ ଦ୍ୱାରା ବ୍ରହ୍ମର ପ୍ରକୃତରୂପ ନିର୍ଦ୍ଧାରଣ କରାଯାଇଛି, ଯଦ୍ୱାରା ଆକାଶାଦି କ୍ରମରେ ସ୍ଥାବର ଓ ଜଙ୍ଗମାଦି ଉତ୍ପତ୍ତି ହେଲେ ।

(ଖ)ସେହି ଭୂତଗୁଡ଼ିକୁ ସୃଷ୍ଟିକରି ସେଠାରେ ପ୍ରବେଶ କରି ବୁଦ୍ଧି ରୂପ ଗୁହାରେ ଅବସ୍ଥାନ କରେ, ଯାହାର ଜ୍ଞାନ ନିମିତ୍ତ 'ଅପରଟି ଅନାତ୍ମା' ବୋଲି କୁହାଯାଇଛି । ସେହି ମନ୍ତ୍ରରେ ବର୍ଣ୍ଣିତ ବ୍ରହ୍ମ ମଧ୍ୟ ଅପରଟି ଆନନ୍ଦମୟ ବୋଲି କହୁଛି ।

(ଗ) ମନ୍ତ୍ର ଓ ବର୍ଣ୍ଣ ଉଭୟ ଅବିରୋଧ ହେତୁ ଏକ ହୋଇପାରେ, ନୋଚେତ୍ ପ୍ରକୃତାର୍ଥକୁ ତ୍ୟାଗକରି ଅପ୍ରକୃତାର୍ଥକୁ ପ୍ରବର୍ତ୍ତନ କରିପାରେ । କିନ୍ତୁ ଅନ୍ନମୟ ଦ୍ୱାରା ଆତ୍ମା କୁହାଗଲା ଭଳି ଆନନ୍ଦମୟଠାରୁ ଅନ୍ୟ ଗୋଟିଏ ଆତ୍ମା ଅଛି ବୋଲି କୁହାଯାଇନାହିଁ ।

(ଘ) ତଦ୍ ବିଷୟ- 'ସେହି ବିଦ୍ୟାକୁ ଭୃଗୁକୁ ବରୁଣଦ୍ୱାରା ମିଳିଲା, ସେହି ହେତୁ ଆନନ୍ଦମୟ ହିଁ ପରମାତ୍ମା ଅଟେ ।

नेतरोऽनुपपत्तेः ॥ १६ ॥

## (୧) ନେତରୋପପତ୍ତେଃ ୧ । ୧। ୧୬

ଇତରଃ-ଜୀବ, ନ-ଆନନ୍ଦମୟ ନୁହେଁ । ଅନୁପପତ୍ତେଃ-କାରଣ- '୦ ।ଽକା-ମୟତ' ଏହି ପ୍ରକାର ସୃଷ୍ଟିର ପୂର୍ବରୁ ଶ୍ରୂୟମାଣ କାମୟିତୃତ୍ୱାଦି ଧର୍ମର ଏଠାରେ ଉପପତ୍ତି ନାହିଁ । ତେଣୁ ଆନନ୍ଦମୟ ହିଁ ପରମାତ୍ମା ଅଟେ ।

(୨) ମୂଳ-(କ) ଇତଶ୍ଚାନନ୍ଦମୟଃ ପର ଏବାତ୍ମା, ନେତର ଈଶ୍ୱର, ଈଶ୍ୱରାଦନ୍ୟଃ ସଂସାରୀ ଜୀବ ଇତ୍ୟର୍ଥଃ । ନ ଜୀବ ଆନନ୍ଦମୟଶବ୍ଦେନାଭିଧୀୟତେ । (ଖ) କସ୍ମାତ୍ ? ଅନୁପପତ୍ତେଃ । ଆନନ୍ଦମୟଂ ହି ପ୍ରକୃତ୍ୟ ଶ୍ରୂୟତେ "ସୋଽକାମୟତ, ବହୁସ୍ୟାଂ ପ୍ରଜାୟେୟେତି । ସଃ ତପୋଽତପ୍ୟତ । ସ ତପସ୍ତପ୍ତ୍ୱା । ଇଦଂ ର୍ବମସୃଜତ । ଯଦିଦଂ କିଞ୍ଚ" (ତୈ ୨।୬) ଇତି । (ଗ) ତତ୍ର ପ୍ରାକ୍‌ଶରୀରାଦ୍ୟୁତ୍ପତ୍ତେରଭିଧାନଂ ସୃଜ୍ୟମାନାନାଞ୍ଚ ବିକାରାଣାଂ ସ୍ରଷ୍ଟୁରବ୍ୟତିରେକଂ ସର୍ବବିକାରସୃଷ୍ଟିଶ୍ଚ ନ ଯରସ୍ମାଦାତ୍ମନୋଽନ୍ୟତ୍ରୋପପଦ୍ୟତେ ।

**(୨) ଭାଷାଂତର-** (କ) ଆନନ୍ଦମୟ ହିଁ ପରମାତ୍ମା, ଏହା ଅନ୍ୟ କୌଣସି ନୁହେଁ ଅର୍ଥାତ୍ ଅନ୍ୟଟି ଈଶ୍ୱରଠାରୁ ପୃଥକ୍ ସଂସାରୀ ଜୀବ । ଜୀବ ମଧ୍ୟ ଆନନ୍ଦମୟ ଦ୍ୱାରା କୁହାଯାଏ ନାହିଁ ।

(ଖ) କିପରି ଏହା କୁହାଯାଏ ? ଅନୁପପତ୍ତିଦ୍ୱାରା ହିଁ ସମ୍ଭବ । ତେଣୁ ଆନନ୍ଦମୟକୁ ପ୍ରସ୍ତୁତ କରି ଶ୍ରୁତି କହେ- "ସେ କାମନା କଲେ ଯେ ମୁଁ ଏକରୁ ବହୁତ ହେବି । ସେ ତପସ୍ୟା କଲେ । ତପକରି ସମସ୍ତଙ୍କୁ ଉତ୍ପନ୍ନ କଲେ ଯାହାକିଛି ବର୍ତ୍ତମାନ ଅଛି ।"

(ଗ) ତେଣୁ ଶରୀରାଦିର ଉତ୍ପତ୍ତି ପୂର୍ବରୁ ତପସ୍ୟା ଓ ସୃଷ୍ଟିର ବିକାର ସ୍ରଷ୍ଟାଠାରୁ ଅଭିନ୍ନ । ଏସବୁ ପରମାତ୍ମା ବ୍ୟତୀତ ଅନ୍ୟ କୌଣସିଠାରୁ ଉତ୍ପନ୍ନ ହୁଏ ନାହିଁ ।

भेदव्यपदेशाच्च ॥ १७ ॥

## (୧) ଭେଦବ୍ୟପଦେଶାଚ୍ଚ ୧ । ୧। ୧୭

ଭେଦବ୍ୟପଦେଶାତ୍ ଚ = 'ରସ' ହ୍ୟେବାୟଂ ଲବ୍ଧାନନ୍ଦୀ ଭବତି' ଏହି ଶ୍ରୁତି ଜୀବ ଏବଂ ଆନନ୍ଦମୟ ଭେଦରେ ବ୍ୟପଦେଶ କରେ । ତେଣୁ ଆନନ୍ଦମୟ ଭେଦରେ ବ୍ୟପଦେଶ କରେ । ତେଣୁ ଆନନ୍ଦମୟ ହିଁ ପରମାତ୍ମା ।



(୨) ମୂଳ-(କ) ଇତଶ୍ଚ ଆନନ୍ଦମୟ ସଂସାରୀ । ଯସ୍ମାଦାନନ୍ଦମୟାଧିକାରେ- 'ରସୋ ବୈ ସଃ, ରସଃ ହ୍ୟେବାୟଂ ଲବ୍ଧ୍ୱାଽଽନନ୍ଦୀ ଭବତି (ତୈ ୨।୭) ଇତି ଜୀବାନନ୍ଦମୟୌ ଭେଦେନ ବ୍ୟପଦିଶତି । ନ ଲବ୍ଧୈବ ଲବ୍ଧବ୍ୟୋ ଭବତି । (ଖ) କଥଂ ତର୍ହି 'ଆତ୍ମାଽନ୍ୱେଷ୍ଟବ୍ୟଃ', 'ଆତ୍ମାଲାଭାନ୍ନ ପରଂ ବିଦ୍ୟତେ' ଇତି ଶ୍ରୁତିସ୍ମୃତୀ ? ଯାବତା ନ ଲବ୍ଧୈବ ଲବ୍ଧବ୍ୟୋ ଭବତୀତ୍ୟୁକ୍ତମ୍ । ବାଢମ୍, ତଥାପ୍ୟାତ୍ମନୋଽପ୍ରଚ୍ୟୁ-ତାତ୍ମାଭାବସ୍ୟୈବ ସତସ୍ତତ୍ତ୍ୱାନବବୋଧନିମିତ୍ତୋ ମିଥ୍ୟୈବ ଦେହାଦିଷ୍ୱନାତ୍ମସ୍ୱାତ୍ମତ୍ୱ-ନିଶ୍ଚୟୋ ଲୌକିକୋଦୃଷ୍ଟଃ । (ଗ) ତେନ ଦେହାଦିଭୂତସ୍ୟାତ୍ମନୋଽପ୍ୟାତ୍ମାଽନନ୍ୱିଷ୍ଟୋଽ-ନେଷ୍ଟବ୍ୟୋଽଲବ୍ଧୋ ଲବ୍ଧବ୍ୟୋଽଶ୍ରୁତଃ ଶ୍ରୋତବ୍ୟୋଽମତୋ ମନ୍ତବ୍ୟୋଽବିଜ୍ଞାତୋ ବିଜ୍ଞାତବ୍ୟ ଇତ୍ୟାଦିଭେଦବ୍ୟପଦେଶ ଉପପଦ୍ୟତେ ।

**(୨) ଭାଷାଂତର-** (କ) ଆନନ୍ଦମୟ ସଂସାରୀ ହୋଇପାରିବ ନାହିଁ । ଯେହେତୁ ଆନନ୍ଦମୟାଧିକାରରେ 'ସେ ହିଁ ରସ । ଏହାକୁ ପାଇ ଜୀବ ଆନନ୍ଦ ପାଏ ।' ଏହି ପ୍ରକାର ଜୀବ ଓ ଆନନ୍ଦମୟର ଭେଦକୁ ଉପଦେଶ ଦିଆଯାଇଛି । ଲବ୍ଧା (ଭେଦର ଉପଦେଶ ଦେଇ) ହିଁ ଆନନ୍ଦ ଲାଭ କରେ ।

(ଖ) କିପରି ? ତାହାଲେ ଆତ୍ମାକୁ ଖୋଜିବା ଆବଶ୍ୟକ । ଆତ୍ମଲାଭରୁ ଅଧିକ କିଛି ନାହିଁ- ଏପରି ଶ୍ରୁତିସ୍ମୃତିରେ ଦେଖାଯାଏ କି ? ଯଦ୍ୟପି ଲାଭ କରିବା ହିଁ ଠିକ୍, ତଥାପି ଯେଉଁ ଆତ୍ମାର ଆତ୍ମଭାବ ନଷ୍ଟ ହୋଇ ନଥାଏ, ତାହାର ଯଥାର୍ଥ ସ୍ୱରୂପ ନ ବୁଝିବା ପାଇଁ ମିଥ୍ୟାଜ୍ଞାନ ଅନାତ୍ମ ଦେହରେ ଆତ୍ମା ରହିବାର ଦେଖାଯାଏ ।

(ଗ) ତଦ୍ୱାରା ଦେହାଭିଭୂତ ଆତ୍ମାର ଅନନ୍ୱିଷ୍ଟ ହୋଇ ଅନ୍ୱେଷଣ ଲାଭ ନ କରି ନ ଶୁଣିବା ଉଚିତ୍, ଅମତ ହୋଇ ମନନ କରିବା ଉଚିତ, ନଜାଣି ଜାଣିବା ଉଚିତ, ଇତ୍ୟାଦି ଭେଦାଦିବାକ୍ୟକୁ ଉତ୍ପନ୍ନ କରେ ।

(୩) ମୂଳ- (କ) ପ୍ରତିଷିଧ୍ୟତ ଏବ ତୁ ପରମାର୍ଥଃ ସର୍ବଜ୍ଞାତ୍ ପରମେଶ୍ୱରାଦନ୍ୟୋ ଦ୍ରଷ୍ଟା ଶ୍ରୋତା ବା 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' (ବୃହ ୩।୭।୨୩) ଇତ୍ୟାଦିନା । ପରମେଶ୍ୱରସ୍ତୁବିଦ୍ୟାପରିକଳ୍ପିତାଚ୍ଛରୀରାତ୍ କର୍ତ୍ତୃର୍ଭୋକ୍ତୁର୍ବିଜ୍ଞା-ନାତ୍ମାଖ୍ୟାଦନ୍ୟଃ । (ଖ) ଯଥା ମାୟାବିନଶ୍ଚର୍ମଖଡ୍‌ଗଧରାତ୍ ସୂତ୍ରେଣାକାଶ-ମଧିରୋହତଃ ସ ଏବ ମାୟାବୀ ପରମାର୍ଥରୂପୋ ଭୂମିଷ୍ଠୋଽନ୍ୟଃ । ଯଥା ବା ଘଟାକାଶାଦୁପାଧିପରିଚ୍ଛିନ୍ନାଦନୁପାଧିରପରିଚ୍ଛିନ୍ନ ଆକାଶୋଽନ୍ୟଃ । ଇଦୃଶଞ୍ଚ ବିଜ୍ଞାନାତ୍ମ-ପରମାତ୍ମଭେଦମାଶ୍ରିତ୍ୟ 'ନେତରୋଽନୁ-ପପତ୍ତେଃ ।, 'ଭେଦବ୍ୟପଦେଶାଚ୍ଚ, ଇତ୍ୟୁକ୍ତମ୍ ।

(୩) ଭାଷାଂତର- (କ) 'ଏହି ପରମେଶ୍ୱରଠାରୁ ଅନ୍ୟ କୌଣସି ଦ୍ରଷ୍ଟା ନାହିଁ, ବୋଲି ବେଦ ପ୍ରମାଣ ଥିବାରୁ ପରାମାର୍ଥ ସର୍ବଜ୍ଞ-ପରମେଶ୍ୱରଠାରୁ ଅନ୍ୟ କୌଣସି ଦ୍ରଷ୍ଟା ନଥିବାର ପ୍ରତିଷେଧ କରାଯାଉଛି । ପରମେଶ୍ୱର କିନ୍ତୁ ଅବିଦ୍ୟା କଳ୍ପିତ ଶରୀର କର୍ତ୍ତା, ଭୋକ୍ତା, ବିଜ୍ଞାନାତ୍ମାଠାରୁ ସମ୍ପୂର୍ଣ୍ଣତଃ ଭିନ୍ନ ।

(ଖ) ଯେପରି ଢାଲ ଓ ଖଣ୍ଡା ଧରିଥିବା ସୂତ୍ରଦ୍ୱାରା ଆକାଶରେ ଥିବା ମାୟାବୀ ପରମାର୍ଥ ସମ୍ଭୂତି-ମାୟାବୀ ପୁରୁଷ ମଧ୍ୟରେ ପୃଥକ୍‌ତ୍ୱ ରହିଛି, ଯେପରି ଘଟ-ଉପାଧିଯୁକ୍ତ ଆକାଶ ଉପାଧିଶୂନ୍ୟ ମହାକାଶଠାରୁ ଭିନ୍ନ, ସେହିପରି ମଧ ବିଜ୍ଞାନାତ୍ମା ପରମାତ୍ମାଭେଦକୁ ଆଶ୍ରୟ କରି 'ନେତରୋଽନୁପପତ୍ତେଃ', 'ଭେଦବ୍ୟପଦେଶାଚ୍ଚ ବୋଲି କୁହାଯାଇଛି ।

## कामाच्च नानुमानापेक्षा ॥ १८ ॥

## (୧) କାମାଚ୍ଚ ନାନୁମାନାପେକ୍ଷା ୧ । ୧ । ୧୮

କାମାତ୍ = 'ସୋଽକାମାୟତ', ଏହିପ୍ରକାର କାମୟିତୃତ୍ୱର ଶ୍ରବଣ ହୁଏ । ତେଣୁ, ନାନୁମାନାପେକ୍ଷା = ସ୍ୱୟଂବ୍ରହ୍ମକାମନା କରିବା ହେତୁ ଅନୁମାନଗମ୍ୟ ପ୍ରଧାନକୁ ଆନନ୍ଦମୟ ଶବ୍ଦଠାରୁ ଅପେକ୍ଷା କରେ ନାହିଁ ।

(୨) ମୂଳ-(କ) ଆନନ୍ଦମୟାଧିକାରେ ଚ 'ସୋଽକାମୟତ', 'ବହୁସ୍ୟାଂ ପ୍ରଜାୟେୟ', (ତୈ ୨।୬) ଇତି କାମୟିତୃତ୍ୱନିର୍ଦ୍ଦେଶାନ୍ନାନୁମାନିକମପି ସାଂଖ୍ୟପରି-କଳ୍ପିତମଚେତନଂ ପ୍ରଧାନମାନନ୍ଦମୟତ୍ୱେନ କାରଣତ୍ୱେନ ବାଽପେକ୍ଷିତବ୍ୟମ୍ । (ଖ) 'ଇ'ତେର୍ନାଶବ୍ଦମ୍', (ବ୍ର.ସୂ ୧।୧।୫) ଇତି ନିରାକୃତମପି ପ୍ରଧାନଂ ପୂର୍ବସୂତ୍ରୋଦାହୃତାଂ କାମୟିତୃତ୍ୱଶ୍ରୁତିମାଶ୍ରିତ୍ୟ ପ୍ରସଙ୍ଗାତ୍ ପୁନର୍ନିରାକ୍ରିୟତେ ଗତିସାମାନ୍ୟ ପ୍ରସଙ୍ଗନାୟ ।

**(୨) ଭାଷାଂତର-** (କ) ଆନନ୍ଦମୟାଧିକାର ପ୍ରକରଣରେ **'ସୋଽକାମୟତେ',** ଇତ୍ୟାଦିସୂତ୍ରରେ କାମୟିତୃତ୍ୱନିର୍ଦ୍ଦେଶ ହେବାଦ୍ୱାରା ଅନୁମାନଗମ୍ୟ-ସାଂଖ୍ୟପରିକଳ୍ପିତ ଅଚେତନ ପ୍ରଧାନ ମଧ୍ୟ ଆନନ୍ଦମୟରୂପରେ ଅଥବା କାରଣତ୍ୱରୂପରେ ଅପେକ୍ଷା କରେ ନାହିଁ ।

(ଖ) 'ଈକ୍ଷେତେର୍ନାଶବ୍ଦମ୍' ଏହି ସୂତ୍ରରେ ଯଦ୍ୟପି ପ୍ରଧାନ ନିରାକରଣ କରାଗଲା, ତଥାପି ସମସ୍ତ ବେଦାନ୍ତ ବାକ୍ୟରେ ବ୍ରହ୍ମାବଗତି ସମାନ ହୁଏ । ଏହାର ବିସ୍ତାର ପାଇଁ ପୂର୍ବସୂତ୍ର 'ଈକ୍ଷତେର୍ନାଶବ୍ଦରେ ଉପହୃତକାମୟିତୃ ବେଦକୁ ନେଇ ପ୍ରସଙ୍ଗ ଦ୍ୱାରା ପୁନର୍ବାର ନିରାକରଣ କରୁଛି ।



## आस्मिन्नस्य च तद्योगं शास्ति ॥ १९ ॥

## (୧) ଅସ୍ମିନ୍ନସ୍ୟ ତଦ୍ୟୋଗଂ ଶାସ୍ତି ୧ ।୧ । ୧୯

'ଯଦା ହ୍ୟେବୈଷ' ଇତ୍ୟାଦି ଶ୍ରୁତି, ଅସ୍ମିନ=ଏହି ପ୍ରକୃତ ଆନନ୍ଦମୟ ଆତ୍ମାରେ, ଅସ୍ୟ=ପ୍ରତିବୃଦ୍ଧଜୀବର, 'ତଦ୍ ଯୋଗଂ=ତଦ୍ ଭାବାପତ୍ତି-ମୁକ୍ତିର, ଶାସ୍ତି=ଉପଦେଶ କରେ ତେଣୁ ଜୀବ ଅଥବା ପ୍ରଧାନ ଆନନ୍ଦମୟ ନୁହେଁ, କିନ୍ତୁ ପରମାତ୍ମା ହିଁ ଆନନ୍ଦମୟ ।

(୨) ମୂଳ-(କ) ଇତଶ୍ଚ ନ ପ୍ରଧାନେ ଜୀବେ ବାନନ୍ଦମୟଶବ୍ଦଃ । ଯସ୍ମାଦସ୍ମିନ୍ନାନନ୍ଦମୟେ ପ୍ରକୃତ ଆତ୍ମନି ପ୍ରତିବୁଦ୍ଧସ୍ୟାଽସ୍ୟ ଜୀବସ୍ୟ ତଦ୍ୟୋଗଂ ଶାସ୍ତି ଶାସ୍ତ୍ରମ୍ । ତଦାତ୍ମନା ଯୋଗସ୍ତଦ୍ୟୋଗଃ, ତଦ୍ଭାବାପତ୍ତିଃ ମୁକ୍ତିରିତ୍ୟର୍ଥଃ ତଦ୍ଯୋଗଂ ଶାସ୍ତି ଶାସ୍ତ୍ରମ୍ । ଯଦା ହ୍ୟେବୈଷ ଏତସ୍ମିନ୍ନଦୃଶ୍ୟେଽନାତ୍ମ୍ୟେଽନିରୁକ୍ତେଽନିଲୟନେଽଭୟଂ ପ୍ରତିଷ୍ଠାଂ ବିନ୍ଦତେ । ଅଥ ସୋଽଭୟଂ ଭବତି । ଯଦା ହ୍ୟେବୈଷ ଏତସ୍ମିନ୍ନୁଦରମନ୍ତରଂ କୁରୁତେ, ଅଥ ତସ୍ୟ ଭୟଂ ଭବତି'' (ତୈ ୨।୭) ଇତି । (ଖ) ଏତଦୁକ୍ତଂ ଭବତି- ଯଦୈତସ୍ମିନ୍ନାନନ୍ଦମୟେଽଳ୍ପମପ୍ୟନ୍ତରମତାଦାତ୍ମ୍ୟରୂପଂ ପଶ୍ୟତି, ତଦା ସଂସାରଭୟାନ୍ନ ନିବର୍ତ୍ତତେ । ଯଦା ତ୍ୱେତସ୍ମିନ୍ନାନନ୍ଦମୟେ ନିରନ୍ତରଂ ତାଦାତ୍ମ୍ୟେନ ପ୍ରତିତିଷ୍ଠତି; ତଦା ସଂସାରଭୟାନ୍ନିବର୍ତ୍ତତେ ଇତି । ତଚ୍ଚ ପରମାତ୍ମାପରିଗ୍ରହେ ଘଟତେ, ନ ପ୍ରଧାନପରିଗ୍ରହେ ଜୀବପରିଗ୍ରହେ ବା । ତସ୍ମାଦାନନ୍ଦମୟଃ ପରମାତ୍ମେତିସ୍ଥିତମ୍ ।

**(୨) ଭାଷାଂତର-** (କ) ଏହି ପ୍ରଧାନ ଜୀବଠାରେ ଆନନ୍ଦମୟଶବ୍ଦ ପ୍ରଯୁଜ୍ୟ ନୁହେଁ । ଯେହେତୁ ଏହି ଆନନ୍ଦମୟ-ପ୍ରକୃତ ଆତ୍ମାରେ ଜ୍ଞାନମୟ ସଂଯୋଗକୁ ଉପଦେଶ ଦିଏ । ତାହାର ଆତ୍ମା ସହିତ ଯୋଗକୁ ତଦ୍ୟୋଗ ଓ ଏହି ସଂଯୋଗଭାବକୁ ମୁକ୍ତି କୁହାଯାଏ । ତାହାର ସଂଯୋଗ ବା ଉପାୟକୁ ଉପଦେଶ ଦେଉଥିବା ପଦାର୍ଥ ହିଁ ଶାସ୍ତ୍ର । ଯଥା- 'ଯେତେବେଳେ ସାଧକ ଏହି ଅଦୃଶ୍ୟ, ଅଶରୀର, ଅନିର୍ବାଚ୍ୟ ଏବଂ ନିରାଧାର ବ୍ରହ୍ମରେ ଅଭୟସ୍ଥିତି ସ୍ଥାପନ କରେ, ସେତେବେଳେ ସେ ଅଭୟ ପାଏ । ଯେତେବେଳେ ବ୍ରହ୍ମରେ ସେ କିଛି ଭେଦ ସୃଷ୍ଟି କରେ, ସେତେବେଳେ ସେ ଭୟ ପାଏ ।'

(ଖ) କିନ୍ତୁ ଏହାର ସଂକ୍ଷିପ୍ତାର୍ଥ ଯେ- ଯେତେବେଳେ ଏହି ଆନନ୍ଦମୟ ପରମାତ୍ମାଠାରେ କିଞ୍ଚିତ୍ ଭେଦ ଓ ଅତାଦାତ୍ମ୍ୟରୂପ ଦେଖେ, ସେତେବେଳେ ସଂସାର ଭୟରୁ ସେ ନିବୃତ୍ତ ହୁଏ ନାହିଁ । କିନ୍ତୁ ଯେତେବେଳେ ଆନନ୍ଦମୟରେ ତାଦାତ୍ମ୍ୟରୂପ

ସ୍ଥାପନ କରେ, ସେତେବେଳେ ସଂସାରଭୟରୁ ନିବୃତ୍ତ ହୁଏ । ତାହା ପରମାତ୍ମା ପରିଗ୍ରହରେ ଘଟେ, କିନ୍ତୁ ପ୍ରଧାନପରିଗ୍ରହ ଅଥବା ଜୀବ ପରିଗ୍ରହରେ ଘଟେ ନାହିଁ । ତେଣୁ ଆନନ୍ଦମୟ ହିଁ ପରମାତ୍ମା ବୋଲି ପ୍ରମାଣିତ ହେଲା ।

(୩) ମୂଳ-(କ) ଇଦଂ ତ୍ୱିହ ବକ୍ତବ୍ୟମ୍ - 'ସ ବା ଏଷ ପୁରୁଷୋନ୍ନରସମୟଃ', 'ତସ୍ମାଦ୍‌ବା ଏତସ୍ମାଦନ୍ନମୟାଦନ୍ୟୋଽନ୍ତର ଆତ୍ମା ପ୍ରାଣମୟଃ' । ତସ୍ମାତ୍ 'ଅନ୍ୟୋଽନ୍ତର ଆତ୍ମା ମନୋମୟଃ' । ତସ୍ମାତ୍ ଅନ୍ୟୋଽନ୍ତର ଆତ୍ମା ଆନନ୍ଦମୟଃ, (ତୈ ୧।୧, ୨,୩,୫) । (ଖ) ଇତିଚ ବିକାରାର୍ଥେ ମୟଟ୍ ପ୍ରବାହେ ସତ୍ୟାନନ୍ଦମୟଃ ଏବାକସ୍ମା-ଦର୍ଦ୍ଧଜରତୀୟନ୍ୟାୟେନ କଥମିବ ମୟଟଃ ପ୍ରାଚୁର୍ଯ୍ୟାର୍ଥତ୍ୱଂ ବ୍ରହ୍ମବିଷୟତ୍ୱଂ ଚାଶ୍ରୀୟତ ଇତି ? ମାନ୍ତ୍ରବର୍ଣ୍ଣିକ ବ୍ରହ୍ମାଧିକାରାଦିତି ଚେତ୍, ନ ଅନ୍ନମୟାଦୀନାମପି ତର୍ହି ବ୍ରହ୍ମତ୍ୱପ୍ରସଙ୍ଗଃ ।

**(୩) ଭାଷାଂତର-** (କ) ପରନ୍ତୁ ଏଠାରେ କହିବା କଥା ଯେ- 'ଏହି ପୁରୁଷ ଅନ୍ନରସମୟ', 'ଏହି ଅନ୍ନରସମୟ ସ୍ଥୂଳ ଶରୀରଠାରୁ ଅନ୍ୟ ଅନ୍ତର ଆତ୍ମା ପ୍ରାଣମୟ ଅଟେ' । 'ଏହାର ଅନ୍ୟ ଆନ୍ତର ଆତ୍ମା ମନୋମୟ', 'ଏହାର ଅନ୍ତର ଅନ୍ତର ଆତ୍ମା ବିଜ୍ଞାନମୟ ।

(ଖ) ଏହି ପ୍ରକାର ବିକାରାର୍ଥକ ମୟଟ୍ ପ୍ରତ୍ୟୟ ପ୍ରବାହରେ କୌଣସି କାରଣ ନ ଥାଇ ଅର୍ଦ୍ଧଜରତୀୟନ୍ୟାୟରେ ମୟଟ୍‌ପ୍ରତ୍ୟୟ ପ୍ରାଚୁର୍ଯ୍ୟାର୍ଥକ ଓ ଆନନ୍ଦମୟ ବ୍ରହ୍ମବିଷୟକ ରୂପରେ କିପରି ଆଶ୍ରୟ ଦିଆଗଲା ? ଯଦି କୁହାଯିବ ଯେ- ମନ୍ତ୍ରରେ ବର୍ଣ୍ଣିତ ବ୍ରହ୍ମ ପ୍ରକରଣ ହେବା ଉଚିତ୍, ତେବେ ମଧ୍ୟ ଏହା ଠିକ୍ ହେବନାହିଁ; କାରଣ-ଏହିଭଳି ସ୍ୱୀକାର କଲେ ଅନ୍ନାମୟାଦିରେ ମଧ୍ୟ ବ୍ରହ୍ମତ୍ୱ ସ୍ୱୀକାର କରାଯାଇପାରେ ।

(୪) ମୂଳ-(କ) ଅତ୍ରାହ-ଯୁକ୍ତମନ୍ନମୟାଦୀନାମବ୍ରହ୍ମତ୍ୱଂ ତସ୍ମାତ୍ତସ୍ମାଦାନ୍ତରସ୍ୟା-ନ୍ତରସ୍ୟାନ୍ୟସ୍ୟାନ୍ୟସ୍ୟାତ୍ମନ ଉଚ୍ୟମାନତ୍ୱାତ୍ । ଆନନ୍ଦମୟାତ୍ତୁ ନ କସ୍ମିଦନ୍ୟ ଆନ୍ତର ଆତ୍ମୋଚ୍ୟତେ, ତେନାନନ୍ଦମୟସ୍ୟ ବ୍ରହ୍ମତ୍ୱମ୍, ଅନ୍ୟଥା ପ୍ରକୃତହାନା ପ୍ରକୃତ ପ୍ରକ୍ରିୟା ପ୍ରସଙ୍ଗାଦିତି । (ଖ) ଅତ୍ରୋଚ୍ୟତେ-ଯଦ୍ୟପ୍ୟନ୍ନମୟାଦିଭ୍ୟ ଇବାନନ୍ଦମୟାଦନ୍ୟୋଽନ୍ତର ଆତ୍ମେତି ଶ୍ରୂୟତେ, ତଥାପି ଆନନ୍ଦମୟସ୍ୟ ବ୍ରହ୍ମତ୍ୱମ୍, ଯତ ଆନନ୍ଦମୟଂ ପ୍ରକୃତ୍ୟ ଶ୍ରୂୟତେ- 'ତସ୍ୟ ପ୍ରିୟମେବ ଶିରଃ । ମୋଦୋ ଦକ୍ଷିଣପକ୍ଷଃ । ପ୍ରମୋଦ ଉତ୍ତରଃ ପକ୍ଷଃ । ଆନନ୍ଦ ଆତ୍ମା । ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା', (ତୈ ୨।୫) ଇତି । (ଗ) ତତ୍ର ଯଦ୍ ବ୍ରହ୍ମ ମନ୍ତ୍ର ବର୍ଣ୍ଣେ ପ୍ରକୃତମ୍- 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ', ଇତି । ତଦିହ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା', ଇତ୍ୟୁଚ୍ୟତେ ।



ତଦ୍‌ବିଜିଜ୍ଞାପୟିଷୟୈବାନ୍ନମୟାଦନ୍ୟ ଆନନ୍ଦମୟ-ପର୍ଯ୍ୟନ୍ତାଃ ପଞ୍ଚକୋଶାଃ କଳ୍ପ୍ୟନ୍ତେ । ତତ୍ର କୁତଃ ପ୍ରକୃତହାନାଽପ୍ରକୃତପ୍ରକ୍ରିୟାପ୍ରସଙ୍ଗଃ ।

**(୪) ଭାଷାଂତର-** (କ) ବୃତ୍ତିକାର ଏହା ଉପରେ କହୁଛନ୍ତି ଯେ- ଅନ୍ନମୟାଦିରେ ବ୍ରହ୍ମତ୍ୱ ନାହିଁ କହିବା ଯୁକ୍ତିଯୁକ୍ତ, କାରଣ-ଏହାଠାରୁ ଆନ୍ତର ଅନ୍ୟ, ଏହାଠାରୁ ଆନ୍ତର ଅନ୍ୟ-ଏହିପରି କୁହାଗଲା । କିନ୍ତୁ ଆନନ୍ଦମୟର ଆନ୍ତରଭାବେ ଅନ୍ୟ କୌଣସି ଆତ୍ମାକୁ କୁହାଯାଇ ନାହିଁ । ତେଣୁ ଆନନ୍ଦମୟ ହିଁ ବ୍ରହ୍ମ, ନୋଚେତ୍ ପ୍ରକୃତି ହାନି ଓ ଅପ୍ରକୃତ ପ୍ରକ୍ରିୟାର ପ୍ରସକ୍ତି ହୋଇପାରେ । ସିଦ୍ଧାନ୍ତ ପକ୍ଷ-

(ଖ) ଯଦ୍ୟପି ଅନ୍ନମୟାଦି ସଦୃଶ ଆନନ୍ଦମୟ ବ୍ୟତୀତ ଅନ୍ୟ ଅନ୍ତରାତ୍ମା ଶ୍ରୁତିରେ ଶୁଣାଯାଏ ନାହିଁ, ତଥାପି ଆନନ୍ଦମୟ ମଧ୍ୟ ବ୍ରହ୍ମପଦବାଚ୍ୟ ନୁହେଁ, କାରଣ- ଆନନ୍ଦମୟକୁ ପ୍ରସ୍ତୁତ କରି 'ପ୍ରିୟ ଏହାର ଶିର, ମୋଦ ଦକ୍ଷିଣ ପକ୍ଷ, ଆନନ୍ଦ ହେଉଛି ଆତ୍ମା ବ୍ରହ୍ମପୁଚ୍ଛ ହେଉଛି ପ୍ରତିଷ୍ଠା ବୋଲି କୁହାଯାଇଛି ।

(ଗ) ଯେଉଁ ବ୍ରହ୍ମ ସତ୍ୟ, ଜ୍ଞାନ ଓ ଅନନ୍ତରୂପରେ ମନ୍ତ୍ରରେ ବର୍ଣ୍ଣନା ହୋଇଛି, ତାହାର 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା' ବୋଲି କୁହାଯାଇଛି । ଏହାକୁ ଜାଣିବା ପାଇଁ ଅନ୍ନମୟାଦି ପାଞ୍ଚଟି କୋଷ କଳ୍ପନା କରାଯାଇଛି । ତା ହେଲେ ପ୍ରକୃତ ହାନି ଓ ଅପ୍ରକୃତ ପ୍ରକ୍ରିୟା କିପରି ହେବ ।

(୫) ମୂଳ- (କ) ନନ୍ୱାନନ୍ଦମୟସ୍ୟାବୟବତ୍ୱେନ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା ଇତ୍ୟୁଚ୍ୟତେ । ଅନ୍ନମୟାଦୀନାମିବ 'ଇଦାଂ ପୁଚ୍ଛଂ ପ୍ରତିଷ୍ଠା', ଇତ୍ୟାଦି । ତତ୍ର କଥଂ ବ୍ରହ୍ମଣଃ ସ୍ୱପ୍ରଧାନତ୍ୱଂ ଶକ୍ୟଂ ବିଜ୍ଞାତୁମ୍ ? ପ୍ରକୃତତ୍ୱାଦିତି ବ୍ରୂମଃ । (ଖ) ନନ୍ୱାନନ୍ଦ-ମୟାବୟବତ୍ୱେନାପି ବ୍ରହ୍ମଣି ବିଜ୍ଞାୟମାନେ ନ ପ୍ରକୃତତ୍ୱଂ ହୀୟତେ, ଆନନ୍ଦମୟସ୍ୟ ବ୍ରହ୍ମତ୍ୱାଦିତି ।

**(୫) ଭାଷାଂତର-** (କ) ପରନ୍ତୁ ଯେପରି ଅନ୍ନମୟର ଅବୟବ ଦ୍ୱାରା 'ଇଦଂ ପୁଚ୍ଛ ପ୍ରତିଷ୍ଠା' ବୋଲି କୁହାଯାଇଅଛି, ସେପରି ଆନନ୍ଦମୟର ଅବୟବ ଦ୍ୱାରା 'ଇଦଂ ପୁଚ୍ଛଂ ପ୍ରତିଷ୍ଠା', ବୋଲି କୁହାଯାଇଅଛି । କିନ୍ତୁ ବ୍ରହ୍ମ ସ୍ୱପ୍ରଧାନ ବୋଲି ଜାଣିବା ପାଇଁ କିପରି ସମର୍ଥ ହେବା ? ବ୍ରହ୍ମ ପ୍ରକୃତ ବୋଲି ଆମ୍ଭେ କହୁ ।

(ଖ) କିନ୍ତୁ ଆନନ୍ଦମୟ ଅବୟବ ଦ୍ୱାରା ବ୍ରହ୍ମଜ୍ଞାନ ହେଲେ ଏହାର ପ୍ରକୃତତ୍ୱ ନଷ୍ଟ ହୁଏ ନାହିଁ; କାରଣ- ଆନନ୍ଦମୟ ହିଁ ବ୍ରହ୍ମ ।

(୬) ମୂଳ- (କ) ଅତ୍ରୋଚ୍ୟତେ-ତଥା ସତି ତଦେବ ବ୍ରହ୍ମାନନ୍ଦମୟ ଆତ୍ମାଽବୟବୀ, ତଦେବ ଚ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠାବୟବ ଇତ୍ୟସାମଞ୍ଜସ୍ୟଂ ସ୍ୟାତ୍ । ଅନ୍ୟତପରିଗ୍ରହେ ତୁ ଯୁକ୍ତଂ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା' ଇତ୍ୟତ୍ରୈବ ବ୍ରହ୍ମନିର୍ଦେଶ ଆଶ୍ରୟିତୁମ୍, ବ୍ରହ୍ମଶବ୍ଦସଂଯୋଗାତ୍ । ଆନନ୍ଦମୟବାକ୍ୟେ ବ୍ରହ୍ମଶବ୍ଦସଂଯୋଗାଭାବାଦିତି । (ଖ) ଅପି ଚ 'ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା,' ଇତ୍ୟୁକ୍ତ୍ୱେଦମୁଚ୍ୟତେ-'ତଦପ୍ୟେଷ ଶ୍ଳୋକୋ ଭବତି, ଅସନ୍ନେବ ସ ଭବତି, ଅସଦ୍‌ବ୍ରହ୍ମେତି ବେଦ ଚେତ୍ । ଅସ୍ତି ବ୍ରହ୍ମେତି ଚେଦ୍ ବିଦ୍ । ସନ୍ତମେନଂ ତତୋ ବିଦୁରିତି,' (ତୈ ୨।୬) ଅସ୍ମିଂଶ୍ଚ ଶ୍ଳୋକେଽନନୁକୃଷ୍ୟାନନ୍ଦମୟଂ ବ୍ରହ୍ମଣ ଏବ ଭାବାଭାବବେଦନୟୋର୍ଗୁଣାଭିଧାନାଦ୍ ଗମ୍ୟତେ । (ଗ) 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା', ଇତ୍ୟତ୍ର ବ୍ରହ୍ମଣ ଏବ ସ୍ୱପ୍ରଧାନତ୍ୱମିତି । ନ ଚାନନ୍ଦମୟସ୍ୟାତ୍ମନୋ ଭାବାଭାବଶଙ୍କା ଯୁକ୍ତା, ପ୍ରିୟମୋଦାଦିବିଶେଷସ୍ୟାନନ୍ଦମୟସ୍ୟ ସର୍ବଲୋକପ୍ରସିଦ୍ଧତ୍ୱାତ୍ ।

(୬) ଭାଷାଂତର- (କ) ସିଦ୍ଧାନ୍ତ ପକ୍ଷରୁ କୁହାଯାଇଛି ଯେ- ଆନନ୍ଦମୟ ଆତ୍ମା ଅବୟବୀ ଏବଂ ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠାରୂପ ହିଁ ଅବୟବ ହେବ ବୋଲି ଯଦି କୁହାଯାଏ, ତେବେ ମଧ୍ୟ ସଙ୍ଗତ ହୋଇପାରେ ନାହିଁ । ଏହି ସ୍ଥଳ ଦ୍ୱୟରେ ବ୍ରହ୍ମର ଏକତ୍ୱ ଗ୍ରହଣ କଲେ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା' ଏହି ସ୍ଥାନରେ ବ୍ରହ୍ମ ନିର୍ଦ୍ଦେଶ ହିଁ ଆଶ୍ରୟ ହୋଇପାରେ, କାରଣ-ଏହି ବାକ୍ୟରେ ବ୍ରହ୍ମ ଶବ୍ଦର ସମ୍ବନ୍ଧ ଅଛି । କିନ୍ତୁ ଆନନ୍ଦମୟବାକ୍ୟରେ ବ୍ରହ୍ମ ଶବ୍ଦକୁ ସମନ୍ୱୟ କରିବା ଅଂନୁପଯୁକ୍ତ । କାରଣ-ଏହି ବାକ୍ୟରେ ବ୍ରହ୍ମ ଶବ୍ଦର ସମ୍ବନ୍ଧ କିଛି ନାହିଁ ।

(ଖ) ପୁନଶ୍ଚ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା', ଏହି ବାକ୍ୟ କହି 'ସେଠାରେ ଏହି ଶ୍ଳୋକ ଅଟେ, ବ୍ରହ୍ମ ଅସତ୍, ଏହା ଯେଉଁ ବ୍ୟକ୍ତି ଜାଣେ, ସେ ନିଜେ ଅସତ୍ ହୋଇଯାଏ, ଯଦି ସେ ବ୍ରହ୍ମ ଅଛି ବୋଲି ଜାଣେ, ତେବେ ବ୍ରହ୍ମଜ୍ଞ-ସତ୍‌କୁ ଜାଣିଛି ବୋଲି କୁହାଯାଏ ।' ଏହି ମନ୍ତ୍ରରେ ଆନନ୍ଦମୟର ଅନୁବୃତ୍ତି ନ କରି ବ୍ରହ୍ମର ଭାବ ଓ ଅଭାବ ଜ୍ଞାନଦ୍ୱାରା ଗୁଣ ଓ ଦୋଷର ଅଭିଧାନ କରେ ।

(ଗ) ତେଣୁ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା', ଏହି ବାକ୍ୟରେ ବ୍ରହ୍ମର ସ୍ୱପ୍ରଧାନତ୍ୱ ଜଣାପଡ଼େ । ଆନନ୍ଦମୟ ବ୍ରହ୍ମର ଭାବ ଓ ଅଭାବ ବିଷୟକଶଙ୍କା କହିବା ଅନୁପଯୁକ୍ତ । କାରଣ- ପ୍ରିୟମୋଦାଦି ବିଶେଷଗୁଣଯୁକ୍ତ ହୋଇ ଆନନ୍ଦମୟ ସର୍ବବିଦିତ ହୁଏ ।

(୭) ମୂଳ-(କ) କଥଂ ପୁନଃ ସ୍ୱପ୍ରଧାନଂ ସଦ୍‌ବ୍ରହ୍ମ, ଆନନ୍ଦମୟସ୍ୟ ପୁଚ୍ଛତ୍ୱେନ ନିର୍ଦ୍ଦିଶ୍ୟତେ-'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା' ଇତି ? ନୈଷୋ ଦୋଷଃ, ପୁଚ୍ଛବତ୍ ପୁଚ୍ଛଂ, ପ୍ରତିଷ୍ଠା



ପରାୟଣମେକନୀଡଂ ଲୌକିକସ୍ୟାନନ୍ଦଜାତସ୍ୟ ବ୍ରହ୍ମାନନ୍ଦ ଇତ୍ୟେତଦନେନବିବକ୍ଷ୍ୟତେ । (ଖ) ନାବୟବତ୍ୱମ୍, 'ଏତସ୍ୟୈବାନନ୍ଦସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି', (ବ୍ରହ୍ମ ୪-୩-୩୨) ଇତିଶ୍ରୁତ୍ୟନ୍ତରାଦପି ଘନନ୍ଦମୟସ୍ୟ ବ୍ରହ୍ମତ୍ୱେ ପ୍ରିୟାଦ୍ୟବୟବତ୍ୱେନ ସବିଶେଷଂ ବ୍ରହ୍ମାଭ୍ୟୁପଗନ୍ତବ୍ୟମ୍ । (ଗ) ନିର୍ବିଶେଷେ ତୁ ବ୍ରହ୍ମ ବାକ୍ୟଶେଷେ ଶ୍ରୂୟତେ ବାଙ୍ମନସୋରଗୋଚରତ୍ୱାଭିଧାନାତ୍ । ଯତୋ-'ଯତୋ ବାଚୋ ନିବର୍ତ୍ତନ୍ତେ, ଅପ୍ରାପ୍ୟ ମନସା ସହ । ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତି କୁତଶ୍ଚନ,' (ତୈ ୨-୯) ।

**(୭) ଭାଷାଂତର-** (କ) ବ୍ରହ୍ମ ସ୍ୱପ୍ରଧାନ ହେଲେ ତାହାର 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା' ଏହି ପ୍ରକାର ଆନନ୍ଦମୟର ପୁଚ୍ଛ ରୂପଦ୍ୱାରା ନିର୍ଦ୍ଦେଶ କିପରି ହୁଏ ? ଏହା ଦୋଷ ନୁହେଁ । ପୁଚ୍ଛ ଅର୍ଥାତ୍ ପୁଚ୍ଛସଦୃଶ । ପ୍ରତିଷ୍ଠା ଅର୍ଥାତ୍ ବାସସ୍ଥାନ । ଲୌକିକ ଆନନ୍ଦ ସମୂହର ବ୍ରହ୍ମାନନ୍ଦ ପରସ୍ଥାନ ଏକ ଅଧିଷ୍ଠାନ ବୋଲି ଅର୍ଥ କୁହାଯାଏ ।

(ଖ) କିନ୍ତୁ ଅବୟବ ରୂପ ଅର୍ଥ ନୁହେଁ, କାରଣ- 'ଏହି ଆନନ୍ଦମୟ ଅଂଶକୁ ନେଇ ଅନ୍ୟପ୍ରାଣୀ ଜୀବିତ ରହେ ଅର୍ଥାତ୍ ଅବିଦ୍ୟାଦ୍ୱାରା ପ୍ରସ୍ତୁତ ଇନ୍ଦ୍ରିୟ ଓ ବିଷୟ ସମ୍ବନ୍ଧ ଦ୍ୱାରା ଆନନ୍ଦମାତ୍ରାକୁ ଗ୍ରହଣ କରି ଅନ୍ୟପ୍ରାଣୀ ଆନନ୍ଦିତ ହୁଏ ।' ଇତି ଅନ୍ୟଶ୍ରୁତି । ତେଣୁ ଯଦି ଆନନ୍ଦମୟକୁ ବ୍ରହ୍ମ ବୋଲି ସ୍ୱୀକାର କରାଯାଏ, ତେବେ ଏହାର ପ୍ରିୟାଦି ଅବୟବ ଦ୍ୱାରା ସଗୁଣ ବ୍ରହ୍ମ ସ୍ୱୀକାର କରାଯିବ ।

(ଗ) ପରନ୍ତୁ ବାକ୍ୟ ଶେଷରେ ହିଁ ନିର୍ଗୁଣ ବ୍ରହ୍ମ ଶୁଣାଯାଏ, କାରଣ- 'ଯାହାଠାରୁ ମନ ଓ ବାଣୀଗୁଡ଼ିକ ନ ପାଇ ଫେରିଆସନ୍ତି, ବ୍ରହ୍ମର ଆନନ୍ଦକୁ ଜାଣିଥିବା ଲୋକ କାହାକୁ ଭୟ କରେ ନାହିଁ'- ଏହି ପ୍ରକାର ବାଣୀ ଓ ମନର ବିଷୟ କୁହାଯାଇଛି ।

(୮) ମୂଳ-(କ) ଅପି ଚ ଆନନ୍ଦ ପ୍ରଚୁର ଇତ୍ୟୁକ୍ତେଽପି ଦୁଃଖାସ୍ତିତ୍ୱମପି ଗମ୍ୟତେ, ପ୍ରାଚୁର୍ଯ୍ୟସ୍ୟ ଲୋକେ ପ୍ରତିଯୋଗ୍ୟଳ୍ପତ୍ୱାପେକ୍ଷିତ୍ୱାତ୍ । ତଥା ଚ ସତି 'ଯତ୍ର ନାନ୍ୟଚ୍ଛୃଣୋତି ନାନ୍ୟଦ୍ ବିଜାନାତି ସ ଭୂମା', (୭-୨୪-୧) ଇତି ଭୂମ୍ନି ବ୍ରହ୍ମଣି ତଦ୍‌ବ୍ୟତିରିକ୍ତାଭାବଶ୍ରୁତିରୂପରୁଧ୍ୟେତ । (ଖ) ପ୍ରତିଶରୀରଞ୍ଚ ପ୍ରିୟାଦିଭେଦାନନ୍ଦମୟସ୍ୟାପି ଭିନ୍ନତ୍ୱମ୍, ବ୍ରହ୍ମତୁ ନ ପ୍ରତିଶରୀରଂ ଭିଦ୍ୟତେ, 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ', (ତେ ତି ୬-୧୧) ଇତିଽଶ୍ରୁତ୍ୟନ୍ତରାତ୍ । (ଗ) ନ ଘନନ୍ଦମୟସ୍ୟାଭ୍ୟାସଃ ଶ୍ରୂୟତେ, ପ୍ରାତିପାଦିକାର୍ଥମେବ ହି ସର୍ବତ୍ରାରଭ୍ୟସ୍ୟତେ 'ରସୋ ବୈସଃ, ରସଂ ହ୍ୟେବାୟଂ ଲବଧ୍ୱାଽଽନନ୍ଦୀ ଭବତି, କୋ

ହ୍ୟେବାନ୍ୟାତ୍‌କଃ ପ୍ରାଣ୍ୟାତ୍, ଯଦେଷ ଆକାଶୋ ଆନନ୍ଦୋ ନ ସ୍ୟାତ୍,' 'ସୈ୍ୟଷାଽଽନନ୍ଦସ୍ୟ ମୀମାଂସା ଭବତି,' 'ଆନନ୍ଦଂବ୍ରହ୍ମଣୋ ବିଦ୍ୱାନ୍ନ ବିଭେତି କୁତଶ୍ଚନେତି' (ତୈ ୨-୭,୮,୯) । 'ଆନନ୍ଦୋ ବ୍ରହ୍ମେତି, ବ୍ୟଜନାତ୍', (ତୈ୬-୬) ଇତି ଚ ।

(୮) ଭାଷାଂତର- (କ) ପୁନଃ 'ଆନନ୍ଦ ପ୍ରଚୁର' ଏହିଭଳି କହିଲେ ମଧ୍ୟ ଦୁଃଖର ସତ୍ତା ଜଣାପଡ଼େ । କାରଣ-ସଂସାରରେ ପ୍ରାଚୁର୍ଯ୍ୟକୁ ନିଜର ପ୍ରତିଯୋଗୀ ଅଳ୍ପ ଅପେକ୍ଷା କରେ । 'ହେ ନାରଦ । ଯେ ଅନ୍ୟ କିଛି ଦେଖେ ନାହିଁ, ଶୁଣିପାରେ ନାହିଁ, ଅନ୍ୟ କିଛି ଜାଣିପାରେ ନାହିଁ, ଜାହା ଭୂମା ବା ବ୍ରହ୍ମ''- ଏହି ପ୍ରକାର ଭୂମାରୂପକ ବ୍ରହ୍ମରେ ଏହା ବ୍ୟତିରକ୍ତ ଅନ୍ୟବସ୍ତୁରି ଅଭାବର ପ୍ରତିପାଦକ ବେଦ ବାଧିତ କରେ ।

(ଖ) କିନ୍ତୁ ବ୍ରହ୍ମ ପ୍ରତି ଶରୀର ଭିନ୍ନ ନୁହେଁ, କାରଣ- 'ସତ୍ୟଂ ଜ୍ଞାନ ଅନନ୍ତ ବ୍ରହ୍ମ',-ଏହି ଆନନ୍ତ୍ୟ ଶ୍ରୁତି । ''ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ଗୂଢ଼ ସର୍ବବ୍ୟାପକ ଓ ସବୁ ପ୍ରାଣୀମାନଙ୍କର ଅନ୍ତରାତ୍ମା ଏକ ବେଦ ଅଟେ''- ଅପର ବେଦବାକ୍ୟ ।

(ଗ) କିନ୍ତୁ ବେଦରେ ଆନନ୍ଦମୟର ପୁନରୁଚ୍ଚାରଣ ଦେଖାଯାଏ ନାହିଁ । କାରଣ ସବୁ ସ୍ଥଳରେ ପ୍ରତିପାଦକାର୍ଥମାତ୍ରର ଅଭ୍ୟାସ ଦେଖାଯାଏ । ଉଦାହରଣ- ''ନିଶ୍ଚିତ ଭାବରେ ରସ ହିଁ ସାର, ରସକୁ ପାଇ ମନୁଷ୍ୟ ଆନନ୍ଦ ହୁଏ । ତେବେ କେଉଁ ବ୍ୟକ୍ତି ଅପାନକ୍ରିୟା କରୁଛି ଏବଂ କିଏ ପ୍ରାଣକ୍ରିୟା ନ କରି ଆନନ୍ଦ ନ ପାଏ'' ତେଣୁ ଏହି ବ୍ରହ୍ମ ଆନନ୍ଦ ମୀମାଂସା ଅଟେ । 'ବ୍ରହ୍ମକୁ ଆନନ୍ଦରୂପରେ ଅନୁଭବ କରୁଥିବା ବ୍ୟକ୍ତି କାହାକୁ ହେଲେ ଭୟ କରେ ନାହିଁ' । 'ଆନନ୍ଦ ହିଁ ବ୍ରହ୍ମ ଏହା ଜାଣି', ଇତ୍ୟାଦି ବେଦରେ ସ୍ପଷ୍ଟ ଭାବରେ କୁହାଯାଇଛି ।

(୯) ମୂଳ-(କ) ଯଦି ଆନନ୍ଦମୟଶବ୍ଦସ୍ୟ ବ୍ରହ୍ମବିଷୟତ୍ୱଂ ନିଶ୍ଚିତଂ ଭବେତ୍, ତତ ଉତ୍ତରେଷ୍ୱପ୍ୟାନନ୍ଦମୟାଭ୍ୟାସଃ କଳ୍ପ୍ୟେତ୍ ତ୍ୱାନନ୍ଦମୟସ୍ୟ ବ୍ରହ୍ମତ୍ୱମସ୍ତି, ପ୍ରିୟଶିରସ୍ତ୍ୱାଦିଭିର୍ହେତୁଭିରିତ୍ୟବୋଚମ । (ଖ) ତସ୍ମାଚ୍ଛ୍ରୁତ୍ୟନ୍ତରେ 'ବିଜ୍ଞାନମାନନ୍ଦଂ ବ୍ରହ୍ମ' (ବୃ ୨-୯-୨୮) ଇତ୍ୟାନନ୍ଦପ୍ରାତିପାଦିକସ୍ୟ ବ୍ରହ୍ମଣି ପ୍ରୟୋଗଦର୍ଶନାତ୍ । 'ଯଦେଷେ ଆକାଶ ଆନନ୍ଦୋ ନ ସ୍ୟାତ୍', ଇତ୍ୟାଦି ବ୍ରହ୍ମବିଷୟଃ ପ୍ରୟୋଗୋ ନ ତ୍ୱାନନ୍ଦମୟାଭ୍ୟାସ ଇତ୍ୟବଗନ୍ତବ୍ୟମ୍ । (ଗ) ଯସ୍ତ୍ୱୟଂ ମୟଡନ୍ତସୈ୍ୟବାନନ୍ଦ-ଶବ୍ଦସ୍ୟାଭ୍ୟାସଃ- ଏତମାନନ୍ଦମୟମାତ୍ମାନମୁପସଂକ୍ରାମତି', (ତୈ ୨-୮) ଇତି । ନ ତସ୍ୟ ବ୍ରହ୍ମବିଷୟତ୍ୱମସ୍ତି, ବିକାରାତ୍ମନାମେବାନ୍ନମୟାଦୀନାମନାତ୍ମନା-ମୁପସଂକ୍ରାମିତବ୍ୟାନାଂ ପ୍ରବାହେ ପତିତ୍ୱାତ୍ ।



**(୯) ଭାଷାଂତର-** (କ) ଯଦି ଆନନ୍ଦମୟ ଶବ୍ଦ ବ୍ରହ୍ମବିଷୟକ ବୋଲି ନିଶ୍ଚିତ ହୁଏ, ତାହେଲେ ଆନନ୍ଦମୟ ପ୍ରୟୋଗ ହେଉଥିବା ବାକ୍ୟମାନଙ୍କରେ ମଧ୍ୟ ଲକ୍ଷଣାଦ୍ୱାରା ଆନନ୍ଦମୟର ଅଭ୍ୟାସ କଳ୍ପନା ହୋଇପାରେ । କିନ୍ତୁ ପ୍ରିୟଶିରସ୍ତ୍ୱାଦି କାରଣ ଦ୍ୱାରା ଆନନ୍ଦମୟ ବ୍ରହ୍ମ ପଦବାଚ୍ୟ ନୁହେଁ ବୋଲି ଆମ୍ଭେମାନେ କହୁଁ ।

(ଖ) ଏହାପାଇଁ 'ବିଜ୍ଞାନମାନନ୍ଦ ବ୍ରହ୍ମ' ଏହି ବେଦବାକ୍ୟରେ ବ୍ରହ୍ମରେ ଆନନ୍ଦଶବ୍ଦର ପ୍ରୟୋଗ ହେବାର ଦେଖାଯାଏ । ଯେପରିକି- 'ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍', ଇତ୍ୟାଦି ବେଦବାକ୍ୟରେ ବ୍ରହ୍ମ ବିଷୟକ ପ୍ରୟୋଗ ହୋଇଛି । କିନ୍ତୁ ଆନନ୍ଦମୟର ଅଭ୍ୟାସ ନୁହେଁ ବୋଲି ଜାଣିବା ଉଚିତ୍ ।

(ଗ) 'ଏହି ଆନନ୍ଦମୟ ଆତ୍ମାର ବିରୁଦ୍ଧ ହେବା ଉଚିତ' । ଏହି ସ୍ଥାନରେ ଯେଉଁ ମୟଟ୍ ପ୍ରତ୍ୟୟାନ୍ତ ଆନନ୍ଦଶବ୍ଦରେ ବାରମ୍ବାର କୁହାଯାଉଛି । କିନ୍ତୁ ଏହା ବ୍ରହ୍ମ ବିଷୟକ ନୁହେଁ, କାରଣ-ବିକାରାତ୍ମ ହୋଇଥିବା ଅନ୍ନମୟାଦି ଅନାତ୍ମ ବସ୍ତୁ ଗୁଡ଼ିକର ବାଧାପରମ୍ପରା କ୍ରମରେ ପଠିତ ହୋଇଛି ।

(୧୦) ମୂଳ-(କ) ଅନ୍ୱାନନ୍ଦମୟସ୍ୟୋପସଂକ୍ରମିତବ୍ୟସ୍ୟାନ୍ନମୟାଦିବଦ୍ ବ୍ରହ୍ମତ୍ୱେ ନୈବ ବିଦୁଷୋ ବ୍ରହ୍ମପ୍ରାପ୍ତିଃ ଫଳଂ ନିର୍ଦ୍ଦିଷ୍ଟଂ ଭବେତ୍ । ନୈବ ଦୋଷଃ, ଆନନ୍ଦମୟୋପସଂକ୍ରମଣନିର୍ଦ୍ଦେଶେନୈବ ପୁଚ୍ଛପ୍ରତିଷ୍ଠାଭୂତବ୍ରହ୍ମପ୍ରାପ୍ତେଃ ଫଳସ୍ୟ ନିର୍ଦ୍ଦିଷ୍ଟତ୍ୱାତ୍ । (ଖ) 'ତଦପ୍ୟେଷ ଶ୍ଳୋକୋ ଭବତି', ଯତୋବାଚୋ ନିବର୍ତ୍ତନ୍ତେ', ଇତ୍ୟାଦି ଚ ପ୍ରପଞ୍ଚମାନତ୍ୱାତ୍ । ଯା ତ୍ୱାନନ୍ଦମୟ ସନ୍ନିଧାନେ 'ସୋଽକାମୟତ ବହୁସ୍ୟାଂ ପ୍ରଜାୟେୟେତି', ଇୟଂ ଶ୍ରୁତିରୁଦାହୃତା, ସା 'ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା' ଇତ୍ୟନେନ ସନ୍ନିହିତତରେଣ ବ୍ରହ୍ମଣା ସମ୍ବଧ୍ୟମାନା ଆନନ୍ଦମୟସ୍ୟ ବ୍ରହ୍ମତାଂ ପ୍ରତିବୋଧୟତି । ତଦପେକ୍ଷାତ୍ୱାଚ୍ଚୋତ୍ତରସ୍ୟ ଗ୍ରନ୍ଥସ୍ୟ 'ରସୋ ବୈ ସଃ', ଇତ୍ୟାଦେର୍ନାନନ୍ଦମୟବିଷୟତା ।

**(୧୦) ଭାଷାଂତର-** (କ) କିନ୍ତୁ ଅନ୍ନମୟାଦି ଭଳି ଯଦି ପ୍ରାପ୍ତବ୍ୟ ଆନନ୍ଦମୟକୁ ବ୍ରହ୍ମ ବୋଲି ସ୍ୱୀକାର କରିବା, ତାହେଲେ ବ୍ରହ୍ମବିତ୍ ବିଦ୍ୱାନକୁ ବ୍ରହ୍ମପ୍ରାପ୍ତି ରୂପ ନିର୍ଦ୍ଦିଷ୍ଟ ଫଳ ମିଳିବ ନାହିଁ । କିନ୍ତୁ ଏହା ଦୋଷ ନୁହେଁ, କାରଣ-ଆନନ୍ଦମୟର ବାଧ ନିର୍ଦ୍ଦେଶଦ୍ୱାରା ପୁଚ୍ଛ ଓ ପ୍ରତିଷ୍ଠାଯୁକ୍ତ ବ୍ରହ୍ମର ପ୍ରାପ୍ତିରୂପ ଫଳର ନିର୍ଦ୍ଦେଶ କରାଯାଇଛି ।

(ଖ) 'ତଦପ୍ୟେଷ ଶ୍ଳୋକୋ ଭବତି', 'ଯତୋ ବାଚୋ ନିବର୍ତ୍ତନ୍ତେ', ଇତ୍ୟାଦି ଦ୍ୱାରା ଏହାର ବିସ୍ତାର କରାଗଲା । ଆନନ୍ଦମୟର ସନ୍ନିଧାନରେ 'ସୋଽକାମୟତ', ଏଠାରେ

ଯେଉଁ ସ୍ମୃତି ଉଦାହରଣ ଭାବରେ ଦିଆଗଲା, ତାହା 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା', ଏହି ଅତ୍ୟନ୍ତ ସନ୍ନିହିତ ବ୍ରହ୍ମର ସହିତ ସମ୍ବନ୍ଧ ହେଲେ ଆନନ୍ଦମୟରେ ବ୍ରହ୍ମତ୍ୱର ବୋଧ ହୁଏ ନାହିଁ ଏବଂ 'ରସୋ ବୈସଃ' ଇତ୍ୟାଦି ପରବର୍ତ୍ତୀ ଗ୍ରନ୍ଥଗୁଡ଼ିକୁ ଅପେକ୍ଷା କରାଯାଏ । ଏହା ମଧ୍ୟ ଆନନ୍ଦମୟ ବିଷୟକ ନୁହେଁ ।

(୧୧) ମୂଳ- (କ) ନନୁ 'ସୋଽକାମୟତ' ଇତି ବ୍ରହ୍ମଣି ପୁଂଲିଙ୍ଗନିର୍ଦ୍ଦେଶୋ ନୋପପଦ୍ୟତେ । ନ୍ୟାୟଂ ଦୋଷଃ । 'ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ', ଇତ୍ୟତ୍ର ପୁଂଲିଙ୍ଗେନାପ୍ୟାତ୍ମଶବ୍ଦେନ ବ୍ରହ୍ମଣଃ ପ୍ରକୃତତ୍ୱାତ୍ । (ଖ) 'ଯା ତୁ ଭାର୍ଗବୀ ବାରୁଣୀ ବିଦ୍ୟା', 'ଆନନ୍ଦୋ ବ୍ରହ୍ମେତି ବ୍ୟଜନାତ୍', ଇତି, ତସ୍ୟାଂ ମୟଡ଼ଶ୍ରବଣାତ୍ । ପ୍ରିୟଶିରସ୍ତ୍ୱାଦ୍ୟଶ୍ରବଣାଚ୍ଚ ଯୁକ୍ତମାନନ୍ଦସ୍ୟ ବ୍ରହ୍ମତ୍ୱମ୍ । ତସ୍ମାଦଣୁମାତ୍ରମପି ବିଶେଷମନାଶ୍ରିତ୍ୟ ନ ସ୍ୱତ ଏବ ପ୍ରିୟଶିରସ୍ତ୍ୱାଦି ବ୍ରହ୍ମଣ ଉପପଦ୍ୟତେ । (ଗ) ନୁ ଚେହ ସବିଶେଷଂ ବ୍ରହ୍ମ ପ୍ରତିପିପାଦୟିଷିତଂ ବାଙ୍ମନସୋ ଗୋଚରାତିକ୍ରମଶ୍ରୁତେଃ ତସ୍ମାଦନ୍ନମୟାଦିଷ୍ୱିବାନନ୍ଦମୟେଽପି ବିକାରାର୍ଥ ଏବ ମୟଡ଼ବିଜ୍ଞେୟୋ ନ ପ୍ରାଚୁର୍ଯ୍ୟାର୍ଥଃ । (ଘ) ସୂତ୍ରାଣି ତ୍ୱେବଂ ବ୍ୟାଖ୍ୟେୟାନି 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା', ଇତ୍ୟତ୍ର କିମାନନ୍ଦମୟାବୟବ ତ୍ୱେନ ବ୍ରହ୍ମ ବିବକ୍ଷତ, ଉତ ସ୍ୱପ୍ରଧାନତ୍ୱେନେତ । (ଙ) ପୁଚ୍ଛଶବ୍ଦାଦବୟବ ତ୍ୱେନେତି ପ୍ରାପ୍ତ ଉଚ୍ୟତେ- 'ଆନନ୍ଦମୟୋଽଭ୍ୟାସାତ୍', ଆନନ୍ଦମୟ ଆତ୍ମେତ୍ୟତ୍ର 'ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା' ଇତି ସ୍ୱପ୍ରଧାନମେବ ବ୍ରହ୍ମୋପଦିଶ୍ୟତେ, ଅଭ୍ୟାସାତ୍ । ଅସନ୍ନେବ ସା ଭବତି', ଇତ୍ୟସ୍ମିନ୍ନିଗମନଶ୍ଳୋକେ ବ୍ରହ୍ମଣ ଏବ କେବଳସ୍ୟାଭ୍ୟସ୍ୟମାନତ୍ୱାତ୍ ।

**(୧୧) ଭାଷାଂତର-** (କ) ପରନ୍ତୁ 'ସୋଽକାମୟତ', ଏଠାରେ ବ୍ରହ୍ମରେ ପୁଂଲିଙ୍ଗ (ସଃ) ଶବ୍ଦର ନିର୍ଦ୍ଦେଶ ହୁଏ ନାହିଁ କି ? ହୁଏ । ପୁଂଲିଙ୍ଗ ନିର୍ଦ୍ଦେଶ କରାଯିବାରେ କୌଣସି ଦୋଷନାହିଁ', କାରଣ-ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ ଏହି ବେଦ ବାକ୍ୟରେ ଏତସ୍ମଦ୍ ଶବ୍ଦରେ ପୁଂଲିଙ୍ଗ ଆତ୍ମ-ଶବ୍ଦଦ୍ୱାରା କେବଳ ବ୍ରହ୍ମ ପ୍ରକୃତ ହୁଏ ।

(ଖ) 'ଆନନ୍ଦୋ ବ୍ରହ୍ମେତି ବ୍ୟଜନାତ୍', ଓ 'ଯା ତୁ ଭାର୍ଗବୀ ବାରୁଣୀ ବିଦ୍ୟା', ଏହି ଦୁଇ ବାକ୍ୟରେ କିନ୍ତୁ ମୟଟ୍ ପ୍ରତ୍ୟୟ ଶୁଣାଯାଏ ନାହିଁ, ପୁନଶ୍ଚ ପ୍ରିୟଶିରସ୍ତ୍ୱାଦିମାନଙ୍କର ମଧ୍ୟ ଶ୍ରବଣ ନାହିଁ । ଏହାପାଇଁ ଆନନ୍ଦ ହିଁ ବ୍ରହ୍ମ କହିବା ଠିକ୍ । ତେଣୁ ଅଣୁମାତ୍ର ମଧ୍ୟ ବିଶେଷର ଆଶ୍ରୟ ନ ନେଇ ନିଜେ ନିଜେ ପ୍ରିୟଶିରସ୍ତ୍ୱାଦି ବ୍ରହ୍ମରେ ଯୋଗ ହୋଇ ପାରିବ ନାହିଁ ।



(ଗ) କିନ୍ତୁ ଏଠାରେ ସଗୁଣ ବ୍ରହ୍ମର ପ୍ରତିପାଦନ ଇଷ୍ଟ ନୁହେଁ । କାରଣ- ଏହି ପ୍ରକରଣରେ ବ୍ରହ୍ମବାଣୀ ଓ ମନର ଅବିଷୟ ବିଷୟ ବେଦରେ ଅଛି । ଏଥିପାଇଁ ଅନ୍ନମୟାଦି ଭଳି ଆନନ୍ଦମୟରେ ମଧ୍ୟ ମୟଟ୍ ପ୍ରତ୍ୟୟ ବିକାରାର୍ଥକ ଭାବରେ ବୁଝିବାକୁ ପଡ଼ିବ । କିନ୍ତୁ ଏହା ପ୍ରାଚୁର୍ଯ୍ୟାର୍ଥକ ନୁହେଁ ।

(ଘ) ସୂତ୍ରର ବ୍ୟାଖ୍ୟା ମଧ୍ୟ ଏହିଭଳି ହେବା ଉଚିତ ଯେ- 'ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା' । ଏହି ସ୍ଥାନରେ କ'ଣ ଅନ୍ନମୟର ଅବୟବ ରୂପରେ ବ୍ରହ୍ମ ବିବକ୍ଷିତ ଅଥବା ସ୍ୱପ୍ରଧାନ ରୂପରେ ଅଛି ?

(ଙ) ପୁଚ୍ଛ ଶବ୍ଦକୁ ପ୍ରୟୋଗ କରିବାରୁ ବ୍ରହ୍ମ ଅବୟବ ରୂପରେ ବିବକ୍ଷିତ ହେଲା, ତେଣୁ ସୂତ୍ରକାର କହିଲେ- 'ଆନନ୍ଦମୟୋଽଭ୍ୟାସାତ୍' । ଆନନ୍ଦମୟ ଆତ୍ମା ଅଟେ, ଏହି ସ୍ଥଳରେ 'ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା' ଏହି ବାକ୍ୟଦ୍ୱାରା ସ୍ୱପ୍ରଧାନ ରୂପରେ ବ୍ରହ୍ମ ଉପଦିଷ୍ଟ ହୁଏ । କାହିଁକି ଏହାର ଅଭ୍ୟାସ କରାଗଲା ? କାରଣ- 'ଅସନ୍ନେବ ସ ଭବତି' ଏହି ବାକ୍ୟରେ ବ୍ରହ୍ମ ହିଁ ଅଭ୍ୟାସ୍ୟମାନ ଅଟେ ।

(୧୨) ମୂଳ-(କ) ବିକାରଶବ୍ଦାନ୍ନେତି ଚେନ୍ନ ପ୍ରାଚୁର୍ଯ୍ୟାତ୍ ବିକାରଶବ୍ଦେନାବୟବଶବ୍ଦୋଽଭିପ୍ରେତଃ । ପୁଚ୍ଛମିତ୍ୟବୟବଶବ୍ଦାନ୍ନ ସ୍ୱପ୍ରଧାନତ୍ୱଂ ବ୍ରହ୍ମ ଇତି ଯଦୁକ୍ତମ୍, ତସ୍ୟ ପରିହାରୋ ବକ୍ତବ୍ୟଃ । (ଖ) ଅତ୍ରୋଚ୍ୟତେନାୟଂ ଦୋଷଃ, ପ୍ରଚୁର୍ଯ୍ୟାଦପ୍ୟବୟବଶବ୍ଦୋପପାତ୍ତେଃ । ପ୍ରାଚୁର୍ଯ୍ୟଂ ପ୍ରାୟାପତ୍ତିଃ । ଅବୟବପ୍ରାପ୍ତେ ବଚନମିତ୍ୟର୍ଥଃ । (ଗ) ଅନ୍ନମୟାଦୀନାଂ ହି ଶିର ଆଦିଷୁ ପୁଚ୍ଛାନ୍ତେଷ୍ୱବୟବେଷୂକ୍ତେଷ୍ୱାନନ୍ଦମୟସ୍ୟାପି ଶିର ଆଦୀନ୍ୟବୟବାନ୍ତରାଣ୍ୟୁକ୍ତ୍ୱାଽବୟବ ପ୍ରାୟାପତ୍ତ୍ୟା 'ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା' ଇତ୍ୟାହ । (ଘ) ନାବୟବବିବକ୍ଷୟା ଯତ୍‌କାରଣମଭ୍ୟାସାଦିତି ସ୍ୱପ୍ରଧାନତ୍ୱଂ ବ୍ରହ୍ମଣଃ ସମର୍ଥିତମ୍ । 'ତଦ୍‌ହେତୁବ୍ୟପାଦେଶାଚ୍ଚ' । ସର୍ବସ୍ୟ ହି ବିକାରଜାତସ୍ୟ ସାନନ୍ଦମୟସ୍ୟ କାରଣତ୍ୱେନ ବ୍ରହ୍ମ ବ୍ୟପଦିଶ୍ୟତେ- 'ଇଦଂ ସର୍ବମସୃଜତ । ଯଦିଦଂ କିଞ୍ଚ, (ତୈ ୨।୬) ଇତି । (ଙ) ନ ଚ କାରଣଂ ସତ୍ ବ୍ରହ୍ମସ୍ୱବିକାରସ୍ୟାନନ୍ଦମୟସ୍ୟ ମୁଖ୍ୟୟା ବୃତ୍ତ୍ୟାଽବୟବ ଉପପଦ୍ୟତେ । ଅପରାଣ୍ୟପି ସୂତ୍ରାଣି ଯଥାସମ୍ଭବଂ ପୁଚ୍ଛବାକ୍ୟନିର୍ଦ୍ଦିଷ୍ଟସ୍ୟୈବ ବ୍ରହ୍ମଣ ଉପପାଦକାନି ଦ୍ରଷ୍ଟବ୍ୟାନି ।

**(୧୨) ଭାଷାଂତର-** (କ) 'ବିକାର ଶବ୍ଦାନ୍ନେତି ଚେନ୍ନ ପ୍ରାଚୁର୍ଯ୍ୟାତ୍', । ଏହି ସୂତ୍ରରେ ବିକାରଶବ୍ଦଦ୍ୱାରା ଅବୟବଶବ୍ଦ ଅଭିପ୍ରେତ ହେଉଛି । ପୁଚ୍ଛଂ ଏହି ଅବୟବଶବ୍ଦ ଦ୍ୱାରା ବ୍ରହ୍ମ ସ୍ୱପ୍ରଧାନ ହୁଏ ନାହିଁ- ଏହି ପ୍ରକାର ଯେଉଁ କୁହାଯାଇଅଛି, ତାହାର ପରିହାର କରିବା ଉଚିତ୍ ।

(ଖ) ତେଣୁ ଏଠାରେ ଦୋଷହୀନ ବୋଲି କୁହାଯାଇଛି, କାରଣ-ପ୍ରାଚୁର୍ଯ୍ୟ ଶବ୍ଦ ଦ୍ୱାରା ବ୍ରହ୍ମରେ ଅବୟବ ଶବ୍ଦର ଉପପତ୍ତି ହେବା ସମ୍ଭବ ହୁଏ । ପ୍ରାଚୁର୍ଯ୍ୟ ଅର୍ଥାତ୍ ପ୍ରାୟାପତ୍ତି (ଅବୟବ କ୍ରମ ବୃଦ୍ଧିରେ ପ୍ରାପ୍ତି) । ଅବୟବ ପ୍ରାୟରେ ବଚନ ଅର୍ଥାତ୍ ଅଧିକତା ଦ୍ୱାରା ଅବୟବମାନଙ୍କର ପ୍ରତିପାଦକ ପ୍ରକରଣରେ ଏହା କଥିତ ବଚନ ।

(ଗ) କାରଣ-ଅନ୍ନମୟାଦିର ଶିରାଦିଠାରୁ ପୁଚ୍ଛ ପର୍ଯ୍ୟନ୍ତ ଅବୟବ କହିବା ପରେ ଆନନ୍ଦମୟର ଓ ଶିରାଦିର ଅନ୍ୟାବୟବକୁ କହି ଅବୟବ କ୍ରମର ପ୍ରାପ୍ତି ହେଲାପରେ 'ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା', କୁହାଯାଏ ।

(ଘ) କିନ୍ତୁ ଅବୟବର ବିବକ୍ଷାଦ୍ୱାରା ନୁହେଁ କାରଣ- ଅଭ୍ୟାସାତ୍ ଅର୍ଥାତ୍ ଅଭ୍ୟାସଦ୍ୱାରା ବ୍ରହ୍ମରେ ସ୍ୱପ୍ରଧାନତ୍ୱର ସମର୍ଥନ କରାଯାଏ । 'ତଦ୍‌ହେତୁ ବ୍ୟପଦେଶାଚ୍ଚ' ଅର୍ଥାତ୍ ଆନନ୍ଦମୟ ସହିତ ସମସ୍ତ କାର୍ଯ୍ୟ ସମୁଦାୟର କାରଣ ରୂପରେ 'ବିଶ୍ୱର ସମଗ୍ର ଯାହା କିଛି ପଦାର୍ଥ, ତାହା ଏହିଠାରୁ ଉତ୍ପନ୍ନ ହୋଇଛି', ଏହି ପ୍ରକାର ବ୍ରହ୍ମ ବଚତ କରା ହୋଇଅଛି ।

(ଙ) କାରଣ ହୋଇ ବ୍ରହ୍ମ ମୁଖ୍ୟବୃତ୍ତି ଦ୍ୱାରା ନିଜର କାର୍ଯ୍ୟ ଆନନ୍ଦମୟର ଅବୟବ ହେବା ଯୁକ୍ତିଯୁକ୍ତ ନୁହେଁ । ତେଣୁ ଅପର ସୂତ୍ର ମଧ୍ୟ ଯଥା ସମ୍ଭବ ପୁଚ୍ଛବାକ୍ୟରେ ନିର୍ଦ୍ଦିଷ୍ଟ ବ୍ରହ୍ମର ଉପପାଦକ ହେବା ଉଚିତ୍ ।

## ७ अन्तराधिकरणम् । २० - २१

## ଅଂତରାଧିକରଣ-୭

## अन्तस्तद्धर्मोपदेशात् ॥ २० ॥

## (୧) ଅଂତସ୍ତଦ୍ଧର୍ମୋପଦେଶାତ୍ ୧ । ୧ । ୨୦

ଅନ୍ତଃ-'ଯ ଏଷୋଽନ୍ତରାଦିତ୍ୟେ', 'ଯ ଏଷୋଽନ୍ତରକ୍ଷିଣି ! ଏହି ବେଦବାକ୍ୟରେ ଆଦିତ୍ୟ ମଣ୍ଡଳାଦିର ଅନ୍ତର ଶ୍ରୂୟମାଣ ପୁରୁଷ ସଂସାରୀ ନୁହେଁ, କିନ୍ତୁ ପରମେଶ୍ୱର ଅଟନ୍ତି, କାରଣ- 'ତଦ୍‌ଧର୍ମୋପଦେଶାତ୍=ପାପଶୂନ୍ୟ-ତ୍ୱାଦି ଏହି ଧର୍ମର ଉପଦେଶ ଅଟେ ।

(୨) ମୂଳ-(କ) ଇଦମାମ୍ନାୟତେ-'ଅଥ ଯ ଏଷୋଽନ୍ତାରାଦିତ୍ୟେ ହିରଣମୟଃ ପୁରୁଷୋ ଦୃଶ୍ୟତେ, ହିରଣ୍ୟଶ୍ମଶ୍ରୁର୍ହିରଣ୍ୟକେଶ ଆ ପ୍ରଣଖାତ୍ ସର୍ବ ଏବ ସୁବର୍ଣ୍ଣଃ,' 'ତସ୍ୟ ଯଥା କପ୍ୟାସଂ ପୁଣ୍ଡରୀକମେବମକ୍ଷିଣୀ ତସ୍ୟୋଦିତି ନାମ ସ ଏଷ ସର୍ବେଭ୍ୟଃ ପାପ୍ମଭ୍ୟଃ ଉଦିତ ଉଦେତି ହ ବୈ ସର୍ବେଭ୍ୟଃ ପାପେଭ୍ୟୋ ଯ ଏବଂ ବେଦ' 'ଇତ୍ୟଧିଦୈବତମ୍,'



(ଛ ୨।୬।୬,୭,୮) ।(ଖ) ଅଥାଧ୍ୟାତ୍ମମପି 'ଅଥ ଯ ଏଷୋଽନ୍ତରକ୍ଷିଣି ପୁରୁଷୋ ଦୃଶ୍ୟତେ,' (ଛା ୨-୭-୧,୫) ଇତ୍ୟାଦି ।

(୨) ଭାଷାଂତର- (କ) ପ୍ରମାଣକ ବେଦ ବାକ୍ୟାନୁସାରେ- 'ଯେଉଁ ପୁରୁଷ ଆଦିତ୍ୟମଣ୍ଡଳାନ୍ତର୍ଗତ ସୁବର୍ଣ୍ଣଜ୍ୟୋତିର୍ମୟକୁ ଦେଖେ, ସେ ସୁବର୍ଣ୍ଣ ସଦୃଶ ଦାଢ଼ି, ନିଶ ଏପରିକି ନଖ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣାବୟବ ସୁବର୍ଣ୍ଣ ହୋଇଯାଏ । 'ବାନର ବସିବା ଆସନ ଭଳି ଉଭାସିତ ଅରୁଣ ସଦୃଶ ପୁଣ୍ଡରୀକପଦ୍ମବତ୍ ଏହି ପୁରୁଷର ଦୁଇଟି ନେତ୍ର ଅଛି । ଏହାର ଉତ୍ ଏହିଭଳି ହେବା ଉଚିତ । କାରଣ-ଏହି ସମସ୍ତ ପାପଠାରୁ ଉର୍ଦ୍ଧ୍ୱରେ ଅର୍ଥାତ୍ ସମସ୍ତପାପଠାରୁ ମୁକ୍ତ ହୁଏ ଏବଂ ଯିଏ ଗୁଣସମ୍ପନ୍ନ ହୋଇ ଉତ୍ନାମକ ଦେବତାଙ୍କର ଯଥୋକ୍ତପ୍ରକାରରେ ଉପାସନା କରେ, ଏହା ନିଶ୍ଚିତ ଭାବରେ କୁହାଯାଇପାରେ ଯେ- 'ସେ ସମଗ୍ରପାପଠାରୁ ମୁକ୍ତି ପାଏ' । 'ଏହି ଅଧିଦୈବତି ଅଟେ ।'

(ଖ) ଅଧୁନା ଯେଉଁ ଚକ୍ଷୁ ନେତ୍ର ମଧ୍ୟସ୍ଥ ପୁରୁଷକୁ ଦେଖାଏ', ଇତ୍ୟାଦି ବେଦବାକ୍ୟ ଦ୍ୱାରା ଅଧ୍ୟାତ୍ମବିଦ୍ୟା କୁହାଯାଇଛି ।

(୩) ମୂଳ- (କ) ତତ୍ର ସଂଶୟଃ-କିଂ ବିଦ୍ୟାକର୍ମାତିଶୟବଶାତ୍ ପ୍ରାପ୍ତୋତ୍କର୍ଷଃ କଶ୍ଚିତ୍‌ସଂସାରୀ ସୂର୍ଯ୍ୟମଣ୍ଡଳେ ଚକ୍ଷୁଷି ଚୋପାସ୍ୟତ୍ୱେନ ଶ୍ରୂୟତେ, କିମ୍ବା ନିତ୍ୟସିଦ୍ଧଃ ପରମେଶ୍ୱର ଇତି । (ଖ) କିଂ ତାବତ୍ ପ୍ରାପ୍ତମ୍ ? ସଂସାରୀତି । କୁତଃ ? ରୂପବତ୍ତ୍ୱଶ୍ରବଣାତ୍ । ଆଦିତ୍ୟପୁରୁଷେଽପି ତଦେବାତିଦେଶେନ ପ୍ରାପ୍ୟତେ-ତସ୍ୟୈତସ୍ୟ ତଦେବ ରୂପଂ ଯଦମୁଷ୍ୟରୂପମିତି । ନ ଚ ପରମେଶ୍ୱରସ୍ୟ ରୂପବତ୍ତ୍ୱଂ ଯୁକ୍ତମ୍ । 'ଅଶବ୍ଦମସ୍ପର୍ଶମରୂପମବ୍ୟୟମ୍,' (କା ୧।୩।୧୫) ଇତି ଶ୍ରୁତେଃ । (ଗ) ଆଧାରଶ୍ରବଣାଚ୍ଚ - 'ଯ ଏଷୋଽନ୍ତରାଦିତ୍ୟେ, ଯ ଏଷୋଽନ୍ତରାକ୍ଷିଣି,' ଇତି । ନ ହ୍ୟନାଧାରସ୍ୟ ସ୍ୱମହିମପ୍ରତିଷ୍ଠସ୍ୟ ସର୍ବବ୍ୟାପିନଃ ପରମେଶ୍ୱରସ୍ୟାଧାର ଉପଦିଶ୍ୟତେ । 'ସ ଭଗବଃ କସ୍ମିନ୍ ପ୍ରତିଷ୍ଠିତ ଇତି ସ୍ୱେ ମହିମ୍ନି, (ଛା ୭।୧୪।୧) ଇତି । ଆକାଶବତ୍ ସର୍ବଗତଶ୍ଚ ନିତ୍ୟ ଇତି ଚ ଶ୍ରୁତୀ ଭବତଃ । (ଘ) ଐଶ୍ୱର୍ଯ୍ୟମର୍ଯ୍ୟାଦାଶ୍ରୁତେଶ୍ଚ । 'ସ ଏଷ ଯେ ଚାମୁଷ୍ୟାତ୍ ପରାଞ୍ଚୋ ଲୋକାସ୍ତେଷାଂ ଚେଷ୍ଟେ ଦେବକାମାନାଞ୍ଚ' (ଛା ୧।୬।୮) ଇତ୍ୟାଦିତ୍ୟପୁରୁଷସ୍ୟୈଶ୍ୱର୍ଯ୍ୟମର୍ଯ୍ୟାଦା । 'ସ ଏଷଃ ଯେ ଚେତସ୍ମାଦର୍ବାଞ୍ଚୋ ଲୋକାସ୍ତେଷାଂ ଚେଷ୍ଟେ ମନୁଷ୍ୟକାମାନାଞ୍ଚ,' (ଛା ୧।୭।୬) ଇତ୍ୟକ୍ଷ ପୁରୁଷସ୍ୟ । (ଙ) ନ ଚ ପରମେଶ୍ୱରସ୍ୟ ମର୍ଯ୍ୟାଦାବଦୈଶ୍ୱର୍ଯ୍ୟଂ ଯୁକ୍ତମ୍, ଏଷ ସର୍ବେଶ୍ୱର, ଏଷ ଭୂତାଧିପତି ରେଷ

ଭୂତପାଳ, ଏଷ ସେତୁର୍ବିଧରଣ ଏଷାଂ ଲୋକାନାମସଂଭେଦାୟ,' (ବୃ ୪।୪।୧୧) ଇତି ବିଶେଷଶ୍ରୁତେଃ । ତସ୍ମାନ୍ନାକ୍ଷ୍ୟାଦିତ୍ୟୟୋରନ୍ତଃ ପରମେଶ୍ୱରଃ ।

(୩) ଭାଷାଂତର- (କ) ଏଠାରେ ଶଙ୍କା-ଅତିଶୟ ବିଦ୍ୟା ଓ କର୍ମର ପ୍ରଭାବ ଦ୍ୱାରା ଉତ୍କର୍ଷ ପ୍ରାପ୍ତ ହୋଇ କୌଣସି ସୂର୍ଯ୍ୟ ମଣ୍ଡଳରେ ତଥା ଚକ୍ଷୁ ଦ୍ୱାରା ଉପାସ୍ୟ ରୂପରେ ଶୁଣାଯାଏ କି ନିତ୍ୟସିଦ୍ଧ ପରମେଶ୍ୱର ଶୁଣାଯାଏ ?

(ଖ) ତାହେଲେ ଏଠାରେ କଣ ହେବ ? ପୂର୍ବପକ୍ଷ-ଏଠାରେ ସଂସାରୀ ଉପାସ୍ୟ ରୂପରେ ସୂଚିତ ହୋଇଛି । କାରଣ-ସଂସାରୀର ରୂପବତ୍ତ୍ୱ ଏଠାରେ ଶ୍ରବଣ କରାଯାଇଛି । ଆଦିତ୍ୟ ପୁରୁଷଠାରେ ହିରଣ୍ମୟ ଶ୍ମଶ୍ରୁ ଇତ୍ୟାଦି ରୂପ କୁହାଯାଇଛି । ଅକ୍ଷି ପୁରୁଷଠାରେ ମଧ୍ୟ ଅତିଦେଶ ହୋଇ ରୂପ କୁହାଯାଇଛି । ଯଥା ଅକ୍ଷିପୁରୁଷଠାରେ ମଧ୍ୟ ଅତିଦେଶ ହୋଇ ରୂପ କୁହାଯାଇଛି । ଯଥା 'ଏହି ଅକ୍ଷିପୁରୁଷର ଏହି ରୂପ ଯାହା ଅକ୍ଷିପୁରୁଷର ରୂପ ଅଟେ ।' ପରନ୍ତୁ ପରମେଶ୍ୱରର ରୂପବତ୍ତ୍ୱ ହେବା ଠିକ୍ ନୁହେଁ । କାରଣ-ତାହା ଶବ୍ଦ-ସ୍ପର୍ଶ-ରୂପ ରହିତ ଓ ଅବିନାଶୀ ବୋଲି ବେଦ କହେ ।

(ଗ) 'ଯାହା ଏହି ଆଦିତ୍ୟ ମଣ୍ଡଳରେ ଅଛି, ତାହା ଅକ୍ଷିର ବ୍ୟତିରିକ୍ତ-ଏହି ପ୍ରକାର ଆଧାର ଶ୍ରବଣ କରାଯାଇଅଛି । କିନ୍ତୁ ଆଧାର ରହିତ, ସ୍ୱମହିମାରେ ପ୍ରତିଷ୍ଠିତ, ସର୍ବବ୍ୟାପୀ ପରମେଶ୍ୱରର ଆଧାର ଉପଦେଶ କରାଯାଇ ନ ପାରେ, କାରଣ- 'ହେ ଭଗବନ୍ ! ସେ ଭୂମା କେଉଁଠାରେ ଅଛି ବୋଲି କହନ୍ତେ, ସନତ୍କୁମାର କହିଲେ, ''ଏହା ଆପଣଙ୍କର ମହିମାରେ ପ୍ରତିଷ୍ଠିତ'', ଏବଂ 'ଗଗନ ସଦୃଶ ଏହା ସର୍ବବ୍ୟାପକ ଓ ନିତ୍ୟ', ଏହି ଶ୍ରୁତିଦ୍ୱୟ ହିଁ ପ୍ରମାଣ ।

(ଘ) ପୁନଶ୍ଚ ଆଦିତ୍ୟ ପୁରୁଷ ଓ ଅକ୍ଷିପୁରୁଷର ଐଶ୍ୱର୍ଯ୍ୟମର୍ଯ୍ୟାଦାର ଶ୍ରବଣ ହିଁ କାରଣ ଅଟେ । 'ଏହି ସେହି ଉତ୍ନାମକ ଦେବତା, ଯେକି ଏହି ଆଦିତ୍ୟ ଲୋକଠାରୁ ଉପରେ ଏବଂ ଦେବତାମାନଙ୍କର ଉପଭୋଗ୍ୟ, ସେ ସମସ୍ତଙ୍କୁ ଶାସନ କରେ ।' ଏହି ପ୍ରକାର ଆଦିତ୍ୟ ପୁରୁଷର ମର୍ଯ୍ୟାଦା ପାଇଁ ବେଦ ହିଁ ପ୍ରମାଣ ଏବଂ 'ଅକ୍ଷିସ୍ଥ ଏହି ଉତ୍ ଅକ୍ଷିପୁରୁଷ ନାମକ ଦେବତା ଯେକି ଅଧାତ୍ମ ଆତ୍ମାଠାରୁ ନିଚଲୋକରେ । ଏହାର ତଥା ମାନବୀୟକାମନାମାନଙ୍କୁ ଶାସନ କରେ ।' ଏହି ପ୍ରକାରର ଅକ୍ଷି ପୁରୁଷର ମର୍ଯ୍ୟାଦା ପ୍ରମାଣ ପାଇଁ ବେଦବାକ୍ୟ ହିଁ ଉଦ୍ଦିଷ୍ଟ ।

(ଙ) ପରନ୍ତୁ ପରମେଶ୍ୱରର ଐଶ୍ୱର୍ଯ୍ୟ ସୀମିତ ରହିବା ଉଚିତ ନୁହେଁ । କାରଣ- 'ଏହି ସର୍ବେଶ୍ୱର ଅଟେ, ଏହା ସମସ୍ତ ପ୍ରାଣୀମାନଙ୍କର ଅଧିପତି ଅଟେ । ଏହା ପ୍ରାଣୀଙ୍କର ପାଳକ । ଲୋକମାନଙ୍କର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଏହା ସମସ୍ତ ବ୍ୟବସ୍ଥା କରିବାର ।



ସଂଯୋଜକ ଅର୍ଥାତ୍ ବନ୍ଧ ସଦୃଶ ନିୟାମକ'- ଏହି ପ୍ରକାର ଅବିଶେଷ ଶ୍ରୁତି ରହିଛି । ନେତ୍ର ଓ ଆଦିତ୍ୟର ଅନ୍ତରପୁରୁଷ ପରମେଶ୍ୱର ନୁହେଁ ବୋଲି ଏହାଦ୍ୱାରା ସିଦ୍ଧ ହୁଏ ।

(୪) ମୂଳ-(କ) ଇତ୍ୟେବଂ ପ୍ରାପ୍ତେ ବ୍ରୂମଃ-'ଅନ୍ତସ୍ତଦ୍ଧର୍ମୋପଦେଶାତ୍' । ଇତି । 'ଯ ଏଷୋଽନ୍ତରାଦିତ୍ୟେ', 'ଯ ଏଷୋଽନ୍ତରାକ୍ଷିଣି,' ଇତି ଚ ଶ୍ରୂୟମାଣଃ ପୁରୁଷଃ ପରମେଶ୍ୱର ଏବ, ନ ସଂସାରୀ । (ଖ) କୁତଃ ? 'ତଦ୍ ଧର୍ମୋପଦେଶାତ୍' । ତସ୍ୟ ହି ପରମେଶ୍ୱରସ୍ୟ ଧର୍ମା ଇହୋପଦିଷ୍ଟା । ତଦ୍ୟଥା 'ତସ୍ୟୋଦିତି ନାମ,' ଇତ ଶ୍ରାବୟିତ୍ୱା ତସ୍ୟାଦିତ୍ୟପୁରୁଷସ୍ୟ ନାମ 'ସ ଏଷ ସର୍ବେଭ୍ୟଃ ପାପେଭ୍ୟ ଉଦିତ' ଇତି ସର୍ବାପାପ୍ମାପଗମେନ ନିର୍ବକ୍ତି । (ଗ) ତଦେବ ଚ କୃତନିର୍ବଚନଂ ନାମାକ୍ଷିପୁରୁଷସ୍ୟାପ୍ୟତିଦିଶତି- 'ଯନ୍ନାମ ତନ୍ନାମ', ଇତ । ସର୍ବପାପ୍ମାପଗମଶ୍ଚ ପରମାତ୍ମନ ଏବ ଶ୍ରୂୟତେ- 'ଯ ଆତ୍ମାପହତପାପ୍ମା, (ଛା ୮।୭।୧)ଇତ୍ୟାଦୌ । (ଘ) ତଥା ଚକ୍ଷୁଷେ ପୁରୁଷେ 'ସେ ବର୍କ୍ତ୍ ସାମ ତଦୁକ୍ ତ୍‌ଥ ତଦ୍ୟଜୁସ୍ତଦ୍‌ବ୍ରହ୍ମ', ଇତ୍ୟୃକ୍ ସାମାଦ୍ୟାତ୍ମକତାଂ ନିର୍ଧାରୟତି । ସା ଚ ପରମେଶ୍ୱରସ୍ୟୋପପଦ୍ୟତେ, ସର୍ବକାରଣତ୍ୱାତ୍ ସର୍ବାତ୍ମକ ତ୍ୱୋପପଦ୍ୟତେ, ସର୍ବକାରଣତ୍ୱାତ୍ ସର୍ବାତ୍ମକତ୍ୱୋପପତ୍ତେଃ । (ଙ) ପୃଥିବ୍ୟଗ୍ନ୍ୟାଦ୍ୟାତ୍ମକେ ଚାଧିଦୈବତଂ ଋକ୍‌ସାମେ, ବାକ୍‌ପ୍ରାଣାଦ୍ୟାତ୍ମକେ ଚାଧ୍ୟାତ୍ମମନୁକ୍ରମ୍ୟାହ-'ତସ୍ୟର୍କ୍ଚ ସାମ ଚ ଗେଷ୍ଣୌ ଇତ୍ୟଧିଦୈବତମ୍ । ତଥା ଚାଧ୍ୟାତ୍ମମପି--'ଯାବମୁଷ୍ୟ ଗେଷ୍ଣୌ ତୌ ଗେଷ୍ଣୌ, ଇତି । ତଚ୍ଚ ସର୍ବାତ୍ମନ ଏବୋପପଦ୍ୟତେ । 'ତଦ୍ୟ ଇମେ ବୀଣାୟାଂ ଗାୟନ୍ତ୍ୟେତଂ ତେଗାୟନ୍ତି, ତସ୍ମାତ୍ତେ ଧନସନୟଃ, (ଛା ୧।୭।୬) ଇତି ଚ । (ଛ) ଲୌକିକେଷ୍ୱପି ଗାନେଷ୍ୱସ୍ୟୈବ ଗୀୟମାନତ୍ୱଂ ଦର୍ଶୟତି । ତଚ୍ଚ ପରମେଶ୍ୱରପରିଗ୍ରହେ ଘଟତେ । 'ଯଦ୍ ଯଦ୍ ବିଭୂତିମତ୍‌ସର୍ବମ୍, ଶ୍ରୀମଦର୍ଜ୍ଜିତମେବ ବା । ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜାଂଽଶ ସମ୍ଭବାତ୍,' ଇତି ଭଗବଦ୍ ଗୀତା ଦର୍ଶନାତ୍ । ଲୋକକାମେଶିତୃତ୍ୱମପି ନିରଙ୍କୁଶଂ ଶ୍ରୂୟମାଣଂ ପରମେଶ୍ୱରଂ ଗମୟତି ।

**(୪) ଭାଷାଂତର-** (କ) ଏହିଭଳି ପ୍ରାପ୍ତ ହୁଅନ୍ତେ 'ଅନ୍ତସ୍ତଦ୍ଧର୍ମୋପଦେଶାତ୍' । ସୂତ୍ର କୁହାଯାଇଛି । 'ଏହି ଯେକି ଆଦିତ୍ୟର ଅନ୍ତର୍ଗତ', 'ଯାହାକି ଚକ୍ଷୁର ଆନ୍ତର ଏହିଭଳି ଶୁଣାଯାଉଥିବା ପୁରୁଷ ହିଁ ପରମେଶ୍ୱର, କିନ୍ତୁ ସଂସାରୀ ନୁହେଁ ।

(ଖ) କାହିଁକି ? 'ତଦ୍ ଧର୍ମଃ' (ସେହିଧର୍ମ) ଶବ୍ଦଦ୍ୱାରା ଏହି ପରମେଶ୍ୱର ସଂପର୍କୀୟ ଧର୍ମମାନଙ୍କର ଉପଦେଶ ଏଠାରେ ଦିଆଯାଇଛି । ଯଦ୍ଦ୍ୱାରା କି 'ତସ୍ୟୋଦିତ ନାମ' (ଏହାର ନାମ ଉତ୍ ଅଟେ) ଏହି ପ୍ରକାର ଏହି ଆଦିତ୍ୟ ପୁରୁଷର ନାମ ଶ୍ରବଣ କରାଇ 'ସେ ଯେକି ସମସ୍ତ ପାପରୁ ମୁକ୍ତ କରେ', ଏହି ପ୍ରକାର ସବୁପାପର ଅବଗମଦ୍ୱାରା 'ଉତ' ନାମକ ଶ୍ରୁତି ନିର୍ବଚନ କରେ ।

(ଗ) ନିର୍ବଚନ କରାଯାଇଥିବା ଏହି ନାମର ଅକ୍ଷି ପୁରୁଷରେ 'ଯନ୍ନାମ ତନ୍ନାମ', 'ଯାହା ଆଦିତ୍ୟପୁରୁଷର ନାମ, ତାହା ମଧ୍ୟ ଅକ୍ଷିପୁରୁଷର ନାମ', ଏହି ଶ୍ରୁତି ଅତିଦେଶ କରେ । (ଗୋଟିଏ ବେଦବାକ୍ୟ ଅନ୍ୟସ୍ଥାନରେ ଶୁଣାଗଲା ତାହାକୁ ଅତିଦେଶ କୁହାଯାଏ । ଯଥା-ଆଦିତ୍ୟ ପୁରୁଷର ରୂପ ଅକ୍ଷିପୁରୁଷରେ ଶୁଣାଯାଏ ।) 'ଯ ଆତ୍ମାପହତପାପ୍ମା', ଇତ୍ୟାଦି ବେଦବାକ୍ୟଗୁଡ଼ିକରେ ପରମାତ୍ମା ହିଁ ସର୍ବ ପାପରହିତ ବୋଲି ଶୁଣାଯାଏ ।

(ଘ) ଏହିପ୍ରକାର 'ଏହି ଅକ୍ଷିପୁରୁଷ ଋକ୍, ସାମ, ଯଜୁ, ଉକ୍ଥ, ଓ ବ୍ରହ୍ମ ଅଟେ', ଏହି ବେଦବାକ୍ୟ ଅକ୍ଷିପୁରୁଷରେ ଋକ୍‌ସାମାଦିର ଆତ୍ମାକତାର ନିର୍ଦ୍ଧାରଣ କରେ । ଏହି ସର୍ବାତ୍ମକତା ପରମେଶ୍ୱରରେହିଁ ଉପପନ୍ନ ହୁଏ, କାରଣ-ଏହା ସମସ୍ତର କାରଣ ହେଲେ ସର୍ବାତ୍ମକ ହେବାକୁ ସମର୍ଥ ହୁଏ ।

(ଙ) 'ଋକ୍, ପୃଥିବୀ ଓ ସାମ ହେଉଛି ଅଗ୍ନି, ଯାହାକି ଅଧିଦୈବତ ଏବଂ ବାକ୍ ପ୍ରାଣାଦି ଆତ୍ମକ ଋକ୍, ସାମ ଅଟେ ।' ଏହିପ୍ରକାର ଆରମ୍ଭ କରି ଶ୍ରୁତିବାକ୍ୟ କହେ ଯେ - 'ଏହି ଆଦିତ୍ୟପୁରୁଷର ଋକ୍ ଏବଂ ସାମ ହେଉଛି ପୂର୍ବ ଓ ଅଙ୍ଗଗୁଡ଼ିକର ସନ୍ଧିସ୍ଥଳ ।' -- ଏହା ଅଧିଦୈବତ ଅଟେ । ସେହିପ୍ରକାର 'ଯାହା ଆଦିତ୍ୟପୁରୁଷର ପାଦପର୍ବ ତାହା ଅକ୍ଷିପୁରୁଷର ପାଦପର୍ବ ଅଟେ',- ଏହାହିଁ ଅଧ୍ୟାତ୍ମ । ଏହିପ୍ରକାର ସର୍ବାତ୍ମକ ପରମେଶ୍ୱରଠାରେ ସମ୍ଭବ ହୋଇପାରେ । 'ଅତଃ ଯେଉଁଲୋକ ବୀଣାରେ ସ୍ତୁତି କରନ୍ତି, ସେମାନେ ପରମେଶ୍ୱରର ଗାୟନ କରନ୍ତି । ଏହାଦ୍ୱାରା ଅର୍ଥପ୍ରାପ୍ତି ହୁଏ' । ଏହି ପ୍ରକାର ବେଦବାକ୍ୟ ଶୁଣାଯାଏ ।

(ଚ) ପୁନଶ୍ଚ ଲୌକିକଗୀତରେ 'ତାହାସବୁ ପରମେଶ୍ୱରର ପରିଗ୍ରହ ଦ୍ୱାରା ସମ୍ଭବ ହୋଇପାରେ । କାରଣ-ହେ କୌନ୍ତେୟ ! ଯେଉଁମାନେ ଐଶ୍ୱର୍ଯ୍ୟଯୁକ୍ତ, ଶ୍ରୀ ସମ୍ପନ୍ନ, ଶକ୍ତିଶାଳୀ ବସ୍ତୁ ଅଟନ୍ତି, ସେମାନେ ମୋର ତେଜାଂଶଠାରୁ ଉତ୍ପନ୍ନ ହୋଇଛନ୍ତି ବୋଲି ବୋଲି ଜାଣ',- ଏହି ପ୍ରକାର ଭଗବଦ୍ ଗୀତାରେ ମଧ୍ୟ ଦେଖାଯାଏ । ସେପରି ଲୋକ ଓ ଭୋଗପରକ ସ୍ୱତନ୍ତ୍ରରୂପରେ ଶ୍ରୂୟମାଣସ୍ୱାମୀତ୍ୱ ମଧ୍ୟ ପରମେଶ୍ୱରର ଜ୍ଞାନ କରେ ।

(୫) ମୂଳ- (କ) ଯଦୁକ୍ତଂ ହିରଣ୍ମୟଶ୍ମଶ୍ରୁତ୍ୱାଦିରୂପଶ୍ରବଣଂ ପରମେଶ୍ୱରେ ନା ପପଦ୍ୟତ ଇତି । ଅତ୍ର ବ୍ରୂମଃ-ସ୍ୟାତ୍ ପରମେଶ୍ୱରସ୍ୟାପୀଚ୍ଛାବଶାନ୍ମାୟାମୟଂ ରୂପଂ ସାଧକାନୁଗ୍ରହାର୍ଥମ୍-'ମାୟା ହ୍ୟେଷା ମୟା ସୃଷ୍ଟା, ଯନ୍ମାଂ ପଶ୍ୟତି ନାରଦ ! ସର୍ବଭୂତେର୍ଗୁଣୈର୍ଯୁକ୍ତଂ ମୈବ ମାଂ ଜ୍ଞାତୁମର୍ହସି ।' ଇତି ସ୍ମରଣାତ୍ । (ଖ) ଅପି ଚ ଯତ୍ର ତୁ



ନିରସ୍ତସର୍ବବିଶେଷଂ ପାରମେଶ୍ୱରଂ ରୂପମୁପଦିଶ୍ୟତେ, ଭବତି ତତ୍ରଶାସ୍ତ୍ରମ୍-ଅଶବ୍ଦମସ୍ପର୍ଶମ୍ରୂପମବ୍ୟୟମ୍,' ଇତ୍ୟାଦି । (ଗ) ସର୍ବକାରଣତ୍ୱାତ୍ତୁ ବିକାରଧର୍ମୈରପି କୈଶ୍ଚିଦ୍‌ବିଶିଷ୍ଟଃ ପରମେଶ୍ୱର ଉପାସ୍ୟତ୍ୱେନ ନିର୍ଦିଶ୍ୟତେ- 'ସର୍ବକର୍ମା ସର୍ବକାମଃ ସର୍ବଗନ୍ଧଃ ସର୍ବରସଃ, (ଛା ୩-୧୪-୨) ଇତ୍ୟାଦିନା । ତଥା ହିରଣ୍ମୟଶ୍ମଶ୍ରୁତ୍ୱାଦିନିର୍ଦେଶୋଽପି ଭବିଷ୍ୟତି । (ଘ) ଯଦପ୍ୟାଧାରଶ୍ରବଣାନ୍ନ ପରମେଶ୍ୱର ଇତି, ଅତ୍ରୋଚ୍ୟତେସ୍ୱମହିମ-ପ୍ରତିଷ୍ଠସ୍ୟାପ୍ୟଧାରବିଶେଷୋପଦେଶ ଉପାସନାର୍ଥୋ ଭବିଷ୍ୟତି, ସର୍ବଗତତ୍ୱାହ ବ୍ରହ୍ମଣୋ ବ୍ୟୋମବତ୍ ସ୍ୱର୍ବାନ୍ତରତ୍ୱୋପପତ୍ତେଃ । (ଙ) ଐଶ୍ୱର୍ଯ୍ୟାମର୍ଯ୍ୟଦାଶ୍ରବଣ ମପ୍ୟାଧ୍ୟାତ୍ମାଧିଦୈବ-ତବିଭାଗାପେକ୍ଷମୁପାସନାର୍ଥମେବ । ତସ୍ମାତ୍ ପରମେଶ୍ୱର ଏବାକ୍ଷ୍ୟାଦିତ୍ୟୟୋ-ରନ୍ତରୁପଦିଶ୍ୟତେ ।

**(୫) ଭାଷାଂତର-** (କ) ଏହି ବିଷୟରେ ଯାହା କୁହାଯାଇଛି ହିରଣ୍ମୟଶ୍ମଶ୍ରୁ-ତ୍ୱାଦିରୂପର ଶ୍ରବଣ ପରମେଶ୍ୱରଠାରେ ଉପପନ୍ନ ନୁହେଁ । ଏହି ବିଷୟରେ ଆମ୍ଭେ କହୁଁ ଯେ- ସାଧକମାନଙ୍କ ଉପରେ ଅନୁଗ୍ରହ କରିବା ପାଇଁ ଇଚ୍ଛାବଶତ ପରମେଶ୍ୱର ମାୟାରୂପ ଧାରଣ କରିପାରେ, କାରଣ-ହେ ନାରଦ ! ଗୁଣଯୁକ୍ତ ସମସ୍ତ ପଦାର୍ଥଗୁଡ଼ିକର ଯାହା ମୋତେ ଦେଖାଇଲ, ତାହା ମାୟାର କାର୍ଯ୍ୟ ହେବାଦ୍ୱାରା ବିଚିତ୍ର ମୂର୍ତ୍ତିରୂପ ମାୟା ମୋର ଉପପନ୍ନ ହୁଏ, ତେଣୁ ଏହିପ୍ରକାର ମୋତେ ଜଣାଇବା ପାଇଁ ତୁ ଅଯୋଗ୍ୟ ଅଟୁ ।' ଏହି ପ୍ରକାର ସ୍ମୃତି ମଧ୍ୟ ଅଛି ।

(ଖ) ପୁନଶ୍ଚ ଯେଉଁଠାରେ ସମସ୍ତ ଉପାଧିବିହୀନ-ନିର୍ବିଶେଷ-ପରମେଶ୍ୱରସ୍ୱରୂପର ଉପଦେଶ କରାଯାଏ, ସେଠାରେ ଏହା ଶବ୍ଦ-ସ୍ପର୍ଶ-ରୂପରହିତ ଓ ଅବିନାଶୀ ଅଟେ', ଇତ୍ୟାଦି ଶାସ୍ତ୍ରବାକ୍ୟ ପ୍ରଯୁଜ୍ୟ ।

(ଗ) ଏହା ସମସ୍ତଙ୍କର କାରଣ ହେଲେ ମଧ୍ୟ କିଛି ବିକାର ଧର୍ମଯୁକ୍ତ ପରମେଶ୍ୱରର ଉପାସ୍ୟରୂପଦ୍ୱାରା ସମ୍ପୂର୍ଣ୍ଣ ରଚନାତ୍ମକ କର୍ମକାରୀ, ସର୍ବକାମୁକ, ସର୍ବଗନ୍ଧଯୁକ୍ତ ଏବଂ ସର୍ବରସ ଯୁକ୍ତ ଅଟେ ।' ଇତ୍ୟାଦି ଶ୍ରୁତିଦ୍ୱାରା ନିର୍ଦେଶ କରାଯାଇଛି । ଏହିପ୍ରକାର ମଧ୍ୟ ହିରଣ୍ୟ ଶ୍ମଶ୍ରୁତ୍ୱାଦିର ନିର୍ଦେଶ ହୋଇପାରେ ।

(ଘ) ଆଧାର ଶ୍ରବଣ ହେଲେ ଆଦିତ୍ୟପୁରୁଷ ଓ ଅକ୍ଷିପୁରୁଷ ପରମେଶ୍ୱର ହୁଏ ନାହିଁ - ଏହିପରି ପୂର୍ବରୁ କୁହାଯାଇଥିବା ତତ୍ତ୍ୱ ଉପରେ ପୁନର୍ବାର କୁହାଯାଇଛି ଯେ- ସ୍ୱ-ମହିମାରେ ପ୍ରତିଷ୍ଠିତ ପରମେଶ୍ୱର ମଧ୍ୟ ଆଧାରବିଶେଷରୂପକ ଉପାସନା ପାଇଁ ହୁଏ । କାରଣ ଆକାଶ ପରି ସର୍ବବ୍ୟାପକ ହେଲେ ବ୍ରହ୍ମ ସର୍ବାନ୍ତର ହୋଇପାରେ ।

(ଙ) ଅଧ୍ୟାତ୍ମ ଓ ଅଧିଦୈବତ ବିଭାଗକୁ ଅପେକ୍ଷା କରିଥିବା ଉପାସନା ନିମିତ୍ତକୁ ହିଁ ଐଶ୍ୱର୍ଯ୍ୟମର୍ଯ୍ୟାଦାର ଶ୍ରବଣ କୁହାଯାଏ । ତେଣୁ ଅକ୍ଷି ଏବଂ ଆଦିତ୍ୟର ଅନ୍ତରକୁ ହିଁ ପରମେଶ୍ୱର ବୋଲି ଉପଦେଶ ଦିଆଯାଇଛି ।

## भेदव्यपदेशाच्चान्यः ॥ २१ ॥

## (୧) ଭେଦବ୍ୟପଦେଶାଚ୍ଚନ୍ୟଃ ॥୧-୧-୨୧॥

ଅନ୍ୱୟଃ- 'ଅକ୍ଷି ଓ ଆଦିତ୍ୟଠାରୁ ଭିନ୍ନ ଶ୍ରୂୟମାଣ ଅନ୍ତର୍ଯ୍ୟାମୀ ପୁରୁଷ ଆଦିତ୍ୟ ପ୍ରଭୃତି ଶରୀରାଭିମାନୀ ଜୀବଠାରୁ ଭିନ୍ନ ଅନ୍ୟ ଅଟେ । ଭେଦବ୍ୟପଦେଶାତ୍ 'ଆଦିତ୍ୟତିଷ୍ଠନ୍' ଏହି ବେଦବାକ୍ୟରେ ଜୀବ ନିୟମ୍ୟ ଓ ପରମେଶ୍ୱରନିୟାମକ-ଏହି ଦୁଇଟିଭେଦ ବ୍ୟପଦେଶକରେ ।

(୨) ମୂଳ-(କ) ଅସ୍ତି ଚ୍ଚଦିତ୍ୟାଦିଶରୀରାଭିମାନିଭ୍ୟୋ ଜୀବେଭ୍ୟୋଽନ୍ୟ ଈଶ୍ୱେରୋଽନ୍ତର୍ଯ୍ୟାମୀ, 'ଯ ଆଦିତ୍ୟେ ତିଷ୍ଠନ୍ନାଦିମନ୍ତରୋ ଯମୟତ୍ୟେଷ ତ ଆତ୍ମାନ୍ତର୍ଯ୍ୟାମ୍ୟମୃତଃ', (ବୃ ୩-୭-୯) ଇତି ଶ୍ରୁତ୍ୟନ୍ତରେ ଭେଦବ୍ୟପଦେଶାତ୍ । (ଖ) ତତ୍ର ହି 'ଆିତ୍ୟାଦନ୍ତରୋ ଯମାଦିତ୍ୟୋ ନ ବେଦ', ଇତି ବେଦିତୁରାଦିତ୍ୟା-ଦ୍‌ବିଜ୍ଞାନାତ୍ମନୋଽନ୍ତର୍ଯ୍ୟାମୀ ସ୍ପଷ୍ଟଂ ନିର୍ଦ୍ଦିଶ୍ୟତେ, ସ ଏବେହାପ୍ୟନ୍ତରା ଦିତ୍ୟେ ପୁରୁଷୋ ଭବିତୁମର୍ହତି, ଶ୍ରୁତିସାମାନ୍ୟାତ୍ । ତସ୍ମାତ୍ ପରମେଶ୍ୱର ଏବେହୋପଦିଶ୍ୟତୀତି ସିଦ୍ଧମ୍ ।

**(୨) ଭାଷାଂତର-** (କ) ଆଦିତ୍ୟ ପ୍ରଭୃତି ଶରୀରାଭିମାନୀ ଜୀବଠାରୁ ଅନ୍ୟ ଈଶ୍ୱର ଅନ୍ତର୍ଯ୍ୟାମୀ ଅଟେ । କାରଣ- 'ଯାହା ଆଦିଦ୍ୟପାଖରେ ରହି ଆଦିତ୍ୟ ଭିତରେ ରହେ, ଯଦ୍ୱାରା କି ଆଦିତ୍ୟ ମଧ୍ୟ ଜାଣିପାରେ ନାହିଁ, ଯାହାର ଆଦିତ୍ୟ ଶରୀର ଅଟେ, ତାହା ଆଦିତ୍ୟ ଭିତରେ ରହି ଆଦିତ୍ୟକୁ ନିୟମନ କରେ । ସେ ତୁମର ଆତ୍ମା ଅନ୍ତର୍ଯ୍ୟାମୀ ଅମୃତ ଅଟେ ।' ଏହି ପ୍ରକାର ବେଦବାକ୍ୟରେ ଭେଦର ବ୍ୟପଦେଶ ହୋଇଥାଏ ।

(ଖ) ସେଠାରେ ମଧ୍ୟ 'ତାହା ହିଁ ଆଦିତ୍ୟଭିତରେ ରହେ, ଯାହାକୁ ଆଦିତ୍ୟ ଜାଣିପାରେ ନାହିଁ । ଏହି ପ୍ରକାର ପ୍ରମାଣ ଆଦିତ୍ୟ ଜୀବାତ୍ମାଠାରୁ ଅନ୍ୟ ଅନ୍ତର୍ଯ୍ୟାମୀ ଅଟେ । ଏହି ପ୍ରକାର ସ୍ପଷ୍ଟଭାବରେ ନିର୍ଦ୍ଦେଶ କରାଯାଇଅଛି । ଏଠାରେ ମଧ୍ୟ ଏହି ଆଦିତ୍ୟଠାରୁ ଭିନ୍ନ ଅନ୍ତର ପୁରୁଷ ହେବା ଉଚିତ୍ । କାରଣ-ଦୁଇଟି ସ୍ଥଳରେ ଶ୍ରୁତିବାକ୍ୟଗୁଡ଼ିକ ସମାନପ୍ରକାର ଅଟନ୍ତି, ସେହିହେତୁ ପରମେଶ୍ୱରର ହିଁ ଏଠାରେ ଉପଦେଶ କରାଯାଇଅଛି ।



## ८ आकाशस्तल्लिङ्गात् ॥ २२ ॥

## (୧) ଆକାଶସ୍ତଲ୍ଲିଙ୍ଗାତ୍ ॥ ୧ । ୧। ୨୨ ॥

ଆକାଶଃ = 'ଆକାଶ ଇତି ହୋବାଚ' ଏଠାରେ ଆକାଶ ଶବ୍ଦଦ୍ୱାରା ବ୍ରହ୍ମର ଗ୍ରହଣ ହୁଏ । ତଲ୍ଲିଂଙ୍ଗାତ୍ = କାରଣ-'ସର୍ବାଣି ହ ବା ଏହି ପ୍ରକାର ବାକ୍ୟଦ୍ୱାରା ସମସ୍ତ ଭୂତମାନଙ୍କର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ଇତ୍ୟାଦି ପରଂବ୍ରହ୍ମର ଲିଙ୍ଗ ଅଟେ ।

(୨) ମୂଳ-(କ) ଇଦମାମନନ୍ତି 'ଅସ୍ୟ ଲୋକସ୍ୟ କା ଗତିରିତ୍ୟାକାଶ ଇତି ହୋବାଚ, ସର୍ବାଣି ହ ବା ଇମାନି ଭୂତାନ୍ୟାକାଶାଦେବ ସମୁତ୍ପଦ୍ୟନ୍ତ ଆକାଶଂ ପ୍ରତ୍ୟସ୍ତଂ ଯାନ୍ତ୍ୟାକାଶୋ ହ୍ୟେବୈଭ୍ୟୋ ଜ୍ୟାୟାନାକାଶଃ ପରାୟଣମ୍,' (ଛା ୧-୯-୧) ଇତି । (ଖ) ତତ୍ର ସଂଶୟଃ-କିମାକାଶବ୍ଦନେ ପରଂବ୍ରହ୍ମାଭିଧୀୟତ ଉତ ଭୂତାକା ଶମିତି । କୁତଃ ସଂଶୟଃ ? ଉଭୟତ୍ର ପ୍ରୟୋଗଦର୍ଶନାତ୍ । ଭୂତବି ଶେଷତାବତ୍ ସୁପ୍ରସିଦ୍ଧୋ ଲୋକବେଦୟୋରାକାଶଶବ୍ଦୋ ବ୍ରହ୍ମଣ୍ୟପି କ୍ୱଚିତ୍ ପ୍ରଯୁଜ୍ୟମାନୋ ଦୃଶ୍ୟତେ । (ଗ) ଯତ୍ର ବାକ୍ୟଶେଷବଶାଦସାଧାରଣଗୁଣଶ୍ରବଣାଦ୍ ବା ନିର୍ଦ୍ଧାରିତଂ ବ୍ରହ୍ମ ଭବତି । ଯଥା- 'ଯଦେଶ ଆକାଶ ଆନନ୍ଦୋ ନ ସ୍ୟାତ୍,' (ତୈ ୨-୭) ଇତି । 'ଆକାଶୋ ବୈନାମ ନାମରୂପୟୋର୍ନିର୍ବହିତା ତେ ଯଦନ୍ତରା ତଦ୍‌ବ୍ରହ୍ମ', (ଛା ୮-୧୪-୧) ଇତି ଚୈବମାଦୌ । ଅତଃ ସଂଶୟଃ କିଂ ପୁନରତ୍ର ଯୁକ୍ତମ୍ ।

**(୨) ଭାଷାଂତର-** ଛାନ୍ଦୋଗ୍ୟରେ କୁହାଯାଇଛି ଯେ- 'ଶାଳବତ୍ୟ'- ''ଏହି ପୃଥିବୀ ଲୋକର ଆଧାର କଣ ?'' ରାଜାପ୍ରବହଣ କହିଲେ,- ''ଆକାଶ ହିଁ କାରଣ । ଏହି ସମସ୍ତବସ୍ତୁ ଆକାଶଠାରୁ ଉତ୍ପନ୍ନ ଏବଂ ଆକାଶରେ ଲୟ ହୋଇ ଉତ୍ପନ୍ନ ହୁଅନ୍ତି । ତେଣୁ ଆକାଶ ସମସ୍ତଙ୍କଠାରୁ ମହାନ୍ ଏବଂ ଆକାଶ ହିଁ ଆଶ୍ରୟ ଅଟେ ।''

(ଖ) ଏଠାରେ ସଂଶୟ-ଆକାଶ ଶବ୍ଦ ଦ୍ୱାରା ପରଂବ୍ରହ୍ମ କୁହାଯାଇଛି କି ଭୂତାକାଶ କୁହାଯାଇଛି । କାହିଁକି ସନ୍ଦେହ ? ଦୁଇଟି ସ୍ଥଳରେ ଆକାଶ ଶବ୍ଦର ପ୍ରୟୋଗ ଦେଖାଦେଇଛି । ଲୋକ ଓ ବେଦ ଦ୍ୱାରା ଆକାଶ ଶବ୍ଦ ଭୂତାକାଶରେ ସୁପ୍ରସିଦ୍ଧ ଅଟେ । କେଉଁ କେଉଁ ସ୍ଥାନରେ ମଧ୍ୟ ଏହା ବ୍ରହ୍ମଠାରେ ପ୍ରଯୁକ୍ତ ହୋଇ ଦେଖାଯାଏ ।

(ଗ) ଯେଉଁ ସ୍ଥଳରେ ବାକ୍ୟ ଶେଷବଳରେ ଅଥବା ଅସାଧାରଣ ଗୁଣ ଶ୍ରବଣ ଦ୍ୱାରା ବ୍ରହ୍ମ ନିର୍ଦ୍ଧାରଣ ହୁଏ, ଯଥା- 'ଯଦି ଏହି ଆନନ୍ଦରୂପ ଆକାଶ ନ ହୁଏ,' କିମ୍ବା 'ଆକାଶ ମଧ୍ୟ ଏହି ପ୍ରସିଦ୍ଧ ନାମ ଓ ରୂପର ପ୍ରକଟକ, ସେମାନେ ଯାହାର ଅନ୍ତର

ଅଟନ୍ତି, ସେ ହେଉଛି ବ୍ରହ୍ମ' ଇତ୍ୟାଦି ବେଦ ବାକ୍ୟ ଗୁଡ଼ିକରେ ଅଛି, ସେଠାରେ ଏହି ପ୍ରକାର ସଂଶୟ କଣ ଠିକ୍ କି ?

(୩) ମୂଳ-(କ) ଭୂତାକାଶମିତି । କୁତଃ ? ତଦ୍ଧି ପ୍ରସିଦ୍ଧତରେଣ ପ୍ରୟୋଗେଣ ଶୀଘ୍ରଂ ବୁଦ୍ଧିମାରୋହତି । ନ ଚାୟମାକାଶଶବ୍ଦ ଉଭୟୋଃ ସାଧାରଣଃ ଶକ୍ୟୋ ବିଜ୍ଞାତୁମ୍, ଅନେକାର୍ଥତ୍ୱପ୍ରସଙ୍ଗାତ୍ । ତସ୍ମାଦ୍ ବ୍ରହ୍ମଣି ଗୌଣ ଏବାକାଶଶବ୍ଦୋ ଭବିତୁମର୍ହତି । (ଖ) ବିଭୂତ୍ୱାଦିଭିର୍ହି ବହୁଭିର୍ଧର୍ମୈଃ ସଦୃଶମାକାଶେନ ବ୍ରହ୍ମଭବତି । ନ ଚ ମୁଖ୍ୟେ ସମ୍ଭବେ ଗୌଣୋଽର୍ଥୋ ଗ୍ରହଣ ମର୍ହତି । ସମ୍ଭବତି ଚେହ ମୁଖ୍ୟସ୍ୟୈବାକାଶସ୍ୟ ଗ୍ରହଣମ୍ । (ଗ) ନନୁ ଭୂତାକାଶପରିଗ୍ରହେ ବାକ୍ୟଶେଷୋ ନୋପପଦ୍ୟତେ- 'ସର୍ବାଣି ହ ବା ଇମାନୀ ଭୂତାନ୍ୟାକାଶାଦେବ ସମୁତ୍ପଦ୍ୟନ୍ତେ । (ଘ) ନୈଷୋ ଦୋଷଃ, ଭୂତାକାଶସ୍ୟାପି ବାୟାଦିକ୍ରମେଣ କାରଣତ୍ୱୋପପତ୍ତେଃ । ବିଜ୍ଞାୟତେ ହି- 'ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ । ଆକାଶାଦ୍ ବାୟୁଃ, ବାୟୋରଗ୍ନିଃ (ତୈ ୧-୧) ଇତ୍ୟାଦି । (ଙ) ଜ୍ୟାୟସ୍ତ୍ୱପରାୟଣତ୍ୱେଽପି ଭୂତାନ୍ତରାପେକ୍ଷୟୋପପଦ୍ୟତେ । ଭୂତାକାଶସ୍ୟାପି ତସ୍ମାଦାକାଶବ୍ଦେନ ଭୂତାକାଶସ୍ୟ ଗ୍ରହଣମିତ୍ୟେବମ୍ ।

**(୩) ଭାଷାଂତର-** ପୂର୍ବପକ୍ଷ (କ) ଯେଉଁଠାରେ ଆକାଶଶବ୍ଦଦ୍ୱାରା ଭୂତାକାଶର ଗ୍ରହଣ ହୁଏ, ତାହା କିପରି ସମ୍ଭବ ? ଭୂତାକାଶ ମଧ୍ୟ ଅତି ପ୍ରସିଦ୍ଧ ପ୍ରୟୋଗ ଦ୍ୱାରା ବୁଦ୍ଧିରେ ଶୀଘ୍ର ଆରୂଢ଼ ହୁଏ, କିନ୍ତୁ ଆକାଶ ଶବ୍ଦ ଦୁଇଟିରେ ସାଧାରଣ ଭାବେ ପ୍ରୟୋଗ ହେବାର ଜଣାଯାଏ ନାହିଁ । କାରଣ-ଏପରି ସ୍ୱୀକାର କଲେ ଗୋଟିଏ ଶବ୍ଦରୁ ଅନେକ ଅର୍ଥ ପ୍ରକାଶ କରିବାର ପ୍ରସଙ୍ଗ ଆସିପାରେ । ତେଣୁ ବ୍ରହ୍ମରେ ଆକାଶଶବ୍ଦ ଗୌଣ ହେବା ହିଁ ଠିକ୍ ।

(ଖ) କାରଣ-ବିଭୂତ୍ୱାଦି ଅନେକ ଧର୍ମଯୁକ୍ତ ହେବାରୁ ବ୍ରହ୍ମ ହିଁ ଆକାଶଶବ୍ଦ ହେବା ସମ୍ଭବ । ମୁଖ୍ୟ ଅର୍ଥର ସମ୍ଭବ ହେଲେ ଗୌଣ ଅର୍ଥର ଗ୍ରହଣ ଯୁକ୍ତିଯୁକ୍ତ ହୁଏ ନାହିଁ, ତେଣୁ ଏଠାରେ ମୁଖ୍ୟ ରୂପରେ ଭୂତାକାଶର ଗ୍ରହଣ ସମ୍ଭବ ହୁଏ ।

(ଗ) ଭୂତାକାଶକୁ ମୁଖ୍ୟରୂପରେ ଗ୍ରହଣ କଲେ 'ନିଶ୍ଚିତ ଭାବରେ ସମସ୍ତ ପଦାର୍ଥ ଆକାଶଠାରୁ ଉତ୍ପନ୍ନ ହେଉଛନ୍ତି' ଇତ୍ୟାଦି ବାକ୍ୟଶେଷ ଉପପନ୍ନ ହେବ ନାହିଁ କି ?

(ଘ) ଉପପନ୍ନ ହେଲେ କୌଣସି ଦୋଷ ହୁଏ ନାହିଁ । କାରଣ-ଭୂତାକାଶ ମଧ୍ୟ ବାୟୁ ଆଦିକ୍ରମରେ କାରଣ ହୋଇପାରେ ଏବଂ ଶାସ୍ତ୍ରପ୍ରସିଦ୍ଧ ପରୋକ୍ଷ ଆତ୍ମା, ଏହା ମାୟା



ବିଶିଷ୍ଟ ଆତ୍ମା ଅଟେ । ଏହାଠାରୁ ଆକାଶ, ଆକାଶଠାରୁ ବାୟୁ, ବାୟୁରୁ ଅଗ୍ନି ଉତ୍ପନ୍ନ ହୁଏ' ଇତ୍ୟାଦି ବେଦବାକ୍ୟ ଗୁଡ଼ିକରୁ ଆକାଶର କାରଣତା ଜଣାଯାଏ ।

(ଙ) ଅନ୍ୟ ବାୟୁ ଆଦି ଭୂତମାନଙ୍କ ଅପେକ୍ଷା ଭୂତାକାଶରେ ଶ୍ରେଷ୍ଠତ୍ୱ ଓ ଆଶ୍ରୟତ୍ୱ ମଧ୍ୟ ଉପପନ୍ନ ହୁଏ । ତେଣୁ ଆକାଶଶବ୍ଦଦ୍ୱାରା ଭୂତାକାଶର ଗ୍ରହଣ ଯୁକ୍ତି ଯୁକ୍ତ ଅଟେ ।

(୪) ମୂଳ-(କ) ପ୍ରାପ୍ତେବ୍ରୂମଃ- 'ଆକାଶସ୍ତଲ୍ଲିଙ୍ଗାତ୍' ଆକାଶଶବ୍ଦେନ ବ୍ରହ୍ମଣୋ ଗ୍ରହଣଂ ଯୁକ୍ତମ୍ । କୁତଃ ? ତଲ୍ଲିଙ୍ଗାତ୍ । ପରସ୍ୟ ହି ବ୍ରହ୍ମଣ ଇଦଂ ଲିଙ୍ଗମ୍, 'ସର୍ବାଣି ହ ବା ଇମାନି ଭୂତାନ୍ୟାକାଶାଦେବ ସମୁତ୍ପଦ୍ୟନ୍ତେ, ଇତି । ପରସ୍ମାଦ୍ ହି ବ୍ରହ୍ମଣୋ ଭୂତାନାମୁତ୍ପତ୍ତିରିତି ବେଦାନ୍ତେଷୁ ମର୍ଯ୍ୟାଦା । (ଖ) ନନୁ ଭୂତାକାଶସ୍ୟାପି ବାୟୁଦିକ୍ରମେଣ କାରଣତ୍ୱଂ ଦର୍ଶିତମ୍, । ସତ୍ୟମ୍, ଦର୍ଶିତମ୍ । ତଥାପି ମୂଳ କାରଣସ୍ୟ ବ୍ରହ୍ମଣୋଽପରିଗ୍ରହାଦାକାଶାଦେବେତ୍ୟବଧାରଣମ୍, ସର୍ବାଣିତୀ ଚ ଭୂତବିଶେଷଣଂ ନାନୁକୂଳଂ ସ୍ୟାତ୍ ।

(୪) **ଭାଷାଂତର-** ସିଦ୍ଧାନ୍ତ-(କ) ଏହିଭଳି ହୁଅନ୍ତେ କୁହାଯାଇଛି- 'ଆକାଶସ୍ତଲିଙ୍ଗାତ୍ ।' ଆକାଶଶବ୍ଦଦ୍ୱାରା ବ୍ରହ୍ମ ଗୃହୀତ ହେବା ଉଚିତ । କାରଣ-ଆକାଶ ବ୍ରହ୍ମର ଲିଙ୍ଗ (ଚିହ୍ନ) ଅଟେ । ପରଂବ୍ରହ୍ମ ଗୃହୀତ ହେବା ବିଷୟରେ 'ସର୍ବାଣି ହ ବା,' ଇତି ଶ୍ରୁତି ଲିଙ୍ଗପ୍ରମାଣ ହୁଏ । ବେଦାନ୍ତବାକ୍ୟରେ 'ପରଂବ୍ରହ୍ମଦ୍ୱାରା ହିଁ ଭୂତମାନଙ୍କର ଉତ୍ପତ୍ତି ହୁଏ'- ଏହା ହିଁ ମର୍ଯ୍ୟାଦା । (ଖ) ପରନ୍ତୁ ଭୂତାକାଶ ମଧ୍ୟ ବାୟୁଆଦି କ୍ରମରେ ଦେଖାଏ କି ? ହଁ, ଦେଖାଏ । ସେ ମଧ୍ୟ ମୂଳକାରଣ ବ୍ରହ୍ମର ଅପରିଗ୍ରହଦ୍ୱାରା 'ଆକାଶଠାରୁ' ବୋଲି ଅବଧାରଣା ଦିଆଯାଇଛି, କିନ୍ତୁ 'ସର୍ବାଣି ହ ବା' ଇତ୍ୟାଦି ଏଠାରେ ଭୂତମାନଙ୍କର ବିଶେଷଣ ପାଇଁ ଅନୁକୂଳ ହୋଇନପାରେ ।

(୫) ମୂଳ-(କ) ତଥା 'ଆକାଶଂ ପ୍ରତ୍ୟସ୍ତଂ ଯାନ୍ତି' ଇତି ବ୍ରହ୍ମଲିଙ୍ଗମ୍, 'ଆକାଶୋ ହ୍ୟେ ବୈଭ୍ୟୋ ଜ୍ୟାୟାନାକାଶଃ ପରାୟଣମ୍ ଇତି ଚ ଜ୍ୟାୟସ୍ତ୍ୱପରାୟଣତ୍ୱେ । (ଖ) ଜାୟସ୍ତ୍ୱଂ ହ୍ୟନାପେକ୍ଷିକଂ ପରମାତ୍ମନ୍ୟେ କସ୍ମିନ୍ନାମ୍ନାତମ୍='ଜ୍ୟାୟାନ୍ ପୃଥିବ୍ୟା ଜ୍ୟାୟାନନ୍ତରୀକ୍ଷାଜ୍ଜାୟାନ୍ଦିବୋ ଜ୍ୟାୟାନେଭ୍ୟୋ ଲୋକେଭ୍ୟୋ', (ଛା ୩-୨୪-୩) ଇତି । (ଗ) ତଥା ପରାୟଣତ୍ୱମପି ପରମକାରଣତ୍ୱାତ୍ ପରମାତ୍ମନ୍ୟେବୋପନ୍ନ ତରମ୍ । ଶ୍ରୁତିଶ୍ଚ'ବିଜ୍ଞାନମାନନ୍ଦଂ ବ୍ରହ୍ମରାତେର୍ଦାତୁଃ ପରାୟଣମ୍', (ବୃ ୩-୯-୨୮) ଇତି ।

**(୫)** ଭାଷାଂତର- (କ) ସେପରି 'ଆକାଶଂପ୍ରତ୍ୟସ୍ତଂ ଯାନ୍ତି' ହେଉଛି ବ୍ରହ୍ମଲିଙ୍ଗ । 'ଆକାଶ ଏହାଠାରୁ ମହାନ୍ ଅଟେ, ଏବଂ ଆକାଶ ପରମାଶ୍ରୟ ଅଟେ,' ଏହିପ୍ରକାର ଜ୍ୟାୟସ୍ତ୍ୱ ଓ ପରମାଶ୍ରୟତ୍ୱ ମଧ୍ୟ ବ୍ରହ୍ମର ଲିଙ୍ଗ ଅଟନ୍ତି ।

(ଖ) 'ଏହି ମୋର ଆତ୍ମା ପୃଥିବୀଠାରୁ ବଡ଼, ଅନ୍ତରୀକ୍ଷଠାରୁ ବଡ଼, ଦ୍ୟୁର୍ଲୋକଠାରୁ ବଡ଼, ଏହା ସବୁଠାରୁ ବଡ଼ ଅଟେ ।' - ଏହା ହିଁ ବେଦବାକ୍ୟ । ଏହା କେବଳ ଏକ ପରମାତ୍ମାରେ ହିଁ ଅପେକ୍ଷା ରହିତ ଜ୍ୟାୟସ୍ତ୍ୱ କହେ ।

(ଗ) ସେପରି ପରମାଶ୍ରୟତ୍ୱ ମଧ୍ୟ ପରମକାରଣ ହେଲେ ପରମାତ୍ମାରେ ଯୁକ୍ତ ହୁଏ । 'ବ୍ରହ୍ମ, ବିଜ୍ଞାନ ଓ ଆନନ୍ଦସ୍ୱରୂପ ଅଟେ । ଏହା ଧନପ୍ରଦାୟକ', ବୋଲି ବେଦ କହେ ।

(୬) ମୂଳ-(କ) ଅପି ଚାନ୍ତ୍ୟବତ୍ତ୍ୱଦୋଷେଣ ଶାଳବତ୍ୟସ୍ୟ ପକ୍ଷଂ ନିନ୍ଦିତ୍ୱା ଅନନ୍ତଂ କିଞ୍ଚିଦ୍‌ବକ୍ତୁକାମେନ ଜୈବଳିନା ଆକାଶଃ ପରିଗୃହୀତ, ତଃମାକାଶମୁଦ୍‌ଗୀଥେ ସମ୍ପାଦ୍ୟୋପସଂହରତି-ସ ଏଷ ପରୋବରୀୟାନୁଦ୍‌ଗୀଥ ସ ଏଷୋଽନନ୍ତଃ,' (ଛ ୧-୯-୨) ଇତି । ତଚ୍ଚାନନ୍ତ୍ୟଂ ବ୍ରହ୍ମଲିଙ୍ଗମ୍ । (ଖ) ଯତ୍ ପୁନରୁକ୍ତଂ ଭୂତାକାଶଂ ପ୍ରସିଦ୍ଧିବଳେନ ପ୍ରଥମତରଂ ପ୍ରତୀୟତ ଇତି । (ଗ) ଅତ୍ର ବ୍ରୂମଃ-ପ୍ରଥମତରଂ ପ୍ରତୀତମପି ସନ୍ ବାକ୍ୟଶେଷଗତାନ୍ ବ୍ରହ୍ମଗୁଣାନ୍ ଦୃଷ୍ଟ୍ୱା ନ ପରିଗୃହ୍ୟତେ । (ଘ) ଦର୍ଶିତଶ୍ଚ ବ୍ରହ୍ମଣ୍ୟାପ୍ୟାକାଶଶବ୍ଦଃ 'ଆକାଶୋ ବୈନାମ ନାମରୂପଯୋର୍ନିବହିତା', ଇତ୍ୟାଦୌ । ତଥାକାଶପର୍ଯ୍ୟାୟବାଚିନାମପି ବ୍ରହ୍ମଣି ପ୍ରୟୋଗୋ ଦୃଶ୍ୟର୍ତେ-ଋଚୋ ଅକ୍ଷରେ ପରମେ ବ୍ୟୋମନ୍ୟସ୍ମିନ୍ ଦେବା ଅଧିବିଶ୍ୱେ ନିଷେଦୁଃ', (ଋ. ସଂ ୧-୧୬୪ ୩୯) 'ସୈଷା ଭାର୍ଗବୀ ବାରୁଣୀ ବିଦ୍ୟା ପରମେବ୍ୟୋମନ୍ ପ୍ରତିଷ୍ଠିତା', (ତୈ ୩।୬) କଂ ବ୍ରହ୍ମ, ଖଂ ବ୍ରହ୍ମ (ଛ ୪ । ୧୦ । ୫) 'ଖଂ ପୁରାଣମ୍', (ବୃ ୫।୧) ଇତି ଚୈବମାଦୌ । (ଙ) ବାକ୍ୟୋପକ୍ରମେଽପି ବର୍ତ୍ତମାନସ୍ୟାକାଶଶବ୍ଦସ୍ୟ ବାକ୍ୟଶେଷାଦ୍‌ବ୍ରହ୍ମବିଷୟତ୍ୱାବଧାରଣା । 'ଅଗ୍ନିରଧୀତେଽନୁବାକମ୍', ଇତି ହି ବାକ୍ୟୋପକ୍ରମ-ଗତୋଽପ୍ୟଗ୍ନିଶବ୍ଦୋ ମାଣବକବିଷୟୋ ଦୃଶ୍ୟତେ, ତସ୍ମାଦକାଶଶବ୍ଦଂ ବ୍ରହ୍ମେତି ସିଦ୍ଧମ୍ ।

**(୬)** ଭାଷାଂତର- (କ) ପୁନର୍ବାର ଅନ୍ତବାତ୍ୱଦୋଷଦ୍ୱାରା ଶାଳବତ୍ୟପକ୍ଷର ନିନ୍ଦାକରି ରାଜା ଜୈବଳି କୌଣସି ଅବିନାଶୀ ବସ୍ତୁକୁ କହିବାରୁ ଇଚ୍ଛା କରି ଆକାଶ ବିଷୟରେ ଉପଦେଶ ଦେଇଛନ୍ତି । ଏହି ଆକାଶକୁ ଉଦ୍‌ଗୀଥରେ ସମ୍ପାଦନା କରି 'ଏହି ସେହି ଉଦ୍‌ଗୀଥ, ଯେକି ପରଠାରୁ ପରମ ଉତ୍କୃଷ୍ଟ । ଏବଂ ଏହା ଅନନ୍ତ ବ୍ରହ୍ମର ଲିଙ୍ଗ ।



(ଖ) କିନ୍ତୁ ଯାହା ପୁନର୍ବାର କୁହାଗଲା କି- ପ୍ରସିଦ୍ଧ ବଳଦ୍ୱାରା ଆକାଶ ଶବ୍ଦଠାରୁ ପ୍ରଥମେ ଭୂତାକାଶ ପ୍ରତୀତ ହୁଏ ।

(ଗ) ସେହି ବିଷୟରେ ଆମ୍ଭର ବକ୍ତବ୍ୟ ଯେ- ଆକାଶ ପଦଦ୍ୱାରା ପ୍ରଥମେ ଭୂତ ଆକାଶ ପ୍ରତୀତ ହେଲେ ମଧ୍ୟ ବାକ୍ୟଶେଷଗତ ବ୍ରହ୍ମଗୁଡ଼ିକୁ ଦେଖିକରି ଏହାର ଶ୍ରବଣ କରାଯାଏ ନାହିଁ ।

(ଘ) 'ଆକାଶ ହିଁ ନାମ ଓ ରୂପକୁ ପ୍ରକଟ କରେ', ଇତ୍ୟାଦି ଶ୍ରୁତିବାକ୍ୟରେ ଆକାଶର ପ୍ରୟୋଗ ବ୍ରହ୍ମରେ ଦେଖାଯାଏ । ଆକାଶର ପର୍ଯ୍ୟାୟବାଚୀଶବ୍ଦଗୁଡ଼ିକର ପ୍ରୟୋଗ ସେପରି ମଧ୍ୟ ବ୍ରହ୍ମରେ ଦେଖାଯାଏ । ଯଥା- 'ଉତ୍କୃଷ୍ଟ କୂଟସ୍ଥ ଏହି ଆକାଶରେ ସମସ୍ତବେଦ ପ୍ରମାଣ ଅଟେ' ଏବଂ ଏଠାରେ ଦେବତାମାନେ ଅଧିଷ୍ଠିତ ଅଟନ୍ତି', 'ଏହି ଭାର୍ଗବୀ ବାରୁଣୀ-ବିଦ୍ୟା ପରଂବ୍ରହ୍ମରେ ପ୍ରତିଷ୍ଠିତ ହୁଏ,' 'ସୁଖ ହେଉଛି ବ୍ରହ୍ମ ଆକାଶ ହେଉଛି ବ୍ରହ୍ମ ଏବଂ ଖ (ପୁରାଣ) ହେଉଛି ବ୍ରହ୍ମ,' ଇତ୍ୟାଦି ଶ୍ରୁତିମାନଙ୍କରେ ଆକାଶର ପ୍ରୟୋଗ ଦେଖାଯାଏ ।

(ଙ) ବାକ୍ୟର ଆରମ୍ଭରେ ମଧ୍ୟ ବାକ୍ୟଶେଷବଳରେ ଆକାଶଶବ୍ଦର ବ୍ରହ୍ମ ବିଷୟକ ପ୍ରମାଣ କରିବା ଆବଶ୍ୟକ । 'ଅଗ୍ନି ଅନୁବାକ ବେଦଭାଗରେ ଅଧ୍ୟୟନ କରେ' ଏହି ବାକ୍ୟର ଆରମ୍ଭରେ ଅଗ୍ନି ଶବ୍ଦ ମାଣବକ ବିଷୟ ରୂପରେ ଦେଖାଯାଏ । ତେଣୁ ଏଠାରେ ଆକାଶ ବ୍ରହ୍ମବିଷୟକ ବୋଲି ସିଦ୍ଧ ହୁଏ ।

## ९ प्राणाधिकरणम् । सू० २३

## ପ୍ରାଣାଧିକରଣ - ୯

## अत एव प्राण: ॥ २३ ॥

## (୧) ଅତଏବ ପ୍ରାଣଃ ୧ । ୧ । ୨୩

ଅତଏବ = ତେଣୁ ପୂର୍ବସୂତ୍ରୋକ୍ତ ଉପବ୍ୟାଦିଲିଙ୍ଗଦ୍ୱାରା ପ୍ରାଣଃ='ପ୍ରାଣଃ ଇତି ହୋବାଚ,' ଇତି ଶ୍ରୁତିରେ ଥିବା ପ୍ରାଣ ହିଁ ପରମାତ୍ମା ହୋଇଛି ।

(୨) ମୂଳ- (କ) ଉଦ୍‌ଗୀଥେ 'ପ୍ରସ୍ତୋତର୍ଯ୍ୟ ଦେବତା ପ୍ରସ୍ତାବନାନ୍ୱୟତା', (ଛା ୧।୧୦।୯) ଇତ୍ୟୁପକ୍ରମ୍ୟ ଶ୍ରୂୟତେ-'କତମା ସା ଦେବେତେତି ପ୍ରାଣ ଇତି ହୋବାଚ ସର୍ବାଣି ହବା ଇମାନି ଭୂତାନି ପ୍ରାଣମେବାଭିସଂବିଶନ୍ତି ।' 'ପ୍ରାଣମଭ୍ୟୁଜ୍ଜିହତେ ସୈଷା ଦେବତା ପ୍ରସ୍ତାବମନ୍ୱୟତା,' (ଛା ୧। ୧୧।୪,୫) ଇତି ସ୍ୱସଂଶୟନିର୍ଣ୍ଣୟୌ ପୂର୍ବଦେବ ଦ୍ରଷ୍ଟବ୍ୟୌ । (ଖ) 'ପ୍ରାଣବନ୍ଧନଂ ହି ସାମ୍ୟ ମନଃ', (ଛା ୬।୮।୨), 'ପ୍ରାଣସ୍ୟ ପ୍ରାଣମ୍,'

(୬ବୃ ୪।୪।୨୮) ଇତି ଚୈବମାଦୌ ବ୍ରହ୍ମବିଷୟୋ ଦୃଶ୍ୟତେ, ବାୟୁବିକାରେ ତୁ ପ୍ରସିଦ୍ଧତରା ଲୋକବେଦୟୋଃ, ଉତ ଇହ ପ୍ରାଣଶବ୍ଦେନ କତରସ୍ୟୋପାଦାନଂ ଯୁକ୍ତିମିତି ଭବତି ସଂଶୟଃ ।

(୨) ଭାଷାଂତର- (କ) ସାମବେଦୀୟ ଉଦ୍‌ଗୀଥ ପ୍ରକରଣରେ 'ହେ ପ୍ରସ୍ତୋତ : ଯାହା ଦେବତା ପ୍ରସ୍ତାବରେ ଅନୁଗୃହତୀ ହୁଏ', ଏହିଠାରୁ ଆରମ୍ଭ କରି 'ସେ ପ୍ରସ୍ତାବରେ ଅଧିଷ୍ଠାତୃ ଦେବତା କିଏ ? ଋକ୍ରବଣ-'ପ୍ରାଣ ଅଟେ । ଏହା କୁହାଗଲା କାରଣ- ଏହି ଭୂତଗୁଡ଼ିକ ସମସ୍ତ ପ୍ରାଣରେ ପ୍ରବେଶ କରନ୍ତି । ଲୀନ ହୁଅନ୍ତି । ପ୍ରାଣଦ୍ୱାରା ଉତ୍ପନ୍ନ ହୁଅନ୍ତି । ସେ ଏହି ପ୍ରାଣଦେବତା ମଧ୍ୟ ପ୍ରସ୍ତାବରେ ଅନୁଗତ ଅଟନ୍ତି ।'', ଏହିଭଳି ବେଦବାକ୍ୟ ଦେଖାଯାଏ ।

(ଖ) 'ହେ ପ୍ରିୟ ! ମନ ଉପାଧିଦ୍ୱାରା ଉପଲକ୍ଷିତ ଜୀବ ପ୍ରାଣବନ୍ଧନଯୁକ୍ତ ହୁଏ ଅର୍ଥାତ୍ ପ୍ରାଣୋପଲକ୍ଷିତବ୍ରହ୍ମର ସହିତ ସୁଷୁପ୍ତି ଅବସ୍ଥାରେ ଏକ ହୋଇଯାଏ ।', ଏବଂ ଏହି ପ୍ରାଣକୁ କେବଳ ପ୍ରାଣ ଜାଣେ', ଇତ୍ୟାଦି ଶ୍ରୁତିବାକ୍ୟଗୁଡ଼ିକରେ ପ୍ରାଣଶବ୍ଦ ବ୍ରହ୍ମବିଷୟକ ଦେଖାଯାଏ । ଶରୀରରେ ଗତାଗତ କରୁଥିବା ବାୟୁବିକାର ପ୍ରାଣରେ ଲୋକ ଓ ବେଦାନୁସାରେ ପ୍ରାଣଶବ୍ଦ ପ୍ରସିଦ୍ଧ ଅଟେ । ତେଣୁ ଏଠାରେ ପ୍ରାଣ ଶବ୍ଦ ଦ୍ୱାରା କେଉଁ ଶବ୍ଦ ଗ୍ରହଣ ଯୋଗ୍ୟହେବ ବୋଲି ସଂଶୟ ହୋଇପାରେ ?

(୩) ମୂଳ-(କ) କିଂ ପୁନରତ୍ର ଯୁକ୍ତମ୍ ? ବାୟୁବିକାରସ୍ୟ ପଞ୍ଚବୃତ୍ତେଃ ପ୍ରାଣସ୍ୟୋପାଦାନଂ ଯୁକ୍ତମ୍ । ତତ୍ର ହି ପ୍ରସିଦ୍ଧତରଃ ପ୍ରାଣଶବ୍ଦ ଇତ୍ୟେବୋଋମଃ (ଖ) ନନୁ ପୂର୍ବବଦିହାପି ତଲ୍ଲିଙ୍ଗାଦ୍ ବ୍ରହ୍ମଣ ଏବ ଗ୍ରହଣଂ ଯୁକ୍ତମ୍ । ଇହାପି ବାକ୍ୟଶେଷେ ଭୂତାନାଂ ସଂବେଶନୋଦ୍‌ଗମନଂ ପାରମେଶ୍ୱରଂ କର୍ମ ପ୍ରତୀୟତେ । ନମୁଖ୍ୟେଽପି ପ୍ରାଣେ ଭୂତସଂବେଶନୋଦ୍‌ଗମନସ୍ୟ ଦର୍ଶନାଦେବମ୍ । (ଖ) ହ୍ୟାମ୍ନାୟତେ-

ଯଦାବୈ ପୁରୁଷଃ ସ୍ୱପିତି ପ୍ରାଣଂ ତର୍ହି ବାଗପ୍ୟେତି ପ୍ରାଣଂ ଚକ୍ଷୁଃ, ପ୍ରାଣଂ ଶ୍ରୋତ୍ରଂ ପ୍ରାଣଂ ମନଃ ସଯଦା ପ୍ରବୁଧ୍ୟତେ ପ୍ରାଣାଦେବାଧି ପୁନର୍ଜାୟନ୍ତେ, (ଶ.ବ୍ର । ୧୦ । ୩ । ୩।୬) ଇତି । (ଗ) ପ୍ରତ୍ୟକ୍ଷଂ ଚେତତ୍ ସ୍ୱାପକାଳେ ପ୍ରାଣବୃତାବପରିଲୁ-ପ୍ୟମାନାୟାମିନ୍ଦ୍ରିୟବୃତ୍ତୟଃ ପରିଲୁପ୍ୟନ୍ତେ, ପ୍ରବୋଧକାଳେ ଚ ପୁନଃ ପ୍ରାଦୁର୍ଭବନ୍ତିତି ।



**(୩) ଭାଷାଂତର-** (କ) ଏଠାରେ କେଉଁଠି ଠିକ୍ ! ବାୟୁର ବିକାର ହୋଇଥିବା **ପାଞ୍ଚବୃତ୍ତିଯୁକ୍ତ** ପ୍ରାଣକୁ ଗ୍ରହଣ କରିବା ଠିକ୍, କାରଣ-ସେଥିରେ ମଧ୍ୟ ପ୍ରାଣଶବ୍ଦ ବିଷୟ ରୂପରେ ପ୍ରସିଦ୍ଧ ଅଟେ ବୋଲି ଆମ୍ଭେ କହୁ ।

(ଖ) ଯଦି କୁହାଯାଏ- ପୂର୍ବାଧିକରଣ ଭଳି ଏହି ଅଧିକରଣରେ ମଧ୍ୟ ବ୍ରହ୍ମଲିଙ୍ଗ ଦ୍ୱାରା ବ୍ରହ୍ମ ଜଣାପଡ଼େ । ତାହା ଯୁକ୍ତି ସଂଗତ ନୁହେଁ, କାରଣ-ମୁଖ୍ୟପ୍ରାଣରେ ମଧ୍ୟ ଭୂତମାନଙ୍କର ଲୟ ଓ ଉତ୍ପତ୍ତି ଦେଖାଯାଏ ।

(ଗ) ଶ୍ରୁତି ଏଭଳି କହେ- 'ଯେତେବେଳେ ପୁରୁଷ ଶୋଇପଡ଼େ, ସେତେବେଳେ ବାଣୀ ପ୍ରାଣରେ, ଚକ୍ଷୁ ପ୍ରାଣରେ, ଶ୍ରୋତ୍ର ପ୍ରାଣରେ ଏବଂ ମନ ପ୍ରାଣରେ ଲୀନ ହୋଇଯା'ନ୍ତି ।

(ଘ) ତେଣୁ ସୁଷୁପ୍ତିକାଳରେ ପ୍ରାଣବ୍ୟାପାରର ଲୁପ୍ତନ ହେଲେ ବି ଇନ୍ଦ୍ରିୟ ବ୍ୟାପାର ଲୁପ୍ତ ହୋଇଯାଏ ଓ ଜାଗ୍ରତକାଳରେ ପ୍ରକଟିତ ହୁଏ ।

(୪) ମୂଳ-(କ) ଇନ୍ଦ୍ରିୟସାରତ୍ୱାଚ୍ଚ ଭୂତାନାମବିରୁଦ୍ଧୋ ମୁଖ୍ୟେ ପ୍ରାଣେଽପି ଭୂତସଂବେଶନୋଦ୍‌ଗମବାଦୀ ବାକ୍ୟଶେଷଃ । ଅପିଚଦିତ୍ୟୋଽନ୍ନଂ ଚୋଦ୍‌ଗୀଥ ପ୍ରତିହାରୟୋର୍ଦେବତେ ପ୍ରସ୍ତାବଦେବତାୟାଃ ପ୍ରାଣସ୍ୟାନନ୍ତରଂ ନିର୍ଦ୍ଦିଶ୍ୟେତୋ ନ ଚ ତୟୋଃ ବ୍ରହ୍ମତ୍ୱମସ୍ତି, ତତ୍‌ସାମାନ୍ୟାଚ୍ଚ ପ୍ରାଣସ୍ୟାପି ନ ବ୍ରହ୍ମତ୍ୱମିତି (ଖ) ଏବଂ ପ୍ରାପ୍ତେ ସୂତ୍ରକାର ଆହ- 'ଅତ ଏବ ପ୍ରାଣ' ଇତି । ତଲ୍ଲିଙ୍ଗାତ୍ ପୂର୍ବ ସୂତ୍ରେ ନିର୍ଦ୍ଦିଷ୍ଟମ୍ । ଅତଏବ ତଲ୍ଲିଙ୍ଗାତ୍ ପ୍ରାଣଶବ୍ଦମପି ପରଂବ୍ରହ୍ମ ଭବିତୁମର୍ହତି । (ଗ) ପ୍ରାଣସ୍ୟାପି ହି ବ୍ରହ୍ମଲିଙ୍ଗସମ୍ବନ୍ଧଃ ଶ୍ରୂୟତେସର୍ବାଣି ହ ବା ଇମାନି ଭୂତାନି ପ୍ରାଣମେବାଭିସଂବିଶନ୍ତି, ପ୍ରାଣମଭ୍ୟୁଜ୍ଜିହତେ,' (ଛା ୧।୧୧।୫) ଇତି । ପ୍ରାଣନିମିତ୍ତୌ ସର୍ବେଷାଂ ଭୂତାନାମୁତ୍ପତ୍ତି ପ୍ରକ୍ରିୟାବୁଚ୍ୟମାନୌ ପ୍ରାଣସ୍ୟ ବ୍ରହ୍ମତାଂ ଗମୟତଃ । (ଘ) ନନୂକ୍ତଂ ମୁଖ୍ୟପ୍ରାଣପରିଗ୍ରହେଽପି ସଂବେଶନୋଦ୍‌ଗମନଦର୍ଶନମବିରୁଦ୍ଧଂ ସ୍ୱାପପ୍ରବୋଧୟୋର୍ଦର୍ଶନାଦିତି । (ଙ) ଅତ୍ରୋଚ୍ୟତେ ରିନ୍ଦ୍ରିୟାଣାମେବ କେବଳାନାଂ ପ୍ରାଣାଶ୍ରୟଂ ସଂବେଶନୋଦ୍ ଗମନଂ ଦୃଶ୍ୟତେ, ନ ସର୍ବେଷାଂ ଭୂତାନାମ୍ । ଇହ ତୁ ସେନ୍ଦ୍ରିୟାଣାଂ ସଶରୀରାଣାଞ୍ଚ ଜୀବାବିଷ୍ଟାନାଂ ଭୂତାନାଂ 'ସର୍ବାଣି ହ ବା ଇମାନି ଭୂତାନି (ଛା ୧।୧୧।୫) ଇତି ଶ୍ରୁତେଃ । (ଚ) ଯଦପି ଭୂତଶ୍ରୁତିର୍ମହାଭୂତବିଷୟଃ ପରିଗୃହ୍ୟତେ, ତଦାପି ବ୍ରହ୍ମଲିଙ୍ଗତ୍ୱମବିରୁଦ୍ଧମ୍ ।

(୪) ଭାଷାଂତର- (କ) ଇନ୍ଦ୍ରିୟଗୁଡ଼ିକ ଭୂତମାନଙ୍କର ସାରରୂପ ଅଟନ୍ତି । ତେଣୁ ଭୂତମାନଙ୍କର ଲୟ ଓ ଉତ୍ପତ୍ତିର ପ୍ରତିପାଦକବାକ୍ୟଶେଷ ମୁଖ୍ୟ ପ୍ରାଣରେ ବିରୁଦ୍ଧ ହୁଏ ନାହିଁ । ପ୍ରସ୍ତାବଦେବତା ଓ ପ୍ରାଣର କଥନପରେ ଉଦ୍‌ଗୀଥ ଓ ପ୍ରତିହାରର ଦେବତା ଆଦିତ୍ୟ ଓ ଅନ୍ନର ନିର୍ଦ୍ଦେଶ ନୁହଁନ୍ତି । ଯେପରି ଏହି ଦୁଇଟି (ଆଦିତ୍ୟ ଓ ଅନ୍ନ) ବ୍ରହ୍ମ ନୁହଁନ୍ତି, ସେପରି ମଧ୍ୟ ଏମାନଙ୍କ ସଦୃଶଦ୍ୱାରା ପ୍ରାଣ ମଧ୍ୟ ବ୍ରହ୍ମ ନୁହେଁ ସିଦ୍ଧାନ୍ତ ।

(ଖ) ଏହିପରି ହେଲାପରେ ଭଗବାନ ସୂତ୍ରକାର କହିଛନ୍ତି 'ଅତଏବ ପ୍ରାଣଃ', କିନ୍ତୁ 'ତଲ୍ଲିଙ୍ଗାତ୍' ପୂର୍ବ ସୂତ୍ରରେ ନିର୍ଦ୍ଦେଶ କରାଯାଇଅଛି ।

(ଗ) ଏହାଦ୍ୱାରା ସେମାନଙ୍କର ଲିଙ୍ଗ ମାଧ୍ୟମରେ ପ୍ରାଣଶବ୍ଦ ବାଚ୍ୟ ପରଂବ୍ରହ୍ମ ହେବା ଉଚିତ୍ । କାରଣ- 'ସର୍ବାଣି ହ ବା ଇମାନି', ଏହି ଶ୍ରୁତି ପ୍ରାଣର ମଧ୍ୟ ବ୍ରହ୍ମଲିଙ୍ଗ ସହିତ ସମ୍ବନ୍ଧ କହେ । ଏଠାରେ ପ୍ରାଣନିମିତ୍ତକ ସମସ୍ତ ଭୂତବସ୍ତୁକୁ କହି ଉତ୍ପତ୍ତି ଓ ପ୍ରଳୟ ପ୍ରାଣରେ ବ୍ରହ୍ମତତ୍ତ୍ୱର ଜ୍ଞାନ କରାଏ ।

(ଘ) ପରନ୍ତୁ ଯାହା ଏଠାରେ କୁହାଗଲା କି- ମୁଖ୍ୟ ପ୍ରାଣର ପରିଗ୍ରହ ହେଲାପରେ ମଧ୍ୟ ଲୟ ଓ ଉତ୍ପତ୍ତିର ଦର୍ଶନ ବିରୁଦ୍ଧ ହୁଏ ନାହିଁ, କାରଣ-ସୁଷୁପ୍ତ ଓ ଜାଗ୍ରତ ଅବସ୍ଥାରେ ଏହିଭଳି ଦେଖାଯାଏ ।

(ଙ) ଏହି ପ୍ରସଙ୍ଗ ଉପରେ କୁହାଗଲା କି ସୁଷୁପ୍ତି ଓ ପ୍ରବୋଧ ସମୟରେ କେବଳ ଇନ୍ଦ୍ରିୟଗୁଡ଼ିକର ହିଁ ପ୍ରାଣାଶ୍ରୟ ଲୟ ଓ ଉଦ୍‌ଗମ ଦେଖାଯାଏ । କିନ୍ତୁ ସବୁ ଭୂତମାନଙ୍କର ନୁହେଁ । ପରନ୍ତୁ ଏଠାରେ ଇନ୍ଦ୍ରିୟ, ଶରୀର ଏବଂ ଜୀବସହିତ ସମ୍ବନ୍ଧ ଭୂତମାନଙ୍କର ପ୍ରାଣାଶ୍ରୟ ଲୟ ଉଦ୍‌ଗମ ହୁଏ, କାରଣ- 'ସର୍ବାଣି ହ ବା ଇମାନି' ଏହି ଶ୍ରୁତିବାକ୍ୟ ହିଁ ପ୍ରମାଣ ।

(ଚ) ଯଦି ଏଠାରେ ଭୂତଶ୍ରୁତି ମହାଭୂତବିଷୟକ ବୋଲି ଗୃହୀତ ହୁଏ । ତାହେଲେ ବ୍ରହ୍ମଲିଙ୍ଗତ୍ୱରେ କୌଣସି ବିରୋଧ ରହେ ନାହିଁ ।

(୫) ମୂଳ-(କ) ନନୁ ସହାପି ବିଷୟରିନ୍ଦ୍ରିୟାଣାଂ ସ୍ୱାପପ୍ରବୋଧୟୋଃ ପ୍ରାଣେଽପ୍ୟୟଂ ପ୍ରାଣାଚ୍ଚ ପ୍ରଭବଂ ଶୃଣୁମଃ- 'ଯଦା ସୁପ୍ତଃ ସ୍ୱପ୍ନଂ ନ କିଞ୍ଚନ ପଶ୍ୟତ୍ୟଥାସ୍ମିନ୍ ପ୍ରାଣେ ଏବୈକଧା ଭବତି ତଦୈନଂ ବାକସର୍ବୋର୍ନାମଭି ସହାପ୍ୟେତି', (କୌ ୩।୩) । ତତ୍ରାପି ତଲ୍ଲିଙ୍ଗାତ୍ ପ୍ରାଣଶବ୍ଦଂ ବ୍ରହ୍ମୈବ । (ଖ) ଯତ୍ପୁନରୁକ୍ତମ୍-ଅନ୍ନାଦିତ୍ୟସଂନିଧାନାତ୍ ପ୍ରାଣସ୍ୟାବ୍ରହ୍ମତ୍ୱମିତି, ତଦଯୁକ୍ତମ୍ ବାକ୍ୟଶେଷବଳେନ ପ୍ରାଣଶବ୍ଦସ୍ୟ ବ୍ରହ୍ମବିଷୟତାୟାଂ ପ୍ରତୀୟମାନାୟାଂ ସନ୍ନିଧାନସ୍ୟା-କିଞ୍ଚିତ୍କରତ୍ୱାତ୍ । (ଗ) ଯତ୍ପୁନଃ ପ୍ରାଣଶବ୍ଦସ୍ୟ ପଞ୍ଚବୃତ୍ତୌ ପ୍ରସିଦ୍ଧତରତ୍ୱମ୍, ତଦାକାଶଶବ୍ଦସ୍ୟୈବ ପ୍ରତିବୋଧେୟମ୍ । ତସ୍ମାତ୍ ସିଦ୍ଧଂ ପ୍ରସ୍ତାବଦେବତାୟାଃ ପ୍ରାଣସ୍ୟ



ବ୍ରହ୍ମତ୍ୱମ୍ । (ଘ) ଅତ୍ର କେଚିଦୁଦାହରନ୍ତି- (ପ୍ରାଣସ୍ୟ ପ୍ରାଣମ୍', (ବୃହ ୪।୪।୧୮), 'ପ୍ରାଣସ୍ୟ ବନ୍ଧନଂ ହି ସୋମ୍ୟ ମନଃ' (ଛା ୬।୮।୧) ଇତି ଚ । ତଦଯୁକ୍ତମ୍, ଶବ୍ଦଭେଦାତ୍ ପ୍ରକରଣାଚ୍ଚ ସଂଶୟାନୁପପତ୍ତେଃ । ଯଥା ପିତୁଃ ପିତେତି ପ୍ରୟୋଗେଽନ୍ୟଃ ପିତା ଷଷ୍ଠୀନିର୍ଦ୍ଦିଷ୍ଟୋଽନ୍ୟଃ ପ୍ରଥମାନିର୍ଦ୍ଦିଷ୍ଟଃ ପିତୁ ପିତେତି ଗମ୍ୟତେ, ତଦ୍‌ବତ୍ 'ପ୍ରାଣସ୍ୟ ପ୍ରାଣ' ମିତ୍ର ଶବ୍ଦଭେଦାତ୍ ପ୍ରାଣାଦନ୍ୟଃ ପ୍ରାଣସ୍ୟ ପ୍ରାଣ ଇତି ନିଶ୍ଚୀୟତେ । ନ ହି ସ ଏବ ତସ୍ୟେତି ଭେଦନିର୍ଦ୍ଦେଶାର୍ହୋ ଭବତି ।

(୫) ଭାଷାଂତର- (କ) କିନ୍ତୁ ଏଭଳି ଶୁଣାଯାଏ ଯେ- ସୁଷୁପ୍ତି ଓ ଜାଗ୍ରତ କାଳରେ ବିଷୟମାନଙ୍କ ସହିତ ଇନ୍ଦ୍ରିୟମାନଙ୍କର ପ୍ରାଣରେ ଲୟ ଓ ପ୍ରାଣରୁ ଉଦ୍‌ଭବ ହୁଏ, କାରଣ-ଯେତେବେଳେ ପୁରୁଷ ଶୋଇଥିବା ଅବସ୍ଥାରେ କୌଣସି ସ୍ୱପ୍ନ ଦେଖେ ନାହିଁ, ସେତେବେଳେ ପ୍ରାଣରେ ହିଁ ଏକ ହୋଇଯାଏ ଏବଂ ଏହି ସମୟ ଏଠାରେ ସମସ୍ତ ଇନ୍ଦ୍ରିୟ ସହ ବାଣୀରେ ଲୀନ ହୋଇଯାଏ' । ଏହି ବେଦବାକ୍ୟ । ପୁନଶ୍ଚ ଏଠାରେ ବ୍ରହ୍ମଲିଙ୍ଗ ଦ୍ୱାରା ପ୍ରାଣଶବ୍ଦ ବାଚ୍ୟ ହୁଏ ।

(ଖ) କିନ୍ତୁ ପୂର୍ବୋକ୍ତ ଅନ୍ନ ଓ ଆଦିତ୍ୟର ସନ୍ନିଧିରେ ପ୍ରାଣ ବ୍ରହ୍ମ ନୁହେଁ ବୋଲି ଯାହା କୁହାଯାଇଛି, ସେହି କଥା ଅଯୁକ୍ତ ହେବ, କାରଣ-ବାକ୍ୟ ଶେଷ ବଳରେ ପ୍ରାଣଶବ୍ଦ ବ୍ରହ୍ମବିଷୟକ ପ୍ରତୀତ ହେଲେ ମଧ୍ୟ ଏହା ସନ୍ନିଧାନ ପ୍ରୟୋଜନ ରହିତ ।

(ଗ) ପୁନଶ୍ଚ କୁହାଯାଇଛି- ପ୍ରାଣଶବ୍ଦ ପଞ୍ଚଇନ୍ଦ୍ରିୟର ପରିଚାଳକ ଓ ମୁଖ୍ୟପ୍ରାଣରେ ଅତି ପ୍ରସିଦ୍ଧ ଅଟେ । ଏହି ଆକ୍ଷେପର ପରିହାର ଆକାଶଶବ୍ଦ ଭଳି ଜାଣିବା ଉଚିତ୍ । ଏହାଦ୍ୱାରା ପ୍ରମାଣିତ ହେଲା ଯେ- ପ୍ରସ୍ତାବ ଦେବତା ରୂପକ ପ୍ରାଣ ହିଁ ବ୍ରହ୍ମ ।

(ଘ) ଏଠାରେ ବୃତ୍ତିକାର 'ପ୍ରାଣସ୍ୟ ପ୍ରାଣମ୍', ପ୍ରାଣବନ୍ଧନଂ ହି ସୋମ୍ୟ ! ମନଃ', ଇତ୍ୟାଦି ଶ୍ରୁତି ବାକ୍ୟଗୁଡ଼ିକୁ ଉଦାହରଣ ଦେଇଛନ୍ତି । କିନ୍ତୁ ସେ କଥା ଯୁକ୍ତିଯୁକ୍ତ ନୁହେଁ, କାରଣ-ଶବ୍ଦ ଭେଦରେ ଓ ପ୍ରକରଣରେ ଏହା ସନ୍ଦେହ ହୁଏ ନାହିଁ । ଯେପରି ପିତା ପିତୁଃ' ଏହି ପ୍ରୟୋଗରେ ଷଷ୍ଠୀ ବିଭକ୍ତିଦ୍ୱାରା ନିର୍ଦ୍ଦିଷ୍ଟ ପିତା ଅନ୍ୟ ଜଣେ, ଓ ପ୍ରଥମ ନିର୍ଦ୍ଦିଷ୍ଟ ପିତା ଅନ୍ୟ ଜଣେ । ଏହାଦ୍ୱାରା 'ପିତା ପିତୁଃ' ଜଣାପଡ଼େ ।

(ଙ) ସେପରି ମଧ୍ୟ 'ପ୍ରାଣସ୍ୟ ପ୍ରାଣମ୍' ଏହି ଶକ୍ତି ଭେଦରେ ପ୍ରସିଦ୍ଧମୁଖ୍ୟ ପ୍ରାଣଭିନ୍ନ ପ୍ରାଣର ପ୍ରାଣକୁ ନିଶ୍ଚିତ କରାଯାଏ, କାରଣ- ଏକ ହିଁ ତତ୍‌ଦ୍ୱାରା କୁହାଯାଉଥିବା ପଦାର୍ଥ 'ତସ୍ୟ' ଶବ୍ଦ ଦ୍ୱାରା ଭେଦନିର୍ଦ୍ଦେଶ କରାଯାଏ ନାହିଁ । ଅର୍ଥାତ୍ ପ୍ରଥମା ବିଭକ୍ତିର ଷଷ୍ଠୀ ବିଭକ୍ତି ଦ୍ୱାରା ଅର୍ଥଜ୍ଞାନ ହୁଏ ନାହିଁ ।

(୬) ମୂଳ-(କ) ଯସ୍ୟ ଚ ପ୍ରକରଣେ ଯୋ ନିର୍ଦ୍ଦିଶ୍ୟତେ, ନାମାନ୍ତରେଣାପି ସ ଏବ ତତ୍ର ପ୍ରକରଣୋ ନିର୍ଦ୍ଦିଷ୍ଟ ଇତି ଗମ୍ୟତେ, ଯଥା- 'ଜ୍ୟୋତିଷ୍ଟୋମାଧିକାରେ ବସନ୍ତେ ବସନ୍ତେ ଜ୍ୟୋତିଷା ଯଜେତ', ଇତ୍ୟତ୍ର ଜ୍ୟୋତିଶବ୍ଦୋ ଜ୍ୟୋତିଷ୍ଟୋମବିଷୟୋ ଭବତି, (ଖ) ତଥା ପରସ୍ୟ ବ୍ରହ୍ମଣଃ ପ୍ରକରଣେ 'ପ୍ରାଣବନ୍ଧନଂ ହି ସୋମ୍ୟ । ମନଃ', (ଛା ୬।୮।୨) ଇତିଶ୍ରୁତଃ ପ୍ରାଣଶବ୍ଦୋ ବାୟୁବିକାରମାତ୍ରଂ କଥମବଗମୟେତ୍ ? ଅତଃ ସଂଶୟବିଷୟତ୍ୱାନ୍ନେତ ଉଦାହରଣଂ ଯୁକ୍ତମ୍ । ପ୍ରସ୍ତାବ ଦେବତାୟାଂ ତୁ ପ୍ରାଣେ ସଂଶୟପୂର୍ବପକ୍ଷ ନିର୍ଣ୍ଣୟା ଉପପାଦିତାଃ ।

**(୬) ଭାଷାଂତର-** (କ) ଯାହାର ପ୍ରକରଣରେ ଯାହା ନିର୍ଦ୍ଦିଷ୍ଟ ହୁଏ, ସେହି ପ୍ରକରଣରେ ଅନ୍ୟ ନାମଦ୍ୱାରା ସେହି ପ୍ରକରଣୀ (ପ୍ରକୃତ) ନିର୍ଦ୍ଦିଷ୍ଟ ହୋଇଥାଏ – ଏହି ପ୍ରକାର ଜ୍ଞାନ ହୁଏ । ଯେପରିକି ଜ୍ୟୋତିଷ୍ଟୋମପ୍ରକରଣରେ ପ୍ରତିବସନ୍ତ ଋତୁରେ 'ଜ୍ୟୋତିଃ' ନାମକ ଯୋଗ କରାଯାଏ' । ଏହି ବାକ୍ୟରେ ଜ୍ୟୋତିଃଶବ୍ଦ ଜ୍ୟୋତିଷ୍ଟୋମ ବିଷୟକ ହୁଏ ।

(ଖ) ସେପରି ପରଂବ୍ରହ୍ମ ପ୍ରକରଣରେ 'ପ୍ରାଣବନ୍ଧନଂ ସୋମ୍ୟ ! ମନଃ', ଏହି ବେଦବାକ୍ୟରେ ଶ୍ରୁତିପ୍ରାଣଶବ୍ଦ କେବଳ ବାୟୁର ବିକାରମାତ୍ରକୁ କିପରି ବୁଝାଉଛି ? ଅତଃ ଏହା ସଂଶୟ ବିଷୟର ନ ହେଲେ ମଧ୍ୟ ଏହି ଉଦାହରଣ ଠିକ୍ ନୁହେଁ । ପ୍ରସ୍ତାବର ଦେବତାରୂପକ ପ୍ରାଣରେ ସଂଶୟ, ପୂର୍ବପକ୍ଷ ଓ ନିର୍ଣ୍ଣୟର ଉପପାଦନ କରାଯାଇଛି ।

## १० ज्योतिश्चरणाधिकरणम् । सू० २४ - २७

## ଜ୍ୟୋତିଷ୍ଚରଣାଧିକରଣ-୧୦

## ज्योतिश्चरणाभिधानम् ॥ २४ ॥

## (୧) ଜ୍ୟୋତିଷ୍ଚରଣାଭିଧାନମ୍ । । । ୪

ଜ୍ୟୋତିଃ = 'ଯଦତଃ ପରୋ ଦିବୋ', – ଏହି ସ୍ଥାନରେ ଜ୍ୟୋତିଶବ୍ଦଦ୍ୱାରା ବ୍ରହ୍ମ ହିଁ ଗ୍ରାହ୍ୟ ଅଟେ । କାରଣ-ଜ୍ୟୋତିଷ୍ଚରଣାଭିଧାନମ୍ = 'ପାଦୋଽସ୍ୟ ଏହି ପୂର୍ବବାକ୍ୟରେ ପଦର ଅଭିଧାନ ହୋଇଛି ।

(୨) ମୂଳ-(କ) ଇଦମାନାନନ୍ତି- 'ଅଥ ଯଦତଃ ପରୋଦିବୋ ଜ୍ୟୋତିର୍ଦୀପ୍ୟତେ, ବିଶ୍ୱତଃ ପୃଷ୍ଠେଷୁ ସର୍ବତଃ ପୃଷ୍ଠେଷ୍ୱନୁତ୍ତମେଷୂତ୍ତମେଷୁ ଲୋକେଷ୍ୱିଦଂ ବାବ ତଦ୍ୟଦିମସ୍ମିନ୍ନନ୍ତଃ



ପୁରୁଷେ ଜ୍ୟୋତିଃ', (ଛା ୩।୨୩।୭) ଇତି । (ଖ) ତତ୍ର ସଂଶୟଃ-କିମିହ ଜ୍ୟୋତିଃଶବ୍ଦେନାଦିତ୍ୟାଦିକଂ ଜ୍ୟୋତିରଭିଧୀୟତେ କିମ୍ବା ପରମାତ୍ମେତି । ଅର୍ଥାନ୍ତରବିଷୟସ୍ୟାପି ଶବ୍ଦସ୍ୟ ତଲ୍ଲିଙ୍ଗାଦ୍ ବ୍ରହ୍ମବିଷୟତ୍ୱମୁକ୍ତମ୍ । ଇହ ତୁ ତଲ୍ଲିଙ୍ଗମେବାସ୍ତି ନାସ୍ତୀତି ବିଚାର୍ଯ୍ୟତେ । କିଂ ତାବତ୍ପ୍ରାପ୍ତମ୍ ।

**(୨) ଭାଷାଂତର-** (କ) ଛାନ୍ଦୋଗ୍ୟ ଉପନିଷଦ କହେ- 'ତଥା ଏହି ଦ୍ୟୁର୍ଲୋକଠାରୁ ଉପରେ ଯେଉଁ ପରମଜ୍ୟୋତି, ବିଶ୍ୱ ଉପରେ ଅର୍ଥାତ୍ ଯାହା ଉପରେ କୌଣସି ଲୋକ ନାହିଁ, ସେହି ଉତ୍ତମ ଲୋକରେ ପ୍ରକାଶିତ ହେଉଛି, ସେ ନିଶ୍ଚିତ ଭାବରେ ସେହି ପୁରୁଷ, ଯେଉଁ ପୁରୁଷର ଦେହଭିତରେ ଜ୍ୟୋତି ଅଛି' ।

(ଖ) ତେଣୁ ଏଠାରେ ସଂଶୟ ଯେ- ବେଦରେ ଜ୍ୟୋତିଃଶବ୍ଦଦ୍ୱାରା ଆଦିତ୍ୟାଦି ଜ୍ୟୋତିଃଶବ୍ଦର ଅଥବା ପରମାତ୍ମାର ଅଭିଧାନ ହୁଏ କି ? ଅନ୍ୟାର୍ଥ ବିଷୟକଶବ୍ଦ ମଧ୍ୟ ବ୍ରହ୍ମଲିଙ୍ଗଦ୍ୱାରା ବ୍ରହ୍ମବିଷୟକ ରୂପେ କୁହାଯାଇଛି । କିନ୍ତୁ ଏଠାରେ ବ୍ରହ୍ମର ଲିଙ୍ଗ ଅଛି କି ନାହିଁ ? ତେବେ କ'ଣ ହେଲା ?

(୩) ମୂଳ-(କ) ଆଦିତ୍ୟାଦିକମେବ ଜ୍ୟୋତିଃଶବ୍ଦେନ ପରିଗୃହ୍ୟେତ ଇତି । କୁତଃ ? ପ୍ରସିଦ୍ଧେଃ । ତମୋ ଜ୍ୟୋତିରିତି ହୀମୌ ଶବ୍ଦୌ ପରସ୍ପର ପ୍ରତିଦ୍ୱନ୍ଦ୍ୱିବିଷୟୌ ପ୍ରସିଦ୍ଧୌ । ଚକ୍ଷୁର୍ବୃତ୍ତେନିରୋଧକଂ ଶାର୍ବରାଦିକଂ ତମ ଉଚ୍ୟତେ । ତସ୍ୟା ଏବାନୁଗ୍ରାହକମାଦିତ୍ୟାଦିକଂ ଜ୍ୟୋତିଃ । 'ତଥା ଦୀପ୍ୟତେ' ଇତୀୟମପି ଶ୍ରୁତିରାଦିତ୍ୟାଦିବିଷୟା ପ୍ରସିଦ୍ଧା । ନ ହି ରୂପାଦିହୀନଂ ବ୍ରହ୍ମ ଦୀପ୍ୟତେ । ଇତି ମୁଖ୍ୟାଂ ଶ୍ରୁତିମହତି । (ଖ) ଦ୍ୟୁମର୍ଯ୍ୟଦାତ୍ୱଶ୍ରୁତେଶ୍ଚ । ନ ହି ଚରାଚରଜୀବସ୍ୟ ବ୍ରହ୍ମଣଃ ସର୍ବାତ୍ମକସ୍ୟ ଦ୍ୟୌର୍ମର୍ଯ୍ୟାଦା ଯୁକ୍ତା । କାର୍ଯ୍ୟସ୍ୟ ତୁ ଜ୍ୟୋତିଷଃ ପରିଛିନ୍ନସ୍ୟ ଦ୍ୟୌର୍ମର୍ଯ୍ୟାଦା ସ୍ୟାତ୍ । 'ପରୋ ଦିବୋ ଜ୍ୟୋତିଃ', ଇତି ଚ ବ୍ରାହ୍ମଣମ୍ ।

**(୩) ଭାଷାଂତର-** ପୂର୍ବପକ୍ଷ (କ) ଜ୍ୟୋତିଃଶବ୍ଦଦ୍ୱାରା ଆଦିତ୍ୟାଦିର ପରିଗ୍ରହ ହୁଏ କାହିଁକି ? କାରଣ-ଏମାନଙ୍କ ପାଖରେ ଜ୍ୟୋତିଃଶବ୍ଦ ପ୍ରସିଦ୍ଧ ଅଟେ । ଅନ୍ଧକାର ଓ ଜ୍ୟୋତି- ଏହି ଦୁଇଟି ଶବ୍ଦ ପରସ୍ପର ବିରୋଧ ଅର୍ଥରେ ବ୍ୟବହୃତ ହୁଅନ୍ତି । ଚକ୍ଷୁବୃତ୍ତିର ନିରୋଧକ ରାତ୍ରର ଅନ୍ଧକାରକୁ ତମ କହନ୍ତି । ଏହିପରି 'ଦୀପ୍ୟତେ' (ପ୍ରକାଶିତ ହୁଏ) ଏହି ଶ୍ରୁତି ମଧ୍ୟ ଆଦିତ୍ୟାଦି ବିଷୟକରୂପରେ ବିଖ୍ୟାତ ଏବଂ ରୂପାଦିରହିତ ବ୍ରହ୍ମରେ 'ଦୀପ୍ୟତେ', ଏହି ଶ୍ରୁତି ମୁଖ୍ୟ ରୂପରେ ଘଟେ ନାହିଁ,

(ଖ) କାରଣ-ଦ୍ୟୁଲୋକ ଜ୍ୟୋତିର ସୀମା ଅଛି ବୋଲି ବେଦ କହେ । ଚରାଚରସୃଷ୍ଟିର ବୀଜଭୂତ-ସର୍ବାତ୍ମକ-ବ୍ରହ୍ମର ଦ୍ୟୁର୍ଲୋକମର୍ଯ୍ୟାଦା ଠିକ୍ ନୁହେଁ । ପରନ୍ତୁ କାର୍ଯ୍ୟରୂପ-ପରିଛିନ୍ନ ଜ୍ୟୋତିରେ ଦ୍ୟୁର୍ଲୋକମର୍ଯ୍ୟାଦା ଯୁକ୍ତ ହୁଏ, କାରଣ- 'ପରୋଦିବୋ ଜ୍ୟୋତିଃ', ଏହିପ୍ରକାର ବ୍ରାହ୍ମଣଗ୍ରନ୍ଥର ପ୍ରମାଣ ଅଛି ।

(୪) ମୂଳ-(କ) ନନୁ କାର୍ଯ୍ୟସ୍ୟାପି ଜ୍ୟୋତିଷଃ ସର୍ବତ୍ରଃ ଗମ୍ୟମାନତ୍ୱାଦ୍ ଦ୍ୟୁମର୍ଯ୍ୟାଦାବତ୍ତ୍ୱମସମଞ୍ଜସମ୍ ? (ଖ) ଅସ୍ତୁ ତର୍ହି ଅତ୍ରିବୃତ୍କୃତଂ ପ୍ରଥମଜମ୍, ନ ଅତ୍ରିବୃତ୍କୃତସ୍ୟ ତେଜସଃ ପ୍ରୟୋଜନାଭାବାଦିତି । (ଗ) ଇଦମେବ ପ୍ରୟୋଜନଂ ଯଦୁପାସ୍ୟତ୍ୱମିତି ଚେତ୍, ନ, ପ୍ରୟୋଜନାନନ୍ତରପ୍ରଯୁକ୍ତ ସ୍ୟୈବାଦିତ୍ୟଦେରୁପାସ୍ୟ-ତ୍ୱଦର୍ଶନାତ୍ । 'ତାସାଂ ତ୍ରିବୃତମେକୈକାଂ କରବାଣି', (ଛା ୬।୩।୩) ଇତି ଚାବିଶେଷଶ୍ରୁତେଃ । (ଘ) ନ ଚାତ୍ରିବୃତ୍କୃତସ୍ୟାପି ତେଜସୋ ଦ୍ୟୁମର୍ଯ୍ୟାଦାତ୍ୱଂ ପ୍ରସିଦ୍ଧମ୍, ଅସ୍ତୁ ତର୍ହି ତ୍ରିବୃତ୍କୃତମେବ ତତ୍ତେଜୋ ଜ୍ୟୋତିଃଶବ୍ଦମ୍ ।

**(୪) ଭାଷାଂତର-** (କ) ଯଦି କୁହାଯାଏ- ବ୍ରହ୍ମଭଳି କାର୍ଯ୍ୟାରୂପ ଜ୍ୟୋତି ମଧ୍ୟ ସର୍ବତ୍ର ଗମ୍ୟମାନ ହେତୁ ଦ୍ୟୁଲୋକ ଏହାର ମର୍ଯ୍ୟାଦା (ସୀମା) ହୁଏ, ତେବେ ଏହା ଅସଂଗତ ହେବ ।

(ଖ) କିନ୍ତୁ ପ୍ରଥମେ ଉତ୍ପନ୍ନ ହୋଇଥିବା କେବଳ ଅତ୍ରିବୃତ୍କୃତ (ତ୍ରିବୃତ୍ କୃତ ଅର୍ଥାତ୍ ଯେପରି ଗୋଟିଏ ଦଉଡ଼ି ତିନୋଟି ଭାଗର ସମିଶ୍ରଣରେ ଗୋଲାକାର ହୁଏ, ସେପରି ତେଜ, ଜଳ ଓ ପୃଥିବୀକୁ ପ୍ରତ୍ୟେକଙ୍କୁ ଅଧା ଅଧା କରି, ଗୋଟିଏ ଭାଗକୁ ନିଜ ସଂଗରେ ନ ମିଶାଇ ଅନ୍ୟ ପଦାର୍ଥ ଦ୍ୱୟରେ ସମାନ ସମାନ କରି ମିଶାଇଲେ ତେଜରେ ତେଜାଂଶ ୧/୨, ଜଳ ୧/୪, ପୃଥିବୀ ୧/୪ ହୋଇ ପୂର୍ଣ୍ଣତା ପାଏ । ସେପରି ମଧ୍ୟ ଜଳରେ ଜଳ ୧/୨, ତେଜ ୧/୪, ପୃଥିବୀ ୧/୪ ହୋଇ ପୂର୍ଣ୍ଣତା ପାଏ ପୁନଶ୍ଚ ପୃଥିବୀରେ ପାର୍ଥିବାଂଶ ୧/୨, ତେଜ ୧/୪, ଜଳ ୧/୨ ହୋଇଏକ ହୁଏ । ଏହି ପ୍ରକ୍ରିୟାକୁ ତ୍ରିବୃତ୍କୃତ କୁହାଯାଏ । ଯେଉଁ ସ୍ଥଳରେ ଯେଉଁ ପଦାର୍ଥ ସୃଷ୍ଟି ଆରମ୍ଭରେ ତ୍ରିବୃତ୍କୃତ ହୋଇନଥିବ, ତାହାକୁ 'ଅତ୍ରିବୃତ୍କୃତ' କୁହାଯାଏ) । ତେଜକୁ ଜ୍ୟୋତି ରୂପରେ ଠିକ୍ କରିବା ସ୍ୱୀକାର୍ଯ୍ୟ ନୁହେଁ । କାରଣ- ଏଠାରେ ଅତ୍ରିବୃତ୍କୃତ ତେଜର ପ୍ରୟୋଜନ ନାହିଁ ।

(ଗ) ଯଦି କୁହାଯାଏ- ଯେଉଁ ଅତ୍ରିବୃତ୍କୃତତେଜ ଉପାସ୍ୟ, ତାହା ପ୍ରୟୋଜନୀୟ, ତେବେ ମଧ୍ୟ ଏହା ଠିକ୍ ନୁହେଁ, କାରଣ- ଅନ୍ୟ ପ୍ରୟୋଜନରେ (ଅନ୍ଧକାର ନିବୃତ୍ତିରେ) ପ୍ରଯୁକ୍ତ ଆଦିତ୍ୟାଦି ଉପାସ୍ୟ ହିଁ ଦେଖାଯାଏ ଏବଂ 'ଏମାନଙ୍କ ଠାରେ ଗୋଟିଏ ଗୋଟିଏ ତ୍ରିବୃତ୍ କରିବୁ' ଏହା ହିଁ ଅବିଶେଷ ଶ୍ରୁତି ।

(ଘ) ଅତ୍ରିବୃତ୍‌କୃତ ତେଜର ଦ୍ୟୁମର୍ଯ୍ୟଦା ପ୍ରସିଦ୍ଧ ନୁହେଁ, ତେବେ ମଧ୍ୟ ତ୍ରିବୃତ୍‌କୃତ ସେ ତେଜ ହିଁ ଜ୍ୟୋତିଃଶବ୍ଦ ହେବ ।

(୫) ମୂଳ-(କ) ନନୂକ୍ତମର୍ବାଗପି ଦିବୋଽବଗମ୍ୟତେଽଗ୍ନ୍ୟାଦିକଂ ଜ୍ୟେତିରିତି, ନୈଷୋ ଦୋଷଃ, ସର୍ବତ୍ରାପି ଗମ୍ୟମାନ ଜ୍ୟୋତିଷଃ 'ପରୋ ଦିବଃ' ଇତ୍ୟୁପସନାର୍ଥଃ ପ୍ରଦେଶବିଶେଷପରିଗ୍ରହୋ ନ ବିରୁଧ୍ୟତେ । ନ ତୁ ନିପ୍ରଦେଶସ୍ୟାପି ବ୍ରହ୍ମଣଃ ପ୍ରଦେଶବିଶେଷକଳ୍ପନା ଭାଗିନୀ, 'ସର୍ବତଃ ପୃଷ୍ଠେଷ୍ୱନୁତ୍ତମେଷ୍ୱୁତ୍ତମେଷୁ ଲୋକେଷୁ', ଇତି ଋଧାରବ୍ରହ୍ମତ୍ୱଶ୍ରୁତିଃ କାର୍ଯ୍ୟେ ଜ୍ୟୋତିଷ୍ୟୁପପଦ୍ୟତେତରାମ୍ । (ଖ) 'ଇଦଂ ବାବ ତଦ୍ୟଦିଦମସ୍ମିନ୍ନନ୍ତଃ ପୁରୁଷେ ଜ୍ୟୋତିଃ' । (ଛା ୩।୨୩।୭) ଇତି ଚ କୌକ୍ଷେୟେ ଜ୍ୟୋତିଷି ପରଂ ଜ୍ୟୋତିରଧ୍ୟସ୍ୟମାନଂ ଦୃଶ୍ୟତେ । ସାରୂପ୍ୟ ନିମିତ୍ତାଶ୍ଚାଧ୍ୟାସାଃ ଭବନ୍ତି । ଯଥା- 'ତସ୍ୟ ଭୂରିତି ଶିର ଏକଂ ଶିର ଏକମେତଦକ୍ଷରମ୍', (ବୃ ୫।୫।୩) ଇତି । କୌକ୍ଷେୟସ୍ୟ ଜ୍ୟୋତିଷଃ ପ୍ରସିଦ୍ଧମବ୍ରହ୍ମତ୍ୱମ୍; 'ତସ୍ୟୈଷା ଦୃଷ୍ଟିଃ', 'ତସ୍ୟୈଷା ଶ୍ରୁତିଃ', (ଛା ୩।୧୩।୮) ଇତି ଔଷ୍ଣ୍ୟଘୋଷଶିଷ୍ଟତ୍ୱସ୍ୟଶ୍ରବଣାତ୍ ।

**(୫) ଭାଷାଂତର** - (କ) ଦ୍ୟୁଲୋକଠାରୁ ନିଚରେ ରହି ଅଗ୍ନି ଆଦି ଜ୍ୟୋତିଃଶବ୍ଦ ଅବଗତ ବୋଲି ଯାହା କୁହାଯାଇଛି, ତାହା ନ୍ୟାୟସଂଗତ ନୁହେଁ । ସେପରି ସର୍ବତ୍ର ଗମ୍ୟମାନ ଜ୍ୟୋତିର ମଧ୍ୟ 'ପରୋଦିବଃ' ଏହି ପ୍ରକାର ଉପାସନା ପାଇଁ ପ୍ରଦେଶ ବିଶେଷର ଗ୍ରହଣ ବିରୋଧ ନୁହେଁ, ପୁନଶ୍ଚ ପ୍ରଦେଶରହିତବ୍ରହ୍ମଠାରେ ପ୍ରଦେଶ ବିଶେଷ କଳ୍ପନା ଯୁକ୍ତିଯୁକ୍ତ ମଧ୍ୟ ନୁହେଁ । 'ପୃଥିବୀ ପ୍ରଭୃତି ଲୋକମାନଙ୍କ ଉପରେ କୌଣସି ଉତ୍ତମ ଦ୍ୱିତୀୟ ବସ୍ତୁ ନାହିଁ', ଏହିପ୍ରକାର ବହୁ ଆଧାରର ପ୍ରତିପାଦକ ହୋଇ ଏହି ଶ୍ରୁତିକାର୍ଯ୍ୟ ଜ୍ୟୋତିରେ ଅଧିକ ସଙ୍ଗତ ହେବ ।

(ଖ) 'ଏହା ନିଶ୍ଚିତ ଯେ- ଏହି ପୁରୁଷ ଶରୀରରେ ଜ୍ୟୋତି ଅଛି । ଏହି ପ୍ରକାର କୁକ୍ଷିସ୍ଥଜ୍ୟୋତିରେ ପରଜୋତିର ଆରୋପ କରାହେବ ଦେଖାଯାଇଛି ଏବଂ ଏହା ସାଦୃଶ୍ୟନିମିତ୍ତକ ଅଧ୍ୟାସ ଅଟେ । ଯେପରିକି ଏହି ପୁରୁଷର ଭୂ, ମସ୍ତକ, କାରଣଶିର ଗୋଟିଏ, ଭୂମଧ୍ୟ ଗୋଟିଏ ।' ପରନ୍ତୁ କୁକ୍ଷିସ୍ଥ ଜ୍ୟୋତିଃ (ଜଠରାଗ୍ନି) ବ୍ରହ୍ମ ନୁହେଁ, ବୋଲି ପ୍ରସିଦ୍ଧ ଅଛି, କାରଣ- 'ଏହି ହୃଦୟସ୍ଥ ପୁରୁଷର ଦୃଷ୍ଟି ହେଉଛି ଦର୍ଶନୋପାୟ ଏବଂ ଏହା ସେହି ଶ୍ରୁତିର ଶ୍ରବଣୋପାୟ ଅର୍ଥାତ୍ ଶରୀରକୁ ସ୍ପର୍ଶ କରିବା ଦ୍ୱାରା ଉଷ୍ଣତାର ଜ୍ଞାନ, ଜଠରାଗ୍ନିର ଦର୍ଶନୋପାୟ, ଶ୍ରୁତିକୁ ବନ୍ଦ କରିବା ଦ୍ୱାରା ଶବ୍ଦ ବିଶେଷର ଶ୍ରବଣ ହେଉଛି ଜଠରାଗ୍ନିର ଶ୍ରବଣୋପାୟ', ଏହି ପ୍ରକାର ଉଷ୍ଣତା ଓ ଘୋଷବିଶିଷ୍ଟତ୍ୱର ଏହା ଶ୍ରୁତି ଅଟେ ।

(୬) ମୂଳ-(କ) ତଦେତଦ୍ ଦୃଷ୍ଟଂ ଚ ଶ୍ରୁତଂ ଚେତ୍ୟୁପାସୀତ', ଇତି ଚ ଶ୍ରୁତେଃ ଚକ୍ଷୁଷ୍ୟଃ ଶ୍ରୁତୋ ଭବତି ଯ ଏବଂ ବେଦ', (ଛା ୩।୨୩।୮) ଇତି ଅଳ୍ପଫଳଶ୍ରବଣାଦବ୍ରହ୍ମତ୍ୱମ୍ । ମହତେ ହି ଫଳାୟ ବ୍ରହ୍ମୋପାନମିଷ୍ୟତେ । ନ ଚାନ୍ୟଦପି କିଞ୍ଚିତ୍ସ୍ୱବାକ୍ୟେ ପ୍ରାଣାକାଶବଜ୍ୟୋତିଷୋଽସ୍ତି ବ୍ରହ୍ମଲିଙ୍ଗମ୍ । (ଖ) ନ ଚ ପୂର୍ବସ୍ମିନ୍ନପି ବାକ୍ୟେ ବ୍ରହ୍ମନିର୍ଦ୍ଦେଷ୍ଟମସ୍ତି, 'ଗାୟତ୍ରୀ ବା ଇଦଂ ସର୍ବଂ ଭୂତମ୍', ଇତି ଛାନ୍ଦୋଗ୍ୟନିର୍ଦ୍ଦେଶାତ୍ । (ଗ) ଅଥାପି କଥଞ୍ଚିତ୍ ପୂର୍ବସ୍ମିନ୍ବାକ୍ୟେ ବ୍ରହ୍ମନିର୍ଦ୍ଦିଷ୍ଟଂ ସ୍ୟାତ୍ । ଏବମପି ନ ତସ୍ୟେହ ପ୍ରତ୍ୟଭିଜ୍ଞାନମସ୍ତି । ତତ୍ର ହି 'ତ୍ରିପାଦସ୍ୟାମୃତଂ ଦିବି', (ଛା ୩।୧୨।୧,୬) ଇତି ଦ୍ୟୌରଧିକରଣତ୍ୱେ ନ ଶ୍ରୂୟତେ, ଅତ୍ର ପୁନଃ 'ପରୋ ଦିବୋ ଜ୍ୟୋତିଃ, ଇତି ଦ୍ୟୌମର୍ଯ୍ୟାଦାତ୍ୱେନ । ତସ୍ମାତ୍ ପ୍ରକୃତଂ ଜ୍ୟୋତିରିହ ଗ୍ରାହ୍ୟମିତି ।

**(୬) ଭାଷାଂତର-** (କ) 'ସେହି ଜ୍ୟୋତି ଦୃଷ୍ଟ ଓ ଶ୍ରୁତ ଅଟେ । ଏହି ପ୍ରକାର ଉପାସନା କରିବା ଉଚିତ୍' ଏହି ଶ୍ରୁତିଦ୍ୱାରା ଏବଂ 'ଯେଉଁ ଉପାସକ ଏହା ଜାଣିଛି, ସେ ଦର୍ଶନୀୟ ଓ ବିଖ୍ୟାତ ହୁଏ', ଏହି ଅଳ୍ପଫଳର ଶ୍ରବଣଶ୍ରୁତିଦ୍ୱାରା ଜ୍ୟୋତିଃ ବ୍ରହ୍ମ ହୁଏ ନାହିଁ । ନିଶ୍ଚୟ ବ୍ରହ୍ମର ଉପାସନା ମହାନ୍ ଫଳପାଇଁ ଉଦ୍ଦିଷ୍ଟ ହୁଏ । ପ୍ରାଣ ଓ ଆକାଶ ଭଳି ସମାନ ଜ୍ୟୋତି ହିଁ ବ୍ରହ୍ମ ଅଟେ ।

(ଖ) ଏହିପ୍ରକାର ଦେଖାଯାଉଥିବା ଲୋକ ନିଜବାକ୍ୟରେ ବ୍ରହ୍ମର-ବୋଧକ ଅନ୍ୟ କୌଣସି ଲିଙ୍ଗ ନୁହେଁ । ପୂର୍ବବାକ୍ୟରେ ମଧ ଚତୁଷ୍ପାଦବ୍ରହ୍ମ ନିର୍ଦ୍ଦିଷ୍ଟ ନୁହେଁ । କାରଣ- 'ସେ ସମସ୍ତପ୍ରକାର ଭୂଗାୟତ୍ରୀ ଅଟେ', ଏହି ପ୍ରକାର ଛନ୍ଦର ନିର୍ଦ୍ଦେଶ ହୁଏ ।

(ଗ) ଯଦି ପୂର୍ବବାକ୍ୟରେ କୌଣସି ପ୍ରକାର ବ୍ରହ୍ମ ନିର୍ଦ୍ଦିଷ୍ଟ ହୁଏ, ତାହେଲେ ତାହାର ଏଠାରେ ପ୍ରତ୍ୟଭିଜ୍ଞାନ ହୁଏ ନାହିଁ, କାରଣ-ଏଠାରେ 'ଏହାର ତିନିପାଦ ଅମୃତ ପ୍ରକାଶମୟ ସ୍ୱାତ୍ମରେ ରହିଛି' । ଏହି ପ୍ରକାର ଦ୍ୟୁଲୋକ ଆଧାରରୂପରେ ଶୁଣାଯାଏ ଏବଂ ଏଠାରେ ମଧ 'ଜ୍ୟୋତି ଦ୍ୟୁଲୋକଠାରୁ ଅନ୍ୟ', ଏହାପାଇଁ ପ୍ରକୃତ ଜ୍ୟୋତିର ଗ୍ରହଣ କରବା ଉଚିତ ।

(୭) ମୂଳ- (କ) ଇତି ପ୍ରାପ୍ତେ ବ୍ରୂମଃ-ଜ୍ୟୋତିରିହ ବ୍ରହ୍ମ ଗ୍ରାହ୍ୟମ୍ । କୁତଃ ? ଚରଣାଭିଧାନାତ୍ । ପାଦାଭିଧାନାଦିତ୍ୟର୍ଥଃ । ପୂର୍ବସ୍ମିନ୍ ହିଁ ବାକ୍ୟେ ଚତୁଷ୍ପାଦବ୍ରହ୍ମ ନିର୍ଦ୍ଦିଷ୍ଟମ୍ - 'ତାବାନସ୍ୟ ମହିମା ତତୋ ଜ୍ୟାୟାଂଶ୍ଚ ପୁରୁଷଃ, ପାଦୋଽସ୍ୟ ସର୍ବଭୂତାନି ତ୍ରିପାଦସ୍ୟାମୃତଂ ଦିବି', (ଛା ୩।୧୨।୬) ଇତ୍ୟନେନ ମନ୍ତ୍ରେଣ । (ଖ) ତତ୍ର ଚତୁଷ୍ପଦୋ ବ୍ରହ୍ମଣସିପାଦୋଽମୃତଂ ଦ୍ୟୁସମ୍ବନ୍ଧରୂପଂ ନିର୍ଦ୍ଦିଷ୍ଟମ୍ । ତଦେବେହ ଦ୍ୟୁସମ୍ବନ୍ଧାନ୍ନିର୍ଦ୍ଦିଷ୍ଟମିତି



ପ୍ରତ୍ୟଭିଜ୍ଞାୟତେ । ତତ୍ ପରିତ୍ୟଜ୍ୟ ପ୍ରାକୃତଂ ଜୋତିଃ କଳ୍ପୟତଃ ପ୍ରକୃତ ହାନାପ୍ରକୃତପ୍ରକ୍ରିୟେ ପ୍ରସଜେୟାତାମ୍ । (ଗ) ନ କେବଲଂ ଜ୍ୟୋତିର୍ବାକ୍ୟ ଏକ ବ୍ରହ୍ମାନୁବୃତ୍ତିଃ, ପରସ୍ୟାମପି ଶାଣ୍ଡିଲ୍ୟବିଦ୍ୟାୟାମନୁବର୍ତ୍ତିଷ୍ୟତେ ବ୍ରହ୍ମ । ତସ୍ମାଦିହ ଜ୍ୟୋତିରିତି ବ୍ରହ୍ମ ପ୍ରତିପତ୍ତବ୍ୟମ୍ ।

(୭) ଭାଷାଂତର- (କ) ଏହିପରି ପ୍ରାପ୍ତ ହୁଅନ୍ତେ- ଏହି ଶ୍ରୁତିରେ ଜ୍ୟୋତିଃ ଶବ୍ଦଦ୍ୱାରା ବ୍ରହ୍ମର ଗ୍ରହଣ କରାଯିବା ଉଚିତ । କିପରି ? ଏହାଦ୍ୱାରା ପାଦର ଅଭିଧାନ ହୁଏ । ଏହି ଗାୟତ୍ରାଖ୍ୟାବ୍ରହ୍ମର ମହିମା ଅଟେ । ଅର୍ଥାତ୍ ସମସ୍ତ ଜଗତ୍ ଏହାର ବିଭୂତି ଏବଂ ନିର୍ବିକାର ପୁରୁଷ ଏହାଠାରୁ ମଧ୍ୟ ଉତ୍କୃଷ୍ଟ । ସମସ୍ତ ଭୂତବସ୍ତୁ ଏହାର ଏକପାଦ (ଏକଅଂଶ) ବିଶିଷ୍ଟ ଏବଂ ଏହାର ତ୍ରିପାଦ ଅମୃତ ଓ ପ୍ରକାଶ ରୂପ ସ୍ୱାତ୍ମାରେ ରହିଛି' । ଏହି ମନ୍ତ୍ରଠାରୁ ଚତୁଷ୍ପାଦ ବ୍ରହ୍ମପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୁଏ ।

(ଖ) ଏଠାରେ ଚତୁଷ୍ପାଦ ବ୍ରହ୍ମର ଯେଉଁ ତ୍ରିପାଦ ଅମୃତ, ଦ୍ୟୁସମ୍ବନ୍ଧାଦି ରୂପ ନିର୍ଦ୍ଦିଷ୍ଟ ହୋଇଛି, ସେ ଦ୍ୟୁଲୋକ ସମ୍ବନ୍ଧଦ୍ୱାରା ସେଠାରେ ମଧ୍ୟ ନିର୍ଦ୍ଦିଷ୍ଟ ବୋଲି ପ୍ରତ୍ୟଭିଜ୍ଞା ହୁଏ । ଏହାକୁ ପରିତ୍ୟାଗ କରି ପ୍ରକୃତ ଜ୍ୟୋତିର କଳ୍ପନା କରୁ ଲୋକକୁ ପ୍ରକୃତରେ ହାନି ଓ ଅପ୍ରକୃତରେ ପ୍ରକ୍ରିୟା ପ୍ରସକ୍ତ ହୁଏ ।

(ଗ) ଜ୍ୟୋତିଃବାକ୍ୟରେ କେବଳ ପୂର୍ବ ବାକ୍ୟଦ୍ୱାରା ହିଁ ବ୍ରହ୍ମର ଅନୁବୃତ୍ତି ହୋଇପାରେ ବୋଲି କହିବା ସମୀଚିନ ନୁହେଁ । କିନ୍ତୁ ପୂର୍ବରୁ କହିଥିବା ଷାଣ୍ଡିଲ୍ୟବିଦ୍ୟାରେ ମଧ୍ୟ ବ୍ରହ୍ମର ଅନୁବୃତ୍ତି ହୁଏ । ତେଣୁ ଏହା ମଧ୍ୟରେ ଜ୍ୟୋତି ହିଁ ବ୍ରହ୍ମ ବୋଲି ଜାଣିବା ଉଚିତ୍ ।

(୮) ମୂଳ-(କ) ଯଦୁକ୍ତମ୍- 'ଜ୍ୟାତିର୍ଦୀପ୍ୟତେ' ଇତି ଚେତୌ ଶବ୍ଦୌ କାର୍ଯ୍ୟେ ଜ୍ୟୋତିଷି ପ୍ରସିଦ୍ଧାବିତି । ନାୟଂ ଦୋଷଃ, ପ୍ରକରଣାଦ୍ ବ୍ରହ୍ମାବଗମେ ସତ୍ୟନୟୋଃ ଶବ୍ଦୟୋରବିଶେଷକତ୍ୱାତ୍ । ଦୀପ୍ୟମାନ କାର୍ଯ୍ୟ ଜ୍ୟୋତିରୁଲାକ୍ଷିତେ ବ୍ରହ୍ମଣ୍ୟପି ପ୍ରୟୋଗସମ୍ଭବାତ୍ । 'ଯେନ ସୂର୍ଯ୍ୟସ୍ତପତି ତେଜସେଦ୍ଧଃ,' (ତୈ.ବ୍ର । ୩।୧୨।୯।୭) ଇତି ଚ ମନ୍ତ୍ରବର୍ଣ୍ଣାତ୍ । (ଖ) ଯଦ୍ ବା 'ନାୟଂ ଜ୍ୟୋତିଃ ଶବ୍ଦଶ୍ଚକ୍ଷୁବୃତ୍ତେରେବାନୁଗ୍ରାହକେ ତେଜସି ବର୍ତ୍ତତେ; ଅନ୍ୟତ୍ରାପି ପ୍ରୟୋଗଦର୍ଶନାତ୍ 'ବାୟେବାୟଂ ଜ୍ୟୋତିଷାସ୍ତେ', (ବୃ ୪।୩।୫), 'ମନୋ ଜ୍ୟୋତିର୍ଜୁଷତମ୍', (ତୈ. ବ୍ରା ୧।୬।୩।୩) ଇତି ଚ ତସ୍ମାଦ୍ୟଦ୍ୟତ୍ କସ୍ୟଚିଦବଭାସକଂ ତତ୍ତଜ୍ଜ୍ୟୋ-ତିଃଶବ୍ଦେନାଭିଧୀୟତେ । (ଗ) ତଥା ସତି ବ୍ରହ୍ମଣୋଽପି ଚୈତନ୍ୟରୂପସ୍ୟ ସମସ୍ତଜଗଦବଭାସ ହେତୁତ୍ୱାଦୁପପନ୍ନୋ ଜ୍ୟୋତିଃଶବ୍ଦଃ । 'ତମେବ

ଭାନ୍ତମନୁଭାତି ସର୍ବସ, ତସ୍ୟ ଭାସା ସର୍ବମିଦଂ ବିଭାତି' (କୌ ୨।୫।୧୫), 'ତଦ୍ଦେବା ଜ୍ୟୋତିଷାଂ ଜ୍ୟୋତିରାୟୁର୍ହୋ ପାସତେଽମୃତମ୍', (ବୃ ୪।୪।୧୬) ଇତ୍ୟାଦିଶ୍ରୁତିଭ୍ୟଶ୍ଚ ।

(୮) ଭାଷାଂତର- (କ) ଯାହା କୁହାଯାଇଅଛି- 'ଜ୍ୟୋତି' ଏବଂ 'ଦୀପ୍ୟତେ', ଏହି ଦୁଇଟି ଶବ୍ଦ କାର୍ଯ୍ୟ ଜ୍ୟୋତିରେ ପ୍ରସିଦ୍ଧ ଅଟେ-ଏହା ଦୋଷ ନୁହେଁ । କାରଣ- ପ୍ରକରଣରେ ବ୍ରହ୍ମଜ୍ଞାନ ହେଲାପରେ ଏହି ଦୁଇଟି ଶବ୍ଦ ବ୍ରହ୍ମର ବ୍ୟାବର୍ତ୍ତକ ନ ହେବା ହେତୁ ପ୍ରକାଶ୍ୟମାନ କାର୍ଯ୍ୟ ଜ୍ୟୋତିଦ୍ୱାରା ଉପଲକ୍ଷିତ ବ୍ରହ୍ମଠାରେ ଏହି ଦୁଇଟି ଶବ୍ଦର ପ୍ରୟୋଗ ସମ୍ଭବ ହୁଏ, କାରଣ- 'ତେଜୋମୟ ଚୈତନ୍ୟ ଆତ୍ମାଠାରୁ ଦୀପ୍ତ, ପ୍ରକାଶିତ ଓ ତପ୍ତ ହୋଇ ସୂର୍ଯ୍ୟ ସଂସାରକୁ ପ୍ରକାଶ କରେ', ଏହି ମନ୍ତ୍ରରେ ପ୍ରମାଣିତ ।

(ଖ) ଅଥବା ଏହି ସୂର୍ଯ୍ୟ ଶବ୍ଦ ଚକ୍ଷୁବୃତ୍ତିର ଅନୁଗ୍ରାହକ ତେଜରେ ରୂଢ଼ ନୁହେଁ, କାରଣ- 'ବାଣୀରୂପ ଜ୍ୟୋତିଦ୍ୱାରା ଏହି ପୁରୁଷ ଗାଢ଼ ଅନ୍ଧକାର ମଧ୍ୟରେ ନିଜ କାର୍ଯ୍ୟକୁ ମଧ୍ୟ କରେ', 'ଘୃତସେବନ କଲେ ବ୍ୟକ୍ତିର ମନ ପ୍ରଫୁଲ୍ଲ ରହେ' । ଏହି ପ୍ରକାର ଅନ୍ୟ ଅର୍ଥରେ ମଧ୍ୟ ଜ୍ୟୋତିଶବ୍ଦର ପ୍ରୟୋଗ ଦେଖାଯାଏ ।

(ଗ) ପୁନଶ୍ଚ ସମଗ୍ର ଜଗତର ପ୍ରକାଶକ ହେତୁ ଚୈତନ୍ୟ ରୂପବ୍ରହ୍ମରେ ମଧ୍ୟ 'ଏହି ବ୍ରହ୍ମ ପ୍ରକାଶ୍ୟମାନ ହେଲେ ସମସ୍ତେ ପ୍ରକାଶିତ ହୁଅନ୍ତି', ଏବଂ ଚନ୍ଦ୍ରାଦିଦେବଗଣ ଏହି ପୂର୍ଣ୍ଣ ବ୍ରହ୍ମର ଜ୍ୟୋତିର ଜ୍ୟୋତିରୂପରେ, ଆୟୁରୂପରେ, ଏବଂ ଅମୃତରୂପରେ ଉପାସନା କରନ୍ତୁ ।', ଇତ୍ୟାଦିଶ୍ରୁତିମାନଙ୍କଦ୍ୱାରା ଜ୍ୟୋତିଃଶବ୍ଦର ପ୍ରୟୋଗ ସଙ୍ଗତ ହୋଇଛି ।

(୯) ମୂଳ-(କ) ଯଦ୍ୟପ୍ୟୁକ୍ତମ୍-ଦ୍ୟୁମର୍ଯ୍ୟାଦତ୍ୱଂ ସର୍ବଗତସ୍ୟ ବ୍ରହ୍ମଣୋ ନୋପପଦ୍ୟତ ଇତି, ଅତ୍ରୋଚ୍ୟତେ-ସର୍ବଗତସ୍ୟାପି ବ୍ରହ୍ମଣ ଉପାସନାର୍ଥ ପ୍ରଦେଶବିଶେଷପରିଗ୍ରହୋ ନ ବିରୁଧ୍ୟତେ । (ଖ) ନନୂକ୍ତଂ ନିଷ୍ପ୍ରଦେଶସ୍ୟ ବ୍ରହ୍ମଣଃ ପ୍ରଦେଶବିଶେଷ-କଳ୍ପନା ନୋପପଦ୍ୟତେ ଇତି । ନାୟଂ ଦୋଷଃ, ନିଷ୍ପ୍ରଦେଶସ୍ୟାପି ବ୍ରହ୍ମଣ ଉପାଧି-ବିଶେଷସମ୍ବନ୍ଧାତ୍ ପ୍ରଦେଶବିଶେଷକଳ୍ପନୋପପତ୍ତେଃ । ତଥାହି 'ଆଦିତ୍ୟେ ଚକ୍ଷୁଷି ହୃଦୟେ' ଇତି । ପ୍ରଦେଶ ବିଶେଷସମ୍ବନ୍ଧୀନି ବ୍ରହ୍ମଣ ଉପାସନାନି ଶ୍ରୂୟନ୍ତେ । ଏତେନ 'ବିଶ୍ୱତଃ ପୃଷ୍ଠେଷୁ' ଇତ୍ୟାଧାରବହୁତ୍ୱମୁପପାଦିତମ୍ । (ଗ) ଯଦପ୍ୟେତଦୁକ୍ତମ୍ 'ଔଷ୍ଣ୍ୟଘୋଷାଭ୍ୟାମନୁ ମିତ୍ବେ କୌକ୍ଷିୟେ କାର୍ଯ୍ୟେ ଜ୍ୟୋତିଷ୍ୟଧ୍ୟସ୍ୟମାନତ୍ୱାତ ପରମପି ଦିବଃ କାର୍ଯ୍ୟଂ ଜ୍ୟୋତି ରେବ-ଇତି



ତଦପ୍ୟଯୁକ୍ତମ୍, ପରସ୍ୟାପି ବ୍ରହ୍ମଣୋ ନାମାଦିପ୍ରତୀକତ୍ୱବତ୍‌କୌକ୍ଷେୟଜ୍ୟୋତିଷ୍ଃ ପ୍ରହ୍ମକତ୍ୱୋପପତେଃ । 'ଦୃଷ୍ଟଞ୍ଚ ଶ୍ରୁତଂ ଚେତ୍ୟୁପାସୀତ', ଇତି ତୁ ପ୍ରତୀକଦ୍ୱାରକଂ ଦୃଷ୍ଟଞ୍ଚ ଭବିଷ୍ୟତି ।

**(୯) ଭାଷାଂତର-** (କ) ସର୍ବଗତ ବ୍ରହ୍ମକୁ ଦ୍ୟୁଲୋକପର୍ଯ୍ୟନ୍ତ ସୀମିତ ରଖିବା ଠିକ୍ ନୁହେଁ । ତାହାରି ଉପରେ କୁହାଯାଇଛି- ଉପାସନା ନିମିତ୍ତ ସର୍ବଗତ ବ୍ରହ୍ମରେ ମଧ୍ୟ ପ୍ରଦେଶ ବିଶେଷର ପରିଗ୍ରହ ବିରୁଦ୍ଧ ନୁହେଁ ।

(ଖ) ପରନ୍ତୁ ପୂର୍ବ କଥାନୁସାରେ ପ୍ରଦେଶ ବିହୀନ ବ୍ରହ୍ମରେ ପ୍ରଦେଶ ବିଶେଷର କଳ୍ପନା ଠିକ୍ ନୁହେଁ ବୋଲି ଯାହା କୁହାଯାଇଛି, ତାହା କିନ୍ତୁ ଦୋଷ ନୁହେଁ, କାରଣ- ପ୍ରଦେଶ ରହିତ ବ୍ରହ୍ମରେ ଉପାଧି ବିଶେଷର ସମ୍ବନ୍ଧ ଦ୍ୱାରା ପ୍ରଦେଶ ବିଶେଷର କଳ୍ପନା ହୁଏ ନାହିଁ । ଯଥା- 'ଆଦିତ୍ୟରେ ନେତ୍ରରେ, ହୃଦୟରେ' ଏହି ପ୍ରକାର ପ୍ରଦେଶ ବିଶେଷ ସମ୍ବନ୍ଧ ବ୍ରହ୍ମର ଉପାସନାଗୁଡ଼ିକୁ ମୁନୀମାନେ ଜାଣିଥା'ନ୍ତି । ପୁନଶ୍ଚ ଏହାଦ୍ୱାରା 'ବିଶ୍ୱତଃ ପୃଷ୍ଠେଷୁ', ସ୍ଥାନରେ ବହୁ ଆଧାରର ଉପାସନା ହେବାର ଜଣାପଡୁଛି ।

(ଗ) ଯାହା ମଧ୍ୟ କୁହାଯାଇଛି- ଉଷ୍ଣତା ଓ ଘୋଷଦ୍ୱାରା ଅନୁମିତ କୁକ୍ଷିସ୍ଥ କାର୍ଯ୍ୟ ଜ୍ୟୋତିରେ ଅଧ୍ୟସ୍ୟମାନ ହେବାଦ୍ୱାରା ଦ୍ୟୁଲୋକଠାରୁ ଅଧିକ କାର୍ଯ୍ୟ ହିଁ ଜ୍ୟୋତି ଅଟେ । ଏହା ଅପ୍ରାସଙ୍ଗି ହେବ । କାରଣ-ମାନାଦିର ପ୍ରତୀକ ସଦୃଶ କୁକ୍ଷିସ୍ଥ କାର୍ଯ୍ୟଜ୍ୟୋତି ମଧ୍ୟ ପରଂବ୍ରହ୍ମର ପ୍ରତୀକ ହୁଏ । ''ଏହା ଦେଖାଯାଏ ଓ ଶୁଣାଯାଏ, ଏହାକୁ ଉପାସନା କରିବା ଉଚିତ୍, ଏହି ପ୍ରକାର ପ୍ରତୀକଦ୍ୱାରା ବ୍ରହ୍ମ ଦୃଷ୍ଟ ଓ ଶ୍ରୁତ ହୁଏ ।

(୧୦) ମୂଳ- (କ) ଯଦ୍ୟପ୍ୟୁକ୍ତମଳ୍ପଫଳଶ୍ରବଣାନ୍ନ ବ୍ରହ୍ମେତି-ତଦନୁପପନ୍ନମ୍ । ନ ହି ଇୟତେ ଫଳାୟ ବ୍ରହ୍ମାଶ୍ରୟଣୀୟଂ ଇୟତେ ନେତି ନିୟମ ହେତୁରସ୍ତି । (ଖ) ଯତ୍ର ହି ନିରସ୍ତସର୍ବବିଶେଷସମ୍ବନ୍ଧଂ ପରଂବ୍ରହ୍ମାତ୍ମତ୍ୱେନୋପଦିଶ୍ୟତେ, ତତ୍ରୈକରୂପମେବ ଫଳଂ ମୋକ୍ଷ ଇତ୍ୟବଗମ୍ୟତେ । ଯତ୍ର ତୁ ଗୁଣବିଶେଷ ସମ୍ବନ୍ଧଂ ପ୍ରତିକବିଶେଷସମ୍ବନ୍ଧଂ ବା ବ୍ରହ୍ମଣୋପଦିଶ୍ୟତେ, ତତ୍ର ସଂସାରଗୋଚରାଣ୍ୟେବୋଚ୍ଚବଚ୍ଚାନି ଫଳାନି ଦୃଶ୍ୟନ୍ତେ- 'ଅନ୍ନାଦୌ ବସୁଦାନୋ ବିଦନ୍ତେ ବସୁ ଯ ଏବ ବେଦ' (ବୃ ୪।୪।୨୪) ଇତ୍ୟାଦ୍ୟାସୁ ଶ୍ରୁତିଷୁ । (ଗ) ଯଦ୍ୟପି ନ ସ୍ୱବାକ୍ୟେ କିଞ୍ଚିଜ୍ଜ୍ୟୋତିଷୋ ବ୍ରହ୍ମଲିଙ୍ଗମସ୍ତି, ତଥାପି ପୂର୍ବସ୍ମିନ୍ ବାକ୍ୟେ ଦୃଶ୍ୟମାନଂ ଗ୍ରହୀତବ୍ୟଂ ଭବତି । ତଦୁକ୍ତଂ ସୂତ୍ରକାରେଣ- 'ଜ୍ୟୋତଶ୍ଚରଣା ଭିଧାନାତ୍', ଇତି ।

(୧୦) ଭାଷାଂତର - (କ) ପୁନର୍ବାର କୁହାଯାଇଛି ଯେ- ଅଛ ଫଳ ଶ୍ରବଣ ଦ୍ୱାରା ଜ୍ୟୋତି ବ୍ରହ୍ମ ହୁଏ ନାହିଁ । କିନ୍ତୁ ଏହା ଅଯୌକ୍ତିକ, କାରଣ-ଏହାର ଫଳପାଇଁ ବ୍ରହ୍ମକୁ ଆଶ୍ରୟ କରିବା ଆବଶ୍ୟକ । ଏହି ଫଳପାଇଁ ଆଶ୍ରୟ ଆବଶ୍ୟକ ନୁହେଁ- ଏହିପ୍ରକାର କୌଣସି ନିୟମରେ କୌଣସି କାରଣ ନାହିଁ ।

(ଖ) ଯେଉଁଠାରେ ସମ୍ପୂର୍ଣ୍ଣ-ବିଶେଷ ସମ୍ବନ୍ଧ ଶୂନ୍ୟ କରି ପରଂବ୍ରହ୍ମର ଆତ୍ମାରୂପରେ ଉପଦେଶ ଦିଆଯାଏ, ସେଠାରେ ଏକରୂପ ତାରତମ୍ୟ ବିହୀନ ନିରତିଶୟ ମୋକ୍ଷଫଳ ହୁଏ । ଯେଉଁଠାରେ କିନ୍ତୁ ଗୁଣ ବିଶେଷ ସମ୍ବନ୍ଧ ଅଥକ ପ୍ରତୀକ- ବିଷୟ ସମ୍ବନ୍ଧ ଗ୍ରହଣ କରି ବ୍ରହ୍ମର ଉପଦେଶ ଦିଆଯାଇଛି, ସେଠାରେ ନାନା ପ୍ରକାର ଉତ୍ତମ, ମଧ୍ୟମ ଓ କନିଷ୍ଠ ସଂସାରର ବିଷୟକ ଫଳ 'ପରମେଶ୍ୱର ଜୀବରୂପରେ ଅନ୍ନଖାଏ, ଅଥବା ଦିଏ, ତେଣୁ ତାହାର ନାମ ବସୁଦାନ,' ଇତ୍ୟାଦି ଶ୍ରୁତିବାକ୍ୟଦ୍ୱାରା ଜଣାପଡ଼େ ।

(ଗ) ଯଦ୍ୟପି ନିଜ ବାକ୍ୟରେ ଜ୍ୟୋତିବିଷୟକ କିଛି ବ୍ରହ୍ମଲିଙ୍ଗ ନାହିଁ, ତଥାପି ପୂର୍ବବାକ୍ୟରେ ଦୃଶ୍ୟମାନ ବ୍ରହ୍ମଲିଙ୍ଗର ଗ୍ରହଣ କରାଯାଏ । ଅତଃ ସୂତ୍ରକାର 'ଜ୍ୟୋତିଶ୍ଚରଣାଭିଧାନାତ୍' ବୋଲି କହିଛନ୍ତି ।

(୧୧) ମୂଳ-(କ) ଅତଃ ପୁନର୍ବାକ୍ୟାନ୍ତରଗତେନ ବ୍ରହ୍ମସନ୍ନିଧାନେନ ଜ୍ୟୋତିଃ ଶ୍ରୁତିଃ ସ୍ୱବିଷୟାଚ୍ଛକ୍ୟା ପ୍ରଚ୍ୟାବୟିତୁମ୍ ? (ଖ) ନୈଷୋ ଦୋଷଃ ଯଦତଃ 'ପରୋ ଦିବୋ ଜ୍ୟୋତିଃ, ଇତି ପ୍ରଥମତରପଠିତେନ ଯଚ୍ଛବ୍ଦେନ ସର୍ବନାମ୍ନା ଦ୍ୟୁସମ୍ବନ୍ଧାତ୍ ପ୍ରତ୍ୟଭିଜ୍ଞାୟମାନେ ପୂର୍ବବାକ୍ୟ ନିର୍ଦ୍ଦିଷ୍ଟେ ବ୍ରହ୍ମଣି ସ୍ୱସାମର୍ଥ୍ୟେନ ପରାମୃଷ୍ଟେ ସତ୍ୟାର୍ଥାଜ୍ୟୋତିଃଶବ୍ଦସ୍ୟାପି ବ୍ରହ୍ମବିଷୟତ୍ୱେନୋପପତ୍ତେଃ । ତସ୍ମାଦିହଜ୍ୟୋତିରିତି ବ୍ରହ୍ମ ପ୍ରତିପତ୍ତିବ୍ୟମ୍ ।

(୧୧) ଭାଷାଂତର- (କ) ତେଣୁ ଅନ୍ୟବାକ୍ୟମାନଙ୍କର ପ୍ରାପ୍ତବ୍ରହ୍ମର ସାନ୍ନିଧ୍ୟଦ୍ୱାରା ଓ ସ୍ୱବିଷୟ ଦ୍ୱାରା ଜ୍ୟୋତିଃ ଶ୍ରୁତି କିପରି ଦୂର ହୋଇ ପାରିବ ?

(ଖ) ଏଠାରେ କିଛି ଦୋଷ ନୁହେଁ । 'ଯଦତଃ ପରୋଦିବୋ ଜ୍ୟୋତିଃ', ଏହି ବେଦବାକ୍ୟ ଦ୍ୱାରା ସର୍ବପ୍ରଥମେ ପାଠ କରାଯାଇଥିବା ସର୍ବନାମ 'ଯତ୍' ଶବ୍ଦ ନିଜଶବ୍ଦ ଦ୍ୱାରା ବ୍ରହ୍ମକୁ ପରାମର୍ଶ କରେ । ଏହାଦ୍ୱାରା ଅର୍ଥାତ୍ ଦ୍ୟୁସମ୍ବନ୍ଧଦ୍ୱାରା ପୂର୍ବବାକ୍ୟରେ ନିର୍ଦ୍ଦିଷ୍ଟ ବ୍ରହ୍ମର ପ୍ରତ୍ୟଭିଜ୍ଞାୟମାନ ହେଲେ ଜ୍ୟୋତିଃଶବ୍ଦ ମଧ୍ୟ ବ୍ରହ୍ମବିଷୟକ ହୋଇପାରେ । ଏହାପାଇଁ ଏଠାରେ ଜ୍ୟୋତି ହିଁ ବ୍ରହ୍ମ ଅଟେ ବୋଲି ଜାଣିବା ଉଚିତ୍ ।

छन्दोभिधानान्नेतिचेन्न तथा चेतोर्पणनिगदा-

त्तथा हि दर्शनम् ॥ २५ ॥

## (୧) ଛନ୍ଦୋଽଭିଧାନାନ୍ନେତି ଚେନ୍ନ ଚେତୋର୍ପଣନିଗଦାତ୍ତଥାହି ଦର୍ଶନମ୍ ॥ ୧-୧-୨୫

ଛନ୍ଦୋଽଭିଧାନାତ୍ = 'ଗାୟତ୍ରୀ ବା ଇଦଂ ସର୍ବଭୂତମ୍' । ଏହି ବେଦବାକ୍ୟରେ ଛନ୍ଦ-ଗାୟତ୍ରୀର କୁହାଯାଇଛି । ତେଣୁ ଗାୟତ୍ରୀ ହିଁ ଚତୁଷ୍ପାଦ । ନ = କିନ୍ତୁ ବ୍ରହ୍ମ ନୁହେଁ । ଇତି ଚେତ୍ ନ = ବୋଲି କହିବା ଠିକ୍ ନୁହେଁ । କାରଣ-ତଥା=ବେଦରେ ଗାୟତ୍ରୀ ଛନ୍ଦଦ୍ୱାରା ଓ ଗାୟତ୍ରୀରେ ଅନୁଗତ ବ୍ରହ୍ମ ଦ୍ୱାରା, ଚେତୋପନ୍ନନିଗଦାତ୍=ଚିତ୍ତର ଏକାଗ୍ରତାର ଅଭିଧାନ ହୁଏ । ତେଣୁ ବ୍ରହ୍ମ ଚତୁଷ୍ପାଦ ବୋଲି କୁହାଯାଉଛି ଏବଂ, ତଥାଦର୍ଶନମ୍=ଏହି ପ୍ରକାର 'ଏତଂ ହ୍ୟେବ' ଆଦିସ୍ଥଳରେ ବିକାର ଦ୍ୱାରା ବ୍ରହ୍ମର ଉପାସନା ଦେଖାଯାଏ ।

(୨) ମୂଳ-(କ) ଯଦୁକ୍ତମ୍-ପୂର୍ବସ୍ମିନ୍ନପି ବାକ୍ୟେନ ବ୍ରହ୍ମାଭିହିତମସ୍ତି । 'ଗାୟତ୍ରୀ ବା ଇଦଂ ସର୍ବଂ ଭୂତଂ ଯଦିଦଂ କିଞ୍ଚ', (ଛା ୩।୧୨।୧) ଇତି ଗାୟତ୍ରାଖ୍ୟସ୍ୟ ଛନ୍ଦସୋଽଭିହିତତ୍ୱାଦିତି ଶକ୍ୟତେ ବକ୍ତୁମ୍ ? ଯାବତା 'ତାବନସ୍ୟ ମହିମା' ଇତ୍ୟେତଦସ୍ୟାମୃଚି ଚତୁଷ୍ପାଦବ୍ରହ୍ମ ଦର୍ଶିତମ୍, ନୈତଦସ୍ତି, 'ଗାୟତ୍ରୀ ବା ଇଦଂ ସର୍ବମ୍', ଇତି ଗାୟତ୍ରୀମୁପକ୍ରମ୍ୟ ତାମେବ ଭୂତପୃଥିବୀଶରୀରହୃଦୟବାକ୍ ପ୍ରାଣପ୍ରଭେଦେ ବ୍ୟାଖ୍ୟାୟ 'ସୈଷା ଚତୁଷ୍ପଦା ଷଡ଼୍ବିଧା ଗାୟତ୍ରୀ ତଦେତଦୃଚାଭ୍ୟନୂକ୍ତଂ ତାବାନସ୍ୟ ମହିମା', ଇତି ତସ୍ୟାମେବ ବ୍ୟାଖ୍ୟାନରୂପାୟାଂ ଗାୟତ୍ର୍ୟାମୁଦାହୃତୋ ମନ୍ତ୍ରଃ କଥକସ୍ମାଦ୍ ବ୍ରହ୍ମ ଚତୁଷ୍ପାଦଭିଦଧ୍ୟାତ୍ ? (ଗ) ଯୋଽପି ତତ୍ର 'ଯଦ୍ବୈ ତଦ୍ବ୍ରହ୍ମ', (ଛା ୩।୧୧।୫,୬) ଇତି ବ୍ରହ୍ମଶବ୍ଦଃ, ସୋଽପି ଛନ୍ଦସଃ ପ୍ରକୃତତ୍ୱାଚ୍ଛନ୍ଦୋ ବିଷୟ ଏବ 'ଯ ଏତାମେବ ବ୍ରହ୍ମୋପନିଷଦଂ ବେଦ', (ଛା ୩।୧୧।୩) ଇତ୍ୟତ୍ର ହି ବେଦୋପନିଷଦମିତି ବ୍ୟାଚକ୍ଷତେ, ତସ୍ମାଚ୍ଛନ୍ଦୋଽଭିଧାନାନ୍ନ ବ୍ରହ୍ମଣଃ ପ୍ରକୃତତ୍ୱମିତି ଚେତ୍ ।

(୨) ଭାଷାଂତର- (କ) ପରନ୍ତୁ ଯାହା କୁହାଯାଇଛି- ପୂର୍ବବାକ୍ୟରେ ମଧ୍ୟ ବ୍ରହ୍ମର ଅଭିଧାନ ନୁହେଁ, କାରଣ- 'ଏହି ସବୁପ୍ରାଣୀମାନେ ଏବଂ ଏହିଠାରେ ଯେଉଁ ସାମାନ୍ୟ ଅଛି, ଏହାସବୁ ଗାୟତ୍ରୀ', ଏହି ବାକ୍ୟରେ ଗାୟତ୍ରୀନାମକ ଛନ୍ଦର ଅଭିଧାନ, କିନ୍ତୁ ଏହାର ପରିହାର କରିବା ଉଚିତ୍ ।

(ଖ) ଯେତେବେଳେ 'ଏହାର ମହିମା', ଏହି ଋକ୍‌ରେ ଚତୁଷ୍ପାଦ ବ୍ରହ୍ମ ଦେଖା ଦେଇଅଛି । କିନ୍ତୁ ଛାନ୍ଦର ଅଭିଧାନଦ୍ୱାରା ବ୍ରହ୍ମ ଅଭିହିତ ନୁହେଁ, କାରଣ- 'ଗାୟତ୍ରୀ ବା ଇଦଂ ସର୍ବମ୍', ଏହିପ୍ରକାର ଗାୟତ୍ରୀର ଉପକ୍ରମ କରି ଏହାର ଭୂତ, ପୃଥିବୀ, ଶରୀର, ହୃଦୟ ବାଣୀ ଓ ପ୍ରାଣୀ ଭେଦଦ୍ୱାରା ବ୍ୟାଖ୍ୟାନ କରି ଏହି ବ୍ୟାଖ୍ୟାନରୂପ ଗାୟତ୍ରୀ ବିଷୟରେ 'ସେ ଏହି ଗାୟତ୍ରୀ ଛଅ, ଛଅ ଅକ୍ଷରରେ ଚତୁଷ୍ପାଦ ଏବଂ ଭୂତ, ପୃଥିବୀ ପ୍ରଭୃତି ଭେଦରେ ଛଅ ପ୍ରକାର । ଏହି ସେ ଗାୟତ୍ରୀ ନାମକ ବ୍ରହ୍ମ ।'' ଏହାର ଏହି ଋକ୍‌ଦ୍ୱାରା ପ୍ରକାଶିତ ହୁଏ । 'ତାବନସ୍ୟ ମହିମା', ଉଦାହରଣରୂପରେ ଦିଆଗଲା ଯେ- ମନ୍ତ୍ର ବିନା କୌଣସି କାରଣରୁ ଚତୁଷ୍ପାଦବ୍ରହ୍ମର କେଉଁ ପ୍ରକାର ଅଭିଧାନ କରାଯିବ ?

(ଗ) ଏହି ପ୍ରକରଣରେ 'ଯଦ୍‌ବୈ ତଦ୍ ବ୍ରହ୍ମ', ଏହି ଶ୍ରୁତିରେ ଯାହା ବ୍ରହ୍ମଶବ୍ଦ, ତାହା ଛନ୍ଦ ପ୍ରକରଣରେ ପଠିତ ହେବାଦ୍ୱାରା ଛନ୍ଦ ବିଷୟକ ହୁଏ, କାରଣ- 'ଏହି ପ୍ରକାର ଏହି ବ୍ରହ୍ମୋପନିଷଦ ବେଦରହସ୍ୟମୟ ମଧୁବିଦ୍ୟାକୁ ଜାଣେ', ଏହି ଶ୍ରୁତିରେ ବ୍ରହ୍ମୋପନିଷଦକୁ ବେଦୋପନିଷଦ କୁହାଯାଏ । ଏହାପାଇଁ ଛନ୍ଦର ଅଭିଧାନଦ୍ୱାରା ବ୍ରହ୍ମ ପ୍ରକୃତ ନୁହେଁ ।

(୩) ମୂଳ-(କ) ନୈଷୋ ଦୋଷଃ, 'ତଥା ଚେତୋର୍ପଣନିଗଦାତ୍' ତଥା ଗାୟତ୍ର୍ୟାଖ୍ୟଛନ୍ଦୋଦ୍ୱାରେଣ ତଦନୁମିତେ ବ୍ରହ୍ମଣି ଚେତସୋଽର୍ପଣଂ ଚିତ୍ତସମାଧାନମନେନ ବ୍ରାହ୍ମଣବାକ୍ୟେନ ନିଗଦ୍ୟତେ, 'ଗାୟତ୍ରୀ ବା ଇଦଂ ସର୍ବମିତି । (ଖ) ନ ହ୍ୟକ୍ଷରସନ୍ନିବେଶ ମାତ୍ରାୟାଃ ଗାୟତ୍ର୍ୟାଃ ସର୍ବାତ୍ମକତ୍ୱଂ ସମ୍ଭବତି । ତସ୍ମାଦ୍ ଯଦ୍‌ଗାୟତ୍ର୍ୟାଖ୍ୟବିକାରେଽନୁଗତଂ ଜଗତ୍‌କାରଣଂ ବ୍ରହ୍ମ ତଦିହ ସର୍ବମିତ୍ୟୁଚ୍ୟତେ । ଯଥା- 'ସର୍ବଂ ଖଲ୍ୱିଦଂ ବ୍ରହ୍ମ, (ଛା ୩।୨୪।୧) ଇତି । (ଗ) କାର୍ଯ୍ୟଞ୍ଚ କାରଣାଦବ୍ୟତିରିକ୍ତମିତି ବକ୍ଷ୍ୟାମଃ- 'ତଦନନ୍ୟତ୍ୱ ମାରଂଭଣଶବ୍ଦାଦିଭ୍ୟଃ' (ବ୍ର.ସୂ ୨।୧।୨୪) ଇତ୍ୟତ୍ର । (ଘ) ତଥା ନ୍ୟତ୍ରାପି ବିକାରଦ୍ୱାରେଣ ବ୍ରହ୍ମଣ ଉପାସନଂ ଦୃଶ୍ୟତେ-'ଏତଂ ହ୍ୟେବ ବହ୍‌ବୃଚ ମହତ୍ୟୁକ୍‌ଥେ ମୀମାଂସନ୍ତ ଏତମଗ୍ନାବଧ୍ୱର୍ଯ୍ୟବ ଏତଂ ମହାବ୍ରତେ ଛନ୍ଦୋଗାଃ' (ଏ.ଆ ୩।୨।୩।୧୨) ଇତି । (ଙ) ତସ୍ମାଦସ୍ତି ଛନ୍ଦୋଽଭିଧାନୋଽପି ପୂର୍ବସ୍ମିନ୍‌ବାକ୍ୟେ ଚତୁଷ୍ପାଦବ୍ରହ୍ମ ନିର୍ଦ୍ଦିଷ୍ଟମ୍ । ତଦେବ ଜ୍ୟୋତିର୍ବାକ୍ୟେଽପି ପରାମୃଶତ ଉପାସନାନ୍ତରଂ ବିଧାନାୟ ।

(୩) ଭାଷାଂତର- (କ) ଏହିଭଳି କଥନରେ ଦୋଷ ନାହିଁ । କାରଣ- 'ତଥା ଚେତୋର୍ପଣ ନିଗଦାତ୍' । ଅର୍ଥାତ୍ ଚିତ୍ତରେ ଏକାଗ୍ରତା 'ଗାୟତ୍ରୀ ବା ଇଦଂ ସର୍ବମ୍' - ଏହି ବ୍ରାହ୍ମଣବାକ୍ୟରେ କୁହାଯାଇଛି ।



(ଖ) ବସ୍ତୁ ଓ ଅକ୍ଷର ମିଳନାତ୍ମକ ଗାୟତ୍ରୀ, ସର୍ବାତ୍ମକ ନୁହେଁ । ଏହାପାଇଁ ଗାୟତ୍ରୀ ନାମକ ବିକାରରେ ଅନୁଗତ ସଂସାର ହିଁ କାରଣ ହେତୁ ଯେଉଁ ବ୍ରହ୍ମ, ସେ ଏହି ସବୁ ଶବ୍ଦଦ୍ୱାରା କୁହାଯାଇଛି । ଯେପରିକି ସର୍ବଂ ଖଲ୍ୱିଦଂ ବ୍ରହ୍ମ' ।

(ଗ) କାର୍ଯ୍ୟ ମଧ୍ୟ କାରଣଠାରୁ ଅନନ୍ୟ ବୋଲି 'ତଦନନ୍ୟତ୍ୱମାରମ୍ଭଣ ଶବ୍ଦାଦିଭ୍ୟଃ, ଏହି ସୂତ୍ରରେ କୁହାଯାଇଛି ।

(ଘ) ଏହି ପ୍ରକାର 'ଋଗ୍‌ବେଦୀ ଏହି ମହାନ୍ ଉକ୍‌ଥ (ଶସ୍ତ୍ରବିଶେଷ) ରୂପ ଉପାଧିରେ ଅନୁଗତ ଏହି ପରମାତ୍ମାରେ ଉପାସନା କରେ । ଅର୍ଥାତ୍ ଉକ୍‌ଥର ପରମାତ୍ମ ଦୃଷ୍ଟିରେ ଉପାସନା ଦେଖାଯାଏ ।

(ଙ) ଏହାଦ୍ୱାରା ପୂର୍ବବାକ୍ୟ (ପାଦୋଽସ୍ୟ)ରେ ଛନ୍ଦର ଅଭିଧାନ ହେଲେ ମଧ୍ୟ ଚତୁଷ୍ପାଦ ବ୍ରହ୍ମ ନିର୍ଦ୍ଦିଷ୍ଟ ବୋଲି ସିଦ୍ଧ ହୁଏ । ଅନ୍ୟ ଉପାସନାର ବିଧାନ କରିବା ପାଇଁ ଜ୍ୟୋତିବାକ୍ୟରେ ମଧ୍ୟ ଏହାର ପରାମର୍ଶ ହୁଏ ।

(୪) ମୂଳ-(କ) ଅପର ଆହ-ସାକ୍ଷାଦେବା ଗାୟତ୍ରୀଶବ୍ଦେନ ବ୍ରହ୍ମ ପ୍ରତିପାଦ୍ୟତେ, ସଂଖ୍ୟାସାମାନ୍ୟାତ୍ । ଯଥା-ଗାୟତ୍ରୀଚତୁଷ୍ପଦା ଷଡ଼କ୍ଷରୈଃ ପାଦୈସ୍ତଥା ବ୍ରହ୍ମ ଚତୁଷ୍ପାତ୍ । (ଖ) ତଥାନ୍ୟତ୍ରାପି ଛନ୍ଦୋଽଭିଧାୟୀ ଶବ୍ଦୋଽର୍ଥାନ୍ତରେ ସଂଖ୍ୟାସାମାନ୍ୟାତ୍ ପ୍ରଯୁଜ୍ୟମାନୋ ଦୃଶ୍ୟତେ, ତଦ୍ୟଥା-ତେ ବା ଏତେ ପଞ୍ଚାନ୍ୟେ ପଞ୍ଚାନ୍ୟେ ଦଶ ସନ୍ତସ୍ତୁତକୃତମ୍', ଇତ୍ୟୁପକ୍ରମ୍ୟାହ-'ସୈଷା ବିରାଡ଼ନ୍ନାଦୌ', (ଛା ୪।୩।୮) ଇତି । (ଗ) ଅସ୍ମିନ୍‌ପକ୍ଷେ ବ୍ରହ୍ମୈବାଭିହିତମିତି ନ ଛନ୍ଦୋଽଭିଧାନମ୍ । ସର୍ବଥାପ୍ୟସ୍ତି ପୂର୍ବସ୍ମିନ୍ ବାକ୍ୟେ ପ୍ରକୃତଂ ବ୍ରହ୍ମ ।

**(୪) ଭାଷାଂତର-** (କ) ଅନ୍ୟ ଏକଦେଶୀ କହେ ଯେ- ଗାୟତ୍ରୀ ଶବ୍ଦ ଦ୍ୱାରା ସାକ୍ଷାତରେ ବ୍ରହ୍ମ ପ୍ରତିପାଦିତ ହୁଏ, କାରଣ-ସଂଖ୍ୟାର ସମାନତା ଅଛି । ଯେପରିକି ଗାୟତ୍ରୀ ଛଅ ଅକ୍ଷର ଯୁକ୍ତ ପାଦରେ ଚତୁଷ୍ପଦା, ସେପରି ମଧ୍ୟ ବ୍ରହ୍ମ ଚତୁଷ୍ପଦା ।

(ଖ) ଏହି ପ୍ରକାର ଅନ୍ୟସ୍ଥଳରେ ଛନ୍ଦରେ ଅଭିଧାନ କରି ଶବ୍ଦ ସଂଖ୍ୟାର ସମାନତାଦ୍ୱାରା ଅନ୍ୟ ଅର୍ଥରେ ପ୍ରଯୁକ୍ତ ହୋଇ ଦେଖାଯାଏ । ଯେପରିକି 'ଏହିମାନେ ସେମାନେ ଅଗ୍ନ୍ୟାଦି ଓ ବାୟୁ, ପାଞ୍ଚ (ବାଗାଦିଠାରୁ) ଅନ୍ୟ ଅଟନ୍ତି । ସେପରି ବାଗାଦି ଓ ପ୍ରାଣାଦିଠାରୁ ଏହିମାନେ ପାଞ୍ଚୋଟି ଅନ୍ୟ । ଏହି ପ୍ରକାର ଦଶଟି ଅଛନ୍ତି । ଏହି ଦଶଟି କୃତାକୃତାତ୍ମକ ପାଖରେ ଉପଲକ୍ଷିତ ଦ୍ୟୁତ ହୁଏ' । ଏହିପରି ଆରମ୍ଭ କରି '୯ ଏହି ଅନ୍ନ ଭକ୍ଷକ ବିରାଟ୍,' ଏହିପ୍ରକାର କୁହାଯାଇଛି ।

(ଗ) ବ୍ରହ୍ମର ମଧ୍ୟ ଅଭିଧାନ ଅଛି । କିନ୍ତୁ ଛନ୍ଦର ଅଭିଧାନ ନାହିଁ । ପୂର୍ବ ବାକ୍ୟରେ ସର୍ବଥା ବ୍ରହ୍ମ ପ୍ରକୃତ ଅଟେ ।

## भूतादिपादव्यपदेशोपपत्तेश्चैवम् ॥२६॥

## (୧) ଭୂତାଦି ପାଦବ୍ୟପଦେଶୋପପତ୍ତେଶ୍ଚୈବମ୍ ॥୧-୧-୨୬॥

ଭୂତାଦି ବ୍ୟପଦେଶୋପପତ୍ତେଃ='ଗାୟତ୍ରୀ ବା ଇଦଂ ସର୍ବଂ', ଏହି ଶ୍ରୁତି ବାକ୍ୟରେ ଭୂତାଦିପାଦମାନଙ୍କର ବ୍ୟପଦେଶ ବ୍ରହ୍ମରେ ଉପପନ୍ନ ହୁଏ । ଅନ୍ତଃ ଗାୟତ୍ରୀ ଶବ୍ଦ ଦ୍ୱାରା ଅନୁଗତବ୍ରହ୍ମର ମଧ୍ୟ ବୋଧ ହୁଏ । ଚୈବମ୍=ବିଷ୍ଟଭ୍ୟୋଽହମିଦମ୍', ଏହି ସ୍ମୃତି ମଧ୍ୟ ବ୍ରହ୍ମରେ ସର୍ବାତ୍ମତା ଦେଖାଏ ।

(୨) ମୂଳ-(କ) ଇତଶ୍ଚୈବମଭ୍ୟୁପଗନ୍ତବ୍ୟମସ୍ତି । ପୂର୍ବସ୍ମିନ୍ ବାକ୍ୟେ ପ୍ରକୃତଂ ବ୍ରହ୍ମେତି । ଯତୋ ଭୂତଦୀନ୍ ପାଦାନ୍ ବ୍ୟପଦିଶତି ଶ୍ରୁତିଃ । ଭୂତପୃଥିବୀ ଶରୀରହୃଦୟାନଂ ହି ନିର୍ଦ୍ଦିଶ୍ୟାଃ-'ସୈଷା ଚତୁଷ୍ପଦା ଷଡ଼୍‌ବିଧା ଗାୟତ୍ରୀ', ଇତି । (ଖ) ନହି ବ୍ରହ୍ମାନାଶ୍ରୟଣେ ନେୟମୃକ୍ ସମ୍ବନ୍ଧ୍ୟତେ-'ତାବାନସ୍ୟ ମହିମା', ଇତି । ଅନୟା ହି ଋଚ୍ଚ ସ୍ୱରସେନ ବ୍ରହ୍ମୈବାଭିଧୀୟତେ-'ପାଦୋଽସ୍ୟ ସର୍ବଭୂତାନି ତ୍ରିପାଦସ୍ୟାମୃତଂ ଦିବି ।' (ଛା୩।୧୨।୫) ଇତି ସର୍ବାତ୍ମତ୍ୱୋପପତ୍ତେଃ । ପୁରୁଷସୂକ୍ତେଽପୀୟମୃରାବ୍ରହ୍ମପରତୟୈବ ସମାମ୍ନାୟତେ । (ଗ) ସ୍ମୃତିଶ୍ଚ ବ୍ରହ୍ମଣଃ ସ୍ୱରୂପତାଂ ଦର୍ଶୟତି-'ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍', (ଗୀ ୨।୪୨) ଇତି 'ଯଦ୍ ବେ ତଦ୍‌ବ୍ରହ୍ମ', (ଛା ୩।୧୨।୮) ଇତି ଚ ନିର୍ଦ୍ଦେଶଃ । ଏବଂ ସତି ମୁଖ୍ୟାର୍ଥ ଉପପଦ୍ୟତେ । 'ତେ ବା ଏତେ ପଞ୍ଚ ବ୍ରହ୍ମପୁରୁଷାଃ', (ଛା ୧୩।୬) ଇତି ଚ ହୃଦୟସୁଷିଷୁ ବ୍ରହ୍ମପୁରୁଷଶ୍ରୁତିଃ ବ୍ରହ୍ମଣ ସମ୍ବନ୍ଧିତାୟାଂ ବିବକ୍ଷିତାୟାଂ ସମ୍ଭବତି । (ଘ) ତସ୍ମାଦସ୍ତି ପୂର୍ବସ୍ମିନ୍ ବାକ୍ୟେ ବ୍ରହ୍ମ ପ୍ରକୃତମ୍ । ତଦେବ ବ୍ରହ୍ମ ଜ୍ୟୋତିର୍ବାକ୍ୟେ ଦ୍ୟୁସମ୍ବନ୍ଧାତ୍ ପ୍ରତ୍ୟଭିଜ୍ଞାୟମାନଂ ପରାମୃଶ୍ୟତ ଇତି ସିଦ୍ଧମ୍ ।

(୨) ଭାଷାଂତର- (କ) ଏହି କାରଣରୁ ମଧ୍ୟ ପୂର୍ବ ବାକ୍ୟରେ ବ୍ରହ୍ମ ପ୍ରକୃତ ଅଟେ । ଏହାହିଁ ସ୍ୱୀକାର କରିବା ଉଚିତ । କାରଣ-ଶ୍ରୁତି ଭୂତାଦିପାଦଙ୍କର ବ୍ୟପଦେଶ କରେ' । ଭୂତ, ପୃଥିବୀ, ଶରୀର ଏବଂ ହୃଦୟକୁ ନିର୍ଦ୍ଦେଶ କରି ଶ୍ରୁତି- 'ସେ ଏହି ଗାୟତ୍ରୀ ଚାରିପାଦ ଯୁକ୍ତ ଓ ଛଅପ୍ରକାର', କହେ ।

(ଖ) ଯଦି ବ୍ରହ୍ମ ଗୃହୀତ ନ ହୁଏ, ତେବେ ଭୂତାଦି ଛନ୍ଦର ପାଦ ଉପପନ୍ନ ହୁଏ ନାହିଁ ଏବଂ ବ୍ରହ୍ମର ଗ୍ରହଣ ନହେଲେ ତ଼ାବାନସ୍ୟ ମହିମା' ଏହି ଋଚ୍ଚ ସମନ୍ୱିତ ହୁଏ ନାହିଁ । ବସ୍ତୁତ ଏହି ଋଚ୍ଚଦ୍ୱାରା ମୁଖ୍ୟ ରୂପରେ ବ୍ରହ୍ମର ଅଭିଧାନ ହୁଏ, କାରଣ- 'ପାଦୋଽସ୍ୟ



**ସର୍ବଭୂତାନି'**, ଏହି ପ୍ରକାର ସର୍ବାତ୍ମତା ଉପପନ୍ନ ହୁଏ । ପୁରୁଷସୂକ୍ତରେ ଏହି ଋକ୍ ବ୍ରହ୍ମପରତ୍ୱଦ୍ୱାରା ଅଭିହିତ ହୁଏ ।

(ଗ) 'ଏକ ଅଂଶରେ ଏହି ସମ୍ପୂର୍ଣ୍ଣ ଜଗତର ବ୍ୟାପ୍ତକରି ମୁଁ ରହିଛି । ଏହି ସ୍ମୃତି ମଧ୍ୟ ବ୍ରହ୍ମରେ ସର୍ବାତ୍ମତା ଦେଖାଏ । ପୂର୍ବ ବାକ୍ୟରେ ବ୍ରହ୍ମକୁ ସ୍ୱୀକାର କଲେ 'ଯେ ଏହି ତ୍ରିପାଦ ଅମୃତରୂପ ବ୍ରହ୍ମ ଅଟେ, ସେ ଏହି ଅଟେ' । ଏହି ଶ୍ରୁତି ନିର୍ଦ୍ଦେଶ ମୁଖ୍ୟାର୍ଥରେ ଉପପନ୍ନ ହୁଏ । 'ସେମାନେ ଏହି ପାଞ୍ଚ ବ୍ରହ୍ମପୁରୁଷ', ଏହି ପ୍ରକାର ହୃଦୟର ଛିଦ୍ରମାନଙ୍କରେ ବ୍ରହ୍ମପୁରୁଷ ପ୍ରତିପାଦକ ଏହି ଶ୍ରୁତି ମଧ୍ୟ ସମ୍ବନ୍ଧିତ ହୁଏ ।

(ଘ) ଏହା ବିବକ୍ଷିତ ହେଲା ପରେ ଏହା ସଙ୍ଗତ ହୁଏ ଏବଂ ଦ୍ୟୁସମ୍ବନ୍ଧରେ ପ୍ରତ୍ୟଭିଜ୍ଞାୟମାଜ ଏହି ବ୍ରହ୍ମର ଜ୍ୟୋତିର୍ବାକ୍ୟରେ ପରାମର୍ଶ ଦିଆଯାଏ ।

**उपदेशभेदान्नेतिचेन्नोभयस्मिणप्यविरोधात् ॥ २७ ॥**

## (୧) ଉପଦେଶ ଭେଦାନ୍ନେତି ଚେନ୍ନୋରୟସ୍ମିନ୍ନପ୍ୟ-ବିରୋଧାତ୍ ॥ ୧-୧-୨୭

ଉପଦେଶ ଭେଦାତ୍ = 'ତ୍ରିପାଦସ୍ୟା ମୃତଂ ଦିବି', ଏବଂ 'ଯଦତଃ ପରୋ ଦିବୋ ଜ୍ୟୋତିଃ, ଦୀପ୍ୟତେ', ଏହିପ୍ରକାର ଉପଦେଶ ଭେଦ ହୁଅନ୍ତେ; ନ=ପ୍ରକୃତ ବ୍ରହ୍ମର ପ୍ରତ୍ୟଭିଜ୍ଞାନ ହୁଏ ନାହିଁ । ଇତି ଚେନ୍ନ-ଏହା ଯଦି କହିବ, ତେବେ ମଧ୍ୟ ଏହା ଅସମୀଚୀନ, କାରଣ-ଉଭୟସ୍ମିନ୍ ଅପି=ଦୁଇବାକ୍ୟରେ ଅବିରୋଧାତ୍-ପ୍ରତ୍ୟଭିଜ୍ଞାନର ବିରୋଧ ହୁଏ ନାହିଁ ।

(୨) ମୂଳ-(କ) ଯଦ୍ୟପ୍ୟେତଦୁକ୍ତଂ ପୂର୍ବତ୍ର-'ତ୍ରିପାଦସ୍ୟାମୃତଂ ଦିବି', ଇତି ସପ୍ତମ୍ୟା ଦ୍ୟୌରାଧାରତ୍ୱେନୋପଦିଷ୍ଟା, ଇହ ପୁନଃ 'ଅଥ ଯଦତଃ ପରୋ ଦିବଃ', ଇତି ପଞ୍ଚମ୍ୟା ମର୍ଯାଦାତ୍ୱେନ, ତସ୍ମାଦୁପଦେଶଭେଦାନ୍ନ, ତସ୍ୟେହ ପ୍ରତ୍ୟଭିଜ୍ଞାନମସ୍ତୀତି, ତତ୍ ପରିହର୍ତ୍ତବ୍ୟମ୍ । (ଖ) ଅତ୍ରୋଚ୍ୟରେନାୟଂ ଦୋଷଃ, ଉଭୟସ୍ମିନ୍‌ପି ଅବିରୋଧାତ୍ । ଉଭୟସ୍ମିନ୍ନପି ସପ୍ତମ୍ୟନ୍ତେ ପଞ୍ଚମ୍ୟନ୍ତେ ଚୋପଦେଶେ ନ ପ୍ରତ୍ୟଭିଜ୍ଞାନଂ ବିରୁଧ୍ୟତେ । (ଗ) ଯଥା ଲୋକେ ବୃକ୍ଷାଗ୍ରସମ୍ବନ୍ଧୋଽପି ଶ୍ୟେନ ଉଭୟଥୋପଦିଶ୍ୟମାନୋ ଦୃଶ୍ୟତେ, ବୃକ୍ଷାଗ୍ରେ ଶ୍ୟେନୋ ବୃକ୍ଷାଗ୍ରାତ୍ ପରତଃ ଶ୍ୟେନ ଇତି ଚ । ଏବଂ ଦିବ୍ୟେବ ସଦ୍‌ବ୍ରହ୍ମ ଦିବଃ ପରମିତ୍ୟୁପଦିଶ୍ୟତେ । (ଘ) ଅପର ଆହ-ଯଥାଲୋକେ ବୃକ୍ଷାଗ୍ରେଣା-ସମ୍ବନ୍ଧୋଽପି ଶ୍ୟେନ ଉଭୟଥୋପଦିଶ୍ୟମାନୋ ଦୃଶ୍ୟତେ, ବୃକ୍ଷାଗ୍ରେ ଶ୍ୟେନୋ ବୃକ୍ଷାଗ୍ରାତ୍ ପରତଃ ଶ୍ୟେନ ଇତି

ଚ, ଏବଂ ଚ ଦିବଃ ପରମପି ସଦ୍‌ବ୍ରହ୍ମ ଦିବୀତ୍ୟୁପଦିଶ୍ୟତେ, ତସ୍ମାଦସ୍ତି ପୂର୍ବନିର୍ଦ୍ଦିଷ୍ଟସ୍ୟ ବ୍ରାହ୍ମଣ ଇହ ପ୍ରତ୍ୟଭିଜ୍ଞାନମ୍ । ଅତଃ ପରମେବ ବ୍ରହ୍ମ ଜ୍ୟୋତିଶବ୍ଦମିତି ସିଦ୍ଧମ୍ ।

(୨) ଭାଷାଂତର- (କ) ଏଠାରେ କୁହାଯାଇଛି ଯେ- 'ତ୍ରିପାଦସ୍ୟ', ଏହି ଶ୍ରୁତିବାକ୍ୟରେ ସପ୍ତମୀ ବିଭକ୍ତି ଦ୍ୱାରା 'ଦ୍ୟୁ', ଆଧାରରୂପରେ ଉପଦିଷ୍ଟ ହୁଏ, ଏବଂ 'ଅଥ ଯଦତଃ ପରୋ', ଏହି ଶ୍ରୁତିବାକ୍ୟରେ ପଞ୍ଚମୀ ବିଭକ୍ତି ଓ ମର୍ଯ୍ୟାଦାଦ୍ୱାରା ଉପଦେଶଭେଦରୁ ଏହି ବ୍ରହ୍ମର ପ୍ରତ୍ୟଭିଜ୍ଞାନ ହେଉନାହିଁ । ତେଣୁ ଏହାର ପରିହାର କରିବା ଆବଶ୍ୟକ ।

(ଖ) ଅତଏବ ଏହାପାଇଁ କୁହାଯାଇଛି ଯେ- ଏଠାରେ ଦୋଷ ନାହିଁ, କାରଣ- ବାକ୍ୟଦ୍ୱୟରେ ବିରୋଧ ନଥିବାରୁ ଦୁଇଟି ବାକ୍ୟର ସପ୍ତମ୍ୟନ୍ତ ଓ ପଞ୍ଚମ୍ୟନ୍ତ ଉପଦେଶରେ ହି ପ୍ରତ୍ୟଭିଜ୍ଞାନର ବିରୋଧ ହୁଏ ନାହିଁ ।

(ଗ) ଯେପରିକି ସଂସାରରେ ବୃକ୍ଷର ଅଗ୍ରଭାଗରେ ରହିଥିବା ଶ୍ୟେନ (ବାଜପେୟୀ) ବୃକ୍ଷର ଅଗ୍ରଭାଗରେ ବା ଅଗ୍ରଭାଗର ଅଧଃପ୍ରଦେଶରେ ଅଛି ବୋଲି ଦୁଇ ପ୍ରକାର ଉପଦେଶ ଦିଆଯାଏ, ସେପରି ମଧ୍ୟ ଦ୍ୟୁଶବ୍ଦରେ 'ଦ୍ୟୁ' ପରବର୍ତ୍ତୀ ହୋଇ ବ୍ୟବହୃତ ହୁଏ ।

(ଘ) ଅନ୍ୟମାନେ କହନ୍ତି ଯେ- ସଂସାରରେ ଯେପରି ବୃକ୍ଷର ଅଗ୍ରଭାଗ ସହିତ ଶ୍ୟେନର ସମ୍ବନ୍ଧ ନଥାଇ ମଧ୍ୟ ବୃକ୍ଷର ଅଗ୍ରଭାଗର ଉପରେ ବା ତଳେ ଶ୍ୟେନ ଅଛି ବୋଲି ବାକ୍ୟ ଦ୍ୱୟର ଉପଦେଶ କରାଯାଏ, ସେପରି ଦ୍ୟୁର ତଳେ ମଧ୍ୟ 'ଦ୍ୟୁ', ଅଛି ବୋଲି ଉପଦେଶ ଦିଆଯାଏ । ତେଣୁ ପୂର୍ବ ନିର୍ଦ୍ଦିଷ୍ଟ ବ୍ରହ୍ମର ଏଠାରେ ପ୍ରତ୍ୟଭିଜ୍ଞାନ ଅଛି । ଏହାଦ୍ୱାରା ଜ୍ୟୋତିଃଶବ୍ଦ ପରଂବ୍ରହ୍ମପରକଶବ୍ଦ ଅଟେ ।

## ११ प्रतर्दनाधिकरणम् । सू० २८ - ३१

## ପ୍ରତର୍ଦନାଧିକରଣ-୧୧

### प्राणस्तथानुगमत् ॥ २८ ॥

### (୧) ପ୍ରାଣସ୍ତଥାନୁଗମତ୍ ॥୧-୧-୨୮॥

ପ୍ରାଣଃ- 'ପ୍ରାଣୋଽସ୍ମି ପ୍ରଜ୍ଞାତ୍ମା', ଏହି ଶ୍ରୁତିରେ ପଠିତ ପ୍ରାଣଶବ୍ଦ ପରମାଣୁ ଅଟେ । କିନ୍ତୁ ବାୟୁ ନୁହେଁ । କାରଣ-ତଥା-ପୂର୍ବାପରବାକ୍ୟମାନଙ୍କର ପର୍ଯ୍ୟାଲୋଚନା କଲା ପରେ, ଅନୁଗମାତ୍-ଉକ୍ତ ଶ୍ରୁତି ବାକ୍ୟରେ ଆନନ୍ଦାଦି ପଦମାନଙ୍କର ସମନ୍ୱୟ ବ୍ରହ୍ମପରକ ହିଁ ଉପଲବ୍ଧ ହୁଏ ।

(୨) ମୂଳ- (କ) ଅସ୍ତି କୌଷୀତକି ବ୍ରାହ୍ମଣୋ ପନିଷଦୀନ୍ଦ୍ରପ୍ରତର୍ଦ୍ଦନାଖ୍ୟାୟିକା- 'ପ୍ରତର୍ଦନୋ ହିବୈ ଦୈବୋଦାସିରିନ୍ଦ୍ରସ୍ୟ ପ୍ରିୟଂ ଧାମୋପଦଗାମ ଯୁଦ୍ଧେନ ଚ ପୌରୁଷେଣ

 

ଚ', ଇତ୍ୟାର ଭ୍ୟାମ୍ନାତା । (ଖ) ତସ୍ୟାଂ ଶ୍ରୂୟତେସ ହୋବାଚ ପ୍ରାଣୋଽସ୍ମି ପ୍ରଜ୍ଞାତ୍ମା ତଂ ମମାୟୁରମୃତମିତ୍ୟୁପାସ୍ୱ' ଇତି । (ଗ) ତଥୋତ୍ତରତ୍ରାପି- 'ଅଥ ଖଲୁପ୍ରାଣ ଏବ ପ୍ରଜ୍ଞାତ୍ମେଦଂ ଶରୀରଂ ପରିଗୃହ୍ୟୋତ୍ଥାପୟତି', (କୌଷ-୧,୨,୩) ଇତି । (ଘ) ତଥା ' ନ ବାଚଂ ବିଜିଜ୍ଞାସୀତ ବକ୍ତାରଂ ବିଦ୍ୟାତ୍, ଇତି । ଅନ୍ତେ ଚ 'ସ ଏଷ ପ୍ରାଣ ଏବ ପ୍ରଜ୍ଞାତ୍ମାନନ୍ଦୋଽଜରୋଽମୃତଃ' (କୌ ୩-୮) ଇତି ।

**(୨) ଭାଷାଂତର-** (କ) 'ଦେବଦାସର ପୁତ୍ର ପ୍ରତର୍ଦନ ଯୁଦ୍ଧ ଓ ପରାକ୍ରମଦ୍ୱାରା ଇନ୍ଦ୍ରିୟର ପ୍ରିୟଧାମ ସ୍ୱର୍ଗକୁ ଗଲା', ଏହିଠାରୁ ଆରମ୍ଭ କରି କୌଷୀତକି ବ୍ରାହ୍ମଣୋପନିଷଦରେ ଇନ୍ଦ୍ର ଓ ପ୍ରତର୍ଦନର ଆଖ୍ୟାୟିକା କୁହାଯାଇଛି ।

(ଖ) ସେଠାରେ ଏହା ଇନ୍ଦ୍ର କହିଲେ- 'ମୁଁ ପୂଣ୍ୟ ପ୍ରଜ୍ଞାତ୍ମା ଅଟେ । ତେଣୁ ମୋର ଆୟୁକୁ ଅମୃତ ରୂପରେ ଉପାସନା କର', ଏହି ଶ୍ରୁତିବାକ୍ୟ ।

(ଗ) ତାପରେ ମଧ୍ୟ 'ବାଗାଦି ଇନ୍ଦ୍ରିୟମାନଙ୍କର ଶରୀର ଧାରଣ କରିବାକୁ ସାମର୍ଥ୍ୟ ନାହିଁ, ଏହା ନିଶ୍ଚିତ ହେଲାପରେ ପ୍ରଜ୍ଞାତ୍ମା ହେଉଛି ପ୍ରାଣ, ଏହା ଦେହକୁ ଅହନ୍ତାମମତା ଦ୍ୱାରା ସ୍ୱୀକାର କରି ଶୟନ ଆସନାଦି ଦ୍ୱାରା ଉପରକୁ ଉଠାଏ' ।

(ଘ) ପୁନଶ୍ଚ 'ବାଣୀକୁ ଜାଣିବା ପାଇଁ ଇଚ୍ଛା ନ କରି ବକ୍ତାକୁ ଇଚ୍ଛା କରିପାର', ଶେଷରେ 'ସେ ଏହି ପ୍ରାଣ, ଯାହା ପ୍ରଜ୍ଞାତ୍ମା, ଆନନ୍ଦ, ଅଜର ଓ ଅମୃତ' । ବୋଲି କୁହାଯାଏ ।

(୩) ମୂଳ- ତତ୍ର ସଂଶୟ-(କ) କିମିହ ପ୍ରାଣଶବ୍ଦେନ ବାୟୁମାତ୍ର ମଭିଧୀୟତେ, ଉତ ଦେବତାତ୍ମା, ଉତ ଜୀବଃ ଅଥବା ପରଂବ୍ରହ୍ମେତି । (ଖ) ନନୁ 'ଅର୍ତ ଏବ ପ୍ରାଣ,' ଇତ୍ୟତ୍ର ବର୍ଣ୍ଣିତଂ ପ୍ରାଣଶବ୍ଦସ୍ୟ ବ୍ରହ୍ମପରତ୍ୱମ୍ । ଇହାପି ବ୍ରହ୍ମଲିଙ୍ଗ ମସ୍ତି - 'ଆନନ୍ଦୋଽଜରୋଽମୃତଃ' ଇତ୍ୟାଦି । କଥମିହ ପୁନଃ ସଂଶୟ ସମ୍ଭବତି ? ଅନେକ ଲିଙ୍ଗ ଦର୍ଶନାଦି ବ୍ରୂମଃ । (ଗ) ନ କେବଳମିହ ବ୍ରହ୍ମଲିଙ୍ଗମେ-ବୋପଲଭ୍ୟତେ, ସନ୍ତି ହୀତରଲିଙ୍ଗାନ୍ୟପି-'ମାମେବ ବିଜାନୀହି', (କୌଷ-୧) ଇତୀନ୍ଦ୍ରସ୍ୟ ବଚନଂ ଦେବତାଲିଙ୍ଗମ୍ । (ଘ) ଇଦଂ ଶରୀରଂ ପରିଗୃହ୍ୟୋତ୍ ଥାପୟତୀତି ପ୍ରାଣଲିଙ୍ଗମ୍ । 'ନ ବାଚଂ ବିଜିଜ୍ଞାସୀତ ବକ୍ତାରଂ ବିଦ୍ୟାତ୍', ଇତ୍ୟାଦି ଜୀବଲିଙ୍ଗମ୍ । ଅତଃ ଉପପନ୍ନଃ ସଂଶୟଃ

**(୩) ଭାଷାଂତର-** (କ) କ'ଣ ଏଠାରେ ପ୍ରାଣଶବ୍ଦ ଦ୍ୱାରା ବାୟୁମାତ୍ର କୁହାଯାଇଛି ଅଥବା ଦେବତାତ୍ମା, କିମ୍ବା ଜୀବ, କି ପରଂବ୍ରହ୍ମ ?

(ଖ) ପରନ୍ତୁ 'ଅତଏବ ପ୍ରାଣଃ', ଏହି ସୂତ୍ରରେ ପ୍ରାଣଶବ୍ଦ ବ୍ରହ୍ମ ପରକ ବୋଲି ବର୍ଣ୍ଣନା କରାଯାଇଛି । ଏଠାରେ ମଧ୍ୟ 'ଆନନ୍ଦ, ଅଜର ଓ ଅମୃତ' ଇତ୍ୟାଦି ବ୍ରହ୍ମଲିଙ୍ଗ ଅଛି । କିନ୍ତୁ ଏଠାରେ ସଂଶୟ କିପରି ହେଲା ? ଅନେକ ଲିଙ୍ଗର ଦର୍ଶନ ଦ୍ୱାରା ଏହା ହିଁ ସଂଶୟ ସମ୍ଭବ ହୋଇଥାଏ ବୋଲି ଆମ୍ଭର ବକ୍ତବ୍ୟ ।

(ଗ)-ଏଠାରେ କେବଳ ବ୍ରହ୍ମଲିଙ୍ଗ ଉପଲବ୍ଧି ନାହିଁ, ଏହିପରି ଅନେକଙ୍କର ମଧ୍ୟ ଲିଙ୍ଗ ଅଛି । ଯେପରିକି 'ମୋତେ ଜାଣ', ବାକ୍ୟରେ ମୁଖ୍ୟ ପ୍ରାଣରେ ଲିଙ୍ଗ ଅଛି ।

(ଘ) ଏହି ଶରୀରକୁ ଗ୍ରହଣ କରି ପୁନର୍ବାର ଉତ୍ଥାପନ କରେ, 'ବାଣୀକୁ ନ ଜାଣି ବକ୍ତାକୁ ଜାଣିବା ପାଇଁ ଇଚ୍ଛା କର', ଇତ୍ୟାଦି ଜୀବଲିଙ୍ଗ ମଧ୍ୟ ଅଛି ତେଣୁ ସଂଶୟ ହେବା ଯଥାର୍ଥ ହୋଇଛି ।

(୪) ମୂଳ-(କ) ତତ୍ର ପ୍ରସିଦ୍ଧେର୍ବାୟୁ ପ୍ରାଣ ଇତି ପ୍ରାପ୍ତ ଉଚ୍ୟତେପ୍ରାଣଶବ୍ଦଂ ବ୍ରହ୍ମ ବିଜ୍ଞେୟମ୍ । କୁତଃ ତଥାଽନୁଗମାତ୍ । ତଥାହି-ପୌର୍ବାପର୍ଯ୍ୟେଣ ପର୍ଯ୍ୟାଲୋଚ୍ୟମାନେ ବାକ୍ୟ ପଦାର୍ଥାନାଂ ସମନ୍ୱୟୋ ବ୍ରହ୍ମ ପ୍ରତିପାଦନପର ଉପଲଭ୍ୟତେ । (ଖ) ଉପକ୍ରମେ ତାବତ୍ 'ବରଂ ବୃଣୀଷ୍ୱ' ଇତୀନ୍ଦ୍ରେଣୋକ୍ତଃ ପ୍ରତର୍ଦନଃ ପରମଂ ପୁରୁଷାର୍ଥଂ ବରମୁପଚିକ୍ଷେପ- 'ତ୍ୱମେବ ମେ ବୃଣୀଷ୍ୱ ଯଂ ତ୍ୱଂ ମନୁଷ୍ୟାୟ ହିତତମଂ ମନ୍ୟସେ ଇତି । (ଖ) ତସ୍ମୈ ହିତତମତ୍ୱେନୋପଦିଶ୍ୟମାନଃ ପ୍ରାଣଃ କଥଂ ପରମାତ୍ମା ନ ସ୍ୟାତ୍ ? ନ ହ୍ୟନ୍ୟତ୍ର ପରମାତ୍ମଜ୍ଞାନାତ୍ ହିତତମପ୍ରାପ୍ତିରସ୍ତି- 'ତମେବ ବିଦିତ୍ୱାଽତିମୃତ୍ୟୁମେତି, ନାନ୍ୟପନ୍ଥା ବିଦ୍ୟତେଽୟନାୟ', (ଶ୍ୱେତା ୩-୬) ଇତ୍ୟାଦିଶ୍ରୁତିଭ୍ୟଃ । (ଘ) ତଥା ସ ଯୋ ମାଂ ବେଦ ନ ହ ବୈ ତସ୍ୟ କେନଚିନ୍ କର୍ମଣାଲୋକୋ ମୀୟତେ ନ ସ୍ତେୟେନ ନ ଭ୍ରୂଣହତ୍ୟୟା, (କୌଷୀ-୧) ଇତ୍ୟାଦି ବ୍ରହ୍ମପରିଗ୍ରହେ ଘଟତେ । (ଙ) ବ୍ରହ୍ମବିଜ୍ଞାନେନ ହି ସର୍ବକର୍ମକ୍ଷୟଃ ପ୍ରସିଦ୍ଧଃ- 'କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ, (ମୁଣ୍ଡ ୧-୨-୮) ଇତ୍ୟାଦ୍ୟାସୁ ଶ୍ରୁତିଷୁ ପ୍ରଜ୍ଞାତ୍ମତ୍ୱଂ ଚ ବ୍ରହ୍ମପକ୍ଷ ଏବୋପପଦ୍ୟତେ । ନ ହ୍ୟଚେତନସ୍ୟ ବାୟୋଃ ପ୍ରଜ୍ଞାତ୍ମତ୍ୱଂ ସମ୍ଭବତି ।

(୪) ଭାଷାଂତର- (କ) ସଂଶୟ ହେଲାପରେ ପ୍ରାଣଶବ୍ଦର ବାୟୁ ବିକାର ରୂପ ମୁଖ୍ୟ ପ୍ରାଣରେ ପ୍ରସିଦ୍ଧ ହେବାରୁ ଏଠାରେ ପ୍ରାଣଶବ୍ଦ ଦ୍ୱାରା ମୁଖ୍ୟ ପ୍ରାଣର ମଧ୍ୟ ଗ୍ରହଣ ହୋଇଛି । ଏହିଭଳି ପୂର୍ବପକ୍ଷ ପ୍ରାପ୍ତ ହୁଅନ୍ତେ କୁହାଯାଇଛି ଯେ- ପ୍ରାଣଶବ୍ଦ ବ୍ରହ୍ମବାଚକ ଅଟେ । କାରଣ-ଶ୍ରୁତିଦ୍ୱାରା ଏହା ଅନୁଗମ ବା ଅବଗମ ହୁଏ । ଯେପରିକି ପୂର୍ବାପର



ବାକ୍ୟର ପର୍ଯ୍ୟାଲୋଚନା କଲାପରେ ପଦାର୍ଥମାନଙ୍କର ସମନ୍ୱୟ ବ୍ରହ୍ମପ୍ରତିପାଦନପରକ ବୋଲି ଉପଲବ୍ଧ ହୁଏ ।

(ଖ) ଆରମ୍ଭରେ ମଧ୍ୟ 'ବରଂ ବୃଣୀଷ୍ୱ' ଏହି ପ୍ରକାର ଇନ୍ଦ୍ରଙ୍କୁ କହିଲା ପରେ ପ୍ରତର୍ଦନ ପରମପୁରୁଷାର୍ଥ ରୂପକ ବରକୁ ମାଗିଥିଲେ- 'ଆପଣ ସ୍ୱୟଂ ବିଚାର କରି ମୋତେ ଏହି ବର ଦିଅନ୍ତୁ, ଯେହେତୁ ଆପଣ ମନୁଷ୍ୟ ପାଇଁ ସବୁଠାରୁ ଉତ୍କୃଷ୍ଟ ପଦାର୍ଥ ସ୍ଥିର କରିଛନ୍ତି ।

(ଗ) ସେହି ପ୍ରାଣକୁ ହିତତମ ପ୍ରାଣୀରୂପରେ ଉପଦେଶ ଦେଇଥିବାରୁ ସେ କାହିଁକି ପରମାତ୍ମା ନ ହେବ । ଏହି ପ୍ରତର୍ଦନ ନିମିତ୍ତ ସବୁଠାରୁ ବଡ଼ ହିତତମରୂପରେ ପ୍ରାପ୍ତହୁଏ ନାହିଁ । କାରଣ- 'ଏହି ପରମାତ୍ମାକୁ ଜାଣି ପୁରୁଷ ଜନ୍ମମରଣ ରୂପସଂସାରଠାରୁ ମୁକ୍ତ ହୋଇଯାଏ । ଏହାକୁ ମଧ୍ୟ ପାଇବା ପାଇଁ ପରମାତ୍ମଜ୍ଞାନଠାରୁ କୌଣସି ଭିନ୍ନ ଉପାୟ ନାହିଁ' । ଇତ୍ୟାଦି ଶ୍ରୁତିବାକ୍ୟ ।

(ଘ) ଏହିପରି ମଧ୍ୟ 'ଯେ କୌଣସି ବିଦ୍ୱାନ୍ ମୋତେ ବ୍ରହ୍ମ ସାକ୍ଷାତ୍କାର ଅନୁଭବ କରେ' । ତାହାର ମୋକ୍ଷରୂପଲୋକ କୌଣସି ଗୁଣରେ ଚୋରି ବା ଭ୍ରୂଣ ହତ୍ୟାରେ ନଷ୍ଟ ହୁଏ ନାହିଁ' । ଇତ୍ୟାଦି ଶ୍ରୁତିବାକ୍ୟ ବ୍ରହ୍ମକୁ ଗ୍ରହଣ କରିବା ଦ୍ୱାରା ଏହା ସଙ୍ଗତ ହୁଏ ।

(ଙ) 'କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ', ଇତି ଶ୍ରୁତିବାକ୍ୟ ମାନଙ୍କରେ ବ୍ରହ୍ମବିଜ୍ଞାନଦ୍ୱାରା ସମସ୍ତକର୍ମ କ୍ଷୟ ହେବାହିଁ ପ୍ରସିଦ୍ଧ ଅଟେ, ଏବଂ ପ୍ରଜ୍ଞାତ୍ମତ୍ୱର ବ୍ରହ୍ମପକ୍ଷରେ ମଧ୍ୟ ଉପନ୍ନ ହୁଏ । ଅଚେତନ ବାୟୁ ପ୍ରଜ୍ଞାତ୍ମା ହୋଇପାରେ ନାହିଁ ।

(୫) ମୂଳ-(କ) ତଥୋପସଂହାରେଽପି-'ସ ଆନନ୍ଦୋଽଜରୋଽମୃତ', ଇତ୍ୟାନନ୍ଦତ୍ୱାଦୀନି ନ ବ୍ରହ୍ମଣୋଽନ୍ୟତ୍ର ସମ୍ୟକ୍ ସମ୍ଭବନ୍ତି । 'ସ ନ ସାଧୁନା କର୍ମଣା ଭୂୟାନ ଭବତି ନୋ ଏବା ସାଧୁନା କର୍ମଣା କନୀୟାନେଷ ହ୍ୟେବ ସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଉନ୍ନିନୀଷତେ । ଏଷ ଉ ଏବାସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟୋଽଧୋ ନିନୀଷତେ' । ଇତି । (ଖ) ଏଷଃ ଲୋକାଧିପତିରେଷ ଲୋକପାଳ ଏବ ଲୋକେଶଃ, (କୌ୩-୮) ଇତି ଚ । ସର୍ବମେବ ତତ୍ ପରସ୍ମିନ୍ ବ୍ରହ୍ମଣ୍ୟା ଶ୍ରୀୟମାଣୋଽନୁଗନ୍ତୁଂ ଶକ୍ୟତେନ ମୁଖ୍ୟେ ପ୍ରାଣ । ତସ୍ମାତ୍ ପ୍ରାଣୋ ବ୍ରହ୍ମ ।

**(୫) ଭାଷାଂତର-** (କ) ଏହିପରି ଉପସଂହାରରେ 'ଆନନ୍ଦୋଽଜରୋଽମୃତ', ଏହି ପ୍ରକାର ଆନନ୍ଦତ୍ୱାଦି ବ୍ରହ୍ମଭିନ୍ନ ଅନ୍ୟଠାରେ ଭଲଭାବରେ ସମ୍ଭବ ନୁହେଁ । ଯଥା- 'ସେ ପୂଣ୍ୟ କର୍ମଦ୍ୱାରା ମହାନ୍ ହୁଏ ନାହିଁ, ଏବଂ ପାପକର୍ମଦ୍ୱାରା ନିମ୍ନକୁ ଯାଏ ନାହିଁ । ସେ ଯାହାକୁ ଏହି ଲୋକଠାରୁ ଉଚ୍ଚକୁ ନେବାକୁ ଇଚ୍ଛାକରେ, ସେ ପୁରୁଷ ଦ୍ୱାରା ପୂଣ୍ୟକର୍ମ

କରାଏ । ସେ ଯାହାକୁ ଏହି ଲୋକଠାରୁ ନିଚକୁ ନେବାକୁ ଚାହେଁ, ସେ ପୁରୁଷ ଦ୍ୱାରା ନିଚକର୍ମ କରାଏ ।'' ଇତ୍ୟାଦି ଶ୍ରୁତିବାକ୍ୟ ଗୁଡ଼ିକ ଅଛନ୍ତି ।

(ଖ) ସେମାନେ ସମସ୍ତେ ପରଂବ୍ରହ୍ମର ଆଶ୍ରୟଣ ହେବା ଦ୍ୱାରା ଠିକ୍ ଅନୁଗତ ହୁଅନ୍ତି । କିନ୍ତୁ ବାୟୁବିକାର ମୁଖ୍ୟ ପ୍ରାଣର ଆଶ୍ରୟଣ ଦ୍ୱାରା ଅନୁଗତ ହୁଅନ୍ତି ନାହିଁ । ତେଣୁ ଏହାଦ୍ୱାରା ସିଦ୍ଧ ହେଲା ଯେ- ପ୍ରାଣ ବ୍ରହ୍ମ ଅଟେ ଅର୍ଥାତ୍ ପ୍ରାଣଶବ୍ଦରେ ବ୍ରହ୍ମର ଗ୍ରହଣ ସର୍ବଦା ଠିକ୍ ଅଟେ ।

## न वक्तुरात्मोपदेशादिति चेदध्यात्म-
## स्संबन्दभूमा ह्यस्मिन् ॥ २९ ॥

## (୧) ନବକ୍ତୁରାତ୍ମୋପଦେଶାଦିତି ଚେଦଧ୍ୟାତ୍ମ ସମ୍ବନ୍ଧଭୂମା ହ୍ୟସ୍ମିନ୍ ॥୧-୧-୨୯

ନ-'ପ୍ରାଣୋଽସ୍ମି', ଏହି ଶ୍ରୁତିବାକ୍ୟରେ ଥିବା ପ୍ରାଣଶବ୍ଦ ପରଂବ୍ରହ୍ମବାଚକ ନୁହେଁ । କାରଣ-ବକ୍ତୁଃ-ବକ୍ତା ଇନ୍ଦ୍ରଦେବଙ୍କର, ଆତ୍ମୋପଦେଶାତ୍ 'ମାମେବ ବିଜାନୀହି ! ଏହାଦ୍ୱାରା ନିଜେ ଆତ୍ମାର ଉପଦେଶ କରାଉଛି । ଇତି ଚେତ୍-ବୋଲି ଯଦି କୁହାଯାଏ, ତେବେ, ଅସ୍ମିନ୍-ଏହି ଅଧ୍ୟାୟରେ ଅଧ୍ୟାତ୍ମସମ୍ବନ୍ଧ ଭୂମା-ପ୍ରାଣ ଏବ ପ୍ରଜ୍ଞାତ୍ମା-ଏହିପ୍ରକାର ପ୍ରତ୍ୟଗାତ୍ମ ସମ୍ବନ୍ଧରେ ବାହୁଲ୍ୟ ଉପଲବ୍ଧ ହୁଏ । ହି-ତେଣୁ ଏହା ବ୍ରହ୍ମର ଉପଦେଶ, କିନ୍ତୁ ଦେବତା ବିଶେଷର ଉପଦେଶ ନୁହେଁ ।

(୨) ମୂଳ-(କ) ଯଦୁକ୍ତମ୍-ପ୍ରାଣୋ ବ୍ରହ୍ମେତି', ତଦାକ୍ଷିପ୍ୟତେ, ନ ପରଂବ୍ରହ୍ମ ପ୍ରାଣଶବ୍ଦମ୍ । କସ୍ମାତ୍ ? ବକ୍ତୁରାତ୍ମୋପଦେଶାତ୍ । ବକ୍ତା ହୀନ୍ଦ୍ରୋ ନାମା କଶ୍ଚିଦ୍‌ବିଗ୍ରହବାନ୍ ଦେବତାବିଶେଷଃ ସ୍ୱମାତ୍ମାନଂ ପ୍ରତର୍ଦନାୟାଚଚକ୍ଷେ-'ମାମେବ ବିଜାନୀହି, ଇତ୍ୟୁପକ୍ରମ୍ୟ 'ପ୍ରାଣୋଽସ୍ମି ପ୍ରଜ୍ଞାତ୍ମା, ଇତ୍ୟହଙ୍କାରବାଦେନ । (ଖ) 'ସ ଏଷ ବକ୍ତୁରାତ୍ମତ୍ୱେନୋପଦିଶ୍ୟମାନଃ ପ୍ରାଣଃ କଥଂ ବ୍ରହ୍ମ ସ୍ୟାତ୍ ? ନହି ବ୍ରହ୍ମଣୋ ବକ୍ତୃତ୍ୱଂ ସମ୍ଭବତି, 'ଅବାଗମନା', (ବୃହ ୩-୮-୮) ଇତ୍ୟାଦିଶ୍ରୁତିଭ୍ୟଃ । (ଗ) ତଥା ବିଗ୍ରହସମ୍ବନ୍ଧିଭିରେବ ବ୍ରହ୍ମଣ୍ୟସମ୍ଭବଦ୍‌ଭିର୍ଧର୍ମୈରାତ୍ମାନଂ ତୁଷ୍ଟାବ- 'ତ୍ରିଶୀର୍ଷାଣଂ ତ୍ୱାଷ୍ଟ୍ରମହନମରୂନ୍ ମୁଖାନ୍ୟତୀନ୍ ଶାଲାବୃକେଭ୍ୟଃ ପ୍ରଯଚ୍ଛମ୍, ଇତ୍ୟେବମାଦିଭି ରେବ ବ୍ରହ୍ମଣ୍ୟ ସମ୍ଭବଦ୍‌ଭିଃ ପ୍ରାଣତ୍ୱଂ ଚେନ୍ଦ୍ରସ୍ୟ ବଳବତ୍ତ୍ୱପପଦ୍ୟତେ । (ଘ) 'ପ୍ରାଣୋ ବୈ ବଳମ୍, ଇତିହି ବିଜ୍ଞାୟତେ । ବଳସ୍ୟ ଚେନ୍ଦ୍ରୋ ଦେବତା ପ୍ରସିଦ୍ଧ । 'ଯା ଚ କାଚିଦ୍ ବଳପ୍ରକୃତିରନ୍ଦ୍ରକର୍ମୈବ ତତ୍', ଇତି ହି ବଦନ୍ତି ।



**(୨) ଭାଷାଂତର-** (କ) 'ପ୍ରାଣ ହି ବ୍ରହ୍ମ' ବୋଲି ଯାହା କୁହାଯାଇଛି, ତାହାକୁ ପୂର୍ବପକ୍ଷ ଆକ୍ଷେପକରି କହନ୍ତି ଯେ- 'ପ୍ରାଣ ଶବ୍ଦ ପରଂବ୍ରହ୍ମବାଚକ ନୁହେଁ, କାରଣ- ବକ୍ତା ନିଜେ ଆତ୍ମାର ଉପଦେଶ କରାଏ ଏବଂ ଏଠାରେ ବକ୍ତା ଇନ୍ଦ୍ରନାମକ କୌଣସି ଦେହଧାରୀ ଏକଦେବତା ବିଶେଷ ଅଛି । ଯଦ୍ଦ୍ୱାରା 'ମାମେବ ବିଜାନୀହି', ଏହି ବାକ୍ୟଠାରୁ ଆରମ୍ଭ କରି 'ପ୍ରାଣୋଽସ୍ମି ପ୍ରଜ୍ଞାତ୍ମା', କହି ଅହଙ୍କାରପୂର୍ବକ ଶବ୍ଦରେ ପ୍ରତର୍ଦନ ପାଇଁ ଉପଦେଶ ଦିଆହୋଇଛି ।

(ଖ) ସେ ଏହି ବକ୍ତାର ଆତ୍ମତ୍ୱରୂପରେ ଉପଦେଶ ଦେବାରୁ ପ୍ରାଣ କିପରି ବ୍ରହ୍ମ ହୋଇପାରେ ? 'ଏହା ବାଣୀ ଓ ମନରହିତ'' ଇତ୍ୟାଦି ଶ୍ରୁତିବାକ୍ୟ ଦ୍ୱାରା ବ୍ରହ୍ମରେ ବକ୍ତୃତ୍ୱର ସମ୍ବନ୍ଧ ରହେ ନାହିଁ ବୋଲି ଦେଖାଯାଏ ।

(ଗ) ଏହି ପ୍ରକାର ବ୍ରହ୍ମରେ ସମ୍ବନ୍ଧ ନ ଥିବା ଶରୀର ସମ୍ବନ୍ଧୀୟ ଧର୍ମ ଦ୍ୱାରା ଇନ୍ଦ୍ରର 'ତ୍ୱଷ୍ଟର ତିନିମୁଣ୍ଡ ବିଶ୍ୱନାମକ ପୁତ୍ରକୁ ମୁଁ ମାରିଛି, ବେଦାନ୍ତଦ୍ୱାରା ପ୍ରତିକୂଳ ହେଉଥିବା ସାଧୁମାନଙ୍କୁ ବଣର କୁକୁରଭଳି ତଡ଼ିଦେଇଛି', ଇତ୍ୟାଦି କଥାଦ୍ୱାରା ନିଜର ସ୍ତୁତି ରହିବା ହେତୁ ବଳବାନ୍ ହୋଇଥିବା ଇନ୍ଦ୍ରଠାରେ ପ୍ରାଣତ୍ୱର ଉପପନ୍ନ ହୁଏ ।

(ଘ) କାରଣ- 'ପ୍ରାଣ ହିଁ ବଳ', ଏହିବାକ୍ୟରୁ ଜଣାପଡ଼େ । ଇନ୍ଦ୍ର ବଳବାନ୍ ଦେବତା ବୋଲି ପ୍ରସିଦ୍ଧି ଅଛି । 'ଯେ କୌଣସି ବଳର କାମ ଅଟେ' ସେ ଇନ୍ଦ୍ରର କର୍ମ ଅଟେ । ଏହିଭଳି ଲୋକମାନେ କହନ୍ତି ।

(୩) ମୂଳ-(କ) ପ୍ରଜ୍ଞାତ୍ମତ୍ୱମପ୍ୟପ୍ରତିହତ ଜ୍ଞାନତ୍ୱାଦ୍ଦେବତାତ୍ମନଃ ସମ୍ଭବତି । ଅପ୍ରତିହତଜ୍ଞାନା ଦେବତା ଇତି ହି ବଦନ୍ତି । ନିଶ୍ଚିତେ ଚୈବଂ ଦେବତାତ୍ମୋପଦେଶେ ହିତତମତ୍ୱାଦିବଚନାନି ଯଥାସମ୍ଭବଂ ତଦ୍‌ବିଷୟାଣ୍ୟେବ ଯୋଜୟିତବ୍ୟାନି । ତସ୍ମାଦ୍‌ବକ୍ତୁରିନ୍ଦ୍ରସ୍ୟାତ୍ମୋପଦେଶାନ୍ନ ପ୍ରାଣୋ ବ୍ରହ୍ମେତ୍ୟାକ୍ଷପ୍ୟ ପ୍ରତି ସମାଧୀୟତେ- 'ଅଧ୍ୟାତ୍ମସମ୍ବନ୍ଧଭୂମା ହ୍ୟସ୍ମିନ୍, ଇତି । (ଖ) ଅଧ୍ୟାତ୍ମ ସମ୍ବନ୍ଧଃ ପ୍ରତ୍ୟଗାତ୍ମସମ୍ବନ୍ଧଃ, ତସ୍ୟ ଭୂମା ବାହୁଲ୍ୟମ୍, ଅସ୍ମିନ୍ନଧ୍ୟାୟେ ଉପଲଭ୍ୟତେ । 'ଯାବଦ୍ ହ୍ୟସ୍ମିନ୍ ଶରୀରେ ପ୍ରାଣୋ ବସତି, ତାବଦାୟୁ, ଇତି ପ୍ରାଣସ୍ୟୈବ ପ୍ରଜ୍ଞାତ୍ମନଃ ପ୍ରତ୍ୟରାଭୂତସ୍ୟାୟୁଷ୍ ପ୍ରଦାପସଂହାରୟୋଃ ସ୍ୱାତନ୍ତ୍ର୍ୟଂ ଦର୍ଶୟତି, ନ ଦେବତାବିଶେଷସ୍ୟ ପରାଚୀନସ୍ୟ ।

**(୩) ଭାଷାଂତର-** (କ) ଅପ୍ରତିହତ (ଅକୁଣ୍ଠିତ) ଜ୍ଞାନୀ ହେଲେ ଦେବତାତ୍ମା ମଧ୍ୟ ପ୍ରଜ୍ଞାତ୍ମା ହୁଏ । ତେଣୁ ଲୌକିକ ଓ ବୈଦିକପ୍ରୟୋଗରେ ଅପ୍ରତିହତ ଜ୍ଞାନୀ ହିଁ ଦେବତା, ବୋଲି ପ୍ରୟୋଗ ଅଛି । ଏହି ପ୍ରକାର ଦେବତାତ୍ମାର ଉପଦେଶ ନିଶ୍ଚିତ ହେଲାପରେ

ହତିତମତ୍ତ୍ୱାଦିବାକ୍ୟଗୁଡ଼ିକ ଯଥାସମ୍ଭବ ସେଥିରେ ପ୍ରୟୋଗ କରିବା ଆବଶ୍ୟକ । ତେଣୁ ବକ୍ତା ଇନ୍ଦ୍ରର ଆପ୍ତୋପଦେଶ ହେଲେ ମଧ୍ୟ ପ୍ରାଣ ବ୍ରହ୍ମ ନୁହେଁ । ଏହିପ୍ରକାର ଆକ୍ଷେପ କରି 'ଅଧ୍ୟାତ୍ମସମ୍ବନ୍ଧଭୂମା ହ୍ୟସ୍ମିନ୍' ଏହି ସୂତ୍ରରେ ଏହାର ସମାଧାନ କରାଯାଇଛି ।

(ଖ) ଏହି ଅଧ୍ୟାୟରେ ଅଧ୍ୟାତ୍ମସମ୍ବନ୍ଧ ଓ ପ୍ରତ୍ୟାଗାତ୍ମସମ୍ବନ୍ଧର ବାହୁଲ୍ୟ (ଅଧିକତା) ଏଠାରେ ଅନୁଭବ ହେଉଛି । 'ଯେପର୍ଯ୍ୟନ୍ତ ଏହି ଶରୀରରେ ପ୍ରାଣ ରହେ, ସେ ପର୍ଯ୍ୟନ୍ତ ତାହା ଆୟୁ', ଏହି ଶ୍ରୁତିବାକ୍ୟ ପ୍ରଜ୍ଞାତ୍ମା ପ୍ରତ୍ୟରାଭୂତ ପ୍ରାଣରେ ମଧ୍ୟ ଆୟୁଦେବା ଓ ନେବାର ସ୍ୱତନ୍ତ୍ରତାକୁ ଦେଖାଏ, କିନ୍ତୁ ବାହ୍ୟଦେବତାବିଶେଷରେ ଏହା ସମ୍ଭବ ନୁହେଁ ।

(୪) ମୂଳ-(କ) ତଥା'ଽସ୍ତିତ୍ୱେ ଚ ପ୍ରାଣାନାଂ ନିଃଶ୍ରେୟସମି'ତ୍ୟଧ୍ୟାତ୍ମମେବେନ୍ଦ୍ରିୟାଶ୍ରୟଂ ପ୍ରାଣଂ ଦର୍ଶୟତି । ତଥା- 'ପ୍ରାଣ ଏବ ପ୍ରଜ୍ଞାତ୍ମେଦଂ ଶରୀରଂ ପରିଗୃହ୍ୟୋତ୍ଥାପୟତି',(କୌ୩-୩) ଇତି, 'ନ ବାଚଂ ବିଜିଜ୍ଞାସୀତ ବକ୍ତାରଂ ବିଦ୍ୟାତ୍', ଇତି ଚୋପକ୍ରମ୍ୟ 'ତଦ୍ ଯଥା ରଥସ୍ୟାରେଷୁ ନେମିରର୍ପିତା ନାଭାବରା ଅର୍ପିତା ଏବମେବୈ ତା ଭୂତମାତ୍ରାଃ ପ୍ରଜ୍ଞାମାତ୍ରାସ୍ୱର୍ପିତାଃ, ପ୍ରଜ୍ଞାମାତ୍ରାଃ ପ୍ରାଣେଽର୍ପିତାଃ, ସ ଏଷ ପ୍ରାଣ ଏବ ପ୍ରଜ୍ଞାତ୍ମାନନ୍ଦୋଽଜରୋଽମୃତଃ,' ଇତି ବିଷୟେନ୍ଦ୍ରିୟବ୍ୟବହାରା ରନାଭିଭୂତଂ ପ୍ରତ୍ୟାଗାତ୍ମାନମେବୋପସଂହରତି । (ଖ) 'ସ ମ ଆତ୍ମେତି ବିଦ୍ୟାତ୍' ଇତି ଚୋପସଂହାରଃ ପ୍ରତ୍ୟଗାତ୍ମପରିଗ୍ରହେ ସାଧୁର୍ନ ପରାଚୀନ ପରିଗ୍ରହେ । (ଗ) 'ଅୟମାତ୍ମା ବ୍ରହ୍ମ ସର୍ବାନୁଭୂଃ' (ବୃହ ୨-୫-୧୯) ଇତି ଚ ଶ୍ରୁତ୍ୟନ୍ତରମ୍ । ତସ୍ମାଦଧ୍ୟାତ୍ମସମ୍ବନ୍ଧ ବାହୁଲ୍ୟାଦ୍ ବ୍ରହ୍ମୋପଦେଶ ଏବାୟଂ ନ ଦେବତାତ୍ମୋପଦେଶଃ ।

(୪) ଭାଷାଂତର- (କ) ସେହିପ୍ରକାର 'ପ୍ରାଣର ଅସ୍ତିତ୍ୱ ରହିଲେ ଇନ୍ଦ୍ରିୟଗୁଡ଼ିକର ମୁକ୍ତି ହୁଏ ଅର୍ଥାତ୍ ଏହି ଶରୀରରେ ପ୍ରାଣ ବିଦ୍ୟମାନ ରହିଲେ ଇନ୍ଦ୍ରିୟମାନଙ୍କର ସକ୍ରିୟତା ରହେ', ଏହି ଶ୍ରୁତିବାକ୍ୟ ଇନ୍ଦ୍ରିୟର ଆଶ୍ରୟ-ଅଧ୍ୟାତ୍ମ-ପ୍ରଜ୍ଞାତ୍ମାପ୍ରାଣକୁ ଦେଖାଏ । ସେପରି ମଧ୍ୟ 'ପ୍ରାଣହିଁ ପ୍ରଜ୍ଞାତ୍ମା, ସେ ଶରୀରକୁ ଗ୍ରହଣ କରି ସକ୍ରିୟ ହୋଇଉଠେ,' ଓ 'ବାଣୀକୁ ଜାଣିବାକୁ ଇଛା ନକରି ବକ୍ତାକୁ ଜାଣିପାର,' ଏହି ଶ୍ରୁତିବାକ୍ୟକୁ ଆରମ୍ଭ କରି 'ଯେପରି ରଥର ଅରରେ ପହି ଲାଗିଥାଏ, ଏବଂ ନାଭିରେ ଅର ଲାଗିଥାଏ, ସେପ୍ରକାର ଭୂତ ଏବଂ ବିଷୟ, ଜ୍ଞାନ ଓ ଇନ୍ଦ୍ରିୟଦ୍ୱାରା ସଂଯୁକ୍ତ ହୋଇଛନ୍ତି, ଜ୍ଞାନ ଓ ଇନ୍ଦ୍ରିୟଗୁଡ଼ିକ ପ୍ରାଣରେ ସଂଯୁକ୍ତ, ସେ ଏହି ପ୍ରାଣ ହିଁ ପ୍ରଜ୍ଞାତ୍ମା, ଆନନ୍ଦ, ଅଜର ଓ ଅମୃତ' ଏହିପ୍ରକାର ବିଷୟ ଓ ଇନ୍ଦ୍ରିୟଗୁଡ଼ିକ ବ୍ୟବହାରରୂପ ଅରର ନାଭିଭୂତ ପ୍ରତ୍ୟଗାତ୍ମାର ଉପସଂହାର କରେ ।



(ଖ) ସେ ମୋର ଆତ୍ମାସ୍ୱରୂପ, ତୁମେ ଜାଣ', ଏହି ଉପସଂହାର ପ୍ରତ୍ୟଗାତ୍ମାର ଗ୍ରହଣ କଲାପରେ ହିଁ ସଂଗତ ହୁଏ କିନ୍ତୁ ବାହ୍ୟଦେବତା ଗ୍ରହଣ କଲାପରେ ନୁହେଁ। କାରଣ-'ଏହି ଆତ୍ମା ସବୁର ଅନୁଭବୀ' ଏହିପ୍ରକାର ଅନ୍ୟଶ୍ରୁତି । ଏହିଠାରୁ ଏଠାରେ ପ୍ରତ୍ୟଗାତ୍ମାସମ୍ବନ୍ଧର ବାହୁଲ୍ୟ ହେବାରୁ ବ୍ରହ୍ମର ଏହା ଉପଦେଶ, କିନ୍ତୁ ଦେବତାତ୍ମାର ଉପଦେଶ ନୁହେଁ ।

## शास्त्रदृष्ट्या तुपदशो वामदेववत् ॥ ३० ॥

## ଶାସ୍ତ୍ରଦୃଷ୍ଟ୍ୟାତୂପଦେଶୋ ବାମଦେବବତ୍ ୧-୧-୩୦

**(୧) ଭାଷାଂତର-** ବକ୍ତାର ଆତ୍ମୋପଦେଶ କେଉଁପ୍ରକାର ହୁଏ ?

ବାମଦେବବତ୍=ବାମଦେବଋଷିଙ୍କ ପରି, ଶାସ୍ତ୍ରଦୃଷ୍ଟ୍ୟା=ଶାସ୍ତ୍ରଦୃଷ୍ଟିରେ, ଉପଦେଶଃ='ମାମେବ ବିଜାନୀହି,' ବାକ୍ୟରେ ବକ୍ତା ଇନ୍ଦ୍ରର ଏହି ଉପଦେଶ ପ୍ରତିଦିନ ପ୍ରତି ଯଥାର୍ଥ । ତେଣୁ 'ପ୍ରାଣୋଽସ୍ମି', ବାକ୍ୟଦ୍ୱାରା ପ୍ରାଣଶବ୍ଦ ବ୍ରହ୍ମପରକ ଅଟେ ।

(୨) ମୂଳ-(କ) ଇନ୍ଦ୍ରୋନାମ ଦେବତାତ୍ମାନଂ ସ୍ୱମାତ୍ମାନଂ ପରମାତ୍ମ ତ୍ୱେନାହମେବ ପରଂବ୍ରହ୍ମେତ୍ୟାର୍ଷେଣ ଦର୍ଶନେନ ଯଥାଶାସ୍ତ୍ରଂ ପଶ୍ୟନ୍ନୁପଦିଶତି ସ୍ମ- 'ମାମେବ ବିଜାନୀହି,' ଇତି । ଯଥା- 'ତଦ୍ଧୈତତ୍ପଶ୍ୟନ୍ନୃଷିର୍ବାମ ଦେବଃ ପ୍ରତିପେଦେଽହଂ ମନୁରଭବଂ ସୂର୍ଯ୍ୟଶ୍ଚ', ଇତି ତଦ୍ବତ୍, ତଦ୍ ଯୋ ଯୋ ଦେବାନାଂ ପ୍ରତ୍ୟବୁଧ୍ୟତ ସ ଏବ ତଦଭବତ୍', (ବୃ ୧-୪-୧୦) ଇତି ଶ୍ରୁତେଃ । (ଖ) ଯତ୍ ପୁନରୁକ୍ତଂ ମାମେବବିଜାନୀହି', ଇତ୍ୟୁକ୍ତ୍ୱାବିଗ୍ରହଧର୍ମୈରିନ୍ଦ୍ର ଆତ୍ମାନଂ ତୁଷ୍ଟାବ ତ୍ୱାଷ୍ଟ୍ରବଧାଦିଭିରିତ୍ ତତ୍ ପରିହର୍ତ୍ତବ୍ୟମ୍ । (ଗ) ଅତ୍ରୋଚ୍ୟତେ-ନ ତାବତ୍ ତ୍ୱାଷ୍ଟ୍ରବଧାଦୀନାଂ ବିଜ୍ଞେୟେନ୍ଦ୍ରସ୍ତୁତ୍ୟର୍ଥତ୍ୱେନୋପନ୍ୟାସଃ, ଯସ୍ମାଦେବଂ କର୍ମାହଂ ତସ୍ମାନ୍ମମାଂ ବିଜାନୀହୀତି । (ଘ) କଥଂ ତର୍ହି ? ବିଜ୍ଞାନସ୍ତୁତ୍ୟର୍ଥତ୍ୱେନ ଯତ୍କାରଣଂ ତ୍ୱାଷ୍ଟ୍ରବଧାଦୀନି ସାହସାନ୍ୟୁପନ୍ୟସ୍ୟ ପରେଣ ବିଜ୍ଞାନସ୍ତୁତିମନୁସନ୍ଧାତି- 'ତସ୍ୟ ମେ ତତ୍ର ଲୋମ ଚ ନ ମୀୟତେ, ସ ଯୋ ମାଂ ବେଦ ନ ହ ବୈତସ୍ୟ କେନ ଚ କର୍ମଣା ଲୋକୋ ମୀୟତେ', ଇତ୍ୟାଦିନା । (ଙ) ଏତଦୁକ୍ତଂ ଭବତି- ଯସ୍ମାଦୀଦୃଶାନ୍ୟପି କ୍ରୂରାଣି କର୍ମାଣି କୃତବତୋ ମମ ବ୍ରହ୍ମଭୂତସ୍ୟ ଲୋମାପି ନ ହିଂସ୍ୟତେ, ସ ଯୋଽନ୍ୟୋଽପି ମାଂ ବେଦ ନ ତସ୍ୟ କେନଚିଦପି କର୍ମଣା ଲୋକୋ ହିଂସ୍ୟତ ଇତି । ବିଜ୍ଞେୟଂ ତୁ ବ୍ରହ୍ମୈବ 'ପ୍ରାଣୋଽସ୍ମି ପ୍ରଜ୍ଞାତ୍ମା', ଇତି ବକ୍ଷ୍ୟମାଣମ୍ । ତସ୍ମାଦ୍ ବ୍ରହ୍ମ ବାକ୍ୟମେତତ୍ ।

(୨) ଭାଷାଂତରଂ- (କ) ଇନ୍ଦ୍ରନାମକ ଦେବତା ଆର୍ଷଦର୍ଶନଦ୍ୱାରା ନିଜେ ଆତ୍ମାକୁ ପରମାତ୍ମା ରୂପରେ 'ମୁଁ ମଧ ପରଂବ୍ରହ୍ମ', ବେଦବାକ୍ୟଦ୍ୱାରା ଯଥାଶାସ୍ତ୍ର ଜାଣିକରି ତଦନୁସାରେ 'ମାମେବ ବିଜାନୀହି', ଏହି ପ୍ରକାର ଉପଦେଶ ଦିଏ । ଯେପରିକି- 'ଏହି ବ୍ରହ୍ମକୁ ଆତ୍ମାରୂପରେ ଦେଖାଯାଉଥିବା ଋଷି ବାମଦେବ ଜାଣନ୍ତି । ମୁଁ ମନୁ ଓ ସୂର୍ଯ୍ୟ ଥିଲି', 'ଏହି ଦେବତାମାନେ ଯାହାକୁ ଜାଣିଛନ୍ତି, ସେ ତଦ୍ରୂପ ଅଟନ୍ତି', ଏହି ହିଁ ଶ୍ରୁତିବାକ୍ୟ ।

(ଖ) 'ମାମେବ ବିଜାନୀହି' ଏହି ପ୍ରକାର କହି ଇନ୍ଦ୍ର ତ୍ୱିଷ୍ଟାର ବିଶ୍ୱରୂପବଧାଦି ଦେହଧର୍ମ ଦ୍ୱାରା ନିଜର ସ୍ତୁତି ଯାହା କୁହାଗଲା, ତାହାର ପରିହାର କରିବା ଉଚିତ୍ ।

(ଗ) ତେଣୁ ଏହି ବିଷୟରେ କୁହାଯାଇଛି- ତ୍ୱଷ୍ଟାର ପୁତ୍ରାଦି ବିଶ୍ୱରୂପ ବଧାଦିର ଉପନ୍ୟାସ କରି 'ମୁଁ ଏହିଭଳି ପରାକ୍ରମୀ ଅଟେ' ତେଣୁ ମୋତେ ଜ୍ଞାନଦିଅ' ଇତ୍ୟାଦି ବିଜ୍ଞେୟ ଦେହଧାରୀ ଇନ୍ଦ୍ରର ସ୍ତୁତି ପାଇଁ ନୁହେଁ ।

(ଘ) ତାହେଲେ ସେ କାହା ପାଇଁ ? ବିଜ୍ଞାନର ସ୍ତୁତିପାଇଁ ? କାରଣ- ତ୍ୱିଷ୍ଟାପୁତ୍ରର ମରଣାଦିର ସାହସ ଉଲ୍ଲେଖ କରି ବିଜ୍ଞାନର ସ୍ତୁତି 'ସେଠାରେ ମୋପରି ପରା କ୍ରମୀର ବାଳ ମଧ ବଙ୍କା ହୁଏ ନାହିଁ,- ଏହା ହିଁ ମୋତେ ଜାଣ, ଏହାର ମୋକ୍ଷ ମଧ କୌଣସି ପ୍ରକାରେ ନଷ୍ଟ ହୁଏ ନାହିଁ', ଇତ୍ୟାଦି ଉତ୍ତର ବାକ୍ୟ ଦ୍ୱାରା ଅନୁସନ୍ଧାନ କରାଯାଏ ।

(ଙ) ସେଠାରେ ତାତ୍ପର୍ଯ୍ୟ ଯେ-ଏହି ହିଂସାତ୍ମକ କ୍ରୂରକର୍ମ କଳାପରେ ବ୍ରହ୍ମରୂପ ହୋଇଥିବା ମୋର ଏକବାଳ ମଧ ନଷ୍ଟ ହୁଏ ନାହିଁ । ଅର୍ଥାତ୍ ମୋର ବ୍ରହ୍ମରୂପତାରେ ବାଳ ମଧ ହାନି ହୁଏ ନାହିଁ । ଯେଉଁ ଲୋକ କୌଣସି ଅନ୍ୟଲୋକ ଏହି ପ୍ରକାର ମୋତେ ବ୍ରହ୍ମରୂପରେ ଜାଣେ ଅର୍ଥାତ୍ 'ମୁଁ ବ୍ରହ୍ମ ଅଟେ', ଏପରି ଅନୁଭବ କରେ, ତାହାର ମୋକ୍ଷରୂପ ସ୍ଥାନ କୌଣସି କର୍ମଦ୍ୱାରା ନଷ୍ଟ ହୁଏ ନାହିଁ । ଅତଃ 'ପ୍ରାଣୋଽସ୍ମି', ଏହି ପ୍ରକାର ବର୍ଣ୍ଣିତ ବିଜ୍ଞେୟ ବକ୍ଷ୍ୟମାଣ ହେଉଛି ବ୍ରହ୍ମ । ତେଣୁ ଏହି ବାକ୍ୟସବୁ ବ୍ରହ୍ମ ବିଷୟକ ଅଟେ ।

**जीवमुख्यप्राणलिङ्गान्नेति चेन्नोपसात्रैविध्या -**
**दाश्रितत्वादिह तद्योगात् ॥ ३१ ॥**

## (୧) ଜୀବମୁଖ୍ୟ ପ୍ରାଣଲିଙ୍ଗାନ୍ନେତି ଚେନ୍ନୋପାସାତ୍ରୈବିଧ୍ୟାଦାଶ୍ରି ତତ୍ୱାଦିହ ତଦ୍ୟୋଗାତ୍ ୧-୧-୩୧

ଜୀବମୁଖ୍ୟ ପ୍ରାଣ ଲିଙ୍ଗାତ୍- 'ବକ୍ତାରଂ ବିଦ୍ୟାତ୍', ଏହି ଶ୍ରୁତିରେ ଜୀବଲିଙ୍ଗ ଓ 'ଇଦଂ ଶରୀରଂ'-ଏହି ସ୍ଥାନରେ ପ୍ରାଣଲିଙ୍ଗ ମୁଖ୍ୟ ହେଲେ ମଧ ନ- 'ପ୍ରାଣୋଽସ୍ମି', ଏହି ବାକ୍ୟରେ



ପ୍ରାଣଶବ୍ଦରେ କେବଳ ବ୍ରହ୍ମର ବୋଧ ହୁଏ ନାହିଁ, ଅଜୀବ ଓ ମୁଖ୍ୟ ପ୍ରାଣର ମଧ୍ୟ ବୋଧ ହୁଏ । ଇତି ଚେତ୍, ନ-ଏହା ଯଦି କୁହ, ତେବେ ମଧ୍ୟ ଠିକ୍ ହେବନାହିଁ, କାରଣ-ଏପରି ହେଲେ ତିନୋଟି ଉପାସନା ସ୍ୱୀକାର କରିବାକୁ ପଡ଼ିବ । ଉପକ୍ରମ ଓ ଉପସଂହାର ଦ୍ୱାରା ଏକ ବାକ୍ୟତା ଅବଗତ ହୁଏ । ଆଶ୍ରିତତ୍ୱାତ୍-'ଏବଂ ପ୍ରାଣ ଇତି ହୋବାଚ', ଇତ୍ୟାଦି ସ୍ଥାନରେ ବ୍ରହ୍ମଲିଙ୍ଗ ହେବାର କାରଣ-ପ୍ରାଣଶବ୍ଦର ଅର୍ଥଂବ୍ରହ୍ମସ୍ୱୀକାର କରାଯାଇଛି । ଇହ-ଏହି ବେଦବାକ୍ୟରେ ମଧ୍ୟ, ତଦ୍ୟୋଗାତ୍-ହିତତମତ୍ୱାଦି ବ୍ରହ୍ମଲିଙ୍ଗର ଯୋଗହୁଏ, ପ୍ରାଣଶବ୍ଦଦ୍ୱାରା ଏଠାରେ ବ୍ରହ୍ମର ଉପଦେଶ ଜ୍ଞାତ ହୁଏ ।

(୨) ମୂଳ-(କ) ଯଦ୍ୟପ୍ୟଧ୍ୟାତ୍ମସମ୍ବନ୍ଧ ଭୂମଦର୍ଶନାନ୍ନ ପରାଚୀନସ୍ୟ ଦେବତାତ୍ମନ ଉପଦେଶଃ, ତଥାପି ନ ବ୍ରହ୍ମବାକ୍ୟଂ ଭବିତୁମର୍ହତି । କୁତଃ ? ଜୀବଲିଙ୍ଗାନ୍ ମୁଖ୍ୟପ୍ରାଣଲିଙ୍ଗାଚ୍ଚ । (ଖ) ଜୀବସ୍ୟ ତାବଦସ୍ମିନ୍ ବାକ୍ୟେ ବିସ୍ପଷ୍ଟଂ ଲିଙ୍ଗମୁପଲଭ୍ୟତେ- 'ନ ବାଚଂ ବିଜିଜ୍ଞାସୀତ ବକ୍ତାରଂ ବିଦ୍ୟାତ୍', ଇତ୍ୟାଦି । ଅତ୍ର ହି ବାଗାଦିଭିଃ କରଣୈର୍ବ୍ୟାପୃତସ୍ୟ କାର୍ଯ୍ୟକାରଣାଧ୍ୟକ୍ଷସ୍ୟ ଜୀବସ୍ୟ ବିଜ୍ଞେୟତ୍ୱମଭିଧୀୟତେ । (ଗ) ତଥା ମୁଖ୍ୟପ୍ରାଣଲିଙ୍ଗମପି-'ଅଥ ଖଲୁ ପ୍ରାଣ ଏବ ପ୍ରଜ୍ଞାତ୍ମେଦଂ ଶରୀରଂ ପରିଗୃହ୍ୟୋତ୍-ଥାପୟତି', ଇତି ଶରୀର ଧାରଣଞ୍ଚ ମୁଖ୍ୟପ୍ରାଣସ୍ୟ ଧର୍ମଃ, ପ୍ରାଣସମ୍ବାଦେ ବାଗାଦୀନ୍ ପ୍ରାଣାନ୍ ପ୍ରକୃତ୍ୟ-'ତାନ୍ୱରିଷ୍ଠଃ ପ୍ରାଣ ଉବାଚ ମା ମୋହମାପଦ୍ୟଥାହମେବୈତତ୍ ପଞ୍ଚଧାତ୍ମାନଂ ପ୍ରବିଭଜ୍ୟୈତଦ୍ବାଣମବଷ୍ଟଭ୍ୟ ବିଧାରୟାମି', (ପ୍ର ୨-୩) ଇତି ଶ୍ରବଣାତ୍ । (ଘ) ତେ ତୁ 'ଇମଂ ଶରୀରଂ ପରିଗୃହ୍ୟ', ଇତି ପଠନ୍ତି । 'ତେଷାମିମଂ ଜୀବମିନ୍ଦ୍ରିୟଗ୍ରାମଂ ବା ପରିଗୃହ୍ୟ', ଶରୀରମୁତ୍ଥାପୟତୀତି ବ୍ୟାଖ୍ୟେୟମ୍ ।

(୨) ଭାଷାଂତର- (କ) ଯଦ୍ୟପି ଅଧ୍ୟାତ୍ମସମ୍ବନ୍ଧରେ ଅଧିକତା ଦେଖାଇ ଦେଲେ ବାହ୍ୟ ଦେବତାତ୍ମାର ଉପଦେଶ ହୁଏ ନାହିଁ । ତାହେଲେ ଏହି ପ୍ରାଣବାକ୍ୟ କେବଳ ବ୍ରହ୍ମ ବିଷୟକ ହୁଏ ନାହିଁ, କାରଣ-ଏଠାରେ ଜୀବଲିଙ୍ଗ ଓ ମୁଖ୍ୟ ପ୍ରାଣଲିଙ୍ଗ ଉପଲବ୍ଧ ହୁଏ ।

(ଖ) 'ନ ବାଚଂ ବିଜିଜ୍ଞାସୀତଂ ବକ୍ତାରଂ ବିଦ୍ୟାତ୍', ଇତ୍ୟାଦି ବାକ୍ୟରେ ଜୀବଲିଙ୍ଗ ସ୍ପଷ୍ଟଭାବରେ ଉପଲବ୍ଧ ହୁଏ, କାରଣ-ଏହି ବାଣୀ ପ୍ରଭୃତି ଇନ୍ଦ୍ରିୟ ଦ୍ୱାରା ବ୍ୟାପାର କରି ଶରୀର ଓ ଇନ୍ଦ୍ରିୟମାନଙ୍କର ଅଧ୍ୟକ୍ଷ ସ୍ୱାମୀ ଜୀବ ବିଜ୍ଞେୟ ରୂପରେ ଅଭିହିତ ହୁଏ ।

(ଗ) ଏହି ପ୍ରକାର ଅଥ ଖଲୁ ପ୍ରାଣ-'ପ୍ରାଣ ନିଶ୍ଚୟ ପ୍ରଜ୍ଞାତ୍ମା', ଏହି ଶରୀରକୁ ଗ୍ରହଣ କରି ଉଠାଏ' । ଏହି ବାକ୍ୟରେ ମୁଖ୍ୟ ପ୍ରାଣର ମଧ୍ୟ ଲିଙ୍ଗ (ଜ୍ଞାପନ) ହୁଏ । କାରଣ-ଶରୀର

ଧାରଣ କରିବା ମୁଖ୍ୟପ୍ରାଣର ଧର୍ମ ଅଟେ । ପ୍ରାଣସମ୍ବାଦରେ ବାଣୀ ଇତ୍ୟାଦି ପ୍ରାଣ ଓ ଇନ୍ଦ୍ରିୟମାନଙ୍କୁ ପ୍ରସ୍ତୁତ କରି 'ଅତ୍ୟନ୍ତ ଶ୍ରେଷ୍ଠ ପ୍ରାଣ ଇନ୍ଦ୍ରିୟମାନଙ୍କୁ କହିଲା- 'ତୁମେ ମୋର ଅଭିମାନକୁ ରଖନାହିଁ' କାରଣ-ମୁଁ ତୁମ୍ଭଙ୍କୁ ପାଞ୍ଚ ପ୍ରକାର ବିଭକ୍ତି କରି ଏହି ଶରୀରକୁ ଆଲମ୍ବନ ଦେଇ ଧାରଣ କରିଛି' । ଏହି ଶ୍ରୁତି ବାକ୍ୟ ଶୁଣାଯାଏ ।

(ଘ) 'ଇମଂ ଶରୀରଂ ସ୍ଥଳରେ ଇଦଂ ଶରୀରଂ ସ୍ୱୀକାର କରାଯାଇଛି । ଏହି ମତରେ ଜୀବ, ଅଥବା ଇନ୍ଦ୍ରିୟ ସମୂହକୁ ଗ୍ରହଣ କରି ଶରୀରକୁ ଉଠାଏ- ଏହିପରି ବ୍ୟାଖ୍ୟା କରିବା ଉଚିତ ।

(୩) ମୂଳ-(କ) ପ୍ରଜ୍ଞାତ୍ମତ୍ୱମପି ଜୀବେ ତାବଚ୍ଚେତନତ୍ୱାଦୁପପନ୍ନମ୍ । ମୁଖ୍ୟେଽପି ପ୍ରାଣେପ୍ରଜ୍ଞାସାଧନପ୍ରାଣାନ୍ତରାଶ୍ରୟତ୍ୱାଦୁପପନ୍ନମେବ । (ଖ) ଜୀବମୁଖ୍ୟପ୍ରାଣ ପରିଗ୍ରହେ ଚ ପ୍ରାଣପ୍ରଜ୍ଞାତ୍ମନୋଃ ସହବୃତ୍ତିତ୍ୱେନାଭେଦନିର୍ଦ୍ଦେଶଃ, ସ୍ୱରୂପେଣ ଚ ଜୀବଭେଦନିର୍ଦ୍ଦେଶଃ ଇତ୍ୟୁଭୟଥାପି ନିଦେଶ ଉପପଦ୍ୟତେ- 'ଯୋ ବୈ ପ୍ରାଣଃ ସା ପ୍ରଜ୍ଞା, ଯା ବୈ ପ୍ରଜ୍ଞା ସଃ ପ୍ରାଣଃ ସହ ହ୍ୟେତାବସ୍ମିନ୍ ଶରୀରେ ବସତଃ ସହୋତ୍କ୍ରାମତଃ' ଇତି । (ଗ) ବ୍ରହ୍ମପରିଗ୍ରହେ ତୁ କିଂ କସ୍ମାଦ୍‌ଭିଦ୍ୟତେ ? ତସ୍ମାଦିହ ଜୀବମୁଖ୍ୟ ପ୍ରାଣଯୋରନ୍ୟତର ଉଭୌ ବା ପ୍ରତୀୟେୟାତଂ ନ ବ୍ରହ୍ମେତି ଚେତ୍ ।

**(୩) ଭାଷାଂତର-** (କ) ଚେତନ ହେବାରୁ ଜୀବପାଖରେ ପ୍ରଜ୍ଞାତ୍ମତ୍ୱ ମଧ୍ୟ ଯୁକ୍ତ ହୁଏ । ପ୍ରଜ୍ଞା (ଜ୍ଞାନ)ରୁ ସାଧନଭୂତ ଅନ୍ୟ ଇନ୍ଦ୍ରିୟମାନଙ୍କର ଆଶ୍ରୟ ହେବା ଦ୍ୱାରା ମୁଖ୍ୟ ପ୍ରାଣରେ ମଧ୍ୟ ପ୍ରଜ୍ଞାତ୍ମତ୍ୱ ଉପପନ୍ନ ହୁଏ ।

(ଖ) ଯଦି ପ୍ରାଣଶବ୍ଦର ଅର୍ଥ ଜୀବ ଓ ମୁଖ୍ୟ ପ୍ରାଣକୁ ସ୍ୱୀକାର କରାଯାଏ, ତେବେ ପ୍ରାଣ ଓ ପ୍ରଜ୍ଞାତ୍ମାର ଏକ ଶରୀରରେ ଏକାଠି ରହିବା ଦ୍ୱାରା ଅଭେଦ ନିର୍ଦ୍ଦେଶ ଓ ସ୍ୱରୂପରେ ଭେଦନିର୍ଦ୍ଦେଶ ଭାବରେ ଦୁଇ ପ୍ରକାର ଭେଦନିର୍ଦ୍ଦେଶ ଉପପନ୍ନ ହୁଏ । କାରଣ- 'ଯାହା ପ୍ରାଣ, ତାହା ପ୍ରଜ୍ଞା' ଯାହା ପ୍ରଜ୍ଞା, ତାହା ପ୍ରାଣ । ଏହି ଦୁଇଟି ଜଣ ନିଶ୍ଚିତ ଭାବରେ ଶରୀରରେ ମିଶିକରି ରହନ୍ତି ଏବଂ ମିଶିକରି ବାହାରି ଯାଆନ୍ତି' ବୋଲି ଶ୍ରୁତିବାକ୍ୟ ଅଛି ।

(ଗ) ଯଦି ପ୍ରାଣଶବ୍ଦର ଅର୍ଥ ବ୍ରହ୍ମ ବୋଲି ସ୍ୱୀକାର କରାଯାଏ, ତେବେ ଏହା ପ୍ରଶ୍ନ ହୋଇପାରେ ଯେ-କିଏ କାହାଠାରୁ ଭିନ୍ନହୁଏ ? ସେହି ହେତୁ ଜୀବ ଓ ମୁଖ୍ୟ ପ୍ରାଣ ଏହି ଦୁଇଟିରେ କୌଣସି ଏକ ବା ଦୁଇଟି ପ୍ରାଣ ଶବ୍ଦଦ୍ୱାରା ପ୍ରତୀତ ହୁଏ, କିନ୍ତୁ ବ୍ରହ୍ମରେ ପ୍ରତୀତ ହୁଏ ନାହିଁ ବୋଲି ପୂର୍ବପକ୍ଷର ମତ ।



(୪) ମୂଳ-(କ) ନୈତଦେବମ୍-ଉପାସନାତ୍ରୈବିଧ୍ୟାତ୍ । ଏବଂ ସତି ତ୍ରିବିଧମୁପାସନଂ ପ୍ରସଜ୍ୟେତ-ଜୀବୋପାସନଂ ମୁଖ୍ୟପ୍ରାଣୋପାସନଂ, ବ୍ରହ୍ମୋପାସନଂ ଚେତି । ନ ଚୈତଦେକସ୍ମିନ୍ ବାକ୍ୟେଽଭ୍ୟୁପଗନ୍ତୁଂ ଯୁକ୍ତମ୍, ଉପକ୍ରମୋପସଂହାରାଭ୍ୟାଂ ହି ବାକ୍ୟୈକତ୍ୱମବଗମ୍ୟତେ । (ଖ) 'ମାମେବ ବିଜାନୀହି', ଇତ୍ୟୁପକ୍ରମ୍ୟ 'ପ୍ରାଣୋଽସ୍ମି'ପ୍ରଜ୍ଞାତ୍ମା ତଂ ମମାୟୁରମୃତମିତ୍ୟୁପାସ୍ସ୍ବ ଇତ୍ୟୁକ୍ତ୍ୱା, ଅନ୍ତେ ଚ ସ ଏଷ ପ୍ରାଣ ଏବ ପ୍ରଜ୍ଞାତ୍ମାନନ୍ଦୋଽଜରୋଽମୃତଃ', ଇତ୍ୟେକରୂପାବୁପକ୍ରମୋପସଂହାରୌ ଦୃଶ୍ୟେତେ । ତତ୍ରାର୍ଥୈକତ୍ୱଂ ଯୁକ୍ତମା ଶ୍ରୟିତୁମ୍ । (ଗ) ନ ଚ ବ୍ରହ୍ମଲିଙ୍ଗମନ୍ୟପରତେନ ପରିଣେତୁଂ ଶକ୍ୟମ୍ । ଦଶାନାଂ ଭୂତମାତ୍ରାଣାଞ୍ଚ ବ୍ରହ୍ମଣୋଽନ୍ୟତ୍ରାର୍ପଣାନୁପପତ୍ତେଃ ଆଶ୍ରିତତ୍ୱାଚ୍ଚାନ୍ୟତ୍ରାପି ବ୍ରହ୍ମଲିଙ୍ଗବଶାତ୍ ପ୍ରାଣଶବ୍ଦସ୍ୟ ବ୍ରହ୍ମଣି ପ୍ରବୃତ୍ତେଃ । ଇହାପି ଚ ହିତତମୋପନ୍ୟାସାଦିବ୍ରହ୍ମଲିଙ୍ଗଯୋଗାଦ୍ ବ୍ରହ୍ମୋପଦେଶ ଏବାୟମିତି ଗମ୍ୟତେ । (ଘ) ଯତ୍ତୁ ମୁଖ୍ୟପ୍ରାଣଲିଙ୍ଗ ଦର୍ଶିତମ୍-'ଇଦଂ ଶରୀରଂ ପରିଗୃହ୍ୟୋ ତ୍ଥାପୟତି', ଇତିତଦସତ୍, ପ୍ରାଣବ୍ୟାପାରସ୍ୟାପି ପରମାତ୍ମାୟତତ୍ୱାତ୍ ପରମାତ୍ମନ୍ୟୁପଚରିତୁଂ ଶକ୍ୟତ୍ୱାତ୍ 'ନ ପ୍ରାଣେନ ନା ପାନେନ ମର୍ତ୍ତ୍ୟୋ ଜୀବତି କଶ୍ଚନ । ଇତରେଣ ତୁ ଜୀବନ୍ତି ଯସ୍ମିନ୍ନେତା ବୁପାଶ୍ରିତୌ', (କା ୦-୨-୫-୫) ଇତି ଶ୍ରୁତେଃ ।

(୪) **ଭାଷାଂତର-** (କ) କିନ୍ତୁ ଏହିଭଳି ହେବାରେ କୌଣସି ଯଥାର୍ଥତା ନାହିଁ, କାରଣ-ଉପାସନା ତିନି ପ୍ରକାର । ୧-ଜୀବୋପାସନା, ୨-ମୁଖ୍ୟ ପ୍ରାଣୋପାସନା, ୩-ବ୍ରହ୍ମୋପାସନା-ଏହି ଭେଦରେ ତିନି ପ୍ରକାର ଉପାସନା ପ୍ରସିଦ୍ଧ । କିନ୍ତୁ ଗୋଟିଏ ବାକ୍ୟରେ ଏହା ସବୁ ସ୍ୱୀକାର କରିବା ଠିକ୍ ନୁହେଁ, କାରଣ-ଉପକ୍ରମ ଓ ଉପସଂହାର ଦ୍ୱାରା ଏକ ବାକ୍ୟତା ଅବଗତ ହୁଏ ।

(ଖ) 'ମାମେବ ବିଜାନୀହି,' ଏହିପରି ଆରମ୍ଭ କରି 'ସେ ଏହି ପ୍ରାଣ ପ୍ରଜ୍ଞାତ୍ମା, ଆନନ୍ଦ, ଅଜର ଓ ଅମୃତ ଅଟେ' । ଏହି ପ୍ରକାର ଉପକ୍ରମ ଓ ଉପସଂହାର ଦୃଷ୍ଟ ହୁଏ । ତେଣୁ ଏଠାରେ ବ୍ରହ୍ମରୂପ ଏକ ଅର୍ଥର ଆଶ୍ରୟ କରିବା ଠିକ୍ ।

(ଗ) ବ୍ରହ୍ମଲିଙ୍ଗକୁ ଅନ୍ୟ (ଜୀବ ତଥା ମୁଖ୍ୟପ୍ରାଣ)ରେ ପରିଣତ ସମନ୍ୱିତ ହୋଇପାରେ ନାହିଁ, କାରଣ-ଦଶଭୂତ ମାତ୍ର ଓ ଦଶ ପ୍ରଜ୍ଞାମାତ୍ରମାନଙ୍କର ବ୍ରହ୍ମଭିନ୍ନ ଅନ୍ୟ କୌଣସି ସ୍ଥାନରେ ଅର୍ପଣ (ଅଧିଷ୍ଠାନରୂପଲିଙ୍ଗର ସମନ୍ୱୟ) କରିବା ଠିକ୍ ନୁହେଁ । କାରଣ- ସେମାନେ ବ୍ରହ୍ମରେ ଆଶ୍ରିତ ଅଟନ୍ତି, ଅନ୍ୟ ସ୍ଥଳରେ ମଧ୍ୟ ବ୍ରହ୍ମଲିଙ୍ଗ ବଳରେ

ପ୍ରାଣଶବ୍ଦ ବ୍ରହ୍ମରେ ଆଶ୍ରିତ ହୁଏ । ପୁନଶ୍ଚ ଏଠାରେ ହିତତମତ୍ୱର ଉପନ୍ୟାସାଦି ବ୍ରହ୍ମଲିଙ୍ଗ ସହ ଯୋଗ ଦ୍ୱାରା ବ୍ରହ୍ମର ଉପଦେଶ ହିଁ ଜଣାପଡ଼େ ।

(ଘ) ଯେଉଁ ମୁଖ୍ୟ ପ୍ରାଣଲିଙ୍ଗ 'ଇଦଂ ଶରୀରଂ ପରିଗୃହ୍ୟୋତ୍‌ପୟତି', ବୋଲି କହିବା ଠିକ୍ ନୁହେଁ, କାରଣ-ପ୍ରାଣର ବ୍ୟାପାର ମଧ୍ୟ ପରମାତ୍ମାର ଅଧୀନ । ତେଣୁ ପରମାତ୍ମାଠାରେ ଏହାର ଉପଚାର (ଗୌଣପ୍ରୟୋଗ) ହୋଇପାରେ । ଯେହେତୁ 'ତାହା କୌଣସି ପ୍ରାଣୀ ନ ହୋଇ ପ୍ରାଣଦ୍ୱାରା ଜୀବିତ ରହେ, କିନ୍ତୁ ଅପାନବାୟୁ ଦ୍ୱାରା ନୁହେଁ । କିନ୍ତୁ ସେମାନେ ଯେଉଁ ଦୁଇଟି ବସ୍ତୁରେ ଆଶ୍ରିତ '(ଅଧ୍ୟସ୍ଥ)' ଏହା ଅନ୍ୟ ଦ୍ୱାରା କିପରି ଜୀବିତ ରହେ', ବୋଲି ଶ୍ରୁତି ବାକ୍ୟ କହେ ।

(୫) ମୂଳ-(କ) ଯଦ୍ୟପି 'ନ ବାଚଂ ବିଜିଜ୍ଞାସୀତ, ବକ୍ତାରଂ ବିଦ୍ୟାତ୍', ଇତ୍ୟାଦି ଜୀବଲିଙ୍ଗ ଦର୍ଶିତମ୍, ତଦପି ନ ବ୍ରହ୍ମପକ୍ଷଂ ନିବାରୟତି । ନ ହି ଜୀବୋ ନାମାତ୍ୟନ୍ତଭିନ୍ନୋ ବ୍ରହ୍ମଣଃ 'ତତ୍ତ୍ୱମସି', 'ଅହଂ ବ୍ରହ୍ମାସ୍ମି', ଇତ୍ୟାଦି ଶ୍ରୁତିଭ୍ୟଃ । (ଖ) ବୁଦ୍ଧ୍ୟାଦ୍ୟୁପାଧିକୃତଂ ତୁ ବିଶେଷମାଶ୍ରିତ୍ୟ ବ୍ରହ୍ମୈବ ସଞ୍ଜୀବଃ କର୍ତ୍ତା ଭୋକ୍ତା ଚେତ୍ୟୁଚ୍ୟତେ । ତସ୍ୟୋପାଧିକୃତବିଶେଷ ପରିତ୍ୟାଗେନ ସ୍ୱରୂପଂ ବ୍ରହ୍ମ ଦର୍ଶୟିତୁଂ' 'ନ ବାଚଂ ବିଜିଜ୍ଞାସୀତ ବକ୍ତାରଂ ବିଦ୍ୟାତ୍', ଇତ୍ୟାଦିନା ପ୍ରତ୍ୟଗାତ୍ମାଭିମୁଖୀକରଣାର୍ଥଂ ଉପଦେଶୋ ନ ବିରୁଧ୍ୟତେ । (ଗ) ଯଦ୍‌ବାଚାନଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ । ତଦେବ ବ୍ରହ୍ମତ୍ୱଂ ବିଦ୍ଧିନେଦଂ ଯଦିଦମୁପାସତେ', (କେ ୨।୪) ଇତ୍ୟାଦି ଚ ଶ୍ରୁତ୍ୟନ୍ତରଂ ବଚନାଦିକ୍ରିୟା ବ୍ୟାପୃତସ୍ୟୈବାତ୍ମନୋ ବ୍ରହ୍ମତ୍ୱଂ ଦର୍ଶୟତି ।

**(୫) ଭାଷାଂତର-** (କ) ଯଦ୍ୟପି 'ନା ବାଚଂ ବିଜିଜ୍ଞାସୀତ' ବକ୍ତାରଂ ବିଦ୍ୟାତ୍', ଇତ୍ୟାଦି ଶ୍ରୁତି ବାକ୍ୟ ଦ୍ୱାରା ଯେଉଁ ଜୀବଲିଙ୍ଗ ଦେଖାଗଲା, ସେ ସବୁ ବ୍ରହ୍ମ ପକ୍ଷକୁ ନିବାରଣ କରେ ନାହିଁ । କାରଣ- 'ତତ୍ତ୍ୱମସି'; 'ଅହଂ ବ୍ରହ୍ମାସ୍ମି', ଇତ୍ୟାଦି ଶ୍ରୁତିଦ୍ୱାରା ଏହା ସ୍ପଷ୍ଟ ଭାବରେ ପ୍ରମାଣିତ ଯେ- ଜୀବ ବ୍ରହ୍ମଠାରୁ ଅତ୍ୟନ୍ତ ଭିନ୍ନ ନୁହେଁ ।

(ଖ) ବ୍ରହ୍ମ ମଧ୍ୟ ବୁଦ୍ଧ୍ୟାଦି ଉପାଧି କୃତ ବିଶେଷ (ପରିଚ୍ଛିନ୍ନତ୍ୱାଦି)କୁ ଆଶ୍ରୟ କରି ଜୀବହୋଇ କର୍ତ୍ତା ଓ ଭୋକ୍ତା ହୁଏ ବୋଲି କୁହାଯାଇଛି । ଉପାଧିକୃତ ବିଶେଷର ତ୍ୟାଗ ଦ୍ୱାରା ଏହାର ଯଥାର୍ଥ ସ୍ୱରୂପ ବ୍ରହ୍ମଜ୍ଞାନ କରାଇବା ପାଇଁ ଏହି ବକ୍ତୃତ୍ୱର ଉପଦେଶ ବିରୋଧବାକ୍ୟ ନୁହେଁ ।



(ଗ) 'ଯାହା ବଚନ ଦ୍ୱାରା ପ୍ରକାଶିତ ହୁଏ ନାହିଁ, କିନ୍ତୁ ଯାହା ଦ୍ୱାରା ବାଣୀ ପ୍ରକାଶିତ ହୁଏ, ଅର୍ଥାତ୍ ଯାହାର ସତ୍ତା ଦ୍ୱାରା ବାଣୀ ନିଜେ ବଦନଶବ୍ଦର ବ୍ୟାପାର କରେ, ଏହାକୁ ତୁମେ ବ୍ରହ୍ମ ବୋଲି ଜାଣ', ଯେଉଁ କାଳାବଚ୍ଛିନ୍ନବସ୍ତୁର ଉପାସନାଦି ଯେଉଁ ଲୋକ କରନ୍ତି, ସେ ବ୍ରହ୍ମ ନୁହେଁ, ଇତ୍ୟାଦି ଅନ୍ୟ ଶ୍ରୁତି ବଚନାଦି କ୍ରିୟାରେ ବ୍ୟାପୃତ ଆତ୍ମା ବ୍ରହ୍ମ ବୋଲି ଦେଖାଇ ଦିଆଯାଇଅଛି ।

(୬) ମୂଳ- (କ) ଯତ୍ପୁନରେତଦୁକ୍ତମ୍- 'ସହ ହ୍ୟେତାବସ୍ମିନ୍ ଶରୀରେ ବସତଃ ସହୋତ୍କ୍ରାମତଃ', ଇତି ପ୍ରାଣପ୍ରଜ୍ଞାତ୍ମନୋର୍ଭେଦଦର୍ଶନଂ ବ୍ରହ୍ମବାଦେ ନୋପପଦ୍ୟେତ ଇତି । (ଖ) ନୈଷୋ ଦୋଷଃ । ଜ୍ଞାନକ୍ରିୟାଶକ୍ତି ଦ୍ୱୟାଶ୍ରୟଯୋର୍ବୁଦ୍ଧି ପ୍ରାଣୟୋଃ ପ୍ରତ୍ୟଗାତ୍ମୋପାଧି ଭୂତୟୋଃ ଭେଦନିର୍ଦ୍ଦେଶୋପପତ୍ତେଃ, ଉପାଧିଦ୍ୱୟୋପହିତସ୍ୟ ତୁ ପ୍ରତ୍ୟଗାତ୍ମନଃ ସ୍ୱରୂପେଣାଭେଦଃ ଇତ୍ୟତଃ ପ୍ରାଣ ଏବ ପ୍ରଜ୍ଞାତ୍ମେତ୍ୟେକୀକରଣମବିରୁଦ୍ଧମ୍ ।

(୬) ଭାଷାଂତର- (କ) ପୁନଶ୍ଚ 'ଏହି ଦୁଇଟି ନିଶ୍ଚୟ ପ୍ରାଣ ଓ ପ୍ରଜ୍ଞାତ୍ମା ଏହି ଶରୀରରେ ଏକସଂଗରେ ରହନ୍ତି ଏବଂ ଏକ ସଙ୍ଗରେ ବାହାରନ୍ତି', ଏହି ପ୍ରକାର ପ୍ରାଣ ଓ ପ୍ରଜ୍ଞାତ୍ମାର ଭେଦଦର୍ଶନ ବ୍ରହ୍ମବାଦରେ ଉପପନ୍ନ ହୁଏ ନାହିଁ- ଏହା ଯେଉଁ କୁହାଯାଇଛି ।

(ଖ) ତାହାର କୌଣସି ଦୋଷ ନାହିଁ, କାରଣ-ପ୍ରତ୍ୟଗାତ୍ମାର ଉପାଧିରୂପ ଜ୍ଞାନଶକ୍ତି ଓ କ୍ରିୟାଶକ୍ତିର ଆଶ୍ରୟ ବୁଦ୍ଧ ଓ ପ୍ରାଣର ଭିନ୍ନରୂପରେ ଆଦେଶ ହୁଏ । ପରନ୍ତୁ ଉପାଧିମାନଙ୍କ ଦ୍ୱାରା ଉପହିତ-ପ୍ରତ୍ୟଗାତ୍ମାର ସ୍ୱରୂପରେ ଅଭେଦ ଥାଏ । ତେଣୁ 'ପ୍ରାଣ ଏବ ପ୍ରଜ୍ଞାତ୍ମା' ବୋଲି ଏକୀକରଣ ଅବିରୁଦ୍ଧ ହୁଏ ।

(୭) ମୂଳ-(କ) ଅଥବା-ନୋପାସାତ୍ରୈବିଧ୍ୟାଦାଶ୍ରିତତ୍ୱାଦିହ ତଦ୍ୟୋଗାତ୍' । ଇତ୍ୟସ୍ୟାମନ୍ୟୋଽର୍ଥଃ, ନ ବ୍ରହ୍ମବାକ୍ୟେଽପି ଜୀବମୁଖ୍ୟ ପ୍ରାଣଲିଂଗଂ ବିରୁଧ୍ୟତେ । କଥମ୍ ? ଉପାସାତ୍ରୈବିଧ୍ୟାତ୍ । (ଖ) ତ୍ରିବିଧମିହ ବ୍ରହ୍ମୋପାସନଂ ବିବକ୍ଷିତମ୍- ପ୍ରାଣଧର୍ମେଣ, ପ୍ରଜ୍ଞାଧର୍ମେଣ, ସ୍ୱଧର୍ମେଣ ଚ ତତ୍ର 'ଆୟୁରମୃତମୁପାସ୍ସ୍ୱାୟୁଃ ପ୍ରାଣ', ଇତି 'ଇଦଂ ଶରୀରଂ ପରିଗୃହ୍ୟୋତ୍ଥାପୟତି' ଇତି । ତସ୍ମାଦେତଦେବୋକ୍ଥ-ମୁପାସୀତ', ଇତି ଚ ପ୍ରାଣଧର୍ମଃ । (ଗ) ଅଥ ଯଥାସ୍ୟୈ ପ୍ରଜ୍ଞାୟୈ ସର୍ବାଣି ଭୂତାନ୍ୟେକୀଭବନ୍ତି ତଦ୍‌ବ୍ୟାଖ୍ୟାସ୍ୟାମଃ', ଇତ୍ୟୁପକ୍ରମ୍ୟ 'ବାଗେବାସ୍ୟା ଏକ ମଙ୍ଗମଦୂଦୁହତ୍ ତସ୍ୟୈ ନାମ ପରତସ୍ତାତ୍ ପ୍ରତିବିହିତା ଭୂତମାତ୍ରା ପ୍ରଜ୍ଞୟା ବାଚଂ ସମାରୂହ୍ୟ ବାଚଃ ସର୍ବାଣି ନାମାନ୍ୟାପ୍ନୋତି', ଇତ୍ୟାଦି ପ୍ରଜ୍ଞାଧର୍ମଃ ।

(୭) ଭାଷାଂତର- (କ) ଅଥବା 'ନୋପାସା ତ୍ରୈବିଧ୍ୟାଦାଶ୍ରି ତତ୍ୱାଦିହ ତଦ୍ ଯୋଗାତ୍' ଏହି ସୂତ୍ର ଭାଗରେ ଏହାର ଅନ୍ୟାର୍ଥ ବ୍ରହ୍ମ ବାକ୍ୟରେ ମଧ୍ୟ ଜୀବଲିଙ୍ଗ ତଥା ମୁଖ୍ୟ ପ୍ରାଣଲିଙ୍ଗର ବିରୋଧ ନାହିଁ । କାହିଁକି ? ଏହାପାଇଁ ଉପାସନା ତିନି ପ୍ରକାର ।

(ଖ) ଏଠାରେ ପ୍ରାଣଧର୍ମ, ପ୍ରଜ୍ଞାଧର୍ମ ଓ ସ୍ୱଧର୍ମ ରୂପରେ ବ୍ରହ୍ମୋପାସନା ତିନିପ୍ରକାର କୁହାଯାଇଛି । ପୁନଶ୍ଚ 'ଆୟୁ ରୂପରେ ଅମୃତରୂପରେ ମୋତେ ଉପାସନା କର, ବାୟୁ ହିଁ ପ୍ରାଣ', 'ଏହି ଶରୀରକୁ ଗ୍ରହଣ କରି ଉପରକୁ ଉଠାଏ', ଏବଂ 'ତେଣୁ ଏହାର ଉକ୍‌ଥ ରୂପରେ ଉପାସନା କରିପାର', - ଏହି ହିଁ ପ୍ରାଣଧର୍ମ ।

(ଗ) 'ବର୍ତ୍ତମାନ ଯେଉଁ ପ୍ରକାର ପ୍ରଜ୍ଞାଜୀବରେ ସମସ୍ତଭୂତ ଏକ ହୁଅନ୍ତି, ତାହାର ବ୍ୟାଖ୍ୟାନ କରିବା', ଏହି ପ୍ରକାର ଉପକ୍ରମ କରି 'ବାଣୀ ଦ୍ୱାରା ଏହି ପ୍ରକାର ଏକ ଅଙ୍ଗକୁ ଦେହାର୍ଦ୍ଧଭାଗକୁ ପୂର୍ଣ୍ଣ କରାଗଲା', ଏହାର ଜ୍ଞାପିତ ଭୂତମାତ୍ରା ଅନ୍ୟ ଦେହାର୍ଦ୍ଧ ଭାଗର କାରଣ ହୁଏ, ବୁଦ୍ଧିଦ୍ୱାରା ଚିଦାତ୍ମା ବାଣୀଉପରେ ଆରୂଢ଼ ହୋଇ ଅର୍ଥାତ୍ ବାଣୀର ପ୍ରେରକ ହୋଇ ସବୁନାମକୁ ପ୍ରାପ୍ତ ହୁଏ' । ଏହି ହେଉଛି ପ୍ରଜ୍ଞା, ଜୀବଧର୍ମ ।

(୮) ମୂଳ-(କ) ତା ବା ଏତାଦଶୈବ ଭୂତମାତ୍ରା ଅଧିପ୍ରଜ୍ଞଂ ଦଶ ପ୍ରଜ୍ଞାମାତ୍ରା ଅଧିଭୂତମ୍ । ଯଦି ଭୂତମାତ୍ରା ନ ସ୍ୟୁର୍ନ ପ୍ରଜ୍ଞାମାତ୍ରା ସ୍ୟୁଃ ଯଦି ପ୍ରଜ୍ଞାମାତ୍ରା ନ ସ୍ୟୁର୍ନ ଭୂତମାତ୍ରା ସ୍ୟୁଃ । ନହ୍ୟନ୍ୟତର ତୋ ରୂପଂ କିଞ୍ଚନ ସିଦ୍ଧ୍ୟେତ୍ । (ଖ) ନୋ ଏତନ୍ନାନା', 'ତଦ୍‌ଯଥା ରଥସ୍ୟାରେଷୁ ନେମିରର୍ପିତା, ସ ଏବ ପ୍ରାଣ ଏବ ପ୍ରଜ୍ଞାତ୍ମା, ଇତ୍ୟାଦିବ୍ରହ୍ମଧର୍ମଃ । ତସ୍ମାଦ୍ ବ୍ରହ୍ମଣ ଏବୈତଦୁପାଧିଦ୍ୱୟଧର୍ମେଣ ସ୍ୱଧର୍ମେଣ ଚୈକମୁପାସନଂ ତ୍ରିବିଧଂ ବିବକ୍ଷିତମ୍', । (ଗ) ଅନ୍ୟତ୍ରାପି 'ମନୋମୟଃ ପ୍ରାଣଶରୀରଃ', ଇତ୍ୟାଦାବୁପାଧିଧର୍ମେଣ ବ୍ରହ୍ମଣ ଉପାସନମାଶ୍ରିତମ୍ । ଇହାପି ତଦ୍‌ଯୁଜ୍ୟତେ, ବାକ୍ୟସ୍ୟୋପକ୍ରମୋପସଂହାରାଭ୍ୟାମେକାର୍ଥତ୍ୱାବଗମାଦ୍ ପ୍ରାଣପ୍ରଜ୍ଞାବ୍ରହ୍ମ ଲିଙ୍ଗାବଗମାଚ୍ଚ । ତସ୍ମାଦ୍ ବ୍ରହ୍ମବାକ୍ୟ ମେତଦିତି ସିଦ୍ଧମ୍ ।

(୮) ଭାଷାଂତର- (କ) 'ତା ବା ଏତା' ସେ ଏହି ଦଶଭୂତ ମାତ୍ରାଗୁଡ଼ିକ ଅଧିପ୍ରଜ୍ଞାର ଅଧୀନ ଏବଂ ଦଶ ପ୍ରଜ୍ଞାମାତ୍ରା ଅଧିଭୂତର ଅଧୀନ । ଯଦି ଭୂତମାତ୍ରା ନ ରହିବେ, ତେବେ ପ୍ରଜ୍ଞାମାତ୍ରା ମଧ୍ୟ ରହିବେ ନାହିଁ, ଯଦି ପ୍ରଜ୍ଞାମାତ୍ରା ନ ରହିବେ ତେବେ ଭୂତମାତ୍ରା ରହିବେ ନାହିଁ । ତେଣୁ ଦୁଇଟିରେ ପରସ୍ପରଭାବରେ କୌଣସି ଗୋଟିକର ଅଭାବ ହେଲେ ଅନ୍ୟର ମଧ୍ୟ ସିଦ୍ଧ ହୋଇପାରେନା ।



(ଖ) କିନ୍ତୁ ନାନା ପ୍ରକାର ହୁଏନାହିଁ, ଯେପରି 'ରଥର ଅରରେ ପହିଲଗା **ହୋଇଛି**, ଏବଂ ନାଭିରେ ଅର ମଧ୍ୟ ସଂଯୁକ୍ତ ହୋଇଛି । ସେପରି ସେହି ଭୂତମାତ୍ରା ଗୁଡ଼ିକର ପ୍ରଜ୍ଞା ମାତ୍ରାରେ ଅର୍ପିତ ଓ ପ୍ରଜ୍ଞାମାତ୍ରା ପ୍ରାଣରେ ଅର୍ପିତ । ସେ ଏହି ପ୍ରାଣ ଓ ପ୍ରଜ୍ଞାତ୍ମା ଇତ୍ୟାଦି ସ୍ୱବ୍ରହ୍ମଧର୍ମ ଅଛି । ଏହି ହେତୁ ବ୍ରହ୍ମର ଏକଉପାସନା (ପ୍ରାଣ ଓ ପ୍ରଜ୍ଞା) ଦୁଇଟି ଓ ଉପାଧିରେ ଧର୍ମ ଓ ସ୍ୱଧର୍ମ ଦ୍ୱାରା ଏହି ତିନୋଟି ଧର୍ମ ବିବକ୍ଷିତ ଅଟେ ।

(ଗ) ଅନ୍ୟ ସ୍ଥଳରେ 'ମନୋମୟଃ ପ୍ରାଣଶରୀରଃ', ଇତ୍ୟାଦିରେ ଉପାଧିର ଧର୍ମ ଦ୍ୱାରା ବ୍ରହ୍ମୋପାସନାର ଆଶ୍ରୟ କରାଯାଇଛି । ଏଠାରେ ମଧ୍ୟ ଅନ୍ୟ ଧର୍ମ ଦ୍ୱାରା ଅନ୍ୟର ଉପାସନା ଯୁକ୍ତିଯୁକ୍ତ, କାରଣ-ଉପକ୍ରମ ଓ ଉପସଂହାର ଦ୍ୱାରା ବାକ୍ୟର ଏକାର୍ଥତା ପ୍ରତୀତ ହୁଏ ଏବଂ ପ୍ରାଣ, ପ୍ରଜ୍ଞା ଓ ବ୍ରହ୍ମଲିଙ୍ଗର ଅବଗତି ହୁଏ । ତେଣୁ ଏହା ବ୍ରହ୍ମବାକ୍ୟ ବୋଲି ସିଦ୍ଧ ହୋଇଛି ।



## प्रथमाध्याये द्वितीयः पादः ।

## ପ୍ରଥମାଧ୍ୟାୟ - ଦ୍ୱିତୀୟ ପାଦ

### १ सर्वत्र प्रसिद्धयधिकरणम् । सू० १ - ८

### (୧) ସର୍ବତ୍ର ପ୍ରସିଦ୍ଧ୍ୟଧିକରଣମ୍

(୧) ମୂଳ-(କ) ପ୍ରଥମପାଦେ 'ଜନ୍ମାଦ୍ୟସ୍ୟ ଯତଃ' ଇତ୍ୟାକାଶାଦେଃ ସମସ୍ତସ୍ୟ ଜଗତଃ ଜନ୍ମାଦିକାରଣଂ ବ୍ରହ୍ମେତ୍ୟୁକ୍ତମ୍ । (ଖ) ତସ୍ୟ ସମସ୍ତ ଜଗତ୍ କାରଣସ୍ୟ ବ୍ରହ୍ମଣଃ ବ୍ୟାପିତ୍ୱଂ ନିତ୍ୟତ୍ୱଂ ସର୍ବଜ୍ଞତ୍ୱଂ ସର୍ବଶକ୍ତିତ୍ୱଂ ସର୍ବାତ୍ମତ୍ୱମିତ୍ୟେବଂ ଜାତୀୟକାଃ ଧର୍ମା ଉକ୍ତା ଏବ ଭବନ୍ତି । (ଗ)ଅର୍ଥାନ୍ତର ପ୍ରସିଦ୍ଧାନାଞ୍ଚ କେଷାଞ୍ଚିଚ୍ଛବ୍ଦାନାଂ ବ୍ରହ୍ମବିଷୟତ୍ୱହେତୁପ୍ରତିପାଦନେନ କାନିଚିଦ୍‌ବାକ୍ୟାନି ସ୍ପଷ୍ଟବ୍ରହ୍ମଲିଙ୍ଗାନି ସନ୍ଦିହ୍ୟମାନାନି ବ୍ରହ୍ମପରତୟା ନିର୍ଣ୍ଣିତାନି । (ଘ) ପୁନରପ୍ୟନ୍ୟାନି ବାକ୍ୟାନ୍ୟସ୍ପଷ୍ଟବ୍ରହ୍ମଲିଙ୍ଗାନି ସଂନ୍ଦିହ୍ୟନ୍ତେ- କିଂ ପରଂ ବ୍ରହ୍ମପ୍ରତିପାଦୟନ୍ତ୍ୟାହୋସ୍ୱିଦର୍ଥାନ୍ତରଂ କିଞ୍ଚିଦିତି, ତନ୍ନିର୍ଣ୍ଣୟାୟ ଦ୍ୱିତୀୟତୃତୀୟୌ ପାଦାବାରଭ୍ୟତେ-

**(୧) ଭାଷାଂତର-** (କ) ପ୍ରଥମପାଦରେ 'ଜନ୍ମାଦ୍ୟସ୍ୟ ଯତଃ' ଏହି ସୂତ୍ରରେ ଆକାଶ ଇତ୍ୟାଦି ସମସ୍ତ ପ୍ରପଞ୍ଚ ପଦାର୍ଥଗୁଡ଼ିକର ଜନ୍ମାଦିର କାରଣ ବ୍ରହ୍ମ ବୋଲି କୁହାଯାଇଛି ।

(ଖ) ସେହି ପ୍ରପଞ୍ଚ ଜଗତର କାରଣ ସ୍ୱରୂପ ବ୍ରହ୍ମର ସର୍ବବ୍ୟାପକତ୍ୱ, ନିତ୍ୟତ୍ୱ, ସର୍ବଜ୍ଞତ୍ୱ, ସର୍ବଶକ୍ତିତ୍ୱଂ, ସର୍ବାତ୍ମକତ୍ୱଂ ଏହି ପ୍ରକାର ଧର୍ମଗୁଡ଼ିକ କୁହାଯାଇଅଛି ।

(ଗ) ବ୍ରହ୍ମଭିନ୍ନ ଅନ୍ୟବସ୍ତୁ (ଆକାଶ, ପ୍ରାଣ, ଜ୍ୟୋତି, ଆଦି) ଅର୍ଥରେ ପ୍ରସିଦ୍ଧ । (ଆକାଶ, ପ୍ରାଣ, ଜ୍ୟୋତି) ଆଦି କେତେକ ଶବ୍ଦଗୁଡ଼ିକର ବ୍ରହ୍ମ ବିଷୟକ ହେତୁ ପ୍ରତିପାଦନଦ୍ୱାରା କେତୋଟି ବାକ୍ୟ ଅଛି । ଯେଉଁଠାରେ ବ୍ରହ୍ମଲିଙ୍ଗ (କାରଣ) ସ୍ପଷ୍ଟ ହୁଏ । ପରନ୍ତୁ ସନ୍ଦେହ ହୁଏ ଯେ- ସେମାନେ ବ୍ରହ୍ମ ବିଷୟକ ଅଟନ୍ତି କି ନୁହଁନ୍ତି ? ଏହିସବୁ ବ୍ରହ୍ମ ବିଷୟକ ବୋଲି ନିର୍ଣ୍ଣୟ ହୋଇଛି ।



(ଘ) କିନ୍ତୁ ଯେଉଁ ବାକ୍ୟଗୁଡ଼ିକରେ ବ୍ରହ୍ମଲିଙ୍ଗ ସ୍ପଷ୍ଟ ହୁଏ ନାହିଁ, ସେହି ବାକ୍ୟଗୁଡ଼ିକରେ 'ଏହି ବାକ୍ୟ ଗୁଡ଼ିକ ବ୍ରହ୍ମକୁ ଅଥବା ଅନ୍ୟ କୌଣସି ଅର୍ଥକୁ ପ୍ରତିପାଦନ କରନ୍ତି' ବୋଲି ସନ୍ଦେହ ହୁଏ କି ? ତେଣୁ ଏହି ସବୁ ନିଶ୍ଚୟକରିବା ପାଇଁ ଦ୍ୱିତୀୟ ଓ ତୃତୀୟ ପାଦରେ ଆରମ୍ଭ ହୋଇଛି ।

## सर्वत्र प्रसिद्धोपदेशात् ॥ १ ॥

## (୧) ସର୍ବତ୍ର ପ୍ରସିଦ୍ଧୋପଦେଶାତ୍ ୧।୨।୧

ସର୍ବତ୍ର = ସବୁବେଦାନ୍ତ ଗୁଡ଼ିକରେ, ପ୍ରସିଦ୍ଧୋପଦେଶାତ୍-ସର୍ବଂ ଖଲ୍ୱିଦଂ ବ୍ରହ୍ମ, ଇତ୍ୟାଦି ବାକ୍ୟଗୁଡ଼ିକରେ ଜଗତ୍ କାରଣ ରୂପବ୍ରହ୍ମର କେବଳ ମନୋମୟତ୍ୱାଦିଧର୍ମଦ୍ୱାରା ଉପଦେଶ ହୁଏ । ତେଣୁ ମନୋମୟ ବ୍ରହ୍ମ ଅଟେ, ଜୀବ ନୁହେଁ ।

(୨) ମୂଳ-(କ) ଇଦମାମ୍ନାୟତେ - ''ସର୍ବଂ ଖଲ୍ୱିଦଂ ବ୍ରହ୍ମ ତଜ୍ଜଲାନିତିଃ ଶାନ୍ତ ଉପାସୀତ, ଅଥ ଖଲୁ କ୍ରତୁମୟଃ ପୁରୁଷୋ ଯଥା କ୍ରତୁରସ୍ମିଲ୍ଲୋକେ ପୁରୁଷୋ ଭବତି ତଥେତିଃ ପ୍ରେତ୍ୟ ଭବତି, ସ କ୍ରତୁଂ କୁର୍ବୀତ, ମନୋମୟଃ ପ୍ରାଣଶରୀରୋ ଭାରୂପଃ,'' (ଛା ୩-୧୪-୧୨) ଇତ୍ୟାଦି ।

**(୨) ଭାଷାଂତର-** (କ) ସମସ୍ତ ଶରୀର ବ୍ରହ୍ମ ଅଟେ କାରଣ- ''ସେହି ବ୍ରହ୍ମଦ୍ୱାରା ଏହି ସଂସାର ଉତ୍ପନ୍ନ ହୋଇଛି' । ସେଠାରେ ଲୀନ ହୁଏ, ସେଠାରେ ସ୍ଥିତି କାଳରେ ଚେଷ୍ଟା କରେ । ତେଣୁ ଶାନ୍ତ ହୋଇ ତାହାକୁ ଉପାସନା କର'' । କାରଣ- ପୁରୁଷ ହିଁ ସଂକଳ୍ପମୟ । ଏହି ସଂସାରରେ ପୁରୁଷ ଯେପରି ସଂକଳ୍ପଯୁକ୍ତ, ସେପରି ମଧ ମରଣୋପାନ୍ତ । ତେଣୁ ପୁରୁଷ ସଂକଳ୍ପରୂପ ଧ୍ୟାନ କରିବା ଉଚିତ୍ ଏବଂ ସେହି ବ୍ରହ୍ମ ମନୋମୟ ପ୍ରାଣଶରୀର ଏବଂ ପ୍ରକାଶରୂପ ଅଟେ ।

(୩) ମୂଳ-(କ) ତତ୍ର ସଂଶୟଃ-କିମିହ ମନୋମୟ ତ୍ୱାଦିଭିର୍ଧର୍ମୈଃ ଶାରୀର ଆତ୍ମୋପସ୍ୟତ୍ୱେନୋପ ଦିଶ୍ୟତେ, ଆହୋସ୍ୱିତ୍-ପରଂବ୍ରହ୍ମେତି । (ଖ) କିଂ ତାବତ୍ପ୍ରାପ୍ତମ୍ ? ଶାରୀର ଇତି । କୁତଃ ? ତସ୍ୟ ହି କାର୍ଯ୍ୟକାରଣାଧିପତେଃ ପ୍ରସିଦ୍ଧୋ ମନ ଆଦିଭିଃ ସମ୍ବନ୍ଧୋ ନ ପରସ୍ୟ ବ୍ରହ୍ମଣଃ 'ଅପ୍ରାଣୋ ହ୍ୟମନାଃ ଶୁଭ୍ରଃ' (ମୁ ୨-୧-୨) ଇତ୍ୟାଦି ଶ୍ରୁତିଭ୍ୟଃ । (ଗ) ନନୁ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ଇତି ସ୍ୱଶବ୍ଦେନୈବ ବ୍ରହ୍ମୋପାତ୍ତଂ କଥମିହ ଶାରୀର ଆତ୍ମୋପାସ୍ୟ ଆଶଙ୍କ୍ୟତେ ? (ଘ) ନୈଷଃ ଦୋଷଃ, ନେଦଂ ବାକ୍ୟଂ ବ୍ରହ୍ମୋପାସନାବିଧିପରମ୍ । (ଙ) କିଂ ତର୍ହି ? ଶମବିଧୀରମ୍ । ଯତ୍କାରଣଂ 'ସର୍ବଂ ଖଲ୍ୱିଦଂ ବ୍ରହ୍ମତଜ୍ଜଲାନିତି ଶାନ୍ତ ଉପାସୀତ' ଇତ୍ୟାହ । (ଚ) ଏତଦୁକ୍ତଂ ଭବତି-'ଯସ୍ମାତ୍ସର୍ବମିଦଂ

ବିକାରଜାତଂ ବ୍ରହ୍ମୈବ, ତଜ୍ଜତ୍ୱାତ୍ତଲ୍ଲତ୍ୱାତ୍ତଦନତ୍ୱାଚ୍ଚ । ନ ଚ ସର୍ବସ୍ୟୈକାତ୍ମକତ୍ୱେନ ଭାଗାଦୟଃ ସମ୍ଭବନ୍ତି । ତଜ୍ଜାନ୍ତ ଉପାସୀତେତି । ନ ଚ ଶମବିଧିପରତ୍ୱେ ସତ୍ୟନେନ ବାକ୍ୟେନ ବ୍ରହ୍ମୋପାସନଂ ନିୟନ୍ତୁଂ ଶକ୍ୟତେ । (ଛ) ଉପାସନଂ ତୁ 'ସ କ୍ରତୁଂ କୁର୍ବୀତ' ଇତ୍ୟନେନ ବିଧୀୟତେ । କ୍ରତୁଃ ସଂକଳ୍ପୋ ଧ୍ୟାନମିତ୍ୟର୍ଥଃ । ତସ୍ୟ ଚ ବିଷୟତ୍ୱେନ ଶ୍ରୂୟତେ- 'ମନୋମୟଃ ପ୍ରାଣଶରୀରଃ' ଇତି ଜୀବଲିଙ୍ଗମ୍ ।

**(୩) ଭାଷାଂତର-** (କ) ସେଠାରେ ସଂଶୟଃ-ମନୋମୟତ୍ୱାଦି-ଧର୍ମଗୁଡ଼ିକ ଦ୍ୱାରା ଜୀବାତ୍ମାର ଉପାସ୍ୟ ରୂପରେ କି ପରଂବ୍ରହ୍ମର ଉପାସ୍ୟ ରୂପରେ ଉପଦେଶ ଦିଆଯାଏ ?

(ଖ) ଏଠାରେ କଣ ହେବ ? (ପୂର୍ବପକ୍ଷ) ଏଠାରେ ଜୀବାତ୍ମାର ଉପାସ୍ୟ ରୂପରେ ଉପଦେଶ ଦିଆଯାଏ; କାରଣ-ଶରୀର ଓ ଇନ୍ଦ୍ରିୟମାନଙ୍କର ପ୍ରଭୁ ଏହି ଜୀବାତ୍ମାର ମନ ପ୍ରଭୃତିଙ୍କ ସଂପର୍କ ସର୍ବବିଦିତ ଅଟେ । କିନ୍ତୁ ପରଂବ୍ରହ୍ମର ନୁହେଁ, କାରଣ-'ପ୍ରାଣ ରହିତ ମନରହିତ ଏହା ଶୁଭ ଅଟେ' ଇତ୍ୟାଦି ଶ୍ରୁତିଦ୍ୱାରା ମନ ସହିତ ପରଂବ୍ରହ୍ମର ସମ୍ବନ୍ଧ ନିଷେଧ କରାଯାଇଛି ।

(ଗ) ପରନ୍ତୁ ଯଦି 'ସର୍ବଂ ଖଳ୍ୱିଦଂ ବ୍ରହ୍ମ' ଏହି ଶ୍ରୁତିବାକ୍ୟରେ ସ୍ୱଶବ୍ଦଦ୍ୱାରା ବ୍ରହ୍ମକୁ ଉପାସନା ରୂପରେ ଗ୍ରହଣ କରାଯାଏ, ତେବେ ପୁଣି ଏଠାରେ ଜୀବାତ୍ମାର ଉପାସ୍ୟରୂପରେ ଆଶଙ୍କା କାହିଁକି କରାଯାଉଛି ?

(ଘ) ଏହା କିନ୍ତୁ ଦୋଷ ନୁହେଁ, କାରଣ-ଏହି ବାକ୍ୟ ବ୍ରହ୍ମୋପାସନା ବିଧିପରକ ନୁହେଁ ।

(ଙ) ତା ହେଲେ ଏହା କଣ ? ଶମ ବିଧିପରକ ଅଟେ । କାରଣ- ''ସବୁ ବ୍ରହ୍ମ ଅଟେ, ଏହି ସଂସାର ବ୍ରହ୍ମଠାରୁ ଉତ୍ପନ୍ନ ହୁଏ, ସେଠାରେ ଲୀନ ହୁଏ ଓ କାର୍ଯ୍ୟ କରେ, ଏହାର କାରଣ ଉପାସକ ଏହି ରାଗଦ୍ୱେଷଠାରୁ ବିଯୁକ୍ତ ହୋଇ ଶାନ୍ତ ହୋଇଯାଏ'' ଇତ୍ୟାଦି ଶ୍ରୁତି କହେ ।

(ଚ) କିନ୍ତୁ ଏଠାରେ ତାତ୍ପର୍ଯ୍ୟ କି- 'ଏହି ସମ୍ପୂର୍ଣ୍ଣ ବିକାରଜାତ ଜଗତ୍ ବ୍ରହ୍ମର କାରଣ, ଏହିଠାରୁ ଉତ୍ପନ୍ନ ହୁଏ, ଲୀନ ହୁଏ, ଓ କାର୍ଯ୍ୟକରେ । ଯେତେବେଳେ ସମସ୍ତ ସଂସାର ଏକାତ୍ମକ ଏକବ୍ରହ୍ମ ରୂପ ହୁଏ, ସେତେବେଳେ ରାଗ, ଦ୍ୱେଷ ଇତ୍ୟାଦି ଉତ୍ପନ୍ନ ହୁଅନ୍ତି ନାହିଁ । ତେଣୁ ଶାନ୍ତ ହୋଇ ବ୍ରହ୍ମ ଉପାସନା କରିବା ଉଚିତ ।' କିନ୍ତୁ ଶମବିଧି ପରକ ହେଲେ ମଧ୍ୟ ଏହିବାକ୍ୟ ବ୍ରହ୍ମୋପାସନାର ବିଧାୟକ ହୁଏ ନାହିଁ ।

(ଛ) ଉପାସନା କିନ୍ତୁ 'ସେ ଧ୍ୟାନ କରିପାରେ' ଏହି ବାକ୍ୟଦ୍ୱାରା ବିଧାନ କରାଯାଇଛି । କ୍ରତୁ-ସଙ୍କଳ୍ପ ଅର୍ଥାତ୍ ଧ୍ୟାନ । ଏହି ଧ୍ୟାନର ବିଷୟ ରୂପରେ 'ମନୋମୟ ହିଁ ପ୍ରାଣଶରୀର' ବୋଲି ଜୀବଲିଙ୍ଗ ଶୁଣାଯାଏ ।

(୪) ମୂଳ-(କ) ଅତୋବ୍ରୂମଃ-ଜୀବବିଷୟମେତଦୁପାସନମିତି । 'ସର୍ବକର୍ମା ସର୍ବକାମଃ' ଇତ୍ୟାଦ୍ୟପି ଶ୍ରୂୟମାଣଂ ପର୍ଯ୍ୟାୟେଣ ଜୀବବିଷୟମୁପପଦ୍ୟତେ । 'ଏଷ ମ ଆତ୍ମାଽନ୍ତର୍ହୃଦୟେଽଣୀୟାନ୍ ବ୍ରୀହେର୍ବା ଯବାଦ୍‌ବା' ଇତି ଚ ହୃଦୟା ୟତନତ୍ୱମଣୀୟସ୍ତ୍ୱଂ ଚାରାଗ୍ରମାତ୍ରସ୍ୟ ଜୀବସ୍ୟାବକଳ୍ପତେ, ନାପରିଚ୍ଛିନ୍ନସ୍ୟ ବ୍ରହ୍ମଣଃ । (ଖ) ନନୁ 'ଜ୍ୟାୟାନ୍ ପୃଥିବ୍ୟା' ଇତ୍ୟାଦ୍ୟପି ନ ପରିଚ୍ଛିନ୍ନେଽବକଳ୍ପତ ଇତି । (ଗ) ଅତ୍ର ବ୍ରୂମଃ-ନ ତାବଦଣୀୟସ୍ତ୍ୱଂ ଜ୍ୟାୟସ୍ତ୍ୱଂ, ଚୋଭୟମେକସ୍ମିନ୍ ସମାଶ୍ରୟିତୁଂ ଶକ୍ୟମ୍, ବିରୋଧାତ୍ । ଅନ୍ତରାଶ୍ରୟଣେ ଚ ପ୍ରଥମଶ୍ରୁତତ୍ୱାଦଣୀୟସ୍ତ୍ୱଂ ଯୁକ୍ତମାଶ୍ରୟିତୁମ୍, ଜ୍ୟାୟସ୍ତ୍ୱଂ ତୁ ବ୍ରହ୍ମଭାବାପେକ୍ଷୟା ଭବିଷ୍ୟତୀତି । (ଘ) ନିଶ୍ଚିତେ ଚ ଜୀବବିଷୟତ୍ୱେ ତଦନ୍ତେ ବ୍ରହ୍ମ ସଂକୀର୍ତ୍ତନଂ-'ଏତଦ୍‌ବ୍ରହ୍ମ' (ଛା ୩-୧୪-୪) ଇତି, ତଦପି ପ୍ରକୃତପରାମର୍ଶାର୍ଥତ୍ୱା ଜ୍ଜୀବବିଷୟମେବ । ତସ୍ମାନ୍ ମନୋମୟତ୍ୱାଦିଭିର୍ଧର୍ମୈର୍ଜୀବ ଉପାସ୍ୟ ଇତ୍ୟେବମ୍-

**(୪) ଭାଷାଂତର-** (କ) ଏହି ଉପାସନା ଜୀବବିଷୟକ ଅଟେ । **'ସର୍ବକର୍ମା ସର୍ବକାମଃ'** ଇତ୍ୟାଦି ଶ୍ରୂୟମାଣ ବିଶେଷଣ ମଧ୍ୟ ଅନେକଜନ୍ମପରମ୍ପରାରେ ଜୀବବିଷୟକ ହୁଏ । ''ଏହି ମୋର ଆତ୍ମା ହୃଦୟ ଭିତରେ ଧାନ ବା ଯବଠାରୁ ସୂକ୍ଷ୍ମ ଅଟେ'' ଏହି ପ୍ରକାର ହୃଦୟସ୍ଥାନ ତଥା ଅଣୀୟସ୍ତ୍ୱଂ ଚକର ଅରର ଅଗ୍ରଭାଗ ସଦୃଶ ଜୀବରେ ଯୁକ୍ତ ଅଟେ ।

(ଖ) କିନ୍ତୁ 'ପୃଥିବୀଠାରୁ ବଡ଼ ଅଟେ' ଇତ୍ୟାଦିବାକ୍ୟ ପରିଚ୍ଛିନ୍ନଜୀବରେ ସମ୍ଭବ ନୁହେଁ ।

(ଗ) ଏହି ବିଷୟରେ ତେଣୁ ଆମ୍ଭେ କହୁଅଛୁଁ ଯେ ଅଣୁତ୍ୱ ଓ ମହତ୍ୱ ଏହି ଦୁଇଟି ବସ୍ତୁ ଗୋଟିଏ ପଦାର୍ଥରେ ଅବସ୍ଥାନ କରିପାରନ୍ତି ନାହିଁ । କାରଣ-ଏହି ଦୁଇଟି ପାରସ୍ପରିକ ବିରୋଧବସ୍ତୁ । ଯଦି ଦୁଇଟି ପଦାର୍ଥରେ ଗୋଟିକର ଗ୍ରହଣ କରାଯାଏ, ତେବେ ପ୍ରଥମଟି ଶୁଣାଗଲେ ଅଣୀୟସ୍ତ୍ୱର ଆଶ୍ରୟ ନେବା ଠିକ୍ ହେବ । ଯଦ୍ୟପି ସଂସାର ଦଶାରେ ଜୀବଠାରେ ମହତ୍ୱପରିମାଣ ନାହିଁ, ତେବେ ମୋକ୍ଷଦଶାରେ ଜୀବଠାରେ ବ୍ରହ୍ମଭାବର ଅପେକ୍ଷା ମହତ୍ୱ ହୋଇଯିବ ।

(ଘ) 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ଇତ୍ୟାଦିବାକ୍ୟରେ ଜୀବବିଷୟତ୍ୱର ନିଶ୍ଚୟ ହେଲେ ଶେଷରେ 'ଏତଦ୍‌ବ୍ରହ୍ମ' ଏହିପ୍ରକାର ଯେଉଁ ବ୍ରହ୍ମର ସଂକୀର୍ତ୍ତନ ହେଉଛି, ସେ ପ୍ରକୃତ ପରାମର୍ଶନିମିତ୍ତ ହେଲେ ଜୀବବିଷୟକ ହୁଏ ।

(୫) ମୂଳ-(କ) ପ୍ରାପ୍ତେ ବ୍ରୂମଃ-ପରମେବ ବ୍ରହ୍ମ ମନୋମୟତ୍ୱାଦିଭିର୍ଧର୍ମୈ ରୂପାସ୍ୟମ୍, କୁତଃ । ସର୍ବତ୍ର ପ୍ରସିଦ୍ଧୋପଦେଶାତ୍ । ଯତ୍ ସର୍ବେଷୁ ବେଦାନ୍ତେଷୁ ପ୍ରସିଦ୍ଧଂ ବ୍ରହ୍ମଶବ୍ଦସ୍ୟାଲମ୍ବନଂ ଜଗତ୍‌କାରଣମ୍, ଇହ ଚ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ଇତି ବାକ୍ୟୋପକ୍ରମେ ଶ୍ରୁତମ୍, ତଦେବ ମନୋମୟତ୍ୱାଦିଧର୍ମୈର୍ବିଶିଷ୍ଟମୁପଦିଶ୍ୟତ ଇତି ଯୁକ୍ତମ୍ । ଏବଂ ଚ ସତି ପ୍ରକୃତହାନା ପ୍ରକୃତକ୍ରିୟେ ନ ଭବିଷ୍ୟତଃ । (ଖ) ନନୁ ବାକ୍ୟୋପକ୍ରମେ ଶମବିଧିବିବକ୍ଷୟା ବ୍ରହ୍ମ ନିର୍ଦ୍ଦିଷ୍ଟମ୍, ନ ବିବକ୍ଷୟେତ୍ୟୁକ୍ତମ୍ । (ଗ) ଅତ୍ରୋଚ୍ୟତେ-ଯଦ୍ୟପି ଶମବିଧିବିବକ୍ଷୟ । ବ୍ରହ୍ମ ନିର୍ଦ୍ଦିଷ୍ଟଂ, ତଥାପି ମନୋମୟତ୍ୱାଦିଷ୍ୱୁପଦିଶ୍ୟମାନେଷୁ ତଦେବ ବ୍ରହ୍ମ ସନ୍ନିହିତଂ ଭବତି । ଜୀବସ୍ତୁ ନ ସନ୍ନିହିତୋ, ନ ଚ ସ୍ୱଶବ୍ଦେନୋ-ପାତ୍ତ ଇତି ବୈଷମ୍ୟମ୍ ।

(୫) ଭାଷାଂତର- (କ) ଏହିଭଳି ପ୍ରାପ୍ତ ହୁଅନ୍ତେ ଆମ୍ଭର ବକ୍ତବ୍ୟ ଯେ ଏଠାରେ ମନୋମୟତ୍ୱାଦିଧର୍ମଦ୍ୱାରା ପରଂବ୍ରହ୍ମ ଉପାସ୍ୟ ଅଟେ, କାରଣ-ସବୁସ୍ଥାନରେ ବେଦାନ୍ତବାକ୍ୟରେ ପ୍ରସିଦ୍ଧବ୍ରହ୍ମର ଉପଦେଶ ଅଛି । ବ୍ରହ୍ମଶବ୍ଦର ଆଲମ୍ବନ ସଂସାରର କାରଣ ରୂପରେ ସମଗ୍ରବେଦାନ୍ତବାକ୍ୟରେ ଯାହା ପ୍ରସିଦ୍ଧ ଏବଂ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ଏହି ବାକ୍ୟରେ ଆରମ୍ଭରେ ଶୁଣାଯାଏ, ତାହା ବ୍ରହ୍ମ ମନୋମୟତ୍ୱାଦିଧର୍ମଦ୍ୱାରା ବିଶିଷ୍ଟ ଏହି ବେଦବାକ୍ୟରେ ଉପଦିଷ୍ଟ ଅଟେ ଏବଂ ଏହା ଠିକ୍ । ଏପରି ହେଲେ ପ୍ରକୃତିର ହାନି (ପ୍ରକରଣଦ୍ୱାରା ପ୍ରାପ୍ତ ବ୍ରହ୍ମରେ ସମ୍ଭବ ହେଉଥିବା ମନୋମୟତ୍ୱାଦିଧର୍ମର ସ୍ୱୀକାର ନ କରିବା) ଏବଂ ଅପ୍ରକୃତ (ଜୀବରେ ଧର୍ମ କଳ୍ପନା କରିବା)ର ପ୍ରାପ୍ତି ହେଉନାହିଁ ।

(ଖ) ପରନ୍ତୁ ବାକ୍ୟର ଆରମ୍ଭରେ ଶମବିଧିର ବିବକ୍ଷାଦ୍ୱାରା ବ୍ରହ୍ମର ନିର୍ଦ୍ଦେଶ କରାଯାଉଛି । କିନ୍ତୁ ତାହା ସ୍ୱବିବକ୍ଷାଦ୍ୱାରା ନୁହେଁ, ଅର୍ଥାତ୍ ବ୍ରହ୍ମର ବିଧାନକରିବାର ବିବକ୍ଷା ଦ୍ୱାରା ବ୍ରହ୍ମର ନିର୍ଦ୍ଦେଶ କରାଯାଏ ।

(ଗ) ପୂର୍ବପକ୍ଷ ଦ୍ୱାରା କଥିତବାକ୍ୟ ଉପରେ କୁହାଯାଇଛି- ଯଦ୍ୟପି ଶମବିଧିର ବିବକ୍ଷାଦ୍ୱାରା ବ୍ରହ୍ମର ନିର୍ଦ୍ଦେଶ ହୁଏ, ତେବେ ମଧ୍ୟ ଉପଦିଶ୍ୟମାନ ମନୋମୟତ୍ୱାଦିରେ ଏହି ବ୍ରହ୍ମ ହିଁ ସନ୍ନିହିତ ହୁଏ । ଜୀବ କିନ୍ତୁ ସନ୍ନିହିତ ହୁଏ ନାହିଁ, ଏବଂ ନିଜ ଶବ୍ଦ ଦ୍ୱାରା ଗୃହୀତ ହୁଏ ନାହିଁ, ଏହି ଜୀବ ଏବଂ ବ୍ରହ୍ମର ନିର୍ଦ୍ଦେଶର ଅନ୍ତର୍ଗତ ହୁଏ ।

## विवक्षितगुणो पपत्तेस्च ॥ २ ॥

## (୧) ବିବକ୍ଷିତଗୁଣୋପପତ୍ତେଶ୍ଚ ୧।୨।୨

ବିବକ୍ଷିତଗୁଣୋପପତ୍ତେଶ୍ଚ=ଉପାସନାନିମିତ୍ତ ବିବକ୍ଷିତ ସତ୍ୟସଂକଳ୍ପତ୍ୱ, ଭାରୁପ-ତ୍ୱାଦିଗୁଣଗୁଡ଼ିକର ବ୍ରହ୍ମରେ ଉପପତ୍ତି (ସମନ୍ୱୟ) ହୋଇପାରେ, ତେଣୁ ମନୋମୟ ବ୍ରହ୍ମ ଅଟେ, କିନ୍ତୁ ଜୀବ ନୁହେଁ ।

(୨) ମୂଳ-(କ) ବକ୍ତୁମିଷ୍ଟା ବିବକ୍ଷିତାଃ । ଯଦ୍ୟପ୍ୟପୌରୁଷେୟେ ବେଦେ ବକ୍ତୁରଭାବାନ୍ନେଚ୍ଛାର୍ଥଃ ସମ୍ଭବତି, ତଥାପ୍ୟୁ ପାଦାନେନ ଫଲେନୋପଚର୍ଯ୍ୟତେ । (ଖ) ଲୋକେ ହି ଯଚ୍ଛବ୍ଦାଭିହିତମୁପାଦେୟଂ ଭବତି, ତଦ୍‌ବିବକ୍ଷିତମିତ୍ୟୁଚ୍ୟତେ, ଯଦନୁପାଦେୟଂ ତଦବିବକ୍ଷିତମିତି । (ଗ) ତଦ୍‌ବଦ୍ ବେଦେଽପ୍ୟୁପାଦେୟ-ତ୍ୱେନାଭିହିତଂ ବିବକ୍ଷିତଂ ଭବତି, ଇତରଦବିବକ୍ଷିତମ୍ । ଉପାଦାନାନୁପାଦାନେ ତୁ ବେଦବାକ୍ୟତାତ୍ପର୍ଯ୍ୟାତା-ତ୍ପର୍ଯ୍ୟାଭ୍ୟାମବଗମ୍ୟେତେ । (ଘ) ତଦିହ ଯେ ବିବକ୍ଷିତାଃ ଗୁଣାଃ ଉପାସନାୟା-ମୁପାଦେୟତ୍ୱେନୋପଦିଷ୍ଟା ସତ୍ୟସଂକଳ୍ପପ୍ରଭୃତୟସ୍ତେ ପରସ୍ମିନ୍ ବ୍ରହ୍ମଣ୍ୟୁପପଦ୍ୟନ୍ତେ । (ଙ) ସତ୍ୟସଂକଳ୍ପତ୍ୱଂ ହି ସୃଷ୍ଟିସ୍ଥିତିସଂହାରେଷ୍ୱପ୍ରତିବଦ୍ଧଶକ୍ତିତ୍ୱାତ୍ ପରମାତ୍ମନ ଏବାବକଳ୍ପତେ । ପରମାତ୍ମଗୁଣତ୍ୱେନ ଚ ''ଯ ଆତ୍ମାଽପହତପାପ୍ମା'' (ଛା ୮-୭-୧) ଇତ୍ୟତ୍ର 'ସତ୍ୟକାମଃ ସତ୍ୟସଂକଳ୍ପଃ' ଇତି ଆକାଶାତ୍ମେତ୍ୟାଦିନା-କାଶବଦାତ୍ମଽସ୍ୟେତ୍ୟର୍ଥଃ ।

(୨) ଭାଷାଂତର- (କ) ଯେଉଁମାନଙ୍କର କଥନ ଅଭିଷ୍ଟ ହୁଏ, ତାହାକୁ ବିବକ୍ଷିତ କୁହାଯାଏ । ଯଦ୍ୟପି ଅପୌରୁଷେୟ ବେଦରେ ବକ୍ତା ନ ହେବାର କାରଣ ଇଚ୍ଛା ରୂପ ସନ୍‌ପ୍ରତ୍ୟୟର ଅର୍ଥର ସମ୍ଭବ ହୁଏ ନାହିଁ, ତଥାପି ଉପାଦାନ ରୂପ ଫଳ ଦ୍ୱାରା ବିବକ୍ଷାର ଉପଚାର କରାଯାଏ, କାରଣ-ଇଚ୍ଛାର ଫଳ ଉପାଦାନ ଅଟେ ।

(ଖ) ସେପରି ମଧ୍ୟ ଜଗତରେ ଯେଉଁ ପଦାର୍ଥ ଦ୍ୱାରା ଯେଉଁ ପଦାର୍ଥ ଅଭିହିତ ବା ଉପାଦେୟ ହୁଏ, ତାହାକୁ ବିବକ୍ଷିତ କୁହାଯାଏ ଏବଂ ଯାହା ଅନୁପାଦେୟ ତାହାକୁ ଅବିବକ୍ଷିତ କହନ୍ତି ।

(ଗ) ଏହି ପ୍ରକାର ବେଦରେ ମଧ୍ୟ ଉପାଦେୟରୂପରେ ଅଭିହିତ ପଦାର୍ଥର ବିବକ୍ଷିତ ଏବଂ ତଦ୍ ଭିନ୍ନପଦାର୍ଥର ଅବିବକ୍ଷିତ ହୁଏ । ଉପାଦାନ ଓ ଅନୁପାଦାନ ବେଦବାକ୍ୟର ତାତ୍ପର୍ଯ୍ୟ ଏବଂ ଅତାତ୍ପର୍ଯ୍ୟଦ୍ୱାରା ଅବଗତ ହୁଏ ।

(ଘ) ତେଣୁ ଏଠାରେ ସତ୍ୟସଂକଳ୍ପାଦି ଯେଉଁ ବିବକ୍ଷିତଗୁଣ ଉପାସନାରେ ଉପାଦେୟ ରୂପରେ ଉପଦିଷ୍ଟ ହୁଏ, ସେ ସବୁ ପରଂବ୍ରହ୍ମରେ ସମନ୍ୱିତ ହୁଅନ୍ତି ।

(ଙ) ଜଗତର ଉତ୍ପତ୍ତିସ୍ଥିତି ଏବଂ ଲୟରେ ଅପ୍ରତିହତଶକ୍ତି ହେବାର କାରଣ-ପରମାତ୍ମା କେବଳ ସତ୍ୟସଂକଳ୍ପ ହୁଏ । ''ଯେଉଁ ଆତ୍ମା ପାପରହିତ'' ଏହି ମନ୍ତ୍ରରେ ସତ୍ୟକାମ ଓ ସତ୍ୟସଂକଳ୍ପ ପରମାତ୍ମାର ଗୁଣରୂପରେ ଶୁଣାଯାଏ । 'ଆକାଶାତ୍ମା' ଇତ୍ୟାଦି ବେଦର ''ଆକାଶସଦୃଶ ଆତ୍ମାସ୍ୱରୂପ ଯାହାର' ଏହି ଅର୍ଥରେ ହୁଏ ।

(୩) ମୂଳ-(କ) ସର୍ବଗତତ୍ୱାଦିଭିର୍ଧର୍ମୈଃ ସମ୍ଭବତ୍ୟାକାଶେନ ସାମ୍ୟଂ ବ୍ରହ୍ମଣଃ । 'ଜ୍ୟାୟାନ୍ ପୃଥିବ୍ୟାଃ' ଇତ୍ୟାଦିନା ଚୈତଦେବ ଦର୍ଶୟତି । ଯଦ୍ୟପ୍ୟାକାଶ ଆତ୍ମା ଯସ୍ୟେତି ବ୍ୟାଖ୍ୟାୟତେ, ତଦାପିପି ସମ୍ଭବତି ଜଗତ୍କାରଣସ୍ୟ ସର୍ବାତ୍ମନୋ ବ୍ରହ୍ମଣ ଆକାଶାତ୍ମତ୍ୱମ୍ । ଅତଏବ 'ସର୍ବକର୍ମା' ଇତ୍ୟାଦି (ଖ) ଏବମିହୋପାସ୍ୟତୟା ବିବକ୍ଷିତାର୍ଗୁଣା-ବ୍ରହ୍ମଣ୍ୟୁପପଦ୍ୟନ୍ତେ । ଯତ୍ତୂକ୍ତଂ 'ମନୋମୟଃ ପ୍ରାଣଶରୀରଃ' (ଛା ୩-୧୪-୨) ଇତି ଜୀବଲିଙ୍ଗଂ ନ ବ୍ରହ୍ମଣ୍ୟୁପପଦ୍ୟତ ଇତି, ତଦପି ବ୍ରହ୍ମଣ୍ୟୁପପଦ୍ୟତ ଇତି ବ୍ରୂମଃ । ସର୍ବାତ୍ମତ୍ୱାଦ୍ଧି ବ୍ରହ୍ମଣ ଜୀବସମ୍ବନ୍ଧାନି ମନୋମୟତ୍ୱାଦୀନି ବ୍ରହ୍ମସମ୍ବନ୍ଧୀନି ଭବନ୍ତି । (ଗ) ତଥା ଚ ବ୍ରହ୍ମବିଷୟେ ଶ୍ରୁତିସ୍ମୃତୀ ଭବତଃ । 'ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି ତ୍ୱଂ କୁମାର ଉତ ବା କୁମାରୀ । ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି ତ୍ୱଂ ଜାତୋ ଭବସି ବିଶ୍ୱତୋମୁଖଃ', (ଶ୍ୱେ ୪-୩) ଇତି । 'ସର୍ବତଃ ପାଣିପାଦଂ ତତ୍ସର୍ବତୋଽକ୍ଷି ଶିରୋମୁଖମ୍ । ସର୍ବତଃ-ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ।' (ଗୀ ୧୩-୧୩) ଇତି ଚ । 'ଅପ୍ରାଣୋ ହ୍ୟମନାଃ ଶୁଭ୍ରଃ' (ମୁଣ୍ଡ ୨-୧-୨) ଇତିଶ୍ରୁତିଃ । (ଘ) ଇୟନ୍ତୁ 'ମନୋମୟଃ ପ୍ରାଣଶରୀରଃ' ଇତି ସଗୁଣବ୍ରହ୍ମବିଷୟେତି ବିଶେଷଃ । ଅତୋ ବିବକ୍ଷିତଗୁଣୋପପଦତ୍ତେଃ ପରମେବ ବ୍ରହ୍ମେହୋପାସ୍ୟତ୍ୱେନୋ-ପଦିଷ୍ଟମିତି ଗମ୍ୟତେ ।

**(୩) ଭାଷାଂତର-** (କ) ସର୍ବଗତତ୍ୱାଦିଧର୍ମଦ୍ୱାରା ଆକାଶ ସହିତ ବ୍ରହ୍ମର ସାଦୃଶ୍ୟ ସମ୍ଭବ ହୁଏ ଏବଂ 'ଜ୍ୟାୟାନ୍ ପୃଥିବ୍ୟାଃ' ଏହିମନ୍ତ୍ର ମଧ ଉପରୋକ୍ତ ଅର୍ଥକୁ ବୁଝାଏ । ଯେତେବେଳେ 'ଆକାଶ ଆତ୍ମା ଯାହାର' ଏହିପରି ବ୍ୟୁତ୍ପତ୍ତି କରାଯାଏ, ସେତେବେଳେ ତାହା ସମସ୍ତ ଜଗତର କାରଣ ସର୍ବାତ୍ମସ୍ୱରୂପ ବ୍ରହ୍ମରେ ଆକାଶାତ୍ମତ୍ୱ ହୋଇପାରେ ତେଣୁ ବ୍ରହ୍ମପାଇଁ 'ସର୍ବକର୍ମା' ଇତ୍ୟାଦିର ବର୍ଣ୍ଣନ ହୋଇଛି ।



(ଖ) ଏହି ପ୍ରକାର ଏଠାରେ ଉପାସ୍ୟ ରୂପରେ ବିବକ୍ଷିତଗୁଣ ବ୍ରହ୍ମଠାରେ ରହେ । 'ମନୋମୟ' ଏହା ଜୀବଲିଙ୍ଗ ଅଟେ, କିନ୍ତୁ ସେ ବ୍ରହ୍ମରେ ଯୁକ୍ତ ନୁହେଁ ବୋଲି ଏଠାରେ କୁହାଗଲେ ମଧ୍ୟ ଆମ୍ଭେମାନେ କହୁଁ ଯେ- ଏହି ଜୀବଲିଙ୍ଗ ବ୍ରହ୍ମରେ ଉତ୍ପନ୍ନ ହୁଏ । କାରଣ- ବ୍ରହ୍ମ ସର୍ବାତ୍ମକ ଅଟେ । ତେଣୁ ଜୀବସମ୍ବନ୍ଧୀ ମନୋମୟତ୍ୱାଦିର ଧର୍ମ ବ୍ରହ୍ମ ସମ୍ବନ୍ଧୀ ଅଟେ ।

(ଗ) ସେପରି ମଧ୍ୟ 'ତୁମେ ସ୍ତ୍ରୀ ବା ପୁରୁଷ, କୁମାର ବା କୁମାରୀ, ତୁମେ ବୁଢ଼ା ହୋଇ ଠେଙ୍ଗା ସାହାଯ୍ୟରେ ଚାଲୁଛ, ଏବଂ ଉତ୍ପନ୍ନ ହୋଇ ଅନେକରୂପ ହୋଇପାର ।' ''ପରନ୍ତୁ ସେ ଜ୍ଞେୟ ବ୍ରହ୍ମ ଉପାଧିଦ୍ୱାରା ସବୁଆଡ଼େ ହାତ, ଗୋଡ଼, ଆଖି, ମୁଣ୍ଡ ତିଆରି କରି ନିଜେ ମୁଣ୍ଡିକ ଓ ଶ୍ରୋତା ହୋଇ ସମସ୍ତଙ୍କ କାରଣ ଅଟେ । ତେଣୁ ସଂସାରରେ ସମସ୍ତଙ୍କୁ ବ୍ୟାପି ରହେ ।'' ଏହିପ୍ରକାର ବେଦ ଓ ସ୍ମୃତି ବ୍ରହ୍ମ ବିଷୟକ ଅଟେ ।

(ଘ) ''ପ୍ରାଣ ଓ ମନ ରହିତ ପବିତ୍ର'' ଏହି ବେଦବାକ୍ୟ ଶୁଦ୍ଧ ବ୍ରହ୍ମ ବିଷୟକ ଅଟେ ଏବଂ 'ମନୋମୟଃ-ପ୍ରାଣଶରୀର' ଏହି ବାକ୍ୟରେ ସଗୁଣବ୍ରହ୍ମ ବିଷୟକ ଅଟେ । ଏହା ହେଉଛି ବ୍ରହ୍ମର ଭେଦ । ଯାହାଦ୍ୱାରା ବିବକ୍ଷିତ ଗୁଣର ଉପପତ୍ତିଦ୍ୱାରା ପରଂବ୍ରହ୍ମ ଏଠାରେ ଉପାସ୍ୟରୂପରେ ଉପଦିଷ୍ଟ ହୁଏ ବୋଲି ଜଣାଯାଏ ।

## अनुपपत्तेस्तु न शारीरः ॥ ३ ॥

## (୧) ଅନୁପପତ୍ତେସ୍ତୁ ନ ଶାରୀରଃ ୧।୨।୩

ଅନୁପପତ୍ତେସ୍ତୁ- ଉପାସନା ନିମିତ୍ତ ବିବକ୍ଷିତ ସତ୍ୟ ସଂକଳ୍ପତ୍ୱ ଇତ୍ୟାଦି ଗୁଣଗୁଡ଼ିକର ଜୀବରେ ସମନ୍ୱୟ ନ ହେବା ଦ୍ୱାରା, ନ-ଜୀବ ଉପାସ୍ୟ ନୁହେଁ । ଶାରୀରଃ-କିନ୍ତୁ ବ୍ରହ୍ମ ଉପାସ୍ୟ ।

**(୨) ଭାଷାଂତର-** (କ) ପୂର୍ବସୂତ୍ରରେ ବ୍ରହ୍ମରେ ପୂର୍ବ ଗୁଣଗୁଡ଼ିକର ଯଥାର୍ଥ୍ୟ କୁହାଯାଇଛି । ଆତ୍ମାଠାରେ ସେହି ଗୁଣ ଗୁଡ଼ିକର ଅଯଥାର୍ଥ୍ୟ ବିଷୟ ଏହି ସୂତ୍ରରେ ଆଲୋଚନା କରାଯାଇଛି । 'ତୁ' ଶବ୍ଦ ଅବଧାରଣ ନିମିତ୍ତ ଅଛି । ବ୍ରହ୍ମ କଥନନ୍ୟାୟପରି ମନୋମୟତ୍ୱାଦିଗୁଣ ମଧ୍ୟ କୁହାଯାଇଛି, କିନ୍ତୁ ମନୋମୟତ୍ୱାଦି ଗୁଣ ବିଶିଷ୍ଟ ଜୀବ ଆତ୍ମା ନୁହେଁ । ସେହିକାରଣ ସତ୍ୟସଙ୍କଳ୍ପ, ଆକାଶାତ୍ମା, ଅନିନ୍ଦ୍ରିୟ, ନିତ୍ୟ ସୁପ୍ତ ଓ ପୃଥିବୀଠାରୁ ବ୍ୟାୟାନ୍ ବୋର୍ନ. ଆତ୍ମା ଗୁଣଗୁଡ଼ିକ ସ୍ପଷ୍ଟଭାବରେ କୁହାଯାଇଛି ।

(ଖ) ଶରୀରରେ ଯାହା ଉତ୍ପନ୍ନ ହୁଏ, ତାହା ଆତ୍ମା । ଈଶ୍ୱର ଜଣେ ଶରୀରରେ ଜାତହୁଏ ? ସତ୍ୟ ଶରୀରରେ ଜାତ ହୁଏ, କିନ୍ତୁ ଶରୀର ଜାତ ହୁଏ ନାହିଁ । ପୃଥିବୀଠାରୁ ବୃହତ୍, ଆକାଶଠାରୁ ବଡ଼, ଆକାଶପରି ନିତ୍ୟ ଓ ସର୍ବଗାମୀ' ବୋଲି ବ୍ୟାପିତ୍ୱ ଶୁଣାଯାଏ । ଜୀବହିଁ ଶରୀରରେ ଉତ୍ପନ୍ନ ହୁଏ, ତାହାର ଭୋଗାଧିଷ୍ଠାନ ଶରୀର ବ୍ୟତିତ ଅନ୍ୟତ୍ର କାର୍ଯ୍ୟ କରେ ନାହିଁ ।

## कर्मकर्तृव्यपदेशाच्च ॥ ४ ॥

## (୧) କର୍ମକର୍ତ୍ତୃବ୍ୟପଦେଶାଚ୍ଚ ॥ ୧-୨-୪॥

କର୍ମ କର୍ତ୍ତୃବ୍ୟପଦେଶାତ୍, ଚ-ମନୋମୟତ୍ୱାଦି ଗୁଣ ଓ ଆତ୍ମାର ଉପଦେଶର କାରଣରୁ ବ୍ରହ୍ମ ହିଁ ଉପାସ୍ୟ ଅଟେ ।

**(୨) ଭାଷାଂତର-** (କ) 'କର୍ମ ଓ କର୍ତ୍ତାର ଉପଦେଶ ଯେଉଁଠାରୁ ହୁଏ, ତାହା ମନୋମୟତ୍ୱାଦିଗୁଣ ଆତ୍ମା ନୁହେଁ । ମନୋମୟତ୍ୱାଦିଗୁଣ ଏଠାରେ ପ୍ରବେଶ କରନ୍ତି' । 'ଏତମ୍' ଅର୍ଥାତ୍ ପ୍ରକୃତ, ମନୋମୟତ୍ୱାଦି ଗୁଣ ଉପାସ୍ୟ ଆତ୍ମାର କର୍ମ ରୂପରେ ଓ ପ୍ରାପ୍ୟ ରୂପରେ ଉପଦେଶ ଦିଏ ।

(ଖ) 'ଅଭିସମ୍ଭବିତାମ୍' ଅର୍ଥାତ୍ ଉପାସକ ଶରୀର ପ୍ରାପକ କର୍ତ୍ତା ରୂପରେ ପାଇଲି ବୋଲି ଅର୍ଥ ହୁଏ । ରହି ବା ଯାଇ କର୍ମ କର୍ତ୍ତୃର ବ୍ୟପଦେଶ ହୁଏ ନାହିଁ । ସେହିପରି ଉପାସ୍ୟ ଓ ଉପାସକ ମଧ୍ୟ ଭେଦାଧିଷ୍ଠାନ । ତେଣୁ ଆତ୍ମା ମନୋମୟତ୍ୱାଦି ଗୁଣ ଯୁକ୍ତ ନୁହେଁ ।

## शब्दविशेषात् ॥ ५ ॥

## (୧) ଶବ୍ଦବିଶେଷାତ୍ ॥ ୧-୨୫ ॥

ଶବ୍ଦବିଶେଷାତ୍-ଶାରୀରଠାରୁ ମନୋମୟତ୍ୱାଦିଗୁଣ ପୃଥକ୍ ବୋଲି ଶ୍ରୁତି କହେ । ଯଥା-ଯଥା ବ୍ରୀହିର୍ବା ଯବୋ ବା ଶ୍ୟାମକୋ ବା ଶ୍ୟାମାକତଣ୍ଡୁଲୋ ବୈବମୟମନ୍ତରାତ୍ମନ୍ ପୁରୁଷୋ ହିରଣ୍ମୟଃ', ବୋଲି ବେଦବାକ୍ୟ ।

**(୨) ଭାଷାଂତର-** (କ) ଏହି ଶରୀରଠାରୁ ମନୋମୟତ୍ୱାଦିଗୁଣ ପୃଥକ୍ ଅଟେ । କାରଣ-ସମାନ ପ୍ରକରଣ ଶ୍ରୁତିରେ ଶବ୍ଦବିଶେଷ ବିଷୟ କୁହାଯାଇଛି । ଯଥା ବ୍ରୀହିର୍ବା (ଯେପରି ବିରି, ଯବ, ଶାମୁକା, ଅଥବା ଚଉଳ ହେଉଛି ଅନ୍ତରାତ୍ମା ପୁରୁଷ ହିରଣ୍ମୟଃ) ।



(ଖ) ଆତ୍ମାର ଯାହା ଅଭିଧାୟକଶବ୍ଦ ସପ୍ତମ୍ୟନ୍ତ, ଅନ୍ତରାତ୍ମା । ତାହାଠାରୁ ଭିନ୍ନ ପ୍ରଥମାନ୍ତ ପୁରୁଷଶବ୍ଦ ମନୋମୟତ୍ୱାଦିବିଶିଷ୍ଟ ଆତ୍ମାର ଅଭିଧାୟକ ଅଟେ । ତେଣୁ ଦୁହିଁଙ୍କ ମଧ୍ୟରେ ଭେଦ ଜଣାପଡ଼େ ।

## स्मृतेश्च ॥ ६ ॥

## (୧) ସ୍ମୃତେଶ୍ଚ ॥ ୧-୨-୬ ॥

ସ୍ମୃତେଃ-ସ୍ମୃତି ପ୍ରମାଣବାକ୍ୟ ଦ୍ୱାରା ଆତ୍ମା ଓ ପରମାତ୍ମା ମଧ୍ୟରେ ପ୍ରଭେଦ ପ୍ରମାଣ ହୁଏ ।

**(୨) ଭାଷାଂତର-** (କ) ସ୍ମୃତି ମଧ୍ୟ ଶାରୀର ଓ ପାରମାତ୍ମା ମଧ୍ୟରେ ପାର୍ଥକ୍ୟ ଦେଖାଏ । ଈଶ୍ୱରଃ (ହେ ଅର୍ଜ୍ଜୁନ ! ଈଶ୍ୱର ସମସ୍ତଙ୍କ ହୃଦୟରେ ରହେ । ମାୟା ରୂପକ ଯନ୍ତ୍ର ଦ୍ୱାରା ସବୁ ପ୍ରାଣୀଙ୍କୁ ବୁଲାଇ ରଖେ) । ଏଠାରେ କୁହାଯାଇଅଛି- ଯାହା 'ଅନୁପପତ୍ତେସ୍ତ ନ ଶାରୀରଃ' ଏହି ସୂତ୍ର ଦ୍ୱାରା ମନା କରାଯାଇଛି, ସେହି ଆତ୍ମା ପୁନଶ୍ଚ ପରମାତ୍ମାଠାରୁ ଭିନ୍ନ କଣ ?

(ଖ) ଶ୍ରୁତି କହେ- ତାହାଠାରୁ ବଳି ଦ୍ରଷ୍ଟା କେହି ନାହିଁ, ଶ୍ରୋତା ମଧ୍ୟ କେହି ନାହିଁ, ଏହି ପ୍ରକାର ପରମାତ୍ମା ଜୀବାତ୍ମାଠାରୁ ପୃଥକ୍ ଅଟେ । ସେପରି ମଧ୍ୟ ସ୍ମୃତି କହେ- 'କ୍ଷେତ୍ରଜ୍ଞ' (ହେ ଭାରତ ! ସମସ୍ତ କ୍ଷେତ୍ରମାନଙ୍କ ମଧ୍ୟରେ ମୋତେ 'କ୍ଷେତ୍ରଜ୍ଞ ବୋଲି ଜାଣ) ।

(ଗ) ଏଠାରେ କୁହାଯାଇଛି- ଏହା ସତ୍ୟ ଅଟେ । ପର ଆତ୍ମା ଦେହ, ଇନ୍ଦ୍ରିୟ, ମନ, ବୁଦ୍ଧି ପ୍ରଭୃତି ଉପାଧି ଦ୍ୱାରା ପୃଥକ୍ ହୋଇ ଆତ୍ମା ବୋଲି ଉପଚାର ହୁଏ । ଯେପରି କି ଘଟ, କରକାଦି ଉପାଧି ଦ୍ୱାରା ପୃଥକ୍ ହୋଇ ଆକାଶର ପୃଥକତ୍ୱ ଜଣାପଡ଼େ, ସେପରି ଆତ୍ମା ଓ ପରମାତ୍ମାର ଭେଦ । ତାହା ଦ୍ୱାରା କର୍ମକର୍ତ୍ତୃ ଭେଦବ୍ୟପଦେଶ ବ୍ୟବହାର ବିରୋଧ ହୁଏ ନାହିଁ । ପ୍ରଥମେ 'ତତ୍ତ୍ୱମସି' ବାକ୍ୟ ଗ୍ରହଣ କରିବା ପରେ ଆତ୍ମାର ଏକତ୍ୱରେ ବନ୍ଧମୋକ୍ଷାଦି ସର୍ବବ୍ୟବହାରର ପରିସମାପ୍ତି ହୁଏ ।

## अर्भकौकस्त्वात्तद्व्यपदेशाच्च नेति चेन्न निचाय्यत्वादेवं व्योमवच्च ॥ ७ ॥

## ୧-(କ) ଅର୍ଭକୌକସ୍ତ୍ୱାତ୍ତଦ୍ବ୍ୟପଦେଶାଚ୍ଚ ନେତି ଚେନ୍ନ ନିଚାଯ୍ୟତ୍ୱାଦେବଂ ବ୍ୟୋମବଚ୍ଚ ॥୧-୨-୭॥

ଅର୍ଭକୌକସ୍ତାତ୍-କ୍ଷୁଦ୍ର ବସା ବୋଲି, ତଦ୍‌ବ୍ୟପ ଦେଶାତ୍ ଚ-'ଅଣୀୟାନ୍ ବ୍ରୀହିବା ଯବାଦ୍‌ବା' ଏହି ଉପଦେଶ ଦ୍ୱାରା ଆତ୍ମା ଜୀବ ବୋଲି ଉପଦେଶ ଦିଆଯାଇଛି, ନେ ତି- କିନ୍ତୁ ସର୍ବଗତ ପରମାତ୍ମା ନୁହେଁ, ତାହା, ଚେନ୍ନ-ବର୍ତ୍ତମାନ ପରିହାର କରାଗଲା । କାରଣ-

ନିଋଯ୍ୟତ୍ୱାତ୍, -ଅଣୀୟସ୍ତ୍ୱାଦିଗୁଣ ଯୁକ୍ତ ଈଶ୍ୱର ହୃଦୟ ପୁଣ୍ଡରୀକରେ ଦେଖାଯାଏ । ବ୍ୟୋମବତ୍ ଚ-ଯେପରି ବ୍ୟାପକ ଆକାଶ ମଧ୍ୟ ଘଟପଟାକାଶ ରୂପରେ ବ୍ୟବହାର କରାଯାଏ, ସେପରି ବ୍ରହ୍ମର ମଧ୍ୟ ବ୍ୟବହାର ହୁଏ ।

(୨) ଭାଷାଂତର- (କ) ଅର୍ଭକ ଅର୍ଥାତ୍ ଅଳ୍ପ, ଓକଃ ଅର୍ଥାତ୍ ବସା । 'ଏଷ ମ ଆତ୍ମାନ୍ତର୍ହୃଦୟେ' ବୋଲି ପରିଛିନ୍ନାୟତନତ୍ୱ ଓ ନିଜଶବ୍ଦରେ 'ଅଣୀୟାନ୍ ବ୍ରୀହିର୍ବା' ବୋଲି ଅଣୀୟସ୍ତ୍ୱର ବ୍ୟପଦେଶ ହେତୁ ଆତ୍ମା ଅରାଗ୍ରମାତ୍ର ଜୀବ ରୂପରେ ଏଠାରେ ଉପଦେଶ ଦିଆଯାଇଛି । କିନ୍ତୁ ସର୍ବଗତ ପରମାତ୍ମା ରୂପ ପ୍ରମାଣକୁ ଉପପାଦନ କରାଯାଇଛି ।

(ଖ) ଏଠାରେ କୁହାଯାଇଛି ଏହା ଦୋଷ ନୁହେଁ । ପରିଛିନ୍ନ ଦେଶ ଆତ୍ମାର ସର୍ବଗତତ୍ୱବ୍ୟପଦେଶ କାହିଁକି ଉପଦେଶ ଦିଆଯାଇନାହିଁ । ସର୍ବଗତର ସବୁସ୍ଥାନରେ ରହିଥିବା ହେତୁ ପରିଛିନ୍ନ ଦେଶ (ଜୀବାତ୍ମା)ର ଉପଦେଶ କାହାଠାରୁ ଉତ୍ପନ୍ନ ହୁଏ ? ଯେପରି ସମଗ୍ର ସଂସାରର ଅଧିପତିକୁ ମଧ୍ୟ ଅଯୋଧ୍ୟାଧିପତିରୂପରେ ବ୍ୟପଦେଶ ହୁଏ । ସେହିପରି ସର୍ବଗତ ଈଶ୍ୱର ସ୍ୱଳ୍ପନୀଡ଼ ବିଶିଷ୍ଟ ଅଣୀୟାନ୍ ବୋଲି ବ୍ୟପଦେଶ ହୁଏ ।

(ଗ) 'ଦ୍ରଷ୍ଟବ୍ୟତ୍ୱ' ହେତୁ ବୋଲି ଆମ୍ଭେ କହୁଁ । ଏହିପରି ଅଣୀୟାସ୍ତ୍ୱାଦିଗୁଣଯୁକ୍ତ ଈଶ୍ୱର ସେଠାରେ ହୃଦୟପୁଣ୍ଡରୀକରେ ଦେଖାଯାଏ ବୋଲି ଉପଦେଶ କରାଯାଇଛି । ଯଥା-ଶାଳଗ୍ରାମରେ ହରି । ଏଠାରେ ବୁଦ୍ଧିବିଜ୍ଞାନ ଗ୍ରହଣ କରାଯାଇଛି ସର୍ବଗତ ଈଶ୍ୱର ମଧ୍ୟ ଶାଳଗ୍ରାମରେ ପୂଜାପାଇ ସ୍ଥାପନ ହୋଇଛି ।

(ଘ) ବ୍ୟୋମବତ୍ ''ଯେପରି ସର୍ବଗତ ଆକାଶ ସୂଚୀ ଓ ପାଶପ୍ରଭୃତି ବସ୍ତୁଠାରୁ କ୍ଷୁଦ୍ର ବୋଲି ବ୍ୟପଦେଶ କରାଯାଏ, ସେହିପରି ବ୍ରହ୍ମ ମଧ୍ୟ । ନିଋଯ୍ୟତ୍ୱ ଅପେକ୍ଷା ବ୍ରହ୍ମର ସ୍ୱଳ୍ପନୀଡ଼ ସଂପନ୍ନ ଅଣୀୟସ୍ତ୍ୱ ପାରମାର୍ଥିକ ନୁହେଁ । ଯଦି ଅଣୀୟସ୍ତ୍ୱକୁ ପାରମାର୍ଥିକ ରୂପରେ ଆଶଙ୍କା କରାଯାଏ, ତେବେ ବ୍ରହ୍ମର ହୃଦୟାୟତନତ୍ୱ ହେତୁ, ତାହା ପ୍ରତ୍ୟେକ ଶରୀରରେ ଭିନ୍ନ କାରଣରୁ ଭିନ୍ନ ଆୟତନ ଶୁକ ପ୍ରଭୃତିର ଅନେକତ୍ୱ, ସାବୟବତ୍ୱ, ଅନିତ୍ୟତ୍ୱାଦି ଦୋଷ ବ୍ରହ୍ମ ଉପରେ ଆରୋପ କରାଯିବ । ତେଣୁ ତାହା ପରିହାର କରାଯାଇଛି ।

**संभोगप्राप्तिरिति चेन्न वैशेष्यात्  ॥ ८ ॥**

## (୧) ସଂଭୋଗପ୍ରାପ୍ତିରିତି ଚେନ୍ନବୈଶେଷ୍ୟାତ୍ ॥ ୧-୨-୮ ॥

ସଂଭୋଗପ୍ରାପ୍ତିଃ ଇତି-ସର୍ବଗତବ୍ରହ୍ମର ସୁଖଦୁଃଖାଦି ଉପଭୋଗପ୍ରାପ୍ତି ବୋଲି ଯାହା କୁହାଯାଇଛି, ନ-ତାହା ନୁହେଁ । କାରଣବୈଶେଷ୍ୟାତ୍-'ତତ୍ତ୍ୱମସି'ବାକ୍ୟରେ ବ୍ରହ୍ମର ସୁଖଦୁଃଖାଦିଭୋଗ ଧର୍ମାଧର୍ମତ୍ୱ ଉପାଧି ବ୍ୟପଦେଶ କରାଯାଏ ।



**(୨) ଭାଷାଂତର-** (କ) ଆକାଶପରି ସର୍ବଗତବ୍ରହ୍ମର ସର୍ବପ୍ରାଣିହୃଦୟସମ୍ବନ୍ଧ ହେତୁ ଚିତ୍‌ରୂପରେ ଶାରୀରାଦି ଅବଶିଷ୍ଟ ହେତୁ, ସୁଖଦୁଃଖାଦି ସଂଭୋଗ ମଧ୍ୟ ଅବଶିଷ୍ଟ ରୂପରେ ଉପଚର ହୁଏ । କିନ୍ତୁ ତାହା ଏକହେତୁ ପରମାତ୍ମା କୌଣସି ଅନ୍ୟ ସଂସାରୀ ନାହିଁ । ନାନ୍ୟୋଽତଃ (ଏହାଠାରୁ ଅନ୍ୟ କେହି ବିଜ୍ଞାତା ନାହିଁ) ଏହା ଶ୍ରୁତିବାକ୍ୟ । ତେଣୁ ପରମାତ୍ମାର ସଂସାର ସଂଭୋଗପ୍ରାପ୍ତି ହୁଏ ନାହିଁ । କାରଣ- ବୈଶେଷ୍ୟାତ୍ ।

(ଖ) ଅର୍ଥାତ୍ ସର୍ବପ୍ରାଣିହୃଦୟ ସମ୍ବନ୍ଧ ହେତୁ 'ଶାରୀରବତ୍' ବୋଲି କୁହାଗଲେ ମଧ୍ୟ ତାହା ବ୍ରହ୍ମର ସମ୍ଭୋଗ ପ୍ରସଙ୍ଗ ନୁହେଁ, କିନ୍ତୁ ତାହା ଅତିଶୟାର୍ଥଭାବେ ପ୍ରୟୋଗ କରାଯାଇଛି । ଶାରୀର ଓ ପରମେଶ୍ୱର ମଧ୍ୟରେ ବିଶେଷ ସମ୍ବନ୍ଧ ରହିଛି । ଜଣେ ମାତ୍ର କର୍ତ୍ତା ଭୋକ୍ତା ଧର୍ମାଧର୍ମ ସାଧନ କରେ, ସୁଖଦୁଃଖକୁ ଭୋଗକରେ । ତାହାର ବିପରୀତ ଅପହତପାପ୍ମତାଦିଗୁଣ ବିଶିଷ୍ଟ ଅନ୍ୟ ଜଣେ । ତେଣୁ ଶାରୀର ଓ ପରମେଶ୍ୱର ମଧ୍ୟରେ ବୈଶିଷ୍ଟ୍ୟ ଥିବାରୁ ଜଣେ ଭୋଗକରେ ଅପରଟି ନୁହେଁ ।

(ଗ) ଯଦି ସନ୍ନିଧାନମାତ୍ରରୁ ବସ୍ତୁଶକ୍ତିକୁ ଆଶ୍ରୟ ନ କରି କାର୍ଯ୍ୟସମ୍ବନ୍ଧ ସ୍ୱୀକାର କରା ନଯାଏ; ତେବେ ଆକାଶ ପ୍ରଭୃତିର ଦେହାଦି ପ୍ରସଙ୍ଗ ହେବ । ଅନେକ ଆତ୍ମା ବୋଲି ସ୍ୱୀକାର କରୁଥିବାଲୋକଙ୍କ ମତରେ ତାହା ସମବେତ ହୋଇ ପୃଥକ୍ ଭାବେ ଅଛନ୍ତି । ଯାହାକି ଏକତ୍ୱଥିବା ବ୍ରହ୍ମର ଆତ୍ମାନ୍ତର ନଥିବାରୁ ଶାରୀରର ଭୋଗଦ୍ୱାରା ବ୍ରହ୍ମର ଭୋଗପ୍ରସଙ୍ଗ ହୁଏ ।

**(୩) ଭାଷାଂତର-** (କ) ଏଠାରେ ଆମ୍ଭେ କହୁଁ ଯେ- ଉକ୍ତପ୍ରସଙ୍ଗରେ ଦେବାନାଂପ୍ରିୟ ପଚାରିବା ଉଚିତ୍ । ଏହା କିପରି ଆତ୍ମାନ୍ତରାଭାବର ଅଧ୍ୟବସାୟ କରାଯାଏ ? 'ତତ୍ତ୍ୱମସି' 'ଅହଂ ବ୍ରହ୍ମାସ୍ମି' 'ନାନ୍ୟୋଽତଶସ୍ତି ବିଜ୍ଞାତା' ଇତ୍ୟାଦିଶାସ୍ତ୍ରରୁ ବୋଲି ଯଦି କହ, ତାହା ଶାସ୍ତ୍ରାନୁସାରେ ଶାସ୍ତ୍ରୀୟ ଅର୍ଥ ପ୍ରମାଣ କରାଯାଏ । କିନ୍ତୁ ଅର୍ଦ୍ଧଜରତୀୟ ନ୍ୟାୟପରି ନୁହେଁ ।

(ଖ) ଶାସ୍ତ୍ର କିନ୍ତୁ 'ତତ୍ତ୍ୱମସି' ବୋଲି ମହାବାକ୍ୟକୁ ଆପହତପାପ୍ମତ୍ୱାଦିବିଶେଷଣ ରୂପ ବ୍ରହ୍ମ ଶାରୀରେ ଆତ୍ମାରୂପରେ ଉପଦେଶ ଦେଇ ଶରୀରର ଉପଭୋକ୍ତୃତ୍ୱଗୁଣକୁ ବାରଣ କରେ । ଶରୀର ଉପଭୋଗ କଲେ ବ୍ରହ୍ମର ଉପଭୋଗ ପ୍ରସଙ୍ଗ କାହୁଁ ବା ଆସିବ ।

(ଗ) ଶାରୀର ଉପଭୋଗକୁ ଗ୍ରହଣ ନକଲେ, ତାହା ବ୍ରହ୍ମୈକତ୍ୱ, ମିଥ୍ୟଜ୍ଞାନନିମିତ୍ତ ହେଲେ ଶାରୀରର ଉପଭୋକ୍ତୃତ୍ୱ ହୁଏ । ଏହାଦ୍ୱାରା ପରମାର୍ଥରୂପ ବ୍ରହ୍ମର ସଂସ୍ପର୍ଶ ହୁଏ ନାହିଁ । ଯଥା-ପିଲାମାନେ ଆକାଶର ତଳଭାଗକୁ ମଳିନ କଲେ ମଧ୍ୟ ତାହା ତଳମଳିନତାଦିବିଶିଷ୍ଟ ଆକାଶ ବୋଲି ପ୍ରକୃତରେ କୁହାଯାଏ ନାହିଁ ।

(ଘ) ତେଣୁ କୁହାଯାଇଅଛି- ବିଶେଷ ହେତୁ ଏହା ନୁହେଁ । ଶାରୀରର ଏକତ୍ୱ ଥିଲେ ବି ଉପଭୋଗ ସମୟରେ ବ୍ରହ୍ମର ଉପଭୋଗପ୍ରସଙ୍ଗ ହୁଏ ନାହିଁ । କାରଣ- ବୈଶେଷ୍ୟାତ୍ । ମିଥ୍ୟାଜ୍ଞାନ ଓ ସମ୍ୟଗ୍ ଜ୍ଞାନମଧ୍ୟରେ ବିଶେଷ ରହେ । ମିଥ୍ୟାଜ୍ଞାନ ଦ୍ୱାରା ପରିକଳ୍ପିତ ଉପଭୋଗ ସମ୍ୟଗଜ୍ଞାନ ହି ଏକତ୍ୱ । ମିଥ୍ୟାଜ୍ଞାନ କଳ୍ପନା ଦ୍ୱାରା ଉପଭୋଗ ଦ୍ୱାରା ସମ୍ୟଗଜ୍ଞାନଦୃଷ୍ଟ ବସ୍ତୁ ସ୍ପର୍ଶ କରେ, ତେଣୁ ଈଶ୍ୱରଠାରେ ଉପଭୋଗଗନ୍ଧ ମଧ୍ୟ କଳ୍ପନା କରିବା ସମ୍ଭବ ନୁହେଁ ।

**अत्राधिकरणम् । सू० ९ - १०**

## ଅତ୍ତ୍ରାଧିକରଣ-୨

**अत्ता चराचरग्रहणात् ॥ ९ ॥**

## (୧) ଅତ୍ତା ଚରାଚରଗ୍ରହଣାତ୍ ॥ ୧-୨-୯ ॥

ଅତ୍ତା-ପରମାତ୍ମା ଏଠାରେ ଭକ୍ଷକ ହୁଏ । ଚରାଚରଗ୍ରହଣାତ୍-ସ୍ଥାବର ଓ ଜଙ୍ଗମ ସମସ୍ତଙ୍କର ମୃତ୍ୟୁପଥରୂପେ ଗୃହୀତ ହେବାରୁ ବ୍ରହ୍ମ ହିଁ ଅତ୍ତା ।

**(୨) ଭାଷାଂତର-** (କ) ପରମାତ୍ମାର ବ୍ରହ୍ମ ଓ କ୍ଷେତ୍ର ଉଭୟେ ଅନ୍ନ ଅଟନ୍ତି । ଯାହାର ମୃତ୍ୟୁ ହେଉଛି ଉପସେଚନ (ଘୃତମିଶ୍ରିତ ଅନ୍ନ), ସେହିଁ କାରଣାତ୍ମାରୂପରେ ରହିଛି- ଏହା କଠବଲ୍ଲୀରେ ପଢ଼ାଯାଇଛି । ଏଠାରେ କୌଣସି ଅନ୍ନଭକ୍ଷଣ ବିଶିଷ୍ଟ କଥା ଜଣାପଡ଼େ ।

(ଖ) ସେଠାରେ ଅଗ୍ନି ଅତ୍ତା ହୋଇପାରେ, ଅଥବା ଜୀବ, ଅଥବା ପରମାତ୍ମା ବୋଲି ସଂଶୟ ହୁଏ । କାରଣ-ବିଶେଷର ଅନବଧାରଣ ହେତୁ । ଜୀବ, ଅଗ୍ନି ଓ ପରମାତ୍ମା- ଏହି ତିନୋଟି ବିଷୟ ଏହି ଗ୍ରନ୍ଥରେ ପ୍ରଶ୍ନ ରୂପରେ ଉପନ୍ୟାସ କରାଯାଇଛି । ଏଠାରେ କଣ ହେବ ? ଅତ୍ତା ଅର୍ଥାତ୍ ଅଗ୍ନି । କିପରି ? 'ଅଗ୍ନି ହେଉଛି ଅନ୍ନଦାତା' ଶ୍ରୁତିପ୍ରସିଦ୍ଧବାକ୍ୟ । ଜୀବ ମଧ୍ୟ ଅତ୍ତା ହୋଇପାରେ କାରଣ- 'ଏ ଦୁହିଁଙ୍କ ମଧ୍ୟରେ ଜଣେ ପିପ୍ପଳର ସ୍ୱାଦକୁ ଚଖେ' ବୋଲି ବାକ୍ୟ ଅଛି, କିନ୍ତୁ ପରମାତ୍ମା ନୁହେଁ, କାରଣ- କିଛି ଭକ୍ଷଣ ନକରି ସେ ଅନାଇ ରହିଛି ବୋଲି ଶ୍ରୁତିବାକ୍ୟ ଅଛି । ଏହା ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ-

**(୩) ଭାଷାଂତର-** (କ) ଅତ୍ତା କେବଳ ପରମାତ୍ମା ହୁଏ । କାରଣ-



ଚରାଚରଗ୍ରହଣାତ୍ । ଚରାଚର ଅର୍ଥାତ୍ ସ୍ଥାବରଜଙ୍ଗମ ମୃତ୍ୟୁର ଉପସେଚନ ପ୍ରଥମେ ଜଣାପଡ଼େ । ସେହିପରି ପ୍ରଥମ ପରମାତ୍ମାର ସଂପୂର୍ଣ୍ଣତଃ ଅତ୍ତୃତ୍ୱ ଅଛି । ପରମାତ୍ମ ବିକାରରୁଜାତ ହୋଇ ସଂହାର ହୋଇ ସବୁ ଭକ୍ଷଣ କରେ ବୋଲି ପ୍ରମାଣ କରାଯାଇଛି

(ଖ) ଯଦ୍ୟପି ଚରାଚରଗ୍ରହଣ ମିଳେ ନାହିଁ, ତେବେ କାହିଁକି ସିଦ୍ଧବଚନପରି ଚରାଚରଗ୍ରହଣକୁ କାରଣ ରୂପରେ ଗ୍ରହଣ କରାଯାଏ ? ଏହା କିନ୍ତୁ ଦୋଷ ନୁହେଁ । ମୃତ୍ୟୁର ଉପସେଚନ ଦ୍ୱାରା ସମସ୍ତ ପ୍ରାଣୀନିକାୟ ପ୍ରତୀୟମାନ ହୁଏ । ବ୍ରହ୍ମ ଓ କ୍ଷେତ୍ର ଉଭୟର ପ୍ରାଧାନ୍ୟ ହେତୁ ତାହାର ପ୍ରଦର୍ଶନ ନିମିତ୍ତ କୁହାଯାଇଛି । ଯାହା ପରମାତ୍ମାର ଅତ୍ତୃତ୍ୱକୁ ଉତ୍ପନ୍ନ କରେ ନାହିଁ । ତାହା 'ଅନଶ୍ନନ୍ନନ୍ୟୋଽଭିଚାକଶୀତି' ବାକ୍ୟରେ ଜଣାପଡ଼େ ।

(ଗ) ଏଠାରେ କୁହାଯାଇଛି- କର୍ମଫଳ ଭୋଗର ଏହାହିଁ ପ୍ରତିଷେଧକଦର୍ଶନ; କାରଣ-ପରମାତ୍ମାର ସନ୍ନିଧିରେ ତାହା ବିଦ୍ୟମାନ । କିନ୍ତୁ ତାହା ବିକାରସମୂହର ପ୍ରତିଷେଧକ ନୁହେଁ । ସମସ୍ତ ବେଦାନ୍ତରେ ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣରୂପରେ ବ୍ରହ୍ମ ବିଦ୍ୟମାନ । ତେଣୁ ପରମାତ୍ମା ହିଁ ଅତ୍ତା ହେବାକୁ ଯୋଗ୍ୟ ।

## ପ୍ରକରଣାଚ୍ଚ ॥ ୧୦ ॥

## (୧) ପ୍ରକରଣାଚ୍ଚ ୧।୨।୧୦

ପ୍ରକରଣାଚ୍ଚ- 'ନ ଜାୟତେ' ଏହି ପ୍ରକରଣ ଦ୍ୱାରା ଏବଂ 'କ ଇତ୍ଥା ବେଦ ଯତ୍ର ସଃ' ଏହି ଦୁର୍ବିଜ୍ଞେୟରୂପ ଲିଙ୍ଗ ଦ୍ୱାରା ଅତ୍ତୃବାକ୍ୟରେ ଉକ୍ତ ଅତ୍ତା ପରମାତ୍ମା ହିଁ ଅଟେ ।

(୨) ମୂଳ- (କ) ଇତଶ୍ଚ ପରମାତ୍ମୈବେହାଽତ୍ତା ଭବିତୁମର୍ହତି । ଯତ୍କାରଣଂ ପ୍ରକରଣମିଦଂ ପରମାତ୍ମନଃ 'ନ ଜାୟତେ ମ୍ରିୟତେ ବା ବିପଶ୍ଚିତ୍' (କାଠ ୧-୧-୧୮) ଇତ୍ୟାଦି । ପ୍ରକୃତ ଗ୍ରହଣଞ୍ଚ ନ୍ୟାୟମ୍ । 'କ ଇତ୍ଥା ବେଦ ଯତ୍ର ସଃ' ଇତି ଚ ଦୁର୍ବିଜ୍ଞାନତ୍ୱଂ ପରମାତ୍ମଲିଙ୍ଗମ୍ ।

**(୨) ଭାଷାଂତର-** (କ) ଏହାଦ୍ୱାରା ପରମାତ୍ମା ଅତ୍ତା (ଭକ୍ଷକ) ହେବା ଉଚିତ୍, କାରଣ- 'ମେଧାବୀ ଆତ୍ମାର ଜନ୍ମ ବା ମରଣ ହୁଏ ନାହିଁ' ଇତ୍ୟାଦି ପ୍ରକରଣ ପରମାତ୍ମାର ହୁଏ । ପ୍ରକୃତ ଗ୍ରହଣ ଠିକ୍ ଅଟେ । 'ସେ ଯେଉଁଠାରେ ଏହି ପ୍ରକାର ତାହାକୁ ଅଧିକାରୀ ବିନା କିଏ ଜାଣିପାରେ' ଏହି ଦୁର୍ବିଜ୍ଞାନତ୍ୱ ପରମାତ୍ମାର ଲିଙ୍ଗ ଅଟେ ।

## गुहाधिकरणम्

## ଗୁହାଧିକରଣମ୍-

### गुहां प्रविष्टावात्मानौ हि तद्दर्शनात् ॥ ११ ॥

### (୧) ଗୁହାଂ ପ୍ରବିଷ୍ଟାବାତ୍ମାନୌ ହି ତଦ୍‌ଦର୍ଶନାତ୍ ୧।୨।୧୧

ଗୁହାଂ ପ୍ରବିଷ୍ଟୌ ଆତ୍ମାନୌ-'ଋତଂ ପିବନ୍ତଂ' ଇତ୍ୟାଦି ମନ୍ତ୍ରରେ ଜୀବ ଏବଂ ପରମାତ୍ମା ଦୁହେଁ ଗୁହାରେ ପଶିଥିଲେ, କିନ୍ତୁ ବୁଦ୍ଧି ଓ ଜୀବ ନୁହେଁ । ତଦ୍‌ଦର୍ଶନାତ୍-କାରଣ, ଶ୍ରୁତିରେ ଏହିଭଳି ଦେଖାଯାଏ ।

(୨) ମୂଳ-(କ) କଣ୍ଠବଲ୍ଲୀଷ୍ୱେବ ପଠ୍ୟତେ- ''ଋତଂ ପିବନ୍ତୌ ସୁକୃତସ୍ୟ ଲୋକେ, ଗୁହାଂ ପ୍ରବିଷ୍ଟୌ ପରିମେ ପରାର୍ଦ୍ଧେ ଛାୟାତପୌ ବ୍ରହ୍ମବିଦୋ ବଦନ୍ତି, ପଞ୍ଚାଗ୍ନୟୋ ଯେ ଚ ତ୍ରିଣାଚିକେତାଃ'' (କାଠ ୧-୩-୧) । (ଖ) ତତ୍ର ସଂଶୟଃ- କିମିହ ବୁଦ୍ଧିଜୀବୌ ନିର୍ଦ୍ଦିଷ୍ଟୌ, ଉତ ଜୀବ ପରମାତ୍ମା ନାବିତି । ଯଦି ବୁଦ୍ଧିଜୀବୌ, ତତଶେ ବୁଦ୍ଧିପ୍ରଧାନାତ୍ କାର୍ଯ୍ୟକାରଣସଂଘାତାଦ୍ ବିଲକ୍ଷଣୋ ଜୀବଃ ପ୍ରତିପାଦିତୋ ଭବତି । (ଗ) ତଦପୀହ ପ୍ରତିପାଦୟିତବ୍ୟମ୍- ''ଯେୟଂ ପ୍ରେତେ ବିଚିକିତ୍ସା ମନୁଷ୍ୟେଽସ୍ତୀତ୍ୟେକେ ନାୟମସ୍ତୀତି ଚୈକେ । ଏତଦ୍ ବିଦ୍ୟାମନୁଶିଷ୍ଟସ୍ତ୍ୱୟାହାମ୍, ବରାଣାମେଷ ବରସ୍ତୃତୀୟଃ (କାଠ ୧-୧-୨୦) ଇତି ପୃଷ୍ଟତ୍ୱାତ୍ । (ଘ) ଅଥ ଜୀବପରମାତ୍ମାନୌ ତତୋ ଜୀବାଦ୍‌ବିଲକ୍ଷଣଃ ପରମାତ୍ମା ପ୍ରତିପାଦିତୋ ଭବତି । ତଦପୀହ ପ୍ରତିପାଦୟିତବ୍ୟମ୍, 'ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାଦନ୍ୟତ୍ରାସ୍ମାତ୍ କୃତାକୃତାତ୍ । ଅନ୍ୟତ୍ର ଭୂତାଚ୍ଚ ଭବ୍ୟାଚ୍ଚ ଯତ ତତ୍ ପଶ୍ୟସି ତଦ୍‌ବଦ୍ । (କାଠ ୧-୨-୨୪) ଇତିପୃଷ୍ଟତ୍ୱାତ୍ ।

(୨) ଭାଷାଂତର- (କ) ଯଥା କଣ୍ଠବଲ୍ଲୀରେ କୁହାଯାଇଛି ଯେ- ''ବ୍ରହ୍ମବେତ୍ତା କହେ କି ଶରୀରରେ ବୁଦ୍ଧିରୂପ ଗୁହାମଧ୍ୟରେ ପ୍ରକୃଷ୍ଟ ବ୍ରହ୍ମସ୍ଥାନରେ ପ୍ରବେଶ କରି ନିଜେ କର୍ମଫଳକୁ ଉପଭୋଗ କରୁଥିବା ଛାୟା ଏବଂ ସ୍ୱର୍ଗସଦୃଶ ବିଲକ୍ଷଣ ତତ୍ତ୍ୱ ଦୁଇଟି ଅଛି । ଏହି କଥା ନଚିକେତାଗ୍ନିର ଚୟନ ୩ଥର ଚୟନ କରାଗଲା ।

(ଖ) ସଂଶୟ - ଏଠାରେ ବୁଦ୍ଧି ଓ ଜୀବ, ଅଥବା ଜୀବ ଓ ପରମାତ୍ମା କ'ଣ ନିର୍ଦ୍ଦିଷ୍ଟ ? ଯଦି ବୁଦ୍ଧି ଓ ଜୀବ ନିର୍ଦ୍ଦିଷ୍ଟ ହୁଏ, ତେବେ ବୁଦ୍ଧି ଯେଉଁଠାରେ

 

ପ୍ରଧାନ ଅଟେ, ସେହିଠାରେ ହିଁ ଶରୀର ଓ ଇନ୍ଦ୍ରିୟାଦି ସଂଘାତ ଦ୍ୱାରା ବିଲକ୍ଷଣ ଜୀବ ପ୍ରତିପାଦିତ ହୁଏ ।

(ଗ) ସେ ମଧ୍ୟ ଏଠାରେ ପ୍ରତିପାଦିତ କରିବା ପାଇଁ ଉଚିତ ଅଟେ । କାରଣ- ''ମନୁଷ୍ୟର ମରଣ ପରେ ଆତ୍ମା ଅଛି ବୋଲି କେତେକ କହନ୍ତି । କେତେକ ଆତ୍ମା ନାହାନ୍ତି ବୋଲି କହନ୍ତି । ଏହିପରି ସଂଶୟ ହୁଏ । ତେଣୁ ଏହି ବିଷୟରେ ତୁମଠାରୁ ନିଶ୍ଚିତ ନିର୍ଣ୍ଣୟ ପାଇଁ ମୁଁ ଏହି ଆତ୍ମାବିଦ୍ୟାକୁ ଜାଣିପାରିବି । ବରମାନଙ୍କ ମଧ୍ୟରେ ଏହା ମୋର ତୃତୀୟବର'' ଏହି ପ୍ରକାର ପ୍ରଶ୍ନ କରାଯାଇଛି ।

(ଘ) ଯଦି ଜୀବ ଓ ପରମାତ୍ମା ଅଛନ୍ତି, ତେବେ ଜୀବଦ୍ୱାରା ପରମାତ୍ମା ବିଲକ୍ଷଣ ହୋଇ ପ୍ରତିପାଦିତ ହୁଏ । ଏହା ଏଠାରେ ପ୍ରତିପାଦନ କରିବା ଯୋଗ୍ୟ, କାରଣ- ''ଯାହା ଧର୍ମଦ୍ୱାରା ପୃଥକ୍, ଅଧର୍ମଦ୍ୱାରା ପୃଥକ୍ ତଥା ଏହି କାର୍ଯ୍ୟ କାରଣ ରୂପା ପ୍ରପଞ୍ଚଦ୍ୱାରା ପୃଥକ୍ ଏବଂ ଯାହା ଭୂତ ଓ ଭବିଷ୍ୟତଠାରୁ ଭିନ୍ନ, ଏହିପ୍ରକାର ଯାହା ଆପଣ ଜାଣନ୍ତି, ତାହା ମୋତେ କହନ୍ତୁ'' ଏହିପ୍ରକାର ପ୍ରଶ୍ନ କରାଯାଇଛି ।

(୩) ମୂଳ- (କ) ଅତ୍ରେହାକ୍ଷେପ୍ତା-ଉଭାବପ୍ୟେତୌ ପକ୍ଷୌ ନ ସମ୍ଭବତିଃ । କସ୍ମାତ୍ ? ଋତପାନଂ କର୍ମଫଂଲୋପଭୋଗଃ 'ସୁକୃତସ୍ୟ ଲୋକେ' ଇତି ଲିଙ୍ଗାତ୍ । ତଚ୍ଚେତନସ୍ୟ କ୍ଷେତ୍ରଜ୍ଞସ୍ୟ ସମ୍ଭବତି, ନାଚେତନାୟାଃ ବୁଦ୍ଧେଃ । 'ପିବନ୍ତୌ' ଇତି ଚ ଦ୍ୱିବଚନେନ ଦ୍ୱୟୋଃ ପାନଂ ଦର୍ଶୟତି ଶ୍ରୁତିଃ । ଅତୋ ବୁଦ୍ଧି କ୍ଷେତ୍ରଜ୍ଞପକ୍ଷସ୍ତାବନ୍ନ ସମ୍ଭବତି । (ଖ) ଅତଏବ କ୍ଷେତ୍ରଜ୍ଞପରମାତ୍ମାପକ୍ଷୋଽପି ନ ସମ୍ଭବତି, ଚେତନେଽପି ପରମାତ୍ମନି ଋତପାନସମ୍ଭବାତ୍ । ''ଅନଶ୍ନନ୍ନନ୍ୟୋଽଭିଚାକଶୀତି'' (ମୁଣ୍ଡ ୩-୧-୧) ଇତି ମନ୍ତ୍ରବର୍ଣ୍ଣାଦିତି । (ଗ) ଅତ୍ରୋଚ୍ୟତେ-ନୈଷୋ ଦୋଷଃ, ଛତ୍ରିଣୋ ଗଚ୍ଛନ୍ତୀତ୍ୟେ-କେନାପି ଛତ୍ରିଣାଂ ବହୂନାଂ ଛତ୍ରିତ୍ୱୋପଚାରଦର୍ଶନାତ୍ । ଏବମେକେନାପି ପିବତା ଦ୍ୱୌ ପବନ୍ତାବୁଚ୍ୟେତେ । ଯଦ୍ ବା ଜୀବସ୍ତାବତ୍ପିବତି, ଈଶ୍ୱରସ୍ତୁ ପାୟୟତି । ପାୟନ୍ନପି ପିବତୀତ୍ୟୁଚ୍ୟତେ, ପାଚୟତର୍ଯପି ପକ୍ତୃତ୍ୱପ୍ରସିଦ୍ଧ ଦଶ ନାତ୍ । (ଘ) ବୁଦ୍ଧକ୍ଷେତ୍ରଜ୍ଞ-ପରିଗ୍ରହେଽପି ସମ୍ଭବତି, କରଣେ କର୍ତ୍ତୃତ୍ୱୋପଚାରାତ୍ । ''ଏଧାଂସି ପଚନ୍ତୀତି'' ପ୍ରୟୋଗଦର୍ଶନାତ୍ । ନ ଚାଧ୍ୟାତ୍ମାଧିକାରେଽନ୍ୟୌ କୌଚିଦ୍ ଦ୍ୱାବୃତଂ ପିବନ୍ତୌ ସମ୍ଭବତଃ, ତସ୍ମାଦ୍ ବୁଦ୍ଧିଜୀବୌ ସ୍ୟାତାମ୍, ଜୀବପରମାତ୍ମାନୌ ବେତି ସଂଶୟଃ ।

(୩) ଭାଷାଂତର- (କ) ଏଠାରେ ଶଙ୍କାକରି କୁହାଯାଇଛି କି- ଏହି ଦୁଇପକ୍ଷ ସମ୍ଭବ ନୁହେଁ । କାରଣ- 'ଋତପାନଂ'ର ଅର୍ଥ କର୍ମଫଳର ଉପଭୋଗ, 'ସୁକୃତସ୍ୟ ଲୋକେ' ହିଁ ଏହାର ଲିଙ୍ଗ । ଏ ଏହି ଚେତନ କ୍ଷେତ୍ରଜ୍ଞରେ ସମ୍ଭବ ଅଟେ । ଅଚେତନ ବୁଦ୍ଧିରେ ନୁହେଁ । 'ପିବନ୍ତୌ' ଏହି ଦ୍ୱିବଚନଦ୍ୱାରା ଶ୍ରୁତି ବାକ୍ୟ ଦ୍ୱୟରେ କର୍ମଫଳର ଉପଭୋଗ ଦେଖାଇ ଦିଆଯାଇଅଛି । ତେଣୁ ବୁଦ୍ଧି କ୍ଷେତ୍ରଜ୍ଞ (ଜୀବ) ପକ୍ଷରେ ଏହା ସମ୍ଭବ ନୁହେଁ ।

(ଖ) ଏହି କାରଣରୁ ଜୀବ ଓ ପରମାତ୍ମାର ପକ୍ଷ ମଧ୍ୟ ସମ୍ଭବ ହୁଏ ନାହିଁ । କାରଣ- ଚେତନ ପରମାତ୍ମାରେ କର୍ମଫଳର ସମ୍ଭବ ହୁଏ ନାହିଁ । ପ୍ରମାଣ ''ନ ଖାଇ ସାକ୍ଷୀରୂପରେ ଦେଖେ'' ଇତି ଶ୍ରୁତି ।

(ଗ) ଏହା ଉପରେ କୁହାଯାଇଛି ଯେ- ଏହା ଦୋଷ ନୁହେଁ । କାରଣ- 'ଛତାଗୁଡ଼ିକ ଯାଉଛନ୍ତି' ଏହି ବାକ୍ୟଦ୍ୱାରା ଗୋଟିଏ ଛତା ଧରିଥିବା ପୁରୁଷ ଦ୍ୱାରା ବହୁ ଛତ୍ରୀର ଉପଚ୍ଚର ଦେଖାଯାଏ । ସେପରି ମଧ୍ୟ ଜଣେ ପାନ କଲେ ଦୁଇଜଣ ପାନ କରନ୍ତି ବୋଲି କୁହାଯାଇଛି । ଅଥବା ଜୀବ ପାନ କରେ ଅର୍ଥାତ୍ କର୍ମଫଳ ଭୋଗକରେ ଏବଂ ଈଶ୍ୱର ପାନ କରାଏ । ପାନ (ଉପଭୋଗ) କରାଇ ଈଶ୍ୱରଠାରେ ମଧ୍ୟ ପାନ କରିବା ପ୍ରୟୋଗ କରାଯାଏ । କାରଣ- ପାଚକଠାରେ ପାକକର୍ତ୍ତୃତ୍ୱ ପ୍ରସିଦ୍ଧି ଦେଖାଯାଏ ।

(ଘ) ପୁନଶ୍ଚ ବୁଦ୍ଧି ଓ ଜୀବର ଗ୍ରହଣ ହୁଏ । କାରଣ-କରଣଠାରେ କର୍ତ୍ତୃତ୍ୱର ଉପଚ୍ଚର ହୁଏ । ଯେପରି ବଡ଼କାଠଗୁଡ଼ିକ ପଚିଯା'ନ୍ତି ବୋଲି ପ୍ରୟୋଗ ଦେଖାଯାଏ ସେପରି ଆଧ୍ୟାତ୍ମ ପ୍ରକରଣରେ ଅନ୍ୟ କୌଣସି ପାନ ବା କର୍ମଫଳ ଭୋଗ କରନ୍ତି । ଏହା ପାଇଁ ବୁଦ୍ଧି ଓ ଜୀବର ଉପଦେଶ ହୁଏ ଅଥବା ପରମାତ୍ମା ହୁଏ - ଏହି ହିଁ ସଂଶୟ ।

(୪) ମୂଳ-(କ) କିଂ ତାବତ୍ ପ୍ରାପ୍ତମ୍ ? ବୁଦ୍ଧିକ୍ଷେତ୍ରଜ୍ଞାବିତି । କୁତଃ ? 'ଗୁହାଂପ୍ରବିଷ୍ଟୌ' ଇତି ବିଶେଷଣାତ୍ । ଯଦି ଶରୀରଂ ଗୁହା, ଯଦି ବା ହୃଦୟଂ, ଉଭୟଥାପି ବୁଦ୍ଧିକ୍ଷେତ୍ରଜ୍ଞୌ ଗୁହାଂ ପ୍ରବିଷ୍ଟାବୁପପଦ୍ୟେତେ । (ଖ) ନ ଚ ସତି ସଂତି ସମ୍ଭବେ ସର୍ବଗତସ୍ୟ ବ୍ରହ୍ମଣୋ ବିଶିଷ୍ଟଦେଶତ୍ୱଂ ଯୁକ୍ତଂ କଳ୍ପୟିତୁମ୍ । (ଗ) 'ସୁକୃତସ୍ୟ ଲୋକେ' ଇତି ଚ କର୍ମଗୋଚରାନତିକ୍ରମଂ ଦର୍ଶୟତି । ପରମାତ୍ମା ତୁ ନ ସୁକୃତସ୍ୟ ବା ଗୋଚରେ ବର୍ତ୍ତତେ । (ଘ) ''ନ କର୍ମଣା ବର୍ଦ୍ଧତେ, ନୋ କନୀୟାନ୍'' ଇତି ଶ୍ରୁତେଃ । 'ଛାୟାତପୌ' ଇତି ଚ ଚେତନାଚେତନୟୋର୍ନିର୍ଦ୍ଦେଶ ଉପପଦ୍ୟତେ, ଛାୟାତପବତ୍ ପରସ୍ପର ବିଲକ୍ଷଣତ୍ୱାତ୍ । ତସ୍ମାଦ୍ ବୁଦ୍ଧିକ୍ଷେତ୍ରଜ୍ଞାବିହୋ ଚ୍ୟେଯାତାମିତ୍ୟେବଂ ପ୍ରାପ୍ତେ ବ୍ରୂମଃ-



(୪) ଭାଷାଂତର- (କ) ତାହେଲେ ଏଠାରେ କଣ ହେବ ? ପୂର୍ବପକ୍ଷ - ବୁଦ୍ଧି ଓ କ୍ଷେତ୍ରଜ୍ଞର ନିର୍ଦ୍ଦେଶପ୍ରାପ୍ତ ହୁଏ । କିପରି ? 'ଗୁହାଂ ପ୍ରବିଷ୍ଟୌ ଏହି ବିଶେଷଣ ଦ୍ୱାରା । ଏହାଦ୍ୱାରା ଶବର ବା ହୃଦୟ ଗୁହା ହେଉ । ଏହା ଦୁଇପ୍ରକାରେ ବୁଦ୍ଧି ତଥା ଜୀବ ଗୁହାରେ ପ୍ରବେଶ ହୋଇ ଉପପନ୍ନ ହୁଅନ୍ତି ।

(ଖ) ଏହା ସମ୍ଭବ (ଗୁହାରେ ପ୍ରବିଷ୍ଟରୂପରେ ବୁଦ୍ଧି ଓ ଜୀବର ଗ୍ରହଣ) ହେଲେ ମଧ୍ୟ ବି ସର୍ବଗତ ପରମାତ୍ମାରେ ବିଶିଷ୍ଟ ଦେଶର କଳ୍ପନା ଠିକ୍ ନୁହେଁ ।

(ଗ) 'ସୁକୃତସ୍ୟ ଲୋକେ' ଏହି ଶ୍ରୁତିବାକ୍ୟ କର୍ମଫଳର ଅନତିକ୍ରମ ଦେଖାଏ । ପରମାତ୍ମା କିନ୍ତୁ ସୁକୃତ ଓ ଦୁଷ୍କୃତ ବିଷୟକ ଫଳରେ ରହେ ନାହିଁ । କାରଣ-

(ଘ) 'କର୍ମଦ୍ୱାରା ଏହା ବଢ଼େ ନାହିଁ କି ଘଟେ ନାହିଁ' । ଏହି ଶ୍ରୁତି ପ୍ରମାଣ । ''ଛାୟା ଓ ଆତପ ସମାନ ପରସ୍ପର ବିଲକ୍ଷଣ'' ଏହି ଚେତନ ଅଚେତନରେ ନିର୍ଦ୍ଦେଶ ଉପପନ୍ନ ହୁଏ । କାରଣ-ଛାୟା ଏବଂ ଆଲୋକ ସଦୃଶ ପରସ୍ପର ବିଲକ୍ଷଣ ଅଂଟେ । ଏହାର କାରଣ ବୁଦ୍ଧ ଏବଂ ଜୀବକୁ ହିଁ ଏଠାରେ କୁହାଯାଇଛି ।

(୫) ମୂଳ- (କ) ବିଜ୍ଞାନାତ୍ମପରମାତ୍ମନାବିହୋଚ୍ୟେୟାତାମ୍ । କସ୍ମାତ୍ ? ଆତ୍ମାନୌ ହି ତାବୁଭାବପି ଚେତନୌ ସମାନସ୍ୱଭାବୌ । ସଂଖ୍ୟାଶ୍ରବଣେ ଚ ସମାନ ସ୍ୱଭାବେଷ୍ୱେବ ଲୋକେ ପ୍ରତୀତିର୍ଦୃଶ୍ୟତେ । (ଖ) ଅସ୍ୟ ଗୋଦ୍ୱିତୀୟୋଽନ୍ୱେଷ୍ଟବ୍ୟ ଇତ୍ୟୁକ୍ତେ ଗୌରେବ ଦ୍ୱିତୀୟୋଽନ୍ୱିଷ୍ୟତେ, ନାଶ୍ୱଃ ପୁରୁଷୋ ବା । ତଦିହ ଋତପାନେନ ଲିଙ୍ଗେନ ନିଶ୍ଚିତେ ବିଜ୍ଞାନାତ୍ମନି ଦ୍ୱିତୀୟାନ୍ୱେଷଣାୟାଂ ସମାନସ୍ୱଭାବଶ୍ଚେତନଃ ପରମାତ୍ମୈବ ପ୍ରତୀୟତେ । (ଗ) ନନୂକ୍ତଂ ଗୁହାହିତତ୍ୱଦର୍ଶନାନ୍ନ ପରମାତ୍ମା ପ୍ରତ୍ୟେତବ୍ୟ ଇତି, ଗୁହାହିତତ୍ୱଦର୍ଶନାଦେବ ପରମାତ୍ମା ପ୍ରତ୍ୟେତବ୍ୟ ଇତି ବଦାମଃ । (ଘ) ଗୁହାହିତତ୍ୱଂ ତୁ ଶ୍ରୁତିସ୍ମୃତିସକୃତ୍ ପରମାତ୍ମନ ଏବ ଦୃଶ୍ୟତେ- ''ଗୁହାହିତଂ ଗହ୍ୱରେଷ୍ଟ ପୁରାଣମ୍'' (କାଠ ୧-୨-୧୨), ''ଯୋ ବେଦ ନିହିତଂ ଗୁହାୟାଂ ପରମେ ବ୍ୟୋମନ୍'' (ତୈ ୨+୧), ''ଆତ୍ମାନମନ୍ୱିଚ୍ଛ ଗ୍ରହାଂ ପ୍ରବିଷ୍ଟମ୍'' ଇତ୍ୟାଦ୍ୟାସୁ । (ଙ) ସର୍ବଗତସ୍ୟାପି ବ୍ରହ୍ମଣ ଉପଲବ୍ଧ୍ୟର୍ଥେଃ । ଦେଶବିଶେଷୋପଦେଶୋ ନ ବିରୁଧ୍ୟତ ଇତ୍ୟେତଦପ୍ୟୁକ୍ତମେବ । (ଚ) ସୁକୃତଲୋକବର୍ତ୍ତିତ୍ୱଂ ତୁ ଛତ୍ରିତ୍ୱବଦେକସ୍ମିନ୍ନପି ବର୍ତ୍ତମାନମୁଭୟୋରବିରୁଦ୍ଧମ୍ । ଚାୟାତପାବିତ୍ୟପ୍ୟବିରୁଦ୍ଧମ୍ । ଛାୟାତପବତ୍ ପରସ୍ପରବିଲକ୍ଷଣତ୍ୱାତ୍

ସଂସାରିତ୍ୱାସଂସାରିତ୍ୱୟୋଃ । (ଛ) ଅବିଦ୍ୟାକୃତତ୍ୱାତ୍‌ସଂସା-ରିତ୍ୱସ୍ୟ ପାରମାର୍ଥିକତ୍ୱାଚ୍ଚା ସଂସାରିତ୍ୱସ୍ୟ । ତସ୍ମାଦ୍ ବିଜ୍ଞାନାତ୍ମ - ପରମାତ୍ମନୌ ଗୁହାଂ ପ୍ରବିଷ୍ଟୌ ଗୃହ୍ୟେତେ ।

**(୫) ଭାଷାଂତର-** (କ) ସିଦ୍ଧାନ୍ତପକ୍ଷଃ 'ଗୁହା ପ୍ରବିଷ୍ଟୌ' ଏହି ପ୍ରୟୋଗରେ ଜୀବ ଏବଂ ପରମାତ୍ମା କୁହାଯାଇପାରନ୍ତି । କାରଣ-ଏହି ଦୁଇଟି ଆତ୍ମା ଚେତନ ଓ ସମାସସ୍ୱଭାବଶୀଳ । ସଂଖ୍ୟାର ଶ୍ରବଣ ହେଲେ ସଂସାରରେ ସମାନ ସ୍ୱଭାବଶାଳୀମାନଙ୍କର ପ୍ରତୀତି ହୁଏ ।

(ଖ) ଯେପରିକି 'ଏହି ବଳଦ ପାଇଁ ଅନ୍ୟ ଏକ ସାଥୀ ଅନ୍ୱେଷଣ କରିବା ଉଚିତ୍ ।' ଏହା କହିଲେ ବଳଦର ସଜାତୀୟ ଦ୍ୱିତୀୟ ବଳଦକୁ ଖୋଜାଯାଏ, କିନ୍ତୁ ଏହାର ବିଜାତୀୟ ଅଶ୍ୱ ଅଥବା ପୁରୁଷକୁ ଖୋଜାଯାଏ ନାହିଁ । ତେଣୁ ଏଠାରେ କର୍ମଫଳ ଭୋଗ ରୂପଲିଙ୍ଗ ଦ୍ୱାରା ଜୀବାତ୍ମାର ନିଶ୍ଚିତ ହେଲାପରେ ଦ୍ୱିତୀୟକୁ ଅନ୍ୱେଷଣ ପାଇଁ ସମାନ ସ୍ୱଭାବଯୁକ୍ତ ଚେତନ ପରମାତ୍ମାର ପ୍ରତୀତି ହୁଏ ।

(ଗ) କିନ୍ତୁ ଏପରି ଯାହା କୁହାଗଲା କି- ଗୁହାରେ ପ୍ରବିଷ୍ଟତ୍ୱ ଦେଖିବା ଦ୍ୱାରା ସର୍ବବ୍ୟାପକ ପରମାତ୍ମାର ପ୍ରତୀତି ହେବା ଉଚିତ ନୁହେଁ । ତେଣୁ ଆମ୍ଭେ କହୁ କି- ଗୁହାର ପ୍ରବିଷ୍ଟିତ୍ୱ ଦେଖିବା ଦ୍ୱାରା ପରମାତ୍ମାର ପ୍ରତୀତି ହୁଏ; କାରଣ-ଗୁହାରେ ପ୍ରବିଷ୍ଟତ୍ୱ ଶ୍ରୁତି ସ୍ମୃତିରେ ବହୁବାର ପରମାତ୍ମାର ଦର୍ଶନ ହୁଏ ।

(ଘ) ଯେପରିକି ''ବୁଦ୍ଧିରୂପ ଗୁହାରେ ସ୍ଥିତ, ଅନେକପ୍ରକାର ଅନର୍ଥଦ୍ୱାରା ପୂର୍ଣ୍ଣଦେହରେ ରହେ'' । ''ଅନାଦି ପୁରୁଷ ପରମାତ୍ମାକୁ ଜାଣି ଅଧିକାରୀ ପୁରୁଷ ହର୍ଷଶୋକକୁ ତ୍ୟାଗ କରେ'' । ''ଶ୍ରେଷ୍ଠ ହୃଦୟ ଆକାଶରେ ସ୍ଥିତ ବୁଦ୍ଧିରୂପୀ ଗୁହାରେ ପ୍ରବିଷ୍ଟ ବ୍ରହ୍ମକୁ ଜାଣେ, ଏହା ସମସ୍ତକାମକୁ ଲାଭ କରେ'' । ''ବୁଦ୍ଧିରୂପୀଗୁହାରେ ରହିଥିବା ଆତ୍ମାକୁ ବିଚାର କର'' ଇତ୍ୟାଦି ବେଦ ଓ ଧର୍ମଶାସ୍ତ୍ରରେ ପ୍ରମାଣ ରହିଛି ।

(ଙ) ସର୍ବବ୍ୟାପକ ବ୍ରହ୍ମର ମଧ୍ୟ ସାକ୍ଷାତ୍କାର ପାଇଁ ହୃଦୟାଦି ଦେଶବିଶେଷର ଉପଦେଶ ବିରୋଧ ହୁଏ ନାହିଁ । ଏହା ଆଗରୁ କୁହାଯାଇଛି ।

(ଚ) ସୁକୃତାକାର୍ଯ୍ୟଶରୀରରେ ରହିବା ଛତ୍ରିତ୍ୱର ସଦୃଶ ଏକଜୀବରେ କର୍ମଫଳ ଭୋକ୍ତୃତ୍ୱାଦି ହେଲେ ଜୀବ ଓ ପରମାତ୍ମା ମଧ୍ୟରେ ଅବିରୁଦ୍ଧ ହୁଏ । ଛାଇ ଓ ଖରାଭଳି ଏହା କହିବା ଅବିରୁଦ୍ଧମାତ୍ର । କାରଣ-ସଂସାରିତ୍ୱ ଓ ଅସଂସାରିତ୍ୱ ଛାୟା ଓ ଆତପ ସମାନ ପରସ୍ପର ବିଲକ୍ଷଣ ଅଟେ ।

(ଛ) ସଂସାରିତ୍ୱ ଅବିଦ୍ୟାକୃତ ଓ ଅସଂସାରିତ୍ୱ ପାରମାର୍ଥିକ ଅଟେ । ତେଣୁ ଗୁହାରେ ପ୍ରବିଷ୍ଟ ଜୀବାତ୍ମା ତଥା ପରମାତ୍ମାର ଏଠାରେ ଗ୍ରହଣ କରାଯାଇଛି ।

## ବିଶେଷଣାଚ୍ଚ ॥ ୧୨ ॥

## (୧) ବିଶେଷଣା ଚ ॥୧।୨।୧୨॥

**(୧)-ଭାଷାଂତର-** (କ) କେଉଁ କାରଣଦ୍ୱାରା ବିଜ୍ଞାନାତ୍ମା ଓ ପରମାତ୍ମାର ଗ୍ରହଣ ହୋଇଛି ।

ବିଶେଷଣାତ୍ ଚ='ଅତ୍ମାନଂ ରଥିନଂ ବିଦ୍ଧି' 'ସୋଽଧ୍ୱନଃ ପାରମାପ୍ନୋତି' ଏହିପ୍ରକାର ଗନ୍ତା ଓ ଗନ୍ତବ୍ୟାଦି ବିଶେଷଣ ଦ୍ୱାରା ହୃଦୟରୂପୀ ଗୁହାରେ ଜୀବ ଓ ପରମାତ୍ମାର ଗ୍ରହଣ କରାଯାଇଛି ।

(୨) ମୂଳ-(କ) ବିଶେଷଣଞ୍ଚ ବିଜ୍ଞାନାତ୍ମ ପରମାତ୍ମାନୋରେବ ଭବତି । 'ଆତ୍ମାନଂ ରଥିନଂ ବିଦ୍ଧି, ଶରୀରଂ ରଥମେବ ତୁ'' (କା ୧-୩-୩) ଇତ୍ୟାଦିନା ପରେଣ ଗ୍ରନ୍ଥେନ ରଥିରଥାଦିରୂପକକଳ୍ପନୟା ବିଜ୍ଞନାତ୍ମାନଂ ରଥିନଂ ସଂସାରମୋକ୍ଷୟୋ-ର୍ଗନ୍ତାରଂ କଳ୍ପୟତି । (ଖ) 'ସୋଽଧ୍ୱନଃ ପାରମାପ୍ନୋତି ତଦ୍‌ବିଷ୍ଣୋଃ ପରମଂ ପଦମ୍', (କା ୧।୩।୯) ଇତି ଚ ପରମାତ୍ମନଂ ଗନ୍ତବ୍ୟମ୍, (ଗ) ତଥା ଚ 'ତଂ ଦୁର୍ଦର୍ଶଂ ଗୁଢ଼ମନୁପ୍ରବିଷ୍ଟମ୍, ଗୁହାହିତଂ ଗହ୍ୱରେଷ୍ଟଂ ପୁରାଣମ୍ । ଆଧ୍ୟାତ୍ମଯୋଗାଧିଗମେନଂ ଦେବଂ, ମତ୍ୱା ଧୀରୋ ହର୍ଷଶୋକୌ ଜହାତି' (କା ୧।୨।୧୨) । ଇତି ପୂର୍ବସ୍ମିନ୍ନପି ଗ୍ରନ୍ଥେ ମନ୍ତୃମନ୍ତବ୍ୟତ୍ୱେନୈତାବେବ ବିଶେଷିତୌ ।

**(୨) ଭାଷାଂତର-** (କ) ଗନ୍ତା ଓ ଗନ୍ତବ୍ୟାଦି ବିଶେଷଣ ଜୀବ ଓ ପରମାତ୍ମାରେ ସମ୍ଭବ ଅଟେ । 'ତୁ ଆତ୍ମାକୁ ରଥୀ ଓ ଶରୀରକୁ ରଥ ବୋଲି ଜାଣ' ଇତ୍ୟାଦି ଉତ୍ତର ବାକ୍ୟ ସନ୍ଦର୍ଭରେ ରଥୀ ଓ ରଥାଦିର ରୂପ କଳ୍ପନା କରି ଯମରାଜ ବିଜ୍ଞାନାତ୍ମା ଓ ଜୀବାତ୍ମା ସଂସାର ଓ ମୋକ୍ଷ ପ୍ରତି ଗନ୍ତାରୂପରେ ରଥ କଳ୍ପନା କରିଛନ୍ତି ।

(ଖ) 'ଏହି ସଂସାର ମାର୍ଗ ଦ୍ୱାରା ପାର-ଏହି ବ୍ୟାପକ ପରମାତ୍ମାର ପରମପଦକୁ ପାଏ', ଏହାଦ୍ୱାରା ପରମାତ୍ମାର ଗନ୍ତବ୍ୟରୂପରେ କଳ୍ପନା କରାଯାଇଛି ।

(ଗ) ଏହି ପ୍ରକାର ମଧ୍ୟ 'ଦୁର୍ବିଜ୍ଞେୟ, ଗୁଢ଼ ମାୟାରେ ପ୍ରବିଷ୍ଟ, ଗୁହାବୁଦ୍ଧିରେ ସ୍ଥିତ, ଗହ୍ୱର ଅନେକ ଅନର୍ଥ ଦ୍ୱାରା ବ୍ୟାପ୍ତ, ଦେହରେ ରହିଥିବା, ସର୍ବଦା ଅଧ୍ୟାତ୍ମ ଯୋଗ ବିଷୟରେ ଚିତ୍ତକୁ ହଟାଇ ଆତ୍ମାରେ ସଂଲଗ୍ନ କରିବା, ଏହାର ପ୍ରାପ୍ତିରେ ଆତ୍ମାରେ ମନନ କରି ଧୀର ପୁରୁଷ ହର୍ଷ ଓ ଶୋକକୁ ତ୍ୟାଗ କରେ ।' ଏହି ପ୍ରକାର ପୂର୍ବଗ୍ରନ୍ଥରେ ମନ୍ତ୍ର ଓ ମନ୍ତବ୍ୟ ରୂପରେ ଦୁହିଁଙ୍କୁ ବିଶେଷିତ କରାଯାଇଛି ।

(୩) ମୂଳ-(କ) ପ୍ରକରଣଂ ଚେଦଂ ପରମାତ୍ମନଃ । 'ବ୍ରହ୍ମବିଦୋ' ବଦନ୍ତି' ଇତି ଚବକ୍ତୃବିଶେଷୋପାଦାନଂ ପରମାତ୍ମପରିଗ୍ରହେ ଘଟତେ । ତସ୍ମାଦିହ ଜୀବପର-ମାତ୍ମନାବୁଚ୍ୟେୟାତାମ୍ । (ଖ) ଏଷ ଏବ ନ୍ୟାୟଃ 'ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା' (ମୁଣ୍ଡ ୩।୧।୧) ଇତ୍ୟେବମାଦିଷ୍ୱପି । ତତ୍ରାପି ହ୍ୟଧ୍ୟାତ୍ମାଧିକାରାନ୍ନ ପ୍ରାକୃତୌ ସୁପର୍ଣ୍ଣାବୁଚ୍ୟେତେ । 'ତୟୋରନ୍ୟଃ ପିପ୍ପଳଂ ସ୍ୱାଦବତ୍ତି' ଇତ୍ୟଦନ ଲିଙ୍ଗାଦ୍ ବିଜ୍ଞାନାତ୍ମା ଭବତି । 'ଅନଶ୍ନନ୍ନନ୍ୟୋଽଭିଚାକଶୀତି' ଇତ୍ୟନଶନଚେତନତ୍ୱାଭ୍ୟାଂ ପରମାତ୍ମା । (ଗ) ଅନନ୍ତରେ ଚ ମନ୍ତ୍ରେତାବେବ ଦ୍ରଷ୍ଟୃଦ୍ରଷ୍ଟବ୍ୟଭାବେନ ବିଶିନଷ୍ଟି-ସମାନବୃକ୍ଷେ ପୁରୁଷୋ ନିମଗ୍ନୋଽନୀଶୟା ଶୋଚତି ମୁହ୍ୟମାନଃ । ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟମୀଶମସ୍ୟ ମହିମାନମିତି ବୀତଶୋକଃ' । (ମୁଣ୍ଡ ୩।୧।୨) ।

**(୩) ଭାଷାଂତର-** (କ) ଏହି ପ୍ରକରଣ ପରମାତ୍ମାର 'ବ୍ରହ୍ମବିତ୍‌ମାନେ କହନ୍ତି' ଏହି ପ୍ରକାର ବକ୍ତା ବିଶେଷଣର ଗ୍ରହଣ ପରମାତ୍ମାର ସ୍ୱୀକାର କଲେ ସମ୍ଭବ ହୁଏ । ତେଣୁ ଏଠାରେ ଜୀବ ଓ ପରମାତ୍ମାର କଥନ କରାଯାଇଛି ।

(ଖ) 'ଦୁଇଟି ସୁନ୍ଦର ଓ ସମାନଧର୍ମକ ପକ୍ଷୀ ଅଛନ୍ତି । ସେ ଦୁହେଁ ଏକାଠି ରହନ୍ତି ଏବଂ ଏକ ବୃକ୍ଷ (ଶରୀର)କୁ ଆଶ୍ରୟ କରି ରହିଛନ୍ତି' । ଇତ୍ୟାଦି ଏହି ପ୍ରକରଣରେ ବିଚାର (ଜୀବାତ୍ମା ଓ ପରମାତ୍ମାର ବିଚାର) କରାଯାଇଛି । ସେଠାରେ ମଧ୍ୟ ଅଧ୍ୟାତ୍ମ ପ୍ରକରଣର କାରଣ ହେଉଛି ଯେ ଲୌକିକପକ୍ଷୀମାନଙ୍କର ହୋଇନାହିଁ । ଏଠାରେ 'ଦୁଇଟି ମଧ୍ୟରୁ ଏକ ପକ୍ଷୀ ମଧୁର ଫଳ (କର୍ମ)ଭୋଗ କରେ' ଇତ୍ୟାଦିରେ ଅଦନ (ଭକ୍ଷଣ) ଲିଙ୍ଗଦ୍ୱାରା ଜୀବାତ୍ମା ଅବଗତ ହୁଏ । ଏବଂ 'ଦ୍ୱିତୀୟଟି ଭୋଗ ନକରି ପ୍ରକାଶ କରେ', ଏଠାରେ ଅଭକ୍ଷଣତ୍ୱ ଓ ଚେତନତ୍ୱ ରୂପ ଲିଙ୍ଗ ଦ୍ୱାରା ପରମାତ୍ମା ଅବଗତ ହୁଏ ।

(ଗ) ଏହାର ପୂର୍ବମନ୍ତ୍ରରେ 'ଏକ ହିଁ ଶରୀରରୂପୀବୃକ୍ଷରେମୁହ୍ୟମାନ ଦେହ ମୁଁ ଅଟେ । ଏହି ପ୍ରକାର ଦେହରେ ତାଦାତ୍ମ୍ୟ ଅଭିମାନକୁ ପାଇ ଦରିଦ୍ରଭାବରେ ମୋହ ହୋଇ ଶୋକକରେ । କିନ୍ତୁ ଯେତେବେଳେ ଅନେକ ଯୋଗମାର୍ଗ ଦ୍ୱାରା ଚିତ୍ତଶୁଦ୍ଧ ହୋଇ ପରମାତ୍ମାର ମହିମାକୁ ଜାଣେ, ସେତେବେଳେ ସେ ଶୋକଶୂନ୍ୟ ହୁଏ' । ଏପରି ଦୁଇଟି ଦ୍ରଷ୍ଟା ଓ ଦ୍ରଷ୍ଟବ୍ୟ ଭାବରେ ବିଶେଷିତ ହୋଇ ରହିଛି ।

(୪) ମୂଳ-(କ) ଅପର ଆହ- 'ଦ୍ୱା ସୁପର୍ଣ୍ଣା' ଇତି ନେୟମୃଗସ୍ୟାଧିକରଣସ୍ୟ ସିଦ୍ଧାନ୍ତଂ ଭଜତେ, ପୈଙ୍ଗି ରହସ୍ୟବ୍ରାହ୍ମଣେନାନ୍ୟଥା ବ୍ୟାଖ୍ୟାତତ୍ୱାତ୍ । 'ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍‌ବତ୍ତୀତି ସତ୍ତ୍ୱମନଶ୍ନନ୍ନନ୍ୟୋଽଭିଚାକଶୀତାତ୍ୟନଶ୍ନନ୍ନନ୍ୟୋ-ଽଭିପଶ୍ୟତି,



ଜ୍ଞସ୍ତାବେତୌ ସତ୍ତ୍ୱକ୍ଷେତ୍ରଜ୍ଞୌ' ଇତି । (ଖ) ସତ୍ତ୍ୱଶବ୍ଦୋ ଜୀବଃ, କ୍ଷେତ୍ରଜ୍ଞଶବ୍ଦଃ ପରମାତ୍ମେତି ଯଦୁଚ୍ୟତେ, ତନ୍ନ ସତ୍ତ୍ୱକ୍ଷେତ୍ରଜ୍ଞଶବ୍ଦୟୋରନ୍ତଃକରଣ ଶାରୀରପରତୟା ପ୍ରସିଦ୍ଧତ୍ୱାତ୍ । ତତ୍ରୈବ ବ୍ୟାଖ୍ୟାତତ୍ୱାତ୍-ତଦେତତ୍‌ସତ୍ତ୍ୱଂ ଯେନ ସ୍ୱପ୍ନଂ ପଶ୍ୟତି, ଅଥ ଯୋଽୟଂ ଶାରୀର ଉପଦେଷ୍ଟା ସ କ୍ଷେତ୍ରଜ୍ଞସ୍ତାବେତୌ ସତ୍ତ୍ୱକ୍ଷେତ୍ରଜ୍ଞୌ ଇତି । (ଗ) ନାପ୍ୟସ୍ୟାଧିକରଣସ୍ୟ ପୂର୍ବପକ୍ଷଂ ଭଜତେ । ନହ୍ୟତ୍ର ଶାରୀରଃ କ୍ଷେତ୍ରଜ୍ଞଃ କର୍ତ୍ତୃତ୍ୱଭୋକ୍ତୃତ୍ୱାଦିନା ସଂସାର ଧର୍ମେଣୋପେତୋ ବିବକ୍ଷ୍ୟତେ । କଥଂ ତର୍ହି ? ସର୍ବସଂସାରଧର୍ମାତୀତୋ ବ୍ରହ୍ମସ୍ୱଭାବଶ୍ଚୈତନ୍ୟମାତ୍ରସ୍ୱରୂପଃ, 'ଅନଶ୍ନ-ନ୍ନନ୍ୟୋଽଭିଚାକଶୀତି' 'ଅନଶ୍ନନନ୍ୟୋଽଭିପଶ୍ୟତି ଜ୍ଞଃ' ଇତି ବଚନାତ୍ । 'ତତ୍ତ୍ୱମସି', କ୍ଷେତ୍ରଜ୍ଞଂଚାପି ମାଂ ବିଦ୍ଧି' (ଗୀ ୧୩-୨) ଇତ୍ୟାଦି ଶ୍ରୁତିସ୍ମୃତିଭ୍ୟଶ୍ଚ । (ଘ) ତାବତା ଚ ବିଦ୍ୟୋପସଂହାରଦର୍ଶନମେବ ମେବାବକଳ୍ପତେ । ତାବେତୌ 'ସତ୍ତ୍ୱକ୍ଷେତ୍ରଜ୍ଞୌ ନ ହ ବା ଏବଂ ବିଦି କିଂଚନ ରଜ ଆଧ୍ୱଂସତେ' ଇତ୍ୟାଦି । (ଙ) କଥଂ ପୁନରସ୍ମିନ୍‌ପକ୍ଷେ 'ତୟୋରନ୍ୟଃ ପିପ୍‌ପଲଂ ସ୍ୱାଦବତ୍ତୀତି ସତ୍ତ୍ୱମ୍', ଇତ୍ୟଚେତନେ ସତ୍ତ୍ୱେ ଭୋକ୍ତୃତ୍ୱବଚନମିତି ? ଉଚ୍ୟତେ-ନେୟଂ ଶ୍ରୁତିରଚେତନସ୍ୟ ସତ୍ତ୍ୱସ୍ୟ ଭୋକ୍ତୃତ୍ୱ ବକ୍ଷ୍ୟାମୀତି ପ୍ରବୃତ୍ତା । କି ତର୍ହି ଚେତନସ୍ୟ କ୍ଷେତ୍ରଜ୍ଞସ୍ୟାଭୋକ୍ତୃତ୍ୱଂ ବ୍ରହ୍ମସ୍ୱଭାବତାଂ ଚ ବକ୍ଷ୍ୟାମୀତି । ତଦର୍ଥଂ ସୁଖାଦିବିକ୍ରିୟାବତି ସତ୍ତ୍ୱେ ଭୋକ୍ତୃତ୍ୱମଧ୍ୟା-ରୋପୟତି । ଇଦଂ ହି କର୍ତ୍ତୃତ୍ୱଂ ଭୋକ୍ତୃତ୍ୱଂ ଚ ସତ୍ତ୍ୱକ୍ଷେତ୍ରଜ୍ଞୟୋରିତ-ରେତରସ୍ୱଭାବାବିବେକକୃତଂ କଳ୍ପ୍ୟତେ । (ଚ) ପରମାର୍ଥସ୍ତୁ ନାନ୍ୟତରସ୍ୟାପି ସମ୍ଭବତି ଅଚେତନତ୍ୱାତ୍ ସତ୍ତ୍ୱସ୍ୟ, ଅବିକ୍ରିୟାତ୍ୱାଚ୍ଚ କ୍ଷେତ୍ରଜ୍ଞସ୍ୟ । ଅବିଦ୍ୟାପ୍ରତ୍ୟୁପସ୍ଥାପିତସ୍ୱଭାବତ୍ୱାଚ୍ଚ ସତ୍ତ୍ୱସ୍ୟ ସୁତରାଂ ନ ସମ୍ଭବତି ।

**(୪) ଭାଷାଂତର-** (କ) ଅନ୍ୟମାନଙ୍କର ମତରେ- 'ଦ୍ୱା ସୁପର୍ଣ୍ଣା' ଏହି ମନ୍ତ୍ର ରକ୍ ଅଧିକରଣରୁ ସିଦ୍ଧାନ୍ତକୁ ପ୍ରତିପାଦନ କରେ ନାହିଁ । କାରଣ-ପୈଙ୍ଗିରହସ୍ୟ ବ୍ରାହ୍ମଣରେ ଏହାର ଅନ୍ୟପ୍ରକାର ବ୍ୟାଖ୍ୟାନ କରାଯାଇଅଛି । ଯଥା- ''ଏମାନଙ୍କ ମଧ୍ୟରୁ ଜଣେ ମଧୁରଫଳ ଭୋଗ କରେ, ସେ ସତ୍ତ୍ୱ (ବୁଦ୍ଧି) ଅଟେ । ଅନ୍ୟଟି ଭକ୍ଷଣ ବିନା କେବଳ ଦେଖେ, ଅର୍ଥାତ୍ କର୍ମଫଳ ଭୋଗନକରି କେବଳ ଦେଖେ, ସେ ଜ୍ଞ ବା କ୍ଷେତ୍ରଜ୍ଞ । ଏହି ଦୁଇଟି ସତ୍ତ୍ୱ ଓ କ୍ଷେତ୍ରଜ୍ଞ'' ।

(ଖ) ସତ୍ତ୍ୱଶବ୍ଦ ଜୀବବାଚକ ଅଟେ ଓ କ୍ଷେତ୍ରଜ୍ଞଶବ୍ଦ ପରମାତ୍ମାବାଚକ ଅଟେ ବୋଲି ଯାହା କୁହାଯାଇଛି, କିନ୍ତୁ ତାହା ଠିକ୍ ନୁହେଁ । କାରଣ-ସତ୍ତ୍ୱ ଏବଂ କ୍ଷେତ୍ରଜ୍ଞଶବ୍ଦ ଅନ୍ତଃକରଣ ତଥା ଜୀବପରକ ପ୍ରସିଦ୍ଧ ଅଟେ ଏବଂ ପୈଙ୍ଗରହସ୍ୟବ୍ରାହ୍ମଣଗ୍ରନ୍ଥରେ ''ଯାହାଦ୍ୱାରା ସ୍ୱପ୍ନ

ଦେଖେ, ସେ ସତ୍ତ୍ୱ । ଯେ ଶରୀର ଉପଦେଷ୍ଟା ସେ କ୍ଷେତ୍ରଜ୍ଞ, ଏହି ପ୍ରକାର ଦୁହେଁ ସତ୍ତ୍ୱ ଓ କ୍ଷେତ୍ରଜ୍ଞ ଅଟନ୍ତି' ଏହି ପ୍ରକାର ବ୍ୟାଖ୍ୟାନ କରାଯାଇଛି ।

(ଗ) ପୁନଶ୍ଚ ଋକ୍ (ଦ୍ୱା ସୁପର୍ଣ୍ଣା) ଅଧିକରଣରେ ପୂର୍ବପକ୍ଷ ଭାବ (ସତ୍ତ୍ୱଶବ୍ଦ ଦ୍ୱାରା ବୁଦ୍ଧି ଓ କ୍ଷେତ୍ରଜ୍ଞଶବ୍ଦଦ୍ୱାରା ଜୀବର ଗ୍ରହଣ)ର ପ୍ରତିପାଦନ ହୋଇନାହିଁ । ବସ୍ତୁତଃ କର୍ତ୍ତୃତ୍ୱ, ଭୋକ୍ତୃତ୍ୱାଦି ସଂସାରୀ ଧର୍ମ ଦ୍ୱାରା ଯୁକ୍ତ ଶାରୀର କ୍ଷେତ୍ରଜ୍ଞ ଏଠାରେ ବିବକ୍ଷିତ ନୁହେଁ, କିନ୍ତୁ ସବୁ ସଂସାର ଧର୍ମ ଦ୍ୱାରା ଅତୀତ ବ୍ରହ୍ମସ୍ୱଭାବ ଚୈତନ୍ୟ ମାତ୍ରସ୍ୱରୂପ ବିବକ୍ଷିତ ଅଟେ । କାରଣ- 'ଅନ୍ୟ ପରମାତ୍ମା ଉପଭୋଗ ନ କରି କେବଳ ଦେଖେ', 'କ୍ଷେତ୍ରଜ୍ଞ, ତୁମେ ମୋତେ ଜାଣ' ଇତି ଶ୍ରୁତି ସ୍ମୃତି ପ୍ରମାଣଦ୍ୱାରା ଅର୍ଥ ହୋଇଛି ।

(ଘ) କେବଳ ମନ୍ତ୍ର ବ୍ୟାଖ୍ୟାନ ଦ୍ୱାରା 'ସେ ଦୁଇଟି ସତ୍ତ୍ୱ ଓ କ୍ଷେତ୍ରଜ୍ଞ । ଏହି ବିଦ୍ୟାରୁ ଅବିଦ୍ୟାକୁ ଜାଣିଥିବା ଲୋକରୁ ଅବିଦ୍ୟା ସ୍ପର୍ଶ କରେ ନାହିଁ' ଇତ୍ୟାଦି ବ୍ରହ୍ମ ବିଦ୍ୟାର ଉପସଂହାରର ଦର୍ଶନ ଜୀବନ ବ୍ରହ୍ମବିଦ୍ୟା କହିବା ଦ୍ୱାରା ସମ୍ଭବ ହୁଏ ।

(ଙ) ପରନ୍ତୁ ଅନ୍ୟପକ୍ଷରେ 'ତୟୋରନ୍ୟଃ ପିପ୍ପଳଂ ସ୍ୱାଦବତ୍ତି' ସ୍ଥଳରେ ଅଚେତନ ସତ୍ତ୍ୱଠାରେ ଭୋକ୍ତୃତ୍ୱ ବଚନ କିପରି ସମ୍ଭବ ହେବ ? ତେଣୁ କୁହାଯାଇଛି- ଅଚେତନ ବସ୍ତୁଠାରେ ଭୋକ୍ତୃତ୍ୱ କହିବା ଉଚିତ୍, ତେଣୁ 'ଦ୍ୱା ସୁପର୍ଣ୍ଣା' ଏହି ଶ୍ରୁତି ଏଠାରେ ପ୍ରବୃତ୍ତ ହୁଏ ନାହିଁ, କିନ୍ତୁ ଚେତନ କ୍ଷେତ୍ରଜ୍ଞଠାରେ ଅଭୋକ୍ତୃତ୍ୱ ଓ ବ୍ରହ୍ମସ୍ୱଭାବତ୍ୱ କହିପାରିବା । ଏହାପାଇଁ ସୁଖାଦି ବିକ୍ରିୟା ବିକାରୀସତ୍ତ୍ୱଠାରେ ଭୋକ୍ତୃତ୍ୱ ଅଧ୍ୟାରୋପ କରୁଛି । ପରମାର୍ଥତଃ କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱ ସତ୍ତ୍ୱ ଓ କ୍ଷେତ୍ରଜ୍ଞର ପରସ୍ପର ସ୍ୱଭାବରେ ଅବିବେକ ଦ୍ୱାରା କଳ୍ପିତ ଅଟେ ।

(ଚ) ତେଣୁ ଦୁଇଟି ମଧ୍ୟରୁ ଗୋଟିକରେ କର୍ତ୍ତୃତ୍ୱ ସମ୍ଭବ ନୁହେଁ, କାରଣ-ବୁଦ୍ଧି ଅଚେତନ ଓ କ୍ଷେତ୍ରଜ୍ଞ କୂଟସ୍ଥ, ବିକାରରହିତ ଅଟେ । ଅବିଦ୍ୟା ଦ୍ୱାରା ପ୍ରତ୍ୟୁପସ୍ଥାପିତ ସ୍ୱଭାବୀ ହେଲେ ସତ୍ତ୍ୱଗୁଣରେ କର୍ତ୍ତୃତ୍ୱ ଭୋକ୍ତୃତ୍ୱ ସମ୍ଭବ ହୁଏ ନାହିଁ ।

(୫) ମୂଳ-(କ) ତଥା ଚ ଶ୍ରୁତିଃ-'ଯତ୍ର ବା ଅନ୍ୟଦିବ ସ୍ୟାତ୍ତତ୍ରାନ୍ୟୋଽନ୍ୟତ୍ ପଶ୍ୟେତ୍' ଇତ୍ୟାଦିନା ସ୍ୱପ୍ନଦୃଷ୍ଟ ହସ୍ତ୍ୟାଦିବ୍ୟବହାରବଦବିଦ୍ୟାବିଷୟ ଏବ କର୍ତ୍ତୃତ୍ୱାଦି-ବ୍ୟବହାରଂ ଦର୍ଶୟତି । (ଖ) 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ ତତ୍କେନ କଂ ପଶ୍ୟେତ୍' (ବୃ ୪।୫।୧୫) ଇତ୍ୟାଦିନା ଚ ବିବେକିନଃ କର୍ତ୍ତୃତ୍ୱାଦିବ୍ୟବହାରଭାବଂ ଦର୍ଶୟତି ।

**(୫) ଭାଷାଂତର-** (କ) ଏହିପ୍ରକାର 'ଯେଉଁଠାରେ ଅବିଦ୍ୟା ଅବସ୍ଥାରେ ସେ ଦ୍ୱୈତ ହୁଏ, ତେବେ ସେ ଅନ୍ୟକୁ ଦେଖେ' ଇତ୍ୟାଦି ଶ୍ରୁତି ଦ୍ୱାରା ସ୍ୱପ୍ନରେ



ଦେଖା ଯାଉଥିବା ହସ୍ତୀ ଇତ୍ୟାଦିର ବ୍ୟବହାର ସଦୃଶ ଅବିଦ୍ୟା ବିଷୟକ ହିଁ କର୍ତ୍ତୃତ୍ୱାଦିବ୍ୟବହାର ଦେଖାଏ ।

(ଖ) ପୁନଶ୍ଚ 'ଯେଉଁଠାରେ ଏହାପାଇଁ ସବୁ ଆତ୍ମା ହୋଇଗଲେ, କିଏ କାହାକୁ ଦେଖିପାରିବ' ଇତ୍ୟାଦି ଦ୍ୱାରା ଏହି ଶ୍ରୁତି ବ୍ରହ୍ମବିତ୍‌ଠାରେ କର୍ତ୍ତୃତ୍ୱାଦି ବ୍ୟବହାରର ଅଭାବ ପ୍ରଦର୍ଶନ କରାଏ ।

## ४ अन्तराधिकरणम् । सू० १३ - १७

## ଅନ୍ତରାଧିକରଣମ୍ - ୪

## अन्तर उपपत्तेः ॥ १३ ॥

## (୧) ଅନ୍ତର ଉପପତ୍ତେଃ ।୧।୨।୧୩

ଅନ୍ତରଃ-'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ' ଏହି ଶ୍ରୁତିବାକ୍ୟର ପ୍ରତିପାଦ୍ୟମାନ ନେତ୍ରାଭ୍ୟନ୍ତର୍ଗତ ପୁରୁଷ ପରମାତ୍ମା ଅଟେ । କିନ୍ତୁ ଛାୟାତ୍ମା ନୁହେଁ । ଉପପତ୍ତେଃ-କାରଣ ଉକ୍ତ ଶ୍ରୁତି ପ୍ରତିପାଦିତ ଆତ୍ମତ୍ୱ ଅମୃତତ୍ୱାଦିଧର୍ମଗୁଡ଼ିକର ପରମାତ୍ମାରେ ଉତପତ୍ତି ହୁଏ ।

(୨) ମୂଳ-(କ) 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତ ଏଷ ଆତ୍ମେତି ହୋବାଚୈତଦମୃତମଭୟମେତଦ୍ ବ୍ରହ୍ମେତି । ତଦ୍ୟପ୍ୟସ୍ମିନ୍ ସର୍ପିର୍ବୋଦକଂ ବା ସିଞ୍ଚତି ବର୍ତ୍ମନୀ ଏବ ଗଚ୍ଛତି (ଛା ୪-୧୫-୧) ଇତ୍ୟାଦି ଶ୍ରୂୟତେ। (ଖ) ତତ୍ର ସଂଶୟଃ-କିମୟଂ ପ୍ରତିବିମ୍ବାତ୍ମାଽକ୍ଷ୍ୟଧିକରଣୋ ନିର୍ଦ୍ଦିଶ୍ୟତେ, ଅଥବା ବିଜ୍ଞାନାତ୍ମା ଉତ ଦେବତାତ୍ମେନ୍ଦ୍ରିୟସ୍ୟାଧିଷ୍ଠାତା, ଅଥେଶ୍ୱର ଇତି । କିଂ ତାବତ୍‌ପ୍ରାପ୍ତମ୍ (ଗ) ଛାୟାତ୍ମା ପୁରୁଷପ୍ରତିରୂପ ଇତି । କୁତଃ ତସ୍ୟ ଦୃଶ୍ୟମାନତ୍ୱପ୍ରସିଦ୍ଧେଃ । 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ'' ଉତି ତ ପ୍ରସିଦ୍ଧବହୁପଦେଶାତ୍ । ବିଜ୍ଞାନାତ୍ମନୋ ବାଽୟଂ ନିର୍ଦ୍ଦେଶ ଇତି ଯୁକ୍ତମ୍ । ସ ହି ଚକ୍ଷୁ ଷା ରୂପଂ ପଶ୍ୟଂଶ୍ଚକ୍ଷୁଂଷି ସନ୍ନିହିତୋ ଭବତି । (ଘ) ଆତ୍ମଶବ୍ଦଶ୍ଚାସ୍ମିନ୍-ପକ୍ଷେଽନୁକୂଲୋ ଭବତି । ଆଦିତ୍ୟପୁରୁଷୋ ବା ଚକ୍ଷୁଷୋଽନୁଗ୍ରାହକଃ ପ୍ରତୀୟତେ, 'ରଶ୍ମିଭିରେଷୋଽସ୍ମିନ୍‌ପ୍ରତିଷ୍ଠିତଃ'', (ବୃହ ୫-୫-୨) ଇତି ଶ୍ରୁତେଃ, ଅମୃତତ୍ୱାଦୀନାଂ ଚ ଦେବତାତ୍ମାନ୍ୟପି କଥଞ୍ଚିତ୍ ସମ୍ଭବାତ୍ । ନେଶ୍ୱରଃ, ସ୍ଥାନବିଶେଷନିର୍ଦ୍ଦେଶାଦିତି ।

**(୨) ଭାଷାଂତର**- (କ) ଏହି ଯେଉଁ ପୁରୁଷ ଦେଖାଯାଏ, ଏହା ଆତ୍ମା ଅଟେ । ଏହା ଅମୃତ, ଅଭୟ ଏବଂ ବ୍ରହ୍ମସ୍ୱରୂପ ଅଟେ । ଏହି ପୁରୁଷର ସ୍ଥାନରୂପ ନେତ୍ରରେ ଯଦି ଘିଅ ବା ଜଳ ଢ଼ଳାଯାଏ, ତେବେ ସେ ନିମିଷକେ ଗଳିଯାଏ' ଏହିପ୍ରକାର ଶୁଣାଯାଏ ।

(ଖ) ଏଠାରେ ସଂଶୟ ହୁଏ ଯେ- ନେତ୍ର ଅଧିକରଣଯୁକ୍ତ କଣ ଛାୟାତ୍ମା ଅଥବା ଜୀବ ବା ଇନ୍ଦ୍ରିୟ ଅଧିଷ୍ଠାତା ଦେବତା ବା ଈଶ୍ୱରର ନିର୍ଦ୍ଦେଶ ଅଟେ । ତେବେ ଏଠାରେ କଣ ହେବ ?

(ଗ) ପୂର୍ବପକ୍ଷ-ପୁରୁଷର ପ୍ରତିବିମ୍ବ ଛାୟାତ୍ମାର ନିର୍ଦ୍ଦେଶ ହୁଏ । କିପରି । ଏହାଦ୍ୱାରା ତାହାର ଦୃଶ୍ୟମାନତ୍ୱ ପ୍ରସିଦ୍ଧ ଅଟେ । ଅଥବା ଜୀବାତ୍ମା-ବିଷୟକ ଏହା ନିର୍ଦ୍ଦେଶଯୁକ୍ତ, କାରଣ-ସେ ଚକ୍ଷୁଦ୍ୱାରା ରୂପକୁ ଦେଖି ନେତ୍ରରେ ସମ୍ବନ୍ଧ ସୃଷ୍ଟିକରେ ।

(ଘ) ଏହି ପକ୍ଷରେ ଶ୍ରୁତି ନିର୍ଦ୍ଦିଷ୍ଟ ଆତ୍ମଶବ୍ଦ ମଧ୍ୟ ଅନୁକୂଳ ସଙ୍ଗତ ହୁଏ, ଅଥବା ନେତ୍ରେନ୍ଦ୍ରିୟର ଅନୁଗ୍ରାହକ ଆଦିତ୍ୟପୁରୁଷ ପ୍ରତୀତ ହୁଏ, କାରଣ- 'କିରଣଦ୍ୱାରା ଏହି ସୂର୍ଯ୍ୟ ନେତ୍ରରେ ପ୍ରତିଷ୍ଠିତ ହୁଏ' ଏହି ପ୍ରକାର ଶ୍ରୁତିବାକ୍ୟ ଏବଂ ଅମୃତତ୍ୱାଦିର ଦେବତାତ୍ମାରେ ଯଥା କଥଂଚିତ୍ ସମ୍ଭବ ହୁଏ । ପରନ୍ତୁ ସ୍ଥାନବିଶେଷନିର୍ଦ୍ଦେଶଦ୍ୱାରା ସର୍ବଗତ ଈଶ୍ୱରର ଗ୍ରହଣ ସମ୍ଭବ ହୁଏ ନାହିଁ ।

(୩) ମୂଳ-(କ) ଏବଂ ପ୍ରାପ୍ତେବ୍ରୂମଃ-ପରମେଶ୍ୱର ଏବାକ୍ଷିଣ୍ୟଭ୍ୟନ୍ତରଃ ପୁରୁଷ ଇହୋପଦିଷ୍ଟ ଇତି । କସ୍ମାତ୍ ? ଉପପତ୍ତେଃ । ଉପପଦ୍ୟତେ ହି ପରମେଶ୍ୱରେ ଗୁଣଜାତମିହୋପଦିଶ୍ୟମାନମ୍ । ଆତ୍ମତ୍ୱଂ ତାବନ୍ମୁଖ୍ୟୟା ବୃତ୍ତ୍ୟା ପରମେଶ୍ୱର ଉପପଦ୍ୟତେ, 'ସ ଆତ୍ମା ତତ୍ତ୍ୱମସି' ଇତି ଶ୍ରୁତେଃ । (ଖ) ଅମୃତତ୍ୱାଭୟତ୍ୱେ ଚ ତସ୍ମିନ୍ନସକୃଚ୍ଛ୍ରୁତୌ ଶ୍ରୂୟତେ, ତଥା ପରମେଶ୍ୱରାନୁରୂପମେତଦକ୍ଷିସ୍ଥାନମ୍ । ଯଥା ହି ପରମେଶ୍ୱରଃ ସର୍ବଦୋଷୈରଲିପ୍ତଃ, ଅପହତପାପ୍ମତ୍ୱାଦିଶ୍ରବଣାତ୍, ତଥାଽକ୍ଷିସ୍ଥାନଂ ସର୍ବଲେପରହିତମୁପଦିଷ୍ଟଂ, 'ତଦ୍ୟପ୍ୟସ୍ମିନ୍ ସର୍ପିର୍ବୋଦକଂ ବା ସିଞ୍ଚତି ବାତ୍ମନୀ ଏବ ଗଚ୍ଛତି' ଇତି ଶ୍ରୁତେଃ । (ଗ) ସଂଯଦ୍ୱାମତ୍ୱାଦିଗୁଣୋପଦେଶଶ୍ଚ ତସ୍ମିନ୍ନବକଳ୍ପତେ-'ଏତଂ ସଂଯଦବାମ ଇତ୍ୟାଚକ୍ଷତେ, ଏତଂ ହି ସର୍ବାଣି ବା ମାନ୍ୟଭିସଂଯନ୍ତି' । 'ଏଷ ଉ ଏବ ବାମନୀରେଷ ହି ସର୍ବାଣି ବାମାନି ନିୟତି ।' 'ଏଷ ଉ ଏବ ଭାମିନୀରେଷ ହି ସର୍ବେଷୁ ଲୋକେଷୁ ଭାତି ।' (ଛା ୪।୧୫।୨, ୩, ୪) ଇତି ଚ । ଅତ ଉପପତ୍ତେରାନ୍ତରଃ ପରମେଶ୍ୱରଃ ।

**(୩) ଭାଷାଂତର** - (କ) ସିଦ୍ଧାନ୍ତ-ଚକ୍ଷୁର ଅଭ୍ୟନ୍ତର ପୁରୁଷଶବ୍ଦ ଦ୍ୱାରା ଏଠାରେ ପରମେଶ୍ୱର ଉପଦିଷ୍ଟ ହୁଏ; କିପରି ? ଏହା ପ୍ରତିପାଦିତ ଗୁଣଗୁଡ଼ିକର ଏଠାରେ ଉପପତ୍ତି



ହୁଏ, ବେଦରେ ଉପଦିଶ୍ୟମାନଗୁଣସମୂହ ପରମେଶ୍ୱରଠାରେ ଘଟେ । 'ସ ଆତ୍ମା ତତ୍ତ୍ୱମସି' ଏହି ବାକ୍ୟଦ୍ୱାରା ଉପଦିଷ୍ଟ ଆତ୍ମତ୍ୱ ମୁଖ୍ୟବୃତ୍ତି ଦ୍ୱାରା ପରମେଶ୍ୱରଠାରେ ଉପପନ୍ନ ହୁଏ ।

(ଖ) ଅମୃତତ୍ୱ ଓ ଅଭୟତ୍ୱ ବେଦରେ ପରମେଶ୍ୱର ପାଇଁ ବାରମ୍ବାର ଶୁଣାଯାଉଛି; ସେପରି ଅକ୍ଷିସ୍ଥାନ ମଧ୍ୟ ସମସ୍ତ ଲେପରହିତ ଉପଦିଷ୍ଟ ହୁଏ । କାରଣ- 'ତଦ୍ୟପ୍ୟସ୍ମିନ୍' (ଏହି ସୂତ୍ରରଆରମ୍ଭରେ ଦେଖ) ଏହି ବେଦବାକ୍ୟ ।

(ଗ) 'ଏହାଙ୍କୁ ସଂଯଦ୍ ବାମ କୁହାଯାଏ, କାରଣ ସମସ୍ତ ସେବନୀୟ ବସ୍ତୁଗୁଡ଼ିକ ସମସ୍ତଙ୍କର ଆରମ୍ଭରେ ଏହାକୁ ମିଳେ', 'ନିଶ୍ଚୟ ଏହା ବାମନୀ ଅଟେ, କାରଣ-ସବୁପ୍ରାଣୀଙ୍କର ପୁଣ୍ୟଫଳକୁ ବହନ କରେ', 'ଏହି ନିଶ୍ଚୟ ଯେ ଅକ୍ଷିପୁରୁଷ ଭାମନୀ ଅଟେ, କାରଣ-ଆଦିତ୍ୟ ଚନ୍ଦ୍ର ଆଦିରୂପରେ ଏହି ସବୁ ଲୋକରେ ପ୍ରକାଶିତ ହୁଏ,' ଏହି ପ୍ରକାର ସଂଯଦ୍ ବାମତ୍ୱାଦିଗୁଣର ଉପଦେଶ ମଧ୍ୟ ପରମେଶ୍ୱରଠାରେ ଉତପନ୍ନ ହୁଏ । ଏହି ଉତପତ୍ତିରେ ଅକ୍ଷି ଅଭ୍ୟନ୍ତର ପୁରୁଷ ପରମେଶ୍ୱର ଅଟେ ।

## स्थानादिव्यपदेशाच्च ॥ १४ ॥

## (୧) ସ୍ଥାନାଦିବ୍ୟପଦେଶାଚ୍ଚ ।୧।୨।୧୪

ସ୍ଥାନାଦିବ୍ୟପଦେଶାତ୍ ଚ-'ଯତ୍ ଚକ୍ଷୁଷି ତିଷ୍ଠନ୍' ଧ୍ୟାନନିମିତ୍ତ ଏହିପ୍ରକାର ସ୍ଥାନାଦିର କଥନଦ୍ୱାରା ସର୍ବଗତ ପରମେଶ୍ୱରର ଅକ୍ଷି ସ୍ଥାନ ହୁଏ । ଅତଃ 'ଯ ଏଷୋଽକ୍ଷିଣି' ଏଠାରେ ଅକ୍ଷିପୁରୁ ହିଁ ପରମେଶ୍ୱର ଅଟେ ।

(୨) ମୂଳ- (କ) କଥଂ ପୁନରାକାଶବତ୍ ସର୍ବଗତସ୍ୟ ବ୍ରହ୍ମଣୋଽକ୍ଷ୍ୟଳ୍ପଂସ୍ଥାନମୁପପଦ୍ୟତ ଇତି ? ଅତ୍ରୋଚ୍ୟତେ-ଭବେଦେଷାଽନବକୃପ୍ତିଃ । ଯଦ୍ୟେତଦେବୈକଂ ସ୍ଥାନମସ୍ୟ ନିର୍ଦ୍ଦିଷ୍ଟଂ ଭବେତ୍ । ସନ୍ତି ହନ୍ୟାନ୍ୟପି ପୃଥିବ୍ୟାଦୀନି ସ୍ଥାନାନ୍ୟସ୍ୟ ନିର୍ଦ୍ଦିଷ୍ଟାନି-'ଯଃ ପୃଥିବ୍ୟାଂ ତିଷ୍ଠନ୍', (ବୃ ୩।୭।୩) ଇତ୍ୟାଦିନା । ତେଷୁ ଚକ୍ଷୁରପି ନିର୍ଦ୍ଦିଷ୍ଟମ୍-ଯଚ୍ଚକ୍ଷୁଷି ତିଷ୍ଠନ୍' ଇତି । (ଖ) 'ସ୍ଥାନାଦିବ୍ୟପଦେଶାତ୍' ଇତ୍ୟାଦିଗ୍ରହଣେନୈତଦ୍ଦର୍ଶୟତି । ନ କେବଳଂ ସ୍ଥାନମେବୈକମନୁଚିତଂ ବ୍ରହ୍ମଣୋଽନୁଚିତଂ ନିର୍ଦ୍ଦିଶ୍ୟମାନଂ ଦୃଶ୍ୟତେ- 'ତସ୍ୟୋଦିତି ନାମ', 'ହିରଣ୍ୟଶ୍ମଶ୍ରୁଃ', (ଛା ୧।୬।୬, ୭) ଇତ୍ୟାଦି । (ଗ) ନିର୍ଗୁଣମପି ସଦ୍‌ବ୍ରହ୍ମ ନାମରୂପଗତୈର୍ଗୁଣୈଃ ସଗୁଣମୁପାସନାର୍ଥଂ ତତ୍ର ତତ୍ରୋପଦିଶ୍ୟତ ଇତ୍ୟେତଦପ୍ୟୁକ୍ତମେବ । (ଘ) ସର୍ବଗତସ୍ୟାପି ବ୍ରହ୍ମଣ ଉପଲବ୍ଧ୍ୟର୍ଥଂ ସ୍ଥାନବିଶେଷା ନ ବିରୁଦ୍ଧ୍ୟତେ, ଶାଳଗ୍ରାମ ଇବ ବିଷ୍ଣୋରିତ୍ୟେତଦପ୍ୟୁକ୍ତମେବ ।

(୨) ଭାଷାଂତର- (କ) ଗଗନ ସଦୃଶ ସର୍ବଗତବ୍ରହ୍ମର ନେତ୍ରରୂପ ଅଳ୍ପସ୍ଥାନ କିପରି ହୋଇପାରେ ? ତେଣୁ କୁହାଯାଇଛି- ଏହି ବ୍ରହ୍ମର ଏହି ଏକସ୍ଥାନ ନିର୍ଦ୍ଦିଷ୍ଟ ହୁଏ, ତେବେ ଏହା ଅନୁପପତ୍ତି ହେବ । ପରନ୍ତୁ 'ଯିଏ ପୃଥିବୀରେ ରହି ପୃଥିବୀକୁ ଚଳାଏ, ଯାହାକୁ ପୃଥିବୀ ଜାଣିନାହିଁ ।' ଏହାଦ୍ୱାରା ପୃଥ୍ୱୀ ଆଦି ଅନ୍ୟସ୍ଥାନ ମଧ୍ୟ ଏହାପାଇଁ ନିର୍ଦ୍ଦିଷ୍ଟ ଅଟେ । ଏହି ସ୍ଥାନମାନଙ୍କରେ 'ଯକ୍ଷୁଂଷ୍ଟଷି ତିଷ୍ଠନ୍' ଏହିପ୍ରକାର ଚକ୍ଷୁର ନିର୍ଦ୍ଦେଶ ଅଛି ।

(ଖ) 'ସ୍ଥାନାଦିବ୍ୟପଦେଶାତ୍' ଏହି ସୂତ୍ରରେ ଆଦିପଦଗ୍ରହଣଦ୍ୱାରା ସୂତ୍ରକାର ଦେଖାଇଛନ୍ତି ଯେ-ବ୍ରହ୍ମର ନିର୍ଦିଶ୍ୟମାନ କେବଳ ଏକ ହିଁ ଅନୁଚିତ ସ୍ଥାନ ଦେଖାଇନାହିଁ, କିନ୍ତୁ 'ଏହାର 'ଉତ୍' ଏପରି ନାମ ଯେ- ଅର୍ଥାତ୍ ସର୍ବପାପରହିତ ହେଲେ ମଧ୍ୟ ପରମାତ୍ମାକୁ 'ଉତ' ବୋଲି କୁହାଯାଏ । ଏବଂ ହିରଣ୍ୟଶ୍ମଶ୍ରୁ ଅର୍ଥାତ୍ ସୁବର୍ଣ୍ଣମୟୀ ଦାଢ଼ୀ ଓ ନିଶଧାରୀ ଇତ୍ୟାଦି ଦ୍ୱାରା ନାମ ଓ ରୂପରହିତ ବ୍ରହ୍ମର ଏହିପ୍ରକାର ଅନୁଚିତ ନାମ, ରୂପାଦି ଦେଖାଦେଇଛି ।

(ଗ) ବ୍ରହ୍ମ ନିର୍ଗୁଣ ଅଟେ, କିନ୍ତୁ ନାମ ତଥା ରୂପଗତଗୁଣଦ୍ୱାରା ସଗୁଣର ଉପାସନା ପାଇଁ ପ୍ରତ୍ୟେକ ସ୍ଥାନରେ ଉପଦେଶ ଦିଆଯାଇଛି । ଏହା ଏଠାରେ ହିଁ କୁହାଯାଇଛି ।

(ଘ) ଯେପରି ଉପାସନାନିମିତ୍ତ ବିଷ୍ଣୁଙ୍କର ଶାଳଗ୍ରାମରେ ଉପଦେଶ ବିରୁଦ୍ଧ ହୁଏ ନାହିଁ, ସେପରି ସର୍ବବ୍ୟାପକ ବ୍ରହ୍ମର ଉପଲବ୍ଧିନିମିତ୍ତ ବିଶେଷସ୍ଥାନରେ ବିରୁଦ୍ଧ ନାହିଁ ବୋଲି ପ୍ରଥମେ କୁହାଯାଇଛି ।

## सुखविशिष्टाभिधानादेव च ॥ १५ ॥

## (୧) ସୁଖବିଶିଷ୍ଟାଭିଧାନାଦେବ ଚ ॥ ୧।୨।୧୫॥

ପ୍ରାଣୋ ବ୍ରହ୍ମ, କଂ ବ୍ରହ୍ମ, ଖଂ ବ୍ରହ୍ମ ଏହିପ୍ରକାର ବାକ୍ୟରେ, ସୁଖବିଶିଷ୍ଟାଭିଧାନାତ୍ ଏବ ଚ-ସୁଖବିଶିଷ୍ଟ ବ୍ରହ୍ମର ଅଭିଧାନ କରାଯାଇଛି । ଏହାଦ୍ୱାରା 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ' ଏହି ନେତ୍ରର ଅଭ୍ୟନ୍ତର ପୁରୁଷ ପରମାତ୍ମା କେବଳ ଅଟେ ।

(୨) ମୂଳ- (କ) ଅପି ଚ ନୈବାତ୍ର ବିବଦିତବ୍ୟାସକିଂ ବ୍ରହ୍ମସ୍ମିନ୍ ବାକ୍ୟେଽଭିଧୀୟତେ ନ ବେତି । ସୁଖବିଶିଷ୍ଟାଭିଧାନାଦେବ ବ୍ରହ୍ମତ୍ୱଂ ସିଦ୍ଧମ୍ । (ଖ) ସୁଖବିଶିଷ୍ଟଂ ହି ଯଦ୍‌ବାକ୍ୟୋପକ୍ରମେ ପ୍ରକାନ୍ତଂ 'ପ୍ରାଣୋ ବ୍ରହ୍ମ କଂ ବ୍ରହ୍ମ ଖଂ ବ୍ରହ୍ମ' ଇତି ତଦେବେ ଅଭିହିତଂ, ପ୍ରକୃତପରିଗ୍ରହସ୍ୟ ନାର୍ଯ୍ୟତ୍ୱାତ୍ । 'ଆଚାର୍ଯ୍ୟସ୍ତୁ ତେ ଗୀତଂ ବକ୍ତା', (ଛା ୪।୧୪।୧) ଇତି ଚ ଗୀତମାତ୍ରାଭିଧାନ ପ୍ରତିଜ୍ଞାନାତ୍ । (ଗ) କଥଂ ପୁନଃ ବାକ୍ୟୋପକ୍ରମେ ସୁଖବିଶିଷ୍ଟଂ ବ୍ରହ୍ମ



ବିଜ୍ଞାୟତ ଇତି ଉଚ୍ୟତେ- 'ପ୍ରାଣୋ ବ୍ରହ୍ମ କଂ ବ୍ରହ୍ମ ଖଂ ବ୍ରହ୍ମ' ଇତ୍ୟେତଦଗ୍ନୀନାଂ ବଚନଂ ଶ୍ରୁତ୍ୱୋପକୋସଲଂ ଉବାଚ- ବିଜାନାମ୍ୟହଂ ଯତ୍ ପ୍ରାଣୋ ବ୍ରହ୍ମ କଂ ବ୍ରହ୍ମ ଖଂ ଚ ତୁ ନ ବିଜାନାମି' ଇତି ।

(୨) ଭାଷାଂତର- (କ) 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ' ଏହି ବାକ୍ୟରେ ବ୍ରହ୍ମର ଅଭିଧାନ ହୁଏ କି ହୁଏ ନାହିଁ ଏହି ବିଷୟରେ ବିବାଦ କରିବା ଉଚିତ ନୁହେଁ, କାରଣ-ସୁଖବିଶିଷ୍ଟର ଅଭିଧାନ ଦ୍ୱାରା ବ୍ରହ୍ମତ୍ୱ ସିଦ୍ଧ ହୁଏ ।

(ଖ) 'ପ୍ରାଣୋ ବ୍ରହ୍ମ, କଂ ବ୍ରହ୍ମ ଖଂ ବ୍ରହ୍ମ' ଏହି ବାକ୍ୟର ଉପକ୍ରମରେ ଯାହା ସୁଖବିଶିଷ୍ଟବ୍ରହ୍ମ ପ୍ରସ୍ତୁତ ହୁଏ, ତାହାର ହି 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ' ବୋଲି ଅଭିଧାନ ଅଟେ, କାରଣ-ପ୍ରକୃତର ଗ୍ରହଣ କରିବା ଉଚିତ ଅଟେ । ଅର୍ଥାତ୍ ଶ୍ରୁତିରେ କୁହାଯାଇଥିବା ପ୍ରକୃତବାଚକ 'ଯଃ'ଶବ୍ଦଦ୍ୱାରା ପ୍ରକୃତ ବ୍ରହ୍ମର ଗ୍ରହଣ କରିବା ଉଚିତ । 'ହେ ଗୁରୁ, ତୁମେ ବାଟ ବତାଇଦିଅ' ଏହିପ୍ରକାର ଗୀତମାତ୍ରାର ଅଭିଧାନକୁ ଅଗ୍ନି ପ୍ରତିଜ୍ଞା କଲେ ।

(ଗ) ପୁନଶ୍ଚ ବାକ୍ୟର ଆରମ୍ଭରେ ସୁଖବିଶିଷ୍ଟ ବ୍ରହ୍ମର ବିଜ୍ଞାନ କିପରି ହୁଏ ? ତେଣୁ କୁହାଯାଇଅଛି- 'ପ୍ରାଣୋବ୍ରହ୍ମ' ଇତ୍ୟାଦି ବ୍ରହ୍ମର କଥାଶୁଣି ଉପକୋସଲ କହିଲେ- 'ପ୍ରାଣ ବୃହତ୍ ହେଲେ ବ୍ରହ୍ମହୁଏ, ଏହା ମୁଁ ଜାଣିଛି । କିନ୍ତୁ କ ଓ ଖ କୁ ଜାଣିନାହିଁ । ଅର୍ଥାତ୍ କଂ-ବିଷୟ ଓ ଇନ୍ଦ୍ରିୟର ସଂଯୋଗଜନ୍ୟସୁଖ, ଖଂ-ଭୂତାକାଶ ଏହି ଦୁଇ ଅନିତ୍ୟ ଓ ଜଡ଼ହେବା ଦ୍ୱାରା କେଉଁପ୍ରକାରରେ ବ୍ରହ୍ମରୂପ ବୋଲି ମୁଁ ଜାଣିନାହିଁ ।''

(୩) ମୂଳ-(କ) ତତ୍ରେଦଂ ପ୍ରତିବଚନମ୍-'ଯଦ୍‌ବାବ କଂ ତଦେବଂ ଖଂ, ଯଦେବଂ ଖଂ ତଦେବଂ କମ୍', (ଛା ୪-୧୦-୫) ଇତି । ତତ୍ର ଖଂଶବ୍ଦୋ ଭୂତାକାଶେ ନିରୂଢୋ ଲୋକେ । (ଖ) ଯଦି ତସ୍ୟ ବିଶେଷଣତ୍ୱେନ କଂଶବ୍ଦଃ ସୁଖବାଚୀ ନୋପାଦୀୟେତ, ତଥା ସତି କେବଳେ ଭୂତାକାଶେ ବ୍ରହ୍ମଶବ୍ଦୋ ନାମାଦିଷ୍ୱିବ ପ୍ରତୀକାଭିପ୍ରାୟେଣ ପ୍ରଯୁକ୍ତ ଇତି ପ୍ରତୀତିଃ ସ୍ୟାତ୍ । (ଗ) ତଥା କଂଶବ୍ଦସ୍ୟ ବିଷୟେନ୍ଦ୍ରିୟଜନିତେ ସାମୟେ ସୁଖେ ପ୍ରସିଦ୍ଧତ୍ୱାତ୍ । ଯଦି ତସ୍ୟ ଖଂଶବ୍ଦୋ ବିଶେଷଣତ୍ୱେନ ନୋପାଦୀୟେତ, ଲୌକିକଂ ସୁଖଂ ବ୍ରହ୍ମେତି ପ୍ରତୀତିଃ ସ୍ୟାତ୍ । ଇତରେତର ବିଶେଷିତୌ ତୁ କଂ ଖଂଶବ୍ଦୋ ସୁଖାତ୍ମକଂ ବ୍ରହ୍ମ ଗମୟତଃ । (ଘ) ତତ୍ର ଦ୍ୱିତୀୟେ ବ୍ରହ୍ମଶବ୍ଦେଽନୁପାଦୀୟମାନେ କଂ ଖଂ ବ୍ରହ୍ମେତ୍ୟେବୋଚ୍ୟମାନେ କଂଶବ୍ଦସ୍ୟ ବିଶେଷଣତ୍ୱେନୈବୋପଯୁକ୍ତତ୍ୱାତ୍ ସୁଖସ୍ୟ ଗୁଣସ୍ୟାଧ୍ୟେୟତ୍ୱଂ ସ୍ୟାତ୍ । ତନ୍ମା ଭୂଦିତ୍ୟୁଭୟୋ କଂ ଖଂଶବ୍ଦୟୋ ବ୍ରହ୍ମଶବ୍ଦଶିରସ୍କଂ 'କଂବ୍ରହ୍ମ ଖଂ ବ୍ରହ୍ମ' ଇତି ।

(୩) ଭାଷାଂତର- (କ) ସେମାନଙ୍କ ପାଇଁ ଉତ୍ତର- 'ଏହା ନିଶ୍ଚୟ ସେ- କଂ ସୁଖ, ଖଂ ଆକାଶ ଅଟେ ଏବଂ ଯିଏ କ, ସେହି ଖ' ଏହି ଶ୍ରୁତିରେ ନିର୍ଦ୍ଦିଷ୍ଟ 'ଖ' ଶବ୍ଦ ଭୂତାକାଶରେ ରୂଢ଼ ହୋଇ ଲୋକପ୍ରସିଦ୍ଧ ଅଟେ ।

(ଖ) ଯଦି ତାହାର ବିଶେଷଣ ରୂପରେ ସୁଖବାଚୀ 'କ' ଶବ୍ଦର ଗ୍ରହଣ ନ କରାଯିବ ତାହାଲେ ନାମାଦି ପ୍ରତୀକସ୍ଥାନରେ ଯେପରି ବ୍ରହ୍ମର ପ୍ରୟୋଗ କରାଯାଇପାରେ, ସେପରି ମଧ୍ୟ ପ୍ରତୀକର ଅଭିପ୍ରାୟ ଦ୍ୱାରା କେବଳ ଭୂତାକାଶରେ ବ୍ରହ୍ମଶବ୍ଦ ପ୍ରଯୁକ୍ତ ବୋଲି ପ୍ରତୀତ ହୁଏ ।

(ଗ) ଏହି ପ୍ରକାର ବିଷୟ ଏବଂ ଇନ୍ଦ୍ରିୟର ସଂଯୋଗରେ କନ୍ୟା ସଦୋଷ ସୁଖରେ କଂଶବ୍ଦର ପ୍ରସିଦ୍ଧ ହେବାର କାରଣ ରହିଛି । ଯଦି ଏହା ବିଶେଷଣ ରୂପରେ ଖ ଶବ୍ଦର ଗ୍ରହଣ ନହୁଏ, ତେବେ, ଲୌକିକ ସୁଖ ବ୍ରହ୍ମ ହେବ-ଏହିପରି ମଧ୍ୟ ହୋଇପାରେ । ପରନ୍ତୁ ପରସ୍ପର ଏକ ଅନ୍ୟଦ୍ୱାରା ବିଶେଷିତ ହୋଇ କଂ ଏବଂ ଖଂ ଶବ୍ଦ ସୁଖାତ୍ମକ ବ୍ରହ୍ମର ପ୍ରତୀତ କରାଏ ।

(ଘ) ସେଠାରେ ଯଦି କଂ ଶବ୍ଦର ଉତ୍ତର ଦ୍ୱିତୀୟ ବ୍ରହ୍ମ ଶବ୍ଦ ଗୃହୀତ ନ ହୁଏ, ତେବେ କେବଳ କଂ ଖଂ ବ୍ରହ୍ମ ଏହିଭଳି କହିଲେ କଂ ଶବ୍ଦର ବିଶେଷଣ ରୂପରେ ଉପଯୋଗ ହେବାରୁ କାରଣ ଗୁଣଭୂତମୁଖ ଧ୍ୟେୟ ହେବନାହିଁ । କିନ୍ତୁ ଏହା ନ ହେଉ, ତେଣୁ କଂ ଓ ଖଂ ବ୍ରହ୍ମ ଶବ୍ଦଦ୍ୱୟର ଉତ୍ତର ବ୍ରହ୍ମ ଶବ୍ଦର କଂ ବ୍ରହ୍ମ, ଖଂ ବ୍ରହ୍ମ ଏହିପ୍ରକାର ପ୍ରୟୋଗ କରାଯାଇଛି ।

(୪) ମୂଳ- (କ) ଇଷ୍ଟଂ ହି ସୁଖସ୍ୟାପି ଗୁଣସ୍ୟ ଗୁଣବଦ୍ ଧ୍ୟେୟତ୍ୱମ୍ । ତଦେବଂ ବାକ୍ୟୋପକ୍ରମେ ସୁଖବିଶିଷ୍ଟଂ ବ୍ରହ୍ମୋପଦିଷ୍ଟମ୍ । (ଖ) ପ୍ରତ୍ୟେକଂ ଚ ଗାର୍ହପତ୍ୟାଦୟୋଽଗ୍ନୟଃ ସ୍ୱଂ ସ୍ୱଂ ମହିମାନମୁପଦିଶ୍ୟ 'ଏଷା ସୋମ୍ୟ ତେଽସ୍ମଦ୍‌ବିଦ୍ୟାତ୍ମବିଦ୍ୟା ଚ' ଇତ୍ୟୁପସଂହରନ୍ତଃ ପୂର୍ବତ୍ର ବ୍ରହ୍ମ ନିର୍ଦ୍ଦିଷ୍ଟମିତି ଜ୍ଞାପୟନ୍ତି । 'ଆଚାର୍ଯ୍ୟସ୍ତୁ ତେ ଗୀତଂ ବକ୍ତା' ଇତି ଚ ଗତିମାତ୍ରାଭିଧାନପ୍ରତିଜ୍ଞାନମର୍ଥାନ୍ତରବିବକ୍ଷାଂ ବାରୟତି । 'ଯଥା ପୁଷ୍କରପଲାଶ ଆପୋ ନ ଶ୍ଲିଷ୍ୟନ୍ତ ଏବମେବଂ ବିଦି ପାପଂ କର୍ମ ନ ଶ୍ଲିଷ୍ୟନ୍ତେ', (ଛା ୪-୧୪-୩) ଇତି ଋକ୍ଷିସ୍ଥାନଂ ପୁରୁଷଂ ବିଜାନତଃ ପାପେନାନୁପଘାତଂ ବ୍ରବନ୍ନକ୍ଷିସ୍ଥାନସ୍ୟ ପୁରୁଷସ୍ୟ ବ୍ରହ୍ମତ୍ୱଂ ଦର୍ଶୟତି । (ଗ) ତସ୍ମାତ୍ ପ୍ରକୃତସ୍ୟୈବ ବ୍ରହ୍ମଣୋଽକ୍ଷିସ୍ଥାନତାଂ ସଂଯଦ୍‌ବାମତ୍ୱାଦିଗୁଣତାଂ ଚୈଲ୍ଚାର୍ଽର୍ଚ୍ଚିରାଦିକାଂ ତଦ୍‌ବିଦୋ ଗତିଂ ବକ୍ଷାମୀତ୍ୟୁପକ୍ରମତେ-'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତ ଏଷ ଆତ୍ମେତି ହୋବାଚ', (ଛା ୪-୧୫-୧) ଇତି ।



(୪) ଭାଷାଂତର - (କ) ଗୁଣରୂପ ସୁଖର ଗୁଣୀ ଧ୍ୟାନ କରାଯାଏ । ତେଣୁ ବାକ୍ୟର ଆରମ୍ଭରେ ଏହି ସୁଖ ବିଶିଷ୍ଟ ବ୍ରହ୍ମ ଉପଦିଷ୍ଟ ଅଟେ ।

(ଖ) ଗାର୍ହପତ୍ୟାଦି ଅଗ୍ନିଠାରୁ ଆରମ୍ଭ କରି ପ୍ରତ୍ୟେକ ନିଜ ନିଜ ମହିମାର ଉପଦେଶ ଦେଇ 'ହେ ସୋମ୍ୟ ! ସେ ନିଜର ବିଦ୍ୟା ଓ ଆତ୍ମା ବିଦ୍ୟା ତୁମକୁ କହିଲି', ଏହିପ୍ରକାର ଉପସଂହାର କରି ପ୍ରଥମେ ବ୍ରହ୍ମର ନିର୍ଦ୍ଦେଶ କରାଯାଇଛି । 'ଆଚାର୍ଯ୍ୟସ୍ତୁ ତେ ଗତିଂ ବକ୍ତା' ଏଠାରେ ଗତିମାତ୍ର ଅଭିଧାନର ପ୍ରତିଜ୍ଞା ଅନ୍ୟାର୍ଥ ବିବକ୍ଷାକୁ ନିବାରଣ କରୁଛି । ଯଥା 'ଯେପରି ପଦ୍ମପତ୍ରର ଜଳ ସହିତ ସମ୍ବନ୍ଧ ନ ଥାଏ, ସେପରି ବିଜ୍ଞଠାରେ କର୍ମଫଳର ସମ୍ବନ୍ଧ ନ ଥାଏ' ଏହିପ୍ରକାର ଶ୍ରୁତି ଅକ୍ଷିସ୍ଥ ପୁରୁଷକୁ ଜାଣିଥିବା ଲୋକର ପାପକର୍ମ ସହିତ ସମ୍ବନ୍ଧ ନ ଥାଏ ।

(ଗ) 'ଯିଏ ଆଖିରେ ପୁରୁଷକୁ ଦେଖେ, ସେ ଆତ୍ମା' ଏହିବାକ୍ୟ ଦ୍ୱାରା ଆଚାର୍ଯ୍ୟ ପ୍ରକୃତି ବ୍ରହ୍ମର ମଧ୍ୟ ଅକ୍ଷିସ୍ଥାନତ୍ୱ ଓ ସଂଯଦ୍ ବା ମତ୍ୱାଦି ଗୁଣକୁ କହି ତାହାକୁ ଜାଣିଥିବା ଅର୍ଚ୍ଚି ଆଦି ଗତିକୁ କହିବି-ଏହିପରି ଉପକ୍ରମ କରାଯାଇଛି ।

## श्रुतोपनिषत्कगत्यभिधाना च्च ॥ १६ ॥

## (୧) ଶ୍ରୁତୋପନିଷତ୍କଗତ୍ୟଭିଧାନା ଚ୍ଚ ॥ ୧-୨-୧୬

ଶ୍ରୁତୋପନିଷତ୍କଗତ୍ୟଭିଧାନାତ୍ ଚ- 'ଅଥୋତ୍ତରେଣ ତପସ୍ୟା' ଏହି ପ୍ରକାର ଶ୍ରୁତି ଓ ସ୍ମୃତିରେ ସଗୁଣ ବ୍ରହ୍ମର ଉପାସନାର ଅନୁଷ୍ଠାନକୁ କରୁଥିବା ଲୋକର ଗତି ଅଭିହିତ ଅଟେ । ସେ ଗତିମାର୍ଗ ନେତ୍ରସ୍ୱରୂପକୁ ଜାଣେ । ତେଣୁ ଅକ୍ଷିସ୍ଥ ପୁରୁଷ ପରମେଶ୍ୱର ଅଟେ ।

(୨) ମୂଳ-(କ) ଇତଶ୍ଚାକ୍ଷିସ୍ଥାନଃ ପୁରୁଷଃ ପରମେଶ୍ୱରଃ, ଯସ୍ମାଚ୍ଛ୍ରୁତୋପନି-ଷତ୍କସ୍ୟ ଶ୍ରୁତରହସ୍ୟବିଜ୍ଞାନସ୍ୟ ବ୍ରହ୍ମବିଦୋ ଯା ଗତିର୍ଦ୍ଦେବଯାନାଖ୍ୟା ପ୍ରସିଦ୍ଧା ଶ୍ରୁତୌ-'ଅଥୋତ୍ତରେଣ ତପସା ବ୍ରହ୍ମଚର୍ଯ୍ୟେଣ ଶ୍ରଦ୍ଧୟା ବିଦ୍ୟୟାତ୍ମାନମନ୍ୱିଷ୍ୟାଦିତ୍ୟ-ମଭିଜୟନ୍ତେ । ଏତଦ୍ ହି ପ୍ରାଣାନାମାୟତନମେତଦମୃତମଭୟମେତତ୍ ପରାୟଣମେତତସ୍ମାନ୍ନ ପୁନରାବର୍ତ୍ତନ୍ତେ', (ପ୍ରଶ୍ନ ୧-୧୦) । (ଖ) ଇତି ସ୍ମୃତାବପି-'ଅଗ୍ନିର୍ଜ୍ୟୋତିରହଃ ଶୁକ୍ଲଃ ଷଡ୍ମାସା ଉତ୍ତରାୟଣମ୍ । ତତ୍ର ପ୍ରୟାଣ ଗଚ୍ଛନ୍ତି ବ୍ରହ୍ମ ବ୍ରହ୍ମବିଦୋ ଜନାଃ', (ଗୀତା ୬-୨୪) ଇତି । (ଗ) ସୈବେହାକ୍ଷିଣି ପୁରୁଷବିଦୋଽଭିଧୀୟମାନା ଦୃଶ୍ୟତେ । 'ଅଥ ଯଦୁ ଚୈବମସ୍ମିଚ୍ଛବ୍ୟଂ କୁର୍ବନ୍ତି ଯଦିଚ

ନାର୍ଚ୍ଚିଷମେବାଭିସଂଭବନ୍ତି' ଇତ୍ୟୁପକ୍ରମ୍ୟ 'ଆଦିତ୍ୟାଚ୍ଚନ୍ଦ୍ରମସଂ ଚନ୍ଦ୍ରମସୋ ବିଦ୍ୟୁତଂ ତତ୍ପୁରୁଷୋଽମାନବଃ ସ ଏତାନ୍ ବ୍ରହ୍ମ ଗମୟତ୍ୟେଷ ଦେବପଥୋ ବ୍ରହ୍ମପଥେ ଏତେନ ପ୍ରତିପଦ୍ୟମାନା ଇମଂ ମାନବମାବର୍ତ୍ତଂ ନାବର୍ତ୍ତନ୍ତେ, (ଛା ୪-୧୫-୫) ଇତି । ତଦିହ ବ୍ରହ୍ମବିଦ୍ ବିଷୟା ପ୍ରସିଦ୍ଧୟା ଗତ୍ୟାକ୍ଷିସ୍ଥାନସ୍ୟ ବ୍ରହ୍ମତ୍ୱଂ ନିଶ୍ଚୀୟତେ ।

(୨) ଭାଷାଂତର- (କ) ଏହି ହେତୁଦ୍ୱାରା ନେତ୍ରସ୍ଥପୁରୁଷ ପରମେଶ୍ୱର ଅଟେ କାରଣ- ଯିଏ ଉପନିଷଦ୍ ଶୁଣୁଛି, ସେ ହିଁ ସଗୁଣ ବ୍ରହ୍ମ ଉପାସକ । ତାହା ହିଁ ଦେବଯାନ ନାମ ଗତି । 'ଶରୀର ପାତ ପରେ ପରେ ସ୍ୱଧର୍ମ ରୂପ ତପ, ବ୍ରହ୍ମଚର୍ଯ୍ୟ, ଶ୍ରଦ୍ଧା ଏବଂ ବିଦ୍ୟା ଦ୍ୱାରା ଆତ୍ମାର ସନ୍ଧାନ କରି ଉତ୍ତର ମାର୍ଗରୁ ଆଦିତ୍ୟ ଲୋକ ମିଳେ । ଏହା ପ୍ରାଣର ଆଶ୍ରୟ, ଏହା ଅମୃତ, ଅଭୟ ଓ ପରମଗତି ଅଟେ । ଏହା ମିଳିଲେ ପ୍ରାଣର ପୁନରାବର୍ତ୍ତନ ହୁଏ ନାହିଁ - ଏହା ଶ୍ରୁତି ପ୍ରସିଦ୍ଧ ।

(ଖ) 'ଅଗ୍ନି', ଶୁକ୍ଳପକ୍ଷ, ଷଟ୍ମାସ, ଉତ୍ତରାୟଣ ନାମକ ଦେବତା ଅଛନ୍ତି । ମରଣ ପରେ ଏହି ଦେବତା ମାର୍ଗଦ୍ୱାରା ବ୍ରହ୍ମଉପାସକ ପୁରୁଷ ବ୍ରହ୍ମକୁ ପାଏ' । ଏହି ସ୍ମୃତି ମଧ୍ୟ ପ୍ରସିଦ୍ଧ ଅଛି ।

(ଗ) 'ଉପାସକର ଦେହ ପାତାନନ୍ତରର ଏହାର ପୁତ୍ରବାନ୍ଧବାଦି ଔର୍ଦ୍ଧ୍ୱଦୈହିକ କରୁ ବା ନ କରୁ, କିନ୍ତୁ ଦୁଇଦଶାରେ ଏହି ଉପାସକ ଉପାସନାର ମହିମା ଦ୍ୱାରା ଅର୍ଚ୍ଚି ଅଭିମାନୀ ଦେବତାକୁ ପ୍ରାପ୍ତ ହୁଏ' । ଏହି ପ୍ରକାର ଉପକ୍ରମ କରି 'ଆଦିତ୍ୟ ଦ୍ୱାରା ଚନ୍ଦ୍ରମାକୁ, ଚନ୍ଦ୍ରମାଦ୍ୱାରା ବିଦ୍ୟୁତକୁ ମିଳେ, ତାହାଠାରୁ ଅମାନବ ଏହି ଉପାସକ କାର୍ଯ୍ୟ ବ୍ରହ୍ମର ପାଖରେ ପହଞ୍ଚେ । ଏହି ହେଉଛି ଦେବପଥ ଓ ବ୍ରହ୍ମପଥ । ଏହି ମାର୍ଗ ଦ୍ୱାରା ଜାଣିଥିବା ଉପାସକ ଏହିମାନବ ମଣ୍ଡଳରେ ପ୍ରତ୍ୟାବର୍ତ୍ତନ ହୁଏ ନାହିଁ', ଏହି ପ୍ରକାର ଏଠାରେ ନେତ୍ରସ୍ଥ ପୁରୁଷକୁ ଜାଣିଥିବା ବ୍ୟକ୍ତିର ଯେ କୌଣସିଠାରେ ଗତି ଦେଖାଯାଏ । ଯାହାକି ବ୍ରହ୍ମୋପାସକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଗତି । ଏହାଦ୍ୱାରା ଏହା ନିଶ୍ଚୟ ହୁଏ, ଯେ ବ୍ରହ୍ମବିଷୟକ ପ୍ରସିଦ୍ଧ ଗତି ଦ୍ୱାରା ଅକ୍ଷିପୁରୁଷ ପରମେଶ୍ୱର ହୁଏ ।

**अनवस्थितेरसंभवाच्च नेतरः ॥ १७ ॥**

## (୧) ଅନବସ୍ଥିତତେରସମ୍ଭବାଚ୍ଚ ନେତରଃ ॥ ୧।୨।୧୭॥

ଅନବସ୍ଥିତେଃ-ସଦା ବେଳେ ସ୍ଥିତି ନ ରହିଲେ ଓ 'ଅସମ୍ଭବାତ୍ ଚ-ଅମୃତତ୍ୱାଦି ଗୁଣର ଅସମ୍ଭବ ହେବାଦ୍ୱାରା, ଇତରଃ-ବ୍ରହ୍ମ ଭିନ୍ନ । ଛାୟାତ୍ମାଦି ଅକ୍ଷିପୁରୁଷ, ନ- ହୋଇପାରେ ନାହିଁ ।



(୨) ମୂଳ- (କ) ତତ୍ପୁନରୁକ୍ତଂ ଛାୟାତ୍ମା, ବିଜ୍ଞାନାତ୍ମା ଦେବତାତ୍ମା ବା ସ୍ୟାଦକ୍ଷସ୍ଥାନ୍ନ ଇତି । ଅତ୍ରୋଚ୍ୟତେ-ନ ଛାୟାତ୍ମାଦିରିତର ଇହ ଗ୍ରହଣମର୍ହତି । କସ୍ମାତ୍ ? ଅନବସ୍ଥିତେଃ । (ଖ) ନ ତାବଚ୍ଛାୟାତ୍ମନଶ୍ଚକ୍ଷୁ ଷି ନିତ୍ୟମବସ୍ଥାନଂ ସମ୍ଭବତି, ଯଦୈବ ହି କଶ୍ଚିତ୍ ପୁରୁଷଶ୍ଚକ୍ଷୁରାସୀଦିତି, ତଥା ଚକ୍ଷୁଷି ପୁରୁଷଚ୍ଛାୟା ଦୃଶ୍ୟତେ, ଅପଗତେ ତସ୍ମିନ୍ ଦୃଶ୍ୟତେ । 'ଯ ଏଷୋଽକ୍ଷିଣି ପୁରୁଷଃ' ଇତି ଚ ଶ୍ରୁତିଃ ସନ୍ନିଧାନାଚ୍ଚକ୍ଷୁଷିଦୃଶ୍ୟମାନଂ ପୁରୁଷମୁପାସ୍ୟ ତ୍ୱେନୋପଦିଶତି । (ଗ) ନ ଚୋପାସନାକାଳେ ଛାୟାକାରଂ କିଞ୍ଚିତପୁରୁଷଂ ଚକ୍ଷୁଃସମୀପେ ସନ୍ନିଧାପ୍ୟୋପାସ୍ତ ଯୁକ୍ତଂ କଳ୍ପୟିତୁମ୍ । 'ଅସ୍ୟୈବ ଶରୀରସ୍ୟ ନାଶମନ୍ୱେଷ ନଶ୍ୟତି' (ଛା ୮-୯-୧) ଇତି ଶ୍ରୁତିଛାୟାତ୍ମାନୋଽପ୍ୟ-ନବସ୍ଥିତତ୍ୱଂ ଦର୍ଶୟତି ।

**(୨) ଭାଷାଂତର-** (କ) ଅକ୍ଷିସ୍ଥ ପୁରୁଷ ଛାୟାତ୍ମା ବିଜ୍ଞାନାତ୍ମା ଅଥବା ଦେବତାତ୍ମା ଅଟେ ବୋଲି କୁହାଯାଇଛି । ଏହା ଉପରେ କୁହାଯାଇଛି ଯେ- ପରମେଶ୍ୱରଠାରୁ ଭିନ୍ନ ଛାୟାତ୍ମାଦିର ଏଠାରେ ଗ୍ରହଣ ଠିକ୍ ନୁହେଁ । କିପରି ? ଅକ୍ଷିପୁରୁଷଦ୍ୱାରା ଛାୟାତ୍ମାର ଅନବସ୍ଥିତ ଜଣାପଡ଼େ ।

(ଖ) ପ୍ରତିବିମ୍ବରୂପଛାୟାତ୍ମାର ଚକ୍ଷୁରେ ନିତ୍ୟ ଅବସ୍ଥାନ ସମ୍ଭବ ନୁହେଁ । ଯଦି କୌଣସି ପୁରୁଷ ଆଖିପାଖକୁ ଆସେ, ତେବେ ଚକ୍ଷୁରେ ପୁରୁଷର ଛାୟା ଦେଖାଯାଏ । ପୁରୁଷ ଚାଲିଗଲେ ଦେଖାମିଳେ ନାହିଁ । 'ଯ ଏଷୋଽକ୍ଷଣି ପୁରୁଷଃ' ଏହି ଶ୍ରୁତି ସମୀପକୁ ବସ୍ତୁ ଆସିଲେ ନେତ୍ରରେ ଦେଖାଯାଉଥିବା ପୁରୁଷର ଉପାସ୍ୟ ରୂପରେ ଉପଦେଶ ଦିଏ ।

(ଗ) କିନ୍ତୁ ଉପାସନା ସମୟରେ ପ୍ରତିବିମ୍ବର କାରଣଭୂତ କୌଣସି ପୁରୁଷକୁ ନେତ୍ର ସମ୍ମୁଖରେ ବସାଇ ଉପାସନା କରାଯାଏ ବୋଲି ଭାବିବା ଠିକ୍ ନୁହେଁ, 'ଏହି ଶରୀରର ନାଶ ହେଲେ ସେ ନଷ୍ଟ ହୋଇଯାଏ' । ଏହି ପ୍ରକାର ଶ୍ରୁତି ଛାୟାତ୍ମାର ଅନବସ୍ଥିତି ଦେଖାଏ ।

(୩) ମୂଳ-(କ) ଅସମ୍ଭବାଚ୍ଚ ତସ୍ମିନ୍ନମୃତତ୍ୱାଦୀନାଂ ଗୁଣାନାଂ ନ ଛାୟାତ୍ମନି ପ୍ରତୀତିଃ । ତଥା ବିଜ୍ଞାନାତ୍ମନୋଽପି ସାଧାରଣେ କୃତ୍ସ୍ନଶରୀରେନ୍ଦ୍ରିୟ ସମ୍ବନ୍ଧେ ସତି ଚକ୍ଷୁସ୍ୟୈବାବସ୍ଥିତ୍ୱଂ ବକ୍ତୁଂ ନ ଶକ୍ୟମ୍ । (ଖ) ବ୍ରହ୍ମଣସ୍ତୁ ବ୍ୟାପିନୋଽପି ଦୃଷ୍ଟ ଉପଲବ୍ଧ୍ୟର୍ଥୋ ହୃଦୟାଦିଦେଶବିଶେଷସମ୍ବନ୍ଧଃ । ସମାନଶ୍ଚ ବିଜ୍ଞାନାତ୍ମନ୍ୟପ୍ୟମୃତ-ତ୍ୱାଦୀନାଂ ଗୁଣାନାଂ ସମ୍ବନ୍ଧଃ । (ଗ) ଯଦ୍ୟପି ବିଜ୍ଞାନାତ୍ମା ପରମାତ୍ମନୋଽନନ୍ୟ ଏବ, ତଥାପ୍ୟ ବିଦ୍ୟାକାମକୃତଂ ତସ୍ମିନ୍ମର୍ତ୍ତ୍ୱମଧ୍ୟାରୋପିତଂ ଭୟଂ ଚେତ୍ୟମୃତତ୍ୱାମୟତ୍ୱେ ନୋପପଦ୍ୟତେ । ସଂଯଦ୍ ବାମ ତ୍ୱାଦୟ ଶ୍ଚୈତସ୍ମିନ୍ନନୈଶ୍ୱର୍ଯ୍ୟା-ଦନୁପପନ୍ନା ଏବ ।

**(୩) ଭାଷାଂତର-** (କ) ଅମୃତତ୍ୱାଦି ଗୁଣଗୁଡ଼ିକ ଅସମ୍ଭବ ହେଲେ ଅକ୍ଷିସ୍ଥ ପୁରୁଷ ଛାୟାତ୍ମା ହୁଏ ନାହିଁ । କାରଣ-ଅମୃତତ୍ୱାଦିଗୁଣର ଏହି ଛାୟାତ୍ମାରେ ପ୍ରତୀତ ହୁଏ ନାହିଁ । ଏହିପ୍ରକାର ସମ୍ପୂର୍ଣ୍ଣ ଶରୀରେନ୍ଦ୍ରିୟ ସହିତ ସମାନ ସମ୍ବନ୍ଧ ହେଲେ ମଧ୍ୟ ବିଜ୍ଞାନାତ୍ମାର କେବଳ ଚକ୍ଷୁରେ ଅବସ୍ଥିତି ହୁଏ । ଏହା କିନ୍ତୁ ହୋଇ ନପାରେ ।

(ଖ) ବ୍ରହ୍ମ ସର୍ବବ୍ୟାପୀ, ତଥାପି ସେଥିରେ ଉପଲବ୍ଧି ନିମିତ୍ତ ହୃଦୟାଦି ଦେଶ ବିଶେଷର ସମ୍ବନ୍ଧ ଦେଖାଯାଏ ଏବଂ ଅମୃତତ୍ୱାଦି ଗୁଣମାନଙ୍କର ଅସମ୍ଭବ ·ବିଜ୍ଞାନାତ୍ମା ପାଖରେ ସମାନ ଅଟେ ।

(ଗ) ଯଦ୍ୟପି ବିଜ୍ଞାନାତ୍ମା ପରମାତ୍ମାଠାରୁ ଭିନ୍ନ ନ ହୁଏ, ତଥାପି ଅବିଦ୍ୟା କାମକର୍ମଦ୍ୱାରା ସେଠାରେ ମରଣ ଏବଂ ଭୟ ଅଧ୍ୟାରୋପିତ ହୁଏ । ତେଣୁ ସେଥିରେ ଅମୃତତ୍ୱ ଏବଂ ଅଭୟତ୍ୱ ଉପପନ୍ନ ହୁଏ ନାହିଁ । ସଂଯଦ୍ ବାମତ୍ୱାଦି ଗୁଣ ମଧ୍ୟ ଐଶ୍ୱର୍ଯ୍ୟର ଅଭାବରେ ସେଠାରେ ଅନୁପପନ୍ନ ହୁଏ ।

**(୪) ମୂଳ-** (କ) ଦେବାତ୍ମନସ୍ତୁ । 'ରଶ୍ମିଭିରେଷୋଽସ୍ମିନ୍ ପ୍ରତିଷ୍ଠିତଃ' ଇତି ଶ୍ରୁତେଯଦ୍ୟପି ଚକ୍ଷୁଷ୍ୟବସ୍ଥାନଂ ସ୍ୟାତ୍ତଥାପ୍ୟାତ୍ମତ୍ୱଂ ତାବନ୍ନ ସମ୍ଭବତି, ପରାଗ୍ରୂପତ୍ୱାତ୍ । (ଖ) ଅମୃତତ୍ୱାଦୟୋଽପି ନ ସମ୍ଭବନ୍ତି, ଉତ୍ପତ୍ତିପ୍ରଳୟଶ୍ରବଣାତ୍ । ଅମରତ୍ୱମପି ଦେବାନାଂ ଚିରକାଳାବସ୍ଥାନାପେକ୍ଷମ୍ । ଐଶ୍ୱର୍ଯ୍ୟମପି ପରମେଶ୍ୱରାୟତ୍ତଂ ନ ସ୍ୱାଭାବିକମ୍, 'ଭୀଷ୍ମାଽସ୍ମାଦ୍‌ବାତଃ ପବତେ, ଭୀଷୋଽଦେତି ସୂର୍ଯ୍ୟ, ଭୀଷୋଽସ୍ମାଦ୍‌ଗ୍ନିଶ୍ଚେନ୍ଦ୍ରଶ୍ଚ ମୃତ୍ୟୁର୍ଧାବତି ପଞ୍ଚମଃ' (ତୈ ୨-୮) ଇତି ମନ୍ତ୍ରବର୍ଣ୍ଣାତ୍ । (ଗ) ତସ୍ମାତ୍ ପରମେଶ୍ୱର ଏବାୟମକ୍ଷିସ୍ଥାନଃ ପ୍ରତ୍ୟେତବ୍ୟଃ । ଅସ୍ମିଂଶ୍ଚପକ୍ଷେ ଦୃଶ୍ୟତ ଇତି ପ୍ରସିଦ୍ଧବଦୁପାଦାନଂ ଶାସ୍ତ୍ରାଦ୍ୟପେକ୍ଷଂ ବିଦ୍ୱଦ୍‌ବିଷୟଂ ପ୍ରରୋଚନାର୍ଥ'ମିତି ବ୍ୟାଖ୍ୟେୟମ୍ ।

**(୪) ଭାଷାଂତର-** (କ) 'କିରଣଦ୍ୱାରା ଏହା ସେଠାରେ ପ୍ରତିଷ୍ଠିତ ହୁଏ' ଏହି ଶ୍ରୁତିରେ ଯଦ୍ୟପି ଦେବତାତ୍ମାର ନେତ୍ରରେ ଅବସ୍ଥିତି ହୁଏ, ତଥାପି ସେଠାରେ ଆତ୍ମତ୍ୱ ସମ୍ଭବ ହୁଏ ନାହିଁ । କାରଣ- ପରାଗ୍ରୂପ-ବାହ୍ୟ ଅନାତ୍ମରୂପ ଅଟେ ।

(ଖ) ସେଠାରେ ଅମୃତତ୍ୱାଦିର ମଧ୍ୟ ସମ୍ଭବ ନୁହେଁ, କାରଣ- ତାହା ଉଦୟ ଓ ପ୍ରଳୟ ଶ୍ରୁତିରେ କୁହାଯାଇଛି । ଦେବତାମାନଙ୍କ ପାଖରେ ଅମୃତତ୍ୱ ତାହାର ଚିରକାଳ ଅବସ୍ଥିତିର ଅପେକ୍ଷା କରେ । ତାହାର ଐଶ୍ୱର୍ଯ୍ୟ ପରମେଶ୍ୱରର ଅଧୀନ କିନ୍ତୁ ସ୍ୱାମୀ ନୁହେଁ । କାରଣ- 'ଏହି ପରମେଶ୍ୱରର ଭୟରେ ବାୟୁ ପ୍ରବାହିତ ହୁଏ, ଏହାର ଭୟରେ ସୂର୍ଯ୍ୟ

ଉଦିତ ହୁଏ, ଏହାର ଭୟରେ ଅଗ୍ନି ଓ ଇନ୍ଦ୍ର ନିଜର କାର୍ଯ୍ୟ କରନ୍ତି ଓ ପଞ୍ଚମ ମୃତ୍ୟୁ ଏହାର ଭୟରେ ଗତାୟୁ ଲୋକର ପାଖକୁ ଦୌଡ଼େ' । ଏହି ମନ୍ତ୍ରବର୍ଣ୍ଣ ଦ୍ୱାରା ପ୍ରମାଣିତ ହୁଏ ।

(ଗ) ତେଣୁ ଏହା ଜାଣିବା ଉଚିତ୍ ଯେ- ଅକ୍ଷିପୁରୁଷ ପରମେଶ୍ୱର ଅଟେ । ଏହି ପକ୍ଷରେ 'ଦୃଶ୍ୟତେ' ଏହି ଲୌକିକ ପ୍ରସିଦ୍ଧ ପରି ଶାସ୍ତ୍ରର ଅପେକ୍ଷାରେ ଗ୍ରହଣ କରାଯାଏ । ବିଦ୍ୱଦ୍ ବିଷୟକ ଅଟେ । ଅଥବା ପ୍ରରୋଚନାର୍ଥକ ଅଟେ । ଏହି ପ୍ରକାର ବ୍ୟାଖ୍ୟା କରିବା ଉଚିତ ।

## ५ अन्तर्याम्यधिकरणम् । सू० १८ - २०

## ଅନ୍ତର୍ଯ୍ୟାମ୍ୟଧିକରଣମ୍ - ୫

## अन्तर्याम्यधिदैवादिषु तद्धर्मव्यपदेशात् ॥ १८ ॥

## (୧) ଅନ୍ତର୍ଯ୍ୟାମ୍ୟଧିଦୈବାଦିଷୁ ତଦ୍ଧର୍ମାବ୍ୟପଦେଶାତ୍ ୧ । ୨ । ୧୮

ଅଧିଦୈବାଦିଷୁ - 'ଯଃ ପୃଥିବ୍ୟାଂ ତିଷ୍ଠନ୍' ଏହି ପ୍ରକାର ଅଧିଦେବାଦିରେ ପ୍ରତିପାଦିତ, ଅନ୍ତର୍ଯ୍ୟାମୀ-ନିୟାମକ ପରମେଶ୍ୱର ଅଟେ । ତଦ୍ଧର୍ମୋପଦେଶାତ୍ କାରଣ- ଅମୃତତ୍ୱାଦି ଏହି ଧର୍ମର ବ୍ୟାପଦେଶ ଅଟେ ।

(୨) ମୂଳ- (କ) 'ଯଂ ଇମଂ ଚ ଲୋକଂ ପରଂ ଚ ଲୋକଂ ସର୍ବାଣି ଚ ଭୂତାନି ଯୋଽନ୍ତରୋ ଯମୟତି' ଇତ୍ୟୁପକ୍ରମ୍ୟ ଶ୍ରୂୟତେ - 'ଯଃ ପୃଥିବ୍ୟାଂ ତିଷ୍ଠନ୍ ପୃଥିବ୍ୟା ଅନ୍ତରୋ ଯଂ ପୃଥିବୀ ନ ବେଦ, ଯସ୍ୟ ପୃଥିବୀ ଶରୀରଂ ଯଃ ପୃଥିବୀ ମନ୍ତରୋ ଯମୟତ୍ୟେଷ ତ ଆତ୍ମାନ୍ତର୍ଯ୍ୟାମ୍ୟମୃତଃ', (ବୃହ ୩-୭-୧, ୨) ଇତ୍ୟାଦି । (ଖ) ଅତ୍ରାଧିଦୈବତମଧିଲୋକମଧିବେଦମଧିଯଜ୍ଞମଧିଭୂତମଧ୍ୟାତ୍ମଂ ଚ କଶ୍ଚିଦନ୍ତର-ବସ୍ଥିତୋ ଯମୟିତାଽନ୍ତର୍ଯ୍ୟାମ୍ୟତି ଶ୍ରୂୟତେ ।

(୨) ଭାଷାଂତର - (କ) 'ଯିଏ ଏହି ସଂସାରର, ପରଲୋକର ଓ ସବୁ ପ୍ରାଣୀ ମାନଙ୍କର ଶରୀରରେ ରହି ଚଳାଏ । ଏହି ପ୍ରକାର ଉପକ୍ରମ କରି, ଯେ ପୃଥିବୀରେ ରହି ପୃଥିବୀରୁ ଅନ୍ତର ହୁଏ, ଯାହାକୁ ପୃଥିବୀ ଜାଣେ ନାହିଁ, ଯାହାର ଶରୀର ପୃଥିବୀ ଅଟେ, ଯାହା ଭିତରେ ରହି ପୃଥିବୀକୁ ପରିଚାଳନା କରେ, ଏହି ତୁମର ଆତ୍ମା ଅନ୍ତର୍ଯ୍ୟାମୀ ଅମୃତ ଅଟେ ।

(ଖ) ଏଠାରେ ଅଧିଦୈବ, ଅଧିଲୋକ, ଅଧିବେଦ, ଅଧିଯଜ୍ଞ, ଅଧିଭୂତ ଓ ଅଧ୍ୟାତ୍ମର ମଧ୍ୟରେ ରହି ଏହା ସମସ୍ତଙ୍କର ନିୟନ୍ତୃ କୌଣସି ଅନ୍ତର୍ଯ୍ୟାମୀ ବୋଲି ଶ୍ରୁତି କହେ ।

(୩) ମୂଳ - (କ) ସ କିମଧିଦୈବାଦ୍ୟଭିମାନୀ ଦେବତାତ୍ମା କଶ୍ଚିତ୍, କିମ୍ବା ପ୍ରାପ୍ତାଣିମାଦ୍ୟୈଶ୍ୱର୍ଯ୍ୟଃ କଶ୍ଚିଦ୍ଯୋଗୀ, କିମ୍ବା ପରମାତ୍ମା, କିମ୍ବାଽର୍ଥାନ୍ତରଂ, କିଞ୍ଚିଦିତ୍ୟପୂର୍ବସଂଜ୍ଞାଦର୍ଶନାତ୍ ସଂଶୟଃ । କିଂ ତାବନ୍ନଃ ପ୍ରତିଭାତି ? (ଖ) ସଂଜ୍ଞାୟା ଅପ୍ରସିଦ୍ଧତ୍ୱତ୍ ସଂଜ୍ଞନାପ୍ୟ ପ୍ରସିଦ୍ଧେନାର୍ଥନ୍ତରେଣ କେନ୍‌ଚିଦ୍ ଭବିତବ୍ୟମିତି । ଅଥବା ରୂପିତରୂପମର୍ଥାନ୍ତରଂ ଶକ୍ୟମସ୍ତୀତ୍ୟଭ୍ୟୁପଗନ୍ତୁମ୍ ଅନ୍ତର୍ଯ୍ୟାମୀଶବ୍ଦଶ୍ଚାନ୍ତର୍ଯ୍ୟ-ମନଯୋଗେନ ପ୍ରବୃତ୍ତୋ ନାତ୍ୟନ୍ତପ୍ରସିଦ୍ଧଃ । (ଗ) ତସ୍ମାତ୍ ପୃଥିବ୍ୟାଦ୍ୟଭିମାନୀ କଶ୍ଚିଦଦେବୋଽନ୍ତର୍ଯ୍ୟାମୀ ସ୍ୟାତ୍ । ତଥା ଚ ଶ୍ରୂୟତେ - 'ପୃଥିବ୍ୟେବ ଯସ୍ୟାୟତନମଗ୍ନିର୍ଲୋକେ ମନୋ ଜ୍ୟୋତିଃ', (ବୃହ ୩-୯-୧୦) ଇତ୍ୟାଦି । (ଘ) ସ ଚ କାର୍ଯ୍ୟକାରଣବତ୍ତ୍ୱାତ୍ ପୃଥିବ୍ୟାଦ୍ୟନନ୍ତମିଷନ୍ୟମୟତୀତି ଯୁକ୍ତଂ ଦେବତାତ୍ମନୋ ଯମୟିତୃତ୍ୱମ୍ । ଯୋଗିନୋ ବା କସ୍ୟଚିତ୍‌ସିଦ୍ଧସ୍ୟ ସର୍ବାନୁପ୍ରବେଶେନ ଯମୟିତୃତ୍ୱଂ ସ୍ୟାତ୍ । ନ ତୁ ପରମାତ୍ମା ପ୍ରତୀୟତେ ଅକାର୍ଯ୍ୟକରଣତ୍ୱାଦିତି ।

**(୩) ଭାଷାଂତର-** (କ) ସେ କ'ଣ ଅଧିଦୈବାଦିର ଅଭିମାନୀ କୌଣସି ଦେବତାତ୍ମା, ଅଥବା ଅଣିମାଦି ଐଶ୍ୱର୍ଯ୍ୟକୁ ପାଇଥିବା କୌଣସି ଯୋଗୀ, ଅଥବା ପରମାତ୍ମା, ଅଥବା କୌଣସି ଅନ୍ୟ ପଦାର୍ଥ କି ? 'ଅନ୍ତର୍ଯ୍ୟାମୀ' ଏହି ଅପୂର୍ବ ନାମକୁ ଶୁଣିବା ଦ୍ୱାରା ସଂଶୟ ହେଉଛି । ତେଣୁ ଏଠାରେ ଏହା ଆମ୍ଭମାନଙ୍କୁ ଜଣାପଡୁଛି କି ?

(ଖ) ଅନ୍ତର୍ଯ୍ୟାମୀ ନାମର ଅପ୍ରସିଦ୍ଧ ହେଲେ ଅନ୍ତର୍ଯ୍ୟାମୀ ନାମକ କୌଣସି ଏକ ଅପ୍ରସିଦ୍ଧ ପଦାର୍ଥ ହେବା ଆବଶ୍ୟକ, ଅଥବା ଯାହାର ନିରୂପଣ କରାଯାଇ ନାହିଁ, ଏପରି କୌଣସି ଅନ୍ୟ ପଦାର୍ଥ ହୋଇପାରେ ବୋଲି ସ୍ୱୀକାର କରାଯାଇ ନପାରେ । 'ଅନ୍ତର୍ଯ୍ୟାମୀ' ଶବ୍ଦ ଅନ୍ତର୍ନିୟମନ ବ୍ୟୁତ୍ପତ୍ତି ଦ୍ୱାରା ପ୍ରବୃତ୍ତ ହୁଏ । ତେଣୁ ଏହା ଅତ୍ୟନ୍ତ ଅପ୍ରସିଦ୍ଧ ନୁହେଁ ।

(ଗ) ତେଣୁ ପୃଥିବୀ ଆଦି କୌଣସି ଅଭିମାନୀ ଦେବତା ଅନ୍ତର୍ଯ୍ୟାମୀ ହେବା ଆବଶ୍ୟକ । ଏହି ପ୍ରକାର 'ପୃଥିବୀ ଯାହାର ଆଶ୍ରୟ ଅଟେ, ଅଗ୍ନି ନେତ୍ର ଅଟେ, ମନଃ ସଂକଳ୍ପ ଜ୍ୟୋତି ଅଟେ' ଇତ୍ୟାଦି ଶ୍ରୁତି ଅଛି ।

(ଘ) ସେ କାର୍ଯ୍ୟ କର୍ତ୍ତୃକ ହେଲେ ପୃଥିବ୍ୟାଦିର ଭିତରେ ରହି ଏହାର ନିୟମନ କରେ, ତେଣୁ ଦେବତାତ୍ମା ଯମୟିତା କହିବା ଠିକ୍ । ଅଥବା କୌଣସି ସିଦ୍ଧଯୋଗୀ ସର୍ବଗାମୀ ହେବାରୁ ଯମୟିତା ମଧ୍ୟ ହୋଇପାରେ । ପରନ୍ତୁ କାର୍ଯ୍ୟ (ଶରୀର) କରଣ (ଇନ୍ଦ୍ରିୟ) ଶୂନ୍ୟ ହେଲେ 'ଅନ୍ତର୍ଯ୍ୟାମୀ' ପଦଦ୍ୱାରା ପରମାତ୍ମା ପ୍ରତୀତି ହୁଏ ନାହିଁ ।



(୪) ମୂଳ - (କ) ଏବଂ ପ୍ରାପ୍ତେ ଇଦଂମୁଚ୍ୟତେ - ଯୋଽନ୍ତର୍ଯ୍ୟାମ୍ୟଧିଦୈବାଦିଷ୍ଠୁ ଶ୍ରୂୟତେ, ସ ପରମାତ୍ମୈବ ସ୍ୟାନ୍ନାସ୍ୟ ଇତି । କୁତଃ ? ତଦ୍‌ଧର୍ମବ୍ୟପଦେଶାତ୍ । (ଖ) ତସ୍ୟ ହି ପରମାତ୍ମନୋ ଧର୍ମା ଇହ ନିର୍ଦ୍ଦିଶ୍ୟମାନା ଦୃଶ୍ୟନ୍ତେ । ପୃଥିବ୍ୟାଦି ତାବଦଧିଦୈବାଦିଭେଦଭିନ୍ନଂ ସମସ୍ତଂ ବିକାରଜାତମନ୍ତସ୍ତିଷନ୍ୟମୟତୀତି ପରମାତ୍ମନୋ ଧର୍ମା ଇହ ନିର୍ଦ୍ଦିଶ୍ୟମାନା ଦୃଶ୍ୟନ୍ତେ । ପୃଥିବ୍ୟାଦି ତାବଦଧିଦୈବାଦିଭେଦଭିନ୍ନଂ ସମସ୍ତଂ ବିକାରଜାତମନ୍ତସ୍ତିଷନ୍ୟମୟତୀତି ପରମାତ୍ମନୋ ଯମୟିତ୍ରତ୍ୱଂ ଧର୍ମ ଉପ୍‌ପଦ୍ୟତେ, ସର୍ବବିକାରକାରଣତ୍ୱେ ସତି ସର୍ବଶକ୍ତ୍ୟୁପପତ୍ତେଃ । (ଗ) 'ଏଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ', ଇତି ଚ୍ଚମତ୍ୱାମୃତତ୍ୱେ ମୁଖ୍ୟେ ପରମାତ୍ମନ ଉପପଦ୍ୟତେ । (ଘ) 'ଯଂ ପୃଥିବୀ ନ ବେଦ' ଇତି ଚ ପୃଥିବୀଦେବତାୟାଃ ଅବିଜ୍ଞେୟମନ୍ତର୍ଯ୍ୟାମିଣଂ ବ୍ରୁବନ ଦେବତାତ୍ମନୋଽନ୍ତର୍ଯ୍ୟାମିଣଂ ଦର୍ଶୟତି । (ଙ) 'ପୃଥିବୀ ଦେବତା ହ୍ୟଦମସ୍ମି ପୃଥିବୀତ୍ୟାତ୍ମାନଂ ବିଜାନୀୟାତ୍', ତଥା ଅଦୃଷ୍ଟୋଽଶ୍ରୁତଃ', ଇତ୍ୟାଦି ବ୍ୟପଦେଶୋ ରୂପାଦିବିହୀନତ୍ୱାତ୍ ପରମାତ୍ମନୋ ଉପପଦ୍ୟତେ ଇତି । ଯତ୍ତ୍ୱକାର୍ଯ୍ୟକରଣସ୍ୟ ପରମାତ୍ମନୋ ଯମୟିତୃତ୍ୱଂ ନୋପପଦ୍ୟତ ଇତି । (ଚ) ନୈଷୋ ଦୋଷଃ, ଯାନ୍ନିୟଚ୍ଛତି, ତତ୍‌କାର୍ଯ୍ୟକରଣୈରେବ ତସ୍ୟ କାର୍ଯ୍ୟକରଣ ବତ୍ତ୍ୱୋପପତ୍ତେଃ । (ଛ) ତସ୍ୟାପ୍ୟନ୍ୟୋ ନିୟନ୍ତେତ୍ୟନବସ୍ଥାଦୋଷଶ୍ଚ ନ ସମ୍ଭବତି, ଭେଦାଭାବାତ୍ । ଭେଦେ ହି ସତ୍ୟନବସ୍ଥାଦୋଷୋପପତ୍ତେଃ, ତସ୍ମାତ୍ ପରମାତ୍ମୈବାନ୍ତର୍ଯ୍ୟାମୀ ।

**(୪) ଭାଷାଂତର-** (କ) ଏହାର ସମାଧାନ କୁହାଯାଇଛି- ଅଧିଦୈବ ଆଦିରେ ଯାହା ଅନ୍ତର୍ଯ୍ୟାମୀ ରୂପରେ ଶୁଣାଯାଏ, ସେ ପରମାତ୍ମା, କିନ୍ତୁ ଅନ୍ୟ କେହି ନୁହଁ । କିପରି ? ଏହାଦ୍ୱାରା ସେହି ଧର୍ମର ବ୍ୟପଦେଶ ହୁଏ ।

(ଖ) ନିଶ୍ଚିତ ଭାବରେ ସେ ପରମାତ୍ମାର ନିର୍ଦ୍ଦିଶ୍ୟମାନ ଧର୍ମ ଦେଖାଯାଏ । ଅଧିଦୈବାଦି ଭେଦରେ ଭିନ୍ନପୃଥିବ୍ୟାଦି ସମସ୍ତ ବିକାର ସମୁଦାୟଭିତରେ ରହି ଏହାକୁ ନିୟନ୍ତ୍ରଣ କରେ । ଏହା ନିୟମନକର୍ତ୍ତୃତ୍ୱ ଧର୍ମ ପରମାତ୍ମାରେ ଉପପନ୍ନ ହୁଏ, କାରଣ- ସେ ସବୁ ବିକାରର କାରଣ ହୁଏ । ତେଣୁ ତାହାଠାରେ ସମ୍ପୂର୍ଣ୍ଣ ଶକ୍ତି ଉପପନ୍ନ ହୁଏ ।

(ଗ) 'ଏହି ତୁମର ଆତ୍ମା ଅନ୍ତର୍ଯ୍ୟାମୀ ଓ ଅମୃତ ଅଟେ ।' ଏହି ଶ୍ରୁତିରେ ନିର୍ଦ୍ଦିଷ୍ଟ ମୁଖ୍ୟ ଆତ୍ମତ୍ୱ ଏବଂ ଅମୃତତ୍ୱ ପରମାତ୍ମାଠାରେ ଯୁକ୍ତ ହୁଏ ।

(ଘ) 'ଯାହାକୁ ପୃଥିବୀ ଅଭିମାନୀ ଦେବତା ବୋଲି ଜାଣେ ନାହିଁ' ଏହି ଶ୍ରୁତି ପୃଥିବୀ ଅଭିମାନୀଦେବତାଦ୍ୱାରା ଅଜ୍ଞେୟ ଅନ୍ତର୍ଯ୍ୟାମୀକୁ କହି ଦେବତାଭିନ୍ନ ଅନ୍ତର୍ଯ୍ୟାମୀକୁ ଦେଖାଏ ।

(ଙ) ଯଦି ପୃଥିବୀର ଅଧିଷ୍ଠାତୃଦେବତା ଅନ୍ତର୍ଯ୍ୟାମୀ ହୁଏ, ତେବେ 'ମୁଁ ପୃଥିବୀ' ଏହିପ୍ରକାର ନିଜକୁ ଜାଣେ । ଏହି ପ୍ରକାର 'ଅଦୃଷ୍ଟୋଽଶ୍ରୁତଃ' ଇତ୍ୟାଦି ବ୍ୟପଦେଶ ରୂପାଦି ରହିତ ହେଲେ ପରମାତ୍ମାରେ ଏହା ଯୁକ୍ତ ହୁଏ । ଶରୀର ଓ ଇନ୍ଦ୍ରିୟରହିତ ପରମାତ୍ମାରେ ନିୟାମକତ୍ୱ ହୋଇପାରେ ନାହିଁ ।

(ଚ) ଏହା ଦୋଷ ନୁହେଁ, କାରଣ-ଯାହାକୁ ସେ ନିୟନ୍ତ୍ରଣ କରେ, ଯାହାର ଶରୀର ଓ ଇନ୍ଦ୍ରିୟଗୁଡ଼ିକ ଦ୍ୱାରା ସେ ଶରୀରଧାରୀ ଓ ଇନ୍ଦ୍ରିୟଧାରୀ ବୋଲି କହେ ।

(ଛ) ତାହାର ମଧ୍ୟ ଦ୍ୱିତୀୟନିୟନ୍ତା ହେବାରେ ଅନବସ୍ଥା ଦୋଷ ସମ୍ଭବ ନୁହେଁ । କାରଣ- ବସ୍ତୁତଃ ଭେଦର ଅଭାବ ହୁଏ । ଭେଦ ହେଲେ ଅନବସ୍ଥା ଦୋଷର ଉପପତ୍ତି ହୁଏ, ତେଣୁ ପରମାତ୍ମା ହିଁ ଅନ୍ତର୍ଯ୍ୟାମୀ ଅଟେ ।

## नच स्मार्तमतद्धर्माभिलापात् ॥ १९ ॥

## (୧) ନ ଚ ସ୍ମାର୍ତ୍ତମତଦ୍ଧର୍ମାଭିଳାପାତ୍ । ୧ । ୨ । ୧୯

ସ୍ମାର୍ତ୍ତମ୍ - ସାଂଖ୍ୟସ୍ମୃତିକଳ୍ପିତ ପ୍ରଧାନ, ନ-ଅନ୍ତର୍ଯ୍ୟାମୀ ହୋଇପାରେ ନାହିଁ । ଅତଦ୍‌ଧର୍ମାଭିଳାପାତ୍-ଶ୍ରୁତିରେ ପ୍ରଧାନଭିନ୍ନ ଚେତନନିଷ୍ଠ ଦ୍ରଷ୍ଟୃତ୍ୱ ଶ୍ରୋତୃତ୍ୱାଦି ଧର୍ମର ଅଭିଧାନ କରାଯାଇଛି ।

(୨) ମୂଳ-(କ) ସ୍ୟାଦେତତ୍ । ଅଦୃଷ୍ଟତ୍ୱାଦୟୋ ଧର୍ମାଃ ସାଂଖ୍ୟସ୍ମୃତି କଳ୍ପିତସ୍ୟ ପ୍ରଧାନସ୍ୟାପ୍ୟୁପପଦ୍ୟନ୍ତେ, ରୂପାଦିହୀନତୟା ତସ୍ୟ ତୈରଭ୍ୟୁପଗମାତ୍ । 'ଅପ୍ରତର୍କ୍ୟମବିଜ୍ଞେୟଂ ପ୍ରସୁପ୍ତମିବ ସର୍ବତଃ', (ମନୁ ୧-୫) ଇତି ହି ସ୍ମରନ୍ତି । (ଖ) ତସ୍ୟାପି ନିୟନ୍ତୃତ୍ୱଂ ସର୍ବବିକାରକାରଣତ୍ୱାଦୁପପଦ୍ୟତେ । ତସ୍ମାତ୍ ପ୍ରଧାନମନ୍ତର୍ଯ୍ୟାମୀ ସ୍ୟାତ୍ । ''ଈକ୍ଷତେର୍ନାଶବ୍ଦମ୍,' (ବ୍ର ସୁ ୧-୧-୫) ଇତ୍ୟତ୍ର ନିରାକୃତମପି ସତ୍ପ୍ରଧାନମିହାଦୃଷ୍ଟତ୍ୱାଦିବ୍ୟପଦେଶସମ୍ଭବେନ ପୁନରାଶଙ୍କ୍ୟତେ । (ଗ) ଅତଉତ୍ତରମୁଚ୍ୟତେ - ନ ଚ ସ୍ମାର୍ତ୍ତଂ ପ୍ରଧାନମନ୍ତର୍ଯ୍ୟାମୀଶବ୍ଦଂ ଭବିତୁମର୍ହତି । କସ୍ମାତ୍ ? ଅତଦ୍‌ଧର୍ମାଭିଳାପାତ୍ । (ଘ) ଯଦ୍ୟପ୍ୟଦୃଷ୍ଟତ୍ୱାଦିବ୍ୟପଦେଶଃ ପ୍ରଧାନସ୍ୟ ସମ୍ଭବତି, ତଥାପି ନ ଦ୍ରଷ୍ଟୃତ୍ୱାଦିବ୍ୟପଦେଶଃ ସମ୍ଭବତି, ପ୍ରଧାନସ୍ୟା ଚେତନତ୍ୱେନ ତୈରଭ୍ୟୁପଗମାତ୍ । (ଙ) 'ଅଦୃଷ୍ଟୋ ଦ୍ରଷ୍ଟାଽଶ୍ରୁତଃ ଶ୍ରୋତାଽମତୋ ମନ୍ତାଽବିଜ୍ଞାନତୋ ବିଜ୍ଞାତା,' (ବୃହ ୩-୭-୨୩) ଇତି ହି ବାକ୍ୟଶେଷ ଇହ ଭବତି । ଆତ୍ମତ୍ୱମପି ନ ପ୍ରଧାନସ୍ୟାପପଦ୍ୟତେ ।

(୨) ଭାଷାଂତର - (କ) ଏହା ଠିକ୍ ଅଟେ । ପରନ୍ତୁ ସାଂଖ୍ୟମତରେ ଅଦୃଷ୍ଟତ୍ୱାଦି ଧର୍ମ ପ୍ରଧାନଠାରେ ଉପପନ୍ନ ହୁଏ । କାରଣ-ସାଂଖ୍ୟବାଦୀମାନେ ପ୍ରଧାନକୁ ରୂପାଦିରହିତ



ରୂପରେ ସ୍ୱୀକାର କରନ୍ତି । 'ଯାହା ତର୍କ ବିଷୟ ନୁହେଁ, ତାହା ରୂପାଦି ରହିତ ହେଲେ ନେତ୍ରାଦି ଇନ୍ଦ୍ରିୟାଦିର ବିଷୟ ନୁହେଁ ଏବଂ ଜଡ଼ ହେଲେ ଚତୁର୍ଦ୍ଦିଗରୁ ବ୍ୟାପ୍ତ ହୁଏ', ଏହାହିଁ ସ୍ମୃତିକାର କହିଛନ୍ତି ।

(ଖ) ତାହା ସବୁ ବିକାରର କାରଣ ହେଲେ ତାହାଠାରେ ମଧ୍ୟ ନିୟନ୍ତୃତ୍ୱ ଯୁକ୍ତ ହୁଏ । ତେଣୁ ପ୍ରଧାନ 'ଅନ୍ତର୍ଯ୍ୟାମୀ' ଶବ୍ଦବାଚ୍ୟ ହୁଏ । 'ଈକ୍ଷତେଃ' ଏହି ସୂତ୍ରରେ ଯଦ୍ୟପି ପ୍ରଧାନର ନିରାକରଣ ହୋଇଛି, ତଥାପି ଅନ୍ତର୍ଯ୍ୟାମୀ ବ୍ରାହ୍ମଣରେ ଅଦୃଷ୍ଟତ୍ୱାଦି ବ୍ୟପଦେଶର ସମ୍ଭବ ହେବାରୁ ପୁନର୍ବାର ଆଶଙ୍କା କରାଯାଉଛି ।

(ଗ) ସିଦ୍ଧାନ୍ତ- ସାଂଖ୍ୟ ସ୍ମୃତି ପ୍ରତିପାଦନ ପ୍ରଧାନ ଅନ୍ତର୍ଯ୍ୟାମୀ ଶବ୍ଦବାଚ୍ୟ ହୁଏ ନାହିଁ । କିପରି ? ଶ୍ରୁତିରେ ରହୁ ନଥିବା ଧର୍ମକୁ କୁହାଯାଇଛି ।

(ଘ) ଯଦ୍ୟପି ଅଦୃଷ୍ଟତ୍ୱାଦି ଧର୍ମର ବ୍ୟପଦେଶ କଥନ ପ୍ରଧାନରେ ସମ୍ଭବ ହୁଏ, ତଥାପି ଦୃଷ୍ଟୃତ୍ୱାଦି ବ୍ୟପଦେଶ ସମ୍ଭବ ହୁଏ ନାହିଁ । କାରଣ-ଏହା ପ୍ରଧାନ ରୂପରେ ସ୍ୱୀକାର କରାଯାଇଛି ।

(ଙ) 'ସେ ଅଦୃଷ୍ଟ ହୋଇ ଦ୍ରଷ୍ଟା, ଅଶ୍ରୁତ ହୋଇ ଶ୍ରୋତା, ଅମତ ହୋଇ ମନ୍ତା, ଅବିଜ୍ଞାତା ହୋଇ ଜ୍ଞାତା' ଏହି ପରି ବାକ୍ୟଶେଷ ହୁଏ । ପ୍ରଧାନରେ ଆତ୍ମତ୍ୱ ହିଁ ଉପପନ୍ନ ନୁହେଁ ।

(୩) ମୂଳ - (କ) ଯଦି ପ୍ରଧାନମାତ୍ମତ୍ୱଦ୍ରଷ୍ଟୃତ୍ୱାଦ୍ୟସମ୍ଭବାନ୍ନନ୍ତର୍ଯ୍ୟାମ୍ୟଭ୍ୟୁପଗମ୍ୟତେ, ଶାରୀରସ୍ତର୍ହ୍ୟନ୍ତର୍ଯ୍ୟାମୀ ଭବତୁ । ଶାରୀରୋ ହି ଚେତନତ୍ୱାଦ୍ ଦ୍ରଷ୍ଟ । ଶ୍ରୋତା ମନ୍ତା ବିଜ୍ଞାତା ଚ ଭବତି ଆତ୍ମା ଚ ପ୍ରତ୍ୟକ୍ତ୍ୱାତ୍ । (ଖ) ଅମୃତଶ୍ଚ ଧର୍ମାଧର୍ମଫଳୋପଭୋଗୋପପତ୍ତେଃ । ଅଦୃଷ୍ଟତ୍ୱାଦୟଶ୍ଚ ଧର୍ମାଃ ଶାରୀରେ ପ୍ରସିଦ୍ଧାଃ ଦର୍ଶନାଦିକ୍ରିୟାୟାଃ କର୍ତ୍ତରି ପ୍ରବୃତ୍ତିବିରୋଧାତ୍ । 'ନ ଦୃଷ୍ଟର୍ଦ୍ରଷ୍ଟାରଂ ପଶ୍ୟେଃ' (ବୃ ୩-୪-୨) ଇତ୍ୟଦି ଶ୍ରୁତିଭ୍ୟଶ୍ଚ । (ଗ) ତସ୍ୟ ଚ କାର୍ଯ୍ୟକରଣସଂଘାତମନ୍ତର୍ଯ୍ୟମୟିତୁଂ ଶୀଳମ୍, ଭୋକ୍ତୃତ୍ୱାତ୍ । ତସ୍ମାଚ୍ଛାରୀରୋଽନ୍ତର୍ଯ୍ୟାମୀତ୍ୟତ ଉତ୍ତରଂ ପଠତି-

(୩) ଭାଷାଂତର- (କ) ଯଦି ଆତ୍ମତ୍ୱ ଓ ଦ୍ରଷ୍ଟତ୍ୱାଦି ଧର୍ମଗୁଡ଼ିକର ଅସମ୍ଭବରେ ଅନ୍ତର୍ଯ୍ୟାମୀ ଶବ୍ଦଦ୍ୱାରା ପ୍ରଧାନକୁ ସ୍ୱୀକାର କରାଯାଏ ନାହିଁ, କିନ୍ତୁ ଶାରୀର ଅନ୍ତର୍ଯ୍ୟାମୀ ହୋଇପାରେ, କାରଣ- ଜୀବ ଚେତନ ହେଲେ ଦ୍ରଷ୍ଟା, ଶ୍ରୋତା, ମନ୍ତା ଓ ବିଜ୍ଞାତା ହୁଏ ଏବଂ ପ୍ରତ୍ୟକ୍ ଅଭ୍ୟନ୍ତର ହେଲେ ସେ ମଧ୍ୟ ଆତ୍ମା ହୁଏ ।

(ଖ) ଧର୍ମ ଓ ଅଧର୍ମର ଫଳୋପଭୋଗର ଉପପତ୍ତିଦ୍ୱାରା ସେ ଅମୃତ ହୁଏ । ଅର୍ଥାତ୍ ନାଶ ରହିତ ହେଲେ କର୍ମଫଳର ଉପଭୋଗ ସମ୍ଭବ ହୁଏ । ଅଦୃଷ୍ଟତ୍ୱାଦି ଧର୍ମ ମଧ୍ୟ ଜୀବରେ

ସୁପ୍ରସିଦ୍ଧ ଅଟେ । କାରଣ 'ବୁଦ୍ଧି ପରିମାଣରୂପ ଦୃଷ୍ଟି ଦ୍ରଷ୍ଟାକୁ ତୁମେ ଏହି ଦୃଷ୍ଟିରେ ଦେଖିପାରିବ ନାହିଁ' ଇତ୍ୟାଦି ଶ୍ରୁତିରେ ଦର୍ଶନାଦି କ୍ରିୟା ପ୍ରବୃତ୍ତିର କର୍ତ୍ତାଠାରେ ବିରୋଧ ପ୍ରତିପାଦିତ ହୁଏ ଅର୍ଥାତ୍ ଦର୍ଶନ କର୍ତ୍ତା ଦର୍ଶନ କ୍ରିୟାର ବିଷୟ ହୁଏ ନାହିଁ ।

(ଗ) ଶରୀର ଓ ଇନ୍ଦ୍ରିୟ ସମୂହର ନିୟମନ କରିବା ଏହାର ସ୍ୱଭାବ ଅଟେ । କାରଣ- ସେ ଭୋକ୍ତା, ତେଣୁ ଜୀବାତ୍ମା ଅନ୍ତର୍ଯ୍ୟାମୀ ଅଟେ । ଅତଃ ଏହାର ଉତ୍ତରରେ କୁହାଯାଇଛି ।

## शारीरश्चोभयेऽपि हि भेदेनैनमभिधीयते ॥ २० ॥

## (୧) ଶାରୀରଶ୍ଚୋଭୟେଽପି ହି ଭେଦେନୈନମଭିଧୀୟତେ ୧।୨।୨୦

ଶାରୀରଃ-ଜୀବ ଅନ୍ତର୍ଯ୍ୟାମୀ ହୁଏ ନାହିଁ । ହି-କାରଣ, ଉଭୟେଽପି-କାଣ୍ୱ ଓ ମାଧ୍ୟନ୍ଦିନଶାଖାସମ୍ପ୍ରଦାୟମାନେ ମଧ୍ୟ ଅନ୍ତର୍ଯ୍ୟାମୀଦ୍ୱାରା ନିୟମ୍ୟ ହେବାର କାରଣ, ଏନମ୍- ଏହି ଜୀବକୁ, ଭେଦେନ-ଅନ୍ତର୍ଯ୍ୟାମୀଭିନ୍ନ, ଅଧୀୟତେ-କୁହାଯାଇଛି । ତେଣୁ ଅଧିଦୈବାଦି ଶ୍ରୁତିରେ ପ୍ରତୀୟମାନ ଅନ୍ତର୍ଯ୍ୟାମୀ ପରମାତ୍ମା ହୁଏ ।

(୨) ମୂଳ-(କ) ନେତି ପୂର୍ବସୂତ୍ରାଦନୁବର୍ତ୍ତତେ । ଶାରୀରଶ୍ଚ ନାନ୍ତର୍ଯ୍ୟା-ମୀଷ୍ୟତେ । କସ୍ମାତ୍ ? ଯଦ୍ୟପି ଦ୍ରଷ୍ଟତ୍ୱାଦୟୋ ଧର୍ମାସ୍ତସ୍ୟ ସମ୍ଭବନ୍ତି, ତଥାପି ଘଟାକାଶବଦୁପାଧି ପରିଚ୍ଛିନ୍ନତ୍ୱାନ୍ନ କାର୍ତ୍ସ୍ନ୍ୟେନ ପୃଥିବ୍ୟାଦିଷ୍ୱନ୍ତରବସ୍ଥାତୁଂ ନିୟନ୍ତୁଂ ଚ ଶକ୍ନୋତି । (ଖ) ଅପି ଚୋଭୟେଽପି ହି ଶାଖିନଃ କାଣ୍ୱାଃ ମାଧ୍ୟନ୍ଦିନାଶ୍ଚାନ୍ତର୍ଯ୍ୟାମିଣୋ ଭେଦେନୈନଂ ଶାରୀରଂ ପୃଥିବ୍ୟାଦିବଦଧିଷ୍ଠାନ ତ୍ୱେନ ନିୟମ୍ୟତ୍ୱେନ ଚାଧୀୟତେ- 'ଯୋ ବିଜ୍ଞାନେ ତିଷ୍ଠନ୍', (ବୃ ୩-୭-୨୨) ଇତି କାଣ୍ୱାଃ, 'ଯ ଆତ୍ମନି ତିଷ୍ଠନ୍,' ଇତି ମାଧ୍ୟନ୍ଦିନାଃ । (ଗ) 'ଯଃ ଆତ୍ମନି ତିଷ୍ଠନ୍' ଇତ୍ୟସ୍ମିଂସ୍ତାବତ୍ପାଠେ ଭବତ୍ୟାତ୍ମଶବ୍ଦଃ ଶାରୀରସ୍ୟ ବାଚକଃ । 'ଯୋ ବିଜ୍ଞାନେ ତିଷ୍ଠନ୍', ଇତ୍ୟସ୍ମିନ୍ ପାଠେ ବିଜ୍ଞାନଶବ୍ଦେନ ଶାରୀର ଉଚ୍ୟତେ । ବିଜ୍ଞାନମୟୋ ହି ଶାରୀରଃ । ତସ୍ମାଚ୍ଛରୀରାଦନ୍ୟ ଈଶ୍ୱରୋଽନ୍ତର୍ଯ୍ୟାମୀତି ସିଦ୍ଧମ୍ । (ଘ) କଥଂ ପୁନରେକସ୍ମିନ୍ ଦେହେ ଦ୍ୱୌ ଦ୍ରଷ୍ଟାରାବୁପପଦ୍ୟେତେ ? ଯଶ୍ଚାୟମୀଶ୍ୱରାଽନ୍ତର୍ଯ୍ୟାମୀ ଯଶ୍ଚାୟମିତରଃ ଶାରୀରଃ । କା ପୁନରିହାନୁପପତ୍ତିଃ ? 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' ଇତ୍ୟାଦି ଶ୍ରୁତିବଚନଂ ବିରୁଧ୍ୟତେ । (ଙ) ଅତ୍ର ହି ପ୍ରକୃତାଦନ୍ତର୍ଯ୍ୟାମିଣୋଽନ୍ୟଂ ଦ୍ରଷ୍ଟାରଂ ଶ୍ରୋତାରଂ ମନ୍ତାରଂ ବିଜ୍ଞାତାରଂ ଚାତ୍ମାନଂ



ପ୍ରତିଷେଧତି । ନିୟନ୍ତନ୍ତର ପ୍ରତିଷେଧାର୍ଥ ମେତଦ୍‌ବଚନମିତି ଚେତ୍ ନ ନିୟନ୍ତନ୍ତରାପ୍ରସଙ୍ଗା
ବିଶେଷ ଶ୍ରବଣାଚ୍ଚ ।

(୨) ଭାଷାଂତର- (କ) ଏହି ସୂତ୍ରରେ 'ନ' ଶବ୍ଦର ପୂର୍ବସୂତ୍ରରେ ଅଧ୍ୟାହାର ହୁଏ । ଶାରୀର (ଜୀବ)ର ଅନ୍ତର୍ଯ୍ୟାମୀ ହେବା ଜଣାନାହିଁ । କାରଣ- ଯଦ୍ୟପି ଦ୍ରଷ୍ଟୃତ୍ୱାଦି ଧର୍ମ ଏଠାରେ ସମ୍ଭବ ହୁଏ । କିନ୍ତୁ ଘଟାକାଶ ସମାନ ତାହାଠାରେ ଉପାଧିଶରୀରାଦିଦ୍ୱାରା ପରିଚ୍ଛିନ୍ନ ହେବାର କାରଣ ସବୁପ୍ରକାର ପୃଥିବୀ ଆଦି ଭିତରେ ରହିଥିବା ଅଥବା ସେମାନଙ୍କର ନିୟମନ କରିବା ସାମର୍ଥ୍ୟ ନାହିଁ ।

(ଖ) ଦ୍ୱିତୀୟତଃ କାଣ୍ୱ ଓ ମାଧ୍ୟନ୍ଦିନଶାଖା ଅନ୍ତର୍ଯ୍ୟାମୀଠାରୁ ଭିନ୍ନ ପୃଥିବ୍ୟାଦି ସମାନ ଅଧିଷ୍ଠାନ (ଆଶ୍ରୟ) ରୂପରେ ଓ ନିୟମ୍ୟରୂପରେ ଅଧ୍ୟୟନ କରନ୍ତି । କାଣ୍ୱ 'ଯୋ ବିଜ୍ଞାନେ ତିଷ୍ଠନ୍' ଏବଂ ମାଧ୍ୟନ୍ଦିନ 'ଯ ଆତ୍ମନି ତିଷ୍ଠନ୍' ଏହି ପ୍ରକାର ଅଧ୍ୟୟନ କରନ୍ତି ।

(ଗ) 'ଯ ଆତ୍ମନି ତିଷ୍ଠନ' ଏହିପାଠରେ ଆତ୍ମଶବ୍ଦ ଜୀବର ବାଚକ । 'ଯୋ ବିଜ୍ଞାନେ ତିଷ୍ଠନ୍' ଏହିପାଠରେ ମଧ୍ୟ ବିଜ୍ଞାନଶବ୍ଦ ଦ୍ୱାରା ଶାରୀର ଜୀବନ କଥକ କରାଯାଇଛି । କାରଣ-ଶାରୀର ବିଜ୍ଞାନମୟ ଅଟେ । ଏହାଦ୍ୱାରା ସିଦ୍ଧାନ୍ତ ହୁଏ ଯେ- ଶାରୀର ଭିନ୍ନ ଅନ୍ତର୍ଯ୍ୟାମୀ ଈଶ୍ୱର ଅଟେ ।

(ଘ) ପରନ୍ତୁ ଯିଏ ଏହି ଈଶ୍ୱର ଅନ୍ତର୍ଯ୍ୟାମୀ ଏବଂ ଦ୍ୱିତୀୟଟି ଯିଏ ଶରୀରାଦି ସଂଘାତର ଜୀବ- ଏହି ଦୁଇଟି ଦ୍ରଷ୍ଟା ଏକ ଶରୀରରେ କିପରି ରହେ ? ଯଦି ସିଦ୍ଧାନ୍ତ କହେ ଯେ- ଏହି ଦୁଇଟି ଦ୍ରଷ୍ଟାର ଏକ ଶରୀରରେ ରହିଲେ କ'ଣ ଅନୁପପତ୍ତି ହୁଏ ? ପୂର୍ବପକ୍ଷ-ଅନୁପପତ୍ତି ଏହା ଯେ- 'ଏହାରୁ ଭିନ୍ନ କୌଣସି ଦ୍ରଷ୍ଟା ନାହିଁ', ଇତ୍ୟାଦି ଶ୍ରୁତିବଚନ ଦ୍ୱାରା ବିରୋଧ ହେବ ।

(ଙ) କାରଣ- ଶ୍ରୁତି ପ୍ରକୃତି ଅନ୍ତର୍ଯ୍ୟାମୀଠାରୁ ଭିନ୍ନ ଦ୍ରଷ୍ଟା, ଶ୍ରୋତା, ମନ୍ତା ଏବଂ ବିଜ୍ଞାତା ଆତ୍ମାକୁ ନିଷେଧ କରେ । ଶରୀରଭିନ୍ନ ଅନ୍ୟ ନିୟନ୍ତାର ପ୍ରତିଷେଧ ପାଇଁ ଏହାହିଁ ବଚନ ଅଟେ । ଏହା ଯଦି କୁହାଯାଏ, ତେବେ ମଧ୍ୟ ଠିକ୍ ନୁହେଁ । କାରଣ- ଏଠାରେ ଅନ୍ୟ ନିୟନ୍ତାର ପ୍ରୟୋଗ ନାହିଁ ଏବଂ କୌଣସି ବିଶେଷ ନିୟନ୍ତାର ଶ୍ରବଣ ନାହିଁ । ଅର୍ଥାତ୍ 'ନାନ୍ୟୋଽତୋଽସ୍ତି' । ଏହି ଶ୍ରୁତିରେ ସାଧାରଣ ରୂପରେ ଅନ୍ୟଦ୍ରଷ୍ଟାର ନିଷେଧ କରାଯାଇଛି । କିନ୍ତୁ ଅନ୍ୟ ନିୟନ୍ତାର ନିଷେଧ କରାଯାଇ ନାହିଁ ।

(୩) ମୂଳ-(କ) ଅତ୍ରୋଚ୍ୟତେ-ଅବିଦ୍ୟାପ୍ରତ୍ୟୁପସ୍ଥାପିତ କାର୍ଯ୍ୟକାରଣୋପାଧିନିମିତ୍ତୋଽୟଂ ଶାରୀରାନ୍ତର୍ଯ୍ୟାମିଣୋର୍ଭେଦବ୍ୟପଦେଶୋ ନ ପାରମାର୍ଥିକଃ । (ଖ) ଏକସ୍ୟୈବ ତୁ ଭେଦବ୍ୟବହାର ଉପାଧିକୃତଃ, ଯଥା ଘଟାକାଶୋ ମହାକାଶଇତି । ତତଶ୍ଚ ଜ୍ଞାତୃଜ୍ଞେୟାଦି,ଭେଦଶ୍ରୁତୟଃ ପ୍ରତ୍ୟକ୍ଷାଦୀନି ଚ ପ୍ରମାଣାନି ସଂସାରାନୁଭବୋ

ବିଧିପ୍ରତିଷେଧଶାସ୍ତ୍ରଂ ଚେତି ସର୍ବମେତଦୁପପଦ୍ୟତେ (ଗ) ତଥା ଚ ଶ୍ରୁତିଃ-ଯତ୍ର ଦ୍ୱୈତମେବ ଭବତି, ତଦିତର ଇତରଂ ପଶ୍ୟତି', ଇତ୍ୟବିଦ୍ୟା ବିଷୟେ ସର୍ବଂ ବ୍ୟବହାରଂ ଦର୍ଶୟତି । 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତାତ୍ କେନ କଂ ପଶ୍ୟେତ୍', ଇତି ବିଦ୍ୟା ବିଷୟେ ସର୍ବଂ ବ୍ୟବହାରଂ ବାରୟତି ।

**(୩) ଭାଷାଂତର** - ସିଦ୍ଧାନ୍ତ-ଜୀବ ଓ ଅନ୍ତର୍ଯ୍ୟାମୀର ଭେଦବ୍ୟପଦେଶ ଅବିଦ୍ୟାଦ୍ୱାରା ଉପସ୍ଥାପିତ ଶରୀର, ଇନ୍ଦ୍ରିୟରୂପଉପାଧିର ଅପେକ୍ଷା ଦ୍ୱାରା ପରମାର୍ଥତଃ ହୁଏ ନାହିଁ । ବସ୍ତୁତଃ ପ୍ରତ୍ୟଗାତ୍ମ ଏକ ଅଟେ । ପ୍ରତ୍ୟଗାତ୍ମା ଦୁଇଟିର ସମ୍ଭବ ହୁଏ ନାହିଁ ।

(ଖ) ଯେପରି ଘଟାକାଶ ଓ ମହାକାଶରେ ଉପାଧିକୃତ ଭେଦବ୍ୟବହାର ହୁଏ । ସେପରି ଏକରେ ଭେଦବ୍ୟବହାର ଉପାଧିକୃତ ହୋଇଥାଏ । ଏହା କଳ୍ପିତ ଉପାଧିଦ୍ୱାରା ଜ୍ଞାତାଜ୍ଞେୟର ଭେଦପ୍ରତିପାଦନ ଶ୍ରୁତି, ପ୍ରତ୍ୟକ୍ଷାଦିପ୍ରମାଣ, ସଂସାରାନୁଭବ, ବିଧିପ୍ରତିଷେଧଶାସ୍ତ୍ର ସବୁ ଉପନ୍ନ ହୁଅନ୍ତି ।

(ଗ) ଏହି ପ୍ରକାର 'ଯେଉଁଠାରେ ଦ୍ୱୈତ ହୁଏ, ସେଠାରେ ସ୍ୱୟଂ ଅନ୍ୟ ହୋଇ ଦେଖେ' ଏହି ଶ୍ରୁତି ଅବିଦ୍ୟା ବିଷୟରେ ସବୁବ୍ୟବହାରକୁ ଦେଖାଏ । 'ଯେଉଁ ଜ୍ଞାନକାଳରେ ଆତ୍ମଜ୍ଞାନୀର ସବୁ ଆତ୍ମା ବୋଲି ଜ୍ଞାନ ହୁଏ, ସେତେବେଳେ କିଏ କାହାକୁ ଦେଖେ', ଏହି ଶ୍ରୁତି ବିଦ୍ୟାବିଷୟରେ ସବୁବ୍ୟବହାରକୁ ନିଷେଧ କରିଛି ।

## ६ अदृश्यत्वाधिकरणम् ॥ २१ - २३ ॥

## ଅଦୃଶ୍ୟତ୍ୱାଧିକରଣମ୍-

## अदृश्यत्वादिगुणको धर्मोक्तेः ॥ २१॥

## (୧) ଅଦୃଶ୍ୟତ୍ୱାଦିଗୁଣକୋ ଧର୍ମୋକ୍ତେଃ ॥ ୧-୨-୨୧

ଅଦୃଶ୍ୟତ୍ୱାଦିଗୁଣକୋ- 'ଯତ୍ତଦଦ୍ରେଶ୍ୟମଗ୍ରାହ୍ୟା' ଇତ୍ୟାଦିଶ୍ରୁତିରେ ଉକ୍ତ ଅଦୃଶ୍ୟତ୍ୱାଦିଗୁଣଥିବା ଭୂତଯୋନି ପରମାତ୍ମା ଅଟେ, ପ୍ରଧାନାଦିନୁହେଁ । ଧର୍ମୋକ୍ତେଃ- 'ଯଃ ସର୍ବଜ୍ଞଃ ସର୍ବବିତ୍' ଇତ୍ୟାଦି ଶ୍ରୁତିରେ ଏହି ଧର୍ମର କଥନ ହୋଇଛି ।

(୨) ମୂଳ - (କ) 'ଅଥ ପରା ଯୟା ତଦକ୍ଷରମଧିଗମ୍ୟତେ', ଯତ୍ତଦଦ୍ରେ-ଶ୍ୟମଗ୍ରାହ୍ୟମଗୋତ୍ରମବର୍ଣ୍ଣମଚକ୍ଷୁଶ୍ରୋତ୍ରଂ ତଦପାଣିପାଦମ୍ । ନିତ୍ୟଂ ବିଭୁଂ ସର୍ବଗତଂ ସୁସୂକ୍ଷ୍ମମ୍, ତଦବ୍ୟୟଂ ଯଦଭୂତଯୋନିଂ ପରିପଶ୍ୟନ୍ତି ଧୀରାଃ' (ମୁଣ୍ଡ ୧।୧।୫) ଇତି ଶ୍ରୂୟତେ । (ଖ) ତତ୍ର ସଂଶୟଃ-କିମୟମଦ୍ରେଶ୍ୟତ୍ୱାଦି ଗୁଣକୋ ଭୂତଯୋନିଃ ପ୍ରଧାନଂ



ସ୍ୟାତ୍, ଉତ ଶାରୀରଃ, ଆହୋସ୍ୱିତ୍ ପରମେଶ୍ୱର ଇତି । ତତ୍ର ପ୍ରଧାନମଚେତନଂଭୂତ ଯୋନିରିତି ଯୁକ୍ତମ୍ ଅଚେତନାନାମେବ ତଦ୍ଦୃଷ୍ଟାନ୍ତତ୍ୱେନୋ ପାଦାନାତ୍ । 'ଯଥୋର୍ଣ୍ଣନାଭିଃ ସୃଜତେ ଗୃହ୍ଣତେ ଚ, ଯଥା ପୃଥିବ୍ୟାମୋଷଧୟଃ ସମ୍ଭବନ୍ତି । ଯଥା ସତଃ ପୁରୁଷାତ୍ କେଶଲୋମାନି, ତଥାଽକ୍ଷରାତ୍ ସମ୍ଭବତୀହ ବିଶ୍ୱମ୍ (ମୁଣ୍ଡ ୧-୧-୭) । (ଗ) ନନୂର୍ଣ୍ଣନାଭିଃ ପୁରୁଷଶ୍ଚ ଚେତନାବିହ ଦୃଷ୍ଟାନ୍ତତ୍ୱେ-ନୋପାତୌ । ନେତି ବ୍ରୂମଃ । ନହି କେବଳସ୍ୟ ଚେତନସ୍ୟ ତତ୍ର ସୂତ୍ରଯୋନିତ୍ୱଂ କେଶଲୋମଯୋନିତ୍ୱଂ ବାସ୍ତି । ଚେତନାଧିଷ୍ଠିତଂ ହ୍ୟଚେତନମୂର୍ଣ୍ଣନାଭିଶରୀରଂ ସୂତ୍ରସ୍ୟ ଯୋନିଃ, ପୁରୁଷଶରୀରଞ୍ଚ କେଶ ଲୋମ୍ନାମିତି ପ୍ରସିଦ୍ଧମ୍ । (ଘ) ଅପିଚ ପୂର୍ବତ୍ରା ଦୃଷ୍ଟତ୍ୱାଦ୍ୟଭିଳାପସମ୍ଭବେଽପି ଦଷ୍ଟୃତ୍ୱାଦ୍ୟଭିଳାପାସମ୍ଭବାନ୍ନ ପ୍ରଧାନ-ମଭ୍ୟୁପଗନ୍ତବ୍ୟମ୍ । ଇହ ତ୍ୱଦୃଶ୍ୟତ୍ୱାଦୟୋ ଧର୍ମାଃ ପ୍ରଧାନେ ସମ୍ଭବନ୍ତି । ନ ଚାତ୍ର ବିରୁଧମାନୋ ଧର୍ମଃ କଶ୍ଚିଦଭିଲପ୍ୟତେ । (ଙ) ନନୁ 'ଯଃ ସର୍ବଜ୍ଞଃ ସର୍ବବିତ୍', (ମୁଣ୍ଡ ୧।୧।୯) ଇତ୍ୟୟଂ ବାକ୍ୟଶେଷୋଽଚେତନେ ପ୍ରଧାନେ ନ ସମ୍ଭବତି । କ୍ଥଂ ପ୍ରଧାନଂ ଭୂତଯୋନିଃ ପ୍ରତିଜ୍ଞାୟତ ଇତି ।

**(୨) ଭାଷାଂତର-** (କ)- 'ଅପରବିଦ୍ୟାକୁ କହି ସାରିବା ପରେ ବର୍ତ୍ତମାନ ପରାବିଦ୍ୟା କୁହାଯାଉଛି । ଯାହାଦ୍ୱାରା ବକ୍ଷ୍ୟମାଣବିଶେଷଣ ବିଶିଷ୍ଟ ଏହି ଅକ୍ଷରର ଜ୍ଞାନପ୍ରାପ୍ତ ହୁଏ ।' 'ସେ ଯେଉଁ ଅଦୃଶ୍ୟ ଜ୍ଞାନେନ୍ଦ୍ରିୟର ଅବିଷୟ, ଅଗ୍ରାହ୍ୟ କର୍ମେନ୍ଦ୍ରିୟର ଅବିଷୟ, ଅଗୋତ୍ର, ଅବର୍ଣ୍ଣ ବ୍ରାହ୍ମଣତ୍ୱାଦିଜାତରହିତ ଅଥବା ଶୁକ୍ଳତ୍ୱାଦିବର୍ଣ୍ଣରହିତ, ଚକ୍ଷୁ ଓ ଶ୍ରୋତ୍ରରହିତ, ପାଣିପାଦରହିତ, କର୍ମେନ୍ଦ୍ରିୟରହିତ, ନିତ୍ୟ, ବିଭୁ, ସର୍ବଗତ, ସୁସୂକ୍ଷ୍ମ, ଦୁର୍ବିଜ୍ଞେୟ, ଅବିନାଶୀ ଅଟେ । ବିଦ୍ୱାନଲୋକ ଭୂତକୁ କାରଣ ରୂପରେ ଦେଖେ ।' ଏହି ଶ୍ରୁତି କହେ ।

(ଖ) ସଂଶୟ-ଅଦୃଶ୍ୟତ୍ୱାଦିଗୁଣଯୁକ୍ତ ଭୂତଯୋନି କ'ଣ ପ୍ରଧାନ ଅଟେ' ଅଥବା ଜୀବ, ଅଥବା ପରମେଶ୍ୱର ? ପୂର୍ବପକ୍ଷ ଏହି ତିନୋଟିଠାରୁ ଅଚେତନପ୍ରଧାନ ଭୂତଯୋନିଯୁକ୍ତ ଅଟେ । କାରଣ ଜଗତ୍‌କାରଣ ଭୂତଯୋନିରେ ଅଚେତନର ଦୃଷ୍ଟାନ୍ତ ରୂପରେ ଗ୍ରହଣ କରାଯାଇଛି । 'ଯେଉଁ ପ୍ରକାର ବୁଢ଼ୀଆଣୀ ଜାଲକୁ ନିର୍ମାଣ ଓ ଗ୍ରହଣ କରେ, ସେପରି ପୃଥିବୀରେ ଔଷଧଗୁଡ଼ିକ ଉତ୍ପନ୍ନ ହୁଅନ୍ତି ଏବଂ ଯେପରି ମଧ୍ୟ ଜୀବିତ ପୁରୁଷଠାରୁ କେଶ ଓ ଲୋମ ଉତ୍ପନ୍ନ ହୁଏ, ସେପରି ମଧ୍ୟ ଅକ୍ଷରରୁ ସମସ୍ତ ବିଶ୍ୱ ଉତ୍ପନ୍ନ ହୁଏ ।'

(ଗ) ପରନ୍ତୁ ବୁଢ଼ୀଆଣି ଓ ପୁରୁଷ- ଏହି ଦୁଇଟି ଚେତନର ଦୃଷ୍ଟାନ୍ତରୂପରେ ଗ୍ରହଣ କରାଯାଏ । ପୂର୍ବପକ୍ଷ-ଏହା ନୁହେଁ ବୋଲି ଆମ୍ଭେ କହୁଁ । କେବଳ ଚେତନ ହିଁ ଏଠାରେ

ତନ୍ତୁର ଅଥବା କେଶଲୋମର କାରଣ ନୁହେଁ, କିନ୍ତୁ ଚେତନଠାରୁ ଅଧିଷ୍ଠିତ ଅଚେତନ ବୁଢ଼ୀଆଣୀର ଶରୀର ମଧ୍ୟ ତନ୍ତୁର କାରଣ ହୁଏ ଏବଂ ପୁରୁଷଶରୀରର କେଶ ଓ ଲୋମର କାରଣ ଅଟେ । ଏହା ହିଁ ପ୍ରସିଦ୍ଧ ।

(ଘ) ପୁରୁଷାଧିକରଣରେ କଣ ଅଦୃଷ୍ଟତ୍ୱାଦିଧର୍ମର କଥନ ପ୍ରଧାନରେ ସମ୍ଭବ ହେଲେ ମଧ୍ୟ ଦୃଷ୍ଟତ୍ୱାଦିଧର୍ମର କଥନ ଅସମ୍ଭବ ହେବାପାଇଁ ପ୍ରଧାନ ସ୍ୱୀକାର କରାଯାଏ । ପରନ୍ତୁ ଏଠାରେ ଅଦୃଶ୍ୟତ୍ୱାଦିଧର୍ମ ପ୍ରଧାନଠାରେ ସମ୍ଭବ ହୁଏ । କିନ୍ତୁ କୌଣସି ବିରୁଦ୍ଧଧର୍ମର ଅଭିଧାନ ନୁହେଁ ।

(ଙ) ଯଦି କୁହାଯାଏ ଯେ – 'ଯଃ ସର୍ବଜ୍ଞଃ ସର୍ବବିତ୍' ଏହି ବାକ୍ୟଶେଷ ଅଚେତନ ପ୍ରଧାନପାଖରେ ସମ୍ଭବ ନୁହେଁ । କିନ୍ତୁ ପ୍ରଧାନ ଭୂତଯୋନି ଅଟେ । ଏହା ପ୍ରତିଜ୍ଞା କିପରି ହୁଏ ?

(୩) ମୂଳ-(କ) ଅତ୍ରୋଚ୍ୟତେ- 'ଯୟା ତଦକ୍ଷରମଧିଗମ୍ୟତେ', 'ଯତ୍ତଦଦ୍ରେଶ୍ୟମ୍' ଇତ୍ୟକ୍ଷରଶବ୍ଦୋନାଦୃଶ୍ୟତ୍ୱାଦିଗୁଣଙ୍କ ଭୂତଯୋନିଂ ଶ୍ରାବୟିତ୍ୱା ପୁନରନ୍ତେ ଶ୍ରାବୟିଷ୍ୟତି – 'ଅକ୍ଷରାତ୍ ପରତଃ ପରଃ' (ମୁଣ୍ଡ ୨-୧ ୨) ଇତି । (ଖ) ଯତ୍ର 'ଯଃ ପରୋଽକ୍ଷରା ଛ୍ରୁତଃ, ସଃ ସର୍ବଜ୍ଞଃ, ସର୍ବବିତ୍ ସଂଭବିଷ୍ୟତି । ପ୍ରଧାନମେବ ତ୍ୱକ୍ଷରଶବ୍ଦନିର୍ଦ୍ଦିଷ୍ଟଂ ଭୂତଯୋନିଃ । ଯଦା ତୁ ଯୋନିଶବ୍ଦୋ ନିମିତ୍ତବାଚୀ, ତଦା ଶରୀରୋଽପି ଭୂତଯୋନିଃସ୍ୟାତ୍, ଧର୍ମାଧର୍ମାଭ୍ୟାଂ ଭୂତଜାତସ୍ୟୋପାର୍ଜ୍ଜନାଦିତି ।

**(୩) ଭାଷାଂତର-** (କ) ଉତ୍ତର ଦେବାରେ ପୂର୍ବପକ୍ଷ- 'ଯାହାଦ୍ୱାରା ସେ ଅକ୍ଷର ଅଧିଗତଜ୍ଞାତ ହୁଏ ।' 'ଯାହା ତାହା ଅଦୃଶ୍ୟ ଅଟେ ।' ଏହି ପ୍ରକାର ଅକ୍ଷରଶବ୍ଦ ଦ୍ୱାରା ଅଦୃଶ୍ୟତ୍ୱାଦିଗୁଣବିଶିଷ୍ଟ ଭୂତଯୋନିର ଶ୍ରବଣକରି ଶେଷରେ ପୁନଃ ଶ୍ରୁତି- 'ସବୁଠାରୁ ଉତ୍କୃଷ୍ଟ ସେହି ଅକ୍ଷରଠାରୁ ଯେ ଉତ୍କୃଷ୍ଟ' ଏହିପ୍ରକାର ଶ୍ରବଣ କରାଏ ।

(ଖ) ଏହି ମନ୍ତ୍ରରେ ଯାହା ଅକ୍ଷରଦ୍ୱାରା ପରିଶ୍ରୁତ ହୁଏ, ସେ ସର୍ବଜ୍ଞ ସର୍ବବିତ୍ ହୋଇପାରେ । ଅକ୍ଷରଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ ଭୂତଯୋନି ହିଁ ପ୍ରଧାନ । ଯଦି 'ଯୋନି' ଶବ୍ଦ ନିମିତ୍ତବାଚକ ବୋଲି ସ୍ୱୀକାର କରାଯାଏ, ତାହେଲେ ଶାରୀର (ଜୀବାତ୍ମା) ମଧ୍ୟ ଭୂତଯୋନି ହେବ । କାରଣ-ଏହାର ଧର୍ମ ଅଧର୍ମଦ୍ୱାରା ଭୂତସମୂହର ସୃଷ୍ଟି ହୁଏ ।

(୪) ମୂଳ- (କ) ଏବଂ ପ୍ରାପ୍ତେଽଭିଧୀୟତେ- ଯୋଽୟମଦୃଶ୍ୟତ୍ୱାଦିଗୁଣକୋ ଭୂତଯୋନିଃ ସ ପରମେଶ୍ୱର ଏବ ସ୍ୟାନ୍ନାନ୍ୟ ଇତି । କଥମେତଦବଗମ୍ୟତେ ?



ଧର୍ମୋକ୍ତେଃ । ପରମେଶ୍ୱରସ୍ୟ ହି ଧର୍ମ ଇହୋଚ୍ୟମାନୋ ଦୃଶ୍ୟତେ-ଯଃ ସର୍ବଜ୍ଞଃ ସର୍ବବିତ୍' ଇତି । (ଖ) ନହି ପ୍ରଧାନସ୍ୟାଚେତନସ୍ୟ ଶାରୀରସ୍ୟ ବୋପାଧିପରିଛିନ୍ନଦୃଷ୍ଟେଃ ସର୍ବଜ୍ଞତ୍ୱଂ ସର୍ବବିତ୍ୱଂ ବା ସମ୍ଭବତି । ନନ୍ୱକ୍ଷର ଶବ୍ଦନିର୍ଦ୍ଦିଷ୍ଟାଦ୍ ଭୂତଯୋନେଃ ପରସ୍ୟୈବୈତତ୍‌ସର୍ବଜ୍ଞତ୍ୱଂ ସର୍ବବିତ୍ୱଂ ନ ଚ ଭୂତଯୋନିବିଷୟମିତ୍ୟୁକ୍ତମ୍ । (ଗ) ଅତ୍ରୋଚ୍ୟତେ-ନୈବଂ ସମ୍ଭବତି । ଯତ୍‌କାରଣଂ 'ଅକ୍ଷରାତ୍ ସମ୍ଭବତୀହ ବିଶ୍ୱମ୍', ଇତି ପ୍ରକୃତଂ ଭୂତଯୋନିମିହ ଜାୟମାନ ପ୍ରକୃତିତ୍ୱେନ ନିର୍ଦ୍ଦିଷ୍ୟାନନ୍ତରମପି ଜାୟମାନପ୍ର-କୃତିତ୍ୱେନୈବ ସର୍ବଜ୍ଞଂ ନିର୍ଦ୍ଦିଶ୍ୟତି- (ଘ) 'ଯଃ ସର୍ବଜ୍ଞଃ ସର୍ବବିଦସ୍ୟ ଜ୍ଞାନମୟଃ ତପଃ । ତସ୍ମାଦେତଦ୍ ବ୍ରହ୍ମ ନାମ ରୂପମନ୍ନଂ ଚଜାୟତେ', ଇତି । ତସ୍ମାନ୍ନିର୍ଦ୍ଦେଶ୍ୟ-ସାମ୍ୟେନ ପ୍ରତିଭିଜ୍ଞାୟମାନତ୍ୱାତ୍ ପ୍ରକୃତସ୍ୟୈବାକ୍ଷରସ୍ୟ ଭୂତଯୋନେଃ ସର୍ବଜ୍ଞତ୍ୱଂ ସର୍ବବିତ୍ୱଂ ଚ ଧର୍ମ ଉଚ୍ୟତେ ଇତି ଗମ୍ୟତେ ।

**(୪) ଭାଷାଂତର-** (କ) ସିଦ୍ଧାନ୍ତ-ଅଦୃଶ୍ୟତ୍ୱାଦି ଗୁଣକ, ଯାହା ଭୂତାଦିର କାରଣ ଅଟେ, ସେ ପରମେଶ୍ୱର, କିନ୍ତୁ ଅନ୍ୟ କିଛି ନୁହେଁ । ଏହା କିପରି ଜଣାପଡ଼ିବ ? ଧର୍ମୋକ୍ତ ଦ୍ୱାରା । ଏଠାରେ 'ଯଃ ସର୍ବଜ୍ଞ ସର୍ବବିତ୍' ଏହି ବାକ୍ୟ ଶେଷରେ ପରମେଶ୍ୱରଙ୍କ ଧର୍ମ ହିଁ କୁହାଯାଇଛି ।

(ଖ) ଅଚେତନପ୍ରଧାନରେ ଅଥବା ଉପାଧିଦ୍ୱାରା ପରିଚ୍ଛିନ୍ନଦୃଷ୍ଟିଥିବା ଜୀବଠାରେ ସର୍ବଜ୍ଞତ୍ୱ ଓ ସର୍ବବେତୃତ୍ୱ ସମ୍ଭବ ନୁହେଁ । ପରନ୍ତୁ ଅକ୍ଷରଶବ୍ଦର ନିର୍ଦ୍ଦିଷ୍ଟଭୂତ ଭୂତଯୋନିଦ୍ୱାରା ଅନ୍ୟ (ପରମେଶ୍ୱର)ଠାରେ ସେ ସର୍ବଜ୍ଞତ୍ୱ, ସର୍ବବେତୃତ୍ୱ ହୁଏ । ଭୂତଯୋନିଠାରେ ନୁହେଁ । ଅର୍ଥାତ୍ ସର୍ବଜ୍ଞତ୍ୱ ଓ ସର୍ବବେତୃତ୍ୱ ଭୂତଯୋନିବିଷୟକ ନୁହେଁ, ଯାହାକି ପଛରେ କୁହାଯାଇଛି ।

(ଗ) ଏହା ଉପରେ କୁହାଯାଇଛି- ଏହା ସମ୍ଭବ ନୁହେଁ । କାରଣ-ଅକ୍ଷରଦ୍ୱାରା ଏହି ବିଶ୍ୱ ଉତ୍ପନ୍ନ ହୁଏ । ଏହିପ୍ରକାର ଏଠାରେ ପ୍ରକୃତଯୋନିର ଉତ୍ପାଦ୍ୟମାନ ପ୍ରପଞ୍ଚର ପ୍ରତି କାରଣରୂପରେ ନିର୍ଦ୍ଦେଶ କରି ଏହାର ଆଗରେ ।

(ଘ) 'ଯେ ସର୍ବଜ୍ଞ ସର୍ବବିତ୍, ଯାହାର ଜ୍ଞାନମୟତପ ଅଛି, ଯାହାଦ୍ୱାରା ଏହି କାର୍ଯ୍ୟ ବ୍ରହ୍ମ ଓ ଯଜ୍ଞଦତ୍ତ ଦେବଦତ୍ତାଦି ନାମ ଶୁକ୍ଳ, ନୀଳରୂପାଦିରୂପ ଏବଂ ବ୍ରୀହି ଯବାଦି ଅନ୍ନ ଉତ୍ପନ୍ନ ହୁଏ,' ଏହିପ୍ରକାର ଶ୍ରୁତି ଉତ୍ପାଦ୍ୟମାନ ପ୍ରପଞ୍ଚର ପ୍ରତି କାରଣ ରୂପରେ ହିଁ ସର୍ବଜ୍ଞର ନିର୍ଦ୍ଦେଶ କରେ । ଏହାଦ୍ୱାରା ସମାନ ନିର୍ଦ୍ଦେଶଦ୍ୱାରା ପ୍ରତ୍ୟଭିଜ୍ଞାର ବିଷୟ ହେଲେ ପ୍ରକୃତ ଅକ୍ଷର ଭୂତଯୋନିର ସର୍ବଜ୍ଞତ୍ୱ ଓ ସର୍ବବେତୃତ୍ୱ ଧର୍ମ କୁହାଯାଇଛି ବୋଲି ଜଣାପଡ଼େ ।

(୫) ମୂଳ- (କ) 'ଅକ୍ଷରାତ୍ ପରତଃ ପରଃ' ଇତ୍ୟତ୍ରାପି ନ ପ୍ରକୃତାଦ୍ ଭୂତଯୋନେରକ୍ଷରାତ୍ ପରଃ କଶ୍ଚିଦଭିଧୀୟତେ । କଥମେ ତଦିବଗମ୍ୟତେ ? 'ଯେନାକ୍ଷରଂ ପୁରୁଷଂ ବେଦ ସତ୍ୟଂ ପ୍ରୋବାଚ ତାଂ ତତ୍ତ୍ୱତୋ ବ୍ରହ୍ମବିଦ୍ୟାମ୍', (ମୁଣ୍ଡ ୧-୨-୧୩) ଇତି ପ୍ରକୃତ୍ୟ ତସ୍ୟୈବା-କ୍ଷରସ୍ୟ ଭୂତଯୋନେର ଦୃଶ୍ୟତ୍ୱାଦିଗୁଣକସ୍ୟ ବକ୍ତବ୍ୟ ତ୍ୱେନପ୍ରତିଜ୍ଞାତତ୍ୱାତ୍ । (ଖ) କଥଂ ତର୍ହିଁ 'ଅକ୍ଷରାତ୍ ପରତଃ ପରଃ' ଇତି ବ୍ୟପଦିଶ୍ୟତେ ? ଇତି ଉତ୍ତରସୂତ୍ରେତଦ୍‌ବନ୍ଧ୍ୟାମଃ । ଅପି ଚାତ୍ରେ ଦ୍ୱେ ବିଦ୍ୟେ ବେଦିତବ୍ୟେ ଉକ୍ତେ- 'ପରା ଚୈବା ପରା ଚ' ଇତି । (ଗ) ତତ୍ରାପରାମୃଗ୍‌ବେଦା-ଦିଲକ୍ଷଣାଂ ବେଦମୁକ୍ତ୍ୱା ବ୍ରବୀତି - 'ଅଥପରୋ ଯୟା ତଦକ୍ଷରମଧିଗମ୍ୟତେ', ଇତ୍ୟାଦି । ତତ୍ର ପରସ୍ୟାବିଦ୍ୟାୟା ବିଷୟତ୍ୱେନାକ୍ଷରଂ ଶ୍ରୁତମ୍ । (ଘ) ଯଦି ପୁନଃ ପରମେଶ୍ୱରାଦନ୍ୟଦଦୃଶ୍ୟତ୍ୱାଦିଗୁଣକମକ୍ଷରଂ ପରିକଳ୍ପ୍ୟେତ, ନେୟଂ ପରା ବିଦ୍ୟା ସ୍ୟାତ୍ । ପରାପରବିଭାଗୋ ହ୍ୟୟଂ ବିଦ୍ୟୟୋରଭ୍ୟୁଦୟନିଃଶ୍ରେୟସଫଳତୟା ପରିକଳ୍ପ ତେ ନ । ଚ ପ୍ରଧାନବିଦ୍ୟା ନିଃଶ୍ରେୟସଫଳା କେନଚିଦଭ୍ୟୁପଗମ୍ୟତେ ?

**(୫) ଭାଷାଂତର-** (କ) ଏଠାରେ ପ୍ରକୃତ ଭୂତଯୋନି- ଅକ୍ଷର ବ୍ୟତିତ କୌଣସି ଅନ୍ୟ ପଦାର୍ଥ ଅଭିହିତ ନୁହେଁ । ଏହା କିପରି ଜାଣିଲ ? 'ଯେଉଁ ବିଦ୍ୟା ଦ୍ୱାରା ଶିଷ୍ୟ ସତ୍ୟ ଓ ଅକ୍ଷର ପୁରୁଷକୁ ଜାଣେ, ସେହି ବ୍ରହ୍ମ ବିଦ୍ୟାକୁ ଆଚାର୍ଯ୍ୟ ଯଥାର୍ଥ ରୂପରେ କହିଛନ୍ତି,'' ଏହି ପ୍ରକାର ପ୍ରକୃତ ଭୂତଯୋନି ଅଦୃଶ୍ୟତ୍ୱାଦି ଗୁଣ ଦ୍ୱାରା ସମ୍ପନ୍ନ ଅକ୍ଷରର ବକ୍ତବ୍ୟରୂପରେ ପ୍ରତିଜ୍ଞା ହୋଇଛି । ଅର୍ଥାତ୍ ଏହାଦ୍ୱାରା ଜଣାପଡ଼େ ଯେ- ଭୂତଯୋନି ଅକ୍ଷର ବ୍ୟତିତ ଅନ୍ୟ କିଛି ନୁହେଁ ।

(ଖ) ତାହେଲେ 'ଅକ୍ଷରାତ୍ ପରତଃ ପରଃ' ଏହି ବ୍ୟପଦେଶ କିପରି କରାଯାଇଛି ? ଏହା ପରସୂତ୍ରରେ କହିବୁ । ପରାବିଦ୍ୟା ଓ ଅପରା ବିଦ୍ୟା - ଏହି ଦୁଇଟି ବିଦ୍ୟାକୁ ଜାଣିବା ପାଇଁ କୁହାଯାଇଛି ।

(ଗ) ଏଠାରେ ଋଗ୍‌ବେଦାଦିକୁ ଅପରାବିଦ୍ୟା କରି 'ଅପରାକୁ ନିରୂପଣ କଲେ ପରାବିଦ୍ୟା କୁହାଯାଏ, ଯାହାଦ୍ୱାରା ଏହି ଅକ୍ଷର ଅଧିଗତ ହୁଏ,' ଇତ୍ୟାଦି କୁହାଯାଇଛି । ଏଠାରେ ପରାବିଦ୍ୟାର ବିଷୟରୂପରେ ଅକ୍ଷର ଶୁଣାଯାଏ ।

(ଘ) ଏଠାରେ ଯଦି ପରମେଶ୍ୱରଠାରୁ ଭିନ୍ନ ଅଦୃଶ୍ୟତ୍ୱାଦି ଗୁଣ ବିଶିଷ୍ଟ ଅକ୍ଷରର ତୁଳନା କରାଯାଏ, ତେବେ ପରାବିଦ୍ୟା ହେବ ନାହିଁ । ନିଶ୍ଚୟ ଅଭ୍ୟୁଦୟ ଓ ନିଃଶ୍ରେୟସଫଳର ଅପେକ୍ଷା ବିଦ୍ୟାରେ ଏହି ପରା ଓ ଅପରାବିଦ୍ୟାର କଳ୍ପନା କରାଯାଇଛି ।



ପ୍ରଧାନ ବିଦ୍ୟା ମୋକ୍ଷ ଫଳବାନ୍ । ଏହା କିଏ ସ୍ୱୀକାର କରିନାହିଁ ? ଅର୍ଥାତ୍ ସମସ୍ତେ ସ୍ୱୀକାର କରିଛନ୍ତି ।

(୬) ମୂଳ- (କ) ତିସ୍ରଃ ବିଦ୍ୟା ପ୍ରତିଜ୍ଞାୟେରନ୍, ତ୍ୱତ୍ପକ୍ଷେଽକ୍ଷରାଦ୍ ଭୂତଯୋନେଃ ପରସ୍ୟ ପରମାତ୍ମନଃ ପ୍ରତିପାଦ୍ୟମାନତ୍ୱାତ୍ । ଦ୍ୱେ ଏବ ତୁ ବିଦ୍ୟେ ବେଦିତବ୍ୟେ ଇହ ନିର୍ଦ୍ଦିଷ୍ଟେ । 'କସ୍ମିନ୍ନ ଭଗବୋ ବିଜ୍ଞାତେ ସର୍ବମିଦଂ ବିଜ୍ଞାତଂ ଭବତି', (ମୁଣ୍ଡ ୧-୧-୩) ଇତି ଚୈକବିଜ୍ଞାନେନାସର୍ବବିଜ୍ଞାନାପେକ୍ଷଣଂ ସର୍ବାତ୍ମକେ ବ୍ରହ୍ମଣି ବିବକ୍ଷ୍ୟମାଣେଽବକଳ୍ପ୍ୟତେ, ନାଚେତନମାତ୍ରୈକାୟତନେ ପ୍ରଧାନେ, ଭୋଗ୍ୟବ୍ୟତିରିକ୍ତେ ବା ଭୋକ୍ତରି । (ଖ) ଅପି ଚ 'ସ ବ୍ରହ୍ମବିଦ୍ୟାଂ ସର୍ବବିଦ୍ୟା ପ୍ରତିଷ୍ଠାମଥର୍ବାୟ ଜ୍ୟେଷ୍ଠପୁତ୍ରାୟ ପ୍ରାହ' (ମୁଣ୍ଡ ୧-୧-୧) ଇତି ବ୍ରହ୍ମବିଦ୍ୟାଂ ପ୍ରାଧାନ୍ୟେନୋପକ୍ରମ୍ୟ ପରାପର ବିଭାଗେନ ପରାଂ ବିଦ୍ୟାମକ୍ଷରାଧିଗମନୀଂ ଦର୍ଶୟଂସ୍ତସ୍ୟା ବ୍ରହ୍ମବିଦ୍ୟାତ୍ୱଂ ଦର୍ଶୟତି, ସା ଚ ବ୍ରହ୍ମବିଦ୍ୟାସମାଖ୍ୟା ତଦଧିଗମ୍ୟସ୍ୟାକ୍ଷରସ୍ୟାବ୍ରହ୍ମତ୍ୱେ ବାଧିତା ସ୍ୟାତ୍ ।

(୬) ଭାଷାଂତର- (କ) ତୁମ୍ଭ ମତରେ ଭୂତଯୋନି-ଅକ୍ଷରଠାରୁ ଅନ୍ୟ ପରମାତ୍ମା ପ୍ରତିପାଦନ କରାଯାଇଛି । ତେଣୁ ତିନିପ୍ରକାର ବିଦ୍ୟାର ସ୍ୱୀକାର କରିବା ଆବଶ୍ୟକ । ପରନ୍ତୁ ଏଠାରେ ଦୁଇଟି ବିଦ୍ୟାକୁ ଜାଣିବା ଉଚିତ । ଶୌନକ - 'ହେ ଭଗବାନ୍ ! କାହାକୁ ଜାଣିବା ଦ୍ୱାରା ସମସ୍ତଙ୍କୁ ଜାଣିହୁଏ', ଏହି ପ୍ରକାର ଗୋଟିଏ ବିଜ୍ଞାନଦ୍ୱାରା ସର୍ବବିଜ୍ଞାନର ଅପେକ୍ଷା ସର୍ବାତ୍ମକ ବ୍ରହ୍ମର ବିବକ୍ଷା କଲେ ଏହା ସମ୍ଭବ ହୁଏ । ଅଚେତନମାତ୍ରର ଏକ ଆଶ୍ରୟ ପ୍ରଧାନ ଅଥବା ଭୋଗ୍ୟଭିନ୍ନ ଭୋକ୍ତାର ବିବକ୍ଷା ହେଲେ ମଧ୍ୟ ଏହା ସମ୍ଭବ ହୁଏ ନାହିଁ ।

(ଖ) 'ତାହାଦ୍ୱାରା ଆପଣଙ୍କର ଜ୍ୟେଷ୍ଠପୁତ୍ର ଅଥର୍ବର ସମସ୍ତବିଦ୍ୟାର ଆଶ୍ରୟଭୂତ ବ୍ରହ୍ମବିଦ୍ୟାର ଉପଦେଶ କରାଯାଇଛି', ଏହା ଦ୍ୱାରା ବ୍ରହ୍ମବିଦ୍ୟାର ପ୍ରଧାନରୂପରେ ଆରମ୍ଭ କରି ପର ଓ ଅପରକୁ ବିଭାଗ କରି ପରାବିଦ୍ୟାକୁ ଅକ୍ଷରକୁ ବୁଝାଉଥିବା ବ୍ରହ୍ମବିଦ୍ୟା ବୋଲି ଦେଖାଯାଉଛି ଏବଂ ଏହି ବିଦ୍ୟା ଦ୍ୱାରା ଅଧିଗମ୍ୟ ଅକ୍ଷରକୁ ଯଦି ବ୍ରହ୍ମ ରୂପରେ ସ୍ୱୀକାର କରା ନ ଯାଏ, ତେବେ ଏହାର ବ୍ରହ୍ମବିଦ୍ୟା ନାମ ହିଁ ବାଧିତ ହେବ ।

(୭) ମୂଳ-(କ) ଅପରଗ୍ୱେଦାଦିଲକ୍ଷଣା କର୍ମବିଦ୍ୟା ବ୍ରହ୍ମୋବିଦ୍ୟୋପକ୍ରମେ ଉପନ୍ୟସ୍ୟତେ ବ୍ରହ୍ମବିଦ୍ୟାପ୍ରଶଂସନାୟୈ । 'ପ୍ଲବା ହ୍ୟେତେ ଅଦୃଢା ଯଜ୍ଞରୂପା, ଅଷ୍ଟାଦଶୋକ୍ତମବରଂ ଯେଷୁ କର୍ମ । ଏତଚ୍ଛ୍ରେୟୋ ଯେଽଭିନନ୍ଦନ୍ତି ମୂଢ଼ାଃ, ଜରାମୃତ୍ୟୁଂ ତେ ପୁନରାବିପିୟନ୍ତି' (ମୁଣ୍ଡ ୧-୧-୭) ଇତ୍ୟେବମାଦି ନିନ୍ଦାବଚନାତ୍ । (ଖ) ନିନ୍ଦିତ୍ୱା

ଽପରାଂ ବିଦ୍ୟାଂ ତତୋ ବିରକ୍ତସ୍ୟ ପରବିଦ୍ୟାଧିକାରଂ ଦର୍ଶୟତି, ପରୀକ୍ଷ୍ୟ ଲୋକାନ୍ କର୍ମଚିତାନ୍ ବ୍ରାହ୍ମଣୋ ନିର୍ବେଦମାୟାନ୍ନାସ୍ତ୍ୟକୃତଃ କୃତେନ । ତଦ୍ ବିଜ୍ଞାନାର୍ଥଂ ସ ଗୁରୁମେବାଭିଗଚ୍ଛେତ୍ ସମିତ୍ପାଣିଃ ଶ୍ରୋତ୍ରେୟଂ ବ୍ରହ୍ମନିଷ୍ଠମ୍' (ମୁଣ୍ଡ ୧-୨-୧୨) ଇତି । (ଗ) ଯତ୍ତୂକ୍ତମ୍‌ଅଚେତନାନାଂ ପୃଥିବ୍ୟାଦୀନାଂ ଦୃଷ୍ଟାନ୍ତତ୍ୱେନୋପାଦାନାଦାର୍ଷ୍ଟା- ନ୍ତିକେନାପ୍ୟଚେତନେନ ଭୂତଯୋନିନା ଭବିତବ୍ୟମିତି । ତଦ୍‌ଯୁକ୍ତମ୍, ନ ହି ଦୃଷ୍ଟାନ୍ତଦାର୍ଷ୍ଟାନ୍ତିକଂୟୋରତ୍ୟନ୍ତସାମ୍ୟେନ ଭବିତବ୍ୟମିତି ନିୟମୋଽସ୍ତି । (ଘ) ଅପି ଚ ସ୍ଥୂଳଃ ଏବ ଦାର୍ଷ୍ଟାନ୍ତିକୋ ଭୂତଯୋନିରଭ୍ୟୁପଗମ୍ୟତେ । ତସ୍ମାଦଦୃଶ୍ୟତ୍ୱା-ଦିଗୁଣକୋ ଭୂତଯୋନିଃ ପରମେଶ୍ୱର ଏବ ।

(୭) ଭାଷାଂତର- (କ) ଋଗ୍‌ବେଦାଦି ଅପରା କର୍ମବିଦ୍ୟାର ବ୍ରହ୍ମବିଦ୍ୟାର ଉପକ୍ରମରେ ବ୍ରହ୍ମବିଦ୍ୟାର ପ୍ରଶଂସାନିମିତ୍ତ ଉପନ୍ୟାସ କରାଯାଇଛି । କାରଣ-ଯେଉଁଠାରେ ଅବର ନିକୃଷ୍ଟ କର୍ମର ଆଶ୍ରୟ ହୁଏ, ସେଠାରେ ସେମାନେ ଅଷ୍ଟାଦଶ ଯଜ୍ଞରୂପ (୧) ଋତ୍ୱିକ୍, ଯଜମାନ, ଓ ଯଜମାନପତ୍ନୀ) ଯଜ୍ଞର ସାଧନ ଅସ୍ଥିର ଓ ନଷ୍ଟକୁ ବତାଇଦିଏ । ଯେଉଁ ମୂଢ଼ ଏହାକୁ ଶ୍ରେୟ ଭାବି ଅଭିନନ୍ଦନ କରେ, ସେ ଜରା ଓ ମରଣ ଭୋଗ କରେ୍ ନାହିଁ ।' ଇତ୍ୟାଦି ନିନ୍ଦାର କଥନ ଅଛି ।

(ଖ) 'କର୍ମ ଦ୍ୱାରା ଲୋକ ପରୀକ୍ଷା କରି ବ୍ରାହ୍ମଣ ନିର୍ବେଦ ପାଏ, କାରଣ-ସଂସାରରେ ନିତ୍ୟ ପଦାର୍ଥ ନାହିଁ ଏବଂ କୃତ ଅନିତ୍ୟ ଦ୍ୱାରା କ'ଣ ପ୍ରୟୋଜନ ହୁଏ ? ତେଣୁ ଏହି ନିତ୍ୟ ବସ୍ତୁକୁ ପାଇବା ପାଇଁ ଏହି ମୁମୁକ୍ଷୁ ପୁରୁଷ ହସ୍ତରେ ସମିଧନେଇ ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ପୁରୁଷଙ୍କ ପାଖକୁ ଯାଏ' । ଏହି ବେଦବାକ୍ୟ ଏହି ପ୍ରକାର ଅପରାବିଦ୍ୟାକୁ ନିନ୍ଦାକରି ଏହାର ବିରକ୍ତପୁରୁଷର ପରାବିଦ୍ୟାରେ ଅଧିକାର ଦେଖାଯାଏ ।

(ଗ) ଯାହା ପୂର୍ବରୁ କୁହାଯାଇଛି କି- ପୃଥ୍ୱୀ ଆଦି ଅଚେତନ ପଦାର୍ଥ ଗୁଡ଼ିକର ଦୃଷ୍ଟାନ୍ତରୂପରେ ଗ୍ରହଣ କଲାପରେ ଦାର୍ଷ୍ଟନ୍ତିକ ମଧ୍ୟ ଅଚେତନ ଭୂତଯୋନି ହେବା ଉଚିତ । ଏହା ଠିକ୍ ନୁହେଁ । କାରଣ- ଦୃଷ୍ଟାନ୍ତ ଏବଂ ଦାର୍ଷ୍ଟାନ୍ତିକର ସର୍ବାଂଶରେ ପୂର୍ଣ୍ଣରୂପରେ ସମାନତା ହେବାର ନିୟମ ନାହିଁ ।

(ଘ) ସ୍ଥୂଳ ପୃଥିବ୍ୟାଦି ଦୃଷ୍ଟାନ୍ତରୂପରେ ଗ୍ରହଣ କରାଯାଇଛି । ତେଣୁ ଦ୍ରାର୍ଷ୍ଟାନ୍ତିକ ଭୂତଯୋନି ମଧ୍ୟ ସ୍ଥୂଳ ହେବା ପାଇଁ କୌଣସି ନିୟମ ନାହିଁ । ଏହି ପୂର୍ବୋକ୍ତ ନିୟମ ଦ୍ୱାରା ଅଦୃଶ୍ୟତ୍ୱାଦି ଗୁଣଥିବା ଭୂତଯୋନି ପରମେଶ୍ୱର ହୁଏ ।

## विशेषणभेदव्यपदेशाभ्यां च नेतरौ ॥ २२ ॥

## (୧) ବିଶେଷାଣଭେଦବ୍ୟପଦେଶାଭ୍ୟାଂ ଚ ନେତରୌ ॥ ୧-୨-୨୨

ବିଶେଷଣଭେଦବ୍ୟପଦେଶାଭ୍ୟାମ୍ - ବିଶେଷଣ ଏବଂ ଭେଦର ବ୍ୟପଦେଶ କହିବା ଦ୍ୱାରା ଭୂତଯୋନି ପରମାତ୍ମା ହୁଏ । ଚ ନେତରୌ-ଇତର ଜୀବ ଓ ପ୍ରଧାନ ନୁହେଁ ।

(୨) ମୂଳ- (କ) ଇତଶ୍ଚ ପରମେଶ୍ୱର ଏବ ଭୂତଯୋନି ର୍ନେତରୌ-ଶାରୀରଂ ପ୍ରଧାନଂ ବା । କସ୍ମାତ୍ ? ବିଶେଷଣଭେଦବ୍ୟପଦେଶାଭ୍ୟାମ୍ । (ଖ) ବିଶିନଷ୍ଟି ହି ପ୍ରକୃତଂ ଭୂତଯୋନିଂ ଶାରୀରାଦ୍ ବିଲକ୍ଷଣତ୍ୱେନ-'ଦିବ୍ୟୋ ହ୍ୟମୂର୍ତ୍ତଃ ପୁରୁଷଃ, ସ ବାହ୍ୟାଭନ୍ତରୋ ହ୍ୟଜଃ । ଅପ୍ରାଣୋ ହ୍ୟମନାଃ ଶୁଭ୍ରଃ', (ମୁଣ୍ଡ ୨-୧-୨) ଇତ୍ୟାଦି । (ଗ) ନ ହେତ୍ୟଦ୍ ଦିବ୍ୟତ୍ୱାଦି ବିଶେଷଣମବିଦ୍ୟା ପ୍ରତ୍ୟୁପସ୍ଥାପିତନାମରୂପ ପରିଚ୍ଛେଦାଭିମାନିନସ୍ତଦ୍ ଧର୍ମାନ୍ ସ୍ୱାତ୍ମନି କଳ୍ପୟତଃ ଶାରୀରସ୍ୟୋପପଦ୍ୟତେ । ତସ୍ମାତ୍ ସାକ୍ଷାଦୌପନିଷଦଃ ପୁରୁଷ ଇହୋଚ୍ୟତେ ।

(୨) ଭାଷାଂତର- (କ) ଏହି କାରଣରୁ ପରମେଶ୍ୱର ହିଁ ଭୂତଯୋନି ହୁଏ । ଅନ୍ୟ ଦୁଇଟି ଜୀବ ତଥା ପ୍ରଧାନ ନୁହେଁ । କିପରି ? ବିଶେଷଣ ଓ ଭେଦର ବ୍ୟପଦେଶ (କଥନ) ଅଛି ।

(ଖ) 'ସେ ଅକ୍ଷର ବ୍ରହ୍ମ ନିଶ୍ଚିତ ଭାବରେ ଦିବ୍ୟ ଅମୂର୍ତ୍ତ ପୁରୁଷ, ବାହାରେ ଓ ଭିତରେ ବିଦ୍ୟମାନ, ଅଜନ୍ମା ଅପ୍ରାଣ, ମନୋରହିତ, ବିଶୁଦ୍ଧ ଓ ଶ୍ରେଷ୍ଠ ଅକ୍ଷର ଦ୍ୱାରା ଉତ୍କୃଷ୍ଟ ଅଟେ ।' ଏହି ବେଦବାକ୍ୟ ପ୍ରକୃତ ଭୂତଯୋନିକୁ ଜୀବଠାରୁ ବିଲକ୍ଷଣରୂପରେ ବିଶେଷିତ କରାଏ ।

(ଗ) ନିଶ୍ଚିତ ଭାବରେ ଏହି ଦିବ୍ୟତ୍ୱାଦିବିଶେଷଣ ଅବିଦ୍ୟା ଦ୍ୱାରା ଉପସ୍ଥାପିତ ନାମ-ରୂପ ପରିଚ୍ଛିନ୍ନରେ ଅଭିମାନ କରୁଥିବା ଏବଂ ଏମାନଙ୍କର ଜଡ଼ତ୍ୱାଦିଧର୍ମର କଳ୍ପନା କରୁଥିବା ଜୀବଠାରେ ଉପପନ୍ନ ହୁଏ ନାହିଁ । ତେଣୁ ସାକ୍ଷାତ୍ ଉପନିଷଦ୍ ପ୍ରତିପାଦ୍ୟ ପୁରୁଷ ହିଁ ଏଠାରେ କୁହାଯାଇଛି ।

(୩) ମୂଳ- (କ) ତଥା ପ୍ରଧାନାଦପି ପ୍ରକୃତଂ ଭୂତଯୋନିଂ ଭେଦେନ ବ୍ୟପଦିଶତି- 'ଅକ୍ଷରାତ୍ ପରତଃ ପରଃ' ଇତି । ଅକ୍ଷରମବ୍ୟାକୃତଂ ନାମରୂପବୀଜ-ଶକ୍ତିରୂପଂ ଭୂତସୂକ୍ଷ୍ମମୀଶ୍ୱରାଶ୍ରୟଂ ତସ୍ୟୈବୋପାଧିଭୂତଂ ସର୍ବସ୍ମାଦ୍ବିକାରାତ୍ ପରୋ ଯୋ ବିକାରସ୍ତସ୍ମାତ୍

ପରତଃ ପର ଇତି ଭେଦେନ ବ୍ୟପଦେଶାତ୍ ପରମାତ୍ମାନମିହ ବିବକ୍ଷିତଂ ଦର୍ଶୟତି । (ଖ) ନାତ୍ର ପ୍ରଧାନଂ ନାମ କିଞ୍ଚିତ୍ସ୍ୱତନ୍ତ୍ରଂ ତତ୍ତ୍ୱମଭ୍ୟୁପଗମ୍ୟ ତସ୍ମାଦ୍ ଭେଦବ୍ୟପଦେଶ ଉଚ୍ୟତେ । କିଂ ତର୍ହି ? (ଗ) ଯଦି ପ୍ରଧାନମପି କଳ୍ପମାନଂ ଶ୍ରୁତବିରୋଧେନାବ୍ୟାକୃତାଦିଶବ୍ଦବାଚ୍ୟଂ ଭୂତସୂକ୍ଷ୍ମଂ ପରିକଳ୍ପେ ତ, ପରିକଳ୍ପ୍ୟତାମ୍ । ତସ୍ମାଦ୍ ଭେଦବ୍ୟପଦେଶାତ୍ ପରମେଶ୍ୱରୋ ଭୂତଯୋନିରିତ୍ୟେତଦିହ ପ୍ରତିପାଦ୍ୟତେ ।

**(୩) ଭାଷାଂତର-** (କ) ଏହି ପ୍ରକାର 'ଅକ୍ଷରାତ୍ ପରତଃ ପରଃ' ଏହି ବେଦବାକ୍ୟ ପ୍ରଧାନକୁ ପ୍ରକୃତ ଭୂତଯୋନିର ଭିନ୍ନରୂପରେ ବ୍ୟପଦେଶ କରୁଛି । ଯାହା ଅବ୍ୟାକୃତ ନାମ ରୂପର କାରଣଭୂତ ଈଶ୍ୱରର ଶକ୍ତିରୂପ ଅଟେ । ଯେଉଁଠାରେ ଭୂତମାନଙ୍କର ସଂସ୍କାର ରହିଛି, ଚିନମାତ୍ର ଈଶ୍ୱର ଯାହାର ଆଶ୍ରୟ, ତାହାର ଉପାଧିଭୂତ ସର୍ବବିକାରା ଭିନ୍ନ ଯେଉଁ ଅବିକାର ଅକ୍ଷର, ତାହାଠାରୁ ଭିନ୍ନ ଈଶ୍ୱର ଅଟେ । ଏହି ପ୍ରକାର ଶ୍ରୁତି ଭେଦ ଦ୍ୱାରା ବ୍ୟାପଦେଶ ହେବାରୁ ଏଠାରେ ପରମାତ୍ମାର ବିବକ୍ଷିତ ରୂପରେ ଦେଖାଯାଏ ।

(ଖ) ପୁନଶ୍ଚ ପ୍ରଧାନ ନାମଥିବା କୌଣସି ସ୍ୱତନ୍ତ୍ର ପଦାର୍ଥ ସ୍ୱୀକାର କରି ତାହାଠାରୁ ପୃଥକ୍ ଈଶ୍ୱରର ବ୍ୟପଦେଶ ହୁଏ । ଏହା କିନ୍ତୁ କୁହାଯାଇ ନାହିଁ । ତାହାଲେ କ'ଣ କୁହାଯାଇଛି ।

(ଗ) ଯଦି କଳ୍ପ୍ୟମାନ ପ୍ରଧାନର ଶ୍ରୁତିର ବିରୋଧରେ ଅବ୍ୟାକୃତାଦି ଶବ୍ଦ ବାଚ୍ୟଭୂତ ସୂକ୍ଷ୍ମ ରୂପରେ କଳ୍ପନା ହୋଇଛି, ତାହେଲେ ଏପରି କଳ୍ପନା କର । ଏହି ଭେଦବ୍ୟପଦେଶ ଦ୍ୱାରା ଭୂତଯୋନି ପରମେଶ୍ୱର ବୋଲି ଏଠାରେ ଶ୍ରୁତି ଓ ସ୍ମୃତିରେ ପ୍ରତିପାଦନ କରାଯାଇଅଛି ।

## रूपोपन्यासाच्च ॥ २३ ॥

## (୧) ରୂପୋପନ୍ୟାସାଚ୍ଚ ୧ । ୨ । ୨୩

'ଅଗ୍ନିର୍ମୂର୍ଦ୍ଧା' ଇତ୍ୟାଦି ବେଦବାକ୍ୟଦ୍ୱାରା ସର୍ବାତ୍ମକତ୍ୱର ଉପନ୍ୟାସ ଦ୍ୱାରା ଭୂତଯୋନି ପରମେଶ୍ୱର ହିଁ ରହେ ।

(୨) ମୂଳ - (କ) ଅପି ଚ 'ଅକ୍ଷରାତ୍ ପରତଃ ପରଃ', ଇତ୍ୟସ୍ୟାନନ୍ତରମ୍ 'ଏତସ୍ମାଜ୍ଜାୟତେ ପ୍ରାଣଃ' ଇତି ପ୍ରାଣପ୍ରଭୃତୀନାଂ ପୃଥିବୀପର୍ଯ୍ୟାନ୍ତାନାଂ ତତ୍ତ୍ୱାନାଂ ସର୍ଗମୁକ୍ତ୍ୱା ତସ୍ୟୈବ ଭୂତଯୋନେଃ ସର୍ବବିକାରାତ୍ମକଂ ରୂପ ସୁପନ୍ୟସ୍ୟମାନଂ ପଶ୍ୟାମଃ- 'ଅଗ୍ନିର୍ମୂର୍ଦ୍ଧା



ଚକ୍ଷୁଷୀ ଚନ୍ଦ୍ରସୂର୍ଯ୍ୟୌ, ଦିଶଃ ଶ୍ରୋତ୍ରେ ବାଗ୍‌ବିବୃତାଶ୍ଚ ବେଦାଃ । ବାୟୁଃ ପ୍ରାଣୋ ହୃଦୟଂ ବିଶ୍ୱମସ୍ୟ, ପଦ୍‌ଭ୍ୟାଂ ପୃଥିବ୍ୟାଂ ହ୍ୟେଷ ସର୍ବଭୂତାନ୍ତରାତ୍ମା । (ମୁଣ୍ଡ ୨।୧।୪) । (ଖ) ତଚ୍ଚ ପରମେଶ୍ୱର ସ୍ୟୈବୋଚିତମ୍, ସର୍ବବିକାରକାରଣତ୍ୱାତ୍ । ନ ଶାରୀରସ୍ୟ ତନୁମହିମ୍ନଃ ନାପି ପ୍ରଧାନସ୍ୟାୟଂ ରୂପୋପନ୍ୟାସଃ ସମ୍ଭବତି, ସର୍ବଭୂତାନ୍ତରାତ୍ମତ୍ୱା-ସମ୍ଭବାତ୍ । ତସ୍ମାତ୍ ପରମେଶ୍ୱର ଏବ ଭୂତଯୋନେର୍ନେ ତରାବିତି ଗମ୍ୟତେ ।

**(୨) ଭାଷାଂତର-** (କ) 'ଅକ୍ଷରାତ୍ ପରତଃ ପରଃ' ଏହି ବେଦ୍‌ବାକ୍ୟ ପରେ 'ଏତସ୍ମାଜ୍ଜାୟତେ ପ୍ରାଣଃ', ଏହି ପ୍ରକାର ପ୍ରାଣଠାରୁ ପୃଥିବୀ ପର୍ଯ୍ୟନ୍ତ ସମସ୍ତ ତତ୍ତ୍ୱର ସୃଷ୍ଟି କହିସାରି ଏହି ଭୂତଯୋନିର ସର୍ବବିକାରାତ୍ମକ ଉପନ୍ୟାସମାନ (କହିବା ବିଷୟ) ରୂପକୁ 'ଅଗ୍ନି ଦ୍ୟୁର୍ଲୋକ ଯାହାର ମସ୍ତକ, ଚନ୍ଦ୍ର ଓ ସୂର୍ଯ୍ୟ ନେତ୍ରସ୍ୱରୂପ, ଦିଗ ହେଉଛି ବାଣୀ, ବାୟୁ ହେଉଛି ପ୍ରାଣ, ବିଶ୍ୱ ହେଉଛି ହୃଦୟ, ଯାହାର ପାଦରୁ ପୃଥିବୀ ଉତ୍ପତ୍ତି, 'ସେହି ଦେବତା ସମସ୍ତ ଭୂତଙ୍କର ଅନ୍ତରାତ୍ମା', ଏହିପ୍ରକାର ଆମ୍ଭେ ଦେଖୁ ।

(ଖ) ଏହି ପ୍ରକାର ବାକ୍ୟ ପରମେଶ୍ୱରଠାରେ ପ୍ରଯୁଜ୍ୟ, କାରଣ ସେ ସମସ୍ତ ବିକାରର କାରଣ ଅଟେ । ଅଳ୍ପ ମହିମା ଥିବା ଜୀବାତ୍ମାଠାରେ ଏହି ଉପନ୍ୟାସ ସମ୍ଭବ ନୁହେଁ । ପ୍ରଧାନଠାରେ ମଧ୍ୟ ଏହି ଉପନ୍ୟାସ ସମ୍ଭବ ନୁହେଁ । କାରଣ-ଏହି ଦୁଇପାଖରେ ସର୍ବଭୂତାନ୍ତରାତ୍ମତ୍ୱ ସମ୍ଭବ ନୁହେଁ । ଏଠାରେ ପରମେଶ୍ୱର ଭୂତଯୋନି ଅଟେ । ଅନ୍ୟ ଦୁଇଟି ଶାରୀର ଓ ପ୍ରଧାନ ଭୂତଯୋନି ନୁହେଁ ବୋଲି ପ୍ରତୀୟମାନ ହୁଏ ।

(୩) ମୂଳ- (କ) କଥଂ ପୁନଃ ଭୂତଯୋନେରୟଂ ରୂପୋପନ୍ୟାସଃ ଇତି ଗମ୍ୟତେ ? ପ୍ରକରଣାତ୍ । 'ଏଷଃ' ଇତି ଚ ପ୍ରକୃତାନୁକର୍ଷଣାତ୍ । ଭୂତଯୋନିଂ ହି ପ୍ରକୃତ୍ୟ 'ଏତସ୍ମାଜ୍ଜାୟତେ ପ୍ରାଣଃ', 'ଏଷଃ ସର୍ବଭୂତାନ୍ତରାତ୍ମା', ଇତି ବଚନଂ ଭୂତଯୋନିବିଷୟମେବ ଭବତି । (ଖ) ଯଥୋପାଧ୍ୟାୟଂ ପ୍ରକୃତ୍ୟୈତସ୍ମାଦଧୀଷ୍ୱୈବ ବେଦବେଦାଙ୍ଗପାରଗ ଇତି ବଚନମୁପାଧ୍ୟାବିଷୟଂ ଭବତି । ତଦ୍‌ବତ୍ । (ଗ) କଥଂ ପୁନରଦୃଶ୍ୟତ୍ୱାଦିଗୁଣକସ୍ୟ ଭୂତଯୋନେର୍ବିଗ୍ରହ ବଦ୍ରୂପଂ ସମ୍ଭବତି ? ସର୍ବାତ୍ମତ୍ୱବିବକ୍ଷୟେ-ଦମୁଚ୍ୟତେ, ନ ତୁ ବିଗ୍ରହବତ୍ତ୍ୱବିବକ୍ଷୟେତ୍ୟ ଦୋଷଃ । 'ଅହମନ୍ନମହମନ୍ନାଦଃ', (ତୈ ୩।୧୦।୬) ଇତ୍ୟାଦିବତ୍ ।

**(୩) ଭାଷାଂତର -** (କ) ଏହି ପରମେଶ୍ୱର ହି ଭୂତଯୋନି ବୋଲି କିପରି ଜଣାପଡ଼େ ? ପ୍ରକରଣଦ୍ୱାରା । କାରଣ- 'ଏଷଃ' ଏହି ପ୍ରକାର ପ୍ରକୃତିର ଅନୁକର୍ଷଣ ଗ୍ରହଣ ହୁଏ । ଭୂତଯୋନିକୁ ପ୍ରସ୍ତୁତ କରି 'ଏତସ୍ମାଜ୍ଜାୟତେ ପ୍ରାଣଃ', 'ଏଷଃ ସର୍ବଭୂତାନ୍ତରାତ୍ମା', ଏହି ଶ୍ରୁତିବଚନ ଭୂତଯୋନି ବିଷୟକ ଅଟେ ।

(ଖ) ଯେପରି ଉପାଧ୍ୟାୟଙ୍କୁ ଉଦ୍ଦେଶ୍ୟ କରି କୁହାଯାଇଛି- 'ଏହା ପାଖରେ ପାଠ ପଢ଼, ଏହିବେଦ ଓ ବେଦାଙ୍ଗର ପାରଙ୍ଗତ ବିଦ୍ୱାନ୍ ଅଟେ', ଏହି ପ୍ରକାର ଉପାଧ୍ୟାୟ ବିଷୟକ ହୁଏ ।

(ଗ) ପରନ୍ତୁ ଅଦୃଶ୍ୟତ୍ୱାଦି ଗୁଣଥିବା ଭୂତଯୋନିର ମୂର୍ତ୍ତିମାନ୍ ରୂପ କିପରି ସମ୍ଭବ ହୁଏ ? ସର୍ବାତ୍ମକତ୍ୱର ବିବକ୍ଷାଦ୍ୱାରା କୁହାଯାଇଛି ଯେ- ଶରୀର ଥିବାର ବିବକ୍ଷାଦ୍ୱାରା ନୁହେଁ । ତେଣୁ ଏହା ଦୋଷ ନୁହେଁ । 'ମୁଁ ଅନ୍ନ ଏବଂ ମୁଁ ତାହାର ଭକ୍ଷକ', ଇତ୍ୟାଦି ବେଦବାକ୍ୟ ଭଳି ସମ୍ଭବ ହୁଏ ।

(୪) ମୂଳ- (କ) ଅନ୍ୟେ ପୁନର୍ମନ୍ୟନ୍ତେ- ନାୟଂ ଭୂତଯୋନେଃ ରୂପୋ-ପନ୍ୟାସଃ, ଜାୟମାନତ୍ୱେନୋପନ୍ୟାସାତ୍ । 'ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ । ଖଂ ବାୟୁ ର୍ଜ୍ୟୋତିରାପଃ ପୃଥିବୀ ବିଶ୍ୱସ୍ୟ ଧାରିଣୀ', ଇତି ପୂର୍ବତ୍ର ପ୍ରାଣାଦି ପୃଥିବ୍ୟନ୍ତଂ ତତ୍ତ୍ୱଜାତଂ ଜାୟମାନତ୍ୱେନ ନିରଦିକ୍ଷତ୍ । (ଖ) ଉତ୍ତରତ୍ରାପି ଚ 'ଏତସ୍ମାଦଗ୍ନିଃ ସମିଧୋ ଯସ୍ୟ ସୂର୍ଯ୍ୟଃ', ଇତ୍ୟେବମାଦିଃ 'ଅତଶ୍ଚ ସର୍ବା ଔଷଧୟୋ ରସାଶ୍ଚ', ଇତ୍ୟେବମନ୍ତଂ ଜାୟାମାନତ୍ୱେନୈବ ନିର୍ଦ୍ଦେକ୍ଷ୍ୟତି । (ଗ) ଇହୈବ କଥମକସ୍ମାଦନ୍ତରାଳେ ଭୂତଯୋନେଃ ରୂପମୁପନ୍ୟସେତ୍ ? ସର୍ବାତ୍ମମର୍ପି ସ୍ରଷ୍ଟିଂ ପରିସମାପ୍ୟୋପଦେକ୍ଷ୍ୟତି 'ପୁରୁଷ ଏବେଦଂ ବିଶ୍ୱଂ କର୍ମ' (ମୁଣ୍ଡ ୨।୧।୧୦) ଇତ୍ୟାଦିନା ।

**(୪) ଭାଷାଂତର-** (କ) ପୁନଶ୍ଚ ଅନ୍ୟମାନେ ସ୍ୱୀକାର କରନ୍ତି – ଏହି ଭୂତଯୋନିର ରୂପୋନ୍ୟାସ ନାହିଁ । କାରଣ-ଏହାର ଜାୟମାନରୂପରେ ଉପନ୍ୟାସ ହୁଏ । 'ଏହି ଅ'ର ପୁରୁଷଠାରୁ ପ୍ରାଣ, ମନ, ସମସ୍ତ ଇନ୍ଦ୍ରିୟ, ଆକାଶ, ବାୟୁ, ତେଜ, ଜଳ ଓ ବିଶ୍ୱକୁ ଧାରଣ କରୁଥିବା ପୃଥିବୀ ଉତ୍ପନ୍ନ ହୁଏ । ଏହି ପ୍ରକାର ପୂର୍ବମନ୍ତଠାରୁ ପୃଥିବୀ ପର୍ଯ୍ୟନ୍ତ ତତ୍ତ୍ୱ ସମୂହର ଜାୟମାନରୂପରେ ନିର୍ଦ୍ଦେଶ କରାହୋଇଛି ।

(ଖ) ପ୍ରଥମେ 'ସୂର୍ଯ୍ୟ ଯାହାର ସମିଧ ଅଟେ, ସେ ଅଗ୍ନି ଦ୍ୟୁଲୋକ ଏହି ପୁରୁଷଠାରୁ ଉତ୍ପନ୍ନ ହୁଏ'। ଏହିଠାରୁ 'ଏହାଦ୍ୱାରା ସମଗ୍ର ଔଷଧ ଓ ରସ ଉତ୍ପନ୍ନ ହୁଏ' । ଏହି ପର୍ଯ୍ୟନ୍ତ ଜାୟମାନରୂପରେ ନିର୍ଦ୍ଦେଶ କରିଛି ।

(ଗ) କିନ୍ତୁ ଏହା ମଧ୍ୟରେ ଅକସ୍ମାତ୍ ବିନାକାରଣରେ ଭୂତଯୋନିର ରୂପୋପନ୍ୟାସ କିପରି ହୋଇଛି ? 'ଏହା ସମଗ୍ରପ୍ରପଞ୍ଚ ଓ କର୍ମପୁରୁଷ ଅଟେ' । ଇତ୍ୟାଦି ଦ୍ୱାରା ଶ୍ରୁତି ସୃଷ୍ଟିର ପରିସମାପ୍ତି କରି ସର୍ବାତ୍ମତ୍ୱର ଉପଦେଶ କରିବ ।

(୫) ମୂଳ- (କ) ଶ୍ରୁତିସ୍ମୃତ୍ୟୋଶ୍ଚ ତ୍ରୈଲୋକ୍ୟ ଶରୀରସ୍ୟ ପ୍ରଜାପତେର୍ଜନ୍ମାଦି ନିର୍ଦ୍ଦିଶ୍ୟମାନମୁପଲଭାମହେ- 'ହିରଣ୍ୟଗର୍ଭ୍ୟ ସମବର୍ତ୍ତତାଗ୍ରେ, ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସଦାଧାର ପୃଥିବୀଂ ଦ୍ୟାମୁତେମାଂ, କସ୍ମୈ ଦେବାୟ ହବିଷା ବିଧେମ,' (ର ୧୦-୧୨୧-୧) ଇତି । ସମବର୍ତ୍ତତେତ୍ୟଜାୟତେତ୍ୟର୍ଥଃ । (ଖ) ତଥା 'ସ ବୈ ଶରୀରୀ ପ୍ରଥମ ସ ବୈ ପୁରୁଷ ଉଚ୍ୟତେ । ଆଦିକର୍ତ୍ତା ସଭୂତାନାଂ ବ୍ରହ୍ମାଗ୍ରେ ସମବର୍ତ୍ତତେ', ଇତି ଚ । ବିକାର ପୁରୁଷସ୍ୟାପି ସର୍ବଭୂତାନ୍ତରାତ୍ମତ୍ୱଂ ସମ୍ଭବତି, ପ୍ରାଣାତ୍ମନା ସର୍ବଭୂତାନାମଧ୍ୟାତ୍ମମବସ୍ଥାନାତ୍ । (ଗ) ଅସ୍ମିନ୍‌ପକ୍ଷେ 'ପୁରୁଷଂ ଏବେଦଂ ବିଶ୍ୱ କର୍ମ' ଇତ୍ୟାଦି ସର୍ବରୂପୋପନ୍ୟାସଃ । ପରମେଶ୍ୱର ପ୍ରତିପତ୍ତିହେତୁରିତି ବ୍ୟାଖ୍ୟେୟମ୍ ।

**(୫) ଭାଷାଂତର** - (କ) ଆମ୍ଭେ ବେଦ ଓ ସ୍ମୃତିଶାସ୍ତ୍ରରେ ଥିବା, ପ୍ରଜାପତିର ନିର୍ଦ୍ଦିଶ୍ୟମାନ ଜନ୍ମାଦିକୁ 'ପ୍ରଥମେ ହିରଣ୍ୟଗର୍ଭ ଉତ୍ପନ୍ନ ହେଲା, ଉତ୍ପନ୍ନ ହୋଇ ସେ ଭୂତସମୂହର ଏକମାତ୍ର ଅଧିଷ୍ଠାତା ହେଲା । ସେ ମଧ୍ୟ ଦ୍ୟୁଲୋକ ଏବଂ ପୃଥିବୀକୁ ଧାରଣ କଲା; ସେ ଏକ ପ୍ରଜାପତିଦେବର ପରିଚର୍ଯ୍ୟା ଘୃତରେ କରିପାର', ଏହି ପ୍ରକାର ଉପଲବ୍ଧି କରୁଛୁ । ଏହି ଶ୍ରୁତିସ୍ଥ 'ସମବର୍ତ୍ତତ' ପଦର ଉତ୍ପନ୍ନ ହେବା ଅର୍ଥ ଅଟେ ।

(ଖ) ତଥା 'ନିଶ୍ଚିତ ଭାବରେ ଏହି ସୃଷ୍ଟିର ଆଦିକାଳରେ ଉତ୍ପନ୍ନ ହେବାରୁ ପ୍ରଥମ ଶରୀର ଏବଂ ପ୍ରଥମ ପୁରୁଷ କୁହାଯାଏ । ଭୂତମାନଙ୍କର ଆଦିକର୍ତ୍ତା ଏହି ବ୍ରହ୍ମା ପ୍ରଥମେ ଜନ୍ମ ହେଲେ' । ବିକାର ପୁରୁଷ (ହିରଣ୍ୟଗର୍ଭ) ସମସ୍ତ ଭୂତମାନଙ୍କର ଅନ୍ତରାତ୍ମା ହୋଇପାରେ, କାରଣ- ସେ ପ୍ରାଣରୂପରେ ସବୁ ପ୍ରାଣୀମାନଙ୍କ ପାଖରେ ରହିଛି ।

(ଗ) ଏହି ପକ୍ଷରେ 'ପୁରୁଷ କେବଳ ଏହି ସମସ୍ତ ପ୍ରପଞ୍ଚ କର୍ମ ଓ ତପଗୁଡ଼ିକର ଫଳ ସ୍ୱରୂପ ଅଟେ' ଇତ୍ୟାଦି ସର୍ବାତ୍ମକତ୍ୱର ଉପନ୍ୟାସ ପରମେଶ୍ୱର ପ୍ରତିପତ୍ତି ପାଇଁ ଅଛି । ଏହିପରି ବ୍ୟାଖ୍ୟା କରିବା ଉଚିତ ।

## ६ वैश्वानराधिकरणम्॥ सू० २४ - ३२ ॥

## ବୈଶ୍ୱାନରାଧିକରଣମ୍ - ୭

## वैश्वनरः साधारणशब्दबिशेषात् ॥ २४ ॥

## (୧) ବୈଶ୍ୱାନରଃ ସାଧାରଣଶବ୍ଦବିଶେଷାତ୍ ୧ । ୨ । ୨୪

ବୈଶ୍ୱାନରଃ- 'ଯସ୍ତ୍ୱେତମେବ' ଇତ୍ୟାଦି ଶ୍ରୁତିରେ ପ୍ରତୀୟମାନ ବୈଶ୍ୱାନର ପରମାତ୍ମା ଅଟନ୍ତି । ସାଧାରଣ ଶବ୍ଦବିଶେଷାତ୍ - ଯଦ୍ୟପି ଏହି ସାଧାରଣ ବୈଶ୍ୱାନର ଶବ୍ଦ ଜଠରାଗ୍ନି, ଭୂତାଗ୍ନି ଓ ସୂର୍ଯ୍ୟର ପ୍ରତିପାଦକ ହୁଏ, ଏବଂ ଆତ୍ମଶବ୍ଦ ଜୀବ ତଥା ପରମାତ୍ମାର

ପ୍ରତିପାଦକ ହୁଏ । ତେବେ 'ମୂର୍ଦ୍ଧୈବ ସୁତେଜାତଃ' ଏହି ବିଶେଷ ପରମାତ୍ମାରେ ହିଁ ସମ୍ଭବ ଯୋଗ୍ୟ ।

(୨) ମୂଳ - (କ) 'କୋ ନ ଆତ୍ମା, କିଂ ବ୍ରହ୍ମ ଇତି 'ଆତ୍ମାନମେବେମଂ ବୈଶ୍ୱାନରଂ ସଂପ୍ରତ୍ୟଧ୍ୟେଷି ତମେବ ନୋ ବ୍ରୂହି' (ଛ ୫।୧୧।୧,୬) ଇତି ଚୋପକ୍ରମ୍ୟ ଦ୍ୟୁସୂର୍ଯ୍ୟ ବାୟ୍ୱାକାଶବାରିପୃଥିବୀନାଂ ସୁତେଜସ୍ତ୍ୱାଦିଗୁଣ ଯୋଗମେକୈକୋ ପାସନନିନ୍ଦୟା ବୈଶ୍ୱାନରଂ ପ୍ରତ୍ୟେଷାଂ ମୂର୍ଦ୍ଧାଧିଭାବମୁପଦିଶ୍ୟାମ୍ନୟତେ- (ଖ) ଯସ୍ତ୍ୱେତମେବଂ ପ୍ରାଦେଶ-ମାତ୍ରମଭିବିମାନମାତ୍ମାନଂବୈଶ୍ୱାନରମୁପାସ୍ତେ, ସ ସର୍ବେଷୁ ଲୋକେଷୁ ସର୍ବେଷୁ ଭୂତେଷୁ ସର୍ବେ ମାତ୍ମସ୍ୱନ୍ନମତ୍ତି ହ ବା ଏତସ୍ୟାତ୍ମନୋ ବୈଶ୍ୱାନରସ୍ୟ ମୂର୍ଦ୍ଧୈବ ସୁତେଜାଶ୍ଚକ୍ଷୁର୍ବିଶ୍ୱରୂପଃ ପ୍ରାଣ ପୃଥଗ୍‌ବର୍ତ୍ମାତ୍ମା ସଂଦେହୋ ବହୁଲୋ ବସ୍ତିରେବ ରୟିଃ ପୃଥିବ୍ୟେବ ପାଦାବୁର ଏବ ବେଦିଲୋମାନି ବହିର୍ହୃଦୟଂ ଗାର୍ହପତ୍ୟୋ ମନୋଽନ୍ୱାହାର୍ଯ୍ୟପଚନ ଆସ୍ୟମାହବନୀୟଃ', (ଛା ୫।୧୮।୨) ଇତ୍ୟାଦି ।

(୨) ଭାଷାଂତର- (କ) 'ଆମ୍ଭର ଆତ୍ମା କିଏ, ଓ ବ୍ରହ୍ମ କ'ଣ ? ଏହି ସମୟରେ ଆପଣ ବୈଶ୍ୱାନର ଆତ୍ମାକୁ ଜାଣିଛନ୍ତି । ତାହାର ବର୍ଣ୍ଣନା ଆପଣ ଆମ୍ଭଙ୍କୁ କହନ୍ତୁ' । ଏହି ପ୍ରକାର ଉପକ୍ରମ କରି ଦ୍ୟୁ, ସୂର୍ଯ୍ୟ, ବାୟୁ, ଆକାଶ, ଜଳ ଓ ପୃଥିବୀଠାରୁ ସୁତେଜସ୍ତ୍ୱାଦି ଗୁଣ ବିଶିଷ୍ଟ ଏକ ଏକ ଉପାସନାର ନିନ୍ଦାକରି ଏବଂ ବୈଶ୍ୱାନର ପ୍ରତି ଏହାର ମୂର୍ଦ୍ଧାଦିଭାବର ଉପଦେଶ ଦେଇ ।

(ଖ) ଶ୍ରୁତି 'ସେ କୌଣସି ମୁଁ ଅଟେ ।' ଏହିପ୍ରକାର ଅଭିମାନର ବିଷୟ ହୋଇଥିବା ଏହି ପ୍ରଦେଶ ମାତ୍ର ବୈଶ୍ୱାନରର ଆତ୍ମାର ଉପାସନା କରେ । ସେ ସମସ୍ତ ସଂସାରରେ ସମସ୍ତ ପ୍ରାଣୀଠାରେ ଓ ସମସ୍ତ ଆତ୍ମାରେ ଅନ୍ନ ଭକ୍ଷଣ କରେ । ଏହି ପ୍ରକାର ବୈଶ୍ୱାନର ଆତ୍ମାର ମସ୍ତକ ହିଁ ସୁତେଜା (ଦ୍ୟୁଲୋକ) ଅଟେ । ଚକ୍ଷୁ ବିଶ୍ୱରୂପ (ସୂର୍ଯ୍ୟ) ପ୍ରାଣ ପୃଥରାବତ୍ମା (ବାୟୁ) ଦେହର ମଧ୍ୟଭାଗ ବହୁଳ (ଆକାଶ), ବସ୍ତି ସୂତ୍ରସ୍ଥାନ ରୟି (ଜଳ), ପୃଥିବୀ ପାଦ, ବକ୍ଷସ୍ଥଳ ବେଦୀ, ଲୋମ କୁଶ, ହୃଦୟ ଗାର୍ହପତ୍ୟାଗ୍ନି, ମନ ଅନ୍ୱାହାର୍ଯ୍ୟପଚନ, ମୁଖ ଆହବନୀୟ ଅଟନ୍ତି', ଇତ୍ୟାଦି କୁହାଯାଇଛି ।

(୩) ମୂଳ- (କ) ତତ୍ର ସଂଶୟଃ - କିଂ ବୈଶ୍ୱାନରଶବ୍ଦେନ ଜାଠରୋଽ-ଗ୍ନିରୁପଦିଶ୍ୟତେ, ଉତ ଭୂତାଗ୍ନି, ଅଥ ତଦଭିମାନିନୀ ଦେବତା, ଅଥବା ଶାରୀରଃ, ଆହୋସ୍ୱିତ୍ ପରମେଶ୍ୱର ଇତି । କିଂ ପୁନରତ୍ର ସଂଶୟକାରଣମ୍ ? ବୈଶ୍ୱାନର ଇତି । (ଖ) ଜାଠରଭୂତାଗ୍ନି ଦେବତାନାଂ ସାଧାରଣଶବ୍ଦ ପ୍ରୟୋଗଦାତ୍ମେତି ଚ ଶାରୀର



ପରମେଶ୍ୱରୟୋଃ । ତତ୍ର କସ୍ୟୋପାଦାନଂ ନ୍ୟାୟ୍ୟଂ, କସ୍ୟ ବା ହନାମିତି ଭବତି ସଂଶୟଃ । କିଂ ତାବତ୍ ପ୍ରାପ୍ତମ୍ ? ଜାଠରୋଽଗ୍ନିରିତି । କୁତଃ ? (ଗ) ତତ୍ର ହି ବିଶେଷଣ କ୍ୱଚିତ୍ପ୍ରୟୋଗୋ ଦୃଶ୍ୟତେ- 'ଅୟମଗ୍ନିର୍ବୈଶ୍ୱାନରୋ ଯୋଽୟମନ୍ତଃ ପୁରୁଷେ ଯେନେଦମନ୍ନଂ ପଚ୍ୟତେ ଯଦିଦମଦ୍ୟତେ' (ବୃହ ୫।୯) ଇତ୍ୟାଦୌ । (ଘ) ଅଗ୍ନିମାତ୍ରଂ ବା ସ୍ୟାତ୍ ସାମାନ୍ୟେନାପି ପ୍ରୟୋଗଦର୍ଶନାତ୍ 'ବିଶ୍ୱସ୍ମାଅଗ୍ନିଂ ଭୁବନାୟ ଦେବା, ବୈଶ୍ୱାନରଂ କେତୁମହ୍ନାମକୃଣ୍ୱନ୍', (ର. ସଂ ୧୦।୮୮।୧୨) ଇତ୍ୟାଦୌ । (ଙ) ଅଗ୍ନିଶରୀରୋ ବା ଦେବତା ସ୍ୟାତ୍, ତସ୍ୟାମପି ପ୍ରୟୋଗ ଦର୍ଶନାତ୍, 'ବୈଶ୍ୱାନରସ୍ୟ ସୁମତୌ ସ୍ୟାମ ରାଜା ହି କଂ ଭୁବନାନାମଭିଶ୍ରୀଃ', (ର.ସଂ ୧।୧୮।୧) ଇତ୍ୟେବମାଦ୍ୟାୟାଃ ଶ୍ରୁତେର୍ଦ୍ଦେବତାୟା ମୈଶ୍ୱର୍ଯ୍ୟଦ୍ୟୁପେତାୟାଂ ସମ୍ଭବାତ୍ । (ଚ) ଅଥାତ୍ମଶବ୍ଦସାମାନାଧିକରଣ୍ୟାଦୁପକ୍ରମେ ଚ 'କୋ ନ ଆତ୍ମା, କିଂ ବ୍ରହ୍ମ' ଇତି କେବଲାତ୍ମଶବ୍ଦପ୍ରୟୋଗାଦାତ୍ମଶବ୍ଦବଶେନ ବୈଶ୍ୱାନରଶବ୍ଦ ପରିଣେୟ ଇତ୍ୟୁଚ୍ୟତେ', ତଥାପି ଶରୀର ଆତ୍ମା ସ୍ୟାତ୍, ତସ୍ୟ ଭୋକ୍ତୃତ୍ୱେନ ବୈଶ୍ୱାନର ସନ୍ନିକର୍ଷାତ୍ । (ଛ) ପ୍ରାଦେଶମାତ୍ରମିତି ଚ ବିଶେଷଣସ୍ୟ ତସ୍ମିନ୍ ଉପାଧିପରିଚ୍ଛିନ୍ନେ ସମ୍ଭବାତ୍ । ତସ୍ମାନ୍ନେଶ୍ୱରୋ ବୈଶ୍ୱାନର ଇତି ।

**(୩) ଭାଷାଂତର** - (କ) ସଂଶୟ - ବୈଶ୍ୱାନରଶବ୍ଦଦ୍ୱାରା ଜାଠରାଗ୍ନିର ଉପଦେଶ ଦିଆଯାଏ କି ଭୂତାଗ୍ନିର କି ତଦଭିମାନୀ ଦେବତାର ଅଥବା ଜୀବର ଅଥବା ପରମେଶ୍ୱରର ? ପରନ୍ତୁ ଏଠାରେ ସଂଶୟ ହେବାର କାରଣ କଣ ଅଛି ? ବୈଶ୍ୱାନର ।

(ଖ) ଜାଠରାଗ୍ନି ଭୂତାଗ୍ନି ଓ ଦେବତାମାନଙ୍କଠାରେ ସମାନରୂପରେ ବୈଶାନର ଶବ୍ଦ ପ୍ରୟୋଗ ହୋଇଛି । ଏବଂ ଜୀବ ଓ ପରମେଶ୍ୱରଠାରେ ସାଧାରଣରୂପରେ ଆତ୍ମଶବ୍ଦର ପ୍ରୟୋଗ ହୁଏ । ତାହେଲେ କଣ ହେବ ?

(ଗ) ପୂର୍ବପକ୍ଷ- ଏହି ସ୍ଥାନତ୍ରୟର ଜଠରାଗ୍ନିର ନିଶ୍ଚୟ ହେବ । କାରଣ- ତାହାଠାରେ କୌଣସି 'ଏହି ଅଗ୍ନି ବୈଶ୍ୱାନର, ଯାହା ପୁରୁଷ ଭିତରେ ରହିଛି, ଯାହାଦ୍ୱାରା ଏହି ଅନ୍ନ ଯାହା ଭକ୍ଷଣ କରାଯାଏ, ସେ ପକାଇ ଦିଆଯାଏ ।' ଏହା ବିଶେଷରୂପରେ ବୈଶ୍ୱାନର ଶବ୍ଦର ପ୍ରୟୋଗ ଦେବତାମାନଙ୍କ ପାଖରେ ଆସେ ।

(ଘ) ଅଥବା କେବଳ ଭୂତାଗ୍ନି ହେଉ, କାରଣ- ସେଠାରେ 'ସବୁ ଭୂତାଗ୍ନିନିମିତ୍ତ ଦେବତାମାନେ ବୈଶ୍ୱାନର ଅଗ୍ନି-ସୂର୍ଯ୍ୟର ଦିନ ଚିହ୍ନକୁ ସଂସାର ପାଇଁ ତିଆରି କରେ,

କାରଣ- ସୂର୍ଯ୍ୟୋଦୟ ହେଲେ ଦିନ ବ୍ୟବହାର ହୁଏ ।' ଇତ୍ୟାଦି ବେଦବାକ୍ୟରେ ବୈଶ୍ୱାନରଶବ୍ଦର ସାମାନ୍ୟ ରୂପରେ ପ୍ରୟୋଗ କରିବାର ଦେଖାଯାଏ ।

(ଙ) ଅଥବା ଅଗ୍ନି ଶରୀରରୂପକ ଦେବତା ହୋଇପାରେ । କାରଣ- ଏଥିରେ ମଧ୍ୟ ବୈଶ୍ୱାନରଶବ୍ଦର ପ୍ରୟୋଗ ହୁଏ । 'ଆମ୍ଭେ ବୈଶ୍ୱାନରର ସୁମିତପାଖରେ ରହୁଁ, କାରଣ- ସେ ସୁଖ ଦେଇ ଭୁବନର ରାଜା ହୁଏ ଏବଂ ତାହାର ଅଭିମୁଖ ଅଟେ' ଇତ୍ୟାଦିଶ୍ରୁତିରେ ଐଶ୍ୱର୍ଯ୍ୟପୂର୍ଣ୍ଣ ଦେବତାମାନଙ୍କ ପାଇଁ ବୈଶ୍ୱାନର ଶବ୍ଦ ପ୍ରୟୋଗ ହୁଏ ।

(ଚ) ଯଦି ଆତ୍ମଶବ୍ଦର ସାମନାଧିକରଣ୍ୟ ଓ 'କୋ ନ ଆତ୍ମା, କିଂ ବ୍ରହ୍ମ' ଏହିପ୍ରକାର ଉପକ୍ରମରେ କେବଳ ଆତ୍ମଶବ୍ଦର ପ୍ରୟୋଗ ହେବାରୁ ଏବଂ ଆତ୍ମଶବ୍ଦ ବଳରେ ବୈଶ୍ୱାନରଶବ୍ଦ ଅଗ୍ନିକୁ ଛାଡ଼ି ଆତ୍ମାପାଇଁ ହୁଏ । ଏପରି କହିଲେ ଜୀବାତ୍ମା ଆତ୍ମା ହୋଇପାରେ । କାରଣ । ଭୋକ୍ତା ହେଲେ ସେ ବୈଶ୍ୱାନର ପାଖରେ ରହେ ।

(ଛ) ଦ୍ୱିତୀୟ କଥା ହେଲା - ପ୍ରାଦେଶମାତ୍ରମ୍- ଏହି ବିଶେଷଣର ଏହି ଉପାଧି ପରିଚ୍ଛିନ୍ନ ଜୀବଠାରେ ସମ୍ଭବ ହୁଏ । ତେଣୁ ବୈଶ୍ୱାନର ପରମେଶ୍ୱର ନୁହେଁ ।

(୪) ମୂଳ- (କ) ଏବଂ ପ୍ରାପ୍ତେ-ତତ ଇଦମୁଚ ତେବୈଶ୍ୱାନରଃ ପରମାତ୍ମା ଭବିତୁମର୍ହତୀତି । କୁତଃ ? ସାଧାରଣଶବ୍ଦବିଶେଷାତ୍ । ସାଧାରଣଶବ୍ଦୟୋର୍ବିଶେଷଃ ସାଧାରଣଶବ୍ଦବିଶେଷଃ । (ଖ) ଯଦ୍ୟପ୍ୟେତାବୁଭାବପ୍ୟାତ୍ମ ବୈଶ୍ୱାନରଶବ୍ଦେ ସାଧାରଣଶବ୍ଦୌ, ବୈଶ୍ୱାନରଶବ୍ଦସ୍ତୁ ତ୍ରୟସ୍ୟ ସାଧାରଣଃ, ଆତ୍ମଶବ୍ଦଶ୍ଚ ଦ୍ୱୟସ୍ୟ, ତଥାପି ବିଶେଷୋ ଦୃଶ୍ୟତେ, ଯେନ ପରମେଶ୍ୱରପରତ୍ୱଂ ତୟୋରଭ୍ୟୁପଗମ୍ୟତେ । 'ତସ୍ୟ ହ ବା ଏତସ୍ୟାତ୍ମନୋ ବୈଶ୍ୱାନରସ୍ୟ ମୂର୍ଦ୍ଧୈବ ସୁତେଜା', ଇତ୍ୟାଦି । (ଗ) ଅତ୍ର ହି ପରମେଶ୍ୱର ଏବ ଦୁ ମୂର୍ଦ୍ଧତ୍ୱାଦିବିଶିଷ୍ଟୋଽବସ୍ଥାନ୍ତରଗତଃ ପ୍ରତ୍ୟଗାତ୍ମତ୍ୱେନୋପନ୍ୟସ୍ତ ଆଧ୍ୟାନାୟେତି ଗମ୍ୟତେ, କାରଣତ୍ୱାତ୍ । କାରଣସ୍ୟ ହି ସର୍ବାଭି କାର୍ଯ୍ୟଗତାଭିରବସ୍ଥାଭିର ବସ୍ଥାବତ୍ତ୍ୱାଦ୍ୟୁଲୋକାଦ୍ୟ-ବୟବବତ୍ତ୍ୱମୁପପଦ୍ୟତେ । 'ସ ସର୍ବେଷୁ ଲୋକେଷୁ ସର୍ବେଷୁ ଭୂତେଷୁ, ସର୍ବେଷ୍ୱାତ୍ମସ୍ୱନ୍ନମତ୍ତି', ଇତି ଚ ସର୍ବଲୋକାଦ୍ୟାଶ୍ରୟଂ ଫଳଂ ଶ୍ରୂୟମାଣଂ ପରମକାରଣପରିଗ୍ରହେ ସମ୍ଭବତି । (ଘ) 'ଏବଂ ହାସ୍ୟ ସର୍ବେ ପାପ୍ମାନଂ ପ୍ରଦୂୟନ୍ତେ', (ଛା ୫।୨୪।୩) ଇତି ଚ ତଦ୍‌ବିଦଃ ସର୍ବପାପ୍ମପ୍ରଦାହଶ୍ରବଣମ୍ । 'କୋ ନ ଆତ୍ମା, କିଂ ବ୍ରହ୍ମ' ଇତି ଚାତ୍ମଶବ୍ଦାଭ୍ୟାମୁପକ୍ରମ ଇତ୍ୟେବମେତାନି ଲିଙ୍ଗାନି ପରମେଶ୍ୱରମେ-ବାବଗମୟନ୍ତି' । ତସ୍ମାତ୍ ପରମେଶ୍ୱର ଏବ ବୈଶ୍ୱାନରଃ ।

(୪) ଭାଷାଂତର- (କ) ସିଦ୍ଧାନ୍ତ- ବୈଶ୍ୱାନର ପରମାତ୍ମା ହୋଇପାରେ । କିପରି ? ଏହାଠାରୁ ସାଧାରଣ ଶବ୍ଦଗୁଡ଼ିକ ବିଶେଷ ହୁଏ । ସାଧାରଣସମାନଶବ୍ଦର ବିଶେଷକୁ ସାଧାରଣ ଶବ୍ଦବିଶେଷ କୁହାଯାଏ ।

(ଖ) ଯଦ୍ୟପି ଆତ୍ମା ଓ ବୈଶ୍ୱାନର - ଏହି ଦୁଇଶବ୍ଦ ସାଧାରଣ ଶବ୍ଦ ଅଟନ୍ତି, ବୈଶ୍ୱାନର ଶବ୍ଦ କିନ୍ତୁ ଜଠରାଗ୍ନି, ଭୂତାଗ୍ନି ଏବଂ ଦେବତା- ଏହି ତିନିଜଣଙ୍କର ପାଖରେ ସମାନ ଅଟେ ଏବଂ ଆତ୍ମଶବ୍ଦ ଜୀବାତ୍ମା ପରମାତ୍ମା- ଏହି ଦୁଇ ଅର୍ଥରେ ସମାନ, ତେବେ ମଧ୍ୟ 'ସେହି ଆତ୍ମାରୂପୀ ବୈଶ୍ୱାନର ମୂର୍ଦ୍ଧା ଅତିତେଜସ୍ୱୀ ଅଟେ', ଇତ୍ୟାଦି ବିଶେଷଣ ଦେଖିଯାଏ ।

(ଗ) ଯାହା ଦ୍ୱାରା କି ଆତ୍ମଶବ୍ଦ ଓ ବୈଶ୍ୱାନର ଶବ୍ଦ ପରମେଶ୍ୱରପରକ ରୂପେ ସ୍ୱୀକୃତ । ସେ ସମସ୍ତଙ୍କର କାରଣ ହେଲେ ମଧ୍ୟ ଦ୍ୟୁମୂର୍ଦ୍ଧାତ୍ୱାଦି ଗୁଣବିଶିଷ୍ଟ ବିରାଟ ଅବସ୍ଥାକୁ ପ୍ରାପ୍ତ ହୋଇଥିବା ପରମେଶ୍ୱରର ଉପାସନା ପାଇଁ ପ୍ରତ୍ୟଗାତ୍ମ ରୂପରେ ଯେଉଁଠାରେ ଉପନ୍ୟସ୍ତ, ତାହା ଅବଗତ ହୁଏ । କାରଣ- ଏହା ସମସ୍ତଙ୍କ କାରଣ । କାରଣ ମଧ୍ୟ କାର୍ଯ୍ୟଗତ ସମସ୍ତ ଅବସ୍ଥା ଦ୍ୱାରା ତାର ଅବସ୍ଥା ହୋଇଥାଏ । ତେଣୁ ପରମେଶ୍ୱରର ଦ୍ୟୁଲୋକାଦି ଅବୟବର ସମ୍ଭବ ହୁଏ । 'ଯିଏ କୌଣସି ପ୍ରଦେଶମାତ୍ର ବୈଶ୍ୱାନର ଆତ୍ମାକୁ ଉପାସନା କରେ, ସେ ସମସ୍ତ ସଂସାରରେ ପ୍ରାଣୀଠାରେ ଓ ଆତ୍ମାରେ ରହି ଅନ୍ନଭକ୍ଷଣ କରେ, ଅର୍ଥାତ୍ କର୍ମଫଳ ଭୋଗ କରେ ।' ଏହିପ୍ରକାର ସବୁଲୋକ ଯଦି ଆଶ୍ରୟ ଶ୍ରୂୟମାଣଫଳ ପରମକାରଣ-ପରମେଶ୍ୱରର ପରିଗ୍ରହଦ୍ୱାରା ସମ୍ଭବ ହୁଏ ।

(ଘ) 'ଏହି ପ୍ରକାର ଯେ ଜାଣିକରି ଅଗ୍ନିହୋତ୍ର କରେ, ତାହାର ସବୁ ପାପଧ୍ୱଂସ ହୋଇଯାଏ' ଏହା ପ୍ରକାର ବୈଶ୍ୱାନର ଜ୍ଞାତାର ସବୁ ପାପନାଶକୁ ଶୁଣି 'କୋ ନ ଆତ୍ମା, କିଂ ବ୍ରହ୍ମ' ଏହି ପ୍ରକାର ଆତ୍ମା ଓ ବ୍ରହ୍ମଶବ୍ଦ ଦ୍ୱାରା ଉପକ୍ରମ ବୋଲି ସବୁଲିଙ୍ଗ ପରମେଶ୍ୱରଙ୍କୁ ଜ୍ଞାନ କରାନ୍ତି । ପରମେଶ୍ୱର ହିଁ ବୈଶ୍ୱାନର ଅଟେ ।

**स्मर्यमाणमनुमानं स्यादिति ॥ २५ ॥**

**(୧) ସ୍ମର୍ଯ୍ୟମାଣମନୁମାନଂ ସ୍ୟାଦିତି ॥ ୧-୨-୨୫ ॥**

ସ୍ମର୍ଯ୍ୟମାଣଂ= 'ଯସ୍ୟାଗ୍ନିରାସ୍ୟାଂ' ଇତ୍ୟାଦି ସ୍ମୃତି ପ୍ରତିପାଦିତ ତ୍ରୈଲୋକ୍ୟାତ୍ମକ ରୂପ ନିଜ ନିଜ ମୂଳଭୂତ ଶ୍ରୁତିର ଅନୁମାନ କରାଯାଇ ପରମାତ୍ମା, ଅନୁମାନଂ=ଜ୍ଞାପକ, ସ୍ୟାତ୍-ହୋଇପାରେ, ଇତି-ବୈଶ୍ୱାନର ତେଣୁ ପରମାତ୍ମା ହୁଏ ।

(୨) ମୂଳ- (କ) ଇତଶ୍ଚ ପରମେଶ୍ୱର ଏବ ବୈଶ୍ୱାନରଃ, ଯସ୍ମାତ୍ ପରମେଶ୍ୱର ସୈ ବାଗ୍ନିରାସ୍ୟଂ ଦ୍ୟୌ ମୂର୍ଦ୍ଧେତୀଦୃଶଂ ତ୍ରୈଲୋକ୍ୟାତ୍ମକଂ ରୂପଂ ସ୍ମର୍ଯ୍ୟତେ- 'ଯସ୍ୟାଗ୍ନିରାସ୍ୟଂ ଦ୍ୟୌର୍ମୂର୍ଦ୍ଧା ଖଂ ନାଭିଶ୍ଚରଣୌ କ୍ଷିତିଃ । ସୂର୍ଯ୍ୟ ଚକ୍ଷୁର୍ଦିଶଃ ଶ୍ରୋତ୍ରଂ ତସ୍ମୈ ଲୋକାତ୍ମନେ ନମଃ ।' ଇତି । (ଖ) ଏତତ୍ ସ୍ମର୍ଯ୍ୟମାଣଂରୂପଂ ମୂଳଭୂତାଂ ଶ୍ରୁତିମନୁମାପୟଦସ୍ୟ ବୈଶ୍ୱାନରପଦସ୍ୟ ପରମେଶ୍ୱର ପରତ୍ୱେଽନୁମାନଂ ଲିଂଗଂ ଗମକଂ ସ୍ୟାଦିତ୍ୟର୍ଥଃ । ଇତିଶବ୍ଦୋ ହେତ୍ୱର୍ଥଃ । ଯସ୍ମାଦିଦଂ ଗମକଂ ତସ୍ମାଦପି ବୈଶ୍ୱାନରଃ ପରମାତ୍ମୈବେତ୍ୟର୍ଥଃ । (ଗ) ଯଦ୍ୟପି ସ୍ମୃତିରିୟଂ 'ତସ୍ମୈ ଲୋକାତ୍ମନେ ନମଃ' ଇତି । ସ୍ତୁତିତ୍ୱମପି ନାସତି ମୂଳଭୂତେ ବେଦବାକ୍ୟେ ସମ୍ୟଗୀଦୃଶେନ ରୂପେଣ ସମ୍ଭବତି । 'ଦ୍ୟାଂ ମୂର୍ଦ୍ଧାନଂ ଯସ୍ୟ ବିପ୍ରା ବଦନ୍ତି, ଖଂ ବୈ ନାଭିଂ ଚନ୍ଦ୍ରସୂର୍ଯ୍ୟୌ ଚ ନେତ୍ରେ । ଦିଶଃ ଶ୍ରୋତ୍ରେ ବିଦ୍ଧି ପାଦୌ କ୍ଷିତିଂ ଚ, ସୋଽଚିନ୍ତ୍ୟାତ୍ମା ସର୍ବଭୂତପ୍ରଣେତା' । ଇତ୍ୟେବଂ ଜାତୀୟକା ଚ ସ୍ମୃତିରିହୋଦାହର୍ତ୍ତବ୍ୟା ।

(୨) ଭାଷାଂତର- (କ) ଏହାଦ୍ୱାରା ପରମେଶ୍ୱରହିଁ ବୈଶ୍ୱାନର ହୁଏ କାରଣ- 'ତାହାର ଅଗ୍ନି ମୁଖ ଅଟେ, ଦ୍ୟୁର୍ଲୋକ ମୂର୍ଦ୍ଧା ଅଟେ- ଏହି ପ୍ରକାର ସ୍ମୃତି ମଧ୍ୟ ପରମେଶ୍ୱରର ତ୍ରୈଲୋକ୍ୟାତ୍ମକରୂପକୁ ପ୍ରତିପାଦନ କରେ । 'ଯାହାର ଅଗ୍ନିମୁଖ, ଦ୍ୟୁର୍ଲୋକ ମସ୍ତକ, ଆକାଶ ନାଭି; ପୃଥ୍ୱୀ ଚରଣ, ସୂର୍ଯ୍ୟ ନେତ୍ର ଓ ଦିଗ କାନ ଏହି ପ୍ରକାର ତ୍ରୈଲୋକ୍ୟାତ୍ମକ ନମସ୍କାର ଯୋଗ୍ୟ' ।

(ଖ) ଏହି ପ୍ରକାର ଏହି ସ୍ମର୍ଯ୍ୟମାଣରୂପ ମଧ୍ୟ ନିଜର ମୂଳଭୂତ ସ୍ମୃତିର ଆନୁମାନ କରାଇ ଏହି ବୈଶ୍ୱାନର ଶବ୍ଦର ପରମେଶ୍ୱର ପରକ ହେଲେ ଅନୁମାନ-ଲିଙ୍ଗଜ୍ଞାପକ ହୁଏ । ଏହାଦ୍ୱାରା ବୈଶ୍ୱାନର ପରମେଶ୍ୱର ବୋଲି ଅର୍ଥ ହୁଏ ଏବଂ ସୂତ୍ରରେ ଇତିଶବ୍ଦ ହେତ୍ୱର୍ଥକ ଅଟେ । ଯାହାଦ୍ୱାରା ବୈଶ୍ୱନର ପରମେଶ୍ୱର ହୁଏ ବୋଲି ଅର୍ଥ ପ୍ରକାଶ କରାଏ ।

(ଗ) ଯଦ୍ୟପି 'ତସ୍ମୈ ଲୋକାତ୍ମନେ ନମଃ' ଏହି ସ୍ତୁତି ଅଛି, ତଥାପି ମୂଳଭୂତ ବେଦବାକ୍ୟରେ ଏପରି ଅଭାବହେତୁ ଏହିପ୍ରକାର ସମ୍ୟଗ୍ ରୂପରେ ସ୍ତୁତି ମଧ୍ୟ ହୁଏ ନାହିଁ । 'ବିଦ୍ୱାନ୍ ଲୋକ ଦ୍ୟୁର୍ଲୋକ ଯାହାର ମସ୍ତକ, ଆକାଶ ଯାହାର ନାଭି, ଚନ୍ଦ୍ର ଓ ସୂର୍ଯ୍ୟ ଯାହାର ନେତ୍ର, ଦିଗ ଯାହାର କାନ, ପୃଥିବୀ ଯାହାର ପାଦ, ସେ ଅଚିନ୍ତ୍ୟାତ୍ମା ସମ୍ପୂର୍ଣ୍ଣ ଭୂତର ପ୍ରଣେତା ବୋଲି ଜାଣ ।' ଏହି ପ୍ରକାର ସ୍ମୃତି ମଧ୍ୟ ଏହାର ଉଦାହରଣ ରୂପରେ ଦେବା ଆବଶ୍ୟକ ।



**शब्दादिभ्योऽन्तः प्रतिष्ठानाच्च नेति चेन्न तथादृष्ट्युप-देशादसंभवात्पुरुषमपि चैनमधीयते ॥ २६ ॥**

**(୧) ଶବ୍ଦାଦିଭ୍ୟୋଽନ୍ତଃ ପ୍ରତିଷ୍ଠାନାଚ୍ଚ ନେତି ଚେନ୍ନ ତଥା-ଦୃଷ୍ଟ୍ୟୁପଦେଶାଦସମ୍ଭବାତ୍ ପୁରୁଷମପି ଚୈନମଭିଧୀୟତେ ॥ ୧-୨-୨୬ ॥**

ଶବ୍ଦାଦିଭ୍ୟଃ- 'ସ ଏଷୋଽଗ୍ନିର୍ବୈଶ୍ୱାନରଃ', ହୃଦୟଂ ଗାର୍ହପତ୍ୟ' ଏହି ପ୍ରକାର ବୈଶ୍ୱାନରଶବ୍ଦଦ୍ୱାରା ଜଠରାଗ୍ନି ଇତ୍ୟାଦି ଅଗ୍ନିତ୍ରୟର କଳ୍ପନା କରାଯାଇଛି । ଏହି ପ୍ରାଣ ଆହୁତିର ଆଧାରରୂପେ କୁହାଯାଇଛି । ଚ-ଏବଂ, ଅନ୍ତଃପ୍ରତିଷ୍ଠାନାତ୍-'ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦ', ଏହି ପ୍ରକାର ବେଦବାକ୍ୟ ଦ୍ୱାରା ବୈଶ୍ୱାନରର ଅନ୍ତର ସ୍ଥିତି କୁହାଯାଇଛି । ଅତଃ, ନ-ବୈଶ୍ୱାନରଶବ୍ଦଦ୍ୱାରା ପରମାତ୍ମାର ଗ୍ରହଣ ଠିକ୍ ନୁହେଁ । ଇତି ଚେନ୍ନ-ଯଦି ଏହା କୁହାଯାଏ, ତେବେ ମଧ୍ୟ ଏହା ଠିକ୍ ନୁହେଁ । ଦୃଷ୍ଟ୍ୟୁପଦେଶାତ୍-କାରଣ ଜାଠରାଗ୍ନିରେ ବ୍ରହ୍ମଦୃଷ୍ଟିର ଉପଦେଶ ହୁଏ । ତଥା ଅସମ୍ଭବାତ୍-'ଏହାର ଦ୍ୟୁର୍ଲୋକ ମସ୍ତକ, ସୂର୍ଯ୍ୟ ନେତ୍ର ଅଟେ । ପୁରୁଷ ଦ୍ୱାରା ଅଭିଧୀୟତେ-ବର୍ଣ୍ଣନା କରାଯାଇଛି । ତେଣୁ ବୈଶ୍ୱାନରଶବ୍ଦଦ୍ୱାରା ପରମେଶ୍ୱରର ଗ୍ରହଣ ହୋଇଛି ।

(୨) ମୂଳ- (କ) ଅତ୍ରାହ-ନ ପରମେଶ୍ୱରୋ ବୈଶ୍ୱାନରୋ ଭବିତୁମର୍ହତି ? ଶବ୍ଦାଦିଭ୍ୟୋଽନ୍ତଃ ପ୍ରତିଷ୍ଠାନାଚ୍ଚ । ଶବ୍ଦସ୍ତାବଦ୍ ବୈଶ୍ୱାନରଶବ୍ଦୋ ନ ପରମେଶ୍ୱରେ ସମ୍ଭବତି, ଅର୍ଥାନ୍ତରେ ରୂଢ଼ତ୍ୱାତ୍ । (ଖ) ତଥାଽଗ୍ନିଶବ୍ଦଃ 'ସ ଏଷୋଽଗ୍ନିର୍ବୈଶ୍ୱାନରଃ' ଇତି । ଆଦିଶବ୍ଦାତ୍ ହୃଦୟଂ ଗାର୍ହପତ୍ୟଃ', (ଛା ୫।୧୮।୨) ଇତ୍ୟାଦି ।ଗ୍ନି ତ୍ରେତାପ୍ରକଳ୍ପନମ୍ । ତଦ୍ୟାଦ୍‌ଭକ୍ତଂ ପ୍ରଥମମାଗଚ୍ଛେତ୍ତଦ୍‌ବୋମୀୟମ୍', (ଛା ୫।୧୯।୧) ଇତ୍ୟାଦିନା ଚ ପ୍ରାଣାହୃତ୍ୟଧିକରଣତାସଂକୀର୍ତ୍ତନମ୍ । ଏତେଭ୍ୟୋ ହେତୁଭ୍ୟୋ ଜାଠରୋ ବୈଶ୍ୱାନରଃ ପ୍ରତେତବ୍ୟଃ । (ଗ) ତଥାଽନ୍ତଃ ପ୍ରତିଷ୍ଠାନମ-ପିଶ୍ରୂୟତେ- 'ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦଂ' ଇତି । ତଚ୍ଚ ଜାଠରେ ସମ୍ଭବତି ।

**(୨) ଭାଷାଂତର-** (କ) ପୂର୍ବପକ୍ଷ- ବୈଶ୍ୱାନର ପରମେଶ୍ୱର ହୋଇନପାରେ ? କିପରି ? ଏହାଦ୍ୱାରା ଶବ୍ଦାଦି ଓ ଅନ୍ତଃ ପ୍ରତିଷ୍ଠାନ ହୁଏ । ପ୍ରଥମରେ ଶବ୍ଦ କିନ୍ତୁ ବୈଶ୍ୱାନରଶବ୍ଦର ପରମେଶ୍ୱରଠାରେ ପ୍ରୟୋଗ ସମ୍ଭବ ନୁହେଁ । କାରଣ ସେ ଅନ୍ୟ ଅର୍ଥରେ ରୂଢ଼ ଅଟେ ।

(ଖ) ତଥା 'ସ ଏଷୋଽଗ୍ନିର୍ବୈଶ୍ୱାନରଃ' ଏହି ବେଦବାକ୍ୟରେ ଅଗ୍ନିଶବ୍ଦ ସହିତ ବୈଶ୍ୱାନର ଶବ୍ଦର ପ୍ରୟୋଗ ହେଲେ ଅଗ୍ନିଶବ୍ଦର ପ୍ରୟୋଗ ପରମେଶ୍ୱରଠାରେ ସମ୍ଭବ ନୁହେଁ ।

ସୂତ୍ରସ୍ଥ 'ଶବ୍ଦାଦିଭ୍ୟଃ', ଶବ୍ଦଦ୍ୱାରା 'ହୃଦୟଂ ଗ୍ରାର୍ହପତ୍ୟ' ଇତି ଅଗ୍ନିତ୍ରୟର କଳ୍ପନା କରାଯାଇଛି ଏବଂ 'ଭୋଜନ ସମୟରେ ଯେଉଁ ଅନ୍ନ ପ୍ରଥମେ ମିଳେ, ଏହାକୁ ହବନ (ଯଜ୍ଞରେ ଦାନ) କରିବା ଉଚିତ୍ ।' ଇତ୍ୟାଦି ଦ୍ୱାରା ପ୍ରାଣାହୁତିର ବୈଶ୍ୱାନରଠାରେ ଅଧିକରଣତା କୁହାଯାଇଛି । ଏହି କାରଣରୁ ବୈଶ୍ୱାନର ଶବ୍ଦ ଦ୍ୱାରା ଜାଠରାଗ୍ନି ଜଣାପଡ଼େ ।

(ଗ) ପୁନଶ୍ଚ 'ପୁରୁଷ ଶରୀର ମଧ୍ୟସ୍ଥ ପଦାର୍ଥକୁ ଜାଣିବା ଉଚିତ୍ ।' ସେ ଭିତର ସ୍ଥିତିର ଶ୍ରୁତି ମଧ୍ୟ । ସେ ଜାଠରାଗ୍ନିରେ ସମ୍ଭବ ହୁଏ ।

(୩) ମୂଳ- (କ) ଯଦପ୍ୟୁକ୍ତମ୍-'ମୂର୍ଦ୍ଧୈବ ସୁତେଜା', ଇତ୍ୟାଦେର୍ବିଶେଷାତ୍ କାରଣାତ୍ ପରମାତ୍ମା ବୈଶ୍ୱାନର ଇତି । (ଖ) ଅତ୍ର ବ୍ରୂମଃ-କୁତୋ ହ୍ୟେଷ ନିର୍ଣ୍ଣୟଃ ? ଯଦୁଭୟଥାପି ବିଶେଷପ୍ରତିଭାନେ ସତି ପରମେଶ୍ୱରବିଷୟ ଏବ ବିଶେଷ ଆଶ୍ରୟଣୀୟୋ ନ ଜାଠର ବିଷୟ ଇତି । (ଗ) ଅଥବା ଭୂତାଗ୍ନେରନ୍ତର୍ବର୍ହିଶ୍ଚାବତିଷ୍ଠମାନସ୍ୟୈ ବ ନିର୍ଦ୍ଦେଶୋ ଭବିଷ୍ୟତି । ତସ୍ୟା ପି ହି ଦ୍ୟୁଲୋକାଦିସମ୍ବନ୍ଧୋ ମନ୍ତ୍ରବର୍ଣ୍ଣାଦବଗମ୍ୟତେ- 'ଯୋ ଭାନୁନା ପୃଥିବୀଂ ଦ୍ୟାମୁତେମାମାତତାନ ରୋଦସୀ ଅନ୍ତରୀକ୍ଷମ୍' (ର. ସଂ ୧୦।୮।୮।୩) ଇତ୍ୟାଦୌ । (ଘ) ଅଥବା ତଚ୍ଛରୀରାୟ ଦେବତାୟା ଐଶ୍ୱର୍ଯ୍ୟଯୋଗାଦ୍ୟୁଲୋକାଦ୍ୟବୟବତ୍ୱଂ ଭବିଷ୍ୟତି । ତସ୍ମାନ୍ନ ପରମେଶ୍ୱରୋ ବୈଶ୍ୱାନର ଇତି ।

**(୩) ଭାଷାଂତର-** (କ) 'ଯାହାର ମୂର୍ଦ୍ଧା ଅତି ତେଜସ୍ୱୀ ଅଟେ' ଇତ୍ୟାଦି ବିଶେଷଣରୂପ କାରଣ ଦ୍ୱାରା ବୈଶ୍ୱାନର ପରମାତ୍ମା ଅଟେ ବୋଲି ଯାହା କୁହାଯାଇଛି,

(ଖ) ଏହା ଉପରେ ଆମ୍ଭେ (ପୂର୍ବପକ୍ଷ) କହୁଛି- ପରମାତ୍ମାର ବିଶେଷ (ଦ୍ୟୁମୂର୍ଦ୍ଧତ୍ୱାଦି) ତଥା ଜାଠରାଗ୍ନିର ବିଶେଷ (ହୋମଧାରତ୍ୱାଦି) ଏହି ଦୁଇ ପ୍ରକାର ବିଷୟର ଏଠାରେ ପ୍ରତିଭାନ ହେବାରୁ ପରମେଶ୍ୱର ବିଷୟକବିଶେଷର ଗ୍ରହଣ କରାଯାଏ । କିନ୍ତୁ ଜାଠରାଗ୍ନି ବିଷୟକ ବିଶେଷର ଗ୍ରହଣ କରାଯାଏ ନାହିଁ । ତେବେ ଏହାର ନିର୍ଣ୍ଣୟ କିପରି ହୁଏ ?

(ଗ) ଅଥବା ବାହାରେ ଓ ଭିତରେ ରହିଥିବା ଭୂତାଗ୍ନିର ମଧ୍ୟ ନିର୍ଦ୍ଦେଶ ହୁଏ । କାରଣ- ଏହାର ମଧ୍ୟ ଦ୍ୟୁଲୋକାଦି ସହିତ ସମ୍ବନ୍ଧ 'ଯେଉଁ ଭୂତାଗ୍ନି ଦ୍ୱାରା ଏହି ପୃଥ୍ୱୀ ଦ୍ୟୁଲୋକ ଏବଂ ଅନ୍ତରୀକ୍ଷର ବ୍ୟାପ୍ତ ହୁଏ', ଇତ୍ୟାଦି ମନ୍ତ୍ରଦ୍ୱାରା ଅବଗତ ହୋଇଛି ।

(ଘ) ଅଥବା ଭୂତାଗ୍ନି ଯାହାର ଶରୀର, ସେହି ଦେବତାର ଐଶ୍ୱର୍ଯ୍ୟ ବଳରେ ଦ୍ୟୁଲୋକାଦିର ଅବୟବ ସମ୍ଭବ । ତେଣୁ ବୈଶ୍ୱାନର ପରମେଶ୍ୱର ନୁହେଁ ।



(୪) ମୂଳ - (କ) ଅତ୍ରୋଚ୍ୟତେ-ନ ତଥାଦୃଷ୍ଟ୍ୟୁପଦେଶାଦିତି । ଶବ୍ଦାଦିଭ୍ୟଃ କାରଣେଭ୍ୟଃ ପରମେଶ୍ୱରସ୍ୟ ପ୍ରତ୍ୟାଖାନଂ ଯୁକ୍ତମ୍ । କୁତଃ ? ତଥା ଜାଠରାପରିତ୍ୟାଗେନ ଦୃଷ୍ଟ୍ୟୁପଦେଶାତ୍ । (ଖ) ପରମେଶ୍ୱରଦୃଷ୍ଟିର୍ହି ଜାଠରେ ବୈଶ୍ୱାନର ଇହୋପଦିଶ୍ୟତେ । 'ମନୋ ବ୍ରହ୍ମେତ୍ୟୁପାସୀତ', (ଛା ୩।୧୮।୧) ଇତ୍ୟାଦିବତ୍ । ଅଥବା ଜାଠର ବୈଶ୍ୱାନରୋପାଧିଃ ପରମେଶ୍ୱର ଇହ ଦ୍ରଷ୍ଟବ୍ୟତେନୋପଦିଶ୍ୟତେ । 'ମନୋମୟଃ ପ୍ରାଣଶରୀରୋଭାରୂପଃ' (ଛା ୩।୧୪।୨) ଇତ୍ୟାଦିବତ୍ । (ଗ) ଯଦି ଚେହ ପରମେ ଶ୍ୱରୋ ନ ବିବକ୍ଷ୍ୟେତ, କେବଲ ଏବ ଜାଠରୋଽଗ୍ନିର୍ବିବକ୍ଷ୍ୟେତ, ତତୋ ମୂର୍ଦ୍ଧୈବ ସୁତେଜା-ଇତ୍ୟାଦେଃ ବିଶେଷସ୍ୟା ସମ୍ଭବ ଏବ ସ୍ୟାତ୍ । (ଘ) ଯଥାତୁ ଦେବତାଭୂତାଗ୍ନିବ୍ୟାପାଶ୍ରୟେଣାପ୍ୟୟଂ ବିଶେଷ ଉପପାଦୟିତୁଂ ନ ଶକ୍ୟେ ତ, ତଥୋତ୍ତରସୂତ୍ରେ ବକ୍ଷ୍ୟାମଃ ।

(୪) ଭାଷାଂତର- (କ) ସିଦ୍ଧାନ୍ତ-ଏହା କହିବା ଠିକ୍ ନୁହେଁ । କାରଣ- ସେହି ପ୍ରକାର ଦୃଷ୍ଟିର ଉପଦେଶ ଅଛି । ଶ୍ରୁତିସ୍ଥିତବୈଶ୍ୱାନର ଶବ୍ଦାଦି ଦ୍ୱାରା ପରମେଶ୍ୱରର ନିରାକରଣ କରିବା ଠିକ୍ ନୁହେଁ । କାରଣ- ଜାଠରାଗ୍ନିର ପରିତ୍ୟାଗ ନ କରୁଥିବା ଦୃଷ୍ଟିର ଉପଦେଶ ଏଠାରେ ଅଛି ।

(ଖ) 'ମନ ବ୍ରହ୍ମ ଅଟେ, ଏହା ଉପାସନା କରିବା ଉଚିତ୍' ଇତ୍ୟାଦି ସଦୃଶ ଏଠାରେ ପରମେଶ୍ୱରର ଦୃଷ୍ଟିର ଜାଠର ବୈଶ୍ୱାନରଠାରେ ଉପଦେଶ କରାଯାଇଛି । ଅଥବା 'ମନୋମୟଃ ପ୍ରାଣଶରୀରେ ଭାରୂପଃ' ଇତ୍ୟାଦି ସମାନ ଜାଠର ବୈଶ୍ୱାନର ଉପାଧିଯୁକ୍ତ ପରମେଶ୍ୱର ଏଠାରେ ଦ୍ରଷ୍ଟବ୍ୟରୂପରେ ଉପଦେଷ୍ଟ ହୁଏ ।

(ଗ) ଯଦି ଏଠାରେ ପରମେଶ୍ୱର ବିବକ୍ଷିତ ନ ହୁଏ, କେବଳ ଜାଠରାଗ୍ନି ବିବକ୍ଷିତ ହୁଏ, ତେବେ 'ମୂର୍ଦ୍ଧୈବ ସୁତେଜା', ଇତ୍ୟାଦି ବିଶେଷର ଅସମ୍ଭବ ହୋଇଯିବ ।

(ଘ) ଦେବତା ଓ ଭୂତାଗ୍ନିର ଆଶ୍ରୟ ଗ୍ରହଣକଲେ ମଧ୍ୟ ଏହି ବିଶେଷର ଉପାଦାନ ଯେଉଁଭଳି ହୋଇପାରେ ନାହିଁ, ଏହି ସବୁ ପରସୂତ୍ରରେ କୁହାଯିବ ।

(୫) ମୂଳ-(କ) ଯଦି ଚ କେବଳ ଏବ ଜାଠରୋ ବିବକ୍ଷ୍ୟେତ ପୁରୁଷେଽନ୍ତଃ ପ୍ରତିଷ୍ଠିତତ୍ୱଂ କେବଲଂ ତସ୍ୟ ସ୍ୟାନ୍ନତୁ ପୁରୁଷତ୍ୱମ୍ । ପୁରୁଷମପି ଚୈନମଭିଧୀୟତେ ବାଜସନେୟିନଃ-'ସ ଏଷୋଽଗ୍ନି ବୈଶ୍ୱାନରୋ ଯତ୍ ପୁରୁଷ ସ ଯୋ ହେତମେବଗ୍ନିଂ ବେଶ୍ୱାନରଂ ପୁରୁଷଂ ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦ', (ଶ ବ୍ରା ୧୦।୬।୧୧) ଇତି ପରମେଶ୍ୱରସ୍ୟ ତୁ ସର୍ବାତ୍ମତ୍ୱାତ୍ ପୁରୁଷତ୍ୱଂ ପୁରୁଷେଽନ୍ତଃ ପ୍ରତିଷ୍ଠିତତ୍ୱଂ ଚୋଭୟମୁପପଦ୍ୟତେ । (ଖ) ଯେ ତୁ ପୁରୁଷବିଧମପି ଚୈନମଭିଧୀୟତେ', ଇତି ସୂତ୍ରାବୟବଂ ପଠନ୍ତି,

ତେଷାମେଷୋଽର୍ଥଃ-କେବଲ-ଜାଠର ପରିଗ୍ରହେ ପୁରୁଷେଽନ୍ତଃ ପ୍ରତିଷ୍ଠିତତ୍ୱଂ କେବଲଂ ସ୍ୟାନ୍ନ ପୁରୁଷବିଧତ୍ୱମ୍ । (ଗ) ପୁରୁଷବିଧମପି ଚୈନମଭିଧୀୟତେ ବାଜସେୟିନଃ- 'ପୁରୁଷବିଧଂ ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବ୍ଭେଦ', ଇତି । ପୁରୁଷବିଧତ୍ୱଂ ଚ ପ୍ରକରଣାଦ୍ୟଧିଦୈବତଂ ଦ୍ୟୁମୂର୍ଦ୍ଧତ୍ୱାଦି ପୃଥିବୀପ୍ରତିଷ୍ଠିତତ୍ୱାନ୍ତମ୍, ଯଚ୍ଚାଧ୍ୟାତ୍ମଂ ପ୍ରସିଦ୍ଧଂ ଦ୍ୟୁମୂର୍ଦ୍ଧତ୍ୱାଦି ଚୁବୁକ ପ୍ରତିଷ୍ଠିତତ୍ୱାନ୍ତଂ ତତ୍ ପରିଗୃହ୍ୟତେ ।

**(୫) ଭାଷାଂତର-** (କ) ଯଦି କେବଳ ଜଠରାଗ୍ନି ବିବକ୍ଷିତ ହୁଏ, ତେବେ ସେଠାରେ ପୁରୁଷ (ଶରୀର)ର ମଧ୍ୟସ୍ଥ ସ୍ଥିତିମାତ୍ର ସମ୍ଭବ ହୋଇପାରେ, କିନ୍ତୁ ପୁରୁଷତ୍ୱ ନୁହେଁ । ଏବଂ 'ଯାହା ପୁରୁଷ ଅଟେ, ତାହା ଏହି ବୈଶ୍ୱାନର ଅଗ୍ନି । ଯେଉଁ ବୈଶ୍ୱାନର ଅଗ୍ନିକୁ ଏହିପ୍ରକାର ପୁରୁଷ ସଦୃଶ ଏବଂ ପୁରୁଷ ଭିତରେ ରହି ଜାଣେ, ସେ ସବୁ ଭୋଗ କରେ', ଏହି ପ୍ରକାର ବାଜସନେୟୀଶାଖାଯୁକ୍ତ ବୈଶ୍ୱାନର ପୁରୁଷ ରୂପରେ ଅଧ୍ୟୟନ କରେ । ସର୍ବାତ୍ମକ ହେଲେ ପରମେଶ୍ୱରଠାରେ ପୁରୁଷ ମଧ୍ୟରେ ପ୍ରତିଷ୍ଠିତତ୍ୱ ଏହି ଦୁଇଟି ଉପପନ୍ନ ହୁଏ ।

(ଖ) ଯେଉଁ ଲୋକ 'ପୁରୁଷବିଧମପି' ଏହି ସୂତ୍ରର ଅନ୍ତିମ ଭାଗର ପାଠ ସ୍ୱୀକାର କରେ, ତାହାଙ୍କ ମତରେ ଏହି ଅର୍ଥ- କେବଳ ଜାଠରାଗ୍ନିକୁ ଗ୍ରହଣ କଲେ ପୁରୁଷ ଭିତରେ ପ୍ରତିଷ୍ଠିତତ୍ୱମାତ୍ର ସମ୍ଭବ ହୁଏ, କିନ୍ତୁ ପୁରୁଷତ୍ୱସଦୃଶ ନୁହେଁ ।

(ଗ) କିନ୍ତୁ 'ଯାହା ଏହି ପୁରୁଷ ସଦୃଶ ଓ ପୁରୁଷବ୍ୟତିରିକ୍ତ ପ୍ରତିଷ୍ଠିତ ଜାଣେ', ଏହି ପ୍ରକାର ବାଜସନେୟୀ ଶାଖାଯୁକ୍ତ ଏହାର ପୁରୁଷ ସଦୃଶରୂପରେ ଅଧ୍ୟୟନ କରେ । ଦ୍ୟୁମୂର୍ଦ୍ଧତ୍ୱାଦିଠାରୁ ଆରମ୍ଭ କରି ପୃଥ୍ୱୀ ପ୍ରତିଷ୍ଠିତତ୍ୱ ପର୍ଯ୍ୟନ୍ତ ଏହି ଅଧିଦୈବ ଏବଂ ଦ୍ୟୁମୂର୍ଦ୍ଧତ୍ୱାଦିଠାରୁ ଆରମ୍ଭ କରି ଚୁବୁକ ପ୍ରତିଷ୍ଠିତତ୍ୱ ପର୍ଯ୍ୟନ୍ତ ଯେଉଁ ପ୍ରସିଦ୍ଧ ଅଧ୍ୟାତ୍ମ ପୁରୁଷସଦୃଶତ୍ୱ ଅଛି, ତାହା ପ୍ରକରଣଠାରୁ ଗ୍ରହଣ ହୋଇଛି ।

## अतएव न देवता भूतं च ॥ २७ ॥

## (୧) ଅତ ଏବ ନ ଦେବତା ଭୂତଂ ଚ ॥ ୧-୨-୨୭ ॥

ଅତଏବ-ଦ୍ୟୁମୂର୍ଦ୍ଧାଦିଧର୍ମର ଅସମ୍ଭବ ହେଲେ ଦେବତା-ଦେବତା, ଚ-ଅଥବା, ଭୂତମ୍-ଭୂତାଗ୍ନି, ନ-ବୈଶ୍ୱାନର ଶବ୍ଦବାଚ୍ୟ ହୁଏ ନାହିଁ ।

(୨) ମୂଳ-(କ) ଯତ୍ ପୁନରୁକ୍ତଂ ଭୂତାଗ୍ନେରପି ମନ୍ତ୍ରବର୍ଣ୍ଣେ ଦ୍ୟୁଲୋକାଦି ସମ୍ବନ୍ଧଦର୍ଶନାନ୍ମୂର୍ଧୈବ ସୁତେଜା ଇତ୍ୟାଦ୍ୟବୟବକଳ୍ପନଂ ତସ୍ୟୈବ ଭବିଷ୍ୟତୀତି ତଚ୍ଛରୀରାୟା ଦେବତାୟା ବୈଶ୍ୱର୍ଯ୍ୟଯୋଗାଦିତି, ତତ୍ପରିହର୍ତ୍ତବ୍ୟମ୍ । (ଖ) ଅତ୍ରୋଚ୍ୟତେ-



ଅତ ଏବୋକ୍ତେଭ୍ୟୋ ହେତୁଭ୍ୟୋ ନ ଦେବତା ବୈଶ୍ୱାନରଃ । ତଥା ଭୂତାଗ୍ନିରପି ନ ବୈଶ୍ୱାନରଃ । ନ ହି ଭୂତାଗ୍ନେରୌଷ୍ଣ୍ୟ ପ୍ରକାଶମାତ୍ରାତ୍ମକସ୍ୟ ଦ୍ୟୁମୂର୍ଦ୍ଧତ୍ୱାଦିକଳ୍ପନୋ ପପଦ୍ୟତେ, ବିକାରସ୍ୟ ବିକାରାନ୍ତରାତ୍ମତ୍ୱାସମ୍ଭବାତ୍ । (ଗ) ତଥା ଦେବତାୟାଃ ସତ୍ୟପ୍ୟୈଶ୍ୱର୍ଯ୍ୟଯୋଗେ ନ ଦ୍ୟୁମ୍ନର୍ଦ୍ଧତ୍ୱାଦିକଳ୍ପନା ସମ୍ଭବତି । ଅକାରଣତ୍ୱାତ୍ ପରମେଶ୍ୱରାଧୀନୈଶ୍ୱର୍ଯ୍ୟତ୍ୱାଚ୍ଚ । ଆତ୍ମଶବ୍ଦାସମ୍ଭବଶ୍ଚ ସର୍ବେଷ୍ୱେଷୁ ପକ୍ଷେଷୁ ସ୍ଥିତ ଏବ ।

(୨) ଭାଷାଂତର- (କ) ମନ୍ତ୍ରରେ ଭୂତାଗ୍ନିର ମଧ୍ୟ ଦ୍ୟୁଲୋକାଦିର ସହ ସମ୍ବନ୍ଧ ହେବାରୁ 'ମୂର୍ଦ୍ଧୈବ ସୁତେଜାଃ' ଇତ୍ୟାଦି ଅବୟବ କଳ୍ପନା ସେଠାରେ ହୁଏ । ଅଥବା ସେହି ଶରୀର ଥିବା ଦେବତାଠାରେ ଐଶ୍ୱର୍ଯ୍ୟଯୋଗରେ ଉକ୍ତ ଅବୟବ କଳ୍ପନା ହେବ । ବୋଲି ଯାହା କୁହାଯାଇଛି, ତାହାର ପରିହାର କରିବା ଉଚିତ୍ ।

(ଖ) ତେଣୁ କୁହାଯାଇଛି- ଉକ୍ତ ହେତୁ ଦ୍ୱାରା ବୈଶ୍ୱାନର ଦେବତା ନୁହେଁ । ତଥା ଭୂତାଗ୍ନି ମଧ୍ୟ ବୈଶ୍ୱାନର ନୁହେଁ, କାରଣ-ଔଷ୍ଣପ୍ରକାଶମାତ୍ରାତ୍ମକ ଭୂତାଗ୍ନିର ଦ୍ୟୁମୂର୍ଦ୍ଧତ୍ୱାଦି କଳ୍ପନା ଠିକ୍ ନୁହେଁ । କାରଣ-ବିକାର ଅନ୍ୟ ବିକାରର ଆତ୍ମା (ସ୍ୱରୂପ) ହୁଏ ନାହିଁ ।

(ଗ) ତଥା ଐଶ୍ୱର୍ଯ୍ୟ ଯୋଗ ହେଲେ ମଧ୍ୟ ଦେବତା ପାଖରେ ଦ୍ୟୁମୂର୍ଦ୍ଧତ୍ୱାଦି କଳ୍ପନା ସମ୍ଭବ ନୁହେଁ । କାରଣ-ସେ କାହାର ଉପାଦାନକାରଣ ନୁହେଁ ଏବଂ ତାହାର ଐଶ୍ୱର୍ଯ୍ୟ ପରମେଶ୍ୱରର ଅଧୀନ ଅଟେ । ଉକ୍ତ ସମସ୍ତ ପକ୍ଷରେ ଆତ୍ମଶବ୍ଦର ପ୍ରୟୋଗ ମଧ୍ୟ ଅସମ୍ଭବ ହୁଏ ବୋଲି ପ୍ରମାଣ କରାଯାଇଛି ।

## साक्षादप्यविरोधं जैमिनिः ॥ २८ ॥

## (୧) ସାକ୍ଷାଦପ୍ୟବିରୋଧଂ ଜୈମିନିଃ ॥ ୧-୨-୨୮

ଜୈମିନିଃ-ଜୈମୁନି ମୁନିଙ୍କ ମତରେ-ବ୍ରହ୍ମରେ, ସାକ୍ଷାଦପି-ଜାଠରାଗ୍ନି ରୂପ ଉପାଧିବିନା ମଧ୍ୟ ବୈଶ୍ୱାନରଶବ୍ଦର, ଅବିରୋଧମ୍-ବିରୋଧ ନାହିଁ, ବୈଶ୍ୱାନରଶବ୍ଦ ସାକ୍ଷାତ୍‌ପରମେଶ୍ୱର ବାଚକ ଅଟେ ।

(୨) ମୂଳ - (କ) ପୂର୍ବଂ ଜାଠରାଗ୍ନି ପ୍ରତୀକୋ ଜାଠରାଗ୍ନ୍ୟୁପାଧିକୋ ବା ପରମେଶ୍ୱର ଉପାସ୍ୟ ଇତ୍ୟୁକ୍ତମନ୍ତଃ ପ୍ରତିଷ୍ଠିତତ୍ୱାଦ୍ୟନୁରୋଧେନ, ଇଦାନୀନ୍ତୁ ବିନୈବ ପ୍ରତୀକୋପାଧିକଳ୍ପନାଭ୍ୟାଂ ସାକ୍ଷାଦପି ପରମେଶ୍ୱରୋପାସନପରିଗ୍ରହେ ନ କଶ୍ଚିଦ୍ ବିରୋଧ ଇତି ଜୈମିନିରାଚାର୍ୟ୍ୟୋ ମନ୍ୟତେ । (ଖ) ନନୁ ଜାଠରାଗ୍ନ୍ୟପରିଗ୍ରହେଽନ୍ତଃ- ପ୍ରତିଷ୍ଠିତତ୍ୱବଚନଂ

ଶବ୍ଦାଦୀନି ଚ କାରଣାନି ବିରୁଧ୍ୟେରନ୍ନିତି । (ଗ) ଅତ୍ରୋଚ୍ୟତେ-ଅନ୍ତଃ ପ୍ରତିଷ୍ଠିତତ୍ୱବଚନଂ ତାବନ୍ନ ବିରୁଧ୍ୟତେ । ନହୀହ 'ପୁରୁଷବିଧଂ ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦ', ଇତି ଜାଠରାଗ୍ନ୍ୟଭିପ୍ରାୟେଣେଦମୁଚ୍ୟତେ, ତସ୍ୟା ପ୍ରକୃତତ୍ୱାଦସଂ-ଶବ୍ଦିଯତ୍ୱାଚ୍ଚ । (ଘ) କଥଂ ତର୍ହି ? ଯତ୍ ପ୍ରକୃତଂ ମୂର୍ଦ୍ଧାଦିଚୁବୁକାନ୍ତେଷୁ ପୁରୁଷାବୟବେଷୁ ପୁରୁଷବିଧତ୍ୱଂ କଳ୍ପିତଂ ତଦଭିପ୍ରାୟେଣେଦମୁଚ୍ୟତେ- 'ପୁରୁଷବିଧଂ ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦ' ଇତି । ଯଥା ବୃକ୍ଷେ ଶାଖାଂ ପ୍ରତିଷ୍ଠିତାଂ ପଶ୍ୟତୀତି ତଦ୍‌ବତ୍' ।

**(୨) ଭାଷାଂତର-** (କ) ପ୍ରଥମେ 'ଅନ୍ତଃ ପ୍ରତିଷ୍ଠିତତ୍ୱ' ପ୍ରଭୃତି ବାକ୍ୟ ଦ୍ୱାରା କୁହାଗଲା କି- ଜଠରାଗ୍ନି ଯାହାର ଉପାଧି, ସେପରି ପରମେଶ୍ୱର ଉପାସ୍ୟ ଅଟେ । କିନ୍ତୁ ଏଠାରେ ଆଚାର୍ଯ୍ୟ ଜୈମିନିଙ୍କର ଅଭିମତ ଯେ-ବୈଶ୍ୱାନରଶବ୍ଦ ଦ୍ୱାରା ପ୍ରତୀକ ଓ ଉପାଧିର କଳ୍ପନାକୁ ତ୍ୟାଗକରି ପ୍ରତ୍ୟକ୍ଷତଃ ପରମେଶ୍ୱରର ଉପାସନା ସ୍ୱୀକାର କରିବାରେ କୌଣସି ବିରୋଧ ନାହିଁ ।

(ଖ) ଯଦି ଜଠରାଗ୍ନିକୁ ସ୍ୱୀକାର କରାନଯାଏ, ତେବେ ପରମେଶ୍ୱର ପାଖରେ ଅନ୍ତଃ ପ୍ରତିଷ୍ଠିତତ୍ୱ ବଚନ ଓ ଶବ୍ଦାଦିକାରଣ ବାଧିତ ହୁଏ କି ?

(ଗ) ତେଣୁ ଏହାର ଉତ୍ତରରେ କୁହାଯାଏ କି ଅନ୍ତଃ ପ୍ରତିଷ୍ଠିତତ୍ୱ ବଚନ କିନ୍ତୁ ବିରୁଦ୍ଧ ନୁହେଁ, କାରଣ 'ପୁରୁଷସଦୃଶ ଓ ପୁରୁଷର ଅନ୍ତଃ ପ୍ରତିଷ୍ଠିତତ୍ୱକୁ ଯିଏ ଜାଣେ', ଏହି କଥା ଜଠରାଗ୍ନିର ଅଭିପ୍ରାୟ ଦ୍ୱାରା କୁହାଯାଇ ନାହିଁ, କାରଣ ଏଠାରେ ଜଠରାଗ୍ନିର ପ୍ରକରଣ ନାହିଁ ଏବଂ ଅଗ୍ନି ଆଦି ଶବ୍ଦର ବାଚ୍ୟ ନୁହେଁ ।

(ଘ) ତେବେ କେଉଁ ଅଭିପ୍ରାୟରେ ଏହା କୁହାଗଲା ? ମସ୍ତକଠାରୁ ଓଠ ପର୍ଯ୍ୟନ୍ତ ପୁରୁଷର ଅବୟବଗୁଡ଼ିକରେ ଯେଉଁ ପ୍ରକୃତ ପୁରୁଷ ସଦୃଶତ୍ୱ କଳ୍ପିତ ଅଟେ, ତାହାର ଅଭିପ୍ରାୟ ଦ୍ୱାରା 'ପୁରୁଷବିଧଂ ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦ' ଏହି ପ୍ରକାର କୁହାଗଲା, ଯେପରିକି ବୃକ୍ଷର ଶାଖାକୁ ଅନ୍ତଃ ପ୍ରତିଷ୍ଠିତତ୍ୱ ହୋଇଥିବା ଦେବତା' ହୁଏ, ସେପରି ।

(୩) ମୂଳ-(କ) ଅଥବା ଯଃ ପ୍ରକୃତଃ ପରମାତ୍ମାଽଧ୍ୟାତ୍ମମଧିଦୈବତଂ ଚ ପୁରୁଷବିଧତ୍ୱୋପାଧିସ୍ତସ୍ୟ ଯତ୍‌କେବଳଂ ସାକ୍ଷିରୂପଂ ତଦଭିପ୍ରାୟେଣେଦମୁଚ୍ୟତେ- 'ପୁରୁଷବିଧଂ ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦ', ଇତି । (ଖ) ନିର୍ଣ୍ଣିତେ ଚ ପୂର୍ବାପରାଲୋଚନବଶେନ ପରମାତ୍ମାପରିଗ୍ରହେ ତଦ୍‌ବିଷୟ ଏବ ବୈଶ୍ୱାନରଶବ୍ଦଃ କେନଚିଦ୍ ଯୋଗେନ ବର୍ତ୍ତିଷ୍ୟତେ । ବିଶ୍ୱଶ୍ଚାୟଂ ନରଶ୍ଚେତି, ବିଶ୍ୱେଷାଂ ବାଽୟଂ ନରଃ, ବିଶ୍ୱେ ବା ନରା ଅସ୍ୟେତି ବିଶ୍ୱାନରଃ ପରମାତ୍ମା ସର୍ବାତ୍ମତ୍ୱାତ୍ । ବିଶ୍ୱାନର ଏବ ବୈଶ୍ୱାନରଃ । ତଦ୍ଧିତୋଽନନ୍ୟାର୍ଥଃ,



ରାକ୍ଷସ ବାୟସାଦିବତ୍ । (ଗ) ଅଗ୍ନିଶବ୍ଦୋଽପ୍ୟଗ୍ରଣୀତ୍ୱାଦିଯୋଗାଶ୍ରୟଣେନ ପରମାତ୍ମାବିଷୟ ଏବ ଭବିଷ୍ୟତି । ଗାର୍ହପତ୍ୟାରିକଳ୍ପନଂ ପ୍ରାଣାହୃତ୍ୟଧିକରଣତ୍ୱଂ ଚ ପରମାତ୍ମନୋଽପି ସର୍ବାତ୍ମତ୍ୱାଦୁପପଦ୍ୟତେ ।

**(୩) ଭାଷାଂତର-** (କ) ଯେପରି ପ୍ରକୃତରେ ଅଛି, ଅଥବା ଯେଉଁ ପ୍ରକୃତ ପରମାତ୍ମାର ଅଧିଦୈବ ଏବଂ ଅଧ୍ୟାତ୍ମପୁରୁଷସଦୃଶତ୍ୱ ଉପାଧି ଅଟେ, ତାହାର ଉପାଧି ବ୍ୟତିରିକ୍ତ ଯେଉଁ କେବଳ ସାକ୍ଷୀରୂପ ଅଟେ, ତାହାର ଅଭିପ୍ରାୟ ଦ୍ୱାରା 'ପୁରୁଷବିଧଂ ପୁରୁଷେଽନ୍ତଃ ପ୍ରତିଷ୍ଠିତଂ ବେଦ', ବୋଲି କୁହାଯାଇଛି ।

(ଖ) ପୂର୍ବାପରପର୍ଯ୍ୟାଲୋଚନାର ବଳରେ ପରମାତ୍ମାର ଗ୍ରହଣ ନିଶ୍ଚିତ ହେଲେ ବୈଶ୍ୱାନରଶବ୍ଦ ମଧ୍ୟ କୌଣସି ଯୋଗବୃତ୍ତିରେ ପରମେଶ୍ୱରପୂର୍ବକ ହେବ । 'ସକଳ ପ୍ରପଞ୍ଚ ରୂପ ଏହି ନରପୁରୁଷ' ଅଥବା 'ସବୁ କାର୍ଯ୍ୟର କର୍ତ୍ତା, ଅଥବା ସଂସାରରେ କର୍ତ୍ତା' ଅଟେ ଯେ ସେ ବିଶ୍ୱାନର ଅର୍ଥାତ୍ ପରମାତ୍ମା, କାରଣ ସେ ପରମାତ୍ମାକ ସର୍ବାତ୍ମକ ଅଟେ । ବିଶ୍ୱାନରକୁ କଣ ବୈଶ୍ୱାନର କୁହାଯାଏ । ଏଠାରେ ତଦ୍ଧିତ ପ୍ରତ୍ୟୟ ସ୍ୱାର୍ଥରେ ଅଛି; ରାକ୍ଷସ ଓ ବାୟାସାଦିଶବ୍ଦଭଳି ।

(ଗ) ଅଗ୍ନିଶବ୍ଦ ମଧ୍ୟ ଅଗ୍ରଣୀତ୍ୱାଦିର ଯାଗର ଆଶ୍ରୟଣ କରି ପରମାତ୍ମାବିଷୟକ ହେବ । ଏହା ସର୍ବାତ୍ମକ ହେଲେ ପରମାତ୍ମାରେ ମଧ୍ୟ ଗାର୍ହପତ୍ୟାଦିକଳ୍ପନା ଏବଂ ପ୍ରାଣାହୁତିରେ ଅଧିକରଣତ୍ୱଯୁକ୍ତ ହୁଏ ।

(୧) ମୂଳ-(କ) କଥଂ ପୁନଃ ପରମେଶ୍ୱରପରିଗ୍ରହେ ପ୍ରଦେଶମାତ୍ରଶ୍ରୁତିରୁପପଦ୍ୟତେ ଇତି ତାଂ ବ୍ୟାଖ୍ୟାତୁମାରଭତେ-

**(୧) ଭାଷାଂତର-** (କ) ବୈଶ୍ୱାନର ଆଦିଶବ୍ଦଦ୍ୱାରା ପରମେଶ୍ୱରର ପରିଗ୍ରହ ହେଲେ ପ୍ରଦେଶମାତ୍ରର ଶ୍ରୁତି କିପରି ଉପପନ୍ନ ହୁଏ ? ଏହିପରି ଆଶଙ୍କା ହେବାରୁ ଏହି ଶ୍ରୁତିର ବ୍ୟାଖ୍ୟାନ କରିବା ପାଇଁ ସୂତ୍ର ଆରମ୍ଭ କରାଯାଉଛି ।

**अभिव्यक्तेरित्याश्मरथ्यः ॥ २९ ॥**

**(୨) ଅଭିବ୍ୟକ୍ତେରିତ୍ୟାଶ୍ମରଥ୍ୟଃ ॥ ୧-୨-୨୯**

ଆଶ୍ମରଥ୍ୟଃ-ଆଶ୍ମରଥ୍ୟଙ୍କ ମତରେ, ଇତି-ଏହି ପ୍ରଦେଶମାତ୍ର ଶ୍ରୁତି, ଅଭିବ୍ୟକ୍ତେଃ-ଅଭିବ୍ୟକ୍ତି ପାଇଁ ଅଛି । ଅର୍ଥାତ୍ ଅଭିବ୍ୟକ୍ତିର ଅଭିପ୍ରାୟ ଦ୍ୱାରା ହୁଏ ।

(୩) ମୂଳ- (କ) ଅତିମାତ୍ରସ୍ୟାପି ପରମେଶ୍ୱରସ୍ୟ ପ୍ରଦେଶମାତ୍ର ତ୍ୱମଭିବ୍ୟକ୍ତିନିମିତ୍ତଂ ସ୍ୟାତ୍ । ଅଭିବ୍ୟଜ୍ୟତେ କିଲ ପ୍ରଦେଶମାତ୍ର ପରିମାଣଃ ପରମେଶ୍ୱର ଉପାସକାନାଂ କୃତେ। ପ୍ରଦେଶେଷୁ ବା ହୃଦୟାଦିଷୂପଲବ୍ଧିସ୍ଥାନେଷୁ ବିଶେଷେଣା-ଭିବ୍ୟଜତେ ।' (ଖ) ଅତଃ ପରମେଶ୍ୱରେଽପି ପ୍ରଦେଶମାତ୍ରଶ୍ରୁତିରଭିବ୍ୟକ୍ତେରୁପପଦ୍ୟତ, ଇତ୍ୟାଶ୍ମରଥ୍ୟଃ ଚ ଆଚାର୍ଯ୍ୟୋ ମନ୍ୟତେ ।

**(୩) ଭାଷାଂତର-** (କ) ନିଃସୀମ ସର୍ବଗତପରମେଶ୍ୱରଠାରେ ପ୍ରଦେଶମାତ୍ର କଥନ ଅଭିବ୍ୟକ୍ତିନିମିତ୍ତ ଅଛି । ଉପାସକ ପାଇଁ ପରମେଶ୍ୱର ପ୍ରଦେଶମାତ୍ରପରିମାଣ ରୂପରେ ଅଭିବ୍ୟକ୍ତି ହୁଏ । ଅଥବା ପ୍ରଦେଶବିଶେଷରେ ହୃଦୟାଦି ଉପଲବ୍ଧିସ୍ଥାନରେ ବିଶେଷ ରୂପରେ ଅଭିବ୍ୟକ୍ତି ହୁଏ ।

(ଖ) ତେଣୁ ପରମେଶ୍ୱରଠାରେ ମଧ୍ୟ ପ୍ରଦେଶମାତ୍ରଶ୍ରୁତି ଅଭିବ୍ୟକ୍ତିର କାରଣ ଉପପନ୍ନ ହୁଏ । ଏହା ଆଚାର୍ଯ୍ୟ ଆଶ୍ମରଥ୍ୟ ସ୍ୱୀକାର କରିଛନ୍ତି ।

## अनुस्मृतेर्वादरिः ॥ ३० ॥

## (୧) ଅନୁସ୍ମୃତେର୍ବାଦରିଃ ॥ ୧-୨-୩୦ ॥

ଅନୁସ୍ମୃତେଃ-ପ୍ରଦେଶମାତ୍ର ପରିମାଣଥିବା ହୃଦୟରେ ରହିଥିବା ମନଦ୍ୱାରା ଧ୍ୟେୟ ହେବା ପାଇଁ ପରମେଶ୍ୱର ପ୍ରଦେଶମାତ୍ର କୁହାଯାଉଛି । ବାଦରିଃ-ଏହା ଆଚାର୍ଯ୍ୟ ବାଦରିଙ୍କର ମତ ।

(୨) ମୂଳ-(କ) ପ୍ରାଦେଶ ମାତ୍ର ହୃଦୟ ପ୍ରତିଷ୍ଠେନ ବାଽୟଂ ମନସାଽ-ନୁସ୍ମର୍ଯ୍ୟତେ, ତେନ ପ୍ରଦେଶମାତ୍ର ଇତ୍ୟୁଚ୍ୟନ୍ତେ । ଯଥା ପ୍ରସ୍ଥମିତା ଯବାଃ ପ୍ରସ୍ଥା ଇତ୍ୟୁଚ୍ୟତେ ତଦ୍ୱତ୍ । (ଖ) ଯଦ୍ୟପି ଚ ଯବେଷୁ ସ୍ୱଗତମେବ ପରିମାଣଂ ପ୍ରସ୍ଥସମ୍ବନ୍ଧାତ୍ ବ୍ୟଜାତେ, ନ ଚେହ ପରମେଶ୍ୱରଗତଂ କିଞ୍ଚିତ୍ପରିମାଣମସ୍ତି, ଯଦ୍ହୃଦୟସମ୍ବନ୍ଧାତ୍ ବ୍ୟଜତେ । (ଗ) ତଥାପି ପ୍ରଯୁକ୍ତାୟାଃ ପ୍ରାଦେଶମାତ୍ରଶ୍ରୁତେଃ ସମ୍ଭବତି, ଯଥା କଥଂଚିଦ୍ନୁସ୍ମରଣମ ଲମ୍ବନମିତ୍ୟୁଚ୍ୟତେ, ପ୍ରଦେଶମାତ୍ରତ୍ୱେନ ବାୟମପ୍ରାଦେଶମାତ୍ରୋଽ-ପ୍ୟନୁସ୍ମରଣୀୟଃ ପ୍ରାଦେଶମାତ୍ର ଶ୍ରୁତ୍ୟର୍ଥବତ୍ତାୟୈ । ଏବମନୁସ୍ମୃତିନିମିତ୍ତା ପରମେଶ୍ୱରେ ପ୍ରାଦେଶମାତ୍ରଶ୍ରୁତିରିତି ବାଦରିରାଚାର୍ଯ୍ୟୋ ମନ୍ୟତେ ।

**(୨) ଭାଷାଂତର-** (କ) ପ୍ରାଦେଶମାତ୍ର ହୃଦୟସ୍ଥିତ ମନରେ ଏହି ପରମେଶ୍ୱର ସ୍ମରଣ କରାଯାଏ । ତେଣୁ ସେ ପରମେଶ୍ୱରକୁ ପ୍ରଦେଶମାତ୍ର କୁହାଯାଏ । ଯେପରି ପ୍ରସ୍ଥପରିମିତଯବକୁ ପ୍ରସ୍ଥା କୁହାଯାଏ । ସେପରି ଏହା ମଧ୍ୟ ।



(ଖ) ଯଦ୍ୟପି ଯବର ନିଜର ପରିମାଣ ହିଁ ପ୍ରସ୍ଥସମ୍ବନ୍ଧଦ୍ୱାରା ଅଭିବ୍ୟକ୍ତ ହୁଏ, ପରନ୍ତୁ ଏଠାରେ ପରମେଶ୍ୱରଗତ କୌଣସି ପରିମାଣ ନାହିଁ, ଯାହାକି ହୃଦୟସମ୍ବନ୍ଧରେ ବ୍ୟକ୍ତ ହୋଇପାରେ ।

(ଗ) ତଥାପି ପରମେଶ୍ୱରର ଧ୍ୟାନରେ ପ୍ରଯୁକ୍ତ ହେଉଥିବା ପ୍ରଦେଶମାତ୍ର ଶ୍ରୁତିର କୌଣସି ପ୍ରକାରରେ ଆଲମ୍ବନ ହୋଇପାରେ, ତେଣୁ ଏପରି କୁହାଗଲା । ଅଥବା ଅନ୍ୟ ଅର୍ଥରେ ପ୍ରଦେଶମାତ୍ରଶ୍ରୁତିର ସାର୍ଥକ ପାଇଁ ପ୍ରଦେଶମାତ୍ର ନହେଲେ ମଧ୍ୟ ଏହି ପରମେଶ୍ୱରର ପ୍ରଦେଶମାତ୍ରରୂପରେ ହୃଦୟରେ ସ୍ମରଣ କରାଯାଏ । ଏହିପ୍ରକାର ପ୍ରାଦେଶମାତ୍ରଶ୍ରୁତି ପରମେଶ୍ୱରର ଆରାଧନା ନିମିତ୍ତ ବାଦରି ଆଚାର୍ଯ୍ୟ ସ୍ୱୀକାର କରିଛନ୍ତି ।

## संपत्तेरित जैमिनिस्तथाहि दर्शयति ॥ ३१ ॥

## (୧) ସମ୍ପତ୍ତେରିତି ଜୈମିନିସ୍ତଥା ହି ଦର୍ଶୟତି । ୧-୨-୩୧

ସମ୍ପତ୍ତେଃ-ମୁଣ୍ଡଠାରୁ ଓଠ ପର୍ଯ୍ୟନ୍ତ ପ୍ରଦେଶମାତ୍ରସ୍ଥାନରେ ସମ୍ପତ୍ତି ଦ୍ୱାରା ବୈଶ୍ୱାନରକୁ ଉପାସ୍ୟରୂପେ ପ୍ରତିପାଦନ କରିବା ଦ୍ୱାରା ପରମେଶ୍ୱରଠାରେ ମଧ୍ୟ ପ୍ରଦେଶମାତ୍ରତ୍ୱ ଯୁକ୍ତ ହୁଏ । ଏହା, ଜୈମିନିଃ-ଜୈମିନିଆଚାର୍ଯ୍ୟଙ୍କର ମତ । ତଥାହି ଦର୍ଶୟତି-ସେପରି ମଧ୍ୟ ବାଜସନେୟୀ-ବ୍ରାହ୍ମଣ ମୁଣ୍ଡଠାରୁ ଓଠପର୍ଯ୍ୟନ୍ତ ସ୍ଥାନରେ ବୈଶ୍ୱାନରକୁ ସମ୍ପାଦନ କରି ପ୍ରଦେଶମାତ୍ର ସମ୍ପତ୍ତିକୁ ପରମାତ୍ମାଠାରେ ପ୍ରମାଣ କରନ୍ତି ।

(୨) ମୂଳ-(କ) ସମ୍ପତ୍ତିନିମିତ୍ତା ବା ସ୍ୟାତ୍ ପ୍ରଦେଶମାତ୍ରଶ୍ରୁତିଃ । କୁତଃ ? ତଥାହି ସମାନପ୍ରକରଣଂ ବାଜସେୟିବ୍ରାହ୍ମଣଂ ଦ୍ୟୁପ୍ରଭୃତୀନ୍ ପୃଥିବୀପର୍ଯ୍ୟାନ୍ତାଂସ୍ତ୍ରୈଲୋ-କ୍ୟାତ୍ମନୋ ବୈଶ୍ୱାନରସ୍ୟାବୟବାନଧ୍ୟାତ୍ମମୂର୍ଧପ୍ରଭୃତିଷୁ ଚୁବୁକପର୍ଯ୍ୟନ୍ତେଷୁ ଦେହାବୟବେଷୁ ସମ୍ପାଦୟତ୍ପ୍ରଦେଶମାତ୍ର ସମ୍ପତ୍ତିଂ ପରମେଶ୍ୱରସ୍ୟ ଦଶୟତି- (ଖ) 'ପ୍ରାଦେଶମାତ୍ରମିବ ବୈ ଦେବାଃ ସୁବିଜିତା ଅଭିସମ୍ପନ୍ନାସ୍ତଥା ନୁ ବ ଏତାନ୍ ବକ୍ଷ୍ୟାମି ଯଥା ପ୍ରାଦେଶମାତ୍ରମେବା-ଭିସମ୍ପାଦୟିଷ୍ୟାମୀତି । ସ ହୋବାଚ-ମୂର୍ଧାନ୍ନୁ ପଦିଶନ୍ନୁ ବା ଚୈଷ ବୈ ପୃଥଗ୍‌ବର୍ମାତ୍ମା ବୈଶ୍ୱାନର ଇତି । ଚକ୍ଷୁଷୀ ଉପଦିଶନ୍ନୁ ବା ଚୈଷ ବୈ ସୁତେଜା ବୈଶ୍ୱାନର ଇତି । ନାସିକେ ଉପଦିଶନ୍ନୁବା ଚୈଷ ବୈ ପୃଥଗ୍‌ବର୍ମାତ୍ମା ବୈଶ୍ୱାନର ଇତି । ମୁଖ୍ୟମାକାଶମୁପଦିଶନ୍ନୁ ବା ଚୈଷ ବୈ ବହୁଲୋ ବୈଶ୍ୱାନର ଇତି । ମୁଖ୍ୟା ଅପ ଉପଦିଶନ୍ନୁ ବା ଚୈଷ ବୈ ରୟିର୍ବୈଶ୍ୱାନର ଇତି । ଚବୁକମୁପଦିଶନ୍ନୁ ବା ଚୈଷ ବୈ ପ୍ରତିଷ୍ଠା ବୈଶ୍ୱାନର ଇତି ।' ଚୁବୁକମିତ୍ୟଧରଂ ମୁଖଫଳକମିତ୍ୟୁଚ୍ୟତେ । (ଗ) ଯଦ୍ୟପି ବାଜସନେୟକେ

ଦ୍ୟୌରତିଷ୍ଠାଦ୍‌ଗୁଣା ସମାମ୍ନାୟତେ, ଆଦିତ୍ୟଶ୍ଚ ସୁତେଜସ୍ତ୍ୱଗୁଣଃ । ଛାନ୍ଦୋଗ୍ୟେ ପୁନର୍ଦ୍ୟୌଃ ସୁତେଜସ୍ତ୍ୱଗୁଣା ସମାମ୍ନାୟତେ । ଆଦିତ୍ୟଶ୍ଚ ବିଶ୍ୱରୂପତ୍ୱଗୁଣଃ । (ଘ) ତଥାପି ନୈତାବତା ବିଶେଷେଣ କିଂଚିତ୍ ହୀୟତେ, ପ୍ରାଦେଶମାତ୍ରଶ୍ରୁତେରବିଶେଷାତ୍, ସର୍ବଶାଖା ପ୍ରତ୍ୟୟତ୍ୱାଚ୍ଚ । ସମ୍ପତ୍ତିନିମିତ୍ତାଂ ପ୍ରାଦେଶମାତ୍ରଶ୍ରୁତିଂ ଯୁକ୍ତତରାଂ ଜୈମିନିରାଚାର୍ଯ୍ୟୋ ମନ୍ୟତେ ।

(୨) ଭାଷାଂତର- (କ) ପ୍ରାଦେଶମାତ୍ରଶ୍ରୁତି ସମ୍ପତ୍ତିନିମିତ୍ତକ ହୋଇପାରେ । କାରଣ- ଏହି ପ୍ରକାର ସମାନ ପ୍ରକରଣ ଥିବା ବାଜସନେୟିବ୍ରାହ୍ମଣ ଦ୍ୟୁଆଦିଲୋକଠାରୁ ପୃଥିବୀ ପର୍ଯ୍ୟନ୍ତ ତ୍ରୈଲୋକ୍ୟ ସ୍ୱରୂପ ବୈଶ୍ୱାନରର ଅବୟବକୁ, ଆଧାତ୍ମର ମୁଣ୍ଡଠାରୁ ଓଠପର୍ଯ୍ୟନ୍ତ ଦେହିକ ଅବୟବରେ ସମ୍ପାଦନା କରି ପରମେଶ୍ୱରର ପ୍ରାଦେଶମାତ୍ର ସମ୍ପତ୍ତିକୁ ଦେଖାଏ ।

(ଖ) ପୂର୍ବକାଳରେ ଦେବତା ଅପରିଚ୍ଛିନ୍ନ ଈଶ୍ୱରକୁ ମଧ୍ୟ ସମ୍ପତ୍ତି ଦ୍ୱାରା ପ୍ରଦେଶ ମାତ୍ର ଭଳି ଜାଣି ପାଆନ୍ତି । ଯେପରିକି ମୁଁ ବୈଶ୍ୱାନରକୁ ପ୍ରଦେଶମାତ୍ର ସମ୍ପାଦନା କରିପାରେ, ସେପରି ଏହି ଦ୍ୟୁଲୋକାଦି ଅବୟବକୁ କହୁଛି ।' ତେଣୁ ସେ କହିଲା, - 'ମସ୍ତକକୁ ଉପଦେଶ କରି ତାହାଦ୍ୱାରା ନିଶ୍ଚିତ ଏହି ମୋରମସ୍ତକ ଭୂଆଦିଲୋକଠାରୁ ଉପରେ ଅଛି । ତେଣୁ ଦ୍ୟୁଲୋକ ବୈଶ୍ୱାନର ଅଟେ । ଚକ୍ଷୁକୁ ଉପଦେଶ କରି କହିଲା, -'ଏହା ନିଶ୍ଚିତ ଭାବରେ ଅତ୍ୟନ୍ତ ତେଜସ୍ୱୀ ବୈଶ୍ୱାନର ଅଟେ । ନାସିକାକୁ ଉପଦେଶ ଦେଇ କହିଲା- 'ଭିନ୍ନଭିନ୍ନ ଗତିଶୀଳବାୟୁ ବୈଶ୍ୱାନର ଅଟେ । ମୁଖସ୍ଥ ଆକାଶକୁ ଉପଦେଶ ଦେଇ ଏହା ବ୍ୟାପକ ବୈଶ୍ୱାନର ବୋଲି କୁହାଯାଇଛି । ଓଠକୁ ଉପଦେଶ ଦେଇ ଏହା ରୟି ରୂପଜଳ ବୈଶ୍ୱାନର ବୋଲି କୁହାଯାଇଛି ।'' ମୁହଁର ନିମ୍ନଭାଗକୁ ଚିବୁକ ଅର୍ଥାତ୍ ମୁଖଫଳକ ବୋଲି କୁହାଯାଇଛି ।

(ଗ) ଯଦ୍ୟପି ବାଜସନେୟ ଦ୍ୟୁଲୋକକୁ ଅତିଷ୍ଠତ୍ୱ (ଉପରେ ଥିବା) ଗୁଣୀ ଏବଂ ଆଦିତ୍ୟକୁ ସୁତେଜସ୍ତ୍ୱଗୁଣୀ ବୋଲି କୁହାଯାଇଛି ।

(ଘ) ତଥାପି ଏପରି ବିଶେଷଣ ଦ୍ୱାରା କିଛି କ୍ଷତି ହୁଏ ନାହିଁ । କାରଣ-ପ୍ରାଦେଶମାତ୍ର ଶ୍ରୁତି ସମାନ ଏବଂ ସମସ୍ତ ଶାଖାରେ ପ୍ରତୀୟମାନ ବୈଶ୍ୱାନର ଉପାସନା ସମାନ ଏକ ଅଟେ । ଅତଃ ପ୍ରାଦେଶମାତ୍ର ଶ୍ରୁତିକୁ ସମ୍ପତ୍ତି ନିମିତ୍ତକ ବୋଲି ସ୍ୱୀକାର ହିଁ ବିଶେଷଯୁକ୍ତ ଅଟେ ବୋଲି ଜୈମିନି ଆଚାର୍ଯ୍ୟଙ୍କର ମତ ଅଟେ ।

## आमनन्ति चैनमस्मिन् ॥ ३२ ॥

## (୧) ଆମନନ୍ତି ଚୈନମସ୍ମିନ୍ ॥ ୧-୨-୩୨ ॥

ଆମନନ୍ତି-ଜାବାଳଶାଖାନୁଯାୟୀ କହନ୍ତି, ଅସ୍ମିନ୍-ପ୍ରଦେଶପରିମାଣରେ ମସ୍ତକ ଏବଂ ଓଠ ମଧ୍ୟରେ, ଏନମ୍-ପରମେଶ୍ୱରର ଉପାସନା କରିବା ଉଚିତ୍ ।



(୨) ମୂଳ-(କ) ଆମନ୍ତନି ଚୈନଂ ପରମେଶ୍ୱରମସ୍ମିନ୍ ମୂର୍ଧଚୁବୁକାନ୍ତରାଳେ ଜାବାଳାଃ-'ଯ ଏଷୋଽନନ୍ତୋବ୍ୟକ୍ତ ଆତ୍ମା, ସୋଽବିମୁକ୍ତେ ପ୍ରତିଷ୍ଠିତ ଇତି । କା ବୈ ବରଣା କା ଚ ନାସୀତି,' (ଜାବାଳ-୧) (ଖ) ତତ୍ର ତ୍ରେମାବେବ ନାସିକାଂ ଯା ସର୍ବାଣୀନ୍ଦ୍ରୟକୃତାନି ପାପାନି ବାରୟତୀତି ସା ବରଣା, ସର୍ବାଣିନ୍ଦ୍ରିୟକୃତାନି ପାପାନି ନାଶୟତୀତି ସା ନାସୀତି ବରଣା ନାସୀତି ନିରୁଚ୍ୟ ପୁନରପ୍ୟାମନନ୍ତି- (ଗ) କତମଣ୍ଟାସ୍ୟ ସ୍ଥାନଂ ଭବତୀତି ଭ୍ରୁବୋ ଘାଣସ୍ୟ ଚ ଯଃ ସନ୍ଧିଃ, ସ ଏଷ ଦ୍ୟୁଲୋକସ୍ୟ ପରସ୍ୟ ଚ ସନ୍ଧି ଭବତୀତି', (ଜାବା-୧), ତସ୍ମାଦୁପପନ୍ନା ପରମେଶ୍ୱରେ ପ୍ରାଦେଶମାତ୍ରଶ୍ରୁତିଃ ।

(୨) ଭାଷାଂତର-(କ) ଜାବାଳ ଶାଖାନୁଯାୟୀ ଏହି ମସ୍ତକ ଓ ଓଠମଧ୍ୟରେ ପରମେଶ୍ୱରର ସ୍ଥାନ କୁହାଯାଇଛି । 'ଯାହା ସେହି ଅନନ୍ତ, ଅପରିଚ୍ଛିନ୍ନ, ଅବ୍ୟକ୍ତ ଆତ୍ମା ଅଟେ, ସେ ଜୀବରେ ପ୍ରତିଷ୍ଠିତ ହୁଏ । ସେ ଜୀବ କେଉଁଠି ପ୍ରତିଷ୍ଠିତ ? ବରଣା ଓ ନାସିକ ମଧ୍ୟରେ ପ୍ରତିଷ୍ଠିତ । ବରଣା ଓ ନାସିକ ତେବେ କଣ ?

(ଖ) ସେଠାରେ ସେହି ଭ୍ରୁବ ସହିତ ନାସିକାର ବରଣା ଓ ନାସିକର ବିବେଚନା କରାଯାଏ । ଯାହା ଇନ୍ଦ୍ରିୟକୃତ ସମସ୍ତ ପାପକୁ ନାଶ କରେ ସେ ନାସିକା ଅଟେ । ଏପରି ନିରୂପଣ କରି ପୁଣି କୁହାଯାଇଛି-

(ଗ) 'ଏହା କେଉଁସ୍ଥାନ ଅଟେ, ଭ୍ରୁ ଓ ନାସିକାର ଯେଉଁ ସନ୍ଧିସ୍ଥଳ, ସେ ଏହି ଦ୍ୟୁଲୋକ ଏବଂ ପରଲୋକର ସନ୍ଧି ଅଟେ ।' ତେଣୁ ପରମେଶ୍ୱରରେ ପ୍ରଦେଶମାତ୍ରଶ୍ରୁତି ଉପପନ୍ନ ହୁଏ ।

(୩) ମୂଳ-(କ) ଅଭିବିମାନଶ୍ରୁତିଃ ପ୍ରତ୍ୟାଗାତ୍ମତ୍ୱାଭିପ୍ରାୟା । ପ୍ରତ୍ୟଗାତ୍ମତୟା ସର୍ବୈଃ ପ୍ରାଣିଭିରଭିବିମୀୟତେ ଇତ୍ୟଭିବିମାନଃ । ଅଭିଗତୋ ବାଽୟଂ ପ୍ରତ୍ୟଗାତ୍ମତ୍ୱାଦ୍ ବିମାନଶ୍ଚ ମାନବିଯୋଗାଦିତ୍ୟଭିବିମାନଃ । ଅଭିବିମିମୀତେ ବା ସର୍ବଂ ଜଗତ୍କାରଣତ୍ୱାଦିତ୍ୟଭିବିମାନଃ । ତସ୍ମାତ୍ ପରମେଶ୍ୱରୋ ବୈଶ୍ୱାନର ଇତି ସିଦ୍ଧମ୍ ।

(୩) ଭାଷାଂତର- (କ) ଅଭିବିମାନଶ୍ରୁତି ପ୍ରତ୍ୟଗାତ୍ମାର ଅଭିପ୍ରାୟ ଦ୍ୱାରା ହୁଏ । ପ୍ରତ୍ୟଗାତ୍ମାରୂପରେ ସବୁପ୍ରାଣୀ ଯାହାକୁ ଜାଣିପାରନ୍ତି, ସେ ଅଭିବିମାନ । ଅଥବା ପ୍ରତ୍ୟଗାତ୍ମରୂପରେ ଅଭିମତ ଏବଂ ବିମାନ (ପରିମାଣରହିତ) ହେଲେ ସେ ଅଭିବିମାନ ହୁଏ । ଅଥବା ଜଗତର କାରଣ ହେଲେ ସେ ସବୁର ନିର୍ମାଣ ହୁଏ । ତେଣୁ ଅଭିବିମାନ । ଏହାଦ୍ୱାରା ପରମେଶ୍ୱର ବୈଶ୍ୱାନରରୂପରେ ସିଦ୍ଧ ହୁଏ ।

## प्रथमाध्याये तृतीयः पादः ।

## ପ୍ରଥମୋଽଧ୍ୟାୟ ତୃତୀୟ ପାଦ

### १ द्युभ्वाद्यधिकरणम् । सू० १ - ७

### ଦ୍ୟୁଭ୍ୱାଦ୍ୟଧିକରଣ - ୧

**द्युभ्वाद्यायतनं स्वशव्दात् ॥ १ ॥**

**(୧) ଦ୍ୟୁଭ୍ୱାଦ୍ୟାୟତନଂ ସ୍ୱଶବ୍ଦାତ୍ ॥ ୧-୩-୧**

ଦ୍ୟୁଭ୍ୱାଦ୍ୟାୟତନମ୍ = 'ଯସ୍ମିନ୍ ଦ୍ୟୌଃ ପୃଥିବୀ ଚାନ୍ତରିକ୍ଷମୋତମ୍', ଇତ୍ୟାଦି 'ବେଦବାକ୍ୟରେ ଦ୍ୟୁଲୋକ, ଭୂଗୋଳ, ଅନ୍ତରିକ୍ଷାଦିଲୋକ ଯେଉଁଠାରେ କଳ୍ପିତ ହୁଏ, ସେ ପ୍ରତୀୟମାନ ଆଶ୍ରୟ ବ୍ରହ୍ମ ଅଟେ । କାରଣ-ବ୍ରହ୍ମର ବାଚକ-ଆତ୍ମଶବ୍ଦ ଶ୍ରୁତିରେ ହିଁ ଅଛି ।

(୨) ମୂଳ-(କ) ଇଦଂ ଶ୍ରୂୟତେ-ଯସ୍ମିନ୍ଦ୍ୟୌଃ ପୃଥିବୀ ଚାନ୍ତରୀକ୍ଷମୋତଂ ମନଃ ସହ ପ୍ରାଣୈଶ୍ଚ ସର୍ବୈଃ । ତମେବୈକଂ ଜାନଥ ଆତ୍ମନମନ୍ୟା ବାଚେ ବିମୁଞ୍ଚଥା ମୃତସ୍ୟୈବ ସେତୁଃ'' (ମୁଣ୍ଡ ୨-୨-୫) ଇତ୍ୟତ୍ର ଯଦେତ ଦ୍ୟୁପ୍ରଭୃତୀନାମୋତତ୍ୱ-ବଚନାଦାୟତନଂ କିଞ୍ଚିଦବଗମ୍ୟତେ । (ଖ) ତତ୍କିଂ ପରଂବ୍ରହ୍ମ ସ୍ୟାତ୍ ଆହୋସ୍ୱି ଦର୍ଥାନ୍ତରମିତି ସନ୍ଦିହ୍ୟତେ । (ଗ) ତତ୍ରାର୍ଥାନ୍ତରଂ କିମପ୍ୟାୟତନଂ ସ୍ୟାଦିତି ପ୍ରାପ୍ତମ୍ । କସ୍ମାତ୍ ? 'ଅମୃତସ୍ୟୈଷଃ ସେତୁଃ' ଇତିଶ୍ରବଣାତ୍ । ପାରାବାନ୍ ହି ସେତୁ ପ୍ରଖ୍ୟାତଃ । ନ ଚ ପରସ୍ୟ ବ୍ରହ୍ମଣଃ ପାରାବତ୍ୱଂ ଶକ୍ୟମଭ୍ୟୁପଗନ୍ତୁଂ 'ଅନନ୍ତମପାରମ୍', (ବୃହ ୨-୪-୧୨) ଇତିଶ୍ରବଣାତ୍ । ଅର୍ଥାନ୍ତରେ ଚାୟତନେ ପରିଗୃହ୍ୟମାଣେ ସ୍ମୃତିପ୍ରସିଦ୍ଧଂ ପ୍ରଧାନଂ ପରିଗ୍ରହୀତବ୍ୟମ୍, ତସ୍ୟ କାରଣତ୍ୱାଦାୟତନତ୍ୱୋପପତ୍ତେଃ । (ଘ) ଶ୍ରୁତି ପ୍ରସିଦ୍ଧୋ ବା ବାୟୁଃ ସ୍ୟାତ୍ । 'ବାୟୁର୍ବୈ ଗୌତମ ତତ୍ସୂତ୍ରଂ ବାୟୁନା ବୈ ଗୌତମସୂତ୍ରେଣାୟଂ ଚ ଲୋକଃ ପରଶ୍ଚ ଲୋକଃ ସର୍ବାଣି ଚ ଭୂତାନି ସଂଦୃବଧାନି ଭବନ୍ତି', (ବୃ ୩-୭-୨) ଇତି ବାୟୋରପି ବିଧାରଣତ୍ୱଶ୍ରବଣାତ୍ । ଶାରୀରୋ ବା ସ୍ୟାତ୍ । ତସ୍ୟାପି ଭୋକ୍ତୃତ୍ୱାଦ୍ଭୋଗ୍ୟଂ ପ୍ରପଞ୍ଚଂ ପ୍ରତ୍ୟାୟତନତ୍ୱୋପପତ୍ତେରିତି ।



**(୨) ଭାଷାଂତର-** (କ) 'ଯେଉଁଠାରେ ଦ୍ୟୁଲୋକ, ପୃଥିବୀ ଏବଂ ଅନ୍ତରୀକ୍ଷ ଓ ସମସ୍ତ ପ୍ରାଣ (ଇନ୍ଦ୍ରିୟ) ସହିତ ମନ ଗୁନ୍ଥା ହୋଇଛି, ସେହି ଏକ ଆତ୍ମାକୁ ଜାଣ, ସେ ସବୁ କଥାକୁ ଛାଡ଼ିଦିଅ, ଏହା ଅମୃତ ମୋକ୍ଷ ପ୍ରାପ୍ତିର ସେତୁ ସାଧନ ଅଟେ ।' - ଏହି ଅମୃତ ମୋକ୍ଷ ପ୍ରାପ୍ତିର ସେତୁ ସାଧନ ଅଟେ,'- ଏହି ବେଦବାକ୍ୟ । ଏହି ବେଦବାକ୍ୟରେ ଦ୍ୟୁଲୋକାଦିର ଓତପ୍ରୋତ କଥନ ଦ୍ୱାରା ଯେ କୌଣସି ଆଶ୍ରୟ ପ୍ରତୀତ ହୁଏ ।

(ଖ) ସେ କ'ଣ ପରଂବ୍ରହ୍ମ କି ଅନ୍ୟ କୌଣସି ପଦାର୍ଥ ? ଏହା ଉପରେ କିଛି ସନ୍ଦେହ ହେଉଛି ।

(ଗ) ପୂର୍ବପକ୍ଷ- ଏଠାରେ ଅନ୍ୟ କୌଣସି ପଦାର୍ଥ ଆଶ୍ରୟ ଅଟେ । ଏହା କିପରି ହୁଏ ? ଏହାଦ୍ୱାରା 'ସେ ଅମୃତର ସେତୁ ଅଟେ', ଏହି ବେଦବାକ୍ୟ । ସେତୁ ଅପରକୂଳ ପର୍ଯ୍ୟନ୍ତ ସମ୍ବନ୍ଧ ହୁଏ, କିନ୍ତୁ ପରଂବ୍ରହ୍ମରେ ପାରାବତ୍ୱ ସ୍ୱୀକାର କରାଯାଏ ନାହିଁ ବୋଲି ଏହା ସଂସାରରେ ପ୍ରସିଦ୍ଧ ଅଟେ । କାରଣ- 'ଅନନ୍ତମପାରମ୍', ଏହି ବେଦବାକ୍ୟ ଦ୍ୱାରା ସିଦ୍ଧ ହୁଏ । ଅନ୍ୟ ପଦାର୍ଥକୁ ଆଶ୍ରୟ ରୂପରେ ସ୍ୱୀକାର କରିବାକୁ ହେଲେ (ସାଂଖ୍ୟ) ସ୍ମୃତି ପ୍ରସିଦ୍ଧ ପ୍ରଧାନର ଗ୍ରହଣ କରାଯାଏ । କାରଣ- ସେ କାରଣ ହେଲେ ସମସ୍ତଙ୍କର ଆଶ୍ରୟ ହେବ ।

(ଘ) ଅଥବା ଶ୍ରୁତି ପ୍ରସିଦ୍ଧ ବାୟୁ ମଧ୍ୟ ଆଶ୍ରୟ ହୋଇପାରେ, କାରଣ- 'ହେ ଗୌତମ ବାୟୁ ହେଉଛି ସୂତ୍ର । ବାୟୁରୂପ-ସୂତ୍ର ଦ୍ୱାରା ଏହି ଲୋକ ପରଲୋକ, ଏବଂ ସମସ୍ତ ଭୂତ ସମୁଦାୟ ଗୁନ୍ଥା ହୋଇଛି । ଏହି ପ୍ରକାର ଶ୍ରୁତି ବାୟୁର ବିଧାରକର ପ୍ରମାଣ । ଅଥବା ଜୀବାତ୍ମା ମଧ୍ୟ ଆଶ୍ରୟ ହୋଇପାରେ । କାରଣ-ସେ ଭୋକ୍ତା ହେଲେ ଭୋଗ୍ୟପ୍ରପଞ୍ଚର ପ୍ରତି ଆଶ୍ରୟ ହେବ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ଇଦମାହ-ଦ୍ୟୁଭ୍ୱାଦ୍ୟାୟତନମିତି । ଦ୍ୟୌଶ୍ଚ, ଭୂଶ୍ଚ, ଦ୍ୟୁଭୁବୌ, ଦ୍ୟୁଭୁବାବାଦୀ ଯସ୍ୟ ତଦିଦଂ ଦ୍ୟୁଭ୍ୱାଦି । ଯଦେତଦସ୍ମିନ୍ ବାକ୍ୟେ ଦ୍ୟୌଃ ପୃଥିବ୍ୟନ୍ତରୀକ୍ଷଂ ମନ ପ୍ରାଣା ଇତ୍ୟେବମାତ୍ମକଂ ଜଗଦୋତତ୍ୱେନ ନିର୍ଦ୍ଦିଷ୍ଟଂ ତସ୍ୟାୟତନଂ ପରଂବ୍ରହ୍ମ ଭବିତୁମର୍ହତି । କୁତଃ ? ସ୍ୱଶବ୍ଦାତ୍ । ଆତ୍ମଶବ୍ଦାଦିତ୍ୟର୍ଥଃ । ଆତ୍ମଶବ୍ଦୋ ହୀହ ଭବତ- 'ତମେବୈକଂ ଜାନଥ ଆତ୍ମାନମିତି ।. ଆତ୍ମଶବ୍ଦଶ୍ଚ ପରମାତ୍ମ ପରିଗ୍ରହେ ସମ୍ୟଗବକଳ୍ପତେ, ନାର୍ଥାନ୍ତରପରିଗ୍ରହେ । (ଖ) କ୍ୱଚିଚ୍ଚ ସ୍ୱଶବ୍ଦେନୈବ ବ୍ରହ୍ମଣ ଆୟତନତ୍ୱଂ ଶ୍ରୂୟତେ- 'ସନ୍ମୂଳାଃ ସୋମ୍ୟେମାଃ ସର୍ବାଃ ପ୍ରଜାଃ ସଦାୟତନାଃ ସତ୍ପ୍ରତିଷ୍ଠା' (ଛା ୬-୮-୪) ଇତି ।

**(୩) ଭାଷାଂତର-** (କ) ସିଦ୍ଧାନ୍ତ-ଏହାପରେ କୁହାଯାଇଛି- 'ଦ୍ୟୁଭ୍ୱାଦ୍ୟାୟତମ' ଇତି । ଦ୍ୟୌଶ୍ଚ ଭୂଶ୍ଚ ଦ୍ୟୁଭୁବୌ । ଦ୍ୟୁଭୂବୌ ଆଦି ଯାହାର ଦ୍ୟୁଭ୍ୱୁବାଦି । ଏହି ବାକ୍ୟରେ ଦ୍ୟୁ, ପୃଥିବୀ, ଅନ୍ତରିକ୍ଷ, ପ୍ରାଣ, ମନ ଆଦି ସ୍ୱରୂପ, ଯାହା ସଂସାରରେ

ଓତପ୍ରୋତଭାବେ ଜଡ଼ିତ । ଏହାର ଆଶ୍ରୟ ପରଂବ୍ରହ୍ମ ହୋଇପାରେ, କାରଣ-ଏହା ସ୍ୱଶବ୍ଦ ଅର୍ଥାତ୍ ଆତ୍ମଶବ୍ଦ ଯୋଗୁଁ । ଯେଉଁଠାରେ 'ସେହି ଏକ ଆତ୍ମାକୁ ଜାଣ', ଏହି ବେଦବାକ୍ୟରେ ଆତ୍ମଶବ୍ଦର ପ୍ରୟୋଗ ହେଉଛି ଏବଂ ଆତ୍ମଶବ୍ଦକୁ ପରମାତ୍ମାରେ ଗ୍ରହଣ କରିବାରେ ଠିକ୍ ଭାବରେ ଉପପନ୍ନ ହୁଏ । ଅନ୍ୟ ପଦାର୍ଥ (ଜୀବପ୍ରଧାନାଦି)ର ଗ୍ରହଣ କରିବାରେ ଉପଯୋଗ ହୁଏ ନାହିଁ ।

(ଖ) କୌଣସିଠାରେ 'ହେ ସୋମ୍ୟ ! ଏହି ପ୍ରକାର ସବୁ ପ୍ରଜା ସନ୍ ମୂଳକ ଅଟେ । ସତ୍ କେବଳ ଏହାର ଆଶ୍ରୟ ଅଟେ ଏବଂ ସତ୍ ହିଁ ପ୍ରତିଷ୍ଠା ଅର୍ଥାତ୍ ସତ୍ ହିଁ ପ୍ରଜାର ଉତ୍ପତ୍ତିରେ କାରଣ ହୁଏ, ସ୍ଥିତିରେ ଆଶ୍ରୟ ଓ ଲୟରେ ପ୍ରତିଷ୍ଠା ହୁଏ,' ଏହି ପ୍ରକାର ବେଦବାକ୍ୟ ସ୍ୱଶବ୍ଦଦ୍ୱାରା ବ୍ରହ୍ମକୁ ଆୟତନ ବୋଲି କହେ ।

(୪) ମୂଳ-(କ) ସ୍ୱଶବ୍ଦେନୈବ ଚେହ ପୁରସ୍ତାଦୁପରିଷ୍ଟାଚ୍ଚ ବ୍ରହ୍ମ ସଂକୀର୍ତ୍ତ୍ୟତେ- 'ପୁରୁଷ ଏବେଦଂ ବିଶ୍ୱଂ କର୍ମ ତପୋ ବ୍ରହ୍ମ ପରାମୃତମ୍', ଇତି । 'ବ୍ରହ୍ମୈବେଦମମୃତଂ ପୁରସ୍ତାଦ୍ ବ୍ରହ୍ମ, ପଶ୍ଚାଦ୍‌ବ୍ରହ୍ମ, ଦକ୍ଷିଣତଶ୍ଚୋତ୍ତରେଣ', (ମୁଣ୍ଡ ୨।୨।୧୧) ଇତି ଚ । ତତ୍ର ତ୍ୱାୟତନାୟତନବଦ୍‌ଭାବଶ୍ରବଣାତ୍ । (ଖ) ସର୍ବଂ ହି ବ୍ରହ୍ମେତି ଚ ସାମାନାଧିକର-ଣ୍ୟାତ୍ । ଯଥାନେକାତ୍ମକୋ ବୃକ୍ଷା ଶାଖା ସ୍କନ୍ଧୋ; ମୂଳଂ ଚେତ୍ୟେବଂ ନାନାରସୋ ବିଚିତ୍ର ଆତ୍ମେତ୍ୟାଶଙ୍କା ସମ୍ଭବତି । (ଗ) ତାଂ ନିବର୍ତ୍ତୟିତୁଂ ସାବଧାରଣାହ- 'ତମେବୈକଂ ଜାନଥ ଆତ୍ମାନମ୍', ଇତି । ଏତଦୁକ୍ତଂ ଭବତି-ନ କାର୍ଯ୍ୟପ୍ରପଞ୍ଚବିଶିଷ୍ଟୋ ବିଚିତ୍ର ଆତ୍ମା ବିଜ୍ଞେୟଃ । କିଂ ତର୍ହି ? ଅବିଦ୍ୟାକୃତଂ କାର୍ଯ୍ୟପ୍ରପଞ୍ଚଂ ବିଦ୍ୟୟା ପ୍ରବିଳାପୟନ୍ତସ୍ତମେବୈ କମାୟତନଭୂତମାତ୍ମାନଂ ଜାନଥୈକରସମିତି । ଯଥା ଯସ୍ମିନ୍ନାସ୍ତେ ଦେବଦତ୍ତସ୍ତଦାନୟେତ୍ୟୁକ୍ତ ଆସନମେବାନୟତି ନ ଦେବଦତ୍ତମ୍, ତଦ୍‌ବଦାୟତନଭୂତସ୍ୟୈବୈକରସସ୍ୟାତ୍ମନୋ ବିଜ୍ଞେୟତ୍ୱମୁପଦିଶ୍ୟତେ ।

**(୪) ଭାଷାଂତର-** (କ) 'ପୁରୁଷ କେବଳ କର୍ମ ଓ ତପ ଅଟେ । ପର ଓ ଅମୃତ ରୂପ ବ୍ରହ୍ମ ଅଟେ', 'ଏହି ଅମୃତରୂପ ବ୍ରହ୍ମ ଆଗରେ, ବ୍ରହ୍ମ ପଛରେ, ବ୍ରହ୍ମ ଦକ୍ଷିଣ ଓ ବ୍ରହ୍ମ ଉତ୍ତରରେ ଅଛି' ଏହି ବେଦବାକ୍ୟରେ ଆଗରେ ଓ ପଛରେ ସ୍ୱଶବ୍ଦ ଦ୍ୱାରା ବ୍ରହ୍ମ ସଂକୀର୍ତ୍ତନ ହୁଏ ଏବଂ ଏହି ଶ୍ରୁତିମାନଙ୍କରେ ଆଧାର-ଆଧେୟ ଭାବରେ ବ୍ରହ୍ମ ଶ୍ରବଣ ହୁଏ ।

(ଖ) 'ସର୍ବଂ ବ୍ରହ୍ମ'- ଏହା କଣ ସାମାନାଧିକରଣ୍ୟ ଅଟେ, ତେଣୁ ଯେପରି ଶାଖା, ସ୍କନ୍ଧ ଓ ମୂଳ ଭେଦରେ ବୃକ୍ଷ ଅନେକାତ୍ମକ ସେପରି ନାନାରସ (ଭିନ୍ନଭିନ୍ନ) ସ୍ୱରୂପ ଥିବା ବିଚିତ୍ର ଆତ୍ମା ଅଟେ । ଏହିପରି ଆଶଙ୍କା ହୋଇପାରେ ।



(ଗ) ଏହାର ନିବାରଣ ପାଇଁ 'ତମେବୈକଂ ଜାନଥ' ଏହି ପ୍ରକାର ସାବଧାରଣ ଶ୍ରୁତି କହେ । ଏହାର ତାତ୍ପର୍ଯ୍ୟ ହେଉଛି-କାର୍ଯ୍ୟ ପ୍ରପଞ୍ଚ ବିଶିଷ୍ଟ ବିଚିତ୍ର ଆତ୍ମା ବିଜ୍ଞେୟ ନୁହେଁ । କିନ୍ତୁ ଅବିଦ୍ୟାକୃତ କାର୍ଯ୍ୟ ପ୍ରପଞ୍ଚର ବିଦ୍ୟାଦ୍ୱାରା ବାଧାପାଇ ଆୟତନଭୂତ ଏକ ରସପୂର୍ଣ୍ଣ ଏକ ଆତ୍ମାକୁ ଜାଣ । ଯେପରି 'ଯାହା ଉପରେ ଦେବଦତ୍ତ ବସିଛି, ତାହାକୁ ଆଣ' । ଏହା କହି ସାରିଲା ପରେ ଆସନକୁ ଆଣେ, କିନ୍ତୁ ଦେବଦତ୍ତକୁ ନୁହେଁ । ସେପରି ମଧ ଆଶ୍ରୟଭୂତ ଏକରସ ଆତ୍ମା ବିଜ୍ଞେୟରୂପରେ ଉପଦିଷ୍ଟ ହୁଏ ।

(୫) ମୂଳ- (କ) ବିକାରାନୃତାଭିସନ୍ଧସ୍ୟ ଚାପବାଦଃ ଶ୍ରୂୟତେ- 'ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି', (କା ୨।୪।୧୧) ଇତି । ସର୍ବଂ ବ୍ରହ୍ମେତି ତୁ ସାମାନାଧିକରଣ୍ୟଂ ପ୍ରପଞ୍ଚ ବିଲାପନାର୍ଥଂ ନାନେକରସତାପ୍ରତିପାଦନାର୍ଥମ୍ । 'ସ ଯଥା ସନ୍ଧୈବଘନୋଽନନ୍ତରୋ ବାହ୍ୟଃ କୃସ୍ନୋ ରସଧନଃ ଏବୈବଂ ବା ଅରେଽୟମାତ୍ମାନନ୍ତରୋଽବାହ୍ୟଃ କୃସ୍ନଃ ପ୍ରଜ୍ଞାନଘନ ଏବ', (ବୃହ ୪।୫।୧୩) ଇତ୍ୟେକରସତାଶ୍ରବଣାତ୍ । ତସ୍ମାଦ୍ଦ୍ୟୁଭ୍ୱଦ୍ୟା ୟତନଂ ପରଂବ୍ରହ୍ମ । (ଖ) ଯତ୍ତୁକ୍ତମ୍-ସେତୁଶ୍ରୁତେଃ ସେତୋଷ୍ଟ ପାରବତ୍ତ୍ୱୋପପତ୍ତେର୍ବ୍ରହ୍ମଣୋଽର୍ଥାନ୍ତରେଣ ଦ୍ୟୁଭ୍ୱାଦ୍ୟାୟ ତନେନ ଭବିତବ୍ୟମିତି । (ଗ) ଅତ୍ରୋଚ୍ୟତେ-ବିଧାରଣତ୍ୱମାତ୍ରମତ୍ର ସେତୁଶ୍ରୁତ୍ୟା ବିବକ୍ଷ୍ୟତେ ନ ପାରବତ୍ତ୍ୱାଦି । ନହି ମୃଦ୍ଦାରୁମୟୋ ଲୋକେ ସେତୁର୍ଦୃଷ୍ଟ ଇତ୍ୟତ୍ରାପି ମୃଦ୍ଦାରୁମୟ ଏବ ସେତୁରଭ୍ୟୁପଗମ୍ୟତେ । ସେତୁଶବ୍ଦାର୍ଥୋଽପି ବିଧାରଣତ୍ୱମାତ୍ରମେବ ନ ପାରବତ୍ତ୍ୱାଦି । ଷିଞ୍ଜୋ ବନ୍ଧନକର୍ମଣଃ ସେତୁଶବ୍ଦବ୍ୟୁତ୍ପତ୍ତେଃ ।

**(୫) ଭାଷାଂତର-** (କ) ମିଥ୍ୟାଶରୀରାଦିବିକାରରେ ଆତ୍ମାଭିମାନୀ କରୁଥିବା ଲୋକର 'ଯେଉଁ ଅଦ୍ୱିତୀୟ ବ୍ରହ୍ମରେ ସେ ଭେଦ ଦେଖେ, ସେ ମୃତ୍ୟୁଦ୍ୱାରା ମୃତ୍ୟୁ-ଜନ୍ମ ପରମ୍ପରାକୁ ପାଏ । ଏହି ପ୍ରକାର ନିନ୍ଦା ଶୁଣେ । ସର୍ବଂ ବ୍ରହ୍ମ-ଏହି ସାମାନ୍ୟଧିକରଣ୍ୟ କିନ୍ତୁ ପ୍ରପଞ୍ଚକୁ ବାଧାଦିଏ । ବ୍ରହ୍ମର ଅନେକରସତା ପ୍ରତିପାଦନ କରିବା ପାଇଁ କିଛି ନାହିଁ, କାରଣ- 'ଯେପରି ଲୁଣର ପାତ୍ର ଅନ୍ତର ଓ ବାହ୍ୟଠାରୁ ସମ୍ପୂର୍ଣ୍ଣ ପୃଥକ୍ ହୋଇ ସମ୍ପୂର୍ଣ୍ଣ ରସଘନ ହୁଏ । ହେ ମୈତ୍ରେୟୀ ! ଏହି ପ୍ରକାର ସେ ଆତ୍ମା ଅନ୍ତର ବାହ୍ୟ ଭେଦରେ ଶୂନ୍ୟ ସମ୍ପୂର୍ଣ୍ଣ ପ୍ରଜ୍ଞାନଘନ ଜ୍ଞାନୈକରସ ହୁଏ' । ଏହିପ୍ରକାର ଆତ୍ମା ଏକରସ (ଏକରୂପ)ରେ ଶୁଣାଯାଏ । ଅତେବ ଦ୍ୟୁଲୋକ ଭୂଲୋକାଦିର ଆୟତନ ପରଂବ୍ରହ୍ମ ଅଟେ ।

(ଖ) ଯାହା ଏଠାରେ କୁହାଯାଇଛି-ଶ୍ରୁତିରେ ସେତୁ ଶବ୍ଦ ଅଛି, ଏବଂ ସେତୁ ପାରାବାନ୍ ହୁଏ । ଅତଃ ଦ୍ୟୁଃ ଭୂଲୋକର ଆଶ୍ରୟ ବ୍ରହ୍ମଠାରୁ ଅନ୍ୟ କୌଣସି ପଦାର୍ଥ ହୋଇପାରେ ।

(ଗ) ଏହାର ଉତ୍ତରରେ କୁହାଯାଇଛି- ଏଠାରେ ଶ୍ରୁତି ସେତୁଦ୍ୱାରା ତାହାଠାରେ କେବଳ ବିଧାରଣତ୍ୱହିଁ ବିବକ୍ଷିତ ହୁଏ, ପାରାବତ୍ତ୍ୱାଦି ନୁହେଁ । ସଂସାରରେ ମାଟି ଓ କାଠରେ ବନ୍ଧ ନିର୍ମାଣ ହେବା ଦେଖାଯାଏ, ପରନ୍ତୁ ଏଠାରେ ମୃତ୍ତିକା ଓ ଦାରୁମୟ ନିମିର୍ତ ସ୍ୱୀକାର କରାଯାଇନାହିଁ । ତେଣୁ ସେତୁ ଶବ୍ଦର ଅର୍ଥ ମଧ୍ୟ ବିଧାରଣତ୍ୱ ହୁଏ, ପାରାବତ୍ତ୍ୱାଦି ନୁହେଁ । କାରଣ-ବନ୍ଧନାର୍ଥକ ଷିଞ୍ ଧାତୁରୁ ସେତୁ ଶବ୍ଦ ନିଷ୍ପନ୍ନ ହୁଏ ।

(୬) ମୂଳ-(କ) ଅପର ଆହ-'ତମେବୈକଂ ଜାନଥ ଆତ୍ମାନମ୍', ଇତି ଯଦେତତ୍‌ସଂକୀର୍ତ୍ତିତମାତ୍ମଜ୍ଞାନଂ, ଯଚ୍ଚୈତତ୍ ''ଅନ୍ୟା ବାଚୋ ବିମୁଞ୍ଚଥ', ଇତି ବାଗ୍‌ବିମୋଚନମ୍, ତଦତ୍ରା ମୃତତ୍ୱସାଧନତ୍ୱାତ୍ 'ଅମୃତସ୍ୟୈଷ ସେତୁଃ', ଇତି ସେତୁଶ୍ରୁତ୍ୟା ସଂକୀର୍ତ୍ତ୍ୟତେ, ନ ତୁ ଦ୍ୟୁଭ୍ୱାଦ୍ୟାୟତନମ୍ । ତତ୍ର ତଦୁକ୍ତଂ ସେତୁଶ୍ରୁତେର୍ବ୍ରହ୍ମଣୋଽର୍ଥାନ୍ତରେଣ ଦ୍ୟୁଭ୍ୱାଦ୍ୟାୟତନେନ ଭାବ୍ୟମିତ୍ୟେତଦ୍ ଯୁକ୍ତମ୍ ।

**(୬) ଭାଷାଂତର-** (କ) ଅନ୍ୟମାନେ କହନ୍ତି ଯେ- 'ସେହି ଏକ ଆତ୍ମାକୁ ତୁମେ ଜାଣ', ଏହି ପ୍ରକାର ଯେଉଁ ଆତ୍ମଜ୍ଞାନର ସଂକୀର୍ତ୍ତନ କରାଯାଇଛି, 'ସେ ସବୁ କଥାକୁ ଛାଡ଼ି ଦିଅ', ଏହି ଆତ୍ମଜ୍ଞାନାତିରିକ୍ତ ଅନାତ୍ମ ପଦାର୍ଥ ପ୍ରତିପାଦକ ଯେଉଁ ଅନ୍ୟ ବାଣୀର ବର୍ଣ୍ଣନା କରାଯାଇଛି, ସେ ସବୁର ଅମୃତତ୍ୱ ସାଧନ ହେତୁ 'ଅମୃତସ୍ୟୈଷ ସେତୁଃ', ଏହି ସେତୁ ଶ୍ରୁତିଦ୍ୱାରା ମଧ୍ୟ କୁହାଯାଇଛି । କିନ୍ତୁ ଦ୍ୟୁ, ଭୁପ୍ରଭୃତିଙ୍କର ଆୟତନରୂପରେ କୁହାଯାଇନାହିଁ । ଏଠାରେ ତେଣୁ ସେତୁ ଶ୍ରୁତିରୁ ବ୍ରହ୍ମର ଅନ୍ୟାର୍ଥଦ୍ୱାରା ଦ୍ୟୁ, ଭୂ ଇତ୍ୟାଦିର ଆୟତନଦ୍ୱାରା ଜଣାପଡ଼େ ବୋଲି କହିବା ଯୁକ୍ତିଯୁକ୍ତ ନୁହେଁ ।

## मुक्तोपसृप्यव्यपदेशात् ॥ २ ॥

## (୧) ମୁକ୍ତୋପସୃପ୍ୟବ୍ୟପଦେଶାତ୍ ॥ ୧-୩-୨

'ତଥା ବିଦ୍ୱାନ୍ ନାମରୂପାଦ୍ ବିମୁକ୍ତ', ଇତ୍ୟାଦି ବେଦବାକ୍ୟ ଦ୍ୱାରା, ମୁକ୍ତୋପସୃପ୍ୟ='ମୁକ୍ତପୁରୁଷ ବ୍ରହ୍ମକୁ ପାଏ', ବ୍ୟପଦେଶାତ୍=ଏହି ବର୍ଣ୍ଣନ କରାଯାଇଛି । ତେଣୁ ଦ୍ୟୁ, ଭୂତ, ଇତ୍ୟାଦିର ଅଧିଷ୍ଠାନ ବ୍ରହ୍ମ ।

(୨) ମୂଳ-(କ) ଇତଶ୍ଚ ପରମେବ ବ୍ରହ୍ମ ଦ୍ୟୁଭ୍ୱାଦ୍ୟାୟତନମ୍ । ଯସ୍ମାନ୍ମୁକ୍ତୋପସୃପ୍ୟତାଽସ୍ୟ ବ୍ୟପଦିଶ୍ୟମାନା ଦୃଶ୍ୟତେ । ମୁକ୍ତୈରୂପସୃପ୍ୟଂ ମୁକ୍ତୋପସୃପ୍ୟମ୍ ।



ଦେହାଦିଷ୍ୱନାତ୍ମସ୍ୱହମସ୍ମୀତ୍ୟାତ୍ମବୁଦ୍ଧିରବିଦ୍ୟା, ତତସ୍ତତ୍ପୂଜନାଦୌ ରାଗସ୍ତତ୍ପରିଭବାଦୌ **ଦ୍ୱେଷସ୍ତଦୁଚ୍ଛେଦଦର୍ଶନାଦ୍ଭୟଂ ମୋହଶ୍ଚେତ୍ୟେବମନନ୍ତଭେଦୋଽନର୍ଥବ୍ରାତଃ ସନ୍ତତଃ ସର୍ବେଷାଂ** ନ ପ୍ରତ୍ୟକ୍ଷତଃ ତଦ୍ବିପର୍ଯ୍ୟୟେଣାବିଦ୍ୟାରାଗଦ୍ୱେଷାଦିଦୋଷମୁକ୍ତୈରୁପସୃପ୍ୟଂ ଗମ୍ୟମେତଦ୍ଦି ଦ୍ୟୁଭ୍ୱାଦ୍ୟାୟତନଂ ପ୍ରକୃତ୍ୟ ବ୍ୟପଦେଶୋଭବତି । (ଖ) କଥମ୍ ? 'ଭିଦ୍ୟତେ ହୃଦୟଗ୍ରନ୍ଥିଶ୍ଛିଦ୍ୟନ୍ତେ ସର୍ବସଂଶୟାଃ, କ୍ଷୀୟନ୍ତେ ଚସ୍ୟ କର୍ମାଣି ତସ୍ମିନ୍ଦୃଷ୍ଟେ ପରାବରେ (ମୁଣ୍ଡ ୨-୨-୮) ଇତ୍ୟୁକ୍ତ୍ୱା ବ୍ରବୀତି- ''ତଥା ବିଦ୍ୱାନ୍ନାମରୂପାଦ୍ ବିମୁକ୍ତଃ, ପରାତ୍ପରଂ ପୁରୁଷମୁପୈତି ଦିବ୍ୟମ୍', (ମୁଣ୍ଡ ୩-୨-୮) ଇତି । ବ୍ରହ୍ମଣଶ୍ଚ ମୁକ୍ତୋପସୃପ୍ୟତ୍ୱଂ ପ୍ରସିଦ୍ଧଂ ଶାସ୍ତ୍ରେ- 'ଯଦା ସବେ ପ୍ରମୁଚ୍ୟନ୍ତେ କାମା ଯେଽସ୍ୟ ହୃଦିସ୍ଥିତାଃ । ଅଥ ମର୍ତ୍ତ୍ୟୋଽମୃତୋ ଭବେତ୍ୟତ୍ର ବ୍ରହ୍ମ ସମଶ୍ନୁତେ', (ବୃ ୪-୪-୭) ଇତ୍ୟେବମାଦୌ । ପ୍ରଧାନାଦୀନାଂ ତୁ ନ କ୍ୱଚିନ୍ମୁକ୍ତୋପସୃପ୍ୟତ୍ୱମସ୍ତି ପ୍ରସିଦ୍ଧମ୍ ।

**(୨) ଭାଷାଂତର-** (କ) ଏହାଦ୍ୱାରା ଦ୍ୟୁ ଆଦି ଆୟତନ ପରଂବ୍ରହ୍ମ ଅଟେ । କାରଣ-ଏଠାରେ ମୁକ୍ତିଠାରୁ ପ୍ରାପ୍ୟତା ବ୍ୟପଦେଶ ଦୃଷ୍ଟ ଅଟେ । ଅର୍ଥାତ୍ ସେ ମୁକ୍ତ ପୁରୁଷ ଦ୍ୱାରା ପ୍ରାପ୍ୟ ବୋଲି କୁହାଯାଇଛି । ଦେହାଦି ଅନାତ୍ମ ପଦାର୍ଥରେ 'ମୁଁ ଅଛି' ବୋଲି କହିବା (ଆତ୍ମବୁଦ୍ଧି)କୁ ଅବିଦ୍ୟା କୁହାଯାଏ । ଏହାଦ୍ୱାରା ଏହି ଦେହାଦିରେ ପୂଜନ ସମ୍ମାନାଦିଦ୍ୱାରା ରାଗ, ଏହାର ଅପମାନାଦିଦ୍ୱାରା ଦ୍ୱେଷ, ଏହାର ନାଶଦର୍ଶନଦ୍ୱାରା ଭୟ ଓ ମୋହ - ଏହିପ୍ରକାର ଅନେକ ପ୍ରକାରର ନିରନ୍ତର ବର୍ତ୍ତମାନ ସବୁଠାରେ ରହିଛି, ଅନର୍ଥ ସମୁଦାୟ ଆମ୍ଭମାନଙ୍କର ପ୍ରତ୍ୟକ୍ଷ । ପରନ୍ତୁ ଏହାର ବିପରୀତ ଅବିଦ୍ୟା, ରାଗ ଓ ଦ୍ୱେଷାଦି ଗୁଣଦ୍ୱାରା ମୁକ୍ତ ହୋଇ ପୁରୁଷ ଏହି ବ୍ରହ୍ମ-ଉପସୃପ୍ୟ ପାଏ । ଦ୍ୟୁଭୂ ପ୍ରଭୃତିର ଆୟତନ (ବ୍ରହ୍ମ)କୁ ପ୍ରକୃତି ବ୍ୟପଦେଶ ହୋଇଛି ।

(ଖ) କିପରି ? 'ସେ ପରାବରବ୍ରହ୍ମର ସାକ୍ଷାତ୍କାର କରିଲା ପରେ ଏହି ଜୀବର ହୃଦୟ ଗ୍ରନ୍ଥି ଛିନ୍ନ ହୋଇଯାଏ । ସମ୍ପୂର୍ଣ୍ଣ ସଂସାର ନଷ୍ଟ ହୋଇଯାଏ, ଏମାନଙ୍କର କର୍ମ କ୍ଷୀଣ ହୋଇଯାଏ,' ଏବଂ 'ଯେଉଁ ସମୟରେ ଏହାର ହୃଦୟରେ ଆଶ୍ରିତ ଐହିକ ଓ ପାରଲୌକିକ ଭାଗର ସମ୍ପୂର୍ଣ୍ଣ ବାସନା ସମୂଳେ ନଷ୍ଟ ହୋଇଯାଏ । ସେହି ସମୟେ ମରଣଶୀଳ ମଣିଷ ମଧ୍ୟ ଅମୃତ ହୋଇଯାଏ । ଏହି ଶରୀରରେ ଏହାକୁ ବ୍ରହ୍ମପ୍ରାପ୍ତି ହୁଏ', ଇତ୍ୟାଦି ଶାସ୍ତ୍ରରେ ବ୍ରହ୍ମ ମୁକ୍ତ ପୁରୁଷଦ୍ୱାରା ପ୍ରାପ୍ୟ ହୁଏ ବୋଲି ଏହା ପ୍ରତ୍ୟକ୍ଷସିଦ୍ଧ । ପ୍ରଧାନାଦି କିନ୍ତୁ ମୁକ୍ତ ପୁରୁଷଦ୍ୱାରା ପ୍ରାପ୍ୟ ପ୍ରସିଦ୍ଧ ନୁହେଁ ।

(୩) ମୂଳ-(କ) ଅପି ଚ 'ତମେବୈକଂ ଜାନଥ ଆତ୍ମାନମନ୍ୟା ବାଚୋ ବିମୁଞ୍ଚଥାମୃତସ୍ୟୈଷ ସେତୁଃ', ଇତି ବାଗ୍‌ବିମୋକପୂର୍ବକଂ ବିଜ୍ଞେୟତ୍ୱମିହ ଦ୍ୟୁଭ୍ୱାଦ୍ୟାୟତନ ସ୍ୟୋଚ୍ୟତେ । (ଖ) ତଚ୍ଚ ଶ୍ରୁତ୍ୟନ୍ତରେ ବ୍ରହ୍ମଣୋ ଦୃଷ୍ଟମ୍-'ତମେବ ଧୀରୋ ବିଜ୍ଞାୟ ପ୍ରଜ୍ଞାଂ କୁର୍ବୀତ ବ୍ରାହ୍ମଣଃ । ନାନୁଧ୍ୟାୟାଦ୍ ବହୂନ୍‌ଶବ୍ଦାନ୍ ବାଚୋ ବିଗ୍ଲାପନଂ ହି ତତ୍ ।', (ବୃହ୍ଣ ୪-୪-୨୧) ଇତି । ତସ୍ମାଦପି ଦ୍ୟୁଭ୍ୱାଦ୍ୟାୟତନଂ ପରଂବ୍ରହ୍ମ ।

(୩) ଭାଷାଂତର- (କ) ଏହାର ଅତିରିକ୍ତ 'ଏହି ଏକ ଆତ୍ମାକୁ ଜାଣ ଓ ସବୁ କଥାକୁ ପରିତ୍ୟାଗ କର । ଏହି ଅମୃତ 'ମୋକ୍ଷପ୍ରାପ୍ତି'ର ସେତୁ ('ସାଧନ') ଅଟେ । ଏହି ପ୍ରକାର ବାଣୀ ତ୍ୟାଗ ପୂର୍ବକ ଭୂପ୍ରଭୃତିରର ଆଶ୍ରୟ (ବ୍ରହ୍ମ) କେବଳ ଏଠାରେ ବିଜ୍ଞେୟ ରୂପରେ କୁହାଯାଇଛି ।

(ଖ) 'ତାହାକୁ ଜାଣି ବୁଦ୍ଧିମାନ ବ୍ରାହ୍ମଣ ସେଠାରେ ପ୍ରଜ୍ଞା କରିପାରେ ଅର୍ଥାତ୍ ବାକ୍ୟାର୍ଥଜ୍ଞାନର ସମ୍ପାଦନ କରିପାରେ, ବହୁତ ଶବ୍ଦର ଚିନ୍ତା କରିପାରେ ନାହିଁ । ସେ କିନ୍ତୁ ବାଣୀ ନିମିତ୍ତ ଶ୍ରମ ଅଟେ । ଏହି ଅନ୍ୟ ଶ୍ରୁତିରେ ବିଜ୍ଞେୟ ବ୍ରହ୍ମ ଅଟେ ବୋଲି ଜଣାଗଲା, ଏହାଦ୍ୱାରା ଦ୍ୟୁ, ଭ୍ୱାଦିର ଆୟତନ ପରଂବ୍ରହ୍ମ ହୁଏ ।

**नानुमानमतच्छब्दात् ॥ ३ ॥**

## (୧) ନାନୁମାନମତଚ୍ଛବ୍ଦାତ୍ ॥ ୧-୩-୩

ଅନୁମାନମ୍=ସାଂଖ୍ୟଶାସ୍ତ୍ରରେ କଳ୍ପିତ ପ୍ରଧାନ, ନ=ଦ୍ୟୁ ଭ୍ୱାଦିର ଆଶ୍ରୟ ନୁହେଁ । ଅତଚ୍ଛବ୍ଦାତ୍=କାରଣ-ଶ୍ରୁତିରେ ପ୍ରଧାନପ୍ରତିପାଦକ କୌଣସି ଶବ୍ଦ ନାହିଁ ।

(୨) ମୂଳ-(କ) ଯଥା ବ୍ରହ୍ମଣଃ ପ୍ରତିପାଦକୋ ବୈଶେଷିକୋ ହେତୁରୁକ୍ତୋ ନୈବମର୍ଥାନ୍ତରସ୍ୟ ବୈଶେଷିକୋ ହେତୁଃ ପ୍ରତିପାଦକୋଽସ୍ତୀତ୍ୟାହ । (ଖ) ନାନୁମାନିକଂ ସାଂଖ୍ୟସ୍ମୃତିପରିକଳ୍ପିତଂ ପ୍ରଧାନମିହ ଦ୍ୟୁଭ୍ୱାଦ୍ୟାୟତନତ୍ୱେନ ପ୍ରତିପତ୍ତବ୍ୟମ୍ । କସ୍ମାତ୍ ? ଅତଚ୍ଛବ୍ଦାତ୍ । ତସ୍ୟାଚେତନସ୍ୟ ପ୍ରଧାନସ୍ୟ ପ୍ରତିପାଦକଃ ଶବ୍ଦସ୍ତଚ୍ଛବ୍ଦଃ, ନ ତଚ୍ଛବ୍ଦୋଽତଚ୍ଛବ୍ଦଃ । (ଗ) ନ ହ୍ୟତ୍ରାଚେତନସ୍ୟ ପ୍ରଧାନସ୍ୟ ପ୍ରତିପାଦକଃ କଶ୍ଚିଚ୍ଛବ୍ଦୋଽସ୍ତି, ଯେନାଚେତନଂ ପ୍ରଧାନଂ କାରଣତ୍ୱେନାୟତନତ୍ୱେନ ବାଽବଗମ୍ୟତେ । ତଦ୍‌ବିପରୀତସ୍ୟ ଚେତନସ୍ୟ ପ୍ରତିପାଦକଶବ୍ଦୋଽତ୍ରାସ୍ତି - 'ଯଃ ସର୍ବଜ୍ଞଃ ସର୍ବବିତ୍', (ମୁଣ୍ଡ ୧-୧-୯) ଇତ୍ୟାଦିଃ, ଅତଏବ ନ ବାୟୁରପୀହ ଦ୍ୟୁଭ୍ୱାଦ୍ୟାୟତନତ୍ୱେନାଶ୍ରୀୟତେ ।



**(୨) ଭାଷାଂତର-** (କ) ଉକ୍ତପ୍ରସଙ୍ଗରେ ଯେପରି ବ୍ରହ୍ମର ପ୍ରତିପାଦକ ବିଶେଷ ଅସାଧାରଣ ହେତୁ (ଆତ୍ମଶବ୍ଦାଦି) କୁହାଯାଇଛି, ସେପରି ଅନ୍ୟପଦାର୍ଥର ପ୍ରତିପାଦକ କୌଣସି ବିଶେଷ ହେତୁ ନାହିଁ ।

(ଖ) ତେଣୁ କୁହାଯାଇଛି- 'ନାନୁମାନିକମ୍', ସାଂଖ୍ୟସ୍ମୃତିରେ କଳ୍ପିତ ପ୍ରଧାନକୁ ଏଠାରେ ଦ୍ୟୁ, ଭୂପ୍ରଭୃତିର ଆଶ୍ରୟରୂପରେ ସ୍ୱୀକାର କରିବା ଠିକ୍ ନୁହେଁ । କାରଣ- ସେ ଅତଚ୍ଛବ୍ଦ । ସେହି ଅଚେତନ ପ୍ରଧାନର ପ୍ରତିପାଦକଶବ୍ଦ 'ତତ୍ଶବ୍ଦ' ଏବଂ ତତ୍ଶବ୍ଦଠାରୁ ଭିନ୍ନ 'ଅତତ୍ଶବ୍ଦ' ହେଉଛି ।

(ଗ) ଏଠାରେ ଅଚେତନ ପ୍ରଧାନର ପ୍ରତିପାଦକ ଏପରି କୌଣସି ଶବ୍ଦ ନାହିଁ; କି ଯାହାଠାରୁ ଅଚେତନ ପ୍ରଧାନ କାରଣରୂପରେ ଅଥବା ଆଶ୍ରୟ ରୂପରେ ଅବଗତ ହେବ । କିନ୍ତୁ ଏଠାରେ ଏହାର ବିପରୀତ ଚେତନର 'ଯଃ ସର୍ବଜ୍ଞଃ ସର୍ବବିତ୍', ଇତ୍ୟାଦି ପ୍ରତିପାଦକ ଶବ୍ଦ ଅଛି । ଏହି କାରଣଦ୍ୱାରା ବାୟୁକୁ ଏଠାରେ ଦ୍ୟୁଭ୍ୱାଦିର ଆଶ୍ରୟ ରୂପରେ ସ୍ୱୀକାର କରାଯାଏ ନାହିଁ ।

## ପ୍ରାଣଭୃଚ୍ଚ ॥ ୪ ॥

## (୧) ପ୍ରାଣଭୃଚ୍ଚ ॥ ୧-୩-୪

ଜୀବ ମଧ୍ୟ ଦ୍ୟୁ ଭ୍ୱାଦିର ଆଶ୍ରୟ ନୁହେଁ । କାରଣ-ଏହାର ପ୍ରତିପାଦ ଶବ୍ଦ ନାହିଁ ।

(୨) ମୂଳ-(କ) ଯଦପି ପ୍ରାଣଭୃତୋ ବିଜ୍ଞାନାତ୍ମନ ଆତ୍ମତ୍ୱଂ ଚେତନତ୍ୱଞ୍ଚ ସମ୍ଭବତି, ତଥାପ୍ୟୁପାଧିପରିଚ୍ଛିନ୍ନଜ୍ଞାନସ୍ୟ ସର୍ବଜ୍ଞତ୍ୱାଦ୍ୟସମ୍ଭବେ ସତ୍ୟସ୍ମାଦେବାତଚ୍ଛବ୍ଦାତ୍ ପ୍ରାଣଭୃତପି ନ ଦ୍ୟୁଭ୍ୱାଦ୍ୟାୟତନତ୍ୱେନାଶ୍ରୟିତବ୍ୟଃ । (ଖ) ନ ଚୋପାଧିପରିଚ୍ଛିନ୍ନ- ସ୍ୟାବିଭୋଃ ପ୍ରାଣଭୃତୋ ଦ୍ୟୁଭ୍ୱାଦ୍ୟାୟତନତ୍ୱମପି ସମ୍ୟକ୍ ସମ୍ଭବତି । ପୃଥଗ୍ ଯୋଗକରଣମୁତ୍ତରାର୍ଥମ୍ ।

**(୨) ଭାଷାଂତର-** (କ) ଯଦ୍ୟପି ପ୍ରାଣଧାରୀଜୀବରେ ଆତ୍ମତ୍ୱ ଓ ଚେତନତ୍ୱ ସମ୍ଭବ ହୁଏ, ତେବେ ମଧ ଉପାଧିଦ୍ୱାରା ପରିଚ୍ଛିନ୍ନ ଜ୍ଞାନଥିବା ଜୀବପାଖରେ ସର୍ବଜ୍ଞତ୍ୱାଦିର ସମ୍ଭବ ନ ହେବାର କାରଣ ଏହି 'ଅତତ୍' ଶବ୍ଦଦ୍ୱାରା କେବଳ ଜୀବାତ୍ମାର ଦ୍ୟୁ ଭୂ ଇତ୍ୟାଦିର ଆୟତନରୂପରେ ଗ୍ରହଣ କରାଯାଏ ନାହିଁ ।

(ଖ) ଉପାଧି ପରିଚ୍ଛିନ୍ନ ଅବିଭୂ ଅବ୍ୟାପକ ଜୀବାତ୍ମା କ'ଣ ଦ୍ୟୁ, ଭୂ ଆଦିର ଆଶ୍ରୟ ଭଲଭାବରେ ପ୍ରକାଶ ହୁଏ ନାହିଁ । ଅଗ୍ରିମ ସୂତ୍ରରେ କେବଳ ଜୀବର ଗ୍ରହଣ ହୋଇପାରେ । ଏହାର ଆବୃତ୍ତି ପାଇଁ ଏହି ସୂତ୍ରର ପୃଥକ୍ ରଚନା ହୋଇଛି ।

(୧) ମୂଳ-(କ) କୁତଶ୍ଚ ନ ପ୍ରାଣଭୃଦ୍ଦ୍ୟୁଭ୍ୟାପ୍ୟାୟତନତ୍ୱେନାଶ୍ରୟିତବ୍ୟଃ ।

**(୧) ଭାଷାଂତର-** (କ) କେଉଁ କାରଣରୁ ଜୀବର ଦ୍ୟୁ, ଭୂ, ଆଦିର ଆଶ୍ରୟ ରୂପରେ ଗ୍ରହଣ କରାଯାଏ ନାହିଁ ?

**भेदव्यपदेशात् ॥ ५ ॥**

**ଭେଦବ୍ୟପଦେଶାତ୍ ॥ ୧-୩-୫**

'ତର୍ମୈବିକଂ ବିଜାନଥ', ଏହିପ୍ରକାର ଶ୍ରୁତିରେ ଜ୍ଞାତା ସ ଜ୍ଞେୟରୂପରେ ଜୀବ ଓ ପରମାତ୍ମାର ଭେଦ କଥନ ହୋଇଛି । ତେଣୁ ଜୀବ ଦ୍ୟୁ, ଭୁ ଆଦିର ଆଶ୍ରୟ ନୁହେଁ ।

(୨) ମୂଳ-(କ) ଭେଦବ୍ୟପଦେଶାଶ୍ଚେହ ଭବତି- 'ତମେବୈକଂଜାନଥ ଆତ୍ମାନମ୍', ଇତି ଜ୍ଞେୟଜ୍ଞାତୃଭାବେନ । ତତ୍ର ପ୍ରାଣଭୃତ୍ତାବନ୍ମୁମୁକ୍ଷୁତ୍ୱାଜ୍ ଜ୍ଞାତା ପରିଶେଷାଦାତ୍ମଶବ୍ଦବାଚ୍ୟଂ ବ୍ରହ୍ମଜ୍ଞେୟଂ ଦ୍ୟୁତ୍ଵାଦ୍ୟାୟତନମିତି ଗମ୍ୟତେ, ନ ପ୍ରାଣଭୃତ୍ ।

**(୨) ଭାଷାଂତର-** (କ) 'ତମେବୈକଂ ଜାନଥ ଆତ୍ମନମ୍' ଏହିପ୍ରକାର ଜ୍ଞେୟ ଓ ଜ୍ଞାତୃଭାବରେ ଭେଦକଥନ କରାଯାଇଛି । ସେଠାରେ ଜୀବ ମୁମୁକ୍ଷୁ ହେଲେ ଜ୍ଞାତା ହୁଏ ଏବଂ ପରିଶେଷରେ ଅବଶିଷ୍ଟ ହେଲେ ଆତ୍ମଶବ୍ଦବାଚ୍ୟ, ଜ୍ଞେୟ, ବ୍ରହ୍ମ ଦ୍ୟୁ, ଭ୍ୱାଦିର ଆଶ୍ରୟ ହୁଏ କିନ୍ତୁ ଜୀବର ଆଶ୍ରୟ ନୁହେଁ ବୋଲି ଜଣାଯାଏ ।

(୧) ମୂଳ-(କ) କୁତଶ୍ଚ ନ ପ୍ରାଣଭୃଦ୍ଦ୍ୟୁଭ୍ୱାଦ୍ୟାୟତନତ୍ୱେନାଶ୍ରୟିତବ୍ୟଃ-

**(୧) ଭାଷାଂତର-** (କ) କେଉଁ କାରଣରୁ ଜୀବର ଦ୍ୟୁ, ଭ୍ୱାଦିର ଆଶ୍ରୟ ରୂପରେ ଗ୍ରହଣ କରିବା ଉଚିତ୍ ନୁହେଁ ।

**प्रकरणात् ॥ ६ ॥**

**ପ୍ରକରଣାତ୍ ॥ ୧।୩।୬**

'କସ୍ମିନ୍ନୁ ଭଗବୋ ବିଜ୍ଞାତେ' ଏହିପ୍ରକାର ବ୍ରହ୍ମ ପ୍ରକରଣ ହେଲେ ମଧ୍ୟ ଜୀବ, ଦ୍ୟୁ ଓ ଭ୍ୱାଦିର ଆଶ୍ରୟ ନୁହେଁ ।

(୨) ମୂଳ-(କ) ପ୍ରକରଣଂ ଚେଦଂ ପରମାତ୍ମନଃ କସ୍ମିନ୍ନ ଭଗବୋ ବିଜ୍ଞାତେ ସର୍ବମିଦଂ ବିଜ୍ଞାତଂ ଭବତି', (ମୁଣ୍ଡ ୧-୧-୩) ଇତ୍ୟେକବିଜ୍ଞାନେନ ସର୍ବବିଜ୍ଞାନା-



ପ୍ରେକ୍ଷଣାତ୍ । ପରମାତ୍ମନି ହି ସର୍ବାତ୍ମକେ ବିଜ୍ଞାତେ ସର୍ବମିଦଂ ବିଜ୍ଞାତଂ ସ୍ୟାନ୍ନ କେବଲେ ପ୍ରାଣଭୃତି ।

**(୨) ଭାଷାଂତର-** (କ) ଏହି ପ୍ରକରଣ ପରମାତ୍ମାର ଅଟେ । କାରଣ- 'ହେ ଭଗବନ୍ ! କାହାର ବିଜ୍ଞାତ ହେଲାପରେ ଏହିସବୁ ଜ୍ଞାତ ହୋଇଯାଏ', ଏହି ପ୍ରକାର ଜଣକର ଜ୍ଞାନ ହେବା ଦ୍ୱାରା ସବୁବିଜ୍ଞାନର ଅପେକ୍ଷା (ଜିଜ୍ଞାସା) ହୁଏ । ନିଶ୍ଚିତ ଭାବରେ ସର୍ବାତ୍ମକ ପରମାତ୍ମାର ବିଜ୍ଞାତ ହେଲେ ଏହିସବୁ ବିଜ୍ଞାତ ହୁଏ, କେବଳ ଜୀବର ବିଜ୍ଞାତ ହେଲେ ଏହିସବୁ ବିକାରମାତ୍ର ଜ୍ଞାତ ହୁଏ ନାହିଁ ।

(୧) ମୂଳ-(କ) କୁତଶ୍ଚ ନ ପ୍ରଣଭୃଦ୍ଦ୍ୟୁଭ୍ୱାଦ୍ୟାୟତନତ୍ୱେନାଶ୍ରୟିତବ୍ୟଃ ?

**(୧) ଭାଷାଂତର-** (କ) ଦ୍ୟୁ, ଭୂ ଇତ୍ୟାଦିର ଆଶ୍ରୟ ରୂପରେ ଜୀବର ଗ୍ରହଣ କାହିଁକି କରାଯାଏ ନାହିଁ ?

**स्थित्यदनाभ्यां च ॥ ७ ॥**

**ସ୍ଥିତ୍ୟଦନାଭ୍ୟାଞ୍ଚ ॥ ୧-୩-୭**

'ଦ୍ୱା ସୁପର୍ଣ୍ଣା' ଏହି ମନ୍ତ୍ରରେ ପରମେଶ୍ୱରର ଉଦାସୀନଭାବରେ ସ୍ଥିତି ଓ ଅନ୍ୟଜୀବର କର୍ମଫଳ ଭକ୍ଷଣ ନିର୍ଦ୍ଦେଶ ହୋଇଛି । ଏହିପରି ସ୍ଥିତି ଓ ଭକ୍ଷଣ ରୂପ ହେତୁ ଦ୍ୱାରା ଦ୍ୟୁ, ଭୂ ଇତ୍ୟାଦିର ଆଶ୍ରୟ ଜୀବ ନୁହେଁ, କିନ୍ତୁ ବ୍ରହ୍ମ ଅଟେ ।

(୨) ମୂଳ-(କ) ଦ୍ୟୁଭ୍ୱଦ୍ୟାୟତନଂ ଚ ପ୍ରକୃତ୍ୟ 'ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟାଃ', (ମୁଣ୍ଡ ୩-୧-୧) ଇତ୍ୟତ୍ରସ୍ଥିତ୍ୟଦନେ ନିର୍ଦ୍ଦିଶ୍ୟେତେ । 'ତୟୋରନ୍ୟଃ ପିପ୍ପଲଂ ସ୍ୱାଦବର୍ତ୍ତି', ଇତି କର୍ମଫଳାଶନମ୍ । 'ଅନଶ୍ନନ୍ନନ୍ୟୋଽଭିଚାକଶୀତି', ଇତ୍ୟୌଦାସୀନ୍ୟେନାବସ୍ଥାନଂ ଚ । (ଖ) ତାଭ୍ୟାଂ ଚ ସ୍ଥିତ୍ୟଦନାଭ୍ୟାମୀଶ୍ୱରକ୍ଷେତ୍ରଜ୍ଞୌ ତତ୍ର ଗୃହ୍ୟେତେ । ଯଦି ଚେଶ୍ୱରୋ ଦ୍ୟୁଭ୍ୱାଦ୍ୟାୟତନତ୍ୱେନ ବିବକ୍ଷିତସ୍ତତସ୍ତସ୍ୟ ପ୍ରକୃତସ୍ୟେଶ୍ୱରସ୍ୟ କ୍ଷେତ୍ରଜ୍ଞାତ୍ ପୃଥଗ୍ ବଚନମବକଳ୍ପତେ, ଅନ୍ୟଥା ହ୍ୟପ୍ରକୃତବଚନମାକସ୍ମିକମସମ୍ବନ୍ଧଂ ସ୍ୟାତ୍ ।

**(୨) ଭାଷାଂତର-** ଦ୍ୟୁ, ଭୂ ଇତ୍ୟାଦି ଆଶ୍ରୟକୁ ପ୍ରସ୍ତୁତ କରି 'ଏକାଠି ରହୁଥିବା ତଥା ସମାନ ଆଖ୍ୟାନଯୁକ୍ତ ଦୁଇପକ୍ଷୀ ଶରୀରରୂପୀ ହୋଇ ଏକବୃକ୍ଷରେ ଆଶ୍ରୟ ନେଇଛନ୍ତି, ଏହିମନ୍ତ୍ରରେ ସ୍ଥିତି ଓ ଭକ୍ଷଣର ନିର୍ଦ୍ଦେଶ କରାଯାଇଛି । 'ଏହା ମଧ୍ୟରୁ ଗୋଟିଏ ଜୀବ ସ୍ୱାଦିଷ୍ଟ ମଧୁର କର୍ମଫଳ ଭୋଗ କରେ', ଏହି ମନ୍ତ୍ରାଂଶବାକ୍ୟରେ

କର୍ମଫଳର ଉପଭୋଗ ଓ 'ଦ୍ୱିତୀୟଜଣକ ଭୋଗନକରି କେବଳ ଦେଖେ', ଏଠାରେ ଉଦାସୀନତାପୂର୍ବକ ଶ୍ରୁତି ନିର୍ଦ୍ଦେଶ କରାଯାଇଛି ।

(ଖ) ଏହି ସ୍ଥିତି ଓ ଭକ୍ଷଣଦ୍ୱାରା ଏହି ମନ୍ତ୍ରରେ ଈଶ୍ୱର ଓ ଜୀବର ଗ୍ରହଣ କରାଯାଇଛି ଏବଂ ଯଦି ଈଶ୍ୱର ଦ୍ୟୁ, ଭୂ ଆଦିର ଆଶ୍ରୟ ରୂପରେ ବିବକ୍ଷିତ ହୁଏ, ତେବେ ସେହି ପ୍ରକୃତ ଈଶ୍ୱରର କ୍ଷେତ୍ରଜ୍ଞଦ୍ୱାରା ପୃଥଗ୍ ବଚନ (ଅନଶ୍ନନ୍ୟୋ) ଉପପନ୍ନ ହୁଏ ।

(୩) ମୂଳ-(କ) ନନୁ ତବାପି କ୍ଷେତ୍ରଜ୍ଞସ୍ୟେଶ୍ୱରାତପୃଥତ୍ ବଚନମାକସ୍ମିକମେବ ପ୍ରସଜ୍ୟେତ । (ଖ) ନ ତସ୍ୟାବିବକ୍ଷିତତ୍ୱାତ୍ । କ୍ଷେତ୍ରଜ୍ଞୌ ହି କର୍ତ୍ତୃତ୍ୱେନ ଭୋକ୍ତୃତ୍ୱେନ ଚ ପ୍ରତିଶରୀରଂ ବୁଦ୍ଧ୍ୟାଦ୍ୟୁପାଧିସମ୍ବନ୍ଧୋ ଲୋକତ ଏବ ପ୍ରସିଦ୍ଧୋ ନାନାସୌ ଶ୍ରୁତ୍ୟା ତାତ୍ପର୍ଯ୍ୟେଣ ବିବକ୍ଷ୍ୟତେ । (ଗ) ଈଶ୍ୱରସ୍ତୁ ଲୋକତୋଽପ୍ରସିଦ୍ଧତାଚ୍ଛ୍ରୁତ୍ୟା ତାତ୍ପର୍ଯ୍ୟେଣ ବିବକ୍ଷ୍ୟତ ଇତି ନ ତସ୍ୟାକସ୍ମିକଂ ବଚନଂ ଯୁକ୍ତମ୍ । 'ଗୁହାଂ ପ୍ରବିଷ୍ଟାବାତ୍ମନୌହି', (ବ୍ର ୧-୨-୧୧-୩) ଇତ୍ୟତ୍ରାପ୍ୟେତଦର୍ଶିତ 'ଦ୍ୱା ସୁପର୍ଣ୍ଣା' ଇତସ୍ୟାମୃଚୀଶ୍ୱରକ୍ଷେତ୍ରଜ୍ଞା-ବୁଚ୍ୟେତେ ଇତି ।

**(୩) ଭାଷାଂତର-** (କ) ପରନ୍ତୁ ତୁମ୍ଭର ମଧ୍ୟ କ୍ଷେତ୍ରଜ୍ଞ ଜୀବର ଈଶ୍ୱରଠାରୁ ପୃଥକ୍‌କଥନ ଆକସ୍ମିକ ପ୍ରସକ୍ତ ହେବ କି ?

(ଖ) ନୁହେଁ, କାରଣ-ଜୀବ ଅବିବକ୍ଷିତ ଅଟେ । କ୍ଷେତ୍ରଜ୍ଞ କିନ୍ତୁ କର୍ତ୍ତା ଓ ଭୋକ୍ତାରୂପରେ ପ୍ରତିଶରୀରେ ବୁଦ୍ଧ୍ୟାଦିଉପାଧିଦ୍ୱାରା ଯୁକ୍ତ ଅଟେ । ସଂସାରରେ ଏହା ପ୍ରସିଦ୍ଧ । ତେଣୁ ସେ ଶ୍ରୁତିର ତାତ୍ପର୍ଯ୍ୟ ନାହିଁ ।

(ଗ) ଈଶ୍ୱର କିନ୍ତୁ ଜଗତରେ ଅପ୍ରସିଦ୍ଧ ହେଲେ ଶ୍ରୁତିର ତାତ୍ପର୍ଯ୍ୟରେ ବିବକ୍ଷିତ, ଅର୍ଥାତ୍ ଏହାର ପ୍ରତିପାଦନରେ ଶ୍ରୁତିର ତାତ୍ପର୍ଯ୍ୟ ଅଛି । ତେଣୁ ଆକସ୍ମିକ କହିବା ଠିକ୍ ନୁହେଁ । 'ଗୁହାଂ ପ୍ରବିଷ୍ଟାବାତ୍ମନୌ ହି', ଏହି ମନ୍ତ୍ରରେ ମଧ୍ୟ ଜୀବ ଓ ପରମାତ୍ମା ଦେଖାଯାଇଛି । 'ଦ୍ୱା ସୁପର୍ଣ୍ଣା', ଏହି ଋଚରେ ମଧ୍ୟ ଈଶ୍ୱର ଏବଂ କ୍ଷେତ୍ରଜ୍ଞ କୁହାଯାଇଛି ।

(୪) ମୂଳ-(କ) ଯଦାପି ପୈଙ୍ଗ୍ୟୁପନିଷତ୍‌କୃତେନ ବ୍ୟାଖ୍ୟାନେନାସ୍ୟମୃଚି ମତ୍ୱକ୍ଷେତ୍ରଃଜ୍ଞାବୁଚ୍ୟେତେ, ତଦାପିନ ବିରୋଧଃ କଶ୍ଚିତ୍ । କଥମ୍ ? (ଖ) ପ୍ରାଣଭୃଦ୍ଧୀହ ଘଟାଦିଚ୍ଛିଦ୍ରବତ୍ ସତ୍ୱାଦ୍ୟୁପାଧଭିମାନିତ୍ୱେନ ପ୍ରତିଶରୀରଂ ଗୃହ୍ୟମାଣୋ ଦ୍ୟୁଭ୍ୱାଦ୍ୟାୟତନଂ ନ ଭବତୀତି, ନିଷିଧତେ । (ଗ) ଯସ୍ତୁ ସର୍ବଶରୀରେଷୁପାଧିଭିବି ନୋପଲକ୍ଷ୍ୟତେ, ପରମାତ୍ମୈବ ସ ଭବତି । ଯଥା ଘଟାଦିଚ୍ଛିଦ୍ରାଣି ଘଟାଦିଭିରୁପାଦିଭିର୍ବି ନୋପଲକ୍ଷ୍ୟମାଣାନି ମହାକାଶ ଏବ ଭବନ୍ତି, ତଦ୍‌ବତ୍ ପ୍ରାଣଭୃତଃ ପରସ୍ମାଦନ୍ୟତ୍ୱାନୁପପତ୍ତେଃ । ପ୍ରତିଷେଧୋ

ନୋପପଦ୍ୟତେ ତସ୍ମାତ୍ ସତ୍ୟାଦ୍ଧ୍ୟୁପା-ଧ୍ୟଭିମାନିନ ଏବ ଦ୍ୟୁତ୍ତ୍ୱାଦ୍ୟାୟତନତ୍ୱପ୍ରତିଷେଧଃ । ତସ୍ମାତ୍ ପରମେବ ବ୍ରହ୍ମ ଦ୍ୟୁତ୍ତ୍ୱାଦ୍ୟାୟତନମ୍ । (ଘ) ତଦେତତ୍, 'ଅଦୃଶ୍ୟତ୍ୱାଦିଗୁଣକୋ ଧର୍ମୋକ୍ତେଃ', (ବ୍ର.ସୂ ୧-୨-୨୧) ଇତ୍ୟନୈବ ସିଦ୍ଧମ୍ । ତସ୍ୟୈବ ହି ଭୂତଯୋନିବାକ୍ୟସ୍ୟ ମଧ୍ୟ ଇଦଂ ପଠିତମ୍ । ଯସ୍ମିନ୍ ଦ୍ୟୌ ପୃଥିବୀ ଚାନ୍ତରିକ୍ଷମ' ଇତି । ପ୍ରପଞ୍ଚାର୍ଥଂ ନ ପୁନରୁପନ୍ୟସ୍ତମ୍ ।

(୪) ଭାଷାଂତର- (କ) ଯଦ୍ୟପି ପୈଙ୍ଗୀ ଉପନିଷଦ୍ କୃତ ବ୍ୟାଖ୍ୟାନ ଅନୁସାରେ ଏହି ଋଚରେ ବୁଦ୍ଧି ଓ କ୍ଷେତ୍ରଜ୍ଞ କୁହାଯାଇଛି, ତାହାର କୌଣସି ବିରୋଧ ନାହିଁ ।

(ଖ) କାରଣ- ଏଠାରେ ଘଟଚ୍ଛିଦ୍ର ସଦୃଶ ତତ୍ତ୍ୱାଦି ଉପାଧିର ଅଭିମାନ ରୂପଦ୍ୱାରା ପ୍ରତିଶରୀରରେ ଗୃହ୍ୟମାଣ ଜୀବାତ୍ମା ଦ୍ୟୁ, ଭୂ ଆଦିର ଆଶ୍ରୟ ନୁହେଁ ବୋଲି ନିଷେଧ କରାଯାଇଛି ।

(ଗ) ପରନ୍ତୁ ଯେଉଁ ସବୁ ଶରୀରରେ ଉପାଧି ବିନା ଉପଲକ୍ଷିତ ହୋଇଥିବା ଘଟାଦିଛିଦ୍ର (ଆକାଶ) ବସ୍ତୁତଃ ମହାକାଶ ଅଟେ । ସେପରି ପରମାତ୍ମାଠାରୁ ଅନ୍ୟତ୍ୱ ଅନୁପପତ୍ତି ହେଲେ ଜୀବାତ୍ମାର ଦ୍ୟୁ, ଭ୍ୱାଦିର ଆଶ୍ରୟ ରୂପରେ ପ୍ରତିଷେଧ କରିବା ଠିକ୍ ନୁହେଁ । ପ୍ରତ୍ୟୁତ ବୁଦ୍ଧି ଇତ୍ୟାଦି ଅଭିମାନୀର ଦ୍ୟୁ, ଭୂ ପ୍ରଭୃତିର ଆଶ୍ରୟ ରୂପରେ ପ୍ରତିଷେଧ ହୋଇଛି । ଏହାଦ୍ୱାରା ପରଂବ୍ରହ୍ମର ମଧ୍ୟ ଦ୍ୟୁ, ଭୂ ଇତ୍ୟାଦିର ଆୟତନ ଜଣାପଡ଼େ ।

(ଘ) ଏପରି ସିଦ୍ଧାନ୍ତ 'ଅଦୃଶ୍ୟତ୍ୱାନି', (ବ୍ର.ସୂ ୧-୨-୨୧) ଏହି ସୂତ୍ରରେ ସିଦ୍ଧ ହୋଇଛି । ଏହି ଭୂତଯୋନି ବାକ୍ୟମଧ୍ୟରେ 'ଯସ୍ମିନ୍ ଦ୍ୟୌଃ' ଏହି ମନ୍ତ୍ର ମଧ୍ୟ ଗଢ଼ାଯାଇଛି । ଏଠାରେ କିନ୍ତୁ ବିସ୍ତାରନିମିତ୍ତ ପୁନଃ ଏହାର ଉପନ୍ୟାସ କରାଗଲା ।

## २ भूमाधिकरणम् । सू० ८ - ९

## ଭୂମାଧିକରଣ-୨

## भूमा संप्रसादादध्युपदेशात् ॥ ८ ॥

### (୧) ଭୂମା ସଂପ୍ରସାଦାଦଧ୍ୟୁପଦେଶାତ୍ ॥୧-୩-୮

ଭୂମା = 'ଭୂମାତ୍ୱେବ ଜିଜ୍ଞାସିତବ୍ୟଃ' ଏହି ଶ୍ରୁତ୍ୟୁକ୍ତ ଭୂମା ପରମାତ୍ମା ଅଟେ । ସଂପ୍ରସାଦାଦ୍=କାରଣ-ସଂପ୍ରସାଦସଂଜ୍ଞକ ପ୍ରାଣର ଉପଦେଶ ପରେ ପରେ, ଉପଦେଶାତ୍=ଏହାର ଉପଦେଶ କରାଯାଇଛି ।

(୨) ମୂଳ-(କ) ଇଦଂ ସମାମନନ୍ତି-'ଭୂମା ତ୍ୱେ ବିଜିଜ୍ଞାସିତଃବ୍ୟ' ଇତି ଭୂମାନଂ ଭଗବୋ ବିଜିଜ୍ଞାସ ଇତି । ଯତ୍ର ନାନ୍ୟତ୍ ପଶ୍ୟତି ନାନ୍ୟଚ୍ଛୃଣୋତି, ନାନ୍ୟଦ୍ ବିଜାନାତି, ସ ଭୂମାଽଥ ଯତ୍ରାନ୍ୟତ୍ ପଶ୍ୟତ୍ୟନ୍ୟଚ୍ଛୃଣୋତ୍ୟନ୍ୟଦ୍ ବିଜାନାତି ତଦଳ୍ପମ୍, (ଛା ୭-୨୩, ୨୪) ଇତ୍ୟାଦି । (ଖ) ତତ୍ରସଂଶୟଃ-କିଂ ପ୍ରାଣୋ ଭୂମାସ୍ୟାତ୍ ଆହୋସ୍ୱିତ୍ ପରମାତ୍ମେତି । କୁତଃ ସଂଶୟଃ-ଭୂମେତି ତାବଦ୍ ବହୁତ୍ୱମଭିଧୀୟତେ' 'ବହୋର୍ଲୋପୋ ଭୂ ଚ ବ୍ରହ୍ମୋଃ', (ପା ୬-୪-୧୫୮) ଇତି ଭୂମଶବ୍ଦସ୍ୟ ଭାବପ୍ରତ୍ୟୟାନ୍ତତାସ୍ମରଣାତ୍ । କିମାତ୍ମକଂ ପୁନସ୍ତଦ୍‌ବହୁତ୍ୱମିତି ବିଶେଷାକାଙ୍କ୍ଷାୟାଂ 'ପ୍ରାଣୋ ବା ଆଶାୟା ଭୂମାନ୍', (ଛା ୭-୧୫-୧) ଇତି ସନିଧାନାତ୍ ପ୍ରାଣୋ ଭୂମେତି ପ୍ରତିଭାତି । (ଗ) ତଥା 'ଶ୍ରୁତଂ ହ୍ୟେବ ଭଗବଦ୍‌ଦୃଶେଭ୍ୟସ୍ତରତି ଶୋକମାତ୍ମବିଦିତି । ସୋଽହଂ ଭଗବଃ ଶୋଚାମି, ତଂ ମାଂ ଭଗବଂ ଶୋକସ୍ୟ ପାରଂ ତାରୟତୁ', (ଛା ୭-୧-୩) ଇତି ପ୍ରକରଣୋତ୍ ଥାନାତ୍ ପରମାତ୍ମା ଭୂମେତ୍ୟପି ପ୍ରତିଭାତି । ତତ୍ର କସ୍ୟୋପାଦାନଂ ନାର୍ଯ୍ୟଂ କସ୍ୟ ବା ହାନମିତି ଭବତି ସଂଶୟଃ । କିଂ ତାବତ୍ ପ୍ରାପ୍ତମ୍ ?

**(୨) ଭାଷାଂତର-** ଛାନ୍ଦୋଗ୍ୟ ଉପନିଷଦରେ 'ସନତ୍‌କୁମାର-ହେ ନାରଦ ! ଭୂମାର ବିଶେଷରୂପରେ ଜିଜ୍ଞାସା କରିବା ଉଚିତ୍ । ନାରଦ-ହେ ଭଗବାନ୍ ! ମୁଁ ଭୂମାର ବିଶେଷରୂପରେ କରୁଛି । ତାପରେ ସନତ୍ କୁମାର ଭୂମାସ୍ୱରୂପକୁ ବର୍ଣ୍ଣନା କଲେ କିନ୍ତୁ ଯେଉଁଠି ଅନ୍ୟ କଥାକୁ ଦେଖନ୍ତି, ଶୁଣନ୍ତି, ଜାଣେ, ତାହାସବୁ ଅଳ୍ପ ଅଟେ' ଇତ୍ୟାଦି କୁହାଯାଇଛି ।

(ଖ) ସଂଶୟ-ପ୍ରାଣ ଭୂମା କି ପରମାତ୍ମା ? ସଂଶୟ କାହିଁକି ହୁଏ ? କାରଣ-ଭୂମା ବହୁତକୁ କୁହାଯାଇଛି । 'ବହୋର୍ଲୋପୋ' ଏହି ପାଣିନୀୟସୂତ୍ରଦ୍ୱାରା ଭୂମାଶବ୍ଦକୁ ଭାବ ପ୍ରତ୍ୟୟନ୍ତ ବୋଲି କୁହାଯାଇଛି । ତାହେଲେ ଏହାର କେଉଁ ପ୍ରକାର ବହୁ ଅଛି ? ଏହିପ୍ରକାର ଭାବନାରେ ଅଧିକର ବିଶେଷ ଆକାଙ୍କ୍ଷାର କ୍ରମରେ, 'ପ୍ରାଣ ହିଁ ଆଶାଠାରୁ ଅଧିକ' । ଏହି ପ୍ରକାର ସାନ୍ନିଧରେ ପ୍ରାଣହିଁ ଭୂମା ଅଟେ ବୋଲି ପ୍ରତୀତ ହୁଏ ।

(ଗ) ପରନ୍ତୁ ପ୍ରକରଣାନୁସାରେ 'ନାରଦ-ମୁଁ ଯାହା ଆପଣଙ୍କଠାରୁ ଶୁଣିଛି ଯେ- ଆତ୍ମବେତ୍ତା ଶୋକକୁ ପାଇ ନିଏ, ଅର୍ଥାତ୍ ଶୋକଠାରୁ ମୁକ୍ତ ହୁଏ । ଏବଂ ହେ ଭଗବନ୍ ! ମୁଁ ଶୋକଯୁକ୍ତ ଅଟେ । ମୋତେ ଶୋକରୁ ପାର କରିଦିଅନ୍ତୁ । ଶୋକରୁ ମୁକ୍ତ କରନ୍ତୁ । ଏହିପରି ପରମାତ୍ମା ଭୂମା ଅଟେ ବୋଲି ପ୍ରତୀତ ହୁଏ । ବର୍ତ୍ତମାନ ଏହି ଦୁଇବାକ୍ୟ ମଧ୍ୟରୁ କାହାକୁ ଗ୍ରହଣ ଏବଂ କାହାକୁ ତ୍ୟାଗ କରିବା ଉଚିତ୍ । ଏହି ସଂଶୟ କ୍ଷେତ୍ରରେ କଣ ହେବ ?

(୩) ମୂଳ-(କ) ପ୍ରାଣୋ ଭୂମେତି । କସ୍ମାତ୍ ? ଭୂୟପ୍ରଶ୍ନପ୍ରତିବଚନ ପରମ୍ପରାଽଦର୍ଶନାତ୍ । ଯଥା ହି 'ଅସ୍ତିଭଗବୋ ନାମ୍ନୋ ଭୂୟଃ' ଇତି । 'ବାଗ୍‌ବାବ ନାମ୍ନୋ ଭୂୟସୀ', ଇତି । 'ତଥା 'ଅସ୍ତି ଭଗବୋ ବାଚୋ ଭୂୟଃ', ଇତି । 'ମନୋ ବାବ ବାଚୋ ଭୂୟଃ' ଇତି ଚ ନାମାଦିଭ୍ୟୋ ହ୍ୟ ପ୍ରାଣାଦ୍‌ଭୂୟଃ ପ୍ରଶ୍ନପ୍ରତିବଚନପ୍ରବାହଃ ପ୍ରବୃତ୍ତଃ । (ଖ) ନୈବଂ ପ୍ରାଣାତ୍ ପରଂ ଭୂୟଃ ପ୍ରତିବଚନଂ ଦୃଶ୍ୟତେ- 'ଅସ୍ତି ଭଗବଃ ପ୍ରାଣାଦ୍‌ଭୂୟ', ଇତି । 'ଅଦୋ କଃବ ବାବ ପ୍ରାଣାଦ୍ ଭୂୟଃ' ଇତି । (ଗ) ପ୍ରାଣମେବ ତୁ ନାମାଦିଭ୍ୟଃ ଆଶାନ୍ତେଭ୍ୟୋ ଭୂୟାଂସଂ 'ପ୍ରାଣୋ ବା ଆଶାୟା ଭୂୟାନ୍' ଇତ୍ୟାଦିନା ପ୍ରପଞ୍ଚମୁକ୍ତ୍ୱା ପ୍ରାଣଦର୍ଶନଶ୍ଚାତିବାଦିତ୍ୱମ୍-ଅତି ବାଦ୍ୟସୀତ୍ୟତି ବାଦ୍ୟସ୍ମୀତି ବ୍ରୂୟାନ୍ନାପହ୍ନୁବୀତ' ଇତ୍ୟଭ୍ୟନୁଜ୍ଞାୟ 'ଏଷ ତୁ ବା ଅତିବଦତି ଯଃ ସତ୍ୟେନାତି ବଦତ', ଇତି ପ୍ରାଣବ୍ରତମତି ବାଦିତ୍ୱମନୁକୃଷ୍ୟାପରିତ୍ୟଜ୍ୟୈବଂ ପ୍ରାଣଂ ସତ୍ୟାଦି ପରମ୍ପରୟା ଭୂମାନମବତାରୟନ୍ ପ୍ରାଣମେବ ଭୂମାନଂ ମନ୍ୟତ ଇତି ଗମ୍ୟତେ ।

**(୩) ଭାଷାଂତର-** ପୂର୍ବପକ୍ଷ-ପ୍ରାଣ ଭୂମା ଅଟେ । କିପରି ? ଏହାଦ୍ୱାରା ଏହାର ଆଗରେ ଥିବା ଭୟ ଆଧିକ୍ୟବିଷୟକ ପ୍ରଶ୍ନ ଏବଂ ଉତ୍ତରରେ ପରମ୍ପରାର ଦର୍ଶନ ହୁଏ ନାହିଁ । ଯେପରିକି-'ନାରଦ-ହେ ଭଗବାନ୍ । କଣ ନାମଦ୍ୱାରା କିଛି ଅଧିକ ଅଛିକି ?' 'ସନତ୍ କୁମାର-ବାଣୀ ନାମଠାରୁ ଅଧିକା', 'ନାରଦ-ହେ ଭଗବନ୍ ! ବାଣୀଠାରୁ ଅଧିକ କିଏ ଅଛି ?, 'ସନତ୍ କୁମାର-ମନ ବାଣୀଠାରୁ ଅଧିକା', ଏହି ପ୍ରକାର ନାମାଦିଠାରୁ ଆରମ୍ଭ କରି ପ୍ରାଣପର୍ଯ୍ୟନ୍ତ କ୍ରମଶଃ ଅଧିକତା ବିଷୟକ ପ୍ରଶ୍ନ ଓ ଉତ୍ତରର ପ୍ରବାହ ପ୍ରବୃତ୍ତ ହୁଏ ।

(ଖ) କିନ୍ତୁ ପ୍ରାଣଠାରୁ ଆଗରେ 'ହେ ଭଗବନ୍ ! ପ୍ରାଣଠାରୁ ଅଧିକ କି ଅଛିକି ? 'ନିଶ୍ଚିତ ଭାବରେ ଏହା ପ୍ରାଣଠାରୁ ଅଧିକା' । ଏହି ପ୍ରକାର ଓ ପ୍ରଥମ ଅଧିକାର ପ୍ରଶ୍ନ ଓ ପ୍ରତିବଚନ କ୍ରମ ଦେଖାଯାଏ ନାହିଁ ।

(ଗ) ପରନ୍ତୁ 'ପ୍ରାଣ ହିଁ ଆଶାଠାରୁ ଅଧିକ', ଇତ୍ୟାଦି ଦ୍ୱାରା ବିସ୍ତାରପୂର୍ବକ ପ୍ରାଣକୁ ନାମାଦିଠାରୁ ଆରମ୍ଭ କରି ଆଶା ପର୍ଯ୍ୟନ୍ତ ସବୁ ପଦାର୍ଥଠାରୁ ଅଧିକ ବୋଲି କହି 'ତୁମେ ଅତିବାଦୀ ଅଟ, କାହାକୁ ଏହିପରି ପ୍ରଶ୍ନକରି 'ମୁଁ ଶ୍ରେଷ୍ଠବାଦୀ ଅଟେ',

ଏହିପରି କହିପାରେ । ନିଜର ଅତିବାଦୀ ହେବାକୁ ନିଷେଧ କରିପାରେ ନାହିଁ', ଏହିପ୍ରକାର ପ୍ରାଣଦର୍ଶୀରେ ଅତିବଦିତା ସ୍ୱୀକାର କରି 'ଏହା ନିଶ୍ଚୟ ଅତିବାଦୀ ଅଟେ, ଯାହା ସତ୍ୟଠାରୁ ଅତିବାଦୀ', ଏହି ପ୍ରକାର ଅତିବାଦୀତ୍ୱ ପ୍ରାଣବୃତ୍ତିର ଅନୁବୃତ୍ତି କରି ପ୍ରାଣତ୍ୟାଗ ନ କରିବା ବିନା ସତ୍ୟାଦିପରମ୍ପରା ଦ୍ୱାରା ଭୂମାର ଅବତରଣ କରି କରି ସନତ୍କୁମାର ପ୍ରାଣକୁ ଭୂମା ବୋଲି ସ୍ୱୀକାର କରାଯାଇଛି ବୋଲି ଜଣାଯାଏ ।

(୪) ମୂଳ-(କ) କଥଂ ପୁନଃ ପ୍ରାଣେ ଭୂମନି ବ୍ୟାଖ୍ୟାୟମାନେ 'ଯତ୍ର ନାନ୍ୟତ୍ ପଶ୍ୟତି', ଇତ୍ୟେତଦ୍ ଭୂମ୍ନୋ ଲକ୍ଷଣପରଂ ବଚନଂ ବ୍ୟାଖ୍ୟେୟେତେତି ? (ଖ) ଉଚ୍ୟତେ-ସୁଷୁପ୍ତ୍ୟ ବସ୍ଥାୟାଂ ପ୍ରାଣଗ୍ରସ୍ତେଷୁ କରଣେଷୁ ଦର୍ଶନାଦିବ୍ୟବହାରନିବୃତ୍ତିଦର୍ଶନାତ୍ ସମ୍ଭବତି ପ୍ରାଣଖ୍ୟାପି 'ଯତ୍ର ନାନ୍ୟତ୍‌ପଶ୍ୟତି', ଇତ୍ୟେତଲ୍ଲକ୍ଷଣମ୍ । ତଥା ଚ ଶ୍ରୁତିଃ-'ନ ଶୃଣୋତି ନ ପଶ୍ୟତି', ଇତ୍ୟାଦିନା ସର୍ବକରଣ ବ୍ୟାପାରପ୍ରତ୍ୟସ୍ତମୟରୂପାଂ ସୁଷୁପ୍ତ୍ୟବସ୍ଥାମୁକ୍ତ୍ୱା ପ୍ରାଣାଗ୍ନୟଃ ଏବୈତସ୍ମିନ ପୁରେ ଜାଗ୍ରତ', (ପ୍ର ୪-୨-୧) ଇତି ତସ୍ୟାମେବାବସ୍ଥାୟାଂ ପଞ୍ଚବୃତ୍ତେଃ ପ୍ରାଣସ୍ୟ ଜାଗରଣଂ ବ୍ରୁବତୀ ପ୍ରାଣ ପ୍ରଧାନାଂ ସୁଷୁପ୍ତ୍ୟବସ୍ଥାଂ ଦର୍ଶୟତି । (ଗ) ଯଚ୍ଛୈତଦ୍‌ଭୂମ୍ନଃ ସୁଖତ୍ୱଂ ଶ୍ରୁତମ୍-ଯୋ ବୈଭୂମା ତତସୁଖମ୍ (ଛା ୪-୨୩) ଇତି । ତଦପ୍ୟବିରୁଦ୍ଧମ୍ 'ଅତ୍ରେଷ ଦେବଃ ସ୍ୱପ୍ନାନ୍ନ ପଶ୍ୟତ୍ୟଥ ଯଦେତସ୍ମିଞ୍ଛରୀରେ ସୁଖଂ ଭବତି' (ପ୍ର ୪-୪) ଇତି । ସୁଷୁପ୍ତ୍ୟବସ୍ଥାୟାମେବ ସୁଖଶ୍ରବଣାତ୍ । ଯଚ୍ଚ 'ଯୋ ବୈ ଭୂମା ତଦମୃତମ୍', (ଛା ୪-୨୪-୧) ଇତି ତଦପି ପ୍ରାଣସ୍ୟାବିରୁଦ୍ଧମ୍ 'ପ୍ରାଣୋ ବା ଅମୃତମ୍', (କୌ ୩-୨) ଇତି ଶ୍ରୁତେଃ । (ଘ) କଥଂ ପୁନଃ ପ୍ରାଣଂ ଭୂମାନଂ ମନ୍ୟମାନସ୍ୟ 'ତରତି ଶୋକମାତ୍ମବିତ୍', ଇତ୍ୟାତ୍ମବିବିଜିଷୟା ପ୍ରକରଣସ୍ୟୋତ୍ ଥାନମୁପପଦ୍ୟତେ ? ପ୍ରାଣ ଏବେହାତ୍ମା ବିବକ୍ଷିତ ଇତି ବ୍ରୁମଃ । (ଙ) ତଥାହି 'ପ୍ରାଣୋହ ପିତା ପ୍ରାଣୋ ମାତା ପ୍ରାଣୋ ଭ୍ରାତା ପ୍ରାଣଃ ସ୍ୱସା ପ୍ରାଣ ଆଚାର୍ଯ୍ୟଃ ପ୍ରାଣୋ ବ୍ରାହ୍ମଣଃ', (ଛା ୩-୧୫-୧) ଇତି ପ୍ରାଣମେବ ସର୍ବାତ୍ମାନଂ କରୋତି । 'ଯଥା ବା ଅରା ନାଭୌ ସମର୍ପିତା ଏବମସ୍ମିନ୍ ପ୍ରାଣେ ସର୍ବଂ ସମର୍ପିତମ୍ ଇତି ଚ ସର୍ବାତ୍ମତ୍ୱାରନାଭିନିଦର୍ଶନାଭ୍ୟାଂ ଚ ସମ୍ଭବତି ବୈପୁଲ୍ୟାତ୍ମିକା ଭୂମରୂପତା ପ୍ରାଣସ୍ୟ । ତସ୍ମାତ୍ ପ୍ରାଣୋ ଭୂମେତ୍ୟେବଂ ପ୍ରାପ୍ତମ୍ ।

**(୪) ଭାଷାଂତର-** (କ) ଯଦି ପ୍ରାଣକୁ ଭୂମାରୂପରେ ବ୍ୟାଖ୍ୟାନ କରିବା, ତେବେ 'ନାନ୍ୟତ୍ ପଶ୍ୟତି' ବେଦବାକ୍ୟରେ ଭୂମାକୁ ଲକ୍ଷଣପରକ ଏହିବାକ୍ୟର କେଉଁ ପ୍ରକାରରେ ବ୍ୟାଖ୍ୟାନ କରାଯାଇପାରେ ।



(ଖ) ଏହାର ଉତ୍ତରରେ ପୂର୍ବପକ୍ଷ କହେ କି- ସୁଷୁପ୍ତି ଅବସ୍ଥାରେ ପ୍ରାଣରେ ଲୀନ ହୋଇ ଇନ୍ଦ୍ରିୟମାନଙ୍କର ଦର୍ଶନାଦି ବ୍ୟବହାର ଦେଖାଯାଏ । ତେଣୁ 'ଯେଉଁଠାରେ ଅନ୍ୟକୁ ଦେଖେ ନାହିଁ' ଏହିପ୍ରକାର ଭୂମାର ସ୍ୱରୂପପ୍ରତିପାଦକ ଏହି ଲକ୍ଷଣ ପ୍ରାଣରେ ହିଁ ସମ୍ଭବ ହୁଏ । କାରଣ- 'ସୁଷୁପ୍ତି ପୁରୁଷ ଦେଖେନାହିଁ, କି ଶୁଣେନାହିଁ' ଇତ୍ୟାଦି ଦ୍ୱାରା ଶ୍ରୁତି ଯେଉଁଠାରେ ସବୁ ଇନ୍ଦ୍ରିୟମାନଙ୍କର ବ୍ୟାପାର ଲୋପପାଏ, ସେହିଠାରେ ଅସ୍ତମୟରୂପସୁଷୁପ୍ତି ଅବସ୍ଥାକୁ କହି 'ପ୍ରାଣରୂପଙ୍କ ଅଗ୍ନି ଏହି ଶରୀରରେ ଜାଗ୍ରତ ହୋଇଛି ଏବଂ ସ୍ୱବ୍ୟାପାର କରୁଛି, ଏହାଦ୍ୱାରା ଏହି ଅବସ୍ଥାରେ ପାଞ୍ଚବୃତ୍ତି ସଂଯୁକ୍ତ ପ୍ରାଣର ଜାଗରଣକୁ କହି ପ୍ରାଣ ପ୍ରଧାନ ସୁଷୁପ୍ତି ଅବସ୍ଥାକୁ ଦେଖାଏ ।

(ଗ) ଏବଂ 'ନିଶ୍ଚିତ ଭାବରେ ଯାହାଭୂମା, ତାହା ସୁଖ ଅଟେ', ଏହିପ୍ରକାର ଶ୍ରୁତି ଭୂମାକୁ ସୁଖସ୍ୱରୂପ ବୋଲି କହେ । ସେ ମଧ୍ୟ ବିରୁଦ୍ଧ ନୁହେଁ । କାରଣ- ସେହି ସମୟ ଏହି ଦେବଜୀବସ୍ୱପ୍ନ ଦେଖେନାହିଁ, ସେହି ସମୟରେ ଶରୀରରେ ଏହି ସୁଖସମ୍ପନ୍ନ ହୁଏ । ଏହିପ୍ରକାର ସୁଷୁପ୍ତି ଅବସ୍ଥାରେ ସୁଖପଦ ଶୁଣାଯାଏ' ସେ ଅମୃତତ୍ୱମଧ୍ୟ ପ୍ରାଣରେ ବିରୁଦ୍ଧ ନୁହେଁ । କାରଣ-'ପ୍ରାଣ ହିଁ ଅମୃତ ଅଟେ', ଏହି ଶ୍ରୁତି ମଧ୍ୟ ଅଛି ।

(ଘ) ସିଦ୍ଧାନ୍ତ-ପରନ୍ତୁ ପ୍ରାଣକୁ ଭୂମା ବୋଲି ସ୍ୱୀକାର କରୁଥିବା ଲୋକମାନଙ୍କ ପକ୍ଷରେ 'ଆତ୍ମବେତ୍ତା ଶୋକରୁ ମୁକ୍ତ ହୋଇଯାଏ', ଏହି ଆତ୍ମବିଜ୍ଞାନୀର ଇଚ୍ଛାରେ ପ୍ରକରଣର ଆରମ୍ଭ କିପରି ଉପପନ୍ନ ହେବ ।

(ଙ) ପୂର୍ବପକ୍ଷ ଆମ୍ଭମାନଙ୍କର ମତରେ ଏହିପ୍ରାଣ ଆତ୍ମରୂପରେ ବିବକ୍ଷିତ ହୁଏ । କାରଣ-ପ୍ରାଣ ହେଉଛି ପିତା, ପ୍ରାଣ ହିଁ ମାତା, ପ୍ରାଣ ହିଁ ଭାଇ, ପ୍ରାଣ ଭଉଣୀ, ପ୍ରାଣ ଆଚାର୍ଯ୍ୟ, ପ୍ରାଣ ବ୍ରାହ୍ମଣ' ଏହି ବାକ୍ୟଦ୍ୱାରା ପ୍ରାଣ ସର୍ବସ୍ୱରୂପ ବୋଲି କୁହାଯାଏ । ଏବଂ 'ଯେପରି ଚକରେ ମଧ୍ୟପ୍ରଦେଶସ୍ଥ ନାଭିରେ ଅରଗୁଡ଼ିକ ସଂଲଗ୍ନ, ସେପରି ପ୍ରାଣରେ ସମସ୍ତେ ଅର୍ପିତ ହୋଇଥାନ୍ତି । ଏହିପ୍ରକାର ସର୍ବାତ୍ମକତା ଓ ଅରନାଭିସଦୃଶ ପ୍ରାଣରେ ବିପୁଳସ୍ୱରୂପତା ଭୂମରୂପତା ସମ୍ଭବ ହୁଏ । ତେଣୁ ପ୍ରାଣ ଭୂମା ଅଟେ, ବୋଲି କୁହାଯାଇଛି ।

(୫) ମୂଳ- (କ) ତତ ଇଦମୁଚ୍ୟତେପରମାତ୍ମୈବେହ ଭୂମା ଭବିତୁମର୍ହତି, ନ ପ୍ରାଣଃ, କସ୍ମାତ୍ ? ସଂପ୍ରସାଦାଦଧ୍ୟୁପଦେଶାତ୍ । ସଂପ୍ରସାଦ ଇତି ସୁଷୁପ୍ତଂ ସ୍ଥାନମୁଚ୍ୟତେ, ସମ୍ୟକ୍ ପ୍ରସୀଦତ୍ୟସ୍ମିନ୍ନିତି ନିର୍ବଚନାତ୍ ବୃହଦାରଣ୍ୟକେ ଚ ସ୍ୱପ୍ନଜାଗରିତସ୍ଥାନାଭ୍ୟାଂ ସହ ପାଠାତ, ତସ୍ୟାଂଚ ସଂପ୍ରସାଦାବସ୍ଥାୟାଂ ପ୍ରାଣୋଜାଗର୍ତୀତି ପ୍ରାଣୋଽତ୍ର ସଂପ୍ରସାଦୋଽଭିପ୍ରେୟତେ । ପ୍ରାଣରାଦୂର୍ଦ୍ଧ୍ୱଂ ଭୂମ୍ନ ଉପଦିଶ୍ୟମାନତ୍ୱାଦିତ୍ୟର୍ଥଃ । (ଖ) ପ୍ରାଣ ଏବ ଚେଦ୍ ଭୂମା ସ୍ୟାତ୍ । ସ ଏବ ତସ୍ମାଦୂର୍ଦ୍ଧ୍ୱମୁପଦିଶ୍ୟେତେତ୍ୟ-ଶ୍ଳିଷ୍ଟମେବୈତତ୍ ସ୍ୟାତ୍ । ନହି ନାମ୍ନୈବ ନାମ୍ନୋ ଭୂୟ ଇତି ନାମ୍ନ ଉର୍ଦ୍ଧ୍ୱମୁପଦିଷ୍ଟମ୍ । କିଂ ତର୍ହି ? ନାମ୍ନୋଽନ୍ୟଦର୍ଥାନ୍ତରମୁପଦିଷ୍ଟଂ ବାଗାଖ୍ୟମ୍-

'ବାଗ୍‌ବାବ ନାମ୍ନୋଭୂୟସୀ' ଇତି । ତଥା ବାଗାଦିଭ୍ୟୋଽପ୍ୟ ପ୍ରାଣାଦର୍ଥାନ୍ତରମେବ ତତ୍ର ତତ୍ରୋର୍ଦ୍ଧ୍ୱମୁପଦିଷ୍ଟମ୍ । ତଦ୍‌ବତ୍ ପ୍ରାଣାଦୂର୍ଦ୍ଧ୍ୱମୁପଦିଶ୍ୟମାନୋ ଭୂମା ପ୍ରାଣାଦର୍ଥାନ୍ତ-ରଭୂତୋ ଭବିତୁମର୍ହତି ।

**(୫) ଭାଷାଂତର-** (କ) ସିଦ୍ଧାନ୍ତ-ପରମାତ୍ମା ହିଁ ଏଠାରେ ଭୂମା ହେବା ଯୁକ୍ତିଯୁକ୍ତ । କାରଣ-ସଂପ୍ରସାଦର ପରେ ଭୂମାଶବ୍ଦର ଉପଦେଶ କରାଯାଇଛି । ଯେଉଁଠାରେ ଭଲଭାବରେ ପ୍ରସନ୍ନ ହୋଇଥାଏ, ସେ ସଂପ୍ରସାଦ-ଏହି ବ୍ୟୁତ୍ପତ୍ତିରେ ସଂପ୍ରସାଦ ସୁଷୁପ୍ତିସ୍ଥାନକୁ କୁହାଯାଇଛି । ବୃହଦାରଣ୍ୟକରେ ସ୍ୱପ୍ନ ଓ ଜାଗ୍ରତିସ୍ଥାନ ସହ ଏହା ପାଠ କରାଯାଇଛି । ଏବଂ ସେହି ସଂପ୍ରସାଦ ଅବସ୍ଥାରେ ପ୍ରାଣ, ଜାଗ୍ରତାସ୍ୱବ୍ୟାପାର କରେ । ତେଣୁ ଏଠାରେ ସଂପ୍ରସାଦ ଶବ୍ଦଦ୍ୱାରା 'ଲକ୍ଷଣାଦିବୃତ୍ତି ଦ୍ୱାରା ପ୍ରାଣ ଅଭିପ୍ରେତ ଅଟେ । ପ୍ରାଣ ପରେ ଭୂମାର ଉପଦେଶ କରାଗଲେ ଭୂମା ପରମାତ୍ମା ହୁଏ ବୋଲି ଅର୍ଥ କରିବା ଆବଶ୍ୟକ ।

(ଖ) ଯଦି ପ୍ରାଣହିଁ ଭୂମା ହୁଏ ତେବେ ସେହି ପ୍ରାଣ ପରେ ଉପଦିଷ୍ଟ ହୁଏ, ତାହେଲେ ସେ ଅସଙ୍ଗତ ହେବ । କାରଣ-ନାମହିଁ ନାମଦ୍ୱାରା ଅଧିକ ହୁଏ । ଏହିପ୍ରକାର ନାମ ପରେ ନାମର ଉପଦେଶ ହୋଇନାହିଁ । କିନ୍ତୁ 'ବାଣୀହିଁ ନାମଠାରୁ ଅଧିକ', ଏହିପ୍ରକାର ନାମଠାରୁ ଭିନ୍ନ ବାଗ୍‌ନାମକ ଅର୍ଥାନ୍ତର ଉପଦିଷ୍ଟ ହୁଏ, ତଥା ପ୍ରାଣୀଠାରୁ ପ୍ରାଣ ପର୍ଯ୍ୟନ୍ତ ସେହି ସେହି ସ୍ଥଳରେ ପ୍ରଥମେ ପ୍ରଥମେ ଅନ୍ୟ ପଦାର୍ଥର ଉପଦେଶ କରାଯାଇଛି । ସେହିଭଳି ପ୍ରାଣରପରେ ଉପଦେଶ ଦିଆଯାଇଥିବା ଭୂମା ପ୍ରାଣଠାରୁ ଅନ୍ୟ ପଦାର୍ଥ ହେବା ଠିକ୍ ହେବ ।

(୬) ମୂଳ-(କ) ନନ୍ୱିହ ନାସ୍ତିପ୍ରଶ୍ନଃ- 'ଅସ୍ତି ଭଗବଃ ପ୍ରାଣାଦ୍ ଭୂୟଃ', ଇତି, ନାପି ପ୍ରତି ବଚନମସ୍ତି ପ୍ରାଣାଦ୍ ବାବ ଭୂୟୋଽସ୍ତୀତି, କଥଂ ପ୍ରାଣାଦଧି ଭୂମୋପଦିଶ୍ୟତି ଇତ୍ୟୁଚ୍ୟତେ ? ପ୍ରାଣବିଷୟମେବ ଋତିବାଦିତ୍ୱମୁତ୍ତର ତ୍ରାନୁକୃଷ୍ୟମାଣଂ ପଶ୍ୟାମଃ 'ଏଷଃ ତୁ ବା ଅତିବଦତି ଯଃ ସତ୍ୟେନାତିବଦତି ଇତି । ତସ୍ମାନ୍ନାସ୍ତି ପ୍ରାଣାଦ୍ଭୂମ୍ନ୍ୟଧ୍ୟୁପଦେଶ ଇତି । (ଖ) ଅତ୍ରୋଚ୍ୟତେ-ନ ତାବତ୍ ପ୍ରାଣବିଷୟସ୍ୟୈବାତିବାଦିତ୍ୱସ୍ୟୈତଦନ୍ନୁ-କର୍ଷଣମିତି ଶକ୍ୟଂ ବକ୍ତୁଂ ବିଶେଷବାଦାତ୍ ଯଃ ସତ୍ୟେନାତି ବଦତି', ଇତି । (ଗ) ନନୁ ବିଶେଷବାଦୋଽୟଂ ପ୍ରାଣବିଷୟ ଏବ ଭବିଷ୍ୟତି । କଥମ୍ ? ଯଥୈଷୋଽଗ୍ନି ହୋତ୍ରୀ ଯଃ ସତ୍ୟଂ ବଦତୀତ୍ୟୁକ୍ତେଃ ନ ସତ୍ୟବଦନେନାଗ୍ନିହୋତ୍ରିତ୍ୱଂ, କେନ ତର୍ହି ? ଅଗ୍ନିହୋତ୍ରେଣୈବ, ତତ୍‌ସତ୍ୟବଦନଂ ତ୍ୱଗ୍ନିହୋତ୍ରିଣୋ ବିଶେଷ ଉଚ୍ୟତେ । ତଥା 'ଏଷ



ତୁ ବା ଅତିବଦତି ଯଃ ସ ସତ୍ୟେନାତିବଦତି', ଇତ୍ୟୁକ୍ତେ, ନ ସତ୍ୟ ବଦନେନା-ତିବାଦିତ୍ୱମ୍ । କେନ ତର୍ହି ? ପ୍ରକୃତେନ ପ୍ରାଣବିଜ୍ଞାନେନୈବ । ସତ୍ୟବଦନଂ ତୁ ପ୍ରାଣବିଦୋ ବିଶେଷୋ ବିବକ୍ଷ୍ୟତ ଇତି ।

(୬) ଭାଷାଂତର- (କ) ପୂର୍ବପକ୍ଷ-ପରନ୍ତୁ ଏଠାରେ ହେ ଭଗବନ୍ ! ପ୍ରାଣଠାରୁ ଅଧିକ କଣ ଅଛି ? ଏହିପ୍ରକାର ପ୍ରଶ୍ନ ହୋଇ ନପାରେ । 'ପ୍ରାଣଠାରୁ ଏହା ଅଧିକ', ଏତାଦୃଶ ଉତ୍ତର ମଧ ହୋଇପାରେ ନାହିଁ । କିନ୍ତୁ ପ୍ରାଣର ପରେ ଭୂମାର ଉପଦେଶ ଅଛି । ଏହିଭଳି କିପରି କୁହାଯାଉଛି ? ଏବଂ 'ଯାହା ସତ୍ୟ ଦ୍ୱାରା ଅତିବାଦୀ ହୁଏ, ସେହି ଅତିବାଦୀ', ଏହିପ୍ରକାର ପ୍ରାଣବ୍ୟତିରିକ୍ତି ଅତିବାଦିତ୍ୱର ଆଗରେ ଆମ୍ଭେ ଅନୁବୃତ୍ତି ଦେଖୁଁ । ତେଣୁ ପ୍ରାଣାଦିବ୍ୟତିରିକ୍ତ କୌଣସି ଅନ୍ୟ ପଦାର୍ଥର ଉପଦେଶ ନାହିଁ ।

(ଖ) ସିଦ୍ଧାନ୍ତ-ପ୍ରାଣ ବିଷୟକ ଅତିବାଦିତ୍ୱର ଏହା ଅନୁକର୍ଷଣ ବୋଲି କୁହାଯାଇ ନପାରେ । କାରଣ- 'ଯିଏ ସତ୍ୟରେ ଅନୁବାଦୀ ଅଟେ', ଏହି ପ୍ରକାର ବିଶେଷବାଦ ଅଛି ।

(ଗ) ପୂର୍ବପକ୍ଷ-ପରନ୍ତୁ ଏହି ବିଶେଷବାଦ ପ୍ରାଣବିଷୟକ ହେବ କିପରି ? ଯେପରିକି ଏହା ଅଗ୍ନିହୋତ୍ର ଅଟେ 'ଯେ ସତ୍ୟ କହେ' ଏହା କହିଲା ମାତ୍ରେ ସତ୍ୟବଦନଦ୍ୱାରା ଅଗ୍ନିହୋତ୍ରିତ୍ୱ ହେବନାହିଁ । କିନ୍ତୁ ଅଗ୍ନିହୋତ୍ରର ବିଶେଷତା କହିବାକୁ ଯାଉଛି । ଏହିପ୍ରକାର 'ଯିଏ ସତ୍ୟବାଦୀ, ସେ ନିଶ୍ଚିତ ଭାବରେ ଅତିବାଦୀ', ଏହିପରି କହିବା ଦ୍ୱାରା ସତ୍ୟ ଭାଷଣରେ କିଏ ଅତିବାଦୀ ହୁଏ ନାହିଁ । କିନ୍ତୁ ପ୍ରକୃତ ପ୍ରାଣବିଜ୍ଞାନ ଦ୍ୱାରା ଅତିବାଦୀ ହୁଏ । ସତ୍ୟବାଦୀ କିନ୍ତୁ ପ୍ରାଣବେତ୍ତାର ବିଶେଷରୂପେ ବିବକ୍ଷିତ ହେଉଛି ।

(୭) ମୂଳ- (କ) ନେତିବ୍ରୂମଃ-ଶ୍ରୁତ୍ୟର୍ଥ ପରିତ୍ୟାଗପ୍ରସଙ୍ଗାତ୍ । ଶ୍ରୁତ୍ୟା ହ୍ୟତ୍ର ସତ୍ୟବଦନେନାତିବାଦିତ୍ୱଂ ପ୍ରତୀୟତେ-'ଯଃ ସତ୍ୟେନାତିବଦତି, ସୋଽତିବଦତି ଇତି । ନାତ୍ର ପ୍ରାଣବିଜ୍ଞାନସ୍ୟ ସଂକୀର୍ତ୍ତନମସ୍ତି । (ଖ) ପ୍ରକରଣାତ୍ତୁ ପ୍ରାଣବିଜ୍ଞାନଂ ସମ୍ବଧ୍ୟତେ । ତତ୍ର ପ୍ରକରଣାନୁରୋଧେନ ଶ୍ରୁତିଃ ପରିତ୍ୟକ୍ତା ସ୍ୟାତ୍ । ପ୍ରକୃତବ୍ୟାବୃତ୍ୟର୍ଥଶ୍ଚ ତୁଶବ୍ଦୋ ନ ସଂଗଚ୍ଛେତ୍ । 'ଏଷ ତୁ ବା ଅତିବଦତି', ଇତି । 'ସତ୍ୟତ୍ତ୍ୱେବ ବିଜିଜ୍ଞାସିତବ୍ୟମ୍' (ଛା ୭-୧୬) ଇତି ଚ ପ୍ରଯତ୍ନାନ୍ତରକରଣମର୍ଥାନ୍ତର-ବିବକ୍ଷାଂ ସୂଚୟତି । (ଗ) ତସ୍ମାଦ୍ୟଥୈକବେଦପ୍ରଶଂସାୟାଂ ପ୍ରକୃତାୟାମେଷ ତୁ ମହାବ୍ରାହ୍ମଣୋ ଯଶ୍ଚତୁରୋ ବେଦାନଧୀତ ଇତ୍ୟେକବେଦେଭ୍ୟୋଽର୍ଥାନ୍ତରଭୂତଶ୍ଚ-ତୁର୍ବେଦଃ ପ୍ରଶଂସ୍ୟତେ, ତାଦୃଗେତଦ୍ ଦ୍ରଷ୍ଟବ୍ୟମ୍ । ନ ଚ ପ୍ରଶ୍ନପ୍ରତିବଚନରୂପୟୈ-ବାର୍ଥାନ୍ତରବିବକ୍ଷୟା ଭବିତବ୍ୟମ ତି

ନିୟମୋଽସ୍ତି, ପ୍ରକୃତ ସମ୍ବନ୍ଧାସମ୍ଭବକାରିତ୍ୱା-ଦର୍ଥାନ୍ତର ବିବକ୍ଷାୟାଃ । ତତ୍ର ପ୍ରାଣାନ୍ତମନୁଶାସନଂ ଶ୍ରୁତ୍ୱା ତୃଷ୍ଣୀଭୂତଂନାରଦଂ ସ୍ୱୟମେବ ସନତ୍‌କୁମାରୋ ବ୍ୟୁତ୍ପାଦୟତି । (ଘ) ଯତ୍ର ପ୍ରାଣବିଜ୍ଞାନେନ ବିକାରାନୃ ତବିଷୟେଣାତିବାଦିତ୍ୱମନତିବାଦିତ୍ୱମେବ, ତତ୍ 'ଏଷ ତୁ ବା ଅତିବଦତି, ଯଃ ସତ୍ୟନାତିବଦତି,' ଇତି । ତତ୍ର ସତ୍ୟମିତି ପରଂବ୍ରହ୍ମୋଚ୍ୟତେ, ପରମାର୍ଥ ରୂପତ୍ୱାତ୍ 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ', (ତୈ ୨-୧) ଇତି ଚ ଶ୍ରୁତ୍ୟନ୍ତରାତ୍ । ତଥା ବ୍ୟୁତ୍ପାଦନାୟ ନାରଦାୟ 'ସୋଽହଂ ଭଗବଃ ସତ୍ୟେନାତିବଦାନି', ଇତ୍ୟେବଂ ପ୍ରବୃତ୍ତାୟ ବିଜ୍ଞାନାଦିସାଧନପରମ୍ପରୟା ଭୂମାନମୁପଦିଶତି । (ଙ) ତତ୍ର ଯତ୍‌ପ୍ରାଣାଦଧି ସତ୍ୟଂ ବକ୍ତବ୍ୟଂ ପ୍ରତିଜ୍ଞାତମ୍, ତଦେବେହ ଭୂମେତ୍ୟୁଚ୍ୟତ ଇତି ଗମ୍ୟତେ । ତସ୍ମାଦସ୍ତି ପ୍ରାଣାଦଧି ଭୂମ୍ନଃ ଉପଦେଶ ଇତ୍ୟତଃ ପ୍ରାଣାଦନ୍ୟଃ ପରମାତ୍ମା ଭୂମା ଭବିତୁମର୍ହତି । ଏବଂ ଚେହାତ୍ମବିବିଷୟା ପ୍ରକରଣସ୍ୟୋତ୍‌ଥାପନମୁପପନ୍ନଂ ଭବିଷ୍ୟତି ।

**(୭) ଭାଷାଂତର-** (କ) ସିଦ୍ଧାନ୍ତ-ଏହା ଠିକ୍ ନୁହେଁ, କାରଣ-ଏହା ସ୍ୱୀକାର କଲେ ଶ୍ରୁତ୍ୟର୍ଥ ପରିତ୍ୟାଗ ପ୍ରସଙ୍ଗ ଉପସ୍ଥିତ ହେବ । 'ଯଃ ସତ୍ୟେନାତିବଦତି, ସୋଽତିବଦତି', ଏହିପ୍ରକାର ଶ୍ରୁତିରେ ସତ୍ୟବାଦଠାରୁ ଅତିବାଦିତ୍ୱ ପ୍ରତୀତ ହୁଏ, ଏଠାରେ ପ୍ରାଣବିଜ୍ଞାନର ସଂକୀର୍ତ୍ତନ ହୁଏ ନାହିଁ ।

(ଖ) ଯଦି ପ୍ରକରଣଦ୍ୱାରା ପ୍ରାଣବିଜ୍ଞାନର ସମ୍ବନ୍ଧ ହୁଏ, ତେବେ ପ୍ରକରଣ ବଳରେ ଶ୍ରୁତିରେ ପରିତ୍ୟାଗ ହେବ, ଏବଂ ଏଷତୁ ଅତିବଦତି' ଏଠାରେ ପ୍ରକୃତର ବ୍ୟାବୃତ୍ତି ନିମିତ୍ତ ତୁଶବ୍ଦ ସଂଗତ ହୁଏ ନାହିଁ । 'ସନତ୍ କୁମାର-ସତ୍ୟର ବିଶେଷ ରୂପରେ ଜିଜ୍ଞାସା କରିବା ଉଚିତ୍ । ଏହି ପ୍ରକାର ଅନ୍ୟପ୍ରଯତ୍ନ ବା ବିଚ୍ଛେଦର ବିଧାନ ଅର୍ଥର ବିବକ୍ଷାକୁ ସୂଚିତ କରେ ।

(ଗ) ଯେପରିକି ଏକବେଦରେ ପ୍ରଶଂସା ପ୍ରସ୍ତୁତ କଲାପରେ ଯିଏ ଚାରିବେଦକୁ ଅଧ୍ୟୟନ କରେ, ସେ କିନ୍ତୁ ଚଣ୍ଡାଳ ହୁଏ,' ଏଠାରେ ଗୋଟିଏ ବେଦପାଠ କରିଥିବା ବ୍ରାହ୍ମଣ ଦ୍ୱାରା ଅର୍ଥାନ୍ତର ଚତୁର୍ବେଦର ପ୍ରଶଂସା ହୁଏ । ସେହି ପ୍ରକରଣରେ ସତ୍ୟର ଜିଜ୍ଞାସା ପ୍ରାଣଭିନ୍ନ ଭୂମାକୁ ଜାଣିବା ଉଚିତ୍ । ପ୍ରଶ୍ନ ଏବଂ ଉତ୍ତର ରୂପରେ ଅନ୍ୟ ଅର୍ଥର ବିବକ୍ଷା ହେବାର କୌଣସି ନିୟମ ନାହିଁ । କାରଣ-ଅନ୍ୟ ଅର୍ଥକୁ ବିବକ୍ଷା ପ୍ରକୃତ ଅର୍ଥର ସମ୍ବନ୍ଧ ନ ହୋଇ ହେଉଛି । ଅର୍ଥାନ୍ତରର ବିବକ୍ଷା ରହିଲା ପରେ ତାହାର ପ୍ରାଣ ପର୍ଯ୍ୟନ୍ତ ଉପଦେଶ ଶୁଣି ତୃଷ୍ଣୀଭୂତ ନାରଦଙ୍କୁ ନିଜେ ସନତ୍ କୁମାର ବୁଝାଉଛନ୍ତି କି- 'ଏଷତୁ' ଇତ୍ୟାଦି ।



(ଘ) ଯାହା ବିକାର ଓ ଅମୃତବିଷୟକ ପ୍ରାଣବିଜ୍ଞାନ ଦ୍ୱାରା ଅତିବାଦିତ୍ୱ ହୁଏ । ସେ କିନ୍ତୁ ଅତିବାଦିତ୍ୱ ନୁହେଁ । ଏହି ଶ୍ରୁତିରେ 'ସତ୍ୟମ୍' ଏହାଦ୍ୱାରା ପରଂବ୍ରହ୍ମ କୁହାଯାଏ । କାରଣ-ସେ ସତ୍ୟଂ ଜ୍ଞାନମନନ୍ତ ବ୍ରହ୍ମ' ହେତୁ ପରମାର୍ଥରୂପ । ଏହିପ୍ରକାର ଅନ୍ୟଶ୍ରୁତି ମଧ୍ୟ ରହିଛି । ଏହାଜାଣି ସାବଧାନ ହୋଇ ଏବଂ 'ହେ ଭଗବନ୍' ମୁଁ ମୁଁ ସତ୍ୟରୁ ଅତିବାଦୀ ହେବି ।' ଏହିପ୍ରକାର ପ୍ରବୃତ୍ତ ହୋଇ ବ୍ୟୁତ୍ପାଦିତନାରଦଙ୍କୁ ବିଜ୍ଞାନାଦି (ନିଦିଧ୍ୟାସନାଦି) ସାଧନ ପରମ୍ପରାଠାରୁ ଭୂମାର ଉପଦେଶ କରେ ।

(ଙ) ଭୂମାର ଉପଦେଶ ପ୍ରସ୍ତୁତ ହେଲାପରେ ପ୍ରାଣ ବ୍ୟତୀତ ଯେଉଁ ସତ୍ୟ ବକ୍ତବ୍ୟ, ତାର ପ୍ରତିଜ୍ଞା ହେଲା । ସେ ମଧ୍ୟ ବିଷୟ ବାକ୍ୟରେ ଭୂମା କୁହାଗଲା ବୋଲି ଜ୍ଞାତ ହୁଏ । ତେଣୁ ପ୍ରାଣୀ ବ୍ୟତିତ ଭୂମାର ଉପଦେଶ ଅଛି । ତେଣୁ ପ୍ରାଣ ବ୍ୟତିରିକ୍ତ ପରମାତ୍ମା ଭୂମା ହେବା ଉଚିତ୍ । ଏହି ପ୍ରକାର ଏଠାରେ ଆତ୍ମାର ବିଜ୍ଞାନ ପାଇବାର ଇଚ୍ଛାରେ ପ୍ରକରଣ ଆରମ୍ଭ କରିବା ସଙ୍ଗତପୂର୍ଣ୍ଣ ।

(୮) ମୂଳ-(କ) ପ୍ରାଣ ଏବେହାତ୍ମା ବିବକ୍ଷିତ ଇତ୍ୟେତଦପି ନୋପପଦ୍ୟତେ । ନହି ପ୍ରାଣସ୍ୟ ମୁଖ୍ୟୟା ବୃତ୍ତ୍ୟାଽଽତ୍ମତ୍ୱମସ୍ତି । ନ ହ୍ୟନ୍ୟତ୍ର ପରମା-ତ୍ମଜ୍ଞାନାଚ୍ଛୋକବିନିବୃତ୍ତିରସ୍ତି, ନାନ୍ୟଃ ପନ୍ଥାଃ ବିଦ୍ୟତେଽୟନାୟ', (ଶ୍ୱେ ୬-୧୫) ଇତି ଶ୍ରୁତ୍ୟନ୍ତରାତ୍ । ତଂ ମୋପକ୍ରମ୍ୟୋପସଂହରତି- 'ତସ୍ମୈମୃଦିତକଷାୟାୟ ତମସଃ ପାରଂ ଦର୍ଶୟତି ଭଗବାନ୍ ସନତ୍ କୁମାରଃ', (ଛା ୭-୨୬-୨) ଇତି । ତମ ଇତି ଶୋକାଦିକାରଣ-ମବିଦ୍ୟୋଚ୍ୟତେ ପ୍ରାଣାନ୍ତେ ଚାନୁଶାସନେ ନ ପ୍ରାଣସ୍ୟାନ୍ୟାୟତ୍ତତୋଚ୍ୟେତ । 'ଆତ୍ମତଃ ପ୍ରାଣଃ' (ଛା ୭-୨୬-୧) ଇତି ଚ ବ୍ରାହ୍ମଣମ୍ । (ଗ) ପ୍ରକରଣାନ୍ତେ ପରମାତ୍ମାବିବକ୍ଷା ଭବିଷ୍ୟତି ଭୂମାତୁ ପ୍ରାଣ ଏବେତି ଚେତ୍-ନ 'ସ ଭଗବଃ କସ୍ମିନ୍ ପ୍ରତିଷ୍ଠିତୋ ଇତି ସ୍ୱେ ମହିମି', (ଛା ୭-୨୪-୧) ଇତ୍ୟାଦିନା ଭୂମା ଏବାପ୍ରକରଣ-ସମାପ୍ତେରନୁକର୍ଷଣାତ୍ । ବୈପୁଲ୍ୟାତ୍ମିକା ଚ ଭୂତ୍ତୁରୂପତା ସର୍ବକାରଣାତ୍ୱାତ୍ପରମାତ୍ମନଃ ସୁତରାମୁପପଦ୍ୟତେ ।

(୮) ଭାଷାଂତର- (କ) ପ୍ରାଣ ଏଠାରେ ଆତ୍ମରୂପରେ ବିବକ୍ଷିତ ହୁଏ ବୋଲି କହିବା ଠିକ୍ ନୁହେଁ । କାରଣ-ମୁଖ୍ୟ ବୃତ୍ତି ଦ୍ୱାରା ପ୍ରାଣ ଆତ୍ମା ନୁହେଁ । ପରମାତ୍ମାର ଜ୍ଞାନ ବିନା ଅନ୍ୟ କୌଣସି ପ୍ରକାରରେ ଶୋକ ନିବୃତ୍ତି ହୁଏ ନାହିଁ । କାରଣ- 'ନାନ୍ୟ ପନ୍ଥା ବିଦ୍ୟତେଽୟନାୟ', ଏହି ହିଁ ଅନ୍ୟଶ୍ରୁତି ।

(ଖ) 'ଏପରି ଶୋକ ମୋତେ ଆପଣ ଶୋକଦ୍ୱାରା ପାର କରନ୍ତୁ' । ଏହିଠାରୁ ଆରମ୍ଭ କରି ରାଗ, ଦ୍ୱେଷାଦି ଦୋଷଶୂନ୍ୟ ନାରଦଙ୍କୁ ଭଗବାନ୍ ସନତ୍କୁମାର ଅବିଦ୍ୟା ରୂପତମ୍ ଠାରୁ ପାରମାର୍ଥିକକୁ ପାରହେବା ଦେଖାଇଛନ୍ତି' । ଏହିପ୍ରକାର ଉପସଂହାର କରି 'ତମ' ଏହି ଶବ୍ଦରେ ଶୋକାଦିର କାରଣଭୂତ ଅବିଦ୍ୟା କୁହାଯାଇଛି ।

(ଗ) ଯଦି ପ୍ରାଣପର୍ଯ୍ୟନ୍ତ ଉପଦେଶ ହୁଏ, ତେବେ ପ୍ରାଣରେ ଅନ୍ୟର ଅଧୀନତା କହି ହେବନାହିଁ । କାରଣ- 'ଆତ୍ମାଠାରୁ ପ୍ରାଣଜାତ ହେଲା', ଏହି ବ୍ରାହ୍ମଣବାକ୍ୟ ।

(ଘ) ପ୍ରକରଣଶେଷରେ ପରମାତ୍ମାର ବିବକ୍ଷା ହେବ । ଭୂମା ହିଁ ପ୍ରାଣ କହିବା ଠିକ୍ ନୁହେଁ । କାରଣ-'ନାରଦ-ହେ ଭଗବାନ୍ ସେ ଭୂମା କେଉଁଠି ପ୍ରତିଷ୍ଠିତ ? ସନତ୍ କୁମାର-ମହିମାରେ । ଏହି ପ୍ରକରଣର ସମାପ୍ତି ପର୍ଯ୍ୟନ୍ତ ଭୂମରୂପକା ମଧ୍ୟ ସମସ୍ତଙ୍କ କାରଣ ହେଲେ ପରମାତ୍ମାରେ ସୁତରାଂ ଉପପନ୍ନ ହୁଏ ।

## धर्मोपपत्तेश्च ॥ ९ ॥

## (୧) ଧର୍ମୋପପତ୍ତେଶ୍ଚ ॥ ୧।୩।୯

'ଯତ୍ର ନାନ୍ୟତ୍ର ପଶ୍ୟତି' ଇତ୍ୟାଦି ଶ୍ରୁତି ପ୍ରତିପାଦିତ ଦର୍ଶନାଦି ବ୍ୟବହାରର ଅଭାବରୂପ ଭୂମାଧର୍ମର ପରମାତ୍ମାଠାରେ ଉପପତ୍ତି ହେଲେ ଭୂମା ପରମାତ୍ମା ହିଁ ହୁଏ ।

(୨) ମୂଳ-(କ) ଅପି ଚ ଯେ ଭୂମ୍ନି ଶ୍ରୂୟନ୍ତେ ଧର୍ମାସ୍ତେ ପରମାତ୍ମନ୍ୟୁପପଦ୍ୟନ୍ତେ- 'ଯତ୍ର ନାନ୍ୟତ୍ପଶ୍ୟତି ନାନ୍ୟଚ୍ଛୃଣୋତି, ନାନ୍ୟଦ୍ବିଜାନାତି ସ ଭୂମା' ଇତି ଦର୍ଶନାଦିବ୍ୟବହାରାଭାବଂ ଭୂମତ୍ୱମବଗମୟତି । (ଖ) ପରମାତ୍ମନି ଚାୟଂ ଦର୍ଶନାଦିବ୍ୟବହାରାଭାବୋଽବଗତଃ 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍କେନ କଂ ପଶ୍ୟେତ୍', (ବୃ ୪-୫-୧୫) ଇତ୍ୟାଦିଶ୍ରୁତ୍ୟନ୍ତରାତ୍ । (ଗ) ଯୋଽପ୍ୟସୌ ସୁଷୁପ୍ତାବସ୍ଥାୟାଂ ଦର୍ଶନାଦିବ୍ୟବହାରାଭାବବିବକ୍ଷୟା ପରମାତ୍ମପ୍ରକଣାତ୍ । ଯଦପି ତସ୍ୟାମବସ୍ଥାୟାଂ ସୁଖମୁକ୍ତମ୍, ତଦପ୍ୟାତ୍ମନ ଏବ ସୁଖରୂପତ୍ୱବିବକ୍ଷୟୋକ୍ତମ୍ ।

(୨) ଭାଷାଂତର- (କ) ଭୂମାର ଯେଉଁ ଧର୍ମ ଶ୍ରୁତିରେ ପ୍ରତିପାଦିତ, ସେମାନେ ପରମାତ୍ମାଠାରେ ଉପପନ୍ନ ହୁଅନ୍ତି । 'ଯତ୍ର ନାନ୍ୟତ୍ପଶ୍ୟତି, ନାନ୍ୟଚ୍ଛୃଣୋତି ନାନ୍ୟଦ୍ ବିଜାନାତି, ସ ଭୂମା' । ଏହି ଶ୍ରୁତିବାକ୍ୟ ଭୂମାରେ ଦର୍ଶନାଦିବ୍ୟବହାରର ଅଭାବକୁ ପ୍ରଦର୍ଶନ କରାଏ ।



(ଖ) 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍ କେନ କଂ ପଶ୍ୟେତ୍', ଏହି ଶ୍ରୁତିବାକ୍ୟ ମଧ୍ୟ ପରମାତ୍ମାଠାରେ ଦର୍ଶନାଦି ବ୍ୟବହାରର ଅଭାବକୁ ଦେଖାଏ ।

(ଗ) ସୁଷୁପ୍ତି ଅବସ୍ଥାରେ ଯାହା ସେ ଦର୍ଶନାଦି ବ୍ୟବହାରର ଅଭାବ କୁହାଯାଇଛି, ସେ ଆତ୍ମାର ଅସଂଗତର ବିବକ୍ଷା ଦ୍ୱାରା ନୁହେଁ । କାରଣ-ଏହା ପରମାତ୍ମାର ପ୍ରକରଣ । ଏହି ଅବସ୍ଥାରେ ଯେଉଁ ସୁଖ କୁହାଯାଇଥିଲା, ସେ ଆତ୍ମା ସୁଖ ସ୍ୱରୂପ ଅଟେ ବୋଲି ବିବକ୍ଷା ଦ୍ୱାରା କୁହାଯାଇଛି ।

(୩) ମୂଳ-(କ) ଯତ ଆହ-ଏଷୋଽସ୍ୟପରମ ଆନନ୍ଦ ଏତସ୍ୟୈବାନନ୍ଦ-ସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି', (ବୃ ୪-୩-୩୨) ଇତି । ଇହାପି 'ଯୋ ବୈ ଭୂମା ତତ୍ ସୁଖଂ ନାଲ୍ପେ ସୁଖମସ୍ତି ଭୂମୈବ ସୁଖମ୍', ଇତି ସାମୟସୁଖନିରାକରଣେନ ବ୍ରହ୍ମୈବ ସୁଖଂ ଭୂମାନଂ ଦର୍ଶୟତି । (ଖ) 'ଯୋ ବୈ ଭୂମା, ତଦମୃତମ୍', ଇତ୍ୟମୃତମପୀହ ଶ୍ରୂୟମାଣଂ ପରମକାରଣଂ ଗମୟତି, ବିକାରମୃତତ୍ୱସ୍ୟାପେକ୍ଷିତତ୍ୱାତ୍ । (ଗ) 'ଅତୋଽନ୍ୟଦାର୍ତ୍ତମ୍', (ବୃ ୩-୪-୨) ଇତି ଚ ଶ୍ରୁତ୍ୟନ୍ତରାତ୍ । ତଥା ଚ ସତ୍ୟତ୍ୱଂ ସ୍ୱମହିମପ୍ରତିଷ୍ଠିତତ୍ୱଂ ସର୍ବଗତତ୍ୱଂ ସର୍ବାତ୍ମତ୍ୱମିତି ଚୈତେ ଧର୍ମାଃ ଶ୍ରୂୟମାଣଃ ପରମାତ୍ମନ୍ୟେବୋପପଦ୍ୟନ୍ତେ, ନାନ୍ୟତ୍ର । ତସ୍ମାଦ୍‌ଭୂମା ପରମାତ୍ମେତି ସିଦ୍ଧମ୍ ।

**(୩) ଭାଷାଂତର-** (କ) ତେଣୁ କୁହାଯାଇଛି- 'ସେ ଏହାର ପରମ ଆନନ୍ଦ ଅଟେ, ଏହି ଆନନ୍ଦ ଅଂଶର ଆଶ୍ରିତ ଅନ୍ୟପ୍ରାଣୀ ଜୀବନ ଧାରଣ କରନ୍ତି', ଏଠାରେ ମଧ୍ୟ 'ସେ ଏହାର ପରମାନନ୍ଦ ଅଟେ, ସେ ସୁଖ ଅଟେ, ଅଳ୍ପରେ ସୁଖ ନାହିଁ, ଭୂମା ହିଁ ସୁଖ ସ୍ୱରୂପ', ଏହି ପ୍ରକାର ସାମୟିକ ସୁଖ (ନାଶାଦି ଦୋଷଯୁକ୍ତ ସାମୟିକ ସୁଖ)ର ନିରାକରଣ ଦ୍ୱାରା ସୁଖ ସ୍ୱରୂପ ଭୂମା ବ୍ରହ୍ମକୁ ଦେଖାଏ ।

(ଖ) 'ଯୋ ବୈ ଭୂମା ତଦମୃତମ୍', ଏହି ଶ୍ରୁତିରେ ଶ୍ରୂୟମାଣ ଅମୃତତ୍ୱ ମଧ୍ୟ ପରମ କାରଣର ଜ୍ଞାନ କରାଏ । କାରଣ-ପ୍ରାଣାଦିବିକାରର ଅମୃତତ୍ୱ ଆପେକ୍ଷିକ ଅଟେ ।

(ଗ) ଯେପରି 'ଏହି ଆତ୍ମାଭିନ୍ନ ସବୁ ମିଥ୍ୟା ଓ ବିନାଶୀ', ଏହି ଦ୍ୱିତୀୟବାକ୍ୟ, ସେପରି ସତ୍ୟତ୍ୱ ନିଜର ମହିମାରେ ପ୍ରତିଷ୍ଠା, ସର୍ବଗତତ୍ୱ ଓ ସର୍ବାତ୍ମତ୍ୱ । ସେମାନେ ଶ୍ରୂୟମାଣଧର୍ମ ପରମାତ୍ମାରେ କେବଳ ଉପପନ୍ନ ହୁଏ । ଅନ୍ୟ କୌଣସି ସ୍ଥାନରେ ନୁହେଁ, ଏହାଦ୍ୱାରା ଭୂମା ପରମାତ୍ମା ବୋଲି ସିଦ୍ଧ ହୁଏ ।

## ३ अक्षराधिकरणम् । सू० १० - १२

## ଅକ୍ଷରାଧିକରଣ-୩

### अक्षरमम्बरान्तधृते: ॥ १० ॥

### (୧) ଅକ୍ଷରମମ୍ବରାନ୍ତଧୃତେଃ ॥ ୧ । ୩ । ୧୦

ଅକ୍ଷରମ୍-ଏତଦ୍ଵୈ ତଦକ୍ଷରଂ ଗାର୍ଗି, ଏହି ବେଦବାକ୍ୟରେ ପ୍ରତିପାଦିତ ଅକ୍ଷର ବ୍ରହ୍ମ ଅଟେ । ଅମ୍ବରାନ୍ତଧୃତେଃ-କାରଣ-ପୃଥିବୀଠାରୁ ଆକାଶ ପର୍ଯ୍ୟନ୍ତ ସମସ୍ତ ବିକାର ପଦାର୍ଥକୁ ସେ ଧାରଣ କରିଛି ।

(୨) ମୂଳ-(କ) 'କସ୍ମିନ୍ନୁ ଖଲ୍ୱାକାଶ ଓତଶ୍ଚ ପ୍ରୋତଶ୍ଚେତି' 'ସ ହୋବାଚୈ-ତଦ୍ଵୈ ତଦକ୍ଷରଂ ଗାର୍ଗି ବ୍ରାହ୍ମଣା ଅଭିବଦନ୍ତ୍ୟସ୍ଥୂଲମନଣ୍ୱ', (ବୃ୩-୮-୭,୮) ଇତ୍ୟାଦି ଶ୍ରୂୟତେ । (ଖ) ତତ୍ର ସଂଶୟଃ-କିମକ୍ଷରଶବ୍ଦେନ ବର୍ଣ୍ଣ ଉଚ୍ୟତେ, କିମ୍ବା ପରମେଶ୍ୱର ଇତି । ତତ୍ରାକ୍ଷରସମମ୍ନାୟା ଇତ୍ୟାଦାବକ୍ଷରଶବ୍ଦସ୍ୟ ବର୍ଣ୍ଣେ ପ୍ରସିଦ୍ଧତ୍ୱାତ୍, ପ୍ରସିଦ୍ଧ୍ୟତିକ୍ରମସ୍ୟ ଚାୟୁକ୍ତତ୍ୱାତ୍ । (ଗ) ଓଁକାର ଏବେଦଂ ସର୍ବମ୍', (ଛା ୨-୨୩-୩) ଇତ୍ୟାଦୌ ଚ ଶ୍ରୁତ୍ୟନ୍ତରେ ବର୍ଣ୍ଣସ୍ୟାପ୍ୟୁପାସ୍ୟତ୍ୱେ ନ ସର୍ବାତ୍ମକତ୍ୱାବଧାରଣାତ୍, ବର୍ଣ୍ଣ ଏବ ଅକ୍ଷରଶବ୍ଦ ଇତି ।

**(୨) ଭାଷାଂତର-** (କ) "ଗାର୍ଗୀ-କିନ୍ତୁ ଆକାଶ କେଉଁଠି ଓତପ୍ରୋତ ଅଟେ । ଯାଜ୍ଞବଲ୍‌କ୍ୟ-ହେ ଗାର୍ଗୀ, ଯାହା ତୁମେ ପଚାରୁଛ । ଏହି ତତ୍ତ୍ୱକୁ ବ୍ରହ୍ମବେତ୍ତା ଅକ୍ଷର କହେ । ଏହା ସ୍ଥୁଳ ନୁହେଁ କି ସୂକ୍ଷ୍ମ ନୁହେଁ ।" ଏହି ପ୍ରକାର ଶୁଣାଯାଏ ।

(ଖ) ସଂଶୟ-ଅକ୍ଷରଶବ୍ଦଦ୍ୱାରା ବର୍ଣ୍ଣ ଗ୍ରହଣ କରାଯାଏ କି ପରମାତ୍ମାର ? ପୂର୍ବପକ୍ଷ-'ତତ୍ରାକ୍ଷରସମାମ୍ନାୟ', ଏଠାରେ ଅକ୍ଷର ଶବ୍ଦ ବର୍ଣ୍ଣରେ ପ୍ରସିଦ୍ଧ ହୁଏ । କିନ୍ତୁ ପ୍ରସିଦ୍ଧର ଅତିକ୍ରମଣ କରିବା ଯୁକ୍ତିଯୁକ୍ତ ନୁହେଁ ।

(ଗ) 'ଏହି ସବୁ ଓଁକାର ଅଟେ', ଇତ୍ୟାଦି ଅନ୍ୟ ଶ୍ରୁତିଦ୍ୱାରା ଉପାସ୍ୟ ରୂପରେ ବର୍ଣ୍ଣରେ ମଧ୍ୟ ସର୍ବାତ୍ମକତ୍ୱର ଅବଧାରଣା ହୁଏ, ତେଣୁ ଅକ୍ଷର ଶବ୍ଦ ବର୍ଣ୍ଣ ବାଚକ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ଉଚ୍ୟତେ-ପର ଏବାତ୍ମାଽକ୍ଷରଶବ୍ଦବାଚ୍ୟଃ । କସ୍ମାତ୍ । (ଖ) ଅମ୍ବରାନ୍ତଧୃତେଃ-ପୃଥିବ୍ୟାଦେରାକାଶାନ୍ତସ୍ୟ ବିକାରଜାତସ୍ୟ ଧାରଣାତ୍ । ତତ୍ର ହି ପୃଥିବ୍ୟାଦେଃ ସମସ୍ତବିକାରଜାତସ୍ୟ କାଳତ୍ରୟବିଭକ୍ତସ୍ୟ 'ଆକାଶ ଏବ ତଦ୍‌ବୋତଂ ଚ ପ୍ରୋତଂ ଚ', ଇତ୍ୟାକାଶେ ପ୍ରତିଷ୍ଠିତତ୍ୱମୁକ୍ତା 'କସ୍ମିନ୍ନୁ ଖଲ୍ୱାକାଶ ଓତଶ୍ଚ ପ୍ରୋତଶ୍ଚ',

 

ଇତ୍ୟନେନ ପ୍ରଶ୍ନେନେଦମକ୍ଷରମବତାରିତମ୍ । ତଥା ଚୋପସଂହୃତମ୍-'ଏତସ୍ମିନ୍ନ ଖଲ୍ୱକ୍ଷରେ ଗାର୍ଗ୍ୟାକାଶ ଓତଶ୍ଚ ପ୍ରୋତଶ୍ଚ', ଇତି । (ଗ) ନ ଚେୟମମ୍ବରାନ୍ତଧୃତିର୍ବ୍ରହ୍ମଣୋଽନ୍ୟତ୍ର ସମ୍ଭବତି । ଯଦପି 'ଓଁକାର ଏବେଦଂ ସର୍ବମ୍', ଇତି । ତଦପି ବ୍ରହ୍ମପ୍ରତିପତ୍ତିସାଧନତ୍ୱାତ୍ ସ୍ତୁତ୍ୟର୍ଥଂ ଦ୍ରଷ୍ଟବ୍ୟମ୍' ତସ୍ମାନ୍ନ କ୍ଷରତ୍ୟଶ୍ନୁତେ ଚେତି ନିତ୍ୟତ୍ୱ ବ୍ୟାପିତ୍ୱାଭ୍ୟାମକ୍ଷରଂ ପରମେବ ବ୍ରହ୍ମ ।

(୩) ଭାଷାଂତର-ସିଦ୍ଧାନ୍ତ-(କ) ଏହି ପ୍ରକାର ହୁଅନ୍ତେ ପରମାତ୍ମା ଅକ୍ଷରଶବ୍ଦବାଚ୍ୟ ବୋଲି କୁହାଯାଇଛି । କିପରି ?

(ଖ) ଏହା ଦ୍ୱାରା 'ସେ ଆକାଶ ପର୍ଯ୍ୟନ୍ତ ଧାରଣ କରେ । ଅର୍ଥାତ୍ ପୃଥିବୀଠାରୁ ଆକାଶପର୍ଯ୍ୟନ୍ତ ବିକାଶ ସମୂହକୁ ଧାରଣ କରେ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକାଳରେ ବିଭକ୍ତ ହୋଇ ପୃଥିବ୍ୟାଦିସବୁ ବିକାର ସମୂହକୁ 'ଆକାଶ ଏବ ତଦ୍‌ବୋତଂ ପ୍ରୋତଞ୍ଚ', ବୋଲି ଏହା ଆକାଶରେ ପ୍ରତିଷ୍ଠିତ କରି 'କସ୍ମିନ୍ନୁ ଖଲ୍ୱାକାଶ ଓତଶ୍ଚ ପ୍ରୋତଶ୍ଚ', ବୋଲି ପ୍ରଶ୍ନରେ ଏହି ଅକ୍ଷରର ଅବତାରଣ କରାଯାଇଛି । ପୁନଶ୍ଚ 'ଏତସ୍ମିନ୍ନୁ ଖଲ୍ୱକ୍ଷରେ ଗାର୍ଗ୍ୟାକାଶ ଓତଶ୍ଚ ପ୍ରୋତଶ୍ଚ' କହି ଉପସଂହାର କରିଛି ।

(ଗ) ଏହି ଆକାଶ ପର୍ଯ୍ୟନ୍ତ ଧାରଣ କରିବା ବ୍ରହ୍ମବ୍ୟତିତ ଅନ୍ୟଠାରେ ସମ୍ଭବ ନୁହେଁ । 'ଓଁ କାର ଏବେଦଂ ସର୍ବମ୍', ଏହି ବାକ୍ୟରେ ବ୍ରହ୍ମଜ୍ଞାନର ସାଧନ ହେବାରୁ ଏହା ସ୍ତୁତି ପାଇଁ ସମ୍ଭବ ହୁଏ । ତେଣୁ 'ଏହା ନଷ୍ଟ ହୁଏ ନାହିଁ ଏବଂ ସର୍ବବ୍ୟାପକ ଅଟେ', ଏହି ବ୍ୟୁତ୍ପତ୍ତି ଦ୍ୱାରା ଅକ୍ଷରଂ ନିତ୍ୟ ଓ ବ୍ୟାପକ ହେବାରୁ ପରଂବ୍ରହ୍ମ ହୁଏ ବୋଲି ସିଦ୍ଧ ହୁଏ ।

(୧) ମୂଳ-(କ) ସ୍ୟାଦେତତ୍-କାର୍ଯ୍ୟସ୍ୟ ଚେତ୍ କାରଣାଧୀନତ୍ୱମ୍-ମ୍ବରାନ୍ତଧୃତିରଭ୍ୟୁପଗମ୍ୟତେ, ପ୍ରଧାନକାରଣବାଦିନୋଽପୀୟମୁପଦ୍ୟତେ । କଥମମ୍ବ-ରାନ୍ତଧୃତେ ର୍ବ୍ରହ୍ମତ୍ୱପ୍ରତିପ୍ରତ୍ତିରିତି ? ଅତ ଉତ୍ତରଂ ପଠତି-

**(୧) ଭାଷାଂତର**-(କ) ଆକାଶ ପର୍ଯ୍ୟନ୍ତ କାର୍ଯ୍ୟକୁ କାରଣର ଅଧୀନରେ ରହିବା ଯଦି ଅମ୍ବରାନ୍ତଧୃତିର ଅର୍ଥ ହୁଏ ବୋଲି ସ୍ୱୀକାର କରାଯାଏ, ତେବେ ପ୍ରଧାନକାରଣବାଦିର ମତରେ ପ୍ରଧାନଠାରେ ମଧ୍ୟ ଅମ୍ବରାନ୍ତଧୃତି ଉପପନ୍ନ ହେବା ସମ୍ଭବ ବୋଲି ଶଙ୍କା କରାଯାଏ । ଆକାଶ ପର୍ଯ୍ୟନ୍ତ ଧାରଣା କରିବା ଦ୍ୱାରା ଅକ୍ଷର ବ୍ରହ୍ମ କିପରି ହୁଏ ? ଏହାର ସମାଧାନ ପାଇଁ କୁହାଯାଇଛି-

## सा च प्रशासनात् ॥ ११ ॥

## (୨) ସା ଚ ପ୍ରାଶାସନାତ୍ । ୧ । ୩ । ୧୧

ସା ଚ - ଏହି ଅମ୍ବରାନ୍ତଧୃତ ପାରମେଶ୍ୱରର କର୍ମ ହୁଏ । ପ୍ରଶାସନାତ୍-କାରଣ- 'ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି' ଏହି ବେଦବାକ୍ୟରେ ପ୍ରଶାସନ କୁହାଯାଇଛି ।

(୩) ମୂଳ-(କ) ସା ଽମ୍ବରାନ୍ତଧୃତିଃ ପରମେଶ୍ୱରସ୍ୟୈବ କର୍ମ । କସ୍ମାତ୍ ? ପ୍ରଶାସନାତ୍ । ପ୍ରାଶାସନଂ ହୀହ ଶ୍ରୂୟତେ - 'ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି ସୂର୍ଯ୍ୟଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ', (ବୃହ ୩-୮-୯) ଇତ୍ୟାଦି । (ଖ) ପ୍ରଶାସନଞ୍ଚ ପାରମେଶ୍ୱରଂ କର୍ମ, ନା ଚେତନସ୍ୟ ପ୍ରଧାନସ୍ୟ ପ୍ରଶାସନଂ ଭବତି, ନ ହ୍ୟଚେତନାନାଂ - ଘଟାଦିକରଣାନାଂ ମୃଦାଦୀନାଂ ଘଟାଦିବିଷୟଂ ପ୍ରଶାସନମସ୍ତି ।

**(୩) ଭାଷାଂତର-** (କ) ଏହି ଆକାଶପର୍ଯ୍ୟନ୍ତ ଧାରଣ କରିବା ପରମେଶ୍ୱରର କାମ । କାରଣ-ବେଦରେ ପ୍ରଶାସନଶବ୍ଦ କୁହାଯାଇଛି । 'ହ ଗାର୍ଗୀ । ଏହି ଅକ୍ଷର ଅନୁସାରେ ସୂର୍ଯ୍ୟ, ଚନ୍ଦ୍ର ବିଶେଷ ରୂପରେ ଧାରଣ ହୋଇ ସ୍ଥିର ରହନ୍ତି', ଇତ୍ୟାଦି ଏହି ପ୍ରଶାସନର ଶ୍ରୁତି ଅଟେ ।

(ଖ) ପ୍ରଶାସନ ପରମେଶ୍ୱରର କର୍ମ, କିନ୍ତୁ ଅଚେତନ ପ୍ରଧାନଠାରେ ପ୍ରଶାସନ ସମ୍ଭବ ନୁହେଁ । କାରଣ-ଘଟାଦିର କାରଭୂତ ଅଚେତନମୃଦାଦିରେ ଘଟାଦିବିଷୟକ ଅନୁଶାସନ ହୁଏ ନାହିଁ ।

## अन्यभावव्यावृत्तेस्च ॥ १२ ॥

## (୧) ଅନ୍ୟ ଭାବବ୍ୟାବୃତ୍ତେଶ୍ଚ ॥ ୧-୩-୧୨

ଅନ୍ୟଭାବବ୍ୟାବୃତ୍ତେଃ ଚ = ପ୍ରଧାନାଦିର ଧର୍ମ ଅଚେତନତ୍ୱାଦି ରହିତ ହେଲେ ମଧ୍ୟ ଅକ୍ଷର ପରଂବ୍ରହ୍ମ ହୁଏ । ପ୍ରଧାନ ନୁହେଁ ।

(୨) ମୂଳ-(କ) ଅନ୍ୟଭାବବ୍ୟାବୃତ୍ତେଶ୍ଚ କାରଣାଦ୍ ବ୍ରହ୍ମୈବାକ୍ଷରଶବ୍ଦବାଚ୍ୟମ୍ । ତସ୍ୟୈବାମ୍ବରାନ୍ତଧୃତିଃ କର୍ମ ନାନ୍ୟସ୍ୟ କସ୍ୟଚିତ୍ । କିମିଦନ୍ୟ ଭାବ ବ୍ୟାବୃତ୍ତେରିତି ? ଅନ୍ୟସ୍ୟ ଭାବୋଽନ୍ୟଭାବଃ, ତସ୍ମାଦ୍ବ୍ୟାବୃତ୍ତିରନ୍ୟଭାବ ବ୍ୟାବୃତ୍ତିରିତି ତସ୍ୟାଃ । (ଖ) ଏତଦୁକ୍ତଂ ଭବତି-ଯଦନ୍ୟଦ୍ ବ୍ରହ୍ମଣୋଽକ୍ଷର ଶବ୍ଦବାଚ୍ୟ ମିହାଶଙ୍କ୍ୟତେ ତଦ୍ଭାବାଦିଦମ୍ବରାନ୍ତବିଧାରଣମକ୍ଷରଂ ବ୍ୟାବର୍ତ୍ତୟତି ଶ୍ରୁତିଃ-'ତଦ୍ବା ଏତଦକ୍ଷରଂ ଗାର୍ଗ୍ୟ

ଦୃଷ୍ଟଂ, ଦ୍ରଷ୍ଟ୍ରଶ୍ରୁତଂ, ଶ୍ରୋତ୍ରମତଂ ମନ୍ତ୍ରବିଜ୍ଞାତଂ ବିଜ୍ଞାତୃଂ', (ବୃ ୩-୮-୧୧) ଇତି । (ଗ) ତତ୍ରା ଦୃଷ୍ଟତ୍ୱାଦିବ୍ୟପଦେଶଃ ପ୍ରଧାନସ୍ୟାପି ସମ୍ଭବତି, ଦୃଷ୍ଟୃତ୍ୱାଦିବ୍ୟପଦେଶସ୍ତୁ ନ ସମ୍ଭବତି, ଅଚେତନତ୍ୱାତ୍ । ତଥା 'ନାନ୍ୟଦ୍‌ତୋଽସ୍ତି ଦ୍ରଷ୍ଟୃ ନାନ୍ୟଦତୋଽସ୍ତି ଶ୍ରୋତୃ, ନାନ୍ୟଦତୋଽସ୍ତିମନ୍ତୃ ନାନ୍ୟଦତୋଽସ୍ତି ବିଜ୍ଞାତୃ', ଇତ୍ୟାତ୍ମଭେଦ ପ୍ରତିଷେଧାତ୍ । (ଘ) ନ ଶରୀରସ୍ୟାପ୍ୟୁପାଧିମତୋଽକ୍ଷରଶବ୍ଦବାଚ୍ୟତ୍ୱମ୍, 'ଅଚକ୍ଷୁଷ୍କମଶ୍ରୋତ୍ରମବାଗମନଃ', (ବୃ ୩-୮-୮) ଇତି ଚୋପାଧିମତ୍ତା ପ୍ରତିଷେଧାତ୍ । ନହି ନିରୁପାଧିକଃ ଶାରୀରୋ ନାମ ଭବତି । ତସ୍ମାତ୍‌ପରମେବ ବ୍ରହ୍ମାକ୍ଷରମିତି ନିଶ୍ଚୟଃ ।

**(୨) ଭାଷାଂତର-** (କ) ଅନ୍ୟଭାବ ବ୍ୟାବୃତ୍ତିରୂପକାରଣଦ୍ୱାରା ବ୍ରହ୍ମ ଅକ୍ଷର ଶବ୍ଦବାଚ୍ୟ ହୁଏ । ଆକାଶ ପର୍ଯ୍ୟନ୍ତ ଧାରଣ କରିବା ଏହାର କାର୍ଯ୍ୟ, କିନ୍ତୁ ଅନ୍ୟର ନୁହେଁ । ଏହି ଅନ୍ୟଭାବବ୍ୟାବୃତ୍ତି କଣ ? ଅନ୍ୟର ଭାବ, ଅନ୍ୟଭାବ ଅର୍ଥାତ୍ ଅନ୍ୟର ଧର୍ମ, ଏହାଦ୍ୱାରା ଯେଉଁଭେଦ, ତାହାକୁ ଅନ୍ୟଭାବବ୍ୟାବୃତ୍ତି କୁହାଯାଏ ।

(ଖ) ତେଣୁ ଏହାହିଁ ତାତ୍ପର୍ଯ୍ୟ ଯେ-ବ୍ରହ୍ମଭିନ୍ନ ଅନ୍ୟର ଅର୍ଥ ଅକ୍ଷର ଶବ୍ଦବାଚ୍ୟ ଅଟେ ବୋଲି ଶଙ୍କା ହେଉଛି । ପରନ୍ତୁ 'ହେ ଗାର୍ଗୀ । ସେ ଏହି ଅକ୍ଷର ନିଜଦୃଷ୍ଟିର ବିଷୟ ନୁହେଁ, କିନ୍ତୁ ଦ୍ରଷ୍ଟା ଶ୍ରବଣ ବିଷୟ ନୁହେଁ । କିନ୍ତୁ ଶ୍ରୋତା ମନନବିଷୟ ନୁହେଁ, କିନ୍ତୁ ମନ୍ତା ନିଜେ ଅବିଜ୍ଞାତ ହୋଇ ଅନ୍ୟର ସ୍ୱରୂପଦ୍ୱାରା ଏହା ଆକାଶ ପର୍ଯ୍ୟନ୍ତ ଧାରଣ କରିଥିବା ଅକ୍ଷରର ବ୍ୟାବୃତ୍ତି କରୁଛି ।

(ଗ) ଏଥିରେ ଅଦୃଷ୍ଟତ୍ୱାଦିବ୍ୟପଦେଶ ପ୍ରଧାନଠାରେ ସମ୍ଭବ ହୁଏ । ପରନ୍ତୁ ଦ୍ରଷ୍ଟୃତ୍ୱାଦିବ୍ୟପଦେଶ ଏଠାରେ ସମ୍ଭବ ନୁହେଁ; କାରଣ ସେ ଅଚେତନ ଅଟେ । ଏହି ପ୍ରକାର 'ଏହା ପ୍ରକୃତରେ ଅକ୍ଷରଭିନ୍ନ କୌଣସି ଦ୍ରଷ୍ଟା ନୁହେଁ'; ଏହି ଶ୍ରୁତି ଆତ୍ମଭିନ୍ନ ବସ୍ତୁର ପ୍ରତିଷେଧ କରେ ।

(ଘ) ତେଣୁ ଉପାଧିଯୁକ୍ତ ଜୀବ ମଧ୍ୟ ଅକ୍ଷର ଶବ୍ଦବାଚ୍ୟ ନୁହେଁ । କାରଣ- 'ସେ ଚକ୍ଷୁରହିତ, ଶ୍ରୋତ୍ର ରହିତ, ବାଣୀରହିତ ତଥା ମନରହିତ', ଏହିପ୍ରକାର ବେଦବାକ୍ୟରେ ଉପାଧିମତ୍ୱର ପ୍ରତିଷେଧ କରାଯାଇଛି । ଉପାଧି ବିନା ଜୀବଭାବ ସମ୍ଭବ ନୁହେଁ । ଏଠାରେ ନିଶ୍ଚିତ ଯେ ଅକ୍ଷର ଶବ୍ଦବାଚ୍ୟ ପରଂବ୍ରହ୍ମ ଅଟେ ।

## ४ ईक्षतिकर्मव्यपदेशाधिकरणम् । सू० १३

## ଈକ୍ଷତିକର୍ମବ୍ୟପଦେଶାଧ୍ୟକରଣ-୪

## ईक्षतिकर्मव्यपदेशात्सः ॥ १३ ॥

## (୧) ଈକ୍ଷତି କର୍ମବ୍ୟପଦେଶାତ୍ ସଃ ॥ ୧-୩-୧୩

ସଃ= 'ଯଃ ପୁନରେତଂ' ଏହି ବେଦବାକ୍ୟରେ ପରଂବ୍ରହ୍ମହିଁ ଧ୍ୟାନଯୋଗ୍ୟ । ଈକ୍ଷତିକର୍ମବ୍ୟପଦେଶାତ୍=କାରଣ, ପରାତ୍ପରଂ ପୁରୀଶୟଂ ପୁରୁଷମୀଯତେ, ଏହି ବାକ୍ୟଶେଷରେ ଧ୍ୟେୟର ଦର୍ଶନ-ବିଷୟରୂପଦ୍ୱାରା ଉପଦେଶ ହୁଏ ।

(୨) ମୂଳ-(କ) 'ଏତଦ୍ୱୈ ସତ୍ୟକାମ ପରଂ ଚାପରଂ ବ୍ରହ୍ମ ଯଦୋଁକାରସ୍ତସ୍ମାଦ୍‌ବିଦ୍ୱାନେତେନୈବାୟତନେନୈକ ତରମନ୍ୱେତି', ଇତି ପ୍ରକୃତ୍ୟ ଶ୍ରୂୟତେ 'ଯଃ ପୁନରେତଂ ତ୍ରିମାତ୍ରେଣୋମିତ୍ୟେତେନୈବାକ୍ଷରେଣ ପରଂ ପୁରୁଷମଭିଧ୍ୟାୟୀତ (ପ୍ର ୫-୨-୫) ଇତି । (ଖ) କିମସ୍ମିନ୍ ବାକ୍ୟେ ପରଂବ୍ରହ୍ମାଭିଧ୍ୟାତବ୍ୟମୁପଦିଶ୍ୟତେ ଆହୋସ୍ୱିଦପରମିତି । ଏତେନୈବାୟତନେନ ପରମପରଂ ବୈକତରମନ୍ୱେତୀତି ପ୍ରକୃତ୍ୟାତ୍‌ସଂଶୟଃ । (ଗ) ତତ୍ରାପରମିଦଂ ବ୍ରହ୍ମେତି ପ୍ରାପ୍ତାମ୍ କସ୍ମାତ୍ ? ସ ତେଜସି ସୂର୍ଯ୍ୟେ ସମ୍ପନ୍ନଃ ସ ସାମଭିରୁନ୍ନୀୟତେ ବ୍ରହ୍ମଲୋକମ୍', ଇତି ଚ ତଦ୍‌ବିଦୋ ଦେଶପରିଚ୍ଛିନ୍ନସ୍ୟ ଫଳସ୍ୟୋଚ୍ୟମାନତ୍ୱାତ୍ । ନହି ପରଂବ୍ରହ୍ମ ବିଦେଶ ପରିଚ୍ଛିନ୍ନଂ ଫଳମଶ୍ନୁବିତେତି ଯୁକ୍ତମ୍, ସର୍ବଗତତ୍ୱାତ୍ ପରସ୍ୟ ବ୍ରହ୍ମଣଃ (ଘ) ନନ୍ୱପରଂବ୍ରହ୍ମପରିଗ୍ରହେ ପରଂ ପୁରୁଷମିତି ବିଶେଷଣଂ ନୋପପଦ୍ୟତେ, ନୈଷୋ ଦୋଷଃ, ପିଣ୍ଡାପେକ୍ଷୟା ପ୍ରାଣସ୍ୟ ପରତ୍ୱୋପପତ୍ତେଃ ।

(୨) ଭାଷାଂତର- (କ) 'ପିପ୍ପଳାଦ-ହେ ସତ୍ୟକାମ ! ଏଠାରେ ଯେଉଁ ଓଁକାର ଅଛି, ସେ ନିଶ୍ଚିତ ଭାବରେ ପର ଓ ଅପର ବ୍ରହ୍ମ । ତେଣୁ ବିଦ୍ୱାନ୍ ଏହି ଓଁକାର ଧ୍ୟାନ ରୂପ ପ୍ରାପ୍ତି ସାଧନଦ୍ୱାରା ତାହାଠାରେ ଏକତ୍ୱ ପ୍ରାପ୍ତ ହୁଏ', ଏତାଦୃଶ ପ୍ରସ୍ତୁତ କରି 'କିନ୍ତୁ ଯାହା ଉପାସକ ତ୍ରିମାତ୍ରା ବିଶିଷ୍ଟ ଓଁ ଏହି ଅକ୍ଷରଦ୍ୱାରା ପରମପୁରୁଷକୁ ଧ୍ୟାନ କରେ ।' ଏହି ଶ୍ରୁତି କହେ ।

(ଖ) ଏହି ବାକ୍ୟରେ ଧ୍ୟାତବ୍ୟ ରୂପରେ ପରଂବ୍ରହ୍ମର କି ଅପରଂବ୍ରହ୍ମର ଉପଦେଶ ହେଉଛି ? ଏହି ଓଁ ରୂପ ପ୍ରାପ୍ତି ସାଧନଦ୍ୱାରା ପର ଓ ଅପର ଦୁହିଁଙ୍କଠାରୁ ଏକବ୍ରହ୍ମ ମିଳେ । ଏହି ପ୍ରକାର ପ୍ରକୃତ ହେଲେ ସଂଶୟ ହୁଏ ।

(ଗ) ପୂର୍ବପକ୍ଷ-ଏଠାରେ ଓଁ କାର ଅପରଂବ୍ରହ୍ମ, କାରଣ- 'ସେ ତେଜୋମୟ ସୂର୍ଯ୍ୟଲୋକକୁ ପାଏ', 'ସାମଶ୍ରୁତିଦ୍ୱାରା ବ୍ରହ୍ମଲୋକକୁ ସେ ନେଇଯାଏ', ଏହିପ୍ରକାର



ଓଁକାର ଜାଣିବା ନିମିତ୍ତ ଦେଶ ପରିଚ୍ଛିନ୍ନ (ସୂର୍ଯ୍ୟ ଓ ବ୍ରହ୍ମଲୋକ ଗମନରୂପ ସୀମିତ) ଫଳ କୁହାଯାଏ । ପରଂବ୍ରହ୍ମବେତ୍ତା ଦେଶପରିଚ୍ଛିନ୍ନଫଳ ଭୋଗକରେ ବୋଲି କହିବା ଠିକ୍ ନୁହେଁ । କାରଣ ପରଂବ୍ରହ୍ମ ସର୍ବଗତ ଅଟେ ।

(ଘ) ପରନ୍ତୁ ପରଂବ୍ରହ୍ମକୁ ଗ୍ରହଣ କଲାପରେ 'ପରଂପୁରୁଷଂ' ଏହି ବିଶେଷଣ ସଙ୍ଗତ ହୁଏ ନାହିଁ କି ? ଏହା ଦୋଷ ନୁହେଁ । କାରଣ-ପିଣ୍ଡ (ବିରାଟ)ର ଅପେକ୍ଷା ପ୍ରାଣରେ ମଧ୍ୟ ପରତ୍ୱ ହୋଇପାରେ ।

(୩) ମୂଳ-(କ) ଏବଂ ପ୍ରାପ୍ତେଽଭିଧୀୟତେପରମେବ ବ୍ରହ୍ମୋହାଭିଧ୍ୟାତବ୍ୟମୁପ-ଦିଶ୍ୟତେ । କସ୍ମାତ୍ ? ଈକ୍ଷତି କର୍ମବ୍ୟପଦେଶାତ୍' ଈକ୍ଷତିର୍ଦର୍ଶନମ୍ । ଦର୍ଶନବ୍ୟାପ୍ୟ-ମୀକ୍ଷତିକର୍ମ । ଈକ୍ଷତିକର୍ମତ୍ୱେନାସ୍ୟାଭିଧ୍ୟାତବ୍ୟସ୍ୟ ପୁରୁଷସ୍ୟ ବାକ୍ୟଶେଷେ ବ୍ୟପଦେଶୋ ଭବତି ସ ଏତସ୍ମାଜ୍ଜୀବଘନାତ୍ପରାତ୍ ପରଂ ପୁରିଶୟଂ ପୁରୁଷମୀକ୍ଷତେ', ଇତି । (ଖ) ତାତ୍ରାଭିଧ୍ୟାୟତେରତଥାଭୂତମପି ବସ୍ତୁ କର୍ମ ଭବତି, ମନୋରଥକଳ୍ପିତସ୍ୟାଭିଧ୍ୟାୟ-ତିକର୍ମତ୍ୱାତ୍ । ଈକ୍ଷତେସ୍ତୁ ଯଥାଭୂତମେବ ବସ୍ତୁ ଲୋକେ କର୍ମଦୃଷ୍ଟମିତ୍ୟତଃ ପରମାତ୍ମୈବାୟଂ ସମ୍ୟଗ୍ ଦର୍ଶନଭୂତବିଷୟଭୂତଂ ଈକ୍ଷତିକର୍ମତ୍ୱେନ ବ୍ୟପଦିଷ୍ଟ ଇତି ଗମ୍ୟତେ । ସ ଏବ ଚେହ ପରପୁରୁଷଶବ୍ଦାଭ୍ୟାମଭିଧ୍ୟାତବ୍ୟଃ ପ୍ରତିଜ୍ଞାୟତେ ।

**(୩) ଭାଷାଂତର-** (କ) ସିଦ୍ଧାନ୍ତ-'ଯଃ ପୁନରେତଂ' ଏହି ବାକ୍ୟରେ ପରଂବ୍ରହ୍ମରର ଅଭିଧ୍ୟାତବ୍ୟରୂପରେ ଉପଦେଶ ଅଛି । କାରଣ-ଈକ୍ଷତିର କର୍ମ କୁହାଯାଇଛି । ଈକ୍ଷତି ଅର୍ଥ ଦର୍ଶନ, ଈକ୍ଷତି କର୍ମ ଅର୍ଥ ଦର୍ଶନ ବିଷୟ ରୂପରେ ବ୍ୟପଦେଶ ହୁଏ । ଓଁକାରର ଉପାସକ ଜୀବଘନ-ହିରଣ୍ୟଗର୍ଭ ରୂପ ପରଠାରୁ ପରଶରୀରରେ ପ୍ରବେଶ କରି ପୁରୁଷପରମାତ୍ମାକୁ 'ମୁଁ ବ୍ରହ୍ମ ଅଟେ ବୋଲି କହେ ।'

(ଖ) ଏଠାରେ ଅତଥାଭୂତ ମିଥ୍ୟାବସ୍ତୁ ମଧ୍ୟ ଅଭିଧାନର ବିଷୟ ହୁଏ । ପରନ୍ତୁ ଈକ୍ଷତିର କର୍ମ ସତ୍ୟବସ୍ତୁ କେବଳ ସଂସାରରେ ଦେଖାଯାଏ । ତେଣୁ ଯଥାର୍ଥଜ୍ଞାନର ବିଷୟରୂପ ଏହି ପରମାତ୍ମା ଈକ୍ଷତିକର୍ମଦ୍ୱାରା ଉପଦିଷ୍ଟ ବୋଲି ଜଣାପଡ଼େ । ସେ ପର ଏବଂ ପୁରୁଷଶବ୍ଦଦ୍ୱାରା ଅଭିଧ୍ୟାତବ୍ୟରୂପରେ ପ୍ରତ୍ୟଭିଜ୍ଞାତ ହୁଏ ।

(୪) ମୂଳ-(କ) ନନ୍ୱଭିଜ୍ଞାନେ ପରଃ ପୁରୁଷ ଉକ୍ତଃ, ଈକ୍ଷଣେ ତୁ ପରାତ୍ପରଃ କଥମିତର ଇତରତ୍ର ପ୍ରତ୍ୟଭିଜ୍ଞାୟତ ଇତି । (ଖ) ଅତ୍ରୋଚ୍ୟତେପରପୁରୁଷଶବ୍ଦୌ ତାବଦୁଭୟତ୍ର ସାଧାରଣୌ ନ ଚାତ୍ର ଜୀବଘନଶବ୍ଦେନ ପ୍ରକୃତୋଽଭିଧ୍ୟାତବ୍ୟଃ ପରଃ

ପୁରୁଷଃ ପରାମୃଶ୍ୟତେ, ଯେନ ତସ୍ମାତ୍, ପରାତ୍ପରୋଽୟମୀକ୍ଷିତବ୍ୟଃ ପୁରୁଷୋଽନ୍ୟଃ ସ୍ୟାତ୍ । (ଗ) କସ୍ତର୍ହି ଜୀବଘନ ଇତି ? ଉଚ୍ୟତେ-ଘନୋ ମୂର୍ତ୍ତିଃ । ଜୀବଲକ୍ଷଣୋ ଘନୋ ଜୀବଘନଃ । ସୈନ୍ଧବଖିଲ୍ୟବଦ୍ୟଃ ପରମାତ୍ମନୋ ଜୀବରୂପଃ ଖିଲ୍ୟଭାବଃ ଉପାଧିକୃତଃ ପରଶ୍ଚ ବିଷୟେନ୍ଦ୍ରିୟେଭ୍ୟଃ ସୋଽତ୍ର ଜୀବଘନ ଇତି । (ଘ) ଅପର ଆହ- 'ସ ସାମଭିରୁନ୍ନୀୟତେ ବ୍ରହ୍ମଲୋକମ୍', ଇତ୍ୟତୀତାନନ୍ତରବାକ୍ୟନିର୍ଦ୍ଦିଷ୍ଟୋ ଯୋ ବ୍ରହ୍ମଲୋକଃ ପରଶ୍ଚ ଲୋକାନ୍ତରେଭ୍ୟଃ ସୋଽତ୍ର ଜୀବଘନଂ ଇତ୍ୟୁଚ୍ୟତେ । (ଙ) ଜୀବାନାଂ ହି ସର୍ବେଷାଂ କରଣପରିବୃତ୍ତାନାଂ ସର୍ବକରଣାତ୍ମନି ହିରଣ୍ୟଗର୍ଭେ ବ୍ରହ୍ମଲୋକନିବାସିନି ସଂଘାତୋପପତେର୍ଭବତି ବ୍ରହ୍ମଲୋକୋ ଜୀବଘନଃ । ତସ୍ମାତ୍ ପରୋ ଯଃ ପରମାତ୍ମନେକ୍ଷଣକର୍ମଭୂତଃ ସ ଏବାଭିଧାନେଽପି କର୍ମଭୂତ ଇତି ଗମ୍ୟତେ ।

**(୪) ଭାଷାଂତର-** (କ) ପରନ୍ତୁ ଅଭିଧ୍ୟାନରେ ପରପୁରୁଷ କୁହାଯାଇଛି ଏବଂ ଦର୍ଶନରେ ପରଠାରୁ ପର ଏହି ପରିସ୍ଥିତିରେ ଏକର ଇତରତ୍ର ପ୍ରତ୍ୟଭିଜ୍ଞା କିପରି ହେବ ?

(ଖ) ଏହା ଉପରେ କୁହାଯାଇଛି- ପର ଓ ପୁରୁଷଶବ୍ଦ କିନ୍ତୁ 'ଅକ୍ଷରେଣ ପରଂ ପୁରୁଷମଭିଧ୍ୟାୟୀତ,' 'ସ ଏତସ୍ମାତ୍‌ଜୀବଘନାତ୍ ପରାତ୍ ପରଂ ପୁରିଶୟଂ ପୁରୁଷମୀକ୍ଷତେ', ଏହି ଦୁଇବାକ୍ୟରେ ସମାନ ଅର୍ଥ । ଏଠାରେ ଜୀନଘନଶବ୍ଦରେ ପ୍ରକୃତ ଅଭିଧ୍ୟାତବ୍ୟ ପରପୁରୁଷର ପରାମର୍ଶ ହୁଏ ନାହିଁ । ଯାହାଦ୍ୱାରାକି ସେହି ପରଠାରୁ ପର ଏହି ଦର୍ଶନୀୟ ପୁରୁଷ ଭିନ୍ନ ହୋଇପାରେ ।

(ଗ) ତାହେଲେ ଜୀବଘନ କିଏ ? କୁହାଯାଇଛି-ଘନ ଅର୍ଥ ମୂର୍ତ୍ତି । ଜୀବରୂପ ଘନ ଜୀବଘନ । ଲବଣ ପିଣ୍ଡ ଭଳି ପରମାତ୍ମାର ଉପାଧିକୃତ ଜୀବରୂପ ଅଂଶଭାବ, ଯାହା ବିଷୟ ଏବଂ ଇନ୍ଦ୍ରିୟଠାରୁ ଭିନ୍ନ ସେ ଏଠାରେ ଜୀବଘନ ବୋଲି କୁହାଯାଏ ।

(ଘ) ଏହି ବିଷୟ ପୁନଶ୍ଚ ପୂର୍ବରୁ କୁହାଯାଇଛି- 'ସେ ଉପାସକ ସାମ ଅଭିମାନୀ ଦେବତା ଦ୍ୱାରା ବ୍ରହ୍ମଲୋକକୁ ନେଇଯାଏ ।' ଏହା ଅବ୍ୟବହିତ ପୂର୍ବବାକ୍ୟରେ ନିର୍ଦ୍ଦିଷ୍ଟ ବ୍ରହ୍ମଲୋକ, ଯାହା ଅନ୍ୟ ଲୋକଠାରୁ ପର, ସେ ହିଁ ଜୀବଘନ ବୋଲି କୁହାଯାଇଛି ।

(ଙ) ବ୍ରହ୍ମଲୋକନିବାସୀ ସର୍ବେନ୍ଦ୍ରିୟାତ୍ମକ ହିରଣ୍ୟଗର୍ଭ ଇନ୍ଦ୍ରିୟ ପରିବେଷ୍ଟନୀରେ ସବୁ ଜୀବର ସମଷ୍ଟି ରୂପ ଅଟେ । ତେଣୁ ବ୍ରହ୍ମଲୋକ ହିଁ ଜୀବଘନ । ତେଣୁ ଜଣାଯାଏ ଯେ- ପରପୁରୁଷ ଯାହା ପରମାତ୍ମାଦର୍ଶନର ବିଷୟଭୂତ, ସେ ଅଭିଧ୍ୟାନରେ ମଧ୍ୟ କର୍ମଭୂତ ଅଟେ ।



(୫) ମୂଳ-(କ) ପରଂ ପୁରୁଷମିତି ଚ ବିଶେଷଣଂ ପରମାତ୍ମପରିଗ୍ରହେ ଏବାବକଳ୍ପତେ । ପରୋହି ପୁରୁଷଃ ପରମାତ୍ମୈବ ଭବତି, ଯସ୍ମାତ୍‌ପରଂ କିଞ୍ଚିଦନ୍ୟନ୍ନାସ୍ତି, 'ପୁରୁଷାନ୍ନ ପରଂ କିଂଚିତ୍ ସା କାଷ୍ଠା ସା ପରା ଗତିଃ', ଇତି ଚ ଶ୍ରୁତ୍ୟନ୍ତରାତ୍ । (ଖ) 'ପରଂ ଚାପରଂ ଚ ବ୍ରହ୍ମ ଯଦୋଁକାରଃ', ଇତି ଚ ବିଭଜ୍ୟ ଅନନ୍ତର ମୋଁକାରେଣ ପରଂ ପୁରୁଷମଭିଧାତବ୍ୟଂ ବ୍ରୁବନ୍ ପରମେବ ବ୍ରହ୍ମ ପରଂ ପୁରୁଷଂ ଗମୟତି । 'ଯଥା ପଦୋଦରସ୍ତ୍ୱଚା ବିନିର୍ମୁଚ୍ୟତ ଏବ ହ ବୈ ସ ପାପ୍‌ମନା ବିନିର୍ମୁଚ୍ୟତେ', ଇତି ପାପ୍‌ମବିନିର୍ମୋକଫଳବଚନଂ ପରମାତ୍ମାନମିହାଭିଧାତବ୍ୟଂ ସୂଚୟତି । (ଗ) ଅଥ ଯଦୁକ୍ତଂ-ପରମାତ୍ମାଭିଧାୟିନୋ ନ ଦେଶପରିଚ୍ଛିନ୍ନଫଳଂ ଯୁଜ୍ୟତ ଇତି । (ଘ) ଅତ୍ରୋଚ୍ୟତେତ୍ରିମାତ୍ରେଣୋଁ । କାରେଣାଲମ୍ବନେନ ପରମାତ୍ମ-ମନଭିଧାୟତଃ ଫଳଂ ବ୍ରହ୍ମଲୋକପ୍ରାପ୍ତିଃ କ୍ରମେଣ ଚ ସମ୍ୟଗ୍ ଦର୍ଶନୋତ୍ପତ୍ତିରିତି କ୍ରମମୁକ୍ତ୍ୟଭିପ୍ରାୟମେତଦ୍ ଭବିଷ୍ୟତୀତ୍ୟଦୋଷଃ ।

**(୫) ଭାଷାଂତର-** 'ପରଂ ପୁରୁଷଂ' ଏହି ବିଶେଷଣ ପରମାତ୍ମାର ଗ୍ରହଣ କରିବା ଦ୍ୱାରା ଏହା ସଙ୍ଗତ ହୁଏ । କାରଣ-ପର ପୁରୁଷ ହିଁ ପରମାତ୍ମା ଅଟେ । ଯାହାଦ୍ୱାରା ପର ଓ ଅପର କିଛି ନାହିଁ । 'ପୁରୁଷଠାରୁ ପର କିଛି ନାହିଁ । ସେ ପରମ ଅବଧି ଓ ପରମ ଗତି ଅଟେ ।' ଏହାହିଁ ଦ୍ୱିତୀୟଶ୍ରୁତି ।

(ଖ) 'ଯାହା ଓଁକାର ସେ ପର ଓ ଅପରବ୍ରହ୍ମ ।' ଏହିପରି ବିଭାଗ କରି ଅନନ୍ତର ଓଁକାର ଦ୍ୱାରା ପରପୁରୁଷକୁ ଅଭିଧାତବ୍ୟ କହି ପରଂବ୍ରହ୍ମକୁ ପର ପୁରୁଷ ରୂପରେ ନକ୍ଷା କରାଏ । 'ଯେପରି ସର୍ପ ନିଜକାତିରୁ ବାହାରି ମୁକ୍ତ ହୁଏ, ସେପରି ଉପାସକ ପାପରୁ ବାହାରି ମୁକ୍ତ ହୁଏ । ଏହି ପ୍ରକାର ପାପରୁ ବିନିର୍ମୁକ୍ତରୂପୀଫଳର କଥନ ଏଠାରେ ପରମାତ୍ମାକୁ ଅଭିଧାତବ୍ୟ ରୂପରେ ସୂଚିତ କରେ ।

(ଗ) ଯାହା ଏଠାରେ କୁହାଗଲା କି-ପରମାତ୍ମାର ଅଭିଧାନ କରୁଥିବା ବ୍ୟକ୍ତି ପାଇଁ ଦେଶ ପରିଚ୍ଛିନ୍ନ ଫଳଯୁକ୍ତ ନୁହେଁ ।

(ଘ) କିନ୍ତୁ ତାହା ଉପରେ କୁହାଗଲା-ମାତ୍ରାତ୍ରୟଯୁକ୍ତ ଓଁକାରରୂପ ଆଲମ୍ବନ ଦ୍ୱାରା ପରମାତ୍ମାର ଅଭିଧାନ କରୁଥିବା ଉପାସକକୁ ବ୍ରହ୍ମଲୋକର ପ୍ରାପ୍ତି ଓ କର୍ମଦ୍ୱାରା ତତ୍ତ୍ୱଜ୍ଞାନର ଉତ୍ପତ୍ତି ରୂପଫଳ ମିଳେ । ଏଠାରେ କ୍ରମମୁକ୍ତିର ଅଭିପ୍ରାୟ ଦ୍ୱାରା ହୋଇଯାଏ । ତେଣୁ ଦେଶ ପରିଚ୍ଛିନ୍ନ ଫଳପ୍ରାପ୍ତି କୌଣସି ଦୋଷ ନୁହେଁ ।

## ५ दह्राधिकरणम् । १४ - २१

## ଦହରାଧିକରଣ - ୫

## दहर उत्तरेभ्य: ॥ १४ ॥

## (୧) ଦହର ଉତ୍ତରେଭ୍ୟଃ ॥ ୧-୩-୧୪

ଦହରଃ-'ଅଥ ଯଦିଦମସ୍ମିନ୍' ଇତ୍ୟାଦିବେଦବାକ୍ୟରେ ପଠିତଦହରାକାଶ ପରମାତ୍ମା ଅଟେ । ଉତ୍ତରେଭ୍ୟଃ-କାରଣ-'ଯାବାନ୍ ବା ଅୟମାକାଶସ୍ତାବାନୋ ଷୋଽନ୍ତଃହୃଦୟଃ', ଇତ୍ୟାଦି ବାକ୍ୟଶେଷଗତ ଆକାଶୋପମାନତ୍ୱାଦି ହେତୁଗୁଡ଼ିକର ପ୍ରତିପାଦନ ହେଉଛି ।

(୨) ମୂଳ-(କ) 'ଅଥ ଯଦିଦମସ୍ମିନ୍ ବ୍ରହ୍ମପୁରେ ଦହରଂ ପୁଣ୍ଡରୀକଂ ବେଶ୍ମ ଦହରୋଽସ୍ମିନ୍ନନ୍ତରାକାଶସ୍ତସ୍ମିନ୍ୟଦନ୍ତସ୍ତଦନ୍ୱେଷ୍ଟବ୍ୟଂ ତଦବାବ ବିଜିଜ୍ଞାସିତବ୍ୟମ୍' (ଛା ୮-୧-୧) ଇତ୍ୟାଦିବାକ୍ୟଂ ସମାମ୍ନାୟତେ । ତତ୍ର ଯୋଽୟଂ ଦହରେ ହୃଦୟପୁଣ୍ଡରୀକେ ଦହର ଆକାଶଃ ଶ୍ରୁତଃ ସଃ କିଂ ଭୂତାକାଶଃ, ଅଥବା ପରମାତ୍ମେତି ସଂଶଯ୍ୟତେ । (ଖ) କୁତଃ ସଂଶୟଃ ? ଆକାଶବ୍ରହ୍ମପୁରଶବ୍ଦାଭ୍ୟାମ୍ । ଆକାଶଶବ୍ଦୋ ହ୍ୟୟଂ ଭୂତାକାଶେ ପରସ୍ମିଁଶ୍ଚ ପ୍ରଯୁଜ୍ୟମାନୋ ଦୃଶ୍ୟତେ । ତତ୍ର କିଂ ଭୂତାକାଶ ଇତି ଦହରଃ ସ୍ୟାତ୍ । କିଂବ ପର ଇତି ସଂଶୟଃ । (ଗ) ତଥା ବ୍ରହ୍ମପୁରମିତି କିଂ ଜୀବୋଽତ୍ର ବ୍ରହ୍ମନାମା ତସ୍ୟେଦଂ ପୁରଂ ଶରୀରଂ ବ୍ରହ୍ମପୁରମ୍, ଅଥବା ପରସ୍ୟୈ ବା ବ୍ରହ୍ମଣଃ ପୁରଂ ବ୍ରହ୍ମପୁରମିତି । ତତ୍ର ଜୀବସ୍ୟ ପରସ୍ୟ ବା ଅନ୍ୟତରସ୍ୟ ପୁରସ୍ୱାମିନୋ ଦହରାକାଶତ୍ୱେ ସଂଶୟଃ ।

(୨) ଭାଷାଂତର- (କ) 'ବର୍ତ୍ତମାନ ସେହି ବ୍ରହ୍ମପୁର ଶରୀରରେ ଯେଉଁ ଏହି ସୂକ୍ଷ୍ମ ଆକାଶ ଅଛି, ଏହା ଭିତରେ ଯେଉଁବସ୍ତୁ ଅଛି, ଏହାର ଅନ୍ୱେଷଣ କରିବା ଉଚିତ୍ । ଏହାର ବିଶେଷ ଜିଜ୍ଞାସା କରିବା ଉଚିତ୍ ।' ଇତ୍ୟାଦିଶ୍ରୁତି ବାକ୍ୟ ଅଛି । ଏଠାରେ ସୂକ୍ଷ୍ମହୃଦୟକମଳରେ ଯେଉଁ ଏହି ଦହର ଅଳ୍ପ ଆକାଶ ଶୁଣାଯାଏ, ସେ ଭୂତାକାଶ କି ବିଜ୍ଞାନାତ୍ମା କି ପରମାତ୍ମା ବୋଲି ସଂଶୟ ହେଉଛି ?

(ଖ) କିପରି ସଂଶୟ ହେଉଛି ? ଏହି ବେଦରେ ଆକାଶ ଓ ବ୍ରହ୍ମପୁର ଶବ୍ଦଦ୍ୱାରା । ଏହି ଆକାଶଶବ୍ଦ ଭୂତକାଶରେ ଏବଂ ପରଂବ୍ରହ୍ମରେ ପ୍ରଯୁଜ୍ୟ ହୋଇ ଦେଖାଯାଏ । ସେଠାରେ କଣ ଭୂତାକାଶ ଦହରା ହୋଇପାରେ, କି ପରଂବ୍ରହ୍ମ ?



(ଗ) 'ବ୍ରହ୍ମପୁର' କହିଲେ ଏଠାରେ କଣ ଜୀବନାମକ ବ୍ରହ୍ମ, ତସ୍ୟ ଏହି ପୁର ବା ଶରୀର ବ୍ରହ୍ମପୁର, ଅର୍ଥାତ୍ ପରଂବ୍ରହ୍ମର ପୁର ଶରୀର ବ୍ରହ୍ମପୁର । ସେଠାରେ ସଂଶୟ ହୁଏ ଯେ- ଜୀବର ବା ପରର ବା ଅନ୍ୟକାହାର ପୁରସ୍ୱାମୀ ବା ଘରର ମାଲିକ ବ୍ରହ୍ମପୁର ।

(୩) ମୂଳ-(କ) ତତ୍ରାକାଶଶବ୍ଦସ୍ୟ ଭୂତାକାଶେ ରୂଢତ୍ୱାଦ୍‌ଭୂତାକାଶ ଏବ ଚ ଦହରଶବ୍ଦ ଇତି ପ୍ରାପ୍ତମ୍ । ତସ୍ୟ ଚ ଦହରାୟତନାପେକ୍ଷୟା ଦହରତ୍ୱମ୍ । 'ଯାବାନ୍ ବା ଅୟମାକାଶସ୍ତାବାନେଷୋଽନ୍ତଃହୃଦୟ ଆକାଶ !'' ଇତି ଚ ବାହ୍ୟାଭ୍ୟନ୍ତରଭାବକୃତଭେଦସ୍ୟୋପମାନୋପମେୟଭାବଃ, ଦ୍ୟାବାପୃଥିବ୍ୟାଦି ଚ ତସ୍ମିନ୍ନନ୍ତଃ ସମାହିତମ୍, ଅବକାଶାତ୍ମନାକାଶସ୍ୟୈକତ୍ୱାତ୍ । (ଖ) ଅଥବା ଜୀବୋ ଦହର ଇତି ପ୍ରାପ୍ତମ୍, ବ୍ରହ୍ମପୁରଶବ୍ଦାତ୍ । ଜୀବସ୍ୟ ହୀଦଂ ପୁରଂ ସଚ୍ଛରୀରଂ ବ୍ରହ୍ମପୁରମିତ୍ୟୁଚ୍ୟତ୍ୟେ, ତସ୍ୟ ସ୍ୱକର୍ମଣୋପାର୍ଜିତତ୍ୱାତ୍ । ଭକ୍ତ୍ୟା ଚ ତସ୍ୟ ବ୍ରହ୍ମଶବ୍ଦବାଚ୍ୟତ୍ୱମ୍, (ଗ) ନ ହି ପରସ୍ୟ ବ୍ରହ୍ମଣଃ ଶରୀରେଣ ସ୍ୱସ୍ୱାମିଭାବଃ ସମ୍ବନ୍ଧୋଽସ୍ତି । ତତ୍ର ପୁରସ୍ୱାମିନଃ ପୁରୈକଦେଶେଽବସ୍ଥାନଂ ଦୃଷ୍ଟମ୍ ଯଥା ରାଜ୍ଞଃ । ମନ ଉପାଧିକଶ୍ଚ ଜୀବଃ, ମନଶ୍ଚ ପ୍ରାୟେଣ ହୃଦୟେ ପ୍ରତିଷ୍ଠିତମିତ୍ୟତୋ ଜୀବସ୍ୟୈବେଦଂ ହୃଦୟେଽନ୍ତରାବସ୍ଥାନଂ ସ୍ୟାତ୍ । ଦହରତ୍ୱମପି ଚ ସ୍ୟୈବ ଆରାଗ୍ରୋପମିତତ୍ୱାଦବକଳ୍ପତେ । (ଘ) ଆକାଶୋପମିତତ୍ୱାଦି ଚ ବ୍ରହ୍ମାଭେଦବିବକ୍ଷୟା ଭବିଷ୍ୟତି । ନ ଚାତ୍ର ଦହରସ୍ୟାକାଶସ୍ୟାନ୍ୱେଷ୍ଟବ୍ୟତ୍ୱଂ ଚ ଶ୍ରୂୟତେ । 'ତସ୍ମିନ୍ୟଦନ୍ତଃ' ଇତି ପରବିଶେଷଣତ୍ୱେନୋପାଦାନାଦିତି ।

**(୩) ଭାଷାଂତର-** (କ) ପୂର୍ବପକ୍ଷ-ଏଠାରେ ଆକାଶଶବ୍ଦ ଭୂତାକାଶରେ ରୂଢ଼ ଅଟେ । ଏହାଦ୍ୱାରା ଦହରଶବ୍ଦ ଭୂତାକାଶରେ ବାଚକ ହୁଏ ବୋଲି ଜଣାପଡୁଛି । ଅଳ୍ପ ଆୟତନ ଅପେକ୍ଷା ତାହାଠାରେ ଦହରତ୍ୱ ଅଳ୍ପତ୍ୱ ଅଟେ । 'ଯେତେ ବଡ଼ ଭୂତକାଶ, ସେତେବଡ଼ ହୃଦୟର ମଧ୍ୟରେ ଦହରାକାଶ ରହେ', ଏହି ପ୍ରକାର ବାହ୍ୟଆଭ୍ୟନ୍ତରକୃତ ଭେଦକୁ ନେଇ ଅର୍ଥାତ୍ କଳ୍ପିତ ଭେଦକୁ ନେଇ ଉପମାନୋ-ପମେୟଭାବ ହୁଏ । ଦ୍ୟୁ ପୃଥିବ୍ୟାଦି ଏହାର ଅନ୍ତର୍ଗତ । କାରଣ-ଅବକାଶ ରୂପରେ ଆକାଶ ଏକ ଅଟେ ।

(ଖ) ଅଥବା ଜୀବର ପୁରଥିବାରୁ ସେ ଶରୀର ବ୍ରହ୍ମପୁର ବୋଲି କୁହାଯାଏ । କାରଣ- ଜୀବ ତାହାର ନିଜ କର୍ମରେ ଉପାର୍ଜିତ କରେ ଓ ଗୌଣଶବ୍ଦରେ ଜୀବ ବ୍ରହ୍ମଶବ୍ଦ ବାଚ୍ୟ ହୁଏ ।

(ଗ) ପରଂବ୍ରହ୍ମର କିନ୍ତୁ ଶରୀର ସହିତ ସ୍ୱସ୍ୱାମିତ୍ୱସମ୍ବନ୍ଧ ନାହିଁ । ସଂସାରରେ ଏହା ଜଣାପଡ଼େ କି-ନଗରର ସ୍ୱାମୀ ନଗରର ଗୋଟିଏ ଅଂଶରେ ରହେ ଓ ରାଜା

ରାଜଧାନୀର ଏକ ଅଂଶରେ ରହେ, ସେରିପ ମନଉପାଧିକ ଜୀବ ମଧ୍ୟ ରହେ । ମନ ପ୍ରାୟ ହୃଦୟରେ ରହେ, ଏହାଦ୍ୱାରା ଜୀବର ହୃଦୟ ଭିତରେ ଅବସ୍ଥାନ କରେ ଆରାଗ୍ରଭାଗରେ ଉପମିତ ହେବାଦ୍ୱାରା ତାହାପାଖରେ ଦହରତ୍ୱ ଉପପନ୍ନ ହୁଏ ।

(ଘ) ଆକାଶ ସହିତ ତାହାର ଉପମାଦି ଓ ବ୍ରହ୍ମ ସହିତ ଅଭେଦବିବକ୍ଷା ଦ୍ୱାରା ହୁଏ । 'ତସ୍ମିନ୍ୟଦନ୍ତଃ' (ତାହାଠାରେ ଯାହା ଅନ୍ତ) ଏହିଠାରେ ଏହି ଦହର ଆକାଶରେ ଅନ୍ୱେଷ୍ଟବ୍ୟତ୍ୱ ଏବଂ ବିଜିଜ୍ଞାସିତବ୍ୟ ଥିବାର ଶୁଣାଯାଆନ୍ତି ନାହିଁ । କିନ୍ତୁ ପରର ବିଶେଷଣ ରୂପରେ ଏହାର ଗ୍ରହଣ ହୁଏ । ଅର୍ଥାତ୍ ଅଭ୍ୟନ୍ତରବସ୍ତୁର ଆଧାରରୂପରେ ଦହରାକାଶର ଗ୍ରହଣ କରାଯାଏ ।

(୪) ମୂଳ-(କ) ଅତ ଉତ୍ତରଂ ବ୍ରୂମଃ-ପରମେଶ୍ୱର ଏବାତ୍ର ଦହରାକାଶୋ ଭବିତୁମର୍ହତି, ନ ଭୂତାକାଶୋ ଜୀବୋ ବା । କସ୍ମାତ୍ ? ଉତ୍ତରେଭ୍ୟୋ ବାକ୍ୟଶେଷଗତେଭ୍ୟୋ ହେତୁଭ୍ୟଃ । (ଖ) ତଥାହି ଅନ୍ୱେଷ୍ଟବ୍ୟତୟାଭିହିତସ୍ୟ ଦହରାକାଶସ୍ୟ 'ତଂ ଚେଦ୍ ବ୍ରୂୟୁଃ, ଇତ୍ୟୁପକ୍ରମ୍ୟ 'କିଂ ତଦତ୍ର ବିଦ୍ୟତେ ଯଦନ୍ୱେଷ୍ଟବ୍ୟଂ ଯଦ୍ ବାବ ବିଜିଜ୍ଞାସିତବ୍ୟମ୍', ଇତ୍ୟେବମାକ୍ଷେପପୂର୍ବକଂ ପ୍ରତିସମାଧାନବଚନଂ ଭବତି- 'ସ ବ୍ରୂୟାଦ୍ୟାବାନ୍ ବା ଅୟମାକାଶସ୍ତାବାନେ-ଷୋଽନ୍ତର୍ହୃଦୟ ଆକାଶ ଉଭେ ଅସ୍ମିନ୍ ଦ୍ୟାବା ପୃଥିବୀ ଅନ୍ତରେବ ସମାହିତେ', (ଛା।୮।୧।୩) ଇତ୍ୟାଦି । (ଗ) ତତ୍ର ପୁଣ୍ଡରୀକଦହରତ୍ୱେନ ପ୍ରାପ୍ତଦହରତ୍ୱସ୍ୟାକାଶସ୍ୟ ପ୍ରସିଦ୍ଧାକାଶୌପମ୍ୟେନ ଦହରତ୍ୱଂ ନିବର୍ତ୍ତୟନ ଭୂତାକାଶତ୍ୱଂ ଦହରସ୍ୟାକାଶସ୍ୟ ନିବର୍ତ୍ତୟତୀତି ଗମ୍ୟତେ । (ଘ) ଯଦ୍ୟପ୍ୟାକାଶଶବ୍ଦୋ ଭୂତାକାଶେ ରୂଢ଼ଃ, ତଥାପି ତେନୈବ ତସ୍ୟୋପମା ନୋପପଦ୍ୟତ ଇତି ଭୂତାକାଶଶଙ୍କା ନିବର୍ତ୍ତିତା ଭବତି ।

**(୪) ଭାଷାଂତର-** (କ) ସିଦ୍ଧାନ୍ତ-ଏଠାରେ ପରମେଶ୍ୱର ହିଁ ଦହରାକାଶ ହେବାକୁ ଯୋଗ୍ୟ, କିନ୍ତୁ ଭୂତାକାଶ ଅଥବା ଜୀବ ନୁହେଁ । କିପରି ? ଏହାଦ୍ୱାରା ବାକ୍ୟଶେଷଗତ ଏହିପ୍ରକାରର ହେତୁ ଅଟେ ।

(ଖ) ଯେପରିକି ଅନ୍ୱେଷ୍ଟବରୂପରେ ଅଭିହିତ ଦହରାକାଶ 'ସେମାନଙ୍କୁ ଯଦି ପଚରାଯାଏ ।' ଏହି ପ୍ରକାର ଉପକ୍ରମ କରି 'ଏଠାରେ ଏହା କଣ ଯାହାକି ଅନ୍ୱେଷ୍ଟବ୍ୟ ଓ ବିଶେଷ ରୂପରେ ବିଜିଜ୍ଞାସିତବ୍ୟ', ଏହିପ୍ରକାର ଆକ୍ଷେପପୂର୍ବକ ତାହାର ପ୍ରତିସମାଧାନବଚନ ରହିଛି । ଯଥା- 'ସେ କହେ ଯେ- ଯେତେବଡ଼ ଏହାର ବାହ୍ୟ ଆକାଶ, ସେତେବଡ଼ ହୃଦୟର ଆଭ୍ୟନ୍ତର, ସେହି ଆକାଶ ଅଟେ । ଏହା ଦ୍ୟୁଲୋକ ଓ ପୃଥିବୀ ମଧ୍ୟରେ ରହିଛି' ।



(ଗ) ଏହି ବାକ୍ୟଦ୍ୱାରା ଜଣାପଡ଼େ କି ହୃଦୟକମଳର ଅଳ୍ପତ୍ୱ ଦ୍ୱାରା ଯାହାକୁ ଅଳ୍ପତ୍ୱ ମିଳେ, ତାହା ଆକାଶରେ ପ୍ରସିଦ୍ଧ ଆକାଶ ସଦୃଶଦ୍ୱାରା ଅଳ୍ପତ୍ୱ ନିବୃତ୍ତ କରି ଆଚାର୍ଯ୍ୟ ଦହରାକାଶରେ ଭୂତାକାଶର ନିବୃତ୍ତି କରେ ।

(ଘ) ଯଦ୍ୟପି ଆକାଶଶବ୍ଦ ଭୂତାକାଶରେ ରୂଢ଼ ହୁଏ, ତେବେ ତାହା ସହ ତାହାର ଉପପନ୍ନ ହୁଏ ନାହିଁ । ତେଣୁ ଦହରାକାଶ ଭୂତାକାଶ ବୋଲି ଶଙ୍କା ନିବୃତ୍ତ ହୁଏ ।

(୫) ମୂଳ-(କ) ନନ୍ୱେକସ୍ୟାପ୍ୟାକାଶସ୍ୟ ବାହ୍ୟାଭ୍ୟନ୍ତରତ୍ୱକଳ୍ପିତେନ ଭେଦେ-ନୋପମାନୋପମେୟଭାବଃ ସମ୍ଭବତୀତ୍ୟୁକ୍ତମ୍ । ନୈବଂ ସମ୍ଭବତି, ଅଗତିକା ହୀୟଂ ଗତିଃ, ଯତ୍କାଳ୍ପନିକ ଭେଦାଶ୍ରୟତାମ୍ । ଅପି ଚ କଳ୍ପୟିତ୍ୱାପି ଭେଦୋପମାନୋପମେୟଭାବଂ ବର୍ଣ୍ଣୟତଃ ପରିଚ୍ଛିନ୍ନତାଦଭ୍ୟନ୍ତରାକାଶସ୍ୟ ନ ବାହ୍ୟାକାଶପରିମାଣତ୍ୱମୁ-ପପଦ୍ୟେତ । (ଖ) ନନୁ ପରମେଶ୍ୱରସ୍ୟାପି 'ଜ୍ୟାୟାନାକାଶତ୍', (ଶତଂ ବ୍ରାଂ ୧।୬।୩।୨) ଇତି ଶ୍ରୁତ୍ୟନ୍ତରାନ୍ନୈବାକାଶ-ପରିମାଣତ୍ୱମୁପପଦ୍ୟତେ । (ଗ) ନୈଷୋ ଦୋଷଃ, ପୁଣ୍ଡରୀକବେଷ୍ଟନପ୍ରାପ୍ତଦହର-ତ୍ୱନିବୃତ୍ତିପରତ୍ୱାଦ୍ ବାକ୍ୟସ୍ୟ ନ ତାବତ୍ତ୍ୱପ୍ରତିପାଦନପରତ୍ୱମ୍ । ଉଭୟପ୍ରତିପାଦନେ ହି ବାକ୍ୟଂ ଭିଦ୍ୟେତ । (ଘ) ନ ଚ କଳ୍ପିତଭେଦେ ପୁଣ୍ଡରୀକବେଷ୍ଟିତ ଆକାଶସ୍ୟୈକଦେଶେ ଦ୍ୟାବାପୃଥିବ୍ୟାଦୀନାମନ୍ତଃ ସମାଧାନମୁପପଦ୍ୟତେ । 'ଏଷ ଆତ୍ମାଽପହତପାପ୍ମା ବିଜରୋ ବିମୃତ୍ୟୁ ଶୋକୋବିଜିଘତ୍ସୋଽପିପାସ ସତ୍ୟକାମଃ ସତ୍ୟକଳ୍ପ । ଇତି ଚାତ୍ମତ୍ୱାପହତପାପ୍ମତ୍ୱାଦୟଶ୍ଚ ଗୁଣାଃ ନ ଭୂତାକାଶେ ସମ୍ଭବନ୍ତି ।

**(୫) ଭାଷାଂତର**-(କ) ପୂର୍ବପକ୍ଷ-ଗୋଟିଏ ଆକାଶରେ ମଧ୍ୟ ବାହ୍ୟ ଓ ଆଭ୍ୟନ୍ତର କଳ୍ପିତ ଭେଦରେ ଉପମାନ-ଉପମେୟଭାବ ହେବା ସମ୍ଭବ ନୁହେଁ, କାରଣ-ଯାହା କାଳ୍ପନିକଭେଦର ଆଶ୍ରୟ, ତାହା ଅଗତିକା ଗତି ଅଟେ । ପୁନଶ୍ଚ ଦ୍ୱିତୀୟକଥା ହେଲା-ଭେଦର କଳ୍ପନା କରି ଉପମାନ ଉପମେୟ ଭାବର ବର୍ଣ୍ଣନା କରିଥିବା ସମ୍ପ୍ରଦାୟର ମତରେ ଆଭ୍ୟନ୍ତର-ଆକାଶ-ପରିଚ୍ଛିନ୍ନ ହେଲେ ବାହ୍ୟାକାଶ ସଦୃଶ ପରିମାଣଯୁକ୍ତ ହୁଏ ନାହିଁ ।

(ଖ) ପରନ୍ତୁ 'ଆକାଶଠାରୁ ଅଧିକ', ଏହି ଦ୍ୱିତୀୟ ବେଦବାକ୍ୟ ଦ୍ୱାରା ପରମେଶ୍ୱର ଠାରେ ମଧ୍ୟ ଆକାଶର ଭଳି ପରିମାଣତ୍ୱଯୁକ୍ତ ନୁହେଁ ।

(ଗ) ସିଦ୍ଧାନ୍ତ-କିନ୍ତୁ ଏଠାରେ କିଛି ଦୋଷ ନାହିଁ । କାରଣ-ଏହି ବାକ୍ୟ ପୁଣ୍ଡରୀକର ବେଷ୍ଟନ ହୋଇଥିବା ଅଳ୍ପତ୍ୱର ନିବୃତ୍ତି ପାଇଁ ଭୂତାକାଶରେ ସମାନ ପରିମାଣର ପରିମାଣ ପ୍ରତିପାଦନରେ ବାକ୍ୟଭେଦ ହୋଇପାରେ ।

(ଘ) ସିଦ୍ଧାନ୍ତ-ଏଠାରେ କୌଣସି ଦୋଷନାହିଁ ପୁଣ୍ଡରୀକବେଷ୍ଟିତ କଳ୍ପିତ ଭେଦକ ଆକାଶର ଏକ ଦେଶରେ ଦ୍ୟୁଲୋକ ଓ ପୃଥିବୀ ଇତ୍ୟାଦିର ଅନ୍ତରବସ୍ଥାନ ଉପପନ୍ନ ହୁଏ ନାହିଁ । 'ଏହି ଆତ୍ମା ପାପରହିତ, ଜରା-ମରଣ-ଶୋକରହିତ, କ୍ଷୁଧା ଓ ପିପାସାଠାରୁ ମୁକ୍ତ, ସତ୍ୟକାମ ଓ ସତ୍ୟସଂକଳ୍ପ' ଏହିପ୍ରକାର ଆତ୍ମତ୍ୱ, ପାପରହିତତ୍ୱ, ଆଦିଗୁଣ ଭୂତାକାଶରେ ସମ୍ଭବ ନୁହେଁ ।

(୬) ମୂଳ-(କ) ଯଦ୍ୟପ୍ୟାତ୍ମଶବ୍ଦୋ ଜୀବେ ସମ୍ଭବତି, ତଥାପୀ ତରେଭ୍ୟଃ କାରଣେଭ୍ୟୋ ଜୀବାଶଙ୍କାଽପି ନିବର୍ତ୍ତିତା ଭବତି । ନ ହ୍ୟୁପାଧିପରିଚ୍ଛିନ୍ନସ୍ୟାରା-ଗ୍ରୋପମିତସ୍ୟ ଜୀବସ୍ୟ ପୁଣ୍ଡରୀକବେଷ୍ଟନକୃତଂ ଦହରତ୍ୱଂ ଶକ୍ୟଂ ନିବର୍ତ୍ତୟିତୁମ୍ । (ଖ) ବ୍ରହ୍ମାଭେଦବିବିକ୍ଷୟା ଜୀବସ୍ୟ ସର୍ବଗତତ୍ୱାଦି ବିବକ୍ଷ୍ୟେତ, ତସ୍ୟୈବ ବ୍ରହ୍ମଣଃ ସାକ୍ଷାତ୍‌ସର୍ବଗତତ୍ୱାଦି ବିବକ୍ଷ୍ୟତାମିତି ଯୁକ୍ତମ୍ । ଯଦପ୍ୟୁକ୍ତଂ ବ୍ରହ୍ମପୁରମିତି ଜୀବେନ ପରସ୍ୟୋପଲକ୍ଷିତତ୍ୱାଦ୍ରାଜ୍ଞ ଇବ ଜୀବସ୍ୟୈବେଦଂ ପୁରସ୍ୱାମିନଃ ପୁରୈକଦେଶବର୍ତ୍ତିତ୍ୱମସ୍ତିତି । (ଗ) ଅତ୍ର ବ୍ରୂମଃ-ପରସ୍ୟୈବେଦଂ ବ୍ରହ୍ମଣଃ ପୁରଂ ସଚ୍ଛରୀରଂ ବ୍ରହ୍ମପୁରମିତ୍ୟୁଚ୍ୟତେ, ବ୍ରହ୍ମଶବ୍ଦସ୍ୟ ତସ୍ମିନ୍ ମୁଖ୍ୟତ୍ୱାତ୍ । ତସ୍ୟାପ୍ୟସ୍ତି ପୁରେଣାନେନ ସମ୍ବନ୍ଧଃ, ଉପଲବ୍ଧ୍ୟଧିଷ୍ଠାନତ୍ୱାତ୍ । 'ସ ବା ଅୟଂ ପୁରୁଷଃ ସର୍ବାସୁ ପୁର୍ଷୁ ପରିଶୟଃ', (ବୃ ୨।୫।୧୮) ଇତ୍ୟାଦିଶ୍ରୁତିଭ୍ୟଃ । (ଘ) ଅଥବା ଜୀବପୁର ଏବାସ୍ମିନ୍ ବ୍ରହ୍ମ ସନ୍ନିହିତମୁପଲକ୍ଷ୍ୟତେ, ଯଥା ଶାଳଗ୍ରାମେ ବିଷ୍ଣୁଃ ସନ୍ନିହିତ ଇତି, ତଦ୍‌ବତ୍ । 'ତଦ୍ୟେଥେହ କର୍ମଚିତୋ ଲୋକଃ କ୍ଷୀୟତ ଏବାମେବାମୁତ୍ର ପୂଣ୍ୟଚିତୋ ଲୋକୋ କ୍ଷୀୟତେ, (ଛା ୮।୧।୬) ଇତି ଚ କର୍ମଣା ମନ୍ତବତ୍ ଫଳତ୍ୱମୁକ୍ତ୍ୱା 'ଅଥ ଯ ଇହାତ୍ମାନମନୁବିଦ୍ୟ ବ୍ରଜନ୍ତ୍ୟେତାଂଶ୍ଚ ସତ୍ୟାନ୍ କାମାଂସ୍ତେଷାଂ ସର୍ବେଷୁ ଲୋକେଷୁ କାମଚାରୋ ଭବତି' । ଇତି ପ୍ରକୃତ ଦହରାକାଶବିଜ୍ଞାନସ୍ୟାନନ୍ତଫଳତ୍ୱଂ ବଦନ୍ ପରମାତ୍ମତ୍ୱମସ୍ୟ ସୂଚୟତି ।

(୬) ଭାଷାଂତର- (କ) ଯଦ୍ୟପି ଆତ୍ମଶବ୍ଦର ପ୍ରୟୋଗ ଜୀବରେ ସମ୍ଭବ, ତଥାପି ଅନ୍ୟ କାରଣରୁ ଜୀବବିଷୟକ ଆଶଙ୍କା ନିବୃତ୍ତ ହେଉଛି । ଉପାଧିଦ୍ୱାରା ପରିଚ୍ଛିନ୍ନ ତଥା ଚକ୍ରସ୍ଥିତ ଅରର ଅଗ୍ରଭାଗ ସଂଯୋଗ ଭଳି ଉପମିତଜୀବରେ କମଳ ବେଷ୍ଟନକୃତ ଅଳ୍ପତ୍ୱର ନିବାରଣ କରାଯାଇଛି ।



(ଖ) ଯଦି ବ୍ରହ୍ମ ଅଭେଦବିବକ୍ଷାଦ୍ୱାରା ଜୀବରେ ସର୍ବଗତତ୍ୱାଦିର ବିବକ୍ଷା କରେ, ତେବେ ଆତ୍ମାରୂପରେ ଅର୍ଥାତ୍ ବ୍ରହ୍ମସହିତ ଅଭେଦ ସ୍ୱୀକାର କରି ଜୀବରେ ସର୍ବଗତତ୍ୱାଦି ଧର୍ମର ବିବକ୍ଷା କରିବା ଅପେକ୍ଷା ଏହା ଅଧିକ ଯୁକ୍ତିଯୁକ୍ତ ହେବଯେ- ଏହି ବ୍ରହ୍ମର ହିଁ ସାକ୍ଷାତ୍ ସର୍ବଗତତ୍ୱାଦିଧର୍ମର ବିବକ୍ଷା କରାଯାଇପାରେ । ଯାହା କୁହାଯାଇଛି ଯେ-ବ୍ରହ୍ମପୁରରେ ଜୀବଦ୍ୱାରା ଶରୀରରୂପୀପୁରର ସମ୍ବନ୍ଧ ହେଲେ ରାଜାଭଳି ପୁରର ସ୍ୱାମୀଜୀବର ପୁର ଭାଗରେ ରହିବା ସମ୍ଭବ ହୁଏ ।

(ଗ) ତେଣୁ ଏହା ଉପରେ କୁହାଯାଇଛି ଯେ- ପରଂବ୍ରହ୍ମର ପୁର ହେବାରୁ ଏହି ପୁର ବ୍ରହ୍ମପୁର ଅଟେ । କାରଣ-ପରଂବ୍ରହ୍ମରେ ବ୍ରହ୍ମଶବ୍ଦ ମୁଖ୍ୟ । ତାହାର ମଧ୍ୟ ଏହି ପୁରସହ ସମ୍ବନ୍ଧ ଅଛି । କାରଣ-ସେ ତାହାର ଉପଲବ୍ଧିର ସ୍ଥାନ । 'ସେ ଉପାସକ ଜୀବଘନ ଦ୍ୱାରା ପର-ଉକୃଷ୍ଟ ଏବଂ ଶରୀରରେ ପ୍ରବିଷ୍ଟ ପରମାତ୍ମାର ଦର୍ଶନ କରେ', ଏବଂ 'ସେ ପୁରୁଷ ସମସ୍ତ ଶରୀରରେ ବର୍ତ୍ତମାନ ହୃଦୟରେ ରହିବାର କାରଣକୁ 'ପୁରିଶୟ' କୁହାଯାଏ' ଇତ୍ୟାଦି ବେଦବାକ୍ୟ ।

(ଘ) ଅଥବା ଯେପରି ଶାଳଗ୍ରାମରେ ବିଷ୍ଣୁ ସନ୍ନିହତ ହେବାର ଉପଲକ୍ଷିତ କରାଯାଏ । ସେପରି ଏହି ଜୀବପୁରରେ ମଧ୍ୟ ବ୍ରହ୍ମ ସନ୍ନିହିତ ହେବାର ଉପଲକ୍ଷିତ କରାଯାଏ । ଯଥା-'ଯେପରି ଏଠାରେ କର୍ମ ସମ୍ପାଦିତ ଫଳ କ୍ଷୀଣ ହୋଇଯାଏ, ସେହିପ୍ରକାର ଏହି ପରଲୋକରେ ଅଗ୍ନିହୋତ୍ରଦିପୂଣ୍ୟଦ୍ୱାରା ଉପାର୍ଜ୍ଜିତ ସର୍ବଲୋକାଦିର ଫଳ କ୍ଷୀଣ ହୋଇଯାଏ । ଏହି ପ୍ରକାର କର୍ମର ଫଳ ନଶ୍ୱର କହି 'ଯାହା ଏଠାରେ ଆତ୍ମା ତଥା ଏହାର ଆଶ୍ରିତ ସତ୍ୟକାମ, ସତ୍ୟସଂକଳ୍ପାଦିଗୁଣର, ଶାସ୍ତ୍ର ଏବଂ ଆଚାର୍ଯ୍ୟର ଉପଦେଶ ଅନୁସାରେ, ଧ୍ୟାନଦ୍ୱାରା ଅନୁଭବ କରି ପରଲୋକରେ ଜାତ ହୁଅନ୍ତି, ସେମାନେ ସାର୍ବଭୌମ ରାଜାସଦୃଶ ସମସ୍ତ ଲୋକରେ ଯଥେଚ୍ଛ ବିହାର କରି ଓ ଅଭିଷ୍ଟବସ୍ତୁକୁ ପାଇ ରହେ' ଏହିପ୍ରକାର ପ୍ରକୃତ ଦହରାକାଶରୂପକ ବିଜ୍ଞାନ ଫଳର ଅନନ୍ତତ୍ୱ କହି ଦହରାକାଶ ପରମାତ୍ମା ବୋଲି ଶ୍ରୁତି ସୂଚନା ଦିଏ ।

(୭)ର ମୂଳ-(କ) ଯଦ୍ୟପ୍ୟେତଦୁକ୍ତମ୍-ନ ଦହରାସ୍ୟାକାଶସ୍ୟାନ୍ୱେଷ୍ଟବ୍ୟତ୍ୱଂ ବିଜିଜ୍ଞାସିତବ୍ୟତ୍ୱଂ ଚ ଶ୍ରୁତମ୍, ପରବିଶେଷଣତ୍ୱେନୋପାଦାନାଦିତି । (ଖ) ଅତ୍ର ବ୍ରୂମଃ-ଯଦ୍ୟାକାଶୋନାନ୍ୱେଷ୍ଟବ୍ୟତ୍ୱେନୋକ୍ତ ସ୍ୟାତ୍, 'ଯାବାନ୍ ବା ଅୟମାକାଶସ୍ତାବାନେଷୋଽନ୍ତର୍ହୃଦୟ ଆକାଶଃ', ଇତ୍ୟାଦ୍ୟାକାଶସ୍ୱରୂପ ପ୍ରଦର୍ଶନଂ ନୋପଯୁଜ୍ୟେତ ।

**(୭) ଭାଷାଂତର-** (କ) ଦହରାକାଶର ଅନ୍ୱେଷ୍ଟବ୍ୟ ତଥା ବିଜିଜ୍ଞାସିତବ୍ୟ-ରୂପରେ ଶ୍ରବଣ ହୁଏ ନାହିଁ । କାରଣ-ପରର ବିଶେଷଣ ରୂପରେ ଏହା ଗ୍ରହଣ ହୁଏ ।

(ଖ) ଯାହା ପୂର୍ବପକ୍ଷରେ କୁହାଯାଇଥିଲା, ତାହା ଉପରେ ଆମ୍ଭେ କହୁଛୁ- ଯଦି ଦହରାକାଶ ଅନ୍ୱେଷବ୍ୟରୂପରେ କୁହାଯାଇ ନଥାନ୍ତା, ତେବେ ଯାବାନ୍ ବା ଅୟମାକାଶସ୍ତାବାନେଷୋଽନ୍ତର୍ହୃଦୟ ଆକାଶଃ, ଇତ୍ୟାଦି ଆକାଶସ୍ୱରୂପର ପ୍ରଦର୍ଶନ ଉପଯୁକ୍ତ ହୋଇପାରିନଥାନ୍ତା ।

(୮) ମୂଳ-(କ) ନନ୍ୱେତଦପ୍ୟନ୍ତର୍ବର୍ତ୍ତିବସ୍ତୁସଦ୍‌ଭାବପ୍ରଦର୍ଶନାୟୈବ ପ୍ରଦର୍ଶ୍ୟତେ । 'ତଂ ଚେଦ୍ ବ୍ରୂୟୁର୍ଯଦିଦମସ୍ମିନ୍ ବ୍ରହ୍ମପୁରେ ଦହରଂ ପୁଣ୍ଡରୀକଂ ବେଶ୍ମ ଦହରୋଽସ୍ମିନ୍ନନ୍ତରାକାଶଃ କିଂ ତଦତ୍ର ବିଦ୍ୟତେ ଯଦନ୍ୱେଷ୍ଟବ୍ୟଂ, ଯଦ୍‌ବାବ ବିଜିଜ୍ଞାସିତବ୍ୟମ୍', ଇତ୍ୟାକ୍ଷିପ୍ୟ ପରିହାରାବସର ଆକାଶୌପମ୍ୟୋପକ୍ରମେଣ ଦ୍ୟାବ-ପୃଥିବ୍ୟାଦୀନାମନ୍ତଃ ସମାହିତତ୍ୱଦର୍ଶନାତ୍ । (ଖ) ନୈତଦେବମ୍ ଏବଂ ହି ସତି ଯଦନ୍ତଃ ସମାହିତଃ ଦ୍ୟାବାପୃଥିବ୍ୟାଦି ତଦନ୍ୱେଷ୍ଟବ୍ୟଂ ବିଜିଜ୍ଞାସିତବ୍ୟଂ, ଚେତ୍କ୍ତଂ ସ୍ୟାତ୍ । ତତ୍ର ବାକ୍ୟଶେଷୋ ନୋପପଦ୍ୟେତ । (ଗ) 'ଅସ୍ମିନ୍ କାମାଃ ସମାହିତାଃ' 'ଏଷ ଆତ୍ମାଽପହତପାପ୍ମା', ଇତି ହି ପ୍ରକୃତଂ ଦ୍ୟାବାପୃଥିବ୍ୟାଦିସ-ମାଧାନାଧାରମାକାଶମାକୃଷ୍ୟ 'ଅଥ ଯ ଇହମାନମନୁବିଦ୍ୟ ବ୍ରଜନ୍ତ୍ୟେତାଂଶ୍ଚ ସତ୍ୟାନ୍ କାମାନ୍', ଇତି ସମୁଚ୍ଚୟାର୍ଥେନ ବାକ୍ୟଶେଷୋ ଚ ଶବ୍ଦେନାତ୍ମାନଂ କାମାଧାରମାଶ୍ରିତା ଶ୍ଚ କାୟାନ୍ ବିଜ୍ଞେୟାନ୍ ଦର୍ଶୟତି । (ଘ) ତସ୍ମାଦ୍‌ବାକ୍ୟୋପକ୍ରମେଽପି ଦହର ଏବାକାଶୋ ହୃଦୟପିଣ୍ଡରୀ-କାଧିଷ୍ଠାନଃ ସହାନ୍ତଃସ୍ଥୈଃ ସମାହିତୈଃ ପୃଥିବ୍ୟାଦିଭିଃ ସତ୍ୟୈଶ୍ଚ କାମୈର୍ବିଜ୍ଞେୟ ଉକ୍ତ ଇତି ଗମ୍ୟତେ । ସ ଚୋକ୍ତେଭ୍ୟୋ ହେତୁଭ୍ୟଃ ପରମେଶ୍ୱର ଇତି ।

(୮) **ଭାଷାନ୍ତର-** (କ) ପରନ୍ତୁ ଏଠାରେ ମଧ୍ୟ ଅନ୍ତର୍ବର୍ତ୍ତୀ ବସ୍ତୁର ସଦ୍‌ଭାବ ଦେଖିବା ପାଇଁ ଦେଖାଇ ଦିଆଯାଇଛି । କାରଣ-'ଆଚାର୍ଯ୍ୟ ଶିଷ୍ୟଙ୍କୁ କହିଲେ, ''ଏହି ବ୍ରହ୍ମପୁରରେ ଯେଉଁ ସୂକ୍ଷ୍ମ କମଳାକାର ଗୃହ ଅଛି, ସେଥିରେ ଯେଉଁ ଅଳ୍ପ ଅନ୍ତରାତ୍ମା ଅଛି, ତାହା ଭିତରେ କଣ ଅଛି- ଏହାହିଁ ଅନ୍ୱେଷଣ ଯୋଗ୍ୟ ଏବଂ ବିଶେଷ ରୂପରେ ଜିଜ୍ଞାସ୍ୟ', ଏହିପରି ଆକ୍ଷେପ କରି ପରିହାର କରିବା ସମୟରେ 'ଯାବାନ୍ ବା', ଏହି ମନ୍ତ୍ରରେ ଆକାଶ ସମାନ ଉପକ୍ରମରେ ଦ୍ୟୁଲୋକ, ପୃଥିବ୍ୟାଦିର ଅନ୍ତରବସ୍ଥାନ ଦେଖାଯାଏ ।

(ଖ) ସିଦ୍ଧାନ୍ତ-ଏହା ନୁହେଁ, କାରଣ-ଏପରି ହେଲେ ଏହାର ଅନ୍ତରବସ୍ଥିତ ଯେଉଁ ଦ୍ୟୁଲୋକ, ପୃଥିବ୍ୟାଦି ଅଛି, ସେମାନେ ଅନ୍ୱେଷବ୍ୟ ଓ ବିଜିଜ୍ଞାସିତବ୍ୟରୂପରେ ଉକ୍ତ ଅଟନ୍ତି । ଏହିପ୍ରକାର ସ୍ଥିତିରେ ବାକ୍ୟଶେଷ ଉପପନ୍ନ ହୁଏ ନାହିଁ ।



(ଗ) 'ଏଥିରେ ଅଭିଳାଷ ଓ କାମନା ଅବସ୍ଥିତ', 'ଏହି ଆତ୍ମା ପାପମୁକ୍ତି, ଏହିପ୍ରକାର ପ୍ରକୃତ୍ୟିଦ୍ୟୁଲୋକ ପୃଥିବ୍ୟାଦି ଯେଉଁଠାରେ ଅଛି, ସେହି ଆକାଶର ଅନୁବୃତ୍ତି କରି 'ଏଠାରେ ଯେଉଁ ଆତ୍ମାର ଏବଂ ଏହି ସତ୍ୟକାମର ଆଚାର୍ଯ୍ୟଙ୍କ ଉପଦେଶ ଅନୁସାରେ ଧ୍ୟାନପୂର୍ବକ ଅନୁଭବ କରି ପରଲୋକକୁ ଯାଏ', ଏହିପ୍ରକାର ଏଠାରେ ବାକ୍ୟଶେଷ, ସମୁଚ୍ଚୟବାଚକ 'ଚ' ଶବ୍ଦଦ୍ୱାରା କାମର ଆଧାରକୁ ଆତ୍ମାକୁ ଏବଂ ଏହାର ଆଶ୍ରିତ କାମକୁ ବିଜ୍ଞେୟ ରୂପରେ ଦେଖାଏ ।

(ଘ) ଏହାଦ୍ୱାରା ଜଣାପଡ଼େ ଯେ ବାକ୍ୟର ଉପକ୍ରମରେ ମଧ୍ୟ ହୃଦୟକମଳ ଯାହାର ଆଧାର ଅଟେ । ସେ ଦହରାକାଶ ହିଁ ଅନ୍ତସ୍ଥିତ ହୋଇ ପୃଥିବ୍ୟାଦି ସହିତ ତଥା ସତ୍ୟକାମ ସହ ବିଜ୍ଞେୟ କୁହାଯାଇଛି । ତେଣୁ ଏହି ଉକ୍ତ ହେତୁଦ୍ୱାରା ଦହରାକାଶ ପରମେଶ୍ୱର ରୂପରେ ସିଦ୍ଧ ହେଲା ।

## गतिशब्दाभ्यां तथाहि दृष्ट लिङ्ग च ॥ १५ ॥

## (୧) ଗତିଶବ୍ଦାଭ୍ୟାଂ ତଥାହି ଦୃଷ୍ଟଂ ଲିଙ୍ଗଞ୍ଚ ॥୧-୩-୧୫॥

ଗତିଶବ୍ଦାଭ୍ୟାମ୍-'ଇମା ସର୍ବାଃ ପ୍ରଜାଃ', ଏହି ବେଦବାକ୍ୟରେ ଗମନ ଏବଂ ବ୍ରହ୍ମଲୋକଶବ୍ଦଦ୍ୱାରା ଦହର କେବଳ ବ୍ରହ୍ମ ବୋଲି ଜଣାଯାଏ । ତଥାହି ଦୃଷ୍ଟମ୍-ଏହି ପ୍ରକାର 'ସତା ସୋମ୍ୟ ତଦା ସମ୍ପନ୍ନୋ ଭବତି' ଏହି ଅନ୍ୟଶ୍ରୁତିରେ ଜୀବଗମ୍ୟ ବ୍ରହ୍ମ ପ୍ରତିପାଦିତ ହୁଏ । ଲିଙ୍ଗଞ୍ଚ-ଏହି ପ୍ରକାର ଶ୍ରୁତିପ୍ରତିପାଦିତ ଜୀବର ପ୍ରତିଦିନ ବ୍ରହ୍ମଲୋକକୁ ଯିବା ଅସମ୍ଭବ । ତେଣୁ 'ବ୍ରହ୍ମୈବ ଲୋକଃ ବ୍ରହ୍ମଲୋକଃ', ଏହି କର୍ମଧାରୟସମାସରେ ସାମାନାଧିକରଣ୍ୟ ଗ୍ରହଣ କଲେ ପ୍ରତିଦିନ ଗମନ ହିଁ ଲିଙ୍ଗ ହୁଏ । ଅର୍ଥାତ୍ ବ୍ରହ୍ମର ଜ୍ଞାପକ ହେତୁ ଅଟେ । ସୂତ୍ରସ୍ଥ 'ଚ' ଶବ୍ଦଦ୍ୱାରା 'ନିଗାଦସ୍ଥପତିନ୍ୟାୟ' ମଧ୍ୟ ସାମାନାଧିକରଣ୍ୟର ଗ୍ରହଣରେ ସୂଚିତ ହୁଏ ।

(୨) ମୂଳ-(କ) ଦହରଃ ପରମେଶ୍ୱର ଉତ୍ତରେଭ୍ୟୋ ହେତୁଭ୍ୟ ଇତ୍ୟୁକ୍ତମ୍ । ତୁ ଏବୋତ୍ତରେ ହେତବ ଇଦାନୀଂ ପ୍ରପଞ୍ଚ୍ୟନ୍ତେ । ଇତଶ୍ଚ ପରମେଶ୍ୱର ଏବ ଦହରଃ, ଯସ୍ମାଦ୍ଦହର ବାକ୍ୟଶେଷେ ପରମେଶ୍ୱର ସ୍ୟୈବ ପ୍ରତିପାଦକୌ ଗତିଶବ୍ଦୌ ଭବତଃ- 'ଇମାଃ ସର୍ବାଃ ପ୍ରଜାଃ ଅହରହର୍ଗଚ୍ଛନ୍ତ୍ୟ ଏତଂ ବ୍ରହ୍ମଲୋକଂ ନ ବିଦନ୍ତି', (ଛା୮।୩।୨) ଇତି । (ଖ) ତତ୍ର ପ୍ରକୃତଂ ଦହରଂ ବ୍ରହ୍ମଲୋକଶବ୍ଦେନାଭିଧାୟ ତଦ୍‌ବିଷୟା ଗତିଃ ପ୍ରଜାଶବ୍ଦବାଚ୍ୟାନାଂ ଜୀବାନାମଧୀୟମାନା ଦହରସ୍ୟ ବ୍ରହ୍ମତାଂ ଗମୟତି । (ଗ) ତଥାହି ହ୍ୟହରହର୍ଜୀବାନାଂ ସୁଷୁପ୍ତାବସ୍ଥାୟାଂ ବ୍ରହ୍ମବିଷୟଂ ଗମନଂ ଦୃଷ୍ଟଂ ଶ୍ରୁତ୍ୟନ୍ତରେ 'ସତା ସୋମ୍ୟ ତଦା ସଂପନ୍ନୋ ଭବତି', (ଛା ୬।୮।୧) ଇତ୍ୟେବମାଦୌ । ଲୋକେଽପି କିଳଂ ଗାତଂ ସୁଷୁପ୍ତମାଚକ୍ଷତେ-

'ବ୍ରହ୍ମୀଭୂତୋ ବ୍ରହ୍ମଣଂ ଗତଃ' ଇତି । (ଘ) ତଥା ବ୍ରହ୍ମଲୋକଶବ୍ଦୋଽପି ପକୃତ ଦହରେପ୍ରଯୁଜ୍ୟ-ମାନୋ ଜୀବଭୂତାକାଶରଙ୍କାଂ ନିବର୍ତ୍ତୟନ୍ ବ୍ରହ୍ମତାମସ୍ୟ ଗମୟତି । (ଙ) ନନୁ କମଳାସନଲୋକମପି ବ୍ରହ୍ମଲୋକଶବ୍ଦୋ ଗମୟତେ୍, ଗମୟେଦ୍ୟଦି ବ୍ରହ୍ମଣୋ ଲୋକ ଇତି ଷଷ୍ଠୀସମାସବୃତ୍ତ୍ୟା ବ୍ୟୁତ୍ପାଦ୍ୟେତ, ସାମାନାଧିକରଣ୍ୟବୃତ୍ତ୍ୟା ତୁ ବ୍ୟୁତ୍ପଦ୍ୟମାନେ ବ୍ରହ୍ମୈବ ଲୋକୋ ବ୍ରହ୍ମଲୋକ ଇତି ପରମେବ ବ୍ରହ୍ମ ଗମିଷ୍ୟତି । (ଚ) ଏତଦେବ ଋହରହବ୍ରହ୍ମଲୋକଗମନଂ ଦୃଷ୍ଟଂ ବ୍ରହ୍ମଲୋକଶବ୍ଦସ୍ୟ ସମାନାଧିକରଣ୍ୟବୃତ୍ତି ପରିଗ୍ରହେ ଲିଙ୍ଗମ୍ । ନ ହ୍ୟହରହରିମାଃ ପ୍ରଜାଃ କାର୍ଯ୍ୟବ୍ରହ୍ମଲୋକଂ ସତ୍ୟଲୋକାଖ୍ୟଂ ଗଚ୍ଛନ୍ତୀତି ଶକ୍ୟଂ କଳ୍ପୟିତୁମ୍ ।

**(୨) ଭାଷାଂତର-** (କ) ବାକ୍ୟଶେଷଗତ ହେତୁଦ୍ୱାରା ଦହର ହିଁ ପରମେଶ୍ୱର ବୋଲି ପୂର୍ବରୁ କୁହାଯାଇଛି । ବର୍ତ୍ତମାନ ସେମାନଙ୍କୁ ପ୍ରଥମେ ଆଣୁଥିବା ହେତୁଗୁଡ଼ିକର ଭଲଭାବରେ ବର୍ଣ୍ଣନା କରାଯାଇଅଛି । ଏହାଦ୍ୱାରା ପରମେଶ୍ୱର ହିଁ ଦହର ଅଟେ । କାରଣ- 'ଯେ ସମସ୍ତ ଜୀବ ହୃଦୟାନ୍ତର୍ଗତ ଦହରାକାଶ ନାମକ ବ୍ରହ୍ମଲୋକକୁ ସୁଷୁପ୍ତି ଅବସ୍ଥାରେ ପାଆନ୍ତି, କିନ୍ତୁ ଅନାଦିଅଜ୍ଞାନଦ୍ୱାରା ଆବୃତ୍ତ ଏହାକୁ ଜାଣେନାହିଁ ।' ଏହି ପ୍ରକାର ଦହର ବାକ୍ୟଶେଷରେ ଏହି ଗତି ଓ ଶବ୍ଦ ପରମେଶ୍ୱରର ପ୍ରତିପାଦକ ଅଟେ ।

(ଗ) ଏଠାରେ ପ୍ରକୃତ ଦହରର ବ୍ରହ୍ମଲୋକଶବ୍ଦଦ୍ୱାରା କହି ତାହାଠାରେ ପ୍ରଜାଶବ୍ଦ ବାଚ୍ୟ ଜୀବକୁ କହୁଥିବା ଗତି ଦହରରେ ବ୍ରହ୍ମତ୍ୱର ଜ୍ଞାନକରେ ଅର୍ଥାତ୍ ସେ 'ଦହରାକାଶ ହିଁ ବ୍ରହ୍ମ' ବୋଲି ଅବଗତ ହୁଏ । ଏହିପ୍ରକାର 'ସତା ସୋମ୍ୟ,ସଦା ସମ୍ପନ୍ନୋଭବତି', ଇତ୍ୟାଦି ଅନ୍ୟଶ୍ରୁତିରେ ସୁଷୁପ୍ତି ଅବସ୍ଥାରେ ପ୍ରତିଦିନ ଜୀବର ବ୍ରହ୍ମବିଷୟକ ଗମନ ଦେଖାଯାଏ, ସଂସାରରେ ମଧ୍ୟ ଗାଢ଼ସୁଷୁପ୍ତପୁରୁଷକୁ 'ବ୍ରାହ୍ମଭୂତ' ବ୍ରହ୍ମତ୍ୱକୁ ପାଇବା କୁହାଯାଇଛି ।

(ଘ) ଏହିପ୍ରକାର ପ୍ରକୃତ ଦହରରେ ପ୍ରଯୁକ୍ତ ହେଉଥିବା ବ୍ରହ୍ମଲୋକଶବ୍ଦ ମଧ୍ୟ ଜୀବ ଓ ଭୂତାକାଶର ଆଶଙ୍କାକୁ ନିବୃତ୍ତ କରାଇ ଦହରାକାଶ ହିଁ ବ୍ରହ୍ମ ବୋଲି ଜ୍ଞାନ କରାଏ ।

(ଙ) ପରନ୍ତୁ ବ୍ରହ୍ମ ଲୋକଶବ୍ଦ ହିଁ ହିରଣ୍ୟଗର୍ଭ, ତାହା କଣ ବ୍ରହ୍ମଲୋକର ଜ୍ଞାନ କରାଏ ? ହଁ ଅବଶ୍ୟ ଜ୍ଞାନ କରାଏ । ଯଦି 'ବ୍ରହ୍ମର ଲୋକ ବ୍ରହ୍ମଲୋକ' ଏହି ଷଷ୍ଠୀସମାସ ବୃତ୍ତିରେ ବ୍ରହ୍ମଲୋକଶବ୍ଦର ବ୍ୟୁତ୍ପତ୍ତି କରାଯାଏ, ତଥାପି ଏଠାରେ କର୍ମଧାରୟ ସମାସ ଦ୍ୱାରା 'ବ୍ରହ୍ମୈବ ଲୋକଃ', ଏହି ସାମାନାଧିକରଣ୍ୟବୃତ୍ତିରେ ବ୍ୟୁତ୍ପତ୍ତି ହେଉଥିବା ବ୍ରହ୍ମଲୋକଶବ୍ଦ ପରଂବ୍ରହ୍ମର ଜ୍ଞାନ କରାଇବ ।

(ଚ) କିନ୍ତୁ ସର୍ବଦା 'ଏହି ବ୍ରହ୍ମଲୋକ-ଗମନ ହିଁ କେବଳ ବ୍ରହ୍ମଲୋକଶବ୍ଦର ସାମାନାଧିକରଣ୍ୟ ବୃତ୍ତିରେ ଗ୍ରହଣ କରିବାରେ ଲିଙ୍ଗ ହେତୁ ହେବାର' ଦେଖାଯାଏ ।



ପ୍ରତିଦିନ ଏମାନେ ଜୀବସତ୍ୟଲୋକନାମକ କାର୍ଯ୍ୟ ବ୍ରହ୍ମଲୋକରେ ହୁଅନ୍ତି ବୋଲି କଳ୍ପନା କରିବା ଠିକ୍ ନୁହେଁ ।

**धृतेश्च महिम्नोऽस्यास्मिन्नुपलब्धेः ॥ १६ ॥**

**(୧) ଧୃତେଶ୍ଚ ମହିମ୍ନୋଽସ୍ୟାସ୍ମିନ୍ନୁପଲବ୍ଧେଃ । ୧-୩-୧୬ ।**

ଧୃତେଶ୍ଚ-'ଅଥ ଯ ଆତ୍ମା' ଏହି ଶ୍ରୁତିରେ ଉକ୍ତ ଧୃତି, ଚ-ଏବଂ 'ଏଷ ଭୂତପାଲଃ' ଅସ୍ୟ ମହିମ୍ନଃ-ସମସ୍ତ ଲୋକଙ୍କୁ ଧାରଣ କରିବାର ମହିମା, ଅସ୍ମିନ୍-ପରମାତ୍ମାରେ ଉପଲବ୍ଧେଃ-ଉପଲବ୍ଧି ହେବାରୁ ଦହରାକାଶ ହିଁ ପରମେଶ୍ୱର ହୁଏ ।

(୨) ମୂଳ-(କ) ଧୃତେଶ୍ଚ ହେତୋଃ ପରମେଶ୍ୱର ଏବାୟଂ ଦହରଃ । କଥମ୍ ? 'ଦହରୋଽସ୍ମିନ୍ନନ୍ତରାକାଶଃ' ଇତିହି ପ୍ରକୃତ୍ୟାକାଶୌପମ୍ୟପୂର୍ବକଂ ତସ୍ମିନ୍ ସର୍ବସମାଧାନମୁକ୍ତ୍ୱା ତସ୍ମିନ୍ନୈବ ଚାତ୍ମଶବ୍ଦଂ ପ୍ରଯୁଜ୍ୟା ପହତ ପାପ୍ମତ୍ୱାଦି ଗୁଣଯୋଗଂ ଚୋପଦିଶ୍ୟ ତମେବାନତିବୃତ୍ତପ୍ରକରଣଂ ନିର୍ଦିଶତି- 'ଅଥ ଯ ଆତ୍ମା ସ ସେତୁର୍ବିଧୃତିରେଷାଂ ଲୋକାନାମସଂଭେଦାୟ', (ଛା ୮।୪।୧) ଇତି । (ଖ) ତତ୍ ବିଧୃତିରିତ୍ୟାତ୍ମଶବ୍ଦସାମାନାଧିକରଣ୍ୟାଦ୍ ବିଧାରୟିତୋଚ୍ୟତୋକ୍ତିଚଃ କର୍ତ୍ତରି ସ୍ମରଣାତ୍ । ଯଥୋଦକସନ୍ତାନସ୍ୟ ବିଧାରୟିତା ଲୋକେ ସେତୁଃ କ୍ଷେତ୍ରସଂପଦାମସଂଭେଦାୟ, ଏବମୟମାତ୍ମୈଷାମଧ୍ୟାତ୍ମାଦିଭେଦଭିନ୍ନାନାଂ ଲୋକାନାଂ ବର୍ଣ୍ଣାଶ୍ରମାଦୀନାଂ ଚ ବିଧାରୟିତ୍ରା ସେତୁସଂଭେଦାୟାସଂକରାୟେତି । (ଗ) ଏବମିହ ପ୍ରକୃତେ ଦହରେ ବିଧାରଣଲକ୍ଷଣଂ ମହିମାନଂ ଦର୍ଶୟତି । ଅୟଂ ଚ ମହିମା ପରମେଶ୍ୱର ଏବ ଶ୍ରୁତ୍ୟନ୍ତରାଦୁପଲଭ୍ୟତେ । 'ଏତସ୍ୟ ବାକ୍ଷରସ୍ୟ ପ୍ରଶାସନେ ଗାର୍ଗି ସୂର୍ଯ୍ୟାଚନ୍ଦ୍ରମସୌ ବିଧୃତୌ ତିଷ୍ଠତିଃ', ଇତ୍ୟାଦେଃ । (ଘ) ତଥାନ୍ୟତ୍ରାପି ନିଷ୍ଠିତେ ପରମେଶ୍ୱରବାକ୍ୟେ ଶ୍ରୂୟତେ-'ଏଷ ସର୍ବେଶ୍ୱର ଏଷ ଭୂତାଧିପତିରେଷ ଭୂତପାଳ ଏଷ ସେତୁର୍ବିଧରଣ ଏଷାଂ ଲୋକନାସଂଭେଦାୟ । ଇତି । ଏବଂ ଧୃତେଶ୍ଚ ହେତୋଃ ପରମେଶ୍ୱର ଏବାୟଂ ଦହରଃ ।

(୨) ଭାଷାଂତର- (କ) ଧୃତିରୂପ ହେତୁ ଦ୍ୱାରା ମଧ୍ୟ ଏହି ଦହର ପରମେଶ୍ୱର ହୁଏ । କାରଣ- 'ଏଠାରେ ଦହର ଅନ୍ତରାକାଶ ଅଟେ ।' ଏହିପ୍ରକାର ପ୍ରସ୍ତୁତ କରି ଆକାଶ ସହିତ ସାଦୃଶ୍ୟପୂର୍ବକ ସେଠାରେ ସମସ୍ତ ବସ୍ତୁଗୁଡ଼ିକର ସ୍ଥିତି କହି ଆତ୍ମଶବ୍ଦକୁ ପ୍ରୟୋଗ କରି ଏବଂ ଅପହୃତ ପାପ୍ମତ୍ୱାଦିଗୁଣକୁ ସମ୍ବନ୍ଧର ଉପଦେଶ ଦେଇ, ଅସମାପ୍ତ ହୋଇଥିବା ଏହି

ପ୍ରକରଣର 'ଯେଉଁ ଆତ୍ମା ଅଛି, ଏହା ସେତୁ ଅଟେ । ଏହି ଲୋକର ମର୍ଯ୍ୟାଦା ସାଙ୍କର୍ଯ୍ୟ ନ ହେଉ, ଏହାହିଁ ତାହାର ବିଧାରକ ଅଟେ ।' ଏହା ଶ୍ରୁତି ନିର୍ଦ୍ଦେଶ କରେ ।

(ଖ) ଏଠାରେ ବିଧୃତିଶବ୍ଦର ଆତ୍ମଶବ୍ଦ ସହ ସାମାନାଧିକରଣ୍ୟ ହେଲେ ବିଧାରୟିତା କୁହାଯାଏ । କାରଣ- 'କ୍ତିଚ୍' ପ୍ରତ୍ୟୟ କର୍ତ୍ତାର ଅର୍ଥରେ ବିଧାନ କରାଯାଇଛି । ଯେପରି ଜଳର ଅବିଚ୍ଛିନ୍ନ ପ୍ରବାହର ବିଧାରକ ସେତୁ ଲୋକରେ କ୍ଷେତ୍ରସମ୍ପତ୍ତିର ମିଶ୍ରଣ ନ ହେବାପାଇଁ ଉଦ୍ଦିଷ୍ଟ, ସେପରି ଏହି ଆତ୍ମା ଅଧ୍ୟାତ୍ମାଦିଭେଦରେ ଭିନ୍ନ ଏହି ସଂସାରର ଏବଂ ବର୍ଣ୍ଣାଶ୍ରମାଦିର ଅଂଶଭେଦ ପାଇଁ ବିଧାରକ ସେତୁ ଅଟେ ।

(ଗ) ଏତାଦୃଶ ଏଠାରେ ପ୍ରକୃତ ଦହରାକାଶରେ ବିଧାରଣ ରୂପମହିମାକୁ ଶ୍ରୁତି ଦେଖାଏ । ଏହି ମହିମା 'ହେ ଗାର୍ଗି । ଏହି ଅକ୍ଷରର ଆଜ୍ଞାରେ ସୂର୍ଯ୍ୟ ଓ ଚନ୍ଦ୍ର ବିଧାରିତ ହୋଇ ଅଛନ୍ତି ।' ଇତ୍ୟାଦି ଅନ୍ୟାନ୍ୟବେଦବାକ୍ୟରେ ପରମେଶ୍ୱରଠାରେ ଉପଲବ୍ଧ ହୁଏ ।

(ଘ) ଏହି ପ୍ରକାର ଅନ୍ୟଅର୍ଥରେ ମଧ୍ୟ 'ଏହା ସର୍ବେଶ୍ୱର ଅଟେ, ଭୂତର ପାଳକ । ଏହି ଲୋକମର୍ଯ୍ୟାଦାର ସଙ୍କର ନ ହେବା ପାଇଁ ବିଧାରକ ସେତୁ ରହିଛି ।' ଏହି ପ୍ରକାର ନିଶ୍ଚିତ ଭାବରେ ପରମେଶ୍ୱର ବାକ୍ୟରେ ଶୁଣାଯାଏ । ଏପରି ଧୃତି ରୂପ ହେତୁ ଦ୍ୱାରା ଏହି ଦହର ପରମେଶ୍ୱର ହୁଏ ।

## प्रसिद्धेश्च ॥ १७ ॥

## (୧) ପ୍ରସିଦ୍ଧଶ୍ଚେ । ୧ । ୩ । ୧୭ ।

'ଆକାଶୋ ବୈ ନାମ' ଇତ୍ୟାଦି ଶ୍ରୁତିବାକ୍ୟରେ ଆକାଶଶବ୍ଦ ପରମାତ୍ମାରେ ପ୍ରସିଦ୍ଧ । ଏହାଦ୍ୱାରା ଦହରାକାଶ ପରମେଶ୍ୱର ହୁଏ ।

(୨) ମୂଳ-(କ) ଇତଶ୍ଚ ପରମେଶ୍ୱର ଏବ 'ଦହରୋଽସ୍ମିନ୍ନନ୍ତରାକାଶଃ', ଇତ୍ୟୁଚ୍ୟତେ । ଯତ୍କାରଣମାକାଶଶବ୍ଦଃ ପରମେଶ୍ୱରେ ପ୍ରସିଦ୍ଧଃ । 'ଆକାଶୋ ବୈ ନାମ ନାରୂପୟୋର୍ନିର୍ବହିତା', (ଛା ୮।୧୪), 'ସର୍ବାଣି ହ ବା ଇମାନି ଭୂତାନ୍ୟାକାଶା ଦେବ ସମୁତ୍ପଦ୍ୟନ୍ତେ', (ଛା ୧।୯।୧) ଇତ୍ୟାଦି ପ୍ରୟୋଗଦର୍ଶନାତ୍ । (ଖ) ଜୀବେ ତୁ ନ କ୍ୱଚିଦାକାଶଶବ୍ଦଃ ପ୍ରଯୁଜ୍ୟମାନୋ ଦୃଶ୍ୟତେ । ଭୂତାକାଶସ୍ତୁ ସତ୍ୟାମପ୍ୟାକାଶ-ଶବ୍ଦପ୍ରସିଦ୍ଧାବୁପମାନୋପମେୟଭାବାଦ୍ୟସମ୍ଭବାନ୍ନ ଗ୍ରହୀତବ୍ୟ ଇତ୍ୟୁକ୍ତମ୍ ।



(୨) ଭାଷାଂତର- (କ) ଏହି ହେତୁଦ୍ୱାରା 'ଦହରୋଽସ୍ମିନ୍ନନ୍ତରାକାଶଃ' ଏହି ବାକ୍ୟରେ ପରମେଶ୍ୱର କୁହାଗଲା । କାରଣ- 'ଆକାଶ ନାମଦ୍ୱାରା ପ୍ରସିଦ୍ଧ ଆତ୍ମା ନାମ ରୂପାତ୍ମକପ୍ରପଞ୍ଚର ନିର୍ବାହକ, 'ଏହିମାନେ ସମସ୍ତଭୂତ ଆକାଶଠାରୁ ଉତ୍ପନ୍ନ ହୋଇଛନ୍ତି', ଇତ୍ୟାଦି ପ୍ରୟୋଗ ଦେଖିବା ଦ୍ୱାରା ଆକାଶଶବ୍ଦ ପରମେଶ୍ୱରଠାରେ ପ୍ରସିଦ୍ଧ ହୁଏ ।

(ଖ) ଜୀବପାଇଁ ପ୍ରଯୁକ୍ତ ହୋଇଥିବା ଆବଶ୍ୟକ କୌଣସିଠାରେ ଦେଖାଯାଏ ନାହିଁ । ଯଦ୍ୟପି ଭୂତାକାଶରେ ଆକାଶ ଶବ୍ଦର ପ୍ରସିଦ୍ଧ ଅଛି, ତଥାପି ଉପମାନ ଉପମେୟ ଭାବବାଦୀର ଅସମ୍ଭବ ହେଲେ ତାହାର ଗ୍ରହଣ କରିବା ଠିକ୍ ନୁହେଁ ବୋଲି ବ୍ରହ୍ମସୂତ୍ର ୧-୩-୧୪ ସୂତ୍ରରେ କୁହାଯାଇଛି ।

## इतरपरामर्शात्स इति चेन्नासंभवात् ॥ १८ ॥

## (୧) ଇତରପରାମର୍ଶାତ୍ସ ଇତି ଚେନ୍ନାସମ୍ଭବାତ୍ ॥ ୧-୩-୧୮

'ଏଷଃ ସମ୍ପ୍ରସାଦଃ' ଏହି ପ୍ରକରଣରେ ସମ୍ପ୍ରସାଦଶବ୍ଦଦ୍ୱାରା, ଇତରପରାମର୍ଶାତ୍= ଜୀବର ପରାମର୍ଶ ହୁଏ । ତେଣୁ, ସଃ-ଜୀବ ହିଁ ଦହରାକାଶ ଅଟେ । ଇତି ଚେନ୍ନ= ଏହିଭଳି କହିବା ଠିକ୍ ନୁହେଁ । ଅସମ୍ଭବାତ୍=କାରଣ-ଆକାଶର ଉପମେୟତ୍ୱ ଶାପରହିତତ୍ୱାଦି ଧର୍ମଜୀବରେ ସମ୍ଭବ ନୁହେଁ ।

(୨) ମୂଳ-(କ) ଯଦି ବାକ୍ୟଶେଷବଳେନ ଦହର ଇତି ପରମେଶ୍ୱରଃ ପରିଗୃହ୍ୟେତାସ୍ତୀତରସ୍ୟାପି ଜୀବସ୍ୟ ବାକ୍ୟଶେଷେ ପରାମର୍ଶଃ-'ଅଥ ଯ ଏଷ ସମ୍ପ୍ରସାଦୋଽସ୍ମାଚ୍ଛରୀରାତ୍ ସମୁତ୍ଥାୟ ପରଂ ଜ୍ୟୋତିରୁପସଂପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତ ଏଷ ଆତ୍ମେତି ହୋବାଚ', (ଛା ୮।୩।୪) ଇତି । (ଖ) ଅତ୍ରହି ସଂପ୍ରସାଦଶବ୍ଦଃ ଶ୍ରୁତ୍ୟନ୍ତରେ ସୁଷୁପ୍ତାବସ୍ଥାୟାଂ ଦୃଷ୍ଟତ୍ୱାତ୍ତଦବସ୍ଥାବନ୍ତଂ ଜୀବଂ ଶକ୍ନୋତ୍ୟୁ-ପସ୍ଥାପୟିତୁଂ ନାର୍ଥାନ୍ତରମ୍ । ତଥା ଶରୀରବ୍ୟାପାଶ୍ରୟସ୍ୟୈବ ଜୀବସ୍ୟ ଶରୀରାତ୍ ସମୁତ୍ଥାନଂ ସମ୍ଭବତି (ଗ) ଯଥାକାଶବ୍ୟାପାଶ୍ରୟାଣୀ ବାୟ୍ୱାଦୀନାମାକାଶାତ୍ ସମୁତ୍ଥାନଂ, ତଦ୍ୱତ୍ । ତଥା ଽଦୃଷ୍ଟୋଽପି ଲୋକେ ପରମେଶ୍ୱରବିଷୟ ଆକଶଶବ୍ଦଃ ପରମେଶ୍ୱର ଧର୍ମସମଭିବ୍ୟାହାରାତ୍ ଆକାଶୋ ବୈ ନାମ ନାମରୂପୟୋର୍ନିର୍ବହିତା', ଇତ୍ୟେବମାଦୌ ପରମେଶ୍ୱର ବିଷୟୋଽଭ୍ୟୁପଗତଃ । ଏବଂ ଜୀବବିଷୟୋଽପି ଭବିଷ୍ୟତି । ତସ୍ମାଦି-ତରପରାମର୍ଶାତ୍ 'ଦହରୋଽସ୍ମିନ୍ନନ୍ତରାକାଶଃ', ଇତ୍ୟତ୍ର ସ ଏବ ଜୀବ ଉଚ୍ୟତ ଇତିଚେତ୍ ।

(୨) ଭାଷାଂତର- (କ) ବାକ୍ୟଶେଷବଳରେ ଯଦି ଦହରହିଁ ପରମେଶ୍ୱର ବୋଲି ସ୍ୱୀକାର କରାଯାଏ, ତେବେ 'ବ୍ରହ୍ମା କହିଲେ ଯେ-ଯାହା ଏହି ସଂପ୍ରସାଦଜୀବ,

ଦେହେନ୍ଦ୍ରିୟ ସମୂହରେ ଆତ୍ମବୁଦ୍ଧିକୁ ତ୍ୟାଗ କରି ଆତ୍ମଜ୍ଞାନ ଦ୍ୱାରା ପ୍ରତ୍ୟଗଭିନ୍ନବ୍ରହ୍ମର ସାକ୍ଷାତ୍କାର କରି ପରଜ୍ୟୋତିସ୍ୱରୂପକୁ ପ୍ରାପ୍ତହୁଏ । ଏବଂ ନିଜସ୍ୱରୂପରେ ଅଭିବ୍ୟକ୍ତ ହୁଏ, ସେ ଆତ୍ମା ଅଟେ ।' ଏହି ବାକ୍ୟଶେଷରେ ଇତରଜୀବର ପରାମର୍ଶ ହୁଏ ।

(ଖ) ଏଠାରେ ମଧ୍ୟ ଅନ୍ୟଶ୍ରୁତିରେ ସଂପ୍ରସାଦଶବ୍ଦ ସୁଷୁପ୍ତି ଅବସ୍ଥାରେ ପ୍ରଯୁକ୍ତ ହୋଇ ଦେଖାଯାଏ । ତେଣୁ ଏହି ସଂପ୍ରସାଦଶବ୍ଦ ଏହି ଅବସ୍ଥାଯୁକ୍ତ ଜୀବର ଉପସ୍ଥାପନ କରିବାକୁ ସମ୍ଭବ ହୁଏ । କିନ୍ତୁ ଅନ୍ୟର ନୁହେଁ ।

(ଗ) ଯେପରି ଆକାଶ ବ୍ୟାପାଶ୍ରୟବ୍ୟାପ୍ତ୍ୱାଦି ଆକାଶଠାରୁ ସମୁତ୍‌ଥାନ ହୁଏ, ସେପରି ଲୋକ ବ୍ୟବହାରରେ ପରମେଶ୍ୱର ବିଷୟକ ଆକାଶଶବ୍ଦ ଅଟେ । ଏହି ଅଦୃଷ୍ଟ ଅପ୍ରସିଦ୍ଧ ହେଲେ ମଧ୍ୟ 'ଆକାଶ ନାମଦ୍ୱାରା ପ୍ରସିଦ୍ଧ ଆତ୍ମା ନାମ ଓ ରୂପର ନିର୍ମାଣକାରୀ ଅଟେ', ଇତ୍ୟାଦି ଶ୍ରୁତିରେ ପରମେଶ୍ୱର ଧର୍ମର ସମଭିବ୍ୟବାର-ସମୀପନିର୍ଦ୍ଦେଶ ହେଲେ ପରମେଶ୍ୱର ବିଷୟ ସ୍ୱୀକାର କରାଯାଏ ? ଜୀବ ବିଷୟ ସ୍ୱୀକାର ମଧ୍ୟ କରାଯିବ । ତେଣୁ ଅନ୍ୟର ପରାମର୍ଶ ଦ୍ୱାରା 'ଦହରୋଽସ୍ମିନ୍ନନ୍ତରାକାଶଃ', ଏଠାରେ ସେ ଜୀବ କୁହାଯାଇଛି ବୋଲି ପୂର୍ବପକ୍ଷର ଅଭିମତ ।

(୩) ମୂଳ-(କ) ନୈତଦେବଂ ସ୍ୟାତ୍ । କସ୍ମାତ୍ ? ଅସମ୍ଭବାତ୍ । ନହି ଜୀବୋ ବୁଦ୍ଧ୍ୟାଦ୍ୟୁପାଧିପରିଚ୍ଛେଦାଭିମାନୀ ସନ୍ନାକାଶେନୋପମୀୟତେ । ନ ଚୈପାଧିଧର୍ମାନ-ଭିମନ୍ୟମାନସ୍ୟାପହତପାପ୍ମତ୍ୱାଦୟୋ ଧର୍ମାଃ ସମ୍ଭବନ୍ତି । ପ୍ରପଞ୍ଚିତଂ ଚୈତତ୍ ପ୍ରଥମସୂତ୍ରେ । (ଖ) ଅତିରେକାଶଙ୍କାପରିହାରାୟାତ୍ର ତୁ ପୁନରୁପନ୍ୟସ୍ତମ୍ । ପଠିଷ୍ୟତି ଚୈପରିଷ୍ଟାତ୍ 'ଅନ୍ୟାର୍ଥଶ୍ଚ ପରାମର୍ଶତଃ' (ବ୍ର.ସୂ ୧।୩।୧୦) ଇତି ।

**(୩) ଭାଷାଂତର-** ସିଦ୍ଧାନ୍ତ-(କ) ଏହା କହିବା ଠିକ୍ ନୁହେଁ । କାରଣ-ଏହା ଅସମ୍ଭବ । ବୁଦ୍ଧି ଆଦି ଉପାଧିଠାରୁ ପରିଚ୍ଛିନ୍ନତ୍ୱାଭିମାନୀ ହୋଇଥିବା ଜୀବଧର୍ମକୁ ଅଭିମାନ କରୁଥିବା ଜୀବଠାରେ ପାପରହିତତ୍ୱାଦି ଧର୍ମର ମଧ୍ୟ ସମ୍ଭବ ହୁଏ ନାହିଁ । ଏହି ଅଧିକରଣରେ ପ୍ରଥମସୂତ୍ରରେ ଏହାର ବର୍ଣ୍ଣନା ଭଲଭାବରେ ବର୍ଣ୍ଣନା କରାଯାଇଛି ।

(ଖ) ଏଠାରେ କିନ୍ତୁ ବକ୍ଷ୍ୟମାଣ ଅଧିକ ଆଶଙ୍କା ପରିହାର ପାଇଁ ଏହାର ପୁନଃ ଉପନ୍ୟାସ କରାଯାଇଛି । ପରେ 'ଅନ୍ୟାର୍ଥଶ୍ଚ ପରାମର୍ଶଃ', (୧-୩-୨୦) ସୂତ୍ରରେ ଜୀବ ପରାମର୍ଶର ପ୍ରୟୋଜନ କୁହାଯିବ ।

## उत्तराच्चेदाविर्भूतस्वरूपस्तु ॥ १९ ॥

## (୧) ଉତ୍ତରାଚ୍ଚେଦାବିର୍ଭୂତ ସ୍ୱରୂପସ୍ତୁ ॥ ୧-୩-୧୯

ଉତ୍ତରାଦ୍ = 'ଯ ଏଷୋଽକ୍ଷିଣି' ଇତ୍ୟାଦି ପ୍ରଜାପତିବାକ୍ୟରେ ଜାଗ୍ରଦାଦି ଅବସ୍ଥାପନ୍ନ ଜୀବରେ ପାପରହିତତ୍ୱାଦିଧର୍ମର ସମ୍ଭବ ହେଲେ ଜୀବ ଦହରାକାଶ ହୁଏ ।



ଚେତ = ଯଦି ଏହା କୁହାଯାଏ, ଆବିର୍ଭୂତ ସ୍ୱରୂପଃ=ପରମାର୍ଥରୂପରେ ଜୀବ ବିବକ୍ଷିତ ହୁଏ, ଜୀବରୂପରେ ନୁହେଁ । ତେଣୁ ଜୀବ ଦହରକାଶ ନୁହେଁ । ଅପିତୁ ବ୍ରହ୍ମ ଅଟେ । ତୁ='ତୁ' (କିନ୍ତୁ) ଶବ୍ଦ ପୂର୍ବପକ୍ଷ ବ୍ୟାବୃତ୍ତ୍ୟର୍ଥକ ଅଟେ ।

(୨) ମୂଳ-(କ) ଇତରପରାମର୍ଶାଦ୍ୟା ଜୀବଶଙ୍କା ଜାତା ସାଽସମ୍ଭବାନ୍ନିରାକୃତା । ଅଥେଦାନୀଂ ମୃତସ୍ୟେବାମୃତସେକାତ୍ ପୁନଃ ସମୁତ୍ଥାନଂ ଜୀବଶଙ୍କାୟାଃ କ୍ରିୟତେ-ଉତ୍ତରସ୍ମାତ୍ ପ୍ରଜାପତ୍ୟାଦ୍ ବାକ୍ୟାତ୍ । (ଖ) ତତ୍ର ହି 'ଯ ଆତ୍ମାଽପହତପାପ୍ମା' ଇତ୍ୟ-ପହତପାପ୍ମତ୍ୱାଦିଗୁଣକମାତ୍ମନମନ୍ୱେଷ୍ଟବ୍ୟମନେଷ୍ଟବ୍ୟଂ ବିଜିଜ୍ଞାସିତବ୍ୟଂ ଚ ପ୍ରତିଜ୍ଞାୟ 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ, ଏଷ ଆତ୍ମା', (ଛା ୮-୭-୪) ଇତି ବ୍ରୁବନ୍ନକ୍ଷିସ୍ଥଂ ଦ୍ରଷ୍ଟାରଂ ଜୀବମାତ୍ମାନଂ ନିର୍ଦ୍ଦିଶତି । (ଗ) 'ଏତଂ ତ୍ୱେବ ତେ ଭୂୟୋଽନୁବ୍ୟାଖ୍ୟାସାମି', (ଛା ୮-୯-୩) ଇତି ଚ ତମେବ ପୁନଃ ପୁନଃ ପରାମୃଶ୍ୟ 'ଯ ଏଷ ସ୍ୱପ୍ନେ ମହୀମାନ-ଶ୍ଚରତ୍ୟେଷ ଆତ୍ମା', (ଛା ୫-୧୦-୧) ଇତି 'ତଦ୍ୟତ୍ରୈତତ୍ସୁପ୍ତଃ ସମସ୍ତଃ ସଂପ୍ରସନ୍ନଃ ସ୍ୱପ୍ନଂ ନ ବିଜାନାତ୍ୟେଷ ଆତ୍ମା', (ଛା ୮-୧୧-୧) ଇତି ଚ ଜୀବମେବାବସ୍ଥାନ୍ତରଗତଂ ବ୍ୟାଚଷ୍ଟେ ।

**(୨) ଭାଷାଂତର-** (କ) ଅନ୍ୟର ପରାମର୍ଶ ଦ୍ୱାରା ଯେଉଁ ଜୀବବିଷୟକ ଆଶଙ୍କା ଜାତ ହୁଏ; ଏହାର ପରିହାର ଜୀବରେ ପାପରହିତତ୍ୱାଦି ଧର୍ମର ଅସମ୍ଭବ ହେବାରୁ ଏହା କରାଯାଇଛି । ବର୍ତ୍ତମାନ ଅମୃତ ଛିଞ୍ଚିଲାମାତ୍ରେ ଯେପର ମୃତପ୍ରାଣୀ ପୁନର୍ବାର ଉଠେ, ସେପରି ଅନନ୍ତରୋକ୍ତ ପ୍ରଜାପତି ବାକ୍ୟଦ୍ୱାରା ଜୀବ ବିଷୟକ ଆଶଙ୍କାର ପୁଣି ଉତ୍ଥାନ ଅଛି ।

(ଖ) କାରଣ- ଏଠାରେ 'ଯ ଆତ୍ମାପହତପାପ୍ମା', ଏହି ବେଦବାକ୍ୟରେ ପାପ-ରହିତତ୍ୱାଦି ଧର୍ମଯୁକ୍ତ ଆତ୍ମାର ଅନ୍ୱେଷଣ କରିବା ଉଚିତ୍', ବିଶେଷରୂପରେ କରିବା ଉଚିତ । ଏହିପ୍ରକାର ପ୍ରତିଜ୍ଞା କରି 'ଯିଏ ଅକ୍ଷିରେ ପୁରୁଷ ଦେଖାଏ, ସେ ଆତ୍ମା ଅଟେ', ଏହିପ୍ରକାର କହୁଥିବା ପ୍ରଜାପତି ଅକ୍ଷିସ୍ଥ ଦ୍ରଷ୍ଟାଜୀବର ଆତ୍ମାରୂପରେ ନିର୍ଦ୍ଦେଶ କରନ୍ତି ।

(ଗ) 'ଏହି ଆତ୍ମା ବିଷୟରେ ମୁଁ ତୁମକୁ କହୁଛି ।' ଏହାର୍ ବାରମ୍ବାର ପରାମର୍ଶ କରି 'ଯାହା ସେ ସ୍ୱପ୍ନରେ ମହିମାନ-ସ୍ତ୍ରୀ ଆଦି ଦ୍ୱାରା ପୂଜିତ ହୋଇ ବିଚରଣ କରାଏ,' ଅର୍ଥାତ୍ ଭୋଗର ଅନୁଭବ କରେ, ସେ ଆତ୍ମା ଅଟେ', ପୁନଶ୍ଚ 'ଯେଉଁ ସୁଷୁପ୍ତି ଅବସ୍ଥାରେ ଏହା ଶୋଇ ଦର୍ଶନାବିବୃତ୍ତିହୀନ ଓ ସମ୍ୟକ୍ ରୂପରେ ଆନନ୍ଦିତ ହୋଇ ସ୍ୱପ୍ନକୁ ଅନୁଭବ କରେ ନାହିଁ । ସେ ଆତ୍ମା ଅଟେ', ଏହିପ୍ରକାର ଅବସ୍ଥାନ୍ତରଗତ ଜୀବର ବ୍ୟାଖ୍ୟାନ କରନ୍ତି ।

(୩) ମୂଳ-(କ) ତସ୍ୟୈବ ଋପହତପାପ୍ମତ୍ୱାଦି ଦର୍ଶୟତି- 'ଏତଦମୃତମଭୟମେତଦ୍ ବ୍ରହ୍ମ', ଇତି । ନାହ ଖଲ୍ୱୟମେବ ସଂପ୍ରତ୍ୟାତ୍ମାନଂ ଜାନାତ୍ୟୟମହମସ୍ମୀତି ନୋ ଏବେମାନି ଭୂତାନି', (ଛା ୮-୧୧-୧,୨) ଇତି ଚ ସୁଷୁପ୍ତାବସ୍ଥାୟାଂ ଦୋଷମୁପକ୍ରମ୍ୟ ଶରୀରସମ୍ବନ୍ଧନିନ୍ଦାପୂର୍ବକଂ 'ଏଷ ସଂପ୍ରସାଦୋଽସ୍ମାଚ୍ଛରୀରାତ୍ ସମୁତ୍ଥାୟ ପରଂ ଜ୍ୟୋତିରୁପସଂପଦ୍ୟସ୍ୱେନ ରୂପେଣାଭନିଷ୍ପଦ୍ୟତେ, ସ ଉତ୍ତମଃ ପୁରୁଷଃ', ଇତି ଜୀବମେବ ଶରୀରାତ୍ସମୁତ୍ଥିତମୁତ୍ତମପୁରୁଷଂ ଦର୍ଶୟତି । (ଖ) ତସ୍ମାଦସ୍ତି ସମ୍ଭବୋ ଜୀବେ ପାରମେଶ୍ୱରାଣାଂ ଧର୍ମାଣାମ୍ । ଅତଃ 'ଦହରୋଽସ୍ମିନ୍ନନ୍ତରାକାଶଃ', ଇତି ଜୀବ ଏବୋକ୍ତ ଇତି ଚେତ୍ କଶ୍ଚିଦ୍‌ବ୍ରୂୟାତ୍ ।

**(୩) ଭାଷାଂତର-** (କ) ''ଏତଦମୃତମଭୟମେତଦ୍ ବ୍ରହ୍ମ' ଏହିବାକ୍ୟ ବ୍ରହ୍ମକୁ ପାପରହିତତ୍ୱାଦି ରୂପରେ ଦେଖାଏ । 'ନିଶ୍ଚିତ ଭାବରେ ସୁଷୁପ୍ତି ଅବସ୍ଥାରେ ଏହା ମୁଁ ଅଟେ, ଏହି ପ୍ରକାର କୌଣସି ଆତ୍ମା ନିଜକୁ ଜାଣେ ନାହିଁ ଏବଂ ସେ ଅନ୍ୟ ପ୍ରାଣୀମାନଙ୍କୁ ଜାଣେ ନାହିଁ', ଏହିପ୍ରକାର ସୁଷୁପ୍ତି ଅବସ୍ଥାରେ ଦୋଷ ଦେଖି 'ଏହାକୁ ମୁଁ ପୁନର୍ବାର ତୁମକୁ କହୁଛି, ଏହା ବ୍ୟତିତ ଅନ୍ୟ କୌଣସି ନୁହେଁ, ଏହି ପ୍ରକାର ଉପକ୍ରମା କରି ଶରୀରସମ୍ବନ୍ଧୀୟ ନିନ୍ଦାପୂର୍ବକ 'ଏହି ସଂପ୍ରସାଦଜୀବ ଏହି ଶରୀର ଦ୍ୱାରା ଉଠି ପରଜ୍ୟୋତିକୁ ପାଇ ପୁଣି ସ୍ୱରୂପରେ ଅଭିବ୍ୟକ୍ତ ହୁଏ' । ଏହିପ୍ରକାର ଶରୀରଦ୍ୱାରା ସମୁତ୍ଥିତ ଜୀବକୁ ଉତ୍ତମ ପୁରୁଷ ରୂପରେ ଦେଖାଏ ।

(ଖ) ତେଣୁ ପରମେଶ୍ୱରର ଧର୍ମଗୁଡ଼ିକ ଜୀବଠାରେ ସମ୍ଭବ ହୁଏ । ଅତଃ ଦହରୋଽସ୍ମିନ୍ନନ୍ତରା କାଶଃ ଏହି ବାକ୍ୟରେ ଦହରାକାଶ ଜୀବ ବୋଲି କେତେକ କହନ୍ତି ।

(୪) ମୂଳ-(କ) ତଂ ପ୍ରତି ବ୍ରୂୟାତ୍-'ଆବିର୍ଭୂତସ୍ୱରୂପସ୍ତୁ' ଇତି । ତୁଶବ୍ଦଃ ପୂର୍ବପକ୍ଷବ୍ୟାବୃତ୍ତ୍ୟର୍ଥଃ ନୋତ୍ତରସ୍ମାଦପି ବାକ୍ୟାଦିହ ଜୀବସ୍ୟାଶଙ୍କା ସମ୍ଭବତୀତ୍ୟର୍ଥଃ । କସ୍ମାତ୍ ? ଯତସ୍ତତ୍ରାପ୍ୟାବିର୍ଭୂତେତରବରୂପୋ ଜୀବୋ ବିବକ୍ଷ୍ୟତେ । ଆବିର୍ଭୂତଂସ୍ୱରୂପମ୍ ସ୍ୟେତ୍ୟାବିର୍ଭୂତସ୍ୱରୂପଃ । ଭୂତପୂର୍ବଗତ୍ୟା ଜୀବବଚନମ୍ । (ଖ) ଏତଦୁକ୍ତଂ ଭବତି- 'ଯୋଽକ୍ଷିଣି' ଇତ୍ୟକ୍ଷିଲକ୍ଷିତଂ ଦ୍ରଷ୍ଟାରଂ ନିର୍ଦ୍ଦିଶ୍ୟୋଦ ଶରାବବ୍ରାହ୍ମଣେନୈନଂ ଶରୀରାତ୍ମତାୟା ବ୍ୟୁତ୍ଥାପ୍ୟ 'ଏତଂ ତ୍ୱେବଂ ତେ', ଇତି ପୁନଃ ପୁନସ୍ତମେବ ବ୍ୟାଖ୍ୟେୟତ୍ୱେନାକୃଷ୍ୟ ସ୍ୱପ୍ନସୁଷୁପ୍ତ୍ୟୋପନ୍ୟାସକ୍ରମେଣ 'ପରଂ ଜ୍ୟୋତିସ୍ୱରୂପସଂପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତେ', ଇତି ଯଦସ୍ୟ ପାରମାର୍ଥିକଂ ସ୍ୱରୂପଂ ପରଂବ୍ରହ୍ମ ତଦ୍‌ରୂପତୟେନଂ ଜୀବଂ ବ୍ୟାଚଷ୍ଟେ, ନ ଜୈବେନ ରୂପେଣ । (ଗ) ଯତ୍ପରଂ ଜ୍ୟୋତିରୂପସଂପତ୍ତବ୍ୟଂ ଶ୍ରୁତଂ ତତ୍ପରଂ ବ୍ରହ୍ମ । ତଚ୍ଚାପହତପାପ୍ମତ୍ୱାଦିଧର୍ମକଂ, ତଦେବଂ ଚ ଜୀବସ୍ୟ ପାରମାର୍ଥିକଂ ସ୍ୱରୂପମ୍ 'ତତ୍ତ୍ୱମସି' ଇତ୍ୟାଦିଶାସ୍ତ୍ରେଭ୍ୟଃ,



ନେତରଦୁପାଧିକଳ୍ପିତମ୍ । ଯାବଦେବ ହି ସ୍ଥାଣାବିବ ପୁରୁଷବୁଦ୍ଧିଂ ଦ୍ୱୈତଲକ୍ଷଣାମବିଦ୍ୟାଂ ନିବର୍ତ୍ତୟନ୍ କୂଟସ୍ଥନିତ୍ୟ ଦୃକ୍‌ସ୍ୱରୂପମାତ୍ମାନମହଂ ବ୍ରହ୍ମାସ୍ମୀତି ନ ପ୍ରତିପଦ୍ୟତେ ତାବଜ୍ଜୀବସ୍ୟ ଜୀବତ୍ୱମ୍ । (ଘ) ଯଦା ତୁ ଦେହେନ୍ଦ୍ରିୟମନୋବୁଦ୍ଧି ସଂଘାତାଦ୍‌ବ୍ୟୁତ୍ଥାପ୍ୟ ଶ୍ରୁତ୍ୟା ପ୍ରତିବୋଧ୍ୟତେ, ନାସିତ୍ୱଂ ଦେହେନ୍ଦ୍ରିୟମନୋବୁଦ୍ଧିସଂଘାତଃ, ନାସି ସଂସାରୀ, କିଂ ତର୍ହି ? ତଦ୍ୟତ୍‌ସତ୍ୟଂ ସ ଆତ୍ମା ଚୈତନ୍ୟମାତ୍ରସ୍ୱରୂପ-ସ୍ତତ୍ତ୍ୱମସୀତି, ତଦା କୂଟସ୍ଥନିତ୍ୟଦୃକ୍ ସ୍ୱରୂପମାତ୍ମାନଂ ପ୍ରତି ବୁଦ୍ଧ୍ୟାସ୍ମାଚ୍ଛରୀରାଦଭିମାନନାତ୍ ସମୁତ୍ତିଷ୍ଠତ୍ ସ ଏବ କୂଟସ୍ଥନିତ୍ୟଦୃକ୍‌ସ୍ୱରୂପ ଆତ୍ମା ଭବତି । (ଙ) 'ସ ଯୋ ହ ବୈ ତତ୍‌ପରମଂ ବ୍ରହ୍ମ ବେଦ ବ୍ରହ୍ମୈବ ଭବତି', (ମୁଣ୍ଡ ୩-୨-୯) ଇତ୍ୟାଦିଶ୍ରୁତିଭ୍ୟଃ । ତଦେବ ଋସ୍ୟ ପାରମାର୍ଥିକଂ ସ୍ୱରୂପଂ ଯେନ ଶରୀରାତ୍ ସମୁତ୍ଥାୟ ସ୍ୱେନରୂପେଣାଭିନିଷ୍ପଦ୍ୟତେ ।

**(୪) ଭାଷାଂତର-** (କ) ସିଦ୍ଧାନ୍ତ-ପୂର୍ବପକ୍ଷମାନଙ୍କୁ କୁହାଯାଉଛି କି- 'ଆବିର୍ଭୂତ ସ୍ୱରୂପସ୍ତୁ ଏହି ସୂତ୍ରରେ ତୁଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତିନିମିତ୍ତ ଅଛି । ପରବର୍ତ୍ତୀ ବାକ୍ୟ ମଧ୍ୟରେ ଜୀବର ଆଶଙ୍କା ସମ୍ଭବ ନୁହେଁ- ଏହି ପ୍ରକାର ଅର୍ଥ ହୁଏ । କାରଣ- ଏଠାରେ ଆବିର୍ଭୂତ ସ୍ୱରୂପ ପ୍ରଜୀବ ବିବକ୍ଷିତ ହୁଏ । ଜାଗ୍ରତାଦି ଅବସ୍ଥାରେ ଏହା ପରିଷ୍କାର କରି ଅଭିବ୍ୟକ୍ତ ହୋଇଛି ଯେ-ନିଜ ପ୍ରତ୍ୟଗ୍ ଭିନ୍ନ ବ୍ରହ୍ମସ୍ୱରୂପ ଯାହାର କି ସେ ଆବିର୍ଭୂତ ସ୍ୱରୂପ । ଭୂତପୂର୍ବ ଅଜ୍ଞାନ ଅବସ୍ଥାର ଅପେକ୍ଷା ସେ ଜୀବବଚନ ।

(ଖ) ଏଠାରେ ଅଭିପ୍ରାୟକି-'ଯ ଏଷୋଽକ୍ଷିଣି' ଏହି ପ୍ରକାର ଚକ୍ଷୁଦ୍ୱାରା ଉପଲକ୍ଷିତ (ବିଶ୍ୱରୂପ) ଦ୍ରଷ୍ଟାର ନିର୍ଦ୍ଦେଶ କରି ଉଦଶରାବବ୍ରାହ୍ମାତାଦ୍ୱାରା ଶରୀରରେ ଆତ୍ମତ୍ୱଦ୍ୱାରା ଏହି ଜୀବକୁ ଅଲଗା କରି 'ଏହି ବିଷୟରେ ମୁଁ ତୁମକୁ ପୁନର୍ବାର କହୁଛି ।' ଏହିପ୍ରକାର ପୁନର୍ବାର ତାହାର ବ୍ୟାଖ୍ୟେୟ ରୂପରେ ଗ୍ରହଣ କରି ସ୍ୱପ୍ନ ଓ ସୁଷୁପ୍ତିର ଉପନ୍ୟାସ କ୍ରମେରେ 'ପରଂଜ୍ୟୋତି ସ୍ୱରୂପକୁ ପାଇ ନିଜ ରୂପରେ ଅଭିନିଷ୍ପନ୍ନ ହୁଏ । ଏହି ପ୍ରକାର ଏହି ଜୀବର ଯଥାର୍ଥ-ପରମାର୍ଥକରୂପ ପରଂବ୍ରହ୍ମ ଅଟେ । ଏହି ରୂପରେ ଜୀବର ବ୍ୟାଖ୍ୟାନ କରାଯାଏ, କିନ୍ତୁ ଜୀବ ରୂପରେ ନୁହେଁ ।

(ଗ) ପ୍ରାପ୍ତବ୍ୟ ଯେଉଁ ପରଂଜ୍ୟୋତି ଶ୍ରୁତିପ୍ରତିପାଦିତ ସେ ପରଂବ୍ରହ୍ମ, ସେ ପାପରହିତତ୍ୱାଦି ଧର୍ମଯୁକ୍ତ । ସେ ଜୀବର ତତ୍ତ୍ୱମସି ଇତ୍ୟାଦି ଶାସ୍ତ୍ରରେ ଜ୍ଞାତବ୍ୟଃ ପାରମାର୍ଥିକ ସ୍ୱରୂପ । ଏତଦ୍‌ଭିନ୍ନ ଉପାଧିକଳ୍ପିକ ସ୍ୱରୂପ ପାରମାର୍ଥିକ ନୁହେଁ । ଯେତେ

ସମୟ ପର୍ଯ୍ୟନ୍ତ ସ୍ଥାଣୁରେ ପୁରୁଷବୁଦ୍ଧି ସଦୃଶ ଦ୍ୱୈତଲକ୍ଷଣ ଅବିଦ୍ୟାକୁ ନିବୃତ୍ତ କରି କୂଟସ୍ଥ, ନିତ୍ୟ, ଜ୍ଞାନସ୍ୱରୂପ ଆତ୍ମାକୁ 'ମୁଁ ବ୍ରହ୍ମ ଅଟେ', ଏହିପରି ନ ଜାଣିଛି, ସେ ପର୍ଯ୍ୟନ୍ତ ଜୀବ ପାଖରେ ଜୀବତ୍ୱ ଅଛି ।

(ଘ) ପରନ୍ତୁ ଯେତେବେଳେ ଦେହ, ଇନ୍ଦ୍ରିୟ, ମନ ଓ ବୁଦ୍ଧିର ସଂଘାତଦ୍ୱାରା ପୃଥକ୍ କରି ତୁମେ ଦେହ-ଇନ୍ଦ୍ରିୟ-ମନ ବୁଦ୍ଧି ରୂପର ସଂଘାତ ନୁହଁ, କି ସଂସାରୀ ମଧ୍ୟ ନୁହଁ, କିନ୍ତୁ ଯାହା ସତ୍ୟ, ଚୈତନ୍ୟସ୍ୱରୂପ ଆତ୍ମା ଅଟେ । 'ତତ୍ତ୍ୱମସି' ଏହି ପ୍ରକାର ଶ୍ରୁତିଦ୍ୱାରା ପ୍ରତିବୋଧିତ ହୁଏ । ସେତେବେଳେ କୂଟସ୍ଥ, ନିତ୍ୟ, ଜ୍ଞାନସ୍ୱରୂପ ଆତ୍ମାକୁ ଜାଣି ଏହି ଶରୀରାଦି ଅଭିମାନକୁ ପରିତ୍ୟାଗ କରି ସେ କୂଟସ୍ଥ, ନିତ୍ୟ, ଜ୍ଞାନ-ସ୍ୱରୂପ ଆତ୍ମା ହୋଇଯାଏ ।

(ଙ) କାରଣ- 'ଯେ ସେହି ପରମବ୍ରହ୍ମକୁ ଜାଣେ, ନିଃସନ୍ଦେହଭାବରେ ସେ ବ୍ରହ୍ମ ହୁଏ ।' ଇତ୍ୟାଦି ଶ୍ରୁତିପ୍ରମାଣ । ଶରୀରଦ୍ୱାରା ଆତ୍ମାଭିମାନକୁ ପରିତ୍ୟାଗ କରି ଯାହାପରମଜ୍ୟୋତିଃ ସ୍ୱରୂପକୁ ପାଏ, ସେ ତାହାର ପାରମାର୍ଥିକ ସ୍ୱରୂପ ଅଟେ ।

(୫) ମୂଳ-(କ) କଥଂ ପୁନଃ ସ୍ୱଂ ଚ ରୂପଂ ସ୍ୱେନୈବ ଚ ନିଷ୍ପଦ୍ୟତ ଇତି ସମ୍ଭବତି କୂଟମ-ନି ତସ୍ୟ ? ସୁବର୍ଣ୍ଣାଦୀନାଂ ତୁ ଦ୍ରବ୍ୟାନ୍ତର ସଂପର୍କାଦଭିଭୂତ ସ୍ୱରୂପାଣା-ମନଭିବ୍ୟକ୍ତାସାଧାରଣବିଶେଷାଣାଂ କ୍ଷାରପ୍ରକ୍ଷେପାଦିଭିଃ ଶୋଧମାନାନାଂ ସ୍ୱରୂପେଣାଭିନିଷ୍ପତ୍ତିଃ ସ୍ୟାତ୍ । (ଖ) ତଥା ନକ୍ଷତ୍ରାଦୀନାମହନ୍ୟ ଭୂତ ପ୍ରକାଶାନାମଭାବକବିଯୋଗେ ରାତ୍ରୌ ସ୍ୱରୂବପଣାଭିନିଷ୍ପତ୍ତିଃସ୍ୟାତ୍ ନ ତୁ ତଥାତ୍ମଚୈତନ୍ୟ ଜ୍ୟୋତିଷୋ ନିତ୍ୟସ୍ୟ କେନଚିଦଭିଭବଃ ସମ୍ଭବତ୍ୟସଂସର୍ଗିତ୍ୱାଦ୍ ବ୍ୟୋମ୍ନ ଇବ, ଦୃଷ୍ଟବିରୋଧାଚ୍ଚ । (ଗ) ଦୃଷ୍ଟିଶ୍ରୁତିମତି ବିଜ୍ଞାତୟୋ ହି ଜୀବସ୍ୟ ସ୍ୱରୂପମ୍ । ତଚ୍ଚ ଶରୀରାଦସମୁତ୍ଥିତସ୍ୟାପି ଜୀବସ୍ୟ ସଦା ନିଷ୍ପନ୍ନମେବ ଦୃଶ୍ୟତେ, ସର୍ବୋହି ଜୀବଃ ପଶ୍ୟନ୍ ଶୃଣ୍ୱନ୍ ମନ୍ୱାନୋ ବିଜାନନ୍ ବ୍ୟବହରତି, ଅନ୍ୟଥା ବ୍ୟବହାରନୁପପତ୍ତେଃ । (ଘ) ତଚ୍ଚେତଚ୍ଛରୀରାତ୍-ସମୁତ୍ଥିତସ୍ୟ ନିଷ୍ପଦ୍ୟେତ, ପ୍ରାକ୍ସମୁତ୍ଥାନାଦ୍ ଦୃଷ୍ଟୋ ବ୍ୟବହାରୋ ବିରୁଧ୍ୟେତ । ଅତ କିମାତ୍ମକମିଦଂ ଶରୀରାତ୍ ସମୁତ୍ଥାନମ୍, କିମାତ୍ମିକା ବା ସ୍ୱରୂପେଣାଭିନିଷ୍ପତ୍ତିରିତି ?

**(୫) ଭାଷାଂତର-** (କ) ପରନ୍ତୁ ନିଜର ସ୍ୱରୂପ ନିଜଦ୍ୱାରା ନିଷ୍ପନ୍ନ ହୁଏ, ଏହା ନିତ୍ୟକୂଟସ୍ଥରେ କିପରି ସମ୍ଭବ ହୁଏ ? ଅନ୍ୟଦ୍ରବ୍ୟର ସଂସର୍ଗ ଦ୍ୱାରା ଯାହାର ସ୍ୱରୂପ ଅଭିଭୂତ ହୋଇଯାଏ । ତଥା ଅସାଧାରଣ ବିଶେଷଗୁଣ ଅଭିବ୍ୟକ୍ତ ହୁଏ ନାହିଁ, କ୍ଷାରପ୍ରେକ୍ଷେପାଦିଦ୍ୱାରା ଶୋଧନ ହୋଇଥିବା ଏହି ସୁବର୍ଣ୍ଣାଦିର ସ୍ୱରୂପରେ ଅଭିବ୍ୟକ୍ତି ହୁଏ ।

 

(ଖ) ତଥାଦିନରେ ଯାହାର ପ୍ରକାଶକ ଅଭିଭବ ହୁଏ, ସେ ନକ୍ଷତ୍ରାଦିର ରାତ୍ରିରେ ଅଭିଭବ କରୁଥିବାର ଅଭାବରେ ସ୍ୱରୂପଦ୍ୱାରା ଅଭିଭବ ହୁଏ-ଏହାହିଁ ସମ୍ଭବ । ପରନ୍ତୁ ଆତ୍ମା ଚୈତନ୍ୟରୂପନିତ୍ୟଜ୍ୟୋତିର ଏପରି କାହାଦ୍ୱାରା ଅଭିଭବ ସମ୍ଭବ ନୁହେଁ । କାରଣ-ଆକାଶ ସଦୃଶ ସେ ସଂସର୍ଗରହିତ ଏବଂ ପ୍ରତ୍ୟକ୍ଷବିରୋଧ ହୁଏ ।

(ଗ) କାରଣ-ଦର୍ଶନ, ଶ୍ରବଣ, ମନନ ଓ ବିଜ୍ଞାନ ଜୀବର ସ୍ୱରୂପ ଅଟେ । ସେ ଶରୀରଠାରୁ ଅଭିମାନକୁ ତ୍ୟାଗ ନ କରୁଥିବା ଜୀବଠାରେ ମଧ୍ୟ ସର୍ବଦା ରହନ୍ତି । ସମସ୍ତ ଜୀବ ଦେଖି, ଶୁଣି, ବିଚାର କରି ଏବଂ ଜାଣି ବ୍ୟବହାର କରନ୍ତି । ଅନ୍ୟଥା ବ୍ୟବହାରର ଉପପତ୍ତି ହୁଏ ନାହିଁ ।

(ଘ) ସେ ସ୍ୱରୂପ ଯଦି ଶରୀରଠାରୁ ଅଭିମାନ ତ୍ୟାଗକଲେ ନିଷ୍ପନ୍ନ ହୁଏ, ତେବେ ସମୁତ୍‌ଥାନର ପୂର୍ବରୁ ଦେଖାଦେଉଥିବା ବ୍ୟବହାର ବାଧିତ ହେବ । ତେଣୁ ଶରୀରଠାରୁ ସମୁତ୍ ଥାନର ସ୍ୱରୂପ କଣ ଓ ସ୍ୱରୂପ ଦ୍ୱାରା ଅଭିବ୍ୟକ୍ତିର ସ୍ୱରୂପ କଣ ?

(୬) ମୂଳ-(କ) ଅତ୍ରୋଚ୍ୟତେ-ପ୍ରାଗ୍‌ବିବେକ ବିଜ୍ଞାନୋତ୍ପତ୍ତେଃ ଶରୀରେନ୍ଦ୍ରିୟ-ମନୋବୁଦ୍ଧିବିଷୟବେଦନୋପାଧିଭିରବିବିକ୍ତମିବ ଜୀବସ୍ୟ ଦୃଷ୍ଟ୍ୟାଦିଜ୍ୟୋତିଃ ସ୍ୱରୂପଂଭବତି । ଯଥା-ଶୁଦ୍ଧସ୍ୟ ସ୍ଫଟିକସ୍ୟ ସ୍ୱାଚ୍ଛ୍ୟଂ ଶୌକ୍ଲ୍ୟଂ ଚ ସ୍ୱରୂପଂ ପ୍ରାଗ୍ ବିବେକଗ୍ରହଣାଦ୍ରକ୍ତନୀଲାଦ୍ୟୁପାଧିଭିରବିବିକ୍ତମିବ ଭବତି । (ଖ) ପ୍ରମାଣଜନିତ ବିବେକଗ୍ରହଣାତ୍ତୁ ପରାଚୀନଃ ସ୍ଫଟିକଃ ସ୍ୱାଚ୍ଛ୍ୟେନ ଶୌକ୍ଲ୍ୟେନ ଚ ସ୍ୱେନ ରୂପେଣାଭିନିଷ୍ପଦ୍ୟତ ଇତ୍ୟୁଚ୍ୟତେ, ପ୍ରାଗପି ତଥୈବ ସନ୍, ତଥା ଦେହାଦ୍ୟୁପାଧିବିବିକ୍ତସ୍ୟୈବ ସତୋ ଜୀବସ୍ୟ ଶ୍ରୁତିକୃତଂ ବିବେକବିଜ୍ଞାନଂ ଶରୀରାତ୍ ସମୁତ୍‌ଥାନମ୍ ବିବେକ ବିଜ୍ଞାନଫଳଂ ସ୍ୱରୂପେଣାଭିନିଷ୍ପତ୍ତିଃ କେବଳାତ୍ମ-ସ୍ୱରୂପାବଗତିଃ । (ଗ) ତଥା ବିବେକାବିବେକମାତ୍ରଣୈବାତ୍ମନୋଽଶରୀରତ୍ୱଂ ସଶରୀରତ୍ୱଞ୍ଚ ମନ୍ତ୍ରବର୍ଣ୍ଣାତ୍, 'ଅଶରୀରଂ ଶରୀରେଷୁ', (କା ୧-୨-୨୨) ଇତି; 'ଶରୀରସ୍ଥୋଽପି କୌନ୍ତେୟଂ ନ କରୋତି ନ ଲିପ୍ୟତେ', (ଗୀ ୧୩-୩୧) ଇତି ଚ ସଶରୀରତ୍ୱାଶରୀରତ୍ୱବିଶେଷ । ଭାବସ୍ମରଣାତ୍ । (ଘ) ତସ୍ମାଦ୍ ବିବେକବିଜ୍ଞାନାଭାବାଦନାବିର୍ଭୂତ ସ୍ୱରୂପଃ ସନ୍ ବିବେକ ବିଜ୍ଞାନାଦାବିର୍ଭୂତସ୍ୱରୂପ ଇତ୍ୟୁଚ୍ୟତେ । ନ ତ୍ୱାନ୍ୟାଦୃଶା ବାବିର୍ଭାବାନାବିର୍ଭାବୌ ସ୍ୱରୂପସ୍ୟ ସମ୍ଭବତଃ ସ୍ୱରୂପତ୍ୱାଦେବ । ଏବଂ ମିଥ୍ୟାଜ୍ଞାନକୃତ ଏବ ଜୀବପରମେଶ୍ୱରୟୋର୍ଭେଦୋ ନ ବସ୍ତୁକୃତଃ ବ୍ୟୋମବଦସଙ୍ଗତ୍ୱାବିଶେଷାତ୍ ।

(୬) ଭାଷାଂତର- ସିଦ୍ଧାନ୍ତ-(କ) ଯେପରି ଶୁଦ୍ଧସ୍ଫଟିକର ସ୍ୱଚ୍ଛତା ଏବଂ ଶୁକ୍ଳ ରୂପ ବିବେକଜ୍ଞାନ ହେଲେ ପୂର୍ବରକ୍ତ ନୀଳାଦି ଉପାଧିଦ୍ୱାରା ଅବିବିକ୍ତ ହୋଇଯାଏ; ସେପରି ବିବେକଜ୍ଞାନର ଉତ୍ପତ୍ତି ହେଲେ ପୂର୍ବଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି, ବିଷୟ ବେଦନାରୂପ ଉପାଧି ଦ୍ୱାରା ଜୀବର ଦୃଷ୍ଟାଦି ଜ୍ୟୋତି ସ୍ୱରୂପ ଅବିବକ୍ତ ହୁଏ ।

(ଖ) ଯଦ୍ୟପି ବିବେକଜ୍ଞାଦୋଦୟର ପୂର୍ବରୁ ସ୍ଫଟିକ ସେପରି ଶୁକ୍ଳ ଏବ୍ୟ ସ୍ୱଚ୍ଛ ଥାଏ, ତେବେ ମଧ୍ୟ ପ୍ରମାଣଜନିତ ବିବେକଜ୍ଞାନର ପରେ ସ୍ଫଟିକ ନିଜେ ନିଜେ ସ୍ୱଚ୍ଛ ଓ ଶୁକ୍ଳରୂପରେ ଅଭିବ୍ୟକ୍ତ ହେବାର କୁହାଯାଇଛି, ସେହିପ୍ରକାର ଦେହାଦି ଉପାଧିଠାରୁ ଅବିବିକ୍ତ ହୋଇଥିବା ଜୀବର ଶ୍ରୁତିଦ୍ୱାରା ଉତ୍ପନ୍ନ ହୋଇଥିବା ବିବେକଜ୍ଞାନ ହିଁ ଶରୀରଠାରୁ ସମୁତ୍‌ଥାନ ହୁଏ, ଏବଂ ସେ ବିବେକ ବିଜ୍ଞାନର ଫଳ କେବଳ ଆତ୍ମସ୍ୱରୂପର ସାକ୍ଷାତ୍‌କାର ହିଁ ସ୍ୱରୂପାଭିବ୍ୟକ୍ତି ଅଟେ ।

(ଗ) ସେହିପ୍ରକାର 'ଶରୀରରେ ଅଶରୀର ଅଛି', ଏହି ମନ୍ତ୍ରରେ ବିବେକ ଏବଂ ଅବିବେକ ମାତ୍ରରେ ହିଁ ଆତ୍ମା ଅଶରୀର ଓ ସଶରୀର ହୁଏ । 'ହେ କୌନ୍ତେୟ । ସେ ଶରୀରରେ ରହି ପ୍ରକୃତରେ କିଛି କରେ ନାହିଁ, ବା କୌଣସି କର୍ମରେ ଲିପ୍ତ ହୁଏ ନାହିଁ ।'' ଏହି ପ୍ରକାର ସଶରୀରତ୍ୱ ଓ ଅଶରୀରତ୍ୱ ବିଷୟକ ବିଶେଷାଭାବ ଭାବାଭାବର ସ୍ମରଣ ହୁଏ ।

(ଘ) ତେଣୁ ବିବେକଜ୍ଞାନର ଅଭାବରୁ ଅନଭିବ୍ୟକ୍ତି ସ୍ୱରୂପ ହୋଇ ମଧ୍ୟ ଜୀବ ବିବେକବିଜ୍ଞାନଦ୍ୱାରା ଅଭିବ୍ୟକ୍ତ ସ୍ୱରୂପ ହୁଏ ବୋଲି କୁହାଯାଇଛି । ଅନ୍ୟପ୍ରକାରରେ ଅଭିବ୍ୟକ୍ତି ଓ ଅନଭିବ୍ୟକ୍ତି ସ୍ୱରୂପରେ ସମ୍ଭବ ନୁହେଁ । କାରଣ ସେ ସ୍ୱରୂପ ଅଟେ । ଏହିପ୍ରକାର ଜୀବ ଏବଂ ଈଶ୍ୱରର ଭେଦ ମିଥ୍ୟାଜ୍ଞାନଦ୍ୱାରା ଜାତ ହୁଏ, ବାସ୍ତବିକ୍ ନୁହେଁ କାରଣ-ଆତ୍ମାରେ ଆକାଶ ସଦୃଶ ଅସଙ୍ଗତ୍ୱ ଅବିଶେଷ ଅଟେ ।

(୭) ମୂଳ- (କ) କୁତଶ୍ଚୈତଦେବଂ ପ୍ରତିପତ୍ତବ୍ୟମ୍ ? ଯତୋ 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ', ଇତ୍ୟୁପଦିଶ୍ୟ 'ଏତଦମୃତମଭୟମେତଦ୍‌ବ୍ରହ୍ମ', ଇତ୍ୟୁପଦିଶତି, ଯୋଽକ୍ଷିଣି ପ୍ରସିଦ୍ଧୋ ଦ୍ରଷ୍ଟୃତ୍ୱେନ ବିଭାବ୍ୟତେ, ସୋଽମୃତାଭୟଲକ୍ଷଣାଦ୍ ବ୍ରହ୍ମଣୋଽନ୍ୟଶ୍ଚେତ୍ ସ୍ୟାତ୍, ତତୋଽମୃତାଭୟ-ବ୍ରହ୍ମସାମାନାଧିକରଣ୍ୟଂ ନ ସ୍ୟାତ୍, ନାପି ପ୍ରତିଚ୍ଛାୟାତ୍ମାଽୟମକ୍ଷିଲକ୍ଷିତୋ ନିର୍ଦ୍ଦିଶ୍ୟତେ, ପ୍ରଜାପତେର୍ମୃଷାବାଦିତ୍ୱପ୍ରସଙ୍ଗାତ୍ । (ଖ) ତଥା ଦ୍ୱିତୀୟେଽପି ପର୍ଯ୍ୟାୟେ 'ଯ ଏଷ ସ୍ୱପ୍ନେ ମହୀୟମାନଶ୍ଚରତି', ଇତି ନ ପ୍ରଥମପର୍ଯ୍ୟାୟ-ନିର୍ଦ୍ଦିଷ୍ଟାଦକ୍ଷି ପୁରୁଷାଦଦ୍ରଷ୍ଟୁରନ୍ୟୋ ନିର୍ଦ୍ଦିଷ୍ଟଃ, 'ଏତଂ ତ୍ୱେବ ତେ ଭୂୟୋଽନୁବ୍ୟାଖ୍ୟାସ୍ୟାମି',



ଇତ୍ୟୁପକ୍ରମାତ୍ । କିଞ୍ଚାହମଦ୍ୟ ସ୍ୱପ୍ନେ ହସ୍ତିନମଦ୍ରାକ୍ଷମ୍, ନେଦାନୀଂ ପଶ୍ୟାମୀତି ଦୃଷ୍ଟମେବ ପ୍ରତିବୁଦ୍ଧଃ ପ୍ରତ୍ୟାଚଷ୍ଟେ, ଦ୍ରଷ୍ଟାରଂ ତୁ ତମେବ ପ୍ରତ୍ୟଭିଜାନାତି 'ଯ ଏବାହଂ ସ୍ୱପ୍ନମଦ୍ରାକ୍ଷଂ ସ ଏବାହଂ ଜାଗରିତଂ ପଶ୍ୟାମି' ଇତି । (ଗ) ତଥା ତୃତୀୟେ ପର୍ଯ୍ୟାୟେ 'ନହି ଖଲ୍ୱୟମେବଂ ସଂପ୍ରତ୍ୟାତ୍ମାନଂ ଜାନାତ୍ୟୟମହମସ୍ମୀତି ନୋ ଏବେମାନି ଭୂତାନି', ଇତି ସୁଷୁପ୍ତାବସ୍ଥାୟାଂ ବିଶେଷବିଜ୍ଞାନାଭାବମେବ ଦର୍ଶୟତି ନ ପ୍ରାୟମେବ ନ ବିଜ୍ଞାତୃବିନାଶାଭିପ୍ରାୟମ୍ । 'ନହି ବିଜ୍ଞାତୁର୍ବିଜ୍ଞାତେଃ ବିପରିଲୋପୋ ବିଦ୍ୟତେଽବିନାଶିତ୍ୱାତ୍', (ବୃ ୪-୩-୩୦) ଇତି ଶ୍ରୁତ୍ୟନ୍ତରାତ୍ । (ଘ) ତଥା ଚତୁର୍ଥେଽପି ପଯ୍ୟାୟେ 'ଏତଂ ତ୍ୱେବ ତେ ଭୂୟୋଽନୁବ୍ୟାଖ୍ୟାସ୍ୟାମି ନୋ ଏବାନ୍ୟତ୍ରୈତସ୍ମାତ୍', ଇତ୍ୟୁପକ୍ରମ୍ୟ 'ମଘବନ ମର୍ତ୍ତ୍ୟଂ ବା ଇଦଂ ଶରୀରମ୍', ଇତ୍ୟାଦିନା ପ୍ରପଞ୍ଚେନ ଶରୀରାଦ୍ୟୁପାଧିସମ୍ବନ୍ଧପ୍ରତ୍ୟାଖ୍ୟାନେନ ସଂପ୍ରସାଦଶବ୍ଦୋଦିତଂ ଜୀବଂ 'ସ୍ୱେନ ରୂପେଣାଭିନିଷ୍ପଦ୍ୟତେ' ଇତି ବ୍ରହ୍ମସ୍ୱରୂପାପନ୍ନଂ ଦର୍ଶୟନ୍ନ ପରସାଦ୍ ବ୍ରହ୍ମଣୋଽମୃତାଭୟସ୍ୱରୂପାଦନ୍ୟଂ ଜୀବଂ ଦର୍ଶୟତି ।

**(୭) ଭାଷାଂତର-** (କ) ପରନ୍ତୁ ଏହା କିପରି ଜଣାପଡ଼େ ? ଏହାଦ୍ୱାରା 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ' ଏହା ଉପଦେଶ ଦେଇ 'ଏତଦମୃତମଭୟମେତଦ୍ ବ୍ରହ୍ମ' ବୋଲି ଉପଦେଶ ଦିଆଯାଇଅଛି । ଆଖିରେ ଯାହା ପ୍ରସିଦ୍ଧ ବିଶ୍ୱ ରୂପଦଷ୍ଟା ରୂପରେ ଜଣାଯାଏ, ତାହା ଯଦି ଅମୃତ ଓ ଅଭୟ ସ୍ୱରୂପ ବ୍ରହ୍ମଭିନ୍ନ ହୁଏ, ତେବେ ଅମୃତ ଓ ଅଭୟରୂପ ବ୍ରହ୍ମ ସହିତ ଏହି ଅକ୍ଷି ପୁରୁଷର ସାମାନାଧିକରଣ୍ୟ ହୁଏ ନାହିଁ । ଅକ୍ଷିଲକ୍ଷିତ ଏହି ପ୍ରତିବିମ୍ବାତ୍ମା ନିର୍ଦ୍ଦିଷ୍ଟ ନୁହେଁ, କାରଣ-ପ୍ରଜାପତି ମିଥ୍ୟା ହୋଇଯିବ ।

(ଖ) ଏହି ପ୍ରକାର 'ଯାହା ସ୍ୱପ୍ନରେ ଭୋଗର ଭୋକ୍ତା ବୋଲି ବିଚାର କରାଯାଇଛି, ତାହା ଆତ୍ମା, ଦ୍ୱିତୀୟଥର ପ୍ରଥମଥରର ନିର୍ଦ୍ଦିଷ୍ଟ ଅକ୍ଷିପୁରୁଷରୂପଦ୍ରଷ୍ଟା ଠାରୁ ଭିନ୍ନ ଦ୍ରଷ୍ଟାର ନିର୍ଦ୍ଦେଶ ନୁହେଁ, କାରଣ-'ଏହାକୁ ମୁଁ ପୁଣି କହୁଛି', ଏହିପରି ଉପକ୍ରମ ଅଛି । 'ଆଜି ସ୍ୱପ୍ନରେ ମୁଁ ହାତୀ ଦେଖିଲି କିନ୍ତୁ ବର୍ତ୍ତମାନ ଦେଖିନାହିଁ', ଏହି ପ୍ରକାର ଦ୍ରଷ୍ଟାର ଜାଗରଣ କରି କ'ଣ ନିଷେଧ କରୁଛି କି ? 'ଯାହା ମୁଁ ସ୍ୱପ୍ନାବସ୍ଥାରେ ଅନୁଭବ କଲି, ତାହା ଜାଗ୍ରଦବସ୍ଥାରେ ଅନୁଭବ କରୁଛି', ଏହି ପ୍ରକାର ସେ ଦ୍ରଷ୍ଟାର ପ୍ରତିଭିଜ୍ଞା କରୁଛି ।

(ଗ) ପୁନଶ୍ଚ ତୃତୀୟଥରରେ ଏହି ଅବସ୍ଥାରେ 'ଏହି ମୁଁ ଅଟେ', ବୋଲି ନିଶ୍ଚିତ ଜ୍ଞାନ ଏହି ଆତ୍ମା ନିଜକୁ ଜାଣେ ଏବଂ ଏହି ପ୍ରାଣୀମାନଙ୍କୁ ଜାଣେ ନାହିଁ', ଏହିପ୍ରକାର ଶ୍ରୁତି ସୁଷୁପ୍ତି ଅବସ୍ଥାରେ ବିଶେଷ ଜ୍ଞାନର ଅଭାବ ଦେଖାଏ । ବିଜ୍ଞାନର ପ୍ରତିଷେଧ କରେ ନାହିଁ, ସେଠାରେ 'ସେ ବିନାଶକୁ ପ୍ରାପ୍ତ ହୁଏ' ଏହା ମଧ୍ୟ ବିଶେଷ ବିଜ୍ଞାନର ବିନାଶର ଅଭିପ୍ରାୟରେ କୁହାଯାଇଛି- ବିଜ୍ଞାତା ବିନାଶର ଅଭିପ୍ରାୟ ନୁହେଁ,

କାରଣ-'ନ ହି ବିଜ୍ଞାତୁର୍ବିଜ୍ଞାନେ' (ବିଜ୍ଞାତାର ବିଜ୍ଞପ୍ତି ବିଜ୍ଞାନଶକ୍ତିର କଦାପି ଲୋପ ହୁଏ ନାହିଁ, କାରଣ-ସେ ଅବିନାଶୀ ଅଟେ) ।

(ଘ) ପୁନଶ୍ଚ ଚତୁର୍ଥଥରରେ 'ଏହାକୁ ମୁଁ ତୁମକୁ ପୁନର୍ବାର କହୁଛି, ଅନ୍ୟକୁ ନୁହେଁ' ଏହିପ୍ରକାର ଉପକ୍ରମ କରି 'ହେ ଇନ୍ଦ୍ର ! ନିଃସନ୍ଦେହଭାବରେ ଏହି ଶରୀର ମରଣଶୀଳ ଅଟେ', ଇତ୍ୟାଦି ବିସ୍ତାର ପୂର୍ବକ ଶରୀରାଦି ଉପାଧି ସମ୍ବନ୍ଧର ନିଷେଧ କରି ସଂପ୍ରସାଦଶବ୍ଦରେ କଥିତ ଜୀବର 'ନିଜ ସ୍ୱରୂପଦ୍ୱାରା ଅଭିବ୍ୟକ୍ତ ହୁଏ', ଏହି ବାକ୍ୟ ଦ୍ୱାରା ବ୍ରହ୍ମସ୍ୱରୂପ ପ୍ରାପ୍ତି ଦେଖାଇ ପ୍ରଜାପତି ଅମୃତ, ଅଭୟସ୍ୱରୂପ ଓ ପରଂବ୍ରହ୍ମ ଦ୍ୱାରା ଜୀବକୁ ଦେଖେ, ଅନ୍ୟକୁ ନୁହେଁ ।

(୮) ମୂଳ-(କ) କେଚିତ୍ତୁ-ପରମାତ୍ମାବିବକ୍ଷାୟାଂ 'ଏତଂ ତ୍ୱେବ ତେ' ଇତି ଜୀବାକର୍ଷଣମନାର୍ଯ୍ୟଂ ମନ୍ୟମାନା ଏତମେବ ବାକ୍ୟୋପକ୍ରମସୂଚିତମ ପହତପାପ୍ମତ୍ୱା-ଗୁଣକମାତ୍ମାନଂ 'ତେ ଭୂୟୋଽନୁବ୍ୟାଖ୍ୟାସ୍ୟାମୀତି-କଳ୍ପୟନ୍ତି । (ଖ) ତେଷାମେତମିତି ସନ୍ନିହିତାବଲମ୍ବିନୀ ସର୍ବନାମଶ୍ରୁତିର୍ବିପ୍ର କୃଷ୍ୟେତ, ଭୂୟଃ ଶ୍ରୁତିଶ୍ଚୋପରୁଧ୍ୟେତ, ପର୍ଯ୍ୟାୟା-ନ୍ତରାଭିହିତସ୍ୟ ପର୍ଯ୍ୟାୟାନ୍ତରେଽନଭିଧୀୟମାନତ୍ୱାତ୍ । 'ଏତଂ ତ୍ୱେବ ତେ' ଇତି ଚ ପ୍ରତିଜ୍ଞାୟ ପ୍ରାକ୍‌ଚତୁର୍ଥାତ୍ ପର୍ଯ୍ୟାୟାଦନ୍ୟମନ୍ୟଂ ବ୍ୟାଚକ୍ଷାଣସ୍ୟ ପ୍ରଜାପତେ ପ୍ରତାରକତ୍ୱଂ ପ୍ରସଜ୍ୟେତ । (ଗ) ତସ୍ମାଦ୍ୟଦବିଦ୍ୟାପ୍ରତ୍ୟୁପସ୍ଥାପିତମପାରମାର୍ଥିକଂ ଜୈବଂ ରୂପଂ କର୍ତ୍ତୃ-ଭୋକ୍ତୃରାଗଦ୍ୱେଷାଦିଦୋଷକଳୁଷିତମନେକାର୍ଥଯୋଗି ତଦ୍‌ବିଲୟନେନ ତଦ୍‌ବିପରୀତ-ମପହତପାପ୍ମତ୍ୱାଦିଗୁଣକଂ ପାରମେଶ୍ୱରଂ ସ୍ୱରୂପଂ ବିଦ୍ୟୟା ପ୍ରତିପାଦ୍ୟତେ, ସର୍ପାଦିବି-ଲୟନେନୈବ ରଜ୍ୱାଦୀନ୍ ।

**(୮) ଭାଷାଂତର**-(କ) କେତେକ ଆଚାର୍ଯ୍ୟଙ୍କ ମତରେ ପରମାତ୍ମାର ବିବିକ୍ଷାରେ 'ଏବଂ ତ୍ୱେବ ତେ' ଏହି ବାକ୍ୟଦ୍ୱାରା ଜୀବର ଅନୁବୃତ୍ତି ଅନୁଚିତ ଜାଣୁଥିବା (ଯ ଆତ୍ମାପହତପାପ୍ମା) ଏହି ବାକ୍ୟୋପକ୍ରମରେ ସୂଚିତ ପାପରହିତତ୍ୱ ଆଦି ଗୁଣବିଶିଷ୍ଟ 'ଏହି ଆତ୍ମାକୁ ତୁମପାଇଁ ପୁନଃ ପୁନଃ କହିବି ବୋଲି କଳ୍ପନା କରନ୍ତି ।

(ଖ) ସେମାନଙ୍କ ମତରେ ସନ୍ନିହିତଜ୍ଞାନ କରୁଥିବା 'ଏତମ୍' ଏହି ସର୍ବନାମ ଶ୍ରୁତି ଦୂରାନ୍ୱିତ ହେବ । ଅର୍ଥାତ୍ ଜୀବକୁ ପ୍ରତିପାଦନ ନକରି ଅଧୁନା ପରମାତ୍ମାର ପ୍ରତିପାଦନ କରିବାକୁ ଲାଗେ ଏବଂ ଭୂୟଃ' ଏହି ଶ୍ରୁତି ମଧ୍ୟ ବାଧ ହୋଇଯିବ, କାରଣ- 'ଯ ଏଷୋଽକ୍ଷିଣି' ଏହି ପର୍ଯ୍ୟାୟରେ ଅଭିହିତର ଦ୍ୱିତୀୟପର୍ଯ୍ୟାୟରେ ଅଭିଧାନ ନୁହେଁ । 'ଏତଂ ତ୍ୱେବ ତେ' ଏହିପ୍ରକାର ପ୍ରତିଜ୍ଞା କରି ଚତୁର୍ଥ ପର୍ଯ୍ୟାୟର ପୂର୍ବ



ପର୍ଯ୍ୟନ୍ତ ଅନ୍ୟାନ୍ୟ ପଦାର୍ଥର ବ୍ୟାଖ୍ୟାନ କରୁଥିବା ପ୍ରଜାପତିଙ୍କୁ ପ୍ରକାରକତ୍ୱ-ମିଥ୍ୟାବାଦିତ୍ୱ ଦୋଷ ପ୍ରସକ୍ତ ହେବ ।

(ଗ) ଅତଃ ଯେପରି ସର୍ପାଦିର ବାଧହେଲେ ରଜ୍ଜ୍ୱାଦିର ଯଥାର୍ଥ ସ୍ୱରୂପର ପ୍ରତିପାଦନ ହୁଏ, ସେପରି ଅବିଦ୍ୟାଦ୍ୱାରା ଉପସ୍ଥାପିତ କର୍ତ୍ତୃତ୍ୱ-ଭୋକ୍ତୃତ୍ୱ-ରାଗଦ୍ୱେଷାଦି ଦୋଷଦ୍ୱାରା ଦୂଷିତ ଅନେକ୍ ଅନର୍ଥଯୁକ୍ତ ଜୀବର ଅପରମାର୍ଥିକ ସ୍ୱରୂପକୁ ପ୍ରତିରୋଧ କରି ବିଦ୍ୟା ଏହାର ବିପରୀତପାପରହିତତ୍ୱାଦିଗୁଣ ବିଶିଷ୍ଟ ପରମେଶ୍ୱରର ସ୍ୱରୂପ ପ୍ରତିପାଦନ କରେ ।

(୯) ମୂଳ-(କ) ଅପରେ ତୁ ବାଦିନଃ ପାରମାର୍ଥିକମେବ ଜୈବଂ ରୂପମିତି ମନ୍ୟନ୍ତେଽସ୍ମଦୀୟାଶ୍ଚ କେଚିତ୍ । ତେଷାଂ ସର୍ବେଷାମାତ୍ମୈକତ୍ୱସମ୍ୟଗ୍ ଦର୍ଶନ ପ୍ରତିପକ୍ଷ-ଭୂତାନାଂ ପ୍ରତିଷେଧାୟେଦଂ ଶାରୀରିକମାରବ୍ଧମ୍ । (ଖ) ଏକ ଏବ ପରମେଶ୍ୱରଃ କୂଟସ୍ଥଃ ନିତ୍ୟୋ ବିଜ୍ଞାନଧାତୁରବିଦ୍ୟୟା ମାୟୟା ମାୟାବିବଦନେକଧା ବିଭାବ୍ୟତେ ନାନ୍ୟୋ ବିଜ୍ଞାନଧାତୁରସ୍ତୀତି । (ଗ) ଯତ୍ତ୍ୱିଦଂ ପରମେଶ୍ୱରବାକ୍ୟେ ଜୀବମାଶଙ୍କ୍ୟ ପ୍ରତିଷେଧତ ସୂତ୍ରକାରଃ 'ନାସମ୍ଭବାତ୍' (ବ୍ର.ସୂ ୧-୩-୧୮) ଇତ୍ୟାଦିନା ।

**(୯) ଭାଷାଂତର-** (କ) କିନ୍ତୁ ପୂର୍ବପକ୍ଷ ଓ କେତେକ ଅସ୍ମଦୀୟ ସିଦ୍ଧାନ୍ତପକ୍ଷର ଆଚାର୍ଯ୍ୟମାନେ ଜୀବର ରୂପ ପାରମାର୍ଥିକ ବୋଲି ସ୍ୱୀକାର କରନ୍ତି । ଆତ୍ମୈକତ୍ୱ ସମ୍ୟଗ୍ ଦର୍ଶନର ପ୍ରତିପକ୍ଷୀଭୂତ ସେହି ସମସ୍ତବାଦୀମାନଙ୍କ ପାଇଁ ଏହା ଶାରୀରିକ ଶାସ୍ତ୍ର ଆରମ୍ଭ କରାଗଲା ।

(ଖ) ଏକ ହିଁ ପରମେଶ୍ୱର କୂଟସ୍ଥ, ନିତ୍ୟ, ବିଜ୍ଞାନସ୍ୱରୂପ, ଅବିଦ୍ୟାରୂପୀ ମାୟା ଦ୍ୱାରା ମାୟାବୀର ସମାନ ଅନେକ ହୁଏ, ଯାହାକି ପ୍ରତୀତି ହୁଏ, ତାହାଠାରୁ ଅନ୍ୟ ବିଜ୍ଞାନ ସ୍ୱରୂପ କୌଣସି ବସ୍ତୁ ନୁହେଁ ।

(ଗ) 'ଯ ଆତ୍ମାଽପହତପାପ୍ମା ।' ଏହି ପରମେଶ୍ୱର ବାକ୍ୟରେ ଜୀବକୁ ଶଙ୍କା କରି 'ନାସମ୍ଭବାତ୍' ଇତ୍ୟାଦି ଦ୍ୱାରା ସୂତ୍ରକାର ଏହାର ପ୍ରତିଷେଧ କରନ୍ତି ।

(୧୦) ମୂଳ-(କ) ତତ୍ରାୟମଭିପ୍ରାୟଃ-ନିତ୍ୟଶୁଦ୍ଧବୁଦ୍ଧମୁକ୍ତ ସ୍ୱଭାବେ କୂଟସ୍ଥନିତ୍ୟେ ଏକସ୍ମିନ୍ ସଂଗେ ପରମାତ୍ମନି ତଦ୍‌ବିପରୀତଂ ଜୈବଂ ରୂପଂ ବ୍ୟୋମ୍ନୀବ ତଲମଳାଦି ପରିକଳ୍ପିତମ୍ । ତଦାତ୍ମୈକତ୍ୱ ପ୍ରତିପାଦନପରୈର୍ବାକ୍ୟୈର୍ନ୍ୟାୟୋ-ପେତୈର୍ଦ୍ୱୈତବାଦ-ପ୍ରତିଷେଧୈଶ୍ଚାପନେଷ୍ୟାମୀତି ପରମାତ୍ମନୋ ଜୀବାଦନ୍ୟତ୍ୱଂ ଦୃଢୟତି । (ଖ) ଜୀବସ୍ୟ ତୁ ନ ପରସ୍ମାଦନ୍ୟତ୍ୱଂ ପ୍ରତିପିପାଦୟିଷତି କିନ୍ତ୍ୱନୁ ବଦତ୍ୟେବାବିଦ୍ୟାକଳ୍ପିତଂ ଲୋକପ୍ରସିଦ୍ଧଂ

ଜୀବଭେଦମ୍ । ଏବଂ ହି ସ୍ୱାଭାବିକର୍ତ୍ତୃତ୍ୱଭୋକ୍ତୃତ୍ୱାନୁବାଦେନ ପ୍ରବୃତ୍ତାଃ କର୍ମବିଧୟୋ ନ ବିରୁଧ୍ୟନ୍ତ ଇତି ମନ୍ୟତେ । (ଗ) ପ୍ରତିପାଦ୍ୟଂ ତୁ ଶାସ୍ତ୍ରାର୍ଥମାତ୍ମୈକତ୍ୱମେବ ଦର୍ଶୟତି- 'ଶାସ୍ତ୍ରଦୃଷ୍ଟ୍ୟା ତ୍ୱପଦେଶୋ ବାମଦେବବତ୍', (ବ୍ର.ସୂ. ୧-୧-୩୦) ଇତ୍ୟାଦିନା । ବର୍ଣ୍ଣିତଶ୍ଚାସ୍ମାଭିର୍ବିଦ୍ୱଦ୍‌ଭେଦେନ କର୍ମବିଧିବିରୋଧପରିହାରଃ ।

**(୧୦) ଭାଷାଂତର-** (କ) ଏହାର ଅଭିପ୍ରାୟ ଯେ-ନିତ୍ୟ-ବୁଦ୍ଧ-ଶୁଦ୍ଧ-ମୁକ୍ତସ୍ୱଭାବ, କୂଟସ୍ଥ, ନିତ୍ୟ, ଏକ, ଅସଙ୍ଗ ପରମାତ୍ମାଠାରେ ତାହାର ବିପରୀତ ଜୀବରୂପ ଆକାଶରେ ମଳିନତାଦିର ସମାନ ପରିକଳ୍ପିତ ଅଟେ । ନ୍ୟାୟଯୁକ୍ତ ଦ୍ୱୈତବାଦୀର ପ୍ରତିଷେଧକ ଏବଂ ଆତ୍ମୈକତ୍ୱ ପ୍ରତିପାଦନ ପରବାକ୍ୟ ଦ୍ୱାରା ଏହାର ଅପନୟନ କରାଯିବ । ଏହି ବିଷୟଦ୍ୱାରା ପରମାତ୍ମାର ଜୀବାତ୍ମା ଦ୍ୱାରା ଭେଦ ଦୃଢ଼ କରେ ।

(ଖ) ଜୀବର ପରମାତ୍ମାଦ୍ୱାରା ଭେଦପ୍ରତିପାଦନ କରିବାକୁ ଚାହେଁ ନାହିଁ, କିନ୍ତୁ ଅବିଦ୍ୟାଦ୍ୱାରା କଳ୍ପିତ ଲୋକପ୍ରସିଦ୍ଧ-ଜୀବଭେଦର କେବଳ ଅନୁବାଦ କରନ୍ତି । ଏହିପ୍ରକାର ସ୍ୱାଭାବିକ ଅବିଦ୍ୟକ କର୍ତ୍ତୃତ୍ୱ ଭୋକ୍ତୃତ୍ୱର ଅନୁବାଦ କରିବାପାଇଁ ପ୍ରବୃତ୍ତ ହୋଇ କର୍ମବିଧିଗୁଡ଼ିକ ବିରୋଧ ହୁଅନ୍ତି ନାହିଁ ବୋଲି ସ୍ୱୀକାର କରନ୍ତି ।

(ଗ) 'ଶାସ୍ତ୍ରଦୃଷ୍ଟ୍ୟା ତୂପଦେଶୋ ବାମଦେବବତ୍' ଏହାଦ୍ୱାରା ସୂତ୍ରକାର ବେଦାନ୍ତଶାସ୍ତ୍ରର ପ୍ରତିପାଦ୍ୟବିଷୟ କିନ୍ତୁ ଆତ୍ମୈକତ୍ୱ ବୋଲି ଦେଖାଇଛନ୍ତି । ଆମ୍ଭେମାନେ ବିଦ୍ୱାନ୍ ଓ ଅବିଦ୍ୱାନ ଭେଦରେ କର୍ମବିଧିର ବିରୋଧକୁ ପରିହାର ବିଷୟରେ ବର୍ଣ୍ଣନା କରୁଁଛୁ ।

## अन्यार्थस्च परामर्श: ॥ २० ॥

## (୧) ଅନ୍ୟାର୍ଥଶ୍ଚ ପରାମର୍ଶଃ ॥ ୧।୩।୨୦ ॥

ପରାମର୍ଶଶ୍ଚ- 'ଅଥ ଯ ଏଷଃ ସଂପ୍ରସାଦଃ' ଏହି ବାକ୍ୟରେ ସଂପ୍ରସାଦଶବ୍ଦ ଦ୍ୱାରା ଯାହା ଜୀବର ପରାମର୍ଶ କରେ, ସେ, ଅନ୍ୟାର୍ଥଃ-ଅନ୍ୟପାଇଁ ଅର୍ଥାତ୍ ପରମାତ୍ମାର ପ୍ରତିପାଦନ କରିବାପାଇଁ ଉଦ୍ଦିଷ୍ଟ ।

(୨) ମୂଳ-(କ) ଅଥ ଯୋ ଦହରବାକ୍ୟଶେଷେ ଜୀବପରାମର୍ଶୋଦର୍ଶିତ-'ଅଥ ଯ ଏଷ ସଂପ୍ରସାଦଃ', (ଛା ୮-୩-୩) ଇତ୍ୟାଦିଃ । ସ ଦହରେ ପରମେଶ୍ୱରେ ବ୍ୟଖ୍ୟାୟମାନେ ନ ଜୀବୋପାସନୋପଦେଶୋ ନ ପ୍ରକୃତବିଶେଷୋପଦେଶ ଇତ୍ୟନର୍ଥକତ୍ୱଂ ପ୍ରପ୍ନୋତୀତି । (ଖ) ଅତ ଆହଅନ୍ୟାର୍ଥୋଽୟଂ ଜୀବପରାମର୍ଶୋ ନ ଜୀବସ୍ୱରୂପପର୍ଯ୍ୟବସାୟୀ । କି ତର୍ହି ? ପରମେଶ୍ୱରସ୍ୱରୂପପର୍ଯ୍ୟବସାୟୀ । (ଗ) କଥମ୍ ?



ସଂପ୍ରସାଦଶବ୍ଦୋଦିତୋ ଜୀବୋ ଜାଗରିତବ୍ୟବହାରେ ଦେହେନ୍ଦ୍ରିୟ-ପଞ୍ଜରାଧ୍ୟକ୍ଷୋ ଭୂତ୍ୱା ତଦ୍‌ବାସନାନିର୍ମିତାଂଶ୍ଚ ସ୍ୱପ୍ନାନ୍ନାଡ଼ୀଚରୋଽନୁଭୂୟ ଶାନ୍ତଃ ଶରଣଂ ପ୍ରେପ୍ସୁରୁଭୟରୂପାଦପି ଶରୀରାଭିମାନାତ୍ ସମୁତ୍‌ଥାୟ ସୁଷୁପ୍ତାବସ୍ଥାୟାଂ ପରଂଜ୍ୟୋତି-ରାକାଶଶବ୍ଦିତଂ ପରଂଜ୍ୟୋତିର୍ଯେନ ସ୍ୱେନ ରୂପେଣାୟମଭିନିଷ୍ପଦ୍ୟତେ, ସ ଏବ ଆତ୍ମାଽପହତପାପ୍ମତ୍ୱାଦିଗୁଣ ଉପାସ୍ୟ ଇତ୍ୟେବମର୍ଥୋଽୟଂ ଜୀବପରାମର୍ଶଃ ପରମେଶ୍ୱର ବାଦିନୋଽପ୍ୟୁପପଦ୍ୟତେ ।

(୨) ଭାଷାଂତର-(କ) ବର୍ତ୍ତମାନ ଯାହା ଦହରବାକ୍ୟଶେଷରେ 'ଅଥ ଯ ଏଷ ସଂପ୍ରସାଦଃ' ଇତ୍ୟାଦି ଦ୍ୱାରା ଜୀବର ପରାମର୍ଶ ଦେଖାଏ । ସେ ଦହର ହିଁ ପରମେଶ୍ୱର ଅଟେ, କିନ୍ତୁ ଜୀବର ଉପାସନାର ଉପଦେଶ ନ କରି ଏବଂ ପ୍ରକୃତ ଦହରାକାଶର ବିଶେଷ ଉପଦେଶ ନ କରିବାର କାରଣ ଅନର୍ଥକ ହେବ ବୋଲି ଯଦି ବ୍ୟାଖ୍ୟା କର ।

(ଖ) ତେଣୁ କୁହାଯାଇଛି- ସେ ଜୀବର ପରାମର୍ଶ ଅନ୍ୟାର୍ଥକ ଅଟେ । ଜୀବର ସ୍ୱରୂପରେ ପର୍ଯ୍ୟବସାୟୀ ନୁହେଁ, କିନ୍ତୁ ପରମେଶ୍ୱରର ସ୍ୱରୂପରେ ପର୍ଯ୍ୟବସାୟୀ ଅଟେ ।

(ଗ) କିପରି ? ସଂପ୍ରସାଦଶବ୍ଦରେ ଉକ୍ତଜୀବ ଜାଗ୍ରତ୍ ଅବସ୍ଥାରେ ଦେହ, ଇନ୍ଦ୍ରିୟର ପଞ୍ଜରର ଅଧ୍ୟକ୍ଷ ହୋଇ ନାଡ଼ିରେ ଯାଇ ଜାଗ୍ରତ୍ ଅବସ୍ଥାରେ ଅନୁଭବ ଜନ୍ୟ ବାସନା ଗୁଡ଼ିକ ଦ୍ୱାରା ଉତ୍ପନ୍ନ ହୋଇ ସ୍ୱପ୍ନପଦାର୍ଥର ଅନୁଭବ କରି ଯେତେବେଳେ ଶାନ୍ତ ହୋଇଯାଏ, ସେତେବେଳେ ବିଶ୍ରାମସ୍ଥାନ ପାଇବା ଇଚ୍ଛାରେ ଦୁଇପ୍ରକାରର ଶରୀର ଅଭିମାନଦ୍ୱାରା ଉଠି ସୁଷୁପ୍ତି ଅବସ୍ଥାରେ ଆକାଶ ଶବ୍ଦଦ୍ୱାରା ପ୍ରତିପାଦିତ ହୋଇ ଜ୍ୟୋତିଃ ସ୍ୱରୂପ ପରଂବ୍ରହ୍ମକୁ ପାଇ ବିଶେଷବିଜ୍ଞାନବତ୍ତ୍ୱର ପରିତ୍ୟାଗ କରି ନିଜ ସ୍ୱରୂପରେ ଅଭିବ୍ୟକ୍ତ ହୁଏ । ସେ ଏହି ଆତ୍ମା ପାପରହିତତ୍ୱାଦିଗୁଣବିଶିଷ୍ଟ ଉପାସ୍ୟ ଅଟେ । ତେଣୁ ଜୀବର ପରାମର୍ଶ ପରମେଶ୍ୱରବାଦୀର ମତରେ ଉପପନ୍ନ ହୁଏ ।

## अल्पश्रुतेरिति चेत्तदुक्तम् ॥ २१ ॥

## (୧) ଅଳ୍ପଶ୍ରୁତେରିତି ଚେତ୍ତଦୁକ୍ତମ୍ ॥ ୧ । ୩ । ୨୧ ॥

ଅଳ୍ପଶ୍ରୁତେଃ-'ଦହରୋଽସ୍ମିନ୍ନନ୍ତରାକାଶଃ' ଏହାଦ୍ୱାରା ଆକାଶରେ ଅଳ୍ପତ୍ୱର ଶ୍ରବଣ ହୁଏ । ଅତଃ ଦହରାକାଶ ପରମେଶ୍ୱର ନୁହେଁ; କିନ୍ତୁ ଜୀବ ଅଟେ । ଇତି ଚେତ୍ ଯଦି ଏହା ତୁମେ କହ (ତଦୁକ୍ତମ୍) ଏହାର 'ଅର୍ଭକୌକସ୍ତ୍ୱାତ୍, (ବ୍ର:ସୂ ୧-୨-୭) ଏହି ସୂତ୍ରରେ ସମାଧାନ କୁହାଯାଇଛି । ତେଣୁ ଦହରାକାଶ ହିଁ ପରମେଶ୍ୱର' ।

(୨) ମୂଳ-(କ) ଯଦପ୍ୟୁକ୍ତମ୍- 'ଦହରୋଽସ୍ମିନ୍ନନ୍ତରାକାଶଃ ଇତ୍ୟାକାଶସ୍ୟାଳ୍ପତ୍ୱଂ ଶ୍ରୂୟମାଣଂ ପରମେଶ୍ୱରେ ନୋପପଦ୍ୟତେ, ଜୀବସ୍ୟ ତ୍ୱାରାଗ୍ରୋପମିତସ୍ୟାଳ୍ପତ୍ୱମବକଳ୍ପତ ଇତି, ତସ୍ୟ ପରିହାରୋ ବକ୍ତବ୍ୟଃ । (ଖ) ଉକ୍ତୋ ହ୍ୟସ୍ୟ ପରିହାର ପରମେଶ୍ୱରସ୍ୟାପେକ୍ଷିକମଳ୍ପତ୍ୱମବକଳ୍ପତ ଇତି । 'ଅଭ କୌକସ୍ତ୍ୱାଉଦ୍‌ବ୍ୟପଦେଶାଚ୍ଚ ନେତି ଚେନ୍ନ ନିଚାୟ୍ୟତ୍ୱାଦେବଂ ବ୍ୟୋମବଚ୍ଚ', (ବ୍ର.ସୂ ୧-୨-୭) ଇତ୍ୟତ୍ର । (ଗ) ସ ଏବେହ ପରିହାରୋଽନୁସନ୍ଧାତବ୍ୟ ଇତି ସୂଚୟତି । ଶ୍ରୁତ୍ୟୈବ ଚେଦମଳ୍ପତ୍ୱଂ ପ୍ରଯୁକ୍ତଂ ପ୍ରସିଦ୍ଧେନାକାଶେନୋପମିମାନୟା 'ଯାବାନ୍ ବା ଅୟମାକାଶସ୍ତାବାନେଷୋଽନ୍ତର୍ହୃଦୟ ଆକାଶଃ ଇତି ।

(୨) ଭାଷାଂତର- (କ) 'ଦହରୋଽସ୍ମିନ୍ନନ୍ତରାକାଶଃ' ଏହି ପ୍ରକାର ଆକାଶରେ ଶ୍ରୂୟମାଣ ଅଳ୍ପତ୍ୱ ଉପପନ୍ନ ହୁଏ ନାହିଁ । କିନ୍ତୁ ଅରର ଅଗ୍ରଭାଗ ପରି ଜୀବରେ ଅଳ୍ପତ୍ୱ ଉପପନ୍ନ ହୁଏ, ଏପରି ଯାହା କୁହାଗଲା, ତାହାର ପରିହାର କରିବା ଉଚିତ ।

(ଖ) ଏହାର ପରିହାର କିନ୍ତୁ 'ଅର୍ଭକୌକସ୍ତ୍ୱାତ୍' ଏହି ସୂତ୍ରରେ କୁହାଯାଇଛି କି ପରମେଶ୍ୱରର ଅଳ୍ପତ୍ୱ ଆପେକ୍ଷିକ ହୋଇପାରେ ।

(ଗ) 'ଏହି ପରିହାରର ଅନୁସନ୍ଧାନ କରିବା ଉଚିତ' । ଏହି ପ୍ରକାର ସୂତ୍ରକାର ସୂଚିତ କରନ୍ତି । ଏବଂ 'ଯେତେବଡ଼ ଏହି ବାହ୍ୟାକାଶ, ସେତେ ବଡ଼ ହୃଦୟାନ୍ତର୍ଗତ ଏହି ଆକାଶ', ପ୍ରସିଦ୍ଧ ଆକାଶର ସହିତ ଉପମା ଦେଉଥିବା ଏହି ସୂତ୍ରରେ ଦହରାକାଶରେ ଏହି ଅଳ୍ପତ୍ୱର ନିରାସ କରାଯାଇଛି ।

## ६ अनुकृत्याधिकरणम् । सू० २२ - २३

## ଅନୁକୃତ୍ୟଧିକରଣମ୍ - ୬

## अनुकृतेस्तस्य च ॥ २२ ॥

## (୧) ଅନୁକୃତେସ୍ତସ୍ୟ ଚ ॥ ୧।୩।୨୨ ॥

ଅନୁକୃତେ- 'ନ ତନ୍ନ ସୂର୍ଯ୍ୟୋ ଯାତି', ଇତ୍ୟାଦି ଶ୍ରୁତିରେ ପ୍ରତିପାଦିତବସ୍ତୁର କୌଣସି ତେଜ ବିଶେଷ ନୁହେଁ, କିନ୍ତୁ ନିର୍ବିଶେଷ ବ୍ରହ୍ମ ଅଟେ । କାରଣ-'ଅନୁମାତି' ତାହାର ପ୍ରକାଶକର ସମସ୍ତ ଅନୁକରଣ କରନ୍ତି । ଚ-ମଧ, ତସ୍ୟ-ଏହାର ପ୍ରକାଶକଦ୍ୱାରା ଏହି ସମସ୍ତ ଜଗତ ପ୍ରକାଶିତ ହୁଏ ।

(୨) ମୂଳ-(କ) 'ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକମ୍, ନେମାଂ ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ । ତମେବ ଭାନ୍ତମନୁଭାତି ସର୍ବମ୍, ତସ୍ୟଭାଷା ସର୍ବମିଦଂ ବିଭାତି' ।



(ମୁଣ୍ଡ ୨-୨-୧୦) ଇତି ସମାମନନ୍ତି । (ଖ) ଯତ୍ର ଯଂ ଭନ୍ତମନୁଭାତି ସର୍ବମ୍, ଯସ୍ୟ ଚ ଭାସା ସର୍ବମିଦଂ ବିଭାତି', ସ କିଂ ତେଜୋଧାତୁଃ କଶ୍ଚିଦୁତ ପ୍ରାଜ୍ଞ ଆତ୍ମେତି ବିଚିକିତ୍ସାୟାଂ ତେଜୋଧାତୁରିତି ତାବତ୍ପ୍ରାପ୍ତମ୍ ? (ଗ) କୁତଃ ? ତେଜୋଧାତ୍ୱନାମେବ ସୂର୍ଯ୍ୟାଦୀନାଂ ଭାନପ୍ରତିଷେଧାତ୍ । ତେଜଃସ୍ୱାଭାବକଂ ଚନ୍ଦ୍ରତାରକାଦି ତେଜସ୍ୱଭାବକଂ ଏବ ସୂର୍ଯ୍ୟେ ଭାସମାନେଽହନି ନ ଭାସତ ଇତି ପ୍ରସିଦ୍ଧମ୍ । (ଘ) ତଥା ସହ ସୂର୍ଯ୍ୟେଣ ସର୍ବମିଦଂ ଚନ୍ଦ୍ରତାରକାଂ ଯସ୍ମିନ୍ନ ଭାସତେ, ସୋଽପି ତେଜଃସ୍ୱଭାବ ଏବ କଶ୍ଚିଦିତ୍ୟବଗମ୍ୟତେ । (ଙ) ଅନୁଭାନମପି ତେଜଃ-ସ୍ୱଭାବକଂ ଏବୋପପଦ୍ୟତେ, ସମାନସ୍ୱଭାବକେଷ୍ୱନୁ-କାରଦର୍ଶନାତ୍, ଗଚ୍ଛନ୍ତମନୁଗ-ଚ୍ଛନ୍ତତୀତିବତ୍ । ତସ୍ମାତ୍ତେଜୋଧାତୁଃ କଶ୍ଚିଦିତି ।

**(୨) ଭାଷାଂତର-** (କ) 'ଏଠାରେ ଏହି ଆତ୍ମସ୍ୱରୂପ ବ୍ରହ୍ମରେ ସୂର୍ଯ୍ୟ ପ୍ରକାଶିତ ହୁଏ ନାହିଁ, ଚନ୍ଦ୍ର ଓ ତାରା ମଧ୍ୟ ପ୍ରକାଶିତ ହୁଅନ୍ତି ନାହିଁ । ବିଜୁଳୀ ମଧ୍ୟ ପ୍ରକାଶିତ ହୁଏ ନାହିଁ । ଆଉ ନିରନ୍ତର ଦୃଷ୍ଟିରେ ଆସୁଥିବା ଅଗ୍ନି କଥା କଣ କହିବା ? ତାହାର ପ୍ରକାଶିତ ହେଲେ ସବୁ ପ୍ରକାଶିତ ହୁଏ, ଏବଂ ସମସ୍ତ ପଦାର୍ଥ ଏହାର ପ୍ରକାଶରେ ପ୍ରକାଶିତ ହୁଅନ୍ତି', ଏହି ଶ୍ରୁତି ।

(ଖ) ଏହି ଶ୍ରୁତି ବାକ୍ୟରେ ଯାହାର ପ୍ରକାଶ ହେଲେ ସେ ସମସ୍ତ ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ପ୍ରକାଶିତ ହୁଅନ୍ତି ଏବଂ ଯାହାର ପ୍ରକାଶରେ ଏହି ସମସ୍ତ ଜଗତ୍ ପ୍ରକାଶିତ ହୁଏ । ତେଣୁ ଏହି ବିଷୟରେ ସନ୍ଦେହ ହୁଏ କି ଏହା କ'ଣ କୌଣସି ତେଜସ୍ୱୀପଦାର୍ଥ ଅଥବା ପରମାତ୍ମା ?

(ଗ) ପୂର୍ବପକ୍ଷ-ଏହା ତେଜସ୍ୱୀ ପଦାର୍ଥ ହୋଇପାରେ । କିପରି ? ଏହାଦ୍ୱାରା ସୂର୍ଯ୍ୟାଦି ତେଜସ୍ୱୀ ପଦାର୍ଥ ଗୁଡ଼ିକର ଦୀପ୍ତିକୁ ପ୍ରତିଷେଧ କରାଯାଇଛି । କିନ୍ତୁ ଏହା ପ୍ରସିଦ୍ଧ ଯେ- ଦିନରେ ସ୍ୱାଭାବିକ ତେଜସ୍ୱୀ ସୂର୍ଯ୍ୟ ପ୍ରକାଶିତ ହେଲେ ତେଜସ୍ୱ ଭାବ ଚନ୍ଦ୍ର, ତାହା ଇତ୍ୟାଦି ପ୍ରକାଶିତ ହୁଅନ୍ତି ।

(ଘ) ଏହା ଜଣାପଡ଼େ ଯେ- ଯଦ୍ୟପି ସୂର୍ଯ୍ୟ ସହିତ ଏହି ଚନ୍ଦ୍ର ତାରାଗୁଡ଼ିକ ଯେଉଁଠାରେ ପ୍ରକାଶିତ ହୁଏ ନାହିଁ, ତଥାପି ସେ କୌଣସି ତେଜଃ ସ୍ୱଭାବପଦାର୍ଥ ଅଟେ ।

(ଙ) 'ଅନୁଭାନ' ମଧ୍ୟ ତେଜଃ ସ୍ୱଭାବ ପଦାର୍ଥ ହେଲେ ମଧ୍ୟ ଉପପନ୍ନ ହୁଏ । କାରଣ-ସମାନସ୍ୱଭାବ ଯୁକ୍ତଠାରେ ମଧ୍ୟ ଅନୁକାର (ଅନୁକରଣ) ଦେଖାଯାଏ; ଯେପରି ଯାଉଛି କହିଲେ ପଛରେ ଯାଉଛି ବୋଲି ପ୍ରୟୋଗ କରାଯାଏ । ତେଣୁ ଜଣାଯାଏ ଯେ- ଏହା କୌଣସି ଏକ ତେଜସ୍ୱୀ ପଦାର୍ଥ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପ୍ରାଜ୍ଞ ଏବାତ୍ମା ଭବିତୁମର୍ହତି । କସ୍ମାତ୍ ? ଅନୁକୃତେଃ ଅନୁକରଣମନୁକୃତିଃ । ଯଦେତତ୍ 'ତମେବ ଭାନ୍ତମନୁଭାତି ସର୍ବମିତ୍ୟନୁଭାନଂ, ତତ୍ପ୍ରାଜ୍ଞପରିଗ୍ରହେଽବକଳ୍ପତେ । 'ଭାରୂପଃ ସତ୍ୟସଂକଳ୍ପଃ' (ଛା ୩-୧୪-୨) ଇତି ହି ପ୍ରାଜ୍ଞମାତ୍ମାନମାମନନ୍ତି । (ଖ) ନ ତୁ ତେଜୋଧାତୁଂ କିଞ୍ଚିତ୍ ସୂର୍ଯ୍ୟାଦୟୋଽନୁଭାନ୍ତୀତି ପ୍ରସିଦ୍ଧମ୍ । ସମତ୍ୱାଚ୍ଚ ତେଜୋଧାତୁନାଂ ସୂର୍ଯ୍ୟାଦୀନାଂ ନ ତେଜୋଧାତୁମନ୍ୟଂ ପ୍ରତ୍ୟପେକ୍ଷାସ୍ତି, ଯଂ ଭାନ୍ତମନୁଭାୟୁଃ, ନ ହି ପ୍ରଦୀପଃ ପ୍ରଦୀପାନ୍ତରମନୁଭାତି ।

**(୩) ଭାଷାଂତର-**(କ) ସିଦ୍ଧାନ୍ତ-ଅସ୍ମଦୀୟ ବକ୍ତବ୍ୟ ଯେ-ଏହା ପ୍ରକାଶକ ପରମାତ୍ମା ହେବା ଠିକ୍ ଅଟେ । କିପରି ? ଏହାଦ୍ୱାରା ଅନୁକୃତି ଶ୍ରବଣ ହେଉଛି । ଅନୁକୃତି ଅର୍ଥ ଅନୁକରଣ । 'ତମେବ ଭାନ୍ତମନୁଭାତି ସର୍ବମ୍', - ଏଠାରେ ଯାହା ଅନୁକରଣ କରାଯାଉଛି, ସେ ପରମାତ୍ମାର ଗ୍ରହଣ କଲେ ସଙ୍ଗତ ହେବ । 'ଭାରୁପଃ ସତ୍ୟସଂକଳ୍ପଃ' (ସେ ପ୍ରକାଶରୂପ ଓ ସତ୍ୟସଙ୍କଳ୍ପ) ଏହି ଶ୍ରୁତି ସ୍ୱୟଂ ପ୍ରକାଶରୂପ ପରମାତ୍ମାଙ୍କୁ ବୁଝାଏ ।

(ଖ) କୌଣସି ତେଜସ୍ୱୀ ପଦାର୍ଥର ପରେ ସୂର୍ଯ୍ୟାଦି ପ୍ରକାଶିତ ହୁଅନ୍ତି ବୋଲି ପ୍ରସିଦ୍ଧି ନାହିଁ । ସୂର୍ଯ୍ୟାଦି ତେଜସ୍ୱୀ ପଦାର୍ଥଗୁଡ଼ିକ ନିଜ ପ୍ରକାଶ ପାଇଁ ଅନ୍ୟକୁ ଅପେକ୍ଷା କରେ ନାହିଁ । କାରଣ-ଦୁହେଁ ସମାନ ତେଜସ୍ୱୀ ପଦାର୍ଥ ଅଟନ୍ତି, ଯେପରି ପ୍ରଦୀପ ଅନ୍ୟ ପ୍ରଦୀପ ଦ୍ୱାରା ପ୍ରକାଶିତ ହୁଏ ନାହିଁ ।

(୪) ମୂଳ-(କ)ଯଦପ୍ୟୁକ୍ତମ୍-ସମାନସ୍ୱଭାବକେଷ୍ୱନୁକାରୋ ଦୃଶ୍ୟତ ଇତି । ନାୟମେକାନ୍ତୋ ନିୟମଃ । ଭିନ୍ନସ୍ୱଭାବକେଷ୍ୱପି ହ୍ୟନ୍ୟକାରୋ ଦୃଶ୍ୟତେ । ଯଥା-ସୁତପ୍ତୋଽୟଃପିଣ୍ଡୋଽଗ୍ନ୍ୟକୃତିରଗ୍ନି ଦହନ୍ତମନୁଦହତି; ଭୌମଂ ବା ରଜୋ ବାୟୁଂ ବହନ୍ତମନୁ ବହତୀତି । (ଖ) 'ଅନୁକୃତେଃ' ଇତ୍ୟନୁମାନମନୁସୂସୁଚତ୍ । 'ତସ୍ୟ ଚ' ଇତି ଚତୁର୍ଥଂ ପାଦମସ୍ୟ ଶ୍ଳୋକସ୍ୟ ସୂଚୟତି । 'ତସ୍ୟ ଭାସା ସର୍ବମିଦଂ ବିଭାତି', ଇତି, ତଦ୍ହେତୁକଂ ଭାନଂ ସୂର୍ଯ୍ୟାଦେରୁଚ୍ୟମାନଂ ପ୍ରାଜ୍ଞମାତ୍ମାନଂ ଗମୟତି । (ଗ) ତଦ୍ଦେବା ଜ୍ୟୋତିଷାଂ ଜ୍ୟୋତିରାୟୁର୍ହୋପାସତେଽମୃତମ୍', (ବୃ ୪-୪-୧୬) ଇତି ହି ପ୍ରାଜ୍ଞମାତ୍ମାନମାମନନ୍ତି । ତେଜୋନ୍ତରେଣ ସୂର୍ଯ୍ୟୋଦିତେଜୋ ବିଭାତୀତ୍ୟପ୍ରସିଦ୍ଧ ବିରୁଦ୍ଧଂ ଚ, ତେଜୋନ୍ତରେଣ ତେଜାନ୍ତରସ୍ୟ ପ୍ରତିଘାତାତ୍ ।

**(୪) ଭାଷାଂତର-** (କ) ଯାହା ଏଠାରେ କୁହାଯାଇଛି-ସମାନ ସ୍ୱଭାବକଠାରେ କେବଳ ଅନୁକରଣ ଦେଖାଯାଏ । କିନ୍ତୁ ଏଠାରେ କୌଣସି ଅବ୍ୟଭିଚରିତ ନିୟମ



ନାହିଁ । କାରଣ-ଭିନ୍ନ ସ୍ୱଭାବଠାରେ ଅନୁକରଣ ଦେଖାଯାଏ, ଯେପରି ଖୁବ୍ ଗରମ ଥିବା ଲୌହପିଣ୍ଡ ଅଗ୍ନିକୁ ଅନୁକରଣ କରେ ଓ ଜଳ ଅଗ୍ନିର ପଛେ ଜଳେ ଅଥବା ପାର୍ଥିବରଜ ନିଜେ ପ୍ରବାହିତବାୟୁର ପଛେ ପଛେ ପ୍ରବାହିତ ହୁଏ ।

(ଖ) 'ଅନୁକୃତେଃ' ଏହି ସୂତ୍ରଭାଗ ଅନୁମାନକୁ ସୂଚିତ କରେ । 'ତସ୍ୟ' ଚ' ଏହି ସୂତ୍ରଭାଗ ଉକ୍ତଶ୍ରୁତି । ତସ୍ୟ 'ଭାଷା ସର୍ବମିଦଂ ବିଭାତି'ର ଚତୁର୍ଥ ପାଦକୁ ସୂଚିତ କରେ । 'ତସ୍ୟ ଭାଷା ସର୍ବମିଦଂ ବିଭାତି' ଏହି ପ୍ରକାର ସୂର୍ଯ୍ୟାଦିରେ କୁହା ହୋଇଥିବା ତଦହେତୁକ ପ୍ରକାଶ ପରମାତ୍ମାର ଜ୍ଞାନ କରାଏ ।

(ଗ) 'ସେହି ଆଦିତ୍ୟ ଜ୍ୟୋତିମାନଙ୍କର ଜ୍ୟୋତିଃସ୍ୱରୂପ ଅମୃତର ଦେବଗଣ ଆୟୁ ରୂପରେ ଉପାସନା କରେ' । ଏହି ପ୍ରକାର ଶ୍ରୁତି ପରମାତ୍ମାକୁ କହେ । ସୂର୍ଯ୍ୟାଦି ତେଜ ଅନ୍ୟ ତେଜଦ୍ୱାରା ପ୍ରକାଶିତ ହୁଏ । ଏଠାରେ ଅପ୍ରସିଦ୍ଧ ଓ ବିରୁଦ୍ଧ ମଧ୍ୟ ଅଛି । କାରଣ ଗୋଟିଏ ତେଜର ଅନ୍ୟ ତେଜଦ୍ୱାରା ପ୍ରତିଘାତ ହୁଏ ।

(୫) ମୂଳ-(କ) ଅଥବା ନ ସୂର୍ଯ୍ୟାଦିନାମେବ ଶ୍ଳୋକପରିପଠିତାନାମିଦଂ ତଦ୍‌ହେତୁକଂ ବିଭାନମୁଚ୍ୟତେ କିଂ ତର୍ହି ? ସର୍ବମିଦମ୍ ଇତ୍ୟବିଶେଷଶ୍ରୁତେଃ ସର୍ବସ୍ୟୈବାସ୍ୟ ନାମରୂପକ୍ରିୟାକାରକ ଫଳଜାତସ୍ୟ ଯାଽଭିବ୍ୟକ୍ତିଃ ସା ବ୍ରହ୍ମଜ୍ୟୋତିଃ ସତ୍ତାନିମିତ୍ତା, ଯଥା ସୂର୍ଯ୍ୟାଦିଜ୍ୟୋତିଃସତ୍ତାନିମିତ୍ତା ସର୍ବସ୍ୟ ରୂପଜାତସ୍ୟାଭିବ୍ୟକ୍ତିସ୍ତଦ୍‌ବତ୍ । (ଖ) 'ନ ତତ୍ ସୂର୍ଯ୍ୟୋ ଭାତି' ଇତି ଚ ତତ୍' ଶବ୍ଦମାହରନ୍ ପ୍ରକୃତଗ୍ରହଣଂ ଦର୍ଶୟତି । ପ୍ରକୃତଂ ଚ ବ୍ରହ୍ମ 'ଯସ୍ମିନ୍ ଦ୍ୟୌଃ ପୃଥିବୀ ଚାନ୍ତରିକ୍ଷମୋତମ୍', (ମୁ ୨-୨-୫) ଇତ୍ୟାଦିନା । (ଗ) ଅନନ୍ତରଂ ଚ ହିରଣ୍ମୟେ ପରେ କୋଶେ ବିରଜଂ ବ୍ରହ୍ମ ନିଷ୍କଳମ୍', ତଚ୍ଛୁଭ୍ରଂ ଜ୍ୟୋତିଷାଂ ଜ୍ୟୋତିସ୍ତଦାଦ୍ୟମାତ୍ମବିଦୋ ବିଦୁଃ', ଇତି । କଥଂ ତଜ୍ଜ୍ୟୋତିଷାଂ ଜ୍ୟୋତିରିତ୍ୟତ ଇଦମୁତ୍ଥିତମ୍- 'ନ ତତ୍ର ସୂର୍ଯ୍ୟୋ ଭାତି', ଇତି ।

**(୫) ଭାଷାଂତର-** (କ) ଅଥବା ଶ୍ରୁତିରେ ପରିପଠିତ ସୂର୍ଯ୍ୟାଦିରେ ତଦ୍‌ହେତୁକ (ବ୍ରହ୍ମହେତୁକ) ପ୍ରକାଶ କୁହାଯାଇ ନାହିଁ । କିନ୍ତୁ ଯେପରି ସୂର୍ଯ୍ୟାଦି ଜ୍ୟୋତିର ସତ୍ତାରେ ସମସ୍ତ ରୂପ ସମୁଦାୟର ଅଭିବ୍ୟକ୍ତ ହୁଏ, ସେପରି 'ସର୍ବମିଦମ୍', ଏହି ସାମାନ୍ୟ ଶ୍ରୁତିରେ ଏହି ସମସ୍ତ ନାମ, ରୂପ, କ୍ରିୟା, କାରକ ଓ ଫଳ ସମୁଦାୟର ଅଭିବ୍ୟକ୍ତି ହୁଏ, ସେ ବ୍ରହ୍ମଜ୍ୟୋତିର ସତ୍ତାଦ୍ୱାରା ହୁଏ ।

(ଖ) 'ନ ତତ୍ର ସୂର୍ଯ୍ୟୋଭାତି', ଏହିମନ୍ତ୍ରରେ 'ତତ୍ର' ଶବ୍ଦକହି ଶ୍ରୁତି ପ୍ରକୃତିର ଗ୍ରହଣ ଦେଖାଏ ଏବଂ 'ଯାହାଠାରେ ଦ୍ୟୁଲୋକ ପୃଥିବୀ ଓ ଅନ୍ତରୀକ୍ଷ ଓତପ୍ରୋତ ହୁଏ' ଇତ୍ୟାଦିରେ ବ୍ରହ୍ମ ହିଁ ପ୍ରକୃତ ଅଟେ ।

(ଗ) ସେ ନିର୍ମଳ ଓ କଳାହୀନ ବ୍ରହ୍ମ ହିରଣ୍ୟମୟ - ଜ୍ୟୋତିର୍ମୟ ପରମକୋଶରେ ବିଦ୍ୟମାନ ଅଟେ । ସେ ଶୁଦ୍ଧ ଓ ସମ୍ପୂର୍ଣ୍ଣ ଜ୍ୟୋତିର୍ମୟ ପଦାର୍ଥର ଜ୍ୟୋତି ଅଟେ । ଏବଂ ସେ ଯାହାଦ୍ୱାରା ଆତ୍ମଜ୍ଞାନୀ ପୁରୁଷ ଜାଣେ', ଏହି ଶ୍ରୁତି ପ୍ରକୃତବ୍ରହ୍ମକୁ କହେ । ସେ ଜ୍ୟୋତିର ଜ୍ୟୋତି କିପରି ହୁଏ ? ଏହି ଶଙ୍କାର ଉତ୍ତରରେ 'ନ ତତ୍ର ସୂର୍ଯ୍ୟୋଭାତି', ଏହି ମନ୍ତ୍ର ଉପସ୍ଥିତ ହେଲା ।

(୬) ମୂଳ-(କ) ଯଦପ୍ୟୁକ୍ତମ୍-ସୂର୍ଯ୍ୟାଦୀନାଂ ତେଜସାଂ ଭାନପ୍ରତିଷେଧସ୍ତେଜୋ-ଘାତାବେବାନ୍ୟସ୍ମିନ୍ନବକଳ୍ପତେ ସୂର୍ଯ୍ୟ ଭବେତରେଷାମିତି । ତତ୍ର ତୁ ସ ଏବ ତେଜୋଧା-ତୁରନ୍ୟୋ ନ ସମ୍ଭବତୀତ୍ୟୁପାପାଦିତମ୍ । (ଖ) ବ୍ରହ୍ମଣ୍ୟପି ଚୈଷାଂ ଭାନପ୍ରତି ଷେଧାଽବକଳ୍ପତେ । ଯତଃ-ଯଦୁପଲଭ୍ୟତେ ତତ୍ ସର୍ବଂ ବ୍ରହ୍ମଣୈବ ଜ୍ୟୋତି ଷୋପଲଭ୍ୟତେ, ବ୍ରହ୍ମ ତୁ ନାନ୍ୟେନ । ଜ୍ୟୋତିଷୋପଲଭ୍ୟତେ, ସ୍ୱୟଂଜ୍ୟୋତିଃ ସ୍ୱରୂପତ୍ୱାତ୍, ଯେନ ସୂର୍ଯ୍ୟାଦୟସ୍ତସ୍ମିନ୍‌ଭାୟୁଃ । (ଗ) ବ୍ରହ୍ମ ତୁ 'ଆତ୍ମନୈବାୟଂ ଜ୍ୟୋତିଷୋଽସ୍ତେ, (ବୃ ୪।୩।୬)', 'ଅଗୃହ୍ୟୋ ନହି ଗୃହ୍ୟତେ', (ବୃ ୪।୨।୪) ଇତ୍ୟାଦିଶ୍ରୁତିଭ୍ୟଃ ।

**(୬) ଭାଷାଂତର-** (କ) ସୂର୍ଯ୍ୟଠାରେ ଅନ୍ୟ ତେଜର ପ୍ରତିଷେଧକ ସମାନ ସୂର୍ଯ୍ୟାଦିତେଜର ପ୍ରକାଶର ପ୍ରତିଷେଧ ତେବେ ସଙ୍ଗତ ହେବ । ଯଦି କୌଣସି ଅନ୍ୟ ତେଜସ୍ୱୀ ପଦାର୍ଥ ହୁଏ, ବୋଲି କୁହାଯାଇଛି ।

(ଖ) ଏହାର ଉତ୍ତରରେ-ସେ ବ୍ରହ୍ମହିଁ ତେଜୋମୟ ପଦାର୍ଥ ଅଟେ । ତାହାଦ୍ୱାରା ଅନ୍ୟ ତେଜର ସମ୍ଭବ ହୁଏ ନାହିଁ, କାରଣ-ଯାହା ଉପଲବ୍ଧ ହୁଏ, ସେ ସବୁ ବ୍ରହ୍ମରୂପ ଜ୍ୟୋତିରେ ଉପଲବ୍ଧ ହୁଏ । 'ଯଦି ବ୍ରହ୍ମ କୌଣସି ଅନ୍ୟ ପଦାର୍ଥ ଦ୍ୱାରା ପ୍ରକାଶିତ ହୁଏ, ତେବେ ସୂର୍ଯ୍ୟାଦି ଏହାର ପ୍ରକାଶକ ହୁଏ ।

(ଗ) କିନ୍ତୁ ବ୍ରହ୍ମ ଅନ୍ୟ ଜ୍ୟୋତିଦ୍ୱାରା ଉପଲବ୍ଧ ହୁଏ ନାହିଁ, କାରଣ-ସେ ସ୍ୱୟଂ ଜ୍ୟୋତିଃସ୍ୱରୂପ, ଯାହାଦ୍ୱାରା ସୂର୍ଯ୍ୟାଦି ପ୍ରକାଶ ହୁଏ । 'ଆତ୍ମାରୂପ ଜ୍ୟୋତିଦ୍ୱାରା ଏହା ପ୍ରକାଶିତ', 'ସେ ଅଗୃହ୍ୟ, ତାହାର ଗ୍ରହଣ କରାଯାଇନାହିଁ ।' ଇତ୍ୟାଦି ଶ୍ରୁତିଦ୍ୱାରା ବ୍ରହ୍ମ ଅନ୍ୟପଦାର୍ଥକୁ ବ୍ୟକ୍ତ କରେ । ପରନ୍ତୁ ବ୍ରହ୍ମ ଅନ୍ୟଦ୍ୱାରା ବ୍ୟକ୍ତ ହୁଏ ନାହିଁ ବୋଲି ଜଣାପଡ଼େ ।

## अपि च स्मर्यते ॥ २३ ॥

## (୧) ଅପି ଚ ସ୍ମର୍ଯ୍ୟତେ ॥ ୧-୩-୨୩ ॥

ସ୍ମର୍ଯ୍ୟତେ-'ନ ତଦ୍‌ଭାସୟତେ ସୂର୍ଯ୍ୟୋ', 'ଯଦାଦିତ୍ୟଗତଂ ତେଜୋ', ଏହି ପ୍ରକାର ଏହି ସ୍ମୃତି, ଅପି=ମଧ୍ୟ ପ୍ରକୃତି ବ୍ରହ୍ମର ଜ୍ୟୋତିଃରୂପରେ ପ୍ରତିପାଦନ କରେ ।



(୨) ମୂଳ-(କ) ଅପି ଚେଦୃଗୂପତ୍ୱଂ ପ୍ରାଜ୍ଞସ୍ୟୈବାତ୍ମନଃ ସ୍ମର୍ଯ୍ୟତେ । ଭଗବଦ୍ ଗୀତାସୁ-'ନ ତଦ୍‌ଭାସୟତେ ସୂର୍ଯ୍ୟୋ ନଶଶାଙ୍କଃ ନ ପାବକଃ । ଯଦଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମପରମଂ ମମ', (୧୫-୬), 'ଯଦାଦିତ୍ୟଗତଂ ତେଜୋ ଜଗଦ୍‌ଭାସ-ଯତେଽଖିଳମ୍ । ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକମ୍' (୧୫-୨୨) ଇତି ଚ ।

**(୨) ଭାଷାଂତର-** (କ) ଭଗବଦ୍‌ଗୀତାରେ ମଧ୍ୟ 'ସେହି ଜ୍ୟୋତିସ୍ୱରୂପକୁ ସୂର୍ଯ୍ୟ ପ୍ରକାଶିତ କରିପାରେ ନାହିଁ, ଚନ୍ଦ୍ର ଓ ଅଗ୍ନି ମଧ ପ୍ରକାଶିତ କରିପାରେ ନାହିଁ । ତାହାହିଁ ମୋର ପରମ ଧାମ, ଯାହାକୁ ପାଇ ମଣିଷ ପୁନର୍ବାର ସଂସାରକୁ ଆସେ ନାହିଁ,' ଏବଂ 'ଯେଉଁ ତେଜ ସୂର୍ଯ୍ୟରେ ରହି ସମ୍ପୂର୍ଣ୍ଣ ଜଗତକୁ ପ୍ରକାଶ କରେ ତଥା ଯେଉଁତେଜ ଚନ୍ଦ୍ରମାରେ ଅଛି, ଯାହା ଅଗ୍ନିରେ ଅଛି, ତାହାକୁ ମୋର ତେଜ ବୋଲି ଜାଣ', ଏପରି ସ୍ୱରୂପ ପରମାତ୍ମାର ହିଁ କୁହାଯାଇଛି ।

## ७ प्रमिताधिकरणम् । सू० २४ - २५

## ପ୍ରମିତାଧିକରଣ-୭

### शब्दादेव प्रमितः ॥ २४ ॥

### (୧) ଶବ୍ଦାଦେବ ପ୍ରମିତଃ ॥ ୧-୩-୨୪ ॥

ପ୍ରମିତଃ = 'ଅଙ୍ଗୁଷ୍ଠମାତ୍ରଃ ପୁରୁଷୋ' ଏହି ପ୍ରମିତବାକ୍ୟରେ ପ୍ରତିପାଦ୍ୟ ପୁରୁଷ ପରମାତ୍ମା ଅଟେ । ଶବ୍ଦାଦେବ=କାରଣ-'ଇଶାନୋ ଭୂତଭବ୍ୟସ୍ୟ' ଏହି ଶ୍ରୁତିରେ ଈଶାନଶବ୍ଦ ଅଟେ ।

(୨) ମୂଳ-(କ) 'ଅଙ୍ଗୁଷ୍ଠମାତ୍ରଃ ପୁରୁଷୋ ମଧ୍ୟ ଆତ୍ମନି ତିଷ୍ଠତି' ଇତି ଶ୍ରୂୟତେ । ତଥା 'ଅଙ୍ଗୁଷ୍ଠମାତ୍ରଃ ପୁରୁଷୋ ଜ୍ୟୋତିରିବାଧୂମକଃ । ଈଶାନୋ ଭୂତଭବ୍ୟସ୍ୟ ସ ଏବାଦ୍ୟ ସ ଉଶ୍ୱ ଏତଦ୍ଧୈତତ୍', (କା ୨।୧।୧୩) ଇତି ଚ । ତତ୍ର ଯୋଽୟମଙ୍ଗୁଷ୍ଠମାତ୍ରଃ ପୁରୁଷଃ ଶ୍ରୂୟତେ, ସ କିଂ ବିଜ୍ଞାନାତ୍ମା କିଂ ବା ପରମାତ୍ମେତି ସଂଶୟଃ । (ଖ) ତତ୍ର ପରିମାଣୋପଦେଶାତ୍ତାବଦ୍ ବିଜ୍ଞାନାତ୍ମେତି ପ୍ରାପ୍ତମ୍ । ନ ହ୍ୟନନ୍ତାୟାମବିସ୍ତାରସ୍ୟ ପରମାତ୍ମନୋଽଙ୍ଗୁଷ୍ଠ ପରିମାଣମୁପପଦ୍ୟତେ । ବିଜ୍ଞାନାତ୍ମନସ୍ତୁପାଧିମତ୍ତ୍ୱାତ୍ ସମ୍ଭବତି କୟାଚିତ୍ କଳ୍ପନୟାଽଙ୍ଗୁଷ୍ଠମାତ୍ରତ୍ୱମ୍ । (ଗ) ସ୍ମୃତେଶ୍ଚ-'ଅଥ ସତ୍ୟବତଃ କାୟାତ୍ ପାଶବଦ୍ଧଂ ବଶଂ ଗତମ୍ । ଅଙ୍ଗୁଷ୍ଠମାତ୍ରଂ ପୁରୁଷଂ ନିଶ୍ଚକର୍ଷ ଯମୋ ବଳାତ୍ । (ମ-ଭାରତ ୩।୨୯୭।୧୭)

ଇତି । ନହି ପରମେଶ୍ୱରୋ ବଳାଦ୍ୟମେନ ନିଷ୍କଷ୍ଟୁଂ ଶକ୍ୟଃ । ତେନ ତତ୍ର ସଂସାର୍ଯ୍ୟଙ୍ଗୁଷ୍ଟମାତ୍ରୋ ନିଶ୍ଚିତଃ, ସ ଏବେହାପୀତି ।

**(୨) ଭାଷାଂତର-** (କ) 'ଯାହା ଅଙ୍ଗୁଷ୍ଠପରିମାଣ ପୁରୁଷ ଶରୀର ଭିତରେ ରହେ ।' ଏବଂ 'ଯାହା ଅଙ୍ଗୁଷ୍ଠମାତ୍ର ପୁରୁଷ ଧୂମରହିତ ଜ୍ୟୋତି ସହ ସମାନ । ଏହା ଭୂତ ଓ ଭବିଷ୍ୟତର ଶାସକ । ଏହା ବର୍ତ୍ତମାନକାଳରେ ଅଛି', ଭବିଷ୍ୟତରେ ରହିବ । ନିଶ୍ଚୟ ଏହା ବ୍ରହ୍ମତତ୍ତ୍ୱ ଅଟେ ।', ଏହିପ୍ରକାର ଶ୍ରୁତିବାକ୍ୟ ଅଛି, ସେ କଣ ଜୀବାତ୍ମା କି ପରମାତ୍ମା ? ଏହାହିଁ ସଂଶୟ ।

(ଖ) ପୂର୍ବପକ୍ଷ-ଏହି ଶ୍ରୁତିର ପରିମାଣର ଉପଦେଶଦ୍ୱାରା ଜୀବାତ୍ମା ବୋଲି ଜଣାପଡ଼େ । କାରଣ ଅନନ୍ତ, ଆୟାମ ଓ ବିଶ୍ରାମ ହୋଇଥିବା ପରମାତ୍ମା ଅଙ୍ଗୁଷ୍ଠମାତ୍ର ପରିମାଣ ଯୁକ୍ତ ହେବା ସମ୍ଭବ ନୁହେଁ । କିନ୍ତୁ ବିଜ୍ଞାନାତ୍ମା ଉପାଧିଯୁକ୍ତ ହେଲେ କୌଣସି କଳ୍ପନା ଦ୍ୱାରା ଅଙ୍ଗୁଷ୍ଠମାତ୍ର ପରିମିତ ହୁଏ ।

(ଗ) ତେଣୁ 'ଏହା ପରେ ଯମ ସତ୍ୟବାନର ଶରୀରରୁ ନିଜ ଫାଶରେ ବନ୍ଧା ହୋଇଥିବା କର୍ମବଶୀଭୂତ ଅଙ୍ଗୁଷ୍ଠମାତ୍ର ପୁରୁଷକୁ ବଳପୂର୍ବକ ଟାଣିଲେ', ଏହିପ୍ରକାର ସ୍ମୃତି ମଧ୍ୟ ଅଛି । ପରମେଶ୍ୱର ଯମଦ୍ୱାରା ବଳପୂର୍ବକ ଟଣାହୋଇଥିବା ସମ୍ଭବ ନୁହେଁ- ଏହାଦ୍ୱାରା ସ୍ମୃତିରେ ଜୀବମଧ୍ୟ ଅଙ୍ଗୁଷ୍ଠମାତ୍ର ପରିମାଣଯୁକ୍ତ ନିଶ୍ଚିତ ଭାବରେ ହୁଏ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃପରମାତ୍ମୈବାୟମଙ୍ଗୁଷ୍ଠମାତ୍ରପରିମିତଃ ପୁରୁଷୋ ଭବିତୁମର୍ହତି । କସ୍ମାତ୍ ? ଶବ୍ଦାତ୍ 'ଈଶାନୋ ଭୂତଭବ୍ୟସ୍ୟ', ଇତି । (ଖ) ନ ହ୍ୟନ୍ୟଃ ପରମେଶ୍ୱରାଦ୍ ଭୂତ ଭବ୍ୟସ୍ୟ ନିରଙ୍କୁଶମୀଶିତା (ଖ) 'ଏତଦ୍ୱୈ ତତ୍' ଇତି ଚ ପ୍ରକୃତଂ ପୃଷ୍ଟମିହାନୁସନ୍ଧଧାତି । ଏତଦ୍ୱୈ ତଦ୍ୟତ୍ପୃଷ୍ଟଂ ବ୍ରହ୍ମେତ୍ୟର୍ଥଃ । ପୃଷ୍ଟଂ ଚେହ ବ୍ରହ୍ମ 'ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାଦନ୍ୟତ୍ରାସ୍ମାତ୍କୃତକୃତାତ୍ । ଅନ୍ୟତ୍ର ଭୂତାଚ୍ଚ ଭବ୍ୟାଚ୍ଚ ଯତ୍ତତ୍ ପଶ୍ୟସି ତଦ୍‌ବଦ', (କା ୧।୨।୨୪) ଇତି । ଶବ୍ଦାଦେବେତି-ଅଭିଧାନଶ୍ରୁତେରେବେଶାନ ଇତି ପରମେଶ୍ୱରୋଽବଗମ୍ୟତ ଇତ୍ୟର୍ଥଃ ।

**(୩) ଭାଷାଂତର -** (କ) ସିଦ୍ଧାନ୍ତ-ଏଠାରେ ଏହା ଅଙ୍ଗୁଷ୍ଠମାତ୍ରପରିମିତ ପୁରୁଷ ପରମାତ୍ମା-ବାଚ୍ୟ କିପରି ? ଏହାଦ୍ୱାରା 'ଈଶାନୋ ଭୂତଭବ୍ୟସ୍ୟ । ଏହି ଶ୍ରୁତରେ ଈଶାନଶବ୍ଦ ଅଛି । ଭୂତ ଓ ଭବିଷ୍ୟତର ନିରଙ୍କୁଶ ଈଶିତା ପରମେଶ୍ୱରଠାରୁ ଅନ୍ୟ କିଛି ନୁହେଁ ।



(ଖ) ନଚିକେତା ଯେଉଁ ବ୍ରହ୍ମ ବିଷୟରେ ପଚାରିଲା, ଏହା ସେହି ଅଟେ । 'ଧର୍ମଠାରୁ ଅନ୍ୟ, ଅଧର୍ମଠାରୁ ଅନ୍ୟ ତଥା ଏହିକାର୍ଯ୍ୟ-କାରଣଠାରୁ ଅନ୍ୟ ଏବଂ ଭୂତ, ଭବିଷ୍ୟତ୍ ତଥା ବର୍ତ୍ତମାନଠାରୁ ଭିନ୍ନ, ଯାହାକୁ ଆପଣ ଦେଖନ୍ତି, ଅନୁଭବ କରନ୍ତି, ତାହାକୁ କହ', ଏହିପ୍ରକାର ଏଠାରେ ବ୍ରହ୍ମବିଷୟକ ପ୍ରଶ୍ନ । ଶବ୍ଦରୁ ଅର୍ଥାତ୍ ଏହି ଅଭିଧାନ ଶ୍ରୁତିରୁ ଏହି ପରମେଶ୍ୱର ଜ୍ଞାନ ହୁଏ ।

(୧) ମୂଳ-(କ) କଥଂ ପୁନଃ ସର୍ବାଗତସ୍ୟ ପରମାତ୍ମନଃ ପରିମାଣୋପଦେଶଃ ? ଇତ୍ୟତ୍ର ବ୍ରୂମଃ-

(୧) ଭାଷାଂତର- (କ) ସବୁଠାରେ ବ୍ୟାପକ ପରମାତ୍ମାଠାରେ ଅଙ୍ଗୁଷ୍ଠମାତ୍ର ପରିମାଣର ଉପଦେଶ କିପରି ହୁଏ ? ଏହି ବିଷୟରେ ଆମ୍ଭେ କହୁଛୁ-

**हृद्यपेक्षया तु मनुष्याधिकारत्वात् ॥ २५ ॥**

**(୨) ହୃଦୟପେକ୍ଷୟା ତୁ ମନୁ ଷ୍ୟାଧିକାରତ୍ୱାତ୍ ॥ ୧-୩-୨୫ ॥**

ମନୁଷ୍ୟାଧିକାରତ୍ୱାତ୍=ଶାସ୍ତ୍ରରେ ମନୁଷ୍ୟ ଅଧିକୃତ ଅଟେ । ମନୁଷ୍ୟର ହୃଦୟ ସ୍ୱ ସ୍ୱ ଅଙ୍ଗୁଷ୍ଠମାତ୍ର ହୁଏ । ତୁ=ଶବ୍ଦ ଶଙ୍କା ନିବୃତ୍ତ୍ୟର୍ଥ । ହୃଦ୍ୟପେକ୍ଷୟ । = ଏହି ହୃଦୟର ଅପେକ୍ଷା ପରମେଶ୍ୱର ମଧ୍ୟ ଅଙ୍ଗୁଷ୍ଠମାତ୍ର ବୋଲି କୁହାଯାଇଛି ।

(୩) ମୂଳ-(କ) ସର୍ବଗତସ୍ୟାପି ପରମାତ୍ମନୋ ହୃଦୟେଽବସ୍ଥାନମପେକ୍ଷ୍ୟା-ଙ୍ଗୁଷ୍ଠମାତ୍ରତ୍ୱମିଦମୁଚ୍ୟତେ । ଆକାଶସୈ ବ ବଂଶପର୍ବାପେକ୍ଷମରତ୍ନିମାତ୍ରତ୍ୱମ୍ । ନ ହ୍ୟଞ୍ଜସାଽତିମାତ୍ରସ୍ୟ ପରମାତ୍ମନୋଽଙ୍ଗୁଷ୍ଠମାତ୍ରତ୍ୱମୁପପଦ୍ୟତେ, ନ ଚାନ୍ୟଃ, ପରମାତ୍ମନ ଇହ ଗ୍ରହଣମର୍ହତୀଶାନଶବ୍ଦାଦିଭ୍ୟ ଇତ୍ୟୁକ୍ତମ୍ । (ଖ) ନନୁ ପ୍ରତିପ୍ରାଣିଭେଦଂ ହୃଦୟାନାମନବସ୍ଥିତତ୍ୱାତ୍ତଦପେକ୍ଷମପ୍ୟଙ୍ଗୁଷ୍ଠମାତ୍ରତ୍ୱଂ ନୋପପଦ୍ୟତ ଇତ୍ୟତ ଉତ୍ତରମୁଚ୍ୟତେ-ମନୁଷ୍ୟାଧିକାରତ୍ୱାଦିତି । (ଗ) ଶାସ୍ତ୍ରଂ ହ୍ୟବିଶେଷପ୍ରବୃତ୍ତମପି ମନୁଷ୍ୟାନେବାଧିକରୋତି, ଶକ୍ତତ୍ୱାଦର୍ଥିତ୍ୱାଦପର୍ଯୁଦ-ସ୍ତତ୍ୱାଦୁପନୟନାଦିଶାସ୍ତ୍ରାଚ୍ଚେତି ବର୍ଣ୍ଣିତମେତଦଧିକାରଲକ୍ଷଣେ (ଜୈ. ସୂ ୬।୧) ମନୁଷ୍ୟାଣାଂ ଚ ନିୟତପରିମାଣଃ କାୟଃ । (ଘ) ଔଚିତ୍ୟେନ ନିୟତପରିମାଣମେବ ଚୈଷାମଙ୍ଗୁଷ୍ଠମାତ୍ରଂ ହୃଦୟମ୍ । ଅତୋ ମନୁଷ୍ୟାଧିକାରତ୍ୱାଚ୍ଛାସ୍ତ୍ରସ୍ୟ ମନୁଷ୍ୟହୃଦୟାବସ୍ଥାନାପେକ୍ଷ-ମଙ୍ଗୁଷ୍ଠମାତ୍ରତ୍ୱମୁପପନ୍ନଂ ପରମାତ୍ମନଃ ।

**(୩) ଭାଷାଂତର-**(କ) ଯେପରି ବାଉଁଶ ପର୍ବରେ ରହିଥିବା କାରଣ ଆକାଶ ଅରତ୍ନିହସ୍ତ, ସେପରି ହୃଦୟସ୍ଥିତର ଅଂପେକ୍ଷା ସର୍ବଗତ ପରମାତ୍ମା ମଧ୍ୟ ଅଙ୍ଗୁଷ୍ଠମାତ୍ର

ବୋଲି କୁହାଯାଇଛି । କାରଣ-ପରିମାଣତୀତ ପରମେଶ୍ୱରର ମୁଖ୍ୟରୂପରେ ଅଙ୍ଗୁଷ୍ଠ ମାତ୍ର ହେବା ଠିକ୍ ନୁହେଁ ଏବଂ ଏହା କୁହାଯାଇଛି ଯେ- ଈଶାନଶବ୍ଦାଦି ହେତୁ ହେବାଦ୍ୱାରା ପରମେଶ୍ୱର ବ୍ୟତିତ ଅନ୍ୟ କିଛି ଗ୍ରହଣ କରାଯିବ ନାହିଁ ।

(ଖ) ପରନ୍ତୁ ପ୍ରତ୍ୟେକ ପ୍ରାଣୀର ହୃଦୟ ଭିନ୍ନ-ଭିନ୍ନ ପରିମିତ ହୁଏ', ଏକ ନୁହେଁ, ଅତଃ ଏହା ଅପେକ୍ଷା ପରମାତ୍ମାର ଅଙ୍ଗୁଷ୍ଠମାତ୍ର ପରିମାଣ ହେବା ଯୁକ୍ତ ନୁହେଁ କି ? ଏହାର ଉତ୍ତରରେ-ମନୁଷ୍ୟାଧିକାରତ୍ୱାତ୍ ।

(ଗ) ଶାସ୍ତ୍ର ସାମାନ୍ୟନିୟମରେ ପ୍ରବୃତ୍ତ ହୋଇ ମଧ୍ୟ ମନୁଷ୍ୟକୁ ଅଧିକୃତ କରେ । କାରଣ-ସେମାନେ ସମର୍ଥ ଅଟନ୍ତି, କାମନା ବିଶେଷଯୁକ୍ତ ଅଟେ, ଶ୍ରୁତ୍ୟୁକ୍ତ କର୍ମାନୁଷ୍ଠାନ ଅନିରାକୃତ ହୁଏ । ଶାସ୍ତ୍ର ସେମାନଙ୍କର ଉପନୟନାଦିର ବିଧାନ କରେ, ଏପରି ଅଧିକାର ଲକ୍ଷଣରେ ଜୈମିନି ମୁନି କହିଛନ୍ତି । ତେଣୁ ମନୁଷ୍ୟ ଶରୀର ନିଶ୍ଚିତ ପରିମାଣକ ହୁଏ ।

(ଘ) ତେଣୁ ସେ ହୃଦୟର ପରିମାଣ ମଧ୍ୟ ଉଚିତରୂପରେ ନିୟତ ଅଙ୍ଗୁଷ୍ଠମାତ୍ର ହେବା ଉଚିତ୍ । ତେଣୁ ଏହି ସିଦ୍ଧାନ୍ତ ଯେ-ଶାସ୍ତ୍ରରେ ମନୁଷ୍ୟର ଅଧିକାର ହେଲେ ମନୁଷ୍ୟ ହୃଦୟରେ ଅବସ୍ଥିତ ହେବାର କାରଣ ପରମାତ୍ମାର ଅଙ୍ଗୁଷ୍ଠ ପରିମାଣ ହେବା ଠିକ୍ ଅଟେ ।

(୪) ମୂଳ-(କ) ଯଦପ୍ୟୁକ୍ତମ୍-ପରିମାଣୋପଦେଶାତ୍ ସ୍ମୃତେଶ୍ଚ ସଂସାର୍ଯ୍ୟେବାୟମଙ୍ଗୁଷ୍ଠମାତ୍ରଃ ପ୍ରତ୍ୟେତବ୍ୟ ଇତି । (ଖ) ତତ୍ ପ୍ରତ୍ୟୁଚ୍ୟତେ-'ସ ଆତ୍ମା ତତ୍ତ୍ୱମସି', ଇତ୍ୟାଦିବତ୍ ସଂସାରିଣ ଏବ ସତୋଽଙ୍ଗୁଷ୍ଠମାତ୍ରସ୍ୟ ବ୍ରହ୍ମତ୍ୱମିଦମୁପଦିଶ୍ୟତ ଇତି । (ଗ) ଦ୍ୱିରୂପା ହି ବେଦାନ୍ତବାକ୍ୟାନାଂ ପ୍ରବୃତ୍ତିଃ, କ୍ୱଚିତ୍ ପରମାତ୍ମ ସ୍ୱରୂପ ନିରୂପଣ ପରା । କ୍ୱଚିଦ୍ ବିଜ୍ଞାନାତ୍ମନଃ ପରମାତ୍ମୈକତ୍ୱୋପଦେଶପରା । ତଦତ୍ର ବିକାରାତ୍ମନଃ ପରମାତ୍ମନୈକତ୍ୱମୁପଦିଶ୍ୟତେ, ନାଙ୍ଗୁଷ୍ଠମାତ୍ରତ୍ୱଂ କସ୍ୟଚିତ୍ । (ଘ) ଏତମେବାର୍ଥଂ ପରେଣ ସ୍ଫୁଟିକରିଷ୍ୟତି 'ଅଙ୍ଗୁଷ୍ଠମାତ୍ରଃ ପୁରୁଷୋନ୍ତରାତ୍ମା ସଦା ଜନାନାଂ ହୃଦୟେ ସଂନିବିଷ୍ଟଃ । ତଂ ସ୍ୱଚ୍ଛରୀରାତ୍ ପ୍ରବୃହେନ୍ମୁଞ୍ଜାଦିବେଷୀକାଂ ଧୈର୍ଯ୍ୟେଣ । ତଂ ବିଦ୍ୟାଚ୍ଛୁକ୍ରମମୃତମ୍', (କା ୨।୬।୧୭) ଇତି ।

**(୪) ଭାଷାଂତର-** (କ) ଯାହା କୁହାଯାଇଛି-ପରିମାଣର ଉପଦେଶ ଦ୍ୱାରା ଏବଂ ଏହାର ପୂର୍ବୋକ୍ତ ସ୍ମୃତିଦ୍ୱାରା ସଂସାରୀ ପୁରୁଷକୁ ହିଁ ଅଙ୍ଗୁଷ୍ଠମାତ୍ର ପୁରୁଷ ବୁଝାଏ ।

(ଖ) ଏହାର ଉତ୍ତରରେ-'ସ ଆତ୍ମା ତତ୍ତ୍ୱମସି' ଇତ୍ୟାଦି ଭଳି ଏହି ଅଙ୍ଗୁଷ୍ଠମାତ୍ର ସଂସାରିକୁ ବ୍ରହ୍ମରୂପରେ ଏହା ଉପଦେଶ ଦିଆଯାଇଛି ।



(ଗ) କାରଣ-ବେଦାନ୍ତ ବାକ୍ୟର ଦୁଇପ୍ରକାର ପ୍ରବୃତ୍ତି ଅଛି । କେଉଁଠି ପରମାତ୍ମା ସ୍ୱରୂପ ନିରୂପଣ ପରକ ଏବଂ କେଉଁଠି ଜୀବାତ୍ମାରେ ପରମାତ୍ମୈକତ୍ୱପରକ ଉପଦେଶ ଦିଆଯାଇଛି । ଏଠାରେ ଜୀବାତ୍ମାର ପରମାତ୍ମା ସହିତ ଏକତ୍ୱର ଉପଦେଶ ହୋଇଛି । କାହାର ମଧ୍ୟ ଅଙ୍ଗୁଷମାତ୍ର ପରିମାଣର ଉପଦେଶରେ ତାତ୍ପର୍ଯ୍ୟ ନାହିଁ ।

(ଘ) ଏହି ଅର୍ଥକୁ 'ଅଙ୍ଗୁଷମାତ୍ର ପୁରୁଷ ଯାହା ଅନ୍ତରାତ୍ମା ଅଟେ । ସର୍ବଦା ଜୀବର ହୃଦୟଦେଶରେ ରହେ । ମୁଞ୍ଜଠାରୁ ଲୁହାବାଡ଼ ସମାନ, ତାହାକୁ ଧୈର୍ଯ୍ୟ ପୂର୍ବକ ନିଜଶରୀରରେ ବାହାରି ତାହାର ଶୁକ୍ର ଏବଂ ଅମୃତରୂପ ବୋଲି ଜାଣ', ଏହି ଉତ୍ତରବାକ୍ୟରେ ଯମରାଜ ସ୍ପଷ୍ଟ କରିବେ ।

## ८ देवताधिकरणम् ॥ स० २६ - ३३ ॥

## ଦେବତାଧିକରଣ - ୮

### तदुपर्यपि बादरायण: संभबात् ॥ २६ ॥

### (୧) ତଦୁପର୍ଯ୍ୟପି ବାଦରାୟଣଃ ସମ୍ଭବାତ୍ ॥ ୧-୩-୨୬ ॥

ତଦୁପର୍ଯ୍ୟପି=ମନୁଷ୍ୟଠାରୁ ଶ୍ରେଷ୍ଠ ଦେବତାମାନଙ୍କ ପାଖରେ, ସମ୍ଭବାତ୍=ଅର୍ଥିତ୍ୱାଦି ଅଧିକାରର କାରଣର ସମ୍ଭବ ହେଲେ ସେମାନେ ମଧ୍ୟ ବ୍ରହ୍ମବିଦ୍ୟାରେ ଅଧିକାରୀ ହୁଅନ୍ତି । ବାଦରାୟଣଃ=ଏହା ବାଦରାୟଣାଚାର୍ଯ୍ୟ କହିଛନ୍ତି ।

ମୂଳ-(କ) ଅଙ୍ଗୁଷମାତ୍ରଶ୍ରୁତିର୍ମନୁଷ୍ୟହୃଦୟାପେକ୍ଷା ମନୁଷ୍ୟାଧିକାରତ୍ୱାଚ୍ଛାସ୍ତ୍ରସ୍ୟେ-ତ୍ୟୁକ୍ତମ୍, ତତ୍ ପ୍ରସଙ୍ଗେନେଦମୁଚ୍ୟତେ । ବାଢମ୍, ମନୁଷ୍ୟାନଧିକରୋତି ଶାସ୍ତ୍ରମ୍ । ନ ତୁ ମନୁଷ୍ୟାନେବେତୀହ ବ୍ରହ୍ମଜ୍ଞାନେ ନିୟମୋଽସ୍ତି । (ଖ) ତେଷାଂ ମନୁଷ୍ୟାଣାମୁ-ପରିଷ୍ଟାଦ୍ୟେ ଦେବାଦୟସ୍ତାନପ୍ୟଧିକରୋତି, ଶାସ୍ତ୍ରମିତି ବାଦରାୟଣ ଆଚାର୍ଯ୍ୟୋ ମନ୍ୟତେ । କସ୍ମାତ୍ ? ସମ୍ଭବାତ୍ । ସମ୍ଭବତି ହି ତେଷାମପ୍ୟର୍ଥିତ୍ୱାଦ୍ୟ-ଧିକାରକାରଣମ୍ । ତତ୍ରାର୍ଥିତ୍ୱଂ ତାବାନ୍ମୋକ୍ଷବିଷୟଂ ଦେବାଦୀନାମପି ସମ୍ଭବତି ବିକାର ବିଷୟବିଭୂତ୍ୟନିତ୍ୟତ୍ୱାଲୋଚନାଦିନିମିତ୍ତମ୍ । (ଗ) ତଥା ସାମର୍ଥ୍ୟମପି ତେଷାଂ ସମ୍ଭବତି, ମନ୍ତ୍ରାର୍ଥବାଦେତି ହାସପୁରାଣଲୋକେଭ୍ୟୋ ବିଗ୍ରହବତ୍ତ୍ୱା-ଦ୍ୟବଗମାତ୍ । (ଘ) ନ ଚ ତେଷାଂ କଶ୍ଚିତ୍ ପ୍ରତିଷେଧୋଽସ୍ତି ନ ଚୋପନୟନ-ଶାସ୍ତ୍ରେଣୈଷାଧିକାରୋ ନିବର୍ତ୍ତ୍ୟେତ, ଉପନୟନସ୍ୟ ବେଦାଧ୍ୟୟନତ୍ୱାତ୍ । ତେଷାଞ୍ଚ ସ୍ୱୟଂ ପ୍ରତିଭାତବେଦତ୍ୱାତ୍ ।

(୨) ଭାଷାଂତର- (କ) ଅଙ୍ଗୁଷ୍ଠମାତ୍ର ଶ୍ରୁତି ମନଷ୍ୟ ହୃଦୟକୁ ଅପେକ୍ଷା କରେ, କାରଣଶାସ୍ତ୍ରରେ ମନୁଷ୍ୟର ଅଧିକାର ଅଛି । ସେହି ପ୍ରସଙ୍ଗରେ ତାହା କୁହାଯାଇଛି ବୋଲି ଯାହା କୁହାଯାଇଛି ତାହା ଠିକ୍ । ମନୁଷ୍ୟକୁ ଶାସ୍ତ୍ର ଅଧିକୃତ କରେ । ପରନ୍ତୁ ସେ କେବଳ ମନୁଷ୍ୟକୁ ଅଧିକାର କରେ ବୋଲି ଏହି ବ୍ରହ୍ମ ଜ୍ଞାନରେ ଏପରି ନିୟମ ନାହିଁ ।

(ଖ) କିନ୍ତୁ ବାଦରାୟଣ ଆଚାର୍ଯ୍ୟଙ୍କ ମତରେ ମନୁଷ୍ୟଠାରୁ ଶ୍ରେଷ୍ଠ ଦେବାଦିମାନଙ୍କୁ ଶାସ୍ତ୍ର ଅଧିକାର କରେ । କିପରି ? ଏହାଦ୍ୱାରା ଏପରି ସମ୍ଭବ ହୁଏ । କାରଣ- ତାହାଠାରେ ଅର୍ଥିତ୍ୱାଦି ଅଧିକାରର କାରଣ ସମ୍ଭବ ହୁଏ । କାରଣ-ବିକାର ବିଷୟବିଭୂତିରେ ଅନିତ୍ୟତ୍ୱ ଆଲୋଚନାଦି ନିମିତ୍ତକ ମୋକ୍ଷବିଷୟକ ଅର୍ଥିତ୍ୱ ଦେବାଦିରେ ସମ୍ଭବ ।

(ଗ) ସେହିପ୍ରକାର ତାହାଠାରେ ସାମର୍ଥ୍ୟ ମଧ୍ୟ ସମ୍ଭବ ହୁଏ, କାରଣ-ମନ୍ତ୍ର, ଅର୍ଥବାଦ, ଇତିହାସ, ପୁରାଣ, ଏବଂ ଲୋକ ଅନୁଭବଦ୍ୱାରା ସେମାନେ ଶରୀରଧାରୀ ବୋଲି ଜଣାଯାଏ ।

(ଘ) ଏମାନଙ୍କ ପାଇଁ କୌଣସି ପ୍ରତିଷେଧ ନାହିଁ । ଉପନୟନାଦି ଶାସ୍ତ୍ରରେ ଏହି ବ୍ରହ୍ମବିଦ୍ୟାର ଅଧିକାର ନିବୃତ୍ତ ହୁଏ ନାହିଁ । କାରଣ-ଉପନୟନ ବେଦାଧ୍ୟୟନ ପାଇଁ । ଏହାକୁ ବେଦଜ୍ଞାନ ସ୍ୱୟଂ ହୁଏ ।

(୩) ମୂଳ-(କ) ଅପି ଚୈଷାଂ ବିଦ୍ୟାଗ୍ରହଣାର୍ଥଂ ବ୍ରହ୍ମଚର୍ଯ୍ୟାଦି ଦର୍ଶୟତି 'ଏକଶତଂ ହବୈ ବର୍ଷାଣି ମଘବାନ୍‌ପ୍ରଜାପତୌ ବ୍ରହ୍ମଚର୍ଯ୍ୟମୁବାସ', (ଛା ୮-୧୧-୩), 'ଭୃଗୁର୍ବୈ ବାରୁଣିଃ ବରୁଣଂ ପିତରମୁପସସାର । ଅଧୀହି ଭଗବୋ ବ୍ରହ୍ମ', (ତୈ ୩-୧) ଇତ୍ୟାଦି । (ଖ) ଯଦ୍ୟପି କର୍ମସ୍ୱନଧିକାରକାରଣମୁକ୍ତମ୍- 'ନ ଦେବାନାଂ ଦେବତାନ୍ତରାଭାବାତ୍', (ଜୈ ୬-୧-୬) ଇତି, 'ନ ଋଷୀଣାମାର୍ଷେୟାନ୍ତରାଭାବାତ୍', (ଜୈ ୬-୧-୭) ଇତି । (ଗ) ନ ତଦ୍‌ବିଦ୍ୟାସ୍ୱସ୍ତି । 'ନ ହୀନ୍ଦ୍ରାଦୀନାଂ ବିଦ୍ୟାସ୍ୱଧିକ୍ରିୟମାଣାନାମିନ୍ଦ୍ରାଦ୍ୟୁଦ୍ଦେଶେନ କିଞ୍ଚିତ୍ କୃତ୍ୟମସ୍ତି । ନ ଚ ଭୃଗ୍‌ବାଦୀନାଂ ଭୃଗ୍ୱାଦିସଗୋତ୍ରତୟା । (ଘ) (ତସ୍ମାଦ୍ଦେବାଦୀନାମପି ବିଦ୍ୟାସ୍ୱଧିକାରଃ କେନ ବାର୍ଯ୍ୟତେ ? ଦେବାଦ୍ୟଧିକାରେଽପ୍ୟଙ୍ଗୁଷ୍ଠମାତ୍ରଶ୍ରୁତିଃ ସ୍ୱାଙ୍ଗଷ୍ଠାପେକ୍ଷୟା ନ ବିରୁଧ୍ୟତେ ।

(୩) ଭାଷାଂତର-(କ) 'ଇନ୍ଦ୍ର ପ୍ରଜାପତିଙ୍କ ପାଖରେ ଏକଶହ ଏକ ବର୍ଷ ବ୍ରହ୍ମଚର୍ଯ୍ୟ ବାସ କଲେ । ବରୁଣର ସୁପ୍ରସିଦ୍ଧପୁତ୍ର ଭୃଗୁ ନିଜପିତା ବରୁଣ ପାଖକୁ

ଗଲେ ଏବଂ କିହଲେ, 'ହେ ଭଗବନ୍ ! ମୋତେ ବ୍ରହ୍ମଜ୍ଞାନର ଉପଦେଶ ଦିଅ' । ଇତ୍ୟାଦି ଶ୍ରୁତି ।

(ଖ) ସେହି ଦେବତାମାନଙ୍କ ପାଖରେ ବିଦ୍ୟାଗ୍ରହଣ କରିବାପାଇଁ ବ୍ରହ୍ମଚର୍ଯ୍ୟ ଇତ୍ୟାଦି ଦେଖାନ୍ତି । 'ଦେବତାମାନଙ୍କ କର୍ମରେ ଅଧିକାର ନାହିଁ, କାରଣ-ଅନ୍ୟ ଦେବତାମାନଙ୍କର ଅଭାବ ଅଟେ । ଅର୍ଥାତ୍ ଇନ୍ଦ୍ରଠାରୁ ପୃଥକ୍ ଅନ୍ୟ ଇନ୍ଦ୍ର ଅଭାବ ଅଟେ' । ଋଷୀମାନଙ୍କର କର୍ମରେ ଅଧିକାର ନାହିଁ, କାରଣ-ଅନ୍ୟଋଷିର ଅଭାବ ଦେଖାଯାଏ, ଅର୍ଥାତ୍ ତନ୍ନାମ ବା ସେହିରୂପର ଅନ୍ୟଋଷି ନାହିଁ, ଯାହା ଉଦ୍ଦେଶ୍ୟରେ କାମ କରାଯିବ', ଏହିପ୍ରକାର ଯାହା ଏହାର କର୍ମରେ ଅନଧିକାରର କାରଣ କୁହାଗଲା ।

(ଘ) ତେଣୁ ଦେବାଦିର ବିଦ୍ୟାରେ ଅଧିକାର କିଏ ମନା କରିବ ? ଦେବାଦିର ଅଧିକାରରେ ଅଙ୍ଗୁଷ୍ଠମାତ୍ର ଶ୍ରୁତି ନିଜ ଅଙ୍ଗୁଷ୍ଠର ଅପେକ୍ଷାରେ ବିରୁଦ୍ଧ କରେ ।

## विरोध: कर्मणीति चेन्नानेकप्रतिपत्तेर्दर्शनात् ॥ २७ ॥

## (୧) ବିରୋଧଃ କର୍ମଣୀତି ଚେନ୍ନାନେକପ୍ରତିପତ୍ତେର୍ଦର୍ଶନାତ୍ ॥୧-୩-୨୭

ଇନ୍ଦ୍ରାଦି ଦେବତାମାନଙ୍କର ଯଦି ଶରୀର ସ୍ୱୀକାର କରାଯାଏ, ତେବେ, କର୍ମଣି ବିରୋଧଃ=କର୍ମରେ ବିରୋଧ ହୋଇଯିବ । ଇତି ଚେନ୍ନ-ଏହାଯଦି କହ, ତେବେ ମଧ୍ୟ ଠିକ୍ ନୁହେଁ । ଅନେକପ୍ରତିପତ୍ତେଃ=କାରଣ - ଯୁଗପତ୍ ଗୋଟିଏ ଅନେକ ଶରୀର ମିଳିପାରେ । ଏହିପରି, ଦର୍ଶନାତ୍='ସ ଏକଧା ଭବତି', ଇତ୍ୟାଦି ଶ୍ରୁତିରେ ଦେଖାଯାଏ, ଅଥବା ଅନେକ କର୍ମରେ ଏକର ଅଙ୍ଗହେବା ସଂସାରରେ ଦେଖାଯାଏ, ତେଣୁ ଇନ୍ଦ୍ରଆଦିର ମଧ୍ୟ ଅନେକସ୍ଥାନରେ ହବିଗ୍ରହଣ କରିବା ଠିକ୍ ଅଟେ ।

(୨) ମୂଳ-(କ) ସ୍ୟାଦେତତ୍ । ଯଦି ବିଗ୍ରହତ୍ୱାଦ୍ୟଭ୍ୟୁପଗମେନ ଦେବାଦୀନାଂ ବିଦ୍ୟାସ୍ୱଧିକାରୋ ବର୍ଣ୍ୟେତ । ବିଗ୍ରହବତ୍ତ୍ୱାଦୃତ୍ୱି ଗାଦିବନ୍ଦ୍ରାଦିନାମପି ସ୍ୱରୂପସଂନିଧାନେନ କର୍ମାଙ୍ଗଭାବୋଽଭ୍ୟୁପଗମ୍ୟେତ୍ । (ଖ) ତଦା ଚ ବିରୋଧଃ କର୍ମଣିସ୍ୟାତ୍, ନ ହୀନ୍ଦ୍ରାଦୀନାଂ ସ୍ୱରୂପସଂନ୍ନିଧାନେନ ଯାଗେଽଙ୍ଗଭାବୋ ଦୃଶ୍ୟତେ, ନ ଚ ସମ୍ଭବତି, ବହ୍ୱଷ୍ଣୁ ଯାଗେଷ୍ଣୁ ଯୁଗପଦେକସୌନ୍ଦ୍ରସ୍ୟ ସ୍ୱରୂପସନ୍ନିଧାନାତାନୁପପତ୍ତରିତି, ନାୟମସ୍ତି ବିରୋଧଃ । (ଗ) କସ୍ମାତ୍ ? ଅନେକପ୍ରତିପତ୍ତେଃ । ଏକସ୍ୟାପି ଦେବତାତ୍ମନୋ ଯୁଗପଦନେକସ୍ୱରୂପପ୍ରତି-ପତ୍ତି ସମ୍ଭବତି । କଥମେତଦବଗମ୍ୟତେ ? ଦର୍ଶନାତ୍ । (ଘ) ତଥାହି 'କତି ଦେବାଃ',

ଇତ୍ୟୁପକ୍ରମ୍ୟ (ତ୍ରୟଶ୍ଚ ତ୍ରୀ ଚ ଶତା ତ୍ରୟଶ୍ଚ ତୀଚ ସହସ୍ରା', ଇତି ନିରୂଚ୍ୟ 'କତମେତେ', ଇତ୍ୟାସ୍ୟାଂ ପୃଚ୍ଛାୟାଂ 'ମହୀମାନ ଏବୈଷାମେତେ ତ୍ରୟସ୍ତ୍ରିଂଶତ୍ତ୍ୱେ ଦେବା', (ବୃ ୩-୯-୧,୨) ଇତି ବ୍ରବତୀ ଶ୍ରୁତିରେକୈକସ୍ୟ ଦେବତାତ୍ମନୋ ଯୁଗପଦେନେକରୂପତାଂ ଦର୍ଶୟତି ।

(୨) ଭାଷାଂତର- (କ) ଏହିପରି ହୋଇପାରେ-ଯଦି ଶରୀରାଧାରୀ ସ୍ୱୀକାର କରି ଦେବାଦିର ବିଦ୍ୟାରେ ଅଧିକାର କୁହାଯାଏ, ତେବେ ଶରୀର ରହିଲେ ଋତ୍ୱିକ୍ ଆଦି ଭଳି ଇନ୍ଦ୍ରାଦିର ମଧ୍ୟ ସ୍ୱରୂପସନ୍ନିଧାନଦ୍ୱାରା କର୍ମରେ ଅଙ୍ଗଭାବ ସ୍ୱୀକାର କରିବାକୁ ପଡ଼ିବ ।

(ଖ) ତେବେ କର୍ମରେ ବିରୋଧ ହେବ, କାରଣ-ଯାଗରେ ସ୍ୱରୂପସନ୍ନିଧିରୁ ଇନ୍ଦ୍ରାଦି ଅଙ୍ଗଭାବ ଦେଖିବାରେ ଆସେ ନାହିଁ, ଏବଂ ଏହା ମଧ୍ୟ ସମ୍ଭବ ହୁଏ ନାହିଁ, କାରଣ-ବହୁତ ଯାଗରେ ଗୋଟିଏ ସମୟରେ ଗୋଟିଏ ଇନ୍ଦ୍ର ସ୍ୱରୂପ ଦ୍ୱାରା ଉପସ୍ଥିତି ଅନୁପପନ୍ନ ହୁଏ, ଏହା ଯଦି କୁହାଯାଏ, ତେବେ ଏଠାରେ ବିରୋଧ ହେବନାହିଁ ।

(ଗ) କିପରି ? ଏହାଦ୍ୱାରା ଅନେକ ପ୍ରତିପତ୍ତି ହୁଏ । ଗୋଟିଏ ଦେବତାଠାରେ ଏକ ସମୟରେ ଅନେକଶରୀରର ପ୍ରାପ୍ତି ସମ୍ଭବ ହୁଏ । ଏହା କିପରି ବୁଝାଯିବ ? ଦର୍ଶନ ହେଲେ ଅର୍ଥାତ୍ ଶ୍ରୁତିରେ ଏହିପରି ଦେଖାଯାଏ ।

(ଘ) କାରଣ-'କତି ଦେବାଃ' ଏହାକୁ ଆରମ୍ଭ କରି 'ତ୍ରୟଶ୍ଚ ତ୍ରୀ ଚ' (ତିନିଶହ ତିନିହଜାର ତିନି ଅର୍ଥାତ୍ ୩୩୦୬) ଏହିପ୍ରକାର ନିର୍ବଚନ କରି 'କତମ ତେ' (ସେମାନେ କେତେ) ଏହି ପ୍ରଶ୍ନ ଉପସ୍ଥିତ ହେଲେ 'ଯାଜ୍ଞବଲ୍କ୍ୟ-ସେମାନେ ଏହାର ମହିମା ଅଟନ୍ତି । ଦେବତା ଆଠବସୁ, ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ଇନ୍ଦ୍ର ଓ ପ୍ରଜାପତି ଏହିପ୍ରକାର ୩୩ ଜଣ ଅଟନ୍ତି) ଏହିପ୍ରକାର କହୁଥିବା ଶ୍ରୁତି ଏକ ଏକ ସମୟରେ ଅନେକରୂପତା ଦେଖାଏ ।

(୩) ମୂଳ-(କ) ତଥା ତ୍ରୟଂସ୍ତ୍ରଶତୋଽପି ଷଡ଼ାଦ୍ୟନ୍ତର୍ଭାବକ୍ରମେଣ 'କତମ ଏକୋ ଦେବ ଇତି ପ୍ରାଣଃ', ଇତି ପ୍ରାଣୈକରୂପତାଂ ଦେବାନାଂ ଦର୍ଶୟନ୍ତୀ ତସ୍ୟୈବୈକସ୍ୟ ପ୍ରାଣସ୍ୟ ଯୁଗପଦନେକରୂପଣଂ ଦର୍ଶୟତି । (ଖ) ସ୍ମୃତିରପି 'ଆତ୍ମନୋ ବେ ଶରୀରାଣି ବହୁନି ଭରତଷ ଭ । ଯୋଗୀ କୁର୍ଯ୍ୟାଦ୍‌ବଳଂ ପ୍ରାପ୍ୟ ତୈଶ୍ଚ ସର୍ବୈର୍ମହୀଂ ଚରେତ୍ । ପ୍ରାପ୍ନୁୟାଦ୍ ବିଷୟାନ୍ କୈଶ୍ଚିତ୍ କୈଶ୍ଚଦୁଗ୍ରଂ ତପଶ୍ଚରେତ୍ । ସଂକ୍ଷେପାଚ୍ଚ ପୁନସ୍ତାନି ସୂର୍ଯ୍ୟୋ ରଶ୍ମିଗଣାନିବ ॥'', ଇତ୍ୟେବଂଜାତୀୟକା ପ୍ରାପ୍ତାଣିମାଦୈଶ୍ୱର୍ଯ୍ୟାଣାଂ ଯୋଗିନାମପି ଯୁଗପଦେକ-ଶରୀରଯୋଗଂ ଦର୍ଶୟତି ।



**(୩) ଭାଷାଂତର-**(କ) ଏହିପ୍ରକାର ତେତିଶ ଶହ ଦେବତାମାନଙ୍କର କ୍ରମଶଃ ୬,୩,୨,୧ରେ ଅନ୍ତର୍ଭାବ ଦେଖାଇ 'ସେ ଏକଦେବ କିଏ ? ପ୍ରାଣ ଅଟେ'' ଏହିପ୍ରକାର ଦେବତାମାନଙ୍କର ପ୍ରାଣରୂପ ଏକ ସ୍ୱରୂପ ଦେଖାଉଥିବା ଶ୍ରୁତି ସେହି ଏକ ପ୍ରାଣୀର ଯୁଗପତ୍ ଅନେକରୂପତା ଦେଖାଏ ।

(ଖ) ତଥା-''ହେ ଭରତ କୂଳଶ୍ରେଷ୍ଠ ! ଯୋଗୀ ଯୋଗିମହିମାଦ୍ୱାରା ନିଜେ ଅନେକ ଶରୀର ଧାରଣ କରେ', ଶରୀରଦ୍ୱାରା ପୃଥିବୀରେ ବିଚରଣ କରେ । ଏଠାରେ କେତେକ ଶରୀର ଦ୍ୱାରା ବିଷୟଭୋଗ ମିଳେ ଏବଂ କେତେକ ଶରୀର ଦ୍ୱାରା ଉଗ୍ରତପ କରେ ଏବଂ ଯେପରି ସୂର୍ଯ୍ୟ ତାର ରଶ୍ମିକୁ ନିଜେ ନିଜେ ଏକାଠି କରନ୍ତି ।'' ଏହିପ୍ରକାର ସ୍ମୃତି ମଧ୍ୟ ପ୍ରାପ୍ତ ଅଣିମାଦି ଐଶ୍ୱର୍ଯ୍ୟଶାଳୀ ଯୋଗୀମାନଙ୍କର ଯୁଗପତ୍ ଅନେକ ଶରୀରଦ୍ୱାରା ସମ୍ବନ୍ଧ ଦେଖାଏ ।

(୪) ମୂଳ-(କ) କିମୁ ବକ୍ତବ୍ୟମାଜାନସିଦ୍ଧାନାଂ ଦେବାନାମ୍ । ଅନେକ ରୂପପ୍ରତିପତ୍ତିସମ୍ଭବାଚ୍ଚୈକୈକା ଦେବତା ବହୁଭିଃ ରୂପୈରାତ୍ମନଂ ପ୍ରବିଭଜ୍ୟ ବହୁଷୁ ଯୋଗେଷୁ ଯୁଗପଦଙ୍ଗଭାବଂ ଗଚ୍ଛତୀତି । (ଖ) ପରୈଶ୍ଚ ନ ଦୃଶ୍ୟତେଽ-ନ୍ତର୍ଦ୍ଧାନାଦିକ୍ରିୟାଯୋଗାଦିତ୍ୟୁପପଦ୍ୟତେ । (ଗ) ଅନେକପ୍ରତିପତ୍ତେର୍ଦର୍ଶନା-ଦିତ୍ୟସ୍ୟପରା ବ୍ୟାଖ୍ୟା-ବିଗ୍ରହବତାମପି କର୍ମାଙ୍ଗଭାବଚ୍ଛେଦନାସ୍ୱନେକା ପ୍ରତିପତ୍ତି-ର୍ଦୃଶ୍ୟତେ । କେଚିଦକୋଽପି ବିଗ୍ରହବାନନେକତ୍ର ଯୁଗପଦଙ୍ଗଭାବଂ ନ ଗଚ୍ଛତି, ଯଥା ବହୁଭିର୍ଭୋଜୟଦ୍‌ଭିର୍ନୈକୋ ବ୍ରାହ୍ମଣୋ ଯୁଗପଦ୍ ଭୋଜ୍ୟତେ । (ଘ) କ୍ୱଚିଚ୍ଚୈକୋଽପି ବିଗ୍ରହବାନନେକତ୍ର ଯୁଗପଦଙ୍ଗଭାବଂ ଗଚ୍ଛତି, ଯଥା-ବହୁଭିର୍ନମସ୍କୁ-ର୍ବାଣୈରେକୋ ବ୍ରାହ୍ମଣୋ ଯୁଗପନ୍ନମସ୍କ୍ରିୟତେ । (ଙ) ତଦ୍‌ବଦିହୋଦ୍ଦେଶପରିତ୍ୟାଗା-ତ୍ମକତ୍ୱାଦ୍ୟାଗସ୍ୟ ବିଗ୍ରହବତୀମପ୍ୟେକାଂ ଦେବତାମୁଦିଶ୍ୟ ବହବଃ ସ୍ୱଂ ସ୍ୱଂ ଯୁଗପତ୍ ପରିତ୍ୟକ୍ଷ୍ୟନ୍ତିତି ବିଗ୍ରହତ୍ୱେଽପି ଦେବତାନାଂ ନ କିଞ୍ଚିତ୍ କର୍ମଣି ବିରୁଧ୍ୟତେ ।

**(୪) ଭାଷାଂତର-** (କ) ଜନ୍ମସିଦ୍ଧ ଦେବତାମାନଙ୍କ ବିଷୟରେ ଆଉ କ'ଣ କହିବା ? ଅନେକ ସ୍ୱରୂପଧାରଣ କରି ସାମର୍ଥ୍ୟର କାରଣ ଏକ-ଏକ ଦେବତା ବହୁରୂପ ଶରୀରଦ୍ୱାରା ନିଜକୁ ବିଭକ୍ତ କରି ଏକସମୟରେ ବହୁଯାଗରେ ଅଙ୍ଗଭାବକୁ ପାଆନ୍ତି ।

(ଖ) ଅନ୍ତର୍ଦ୍ଧାନାଦି ଯୋଗକ୍ରିୟାର ସାମର୍ଥ୍ୟଦ୍ୱାରା ଅନ୍ୟପୁରୁଷ ଏହାକୁ ଦେଖିପାରେ ନାହିଁ । ଏହିପ୍ରକାର ଶରୀରଧାରୀ ସିଦ୍ଧ ହେଲେ ଦେବତାମାନଙ୍କର ବ୍ରହ୍ମବିଦ୍ୟାରେ ଅଧିକାର ଯୁକ୍ତ ହୁଏ ।

(ଗ) 'ଅନେକପ୍ରତିପତ୍ତେଦର୍ଶନାଦ୍' ବର୍ତ୍ତମାନ ଏହାର ଅନ୍ୟ ବ୍ୟାଖ୍ୟା- ଦେହଧାରିଙ୍କର କର୍ମର ଅଙ୍ଗଭାବକୁ ବିଧାନ କରୁଥିବା ବିଧିବାକ୍ୟର ଅନେକ ପ୍ରତିପତ୍ତି ଦେଖାଯାଏ । କୌଣସିଠାରେ ଏକ ହିଁ ଶରୀରଧାରୀ ଅନେକସ୍ଥଳରେ ଯୁଗପତ୍ ଅଙ୍ଗଭାବକୁ ପାଏ ନାହିଁ । ଯେପରି ଭୋଜନ କରାଉଥିବା ବହୁଯାଜକମାନଙ୍କଦ୍ୱାରା ଯୁଗପତ୍ ଅନେକ ସ୍ଥାନରେ ଗୋଟିଏ ବ୍ରାହ୍ମଣକୁ ଭୋଜନ କରାଯାଇ ନପାରେ ।

(ଘ) ଏହିପ୍ରକାର କୌଣସିଠାରେ ଅନେକସ୍ଥଳରେ ଏକ ଅଙ୍ଗଭାବକୁ ପାଏ, ଯେପରି ବହୁତ ନମସ୍କାର କରୁଥିବା ଲୋକଦ୍ୱାରା ଗୋଟିଏ ବ୍ରାହ୍ମଣ ନମସ୍କାର ପାଏ ।

(ଙ) କିନ୍ତୁ ଏହିପ୍ରକାର ଏଠାରେ ମଧ୍ୟ ଉଦ୍ଦେଶ୍ୟ ଦ୍ରବ୍ୟ ପରିତ୍ୟାଗାତ୍ମକ ଯାଗରେ ଏକଶରୀରଦେବତାର ଉଦ୍ଦେଶ୍ୟରେ ବହୁତ ଯାଜ୍ଞିକଲୋକ ନିଜ ନିଜର ଭବିଷ୍ୟ ରୂପଦ୍ରବ୍ୟକୁ ଯୁଗପତ୍ ତ୍ୟାଗକରନ୍ତି । ତେଣୁ ଦେବତା ଶରୀରଧାରୀ ହେଲେ ମଧ୍ୟ କର୍ମରେ କୌଣସି ବିରୋଧ ହୁଏ ନାହିଁ ।

## शब्द इति चेन्नात: प्रभवातप्रत्यक्षानुमानाभ्याम् ॥ २८ ॥

## (୧) ଶବ୍ଦ ଇତି ଚେନ୍ନାତଃ ପ୍ରଭବାତ୍ ପ୍ରତ୍ୟକ୍ଷାନୁମାନାଭ୍ୟାମ୍ ॥ ୧-୩-୨୮

ଶବ୍ଦେ=ଦେବବାକ୍ୟରେ ବିରୋଧ ହେବ, ଇତି ଚେନ୍ନ=ଏହିପରି ଯଦି କୁହାଯାଏ, ତେବେ ମଧ୍ୟ ଏହା ଠିକ ନୁହେଁ । କାରଣ, ଅତଃ=ବୈଦିକଶବ୍ଦଦ୍ୱାରା, ପ୍ରଭାବାତ=ଦେବାଦିଜଗତ୍‌ର ପ୍ରଭାବ ହୁଏ । ଏହି କଥା, ପ୍ରତ୍ୟକ୍ଷାନୁମାନାଭ୍ୟାମ୍=ପ୍ରତ୍ୟକ୍ଷ - ଶ୍ରୁତି ଓ ଅନୁମାନ ସ୍ମୃତିଦ୍ୱାରା ସିଦ୍ଧ ହୁଏ ।

(୨) ମୂଳ-(କ) ମା ନାମ ବିଗ୍ରହବତ୍ତ୍ୱେ ଦେବାଦୀନାମଭ୍ୟୁପଗମ୍ୟମାନେ କର୍ମଣି କଶ୍ଚିଦ୍‌ବିରୋଧଃ ପ୍ରସଞ୍ଜି । ଶବ୍ଦେ ତୁ ବିରୋଧଃ ପ୍ରସଜ୍ୟେତ । କଥମ୍ ? ଔତ୍ପତ୍ତିକଂ ହି ଶବ୍ଦସ୍ୟାର୍ଥେନ ସମ୍ବନ୍ଧମାଶ୍ରିତ୍ୟ 'ଅନପେକ୍ଷତ୍ୱାତ୍' ଇତି ବେଦସ୍ୟ ପ୍ରାମାଣ୍ୟଂ ସ୍ଥାପିତମ୍ । (ଖ) ଇଦାନୀଂତୁ ବିଗ୍ରହବତୀ ଦେବତାଽଭ୍ୟୁ ପଗମ୍ୟମାନା ଯଦ୍ୟପୈଶ୍ୱର୍ଯ୍ୟ- ଯୋଗାଦ୍ୟୁଗପଦନେକକର୍ମସମ୍ବନ୍ଧୀନି ହବୀଂଷି ଭୁଞ୍ଜୀତ, ତଥାପି ବିଗ୍ରହଯୋଗାଦସ୍ମଦାଦି- ବଜ୍ଜନନମରଣବତୀ ସେତି ନିତ୍ୟସ୍ୟ ଶବ୍ଦସ୍ୟ ନିତ୍ୟେନାର୍ଥେନ ନିତ୍ୟେ ସମ୍ବନ୍ଧେ ପ୍ରତୀୟମାନେ ଯଦ୍‌ବୈଦିକେ ଶବ୍ଦେ ପ୍ରାମାଣ୍ୟଂସ୍ଥିତି, ତସ୍ୟ ବିରୋଧଃ ସ୍ୟାଦିତି ଚେତ-(ଗ) ନାୟମପ୍ୟସ୍ତି ବିରୋଧଃ । କସ୍ମାତ୍ ? ଅତଃ ପ୍ରଭାବାତ୍ । ଅତଏବ ହି ବୈଦିକାଚ୍ଛବ୍ଦାଦ୍ଦେବାଦିକଂ ଜଗତ୍ ପ୍ରଭବତି ।(ଘ) ନନୁ 'ଜନ୍ମାଦ୍ୟସ୍ୟ ଯତଃ' (ବ୍ର ସୂ. ୧-୧-୨) ଇତ୍ୟତ୍ର ବ୍ରହ୍ମପ୍ରଭବତ୍ତ୍ୱଂ ଜଗତୋଽବଧାରିତମ୍ । କଥମିହ ଶବ୍ଦପ୍ରଭବତ୍ୱମୁଚ୍ୟତେ ? ଅପି ଚ ଯଦି ନାମ ବୈଦିକା-



ଛନ୍ଦାଦସ୍ୟ ପ୍ରଭବୋଽ-ଭ୍ୟୁପଗତଃ କଥମେତାବତା ବିରୋଧଃ ଶବ୍ଦେ ପରିହୃତଃ ? (ଙ) ଯାବତା ବସବୋ ରୁଦ୍ରା ଆଦିତ୍ୟା ବିଶ୍ୱଦେବା ମରୁତ' ଇତ୍ୟେତେଽର୍ଥା ଅନିତ୍ୟା ଏବୋତ୍ପତ୍ତିମତ୍ତ୍ୱାତ୍ । ତଦନିତ୍ୟତ୍ୱେ ଚ ତଦ୍‌ବାଚିନାଂ ବୈଦିକାନାଂ ବସ୍ୱାଦିଶବ୍ଦାନାମନିତ୍ୟତ୍ୱଂ କେନ ନିବାର୍ଯ୍ୟତେ ? ପ୍ରସିଦ୍ଧ ହି ଲୋକେ ଦେବଦତ୍ତସ୍ୟ ପୁତ୍ର ଉତ୍ପନ୍ନେ ଯଜ୍ଞଦତ୍ତ ଇତି ତସ୍ୟ ନାମ କ୍ରିୟତ ଇତି । ତସ୍ମାଦ୍‌ବିରୋଧ ଏବ ଶବ୍ଦ ଇତି ଚେତ୍-

**(୨) ଭାଷାଂତର**-(କ) ଦେବତାମାନଙ୍କର ଶରୀର ସ୍ୱୀକାର କଲେ କର୍ମରେ କୌଣସି ବିରୋଧ ପ୍ରସକ୍ତ ହୋଇନପାରେ । କିନ୍ତୁ ଶବ୍ଦରେ ବିରୋଧ ହେବ । କାରଣ-ଅର୍ଥ ସହିତ ଶବ୍ଦର ଔତ୍ପତ୍ତିକ-ସ୍ୱାଭାବିକ-ନିତ୍ୟସମ୍ବନ୍ଧ ସ୍ୱୀକାର କରି । 'ଅନପେକ୍ଷତ୍ୱାତ୍' (ପ୍ରମାଣାନ୍ତର ଅପେକ୍ଷା ନ ହେଲେ) ଏହିପ୍ରକାର ବେଦସ୍ତପ୍ରାମାଣ୍ୟ ସ୍ଥାପନ କରାଯାଇଅଛି ।

(ଖ) ଦେବତାର ଶରୀର ସ୍ୱୀକାର କରିଜାଣି ମଧ ଯଦ୍ୟପି ଐଶ୍ୱର୍ଯ୍ୟର ଯାଗଦ୍ୱାରା ଯୁଗପତ୍ ଅନେକକର୍ମସମ୍ବନ୍ଧୀ ହବିଷ୍ୟକୁ ଗ୍ରହଣ କରାଯାଏ, ତଥାପି ଶରୀର ସହ ସମ୍ବନ୍ଧ ରଖିଲେ ଆମ୍ଭମାନଙ୍କ ଭଳି ସେମାନେ ଜନ୍ମମରଣଶୀଳ ହୋଇଯିବେ, ତେଣୁ ନିତ୍ୟଶଢର ନିତ୍ୟ ଅର୍ଥ ସହିତ ନିତ୍ୟସମ୍ବନ୍ଧ ପ୍ରତୀୟମାନ ହେଲେ ବୈଦିକ ଶବ୍ଦରେ ପ୍ରମାଣାନ୍ତର ଅନପେକ୍ଷତ୍ୱରୂପ-ପ୍ରାମାଣ୍ୟ ସ୍ଥାପନ ହୋଇଛି- ଏହାର ବିରୋଧ ହୋଇଯିବ ।

(ଗ) ଏହା ଯଦି କହୁ, ତେବେ ମଧ ବିରୋଧ ନୁହେଁ । କାରଣ-ଏହାଦ୍ୱାରା ଦେବତାମାନଙ୍କର ପ୍ରଭବ ହୁଏ । ଏହାଦ୍ୱାରା ଅର୍ଥାତ୍ ବୈଦିକଶବ୍ଦଦ୍ୱାରା ମଧ ଦେବାଦି ଜଗତ୍ ଉତ୍ପନ୍ନ ହୁଏ ।

(ଘ) ପରନ୍ତୁ 'ଜନ୍ମାଦ୍ୟସ୍ୟ ଯତଃ' ଏହି ସୂତ୍ରରେ ସଂସାରର ଉତ୍ପତ୍ତି ବ୍ରହ୍ମଠାରୁ ବୋଲି କୁହାଯାଇଛି । କିନ୍ତୁ ଏଠାରେ ଶବ୍ଦଠାରୁ ସଂସାରର ଉତ୍ପତ୍ତିବୋଲି କିପରି କୁହାଯାଇଛି ?

(ଙ) ତେବେ ଯେତେବେଳେ ବସୁ, ରୁଦ୍ର, ଆଦିତ୍ୟ ବିଶ୍ୱଦେବ ଏବଂ ମରୁଦ୍‌ଗଣ ଏହି ପଦଗୁଡ଼ିକ ଉତ୍ପତ୍ତିଶୀଳ ହେବାରୁ ଅନିତ୍ୟ ହୁଅନ୍ତି । ପୁନଶ୍ଚ ବୈଦିକ ଶବ୍ଦଦ୍ୱାରା ସଂସାରର ଉତ୍ପତ୍ତି ବୋଲି ଯଦି ସ୍ୱୀକାର କରାଯାଏ, ତେବେ ଏହି ଶବ୍ଦ ଦ୍ୱାରା ଶବ୍ଦରେ ବିରୋଧ ପରିହାର କିପରି ହୁଏ ? ବସୁଆଦିର ଅନିତ୍ୟ ହେଲେ ତାହାର ବାଚକ 'ବୈଦିକ' ଆଦିଶବ୍ଦର ଅନିତ୍ୟତ୍ୱ କିଏ ନିବାରଣ କରିବ ? ସଂସାରରେ ଦେବଦତ୍ତର ପୁତ୍ର ହେଲେ ତାହାର ନାମ ଯଜ୍ଞଦତ୍ତ ରଖାଯାଏ ବୋଲି ପ୍ରୟୋଗ ଅଛି । ତେଣୁ ଶବ୍ଦରେ ଏହା ବିରୋଧ ।

(୩) ମୂଳ-(କ) ନ ଗବାଦିଶବ୍ଦାର୍ଥସମ୍ବନ୍ଧନିତ୍ୟତ୍ୱଦଶ ନାତ୍ । ନହି ଗବାଦିବ୍ୟକ୍ତୀନାମୁତ୍ପତ୍ତିମତ୍ତ୍ୱେ ତଦାକୃତୀନାମପ୍ୟୁତ୍ପତ୍ତିମତ୍ତ୍ୱଂ ସ୍ୟାତ୍ । ଦ୍ରବ୍ୟଗୁଣ କର୍ମଣାଂ ହି ବ୍ୟକ୍ତୟ ଏବୋତ୍ପଦ୍ୟନ୍ତେ, ନାକୃତୟଃ । (ଖ) ଆକୃତିଭିଶ୍ଚ ଶବ୍ଦାନାଂ ସମ୍ବନ୍ଧଃ, ନ ବ୍ୟକ୍ତିଭିଃ, ବ୍ୟକ୍ତୀନାମାନନ୍ତ୍ୟାତ୍ ସମ୍ବନ୍ଧଗ୍ରହଣାନୁପପତ୍ତେଃ । ବ୍ୟକ୍ତିଷୂତ୍ପଦ୍ୟମାନାସ୍ୱାପ୍ୟାକୃତୀନାଂ ନିତ୍ୟତ୍ୱାନ୍ନ ଗବାଦିଶବ୍ଦେଷୁ କଶ୍ଚିଦ୍ ବିରୋଧୋ ଦୃଶ୍ୟତେ । (ଗ) ତଥା ଦେବାଦିବ୍ୟକ୍ତି ପ୍ରଭାବାଭ୍ୟୁପଗମେଽପ୍ୟାକୃତି ନିତ୍ୟତ୍ୱାନ୍ନ କଶ୍ଚଦ୍ୱସ୍ୱାଦିଶବ୍ଦେଷୁ ବିରୋଧ ଇତି ଦ୍ରଷ୍ଟବ୍ୟମ୍ । (ଘ) ଆକୃତିବିଶେଷସ୍ତୁ ଦେବାଦୀନାଂ ମନ୍ତ୍ରାର୍ଥବାଦାଦିଭ୍ୟୋ ବିଗ୍ରହବତ୍ତ୍ୱା-ଦ୍ୟବଗମାଦବଗନ୍ତବ୍ୟଃ । ସ୍ଥାନବିଶେଷସମ୍ବନ୍ଧନିମିତ୍ତାଶ୍ଚେନ୍ଦ୍ରାଦିଶବ୍ଦାଃ ସେନାପତ୍ୟା-ଦିଶବ୍ଦବତ୍ । ତତଶ୍ଚ ଯୋ ଯସ୍ତତ୍ତତ୍ ସ୍ଥାନମଧିକରୋତି ସ ସ ଇନ୍ଦ୍ରାଦିଶବ୍ଦୈରଭିଧୀୟତ ଇତି ନ ଦୋଷୋ ଭବତି ।

(୩) ଭାଷାଂତର- (କ) ଏହିପ୍ରକାର କହିବା ଠିକ୍ ନୁହେଁ । କାରଣ-ଗୋପ୍ରଭୃତି ଶବ୍ଦ ଓ ଅର୍ଥର ସମ୍ବନ୍ଧ ନିତ୍ୟ ବୋଲି ଜଣାପଡ଼େ । ଗୋ ଆଦି ବ୍ୟକ୍ତିର ଉତ୍ପତ୍ତି ହେଲେ ସେହି ଆକୃତି (ଜାତି)ର ଉତ୍ପତ୍ତି ହୁଏ ନାହିଁ । ଦ୍ରବ୍ୟ, ଗୁଣ ଓ କର୍ମ ଏହି ତିନୋଟି ବ୍ୟକ୍ତିର ଉତ୍ପତ୍ତି ହୁଏ, କିନ୍ତୁ ଆକୃତିର ନୁହେଁ ।

(ଖ) ଶବ୍ଦର ସମ୍ବନ୍ଧ ଆକୃତିର ସହିତ ହୁଏ । କାରଣ-ବ୍ୟକ୍ତି ହିଁ ଅନନ୍ତ । ତେଣୁ ଏହା ସହିତ ଶବ୍ଦଗୁଡ଼ିକର ସମ୍ବନ୍ଧ ଗ୍ରହଣ ହୁଏ ନାହିଁ । ବ୍ୟକ୍ତିଗୁଡ଼ିକ ଉତ୍ପଦ୍ୟମାନ ହେଲେ ମଧ୍ୟ ଆକୃତି ନିତ୍ୟ ହେବାରୁ 'ଗୋ' ଶବ୍ଦାଦିରେ କୌଣସି ବିରୋଧ ଦେଖାଯାଏ ନାହିଁ ।

(ଗ) ଏହି ପ୍ରକାର ଦେବାଦିବ୍ୟକ୍ତିର ଉତ୍ପତ୍ତି ସ୍ୱୀକାର କଲାପରେ ଆକୃତିର ନିତ୍ୟ ହେଲେ 'ବସୁ' ଆଦି ଶବ୍ଦରେ କୌଣସି ବିରୋଧ ହୁଏ ନାହିଁ ବୋଲି ଜାଣିବା ଉଚିତ୍ ।

(ଘ) ମନ୍ତ୍ର ଅର୍ଥ ବାଦାଦିରେ ଦେବତାମାନଙ୍କର ଶରୀରଧାରଣାଦିର ଅବଗତ ହେଲେ ଏହାର ଆକୃତି ବିଶେଷ ମଧ୍ୟ ହୁଏ ବୋଲି ଜାଣିବା ଉଚିତ୍ । ସେନାପତି ଇତ୍ୟାଦିଶବ୍ଦର ସମାନସ୍ଥାନବିଶେଷର ସମ୍ବନ୍ଧଦ୍ୱାରା ଇନ୍ଦ୍ରାଦିଶବ୍ଦ ପ୍ରବୃତ୍ତ ହୁଏ । ତେଣୁ ଯାହା ଯାହା ସେହି ସ୍ଥାନ ଉପରେ ଆରୂଢ଼ ହୁଏ, ସେ ଇନ୍ଦ୍ରାଦି ଶବ୍ଦ ଦ୍ୱାରା କୁହାଯାଇଛି । ତେଣୁ କୌଣସି ଦୋଷ ନାହିଁ ।

(୪) ମୂଳ-(କ) ନ ଚେଦଂ ଶବ୍ଦପ୍ରଭବତ୍ତ୍ୱଂ ବ୍ରହ୍ମପ୍ରଭବତ୍ତ୍ୱବଦୁ ପାଦାନକାରଣାଭିପ୍ରାୟେଣୋଚ୍ୟତେ । କଥଂତର୍ହି ? ସ୍ଥିତେ ବାଚକାତ୍ମନା ନିତ୍ୟେ ଶବ୍ଦେ ନିତ୍ୟାର୍ଥସମ୍ବନ୍ଧିନି ଶବ୍ଦବ୍ୟବହାରଯୋଗ୍ୟାର୍ଥବ୍ୟକ୍ତି ନିଷ୍ପତ୍ତିଃ 'ଅତଃ ପ୍ରଭବ' ଇତ୍ୟୁଚ୍ୟତେ । (ଖ) କଥଂ

ପୁନରବଗମ୍ୟତେ ଶବ୍ଦାତ୍ ପ୍ରଭବତି ଜଗଦିତି ? ପ୍ରତ୍ୟକ୍ଷାନୁମାନାଭ୍ୟାମ୍ । ପ୍ରତ୍ୟକ୍ଷଂ ଶ୍ରୁତିଃ, ପ୍ରାମାଣ୍ୟଂ ପ୍ରତ୍ୟନପେକ୍ଷତ୍ୱାତ୍ । ଅନୁମାନଂ ସ୍ମୃତିଃ ପ୍ରାମାଣ୍ୟଂ ପ୍ରତି ସାପେକ୍ଷ୍ୟତ୍ୱାତ୍ । (ଗ) ତେ ହି ଶବ୍ଦପୂର୍ବାଂ ସୃଷ୍ଟି ଦର୍ଶୟତଃ- 'ଏତ ଇତି ବେ ପ୍ରଜାପତିର୍ଦେବାନ ସୃଜତାସ୍ରଗ୍ରମିତି ମନୁଷ୍ୟାନିନ୍ଦବ ଇତି ପିତୃସ୍ତିରଃ ପବିତ୍ରମିତି ଗ୍ରହନାଶବ ଇତି ସ୍ତୋତ୍ରଂ ବିଶ୍ୱାନୀତି ଶସ୍ତ୍ରମଭିସୌଭଗେତ୍ୟନ୍ୟାଃ ପ୍ରଜାଃ' ଇତି ଶ୍ରୁତିଃ । (ଘ) ତଥାଽନ୍ୟତ୍ରାପି 'ସ ମନସା ବାଚଂ ମିଥୁନଂ ସମଭବତ୍', (ବୃ ୧-୨-୪) ଇତ୍ୟାଦିନା ତତ୍ର ତତ୍ର ଶବ୍ଦପୂର୍ବିକା ସୃଷ୍ଟିଃ ଶ୍ରାବ୍ୟତେ ।

**(୪) ଭାଷାଂତର-** (କ) ଏହି ଶବ୍ଦ ପ୍ରଭବତ୍ୱ ବ୍ରହ୍ମପ୍ରଭବତ୍ୱ ଭଳି ଉପାଦାନ କାରଣତ୍ୱର ଅଭିପ୍ରାୟ ଦ୍ୱାରା କୁହାଯାଇନାହିଁ । ତେବେ କିପରି ? ନିତ୍ୟ ଅର୍ଥ ସହିତ ସମ୍ବନ୍ଧ ରଖିଲେ ଯଦି ନିତ୍ୟଶବ୍ଦ, ବାଚକରୂପରେ ରହେ, ତେବେ ମଧ୍ୟ ଶବ୍ଦ ବ୍ୟବହାର ଯୋଗ୍ୟ-ଅର୍ଥବ୍ୟକ୍ତିର ନିଷ୍ପତ୍ତି ହୁଏ । ଏହିପ୍ରକାର ଅଭିପ୍ରାୟ ଦ୍ୱାରା ଶବ୍ଦରୁ ପ୍ରଭବ (ଉତ୍ପତ୍ତି) ହୁଏ ବୋଲି କୁହାଯାଇଛି ।

(ଖ) କିନ୍ତୁ ଶବ୍ଦଦ୍ୱାରା ସଂସାର କିପରି ଉତ୍ପନ୍ନ ହୁଏ ବୋଲି କୁହାଯାଇଛି । ପ୍ରତ୍ୟକ୍ଷ ଏବଂ ଅନୁମାନଦ୍ୱାରା । ଶ୍ରୁତି ହିଁ ପ୍ରତ୍ୟକ୍ଷ, କାରଣ-ସେ ନିଜେ ପ୍ରାମାଣ୍ୟ-ପ୍ରତି କୌଣସି ପ୍ରମାଣକୁ ଅପେକ୍ଷା କରେନାହିଁ । ଅନୁମାନ ହିଁ ସ୍ମୃତି । କାରଣ-ସେ ନିଜେ ପ୍ରମାଣତା ପାଇଁ ମୂଳଭୂତଶ୍ରୁତିକୁ ଅପେକ୍ଷା କରେ ।

(ଗ) ଏହି ଦୁଇଟି ଶବ୍ଦପୂର୍ବକ ସୃଷ୍ଟିକୁ ଦେଖାଏ । 'ଏତେ ଏହି ପଦଦ୍ୱାରା ଦେବତାମାନଙ୍କୁ ସ୍ମରଣ କରି, ପ୍ରଜାପତି ଦେବାର 'ଅସ୍ରଗ୍ରମ୍' ଏହି ପଦଦ୍ୱାରା ମନୁଷ୍ୟଙ୍କୁ ସ୍ମରଣ କରି, ମନୁଷ୍ୟର 'ଆଶବ' ପଦଦ୍ୱାରା ସ୍ତୋତ୍ରର ସ୍ମରଣ କରି, ସ୍ତୋତ୍ରର 'ବିଶ୍ୱାନି' ପଦଦ୍ୱାରା ଶସ୍ତ୍ରର ସ୍ମରଣ କରି, ଶସ୍ତ୍ରର 'ଅଭିସୌଭଗା', ଏହି ପଦ ଦ୍ୱାରା ଅନ୍ୟ ପ୍ରଜାମାନଙ୍କୁ ସ୍ମରଣ କରି, ଅନ୍ୟପ୍ରଜାର ସୃଷ୍ଟିର' ଏହି ବେଦବାକ୍ୟ ।

(ଘ) ଏହି ପ୍ରକାର ଅନ୍ୟସ୍ଥାନରେ ମଧ୍ୟ 'ଏହି ପ୍ରଜାପତି ବେଦତ୍ରୟୀରୂପା, ବାଣୀର ଦ୍ୱନ୍ଦ୍ୱଭାବର ଭାବନାର ଅର୍ଥାତ୍ ମନଦ୍ୱାରା ବେଦକ୍ରୟର ଆଲୋଚନାର ଇତ୍ୟାଦି ଦ୍ୱାରା କେତେକ ସ୍ଥାନରେ ଶବ୍ଦପୂର୍ବକ ସୃଷ୍ଟିର ଶ୍ରବଣ କରାଏ । ଏହି ହିଁ ପ୍ରତିପାଦନ କରେ ।

(୫) ମୂଳ-(କ) ସ୍ମୃତିରପି-ଅନାଦିନିଧନା ନିତ୍ୟା ବାଗୁସୃଷ୍ଟା ସ୍ୱଂୟଂଭୁବା । ଆଦୌ ବେଦମୟୀ ଦିବ୍ୟା ଯତଃ ସର୍ବାଃ ପ୍ରବୃତ୍ତୟଃ', (ମ.ଭା.ଶା.ପ ୨୩୩-୨୪) ଇତି । ଉତ୍ସର୍ଗୋଽପ୍ୟଂ ବାଚଃ ସଂପ୍ରଦାପ୍ରବର୍ତ୍ତନାମ୍ନକୋ ଦ୍ରଷ୍ଟବ୍ୟଃ', ଅନାଦିନିଧନାୟା ଅନ୍ୟାଦୃଶ୍ୟସ୍ୟୋତ୍ସର୍ଗସ୍ୟାସମ୍ଭବାତ୍ । (ଖ) ତଥା-'ନାମ ରୂପ ଚ ଭୂତାନାଂ, କର୍ମଣାଂ ଚ

ପ୍ରବର୍ତ୍ତନମ୍ । ବେଦଶବ୍ଦେଭ୍ୟ ଏବାଦୌ ନିର୍ମମେ ସ ମହେଶ୍ୱରଃ', (ମନୁ ୧-୨୯) 'ସ ବେଷାଂ ତୁ ସ ନାମାନି, କର୍ମାଣି ଚ ପୃଥକ୍ ପୃଥକ୍ । ବେଦଶବ୍ଦେଭ୍ୟ ଏବାଦୌ, ପୃଥକ୍ ସଂସ୍ଥାଶ୍ଚ ନିର୍ମମେ । (ଗ) ଅପିଚ ଚିକୀର୍ଷିତମର୍ଥମନୁତିଷ୍ଠଂସ୍ତସ୍ୟ ବାଚକଂ ଶବ୍ଦଂ ପୂର୍ବଂ ସ୍ମୃତ୍ୱା ପଶ୍ଚାତ୍ତମର୍ଥମନୁତିଷ୍ଠତୀତି ସର୍ବେଷାଂ ନଃ ପ୍ରତ୍ୟକ୍ଷମେତତ୍ । ତଥାପ୍ରଜାପତେରପି ସ୍ରଷ୍ଟୁଃ ସୃଷ୍ଟେଃ ପୂର୍ବଂ ବୈଦିକାଃ ଶବ୍ଦା ମନସି ପ୍ରାଦୁର୍ବଭୁବୁଃ, ପଶ୍ଚାତ୍ତଦନୁଗତାନାର୍ଥାନ୍ ସସର୍ଜେତି ଗମ୍ୟତେ । (ଘ) ତଥା ଚ ଶ୍ରୁତିଃ 'ସଭୂରିତ ବ୍ୟାବହରତ୍ ସଃ ଭୂମିମସୃଜତ', (ତୈ.ବ୍ରା ୨।୨।୪।୨) ଇତ୍ୟେବମାଦିକା ଭୂରାଦିଶବ୍ଦେଭ୍ୟ ଏବ ମନସି ପ୍ରାଦୁର୍ଭୂତେଭ୍ୟୋ ଭୂରାଦିଲୋକାନ୍‌ସୃଷ୍ଟାନ୍ ଦର୍ଶୟତି ।

**(୫) ଭାଷାଂତର**-(କ) 'ସୃଷ୍ଟିର ଆରମ୍ଭରେ ସ୍ୱୟଂଭୂଉ ଅନାଦି, ଅନନ୍ତ, ନିତ୍ୟ ଏବଂ ଦିବ୍ୟ ବେଦମୟୀ ବାଣୀକୁ ଉତ୍ସର୍ଗ-ଅଭିବ୍ୟକ୍ତ କରିଛନ୍ତି । ଯଦ୍ୱାରା ଅନ୍ୟ ସମ୍ପୂର୍ଣ୍ଣ ପ୍ରବୃତ୍ତିଗୁଡ଼ିକ ଜାତ ହେଲେ' । ଏହି ସ୍ମୃତି ମଧ୍ୟ ଅଛି । ବାଣୀର ଏହି ଉତ୍ସର୍ଗ (ଉତ୍ପତ୍ତି) ମଧ୍ୟ ଗୁରୁଶିଷ୍ୟ ପରମ୍ପରା ଦ୍ୱାରା ଅଧ୍ୟୟନ ରୂପ ମଧ୍ୟ ସମ୍ପ୍ରଦାୟର ପରମ୍ପରା ରୂପକୁ ବୁଝାଏ, କାରଣ-ଅନାଦି ଓ ହାନନ୍ତବାଣୀର ଅନ୍ୟପ୍ରକାରଠାରୁ ଉତ୍ପନ୍ନ ହେବା ସମ୍ଭବ ନୁହେଁ ।

(ଖ) ତଥା 'ସେହି ମହେଶ୍ୱର ସୃଷ୍ଟିର ଆରମ୍ଭରେ ବୈଦିକଶବ୍ଦଦ୍ୱାରା ଭୂତଗୁଡ଼ିକର ନାମ, ରୂପ ଏବଂ ସତ୍‌କର୍ମର ଅନୁଷ୍ଠାନ ପ୍ରବୃତ୍ତି ନିର୍ମାଣଉତ୍ପନ୍ନ କଲେ' । ଏବଂ 'ଏହାର ଆରମ୍ଭରେ ସମ୍ପୂର୍ଣ୍ଣ ଭୂତଗୁଡ଼ିକର ପୃଥକ ନାମ, ରୂପ, କର୍ମ ଏବଂ ଅବସ୍ଥାର ନିର୍ମାଣ ବେଦଶବ୍ଦଦ୍ୱାରା ହେଲା', ଏହି ସ୍ମୃତିଗୁଡ଼ିକ ବେଦଶବ୍ଦ ଦ୍ୱାରା ସୃଷ୍ଟି ଦେଖାଏ ।

(ଗ) ତେଣୁ ଆମ୍ଭର ସବୁ ପ୍ରତ୍ୟକ୍ଷ ଅନୁଭବ ଯେ- ଯେତେବେଳେ କୌଣସି ପୁରୁଷ କୌଣସି ଅଭୀଷ୍ଟବସ୍ତୁକୁ ନିର୍ମାଣ କରିବାକୁ ଚାହେଁ, ତେବେ ସେ ପ୍ରଥମେ ସେହି ବସ୍ତୁର ଶବ୍ଦବାଚକକୁ ମନେପକାଇ ପଶ୍ଚାତ୍ ସେହି ବସ୍ତୁକୁ ନିର୍ମାଣ କରେ । ଏହି ପ୍ରକାର ସ୍ରଷ୍ଟା ପ୍ରଜାପତି ମନରେ ମଧ୍ୟ ସୃଷ୍ଟିର ପୂର୍ବରୁ ପ୍ରଥମେ ବୈଦିକ ଶବ୍ଦ ପ୍ରାଦୁର୍ଭାବ ହୋଇ ତାହାର୍ ଅନୁଗତ ଅର୍ଥର ରଚନା କରେ-ଏହିପ୍ରକାର ଜ୍ଞାନ ହୁଏ ।

(ଘ) ପୁନଶ୍ଚ 'ଏହାଦ୍ୱାରା 'ଭୂ' ଏହିପ୍ରକାର ଉଚ୍ଚାରଣ କରି ପୃଥିବୀ ସୃଷ୍ଟି କରେ' । ଇତ୍ୟାଦି ଶ୍ରୁତିମନରେ ପ୍ରାଦୁର୍ଭାବ୍ ହୋଇ 'ଭୂ' ଇତ୍ୟାଦି ଶବ୍ଦଦ୍ୱାରା ଉତ୍ପନ୍ନ ହୋଇ ଭୂଆଦି ଲୋକକୁ ଦେଖାଏ ।

(୭) ମୂଳ-(କ) କିମାତ୍ମକଂ ପୁନଃ ଶବ୍ଦମଭିପ୍ରେତ୍ୟେଦଂ ଶବ୍ଦପ୍ରଭବତ୍ୱ-ମୁଚ୍ୟତେ ? ସ୍ଫୋଟମିତ୍ୟାହା ବର୍ଣ୍ଣପକ୍ଷେ ହି ତେଷାମୁତ୍ପନ୍ନପ୍ରଧ୍ୱଂସିତ୍ୱାନ୍ନିତ୍ୟେଭ୍ୟଃ ଶବ୍ଦେଭ୍ୟୋ ଦେବାଦିବ୍ୟକ୍ତୀନାଂ ପ୍ରଭବ ଇତ୍ୟନୁପପନ୍ନଂସ୍ୟାତ୍ । (ଖ) ଉତ୍ପନ୍ନଧ୍ୱଂସିନଶ୍ଚ ବର୍ଣ୍ଣା, ପ୍ରତ୍ୟୁଚ୍ଚାରଣମନ୍ୟଥା ଚାନ୍ୟଥା ଚ ପ୍ରତୀୟମାନତ୍ୱାତ୍ । ତଥା ହି ଅଦୃଶ୍ୟମାନୋଽପି ପୁରୁଷବିଶେଷୋଽଧ୍ୟୟନଧ୍ୱନିଶ୍ରବଣାଦେବ ବିଶେଷତୋ ନିର୍ଦ୍ଧାର୍ଯ୍ୟତେ-ଦେବଦତ୍ତୋଽୟମଧୀତେ, ଯଜ୍ଞଦତ୍ତୋଽୟମଧୀତେ ଇତି । (ଗ) ନ ଚାୟଂ ବର୍ଣ୍ଣବିଷୟୋଽନ୍ୟଥାତ୍ୱପ୍ରତ୍ୟୟୋ ମିଥ୍ୟାଜ୍ଞାନଂ ବାଧକପ୍ରତ୍ୟୟାଭାବାତ୍ । ନ ଚ ବର୍ଣ୍ଣେଭ୍ୟୋଽର୍ଥାବଗତିର୍ଯୁକ୍ତା । ନ ହ୍ୟେକୈକୋ ବର୍ଣ୍ଣୋଽର୍ଥପ୍ରତ୍ୟାୟୟେତ୍ ବ୍ୟଭିଚାରାତ୍ । ନ ଚ ବର୍ଣ୍ଣସମୁଦାୟପ୍ରତ୍ୟୟୋଽସ୍ତି କ୍ରମବତ୍ତ୍ୱାଦ୍‌ବର୍ଣ୍ଣାନାମ୍ ।

**(୬) ଭାଷାଂତର-** (କ) ପୁନଶ୍ଚ ଏହିଶବ୍ଦ କିଦୃଶ ବୋଲି ଆକାଂକ୍ଷା କରି ଶବ୍ଦପ୍ରଭବତ୍ୱ ବୋଲି କହୁଅଛି କି ? ଏହା ସ୍ଫୋଟମ୍ବକ କି ବର୍ଣ୍ଣାତ୍ମକ ? (ବୈୟାକରଣମାନଙ୍କ ମତରେ ଏହା ସ୍ଫୋଟାତ୍ମକ) ଯଦି ବର୍ଣ୍ଣାତ୍ମକ ଶବ୍ଦଦ୍ୱାରା ସୃଷ୍ଟି ବୋଲି ସ୍ୱୀକାର କରାଯାଏ, ତେବେ ତାହାର ଉତ୍ପନ୍ନ ଏବଂ ନଷ୍ଟ ହେବାରୁ ନିତ୍ୟଶବ୍ଦ ଦ୍ୱାରା ଦେବାଦି ବ୍ୟକ୍ତି ଉତ୍ପନ୍ନ ହୁଏ ବୋଲି କହିବା ଠିକ୍ ହେବ ନାହିଁ ।

(ଖ) ବର୍ଣ୍ଣ ଉତ୍ପନ୍ନ ଓ ବିନଷ୍ଟ ହୁଏ । କାରଣ-ପ୍ରତ୍ୟେକ ଉଚ୍ଚାରଣରେ ଏମାନେ ଭିନ୍ନ ଭିନ୍ନ ପ୍ରକାରେ ପ୍ରତୀତ ହୁଅନ୍ତି, ଯେପରିକି ଅଧ୍ୟୟନଧ୍ୱନିର ଶ୍ରବଣ ଦ୍ୱାରା ଅଦୃଶ୍ୟମାନ ପୁରୁଷବିଶେଷ ମଧ୍ୟ ବିଶେଷରୂପରେ ନିର୍ଦ୍ଧାରିତ ହୁଏ, ଯଥା-ଏହି ଦେବଦତ୍ତ ଅଧ୍ୟୟନ କରେ, ଏହି ଯଜ୍ଞଦତ୍ତ ଅଧ୍ୟୟନ କରେ ।

(ଗ) ପୁଣି ବର୍ଣ୍ଣବିଷୟକ ଏହି ଅନ୍ୟଥାତ୍ୱ (ଭିନ୍ନ) ପ୍ରତୀତି ମିଥ୍ୟାଜ୍ଞାନ ନୁହେଁ, କାରଣ-ଏହା କୌଣସି ବାଧକ ଜ୍ଞାନ ନାହିଁ । ବର୍ଣ୍ଣଦ୍ୱାରା ମଧ୍ୟ ଅର୍ଥଜ୍ଞାନ ଯୁକ୍ତ ହୁଏ ନାହିଁକି ? କାରଣ-(୧) ଏଠାରେ ବ୍ୟଭିଚାର ହେଉଛି, (୨) ତଥା ବର୍ଣ୍ଣସମୁଦାୟର ମଧ୍ୟ ଅର୍ଥ ପ୍ରତ୍ୟାୟକ ହୁଏ ନାହିଁ, କାରଣ-ବର୍ଣ୍ଣ କ୍ରମଯୁକ୍ତ ନୁହେଁ ।

(୭) ମୂଳ-(କ) ପୂର୍ବପୂର୍ବ ବର୍ଣ୍ଣାନୁଭବଜନିତସଂସ୍କାରସହିତୋଽନ୍ତ୍ୟୋ ବର୍ଣ୍ଣୋଽର୍ଥଂ ପ୍ରତ୍ୟାୟୟିଷ୍ୟତୀତି ଯଦୁଚ୍ୟେତ । ତନ୍ନ । ସମ୍ବନ୍ଧ ଗ୍ରହଣାପେକ୍ଷୋ ହି ଶବ୍ଦଃ ସ୍ୱୟଂ ପ୍ରତୀୟମାନୋଽର୍ଥଂ ପ୍ରତ୍ୟୟୟେତ୍, ଧୂମାଦିବତ୍ । (ଖ) ନ ଚ ପୂର୍ବପୂର୍ବବର୍ଣ୍ଣାନୁଭବଜନିତସଂସ୍କାରସହିତସ୍ୟାନ୍ତ୍ୟବର୍ଣ୍ଣସ୍ୟ ପ୍ରତୀତିରସ୍ତି, ଅପ୍ରତ୍ୟକ୍ଷତ୍ୱାତ୍‌ସଂସ୍କାରାଣାମ୍ । (ଗ)

କାର୍ଯ୍ୟପ୍ରତ୍ୟାୟିନୈଃ ସଂସ୍କାରୈଃ ସହିତୋଽନ୍ତ୍ୟୋ ବର୍ଣ୍ଣୋଽର୍ଥଂ ପ୍ରତ୍ୟାୟୟିଷ୍ୟତୀତ ଚେତ୍, (ଘ) ନ, ସଂସ୍କାରକାର୍ଯ୍ୟସ୍ୟାପି ସ୍ମରଣସ୍ୟ କ୍ରମବର୍ତ୍ତିତ୍ୱାତ୍ । ତସ୍ମାତ୍ ସ୍ଫୋଟ ଏବ ଶବ୍ଦଃ । (ଙ) ସ ଚୈକୈକବର୍ଣ୍ଣପ୍ରତ୍ୟାହିତସଂସ୍କାରବୀଜେଽନ୍ତ୍ୟବର୍ଣ୍ଣ ପ୍ରତ୍ୟୟ ଜନିତପରିପାକେ ପ୍ରତ୍ୟୟିନ୍ୟେକ ପ୍ରତ୍ୟୟବିଷୟତୟା ଝଟିତି'ବଭାସତେ ।

**(୭) ଭାଷାଂତର**-(କ) ଯଦି ଏପରି କହ ଯେ-ପୂର୍ବପୂର୍ବ-ବର୍ଣ୍ଣଗୁଡ଼ିକର ଅନୁଭବଜନ୍ୟ ସଂସ୍କାର ସହିତ ଅନ୍ତ୍ୟବର୍ଣ୍ଣ ଅର୍ଥର ବୋଧ କରାଇବ, ତେବେ ଏହା ଠିକ୍ ନୁହେଁ । କାରଣ-ଶବ୍ଦ ସମ୍ବନ୍ଧ ଗ୍ରହଣର ଅପେକ୍ଷାରେ ରଖି ସେ ଶବ୍ଦ ଧୂମାଦିର ସମାନ ସ୍ୱୟଂ ପ୍ରତୀୟମାନ ହୋଇ ଅର୍ଥର ବୋଧ-କରାଏ ।

(ଖ) ପୂର୍ବପୂର୍ବ ବର୍ଣ୍ଣର ଅନୁଭବଜନ୍ୟ ସଂସ୍କାର ସହିତ ଅନ୍ତିମବର୍ଣ୍ଣର ପ୍ରତୀତି ହୁଏ ନାହିଁ, କାରଣ-ସଂସ୍କାର ଅପ୍ରତ୍ୟକ୍ଷ ଅଟେ ।

(ଗ) ଯଦି କୁହାଯାଏ ଯେ-ଶାବ୍ଦବୋଧରୂପକାର୍ଯ୍ୟଦ୍ୱାରା ଜ୍ଞାପିତ ସଂସ୍କାର ଦ୍ୱାରା ଯୁକ୍ତ ଅନ୍ୟବର୍ଣ୍ଣ ଅର୍ଥର ପ୍ରତୀତି କରାଇବ ଏହା ଠିକ୍ ନୁହେଁ ।

(ଘ) କାରଣ-ସଂସ୍କାରର କାର୍ଯ୍ୟ ରୂପ ସ୍ମରଣ ମଧ୍ୟ କ୍ରମଯୁକ୍ତ ଅଟେ । ଏହି ପ୍ରକାର ବର୍ଣ୍ଣଗୁଡ଼ିକରେ ଅର୍ଥ ପ୍ରତୀତିର ଅଭାବ ହେଲେ ସ୍ଫୋଟ ହିଁ ଶବ୍ଦ ହୁଏ ।

(ଙ) ଏକ ଏକବର୍ଣ୍ଣର ପ୍ରତୀତି ଦ୍ୱାରା ଯେଉଁଠାରେ କି ସଂସ୍କାର ରୂପବୀଜ ବପନ କରାଯାଇଅଛି' ଏବଂ ଅନ୍ତିମବର୍ଣ୍ଣର ପ୍ରତୀତି ଦ୍ୱାରା ଯେଉଁଠିକି ପରିପାକ-ଅନ୍ତିମ ସଂସ୍କାର ଉତ୍ପନ୍ନ ହୋଇଛି, ସେହି ଚିତ୍ତରେ ଏକ ପ୍ରତୀତିର ବିଷୟ ରୂପରେ ଏହି ସ୍ଫୋଟ ଶୀଘ୍ର ଅବଭାସିତ ବା ଅଭିବ୍ୟକ୍ତ ହୁଏ ।

(୮) ମୂଳ-(କ) ନ ଖଲ୍ୱୟମେକପ୍ରତ୍ୟୟୋ ବର୍ଣ୍ଣବିଷୟା ସ୍ମୃତିଃ, ବର୍ଣ୍ଣନାମନେକ-ତ୍ୱାଦେକ ପ୍ରତ୍ୟୟବିଷୟତ୍ୱାନୁପପତ୍ତେଃ । ତସ୍ୟ ଚ ପ୍ରତ୍ୟୁଚ୍ଚାରଣଂ ପ୍ରତ୍ୟଭିଜ୍ଞାୟମାନ-ତ୍ୱାନ୍ନିତ୍ୟତ୍ୱମ୍, ଭେଦପ୍ରତ୍ୟୟସ୍ୟ ବର୍ଣ୍ଣବିଷୟତ୍ୱାତ୍ । (ଖ) ତସ୍ମାନ୍ନିତ୍ୟାଚ୍ଛବ୍ଦାତ୍ ସ୍ଫୋଟରୂପା-ଦଭିଧାୟକାତ୍ କ୍ରିୟାକାରକଫଳଲକ୍ଷଣଂ ଜଗଦଭିଧେୟଭୂତଂ ପ୍ରଭବତୀତି । 'ବର୍ଣ୍ଣା ଏବ ତୁ ଶବ୍ଦ, ଇତି ଭଗବାନୁପ ବର୍ଷଃ । (ଗ) ନନୂତ୍ପନ୍ନପ୍ରଧ୍ୱଂସିତ୍ୱଂ ବର୍ଣ୍ଣାନାମୁକ୍ତମ୍, ତନ୍ନ ତ ଏବେତି ପ୍ରତ୍ୟଭିଜ୍ଞାନାତ୍ । (ଘ) ସାଦୃଶ୍ୟାତ୍ ପ୍ରତ୍ୟଭିଜ୍ଞାନଂ କେଶାଦିଷ୍ୱିବେତେ ଚେତ୍, ନ, ପ୍ରତ୍ୟଭିଜ୍ଞାନସ୍ୟ ପ୍ରମାଣାନ୍ତରେଣ ବୋଧାନୁପପତ୍ତେଃ । (ଙ) ପ୍ରତ୍ୟଭିଜ୍ଞାନ-ମାକୃତିନିମିତ୍ତମିତି ଚେତ୍, ନ ବ୍ୟକ୍ତିପ୍ରତ୍ୟଭିଜ୍ଞାନାତ୍ । (ଚ) ଯଦି ହି ପ୍ରତ୍ୟୁଚ୍ଚାରଣଂ ଗବାଦିବ୍ୟକ୍ତିବଦନ୍ୟା ଅନ୍ୟା



ବର୍ଣ୍ଣବ୍ୟକ୍ତୟଃ ପ୍ରତୀୟେରଂ ସ୍ତତ ଆକୃତିନିମିତ୍ତଂ ପ୍ରତ୍ୟଭିଜ୍ଞାନଂ ସ୍ୟାତ୍ । ନ ତ୍ୱେତଦସ୍ତି ବର୍ଣ୍ଣବ୍ୟକ୍ତୟ ଏବ ହି ପ୍ରତ୍ୟୁଚ୍ଚାରଣଂ ପ୍ରତ୍ୟଭିଜ୍ଞାୟନ୍ତେ । ଦ୍ୱିର୍ଗୋଶବ୍ଦ ଉଚ୍ଚାରିତ ଇତିହି କ୍ଷତିପତ୍ତିର୍ନ ତୁ ଦ୍ୱୌ ଗୋଶବ୍ଦାବିତି,

(୮) ଭାଷାଂତର- (କ) ଏହି ଏକ ପ୍ରତ୍ୟୟବର୍ଣ୍ଣବିଷଂୟକସ୍ମୃତି ନୁହେଁ । କାରଣ- ବର୍ଣ୍ଣ ଅନେକ ହେଲେ ଏକ ପ୍ରତ୍ୟୟର ବିଷୟ ହୁଏ ନାହିଁ । ତାହାର ପ୍ରତ୍ୟେକ ଉଚ୍ଚାରଣ ପ୍ରତ୍ୟଭିଜ୍ଞାର ବିଷୟକ ହେଲେ ନିତ୍ୟ ହୁଏ । ଭେଦପ୍ରତ୍ୟୟ କିନ୍ତୁ ବର୍ଣ୍ଣ ବିଷୟକ ହୁଏ ।

(ଖ) ତେଣୁ ସ୍ଫୋଟରୂପ ନିତ୍ୟବାଚକ ଶବ୍ଦଦ୍ୱାରା କ୍ରିୟା, କାରକ ଓ ଫଳରୂପ ଅଭିଧେୟଭୂତ ଜଗତ୍ ଉତ୍ପନ୍ନ ହୁଏ । ଭଗବାନ-ଉପବର୍ଷଙ୍କ ବଚନ-ବର୍ଣ୍ଣ ହିଁ ଶବ୍ଦ ।

(ଗ) କିନ୍ତୁ ଏଠାରେ ଏହା କୁହାଗଲା ଯେ- ବର୍ଣ୍ଣ ଉତ୍ପତ୍ତି ଓ ବିନାଶଶୀଳ ବୋଲି କହିବା ଠିକ୍ ନୁହେଁ । କାରଣ- 'ସେମାନେ ବର୍ଣ୍ଣଗୁଡ଼ିକ' ଏହି ରୂପରେ ପ୍ରତ୍ୟଭିଜ୍ଞା ହୁଏ । (ଘ) ବାଳ କାଟିଲା ପରେ ଉତ୍ପନ୍ନ ହେଉଥିବା ବାଳର ସାଦୃଶ୍ୟ ଦ୍ୱାରା ଏହା କେଶଗୁଚ୍ଛ ବୋଲି ଯେପରି ଭ୍ରମାତ୍ମକ ପ୍ରତ୍ୟଭିଜ୍ଞା ହୁଏ, ସେହିପରି ବର୍ଣ୍ଣରେ ମଧ୍ୟ ପ୍ରତ୍ୟଭିଜ୍ଞା ହୁଏ ବୋଲି ଯଦି କୁହାଯାଏ, ତେବେ ମଧ୍ୟ ତାହା ଠିକ୍ ନୁହେଁ, କାରଣ- ଏଠାରେ ପ୍ରତ୍ୟଭିଜ୍ଞାର ପ୍ରମାଣାନ୍ତରଦ୍ୱାରା ବାଧ ଅନୁପପନ୍ନ ହୁଏ ।

(ଙ) ଯଦି କୁହାଯାଏ ଯେ- ଏଠାରେ ପ୍ରତ୍ୟଭିଜ୍ଞା ଆକୃତିଜାତିନିମିତ୍ତକ ଅଟେ, ତାହା ମଧ୍ୟ ଠିକ୍ ହୋଇ ନପାରେ, କାରଣ-ସେଠାରେ ବ୍ୟକ୍ତିର ପ୍ରତ୍ୟଭିଜ୍ଞା ହୁଏ ।

(ଚ) ଯଦି ପ୍ରତ୍ୟେକ ଉଚ୍ଚାରଣରେ ଗୋ ଆଦି ବ୍ୟକ୍ତିଭଳି ଅନ୍ୟ ବର୍ଣ୍ଣର ବ୍ୟକ୍ତି ପ୍ରତୀତି ହୁଏ, ତେବେ ଆକୃତି ନିମିତ୍ତ ପ୍ରତ୍ୟଭିଜ୍ଞା ହୁଏ,-ଏପରି ଯଦି କୁହ, ତେବେ ମଧ୍ୟ ଏହା ଠିକ୍ ହୋଇନପାରେ । କାରଣ-ପ୍ରତ୍ୟେକ ଉଚ୍ଚାରଣରେ ବର୍ଣ୍ଣବ୍ୟକ୍ତି ମଧ୍ୟ ପ୍ରତ୍ୟଭିଜ୍ଞାତ ହୁଏ । ଯେପରି ଦ୍ୱିର୍ଗୋଶବ୍ଦ (ଦୁଇଥର ଗୋଶବ୍ଦ) ସ୍ଥଳରେ ଦୁଇଥର ଗୋଶବ୍ଦର ଉଚ୍ଚାରଣ କରାଯାଇଛି । କିନ୍ତୁ ଏଠାରେ ଏହା ଦୁଇଟି ଗାଈର ଉଚ୍ଚାରଣ ବୋଲି ପ୍ରତୀତି ହୁଏ ନାହିଁ ।

(୯) ମୂଳ-(କ) ନନୁ ବର୍ଣ୍ଣା ଅପ୍ୟୁଚ୍ଚାରଣଭେଦେନ ଭିନ୍ନାଃ ପ୍ରତୀୟନ୍ତେ ଦେବଦତ୍ତଯଜ୍ଞଦତ୍ତୟୋରଧ୍ୟୟନଧ୍ୱନିଶ୍ରବଣାଦେବ ଭେଦପ୍ରତୀତେରିତ୍ୟୁକ୍ତମ୍ । (ଖ) ଅତ୍ରାଭିଧୀୟତେସତି ବର୍ଣ୍ଣବିଷୟେ ନିଶ୍ଚିତେ ପ୍ରତ୍ୟଭିଜ୍ଞାନେ ସଂଯୋଗବିୟୋଗାଭି-ବ୍ୟଙ୍ଗ୍ୟତ୍ୱାଦ୍ ବର୍ଣ୍ଣାନାମଭିବ୍ୟଞ୍ଜକ ବୈଚିତ୍ର୍ୟ ନିମିତ୍ତୋଽୟଂ ବର୍ଣ୍ଣ ବିଷୟୋ ବିଚିତ୍ରଃ ପ୍ରତ୍ୟୟୋ ଯ-

ସ୍ୱରୂପନିମିତ୍ତଃ । (ଗ) ଅପି ଚ ବର୍ଣ୍ଣବ୍ୟକ୍ତି ଭେଦବାଦିନାପି ପ୍ରତ୍ୟଭିଜ୍ଞା-ନସିଦ୍ଧୟେ ବର୍ଣ୍ଣାକୃତୟଃ କଳ୍ପୟିତବ୍ୟାଃ । (ଘ) ତାସୁ ଚ ପରୋପାଧିକୋ ଭେଦପ୍ରତ୍ୟୟଃ ସ୍ୱରୂପନିମିତ୍ତଂ ଚ ପ୍ରତ୍ୟଭିଜ୍ଞାନମିତି କଳ୍ପନାଲାଘବମ୍ । (ଙ) ଏଷ ଏବ ଚ ବର୍ଣ୍ଣବିଷୟସ୍ୟ ଭେଦପ୍ରତ୍ୟୟସ୍ୟ ବାଧକଃ ପ୍ରତ୍ୟୟୋ ଯତ୍ ପ୍ରତ୍ୟଭିଜ୍ଞାନମ୍ ।

(୯) **ଭାଷାଂତର-** (କ) ପରନ୍ତୁ ଉଚ୍ଚାରଣ ଭେଦଦ୍ୱାରା ବର୍ଣ୍ଣ ଭିନ୍ନରୂପରେ ପ୍ରତୀତ ହୁଏ । କାରଣ-ଦେବଦତ୍ତ ଓ ଯଜ୍ଞଦତ୍ତର ଅଧ୍ୟୟନଧ୍ୱନି ଶୁଣିବା ଦ୍ୱାରା ଯାହା ଭେଦପ୍ରତୀତି ହୁଏ ବୋଲି କୁହାଯାଇଛି ।

(ଖ) ଏହା ଉପରେ କୁହାଯାଇଛି ଯେ- ବର୍ଣ୍ଣବିଷୟକ ପ୍ରତ୍ୟଭିଜ୍ଞାନ ନିଶ୍ଚିତ ହେଲେ (କଣ୍ଠ ତାଲୁ ଆଦି ସ୍ଥାନଗୁଡ଼ିକର ସହ କୋଷ୍ଠସ୍ଥ ବାୟୁର) ସଂଯୋଗ ଓ ବିଯୋଗ ଦ୍ୱାରା ଅଭିବ୍ୟଙ୍ଗ୍ୟ ହେବାର କାରଣ ବର୍ଣ୍ଣରେ ଅଭିବ୍ୟଞ୍ଜକ ବୈଚିତ୍ର୍ୟନିମିତ୍ତ ଏହିବର୍ଣ୍ଣ ବର୍ଣ୍ଣବିଷୟକ ବିଚିତ୍ରପ୍ରତ୍ୟୟ ପ୍ରତୀତି ହୁଏ ବୋଲି କୁହାଯାଇଛି, କିନ୍ତୁ ସ୍ୱରୂପଦ୍ୱାରା ନୁହେଁ ।

(ଗ) ପୁନଶ୍ଚ ବର୍ଣ୍ଣ ଓ ବ୍ୟକ୍ତିକୁ ଭିନ୍ନ ରୂପରେ ସ୍ୱୀକାର କରୁଥିବା ବ୍ୟକ୍ତିକୁ ମଧ୍ୟ ପ୍ରତ୍ୟଭିଜ୍ଞା ସିଦ୍ଧ ନିମିତ୍ତ ବର୍ଣ୍ଣାକୃତି ଜାତିର କଳ୍ପନା କରିବାକୁ ପଡ଼େ ଏବଂ ଉଦାତ୍ତାଦିଭେଦପ୍ରତ୍ୟୟ ତା'ଠାରେ ଅନ୍ୟ ଉପାଧି ଦ୍ୱାରା ହୁଏ-ଏହି ପ୍ରକାର ସ୍ୱୀକାର କରିବାକୁ ପଡ଼େ ।

(ଘ) ତେଣୁ ଏହା ଉତ୍ତମ ସ୍ୱୀକାର ଯେ.... ବର୍ଣ୍ଣ ବ୍ୟକ୍ତିମାନଙ୍କ ପାଖରେ ଭେଦପ୍ରତୀତି ଅନ୍ୟ ଉପାଧିଦ୍ୱାରା 'ହୁଏ ଏବଂ ପ୍ରତ୍ୟଭିଜ୍ଞା ସ୍ୱରୂପଦ୍ୱାରା ସମ୍ଭବ ହୁଏ । ତେଣୁ ଏଠାରେ କଳ୍ପନା ଲାଘବ ।

(ଙ) ଏଠାରେ ଯାହା ବର୍ଣ୍ଣବିଷୟକ ପ୍ରତ୍ୟଭିଜ୍ଞା ଅଛି, ସେ ବସ୍ତୁବିଷୟକ ଭେଦପ୍ରତ୍ୟୟର ବାଧକପ୍ରତ୍ୟୟ ଅଟେ ।

(୧୦) ମୂଳ-(କ) କଥଂ ହ୍ୟେକସ୍ମିନ୍‌କାଳେ ବହୂନାମୁଚ୍ଚାରୟତାମେକ ଏବ ସାନ୍‌ଗକାରୋ ଯୁଗପଦନେକରୂପଃ ସ୍ୟାତ୍ ? ଉଦାତ୍ତଶ୍ଚାନୁଦାତ୍ତଶ୍ଚ ସ୍ୱରିତଶ୍ଚ ସାନୁନାସିକଶ୍ଚ ନିରନୁନାସିକଶ୍ଚୋତି । ଅଥବା-ଧ୍ୱନିକୃତୋଽୟଂ ପ୍ରତ୍ୟୟଭେଦୋ ନ ବର୍ଣ୍ଣକୃତ ଇତ୍ୟଦୋଷଃ । (ଖ) କଃ ପୁନରୟଂ ଧ୍ୱନିର୍ନାମ ? ଯୋ ଦୂରାଦା-କର୍ଣ୍ଣୟତୋ ବର୍ଣ୍ଣବିବେକ ସପ୍ରତିପ୍ରାଦ୍ୟମାନସ୍ୟ କର୍ଣ୍ଣପଥମବତରତି । ପ୍ରତ୍ୟାସୀଦତଶ୍ଚ ପଟୁମୃଦୁତ୍ୱାଦିଭେଦଂ ବର୍ଣ୍ଣେଷ୍ୱାସଞ୍ଜୟତି । ତନ୍ନିବନ୍ଧନାଶ୍ଚୋଦାତ୍ତାଦୟୋ ବିଶେଷା ନ ବର୍ଣ୍ଣସ୍ୱରୂପନିବନ୍ଧନାଃ,



ବର୍ଣ୍ଣାନାଂ ପ୍ରତ୍ୟୁଚ୍ଚାରଣଂ ପ୍ରତ୍ୟଭିଜ୍ଞାୟମାନତ୍ୱାତ୍ । (ଗ) ଏବଂ ଚ ସତି ସାଲମ୍ବନା ଏବୈତେ ଉଦାତ୍ତାଦିପ୍ରତ୍ୟୟାଃ ଭବିଷ୍ୟନ୍ତି । ଇତରଥା ହି ବର୍ଣ୍ଣାନାଂ ପ୍ରତ୍ୟଭିଜ୍ଞାୟମାନାନାଂ ନିର୍ଭେଦତ୍ୱାତ୍ ସଂଯୋଗବିଭାଗକୃତା ଉଦାତ୍ତାଦି ବିଶେଷାଃ କଳ୍ପେରନ୍ । (ଘ) ସଂଯୋଗବିଭାଗାନାଂ ଚାପ୍ରତ୍ୟକ୍ଷତ୍ୱାନ୍ନ ତଦାଶ୍ରୟା ବିଶେଷା ବର୍ଣ୍ଣେଷ୍ୱଧ୍ୟବସାତୁଂ ଶକ୍ୟନ୍ତ ଇତ୍ୟତୋ ନିରାଲମ୍ବନା ଏବୈତ ଉଦାତ୍ତାଦିପ୍ରତ୍ୟୟାଃ ସ୍ୟୁଃ ।

**(୧୦) ଭାଷାଂତର**-(କ) ଏକ ସମୟରେ ବହୁତ ଲୋକଙ୍କଦ୍ୱାରା ଉଚ୍ଚାରିତ ଏକ ପ୍ରକାର ହୋଇ ଗକାର 'ଗ' ଯୁଗପତ୍ ଉଦାତ୍ତ, ଅନୁଦାତ୍ତ, ସ୍ୱରିତ, ସାନୁନାସିକ ଏବଂ ଅନନୁନାସିକଭେଦରେ ଅନେକରୂପ କେଉଁ ପ୍ରକାରରେ ହେବ ? ଅଥବା ଏହି ଭେଦ ପ୍ରତ୍ୟୟ ଧ୍ୱନିକୃତ ଅଟେ, ବର୍ଣ୍ଣକୃତ ନୁହେଁ । ତେଣୁ କୌଣସି ଦୋଷନୁହେଁ ।

(ଖ) କିନ୍ତୁ ଏହି ଧ୍ୱନିନାମ ବସ୍ତୁ କଣ ? ଦୂରରୁ ଶୁଣୁଥିବା ଓ ଭିନ୍ନଭିନ୍ନ ବର୍ଣ୍ଣକୁ ନ ଜାଣୁଥିବା ପୁରୁଷର କାନରେ ଯାହା ପ୍ରବେଶ କରେ ଏବଂ ପାଖରେ ଶୁଣିବା ପାଇଁ ପଟୁତ୍ୱ, ମୃଦୁତ୍ୱାଦିଭେଦର ବର୍ଣ୍ଣରେ ଆରୋପ କରେ, ସେ ଧ୍ୱନି ଅଟେ । ଉଦାତ୍ତାଦି ବିଶେଷ ଏହାଦ୍ୱାରା ହୁଏ, କିନ୍ତୁ ବର୍ଣ୍ଣ ସ୍ୱରୂପ ଦ୍ୱାରା ନୁହେଁ । କାରଣ- ପ୍ରତ୍ୟେକ ଉଚ୍ଚାରଣରେ ବର୍ଣ୍ଣ ପ୍ରତ୍ୟଭିଜ୍ଞାର ବିଷୟ ହୁଏ ।

(ଗ) ଏହିପରି ହେଲେ ଏହି ଉଦାତ୍ତାଦିପ୍ରତ୍ୟୟ ଅବଲମ୍ବନ ହୁଅନ୍ତି । ନଚେତ୍ ପ୍ରତ୍ୟଭିଜ୍ଞାର ବିଷୟ ଭୂତବର୍ଣ୍ଣରେ ଭେଦ ନହେଲେ ଭେଦାତ୍ତାଦି ବିଶେଷ ସଂଯୋଗବିଯୋଗ ହୁଏ ବୋଲି କଳ୍ପନା କରିବାକୁ ପଡ଼େ ।

(ଘ) ସଂଯୋଗବିଯୋଗ ଅପ୍ରତ୍ୟକ୍ଷ ହେତୁ ତଦାଶ୍ରୟ ଉଦାତ୍ତାଦି ବିଶେଷ ବର୍ଣ୍ଣରେ ଆରୋପିତ କରାଯାଏ ନାହିଁ । ତେଣୁ ଏହି ଉଦାତ୍ତାଦି ପ୍ରତ୍ୟୟ ନିରାଧାର ହୁଏ ।

(୧୧) ମୂଳ-(କ) ଅପି ଚ ନେବୈତଦଭିନିବେଷ୍ଟବ୍ୟମୁଦାତ୍ତାଦି ଭେଦେନ ବର୍ଣ୍ଣାନାଂ ପ୍ରତ୍ୟଭିଜ୍ଞାୟମାନାନାଂ ଭେଦୋଭବେଦିତି । ନ ହ୍ୟନ୍ୟସ୍ୟ ଭେଦେନାନ୍ୟସ୍ୟାଭିଦ୍ୟମାନସ୍ୟ ଭେଦୋ ଭବିତୁମର୍ହତି । (ଖ) ନ ହି ବ୍ୟକ୍ତିଭେଦେନ ଜାତିଂ ଭିନ୍ନାଂ ମନ୍ୟନ୍ତେ । ବର୍ଣ୍ଣେଭ୍ୟଶ୍ଚାର୍ଥପ୍ରତୀତେଃ ସମ୍ଭବାତ୍ ସ୍ଫୋଟକଳ୍ପନାଽନାର୍ଥିକା । (ଗ) ନ କଳ୍ପୟାମ୍ୟହଂ ସ୍ଫୋଟମ୍ । ପ୍ରତ୍ୟକ୍ଷମେବ ତ୍ୱେନମବଗଚ୍ଛାମି । ଏକୈକ ବର୍ଣ୍ଣଗ୍ରହଣସଂସ୍କାରାୟା ବୁଦ୍ଧୌ ଝଟିତି ପ୍ରତ୍ୟବଭାସନାଦିତି ଚେତ୍, (ଘ) ନ, ଅସ୍ୟା ଅପି ବୁଦ୍ଧେର୍ବର୍ଣ୍ଣବିଷୟତ୍ୱାତ୍' ଏକୈକ ବର୍ଣ୍ଣଗ୍ରହଣୋତ୍ତରକାଳା ହୀୟମେକା ବୁଦ୍ଧିର୍ଗୌରିତି ସମସ୍ତବର୍ଣ୍ଣବିଷୟାନାର୍ଥାନ୍ତର ବିଷୟା । (ଙ) କଥମେତଦ-ବଗମ୍ୟତେ ? ଯତୋଽସ୍ୟାମପି ବୁଦ୍ଧୌ ଗକାରାଦୟୋ ବର୍ଣ୍ଣା ଅନୁବର୍ତ୍ତନ୍ତେ, ନ ତୁ ଦକାରାଦୟଃ । (ଚ) ଯଦି ହ୍ୟସ୍ୟା ବୁଦ୍ଧେର୍ଗକାରାଦିଭ୍ୟୋ-

ଽର୍ଥାନ୍ତରଂ ସ୍ଫୋଟୋ ବିଷୟୋ ସ୍ୟାତ୍ତତୋ ଦକାରାଦୟ ଇବ ଗକାରାଦୟୋଽପ୍ୟସ୍ୟା ବୁଦ୍ଧେର୍ବ୍ୟାବେର୍ତ୍ତରନ୍, ନତୁ ତଥାସ୍ତି । ତସ୍ମାଦିୟମେକବୁଦ୍ଧିବ-ର୍ଣ୍ଣବିଷୟୈବ ସ୍ମୃତିଃ ।

**(୧୧) ଭାଷାଂତର-** (କ) ଉଦାଭାଦି ଭେଦରେ ପ୍ରତ୍ୟଭିଜ୍ଞାୟମାନ ବର୍ଣ୍ଣଗୁଡ଼ିକର ଭେଦ ହେବ, କାରଣ-କୌଣସି ଗୋଟିକର ଭେଦରେ ଅନ୍ୟ ଅଭିଦ୍ୟମାନ ପଦାର୍ଥର ଭେଦହେବା ସମ୍ଭବ ନୁହେଁ ।

(ଖ) ବ୍ୟକ୍ତିର ଭେଦହେଲେ ଜାତରି ଭେଦ ସ୍ୱୀକାର କରାଯାଏ ନାହିଁ ବୋଲି ସ୍ଫୋଟବାଦିକୁ ଏହିପ୍ରକାର ଆଗ୍ରହ କରିବା ଠିକ୍ ନୁହେଁ । ପୂର୍ବପକ୍ଷ-

(ଗ) ମୁଁ କେବଳ ସ୍ଫୋଟର କଳ୍ପନା କରୁନାହିଁ, କିନ୍ତୁ ଏହାର ପ୍ରତ୍ୟାକ୍ଷାନୁଭୂତି ମୋତେ ହେଉଛି, କାରଣ-ଏକବର୍ଣ୍ଣର ଗ୍ରହଣଦ୍ୱାରା ଅନୁଭବଜନ୍ୟ ସଂସ୍କାର ସହିତ ବୁଦ୍ଧିରେ ଶୀଘ୍ର ସ୍ଫୋଟ ପ୍ରତ୍ୟବଭାସ ହୁଏ । ଯଦି ଏହା କୁହ, ତେବେ ମଧ୍ୟ

(ଘ) ଏହା ଠିକ୍ ନୁହେଁ, କାରଣ ଏହି ବୁଦ୍ଧି ବର୍ଣ୍ଣ ବିଷୟକ ଅଟେ । ଏକ ଏକ ବର୍ଣ୍ଣର ଗ୍ରହଣ ହେଲେ ପରେ 'ଗୋ' ଏହି ଯେଉଁ ଏକପ୍ରକାର ବୁଦ୍ଧି ହୁଏ, ସେ ସମସ୍ତ ବର୍ଣ୍ଣବିଷୟକ ହୁଏ, କିନ୍ତୁ ଅର୍ଥାନ୍ତର ସ୍ଫୋଟ ବିଷୟକ ନୁହେଁ ।

(ଙ) ଏହା କିନ୍ତୁ କିପରି ହୁଏ ? ଏହା ସମ୍ଭାବ୍ୟ କି ? ଏହି ବୁଦ୍ଧିରେ ମଧ୍ୟ ଗକରାଦି ବର୍ଣ୍ଣାଦିର ଅନୁବୃତ୍ତି ହୁଏ, ଦକରାଦିର ନୁହେଁ ।

(ଚ) ଯଦି ଏହି ବୁଦ୍ଧିର ଗକାରାଦି ସଦୃଶ ଗକାରାଦି ମଧ୍ୟ ସେହି ବୁଦ୍ଧି ଦ୍ୱାରା ବ୍ୟାବୃତା ହେବା ଅର୍ଥାତ୍ ଯେପରି ପୂର୍ବଗକାର ବିଷୟକ ବୁଦ୍ଧିରେ ଦକରାଦିବିଷୟକ ଅନୁବୃତ୍ତି ହୁଏ ନାହିଁ, ତେଣୁ ଏହି ଏକ ବୁଦ୍ଧି ବର୍ଣ୍ଣବିଷୟକ ହିଁ ସ୍ମୃତି ଅଟେ ।

(୨) ମୂଳ-(କ) ନନ୍ୱେନେକତ୍ୱାଦ୍ ବର୍ଣ୍ଣାନାଂ ନୈକବୁଦ୍ଧିବିଷୟ-ତୋପପଦ୍ୟେତ ଇତ୍ୟୁକ୍ତମ୍ । ତତ୍ପ୍ରତି ବ୍ରୂମଃସମ୍ଭବତ୍ୟ ନେକସ୍ୟାପ୍ୟେକବୁଦ୍ଧି ବିଷୟତ୍ୱମ୍ । ପଙ୍କ୍ତିର୍ବନଂ ସେନାଶତଂ ସହସ୍ରମିତ୍ୟାଦିଦର୍ଶନାତ୍ । ଯା ତୁ ଗୌରିତ୍ୟେ-କୋଽୟଂ ଶବ୍ଦ ଇତି ବୁଦ୍ଧିଃ, ସା ବହୁଷ୍ୱେବ ବର୍ଣ୍ଣେଷ୍ୱକାର୍ଥା ବଚ୍ଛେଦନିବନ୍ଧ-ନୋପଚରିକୀ ବନସେନାଦିବୁଦ୍ଧିବଦେବ । (ଖ) ଅତ୍ରାହ-ଯଦି ବର୍ଣ୍ଣା ଏବ ସାମ-ସ୍ତ୍ୟେନୈକବୁଦ୍ଧିବିଷୟତାମାପଦ୍ୟମାନାଃ ପଦଂ ସ୍ୟୁସ୍ତତୋ ଜାରା-ରାଜା, କପିଃପିକ ଇତ୍ୟାଦିଷ୍ୱ ପଦବିଶେଷପ୍ରତିପତ୍ତିର୍ନ ସ୍ୟାତ୍ । ତ ଏବ ହି ବର୍ଣ୍ଣା ଇତିରତ୍ର ଚେତରତ୍ର ଚ ପ୍ରତ୍ୟବଭାସନ୍ତ ଇତି । (ଗ) ଅତ୍ର ବଦାମଃସତ୍ୟପି ସମସ୍ତବର୍ଣ୍ଣପ୍ରତ୍ୟବମର୍ଶେ ଯଥା କ୍ରମାନୁରୋଧିନ୍ୟ ଏବ ପିପୀଲିକାଃ ପଙ୍କ୍ତିବୁଦ୍ଧିମାରୋହନ୍ତି,



ଏବଂ କ୍ରମାନୁରୋଧିନ ଏବବର୍ଣ୍ଣାଃ ପଦବୁଦ୍ଧିମାରୋକ୍ଷ୍ୟନ୍ତି । ତତ୍ର ବର୍ଣ୍ଣାନାମବିଶେଷେଽପି କ୍ରମବିଶେଷକୃତା ପଦବିଶେଷପ୍ରତିପତ୍ତିର୍ନ ବୁରୁଧ୍ୟତେ ।

**(୧୨) ଭାଷାଂତର**-(କ) ବର୍ଣ୍ଣଗୁଡ଼ିକର ଅନେକତ୍ୱ ହେଲେ ସେଠାରେ ଏକବୁଦ୍ଧିର ବିଷୟତା ଉପପନ୍ନ ହୁଏ ନାହିଁ, ବୋଲି ଯାହା କୁହାଯାଇଛି, ତାହା ଉପରେ ଆମ୍ଭେ କହୁଁ ଯେ- ଅନେକ ମଧ୍ୟ ଏକବୁଦ୍ଧିର ବିଷୟ ହୋଇପାରେ । ଯେପରି ପଙ୍‌କ୍ତି, ବନସେନା ଦଶ, ଶତ, ସହସ୍ର ଇତ୍ୟାଦି ସ୍ଥଳରେ ଏକବୁଦ୍ଧି ବିଷୟତା ଦେଖାଯାଏ । 'ଗୌ' ଏହି ଗୋଟିଏ ଶବ୍ଦ, ଏପରି ଯେଉଁ ବୁଦ୍ଧି ଜାତ ହୁଏ, ସେ ବନ, ସେନାଦି ବୁଦ୍ଧି ଭଳି ବହୁତ ବର୍ଣ୍ଣରେ ଏକାର୍ଥବୋଧକସମ୍ବନ୍ଧରେ ଔପଚାରିକ ରୂପରେ ପ୍ରଯୁକ୍ତ ହୁଏ ।

(ଖ) ସ୍ଫୋଟବାଦୀ ଏଠାରେ କହନ୍ତି-ଯଦି ବର୍ଣ୍ଣ କେବଳ ସମସ୍ତେ ମିଳିକରି ଗୋଟିଏ ବୁଦ୍ଧିର ବିଷୟତାକୁ ପାଇ ପଦନିର୍ମାଣ କରନ୍ତି, ତେବେ ଜାରା,-ରାଜା, କପିପିକ ଇତ୍ୟାଦି ପଦବିଶେଷର ପ୍ରତୀତି ହେବନାହିଁ, କାରଣ-ସେହି ବର୍ଣ୍ଣଗୁଡ଼ିକ ଏପଟସେପଟ ହୋଇ ପ୍ରତ୍ୟଭାସିତ ହୁଅନ୍ତି ।

(ଗ) ଏହା ଉପରେ ଆମ୍ଭେ କହୁଁ ଯେ-ଶବ୍ଦରେ ସମସ୍ତ ବର୍ଣ୍ଣଗୁଡ଼ିକର ପ୍ରତ୍ୟବମର୍ଶ ସ୍ମୃତି ହେଲେ ମଧ୍ୟ ଯେପରି କ୍ରମାନୁସାର ପିପୀଲିକାରେ ପଂକ୍ତିବୁଦ୍ଧି ହୁଏ, ସେପରି ମଧ୍ୟ କ୍ରମାନୁସାରବର୍ଣ୍ଣ ମଧ୍ୟ ପଦବୁଦ୍ଧିରେ ଆରୂଢ଼ ହୁଏ । ବର୍ଣ୍ଣଗୁଡ଼ିକର ଅଭିନ୍ନ ହେଲେ ମଧ୍ୟ କ୍ରମବିଶେଷକୃତପଦ ବିଶେଷର ପ୍ରତୀତି ବିରୁଦ୍ଧ ହୁଏ ନାହିଁ ।

(୧୩) ମୂଳ-(କ) ବୁଦ୍ଧି ବ୍ୟବହାରରେ ତେମେ ବର୍ଣ୍ଣାଃ କ୍ରମାଦ୍ୟନୁଗୃହୀତା ଗୃହୀତାର୍ଥବିଶେଷସମ୍ବନ୍ଧାଃ ସନ୍ତଃ ସ୍ୱ ବ୍ୟବହାରେଽପ୍ୟେକୈକବର୍ଣ୍ଣଗ୍ରହଣାନନ୍ତରଂ ସମସ୍ତପ୍ରତ୍ୟବମର୍ଶିନ୍ୟାଂ ବୁଦ୍ଧୌ ତାଦୃଶା ଏବ ପ୍ରତ୍ୟବଭାବମାନାସ୍ତଂ ତମର୍ଥମବ୍ୟଭିଚାରେଣ ପ୍ରତ୍ୟାୟୟିଷ୍ୟନ୍ତୀତି ବର୍ଣ୍ଣବାଦିନୋ ଲଘୀୟସୀ କଳ୍ପନା । (ଖ) ସ୍ଫୋଟବାଦିନସ୍ତୁ-ଦୃଷ୍ଟିହାନିରଦୃଷ୍ଟକଳ୍ପନା ଚ, ବର୍ଣ୍ଣାଶ୍ଚେମେ କ୍ରମେଣ ଗୃହ୍ୟମାଣାଃ ସ୍ଫୋଟଂ ବ୍ୟଞ୍ଜୟନ୍ତି, ସ ସ୍ଫୋଟୋଽର୍ଥଂ ବ୍ୟନକ୍ତୀତି ଗରୀୟସୀ କଳ୍ପନା ସ୍ୟାତ୍ । (ଗ) ଅଥାପି ନାମ ପ୍ରତ୍ୟୁଚ୍ଚାରଣ-ମନ୍ୟେଽନ୍ୟେ ବର୍ଣ୍ଣାଃ ସ୍ୟୁଃ, ତଥାପି ପ୍ରତ୍ୟଭିଜ୍ଞାଲମ୍ବନଭାବେନ ବର୍ଣ୍ଣସାମାନ୍ୟା-ନାମବଶ୍ୟା-ଭ୍ୟୁପଗନ୍ତବ୍ୟତ୍ୱାଦ୍ୟା ବର୍ଣ୍ଣେଷ୍ୱର୍ଥପ୍ରତିପାଦନପ୍ରକ୍ରିୟା ରଚିତା ସା ସାମାନ୍ୟେଷ ସଞ୍ଚାରୟିତବ୍ୟା । ତତଶ୍ଚ ନିତେଭ୍ୟଃ ଶବ୍ଦେଭଃ ଶବ୍ଦେଭ୍ୟୋ ଦେବାଦିବ୍ୟଙ୍କୀନାଂ ପ୍ରଭବ ଇତ୍ୟୁବିରୁଦ୍ଧମ୍ ॥

(୧୩) ଭାଷାଂତର- (କ) କ୍ରମାଦି ଅନୁସାରେ ଗୃହୀତ ସେହି ବର୍ଣ୍ଣଗୁଡ଼ିକର ବୁଦ୍ଧି ବ୍ୟବହାରରେ (ଶକ୍ତିଗ୍ରହ ଦଶାରେ) ଭିନ୍ନଭିନ୍ନ ଅର୍ଥ ସହିତ ସମ୍ବନ୍ଧ ଗ୍ରହଣ କରାଯାଇଅଛି । ତେଣୁ ନିଜେ ମଧ୍ୟମ ବ୍ୟବହାରରେ ମଧ୍ୟ ଗୋଟିଏ ଗୋଟିଏ ବର୍ଣ୍ଣର ଗ୍ରହଣ ହେଲେ ସମସ୍ତ ବର୍ଣ୍ଣକୁ ବିଷୟ କରୁଥିବା ବୁଦ୍ଧିରେ ସେହିପରି ଅବଭାସିତ ହୋଇ ସେହି ସେହି ଅର୍ଥକୁ ଅବ୍ୟଭିଚାରରୂପରେ ଜ୍ଞାନ କରାଏ । ଏହିପ୍ରକାର ବର୍ଣ୍ଣବାଦୀର କଳ୍ପନାରେ ଲାଘବ ହୁଏ ।

(ଖ) ସ୍ଫୋଟବାଦୀମାନେ ଦୃଷ୍ଟହାନି ଓ ଅଦୃଷ୍ଟକଳ୍ପନା କରନ୍ତି । କ୍ରମରେ ଗୃହୀତ ହୋଇଥିବା ବର୍ଣ୍ଣଗୁଡ଼ିକ ସ୍ଫୋଟକୁ ବ୍ୟକ୍ତ କରେ । ସେ ସ୍ଫୋଟକୁ ଅର୍ଥକୁ ବ୍ୟକ୍ତି କରେ । ଏହିପ୍ରକାର କଳ୍ପନାଗୌରବ ହୁଏ ।

(ଗ) ଯଦି ପ୍ରତ୍ୟେକ ଉଚ୍ଚାରଣରେ ଭିନ୍ନଭିନ୍ନ ବର୍ଣ୍ଣ ହୁଅନ୍ତି, ବୋଲି ସ୍ୱୀକାର କରାଯାଏ, ତେବେ ପ୍ରତ୍ୟଭିଜ୍ଞାର ଆଧାରରୂପରେ ବର୍ଣ୍ଣଗତ ଜାତିମାନଙ୍କ ସ୍ୱୀକାର ହେଲାପରେ ବର୍ଣ୍ଣରେ ଯେଉଁ ଅର୍ଥପ୍ରତିପାଦନପ୍ରକ୍ରିୟା ରଚନ କରାଯାଇଛି, ଏହାର ବର୍ଣ୍ଣଗତ ଜାତିମାନଙ୍କରେ ସଞ୍ଚାର କରିବା ଉଚିତ୍ । ନିତ୍ୟଶବ୍ଦଦ୍ୱାରା ଦେବାଦିବ୍ୟକ୍ତିମାନଙ୍କର ଉତ୍ପତ୍ତି ହେବ । ତେଣୁ କୌଣସି ବିରୋଧ ନାହିଁ ।

## अतएव च नित्यत्वम् ॥ २९ ॥

## (୧) ଅତଏବ ଚ ନିତ୍ୟତ୍ୱମ୍ ॥ ୧-୩-୨୯ ॥

ଅତଏବ ଚ-ଏପରି ଦେବାଦି ସମସ୍ତଜଗତ ବେଦଶବ୍ଦଦ୍ୱାରା ଭିନ୍ନ ହେବାର କାରଣ, ନିତ୍ୟତ୍ୱମ୍-ବେଦରେ ନିତ୍ୟତ୍ୱ ଅଛି ।

(୨) ମୂଳ-(କ) ସ୍ୱତନ୍ତ୍ରସ୍ୟ କର୍ତ୍ତୁଃ ସ୍ମରଣାଦିଭିଃ ସ୍ଥିତେ ବେଦସ୍ୟ ନିତ୍ୟତ୍ୱେ ଦେବାଦି ବ୍ୟକ୍ତି ପ୍ରଭାବାଭ୍ୟୁପଗମେନ ତସ୍ୟ ବିରୋଧମାଶଙ୍କ୍ୟ 'ଅତଃ ପ୍ରଭାବତ୍', ଇତି ପରିହୃତ୍ୟେଦାନୀଂ ତଦେବ ବେଦନିତ୍ୟତ୍ୱଂ ସ୍ଥିତଂ ଦ୍ରଢୟତିଅତଏବ ନିତ୍ୟତ୍ୱମିତି । (ଖ) ଅତଏବ ନିୟତାକୃତେର୍ଦେବାଦେର୍ଜଗତୋ ବେଦଶବ୍ଦପ୍ରଭବତ୍ୱାଦ୍ ବେଦଶବ୍ଦେ ନିତ୍ୟତ୍ୱମପି ପ୍ରତ୍ୟେତବ୍ୟମ୍ । (ଗ) ତଥାଚ ମନ୍ତ୍ରବର୍ଣ୍ଣଃ 'ଯଜ୍ଞେନ ବାଚଃ ପଦବୀୟ-ମାୟନ୍ତାମନ୍ୱବିନ୍ଦ ନୃଷିଷୁ ପ୍ରବିଷ୍ଟମ୍' (ରି. ସଂ ୧୦-୭୯-୩) ଇତି ସ୍ଥିତାମେବ ବାଚମନୁବିନ୍ନଂ ଦ୍ରଢ୍ୟତି । (ଘ) ବେଦବ୍ୟାସଶ୍ଚୈବମେବ ସ୍ମରତି-'ଯୁଗାନ୍ତେଽନ୍ତର୍ହିତାନ୍ ବେଦାନ୍ ସେତିହାସାନ୍ ମହର୍ଷୟଃ । ଲେଭିରେ ତପସା ପୂର୍ବମନୁଜ୍ଞାତାଃ ସ୍ୱୟଂଭୁବା' । ଇତି ।



(୨) ଭାଷାଂତର-(କ) (ବେଦାପୌରୁଷେୟତ୍ୱାଧିକରଣରେ) ବେଦରେ ସ୍ୱତନ୍ତ୍ରକର୍ତ୍ତାର ସ୍ମରଣ ନ ହେଲେ ଓ ନିତ୍ୟତ୍ୱ ସିଦ୍ଧ ହେଲେ ତଥା ଦେବାଦିବ୍ୟକ୍ତିମାନଙ୍କର ପ୍ରଭବ ସ୍ୱୀକାର କଲେ (ଦେବାଦିର ବାଚକ, ଇନ୍ଦ୍ରାଦିଶବ୍ଦଗୁଡ଼ିକର ମଧ୍ୟ ଉତ୍ପତ୍ତି ମାନିବାକୁ ପଡ଼ିବ) । ବେଦରେ ନିତ୍ୟତ୍ୱ ଅଯୁକ୍ତ ହେଲେ ଏହି ବିରୋଧର ଆଶଙ୍କାକୁ 'ଅତଃ ପ୍ରଭାବାତ୍'; ଏହି ସୂତ୍ରଦ୍ୱାରା ପରିହାର କରି ବର୍ତ୍ତମାନ ପୂର୍ବସିଦ୍ଧ ସେହି ବେଦନିତ୍ୟତ୍ୱକୁ 'ଅତଏବ ନିତ୍ୟତ୍ୱମ୍', ଏହାଦ୍ୱାରା ଦୃଢ଼ କରନ୍ତି ।

(ଖ) ଏହାଦ୍ୱାରା ନିୟତଆକୃତିବିଶିଷ୍ଟ ଦେବାଦିଜଗତର ବେଦଶବ୍ଦଦ୍ୱାରା ଉତ୍ପତ୍ତି ହେବାରୁ ବେଦଶବ୍ଦରେ ନିତ୍ୟତ୍ୱ ହେବା ଉଚିତ୍ ।

(ଗ) ତଥା 'ପୂର୍ବସୁକୃତପୁଣ୍ୟକର୍ମଦ୍ୱାରା ବେଦଲାଭର ଯୋଗ୍ୟତା ପାଇ ଯାଜ୍ଞିକ-ପୁରୁଷରଷିଠାରେ ରହିଥିବା ବେଦବାଣୀକୁ ପାଏ'' । ଏହି ମନ୍ତ୍ର ପୂର୍ବକଳ୍ପସିଦ୍ଧବେଦମୟୀ ବାଣୀର ଉପଲବ୍ଧି ଦେଖାଏ ।

(ଘ) ଭଗବାନ୍ ବେଦବ୍ୟାସ ମଧ୍ୟ ଏହା କହିଛନ୍ତି- 'ଅବାନ୍ତର ପ୍ରଳୟ ପରେ ମହର୍ଷି ବ୍ରହ୍ମାଙ୍କର ଅନୁଜ୍ଞା ପାଇ ଯୁଗର ଶେଷରେ ତିରୋଭୂତ ଇତିହାସ ସହିତ ବେଦକୁ ତପସ୍ୟା ଦ୍ୱାରା ପାଏ' ଏହି ସ୍ମୃତି ଅଛି ।

**समाननामरूपत्वाच्चावृत्तावप्यविरोधो दर्शनात्स्मृतेश्च ॥ ३० ॥**

## (୧) ସମାନନାମରୂପ ତ୍ୱାଚ୍ଚାବୃତ୍ତାବପ୍ୟବିରୋଧୋ ଦର୍ଶନାତ୍ ସ୍ମୃତେଶ୍ଚ ॥ ୧-୩-୩୦ ॥

ଆବୃତ୍ତାବପି-ସୃଷ୍ଟି ଓ ପ୍ରଳୟର ଆବୃତ୍ତି ହେଲେ ମଧ୍ୟ, ଅବିରୋଧଃ-ଶବ୍ଦ ଓ ଅର୍ଥ ସମ୍ବନ୍ଧରେ ଅନିତ୍ୟତାରୂପ ବିରୋଧ ନୁହେଁ । ସମାନନାମରୂପତ୍ୱାଚ୍ଚ-କାରଣ-ଉତ୍ତରକଳ୍ପପ୍ରପଞ୍ଚ ପୂର୍ବକଳ୍ପପ୍ରପଞ୍ଚର ସମାନନାମ ରୂପ ଅଛି । କିପରି ?, ଦର୍ଶନାତ୍-ଧାତା, ଯଥାପୂର୍ବଂମକଳ୍ପୟତ୍,' ଇତ୍ୟାଦି ଶ୍ରୁତି ଓ ସ୍ମୃତେଶ୍ଚ-ଯଥାର୍ତୁଷ୍ୱତୁଲିଙ୍ଗାନି ନାନାରୂପାଣି ପର୍ଯ୍ୟୟେ' ଇତ୍ୟାଦି ସ୍ମୃତି ମଧ୍ୟ ଅଛି ।

(୨) ମୂଳ-(କ) ଅଥାପି ସ୍ୟାତ୍, ଯଦି ପଶ୍ୱାଦିବ୍ୟକ୍ତିବଦ୍ଦେବାଦି ବ୍ୟକ୍ତୟୋଽପି ସନ୍ତତ୍ୟୈବୋତ୍ପଦ୍ୟେରନ୍ନିରୁଧ୍ୟେରଂଶ୍ଚ ତତୋଽଭିଧାନାଭିଧେୟାତ୍ମ ବ୍ୟବହାରାବିଚ୍ଛେଦାତ୍ ସମ୍ବନ୍ଧନିତ୍ୟତ୍ୱେନ ବିରୋଧଃ ଶବ୍ଦେ ପରିହ୍ରିୟତେ । (ଖ) ଯଦାତୁ ଖଳୁ ସକଳଂ ତ୍ରୈଲୋକ୍ୟଂ ପରିତ୍ୟକ୍ତନାମରୂପଂ ନିର୍ଲେପଂ ପ୍ରଳୀୟତେ, ପ୍ରଭବତି ଚାଭିନବମିତି ଶ୍ରୁତିସ୍ମୃତିବାଦା ବଦନ୍ତି, ତଦା କଥମବିରୋଧ ଇତି ?

**(୨) ଭାଷାଂତର** - (କ) ଯଦି ପଶୁ ପ୍ରଭୃତି ବ୍ୟକ୍ତିମାନଙ୍କର ଭଳି ସମାନ ଦେବାଦିବ୍ୟକ୍ତିମାନଙ୍କର ମଧ୍ୟ ସନ୍ତତ ଜନ୍ମ ଓ ବିନାଶ ହୁଏ, କିନ୍ତୁ ନାମ, ବିଷୟବକ୍ତାର ବ୍ୟବହାର ବିଚ୍ଛେଦ ନ ହେବାଦ୍ୱାରା ସମ୍ବନ୍ଧ ନିତ୍ୟ ହେଲେ ମଧ୍ୟ ଶବ୍ଦରେ ବିରୋଧର ପରିହାର ହୁଏ ବୋଲି କଣ ସମ୍ଭବ କି ?

(ଖ) ପରନ୍ତୁ ଯେତେବେଳେ ଶ୍ରୁତି ଓ ସ୍ମୃତି 'ସମ୍ପୂର୍ଣ୍ଣ ତ୍ରୈଲୋକ୍ୟନାମରୂପକୁ ପରିତ୍ୟାଗ କରି ସମୂଳ ନଷ୍ଟ ହୁଏ ଏବଂ ପୁନର୍ବାର ନବୀନ ଉତ୍ପନ୍ନ ହୁଏ ବୋଲି କହନ୍ତି, ସେତେବେଳେ କିପରି ଅବିରୋଧ ହେବ ?

(୩) ମୂଳ-(କ) ତତ୍ରେଦମଭିଧୀୟତେସମାନନାମରୂପତ୍ୱାଦିତି । ତଦାପି ସଂସାରସ୍ୟ ନାଦିତ୍ୱଂ ତାବଦଭ୍ୟୁପଗନ୍ତବ୍ୟମ୍ । ପ୍ରତିପାଦୟିଷ୍ୟତି ଚାର୍ଯ୍ୟଃ ସଂସାରସ୍ୟା ନାଦିତ୍ୱମ୍-'ଉପପଦ୍ୟତେ ଚାପ୍ୟୁଲଭ୍ୟତେ ଚ', (ବ୍ର.ସୂ. ୨-୧-୩୬) ଇତି । (ଖ) ଅନାଦୌ ଚ ସଂସାରେ ଯଥା ସ୍ୱାପପ୍ରବୋଧୟୋଃ ପ୍ରଳୟପ୍ରଭବଶ୍ରବଣେଽପି ପୂର୍ବପ୍ରବୋଧବଦୁତ୍ତରପ୍ରବୋ-ଧେଽପି ବ୍ୟବହରନ୍ନ କଶ୍ଚିଦ୍‌ବିରୋଧଃ, ଏବଂ କଳ୍ପାନ୍ତର ପ୍ରଭବ ପ୍ରଳୟୟୋରପୀତି ଦ୍ରଷ୍ଟବ୍ୟମ୍ । (ଗ) ସ୍ୱାପପ୍ରବୋଧୟୋଶ୍ଚ ପ୍ରଳୟପ୍ରଭବୌ ଶ୍ରୂୟେତେ-''ଯଦା ସୁପ୍ତଃ ସ୍ୱପ୍ନଂ ନ କଞ୍ଚନ ପଶ୍ୟତ୍ୟଥାସ୍ମିନ ପ୍ରାଣ ଏବୈକଧା ଭବତି, ତଦୈନଂ ବାକ୍‌ସର୍ବୈର୍ନାମଭିଃ ସହାପ୍ୟେତି ଚକ୍ଷୁଃସର୍ବୈଃ ରୂପୈଃ ସହାପ୍ୟେତି ଶ୍ରୋତ୍ରଂ ସର୍ବୈଃ ଶବ୍ଦୈଃ ସହାପ୍ୟେତି, ନମଃ ସର୍ବୈର୍ଧ୍ୟାନୈଃ ସହାପ୍ୟେତି, ସ ଯଦା ପ୍ରତିବୁଧ୍ୟତେ ଯଥାଽଗ୍ନେର୍ଜ୍ୱଳତଃ ସର୍ବାଦିଶୋ ବିସ୍ଫୁଲିଙ୍ଗା ବିପ୍ରତିଷ୍ଠେରନ୍ନେ ବମେବୈତସ୍ମାଦାତ୍ମନଃ ସର୍ବେପ୍ରାଣା ଯଥାୟତନଂ ବିପ୍ରତିଷ୍ଠନ୍ତେ ପ୍ରାଣେଭ୍ୟୋ ଦେବା ଦେବେଭ୍ୟୋ ଲୋକା', (କୌ ୩-୩) ଇତି ।

**(୩) ଭାଷାଂତର** - (କ) ଏହାର ଉତ୍ତରରେ କୁହାଯାଇଛି- ତଥାପି ସଂସାରକୁ ଅନାଦି ବୋଲି ଜାଣିବା ଉଚିତ୍ । କାରଣ- 'ସମାନନାମରୂପତ୍ୱାତ୍' ଇତ୍ୟାଦି କୁହାଯାଇଛି । ଆଚାର୍ଯ୍ୟମାନେ 'ଉପପଦ୍ୟତେ', ଏହି ସୂତ୍ରରେ ସଂସାରର ଅନାଦିତ୍ୱ ପ୍ରତିପାଦନ କରିବେ ।

(ଖ) ସଂସାରକୁ ଅନାଦିରୂପରେ ସ୍ୱୀକାର କଲେ ସୁଷୁପ୍ତି ଓ ଜାଗ୍ରତ ଅବସ୍ଥାରେ ଉତ୍ପତ୍ତି ଓ ପ୍ରଳୟଶବ୍ଦ ଶୁଣିଲେ ମଧ୍ୟ ଯାହାଦ୍ୱାରା ପୂର୍ବପ୍ରବୋଧର ସଦୃଶ ଉତ୍ତରଜାଗ୍ରତ କବସ୍ଥାରେ ବ୍ୟବହାର ହେଲେ ଯେପରି କୌଣସି ବିରୋଧ ହୁଏ ନାହିଁ, ସେପରି ମଧ୍ୟ ପୂର୍ବକଳ୍ପର ଲୟ ଓ ଉତ୍ତରକଳ୍ପର ଉତ୍ପତ୍ତିରେ ବୈଦିକ ନିତ୍ୟତାରେ କୌଣସି ବିରୋଧ ହୁଏ ନାହିଁ ବୋଲି ଜାଣିବା ଉଚିତ୍ ।



(ଗ) 'ଯେତେବେଳେ ସେ ସୁପ୍ତ କୌଣସି ବସ୍ତୁକୁ ଦେଖେନାହିଁ' ସେତେବେଳେ ସେ ସେହିପ୍ରାଣରୂପପରମାତ୍ମାରେ ଏକ ହୋଇଯାଏ, ଅର୍ଥାତ୍ ଅଭିନ୍ନ ରୂପରେ ପ୍ରାପ୍ତ ହୁଏ, ତେଣୁ ସବୁ ନାମ ସହିତ ବାଣୀ ମଧ୍ୟ ତାଠାରେ ଲୀନ ହୋଇଯାଏ, ଶ୍ରୋତ୍ର ଶବ୍ଦସହିତ ତେତ୍ରସବୁ ରୂପସହ ଲୀନ ହୋଇଯାଏ ତାହାଠାରେ ଲୀନ ହୋଇଯାଏ, ମନ ସଂକଳ୍ପର ସହିତ ତା'ଠାରେ ଲୀନ ହୋଇଯାଏ । ଯେତେବେଳେ ସେ ପ୍ରବୃଦ୍ଧ ହୁଏ; ସେତେବେଳେ ଜଳି ଅଗ୍ନିଠାରୁ ଯେପରି ତାହାର ଅଗ୍ନିକଣା ଚାରିଆଡ଼େ ବିଛୁରିତ ହୋଇଯାଏ, ସେପରି ଏହି ଆତ୍ମାଠାରୁ ସବୁ ଇନ୍ଦ୍ରିୟ ରୂପପ୍ରାଣ ନିଜେ ନିଜେ ଗୋଲକ ରୂପସ୍ଥାନକୁ ପାଏ । ଇନ୍ଦ୍ରିୟବ୍ୟତିତ ସୂର୍ଯ୍ୟାଦି ଦେବତ ଓ ଦେବତା ବ୍ୟତିତ ବିଷୟରୂପଲୋକ ପ୍ରକଟିତ ହୁଅନ୍ତି ।'' ଏହିପ୍ରକାର ବେଦବାକ୍ୟରେ ସୁଷୁପ୍ତି ଓ ଜାଗ୍ରତ୍ ଅବସ୍ଥାରେ ସଂସାରର ଲୟ ଓ ଉତ୍ପତ୍ତି କୁହାଯାଇଛି ।

(୪) ମୂଳ-ସ୍ୟାଦେତତ୍-(କ) ସ୍ୱାପେ ପୁରୁଷାନ୍ତରବ୍ୟବହାରାବିଚ୍ଛେଦାତ୍ ସ୍ୱୟଂ ଚ ସୁଷୁପ୍ତପ୍ରବୁଦ୍ଧସ୍ୟ ପୂର୍ବପ୍ରବୋଧ ବ୍ୟବହାରାନୁ ସନ୍ଧାନ ସମ୍ଭବାଦବିରଦ୍ଧମ୍ । (ଖ) ମହାପ୍ରଳୟେତ୍ୱ ସର୍ବବ୍ୟବହାରୋଚ୍ଛେଦାଦ୍ୱାଦ୍ ବୈଷମ୍ୟମିତି । (ଗ) ନୈଷୋ ଦୋଷଃ, ସତ୍ୟପି ସର୍ବବ୍ୟବହାରୋଚ୍ଛେଦିନି ମହାପ୍ରଳୟେ ପରମେଶ୍ୱରାନୁଗ୍ରହାଦୀଶ୍ୱରାଣାଂ ହିରଣ୍ୟଗର୍ଭାଦୀନାଂ କଳ୍ପାନ୍ତର ବ୍ୟବହାରାନୁସନ୍ଧାନୋପପତ୍ତେଃ ।

**(୪) ଭାଷାଂତର**-(କ) ଏହା ଠିକ୍ ଅଟେ । ପରନ୍ତୁ ସୁଷୁପ୍ତିରେ ଅନ୍ୟ ପୁରୁଷର ବ୍ୟବହାର ବିଚ୍ଛିନ୍ନ ହେବାରୁ ସୁଷୁପ୍ତି ଦ୍ୱାରା ପ୍ରବୃଦ୍ଧପୁରୁଷକୁ ସ୍ୱୟଂ ଜାଗ୍ରତ ଅବସ୍ଥାରେ ବ୍ୟବହାରର ସନ୍ଧାନ ହୁଏ । ତେଣୁ ଏହା ଅବିରୁଦ୍ଧ ଅଟେ ।

(ଖ) କିନ୍ତୁ ମହାପ୍ରଳୟରେ ସବୁବ୍ୟବହାରର ଉଚ୍ଛେଦ ହେଲେ ଜନ୍ମାନ୍ତର ବ୍ୟବହାର ସଦୃଶ କଳ୍ପାନ୍ତରବ୍ୟବହାର ହୁଏ ନାହିଁ । ତେଣୁ (ଦୃଷ୍ଟାନ୍ତ ଓ ଦ୍ରାଷ୍ଟାନ୍ତିକରେ) ବିଷମତା ଅଛି ।

(ଗ) ଏହା ଦୋଷ ନୁହେଁ । ସର୍ବବ୍ୟବହାରର ଉଚ୍ଛେଦ କରିଥିବାରୁ ମହାପ୍ରଳୟ ହେଲେ ମଧ୍ୟ ପରମେଶ୍ୱରର ଅନୁଗ୍ରହଦ୍ୱାରା ହିରଣ୍ୟଗର୍ଭାଦି ଈଶ୍ୱରକୁ କଳ୍ପାନ୍ତର ବ୍ୟବହାରର ଅନୁସନ୍ଧାନ (ସ୍ମରଣ) ହୁଏ ।

(୫) ମୂଳ-(କ) ଯଦ୍ୟପି ପ୍ରାକୃତାଃ ପ୍ରାଣିନୋ ନ ଜନ୍ମାନ୍ତର ବ୍ୟବହାରମନୁ ସନ୍ଧାତା ଦୃଶ୍ୟନ୍ତ ଇତି, ତଥାପି ନ ପ୍ରାକୃତବଦୀଶ୍ୱରାଣାଂ ଭବିତବ୍ୟମ୍ । (ଖ) ଯଥା ହି

ପ୍ରାଣିତ୍ୱାବିଶେଷେଽପି ମନୁଷ୍ୟାଦି ସ୍ତମ୍ବପର୍ଯ୍ୟନ୍ତେଷୁ ଜ୍ଞାନୈଶ୍ୱର୍ଯ୍ୟା ଦିପ୍ରତିବନ୍ଧଃ ପରେଣ ପରେଣ ଭୂୟାନ୍ ଭବନ୍ ଦୃଶ୍ୟତେ, ତଥା ମନୁଷ୍ୟାଦିଷ୍ୱେବ ହିରଣ୍ୟଗର୍ଭ ପର୍ଯ୍ୟନ୍ତେଷୁ ଜ୍ଞାନୈଶ୍ୱର୍ଯ୍ୟାବ୍ୟଭିବ୍ୟକ୍ତିରପି ପରେଣ ପରେଣ ଭୂୟସୀ ଭବତୀତ୍ୟେତଚ୍ଛ୍ରୁତି ସ୍ମୃତି ବାଦେଷ୍ୱମକୃଦନୁଶ୍ରୂୟମାଣଂ ନ ଶକ୍ୟଂ ନାସ୍ତୀତି ବଦିତୁମ୍ । (ଗ) ତତଶ୍ଚାତୀତକଳ୍ପନାନୁଷ୍ଠିତ ପ୍ରକୃଷ୍ଟଜ୍ଞାନ କର୍ମଣାମୀଶ୍ୱରାଣାଂ ହିରଣ୍ୟଗର୍ଭାଦୀନାଂ ବର୍ତ୍ତମାନ କଳ୍ପାଦୌ ପ୍ରାଦୁର୍ଭବତାଂ ପରମେଶ୍ୱରାନୁଗ୍ରହୀତାନାଂ ସୁପ୍ତପ୍ରତିବୁଦ୍ଧବତ୍-କଳ୍ପାନ୍ତର ବ୍ୟବହାରାନୁସନ୍ଧାନୋପପତ୍ତିଃ । (ଘ) ତଥା ଚ ଶ୍ରୁତିଃ- 'ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ, ତଂ ହ ଦେବମାତ୍ମବୁଦ୍ଧି ପ୍ରକାଶଂ ମୁମୁକ୍ଷୁର୍ବୈ ଶରଣମହଂ ପ୍ରପଦ୍ୟେ'' । (ଶ୍ୱେ ୬-୧୮) ଇତି । (ଙ) ସ୍ମରନ୍ତି ଚ ଶୌନକାଦୟଃ 'ମଧୁଚ୍ଛନ୍ଦ ପ୍ରଭୃତିଭିରଷିଭିର୍ଦାଶତର୍ଯ୍ୟୋ ଦୃଷ୍ଟା'', ଇତି । ପ୍ରତିବେଦଂ ଚୈବମେବ କାଣ୍ଡାର୍ଷ୍ୟାଦୟଃ ସୂର୍ଯ୍ୟନ୍ତେ ॥

**(୫) ଭାଷାଂତର**-(କ) ଯଦି ପ୍ରାକୃତପ୍ରାଣୀ ଜନ୍ମାନ୍ତର ବ୍ୟବହାରକୁ ଅନୁସନ୍ଧାନ କରି ଦେଖେନାହିଁ, ତଥାପି ଈଶ୍ୱରକୁ ସେହି ପ୍ରକୃତ ପ୍ରାଣୀସଦୃଶ ଭାବିବା ଉଚିତ ନୁହେଁ ।

(ଖ) ଯେପରି ପ୍ରାଣିତ୍ୱସମାନ ହେଲେ ମଧ ମନୁଷ୍ୟତ୍ୱାଦିଠାରୁ ଆରମ୍ଭ କରି ସ୍ତମ୍ଭ (ବୃକ୍ଷାଦି) ପର୍ଯ୍ୟନ୍ତ ପ୍ରାଣୀମାନଙ୍କଠାରେ ଜ୍ଞାନ ଐଶ୍ୱର୍ଯ୍ୟାଦିର ପ୍ରତିବନ୍ଧ ଉତ୍ତରୋତ୍ତର ବଢ଼ି ବଢ଼ି ଦେଖାଯାଏ, ସେପରି ମନୁଷ୍ୟାଦିଠାରୁ ଆରମ୍ଭ କରି ହିରଣ୍ୟ ଗର୍ଭ ପର୍ଯ୍ୟନ୍ତ ଜ୍ଞାନ, ଐଶ୍ୱର୍ଯ୍ୟାଦିର ଅଭିବ୍ୟକ୍ତି ଉତ୍ତରୋତ୍ତର ଅଧିକ ହୁଏ । ଏହିପରି ଶ୍ରୁତି ଏବଂ ସ୍ମୃତି ବଚନ ଦ୍ୱାରା ବାରମ୍ୱାର ଶୁଣାଯାଏ । କିନ୍ତୁ ଏହିପ୍ରକାର ସମ୍ଭବ ନୁହେଁ ବା କୁହାଯାଏ ନାହିଁ ।

(ଗ) ତେଣୁ ଅତୀତ କଳ୍ପରେ ଯାହାକୁ ସର୍ବୋତ୍ତମ ଜ୍ଞାନ ଓ କର୍ମର ଅନୁଷ୍ଠାନ କରାଯାଇଛି, ଏବଂ ବର୍ତ୍ତମାନ କଳ୍ପର ପ୍ରାରମ୍ଭରେ ଯାହା ପ୍ରାଦୁର୍ଭୂତ ହୋଇଛି, ତଥା ପରମେଶ୍ୱରଠାରୁ ଅନୁଗୃହୀତ ହୋଇ ହିରଣ୍ୟଗର୍ଭାଦି ଈଶ୍ୱରକୁ ସୁଷୁପ୍ତି ଦ୍ୱାରା ଉଠି ପୁରୁଷଭଳି ପୂର୍ବକଳ୍ପର ବ୍ୟବହାର ଅନୁସନ୍ଧାନ କରିବା ଠିକ୍

(ଘ) କାରଣ- 'ଯାହା ସୃଷ୍ଟିରେ ଆରମ୍ଭରେ ବ୍ରହ୍ମାକୁ ଉତ୍ପନ୍ନ କରେ, ଯାହା ତାହାର ବୁଦ୍ଧିରେ ବେଦକୁ ସୃଷ୍ଟିକରେ, ନିଜବୁଦ୍ଧିକୁ ପ୍ରକାଶିତ କରି ସେହି ଦେବର ମୁଁ ମୁମୁକ୍ଷୁକୁ ଶରଣ ଗ୍ରହଣ କରେ'', ଏହା ହିଁ ଶ୍ରୁତି ।



(ଙ) 'ମଧୁଛନ୍ଦାଦି ଋଷିମାନେ ଦଶମଣ୍ଡଳଯୁକ୍ତ ଋଗ୍‌ବେଦର ଋକ୍ ଦେଖନ୍ତି' ଏହି ପ୍ରକାର ଶୌନକାଦିଋଷ ମାନେ କହିଛନ୍ତି । ତଥା ବୋଧାୟନାଦିଋଷିମାନେ ମଧ୍ୟ ପ୍ରତ୍ୟେକବେଦରେ କାଣ୍ଡାଦିସ୍ରଷ୍ଟାଋଷି ମାନଙ୍କୁ ସ୍ମରଣ କରନ୍ତି ।

(୬) ମୂଳ-(କ) ସ୍ମୃତିରପ୍ୟୃଷିଜ୍ଞାନପୂର୍ବକମେବ ମନ୍ତ୍ରେଣାନୁଷ୍ଠାନଂ ଦର୍ଶୟତି- 'ଯୋ ହ ବା ଅବିଦିତାର୍ଷେୟଛନ୍ଦୋ ଦୈବତବ୍ରାହ୍ମଣେନ ମନ୍ତ୍ରେଣ ଯାଜୟତି ବାଧ୍ୟାପୟତି ବା ସ୍ଥାଣୁଂ ବର୍ଚ୍ଛତି ଗର୍ତ୍ତଂ ବା ପ୍ରତିପଦ୍ୟତେ', (ସର୍ବାନ୍ନଂ ପରିଂ) ଇତ୍ୟୁପକ୍ରମ୍ୟ 'ତସ୍ମାଦେତାନି ମନ୍ତ୍ରେ ମନ୍ତ୍ରେ ବିଦ୍ୟାତ୍', ଇତି । (ଖ) ପ୍ରାଣିନାଂ ଚ ସୁଖପ୍ରାପ୍ତୟେ ଧର୍ମୋ ବିଧୀୟତେ । ଦୁଃଖ ପରିହାରାୟ ଚାଧର୍ମଃ ପ୍ରତିଷିଧ୍ୟତେ । ଦୃଷ୍ଟାନୁଶ୍ରବିକ ସୁଖଦୁଃଖବିଷୟୌ ଚ ରାଗଦ୍ୱେଷୌ ଭବତଃ, ନ ବିଲକ୍ଷଣବିଷୟାବିତ୍ୟତୋ ଧର୍ମାଧର୍ମଫଳଭୂତୋତ୍ତରା ସୃଷ୍ଟି ନିଷ୍ପଦ୍ୟମାନା ପୂର୍ବ ସୃଷ୍ଟିସଦୃଶୈବ ନିଷ୍ପଦ୍ୟତେ । (ଗ) ସ୍ମୃତେଶ୍ଚ- 'ତେଷାଂ ଯେ ଯାନି କର୍ମାଣି, ପ୍ରାକ୍‌ସୃଷ୍ଟ୍ୟଂ ପ୍ରତି ପେଦିରେ । ତାନ୍ୟେବ ତେ ପ୍ରପଦ୍ୟନ୍ତେ, ସୃଜ୍ୟମାନାଃ ପୁନଃ ପୁନଃ ॥ ହିଂସାହିଂସ୍ରେ ମୃଦୁକ୍ରୁରେ ଧର୍ମାଧର୍ମାବୃତାନୃତେ । ତଦ୍‌ଭାବିତାଃ ପ୍ରପଦ୍ୟନ୍ତେ ତସ୍ମାତ୍ତସ୍ୟ ରୋଚତେ ।' ଇତି ।

**(୬) ଭାଷାଂତର**-(କ) 'ଯେଉଁ ମନ୍ତ୍ରରେ ଛନ୍ଦ, ଋଷି, ଦେବତା ତଥା ବିନିଯୋଗର ଜ୍ଞାନ ନାହିଁ; ତାହାଦ୍ୱାରା ଯେଉଁ ଯଜ୍ଞ କରାଯାଏ, ଯାହା ଅଧ୍ୟାପନା କରାଯାଏ ସେ ସ୍ଥାଣୁ ହୁଏ, ଅଥବା ନରକକୁ ପ୍ରାପ୍ତ ହୁଏ' । ଏହିପ୍ରକାର ଉପକ୍ରମ କରି 'ତେଣୁ ପ୍ରତ୍ୟେକ ମନ୍ତ୍ରରେ ଋଷି ପ୍ରଭୃତି ଜାଣିବା ଉଚିତ' ଏହି ପ୍ରକାର ମଧ୍ୟ ଋଷିଜ୍ଞାନ ପୂର୍ବକ ମନ୍ତ୍ରଦ୍ୱାରା ଦେଖାଯାଏ ।

(ଖ) ପ୍ରାଣୀର ସୁଖପାଇବା ପାଇଁ ଧର୍ମର ବିଧାନ କରାଯାଏ ଏବଂ ଦୁଃଖ ପରିହାର ପାଇଁ ଅଧର୍ମର ପ୍ରତିଷେଧ କରାଯାଇଛି । ଐହିକ ଓ ପାରଲୌକିକ ସୁଖ ଦୁଃଖ ବିଷୟକ ରାଗ ଓ ଦ୍ୱେଷ ହୁଏ, ଅନ୍ୟ ବିଷୟରେ କିନ୍ତୁ ହୁଏ ନାହିଁ । ତେଣୁ ଧର୍ମ ଓ ଅଧର୍ମର ଫଳଭୂତ ଉତ୍ପନ୍ନ ହୋଇ ଉତ୍ତରୋତ୍ତର ସୃଷ୍ଟି ପୂର୍ବସୃଷ୍ଟିର ସଦୃଶ ନିଷ୍ପନ୍ନ ହୁଏ ।

(ଗ) 'ପ୍ରାଣୀମାନଙ୍କଦ୍ୱାରା ଯେଉଁ ଯେଉଁ କର୍ମ ପ୍ରଥମ ସୃଷ୍ଟିରେ କରାଯାଇ ସେହି କର୍ମକୁ ସେମାନେ ପୁନଃପୁନଃ ଉତ୍ପନ୍ନ ହୋଇ ପ୍ରାପ୍ତ ହୁଅନ୍ତି । ହିଂସା ଓ ଅହିଂସା, ମୃଦୁ ଓ କ୍ରୁର, ଧର୍ମ ଓ ଅଧର୍ମ, ସତ୍ୟ ଓ ଅସତ୍ୟ ଇତ୍ୟାଦି ଧର୍ମଦ୍ୱାରା ସ୍ଥିର ଓ ଉତ୍ପନ୍ନ ହୋଇ ଏହା ମିଳେ ଏବଂ ସେ ତାହାକୁ ରୁଚିକର ହୁଏ ।' ଏହାହିଁ ସ୍ମୃତି ।

(୭) ମୂଳ-(କ) ପ୍ରଲୀୟମାନମପି ଚେଦଂ ଜଗଚ୍ଛକ୍ତ୍ୟବଶେଷମେବ ପ୍ରଲୀୟତେ । ଶକ୍ତିମୂଳମେବ ଚ ପ୍ରଭବତି, ଇତରଥାଽକସ୍ମିକତ୍ୱପ୍ରସଙ୍ଗାତ୍ । (ଖ) ନ ଚାନେକକାରାଃ

ଶକ୍ତୟଃ ଶକ୍ୟାଃ କଳ୍ପୟିତୁମ୍ । ତତଶ୍ଚ ବିଚ୍ଛଦ୍ୟ ବିଚ୍ଛଦ୍ୟା-ପୁଦ୍‌ଭବତାଂ ଭୂରାଦିଲୋକ-ପ୍ରବାହାଣାଂ ଦେବତିର୍ଯ୍ୟଙ୍‌ମନୁଷ୍ୟ ଲକ୍ଷଣାନାଂ ଚ ପ୍ରାଣିନିକାୟପ୍ରବାହାଣାଂ ବର୍ଣ୍ଣାଶ୍ରମଧର୍ମ-ଫଳବ୍ୟବସ୍ଥାନାଂ ଚାନାଦୌ ସଂସାରେ ନିତ୍ୟତ୍ୱମିନ୍ଦ୍ରିୟ ବିଷୟସମ୍ବନ୍ଧ ନିୟତତ୍ୱବତ୍ପ୍ରତ୍ୟେତବ୍ୟମ । (ଗ) ନ ହୀନ୍ଦ୍ରିୟସମ୍ବନ୍ଧାଦେବ୍ୟ ବହାରସ୍ୟ ପ୍ରତିସର୍ଗମନ୍ୟଥାତ୍ୱଂ ଷଷ୍ଠେନ୍ଦ୍ରିୟବିଷୟକଳ୍ପଂ ଶକ୍ୟମୁତ୍‌ପ୍ରେକ୍ଷିତୁମ୍ । ସର୍ବକଳ୍ପନାଂ ତୁଲ୍ୟାବ୍ୟବହାରତ୍ୱାତ୍ କଳ୍ପାନ୍ତରବ୍ୟବହାରାନୁସନ୍ଧାନକ୍ଷମତ୍ୱାଚ୍ଚେଶ୍ୱରାଣା ସମାନନାମରୂପା ଏବ ପ୍ରତିସର୍ଗଂ ବିଶେଷାଃ ପ୍ରାଦୁର୍ଭବନ୍ତି । (ଘ) ସମାନନାମରୂପତ୍ୱାଚ୍ଚାବୃତାମପି ମହାସର୍ଗମହାପ୍ରଳୟଲକ୍ଷଣାୟାଂ ଜଗତୋଽଭ୍ୟୁପଗମ୍ୟମାନାୟ ନ କଶ୍ଚିଚ୍ଛବ୍ଦପ୍ରାମାଣ୍ୟାଦିବିରୋଧଃ । (ଙ) ସମାନନାମରୂପତାଂ ଚ ଶ୍ରୁତି ସ୍ମୃତି ଦର୍ଶୟତଃ-ସୂର୍ଯ୍ୟାଚନ୍ଦ୍ରମସୌ ଧାତା ଯଥାପୂର୍ବମକଳ୍ପୟତ୍ । ଦିବଂ ଚ ପୃଥିବୀଂ ଚାନ୍ତରିକ୍ଷମଥୋ ସ୍ୱଃ'', (ଋ. ସଂ ୧୦-୧୯୦-୧୩) ଇତି । ଯଥା ପୂର୍ବସ୍ମିନ୍ କଳ୍ପେ ସୂର୍ଯ୍ୟାଚନ୍ଦ୍ରମଃ ପ୍ରଭୃତି ଜଗତ୍‌କ୍ଳୃପ୍ତଂ ତଥାସ୍ମିନ୍ନପି କଳ୍ପେ ପରମେଶ୍ୱରୋ-ଽକଳ୍ପୟଦିତ୍ୟର୍ଥଃ ॥

**(୭)** ଭାଷାଂତର-(କ) ପ୍ରଲୀୟମାନ ହେଉଥିବା ଏହି ଜଗତ ଶକ୍ତିର ଅବଶିଷ୍ଟ ପ୍ରଚଳନ ହୁଏ । ପୁନଶ୍ଚ ଶକ୍ତିଦ୍ୱାରା ଉତ୍ପନ୍ନ ହୁଏ, ଅନ୍ୟଥା ସଂସାରରେ ଅକାରଣତ୍ୱ ପ୍ରସଙ୍ଗ ଉପସ୍ଥିତି ହୁଏ ।

(ଖ) ଅବିଦ୍ୟାରୂପ ଉପାଦାନକାରଣରେ ଲୀନ, କାର୍ଯ୍ୟରୂପ ସଂସ୍କାରଭିନ୍ନ ଅନେକ ପ୍ରକାରର ଶକ୍ତିଗୁଡ଼ିକ କଳ୍ପନା କରାଯାଇପାରିବ ନାହିଁ, (କାରଣ-ଏହି କଳ୍ପନାରେ କୌଣସି ପ୍ରମାଣ ନାହିଁ ।) ତେଣୁ ପୃଥକ୍ ପୃଥକ୍ ଉତ୍ପନ୍ନ ହେଉଥିବା ଭୂଆଦି ଲୋକପ୍ରବାହ ଓ ଦେବ, ପଶୁ, ମନୁଷ୍ୟର ପ୍ରାଣୀ ସମୂହର ପ୍ରବାହ, ବର୍ଣ୍ଣ ଆଶ୍ରମ, ଧର୍ମ ଓ ଫଳରବ୍ୟବସ୍ଥାର ନିତ୍ୟତ୍ୱ ଅନାଦି ସଂସାରରେ ବିଷୟେନ୍ଦ୍ରିୟ ସମ୍ବନ୍ଧର ନିତ୍ୟତ୍ୱ ସଦୃଶ ଜାଣିବା ଉଚିତ୍ ।

(ଗ) ଛଅ ଇନ୍ଦ୍ରିୟ ମନ ବିଷୟର ଭଳି ପ୍ରତ୍ୟେକ ସୃଷ୍ଟିରେ ଇନ୍ଦ୍ରିୟ ବିଷୟ ସମ୍ବନ୍ଧାଦି ବ୍ୟବହାରର ଭେଦକଳ୍ପନା କରାଯାଇପାରିବ ନାହିଁ । ଏହାର କାରଣ ସବୁକଳ୍ପରେ ସମାନଭାବରେ ବ୍ୟବହାର କଲେ ଏବଂ ହିରଣ୍ୟଗର୍ଭାଦି ଈଶ୍ୱରକୁ ଅନ୍ୟକଳ୍ପର ବ୍ୟବହାର ଅନୁସନ୍ଧାନ କରିବାରେ ସମର୍ଥ ହେଲେ ପ୍ରତ୍ୟେକ ସୃଷ୍ଟିରେ ସମାନନାମ ରୂପଥିବା ଭିନ୍ନ ଭିନ୍ନ ବ୍ୟକ୍ତି ପ୍ରାଦୁର୍ଭୂତ ହୁଅନ୍ତି ।

(ଘ) ନାମ ଓ ରୂପ ଭଳି ହେଲେ ଜଗତର ମହାସୃଷ୍ଟି ଓ ମହାପ୍ରଳୟରୂପ ଆବୃତ୍ତି ସ୍ୱୀକାର କଲାପରେ ମଧ୍ୟ ଶବ୍ଦ ପ୍ରାମାଣ୍ୟାଦିରେ କୌଣସି ବିରୋଧ ନାହିଁ ।



(ଙ) ଶ୍ରୁତି ଓ ସ୍ମୃତି ମଧ୍ୟ ସବୁକଳ୍ପରେ ନାମରୂପର ସମାନତା ଦେଖାଏ । 'ବ୍ରହ୍ମା ପୂର୍ବକଳ୍ପର ଭଳି ସୂର୍ଯ୍ୟ, ଚନ୍ଦ୍ରମା, ଦ୍ୟୁଲୋକ, ପୃଥିବୀ, ଅନ୍ତରିକ୍ଷ ଏବଂ ସ୍ୱର୍ଗକୁ ରଚନା କଲେ ।' ପୂର୍ବକଳ୍ପରେ ସୂର୍ଯ୍ୟ, ଚନ୍ଦ୍ରମାଦି ଜଗତର ଯେପରି କଳ୍ପନା ଥିଲା, ସେପରି ଏହି କଳ୍ପରେ ମଧ୍ୟ ପରମେଶ୍ୱର ତାହାକୁ କଳ୍ପନା କଲେ, ଏହାହିଁ ଅର୍ଥ ।

(୮) ମୂଳ-(କ) ତଥା 'ଅଗ୍ନିର୍ବା' ଅକାମୟତା ଅନ୍ନାଦୋ ଦେବାନଂ ସ୍ୟାମିତି । ସ ଏତମଗ୍ନୟେ କୃତ୍ତିକାଭ୍ୟଃ ପୁରୋଡ଼ାଶମଷ୍ଟାକପାଲଂ ନିରବପତ୍ ।' ତୈ.ବ୍ରା ୩ । ୧ । ୪ । ୧) ଇତି ନକ୍ଷତ୍ରେଷ୍ଟିବଧୌ ଯୋଽଗ୍ନିର୍ନିରବପଦ୍ୟସ୍ମୈ ବାଽଗ୍ନୟେ ନିରବପତ୍ତୟୋଃ ସମାନନାମରୂପତାଂ ଦର୍ଶୟତୀତ୍ୟେବଂଜାତୀୟକା ଶ୍ରୁତିରିହୋଦାହର୍ତ୍ତବ୍ୟା । (ଖ) ସ୍ମୃତିରପି- 'ଋଷୀଣାଂ ନାମଧେୟାନି ଯାଶ୍ଚ ବେଦେଷୁ ଦୃଷ୍ଟୟଃ । ଶର୍ବର୍ଯ୍ୟନ୍ତ ପ୍ରସୂତାନାଂ ତାନ୍ୟେବୈଭ୍ୟା ଦଦାତ୍ୟଜଃ । ଯଥା ତୁଷ୍ଟଲିଙ୍ଗାନି ନାମରୂପାଣି ପର୍ଯ୍ୟୟେ । ଦୃଶ୍ୟନ୍ତେ ତାନି ତାନ୍ୟେବ ତଥାଭାବା ଯୁଗାଦିଷୁ । ଯଥାଭିମାନିନୋଽତୀତାସ୍ତୁଲ୍ୟାସ୍ତେ ସାଂପ୍ରତୈରିହ । ଦେବା ଦେବୈରତୀତୈର୍ହି ରୂପୈନାମଭିରେବ ଚ ।' ଇତ୍ୟେବଂଜାତୀୟକା ଦ୍ରଷ୍ଟବ୍ୟା ।

(୮) ଭାଷାଂତର-(କ) ଏହିପ୍ରକାର 'ମୁଁ ଦେବତାମାନଙ୍କ ମଧ୍ୟରେ ଅନ୍ନ ଭକ୍ଷକ ଅଗ୍ନିରୂପ ହେବି ବୋଲି ଯଜମାନ କାମନା କଲେ । ଏହାଦ୍ୱାରା କୃତ୍ତିକା ନକ୍ଷତ୍ରର ଅଭିମାନୀ ଅଗ୍ନି ପାଇଁ ଆଠଟି କପାଳରେ ନିର୍ମାଣ ହୋଇଥିବା ପୁରୋଡ଼ାଶ (ହବିଷ୍ୟ) ଅର୍ପଣ କରାଗଲା'' । ଏହି ଶ୍ରୁତି ନକ୍ଷତ୍ରେଷ୍ଟି ବିଧିରେ ଯେଉଁ ଯଜମାନ ରୂପ ଅଗ୍ନିଦ୍ୱାରା ଯେଉଁ ଅଗ୍ନିପାଇଁ ହବିଷ୍ୟ ଅର୍ପଣ କରାଗଲା, ସେହି ଦୁଇଟି ନାମରୂପର ସମାନତାକୁ ଦେଖାଏ ।

(ଖ) ପୂର୍ବକଳ୍ପରେ ଯାହା ଋଷିର ନାମଥିଲା, ଓ ଯାହା ବେଦବିଷୟକ ଦୃଷ୍ଟିଥିଲା, ପ୍ରଳୟଶେଷରେ ପୁଣି ତାହାର ଉତ୍ପନ୍ନ ହେଲେ ମଧ୍ୟ ବ୍ରହ୍ମା ତାହାର ନାମ ଓ ଶକ୍ତିକୁ ସେହି ଋଷିଙ୍କୁ ଦେଲେ । ଯେପରି ବସନ୍ତାଦିଭିନ୍ନ ଋତୁରେ ଭିନ୍ନ ଭିନ୍ନ ତାହାର ନବପଲ୍ଲବାଦି ଚିହ୍ନ ହୁଏ ଏବଂ ସେମାନେ ଋତୁ ଆସିଲେ ଦେଖାଯା'ନ୍ତି । ସେପରି ସୃଷ୍ଟିର ଆଦିରେ ପଦାର୍ଥ ଦେଖାଯାଏ । ଚକ୍ଷୁ ଆଦି ଇନ୍ଦ୍ରିୟମାନଙ୍କର ଅଭିମାନୀ ଯାହା ଅତୀତ କଳ୍ପରେ ଦେବତା ଥିଲେ, ସେପରି ଏହି କଳ୍ପରେ ମଧ୍ୟ ସେ ସୂର୍ଯ୍ୟାଦି ଦେବତା ଅଟନ୍ତି । ଅତୀତଦେବତାମାନଙ୍କର ନାମରୂପ ସଦୃଶ ତାହାର ନାମରୂପ ମଧ୍ୟ ଅଛି । ''ଏହି ପ୍ରକାର ସ୍ମୃତି ମଧ୍ୟ ନାମରୂପସମାନତାରେ ପ୍ରାଣରୂପରେ ବୁଝାଯାଏ ।

मध्वादिष्वसंभवादनधिकारं जैमिनिः ॥ ३१ ॥

(୧) ମଧ୍ୱାଦିଷ୍ୱସମ୍ଭବାଦନଧିକାରଂ ଜୈମିନିଃ ॥୧-୩-୩୧

ମଧ୍ୱାଦିଷୁ = 'ଅସୌ ବା ଆଦିତ୍ୟୋ ଦେବମଧୁ' ଇତ୍ୟାଦି ମନୁଷ୍ୟାଧିକାରକ ମଧ୍ୱାଦି ଉପାସନାରେ, ଅସମ୍ଭବାତ୍ = ଦେବାଦି ଅଧିକାରର ଅସମ୍ଭବ ହେଲେ, ଅନଧିକାରମ୍ = ବ୍ରହ୍ମ ବିଦ୍ୟାରେ ମଧ ଦେବାଦିର ଅଧିକାର ନାହିଁ । ଜୈମିନିଃ=ଏହିପରି ଜୈମିନି ଆଚାର୍ଯ୍ୟ ସ୍ୱୀକାର କରିଛନ୍ତି ।

(୨) ମୂଳ-(କ) ଇହ ଦେବାଦିନାମପି ବ୍ରହ୍ମବିଦ୍ୟାୟାମସ୍ତ୍ୟଧିକାର ଇତି ଯତ୍ପ୍ରତିଜ୍ଞାତଂ ତତ୍ପର୍ଯ୍ୟାବର୍ତ୍ତ୍ୟତେ । ଦେବାଦୀନାମନଧିକାରଂ ଜୈମିନିରାଚାର୍ଯ୍ୟୋ ମନ୍ୟତେ । କସ୍ମାତ୍ ? ମଧ୍ୱାଦିସମ୍ଭବାତ୍ । ବ୍ରହ୍ମବିଦ୍ୟାୟାମଧିରାଭ୍ୟୁପଗମେ ହି ବିଦ୍ୟାତ୍ୱାବିଶେଷାନ୍ ମଧ୍ୱାଦିବିଦ୍ୟାସ୍ୱପ୍ୟଧିକାରୋଽଭ୍ୟୁପଗମ୍ୟେତ । (ଖ) ନ ଚୈବଂ ସମ୍ଭବତି । କଥମ୍ ?'' ଅସୌ ବା ଆଦିତ୍ୟୋ ଦେବମଧୁ'' (ଛା ୩ । ୧ । ୨) ଇତ୍ୟତ୍ର ମନୁଷ୍ୟା ଆଦିତ୍ୟଂ ମଧ୍ୱଧ୍ୟାସେନୋପାସୀରନ୍ ଦେବାଦିଷୁହ୍ୟୁପାସକେଷ୍ୱଭ୍ୟୁପଗମ୍ୟମାନେଷ୍ୱାଦିତ୍ୟଃ କମନ୍ୟମାଦିତ୍ୟମୁପାସୀତ ? (ଗ) ପୁନଶ୍ଚାଦିତ୍ୟବ୍ୟପଶ୍ରୟାଣି ପଞ୍ଚ ରୋହିତାଦୀନ୍ୟମୃତାନ୍ୟୁପକ୍ରମ୍ୟ ବସବୋ ରୁଦ୍ରା ଆଦିତ୍ୟା ମରୁତଃ ସାଧ୍ୟାଶ୍ଚ ପଞ୍ଚ ଦୈବଗତାଃ କ୍ରମେଣ ତତ୍ତଦମୃତମୁପଜୀବନ୍ତୀତ୍ୟୁପଦିଶ୍ୟ 'ସ ଯ ଏତଦେବମମୃତଂ ବେଦ ବସୁନାମେବୈକୋ ଭୂତ୍ୱାଽଗ୍ନିନୈବ ମୁଖେନୈତଦେବାମୃତଂ ଦୃଷ୍ଟ୍ୱାତୃଷ୍ୟତି ।' ଇତ୍ୟାଦିନା ବସ୍ୱାଦ୍ୟୁପଜୀବ୍ୟାନ୍ୟମୃତାନି ବିଜାନତାଂ ବସ୍ୱାଦିମହିମାପ୍ରାପ୍ତିଂ ଦର୍ଶୟତି ।

(୨) ଭାଷାଂତର - (କ) ଏଠାରେ ଯାହା ''ଏଠାରେ ବ୍ରହ୍ମବିଦ୍ୟାରେ ଦେବାଦିର ଅଧିକାର ଅଛି'' ବୋଲି ପ୍ରତିଜ୍ଞା କରାଯାଇଅଛି । ତାହା ଉପରେ ଆକ୍ଷେପ କରାଯାଇଛି । ଜୈମିନିଙ୍କର ମତରେ-ଦେବାଦିର ବ୍ରହ୍ମବିଦ୍ୟାରେ ଅଧିକାର ନାହିଁ । କିପରି ? ଏହାଦ୍ୱାରା ମଧ୍ୱାଦିରେ ତାହାର ଅଧିକାର ସମ୍ଭବ ନୁହେଁ । ବ୍ରହ୍ମବିଦ୍ୟାରେ ସେହି ଅଧିକାର ସ୍ୱୀକାର କଲେ ବିଦ୍ୟାତ୍ୱ ଦୁଇଟି ସ୍ଥଳରେ ସମାନ ହେବାରୁ ମଧ୍ୱାଦି ବିଦ୍ୟାରେ ତାହାର ଅଧିକାର ସ୍ୱୀକାର କରିବାକୁ ପଡ଼େ ।

(ଖ) ପରନ୍ତୁ ଏହା ଅସମ୍ଭବ । କାରଣ-'ଆଦିତ୍ୟ ନିଶ୍ଚିତ ଭାବରେ ଦେବତାମାନଙ୍କର ମଧୁ ଅଟେ'' । ଏଠାରେ ମଧୁର ଅଧ୍ୟାସଦ୍ୱାରା ଆଦିତ୍ୟର ମନୁଷ୍ୟ



ଉପାସନା କରିବା ଉଚିତ । ପରନ୍ତୁ ଦେବାଦିକୁ ଉପାସକରୂପରେ ସ୍ୱୀକାର କରିବାର ଜାଣିବା ପରେ ଆଦିତ୍ୟ କୌଣସି ଅନ୍ୟ ଆଦିତ୍ୟକୁ ଉପାସନା କରେ କି ?

(ଗ) ''ଆଦିତ୍ୟର ଆଶ୍ରିତ ରୋହିତାଦି ପାଞ୍ଚକିରଣ ଅମୃତ ଅଟେ । ଏହିପରି ଆରମ୍ଭ କରି ବସୁ, ରୁଦ୍ର, ଆଦିତ୍ୟ, ମରୁତ ଓ ସାଧ୍ୟ ଏହି ପାଞ୍ଚ ଦେବଗଣକ୍ରମରେ ସେହି ଅମୃତର ଉପଯୋଗ କରନ୍ତି' । ଏହିପରି ଉପଦେଶ କରି 'ସେ ଯେଉଁ ଏହିପ୍ରକାର ଅମୃତକୁ ଦେଖି ତୃପ୍ତ ହୋଇଯାଏ' ଇତ୍ୟାଦି ଶ୍ରୁତି ବସ୍ୱାଦିର ଉପଜୀବ୍ୟ ଅମୃତର ଜ୍ଞାତାନିମିତ୍ତ ବସ୍ୱାଦିର ମହିମାପ୍ରାପ୍ତି ଦେଖାଏ ।

(୩) ମୂଳ-(କ) ବସ୍ୱାଦୟସ୍ତୁ କାନନ୍ୟାନ୍‌ବସ୍ୱାଦୀନମୃତୋପଜୀବିନୋ ବିଜାନୀୟୁଃ ? କଂ ବାଽନ୍ୟଂ ବସ୍ୱାଦିମହିମାନଂ ପ୍ରେପ୍ସେୟୁଃ । (ଖ) ତଥା ଅଗ୍ନିଃପାଦୋ ବାୟଃ ପାଦ ଆଦିତ୍ୟଃ ପାଦୋ ଦିଶଃ ପାଦଃ', (ଛା ୩।୧୮।୨) 'ବାୟର୍ବାବ ସଂବର୍ଗଃ', (ଛା ୪।୩।୧), 'ଆଦିତ୍ୟ ବ୍ରହ୍ମେତ୍ୟାଦେଶଃ', (ଛା ୩।୧୧।୪) ଇତ୍ୟାଦିଷୁ ଦେବାତମ୍ନୋପାସନେଷୁ ନ ତେଷାମେବ ଦେବତାତ୍ମନାମଧିକାରଃ ସମ୍ଭବତି । (ଗ) ତଥା 'ଇମାବେବ ଗୀତମଭରଦ୍ୱାଜାବୟମେବ ଗୌତମୋଽୟଂ ଭରଦ୍ୱାଜଃ', (ବୃ ୨।୨।) ଇତ୍ୟାଦିଷ୍ୱପ୍ୟୃଷିସମ୍ବନ୍ଧେଷୂପାସନେଷୁ ନ ତେଷାମେବର୍ଷୀଣାମଧିକାରଃ ସମ୍ଭବତି ।

**(୩) ଭାଷାଂତର-** (କ) ଯଦି ବସ୍ୱାଦିକୁ ଉପାସକ ବୋଲି ସ୍ୱୀକାର କରାଯାଏ, ତେବେ ବସ୍ୱାଦି ଅମୃତୋପଜୀବୀ କୌଣସି ଅନ୍ୟ ବସ୍ୱାଦିକୁ ସ୍ୱୀକାର କରେ କି ? ଅଥବା କୌଣସି ଅନ୍ୟ ବସ୍ୱାଦିର ମହିମାକୁ ପାଇବା ପାଇଁ ଋହେଁ କି ?

(ଖ) ତଥା ''ଅଗ୍ନିପାଦ, ବାୟୁପାଦ, ଆଦିତ୍ୟପାଦ, ଦିଗଗୁଡ଼ିକ ପାଦ'' ବାୟୁ ନିଶ୍ଚିତ ଭାବରେ ସବର୍ଗ ଅଟେ' । 'ଆଦିତ୍ୟ ବ୍ରହ୍ମ ଅଟେ । ଏହାହିଁ ଆଦେଶ'' ଇତ୍ୟାଦି ଦେବତାତ୍ମକ ଉପାସନାରେ ସେହି ଦେବତାମାନଙ୍କର ଅଧିକାର ସମ୍ଭବ ନୁହେଁ ।

(ଗ) ଏହିପ୍ରକାର 'ଯେଉଁ ଦୁଇଟି ଶ୍ରୋତ୍ର ହିଁ ଗୌତମ ଓ ଭରଦ୍ୱାଜ । ଯିଏ ଗୌତମ, ସେ ହିଁ ଅନ୍ୟ ଭରଦ୍ୱାଜ ଅଟେ ।'' ଇତ୍ୟାଦି ଋଷିସମ୍ବନ୍ଧୀ ଉପାସନାରେ ସେହି ଋଷିମାନଙ୍କର ଅଧିକାର ସମ୍ଭବ ନୁହେଁ'' ।

(୧) ମୂଳ-(କ) କୁତଶ୍ଚ ଦେବାଦୀନାଧିକାରଃ ମନଧିକାରଃ ?

ଭାଷାଂତର- (କ) ଯେଉଁ କାରଣରୁ ଦେବତାମାନଙ୍କର ଅନଧିକାର ?

## ज्योतिषि भावाच्च ॥ ३२ ॥

## (୧) ଜ୍ୟୋତିଷି ଭାବାଚ୍ଚ ॥ ୧-୩-୩୨ ॥

ଜ୍ୟୋତିଷି=ଦୃଶ୍ୟମାନ ଜ୍ୟୋତିର୍ମଣ୍ଡଳରେ ଭାବାଚ୍ଚ = ଆଦିତ୍ୟ ଶବ୍ଦର ପ୍ରୟୋଗ ଓ ଆଦିତ୍ୟ ପ୍ରତ୍ୟୟ ହୁଏ । ସେମାନେ ମଣ୍ଡଳ ଅଚେତନ ଅଟନ୍ତି । ତାହାଠାରୁ ଭିନ୍ନ ଶରୀରାଦିଯୁକ୍ତ ଅଚେତନ ପ୍ରତ୍ୟକ୍ଷାଦି ପ୍ରମାଣଗୁଡ଼ିକ ଦ୍ୱାରା ଅଜ୍ଞାତ । ତେଣୁ ଶରୀରରହିତ ହେଲେ ଦେବତାଦି ବ୍ରହ୍ମବିଦ୍ୟାର ଅଧିକାରୀ ହୁଏ ନାହିଁ ।

(୨) ମୂଳ-(କ) ଯଦିଦଂ ଜ୍ୟୋତିର୍ମଣ୍ଡଲଂ ଦ୍ୟୁସ୍ଥାନମହୋରାତ୍ରାଭ୍ୟାଂ ବଂଭ୍ରମ-ଜ୍ଜଗଦବଭାସୟତି, ତସ୍ମିନ୍ନାଦିତ୍ୟାଦୟୋ ଦେବତାବଚନାଃ ଶବ୍ଦାଃ ପ୍ରଯୁଜ୍ୟନ୍ତେ । ଲୋକ-ପ୍ରସିଦ୍ଧେର୍ବାକ୍ୟଶେଷପ୍ରସିଦ୍ଧେଶ୍ଚ । (ଖ) ନ ଚ ଜ୍ୟୋତିର୍ମଣ୍ଡଲସ୍ୟ ହୃଦୟାଦିନା ବିଗ୍ରହେଣ ଚେତନତୟାଽର୍ଥିତ୍ୱାଦିନା ବା ଯୋଗୋଽବଗନ୍ତୁଂ ଶକ୍ୟତେ ମୃଦାଦିବଦଚେତନତ୍ୱାବଗମାତ୍ । ଏତେନାଗ୍ନ୍ୟାଦୟୋ ବ୍ୟାଖ୍ୟାତା । (ଗ) ସ୍ୟାଦେତତ୍-ମନ୍ତ୍ରାର୍ଥବାଦେତିହାସପୁରାଣଲୋକେଭ୍ୟୋ ଦେବାଦୀନାଂ ବିଗ୍ରହବତ୍ତ୍ୱାଦ୍ୟବଗମାଦୟମଦୋଷ ଇତି, (ଘ) ନେତ୍ୟୁଚ୍ୟତେ । ନହି ତାବଲ୍ଲୋକୋ ନାମ କିଞ୍ଚିତ୍ ସ୍ୱତନ୍ତ୍ରଂ ପ୍ରମାଣମସ୍ତି । ପ୍ରତ୍ୟକ୍ଷାଦିଭ୍ୟ ଏବ ହ୍ୟବିଚରିତ ବିଶେଷେଭ୍ୟ ପ୍ରମାଣେଭ୍ୟଃ ପ୍ରସିଦ୍ଧ ଏବାର୍ଥୋ ଲୋକାତ୍ପ୍ରସିଦ୍ଧଂ ଇତ୍ୟୁଚ୍ୟତେ । (ଙ) ନ ଚାତ୍ର ପ୍ରତ୍ୟକ୍ଷାଦୀନାମନ୍ୟତମଂ ପ୍ରମାଣମସ୍ତି । ଇତିହାସପୁରାଣମପି ପୌରୁଷେୟତ୍ୱାତ୍ ପ୍ରମାଣାନ୍ତରଂ ମୂଳମାକାଙ୍କ୍ଷତି ।

**(୨) ଭାଷାଂତର**-(କ) ଦ୍ୟୁଲୋକରେ ରହିଥିବା ଏହି ଯେଉଁ ଜ୍ୟୋତିର୍ମଣ୍ଡଳ ଦିନ ରାତି ଭ୍ରମଣ କରି ସଂସାରକୁ ପ୍ରକାଶିତ କରେ । ତାହାଠାରେ ଆଦିତ୍ୟାଦି ଦେବତାବାଚକ ଶବ୍ଦ ପ୍ରଯୁକ୍ତ ହୁଅନ୍ତି; କାରଣ-ଏହି ଲୋକ ପ୍ରସିଦ୍ଧି ଓ ବାକ୍ୟଶେଷ ପ୍ରସିଦ୍ଧି ଅଟେ ।

(ଖ) ଜ୍ୟୋତିର୍ମଣ୍ଡଳର ହୃଦୟାଦିଶରୀର ସହ ଅଥବା ଚେତନତା ଓ ଅର୍ଥିତ୍ୱାଦି ସହ ସମ୍ବନ୍ଧ ଜାଣି ହୁଏ ନାହିଁ । କାରଣ-ମୃଦାଦି ଭଳି ସେମାନେ ଅଚେତନ ବୋଲି ଜଣା ଯାଆନ୍ତି । ଏହିପ୍ରକାର ଅଗ୍ନି ଇତ୍ୟାଦି ମଧ୍ୟ ଜାଣିବା ଉଚିତ୍ ।

(ଗ) ଏହିପରି ହୋଇପାରେ-ମନ୍ତ୍ର, ଅର୍ଥବାଦ, ଇତିହାସ, ପୁରାଣ ଏବଂ ଲୋକ ବ୍ୟବହାରଦ୍ୱାରା ଏହା ପ୍ରତି ହୁଏ କି ଦେବାଦିଠାରେ ବିଗ୍ରହବତ୍ତ୍ୱାଦିର ଜ୍ଞାନୋଦୟ ହେଲେ ଏହି ଅନଧିକାରରୂପ ଦୋଷ ନୁହେଁ ବୋଲି କୁହାଯାଇଛି ।



(ଘ) କିନ୍ତୁ ଏହା ଠିକ୍ ନୁହେଁ । କାରଣ-ଲୋକ କୌଣସି ସ୍ୱତନ୍ତ୍ର ପ୍ରମାଣ ନୁହେଁ । ଯାହାର ବିଶେଷ ବିଷୟରେ ବିଚାର କରାଯାଇନାହିଁ- ଏପରି ପ୍ରତ୍ୟକ୍ଷାଦି ପ୍ରମାଣ ଦ୍ୱାରା ପ୍ରସିଦ୍ଧ ହୋଇଥିବା ଅର୍ଥ ସଂସାରରେ ହୋଇଛି ବୋଲି କୁହାଯାଇଛି ।

(ଙ) ଦେବତାର ଶରୀର ରହିଥିବା ବିଷୟରେ କୌଣସି ପ୍ରତ୍ୟକ୍ଷାଦିରେ ପ୍ରମାଣ ନାହିଁ । ଇତିହାସ, ପୁରାଣ ମଧ୍ୟ ପୁରୁଷପ୍ରଣୀତ ହେଲେ ମୂଳଭୂତ ଅନ୍ୟପ୍ରମାଣକୁ ଅପେକ୍ଷା ରଖେ ।

(୩) ମୂଳ-(କ) ଅର୍ଥବାଦା ଅପି ବିଧିନୈକବାକ୍ୟତ୍ୱାତ୍ ସ୍ତୁତ୍ୟର୍ଥାଃ ସନ୍ତୋ ନ ପାର୍ଥଗର୍ଥ୍ୟେନ ଦେବାଦୀନାଂ ବିଗ୍ରହାଦିସଦ୍ଭାବେ କାରଣଭାବଂ ପ୍ରତିପଦ୍ୟନ୍ତେ । (ଖ) ମନ୍ତ୍ରାଅପି ଶ୍ରୁତ୍ୟାଦିବିନିଯୁକ୍ତାଃ ପ୍ରୟୋଗସମବାୟିନୋଽଭିଧାନାର୍ଥା ନ କସ୍ୟଚିଦର୍ଥସ୍ୟ ପ୍ରମାଣମିତ୍ୟାଚକ୍ଷତେ । ତସ୍ମାଦଭାବୋ ଦେବାଦୀନାମଧିକାରସ୍ୟ ।

**(୩) ଭାଷାଂତର-** (କ) ଅର୍ଥବାଦ ବାକ୍ୟ ମଧ୍ୟ ବିଧିର ସହିତ ଏକବାକ୍ୟତା (ଏକାର୍ଥ ପ୍ରତିପାଦକତା) ହେତୁ ସ୍ତୁତି ଅର୍ଥକ ହୋଇ ବିଧିବାକ୍ୟର ଅର୍ଥଠାରୁ ଭିନ୍ନ ସ୍ୱତନ୍ତ୍ର ରୂପରେ ଦେବତାଦିର ଶରୀର ସଦ୍ ଭାବରେ କାରଣତ୍ୱକୁ ପ୍ରାପ୍ତ ହୁଏ ନାହିଁ ।

(ଖ) ଶ୍ରୁତାଦିଦ୍ୱାରା ବିନିଯୋଗକୁ ପ୍ରାପ୍ତ ହୋଇ ସେ ମନ୍ତ୍ର ଗୁଡ଼ିକ ପ୍ରୟୋଗ ସହିତ ସମ୍ବନ୍ଧ ସ୍ଥାପନ କରୁଥିବା ଅର୍ଥର ଅଭିଧାନ କରନ୍ତି । ସ୍ୱତନ୍ତ୍ରରୂପରେ କୌଣସି ଅର୍ଥରେ ପ୍ରମାଣ ନାହିଁ ବୋଲି ମୀମାଂସକମାନେ କହନ୍ତି । ତେଣୁ ଶରୀରାଦି ଅଭାବ ହେଲେ ବ୍ରହ୍ମବିଦ୍ୟାରେ ଦେବତାଦିର ଅଧିକାର ରହେନାହିଁ ।

## भावं तु बादरायणोऽस्ति हि ॥ ३३ ॥

## (୧) ଭାବଂ ତୁ ବାଦରାୟଣୋଽସ୍ତି ହି ।୧-୩-୩୩।

ତୁ=ଶବ୍ଦ ପୂର୍ବପକ୍ଷକୁ ବ୍ୟାବୃତିପାଇଁ ଅଛି । ବାଦରାୟଣଃ=ବାଦରାୟଣାଚାର୍ଯ୍ୟଙ୍କ ମତରେ, ଭାବମ୍ = ଶରୀରଧାରୀ ହେଲେ ଦେବାଦିର ବ୍ରହ୍ମବିଦ୍ୟାରେ ଅଧିକାର ହୁଏ । ହି = କାରଣ-ଅସ୍ତି = ତାହାଠାରେ ଅର୍ଥିତ୍ୱାଦି ଅଧିକାରର କାରଣ ହୋଇଥିବାରୁ ।

(୨) ମୂଳ-(କ) ତୁଶବ୍ଦଃ ପୂର୍ବପକ୍ଷଂ ବ୍ୟାବର୍ତ୍ତୟତି । ବାଦରାୟଣସ୍ତ୍ୱାଚାର୍ଯ୍ୟୋ ଭାବମଧିକାରସ୍ୟ ଦେବୋଦୀନାମପି ମନ୍ୟତେ । ଯଦ୍ୟପି ମଧ୍ୱାଦିବିଦ୍ୟାସୁ ଦେବତାଦି-ବ୍ୟାମିଶ୍ରାସ୍ୱସମ୍ଭବୋଽଧିକାରସ୍ୟ, ତଥାପ୍ୟସ୍ତି ହି ଶୁଦ୍ଧାୟାଂ ବ୍ରହ୍ମବିଦ୍ୟାୟାଂ ସମ୍ଭବଃ । (ଖ) ଅର୍ଥିତ୍ୱସାମର୍ଥ୍ୟାପ୍ରତିଷେଧାଦ୍ୟପେକ୍ଷାତ୍ୱାଦଧିକାରସ୍ୟ । ନଚ କ୍ୱଚିଦସମ୍ଭବ ଇତ୍ୟେତାବତା

ଯତ୍ର ସମ୍ଭବସ୍ତତ୍ରାପ୍ୟଧିକାରୋଽପୋଦ୍ୟେତ । ମନୁଷ୍ୟଣାମାପି ନ ସର୍ବେଷାଂ ବ୍ରାହ୍ମଣାଦୀନାଂ ସର୍ବେଷୁ ରାଜସୂୟାଦିଷ୍ୱଧିକାରଃ ସମ୍ଭବତି । ତତ୍ର ଯୋ ନ୍ୟାୟଃ ସୋଽତ୍ରାପି ଭବିଷ୍ୟତି । (ଗ) ବ୍ରହ୍ମବିଦ୍ୟାଂ ଚ ପ୍ରକୃତ୍ୟ ଭବତି ଦର୍ଶନଂ ଶ୍ରୌତ୍ରଂ ଦେବାଦ୍ୟଧିକାରସ୍ୟ ସୂଚକମ୍- 'ତଦ୍ୟୋ ଯୋ ଦେବାନାଂ ପ୍ରତ୍ୟବୁଧ୍ୟତି ସ ଏବ ତଦଭବତ୍ତଥର୍ଷୀଣାଂ ତଥା ମନୁଷ୍ୟାଣାମ୍' (ବୃ ୧-୪-୧୦) ଇତି । (ଘ) ତେ ହୋଚୁର୍ହନ୍ତ ତମାତ୍ମାନମନ୍ୱିଚ୍ଛାମୋ ଯମାତ୍ମାନମନ୍ୱିଷ୍ୟ ସର୍ବାଂଶ୍ଚ ଲୋକାନାପ୍ନୋତି ସର୍ବାଂଶ୍ଚ କାମାନ୍', ଇତି । 'ଇନ୍ଦ୍ରୋ ହ ବୈ ଦେବାନାମଭିପ୍ରବବ୍ରାଜ ବିରୋଚନୋଽସୁରାଣାମ୍', (ଛା ୮-୭-୨) ଇତ୍ୟାଦି ଚ । ସ୍ମାର୍ତ୍ତମପି ଗନ୍ଧର୍ବଯାଜ୍ଞବଲ୍କ୍ୟ ସମ୍ବାଦାଦି ।

**(୨) ଭାଷାଂତର**-(କ) ସୂତ୍ରରେ ଥିବା ତୁଶବ୍ଦ ପୂର୍ବପକ୍ଷର ବ୍ୟାବୃତି କରୁଛି । ବାଦରାୟଣାଚାର୍ଯ୍ୟ କିନ୍ତୁ ଏପରି ସ୍ୱୀକାର କରନ୍ତି ଯେ-ଦେବତାଦିର ବ୍ରହ୍ମବିଦ୍ୟାରେ ଅଧିକାର ଅଛି । ଯଦ୍ୟପି ଦେବତା ପ୍ରଭୃତିଙ୍କଦ୍ୱାରା ସମ୍ବନ୍ଧିତ ମଧ୍ୱାଦିବିଦ୍ୟାରେ ତାହାର ଅଧିକାର ସମ୍ଭବ ହୁଏ । ଯଦି କୌଣସି (ମଧ୍ୱାଦି ବିଦ୍ୟାରେ) ଅଧିକାରର ଅସମ୍ଭବ ହୁଏ, ତେବେ ମଧ ଏତେମାତ୍ରାରେ ଏଠାରେ (ବ୍ରହ୍ମବିଦ୍ୟାରେ) ସମ୍ଭବ ହୁଏ ।

(ଖ) ସେହି ଅଧିକାରର ନିଷେଧ କରାଯାଇପାରିବ ନାହିଁ । ମନୁଷ୍ୟ ପାଖରେ ମଧ ସବୁବ୍ରାହ୍ମଣାଦିର ସମ୍ପୂର୍ଣ୍ଣ ରାଜସୂୟାଦିରେ ଅଧିକାର ସମ୍ଭବ ନୁହେଁ । ସେଠାରେ ଯେଉଁ ନ୍ୟୟା ଅଛି, ସେ ସେଠାରେ ମଧ ପ୍ରୟୋଗ ହୋଇପାରିବ ।

(ଗ) ବ୍ରହ୍ମ ବିଦ୍ୟାକୁ ପ୍ରସ୍ତୁତ କରି ଦେବତାଦିର ଅଧିକାର ସୂଚକ 'ସେହି ଦେବତାମାନଙ୍କଠାରୁ ଯିଏ ଯେତେ ଜାଣିଛି, ସେ ତଦ୍ରୂପ ହେବ' । ଏହିପ୍ରକାର ଋଷି ଓ ମନୁଷ୍ୟମାନଙ୍କଠାରୁ ଯିଏ ଯେତେ ଶିକ୍ଷାଲାଭ କରିଛି, ସେ ସେପରି ବ୍ରହ୍ମରୂପ ହୋଇଯାଏ ।

(ଘ) 'ସେମାନେ କହିବାକୁ ଲାଗିଲେ- ଆମ୍ଭେ ସେହି ଆତ୍ମାକୁ ଜାଣବାକୁ ଚାହୁଁ; ଯାହାକୁ ଜଣଣିଲାପରେ ଜୀବ ସମ୍ପୂର୍ଣ୍ଣ ଲୋକ ଓ ଭୋଗକୁ ପାଏ । ଏହା ନିଶ୍ଚିତ କରି ଦେବତାମାନଙ୍କର ରାଜା ଇନ୍ଦ୍ର ଓ ଅସୁରର ରାଜା ବିରୋଚନ ଏହି ଦୁଇଜଣ ପରସ୍ପର ଈର୍ଷାକରି ହାତରେ ସମିଧ ନେଇ ପ୍ରଜାପତିଙ୍କ ପାଖକୁ ଗଲେ' । ଇତ୍ୟାଦି ଶ୍ରୌତ ଲିଙ୍ଗ ଦର୍ଶନ ଅଛି । ସେପରି ଗନ୍ଧର୍ବ ଓ ଯାଜ୍ଞବଲ୍କ୍ୟର ସମ୍ବାଦାହି ସ୍ମୃତିଲିଙ୍ଗ ମଧ ଅଛି ।



(୩) ମୂଳ-(କ) ଯଦପ୍ୟୁକ୍ତମ୍-'ଜ୍ୟୋତିଷି ଭାବାଚ୍ଚେତି' । ଅତ୍ର ବ୍ରୂମଃ- ଜ୍ୟୋତିରାଦିବିଷୟା ଅପି ଆଦିତ୍ୟାଦୟୋ ଦେବତାବଚନାଃ ଶବ୍ଦାଶ୍ଚେତନାବନ୍ତ- ମୈଶ୍ୱର୍ଯ୍ୟାଦ୍ୟୁପେତଂ ତଂତଂ ଦେବତାତ୍ମନଂ ସମର୍ପୟନ୍ତି, ମନ୍ତ୍ରାର୍ଥବାଦାଦିଷୁ ତଥା ବ୍ୟବହାରାତ୍ । (ଖ) ଅସ୍ତି ହ୍ୟୈଶ୍ୱର୍ଯ୍ୟଯୋଗାଦ୍ଦେବତାନାଂ ଜ୍ୟୋତିରାଦ୍ୟାତ୍ମଭିଶ୍ଚାବସ୍ଥାତୁମ୍ । ଯଥେଷ୍ଟଂ ଚ ତଂ ତଂ ବିଗ୍ରହଂ ଗ୍ରହୀତୁଂ ସାମର୍ଥ୍ୟମ୍ । ତଥାହି ଶ୍ରୂୟତେ ସୁବ୍ରହ୍ମଣ୍ୟାର୍ଥବାଦେମେଘାତିଥେର୍ମେଷେତି । 'ମେଘାତିଥିଂ ହ କାଣ୍ୱାୟନମିନ୍ଦ୍ରୋ ମେଷୋ, ଭୂତ୍ୱାଜହାର' (ଷଡ୍‌ବିଂଶ ବ୍ରା ୧-୧) ଇତି । (ଗ) ସ୍ମର୍ଯ୍ୟତେ- 'ଆଦିତ୍ୟଃ ପୁରୁଷୋ ଭୂତ୍ୱା କୁନ୍ତୀମୁପଜଗାମହ', ଇତି । ମୃଦାଦିଷ୍ୱପି ଚେତନା ଅଧିଷ୍ଠାତାରେଽଭ୍ୟୁପଗ ମ୍ୟନ୍ତେ । ମୃଦବ୍ରବୀଦାପୋଽବ୍ରୁବନ୍', ଇତ୍ୟାଦିଦର୍ଶନାତ୍ । (ଘ) ଜ୍ୟୋତି ରାଦେସ୍ତୁ ଭୂତିଧାତୋରାଦିତ୍ୟାଦିଷ୍ୱଚେତନତ୍ୱମଭ୍ୟୁପଗମ୍ୟତେ । ଚେତନାତ୍ ସ୍ୱଧିଷ୍ଠାତାରୋ ଦେବତାତ୍ମାନୋ ମନ୍ତ୍ରାର୍ଥବାଦାଦିବ୍ୟବହାରାଦିତ୍ୟୁକ୍ତମ୍ ।

**(୩) ଭାଷାଂତର-** (କ) 'ଜ୍ୟୋତିଷ ଭାବାଚ୍ଚ', ଏହି ସୂତ୍ରରେ ଯାହା କୁହାଯାଇଛି, ତାହା ଉପରେ ଆମ୍ଭେମାନେ କହୁଁ, - ଜ୍ୟୋତିର୍ମଣ୍ଡଳାଦିବିଷୟକ ହେଲେ ମଧ୍ୟ ଦେବତାବାଚକ ଆଦିତ୍ୟାଦିଶବ୍ଦ ଚେତନାଯୁକ୍ତ ଐଶ୍ୱର୍ଯ୍ୟାଦିଯୁକ୍ତ ସେହି ସେହି ଦେବତାକୁ ବୋଧ କରାଏ । କାରଣ-ମନ୍ତ୍ର, ଅର୍ଥବାଦିରେ ଏହି ପ୍ରକାର ବ୍ୟବହାର ହୋଇଛି ।

(ଖ) ଐଶ୍ୱର୍ଯ୍ୟର ଯାଗଦ୍ୱାରା ଦେବତାମାନଙ୍କର ଜ୍ୟୋତି ଆଦିତ୍ୟରୂପରେ ଅବସ୍ଥାନ ହେବ ଏବଂ ଯଥେଷ୍ଟଭାବରେ ସେହି ବିଗ୍ରହ ଧାରଣ କରିବାରୁ ସେଠାରେ ସେହି ସାମର୍ଥ୍ୟ ଅଛି । ଏହି ପ୍ରକାର ସୁବ୍ରହ୍ମଣ୍ୟାର୍ଥବାଦରେ 'ଇନ୍ଦ୍ର ମେଣ୍ଢା ହୋଇ କଣ୍ୱ ପୁତ୍ର ମେଘାତିଥିକୁ ଅପହରଣ କଲେ' । ଏହି ଶ୍ରୁତିରେ 'ଇନ୍ଦ୍ରପତି ମେଘାତିଥିର ମେଷ' ଏହିପରି ସମ୍ବୋଧନ ଅଛି ।

(ଗ) ଆଦିତ୍ୟ ପୁରୁଷ ହୋଇ କୁନ୍ତୀଙ୍କ ପାଖକୁ ଗଲେ' ଏହିପରି ସ୍ମୃତି ମଧ୍ୟ ଅଛି । ମୃତ୍ତିକାଦିରେ ମଧ୍ୟ ଚେତନ ଅଧିଷ୍ଠାତା ସ୍ୱୀକାର କରାଯାଇଛି', କାରଣ- 'ମୃତ୍ତିକା କୁହାଗଲା, ଜଳକହିଲା', ଇତ୍ୟାଦି ଶ୍ରୁତ ଗୁଡ଼ିକ ଅଛି ।

(ଘ) ଆଦିତ୍ୟାଦିରେ ଜ୍ୟୋତିମଣ୍ଡଳାଦି ଭୌତିକବସ୍ତୁର ଅଚେତନ ସ୍ୱୀକାର କରାଯାଇଛି । ମନ୍ତ୍ର, ଅର୍ଥବାଦି ଇତ୍ୟାଦିରର ବ୍ୟବହାର ଦ୍ୱାରା ଜ୍ୟୋତିର୍ମଣ୍ଡଳାଦି ଭୌତିକ ବସ୍ତୁର ଅଧିଷ୍ଠାତା ଦେବତା ଚେତନ ଅଟେ ବୋଲି କୁହାଯାଇଛି ।

(୪) ମୂଳ-(କ) ଯଦପ୍ୟୁକ୍ତମ୍-ମନ୍ତ୍ରାର୍ଥବାଦୟୋରନ୍ୟାର୍ଥତ୍ୱାନ୍ନ ଦେବତା-ବିଗ୍ରହାଦିପ୍ରକାଶନସାମର୍ଥ୍ୟମିତି । (ଖ) ଅତ୍ର ବ୍ରୂମଃପ୍ରତ୍ୟୟପ୍ରତ୍ୟୟୌ ହି ସଦ୍‌ଭାବାସଦ୍‌ଭାବୟୋଃ କାରଣଂ ନାନ୍ୟାର୍ଥତ୍ୱମନନ୍ୟାର୍ଥତ୍ୱଂ ବା । ତଥାହ୍ୟାନାର୍ଥ ମପି ପ୍ରସ୍ଥିତଃ ପଥି ପତିତଂ ତୃଣପର୍ଣ୍ଣାଦ୍ୟସ୍ତୀତ୍ୟେବଂ ପ୍ରତିପଦ୍ୟତେ । (ଗ) ଅତ୍ରାହ-ବିଷମ ଉପନ୍ୟାସଃ । ତତ୍ର ହି ତୃଣପର୍ଣ୍ଣାଦିବିଷୟଂ ପ୍ରତ୍ୟକ୍ଷଂ ପ୍ରବୃତ୍ତମସ୍ତି, ଯେନ ତଦସ୍ତିତ୍ୱଂ ପ୍ରତିପଦ୍ୟତେ । (ଘ) ଅତ୍ର ପୁନଃ ବିଧ୍ୟୁଦ୍ଦେଶେକବାକ୍ୟଭାବେନ ସ୍ତୁତ୍ୟର୍ଥେଽର୍ଥବାଦେ ନ ପାର୍ଥଗର୍ଥ୍ୟେନ ବୃତ୍ତାନ୍ତବିଷୟା ପ୍ରବୃତ୍ତିଃ ଶକ୍ୟାଽଧ୍ୟାବସାତୁମ୍ । (ଙ) ନହି, ମହାବାକ୍ୟେଽର୍ଥ ପ୍ରତ୍ୟାୟକେଽବାନ୍ତରବାକ୍ୟସ୍ୟ ପୃଥକ୍‌ପ୍ରତ୍ୟା-ୟିକତ୍ୱମସ୍ତି । ଯଥା 'ନ ସୁରାଂ ପିବେତ୍', ଇତି ନଞବତି ବାକ୍ୟେ ପାଦତ୍ରୟସମ୍ବନ୍ଧାତ୍ ସୁରାଗାନପ୍ରତିଶେଧ ଏବୈକୋଽର୍ଥୋଽବଗମ୍ୟତେ, (ଚ) ନ ପୁନଃ ସୁରାଂ ପିବେଦିତି ପଦଦ୍ୱୟସମ୍ବନ୍ଧାତ୍ ସୁରାପାନବିଧିରପୀତି ।

(୪) **ଭାଷାଂତର-** (କ) ଯାହା କୁହାଯାଇଛି ଯେ- ମନ୍ତ୍ର ଓ ଅର୍ଥବାଦରେ ଅନ୍ୟାର୍ଥକତ୍ୱ ହେଲେ ଦେବତାର ବିଗ୍ରହ ପ୍ରକାଶନର ସାମର୍ଥ୍ୟ ସମ୍ଭବ ହୁଏ ନାହିଁ ।

(ଖ) ଏହା ଉପରେ କୁହାଯାଇଛି- ବସ୍ତୁର ସଦ୍‌ଭାବ ଓ ଅସଦ୍ ଭାବରେ ଏହାର ପ୍ରତ୍ୟୟ ଓ ଅପ୍ରତ୍ୟୟ କେବଳ କାରଣ ଅଟେ । କିନ୍ତୁ ଅନ୍ୟାର୍ଥକତ୍ୱ ଓ ଅନନ୍ୟାର୍ଥକତ୍ୱ କାରଣ ନୁହେଁ । ଉଦାହରଣ ସ୍ୱରୂପ-କୌଣସି ଅନ୍ୟ ପ୍ରୟୋଜନ ନିମିତ୍ତ ପ୍ରସ୍ଥାନ କରାଯାଇଥିବା ଓ ପୁରୁଷମାର୍ଗରେ ପଡ଼ିଥିବା ତୃଣପର୍ଣ୍ଣାଦିର ଅସ୍ତିତ୍ୱକୁ ପ୍ରତିପନ୍ନ ହୁଏ ।

(ଗ) ଏହା ଉପରେ କୁହାଯାଇଛି ଯେ- ଏହାହିଁ ବିଷମଦୃଷ୍ଟାନ୍ତ । ସେଠାରେ ତୃଣପର୍ଣ୍ଣାଦିବିଷୟକ ପ୍ରତ୍ୟକ୍ଷପ୍ରବୃତ୍ତ ହୁଏ । ଯାହାଦ୍ୱାରା ସେମାନଙ୍କର ଅସ୍ତିତ୍ୱ ପ୍ରତିପନ୍ନ ହୁଏ ।

(ଘ) ପରନ୍ତୁ ଏଠାରେ ବିଧିବାକ୍ୟର ସହ ଏକବାକ୍ୟତାପ୍ରାପ୍ତ କଲେ ସ୍ତୁତ୍ୟର୍ଥକ ଅର୍ଥବାଦରେ ସ୍ୱତନ୍ତ୍ର ରୂପରେ ଭୂତାର୍ଥବିଷୟକ ପ୍ରବୃତ୍ତିର ନିଶ୍ଚିତ କରାଯାଇପାରିବ ନାହିଁ ।

(ଙ) ଅର୍ଥବୋଧକ ମହାବାକ୍ୟରେ ଅବାନ୍ତରବାକ୍ୟକୁ ପୃଥକ୍ ଭାବରେ ଅର୍ଥବୋଧକତ୍ୱ ହୁଏ ନାହିଁ । ଯେପରି 'ମଦପିଇବା ଉଚିତ୍ ନୁହେଁ' । ଏହିପ୍ରକାର ନକାରାର୍ଥକ ବାକ୍ୟରେ ପଦତ୍ରୟର ସମ୍ବନ୍ଧ ହେଲେ ସୁରାପାନର ପ୍ରତିଷେଧରୂପ ଏକ ହିଁ ଅର୍ଥ ଅବଗତ ହୁଏ ।

(ଚ) କିନ୍ତୁ 'ସୁରାଂ ପିବେତ୍' ଏହି ପଦଦ୍ୱୟ ସମ୍ବନ୍ଧ ଦ୍ୱାରା ସୁରାପାନର ପ୍ରତିଷେଧରୂପ ଏକପ୍ରକାରକ ଅର୍ଥ ଅବଗତ ହୁଏ ନାହିଁ ।

(୫) ମୂଳ-(କ) ଅତ୍ରୋଚ୍ୟତେ-ବିଷମ ଉପନ୍ୟାସଃ । ଯୁକ୍ତଂ ଯତ୍ସୁରାପାନ-ପ୍ରତିଷେଧେ ପଦାନ୍ୱୟସ୍ୟୈକତ୍ୱାଦବାନ୍ତରବାକ୍ୟାର୍ଥସ୍ୟାଗ୍ରହଣମ୍ । ବିଧ୍ୟୁଦ୍ଦେଶାର୍ଥବା-ଦୟୋସ୍ତ୍ୱର୍ଥବାଦସ୍ଥାନି ପଦାନି ପୃଥଗନ୍ୱୟବୃତ୍ତାନ୍ତବିଷୟଂ ପ୍ରତିପଦ୍ୟାନନ୍ତରଂ କିମର୍ଥ୍ୟବଶେନ କାମଂ ବିଧେଃ ସ୍ତାବକତ୍ୱଂ ପ୍ରତିପଦ୍ୟନ୍ତେ । (ଖ) ଯଥାହି ବାୟବ୍ୟଂ ଶେତମାଲଭେତ ଭୂତିକାମଃ', ଇତ୍ୟତ୍ର ବିଧ୍ୟୁଦ୍ଦେଶବର୍ତ୍ତିନାଂ ବାୟବ୍ୟାଦିପଦାନାଂ ବିଧିନା ସମ୍ବନ୍ଧଃ, ନୈବଂ ବାୟବୈ କ୍ଷେପିଷ୍ଠା ଦେବତା ବାୟୁମେବ ସ୍ୱେନ ଭାଗଧେୟେନୋପାଧାବତି ସ ଏବୈନଂ ଭୂତିଗମୟତି', ଇତ୍ୟେଷାମର୍ଥବାଦଗତାନାଂ ପାଦାନାମ୍ । (ଗ) ନହି ଭବତି ବାୟୁର୍ବା ଆଲଭେତେତ୍ୟାଦି । ବାୟୁସ୍ୱଭାବସଂକୀର୍ତ୍ତନେନ ତ୍ୱବାନ୍ତରମନ୍ୱୟେ ପ୍ରତିପଦ୍ୟୈବଂବିଶିଷ୍ଟ-ଦୈବତ୍ୟମିଦଂ କର୍ମେତି ବିଧିଂ ସ୍ତୁବନ୍ତି ।

**(୫) ଭାଷାଂତର**-(କ) ତେଣୁ କୁହାଯାଇଛି- ଏହି ଦୃଷ୍ଟାନ୍ତ ବିଷମ ଅଟେ । ରୂରାପାନର ପ୍ରତିଷେଧରେ ପଦାନ୍ୱୟ ଏକ ହେବାରୁ 'ସୁରାଂ ପିବେତ୍' ଏହି ଅବାନ୍ତର ବାକ୍ୟାର୍ଥର ଗ୍ରହଣ କରିବା ଠିକ୍ ନୁହେଁ ।

(ଖ) ପରନ୍ତୁ ବିଧିବାକ୍ୟ ଓ ଅର୍ଥବାଦରେ ଅର୍ଥବାଦସ୍ଥ ପଦ ଭୂତାର୍ଥବିପିୟକ ପୃଥକ ଅନ୍ୱିତ ହୋଇ ପରେ କୈମର୍ଥ୍ୟ (ଅର୍ଥବାଦର ଆବଶ୍ୟକ କଣ ଓ କାହାପାଇଁ ?) ଦ୍ୱାରା ଯଥେଷ୍ଟ ବିଧିବାକ୍ୟର ସ୍ତାବକ ହୁଅନ୍ତି ।

(ଗ) ଯେପରି 'ଐଶ୍ୱର୍ଯ୍ୟକୁ ଋହୁଁଥିବା ବାୟବ୍ୟ ଶ୍ୱେତପଶୁକୁ ଆଲମ୍ଭନ କରିବା ଉଚିତ' । ଏଠାରେ ବିଧିବାକ୍ୟଗତପଦମାନଙ୍କର ବିଧି ସହିତ ସମ୍ବନ୍ଧ ନାହିଁ । 'ବାୟୁର୍ବା ଆଲଭେତ' ଅଥବା 'ଯେପିଷ୍ଠା ବା ଦେବତା ଆଲଭେତ', ଇତ୍ୟାଦି ବାକ୍ୟଗୁଡ଼ିକର ବିଧି ସହିତ ସମ୍ବନ୍ଧ ନାହିଁ ।

(ଘ) କିନ୍ତୁ ବାୟୁର ସ୍ୱାଭାବକଥନଦ୍ୱାରା ଅବାନ୍ତର ଅନ୍ୱୟ ପାଇଁ ଏହିପ୍ରକାର ବିଶିଷ୍ଟ ଦେବତା ସମ୍ବନ୍ଧୀୟ କର୍ମ ହୁଏ- ଏହି ପ୍ରକାର ବିଧିର ସ୍ତୁତି କରନ୍ତି ।

(୬) ମୂଳ-(କ) ତଦ୍ୟତ୍ର ସୋଽବାନ୍ତରବାକ୍ୟାର୍ଥଃ ପ୍ରମାଣାନ୍ତରଗୋଚରୋ ଭବତି, ତତ୍ର ତଦନୁବାଦେନାର୍ଥବାଦଃ ପ୍ରବର୍ତ୍ତତେ । ଯତ୍ର ପ୍ରମାଣାନ୍ତରବିରୁଦ୍ଧସ୍ତତ୍ର ଗୁଣବାଦେନ । (ଖ) ଯତ୍ର ତୁ ତଦୁଭୟଂ ନାସ୍ତି, ତତ୍ର କିଂ ପ୍ରମାଣାନ୍ତରାଭାବାଦ୍, ଗୁଣବାଦଃ ସ୍ୟାତ୍ ।

ଆହୋସ୍ୱିତ୍ ପ୍ରମାଣାନ୍ତରାବିରୋଧାଦ୍ ବିଦ୍ୟାମାନବାଦ ଇତି ପ୍ରତୀତିଶରଣୈର୍ବିଦ୍ୟମାନବାଦ ଆଶ୍ରୟଣୀୟୋ ନ ଗୁଣବାଦଃ । ଏତେନ ମନ୍ତ୍ରୋ ବ୍ୟାଖ୍ୟାତଃ ।

(୬) **ଭାଷାଂତର**-(କ) ଏଠାରେ ଯେଉଁ ଅବାନ୍ତରବାକ୍ୟର୍ଥ ପ୍ରମାଣନ୍ତରର ବିଷୟ ହୁଏ, ସେଠାରେ ତାହାର ଅନୁବାଦଦ୍ୱାରା ଅର୍ଥବାଦ ପ୍ରବୃତ୍ତ ହୁଏ । ଯେଉଁଠାରେ ପ୍ରମାଣନ୍ତରଦ୍ୱାରା ବିରୋଧ ହୁଏ, ସେଠାରେ ଗୁଣବାଦଦ୍ୱାରା ବିରୋଧ ହୁଏ ।

(ଖ) ଯେଉଁଠାରେ ଏହି ଦୁଇଟି ନାହିଁ, ସେଠାରେ ପ୍ରମାଣାନ୍ତରର ଅଭାବରେ ଗୁଣବାଦ ହେଉ ଅଥବା ପ୍ରାମାଣାନ୍ତରର ଅବିରୋଧରେ ବିଦ୍ୟମାନ ଅର୍ଥବାଦ ହେଉ, ଏହି ପ୍ରକାର ସନ୍ଦେହ ହେବାରୁ ପ୍ରତୀତି ଶରଣ ପୁରୁଷଦ୍ୱାରା ବିଦ୍ୟମାନ ଅର୍ଥବାଦ (ଭୂତାର୍ଥବାଦ) କେବଳ ଆଶ୍ରୟଣୀୟ ହୁଏ, ଅର୍ଥାତ୍ ମନ୍ତ୍ର ମଧ୍ୟ ପ୍ରମାଣାନ୍ତରର ସମ୍ବାଦ ଓ ବିସମ୍ବାଦର ଅଭାବରୁ ସ୍ୱାର୍ଥରେ ପ୍ରମାଣଭୂତ ହୁଏ ।

(୭) ମୂଳ-(କ) ଅପି ଚ ବିଧିଭିରେବେନ୍ଦ୍ରାଦିଦୈବତ୍ୟାନି ହବୀଂଷି ଚ୍ଛେଦୟଦ୍ଭିରପେକ୍ଷିତମିନ୍ଦ୍ରାଦୀନାଂ ସ୍ୱରୂପମ୍ । ନହି ସ୍ୱରୂପରହିତା ଇନ୍ଦ୍ରାଦୟଶ୍ଚେତସ୍ୟା-ରୋପୟିତୁଂ ଶକ୍ୟନ୍ତେ । ନ ଚ ଚେତସ୍ୟାନାରୂଢ଼ାୟୈ ତସ୍ୟୈ ତସ୍ୟୈ ଦେବତାୟୈ ହବିଃ ପ୍ରଦାତୁଂ ଶକ୍ୟତେ । (ଖ) ଶ୍ରାବୟତି ଚ- ''ତସ୍ୟୈ ଦେବତାୟୈ ହବିର୍ଗୃହୀତଂ ସ୍ୟାତ୍ତାଂ ଧ୍ୟାୟେତ୍ ବଷଟ୍ କରିଷ୍ୟନ୍', (ଐ.ବ୍ରା. ୩-୮-୧) ଇତି । (ଗ) ନ ଚ ଶବ୍ଦମାତ୍ରମର୍ଥସ୍ୱରୂପଂ ସମ୍ଭବତି, ଶବ୍ଦାର୍ଥୟୋର୍ଭେଦାତ୍ । ତତ୍ର ଯାଦୃଶଂ ମନ୍ତ୍ରାର୍ଥ ବାଦୟୋରିନ୍ଦ୍ରାଦୀନାଂ ସ୍ୱରୂପ ମବଗତଂ ନ ତତ୍ତାଦୃଶଂ ଶବ୍ଦପ୍ରମାଣକେନ ପ୍ରତ୍ୟାଖ୍ୟାତୁଂ ଯୁକ୍ତମ୍, ଇତିହାସପୁରାଣମପି ବ୍ୟାଖ୍ୟାତେନ ମାର୍ଗେଣ ସମ୍ଭବନ୍ ମନ୍ତ୍ରାର୍ଥବାଦମୂଳତ୍ୱାତ୍ ପ୍ରଭବତି ଦେବତାଦିବିଗ୍ରହାଦି ସାଧୟିତୁମ୍ । ପ୍ରତ୍ୟକ୍ଷାଦିମୂଳମପି ସମ୍ଭବତି । (ଘ) ଭବତି ହ୍ୟସ୍ମାକ ପ୍ରତ୍ୟକ୍ଷମପି ଚିରନ୍ତାନାଂ ପ୍ରତ୍ୟକ୍ଷମ୍ । ତଥା ଚ ବ୍ୟାସାଦୟୋ ଦେବାଦିଭିଃ ପ୍ରତ୍ୟକ୍ଷଂ ବ୍ୟବହରନ୍ତୀତି ସ୍ମର୍ଯ୍ୟାତେ । (ଙ) ଯସ୍ତୁ ବ୍ରୂୟାଦୀଦାଦାନୀନ୍ତ-ନାନାମିବପୂର୍ବୋଷାମପି ନାସ୍ତି, ଦେବାଦିଭିର୍ବ୍ୟହର୍ତ୍ତୁଂ ସାମର୍ଥ୍ୟମିତି, ମ ଜଗଦ୍ବୈଚିତ୍ର୍ୟଂ ପ୍ରତକ୍ଷେଧେତ୍ । ଇଦାନୀମିବ ଚ ନାନ୍ୟଦାପି ସାର୍ବଭୌମଃ କ୍ଷତ୍ରିୟୋଽପି ବ୍ରୂୟାତ୍ । ତତଶ୍ଚ ରାଜସ୍ୱୟାଦିଚ୍ଛେଦନୋପସୁନ୍ଧ୍ୟାତ । ଇତାନୀମିବ ଚ କାଳାନ୍ତରେଽପ୍ୟାବ୍ୟବସ୍ଥିତପ୍ରାୟାନ୍ ବର୍ଣ୍ଣାଶ୍ରମଧର୍ମାନ୍ ପ୍ରତିଜାନୀତ । ତତଶ୍ଚ ବ୍ୟବସ୍ଥାବିଧାୟିଶାସ୍ତ୍ରଂମନର୍ଥକଂ ସ୍ୟାତ୍ । ତସ୍ମାଦ୍ ଧର୍ମୋତ୍କର୍ଷବଶାଚ୍ଚିରନ୍ତନା ଦେବାଦିଭିଃ ପ୍ରତ୍ୟକ୍ଷଂ ବ୍ୟବଜହ୍ରୁରିତି ଶ୍ଳିଷ୍ୟତେ । (ଚ) ଅପିଚସ୍ମରନ୍ତି 'ସ୍ୱାଧ୍ୟାୟାଦିଷ୍ଟ ଦେବତାସଂପ୍ରୟୋଗଃ',

 

(ଯୋ. ସୂ ୨-୪୪) ଇତ୍ୟାଦି, ଯୋଗୋଽପ୍ୟଣିମାଦ୍ୟୈ-ଶ୍ୱର୍ଯ୍ୟପ୍ରାପ୍ତିଫଳଃ ସ୍ମର୍ଯ୍ୟମାଣୋ ନ ଶକ୍ୟତେ ସାହସମାତ୍ରେଣ ପ୍ରତ୍ୟାଖ୍ୟାତୁମ୍ । (ଛ) ଶ୍ରୁତିଶ୍ଚ ଯୋଗମାହାତ୍ମ୍ୟଂ ପ୍ରଖ୍ୟାପୟତି- 'ପୃଥ୍ୱ୍ୟପ୍ତେଜୋଽନିଲଖେ ସମୁତ୍ଥିତେ ପଞ୍ଚାତ୍ମକେ ଯୋଗଗୁଣେ ପ୍ରବୃତ୍ତେ, ନ ତସ୍ୟ ରୋଗୋ ର ଜରା ନ ମୃତ୍ୟୁ ପ୍ରାପ୍ତସ୍ୟ ଯୋଗାଗ୍ନିମୟଂ ଶରୀରମ୍', (ଶ୍ୱେ ୨-୧୨) ଇତି । ଋଷୀଣାମପି ମନ୍ତ୍ରବ୍ରାହ୍ମଦର୍ଶିତାନାଂ ସାମର୍ଥ୍ୟଂ ନାସ୍ମଦୀୟେନ ସାମର୍ଥେନୋପମାତୁଂ ଯୁକ୍ତମ୍ । ତସ୍ମାତ୍ ସମୂଳମିତିହାସ ପୁରାଣମ୍ ।

**(୭) ଭାଷାଂତର-** (କ) ଇନ୍ଦ୍ରାଦି ଦେବତା ସମ୍ବନ୍ଧୀ ହବିଷ୍ୟ ଦେବାପାଇଁ ପ୍ରେରଣା କରୁଥିବା ବିଧିଗୁଡ଼ିକ ମଧ୍ୟ ଇନ୍ଦ୍ରାଦିର ସ୍ୱରୂପକୁ ଅପେକ୍ଷା କରେ । ବସ୍ତୁତଃ ସ୍ୱରୂପରହିତ ଇନ୍ଦ୍ରାଦି ଦେବତାମାନଙ୍କର ଚିତ୍ତରେ ଆରୋପ ଧ୍ୟାନ କରାଯାଏ ନାହିଁ । ଚିତ୍ତରେ ଅନାରୂଢ଼ ସେହି ସେହି ଦେବତାମାନଙ୍କ ପାଇଁ ହବିଷ୍ୟ ଦେବାପାଇଁ ସମର୍ଥ ହୋଇପାରେ ନାହିଁ । 'ଯେଉଁ ଦେବତାପାଇଁ ହବିର ଗ୍ରହଣ କରାଯାଇଛି, ସେହି ଦେବତାର ବଷଟ୍, ଏହି ଶବ୍ଦକୁ ଉଚ୍ଚାରଣ କରି ପ୍ରଥମେ ଧ୍ୟାନ କରାଯାଏ' । ଏହାହିଁ ଶ୍ରୁତି କହେ ।

(ଖ) କେବଳ ଶବ୍ଦ ଅର୍ଥସ୍ୱରୂପ ହୋଇପାରେ ନାହିଁ, କାରଣ-ଶବ୍ଦ ଓ ଅର୍ଥ ମଧ୍ୟରେ ଭେଦ ଅଛି । ସେହି ମନ୍ତ୍ର ଓ ଅର୍ଥବାଦରେ ଇନ୍ଦ୍ରାଦିର ଯେପରି ସ୍ୱରୂପ ଅବଗତ ହୁଏ, ସେପରି ସ୍ୱରୂପ ଶବ୍ଦପ୍ରମାଣଦ୍ୱାରା ପ୍ରତ୍ୟାଖ୍ୟାନ କରିବା ଠିକ୍ ନୁହେଁ' ଇତିହାସ ଓ ପୁରାଣ ମଧ୍ୟ ମନ୍ତ୍ର ଓ ଅର୍ଥବାଦ ମୂଳକ ହେବାରୁ ଉକ୍ତରୀତିରେ ଦେବତାଦି-ବିଗ୍ରହାଦିସିଦ୍ଧ କରିବାରେ ସମର୍ଥ ହୁଅନ୍ତି ଓ ଦେବତାର ଶରୀରାଦିରେ ପ୍ରତ୍ୟାକ୍ଷାଦି ମୂଳତ୍ୱ ସମ୍ଭବ ହୁଏ ।

(ଗ) ଆମ୍ଭଲୋକଙ୍କୁ ସେହି ଅପ୍ରତ୍ୟକ୍ଷ ମଧ୍ୟ ଚିରନ୍ତନ ପ୍ରାଚୀନମାନଙ୍କର ପ୍ରତ୍ୟକ୍ଷ ଅଟେ । ଯେପରି ବ୍ୟାସାଦି ଦେବତାମାନଙ୍କ ସହ ପ୍ରତ୍ୟକ୍ଷ ବ୍ୟବହାର କରନ୍ତି ବୋଲି ସ୍ମୃତି ଅଛି ।

(ଘ) ଆଜିକାଲିର ଭଳି ପ୍ରାଚୀନ ଲୋକଙ୍କର ଦେବତାମାନଙ୍କର ସହ ବ୍ୟବହାର କରିବାର ସାମର୍ଥ୍ୟ ନଥିଲା ବୋଲି ଆଜି ଯାହା କୁହାଯାଉଛି, ତାହା ମଧ୍ୟ ସେହି ଜଗତର ବିଚିତ୍ରାକୁ ପ୍ରତିଷେଧ କରାଏ ଏବଂ ବର୍ତ୍ତମାନ ଭଳି ଅନ୍ୟ ସମୟରେ ମଧ୍ୟ ସାର୍ବଭୌମ କ୍ଷତ୍ରିୟ ନଥିଲେ ବୋଲି କୁହାଯାଇଛି । ତେଣୁ ରାଜସୂୟାଦି ବିଧିଗୁଡ଼ିକ ବାଧିତ ହୁଏ ।

(ଙ) ଆଜିକାଲି ଭଳି କଣ ଅନ୍ୟ ସମୟରେ ବର୍ଣ୍ଣାଶ୍ରମଧର୍ମ ଅବ୍ୟବସ୍ଥିତ ଆକାରରେ ଥିଲା ? ଏପରି ପ୍ରତିଜ୍ଞା କଲେ ଏହି ପରିସ୍ଥିତିରେ ବ୍ୟବସ୍ଥା ବିଧାୟକ ଶାସ୍ତ୍ର

ଅନର୍ଥକ ହୁଏ, ଓ ଏହାଦ୍ୱାରା ଧର୍ମର ଉତ୍କର୍ଷ ହେତୁ ପ୍ରାଚୀନଲୋକ ଦେବତାସହ ପ୍ରତ୍ୟକ୍ଷ ବ୍ୟବହାର କରିଥିଲେ ବୋଲି କହିବା ଠିକ୍ ।

(ଚ) 'ସ୍ୱାଧ୍ୟାୟଦ୍ୱାରା, ସିଦ୍ଧମନ୍ତ୍ର ଜପଦ୍ୱାରା ଇଷ୍ଟଦେବତାର ସାନ୍ନିଧ୍ୟ ଏବଂ ଏହା ସହ ସମ୍ଭାଷଣ ହୁଏ', ଇତ୍ୟାଦି ସ୍ତୁତି ଅଛି । ଅଣିମାଦି ଐଶ୍ୱର୍ଯ୍ୟପ୍ରାପ୍ତି ଫଳବାନ ଓ ସ୍ମୃତିସିଦ୍ଧ ।

(ଛ) 'ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶ- ଏହି ପଞ୍ଚଭୂତ ନିଜର ବଶ ହେଲେ ଏବଂ ଅଣମାଦି ସିଦ୍ଧର ପ୍ରାପ୍ତି ହେଲେ ଅଭିବ୍ୟକ୍ତ ତେଜୋମୟ ଦେହର ପ୍ରାପ୍ତ ହୋଇ ଯୋଗୀକୁ ରୋଗ, ଜରା ଓ ମୃତ୍ୟୁ ହୁଏ' । ସେପରି ମଧ୍ୟ ମନ୍ତ୍ର ତଥା ବ୍ରାହ୍ମଣରୂପ ବେଦର ଦ୍ରଷ୍ଟା ଋଷିମାନଙ୍କର ସାମର୍ଥ୍ୟ ନିଜସାମର୍ଥ୍ୟ ଦ୍ୱାରା ତୁଳନା କରିବା ଠିକ୍ ନୁହେଁ । ଏହାଦ୍ୱାରା ଇତିହାସ, ପୁରାଣ ସବୁ ସମୂଳ ପ୍ରମାଣଭୂତ ହୁଅନ୍ତି ।

(୮) ମୂଳ-(କ) ଲୋକପ୍ରସିଦ୍ଧରପି ନ ସତି ସମ୍ଭବେ ନିରାଲମ୍ବନାଽଅ-ଧ୍ୱବସାତୁଂ ଯୁକ୍ତା 'ତସ୍ମାଦୁପପନ୍ନୋ ମନ୍ତ୍ରାଦିଭ୍ୟୋ ଦେବାଦୀନାଂ ବିଗ୍ରହବ-ତ୍ତ୍ୱାଦ୍ୟବଗମଃ । (ଖ) ତତଶ୍ଚାର୍ଥିତ୍ୱାଦିସମ୍ଭବଦୁପପନ୍ନୋ ଦେବାଦୀନାମପି ବ୍ରହ୍ମବିଦ୍ୟାୟାମଧିକାରଃ । କ୍ରମମୁକ୍ତି ଦର୍ଶନାନ୍ୟପ୍ୟେବମେବୋପପଦ୍ୟନ୍ତେ ।

(୮) ଭାଷାଂତର- (କ) ଲୋକପ୍ରସିଦ୍ଧି ମଧ୍ୟ ଶ୍ରୁତି ସ୍ମୃତାଦି ଆଲମ୍ବନ ହେଲେ ନିରାଧାର ନିଶ୍ଚିତ କରିବା ଠିକ୍ ହେବ ନାହିଁ, ତେଣୁ ମନ୍ତ୍ରାଦିଦ୍ୱାରା ଦେବାଦିରେ ବିଗ୍ରହବତ୍ତ୍ୱାଦି ପ୍ରତୀତି ଠିକ୍ ଅଟେ । (ଖ) ସେଠାରେ ଅର୍ଥିତ୍ୱାଦି ସମ୍ଭବ ହେବାରୁ ଦେବତାଦିର ବ୍ରହ୍ମବିଦ୍ୟାରେ ଅଧିକାର ଉପପନ୍ନ ହୁଏ । ତେଣୁ କ୍ରମଯୁକ୍ତି ମଧ୍ୟ ପ୍ରତିପାଦକଶାସ୍ତ୍ର ଉପପନ୍ନ ହୁଅନ୍ତି ।

## ९ अपशूद्राधिकरणम् । सू० ३४ - ३८

## ଅପଶୂଦ୍ରାଧିକରଣ-୯

### शुगस्य तदनादरश्रवणात्तदाद्रवणात्सूच्यते हि ॥ ३४ ॥

### (୧) ଶୁଗସ୍ୟ ତଦନାଦରଶ୍ରବଣାତ୍ତଦାଦ୍ରବଣାତ୍ ସୂଚ୍ୟତେ ହି ॥୧-୩-୩୪॥

ଅସ୍ୟ = ଜାନଶ୍ରୁତିର, ତଦନାଦରଶ୍ରବଣାତ୍=ଏହାଦ୍ୱାରା ନିଜର ଅନାଦର ଶ୍ରବଣ କରିବାଦ୍ୱାରା, ଶୁକ୍-ଶୋକ ଉତ୍ପନ୍ନ ହୋଇ, ସେ ସୂଚ୍ୟତେ-ଶୂଦ୍ରଦ୍ୱାରା ସୂଚିତ କରାଯାଇଛି । ତଦାଦ୍ରବଣାତ୍-ଶୋକଠାରୁ ମଧ୍ୟ ରେକ୍ୱପାଖକୁ ଗଲା ଏବଂ ଶୂଦ୍ରକୁ କହିଲା ।



(୨) ମୂଳ-(କ) ଯଥା ମନୁଷ୍ୟାଧିକାରନିୟମମପୋଦ୍ୟ, ଦେବାଦୀନାମପି ବିଦ୍ୟାସ୍ୱଧିର ଉକ୍ତସ୍ତଥୈବ ଦ୍ୱିଜାତ୍ୟଧିକାରନିୟମାପବାଦେନ ଶୁଦ୍ରସ୍ୟାପ୍ୟଧିକାରଃ ସ୍ୟାଦିତ୍ୟେତାମାଶଙ୍କାଂ ନିବର୍ତ୍ତୟିତୁମିଦମଧିକରଣମାରଭତେ । (ଖ) ତତ୍ର ଶୁଦ୍ରସ୍ୟାପ୍ୟ-ଧିକାରଃ ସ୍ୟାଦିତି ତାବତ୍ ପ୍ରପ୍ତମ୍, ଅର୍ଥିତ୍ୱସାମର୍ଥୟୋଃ ସମ୍ଭାବାତ୍ 'ତସ୍ମାଛୂଦ୍ରୋ ଯଜ୍ଞେଽନବକ୍ଳୃପ୍ତଃ', (ତୈ. ସଂ ୭-୧-୧-୬୬) ଇତିବତ୍ । 'ଶୁଦ୍ରୋ ବିଦ୍ୟାୟାମନବକ୍ଳୃପ୍ତଃ' ଇତି ଚ ନିଷେଧାଶ୍ରବଣାତ୍ । (ଗ) ଯଚ୍ଚ କର୍ମସ୍ୱନଧିକାରଣକାରଣଂ ଶୁଦ୍ରସ୍ୟାନଗ୍ନିତ୍ୱମ୍, ନ ତତ୍‌ବିଦ୍ୟାସ୍ୱାଧିକାରସ୍ୟାପବାଦଙ୍କ ଲିଙ୍ଗମ୍ । ନ ହ୍ୟାହବନୀୟାଦିରହିତେନ ବିଦ୍ୟା ବେଦିତୁଂ ନ ଶକ୍ୟତେ, ଭବତି ଚ ଲିଂଗଂ ଶୁଦ୍ରାଧିକାରସ୍ୟୋ ପୋଦ୍‌ବଲମ୍ । (ଘ) ସଂବର୍ଗବିଦ୍ୟାୟାଂ ହି ଜାନଶ୍ରୁତିଂ ପୌତ୍ରାୟଣଂ ଶୁଶ୍ରୂଷ ଶୁଦ୍ରଶବ୍ଦେନ ପରାମୃଶତି- 'ଅହ ହା ରେ ବା ଶୁଦ୍ର ତବୈବ ସହ ଗୋଭିସ୍ତୁ', (ଛା ୪-୨-୨) ଇତି । ବିଦୁରପ୍ରଦୁରପ୍ରଭୃତୟଶ୍ଚ ଶୁଦ୍ରଯୋନିପ୍ରଭବା ଅପି ବିଶିଷ୍ଟବିଜ୍ଞାନସଂପନ୍ନା ସ୍ମର୍ଯ୍ୟନ୍ତୋ ତସ୍ମାଦଧିକ୍ରିୟତେ ଶୁଦ୍ରୋ ବିଦ୍ୟାସ୍ୱିତି ।

(୨) ଭାଷାଂତର- (କ) କେବଳ ମନୁଷ୍ୟର ବ୍ରହ୍ମବିଦ୍ୟାରେ ଅଧିକାର ଅଛି । ଏହି ନିୟମ ଯେପରି ଦେବତାମାନଙ୍କର ବ୍ରହ୍ମବିଦ୍ୟାରେ ଅଧିକାର ବୋଲି କୁହାଯାଇଛି' ସେପରି ଦ୍ୱିଜାତିମାତ୍ର (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ)ର ବିଦ୍ୟାରେ ଅଧିକାର ଅଛି । ଏହି ଶଙ୍କାକୁ ନିବୃତ୍ତ କରିବା ପାଇଁ ଏହି ଅଧିକାର ଆରମ୍ଭ ହୋଇଛି ।

(ଖ) ପୂର୍ବପକ୍ଷ - ବ୍ରହ୍ମବିଦ୍ୟାରେ 'ଶୂଦ୍ରର ଅଧିକାର ଅଛି । କାରଣ-ଅର୍ଥିତ୍ୱ ଓ ସାମର୍ଥ୍ୟ ତାହାଠାରେ ହିଁ ସମ୍ଭବ । ମୂର୍ଖଶ୍ଚ ଅଗ୍ନିରହିତ ହେଲେ ଶୂଦ୍ର ଯଜ୍ଞରେ ଅସମର୍ଥ ହୁଏ', ଏହିଭଳି ମଧ୍ୟ ଶୂଦ୍ର ବିଦ୍ୟାରେ ଅସମର୍ଥ ହୁଏ । ଏହି ପ୍ରକାର ନିଷେଧର ଶ୍ରବଣ ନୁହେଁ, ଅର୍ଥାତ୍ ନିଷେଧକ ଶ୍ରୁତି ନୁହେଁ ।

(ଗ) କୌଣସିଠାରେ ଶୁଦ୍ରର ଅନଧିକାରର କାରଣରୁ ଯାହା ଅଗ୍ନି ରହିତତ୍ୱ, ସେ ବ୍ରହ୍ମବିଦ୍ୟାରେ ଅଧିକାରର ଅପବାଦକ ଲିଙ୍ଗ ନୁହେଁ । ଆହବନିୟାଦି ଅଗ୍ନିବ୍ୟତିରିକ୍ତ ପୁରୁଷଦ୍ୱାରା ବିଦ୍ୟା ସମ୍ପାଦନ କରାଯାଇପାରିବ ନାହିଁ ବୋଲି କୁହାଯାଇ ନପାରେ । ତେଣୁ ଶୁଦ୍ରାଧିକାରର ସମର୍ଥକ ଶ୍ରୋତ୍ର ଲିଙ୍ଗ ଶ୍ରୁତି ।

(ଘ) ସଂବର୍ଗବିଦ୍ୟାରେ ଶ୍ରବଣ କରିବାକୁ ଇଚ୍ଛାଥିବା ପୌତ୍ରାୟଣ ଜାତଶ୍ରୁତିର ରୈଦ୍ୱକୁ 'ହେ ଶୁଦ୍ର ! ଗାଈ ସହିତ ଏହି ହାରଯୁକ୍ତ ରଥ ତୁମ୍ଭ ପାଖରେ ଅଛି । – ଏହିପ୍ରକାର ଶୁଦ୍ର

ଶବ୍ଦଦ୍ୱାରା ପରାମର୍ଶ କରାଯାଇଛି । ବିଦୁରାଦି-ଶୁଦ୍ରଯୋନିରେ ଉତ୍ପନ୍ନ ହୋଇ ବିଜ୍ଞାନ ସମ୍ପନ୍ନ ଥିଲେ ବୋଲି ସ୍ମୃତିଶାସ୍ତ୍ର କହେ । ତେଣୁ ଶୁଦ୍ର ବିଦ୍ୟାର ଅଧିକାର ଅଟେ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ନ ଶୂଦ୍ରସ୍ୟାଧିକାରଃ, ବେଦାଧ୍ୟୟନାଭାବାତ୍ । ଅଧୀତବେଦୋ ହି ବିଦିତବେଦାର୍ଥୋ ବେଦେଷ୍ୱଧିକ୍ରିୟତେ । ନ ଚ ଶୂଦ୍ରସ୍ୟ ବେଦାଧ୍ୟୟନମସ୍ତି; ଉପନୟନପୂର୍ବକତ୍ୱାଦ୍ ବେଦାଧ୍ୟୟନସ୍ୟ । ଉପନୟନସ୍ୟଚବର୍ଣ୍ଣତ୍ରୟ ବିଷୟତ୍ୱାତ୍ । (ଖ) ଯତ୍ତ୍ୱର୍ଥିତ୍ୱଂ ନ ତଦସତି ସାମର୍ଥ୍ୟେଽଧି-କାରକାରଣଂ ଭବତି । ସାମର୍ଥ୍ୟମପି ନ ଲୌକିକଂ କେବଳମଧିକାରକାରଣଂ ଭବତି, ଶାସ୍ତ୍ରୀୟେଽର୍ଥେ ଶାସ୍ତ୍ରୀୟସ୍ୟ ସାମର୍ଥସ୍ୟାନପେକ୍ଷିତ୍ୱାତ୍, ଶାସ୍ତ୍ରୀୟସ୍ୟ ଚ ସାମର୍ଥ୍ୟେନାଧ୍ୟନନିରାରରଣେନ ନିରାକୃତ୍ୱାତ୍ । (ଗ) ଯଚ୍ଚେଦଂ 'ଶୁଦ୍ରୋଯଜ୍ଞେଽନବକ୍ଳୃପ୍ତଃ' ଇତି ତନ୍ନ୍ୟାୟପୂର୍ବକତ୍ୱାଦ୍ ବିଦ୍ୟାୟାମପ୍ୟନବକ୍ଳପ୍ତତ୍ୱଂ ଦ୍ୟୋତିୟତି, ନ୍ୟାୟସ୍ୟ ସାଧାରଣତ୍ୱାତ୍ । (ଘ) ଯତ୍ପୁନଃ ସଂବର୍ଗବିଦ୍ୟାୟାଂ ଶୁଦ୍ରଶବ୍ଦଶ୍ରବଣଂ ଲିଂଗଂ ମନ୍ୟସେ, ନ ତଲ୍ଲିଙ୍ଗମ୍, ନ୍ୟାୟାଭାବାତ୍ । ନ୍ୟାୟୋକ୍ତେ ଚ ଲିଂଙ୍ଗଂଦର୍ଶନ ଦ୍ୟୋତକଂ ଭବତି । ନ ଚାତ୍ର ନ୍ୟାୟୋଽସି । (ଙ) କାମଂ ଚାୟଂ ଶୁଦ୍ରଶବ୍ଦଃ ସଂବର୍ଗବିଦ୍ୟାୟାମେବୈକସ୍ୟାଂ ଶୁଦ୍ରମଧିକୁର୍ଯ୍ୟାତ୍ ତଦ୍‌ବିଷୟତ୍ୱାତ୍, ନ ସର୍ବାସୁ । ବିଦ୍ୟାସୁ । ଅର୍ଥ ବାଦସ୍ଥାତ୍ୱାତ୍ତୁ ନ କ୍ୱଚିଦପ୍ୟୟଂ ଶୁଦ୍ରମଧିକର୍ତ୍ତୁମୁସହତେ । ଶକ୍ୟତେ ଚାୟଂ ଶୁଦ୍ରଶବ୍ଦୋଽଧିକୃତବିଷୟୋ ଯୋଜୟିତୁମ୍ ।

**(୩) ଭାଷାଂତର-** (କ) ସିଦ୍ଧାନ୍ତ-(କ)-ବେଦାଧ୍ୟୟନ ନ ହେବାରୁ ଶୁଦ୍ରର ବିଦ୍ୟାରେ ଅଧିକାର ନାହିଁ । ଅଧୀତ ବେଦ ଓ ବିଦିତବେଦାର୍ଥପୁରୁଷର ବେଦାର୍ଥ ବିଚାରରେ ଅଧିକାର ଅଛି । ଶୁଦ୍ରପାଇଁ ବେଦାଧ୍ୟୟନ ନାହିଁ । କାରଣ-ବେଦାଧ୍ୟୟନ ଉପନୟନ ପୂର୍ବକ କରାଯାଏ । ଉପନୟନ ମଧ୍ୟ ବର୍ଣ୍ଣତ୍ରୟ (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ) ବିଷୟକ ହୁଏ ।

(ଖ) ଯିଏ ଅର୍ଥିତ୍ୱ, ତାର ସାମର୍ଥ୍ୟ ନ ହେଲେ ଅଧିକାରର କାରଣ ହୁଏ ନାହିଁ । କେବଳ ଲୌକିକ ସାମର୍ଥ୍ୟ ଅଧିକାରର କାରଣ ନୁହେଁ, କାରଣ-ଶାସ୍ତ୍ରୀୟ-ଅର୍ଥରେ ଶାସ୍ତ୍ରୀୟ ସାମର୍ଥ୍ୟକୁ ଅପେକ୍ଷା କରାଯାଏ ଏବଂ ଅଧ୍ୟୟନର ନିରାକରଣ ଦ୍ୱାରା ଶାସ୍ତ୍ରୀୟ ସାମର୍ଥ୍ୟର ନିରାକରଣ ହେବାର ବୁଝାଯାଏ ।

(ଗ) ଏହି ନ୍ୟାୟ ଦୁଇଟି ସ୍ଥଳରେ ସମାନ । ତେଣୁ ନ୍ୟାୟପୂର୍ବକ ହେଲେ ବିଦ୍ୟାରେ 'ଶୂଦ୍ରୋ ଯଜ୍ଞେଽନବକ୍ଳୃପ୍ତଃ' ଏହା କିଣ ଅସାମର୍ଥ୍ୟସୂଚିତ କରୁଛି କି ?

(ଘ) ସଂବର୍ଗ ବିଦ୍ୟାରେ ଶୂଦ୍ରଶବ୍ଦ ଶ୍ରବଣକୁ ତୁମେ ଯେଉଁ ଲିଙ୍ଗ ବୋଲି ସ୍ୱୀକାର କରୁଛ, ସେ ଲିଙ୍ଗ ନୁହେଁ । କାରଣ-ବେଦାର୍ଥ ଜ୍ଞାନସାମର୍ଥ୍ୟରୂପ ଅନୁକୂଳ ନ୍ୟାୟ ନୁହେଁ । ଲିଙ୍ଗ ଦର୍ଶନ ନ୍ୟାୟସଙ୍ଗତ ବିଷୟର ସୂଚକ ଅଟେ । ପରନ୍ତୁ ଏଠାରେ ଉକ୍ତନ୍ୟାୟ ପ୍ରଯୁଜ୍ୟ ନୁହେଁ ।

(ଙ) ଏଠାରେ ଏହି ଶୂଦ୍ରଶବ୍ଦ କେବଳ ଏକ ସଂବର୍ଗ ବିଦ୍ୟାରେ ଶୂଦ୍ରକୁ ଅଧିକାର ଦିଏ ବୋଲି ମନେକରାଯାଏ' । କାରଣ-ଶୂଦ୍ରଶବ୍ଦ ସଂବର୍ଗ ବିଦ୍ୟାରେ ପଠିତ । ସବୁବିଦ୍ୟାରେ ତାହାର ଅଧିକାର ନାହିଁ, ଶୂଦ୍ର ଶବ୍ଦ ଅର୍ଥବାଦବାକ୍ୟରେ ପଠିତ ହେବାରୁ କୌଣସି ବିଦ୍ୟାରେ ଶୁଦ୍ରକୁ ଅଧିକାର ଦିଆଯାଇ ନାହିଁ । ତେଣୁ ଏହି ଶୂଦ୍ର ଶବ୍ଦ ଅଧିକୃତ ବିଷୟକ (ଦ୍ୱିଜାତି) ପୁରୁଷ ପାଇଁ ପ୍ରଯୁକ୍ତ କରାଯାଇଅଛି ।

(୪) ମୂଳ-(କ) କଥମିତ୍ୟୁଚ୍ୟତେ ? 'କମ୍ବରଂ ଏନମେତତ୍‌ସନ୍ତଂ ସଯୁଗବା-ନମିବ ରୈକ୍ୱମାତ୍ଥମ୍', (ଛା ୪-୧-୩) ଇତ୍ୟସ୍ମାଦ୍‌ହଂସ ବାକ୍ୟାଦାତ୍ମନୋଽନାଦରଂ ଶ୍ରୁତବତୋ ଜାନଶ୍ରୁତେଃ ପୌତ୍ରାୟଣସ୍ୟ ଶୁଗୁତ୍ପେଦେ, ତାମୃଷୀରୈକ୍ୱଃ ଶୁଦ୍ରଶବ୍ଦେନାନେନ ସୂଚୟାଂବଭୂବାତ୍ମନଃ ପରେକ୍ଷତାଖ୍ୟା ପନାୟେତି ଗମ୍ୟତେ, ଜାତିଶୁଦ୍ରସ୍ୟାନଧିକାରାତ୍ । (ଖ) କଥଂ ପୁନଃ ଶୁଦ୍ରଶବ୍ଦେନ ଶୁଗୁତ୍ପନ୍ନା ସୂଚ୍ୟତ ଇତି ? ଉଚ୍ୟତେ-ତଦାଶ୍ରବଣାତ୍ । ଶୁଭମଭିଦୁଦ୍ରାବ, ଶୁଚଃ ବାଽଭିଦୁଦୁବେ, ଶୁଚ ବା ରୈକ୍ୱମଭିଦୁଦ୍ରାବେତି ଶୂଦ୍ରଃ, ଅବଲବାର୍ଥସମ୍ଭବାଦ୍ ରୂଢ୍ୟର୍ଥସ୍ୟା ଚାମନ୍ତବାତ୍ । ଦୃଶ୍ୟତେ ଚାୟମର୍ଥୋଽସ୍ୟାମାଖ୍ୟାୟିକାୟାମ୍ ।

**(୪) ଭାଷାଂତର-** (କ) କାହିଁକି ଏହି ପ୍ରକାର ? 'ଅରେ ତୁ କେଉଁ ମହତ୍ତ୍ୱ ସଂପନ୍ନ ଏହି ରାଜାଙ୍କ ପ୍ରତି ଏହି ପ୍ରକାର ସମ୍ମାନିତ ବଚନ କହୁଛୁ, କଣ ତୁ ସେହି ଗାଡ଼ି ବାଲା ରୈକ୍ୱେରଷି ଭଳି ଶିଖାଉଛୁ ? ଏହି ହଂସବାକ୍ୟରେ ନିଜେ ଅନାଦରକୁ ଶୁଣୁଥିବା ପୌତ୍ରାୟଣଜାନଶ୍ରୁତିକୁ ଶୋକ ସଂପନ୍ନ କରେ । ଏଠାରେ ରୈକ୍ୱରଷି ନିଜେ ପରୋକ୍ଷଜ୍ଞତାକୁ କହିବା ନିମିତ୍ତ ଏକଶୁଦ୍ରଶବ୍ଦଦ୍ୱାରା ଶୋକ ସୂଚନା ଦିଏ । କାରଣ- ଏଠାରେ ଜାତିଗତଶୁଦ୍ରର ଅଧିକାର ନୁହେଁ ।

(ଖ) ରାଜାକୁ ଉତ୍ପନ୍ନ କରି ଶୋକ ଏହି ଶୁଦ୍ର ଶବ୍ଦରେ କିପରି ସୂଚିତ କରେ ? କୁହାଯାଇଛି- ତାହାର ଆଦ୍ର ବଣଦ୍ୱାରା ସେ ଶୋକ ଆଡ଼କୁ ଅଗ୍ରସର ହୋଇ ଅର୍ଥାତ୍ ଶୋକରେ ବ୍ୟାପ୍ତ ହୋଇ ଅଥବା ଶୋକଦ୍ୱାରା ରୈକ୍ୱ ପାଖକୁ ଗଲା । ତେଣୁ ସେ ଶୁଦ୍ର କହିଲା-କାରଣ-ଏଠାରେ ଅବୟବ (ଯୌଗିକ) ଅର୍ଥର ସମ୍ଭବ ହୁଏ । ରୂଢ଼ି ଅଥ ସମ୍ଭବ ନୁହେଁ । ଏହି ଆଖ୍ୟାୟିକାରେ, ଏହି ଅର୍ଥ ଦେଖାଯାଏ ।

क्षत्रियत्वगतेस्चोत्तरति चैत्ररथेन लिङ्गात् ॥ ३५ ॥

## (୧) କ୍ଷତ୍ରିୟତ୍ୱଗତେଷ୍ଚୋତ୍ତରତି ଚୈତ୍ରରଥେନ ଲିଙ୍ଗାତ୍ ॥ ୧-୩-୩୫ ॥

କ୍ଷତ୍ରିୟତ୍ୱଗତେଶ୍ଚ = କ୍ଷତ୍ରିୟତ୍ୱଜ୍ଞାନ ହେଲେ ଜାନଶ୍ରୁତି ମୁଖ୍ୟଶୁଦ୍ର ହୁଏ ନାହିଁ, କାରଣ-ଉତ୍ତରତ୍ର=ସଂବର୍ଗବିଦ୍ୟାର ବାକ୍ୟଶେଷରେ, ଚୈତ୍ରରଥେନ=ପ୍ରସିଦ୍ଧକ୍ଷତ୍ରିୟ ଚୈତ୍ରରଥ ଅଭିପ୍ରତାରୀ ସହ, ଲିଙ୍ଗାତ୍ = ସମଭିବ୍ୟାହାରରୂପଲିଙ୍ଗଦ୍ୱାରା ଜାନଶ୍ରୁତି କ୍ଷତ୍ରିୟ ଜ୍ଞାତ ହୁଏ । ଏହାଦ୍ୱାରା ବିଦ୍ୟାରେ ଶୂଦ୍ରର ଅଧିକାର ନାହିଁ ।

(୨) ମୂଳ-(କ) ଇତଶ୍ଚ ନ ଜାତିଶୁଦ୍ରୋ ଜାନଶ୍ରୁତିଃ । ଯତ୍କାରଣଂ ପ୍ରକରଣ-ନିରୂପଣେନ କ୍ଷତ୍ରିୟତ୍ୱମସ୍ୟୋତ୍ତରତ୍ର ଚୈତ୍ରଥେନାଭିପ୍ରତାରିଣା କ୍ଷତ୍ରିୟେଣ ସମଭବ୍ୟା-ହାରାଲିଙ୍ଗାଦ୍ ଗମ୍ୟତେ । (ଖ) ଉତ୍ତରତ୍ର ହି ସଂବର୍ଗବିଦ୍ୟାବାକ୍ୟଶେଷେ ଚୈତ୍ରରଥିରଭିପ୍ରେତାରୀ କ୍ଷତ୍ରିୟଃ ସଙ୍କୀର୍ତ୍ତ୍ୟତେ-'ଅଥ ହ ଶୌନକଂ ଚ କାପେୟମଭିପ୍ରେତାରିଣଂ ଚ କାକ୍ଷସେନିଂ (ସ୍ୱଦେନ) ପରିବିଷ୍ୟମାଣୌ ବ୍ରହ୍ମଚାରୀ ବିଭିକ୍ଷେ', (ଛା ୪।୩।୫) (ଗ) ଚୈତ୍ରରଥି ତ୍ୱଂ ଚାଭିପ୍ରମାରିଣଃ କାପେୟଯୋଗାଦ-ବଗନ୍ତବ୍ୟମ୍ । କାପେୟଯୋଗୋ ତୁ ଚିତ୍ରଥସ୍ୟାବଗତଃ 'ଏତେନ ବୈଚିତ୍ରରଥଂ କାପେୟା ଅଯାଜୟନ୍', (ତାଣ୍ଡ୍ୟବ୍ରା ୨୦।୧୨।୫) ଇତି । ସମାନାନ୍ୱୟାନାଂ ଚ ପ୍ରାୟେଣ ସମାନାନ୍ୱୟା ଯାଜକା ଭବନ୍ତି । 'ତସ୍ମାଚ୍ଚୈତ୍ରରଥିର୍ନାମୈକଃ କ୍ଷତ୍ରପତିରଜାୟତ', ଇତି ଚ କ୍ଷତ୍ରପତିତ୍ୱାବଗମାତ୍କ୍ଷତ୍ରିୟତ୍ୱମସ୍ୟାବଗନ୍ତବ୍ୟମ୍ । (ଘ) ତେଜ କ୍ଷତ୍ରିୟେଣାଭିପ୍ରତାରିଣା ସହ ସମାନାୟଂ ସଂବର୍ଗବିଦ୍ୟାୟଂ ସଂକୀର୍ତ୍ତନଂ ଜାତଶ୍ରୁତେରପି କ୍ଷତ୍ରିୟତ୍ୱଂ ସୂଚୟତି । ସମାନାନାମେବ ହି ପ୍ରାୟେଣ ସମଭିବ୍ୟାହାରା ଭବନ୍ତି । କ୍ଷତ୍ତୃପ୍ରେଷଣାଦ୍ୟୈଶ୍ୱର୍ଯ୍ୟଯୋଗାଚ୍ଚ ଜାନଶ୍ରୁତେଃ କ୍ଷତ୍ରିୟତ୍ୱାବଗତିଃ । ଅତେ ନ ଶୁଦ୍ରସ୍ୟାଧିକାରଃ ।

(୨) ଭାଷାଂତର - (କ) ଏହି କାରଣରୁ ଜାନଶ୍ରୁତି ଜାତିରେ ଶୁଦ୍ର ନୁହେଁ । କାରଣ-ପ୍ରକରଣର ନିରୂପଣ ଦ୍ୱାରା ପ୍ରଥମେ ଚୈତ୍ରରଥ ଅଭିପ୍ରତାରୀ କ୍ଷତ୍ରିୟ ସହିତ ସମଭିବ୍ୟାହାରସ୍ୱରୂପ ଲିଙ୍ଗରେ ଜଣାପଡ଼େ ।

(ଖ) ଉତ୍ତରତ୍ର - ସଂବର୍ଗବିଦ୍ୟାର ବାକ୍ୟଶେଷରେ ଚୈତ୍ରରଥି ଅଭିପ୍ରତାରୀ କ୍ଷତ୍ରିୟର 'ଥରେ କପି ଗୋତ୍ରକ ଶୌନକ ଏବଂ କକ୍ଷସେନର ପୁଅ ଅଭିପ୍ରତାରଠାରୁ ଯେତେବେଳେ ସେ ଭୋଜନ ପରିବେଶ କରିଥିଲା ସେ ବ୍ରହ୍ମଚାରୀ ହୋଇ ଭିକ୍ଷା ମାଗିଥିଲେ' । ଏହି ବଚନ ଅଟେ ।



(ଗ) ଅଭିପ୍ରତାରୀରେ ଚୈତ୍ରରଥତ୍ୱ କାପେୟ ସମ୍ବନ୍ଧଦ୍ୱାରା ଜାଣିବା ଉଚିତ୍ । 'ଏହି ଦ୍ୱିରାତ୍ରେଷ୍ଟଦ୍ୱାରା କାପେୟ ଚିତ୍ରରଥକୁ ଯଜ୍ଞ କରାଇଲେ', ଏହାଦ୍ୱାରା ଚିତ୍ରରଥର କାପେୟ ସହ ସମ୍ବନ୍ଧ ଅବଗତ ହୁଏ । ପ୍ରାୟ ସମାନବଂଶଜର ଯାଜକ ହୁଏ । ଅର୍ଥାତ୍ ରାଜବଂଶୀୟର ପ୍ରାୟଃ ପୁରୋହିତବଂଶ୍ୟ ଯାଜକ ହୁଅନ୍ତି । 'ତାହାଠାରୁ ଚୈତ୍ରରଥଦ୍ୱାରା ଚିତ୍ରରଥ ନାମକ ଏକ କ୍ଷତ୍ରପତିଜାତ ହେଲା', ଏହି ପ୍ରକାର କ୍ଷତ୍ରପତିତ୍ୱର ଅବଗତି ଦ୍ୱାରା ଏହି ଚୈତ୍ରରଥରେ କ୍ଷତ୍ରିୟତ୍ୱ ସୂଚିତ କରେ ।

(ଘ) ତେଣୁ କ୍ଷତ୍ରିୟ ଦ୍ୱାରା ଅଭିପ୍ରତାର ହୋଇ ସମାନସଂବର୍ଗ ବିଦ୍ୟାରେ ଜାତ ଶ୍ରୁତିର କ୍ଷତ୍ରିୟତ୍ୱ ସଂକୀର୍ତ୍ତନ ଜଣାପଡ଼େ । ସମାନର ପ୍ରାୟଶଃ ସମଭିବ୍ୟହାର ହୁଏ । ସାରଥିପ୍ରେଷଣା (ଭୋଜନା ବି) ଐଶ୍ୱର୍ଯ୍ୟର ଯାଗରେ ଜାନଶ୍ରୁତିରେ କ୍ଷତ୍ରିୟତ୍ୱ ଅବଗତ ହୁଏ । ତେଣୁ ଶ୍ରୋତବିଦ୍ୟାରେ ଶୁଦ୍ରର ଅଧିକାର ନାହିଁ ।

## संस्कारपरामर्शात्तदभावाभिलापाच्च ॥ ३६ ॥

## (୧) ସଂସ୍କାର ପରାମର୍ଶାତ୍ତଦଭାବାଭିଲାପାଚ୍ଚ ॥ ୧-୩-୩୬ ॥

ସଂସ୍କାର ପରାମର୍ଶାତ୍ = ବ୍ରହ୍ମବିଦ୍ୟାରେ ଉପନୟାଦି ସଂସ୍କାରର ପରାମର୍ଶ ହୁଏ । ଏବଂ ତଦଭାବାଭିଲପାଚ୍ଚ = ଶୁଦ୍ରକୁ ଉପନୟନାଦି ସଂସ୍କାରର ଅଭାବଯୋଗୁ ବ୍ରହ୍ମବିଦ୍ୟାରେ ଶୁଦ୍ରର ଅଧିକାର ନାହିଁ ।

(୨) ମୂଳ-(କ) ଇତଶ୍ଚ ଶୁଦ୍ରସ୍ୟାଧିକାରଃ ଯଦ୍‌ବିଦ୍ୟାପ୍ରଦେଶେ-ଷୂପନୟନାଦୟଃ ସଂସ୍କାରାଃ ପରାମୃଶ୍ୟନ୍ତେ-'ତଂ ହୋପନିନ୍ୟେ', (ଶ.ବ୍ର ୧୧।୫।୩।୧୩), 'ଅଧୀହି ଭଗବ ଇତି ହୋପସସାଦ', (ଛା ୭।୧।୧) (ଖ) ବ୍ରହ୍ମପରା ବ୍ରହ୍ମନିଷ୍ଠାଃ ପରଂବ୍ରହ୍ମାନ୍ୱେଷମାଣା ଏଷ ହ ବୈ ତତ୍‌ସର୍ବ ବକ୍ଷତୀତି ତେ ହ ସମିତ୍‌ପ୍ରାଣୟୋ ଭଗବନ୍ତଂ ପିପ୍ପଳାଦମୁପସନ୍ନାଃ (ପ୍ର ୧।୧) ଇତି ଚ । 'ତାନ୍ ହାନୁପନୀୟୈବ', (ଛା ୬।୧୧।୭) ଇତ୍ୟପି ପ୍ରଦର୍ଶତୈବୋପୟନପ୍ରାପ୍ତିର୍ଭବତି । (ଖ) ଶୂଦ୍ରସ୍ୟ ସଂସ୍କାରା-ଭାବୋଽଭିଲିପ୍ୟତେ, ଶୁଦ୍ରଶ୍ଚତୁର୍ଥୋ ବର୍ଣ୍ଣ ଏକଜାତିଃ', (ମନୁ ୧୦।୪) ଇତ୍ୟେକଜାତ-ସ୍ମରଣାତ୍ । ନ ଶୁଦ୍ରେ ପାତକଂ କିଂଚିନ୍ନ ଚ ସଂସ୍କାରମର୍ହତି', (ମନୁ ୧୦।୧୨।୭) ଇତ୍ୟାଦିଭିଶ୍ଚ ।

(୨) ଭାଷାଂତର-(କ) ତେଣୁ ଶୁଦ୍ରର ବ୍ରହ୍ମବିଦ୍ୟାରେ ଅଧିକାର ନାହିଁ । କାରଣ- 'ତାହାର ଉପନୟନ କରାଗଲା', ହେ ଭଗବନ୍ ? ମୋତେ ଉପଦେଶ ଦିଅନ୍ତୁ- ଏହିପରି କହି ନାରଦ ସନତ୍ କୁମାରଙ୍କ ପାଖକୁ ଗଲେ' ।

(ଖ) ଏମାନେ ଅପର ବ୍ରହ୍ମର ଉପାସନା କରୁଥିବା ଓ ତଦନୁକୂଳ ଅନୁଷ୍ଠାନରେ ତତ୍‌ପରଭରଦ୍ୱାଜାଦି ଛଅ ଋଷି ପରଂବ୍ରହ୍ମକୁ ଜିଜ୍ଞାସା କରି ଭଗବାନ ପିପ୍ପଳାଦ ପାଖରେ ଦୁଃଖ ପ୍ରକାଶ କଲେ ଯେ-ଏହିମାନେ ସେହି ବିଷୟରେ ସବୁକିଛି ବତାଇ ଦେବେ ଏବଂ ହାତରେ ସମିଧ ନେଇ ଗଲେ' । ଏହି ପ୍ରକାର ବିଦ୍ୟା ପ୍ରକରଣରେ ଉପନୟନାଦି ସଂସ୍କାରକୁ ପରାମର୍ଶ କରେ । 'ସେମାନଙ୍କର ଉପଦେଶ ନ ଦେଇ ରାଜା ସେହି ବିଦ୍ୟାରେ ଉପଦେଶ ଦେଲେ', ଏଠାରେ ଉପନୟନପ୍ରାପ୍ତି ଦେଖା ଦିଆଯାଇଛି ।

(ଗ) ପରନ୍ତୁ 'ଶୁଦ୍ର ହିଁ ଚତୁର୍ଥବର୍ଣ୍ଣ ଓ ଉପଦେଶରହିତ ଅଟେ', ଏହି ପ୍ରକାର ସ୍ମୃତିରେ ସେ ଗୋଟିଏ ଜାତିରୂପେ କୁହାଯାଇଛି । 'ଶୁଦ୍ର ରସୁଣାଦି ଭକ୍ଷଣ କଲେ ତାକୁ କୌଣସି ପାପ ହୁଏ ନାହିଁ ଏବଂ ସେ ଉପନୟନାଦି ସଂସ୍କାରର କରେନାହିଁ ।" ଇତ୍ୟାଦି ସ୍ମୃତିଦ୍ୱାରା ଶୁଦ୍ରରେ ସଂସ୍କାରର ଅଭାବ କୁହାଯାଇଛି ।

## तदभावनिर्धारणे च प्रवृत्तेः ॥ ३७ ॥

## (୧) ତଦଭାବନିର୍ଦ୍ଧାରଣେ ଚ ପ୍ରବୃତ୍ତେଃ ॥୧-୩-୩୭॥

ତଦଭାବନିର୍ଦ୍ଧାରଣେ=ସତ୍ୟକାମରେ ସତ୍ୟକଥନ ଦ୍ୱାରା ଶୁଦ୍ରତ୍ୱଭାବ ନିର୍ଦ୍ଧାରଣ କଲାପରେ, ପ୍ରବୃତ୍ତେଃ-ଗୌତମ ସତ୍ୟକାମକୁ ପାଇ ଉପଦେଶ ଇତ୍ୟାଦି କରିବାରେ ପ୍ରବୃତ୍ତ ହୁଏ । ଏହାଦ୍ୱାରା, ଚ = ମଧ୍ୟ ବିଦ୍ୟାରେ ଶୂଦ୍ରର ଅନଧିକାର ପ୍ରକାଶିତ ହୁଏ ।

(୨) ମୂଳ-(କ) ଇତଶ୍ଚ ନ ଶୁଦ୍ରସ୍ୟାଧିକାରଃ । ଯତ୍‌ସତ୍ୟବଚନେନ ଶୁଦ୍ରତ୍ୱାଭାବେ ନିର୍ଦ୍ଧାରିତେ ଜାବାଲଂ ଗୌତମ ଉପନେତୁମନୁଶାସିତୁଂ ଚ ପ୍ରବବୃତେ । 'ନୈତଦ୍‌ବ୍ରାହ୍ମଣୋ ବିବକ୍ତୁମର୍ହତି, ସମିଧଂ ସୋମ୍ୟାହରୋପ ତ୍ୱା ନେଷ୍ୟେ ନ ସତ୍ୟବଗାଃ'' (ଛା ୪।୪।୫) ଇତି ଶ୍ରୁତିଲିଙ୍ଗାତ୍ ।'

(୨) ଭାଷାଂତର- (କ) ଏହିଯୋଗୁଁ ଶୁଦ୍ରର ବିଦ୍ୟାରେ ଅଧିକାର ନାହିଁ, କାରଣ-ସତ୍ୟ କହିଲେ ଶୁଦ୍ରତ୍ୱାଭାବର ନିର୍ଦ୍ଧାରଣ କଲାପରେ ଗୌତମ ସତ୍ୟକାମର ଉପନୟନ୍ କରି ସେହି ବିଦ୍ୟାକୁ ଉପଦେଶ ଦେବାପାଇଁ ପ୍ରବୃତ୍ତ ହୋଇ 'ତେଣୁ ଗୌତମ କହିଲେ- ଏହିପରି ସ୍ପଷ୍ଟଭାଷଣ କୌଣସି ବ୍ରହ୍ମଣେତର ଲୋକ କରିପାରେନା, ଅତଃ ହ ସୌମ୍ୟ । ତୁମର ସମିଧ ଆଣ, ମୁଁ ତୁମର ଉପନୟକ କରିବି । କାରଣ- ତୁମେ ସତ୍ୟ ତ୍ୟାଗ କରି ନାହିଁ'' । ଏହି ଶ୍ରୁତିଲିଙ୍ଗ ଅଟେ ।



## श्रवणाध्ययनार्थप्रतिषेधात्स्मृतेश्च ॥ ३८ ॥

## (୧) ଶ୍ରବଣାଧ୍ୟୟନାର୍ଥପ୍ରତିଷେଧାତ୍ସ୍ମୃତେଶ୍ଚ ॥ ୧-୩-୩୮ ॥

ସ୍ମୃତେଃ='ଅଥାସ୍ୟ ବେଦମୁପଶୃଣ୍ୱତଃ' ଇତ୍ୟାଦି ସ୍ମୃତିଦ୍ୱାରା, ଶ୍ରବଣାଧ୍ୟୟନ ପ୍ରତିଷେଧାତ୍=ଶୁଦ୍ର ପାଇଁ ବେଦର ଶ୍ରବଣ, ଅଧ୍ୟୟନ, ଅର୍ଥଜ୍ଞାନ ଓ ଅନୁଷ୍ଠାନର ପ୍ରତିଷେଧ କରାଯାଇଛି । ତେଣୁ ଶୁଦ୍ରର ବିଦ୍ୟାରେ ଅଧିକାର ନାହିଁ ।

(୨) ମୂଳ-(କ) ଇତଶ୍ଚ ନ ଶୁଦ୍ରସ୍ୟାଧିକାରଃ, ଯଦସ୍ୟ ସ୍ମୃତେଃ ଶ୍ରବଣାଧ୍ୟୟନାର୍ଥ-ପ୍ରତିଷେଧୋ ଭବତି । ବେଦଶ୍ରବଣପ୍ରତିଷେଧୋ ବେଦାଧ୍ୟୟନ ପ୍ରତିଷେଧସ୍ତଦର୍ଥଜ୍ଞାନା-ନୁଷ୍ଠାନୟୋଶ୍ଚ ପ୍ରତିଷେଧଃ ଶୁଦ୍ରସ୍ୟ ସ୍ମର୍ଯ୍ୟତେ । ଶ୍ରବଣପ୍ରତିଷେଧସ୍ତାବତ୍ 'ଅଥାସ୍ୟ ବେଦମୁପଶୃଣ୍ୱତସ୍ତ୍ରପୁଜତୁଭ୍ୟାଂ ଶ୍ରୋତ୍ର ପ୍ରତିପୂରଣମ୍', ଇତି । ପଦ୍ୟୁ ହ ବା ଏତଚ୍ଛ୍ମଶାନଂ ଯଚ୍ଛୁଦ୍ରସ୍ତସ୍ମାଚ୍ଛୁଦ୍ର ସମୀପେଽପି ନାଧ୍ୟେତବ୍ୟମ୍', ଇତି ଅତ ଏବାଧ୍ୟୟନପ୍ରତିଶେଧଃ । (ଖ) ଯସ୍ୟ ହି ସମୀପେଽପି ନାଧ୍ୟେତବ୍ୟ ଭବତି, ସ କଥମଶ୍ରୁତମଧୀୟୀତ ? ଭବତି ଚ ବେଦୋଚ୍ଚାରେଣ ଜିହ୍ୱାଚ୍ଛେଦୋ ଧାରଣେ ଶରୀରଭେଦ ଇତି । ଅତଏବ ଚାର୍ଥ୍ୟଦର୍ଥ-ଜ୍ଞାନାନୁଷ୍ଠାନୟୋଃ ପ୍ରତିଷେଧୋ ଭବତି । 'ନ ଶୁଦ୍ରାୟ ମତିଂ ଦଦ୍ୟାତ୍' ଇତି ଦ୍ୱିଜାତୀମଧ୍ୟୟନ-ମିଜ୍ୟାଦାନମ୍', ଇତି ଚ । (ଗ) ଯେଷାଂ ପୁନଃ ପୂର୍ବକୃତସଂସ୍କାରବଶାଦ୍ ବିଦୁର ଧର୍ମବ୍ୟାଧପ୍ରଭୃତୀନାଂ ଜ୍ଞାତୋତ୍ପତ୍ତି ସ୍ତେଷାଂ ନ ଶକ୍ୟତେ, ଫଳପ୍ରାପ୍ତିଃ ପ୍ରତିଷେଦ୍ଧୁମ୍, ଜ୍ଞାନସ୍ୟୈକାନ୍ତିକ ଫଳତ୍ୱାତ୍ । 'ଶ୍ରାବୟେଚ୍ଚତୁରୋ ବର୍ଣ୍ଣାନ୍', ଇତି ଚେତିହାସପୁରାଣାଧିଗମେ ଚତୁର୍ବର୍ଣ୍ଣ୍ୟସ୍ୟାଧିକା-ରସ୍ମରଣାତ୍ । ବେଦପୂର୍ବକସ୍ତୁ ନାସ୍ତ୍ୟଧିକାରଃ ଶୁଦ୍ରାଣାମିତି ସ୍ଥିତମ୍ ।

**(୨) ଭାଷାଂତର**-(କ) ତେଣୁ ଶୁଦ୍ରର ବିଦ୍ୟାରେ ଅଧିକାର ନାହିଁ, କାରଣ-ଧର୍ମଶାସ୍ତ୍ରରେ ତାହାପାଇଁ ଶ୍ରବଣ, ଅଧ୍ୟୟନ ଓ ଅର୍ଥଜ୍ଞାନର ପ୍ରତିଷେଧ କରାଯାଇଛି । ସ୍ମୃତିରେ ଶୁଦ୍ର ପାଇଁ ବେଦର ଶ୍ରବଣ, ବେଦର ଅଧ୍ୟୟନ ଓ ବେଦାର୍ଥଜ୍ଞାନ ଏବଂ ଅନୁଷ୍ଠାନର ନିଷେଧ କରାଯାଇଛି । 'ପାଖରେ ବେଦକୁ ଶ୍ରବଣ କରୁଥିବା ଶୁଦ୍ରପାଇଁ ଦୁଇଟି କାନ ସୀସା ଓ ଲାଖରେ ପୂର୍ଣ୍ଣ ହୋଇଛି । ଏବଂ 'ଶୁଦ୍ର ନିଃସନ୍ଦେହରେ ପାଦଯୁକ୍ତ ଶ୍ମଶାନ ଅଟେ । ତେଣୁ ଶୁଦ୍ର ପାଖରେ ବେଦର ଅଧ୍ୟୟନ କରିବା ଉଚିତ ନୁହେଁ', ଏହିପ୍ରକାର ବେଦର ପ୍ରତିଷେଧ କରାଯାଉଛି ।

(ଖ) ଶ୍ରବଣର ନିଷେଧ ହେଲେ ଅଧ୍ୟୟନରେ ନିଷେଧ ସିଦ୍ଧି ହୁଏ । କାରଣ-ଯାହାପାଖରେ ଅଧ୍ୟୟନ କରିବା ଠିକ୍ ନୁହେଁ, ସେ ଅଶ୍ରୁତବେଦର ଅଧ୍ୟୟନ କିପରି

ହେବ ? ବେଦର ଉଚ୍ଚାରଣ କରିବା ପରେ ତଥା ଶୁଦ୍ରର ଜିହ୍ବା ଉଚ୍ଛେଦ ଓ ଧାରଣ କଲାପରେ ଶରୀରର ଭେଦ ବିଧାନ କରାଯାଏ । ବେଦାଧ୍ୟୟନର ଅଭାବରେ ଶୁଦ୍ର ପାଇଁ ଅର୍ଥଜ୍ଞାନ ଓ ଅନୁଷ୍ଠାନର ନିଷେଧ ଅର୍ଥରୁ ସିଦ୍ଧ ହୁଏ । 'ଶୁଦ୍ରକୁ ବେଦାର୍ଥଜ୍ଞାନ ଦିଅନାହିଁ' । 'ଦ୍ୱିଜାତିମାନଙ୍କ ପାଇଁ ଅଧ୍ୟୟନ ଯଜ୍ଞ ତଥା ଦାନର ବିଧାନ କରାଯାଇଛି ।

(ଗ) ପରନ୍ତୁ ବିଦୁର ଧର୍ମବ୍ୟାଧାଦି ଯେଉଁମାନଙ୍କର ପୂର୍ବକର୍ମର ସଂସ୍କାର ଦ୍ୱାରା ଜ୍ଞାନ ଉତ୍ପନ୍ନ ହୋଇଛି, ସେମାନଙ୍କ ପାଇଁ ଫଳପ୍ରାପ୍ତିର ପ୍ରତିଷେଧ କରାଯାଇନାହିଁ କାରଣ-ଜ୍ଞାନ ଓ ଅବ୍ୟଭିଚରିତଫଳ ଯୁକ୍ତ ହୁଏ । 'ଚାରିବର୍ଣ୍ଣକୁ ଶୁଣାଇବା ଉଚିତ । ଏହି ପ୍ରକାର ସ୍ମୃତି ଇତିହାସ ପୁରାଣଗୁଡ଼ିକରେ ଜ୍ଞାନ କରାଇବାରେ ଚାରିବର୍ଣ୍ଣର ଅଧିକାର ଶିଖାଏ । ତେଣୁ ଏହାଦ୍ୱାରା ବେଦାଧ୍ୟୟନ ପୂର୍ବକ ଜ୍ଞାନପ୍ରାପ୍ତ କରିବାର ଅଧିକାର ଶୁଦ୍ରର ନାହିଁ ବୋଲି ସିଦ୍ଧ ହେଲା ।

## १० कम्पनाधिकरणम् । सू० ३९

## କମ୍ପନାଧିକରଣମ୍ - ୧୦

## कम्पनात् ॥ ३९ ॥

## (୧) କମ୍ପନାତ୍ ॥ ୧-୩-୩୯ ॥

ଯଦିଦଂ କିଞ୍ଚ (ଏହି ସାରାଜଗତ୍ ପ୍ରାଣଦ୍ୱାରା ଉତ୍ପନ୍ନ ହୋଇ ଚେଷ୍ଟା କରେ) ଏହି କମ୍ପନଦ୍ୱାରା ପ୍ରତୀୟମାନ ପ୍ରାଣ ପରମାତ୍ମା ହିଁ ଅଟେ ।

(୨) ମୂଳ-(କ) ଅବସିତଃ ପ୍ରାସଙ୍ଗିକୋଽଧିକାରବିଚାରଃ । ପ୍ରକୃତାମେବେଦୀନାଂ ବାକ୍ୟାର୍ଥେବିଚାରାଣାଂ ପ୍ରବର୍ତ୍ତୟିଷ୍ୟାମଃ । 'ଯଦିଦଂ କିଞ୍ଚ ଜଗତ୍ ସର୍ବପ୍ରାଣ ଏଜତି ନିଃସୃତମ୍ । ମହଦ୍‌ଭୟଂ ବଜ୍ରାମୁଦ୍ୟତଂ ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତି ।' (କା ୨।୬।୩) । ଏତଦ୍‌ବାକ୍ୟଂ 'ଏଜୃ କମ୍ପନେ' ଇତି ଧାତ୍ୱର୍ଥାନୁଗମାଲ୍ଲିଙ୍ଗମ୍ । (ଖ) ଅସ୍ମିନ୍‌ବାକ୍ୟେ ସର୍ବମିଦଂ ଜଗତ୍‌ପ୍ରାଣାଶ୍ରୟଂ ସ୍ପନ୍ଦତେ, ମହଚ୍ଚ କିଞ୍ଚିଦ୍‌ଭୟକାରଣଂ ବଜ୍ରଶବ୍ଦତମୁଦ୍ୟତମ୍, ତଦ୍‌ବିଜ୍ଞାନାଚ୍ଚାମୃତତ୍ୱପ୍ରାପ୍ତିରିତି ଶ୍ରୂୟତେ । (ଗ) ତତ୍ର କୋଽସୌ ପ୍ରାଣଃ, କିଂ ତଦ୍‌ଭୟାନକଂ ବଜ୍ରମିତ୍ୟପ୍ରତିପତ୍ତେ-ର୍ବିଚାରେ କ୍ରିୟମାଣେ ପ୍ରାପ୍ତଂ ତାବତ୍ ପ୍ରସିଦ୍ଧେଃ ପଞ୍ଚବୃତ୍ତିର୍ବାୟୁଃ ପ୍ରାଣ ଇତି । ପ୍ରସିଦ୍ଧେରେବ ଚାଶନିର୍ବଜ୍ରଂ ସ୍ୟାତ୍ । ବାୟୋଶ୍ଚେଦଂ ମାହାତ୍ମ୍ୟ ସଙ୍କୀର୍ତ୍ତ୍ୟତେ । କଥମ୍ ? ସର୍ବମିଦଂ ଜଗତ୍ ପଞ୍ଚବୃତ୍ତୌ ବାୟୌ ପ୍ରାଣଶବ୍ଦିତେ ପ୍ରତିଷ୍ଠାୟୈଜତି । (ଘ) ବାୟୁନିମତ୍ତମେବ ଚ ମହଦ୍‌ଭୟାନକଂ ବଜ୍ରମୁଦ୍ୟମ୍ୟତେ । ବାୟୌ



ହି ପର୍ଜନ୍ୟଭାବେନବିବର୍ତ୍ତମାନେ ବିଦ୍ୟୁତ୍ସ୍ତନୟିନ୍ନୁବୃଷ୍ଟ୍ୟଶନୟୋ ବିବର୍ତ୍ତନ୍ତେ ଇତ୍ୟାଚକ୍ଷତେ । ବାୟୁବିଜ୍ଞାନାଦେବ ଚେଦମମୃତତ୍ୱମ୍ । ତଥାପି ଶ୍ରୁତ୍ୟନ୍ତରମ୍- 'ବାୟୁରେବ ବ୍ୟଷ୍ଟି, ବାୟୁଃ ସମଷ୍ଟିରପି ପୁନର୍ମୃତ୍ୟୁଂ ଜୟତି ଯ ଏବଂ ବେଦ', ଇତି । ତସ୍ମାଦ୍ ବାୟୁରୟମିହ ପ୍ରତିପତ୍ତବ୍ୟ ଇତି ।

**(୨) ଭାଷାଂତର-** (କ) ପ୍ରାସଙ୍ଗିକ ଅଧିକାର ବିଚାର ସମାପ୍ତ ହେଲା । ବର୍ତ୍ତମାନ ପ୍ରଥମେ ପ୍ରକୃତବାକ୍ୟାର୍ଥ ବିଚାରକୁ ଦେଖିବା । 'ଯାହା କିଛି ସମଗ୍ର ସଂସାରର ପ୍ରାଣବ୍ରହ୍ମରେ ଉଦୟ ହୋଇ ତାହାଠାରୁ ଚେଷ୍ଟା କରେ, ସେ ବ୍ରହ୍ମ ମହାନ୍ ଭୟରୂପ ଓ ହାତରେ ଉଠାଉଥିବା ବଜ୍ର ସମାନ ଅଟେ । ଯିଏ ଏହା ଜାଣେ, ସେ ଅମର ହୋଇଯାଏ । 'ଏଜୃ' ଧାତୁର ଅର୍ଥ କମ୍ପିବା - ଏହି ବାକ୍ୟ ଏହି ଧାତୁର ଅର୍ଥକୁ ଅନୁଗମ ଦ୍ୱାରା ଲକ୍ଷିତ ହୁଏ ।

(ଖ) ଏହି ବାକ୍ୟରେ ଏହି ସମ୍ପୂର୍ଣ୍ଣ ଜଗତ୍ ପ୍ରାଣକୁ ଆଶ୍ରୟ କରି କାର୍ଯ୍ୟ କରେ । ସେ ଉଦ୍ୟତ ବଜ୍ରର ସଦୃଶ ଭୟାନକ କୌଣସି ମହାନ୍ ଅଟେ । ତାହାର ଜ୍ଞାନଦ୍ୱାରା ଅମୃତପ୍ରାପ୍ତି ହୁଏ । ଏହା ହିଁ ବେଦବାକ୍ୟ ।

(ଗ) ସେଠାରେ ଏହି ପ୍ରାଣୀ କିଏ ? ସେ ଭୟାନକ ବଜ୍ର କ'ଣ ? ଏହାର ନିଶ୍ଚିତ ନ ହେବାରୁ ବିଚାର କଲାପରେ ଲୋକପ୍ରସିଦ୍ଧଠାରୁ ଏହା ଜଣାଯାଏ ଯେ- ପାଞ୍ଚବୃତ୍ତି ସମ୍ପନ୍ନ ବାୟୁ ପ୍ରାଣ ଅଟେ । ଲୋକପ୍ରସିଦ୍ଧିରୁ ବଜ୍ର ଅଶନୀ (ବଜ୍ର) ହୁଏ । ସେ ବାୟୁର ମାହାତ୍ମ୍ୟ କୁହାଯାଇଛି, କିପରି ? ଏହି ସମ୍ପୂର୍ଣ୍ଣ ଜଗତ୍ ପାଞ୍ଚବୃତ୍ତି ଯୁକ୍ତ ପ୍ରାଣନାମକ ବାୟୁରେ ରହି ବ୍ୟାପାର କରେ ।

(ଘ) ବାୟୁର ସେହି ମହାନ୍ ଭୟାନକ ଚକ୍ର ଉଠେ । ବାୟୁ ପର୍ଜନ୍ୟ ଭାବରେ ବିବର୍ତ୍ତମାନ ହେଲେ ବିଦ୍ୟୁତ୍ ମେଘ, ବୃଷ୍ଟି ଓ ଅଶନିରୂପରେ ମଧ୍ୟ ବିବର୍ତ୍ତିତ ହୁଏ- ଏହାହିଁ କୁହାଯାଇଅଛି । ବାୟୁକୁ ଜାଣିଲେ ଅମୃତତ୍ୱ ପ୍ରାପ୍ତି ହୁଏ । ତେଣୁ ବାୟୁ ହିଁ ବ୍ୟଷ୍ଟି, ବାୟୁ ହିଁ ସମଷ୍ଟି, ଯାହା ଏହିପରି ଜଣାଯାଏ, ସେ ଅପମୃତ୍ୟୁକୁ ଜୟ କରେ ।' ଏହାହିଁ ଅନ୍ୟଶ୍ରୁତିବାକ୍ୟ । ତେଣୁ ଏଠାରେ ପ୍ରାଣକୁ ବାୟୁ ବୋଲି ଜାଣବା ଉଚିତ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ବ୍ରହ୍ମୈବେଦମିହ ପ୍ରତିପତ୍ତବ୍ୟମ୍ । କୁତଃ ? ପୂର୍ବୋତ୍ତରାଲୋଚନାତ୍ । ପୂର୍ବୋତ୍ତରୟୋର୍ହି ଗ୍ରନ୍ଥଭାଗୟୋର୍ବ୍ର'ହ୍ମୈବ ନିର୍ଦ୍ଦିଶ୍ୟମାନମୁପାଲଭାମହେ । ଇହୈବ କଥମକସ୍ମାଦନ୍ତରାଳେ ବାୟୁଂ ନିର୍ଦ୍ଦିଶ୍ୟମାନଂ ପ୍ରତିପଦ୍ୟେମହି ? ପୂର୍ବତ୍ର ତାବତ୍ 'ତଦେବ ଶୁକ୍ରଂ ତଦ୍ବ୍ରହ୍ମ ତଦେବାମୃତମୁଚ୍ୟତେ । ତସ୍ମିଁ ଲ୍ଲୋକାଃ ଶ୍ରିତା ସର୍ବେ ତଦୁ ନାତ୍ୟେତି କଶ୍ଚନ', (କା ୨-୬-୧) ଇତି ବ୍ରହ୍ମ

ନିର୍ଦିଷ୍ଟମ୍ । (ଖ) ତଦେବେହାପି ସନ୍ନିଧାନାତ୍, ଜଗତ୍ସର୍ବଂପ୍ରାଣ ଏଜତୀର୍ତି ଚ ଲୋକାଶ୍ରୟତ୍ୱପ୍ରତିଭିଜ୍ଞାନାନ୍ନିର୍ଦ୍ଦିଷ୍ଟମିତି ଗମ୍ୟତେ । ପ୍ରାଣଶବ୍ଦୋଽପ୍ୟୟଂ ପରମାତ୍ମନ୍ୟେବ ପ୍ରଯୁକ୍ତଃ, 'ପ୍ରାଣସ୍ୟ ପ୍ରାଣମ୍', (ବୃ ୪-୪-୧୮) ଇତିଦର୍ଶନାତ୍ । (ଗ) ଏଜୟିତୃତ୍ୱମପୀଦଂ ପରମାତ୍ମନ ଏବୋପପଦ୍ୟତେ ନ ବାୟୁମାତ୍ରସ୍ୟ । ତଥା ଚୋକ୍ତମ୍- 'ନ ପ୍ରାଣେନ ନପାନେନ ମର୍ତ୍ତ୍ୟୋ ଜୀବତି କଶ୍ଚନା ଇତରେଣ ତୁ ଜୀବନ୍ତି ଯସ୍ମିନ୍ନେତାବୁପାଶ୍ରିତୌ (କା ୨-୫-୫) ଇତି । (ଘ) ଉତ୍ତରତ୍ରାପି -'ଭୟାଦସ୍ୟଗ୍ନିସ୍ତପତି ଭୟାତ୍ତପତି ତତ୍ ସୂର୍ଯ୍ୟଃ । ଭୟାଦିନ୍ଦ୍ରଶ୍ଚ ବାୟୁଶ୍ଚ, ମୃତ୍ୟୁର୍ଧାବତି ପଞ୍ଚମ'', (କା ୨-୬-୩) ଇତି ବ୍ରହ୍ମୈବ ନିର୍ଦ୍ଦେକ୍ଷ୍ୟତେ ନ ବାୟୁଃ ।

**(୩) ଭାଷାଂତର**-ସିଦ୍ଧାନ୍ତ-(କ) ଏଠାରେ ପ୍ରାଣଶବ୍ଦଦ୍ୱାରା ବ୍ରହ୍ମକୁ ଜାଣିବା ଉଚିତ । କିପରି ? ପୂର୍ବ ଓ ଉତ୍ତରବାକ୍ୟ ଗୁଡ଼ିକର ପର୍ଯ୍ୟାଲୋଚନ କରିବାଦ୍ୱାରା' ଏହି ବାକ୍ୟର ପୂର୍ବ ତଥା ଉତ୍ତର ଗ୍ରନ୍ଥ ଭାଗରେ ଆତ୍ମଙ୍କୁ ବ୍ରହ୍ମ ନିର୍ଦ୍ଦିଶ୍ୟମାନ ରୂପରେ ଉପଲବ୍ଧି ହୁଏ ବୋଲି ସ୍ପଷ୍ଟ ଭାବରେ ଜଣାପଡ଼େ । ତାହାଲେ ଏଠାରେ ଆତ୍ମ ଭିତରେ ଅକସ୍ମାତ୍ ବାୟୁକୁ ନିର୍ଦ୍ଦିଶ୍ୟମାନ ବୋଲି କିପରି ବୁଝାଯିବ ? 'ଏହି ଯେଉଁ ସଂସ୍କାର ବୃକ୍ଷର ମୂଳ ଅଟେ । ବିଶୁଦ୍ଧ ଜ୍ୟୋତିସ୍ୱରୂପ ଅଟେ । ସେ ବ୍ରହ୍ମ ଅଟେ ଓ ସେ ହିଁ ଅମୃତ ବୋଲି କୁହାଯାଏ । ସମଗ୍ର ସଂସାର ସେଠାରେ ଆଶ୍ରିତ । କିଏ ଏହାକୁ ଅତିକ୍ରମଣ କରିପାରେ ନାହିଁ । ଏହା ନିଶ୍ଚିତ ଭାବରେ ବ୍ରହ୍ମ ।' ଏହି ପୂର୍ବ ବାକ୍ୟରେ ବ୍ରହ୍ମ ନିର୍ଦ୍ଦିଷ୍ଟ ଅଟେ ।

(ଖ) ସନ୍ନିଧାନଦ୍ୱାରା ସମଗ୍ର ଜଗତ୍ ପ୍ରାଣରେ ଚେଷ୍ଟା କରେ । ସେପରି ମଧ୍ୟ ଲୋକାଶ୍ରୟରୂପରେ ପ୍ରତ୍ୟଭିଜ୍ଞାନ ହେଲେ ସେ ନିର୍ଦ୍ଦିଷ୍ଟ ହୁଏ ବୋଲି ଜଣାଯାଉଛି । ଏହି ପ୍ରାଣଶବ୍ଦ ମଧ୍ୟ ପରମାତ୍ମାରେ ପ୍ରଯୁଜ୍ୟ, କାରଣ-'ପ୍ରାଣସ୍ୟ ପ୍ରାଣମ୍', ଇତି ବେଦବାକ୍ୟ ଦ୍ୱାରା ପ୍ରମାଣିତ ।

(ଗ) ଏକୟିତୃତ୍ୱ-କମ୍ପନକତ୍ତୃତ୍ୱ ପରମାତ୍ମାରେ ଉପପନ୍ନ ହୁଏ । ବାୟୁମାତ୍ରାରେ ନୁହେଁ । କାରଣ-'କୌଣସି ମନୁଷ୍ୟ ପ୍ରାଣୀ, ପ୍ରାଣ ବା ଅପାନଦ୍ୱାରା ଜୀବିତ ରହେ ନାହିଁ । କିନ୍ତୁ ଅନ୍ୟମାନେ ଜୀବିତ ରହନ୍ତି । ଯେଉଁଠି ଏହି ଦୁଇଟି ଆଶ୍ରିତ ହୁଏ, ସେଠାରେ କୌଣସି ପ୍ରାଣୀ ଅନ୍ୟଦ୍ୱାରା ଜୀବିତ ରହନ୍ତି'' । ବୋଲି କୁହାଯାଇଛି ।

(ଘ) ପ୍ରଥମେ 'ଏହି ପରମାତ୍ମାର ଭୟରେ ଅଗ୍ନି ପ୍ରଜ୍ୱଳିତ ହୁଏ, ଏହାର ଭୟରେ ସୂର୍ଯ୍ୟ ଜଳେ ଓ ଏହାର ଭୟରେ ଇନ୍ଦ୍ର, ବାୟୁ ଓ ମୃତ୍ୟୁ ଏହି ପାଞ୍ଚଟି ମୃତ୍ୟୁ ଦୌଡ଼େ । ଅର୍ଥାତ୍ ନିୟମତଃ ନିଜ ନିଜ ବ୍ୟାପାରରେ ପ୍ରବୃତ୍ତ ହୁଅନ୍ତି ।'' ଏହି ପ୍ରକାର ବ୍ରହ୍ମର ନିର୍ଦ୍ଦେଶ କରାଯିବ କିନ୍ତୁ ବାୟୁର ନୁହେଁ ।

 

(୪) ମୂଳ-(କ) ସବାୟୁକସ୍ୟ ଜଗତୋ ଭୟହେତୁତ୍ୱାଭିଧାନାତ୍ । ତଦେବେହାପି ସନ୍ନିଧାନାତ୍ । 'ମହଦ୍‌ଭୟଂ ବଜ୍ରମୁଦ୍ୟତମ୍', ଇତି ଚ ଭୟହେତୁତ୍ୱ-ପ୍ରତ୍ୟଭିଜ୍ଞାନାନ୍ନିର୍ଦ୍ଦିଷ୍ଟମିତି ଗମ୍ୟତୋ ବଜ୍ରଶବ୍ଦୋଽୟଂ ଭୟହେତୁତ୍ୱସାମାନ୍ୟାତ୍ ପ୍ରଯୁକ୍ତଃ । (ଖ) ଯଥାହି ବଜ୍ରମୁଦ୍ୟତଂ ମମୈବ ଶିରସି ନିପତେଦ୍ୟଦ୍ୟହମସ୍ୟ ଶାସନଂ ନ କୁର୍ଯ୍ୟାମିତ୍ୟନେନ ଭୟେନ ଜନୋ ନିୟମେନ ରାଜାଦିଶାସନେ ପ୍ରବର୍ତ୍ତତ, ଏବମିଦମ-ଗ୍ନିବାୟୁସୂର୍ଯ୍ୟାଦିକଂ ଜଗଦସ୍ମାଦେବ ବ୍ରହ୍ମଣୋ ବିଭ୍ୟନ୍ନିୟମେନ ସ୍ୱବ୍ୟାପାରେ ପ୍ରବର୍ତ୍ତତ ଇତି ଭୟାନକଂ ବଜ୍ରୋପମିତଂ ବ୍ରହ୍ମ । (ଗ) ତଥା ଚ ବ୍ରହ୍ମବିଷୟଂ ଶ୍ରୁତ୍ୟନ୍ତରମ୍‌ଭୀଷାଽ-ସ୍ମାଦ୍‌ବାତଃ ପବତେ । ଭୀଷୋଽସ୍ମାଦଗ୍ନିଶ୍ଚେନ୍ଦ୍ରଶ୍ଚ । ମୃତ୍ୟୁର୍ଧାବତି ପଞ୍ଚମଃ', (ତୈ ୮-୧୬) ଇତି । ଅମୃତତ୍ୱଫଳଶ୍ରବଣାଦପି ବ୍ରହ୍ମୈବେଦମିତି ଗମ୍ୟତେ । ବ୍ରହ୍ମଜ୍ଞାନାଦ୍ ହ୍ୟମୃତତ୍ୱପ୍ରାପ୍ତିଃ । 'ତମେବ ବିଦିତ୍ୱାଽତିମୃତ୍ୟୁମେତି ନାନ୍ୟ ପନ୍ଥା ବିଦ୍ୟତେଽୟନାୟ', (ଶ୍ୱେ ୬-୧୫) ଇତି ମନ୍ତ୍ରବର୍ଣ୍ଣାତ୍ । (ଘ) ଯତ୍ତୁ ବାୟୁବିଜ୍ଞାନାତ୍ କ୍ୱଚିଦମୃତତ୍ୱମଭିହିତମ୍, ତଦାପେକ୍ଷିକମ୍ । ତତ୍ରୈବ ପ୍ରକରଣାନ୍ତରକରଣେନ ପରମାତ୍ମାନମଭିଧାୟ 'ଅତୋଽନ୍ୟଦାର୍ତ୍ତମ୍', (ବୃ ୩-୪) ଇତି ବାୟୁଦେଃରାର୍ତ୍ତତ୍ୱାଭିଧାନାତ୍ । (ଙ) ପ୍ରକରଣାଦନ୍ୟତ୍ର ପରମାତ୍ମନିଶ୍ଚୟଃ, 'ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାଦନ୍ୟତ୍ରାସ୍ମାତ୍ କୃତକୃତାତ୍ । ଅନ୍ୟତ୍ର ଭୂତାଚ୍ଚଭବ୍ୟାଚ୍ଚ ଯତ୍ତତ୍‌ପଶ୍ୟସି ତଦ୍‌ବଦ୍ ।' (କା ୧-୨-୧୪) ଇତି ପରମାତ୍ମନଃ ପୃଷ୍ଟତ୍ୱାତ୍ ।

**(୪) ଭାଷାଂତର**-(କ) କାରଣ-ଏଠାରେ ବାୟୁ ସହିତ ସଂସାରର ଭୟ ହେତୁତ୍ୱ ଅଭିଧାନ କରାଯାଇଛି । ଏଠାରେ ଜଣାପଡ଼େ ଯେ ସନ୍ନିଧାନପ୍ରକରଣ ଦ୍ୱାରା ଓ ''ଉଦ୍ୟତବଜ୍ର ହିଁ ଖୁବ୍ ଭୟପ୍ରଦ'' ଏହି ପ୍ରକାର ଭୟ ହେତୁତ୍ୱ ରୂପ ପ୍ରତ୍ୟଭିଜ୍ଞାନ ହେଲେ ତାହା ନିର୍ଦ୍ଦିଷ୍ଟ ହୁଏ ।

(ଖ) 'ଯଦି ମୁଁ ଏହାର ଆଜ୍ଞା ପାଳନ ନ କରିବି, ତେବେ ଉଦ୍ୟତ ବଜ୍ର ମୋ ମୁଣ୍ଡ ଉପରେ ପଡ଼ିବ-ଏହି ଭୟରେ ଯେପରି ଲୋକ ରାଜାମାନଙ୍କର ଶାସନରେ ପ୍ରବୃତ୍ତ ହୁଅନ୍ତି । ସେପରି ଅଗ୍ନି ବାୟୁ, ସୂର୍ଯ୍ୟାଦି ଜଗତ୍ ବ୍ରହ୍ମକୁ ଭୟକରି ନିୟମ ସହିତ ନିଜ ବ୍ୟାପାରରେ ପ୍ରବୃତ୍ତ ହୁଏ । ତେଣୁ ଭୟାନକ ବଜ୍ର ସହିତ ବ୍ରହ୍ମର ଉପମା ତୁଳନା କରାଗଲା ।

(ଗ) 'ଏହାର ଭୟରେ ବାୟୁ ବହେ, ଏହାର ଭୟରେ ସୂର୍ଯ୍ୟ ଉଦୟ ହୁଏ, ଏହାର ଭୟରେ ଅଗ୍ନି, ଇନ୍ଦ୍ର ଓ ମୃତ୍ୟୁ ଧାଆନ୍ତି, ଅର୍ଥାତ୍ ନିୟମିତ ଭାବରେ ନିଜ ନିଜର

କାର୍ଯ୍ୟ କରନ୍ତି ।' ଏହି ବ୍ରହ୍ମ ବିଷୟକ ଅନ୍ୟଶ୍ରୁତି ଏବଂ ଅମୃତତ୍ୱ ଫଳର ଶ୍ରବଣ ଦ୍ୱାରା ଏହା ଜଣାଯାଏ କି-ପ୍ରାଣ ହିଁ ବ୍ରହ୍ମ । କାରଣ-ବ୍ରହ୍ମଜ୍ଞାନଠାରୁ ଅମୃତ ମିଳେ । କାରଣ-ମନ୍ତ୍ରରେ 'ଏହା ଜାଣି ମନୁଷ୍ୟ ମୃତ୍ୟୁକୁ ଅତିକ୍ରମଣ କରେ । ଏତଦଭିନ୍ନ ମୋକ୍ଷପ୍ରାପ୍ତିର କୌଣସି ଅନ୍ୟ ମାର୍ଗ ନାହିଁ' । କୁହାଯାଇଛି ।

(ଘ) କୌଣସି ସ୍ଥାନରେ ବାୟୁ ବିଜ୍ଞାନଦ୍ୱାରା ଯେଉଁ ଅମୃତତ୍ୱ କୁହାଯାଇଛି, ସେ ସାପେକ୍ଷିକ, କାରଣ-ସେ ଅନ୍ୟପ୍ରକରଣରେ ପରମାତ୍ମାର ଅଭିଧାନ କରି 'ଏହିଠାରୁ ଭିନ୍ନ ଆର୍ତ୍ତବିନାଶୀ ଅଟେ ।' ଏହି ପ୍ରକାର ବାୟୁ ଇତ୍ୟାଦିର ନାଶତ୍ୱ କୁହାଯାଇଛି ।

(ଙ) ପ୍ରକରଣଦ୍ୱାରା ଏଠାରେ ପରମାତ୍ମା ନିଶ୍ଚିତ ହୁଏ, କାରଣ- 'ଯାହା ଧର୍ମଭିନ୍ନ, ଯାହା ଅଧର୍ମଭିନ୍ନ ତଥା ଏହି କାର୍ଯ୍ୟ କାରଣରୁ ପପ୍ରଞ୍ଚଠାରୁ ଭିନ୍ନ ଏବଂ ଯାହା ଅତୀତ ଏବଂ ଭବିଷ୍ୟତଠାରୁ ଭିନ୍ନ, ଏହା ଯିଏ ଦେଖି ଅନୁଭବ କରେ, ତାହା ମୋତେ ଉପଦେଶ ଦିଅନ୍ତୁ ।' ଏହିପ୍ରକାର ନଚିକେତା ପରମାତ୍ମାକୁ ପଚାରିଲେ ।

## ११ ज्योतिराधिकरणम् । सू० ४०

## ଜ୍ୟୋତିରଧିକରଣ-୧୧

## ज्योतिर्दर्शनात् ॥ ४० ॥

## (୧) ଜ୍ୟୋତିର୍ଦର୍ଶନାତ୍ ॥ ୧-୩-୪୦ ॥

ଜ୍ୟୋତିଃ='ଏଷଃ ସମ୍ପ୍ରସାଦୋ' ଏହି ବେଦବାକ୍ୟରେ ଜ୍ୟୋତିଃଶବ୍ଦଦ୍ୱାରା ବ୍ରହ୍ମ ହିଁ ପ୍ରତିପାଦ୍ୟ । ଦର୍ଶନାତ୍=କାରଣ-'ଯ ଆତ୍ମା' ଏହି ଉପକ୍ରମ ବାକ୍ୟର ପର୍ଯ୍ୟାଲୋଚନା ଦ୍ୱାରା ବ୍ରହ୍ମର ପ୍ରତିପାଦକରୂପରେ ଅନୁବୃତ୍ତି ଦେଖାଏ ।

(୨) ମୂଳ-(କ) 'ଏଷ ସମ୍ପସାଦୋଽସ୍ମାଚ୍ଛରୀରାତ୍ ସମୁତ୍ଥାୟ ପରଂଜ୍ୟୋତି-ରଣସଂପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତେ', (ଛା ୮-୧୨-୩) ଇତି ଶ୍ରୂୟତେ । (ଖ) ତତ୍ ସଂଶୟ୍ୟତେ-କିଂ ଜ୍ୟୋତିଃଶବ୍ଦଂ ଚକ୍ଷୁର୍ବିଷୟତମୋପହଂ ତେଜଃ, କିଂ ବା ପରଂବ୍ରହ୍ମେତି । କିଂ ତାବତ୍ ପ୍ରାପ୍ତମ୍ ? (ଗ) ପ୍ରସିଦ୍ଧମେବ ତେଜୋ ଜ୍ୟୋତିଃଶବ୍ଦମିତି । କୁତଃ ? ତତ୍ର ଜ୍ୟୋତିଃଶବ୍ଦସ୍ୟ ରୂଢ଼ତ୍ୱାତ୍ । 'ଜ୍ୟୋତିଶ୍ଚରଣାଭିଧାନାତ୍ ।'' (ବ୍ର. ସୂ ୧-୧-୨୪) ଇତି ହି ପ୍ରକରଣା-ଜ୍ଜ୍ୟୋତିଃଶବ୍ଦଃ ସ୍ୱାର୍ଥଂ ପରିତ୍ୟଜ୍ୟ ବ୍ରହ୍ମଣି ବର୍ତ୍ତତେ । ନ ଚେହ ତଦ୍‌ବିତ୍‌କିଞ୍ଚିତ୍ ସ୍ୱାର୍ଥ ପରିତ୍ୟାଗେ କାରଣଂ ଦୃଶ୍ୟତେ। (ଘ) ତଥା ଚ ନାଡ଼ୀଖଣ୍ଡେ-

 

'ଅଥ ଯତ୍ରୈତଦସ୍ମାଚ୍ଛ-ରୀରାଦୁତ୍ କାମତ୍ୟର୍ଥୈତେରେବ ରଶ୍ମି ଭିରୁଦ୍ଧ୍ୱମାକ୍ରମତେ', (ଛା ୮-୬-୫) ଇତି ମୁମୁକ୍ଷୋରାଦିତ୍ୟପ୍ରାପ୍ତି ରଭିହିତା । ତସ୍ମାତ୍ ପ୍ରସିଦ୍ଧମେବ ତେଜୋ ଜ୍ୟୋତିଃଶବ୍ଦମିତି ।

(୨) ଭାଷାଂତର-(କ) ''ଏହି ସମ୍ପ୍ରସାଦ ଜୀବ ଅବିଦ୍ୟା ଅବସ୍ଥାରେ ଦେହାଭାବାପନ୍ନ ହୋଇ ବ୍ରହ୍ମନିଷ୍ଠ ଆଚାର୍ଯ୍ୟର ଉପଦେଶ ଦ୍ୱାରା ଦେହରେ ଆତ୍ମାଭିମାନକୁ ଛାଡ଼ି ପରମଜ୍ୟୋତିଃକୁ ପାଇ ନିଜ ସ୍ୱରୂପଦ୍ୱାରା ଅଭିନିଷ୍ପନ୍ନ ହୁଏ ।'' ଏହା ହିଁ ଶ୍ରୁତିବାକ୍ୟ ।

(ଖ) ଏଠାରେ କିନ୍ତୁ ସଂଶୟ ହୁଏ ଯେ- ଜ୍ୟୋତିଃଶବ୍ଦବାଚ୍ୟ ଚକ୍ଷୁ ବିଷୟଘଟାଦି ପଦାର୍ଥ ଗୁଡ଼ିକର ଆବରକ, ଅନ୍ଧକାରର ନାଶକ କ'ଣ ସୂର୍ଯ୍ୟାଦି ତେଜ କି ପରଂବ୍ରହ୍ମ ? ଏଠାରେ କ'ଣ ହୁଏ ?

(ଗ) ପୂର୍ବପକ୍ଷ-ପ୍ରସିଦ୍ଧତେଜ ହିଁ ଜ୍ୟୋତିଃଶବ୍ଦବାଚ୍ୟ । କିପରି ? ଏହାଦ୍ୱାରା ତାହାଠାରେ ଜ୍ୟୋତିଃଶବ୍ଦ ହିଁ ରୂଢ଼ ହୁଏ । 'ଜ୍ୟୋତିଶ୍ଚରଣାଭିଧାନାତ୍' ଏହି ସୂତ୍ରରେ ପ୍ରକରଣ ଦ୍ୱାରା ଜ୍ୟୋତିଃଶବ୍ଦ ନିଜ ଅର୍ଥକୁ ପରିତ୍ୟାଗ କରି ବ୍ରହ୍ମରୂପକ ହୁଏ । ପରନ୍ତୁ ଏଠାରେ ତାହାଭଳି ସୁପ୍ରସିଦ୍ଧ ତୋଜୋରୂପ ଅର୍ଥରେ ପରିତ୍ୟାଗ କରିବାରେ କୌଣସି କାରଣ ଦେଖାଯାଏ ନାହିଁ ।

(ଘ) ତେଣୁ ନାଡ଼ୀଖଣ୍ଡରେ 'ପୁନଶ୍ଚ ଯେତେବେଳେ ଏହା ଶରୀରଠାରୁ ଉତ୍କ୍ରମଣ ହୁଏ, ସେ ସମୟରେ ନାଡ଼ିଗୁଡ଼ିକର ରଶ୍ମି ପଡ଼ି ଉପରକୁ ଚଢ଼େ ।' ଏହିପ୍ରକାର ମୁମୁକ୍ଷୁ ପାଇଁ ଆଦିତ୍ୟର ପ୍ରାପ୍ତି ଅଭିଧାନ ହୁଏ । ତେଣୁ ପ୍ରସିଦ୍ଧତେଜ ମଧ୍ୟେ ଜ୍ୟୋତିଃଶବ୍ଦ ବାଚ୍ୟ ହୁଏ ।

(୩) ମୂଳ-(କ) ଏବଂ ପ୍ରାପ୍ତେରବ୍ରୁମଃ-ପରମେବ ବ୍ରହ୍ମ ଜ୍ୟୋତିଃଶବ୍ଦମ୍ । କସ୍ମାତ୍ ? ଦର୍ଶନାତ୍ । ତସ୍ୟ ହୀଦ ପ୍ରକରଣେ ବକ୍ତବ୍ୟତ୍ୱେନାନୁବୃତ୍ତିର୍ଦୃଶ୍ୟତେ । (ଖ)ର 'ଯ ଆତ୍ମାଽପହତି ପାପ୍ମା', (ଛା ୮-୭-୧) ଇତ୍ୟପହତପାପ୍ମତ୍ୱାଦିଗୁଣକ-ସ୍ୟାତ୍ମନଃ ପ୍ରକରଣାଦାବନ୍ୱେଷ୍ଟବ୍ୟତ୍ୱେନ ଚ ପ୍ରତିଜ୍ଞାନାତ୍ । 'ଏତଂ ତ୍ୱେବ ତେ ଭୂୟୋଽନୁବ୍ୟାଖ୍ୟାସ୍ୟାମି', (ଛା ୮-୯-୩) ଇତି ଚାନୁସନ୍ଧାନାତ୍ । 'ଅଶରୀରଂ ବାବ ମନ୍ତଂ ନ ପ୍ରିୟାପ୍ରିୟେ ସ୍ପୃଶତଃ', (ଛା ୧୨-୧) ଇତି ଚାଶରୀରତାୟୈ ଜ୍ୟୋତିଃସଂପତ୍ତେରସ୍ୟାଭିଧାନାତ୍ । (ଗ) ବ୍ରହ୍ମଭାବାଚ୍ଚାନତ୍ରଶରୀର-ତାନୁପପତ୍ତେଃ । 'ପରଂ ଜ୍ୟୋତିଃ', 'ସ ଉତ୍ତମଃ ପୁରୁଷଃ', (ଛା ୮-୧୨-୩) ଇତି ଚ ବିଶେଷଣାତ୍ । (ଘ) ଯତ୍ତୂକ୍ତଂ ମୁମୁକ୍ଷୋରାଦିତ୍ୟପ୍ରାପ୍ତି ରଭିହିତେତି, ନାସାବାତ୍ୟନ୍ତିକୋ ମୋକ୍ଷେ ଗତ୍ୟୁତ୍କ୍ରାନ୍ତିସମ୍ବନ୍ଧାତ୍ । ନ ହ୍ୟାତ୍ୟନ୍ତିକେ ମୋକ୍ଷେ ଗତ୍ୟୁତକ୍ରାନ୍ତି ସ୍ତ ଇତି ବକ୍ଷାମଃ ।

(୩) ଭାଷାଂତର- ସିଦ୍ଧାନ୍ତ - (କ) ପରଂବ୍ରହ୍ମ ଜ୍ୟୋତିଶବ୍ଦବାଚ୍ୟ ଅଟେ । କିପରି ? ଏହାଦ୍ୱାରା ତାହାର ଦର୍ଶନ (ଅନୁବୃତ୍ତି) ହୁଏ । ଏହି ପ୍ରକରଣରେ ବକ୍ତବ୍ୟ ରୂପରେ ତାହାର ଅନୁବୃତ୍ତି ଦେଖାଯାଏ, କାରଣ-

(ଖ) ଏହିପ୍ରକାର ପାପରହିତତ୍ୱାଦିଗୁଣବିଶିଷ୍ଟ ଆତ୍ମାର ପ୍ରକରଣରେ ଅନ୍ୱେଷବ୍ୟ ରୂପ ଓ ବିଜିଜ୍ଞାସିତବ୍ୟରୂପଦ୍ୱାରା ପ୍ରତିଜ୍ଞା କରାଯାଇଛି । 'ମୁଁ ତୁମ୍ଭପ୍ରତି ଏହାର ପୁନର୍ବାର ବ୍ୟାଖ୍ୟା କରିବି', ଅଶରୀର ହେଲେ ପ୍ରିୟ ଓ ଅପ୍ରିୟ ସ୍ପର୍ଶ କରେ ନାହିଁ ଏହି ପ୍ରକାର ଶରୀର ରହିତ ସ୍ୱରୂପ ପାଇଁ ଏହି ଜୀବକୁ ଜ୍ୟୋତିଃସ୍ୱରୂପତା ରୂପରେ କହିଛି ।

(ଗ) ବୃହଭାବ ବ୍ୟତୀତ ଅଶରୀରର ଉପପତ୍ତି ହୁଏ ନାହିଁ । 'ଯାହା ପରଂଜ୍ୟୋତି, ସେ ଉତ୍ତମ ପୁରୁଷ', ଏହିପ୍ରକାର ବିଶେଷଣ ।

(ଘ) 'ଯାହା କୁହାଯାଇଛି ଯେ- ମୁମୁକ୍ଷୁ ପାଇଁ ଆଦିତ୍ୟର ପ୍ରାପ୍ତିର ଅଭିଧାନ ହୁଏ, ସେ କିନ୍ତୁ ଆତ୍ୟନ୍ତିକ ମୋକ୍ଷ ନୁହେଁ । କାରଣ-ତାହାଠାରେ ଗତି ବା ଉତକ୍ରାନ୍ତିର ସମ୍ବନ୍ଧ ଅଛି । ଆତ୍ୟନ୍ତକି ମୋକ୍ଷରେ ଗତି ଓ ଉତ୍କ୍ରାନ୍ତି ନ ହେବା କଥା ପରେ କୁହାଯିବ ।

## १२ अर्थान्तरत्वव्यपदेशाधिकरणम् । सू० ४१

## ଅର୍ଥାନ୍ତରତ୍ୱବ୍ୟପଦେଶାଧିକରଣଂ - ୧୨

## आकाशोऽर्थान्तरत्वादिव्यपदेशात् ॥ ४१ ॥

## (୧) ଆକାଶୋଽର୍ଥାନ୍ତରତ୍ୱାଦିବ୍ୟପଦେଶାତ୍ ॥୧-୩-୪୧॥

ଆକାଶଃ-'ଆକାଶୋ ବୈନାମ ନାମରୂପୟୋର୍ନିର୍ବହିତା', ଏହି ଶ୍ରୁତିରେ ପ୍ରତିପାଦକ ଆକାଶ ବ୍ରହ୍ମ ଅଟେ । ଅର୍ଥାନ୍ତରତ୍ୱାଦି ବ୍ୟପଦେଶାତ୍-'ତେ ଯଦନ୍ତରା' ଏଠାରେ ଆକାଶର ନାମରୂପରେ ଅର୍ଥାନ୍ତରତ୍ୱାଦିରୂପରେ ବ୍ୟପଦେଶ ହୁଏ । 'ଆଦି' ଶବ୍ଦରେ 'ତଦ୍ ବ୍ରହ୍ମ ତଦମୃତଂ ସ ଆତ୍ମ', ଏହିପ୍ରକାର ବ୍ରହ୍ମତ୍ୱର ବ୍ୟପଦେଶ ହୁଏ ।

(୨) ମୂଳ-(କ) 'ଆକାଶୋ ବୈ ନାମ୍ନ ନାମରୂପୟୋର୍ନିର୍ବହିତା ତେ ଯଦନ୍ତରା ବ୍ରହ୍ମ ତଦମୃତଂ ସ ଆତ୍ମା', (ଛା ୮-୧୪-୧) ଇତିଶ୍ରୂୟତେ । (ଖ) ତତ୍କିମାକାଶଶବ୍ଦଂ ପରଂବ୍ରହ୍ମ କିଂବା ପ୍ରସିଦ୍ଧମେବ ଭୂତାକାଶମିତି ବିଚରେ ଭୂତପରିଗ୍ରହୋ ଯୁକ୍ତଃ, ଆକାଶଶବ୍ଦସ୍ୟ ତସ୍ମିନ୍ ରୂଢ଼ତ୍ୱାତ୍ । (ଗ) ନାମରୂପନିର୍ବହଣସ୍ୟ ଋବକାଶଦାନଦ୍ୱାରେଣ ତସ୍ମିନ୍ ଯୋଜୟିତୁଂ ଶକ୍ୟତ୍ୱାତ୍; ସ୍ରଷ୍ଟତ୍ୱାଦେଶ୍ଚ ସ୍ପଷ୍ଟସ୍ୟ ବ୍ରହ୍ମଲିଙ୍ଗସ୍ୟାଶ୍ରବଣାଦିତି ।



**(୨) ଭାଷାଂତର-** (କ) 'ଆକାଶ ନାମରୂପଦ୍ୱାରା ପ୍ରସିଦ୍ଧ ଆତ୍ମା ନାମ ଓ ରୂପର ନିର୍ବାହକ । ସେମାନେ (ନାମ ଓ ରୂପ) ଯାହାର ଭିତରେ ଅଛନ୍ତି, ସେମାନେ ବ୍ରହ୍ମ, ସେ ଆତ୍ମା', ଏପରି ଶ୍ରୁତି ଅଛି ।

(ଖ) ସେ ଆକାଶଶବ୍ଦ ପରଂବ୍ରହ୍ମବିଷୟକ ଅଥବା ପ୍ରସିଦ୍ଧ ଭୂତାକାଶ ବିଷୟ ? ଏହିପରି ବିଚାର ହୁଅନ୍ତେ ପୂର୍ବପକ୍ଷରେ ଭୂତାକାଶରେ ଗ୍ରହଣ କରିବା ଠିକ୍, କାରଣ-ସେଠାରେ ଆକାଶ ଶବ୍ଦହିଁ ରୂଢ଼ ଅଟେ ।

(ଗ) ଅବକାଶ ଦେବାର କାରଣ ହେଉଛି- ନାମରୂପର ନିର୍ବାହକତ୍ୱର ଯୋଜନା ସେଠାରେ ହିଁ ସମ୍ଭବ ଏବଂ ଶ୍ରୁତିରେ ସ୍ରଷ୍ଟୃତ୍ୱାଦି ସ୍ପଷ୍ଟବ୍ରହ୍ମଲିଙ୍ଗ ନାହିଁ ।

(୩) ମୂଳ-(କ) ଏବଂପ୍ରାପ୍ତେ ଇଦମୁଚ୍ୟତେ ପରମେବ ବ୍ରହ୍ମେହାକାଶ ଶବ୍ଦଂ ଭବିତୁମହ ତି ? କସ୍ମାତ୍ ? ଅର୍ଥାନ୍ତରତବାଦିବ୍ୟପଦେଶାତ୍ 'ତେ ଯଦନ୍ତରା ତଦ୍‌ବ୍ରହ୍ମ', ଇତି ନାମରୂପାଭ୍ୟାମର୍ଥାନ୍ତରଭୂତମାକାଶଂ ବ୍ୟପଦିଶତି । ନ ଚ ବ୍ରହ୍ମଣୋଽନ୍ୟନାମରୂପାଭ୍ୟାମର୍ଥାନ୍ତରଂ ସମ୍ଭବତି । ସର୍ବସ୍ୟ ବିକାରଜାତସ୍ୟ ନାମରୂପାଭ୍ୟାମେବ ବ୍ୟକୃତତ୍ୱାତ୍ । (ଖ) ନାମରୂପୟୋରପି ନିର୍ବହଣଂନିରଙ୍କୁଶ ନ ବ୍ରହ୍ମଣୋଽନ୍ୟତ୍ର ସମ୍ଭବତି, 'ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣି', (ଛା ୬-୩-୨) ଇତ୍ୟାଦି ବ୍ରହ୍ମ କର୍ତ୍ତୃକତ୍ୱଶ୍ରବଣାତ୍ । (ଗ) ନନୁ ଜୀବସ୍ୟାପି ପ୍ରତ୍ୟକ୍ଷଂ ନାମରୂପବିଷୟଂ ନିର୍ବୋଢ଼ୃତ୍ୱମସ୍ତି । ବାଢମସ୍ତି । ଅଭେଦସ୍ତ୍ୱିହ ବିବକ୍ଷିତଃ । ନାମରୂପ-ବିଷୟଂ ନିର୍ବୋଢ଼ୃତ୍ୱମସ୍ତି । ବାଢମସ୍ତି । ଅଭେଦସ୍ତ୍ୱିହ ବିବକ୍ଷିତଃ । ନାମରୂପନିର୍ବହଣାଭିଧାନାଦେବ ଚ ସ୍ରଷ୍ଟୃତ୍ୱାଦି ବ୍ରହ୍ମଲିଙ୍ଗ ମଭିହିତଂ ଭବତି । 'ତଦ୍‌ବ୍ରହ୍ମ ତଦମୃତଂ ସ ଆତ୍ମା', (ଛା ୮-୧୩) ଇତି ଚ ବ୍ରହ୍ମବାଦସ୍ୟ ଲିଙ୍ଗାନି, 'ଆକାଶସ୍ତଲ୍ଲିଙ୍ଗାତ୍' (ବ୍ର. ସୂ ୧-୧-୨୨) ଇତ୍ୟସ୍ୟୈବାୟଂ ପ୍ରପଞ୍ଚଃ ।

**(୩) ଭାଷାଂତର-** ସିଦ୍ଧାନ୍ତ-(କ) ଏଠାରେ ପରଂବ୍ରହ୍ମ ଆକାଶଶବ୍ଦବାଚ୍ୟ ହେବା ଉଚିତ । କିପରି ? ଏହି ପ୍ରମାଣଯୋଗୁଁ ଏଠାରେ ଅର୍ଥାନ୍ତରତ୍ୱାଦିର ବ୍ୟପଦେଶ ହୁଏ । 'ସେମାନେ ଯାହାର ଭିତରେ ଅଛନ୍ତି, ସେ ବ୍ରହ୍ମ' ଏହିପ୍ରକାର ନାମ ଓ ରୂପଠାରୁ ଭିନ୍ନ ଅର୍ଥଭୂତ ଆକାଶର ବ୍ୟପଦେଶ ହୁଏ । ବ୍ରହ୍ମ-ବ୍ୟତିରିକ୍ତ ନାମ ଓ ରୂପଭିନ୍ନ ଅନ୍ୟ ପଦାର୍ଥର ସମ୍ଭବ ହୁଏ ନାହିଁ, କାରଣ-ସମସ୍ତବିକାରସମୂହ ନାମରୂପରେ ବ୍ୟାକୃତ ହୁଏ ।

(ଖ) ଏହିପ୍ରକାର ନାମ ଓ ରୂପର ସ୍ୱତନ୍ତ୍ର ରୂପରେ ନିର୍ବହଣ ବ୍ରହ୍ମଠାରୁ ଅନ୍ୟତ୍ର ସମ୍ଭବ ନୁହେଁ କାରଣ- 'ମୁଁ ଏହି ଜୀବାତ୍ମା ରୂପରେ ଏହି ଦେବତାତ୍ରୟରେ ପ୍ରବେଶକରି ନାମରୂପର ଅଭିବ୍ୟକ୍ତି କରିବି ?' ଇତ୍ୟାଦି ବ୍ରହ୍ମକର୍ତ୍ତୃତ୍ୱ ଶ୍ରୁତି ଅଛି ।

(ଗ) ପରନ୍ତୁ ଜୀବଠାରେ ନାମରୂପ ବିଷୟକ ନିର୍ବାହଣ କର୍ତ୍ତୃତ୍ୱ ପ୍ରତ୍ୟକ୍ଷ ହୁଏ । ଏହାହିଁ ସତ୍ୟ, ପରନ୍ତୁ ଏଠାରେ ଅଭେଦ ନାହିଁ ବୋଲି କୁହାଯାଇଛି । ନାମରୂପର ନିର୍ବାହଣଅଭିଧାନଦ୍ୱାରା ସ୍ରଷ୍ଟୃତ୍ୱାଦି ବ୍ରହ୍ମଲିଙ୍ଗର ଅଭିଧାନ ହୁଏ । 'ତଦ୍ ବ୍ରହ୍ମ, ତଦମୃତ, ସ ଆତ୍ମା' ବାକ୍ୟରେ ଏହିମାନେ ବ୍ରହ୍ମବାଦର ଲିଙ୍ଗ ଅଟନ୍ତି । ଏହିସୂତ୍ର 'ଆକାଶସ୍ତଲ୍ଲିଙ୍ଗାତ୍' ଏହିସୂତ୍ରର ବିସ୍ତାରମାତ୍ର ।

## १३ सुषुप्त्युत्क्रान्त्यधिकरणम् । सू० ४२ -४३

## ସୁଷୁପ୍ତ୍ୟୁତ୍କ୍ରାନ୍ତ୍ୟଧିକରଣ - ୧୩

## सुषुप्त्युत्क्रान्त्योर्भेदेन ॥ ४२ ॥

## (୧) ସୁଷୁପ୍ତ୍ୟୁତ୍କ୍ରାନ୍ତ୍ୟୋର୍ଭେଦେନେ ।୧।୩।୪୨।

'ଯୋଽୟଂ ବିଜ୍ଞାନମୟଃ' ଇତ୍ୟାଦିଶ୍ରୁତିମାନଙ୍କରେ ପ୍ରତିପାଦ୍ୟମାନ ପୁରୁଷ ପରମାତ୍ମା ଅଟେ । କାରଣ-ସୁଷୁପ୍ତ୍ୟୁତ୍କ୍ରାନ୍ତ୍ୟୋ-'ପ୍ରାଜ୍ଞେନାତ୍ମନା', ଏହିପ୍ରକାର ସୁଷୁପ୍ତି ଓ ଉତ୍କ୍ରାନ୍ତି ଅବସ୍ଥାଗୁଡ଼ିକରେ ଭେଦେନ-ଜୀବଠରୁ ଭିନ୍ନ ରୂପରେ ପରମାତ୍ମାର ପ୍ରତିଶବ୍ଦ ଦ୍ୱାରା ବ୍ୟପଦେଶ ହୁଏ ।

(୨) ମୂଳ-(କ) 'ବ୍ୟପଦେଶାତ୍' ଇତ୍ୟନୁବର୍ତ୍ତତେ। ବୃହଦାରଣ୍ୟକେ ଷଷ୍ଠେ ପ୍ରପାଠକେ 'କତମ ଆତ୍ମେତି ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ ହୃଦନ୍ତର୍ଜ୍ୟୋତିଃ ପୁରୁଷଃ', (ବୃ ୪-୩-୭) ଇତ୍ୟୁପକ୍ରମ୍ୟ ଭୂୟାନାତ୍ମବିଷୟଃ ପ୍ରପଞ୍ଚଃ କୃତଃ । (ଖ) ତତ୍କିଂ ସଂସାରିସ୍ୱରୂପମାତ୍ରାନ୍ୱାଖ୍ୟାନପରଂ ବାକ୍ୟମ୍, ଉତାସଂସାରିସ୍ୱରୂପପ୍ରତିପାଦନପରମିତି ସଂଶୟଃ । (ଗ) କିଂ ତାବତ୍ପ୍ରାପ୍ତମ୍ ? ସଂସାରିସ୍ୱରୂପମାତ୍ରବିଷୟମେବେତି । କୁତଃ ? ଉପକ୍ରମୋପସଂହାରାଭ୍ୟାମ୍ । ଉପକ୍ରମେ 'ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ' ଇତି ଶାରୀରଲିଙ୍ଗାତ୍ । ଉପସଂହାରେ ଚ 'ସାବା ଏଷ ମହାନଜ ଆତ୍ମା ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ', (ବୃ ୪-୪-୨୨) ତଦପରିତ୍ୟାଗାତ୍ । ମଧ୍ୟେଽପି ବୁଦ୍ଧାନ୍ତାଦ୍ୟବସ୍ଥୋପନ୍ୟାସେନ ତସ୍ୟୈବ ପ୍ରପଞ୍ଚନାଦିତି ।

(୨) ଭାଷାଂତର- (କ) 'ବ୍ୟପଦେଶାତ୍' ଏହିପଦର ଅନୁବୃତ୍ତି ପୂର୍ବସୂତ୍ରରେ କରାଯାଇଛି । ବୃହଦାରଣ୍ୟକର ଷଷ୍ଠ ପ୍ରପାଠ କରେ 'ଜନକ-'ମୁଁ ବୁଦ୍ଧିବିଷୟ ଦେହ, ଇନ୍ଦ୍ରିୟ', ମନ ଓ ପ୍ରାଣାଦିରେ ଆତ୍ମା କିଏ ?, ଯାଜ୍ଞବଲ୍କ୍ୟ-ଏହା ଯେଉଁ ପ୍ରାଣରେ ବୁଦ୍ଧି ବୃତ୍ତିର ସାକ୍ଷିଭୂତହୃଦୟର ଅନ୍ତର୍ଗତ ବିଜ୍ଞାନମୟ ଜ୍ୟୋତିଃସ୍ୱରୂପ ଅଟେ, ସେ ଆତ୍ମା', ଏହା ଉପକ୍ରମ କରି ଆତ୍ମବିଷୟରେ ବହୁବିସ୍ତାର କରାଯାଇଛି ।



(ଖ) ସେ ବାକ୍ୟ କେବଳ ସଂସାରୀ ଜୀବ-ସ୍ୱରୂପର ଅନୁବାଦପରକ କି ପରମାତ୍ମାସ୍ୱରୂପର ପ୍ରତିପାଦନପରକ ? ଏହିପ୍ରକାର ସଂଶୟ ହେବାରୁ କ'ଣ ତାହା ହେବ ?

(ଗ) ପୂର୍ବପକ୍ଷ- 'କତମ ଆତ୍ମେତି', ଏହିବାକ୍ୟ କେବଳ ଜୀବସ୍ୱରୂପ ବିଷୟକ । କିପରି ? ଏହା ଉପକ୍ରମ ଓ ଉପସଂହାରଦ୍ୱାରା ଜଣାପଡ଼େ । ଉପକ୍ରମରେ 'ଯୋଽୟଂ ବିଜ୍ଞାନମୟଃ', - ଏହା ଜୀବର ଲିଙ୍ଗ ଏବଂ 'ସେ ଏହି ମହାନ୍ ଅଜନ୍ମା ଆତ୍ମା, ଯେ କି ଏହିପ୍ରାଣରେ ବିଜ୍ଞାନମୟ', ଉପସଂହାରରେ ଏହାର ପରିତ୍ୟାଗ ନୁହେଁ ଏବଂ ମଝିରେ ଜାଗ୍ରଦାଦି ଅବସ୍ଥାର ଉପନ୍ୟାସରେ ତାହାର ବିସ୍ତାର ହୁଏ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପରମେଶ୍ୱରୋପଦେଶପରମେବେଦଂ ବାକ୍ୟଂ ନ ଶାରୀରମାତ୍ରାନ୍ୱାଖ୍ୟାନପରମ୍ । କସ୍ମାତ୍ ? ସୁଷୁପ୍ତୌ ବୁତ୍କ୍ରାନ୍ତୌ ଚ ଶାରୀରାଦ୍ଭେଦେନ ପରମେଶ୍ୱରସ୍ୟ ବ୍ୟପଦେଶାତ୍ । (ଖ) ସୁଷୁପ୍ତୌ ତାବତ୍ 'ଅୟଂ ପୁରୁଷଃ ପ୍ରଜ୍ଞେନାତ୍ମନା ସଂପରିଷ୍ୱକ୍ତୌ ନ ବାହ୍ୟଂ କିଞ୍ଚନ ବେଦ ନାନ୍ତରମ୍', (ବୃ ୪-୨-୨୧) ଇତି ଶାରୀରାଦ୍ ଭେଦେନ ପରମେଶ୍ୱରଂ ବ୍ୟପଦିଶତି । (ଗ) ତତ୍ର ପୁରୁଷଃ ଶାରୀରଃ ସ୍ୟାତ୍ତସ୍ୟ ବେଦିତୃତ୍ୱାତ୍ । ବାହ୍ୟାଭ୍ୟନ୍ତର ବେଦନପ୍ରସଙ୍ଗେ ସତି ତତ୍ପ୍ରତିଷେଧସମ୍ଭବାତ୍, ପ୍ରାଜ୍ଞଃ ପରମେଶ୍ୱରଃ, ସର୍ବଜ୍ଞତ୍ୱଲକ୍ଷଣୟା ପ୍ରଜ୍ଞୟା ନିତ୍ୟମବିଯୋଗାତ୍ । (ଘ) ତଥୋତ୍କ୍ରାନ୍ତାବପି 'ଅୟଂ ଶାରୀର ଆତ୍ମା ପ୍ରାଜ୍ଞେନାତ୍ମନାନ୍ୱାରୂଢ଼ ଉତ୍ସର୍ଜନ୍ୟାତି', (ବୃ ୪-୩-୩୫) ଇତି ଜୀବାଦ୍ ଭେଦେନ ପରମେଶ୍ୱରଂ ବ୍ୟପଦିଶତି, ତତ୍ରାପି ଶାରୀରୋ ଜୀବଃ ସ୍ୟାତ୍, ଶରୀରସ୍ୱାମିତ୍ୱାତ୍ । (ଙ) ପ୍ରାଜ୍ଞସ୍ତ ସ ଏବ ପରମେଶ୍ୱରଃ, ତସ୍ମାତ୍ ସୁଷୁପ୍ତ୍ୟୁତ୍କ୍ରାନ୍ତ୍ୟୋର୍ଭେଦେନ ବ୍ୟପଦେଶାତ୍ ପରମେଶ୍ୱର ଏବାତ୍ର ବିବକ୍ଷିତ ଇତି ଗମ୍ୟତେ ।

**(୩) ଭାଷାଂତର-** ସିଦ୍ଧାନ୍ତ-(କ) 'କତମ ଆତ୍ମା' ଏହିବାକ୍ୟ ପରମେଶ୍ୱରର ଉପଦେଶପରକ ଅଟେ । କେବଳ ଜୀବ ସ୍ୱରୂପର ଅନୁବାଦପରକ ନୁହେଁ । କିପରି ? ସୁଷୁପ୍ତି ଓ ଉତ୍କ୍ରାନ୍ତି (ମରଣ)ରେ ଜୀବଭିନ୍ନ ରୂପଦ୍ୱାରା ପରମେଶ୍ୱରର ବ୍ୟପଦେଶ ହୁଏ ।

(ଖ) ସୁଷୁପ୍ତିରେ କିନ୍ତୁ 'ଏହି ପୁରୁଷ ପ୍ରଜ୍ଞାତ୍ମା ଦ୍ୱାରା ସଂଶ୍ଳିଷ୍ଟ ହୋଇ ଏକ ହେଲେ କୌଣସି ବାହାରକୁ ବା ଭିତରକୁ ଜାଣେ ନାହିଁ', ଏହି ଶ୍ରୁତି ଜୀବଭିନ୍ନ ରୂପରେ ପରମେଶ୍ୱରର ବ୍ୟପଦେଶ କରେ ।

(ଗ) ସେଠାରେ ମଧ୍ୟ ପୁରୁଷଶବ୍ଦ ଜୀବବାଚକ ହୁଏ, କାରଣ-ସେ ବେଦିତା ହେଲେ ବାହ୍ୟ ଓ ଭିତର ପଦାର୍ଥଗୁଡ଼ିକୁ ଜାଣିବା ପାଇଁ ପ୍ରସଙ୍ଗରେ ତାହାର ପ୍ରତିଷେଧ

ସମ୍ଭବ ହୁଏ । କିନ୍ତୁ ପ୍ରାଜ୍ଞ ହିଁ ପରମେଶ୍ୱର । କାରଣ-ସର୍ବଜ୍ଞତ୍ୱଲକ୍ଷଣ ପ୍ରଜ୍ଞାଦ୍ୱାରା ତାହାର ନିତ୍ୟ ସମ୍ବନ୍ଧ ଅଛି ।

(ଘ) ଏହି ପ୍ରକାର ଉତ୍କ୍ରାନ୍ତିରେ 'ସେହି ପ୍ରକାର ଏହି ଦେହୀ ଆତ୍ମା ପ୍ରାଜ୍ଞାତ୍ମଦ୍ୱାରା ଅଧିଷ୍ଠିତ ହୋଇଯାଏ ।' ଏହି ପ୍ରକାର ଶ୍ରୁତି ପରମେଶ୍ୱରର ଜୀବଠାରୁ ଭିନ୍ନ ହୋଇ ବ୍ୟପଦେଶ କରେ । ତାହାଠାରେ ମଧ୍ୟ ଶରୀର ହିଁ ଜୀବ, କାରଣ-ସେ ଶରୀରର ସ୍ୱାମୀ ।

(ଙ) ପ୍ରାଜ୍ଞ ସେ ହିଁ ପରମେଶ୍ୱର । ତେଣୁ ସୁଷୁପ୍ତି ଓ ଉତ୍କ୍ରାନ୍ତିରେ ଜୀବ ଓ ପରମେଶ୍ୱରର ଭେଦରେ ବ୍ୟପଦେଶ ହେବାରୁ ଏଠାରେ ପରମେଶ୍ୱର ହିଁ ବିବକ୍ଷିତ ବୋଲି ଜଣାଯାଏ ।

(୪) ମୂଳ-(କ) ଯଦୁକ୍ତମାଦ୍ୟନ୍ତମଧ୍ୟେଷୁ ଶାରୀରଲିଙ୍ଗାଉତ୍ ପରତ୍ୱମସ୍ୟ ବାକ୍ୟସ୍ୟେତି, ଅତ୍ର ବ୍ରୂମଃ-ଉପକ୍ରମେ ତାବତ୍ 'ଯୋଽୟଂ ବିଜ୍ଞାନମୟଃ ପ୍ରଣେଷ୍ଟୁ', ଇତି ନ ସଂସାରିସ୍ୱରୂପଂ ବିବକ୍ଷିତମ୍, (ଖ) କିଂ ତର୍ହି ? ଅନୂଦ୍ୟସଂସାରିସ୍ୱରୂପଂ ପରେଣ ବ୍ରହ୍ମଣାଽସ୍ୟୈକତାଂ ବିବକ୍ଷିତା ଯତୋ 'ଧ୍ୟାୟତୀବ ଲେଲାୟତୀବ' ଇତ୍ୟେବମାଦ୍ୟୁତ୍ତରଗ୍ରନ୍ଥପ୍ରବୃତ୍ତିଃ ସଂସାରିଧର୍ମନିରାକରଣପରା ଲକ୍ଷ୍ୟତେ । (ଗ) ତଥୋପସଂହାରେଽପି ଯଥୋପକ୍ରମମେବୋପସଂହରତି, 'ସ ବା ଏଷ ମହାନଜ ଆତ୍ମା ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷ', ଇତି । ଯୋଽୟଂ ବିଜ୍ଞାନମୟଃ ପ୍ରଣେଷ୍ଟ ସଂସାରୀ ଲକ୍ଷ୍ୟତେ ସ ବା ଏଷ ମହାନଜ ଆତ୍ମା ପରମେଶ୍ୱର ଏବାସ୍ମାଭିଃ ପ୍ରତିପାଦିତ ଇତ୍ୟର୍ଥଃ ।

**(୪) ଭାଷାଂତର**-(କ) ଯାହା କୁହାଗଲା ଯେ- ଆଦି, ଅନ୍ତ ଓ ମଧ୍ୟରେ ଶରୀରଲିଙ୍ଗଦ୍ୱାରା ଏହିବାକ୍ୟ ଜୀବପରକ ଅଟେ । ତେଣୁ ଏହି ବିଷୟରେ ଆମ୍ଭେ କହୁ ଯେ- ଉପକ୍ରମରେ 'ଯୋଽୟଂ ବିଜ୍ଞାନମୟଃ', (ଯେଉଁପ୍ରାଣରେ ବିଜ୍ଞାନମୟ) ସଂସାରିର ସ୍ୱରୂପ ବିବକ୍ଷିତ ନୁହେଁ ।

(ଖ) କିନ୍ତୁ ଜୀବର ସ୍ୱରୂପକୁ ଅନୁବାଦ କରି ତାହାର ପରଂବ୍ରହ୍ମ ସହ ଏକତାର ଶ୍ରୁତି ବିବକ୍ଷା କରେ । କାରଣ- 'ସେ ଧ୍ୟାନ କରେ ଓ ବୁଲେ' ଇତ୍ୟାଦି ଉତ୍ତର ଗ୍ରନ୍ଥର ପ୍ରବୃତ୍ତି ଆତ୍ମାଠାରେ ସଂସାରୀଧର୍ମର ନିରାକରଣ କରିବାରେ ଲକ୍ଷିତ ହୁଏ ।

(ଗ) ଏହିପ୍ରକାର ଉପସଂହାରରେ ମଧ୍ୟ ଉପକ୍ରମ ଭଳି 'ସେ ଏହି ମହାନ୍ ଅଜନ୍ମା ଆତ୍ମା, ଯାହାକି ସେ ପ୍ରାଣରେ ବିଜ୍ଞାନମୟ ଅଟେ' ଏହି ଶ୍ରୁତି କୁହାଯାଇଛି ।

 

ତେଣୁ ଯେଉଁ ପ୍ରାଣରେ ବିଜ୍ଞାନମୟ ସଂସାରୀ ଲକ୍ଷିତ ହୁଏ, ସେ ମହାନ୍ ଅଜନ୍ମା ଆତ୍ମା ପରମେଶ୍ୱରଙ୍କର ଅଟେ, ଏହା ଆମ୍ଭେ ପ୍ରତିପାଦନ କରିଅଛୁ ।

(୫) ମୂଳ-(କ) ଯସ୍ତୁ ମଧ୍ୟେ ବୁଦ୍ଧାନ୍ତାଦ୍ୟବସ୍ଥୋପନ୍ୟାସାତ୍ ସଂସାରିସ୍ୱରୂପ ବିବକ୍ଷାଂ ମାନ୍ୟତେ, ସ ପ୍ରାଚୀମପି ଦିଶଂ ପ୍ରସ୍ଥାପିତଃ ପ୍ରତୀଚୀମପି ଦିଶଂ ପ୍ରତିଷ୍ଠେତ । ଯତୋ ନ ବୁଦ୍ଧାନ୍ତାଦ୍ୟବସ୍ଥୋପନ୍ୟାସେନାବସ୍ଥାବତ୍ୱଂ ସଂସାରିତ୍ୱଂ ବା ବିବକ୍ଷିତି, କିଂ ତର୍ହି ? ଅବସ୍ଥାରହିତତ୍ୱମସଂସାରିତ୍ୱଂ ଚ । (ଖ) କଥମେତଦବଗମ୍ୟତେ ? ଯତ୍ 'ଅତ ଊର୍ଦ୍ଧ୍ୱଂ ବିମୋକ୍ଷାୟୈବ ବ୍ରୂହି', ଇତି ପଦେ ପଦେ ପୃଚ୍ଛତି । ଯଚ୍ଚ 'ଅନନ୍ୱାଗତସ୍ତେନ ଭବତ୍ୟସଙ୍ଗୋ ହ୍ୟୟଂ ପୁରୁଷଃ', (ବୃ ୪-୩-୧୪-୧୫) ଇତି ପଦେ ପଦେ ପ୍ରତିବ୍ୟକ୍ତି । 'ଅନନାଗତଂ ପୁଣ୍ୟେନାନନ୍ୱାଗତଂ ପାପେନ ତୀର୍ଣ୍ଣୋ ହି ତଦା ସର୍ବାନ୍ ଶୋକାନ୍ ହୃଦୟସ୍ୟ ଭବତି', (ବୃ ୪-୩-୨୨) ଇତି ଚ । ତସ୍ମାଦ ସଂସାରି ସ୍ୱରୂପ ପ୍ରତିପାଦନପରମେ-ବୈତଦ୍‌ବାକ୍ୟମିତ୍ୟ ବଗନ୍ତବ୍ୟମ୍ ।

**(୫) ଭାଷାଂତର**-(କ) ଯାହା ମଝିରେ ଜାଗ୍ରଦାଦିଅବସ୍ଥାର ଉପନ୍ୟାସରେ ସ୍ୱରୂପର ବିବକ୍ଷାକୁ ସ୍ୱୀକାର କରେ, ସେ ଯେପରି ପୂର୍ବଦିଗକୁ ପଠାଇବାରେ ପଶ୍ଚିମଦିଗରୁ ପ୍ରସ୍ଥାନ କରେ, (ସେପରି ପରମାତ୍ମାପରକ ଉପଦେଶକୁ ଜୀବପରକ ବୁଝିବାକୁ ପଡ଼େ) କାରଣ-ଜାଗ୍ରଦାଦି ଅବସ୍ଥାର ଉପନ୍ୟାସ ଦ୍ୱାରା ଆତ୍ମା ଅବସ୍ଥାବାନ୍ ବା ସଂସାରୀ ହୁଏ-ଏହାହିଁ କହେ ନାହିଁ, କିନ୍ତୁ ସେ ଅବସ୍ଥାରହିତ ଓ ଅସଂସାରୀ ହୁଏ ବୋଲି ବିବକ୍ଷା କରେ ।

(ଖ) ପରନ୍ତୁ ସେ କିପରି ଜଣାପଡ଼େ ? (ଜନକ ଓ ଯାଜ୍ଞବଲ୍କ୍ୟ ସମ୍ବାଦରେ) 'ଜନକ-ପ୍ରଥମେ ମୋତେ ମୋକ୍ଷପାଇଁ ଉପଦେଶ ଦିଅନ୍ତୁ' ଏହିପ୍ରକାର ବାରମ୍ବାର ପ୍ରଶ୍ନ ଜନକ କରନ୍ତି । 'ଏହି ଅବସ୍ଥାରେ ସେ ଅସମ୍ବନ୍ଧ ରହେ । କାରଣ-'ଏହି ପୁରୁଷ ଅସଙ୍ଗତ ଅଟେ' ବୋଲି ଯାଜ୍ଞବଲକ୍ୟ ଏପରି ବାରମ୍ବାର ଉତ୍ତର ଦିଅନ୍ତି । 'ସେହି ସମୟରେ ଏହି ପୁରୁଷର ପୁଣ୍ୟରୁ ଅସମ୍ବନ୍ଧ ଓ ପାପରୁ ମଧ୍ୟ ଅସମ୍ବନ୍ଧ ହୁଏ, ହୃଦୟର ସଂପୂର୍ଣ୍ଣ ଶୋକକୁ ପାର କରାଯାଏ' । ଏହିପରି ଶ୍ରୁତି । ଏହାଦ୍ୱାରା ଏହିବାକ୍ୟ ଅସଂସାରୀର ସ୍ୱରୂପକୁ ପ୍ରତିପାଦନ କରିବାପାଇଁ ନିଶ୍ଚୟ କରିଛି ।

## पत्यादिशब्दोभ्य: ॥ ४३ ॥

## ୧ । ପତ୍ୟାଦିଶବ୍ଦୋଭ୍ୟଃ ॥୧-୩-୪୩ ॥

ପତ୍ୟାଦିଶବ୍ଦେଭ୍ୟଃ-ସର୍ବସ୍ୟ ବଶୀ' ଇତ୍ୟାଦିଶ୍ରୁତିସ୍ଥ ପତି ଆଦି ଶବ୍ଦଦ୍ୱାରା ଏହା ସିଦ୍ଧ ଯେ- ଏଠାରେ ଅସଂସାରୀ ହିଁ ପରମେଶ୍ୱରର ସ୍ୱରୂପ ବୋଲି ନିରୂପଣ ହୋଇଛି ।

(୨) ମୂଳ-(କ) ଇତଶ୍ଚ ସଂସାରିସ୍ୱରୂପ ପ୍ରତିପାଦନପରମେବୈତଦ୍‌ବାକ୍ୟ-ମିତ୍ୟବଗନ୍ତବ୍ୟମ୍ । ଯଦସ୍ମିନ୍ ବାକ୍ୟେ ପତ୍ୟାଦୟଃ ଶବ୍ଦା ଅସଂସାରିସ୍ୱରୂପ ପ୍ରତିପାଦନ-ପରାଃ ସଂସାରିସ୍ୱଭାବପ୍ରତିଷେଧନାଶ୍ଚ ଭବନ୍ତି । (ଖ) 'ସର୍ବସ୍ୟ ବଶୀ ସର୍ବସ୍ୟେଶାନାଃ ସର୍ବସ୍ୟାଧିପତିଃ', ଇତ୍ୟେବଂଜାତୀୟକା ଅସଂସାରିସ୍ୱଭାବ ପ୍ରତିପାଦନତରାଃ । 'ସ ନ ସାଧୁନା କର୍ମଣା ଭୂୟାନ୍ନ ଏବାସାଧୁନା କନୀୟାନ୍', ଇତ୍ୟେବଂଜାତୀୟକାଃ ସଂସାରିସ୍ୱଭାବ ପ୍ରତିଷେଧନାଃ । ତସ୍ମାଦସଂସାରୀ ପରମେଶ୍ୱର ଇହୋକ୍ତ ଇତ୍ୟେବଗମ୍ୟତେ ।

**(୨) ଭାଷାଂତର**-(କ) ଏହାଦ୍ୱାରା ସ୍ଥିର କରିବା ଉଚିତ ଯେ-ଏହି ବାକ୍ୟ ଅସଂସାରିସ୍ୱରୂପ ପ୍ରତିପାଦନପରକ ଅଟେ । କାରଣ-ଏହି ବାକ୍ୟରେ ପତି ଆଦି ଶବ୍ଦ ଅସଂସାରିରର ସ୍ୱରୂପକୁ ପ୍ରତିପାଦନ କରେ ଏବଂ ସଂସାରିର ସ୍ୱଭାବ (ଧର୍ମ)ର ପ୍ରତିଷେଧ ମଧ୍ୟ କରେ ।

(ଖ) 'ସମସ୍ତଙ୍କୁ ନିଜ ଅଧୀନରେ ରଖୁଥିବା ଓ ସମସ୍ତଙ୍କୁ ଶାସନ କରୁଥିବା ଏହି ସମସ୍ତଙ୍କର ଅଧିପତି ଅଟେ' ଏହିପ୍ରକାର ଅସଂସାରିସ୍ୱଭାବକୁ ସମାପ୍ତ କରି 'ସେ ସାଧୁ କର୍ମଦ୍ୱାରା ବଡ଼ ନୁହେଁ କିମ୍ବା ଅସାଧୁକାର୍ଯ୍ୟ ଦ୍ୱାରା କନିଷ୍ଠ ନୁହେଁ' । ଏହି ପ୍ରକାର ସଂସାରି ସ୍ୱଭାବକୁ ପ୍ରତିଷେଧ କରେ । ତେଣୁ ଅସଂସାରୀ ପରମେଶ୍ୱର ଏଠାରେ କୁହାଯାଇଛି ବୋଲି ବୁଝିବାକୁ ପଡ଼ିବ ।



# प्रथमाध्याये चतुर्थः पादः

# ପ୍ରଥମ ଅଧ୍ୟାୟ - ଚତୁର୍ଥପାଦ

## १ आनुमानिकाधिकरणम् । सू० १ -७

## ଅନୁମାନିକାଧିକରଣ - ୧

**आनुमानिकमप्येकेषामिति चेन्न शरीररूपकविन्यस्तगृहि-तेर्दर्शयति च ॥ १ ॥**

**୧। ଆନୁମାନିକମପ୍ୟେକେଷାମିତି ଚେନ୍ନ ଶରୀର-ରୂପକବିନ୍ୟସ୍ତ ଗୃହୀତେର୍ଦର୍ଶୟତି ॥ ୧।୪।୧ ॥**

ଏକେଷାମ୍-କେତେକ ସମ୍ପ୍ରଦାୟ 'ମହତଃ ପରମବ୍ୟକ୍ତମ୍' ଇତ୍ୟାଦିରେ, ଅନୁମାନିକମପି-ଅନୁମାନଗମ୍ୟ ପ୍ରଧାନକୁ ମଧ୍ୟ ଅବ୍ୟକ୍ତ ବୋଲି ସ୍ୱୀକାର କରନ୍ତି । ଏହାଦ୍ୱାରା ପ୍ରଧାନଠାରେ ଅଶବ୍ଦତ୍ୱ ସିଦ୍ଧ ହୁଏ ନାହିଁ । ଇତି ଚେତ୍, ନ-ଏହା ଯଦି କୁହାଯାଏ, ତେବେ ମଧ୍ୟ ଠିକ୍ ନୁହେଁ । ଶରୀର ରୂପକ ବିନ୍ୟସ୍ତ ଗୃହୀତେ-କାରଣ- 'ଶରୀରଂ ରଥମେବ ତୁ' ଏହି ପୂର୍ବବାକ୍ୟରେ ରଥରୂପକଳ୍ପିତ ଶରୀରର ଗ୍ରହଣ କରାଯାଇଛି । ଦର୍ଶୟତି ଚ-ପୂର୍ବାପର ଗ୍ରନ୍ଥର ପର୍ଯ୍ୟାଲୋଚନା ପ୍ରକୃତ ଶରୀରକୁ ଅବ୍ୟକ୍ତଶବ୍ଦଦ୍ୱାରା ଗ୍ରାହ୍ୟ ବୋଲି ଦେଖାଏ ।

(୨) ମୂଳ-(କ) ବ୍ରହ୍ମଜିଜ୍ଞାସାୟାଂ ପ୍ରତିଜ୍ଞାୟା ବ୍ରହ୍ମଣୋ ଲକ୍ଷଣମୁକ୍ତମ୍ 'ଜନ୍ମାଦ୍ୟସ୍ୟ ଯତଃ' (ବ୍ର. ସୂ ୧।୧।୨) ଇତି । ତଲ୍ଲକ୍ଷଣଂ ପ୍ରଧାନସ୍ୟାପି ସମାନମିତ୍ୟାଶଙ୍କ୍ୟ ତଦଶବ୍ଦତ୍ୱେନ ନିରାକୃତମ୍-'ଈକ୍ଷତେର୍ନାଶବ୍ଦମ୍', (ବ୍ର.ସୂ ୧।୧।୫) ଇତି । (ଖ) ଗତି ସାମାନ୍ୟଂ ଚ ବେଦାନ୍ତବାକ୍ୟାନାଂ ବ୍ରହ୍ମକାରଣବାଦଂ ପ୍ରତି ବିଦ୍ୟତେ ନ ପ୍ରଧାନକାରଣବାଦଂ ପ୍ରତୀତିପ୍ରପଞ୍ଚିତଂ ଗତେନ ଗ୍ରନ୍ଥେନ । (ଗ) ଇଦଂ ତ୍ୱିଦାନୀମବଶିଷ୍ଟମାଶଙ୍କ୍ୟତେ-ଯଦୁକ୍ତଂ ପ୍ରଧାନସ୍ୟାଶବ୍ଦତ୍ୱଂ ତଦସିଦ୍ଧମ୍, କାସୁଚିଚ୍ଛାଖାସୁ ପ୍ରଧାନସମର୍ପଣାଭାସାନାଂ ଶବ୍ଦାନାଂ ଶ୍ରୂୟମାଣତ୍ୱାତ୍ । ଅତଃ ପ୍ରଧାନସ୍ୟ କାରଣତ୍ୱଂ ବେଦସିଦ୍ଧମେବ ମହଦ୍ଭିଃ ମହର୍ଷିଭିଃ କପିଳପ୍ରଭୃତିଭିଃ ପରଗୃହୀତମିତି ପ୍ରସଜ୍ୟତେ । (ଘ) ତଦ୍ୟାବତ୍ତେଷାଂ ଶବ୍ଦାନାଂ ମନ୍ୟପରତ୍ୱଂ

ନ ପ୍ରତିପାଦ୍ୟତେ ତାବତ୍ ବ୍ରହ୍ମ ଜଗତଃ କାରଣମିତି ପ୍ରତିପାଦିତମପ୍ୟାକୁଳୀଭବେତ୍ । ଅତସ୍ତେଷାମନ୍ୟପରତ୍ୱଂ ଦର୍ଶୟିତୁଂ ପରଃ ସନ୍ଦର୍ଭଃ ପ୍ରବର୍ତ୍ତତେ ।

**(୨) ଭାଷାଂତର**-(କ) 'ଅଥାତୋ' ଏହି ପ୍ରଥମ ସୂତ୍ରରେ ବ୍ରହ୍ମଜିଜ୍ଞାସାକୁ ପ୍ରତିଜ୍ଞା କରି 'ଜନ୍ମାଦ୍ୟସ୍ୟ ଯତଃ' ଏହି ସୂତ୍ରଦ୍ୱାରା ତାହାର ଲକ୍ଷଣ କୁହାଯାଇଛି । ସେହି ଲକ୍ଷଣ କୁହାଯାଇଛି । ସେହି ଲକ୍ଷଣ ପ୍ରଧାନର ଲକ୍ଷଣ ସହ ସମାନ ଅଟେ । ଏପରି ଆଶଙ୍କା କରି ଶ୍ରୁତିପ୍ରତିପାଦିତ ନ ହେବାରୁ 'ଈକ୍ଷତେର୍ନାଶବ୍ଦମ୍' ସୂତ୍ରରେ ଏହାର ନିରାକରଣ କରାଯାଇଅଛି ।

(ଖ) ସମସ୍ତ ବେଦାନ୍ତବାକ୍ୟଗୁଡ଼ିକର 'ବ୍ରହ୍ମକାରଣବାଦ' ପ୍ରତି ସମାନ ଗତି (ଜ୍ଞାନ) ଅଛି । କିନ୍ତୁ ପ୍ରଧାନକାରଣବାଦ ପ୍ରତି ନୁହେଁ । ଏହା ପୂର୍ବଗ୍ରନ୍ଥରେ 'ଗତିସାମାନ୍ୟାତ୍' ଏହି ସୂତ୍ରରେ ବିସ୍ତାର ପୂର୍ବକ କୁହାଯାଇଛି ।

(ଗ) ବର୍ତ୍ତମାନ ଅବଶିଷ୍ଟବିଷୟକ ଆଶଙ୍କା ହୋଇଛି- ଏହା ଯାହା କୁହାଯାଇଛି ଯେ, ପ୍ରଧାନ ଅଶବ୍ଦ ଓ ଅଯୁକ୍ତ । କାରଣ-କୌଣସି ଏକ ଶାଖାରେ ଏପରି ଶବ୍ଦ ଶୁଣାଯାଏ, ଯାହାର ତାତ୍ପର୍ଯ୍ୟ ଅଭ୍ୟାସ ପ୍ରଧାନ ପରକ ଅଟେ । ତେଣୁ ପ୍ରଧାନରେ କାରଣତ୍ୱ ବେଦ ସିଦ୍ଧ ହୁଏ ଓ ତାହାକୁ କପିଳାଦି ମହାନ୍ ପରମମହର୍ଷିମାନେ ଗ୍ରହଣ କରିଛନ୍ତି ବୋଲି ପ୍ରସକ୍ତି ଅଛି ।

(ଘ) ଯେପର୍ଯ୍ୟନ୍ତ ସେହି ଶବ୍ଦର ଅନ୍ୟପରତ୍ୱ ପ୍ରତିପାଦନ କରାନଯାଇଛି ସେ ପର୍ଯ୍ୟନ୍ତ ସର୍ବଜ୍ଞ ବ୍ରହ୍ମ ଜଗତର କାରଣ ହୁଏ-ଏହା ଯେଉଁ ପ୍ରତିପାଦନ କରାଯାଇଛି, ଏହା ହିଁ ବାଧିତ ହେବା ଉଚିତ । ତେଣୁ ସେ ଶବ୍ଦର ଅନ୍ୟପରତ୍ୱ ଦେଖାଇବା ପାଇଁ ଅଗ୍ରିମ ଗ୍ରନ୍ଥ ପ୍ରବୃତ୍ତ ହୁଏ ।

**(୩) ମୂଳ**-(କ) ଆନୁମାନିକମପ୍ୟନୁମାନନିରୂପିତମପି ପ୍ରଧାନମେକେଷାଂ ଶାଖିନାଂ ଶବ୍ଦବଦୁପଲଭ୍ୟତେ । କାଠକେ ହି ପଠ୍ୟତେ-'ମହତଃ ପରମବ୍ୟକ୍ତମ-ବ୍ୟକ୍ତାତ୍ ପୁରୁଷଃ ପରଃ' (୧।୩।୧୧) ଇତି । ତତ୍ର ଯ ଏବ ଯନ୍ନାମାନୋ ଯତ୍କ୍ରମାଷ୍ଟ ମହଦବ୍ୟକ୍ତପୁରୁଷାଃ ସ୍ମୃତିପ୍ରସିଦ୍ଧାସ୍ତ ଏବେହ ପ୍ରତ୍ୟଭିଜ୍ଞାୟନ୍ତେ । (ଖ) ତତ୍ରାବ୍ୟକ୍ତିମିତି ସ୍ମୃତିପ୍ରସିଦ୍ଧଂ ପ୍ରଧାନମଭିଧୀୟତେ । ତସ୍ୟ ଶବ୍ଦବତ୍ତ୍ୱାଦଶବ୍ଦତ୍ୱ-ମନୁପପନ୍ନମ । ତଦେବ ଚ ଜଗତଃ କାରଣଂ ଶ୍ରୁତି-ସ୍ମୃତି-ନ୍ୟାୟ ପ୍ରସିଦ୍ଧିଭ୍ୟ ଇତି ଚେତ୍- (ଗ) ନୈତଦେବମ୍' । ନ ହ୍ୟେତତ୍ କାଠକଂ ବାକ୍ୟଂ ସ୍ମୃତିପ୍ରସିଦ୍ଧୟୋର୍ମହ-ଦୁବ୍ୟକ୍ତୟୋରସ୍ତିତ୍ୱପରମ୍ । ନହ୍ୟତ୍ର



ଯାଦୃଶଂ ସ୍ମୃତିପ୍ରସିଦ୍ଧଂ ସ୍ୱତନ୍ତ୍ରଂ କାରଣଂ ତ୍ରିଗୁଣଂ ପ୍ରଧାନଂ ତାଦୃଶଂ ପ୍ରତ୍ୟଭିଜ୍ଞାୟତେ । (ଘ) ଶବ୍ଦମାତ୍ରଂ ହ୍ୟତ୍ରାବ୍ୟକ୍ତମିତି ପ୍ରତ୍ୟଭିଜ୍ଞାୟତେ । ସ ଚ ଶବ୍ଦୋ ନ ବ୍ୟକ୍ତମବ୍ୟକ୍ତମିତି ଯୌଗିକତ୍ୱାଦନ୍ୟସ୍ମିନ୍ନପି ସୂକ୍ଷ୍ମେ ସୁଦୁର୍ଲକ୍ଷ୍ୟେ ଚ ପ୍ରଯୁଜ୍ୟତେ ।

**(୩) ଭାଷାଂତର-ପୂର୍ବପକ୍ଷ**-(କ) ଆନୁମାନିକ ଅନୁମାନଦ୍ୱାରା ନିରୂପିତ ପ୍ରଧାନ ମଧ୍ୟ ଜଗତ୍ କାରଣ କତିପୟ ବୈଦିକ ଶାଖାଥିବା ମନଦ୍ୱାରା ପ୍ରତିପାଦିତ ହେବା ଉପଲବ୍ଧି ହୁଏ । ଯେପରି 'ମହତଦ୍ୱାରା ଅବ୍ୟକ୍ତ ମୂଳପ୍ରକୃତି ପର ସୂକ୍ଷ୍ମତର ଅଟେ ଓ ଅବ୍ୟକ୍ତଦ୍ୱାରା ମଧ୍ୟ ପୁରୁଷ ପର-ଅତିସୂକ୍ଷ୍ମ, ଏହା କାଠକରେ ପଠିତ ହୋଇଛି ।

(ଖ) ଏଠାରେ ଯେଉଁ ନାମ, ଓ କ୍ରମ, ମହତ୍ ଅବ୍ୟକ୍ତ ଓ ପୁରୁଷ ସାଂଖ୍ୟଶାସ୍ତ୍ରରେ ପ୍ରସିଦ୍ଧ, ସେମାନେ ଏଠାରେ କଠଶ୍ରୁତିରେ ପ୍ରତ୍ୟଭିଜ୍ଞାନ ହୁଅନ୍ତି ।

(ଗ) ସେଠାରେ ଅବ୍ୟକ୍ତଶବ୍ଦ ସାଂଖ୍ୟଶାସ୍ତ୍ରରେ ପ୍ରସିଦ୍ଧ ହେବାରୁ ଓ ଶବ୍ଦାଦି ରହିତ ହେବାରୁ ତଥା ଯାହାବ୍ୟକ୍ତ ନୁହେଁ, ସେ ଅବ୍ୟକ୍ତ, ଏହି ବ୍ୟୁତ୍ପତ୍ତିର ସମ୍ଭବ ହେତୁ ସାଂଖ୍ୟ ଶାସ୍ତ୍ରରେ ପ୍ରସିଦ୍ଧ ପ୍ରଧାନର ଅଭିଧାନ କରେ । ତେଣୁ ଶ୍ରୁତିପ୍ରତିପାଦିତ ହେବାରୁ ତାହାକୁ ଅଶବ୍ଦ କହିବା ଠିକ୍ ନୁହେଁ । ଶ୍ରୁତି, ସ୍ମୃତି ଓ ତର୍କରେ ଏହି ପ୍ରଧାନ ଜଗତର କାରଣ ବୋଲି ସିଦ୍ଧ ହୁଏ ।

(ଗ) ସିଦ୍ଧାନ୍ତ - ଏହା କହିବା ଠିକ୍ ନୁହେଁ । କାରଣ-ଏହି କାଠକଶ୍ରୁତି ସାଂଖ୍ୟ ସ୍ମୃତି ପ୍ରସିଦ୍ଧ ଜଗତର ସ୍ୱତନ୍ତ୍ରକାରଣ ତ୍ରିଗୁଣାତ୍ମକ ପ୍ରଧାନ ହୁଏ । ସେପରି ଏଠାରେ ପ୍ରତ୍ୟଭିଜ୍ଞାନ ହୁଏ ନାହିଁ ।

(ଘ) କିନ୍ତୁ ଏଠାରେ କେବଳ ଅବ୍ୟକ୍ତ ଶବ୍ଦମାତ୍ରର ପ୍ରତ୍ୟଭିଜ୍ଞା ହୁଏ । ଏବଂ ସେ ଶବ୍ଦ ଯାହା ନୁହେଁ, ସେ ଅବ୍ୟକ୍ତ-ଏହି ବ୍ୟୁତ୍ପତ୍ତି ଅନୁସାରେ ଯୌଗିକ କାରଣରୁ ପ୍ରଧାନଭିନ୍ନ ସୂକ୍ଷ୍ମ ଓ ଅତ୍ୟନ୍ତ ଦୁର୍ଲଭ୍ୟପଦାର୍ଥରେ ମଧ୍ୟ ଏହା ସଙ୍ଗତ ହୁଏ ।

(୪) ମୂଳ-(କ) ନ ହ୍ୟୟଂ କସ୍ମିଶ୍ଚିଦ୍ରୂଢଃ । ଯାତୁ ପ୍ରଧାନାବାଦିନାଂ ରୂଢ଼ିଃ, ସା ତେଷାମେବ ପାରିଭାଷିକୀ ସତି ନ ବେଦାର୍ଥନିରୂପଣେ କାରଣଭାବଂ ପ୍ରତିପଦ୍ୟତେ । ନ ଚ କ୍ରମମାତ୍ରସାମାନ୍ୟାତ୍ ସମାନାର୍ଥ ପ୍ରତିପତ୍ତିର୍ଭବତ୍ୟ ସତି ତଦ୍ରୂପପ୍ରତ୍ୟଭିଜ୍ଞାନେ । (ଖ) ନ ହ୍ୟଶ୍ୱସ୍ଥାନେ ଗାଂ ପଶ୍ୟନ୍ନଶ୍ୱୋଽୟମିତ୍ୟମୁଡୋଽଧ୍ୟବସ୍ୟତି । ପ୍ରକରଣନିରୂପଣାୟାଂ ତ୍ୱତ୍ର ନ ପରପରିକଳ୍ପିତଂ ପ୍ରଧାନଂ ପ୍ରତୀୟତେ, ଶରୀରରୂପକବିନ୍ୟସ୍ତଗୃହୀତେଃ । (ଗ) ଶରୀରଂ ହ୍ୟତ୍ର ରଥରୂପକବିନ୍ୟସ୍ତମବ୍ୟକ୍ତ-ଶବ୍ଦେନ ପରିଗୃହ୍ୟତେ । କୁତଃ ? ପ୍ରକରଣାତ୍ ପରିଶେଷାଚ୍ଚ । ତଥା ହ୍ୟନନ୍ତରାତୀତୋ ଗ୍ରନ୍ଥ ଆତ୍ମଶରୀରାଦୀନାଂ ରଥିରଥାଦି ରୂପକକ୍ଳୃପ୍ତିଂ ଦର୍ଶୟତି- 'ଆତ୍ମାନାଂ ରଥିନଂ ବିଦ୍ଧି, ଶରୀରଂ ରଥମେବ ତୁ । ବୁଦ୍ଧିଂ ତୁ ସାରଥିଂ ବିଦ୍ଧି, ମନଃ ପ୍ରଗ୍ରହମେବ ଚ ।

ଇନ୍ଦ୍ରିୟାଣି ହୟନାହୁର୍ବିଷୟାଂସ୍ତେଷୁ ଗୋଚରାନ୍ । ଆତ୍ମେନ୍ଦ୍ରିୟ-ମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ ॥', (କା ୧।୩।୩,୪) ଇତି । (ଘ) ତୈଶ୍ଚେ-ନ୍ଦ୍ରିୟାଦିଭିରସଂଯତୈଃ ସଂସାରମଧିଗଚ୍ଛତି । ସଂଯତୈସ୍ତ୍ୱଧ୍ୱନଃ ପାରଂ ତଦ୍‌ବିଷ୍ଣୋ ପରମଂ ପଦମାପ୍ନୋତୀତି ଦର୍ଶୟିତ୍ୱା କିଂ ତଦଧ୍ୱନଃ ପାରଂ ବିଷ୍ଣୋଃ ପରଷଦମିତ୍ୟସ୍ୟା-ମାକାଙ୍କ୍ଷାୟାମ୍ (ଙ) ତେଭ୍ୟ ଏବ ପ୍ରକୃତେଭ୍ୟ ଇନ୍ଦ୍ରିୟାଦିଭ୍ୟ ପରତ୍ୱେନ ପରମାତ୍ମ-ନମଧ୍ୱନଃ ପାରଂ ବିଷ୍ଣୋଃ ପରମପଦଂ ଦର୍ଶୟତି- 'ଇନ୍ଦ୍ରିୟେଭ୍ୟଃ ପରା ହ୍ୟର୍ଥା ଅର୍ଥେଭ୍ୟଶ୍ଚ ପରଂ ମନଃ । ମନସ୍ତସ୍ତୁ ପରା ବୁଦ୍ଧିଃ, ବୁଦ୍ଧେରାତ୍ମା ମହାନ୍‌ପରଃ ॥ ମହତଃ ପରମବ୍ୟକ୍ତମବ୍ୟକ୍ତାତ୍ ପୁରୁଷଃ ପରଃ । ପୁରୁଷାନ୍ନ କରଂ କିଞ୍ଚିତ୍ ସା କାଷ୍ଠା ସା ପରା ଗତିଃ ॥ (କା ୧।୩।୧୦,୧୧) ଇତ୍ୟାଦି ।

**(୪) ଭାଷାଂତର**-(କ) ଏହି ଅବ୍ୟକ୍ତଶବ୍ଦ କୌଣସି ଅର୍ଥରେ ରୂଢ଼ ନୁହେଁ, ଯାହା ପ୍ରଧାନବାଦି ରୂଢ଼ ଅର୍ଥାତ୍ ପ୍ରଧାନ ହିଁ ଅବ୍ୟକ୍ତ ଶବ୍ଦବାଚ୍ୟ । ସେ ତାହାର ପାରିଭାଷିକ ହେଲେ ଅପୌରୁଷେୟ ବେଦାର୍ଥନିରୂପଣ କରିବାରେ କାରଣ ଭାବକୁ ପ୍ରାପ୍ତ ହୁଏ ନାହିଁ । ବସ୍ତୁରୂପର ପ୍ରତ୍ୟଭିଜ୍ଞାନ ନ ହେଲେ କେବଳ କ୍ରମର ସମାନତା ଦୃଷ୍ଟିରୁ ସମାନ ଅର୍ଥଜ୍ଞାନ ହୁଏ ନାହିଁ ।

(ଖ) କୌଣସି ବୁଦ୍ଧିମାନ ପୁରୁଷ ଅଶ୍ୱସ୍ଥାନରେ ଗାଈ ଦେଖି ଏହା ଅଶ୍ୱ ବୋଲି ନିଶ୍ଚିତ କରେ ନାହିଁ ।' ଏହିପ୍ରକାର ପ୍ରକରଣ ନିରୂପଣ କଲାବେଳେ ପ୍ରତିପକ୍ଷପରିକଳ୍ପିତ ପ୍ରଧାନର ପ୍ରତୀତି ହୁଏ ନାହିଁ । କାରଣ-ଏଠାରେ ଶରୀରରୂପ ବିନ୍ୟାସ ହିଁ ଗୃହୀତ ।

(ଗ) ନିଃସନ୍ଦେହଭାବରେ ଏଠାରେ ରଥରୂପକ ବିନ୍ୟସ୍ତ ଶରୀରର ଅବ୍ୟକ୍ତ ଶବ୍ଦଦ୍ୱାରା ଗ୍ରହଣ କରାଯାଏ । କାରଣ-ଏହା ପ୍ରକରଣ ଓ ପରିଶେଷ ଦ୍ୱାରା ପ୍ରମାଣିତ ହୁଏ । ଏହି ପ୍ରକାର- 'ତୁମେ ଆତ୍ମାକୁ ରଥି ଓ ଶରୀରକୁ ରଥ ବୋଲି ଜାଣ, ବୁଦ୍ଧିକୁ ସାରଥି ଓ ମନକୁ ଲଗାମ ବୋଲି ବୁଝ । ବିବେକୀ ପୁରୁଷ ଇନ୍ଦ୍ରିୟଗୁଡ଼ିକୁ ଅଶ୍ୱ ଓ ସେମାନଙ୍କର ଅଶ୍ୱ ରୂପରେ କଳ୍ପିତ ହେବା ଜାଣି ବିଷୟଗୁଡ଼ିକୁ ବାଟ ବତାଏ । ଏବଂ ଶରୀର, ଇନ୍ଦ୍ରିୟ ଏବଂ ମନଯୁକ୍ତ ଆତ୍ମାକୁ ଭୋକ୍ତା କହନ୍ତି ।' ଏହି ବ୍ୟବହିତ ଅତୀତ ଗ୍ରନ୍ଥ ଆତ୍ମା ଶରୀରାଦିରେ ରଥୀ, ରଥାଦିରୂପକର କ୍ଳୃପ୍ତି (କଳ୍ପନା) ଦେଖାଏ' ।

(ଘ) ସେହି ଅସଂଯତ ଇନ୍ଦ୍ରିୟଦ୍ୱାରା ସେ ଜନ୍ମ-ମରଣରୂପ ସଂସାରକୁ ପାଏ ଓ ସେହି ସଂଯତ ଇନ୍ଦ୍ରିୟାଦି ବ୍ୟତିରିକ୍ତ ଜନ୍ମମରଣରହିତ ସେହି ବିଷ୍ଣୁ ପରମପଦକୁ ପାଏ ।'



ଏହିପରି ଦେଖାଏ । ତେବେ ଜନ୍ମମରଣ ରହିତ ବିଷ୍ଣୁପଦ କଣ ? ଏହିପ୍ରକାର ନଚିକେତାର ଆକାଂକ୍ଷା ହେବାରୁ,

(ଘ) ଯମରାଜ କହିଲେ, ''ଇନ୍ଦ୍ରିୟ ଅପେକ୍ଷା ଏହାର ବିଷୟ ଶ୍ରେଷ୍ଠ ଅଟେ । ବିଷୟଠାରୁ ମନ ଶ୍ରେଷ୍ଠ, ମନଠାରୁ ବୁଦ୍ଧି ଅଧିକ ଓ ବୁଦ୍ଧିଠାରୁ ମହାନ୍ ଆତ୍ମା (ମହତ୍) ଶ୍ରେଷ୍ଠ । ମହତଠାରୁ ଅବ୍ୟକ୍ତ (ସୂକ୍ଷ୍ମ ପ୍ରକୃତି) ଶ୍ରେଷ୍ଠ ଓ ଅବ୍ୟକ୍ତଠାରୁ ପୁରୁଷ ଶ୍ରେଷ୍ଠ । ପୁରୁଷଠାରୁ ଶ୍ରେଷ୍ଠ ଆଉ କିଛି ନାହିଁ । ସେ ସୂକ୍ଷ୍ମତତ୍ତ୍ୱର ପରକାଷ୍ଠା ଅବଧି, ସେ ହିଁ ପରା ଉତ୍କୃଷ୍ଟ ଗତି ।' ଏହି ଶ୍ରୁତି ସେହି ପ୍ରକୃତ ଇନ୍ଦ୍ରିୟଠାରୁ ଶ୍ରେଷ୍ଠ ପରମାତ୍ମାଙ୍କୁ ଜନ୍ମ ମରଣରହିତ ବିଷ୍ଣୁର ପରମପଦକୁ ଦେଖାଏ ।

(୫) ମୂଳ-(କ) ତତ୍ର ଯ ଏବେନ୍ଦ୍ରିୟାଦୟଃ ପୂର୍ବସ୍ୟାଂ ରଥରୂପକକଳ୍ପନା-ୟାମଶ୍ୱାଦିଭାବେନ ପ୍ରକୃତାସ୍ତ ଏବେହ ପରିଗୃହ୍ୟନ୍ତେ ପ୍ରକୃତହାନାପ୍ରକୃତ ପ୍ରକ୍ରିୟାପରିହାରାୟ । (ଖ) ତତ୍ରେନ୍ଦ୍ରିୟା ମନୋବୁଦ୍ଧୟସ୍ତାବତ୍ପୂର୍ବତ୍ରେହ ଚ ସମାନଶବ୍ଦା ଏବ । ଅର୍ଥା ଯେ ଶବ୍ଦାଦୟୋ ବିଷୟା ଇନ୍ଦ୍ରିୟହୟଗୋଚରତ୍ୱେନ ନିର୍ଦ୍ଦିଷ୍ଟାସ୍ତେଷାଂ ଚେନ୍ଦ୍ରିୟେଭ୍ୟଃ ପରତ୍ୱମ୍ । 'ଇନ୍ଦ୍ରିୟାଣାଂ ଗ୍ରହତ୍ୱଂ ବିଷୟାଣାମତିଗ୍ରହତ୍ୱମ୍', (ବୃ ୩।୨) ଇତି ଶ୍ରୁତିପ୍ରସିଦ୍ଧେଃ । (ଗ) ବିଷୟେଭ୍ୟଶ୍ଚ ମନସଃ ପରତ୍ୱମ୍, ମନୋମୂଳତ୍ୱାଦ୍ ବିଷୟେନ୍ଦ୍ରିୟବ୍ୟବହାରସ୍ୟ । 'ମନସସ୍ତୁ ପରା ବୁଦ୍ଧିଃ । ବୁଦ୍ଧିମାରୂହ୍ୟ ଭୋଗଜାତଂ ଭୋକ୍ତାରମୁପସର୍ପତି । ବୁଦ୍ଧିରାତ୍ମା ମହାନ୍‌ପରଃ', ଯଃ ସଃ 'ଆତ୍ମାନଂ ରଥିନଂ ବିଦ୍ଧି', ଇତି ରଥିତ୍ୱେନୋପକ୍ଷିପ୍ତଃ, କୁତଃ ? ଆତ୍ମଶବ୍ଦାତ୍ । ଭୋକ୍ତୁଶ୍ଚ ଭୋଗୋପକରଣାତ୍ ପରତ୍ୱୋପପତ୍ତେଃ । ମହତ୍ତ୍ୱଂ ଚାସ୍ୟ ସ୍ୱାମିତ୍ୱାଦୁପପନ୍ନମ୍ ।

**(୫) ଭାଷାଂତର**-(କ) ସେହି ଶ୍ରୁତିରେ ପ୍ରଥମେ ରଥରୂପକରର କଳ୍ପନାରେ ଅଶ୍ୱାଦି ରୂପରେ ଯାହା ଇନ୍ଦ୍ରିୟାଦି ପ୍ରକୃତ ଅଟେ, ସେ ପ୍ରକୃତର ହାନି ଓ ଅପ୍ରକୃତ (ପ୍ରଧାନ)ର କଳ୍ପନାରୂପ ଦୋଷର ପରିହାର ପାଇଁ ସେମାନଙ୍କର ଏହି ଶ୍ରୁତିବାକ୍ୟରେ ଗ୍ରହଣ କରାଯାଏ ।

(ଖ) ସେମାନଙ୍କ ଦ୍ୱାରା ଇନ୍ଦ୍ରିୟ, ମନ ଓ ବୁଦ୍ଧି ପୂର୍ବବାକ୍ୟରେ ଓ ଏଠାରେ ସମାନଶବ୍ଦଗୁଡ଼ିକ ଦ୍ୱାରା ନିର୍ଦ୍ଦିଷ୍ଟ ଅଟେ । ଅର୍ଥ ଅର୍ଥାତ୍ ଶବ୍ଦାଦି ବିଷୟ ଯାହା ଇନ୍ଦ୍ରିୟ ରୂପ ଅଶ୍ୱର ମାର୍ଗରୂପରେ ନିର୍ଦ୍ଦିଷ୍ଟ, ସେମାନେ ଇନ୍ଦ୍ରିୟଗୁଡ଼ିକଠାରୁ ପର (ଶ୍ରେଷ୍ଠ) କାରଣ (ଘ୍ରାଣ, ରସନା, ବାକ୍, ନେତ୍ର, ଶ୍ରୋତ, ମନ, ହସ୍ତ ତ୍ୱାକ ଏହି ଆଠଟି ଇନ୍ଦ୍ରିୟକୁ ବେଦରେ ଗ୍ରହ ବୋଲି କୁହାଯାଇଛି । କାରଣ-ପୁରୁଷ ପଶୁକୁ ଯେଉଁ ଇନ୍ଦ୍ରିୟଗୁଡ଼ିକ ଦ୍ୱାରା ନିଜର ବଶ କରେ । ପରନ୍ତୁ ଇନ୍ଦ୍ରିୟଗୁଡ଼ିକ ଗନ୍ଧ, ରସ, ନାମ, ରୂପ, ଶବ୍ଦ, କାମ, କର୍ମ ଓ ସ୍ପର୍ଶାଦି

ବିଷୟ ସମ୍ବନ୍ଧବିନା ସ୍ୱତଃ ଏହି ପୁରୁଷ ପଶୁଙ୍କୁ ନିଜର ବଶ କରିପାରେ ନାହିଁ । ଏବଂ ବିଷୟଗୁଡ଼ିକ ଅତିଗ୍ରହ ଅଟନ୍ତି ।' ଏପରି ଶ୍ରୁତିରେ ପ୍ରସିଦ୍ଧ ଅଟେ ।

(ଗ) ବିଷୟଠାରୁ ମନ ଶ୍ରେଷ୍ଠ । କାରଣ-ବିଷୟ ଓ ଇନ୍ଦ୍ରିୟଗୁଡ଼ିକର ସମ୍ପୂର୍ଣ୍ଣ ବ୍ୟବହାର ମନର ଅଧୀନ ଅଟେ । ବୁଦ୍ଧି ମନଠାରୁ ଶ୍ରେଷ୍ଠ । ଭୋଗ୍ୟ ସମୁଦାୟ ବୁଦ୍ଧି ଉପରେ ଆରୂଢ଼ ହୋଇ ଭୋକ୍ତାର ପାଖକୁ ଯାଏ । ଯିଏ 'ଆତ୍ମାନଂ ରଥିନଂ ବିଦ୍ଧି ବୋଲି ରଥୀରୂପରେ ନିର୍ଦ୍ଦିଷ୍ଟ ମହାନ୍ ଆତ୍ମା, ସେ ବୁଦ୍ଧିଠାରୁ ଶ୍ରେଷ୍ଠ । କାରଣ-ଶ୍ରୁତିରେ ଆତ୍ମ ଶବ୍ଦହିଁ ଅଛି । ଭୋଗର ସାମଗ୍ରୀ ଦ୍ୱାରା ଭୋକ୍ତା ଉତ୍କୃଷ୍ଟ ହୋଇପାରେ । ସ୍ୱାମୀ ହେଲେ ସେ ମହାନ ମଧ୍ୟ ହୋଇପାରେ ।

(୬) ମୂଳ-(କ) ଅଥବା 'ମନୋ ମହାନ୍ ମତିର୍ବ୍ରହ୍ମା ପୂର୍ବୁଦ୍ଧିଃ ଖ୍ୟାତିରୀଶ୍ୱରଃ । ପ୍ରଜ୍ଞା ସଂବିଚ୍ଛିତିଶ୍ଚୈବ ସ୍ମୃତିଶ୍ଚ ପରିପଠ୍ୟତେ ।' ଇତି ସ୍ମୃତେଃ । 'ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ', (ଶ୍ୱେ ୬।୧୮) ଇତି ଚ ଶ୍ରୁତେଃ । ଯା ପ୍ରଥମଜସ୍ୟ ହିରଣଗର୍ଭସ୍ୟ ବୁଦ୍ଧିଃ, ସା ସର୍ବାସାଂ ବୁଦ୍ଧୀନାଂ ପରା ପ୍ରତିଷ୍ଠା । ସେହ ମହାନାତ୍ମେତ୍ୟୁଚ୍ୟତେ । (ଖ) ସା ଚ ପୂର୍ବତ୍ର ବୁଦ୍ଧି ଗ୍ରହଣେନୈବ ଗୃହୀତା ସତୀ ହିରୁଗିହୋପଦିଶ୍ୟତେ, ତସ୍ୟା ଅପ୍ୟସ୍ମଦୀୟାଭ୍ୟୋ ବୁଦ୍ଧିଭ୍ୟଃ ପରତ୍ୱୋପପପତ୍ତେଃ (ଗ) 'ଏତସ୍ମିଂସ୍ତୁପକ୍ଷେପରମାତ୍ମବିଷୟଣୈବ ପରେଣ ପୁରୁଷଗ୍ରହଣେନ ରଥିନମାତ୍ମନୋ ଗ୍ରହଣଂ ଦ୍ରଷ୍ଟବ୍ୟମ୍, ପରମାର୍ଥତଃ ପରମାତ୍ମା ବିଜ୍ଞାନାତ୍ମନୋ ର୍ଭେଦାଭାବାତ୍ । ତଦେବଂ ଶରୀରମେବୈକଂ ପରିଶିଷ୍ୟତେ । (ଘ) ଇତରାଣୀନ୍ଦ୍ରିୟାଦୀନି ପ୍ରକୃତାନ୍ୟେବ ପରମପଦ ବିଦର୍ଶୟିଷୟା ସମନୁକ୍ରାମନ୍ ପରିଶିଷ୍ୟମାଣେନେହାନ୍ତ୍ୟେନାବ୍ୟକ୍ତଶବ୍ଦେନ ପରିଶିଷ୍ୟମାଣଂ ପ୍ରକୃତିଂ ଶରୀରଂ ଦର୍ଶୟତୀତି ଗମ୍ୟତେ । ଶରୀରେନ୍ଦ୍ରିୟ ମନୋବୁଦ୍ଧି ବିଷୟବେଦନାସଂଯୁକ୍ତସ୍ୟ ହ୍ୟବିଦ୍ୟାବତୋ ଭୋକ୍ତୁଃ ଶରୀରାଦୀନାଂ ରଥାଦିରୂପକଳ୍ପନୟା ସଂସାରମୋକ୍ଷଗତିନିରୂପଣେନ ପ୍ରତ୍ୟାଗାତ୍ମବ୍ରହ୍ମବଗତିରିହ ବିବକ୍ଷିତା ।

(୬) ଭାଷାଂତର-(କ) ଅଥବା 'ସମଷ୍ଟି, ବୁଦ୍ଧି, ମନନଶକ୍ତି, ଭାବନିଶ୍ଚୟ, ବ୍ୟାପିନୀ, ବ୍ରହ୍ମାତ୍ମା, ଭୋଗ୍ୟବର୍ଗର ଆଶ୍ରୟ, ତାତ୍କାଳିକନିଶ୍ଚୟ, କୀର୍ତ୍ତିଶକ୍ତି, ନିୟମନଶକ୍ତି, ତ୍ରୈକାଳିକଶକ୍ତି, ସଂଛିତ, ଅଭିବ୍ୟଂଜିକା, ଚିତ୍ ଓ ସ୍ମୃତି କୁହାଯାଇଛି', ଏହି ସ୍ମୃତି ଅନୁସାରେ ଏବଂ 'ଯିଏ ସୃଷ୍ଟିର ଆରମ୍ଭରେ ବ୍ରହ୍ମାଙ୍କୁ ଉତ୍ପନ୍ନ କରେ ଓ ତାହାର ବୁଦ୍ଧିରେ ବେଦଗୁଡ଼ିକ ଆବିର୍ଭାବ', ଏହି ବେଦବାକ୍ୟାନୁସାରେ ପ୍ରଥମେ ଉତ୍ପନ୍ନ



ହୋଇଥିବା ହିରଣ୍ୟଗର୍ଭର ଯାହାବୁଦ୍ଧି, ସେ ସମ୍ପୂର୍ଣ୍ଣ ବୁଦ୍ଧିର ପ୍ରତିଷ୍ଠାତା ହୁଏ । ସେ ହିଁ ଏଠାରେ ମହାନ ଆତ୍ମା ବୋଲି କୁହାଯାଇଛି ।

(ଖ) ପ୍ରଥମ ମନ୍ତ୍ର (ଆତ୍ମାନଂ ରଥିନଂ ବିଦ୍ଧି)ରେ ପଠିତବୁଦ୍ଧି ଶବ୍ଦର ଗ୍ରହଣ ଦ୍ୱାରା ସେ ଗୃହୀତ । ଏଠାରେ ତାହା ପୃଥକଭାବରେ ନିର୍ଦ୍ଦିଷ୍ଟ ହୋଇଛି । କାରଣ-ସେଠାରେ ଅସ୍ମଦାଦି ବୁଦ୍ଧିର ଅପେକ୍ଷା ଶ୍ରେଷ୍ଠତ୍ୱ ଉପପନ୍ନ ହୋଇଛି ।

(ଗ) ପରନ୍ତୁ ଏହି ପକ୍ଷରେ ଅନ୍ତିମପରମାତ୍ମା ବିଷୟକ ଶ୍ରେଷ୍ଠ ପୁରୁଷ ଶବ୍ଦର ଗ୍ରହଣ ଦ୍ୱାରା ରଥୀ ଆତ୍ମାର ଗ୍ରହଣ ବୁଝାଯାଏ । କାରଣ-ପ୍ରକୃତରେ ପରମାତ୍ମା ଓ ବିଜ୍ଞାନାତ୍ମା ମଧ୍ୟରେ ଭେଦ ନାହିଁ । ଏହି ପ୍ରକାର ସେଠାରେ କେବଳ ଏକଶରୀର ଅବଶିଷ୍ଟ ରହେ ।

(ଘ) ଏଠାରେ ସ୍ପଷ୍ଟତଃ ଜଣାପଡ଼େ ଯେ-ପରମପଦକୁ ଦେଖାଉଥିବା ଇଚ୍ଛାଦ୍ୱାରା ପୂର୍ବ ମନ୍ତ୍ରରେ ପଠିତ ଅନ୍ୟ ଇନ୍ଦ୍ରିୟାଦିର ଅନୁକ୍ରମରେ ଗ୍ରହଣ କରୁଥିବା କଠୋପନିଷଦ ଏଠାରେ ଅବଶିଷ୍ଟ ଅନ୍ତିମ ଅବ୍ୟକ୍ତଶବ୍ଦଦ୍ୱାରା ପରିଶିଷ୍ଟ ପ୍ରକୃତ ଶରୀରକୁ ଦେଖାଏ । ଅତଃ ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ବିଷୟ ଓ ବେଦନାଦ୍ୱାରା ସମ୍ବନ୍ଧ ଅବିଦ୍ୟାବାନ ଭୋକ୍ତାର ଶରୀରାଦିକୁ ରଥାଦି ସହ ସାଦୃଶ୍ୟକଳ୍ପନା ଦ୍ୱାରା ସଂସାରଗମନ ଓ ମୋକ୍ଷ ପ୍ରାପ୍ତିର ନିରୂପଣ କରି ପ୍ରତ୍ୟାଗାତ୍ମାର ବ୍ରହ୍ମରୂପର ଜ୍ଞାନ କରେ ବୋଲି କୁହାଯାଇଛି ।

(୭) ମୂଳ-(କ) ତଥା ଚ 'ଏଷ ସର୍ବେଷୁ ଭୂତେଷୁ ଗୁଢାତ୍ମା ପ୍ରକାଶୟେତ୍ । ଦୃଶ୍ୟତେ ତ୍ୱଗ୍ର୍ୟୟା ବୁଦ୍ଧ୍ୟା ସୂକ୍ଷ୍ମୟା ସୂକ୍ଷ୍ମଦର୍ଶିଭିଃ', (କା ୨-୩-୧୨) ଇତି ବୈଷ୍ଣବସ୍ୟ ପରମପଦସ୍ୟ ଦୁରବଗମତ୍ୱମୁକ୍ତ୍ୱା ତଦବଗମାର୍ଥଂ ଯୋଗଂ ଦର୍ଶୟତି-'ଯଚ୍ଛେଦ୍‌ବାଙ୍‌ମନସୀ ପ୍ରାଜ୍ଞସ୍ତଦ୍ୟଚ୍ଛେଦ୍ ଜ୍ଞାନ ଆତ୍ମନି । ଜ୍ଞାନମାତ୍ମନି ମହତି ନିୟଚ୍ଛେତ୍ତଦ୍ୟଚ୍ଛେଦାନ୍ତ ଆତ୍ମନି', (କା ୧-୩-୧୩) ଇତି । (ଖ) ତଦୁକ୍ତଂ ଭବତି- ବାଚଂ ମନସି ସଂଯେଚ୍ଛେତ୍ ବାଗାଦିବାହ୍ୟେନ୍ଦ୍ରିୟବ୍ୟାପାରମୁତ୍ସୃଜ୍ୟ ମନୋମାତ୍ରେଣାବତିଷ୍ଠେତ୍ । ମନୋଽପି ବିଷୟ ବିକଳ୍ପାଭିମୁଖଂ ବିକଳ୍ପଦୋଷଦର୍ଶନେନ ଜ୍ଞାନଶବ୍ଦୋଦିତାୟାଂ ବୁଦ୍ଧ୍ୟାବଧ୍ୟବସାୟ ସ୍ୱଭାବାୟାଂ ଧାରୟେତ୍ । (ଗ) ତାମପି ବୁଦ୍ଧିଂ ମହତ୍ୟାତ୍ମନି ଭୋକ୍ତର୍ଯ୍ୟଗ୍ର୍ୟାୟାଂ ବା ବୁଦ୍ଧୌ ସୂକ୍ଷ୍ମତାପ୍ରତିପାଦନେନ ନିଯଚ୍ଛେତ୍ । ମହାନ୍ତଂ ତ୍ୱାତ୍ମାନ ଶାନ୍ତ ଆତ୍ମନି ପ୍ରକରଣବତ ପରସ୍ମିନ୍ ପୁରୁଷେ ପରସ୍ୟାଂ କାଷ୍ଠାୟ । ପ୍ରତିଷ୍ଠାପୟେଦିତି ଚ । ତଦେବଂ ପୂର୍ବାପରାଲୋଚନାୟାଂ ନ୍ୟସ୍ତ୍ୟତ୍ର ପରପରିକଳ୍ପିତସ୍ୟ ପ୍ରଧାନସ୍ୟାବକାଶଃ ॥

(୭) ଭାଷାଂତର-(କ) ଏହିପ୍ରକାର 'ସମଗ୍ରପ୍ରାଣୀଠାରେ ଗୁପ୍ତ ଭାବରେ ରହିଥିବା ଏହି ଆତ୍ମା ପ୍ରକାଶମାନ ହୁଏ ନାହିଁ । ଏଠାରେ କିନ୍ତୁ ସୂକ୍ଷ୍ମଦର୍ଶୀ ପୁରୁଷ ନିଜେ ତୀବ୍ର ଓ ସୂକ୍ଷ୍ମ ବୁଦ୍ଧିଦ୍ୱାରା ଦେଖାଯାଏ । ଅର୍ଥାତ୍ ସେମାନେ ବ୍ରହ୍ମାକାର ବୃତ୍ତିରେ ସାକ୍ଷାତ୍କାର କରେ ।' ଏହିପ୍ରକାର ବିଷ୍ଣୁ ପରମପଦର ଦୁର୍ବିଜ୍ଞେୟତା କହି ଜ୍ଞାନ ପାଇଁ 'ବିବେକୀ ପୁରୁଷ ବାଗିନ୍ଦ୍ରିୟର ମନରେ ଭୟ କରି ତାହାର ପ୍ରକାଶ ସ୍ୱରୂପ ବୁଦ୍ଧିରେ ଲୟ କର । ବୁଦ୍ଧି ମହାନ୍ ଆତ୍ମାରେ ଲୀନ ହୁଏ, ତାହାକୁ ଶାନ୍ତ ଆତ୍ମାରେ ନିଯୁକ୍ତ କର ।', ଏହି ପ୍ରକାର ଶ୍ରୁତି ଯୋଗକୁ ଦେଖାଏ ।

(ଖ) ତାହାର ତାତ୍ପର୍ଯ୍ୟ ଏହା ଯେ - ବାଣୀର ମନରେ ଲୟକରି ଅର୍ଥାତ୍ ବାଣୀ ଆଦି ବାହ୍ୟ ଇତ୍ୟାଦିର ବ୍ୟାପାରକୁ ତ୍ୟାଗକରି କେବଳ ମନରୂପରେ ଅବସ୍ଥିତ ରହିପାରେ ବିଷୟ ବିକଳ୍ପାଭିମୁଖ ମନରେ ମଧ୍ୟ ବିକଳ୍ପସମ୍ବନ୍ଧୀ ଦୋଷଦର୍ଶନ ଦ୍ୱାରା ଜ୍ଞାନଶବ୍ଦ ଦ୍ୱାରା କଥିତ ନିଶ୍ଚୟାତ୍ମକବୁଦ୍ଧିରେ ଲୟ ରଖିପାରେ ।

(ଗ) ସେହି ବୁଦ୍ଧିର ମହାନ୍ ଆତ୍ମା ଭୋକ୍ତାରେ ଅଥବା ସମାଧିର ପରିପାକଦ୍ୱାରା ଉତ୍ପନ୍ନ ବୁଦ୍ଧିରେ ଅଧିକ ସୂକ୍ଷ୍ମତା ସମ୍ପାଦନା ଦ୍ୱାରା ଲୟ କରିପାରେ ଏବଂ ସେହି ମହାନ୍ ଆତ୍ମାରେ ପ୍ରକରଣ ପ୍ରାପ୍ତ ଅନ୍ତିମ କାଷ୍ଠା ଅବଧି ଶାନ୍ତ ଆତ୍ମା ଉପରେ ବ୍ରହ୍ମରେ ଲୟ କରିପାରେ ଅର୍ଥାତ୍ 'ମୁଁ ବ୍ରହ୍ମ ଅଟେ', ଏପରି ଅଭେଦ ରୂପରେ ସ୍ଥିତିର ଅନୁଭବ କରିପାରେ । ଏହି ପ୍ରକାର ପୂର୍ବାପରବାକ୍ୟର ପର୍ଯ୍ୟାଲୋଚନା କଲା ପରେ ପୂର୍ବପକ୍ଷ ଦ୍ୱାରା ପରିକଳ୍ପିତ ପ୍ରଧାନର ଏଠାରେ କୌଣସି ଅବକାଶ ନାହିଁ ବୋଲି ସିଦ୍ଧ ହୁଏ ।

## सूक्ष्मं तु तदर्हत्वात् ॥ २ ॥

## (୧) ସୂକ୍ଷ୍ମଂ ତୁ ତଦର୍ହତ୍ୱାତ୍ ॥ ୧-୪-୨

ସୂକ୍ଷ୍ମମ୍-ସ୍ଥାନଶରୀରର ଆରମ୍ଭକ ସୂକ୍ଷ୍ମଭୂତ (ସୂକ୍ଷ୍ମଶରୀର)ର ଅବ୍ୟକ୍ତଶବ୍ଦରେ ଗ୍ରହଣ ହୁଏ । ତଦର୍ହତ୍ୱାତ୍-କାରଣ-ସେମାନେ ଅବ୍ୟକ୍ତ ଶବ୍ଦର ଯୋଗ୍ୟ ଅଟନ୍ତି । ତୁ-ଶବ୍ଦ-ଶଙ୍କା ନିବୃତ୍ତି ନିମିତ୍ତ ଅଟେ ।

(୨) ମୂଳ-(କ) ଉକ୍ତମେତତପ୍ର କରଣପରିଶେଷାଭ୍ୟାଂ ଶରୀରମବ୍ୟକ୍ତଶବ୍ଦଂ ନ ପ୍ରଧାନମିତି । ଇଦମିଦାନୀମାଶଙ୍କ୍ୟତେ-କଥମବ୍ୟକ୍ତଶବ୍ଦାର୍ହତ୍ୱଂ ଶରୀରସ୍ୟ । ଯାବତା ସ୍ଥୁଳତ୍ୱାତ୍ ସୂକ୍ଷ୍ମତରମିଦଂ ଶରୀରଂ ବ୍ୟକ୍ତଶବ୍ଦାର୍ହମସୂକ୍ଷ୍ମବଚନ ସ୍ତ୍ୱବ୍ୟକ୍ତଶବ୍ଦ ଇତି । (ଖ) ଅତ ଉତ୍ତରମୁଚ୍ୟତେ-ସୂକ୍ଷ୍ମଂ ତ୍ୱିହ କାରଣାତ୍ମନା ଶରୀରଂ ବିବକ୍ଷ୍ୟତେ, ସୂକ୍ଷ୍ମସ୍ୟାବ୍ୟକ୍ତଶବ୍ଦାର୍ହତ୍ୱାତ୍ ।



ଯଦ୍ୟପି ସ୍ଥୁଳମିଦଂ ଶରୀରଂ ନ ସ୍ୱୟମବ୍ୟକ୍ତଶବ୍ଦମର୍ହତି ତଥାପି ତସ୍ୟ ତ୍ୱାରମ୍ଭକଂ ଭୂତସୂକ୍ଷ୍ମମବ୍ୟକ୍ତ ଶବ୍ଦମର୍ହତି ତଥାପି ତସ୍ୟ ତ୍ୱାରମ୍ଭକଂ ଭୂତସୂକ୍ଷ୍ମବ୍ୟକ୍ତ ଶବ୍ଦମର୍ହତି ତଥାପି ତସ୍ୟତ୍ୱାରମ୍ଭକଂ ଭୂତସୂକ୍ଷ୍ମମବ୍ୟକ୍ତ ଶବ୍ଦ ମର୍ହତି । (ଗ) ପ୍ରକୃତିଶବ୍ଦଶ୍ଚ ବିକାରେ ଦୃଷ୍ଟଃ । ଯଥା 'ଗୋଭିଃ ଶ୍ରୀଣୀତ ମତ୍ସରମ୍' (ର. ସଂ ୯-୪୬-୪) ଇତି । ଶ୍ରୁତିଶ୍ଚ 'ତଦ୍‌ବେଦଂ ତର୍ହ୍ୟବ୍ୟାକୃତମାସୀତ୍‌', (ବୃ ୧-୪-୭) ଇତୀଦମେବ ବ୍ୟାକୃତନାମରୂପବିଭିନ୍ନଂ ଜଗତ୍‌ପ୍ରାଗବସ୍ଥାୟାଂ ପରିତ୍ୟକ୍ତବ୍ୟ-କୃତନାମରୂପଂ ବୀଜଶକ୍ତ୍ୟବସ୍ଥମବ୍ୟକ୍ତ ଶବ୍ଦଯୋଗ୍ୟଂ ଦର୍ଶୟତି ।

**(୨) ଭାଷାଂତର**-(କ) ପ୍ରକରଣ ଓ ପରିଶେଷରେ କୁହାଯାଇଛି-ଶରୀର ଅବ୍ୟକ୍ତ ଶବ୍ଦବାଚ୍ୟ, ପ୍ରଧାନ ନୁହେଁ । ଏଠାରେ ଶଙ୍କା ହୁଏ ଯେ-ଯେତେବେଳେ ସ୍ଥୁଳ ହେବାରୁ ଏହି ଶରୀର ଅତି ସୂକ୍ଷ୍ମ ରୂପରେ ବ୍ୟକ୍ତଶବ୍ଦର ଯୋଗ୍ୟରୂପେ ପ୍ରତୀତ ହୁଏ । କିନ୍ତୁ ସେ ଶରୀର ଅବ୍ୟକ୍ତଶବ୍ଦର ଯୋଗ୍ୟ କିପରି ହୁଏ ? ଅବ୍ୟକ୍ତଶବ୍ଦ କିନ୍ତୁ ଅସ୍ପଷ୍ଟବାଚକ ଅଟେ ।

(ଖ) ସିଦ୍ଧାନ୍ତ-ଉତ୍ତରରେ କୁହାଯାଇଛି ଯେ- ଏଠାରେ ଅବ୍ୟକ୍ତଶବ୍ଦଦ୍ୱାରା କାରଣରୂପ ହେଲେ ସୂକ୍ଷ୍ମ ଶରୀର ବିବକ୍ଷିତ ହୁଏ । କାରଣ-ସୂକ୍ଷ୍ମ ଅବ୍ୟକ୍ତଶବ୍ଦର ଯୋଗ୍ୟ ଅଟେ । ଯଦ୍ୟପି ଏହି ସ୍ଥୁଳଶରୀର ସ୍ୱୟଂ ଅବ୍ୟକ୍ତଶବ୍ଦର ଯୋଗ୍ୟ ନୁହେଁ, ତଥାପି ତାହାର ଆରମ୍ଭକ (ଆକାଶାଦି) ସୂକ୍ଷ୍ମଭୂତ ଅବ୍ୟକ୍ତ ଶବ୍ଦର ଯୋଗ୍ୟ ଅଟେ ।

(ଗ) ପ୍ରକୃତଶବ୍ଦ ବିକାରାର୍ଥରେ ପ୍ରଯୁକ୍ତ ହୋଇ ଦେଖାଯାଏ । ଯେପରି 'ଗାଈର ବିକାର ଦୁଧ ସହ ସୋମରସରେ ମିଶ୍ରଣ କରିବା ଉଚିତ୍ ।' କିନ୍ତୁ ଏହିପ୍ରକାର ଏଠାରେ ଶ୍ରୁତି ମଧ୍ୟ 'ତେବେ ପ୍ରାଗବସ୍ଥାରେ ଏହି ଜଗତ୍ ଅବ୍ୟାକୃତ ଅବ୍ୟକ୍ତ ଥିଲା', ଏପରି ଏଠାରେ ପରୋକ୍ଷାତ୍ମକ ବ୍ୟାକୃତ ଭିନ୍ନ ଭିନ୍ନ ରୂପଧାରୀ ଜଗତ୍ ମଧ୍ୟ ଯାହାକି ସୃଷ୍ଟିର ପୂର୍ବରୁ ନିଜେ ବ୍ୟାକୃତ ନାମରୂପକୁ, ପରିତ୍ୟାଗ କରି ବୀଜଶକ୍ତିରୂପ (ସଂସ୍କାରରୂପ) ଦ୍ୱାରା ଅବସ୍ଥିତ ରହେ । ତାହାକୁ ଏଠାରେ ଶ୍ରୁତି ଅବ୍ୟକ୍ତଶବ୍ଦର ଅନୁରୂପ ଦେଖାଏ ।

## तदधीनत्वादर्थवत् ॥ ३ ॥

## (୧) ତଦଧୀନତ୍ୱାଦର୍ଥବତ୍ ॥୧-୪-୩

ତଦଧୀନତ୍ୱାତ୍-ଅବ୍ୟକତ ଈଶ୍ୱରର ଅଧୀନ ହେଲେ ମଧ୍ୟ ସ୍ୱତନ୍ତ୍ର ନୁହେଁ । ଅର୍ଥବତ୍- ସଂସାରର ଉତ୍ପତ୍ତିରେ ଈଶ୍ୱରର ସହାୟକ ହେଲେ ସାର୍ଥକ ହୁଏ ।

(୨) ମୂଳ-(କ) ଅତ୍ରାହ-ଯଦି ଜଗଦିଦମନଭିବ୍ୟକ୍ତନାମରୂପଂ ବୀଜାତ୍ମକଂ ପ୍ରାଗବସ୍ଥମବ୍ୟକ୍ତଶବ୍ଦାର୍ହମଭ୍ୟୁପଗମ୍ୟେତ, ତଦାତ୍ମନା ଚ ଶରୀରସ୍ୟାପ୍ୟ-ବ୍ୟକ୍ତଶବ୍ଦାର୍ହତ୍ୱଂ

ପ୍ରତିଜ୍ଞାୟେତ ସ ଏବ ତର୍ହି ପ୍ରଧାନକାରଣବାଦଂ ଏବ ସତ୍ୟାପଦ୍ୟେତ । (ଖ) ଅସ୍ୟୈବ ଜଗତଃ ପ୍ରାଗବସ୍ଥାୟାଃ ପ୍ରଧାନତ୍ୱେ ନାଭ୍ୟୁପଗମାଦିତି ।

**(୨) ଭାଷାଂତର**-(କ) ପୂର୍ବପକ୍ଷ-ଅନଭିବ୍ୟକ୍ତ ନାମରୂପଧାରୀ ପୂର୍ବବସ୍ଥାରେ ରହିଥିବା ବୀଜାତ୍ମକ ଏହି ଜଗତ୍ ଯଦି ଅବ୍ୟକତ୍ ଶବ୍ଦର ଯୋଗ୍ୟ ବୋଲି ସ୍ୱୀକାର କରାଯାଏ ଓ ସେହି ରୂପରେ ଶରୀରରେ ଅବ୍ୟକ୍ତ ଶବ୍ଦର ପ୍ରଯୁକ୍ତିର ପ୍ରତିଜ୍ଞା ହୋଇପାରେ, ତେବେ ସେହି ପ୍ରଧାନକାରଣବାଦର ପ୍ରସକ୍ତି ହେବ ।

(ଖ) କାରଣ-ସାଂଖ୍ୟବାଦୀ ଜଗତର ପ୍ରାଗବସ୍ଥା (କାରଣାବସ୍ଥା)କୁ ପ୍ରଧାନରୂପରେ ସ୍ୱୀକାର କରନ୍ତି ।

(୩) ମୂଳ-(କ) ଅତ୍ରୋଚ୍ୟତେ-ଯଦି ବୟଂ ସ୍ୱତନ୍ତ୍ରାଂ କାଂଚିତ୍ ପ୍ରାଗବସ୍ଥାଂ ଜଗତଃ କାରଣତ୍ୱେନାଭ୍ୟୁପଗଚ୍ଛେମ, ପ୍ରସଂଜୟେମ ତଦା ପ୍ରଧାନକାରଣବାଦମ୍ । (ଖ) ପରମେଶ୍ୱରାଧୀନା ତ୍ୱିୟମସ୍ମାଭିଃ ପ୍ରାଗବସ୍ଥା ଜଗତୋଽଭ୍ୟୁପଗମ୍ୟେତ, ନ ସ୍ୱତନ୍ତ୍ରା । ସା ଚାବଶ୍ୟାଭ୍ୟୁପଗନ୍ତବ୍ୟା । (ଗ) ଅର୍ଥବତୀ ହି ସା । ନହି ତୟା ବିନା ପରମେଶ୍ୱରସ୍ୟା ସ୍ରଷ୍ଟୃତ୍ୱଂ ସିଦ୍ଧ୍ୟତି । ଶକ୍ତିରହିତସ୍ୟ ତସ୍ୟ ପ୍ରବୃତ୍ତ୍ୟନୁପପତ୍ତେଃ । ମୁକ୍ତାନାଂ ଚ ପୁନରନୁତ୍ପତ୍ତିଃ । (ଘ) କୁତଃ ? ବିଦ୍ୟୟା ତସ୍ୟା ବୀଜଶକ୍ତେର୍ଦାହାତ୍ । ଅବିଦ୍ୟାତ୍ମିକା ହି ବୀଜଶକ୍ତିରବ୍ୟକ୍ତଶବ୍ଦନିର୍ଦ୍ଦେଶ୍ୟା ପରମେଶ୍ୱରାଶ୍ରୟା ମାୟାମୟୀ ମହାସୁଷୁପ୍ତିଃ ଯସ୍ୟାଂ ସ୍ୱରୂପ ପ୍ରତିବୋଧ ରହିତାଃ ଶେରତେ ସଂସାରିଣୋ ଜୀବାଃ । (ଙ) ତଦେତଦବ୍ୟକ୍ତଂ କ୍ୱଚିଦାକାଶଶବ୍ଦନିର୍ଦ୍ଦିଷ୍ଟମ୍-'ଏତସ୍ମିନ୍ନୁ ଖଲ୍ୱକ୍ଷରେ ଗାର୍ଗ୍ୟାକାଶ ଓତଶ୍ଚ ପ୍ରୋତଶ୍ଚ', (ବୃ ୧-୮-୧୧) ଇତି ଶ୍ରୁତେଃ । କ୍ୱଚିଦକ୍ଷର ଶବ୍ଦୋଦିତମ୍ 'ଅକ୍ଷରାତ୍ ପରତଃ ପରଃ' (ମୁ ୨-୧-୨) ଇତି ଶ୍ରୁତେଃ । କ୍ୱଚିନ୍ମାୟେତି ସୂଚିତମ୍ । 'ମାୟା ତୁ ପ୍ରକୃତିଂ ବିଦ୍ୟାନ୍ ମାୟିନଂ ତୁ ମହେଶ୍ୱରମ୍', (ଶ୍ୱେ ୪-୧୦) ଇତି ମନ୍ତ୍ରବର୍ଣ୍ଣାତ୍ ।

**(୩) ଭାଷାଂତର**-(କ) ସିଦ୍ଧାନ୍ତ-ଯଦି ଆମ୍ଭେମାନେ ସଂସାରର କାରଣ ରୂପରେ କୌଣସି ଏକ ସ୍ୱତନ୍ତ୍ରା ପ୍ରାଗବସ୍ଥାକୁ ଗ୍ରହଣ କରିବା ତେବେ ଆମ୍ଭେ ପ୍ରଧାନ କାରଣ ବାଦର ଅନୁଯାୟୀ ସମର୍ଥ ହେବା ।

(ଖ) ପରନ୍ତୁ ଆମ୍ଭେ ଜଗତର ଏହି ପ୍ରାଗବସ୍ଥା (କାରଣାବସ୍ଥା)କୁ ପରମେଶ୍ୱରର ଅଧୀନକୁ ସ୍ୱୀକାର କରୁ, କିନ୍ତୁ ସ୍ୱତନ୍ତ୍ରକୁ ନୁହେଁ । ତାହା ଅବଶ୍ୟ ସ୍ୱୀକାର କରିବା ଆବଶ୍ୟକ ।



(ଗ) ସେ ପ୍ରୟୋଜନ ଯୁକ୍ତିଯୁକ୍ତ ଅଟେ । 'ତାହା ବିନା ନିର୍ଗୁଣ ନିଷ୍କ୍ରିୟ ପରମେଶ୍ୱର ସ୍ରଷ୍ଟା ବୋଲି ସିଦ୍ଧ ହୋଇପାରେ ନାହିଁ ।

(ଘ) କାରଣ-ଶକ୍ତିରହିତ ପରମେଶ୍ୱରଠାରେ ପ୍ରବୃତ୍ତି ଉତ୍ପନ୍ନ ହୋଇପାରେ ନାହିଁ । ମୁକ୍ତ ପୁରୁଷର ବନ୍ଧ ପୁନର୍ବାର ଉତ୍ପତ୍ତି ହୁଏ ନାହିଁ । କାରଣ-ବିଦ୍ୟାଠାରୁ ସେହି ବୀଜଶକ୍ତିର ନାଶ (ବାଧ) ହୁଏ । ଅବିଦ୍ୟାତ୍ମକ ଏହି ବୀଜଶକ୍ତି ଅବ୍ୟକ୍ତଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ ହୁଏ । ପରମେଶ୍ୱରର ଆଶ୍ରିତ ମାୟାମୟି ଓ ମହାସୁଷୁପ୍ତି ଅଟେ । ଯେଉଁଠିକି ସ୍ୱରୂପଜ୍ଞାନରହିତ ସଂସାରୀଜୀବ ଶୟନ କରେ,

(ଙ) ସେହି ଅବ୍ୟକ୍ତ କୌଣସିଠାରେ 'ହେ ଗାର୍ଗି, ଅହି ଅକ୍ଷରରେ ଆକାଶ ଓତପ୍ରୋତ ଅଟେ', ଏହି ଶ୍ରୁତିରେ ଆକାଶଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ ହୁଏ ଏବଂ କାହା ଉପରେ 'ଅକ୍ଷରଠାରୁ ସର୍ବଶ୍ରେଷ୍ଠ ଉତ୍କୃଷ୍ଟ ଅଟେ', ଏହି ବେଦବାକ୍ୟରେ ଅକ୍ଷରଶବ୍ଦରୁ ବର୍ଣ୍ଣିତ କୌଣସି ସ୍ଥାନରେ ମଧ୍ୟ 'ପ୍ରକୃତିକୁ ମାୟା ବୋଲି ଜାଣ ଓ ମହେଶ୍ୱରକୁ ମାୟାବୀ ବୋଲି ଜାଣ', ଏହି ମନ୍ତ୍ରରେ ମାୟାଶବ୍ଦ ଦ୍ୱାରା ସୂଚିତ ହୁଏ ।

(୪) ମୂଳ-(କ) ଅବ୍ୟକ୍ତା ହି ସା ମାୟା, ତତ୍ତ୍ୱାନ୍ୟତ୍ୱନିରୂପଣସ୍ୟା ଶକ୍ୟତ୍ୱତ୍ । 'ମହତଃ ପରମବ୍ୟକ୍ତମ୍', ଇତ୍ୟୁକ୍ତମ୍, ଅବାକ୍ତପ୍ରବତ୍ୱାନ୍ ମହତଃ, ଯଦା ହିରଣ୍ୟଗର୍ଭୀ ବୁଦ୍ଧିର୍ମହାନ୍' । ଯଦା ତୁ ଜୀବୋ ମହାନ୍ ତଦାପ୍ୟ ବ୍ୟକ୍ତା ଧୀନତ୍ୱାଜ୍ଜୀବଭାବସ୍ୟ, 'ମହତଃ ପରମବ୍ୟକ୍ତମ୍', ଇତ୍ୟୁକ୍ତମ୍ । (ଖ) ଅବିଦ୍ୟା ହ୍ୟବ୍ୟକ୍ତମ୍ । ଅବିଦ୍ୟାବତ୍ତ୍ୱେନୈବ ଜୀବସ୍ୟ ସର୍ବଃ ସଂବ୍ୟବହାରଃ ସନ୍ତତୋ ବର୍ତ୍ତତେ । ତଚ୍ଚାବ୍ୟକ୍ତଗତଂ ମହତଃ ପରତ୍ୱମଭେଦୋ-ପଚାରାଉଦ୍‌ବିକାରେ ଶରୀରେ ପରିକଳ୍ପ୍ୟତେ । (ଗ) ସତ୍ୟପି ଶରୀରବଦିନ୍ଦ୍ରିୟାଦୀନାଂ ତଦ୍‌ବିକାରତ୍ୱା ବିଶେଷ ଶରୀସୈ୍ୟବାଭେଦୋପଚାରାଦବ୍ୟକ୍ତଶବ୍ଦେନ ଗ୍ରହଣମ୍ । ଇନ୍ଦ୍ରିୟାଦୀନାଂ ସ୍ୱଶବ୍ଦୈରେବ ଗୃହୀତତ୍ୱାତ୍ ପରିଶିଷ୍ଟତ୍ୱାଚ୍ଚ ଶରୀରସ୍ୟ ।

(୪) ଭାଷାଂତର-(କ) 'ସେ ମାୟା ଅବ୍ୟକ୍ତ ଅଟେ ।' କାରଣ - ସେ ସଦ୍ରୂପ ବ୍ରହ୍ମଠାରୁ ଅଭିନ୍ନ ଅଥବା ଭିନ୍ନ' ଏହିପ୍ରକାର ତାହାର ନିରୂପଣ କରାଯାଇନାହିଁ । ଯଦି ମହତ୍ତ୍ୱର ଅର୍ଥ ହିରଣ୍ୟଗର୍ଭର ବୁଦ୍ଧି ହୁଏ, ତେବେ ଅବ୍ୟକ୍ତଠାରୁ ମହତ୍ ଉତ୍ପନ୍ନ ହେବ । ତେଣୁ 'ମହତଃ ପରମବ୍ୟକ୍ତମ' ଏହା ଉପରେ ସେହି ପୂର୍ବାବସ୍ଥା କୁହାଯାଇଛି । ଯଦି ମହତର ଅର୍ଥ ଜୀବ ହୋଇପାରେ କିନ୍ତୁ ଜୀବଭାବ ଅବ୍ୟକ୍ତର ଅଧୀନ ହେଲେ ମହତଠାରୁ ଅବ୍ୟକ୍ତ ଶ୍ରେଷ୍ଠ ହୁଏ । ଅର୍ଥାତ୍ ଅବ୍ୟକ୍ତଠାରେ ଜୀବଠାରୁ ପରତ୍ୱ କଥନ ଠିକ୍ ଅଟେ ।

(ଖ) ନିଶ୍ଚିତ ଭାବରେ ଅବିଦ୍ୟା ଅବ୍ୟକ୍ତ ଅଟେ । ଅବିଦ୍ୟାପାଧି ଯୁକ୍ତ ହେଲେ ଜୀବର ସର୍ବଦା ସବୁ ପ୍ରକାରର ବ୍ୟବହାର ରହେ । ଅବ୍ୟକ୍ତରେ ଯାହା ମହତ୍ତ୍ୱଠାରୁ ପରତ୍ୱ (ଶ୍ରେଷ୍ଠତ୍ୱ) ଅଛି; ତାହାର ଅଭେଦୋପାଧିଦ୍ୱାରା ତାହାର ବିକାର ଶରୀରରେ କଳ୍ପନା ହୁଏ ।

(ଗ) ଯଦ୍ୟପି ଶରୀର ସଦୃଶ ଇନ୍ଦ୍ରିୟାଦିରେ (ଅବ୍ୟକ୍ତ) ବିକାରତ୍ୱ ସମାନ ଅଟେ, କିନ୍ତୁ ଅଭେଦୋପଚାରଠାରୁ ଅବ୍ୟକ୍ତ ଶବ୍ଦଦ୍ୱାରା ଶରୀର ଗ୍ରହଣ ହୁଏ । କାରଣ- ଇନ୍ଦ୍ରିୟାଦିର ସ୍ୱବାଚକଶବ୍ଦଦ୍ୱାରା ଗ୍ରହଣ କରାଯାଏ । କେବଳ ଶରୀର ହିଁ ଅବଶିଷ୍ଟ ରହେ । ତେଣୁ ତାହାର ଅବ୍ୟକ୍ତ ଶବ୍ଦର ଗ୍ରହଣ ହୁଏ ।

(୫) ମୂଳ-(କ) ଅନ୍ୟେ ତୁ ବର୍ଣ୍ଣୟନ୍ତି-ଦ୍ୱିବିଧଂ ହି ଶରୀରଂ ସୂକ୍ଷ୍ମଂ, ସ୍ଥୁଳଞ୍ଚ । ସ୍ଥୁଳଂ ଯଦି ଦମୁପଲ୍ୟଭ୍ୟତେ । ସୂକ୍ଷ୍ମଂ ଯଦୁତ୍ତରତ୍ର ବକ୍ଷ୍ୟତେ-'ତଦନ୍ତରପ୍ରତିପତ୍ତୌ ରଂହତି ସଂପରିଷ୍ୱକ୍ତଃ ପ୍ରଶ୍ନନିରୂପଣାଭ୍ୟାମ୍', (ବୃ ୩-୧-୧) ଇତି । (ଖ) ତଚ୍ଚୋଭୟମପି ଶରୀରବିଶେଷାତ୍ ପୂର୍ବତ୍ର ରଥତ୍ୱେନ ସଂକୀର୍ତ୍ତିତମ୍ । ଇହ ତୁ ସୂକ୍ଷ୍ମମବ୍ୟକ୍ତଶବ୍ଦେନ ପରିଗୃହ୍ୟତେ, ସୂକ୍ଷ୍ମସ୍ୟା ବ୍ୟକ୍ତଶବ୍ଦାର୍ହତ୍ୱାତ । (ଗ) ତଦଧୀନତ୍ୱାଚ୍ଚ ବନ୍ଧମୋକ୍ଷବ୍ୟବହାରସ୍ୟ ଜୀବାତ୍ତସ୍ୟ ପରତ୍ୱମ୍ । ଯଥାଥାଧୀନତ୍ୱାଦିନ୍ଦ୍ରିୟବ୍ୟାପାର ସେନ୍ଦ୍ରିୟେଭ୍ୟଃ ପରତ୍ୱମର୍ଥାନାମିତି ।

**(୫) ଭାଷାଂତର**-(କ) କେତେକ ଆଚାର୍ଯ୍ୟ କହନ୍ତି ଯେ-ଶରୀର ଦୁଇପ୍ରକାର । ସ୍ଥୁଳ ଓ ସୂକ୍ଷ୍ମ । ଚକ୍ଷୁଦ୍ୱାରା ଯାହା ଉପଲବ୍ଧ କରାଯାଏ, ସେ ସ୍ଥୁଳ । ଯାହା ସୂକ୍ଷ୍ମ, ତାହା 'ତଦନନ୍ତରପ୍ରତିପତ୍ତେ', ସୂତ୍ରରେ କହିବୁ ।

(ଖ) ଏହି ଦୁଇଟି ଶରୀର ସମାନରୂପରେ ପୂର୍ବବାକ୍ୟ (ଆତ୍ମାନଂ ରଥିନଂ ବିଦ୍ଧି, ଶରୀରଂ ରଥମେବ ତୁ')ରେ ରଥରୂପରେ କୁହାଯାଇଛି । 'ଇନ୍ଦ୍ରିୟେଭ୍ୟଃ ପାରାଃ ହ୍ୟର୍ଥାଃ' ଏହି ଉତ୍ତର ବାକ୍ୟର ଅବ୍ୟକ୍ତ ଶବ୍ଦଦ୍ୱାରା କେବଳ ସୂକ୍ଷ୍ମ ଶରୀରର ଗ୍ରହଣ କରାଯାଏ । କାରଣ-ସୂକ୍ଷ୍ମ ଅବ୍ୟକ୍ତ ଶବ୍ଦର ଯୋଗ୍ୟ ।

(ଗ) ଯେପରି ଇନ୍ଦ୍ରିୟଗୁଡ଼ିକର ବ୍ୟାପାର ଅର୍ଥଶବ୍ଦାଦି ବିଷୟ ଗୁଡ଼ିକର ଅଧୀନ ହେବାରୁ ଅର୍ଥରେ ଇନ୍ଦ୍ରିୟ ଶ୍ରେଷ୍ଠତ୍ୱ, ସେହିପରି ବନ୍ଧ ଓ ମୋକ୍ଷ ବ୍ୟବହାର ସୂକ୍ଷ୍ମଶରୀରର ଅଧୀନ ହେଲେ ସେଠାରେ ଜୀବଠାରୁ ସେ ଶ୍ରେଷ୍ଠତ୍ୱ ହୁଏ ।

(୬) ମୂଳ-(କ) ତୈସ୍ୱେତଦ୍‌ବକ୍ତ୍ୟବମ୍-ଅବିଶେଷେଣ ଶରୀରଦ୍ୱୟସ୍ୟ ପୂର୍ବତ୍ର ରଥତ୍ୱେତ ସଂକୀର୍ତ୍ତିତ୍ୱାତ୍ ସମାନୟୋଃ ପ୍ରକୃତତ୍ୱପରିଶିଷ୍ଟତ୍ୱୟୋଃ କଥଂ ସୂକ୍ଷ୍ମମେବ ଶରୀରମିହ ଗୃହ୍ୟତେ, ନ ପୁନଃ ସ୍ଥୁଳମପୀତି । ଆମ୍ନାତସ୍ୟାର୍ଥଂ ପ୍ରତିପତ୍ତୁଂ ପ୍ରଭବାମଃ, ନାମ୍ନାତଂ

ପର୍ଯ୍ୟନୁଯୋକ୍ତୁମ୍ । (ଖ) ଆମ୍ନାତଂ ଝବ୍ୟକ୍ତପଦଂ ସୂକ୍ଷ୍ମମେବ ପ୍ରତିପାଦୟିତୁଂ ଶକ୍ନୋତି, ନେତରତ୍ । ଅବ୍ୟକ୍ତତ୍ୱାତସ୍ୟେତି ଚେତ୍ୱନ, ଏକବାକ୍ୟତାଧୀନତ୍ୱାଦର୍ଥପ୍ରତିପତ୍ତେଃ । ନ ହୀମେ ପୂର୍ବୋତ୍ତରେ ଆମ୍ନାତେ ଏକବାକ୍ୟତାମନାପଦ୍ୟ କିଞ୍ଚିଦର୍ଥଂ ପ୍ରତିପାଦୟତଃ ପ୍ରକୃତହାନା ପ୍ରକୃତପ୍ରକ୍ରିୟା-ପ୍ରସଙ୍ଗାତ୍ । (ଗ) ନ ଝକାଙ୍‌କ୍ଷାମନ୍ତରେଣୈକବାକ୍ୟତା ପ୍ରତିପତ୍ତିରସ୍ତି । ତତ୍ରାବିଶିଷ୍ଟାୟାଂ ଶରୀରଦ୍ୱୟସ୍ୟ ଗ୍ରାହ୍ୟତ୍ୱାକାଙ୍‌କ୍ଷାଂ ଯଥାକାଙ୍‌କ୍ଷାଂ ସମ୍ବନ୍ଧେଽନଭ୍ୟୁ-ପଗମ୍ୟମାନ ଏକବାକ୍ୟତୈବ ବାଧିତା ଭବତି, କୁତ ଆମ୍ନାତସ୍ୟାର୍ଥପ୍ରତିପତ୍ତିଃ ?

(୬) ସିଦ୍ଧାନ୍ତ-(କ) (ବୃତ୍ତିକାର ମତରେ ନିରାକରଣ କରାଯାଇଛି) ପରନ୍ତୁ ସେମାନେ କହନ୍ତି ଯେ- ପୂର୍ବ ବାକ୍ୟରେ ରଥରୂପରେ ଶରୀର ଦ୍ୱୟର ସମାନ ରୂପରେ କହିବାରୁ ଶରୀରରେ ପ୍ରକୃତତ୍ୱ ପରିଶିଷ୍ଟତ୍ୱ ସମାନ ଅଟେ; କିନ୍ତୁ ଏଠାରେ ଅବ୍ୟକ୍ତ ଶବ୍ଦଦ୍ୱାରା କେବଳ ସୂକ୍ଷ୍ମ ଶରୀରର ଗ୍ରହଣ କରାଯାଏ, କି ସ୍ଥୂଳଶରୀରର ? ଆମ୍ଭେ ବେଦର ଅର୍ଥ ଜାଣିବା ଓ ଗ୍ରହଣ କରିବାରେ ସମର୍ଥ । ପରନ୍ତୁ ବେଦ ଉପରେ ଏହା କରିହୁଏ ନାହିଁ ।

(ଖ) ବେଦୋକ୍ତ ଅବ୍ୟକ୍ତ ଶବ୍ଦ ସୂକ୍ଷ୍ମର ପ୍ରତିପାଦନ କରିପାରେ । କିନ୍ତୁ ସ୍ଥୂଳର ନୁହେଁ । କାରଣ-ସେ ବ୍ୟକ୍ତ ଅଟେ-ଏହା ଯଦି କୁହାଯାଏ, ତେବେ ମଧ ଏହା ଠିକ୍ ନୁହେଁ । କାରଣ-ଅର୍ଥ ଜ୍ଞାନ ଏକବାକ୍ୟତାର ଅଧୀନ ଅଟେ । ଏହି ପୂର୍ବ ଓ ଉତ୍ତର ଶ୍ରୁତିବାକ୍ୟ ଏକବାକ୍ୟତା ନପାଇ କୌଣସି ଅର୍ଥର ପ୍ରତିପାଦନ କରିପାରେ ନାହିଁ । ଅନ୍ୟଥା ପ୍ରକୃତିର ହାନି ଓ ଅପ୍ରକୃତପ୍ରକ୍ରିୟାର ପ୍ରସଙ୍ଗ ହେବ । ଅର୍ଥାତ୍ 'ଅବ୍ୟକ୍ତ ଶବ୍ଦରେ ସ୍ଥୂଳଶରୀର ଗ୍ରହଣ ନକରିବା ଅପ୍ରକୃତ ସୂକ୍ଷ୍ମ ଶରୀରରେ ଗ୍ରହଣ କରିବା'- ଏହି ପ୍ରକୃତହାନି, ଅପ୍ରକୃତ ପ୍ରକ୍ରିୟା ରୂପଦୋଷ ପ୍ରସକ୍ତ ହେବ ।

(ଗ) ଆକାଙ୍‌କ୍ଷା ବିନା ଏକବାକ୍ୟତାର ବୋଧ ହୁଏ ନାହିଁ । ସେହି ପୂର୍ବୋତ୍ତର ବାକ୍ୟଗୁଡ଼ିକରେ ଶରୀର ଦୁଇଟିର ଗ୍ରାହ୍ୟତ୍ୱାକାଙ୍‌କ୍ଷା ସମାନ ହେବାରୁ ଆକାଙ୍‌କ୍ଷାନୁସାରେ ସମ୍ବନ୍ଧ ସ୍ୱୀକାର କରାଯାଏ ନାହିଁ । ତେଣୁ, ଏକବାକ୍ୟତା ବାଧିତ ହେବ । କିନ୍ତୁ ଶ୍ରୁତ୍ୟର୍ଥର ବୋଧ କିପରି ହେବ ?

(୭) ମୂଳ-(କ) ନ ଚୈବଂ ମନ୍ତବ୍ୟମ୍-'ଦୁଃଶୋଧତ୍ୱାତ୍‌ସୂକ୍ଷ୍ମସ୍ୟୈବ ଶରୀରସ୍ୟେହ ଗ୍ରହଣଂ ସ୍ଥୂଳସ୍ୟ ତୁ ଦୃଷ୍ଟବିଭସତୟା ସୁଶୋଧିତ୍ୱାଦଗ୍ରହଣମିତି । ଯତୋ ନୈବେହ ଶୋଧନଂ

କସ୍ୟଚିଦ୍ ବିବକ୍ଷ୍ୟତେ । ନହ୍ୟତ୍ର ଶୋଧନବିଧାୟି କିଞ୍ଚଦାଖ୍ୟାତମସ୍ତି । (ଖ) ଅନନ୍ତରଂ ନିର୍ଦ୍ଦିଷ୍ଟତ୍ୱାତ୍ତୁ କିଂ ତଦ୍‌ବିଷ୍ଣୋଃ ପରମଂ ପଦମିତୀଦମିହ ବିବକ୍ଷ୍ୟତେ । ତଥାହୀଦମସ୍ମାତ୍ ପରମିଦମସ୍ମାତ୍ ପରମିତ୍ୟୁକ୍ତ୍ୱା 'ପୁରୁଷାନ୍ନପରଂ କିଞ୍ଚିତ୍', ଇତ୍ୟାହ । (ଗ) ସର୍ବଥାପି ତ୍ୱାନୁମାନିକନିରା କରଣୋ-ପପଦ୍ୟେସ୍ତଥା ନାମାସ୍ତୁ । ନ ନଃ କିଞ୍ଚିଚ୍ଛିଦ୍ୟତେ ।

**(୭) ଭାଷାଂତର-(କ)** ଏହିପ୍ରକାର ସ୍ୱୀକାର କରିବା ଉଚିତ୍ ନୁହେଁ ଯେ- ଅନାତ୍ମତ୍ୱ-ନିଶ୍ଚୟରୂପ ଶୋଧନ ଦୁଷ୍କର ହେବାରୁ ସୂକ୍ଷ୍ମ ଶରୀରର ଏଠାରେ ଗ୍ରହଣ ହୁଏ । ନାନା ଦୋଷଦ୍ୱାରା ଦୂଷିତ ପ୍ରତ୍ୟକ୍ଷ ଘୃଣାର ବିଷୟ ହେଲେ ଅନାତ୍ମନିଶ୍ଚୟରୂପ ଶୋଧନ ସୁକର ହେବାରୁ ସ୍ଥୁଳଶରୀରର ଗ୍ରହଣ ହୁଏ ନାହିଁ । କାରଣ-ଏହି ପ୍ରକରଣରେ କାହାର ଶୋଧନ ବିବକ୍ଷିତ ନୁହେଁ ଓ ଏଠାରେ ଶୋଧନର ବିଧାନ କରିବା ପାଇଁ କୌଣସି କ୍ରିୟାପଦ ନାହିଁ ।

(ଖ) ତେବେ ବିଷ୍ଣୁର ପରମପଦ କ'ଣ ? 'ଆତ୍ମାନଂ ରଥିନଂ ବିଦ୍ଧି', ଏହି ବାକ୍ୟର ପରବର୍ତ୍ତୀପଦ ନିର୍ଦ୍ଦିଷ୍ଟ ହେଲେ ସେହି ଏଠାରେ ବିବକ୍ଷିତ ହୁଏ । କାରଣ- 'ଏହା ଏହିଠାରୁ ଶ୍ରେଷ୍ଠ ଅଟେ', 'ଏହା ଏହାଠାରୁ ଶ୍ରେଷ୍ଠ ଅଟେ', ଅର୍ଥାତ୍ ଇନ୍ଦ୍ରିୟଠାରୁ ବିଷୟ ଶ୍ରେଷ୍ଠ ଅଟେ, ବିଷୟଠାରୁ ମନ ଶ୍ରେଷ୍ଠ ଅଟେ', ଏହି ପ୍ରକାର କହି 'ପୁରୁଷଠାରୁ କିଛି ଶ୍ରେଷ୍ଠ ନାହିଁ' ଏହିପ୍ରକାର ଶ୍ରୁତି କହେ ।

(ଗ) ସବୁ ପ୍ରକାରର ଅନୁମାନନିରୂପିତ ପ୍ରଧାନର ନିରାକରଣ ଉପପନ୍ନ ହୁଏ । ଏହାହିଁ ଉତ୍ତମ । ଏହାଦ୍ୱାରା ଆମ୍ଭର କିଛି ହାନି ନୁହେଁ ।

## ज्ञेयत्वावचनाच्च ॥ ४ ॥

## (୧) ଜ୍ଞେୟତ୍ୱାବଚନାଚ୍ଚ ॥ ୧।୪।୪ ॥

ଜ୍ଞେୟତ୍ୱାବଚନାତ୍ ଚ = ଏହି ପ୍ରକରଣରେ ଅବ୍ୟକ୍ତ ଜ୍ଞେୟ ବୋଲି କୁହାଯାଏ ନାହିଁ । ତେଣୁ ଶ୍ରୁତିରେ ଅବ୍ୟକ୍ତ ଶବ୍ଦଦ୍ୱାରା ପ୍ରଧାନର ଗ୍ରହଣ ହୁଏ ନାହିଁ ।

(୨) ମୂଳ-(କ) ଜ୍ଞେୟତ୍ୱେନ ଚ ସାଂଖ୍ୟୈଃ ପ୍ରଧାନଂ ସ୍ମର୍ଯ୍ୟତେ ଗୁଣପୁରୁଷାନ୍ତରଜ୍ଞାନାତ୍ କୈବଲ୍ୟମିତି ବଦଦ୍‌ଭିଃ । ନ ହି ଗୁଣସ୍ୱରୂପମଜ୍ଞାତ୍ୱା ଗୁଣେଭ୍ୟଃ ପୁରୁଷସ୍ୟାନ୍ତରଂଶକ୍ୟଂ ଜ୍ଞାତୁମିତି । କ୍ୱଚିଚ୍ଚ ବିଭୂତିବିଷୟପ୍ରାପ୍ତୟେ ଜ୍ଞେୟମିତି ସ୍ମରନ୍ତି । (ଖ) ନ ଚୈଦମିହାବ୍ୟକ୍ତଂ ଜ୍ଞେୟତ୍ୱେନୋଚ୍ୟତେ । ପଦମାତ୍ରଂ ହ୍ୟବ୍ୟକ୍ତଶବ୍ଦଃ । ନେହାବ୍ୟକ୍ତଂ



ଜ୍ଞାତବ୍ୟମୁପାସିତବ୍ୟଂଚେତି ବାକ୍ୟମସ୍ତି । (ଗ) ନ ହ୍ୟନୁପଦିଷ୍ଟଂ ପଦାର୍ଥଜ୍ଞାନଂ ପୁରୁଷାର୍ଥମିତି ଶକ୍ୟଂ ପ୍ରତିପତ୍ତୁମ୍' ତସ୍ମାଦପି ନାବ୍ୟକ୍ତଶବ୍ଦେନ ପ୍ରଧାନମଭିଧୀୟତେ । ଅସ୍ମାକନ୍ତୁ ରଥରୂପକକ୍ଳୃପ୍ତଶରୀରାଦ୍ୟନୁସରଣେନ ବିଷ୍ଣୋରେବ ପରମଂ ପଦଂ ଦର୍ଶୟିତୁମୟମୁପନ୍ୟାସ ଇତ୍ୟନବଦ୍ୟମ୍ ।

**(୨) ଭାଷାଂତର-(କ)** ସତ୍ତ୍ୱାଦି ଗୁଣ ଓ ପୁରୁଷର ଭେଦଜ୍ଞାନରୁ ମୋକ୍ଷ ହୁଏ । ଏହିଭଳି କହୁଥିବା ସାଂଖ୍ୟମତାନୁଯାୟୀ ବିଦ୍ୱାନ୍ ପ୍ରଧାନର ଜ୍ଞେୟରୂପରେ ସ୍ମରଣ କରନ୍ତି । କାରଣ-ସତ୍ତ୍ୱାଦିଗୁଣର ସ୍ୱରୂପ ନ ଜାଣିଲେ କେବଳ ଗୁଣଦ୍ୱାରା ପୁରୁଷର ଭେଦ ଜଣାପଡ଼େ ନାହିଁ । ଅଣିମାଦି ଐଶ୍ୱର୍ଯ୍ୟ ପାଇବା ପାଇଁ ପ୍ରଧାନ ଜ୍ଞେୟ ବୋଲି କେତେକ ସ୍ମୃତିରେ କୁହାଯାଇଛି ।

(ଖ) ପରନ୍ତୁ 'ମହତଃ ପରମବ୍ୟକତମ୍' ଏହି ମନ୍ତ୍ରରେ ଅବ୍ୟକ୍ତକୁ ଜ୍ଞେୟ ରୂପରେ କୁହାଯାଇନାହିଁ । ଏଠାରେ ଅବ୍ୟକ୍ତ ଶବ୍ଦ କେବଳ ଗୋଟିଏ ପଦ । ଅବ୍ୟକ୍ତ ଜ୍ଞାତବ୍ୟ ବା ଉପାସିତବ୍ୟ ବୋଲି ଏହି ବିଷୟରେ କୌଣସି ଏପରି ବିଧାୟକ ବାକ୍ୟ ନାହିଁ ।

(ଗ) ଅନୁପଦିଷ୍ଟ ପଦାର୍ଥ ଜ୍ଞାନ ପୁରୁଷାର୍ଥ ଅଟେ । ଏପରି ଜଣାନାହିଁ । ତେଣୁ ଶ୍ରୁତି ଅବ୍ୟକ୍ତ ଶବ୍ଦଦ୍ୱାରା ପ୍ରଧାନକୁ କରେ ନାହିଁ । ଆମ୍ଭ ମତରେ- ରଥସାଦୃଶ୍ୟ କଳ୍ପିତ ଶରୀରାଦିର ଅନୁସରଣ କରି ବିଷ୍ଣର ପରମପଦ ଦେଖାଇବା ପାଇଁ ଏହା ଉପନ୍ୟାସ ଅଟେ । ଏହିପ୍ରକାର କୌଣସି ଦୋଷ ନାହିଁ ।

## वदतीति चेन्न प्राज्ञो हि प्रकरणात् ॥ ५ ॥

## (୧) ବଦତୀତି ଚେନ୍ନ ପ୍ରାଜ୍ଞୋ ହି ପ୍ରକରଣାତ୍ ॥୧।୪।୫

ବଦତି='ମହତଃ ପରଂଧ୍ରୁବଂ ନିଚାୟ୍ୟ' ଏହି ଉତ୍ତରବାକ୍ୟ ପ୍ରଧାନକୁ ଜ୍ଞେୟ ବୋଲି କହେ । ଇତି ଚେତ୍, ନ=ଯଦି ଏହା କୁହ, ତେବେ ଏହା ଠିକ୍ ନୁହେଁ । ପ୍ରକରଣାତ୍=କାରଣ-'ପୁରୁଷାନ୍ନ ପରଂ', ଏହି ଆତ୍ମପ୍ରକରଣରେ, ପ୍ରାଜ୍ଞୋହି=ପରମାତ୍ମା ହିଁ ଏଠାରେ ଜ୍ଞେୟ ରୂପରେ ନିର୍ଦ୍ଦିଷ୍ଟ ହୁଏ ।

(୨) ମୂଳ-(କ) ଅତ୍ରାହ ସାଂଖ୍ୟଃ-'ଜ୍ଞେୟତ୍ୱାବଚନାତ୍' ଇତ୍ୟସିଦ୍ଧମ୍, କଥମ ? ଶ୍ରୂୟତେ ହ୍ୟୁତ୍ତରତ୍ରାବ୍ୟକ୍ତଶବ୍ଦୋଦିତସ୍ୟ ପ୍ରଧାନସ୍ୟ ଜ୍ଞେୟତ୍ୱବଚନମ୍- 'ଅଶବ୍ଦମସ୍ପର୍ଶସ୍ୱରୂପମବ୍ୟୟମ୍, କଥାଽରସଂ ନିତ୍ୟମଗନ୍ଧବଚ୍ଚ ଯତ୍ ॥ ଅନାଦ୍ୟନନ୍ତଂ ମହତଃ ପରଂ ଧ୍ରୁବମ୍, ନିଚାୟ୍ୟ ତଂ ମୃତ୍ୟୁମୁଖାତ୍ ପ୍ରମୁଚ୍ୟତେ ॥ (କା ୨-୩-୧୫) ଇତି । (ଖ) ଅତ୍ର ହି

ଯାଦୃଶଂ ଶବ୍ଦାଦିହୀନଂ ପ୍ରଧାନଂ ମହତଃ ପରଂ ସ୍ମୃତୌ ନିରୂପିତମ୍, ତାଦୃଶମେବ ନିର୍ଦ୍ଦେୟତ୍ୱେନ ନିର୍ଦ୍ଦିଷ୍ଟମ୍ । ତସ୍ମାତ୍ ପ୍ରଧାନମେବେଦମ୍, ତଦେବ ଚାବ୍ୟକ୍ତଶବ୍ଦନିର୍ଦ୍ଦିଷ୍ଟମିତି ।

**(୨) ଭାଷାଂତର**-(କ) ଏଠାରେ ସାଂଖ୍ୟ କହେ- 'ଜ୍ଞେୟତ୍ୱାବଚନାତ୍' ଏହି ହେତୁ ଅସିଦ୍ଧ ହୁଏ । କାରଣ-'ଯାହା ଅଶବ୍ଦ ଅସ୍ପର୍ଶ, ଅରୂପ, ଅବ୍ୟୟ, ରସହୀନ, ନିତ୍ୟ ତଥା ଗନ୍ଧରହିତ । ଯାହା ଅନାଦି, ଅନନ୍ତ, ମହତ୍‌ଠାରୁ ଭିନ୍ନ ନିଶ୍ଚଳ ଅଟେ । ସେହି ତତ୍ତ୍ୱର ଜ୍ଞାନ ପାଇ ପୁରୁଷ ମୃତ୍ୟୁମୁଖରୁ ମୁକ୍ତ ହୁଏ', ବୋଲି ଏହି ଉତ୍ତରବାକ୍ୟରେ ଅବ୍ୟକ୍ତ ଶବ୍ଦ ସହିତ ପ୍ରଧାନର ଜ୍ଞେୟତ୍ୱବଚନ ଶୁଣାଯାଏ ।

(ଖ) ସାଂଖ୍ୟସ୍ମୃତିରେ ଶବ୍ଦାଦିରହିତ ମହତ୍‌ଠାରୁ ପରପ୍ରଧାନର ଯେପରି ନିରୂପଣ ଅଛି, ସେପରି ଏଠାରେ ଜ୍ଞେୟ ରୂପରେ ନିର୍ଦ୍ଦେଶ ହୋଇଛି । ତେଣୁ ଏହା ପ୍ରଧାନ ଏବଂ ସେ ହିଁ ଏଠାରେ 'ମହତଃ ପରମବ୍ୟକ୍ତମ୍' ବାକ୍ୟରେ ଅବ୍ୟକ୍ତ ଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ ହୁଏ ।

(୩) ମୂଳ-(କ) ଅତ୍ର ବ୍ରୂମଃ-ନେହ ପ୍ରଧାନଂ ନିଚାୟ୍ୟତ୍ୱେତ ନିର୍ଦ୍ଦିଷ୍ଟମ୍ । 'ପ୍ରାଜ୍ଞୋ ହୀଦ ପରମାତ୍ମା ନିଚାୟ୍ୟତ୍ୱେନ ନିର୍ଦ୍ଦିଷ୍ଟ ଇତି ଗମ୍ୟତେ । (ଖ) କୁତଃ ? ପ୍ରକରଣାତ୍ । ପ୍ରାଜ୍ଞସ୍ୟ ହି ପ୍ରକରଣଂ ବିତତଂ ବର୍ତ୍ତତେ', 'ପୁରୁଷାନ୍ନ ପରଂ କିଞ୍ଚିତ୍ ସା କାଷ୍ଠା ସା ପରା ଗତିଃ', ଇତ୍ୟାଦି ନିର୍ଦ୍ଦେଶାତ୍ । 'ଏଷହଂ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମା ନ ପ୍ରକାଶତେ', ଇତି ଚ ଦୁର୍ଜ୍ଞାତତ୍ୱ ବଚନେନ ତସ୍ୟୈବ ଜ୍ଞେୟତ୍ୱକା-ଙ୍କ୍ଷଣାତ୍ । 'ଯଚ୍ଛେଦବାଙ୍ ମନସୀ ପ୍ରାଜ୍ଞଃ' ଇତି ଚ ତତ୍‌ଜ୍ଞାନାୟୈବ ବାଗାଦି-ସଂଯମସ୍ୟ ବିହିତତ୍ୱାତ୍, ମୃତ୍ୟୁମୁଖ-ପ୍ରମୋକ୍ଷଣଫଳତ୍ୱାଚ୍ଚ । (ଗ) ନ ହି ପ୍ରଧାନମାତ୍ରଂ ନିଚାୟ୍ୟ ମୃତ୍ୟୁମୁଖାତ୍ ପ୍ରମୁଚ୍ୟତେ' ଇତି ସାଂଖ୍ୟୈ ରିଷ୍ୟତେ । ଚେତନାତ୍ମବିଜ୍ଞାନାଦ୍ ହି ମୃତ୍ୟୁମୁଖାତ୍ ପ୍ରମୁଚ୍ୟତ', ଇତି ତେଷା-ମଭ୍ୟୁପଗମଃ । (ଘ) ସର୍ବେଷୁ ବେଦାନ୍ତେଷୁ ପ୍ରାଜ୍ଞସ୍ୟୈମାତ୍ମନୋଽ-ଶବ୍ଦାଦିଧର୍ମତ୍ୱମଭିଲପ୍ୟତେ । ତସ୍ମାନ୍ନ ପ୍ରଧାନ୍ ସ୍ୟାତ୍ର ଜ୍ଞେୟତ୍ୱମବ୍ୟକ୍ତଶବ୍ଦନିର୍ଦ୍ଦିଷ୍ଟତ୍ୱଂ ବା ।

**(୩) ଭାଷାଂତର**-(କ) ସିଦ୍ଧାନ୍ତ-ଏହି ମନ୍ତ୍ର (ଅଶବ୍ଦମସ୍ପର୍ଶ)ରେ ପ୍ରଧାନ ଜ୍ଞେୟ ରୂପରେ ନିର୍ଦ୍ଦିଷ୍ଟ ନୁହେଁ । କିନ୍ତୁ ପ୍ରାଜ୍ଞ ପରମାତ୍ମା କେବଳ ଏଠାରେ ଜ୍ଞେୟ ରୂପରେ ନିର୍ଦ୍ଦିଷ୍ଟ ବୋଲି ଜଣାଯାଏ ।



(ଖ) କିପରି ? ତାହାର ପ୍ରକରଣହେତୁ । ପ୍ରାଜ୍ଞର ବିସ୍ତୃତ ପ୍ରକରଣ ସର୍ବତ୍ର ରହିଛି । 'ପୁରୁଷଠାରୁ କୌଣସି ପଦାର୍ଥ ଶ୍ରେଷ୍ଠ ନୁହେଁ । ସେ ହିଁ ପରମଗତି ଅଟେ ଇତ୍ୟାଦି ନିର୍ଦ୍ଦେଶ ରହିଛି । 'ସମଗ୍ରଜୀବଠାରେ ଲୁଚି ରହିଥିବା ଏହି ଆତ୍ମା ପ୍ରକାଶିତ ହୁଏ ନାହିଁ' । ଏହିପ୍ରକାର ଦୁର୍ଜ୍ଞାନ କଥନରୁ ଏହାର ଜ୍ଞେୟ ରୂପରେ ଆଙ୍‌କାଂକ୍ଷା ପ୍ରତୀତି ହୁଏ । ତଥା 'ବିବେକୀ ପୁରୁଷ ବାଣୀର ମନରେ ଲୟରଖିବା ଉଚିତ୍', ଏହିପ୍ରକାର ତାହାର ଜ୍ଞାନ ପାଇଁ ବାଣୀ ଆଦିର ସଂଯମନ ବିଧାନ କରେ ଓ ମୃତ୍ୟୁ ମୁଖରେ ଶୀଘ୍ର ମୋକ୍ଷପାଇବା ଜ୍ଞାନର ଫଳ ।

(ଗ) ପରନ୍ତୁ ସାଂଖ୍ୟମାନେ ଏହାକୁ ସ୍ୱୀକାର ନକରି କହନ୍ତି ଯେ- କେବଳ ପ୍ରଧାନର ଜ୍ଞାନଦ୍ୱାରା ମୃତ୍ୟୁମୁଖରୁ ମୁକ୍ତ ହୁଅନ୍ତି । କିନ୍ତୁ ସେମାନେ ସ୍ୱୀକାର କରନ୍ତି ଯେ- ଚେତନ ଆତ୍ମଜ୍ଞାନଦ୍ୱାରା ମୃତ୍ୟୁ ମୁଖରୁ ମୁକ୍ତ ହୁଏ ।

(ଘ) ସମ୍ପୂର୍ଣ୍ଣ ବେଦାନ୍ତଶାସ୍ତ୍ରରେ ପ୍ରାଜ୍ଞ ପରମାତ୍ମାଠାରେ ଅଶବ୍ଦତ୍ୱାଦି ଧର୍ମକୁ କହେ । ତେଣୁ ଏଠାରେ ପ୍ରଧାନ ଜ୍ଞେୟ ନୁହେଁ ଏବଂ ଅବ୍ୟକ୍ତଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ ନୁହେଁ ।

## प्रयाणमेव चैवमुपन्यासः प्रस्नस्च ॥ ६ ॥

## (୧) ତ୍ରୟାଣାମେବ ଚୈବମୁପନ୍ୟାସଃ ପ୍ରଶ୍ନଶ୍ଚ ॥ ୧।୪।୬ ॥

ଏବଂ = ପୂର୍ବ ଓ ଉତ୍ତର ବାକ୍ୟର ପର୍ଯ୍ୟାଲୋଚନା ଦ୍ୱାରା, ତ୍ରୟାଣାମେବ-ଅଗ୍ନି, ଜୀବ ଓ ପରମାତ୍ମା-ଏହି ତିନୋଟିର, ଉପନ୍ୟାସଃ-ବକ୍ତବ୍ୟରୂପରେ ଉପନ୍ୟାସ ହୋଇଛି । ପ୍ରଶ୍ନଶ୍ଚ-ପ୍ରଶ୍ନ ମଧ୍ୟ ସେମାନଙ୍କର ବିଷୟରେ ଅଛି । ତେଣୁ ପ୍ରଧାନ ଅବ୍ୟକ୍ତ ଶବ୍ଦବାଚ୍ୟ ନୁହେଁ ।

(୨) ମୂଳ-(କ) ଇତଶ୍ଚ ନ ପ୍ରଧାନସ୍ୟାବ୍ୟକ୍ତଶବ୍ଦବାଚ୍ୟତ୍ୱଂ ଜ୍ଞେୟତ୍ୱଂ ବା । ଯସ୍ମାତ୍ ତ୍ରୟାଣାମେବ ପଦାର୍ଥାନାମଗ୍ନିଜୀବପରମାତ୍ମନାମସ୍ମିନ୍‌ଗ୍ରନ୍ଥେ କଠବଲ୍ଲୀଷୁ ବର ପ୍ରଦାନସାମର୍ଥ୍ୟାଦ୍‌ବକ୍ତବ୍ୟତୟୋପନ୍ୟାସୋ ଦୃଶ୍ୟତେ । (ଖ) ତଦ୍‌ବିଷୟ ଏବ ଚ ପ୍ରଶ୍ନଃ- 'ନାତୋଽନ୍ୟସ୍ୟ ପ୍ରଶ୍ନ ଉପନ୍ୟାସୋବାଽସ୍ତି । ତତ୍ରତାବତ୍ 'ସ ତ୍ୱମଗ୍ନିଂ ସ୍ୱର୍ଗମଧ୍ୟେଷି ମୃତ୍ୟୋ ପ୍ରବ୍ରୂହି ତଂ ଶ୍ରଦ୍ଧଧାନାୟ ମହ୍ୟମ୍', (କା ୧-୧-୧୩) ଇତ୍ୟଗ୍ନି ବିଷୟଃ ପ୍ରଶ୍ନଃ । (ଗ) 'ଯେ ୟଂ ପ୍ରେତି ବିଚିକିତ୍ସା ମନୁଷ୍ୟେଽସ୍ତୀତ୍ୟେକେ ନାୟମସ୍ତୀତି ଚୈକେ । ଏତଦ୍‌ବିଦ୍ୟାମନୁଶିଷ୍ଟସ୍ତ୍ୱୟାହଂ, ବରାଣାମେଷୋ ବରସ୍ତୃତୀୟଃ', (କା ୧-୧-୨୦) ଇତି

ଜୀବବିଷୟଃ ପ୍ରଶ୍ନଃ । (ଘ) 'ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାଦନ୍ୟତ୍ରାସ୍ମାତ୍ କୃତକୃତାତ୍ । ଅନ୍ୟତ୍ର ଭୂତାଚ୍ଚ ଭବ୍ୟାଚ୍ଚ ଯତ୍ତତ୍ପଶ୍ୟସିତଦ୍‌ବଦ୍', (କା ୧-୨-୧୪) ଇତି ପରମାତ୍ମାବିଷୟଃ । (ଙ) ପ୍ରତିବଚନମପି 'ଲୋକାଦିମଗ୍ନିଂ ତମୁବାଚ ତସ୍ମୈ' । ଯା ଇଷ୍ଟକା ଯାବତୀବା 'ଯଥା ବା', । (କା ୧-୧-୧୫) ଇତ୍ୟଗ୍ନିବିଷୟମ୍ । (ଚ) 'ହନ୍ତ ତ ଇଦଂ ପ୍ରବକ୍ଷ୍ୟାମି ଗୁହ୍ୟଂ ବ୍ରହ୍ମ ସନାତନମ୍ । ଯଥା ଚ ମରଣଂ ପ୍ରାପ୍ୟ ଆତ୍ମା ଭବତି ଗୌତମଃ', । ଯୋନିମନ୍ୟେ ପ୍ରପଦ୍ୟନ୍ତେ ଶରୀରତ୍ୱାୟ ଦେହିନଃ । ସ୍ଥାଣୁମନ୍ୟେଽନୁ-ସଂଯନ୍ତି ଯଥାକର୍ମ ଯଥାଶ୍ରୁତମ୍', (କା ୨-୫-୬-୭) ଇତି ବ୍ୟବହିତଂ ଜୀବବିଷୟମ୍ । (ଛ) 'ନ ଜାୟତେ ମ୍ରିୟତେ ବା ବିପଶ୍ଚିତ୍' (କା ୧-୧-୧୮) ଇତ୍ୟାଦି ବହୁ ପ୍ରପଞ୍ଚଂ ପରମାତ୍ମବିଷୟମ୍ । ନୈବଂ ପ୍ରଧାନବିଷୟଃ ପ୍ରଶ୍ନୋଽସ୍ତି, ଅପୃଷ୍ଟତତ୍ୱାଚ୍ଚାନୁପନ୍ୟସନୀୟତ୍ୱଂ ତସ୍ୟେତି ।

**(୨) ଭାଷାଂତର**-(କ) ଏହି କାରଣରୁ ପ୍ରଧାନ ଅବ୍ୟକ୍ତ ଶବ୍ଦବାଚ୍ୟ ଅଥବା ଜ୍ଞେୟ ନୁହେଁ । କାରଣ-ବର ପ୍ରଦାନ ସାମର୍ଥ୍ୟଦ୍ୱାରା ଏହି କଠବଲ୍ଲୀ ଗ୍ରନ୍ଥରେ ବକ୍ତବ୍ୟ ରୂପରେ ଅଗ୍ନି, ଜୀବ ଓ ପରମାତ୍ମା- ଏହି ତିନୋଟିର ଉପନ୍ୟାସ ଦେଖାଯାଏ ଏବଂ ତଦ୍‌ବିଷୟକ ମଧ୍ୟ ପ୍ରଶ୍ନ ଅଟେ । ତେଣୁ ଅନ୍ୟ ପ୍ରଶ୍ନ ଅଥବା ଉପନ୍ୟାସ ନୁହେଁ ।

(ଖ) ସେଥିରେ ନଚିକେତା-ହେ ମୃତ୍ୟୁ ! ତୁମେ ସ୍ୱର୍ଗର ସାଧନଭୂତ ଅଗ୍ନିକୁ ଜାଣିଛ, ଶ୍ରଦ୍ଧାଳୁ ମୋତେ ତାହାର ବର୍ଣ୍ଣନା କର, ଏହି ଅଗ୍ନିବିଷୟକ ପ୍ରଶ୍ନ ଅଟେ ।

(ଗ) 'ମୃତକବିଷୟରେ ଯାହା ସନ୍ଦେହ ଅଛି'- ସେହି ବିଷୟରେ କେତେକ କହନ୍ତି ଯେ- ଦେହାଦିସଂଘାତ ଦ୍ୱାରା ଅତିରିକ୍ତ ଦେହାନ୍ତର ସମ୍ବନ୍ଧୀ ଆତ୍ମା ଅଟେ । କେତେକ କହନ୍ତି-ଏହିପ୍ରକାର ଆତ୍ମା ନାହିଁ । ତୁମଦ୍ୱାରା ଉପଦେଶ ପାଇଥିବା ମୁଁ ଏହା ଜାଣିବି । ଏହାହିଁ ବର ମଧ୍ୟରେ ଶେଷ ଓ ତୃତୀୟ ବର' । ଏହି ଜୀବ ବିଷୟକ ପ୍ରଶ୍ନ ଅଟେ' ।

(ଘ) 'ଯାହା ଧର୍ମଠାରୁ ପୃଥକ, ଅଧର୍ମଠାରୁ ଭିନ୍ନ, କାର୍ଯ୍ୟ ଓ କାରଣଠାରୁ ଅନ୍ୟ, ଭୂତ ଭବିଷ୍ୟତ ଓ ବର୍ତ୍ତମାନଠାରୁ ଅନ୍ୟ'- ଏହିପ୍ରକାର ତୁମେ ଯାହା ଦେଖୁଛ, ତାହା ମୋତେ କହ' । ଏହି ପରମାତ୍ମା ବିଷୟକ ପ୍ରଶ୍ନ ଅଟେ ।

(ଙ) ପ୍ରତିବଚନ ମଧ୍ୟ 'ତେବେ ଜଗତ୍‌ର କାରଣଭୂତ ସେହି ଅଗ୍ନିର ଓ ତାହାର ଚୟନ କରିବାରେ ଯେପରି ଓ ଯେତେ ଇଟା ଦରକାର ହୁଏ, ଓ ଯେଉଁ ପ୍ରକାର ସ୍ଥଣ୍ଡିଳରେ



ତାହାର ଚୟନ କରାଯାଇଛି, ସେହିସବୁ ନଚିକେତାକୁ ଯମରାଜ୍ ବର୍ଣ୍ଣନା କଲେ', ଏହି ଅଗ୍ନି ବିଷୟକ ଉତ୍ତର ଅଟେ ।

(ଚ) 'ହେ ଗୌତମ ! ବର୍ତ୍ତମାନ ମୁଁ ତୁମ୍ଭଙ୍କୁ ଏହି ଗୁହ୍ୟ ଓ ସନାତନ ବ୍ରହ୍ମର ବର୍ଣ୍ଣନା କରିବି ଓ (ବ୍ରହ୍ମକୁ ଜାଣି ନଥିବା) ମରଣଶୀଳ ଆତ୍ମା ଯେପରି ହୁଏ, (ତାହା ବତାଇ ଦେବି) । ନିଜର କର୍ମ ଓ ଜ୍ଞାନର ଅନୁସାରେ କେତେକ ଆତ୍ମା ଶରୀରଧାରଣ କରିବା ପାଇଁ କେତେ ଯୋନିକୁ ପାଆନ୍ତି ଓ କେତେକ ସ୍ଥାବର ଭାବକୁ ଲାଭ କରନ୍ତି' । ଏହି ବ୍ୟବଧାନରେ (ଅବିଦ୍ୟାସଂଯୁକ୍ତ) ଜୀବବିଷୟକ ଉତ୍ତର ଅଟେ ।

(ଛ) 'ଏହି ବିଦ୍ୱାନ୍ ଜନ୍ମ ହୁଏ ନାହିଁ, ମରେ ନାହିଁ', ଇତ୍ୟାଦି ବହୁତ ବିସ୍ତୃତ ପରମାତ୍ମା ବିଷୟକ ପ୍ରତିବଚନ ଅଟେ । ଏହିପ୍ରକାର ପ୍ରଧାନବିଷୟକ ପ୍ରଶ୍ନ ହୁଏ ନାହିଁ । ଏହା ଅପୃଷ୍ଟ ହେଲେ ଉପନ୍ୟାସ ଯୋଗ ମଧ୍ୟ ହୁଏ ନାହିଁ ।

(୩) ମୂଳ-(କ) ଅତ୍ରାହ-ଯୋଽୟମାତ୍ମବିଷୟଃ ପ୍ରଶ୍ନୋ ଯେ ଯଂ ପ୍ରେତେ ବିଚିକିତ୍ସା ମନୁଷ୍ୟେଽସ୍ତୀତି କିଂ ସ ଏବାୟସ' । 'ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାତ୍', ଇତି ପୁନରନୁକୃଷ୍ୟତେ' କିଂ ବା ତତୋଽନ୍ୟୋୟମପୂର୍ବଃ ପ୍ରଶ୍ନ ଉତ୍ଥାପ୍ୟତ ଇତି । (ଖ) କିଂ ଚାତଃ ସ ଏବାୟଂ ପ୍ରଶ୍ନଃ ପୁନରକୃଷ୍ୟତ ଇତି ଯଦୁଚ୍ୟେତ, ଦ୍ୱୟୋରାତ୍ମବିଷୟୋଃ ପ୍ରଶ୍ନୟୋରେକତାପତ୍ତେରଗ୍ନିବିଷୟ ଆତ୍ମବିଷୟଶ୍ଚ ଦ୍ୱାବେବ ପ୍ରଶ୍ନବିତ୍ୟତୋ ନ ବକ୍ତବ୍ୟଂ ତ୍ରୟାଣାଂ ପ୍ରଶ୍ନୋପନ୍ୟାସାଦିତି । (ଗ) ଅଥାନ୍ୟୋଽୟମପୂର୍ବଃ ପ୍ରଶ୍ନ ଉତ୍ଥାପ୍ୟତ ଇତ୍ୟୁଚ୍ୟେତ, ତତୋ ଯଥୈବ ବରପ୍ରଦାନବ୍ୟତିରେକେଣ ପ୍ରଶ୍ନକଳ୍ପନାୟାସଦୋଷଃ । ଏବଂ ପ୍ରଶ୍ନବ୍ୟତିରେକେଣାପି ପ୍ରଧାନୋପନ୍ୟାସକଳ୍ପନାୟାମଦୋଷଃ ସ୍ୟାଦିତି ।

**(୩) ଭାଷାନ୍ତର-** (କ) ପୂର୍ବପକ୍ଷ- 'ଯେ ଯଂ ପ୍ରେତେ' ଏହି ଯେଉଁ ଆତ୍ମବିଷୟକ ଅଟେ, ତାହାର କ'ଣ 'ଅନ୍ୟତ୍ର ଧର୍ମାଦ୍' ଏଠାରେ ପୁନର୍ବାର ଅନୁବୃତ୍ତି ଅଥବା ଅନ୍ୟ ଅପୂର୍ବ ପ୍ରଶ୍ନ ଉଠିଯାଏ । ସେହି ପ୍ରକରଣରେ ହେଲା ? 'ଯେ ଯଂ ପ୍ରେତେ' ସେହି ପ୍ରଶ୍ନର 'ଅନ୍ୟତ୍ର ଧର୍ମାତ୍' ଏହି ଅନୁବୃତ୍ତି-ଏହା ଯଦି କହ, ତେବେ ଆତ୍ମ ବିଷୟକ ଦୁଇଟି ପ୍ରଶ୍ନରେ ଅଭେଦ ହେଲେ ଅଗ୍ନିବିଷୟକ ଏହିପ୍ରକାର ପ୍ରଶ୍ନ ଦୁଇଟି ହୁଅନ୍ତି । ଅତଃ ତିନୋଟି ପଦାର୍ଥ ବିଷୟକ ହିଁ ପ୍ରଶ୍ନ ଓ ଉପନ୍ୟାସ ଅଟେ ବୋଲି କହିବା ଉଚିତ୍ ନୁହେଁ ।

(ଖ) ଯଦି କୁହ ଯେ ଏଠାରେ ଅପୂର୍ବ ପ୍ରଶ୍ନ ହୁଏ, କିନ୍ତୁ ଯେପରି ବରପ୍ରଦାନ ଦ୍ୱାରା ଅତିରିକ୍ତ କଳ୍ପନାରେ ତୁମ୍ଭର ଦୋଷ ନାହିଁ ।

(ଗ) ଯେପରି ପ୍ରଶ୍ନ ବିନା ମଧ୍ୟ ପ୍ରଧାନର ଉପନ୍ୟାସ କଳ୍ପନାରେ ଆମ୍ଭର ଦୋଷ ନାହିଁ ।

(୪) ମୂଳ-(କ) ଅତ୍ରୋଚ୍ୟତେ-ନୈବଂ ବୟମିହ ବରପ୍ରଦାନ ବ୍ୟତିରେକେଣ ପ୍ରଶ୍ନଂ କିଞ୍ଚିତ୍ କଳ୍ପୟାମଃ ବାକ୍ୟୋପକ୍ରମସାମର୍ଥ୍ୟାତ୍ । (ଖ) ବରପ୍ରଦାନୋପକ୍ରମା ହି ମୃତ୍ୟୁନିଚିକେତଃ ସମ୍ବାଦରୂପା ବାକ୍ୟପ୍ରବୃତ୍ତିରାସମାପ୍ତେଃ କଠବଲ୍ଲୀନାଂ ଲକ୍ଷ୍ୟତେ, ମୃତ୍ୟୁଃ କିଲ ନଚିକେତ ସେ ପିତ୍ରା ପ୍ରହିତାୟତ୍ରୀନ୍ ବରାନ୍‌ପଦଦୌ । ନଚିକେତାଃ କିଲ ତେଷାଂ ପ୍ରଥମେନ ବରେଣ ପିତୁଃ ସୌମନସ୍ୟଂ ବବ୍ରେ, ଦ୍ୱିତୀୟେନାମ୍ବିଦ୍ୟାମ୍ 'ଯେ ଯଂ ପ୍ରେତେ', ଇତି 'ବରାଣାମେଷ ବରସ୍ତୃତୀୟଃ', (କାଃ ୧-୧-୨୦) ଇତିଲିଙ୍ଗାତ୍ । (ଗ) ତତ୍ର ଯଦ୍ୟନ୍ୟତ୍ର ଧର୍ମାଦିତ୍ୟନ୍ୟୋଽୟପୂର୍ବଃ ପ୍ରଶ୍ନ ଉତ୍‌ଥାପ୍ୟେତ, ତତୋ ବରପ୍ରଦା-ନବ୍ୟତିରେକେଣାପି ପ୍ରଶ୍ନକଳ୍ପନାଦ୍‌ବାକ୍ୟଂ ବାଧେତ ।

**(୪)** ଭାଷାଂତର-ସିଦ୍ଧାନ୍ତ-(କ)ଏଠାରେ ଆରମ୍ଭ ଏହି ବର ପ୍ରଦାନର ଅତିରିକ୍ତ କୌଣସି ପ୍ରଶ୍ନ କଳ୍ପନା କରୁ । କାରଣ-ବାକ୍ୟର ଉପକ୍ରମସାମର୍ଥ୍ୟ ଏହି ପ୍ରକାର ହୁଏ ।

(ଖ) ବର ପ୍ରଦାନଠାରୁ ଆରମ୍ଭ କରି କଠବଲ୍ଲୀର ସମାପ୍ତି ପର୍ଯ୍ୟନ୍ତ ଯମରାଜ ଓ ନଚିକେତାର ସମ୍ବାଦରୂପ ବାକ୍ୟପ୍ରବୃତ୍ତି ଏହିପରି ଲକ୍ଷିତ ହୁଏ । ପିତା ପଠାଇଥିବା ନଚିକେତାଙ୍କୁ ଯମରାଜ ତିନୋଟି ବର ପ୍ରଦାନ କଲେ । ସେମାନଙ୍କ ମଧ୍ୟରୁ ପ୍ରଥମ ବରଟି ନଚିକେତାପିତାଙ୍କର ପ୍ରସନ୍ନତା, ଦ୍ୱିତୀୟ ବରରେ ଅଗ୍ନିବିଦ୍ୟା ଓ ତୃତୀୟ ବରରେ ଆତ୍ମବିଦ୍ୟା ମାଗିଲେ । କାରଣ-'ଯେ ଯଂ ପ୍ରେତେ' ଏବଂ 'ବରାଣାମେଷ' ଏହି ଶ୍ରୁତି ଲିଙ୍ଗ ଅଟେ ।

(ଗ) ସେଥିରେ ଯଦି 'ଅନ୍ୟତ୍ ଧର୍ମାତ୍' ଏହି ନୂତନ ପ୍ରଶ୍ନ ଉଠାଯାଏ, ତେବେ ବର ପ୍ରଦାନରେ ଅତିରିକ୍ତ ପ୍ରଶ୍ନର କଳ୍ପନା ହେଲେ ଉପକ୍ରମ ବାକ୍ୟର ବାଧକ ହୋଇଯାଏ ।

(୫) ମୂଳ-(କ) ନନୁ ପ୍ରଷ୍ଟବ୍ୟଭେଦାଦ ପୂର୍ବୋଽୟଂ ପ୍ରଶ୍ନୋ ଭବିତୁମର୍ହତି । ପୂର୍ବୋ ହି ପ୍ରଶ୍ନୋ ଜୀବବିଷୟଃ, 'ଯେ ଯଂ ପ୍ରେତେ' ବିଚିକିତ୍ସା ମନୁଷ୍ୟେଽସ୍ତି ନାସ୍ତୀତି ବିଚିକିତ୍ସାଭିଧାନାତ୍ । (ଖ) ଜୀବଶ୍ଚ ଧର୍ମାଦିଗୋଚରାନ୍ନାନ୍ୟତ୍ର ଧର୍ମାଦିତି ପ୍ରଶ୍ନମର୍ହତି । ପ୍ରାଜ୍ଞସ୍ତୁ



ଧର୍ମାଦ୍ୟତୀତାଦ୍ୱଦନ୍ୟତ୍ର ଧର୍ମାଦିତି ପ୍ରଶ୍ନମର୍ହତି । (ଗ) ପ୍ରଶ୍ନଛାୟା ନଚ ନ ସମାନା ଲକ୍ଷ୍ୟତେ, ପୂର୍ବସ୍ୟାସ୍ତିତ୍ୱନାରିତ୍ୱବିଷୟତ୍ୱାଦୁତ୍ତରସ୍ୟ ଧର୍ମାଦ୍ୟ ତୀତବସ୍ତୁ ବିଯତ୍ୱାତ୍ । ତସ୍ମାତ୍ ପତ୍ୟଭିଜ୍ଞାନାଭାବାତ୍ ପ୍ରଶ୍ନଭେଦଃ ।

**(୫) ଭାଷାଂତର**-(କ) ପରନ୍ତୁ (ଜୀବ ଓ ଈଶ୍ୱରରୂପ) ପ୍ରଷ୍ଟବ୍ୟପଦାର୍ଥର ଭେଦ ହେଲେ 'ଅନ୍ୟତ୍ର ଧର୍ମାତ୍', ଏଠାରେ ନୂତନ ପ୍ରଶ୍ନ ହୋଇପାରେ । ପୂର୍ବ ପ୍ରଶ୍ନ ଜୀବ ବିଷୟକ ଅଟେ, କାରଣ- 'ଯେ ଯଂ ପ୍ରେତେ' ଏହି ମନ୍ତ୍ରରେ ମୃତକ ମନୁଷ୍ୟର ବିଷୟରେ ଦେହାଦିସଂଘାତଭିନ୍ନ ଆତ୍ମା ଅଟେ-ଏହି ପ୍ରକାର ଶଙ୍କା ହୋଇପାରେ ।

(ଖ) ଜୀବଧର୍ମାଦିର ଆଶ୍ରୟ ହେଲେ 'ଅନ୍ୟତ୍ର ଧର୍ମାତ୍' ଏହି ପ୍ରଶ୍ନର ଯୋଗ୍ୟ ନୁହେଁ । ପ୍ରାଜ୍ଞ କିନ୍ତୁ ଧର୍ମାଦିଠାରୁ ଅତୀତ ହେବାରୁ 'ଅନ୍ୟତ୍ର ଧର୍ମାତ୍' ଏହି ପ୍ରଶ୍ନର ଯୋଗ୍ୟତା ଆସେ । କେବଳ ପ୍ରଷ୍ଟବ୍ୟଭେଦରେ ପ୍ରଶ୍ନର ଭେଦ ହୁଏ ନାହିଁ ।

(ଗ) କିନ୍ତୁ ଦୁଇଟି ମନ୍ତ୍ରରେ ପ୍ରଶ୍ନ ସାଦୃଶ୍ୟ ମଧ୍ୟ ସମାନ ଭାବରେ ଲକ୍ଷିତ ହୁଏ ନାହିଁ, କାରଣ-'ଯେ ଯଂ ପ୍ରେତେ' ଏହି ପୂର୍ବ ପ୍ରଶ୍ନ ଅସ୍ତି ଓ ନାସ୍ତିବିଷୟକ ଅଟେ ଓ 'ଅନ୍ୟତ୍ର ଧର୍ମାତ୍' ଏହି ଉତ୍ତର ପ୍ରଶ୍ନ ଧର୍ମାଦି ଅତୀତ ବସ୍ତୁ ବିଷୟକ ଅଟେ । ଅତଃ ପୂର୍ବ ମନ୍ତ୍ରରେ ପ୍ରତିପାଦିତ ବସ୍ତୁର ଉତ୍ତର ମନ୍ତ୍ରରେ ପ୍ରତ୍ୟଭିଜ୍ଞାନର ଅଭାବ ହେବାରୁ ପ୍ରଶ୍ନ ଗୁଡ଼ିକରେ ପରସ୍ପର ଭେଦ ହୁଏ ।

(୬) ମୂଳ-(କ) ନ ପୂର୍ବସ୍ୟୈବୋତ୍ତରତ୍ରାନୁକର୍ଷଣମିତି ଚେତ୍, ନ । ଜୀବପ୍ରାଜ୍ଞୟୋରେକତ୍ୱାଭ୍ୟୁପଗମାତ୍ । ଭବେତ୍ ପ୍ରଷ୍ଟବ୍ୟଭେଦାତ୍ ପ୍ରଶ୍ନଭେଦୋ ଯଦ୍ୟନ୍ୟୋ ଜୀବଃ ପ୍ରାଜ୍ଞାତ୍ ସ୍ୟାତ୍ । ନ ତ୍ୱନ୍ୟତ୍ୱମସ୍ତି । (ଖ) ତତ୍ତ୍ୱମସୀତ୍ୟାଦି-ଶ୍ରୁତ୍ୟିନ୍ତରେଭ୍ୟଃ । ଇହ ଚ 'ଅନ୍ୟତ୍ର ଧର୍ମାଦ୍' ଇତ୍ୟସ୍ୟ ପ୍ରଶ୍ନସ୍ୟ ପ୍ରତିବଚନଂ 'ନ ଜାୟତେ ମ୍ରିୟତେ ବା ବିପଶ୍ଚିତ୍', ଇତି ଜନ୍ମମରଣ ପ୍ରତିଷେଧେନ ପ୍ରତିପଦ୍ୟମାନଂ ଶାରୀର ପରମେଶ୍ୱରୟୋରଭେଦଂ ଦର୍ଶୟତି । ସତି ହି ପ୍ରସଙ୍ଗେ ପ୍ରତିଷେଧୋ ଭାଗୀଭବତି । (ଗ) ପ୍ରସଙ୍ଗଶ୍ଚ ଜନ୍ମମରଣୟୋଃ ଶରୀରସଂସ୍ପର୍ଶାଚ୍ଛରୀରସ୍ୟ ଭବତି ନ ପରମେଶ୍ୱରସ୍ୟ । (ଘ) ତଥା 'ସ୍ୱପ୍ନାନ୍ତଂ ଜାଗରିତାନ୍ତଂ ଚୋଭୌ ଯେନାନୁପଶ୍ୟତି । ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି', (କା ୨-୪-୪) ଇତି ସ୍ୱପ୍ନଜାଗରିତଦୃଶୋ ଜୀବସ୍ୟୈବ ମହତ୍ତ୍ୱବିଭୁତ୍ୱ ବିଶେଷଣସ୍ୟ ମନନେନ ଶୋକ ବିଚ୍ଛେଦଂ ଦର୍ଶୟନ୍ନ ପ୍ରାଜ୍ଞାଦନ୍ୟୋ ଜୀବ ଇତି ଦର୍ଶୟତି । ପ୍ରାଜ୍ଞବିଜ୍ଞାନାଦ୍ଧି ଶୋକବିଚ୍ଛେଦ ଇତି ବେଦାନ୍ତସିଦ୍ଧାନ୍ତଃ ।

(୬) ଭାଷାଂତର- ସମାଧାନ-(କ) ଯଦି ତୁମେ କୁହ ଯେ-ପୂର୍ବ ପ୍ରଶ୍ନର ଉତ୍ତର ବାକ୍ୟରେ ଅନୁବୃତ୍ତି ହୁଏ ନାହିଁ । ଏହା କହିବା ଠିକ୍ ନୁହେଁ । କାରଣ-ଜୀବ ଓ ପ୍ରାଜ୍ଞରେ ଏକତ୍ୱସ୍ୱୀକାର କରାଯାଇଛି । ଯଦି ଜୀବ ପ୍ରାଜ୍ଞଠାରୁ ଅନ୍ୟକିଛି ହୁଏ, ତେବେ ପ୍ରଷ୍ଟବ୍ୟଭେଦରେ ପ୍ରଶ୍ନର ଭେଦ ହୁଏ ।

(ଖ) ପରନ୍ତୁ 'ତତ୍ତ୍ୱମସି' ଇତ୍ୟାଦି ଅନ୍ୟଶ୍ରୁତି ଦ୍ୱାରା ଦୁଇଟିରେ ଭେଦ ନାହିଁ, ବୋଲି ସିଦ୍ଧ ହେଉଛି । ଏଠାରେ ମଧ୍ୟ 'ଅନ୍ୟତ୍ର ଧର୍ମାଦ୍' ଏହି ପ୍ରଶ୍ନର 'ନ ଜାୟତେ ମ୍ରିୟତେ ବା ବିପଶ୍ଚିତ୍' ଏହି ପ୍ରକାର ଜନ୍ମମରଣ ପ୍ରତିଷେଧରେ ପ୍ରତିପଦ୍ୟମାନ ପ୍ରତିବଚନ ଜୀବ ଓ ପରମେଶ୍ୱରର ଅଭେଦ ଦେଖାଏ । ଜନ୍ମମରଣର ପ୍ରସଙ୍ଗ ହେଲେ ପ୍ରତିଷେଧଯୁକ୍ତ ହୁଏ ।

(ଗ) ଶରୀର ସହ ସମ୍ବନ୍ଧ ହେଲେ ଜୀବାତ୍ମାରେ ଜନ୍ମମରଣର ପ୍ରସଙ୍ଗ ହୁଏ, କିନ୍ତୁ ପରମେଶ୍ୱରଠାରେ ନୁହେଁ ।

(ଘ) ଏହି ପ୍ରକାର 'ଯାହାଦ୍ୱାରା ସ୍ୱପ୍ନରେ ଜଣାଯାଉଥିବା ଓ ଜାଗ୍ରତ ଅବସ୍ଥାରେ ଦେଖାଉଥିବା ଦୁଇପ୍ରକାର ପଦାର୍ଥକୁ ଦେଖେ । ସେହି ମହାନ୍ ଓ ବିଭୁ ଆତ୍ମାକୁ ଜାଣି ବୁଦ୍ଧିମାନ୍ ପୁରୁଷ ଶୋକ କରେ ନାହିଁ', ଏହି ପ୍ରକାର ସ୍ୱପ୍ନ ଓ ଜାଗ୍ରତ ପଦାର୍ଥକୁ ଦେଖୁଥିବା ମହତ୍ତ୍ୱ ଓ ବିଭୁତ୍ୱ ବିଶିଷ୍ଟ ଜୀବର ଚିନ୍ତନରୁ ଶୋକର ଅତ୍ୟନ୍ତ ନିବୃତ୍ତି ଦେଖାଇ ଯମରାଜ ପ୍ରାଜ୍ଞ ପରମାତ୍ମାଠାରୁ ଜୀବ ଭିନ୍ନ ନୁହେଁ ବୋଲି ଦେଖାଏ । ଏହି ବେଦାନ୍ତ ସିଦ୍ଧାନ୍ତ ଯେ-ପ୍ରାଜ୍ଞର ବିଜ୍ଞାନଦ୍ୱାରା ଶୋକ ନାଶ ହୁଏ ।

(୭) ମୂଳ-(କ) ତଥାଽଗ୍ରେ 'ଯଦେବେହ ତଦମୁତ୍ର ଯଦମୁତ୍ର ତଦନ୍ୱିହ । ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି', (କା ୨-୪-୧୦) ଇତି ଜୀବପ୍ରାଜ୍ଞଭେଦ ଦୃଷ୍ଟିମପବଦତି । (ଖ) ତଥା ଜୀବବିଷୟସ୍ୟାସ୍ତିତ୍ୱନାସ୍ତିତ୍ୱପ୍ରଶ୍ନସ୍ୟା-ନନ୍ତରମ୍'' 'ଅନ୍ୟଂ ବରଂ ନଚିକେତୋ ବୃଣୀଷ୍ୱ' ଇତ୍ୟାରଭ୍ୟ ମୃତ୍ୟୁନା ତୈସ୍ତୈଃ କାମୈଃ ପ୍ରଲୋଭ୍ୟମାନୋଽପି ନଚିକେତା ଯଦା ନ ଚଚାଲ, ତଦୈନଂ ମୃତ୍ୟୁରଭ୍ୟୁ ପଦୟନିଃଶ୍ରେୟସବିଭାଗପ୍ରଦର୍ଶନେନ ବିଦ୍ୟା ବିଦ୍ୟା ବିଭାଗପ୍ରଦର୍ଶନେନ 'ବିଦ୍ୟାଭୀପ୍ସିନଂ ନିଚିକେତସଂ ମନ୍ୟେ ନତ୍ୱା କାମା ବହବୋଽଲୋଲୁପନ୍ତ', (କା ୧।୨।୪) ଇତି ପ୍ରଶସ୍ୟ ପ୍ରଶ୍ନମପି ତଦୀୟଂ ପ୍ରଶଂସନ୍ୟଦୁବାଚ' 'ତଂ ଦୁର୍ଦର୍ଶଂ ଗୂଢ଼ମନୁପ୍ରବିଷ୍ଟଂ ଗୁହାହିତଂ ଗହ୍ୱରେଷ୍ଟଂ ପୁରାଣମ୍ । ଅଧ୍ୟାତ୍ମଯୋଗାଧିଗମେନ ଦେବମ୍,



ମତ୍ୱା ଧୀରୋ ହର୍ଷଶୋକୌ ଜହାତି', (କା ୧।୨।୧୨) ଇତି । ତେନାପି ଜୀବପ୍ରାଜ୍ଞୟୋରଭେଦ ଏବହ ବିବକ୍ଷିତ ଇତି ଗମ୍ୟତେ । (ଗ) ଯତ୍ ପ୍ରଶ୍ନନିମିତ୍ତାଂ ଚ ପ୍ରଶଂସାଂ ମହତୀଂ ମୃତ୍ୟୋଃପ୍ରତ୍ୟପଦ୍ୟତ ନଚିକେତା ଯଦି ତଂ ବିହାୟ ପ୍ରଶଂସନାନନ୍ତରମନ୍ୟମେବ, ପ୍ରଶ୍ନମୁପକ୍ଷିପେଦସ୍ଥାନ ଏବ ସା ସର୍ବା ପ୍ରଶଂସା ପ୍ରସାରିତା ସ୍ୟାତ୍ । ତସ୍ମାତ୍ 'ଯେ ଯ ପ୍ରେତେ' ଇତ୍ୟସୈବ ପ୍ରଶ୍ନସ୍ୟୈତଦନୁକର୍ଷଣମ୍ 'ଅନ୍ୟତ୍ର ଧର୍ମାତ୍', ଇତି ।

**(୭) ଭାଷାଂତର-** (କ) ଏହି ପ୍ରକାର ଆଗରେ-'ଯେଉଁ ତତ୍ତ୍ୱ ଏହି ଦେହେନ୍ଦ୍ରିୟ ସଂଘାତରେ ଭାସେ, ସେ ଅନ୍ୟତ୍ର ଦେହାଦିରେ ରହେ । ଯେ ଅନ୍ୟ ସ୍ଥାନରେ ରହେ, ସେ ଏଠାରେ ରହେ । ଯେଉଁ ମନୁଷ୍ୟ ଏହି ତତ୍ତ୍ୱରେ ନାନାତ୍ୱରୂପରେ ଦେଖାଦିଏ, ସେ ମୃତ୍ୟୁରୁ ମୃତ୍ୟୁକୁ ଜନ୍ମମରଣକୁ ପାଏ', ଏହି ପ୍ରକାର ମନ୍ତ୍ର ଜୀବ ଓ ପ୍ରାଜ୍ଞରେ ଭେଦଦୃଷ୍ଟିରେ ନିଷେଧ କରେ ।

(ଖ) ଏହି ପ୍ରକାର ନଚିକେତାର ଜୀବବିଷୟକ ଅସ୍ତିତ୍ୱ, ନାସ୍ତିତ୍ୱ ପ୍ରଶ୍ନର ପରେ 'ହେ ନଚିକେତା, ଆତ୍ମବିଷୟକ ବରକୁ ଛାଡ଼ି ଅନ୍ୟବର ମାଗ', ଏହିପ୍ରକାର ଆରମ୍ଭ କରି ଯମରାଜଦ୍ୱାରା ପୁତ୍ର ଦାରା ଆଦି ଅନେକ ତତ୍‌ତତ୍ କାମନାଗୁଡ଼ିକରୁ ଅବ୍ୟକ୍ତ ପ୍ରଲୋଭିତ କରାଗଲେ ମଧ୍ୟ ନଚିକେତା ଯେତେବେଳେ ନିଜ ବର ଦ୍ୱାରା ବିଚଳିତ ନ ହୋଇ ନଥିଲେ, ସେତେବେଳେ ଧର୍ମରାଜ ଅଭ୍ୟୁଦୟ ଓ ମୋକ୍ଷର ବିଭାଗଭେଦପ୍ରଦର୍ଶନ କରିବା ଦ୍ୱାରା ଏବଂ ବିଦ୍ୟା ଓ ଅବିଦ୍ୟାର ପ୍ରଦର୍ଶନ ଦ୍ୱାରା 'ମୁଁ ତୁମ (ନଚିକେତା)କୁ ବିଦ୍ୟାଭିଳାଷୀ ବୋଲି ସ୍ୱୀକାର କରୁଛି । କାରଣ-ତୋତେ ବହୁତ ଭୋଗରେ ଲୋଭ ହୋଇନଥିଲା' । ଏହିପ୍ରକାର ନଚିକେତାର ପ୍ରଶଂସା କରି ତାହାର ପ୍ରଶ୍ନର ପ୍ରଶଂସା କରି 'ସେହି ଦୁଃଖରେ ଦେଖୁଥିବା, ଗୂଢ଼ସ୍ଥାନରେ ଅନୁପ୍ରବିଷ୍ଟ (ଗୁହା) ବୁଦ୍ଧିରେ ସ୍ଥିତ, ଅନେକ ଅନର୍ଥବ୍ୟାପ୍ତ ଦେହରେ ରହିଥିବା, ପୁରାତନ ଦେବକୁ ଅଧ୍ୟାତ୍ମଯୋଗର ପ୍ରାପ୍ତିଦ୍ୱାରା ଜାଣି ବୁଦ୍ଧିମାନ ପୁରୁଷ ହର୍ଷ-ଶୋକକୁ ତ୍ୟାଗ କରେ', ଏହା କୁହାଯାଇଛି । ଅତଏବ ଜୀବ ଓ ପ୍ରାଜ୍ଞ ପରମାତ୍ମାର ଅଭେଦହିଁ ଏଠାରେ ବିବକ୍ଷିତ ବୋଲି ଏହାଠାରୁ ଜଣାଯାଏ ।

(ଗ) ଯେଉଁ ପ୍ରଶ୍ନର କାରଣ ମୃତ୍ୟୁଦ୍ୱାରା ନଚିକେତାର ମହତୀ ପ୍ରଶଂସା କରାଯାଇଅଛି, ତାହାକୁ ଛାଡ଼ି ପ୍ରଶଂସାର ଅନନ୍ତର ଅନ୍ୟ ପ୍ରଶ୍ନକୁ ଉଠାଏ । ସେହିସବୁ ପ୍ରଶଂସା ଅନୁପଯୁକ୍ତ ସ୍ଥାନରେ ପ୍ରସାରିତ ହୁଏ ଅର୍ଥାତ୍ ଅନୁପଯୁକ୍ତ ସ୍ଥାବରେ ଜାଣିବାର କାରଣ ବ୍ୟର୍ଥ ହୋଇଯିବ । ତେଣୁ 'ଯେ ଯଂ ପ୍ରେତେ, ଏହି ପ୍ରଶ୍ନର ମଧ୍ୟ 'ଅନ୍ୟତ୍ର ଧର୍ମାତ୍' ଏହି ମନ୍ତ୍ରରେ ଅନୁବୃତ୍ତି ହୁଏ ।

(୮) ମୂଳ-(କ) ଯତ୍ତୁ ପ୍ରଶ୍ନଚ୍ଛାୟା ବୈଲକ୍ଷଣ୍ୟମୁକ୍ତମ୍, ତଦଦୂଷଣମ୍ । ତଦୀୟସ୍ୟୈବ ବିଶେଷସ୍ୟ ପୁନଃ ପୃଚ୍ଛ୍ୟମାନତ୍ୱାତ୍ । (ଖ) ପୂର୍ବତ୍ର ହି ଦେହାଦିବ୍ୟତିରିକ୍ତସ୍ୟାତ୍ମନୋଽସ୍ତିତ୍ୱଂ ପୃଷ୍ଟମ୍, ଉତ୍ତରତ୍ର ତୁ ତସ୍ୟୈବାସଂସାରିତ୍ୱଂ ପୃଚ୍ଛ୍ୟତ ଇତି । ଯାବଦ୍ଧ୍ୟବିଦ୍ୟା ନ ନିବର୍ତ୍ତତେ, ତାବଦ୍ଧର୍ମାଦିଗୋଚରତ୍ୱଂ ଜୀବସ୍ୟ ଜୀବତ୍ୱଂ ନ ନିବର୍ତ୍ତତେ । ତନ୍ନିବୃତ୍ତୌ ତୁ ପ୍ରାଜ୍ଞ ଏବ ତତ୍ତ୍ୱମସୀତି ଶ୍ରୁତ୍ୟା ପ୍ରତ୍ୟାୟ୍ୟତେ । (ଗ) ନ ଚାବିଦ୍ୟାବତ୍ତ୍ୱେ ତଦପଗମେ ଚ ବସ୍ତୁନଃ କଶ୍ଚିଦର୍ଥବିଶେଷୋଽସ୍ତି । ଯଥା କଶ୍ଚିତ୍ ସନ୍ତମସେ ପତିତାଂ କାଞ୍ଚିଦ୍ରଜ୍ଜୁମହିଂ ମନ୍ୟମାନୋ ଭୀତୋ ବେପମାନଃ ପଲାୟତେ, ତଂ ଚାପରୋ ବ୍ରୂୟାନ୍ ମା ଭୈଷୀର୍ନାୟମହୀ ରଜ୍ଜୁରେବେତି । ସ ଚ ତଦୁପଶ୍ରୁତ୍ୟା ହି କୃତଂ ଭୟମୁତ୍ସୃଜେଦ୍ ବେପଥୁଂ ପଲାୟନଞ୍ଚ । (ଘ) ନ ତ୍ୱିହ ବୁଦ୍ଧିକାଳେ ତଦପଗମକାଳେ ଚ ବସ୍ତୁନ କଶ୍ଚିଦ୍ ବିଶେଷଃସ୍ୟାତ୍ । ତଥୈବୈତଦପି ଦ୍ରଷ୍ଟବ୍ୟମ୍ । ତତଶ୍ଚ 'ନଜାୟତେ ମ୍ରିୟତେ ବା', ଇତ୍ୟେବମାଦ୍ୟପି ଭବତ୍ୟସ୍ତିତ୍ୱପ୍ରଶ୍ନସ୍ୟ ପ୍ରତିବଚନମ୍ ।

(୮) **ଭାଷାଂତର**-(କ) ଦୁଇଟି ପ୍ରଶ୍ନରେ ସାଦୃଶ୍ୟ ନ ହେବାରୁ ବୈଲକ୍ଷଣ ହୁଏ ବୋଲି ଯାହା କୁହାଯାଇଛି, ସେ ଦୋଷ ନୁହେଁ । କାରଣ-ତାହାର ବିଶେଷ ପୁଣି ପଚରାଗଲା ।

(ଖ) ପୂର୍ବବାକ୍ୟ 'ଯେ ଯଂ ପ୍ରେତେ'ରେ ଦେହାଦିଭିନ୍ନ ଆତ୍ମାର ଅସ୍ତିତ୍ୱ ପଚରାଗଲା ଓ ଉତ୍ତର ମନ୍ତ୍ରରେ କିନ୍ତୁ ତାହାର ଅସଂସାରିତ୍ୱ ପଚରାଗଲା । ତେଣୁ ଯେପର୍ଯ୍ୟନ୍ତ ଅବିଦ୍ୟା ନିବୃତ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ଜୀବରେ ଧର୍ମାଦି ଆଶ୍ରୟତ୍ୱ ଓ ଜୀବତ୍ୱ ନିବୃତ୍ତ ହେବନାହିଁ । ତାହାର ନିବୃତ୍ତ ହେଲା ପରେ ସେ ପ୍ରାଜ୍ଞ ହୁଏ । 'ତତ୍ତ୍ୱମସି' ଏହିପରି ଶ୍ରୁତି ପ୍ରତୀତି କରାଏ ।

(ଗ) ଅବିଦ୍ୟାର ଯୋଗରେ ବା ନିବୃତ୍ତହେଲେ ବସ୍ତୁରେ କୌଣସି ବିଶେଷ ଆସେ ନାହିଁ । ଯେପରି ଅନ୍ଧକାରରେ ପଡ଼ି କୌଣସି ରଜ୍ଜୁରେ ସର୍ପ ବୋଲି ଭାବି କୌଣସି ପୁରୁଷ ଭୟରେ ଥରି ଥରି ସେଠାରୁ ପଳାଇଯାଏ । ସେହିସ୍ଥାନରେ ଯଦି କୌଣସି ଅନ୍ୟ ଭଦ୍ରବ୍ୟକ୍ତି କହେ ଯେ- ଭୟ କର ନାହିଁ, ଏହା ସର୍ପ ନୁହେଁ, କିନ୍ତୁ ରଜ୍ଜୁ । ତେବେ ସେ ପୁରୁଷ ତାହାର କଥା ଶୁଣି ସର୍ପଜ୍ଞାନଜନ୍ୟ ଭୟ, କମ୍ପନ ଓ ପଳାୟନ କରେ ନାହିଁ ।

(ଘ) ପରନ୍ତୁ ସର୍ପବୁଦ୍ଧି କାଳରେ ଅଥବା ତାର ନିବୃତ୍ତି କାଳରେ ବସ୍ତୁ (ରଜ୍ଜୁ)ରେ କୌଣସି ବିଶେଷତା ନାହିଁ । ଏହିପ୍ରକାର ଏଠାରେ ଜାଣିବା ଉଚିତ୍ । ଏହା ବ୍ୟତୀତ ଜୀବ ବ୍ରହ୍ମର ଅଭେଦ ହେଲେ 'ନ ଜାୟତେ ମ୍ରିୟତେ ବା' ଇତ୍ୟାଦି ମଧ୍ୟ ଅସ୍ତିତ୍ୱ ପ୍ରଶ୍ନର ପ୍ରତିବଚନ ଅଟେ ।

 

(୯) ମୂଳ-(କ) ସୂତ୍ରଂ ତ୍ୱବିଦ୍ୟାକଳ୍ପିତଜୀବପ୍ରାଜ୍ଞଭେଦାପେକ୍ଷୟା ଯୋଜୟିତବ୍ୟମ୍ । ଏକତ୍ୱେପି ହ୍ୟାତ୍ମବିଷୟସ୍ୟ ପ୍ରଶ୍ନସ୍ୟ ପ୍ରାୟଣାବସ୍ଥାୟାଂ ଦେହବ୍ୟ-ତିରିକ୍ତାସ୍ତିତ୍ୱମାତ୍ରବିଚିକତ୍ସନାତ୍ କର୍ତ୍ତୃତ୍ୱାଦିସଂସାରସ୍ୱଭାବାନପୋହନାଚ୍ଚ ପୂର୍ବସ୍ୟ ପର୍ଯ୍ୟାୟସ୍ୟ ଜୀବବିଷୟତ୍ୱମୁତ୍ପ୍ରେକ୍ଷ୍ୟତେ । (ଖ) ଉତ୍ତରସ୍ୟ ତୁ ଧର୍ମାଦ୍ୟତ୍ୟୟସଂ-କୀର୍ତ୍ତନାତ୍ ପ୍ରାଜ୍ଞବିଷୟତ୍ୱମିତି । ତତଶ୍ଚ ଯୁକ୍ତାଽଗ୍ନି ଜୀବପରମାତ୍ମାକଳ୍ପନା । ପ୍ରଧାନକଳ୍ପ-ନାୟାନ୍ତୁ ନ ବରପ୍ରଦାନଂ ନ ପ୍ରଶ୍ନୋ ନ ପ୍ରତିବଚନମିତି ବୈଷମ୍ୟମ୍ ।

(୯) ଭାଷାଂତର-(କ) (ଜୀବ ଓ ବ୍ରହ୍ମର ଏକ ହେଲେ ମଧ୍ୟ) ଅବିଦ୍ୟା କଳ୍ପିତ ଜୀବ ବ୍ରହ୍ମ ଭେଦର ଅପେକ୍ଷା ସୂତ୍ରର ଯୋଜନା କରିବା ଉଚିତ । ଯଦ୍ୟପି ଆତ୍ମବିଷୟକ ପ୍ରଶ୍ନ ଏକ ଅଟେ, ତଥାପି ମରଣାବସ୍ଥାରେ ଦେହଭିନ୍ନ ଆତ୍ମାରେ ଅସ୍ତିତ୍ୱ ମାତ୍ରାର ସଂଶୟ ହେଲେ ଓ କର୍ତ୍ତୃତ୍ୱାଦି ସଂସାର ସ୍ୱଭାବର ନିଷେଧ ନ ହେଲେ ପୂର୍ବ ପର୍ଯ୍ୟାୟ (ପ୍ରଶ୍ନ)ରେ ଜୀବ ବିଷୟକ ଉତ୍ପ୍ରେକ୍ଷା ହୁଏ ।

(ଖ) ଉତ୍ତର ପର୍ଯ୍ୟାୟରେ ଧର୍ମାଦିରାହିତ୍ୟ ପ୍ରତିପାଦିନ ହେଲେ ସେ ପ୍ରାଜ୍ଞବିଷୟକ ହୁଏ । ତେଣୁ ଅଗ୍ନି, ଜୀବ ଓ ପରମାତ୍ମାର କଳ୍ପନା ଠିକ୍ ଅଟେ । ପ୍ରଧାନର କଳ୍ପନାରେ ବରପ୍ରଦାନ ନାହିଁ, କି ପ୍ରଶ୍ନ ନାହିଁ, କି ପ୍ରତିବଚନ ନାହିଁ, ଏହି ପ୍ରକାର ବୈଷମ୍ୟ ଦେଖାଯାଏ ।

## ମହଦ୍ବଚ୍ଚ ॥ ୭ ॥

## (୧) ମହଦ୍ବଚ୍ଚ ॥ ୧-୪-୭

ମହତବତ୍ - 'ବୁଦ୍ଧେରାତ୍ମା ମହାନ୍ ପରଃ' ଏଠାରେ ପଠିତ 'ମହତ୍' ଶବ୍ଦ ଯେପରି ସାଂଖ୍ୟାଭିମତତତ୍ତ୍ୱର ବାଚକ ନୁହେଁ, ଚ-ସେପରି ବୈଦିକ ଅବ୍ୟକ୍ତଶବ୍ଦ ପ୍ରଧାନର ବାଚକ ନୁହେଁ ।

(୨) ମୂଳ- (କ) ଯଥା ମହଚ୍ଛବ୍ଦଃ ସାଂଖ୍ୟୈଃ ସତ୍ତାମାତ୍ରେଽପି ପ୍ରଥମଜେ ପ୍ରଯୁକ୍ତୋ ନ ତମେବ ବୈଦିକେଽପି ପ୍ରୟୋଗେଽଭିଧତ୍ତେ । 'ବୁଦ୍ଧେରାତ୍ମା ମହାନ୍ ପରଃ', (କା ୧।୩।୧୦), ମହାନ୍ତଂ ବିଭୁମାତ୍ମାନମ୍', (କା ୧।୨।୨୨), ବେଦାହମେତଂ ପୁରୁଷଂ ମହାନ୍ତମ୍', (ଶ୍ୱେ ୩।୮) ଇତ୍ୟେବମାଦାବାତ୍ମଶବ୍ଦ ପ୍ରୟୋଗାଦିଭ୍ୟୋ ହେତୁଭ୍ୟଃ । (ଖ) ତଥାଽବ୍ୟକ୍ତଶବ୍ଦୋଽପି ନ ବୈଦିକେ ପ୍ରୟୋଗ ପ୍ରଧାନମଭିଧାତୁମର୍ହତି । ଅତଶ୍ଚ ନାସ୍ତ୍ୟାନୁମାନିକସ୍ୟ ଶବ୍ଦବତ୍ତ୍ୱମ୍ ।

(୨) ଭାଷାଂତର- (କ) ଯେପରି ସାଂଖ୍ୟାଚାର୍ଯ୍ୟମତରେ ସତ୍ତାମାତ୍ର ପ୍ରଥମୋତ୍ପନ୍ନ ମହତ୍ତତ୍ତ୍ୱ ଅର୍ଥରେ 'ମହାନ୍ ବିଭୁ ଆତ୍ମାକୁ', 'ମୁଁ ଏହି ମହାନ୍ ପୁରୁଷକୁ ଜାଣିଛି, ଇତ୍ୟାଦିରେ ଆତ୍ମଶବ୍ଦପ୍ରୟୋଗାଦିହେତୁରୁ ବୈଦିକ ପ୍ରୟୋଗରେ ତାହାର ଅର୍ଥକୁ କହେ ।

(ଖ) ସେହି ପ୍ରକାର ମଧ୍ୟ ଅବ୍ୟକ୍ତଶବ୍ଦ ବୈଦିକ ପ୍ରୟୋଗରେ ପ୍ରଧାନର ଅଭିଧାନକୁ କରିପାରେ ନାହିଁ । ତେଣୁ ଅନୁମାନଗମ୍ୟ ପ୍ରଧାନ ଶ୍ରୁତି ପ୍ରତିପାଦିତ ନୁହେଁ ।

## २ चमसाधिकरणम् । सू० ८-१०

## ଚମସାଧିକରଣ-୨

## चमसवदविशेषात् ॥ ८ ॥

## (୧) ଚମସବଦବିଶେଷାତ୍ ॥ ୧-୪-୮

ଚମସବତ୍-'ଅବାଗ୍‌ବିଲମସଶ୍ଚର୍ମସଃ', ଚମସ (ଯଜ୍ଞପାତ୍ର)ର ସଦୃଶ, ଅବିଶେଷାତ୍-ଅବିଶେଷ ହେବାରୁ ଶ୍ରୁତିପଠିତ ଅଜାଶବ୍ଦ ମଧ୍ୟ ପ୍ରଧାନର ବାଚକ ନୁହେଁ ଅର୍ଥାତ୍ ଯେପରି ଅର୍ବାଗ୍ ବିଲତ୍ୱ ସାମାନ୍ୟ ଧର୍ମ ହେବାରୁ ଚମସର ବାଚକ ନୁହେଁ । ସେପରି ଅଜାତ୍ୱ ଧର୍ମ ମଧ୍ୟ ସାମାନ୍ୟହେବାରୁ ପ୍ରଧାନ ବାଚକ ନୁହେଁ ।

(୨) ମୂଳ-(କ) ପୁନରପି ପ୍ରଧାନବାଦ୍ୟଶବ୍ଦତ୍ୱଂ ପ୍ରଧାନସ୍ୟାସିଦ୍ଧମିତ୍ୟାହ । କସ୍ମାତ୍ ? ମନ୍ତ୍ରବର୍ଣ୍ଣାତ୍-'ଅଜାମେକାଂ ଲୋହିତ ଶୁକ୍ଲକୃଷ୍ଣାମ୍, ବହ୍ୱୀଃ ପ୍ରଜାଃ ସୃଜମାନାଂ ସ୍ୱରୂପାଃ । ଅଜୋ ହ୍ୟେକୋ ଜୁଷମାଣୋଽନୁଶେତେ, ଜହାତ୍ୟେନାଂ ଭୁକ୍ତଭୋଗାମଜୋଽନ୍ୟଃ', (ଶ୍ୱେ ୪-୫) ଇତି । ଅତ୍ର ହି ମନ୍ତ୍ରେ ଲୋହିତଶୁକ୍ଲକୃଷ୍ଣଶବ୍ଦୈଃ ରଜଃସତ୍ତ୍ୱତମାଂସ୍ୟଭିଧୀୟନ୍ତେ । (ଖ) ଲୋହିତଂ ରଜଃ, ରଞ୍ଜନାତ୍ମକତ୍ୱାତ୍ । ଶୁକ୍ଲଂ ସତ୍ତ୍ୱଂ ପ୍ରକାଶାତ୍ମକତ୍ୱାତ୍, କୃଷ୍ଣଂ ତମଃ ଆବରଣାତ୍ମକତ୍ୱାତ୍ । ତେଷାଂ ସାମ୍ୟାବସ୍ଥାଽବୟବଧର୍ମୈର୍ବ୍ୟପଦିଶ୍ୟତେ ଲୋହିତଶୁକ୍ଲକୃଷ୍ଣେତି । (ଗ) 'ନ ଜାୟତ' ଇତି ଅଜା ସ୍ୟାତ୍ । ମୂଳପ୍ରକୃତିରବିକୃତିଃ' ଇତ୍ୟଭ୍ୟୁପଗମାତ୍ । (ଘ) ନନ୍ୱଜାଶବ୍ଦଶ୍ଛାଗାୟାଂ ରୂଢ଼ଃ । ବାଢମ୍, ସାତୁ ରୂଢ଼ିରିହ ନାଶ୍ରୟିତୁଂ ଶକ୍ୟା, ବିଦ୍ୟାପ୍ରକରଣାତ୍ । ସା ଚ ବହ୍ୱୀଃ ପ୍ରଜାସ୍ତ୍ରୈଗୁଣାନ୍ୱିତା ଜନୟତି । ତାଂ ପ୍ରକୃତିମଜଃ ଏକଃ ପୁରୁଷୋ ଜୁଷମାଣଃ ପ୍ରିୟମାଣଃ ସେବମାନୋ ବାଽନୁଶେତେ । ତାମେବା ବିଦ୍ୟୟାଽତ୍ମତ୍ୱେନୋପଗମ୍ୟ ସୁଖୀ ଦୁଃଖୀ ମୂଢୋଽହମିତ୍ୟବିବେକତୟା ସଂସରତି । (ଙ) ଅନ୍ୟଃ ପୁନରଜଃ ପୁରୁଷ



ଉତ୍ପନ୍ନବିବେକଜ୍ଞାନୋ ବିରକ୍ତେ ଜହାତ୍ୟେନାଂ ପ୍ରକୃତିଂ ଭୁକ୍ତଭୋଗାଂ କୃତଭୋଗାପବର୍ଗାଂ ପରିତ୍ୟଜତିମୁଚ୍ୟତ ଇତ୍ୟର୍ଥଃ । ତସ୍ମାଚ୍ଛ୍ରୁତି-ମୂଳୈବ ପ୍ରଧାନାଦିକଳ୍ପନା କାପିଳାନାମିତି ।

(୨) ଭାଷାଂତର-(କ) ପ୍ରଧାନବାଦୀମାନେ କହନ୍ତି ଯେ- ପ୍ରଧାନକୁ ଅଶବ୍ଦ ଶ୍ରୁତି ଦ୍ୱାରା ଅପ୍ରତିପାଦିତ କହିବା ଅସିଦ୍ଧ ଅଟେ । କିପରି ? 'ନିଜ ଅନୁରୂପ ଅନେକ ସନ୍ତାନ ଉତ୍ପନ୍ନ କରୁଥିବା, ଲୋହିତ, କୃଷ୍ଣ ଓ ଶୁକ୍ଳ ବର୍ଣ୍ଣର ଗୋଟିଏ ମାଈଛେଳିକୁ ଏକ ଅଣ୍ଡିରା ଛେଳି ଭକ୍ଷଣକରି ଭୋଗକରେ ଓ ଆଉ ଗୋଟିଏ ଅଣ୍ଡିରାଛେଳି ସେହି ଭୁକ୍ତ ଭୋଗକୁ ତ୍ୟାଗକରେ', ଏହି ହିଁ ମନ୍ତ୍ର ଅଟେ । ଏହି ମନ୍ତ୍ରରେ ଲୋହିତ, ଶୁକ୍ଳ, କୃଷ୍ଣ ଶବ୍ଦଦ୍ୱାରା ରଜ, ସତ୍ୱ ଓ ତମର ଅଭିଧାନ ହୁଏ ।

(ଖ) ଲୋହିତ ରାଗାତ୍ମକ ରଜ, ଶୁକ୍ଳ ପ୍ରକାଶାତ୍ମକ ହେଲେ ସତ୍ୱ, କୃଷ୍ଣ ଆବରଣାତ୍ମକ ହେଲେ ତମ ହୁଅନ୍ତି । ତାହାର ଅବୟବ ଧର୍ମଗୁଡ଼ିକଦ୍ୱାରା ଲୋହିତ, ଶୁକ୍ଳ ଓ କୃଷ୍ଣ ରୂପକୁ ସାମ୍ୟାବସ୍ଥା କୁହାଯାଏ ।

(ଗ) ଯାହା ଉତ୍ପନ୍ନ ହୁଏ ନାହିଁ, ସେ ଅଜା ହୁଏ । କାରଣ ମୂଳ ପ୍ରକୃତି କାହାର କାର୍ଯ୍ୟ ହୁଏ ନାହିଁ-ଏହାହିଁ ସାଂଖ୍ୟ ଲୋକମାନେ ସ୍ୱୀକାର କରନ୍ତି ।

(ଗ) ଯାହା ଉତ୍ପନ୍ନ ହୁଏ ନାହିଁ, ସେ ଅଜା ହୁଏ । କାରଣ ମୂଳ ପ୍ରକୃତି କାହାର କାର୍ଯ୍ୟ ହୁଏ ନାହିଁ-ଏହାହିଁ ସାଂଖ୍ୟ ଲୋକମାନେ ସ୍ୱୀକାର କରନ୍ତି ।

(ଘ) ଅଜା ଶବ୍ଦ କ'ଣ ପ୍ରକୃତିରେ ରୂଢ଼ ହୁଏ ? ହିଁ, ଏହା ସତ୍ୟ । କିନ୍ତୁ ଏଠାରେ ସେହି ରୂଢ଼ିର ଆଶ୍ରୟ ଗ୍ରହଣ କରାଯାଇପାରିବ ନାହିଁ । କାରଣ-ଏହା ବିଦ୍ୟାର ପ୍ରକରଣ ଅଟେ । ସେ ଅଜା ନିଜର ଅନୁରୂପ ତ୍ରିଗୁଣାନ୍ୱିତ-ସୁଖ-ଦୁଃଖ-ମୋହାତ୍ମକ ଦେବତା, ମନୁଷ୍ୟ, ପଶୁ ଆଦି ବହୁତ ଜୀବଙ୍କୁ ଜନ୍ମଦିଏ । ଏକ ଅଜ-ପୁରୁଷ ସେହି ପ୍ରକୃତି ଉପରେ ପ୍ରେମ ରଖେ ଓ ତାହାକୁ ଉପଭୋଗ କରେ, ତାହାର ପାଖରେ ଶୁଏ ଅର୍ଥାତ୍ ଅବିଦ୍ୟା ଦ୍ୱାରା ତାହାକୁ ଆତ୍ମରୂପରେ ସ୍ୱୀକାର କରି 'ମୁଁ ସୁଖୀ, ଦୁଃଖୀ ଓ ମୂଢ଼' ଏହିପ୍ରକାର ଅବିବେକରୁ ଜନ୍ମ ମରଣକୁ ପାଏ ।

(ଙ) ପରନ୍ତୁ ଉତ୍ପନ୍ନ ହେଉଥିବା, ବିବେକ ଜ୍ଞାନଥିବା, ଅନ୍ୟଗୋଟିଏ ଅଜ ବିରକ୍ତ ପୁରୁଷ, ଯେତେଗୁଡ଼ିଏ ଭୋଗ ଓ ଅପବର୍ଗ ସମ୍ପାଦନା କରେ, ସେହି ଭୁକ୍ତଭୋଗା ପ୍ରକୃତିକୁ ପରିତ୍ୟାଗ କରେ, ତାହାଠାରୁ ମୁକ୍ତ ହୁଏ । ଏହିପରି ଅର୍ଥ ହୁଏ । କପିଳମତାନୁଯାୟୀମାନଙ୍କର ପ୍ରଧାନାଦିକଳ୍ପନା ଶ୍ରୁତି ମୂଳକ ଅଟେ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ନାନେନ ମନ୍ତ୍ରେଣ ଶ୍ରୁତିମତ୍ତ୍ୱଂ ସାଂଖ୍ୟବାଦସ୍ୟ ଶକ୍ୟମାଶ୍ରୟିତୁମ୍ । ନ ହ୍ୟୟଂ ମନ୍ତ୍ରଃ ସ୍ୱାତନ୍ତ୍ରେଣ କିଞ୍ଚିଦପି ବାଦଂ ସମର୍ଥୟିତୁମୁତ୍ସହତେ, ସର୍ବତ୍ରାପି ଯୟା କୟାଚିତ୍‌କଳ୍ପନୟାଽଜାତ୍ୱାଜାତ୍ୱାଦିସମ୍ପାଦନୋ-ପପତ୍ତେଃ, ସାଂଖ୍ୟବାଦ ଏବେହାଭିପ୍ରେତଇତି ବିଶେଷାବଧାରଣକାରଣାଭାବାତ୍ । (ଖ) ଚମସବତ୍ । ଯଥାହି 'ଅର୍ବାଗ୍‌ବିଲଶ୍ଚମସ ଊର୍ଦ୍ଧ୍ୱବୁଘ୍ନଃ', (ବୃ ୨।୨।୩) ଇତ୍ୟସ୍ମିନ୍ ମନ୍ତ୍ରେ ସ୍ୱାତନ୍ତ୍ରେଣାୟାଂ ନାମାସୌ ଚମସୋଽଭିପ୍ରେତ ଇତି ନ ଶକ୍ୟତେ ନିରୂପୟିତୁମ୍ । (ଗ) ସର୍ବତ୍ରାପି ଯଥାକଥଞ୍ଚିଦର୍ବାଗ୍‌ବିଲତ୍ୱାଦିକଳ୍ପନୋପପତ୍ତେଃ । ଏବମିହାପ୍ୟ ବିଶେଷଃ 'ଅଜାମେକାମ୍' ଇତ୍ୟସ୍ୟ ମନ୍ତ୍ରସ୍ୟ ନାସ୍ମିନ୍ ମନ୍ତ୍ରେ ପ୍ରଧାନମେବାଜାଽପ୍ରେତେତି ଶକ୍ୟତେ ନିୟନ୍ତୁମ୍ ।

**(୩) ଭାଷାଂତର**-ସିଦ୍ଧାନ୍ତ-(କ) 'ଅଜାମେକାମ୍' ଏହି ମନ୍ତ୍ରରେ ସାଂଖ୍ୟବାଦ ଶ୍ରୁତିପ୍ରତିପାଦିତ ଅଟେ ବୋଲି ସ୍ୱୀକାର କରାଯାଇପାରିବ ନାହିଁ । କାରଣ-ଏହି ମନ୍ତ୍ର ସ୍ୱତନ୍ତ୍ରରୂପରେ କୌଣସିବାଦର ସମର୍ଥନ କରିବାରେ ଉତ୍ସାହ କରେ ନାହିଁ । ସମସ୍ତଙ୍କର ମତରେ ଅଜାତ୍ୱାଦିର ସମ୍ପାଦନ ଉତ୍ପନ୍ନ ହୁଏ । ସାଂଖ୍ୟବାଦହିଁ ଏଠାରେ ଅଭିପ୍ରେତ ହୁଏ । ଏହି ବିଶେଷର ନିଶ୍ଚାୟକ କୌଣସି କାରଣ-ପ୍ରମାଣ ନାହିଁ ।

(ଖ) ଚମସର ସଦୃଶ 'ଯାହା ନିଚର ଛିଦ୍ର ଓ ଉପରର ଉତ୍‌ଥାନ କରେ ସେ ଚମସ ଅଟେ', ଏହି ମନ୍ତ୍ରରେ ସ୍ୱତନ୍ତ୍ର ରୂପରେ ଏହି ଚ୍‌ମସ ନାମକ ଯଜ୍ଞପାତ୍ର ଅଭିପ୍ରେତ ହୁଏ ବୋଲି ନିରୂପଣ କରାଯାଇପାରିବ ନାହିଁ । କାରଣ-ସର୍ବତ୍ର କୌଣସି ନା କୌଣସି ପ୍ରକାର ଅର୍ବାଗ୍‌ବିଳତ୍ୱର କଳ୍ପନା ହୋଇପାରେ ।

(ଗ) ସେପରି ଏଠାରେ ମଧ୍ୟ 'ଅଜାମେକାମ୍' ଏହି ମନ୍ତ୍ରରେ କୌଣସି ବିଶେଷ ଅର୍ଥ ପ୍ରତିପାଦିତ ନାହିଁ । ତେଣୁ ଏହି ମନ୍ତ୍ରରେ ଅଜାଶବ୍ଦଦ୍ୱାରା ପ୍ରଧାନ ଅଭିପ୍ରେତ ବୋଲି ନିୟମନ ହୋଇପାରିବ ନାହିଁ ।

(୧) ମୂଳ-(କ) ତତ୍ର ତୁ 'ଇଦଂ ତଚ୍ଛିର ଏଷ ହ୍ୟର୍ବାଗ୍‌ବିଲଶ୍ଚମସ ଊର୍ଦ୍ଧ୍ୱବୁଘ୍ନଃ' ଇତି ବାକ୍ୟଶେଷାଚ୍ଚମସବିଶେଷପ୍ରତିପତ୍ତିର୍ଭବତି । ଇହ ପୁନଃ କେୟମଜା ପ୍ରତିପତ୍ତି-ବ୍ୟେତି ? ଅତ୍ର ବ୍ରୂମଃ ।

**(୧) ଭାଷାଂତର**-(କ) ପରନ୍ତୁ ସେଠାରେ 'ସେ ଏହି ଶିର ଅଟେ, ଯାହାକି ଅଧୋମୁଖ, ଉପରକୁ ଉଠୁଥିବା ଗୋଲାକାର' । ଏହିପ୍ରକାର ବାକ୍ୟଶେଷରେ ଚମସ ବିଶେଷର ପ୍ରତୀତି ହୁଏ । କିନ୍ତୁ ଏଠାରେ ଅଜାପଦ କାହାକୁ ବୁଝାଇବା ଉଚିତ ? ଏହା ଉପରେ ଆମ୍ଭେ କହୁଁ-



## ज्योतिरूपक्रमा तु तथा ह्यभिधीयत एके ॥ ९ ॥

## (୨) ଜ୍ୟୋତିରୁପକ୍ରମା ତୁ ତଥା ହ୍ୟଭିଧୀୟତ ଏକେ ॥ ୧-୪-୯ ॥

ଜ୍ୟୋତିରୂପକ୍ରମା-ତେଜ ଯାହାର ଉପକ୍ରମ ଆରମ୍ଭରେ ଅଛି, ସେହି ତେଜ, ଜଳ ଓ ଅନ୍ନରୂପ ପ୍ରକୃତିର ଅଜଶବ୍ଦ ଦ୍ୱାରା ନିଶ୍ଚିତ କରିବା ଉଚିତ । ପ୍ରାଧାନ ନୁହେଁ । ହି-କାରଣ, ତଥା-ସେହିପରି ଏକେ-ଛାନ୍ଦୋଗ୍ୟ ତେଜ, ଜଳ ଓ ଅନୁରୂପ ପ୍ରକୃତିର ରୋହିତାଦି ରୂପ, ଅଧୀୟତେ-କୁହାଯାଏ, ତୁ-ତୁ ଶବ୍ଦ ଅବଧାରଣାର୍ଥକ ଅଟେ ।

(୩) ମୂଳ-(କ) ପରମେଶ୍ୱରାଦୁତ୍ପନ୍ନା ଜ୍ୟୋତିଃପ୍ରମୁଖା ତେଜୋବନ୍ନ ଲକ୍ଷଣା ଚତୁର୍ବିଧସ୍ୟ ଭୂତଗ୍ରାମସ୍ୟ ପ୍ରକୃତିଭୂତେୟମଜା ପ୍ରତିପତ୍ତବ୍ୟା । ତୁଶବ୍ଦୋଽବଧାରଣାର୍ଥଃ, ଭୂତତ୍ରୟଲକ୍ଷଣୈବେୟମଜା ବିଜ୍ଞେୟା, ନ ଗୁଣତ୍ରୟଲକ୍ଷଣା । (ଖ) କସ୍ମାତ୍ ? ତଥା ହ୍ୟେକେ ଶାଖିନସ୍ତେଜୋବନ୍ନାନାଂ ପରମେଶ୍ୱରାଦୁତ୍ପତ୍ତିମାମ୍ନାୟ ତେଷାମେବ ରୋହିତାଦି-ରୂପତାମାମନନ୍ତି 'ଯଦଗ୍ନେ ରୋହିତଂ ରୂପଂ, ତେଜସସ୍ତଦ୍ରୂପଂ ଯଚ୍ଛୁକ୍ଳଂ ତଦପାଂ ଯତ୍କୃଷ୍ଣଂ ତଦନ୍ନସ୍ୟ', ଇତି, ତାନ୍ୟେବେହ ତେଜୋବନ୍ନାନି ପ୍ରତ୍ୟଭିଜ୍ଞାୟନ୍ତେ; (ଗ) ରୋହିତାଦି ଶବ୍ଦସାମାନ୍ୟାତ୍ । ରୋହିତାଦୀନାଞ୍ଚ ଶବ୍ଦାନାଂ ରୂପବିଶେଷେଷୁ ମୁଖ୍ୟତାଦ୍ଭୋକ୍ତାଦ୍ୱାଚ ଗୁଣ ବିଶେଷସ୍ୟ । ଅସନ୍ଦିଗ୍ଧେନ ଚ ସନ୍ଦିଗ୍ଧସ୍ୟ ନିଚମନଂ ନାଯ୍ୟଂ ମନ୍ୟନ୍ତେ ।

**(୩) ଭାଷାଂତର-** (କ) ପରମେଶ୍ୱରଠାରୁ ଉତ୍ପନ୍ନ ହୋଇଥିବା ତେଜପ୍ରମୁଖ ତେଜ, ଜଳ ଓ ଅନ୍ନରୂପ ଅଟେ । ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍ଭିଦ୍ଜ ରୂପ ଚାରି ପ୍ରକାରର ଭୂତସମୂହର କାରଣରୂପ ଅଟେ । ସେ ଏଠାରେ ଅଜାପଦରେ ବୁଝିବା ଉଚିତ୍ । ସୂତ୍ରସ୍ଥ 'ତୁ' ଶବ୍ଦ ଅବଧାରଣ (ନିଶ୍ଚୟ) ଅର୍ଥରେ ପ୍ରଯୁକ୍ତ ଅଟେ । ଏହି ଅଜା ତେଜ, ଜଳ, ଅନ୍ନ ଭୂତତ୍ରୟାତ୍ମକ ବୋଲି ଜାଣିବା ଉଚିତ । କିନ୍ତୁ ଗୁଣ କ୍ରୟାତ୍ମକ-ପ୍ରଧାନର ନୁହେଁ ।

(ଖ) କାରଣ-ଏହି ପ୍ରକାର ଛାନ୍ଦୋଗ୍ୟ ଶାଖାମାନେ ତେଜ, ଜଳ ଓ ଅନ୍ନର ପରମେଶ୍ୱରଠାରୁ ଉତ୍ପତ୍ତି କହି 'ଯେଉଁ ଅଗ୍ନିରେ ରୋହିତ-ରକ୍ତରୂପ ଅଟେ, ସେ ତେଜର ଅଟେ । ଯାହା ଶୁକ୍ଳରୂପ, ସେ ଜଳର ଅଟେ । ଯାହା କୃଷ୍ଣରୂପ ସେ ଅନ୍ନ ପୃଥିବୀର', ଏହିପ୍ରକାର ସେହି ତିନୋଟିର ରୋହିତାଦିରୂପ କୁହାଯାଏ । ସେହି ଅଜାମନ୍ତ୍ରରେ ସେହି ତେଜ, ଜଳ ଓ ଅନ୍ନର ଲୋହିତ, ଶୁକ୍ଳ ଓ କୃଷ୍ଣ ରୂପରେ ପ୍ରତ୍ୟଭିଜ୍ଞା ହୁଏ ।

(ଗ) କାରଣ-ରୋହିତାଦି ମନ୍ତ୍ରଦ୍ୱୟରେ ସମାନ ହୁଏ । ରୋହିତାଦିଶବ୍ଦ ରୂପ ବିଶେଷରେ ଗୌଣ୍ୟ ଅର୍ଥାତ୍ ରୋହିତାଦିଶବ୍ଦର ମୁଖ୍ୟ ଅର୍ଥ ତେଜ ଇତ୍ୟାଦିର ରୂପ ବିଶେଷ ଅଟେ । ସତ୍ତ୍ୱାଦି ଗୁଣ ଗୌଣାର୍ଥ ଅଟେ ଓ ଅସନ୍ଦିଗ୍ଧବାକ୍ୟରୁ ସନ୍ଦିଗ୍ଦ ବାକ୍ୟର ନିଗମନ ନିର୍ଣ୍ଣୟ କରିବା ନ୍ୟାୟସଙ୍ଗତ ବୋଲି ସ୍ୱୀକାର କରନ୍ତି ।

(୪) ମୂଳ-(କ) ତଥେହାପି 'ବ୍ରହ୍ମବାଦିନୋ ବଦନ୍ତି । କିଂ କାରଣଂ ବ୍ରହ୍ମ', (ଶ୍ୱେ ୧-୧) ଇତ୍ୟୁପକ୍ରମ୍ୟ 'ତେ ଧ୍ୟାନଯୋଗାନୁଗତା ଅପଶ୍ୟନ୍ ଦେବାତ୍ମଶକ୍ତିଂ ସ୍ୱଗୁଣୈର୍ନିଗୂଢ଼ାମ୍', (ଶ୍ୱେ ୧-୩) ଇତି, ପାରମେଶ୍ୱର୍ଯ୍ୟାଃ ଶକ୍ତେଃ ସମସ୍ତଜଗତ୍ ବିଧାୟିନ୍ୟା ବାକ୍ୟୋପକ୍ରମେଽବଗାତ୍ । (ଖ) ବାକ୍ୟଶେଷେଽପି 'ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ମାୟିନଂ ତୁ ମହେଶ୍ୱରମ୍', ଇତି । 'ଯୋ ଯୋନିଂ ଯୋନିମଧିତିଷ୍ଠତ୍ୟେକଃ', (ଶ୍ୱେ ୪-୧୦, ୧୧) ଇତି ଚ ତସ୍ୟା ଏବାବଗମାନ୍ନ ସ୍ୱତନ୍ତ୍ରା କାଚିତ୍ ପ୍ରକୃତିଃ ପ୍ରଧାନଂ ନାମାଜାମାତ୍ରେଣାମ୍ନାୟତ ଇତି ଶକ୍ୟତେ ବକ୍ତୁମ୍ । (ଗ) ପ୍ରକରଣାତ୍ତୁ ସୈବ ଦୈବୀ ଶକ୍ତିରବ୍ୟାକୃତନାମରୂପା ନାମରୂପୟୋଃ ପ୍ରାଗବସ୍ଥାନେନାପି ମନ୍ତ୍ରେଣାମ୍ନାୟତ ଇତ୍ୟୁଚ୍ୟତେ । ତସ୍ୟାଶ୍ଚ ସ୍ୱବିକାର ବିଷୟେଣ ତ୍ରୈରୂପ୍ୟେଣ ତ୍ରୈରୂପ୍ୟ ମୁକ୍ତମ୍ ।

**(୪) ଭାଷାଂତର-**(କ) ସେହି ପ୍ରକାର ଏଠାରେ ମଧ 'ବ୍ରହ୍ମବେତ୍ତାଲୋକମାନେ କହନ୍ତି ଯେ- ଜଗତର କାରଣଭୂତ ବ୍ରହ୍ମ କିପରି ହୁଏ ? ଏହିପରି ଉପକ୍ରମ କରି ସେହି ଋଷିମାନେ ଧ୍ୟାନଯୋଗକୁ ଅନୁବର୍ତ୍ତନ କରି ନିଜ ଗୁଣଠାରୁ ଅତ୍ୟନ୍ତ ଭାବରେ ଲୁଚି ଦେବାତ୍ମଶକ୍ତିର ସାକ୍ଷାତକାର କରନ୍ତି', ଏହିପ୍ରକାର ବାକ୍ୟର ଉପକ୍ରମରେ ସମ୍ପୂର୍ଣ୍ଣ ଜଗତକୁ ଉତ୍ପନ୍ନ କରୁଥିବା ପରମେଶ୍ୱରଶକ୍ତି ଅବଗତ ହୁଏ ।

(ଖ) ବାକ୍ୟ ଶେଷରେ ମଧ 'ପ୍ରକୃତିକୁ ମାୟା ଓ ମହେଶ୍ୱରକୁ ମାୟାବୀ ବୋଲି ଜାଣ', ଓ 'ଯେଉଁ ପରମାତ୍ମା ନିଜେ ହିଁ ପ୍ରତ୍ୟେକ ଯୋନିର ଅଧିଷ୍ଠାତା' ଏହି ପ୍ରକାର ସେହି ଶକ୍ତିର ଅବଗତ ହେଲେ ମଧ ପ୍ରଧାନ ନାମର କୌଣସି ସ୍ୱତନ୍ତ୍ର ପ୍ରକୃତି ଅଜାମନ୍ତ୍ରରେ କହେ ବୋଲି କହିବା ଅସମ୍ଭବ ।

(ଗ) କିନ୍ତୁ ଏହା କୁହାଯାଏ ଯେ- ପ୍ରକରଣରେ ସେହି ଦୈବୀଶକ୍ତି ଅବ୍ୟାକୃତ ନାମ ରୂପଯୁକ୍ତ ନାମ ଓ ରୂପର ପୂର୍ବାବସ୍ଥା ସେହି ମନ୍ତ୍ରରେ କୁହାଯାଇଛି । ତ୍ରୈରୂପ୍ୟ ସ୍ୱୀକାର ବିଷୟ ହେତୁ ତାହାକୁ ତ୍ରୈରୂପ୍ୟ କୁହାଗଲା ।

(୧) ମୂଳ-(କ) କଥଂ ପୁନସ୍ତେଜୋବନ୍ନାତ୍ମନା ତ୍ରୈରୂପ୍ୟେଣ ତ୍ରିରୂପାଽଜା ପ୍ରତିପତ୍ତୁଂ ଶକ୍ୟତେ ? ଯାବତା ନ ତାବତ୍ତେଜୋଷ୍ୱେଜାକୃତିରସ୍ତି । ନ ଚ ଅତି ଉତ୍ତରଂ ପଠତି-



**(୧) ଭାଷାଂତର**-(କ) (ରତିକୁ ନେଇ ଶଙ୍କା) ଯେତେବେଳେ ତେଜ, ଜଳ ଓ ଅନ୍ନରେ ଅଜାର ଜାତି ନାହିଁ; କିନ୍ତୁ ତେଜ, ଜଳ ଓ ଅନ୍ନ ତ୍ରୈରୂପ୍ୟ ହେଲେ ଅଜା ତ୍ରିରୂପ କି ପ୍ରକାରରେ ବୁଝାଯାଏ ? 'ନ ଜାୟତେ' ଇତି ଅଜା'- ଏହି ଯୌଗିକକୁ ନେଇ କୁହାଯାଇଛି । ତେଜ ଓ ଅନ୍ନକୁ ଉତ୍ପତ୍ତିର ଶ୍ରବଣ ହେଲେ ସେଠାରେ ଜନ୍ମାଭାବ ନିମିତ୍ତକ ଅଜାଶବ୍ଦର ପ୍ରୟୋଗ ସମ୍ଭବ ନୁହେଁ । ତେଣୁ ଉତ୍ତରସୂତ୍ରରେ କୁହେ-

## कल्पनोपदेशाच्च मध्वादिवदविरोधः ॥ १० ॥

## (୨) କଳ୍ପନୋପଦେଶାଚ୍ଚ ମଧ୍ୱାଦିବଦବିରୋଧଃ ॥ ୧-୪-୧୦ ॥

କଳ୍ପନୋପଦେଶାଚ୍ଚ=ତେଜ, ଜଳ ଓ ଅନ୍ନରୂପ ପ୍ରକୃତିରେ ସାଦୃଶ୍ୟ ସୂଚିତ କରିବା ପାଇଁ କଳ୍ପନା ଦ୍ୱାରା ଅଜାତ୍ୱର ଉପଦେଶ କରାଯାଏ । ମଧ୍ୱାଦିବତ୍=ଯେପରି ମଧୁଭିନ୍ନ ଆଦିତ୍ୟରେ ମଧୁତ୍ୱର ଉପଦେଶ ହୁଏ, ସେପରି ଅଜାଭିନ୍ନ ପ୍ରକୃତିରେ ଅଜାତ୍ୱର ଉପଦେଶ ହେଲେ ଅବିରୋଧଃ=ବିରୋଧ ହୁଏ ନାହିଁ । ତେଣୁ ପ୍ରଧାନ ଶ୍ରୁତିପ୍ରତିପାଦିତ ନୁହେଁ ।

(୩) ମୂଳ-(କ) ନାୟମଜାକୃତିନିତ୍ତୋଽଜାଶବ୍ଦଃ । ନାପି ଯୌଗିକଃ । କିଂ ତର୍ହି ? କଳ୍ପନୋଦେଶୋଽୟମ୍ । ଅଜାରୂପ 'ଅଜାରୂପକକ୍ଳୃପ୍ତିସ୍ତେଜୋବନ୍ନ ଲକ୍ଷଣାୟାଶ୍ଚ-ରାଚରଯୋନେରୁପଦିଶ୍ୟତେ । (ଖ) ଯଥା ହି ଲୋକେ ଯଦୃଚ୍ଛୟା କାଚିଦଜା ଲୋହିତ ଶୁକ୍ଳକୃଷ୍ଣବର୍ଣ୍ଣା ସ୍ୟାଦ୍‌ବହୁବର୍କରା ସରୂପବର୍କରା ଚ, ତାଂ ଚ କଶ୍ଚିଦଜୋ ଜୁଷମାଣୋଽନୁଶୟୀତ, କଶ୍ଚିଚ୍ଚୈନାଂ ଭୁକ୍ତଭୋଗାଂ ଜହ୍ୟାତ୍ । ଏବମିୟମପି ତେଜୋବନ୍ନଲକ୍ଷଣା ଭୂତପ୍ରକୃତିସ୍ତ୍ରିବର୍ଣ୍ଣା ବହୁସରୂପଂ ଚରାଚରଲକ୍ଷଣଂ ବିକାରଜାତଂ ଜନୟତି, ଅବିଦୁଷା ଚ କ୍ଷେତ୍ରଜ୍ଞେନୋପଭୁଜ୍ୟତେ, ବିଦୁଷା ଚ ପରିତ୍ୟଜ୍ୟତ ଇତି ।

**(୩) ଭାଷାଂତର** - (କ) ଏହି ଅଜାଶବ୍ଦ ଜାତିନିମିତ୍ତକ ରୂଢ଼ି ନୁହେଁ ଓ୍ ଯୌଗିକ ମଧ୍ୟ ନୁହେଁ, ତାହେଲେ କ'ଣ ? ଏହା କାଳ୍ପନିକ ଉପଦେଶ । ଚରାଚର ଜଗତ୍‌ର କାରଣ ଭୂତ ତେଜ, ଜଳ ଓ ଅନ୍ନରୂପ ପ୍ରକୃତିର ଆଜାସାଦୃଶ୍ୟ କଳ୍ପନାର ଉପଦେଶ କରାଯାଇଛି ।

(ଖ) ଯେପରି ସଂସାରରେ ଦୈବବଶ ରକ୍ତ, ଶୁକ୍ଳ ଓ କୃଷ୍ଣବର୍ଣ୍ଣ କୌଣସି ଏକ ମାଈଛେଳି ହୁଏ, ତାହାର ସମାନ ରୂପ ଥିବା ବହୁତ ଛେଳି ହୁଅନ୍ତି । ତାହା ଉପରେ କୌଣସି ଏକ ଛେଳି ପ୍ରେମ କରେ, ତାହାର ପଛେ ପଛେ ଫେରେ ଓ କୌଣସି ଏକ ଛେଳି ଭୋଗ କଲାପରେ ତାହାକୁ ଛାଡ଼ିଦିଏ । ସେପରି ଏହି ତେଜ, ଜଳ ଓ ଅନ୍ନରୂପ ତ୍ରିବର୍ଣ୍ଣାତ୍ମକ ଭୂତପ୍ରକୃତି ମଧ୍ୟ ସମାନରୂପ ଧାରଣ କରି ଚରାଚରାତ୍ମକ ବିକାର ସମୂହକୁ

ଉତ୍ପନ୍ନ କରେ । ଅବିଦ୍ୱାନ୍ କ୍ଷେତ୍ରଜ୍ଞ ଏହାର ଉପଭୋଗ କରେ; ଓ ବିଦ୍ୱାନ୍ ତାହାର ପରିତ୍ୟାଗ କରେ ।

(୪) ମୂଳ-(କ) ନ ଚେଦମାଶଙ୍କିତବ୍ୟମ୍-ଏକଃ କ୍ଷେତ୍ରଜ୍ଞୋଽନୁଶେତେ, ଅନ୍ୟୋ ଜହାତୀତ୍ୟତଃ କ୍ଷେତ୍ରଜ୍ଞଭେଦଃ ପାରମାର୍ଥିକଃ ପରେଷାମିଷ୍ଟଃ ପ୍ରାପ୍ନୋତୀତି । (ଖ) ନ ହୀୟଂ କ୍ଷେତ୍ରଜ୍ଞଭେଦପ୍ରତିପାଦୟିଷା, କିନ୍ତୁ ବନ୍ଧମୋକ୍ଷବ୍ୟବସ୍ଥା ପ୍ରତିପାଦୟିଷା ତ୍ୱେଷା । ପ୍ରସିଦ୍ଧନ୍ତୁ ଭେଦମନୂଦ୍ୟ ବନ୍ଧମୋକ୍ଷବ୍ୟବସ୍ଥା ପ୍ରତିପାଦୟତେ। ଭେଦସ୍ତୂପାଧି-ନିମିତ୍ତୋ ମିଥ୍ୟାଜ୍ଞାନକଳ୍ପିତୋ ନ ପାରମାର୍ଥିକଃ । (ଗ) 'ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ, ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା' । ଇତ୍ୟାଦିଶ୍ରୁତିଭ୍ୟଃ ମଧ୍ୱାଦିବତ୍ । ଯଥା 'ଆଦିତ୍ୟ-ସ୍ୟାମଧୁନୋ ମଧୁତ୍ୱମ୍', (ଛା ୬-୧), 'ବାଚଶ୍ଚାଧେନୋର୍ଧେନୁତ୍ୱମ୍', (ବୃ ୫-୮) 'ଦ୍ୟୁଲୋକାଦୀନାଂ ଚାନଗ୍ନୀନାମଗ୍ନିବତ୍', (ବୃ ୮-୨-୯) ଇତ୍ୟେବଂ ଜାତୀୟକଂ କଳ୍ପ୍ୟତେ, ଏବମିଦ ମନଜାୟା ଅଜାତ୍ୱଂ କଳ୍ପ୍ୟତ ଇତ୍ୟର୍ଥଃ । ତସ୍ମାଦବିରୋଧ ସ୍ତେଜୋ ବନ୍ନେଷ୍ୱଜାଶବ୍ଦ ପ୍ରୟୋଗସ୍ୟ' ।

**(୪) ଭାଷାଂତର**-(କ) ଏହି ଶଙ୍କା ଏଠାରେ କରିବା ଉଚିତ ନୁହେଁ-ଏକ କ୍ଷେତ୍ରଜ୍ଞ ସେବନ କରି ଏହାର ପାଖରେ ଶୁଏ ଓ ଅନ୍ୟଟି ଏହାକୁ ପରିତ୍ୟାଗ କରେ', ଏହାଦ୍ୱାରା ପାରମାର୍ଥିକ କ୍ଷେତ୍ରଜ୍ଞର ଭେଦ, ଯାହା ପର (ସାଂଖ୍ୟ)କୁ ଇଷ୍ଟ, ସେ ପ୍ରାପ୍ତ ହୁଏ ।

(ଖ) କାରଣ-ଏହି କ୍ଷେତ୍ରଜ୍ଞ ଭେଦର ପ୍ରତିପାଦନର ଇଚ୍ଛାନାହିଁ । କିନ୍ତୁ ବନ୍ଧ ମୋକ୍ଷ ବ୍ୟବସ୍ଥାକୁ ପ୍ରତିପାଦନ କରିବାର ଇଚ୍ଛା ଅଛି । ଲୋକ ପ୍ରସିଦ୍ଧ ଭେଦର ଅନୁବାଦ କରି ବନ୍ଧମୋକ୍ଷ ବ୍ୟବସ୍ଥାର ପ୍ରତିପାଦନ କରାଯାଇଛି । ଭେଦ କିନ୍ତୁ ଉପାଧି ନିମିତ୍ତକ ଓ ମିଥ୍ୟାଜ୍ଞାନଦ୍ୱାରା କଳ୍ପିତ । କିନ୍ତୁ ପରମାର୍ଥିକ ନୁହେଁ ।

(ଗ) କାରଣ- ଗୋଟିଏ ଦେବତା ସମଗ୍ର ଜୀବଠାରେ ଗୂଢ଼, ସବୁସ୍ଥାନରେ ବ୍ୟାପକ ଓ ସବୁପ୍ରାଣୀର ଅନ୍ତରାତ୍ମା ଅଟେ ଇତ୍ୟାଦି ଶ୍ରୁତି ଅଛି । ମଧୁ ଇତ୍ୟାଦି ସମାନ ଅର୍ଥାତ୍ ଯେପରି 'ମଧୁଭିନ୍ନ ଆଦିତ୍ୟକୁ ମଧୁ କୁହାଯାଏ' । 'ଧନୁଭିନ୍ନବାଣୀରେ ଧନୁଶବ୍ଦର ପ୍ରୟୋଗ କରାଗଲା', 'ଅଗ୍ନିଦ୍ୟୁଲୋକରେ ଅଗ୍ନିଶବ୍ଦର ପ୍ରୟୋଗ କରାଯାଇଛି', ଏହି ପ୍ରକାର କଳ୍ପନା ଜାତ ହୁଏ । ସେପରି ଏଠାରେ ମଧ୍ୟ ଅନଜା-ଅଜାଭିନ୍ନରେ ଏହି ଅଜାତ୍ୱର କଳ୍ପନା ହୋଇଛି । ଏହାହିଁ ଅର୍ଥ । ତେଣୁ ତେଜ, ଜଳ ଓ ଅନ୍ନରେ ଅଜା ଶବ୍ଦର ପ୍ରୟୋଗ ବିରୋଧ ନୁହେଁ ।



## ३ संख्योपसंग्रहाधिकरणम् । सू० ११ - १३

## ସଂଖ୍ୟୋପସଂଗ୍ରହାଧିକରଣ - ୩

**न सांख्योपसंग्रहादपि मानाभावादतिरेकाच्च ॥ ११ ॥**

**(୧) ନ ସାଂଖ୍ୟୋପସଂଗ୍ରହାଦପି ମାନାଭାବାଦତିରେକାଚ୍ଚ ॥୧-୪-୧୧॥**

ସାଂଖ୍ୟୋପସଂଗ୍ରହାଦପି-'ଯସ୍ମିନ୍ ପଞ୍ଚ ପଞ୍ଚଜନାଃ 'ଆକାଶଶ୍ଚ' ପ୍ରତିଷ୍ଠିତଃ' ଏହି ମନ୍ତ୍ରରେ ଶ୍ରୂୟମାଣ ସଂଖ୍ୟାବାଚକ ପଦରୁ ପଚିଶ ସଂଖ୍ୟାର ଗ୍ରହଣ କଲେ ମଧ୍ୟ, ନ-ପ୍ରଧାନ ଶ୍ରୁତିପ୍ରତିପାଦିତ ହୁଏ ନାହିଁ, ମାନାଭାବାତ୍-କାରଣ-ଏହା ବିବିଧପ୍ରକାର ଅଟେ । ଅତିରେକାଚ୍-ଆତ୍ମା ଓ ଆକାଶ ଅତିରିକ୍ତ କୁହାଗଲେ, ତେଣୁ ସପ୍ତବିଂଶତିତତ୍ତ୍ୱ ମାନିବାକୁ ପଡ଼ିବ । ତେଣୁ ଏହା ଅପସିଦ୍ଧାନ୍ତ ହେବ । ଅତଃ ପ୍ରଧାନାଦିତତ୍ତ୍ୱର ଶ୍ରବଣ ଠିକ୍ ନୁହେଁ ।

(୨) ମୂଳ-(କ) ଏବଂ ପରିହୃତେଽପ୍ୟଜାମନ୍ତ୍ରେ ପୁନରନ୍ୟସ୍ମାନ୍ମନ୍ତ୍ରାତ୍ ସାଂଖ୍ୟଃ ପ୍ରତିବତିଷ୍ଠତେ । 'ଯସ୍ମିନ୍ ପଞ୍ଚ ପଞ୍ଚଜନାଃ ଆକାଶଶ୍ଚ ପ୍ରତିଷ୍ଠିତଃ, ତମେବ ମନ୍ୟ ଆତ୍ମାନଂ ବିଦ୍ୱାନ୍ ବ୍ରହ୍ମାମୃତୋଽମୃତମ୍', (ବୃ ୪-୪-୧୭) ଇତି । (ଖ) ଅସ୍ମିନ୍ ମନ୍ତ୍ରେ ପଞ୍ଚ ପଞ୍ଚଜନାଃ ଇତି ପଞ୍ଚସଂଖ୍ୟାବିଷୟାଽପରା ପଞ୍ଚସଂଖ୍ୟା ଶ୍ରୂୟତେ; ପଞ୍ଚଶବ୍ଦଦ୍ୱୟଦର୍ଶନାତ୍ । (ଗ) ତ ଏତେ ପଞ୍ଚପଞ୍ଚକାଃ ପଞ୍ଚବିଂଶତିଃ ସମ୍ପଦ୍ୟନ୍ତେ । ତଥା ପଞ୍ଚବିଶତିସଂଖ୍ୟାୟ । ଯାବନ୍ତଃ ସଂଖ୍ୟେୟା ଆକାଙ୍କ୍ଷ୍ୟନ୍ତେ, ତାବନ୍ତ୍ୟେବ ଚ ତତ୍ତ୍ୱାନି ସାଂଖ୍ୟୈଃସଂଖ୍ୟାୟନ୍ତେ-'ମୂଳପ୍ରକୃତିରବିକୃତିଃ ମହଦାଦ୍ୟାଃ ପ୍ରକୃତିବିକୃତୟଃ ସପ୍ତ । ଷୋଡ଼ଶକସ୍ତୁ ବିକାରୋ ନ ପ୍ରକୃତିର୍ନ ବିକୃତିଃ ପୁରୁଷଃ' । (ସାଂ, କା-୩) ଇତି । ତୟା ଶ୍ରୁତିପ୍ରସିଦ୍ଧୟା ପଞ୍ଚବିଂଶତିସଂଖ୍ୟୟା ତେଷାଂ ସ୍ମୃତିପ୍ରସିଦ୍ଧାନାଂ ପଞ୍ଚବିଂଶତି-ତତ୍ତ୍ୱାନାମୁପସଂଗ୍ରହାତ୍ପ୍ରାପ୍ତଂ ପୁନଃ ଶ୍ରୁତିମତ୍ତ୍ୱମେବ ପ୍ରଧାନାଦୀନାମ୍ ।

**(୨) ଭାଷାଂତର-** (କ) ଏହି ପ୍ରକାର ଅଜାମନ୍ତ୍ରରେ ସଂଖ୍ୟାଭିମତପ୍ରଧାନାଦିର ପରିହାର ହେବାରୁ ଅନ୍ୟ ମନ୍ତ୍ରରେ ଆଧାରିତ ସାଂଖ୍ୟ ପୁନର୍ବାର ପକ୍ଷ କରନ୍ତି- 'ଯେଉଁ ସ୍ଥାନରେ ପାଞ୍ଚ, ପଞ୍ଚଜନ ଓ ଆକାଶ ମଧ୍ୟ ପ୍ରତିଷ୍ଠିତ, ସେହି ଆତ୍ମାର ମୁଁ ଅମୃତ ବ୍ରହ୍ମ ବୋଲି ସ୍ୱୀକାର କରୁଁ । ସେ ବ୍ରହ୍ମକୁ ଜାଣିଥିବା ମୁଁ ଅମୃତ', ଏହି ମନ୍ତ୍ରରେ 'ପଞ୍ଚ ପଞ୍ଚଜନାଃ ଏହିପ୍ରକାର ପାଞ୍ଚସଂଖ୍ୟା ବିଷୟକ ଦ୍ୱିତୀୟ ପାଞ୍ଚସଂଖ୍ୟାର ଶ୍ରବଣ ହୁଏ । କାରଣ-ଦୁଇଥର ପାଞ୍ଚଶବ୍ଦ ଦେଖାଯାଏ ।

(ଖ) ସେ ଏହି ୫ × ୫ ମିଶି ୨୫ ହୁଅନ୍ତି ଏବଂ ପଚିଶ ସଂଖ୍ୟାରୁ ଯେତେ ସଂଖ୍ୟା ଯୁକ୍ତର ଆକାଂକ୍ଷା ହୁଏ, ସେତେତତ୍ତ୍ୱ ମଧ୍ୟ ସଂଖ୍ୟାଦ୍ୱାରା ଗଣାଯାଏ 'ମୂଳ ପ୍ରକୃତି ଅବିକୃତି, ମାତ୍ର ଅର୍ଥାତ୍ କାହାର ବିକୃତି ନାହିଁ । ମହଦାଦି ପ୍ରକୃତି ଓ ବିକୃତି ଦୁଇଟି । ଷୋଡ଼ଶତତ୍ତ୍ୱ ବିକାର । ପୁରୁଷ ପ୍ରକୃତି ନୁହେଁ କି ବିକୃତି ନୁହେଁ । ଏହି ଶ୍ରୁତି ପ୍ରସିଦ୍ଧ ପଚିଶସଂଖ୍ୟାଦ୍ୱାରା ସେହି ସ୍ମୃତି ପ୍ରସିଦ୍ଧ ପଚିଶତତ୍ତ୍ୱର ଉପସଂଗ୍ରହ ହେବାରୁ ପ୍ରଧାନାଦି ଶ୍ରୁତିପ୍ରତିପାଦିତ ହୁଏ । ଏହାହିଁ ପ୍ରାପ୍ତ ହୁଏ ।

(୩) ମୂଳ-(କ) ତତୋ ବ୍ରୂମଃ-ନ ସାଂଖ୍ୟୋପସଂଗ୍ରହାଦପି ପ୍ରଧାନାଦୀନାଂ ଶ୍ରୁତିମତ୍ତ୍ୱଂ ପ୍ରତ୍ୟାଶା କର୍ତ୍ତବ୍ୟା । କସ୍ମାତ୍ ? ନାନାଭାବାତ୍ । ନାନା ହ୍ୟେତାନି ପଞ୍ଚବିଂଶ-ତିତତ୍ତ୍ୱାନି । ନୈଷାଂ ପଞ୍ଚଶଃ ପଞ୍ଚଶଃ ସାଧାରଣୋ ଧର୍ମୋଽସ୍ତି, ଯେନ ପଞ୍ଚବିଂଶତେ-ରନ୍ତରାଳେ ପରାଃ ପଞ୍ଚ ପଞ୍ଚସଂଖ୍ୟା ନିବିଶେରନ୍ । ନ ହ୍ୟେକନିବନ୍ଧନ ମନ୍ତରେଣ ନାନାଭୂତେଷୁ ଦ୍ୱିତ୍ୱାଦିକାଃ ସଂଖ୍ୟାଃ ନିବିଶନ୍ତେ । (ଖ) ଅଥୋଚ୍ୟତେ ପଞ୍ଚବିଂଶତିସଂଖ୍ୟୈ-ବେୟମବୟବଦ୍ୱାରେଣ ଲକ୍ଷ୍ୟତେ, ଯଥା 'ପଞ୍ଚ ସପ୍ତ ଚ ବର୍ଷାଣି ନବବର୍ଷ ଶତକ୍ରତୁଃ', ଇତି ଦ୍ୱାଦଶ ବାର୍ଷିକୀମନାବୃଷ୍ଟିଂ କଥୟନ୍ତି, ତଦ୍‌ବଦତି । (ଗ) ତଦପି ନୋପପଦ୍ୟତେ, ଅୟମେବାସ୍ମିନ୍ ପକ୍ଷେ ଦୋସୋ ଯଲ୍ଲକ୍ଷଣାଶ୍ରୟଣୀୟା ସ୍ୟାତ୍ । ପରଶ୍ଚାତ୍ର ପଞ୍ଚଶବ୍ଦୋ ଜନଶବ୍ଦେନ ସମସ୍ତ ପଞ୍ଚଜନା ଇତି, ଭାଷିକସ୍ୱରେଣୈକପଦତ୍ୱନିଶ୍ଚୟାତ୍ । ପ୍ରୟୋଗାନ୍ତରେ ଚ 'ପଞ୍ଚାନାଂ ତ୍ୱାଂ ପଞ୍ଚଜନାନାମ୍', (ତୈ ୧-୬-୨-୨) ଇତ୍ୟେକ-ପଦ୍ୟୈକସ୍ୱର୍ଯୈ୍ୟକବିଭକ୍ତିକତ୍ୱାବଗମାତ୍ ।

**(୩) ଭାଷାଂତର-** (କ) ସିଦ୍ଧାନ୍ତ-ସଂଖ୍ୟାର ସଂଗ୍ରହରୁ ପ୍ରଧାନାଦି ଶ୍ରୁତିପାଦିତ ଅଟେ । ଏପରି ଆଶା କରିବା ଉଚିତ୍ ନୁହେଁ। କିପରି ? ଏହାଦ୍ୱାରା ନାନାଭାବ ହୁଏ । ଅର୍ଥାତ୍ ଯେଉଁମାନେ ପଚିଶତତ୍ତ୍ୱ ନାନା ପୃଥକ୍ ଅଟନ୍ତି', ଏହି ସ୍ଥାନରେ ପ୍ରତ୍ୟେକ ପଞ୍ଚକର ସାଧାରଣ ଧର୍ମ ନୁହେଁ । ଯାହାଦ୍ୱାରା ପଚିଶ ସଂଖ୍ୟା ମଧ୍ୟରେ ଅନ୍ୟ ପାଞ୍ଚ ପାଞ୍ଚ ଅନ୍ତର୍ଭୂତ ହୋଇପାରନ୍ତି ।

(ଖ) ଯଦି କହ ଯେ- 'ପାଞ୍ଚ ଓ ସାତବର୍ଷ ଅର୍ଥାତ୍ ୧୨ ବର୍ଷ ଇନ୍ଦ୍ରବୃଷ୍ଟି କଲେ ନାହିଁ', ଏଠାରେ ଦ୍ୱାଦଶବର୍ଷର ଅନାବୃଷ୍ଟି କୁହାଯାଇଛି । ସେପରି '୫×୫' ଏହି ଅବାନ୍ତର ଅବୟବଦ୍ୱାରା ପଚିଶସଂଖ୍ୟା ପରିଲକ୍ଷିତ ହୁଏ,

(ଗ) ଏହା ଠିକ୍ ହେବ ନାହିଁ । ଏହି ପକ୍ଷରେ ଏହାହିଁ ଦୋଷ ଯେ ଲକ୍ଷଣା ଗ୍ରହଣ କରାଯାଇଛି ଏବଂ ଏଠାରେ ଅନ୍ୟ ପାଞ୍ଚଶବ୍ଦର ସହ ମିଶିକରି ପଞ୍ଚଜନ ହୋଇଛି । କାରଣ-



ଭାଷିକସ୍ୱରରୁ ଏକପଦତ୍ୱ ନିଶ୍ଚିତ ହୁଏ ଏବଂ 'ତୁମକୁ ପାଞ୍ଚ ପାଞ୍ଚ ଜଣକୁ' ଏହି ଅନ୍ୟ ପ୍ରୟୋଗରେ ଏକପଦ, ଏକସ୍ୱର ଓ ଏକ ବିଭକ୍ତି ପ୍ରତୀତ ହୁଏ ।

(୪) ମୂଳ-(କ) ସମସ୍ତତ୍ୱାଚ୍ଚ ନ ବୀପ୍‌ସା 'ପଞ୍ଚ ପଞ୍ଚ' ଇତି । ନ ଚ ପଞ୍ଚସଂଖ୍ୟାୟା ଏକସ୍ୟାଃ ପଞ୍ଚସଂଖ୍ୟୟା ପରୟା ବିଶେଷଣଂ ପଞ୍ଚ ପଞ୍ଚକା ଇତି', ଉପସର୍ଜନସ୍ୟ ବିଶେଷଣେନାସଂଯୋଗାତ୍ । (ଖ) ନନ୍ୱାପନ୍ନ ପଞ୍ଚସଂଖ୍ୟକାଃ ଜନା ଏବ ପୁନଃ ପଞ୍ଚସଂଖ୍ୟୟା ବିଶେଷ୍ୟମାଣାଃ ପଞ୍ଚବିଂଶତିଃ ପ୍ରତ୍ୟେଷ୍ୟନ୍ତେ । ଯଥା ପଞ୍ଚ ପଞ୍ଚପୂଲ୍ୟ ଇତି ପଞ୍ଚବିଂଶତି ପୂଲାଃ ପ୍ରତୀୟନ୍ତେ, ତଦ୍‌ବତ୍ । (ଗ) ନେତି ବ୍ରୂମଃ । ଯୁକ୍ତଂ ଯତ୍ ପଞ୍ଚପୁଲୀ ଶବ୍ଦସ୍ୟ ସମାହାରାଭିପ୍ରାୟତ୍ୱାତ୍ କତୀତି ସତ୍ୟାଂ ଭେଦାକାଙ୍‌କ୍ଷାୟାଂ ପଞ୍ଚ ପଞ୍ଚପୂଲ୍ୟ ଇତି ବିଶେଷଣମ୍, ଇହ ତୁ ପଞ୍ଚଜନା ଇତ୍ୟାଦିତ (ଘ) ଏବ ଭେଦୋପାଦାନାତ୍ କତୀତ୍ୟସତ୍ୟାଂ ଭେଦାକାଙ୍‌କ୍ଷାୟାଂ ନ ପଞ୍ଚ ପଞ୍ଚଜନା ଇତି ବିଶେଷଣଂ ଭବେତ୍ । ଭବଦପୀଦଂ ବିଶେଷଣଂ ପଞ୍ଚସଂଖ୍ୟାୟା ଏବ ଭବେତ୍ । ତତ୍ର ଋକ୍ତୋ ଦୋଷଃ । ତସ୍ମାତ୍ ପଞ୍ଚ ପଞ୍ଚଜନା ଇତି ନ ପଞ୍ଚବିଂଶତିତତ୍ତ୍ୱାଭିପ୍ରାୟମ୍ । (ଙ) ଅତିରେକାଚ୍ଚ ନ ପଞ୍ଚବିଂଶତି ତତ୍ତ୍ୱାଭିପ୍ରାୟମ୍ । ଅତିରେକୋ ହି ଭବତ୍ୟାତ୍ମାକାଶାଭ୍ୟାଂ ପଞ୍ଚବିଂଶତିସଂଖ୍ୟାୟାଃ । ଆତ୍ମା ତାବଦିହ ପ୍ରତିଷ୍ଠାଂ ପ୍ରତ୍ୟାଧାରତ୍ୱେନ ନିର୍ଦ୍ଦିଷ୍ଟଃ' ଯସ୍ମିନ୍ନିତି ସପ୍ତମୀସୂଚିତସ୍ୟ 'ତମେବ ମନ୍ୟ ଆତ୍ମାନମ୍', ଇତ୍ୟାତ୍ମତ୍ୱେନାନୁକର୍ଷଣାତ୍ । (ଚ) ଆତ୍ମା ଚ ଚେତନଃ ପୁରୁଷଃ । ସ ଚ ପଞ୍ଚବିଂଶତାବନ୍ତର୍ଗତ ଏବେତି ତସ୍ୟୈବାଧାରତ୍ୱ-ମାଧେୟତ୍ୱଂ ଯୁଜ୍ୟତେ । ଅର୍ଥାନ୍ତରପରିଗ୍ରହେ ଚ ତତ୍ତ୍ୱ ସଂଖ୍ୟାତିରେକଃ ସିଦ୍ଧାନ୍ତବିରୁଦ୍ଧଃ ପ୍ରସଜ୍ୟେତ ।

(୪) ଭାଷାଂତର-(କ) ସମସ୍ତପଦ ହେବାରୁ 'ପଞ୍ଚ ପଞ୍ଚ' ଏହି ବୀପ୍ରସା (ଦୁଇଥର କଥନ) ନୁହେଁ ଏବଂ ଏହାଦ୍ୱାରା 'ପଞ୍ଚ ପଞ୍ଚ' ଏହିପ୍ରକାର ଦୁଇଟି ପଂଚକର ଗ୍ରହଣ ନୁହେଁ। ଶଙ୍କା- 'ପଞ୍ଚ ପଞ୍ଚକାଃ' ଏହିପ୍ରକାର ଏକପାଞ୍ଚସଂଖ୍ୟାର ଅନ୍ୟପାଞ୍ଚ ସଂଖ୍ୟା ସହ ବିଶେଷଣ ଅନ୍ୱୟ ହୁଏ ନାହିଁ । କାରଣ-ଏକ ବିଶେଷଣର ଅନ୍ୟ ବିଶେଷଣ ସହ ଅନ୍ୱିତ ହୁଏ ନାହିଁ ।

(ଖ) ପୂର୍ବପକ୍ଷ-ପରନ୍ତୁ ପାଞ୍ଚସଂଖ୍ୟାକୁ ପାଉଥିବା ମଣିଷ ପୁନଶ୍ଚ ପାଞ୍ଚସଂଖ୍ୟା ଦ୍ୱାରା ବିଶେଷ୍ୟମାଣ ହୋଇ ପଚିଶରୂପରେ ପ୍ରତୀତ ହେବେ । ଯେପରିକି 'ପଞ୍ଚ ପଞ୍ଚ ପୁଲ୍ୟଃ' (ପାଞ୍ଚ ପାଞ୍ଚର ଗୁଣନ) ଏଠାରେ ପଚିଶ ଗୁଣନ ବୋଲି ପ୍ରତୀତ ହୁଏ ।

(ଗ) ଏହାଭଳି ଏତାଦୃଶ୍ୟ ପ୍ରକରଣରେ ଜାଣିବା ଉଚିତ୍ । ସିଦ୍ଧାନ୍ତ-ଏହା ଠିକ୍ ନୁହେଁ, କାରଣ-ପାଞ୍ଚପୂଲୀ ଶବ୍ଦରେ ସମାହାର ଅଭିପ୍ରେତ ହେଲେ କେତୋଟି ପଞ୍ଚପୂଲ୍ଲୀ ହୁଏ । ପ୍ରକାର ଭେଦର ଆକାଂକ୍ଷା ହେବାରୁ 'ପଞ୍ଚ ପଞ୍ଚ ପୂଲ୍ୟଃ' ଏହିପ୍ରକାର ପାଞ୍ଚପୂଲୀର ବିଶେଷଣ ପୁଣି ପାଞ୍ଚଯୁତ ହୁଏ ।

(ଘ) ପରନ୍ତୁ ଏଠାରେ 'ପଞ୍ଚଜନାଃ' ଏହି ଆରମ୍ଭରେ ଭେଦ (ବିଶେଷଣ)ର ଗ୍ରହଣ ହୁଏ । ଅତଃ 'କେତୋଟି' ଏହିପ୍ରକାର ଭେଦର ଆକାଂକ୍ଷା ନ ହେଲେ 'ପଞ୍ଚ ପଞ୍ଚଜନାଃ' ଏହି ପ୍ରକାର ପଞ୍ଚଜନର ପଞ୍ଚସଂଖ୍ୟା ବିଶେଷଣ ନୁହେଁ । ଯଦି ବିଶେଷଣ ହୁଏ, ତେବେ ମଧ୍ୟ କେବଳ ପାଞ୍ଚସଂଖ୍ୟାର ହେବ । (ଜନପଦର ନୁହେଁ) । ଏହି ପକ୍ଷରେ ଦୋଷ (ଉପସର୍ଜ୍ଜନସ୍ୟ ବିଶେଷଣେନା ସଂଯୋଗାତ୍) କୁହାଯାଇଛି । ତେଣୁ 'ପଞ୍ଚ ପଞ୍ଚଜନାଃ' ଏହି ପ୍ରୟୋଗ ପଚିଶତତ୍ତ୍ୱର ଅଭିପ୍ରାୟରେ ନୁହେଁ ।

(ଙ) ସଂଖ୍ୟାର ଅଧିକତାରୁ ପଚିଶତତ୍ତ୍ୱର ଅଭିପ୍ରାୟ ଦ୍ୱାରା ନୁହେଁ । କାରଣ-ଆତ୍ମ ଓ ଆକାଶକୁ ନେଇ ପଚିଶସଂଖ୍ୟାଠାରୁ ଅଧିକ ହୁଏ । ଏଠାରେ ତତ୍ତ୍ୱପ୍ରତିଷ୍ଠାନର ଆଧାରରୂପରେ ଆତ୍ମାର ନିର୍ଦ୍ଦେଶ ହୁଏ, କାରଣ- 'ଅସ୍ମିନ୍' ଏହି ସପ୍ତମୀ ବା ସପ୍ତମ୍ୟନ୍ତ 'ଯତ୍' ପଦର ସୂଚିତର 'ତାହାକୁ ମୁଁ ଆତ୍ମା ବୋଲି ଜାଣିଛି', ଏହିପ୍ରକାର ଆତ୍ମାରୂପରେ ଆକର୍ଷଣ ହୁଏ ।

(ଚ) ଆତ୍ମା ଚେତନ ପୁରୁଷ ଓ ସେ ସଂଖ୍ୟାଭିମତ ପଚିଶତତ୍ତ୍ୱର ଅନ୍ତର୍ଗତ । ତେଣୁ ସେଠାରେ ଆଧାର ଆଧେୟଭାବ ଠିକ୍ ନୁହେଁ । ତତ୍ତ୍ୱଭିନ୍ନ ଅର୍ଥର ଗ୍ରହଣ କରାଗଲେ ସାଂଖ୍ୟତତ୍ତ୍ୱର ବିରୁଦ୍ଧତତ୍ତ୍ୱ ସଂଖ୍ୟାରେ ଅଧିକତା ପ୍ରସକ୍ତ ହେବ ।

(୫) ମୂଳ-(କ) ତଥା 'ଆକାଶଶ୍ଚ ପ୍ରତିଷ୍ଠିତଃ' ଇତ୍ୟାକାଶସ୍ୟାପି ପଞ୍ଚବିଂଶତାବନ୍ତର୍ଗତସ୍ୟ ନ ପୃଥଗୁପାଦାନଂ ନ୍ୟାଯ୍ୟମ୍ । ଅଥାନ୍ତରପରିଗ୍ରହେ ଓ୍ୱେକ୍ତଂ ଦୂଷଣମ୍ । (ଖ) କଥଂ ଚ ସଂଖ୍ୟାମାତ୍ରଶ୍ରବଣେ ସତ୍ୟଶ୍ରୁତାନାଂ ପଞ୍ଚବିଂଶତିତତ୍ତ୍ୱାନା-ମୁପସଂଗ୍ରହଃ ପ୍ରତୀୟତ ? ଜନଶବ୍ଦସ୍ୟ ତତ୍ତ୍ୱେଷ୍ୱରୂଢ଼ତ୍ୱାତ୍ ଅର୍ଥାନ୍ତରୋପସଂଗ୍ରହେଽପି ସଂଖ୍ୟୋପପତ୍ତେଃ । (ଗ) କଥଂତର୍ହି ପଞ୍ଚ ପଞ୍ଚଜନା ଇତି ? ଉଚ୍ୟେତ- 'ଦିକ୍‌ସଂଖ୍ୟେ ସଂଜ୍ଞାୟାମ୍' (ପା. ସୂ ୨-୧-୫୦) ଇତି ବିଶେଷସ୍ମରଣାତ୍ ସଂଜ୍ଞାୟାମେବ ପଞ୍ଚଶବ୍ଦସ୍ୟ ଜନଶବ୍ଦେନ ସମାସଃ । ତତଶ୍ଚ ରୂଢ଼ତ୍ୱାଭିପ୍ରାୟେଣୈବ କେଚିତ ପଞ୍ଚଜନା ନାମ ବିବକ୍ଷ୍ୟନ୍ତେ । (ଘ) ନ ସାଂଖ୍ୟତତ୍ତ୍ୱାଭିପ୍ରାୟେଣ । ତେ କତୀତ୍ୟସ୍ୟାମାକାଂକ୍ଷାୟାଂ ପୁନଃ ପଞ୍ଚେତି ପ୍ରଯୁଜ୍ୟତେ । ପଞ୍ଚଜନା ନାମ ଯେ କେଚିତ୍ତେ ଚ ପଞ୍ଚୈବେତ୍ୟର୍ଥଃ । ସପ୍ତର୍ଷୟଃ ସପ୍ତେତି ଯଥା ।



**(୫) ଭାଷାଂତର-** (କ) ଏହି ପ୍ରକାର ପଚିଶତତ୍ତ୍ୱର ଅନ୍ତର୍ଗତ ଆକାଶର **'ଆକାଶଶ୍ଚ ପ୍ରତିଷ୍ଠିତଃ'** ଏହିପ୍ରକାର ପୃଥଗ୍ ଗ୍ରହଣ ଠିକ୍ ନୁହେଁ । ଅନ୍ୟ ଅର୍ଥର ଗ୍ରହଣ କଲେ ଉକ୍ତ ଦୋଷ (ଅଧିକ ସଂଖ୍ୟା) ହୁଏ ।

(ଖ) ସଂଖ୍ୟା ମାତ୍ରର ଶ୍ରବଣ ହେଲେ ଶ୍ରୁତି ଅପ୍ରତିପାଦିତ ପଚିଶତତ୍ତ୍ୱର ସଂଗ୍ରହ କେଉଁ ପ୍ରକାର ପ୍ରତୀତି ହୁଏ ? କାରଣ-ଜନଶବ୍ଦ ତତ୍ତ୍ୱରେ ରୂଢ଼ ନୁହେଁ; ଅନ୍ୟ ଅର୍ଥର ସଂଗ୍ରହ କଲେ ସଂଖ୍ୟା ଉପପନ୍ନ ହୁଏ ।

(ଗ) 'ପଞ୍ଚ ପଞ୍ଚଜନାଃ' କିପରି ହୁଏ ? କୁହାଯାଇଛି- ଦିଗ୍ ଓ ସଂଖ୍ୟାବାଚକ ଶବ୍ଦର ସଂଜ୍ଞାଅର୍ଥରେ ସୁବନ୍ତ ଉତ୍ତରପଦର ସହ ସମାସ ହୁଏ । ଏହି ବିଶେଷ ସୂତ୍ରଦ୍ୱାରା ସଂଜ୍ଞାରେ ପଞ୍ଚଶବ୍ଦର ଜନପଦସହ ସମାନ ହୁଏ । ବସ୍ତୁତଃ ରୂଢ଼ିତ୍ୱର ଅଭିପ୍ରାୟରେ କୌଣସି ପାଞ୍ଚଜନ ନାମ ଏଠାରେ ବିବକ୍ଷିତ ଅଟେ । ସେ ପାଞ୍ଚ ହୁଏ । ଏହି ପ୍ରକାର ଅର୍ଥ ହୁଏ ।

(ଘ) କିନ୍ତୁ ସଂଖାଭିମତ ପଚିଶତତ୍ତ୍ୱର ଅଭିପ୍ରାୟରେ ନୁହେଁ । ସେମାନେ କେତୋଟି ଅଛନ୍ତି ? ଏହିପ୍ରକାର ଆକାଂକ୍ଷା ହେଲେ ତାହାର ଉତ୍ତରରେ ଏଠାରେ ପଞ୍ଚଶବ୍ଦର ପ୍ରୟୋଗ କରାଯାଇଛି । ଯେପରି ସପ୍ତର୍ଷି ସାତୋଟି' ସେପରି ପଞ୍ଚଜନ ନାମଥିବା ଯେ କୌଣସି ଅଟେ । ସେ ପାଞ୍ଚ ହୁଏ । ଏହି ପ୍ରକାର ଅର୍ଥ ହୁଏ ।

(୧) ମୂଳ-(କ) କେ ପୁନସ୍ତେ ପଞ୍ଚଜନା ନା ନାମେତି ? ତଦୁଚ୍ୟତେ-

**(୧) ଭାଷାଂତର-**(କ) ପୁନଶ୍ଚ ସେମାନେ ପଞ୍ଚଜନ ନାମକ କିଏ କିଏ ? ସେମାନେ କହନ୍ତି-

**प्रणादयो वाक्यशेषात् ॥ १२ ॥**

## (୧) ପ୍ରାଣାଦୟୋ ବାକ୍ୟଶେଷାତ୍ ॥ ୧-୪-୧୨

ପ୍ରାଣାଦୟଃ-ଏଠାରେ ପଞ୍ଚଜନଶବ୍ଦଦ୍ୱାରା ପ୍ରାଣ, ଚକ୍ଷୁ, ଶ୍ରୋତ୍ର, ଅନ୍ନ ଓ ମନ କୁହାଯାଇଛି । ବାକ୍ୟଶେଷାତ୍=କାରଣ 'ପ୍ରାଣସ୍ୟ ପ୍ରାଣମ୍ ଏହି ବାକ୍ୟଶେଷରେ ରହିଛି ।

(୨) ମୂଳ-(କ) 'ଯସ୍ମିନ୍ ପଞ୍ଚ ପଞ୍ଚଜନାଃ', ଇତ୍ୟତ ଉତ୍ତରସ୍ମିନ୍ ମନ୍ତ୍ରେ ବ୍ରହ୍ମସ୍ୱରୂପ ନିରୂପଣାୟ ପ୍ରାଣାଦୟଃ ପଞ୍ଚ ନିର୍ଦ୍ଦିଷ୍ଟାଃ 'ପ୍ରାଣସ୍ୟ ପ୍ରାଣମୁତ ଚକ୍ଷୁଷଶ୍ଚକ୍ଷୁରୁତ ଶ୍ରୋତ୍ରସ୍ୟ ଶ୍ରୋତ୍ରମନ୍ନସ୍ୟାନ୍ନଂ ମନସୋ ଯେ ମନୋ ବିଦୁଃ', ଇତି । ତେଽତ୍ର ବାକ୍ୟଶେଷଗତାଃ ସଂନିଧାନାତ୍ ପଞ୍ଚଜନାଃ ବିବକ୍ଷ୍ୟନ୍ତେ । (ଖ) କଥଂ ପୁନଃ ପ୍ରାଣାଦିଷୁ ଜନଶବ୍ଦପ୍ରୟୋଗଃ ? ତତ୍ତ୍ୱେଷୁ ବା କଥଂ ଜନଶବ୍ଦପ୍ରୟୋଗଃ ? ସମାନେ ତୁ ପ୍ରସିଦ୍ଧ୍ୟତିକ୍ରମେ ବାକ୍ୟଶେଷବଶାତ୍

ପ୍ରାଣାଦୟ ଏବ ଗ୍ରହୀତବ୍ୟା ଭବନ୍ତି । (ଗ) ଜନସମ୍ବନ୍ଧାଚ୍ଚ ପ୍ରାଣାଦୟୋ ଜନଶବ୍ଦଭାଜୋ ଭବନ୍ତି । ଜନବଚନଶ୍ଚ ପୁରୁଷଶବ୍ଦଃ ପ୍ରାଣେଷୁ ପ୍ରଯୁକ୍ତଃ-'ତେ ବା ଏତେ ପଞ୍ଚବ୍ରହ୍ମପୁରୁଷାଃ', (ଛା ୫-୧୫-୧) ଇତ୍ୟାଦି ଚ ବ୍ରାହ୍ମଣମ୍ । ସମାସବଳାଚ୍ଚ ସମୁଦାୟସ୍ୟ ରୂଢ଼ତ୍ୱମବିରୁଦ୍ଧମ୍ ।

(୨) ଭାଷାଂତର-(କ) 'ଯସ୍ମିନ୍ ପଞ୍ଚ ପଞ୍ଚଜନାଃ' ଏହି ଅଗ୍ରିମ ମନ୍ତ୍ରରେ ବ୍ରହ୍ମ ସ୍ୱରୂପର ନିରୂପଣ କରିବା ପାଇଁ 'ଯାହା ସେହି ପ୍ରାଣର ପ୍ରାଣ, ଚକ୍ଷୁର ଚକ୍ଷୁ, ଶ୍ରୋତ୍ରର ଶ୍ରୋତ୍ର ଅନ୍ନର ଅନ୍ନ ତଥା ମନର ମନକୁ ଜାଣେ, ସେମାନେ ବ୍ରହ୍ମଜ୍ଞ ହୁଅନ୍ତି । ଏହିପ୍ରକାର ପ୍ରାଣାଦି ପାଞ୍ଚଟି ନିର୍ଦ୍ଦିଷ୍ଟ ଅଟେ । ବାକ୍ୟଶେଷରେ ସନ୍ନିହିତ ହେବାରୁ ସେମାନେ ପ୍ରାଣାଦି 'ଯସ୍ମିନ୍' ଏହି ମନ୍ତ୍ରରେ ପଞ୍ଚଜନ ଶବ୍ଦଦ୍ୱାରା ବିବକ୍ଷିତ ହୁଏ ।

(ଖ) ପୂର୍ବପକ୍ଷ-ପ୍ରାଣାଦିରେ ଜନଶବ୍ଦର ପ୍ରୟୋଗ କିପରି ହୁଏ ? ସିଦ୍ଧାନ୍ତ-ତତ୍ତ୍ୱରେ ଜନଶବ୍ଦର ପ୍ରୟୋଗ କିପରି ହୁଏ ? ପ୍ରସିଦ୍ଧିରୂଢ଼ିର ଦୁଇପକ୍ଷରେ ତ୍ୟାଗ ସମାନ ହେଲେ ବାକ୍ୟଶେଷ ବଳରେ ପଞ୍ଚଜନଶବ୍ଦଦ୍ୱରା ପ୍ରାଣାଦି ପାଞ୍ଚ ହିଁ ଗ୍ରହଣ ଯୋଗ୍ୟ ଓ ମନୁଷ୍ୟ ସହ ସମ୍ବନ୍ଧ ହେଲେ ପ୍ରାଣାଦି ଜନଶବ୍ଦର ଭାଗୀ ହୁଏ ।

(ଗ) 'ସେ ସେମାନେ ପାଞ୍ଚ ବ୍ରହ୍ମପୁରୁଷ ଅଟନ୍ତି' ଏଠାରେ ଜନବାଚକ ପୁରୁଷଶବ୍ଦ ପ୍ରାଣରେ ପ୍ରଯୁକ୍ତ ଅଟେ । ସେହି ପ୍ରକାର 'ପ୍ରାଣ ହିଁ ପିତା, ପ୍ରାଣ ହିଁ ମାତା', ଇତ୍ୟାଦି ବ୍ରାହ୍ମଣ ସ୍ମୃତି । ସମାସବଳରେ ସମୁଦାୟଙ୍କୁ ରୂଢ଼ରୂପରେ ସ୍ୱୀକାର କଲେ କୌଣସି ବିରୁଦ୍ଧ ନାହିଁ ।

(୩) ମୂଳ-(କ) କଥଂ ପୁନରସତି ପ୍ରଥମପ୍ରୟୋଗେ ରୂଢ଼ିଃ ଶକ୍ୟାଽଶ୍ରୟିତୁମ୍ ? ଶକ୍ୟୋଦ୍ଭିଦାଦିବଦିତ୍ୟାହପ୍ରସିଦ୍ଧାର୍ଥସନ୍ନିଧାନେ ହ୍ୟପ୍ରସିଦ୍ଧାଥଃ ଶବ୍ଦଃ ପ୍ରଯୁଜ୍ୟମାନଃ ସମଭିବ୍ୟାହାରାଉଦ୍‌ଚିଷୟୋ ନିୟମ୍ୟତେ । (ଖ) ଯଥା 'ଉଦ୍‌ଭିଦା ଯଜେତ', 'ଯୂପଂ ଛିନତ୍ତି', 'ବେଦିଂ କରୋତି', ଇତି । ତଥାଽୟମପି ପଞ୍ଚଜନଶବ୍ଦଃ ସମାସାନ୍ୱାଖ୍ୟାନାଦବଗତସଂଜ୍ଞାଭାବଃ ସଂଜ୍ଞାକାଂକ୍ଷୀ ବାକ୍ୟଶେଷସମ-ଭିବ୍ୟାହୃତେଷୁ ପ୍ରାଣାଦିଷୁ ବର୍ତ୍ତିଷ୍ୟତେ । (ଗ) କୈଶ୍ଚିତ୍ତୁ ଦେବା ପିତରୋ ଗନ୍ଧର୍ବା ଅସୁରା ରକ୍ଷାଂସି ଚ ପଞ୍ଚ ପଞ୍ଚଜନା ବ୍ୟାଖ୍ୟାତାଃ । ଅନ୍ୟୈଶ୍ଚ ଚତ୍ୱାରୋ ବର୍ଣ୍ଣା ନିଷାଦପଞ୍ଚମାଃ ପରିଗୃହୀତାଃ' (ଗ) କ୍ୱଚିଚ୍ଚ 'ଯତ୍ ପାଞ୍ଚଜନ୍ୟୟା ବିଶ', (ଋ. ସଂ ୮-୫୩-୭) ଇତି ପ୍ରଜାପରଃ ପ୍ରୟୋଗଃ ପଞ୍ଚଜନଶବ୍ଦସ୍ୟ ଦୃଶ୍ୟତେ । (ଘ) ତତ୍ ପରିଗ୍ରହେଽପୀହ ନ କଶ୍ଚିଦ୍‌ବିରୋଧଃ



ଆଚାର୍ଯ୍ୟସ୍ତୁ ନ ପଞ୍ଚବିଂଶତେସ୍ତତ୍ତ୍ୱାନାମିହ ପ୍ରତୀତିରସ୍ତୀତ୍ୟେବଂ ପରତୟା 'ପ୍ରାଣାଦୟୋ ବାକ୍ୟଶେଷାତ୍' ଇତି ଜଗାଦ ।

**(୩) ଭାଷାଂତର**-(କ) ପରନ୍ତୁ ପଞ୍ଚଜନ ଶବ୍ଦର ପ୍ରଥମ-ପ୍ରାଣାଦିରେ ପ୍ରୟୋଗର ଅସିଦ୍ଧି ହେଲେ ରୂଢ଼ିର କେଉଁ ପ୍ରକାର ଆଶ୍ରୟ କରାଯାଇପାରିବ ? ତେଣୁ କୁହାଯାଇଛି- ଉଦ୍‌ଭିଦାଦି ସଦୃଶ ପଞ୍ଚଜନଶବ୍ଦର ରୂଢ଼ି ହୋଇପାରିବ । ପ୍ରସିଦ୍ଧାର୍ଥ ପଦର ସନ୍ନିଧାନରେ ପ୍ରଯୁକ୍ତ ହୋଇଥିବା ଅପ୍ରିଦ୍ଧାର୍ଥବାଚକ ଶବ୍ଦର ସମଭିବ୍ୟାହାର ବଳରେ ତଦ୍‌ବିଷୟକ ଅର୍ଥ ହୁଏ । ଏହା ହିଁ ନିୟମ ।

(ଖ) ଯେପରି 'ପଶୁକାମୁକ ଉଦ୍‌ଭିଦନାମକ ଯାଗକରିବା ଉଚିତ୍', 'ଯୂପର ଛେଦନ କରି ସଂସ୍କାର କରିବା ଉଚିତ୍,' 'ବେଦିର ସଂସ୍କାର କରିବା ଉଚିତ୍', ଇତ୍ୟାଦିରେ ହୁଏ । ସେହିପରି ମଧ୍ୟ ଏହି ପଞ୍ଚଜନ ଶବ୍ଦ ସମାସକୁ କହିବାରୁ ସଂଜ୍ଞାଭାବକୁ ପାଇ ସଂଜ୍ଞାର ଆକାଙ୍କ୍ଷା କରେ । ବାକ୍ୟଶେଷ ଓ ସମଭିବ୍ୟାହୃତ ସହୋଚ୍ଚାରିତ ପ୍ରାଣାଦିରେ ପ୍ରବୃତ୍ତ ହୁଏ ।

(ଗ) କୌଣସି ଲୋକ କହେ ଯେ- ଦେବତା, ପିତୃଗଣ, ଗନ୍ଧର୍ବ, ଅସୁର ଓ ରାକ୍ଷସ ଏହି ପାଞ୍ଚଟି ପଞ୍ଚଜନ ଅଟନ୍ତି । କେତେକଙ୍କ ମତରେ ବର୍ଣ୍ଣଚାରୀ ଓ ପଞ୍ଚମରେ ନିଷାଦ (ବ୍ରାହ୍ମଣ ଦ୍ୱାରା ଶୂଦ୍ରାଠାରୁ ଉତ୍ପନ୍ନ ସନ୍ତାନ)ର ଗ୍ରହଣ କରାଯାଇଛି । କୌଣସିଠାରେ ମଧ୍ୟ 'ଯତ୍ ପଞ୍ଚଜନ୍ୟୟା ବିଶା', ଏହି ପ୍ରକାର ପଞ୍ଚଜନଶବ୍ଦର ପ୍ରୟୋଗ ପ୍ରଜା ପାଇଁ ଦେଖାଇଦିଏ ।

(ଘ) ଏହାର ଗ୍ରହଣ କଲେ କୌଣସି ବିରୋଧ ନାହିଁ । ଆଚାର୍ଯ୍ୟ ପଚିଶ ତତ୍ତ୍ୱକୁ ଏଠାରେ ପ୍ରତୀତି ହୁଏ ନାହିଁ । ଏହି ଅଭିପ୍ରାୟରେ 'ପ୍ରାଣାଦୟୋ ବାକ୍ୟଶେଷାତ୍', ବୋଲି ସୂତ୍ର କହିଛନ୍ତି ।

(୧) ମୂଳ-(କ) ଭବେୟୁସ୍ତାବତ୍ପ୍ରାଣାଦୟଃ ପଞ୍ଚଜନାଃ ମାଧ୍ୟନ୍ଦିନାର୍ନାମ୍, ଯେଽନ୍ନଂ ପ୍ରାଣାଦିଷ୍ୱାମନନ୍ତି । କାଣ୍ୱାନାନ୍ତୁ କଥଂ ପ୍ରାଣାଦୟଃ ପଞ୍ଚଜନାଃ ଭବେୟୁଃ । ଯେଽନ୍ନଂ ପ୍ରାଣାଦିଷ୍ୱ ନାମନନ୍ତି ? ଅତଃ ଉତ୍ତରଂପଠିତ ।

**(୧) ଭାଷାଂତର**- (କ) ପ୍ରାଣାଦିରେ ଅନ୍ନପାଠ କରୁଥିବା ମଧ୍ୟନ୍ଦିନଶାଖା ମାନଙ୍କ ମତରେ ପ୍ରାଣାଦି ପଞ୍ଚଜନ ହେଉ, ପରନ୍ତୁ କାଣ୍ୱଶାଖା ଯାହା ପ୍ରାଣାଦିରେ ଅନ୍ନର ପାଠକରନ୍ତି ନାହିଁ । ସେମାନଙ୍କ ମତରେ ପ୍ରାଣାଦି ପଞ୍ଚଜନ କିପରି ହେବ ? ଏହାପାଇଁ ଉତ୍ତର ପଢ଼ା ହେଉଛି ।

## ज्योतिषैकेषामसत्यन्ने ॥ १३ ॥

## (୧) ଜ୍ୟୋତିଷୈକେଷାମସତ୍ୟନ୍ନେ ।୧।୪।୧୩।

ଏକେଷାମ୍=କାଣ୍ୱଶାଖାମାନଙ୍କମତରେ ପୂର୍ବୋକ୍ତ ପ୍ରାଣାଦିରେ, ଅନ୍ନେ ଅସତି = ଅନ୍ନ ନ ହେବାର କାରଣ, ଜ୍ୟୋତିଷା='ତଦ୍ଦେବା' ଏହି ପୂର୍ବବାକ୍ୟସ୍ଥ ଜ୍ୟୋତିଦ୍ୱାରା ପଞ୍ଚସଂଖ୍ୟାର ପୂର୍ତ୍ତି କରିବା ଉଚିତ ।

(୨) ମୂଳ-(କ) ଅସତ୍ୟପି କାଣ୍ୱନାମ୍ନାନ୍ନେ ଜ୍ୟୋତିଷା ତେଷାଂ ପଞ୍ଚସଂଖ୍ୟା ପୂର୍ୟେତ । ତେଽପି ହି 'ଯସ୍ମିନ୍ ପଞ୍ଚ ପଞ୍ଚଜନାଃ' ଇତ୍ୟତଃ ପୂର୍ବସ୍ମିନ୍ ମନ୍ତ୍ରେ ବ୍ରହ୍ମସ୍ୱରୂପନିରୂପଣାୟୈବ ଜ୍ୟୋତିରଭିଧୀୟତେ-'ତଦ୍ଦେବା ଜ୍ୟୋତିଷାଂ ଜ୍ୟୋତିଃ' ଇତି । (ଖ) କଥଂ ପୁନରୁଭୟେଷାମପି ତୁଲ୍ୟବଦିଦଂ କେଷାଞ୍ଚି ପଠ୍ୟମାନଂ ସମାନମନ୍ତ୍ରଗତୟା ପଞ୍ଚସଂଖ୍ୟୟା କେଷାଞ୍ଚିଦ୍ ମାଧ୍ୟନ୍ଦିନାନାଂ ହି ସମାନମନ୍ତ୍ର ନ୍ନେତି ? (ଗ) ଅପେକ୍ଷା ଭେଦ୍ଦାଦିତ୍ୟାହ ଜନଲାଭାନ୍ନାସ୍ମିନ୍ ମନ୍ତ୍ରାନ୍ତରପଠିତେ ଜ୍ୟୋତିଷ୍ୟପେକ୍ଷା ଭବତି । ତଦଲାଭାତ୍ତୁ କାଣ୍ୱାନାଂ ଭବତ୍ୟପେକ୍ଷା । ଅପେକ୍ଷାଭେଦାଚ୍ଚ ସମାନେଽପିମନ୍ତ୍ରେ ଜ୍ୟୋତିଷୋ ଗ୍ରହଣାଗ୍ରହଣେ, ତଦ୍‌ବତ୍ । (ଘ) ଯଥା ସମାନେଽପ୍ୟତି ରାତ୍ରେ ବଚନଭେଦାତ୍ ଷୋଡ଼ଶିନୋ ଗ୍ରହଣାଗ୍ରହଣେ, ତଦ୍‌ବତ୍ । ତଦେବଂ ନ ତାବଚ୍ଛ୍ରୁତିପ୍ରସିଦ୍ଧିଃ କାଚିତ୍ ପ୍ରଧାନବିଷୟାସ୍ତି । ସ୍ମୃତିନ୍ୟାୟପ୍ର ସିଦ୍ଧି ତୁ ପରିହରିଷ୍ୟତେ ।

**(୨) ଭାଷାଂତର-** (କ) କାଣ୍ୱଶାଖାମାନଙ୍କ ପାଠରେ 'ପ୍ରାଣସ୍ୟ ପ୍ରାଣମୁତ' ଏହି ମନ୍ତ୍ରରେ ଅନ୍ନର ଗ୍ରହଣ ନ ହେଲେ ମଧ୍ୟ ଜ୍ୟୋତିଦ୍ୱାରା ତାହାର ପଞ୍ଚମ ସଂଖ୍ୟାର ପୂର୍ତ୍ତି ହୋଇଯିବ । କାରଣ-ସେମାନେ ମଧ୍ୟ 'ଯସ୍ମିନ ପଞ୍ଚ ପଞ୍ଚଜନାଃ' ଏହି ମନ୍ତ୍ରଠାରୁ ପୂର୍ବ ମନ୍ତ୍ରରେ ବ୍ରହ୍ମସ୍ୱରୂପ ନିରୂପଣ କରିବା ପାଇଁ ସେହି ଆଦିତ୍ୟାଦି ଜ୍ୟୋତିଗୁଡ଼ିକର ଜ୍ୟୋତିସ୍ୱରୂପ ଅମୃତର ଆୟୁକୁ ଦେବଗଣ ଉପାସନା କରନ୍ତି ।' ଏହିପ୍ରକାର ଜ୍ୟୋତିର ଅଧ୍ୟୟନ କରନ୍ତି ।

(ଖ) ପରନ୍ତୁ ଦୁଇଶାଖାମାନଙ୍କ ପାଠରେ ସମାନରୂପରେ ପଢ଼ା ହୋଇଥିବା ଏହି ଜ୍ୟୋତିର ଗୋଟିଏ ମନ୍ତ୍ରରେ ପ୍ରାପ୍ତ ପାଞ୍ଚସଂଖ୍ୟାଦ୍ୱାରା କେତେକ ଲୋକ (କାଣ୍ୱଶାଖା) କାହିଁକି ଗ୍ରହଣ କରନ୍ତି ଓ ଆଉ କେତେକ (ମାଧ୍ୟନ୍ଦିନଶାଖା) କାହିଁକି ଗ୍ରହଣ କରନ୍ତି ନାହିଁ ?



(ଗ) କାରଣ-ଅପେକ୍ଷା (ଆକାଂକ୍ଷା)ର ଭେଦ୍ବହେତୁ ବୋଲି କୁହାଯାଇଛି । 'ପ୍ରାଣସ୍ୟ ପ୍ରାଣମୁତ,' ଏହି ଗୋଟିଏ ମନ୍ତ୍ରରେ ଅନ୍ନର ଗ୍ରହଣ ହେଲେ ପ୍ରାଣାଦି ପଞ୍ଚଜନର ମାଧ୍ୟନ୍ଦିନକୁ ଲାଭ ହେବାରୁ ପୂର୍ବ ମନ୍ତ୍ରରେ ପଠିତ ଜ୍ୟୋତିର ଅପେକ୍ଷା ହୁଏ ନାହିଁ । ଅନ୍ନର ଗ୍ରହଣ ନହେଲେ ଏକମନ୍ତ୍ରରେ ପ୍ରାଣାଦି ପଞ୍ଚଜନର ଲାଭ ନ ହେବାରୁ କାଣ୍ୱ ଶାଖାକୁ ଜ୍ୟୋତିର ଅପେକ୍ଷା କରିବାକୁ ହୁଏ । ଅର୍ଥାତ୍ ଚାରୋଟି ହେଲେ ମଧ୍ୟ ପଞ୍ଚମଟି କିଏ ହେବ ? ଏହି ପ୍ରକାର ଅପେକ୍ଷା କରାଯାଏ ।

(ଘ) ଯେପରି ଗୋଟିଏ ଅତିରାତ୍ରରେ ବଚନ ଭେଦହେତୁ କୌଣସି ଷୋଡ଼ଶୀ (ଯଜ୍ଞପାତ୍ର)ର ଗ୍ରହଣ ହୁଏ ଓ କାହାର ଗ୍ରହଣ ହୁଏ ନାହିଁ । ସେହିପରି ଅପେକ୍ଷା ଭେଦରେ ଗୋଟିଏ ମନ୍ତ୍ରରେ ପଠିତ ଜ୍ୟୋତିର ଗ୍ରହଣ ଓ ଅଗ୍ରହଣ ହୁଏ । ଏହି ପ୍ରକାର ପ୍ରଧାନବିଷୟକ କୌଣସି ଶ୍ରୁତିପ୍ରସିଦ୍ଧ ନାହିଁ । ସ୍ମୃତି ଓ ନ୍ୟାୟ ପ୍ରସିଦ୍ଧର ପରିହାର ଆଗରେ କୁହାଯିବ ।

## ४ कारणत्वाधिकरणम् ॥ सू० १४ - २५ ॥

## କାରଣତ୍ୱାଧିକରଣ-୪

### कारणत्वेन चाकाशादिषु यथाव्यपदिष्टोक्तेः ॥ १४ ॥

### (୧) କାରଣତ୍ୱେ ନ ଚାକାଶାଦିଷୁ ଯଥାବ୍ୟପଦିଷ୍ଟୋକ୍ତେଃ ॥୧।୪।୧୪॥

କାରଣତ୍ୱେ = ବ୍ରହ୍ମର ଜଗତର କାରଣ ହେବାରେ, ନ-କୌଣସି ବିରୋଧ ନାହିଁ । କାରଣ-ଆକାଶାଦିଷୁ-ସୃଜ୍ୟମାନ ଆକାଶାଦିପଦାର୍ଥ ବିଷୟରେ, ଯଥା ବ୍ୟପଦିଷ୍ଟୋକେ୍ତୋଃ-ଯାଦୃଶ ଗୋଟିଏ ମାତ୍ର ଉପନିଷଦରେ କାରଣ ରୂପରେ ବ୍ୟପଦିଷ୍ଟ ଓ ତାଦୃଶ ମଧ୍ୟ ଅନ୍ୟ ଉପନିଷଦରେ କାରଣ ରୂପରେ କଥିତ ହୁଏ ।

(୨) ମୂଳ-(କ) ପ୍ରତିପାଦିତଂ ବ୍ରହ୍ମଣୋ ଲକ୍ଷଣମ୍, ପ୍ରତିପାଦିତଂ ଚ ବ୍ରହ୍ମବିଷୟଂ ଗତିସାମାନ୍ୟଂ ବେଦାନ୍ତବାକ୍ୟାନାମ୍ । ପ୍ରତିପାଦିତଂ ଚ ପ୍ରଧାନସ୍ୟାଶବ୍ଦତ୍ୱମ୍ । (ଖ) ତତ୍ରେଦମପରମାଶଙ୍କ୍ୟତେ-ନ ଜନ୍ମାଦିକାରଣତ୍ୱଂ ବ୍ରହ୍ମଣୋ ବ୍ରହ୍ମବିଷୟଂ ବା ଗତିସାମାନ୍ୟଂ ବେଦାନ୍ତବାକ୍ୟାନାଂ ପ୍ରତିପାଦୟିତୁଂ ଶକ୍ୟମ୍ । କସ୍ମାତ୍ ? ବିଗାନଦର୍ଶନାତ୍ । ପ୍ରତିବେଦାନ୍ତଂ ହ୍ୟନ୍ୟାନ୍ୟା ସୃଷ୍ଟ ରୂପଲଭ୍ୟତେ, କ୍ରମାଦିବୈଚିତ୍ର୍ୟାତ୍ । (ଗ) ତଥାହି କ୍ୱଚିତ୍ 'ଆତ୍ମନ ଆକାଶଃ ସମ୍ଭୂତଃ', (ତୈ ୨।୧) ଇତ୍ୟାଦିକା ସୃଷ୍ଟିରାମ୍ନାୟତେ । କ୍ୱଚିତ୍ତେଜ ଆଦିକା- 'ତତ୍ତେଜୋଽସୃଜତ', (ଛା ୬।୨।୩) ଇତି । କ୍ୱଚିତ୍ପ୍ରାଣାଦିକା 'ସ ପ୍ରାଣମସୃଜତ ପ୍ରାଣାଚ୍ଛ୍ରଦ୍ଧାମ୍', (ପ୍ର ୬।୪) ଇତି । କ୍ୱଚିଦକ୍ରମେଣୈବ ଲୋକାନାମୁତ୍ପତ୍ତିରାମ୍ନାୟତେ- 'ସ ଇମାଂ ଲ୍ଲୋକାନସୃଜତ । ଅମ୍ଭୋ ମରୀଚୀର୍ମରମାପଃ' (ଐ. ଉ ୪।୧।୨) ଇତି । ତଥା

କ୍ୱଚିଦସତ୍‌ପୂର୍ବିକା ସୃଷ୍ଟିଃ ପଠ୍ୟତେ-'ଅସଦ୍‌ବା ଇଦମଗ୍ର ଆସୀତ୍ତେତୋ ବୈ ସଦଜାୟତ', (ତୈ ୨।୭) ଇତି । 'ଅସଦେବେଦମଗ୍ର ଆସୀତ୍ତତ୍‌ସଦାସୀତ୍ତତ୍ ସମଭବତ୍', (ଛା ୩।୧୯।୧) ଇତି ଚ । (ଘ) କ୍ୱଚିଦସଦ୍‌ବାଦନିରାକରଣେନ ସତ୍‌ପୂର୍ବିକା ପ୍ରକ୍ରିୟା ପ୍ରତିଜ୍ଞାୟତେ- 'ତଦ୍ଧୈକ ଆହୁରସଦେବେଦମଗ୍ର ଆସୀତ୍', ଇତ୍ୟୁପକ୍ରମ୍ୟ 'କୁତସ୍ତୁ ଖଲୁ ସୋମ୍ୟୈବ ସ୍ୟାଦିତି ହୋବାଚ କଥମସତଃ ସଜ୍ଜାୟେତେତି ସତ୍ତ୍ୱେବ ସୋମ୍ୟେଦମଗ୍ର ଆସୀତ୍', (ଛା ୬।୨।୧,୨) ଇତି । (ଙ) କ୍ୱଚିତ୍ ସ୍ୱୟଂ କର୍ତ୍ତୃକୈବ ବ୍ୟାକ୍ରିୟା ଜଗତୋ ନିଗଦ୍ୟତେ- 'ତଦ୍ଧେଦଂ ତର୍ହ୍ୟବ୍ୟାକୃତମାସୀତ୍ତନ୍ନାମରୂପାଭ୍ୟାମେବ ବ୍ୟାକ୍ରିୟତେ', (ବୃ ୧।୪।୭) ଇତି । (ଚ) ଏବମନେକଧା ବିପ୍ରତ୍ତିପତ୍ତେର୍ବସ୍ତୁନି ଚ ବିକଳ୍ପସ୍ୟାନୁପପତ୍ତେଃ ନ ବେଦାନ୍ତ-ବାକ୍ୟାନାଂ ଜଗତ୍ କାରଣାବଧାରଣପରତା ନ୍ୟାଯ୍ୟା । ସ୍ମୃତି ନ୍ୟାୟ ପ୍ରସିଦ୍ଧାଭ୍ୟାଂ ତୁ କାରଣାନ୍ତରପିଗ୍ରହୋ ନ୍ୟାଯ୍ୟ ଇତି ।

(୨) ଭାଷାଂତର-(କ) 'ଜନ୍ମାଦ୍ୟସ୍ୟ ଯତଃ' ଇତ୍ୟାଦି ସୂତ୍ରରେ ଜଗତ୍ ଜନ୍ମାଦିକାରଣତ୍ୱ ବୋଲି ବ୍ରହ୍ମର ଲକ୍ଷଣ କୁହାଯାଇଛି । (ଗତି ସାମାନ୍ୟାତ୍, ଏହି ସୂତ୍ରରେ) ସବୁ ବେଦାନ୍ତ ବାକ୍ୟ ସମାନରୂପରେ ବ୍ରହ୍ମର କାରଣତ୍ୱ ବୋଧକ ହୁଏ ବୋଲି ଏଠାରେ ମଧ୍ୟ କୁହାଯାଇଛି । ('ଈକ୍ଷତେର୍ନାଶବ୍ଦମ୍', ଏହି ସୂତ୍ରରେ) ପ୍ରଧାନ ଶ୍ରୁତି ପ୍ରତିପାଦିତ ନୁହେଁ ବୋଲି ମଧ୍ୟ ଜଣାପଡ଼େ ।

(ଖ) ବର୍ତ୍ତମାନ ଏଠାରେ ଅନ୍ୟ ଆଶଙ୍କା କରାଯାଏ ଯେ- ବ୍ରହ୍ମ ଜଗତର ଜନ୍ମାଦି କାରଣ ଅଟେ' । ସମ୍ପୂର୍ଣ୍ଣ ବେଦାନ୍ତ ବାକ୍ୟ ଗୁଡ଼ିକର ବ୍ରହ୍ମବିଷୟକ କାରଣ ଗତି ଜ୍ଞାନ ସମାନ ବୋଲି ପ୍ରତିପାଦନ କରାଯାଇ ନ ପାରେ । କିପରି ? ଏଠାରେ ବିଗାନ ଅର୍ଥାତ୍ ବିରୋଧ ଦେଖାଯାଏ । ପ୍ରତ୍ୟେକ ଉପନିଷଦରେ କ୍ରମାଦିବୈଚିତ୍ର୍ୟରୁ ଭିନ୍ନ ଭିନ୍ନ ସୃଷ୍ଟି ଉପଲବ୍ଧ ହୁଏ ।

(ଗ) ଯେପରି କୌଣସିଠାରେ 'ଆତ୍ମାଠାରୁ ଆକାଶ ଉତ୍ପନ୍ନ ହୋଇଛି', ଏହି ପ୍ରକାର ଆକାଶପୂର୍ବକ ସୃଷ୍ଟି କୁହାଯାଇଛି । କୌଣସିଠାରେ 'ସେ ତେଜକୁ ଉତ୍ପନ୍ନ କଲା' ଏହିପ୍ରକାର ପ୍ରାଣପୂର୍ବକ ସୃଷ୍ଟି କଥିତ । କୌଣସିଠାରେ 'ସେ ଏହି ସଂସାରର ସୃଷ୍ଟିର ଜଳମୟଶରୀର ଥିବା ସ୍ୱର୍ଗଲୋକ, ସୂର୍ଯ୍ୟକିରଣରୁ ବ୍ୟାପ୍ତ ଅନ୍ତରିକ୍ଷ ଲୋକ, ମନୁଷ୍ୟଲୋକ ଓ ଜଳମୟ ପ୍ରାଣଲଲୋକ', ଏହିପ୍ରକାର କ୍ରମବ୍ୟତିତ ସୃଷ୍ଟି କୁହାଯାଇଛି । ଏପରି କୌଣସିଠାରେ 'ପ୍ରଥମେ ଏହି ଜଗତ୍ ଅସତ୍ ଥିଲା, ତାହାଦ୍ୱାରା



ସତ୍- ନାମରୂପାତ୍ମକ ବ୍ୟକ୍ତି ହେଲା', ଏବଂ ପ୍ରଥମ ଅସତ୍ ଥିଲା ସେସତ୍-ହେଲା, ସେ ଅଭିବ୍ୟକ୍ତ ହେଲା ଅର୍ଥାତ ଅଙ୍କୁରିତ ହେଲା' 'ଏହିପ୍ରକାର ଅସତ୍ ପୂର୍ବକ ସୃଷ୍ଟି କୁହାଯାଇଛି ।

(ଘ) କୌଣସି ସ୍ଥାନରେ ଅସଦ୍ ବାଦର ନିରାକରଣ କରି 'ଏହି ଜଗତ୍ କାରଣର ବିଷୟରେ କୌଣସି ଲୋକ ଆରମ୍ଭରେ ଅସତ୍ ଥିଲା' ବୋଲି କହୁଛନ୍ତି', ଏହି ପ୍ରକାର ଉପକ୍ରମ କରି, 'କିନ୍ତୁ ହେ ସୋମ୍ୟ । ଏହା କିପରି ହୋଇପାରେ ? ଅସତ୍‌ରୁ ସତ୍ କିପରି ଉତ୍ପନ୍ନ ହୁଏ ? ଅତଃ ହେ ସୋମ୍ୟ । ପ୍ରଥମେ ଏହି ଏକମାତ୍ର ଅଦ୍ୱିତୀୟ ସତ୍‌ଥିଲା ଏହିପ୍ରକାର ଆରୁଣି କହିଲେ', ଏହିପ୍ରକାର ସତ୍ ପୂର୍ବକ ସୃଷ୍ଟିର ପ୍ରତିଜ୍ଞା ହୋଇଛି ।

(ଙ) କୌଣସିଠାରେ ସେ ଏହି ଜଗତ୍ ସୃଷ୍ଟିର ପୂର୍ବରୁ ଅବ୍ୟାକୃତ ଥିଲା, ଯେ ନାମରୂପରେ ବ୍ୟାକୃତ ବ୍ୟକ୍ତ ହେଲା', ଏହିପ୍ରକାର ଜଗତ୍‌ର ଅଭିବ୍ୟକ୍ତି ସ୍ୱୟଂ କର୍ତ୍ତୃକ ନିଜେ ହିଁ କହେ ।

(ଚ) ଏହି ପ୍ରକାର ଅନେକ ରୀତିରେ ସୃଷ୍ଟି ଆଦି ବିଷୟକ ଶ୍ରୁତିର ପରସ୍ପରର ବିରୋଧ ହେଲେ ଏବଂ ବସ୍ତୁରେ ବିକଳ୍ପର ଅନୁପପତ୍ତି ହେଲେ ବେଦାନ୍ତ ବାକ୍ୟଗୁଡ଼ିକରେ ଜଗତ୍ କାରଣର ଅବଧାରଣପରତା ଠିକ୍ ହୁଏ ନାହିଁ । ଅତଃ ସ୍ମୃତି ପ୍ରସିଦ୍ଧ ଦ୍ୱାରା ବ୍ରହ୍ମଭିନ୍ନ କାରଣର ଗ୍ରହଣ କରିବା ଯୁକ୍ତି ଯୁକ୍ତ ଅଟେ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ସତ୍ୟପି ପ୍ରତିବେଦାନ୍ତଂ ସୃଜମାନେଷ୍ୱା-କାଶାଦିଷୁ କ୍ରମାଦିଦ୍ୱାରକେ ବିଗାନେ ନ ସ୍ରଷ୍ଟରି କିଞ୍ଚିଦ୍‌ଗାନମସ୍ତି । (ଖ) କୁତଃ ? ଯଥାବ୍ୟପଦିଷ୍ଟୋକ୍ତେଃ । ଯଥାଭୂତୋ ହ୍ୟେକସ୍ମିନ୍ ବେଦାନ୍ତେ ସର୍ବଜ୍ଞଃ ସର୍ବେଶ୍ୱରଃ ସର୍ବାତ୍ମୈକୋଽଦ୍ୱିତୀୟଃ କାରଣତ୍ୱେନ ବ୍ୟପଦିଷ୍ଟସ୍ତଥାଭୂତ ଏବ ବେଦାନ୍ତାନ୍ତରେଷ୍ୱପି ବ୍ୟପଦିଶ୍ୟତେ । (ଗ) ତଦ୍ଯଥା 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ', (ତୈ ୨-୧) ଇତି । ଅତ୍ରିତାବଜ୍ ଜ୍ଞାନଶବ୍ଦେନ ପରେଣ ଚ ତଦ୍ ବିଷୟେଣ କାମୟିତୃତ୍ୱବଚନେନ ଚେତନଂ ବ୍ରହ୍ମ ନ୍ୟରୂପୟତ୍', ଅପରପ୍ରଯୋଜ୍ୟତ୍ୱେନେଶ୍ୱରଂ କାରଣମବ୍ରବୀତ୍ । ତଦ୍‌ବିଷୟେଣୈବ ପରେଣାତ୍ମଶବ୍ଦେନ ଶରୀରାଦିକୋଷପରମ୍ପରୟା ଽନ୍ତରନୁ-ପ୍ରବେଶେନ ସର୍ବେଷାମନ୍ତଃ ପ୍ରତ୍ୟଗାତ୍ମନଂ ନିରଧାରୟତ୍ । (ଘ) 'ବହୁସ୍ୟାଂ ପ୍ରଜାୟେୟ', (ତୈ ୨-୬) ଇତି ଽତ୍ମ ବିଷୟେଣ ବହୁଭବନାନୁଶଂସନେନ ସୃଜମାନାନାଂ ବିକାରାଣାଂ ସ୍ରଷ୍ଟୁରଭେଦମଭାଷତ । (ଙ) ତଥା 'ଇଦଂ ସର୍ବମସୃଜତ । ଯଦିଦଂ କିଞ୍ଚ', (ତୈ ୨-୬) ଇତି ସମସ୍ତ ଜଗତ ସୃଷ୍ଟି ନିର୍ଦ୍ଦେଶେନ ପ୍ରାକ୍‌ସୃଷ୍ଟେର୍ ଦ୍ୱିତୀୟଂ ସ୍ରଷ୍ଟାରମାଚଷ୍ଟେ ।

(୩) ଭାଷାଂତର- ସିଦ୍ଧାନ୍ତ (କ) ପ୍ରତ୍ୟେକ ଉପନିଷଦରେ ସୃଜମାନେ ଆକାଶାଦିରେ କ୍ରମାଦିଦ୍ୱାରକ ବିରୋଧ ହେଲେ ମଧ୍ୟ ସ୍ରଷ୍ଟା ବିଷୟରେ କୌଣସି ବିରୋଧ ନାହିଁ ।

(ଖ) କିପରି ? ଯେପରି ଏକତ୍ର ସ୍ରଷ୍ଟାର ବ୍ୟପଦେଶ ହୁଏ; ସେପରି ଅନ୍ୟସ୍ଥାନରେ ମଧ୍ୟ ହୁଏ । ଗୋଟିଏ ଉପନିଷଦରେ ସୃଜ୍ୟମାନ ଆକାଶାଦିରେ ସର୍ବଜ୍ଞ, ସର୍ବେଶ୍ୱର, ସର୍ବାତ୍ମା, ଏକ ଅଦ୍ୱିତୀୟ ବ୍ରହ୍ମ, କାରଣରୂପରେ ବ୍ୟପଦିଷ୍ଟ ହୁଏ, ସେପରି ଅନ୍ୟ ଉପନିଷଦରେ ମଧ୍ୟ ବ୍ୟପଦିଷ୍ଟ ହୋଇଥାଏ ।

(ଗ) ସେପରି ମଧ୍ୟ ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ', ଏହି ବାକ୍ୟରେ ଜ୍ଞାନଶବ୍ଦରେ ସେ ବ୍ରହ୍ମ ବିଷୟକ (ସୋଽକାମୟତ) କାମୟିତୃତ୍ୱବଚନଦ୍ୱାରା ଚେତନବ୍ରହ୍ମର ନିରୂପଣ କରି ଶ୍ରୁତି ଈଶ୍ୱରଙ୍କୁ ସ୍ୱତନ୍ତ୍ରରୂପରେ କାରଣ କହେ । ଅନନ୍ତରୋକ୍ତ ବ୍ରହ୍ମବିଷୟକ ଆତ୍ମଶବ୍ଦରେ ଓ ଶରୀରାଦିକୋଷ ପରମ୍ପରାଦ୍ୱାରା ସମସ୍ତଙ୍କ ଭିତରେ ଅନୁପ୍ରବେଶ କରିବାରୁ ସମସ୍ତଙ୍କ ମଧ୍ୟରେ ପ୍ରତ୍ୟାଗାତ୍ମାର ନିର୍ଦ୍ଧାରଣ କରାଗଲା । 'ବହୁସ୍ୟାଂ ପ୍ରଜାୟେୟ' ଏହିପ୍ରକାର ଆତ୍ମ ବିଷୟକ ଅନେକ ସ୍ୱରୂପ ହେବା ବିଷୟ କହିବାରୁ ସୃଜ୍ୟମାନବିକାରର ସ୍ରଷ୍ଟାର ଅଭେଦ କୁହାଗଲା ।

(ଙ) ସେହିପ୍ରକାର 'ଏଠାରେ ଯାହା କିଛି ଅଛି, ତାହା ଏହି ପ୍ରକାର ତାହାଙ୍କର ରଚନା', ସମସ୍ତ ଜଗତର ସୃଷ୍ଟି ନିର୍ଦ୍ଦେଶ ଦ୍ୱାରା ସୃଷ୍ଟିର ପୂର୍ବ କେବଳ ଅଦ୍ୱିତୀୟ ସ୍ରଷ୍ଟାଙ୍କୁ ଶ୍ରୁତି କହେ ।

(୪) ମୂଳ-(କ) ତଦତ୍ର ଯଲ୍ଲକ୍ଷଣଂ ବ୍ରହ୍ମ କାରଣତ୍ୱେନ ବିଜ୍ଞାତମ୍', ତଲ୍ଲକ୍ଷଣ-ମେବାନ୍ୟତ୍ରାପି ବିଜ୍ଞାୟତେ-'ସଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱ ତୀୟମ୍', 'ତଦୈକ୍ଷତ ବହୁସ୍ୟାଂ ପ୍ରଜାୟେୟେତି । ତତ୍ତେଜୋଽସୃଜତ', (ଛ ୬-୨-୧,୩) ଇତି । ତଥା 'ଆତ୍ମା ବା ଇଦମେକ ଏବାଗ୍ର ଆସୀନ୍ନାନ୍ୟକିଞ୍ଚନମିଷତ୍ । ସ ଈକ୍ଷତ ଲୋକାନ୍ନୁ ସୃଜେ', (ଐ. ଉ. ୪-୧-୧,୨) ଇତି । (ଖ) ଏବଂ-ଜାତୀୟକସ୍ୟ କାରଣସ୍ୱରୂପନିରୂପଣପରସ୍ୟ ବାକ୍ୟଜାତସ୍ୟ ପ୍ରତିବେଦାନ୍ତମବିଗୀତାର୍ଥତ୍ୱାତ୍ । କାର୍ଯ୍ୟବିଷୟଂ ତୁ ବିଗାନଂ ଦୃଶ୍ୟତେ । କ୍ୱଚିଦାକାଶାଦିକା ସୃଷ୍ଟିଃ କ୍ୱଚିତ୍ତେଜ ଆଦିକେତ୍ୟେବଂଜାତୀୟକମ୍' (ଗ) ନ ଚ କାର୍ଯ୍ୟବିଷୟେଣ ବିଗାନେନ କାରଣମପି ବ୍ରହ୍ମ ସର୍ବବେଦାନ୍ତେଷ୍ୱବିଗୀତମଧିଗମ୍ୟମାନବିବକ୍ଷିତଂ ଭବିତୁମର୍ହତୀତି ଶକ୍ୟତେ ବକ୍ତୁ ମତିପ୍ରସଙ୍ଗାତ୍ ।



(୪) ଭାଷାଂତର-(କ) ଯେଉଁପ୍ରକାର ଏଠାରେ ତୈତିରୀୟ ଉପନିଷଦରେ ଯେଉଁ ସର୍ବଜ୍ଞତ୍ୱାଦି ଲକ୍ଷଣଯୁକ୍ତ ବ୍ରହ୍ମ ଜଗତ କାରଣ ରୂପରେ ବିଜ୍ଞାତ, ସେହି ପ୍ରକାର ଲକ୍ଷଣଯୁକ୍ତ ବ୍ରହ୍ମ 'ହେ ସୌମ୍ୟ, । ପ୍ରଥମେ ଏହି ସାରା ପ୍ରପଞ୍ଚ ଏକମାତ୍ର ଅଦ୍ୱିତୀୟ ସତ୍ ଥିଲା' 'ସେହି ସତ୍ ଈକ୍ଷଣ କଲା ଯେ- ମୁଁ ବହୁତ ହେବି, ଅନେକପ୍ରକାରରେ ଉତ୍ପନ୍ନ ହେବି' । ଏହି ପ୍ରକାର ଈକ୍ଷଣ କରି ସେ ତେଜ ଉତ୍ପନ୍ନ କଲା', ଏହି ପ୍ରକାର ସୃଷ୍ଟିର ପୂର୍ବରୁ ଏହି ସମଗ୍ର ଜଗତ କେବଳ ଆତ୍ମରୂପ ଥିଲା । ଅନ୍ୟ କୌଣସି ସଚେଷ୍ଟା ପଦାର୍ଥ ନ ଥିଲା । ସେ ଈକ୍ଷଣ କଲା ଯେ- ମୁଁ ସଂସାରକୁ ସୃଷ୍ଟି କରିବି' । ଏହି ପ୍ରକାର ଅନ୍ୟତ୍ର ଛାନ୍ଦୋଗ୍ୟାଦି ଉପନିଷଦରେ ଜାଣିବାକୁ ପଡ଼େ ।

(ଖ) କାରଣ-ସ୍ୱରୂପ ନିରୂପଣରକ ଏହିପ୍ରକାର ବାକ୍ୟସମୁଦାୟର କାରଣ ପ୍ରତ୍ୟେକ ଉପନିଷଦ୍‌ରେ ଅର୍ଥବିଷୟକ ଅବିରୋଧ ଅଟେ । ପରନ୍ତୁ କୌଣସି ଆକାଶର ପ୍ରଥମସୃଷ୍ଟି କୌଣସି ତେଜର ପ୍ରଥମ ସୃଷ୍ଟି, ରୂପରେ ଦେଖାଯାଏ ଏହି ପ୍ରକାର କାର୍ଯ୍ୟ ବିଷୟକ ବିରୋଧ ।

(ଗ) କାର୍ଯ୍ୟ ବିଷୟକ ବିରୋଧ ହେଲେ ସମସ୍ତ ବେଦାନ୍ତବାକ୍ୟରେ ଅବିରୁଦ୍ଧ ରୂପରେ ପ୍ରତୀୟମାନ କାରଣ ବ୍ରହ୍ମ ମଧ୍ୟ ଆବିବକ୍ଷତ ହେବା ଯୋଗ୍ୟ ବୋଲି ହୋଇ ନପାରେ, କାରଣ-ଏହିଭଳି ସ୍ୱୀକାର କଲେ ଅତି ପ୍ରସଙ୍ଗ ହେବ ।

(୫) ମୂଳ-(କ) ସମାଧସ୍ୟତି ଚୈତର୍ଯ୍ୟଃ କାର୍ଯ୍ୟବିଷୟମପି ବିଗାନଂ 'ନ ବିୟଦଶ୍ରୁତେଃ', (ବ୍ର.ସୂ ୨-୩-୧) ଇତ୍ୟାରଭ୍ୟଃ । ଭବେଦପି କାର୍ଯ୍ୟସ୍ୟ ବିଗୀତତ୍ୱ-ମପ୍ରତିପାଦ୍ୟତ୍ୱାତ୍ । ନହ୍ୟୟଂ ସୃଷ୍ଟ୍ୟାଦିପ୍ରପଞ୍ଚଃ ପ୍ରତିପାଦୟିଷିତଃ । ନହିତତ୍‌ପ୍ରତିବଦ୍ଧଃ କଶ୍ଚିତ୍ ପୁରୁଷାର୍ଥୋ ଦୃଶ୍ୟତେ ଶ୍ରୂୟତେ ବା । ନ ଚ କଳ୍ପୟିତୁଂ ଶକ୍ୟତେ ଉପକ୍ରମୋପସଂହାରାଭ୍ୟାଂ ତତ୍ର ତତ୍ର ବ୍ରହ୍ମବିଷୟୈର୍ବାକ୍ୟୈଃ ସାକମେକବାକ୍ୟତାୟା ଗମ୍ୟତ୍ୱାତ୍ । (ଖ) ଦଶୟତି ଚ ସୃଷ୍ଟ୍ୟାଦିପ୍ରପଞ୍ଚସ୍ୟ ବ୍ରହ୍ମପ୍ରତିପତ୍ତ୍ୟର୍ଥତାମ୍ 'ଅନେନ ସୋମ୍ୟ ଶୃଙ୍ଗେନୋପୋ ମୂଳମନ୍ୱିଚ୍ଛାଦ୍‌ଭିଃ ସୋମ୍ୟ ଶୃଙ୍ଗେନ ତେଜୋ ମୂଳକନ୍ୱିଚ୍ଛ ତେଜସା ସୋମ୍ୟ ଶୃଙ୍ଗେନ ସନ୍ମୂଳମନ୍ୱିଚ୍ଛ', (ଛ ୬-୮-୪) ଇତି । (ଗ) ମୃଦାଦିଦୃଷ୍ଟାନ୍ତୈଶ୍ଚ କାର୍ଯ୍ୟସ୍ୟ କାରଣେନାଭେଦଂ ବଦିତୁଂ ସୃଷ୍ଟ୍ୟାଦିପ୍ରପଞ୍ଚଃ ଶ୍ରାବ୍ୟତ ଇତି ଗମ୍ୟତେ । ତଥାଚ ସମ୍ପ୍ରଦାୟବିହୋବଦନ୍ତି- ''ମୃଲ୍ଲୋହବିସ୍ଫୁଲିଙ୍ଗାଦୈଃ ସୃଷ୍ଟିର୍ଯା ଚୈଦିତାଽନ୍ୟଥା । ଉପାୟଃ ସୋଽବତାରାୟ ନାସ୍ତି ଭେଦଃ କଥଞ୍ଚ', (ମାଣ୍ଡୁକ ୩-୧୫) ଇତି । (ଘ) ବ୍ରହ୍ମପ୍ରତିପତ୍ତିପ୍ରିବଦ୍ଧଂ ତୁଂ ଫଳଂ

ଶ୍ରୂୟତେ 'ବ୍ରହ୍ମବିଦାପ୍ନୋତି ପରମ୍', (ତୈ ୩-୮) 'ତମେବ ବିଦିତ୍ୱାଽତିମୃତ୍ୟୁମେତି', (ଶ୍ୱେତ ୩-୮) ଇତି । ପ୍ରତ୍ୟକ୍ଷାବଗମଂ ଚୈଦଂ ଫଳମ୍ । 'ତତ୍ତ୍ୱମସି' ଇତ୍ୟସଂସାର୍ଯ୍ୟାତ୍ମତ୍ୱପ୍ରତିପତ୍ତୌ ସତ୍ୟାଂ ସଂସାର୍ଯ୍ୟାତ୍ମତ୍ୱବ୍ୟାଦତେଃ ।

**(୫) ଭାଷାଂତର**-(କ) 'ନ ବିୟଦଶ୍ରୁତେଃ' ଏହି ବେଦାନ୍ତ ସୂତ୍ରରୁ ଆରମ୍ଭ କରି କାର୍ଯ୍ୟବିଷୟକ ବିରୋଧର ଆଚାର୍ଯ୍ୟ ସମାଧାନ କରିବେ । ବେଦାନ୍ତ ପ୍ରତିପାଦ୍ୟ ନ ହେବାରୁ କାର୍ଯ୍ୟବିଷୟକ ବିରୋଧ ହୋଇପାରେ, ପରନ୍ତୁ ଏଠାରେ ସୃଷ୍ଟ୍ୟାଦି ପ୍ରପଞ୍ଚ ବେଦାନ୍ତବାକ୍ୟଗୁଡ଼ିକ ଦ୍ୱାରା ପ୍ରତିପାଦନ କରିବାର ଇଚ୍ଛା ବିଷୟ ନୁହେଁ । କାରଣ- ପ୍ରପଞ୍ଚସମ୍ବନ୍ଧରୁ କୌଣସି ପୁରୁଷାର୍ଥ ଦେଖାଯାଏ ନାହିଁ, ଶୁଣାଯାଏ ନାହିଁ କି ତାହାର କଳ୍ପନା ମଧ୍ୟ କରାଯାଏ ନାହିଁ ଏବଂ ଉପକ୍ରମ ଓ ଉପସଂହାରଦ୍ୱାରା ସେହି ୨ ଉପନିଷଦରେ ରହିଥିବା ବ୍ରହ୍ମବିଷୟକ ବାକ୍ୟ ସହ ସୃଷ୍ଟିବାକ୍ୟର ଏକବାକ୍ୟତା ଅବଗତ ହୁଏ ।

(ଖ) 'ହେ ସୋମ୍ୟ ! ଅନ୍ନରୂପ କାର୍ଯ୍ୟରେ ଜଳରୂପ ମୂଳର ସନ୍ଧାନ ପାଇ, ହେ ସୋମ୍ୟ । ଜଳରୂପ କାର୍ଯ୍ୟ ଲିଙ୍ଗରେ ତେଜରୂପମୂଳକୁ ପାଇ ଓ ହେ ସୋମ୍ୟ । ତେଜ ରୂପକାର୍ଯ୍ୟ ଦ୍ୱାରା ସନ୍ମୁଦ୍ରପ ମୂଳର ନିଶ୍ଚୟ କର', ଏହି ପ୍ରକାର ଶ୍ରୁତି ବ୍ରହ୍ମଜ୍ଞାନକୁ ପାଇବା ପାଇଁ ସୃଷ୍ଟ୍ୟାଦି ପ୍ରଞ୍ଚ ଦେଖାଏ ।

(ଗ) ଏଠାରେ ଏପରିଜ୍ଞାନ ହୁଏ ଯେ- ମୃତ୍ତିକାଦିଦୃଷ୍ଟାନ୍ତଦ୍ୱାରା କାର୍ଯ୍ୟର କାରଣ ସହିତ ଅଭେଦରୂପ କହିବା ପାଇଁ ସୃଷ୍ଟ୍ୟାଦି ପ୍ରପଞ୍ଚ ଶ୍ରବଣ କରେ । 'ମୃତ୍ତିକା, ଲୋହଖଣ୍ଡ ଓ ବିସ୍ଫୁଲିଙ୍ଗାଦିଦୃଷ୍ଟାନ୍ତଦ୍ୱାରା ଭିନ୍ନଭିନ୍ନ ପ୍ରକାରରେ ସୃଷ୍ଟିର ନିରୂପଣ କରାଗଲା । ସେ ବ୍ରହ୍ମାତ୍ମୈକ୍ୟରେ ବୁଦ୍ଧି ପ୍ରବେଶ କରିବାର ଉପାୟମାତ୍ର ଅଟେ । ବସ୍ତୁତଃ ସେଠାରେ କୌଣସି ଭେଦନାହିଁ ।'' ଏହିପ୍ରକାର ସମ୍ପ୍ରଦାୟବିଦ ଆଚାର୍ଯ୍ୟ ଗୌଡ଼ପାଦ କହନ୍ତି- 'ବ୍ରହ୍ମବିତ୍ ବ୍ରହ୍ମକୁ ଭେଦନାହିଁ' । ଏହିପ୍ରକାର ସମ୍ପ୍ରଦାୟବିଦ ଆଚାର୍ଯ୍ୟ ଗୌଡ଼ପାଦ କହନ୍ତି- 'ବ୍ରହ୍ମବିତ୍ ବ୍ରହ୍ମକୁ ପାଏ', । 'ଆତ୍ମବିତ୍ ଶୋକମୟ ସଂସାରରୁ ମୁକ୍ତ ହୁଏ', । ଏହାଜାଣି ପୁରୁଷ ମୃତ୍ୟୁକୁ ପାରହୁଏ,' । ଏହିପ୍ରକାର ବ୍ରହ୍ମଜ୍ଞାନ ଦ୍ୱାରା ସମ୍ବନ୍ଧଫଳର ଶ୍ରୁତି ହୁଏ । (ବ୍ରହ୍ମଜ୍ଞାନ ଦ୍ୱାରା ବିଦ୍ୱାନକୁ ପରମାନନ୍ଦ ପ୍ରାପ୍ତି, ଶୋକନିବୃତ୍ତି ଓ ମୃତୁର ଅତିକ୍ରମଣରୂପ ଫଳ ପ୍ରତ୍ୟକ୍ଷ ଅନୁଭବରେ ଆଣେ) କାରଣ- ଯେତେବେଳେ 'ତତ୍ତ୍ୱମସି' ଏହି ପ୍ରକାର ଅସଂସାରୀ ଆତ୍ମତ୍ୱର ଅପରୋକ୍ଷ ଅନୁଭବ ହୁଏଏ' ସେତେବେଳେ ସଂସାରୀ ଆତ୍ମତ୍ୱର ନିବୃତ୍ତ ହୋଇଯାଏ ।

(୧) ମୂଳ-(କ) ଯତ୍ପୁନଃ କାରଣବିଷୟଂ ବିଗାନଂ ଦର୍ଶିତମ୍-'ଅସଦ୍ ବା ଇଦମଗ୍ର ଆସୀତ୍' ଇତ୍ୟାଦି ତତ୍ପରିହର୍ତ୍ତବ୍ୟମ୍ । ଅତ୍ରୋଚ୍ୟତେ-

 

**(୧) ଭାଷାଂତର-** (କ) ପରନ୍ତୁ 'ସୃଷ୍ଟିର ପ୍ରଥମରେ ଏହି ଅସତ୍ ଥିଲା', ଇତ୍ୟାଦି ଯେଉଁକାରଣ ବିଷୟକ ବିରୋଧ ଦେଖାଇ ଦିଆଗଲା, ତାହାର ପରିହାର କରିବା ଉଚିତ୍ । ଏହା ଉପରେ ସୂତ୍ରକାର କହିଲେ-

**समाकर्षात् ॥ २५ ॥**

**ସମାକର୍ଷାତ୍ ।୧।୪।୧୫।**

ଅସଦେବେଦମଗ୍ର ଆସୀତ୍', ଏହି ପ୍ରକାର ଅନଭିବ୍ୟକ୍ତ ନାମ-ରୂପ-ବାଚୀ ଅସତ୍ ଶବ୍ଦଦ୍ୱାରା, ସମାକର୍ଷାତ୍-ସତ୍‌ର ଆକର୍ଷଣ ହୁଏ । ଅତଃ ଅସତ୍ କାରଣ ବିଷୟକ ଆଶଙ୍କା ଅବକାଶ ନାହିଁ ।

(୩) ମୂଳ-(କ) 'ଅସଦ୍‌ବା ଇଦମଗ୍ର ଆସୀତ୍', (ତୈ ୨-୭) ଇତି ନାତ୍ରାସନ୍ନିରାତ୍ମକଂ କାରଣତ୍ୱେନ ଶ୍ରାବ୍ୟତେ, (ଖ) ଯତଃ 'ଅସନ୍ନେବ ସ ଭବତି, ଅସଦ୍‌ବ୍ରହ୍ମେତି ବେଦ ଚେତ୍ । ଅସ୍ତି ବ୍ରହ୍ମେତି ଚେଦ୍‌ବେଦ । ସନ୍ତମେନଂ ତତୋ ବିଦୁଃ', ଇତ୍ୟସଦ୍‌ବାଦାପବାଦେନାସ୍ତିତ୍ୱଲକ୍ଷଣଂ ବ୍ରହ୍ମାନ୍ନମୟାଦିକୋଶପରମ୍ପରୟା ପ୍ରତ୍ୟଗାତ୍ମାନଂ ନିର୍ଦ୍ଧାର୍ଯ୍ୟଂ 'ସୋଽକାମୟତ', ଇତି ତମେବ ପ୍ରକୃତଂ ସମାକୃଷ୍ୟ ସପ୍ରପଞ୍ଚାଂ ସୃଷ୍ଟିଂ ଓ ତଚ୍ଛାବୟିତ୍ୱା ତତ୍‌ସତ୍ୟମିତ୍ୟାଚକ୍ଷତେ', ଇତି ଚୋପସଂହୃତ୍ୟ 'ତଦପ୍ୟେଷ ଶ୍ଳୋକୋ ଭବତି', ଇତି ତସ୍ମିନ୍ନେବ ପ୍ରକୃତେଽର୍ଥେ ଶ୍ଳୋକମିମମୁଦାହରତି-ଅସଦ୍ ବା ଇଦମଗ୍ର ଆସୀତ', ଇତି ।

**(୩) ଭାଷାଂତର-**(କ) 'ସୃଷ୍ଟିର ପ୍ରଥମରେ ଏହି ଅସତ୍ ହିଁ ଥିଲା, ଏହି ତୈତ୍ତିରୀୟ ଉପନିଷଦରେ ସ୍ୱରୂପ ରହିତ ଅସତ୍‌ର କାରଣ ରୂପରେ ଶ୍ରବଣ କରାଯାଏ ନାହିଁ ।

(ଖ) କାରଣ-ଯଦି ପୁରୁଷ ବ୍ରହ୍ମ ଅସତ୍, ଏହା ତୁମେ ଜାଣିଛ, ତେବେ ସେ ସ୍ୱୟଂ ମଧ୍ୟ ଅସତ୍ ହୋଇପାରେ ଯେ ବ୍ରହ୍ମସତ୍ ଅଟେ, କିନ୍ତୁ ବ୍ରହ୍ମବେତ୍ତା ସେହି ସତ୍‌କୁ ଜାଣେ', ଏହି ପ୍ରକାର ଅସଦ୍‌ବାଦର ଅପବାଦଦ୍ୱାରା ସତ୍‌ସ୍ୱରୂପ ବ୍ରହ୍ମକୁ ଅନ୍ନମୟାଦି କୋଷ ପରମ୍ପରାଠାରୁ ପ୍ରତ୍ୟଗାତ୍ମରୂପଦ୍ୱାରା ନିର୍ଦ୍ଧାରଣ କରି 'ସେ ପରମାତ୍ମା କାମନା କଲେ', ଏହି ପ୍ରକାର ସେହି ପ୍ରକୃତ ବ୍ରହ୍ମର ସମାକର୍ଷଣ କରି ସେଥିରେ ବିସ୍ତୃତ ସୃଷ୍ଟିର ଶ୍ରବଣ କରାଇ 'ସେ ସତ୍ୟ ଅଟେ, ଏହି ଲୋକମାନେ କହନ୍ତି', ଏହିପ୍ରକାର ଉପସଂହାର କରି 'ସେହି ବିଷୟରେ ଶ୍ଳୋକ ଅଛି, ଏହିପ୍ରକାର ସେହି ପ୍ରକୃତ ବ୍ରହ୍ମରୂପ ଅର୍ଥରେ 'ଅସଦ୍ ବା ଇଦମଗ୍ର ଆସୀତ୍' ଏହି ମନ୍ତ୍ରକୁ ଉଦାହରଣ ରୂପରେ କହନ୍ତି ।

(୪) ମୂଳ-(କ) ଯଦି ତ୍ୱସନ୍ନିରାତ୍ମକମସ୍ମିଂଶ୍ଳୋକେଽଭିପ୍ରେୟେତ, ତତୋଽନ୍ୟସମାକର୍ଷଣେଽନ୍ୟସ୍ୟୋଦାହରଦସମ୍ବନ୍ଧଂ ବାକ୍ୟମାପଦ୍ୟେତ । (ଖ) ତସ୍ମାନ୍ନାମରୂପବ୍ୟାକୃତବସ୍ତୁବିଷୟଃ ସଚ୍ଛବ୍ଦଃ ପ୍ରସିଦ୍ଧ ଇତି ତଦ୍‌ବ୍ୟାକରଣାଭାବାପେକ୍ଷୟା ପ୍ରାଗୁତ୍ପତ୍ତେଃ ସଦୈବ ବ୍ରହ୍ମାସଦିବାସୀଦିତ୍ୟୁପଚର୍ଯ୍ୟତେ । (ଗ) ଏଷୈବ 'ଅସଦେବେଦମଗ୍ର ଆସୀତ୍', (ଛା ୩-୧୯-୧) ଇତ୍ୟତ୍ରାପି ଯୋଜନା, 'ତତ୍ ସଦାସୀତ୍', ଇତି ସମାକର୍ଷଣାତ୍ । ଅତ୍ୟନ୍ତାଭାବାଭ୍ୟୁପଗମେ ହି 'ତତ୍‌ସଦାସୀତ୍', ଇତି କିଂ ସମାକୃଷ୍ୟେତ ? (ଘ) 'ତଦ୍ଧୈକ ଆହୁରସଦେବେଦମଗ୍ର ଆସୀତ୍', (ଛ । ୬-୨-୧) ଇତ୍ୟତ୍ରାପି ନ ଶ୍ରୁତ୍ୟନ୍ତରାଭିପ୍ରାୟେଣାୟମେକୀୟମତୋପନ୍ୟାସଃ କ୍ରିୟାୟାମିବ ବସ୍ତୁନି ବିକଳ୍ପସ୍ୟାସମ୍ଭବାତ୍ । ତସ୍ମାଚ୍ଛ୍ରୁତିପରିଗୃହୀତସତ୍ ପକ୍ଷଦାର୍ଢ୍ୟାୟୈବାୟଂ ମନ୍ଦମତିପରିକଳ୍ପିତସ୍ୟାସତ୍ ପକ୍ଷସ୍ୟୋପନ୍ୟସ୍ୟ ନିରାସ ଇତି ଦ୍ରଷ୍ଟବ୍ୟମ । (ଙ) 'ତଦ୍‌ବେଦଂ ତର୍ହ୍ୟବ୍ୟାକୃତମାସୀତ୍', (ବୃ ୧-୪-୭) ଇତ୍ୟତ୍ରାପି ନ ନିରଧକ୍ଷସ୍ୟ ଜଗତେ ବ୍ୟାକରଣଂ କଥ୍ୟତେ, 'ସ ଏଷ ଇହ ପ୍ରବିଷ୍ଟ ଆ ନଖାଗ୍ରେଭ୍ୟଃ' ଇତ୍ୟଧକ୍ଷସ୍ୟ ବ୍ୟାକୃତକାର୍ଯ୍ୟାନୁପ୍ରବେଶିତ୍ୱେନ ସମାକର୍ଷାତ୍ । (ଚ) ନିରଧକ୍ଷେ ବ୍ୟାକରଣାଭ୍ୟୁପଗମେ ହ୍ୟନନ୍ତରେଣ ପ୍ରକୃତାବଲମ୍ବିନା ସ ଇତ୍ୟନେନ ସର୍ବନାମ୍ନ । କଃ କାର୍ଯ୍ୟାନୁପ୍ରବେଶିତ୍ୱେନ ସମାକୃଷ୍ୟେତ । (ଛ) ଚେତନସ୍ୟ ଚାୟମାତ୍ମନଃ ଶରୀରେଽନୁପ୍ରବେଶଃ ଶ୍ରୂୟତେ । ଅନୁପ୍ରବିଷ୍ଟସ୍ୟ ଚେତନତ୍ୱଶ୍ରବଣାତ୍, 'ପଶ୍ୟଂଶ୍ଚକ୍ଷୁଃ ଶୃଣ୍ୱନ୍ ଶ୍ରୋତ୍ରଂ ମନ୍ୱାନୋ ମନୋ', ଇତି ।

**(୪) ଭାଷାଂତର** - (କ) ଯଦି ଏହି ଶ୍ଳୋକରେ ସ୍ୱରୂପ ରହିତ ଅସତ୍ ଅଭିପ୍ରେତ ହୁଏ, ତେବେ ଅନ୍ୟର ସମାକର୍ଷଣ ହେଲେ ଅନ୍ୟର ଉଦାହରଣ ଦେବାଦ୍ୱାରା ବାକ୍ୟ ଅସମ୍ବନ୍ଧ ହୋଇଯାଏ । ଅର୍ଥାତ୍ ଯେଉଁ ସତ୍ ପ୍ରକୃତିର ଏଠାରେ ସମାକର୍ଷଣ କରାଗଲା, ତାହାଭିନ୍ନ ଅସତ୍‌ର ଉଦାହରଣ ହେଲେ ଏହିବାକ୍ୟ ଅସମ୍ବନ୍ଧ ହୋଇଯାଏ ।

(ଖ) ତେଣୁ ନାମରୂପରେ ଅଭିବ୍ୟକ୍ତ ବସ୍ତୁରେ ପ୍ରାୟଃ ସତ୍‌ଶବ୍ଦ ପ୍ରସିଦ୍ଧ । ଏଣୁ ସୃଷ୍ଟିର ପ୍ରଥମେ ନାମରୂପର ବ୍ୟାକୃତାଭାବର ଅପେକ୍ଷା ଦ୍ୱାରା ସତ୍‌ବ୍ରହ୍ମ ଅସତ୍ ଆକାରରେ ଥିଲା ବୋଲି ଉପଚାର କରାଯାଏ । ଅର୍ଥାତ୍ ଗୁଣବୃତ୍ତିରେ ଅସତ୍ ଶବ୍ଦଦ୍ୱାରା ଉପଚାର କରାଯାଏ ।

(ଗ) 'ଅସଦେବେଦମଗ୍ର ଆସୀତ୍', ଏହି ମନ୍ତ୍ରରେ ଏହାହିଁ ଯୋଜନା କାରଣ- 'ତତ୍ ସଦାସୀତ୍' ଏହି ବାକ୍ୟଘଟକ 'ତତ୍'ପଦଦ୍ୱାରା ପୂର୍ବବାକ୍ୟ ଗତ 'ସତ୍'ର କ'ଣ



ସମାକର୍ଷଣ ହୁଏ ? ଯଦି ଅତ୍ୟନ୍ତାଭାବ ରୂପ ଅସତ୍‌ର ସ୍ୱୀକାର କରାଯାଏ, ତେବେ 'ତତ୍ ସଦାସୀତ୍' ଏହିବାକ୍ୟରେ କାହାର ସମାକର୍ଷଣ ହେବ ? ଅର୍ଥାତ୍ ସ୍ୱରୂପଶୂନ୍ୟ ଅସତ୍‌ର ସମାକର୍ଷଣ ଅସମ୍ଭବ ଓ ଅସତ୍‌ର ସଦ୍ରୂପରେ ଗ୍ରହଣ କରିବା ଅସଙ୍ଗତ ।

(ଘ) 'ସେହି ବିଷୟରେ ଜଣେ କିଏ କହିଲେ ଯେ ସୃଷ୍ଟିର ପ୍ରଥମେ ଏହି ଅସତ୍ ହିଁ ଥିଲା', ଏଠାରେ ଅନ୍ୟଶ୍ରୁତିର ଅଭିପ୍ରାୟରୁ ଏହା କୌଣସି ଏକୀୟମତର ଉପନ୍ୟାସ ନାହିଁ । ଅର୍ଥାତ୍ ଏହି ମନ୍ତ୍ରର କୌଣସି ଶାଖାଥିବା କାରଣକୁ ଅସତ୍ କୁହାଯାଏ ବୋଲି ଅର୍ଥ ହୁଏନାହିଁ । କାରଣ-କ୍ରିୟାସଦୃଶ ବସ୍ତୁରେ ବିକଳ୍ପର ସମ୍ଭବ ନୁହେଁ । ତେଣୁ ଏଠାରେ ଜାଣିବା ଉଚିତ୍ ଯେ- ଶ୍ରୁତି ଦ୍ୱାରା ପରିଗୃହୀତ ସତ୍ ପକ୍ଷକୁ ଦୃଢ଼ କରିବା ପାଇଁ ମନ୍ଦମତି ପୁରୁଷଦ୍ୱାରା ପରିକଳ୍ପିତ ଅସତ୍ ପକ୍ଷର ଉପନ୍ୟାସ କରି ଏହା ପରିହାର କରାଯାଏ ।

(ଙ) 'ଉତ୍ପତ୍ତି ପୂର୍ବରୁ ଏହିଜଗତ୍ ଅବ୍ୟାକୃତ ଥିଲା', ଏଠାରେ ମଧ୍ୟ ଅଧ୍ୟକ୍ଷରହିତ ସଂସାରର ବ୍ୟାକରଣ କୁହାଯାଏ ନାହିଁ । 'ସେ ଏହି ବ୍ୟାକାର୍ତ୍ତା ଏହି ଶରୀରରେ ନଖାଗ୍ର ପର୍ଯ୍ୟନ୍ତ ପ୍ରବେଶ କରିଛି', ଏହି ପ୍ରକାର ଅଧ୍ୟକ୍ଷର ବ୍ୟାକୃତବସ୍ତୁରେ ପ୍ରବେଶ କର୍ତ୍ତୃତ୍ୱ ରୂପରେ ସମାକର୍ଷଣ ହୁଏ ।

(ଚ) ଅଧ୍ୟକ୍ଷବ୍ୟତିତ ବ୍ୟାକରଣ ନାମରୂପରେ ଜଗତ୍‌ର ଅଭିବ୍ୟକ୍ତି ସ୍ୱୀକାର ନ କଲେ 'ସ ଏଷ ଇହ ପ୍ରବିଷ୍ଟଃ' ସେହି ଅନନ୍ତର ଗ୍ରନ୍ଥବର୍ତ୍ତୀ ପ୍ରକୃତ ଅର୍ଥର ଅବଲମ୍ବନ କରୁଥିବା 'ସଃ' ଏହି ସର୍ବନାମଦ୍ୱାରା କାର୍ଯ୍ୟରେ ଅନୁପ୍ରବଶତ୍ୱରୁ କାହାର ଆକର୍ଷଣ ହେବ ।

(ଛ) ଚେତନ ଆତ୍ମାର ଶରୀରରେ ଏହି ଅନୁପ୍ରବେଶ ଶୁଣାଯାଏ । କାରଣ- 'ଦେଖିବାରୁ ଏହି ଚକ୍ଷୁ ଦ୍ରଷ୍ଟା, ଶୁଣିବାରୁ କାନ ଶ୍ରୋତା, ମନନ କରିବାରୁ ମନ ମନ୍ତା ହୁଏ', ଏହି ପ୍ରକାର ଅନୁପ୍ରବେଶ କରିବା ବ୍ୟକ୍ତିଠାରେ ଚେତନତ୍ୱର ଶ୍ରବଣ ହୁଏ ।

(୫) ମୂଳ-(କ) ଅପିଚ ଯାଦୃଶମିଦମଦ୍ୟତ୍ୱେ ନାମରୂପାଭ୍ୟାଂ ବ୍ୟାକ୍ରିୟମାଣଂ ଜଗତସାଧ୍ୟକ୍ଷଂ ବ୍ୟାକ୍ରିୟତ, ଏବମାଦିସର୍ଗେଽପୀତି ଗମ୍ୟତେ, ଦୃଷ୍ଟବିପରୀତକଳ୍ପ- ନାନୁପପତ୍ତେଃ । ଶ୍ରୁତ୍ୟନ୍ତରମପି 'ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣି', (ଛା ୬-୩-୨) ଇତି ସାଧ୍ୟକ୍ଷାମେବ ଜଗତୋ ବ୍ୟାକ୍ରିୟାଂ ଦର୍ଶୟତି । (ଖ) ବ୍ୟାକ୍ରିୟତ ଇତ୍ୟପି କର୍ମକର୍ତ୍ତରି ଲକାରଃ ସତ୍ୟେବ ପରମେଶ୍ୱରେ ବ୍ୟାକର୍ତ୍ତରି ସୌକର୍ଯ୍ୟମପେକ୍ଷ ଦ୍ରଷ୍ଟବ୍ୟଃ । ଯଥା-ଲୁୟତେ କେଦାରଃ ସ୍ୱୟମେବେତି ସତ୍ୟେବ ପୂର୍ଣ୍ଣକେ

ଲବିତରି । (ଗ) ଯଦ୍ବା-କ୍ରର୍ମଣ୍ୟେବୈଷ ଲକାରୋଽର୍ଥାକ୍ଷିପ୍ତଂ କର୍ତ୍ତାରମପେକ୍ଷ୍ୟ ଦ୍ରଷ୍ଟବ୍ୟଃ । ଯଥା-ଗମ୍ୟତେ ଗ୍ରାମ ଇତି ।

**(୫) ଭାଷାଂତର**-(କ) ବର୍ତ୍ତମାନ ସମୟରେ ନାମରୂପରେ ବ୍ୟାକୃତ ହୋଇଥିବା ଏହି ସଂସାର ଯେପରି ସକର୍ତ୍ତୃକ ବ୍ୟାକୃତ ହୁଏ, ସେପରି ଆଦି ସୃଷ୍ଟିରେ ଥିଲା ବୋଲି ଜଣାଯାଏ । କାରଣ-ଦୃଷ୍ଟପ୍ରତ୍ୟକ୍ଷାସିଦ୍ଧରୁ ବିପରୀତକଳ୍ପନା କରାଯାଏ ନାହିଁ । 'ମୁଁ ଏହି ଜୀବାତ୍ମାରୂପରେ ତେଜ, ଜଳ ଓ ଅନ୍ନ - ଏପରି ତିନିଦେବତାଙ୍କଠାରେ ଅନୁପ୍ରବେଶ କରି ନାମ ଓ ରୂପର ଅଭିବ୍ୟକ୍ତ କରିବି', ଏହି ପ୍ରକାର ଅନ୍ୟଶ୍ରୁତି ମଧ୍ୟ ଜଗତ୍‌ର ଅଭିବ୍ୟକ୍ତିସକର୍ତ୍ତୃକ ହିଁ ଦେଖାଏ ।

(ଖ) 'ବ୍ୟାକ୍ରିୟତେ' ଏହି କର୍ମକର୍ତ୍ତାରେ ଲକାର ଅଭିବ୍ୟକ୍ତି କର୍ତ୍ତା ପରମେଶ୍ୱରର ହେଲେ ମଧ୍ୟ ସୌକର୍ଯ୍ୟର ଅପେକ୍ଷା ଦ୍ୱାରା ଜାଣିବା ଉଚିତ୍ । ଯେପରି ଶସ୍ୟକ୍ଷେତ୍ରରେ କାଟୁଥିବା କୌଣସି ପୂର୍ଣ୍ଣକ ନାମବ୍ୟକ୍ତି ଉପସ୍ଥିତ ଥିଲେ ମଧ୍ୟ 'ଲୁୟତେ' କେଦାରଃ' ଅର୍ଥାତ୍ ଶସ୍ୟକ୍ଷେତ୍ର କାଟୁଛି ବୋଲି ପ୍ରୟୋଗ ହୁଏ ।

(ଗ) ଅଥବା ଯେପରି 'ଗମ୍ୟତେ ଗ୍ରାମଃ' (ଗ୍ରାମରେ ପହଞ୍ଚିଲା) ଏଠାରେ କର୍ତ୍ତା ଆକ୍ଷେପ କରାଗଲା, ଯେପରି ଅର୍ଥଦ୍ୱାରା ଆକ୍ଷିପ୍ତ କର୍ତ୍ତାର ଅପେକ୍ଷାରେ କର୍ମ ଅର୍ଥରେ ମଧ୍ୟ ଏହି ଲକାର ଜାଣିବା ଉଚିତ୍ ।

## ५ बालाक्यधिकरणम् । सू० १६ -१७

## ବାଲାକ୍ୟଧିକରଣମ୍ - ୫

## जगद्वाचित्वात् ॥ १६ ॥

## (୧) ଜଗଦ୍‌ବାଚିତ୍ୱାତ୍ ॥୧-୪।୧୬॥

'ଯୋ ହ ବୈ ବାଲାକେ' ଏହି ଶ୍ରୁତିରେ କର୍ମଶବ୍ଦ ସମ୍ପୂର୍ଣ୍ଣ ପ୍ରପଞ୍ଚର ବାଚକ ହେବାରୁ ଏହା କର୍ତ୍ତା ପରମାତ୍ମା ହୁଏ ।

(୨) ମୂଳ-(କ) କୌଷତକୀବ୍ରାହ୍ମଣେ ବାଲାକ୍ୟଜାତଶତ୍ରୁସମ୍ବାଦେ ଶ୍ରୂୟତେ-'ଯୋ ବୈ ବାଲାକ ଏତେଷାଂ ପୁରୁଷାଣାଂ କର୍ତ୍ତା ଯସ୍ୟ ବୈତତ୍‌କର୍ମ ସ ବୈ ବେଦିତବ୍ୟଃ', (କୌ. ବ୍ରା. ୪-୧୯) ଇତି । (ଖ) ତତ୍ର କିଂ ଜୀବୋ ବେଦିତବ୍ୟତ୍ୱେନୋପଦିଶ୍ୟତେ । ଉତ ମୁଖ୍ୟଃ ପ୍ରାଣଃ, ଉତ ପାରମାତ୍ମେତି ବିଶୟଃ । (ଗ) କିଂ ତାବତ୍‌ପ୍ରାପ୍ତମ୍ ? ପ୍ରାଣ ଇତି । କୁତଃ ? 'ଯସ୍ୟ ବୈତତ୍‌କର୍ମ', ଇତି ଶ୍ରବଣାତ୍ । ପରିସ୍ପନ୍ଦଲକ୍ଷଣସ୍ୟ ଚ କର୍ମଣଃ ପ୍ରାଣାଶ୍ରୟତ୍ୱାତ୍,



ବାକ୍ୟଶେଷେ ଚ 'ଅଥାସ୍ମିନ୍ ପ୍ରାଣେ ଏବୈକଧା ଭବତି', ଇତି ପ୍ରାଣଶବ୍ଦଦର୍ଶନାତ୍ । ପ୍ରାଣଶବ୍ଦସ୍ୟ ଚ ମୁଖ୍ୟେ ପ୍ରାଣେ ପ୍ରସିଦ୍ଧତ୍ୱାତ୍ । (ଘ) ଯେ ଚୈତେ ପୁରସ୍ତାଦ୍‌ବଲାକିନା 'ଆଦିତ୍ୟେ ପୁରୁଷଶ୍ଚନ୍ଦ୍ରମସି ପୁରୁଷଃ', ଇତ୍ୟେବମାଦାୟ ପୁରୁଷା ନିର୍ଦ୍ଦିଷ୍ଟାସ୍ତେଷାମପି ଭବତି ପ୍ରାଣଃ କର୍ତ୍ତା । (ଙ) ପ୍ରାଣାବସ୍ଥାଦିବିଶେଷତ୍ୱା ଦାଦିତ୍ୟାଦିଦେବତାତ୍ମନାମ୍- 'କତମ ଏକୋ ଦେବ ଇତି ପ୍ରାଣ ଇତି ସ ବ୍ରହ୍ମ ତ୍ୟଦିତ୍ୟା-ଚକ୍ଷତେ', (ବୃ ୩-୯-୯) ଇତି ଶ୍ରୁତ୍ୟନ୍ତରପ୍ରସିଦ୍ଧେଃ ।

**(୨) ଭାଷାଂତର**-(କ) କୌଷତକି ବ୍ରାହ୍ମଣରେ ବାଳାକି ଓ ଅଜାତଶତ୍ରୁର ସମ୍ବାଦରେ 'ହେ ବାଳାକି, ଯାହା ଏହି ପୁରୁଷର କର୍ତ୍ତା, ଯାହାର ସମ୍ପୂର୍ଣ୍ଣ ପ୍ରପଞ୍ଚ କର୍ମ, ସେହି ଜାଣିବା ଯୋଗ୍ୟ ଅଟେ' । ଏହାହିଁ ଶ୍ରୁତି ।

(ଖ) ଏଠାରେ ବେଦିତବ୍ୟରୂପରେ କଣ ଜୀବ ଉପଦିଷ୍ଟ ଅଥବା ମୁଖ୍ୟ ପ୍ରାଣ, ଅଥବା ପରମାତ୍ମା ? ଏହାହିଁ ସଂଶୟ ଅଟେ ।

(ଗ) ତେବେ ଏଠାରେ କଣ ହେବ ? ପୂର୍ବପକ୍ଷ-ପ୍ରାଣ ଉଦ୍ଦିଷ୍ଟ ଅଟେ, କାରଣ- 'ଯସ୍ୟ ବୈତତ୍ କର୍ମ', ଏହି ହିଁ ଶ୍ରୁତିବାକ୍ୟ । ଚଳନାତ୍ମକ କର୍ମ ପ୍ରାଣର ଆଶ୍ରିତ ଅଟେ । 'ଜଗତ୍ ଓ ସ୍ୱପ୍ନଜନକ କର୍ମର ଉପରତିପରେ ସୁଷୁପ୍ତି ଅବସ୍ଥାରେ ପ୍ରାଣରେ ସବୁ ଏକ ହୁଏ' । ଏହି ପ୍ରକାର ବାକ୍ୟଶେଷରେ ପ୍ରାଣଶବ୍ଦର ଶ୍ରବଣ ହୁଏ ଏବଂ ପ୍ରାଣଶବ୍ଦ ମୁଖ୍ୟ ପ୍ରାଣରେ ପ୍ରସିଦ୍ଧ ହୁଏ । ଆଦିତ୍ୟରେ ପୁରୁଷ ଅଛି ଓ ଚନ୍ଦ୍ରମାରେ ପୁରୁଷ ଅଛି, ଏହି ପ୍ରକାର ବାଳାକି ଏହି ଯେଉଁ ଆଦିତ୍ୟ ପୁରୁଷର ନିର୍ଦ୍ଦେଶ କରେ, ତାହାର ମଧ୍ୟ କର୍ତ୍ତା ପ୍ରାଣ ହୁଏ ।

(ଘ) କାରଣ- ଆଦିତ୍ୟାଦି ଦେବତା ପ୍ରାଣର ଭିନ୍ନ ଭିନ୍ନ ଅବସ୍ଥା, 'ଶାକଲ୍ୟ ଗୋଟିଏ ଦେବତା କିଏ ? ଯାଜ୍ଞବଲ୍କ୍ୟ ସେ ପ୍ରାଣ, ସେ ବ୍ରହ୍ମ ତାହାକୁ ତ୍ୟତ୍ (ପରୋକ୍ଷ) ବୋଲି କହନ୍ତି' । ଏହିପ୍ରକାର ଅନ୍ୟଶ୍ରୁତିରେ ପ୍ରସିଦ୍ଧ ଅଟେ ।

(୩) ମୂଳ-(କ) ଜୀବୋ ବାଽୟମିହ ବେଦିତବ୍ୟତୟୋପଦିଶ୍ୟତେ । ତସ୍ୟାପି ଧର୍ମାଧର୍ମଲକ୍ଷଣଂ କର୍ମ ଶକ୍ୟତେ ଶ୍ରାବୟିତୁମ୍-'ଯସ୍ୟ ବୈତତ୍ କର୍ମ', ଇତି । ସୋଽପି ଭୋକ୍ତୃତ୍ୱାଦ୍ ଭୋଗୋପକରଣଭୂତାନାମେତେଷାଂ ପୁରୁଷାଣାଂ କର୍ତ୍ତୋପପଦ୍ୟତେ । ବାକ୍ୟଶେଷେ ଚ ଜୀବଲିଙ୍ଗମବଗମ୍ୟତେ । (ଖ) ଯତ୍କାରଣଂ ବେଦିତବ୍ୟତୟୋପନ୍ୟସ୍ତସ୍ୟ ପୁରୁଷାଣାଂ କର୍ତ୍ତୁର୍ବେଦନାୟୋପେତଂ ବାଳାକିଂ ପ୍ରତି ବୁବୋଧୟିଷୁରଜାତଶତ୍ରୁଃ ସୁପ୍ତଂ ପୁରୁଷମାମନ୍ତ୍ୟାମନ୍ତ୍ରଣଶବ୍ଦାଶ୍ରବଣାତ୍ । ପ୍ରାଣଶଦୀନାମଭୋକ୍ତୃତ୍ୱଂ ପ୍ରତିବୋଧ

ଯଷ୍ଟିଘାତୋତ୍‌ଥାନାତ୍ ପ୍ରାଣାଦିବ୍ୟତିରିକ୍ତଂ ଜୀବଂ ଭୋକ୍ତାରଂ ପ୍ରତିବୋଧୟତା ତଥାପରସ୍ତାଦପି ଜୀବଲିଙ୍ଗମବଗମ ତେ । (ଗ) 'ତଦ୍‌ଯଥା ଶ୍ରେଷ୍ଠୀ ସ୍ୱୈର୍ଭୁଙ୍‌କ୍ତେ ଯଥା ବା ସ୍ୱାଃ ଶ୍ରେଷ୍ଠିନ୍ ଭୁଞ୍ଜନ୍ତ୍ୟେବମେବୈଷ ପ୍ରଜ୍ଞାତ୍ମୈତୈରାତ୍ମଭିଃର୍ଭୂଙ୍‌କ୍ତେ ଏବମେବୈତ ଆତ୍ମାନ ଏତମାତ୍ମାନଂ ଭୁଞ୍ଜନ୍ତି', (କୌ.ବ୍ରା. ୪-୧୦) ଇତି । ପ୍ରାଣଭୃତ୍ତ୍ୱାଚ୍ଚ ଜୀବସ୍ୟୋପପନ୍ନଂ ପ୍ରାଣଶବ୍ଦତ୍ୱମ୍ । ତସ୍ମାଜ୍ଜୀବମୁଖ୍ୟପ୍ରାଣୟୋରନ୍ୟତର ଇହ ଗ୍ରହଣୀୟୋ ନ ପରମେଶ୍ୱରଃ ତଲ୍ଲିଙ୍ଗାନବଗମାଦିତି ।

(୩) ଭାଷାଂତର-(କ) ଅଥବା ଏଠାରେ ବେଦିତବ୍ୟରୂପରେ ଏହି ଜୀବ ହିଁ ଉପଦିଷ୍ଟ । ତାହାର ଧର୍ମାଧର୍ମରୂପ କର୍ମ 'ଯସ୍ୟ ବୈତତ୍ କର୍ମ', ଏହିପ୍ରକାର ଶୁଣାଯାଏ । ସେ ଭୋକ୍ତା ହେଲେ ଭୋଗର ସାଧନଭୂତ ଏହି ପୁରୁଷର ଅଦୃଷ୍ଟ ଦ୍ୱାରା କର୍ତ୍ତା ହୋଇପାରେ । ବାକ୍ୟ ଶେଷରେ ମଧ୍ୟ ଜୀବର ଲିଙ୍ଗ ଅବଗତ ହୁଏ ।

(ଖ) କାରଣ-ବେଦିତବ୍ୟରୂପରେ ଯେଉଁ ପୁରୁଷର କର୍ତ୍ତା, ତାହାର ଜ୍ଞାନ ଜାଣିବା ପାଇଁ, ବାଳାକିକୁ ବୁଝାଇବା ପାଇଁ ଅଭିଳାଷୀ ଅଜାତଶତ୍ରୁ ସୁପ୍ତ ପୁରୁଷକୁ କହି ସେହି ଆମନ୍ତ୍ରଣଶବ୍ଦକୁ ନ ଶୁଣିବାରୁ ପ୍ରାଣାଦି ଅଭୋକ୍ତା ହୁଏ । ଏହିପରି ଜ୍ଞାନକରି ବାଡ଼ିରେ ପ୍ରହାର କରି ସୁପ୍ତପୁରୁଷକୁ ଉଠାଇଲା ଭଳି ଏହା ଜଣାଯାଏ ଯେ- ପ୍ରାଣାଦିଠାରୁ ଜୀବ ଭିନ୍ନ ଓ ଭୋକ୍ତା ଅଟେ ।

(ଗ) ତଥା ଅଗ୍ରିମ ବାକ୍ୟରେ ମଧ୍ୟ 'ଯେପରି ସ୍ୱାମୀ ନିଜର ସେବକାଦି ଦ୍ୱାରା ବ୍ୟବହୃତ ବସ୍ତୁର ଉପଭୋଗ କରେ ଓ ସେମାନେ ସେବକାଦି ସେହିସ୍ୱାମୀ ଦ୍ୱାରା ଅଜୀବିକା ପାଏ, ସେହିପରି ଏହି ପ୍ରଜ୍ଞାତ୍ମା ଏହି ଆତ୍ମାଦ୍ୱାରା ଉପଭୋଗ କରେ ଏବଂ ସେମାନେ ଆତ୍ମାଦେବତା ବା ଇନ୍ଦ୍ରିୟାଦି ସେହି ପ୍ରଜ୍ଞାତ୍ମାର ଆଶ୍ରିତ ଭୋଗପାଏ' । ଏହିପ୍ରକାର ଜୀବଲିଙ୍ଗ ଅବଗତ ହୁଏ । ଜୀବଠାରେ ପ୍ରାଣଧାରୀ ହେଲେ ପ୍ରାଣଶବ୍ଦ ଯୁକ୍ତିଯୁକ୍ତ ହୁଏ । ତେଣୁ ଜୀବ ଓ ମୁଖ୍ୟ ପ୍ରାଣରେ ଏକର ଏଠାରେ ଗ୍ରହଣ କରିବା ଉଚିତ୍, ପରମେଶ୍ୱର ନୁହେଁ । କାରଣ- ତାହାର ଲିଙ୍ଗ ଜ୍ଞାତ ନୁହେଁ ।

(୪) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପରମେଶ୍ୱର ଏବାୟମେତେଷାଂ ପୁରୁଷାଣାଂ କର୍ତ୍ତା ସ୍ୟାତ୍ । କସ୍ମାତ୍ ? ଉପକ୍ରମସାମର୍ଥ୍ୟାତ୍ । ଇହ ହି ବାଳାକିରଜାତ-ଶତ୍ରୁଣାଂ ସହ 'ବ୍ରହ୍ମତେ ବ୍ରବାଣି', ଇତି ସମ୍ବଦିତୁମୁପଚକ୍ରମେ । ସ ଚ କତିଚିଦାଦିତ୍ୟାଦ୍ୟାଧିକରଣାନ୍

**ପୁରୁଷାନମୁଖ୍ୟବ୍ରହ୍ମଦୃଷ୍ଟିଭାଜଜ** ଉକ୍ତ୍ୱାତଷ୍ଟୀଂବଭୂବ । ତମଜାତଶତ୍ରୁଃ 'ମୃଷା ବୈଖଲୁମା **ସମ୍ବୁଦିଷ୍ଟା** ବ୍ରହ୍ମତେ ବ୍ରବାଣି', ଇତ୍ୟମୁଖ୍ୟବ୍ରହ୍ମବାଦିତୟାଽପୋଦ୍ୟ ତତ୍‌କର୍ତ୍ତାରମନ୍ୟଂ ବେଦିତବ୍ୟତୟୋପଚିକ୍ଷେପ । (ଖ) ଯଦି ସୋଽପ୍ୟମୁଖ୍ୟବ୍ରହ୍ମଦୃଷ୍ଟିଭାକ୍ ସ୍ୟାତ୍, ଉପକ୍ରମୋ ବାଧେତ । ତସ୍ମାତ୍ ପରମେଶ୍ୱର ଏବାୟଂ ଭବିତୁମର୍ହତି । (ଗ) କର୍ତ୍ତୃତ୍ୱଂ ଚୈତେଷାଂ ପୁରୁଷାଣାଂନ ପରମେଶ୍ୱରାଦନ୍ୟସ୍ୟ ସ୍ୱାତନ୍ତ୍ର୍ୟେଣାବକଳ୍ପତେ 'ଯସ୍ୟ ବୈତତ୍ କର୍ମ', ଇତ୍ୟପି ନାୟଂ ପରିସ୍ପନ୍ଦଲକ୍ଷଣସ୍ୟ ଧର୍ମାଧର୍ମଲକ୍ଷଣସ୍ୟ ବା କର୍ମଣୋ ନିର୍ଦ୍ଦେଶଃ, ତୟୋରନ୍ୟତରସ୍ୟାପ୍ୟପ୍ରକୃତତ୍ୱାତ୍, ଅସଂଶବ୍ଦିତତ୍ୱାତ୍ । (ଘ) ନାପି ପୁରୁଣାମୟଂ ନିର୍ଦ୍ଦେଶଃ, ଏତେଷାଂ ପୁରୁଷାଣାଂ କର୍ତ୍ତେତ୍ୟେବଂ ତେଷାଂ ନିର୍ଦ୍ଦିଷ୍ଟତ୍ୱାତ୍, ଲିଙ୍ଗବଚନାଚ୍ଚ । (ଙ) ନାପି ପୁରୁଷବିଷୟସ୍ୟ କରୋତ୍ୟର୍ଥସ୍ୟ କ୍ରିୟାଫଳସ୍ୟ ବାଽୟଂନି ର୍ଦ୍ଦେଶଃ, କର୍ତ୍ତୃଶବ୍ଦେନୈବ ତୟୋରୁପାତ୍ତତ୍ୱାତ୍ । (ଚ) ପାରିଶେଷ୍ୟାତ୍ ପ୍ରତ୍ୟକ୍ଷସନ୍ନିହିତଂ ଜଗତ୍ ସର୍ବନାମ୍ନୈତଚ୍ଛବ୍ଦେନୈବ ନିର୍ଦ୍ଦିଶ୍ୟତେ, କ୍ରିୟତ ଇତି ଚ ତଦେବ ଜଗତ୍ କର୍ମ ।

**(୪) ଭାଷାଂତର-ସିଦ୍ଧାନ୍ତ**-(କ) ଏହି ପରମେଶ୍ୱର ଏହି ପୁରୁଷର କର୍ତ୍ତା ହେଉ । କିପରି ? କାରଣ-ଉପକ୍ରମର ସାମର୍ଥ୍ୟ ହେତୁ । ଏଠାରେ ବାଲାକି ଅଜାତଶତ୍ରୁ ସହ 'ବ୍ରହ୍ମ ତେ ବ୍ରବାଣି', ଏହିପ୍ରକାର କଥାବାର୍ତ୍ତା ଆରମ୍ଭ କଲେ ଓ ଆଦିତ୍ୟାଦିରେ ରହିଥିବା ଅମୁଖ୍ୟ ବ୍ରହ୍ମ ଦୃଷ୍ଟିର ଭାଗୀ କିଛି ପୁରୁଷକୁ କହି ସେ ଚୁପ୍‌ଚାପ ହୋଇ ଗଲେ । 'ତୁମେ ମୋତେ ଏହା ମିଛ କହିଲ ଯେ- ମୁଁ ତୁମକୁ ବ୍ରହ୍ମ ଉପଦେଶ ଦେଉଛି' ଏହି ପ୍ରକାର ଅଜାତଶତ୍ରୁ ବାଲାକିର ଅମୁଖ୍ୟ ବ୍ରହ୍ମବାଦି ରୂପରେ ନିଷେଧ କରି ତାହାର କର୍ତ୍ତା ଅନ୍ୟକୁ ବେଦିତବ୍ୟରୂପରେ ଆକ୍ଷେପ କଲେ ।

(ଖ) ଯଦି ସେ ବେଦିତବ୍ୟ ମଧ୍ୟ ଅମୂଖ୍ୟବ୍ରହ୍ମ (ବ୍ରହ୍ମଭିନ୍ନ) ଦୃଷ୍ଟିର ଭାଗୀ ହୁଏ, ତେବେ ଉପକ୍ରମ ବାଧା ପାଇବ । ତେଣୁ ଏହା ପରମେଶ୍ୱର ହେବା ଉଚିତ ।

(ଗ) ପରମେଶ୍ୱର ଭିନ୍ନ ଅନ୍ୟ କେହି ଏହି ପୁରୁଷର ସ୍ୱତନ୍ତ୍ର ରୂପରେ କର୍ତ୍ତା ନାହିଁ । 'ଯସ୍ୟ ବୈତତ୍ କର୍ମ', ଏହି ନିର୍ଦ୍ଦେଶ ଚଳନାତ୍ମକ ଅଥବା ଧର୍ମାଧର୍ମାତ୍ମକକର୍ମର ବିଷୟରେ ନୁହେଁ । କାରଣ-ଏହି ଦୁଇଟିରେ କୌଣସି ଯଥାର୍ଥତା ନାହିଁ, ଏବଂ ଶ୍ରୁତିପ୍ରତି ପାଦିତ ନୁହେଁ ।

(ଘ) ପୁରୁଷ ପାଇଁ ଏହା ନିର୍ଦ୍ଦେଶ ନୁହେଁ । କାରଣ-'ଏହି ପୁରୁଷର କର୍ତ୍ତା' ଏହିପ୍ରକାର ନିର୍ଦ୍ଦେଶ ହୋଇଛି ଏବଂ ଲିଙ୍ଗ ଓ ବଚନର ଭେଦ ଅର୍ଥାତ୍ 'ଯସ୍ୟ ବୈତତ୍ କର୍ମ', ଏଠାରେ ଏକବଚନ ଓ ନପୁଂସକ ଲିଙ୍ଗ କୁହାଯାଇଛି ।

(ଙ) ପୁରୁଷୋତ୍ପାଦନ ଅଥବା ତାହାର ଫଳ ପୁରୁଷଜନ୍ମର ବୋଲି ନିର୍ଦ୍ଦେଶ ନାହିଁ । କାରଣ-କର୍ତ୍ତୃଶବ୍ଦରେ ଦୁଇଟିର ଗ୍ରହଣ କରାଯାଇଛି ।

(ଚ) ପରିଶେଷରେ ପ୍ରତ୍ୟକ୍ଷ ସନ୍ନିହିତ ଜଗତ୍‌ର ସର୍ବନାମ 'ଏତତ୍' ଶବ୍ଦ ଦ୍ୱାରା ନିର୍ଦ୍ଦେଶ କରାଯାଇଛି ଯାହା କରାଯାଇପାରେ, ସେ କର୍ମ-ଏହି ବ୍ୟୁତ୍ପତ୍ତିଦ୍ୱାରା ସେ ଜଗତ୍ ହିଁ କର୍ମ ଅଟେ ।

(୫) ମୂଳ-(କ) ନନୁ ଜଗଦପ୍ୟପ୍ରକୃତମଶବ୍ଦିତ୍ୱଂ ଚ । ସତ୍ୟମେତତ୍ । ତଥାପ୍ୟସତି ବିଶେଷୋପାଦାନେ ସାଧାରଣେନାର୍ଥେନ ସନ୍ନିଧାନେନ ସନ୍ନିହିତବସ୍ତୁ-ମାତ୍ରସ୍ୟାୟଂ ନିର୍ଦ୍ଦେଶ ଇତି ଗମ୍ୟତେ, ନ ବିଶିଷ୍ଟସ୍ୟ କସ୍ୟଚିତ୍', ବିଶେଷସନ୍ନିଧାନା-ଭାବାତ୍' ପୂର୍ବତ୍ର ଚ ଜଗଦେକଦେଶଭୂତାନାଂ କର୍ତ୍ତା କିମନେନ ବିଶେଷେଣ, ଯସ୍ୟ କୃତ୍ସ୍ନମେବ ଜଗଦବିଶେଷିତଂ କମେତି । ବାଶବ୍ଦ ଏକଦେଶାବଚ୍ଛିନ୍ନକ-ର୍ତ୍ତୃତ୍ୱବ୍ୟାବୃତ୍ତ୍ୟର୍ଥଃ । (ଗ) ଯେ ବାଳାକିନା ବ୍ରହ୍ମତ୍ୱାଭିମତାଃ ପୁରୁଷାଃ କୀର୍ତ୍ତିତାସ୍ତେଷାମବ୍ରହ୍ମତ୍ୱଖ୍ୟାପନାୟ ବିଶେଷୋପାଦାନମ୍, ଏବଂ ବ୍ରାହ୍ମଣ ପରିବ୍ରାଜକନ୍ୟାୟେନ ସାମାନ୍ୟବିଶେଷାଭ୍ୟାଂ ଜଗତଃ କର୍ତ୍ତା ବେଦିତବ୍ୟତ-ୟୋପଦିଶ୍ୟତେ । ପରମେଶ୍ୱରଶ୍ଚ ସର୍ବଜଗତଃ କର୍ତ୍ତା ସର୍ବବେଦାନ୍ତେଷ୍ୱବଧାରିତଃ ।

**(୫) ଭାଷାଂତର**-(କ) ପରନ୍ତୁ ଜଗତ୍ ମଧ୍ୟ ଅପ୍ରକୃତ ଏବଂ ଶ୍ରୁତି ଅପ୍ରତିପାଦିତ ଅଟେ । ଏହା ହିଁ ସତ୍ୟ ତଥାପି ଏପରି ଜଣାଯାଏ ଯେ- ବିଶେଷବସ୍ତୁର ଗ୍ରହଣ ନ ହେଲେ ସାଧାରଣ ଅର୍ଥ ସହ ସନ୍ନିଧାନ ହେଲେ ସନ୍ନିହିତ ବସ୍ତୁ ମାତ୍ରର ଏହା ନିର୍ଦ୍ଦେଶ ହୁଏ । ଆଉ କୌଣସି ବସ୍ତୁର ନୁହେଁ । କାରଣ-ଏହାର ବିଶେଷ ସନ୍ନିଧାନ ନାହିଁ । ପୂର୍ବ ବାକ୍ୟରେ ଜଗତ୍‌ର ଏକ ଦେଶଭୂତ ପୁରୁଷର ବିଶେଷ ରୂପରେ ଗ୍ରହଣ କଲେ ଜଣାଯାଏ ଯେ- ଅବିଶେଷିତ (ସାମାନ୍ୟ) ଜଗତ୍‌ର ଏଠାରେ ଗ୍ରହଣ କରାଯାଏ ।

(ଖ) ତାତ୍ପର୍ଯ୍ୟ ଏହା ଯେ, ସଂସାରରେ ଏକ ଦେଶଭୂତ ସେହି ପୁରୁଷର ଯିଏ କର୍ତ୍ତା ଏହାଠାରୁ ଆଉ କଣ ବିଶେଷଣ ହୋଇପାରେ ? ଯାହାର କିନ୍ତୁ ସାମାନ୍ୟରୂପରେ ସାରାଜଗତ୍ ହିଁ ଯାହାର କର୍ମ ହୁଏ, (ଯସ୍ୟ ବା ଏତତ୍ କର୍ମ) ଏହି ଶ୍ରୁତି ବା ଶବ୍ଦ ଏକ ଦେଶର କର୍ତ୍ତୃତ୍ୱର ବ୍ୟାବୃତ୍ତି ଅଛି ।

(ଗ) ବାଳାକିଦ୍ୱାରା ବ୍ରହ୍ମରୂପରେ ଅଭିମତ ଯେଉଁ ପୁରୁଷ କୁହାଗଲେ, ସେମାନେ ଅବ୍ରହ୍ମ । ଏହା କହିବା ପାଇଁ ବିଶେଷଣ ଗ୍ରହଣ ହୁଏ । ତେଣୁ ବ୍ରାହ୍ମଣ ପରିବ୍ରାଜକ ନ୍ୟାୟରେ

ସାମାନ୍ୟ ଓ ବିଶେଷ ଦ୍ୱାରା ଜଗତ୍‌ର କର୍ତ୍ତା ବେଦିତବ୍ୟରୂପରେ ଉପଦିଷ୍ଟ ହୁଏ । ସେହି ବେଦାନ୍ତରେ ଏହା ନିର୍ଣ୍ଣୟ ହୁଏ ଯେ- ପରମେଶ୍ୱର ହିଁ ସମସ୍ତ ସଂସାରର କର୍ତ୍ତା ।

## जीवमुख्यप्रणलिङ्गान्नेतिचेत्तव्याख्यातम् ॥ १७ ॥

## (୧) ଜୀବମୁଖ୍ୟ ପ୍ରାଣଲିଙ୍ଗାନ୍ନେତି ଚେତ୍ତଦ୍‌ବ୍ୟାଖ୍ୟାତମ୍ ॥ ୧।୪।୧୭॥

ଜୀବମୁଖ୍ୟପ୍ରାଣଲିଙ୍ଗାତ୍ = ପୂର୍ବ ବାକ୍ୟରେ ଜୀବ ଓ ମୁଖ୍ୟପ୍ରାଣର ଲିଙ୍ଗ ହେଲେ ମଧ୍ୟ, ନ=ଏହି ଶ୍ରୁତି ବ୍ରହ୍ମପରକ ନୁହେଁ । ଇତି ଚେତ୍ = ଯଦି ଏହିପରି କୁହ, ତେବେ, ବ୍ୟାଖ୍ୟାନମ୍=ପ୍ରତର୍ଦନାଧିକରଣରେ ତାହା ବ୍ୟାଖ୍ୟା କରାଯାଇଛି ।

(୨) ମୂଳ-(କ) ଅଥଯଦୁକ୍ତମ୍-ବାକ୍ୟଶେଷଗତାଜ୍ଜୀବଲିଙ୍ଗାନ୍ ମୁଖ୍ୟପ୍ରାଣଲିଙ୍ଗାଚ୍ଚ ତୟୋରେବାନ୍ୟତରସ୍ୟେହ ଗ୍ରହଣଂ ନାଯ୍ୟଂ ନ ପରମେଶ୍ୱରସ୍ୟେତି, ତତ୍‌ପରିହର୍ତ୍ତବ୍ୟମ । (ଖ) ଅତ୍ରୋଚ୍ୟତେ-ପରିହୃତଂ ଚୈତତ୍, 'ନୋପାସାତ୍ରୈବିଧ୍ୟାଦାଶ୍ରି-ତତ୍ୱାଦିହ ତଦ୍ୟୋଗାତ୍', (ବ୍ର. ସୂ ୧-୧-୩୧) ଇତ୍ୟତ୍ର । ତ୍ରିବିଧଂ ହ୍ୟତ୍ରୋପାସନମେବଂ ସତି ପ୍ରସଜ୍ୟେତ- ଜୀବୋପାସନଂ ମୁଖ୍ୟପ୍ରାଣୋପାସନଂ ବ୍ରହ୍ମୋପାସନମିତି । (ଗ) ନ ଚୈତନ୍ନ୍ୟାଯ୍ୟମ୍ । ଉପକ୍ରମୋପସଂହାରାଭ୍ୟାଂ ହି ବ୍ରହ୍ମବିଷୟତ୍ୱମସ୍ୟ ବାକ୍ୟସ୍ୟାବଗମ୍ୟତେ । ତତ୍ରୋପକ୍ରମସ୍ୟ ତାବଦ୍ ବ୍ରହ୍ମବିଷୟତ୍ୱଂ ଦର୍ଶିତମ୍ । ଉପସଂହାରସ୍ୟାପି ନିରତିଶୟଫଳଶ୍ରବଣାଦ୍‌ବ୍ରହ୍ମବିଷୟତ୍ୱଂ ଦୃଶ୍ୟତେ- 'ସର୍ବାନ୍ ପାପ୍ମନୋଽପହତ୍ୟ ସର୍ବେଷାଞ୍ଚ ଭୂତାନାଂ ଶ୍ରୈଷ୍ଠ୍ୟଂ ସ୍ୱାରାଜ୍ୟମାଧିପତ୍ୟଂ ପର୍ଯ୍ୟେତି ଯ ଏବଂ ବେଦ', ଇତି ।

**(୨) ଭାଷାଂତର**-(କ) ବାକ୍ୟ ଶେଷଗତ ଭୋକ୍ତୃତ୍ୱ ଜୀବଲିଙ୍ଗ ଦ୍ୱାରା ଏବଂ ସ୍ପନ୍ଦନ ରୂପ ମୁଖ୍ୟପ୍ରାଣଲିଙ୍ଗଦ୍ୱାରା ଏଠାରେ ଜୀବ ଓ ପ୍ରାଣରେ କୌଣସି ଏକର ଗ୍ରହଣ କରିବା ଉଚିତ, କିନ୍ତୁ ପରମେଶ୍ୱର ନୁହେଁ ବୋଲି ଯାହା କୁହାଯାଇଛି, ତାହାହିଁ ପରିହାର କରିବା ଉଚିତ୍, ।

(ଖ) ଏହାପରେ କୁହାଯାଇଛି- 'ନୋପାସାତ୍ରୈ ବିଧ୍ୟାତ୍', ଏହି ସୂତ୍ରରେ ଏହାର ପରିହାର କରାଗଲା, କାରଣ ଏପରି ହେଲାପରେ ଜୀବୋପାସନା ମୁଖପ୍ରାଣୋପାସନା ଓ ବ୍ରହ୍ମୋପାସନା-ଏହି ତିନିପ୍ରକାର ଉପାସନା ପ୍ରଯୁକ୍ତ ହେବ ।

(ଗ) କିନ୍ତୁ ଏହା ଉପଯୁକ୍ତ ନୁହେଁ, କାରଣ-ଉପକ୍ରମ ଓ ଉପସଂହାର ଦ୍ୱାରା 'ଯୋ ବୈ ବାଲାକେ' ଏହି ବାକ୍ୟ ବ୍ରହ୍ମ ବିଷୟକ ଅବଗତ ହୁଏ । ସେହି ଦୁଇଟି ସ୍ଥଳରେ ଉପକ୍ରମ ବ୍ରହ୍ମବିଷୟକ ଦେଖାଯାଏ ଏବଂ 'ଯାହା ଏହି ପ୍ରକାର ଜାଣେ, ସେ ସମସ୍ତ

ପାପକୁ ନାଶ କରି ସମସ୍ତ ପ୍ରାଣୀଠାରେ ଶ୍ରେଷ୍ଠତ୍ୱ, ସ୍ୱରାଜ୍ୟ ଓ ଆଧିପତ୍ୟ ପ୍ରାପ୍ତ କରେ' ଏହି ପ୍ରକାର ଉପସଂହାର ମଧ୍ୟ ନିରତିଶୟ ଫଳର ଶ୍ରବଣ ହେଲେ ବ୍ରହ୍ମ ବିଷୟକ ଦେଖାଯାଏ ।

(୩) ମୂଳ-(କ) ନନ୍ୱେବଂ ସତି ପ୍ରତର୍ଦ୍ଦନବାକ୍ୟନିର୍ଣ୍ଣୟେନୈବେଦମପି ବାକ୍ୟଂ ନିର୍ଣ୍ଣୀୟତେ, ନ ନିର୍ଣ୍ଣୀୟତେ 'ଯସ୍ୟ ବୈତତ୍‌କର୍ମ', ଇତ୍ୟସ୍ୟ ବ୍ରହ୍ମବିଷୟତ୍ୱେନ ତତ୍ରାର୍ଦ୍ଧାରିତତ୍ୱାତ୍ । ତସ୍ମାଦତ୍ର ଜୀବମୁଖ୍ୟପ୍ରାଣଶଙ୍କା ପୁନରୁତ୍ପଦ୍ୟମାନା ନିବର୍ତ୍ତ୍ୟତେ । (ଖ) ପ୍ରାଣଶବ୍ଦୋଽପି ବ୍ରହ୍ମବିଷୟୋ ଦୃଷ୍ଟଃ 'ପ୍ରାଣବନ୍ଧନଂ ହି ସୋମ୍ୟ ମନଃ', (ଛା ୬-୮-୨) ଇତ୍ୟତ୍ର । ଜୀବଲିଙ୍ଗମପ୍ୟୁପକ୍ରମୋପସଂହାରାୟୋର୍ବ୍ରହ୍ମବିଷୟତ୍ୱାଦ-ଭେଦାଭିପ୍ରାୟେଣ ଯୋଜୟିତବ୍ୟମ୍ ।

(୩) ଭାଷାଂତର-(କ) ପରନ୍ତୁ ଏପରି ହେଲେ ପ୍ରତର୍ଦ୍ଦନବାକ୍ୟର ନିର୍ଣ୍ଣୟ ଦ୍ୱାରା ଏହି ବାକ୍ୟର ନିର୍ଣ୍ଣୟ ହୋଇପାରେ । କିନ୍ତୁ ନିର୍ଣ୍ଣୟ ହୁଏ ନାହିଁ । କାରଣ-'ଯସ୍ୟ ବୈତତ୍ କର୍ମ', ଏହାର ବ୍ରହ୍ ବିଷୟ ରୂପରେ ଏଠାରେ ନିର୍ଦ୍ଧାରଣ ହୁଏ ନାହିଁ । ତେଣୁ ଏଠାରେ ପୁଣି ଉତ୍ପନ୍ନ ହେଉଥିବା ଜୀବ ଓ ମୁଖ୍ୟପ୍ରାଣ ଶଙ୍କାର ନିଷେଧ କରେ ।

(ଖ) 'ହେ ସୋମ୍ୟ ! ମନ ପ୍ରାଣରୂପ ବନ୍ଧନବାଲା', ଏଠାରେ ପ୍ରାଣଶବ୍ଦ ମଧ୍ୟ ବ୍ରହ୍ମବିଷୟକ ଦେଖାଯାଏ । ଉପକ୍ରମ ଓ ଉପସଂହାର ବ୍ରହ୍ମବିଷୟକ ହେଲେ ଜୀବଲିଙ୍ଗର ମଧ୍ୟ ଅଭେଦାଭିପ୍ରାୟରେ ଯୋଜନା କରିବା ଉଚିତ ।

## अन्यार्थं तु जैमिनिः प्रश्नव्याख्यानाभ्यामपि चैवमेके ॥ १८ ॥

## (୧) ଅନ୍ୟାର୍ଥନ୍ତୁ ଜୈମିନିଃ ପ୍ରଶ୍ନବ୍ୟାଖ୍ୟାନାଭ୍ୟାମପି ଚୈବମେକେ ॥ ୧-୪-୧୮ ॥

ଜୈମିନିସ୍ତୁ=ଆଚାର୍ଯ୍ୟ ଜୈମିନି ସ୍ୱୀକାର କରନ୍ତି ଯେ- ଏହି ପ୍ରକରଣରେ ଜୀବର ପରାମର୍ଶ, ଅନ୍ୟାର୍ଥମ୍=ବ୍ରହ୍ମଜ୍ଞାନ ପାଇଁ ଉଦ୍ଦିଷ୍ଟ । କାରଣ-ପ୍ରଶ୍ନବ୍ୟାଖ୍ୟାନାଭ୍ୟାମ୍='କ୍ୱେଷ ଏତଦ୍ ବାଲାକେ', ଏହି ପ୍ରଶ୍ନ ଓ 'ଯଦା ସୁପ୍ତସ୍ୱପ୍ନଂ', ଏହି ଉତ୍ତର ଅଛି । ଅପିଚ=କଣ ?, ଏକେ=ବାଜସନେୟ ସଂପ୍ରଦାୟମାନେ, ଏବଂ 'ଯ ଏଷ ବିଜ୍ଞାନମୟଃ' ଏହି ପ୍ରଶ୍ନ ଓ 'ଯ ଏଷୋଽନ୍ତର୍ହୃଦୟ', ଏହି ଉତ୍ତର ଦ୍ୱାରା ସ୍ପଷ୍ଟ କୁହାଯାଏ ଯେ-ବିଜ୍ଞାନାତ୍ମା ପରମାତ୍ମାଠାରୁ ଭିନ୍ନ ଅଟେ ।



(୨) ମୂଳ-(କ) ଅପି ଚ ନୈବାତ୍ର ବିବଦିତବ୍ୟମ୍ ଜୀବପ୍ରଧାନଂ ବେଦଂ ବାକ୍ୟଂ ସ୍ୟାଦ୍ ବ୍ରହ୍ମପ୍ରଧାନଂ ବେତି । ଯତୋଽନ୍ୟାର୍ଥଂ ଜୀବପରାମର୍ଶଂ ବ୍ରହ୍ମପ୍ରତିପତ୍ତ୍ୟର୍ଥ ମସ୍ମିନ୍‌ବାକ୍ୟେ ଜୈମିନିରାଚାର୍ଯ୍ୟୋ ମନ୍ୟତେ । (ଖ) କସ୍ମାତ ? ପ୍ରଶ୍ନବ୍ୟାଖ୍ୟାନାଭ୍ୟାମ୍ । ପ୍ରଶ୍ନସ୍ତାବତ୍ ସୁପ୍ତପୁରୁଷପ୍ରତିବୋଧନେନ ପ୍ରାଣାଦିବ୍ୟକ୍ତିରିକ୍ତେ ଜୀବେପ୍ରତିବୋଧିତେ ପୁନର୍ଜୀବବ୍ୟତିରିକ୍ତବିଷୟୋ ଦୃଶ୍ୟତେ- 'କ୍ୱୈଷ ଏତଦ୍‌ବାଲାକେ ପୁରୁଷୋଽଶୟିଷ୍ଟ କ୍ୱବା ଏତଦଭୂତ୍ କୁତ ଏତଦାଗାତ୍', (କୌ. ବ୍ରା ୪-୧୯) ଇତି । (ଗ) ପ୍ରତିବଚନମପି 'ଯଦା ସୁପ୍ତଃ ସ୍ୱପ୍ନଂ ନ କଞ୍ଚନ ପଶ୍ୟତ୍ୟଥାସ୍ମିନ୍ ପ୍ରାଣ ଏବୈକଧା ଭବତି', ଇତ୍ୟାଦି, 'ଏତସ୍ମାଦାତ୍ମନଃ ପ୍ରାଣା ଯଥାୟତନଂ ବିପ୍ରତିଷ୍ଠନ୍ତେ ପ୍ରାଣେଭ୍ୟୋ ଦେବା, ଦେବେଭ୍ୟୋ ଲୋକା', (କୈ. ବ୍ରା ୪-୨୦) ଇତି ଚ । ସୁଷୁପ୍ତିକାଳେ ଚ ପରେଣ ବ୍ରହ୍ମଣା ଜୀବ ଏକତାଂ ଗଛତି । ପରସ୍ମାଚ୍ଚ ବ୍ରହ୍ମଣଃ ପ୍ରାଣାଦିକଂ ଜଗଜ୍ଜାୟତ ଇତି ବେଦାନ୍ତମର୍ଯ୍ୟାଦା ।

**(୨) ଭାଷାଂତର-** (କ) ଏହିବାକ୍ୟ ଜୀବ ପ୍ରଧାନ ଅଟେ; ଅଥବା ବ୍ରହ୍ମପ୍ରଧାନ, କାରଣ-ଏହି ବାକ୍ୟରେ ଆଚାର୍ଯ୍ୟ ଜୈମିନି ଜୀବ ପରାମର୍ଶକୁ ଅନ୍ୟାର୍ଥକ ବ୍ରହ୍ମପ୍ରତିପତ୍ତି ପାଇଁ ସ୍ୱୀକାର କରନ୍ତି ବୋଲି ଏଠାରେ ବିବାଦ କରିବା ଉଚିତ୍ ନୁହେଁ ।

(ଖ) କାହିଁକି ? କାରଣ-ପ୍ରଶ୍ନ ଓ ବ୍ୟାଖ୍ୟାନ (ଉତ୍ତର) ଅଛି । ଶୋଇଥିବା ପୁରୁଷକୁ ଉଠାଇ ପ୍ରାଣାଦିଦ୍ୱାରା ଅନ୍ୟଜୀବର ପ୍ରତିବୋଧିତ ହେଲାପରେ 'ହେ ବାଲାକେ ଏହି ପୁରୁଷ କେଉଁଠି ଶୁଏ ? ଏହାର ଶୟନ କାହିଁକି ହେଲା ? ଅର୍ଥାତ୍ ସୁପ୍ତପୁରୁଷ କ'ଣ ପାଇଲା ? ଏବଂ ଐକ୍ୟଭ୍ରଂଶରୂପ ଆଗମନ କେଉଁଠୁ ହେଲା', ? ଏହିପ୍ରକାର ଜୀବଭିନ୍ନ ବିଷୟକ ପୁଣି ପ୍ରଶ୍ନ ଦେଖାଯାଏ ।

(ଗ) 'ଶୋଇଥିବା ପୁରୁଷ ଯେତେବେଳେ କୌଣସି ସ୍ୱପ୍ନ ଦେଖେ ନାହିଁ, ସେତେବେଳେ ଏହି ପ୍ରାଣୀଠାରେ ଏକ ହୁଏ' ଇତ୍ୟାଦି ଏବଂ 'ଏହି ଆତ୍ମାରୁ ବିସ୍ଫୁଲିଙ୍ଗ ଭଳି ବାଗାଦିପ୍ରାଣ ନିଜନିଜ ସ୍ଥାନରେ ହୁଅନ୍ତି । ପ୍ରାଣଠାରୁ ଦେବତା, ଦେବତାଠାରୁ ଲୋକ ବାହାରେ, ଉତ୍ପନ୍ନ ହୁଅନ୍ତି,' ଏହି ହିଁ ପ୍ରତିବଚନ । ସୁଷୁପ୍ତି କାଳରେ ଜୀବ ପରଂବ୍ରହ୍ମ ସହ ଏକ ହୋଇଯାଏ ଏବଂ ପରଂବ୍ରହ୍ମଠାରୁ ପ୍ରାଣାଦି ଜଗତ ଉତ୍ପନ୍ନ ହୁଏ – ଏହାହିଁ ବେଦାନ୍ତ ମର୍ଯ୍ୟାଦା ସିଦ୍ଧାନ୍ତ ଅଟେ ।

(୩) ମୂଳ-(କ) ତସ୍ମାଦ୍ୟତ୍ରାସ୍ୟ ଜୀବସ୍ୟ ନିଃସମ୍ବୋଧତା ସ୍ୱଚ୍ଛତାରୂପଃସ୍ୱାପ ଉପାଧିଜନିତ ବିଶେଷଜ୍ଞାନରହିତଂ ସ୍ୱରୂପଂ ଯତସ୍ତଦ୍‌ଭ୍ରଂଶରୂପମାଗମନଂ ସୋଽତ୍ର ପରମାତ୍ମା

ବେଦିତବ୍ୟତୟା ଶ୍ରାବିତ ଇତି ଗମ୍ୟତେ । (ଖ) ଅପି ଚୈବମେକେ ଶାଖିନୋ ବାଜସନେୟିନୋଽସ୍ମିନ୍ନେବ ବାଲାକ୍ୟାଜାତଶତ୍ରୁସମ୍ବାଦେ ସ୍ପଷ୍ଟଂ ବିଜ୍ଞାନମୟଶବ୍ଦେନ ଜୀବମାମ୍ନାୟ ତଦ୍‌ବ୍ୟତିରିକ୍ତଂ ପରମାତ୍ମାନମାମନନ୍ତି- 'ଯ ଏଷ ବିଜ୍ଞାନମୟଃ ପୁରୁଷଃ କ୍ୱୈଷଃ ତଦାଭୂତ୍‌କୁତ ଏତଦାଗାତ୍', (ବୃ ୨-୧-୧) ଇତି ପ୍ରଶ୍ନେ । ପ୍ରତିବଚନେଽପି 'ଯ ଏଷୋଽନ୍ତର୍ହୃଦୟ ଆକାଶସ୍ତସ୍ମିନ୍ ଶେତେ', ଇତି । ଆକାଶଶବ୍ଦଶ୍ଚ ପରମାତ୍ମନି ପ୍ରଯୁକ୍ତଃ 'ଦହରୋଽସ୍ମିନ୍ନନ୍ତରା କାଶଃ', (ଛା ୮-୧-୧) ଇତ୍ୟତ୍ର । (ଗ) ସର୍ବ ଏତ ଆତ୍ମନୋ ବ୍ୟୁଚ୍ଚରନ୍ତି', ଇତି ଚୋପାଧିମତାମାତ୍ମନା-ମନ୍ୟତୋ ବ୍ୟୁଚ୍ଚରଣ ମାମନନ୍ତଃ ପରମାତ୍ମାନମେବ କାରଣତ୍ୱେନାମନନ୍ତୀତି ଗମ୍ୟତେ । ପ୍ରାଣନିରାକରଣସ୍ୟାପି ସୁପ୍ତପୁରୁଷୋତ୍‌ଥାପନେନ ପ୍ରାଣାଦିବ୍ୟତିରିକ୍ତୋପଦେଶୋଽଭ୍ୟୁଚ୍ଚୟଃ ।

**(୩)** ଭାଷାଂତର-(କ) ଏଥିରୁ ଜଣାପଡ଼େ ଯେ- ଯେଉଁଠାରେ ଏହି ଜୀବର ଜ୍ୟୋତିରହିତ ସ୍ୱଚ୍ଛତା ରୂପ ସ୍ୱାପ ହୁଏ, ଅର୍ଥାତ୍ ଉପାଧିଜନିତ ବିଶେଷବିଜ୍ଞାନ ରହିତ ସ୍ୱରୂପ, ଯାହାର ସ୍ୱରୂପଦ୍ୱାରା ସେ ପତନରୂପ ଆଗମନ ହୁଏ, ସେ ପରମାତ୍ମା ଏଠାରେ ବେଦିତବ୍ୟରୂପରେ ଶୁଣାଯାଏ । ଅର୍ଥାତ୍ ପ୍ରତିପାଦିତ ହୁଏ ।

(ଖ) ଏହି ପ୍ରକାର ଏକ ବାଜସନେୟ ସମ୍ପ୍ରଦାୟର ବାଲାକି ଓ ଅଜାତଶତ୍ରୁର ଏହି ସମ୍ବାଦରେ ବିଜ୍ଞାନମୟଶବ୍ଦରେ ଜୀବର ସ୍ପଷ୍ଟ ଶ୍ରବଣ କରାଇ ତାହାଠାରୁ ଅନ୍ୟ ପରମାତ୍ମାକୁ 'ଯେଉଁ ବିଜ୍ଞାନମୟ ପୁରୁଷ ଅଟେ, ଯେତେବେଳେ ସେ ଶୋଇଥାଏ, ସେତେବେଳେ ସେ କେଉଁଠି ଥିଲା ? କେଉଁଠାରୁ ଆସିଲା' ? ଏହିପରି ପ୍ରତିବଚନରେ କୁହାଯାଇଛି । 'ଏଠାରେ ଯେଉଁ ସୂକ୍ଷ୍ମାକାଶ ରହିଛି', ସେ ଛାନ୍ଦୋଗ୍ୟ ଶ୍ରୁତିରେ ଆକାଶଶବ୍ଦ ପରମାତ୍ମାରେ ପ୍ରଯୁକ୍ତ ଅଟେ । ସେମାନେ ସମସ୍ତେ ଆତ୍ମାରୁ ବାହାରିଛନ୍ତି ।

(ଗ) ଏହିପ୍ରକାର ଜଣାଯାଏ ଯେ- ଉପାଧିଯୁକ୍ତ ଆତ୍ମାର ଅନ୍ୟପ୍ରକାରେ ବାହାରି ଶ୍ରବଣ କରାଇ ପରମାତ୍ମାର ମଧ୍ୟ କାରଣ ରୂପରେ ପ୍ରତିପାଦନ କରନ୍ତି । ପ୍ରାଣର ନିରାକରଣରେ ସୁଷୁପ୍ତ ପୁରୁଷର ଉତ୍‌ଥାନ ସହ ପ୍ରାଣାଦି ଦ୍ୱାରା ଜୀବର ଉପଦେଶ ରୂପ ହେତୁର ମଧ୍ୟ ସଂଗ୍ରହ କରିବା ଉଚିତ । ଅର୍ଥାତ୍ ପ୍ରାଣର ନିରାକରଣରେ ଏହା ହେତୁ ଅଟେ ।

## ६ वाक्यान्वयाधिकरणम् । सू० १९ -२२

## ବାକ୍ୟାନ୍ୱୟାଧିକରଣ-୬

## वाक्यान्वयात् ॥ १९ ॥

## (୧) ବାକ୍ୟାନ୍ୱୟାତ୍ ।୧-୪-୧୯।

'ଆତ୍ମା ବାଽରେ ଦ୍ରଷ୍ଟବ୍ୟ', ଏହି ଶ୍ରୁତି ବାକ୍ୟରେ ଦ୍ରଷ୍ଟବ୍ୟାଦିରୂପରେ ଉପଦିଷ୍ଟ ଆତ୍ମା ପରମାତ୍ମା ହିଁ ଅଟେ । କାରଣ ଉପକ୍ରମାଦିର ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ,- ବାକ୍ୟାନ୍ୱୟାତ୍-ବ୍ରହ୍ମରେ ବାକ୍ୟର ଅନ୍ୱୟ ହୁଏ ।

(୨) ମୂଳ-(କ) ବୃହଦାରଣ୍ୟକେ ମୈତ୍ରେୟୀବ୍ରାହ୍ମଣେଽଭିଧୀୟତେ- 'ନବା ଅରେ ପତ୍ୟୁଃ କାମାୟ', ଇତ୍ୟୁପକ୍ରମ୍ୟ 'ନ ବା ଅରେ ସର୍ବସ୍ୟ କାମାୟ ସର୍ବଂ ପ୍ରିୟଂ ଭବତ୍ୟାତ୍ମନସ୍ତୁ କାମାୟ ସର୍ବଂ ପ୍ରିୟଂ ଭବତ୍ୟାତ୍ମା ବା ଅରେ ଦ୍ରଷ୍ଟବ୍ୟଃ, ଶ୍ରୋତବ୍ୟୋ, ମନ୍ତବ୍ୟୋ, ନିଦିଧ୍ୟାସିତବ୍ୟୋ, ମୈତ୍ରେୟ୍ୟାତ୍ମନୋ ବା ଅରେ ଦର୍ଶନେନ ଶ୍ରବଣେନ ମତ୍ୟା, ବିଜ୍ଞାନେନେଦଂ ସର୍ବଂ ବିଦିତମ୍', (ବୃ ୪-୫-୬) ଇତି । (ଖ) ତତ୍ରୈତଦ୍ ବିଚିକିତ୍ସ୍ୟତେ- କିଂ ବିଜ୍ଞାନାତ୍ମୈବାୟଂ ଦ୍ରଷ୍ଟବ୍ୟଶ୍ରୋତବ୍ୟତ୍ୱାଦିରୂପେଣୋପଦିଶ୍ୟତ ଆହୋସ୍ୱିତ୍ ପରମାତ୍ମେତି । କୁତଃ ପୁନରେଷା ବିଚିକିତ୍ସା ? ପ୍ରିୟସଂସୂଚିତେନାତ୍ମନା ଭୋକ୍ତୋପକ୍ରମାଦ୍ ବିଜ୍ଞାନତ୍ମୋପଦେଶ ଇତି ପ୍ରତିଭାତି । ତଥାତ୍ମବିଜ୍ଞାନେନ ସର୍ବବିଜ୍ଞାନୋପଦେଶାତ୍ ପରମାତ୍ମୋପଦେଶ ଇତି । କିଂ ତାବତ୍ପ୍ରାପ୍ତମ୍ ?

**(୨) ଭାଷାଂତର**-(କ) ବୃହଦାରଣ୍ୟକର ମୈତ୍ରେୟୀ ବ୍ରାହ୍ମଣରେ 'ଅରେ ମୈତ୍ରେୟୀ ! ସ୍ତ୍ରୀକୁ ପତି ପାଇଁ ପତିପ୍ରିୟ ହୁଏ ନାହିଁ । ଏହିପ୍ରକାର ଆରମ୍ଭ କରି ପ୍ରଥମେ 'ଆରେ ମୈତ୍ରେୟୀ, ସମସ୍ତଙ୍କର ପ୍ରୟୋଜନ ପାଇଁ ସବୁପ୍ରିୟ ହୁଏ ନାହିଁ । ନିଜର ପ୍ରୟୋଜନ ସୁଖ ପାଇଁ ସବୁ ପ୍ରିୟ ହୁଏ । ଅତଃ ମୈତ୍ରେୟୀ । ଆତ୍ମା ଦର୍ଶନର ଯୋଗ୍ୟ ଅଟେ । ଅତଃ ତାହାର ଶ୍ରବଣ କରିବା ଉଚିତ । ମନନ କରିବା ଉଚିତ । ନିଦିଧ୍ୟାସନ କରିବା ଉଚିତ । ହେ ମୈତ୍ରିୟୀ ! ନିଶ୍ଚିତ ଭାବରେ ଆତ୍ମାର ଦର୍ଶନ, ଶ୍ରବଣ, ମନନ ଓ ବିଜ୍ଞାନଦ୍ୱାରା ସବୁ ଜଣାପଡ଼େ' । ଏହିପ୍ରକାର ଅଧ୍ୟୟନ ହୋଇଛି ।

(ଖ) ଏଠାରେ ସଂଶୟ ହୁଏ ଯେ- ଏହି ବିଜ୍ଞାନାତ୍ମା ଦ୍ରଷ୍ଟବ୍ୟ-ଶ୍ରୋତବ୍ୟାଦି ରୂପଦ୍ୱାରା ଉପଦିଷ୍ଟ ଅଥବା ପରମାତ୍ମା ? ଏହି ସଂଶୟ କାହିଁକି ହୁଏ ? ପ୍ରିୟ ଶବ୍ଦରୁ ସୂଚିତ ଭୋକ୍ତା ଆତ୍ମାର ଉପକ୍ରମ ହେବାରୁ ପ୍ରତୀତ ହୁଏ ଯେ- ବିଜ୍ଞାନାତ୍ମାର ଉପଦେଶ ହୁଏ । ସେହି

ପ୍ରକାର ଆତ୍ମା ବିଜ୍ଞାନ ଦ୍ୱାରା ସବୁ ବିଜ୍ଞାନର ଉପଦେଶ ହେଲେ ପରମାତ୍ମାର ଉପଦେଶ ପ୍ରତୀତ ହୁଏ । ତାହେଲେ ଏଠାରେ କ'ଣ ହେବ ?

(୩) ମୂଳ-(କ) ବିଜ୍ଞାନାତ୍ମୋପଦେଶ ଇତି । କସ୍ମାତ୍ ? ଉପକ୍ରମସାମର୍ଥ୍ୟାତ୍ । ପ୍ରତିଜାୟାପୁତ୍ରବିତ୍ତାଦିକଂ ହି ଭୋଗ୍ୟଭୂତଂ ସର୍ବଂ ଜଗଦାତ୍ମାର୍ଥତୟା ପ୍ରିୟଂ ଭବତିତୀ ପ୍ରିୟସଂସୂଚିତଂ ଭୋକ୍ତାରମାତ୍ମମୁପ-କ୍ରମ୍ୟାନନ୍ତରମିଦମାତ୍ମନୋ ଦର୍ଶନାଦ୍ୟୁପଦିଶ୍ୟମାନଂ କସ୍ୟାନ୍ୟସ୍ୟାତ୍ମନଃ ସ୍ୟାତ୍ ? (ଖ) ମଧ୍ୟେଽପି ଇଦଂ ମହଦ୍‌ଭୂତମନନ୍ତମପାରଂ ବିଜ୍ଞାନଘନ ଏବୈତେଭ୍ୟୋ ଭୂତେଭ୍ୟଃ ସମୁତ୍‌ଥାୟ ତାନ୍ୟେବାନୁବିନଶ୍ୟତି ନ ପ୍ରେତ୍ୟ ସଂଜ୍ଞାସ୍ତି', ଇତି ପ୍ରକୃତସ୍ୟୈବ ମହତୋ ଭୂତସ୍ୟ ଦ୍ରଷ୍ଟବ୍ୟସ୍ୟ ଭୂତେଭ୍ୟଃ ସମୁତ୍‌ଥାନଂ ବିଜ୍ଞାନାତ୍ମ-ଭାବେନ ବ୍ରୁବନ୍‌ବିଜ୍ଞାନାତ୍ମନ ଏବେଦଂ ଦ୍ରଷ୍ଟବ୍ୟତ୍ୱଂ ଦର୍ଶୟତି । (ଗ) ତଥା 'ବିଜ୍ଞାତାମରେ କେନ ବିଜାନୀୟାତ୍', ଇତି କର୍ତ୍ତୃବଚନେନ ଶବ୍ଦେନୋପସଂହରନ୍ ବିଜ୍ଞାନାତ୍ମନ-ମେବେହୋପଦିଷ୍ଟଂ ଦର୍ଶୟତି । ତସ୍ମାଦାତ୍ମବିଜ୍ଞାନେନ ସର୍ବବିଜ୍ଞାନବଚନଂ ଭୋକ୍ ତ୍ରାର୍ଥତ୍ୱାଦ୍ ଭୋଗ୍ୟଜାତ ସ୍ୟୈପଚରିକଂ ଦ୍ରଷ୍ଟବ୍ୟମିତି ।

**(୩) ଭାଷାଂତର-** ପୂର୍ବପକ୍ଷ-(କ) ବିଜ୍ଞାନାତ୍ମାର ଏହି ହିଁ ଉପଦେଶ । କିପରି ? ଏହାଦ୍ୱାରା ଉପକ୍ରମର ସାମର୍ଥ୍ୟ ଅଛି । ପତି, ସ୍ତ୍ରୀ, ପୁତ୍ର, ସମ୍ପତ୍ତି ଇତ୍ୟାଦି ଭୋଗ ରୂପ ସମଗ୍ର ସଂସାରର ଆତ୍ମାପାଇଁ ପ୍ରିୟ ହୁଏ । ଅତଏବ ପ୍ରିୟଶବ୍ଦ ଦ୍ୱାରା ସଂସୁଚିତ ଭୋକ୍ତା ଆତ୍ମାର ଉପକ୍ରମ କରି ପରେ ଉପଦେଶ ଦେଇ ଆତ୍ମାର ଦର୍ଶନାଦି କୌଣସି ଅନ୍ୟ ଆତ୍ମାକୁ ବୁଝାଏ କି ?

(ଖ) ମଝିରେ ମଧ୍ୟ 'ଏହି ମହାନ୍ ସତ୍ୟ, ଅନନ୍ତ, ଅପାର ଓ ବିଜ୍ଞାନୈକରସ ଏହି ଭୂତଠାରୁ ବିଶେଷରୂପରେ ସମୁତ୍ ଥିତ ହୋଇ ତାହା ସହ ନଷ୍ଟ ହୁଏ, ଏହିପ୍ରକାର ମଲାପରେ ଏହାର ସଂଜ୍ଞା ରହେନାହିଁ । ଏହି ପ୍ରକାର ପ୍ରକୃତ ଦ୍ରଷ୍ଟବ୍ୟ ମହାନ୍ ଭୂତର ବିଜ୍ଞାନାତ୍ମାରୂପରେ କହୁଥିବା ଶ୍ରୁତିବିଜ୍ଞାନାତ୍ମା ଉପଦିଷ୍ଟ ହୁଏ ।

(ଗ) ତେଣୁ ଏହା ଜଣାଯାଏ ଯେ- 'ବିଜ୍ଞାତା କିପରି ଜଣାପଡ଼େ; ଏହି ପ୍ରକାର କର୍ତ୍ତୃବାଚକଶବ୍ଦରେ ଉପସଂହାର କରୁଥିବା ଶ୍ରୁତି ବିଜ୍ଞାତା ବିଜ୍ଞାନାତ୍ମା ହିଁ ଉପଦିଷ୍ଟ ବୋଲି ଜଣାପଡ଼େ । ତେଣୁ ଏହା ଜାଣିବା ଯେ ବିଜ୍ଞାନ ରୂପରେ ସବୁ ବିଜ୍ଞାନ ହୁଏ, ଏହିକଥା ଭୋକ୍ତା ପାଇଁ ଭୋଗ୍ୟସମୂହରେ ଗୌଣ ।



(୪) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପରମାତ୍ମୋପଦେଶ ଏବାୟମ୍ । କସ୍ମାତ୍ ? ବାକ୍ୟାନ୍ୱୟାତ୍ । ବାକ୍ୟଂ ହୀଦଂ ପୌର୍ବାପର୍ଯ୍ୟୋଣାବେକ୍ଷ୍ୟମାଣଂ ପରମାତ୍ମାନଂ ପ୍ରତି ଅନ୍ୱିତାବୟବଂ ଲକ୍ଷ୍ୟତେ । (ଖ) କଥମିତି, ତଦୁପପାଦ୍ୟତେ, ''ଅମୃତତ୍ୱସ୍ୟ ତୁ ଯଦାସ୍ତି ବିତ୍ତେନ', ଇତି ଯାଜ୍ଞବଲ୍କ୍ୟାଦୁପଶ୍ରୁତ୍ୟ 'ଯେନାହଂ ନାମୃତା ସ୍ୟାଂ କିମହଂ ତେନ କୁର୍ଯ୍ୟାଂ ଯଦେବ ଭଗବାନ୍‌ବେଦ ତଦେମ ମେ ବ୍ରୂହି', ଇତ୍ୟମୃତତ୍ୱମାଶାସାନାୟା ମୈତ୍ରେୟ୍ୟା ଯାଜ୍ଞବଲ୍କ୍ୟ ଆତ୍ମବିଜ୍ଞାନମିଦମୁପଦିଶତି । ନ ହ୍ୟନ୍ୟତ୍ର ପରମାତ୍ମବିଜ୍ଞାନା-ନାଦମୃତତ୍ୱମସ୍ତୀତି ଶ୍ରୁତିସ୍ମୃତିବାଦା ବଦନ୍ତି ।

**(୪) ଭାଷାଂତର**-(କ) ପରମାତ୍ମାର ଉପଦେଶ ଏଠାରେ ଅଛି । କିପରି ? ଏଠାରେ ବାକ୍ୟର ଅନ୍ୱୟ ହେବାରୁ । ପୂର୍ବାପରର ପର୍ଯ୍ୟାଲୋଚନାରେ ଏହି ବାକ୍ୟର ଅବୟବ ଅବେକ୍ଷ୍ୟମାଣ ପରମାତ୍ମାରେ ଅନ୍ୱିତ ହେବାରେ ଲକ୍ଷ୍ୟ କରାଯାଏ ।

(ଖ) କିପରି ? ଅନ୍ୱିତ ହୁଏ ? ତାହାର ଉପପାଦନ କରୁଛି- 'ଅମୃତତ୍ୱର ଧନରେ ଆଶା ନାହିଁ ? ଏହି ପ୍ରକାର ଯାଜ୍ଞବଲ୍କ୍ୟଠାରୁ ଶୁଣିକରି 'ଯାହାଦ୍ୱାରା ମୁଁ ଅମର ନ ହେବା ଉଚିତ, ଏହାକୁ ନେଇ ମୁଁ କ'ଣ କରିବି ? ହେ ଭଗବାନ ! ଯେଉଁ ଅମୃତ ତ୍ୱର ସାଧନ ଜାଣିଛ । ତାହାକୁ ହିଁ ମୋତେ ବତାଅ', ଏହିପ୍ରକାର ଅମୃତତ୍ୱର ଆଶା ରଖିଥିବା ମୈତ୍ରେୟୀକୁ ଯାଜ୍ଞବଲ୍କ୍ୟ ଏହି ଆତ୍ମବିଜ୍ଞାନର ଉପଦେଶ କରନ୍ତି । ପରମାତ୍ମା ବିଜ୍ଞାନର ସେବା ଅମୃତତ୍ୱର ପ୍ରାପ୍ତି ନୁହେଁ; ଏହି ଶ୍ରୁତି ଓ ସ୍ମୃତିବଚନ କହନ୍ତି ।

(୫) ମୂଳ-(କ) ତଥା ହ୍ୟାତ୍ମବିଜ୍ଞାନେନ ସର୍ବବିଜ୍ଞାନମୁଚ୍ୟମାନଂ ନାନ୍ୟତ୍ର ପରମକାରଣବିଜ୍ଞାନାନ୍ ମୁଖ୍ୟମବକଳ୍ପତେ । ନ ଚୈତଦୌପଚାରିକମାଶ୍ରୟିତୁଂ ଶକ୍ୟମ୍, ଯତ୍‌କାରଣମାତ୍ମବିଜ୍ଞାନେନ ସର୍ବବିଜ୍ଞାନଂ ପ୍ରତିଜ୍ଞାୟାନନ୍ତରେଣ ଗ୍ରନ୍ଥେନ ତଦେବୋପପାଦୟତି । 'ବ୍ରହ୍ମ ତଂ ପରାଦଦ୍ୟୋଽନ୍ୟତ୍ରାତ୍ମନୋ ବ୍ରହ୍ମ ବେଦ', ଇତ୍ୟାଦିନା । (ଖ) ଯୋ ହି ବ୍ରହ୍ମକ୍ଷତ୍ରାଦିକଂ ଜଗଦାତ୍ମନୋଽନ୍ୟତ୍ର ସ୍ୱାତନ୍ତ୍ର୍ୟେଣ ଲବ୍ଧ-ସଦ୍‌ଭାବଂ ପଶ୍ୟତି ତଂ ମିଥ୍ୟାଦର୍ଶନଂ ତମେବ ମିଥ୍ୟାଦୃଷ୍ଟଂ ବ୍ରହ୍ମକ୍ଷତ୍ରାଦିକଂ ଜଗତ୍‌ପରା-କରୋତୀତି ଭେଦଦୃଷ୍ଟିମପୋଦ୍ୟ 'ଇଦଂ ସର୍ବଂ ଯଦୟମାତ୍ମା' ଇତି ସର୍ବସ୍ୟ ବସ୍ତୁଜାତସ୍ୟା-ତ୍ମବ୍ୟତିରେକମବତାରୟତି । (ଗ) ଦୁନ୍ଦୁଭ୍ୟାଦିଦୃଷ୍ଟାନ୍ତୈଶ୍ଚ', (ବୃ ୪-୫-୮) ତମେବାବ୍ୟତିରେକ ଦ୍ରଢ଼ୟତି । 'ଅସ୍ୟ ମହତୋ ଭୂତସ୍ୟ ନିଶ୍ୱସିତମେତଦ୍ୟଦୃଗ୍‌ବେଦଃ', (ବୃ ୪-୫-୧୧) ଇତ୍ୟାଦୀନା ଚ ପ୍ରକୃତସ୍ୟାତ୍ମନୋ ନାମରୂପକର୍ମପ୍ରପଞ୍ଚକାରଣତାଂ

ବ୍ୟାଚକ୍ଷାଣଃ ପରମାତ୍ମାନମେନଂ ଗମୟତି । (ଘ) 'ତଥୈବୈକାୟନପ୍ରକ୍ରିୟାୟାମପି', (ବୃ ୪-୫-୧୨) ସବିଷୟସ୍ୟ ସେନ୍ଦ୍ରିୟସ୍ୟ ସାନ୍ତଃକରଣସ୍ୟ ପ୍ରପଞ୍ଚସ୍ୟୈକାୟନମନନ୍ତରମବାହ୍ୟଂ କୃତ୍ସ୍ନଂ ପ୍ରଜ୍ଞାନଘନଂ ବ୍ୟାଚକ୍ଷାଣଃ ପରମାତ୍ମନମେନଂ ଗମୟତି । ତସ୍ମାତ୍ ପରମାତ୍ମନ ଏବାୟଂ ଦର୍ଶନାଦ୍ୟୁପଦେଶଃ ଇତି ଗମ୍ୟତେ ।

**(୫) ଭାଷାଂତର**-(କ) ଏହିପ୍ରକାର ଆତ୍ମବିଜ୍ଞାନଦ୍ୱାରା କୁହାଯାଇଥିବା ଯେଉଁ ସର୍ବବିଜ୍ଞାନ, ସେ ପରକାରଣ ବିଜ୍ଞାନର ବିନା ମୁଖ୍ୟରୂପରେ ହୋଇପାରେ ନାହିଁ । ଏହି କଥନ ଔପଚାରିକରୂପରେ ଗ୍ରହଣ କରାଯାଏ ନାହିଁ । କାରଣ ଆତ୍ମବିଜ୍ଞାନ ଦ୍ୱାରା ସର୍ବ ବିଜ୍ଞାନର ପ୍ରତିଜ୍ଞା କରି ବ୍ରାହ୍ମଣଜାତି ତାହାକୁ ପରାପ୍ତ କରିଦିଏ । ବ୍ରାହ୍ମଣ ଜାତିକୁ ଆତ୍ମଭିନ୍ନ ବୋଲି ଭାବେ, ଇତ୍ୟାଦି ଅଗ୍ରିମ ଗ୍ରନ୍ଥରେ ତାହାର ଉପପାଦନ କରେ ।

(ଖ) ଯେଉଁ ବ୍ରହ୍ମ କ୍ଷତ୍ରାଦି ଜଗତକୁ ଆତ୍ମାଠାରୁ ଭିନ୍ନ ସ୍ୱତନ୍ତ୍ରରୂପରେ ସତ୍ତାଯୁକ୍ତ ଭାବରେ ଦେଖେ । ସେ ମିଥ୍ୟାଦୃଷ୍ଟ ବ୍ରହ୍ମ କ୍ଷତ୍ରାଦି ଜଗତ୍ ସେହି ମିଥ୍ୟାଦର୍ଶୀକୁ କଲ୍ୟାଣ ମାର୍ଗରେ ଭ୍ରଷ୍ଟକରେ । ଏହିପ୍ରକାର ଭେଦ ଦୃଷ୍ଟିରେ ନିଷେଧ କରି 'ଏହା ଯାହା କିଛି, ସେ ସବୁ ଏହି ଆତ୍ମା', ଏହିପ୍ରକାର ସମ୍ପୂର୍ଣ୍ଣ ବସ୍ତୁସମୂହକୁ ଆତ୍ମାଠାରୁ ଅଭିନ୍ନ ବୋଲି ଅବତରଣ କରେ ।

(ଗ) ଦୁନ୍ଦୁଭି ଆଦି ଦୃଷ୍ଟାନ୍ତରୁ ସେହି ଅଭେଦକୁ ଦୃଢ଼କରେ । 'ଯେଉଁ ଏହି ଋଗ୍‌ବେଦ, ସେ ଏହି ସତ୍ୟ, ବ୍ରହ୍ମର ନିଃଶ୍ୱାସ ଅଟେ', ଇତ୍ୟାଦି ପ୍ରକୃତ ଆତ୍ମାରେ ନାମ, ରୂପ, କର୍ମ, ପ୍ରପଞ୍ଚର କାରଣତାର ବ୍ୟାଖ୍ୟାନକୁ ଇଚ୍ଛା କରି ଏହି ପରମାତ୍ମାର ଅବଗମ (ବୋଧ) କରାଏ ।

(ଘ) ଏହିପ୍ରକାର ଏକାୟନ ପ୍ରକ୍ରିୟାରେ ମଧ୍ୟ ବିଷୟ, ଇନ୍ଦ୍ରିୟ ଓ ଅନ୍ତଃକରଣ ସହ ସମ୍ପୂର୍ଣ୍ଣ ପ୍ରପଞ୍ଚର ଏକ ଆଧାର ବାହ୍ୟ ଓ ଆଭ୍ୟନ୍ତର ଭେଦଶୂନ୍ୟ, ଅଖଣ୍ଡ ଏବଂ ପ୍ରାଣାନୈକରସର ବ୍ୟାଖ୍ୟାନର ଇଚ୍ଛା କରି ଯାଜ୍ଞବଲକ୍ୟ ଏହି ପରମାତ୍ମାର ବୋଧ କରାଏ । ଏହାଦ୍ୱାରା ଜଣାପଡ଼େ ଯେ- ପରମାତ୍ମାର ମଧ୍ୟ ଏହି ଦର୍ଶନାଦି ଉପଦେଶ ଅଛି ।

(୧) ମୂଳ-(କ) ଯତ୍ ପୁନରୁକ୍ତମ୍-ପ୍ରିୟସଂସୂଚିତୋପକ୍ରମାଦ୍ ବିଜ୍ଞାନାତ୍ମନ ଏବାୟଂ ଦର୍ଶନାଦ୍ୟୁପଦେଶ ଇତି । ଅତ୍ରବ୍ରୂମଃ ।

**(୧) ଭାଷାଂତର**-(କ) ଯାହା କୁହାଗଲା ଯେ- ପ୍ରିୟଶବ୍ଦରୁ ସୂଚିତ ଭୋକ୍ତା ଆତ୍ମାର ଉପକ୍ରମରେ ବିଜ୍ଞାନାତ୍ମାର ଏହି ଦର୍ଶନାଦି ଉପଦେଶ ହୁଏ । ଏହା ଉପରେ କୁହାଯାଇଛି-



## प्रतिज्ञासिद्धेर्लिङ्गमाश्मरथ्यः ॥ २० ॥

## (୨) ପ୍ରତିଜ୍ଞାସିଦ୍ଧେର୍ଲିଙ୍ଗମାଶ୍ମରଥ୍ୟଃ ୧।୪।୨୦

'ପ୍ରତିଜ୍ଞାସିଦ୍ଧେଃ-ଗୋଟିଏ ବିଜ୍ଞାନଦ୍ୱାରା ସବୁଜ୍ଞାନ ହୁଏ । ଏହି ପ୍ରତିଜ୍ଞାର ସିଦ୍ଧରେ ଲିଙ୍ଗମ୍-ଜୀବ ବ୍ରହ୍ମର ଅଭେଦାଂଶକୁ ନେଇ ଜୀବର ଉପକ୍ରମ ହେତୁ ହୁଏ । ଆଶ୍ମରଥ୍ୟଃ-ଆଶ୍ମ ରଥ୍ୟ ଆଚାର୍ଯ୍ୟଙ୍କର ମତ ।

(୩) ମୂଳ-(କ) ଅସ୍ତ୍ୟତ୍ର ପ୍ରତିଜ୍ଞା 'ଆତ୍ମନିବିଜ୍ଞାତେ ସର୍ବମିଦଂ ବିଜ୍ଞାତଂ ଭବତି' । 'ଇଦଂ ସର୍ବଂ ଯଦୟମାତ୍ମା', ଇତି ଚ । ତସ୍ୟାଃ ପ୍ରତିଜ୍ଞାୟାଃ ସିଦ୍ଧିଂ ସୂଚୟତେତଲ୍ଲିଂଗଂ ଯତ୍ପ୍ରିୟ ସଂସୂଚିତସ୍ୟାତ୍ମନୋ ଦ୍ରଷ୍ଟତ୍ୱାଦି ସଂକୀର୍ତ୍ତନମ୍ । (ଖ) ଯଦି ହି ବିଜ୍ଞାନାତ୍ମା ପରମାତ୍ମନୋଽନ୍ୟଃ ସ୍ୟାତ୍ତତଃ ପରମାତ୍ମବିଜ୍ଞାନେଽପି ବିଜ୍ଞାନାତ୍ମା ନ ବିଜ୍ଞାତ ଇତ୍ୟେକବିଜ୍ଞାନେନ ସର୍ବବିଜ୍ଞାନଂ ଯତ୍ପ୍ରତିଜ୍ଞାତଂ ତଦ୍ଧୀୟେତ । ତସ୍ମାତ୍ ପ୍ରତିଜ୍ଞାସିଦ୍ଧ୍ୟର୍ଥଂ ବିଜ୍ଞାନାତ୍ମ ପରମାତ୍ମନୋର ଭେଦାଂଶେନୋପକ୍ରମ-ଣମିତ୍ୟାଶ୍ମରଥ୍ୟଃ ଆଚାର୍ଯ୍ୟୋ ମନ୍ୟତେ ।

**(୩) ଭାଷାଂତର**-(କ) 'ଆତ୍ମା ବିଜ୍ଞାନ ହେଲାପରେ ଏହି ସମ୍ପୂର୍ଣ୍ଣ ପ୍ରପଞ୍ଚ ବିଷୟରେ ଜ୍ଞାନ ହୁଏ', ଏବଂ 'ଏହି ଆତ୍ମା ସବୁ କିଛି', । ଏହାହିଁ ପ୍ରତିଜ୍ଞା । ପ୍ରିୟ ଶବ୍ଦରୁ ସଂସୂଚିତ ଆତ୍ମାର ଯାହା ଦ୍ରଷ୍ଟବ୍ୟତ୍ୱାଦିସଂକୀର୍ତ୍ତନ ହୁଏ, ସେ ଏହି ଲିଙ୍ଗ ସେହି ପ୍ରତିଜ୍ଞାର ସିଦ୍ଧକୁ ସୂଚିତ କରାଏ ।

(ଖ) ଯଦି ବିଜ୍ଞାନାତ୍ମା ପରମାତ୍ମାଠାରୁ ଅନ୍ୟ ହୁଏ, ତେବେ ପରମାତ୍ମାର ବିଜ୍ଞାନ ହେଲେ ମଧ୍ୟ ବିଜ୍ଞାନାତ୍ମା ବିଜ୍ଞାତ ହେବନାହିଁ । ଏହିପରି ଏକ ବିଜ୍ଞାନ ହେଲେ ସବୁ ବିଜ୍ଞାନ ହୁଏ । ଯାହାକୁ ଏଠାରେ ପ୍ରତିଜ୍ଞା କରାଗଲା, ସେ ବାଧିତ ହୋଇଯିବ । ତେଣୁ ପ୍ରତିଜ୍ଞାର ସିଦ୍ଧି ପାଇଁ ଜୀବାତ୍ମା ଓ ପରମାତ୍ମାର ଅଭେଦାଂଶକୁ ନେଇ ଉପଗମ ହୁଏ । ଏହି ପ୍ରକାର ଆଶ୍ମରଥ୍ୟ ଆଚାର୍ଯ୍ୟ ସ୍ୱୀକାର କରନ୍ତି ।

## उत्क्रमिष्यत एवंभावादित्यौडुलोमिः ॥ २१ ॥

## (୧) ଉତ୍କ୍ରମିଷ୍ୟତ ଏବଂ ଭାବାଦିତ୍ୟୌଡୁଲୋମିଃ ୧।୪।୨୧

ଉତ୍କ୍ରମିଷ୍ୟତଃ-ବ୍ରହ୍ମସାକ୍ଷାତ୍କାର ହେଲେ ଅନନ୍ତରଦେହାଦିସଂଘାତଦ୍ୱାରା ଉତ୍କ୍ରମଣ କରି ଜୀବର, ଏବଂ ଭାବାତ୍-ପରମାତ୍ମାର ସହିତ ଐକ୍ୟ ହୁଏ । ଏହି ଭବିଷ୍ୟତ ଅଭେଦକୁ ନେଇ ଜୀବର ଉପକ୍ରମ ହୁଏ । ଔଡୁଲୋମିଃ-ଏହା ଔଡୁଲୋମି ଆଚାର୍ଯ୍ୟଙ୍କ ମତ ।

(୨) ମୂଳ-(କ) ବିଜ୍ଞାନାତ୍ମନ ଏବ ଦେହେନ୍ଦ୍ରିୟମନୋବୁଦ୍ଧି ସଂଜାତୋପାଧିସଂପର୍କାତ୍ କଲୁଷୀ ଭୂତସ୍ୟ ଜ୍ଞାନଧ୍ୟାନାଦିସାଧନାନୁଷ୍ଠାନାତ୍ ସଂପନ୍ନସ୍ୟ ଦେହାଦିସଂଘାତାଜ୍ଜୁତ୍କ୍ରମିଷ୍ୟତଃ ପରମାତ୍ମୈକ୍ୟୋପପତ୍ତେରିଦମଭେଦେନୋପକ୍ରମଣ-ମିତ୍ୟୌଡୁଲୋମିରାଚାର୍ଯ୍ୟୋ ମନ୍ୟତେ । (ଖ) ଶ୍ରୁତିଶ୍ଚୈବଂ ଭବତି, 'ଏଷ ସମ୍ପ୍ରସାଦୋଽସ୍ମାଚ୍ଛରୀରାତ୍ ସମୁତ୍ଥାୟ ପରଂ ଜ୍ୟୋତିରୂପସଂପଦ୍ୟ ସ୍ୱେନ ରୂପେଣାଭିନି-ଷ୍ପଦ୍ୟତେ', (ଛା ୮-୧୨-୩) ଇତି । (ଗ) କ୍ୱଚିଚ୍ଚ ଜୀବାଶ୍ରୟମପି ନାମରୂପଂ ନଦୀନିଦର୍ଶନେନ ଜ୍ଞାପୟତି, - 'ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେଽସ୍ତଂ ଗଚ୍ଛନ୍ତି ନାମରୂପେ ବିହାୟ । ତଥା ବିଦ୍ୱାନ୍ନାମରୂପାଦ୍ୱିମୁକ୍ତଃ, ପରାତ୍ପରଂ ପୁରୁଷ ମୁପୈତି ଦିବ୍ୟମ୍', (ମୁଣ୍ଡ ୩।୨।୮) ଇତି ଯଥା ନଦ୍ୟଃ ସ୍ୱାଶ୍ରୟମେବ ନାମରୂପଂ ବିହାୟ ପରଂ ପୁରୁଷମୁପୈତୀତି ହି ତତ୍ରାର୍ଥଃ ପ୍ରତୀୟତେ ଦୃଷ୍ଟାନ୍ତଦାର୍ଷ୍ଟାନ୍ତିକୟୋସ୍ତୁଲ୍ୟତାୟୈ ।

(୨) ଭାଷାଂତର-(କ) ଦେହ, ଇନ୍ଦ୍ରିୟ ମନ ଓ ବୁଦ୍ଧିର ସଂଘାତ ରୂପ ଉପାଧି ସମ୍ବନ୍ଧରେ କଲୁଷିତ ବିଜ୍ଞାନାତ୍ମାର ହିଁ ଜ୍ଞାନ, ଧ୍ୟାନାଦିସଂଘାତର ଅନୁଷ୍ଠାନ ଦ୍ୱାରା ସଙ୍ଗପ୍ରସନ୍ନ ହୋଇ ଦୃଷ୍ଟ ଦେହାଦିସଂଘାତରେ ଉତ୍କ୍ରମଣ ହେବାପରେ ପରମାତ୍ମାର ସହିତ ଐକ୍ୟ ଉପପନ୍ନ ହୁଏ । ଅତଃ ଏଠାରେ ଅଭେଦଦ୍ୱାରା ଉପକ୍ରମ ହୁଏ । ଏପରି ଔଡୁଲୋମି ଆଚାର୍ଯ୍ୟ ସ୍ୱୀକାର କରନ୍ତି ।

(ଖ) ଶ୍ରୁତି ମଧ୍ୟ ଏହା କହେ ଯେ- 'ଏହି ସମ୍ପ୍ରସାଦ ଜୀବ ଏହି ଶରୀରରୁ ଉଠି ଅନାତ୍ମାଭିମାନ ପରିତ୍ୟାଗ କରି ପରମଜ୍ୟୋତିକୁ ପ୍ରାପ୍ତ ହୋଇ ନିଜ ସ୍ୱରୂପରେ ସ୍ଥିତ ହୁଏ ।

(ଗ) କେଉଁଠି ମଧ୍ୟ ଜୀବାଶ୍ରୟନାମ ରୂପକୁ ଔଡୁ ଲୋମି ଆଚାର୍ଯ୍ୟ ନଦୀ ଦୃଷ୍ଟାନ୍ତରେ ଜ୍ଞାପନ କରନ୍ତି । 'ଯେପରି ସଂସାରରେ ନଦୀଗୁଡ଼ିକ ସ୍ୱାଶ୍ରୟନାମରୂପକୁ ତ୍ୟାଗକରି ସମୁଦ୍ରରେ ଲୀନ ହୁଅନ୍ତି, ସେପରି ଜୀବମଧ୍ୟ ସ୍ୱାଶ୍ରୟ ନାମ ରୂପକୁ ତ୍ୟାଗକରି ପରମପୁରୁଷକୁ ପାଏ,' । ଏହି ଦୃଷ୍ଟାନ୍ତ ଓ ଦାର୍ଷ୍ଟାନ୍ତିକ ଗୁଡ଼ିକର ତୁଲ୍ୟତା ପାଇଁ ଏହି ଅର୍ଥ ପ୍ରତୀତି ହୁଏ ।

**अवस्थितेरिति काशकृत्स्नः ॥ २२ ॥**

**ଅବସ୍ଥିତେରିତି କାଶକୃତ୍ସ୍ନଃ ।୧।୪।୨୨।**

ଅବସ୍ଥିତେଃ-ଅବିଦ୍ୟା କଳ୍ପିତଭେଦରେ ବ୍ରହ୍ମହିଁ ଜୀବ ରୂପରେ ଅବସ୍ଥିତ । ତେଣୁ ଜୀବଠାରୁ ଉପଦେଶର ଉପକ୍ରମ ଅଛି । ଇତି କାଶକୃତ୍ସ୍ନଃ-ଏହା କାଶକୃତ୍ସ୍ନଙ୍କର ମତ ।

(୨) ମୂଳ-(କ) ଅସ୍ୟୈବ ପରମାତ୍ମନୋଽନେନାପି ବିଜ୍ଞାନାତ୍ମଭାବେନାବସ୍ଥାନାଦୁପପନ୍ନମିଦମଭେଦେନୋ ପକ୍ରମଣମିତି କାଶକୃତ୍ସ୍ନ ଆଚାର୍ଯ୍ୟୋ ମନ୍ୟତେ । ତଥା ଚ ବ୍ରାହ୍ମଣମ୍-'ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣି', (ଛା ୬-୩-୨) ଇତ୍ୟେବଂ ଜାତୀୟକଂ ପରଙ୍ଗେସ୍ୟିବାତ୍ମନୋ ଜୀବାଭାବେନାବସ୍ଥାନଂ ଦର୍ଶୟତି । ମନ୍ତ୍ରବର୍ଣ୍ଣଶ୍ଚ 'ସର୍ବାଣି ରୂପାଣି ବିଚିତ୍ୟ ଧୀରୋ ନାମାନି କୃତ୍ୱାଭିବଦନ୍ୟଦାସ୍ତେ', (ତୈ ଆ ୩-୧୨-୭) ଇତ୍ୟେବଂ ଜୀତୀୟକଃ । (ଖ) ନ ଚ ତେଜଃ ପ୍ରଭୃତୀନାଂ ସୃଷ୍ଟୌ ଜୀବସ୍ୟ ପୃଥକ୍‌ସୃଷ୍ଟିଃ ଶ୍ରୁତା, ଯେନ ପରସ୍ମାଦାତ୍ମନୋଽନ୍ୟସ୍ତଦ୍‌ବିକାରୋ ଜୀବଃ ସ୍ୟାତ୍ । (ଗ) କାଶକୃତ୍ସ୍ନସ୍ୟା ଚାର୍ଯ୍ୟସ୍ୟାବିକୃତଃ ପରମେଶ୍ୱରୋ ଜୀବୋ ନାନ୍ୟ ଇତି ମତମ୍ । ଆଶ୍ମରଥସ୍ୟ ତୁ ଯଦ୍ୟପି ଜୀବସ୍ୟ ପରସ୍ମାଦନନ୍ୟତ୍ୱମଭିପ୍ରେତଂ ତଥାପି ପ୍ରତିଜ୍ଞାସିଦ୍ଧେରିତି ସାପେକ୍ଷତ୍ୱାଭିଧାନାତ୍ କାର୍ଯ୍ୟକାରଣଭାବଃ କିୟାନଷ୍ୟଭିପ୍ରେତ ଇତି ଗମ୍ୟତେ ।

(୨) ଭାଷାଂତର-(କ) କାଶକୃତ୍ସ୍ନ ଆଚାର୍ଯ୍ୟ ସ୍ୱୀକାର କରନ୍ତି ଯେ- ଏହି ପରମାତ୍ମାର ଜୀବାତ୍ମା ରୂପରେ ଅବସ୍ଥିତିହେବାରୁ ଅଭେଦ ରୂପରେ ଏହି ଉପକ୍ରମ ଯଥାର୍ଥ ଅଟେ । ଏହିପ୍ରକାର 'ମୁଁ ଏହି ଜୀବାତ୍ମା ରୂପରେ ତେଜ, ଜଳ ଓ ଅନ୍ନ- ଏହି ଦେବତାତ୍ରୟାଠାରେ ଅନୁପ୍ରବେଶ କରି ନାମ ଓ ରୂପକୁ ଅବିବ୍ୟକ୍ତ କରିବି । ଏହି ପ୍ରକାର ବ୍ରାହ୍ମଣବାକ୍ୟ ପରମାତ୍ମାର ଜୀବାତ୍ମାରୂପରେ ଅବସ୍ଥାନ ଦେଖାଏ । ସର୍ବଜ୍ଞ ସମସ୍ତ ଚରାଚରକୁ ଉତ୍ପନ୍ନ କରି ତାହାର ନାମ ରୂପ ଓ ସେଥିରେ ପ୍ରବେଶ କରି ଭାଷଣାଦି ବ୍ୟବହାର କରି ରହେ' । ଏହି ପ୍ରକାର ମନ୍ତ୍ର ମଧ୍ୟ ଅଛି ।

(ଖ) ତେଜାଦିର ସୃଷ୍ଟିରେ ଜୀବର ପୃଥକ୍ ସୃଷ୍ଟି ଶ୍ରୁତି ନୁହେଁ । ଯଦ୍ଦ୍ୱାରା କି ଜୀବ ପରମାତ୍ମାଠାରୁ ଅନ୍ୟ ଏବଂ ତାହାର ବିକାର ହୋଇପାରେ ।

(ଗ) କାଶକୃତ୍ସ୍ନ ଆଚାର୍ଯ୍ୟଙ୍କର ମତରେ- ଅବିକୃତ ପରମେଶ୍ୱର ଜୀବ ଅଟେ । ଅନ୍ୟ କିଏ ନୁହେଁ ! କିନ୍ତୁ ଆଶ୍ମ ରଥ୍ୟଙ୍କୁ ଯଦ୍ୟପି ଜୀବାତ୍ମାର ପରମାତ୍ମାଠାରୁ ଅନନ୍ୟତ୍ୱ ଅଭିପ୍ରେତ ହୁଏ, ତଥାପି 'ପ୍ରତିଜ୍ଞାସିଦ୍ଧେ' ଏହିପ୍ରକାର ସାପେକ୍ଷତ୍ୱାଭିଧାନ ଦ୍ୱାରା ଯତ୍‌କିଞ୍ଚିତ କାର୍ଯ୍ୟକାରଣଭାବ ଅଭିପ୍ରେତ ହୁଏ ବୋଲି ଜଣାପଡ଼େ ।

(୩) ମୂଳ-(କ) ଔଡୁଲୋମିପକ୍ଷେ ପୁନଃ ସ୍ପଷ୍ଟମେବାବସ୍ଥାନ୍ତରାପକ୍ଷୌ ଭେଦାଭେଦୌ ଗମ୍ୟେତେ । ତତ୍ର କାଶକୃତ୍ସ୍ନୀୟଂ ମତଂ ଶ୍ରୁତ୍ୟନୁସାରୀତି ଗମ୍ୟତେ, ପ୍ରତିପାଦୟିଷିତାର୍ଥନୁସାରାତ୍ 'ତତ୍ତ୍ୱମସି', ଇତ୍ୟାଦି ଶ୍ରୁତିଭ୍ୟଃ । ଏବଂ ଚ ସତି

ତଜ୍ଜ୍ଞାନାଦମୃତତ୍ୱମବକଳ୍ପତେ । (ଖ)˚ ବିକାରାତ୍ମକତ୍ୱେ ହି ଜୀବସ୍ୟାଭ୍ୟୁପଗମ୍ୟମାନେ ବିକାରସ୍ୟ ପ୍ରକୃତିସମ୍ବନ୍ଧେ ପ୍ରଳୟପ୍ରସଙ୍ଗାନ୍ନ ତଜ୍ଜ୍ଞାନାଦମୃତତ୍ୱମବକଳ୍ପେତ । ଅତଶ୍ଚ ସ୍ୱାଶ୍ରୟସ୍ୟ ନାମରୂପସ୍ୟାସମ୍ଭବାଦୁପାଧ୍ୟା ଶ୍ରୟଂ ନାମରୂପଂ ଜୀବ ଉପଚର୍ଯ୍ୟତେ । ଅତ ଏବୋତ୍ପତ୍ତିରପି ଜୀବସ୍ୟ କ୍ୱଚିଦଗ୍ନି ବିସ୍ଫୁଲିଙ୍ଗୋଦାହରଣେନ ଶ୍ରାବ୍ୟମାଣୋପାଧ୍ୟାଶ୍ରୟୈବ ବେଦିତବ୍ୟ । (ଗ) ଯଦପ୍ୟୁକ୍ତମ୍ପ୍ରକୃତସ୍ୟୈବ ମହତୋ ଭୂତସ୍ୟ ଦ୍ରଷ୍ଟବ୍ୟସ୍ୟ ଭୂତେଭ୍ୟଃ ସମୁତ୍ଥାନମ୍ ବିଜ୍ଞାନାତ୍ମଭାବେନ ଦର୍ଶୟନ୍ ବିଜ୍ଞାନାତ୍ମନ ଏବେଦଂ ଦ୍ରଷ୍ଟବ୍ୟତ୍ୱଂ ଦର୍ଶୟତୀତି, ତତ୍ରାପୀୟମେବ ତ୍ରିସୂତ୍ରୀ ଯୋଜୟିତବ୍ୟା ।

(୩) ଭାଷାଂତର-(କ) ପୁନଶ୍ଚ ଔଡୁଲୋମୀଙ୍କ ମତରେ ସଂସାରଦଶାର ଅପେକ୍ଷା ଭେଦ ଓ ମୋକ୍ଷାବସ୍ଥାର ଅପେକ୍ଷା ଅଭେଦ ସ୍ପଷ୍ଟତଃ ପ୍ରତୀତି ହୁଏ । ସେମାନଙ୍କ ମତରେ- ଆଚାର୍ଯ୍ୟ କାଶକୃତ୍ସ୍ନଙ୍କ ମତ ଶ୍ରୁତି ଅନୁରୂପ ପରି ଜଣାଯାଏ । କାରଣ- 'ତତ୍ତ୍ୱମସି' ଇତ୍ୟାଦି ଶ୍ରୁତି ଦ୍ୱାରା ପ୍ରତିପାଦନର ଅଭୀଷ୍ଟ ଅର୍ଥର ଅନୁସାରେ ହୁଏ । ଶ୍ରୁତି ଅନୁରୂପ ହେଲେ ତାହାର ଜ୍ଞାନ ଦ୍ୱାରା ଅମୃତତ୍ୱ ହୋଇପାରେ ।

(ଖ) ଯଦି ଜୀବକୁ ବ୍ରହ୍ମର ବିକାରତ୍ମକ ବୋଲି ସ୍ୱୀକାର କରାଯାଏ, ତେବେ ପ୍ରକୃତି ସହ ସମ୍ବନ୍ଧ ହେଲେ ବିକାରର ଲୟ ପ୍ରସଙ୍ଗ ଯୋଗୁଁ ତାହାର ଜ୍ଞାନରେ ଅମୃତତ୍ୱ ସମ୍ଭବ ନୁହେଁ । ଅତଃ ସ୍ୱାଶ୍ରୟ ନାମରୂପର ଅସମ୍ଭବ ହେଲେ ଉପାଧି ଆଶ୍ରୟ ନାମ ରୂପର ଜୀବରେ ଉପଚାର ହୁଏ । ଏହାର କାରଣ- କୌଣସିଠାରେ ଅଗ୍ନି ଓ ବିସ୍ଫୁଲିଙ୍ଗର ଉଦାହରଣ ଦ୍ୱାରା ଶୁଣାଯାଉଥିବା ଜୀବର ଉତ୍ପତ୍ତି ମଧ୍ୟ ଉପାଧିର ଆଶ୍ରିତ ବୋଲି ବୁଝିବା ଉଚିତ ।

(ଗ) ଏଠାରେ ଏହା କୁହାଗଲା ଯେ- ପ୍ରକୃତ ଦ୍ରଷ୍ଟବ୍ୟ ମହାନ୍ ସତ୍ୟ ସ୍ୱରୂପର ବିଜ୍ଞାନାତ୍ମରୂପରେ ଭୂତମାନଙ୍କଠାରୁ ସମୁତ୍ଥାନ ଦେଖାଯାଉଥିବା ମୁନି ଯାଜ୍ଞବଲ୍କ୍ୟ ବିଜ୍ଞାନାତ୍ମା ହିଁ ଏହା ଦ୍ରଷ୍ଟବ୍ୟ ଏବଂ ଦେଖାଯାଏ ମଧ୍ୟ । ସେଠାରେ ଏହି ତ୍ରିସୂତ୍ରୀର ଯୋଜନା କରିବା ଉଚିତ ।

(୪) ମୂଳ-(କ) ''ପ୍ରତିଜ୍ଞାସିଦ୍ଧେର୍ଲିଙ୍ଗମାଶ୍ମରଥ୍ୟଃ' (ବ୍ର: ସୂ ୧-୪-୨୦) ଇଦମତ୍ର ପ୍ରତିଜ୍ଞାତମ୍ । 'ଆତ୍ମନି ବିଦିତେ ସର୍ବଂ ବିଦିତଂ ଭବତି, ଇଦଂ ସର୍ବଂ ଯଦୟମାତ୍ମା', (ବୃ ୨-୪-୬) ଇତି ଚ । ଉପପାଦିତଂ ଚ ସର୍ବସ୍ୟ ନାମରୂପକର୍ମ ପ୍ରପଞ୍ଚସ୍ୟୈକ ପ୍ରସବତ୍ୱାଦେକପ୍ରଳୟତ୍ୱାଚ୍ଚ । ଦୁନ୍ଦୁଭ୍ୟାଦିଦୃଷ୍ଟାନ୍ତୈଶ୍ଚ କାର୍ଯ୍ୟକାରଣୟୋରବ୍ୟତିରେକ-ପ୍ରତିପାଦନାତ୍ । ତସ୍ୟା ଏବ ପ୍ରତିଜ୍ଞାୟାଃ ସିଦ୍ଧିଂ ସୂଚୟତ୍ୟେତଲ୍ଲିଂଗଂ ଯନ୍ ମହତୋ ଭୂତସ୍ୟ



ଦ୍ରଷ୍ଟବ୍ୟସ୍ୟ ଭୂତେଭ୍ୟଃ ସମୁତ୍ ଥାନଂ ବିଜ୍ଞାନାତ୍ମଭାବେନ କଥିତ ମିତ୍ୟାଶ୍ମରଥ୍ୟଃ ଆଚାର୍ଯ୍ୟୋ ମନ୍ୟତେ । ଅଭେଦେହି ସତ୍ୟେକବିଜ୍ଞାନେନ ସର୍ବବିଜ୍ଞାନଂ ପ୍ରତିଜ୍ଞାତମବକଳ୍ପତ ଇତି । (ଖ) "ଉତ୍କ୍ରମିଷ୍ୟତ ଏବଂ ଭାବାଦିତ୍ୟୌ ଡୁଲୋମିଃ । (ବ୍ର. ସୂ. ୧-୪-୨୦) ଉତ୍କ୍ରମିଷ୍ୟତୋ ବିଜ୍ଞାନାତ୍ମନୋ ଜ୍ଞାନଧ୍ୟାନାଦିସାମର୍ଥ୍ୟାତ୍ ସଂପ୍ରସନ୍ନସ୍ୟ ପରେଣାତ୍ମନୈକ୍ୟସମ୍ଭ-ବାଦିଦମଭେଦାଭିଧାନ ମିତ୍ୟୌଡୁଲୋମିରାଚାର୍ଯ୍ୟୋ ମନ୍ୟତେ । (ଗ) 'ଅବସ୍ଥିତେରିତି କାଶକୃତ୍ସ୍ନଃ', ଅସ୍ୟୈବ ପରମାତ୍ମନୋଽନେନାପି ବିଜ୍ଞାନାତ୍ମଭାବେନା-ବସ୍ଥାନାଦୁପପନ୍ନମିଦ ମଭେଦାଭିଧାନମିତି କାଶକୃତ୍ସ୍ନ ଆଚାର୍ଯ୍ୟୋ ମନ୍ୟତେ ।

**(୪) ଭାଷାଂତର-** (କ) 'ପ୍ରତିଜ୍ଞାସିଦ୍ଧେ' ଏଠାରେ 'ଆତ୍ମାକୁ ଜାଣିଲେ ସବୁ ଜଣାପଡ଼େ, ଏବଂ 'ଏହିସବୁ ଦୃଶ୍ୟ ପ୍ରପଞ୍ଚ ଆତ୍ମା', ଏହାହିଁ ପ୍ରତିଜ୍ଞା ହେଉଛି । ନାମ, ରୂପ ଓ କର୍ମ ସମଗ୍ର ପ୍ରପଞ୍ଚର ଆତ୍ମରୂପତ୍ୱ ଏବଂ ଦୁନ୍ଦୁଭି ଆଦି ଦୃଷ୍ଟାନ୍ତ ଦ୍ୱାରା କାର୍ଯ୍ୟ ଓ କାରଣର ଅଭେଦ ପ୍ରତିପାଦିତ ହୁଏ । ଯେଉଁ ମହାନ୍ ସତ୍ୟଭୂତ ଦ୍ରଷ୍ଟବ୍ୟ ବ୍ରହ୍ମର ଭୂତମାନଙ୍କଠାରୁ ବିଜ୍ଞାନାତ୍ମରୂପରେ ସମୁତ୍ଥାନ କୁହାଯାଇଛି । ସେ ଲିଙ୍ଗ ଏହି ପ୍ରତିଜ୍ଞାର ସିଦ୍ଧିକୁ ସୂଚିତ କରେ- ଏହାହିଁ ଆଶ୍ମ ରଥ୍ୟ ଆଚାର୍ଯ୍ୟଙ୍କର ମତ । କାରଣ-ଏହା ଅଭେଦ ହେଲେ ପ୍ରତିଜ୍ଞାତ ଏକ ବିଜ୍ଞାନରୁ ସର୍ବବିଜ୍ଞାନ ଉପପନ୍ନ ହୁଏ ।

(ଖ) 'ଉତ୍କ୍ରମିଷ୍ୟତଃ ଉତ୍କ୍ରମଣ କରୁଥିବା ଜ୍ଞାନ ଧ୍ୟାନାଦିର ସାମର୍ଥ୍ୟରୁ ସମ୍ୟକ୍ ପ୍ରସନ୍ନ ହେଉଥିବା ବିଜ୍ଞାନାତ୍ମାର ପରମାତ୍ମା ସହିତ ଐକ୍ୟ ସମ୍ଭବ ହେଲେ ଏହି ଅଭେଦ କଥନ ଠିକ୍ ହୁଏ- ଏହା ଔଡୁଲୋମୀ ଆଚାର୍ଯ୍ୟ ସ୍ୱୀକାର କରନ୍ତି । 'ଅବସ୍ଥିତେରିତି', ଏହି ପରମାତ୍ମାର ବିଜ୍ଞାନାତ୍ମରୂପରେ ଅବସ୍ଥିତ ହେଲେ ଏହି ଅଭେଦର ଅଭିଧାନ ଉପପନ୍ନ ହୁଏ- ଏହା କାଶକୃତ୍ସ୍ନ ଆଚାର୍ଯ୍ୟ ସ୍ୱୀକାର କରିଛନ୍ତି ।

(୫) ମୂଳ-(କ) ନନୂଚ୍ଛେଦାଭିଧାନମେତତ୍ 'ଏତେଭ୍ୟୋ ଭୂତେଭ୍ୟଃ ସମୁତ୍ଥାୟ ତାନ୍ୟେବାନୁବିଶ୍ୟତି ନ ପ୍ରେତ୍ୟ ସଂଜ୍ଞାସ୍ତି', (ବୃ ୨-୪-୧୨) ଇତି, କଥମେତଦଭେଦାଭିଧାନମ୍ ? (ଖ) ନୈଷୋ ଦୋଷଃ, ବିଶେଷବିଜ୍ଞାନ ବିନାଶାଭି ପ୍ରାୟମେତଦ୍ ବିନାଶାଭିଧାନମ୍, ନାତ୍ମୋଚ୍ଛେଦାଭିପ୍ରାୟମ୍ । 'ଅତ୍ରୈବ ମା ଭଗବାନମୂମୁହନ୍ନ ପ୍ରେତ୍ୟ ସଂଜ୍ଞାସ୍ତି', ଇତି ପର୍ଯ୍ୟନୁଯୁଜ୍ୟ ସ୍ୱୟମେବ ଶ୍ରୁତ୍ୟାଽର୍ଥାନ୍ତରସ୍ୟ ଦର୍ଶିତତ୍ୱାତ୍- 'ନ ବାଽରେଽହଂ ମୋହଂ ବ୍ରବୀମ୍ୟବିନାଶୀ ବାଽଅରେଽୟମାତ୍ମାନୁଚ୍ଛିତ୍ତିଧର୍ମା ମାତ୍ରାସଂସର୍ଗସ୍ତ୍ୱସ୍ୟ ଭବତି', ଇତି । (ଗ) ଏତଦୁକ୍ତଂ ଭବତି- କୂଟସ୍ଥନିତ୍ୟ ଏବାୟଂ ବିଜ୍ଞାନ ଘନ ଆତ୍ମା

ନାସ୍ୟୋଚ୍ଛେଦ ପ୍ରସଙ୍ଗୋଽସ୍ତି । ମାତ୍ରାଭିସ୍ତ୍ୱସ୍ୟ ଭୂତେନ୍ଦ୍ରିୟଲକ୍ଷଣାଭିବିଦ୍ୟାକୃତାଭିରସଂସର୍ଗୋ ବିଦ୍ୟାୟା ଭବତି । ସଂସାର୍ଗାଭାବେ ଚ ତତ୍କୃତସ୍ୟ ବିଶେଷବିଜ୍ଞାନସ୍ୟାଭାବାନ୍ନ ପ୍ରେତ୍ୟ ସଂଜ୍ଞାସ୍ତୀତ୍ୟୁମୁକ୍ତ-ମିତି । (ଘ) ଯଦପ୍ୟୁକ୍ତମ୍- ''ବିଜ୍ଞାତାରମରେ କେନ ବିଜାନୀୟାତ୍', ଇତି କର୍ତ୍ତୃବଚନେନ ଶବ୍ଦେନୋପସଂହାରାଦ୍ ବିଜ୍ଞାନାତ୍ମନ ଏବେଦଂ ଦ୍ରଷ୍ଟବ୍ୟମିତି ତଦପି କାଶକୃସ୍ନୀୟେନୈବ ଦର୍ଶନେନ ପରିହରଣୀୟମ୍ ।

**(୫) ଭାଷାଂତର**-(କ) ପରନ୍ତୁ 'ଏହି ପ୍ରକୃତ ଦ୍ରଷ୍ଟବ୍ୟ ଆତ୍ମାମଧ ପାଞ୍ଚଭୂତ ରୂପ ଉପାଧି ଦ୍ୱାରା ଜୀବଭାବକୁ ପାଇ ବିଦ୍ୟାଦ୍ୱାରା ଉପାଧିର ନିବୃତ୍ତି ପରେ ନାଶକୁ ପ୍ରାପ୍ତ ହୁଏ । ଦେହେନ୍ଦ୍ରିୟ ଭାବରେ ମୁକ୍ତ ହେଲାପରେ ଏହାର କୌଣସି ବିଶେଷ ସଂଜ୍ଞା ରହେ ନାହିଁ । ଏହିପ୍ରକାର ଏହି ଉଚ୍ଛେଦର ଅଭିଧାନ କରାଯାଇଛି । ଏହି ଅଭେଦର ଅଭିଧାନ କିପରି ହୁଏ ?

(ଖ) ଏହା ଦୋଷ ନୁହେଁ, କାରଣ-ଏହି ବିନାଶର ଅଭିଧାନ ବିଶେଷବିଜ୍ଞାନର ବିନାଶକ ଅଭିପ୍ରାୟରେ ହୁଏ । ଆତ୍ମୋଚ୍ଛେଦର ଅଭିପ୍ରାୟ ନୁହେଁ । କାରଣ-ହେ ଭଗବାନ୍ ! ଶରୀରପାତର ପରେ ପରେ କୌଣସି ବିଶେଷ ସଂଜ୍ଞା ରହେ ନାହିଁ, ଏହା କହି ନିଜେ ମୋତେ ମୋହରେ ପକାଇଦେଲା', ଏହିପ୍ରକାର ପର୍ଯ୍ୟନୁଯୋଗ (ଶଙ୍କା) କରି ଶ୍ରୁତି ଦ୍ୱାରା ସ୍ୱୟଂ ହିଁ ଅନ୍ୟ ଅର୍ଥକୁ ଦେଖାଏ । 'ଯାଜ୍ଞବଲ୍କ୍ୟ-ଆରେ ମୈତ୍ରେୟୀ ! ମୁଁ ମୋହ ବିଷୟରେ ଉପଦେଶ ଦେଉନାହିଁ, ନାଶହେତୁ ରହିତ ହେଲେ ଏହି ଆତ୍ମା ଅବିନାଶୀ ହୁଏ । ଦେହ, ଇନ୍ଦ୍ରିୟାଦି ସହ ଏହାର ସଂସର୍ଗ ନାହିଁ ।

(ଗ) ତାତ୍ପର୍ଯ୍ୟ ଏହା ଯେ- ଏହି ଆତ୍ମା କୂଟସ୍ଥ, ନିତ୍ୟ, ବିଜ୍ଞାନୈକରସ ଅଟେ । ଏହାର ଉଚ୍ଛେଦ ପ୍ରସଙ୍ଗ ନାହିଁ । ଅବିଦ୍ୟାକୃତ ଭୂତେନ୍ଦ୍ରିୟାତ୍ମକ ମାତ୍ରା ଗୁଡ଼ିକର ସହ ଏହାର ସଂସର୍ଗାଭାବ ବିଦ୍ୟାଦ୍ୱାରା ହୁଏ । ସଂସର୍ଗାଭାବ ହେଲେ ସଂସର୍ଗକୃତ ବିଶେଷ, ବିଜ୍ଞାନର ଅଭାବ ହେଲେ 'ନ ପ୍ରେତ୍ୟ ସଂଜ୍ଞାସ୍ତି ବୋଲି କୁହାଯାଏ ।

(ଘ) 'ହେ ମୈତ୍ରେୟୀ ! ବିଜ୍ଞାତାକୁ କିପରି ଜାଣିବା', ଏହିପ୍ରକାର କର୍ତ୍ତୃବାଚକ ଶବ୍ଦଦ୍ୱାରା ଉପସଂହାର ହେଲେ ବିଜ୍ଞାନାତ୍ମାର ଏହି ଦ୍ରଷ୍ଟବ୍ୟ ରୂପ ଉପଦେଶ ହୁଏ । ଏହାହିଁ କୁହାଯାଇଛି । ତାହାର ମଧ୍ୟ କାଶକୃସ୍ନର ଦର୍ଶନ ଦ୍ୱାରା ପରିହାର କରିବା ଉଚିତ ।

(୬) ମୂଳ-(କ) ଅପି ଚ ''ଯତ୍ର ହି ଦ୍ୱୈତମିବ ଭବତି ତଦିତର ଇତରଂ ପଶ୍ୟତି', (ବୃ ୨-୪-୧୩) ଇତ୍ୟାରଭ୍ୟାବିଦ୍ୟାବିଷୟେ ତସ୍ୟୈବ ଦର୍ଶନାଦିଲକ୍ଷଣଂ ବିଶେଷବିଜ୍ଞାନଂ



ପ୍ରପଞ୍ଚ୍ୟ 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍କେନ କଂ ପଶ୍ୟେତ୍', ଇତ୍ୟାଦି ବିଷ୍ୟା ବିଷୟେ ତସ୍ୟୈବ ଦର୍ଶନାଦିଲକ୍ଷଣସ୍ୟ ବିଶେଷବିଜ୍ଞାନସ୍ୟାମ-ଭାବମଭିଦଧାତି । (ଖ) ପୁନଶ୍ଚ ବିଷୟାଭାବେଽପି ଆତ୍ମାନଂ ବିଦାନୀୟାତ୍, ଇତ୍ୟାଶଙ୍କ୍ୟ 'ବିଜ୍ଞାତାମରେ କେନ ବିଜାନୀୟାତ୍', ଇତ୍ୟାହ । (ଗ) ତତଶ୍ଚ ବିଶେଷବିଜ୍ଞାନାଭାବୋପପାଦାନପରତ୍ୱାଦ୍‌ବାକ୍ୟସ୍ୟ ବିଜ୍ଞାନଧାତୁରେବ କେବଲଃ ସନ୍‌ଭୂତ ପୂର୍ବଗତ୍ୟା କର୍ତ୍ତୃବଚନେନ ତୃଚ୍ଚ ନିର୍ଦ୍ଦିଷ୍ଟ ଇତି ଗମ୍ୟତେ । (ଘ) ଦର୍ଶିତନ୍ତୁ ପୁରସ୍ତାତ୍ କାଶକୃସ୍ନୀୟସ୍ୟ ପକ୍ଷସ୍ୟ ଶ୍ରୁତିମତ୍ତ୍ୱମ୍ । ଅତଶ୍ଚ ବିଜ୍ଞାନାତ୍ମପରମାତ୍ମନୋର-ବିଦ୍ୟାପ୍ରତ୍ୟୁପସ୍ଥାପିତନାମରୂପରଚିତ ଦେହାଦ୍ୟୁପାଧିନିମିତ୍ତୋ ଭୋଦୋ ନ ପାରମାର୍ଥିକ ଇତ୍ୟେଷୋଽର୍ଥଃ ଇତ୍ୟେଷୋଽର୍ଥଃ ସର୍ବୈର୍ବେଦାନ୍ତବାଦିଭିରଭ୍ୟୁପଗନ୍ତବ୍ୟଃ ।

(୬) ଭାଷାଂତର-(କ) ପୁଣି 'ପରନ୍ତୁ ଏଠାରେ ଅବିଦ୍ୟାବସ୍ଥାରେ ଦ୍ୱୈତ ହୁଏ । ସେଠାରେ ଅନ୍ୟ ଅନ୍ୟକୁ ଦେଖେ । ଏହା ଆରମ୍ଭ କରି ଅବିଦ୍ୟା ବିଷୟରେ ତାହାର ଦର୍ଶନାଦି ରୂପ ବିଶେଷ ବିଜ୍ଞାନର ପ୍ରପଞ୍ଚକରି 'କିନ୍ତୁ ଏଠାରେ ବିଦ୍ୟାବସ୍ଥାରେ ଏହାପାଇଁ ସବୁ ଆତ୍ମା ହୋଇଗଲା, ସେଠାରେ କିଏ କାହାକୁ ଦେଖିଲା ? ଇତ୍ୟାଦି ଦ୍ୱାରା ଏହାପାଇଁ ସବୁ ଆତ୍ମା ହୋଇଗଲା, ସେଠାରେ କିଏ କାହାକୁ ଦେଖିଲା ? ଇତ୍ୟାଦି ଦ୍ୱାରା ବିଦ୍ୟା ବିଷୟରେ ତାହାର ଦର୍ଶନାଦି ରୂପାତ୍ମକ ବିଶେଷବିଜ୍ଞାନର ଅଭାବ କୁହାଯାଏ ।

(ଖ) ବିଷୟର ଅଭାବରେ ମଧ୍ୟ ଆତ୍ମାକୁ ବିଶେଷ ରୂପରେ ଜାଣିବା ଉଚିତ । ଏହାହିଁ ଆଶଙ୍କା କରି 'ବିଜ୍ଞାତାର ମରେ' ବୋଲି କୁହାଯାଇଛି ।

(ଗ) ଏହି ବାକ୍ୟ ବିଶେଷ ବିଜ୍ଞାତାର ଅଭାବର ପ୍ରତିପାଦନ କରେ । ତେଣୁ ଏହା କୁହାଯାଇଛି ଯେ- କେବଳ ବିଜ୍ଞାନୈକରସ ଭୂତପୂର୍ବଗତି ଅବିଦ୍ୟା ଦଶାରୁ କର୍ତ୍ତୃବାଚକ 'ତୃଚ୍' ପ୍ରତ୍ୟୟ ଦ୍ୱାରା ନିର୍ଦ୍ଦିଷ୍ଟ ଅଟେ ।

(ଘ) ଏହା ପ୍ରଥମେ ଦେଖାଗଲା ଯେ- କାଶକୃସ୍ନର ସିଦ୍ଧାନ୍ତ ଶ୍ରୁତି ଅନୁରୂପ ଅଟେ । ତେଣୁ ବିଜ୍ଞାନାତ୍ମା ଓ ପରମାତ୍ମାର ଭେଦ ଅବିଦ୍ୟାଦ୍ୱାରା ଉପସ୍ଥାପିତ ନାମ-ରୂପରେ ରଚିତ କଳ୍ପିତ ଦେହାଦି ଉପାଧିଦ୍ୱାରା ହୁଏ । ପାରମାର୍ଥିକ ନୁହେଁ । ଏହି ଅର୍ଥହିଁ ସବୁ ବେଦାନ୍ତ ବାଦୀମାନେ ସ୍ୱୀକାର କରନ୍ତି ।

(୭) ମୂଳ-(କ) 'ସଦେବ ସୋମ୍ୟେଦମଗ୍ର ଆସୀଦେକମେବା-ମେବାଦ୍ୱିତୀୟମ୍', (ଛା ୬-୨-୧), ''ଆତ୍ମୈବେଦଂ ସର୍ବମ୍', (ଛା ୭-୨୫-୨), 'ବ୍ରହ୍ମୈବେଦଂ ସର୍ବମ୍', (ମୁଣ୍ଡ ୨-୨-୧୧), 'ଇଦଂ ସର୍ବଂ ଯଦୟମାତ୍ମା', (ବୃ ୨-୪-୬) 'ନାନ୍ୟୋଽତୋଽସ୍ତି

ଦ୍ରଷ୍ଟା', (ବୃ ୩-୭-୨୩), 'ନାନ୍ୟଦତୋଽସ୍ତିଦ୍ରଷ୍ଟୃ', (ବୃ ୬-୮-୧୧), ଇତ୍ୟେବଂ ରୂପାଭ୍ୟଃ ଶ୍ରୁତିଭ୍ୟଃ । (ଖ) ସ୍ମୃତିଭ୍ୟଶ୍ଚ 'ବାସୁଦେବଂ ସର୍ବମିତି', (ଗୀ.୭-୧୯), 'କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ', (ଗୀ ୧୩-୨), 'ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରମ୍', (ଗୀ ୧୩-୧୭) ଇତ୍ୟେବଂ ରୂପାଭ୍ୟଃ ଭେଦଦର୍ଶନା ପବାଦାଚ୍ଚ । (ଗ) ଅନ୍ୟୋଽସାବନ୍ୟୋଽହମସ୍ମୀତି ନ ସ ବେଦ ଯଥା ପଶୁ', (ବୃ ୧-୪-୧୦), 'ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି', (ବୃ ୪-୪-୧୯) ଇତ୍ୟେବଂ ଜାତୀୟକାତ୍ । 'ସ ବା ଏଷ ମହାନଜ ଆତ୍ମାଽଜରୋଽମରୋଽମୃତୋଽଭୟୋ ବ୍ରହ୍ମ', (ବୃ ୪।୪।୨୫) ଇତି । (ଘ) ଚାତ୍ମନି ସର୍ବବିକ୍ରିୟା ପ୍ରତିଷେଧାତ୍' ଅନ୍ୟଥା ଚ ମୁମୁକ୍ଷୂଣାଂ ନିରପଦବିଜ୍ଞାନାନୁପପତ୍ତେଃ ସୁନିଶ୍ଚିତାର୍ଥତ୍ୱାନୁପପତ୍ତେଶ୍ଚ । ନିରପବାଦଂ ହି ବିଜ୍ଞାନଂ ସର୍ବାକାଙ୍କ୍ଷାନିବର୍ତ୍ତକମାତ୍ମବିଷୟମିଷ୍ୟତେ, 'ବେଦାନ୍ତବିଜ୍ଞାନ ସୁନିଶ୍ଚିତାର୍ଥାଃ', (ମୁଣ୍ଡ ୩-୨-୬) ଇତି ଚ ଶ୍ରୁତେଃ । (ଙ) ତତ୍ର କୋ ମୋହଃ କଃ ଶୋକ 'ଏକତ୍ୱମନୁପଶ୍ୟତଃ', (ଈଶା-୭) ଇତି ଚ । 'ସ୍ଥିତପ୍ରଜ୍ଞଲକ୍ଷଣସ୍ମୃତେଶ୍ଚ', (ଗୀ ୨-୫୪) ସ୍ଥିତେ ଚ କ୍ଷେତ୍ରଜ୍ଞ ପରମାତ୍ମୈକତ୍ୱବିଷୟେ ସମ୍ୟଗ୍‌ଦର୍ଶନେ କ୍ଷେତ୍ରଜ୍ଞଃ ପରମାତ୍ମେତି ନାମମାତ୍ରଭେଦାତ୍ । (ଚ) କ୍ଷେତ୍ରଜ୍ଞୋଽୟଂ ପରମାତ୍ମାନୋ ଭିନ୍ନଃ, ପରମାତ୍ମାଽୟଂ କ୍ଷେତ୍ରଜ୍ଞାଦ୍‌ଭିନ୍ନଃ ଇତ୍ୟେବଂ ଜାତୀୟକ ଆତ୍ମଭେଦବିଷୟୋ ନିର୍ବନ୍ଧୋ ନିରର୍ଥକଃ । ଏକ୍ୟେ ହ୍ୟୟମାତ୍ମା ନାମମାତ୍ରଭେଦେନ ବହୁଧାଭିଧୀୟତେ ଇତି ।

**(୭) ଭାଷାଂତର-** (କ) ହେ ସୌମ୍ୟ, ଆରମ୍ଭରେ ଏହି ଏକମାତ୍ର ଅଦ୍ୱିତୀୟ ସତ୍ ଥିଲା', । ଆତ୍ମା କେବଳ ଏହି ସବୁ ଅଟେ', । 'ବ୍ରହ୍ମ ହିଁ ସବୁ', 'ଏହି ସବୁ ଆତ୍ମା', 'ଏହାଦ୍ୱାରା ଅନ୍ୟ କେହି ଦ୍ରଷ୍ଟା ନୁହେଁ', । ଏହାଠାରୁ ଅନ୍ୟଦ୍ରଷ୍ଟା ନାହିଁ । ଏହିପ୍ରକାର ଶ୍ରୁତିଗୁଡ଼ିକ ।

(ଖ) 'ସବୁ ହିଁ ବାସୁଦେବ', ହେ ଭାରତ ! ସବୁ କ୍ଷେତ୍ରରେ କ୍ଷେତ୍ରଜ୍ଞ ବୋଲି ମୋତେ ଜାଣ', 'ସମ୍ପୂର୍ଣ୍ଣ ଭୂତରେ ସମଭାବରେ ରହିଥିବା ପରମେଶ୍ୱରଙ୍କୁ ଦେଖେ', ଏହିପ୍ରକାର ସ୍ମୃତିଗୁଡ଼ିକ ।

(ଗ) 'ଏହା ଅନ୍ୟ ଅଟେ', ମୁଁ ଅନ୍ୟ 'ଅଟେ ଯିଏ ଏହି ପ୍ରକାର ଉପାସନା କରେ, ସେ ପଶୁ ସଦୃଶ, ତତ୍ତ୍ୱକୁ ଜାଣେ ନାହିଁ' । 'ଯିଏ ଅଦ୍ୱିତୀୟ ଆତ୍ମାର ଅନେକ ରୂପରେ ଦେଖେ, ସେ ମୃତ୍ୟୁ ଦ୍ୱାରା ମୃତ୍ୟୁକୁ ପାଏ' । ଏହିପ୍ରକାର ଶ୍ରୁତି ଦ୍ୱାରା ଭେଦ ଦର୍ଶନର ଅପବାଦ ହୁଏ ।



କାରଣ-ସେ ଏହି ମହାନ୍ ଅଜନ୍ମା, ଆତ୍ମା ଅଜ, ଅମର, ଅମୃତ ଓ ଅଭୟ ବ୍ରହ୍ମ ଅଟେ', । ଏହି ପ୍ରକାର ଆତ୍ମାରେ ସମସ୍ତ ପ୍ରକ୍ରିୟା ଗୁଡ଼ିକର ପ୍ରତିଷେଧ ହୁଏ ।

(ଘ) ନୋଚେତ୍ ମୁମୁକ୍ଷୁର ଅପବାଦ (ବାଧ) ରହିତ ଜ୍ଞାନର ଅନୁପପତ୍ତି ହେବ । ସୁନିଶ୍ଚିତାର୍ଥତ୍ୱତତ୍ତ୍ୱ ନିଶ୍ଚୟର ମଧ ଅନୁପପତ୍ତି ହେବ । କାରଣ-ସବୁ ଆକାଙ୍କ୍ଷାର ନିବର୍ତ୍ତକ ଅପବାଦ ରହିତ ଆତ୍ମବିଷୟକ ବିଜ୍ଞାନ ଇଷ୍ଟ ଅଟେ । କାରଣ- 'ଯାହାଦ୍ୱାରା ବେଦାନ୍ତ ବିଜ୍ଞାନରୁ ଜ୍ଞେୟ ଅର୍ଥର ଉତ୍ତମ ପ୍ରକାର ନିଶ୍ଚୟ କରିନିଏ ।

(ଙ) ଏହି ସମୟରେ ଏକତ୍ୱ ଦେଖୁଥିବା ସେହି ବିଦ୍ୱାନକୁ କ'ଣ ମୋହ ଓ କ'ଣ ଶୋକ' ଏହି ହିଁ ବେଦ ବାକ୍ୟ ଗୁଡ଼ିକ ଅଛନ୍ତି ଓ ଏତାଦୃଶ ସ୍ଥିତ ପ୍ରଜ୍ଞ ଲକ୍ଷଣ କହୁଥିବା ସ୍ମୃତି । ଏହିପ୍ରକାର କ୍ଷେତ୍ରଜ୍ଞ ଓ ପରମାତ୍ମାର ଏକତ୍ୱ ବିଷୟକ ସମ୍ୟଗ୍‌ଜ୍ଞାନ ନିଶ୍ଚିତ ହେଲାପରେ କ୍ଷେତ୍ରଜ୍ଞ ପରମାତ୍ମା । ଏହିପ୍ରକାର ନାମମାତ୍ରର ଭେଦହେଲେ ଏହି କ୍ଷେତ୍ରଜ୍ଞ ପରମାତ୍ମାଠାରୁ ଭିନ୍ନ ହୁଏ ।

(ଚ) ଏହି ଏକ ଆତ୍ମା ନାମମାତ୍ରର ଭେଦରେ ବହୁତ ପ୍ରକାରରେ କୁହାଯାଏ ।

(୮) ମୂଳ-(କ) ନହି 'ସତ୍ୟଂଜ୍ଞାନମନନ୍ତଂ ବ୍ରହ୍ମ', 'ଯୋ ବେଦ ନିହିତଂ ଗୁହାୟାମ୍' (ତୈ ୨-୬) ଇତି କାଞ୍ଚଦେବୈକାଂ ଗୁହାମଧିକୃତ୍ୟୋତଦୁକ୍ତମ୍ । ନ ଚ ବ୍ରହ୍ମଣୋଽନ୍ୟୋ ଗୁହାୟାଂ ନିହିତୋଽସ୍ତି । 'ତତ୍ସୃଷ୍ଟ୍ୱା ତଦେବାନୁପ୍ରାବିଶତ୍', (ତୈ ୨-୬) ଇତି ସ୍ରଷ୍ଟୁରେବ ପ୍ରବେଶଶ୍ରବଣାତ୍ । (ଖ) ଯେ ତୁ ନିର୍ବନ୍ଧଂ କୁର୍ବନ୍ତି ତେ ବେଦାନ୍ତାର୍ଥଂ ବାଧମାନାଃ ଶ୍ରେୟୋ ଦ୍ୱାରଂ ସମ୍ୟଗ୍‌ଦର୍ଶନମେବ ବାଧନ୍ତେ, କୃତକମନିତ୍ୟଞ୍ଚ ମୋକ୍ଷଂ କଳ୍ପୟନ୍ତି । ନ୍ୟାୟେନ ଚ ନ ସଙ୍ଗଚ୍ଛନ୍ତ ଇତି ।

(୮) ଭାଷାଂତର-(କ) 'ବ୍ରହ୍ମସତ୍ୟ ଜ୍ଞାନ ଓ ଅନନ୍ତ' ଯେଉଁ ପୁରୁଷ ତାହାକୁ ବୁଦ୍ଧିରୂପ ପରମାକଶରେ ନିହିତ ବୋଲି ଜାଣେ', ଏହି କଥନ କୌଣସି ଏକ ଗୁହାର ଉଦ୍ଦେଶ୍ୟରେ କୁହାଯାଇ ନାହିଁ । (କିନ୍ତୁ ସମଷ୍ଟି ବୁଦ୍ଧିରୂପ ଗୁହାର ଉଦ୍ଦେଶ୍ୟରେ କୁହାଯାଇଛି' । ବ୍ରହ୍ମଭିନ୍ନ ଅନ୍ୟକିଛି ଗୁହାରେ ନାହିଁ । କାରଣ- 'ଏହା ରଚନା କରି ସେ ଏଥିରେ ଅନୁପ୍ରବିଷ୍ଟ ହେଲା' । ଏହିପ୍ରକାର ସ୍ରଷ୍ଟାର ଅନୁପ୍ରବେଶର ଶ୍ରୁତି ଅଛି ।

(ଖ) ପରନ୍ତୁ ଯେଉଁ ଆଚାର୍ଯ୍ୟ ଭେଦାଦିକୁ ଆଗ୍ରହ କରନ୍ତି । 'ସେମାନେ ବେଦାନ୍ତାର୍ଥ (ଅତ୍ୟନ୍ତ ଦୁଃଖ ନିବୃତ୍ତି)ର ବାଧକରି ଶ୍ରେୟ ଦ୍ୱାର ସମ୍ୟଗ୍‌ଜ୍ଞାନର ମଧ ବାଧ କରନ୍ତି । କାର୍ଯ୍ୟ ଓ ଅନିତ୍ୟମୋକ୍ଷର କଳ୍ପନା କରନ୍ତି କିନ୍ତୁ ନ୍ୟାୟର ଅନୁସରଣ କରନ୍ତି ନାହିଁ ।

## ७ प्रकृत्यधिकरणम् । सू० २३ - २७

## ପ୍ରକୃତ୍ୟଧିକରଣ-୭

### प्रकृतिश्च प्रतिज्ञादृष्टान्तानुपरोधात् ॥ २३ ॥

### (୧) ପ୍ରକୃତିଶ୍ଚ ପ୍ରତିଜ୍ଞାଦୃଷ୍ଟାନ୍ତାନୁପରୋଧାତ୍ ॥ ୧।୪।୨୩

ପ୍ରକୃତିଶ୍ଚ-ବ୍ରହ୍ମ ଉପାଦାନ କାରଣ ଓ ନିମିତ୍ତକାରଣ ଅଟେ । ପ୍ରତିଜ୍ଞାଦୃଷ୍ଟାନ୍ତାନୁ-ରୋଧାତ୍-କାରଣ- 'ଯେନାଶ୍ରୁତଂ ଶ୍ରୁତଂ ଭବତି', ଏହିପ୍ରକାର ଗୋଟିଏ ବିଜ୍ଞାନରୁ ସମସ୍ତ ବିଜ୍ଞାନର ପ୍ରତିଷ୍ଠା ଓ ଯଥା 'ସୌମ୍ୟୈକେନ ମୃତ୍ପିଣ୍ଡେନ' ଏହିପ୍ରକାର ଦୃଷ୍ଟାନ୍ତର ସାମଞ୍ଜସ୍ୟ ଅଛି ।

(୨) ମୂଳ-(କ) ଯଥାଭ୍ୟୁଦୟହେତୁତ୍ୱାଦ୍ ଧର୍ମୋ ଜିଜ୍ଞାସ୍ୟଃ, ଏବଂ ନିଃଶ୍ରେୟସହେତୁତ୍ୱାଦ୍ ବ୍ରହ୍ମ ଜିଜ୍ଞାସ୍ୟମିତ୍ୟୁକ୍ତମ୍ । ବ୍ରହ୍ମଂ ଚ 'ଜନ୍ମାଦ୍ୟସ୍ୟ ଯତଃ' (ବ୍ର. ସୂ ୧-୧-୨) ଇତି ଲକ୍ଷିତାମ୍ ତଚ୍ଚଲକ୍ଷଣଂ ଘଟରୁଚକାଦୀନାଂ ମୃତ୍ସୁବର୍ଣ୍ଣାଦିବତ୍ । ପ୍ରକୃତିତ୍ୱେ କୁଲାଲସୁବର୍ଣ୍ଣକାରାଦିବନ୍ନିମିତ୍ତତ୍ୱେ ଚ ସମାନମିତ୍ୟତୋ ଭବତି ବିମର୍ଶଃ-କିମାତ୍ମକଂ ପୁନର୍ବ୍ରହ୍ମଣଃ କାରଣତ୍ୱଂ ସ୍ୟାଦିତି । ତତ୍ର ନିମିତ୍ତକାରଣମେବ ତାବତ୍କେବଲଂ ସ୍ୟାଦିତି ପ୍ରତିଭାତି । କସ୍ମାତ୍ ? (ଖ) ଈକ୍ଷାପୂର୍ବକକର୍ତ୍ତୃତ୍ୱଶ୍ରବଣାତ୍ । ଈକ୍ଷାପୂର୍ବକଂ ହି ବ୍ରହ୍ମଣଃ କର୍ତ୍ତୃତ୍ୱମବଗମ୍ୟତେ- 'ସ ଈକ୍ଷାଂଚକ୍ରେ', (ପ୍ର. ୬-୩), 'ସ ପ୍ରାଣମସଜତ', (ପ୍ର: ୬-୪) ଇତ୍ୟାଦିଶ୍ରୁତିଭ୍ୟଃ । (ଗ) ଈକ୍ଷାପୂର୍ବକଂ ଚ କର୍ତ୍ତୃତ୍ୱଂ ନିମିତ୍ତକାରଣଷ୍ୱେବ କୁଲାଲାଦିଷୁଦୃଷ୍ଟମ୍ । ଅନେକକାରଣପୂର୍ବିକା ଚକ୍ରିୟାଫଳ ସିଦ୍ଧିର୍ଲୋକେ ଦୃଷ୍ଟା । ସ ଚ ନ୍ୟାୟ ଆଦି କର୍ତ୍ତର୍ଯ୍ୟପି ଯୁକ୍ତଃ ସଂକ୍ରମୟିତୁମ୍', (ଘ) 'ଈଶ୍ୱରତ୍ୱପ୍ରସିଦ୍ଧେଶ୍ଚ'- ଈଶ୍ୱରାଣାଂହି ରାଜବୈବସ୍ୱତାଦୀନାଂ ନିମିତ୍ତକାରଣତ୍ୱମେବ ଯୁକ୍ତଂ ପ୍ରତିପତ୍ତୁମ୍ । କାର୍ଯ୍ୟଂ ଚେଦଂ ଜଗତ୍ସାବୟବଚେତନମଶୁଦ୍ଧଂ ଚ ଦୃଶ୍ୟତେ, କାରଣେନାପି ତସ୍ୟ ତାଦୃଶେନୈବ ଭବିତବ୍ୟମ୍, କାର୍ଯ୍ୟକାରଣୟୋ ସାରୂପ୍ୟଦର୍ଶନାତ୍ । (ଙ) ବ୍ରହ୍ମଂ ଚ ନୈବ ଲକ୍ଷଣମବଗମ୍ୟତେ 'ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍', (ଶ୍ୱେ ୬-୧୯) ଇତ୍ୟାଦିଶ୍ରୁତିଭ୍ୟ । ପାରିଶେଷ୍ୟାଦ୍ ବ୍ରହ୍ମଣୋଽନ୍ୟଦୁପାଦାନକାରଣସ୍ତଶୁଦ୍ଧ୍ୟାଦିକଗୁଣଙ୍କ ସ୍ମୃତିପ୍ରସିଦ୍ଧସକ୍ୟୁପଗନ୍ତବ୍ୟମ୍ । ବ୍ରହ୍ମକାରଣତ୍ୱଶ୍ରୁତେ-ର୍ନିମିତ୍ତତ୍ୱମାତ୍ରେ ପର୍ଯ୍ୟବସାନାଦିତି ।



(୨) ଭାଷାଂତର-(କ) ଯେପରି ଅଭ୍ୟୁଦୟର ହେତୁ ହେଲେ ଧର୍ମହିଁ ଜିଜ୍ଞାସ୍ୟ ହୁଏ । ସେହିପରି ମୋକ୍ଷର କାରଣ ହେଲେ ବ୍ରହ୍ମଜିଜ୍ଞାସ୍ୟ ହୁଏ ବୋଲି କୁହାଯାଇଛି । 'ଜନ୍ମାଦ୍ୟସ୍ୟ ଯତଃ' ଏହି ସୂତ୍ରରେ ବ୍ରହ୍ମର ଲକ୍ଷଣ କୁହାଯାଇଛି । ଏହି ଲକ୍ଷଣରୁ ବ୍ରହ୍ମଘଟ, ଆଭୂଷଣାଦିର ପ୍ରତି ମୃତ ଓ ସୁବର୍ଣ୍ଣାଦିର ସଦୃଶ ଉପାଦାନକାରଣ ଓ କୁମ୍ଭାର ବଣିଆ ଭଳି ନିମିତ୍ତ କାରଣ ହୁଏ । ଏହି ହିଁ ସାଦୃଶ୍ୟ । କିନ୍ତୁ ଏଠାରେ ସନ୍ଦେହ ହୁଏ ଯେ- ଏହା କିପରି ସମ୍ଭବ ?

(ଖ) ପୂର୍ବପକ୍ଷ-ଦୁଇଟି କାରଣରେ ବ୍ରହ୍ମ କେବଳ ନିମିତ୍ତକାରଣ ବୋଲି କୁହାଯାଇଛି । କିପରି ? ଏଠାରେ ଈକ୍ଷଣପୂର୍ବକ କର୍ତ୍ତୃତ୍ୱର ଶ୍ରବଣ ହୁଏ । 'ସେ ଦେଖିଲା', 'ସେ ପ୍ରାଣକୁ ସୃଷ୍ଟିକଲା', ଇତ୍ୟାଦି ଶ୍ରୁତିଦ୍ୱାରା ପ୍ରତୀତି ହୁଏ ଯେ-

(ଗ) ବ୍ରହ୍ମ ଈକ୍ଷଣ ପୂର୍ବକ କର୍ତ୍ତା, ଈକ୍ଷାପୂର୍ବକ କର୍ତ୍ତୃତ୍ୱ କୁମ୍ଭାରାଦିନିମିତ୍ତ କାରଣରେ ଦେଖାଯାଏ । ଅନେକ କାରକ (କର୍ତ୍ତା କର୍ମାଦି) ପୂର୍ବକ କ୍ରିୟାର ଫଳସିଦ୍ଧି ସଂସାରରେ ଦେଖାଯାଏ ଏବଂ ନ୍ୟାୟାଦି କର୍ତ୍ତାରେ ମଧ୍ୟ ସଂକ୍ରମିତ ହେବା ଠିକ୍ ଅଟେ ।

(ଘ) ଈଶ୍ୱରତ୍ୱର ପ୍ରସିଦ୍ଧିରୁ ମଧ୍ୟ ବ୍ରହ୍ମ ନିମିତ୍ତକ କାରଣ । କାରଣ- ଯେପରି ରାଜା ବୈବସ୍ୱତମନୁ ପ୍ରଭୃତି ଈଶ୍ୱର କେବଳ ନିମିତ୍ତକାରଣ ରୂପରେ ପ୍ରତୀତ ହୁଅନ୍ତି । ସେପରି ପରମେଶ୍ୱରଙ୍କୁ ମଧ୍ୟ କେବଳ ନିମିତ୍ତକାରଣ କହିବା ଠିକ୍ ଓ କାର୍ଯ୍ୟରୂପ ଜଗତ୍ ସାବୟବ, ଅଚେତନ ଓ ଅଶୁଦ୍ଧ ଦେଖାଯାଏ । ତାହାର କାରଣ ମଧ୍ୟ ଏହିଭଳି ହେବା ଉଚିତ । କାରଣ-କାର୍ଯ୍ୟ କାରଣରେ ସାଦୃଶ୍ୟ ଦେଖାଯାଏ ।

(ଙ) ପରନ୍ତୁ 'ଅବୟବ ରହିତ, ଅକ୍ରିୟ, ଶାନ୍ତ, ଦୋଷରହିତ, ନିର୍ଲେଜ', ଇତ୍ୟାଦି ଶ୍ରୁତିଦ୍ୱାରା ବ୍ରହ୍ମ ଏପରି ପ୍ରତୀତ ହୁଏ । ଅତଃ ପରିଶେଷରେ ଅର୍ଥାତ୍ ପ୍ରକୃତ ବ୍ରହ୍ମର ପ୍ରତିଷେଧ ଓ ଅନ୍ୟତ୍ର ପ୍ରସକ୍ତ ଅଭାବରୁ ବ୍ରହ୍ମଭିନ୍ନ ଅଶୁଦ୍ଧି ଆଦି ଗୁଣଯୁକ୍ତ ସ୍ମୃତିରେ ପ୍ରସିଦ୍ଧ ପ୍ରଧାନଙ୍କୁ ଉପାଦାନ କାରଣ ରୂପେ ସ୍ୱୀକାର କରିବା ଉଚିତ । କାରଣ- ବ୍ରହ୍ମରେ କାରଣତ୍ୱ ପ୍ରତିପାଦକ ଶ୍ରୁତିର ନିମିତ୍ତକାରଣ ମାତ୍ରରେ ପର୍ଯ୍ୟବସାନ ହୁଏ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପ୍ରକୃତିଶ୍ଚୋପାଦାନକାରଣଞ୍ଚ ବ୍ରହ୍ମାଭ୍ୟୁପଗନ୍ତବ୍ୟଂ ନିମିତ୍ତକାରଣଂ ଚ । ନ କେବଳଂ ନିମିତ୍ତକାରଣମେବ । କସ୍ମାତ୍ ? ପ୍ରତିଜ୍ଞାଦୃଷ୍ଟାନ୍ତୌ ଶ୍ରୌତୌ ନୋପରୁଧ୍ୟେତେ । ପ୍ରତିଜ୍ଞା ତାବତ୍ 'ଉତ ତମାଦେଶମାପ୍ରାକ୍ଷୋ ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମ୍', (ଛା ୬-୧-୨) ଇତି । (୨) ତତ୍ର ଚୈକେନ ବିଜ୍ଞାତେନ ସର୍ବମନ୍ୟଦବିଜ୍ଞାତମପି ବିଜ୍ଞାତଂ ଭବତୀତି ପ୍ରତୀୟତେ ।

ତଚ୍ଚୋପାଦାନକାରଣବିଜ୍ଞାନେ ସର୍ବବିଜ୍ଞାନଂ ସମ୍ଭବତ୍ୟୁପାଦାନକାରଣାବ୍ୟତିରେକାତ୍ କାର୍ଯ୍ୟସ୍ୟ । ନିମିତ୍ତକାରଣବ୍ୟତିରେକସ୍ତୁ କାର୍ଯ୍ୟସ୍ୟ ନାସ୍ତି ଲୋକେ ତକ୍ଷ୍ଣଃ ପ୍ରାସାଦବ୍ୟତିରେକଦର୍ଶନାତ୍ ।

(୩) ଭାଷାଂତର-ସିଦ୍ଧାନ୍ତ-(କ) ବ୍ରହ୍ମକୁ ପ୍ରକୃତି ଅର୍ଥାତ୍ ଉପାଦାନକାରଣ ଓ ନିମିତ୍ତକାରଣରୂପେ ସ୍ୱୀକାର କରିବା ଉଚିତ । କେବଳ ନିମିତ୍ତକାରଣ ନୁହେଁ । କିପରି ? ଏହାଦ୍ୱାରା ପ୍ରତିଜ୍ଞା ଓ ଦୃଷ୍ଟାନ୍ତର ଅନୁପରୋଧ ହୁଏ । ବ୍ରହ୍ମକୁ ଉଭୟକାରଣ ରୂପରେ ସ୍ୱୀକାର କଲେ ପ୍ରତିପାଦିତ ପ୍ରତିଜ୍ଞା ଓ ଦୃଷ୍ଟାନ୍ତ ବାଧିତ ହୁଅନ୍ତି ନାହିଁ । ତୁମେ କ'ଣ ଗୁରୁଙ୍କୁ ଏହି ଆଦେଶ ପଚାରିଲ ? ଯଦ୍ଦ୍ୱାରା ଅଶ୍ରୁତ ଶ୍ରୁତ ହୁଏ । ଅମତ ମତ ହୁଏ, ଅବିଜ୍ଞାତା ବିଶେଷରୂପରେ ବିଜ୍ଞାତା ହୁଏ । ଏହିହିଁ ପ୍ରତିଜ୍ଞା ।

(ଖ) ଏଠାରେ ଏହା ପ୍ରତୀତି ହୁଏ ଯେ- ଗୋଟିଏର ବିଜ୍ଞାତା ହେଲେ ଅନ୍ୟସବୁ ଅବିଜ୍ଞାତା ମଧ୍ୟ ବିଜ୍ଞାତା ହୋଇଯାଏ । ସେ ସର୍ବବିଜ୍ଞାନ ଉପାଦାନକାରଣର ବିଜ୍ଞାନ ହେଲାପରେ ସମ୍ଭବ ହୁଏ କାରଣ- କାର୍ଯ୍ୟ ଉପାଦାନ କାରଣରୁ ଅଭିନ୍ନ ହୁଏ । କିନ୍ତୁ ନିମିତ୍ତ କାରଣକୁ ଅଭିନ୍ନ ହୁଏ ନାହିଁ । କାରଣ-ସଂସାରରେ କାରିଗର ପ୍ରାସାଦଠାରୁ ଭିନ୍ନ ଦେଖାଯାଏ ।

(୪) ମୂଳ-(କ) ଦୃଷ୍ଟାନ୍ତେଽପି-'ଯଥା ସୌମ୍ୟୈକେନ ମୃତ୍ପିଣ୍ଡେନ ସର୍ବଂ ମୃନ୍ମୟଂ ବିଜ୍ଞାତଂ ସ୍ୟାଦ୍ ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତ୍ତିକେତ୍ୟେବଂ ସତ୍ୟମ୍', ଇତ୍ୟୁପାଦାନକାରଣଗୋଚର ଏବାମ୍ନାୟତେ । ତଥା 'ଏକେନ ଲୋହମଣିନା ସର୍ବଂ ଲୋହମୟଂ ବିଜ୍ଞାତଂ ସ୍ୟାତ୍, ଏକେନ ନଖନିକୃନ୍ତନେନ ସର୍ବଂ କାର୍ଷ୍ଣାୟସଂ ବିଜ୍ଞାତଂ ସ୍ୟାତ୍', (ଛା ୬-୧-୪,୫,୬) ଇତି ଚ । (ଖ) ତଥାନ୍ୟତ୍ରାପି 'କସ୍ମିନ୍ନୁ ଭଗବୋ ବିଜ୍ଞାତେ ସର୍ବମିଦଂ ବିଜାତଂ ଭବତି', (ମୁଣ୍ଡ ୧-୧-୨) ଇତି ପ୍ରତିଜ୍ଞା । 'ଯଥା ପୃଥିବ୍ୟାମୋଷଧୟଃ ସମ୍ଭବନ୍ତି', (ମୁଣ୍ଡ ୧-୧-୭) ଇତି ଦୃଷ୍ଟାନ୍ତଃ' ତଥା 'ଆତ୍ମନି ଖଲ୍ୱରେ ଦୃଷ୍ଟେ ଶ୍ରୁତେ ମତେ ବିଜ୍ଞାତ ଇଦଂ ସର୍ବଂ ବିଦିତମ୍' ଇତିପ୍ରତିଜ୍ଞା । 'ଯଥା ଦୁନ୍ଦୁଭେର୍ହନ୍ୟମାନସ୍ୟ ନ ବାହ୍ୟାଙ୍ ଶବ୍ଦାଙ୍ ଶକ୍ନୁୟାଦ୍ଗ୍ରହଣାୟ ଦୁନ୍ଦୁଭେସ୍ତୁ ଗ୍ରହଣେନ ଦୁନ୍ଦୁଭ୍ୟାଘାତସ୍ୟ ବା ଶବ୍ଦୋ ଗୃହୀତଃ', (ବୃ ୪-୫-୬,୮) ଇତି ଦୃଷ୍ଟାନ୍ତଃ ।

(୪) ଭାଷାଂତର-(କ) ଯଥା 'ହେ ସୌମ୍ୟ । ଯେପରି ଏକ ମୃତପିଣ୍ଡର ବିଜ୍ଞାନଦ୍ୱାରା ସବୁମୃତ୍ତିକାର ବିକାରଗୁଡ଼ିକ ହୁଏ ନାହିଁ, କିନ୍ତୁ ବିକାର କେବଳ ପ୍ରାଣୀର ଆଶ୍ରୟଭୂତ ନାମାମତ୍ର ଅଟେ । ''ସତରେ କେବଳ ମୃତ୍ତିକା ଅଛି'' । ସେପରି 'ଗୋଟିଏ

ଲୌହମଣି ସୁବର୍ଣ୍ଣମଣିର ବିଜ୍ଞାତ ହେଲେ ସବୁସୁବର୍ଣ୍ଣ ବିକାର ଜ୍ଞାତ ହୁଅନ୍ତି' । 'ଗୋଟିଏ ନିହଣର ଲୁହାପିଣ୍ଡଜ୍ଞାନରୁ ସବୁଲୁହାର ବିକାର ଜଣାପଡ଼େ' । ଏହିପ୍ରକାର ଦୃଷ୍ଟାନ୍ତ ମଧ୍ୟ ଉପାଦାନ କାରଣ ବିଷୟକ କୁହାଗଲା ।

(ଖ) ସେହିପ୍ରକାର ଅନ୍ୟସ୍ଥଳରେ 'ଶୌନକ-ହେ ଭଗବାନ । କାହାକୁ ଜାଣିଲେ ସବୁ କିଛି ଜଣାପଡ଼େ' ଏହାହିଁ ପ୍ରତିଜ୍ଞା । 'ଯେପରି ପୃଥିବୀରେ ଔଷଧଗୁଡ଼ିକ ଉତ୍ପନ୍ନ ହୁଅନ୍ତି' । ଏହାହିଁ ଦୃଷ୍ଟାନ୍ତ । ତଥା 'ହେ ପମୈତ୍ରେୟୀ ! ନିଶ୍ଚିତ ଭାବରେ ଆତ୍ମାର ଦର୍ଶନ, ଶ୍ରବଣ, ମନନ ଓ ବିଜ୍ଞାନ ଜାଣିଲେ ଏହିସବୁର ଜ୍ଞାନ ହୁଏ' । ଏହିପରି ପ୍ରତିଜ୍ଞା । 'ସେହି ଦୃଷ୍ଟାନ୍ତ ଏପରି ଯେ- ଯାହା ଉପରେ ବାଡ଼ିରେ ଆଘାତ ହୁଏ, ସେହି ଦୁନ୍ଦୁଭିର ବାହ୍ୟଶବ୍ଦକୁ ଯେପରି କିଏ ଗ୍ରହଣ କରେ ନାହିଁ, କିନ୍ତୁ ଦୁନ୍ଦୁଭିର ଆଘାତକୁ ଗ୍ରହଣ କଲେ ତାହାର ଶବ୍ଦ ଗୃହୀତ ହୁଏ,' ଏହାହିଁ ଦୃଷ୍ଟାନ୍ତ ।

(୫) ମୂଳ-(କ) ଏବଂ ଯଥାସମ୍ଭବଂ ପ୍ରତିବେଦାନ୍ତଂ ପ୍ରତିଜ୍ଞାଦୃଷ୍ଟାନ୍ତୌ ପ୍ରକୃତିତ୍ୱସାଧନୌ ପ୍ରତ୍ୟେତବ୍ୟୌ । ଯତ୍ ଇତୀୟଂ ପଞ୍ଚମୀ, 'ଯତୋ ଇମାନି ଭୂତାନି ଜାୟନ୍ତେ, ଇତ୍ୟତ୍ର 'ଜନିକର୍ତ୍ତୁଃ ପ୍ରକୃତିଃ', (ପା. ସୁ ୧-୪-୩୦) ଇତି ବିଶେଷସ୍ମରଣାତ୍ ପ୍ରକୃତିଲକ୍ଷଣା ଏବୋପାଦାନେ ଦ୍ରଷ୍ଟବ୍ୟା । (ଖ) ନିମିତ୍ତତ୍ୱଂ ତ୍ୱଧିଷ୍ଠାତ୍ରନ୍ତରାଭାବାଦଧିଗନ୍ତବ୍ୟମ୍ । ଯଥା ହି ଲୋକେ ମୃତ୍ସୁବର୍ଣ୍ଣାଦିକମୁପାଦାନକାରଣଂ କୁଲାଳସୁବ-ର୍ଣ୍ଣକାରାଦୀନଧିଷ୍ଠାତୃନପେକ୍ଷ୍ୟ ପ୍ରବର୍ତ୍ତତେ, ନୈବ ବ୍ରହ୍ମଣ ଉପାଦାନକାରଣସ୍ୟ ସତୋଽନ୍ୟୋଽଧିଷ୍ଠାତାପେକ୍ଷାଽସ୍ତି, ପ୍ରାଗୁତ୍ପତ୍ତେରେ-କମେବାଦ୍ୱିତୀୟମିତ୍ୟବଧାରଣାତ୍ । ଅଧିଷ୍ଠାତ୍ରନ୍ତରାଭାବେଽପି ପ୍ରତିଜ୍ଞାଦୃଷ୍ଟାନ୍ତାନୁପରୋଧ ଏବ ସ୍ୟାତ୍ । ତସ୍ମାଦଧିଷ୍ଠାତ୍ରନ୍ତରାଭାବାଦାତ୍ମନଃ କର୍ତ୍ତୃତ୍ୱମୁପାଦାନା-ନ୍ତରାଭାବାଚ୍ଚ ପ୍ରକୃତିତ୍ୱମ୍ ।

**(୫) ଭାଷାଂତର-**(କ) ଏହିପ୍ରକାର ଯଥାସମ୍ଭବ ପ୍ରତ୍ୟେକ ବେଦାନ୍ତବାକ୍ୟରେ ଉପାଦାନ କାରଣକୁ ସିଦ୍ଧକରୁଥିବା ପ୍ରତିଜ୍ଞା ଓ ଦୃଷ୍ଟାନ୍ତ ଜାଣିବା ଦରକାର । 'ଯାହାଠାରୁ ଭୂତ ଉତ୍ପନ୍ନ ହୁଅନ୍ତି', ଏହି ଶ୍ରୁତିସ୍ଥ 'ଯତଃ' ଏହି ପଦରେ ପଞ୍ଚମୀ ବିଭକ୍ତି 'ଜନିକର୍ତ୍ତୁଃ' (ଜାୟମାନ ପ୍ରକୃତିର ସଂଜ୍ଞା ଉପାଦାନ ହୁଏ) ଏହି ବିଶେଷ ସୂତ୍ରରେ ପ୍ରକୃତିରୂପ ଅପାଦାନ ଅର୍ଥରେ ଜାଣିବା ଦରକାର ।

(ଖ) ବ୍ରହ୍ମର ଅନ୍ୟ ଅଧିଷ୍ଠାତା ନ ହେବାରୁ ନିମିତ୍ତକାରଣ ବୁଝାଯାଏ । ଯେପରି ସଂସାରରେ ମୃତ୍ତିକା, ସୁବର୍ଣ୍ଣାଦିଉପାଦାନ କାରଣ ହୋଇଥିବା କୁମ୍ଭର ବଣିଆ ପ୍ରଭୃତି ଅଧିଷ୍ଠାତାର ଅପେକ୍ଷା ରଖି ପ୍ରବୃତ୍ତ ହୁଏ, ସେପରି ଉପାଦାନ କାରଣ ସତ୍‌ବ୍ରହ୍ମର ଅନ୍ୟ

ଅଧିଷ୍ଠାତାଙ୍କୁ ଅପେକ୍ଷା କରେ ନାହିଁ । କାରଣ-ଜଗତର ଉତ୍ପତ୍ତି ପୂର୍ବରୁ ସଜାତୀୟ ବିଜାତୀୟ, ସ୍ୱଗତ ଭେଦଶୂନ୍ୟ କେବଳ ଏକ ଅଦ୍ୱିତୀୟ ଥିଲା । ଏହାହିଁ ଅବଧାରଣା । ଅନ୍ୟ ଅଧିଷ୍ଠାତାର ଅଭାବ ମଧ ପ୍ରତିଜ୍ଞା ଓ ଦୃଷ୍ଟାନ୍ତରୁ ବାଧାଭାବରୁ ଜୁହାଗଲା ବୋଲି ଜାଣିବା ଉଚିତ।

(ଗ) ଉପାଦାନ କାରଣ ଦ୍ୱାରା ଅଧିଷ୍ଠାତାର ସ୍ୱୀକାର କରିବା ଜାଣିବା ପରେ ମଧ ଏକ ବିଜ୍ଞାନରୁ ସର୍ବବିଜ୍ଞାନର ଅସମ୍ଭବ ହେଲେ ପ୍ରତିଜ୍ଞା ଓ ଦୃଷ୍ଟାନ୍ତର ବାଧ ହେବ ତେଣୁ ଅନ୍ୟ ଅଧିଷ୍ଠାତାର ନ ହେଲେ ଆତ୍ମା କର୍ତ୍ତା ହୁଏ ଓ ଅନ୍ୟ ଉପାଦାନର ନ ହେଲେ ପ୍ରକୃତି ହୁଏ ।

(୧) ମୂଳ-(କ) କୁତଶ୍ଚାତ୍ମନଃ କର୍ତ୍ତୃତ୍ୱ ପ୍ରକୃତିତ୍ୱେ-

**(୧) ଭାଷାଂତର-(କ) ଆତ୍ମା ନିମିତ୍ତ କାରଣ ଓ ଉପାଦାନ କାରଣ କିପରି ?**

## अभिध्योपदेशाच्च ॥ २४ ॥

## ଅଭିଧ୍ୟୋପଦେଶାଚ୍ଚ ॥ ୧-୪-୨୪ ॥

'ସୋଽକାମୟତ' ଏହିପ୍ରକାର ଅଭିଧାନ ସଂକଳ୍ପର ଉପଦେଶ ହେଲେ ଆତ୍ମା କର୍ତ୍ତା, ନିମିତ୍ତକାରଣ ହୁଏ' । 'ବହୁସ୍ୟାମ୍' 'ଏହି ପ୍ରକାର ଅଭିଧାନର ଉପଦେଶ ହେଲେ ପ୍ରକୃତି ଉପାଦାନକାରଣ ମଧ ହୁଏ ।

(୨) ମୂଳ-(କ) ଅଭିଧ୍ୟୋପଦେଶଶ୍ଚାତ୍ମନଃ କର୍ତ୍ତୃତ୍ୱପ୍ରକୃତିତ୍ୱେ ଗମୟତି 'ସୋଽକାମୟତ ବହୁସ୍ୟାଂ ପ୍ରଜାୟେୟ ଇତି, ତଦୈକ୍ଷତ ବହୁସ୍ୟାଂ ପ୍ରଜାୟେୟ', ଇତି ଚ । (ଖ) ତତ୍ରାଭିଧାନପୂର୍ବିକାୟାଃ ସ୍ୱାତନ୍ତ୍ର୍ୟପ୍ରବୃତ୍ତେଃ କର୍ତ୍ତେତି ଗମ୍ୟତେ । ବହୁସ୍ୟାମିତି ପ୍ରତ୍ୟାଗାତ୍ମବିଷୟତ୍ୱାଦ୍ ବହୁଭବନାଭିଧାନସ୍ୟ ପ୍ରକୃତିରତ୍ୟପି ଗମ୍ୟତେ ।

**(୨) ଭାଷାଂତର-(କ) ସେହି କାମନା କଲା ଯେ- ମୁଁ ବହୁତ ହେବି ଅର୍ଥାତ୍** ଉତ୍ପନ୍ନ ହେବି', 'ସେ ଈକ୍ଷଣ ସଂକଳ୍ପ କଲା ଯେ- ମୁଁ ବହୁତ ହେବି' । ଏହିପ୍ରକାର ସୃଷ୍ଟି ସଂକଳ୍ପର ଉପଦେଶ ଆତ୍ମାରେ କର୍ତ୍ତୃତ୍ୱ ଓ ପ୍ରକୃତିତ୍ୱ ବୋଧିତ କରେ ।

(ଖ) ସେଥିରେ ସଂକଳ୍ପପୂର୍ବକ ସ୍ୱତନ୍ତ୍ର ପ୍ରବୃତ୍ତିଦ୍ୱାରା ଆତ୍ମା କର୍ତ୍ତାନିମିତ୍ତ କାରଣ ହୁଏ ବୋଲି ପ୍ରତୀତ ହୁଏ ଏବଂ 'ବହୁସ୍ୟାଂ ପ୍ରଜାୟେୟ' ଏହିପ୍ରକାର ବହୁତ ହେବାର



ସଂକଳ୍ପ ପ୍ରତ୍ୟାଗାତ୍ମା ବିଷୟକ ହେଲେ ଏହା ଜଣାଯାଏ ଯେ- ଆତ୍ମା ପ୍ରକୃତି ଉପାଦାନ କାରଣ ମଧ୍ୟ ହୁଏ ।

## साक्षाच्चोभयाम्नानात् ॥ २५ ॥

## (୧) ସାକ୍ଷାଚ୍ଚୋଭୟାମ୍ନାନାତ୍ ॥ ୧-୪-୨୫ ॥

(ସାକ୍ଷାତ୍ ଉଭୟ ଆମ୍ନାନାତ୍- 'ସର୍ବାଣି ହବା ଇମାନି ଭୂତାନି' ଏହିପ୍ରକାର ଆକାଶ ଶବ୍ଦରୁ ବ୍ରହ୍ମକୁ ଗ୍ରହଣ କରି ସାକ୍ଷାତ୍ ଜଗତର ଉତ୍ପତ୍ତି ଓ ପ୍ରଳୟ ଶୁଣାଯାଏ । ତେଣୁ ବ୍ରହ୍ମ ହିଁ ଜଗତର ଉପାଦାନକାରଣ ।

(୨) ମୂଳ-(କ) ପ୍ରକୃତିତ୍ୱସ୍ୟାୟମଭ୍ୟୁଚୟଃ ଇତଶ୍ଚ ପ୍ରକୃତିର୍ବ୍ରହ୍ମ, ଯତ୍ କାରଣଂ ସାକ୍ଷାଦ୍ ବ୍ରହ୍ମୈବ କାରଣମୁପାଦାୟୋଭୌ ପ୍ରଭବପ୍ରଳୟାବାମ୍ନାୟେତେ 'ସର୍ବାଣି ହ ବା ଇମାନି ଭୂତାନ୍ୟାକାଶାଦେବ ସମୁତ୍ପଦ୍ୟନ୍ତେ । ଆକାଶଂ ପ୍ରତ୍ୟସ୍ତଂ ଯାନ୍ତି', (ଛା ୧-୯-୧) ଇତି । (ଖ) ଯଦ୍ଧି ଯସ୍ମାତ୍ ପ୍ରଭବତି ଯସ୍ମିଁଶ୍ଚ ପ୍ରଲୀୟତେ ତତ୍ତସ୍ୟୋପାଦାନଂ ପ୍ରସିଦ୍ଧମ୍ । ଯଥା ବ୍ରୀହିଯବାଦୀନାଂ ପୃଥିବୀ । 'ସାକ୍ଷାତ୍' ଇତି ଚୋପାଦାନାନ୍ତରାନୁପାଦାନଂ ଦର୍ଶୟତ୍ୟାକାଶାଦେବେତି । ପ୍ରତ୍ୟସ୍ତମୟଶ୍ଚ ନୋପାଦାନାଦନ୍ୟତ୍ର କାର୍ଯ୍ୟସ୍ୟଦୃଷ୍ଟଃ ।

**(୨) ଭାଷାଂତର-** (କ) ଉପାଦାନ କାରଣ ହେଲେ ଏହି ଅନ୍ୟ ହେବ, ଏହାଦ୍ୱାରା ବ୍ରହ୍ମ ପ୍ରକୃତି ଅଟେ । କାରଣ- 'ସେହି ସମସ୍ତଭୂତ ଆକାଶରୁ ଉତ୍ପନ୍ନ ହୁଅନ୍ତି, ଏହି ଶ୍ରୁତିରେ ସାକ୍ଷାତ୍ ବ୍ରହ୍ମର ହିଁ କାରଣ ରୂପରେ ଗ୍ରହଣ କରି ଉତ୍ପତ୍ତି ଓ ପ୍ରଳୟ ଦୁଇଟି କୁହାଯାଇଛି ।

(ଖ) କାରଣ- ଏହି ପ୍ରସିଦ୍ଧ ଯେ- 'ଯାହା ଯେଉଁଠାରୁ ଉତ୍ପନ୍ନ ହୁଅନ୍ତି, ଏବଂ ଯେଉଁଠାରେ ଲୟ ହୁଏ, ସେ ତାହାର ଉପାଦାନ ହୁଏ, ଯେପରି ଧାନ, ଯବ, ଇତ୍ୟାଦିର ପୃଥିବୀ ଉପାଦାନକାରଣ । ଶ୍ରୁତିସ୍ଥ 'ଆକାଶାଦେବ' ଏହି ପଦଦ୍ୱାରା ସୂଚିତ ଅନ୍ୟ ଉପାଦାନର ଅଗ୍ରହଣକୁ ଭଗବାନ୍ ସୂତ୍ରକାର 'ସାକ୍ଷାତ' ପଦଦ୍ୱାରା ଦେଖାଏ । କାର୍ଯ୍ୟର ପ୍ରଳୟ ମଧ୍ୟ ଉପାଦାନଠାରୁ ଭିନ୍ନରେ ଦେଖାଯାଇନାହିଁ ।

## आत्माकृते: परिणामात् ॥ २६ ॥

## (୧) ଆତ୍ମକୃତେଃ ପରିଣାମାତ୍ ॥ ୧-୪-୨୬ ॥

ଆତ୍ମକୃତେଃ-'ତଦାତ୍ମାନଂ ସ୍ୱୟମକୁରୁତ', ଏଠାରେ ଆତ୍ମସମ୍ବନ୍ଧୀକୃତିର ଶ୍ରବଣ ହୁଏଁ । ଅତଃ ବ୍ରହ୍ମଉଭୟ କାରଣ ଅଟେ । 'ପରିଣାମାତ୍'-କାରଣ-କର୍ତ୍ତାରୂପରେ

ପୂର୍ବସିଦ୍ଧବସ୍ତୁ ମଧ୍ୟ ବିବର୍ତ୍ତରୂପରେ ସାଧ୍ୟ ହୋଇପାରେ । ତେଣୁ ବ୍ରହ୍ମ କୃତିର କର୍ମ ବିଷୟ ଅଟେ ।

(୨) ମୂଳ- ଇତଶ୍ଚ ପ୍ରକୃତିର୍ବ୍ରହ୍ମ, ଯତ୍କାରଣଂ ବ୍ରହ୍ମପ୍ରକ୍ରିୟାୟାଂ 'ତଦାତ୍ମାନଂ ସ୍ୱୟମକୁରୁତ', (ତୈ ୨-୭) ଇତ୍ୟାତ୍ମନଃ କର୍ମତ୍ୱଂ କର୍ତ୍ତୃତ୍ୱଂ ଚ ଦର୍ଶୟତି । ଆତ୍ମାନମିତି କର୍ମତ୍ୱଂ, ସ୍ୱୟମକୁରୁତେତି କର୍ତ୍ତୃତ୍ୱମ୍ ।' (ଖ) କଥଂ ପୁନଃ ପୂର୍ବସିଦ୍ଧସ୍ୟ ସତଃକର୍ତ୍ତୃତ୍ୱେନ ବ୍ୟବସ୍ଥିତସ୍ୟ କ୍ରିୟମାଣତ୍ୱଂ ଶକ୍ୟଂ ସମ୍ପାଦୟିତୁମ୍ ? ପରିଣାମାଦିତି ବ୍ରୂମଃ । ପୂର୍ବସିଦ୍ଧୋଽପି ହି ସନ୍ନାତ୍ମା ବିଶେଷେଣେ ବିକାରାତ୍ମନା ପରିଣମୟାମାସାତ୍ମାନମିତି । ବିକାରାତ୍ମନା ଚ ପରିଣାମୋ ମୃଦାଦ୍ୟାସୁ ପ୍ରକୃତିସୂପଲବ୍ଧଃ । ସ୍ୱୟମିତି ଚ ବିଶେଷଣାନ୍ନିମିତ୍ତାନ୍ତରାନପେକ୍ଷତ୍ୱମପି ପ୍ରତୀୟତେ । ପରିଣାମାଦିତି ବା ପୃଥକ୍ସୂତ୍ରମ୍ । (ଗ) ତସ୍ୟୈଷୋଽର୍ଥଃ-ଇତଶ୍ଚ ପ୍ରକୃତିର୍ବ୍ରହ୍ମ ଯତ୍କାରଣଂ ବ୍ରହ୍ମଣ ଏବ ବିକାରାତ୍ମନା ପରିଣାମଃ ସାମାନାଧିକରଣ୍ୟେନାମ୍ନାୟତେ 'ସଚ୍ଚ ତଚ୍ଚାଭବତ୍ । ନିରୁକ୍ତଂ ଚାନିରୁକ୍ତଂ ଚ', (ତୈ. ୨-୬) ଇତ୍ୟାଦିନେତ ।

**(୨) ଭାଷାଂତର**-(କ) ଏହି କାରଣରୁ ବ୍ରହ୍ମ ପ୍ରକୃତି ଅଟେ । କାରଣ-ବ୍ରହ୍ମ ପ୍ରକ୍ରିୟାରେ 'ସେ ନିଜକୁ ନାନାରୂପାତ୍ମକ ଜଗତ-ରୂପରେ ରଚନା କଲା', ଏହିପ୍ରକାର ଏହି ଶ୍ରୁତି ଆତ୍ମାକୁ କର୍ମ ଓ କର୍ତ୍ତୁ ରୂପରେ ଦେଖାଏ । 'ଆତ୍ମାନମ୍' ଏହି ପଦରୁ କର୍ମତ୍ୱ ଓ 'ସ୍ୱୟମକୁରୁତ' ଏହିଁ ପଦରୁ ଆତ୍ମାରେ କର୍ତ୍ତୃତ୍ୱ ଦେଖାଏ ।

(ଖ) ପରନ୍ତୁ ପୂର୍ବସିଦ୍ଧ ଏବଂ କର୍ତ୍ତାରୂପରେ ବ୍ୟବସ୍ଥିତ ପଦାର୍ଥକୁ କ୍ରିୟାବିଷୟତ୍ୱ କିପରି ସମ୍ପାଦନା କରାଗଲା ? ପରିମାଣଦ୍ୱାରା ବୋଲି ଆମ୍ଭେ କହୁ । ପୂର୍ବସିଦ୍ଧ ହେଲେ ମଧ୍ୟ ଆତ୍ମା ଅବିଦ୍ୟା ବଳରେ ନିଜକୁ ବିଶେଷ ବିକାରରୂପରେ ପରିଣତ କଲା । ବିକାର ରୂପରେ ପରିଣାମ ମୃତ୍ତିକାଦି ଉପାସନା କାରଣରେ ଉପଲବ୍ଧ ହୁଏ । ଏଠାରେ 'ସ୍ୱୟଂ' ଏହି ବିଶେଷଦ୍ୱାରା ଏହାଠାରୁ ଅନ୍ୟନିମିତ୍ତକୁ ଅପେକ୍ଷା କରେ ନାହିଁ ବୋଲି ପ୍ରତୀତ ହୁଏ । ଅଥବା 'ପରିଣାମାତ୍' ଏହି ଅଂଶ ପୃଥକ୍ ସୂତ୍ର ଅଟେ ।

(ଗ) ଏହାର ଅର୍ଥ ହେଲା- ଏହି କାରଣରୁ ବ୍ରହ୍ମ ପ୍ରକୃତି ଅଟେ । କାରଣ- 'ସେ ବ୍ରହ୍ମ ମୂର୍ତ୍ତ ଓ ଅମୂର୍ତ୍ତ, ନିର୍ବଚନ ଯୋଗ୍ୟ ଓ ନିର୍ବଚନ ଅଯୋଗ୍ୟ ଅଟେ', ଇତ୍ୟାଦି ଦ୍ୱାରା ଶ୍ରୁତି ସାମାନାଧିକାରଣ୍ୟରୁ ବ୍ରହ୍ମର ବିକାରରୂପରେ ଏହ ପରିଣାମକୁ କହେ ।



## योनिश्च हि गीयते ॥ २७ ॥

## (୧) ଯୋନିଶ୍ଚ ହି ଗୀୟତେ ॥୧-୪-୨୭॥

ହି-କାରଣ, 'ଯୋନିଶ୍ଚ ଗୀୟତେ'- ଯଦ୍ ଭୂତ ଯୋନିଂ ପରିପଶ୍ୟନ୍ତି' ଏଠାରେ ପ୍ରକୃତିବାଚକ ଯୋନିଶବ୍ଦଦ୍ୱାରା ଆତ୍ମା କୁହାଗଲା । ତେଣୁ ବ୍ରହ୍ମ ମଧ୍ୟ ଉପାଦାନ ଓ ନିମିତ୍ତକାରଣ ହୁଏ ।

(୨) ମୂଳ-(କ) ଇତଶ୍ଚ ପ୍ରକୃତିର୍ବ୍ରହ୍ମ, ଯତ୍‌କାରଣଂ ବ୍ରହ୍ମଯୋନିରିତ୍ୟପି ପଠ୍ୟତେ ବେଦାନ୍ତେଷୁ 'କର୍ତ୍ତାରମୀଶଂ ପୁରୁଷଂ ବ୍ରହ୍ମଯୋନିମ୍', (ମୁଣ୍ଡ ୩-୧-୩) ଇତି । 'ଯଦ୍‌ଭୂତଯୋନିଂ ପରିପଶ୍ୟନ୍ତି ଧୀରାଃ', (ମୁଣ୍ଡ ୧-୧-୬) ଇତି ଚ । (ଖ) ଯୋନିଶବ୍ଦଶ୍ଚ ପ୍ରକୃତି ବଚନଃ ସମଧିଗତୋ ଲୋକେ- 'ପୃଥିବୀ ଯୋନିରୌଷଧିବନସ୍ପତୀନାମ୍', ଇତି । ସ୍ତ୍ରୀ ଯୋନେରପ୍ୟସ୍ତ୍ୟେବୟବଦ୍ୱାରେଣ ଗର୍ଭଂ ପ୍ରତ୍ୟୁପଦାନକାରଣତ୍ୱମ୍ । କ୍ୱଚିତ୍‌ସ୍ଥାନବଚନୋଽପି ଯୋନିଶବ୍ଦୋ ଦୃଷ୍ଟଃ-'ଯୋନିଷ୍ଟ ଇନ୍ଦ୍ର ନିଷଦେ ଅକାରି', (ଋ. ସଂ ୧-୧୦୪-୧) ଇତି । ବାକ୍ୟଶେଷାତ୍ତ୍ୱତ୍ର ପ୍ରକୃତି ବଚନତା ପରିଗୃହ୍ୟତେ । 'ଯଥାର୍ଣ୍ଣନାଭିଃ ସୃଜତେ ଗୃହ୍ୟତେ ଚ', (ମୁଣ୍ଡ ୧-୧-୭) ଇତ୍ୟେବଂଜାତୀୟକାତ୍ । ଏବଂ ପ୍ରକୃତିତ୍ୱଂ ବ୍ରହ୍ମଣଃ ପ୍ରସିଦ୍ଧମ୍ । (ଗ) ଯତ୍ ପୁନରିଦମୁକ୍ତମୀକ୍ଷାପୂର୍ବକଂ କର୍ତ୍ତୃତ୍ୱ ନିମିତ୍ତକାରଣେଷ୍ୱେବ କୁଲାଳାଦିଷୁ ଲୋକେ ଦୃଷ୍ଟଂ ନୋପାଦାନେଷ୍ୱିତ୍ୟାଦି । (ଘ) ତତ୍ ପ୍ରତ୍ୟୁଚ୍ୟତେ- ନ ଲୋକବଦିହ ଭବିତବ୍ୟମ୍ । ନହ୍ୟୟମନୁମାନଗମ୍ୟୋଽର୍ଥଃ । ଶବ୍ଦଗମ୍ୟତ୍ୱାତ୍ତସ୍ୟାର୍ଥସ୍ୟ ଯଥାଶବ୍ଦମିହ ଭବିନବ୍ୟମ୍ । ନହ୍ୟୟମନୁମାନ ଗମ୍ୟୋଽର୍ଥ । ଶବ୍ଦଗମ୍ୟତ୍ୱାତ୍ତସ୍ୟାର୍ଥସ୍ୟ ଯଥାଶବ୍ଦମିହ ଭବିତବ୍ୟମ୍ । ଶବ୍ଦ ଶ୍ଚେକ୍ଷିତୁରୀଶ୍ୱରସ୍ୟ ପ୍ରକୃତିତ୍ୱଂ ପ୍ରତିପାଦୟତୀତ୍ୟବୋଚମ । ପୁନଶ୍ଚୈତତ୍ ସର୍ବଂ ବିସ୍ତରେଣ ପ୍ରତି ବକ୍ଷ୍ୟାମଃ ।

**(୨) ଭାଷାଂତର**-(କ) ଏହି ହେତୁରୁ ବ୍ରହ୍ମ ହିଁ ପ୍ରକୃତି ଅଟେ । କାରଣ- 'ବ୍ରହ୍ମର ମଧ୍ୟ ଉତ୍ପତ୍ତିସ୍ଥାନ ଏହି ଜଗତ୍ କର୍ତ୍ତା ଈଶ୍ୱର ପୁରୁଷକୁ ଦେଖାଏ', ଏବଂ 'ଯେଉଁ ସମ୍ପୂର୍ଣ୍ଣ ଭୂତର କାରଣ ଏହି ବିବେକୀଲୋକ ସବୁ ଦିଗକୁ ଦେଖେ,' ଏହିପ୍ରକାର ବେଦାନ୍ତ ଉପନିଷଦ୍‌ରେ ବ୍ରହ୍ମଯୋନି ବୋଲି ଏହା ପଢ଼ା ହୋଇଛି ।

(ଖ) 'ଔଷଧ ଓ ବନସ୍ପତିର ଉତ୍ପତ୍ତିସ୍ଥଳ ପୃଥିବୀ', ଏହିପ୍ରକାର ବ୍ୟବହାରରେ ନିଶ୍ଚିତ କରାଗଲା ଯେ- ଯୋନିଶବ୍ଦ ପ୍ରକୃତିବାଚକ ଅଟେ । ସ୍ତ୍ରୀର ଯୋନି ମଧ୍ୟ ଅବୟବ

ଶୋଣିତ ଦ୍ୱାରା ଗର୍ଭପ୍ରତି ଉପାଦାନ କାରଣ । 'ହେ ଇନ୍ଦ୍ର ! ଆପଣ ବସିବା ପାଇଁ ମୁଁ ସ୍ଥାନ କରିଛି', ଏହିପ୍ରକାର କୌଣସି ସ୍ଥାନବାଚକ ମଧ୍ୟ ଯୋନିଶବ୍ଦ ଦେଖାଗଲା । 'ଯେଉଁ ପ୍ରକାର ବୁଢିଆଣୀ ତାରଜାଲକୁ ନିର୍ମାଣ କରେ ଓ ଗ୍ରହଣ କରେ', ଏହିପ୍ରକାର ବାକ୍ୟ ଶେଷରେ ଏଠାରେ ମଧ୍ୟ ଯୋନିଶବ୍ଦ ପ୍ରକୃତି ବାଚକ ରୂପରେ ଗ୍ରହଣ ହୁଏ । ସେହି ପ୍ରକାର ବ୍ରହ୍ମରେ ଉପାଦାନକାରଣତ୍ୱ ପ୍ରସିଦ୍ଧ ଅଟେ ।

(ଗ) ଈକ୍ଷାପୂର୍ବକ କର୍ତ୍ତୃତ୍ୱ ଲୋକରେ କୁମ୍ଭାରାଦିନିମିତ୍ତକାରଣରେ ଦେଖାଯାଏ । ଉପାଦାନକାରଣରେ ନୁହେଁ ଇତ୍ୟାଦି ଯାହା କୁହାଯାଇଛି ।

(ଘ) ତାହାର ନିରାକରଣ କରୁଁ କି ? ଏଠାରେ ସଂସାର ସଦୃଶ ହେବା ଉଚିତ ନୁହେଁ । କାରଣ-ଏହା ଅନୁମାନ ଗମ୍ୟ ନୁହେଁ, କିନ୍ତୁ ଶବ୍ଦଗମ୍ୟ। ତେଣୁ ଏହି ଅର୍ଥ ଏଠାରେ ଶବ୍ଦଶ୍ରୁତିର ଅନୁସାରେ ହେବା ଆବଶ୍ୟକ । ଆମର ବକ୍ତବ୍ୟ ଯେ- ଶବ୍ଦ ହେବ ଈକ୍ଷଣ କର୍ତ୍ତା ଈଶ୍ୱର ପ୍ରକୃତି ଅଟେ । ପୁନଶ୍ଚ ଏହିସବୁ ବିସ୍ତାର ପୂର୍ବକ ଯରେ (ବ୍ର. ସୂ ୨-୧-୪) ଇତ୍ୟାଦି ସୂତ୍ରରେ କହିବୁ ।

## ८ सर्वव्याख्यानाधिकरणम् । सू० २८

## ସର୍ବବ୍ୟାଖ୍ୟାନାଧିକରଣମ-୮

**एतेन सर्वे व्याख्याता: व्याख्याता: ॥ २८ ॥**

**(୧) ଏତେନ ସର୍ବେବ୍ୟାଖ୍ୟାତାଃ ବ୍ୟାଖ୍ୟାତାଃ ॥୧-୪-୨୮॥**

ଏତେନ-ପ୍ରଧାନକାରଣବାଦର ନିରାକରଣ ଯୋଗୁଁ, ସର୍ବେ-ଅଣୁସ୍ୱଭାବ, ଅସଦାଦିକୁ ଜଗତକାରଣ ରୂପରେ ସ୍ୱୀକାର କରୁଥିବା (ନ୍ୟାୟମତ) ମଧ୍ୟ, ବ୍ୟାଖ୍ୟାତାଃ-ନିରାକରଣ କରିବା ଉଚିତ । ବ୍ୟାଖ୍ୟାତା-ଏହି ପଦର ଅଭ୍ୟାସ ଦ୍ୱିତୀୟବାର ଉଚ୍ଚାରଣ ଅଧ୍ୟାୟ ସମାପ୍ତିର ଦ୍ୟୋତକ ଅଟେ ।

(୨) ମୂଳ-(କ) 'ଈକ୍ଷତେର୍ନାଶବ୍ଦମ୍' (ବ୍ର. ସୂ ୧।୧।୫) ଇତ୍ୟାରଭ୍ୟଃ ପ୍ରଧାନକାରଣବାଦଃ ସୂତ୍ରୈରେବ ପୁନଃ ପୁନରାଶଙ୍କ୍ୟ ନିରାକୃତଃ । ତସ୍ୟ ହି ପକ୍ଷସ୍ୟୋ-ପୋଦ୍ ବଲକାନି କାନିଚିଲ୍ଲିଙ୍ଗାଭାସାନି ବେଦାନ୍ତେଷ୍ୱାପାତେନ ମନ୍ଦମତୀନ୍ ପ୍ରତିଭାନ୍ତୀତି ।

ସ ଚ କାର୍ଯ୍ୟକାରଣାନନ୍ୟତ୍ୱାଭ୍ୟୁପଗମମାତ୍ର ପ୍ରତ୍ୟାସନ୍ନୋ ବେଦାନ୍ତବାଦସ୍ୟ । ଦେବଲପ୍ରଭୃତିଷ୍ଚ କୈଶ୍ଚିଦ୍ ଧର୍ମସୂତ୍ରକାରୈଃ ସ୍ୱଗ୍ରନ୍ଥେଷ୍ୱାଶ୍ରିତଃ, ତେନ ତତ୍ ପ୍ରତିଷେଧେ ଯତ୍ନୋଽତୀବକୃତୋ ନାଣ୍ୱାଦିକାରଣବାଦପ୍ରତିଷେଧେ । (ଖ) ତେଽପି ତୁ ବ୍ରହ୍ମକାରଣବାଦ ପକ୍ଷସ୍ୟ ପ୍ରତିପକ୍ଷତ୍ୱାତ୍ ପ୍ରତିଷେଧବ୍ୟାଃ । ତେଷାମପ୍ୟୁପୋଦ୍ ବଲକଂ ବୈଦିକଂ କିଞ୍ଚିଲ୍ଲିଙ୍ଗମାପାତେନ ମନ୍ଦମତୀନ୍ ପ୍ରତିଭାୟାଦିତି । ଅତଃ ପ୍ରଧାନମଲ୍ଲନିବର୍ହଣନ୍ୟାୟେ-ନାତିଦିଶତି- ଏତେନ ପ୍ରଧାନକାରଣବାଦ ପ୍ରତିଷେଧନ୍ୟାୟକଲାପେନ ସର୍ବେଽଣ୍ୱାଦିକାରଣ-ବାଦା ଅପି ପ୍ରତିଷିଦ୍ଧବ୍ୟା ବ୍ୟାଖ୍ୟାତା ଇତି ପଦାଭ୍ୟସୋଽଧ୍ୟାୟପରିସମାପ୍ତିଂ ଦ୍ୟୋତୟତି ।

(୨) ଭାଷାଂତର-(କ) 'ଇକ୍ଷତେର୍ନାଶବ୍ଦମ୍ ? ଏହି ସୂତ୍ରଠାରୁ ଆରମ୍ଭ କରି ଅନ୍ୟ ସୂତ୍ରଦ୍ୱାରା ପୁନର୍ବାର ଆଶଙ୍କା କରି ପ୍ରଧାନକାରଣବାଦର ନିରାକରଣ କରାଗଲା । କାରଣ-ମନ୍ଦମତିମାନଙ୍କୁ ଏହି ପକ୍ଷର ପୋଷାକ ଅଳ୍ପଲିଙ୍ଗାଭାଷ ବେଦାନ୍ତରେ ଆପାତତଃ ପ୍ରତୀତ ହୁଏ । ସେ ପକ୍ଷ କାର୍ଯ୍ୟକାରଣର ଅଭେଦ ସ୍ୱୀକାର କଲେ ବେଦାନ୍ତବାଦର ଅତିନିକଟବର୍ତ୍ତୀ ହୁଏ ଓ ଦେବଳାଦି କେତେକ ଧର୍ମ ସୂତ୍ରକାର ନିଜଗ୍ରନ୍ଥରେ ଆଶ୍ରୟ ଦେଲେ । ତେଣୁ ଏହା ପ୍ରତିଷେଧରେ ଅତ୍ୟଧିକ ଯତ୍ନ କରାଗଲା । କିନ୍ତୁ ପରମାଣୁ ଆଦି କାରଣବାଦର ପ୍ରତିଷେଧରେ ଅତ୍ୟଧିକ ଯତ୍ନ କରାଯାଇ ନାହିଁ ।

(ଖ) ପରନ୍ତୁ ବ୍ରହ୍ମକାରଣବାଦ ପକ୍ଷରେ ପ୍ରତିପକ୍ଷ ହେଲେ ସେମାନେ ମଧ୍ୟ ପ୍ରତିଷେଧ କରିବାକୁ ଯୋଗ୍ୟ । କାରଣ- ମନ୍ଦମତିମାନଙ୍କୁ ଆପାତତଃ ତାହାର ପୋଷାକ କୌଣସି ବୈଦିକଲିଙ୍ଗ ପ୍ରତୀତ ହୁଅନ୍ତି । ତେଣୁ 'ପ୍ରଧାନମଲ୍ଲନିବର୍ହଣନ୍ୟାୟରେ ଅତିଦେଶ କରନ୍ତି । ତେଣୁ ପ୍ରଧାନକାରଣବାଦର ପ୍ରତିଷେଧନ୍ୟାୟ ସମ୍ପ୍ରଦାୟରେ ସବୁ ଅଣ୍ୱାଦିକାରଣବାଦ ପ୍ରତିଷେଧ ରୂପରେ ବ୍ୟାଖ୍ୟାନ ହୋଇ ବୁଝିଯିବା ଉଚିତ । କାରଣ- ସେମାନେ ମଧ୍ୟ ପ୍ରଧାନର ସଦୃଶ ଅଶବ୍ଦ ଓ ଶବ୍ଦ ଶ୍ରୁତି ବିରୁଦ୍ଧ ହୁଏ । ବ୍ୟାଖ୍ୟାତାଃ, ବ୍ୟାଖ୍ୟାତାଃ ଏହିପ୍ରକାର ପଦର ଅଭ୍ୟାସ ଦୁଇଥର ଉଚ୍ଚାରିତ ଅଧ୍ୟାୟ ସମାପ୍ତିର ଦ୍ୟୋତକ ହେଉଛି ।

## ଇତି ପ୍ରଥମ ଅଧ୍ୟାୟ ଚତୁର୍ଥ ପାଦ ସମାପ୍ତ

□□

## द्वितीय अध्याये - प्रथम: पाद

## ଦ୍ୱିତୀୟ ଅଧ୍ୟାୟ - ପ୍ରଥମପାଦ

### १ स्मृत्यधिकरणम् । सू० १ - २

### ସ୍ମୃତ୍ୟଧିକରଣ - ୧

(୧) ମୂଳ-(କ) ପ୍ରଥମେଽଧ୍ୟାୟେ ସର୍ବଜ୍ଞଃ ସର୍ବେଶ୍ୱରୋ ଜଗତ ଉତ୍ପତ୍ତିକାରଣମ୍, ମୃତସୁବର୍ଣ୍ଣାଦୟ ଇବ ଘଟରୁଚକାଦୀନାମ୍, ଉତ୍ପନ୍ନସ୍ୟ ଜଗତୋ ନିୟନ୍ତୃତ୍ୱେନ ସ୍ଥିତିକାରଣମ, ମାୟାବୀବ ମାୟାୟାଃ ।

(ଖ) ପ୍ରସାରିତସ୍ୟ ଚ ଜଗତଃ ପୁନଃ ସ୍ୱାତ୍ମନ୍ୟେବୋପସଂହାର କାରଣମ୍ । ଅବନିରିବ ଚତୁର୍ବିଧସ୍ୟ ଭୂତଗ୍ରାମସ୍ୟ । ସ ଏବ ଚ ସର୍ବେଷାଂ ନ ଆତ୍ମନ୍ୟେତଦ୍‌ବେଦାନ୍ତ-ବାକ୍ୟସମନ୍ୱୟପ୍ରତିପାଦନେନ ପ୍ରତିପାଦିତମ୍ । ପ୍ରଧାନାଦିକରଣବାଦାଶ୍ଚାଶବ୍ଦତ୍ୱେନ ନିରାକୃତାଃ ।

(ଗ) ଇଦାନୀଂ ସ୍ୱପକ୍ଷେ ସ୍ମୃତିନ୍ୟାୟବିରୋଧପରିହାରଃ, ପ୍ରଧାନାଦିବାଦାନାଂ ଚ ନ୍ୟାୟାଭାସୋପବୃଂହିତତ୍ୱମ୍; ପ୍ରତିବେଦାନ୍ତଞ୍ଚ ସୃଷ୍ଟ୍ୟାଦିପକ୍ରିୟାୟା ଅବିଗୀତତ୍ୱମିତ୍ୟ-ସ୍ୟାର୍ଥଜାତସ୍ୟ ପ୍ରତିପାଦନାୟ ଦ୍ୱିତୀୟୋଽଧ୍ୟାୟ ଆରଭ୍ୟତେ । ତତ୍ର ପ୍ରଥମଂ ତାବତ୍ ସ୍ମୃତିବିରୋଧମୁପନ୍ୟସ୍ୟ ପରିହରତି ।

**(୧) ଭାଷାଂତର**-(କ) ଯେପରି ମୃତ୍ତିକା ଓ ସୁବର୍ଣ୍ଣାଦି କଳସୀ ଓ ଅଳଙ୍କାର ଗୁଡ଼ିକର କାରଣ ଅଟନ୍ତି, ସେହିପରି ପ୍ରଥମ ଅଧ୍ୟାୟରେ ସର୍ବଜ୍ଞ, ସର୍ବେଶ୍ୱର ସଂସାରର ଉତ୍ପତ୍ତିକାରଣ ଅଟେ ଏବଂ ସର୍ବଜ୍ଞ ସର୍ବେଶ୍ୱର ନିୟନ୍ତାରୂପରେ ଉତ୍ପନ୍ନ ହୋଇ ଜଗତ୍ ସ୍ଥିତିର କାରଣ ହୁଏ ।

(ଖ) ଯେପରି ପୃଥିବୀ ଚାରିପ୍ରକାର (ଜରାୟୁଜ, ଅଣ୍ଡଜ, ଉଦ୍ଭିଦ ଓ ସ୍ୱେଦଜ)ର ପ୍ରାଣୀମାନଙ୍କର ଉପସଂହାର କାରଣ ହୁଏ । ଅର୍ଥାତ୍ ଏହାର ନିଜଠାରେ ଉପସଂହାର କରିନିଏ, ସେହିପରି ସର୍ବଜ୍ଞ ସର୍ବେଶ୍ୱର ପ୍ରସାରିତ ଜଗତ୍‌ର ପୁନର୍ବାର ନିଜଠାରେ ଉପସଂହାରର କାରଣ ହୁଏ । ସେ ଏହି ସମସ୍ତ ଆତ୍ମା ବୋଲି ପ୍ରଥମ ଅଧ୍ୟାୟରେ ବେଦାନ୍ତ ବାକ୍ୟଗୁଡ଼ିକର ସମନ୍ୱୟ ପ୍ରତିପାଦନଦ୍ୱାରା ପ୍ରତିପାଦିତ କରାଗଲା ଏବଂ ପ୍ରଧାନାଦିକାରଣବାଦର ଶ୍ରୁତି-ଅପ୍ରତିପାଦିତ ହେତୁଦ୍ୱାରା ନିରାକରଣ କରାଗଲା ।

(ଗ) ବର୍ତ୍ତମାନ ନିଜପକ୍ଷରେ ସ୍ମୃତି ଓ ନ୍ୟାୟମାନଙ୍କରେ ବିରୋଧର ପରିହାର, ପ୍ରଧାନପ୍ରଭୃତି କାରଣବାଦୀଗୁଡ଼ିକର ନ୍ୟାୟାଭାସକତା, ଭ୍ରାନ୍ତିମୂଳକତା ଏବଂ ପ୍ରତ୍ୟେକ ଉପନିଷଦ୍‌ରେ ସୃଷ୍ଟି ଆଦି ପ୍ରକ୍ରିୟାର ଅବିରୋଧ-ଏହି ବିଷୟ ସମୁଦାୟର ପ୍ରତିପାଦନ କରିବା ପାଇଁ ଏହି ଅଦ୍ୱିତୀୟ ଅଧ୍ୟାୟ ଆରମ୍ଭ କରାଗଲା । ଏହି ସମସ୍ତଙ୍କଠାରୁ ପ୍ରଥମେ ସ୍ମୃତିବିରୋଧର ଉପନ୍ୟାସ କରି ପରିହାର କରୁଛୁ ।

**स्मृत्यनवकादोषप्रसङ्ग इति चेन्नान्यस्मृत्य-**
**चेन्नान्यस्मृत्वकाशदाषप्रसङ्गात् ॥ १ ॥**

## (୨) ସ୍ମୃତ୍ୟନବକାଶଦୋଷପ୍ରସଙ୍ଗ ଇତି ଚେନ୍ନାନ୍ୟସ୍ମୃତ୍ୟନବା-କାଶଦୋଷପ୍ରସଙ୍ଗାତ୍ ୨।୧।୧

ସ୍ମୃତ୍ୟନବକାଶଦୋଷ ପ୍ରସଙ୍ଗଃ-ବ୍ରହ୍ମ ଜଗତ୍‌ର କାରଣ ହେଲେ, କପିଳପ୍ରଣୀତ ସ୍ମୃତିଦ୍ୱାରା ଅନବକାଶଦୋଷ ପ୍ରସଙ୍ଗ ହେବ । ଏହାଦ୍ୱାରା ବେଦାନ୍ତର ବ୍ରହ୍ମରେ ସମନ୍ୱୟ ବିରୁଦ୍ଧ ହୁଏ । ଇତି ଚେନ୍ନ-ଏହିଭଳି ଯଦି କହ, ତଥାପି ଏହା ଯୁକ୍ତି ସଂଗତ ନୁହେଁ । ଅନ୍ୟ ସ୍ମୃତ୍ୟନବକାଶ ଦୋଷ ପ୍ରସଙ୍ଗାତ୍- ଚେତନ କାରଣବାଦୀ ଅନ୍ୟ ମନୁ ପ୍ରଭୃତି ସ୍ମୃତି ଗୁଡ଼ିକରେ ଦୋଷ ପ୍ରସଙ୍ଗ ଆସିଯିବ । ଯେଣୁ ଶ୍ରୁତ୍ୟନୁସାରୀ ସ୍ମୃତି ପ୍ରମାଣ ହୁଏ ଏବଂ ତଦ୍‌ଭିନ୍ନ ସ୍ମୃତି ଅପ୍ରମାଣ ହୁଏ । ଏହାଦ୍ୱାରା ସମନ୍ୱୟର ବିରୋଧ ହୁଏ ନାହିଁ ।

(୩) ମୂଳ-(କ) ଯଦୁକ୍ତଂ ବ୍ରହ୍ମୈବ ସର୍ବଜ୍ଞଂ ଜଗତଃ କାରଣମିତି, ତଦଯୁକ୍ତମ୍, । କୁତଃ ? ସ୍ମୃତ୍ୟନବକାଶଦୋଷପ୍ରସଙ୍ଗାତ୍ । ସ୍ମୃତିଶ୍ଚ ତନ୍ତ୍ରାଖ୍ୟା ପରମର୍ଷିପ୍ରଣୀତା ଶିଷ୍ଟପରିଗୃହୀତାଃ, ଅନ୍ୟାଶ୍ଚ ତଦନୁସାରିଣ୍ୟଃ ସ୍ମୃତୟଃ । ତା ଏବଂ ସତ୍ୟନବାକାଶାଃ 'ପ୍ରସଜ୍ୟେରନ୍ । ତାସୁ ହ୍ୟଚେତନଂ ପ୍ରଧାନଂ ସ୍ୱତନ୍ତ୍ରଂ ଜଗତଃ କାରଣମୁପନିବଧ୍ୟତେ ।

(ଖ) ମନ୍ୱାଦିସ୍ମୃତିୟସ୍ତାବଚୋଦନାଲକ୍ଷଣେନାଗ୍ନିହୋତ୍ରାଦିନା ଧର୍ମଜାତେନାପେକ୍ଷି ତମର୍ଥଂ ସମର୍ପୟନ୍ତ୍ୟଃ ସାବକାଶାଃ ଭବନ୍ତି । ଅସ୍ୟ ବର୍ଣ୍ଣସ୍ୟାସ୍ମିନ୍ କାଲେଽନେନ ବିଧାନେ-ନୋପନୟାନମ୍, ଈଦୃଶଶ୍ଚାଚାରଃ, ଇତଥ ବେଦାଧ୍ୟୟନମ୍, ଇତ୍ଥଂ ସମାବର୍ତ୍ତନମ୍, ସହଧର୍ମଚାରିଣୀ ସଂଯୋଗ ଇତି । ତଥା ପୁରୁଷାର୍ଥାଂଶ୍ଚ ବର୍ଣ୍ଣାଶ୍ରମଧର୍ମାନ୍ନାନାବିଧାନ୍ ବିଦଧତି ।

(ଗ) ନୈବଂ କପିଳାଦିସ୍ମୃତୀ ନାମନୁଷ୍ଠେୟେ ବିଷୟେଽବକାଶୋଽସ୍ତି । ମୋକ୍ଷ-ସାଧନମେବହି ସମ୍ୟଗଦର୍ଶନମଧିକୃତ୍ୟ ତାଃ ପ୍ରଣୀତାଃ । ଯଦି ତତ୍ରାପ୍ୟନବକାଶାଃ ସ୍ୟୁରନର୍ଥ କ୍ୟମେବାସାଂ ପ୍ରସଜ୍ୟେତ । ତସ୍ମାତ୍ତଦବିରୋଧେନ ବେଦାନ୍ତା ବ୍ୟାଖ୍ୟାତବ୍ୟାଃ ।

(୩) ଭାଷାଂତର- (କ) ସର୍ବଜ୍ଞ ବ୍ରହ୍ମ ହିଁ ଜଗତ୍‌ର କାରଣ ବୋଲି ଯାହା କୁହାଯାଇଅଛି, ତାହା ଅସଙ୍ଗତ । କିପରି ? ଏହି ସ୍ମୃତି ଶାସ୍ତ୍ରଗୁଡ଼ିକ ଦ୍ୱାରା ଅନବକାଶ ରୂପ ଦୋଷର ପ୍ରସଙ୍ଗ ହେବ ଶାସ୍ତ୍ର ନାମକ ସେହି ସ୍ମୃତି ପରମଋଷି ଦ୍ୱାରା ପ୍ରଣୀତ ଓ ଶିଷ୍ଟ ପୁରୁଷଦ୍ୱାରା ଗୃହୀତ ଏବଂ ସେହି ପ୍ରକାର ସ୍ମୃତିଗୁଡ଼ିକ ମଧ୍ୟ ଅଛନ୍ତି । ବ୍ରହ୍ମ ଜଗତ୍‌ର କାରଣ ହେଲେ ସେହି ସବୁ ସ୍ମୃତି ଗୁଡ଼ିକ ଅନବକାଶ ବ୍ୟର୍ଥ ହୋଇଯିବେ । କାରଣ- ସେଠାରେ ଅଚେତନ ପ୍ରଧାନ ସ୍ୱତନ୍ତ୍ର ରୂପରେ ଜଗତ୍‌ର କାରଣ ଉପନିବଦ୍ଧ ଓ ଅଙ୍ଗୀକୃତ ।

(ଖ) ମନ୍ୱାଦି ସ୍ମୃତିଗ୍ରନ୍ଥ କିନ୍ତୁ ଚୋଦନାତ୍ମକ-ବିଧ୍ୟାତ୍ମକ-ବିଧିପ୍ରମାଣକ ଅଗ୍ନିହୋତ୍ରାଦିଧର୍ମ ସମୂହ ଦ୍ୱାରା ଅପେକ୍ଷିତ ଅର୍ଥକୁ ବର୍ଣ୍ଣନା କରି ସାବକାଶ ହୁଅନ୍ତି । ଏହି ବର୍ଣ୍ଣର ଏହି କାଳରେ ଏହି ବିଧାନ (ବିଧି)ରେ ଉପନୟନ, ଏହି ପ୍ରକାର ଆଚାର, ଏହି ପ୍ରକାର ବେଦାଧ୍ୟୟନ, ଏହିପ୍ରକାର ସମାବର୍ତ୍ତନ, ଏପରି ନିଜର ପତ୍ନୀ ସହିତ ବ୍ୟବହାର ଇତ୍ୟାଦି ସମସ୍ତ ବିଧି ସେଠାରେ ପ୍ରତିପାଦିତ ହୋଇଛି । ପୁଣି ପୁରୁଷାର୍ଥକୁ ଅର୍ଥାତ୍ ଧର୍ମାର୍ଥକାମମୋକ୍ଷକୁ ଏବଂ ବର୍ଣ୍ଣାଶ୍ରମର ବିବିଧ ଧର୍ମକୁ ବିଧାନ କରନ୍ତି ।

(ଗ) ଏହି ପରିସ୍ଥିତିରେ କପୀଳାଦିପ୍ରଣୀତ ସ୍ମୃତିଗୁଡ଼ିକର ଅନୁଷ୍ଠେୟବିଷୟରେ ଅବକାଶ ନାହିଁ । କାରଣ-ମୋକ୍ଷରେ ସାଧନ ତତ୍ତ୍ୱଜ୍ଞାନକୁ ଅଧିକୃତ କରି ସେ ସବୁ ରଚନା କରାଯାଇଅଛି । ଯଦି ସେଠାରେ ଅନବକାଶ (ଅବକାଶ ରହିତ) ହୁଏ । ତେବେ ତାହା ଅନର୍ଥକ ହେବ । ତେଣୁ କପିଳାଦି ସ୍ମୃତି ଗୁଡ଼ିକ ସହ ବିରୋଧ ନ ହୋଇ ବେଦାନ୍ତବାକ୍ୟଗୁଡ଼ିକର ବ୍ୟାଖ୍ୟାନ କରିବା ଉଚିତ୍ ।

(୪) ମୂଳ- କଥଂ ପୁନରୀକ୍ଷତ୍ୟାଦିଭ୍ୟୋ ହେତୁଭ୍ୟୋ ବ୍ରହ୍ମୈବ ସର୍ବଜ୍ଞଂ ଜଗତଃ କାରଣମିତ୍ୟବଧାରିତଃ ଶ୍ରୁତ୍ୟର୍ଥଃ ସ୍ମୃତ୍ୟନବକାଶଦୋଷପ୍ରସଙ୍ଗେନ ପୁନରାକ୍ଷିପ୍ୟତେ ?

(ଖ) ଭବେଦୟମନାକ୍ଷେପଃ ସ୍ୱତନ୍ତ୍ରପ୍ରଜ୍ଞାନାମ୍ । ପରତନ୍ତ୍ରପ୍ରଜ୍ଞାସ୍ତୁ ପ୍ରାୟେଣ ଜନାଃ ସ୍ୱାତନ୍ତ୍ର୍ୟେଣ ଶ୍ରୁତ୍ୟର୍ଥମବଧାରୟିତୁମଶକ୍ନୁବନ୍ତଃ ପ୍ରଖ୍ୟାତ ପ୍ରଣେତୃକାସୁ ସ୍ମୃତିଷ୍ୱବଲମ୍ବେରନ୍ । ତଦ୍ ବଳେନ ଚ ଶ୍ରୁତ୍ୟର୍ଥଂ ପ୍ରତିପିତ୍ସେରନ୍ । ଅସ୍ମତ୍ କୃତେ ଚ ବ୍ୟାଖ୍ୟାନେ ନ ବିଶ୍ୱସ୍ୟୁଃ ବହୁମାନାତ୍ ସ୍ମୃତୀନାଂ ପ୍ରଣେତୃଷୁ ।

(ଗ) କପିଳପ୍ରଭୃତୀନାଂ ଚାର୍ଷଂ ଜ୍ଞାନମପ୍ରତିହତଂ ସ୍ମର୍ଯ୍ୟତେ । ଶ୍ରୁତିଶ୍ଚ ଭବତି- 'ଋଷିଂ ପ୍ରସୂତଂ କପିଳଂ ଯସ୍ତମଗ୍ରେ ଜ୍ଞାନୈଃ ବିଭର୍ତ୍ତି ଜାୟମାନଞ୍ଚ ପଶ୍ୟେତ୍' (ଶ୍ୱେ ୫-୨) ଇତି । ତସ୍ମାନ୍ନୈଷାଂ ମତମଯଥାର୍ଥଂ ଶକ୍ୟଂ ସମ୍ଭାବୟିତୁମ୍ । ତର୍କାବଷ୍ଟମ୍ଭେନ ଚୈତେଽର୍ଥଂ ପ୍ରତିଷ୍ଠାପୟନ୍ତି । ତସ୍ମାଦପି ସ୍ମୃତି ବଳେନ ବେଦାନ୍ତାଃ ବ୍ୟାଖ୍ୟେୟା ଇତି ପୁନରାକ୍ଷେପଃ ।

(୪) ଭାଷାଂତର-(କ) ଯେତେବେଳେ ଈକ୍ଷତି ଆଦି ହେତୁଗୁଡ଼ିକ ଦ୍ୱାରା ସର୍ବଜ୍ଞ ବ୍ରହ୍ମ ଜଗତ୍ କାରଣ ବୋଲି ଶ୍ରୁତ୍ୟର୍ଥଦ୍ୱାରା ସଂପୂର୍ଣ୍ଣ ଭାବରେ ନିର୍ଣ୍ଣୟ କରାଗଲା



ଯେତେବେଳେ ସ୍ମୃତିର ଅନବକାଶ ଦୋଷ ପ୍ରସଙ୍ଗଦ୍ୱାରା ଶ୍ରୁତ୍ୟର୍ଥ ଉପରେ ପୁନର୍ବାର କାହିଁକି ଆକ୍ଷେପ କରାଗଲା ?

(ଖ) ଶ୍ରୁତ୍ୟର୍ଥର ଅବବୋଧରେ ସ୍ୱତନ୍ତ୍ରବୁଦ୍ଧି ରଖିଥିବା ବିଦ୍ୱାନମାନଙ୍କ ପାଇଁ ଏହି ଆକ୍ଷେପ କରାଯାଇନାହିଁ । କିନ୍ତୁ ପ୍ରାୟ ପରତନ୍ତ୍ରବୁଦ୍ଧି ସ୍ୱୀକାର କରୁଥିବା ମନୁଷ୍ୟ ସ୍ୱତନ୍ତ୍ର ରୂପରେ ଶ୍ରୁତ୍ୟର୍ଥକୁ ନିର୍ଣ୍ଣୟ କରିବାରେ ଅସମର୍ଥ ହୋଇ ପ୍ରସିଦ୍ଧବ୍ୟକ୍ତିମାନଙ୍କ ଦ୍ୱାରା ପ୍ରଣୀତ ସ୍ମୃତିକୁ ଅବଲମ୍ବନ କରେ ଏବଂ ତାହାର ବଳରେ ଶ୍ରୁତ୍ୟର୍ଥ ଜାଣିବା ଉଚିତ୍ । ସ୍ମୃତିର ପ୍ରଣେତାମାନଙ୍କ ଉପରେ ଅଧିକ ଆଦର ହେବାରୁ ସମ୍ଭବତଃ ସେମାନେ ଆମ୍ଭେ କରିଥିବା ବ୍ୟାଖ୍ୟାନ ଉପରେ ବିଶ୍ୱାସ କରି ନ ପାରନ୍ତି ।

(ଗ) କପିଳ ପ୍ରଭୃତିର ଜ୍ଞାନ ଆର୍ଷ ଓ ଅପ୍ରତିହତ ଅଟେ ବୋଲି ସ୍ମୃତି କହେ । 'ଋଷି ପ୍ରସୂତଂ' (ଯିଏ ସୃଷ୍ଟିର ଆରମ୍ଭରେ ଉତ୍ପନ୍ନ ହୋଇ କପିଳଋଷି (ହିରଣ୍ୟ ଗର୍ଭ)କୁ ଜ୍ଞାନରୁ ଉତ୍ପନ୍ନ କଲା, ଏବଂ ଜନ୍ମ ନେଇ ଦେଖା ହେଲା) ଏହି ଶ୍ରୁତି ମଧ କହେ । ତେଣୁ ସେମାନଙ୍କର ମତ ଅଯଥାର୍ଥ କହିବା ସମ୍ଭବ ନୁହେଁ । ସେମାନେ ତର୍କବଳରେ ଅର୍ଥ ସ୍ଥାପନ କରନ୍ତି । ଏହାଦ୍ୱାରା ସ୍ମୃତି ବଳରେ ବେଦାନ୍ତ ଓ ଉପନିଷଦ୍‌ର ବ୍ୟାଖ୍ୟା କରିବା ଉଚିତ୍ । ଏହା ହିଁ ପୁନର୍ବାର ଆକ୍ଷେପ କରାଗଲା ।

(୫) ମୂଳ-(କ) ତସ୍ୟ ସମାଧିଃ-ନାନ୍ୟସ୍ମୃତ୍ୟନବକାଶ ଦୋଷପ୍ରସଙ୍ଗାଦିତି । ଯଦି ସ୍ମୃତ୍ୟନବକାଶଦୋଷପ୍ରସଙ୍ଗେନେଶ୍ୱର କାରଣବାଦ ଆକ୍ଷିପ୍ୟେତ, ଏତାମପ୍ୟନ୍ୟା ଈଶ୍ୱରକାରଣ ବାଦିନ୍ୟଃ ସ୍ମୃତୟୋଽନବକାଶାଃ ପ୍ରସଜ୍ୟେରନ୍ ।

(ଖ) ତା ଉଦାହରିଷ୍ୟାମଃ-'ଯତ୍ତତ୍ ସୂକ୍ଷ୍ମମବିଜ୍ଞେୟମ୍' ଇତି ପରଂ ପ୍ରକୃତ୍ୟ 'ସ ହ୍ୟନ୍ତରାତ୍ମା ଭୂତାନାଂ କ୍ଷେତ୍ରଜ୍ଞଶ୍ଚେତି କଥ୍ୟତେ' ଇତିଚୋକ୍ତ୍ୱା ତସ୍ମାଦବ୍ୟକ୍ତମୁତ୍ପନ୍ନଂ ତ୍ରିଗୁଣଂ ଦ୍ୱିଜସତ୍ତମ୍' ଇତ୍ୟାହ । ତଥାନ୍ୟତ୍ରାପି 'ଅବ୍ୟକ୍ତଂ ପୁରୁଷେ ବ୍ରହ୍ମନ୍ନିର୍ଗୁଣେ ସଂପ୍ରଲୀୟତେ' ଇତ୍ୟାହ । 'ଅତଶ୍ଚ ସଂକ୍ଷେପମିମଂ ଶୃଣୁଧ୍ୱଂ ନାରାୟଣଃ ସର୍ବମିଦଂ ପୁରାଣଃ । ସ ଚ ସର୍ଗକାଳେ ଚ କରୋତି ସର୍ବମ୍, ସଂହାରକାଳେ ଚ ତଦତ୍ତିଭୂୟଃ' । ଇତିପୁରାଣେ ।

(ଗ) ଭଗବତ୍‌ଗୀତାସୁ ଚ-'ଅହଂ କୃତ୍ସ୍ନସ୍ୟଜଗତଃ ପ୍ରଭବଃ ପ୍ରଳୟସ୍ତଥା' (ଭ. ଗୀ ୭-୬) ଇତି । ପରମାତ୍ମାନମେବ ଚ ପ୍ରକୃତ୍ୟାପସ୍ତମ୍ଭଃ ପଠତି- 'ତସ୍ମାତ୍ କାୟାଃ ପ୍ରଭବନ୍ତି ସର୍ବେସମ ମୂଳଂ ଶାଶ୍ୱତିକଃ ସ ନିତ୍ୟଃ' (ଧ. ସୂ ୧-୮-୨୩-୨) ଇତି । ଏବମନେକାଶଃ ସ୍ମୃତିଷ୍ୱପୀଶ୍ୱରଃ କାରଣତ୍ୱେନୋପପାଦନତ୍ୱେ ନ ଚ ପ୍ରକାଶ୍ୟତେ ।

**(୫) ଭାଷାଂତର**-ସିଦ୍ଧାନ୍ତ (କ) ଏହାର ସମାଧାନ କରାଯାଇଛି ବୋଲି କହିବା ଯୁକ୍ତିସଂଗତ ନୁହେଁ । କାରଣ- ଏହା ସ୍ୱୀକାର କଲାପରେ ମଧ ଅନ୍ୟ ସ୍ମୃତି ଗୁଡ଼ିକରେ ଅନବକାଶ ଦୋଷ ପ୍ରସଙ୍ଗ ହେବ । ଯଦି ସାଂଖ୍ୟ ସ୍ମୃତିର ଅନବକାଶ ଦୋଷ ପ୍ରସଙ୍ଗ

ଦ୍ୱାରା ଈଶ୍ୱରକାରଣବାଦର ଉପରେ ଆକ୍ଷେପ କରାଯାଏ, ତେବେ ଏହିପ୍ରକାର ଈଶ୍ୱର କାରଣ ପ୍ରତି ପାଦକ ଅନ୍ୟ (ମନୁ) ପ୍ରଭୃତି ସ୍ମୃତି ଅନବକାଶଦୋଷଦ୍ୱାରା ପ୍ରସକ୍ତ ହେବେ ।

(ଖ) ସେଗୁଡ଼ିକୁ ଉଦାହରଣ ଦିଆଯାଇଅଛି- 'ଯତ୍ତତ୍ ସୂକ୍ଷ୍ମଂ' (ଯାହା ସେ ସୂକ୍ଷ୍ମ ଓ ଅବିଜ୍ଞେୟ) ଏହିପ୍ରକାର ପରଂବ୍ରହ୍ମକୁ ପ୍ରସ୍ତୁତ କରି 'ସହ୍ୟନ୍ତରାତ୍ମା' (ନିଶ୍ଚିତ ଭାବେ ସେ ଭୂତର ଅନ୍ତରାତ୍ମା ଓ କ୍ଷେତ୍ରଜ୍ଞ ଅଟେ- ଏହାହିଁ କୁହାଯାଇଅଛି) ଏହା କହି 'ତସ୍ମାଦବ୍ୟକ୍ତଂ' (ହେ ଦ୍ୱିଜଶ୍ରେଷ୍ଠ ! ତାହାଦ୍ୱାରା ତ୍ରିଗୁଣାତ୍ମକ ଅବ୍ୟକ୍ତ ନାମ ରୂପରେ ଅନଭିବ୍ୟକ୍ତ ଜଗତ ଉତ୍ପନ୍ନ ହୁଏ) ଏହାହିଁ କୁହାଗଲା । ସେହିପରି ଅନ୍ୟ ସ୍ଥଳରେ 'ଅବ୍ୟକ୍ତଂ' (ହେ ବ୍ରହ୍ମନ୍ ! ନିର୍ଗୁଣ ପୁରୁଷଠାରେ ଅବ୍ୟକ୍ତ ହୁଏ) ବୋଲି କୁହାଯାଇଛି । ପୁନଶ୍ଚ 'ଅତଶ୍ଚ ସଂକ୍ଷେପମିମଂ' ତୁମେ ଏହାକୁ ସଂକ୍ଷେପରେ ଶୁଣ । ଏହି ସମସ୍ତ ଜଗତ ପୁରାଣପୁରୁଷ ନାରାୟଣରୂପ ଅଟେ । ସେ ସୃଷ୍ଟିକାଳରେ ସମସ୍ତଙ୍କୁ ଉତ୍ପନ୍ନ କରେ ଏବଂ ସଂହାରକାଳରେ ସମସ୍ତଙ୍କୁ ଲୟ କରେ, ଏହିପ୍ରକାର ପୁରାଣରେ କୁହାଯାଇଅଛି ।

(ଗ) ଭଗବତ୍ ଗୀତାରେ ମଧ୍ୟ 'ଅହଂ କୃତ୍ସ୍ନସ୍ୟ' (ମୁଁ ସମସ୍ତ ଜଗତର ଉତ୍ପତ୍ତି ଓ ପ୍ରଳୟସ୍ଥଳ ଅଟେ) କୁହାଯାଇଛି । ପରମାତ୍ମାକୁ ପ୍ରସ୍ତୁତ କରି ଆପସ୍ତମ୍ବରେ ମଧ୍ୟ କୁହାଯାଇଛି- 'ତସ୍ମାତ୍କାୟଃ' (ସେ ପରମେଶ୍ୱରରୁ ବ୍ରହ୍ମାଦିଠାରୁ ସ୍ତମ୍ବ ପର୍ଯ୍ୟନ୍ତ ସବୁ ଶରୀର ଉତ୍ପନ୍ନ ହୁଏ । ତେଣୁ ସେ ଉପାଦାନ, କୂଟସ୍ଥ ଓ ନିତ୍ୟ ଅଟେ) ଏହିପରି ଅନେକ ପ୍ରକାରରେ ସ୍ମୃତିରେ ଈଶ୍ୱର ନିମିତ୍ତ କାରଣ ଓ ଉପାଦାନ କାରଣ ରୂପରେ ବର୍ଣ୍ଣନା କରାଯାଇଛି ।

(୬) ମୂଳ-(କ) ସ୍ମୃତିବଲେନ ପ୍ରତ୍ୟବତିଷ୍ଠମାନସ୍ୟ ସ୍ମୃତିବଲେନୈବୋତ୍ତରଂ ବକ୍ଷ୍ୟାମୀତ୍ୟତୋଽୟମନ୍ୟ ସ୍ମୃତ୍ୟନବକାଶଦୋଷୋପନ୍ୟାସଃ । ଦର୍ଶିତଂ ତୁ ଶ୍ରୁତୀ ନାମୀଶ୍ୱର କାରଣ ବାଦଂ ପ୍ରତି ତାତ୍ପର୍ଯ୍ୟମ୍ ।

(ଖ) ବିପ୍ରତିପତ୍ତୌ ସ୍ମୃତୀନାମବଶ୍ୟକର୍ତ୍ତା ବ୍ୟେନ୍ୟ ତରପରିଗ୍ରହେଽନ୍ୟଽତର ପରିତ୍ୟାଗେ ଚ ଶ୍ରୁତ୍ୟନୁସାରିଣ୍ୟଃ ସ୍ମୃତୟଃ ପ୍ରମାଣମ୍ । ଅନ୍ୟପେକ୍ଷ୍ୟ ଇତରାଃ । ତଦୁକ୍ତଂ ପ୍ରମାଣ ଲକ୍ଷଣେ- 'ବିରୋଧେ ତ୍ୱନପେକ୍ଷଂ ସ୍ୟାଦସତି ହ୍ୟନୁମାନମ୍' (ଜୈ. ସୂ ୧-୩-୩) ଇତି ।

(ଗ) ନ ଚାତୀନ୍ଦ୍ରିୟାନର୍ଥାଞ୍ଜ୍ ଶ୍ରୁତି ମନ୍ତରେଣ କଶ୍ଚିଦୁପ ଲଭତ ଇତି ଶକ୍ୟଂ ସମ୍ଭାବୟିତୁମ୍, ନିମିତ୍ତାଭାବାତ୍ । ଶକ୍ୟଂ କପିଲାଦୀନାଂ ସିଦ୍ଧାନାମପ୍ରତିହତ ଜ୍ଞାନତ୍ୱାଦିତି ଚେତ୍-ନ, ସିଦ୍ଧେରପି ସାପେକ୍ଷତ୍ୱାତ୍ ।

(ଘ) ଧର୍ମାନୁଷ୍ଠାନାପେକ୍ଷା ହି ସିଦ୍ଧିଃ । ସ ଚ ଧର୍ମଶ୍ଚୋଦନା ଲକ୍ଷଣଃ । ତତଶ୍ଚ ପୂର୍ବସିଦ୍ଧାୟାଶ୍ଚୋଦନାୟା ଅର୍ଥୋ ନ ପଶ୍ଚିମ ସିଦ୍ଧପୁରୁଷବଚନ ବଶେନାତି ଶଙ୍କିତୁଂ ଶକ୍ୟତେ । ସିଦ୍ଧ ବ୍ୟାପାଶ୍ରୟକଳ୍ପନାୟାମପି ବହୁତ୍ୱାତ୍ ସିଦ୍ଧାନାଂ ପ୍ରଦର୍ଶିତେନ ପ୍ରକାରେଣ ସ୍ମୃତିବିପ୍ରତିପତ୍ତୌ ସତ୍ୟାଂ ନ ଶ୍ରୁତିବ୍ୟାପାଶ୍ରୟାଦନ୍ୟନ୍ନିର୍ଣ୍ଣୟ କାରଣମସ୍ତି ।



**(୬) ଭାଷାଂତର**-(କ) ସ୍ମୃତି ବାକ୍ୟଗୁଡ଼ିକ ପ୍ରମାଣ ଦେଇ ଆତ୍ମମତକୁ ବିରୋଧ କରୁଥିବା ପକ୍ଷକୁ ଆମ୍ଭେ ହିଁ ସ୍ମୃତି ବଳରେ କହିବୁ । ତେଣୁ ଏହା ଅନ୍ୟସ୍ମୃତି ଅନବକାଶ ଦୋଷର ଉପନ୍ୟାସ କରାଗଲା । କିନ୍ତୁ ଶ୍ରୁତିଗୁଡ଼ିକର ତାତ୍ପର୍ଯ୍ୟ ଈଶ୍ୱର କାରଣବାଦରେ ଦେଖାଇ ଦିଆଯାଉଅଛି ।

(ଖ) ସ୍ମୃତିର ପରସ୍ପର ମଧ୍ୟରେ ବିରୋଧ ହେଲେ ଗୋଟିକର ଗ୍ରହଣ ଓ ଅନ୍ୟଟିର ପରିତ୍ୟାଗ କରାଗଲେ ଅବଶ୍ୟ ସ୍ମୃତିଗୁଡ଼ିକ ଶ୍ରୁତ୍ୟନୁସାରୀ ପ୍ରମାଣ ହୁଅନ୍ତି ଏବଂ ଅନ୍ୟ ସ୍ମୃତିଗୁଡ଼ିକ (ଯେଉଁମାନେ କି ଶ୍ରୁତ୍ୟନୁସାରୀ ନୁହଁନ୍ତି, ସେମାନେ) ଅନପେକ୍ଷା ପ୍ରମାଣ ଅଟନ୍ତି । କାରଣ- 'ବିରୋଧେ ତ୍ୱପେକ୍ଷଂ' ଉପଲବ୍ଧ ଶ୍ରୁତିର ସହିତ ସ୍ମୃତିର ଯଦ୍ୟପି ବିରୋଧ ହୁଏ, ତେବେ ସେ ସ୍ମୃତି ଅପ୍ରମାଣରୂପ ହୁଏ । ବିରୋଧ ନ ହେଲେ ଶ୍ରୁତିର ଅନୁମାନ ହୁଏ) ଏହି ପ୍ରକାର ଲକ୍ଷଣରେ ତାହା କୁହାଗଲା ।

(ଗ) ଶ୍ରୁତି ବ୍ୟତିତ ଅତୀନ୍ଦ୍ରିୟ ଅର୍ଥର କୌଣସି ଉପଲବ୍ଧ କରାଯାଏ ବୋଲି ସମ୍ଭାବନା କରାଯାଏ ନାହିଁ, କାରଣ-ଶ୍ରୁତି ବ୍ୟତିତ ଅନ୍ୟ କିଏ ନିମିତ୍ତକାରଣ ନୁହେଁ, (ଅର୍ଥାତ୍ ଶ୍ରୁତି ହିଁ ସମସ୍ତ ପ୍ରମାଣର ନିମିତ୍ତ କାରଣ ଯୋଗୁଁ ସେ ଅନ୍ୟ ବସ୍ତୁର ପ୍ରମାଣ ଅଟେ) ଯଦି କୁହାଯାଏ ଯେ- ଅପ୍ରତିହତ ଜ୍ଞାନଯୋଗୁଁ କପିଳାଦିସିଦ୍ଧ ଅତୀନ୍ଦ୍ରିୟ ଅର୍ଥର ଜ୍ଞାନ ହୁଏ, ତାହା ମଧ୍ୟ ଠିକ୍ ନୁହେଁ, କାରଣ-ସିଦ୍ଧ ହିଁ ସାପେକ୍ଷା ।

(ଘ) ସିଦ୍ଧ ଧର୍ମାନୁଷ୍ଠାନକୁ ଅପେକ୍ଷା କରି ହୁଏ । ସେହି ଧର୍ମ ଚୋଦନାତ୍ମକ ବିଧି ପ୍ରମାଣକ । ତେଣୁ ପୂର୍ବସିଦ୍ଧ-ଚୋଦନାରୂପକ ଅର୍ଥ ଅନନ୍ତରସିଦ୍ଧ ପୁରୁଷର ବଚନବଳରେ ଆକ୍ଷେପ କରିବାକୁ ସମର୍ଥ ହୁଏ ନାହିଁ । ସିଦ୍ଧପୁରୁଷମାନଙ୍କର ବଚନଗୁଡ଼ିକୁ ଆଶ୍ରୟ କରି ବେଦାର୍ଥର କଳ୍ପନା କରିବାରେ ସିଦ୍ଧପୁରୁଷ ବହୁତ ହେବାରୁ ପୂର୍ବରୁ ବହୁପ୍ରକାରେ ପ୍ରଦର୍ଶିତ ସ୍ମୃତି ବାକ୍ୟଗୁଡ଼ିକର ବିରୋଧ ସ୍ଥଳରେ ଶ୍ରୁତି ଆଶ୍ରୟର ବ୍ୟତୀତ କୌଣସି ଅନ୍ୟ ନିର୍ଣ୍ଣାୟକ ନୁହେଁ ।

(୭) ମୂଳ-(କ) ପରତନ୍ତ୍ରସ୍ୟାପି ନାକସ୍ମାତ୍ ସ୍ମୃତି ବିଶେଷ ବିଷୟଃ ପକ୍ଷପାତୋ ଯୁକ୍ତଃ, କସ୍ୟଚିତ୍ କ୍ୱଚିତ୍ ପକ୍ଷପାତେ ସତି ପୁରୁଷମତିବୈଶ୍ୱରୂପ୍ୟେଣ ତତ୍ତ୍ୱାବ୍ୟବସ୍ଥାନପ୍ରସଙ୍ଗାତ୍ । ତସ୍ମାତ୍ତସ୍ୟାପି ସ୍ମୃତିବିପ୍ରତିପତ୍ତ୍ୟୁପନ୍ୟାସେନ ଶ୍ରୁତ୍ୟନୁସାରାନୁସାର ବିଷୟ ବିବେନଚନେ ଚ ସନ୍ମାର୍ଗେ ପ୍ରଜ୍ଞା ସଂଗ୍ରହଣୀୟା ।

(ଖ) ଯା ତୁ ଶ୍ରୁତିଃ କପିଳସ୍ୟ ଜ୍ଞାନାତିଶୟଂ ପ୍ରଦର୍ଶୟନ୍ତୀ ପ୍ରଦର୍ଶିତା ନ ତୟା ଶ୍ରୁତିବିରୁଦ୍ଧମପି କାପିଳଂ ମତଂ ଶ୍ରଦ୍ଧାତୁଂ ଶକ୍ୟମ୍, କପିଳମିତି ଶ୍ରୁତିସାମାନ୍ୟମାତ୍ରତ୍ୱାତ୍, ଅନ୍ୟସ୍ୟ ଚ କପିଳସ୍ୟ ସଗରପୁତ୍ରାଣାଂ ପ୍ରତୁପ୍ତର୍ବାସୁଦେବନାମ୍ନଃ ସ୍ମରଣାତ୍ । ଅନ୍ୟାର୍ଥ ଦର୍ଶନସ୍ୟଃ ଚ ପ୍ରାପ୍ତିରାହିତସ୍ୟାସାଧକତ୍ୱାତ୍ ।

(ଗ) ଭବତି ଚାନ୍ୟା ମନୋର୍ମାହାତ୍ମ୍ୟଂ ପ୍ରଖ୍ୟାପୟନ୍ତୀ ଶ୍ରୁତିଃ- 'ଯଦ୍ ବୈ କିଞ୍ଚ ମନୁରବଦତ୍ତଦ୍ ଭେଷଜମ୍' (ତୈ. ସଂ ୨-୨--୧୦-୨) ଇତି ।

(ଘ) ମନୁନା ଚ 'ସର୍ବଭୂତେଷୁ ଚାତ୍ମାନଂ ସର୍ବ ଭୂତାନି ଚାତ୍ମନି । ସଂପଶ୍ୟାନ୍ନାତ୍ମଯାଜୀ ବୈ ସ୍ୱାରାଜ୍ୟମଧିଗଚ୍ଛତି' (୧୨-୯୧) ଇତି ସର୍ବାତ୍ମତ୍ୱଦର୍ଶନଂ ପ୍ରଶଂସତା କାପିଲଂ ମତଂ ନିନ୍ଦ୍ୟତ ଇତି ଗମ୍ୟତେ । କପିଲୋ ହି ନ ସର୍ବାତ୍ମତ୍ୱଦର୍ଶନମନୁମନ୍ୟତେ, ଆତ୍ମଭେଦାଭ୍ୟୁପଗମାତ୍ ।

**(୭) ଭାଷାଂତର**-(କ) ପରତନ୍ତ୍ରବୁଦ୍ଧିକୁ ସ୍ୱୀକାର କରୁଥିବା ପୁରୁଷର ଅକସ୍ମାତ୍ ବିନାକାରଣରେ କୌଣସି ବିଶେଷସ୍ମୃତିର ବିଷୟରେ ପକ୍ଷପାତ କରିବା ଠିକ୍ ନୁହେଁ । କାରଣ-କୌଣସି ପରତନ୍ତ୍ରପ୍ରଜ୍ଞାର କୌଣସି ବିଶେଷ ସ୍ମୃତିରେ ପକ୍ଷପାତ ହେଲେ ପୁରୁଷ ବୁଦ୍ଧିର ବିଚିତ୍ରତା ଦ୍ୱାରା ତତ୍ତ୍ୱର ଅବ୍ୟବସ୍ଥା ହେବ । ଏଣୁ ସ୍ମୃତି ବିରୋଧର ଉପନ୍ୟାସ ହେଲେ ଏହିସ୍ମୃତି ଶ୍ରୁତ୍ୟନୁସାରୀ ହୁଏ, ବା ଶ୍ରୁତ୍ୟନନୁସାରୀ ହୁଏ- ଏହି ବିଷୟରେ ବିବେଚନା କରି ତାହାର ବୁଦ୍ଧି ସନ୍ମାର୍ଗରେ ଗ୍ରହଣ କରିବା ଉଚିତ୍ ।

(ଖ) ଯେଉଁ ଶ୍ରୁତି କପିଳର ଜ୍ଞାନାତିଶୟକୁ ଦେଖାଇ ଦେଉଛି' ଓ ଦେଖାଇଦେଲା ବିରୁଦ୍ଧ ହୋଇଥିବା କପିଳମତ ଉପରେ ଶ୍ରଦ୍ଧା କରାଯାଇପାରେ । କାରଣ- 'କପିଳ' ଏହି ପ୍ରକାର କେବଳ ସାମାନ୍ୟଶ୍ରୁତିମାତ୍ର ଅଟେ । ଅର୍ଥାତ୍ ସାଂଖ୍ୟସ୍ମୃତିପ୍ରଣେତା କପିଳ ଓ ଶ୍ରୁତ୍ୟୁକ୍ତ କପିଳ-ଏହି ଦୁଇଟି ମଧ୍ୟରେ କେବଳ ଶବ୍ଦସାଦୃଶ୍ୟ । ଯଜ୍ଞୀୟ ଅଶ୍ୱକୁ ରକ୍ଷା କରିବା ନିମିତ୍ତ-ନିଯୁକ୍ତ ହୋଇଥିବା ସଗରପୁତ୍ରମାନଙ୍କୁ ଶାପଦ୍ୱାରା ବହନ କରିଥିବା ବାସୁଦେବ ନାମକ ଏକ ଅନ୍ୟ କପିଳ ମଧ୍ୟ ସ୍ମୃତିରେ ପ୍ରସିଦ୍ଧ ଅଟନ୍ତି । କୌଣସି ଅନ୍ୟପ୍ରମାଣ ଦ୍ୱାରା ଅପ୍ରାପ୍ତ ଅନ୍ୟାର୍ଥଦର୍ଶନ-ଅନ୍ୟଅର୍ଥର ଅନୁବାଦ ସ୍ୱାର୍ଥସାଧକ ହୁଏ ନାହିଁ ।

(ଗ) 'ଯଦ୍ ବୈ କିଞ୍ଚ' (ଯାହାକୁ ଯାହା ମନୁ କହିଛନ୍ତି ସେହି ସବୁ ଔଷଧ) ଏହି ପ୍ରକାର ମନୁର ମାହାତ୍ମ୍ୟ ବର୍ଣ୍ଣନା କରୁଥିବା ବେଦବାକ୍ୟ ଅଛି । 'ସର୍ବଭୂତେଷୁ' (ସବୁ ପ୍ରାଣୀମାନଙ୍କଠାରୁ ଆତ୍ମାକୁ ଓ ଆତ୍ମାରେ ସମସ୍ତଭୂତକୁ ଦେଖି ଆତ୍ମଯାଜୀ ନିଶ୍ଚିତ ଭାବେ ସ୍ୱରାଜ୍ୟ ବ୍ରହ୍ମକୁ ପାଏ) ଏହି ପ୍ରକାର ପ୍ରତୀତ ହୁଏ ଯେ- ସର୍ବାତ୍ମତ୍ୱ-ଦର୍ଶନର ପ୍ରଶଂସା କରି ମନୁ କପିଳମତକୁ ନିନ୍ଦା କରିଛନ୍ତି । କପିଳ କିନ୍ତୁ ସର୍ବାତ୍ମତ୍ୱ ଦର୍ଶନକୁ ସ୍ୱୀକାର କରନ୍ତି ନାହିଁ, କାରଣ-ସେ ଆତ୍ମ ଭେଦକୁ ସ୍ୱୀକାର କରନ୍ତି ।

(୮) ମୂଳ-(କ) ମହାଭରତେଽପି 'ବହବଃ ପୁରୁଷା ବ୍ରହ୍ମନ୍ନୁତାହୋ ଏକ ଏବ ତୁ' ଇତି ବିଚାର୍ଯ୍ୟ 'ବହବଃ ପୁରୁଷାଃ ରାଜନ୍ ସାଂଖ୍ୟ ଯୋଗବିଚାରିଣାମ୍' ଇତି ପରପକ୍ଷମୁପନ୍ୟସ୍ୟ ତଦ୍ ବ୍ୟୁଦାସେନ- 'ବହୂନାଂ ପୁରୁଷାଣାଂ ହି ଯଥୈକା ଯୋନିରୁଚ୍ୟତେ, ତଥା ତଂ ପୁରୁଷଂ ବିଶ୍ୱମାଖ୍ୟାସ୍ୟାମି ଗୁଣାଧିକମ୍' ଇତ୍ୟୁପକ୍ରମ୍ୟ 'ମମାନ୍ତରାତ୍ମା ଏବ ଚ ଯେ ଚାନ୍ୟେ ଦେହସଂସ୍ଥିତାଃ । ସର୍ବେଷାଂ ସାକ୍ଷିଭୂତୋଽସୌ ନ ଗ୍ରାହ୍ୟ କେନଚିତ କ୍ୱଚିତ୍ ॥

ବିଶ୍ୱମୂର୍ଦ୍ଧା ବିଶ୍ୱଭୂଜୋ ବିଶ୍ୱପାଦାକ୍ଷିନାସିକଃ । ଏକଶ୍ଚରତି ଭୂତେଷୁ ସ୍ୱୈରଚାରୀ ଯଥାସୁଖମ୍' ॥ ଇତି ସର୍ବାତ୍ମତୈବ ନିର୍ଦ୍ଧାରିତା ॥

(ଖ) ଶ୍ରୁତିଶ୍ଚ ସର୍ବାତ୍ମତାୟାଂ ଭବତି- ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବାଭୂତ୍ ବିଜାନତଃ । ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ' ଈଶା-୭) ଇତ୍ୟେବଂବିଧା । ଅତଶ୍ଚ ସିଦ୍ଧମାତ୍ମଭେଦକଳ୍ପନୟାପି କପିଳସ୍ୟ ତନ୍ତ୍ରଂ ବେଦବିରୁଦ୍ଧଂ ବେଦାନୁସାରିମନୁବଚନ ବିରୁଦ୍ଧଞ୍ଚ, ନ କେବଳଂ ସ୍ୱତନ୍ତ୍ର ପ୍ରକୃତିକଳ୍ପନୟୈବେତି ।

(ଗ) ବେଦସ୍ୟ ହି ନିରପେକ୍ଷଂ ସ୍ୱାର୍ଥେ ପ୍ରାମାଣ୍ୟଂ ରବେରିବ ରୂପବିଷୟେ। ପୁରୁଷବଚସାଂ ତୁ ମ୍ ଲାନ୍ତରାନପକ୍ଷଂ କକ୍ତୃସ୍ମୃତିବ୍ୟବହିତଂ ଚୋତି ବିପ୍ରକର୍ଷଃ । ତସ୍ମାଦ୍‌ବେଦବିରୁଦ୍ଧେ ବିଷୟେ ସ୍ମୃତ୍ୟନବକାଶପ୍ରସଙ୍ଗୋ ନ ଦୋଷଃ ।

(୮) ଭାଷାଂତର-(କ) ମହାଭାରତରେ ମଧ୍ୟ 'ବହବଃ ପୁରୁଷାଃ(ହେ ବ୍ରହ୍ମନ୍ ! ଆତ୍ମା ବହୁତ ଅଥବା ଏକ ଅଟେ) ଏହି ପ୍ରକାର ବିଚାର କରି 'ବହବଃ ପୁରୁଷାଃ' (ହେ ରାଜନ୍ ! ସାଂଖ୍ୟ ଓ ଯୋଗର ଦାର୍ଶନିକମାନଙ୍କ ମତରେ ପୁରୁଷ ଆତ୍ମା ବହୁତ । ଅର୍ଥାତ୍ ପ୍ରତ୍ୟେକ ଶରୀରରେ ଭିନ୍ନଭିନ୍ନ) ଏହିପରି ପରପକ୍ଷର ଉପନ୍ୟାସ କରି ଏହାର ନିରାକରଣ କରିବା ପାଇଁ 'ବହୂନାଂ ପୁରୁଷାଣାଂ' (ଯେପରି ବହୁତ ପୁରୁଷାକାର ଦେହଗୁଡ଼ିକର ଗୋଟିଏ ପୃଥିବୀ ଉପାଦାନରୂପରେ କୁହାଯାଇଅଛି, ସେପରି ମଧ୍ୟ ଯାହା ସମସ୍ତଙ୍କର ଉପାଦାନ ହେଲେ ସର୍ବାତ୍ମକ ଓ ସର୍ବଗୁଣ-ସଂପନ୍ନ ହୁଏ, ତାହାକୁ ଆତ୍ମା କୁହାଯାଏ) ଏହିପ୍ରକାର ଉପକ୍ରମ କରି 'ମମାନ୍ତରାତ୍ମା' (ମୋର ଏବଂ ତୁମ୍ଭର ଯାହା ଅନ୍ତରାତ୍ମା, ଏବଂ ଦେହସ୍ଥିତ, ଯାହା ଅନ୍ୟ ଆତ୍ମା, ସେ ସମସ୍ତଙ୍କର ସାକ୍ଷିଭୂତ ଅଟେ । ସେ କାହା ଉପରେ କାହାଦ୍ୱାରା ଗ୍ରାହ୍ୟ ନୁହେଁ । ଲୋକପ୍ରସିଦ୍ଧ ଦେବ, ମନୁଷ୍ୟାଦି ସମସ୍ତଙ୍କର ମସ୍ତକ ତାହାର ମସ୍ତକ । ସେହିପରି ସମସ୍ତଙ୍କର ହାତ, ତାର ହାତ । ସମସ୍ତଙ୍କର ପାଦ, ନେତ୍ର, ନାସିକା ହେଉଛନ୍ତି ତାହାର ପାଦ, ନେତ୍ର, ନାସିକା, ଏକାକୀ, ସ୍ୱତନ୍ତ୍ର, ସୁଖପୂର୍ବକ ଭୂତଗୁଡ଼ିକରେ ବିଚରଣ କରେ ଅର୍ଥାତ୍ ସମସ୍ତଙ୍କୁ ଜାଣେ) ଏହିପ୍ରକାର ସର୍ବାତ୍ମତ୍ୱ ମଧ୍ୟ ନିର୍ଦ୍ଧାରଣ କରାଗଲା ।

(ଗ) 'ଯସ୍ମିନ୍ ସର୍ବାଣି' (ଯେତେବେଳେ ଜ୍ଞାନୀପୁରୁଷ ପାଇଁ ସର୍ବଭୂତ ହିଁ ଆତ୍ମା ହୁଏ, ସେତେବେଳେ ଏକତ୍ୱକୁ ଦେଖୁଥିବା ସେହି ବିଦ୍ୱାନକୁ କ'ଣ ମୋହ, କ'ଣ ବା ଶୋକ ହେବ) ଏହିପ୍ରକାର ଶ୍ରୁତି ମଧ୍ୟ ସର୍ବାତ୍ମତାରେ ଅଛି । ତେଣୁ କେବଳ ସ୍ୱତନ୍ତ୍ର ପ୍ରଧାନର କଳ୍ପନାକରିବାରେ ନୁହେଁ, କେବଳ ଆତ୍ମଭେଦର କଳ୍ପନାରେ ମଧ୍ୟ କପିଳତନ୍ତ୍ର ବେଦବିରୁଦ୍ଧ ନୁହେଁ ।

(ଘ) ବେଦାନୁସାରୀ ମନୁବଚନଦ୍ୱାରା ବିରୁଦ୍ଧ ହୁଏ, କାରଣ-ଯେପରି ସୂର୍ଯ୍ୟର ରୂପ ବିଷୟରେ ନିରପେକ୍ଷଗ୍ରାମାଣ୍ୟ ସେପରି ନିଜ ଅର୍ଥରେ ବେଦର ପ୍ରାମାଣ୍ୟ ନିରପେକ୍ଷ ଅଟେ । ପୁରୁଷବଚନଗୁଡ଼ିକର ପ୍ରାମାଣ୍ୟ କିନ୍ତୁ ମୂଳାନ୍ତରକୁ ଅପେକ୍ଷା କରେ ଏବଂ

ସେଠାରେ ବକ୍ତାର ଅର୍ଥ ସ୍ମୃତିର ବ୍ୟବଧାନ । ଏହାହିଁ ମହାନ୍ ଅନ୍ତର । ତେଣୁ ବେଦବିରୁଦ୍ଧ ବିଷୟରେ ସ୍ମୃତିର ଅନବକାଶ ପ୍ରସଙ୍ଗ ଦୋଷ ନୁହେଁ ।

(୧) ମୂଳ-କୃତଶ୍ଚ ସ୍ମୃତ୍ୟନବକାଶପ୍ରସଙ୍ଗୋ ନ ଦୋଷଃ ?

**(୧) ଭାଷାଂତର**-(କ) ସ୍ମୃତିର ମଧ୍ୟ ଅନବକାଶପ୍ରସଙ୍ଗ ଦୋଷ କାହିଁକି ନ ହୁଏ ?

## इतरेषां चानुपलब्धेः ॥२॥

## ଇତରେଷାଂ ଚାନୁପଲବ୍ଧେଃ ॥୨।୧।୨॥

ଇତରେଷାଂ- ସାଂଖ୍ୟ ସ୍ମୃତିରେ ପ୍ରସିଦ୍ଧ ପ୍ରଧାନଭିନ୍ନ ମହତ୍ ଆଦି ତତ୍ତ୍ୱଗୁଡ଼ିକର ଅନୁପଲବ୍ଧେଃ-ଲୋକ ଅଥବା ବେଦରେ ଉପଲବ୍ଧ ନ ହେଲେ ସାଂଖ୍ୟସ୍ମୃତିର ଅପ୍ରମାଣ ସ୍ୱୀକାର କରିବାରେ କୌଣସି ଦୋଷ ନାହିଁ ।

(୨) ମୂଳ-(କ) ପ୍ରଧାନାଦିତରାଣି ଯାନି ପ୍ରଧାନ ପରିଣାମତ୍ୱେନ ସ୍ମୃତୌ କଳ୍ପିତାନି ମହଦାଦୀନି ନ ତାନି ବେଦେ ଲୋକେ ବୋପଲଭ୍ୟନ୍ତେ । ଭୂତେନ୍ଦ୍ରିୟାଣି ତାବଲ୍ଲୋକବେଦ ପ୍ରସିଦ୍ଧତ୍ୱାଚ୍ଛକ୍ୟନ୍ତେ ସ୍ମର୍ତୁମ୍ । ଆଲୋକବେଦ ପ୍ରସିଦ୍ଧତ୍ୱାତ୍ତୁ ମହଦାଦୀନଂ ଷଷ୍ଠସ୍ୟେବେନ୍ଦ୍ରିୟାର୍ଥସ୍ୟ ନ ସ୍ମୃତିରବକଳ୍ପତେ ।

(ଖ) ଯଦ୍ୟପି କ୍ୱଚିତ୍ତତ୍ ପରମିବ ଶ୍ରବଣମବଭାସତେ, ତଦପ୍ୟତତ୍ ପରଂ ବ୍ୟାଖ୍ୟାତମ୍ 'ଆନୁମାନିକମପ୍ୟେକେଷାମ୍' (ବ୍ର ୧।୪।୧) ଇତ୍ୟତ୍ର । କାର୍ଯ୍ୟସ୍ମୃତେରପ୍ରାମାଣ୍ୟାତ୍ କାରଣସ୍ମୃତେରପ୍ରାମାଣ୍ୟଂ ଯୁକ୍ତମିତ୍ୟଭିପ୍ରାୟଃ । ତସ୍ମାଦପି ନ ସ୍ମୃତ୍ୟନବକାଶପ୍ରସଙ୍ଗୋ ଦୋଷଃ, ତର୍କାବଷ୍ଟୟଂ ତୁ 'ନ ବିଲକ୍ଷଣତତ୍ୱାତ୍' (ବ୍ର.ସୂ ୨।୧।୪) ଇତ୍ୟାରଭ୍ୟୋନ୍ନଥିଷ୍ୟତି ।

**(୨) ଭାଷାଂତର-** (କ) ଯେଉଁ ପ୍ରଧାନ ବ୍ୟତିରିକ୍ତମହଦାଦି ତତ୍ତ୍ୱଗୁଡ଼ିକ ପ୍ରଧାନର ପରିମାଣ ରୂପରେ ସାଂଖ୍ୟ ସ୍ମୃତିରେ କଳ୍ପନା କରାଯାଇଅଛି, ସେମାନେ ବେଦ ଓ ଲୋକରେ ଉପଲବ୍ଧ ହୁଅନ୍ତି ନାହିଁ । ଲୋକ ଓ ବେଦରେ ଏହା ବିଖ୍ୟାତ ହେତୁ ଭୂତ ଓ ଇନ୍ଦ୍ରିୟଗୁଡ଼ିକ ସ୍ମୃତିରେ ପ୍ରତିପାଦିତ ହୁଅନ୍ତି । ପରନ୍ତୁ ଲୋକ ଓ ବେଦରେ ପ୍ରସିଦ୍ଧ ନ ହେଲେ ଷଷ୍ଠ ଇନ୍ଦ୍ରିୟର ସଦଶ ମହାଦାଦିର ସ୍ମୃତିରେ ପ୍ରତିପାଦନ ସମ୍ଭବ ହୁଏ ନାହିଁ ।

(ଖ) ଯଦ୍ୟପି କେଉଁ କେଉଁ ସ୍ଥାନରେ ଶ୍ରୁତି ମହାଦଦିପରକ ରୂପରେ ପ୍ରତୀତ ହୁଏ, ତାହାର ମଧ୍ୟ 'ନାନୁମାନିକମପ୍ୟେକେଷାଂ' ସୂତ୍ରରେ ଶ୍ରୁତି ଅତତ୍ ପରତ୍ୱମହଦାଦି ପ୍ରତିପାଦନ କରେ ନାହିଁ-ଏହା ହିଁ ବ୍ୟାଖ୍ୟା କରାଯାଇଅଛି । କାର୍ଯ୍ୟ-ମହଦାଦିସ୍ମୃତିର ଅପ୍ରମାଣ ହେଲେ କାରଣ ପ୍ରଧାନ ମଧ୍ୟ ସ୍ମୃତିରେ ଅପ୍ରମାଣ୍ୟ ହୁଏ- ଏହା ହିଁ ଅଭିପ୍ରାୟ । ତେଣୁ ସ୍ମୃତିର



ଅନବକାଶ ପ୍ରସଙ୍ଗ ଦୋଷ ନୁହେଁ ଏବଂ ସୂତ୍ରକାର ତର୍କାବଲମ୍ବନର ଖଣ୍ଡନ 'ନ ବିଲକ୍ଷଣତ୍ୱାତ୍' ଏହି ସୂତ୍ରଠାରୁ କରିବେ ।

## २ योगप्रत्युक्त्यधिकरणम् । सूं ३

## ଯୋଗପ୍ରତ୍ୟୁକ୍ତ୍ୟଧିକରଣ - ୨

## एतेन योगः प्रत्युक्तः ॥३॥

## (୧)-ଏତେନ ଯୋଗଃ ପ୍ରତ୍ୟୁକ୍ତଃ ୨-୧-୩

ଏତେନ-ସାଂଖ୍ୟ ସ୍ମୃତିରେ ନିରାକରଣ ଦ୍ୱାରା ଯୋଗଃ-ଯୋଗସ୍ମୃତି ମଧ୍ୟ, ପ୍ରତ୍ୟୁକ୍ତଃ-ନିରାକୃତ କରାଗଲା ।

(୨) ମୂଳ-(କ) ଏତେନ ସାଂଖ୍ୟସ୍ମୃତିପ୍ରତ୍ୟାଖ୍ୟାନେନ ଯୋଗସ୍ମୃତିରପି ପ୍ରତ୍ୟାଖ୍ୟାତା ଦ୍ରଷ୍ଟବ୍ୟେତ୍ୟତିଦିଚିତି । ତତ୍ରାପି ଶ୍ରୁତିବିରୋଧେନ ପ୍ରଧାନଂ ସ୍ୱତନ୍ତ୍ରମେବ କାରଣମ୍, ସହବାଦୀନ ଚ କାର୍ଯ୍ୟାଣ୍ୟଲୋକବେଦପ୍ରସିଦ୍ଧାନି କଳ୍ପ୍ୟନ୍ତେ ।

(ଖ) ନନ୍ୱେବଂ ସତି ସମାନନ୍ୟାୟତ୍ୱାତ୍ ପୂର୍ବେଣୈବ ତଦ୍‌ଗତମ୍, କିମର୍ଥଂ ପୁନରତିଦିଶ୍ୟତେ ? ଅସ୍ତି ହ୍ୟାତ୍ରାଭ୍ୟଧିକା ଶଙ୍କା । ସମ୍ୟଗ୍ ଦର୍ଶନାଭ୍ୟୁପାୟୋ ହି ଯୋଗୋ ବେଦେ ବିହିତଃ ''ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ' (ଛା ୨-୪-୫) ଇତି । ତ୍ରିରୁନ୍ନତଂ ସ୍ଥାପ୍ୟ ସମଂ ଶରୀରମ୍' (ଶ୍ୱେ ୨-୮) ଇତ୍ୟାଦିନା ଋସନାଦିକଳ୍ପନା ପୁରଃସରଂ ବହୁପ୍ରପଞ୍ଚଂ ଯୋଗବିଧାନଂ ଶ୍ୱେତାଶ୍ୱେତରୋପନିଷଦି ଦୃଶ୍ୟତେ ।

(ଗ) ଲିଙ୍ଗାନି ଚ ବୈଦିକାନି ଯୋଗବିଷୟାଣି ସହସ୍ରଶ ଉପଲଭ୍ୟନ୍ତେ- 'ତାଂ ଯୋଗମିତ ମନ୍ୟନ୍ତେ ସ୍ଥିରାମିନ୍ଦ୍ରିୟଧାରଣାମ୍' (କା ୨-୬-୧୮) ଇତି । ବିଦ୍ୟାମେତାଂ ଯୋଗବିଧିଂ କୃତ୍ସ୍ନମ୍' (କା ୨-୬-୧୮) ଇତି । ଚୈବମାଦୀନି ।

**(୨) ଭାଷାଂତର-** (କ) ଏହି ସାଂଖ୍ୟ ସ୍ମୃତିର ନିରାକରଣ ହେବା ଦ୍ୱାରା ଯୋଗ ସ୍ମୃତିର ମଧ୍ୟ ନିରାକରଣ ହେଲା ବୋଲି ଜାଣିବା ଉଚିତ । ଏହିପ୍ରକାର ସୂତ୍ରକାର ସୂତ୍ରରେ ପୂର୍ବନ୍ୟାୟର ଅତିଦେଶ କରିଛନ୍ତି । ଯୋଗରେ ମଧ୍ୟ ପ୍ରଧାନ ସ୍ୱତନ୍ତ୍ର କାରଣ ଅଟେ ଏବଂ ଲୋକ ଓ ବେଦର ଅପ୍ରସିଦ୍ଧ ମହଦାଦି କାର୍ଯ୍ୟ ହୁଏ । ଏହିପରି ଶ୍ରୁତିବିରୁଦ୍ଧ କଳ୍ପନା କରାଯାଇଛି ।

(ଖ) ଯଦି ସାଂଖ୍ୟସ୍ମୃତି ଓ ଯୋଗସ୍ମୃତିରେ ସମାନତା ଅଛି । ତେବେ ଏକନ୍ୟାୟରେ ପୂର୍ବାଧିକରଣର କଥନଦ୍ୱାରା ଏହି ଅଧିକରଣର ଅର୍ଥ ମଧ୍ୟ ଆସିଲା । ତେଣୁ ପୁନର୍ବାର ଏହାର ଅତିଦେଶ କାହିଁକି କରାଗଲା ? ତେଣୁ ଏଠାରେ ଅଧିକ ଆଶଙ୍କା ଅଛି କି- 'ଶ୍ରୋତବ୍ୟଃ (ଆତ୍ମାକୁ ଶ୍ରବଣ କରିବା ଉଚିତ, ମନନ କରିବା ଉଚିତ, ଓ ନିଦିଧ୍ୟାସନ କରିବା ଉଚିତ)

ଏହିପ୍ରକାର ସମ୍ୟଗଦର୍ଶନର ସାଧନଭୂତ ଯୋଗ ବେଦରେ ବିହିତ ଅଛି । 'ତ୍ରିରୁନ୍ନତଂ' (ବକ୍ଷଃସ୍ଥଳ, ଗ୍ରୀବା ଓ ତ୍ରିରୁନ୍ନତ ଶରୀରକୁ ସମାନ ଭାବରେରଖି ଯୋଗ କରାଯାଏ) ଇତ୍ୟାଦି ବାକ୍ୟଦ୍ୱାରା ଆସନାଦିରକଳ୍ପନା କରି ବିସ୍ତାର ପୂର୍ବକ ଯାଗର ବିଧାନ ଶ୍ୱେତାଶ୍ୱେତରୋପନିଷଦରେ ଦେଖାଯାଏ ।

(ଗ) 'ତାଂ ଯୋଗମିତି' (ସେହିସ୍ଥିର ଇନ୍ଦ୍ରିୟଧାରଣକୁ ଯାଗ କହନ୍ତି) ଏବଂ 'ବିଦ୍ୟାମେତାଂ' (ସେହି ବ୍ରହ୍ମବିଦ୍ୟା ଓ ସଂପୂର୍ଣ୍ଣ ଯୋଗବିଧିକୁ ପାଇ ନଚିକେତା ବ୍ରହ୍ମଭାବକୁ ପାଏ) ଇତ୍ୟାଦି ଯୋଗ ବିଷୟକ ସହସ୍ର ବୈଦିକଲିଙ୍ଗ ଉପଲବ୍ଧ ହୁଅନ୍ତି ।

(୩) ମୂଳ-(କ) ଯୋଗଶାସ୍ତ୍ରେଽପି 'ଅଥ ତତ୍ତ୍ୱଦର୍ଶନୋପାୟୋ ଯୋଗଃ' ଇତି ସମ୍ୟଗଦର୍ଶନାଭ୍ୟୁପାୟତ୍ୱେନୈବ ଯୋଗୋଽଙ୍ଗୀକ୍ରୀୟତେ । ଅତଃ ସଂପ୍ରତିପନ୍ନାର୍ଥୈକଦେଶତ୍ୱାଦଷ୍ଟକାଦିସ୍ମୃତି ବଦ୍ ଯୋଗସ୍ମୃତିରପ୍ୟପବଦନୀୟା ଭବିଷ୍ୟତୀତି-ଇୟମପ୍ୟଧିକାଶଙ୍କାଽତିଦେଶେନ ନିବର୍ତ୍ତ୍ୟତେ, ଅର୍ଥୈକଦେଶସଂପ୍ରତିପତ୍ତାବପ୍ୟର୍ଥୈକଦେଶବିପ୍ରତିପତ୍ତେଃ ପୂର୍ବୋକ୍ତାୟାଃ ଦର୍ଶନାତ୍ ।

(ଖ) ସତୀଷ୍ୱାପ୍ୟଧ୍ୟାତ୍ମବିଷୟାସୁ ବହ୍ୱୀଷୁ ସ୍ମୃତିଷୁ ସାଂଖ୍ୟଯୋଗସ୍ମୃତ୍ୟୋରେବ ନିରାକରଣେ ଯତ୍ନଃକୃତଃ । ସାଂଖ୍ୟଯୋଗୌ ହି ପରମପୁରୁଷାର୍ଥସାଧନତ୍ୱେନ ଲୋକେ ପ୍ରଖ୍ୟାତୌ, ଶିଷ୍ଟୈଶ୍ଚ ପରିଗୃହୀତୌ, ଲିଂଗେନ ଚ ଶୌତେନୋପବୃଂହିତୌ । 'ତତ୍କାରଣଂ ସାଂଖ୍ୟଯୋଗାଭିପନ୍ନଂ ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାଶୈଃ' (ଶ୍ୱେ ୬-୧୩) ଇତି ।

**(୩) ଭାଷାଂତର-** (କ) 'ଅଥ ତତ୍ତ୍ୱଦର୍ଶନଂ' (ଯୋଗ ହିଁ ତତ୍ତ୍ୱଦର୍ଶନର ସାଧନ ଅଟେ) ଏହିପ୍ରକାର ଯୋଗଶାସ୍ତ୍ରରେ ମଧ୍ୟ ଯୋଗକୁ ସମ୍ୟଗ୍ ଦର୍ଶନର ସାଧନ ରୂପରେ ସ୍ୱୀକାର କରାଯାଇଅଛି । ତେଣୁ ପ୍ରାମାଣିକ ଅର୍ଥୈକ ଅର୍ଥର ଏକଦେଶ (ଯୋଗାଂଶ) ହେଲେ ଅଷ୍ଟକାଦି ସ୍ମୃତି ଭଳି ଯୋଗସ୍ମୃତି ମଧ୍ୟ ଅନିରାକରଣୀୟ ହୋଇଯାଏ । ଏହି ଅଧିକଶଙ୍କା ମଧ୍ୟ ଅତିଦେଶ ଦ୍ୱାରା ନିବୃତ୍ତ ହୁଏ, କାରଣ-ଅର୍ଥର ଗୋଟିଏ ଅଂଶରେ ସଂପ୍ରତିପତ୍ତି (ପ୍ରାମାଣ୍ୟ) ହେଲେ ମଧ୍ୟ ଅର୍ଥର ଏକଦେଶ (ପ୍ରାଧାନାଦି)ରେ ପୂର୍ବୋକ୍ତ ବିପ୍ରତିପତ୍ତିବିରୋଧ ଦେଖାଯାଏ ।

(ଖ) ଅଧ୍ୟାତ୍ମବିଷୟକ ହେତୁ ସ୍ମୃତି ଥିଲେ ମଧ୍ୟ ସାଂଖ୍ୟସ୍ମୃତି ଓ ଯୋଗସ୍ମୃତିର ନିରାକରଣରେ ଯତ୍ନ କରାଗଲା, କାରଣ-ସାଂଖ୍ୟ ଓ ଯୋଗ ମୋକ୍ଷର ସାଧନ ରୂପରେ ସଂସାରରେ ପ୍ରସିଦ୍ଧ । ଏହା ମଧ୍ୟ ଶିଷ୍ଟପୁରୁଷ (ସାଧୁ)ମାନେ ଗ୍ରହଣ କରନ୍ତି । 'ତତ୍ କାରଣଂ' (ସାଂଖ୍ୟ ଓ ଯୋଗ ପ୍ରାପ୍ତ ହୋଇ ସେ ସମଗ୍ର କାରଣ ରୂପଦେବତାକୁ ଜାଣି ପୁରୁଷ ସମସ୍ତ ବନ୍ଧନଠାରୁ ମୁକ୍ତ ହୁଏ) ଏହି ପ୍ରକାର ଶ୍ରୁତିଲିଙ୍ଗ ଦ୍ୱାରା ସେ ପୁଷ୍ଟ (ଆଧାରିତ) ଅଟେ ।



(୪) ମୂଳ-(କ) ନିରାକରଣଂ ତୁ-ନ ସାଂଖ୍ୟଜ୍ଞାନେନ ବେଦନିରପେକ୍ଷେଣ ଯୋଗ ମାର୍ଗେଣ ବା ନିଃଶ୍ରେୟସମଧିଗମ୍ୟତ ଇତି । ଶ୍ରୁତିର୍ହି ବୈଦିକାଦାତ୍ମୈକତ୍ୱବିଜ୍ଞାନାଦନ୍ୟନିଃଶ୍ରେୟସସାଧନଂ କାରୟତି- 'ତମେବ ବିଦିତ୍ୱାଽତିମୃତ୍ୟୁମେତି, ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ' (ଶ୍ୱେ ୩-୮) ଇତି । ଦ୍ୱୈତିନୋ ହି ତେ ସାଂଖ୍ୟା ଯୋଗାଶ୍ଚ ନାତ୍ମୈକତ୍ୱ ଦର୍ଶନଃ ।

(ଖ) ଯତ୍ତୁ ଦର୍ଶନମୁକ୍ତଂ 'ତତ୍କାରଣଂ ସାଂଖ୍ୟଯୋଗାଭିପନ୍ନମ୍' ଇତି । ବୈଦିକମେବ ତତ୍ତ୍ୱଜ୍ଞାନଂଧ୍ୟାନଞ୍ଚ ସାଂଖ୍ୟଯୋଗଶବ୍ଦାଭ୍ୟାମଭିଲପ୍ୟତେ, ପ୍ରତ୍ୟାସତ୍ତେରିତ୍ୟବଗନ୍ତବ୍ୟମ୍ । ଯେନ ତ୍ୱଂଶେନ ନ ବିରୁଧ୍ୟେତେ ତେନେଷ୍ଟ ମେ ସାଂଖ୍ୟଯୋଗସ୍ମୃତ୍ୟୋଃ ସାବକାଶତ୍ୱମ୍ । ତଦ୍ୟଥା- 'ଅସଙ୍ଗୋ ହ୍ୟୟଂ ପୁରୁଷଃ' (ବୃ ୪-୩-୧୬) ଇତ୍ୟେବମାଦିଶ୍ରୁତିପ୍ରସିଦ୍ଧମେବ ପୁରୁଷସ୍ୟବିଶୁଦ୍ଧତ୍ୱଂ ନୁର୍ଗୁଣପୁରୁଷନିରୂପଣେନ ସାଂଖ୍ୟୈରଭ୍ୟୁପଗମ୍ୟତେ ।

(ଗ) ତଥା ଚ ଯୋଗୈରପି 'ଅଥ ପରବ୍ରାଡ଼୍ ବିବର୍ଣ୍ଣବାସା ମୁଣ୍ଡୋଽପରିଗ୍ରହଃ' (ଜାବା-୫) ଇତ୍ୟେବମାଦି ଶ୍ରୁତିପ୍ରସିଦ୍ଧମେବ ନିବୃତ୍ତିନିଷ୍ଠତ୍ୱଂ ପ୍ରବ୍ରଜ୍ୟାଦ୍ୟୁପଦେଶେ ନାନୁଗମ୍ୟତେ ।

(ଘ) ଏତେନ ସର୍ବାଣି ତର୍କସ୍ମରଣାନି ପ୍ରତିବକ୍ତବ୍ୟାନି । ତାନ୍ୟପି ତର୍କୋପପତ୍ତିଭ୍ୟାଂ ତତ୍ତ୍ୱଜ୍ଞାନାୟୋପକୁର୍ବନ୍ତୀତି ଚେଦୁପକୁର୍ବନ୍ତୁ ନାମ । ତତ୍ତ୍ୱଜ୍ଞାନଂ ତୁ ବେଦାନ୍ତବାକ୍ୟେଭ୍ୟଃ ଏବ ଭବତି 'ନାବେଦବିନ୍ମନୁତେ ତଂ ବୃହନ୍ତମ୍' (ତୈ. ବ୍ରା ୩।୧୨।୯।୭) 'ତଂ ତ୍ୱୌପନିଷଦଂ ପୁରୁଷଂ ପୃଚ୍ଛାମି' (ବୃ ୩।୯।୨୬) ଇତ୍ୟେବମାଦିଶ୍ରୁତିଭ୍ୟଃ ।

**(୪) ଭାଷାଂତର-**(କ) କିନ୍ତୁ ବେଦ ନିରପେକ୍ଷ ସାଂଖ୍ୟସ୍ମୃତଜ୍ଞାନଦ୍ୱାରା ଅଥବା ଯୋଗ ମାର୍ଗଦ୍ୱାରା ମୋକ୍ଷ ମିଳେ ନାହିଁ- ଏହି କାରଣ ହେତୁ ଦୁଇମତର ନିରାକରଣ ହୋଇଛି । 'ତମେବ' (ସେହି ମହାନ୍ ପୁରୁଷକୁ ଜାଣି ପୁରୁଷ ମୃତ୍ୟୁକୁ ପାରହୁଏ । ଏହା ବ୍ୟତୀତ ପରମପଦ ପ୍ରାପ୍ତି ପାଇଁ କୌଣସି ଅନ୍ୟମାର୍ଗ ନାହିଁ) ଏହି ଶ୍ରୁତି ବୈଦିକ ଆତ୍ମୈକତ୍ୱ ଜ୍ଞାନଦ୍ୱାରା ଅତିରିକ୍ତ ଅନ୍ୟମୋକ୍ଷ ସାଧନକୁ ନିବାରଣ କରେ । ନିଃସନ୍ଦେହ ଭାବରେ ସେହି ସାଂଖ୍ୟ ଓ ଯୋଗ ଦ୍ୱୈତବାଦୀ ଅଟନ୍ତି । କିନ୍ତୁ ଆତ୍ମୈକତ୍ୱଦର୍ଶୀ ନୁହଁନ୍ତି ।

(ଖ) 'ତତ୍କାରଣଂ ସାଂଖ୍ୟଯୋଗାଭିପନ୍ନମ୍' ଏହି ପ୍ରକାର ଯେଉଁ ଦର୍ଶନ କୁହାଗଲା ସେଠାରେ ଏହା ଜାଣିବା ଉଚିତ ଯେ- ସାଂଖ୍ୟ ଓ ଯୋଗଶବ୍ଦଗୁଡ଼ିକର ସାନ୍ନିଧ୍ୟ ହେତୁ ବୈଦିକଜ୍ଞାନ ଓ ଧ୍ୟାନ ହିଁ କୁହାଗଲା । ଯେଉଁ ଅଂଶରେ ଶ୍ରୁତିର ବିରୋଧ ନାହିଁ, ସେହି ଅଂଶରେ ସାଂଖ୍ୟ ଏବଂ ଯୋଗସ୍ମୃତି ଗୁଡ଼ିକର ସାବକାଶତ୍ୱ ଇଷ୍ଟ ହୁଏ । ଯେପରି 'ଅସଙ୍ଗୋ' (ଏହି ଆତ୍ମା ନିଶ୍ଚିତ ଭାବରେ ଅସଙ୍ଗ ଅଟେ) ଇତ୍ୟାଦି ଶ୍ରୁତିପ୍ରସିଦ୍ଧ ପୁରୁଷଠାରେ ମଧ୍ୟ ନିର୍ଗୁଣପୁରୁଷର ନିରୂପଣ ଦ୍ୱାରା ବିଶୁଦ୍ଧତ୍ୱ ସାଂଖ୍ୟଲୋକ ସ୍ୱୀକାର କରନ୍ତି ।

(ଗ) ତେଣୁ ଯୋଗଶାସ୍ତ୍ରଙ୍କ ମଧ୍ଯ 'ଅଥପରିବାଡ୍' (ପରିବ୍ରାଜକକୁ କଷାୟବସ୍ତ୍ରଧାରୀ, ମୁଣ୍ଡ ଲଣ୍ଡା ଓ ପରିଗ୍ରହ (ଦାନ) ରହିତ ହେବା ଉଚିତ) ଇତ୍ୟାଦି ଶ୍ରୁତିପ୍ରସିଦ୍ଧ ନିବୃତ୍ତିମାର୍ଗର ପ୍ରବ୍ରଜ୍ୟାଦି ଉପଦେଶଦ୍ୱାରା ଅନୁସରଣ କରନ୍ତି ।

(ଘ) ଏହି ଶ୍ରୁତି ବିରୋଧ ଦ୍ୱାରା ଅର୍ଥାତ୍ ସାଂଖ୍ୟସ୍ମୃତି ଓ ଯୋବଂସ୍ମୃତିର ନିରାକରଣ-ନ୍ୟାୟରେ ସବୁତର୍କସ୍ମୃତିର ନିରାକରଣ ହେବା ଦରକାର । ଯଦି ସ୍ମୃତିଗୁଡ଼ିକ ତର୍କ (ଅନୁମାନ) ଉପପତ୍ତି (ତର୍କର ଅନୁଗ୍ରାହିକା ଯୁକ୍ତି) ଦ୍ୱାରା ତତ୍ତ୍ୱଜ୍ଞାନର ଉପକାରକ ହେବେ, ତେବେ ବେଦକୁ ନଜାଣିଥିବାବେଳେ ବ୍ରହ୍ମକୁ ଜାଣେ ନାହିଁ) 'ତଂ ତ୍ୱୌପନିଷଦଂ (ମୁଁ କିନ୍ତୁ ଉପନିଷଦ୍ ଗମ୍ୟ ଏହି ପୁରୁଷକୁ ପଚାରୁଛି) ଇତ୍ୟାଦି ଶ୍ରୁତିଦ୍ୱାରା ତତ୍ତ୍ୱଜ୍ଞାନ କିନ୍ତୁ ବେଦାନ୍ତବାକ୍ୟଦ୍ୱାରା ସିଦ୍ଧ ହେବାହିଁ ପ୍ରମାଣିତ ହୁଏ ।

## ३ विलक्षणत्वाधिकरणम् ।सूं ४ - १२

## ବିଲକ୍ଷଣତ୍ୱାଧିକରଣମ୍ - ୩

## न विलक्षणत्वादस्य तथात्वं च शव्दात् ॥ ४ ॥

## (୧) ନ ବିଲକ୍ଷଣତ୍ୱାଦସ୍ୟ ତଥାତ୍ୱଂ ଚ ଶବ୍ଦାତ୍ ॥୨।୧।୪॥

ଅସ୍ୟ-ଏହିଜଗତର, ନ-ବ୍ରହ୍ମ ଉପାଦାନକାରଣ ନୁହେଁ, ବିଲକ୍ଷଣତ୍ୱାତ୍-କାରଣ-ତାହା ବିଲକ୍ଷଣ ଅଟେ । ଅର୍ଥାତ୍, ବ୍ରହ୍ମଚେତନ । ଜଗତ୍ ଅଚେତନ ଶବ୍ଦାତ୍-ବିଜ୍ଞାନଂ ଚାବିଜ୍ଞାନଂ ଚାଭବତ୍' ଏହି ଶ୍ରୁତିରେ, ତଥାତ୍ୱଂ ଚ-ବିଲକ୍ଷଣତ୍ୱ ଦେଖାଯାଏ ।

(୨) ମୂଳ (କ) ବ୍ରହ୍ମସ୍ୟ ଜଗତୋ ନିମିତ୍ତକା । ରଣଂ ପ୍ରକୃତିଶ୍ଚେତ୍ୟସ୍ୟ ପକ୍ଷସ୍ୟାକ୍ଷେପ ସ୍ମୃତିନିମିତ୍ତିଃ ପରିହୃତଃ । ତର୍କ ନିମିତ୍ତ ଇଦାନୀମାକ୍ଷେପଃ ପରିହ୍ରିୟତେ ।

(ଖ) କୁତଃ ପୁନରସ୍ମିନ୍ନବଧାରିତ ଆଗମାର୍ଥେ ତର୍କନିମିତ୍ତ ସ୍ୟାକ୍ଷେପସ୍ୟାବକାଶଃ ? ନନୁ ଧର୍ମ ଇବ ବ୍ରହ୍ମଣ୍ୟ ଆଗମୋ ଭବିତୁମର୍ହତି । ଭବେଦୟମବଷ୍ଟମ୍ଭୋ ଯଦି ପ୍ରମାଣାନ୍ତରାନବଗାହ୍ୟ ଆଗମମାତ୍ର ପ୍ରମେୟୋଽୟମର୍ଥଃ ସ୍ୟାଦନୁଷ୍ଠେୟରୂପ ଇବ ଧର୍ମଃ, ପରିନିଷ୍ପନ୍ନରୂପଂ ତୁ ବ୍ରହ୍ମାବଗମ୍ୟତେ । ପରିନିଷ୍ପନ୍ନେ ଚ ବସ୍ତୁନି ପ୍ରମାଣାନ୍ତରାଣାସ୍ତ୍ୟବକାଶୋ ଯଥା ପୃଥିବ୍ୟାଦିଷୁ ।

(ଗ) ଯଥା ଚ ଶ୍ରୁତୀନାଂ ପରସ୍ପରବିରୋଧେ ସତ୍ୟେକଦଶେନେତରା ନୀୟନ୍ତେ ଏବଂ ପ୍ରମାଣାନ୍ତରାବିରୋଧେଽପି ତଦ୍‌ବଶେନୈବ ଶ୍ରୁତିର୍ନୀୟେତ । ଦୃଷ୍ଟସାମ୍ୟେନ ଚାଦୃଷ୍ଟମର୍ଥଂ ସମର୍ଥୟନ୍ତୀ ଯୁକ୍ତିଭିରନୁଭବସ୍ୟ ସନ୍ନିକୃଷ୍ୟତେ । ବିପ୍ରକୃଷ୍ୟତେ ତୁଶ୍ରୁତିରୈତିହ୍ୟାଯାତ୍ରେଣ ସ୍ୱାର୍ଥାଭିଧାନାତ୍ ।

(ଘ) ଅନୁଭବାବସାନଞ୍ଚ ବ୍ରହ୍ମବିଜ୍ଞାନମବିଦ୍ୟାୟା ନିବର୍ତ୍ତକଂ ମୋକ୍ଷସାଧନଞ୍ଚ ଦୃଷ୍ଟଫଳତୟେଷ୍ୟତେ । ଶ୍ରୁତିରପି ଶ୍ରୋତବ୍ୟଃମନ୍ତବ୍ୟଃ ଇତି ଶ୍ରବଣବ୍ୟତିରେକେଣ ମନନଂ ବିବଧତୀ ତର୍କ ମପ୍ୟତ୍ରାର୍ତ୍ତବ୍ୟଂ ଦର୍ଶୟତି । ଅତସ୍ତର୍କନିମିତ୍ତଃ ପୁନରାକ୍ଷେପଃ କ୍ରିୟତେ, 'ନ ବିଲକ୍ଷଣତ୍ୱାଦସ୍ୟ' ଇତି ।

(୨) ଭାଷାଂତର - (କ) ବ୍ରହ୍ମ ଏହି ଜଗତ୍‌ର ନିମିତ୍ତକାରଣ ଓ ଉପାଦାନ କାରଣ ଅଟେ, ଏହିପକ୍ଷ ଉପରେ ସାଂଖ୍ୟସ୍ମୃତିନିମିତ୍ତକ ଆକ୍ଷେପର ପରିହାର କରାଗଲା । କିନ୍ତୁ ବର୍ତ୍ତମାନ ତର୍କ ନିମିତ୍ତକ ଆକ୍ଷେପର ପରିହାର କରାଯାଉଅଛି ।

(ଖ) ପରନ୍ତୁ ନିଶ୍ଚିତ ଭାବରେ ଏହି ବେଦାର୍ଥରେ ତର୍କନିମିତ୍ତକ ଆକ୍ଷେପର ଅବକାଶ କେଉଁଠି ହୁଏ ବୋଲି ଆଶଙ୍କା କରାଯାଏ । କାରଣ ଧର୍ମଭଳି ବ୍ରହ୍ମରେ ମଧ୍ୟ ବେଦ ସ୍ୱତନ୍ତ୍ରପ୍ରମାଣ ହେବା ଠିକ୍ ଅଟେ । ଏହି ଦୃଷ୍ଟାନ୍ତ ଠିକ୍ ହୁଏ, ଯଦି ଅନୁଷ୍ଠେୟ ଧର୍ମଭଳି ଏହି ବ୍ରହ୍ମରୂପର ଅର୍ଥ ମଧ୍ୟ ପ୍ରମାଣାନ୍ତରଦ୍ୱାରା ଅଗ୍ରାହୀ କେବଳ ଆଗମମାତ୍ର ଜ୍ଞେୟ ହୋଇପାରେ । କିନ୍ତୁ ବ୍ରହ୍ମସିଦ୍ଧବୋଲି ଜଣାଯାଏ । ପୃଥିବ୍ୟାଦି ସଦୃଶ ସିଦ୍ଧବସ୍ତୁରେ ଅନ୍ୟପ୍ରମାଣ ଗୁଡ଼ିକର ଅବକାଶ ହୁଏ ।

(ଗ) ଯେପରି ବେଦବାକ୍ୟ ମଧ୍ୟରେ ପରସ୍ପର ବିରୋଧ ହେଲେ ଏକ ବଳବାନ୍ ଶ୍ରୁତି ଅନୁସାରେ ଅନ୍ୟ ଦୁର୍ବଳଶ୍ରୁତିର ଅର୍ଥ କରାଯାଏ, ସେହିପରି ଅନ୍ୟପ୍ରମାଣମାନଙ୍କ ସହିତ ଶ୍ରୁତିର ବିରୋଧ ହେଲେ ମଧ୍ୟ ସେହି ନିରବକାଶ (ଶଙ୍କାଶୂନ୍ୟ)ରେ ଶ୍ରୁତିର (ବଳବାନହେତୁ) ଅର୍ଥ କରାଯାଏ । ଅନୁଭୂତ ଅର୍ଥଭଳି ଅଦୃଷ୍ଟ ପରୋକ୍ଷ ଅର୍ଥକୁ ସମର୍ଥନ କରୁଥିବା ତର୍କ ସ୍ମୃତି ଅନୁଭବର ସନ୍ନିହିତ ହୁଏ । ଶ୍ରୁତି କିନ୍ତୁ ଐତିହ୍ୟମାତ୍ର (ପରୋକ୍ଷରୂପ ପ୍ରବାହପରମ୍ପରା ମାତ୍ର) ଦ୍ୱାରା ସ୍ୱକୀୟ ଅର୍ଥକୁ କହେ ।

(ଘ) ତେଣୁ ଅନୁଭବ ଦ୍ୱାରା ଏହା ଦୂର ହୁଏ । ବ୍ରହ୍ମ ସାକ୍ଷାତ୍କାର ପର୍ଯ୍ୟନ୍ତ ମୋକ୍ଷର ସାଧନ ଭୂତ-ବ୍ରହ୍ମଜ୍ଞାନ ଅବିଦ୍ୟାର ନିବର୍ତ୍ତକ ହୋଇ ଦୃଷ୍ଟଫଳ ସ୍ୱରୂପଦ୍ୱାରା ଅଭିଷ୍ଟ ହୁଏ । 'ଶ୍ରୋତବ୍ୟୋ ମନ୍ତବ୍ୟଃ' ଏହି ପ୍ରକାର ଶ୍ରବଣଭିନ୍ନ ମନନର ବିଧାନ କରି ଶ୍ରୁତିମଧ୍ୟ ତର୍କକୁ ଏଠାରେ ଆଦର ଯୋଗ୍ୟ ରୂପରେ ଦେଖାଏ । ତେଣୁ 'ନ ବିଲକ୍ଷଣତ୍ୱାଦସ୍ୟ' ଏହି ସୂତ୍ରରେ ତର୍କ ନିମିତ୍ତକ ପୁନର୍ବାର ଆକ୍ଷେପ କରାଯାଇଅଛି ।

(୩) ମୂଳ-(କ) ଯଦୁକ୍ତଂ ଚେତନଂ ବ୍ରହ୍ମ ଜଗତଃ କାରଣଂ ପ୍ରକୃତିରିତି ତନ୍ନୋପପଦ୍ୟତେ, କସ୍ମାତ୍ ? ବିଲକ୍ଷଣତ୍ୱାଦସ୍ୟ ବିକାରସ୍ୟ ପ୍ରକୃତ୍ୟାଃ । ଇଦଂ ହି ବ୍ରହ୍ମକାର୍ଯ୍ୟ ତ୍ୱେନାଭିପ୍ରେୟମାଣଂ ଜଗତ୍ ବ୍ରହ୍ମବିଲକ୍ଷଣମଚେତନମଶୁଦ୍ଧଂ ଚ ଦୃଶ୍ୟତେ । ବ୍ରହ୍ମ ଚ ଜଗଦ୍‌ବିଲକ୍ଷଣଂ ଚେତନଂ ଶୁଦ୍ଧଞ୍ଚ ଶ୍ରୂୟତେ । ନ ଚ ବିଲକ୍ଷଣତ୍ୱେ ପ୍ରକୃତି ବିକାରଭାବୋ ଦୃଷ୍ଟଃ ।

(ଖ) ନହି ରୁଚକାଦୟୋ ବିକାରା ମୃତପ୍ରକୃତିକା ଭବନ୍ତି । ଶରବାଦୟୋ ବା ସୁବର୍ଣ୍ଣପ୍ରକୃତିକାଃ । ମୃଦୈବ ତୁ ମୃଦାନ୍ୱିତା ବିକାରାଃ କ୍ରିୟନ୍ତେ, ସୁବର୍ଣ୍ଣେନ ଚ ସୁବର୍ଣ୍ଣାନ୍ୱିତାଃ ।

ତଥେଦମପି ଜଗଦଚେତନଂ ସୁଖଦୁଃଖମୋହାନ୍ୱିତଂ ସଦଚେତନସ୍ୟୈବ ସୁଖଦୁଃଖମୋହାତ୍ମକସ୍ୟ କାରଣସ୍ୟ କାର୍ଯ୍ୟଂ ଭବିତୁମର୍ହୀତୀତି ନ ବିଲକ୍ଷଣସ୍ୟ ବ୍ରହ୍ମଣଃ । ବ୍ରହ୍ମବିଲକ୍ଷଣତ୍ୱଂ ଚାସ୍ୟ ଜଗତୋଽଶୁଦ୍ଧ୍ୟଚେତନତ୍ୱ ଦର୍ଶନାଦବତାନ୍ତଦ୍ୟମ୍ ।

(ଗ) ଅଶୁଦ୍ଧଂ ହି ଜଗତ୍ ସୁଖଦୁଃଖମୋହାତ୍ମକତୟା ପ୍ରୀତି ପରିତାପବିଷାଦାଦି ହେତୁତ୍ୱାତ୍ ସ୍ୱର୍ଗ ନରକାଦ୍ୟୁ ଛାବଚ ପ୍ରପଞ୍ଚତ୍ୱାଚ୍ଚ । ଅଚେତନଂ ଚେଦଂ ଜଗତ୍ ଚେତନଂ ପ୍ରତି କାର୍ଯ୍ୟକାରଣଭାବେନୋପକରଣଭାବୋପଗମାତ୍ । ନ ହି ସାମ୍ୟେ ସତ୍ୟୁପକାର୍ଯ୍ୟୋପକାରକଭାବୋ ଭବତି । ନହି ପ୍ରଦୀପୌ ପରସ୍ପରସ୍ୟୋପକୁରୁତଃ ।

(ଘ) ନନୁ ଚେତନମପି କାର୍ଯ୍ୟକାରଣଂ ସ୍ୱାମି ଭୃତ୍ୟନ୍ୟାୟେନ ଭୋକ୍ତୁ ରୂପକରିଷ୍ୟତି ନ, ସ୍ୱାମି ଭୃତ୍ୟୟୋରପ୍ୟ ଚେତନାଂଶସ୍ୟୈବ ଚେତନଂ ପ୍ରତ୍ୟୁକାରକତ୍ୱାତ୍ । ଯୋ ହ୍ୟେକସ୍ୟ ଚେତନସ୍ୟ ପରିଗ୍ରହୋ ବୁଦ୍ଧ୍ୟାଦିର ଚେତନ ଭାଗଃ ସ ଏବାନ୍ୟସ୍ୟ ଚେତନସ୍ୟୋପକୋରତି । ନ ତୁ ସ୍ୱଂୟମେବ ଚେତନଶ୍ଚେତନାନ୍ତର । ସ୍ୟୋପକରୋତ୍ୟପକୋରତି ବା ନିରତିଶୟା ହ୍ୟକର୍ତ୍ତାରଶ୍ଚେତନା ଇତି ସାଂଖ୍ୟା ମନ୍ୟନ୍ତେ । ତସ୍ମାଦ ଚେତନଂ କାର୍ଯ୍ୟକାରଣମ୍ ।

**(୩) ଭାଷାଂତର-** (କ) ଚେତନ ବ୍ରହ୍ମ ଜଗତର କାରଣ ପ୍ରକୃତି ରୂପରେ ଯାହା କୁହାଯାଇଅଛି, ତାହା ଠିକ୍ ନୁହେଁ । କାରଣ-ଏହି କାର୍ଯ୍ୟ ପ୍ରକୃତିଠାରୁ ବିଲକ୍ଷଣ ଅଟେ । ବ୍ରହ୍ମର କାର୍ଯ୍ୟରୂପରେ ସ୍ୱୀକାର କରି ଜଗତ୍ ବ୍ରହ୍ମଠାରୁ ବିଲକ୍ଷଣ ହୋଇ ଅଚେତନ ଓ ଅଶୁଦ୍ଧରୂପରେ ଦେଖାଯାଏ ଏବଂ ବ୍ରହ୍ମ ଜଗତ୍‌ଠାରୁ ବିଲକ୍ଷଣ ହୋଇ ଚେତନ ଓ ଶୁଦ୍ଧରୂପରେ ଶୁଣାଯାଏ । ବିଲକ୍ଷଣ ହେଲେ ବିଲକ୍ଷଣରେ କାର୍ଯ୍ୟକାରଣଭାବ ଦେଖାଯାଏ ନାହିଁ । ସେପରି ଶରା, ମାଠିଆ ଇତ୍ୟାଦି କାର୍ଯ୍ୟ ସୁବର୍ଣ୍ଣର ଉପାଦାନ ନୁହଁନ୍ତି । କିନ୍ତୁ ମୃତ୍ତିକାଠାରୁ ଅନ୍ୱିତ ହୋଇ ଘଟାଦିବିକାର ମୃତ୍ତିକାରୁ ତିଆରି ହୁଅନ୍ତି ଏବଂ ସୁବର୍ଣ୍ଣାନ୍ୱିତ ଅଭୂଷଣ ଇତ୍ୟାଦି ବିକାର ସୁବର୍ଣ୍ଣରୁ ନିର୍ମିତ ହୁଅନ୍ତି । ସେହିପ୍ରକାର ଏହି ଜଗତ୍ ମଧ୍ୟ ଅଚେତନ ସୁଖ, ଦୁଃଖ ଓ ମୋହଯୁକ୍ତ ହୋଇ ଅଚେତନ ସୁଖ, ଦୁଃଖ ଏବଂ ମୋହାତ୍ମକକାରଣର କାର୍ଯ୍ୟହେବା ଯୁକ୍ତିଯୁକ୍ତ । କିନ୍ତୁ ବିଲକ୍ଷଣ ବ୍ରହ୍ମର ନୁହେଁ । ଅଶୁଦ୍ଧ ଓ ଅଚେତନତ୍ୱକୁ ଦେଖିବା ଦ୍ୱାରା ଏହି ସଂସାର ବ୍ରହ୍ମଠାରୁ ବିଲକ୍ଷଣ ବୋଲି ଜାଣିବା ଉଚିତ ।

(ଖ) ନିଶ୍ଚିତ ଭାବରେ ଏହି ଜଗତ୍ ଅଶୁଦ୍ଧ ଅଟେ, କାରଣ-ସୁଖ, ଦୁଃଖ ଓ ମୋହାତ୍ମକରୂପରେ ପ୍ରୀତି ପରିତାପ ଓ ବିଷାଦାଦିର ହେତୁ ହୁଏ ଏବଂ ସ୍ୱର୍ଗ ଓ ନରକାଦି ଅନେକପ୍ରକାରର ପ୍ରପଞ୍ଚରୂପ ହୁଏ । ଏହି ଜଗତ୍ ଅଚେତନ ଅଟେ' । କାରଣ-ଶରୀର ଇନ୍ଦ୍ରିୟାଦିରୂପରେ ଚେତନର ପ୍ରତି ଉପକରଣଭାବରେ ପ୍ରାପ୍ତ ହୁଏ । ସାଦୃଶ୍ୟ ହେଲେ ମଧ୍ୟ ଉପକାର୍ଯ୍ୟ - ଉପକାରଭାବ ହୁଏ ନାହିଁ, ଯେପରିକି ଦୁଇଟି ପ୍ରଦୀପ ଗୋଟିକର ଅନ୍ୟଟି ଉପକାର କରେ ନାହିଁ ।



(ଗ) ପରନ୍ତୁ ଦେହ, ଇନ୍ଦ୍ରିୟାଦି ଅଚେତନ ହେଲେ ମଧ୍ୟ ସ୍ୱାମିଭୃତ୍ୟନ୍ୟାୟରେ ଭୋକ୍ତାର ଉପକାର କରେ ନୁହେଁ, କାରଣ-ସ୍ୱାମୀ ଓ ଭୃତ୍ୟର ଅଚେତନ ଅଂଶହିଁ ଚେତନର ଉପକାରକ ଅଟେ । ଗୋଟିଏ ଚେତନର ପରିଗ୍ରହ ଯାହା ବୁଦ୍ଧି ପ୍ରଭୃତି ଅଚେତନଭାଗ ଅଟେ, ସେହି ଅନ୍ୟ ଚେତନର ଉପକାର କରେ, ପରନ୍ତୁ ସ୍ୱୟଂ ଚେତନ ଅନ୍ୟଚେତନର ଉପକାର କରେ ନାହିଁ ବା ଅପକାର କରେ ନାହିଁ, କାରଣ- ଚେତନ ହେଉଛି ଅତିଶୟରହିତ ଓ ଅକର୍ତ୍ତା ବୋଲି ସାଂଖ୍ୟମତାବଲମ୍ବୀ ସ୍ୱୀକାର କରନ୍ତି, ତେଣୁ ଦେହ, ଇନ୍ଦ୍ରିୟାଦି ଅଚେତନ ।

(୪) ମୂଳ-(କ) ନ ଚ କାଷ୍ଠଲୋଷ୍ଟାଦୀନାଂ ଚେତନତ୍ୱେ କିଞ୍ଚିତ୍ ପ୍ରମାଣମସ୍ତି । ପ୍ରସିଦ୍ଧଶ୍ଚାୟଂ ଚେତନାଚେତନପ୍ରବିଭାଗୋ ଲୋକେ । ତସ୍ମାଦ୍ ବ୍ରହ୍ମବିଲକ୍ଷଣତ୍ୱାନ୍ନେଦଂ ଜଗତ୍ତତ୍ପ୍ରକୃତିକମ୍ ।

(ଖ) ଯୋଽପି କଶ୍ଚିଦାଚକ୍ଷୀତ-ଶ୍ରୁତ୍ୱା ଜଗତଶ୍ଚେତନପ୍ରକୃତିକତାଂ ତଦ୍‌ବଳେ-ନୈବ ସମସ୍ତଂ ଜଗଚ୍ଚେତନମବଗମୟିଷ୍ୟାମି । ପ୍ରକୃତିରୂପସ୍ୟ ବିକାରେଽନ୍ୱୟଦର୍ଶନାତ୍ ।

(ଗ) ଅବିଭାବନଂ ତୁ ଚୈତନସ୍ୟ ପରିଣାମବିଶେଷାଦ୍ ଭବିଷ୍ୟତ । ଯଥା ସ୍ପଷ୍ଟ ଚୈତନ୍ୟାନାମପ୍ୟାତ୍ମନାଂ ସ୍ୱାପମୂର୍ଚ୍ଛାଦ୍ୟବସ୍ଥାସୁଚୈତନ୍ୟଂ ନ ବିଭାବ୍ୟତେ, ଏବଂ କାଷ୍ଠଲୋଷ୍ଟାଦୀନାମପି ଚୈତନ୍ୟଂ ନ ବିଭାବୟିଷ୍ୟତେ ।

(ଘ) ଏତସ୍ମାଦେବ ବିଭାବିତାବିଭାବିତତ୍ୱକୃତାଦ୍ ବିଶେଷାଦ୍ ରୂପାଦିଭାବା-ଭାବାଭ୍ୟାଂ ଚ କାର୍ଯ୍ୟକାରଣାନାମାତ୍ମନାଂ ଚ ଚେତନତ୍ୱାବିଶେଷେଽପି ଗୁଣପ୍ରଧାନଭାବୋ ନ ବିରୋତ୍ସ୍ୟତେ । ଯଥା ଚ ପାର୍ଥିବତ୍ୱାବିଶେଷେଽପି ମାଂସସୂପୌଦନାଦୀନାଂ ପ୍ରତ୍ୟାତ୍ମତ୍ୱବର୍ତ୍ତିନୋ ବିଶେଷାତ୍ ପରସ୍ପରୋପକାରିତ୍ୱଂ ଭବତ୍ୟେବମିହାପି ଭବିଷ୍ୟତି ।

(ଙ) ପ୍ରବିଭାଗପ୍ରସିଦ୍ଧିରପ୍ୟତ ଏବେ ନ ବିରୋତ୍ସ୍ୟତ ଇତି । ତେନାପି କଥଞ୍ଚିଚ୍ଚେତନାଚେନତ୍ୱଲକ୍ଷଣଂ ବିଲକ୍ଷଣତ୍ୱଂପରିହ୍ରିୟତେ । ଶୁଦ୍ଧ୍ୟଶୁଦ୍ଧିତ୍ୱଲକ୍ଷଣଂ ତୁ ବିଲକ୍ଷଣଂ ନୈବ ପରିହ୍ରିୟତେ ।

**(୪) ଭାଷାଂତର-** (କ) କାଠ ଓ ଟେକାପଥର ଇତ୍ୟାଦି ଚେତନ ହେବା ପାଇଁ କୌଣସି ପ୍ରମାଣ ନାହିଁ । ସଂସାରରେ ଏହି ଚେତନ ଓ ଅଚେତନ ବିଭାଗ କିନ୍ତୁ ପ୍ରସିଦ୍ଧ ଅଟେ । ତେଣୁ ବ୍ରହ୍ମଠାରୁ ବିଲକ୍ଷଣ ହେଲେ ଏହି ଜଗତ ବ୍ରହ୍ମପ୍ରକୃତିକ ହୁଏ ନାହିଁ ।

(ଖ) ଯଦି ଚେତନ ଜଗତର ପ୍ରକୃତି (ଉତ୍ପତ୍ତିସ୍ଥଳ) ବୋଲି କେହି କହେ, ଏହା ଶୁଣି ତାହାବଳରେ ସମସ୍ତଜଗତକୁ ଚେତନରୂପରେ ସିଦ୍ଧ ହେବ, କାରଣ-ପ୍ରକୃତି ସ୍ୱରୂପର ଅନ୍ୱୟ କାର୍ଯ୍ୟରେ ଦେଖାଯାଏ ।

(ଗ) ବିଶେଷ ପରିଣାମ କାରଣରୁ ସେଠାରେ ଚୈତନ୍ୟ ଅପ୍ରତୀତ ଅବିଭକ୍ତ ହୁଏ ନାହିଁ । ଯେପରି ସ୍ପଷ୍ଟରୂପରେ ପ୍ରତୀୟମାନ ଚୈତନ୍ୟ ଓ ଆତ୍ମାଗୁଡ଼ିକରେ ଚୈତନ୍ୟ, ନିଦ୍ରା,

ମୂର୍ଚ୍ଛାଦି ଅବସ୍ଥାରେ ପ୍ରତୀତ ହୁଏ ନାହିଁ, ସେପରି କାଷ୍ଠ ଓ ଲୋଷ୍ଟାଦିର ମଧ୍ୟ ଚୈତନ୍ୟ ପ୍ରତୀତି ହେବ ନାହିଁ ।

(ଘ) ଏହି ପ୍ରକାର ଅଭିବ୍ୟକ୍ତି ଓ ଅନଭିବ୍ୟକ୍ତିଜନ୍ୟ ବିଶେଷରୁ ଏପରିରୂପାଦିର ଭାବା ଭାବହେତୁ ଦେହ, ଇନ୍ଦ୍ରିୟ ଓ ଆତ୍ମାରେ ଚେତନତ୍ୱପରି ହେଲେ ମଧ୍ୟ ପ୍ରଧାନ ଭାବର ବିରୋଧ ହୁଏ ନାହିଁ । ଯେପରି ମାଂସ, ଡାଲି ଓ ଅନ୍ନ ପ୍ରଭୃତିରେ ପାର୍ଥିବତ୍ୱ ସମାନ ହେଲେ ମଧ୍ୟ ପ୍ରତ୍ୟେକରେ ବର୍ତ୍ତମାନ ବୈଲକ୍ଷଣ୍ୟ ହେତୁ ପରସ୍ପର ଉପକାରିତ୍ୱ ଅଟନ୍ତି, ସେପରି ଏଠାରେ ମଧ୍ୟ ପ୍ରଯୁଜ୍ୟ ଅଟେ ।

(ଙ) ଏହାଦ୍ୱାରା (ଚୈତନ୍ୟର ଅଭିବ୍ୟକ୍ତି ଓ ଅନଭିବ୍ୟକ୍ତି) ବିଭାଗ (ଚେତନ ଓ ଅଚେତନ)ର ପ୍ରସିଦ୍ଧିରେ ବିରୋଧ ହୁଏ ନାହିଁ । ତେଣୁ ଏହି ପ୍ରସଙ୍ଗରେ କୌଣସି ପ୍ରକାର ଚେତନତ୍ୱ ଓ ଅଚେତନତ୍ୱରୂପ ବୈଲକ୍ଷଣ୍ୟର ପରିହାର ହୋଇପାରେ । ପରନ୍ତୁ ଶୁଦ୍ଧି ଓ ଅଶୁଦ୍ଧିରୂପ ବୈଲକ୍ଷଣ୍ୟର ପରିହାର ହୋଇପାରେ ନାହିଁ ।

(୫) ମୂଳ-(କ) ନ ଚେତରଦପି ବିଲକ୍ଷଣତ୍ୱଂ ପରିହର୍ତ୍ତୁଂ ଶକ୍ୟତ ଇତ୍ୟାହ-ତଥାତ୍ୱଂ ଚ ଶବ୍ଦାଦିତି । ଅନବଗମ୍ୟମାନମେବ ହୀବଂ ଲୋକେ ସମସ୍ତସ୍ୟ ବସ୍ତୁନଶ୍ଚେତନତ୍ୱଂ ଚେତନପ୍ରକୃତି କତ୍ୱ ଶ୍ରବଣାଚ୍ଛବ୍ଦଶରଣତୟା କେବଳତୟୋତ୍ ପ୍ରେକ୍ଷେତ, ତଚ୍ଚ ଶବ୍ଦାଦେର୍ନୈବ ବିରୁଧ୍ୟତେ । ଯତଃ ଶବ୍ଦାଦପି ତଥାତ୍ୱମବଗମ୍ୟତେ ।

(ଖ) ତଥାତ୍ୱମିତି ପ୍ରକୃତି ବିଲକ୍ଷଣତ୍ୱଂ କଥୟତି । ଶବ୍ଦ ଏବ 'ବିଜ୍ଞାନଂ ଚାବିଜ୍ଞାନଂ ଚ' (ତୈ ୨-୬) ଇତି କସ୍ୟଚିଦ୍ ବିଭାଗସ୍ୟା ଚେତନତାଂ ଶ୍ରାବୟଂଶ୍ଚେତନାଦ୍ ବ୍ରହ୍ମଣୋ ବିଲକ୍ଷଣମଚେତନଂ ଜଗଚ୍ଛାବୟତି ।

**(୫) ଭାଷାଂତର**-(କ) ଏହିପ୍ରକାର ଅନ୍ୟ ବୈଲକ୍ଷଣ୍ୟର ମଧ୍ୟ ପରିହାର ହୁଏ ନାହିଁ । ତେଣୁ କୁହାଯାଇଛି- 'ତଥାତ୍ୱଂ ଚ ଶବ୍ଦାତ୍', ଚ ସଂସାରରେ ସମସ୍ତ ପଦାର୍ଥ ଚେତନରୂପରେ ପ୍ରତୀତ ହୁଅନ୍ତି ନାହିଁ । ଜଗତ ଚେତନ ଉପାଦାନଯୁକ୍ତ । ଏହି ପ୍ରକାର ଶ୍ରବଣରେ ଯଦି କେବଳ ଶ୍ରୁତି ପ୍ରମାଣର ଆଧାର ଉପରେ ସେଠାରେ ଚେତନର କଳ୍ପନା କରାଯାଏ, ତେବେ ସେହି କଳ୍ପନା ଶ୍ରୁତିଦ୍ୱାରା ବିରୁଦ୍ଧ ହୁଏ, କାରଣ-ଶ୍ରୁତିଦ୍ୱାରା ହିଁ ତଥାତ୍ୱ (ବୈଲକ୍ଷଣ୍ୟ) ଅବଗତ ହୁଏ ।

(ଖ) ତଥାତ୍ୱପଦଦ୍ୱାରା ପ୍ରକୃତିରୁ ବିଲକ୍ଷଣତାକୁ ସୂତ୍ରକାର କହନ୍ତି । 'ବିଜ୍ଞାନଂ ଚାବିଜ୍ଞାନଂ ଚ' (ଚେତନ ଓ ଅଚେତନ) ଏହିପ୍ରକାର କୌଣସି ବିଭାଗକୁ ଅଚେତନତ୍ୱ ଶ୍ରବଣ କରାଇ ଶ୍ରୁତି ଚେତନ ବ୍ରହ୍ମଠାରୁ ଜଗତ ବିଲକ୍ଷଣ ଓ ଅଚେତନ ବୋଲି ଶ୍ରବଣ କରାଏ ।

(୧) ମୂଳ- ନନୁ ଚେତନତ୍ୱମପି କ୍ୱଚିଦଚେତନତ୍ୱାଭିମତାନାଂ ଭୂତେନ୍ଦ୍ରିୟାଣାଂ ଶ୍ରୂୟତେ । ଯଥା 'ମୃଦବ୍ରବୀତ୍' 'ଆପୋ ବ୍ରୁବନ୍' (ଶ-ବ୍ରା ୬-୧-୩-୨-୪) ଇତି ।



'ତତ୍ତେଜ ଐକ୍ଷତ' 'ତା ଆପ ଐକ୍ଷନ୍ତ' (ଛା ୬-୨-୩-୪) ଇତି । ଚୈବମାଦ୍ୟା ଭୂତବିଷୟା ଚେତନତ୍ୱଶ୍ରୁତିଃ ।

(ଖ) ଇନ୍ଦ୍ରିୟ ବିଷୟାଣି 'ତେ ହେମେ ପ୍ରାଣା ଅହଂ ଶ୍ରେୟସେ ବିବଦମାନ । ବ୍ରହ୍ମ ଜଗ୍ମୁ' (ବୃ ୬-୧-୭) ଇତି । 'ତେହ ବାଚମୂଚୁଃସ୍ତ୍ୱଂ ନ ଉଦ୍‌ଗାୟେତି' (ବୃହ - ୧ -୩- ୨) ଇତ୍ୟେବମାଦ୍ୟେନ୍ଦ୍ରିୟବିଷୟେତି । ଅତ ଉତ୍ତରଂ ପଠତି-

**(୧) ଭାଷାଂତର-** (କ) ପରନ୍ତୁ ଅଚେତନରୂପରେ ଅଭିମତ ଆକାଶାଦିଭୂତ ଓ ଚକ୍ଷୁ ଆଦି ଇନ୍ଦ୍ରିୟଗୁଡ଼ିକରେ କେଉଁଠି କେଉଁଠି ଚେତନତ୍ୱ ପ୍ରତିପାଦକ ଶ୍ରୁତି ଅଛି । ଯେପରି 'ମୃଦବ୍ରବ୍ତ୍' (ମାଟି ପୃଥିବୀକୁ କହିଲା, ଜଳ କହିଲା) ଏହିପ୍ରକାର ଏବଂ 'ତତ୍ତେଜ' ଐକ୍ଷତ' (ସେ ତେଜ ଦେଖିଲା, ସେ ଜଳ ଇକ୍ଷଣ କଲା) ଇତ୍ୟାଦି ଭୂତବିଷୟକ ଚେତନତ୍ୱ ଶ୍ରୁତି ଅଛି ।

(ଖ) ଇନ୍ଦରିୟଗୁଡ଼ିକ ପାଇଁ ମଧ୍ୟ ସେପରି ଶ୍ରୁତି ମିଳେ । ଯଥା 'ତେ ହ୍ୟେମେ' (ସେମାନେ ଏହି ପ୍ରାଣ-ଇନ୍ଦ୍ରିୟ 'ମୁଁ ଶ୍ରେଷ୍ଠ, ମୁଁ ଶ୍ରେଷ୍ଠ' ଏହିପ୍ରକାର ବିଷାଦ କରି ବ୍ରହ୍ମାଙ୍କ ପାଖକୁ ଗଲେ) 'ତେ ହ' (ସେହି ଦେବତା ବାଣୀଦ୍ୱାରା କହିଲେ- ତୁମେ ଆମ୍ଭପାଇଁ ଉଦ୍‌ଗାନ କର) ଇତ୍ୟାଦି ଇନ୍ଦ୍ରିୟବିଷୟକ ଚେତନତ୍ୱ ଶ୍ରୁତି ଅଛି । ତେଣୁ ଏହାର ଉତ୍ତରରେ ଆମ୍ଭେ କହୁଁ-

## अभिमानिव्यपदेशस्तु विशेषानुगतिभ्याम् ॥५॥

## (୨) ଅଭିମାନିବ୍ୟପଦେଶସ୍ତୁ ବିଶେଷାନୁଗତିଭ୍ୟାମ୍ ॥୨।୧।୫॥

ତୁ- ତୁ ଶବ୍ଦ ଶଙ୍କାର ନିବୃତ୍ତି ପାଇଁ ଦିଆଯାଇଛି । ଅଭିମାନ ବ୍ୟପଦେଶଃ- 'ତେହ ପ୍ରାଣା' ଇତି ଶ୍ରୁତିରେ 'ପ୍ରାଣା' ଶବ୍ଦରେ ପ୍ରାଣ ଅଭିମାନୀ ଦେବତାମାନଙ୍କୁ କୁହାଯାଇଅଛି । ବିଶେଷାନୁଗତିଭ୍ୟାମ୍- ଏହା ବିଶେଷ ଓ ଅନୁଗତି ଅଟେ ।

(୩) ମୂଳ-(କ) ତୁଶବ୍ଦ ଆଶଙ୍କାମପନୁଦତି । ନ ଖଲୁ 'ମୃଦବ୍ରବୀତ୍' ଇତ୍ୟେବଂ ଜାତୀୟକୟା ଶ୍ରୁତ୍ୟା ଭୂତେନ୍ଦ୍ରିୟାଣାଂ ଚେତତ୍ୱମାଶଙ୍କନୀୟମ୍ । ଯତୋଽଭିମାନିବ୍ୟପ-ଦେଶ ଏଷଃ । ମୃଦାଦ୍ୟଭିମାନିନ୍ୟୋ ବାଗାଦ୍ୟଭିମାନିନ୍ୟଶ୍ଚ ଚେତନା ବେଦତା ବଦନ ସଂବଦନାଦିଷୁ ଚେତନୋଚିତେଷୁ ବ୍ୟବହାରେଷୁ ବ୍ୟପଦିଶ୍ୟନ୍ତେ । ନ ଭୂତେନ୍ଦ୍ରିୟମାତ୍ରମ୍ ।

(ଖ) କସ୍ମାତ୍ ? ବିଶେଷାନୁଗତିଭ୍ୟାମ୍ । ବିଶେଷୋ ହି ଭୋକ୍ତୃଣାଂ ଭୂତେନ୍ଦ୍ରିୟାଣାଂ ଚ ଚେତନାଚେତନପ୍ରବିଭାଗଲକ୍ଷଣଃ ପ୍ରାଗଭିହିତଃ । ସର୍ବଚେତନ ତାୟାଂ ଚାସୌ ନୋପପଦ୍ୟେତ ।

(ଗ) ଅପି ଚ କୌଷୀତକିନଃ ପ୍ରାଣସଂବାଦେ କାରଣମାତ୍ରାଶଙ୍କାବିନିବୃତ୍ତୟେଽଧିଷ୍ଠାତୃଚେତନ ପରିଗ୍ରହାୟ ଦେବତାଶବ୍ଦେନ ବିଶିଂଷନ୍ତି- 'ଏତା ହ ବୈଦେବତା ଅହଂ ଅହଂଶ୍ରେୟସେ ବିବଦାମାନାଃ' ଇତି । 'ତା ବା ଏତାଃ ସ୍ୱର୍ବ ସର୍ବା ଦେବତାଃ ପ୍ରାଣେ ନିଃଶ୍ରେୟସଂ ବିଦିତ୍ୱା' (କୌଷୀ ୨-୧୪) ଇତି ଚ ।

(ଘ) ଅନୁଗତାଶ୍ଚ ସର୍ବତ୍ରାଭିମାନିନ୍ୟଶ୍ଚେତନା ଦେବତା ମନ୍ତ୍ରାର୍ଥବାଦେତିହାସପୁରାଣାଦିଭ୍ୟୋବଗମ୍ୟନ୍ତେ । 'ଅଗ୍ନିର୍ବାଗ୍‌ଭୂତ୍ୱା ମୁଖଂ ପ୍ରାବଶିତ୍' (ଐ ଆ ୨-୪-୨-୪) ଇତ୍ୟେବମାଦିକା ଚ ଶ୍ରୁତିଃ କରଣେଷେ ଷ୍ୱନୁଗ୍ରାହିକାଂ ଦେବତାମନୁଗତାଂ ଦର୍ଶୟତି ।

(ଙ) ପ୍ରାଣ ସମ୍ବାଦବା କ୍ୟଶେଷେ ଚ 'ତେ ହ ପ୍ରାଣାଃ ପ୍ରଜାପତିଂ ପିତରମିତ୍ୟୋଚୁଃ' (ଛା ୫-୧୭) ଇତି ଶ୍ରେଷ୍ଠତ୍ୱନିର୍ଦ୍ଧାରଣାୟ ପ୍ରଜାପତିଗମନମ୍, ତଦ୍‌ବଚନାଚ୍ଛୈକୈକୋ ତକ୍ରମଣେନାନ୍ୱୟ ବ୍ୟତିରେକାଭ୍ୟାଂ ପ୍ରାଣଶ୍ରୈଷ୍ଠ୍ୟପ୍ରତିପତ୍ତିଃ । 'ତସ୍ମୈବଳିହରଣମ' (ବୃ ୬-୧-୧୩) ଇତି ଚୈବଂଜାତୀୟକୋଽସ୍ମଦାଦିଷ୍ୱିବ ବ୍ୟବହାରୋଽନୁଗମ୍ୟମାନୋଽଭିମାନିବ୍ୟପଦେଶଂ ଦ୍ରଢୟତି ।

(ଚ) 'ତତ୍ତେଜ ଐକ୍ଷତ' ଇତ୍ୟପି ପରସ୍ୟଏବ ଦେବତାୟା ଅଧିଷ୍ଠାତ୍ର୍ୟାଃ ସ୍ୱବିକାରେଷ୍ୱନୁଗତାୟା ଇୟମୀକ୍ଷା ବ୍ୟପଦିଶ୍ୟତି ଇତିଦ୍ରଷ୍ଟବ୍ୟମ୍ । ତସ୍ମାଦ୍ ବିଲକ୍ଷଣମେବେଦଂ ବ୍ରହ୍ମଣୋ ଜଗତ୍ ।

**(୩) ଭାଷାଂତର-** (କ) ତୁ ଶବ୍ଦ ଆଶଙ୍କାକୁ ନିବାରଣ କରେ । 'ମୃଦବ୍ରବୀତ୍' ଏହିପ୍ରକାର ଶ୍ରୁତି ବାକ୍ୟଦ୍ୱାରା ଭୂତ ଓ ଇନ୍ଦ୍ରିୟଗୁଡ଼ିକରେ ଚେତନତ୍ୱ ଆଶଙ୍କା କରିବା ଉଚିତ ନୁହେଁ । କାରଣ- 'ମୃଦବ୍ରବୀତ୍' ଏହିକଥା ତାହାର ଅଭିମାନୀ-ଦେବତା ବିଷୟକ ଅଟେ । ମୃତ୍ତିକା (ପୃଥିବୀ) ଆଦିର ଅଭିମାନୀ ଏବଂ ବାଣୀ ଇତ୍ୟାଦିର ଅଭିମାନୀ ଚେତନ ଦେବତାମାନଙ୍କର ବାଦବିବାଦାଦି ଚେତନୋଚିତ ବ୍ୟବହାରରେ ବ୍ୟପଦେଶ ହୁଏ । କେବଳ ଭୂତ ଓ ଇନ୍ଦ୍ରିୟ ବିଷୟକ ବ୍ୟପଦେଶ ନୁହେଁ ।

(ଖ) କିପରି ? ଏହାର ବିଶେଷ ଓ ଅନୁଗତି ଦ୍ୱାରା । ଭୋକ୍ତାଗୁଡ଼ିକ ଭୂତ ଏବଂ ଇନ୍ଦ୍ରିୟଗୁଡ଼ିକରେ ଚେତନ ଓ ଅଚେତନ ବିଭାଗ ରୂପବିଶେଷ (ବୈଲକ୍ଷଣ୍ୟ) ପୂର୍ବ (ବ୍ର.ସୂ-୨-୧-୪) ସୂତ୍ରରେ କୁହାଯାଉଅଛି । ସମସ୍ତ ଜଗତକୁ ଚେତନ ରୂପରେ ଗ୍ରହଣ କଲେ ଏହା ଚେତନାଚେତନବିଭାଗରୂପ ବିଶେଷ ଉପପନ୍ନ ହୁଏ ନାହିଁ ।

(ଗ) କୌଷୀତକିଶାଖା ସଂପ୍ରଦାୟ ପ୍ରାଣସମ୍ବାଦରେ କେବଳ ଇନ୍ଦ୍ରିୟଗୁଡ଼ିକରେ ଚେତନତ୍ୱର ଆଶଙ୍କା ନିବୃତ୍ତି କରିବା ପାଇଁ ଏବଂ ଅଧିଷ୍ଠାତୃଚେତନକୁ ସ୍ୱୀକାର କରିବା ପାଇଁ 'ଏତା ବୈ' (ଯିଏ ପ୍ରସିଦ୍ଧ ଦେବତା 'ମୁଁ ଶ୍ରେଷ୍ଠ, ମୁଁ ଶ୍ରେଷ୍ଠ' ଏହିପ୍ରକାର ବିବାଦ କରି) ଏବଂ 'ତାବା ଏତାଃ' (ସେମାନେ ସବୁ ଦେବତା ପ୍ରାଣରେ ନିଃଶ୍ରେୟସଜାଣି) ଏହିପ୍ରକାର ଇନ୍ଦ୍ରିୟ ଓ ପ୍ରାଣକୁ ଦେବତା ଶବ୍ଦରେ ବିଶେଷିତ କରନ୍ତି ।



(ଘ) ଅଭିମାନୀ ଚେତନଦେବତା ସର୍ବତ୍ର (ଭୂତ ଓ ଇନ୍ଦ୍ରିୟାଦିରେ) ଅନୁଗତ ହୁଏ । ଏହା ଅନୁଗତି, ମନ୍ତ୍ର ଅର୍ଥବାଦ ଇତିହାସ, ପୁରାଣ ପ୍ରଭୃତିରୁ ଜଣାଯାଏ । ଯଥା- 'ଅଗ୍ନି ବାଗ୍‌ଭୂତ୍ୱା' (ଅଗ୍ନି ବାଣୀ ହୋଇ ମୁଖରେ ପ୍ରବେଶ କରେ) ଇତ୍ୟାଦି ଶ୍ରୁତି ଇନ୍ଦ୍ରିୟାଦିର ଅନୁଗ୍ରାହକ (ପ୍ରକାଶକ) ଏବଂ 'ତେ ହ ପ୍ରାଣାଃ' (ସେହି ପ୍ରାଣମାନେ ପିତାପ୍ରଜାତିଙ୍କ ପାଖକୁ ଯିବା ଓ ତାହାଙ୍କ କଥାରେ ଜଣ ଜଣକର ଉପକ୍ରମଣରେ ଅନ୍ୱୟ ବ୍ୟତିରେକଦ୍ୱାରା ପ୍ରାଣରେ ଶ୍ରେଷ୍ଠତ୍ୱ ପ୍ରତୀତି 'ତସ୍ମୈ ବଳିଂ ହରଣମ୍' (ଚକ୍ଷୁ ଓ ଇନ୍ଦ୍ରିୟ ପାଇଁ ବଳି ଦିଆଯାଏ, ଏହି ପ୍ରକାରରେ ଆମ୍ଭଲୋକଙ୍କ ସଦୃଶ ଜାଣି ବ୍ୟବହାର ଅଭିମାନୀ ଦେବତା ବିଷୟକ କଥାକୁ ଦୃଢ଼ କରେ ।

(ଙ) 'ତତ୍ତେଜ ଐକ୍ଷତ' ଏହା ମଧ୍ୟ ନିଜର ବିକାରରେ ଅନୁଗତ ଅନ୍ୟ ଅଧିଷ୍ଠାତୃ ଦେବତାବିଷୟକ ଏହି ଈକ୍ଷଣ ବ୍ୟପଦିଷ୍ଟ ହୁଏ ବୋଲି ଜାଣିବା ଉଚିତ । ଏଣୁ ଏହି ଜଗତ୍ ବ୍ରହ୍ମଠାରୁ ବିଲକ୍ଷଣ ଅଟେ ।

୧ ମୂଳ- ବିଲକ୍ଷଣତ୍ୱାଚ୍ଚ ନ ବ୍ରହ୍ମପ୍ରକୃତିକମିତ୍ୟାକ୍ଷିପ୍ତେ ପ୍ରତିବିଧତ୍ତେ ।

(୧) ଭାଷାଂତର- ବିଲକ୍ଷଣ ହେଲେ ଜଗତ୍ ବ୍ରହ୍ମର ଉପାଦାନଯୁକ୍ତ ହୁଏ ନାହିଁ । ଏହିପରି ପୂର୍ବପକ୍ଷ ଦ୍ୱାରା ଆକ୍ଷେପ କରିବା ଜାଣି ଉତ୍ତର କହେ ଯେ-

## दृश्यते तु ॥६॥

## ଦୃଶ୍ୟତେ ତୁ ॥ ୨-୧-୬ ॥

ଦୃଶ୍ୟତେ- କିନ୍ତୁ ଚେତନାଠାରୁ ଚେତନବିଲକ୍ଷଣ ଅଚେତନ ପଦାର୍ଥର ଏବଂ ଅଚେତନଠାରୁ ତାହାର ବିଲକ୍ଷଣ ଚେତନ ପଦାର୍ଥଗୁଡ଼ିକର ଉତ୍ପତ୍ତି ଦେଖାଯାଏ । ତେଣୁ ଅଚେତନ ଜଗତ୍ ଚେତନପ୍ରକୃତିକ ଅଟେ । ତୁ-ତୁଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି ପାଇଁ କୁହାଯାଇଅଛି ।

୨ ମୂଳ-(କ) ତୁଶବ୍ଦ ପକ୍ଷଂ ବ୍ୟାବର୍ତ୍ତୟତି । ଯଦୁକ୍ତଂ ବିଲକ୍ଷଣତ୍ୱାନ୍ନେଦଂ ଜଗଦ୍‌ବ୍ରହ୍ମ ପ୍ରକୃତିକମିତି । ନାୟମେକାନ୍ତଃ ଦୃଶ୍ୟତେହି ଲୋକେ ଚେତନତ୍ୱେନ ପ୍ରସିଦ୍ଧେଭ୍ୟଃ ପୁରୁଷାଦିଭ୍ୟଃ ବିଲକ୍ଷଣନାଂ କେଶନଖାଦୀନାମୁତ୍ପତ୍ତିଃ, ଅଚେତନତ୍ୱେ ନ ଚ ପ୍ରସିଦ୍ଧେଭ୍ୟୋ ଗୋମୟାଦିଭ୍ୟୋ ବୃଶ୍ଚିକାଦୀନାମ୍ ।

(ଖ) ନନ୍ୱଚେତନାନ୍ୟେବ ପୁରୁଷାଦିଶରୀରାଣ୍ୟଚେତନାନାଂ କେଶନ-ଖାଦୀନାଂ କାରଣାନି, ଅଚେତନାନ୍ୟେବ ଚ ବୃଶ୍ଚିକାଦିଶରୀରାଣ୍ୟ-ଚେତନାନାଂ ଗୋମୟାଦୀନାଂ କାର୍ଯ୍ୟାଣୀତି ।

(ଗ) ଉଚ୍ୟତେ-ଏବମପି କିଞ୍ଚିଦଚେତନଂ ଚେତନସ୍ୟାୟତନା-ଭାବମୁପଗଚ୍ଛତି, କିଞ୍ଚିନ୍ନେତ୍ୟସ୍ତ୍ୟେବ ବୈଲକ୍ଷଣ୍ୟମ୍ । ମହାଂଶ୍ଚାୟଂ ପାରିଣାମିକଃ ସ୍ୱଭାବବିପ୍ରକର୍ଷଃ ପୁରୁଷାଦୀନାଂ କେଶନଖାଦୀନାଞ୍ଚ ସ୍ୱରୂପାଦିଭେଦାତ୍ । ଯଥା ଗୋମୟାଦୀନାଂ ବୃଶ୍ଚିକାଦିନାଞ୍ଚ, ଅତ୍ୟନ୍ତ ସାରୂପ୍ୟେ ଚ ପ୍ରକୃତି ବିକାର ଭାବ ଏବ ପ୍ରଲୀୟତେ' '।

(ଘ) ଅଥୋଚ୍ୟେତ-ଅସ୍ତି କଶ୍ଚିତ୍ ପାର୍ଥିବତ୍ୱାଦିସ୍ୱଭାବଃ ପୁରୁଷାଦୀନାଂ କେଶନଖାଦିଷ୍ୱନୁ ବର୍ତ୍ତମାନୋ ଗୋମୟାଦୀନାଂ ବୃଶ୍ଚିକାଦିଷ୍ୱିତି । ବ୍ରହ୍ମଣୋଽପି ତର୍ହି ସତ୍ତାଲକ୍ଷଣଃ ସ୍ୱଭାବ ଆକାଶାଦିଷ୍ୱନୁ ବର୍ତ୍ତମାନୋ ଦୃଶ୍ୟତେ ।

**(୨) ଭାଷାଂତର-** (କ) ତୁ ଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି କରେ । ବିଲକ୍ଷଣ ହେଲେ ଏହି ଜଗତ୍ ବ୍ରହ୍ମୋପାଦାନକ ହୁଏ ନାହିଁ ବୋଲି ଯାହା କୁହାଯାଇଅଛି, ଏହି ନିୟମ ଐକାନ୍ତ (ଅବ୍ୟଭିଚରିତ) ନୁହେଁ । କାରଣ-ସଂସାରରେ ଏପରି ଦେଖାଯାଏ କି- ଚେତନ ରୂପରେ ପ୍ରସିଦ୍ଧ ହୋଇଥିବା ପୁରୁଷାଦିଠାରୁ ବିଲକ୍ଷଣ ଅଚେତନ କେଶନଖାଦିର ଉତ୍ପତ୍ତି ହୁଏ ଏବଂ ଅଚେତନ ରୂପରେ ପ୍ରସିଦ୍ଧ ଗୋମୟାଦିରୁ ବୃଶ୍ଚିକା (ପୋକ)ର ଉତ୍ପତ୍ତି ହୁଏ । ପରନ୍ତୁ ପୁରୁଷାଦିର ଅଚେତନଶରୀର ମଧ୍ୟ ଅଚେତନ କେଶନଖାଦିର କାରଣ ହୁଏ ଏବଂ ବୃଶ୍ଚିକାଦିର ଅଚେତନ ଶରୀର ମଧ୍ୟ ଅଚେତନ ଗୋମୟାଦିର କାର୍ଯ୍ୟ ଅଟେ କି ?

(ଖ) ତେଣୁ କୁହାଯାଇଛି- ଏହିପ୍ରକାର କୌଣସି ଅଚେତନ ଚେତନର ଆଶ୍ରୟ ଭାବକୁ ପାଏ ଏବଂ କେତେକ ସ୍ଥଳରେ ପାଏ ନାହିଁ- ଏହାହିଁ ବୈଲକ୍ଷଣ୍ୟ । ଏଠାରେ ପରିଣାମାତ୍ମକ ସ୍ୱଭାବର ବୈଲକ୍ଷଣ୍ୟ ମହାନ୍ ଅଟେ । କାରଣ-ପୁରୁଷାଦି ଓ କେଶନଖାଦିର ସ୍ୱରୂପାଦିରେ ଭେଦ ଅଛି । ସେହିପରି ଗୋମୟାଦି ଓ ବୃଶ୍ଚିକାଦିର ପରିଣାମାତ୍ମକ ବୈଲକ୍ଷଣ୍ୟ ମଧ୍ୟ ମହାନ୍ ଅଟେ ଏବଂ ଦୁଇଟିର ସ୍ୱରୂପ ମଧ୍ୟରେ ମଧ୍ୟ ଭେଦ ଅଛି । କାର୍ଯ୍ୟକାରଣ ମଧ୍ୟରେ ଅତ୍ୟନ୍ତ ସାଦୃଶ୍ୟ ହେଲେ କାର୍ଯ୍ୟକାରଣଭାବର (ପ୍ରକୃତି ବିକାରଭାବର) ବିଲୟ ହୋଇଯାଏ ।

(ଘ) ଯଦି କହ ଯେ- ପୁରୁଷାଦିର କୌଣସି ପାର୍ଥିବତ୍ୱାଦି ସ୍ୱଭାବ କେଶନଖାଦିରେ ଏବଂ ଗୋମୟାଦିର କୌଣସି ପାର୍ଥିବତ୍ୱାଦି ସ୍ୱଭାବ ବୃଶ୍ଚିକାଦିରେ ଅନୁବର୍ତ୍ତମାନ ହୁଏ କି ? ତେବେ ବ୍ରହ୍ମର ସତ୍ତାତ୍ମକସ୍ୱଭାବ ଆକାଶାଦିରେ ଅନୁବର୍ତ୍ତ ମାନହୋଇ ଦେଖାଯାଏ ।

(୩) ମୂଳ-(କ) ବିଲକ୍ଷଣତ୍ୱେନ ଚ କାରଣେନ ବ୍ରହ୍ମପ୍ରକୃତିକତ୍ୱଂ ଜଗତୋ ଦୂଷୟତା କିମଶେଷସ୍ୟ ବ୍ରହ୍ମସ୍ୱଭାବସ୍ୟାନନୁବର୍ତ୍ତନଂ ବିଲକ୍ଷଣତ୍ୱମଭିପ୍ରେୟତ ଉତ ଯସ୍ୟ କସ୍ୟଚିତ୍, ଅଥ ଚୈତନ୍ୟସ୍ୟେତି ବକ୍ତବ୍ୟମ୍ ।

(ଖ) ପ୍ରଥମେ ବିକଳ୍ପେ ସମସ୍ତ ପ୍ରକୃତି ବିକାରୋ ଚ୍ଛେଦ ପ୍ରସଙ୍ଗଃ ନ ହ୍ୟତିଶୟେ ପ୍ରକୃତି ବିକାର ଇତି ଭବତି । ଦ୍ୱିତୀୟେ ତ୍ୱସିଦ୍ଧତ୍ୱମ୍ । ଦୃଶ୍ୟତେ ହି ସତ୍ତାଲକ୍ଷଣୋ ବ୍ରହ୍ମସ୍ୱଭାବ୍ ଆକଶାଦିଷ୍ୱନୁବର୍ତ୍ତମାନ ଇତ୍ୟୁକ୍ତମ୍ । ତୃତୀୟେ ତୁ ଦୃଷ୍ଟାନ୍ତାଭାବଃ ।

(ଗ) କିଂ ହି ଯଚ୍ଚେତନ୍ୟେନାନ୍ୱିତଂ ତଦ୍ ବ୍ରହ୍ମପ୍ରକୃତିକଂ ଦୃଷ୍ଟମିତି ବ୍ରହ୍ମବାଦିନଂ ପ୍ରତ୍ୟୁଦାହ୍ରିୟେତ, ସମସ୍ତସ୍ୟ ବସ୍ତୁଜାତସ୍ୟ ବ୍ରହ୍ମପ୍ରକୃତିକତ୍ୱାଭ୍ୟୁପଗମାତ୍ । ଆଗମବିରୋଧସ୍ତୁ ପ୍ରସିଦ୍ଧ ଏବ, ଚେତନଂ ବ୍ରହ୍ମ ଜଗତଃ କାରଣଂ ପ୍ରକୃତିଶ୍ଚେତ୍ୟାଗମତାତ୍ପର୍ଯ୍ୟସ୍ୟ ପ୍ରସାଧିତତ୍ୱାତ୍ ।

**(୩) ଭାଷାଂତର-** (କ) ବିଲକ୍ଷଣତ୍ୱ ହେତୁଦ୍ୱାରା ଜଗତ୍‌ର ବ୍ରହ୍ମ ପ୍ରକୃତି କତ୍ୱରେ ଦୋଷ ଦେଉଥିବାରୁ ଅଶେଷ (ସଂପୂର୍ଣ୍ଣ) ବ୍ରହ୍ମସ୍ୱଭାବର ଅନୁବୃତ୍ତିର ଅଭାବ ବିଲକ୍ଷଣତ୍ୱ ଅଭିପ୍ରେତ ହୁଏ । ଯିଏ ଯେ କୌଣସି ଅନୁବୃତ୍ତିର ଅଭାବ, ଅଥବା ଚୈତନ୍ୟର ଅନୁବୃତ୍ତି ଅଭାବ ଅଭିପ୍ରେତ ହୁଏ ବୋଲି କ'ଣ କହିବା ଉଚିତ ?

(ଖ) ପ୍ରଥମ ପକ୍ଷରେ କିନ୍ତୁ ସମସ୍ତ କାର୍ଯ୍ୟକାରଣ ଭାବ ଉଚ୍ଛେଦ ହୋଇଯିବ, କାରଣ-ପ୍ରକୃତି ଓ ବିକୃତିରେ ଅତିଶୟ ବୈଲକ୍ଷଣ୍ୟ ନ ହେଲେ ସେ ପ୍ରକୃତି ହୁଏ, ସେ ମଧ୍ୟ ବିକାର ହୁଏ ଏବଂ ପ୍ରକୃତି ବିକୃତିଭାବ ରହେ ନାହିଁ । ଦ୍ୱିତୀୟ ପକ୍ଷରେ ଅସିଦ୍ଧରୂପ ଦୋଷ ହୁଏ; କାରଣ- 'ସତ୍ତାଲକ୍ଷଣ ବ୍ରହ୍ମସ୍ୱଭାବର ଆକାଶାଦିରେ ଅନୁବୃତ୍ତି ଦେଖାଯାଏ ବୋଲି ପ୍ରଥମେ କୁହାଯାଇଅଛି । ତୃତୀୟ ପକ୍ଷରେ ଦୃଷ୍ଟାନ୍ତର ଅଭାବ ହୁଏ ।

(ଗ) ଯାହା ଚୈତନ୍ୟଦ୍ୱାରା ଅନ୍ୱିତ ନୁହେଁ; ସେ ବ୍ରହ୍ମ ପ୍ରକୃତିକ ରୂପରେ ଦେଖାଯାଏ ନାହିଁ । ଏପରି କେଉଁ ଉଦାହରଣ ବ୍ରହ୍ମବାଦୀ ପ୍ରତି ଦେବା ? କାରଣ- ଏହି ସମସ୍ତ ବସ୍ତୁ ସମୁଦାୟକୁ ବ୍ରହ୍ମ ଉପାଦାନକ ରୂପେ ସ୍ୱୀକାର କରାଗଲା । କିନ୍ତୁ ଏଠାରେ ଶାସ୍ତ୍ରବିରୋଧ ପ୍ରସିଦ୍ଧ ଅଟେ; କାରଣ-ଚେତନ ବ୍ରହ୍ମ ଜଗତ୍‌ର ନିମିତ୍ତକାରଣ ଓ ଉପାଦାନ କାରଣ ଅଟେ- ଏହି ଆଗମର ତାତ୍ପର୍ଯ୍ୟ ସିଦ୍ଧ କରାଗଲା ।

(୪) ମୂଳ-(କ) ଯତ୍ତୁକ୍ତଂ ପରିନିଷ୍ପନ୍ନତ୍ୱାଦ୍ ବ୍ରହ୍ମଣି ପ୍ରମାଣାନ୍ତରାଣି ସମବେୟୁରିତି, ତଦପି ମନୋରଥମାତ୍ରମ୍ ରୂପାଦ୍ୟଭାବାଦ୍ ବିନାୟମର୍ଥଃ ପ୍ରତ୍ୟକ୍ଷସ୍ୟ ଗୋଚରଃ, ଲିଙ୍ଗାଦ୍ୟଂଭାବାଚ୍ଚ ନାନୁମାନାଦୀନାଦୀନାମ୍ ।

(ଖ) ଆଗମମାତ୍ର ସମଧିଗମ୍ୟ ଏବ ତ୍ୱୟମର୍ଥୋ ଧର୍ମବତ୍, ତଥା ଚ ଶ୍ରୁତିଃନୈଷା ତର୍କେଣ ମତିରାପନେୟାପ୍ରାକ୍ତାନ୍ୟେନୈବ, ସୁଜ୍ଞାନାୟ ପ୍ରେଷ୍ଠ' (କା୧-୨-୯) ଇତି । 'କୋ ଅଦ୍ଧା ବେଦ ଇବ ପ୍ରବୋଚତ୍' 'ଇୟଂ ବିସୃଷ୍ଟିଃ ଯତ୍ ଆବଭୂବ' (ଋ-ସଂ ୧-୩୦-୬) ଇତି ଚେତେ ଋଚୌ ସିଦ୍ଧାନାମପୀଶ୍ୱରାଣାଂ ଦୁର୍ବୋଧତାଂ ଜଗତ୍‌କାରଣସ୍ୟ ଦର୍ଶୟତଃ ।

(ଗ) ସ୍ମୃତିରପି ଭବତି- 'ଅଚିନ୍ତ୍ୟାଃ ଖଲୁ ଯେ ଭାବା ନ ତାଂସ୍ତର୍କେଣ ଯୋଜୟେତ୍' ଇତି । 'ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ' (ଗୀ-୨-୨୫) ଇତି ଚ । 'ନ ମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ । ଅହମାଦି ହିଁ ଦେବାନାଂ ମହର୍ଷୀଣାଂ ତୁ ସର୍ବଶଃ (ଗୀ ୧୦-୨) ଇତି ଚୈବଂଜାତୀୟକା ।

(ଘ) ଯଦପି ଶ୍ରବଣବ୍ୟତିରେକେଣ ମନନଂ ବିଧଦଚ୍ଛବ୍ଦ ଏବତର୍କମପ୍ୟାଦର୍ତ୍ତବ୍ୟଂ ଦର୍ଶୟତୀତ୍ୟୁକ୍ତମ୍ । ନାନେନ ମିଷେଣ ଶୁଷ୍କତର୍କସ୍ୟାତ୍ରାତ୍ମଲାଭଃ ସମ୍ଭବତି । ଶ୍ରୁତ୍ୟନୁଗୃହୀତ ଏବ ହ୍ୟତ୍ର ତର୍କୋଽନୁଭବାଙ୍ଗତ୍ୱେନାଶ୍ରୀୟତେ ।

**(୪) ଭାଷାଂତର**-(କ) ଯାହା ଏଠାରେ କୁହାଯାଇଛି- ସିଦ୍ଧବସ୍ତୁ ହେଲେ ବ୍ରହ୍ମରେ ଅନ୍ୟପ୍ରମାଣଗୁଡ଼ିକର ସମ୍ଭବ ହୁଏ, ସେ କିନ୍ତୁ ମନୋରଥମାତ୍ର; କାରଣ-ରୂପାଦିର ଅଭାବହେଲେ ଅନୁମାନାଦିର ବିଷୟ ହୁଏ ନାହିଁ ।

(ଖ) କିନ୍ତୁ ଯେଉଁବସ୍ତୁ ଧର୍ମଭଳି କେବଳ ଅଗମମାତ୍ରରୁ ଅଧିଗମ୍ୟ ହୁଏ, ସେହି ବିଷୟରେ 'ନୈଷା ତର୍କେଣ' (ହେ ପ୍ରିୟତମ ! ସମ୍ୟଗଜ୍ଞାନ ପାଇଁ ଶୁଷ୍କତାର୍କିକଭିନ୍ନ ଶାସ୍ତ୍ରଜ୍ଞ ଏହି ବୁଦ୍ଧି କୁହାଯାଇଅଛି । ଯାହାକୁ ତୁମେ ପାଇଛ, ତର୍କଦ୍ୱାରା ତାହା ପାଇବା ପାଇଁ ଅଥବା ଦୂର ହେବା ପାଇଁ ଯୋଗ୍ୟ ହୁଏ ନାହିଁ । ଏହା ହିଁ ଶ୍ରୁତି । ପୁନଶ୍ଚ 'କୋ ଅଦ୍ଧା ବେଦ' (କିଏ ସାକ୍ଷାତ୍‌ଭାବେ ତାହାକୁ ଜାଣେ, ଅଥବା ତାହାକୁ ଠିକ୍ ରୂପରେ ବୁଝେ । ଏହି ବିବିଧ ସୃଷ୍ଟି ଯାହାଠାରୁ ଉତ୍ପନ୍ନ ହେଲା) ଏହି ଦୁଇଟି ଋଚ୍ଚ ଜଗତ୍‌ର କାରଣ ବ୍ରହ୍ମରେ ସିଦ୍ଧ, ଯୋଗୀମାନଙ୍କ ପାଇଁ ଦୁର୍ବିଜ୍ଞେୟତ୍ୱ ଦେଖାଯାଏ ।

(ଗ) 'ଅଚିନ୍ତ୍ୟାଚ ଖଲୁ' (ଯେଉଁ ପଦାର୍ଥ ଅଚିନ୍ତ୍ୟ, ଯେଉଁ ପଦାର୍ଥ ଗୁଡ଼ିକର ଉତ୍ପ...ାଦି ମନୁଷ୍ୟଠାରୁ ଦେବତା ଋଷି ପ୍ରଭୃତିର ବୁଦ୍ଧିରେ ଅଗମ୍ୟ ହୁଏ, ସେହି ପଦାର୍ଥଗୁଡ଼ିକ ତର୍କରେ ନିୟୋଜନ କର) ଏବଂ ଅବ୍ୟକ୍ତଂ (ଏହା ଅବ୍ୟକ୍ତ ଇନ୍ଦ୍ରିୟର ଅବିଷୟ) ଏହି ଅଚିନ୍ତ୍ୟ (ମନର ଅବିଷୟ ଓ ଅବିକାର୍ଯ୍ୟ), 'ନ ମେ ବୁଦଃ (ହେ ଅର୍ଜୁନ । ମୋର ଉତ୍ପତ୍ତିକୁ ଅର୍ଥାତ୍ ବିଭୂତି ସହିତ ଲୀଳାରେ ପ୍ରକଟ ହେବାକୁ ଦେବତା ମହର୍ଷିମାନେ ଜାଣିପାରନ୍ତି ନାହିଁ । କାରଣ ମୁଁ ସବୁପ୍ରକାର ଦେବତା ଓ ମହର୍ଷି ମାନଙ୍କର ଆଦିକାରଣ ଅଟେ ।) ଏହିପ୍ରକାର ଏହି ସ୍ମୃତିଗୁଡ଼ିକ ଅଛି ।

(ଘ) ଶ୍ରବଣ ଭିନ୍ନ ମନନର ବିଧାନ କରୁଥିବା ଶ୍ରୁତି ମଧ୍ୟ ତର୍କର ଆଦର କରେ ଓ ଦେଖାଏ । ଏହି ମନନ ବିଧିର ମିଶ୍ରଣ କଲେ ଏଠାରେ ଶୁଦ୍ଧ ତର୍କ ହେବା ସମ୍ଭବ ହୁଏ ନାହିଁ । ଏଠାରେ ଶ୍ରୁତିର ଅନୁଗୃହୀତ ତର୍କ ଅନୁଭବର ସହାୟକ ରୂପରେ ଗ୍ରହଣ କରାଯାଇଅଛି ।

(୫) ମୂଳ-(କ) ସ୍ୱପ୍ନାନ୍ତବୁଦ୍ଧାନ୍ତୟୋରୁ ଭୟୟୋରିତରେତର ବ୍ୟଭିଚାରାଦା-ତ୍ମନୋଽନନ୍ୱଗତତ୍ୱମ୍, ସଂପ୍ରସାଦେଃ ପ୍ରପଞ୍ଚ ପରିତ୍ୟାଗେନ ସଦାତ୍ମନା ସଂପତ୍ତେର୍ନିଷ୍ ପ୍ରପଞ୍ଚ

ସଦାତ୍ମତ୍ୱମ୍, ପ୍ରପଞ୍ଚସ୍ୟ ବ୍ରହ୍ମପ୍ରଭବତ୍ୱାତକାର୍ଯ୍ୟକାରଣା ନନ୍ୟତ୍ୱନ୍ୟାୟେନ ବ୍ରହ୍ମବ୍ୟତିରେକ ଇତ୍ୟେୟବଂଜାତୀୟକଃ ।

(ଖ) 'ତର୍କାପ୍ରତିଷ୍ଠାନାତ୍' (ବ୍ର-ସୂ ୧-୧-୧୧) ଇତି ଚ କେବଳସ୍ୟ ତର୍କସ୍ୟ ବିପ୍ରଲମ୍ଭକତ୍ୱଂ ଦର୍ଶୟିଷ୍ୟତି । ଯୋଽପି ଚେତନକାରଣ ଶ୍ରବଣବଳେନୈବ ସମସ୍ତସ୍ୟ ଜଗତଶ୍ଚେତନତାମୁତ୍ ପ୍ରେକ୍ଷେତ, ତସ୍ୟାପି 'ବିଜ୍ଞାନଂ ଚାବିଜ୍ଞାନଞ୍ଚ' ଇତି ଚେତନା ଚେତନବିଭାଗଶ୍ରବଣଂ ବିଭାବନା ବିଭାବନାଭ୍ୟାଂ ଚୈତନ୍ୟସ୍ୟ ଶକ୍ୟତ ଇତି ଯୋଜୟିତୁମ୍ ।

(ଗ) ପରସ୍ୟୈ ବ ତ୍ୱିଦମପି ବିଭାଗଶ୍ରବଣଂ ନ ଯୁଜ୍ୟତେ । କଥମ୍ ? ପରମକାରଣସ୍ୟ ହ୍ୟତ୍ର ସମସ୍ତ ଜଗଦାତ୍ମନା ସମବସ୍ଥାନ ଶ୍ରାବ୍ୟତେ-'ବିଜ୍ଞାନ ଚାବିଜ୍ଞାନଂ ଚାଭବତ୍' ଇତି । ତତ୍ର ଯଥା ଚେତନସ୍ୟାଚେତମଭାବୋ ନୋପପଦ୍ୟାତେ, ବିଲକ୍ଷଣତ୍ୱାତ୍ । ଏବମଚେତନସ୍ୟାପି ଚେତନଭାବୋ ନୋପପଦ୍ୟତେ ପ୍ରତ୍ୟୁକ୍ତତ୍ୱାତ୍ତୁ ବିଲକ୍ଷଣତ୍ୱସ୍ୟ ଯଥାଶ୍ରୁତ୍ୟୈବ ଚେତନଂ କାରଣ ଗ୍ରହୀତବ୍ୟ ଭବତି ।

**୫-ଭାଷାଂତର**-(କ) ସ୍ୱପ୍ନାବସ୍ଥା ଓ ଜାଗ୍ରଦବସ୍ଥା ଏହି ଦୁଇଟିରେ ପରସ୍ପର ମଧ୍ୟରେ ବ୍ୟଭିଚାର ହେଲେ ଆତ୍ମା ଏହାଠାରୁ ଅସଂସ୍ପୃଷ୍ଟ (ପରିତ୍ୟାଗୀ ହୁଏ ଏବଂ ସୁଷୁପ୍ତି ଅବସ୍ଥାରେ ପ୍ରପଞ୍ଚର ତ୍ୟାଗପୂର୍ବକ ସଦ୍ରୂପ ସହିତ ଏକହୋଇ ଆତ୍ମା ନିଷ୍ପ୍ରପଞ୍ଚ ବ୍ରହ୍ମସ୍ୱରୂପ ହୋଇଯାଏ । ପ୍ରପଞ୍ଚ ବ୍ରହ୍ମଠାରୁ ଉତ୍ପନ୍ନ ହୁଏ । ତେଣୁ କାର୍ଯ୍ୟ କାରଣଠାରୁ ଅଭିନ୍ନ । ଏହି ଅନ୍ୟାୟରେ ବ୍ରହ୍ମଠାରୁ ମଧ୍ୟ ପ୍ରପଞ୍ଚ ଅଭିନ୍ନ-ଏହିପ୍ରକାର ତର୍କ ଅଙ୍ଗିକୃତ ହୋଇଛି ।

(ଖ) ତର୍କାପ୍ରତିଷ୍ଠାନାତ୍ ଏହି ସୂତ୍ରରେ ଶ୍ରୁତି ନିରପେକ୍ଷତର୍କକୁ ଅପ୍ରମାପକ-ପ୍ରମାଜ୍ଞାନକୁ ଉତ୍ପନ୍ନ ନ କରି ଦେଖାଇଦେବ । ଯେକୌଣସି (ଏକଦେଶୀ) ବ୍ରହ୍ମକୁ ଚେତନ କାରଣ ରୂପ ପ୍ରତିପାଦିତ ଶ୍ରୁତିବାକ୍ୟ ଗୁଡ଼ିକର ବଳରେ ସମସ୍ତ ଜଗତ୍‌ରେ ଚେତନତ୍ୱର କଳ୍ପନା କରାଯାଇପାରେ । ତାହାମତରେ ମଧ୍ୟ ବିଜ୍ଞାନ ଚାବିଜ୍ଞାନଞ୍ଚ' ଏହିପ୍ରକାର ଚେତନ ଓ ଅଚେତନର ବିଭାଗଶ୍ରବଣ ଓ ଚୈତନ୍ୟର ଅଭିବ୍ୟକ୍ତି ଓ ଅନଭିବ୍ୟକ୍ତି ଦ୍ୱାରା ଯୋଜନା କରାଯାଏ ।

(ଗ) କିନ୍ତୁ ଅନ୍ୟ ସଂଖ୍ୟାମତରେ ଏହି ବିଭାଗ ଶ୍ରବଣ ଠିକ୍ ନୁହେଁ, କାରଣ- 'ବିଜ୍ଞାନ ଚାବିଜ୍ଞାନଞ୍ଚ' (ଚେତନ ଓ ଅଚେତନ ହେଲା) ଏହି ପ୍ରକାର ଶ୍ରୁତି ଏଠାରେ ପରମକାରଣକୁ ସମସ୍ତ ଜଗତ୍ ରୂପରେ ଅବସ୍ଥିତିର ଶ୍ରବଣ କରାଏ । ଯେପରି ସେଠାରେ ବିଲକ୍ଷଣ ଦ୍ୱାରା ଚେତନରେ ଅଚେତନଭାବ ଉପପନ୍ନ ହୁଏ ନାହିଁ, ସେପରି ଅଚେତନରେ ମଧ୍ୟ ଚେତନଭାବ ଉପପନ୍ନ ହୁଏ ନାହିଁ । ଅଭିବ୍ୟକ୍ତି ଓ ଅନଭିବ୍ୟକ୍ତିଦ୍ୱାରା ଅଥବା ସାରୂପ୍ୟ ଓ ବୈଲକ୍ଷଣ୍ୟ ପ୍ରତିପାଦିତ ହେଲେ ଚେତନ ଓ ଅଚେତନର ବୈଲକ୍ଷଣ୍ୟର ପରିହାର କରାଯାଏ । ତେଣୁ ଶ୍ରୁତି ଅନୁସାରେ ଚେତନକାରଣର ଗ୍ରହଣ କରିବା ଉଚିତ ।

## असदिति चेन्न प्रतिषेधमात्रत्वात्  ॥७॥

## ୧ । ଅସଦିତି ଚେନ୍ନ ପ୍ରତିଷେଧମାତ୍ରତ୍ୱାତ୍ ୨।୧।୭

ଅସତ୍-ଉତ୍ପତ୍ତିର ପୂର୍ବରୁ ଏହି ଜଗତ ଅସତ ଥିଲା, ଚେତନ-ଏହା ଯଦି କହ, ତେବେ ମଧ୍ୟ ଏହା ଠିକ୍ ନୁହେଁ । ପ୍ରତିଷେଧମାତ୍ରତ୍ୱାତ- 'ତଦସତ୍' ବାକ୍ୟ ହିଁ କେବଳ ପ୍ରତିଷେଧମାତ୍ର ଅଟେ ।

(୨) ମୂଳ-(କ) ଯଦି ଚେନନଂ ଶୁଦ୍ଧଂ ଶବ୍ଦାଦିହୀନଂ ଚ ବ୍ରହ୍ମ ତଦ୍ ବିପରୀତ-ସ୍ୟାଚେତସାଶୁଦ୍ଧସ୍ୟ ଶବ୍ଦଦିମତଶ୍ଚ କାର୍ଯ୍ୟସ୍ୟ କାରଣମିଷ୍ୟେତ, ଅସତ୍ତର୍ହି କାର୍ଯ୍ୟଂ ପ୍ରାଗୁତ୍ପତ୍ତେରିତି ପ୍ରସଜ୍ୟେତ । ଅନିଷ୍ଟଂ ଚୈତତ୍ ସତ୍ କାର୍ଯ୍ୟବାଦିନସ୍ତବେତି ଚେତ ।

(ଖ) ନୈଷୋ ଦୋଷଃ' ପ୍ରତିଷେଧମାତ୍ରତ୍ୱାତ । ପ୍ରତିଷେଧମାତ୍ରଂ ହୀଦଂ ନାସ୍ୟ ପ୍ରତିଷେଧସ୍ୟ ପ୍ରତିଷେଧମସ୍ତି ନ ହ୍ୟୟଂ ପ୍ରତିଷେଧଃ ପ୍ରାଗୁତ୍ପତ୍ତେଃ ସତ୍ୱଂ କାର୍ଯ୍ୟସ୍ୟ ପ୍ରତିଷେଦ୍ଧୁଂ ଶକ୍ନୋତି ।

(ଗ) କଥମ ? ଯଥୈବ ହୀଦାନୀମପୀଦଂ କାର୍ଯ୍ୟଂ କାରଣତ୍ମନାସତ୍, ଏବଂ ପ୍ରାଗୁଜତ୍ତେରପୀତି ଗମ୍ୟତେ । ନ ଡୀଦାଦୀ ମପିଦଂ କାର୍ଯ୍ୟଂକାରଣାତ୍ମନାମନ୍ତରେଣ ସ୍ୱତନ୍ତ୍ରଂ ମେବାସ୍ତି । ସର୍ବଂ ତଂ ପରାଦାଦ୍ୟୋଽନ୍ୟତ୍ରାତ୍ମନଃ ସର୍ବଂ ବେଦ' (ବୃ ୨-୪-୬) ଇତ୍ୟାଦି ଶ୍ରବଣାତ । କାରଣାତ୍ମନା ତୁ ସତ୍ୱଂ କାର୍ଯ୍ୟସ୍ୟ ପ୍ରାଗୁତ୍ପତ୍ତେରବଶିଷ୍ଟମ୍ ।

(ଘ) ନନୁ ଶବ୍ଦାଦିହୀନଂ ବ୍ରହ୍ମ ଜଗତଃ କାରଣମ ବାଡ଼ସ, ନ ତୁ ଶବ୍ଦାଦିମତକାର୍ଯ୍ୟଂ, କାରଣାତ୍ମନା ହୀନଂ ପ୍ରାଗୁତ୍ପତ୍ତେରିଦାନୀଂ ବାଽସ୍ତି । ତେନ ନ ଶକ୍ୟତେ ବକ୍ତୁଂ ପ୍ରାଗୁତ୍ପତ୍ତେରସତ କାର୍ଯ୍ୟମିତି । ବିସ୍ତରେଣ ଚୈତତକାର୍ଯ୍ୟକାରଣାନନ୍ୟତ୍ୱବାଦେ ବକ୍ଷ୍ୟାମଃ ।

**(୨) ଭାଷାଂତର-** (କ) ଯଦି ଚେତନ ଶୁଦ୍ଧ ଶବ୍ଦାଦିରହିତ ବ୍ରହ୍ମ ନିଜଠାରୁ ବିପରୀତ ଅଚେତନ, ଅଶୁଦ୍ଧ ଶବ୍ଦାଦିଯୁକ୍ତ ଜଗତ୍‌ରୂପ କାର୍ଯ୍ୟର କାରଣ ରୂପରେ ସ୍ୱୀକାର କରାଯାଏ, ତେବେ ଉତ୍ପତ୍ତିର ପୂର୍ବରୁ ଏହିକାର୍ଯ୍ୟ ଅସତରୂପରେ ପ୍ରସକ୍ତ ହେବ । ଏହିପ୍ରକାର ସତକାର୍ଯ୍ୟବାଦୀ ପାଇଁ ଏହା ଅନିଷ୍ଟ ହେବ ବୋଲି ଯଦି କହ,

(ଖ) ତଥାପି ଏହା ଦୋଷ ହେବ ନାହିଁ, କାରଣ-ଏଠାରେ ପ୍ରତିଷେଧମାତ୍ର ହିଁ ଅଛି । ଏହା କେବଳ ପ୍ରତିଷେଧମାତ୍ର । ଏହି ପ୍ରତିଷେଧର କୌଣସି ପ୍ରତିଷେଧ ନାହିଁ । ଏହି ପ୍ରତିଷେଧର ଉତ୍ପତ୍ତି ପୂର୍ବରୁ କାର୍ଯ୍ୟସତ୍ତାର ପ୍ରତିଷେଧ କରାଯାଇପାରେ ନାହିଁ ।

(ଗ) କାହିଁକି ? ଯେପରି ଏହି କାର୍ଯ୍ୟ ବର୍ତ୍ତମାନ ମଧ୍ୟ କାରଣରୂପରେ ସତ ଅଟେ, ଏହିପ୍ରକାର ଉତ୍ପତ୍ତିର ପୂର୍ବରୁ ଥିଲା । ବର୍ତ୍ତମାନ ମଧ୍ୟ କାର୍ଯ୍ୟ କାରଣ ସ୍ୱରୂପ ବିନା ସ୍ୱତନ୍ତ୍ର ନୁହେଁ, କାରଣ- 'ସର୍ବଂ' ତ ସମସ୍ତଙ୍କୁ ସେ ପରାସ୍ତ କରିଦିଏ, ଯିଏ ଆତ୍ମାଠାରୁ ଭିନ୍ନ

ସମସ୍ତଙ୍କୁ ଦେଖେ) ଇତ୍ୟାଦି ଶ୍ରୁତି । ଉତ୍ପତ୍ତି ପୂର୍ବରୁ କାର୍ଯ୍ୟ କାରଣ ରୂପହେଲେ ବର୍ତ୍ତମାନଠାରୁ କୌଣସି ବିଶେଷ ହୁଏ ନାହିଁ ।

(ଘ) ପରନ୍ତୁ ଶବ୍ଦାଦି ରହିତ ବ୍ରହ୍ମ ଜଗତର କାରଣ ହୁଏ କି ? ହିଁ ହୁଏ । କିନ୍ତୁ ଶବ୍ଦାଦିଯୁକ୍ତ କାର୍ଯ୍ୟ କାରଣ ରୂପରେ ନ ରହିଥିବାରୁ ଉତ୍ପତ୍ତିର ପୂର୍ବରୁ ନ ଥିଲା, କି ବର୍ତ୍ତମାନ ନାହିଁ । ଏହାଠାରୁ କାର୍ଯ୍ୟ କାରଣରୂପ ହେଲେ ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟ କାରଣ ରୂପରେ ନ ରହିଥିବାରୁ ଉତ୍ପତ୍ତିର ପୂର୍ବରୁ ନଥିଲା, କି ବର୍ତ୍ତମାନ ନାହିଁ । ଏହାଠାରୁ କାର୍ଯ୍ୟ କାରଣରୂପ ହେଲେ ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟ ଅସତ୍ ହୁଏ ବୋଲି କୁହାଯାଇ ନପାରେ, କାର୍ଯ୍ୟକାରଣର ଅଭେଦବର୍ଣ୍ଣନା ଏହାପରେ ବିସ୍ତୃତ କରି ବର୍ଣ୍ଣନା କରାଯିବ ।

## अपीतौ तद्वत्प्रसङ्गादसमञ्जसम् ॥२॥

## (୧) ଅପୀତୌ ତଦ୍‌ବତ୍ ପ୍ରସଙ୍ଗାଦସମଞ୍ଜସମ୍ ॥ ୨-୧-୮ ॥

ଅପୀତୌ-ପ୍ରଳୟକାଳରେ, ତଦ୍‌ବତ-କାର୍ଯ୍ୟଭଳି, ପ୍ରସଙ୍ଗାତ୍-କାରଣ-ବ୍ରହ୍ମରେ ମଧ୍ୟ ଅଶୁଦ୍ଧଭାବାଦି ହେବାର ପ୍ରସଙ୍ଗ ହୋଇଯିବ । ଅତଃ, ଅସମଞ୍ଜସମ୍-ଶୁଦ୍ଧତ୍ୱାଦି ଗୁଣଯୁକ୍ତ ବ୍ରହ୍ମ ଜଗତର ଉପାଦାନ ହେବା ଅଯୌକ୍ତିକ ଅଟେ ।

(୨) ମୂଳ-(କ) ତତ୍ରାହ-ଯଦି ସ୍ଥୌଲ୍ୟସାବୟବତ୍ୱାଚେତନତ୍ୱ- ପରିଚ୍ଛିନ୍ନତ୍ୱାଶୁଦ୍ଧ୍ୟାଦିଧର୍ମକଂ କାର୍ଯ୍ୟଂ ବ୍ରହ୍ମକାରଣମଭ୍ୟୁପଗମ୍ୟତେ, ତଦାପୀତୌ ପ୍ରଳୟେ ପ୍ରତିସଂସୃଜ୍ୟମାନଂ କାର୍ଯ୍ୟଂ କାରଣା ବିଭାଗମାପଦ୍ୟମାନଂ କାରଣମାତ୍ମୀୟେନ ଧର୍ମେଣ ଦୂଷୟେଦିତାପୀତୌ କାରଣସ୍ୟାପି ବ୍ରହ୍ମଣଃ କାର୍ଯ୍ୟସ୍ୟୈବାଶୁଦ୍ଧ୍ୟାଦିରୂପପ୍ରସଙ୍ଗାତ ସର୍ବଜ୍ଞଃ ବ୍ରହ୍ମ ଜଗତକାରଣମିତ୍ୟସମଞ୍ଜସମିଦମୌପନିଷଦଂ ଦର୍ଶନମ୍ ।

(ଖ) ଅପିଚ ସମସ୍ତସ୍ୟ ବିଭାଗସ୍ୟା ବିଭାଗପ୍ରାପ୍ତେଃ ପୁନରୁତ୍ପତ୍ତୌ ନିୟମକାରଣାଭାବାଦ୍‌ଭୋକ୍ତୃ ଭୋଗ୍ୟାଦିବିଭାଗେନୋତ୍ପତ୍ତିର୍ନ ପ୍ରାପ୍ନୋତୀତ୍ୟସମଞ୍ଜସମ୍ ।

(ଗ) ଅପି ଚ ଭୋକ୍ତୃଣାଂ ପରେଣ ବ୍ରହ୍ମଣାଽବିଭାଗଂ ଗତାନାଂ କର୍ମାଦିନିମିତ୍ତ ପ୍ରଳୟେଽପି ପୁନରୁତ୍ପତ୍ତାବଭ୍ୟୁପଗମ୍ୟମାନାୟଂ ମୁକ୍ତାନାମପି ପୁନରୁତ୍ପତ୍ତିପ୍ରସଙ୍ଗାଦ-ସମଞ୍ଜସମ୍ ।

(ଘ) ଅଥେଦଂ ଜଗଦପୀତାବପି ବିଭକ୍ତମେବ ପରେଣ ବ୍ରହ୍ମଣାବତିଷ୍ଠେତ, ଏବମପ୍ୟପୀତଶ୍ଚ ନ ସମ୍ଭବତି କାରଣାବ୍ୟତିରିକ୍ତଞ୍ଚ କାର୍ଯ୍ୟଂ ନ ସମ୍ଭବତୀତ୍ୟସମଞ୍ଜସମେବେତି ।

**(୨) ଭାଷାଂତର**-(କ) ଏଠାରେ ପୂର୍ବପକ୍ଷ କହନ୍ତି ଯେ- ସ୍ଥୂଳତ୍ୱ, ସାବୟବତ୍ୱ, ଅଚେତନତ୍ୱ, ପରିଚ୍ଛିନ୍ନତ୍ୱ ଅଶୁଦ୍ଧାଦିଧର୍ମବିଶିଷ୍ଟ କାର୍ଯ୍ୟର କାରଣ ବ୍ରହ୍ମ ହୁଏ ବୋଲି ଯଦି ସ୍ୱୀକାର କରାଯାଏ, ତେବେ ପ୍ରଳୟ କାଳରେ ଅର୍ଥାତ୍ କାରଣ ସହିତ ଅବିଭାଗ ପ୍ରାପ୍ତ

ହୋଇ କାର୍ଯ୍ୟ କାରଣକୁ ନିଜ ଧର୍ମଦ୍ୱାରା ଦୂଷିତ କରିବ । ଏହିପ୍ରକାର ପ୍ରଳୟରେ କାରଣ ବ୍ରହ୍ମରେ କାର୍ଯ୍ୟ ସଦୃଶ ଅଶୁଦ୍ଧ୍ୟାଦିରୂପର ପ୍ରସଙ୍ଗ ହେବ । ଏହାଦ୍ୱାରା ସର୍ବଜ୍ଞ ବ୍ରହ୍ମ ଜଗତର କାଣ ହୁଏ- ଏହାହିଁ ଔପନିଷଦଦର୍ଶନର ଅସଙ୍ଗତପ୍ରସଙ୍ଗ ।

(ଖ) ସମସ୍ତ ବିଭାଗର କାରଣ ସହିତ ଅବିଭାଗ ପ୍ରାପ୍ତ ହେଲେ ପୁନର୍ବାର ଉତ୍ପତ୍ତିରେ ନିୟମକାରଣର ଅଭାବ ହେଲେ ଭୋକ୍ତାଭୋଗ୍ୟାଦି ବିଭାଗଠାରୁ ଉତ୍ପତ୍ତି ପ୍ରାପ୍ତ ହୁଏ ନାହିଁ । ଏହା ମଧ୍ୟ ଅସଙ୍ଗତ ।

(ଘ) ଯଦି ଜଗତ୍ ପ୍ରଳୟରେ ମଧ୍ୟ ପରଂବ୍ରହ୍ମଠାରୁ ଭିନ୍ନ ହୋଇ ଅବସ୍ଥାନ କରେ ବୋଲି ସ୍ୱୀକାର କଲେ ପ୍ରଳୟର କଦାପି ସମ୍ଭବ ହେବ ନାହିଁ ଏବଂ କାର୍ଯ୍ୟର କାରଣଠାରୁ ଅଭିନ୍ନତ୍ୱ ସମ୍ଭବ ହୁଏ ନାହିଁ । ତେଣୁ ଔପନିଷଦଦର୍ଶନ ଅସଙ୍ଗତ ହୁଏ । ତେଣୁ କୁହାଯାଇଛି-

## न तु दृष्टान्तभावात् ॥९॥

## (୧) ନ ତୁ ଦୃଷ୍ଟାନ୍ତାଭାବାତ୍ ॥ ୨-୧-୯ ॥

ନ ତୁ - ପୂର୍ବୋକ୍ତ ଅସାମଞ୍ଜସ୍ୟ ଅସଂଗତତ୍ୱ ଦୋଷ ନୁହେଁ, ଦୃଷ୍ଟାନ୍ତାଭାବାତ୍ କାରଣ-କାରଣରେ ଲୀନ ହେଉଥିବା କାର୍ଯ୍ୟ କାରଣକୁ ଦୂଷିତ କରେ ନାହିଁ, ଏହି ବିଷୟରେ ମଧ୍ୟ ଦୃଷ୍ଟାନ୍ତ ଅଛି ।

(୨) ମୂଳ-ନୈବସ୍ମଦୀୟେ ଦର୍ଶନେ କିଞ୍ଚିଦସାମଞ୍ଜସ୍ୟମସ୍ତି ଯତ୍ତାବଦଭିହିତଂ କାରଣମପିଗଚ୍ଛତ୍କାର୍ଯ୍ୟଂ କାରଣମାତ୍ମୀୟେନ ଧର୍ମେଣ ଦୂଷୟେଦିତି, ତଦଦୂଷଣମ୍, କସ୍ମାତ୍ ? ଦୃଷ୍ଟାନ୍ତଭାବାତ୍ ।

(ଖ) ସନ୍ତି ହି ଦୃଷ୍ଟାନ୍ତା ଯଥା କାରଣମପିଗଚ୍ଛତ୍କାର୍ଯ୍ୟଂ କାରଣମାତ୍ମୀୟେନ ଧର୍ମେଣ ଦୂଷୟତି । ତଦ୍ୟଥା ଶରାବାଦୟୋ ମୃତ୍ପ୍ରକୃତିକା ବିକାରା ବିଭାଗାବସ୍ଥାୟା-ମୁଚ୍ଚାବଚମଧ୍ୟମପ୍ରେଭେଦାଃ ସନ୍ତଃ ପୁନଃ ପ୍ରକୃତିମପିଗଚ୍ଛନ୍ତୋ ନ ତାମାତ୍ମୀୟେନ ଧର୍ମେଣ ସଂସୃଜତି ।

(ଗ) ପୃଥିବୀବିକାରଶ୍ଚତୁର୍ବିଧୋ ଭୂତଗ୍ରାମୋ ନ ପୃଥିବୀମପୀତାବାତ୍ମୀୟେନ ଧର୍ମେଣ ସଂସୃଜତି । ତ୍ୱତ୍ପକ୍ଷସ୍ୟ ତୁ ନ କଶ୍ଚିଦ୍ଦୃଷ୍ଟାନ୍ତୋଽସ୍ତି । ଅପୀତିରେବ ହି ନ ସମ୍ଭବେଦ୍ୟଦି କାର୍ଯ୍ୟେ କାର୍ଯ୍ୟଂ ସ୍ୱଧର୍ମେଣୈବାବତିଷ୍ଠେତ୍ । ଅନନ୍ୟତ୍ୱେଽପି କାର୍ଯ୍ୟକାରଣୟୋଃ କାର୍ଯ୍ୟସ୍ୟ କାରଣାତ୍ମତ୍ୱଂ ନ ତୁ କାରଣସ୍ୟ କାର୍ଯ୍ୟାତ୍ମତ୍ୱଂ ନ ତୁ କାରଣସ୍ୟ କାର୍ଯ୍ୟାତ୍ମତ୍ୱଂ 'ଆରମ୍ଭଣଶବ୍ଦାଦିଭ୍ୟଃ' (ବ୍ର.-ସୂ ୨-୧-୧୪) ଇତି ବକ୍ଷ୍ୟାମଃ ।

(ଘ) ଅଶ୍ବତ୍ବଂ ଚେଦମୁଚ୍ୟତେ କାର୍ଯ୍ୟମପୀତାବାତ୍ମୀୟେନ ଧର୍ମେଣ କାରଣଂ ସଂସୃଜେଦିତି । ସ୍ଥିତାବିତି ସମାନୋଽୟଂ ପ୍ରସଂଗଃ, କାର୍ଯ୍ୟକାରଣୟୋରନନ୍ୟତ୍ୱାଭ୍ୟୁପଗମାତ୍ । 'ଇଦଂ ସର୍ବଂ ଯଦୟମାତ୍ମା' (ବୃ ୨-୪-୬) 'ଆତ୍ମୈବେଦଂ ସର୍ବମ୍' (ଛା, ୭-୨୫-୨), 'ବ୍ରହ୍ମୈବେଦମମୃତଂ ପୁରସ୍ତାତ୍' (ମୁ ୨-୨-୧୧) 'ସର୍ବଂ ଖଲ୍ୱିଦଂ ବ୍ରହ୍ମ (ଛା ୩-୧-୪-୧) ଇତ୍ୟେବମାଦ୍ୟାଭିର୍ହି ଶ୍ରୁତିଭିରବିଶେଷେଣ ତ୍ରିଷ୍ୱପି କାଳେଷୁ କାର୍ଯ୍ୟସ୍ୟ କାରଣାନନ୍ୟତ୍ୱଂ ଶ୍ରାବ୍ୟତେ ।

(ଙ) ତତ୍ର ଯଃ ପରିହାରଃ କାର୍ଯ୍ୟସ୍ୟ ତଦ୍ଧର୍ମକାଣାଂ ଚାବିଦ୍ୟାଧ୍ୟାରୋପିତ୍ତ୍ୱାନ୍ନ ତୈକାରଣଂ ସଂସୃଜ୍ୟତ ଇତି ଅପିତାବସି ସ ସମାନଃ ।

**(୨) ଭାଷାଂତର-** (କ) ଆତ୍ମ ଦର୍ଶନରେ କୌଣସି ପ୍ରକାର ଅନୌଚିତ୍ୟ ନାହିଁ, କାରଣରେ ଲୀନ ହେଉଥିବା କାର୍ଯ୍ୟ କାରଣକୁ ନିଜଧର୍ମ ଦ୍ୱାରା ଦୂଷିତ କରିପାରେ ବୋଲି ଯାହା କୁହାଯାଇଛି ।

(ଖ) ଯେପରି କାରଣରେ ଲୀନ ହେଉଥିବା କାରଣକୁ ଦୂଷିତ ନ କରିବା ବିଷୟରେ ଦୃଷ୍ଟାନ୍ତ ଅଛି, ଯେପରି ମୃତ୍ତିକା ଉପାଦାନକ ଶରା (ମାଟିପାତ୍ର ବିଶେଷ) ଇତ୍ୟାଦିବିକାର ବିଭାଗ ଅବସ୍ଥାରେ ଛୋଟ, ବଡ, ମଧ୍ୟମ ଆକାରର ହୋଇ ପୁନର୍ବାର ପ୍ରକୃତିରେ ଲୀନ ହୋଇ ମଧ୍ୟ ତାହାକୁ ନିଜଧର୍ମରେ ସଂସୃଷ୍ଟ କରେ ନାହିଁ ।

(ଗ) ସେହି ପ୍ରକାର ଚାରିପ୍ରକାର ପୃଥିବୀର ବିକାର ପ୍ରାଣସମୂହ ଲୟ ହୋଇ ପୃଥିବୀକୁ ନିଜଧର୍ମରେ ସଂସୃଷ୍ଟ କରେ ନାହିଁ । ପରନ୍ତୁ ତୁମ୍ଭ ପକ୍ଷରେ କୌଣସି ଦୃଷ୍ଟାନ୍ତ ନାହିଁ । ଯଦି କାରଣରେ କାର୍ଯ୍ୟ ନିଜ ଧର୍ମ ସହ ରହେ, ତେବେ ପ୍ରଳୟର ସମ୍ଭବ ହୁଏ ନାହିଁ । କାର୍ଯ୍ୟ କାରଣର ଅନନ୍ୟତ୍ୱ (ଅଭେଦ) ହେଲେ ମଧ୍ୟ କାର୍ଯ୍ୟ କାରଣାତ୍ମକ ହୁଏ ନାହିଁ । ଏହି ବିଷୟରେ 'ଆରମ୍ଭଣଶବ୍ଦାଦିଭ୍ୟାଃ' ସୂତ୍ରରେ ଆମ୍ଭେ କହିବୁ ।

(ଘ) କିନ୍ତୁ ଏଠାରେ ଖୁବ୍ ଅଳ୍ପ କୁହାଗଲା ଯେ- ପ୍ରଳୟ ସମୟରେ କାର୍ଯ୍ୟ କାରଣକୁ ନିଜଧର୍ମଗୁଡ଼ିକ ସହ ସଂସୃଷ୍ଟ କରେ, ସ୍ଥିତି କାଳରେ ଏହି ପ୍ରସଂଗ ମଧ୍ୟ ସମାନତୁଲ୍ୟ ରହେ । କାରଣ- କାର୍ଯ୍ୟ ଓ କାରଣର ଅନନ୍ୟତ୍ୱ ସ୍ୱୀକାର କରାଯାଇ ଅଛି । 'ଇଦଂ ସର୍ବଂ' (ଏହା ଯାହା କିଛି ସେ ସବୁ ଆତ୍ମା), 'ଆତ୍ମୈବେଦଂ' (ଏହି ସବୁ ଆତ୍ମା) ବ୍ରହ୍ମୈବେଦମ' (ଏହି ଅମୃତବ୍ରହ୍ମ ସମସ୍ତଙ୍କର ସମ୍ମୁଖରେ ଅଛି) 'ସର୍ବ ଖଳୁ ଇଦଂ' (ଏହି ସବୁ ବ୍ରହ୍ମ) ଇତ୍ୟାଦି ଶ୍ରୁତିଦ୍ୱାରା ତିନି କାଳରେ ସମାନରୂପରେ ଅଭେଦ କାରଣଠାରେ ଶୁଣାଯାଏ ।

(ଙ) ସେଠାରେ କାର୍ଯ୍ୟ ଓ ତାହାର ଧର୍ମ ଅବିଦ୍ୟାଠାରୁ ଅଧ୍ୟାରୋପିତ ହେଲେ ତାହାଠାରୁ କାରଣ ସଂସୃଷ୍ଟ ହୁଏ ନାହିଁ । ଏହିପ୍ରକାର କାର୍ଯ୍ୟକାଳରେ ଯାହା ପରିହାର କରାଯାଇଅଛି, ସେହି ପ୍ରଳୟରେ ମଧ୍ୟ ସେପରି ପରିହାର କରାଯାଏ ।

(୩) ମୂଳ-(କ) ଅସ୍ତି ଚାୟମପରୋ ଦୃଷ୍ଟାନ୍ତୋ ଯଥା ସ୍ୱୟଂ ପ୍ରସାରିତତୟା ମାୟୟା ମାୟାବୀ ତ୍ରିଷ୍ୱପି କାଳେଷୁ ନ ସଂସ୍ପୃଶ୍ୟତେ, ଅବସ୍ତୁତ୍ୱାତ୍ । ଏବଂ ପରମାତ୍ମାପି ସଂସାରମାୟୟା ନ ସଂସ୍ପୃଶ୍ୟତ ଇତି ।

(ଖ) ଯଥା ଚ ସ୍ୱପ୍ନ ଦୃଗୋକଃ ସ୍ୱପ୍ନଦର୍ଶନମାୟୟା ନ ସଂସ୍ପୃଶ୍ୟ ଇତି । ପ୍ରବୋଧସଂପ୍ରସାଦୟୋରନନ୍ୱାଗତତ୍ୱାତ୍ । ଏବମବସ୍ଥାତ୍ରୟାସାକ୍ଷ୍ୟେକୋଽବ୍ୟଭିଚାର୍ଯ୍ୟବସ୍ଥା ତ୍ରୟେଣ ବ୍ୟଭିଚାରିଣା ନ ସଂସ୍ପୃଶ୍ୟତେ ।

(ଗ) ମାୟାମାତ୍ରଂ ହ୍ୟେତଦ୍ୟତ୍ ପରମାତ୍ମନୋଽବସ୍ଥାତ୍ରୟାତ୍ମନାବଭାସାନଂ ରଜ୍ଜ୍ୱା ଇବ ସର୍ପାଦି ଭାବନେତି । ଅତ୍ରୋକ୍ତଂ ବେଦାନ୍ତାର୍ଥସଂପ୍ରଦାୟବିଦ୍‌ଭିରାଚାର୍ଯ୍ୟୈଃ- 'ଅନାଦି ମାୟୟା ସୁପ୍ତୋ ଯଦାଜୀବଃ ପ୍ରବୁଧ୍ୟତେ । ଅଜମନିଦ୍ରମସ୍ୱପ୍ନମଦ୍ୱୈତଂ ବୁଧ୍ୟତେ ତଦା' (ଗୌଡ଼ କାରି ୧-୬) ଇତି ।

(ଘ) ତତ୍ର ଯଦୁକ୍ତମପୀତୌ କାରଣସ୍ୟାପି କାର୍ଯ୍ୟସ୍ୟୈବ ସ୍ଥୌଲ୍ୟାଦିଦୋଷ ପ୍ରସଂଗ ଇତ୍ୟତଦଯୁକ୍ତମ ।

(ଙ) ଯତ ପୁନରେତଦଯୁକ୍ତମ - ସମସ୍ତସ୍ୟ ବିଭାଗସ୍ୟା ବିଭାଗପ୍ରାପ୍ତେଃ ପୁନର୍ବିଭାଗେନୌତ୍ପତ୍ତୌ ନିୟମକାରଣଂ ନୋପପଦ୍ୟତ ଇତି, ଅୟମପ୍ୟଦୋଷଃ, ଦୃଷ୍ଟାନ୍ତଭାବାଦେବ । ଯଥାହି ସୁଷୁପ୍ତିସମାଧାଦାବପି ସତ୍ୟାଂ ସ୍ୱଭାବିକ୍ୟାମବିଭାଗପ୍ରାପ୍ତୌ ମିଥ୍ୟାଜ୍ଞାନସ୍ୟାନପୋଦିତତ୍ୱାତ ପୂର୍ବବତ ପୁନଃ ପ୍ରବୋଧେ ବିଭାଗୋ ଭବତି, ଏବମିହାପି ଭବିଷ୍ୟତି ।

(ଚ) ଶ୍ରୁତିଶ୍ଚାତ ଭବତି – 'ଇମାଃ ସର୍ବାଃ ପ୍ରଜାଃ ସତି ସମ୍ପଦ୍ୟ ନ ବିଦୁଃ ସତି ସମ୍ପଦ୍ୟାମହ ଇତି, ତ ଇହ ବ୍ୟାଘ୍ରୋ ବା ସିଂହୋ ବା ବରାହୋ ବା କୀଟୋ ବା ପତଙ୍ଗୋ ବା ଦଂଶୋ ବା ମଶକୋ ବା ଯଦ୍‌ଯଦ୍ ଭବିଷ୍ୟନ୍ତି, ତଦା ଭବନ୍ତି' (ଛା ୬-୯-୨,୩) ଇତି ।

(ଛ) ଯଥା ହ୍ୟବିଭାଗେଽପି ପରମାତ୍ମନି ମିଥ୍ୟାଜ୍ଞାନପ୍ରତିବଦ୍ଧୋ ବିଭାଗବ୍ୟବହାରଃ ସ୍ୱପ୍ନବଦ ବ୍ୟାହତଃ ସ୍ଥିତୋ ଦୃଶ୍ୟତେ । ଏବମପୀତାବପି ମିଥ୍ୟାଜ୍ଞାନପ୍ରତିବଦ୍ଧୈବ ବିଭାଗଶକ୍ତିରନୁମାସ୍ୟତେ । ଏତେନ ମୁକ୍ତାନାଂ ପୁନରୁତ୍ପତ୍ତିପ୍ରସଙ୍ଗଃ ପ୍ରତ୍ୟୁକ୍ତଃ ସମ୍ୟଗ୍‌ଜ୍ଞାନେନ ମିଥ୍ୟାଜ୍ଞାନସ୍ୟାପୋଦିତତ୍ୱାତ ।

(ଜ) ଯ ପୁନରାୟମନ୍ତ୍ରେଽପରୋ ବିକଳ୍ପ ଉତପ୍ରେକ୍ଷୀତୋଽଥେଦଂ ଜଗଦପୀତାବପି ବିଭକ୍ତମେବ ପରେଣ ବ୍ରହ୍ମଣାବତିଷ୍ଠେତେତି ସୋଽପ୍ୟନଭ୍ୟୁପ-ଗମାଦେବ ପ୍ରତିଷିଦ୍ଧଃ । ତସ୍ମାତ୍ ସମଞ୍ଜସମିଦମୌପନିଷଦଂ ଦର୍ଶନମ୍ ।

**(୩) ଭାଷାଂତର-** (କ) ଅନ୍ୟ ଗୋଟିଏ ଦୃଷ୍ଟାନ୍ତ ମଧ୍ୟ ଅଛି । ଯେପରି ନିଜେ ମାୟା ବିସ୍ତାର ହୋଇ ତଦ୍ଦ୍ୱାରା ତିନିକାଳରେ ସ୍ୱୟଂ ମାୟାବୀ ସଂସୃଷ୍ଟ ହୁଏ ନାହିଁ, କାରଣ-



ସେ ବସ୍ତୁ ମାୟା ଅବସ୍ତୁ (ମିଥ୍ୟା) ଅଟେ, ସେପରି ମଧ୍ୟ ପରମାତ୍ମା ଦ୍ୱାର ସଂସାରମାୟା ସଂସୃଷ୍ଟ ହୁଏ ନାହିଁ ।

(ଖ) ଯେପରି ଏକ ସ୍ୱପ୍ନ ଦ୍ରଷ୍ଟା ସ୍ୱପ୍ନଦର୍ଶନ ମାୟାଦ୍ୱାରା ସମ୍ପୋଧିତ ହୁଏ ନାହିଁ, କାରଣ-ଜାଗ୍ରତ ଓ ସୁଷୁପ୍ତି କାଳରେ ସେହି ସ୍ୱପ୍ନଦର୍ଶନ ମାୟାଦ୍ୱାରା ସମ୍ପର୍କିତ ହୁଏ ନାହିଁ, ସେପରି ଜାଗ୍ରଦାଦି ଅବସ୍ଥାତ୍ରୟରେ ସାକ୍ଷୀ, ଏକ ଓ ଅବ୍ୟଭଚାରୀ (କାଳତ୍ରୟରେ ସମାନରୂପରେ ରହିଥିବା) ଏହି ବ୍ୟଭିଚାରୀ ଅବସ୍ଥା ତ୍ରୟଦ୍ୱାରା ସଂସୃଷ୍ଟ ହୁଏ ନାହିଁ ।

(ଗ) ଯେପରି ଦଉଡ଼ି ସର୍ପାଦି ରୂପରେ ପ୍ରତୀତି ହେବା ହିଁ ମିଥ୍ୟା, ସେପରି ପରମାତ୍ମାର ଅବସ୍ଥାତ୍ରୟ (ସୃଷ୍ଟି-ସ୍ଥିତି-ପ୍ରଳୟ) ରୂପରେ ମିଥ୍ୟା ପ୍ରତୀତି ହୁଏ । ଏହି ବିଷୟରେ ବେଦାନ୍ତ ସଂପ୍ରଦାୟର ଗୌଡ଼ପାଦ ଆଚାର୍ଯ୍ୟ କହିଛନ୍ତି- 'ଅନାଦି ମାୟୟା' (ଯେତେବେଳେ ଅନାଦି-ମାୟାଦ୍ୱାରା ଶୋଇ ଜୀବ ଜୀବ (ତତ୍ତ୍ୱମସି) ଇତ୍ୟାଦି ମାହାବାକ୍ୟଦ୍ୱାରା ଜାଗ୍ରତ ରହେ ଅର୍ଥାତ୍ ତତ୍ତ୍ୱଜ୍ଞାନ ଲାଭ କରେ, ସେତେବେଳେ ସେ ଅଜ, ଅନିଦ୍ର ଓ ସ୍ୱପ୍ନ ରହିତ ଅଦ୍ୱୈତ ଆତ୍ମତତ୍ତ୍ୱକୁ ପାଏ) ।

(ଘ) ପ୍ରଳୟରେ କାର୍ଯ୍ୟପରି କାରଣରେ ମଧ୍ୟ ସ୍ଥୁଳତ୍ୱାଦିଦୋଷଗୁଡ଼ିକର ପ୍ରସଙ୍ଗ ହେବ ବୋଲି ଯାହା କୁହାଯାଇଅଛି, ତାହା ମଧ୍ୟ ଅଯୁକ୍ତ ।

(ଙ) ପର୍ଲୟରେ କାରଣ ସହିତ ସମସ୍ତ ବିଭାଗର ଅବିଭାଗ ପ୍ରାପ୍ତ ହେଲେ ପୁଣି ବିଭାଗ ପୂର୍ବକ ଉତ୍ପତ୍ତିରେ ନିୟମ-କାରଣ ଉପପନ୍ନ ହୁଏ ନାହିଁ ବୋଲି ଯାହା କୁହାଯାଇଅଛି, ତାହା ମଧ୍ୟ ଦୋଷ ନୁହେଁ, କାରଣ-ଏହି ବିଷୟରେ ଦୃଷ୍ଟାନ୍ତ ଅଛି । ଯେପରି ସୁଷୁପ୍ତି, ସମାଧି ପ୍ରଭୃତିରେ ସ୍ୱାଭାବିକ ଅବିଭାଗ (ପୃଥକତ୍ୱ) ପ୍ରାପ୍ତ ହେଲେ ମଧ୍ୟ ମିଥ୍ୟାଜ୍ଞାନ ନିବୃତ୍ତ ନ ହେବାରୁ କେବଳ ପ୍ରବୋଧ ଜାଗ୍ରତ ହେଲାପରେ ହିଁ ପୂର୍ବଭଳି ସମାନ ବିଭାଗ ହୁଏ, ସେହିପରି ଏଠାରେ ମଧ୍ୟ ପ୍ରଳୟ ପରେ ସୃଷ୍ଟି କାଳରେ ମଧ୍ୟ ପୂର୍ବ ସୃଷ୍ଟି ଭଳି ବିଭାଗ ହେବ ।

(ଚ) ଏହି ବିଷୟରେ ଶ୍ରୁତି ମଧ୍ୟ କହେ- 'ଇମାଃ ପ୍ରଜାଃ ସୃଷ୍ଟାଃ' (ସୁଷୁପ୍ତିରେ ଏହି ସଂପୂର୍ଣ୍ଣ ପ୍ରଜା ସଦ୍‌ବ୍ରହ୍ମକୁ ପାଇ ସେମାନେ ପାଇଛନ୍ତି ବୋଲି ଜାଣନ୍ତି ନାହିଁ) ଏଠାରେ ସୁଷୁପ୍ତିପୂର୍ବରୁ ପ୍ରବୋଧ ସମୟରେ ବ୍ୟାଘ୍ର, ସିଂହ, ହାତୀ. ଶୁକର, କୀଟ, ପତଙ୍ଗ, ଡାଁଉଶ ଅଥବା ମଶା ଯାହା ହୁଅନ୍ତି, ସେମାନେ ଉଠି ପୁନର୍ବାର ପାଆନ୍ତି ।)

(ଛ) ଯେପରି ସ୍ଥିତିକାଳରେ ପରମାତ୍ମାରେର ଅବିଭାଗ ପ୍ରତିବନ୍ଧ ବିଭାଗ ବ୍ୟବହାର ହେଲେ ମଧ୍ୟ ମିଥ୍ୟାଜ୍ଞାନ ଦ୍ୱାରା ସ୍ୱପ୍ନଭଳି ଅବ୍ୟାହତ (ଅବାଧିତ) ସ୍ଥିତି ଦେଖିବାରେ ଆସେ, ସେପରି ପ୍ରଳୟରେ ମଧ୍ୟପ୍ରତିବନ୍ଧ (ସମ୍ବନ୍ଧ) ବିଭାଗ ଶକ୍ତିର ଅନୁମାନେ ହେବ । ଏହାଦ୍ୱାରା ମୁକ୍ତପୁରୁଷମାନଙ୍କର ପୁନରୁତ୍ପତ୍ତି ନିରାକରଣ ହେଲା, କାରଣ-ସମ୍ୟଗ୍‌ଜ୍ଞାନଦ୍ୱାରା ମିଥ୍ୟାଜ୍ଞାନର ନିବୃତ୍ତି ହୁଏ ।

(ଜ) ଶେଷରେ ଏହି ଜଗତ୍ ପ୍ରଳୟ ସମୟରେ ପରଂବ୍ରହ୍ମ ସହିତ ବିଭକ୍ତ ହେବ ବୋଲି ଯାହା ଅପର ବିକଳ୍ପ କରାଯାଇଅଛି, ତାହା ସ୍ୱୀକାର ନ କଲେ ପ୍ରତିଷେଧ ହୁଏ ବୋଲି ବୁଝିବାକୁ ହ୍ରିବ । ଏହାଦ୍ୱାରା ଏହି ଔପନିଷଦର୍ଶନ ସଂଗତ ହୁଏ ।

## स्वपक्षदोषात् ॥१०॥

## (୧) ସ୍ୱପକ୍ଷଦୋଷାତ୍ ୨।୧।୧୦

ସାଂଖ୍ୟମତ ବାଦୀମାନେ ଆତ୍ମମତରେ ଦୋଷ ବୋଲି କହୁଛନ୍ତି । ସ୍ୱପକ୍ଷଦୋଷାଚ କିନ୍ତୁ ସେମାନଙ୍କର ମତରେ ମଧ୍ୟ ଦୋଷ ରହିଛି । ତେଣୁ ଦୋଷ ଏବଂ ତାହାର ପରିହାର ଦୁହିଁଙ୍କ ମତରେ ସମାନ ଅଟେ ।

(୨) ମୂଳ-(କ) ସ୍ୱପକ୍ଷେ ଚୈତେ ପ୍ରତିବାଦିନଃ ସାଧାରଣାଃ ଦୋଷାଃ ପ୍ରାଦୁଃଷ୍ୟୁଃ । କଥମିତି ?

(ଖ) ଉଚ୍ୟତେ-ଯତ୍ତାବଦଭିହିତମ୍-ବିଲକ୍ଷଣତ୍ୱାନ୍ନେଦଂ ଜଗଦ୍ ବ୍ରହ୍ମପ୍ରକୃତିକମିତି, ପ୍ରଧାନପ୍ରକୃତିକତାୟାମପି ସମାନମେତତ୍, ଶବ୍ଦାଦିହୀନାତ୍ ପ୍ରଧାନାଚ୍ଛଦାଦିମତୋ ଜଗତ ଉତ୍ପତ୍ତ୍ୟଭ୍ୟୁପଗମାତ୍ । ଅତଏବଚ ବିଲକ୍ଷଣକାର୍ଯ୍ୟୋତ୍ପତ୍ତ୍ୟଭ୍ୟୁପଗମାତ୍ ସମାନଃ, ପ୍ରାଗୁତ୍ପତ୍ତେରସତ୍ କାର୍ଯ୍ୟବାଦପ୍ରସଙ୍ଗଃ ।

(ଗ) ତଥାଽପୀତୌ କାର୍ଯ୍ୟସ୍ୟ କାରଣାବିଭାଗାଭ୍ୟୁପଗମାତ୍ତଦ୍‌ବତ୍ ପ୍ରସଙ୍ଗୋଽପି ସମାନଃ । ତଥା ମୃଦିତସର୍ବବିଶେଷେଷୁ ବିକାରେଷ୍ୱପୀତାବବିଭାଗାଷାମ୍ନତାଂ ଗତେଷ୍ୱିଦମସ୍ୟ ପୁରୁଷସ୍ୟୋପାଦାନମିଦମସ୍ୟେତି ପ୍ରାକ୍‌ପ୍ରଳୟାତ ପ୍ରତିପୁରୁଷଂ ଯେ ନିୟତା ଭେଦାଃ, ନ ତେ ତଥୈବ ପୁନରୁପତ୍ତୌ ନିୟନ୍ତୁଂ ଶକ୍ୟନ୍ତେ, କାରଣାଭାବାତ୍ । ବିନୈବ କାରଣେନ ନିୟମେଽଭ୍ୟୁପଗମ୍ୟମାନେ କାରଣାଭାବସାମ୍ୟାନ୍ ମୁକ୍ତାନାମପି ପୁନର୍ବନ୍ଧପ୍ରସଙ୍ଗଃ ।

(ଘ) ଅଥ କେଚିଦ୍‌ଭେଦା ଅପୀତାବିଭାଗମାପଦ୍ୟନ୍ତେ କେଚିନ୍ନେତି ଚେତ୍ ଯେ ନୋତ୍ପଦ୍ୟନ୍ତେ ତେଷାଂ ପ୍ରଧାନକାର୍ଯ୍ୟତ୍ୱଂ ନ ପ୍ରାପ୍ନେତୀବମେତେ ଦୋଷାଃ ସାଧାରଣ-ତ୍ୱାନ୍ନାନ୍ୟତରସ୍ମିନ୍ ପକ୍ଷେ ଚ୍ଛେଦୟିତବ୍ୟା ଭବନ୍ତୀତ୍ୟଦୋଷତାମେବୈଷାଂ ଦ୍ରଢୟତି ଅବଶ୍ୟାଶ୍ରୟିତବ୍ୟତ୍ୱାତ୍ ।

(୨) ଭାଷାଂତର-(କ) ପ୍ରତିବାଦୀମାନଙ୍କର ନିଜପକ୍ଷରେ ମଧ୍ୟ ନିମ୍ନଲିଖିତ ସାଧାରଣଦୋଷଗୁଡ଼ିକ ପ୍ରାଦୁର୍ଭୁତ ହୁଅନ୍ତି । କିପରି ?

(ଖ) ବିଲକ୍ଷଣ ହେଲେ ଏହି ଜଗତ୍ ବ୍ରହ୍ମୋପାଦାନକ ହୁଏ ନାହିଁ ବୋଲି ଯାହା କୁହାଯାଇଅଛି, ସେ କିନ୍ତୁ ପ୍ରଧାନକୁ ଜଗତର ଉପାଦାନକାରଣରୂପର ସ୍ୱୀକାର କଲେ ସମାନ ଅବସ୍ଥା ପ୍ରାପ୍ତ ହୁଏ, କାରଣ-ଶବ୍ଦାଦିରହିତ ପ୍ରଧାନଦ୍ୱାର ଶବ୍ଦାଦ୍ୟୁକ୍ତ ଜଗତର ଉତ୍ପତ୍ତିକୁ



ସାଂଖ୍ୟମାନେ ସ୍ୟକାର କରନ୍ତି । ଏହି ବିଲକ୍ଷଣ କାରଣଠାରୁ ବିଲକ୍ଷଣ କାର୍ଯ୍ୟର ଉତ୍ପତ୍ତି ସ୍ୱୀକାର କରିବା ଦ୍ୱାରା ଉତ୍ପତ୍ତିର ପୂର୍ବରୁ ଅସତ୍ କାର୍ଯ୍ୟବାଦ ପ୍ରସଙ୍ଗ ତାଦୃଶ ହୁଏ ।

(ଖ) ସେହିପରି ପ୍ରଳୟରେ କାରଣସହିତ କାର୍ଯ୍ୟର ଅବିଭାଗ ସ୍ୱୀକାର କଲେ କାର୍ଯ୍ୟର ଧର୍ମଦ୍ୱାରା କାରଣ ସଂସୃଷ୍ଟ ହେବା ମଧ୍ୟ ତାଦୃଶ ହୁଏ । ଅର୍ଥାତ୍ କାର୍ଯ୍ୟର ସ୍ଥୁଳତ୍ୱାଧର୍ମଗୁଡ଼ିକ ଦ୍ୱାରା କାରଣ ରୂପରେ ସ୍ୱୀକାର କରାଯାଉଥିବା ପ୍ରଧାନରେ ସ୍ଥୁଳତ୍ୱାଦିପ୍ରସଙ୍ଗ ହେବ ଏବଂ ଯେଉଁ ବିକାର ଗୁଡ଼ିକର ଜାତି ପ୍ରଭୃତି ସବୁବିଶେଷ ନଷ୍ଟ ହୁଅନ୍ତି, ପ୍ରଳୟ ସମୟରେ କାରଣ ସହିତ ଅଭେଦ ପ୍ରାପ୍ତ ହେଲେ ପ୍ରଳୟ ପୂର୍ବରୁ ପ୍ରତ୍ୟେକ ପୁରୁଷପ୍ରତି ଏହି ପୁରୁଷ ଉପାଦାନ ହୁଏ । 'ପୁରୁଷର ଏହିପରି ଯାହା ନିୟତଭେଦ ଥିଲା, ସେମାନଙ୍କର ସେହିପ୍ରକାର ପୁନରୁତ୍ପତ୍ତିରେ ନିୟମନ କରାଯାଏ ନାହିଁ । ଯଦି କାରଣ ବିନା ନିୟମନ ସ୍ୱୀକାର କରାଯିବ, ତେବେ କାରଣାଭାବ ଭଳି ମୁକ୍ତାତ୍ମାଗୁଡ଼ିକୁ ପୁନର୍ବାର ସଂସାର ପ୍ରସଙ୍ଗ ହେବ ।

(ଘ) ପ୍ରଳୟରେ କିଛି ବିଶେଷ ଅବିଭାଗକୁ ପ୍ରାପ୍ତ ହୁଏ ବୋଲି କହନ୍ତି, କେତେକ ପ୍ରାପ୍ତ ହୁଅନ୍ତି ନାହିଁ ବୋଲି କହନ୍ତି । ଯାହା ସବୁ କିନ୍ତୁ ଅବିଭାଗକୁ ପ୍ରାପ୍ତ ହୁଏ ନାହିଁ, ସେଗୁଡ଼ିକ ପ୍ରଧାନର କାର୍ଯ୍ୟ ହୁଅନ୍ତି ନାହିଁ । ଏହିପ୍ରକାର ଦୋଷସବୁ ଦୁଇ ପକ୍ଷରେ ସାଧାରଣ ହେଲେ ଏକପକ୍ଷରେ ଆକ୍ଷେପ ଯୋଗ୍ୟ ହୁଏ ନାହିଁ- ଏହିକଥା ଦୋଷଗୁଡ଼ିକୁ ଓ ଅଦୋଷତାକୁ ଦୃଢ଼ କରେ, କାରଣ- ଏହି ଦୋଷଗୁଡ଼ିକ ଅବଶ୍ୟ ସ୍ୱୀକାର ଯୋଗ୍ୟ ଅଟେ ।

## तर्काप्रतिष्ठानादप्यथानुमेयमितिचेदेवमप्यविमोक्षप्रसङ्गः ॥११॥

## (୧) ତର୍କପ୍ରତିଷ୍ଠାନାଦପ୍ୟନ୍ୟଥାନୁମେୟମିତି ଚେଦେବମ-ପ୍ୟବିମୋକ୍ଷପ୍ରସଙ୍ଗଃ ॥୨।୧।୧୧॥

ତର୍କାପ୍ରତିଷ୍ଠାନାଦପି-କେବଳ ତର୍କର ପ୍ରତିଷ୍ଠା ନ ହେଲେ ବ୍ରହ୍ମରେ ବେଦାନ୍ତ-ବାକ୍ୟଗୁଡ଼ିକର ସମନ୍ୱୟରେ କୌଣସି ବିରୋଧ ହୁଏ ନାହିଁ । କୌଣସି ତର୍କର ଅପ୍ରତିଷ୍ଠିତ ହେଲେ ମଧ୍ୟ, ଅନ୍ୟଥା-ଅନ୍ୟପ୍ରକାରରେ, ଅର୍ଥାତ୍ ପ୍ରତିଷ୍ଠିତ ତର୍କ ଦ୍ୱାରା, ଅନୁମେୟମ୍-ବେଦାନ୍ତ ସମନ୍ୱୟ ବିରୋଧର ଅନୁମାନ କରିବା ଉଚିତ୍ । ଇତି ଚେତ୍-ଯଦି ଏହା କହ, କିନ୍ତୁ ଏବମପି-କୌଣସି ତର୍କ ପ୍ରତିଷ୍ଠିତ ହେଲେ ମଧ୍ୟ, ଅବିମୋକ୍ଷ ପ୍ରସଙ୍ଗ-ପ୍ରକୃତ ବିଷୟରେ ତର୍କ ଅପ୍ରତିଷ୍ଠିତତ୍ୱଦୋଷରୁ ମୁକ୍ତ ହୁଏ ନାହିଁ । ଅଥବା କପିଳ, କଣାଦାଦିର ପରସ୍ପରବିରୁଦ୍ଧ ତର୍କଦ୍ୱାରା ତତ୍ତ୍ୱନିର୍ଣ୍ଣୟ ହୁଏ ନାହିଁ । ଏହି ସଂସାରଠାରୁ କେବେହେଲେ ମୋକ୍ଷ ହୁଏ ନାହିଁ ।

(୨) ମୂଳ-(କ) ଇତଶ୍ଚ ନାଗମଗମ୍ୟେଽର୍ଥେ କେବଳେନ ତର୍କେଣ ପ୍ରତ୍ୟବ-ସ୍ଥାତବ୍ୟମ୍ । ଯସ୍ମିନ୍ନିରାଗମାଃ ପୁରୁଷୋତ୍ ପ୍ରେକ୍ଷାମାତ୍ର ନିବନ୍ଧନାସ୍ତର୍କାଃ ଅପ୍ରତିଷ୍ଠିତା ଭବନ୍ତି,

ଉତ୍ପ୍ରେକ୍ଷାୟା ନିରଙ୍କୁଶତ୍ୱାତ୍ । ତଥା ହି କୈଶ୍ଚିଦଭିଯୁକ୍ତୈ ର୍ଯନ୍ନେନୋତ୍ ପ୍ରେକ୍ଷିତାସ୍ତର୍କା ଅଭିଯୁକ୍ତତରୈରନ୍ୟୈରାଭସ୍ୟମାନା ଦୃଶ୍ୟନ୍ତେ । ତୈରୁତ୍ପ୍ରେକ୍ଷିତାଃ ସନ୍ତସ୍ତୁତୋଽନ୍ୟୈ-ରଭାସ୍ୟନ୍ତ ଇତି ନ ପ୍ରତିଷ୍ଠିତତ୍ୱଂ ତର୍କାଣାଂଶକ୍ୟମାଶ୍ରୟିତୁମ୍, ପୁରୁଷମତି ବୈରୂପ୍ୟାତ୍ ।

(ଖ) ଅଥ କସ୍ୟଚିତ୍ ପ୍ରସିଦ୍ଧମାହାତ୍ମ୍ୟସ୍ୟ କପିଳସ୍ୟ ଚାନ୍ୟସ୍ୟ ବା ସମସ୍ତସ୍ତର୍କଃ ପ୍ରତିଷ୍ଠିତ ଇତ୍ୟାଶ୍ରୀୟେତ, ଏବମପ୍ୟ ପ୍ରତିଷ୍ଠିତତ୍ୱମେବ, ପ୍ରସିଦ୍ଧମାହାତ୍ମ୍ୟାନୁମତାନାମପି ତୀର୍ଥକରାଣାଂ କପିଳକଣଭୁକ୍ ପ୍ରଭୃତୀନାଂ ପରସ୍ପରବିପ୍ରପତ୍ତିଦର୍ଶନାତ୍ ।

(ଗ) ଅଥୋଚ୍ୟେତାନ୍ୟଥା ବୟମନୁମାସ୍ୟାମହେ ଯଥା ନାପ୍ରତିଷ୍ଠାଦୋଷୋ ଭବିଷ୍ୟତି । ନହି ପ୍ରତିଷ୍ଠିତସ୍ତର୍କଃ ଏବା ନାସ୍ତୀତି ଶକ୍ୟତେ ବକ୍ତୁମ୍ । ଏତଦପି ହି ତର୍କାଣାମପ୍ରତିଷ୍ଠିତତ୍ୱଂ ତର୍କେଣୈବ ପ୍ରତିଷ୍ଠାପ୍ୟତେ । କେଷାଞ୍ଚିତ୍ତର୍କାଣାମପ୍ରତିସ୍ଥିତତ୍ୱ ଦର୍ଶନେନାନ୍ୟେଷାମପି ତଜ୍ଜାତୀୟକାନାଂ ତକାଣାମ ପ୍ରତିଷ୍ଠିତତ୍ୱ କଳ୍ପନାତ୍ ।

(ଘ) ସର୍ବତର୍କପ୍ରତିଷ୍ଠାୟାଞ୍ଚ ଲୋକବ୍ୟବହାରୋଚ୍ଛେଦପ୍ରସଙ୍ଗଃ । ଅତୀତବର୍ତ୍ତମାନା ଧ୍ୱସାମ୍ୟେନ ହ୍ୟନାଗତେଽପ୍ୟଧ୍ୱନି ସୁଖଦୁଃଖପ୍ରାପ୍ତି ପରିହାରାୟ ବର୍ତ୍ତମାନୋ ଲୋକୋଦୃଶ୍ୟତେ । ଶ୍ରୁତ୍ୟର୍ଥବିପ୍ରତ୍ତିପତ୍ତୌ ଚାର୍ଥାଭାସନିରାକରଣେନ ସମ୍ୟଗର୍ଥ ନିର୍ଦ୍ଧାରଣଂ ତର୍କେଣେବ ବାକ୍ୟବୃତ୍ତିନିରୂପଣରୂପେଣ କ୍ରୀୟତେ ।

(ଙ) ମନୁରପି ଚୈବଂ ମନ୍ୟତେ-ପ୍ରେତ୍ୟକ୍ଷ ମନୁମାନଞ୍ଚ ଶାସ୍ତ୍ରଞ୍ଚ ବିବିଧାଗମମ୍, ତ୍ରୟଂ ସୁବିଦିତଂ କାର୍ଯ୍ୟଂ ଧର୍ମଶୁଦ୍ଧିମଭୀପ୍ସତା' ଇତି । 'ଆର୍ଷଂ ଧର୍ମୋପଦେଶଞ୍ଚ ବେଦଶାସ୍ତ୍ର ବିରୋଧିନା । ଯସ୍ତର୍କେଣାନୁସନ୍ଧତେ ସ ଧର୍ମ ବେଦ ନେତରଃ' (୧୨-୧୦୫,୧୦) ଇତି ଚବ୍ରୁବନ୍ ।

**(୨) ଭାଷାଂତର-** (କ) ତେଣୁ ଆଗମଗମ୍ୟ ଅର୍ଥରେ ବେଦ ନିରପେକ୍ଷ-ତର୍କକୁ ବିରୋଧ କରିବା ଉଚିତ୍ ନୁହେଁ । କାରଣ-ଆଗମ ହେଉଚି ନିରପେକ୍ଷ । ସେଠାରେ କେବଳ ପୁରୁଷ ହିଁ କଳ୍ପନାମୂଳକ ତର୍କ କିନ୍ତୁ ପ୍ରତିଷ୍ଠିତ ହୁଏ ନାହିଁ । କାରଣ- କଳ୍ପନା ହିଁ ନିରଙ୍କୁଶ । ଯେପରି କୌଣସି ପଣ୍ଡିତ ଯତ୍ନପୂର୍ବକ କଳ୍ପିତ ତର୍କ ଅନ୍ୟ ବିଶେଷ ପଣ୍ଡିତଦ୍ୱାରା ଆଭାସ ଦ୍ୱାରା ଦେଖେ ଏବଂ ତଦ୍ଧ୍ୱାରା କଳ୍ପିତତର୍କ ତାହାଠାରୁ ଭିନ୍ନ ଅନ୍ୟ ବିଶିଷ୍ଟ ବିଦ୍ୱାନର ଆଭାସମାତ୍ର କରେ । ତେଣୁ ତର୍କର ପ୍ରତିଷ୍ଠା କଦାପି ଗ୍ରହଣଯୋଗ୍ୟ ନୁହେଁ । କାରଣ-ପୁରୁଷର ବୁଦ୍ଧି ହିଁ ବିଲକ୍ଷଣ ଅଟେ ।

(ଖ) ଯଦି କୌଣସି ପ୍ରସିଦ୍ଧ ମହାତ୍ମା କପିଳଙ୍କର ବା କୌଣସି ଅନ୍ୟପୁରୁଷର ସମସ୍ତ ତର୍କ ପ୍ରତିଷ୍ଠିତ ହେବ, ତେବେ ସେ ପୂର୍ବୋକ୍ତ ଦୋଷଦ୍ୱାରା ଅପ୍ରତିଷ୍ଠିତ ହୁଏ,



କାରଣ ଯାହାର ମାହାତ୍ମ୍ୟ ପ୍ରସିଦ୍ଧ ହୋଇଛି । ସେମାନଙ୍କର ଶାସ୍ତ୍ରରେ ତଥା କପିଳ ଓ କଣାଦ ପ୍ରଭୃତିଙ୍କ ମଧ୍ୟରେ ପରସ୍ପର ବିରୋଧ ଦେଖାଯାଏ ।

(ଗ) ତେଣୁ ଏହିପରି କୁହାଯାଇପାରେ । ନୋଚେତ୍ ଯେପରି ଅପ୍ରତିଷ୍ଠା ଦୋଷ ନ ହେବ, ସେହିପରି ଅନ୍ୟରୀତିରେ ଏହି ଅନୁମାନ କରାଯିବ । ଯଦି ତର୍କ କଦାପି ପ୍ରତିଷ୍ଠିତ ନୁହେଁ ବୋଲି କୁହା ନ ଯିବ, ତେବେ ତର୍କଗୁଡ଼ିକର ଅପ୍ରତିଷ୍ଠିତତ୍ୱକୁ ତର୍କଦ୍ୱାରା ପ୍ରତିଷ୍ଠାପିତ କରାଯିବ । କୌଣସି ତର୍କରେ ଅପ୍ରତିଷ୍ଠିତତ୍ୱର ଦର୍ଶନ ଦ୍ୱାରା ତଜ୍ଜାତୀୟ ଅନ୍ୟ ତର୍କରେ ମଧ୍ୟ ଅପ୍ରତିଷ୍ଠିତ ହେବାର କଳ୍ପନା କରାଯାଏ ।

(ଘ) କିନ୍ତୁ ସବୁ ତର୍କଗୁଡ଼ିକର ଅପ୍ରତିଷ୍ଠିତ ହେଲେ କିନ୍ତୁ ଲୋକବ୍ୟବହାରର ଉଚ୍ଛେଦ ପ୍ରସଙ୍ଗ ହୋଇପାରେ, କାରଣ-ଭୂତ ଓ ବର୍ତ୍ତମାନ ବିଷୟକସାଦୃଶ୍ୟଦ୍ୱାରା ଭବିଷ୍ୟତ ବିଷୟରେ ସୁଖପ୍ରାପ୍ତି ଓ ଦୁଃଖର ପରିହାର ପାଇଁ ପ୍ରବୃତ୍ତ ହେବା ଦେଖାଯାଏ । ଶ୍ରୁତ୍ୟର୍ଥ ବିରୋଧ ହେଲେ ଅର୍ଥାଭାସର ନିରାକରଣ ପୂର୍ବକ ଯଥାର୍ଥ ଅର୍ଥର ନିର୍ଣ୍ଣୟ ବାକ୍ୟବୃତ୍ତି ନିରୂପଣ ତର୍କ ଦ୍ୱାରା କରାଯାଏ ।

(ଙ) ମନୁ ମଧ୍ୟ ଏହିପରି ତର୍କକୁ ସ୍ୱୀକାର କରିଛନ୍ତି- ଏହି ତିନୋଟି ଦ୍ୱାରା ଧର୍ମକୁ ଜାଣିବା ଉଚିତ୍ ଏବଂ 'ଆର୍ଷ ଧର୍ମୋପଦେଶ' (ଋଷି ପ୍ରଣୀତ ଧର୍ମୋପଦେଶର ବେଦ ଓ ଶାସ୍ତ୍ର ଅବିରୁଦ୍ଧ ତର୍କଦ୍ୱାରା ଯାହା ଅନୁସନ୍ଧାନ କରେ, ସେ ଧର୍ମକୁ ଜାଣେ, କିନ୍ତୁ ଅନ୍ୟ କିଏ ନୁହେଁ) ଇତ୍ୟାଦି ।

(୩) ମୂଳ-(କ) ଅୟମେବ ତର୍କସ୍ୟାଲଙ୍କାରୋ ଯଦପ୍ରତିଷ୍ଠିତତ୍ୱଂ ନାମ ଏବଂ ହି ସାବଦ୍ୟତର୍କପରିତ୍ୟାଗେନ ନିରବ୍ୟଦସ୍ତର୍କଃ ପ୍ରତିପତ୍ତବ୍ୟୋ ଭବତି । ନହି ପୂର୍ବଜୋ ମୂଢ଼ ଆସୀଦିତ୍ୟାତ୍ମନାପି ମୂଢ଼େନ ଭବିତବ୍ୟମିତି କିଞ୍ଚିନସ୍ତି ପ୍ରମାଣମ୍ ।

(ଖ) ତସ୍ମାନ୍ନ ତର୍କା ପ୍ରତିଷ୍ଠାନଂ ଦୋଷ ଇତି ଚେତ୍ଏବମପ୍ୟବିମୋକ୍ଷପ୍ରସଙ୍ଗଃ । ଯଦ୍ୟପି କ୍ୱଚିଦ୍ ବିଷୟେ ତର୍କସ୍ୟ ପ୍ରତିଷ୍ଠିତତ୍ୱମୁପଲକ୍ଷ୍ୟତେ, ତଥାପି ପ୍ରକୃତେ ତାବଦ୍ ବିଷୟେ ପ୍ରସଜ୍ୟତ ଏବାପ୍ରତିଷ୍ଠିତତ୍ୱଦୋଷାଦନିର୍ମୋକ୍ଷସ୍ତର୍କସ୍ୟ ।

(ଗ) ନ ହୀଦମତିଗମ୍ଭୀରଂ ଭାବ ଯାଥାତ୍ମ୍ୟଂ ମୁକ୍ତିନିବନ୍ଧନମାଗମମନ୍ତରେଣୋତ୍ପ୍ରେକ୍ଷିତୁଂ ଶକ୍ୟମ୍ । ରୂପାଦ୍ୟଭାବାଦ୍ ହି ନାୟମର୍ଥଃ ପ୍ରତ୍ୟକ୍ଷ ଗୋଚରଃ, ଲିଙ୍ଗାଦ୍ୟଭାବାଚ୍ଚ ନାନୁମାନାଦୀନାମିତି ଚାବୋଚାମ ।

(ଘ) ଅପି ଚ ସମ୍ୟଗ୍ ଜ୍ଞାନାନ୍ ମୋକ୍ଷ ଇତି ସର୍ବେଷାଂ ମୋକ୍ଷବା-ଦିନାମଭ୍ୟୁପଗମାଃ ତଚ୍ଚ ସମ୍ୟଗ୍ଜ୍ଞାନମେବ ରୂପମ୍ ବସ୍ତୁତନ୍ତତ୍ୱାତ୍ । ଏକରୂପେଣ ହ୍ୟବସ୍ଥିତୋ ଯୋଽର୍ଥଃ ସ ପରମାର୍ଥଃ ।

(ଙ) ଲୋକେ ତଦ୍ ବିଷୟଂ ଜ୍ଞାନଂ ସମ୍ୟଗ୍ଜ୍ଞାନମିତ୍ୟୁଚ୍ୟତେ- ଯଥାଗ୍ନିରୁଷ୍ଣ ଇତି । ତତ୍ରୈବ ସତି ସମ୍ୟଗ୍ଜ୍ଞାନେ ପୁରୁଷାଣାଂ ବିପ୍ରତିପତ୍ତିରନୁପପନ୍ନା ।

(୩) ଭାଷାଂତର-(କ) ତର୍କର ଅପ୍ରତିଷ୍ଠିତତ୍ୱ ହେବା ହିଁ ତାର ଅଳଙ୍କାର ସଦୃଶ । ଏହିପ୍ରକାର ଦୋଷ ଥିବା ତର୍କକୁ ଛାଡ଼ି ଦୋଷରହିତ ତର୍କକୁ ସ୍ୱୀକାର କରିବା ଠିକ୍ । ଜଣେ ପୂର୍ବଜନ୍ମରେ ମୂଢ଼ (ମୂର୍ଖ) ଥିଲା, ତେଣୁ ସେ ମୂଢ଼ ହେବା ଉଚିତ୍ ବୋଲି କୌଣସି ପ୍ରମାଣ ନାହିଁ ।

(ଖ) ଅତିଏବ ଯଦି ତୁମେ କହ ଯେ- ତର୍କର ଅପ୍ରତିଷ୍ଠାନ ହେଲେ ମଧ୍ୟ ତାର ଦୋଷ ହୁଏ ନାହିଁ, ତଥାପି ଏପରି ଦୋଷ ସ୍ୱୀକାର କଲେ ସେ ଦୋଷରୁ ମୁକ୍ତ ହୁଏ ନାହିଁ । ଯଦ୍ୟପି କୌଣସି ଏକ ବିଷୟରେ ତର୍କର ପ୍ରତିଷ୍ଠା ଉପଲକ୍ଷିତ ହୁଏ, ତେବେ ପ୍ରକୃତ ବିଷୟରେ ଅପ୍ରତିଷ୍ଠିତତ୍ୱ ଦୋଷଦ୍ୱାରା ତର୍କରେ ଅବିମୋକ୍ଷ (ମୁକ୍ତି ନ ହେବା) ରୂପକ ଦୋଷ ପ୍ରସକ୍ତ ହେବ ।

(ଗ) ଏହି ଅତି ଗମ୍ଭୀର (ବେଦବ୍ୟତୀତ ପ୍ରମାଣ କରାଯାଏ ନାହିଁ) ମୁକ୍ତି ହେତୁ ଜଗତର କାରଣରୂପକ ବ୍ରହ୍ମର ଅଦ୍ୱିତୀୟର ନିଶ୍ଚୟ (ସ୍ଥିର କରିବା) ଶାସ୍ତ୍ର ବିନା କେବଳ କଳ୍ପନା ଦ୍ୱାରା ହୁଏ ନାହିଁ, କାରଣ-ରୂପାଦିରହିତ ହେଲେ ଏହି ପଦାର୍ଥ ପ୍ରତ୍ୟକ୍ଷ ପ୍ରମାଣର ବିଷୟ ହୁଏ ନାହିଁ ଏବଂ ଲିଙ୍ଗାଦିର ଅଭାବ ହେଲେ ତାହା ଅନୁମାନ ପ୍ରାମାଣାଦିର ବିଷୟ ହୁଏ ନାହିଁ ବୋଲି ଆମ୍ଭେ କହୁଁ ।

(ଘ) ତେଣୁ ସବୁ ମୋକ୍ଷବାଦୀମାନଙ୍କର ସିଦ୍ଧାନ୍ତ ଯେ- ସମ୍ୟଗଜ୍ଞାନ ଦ୍ୱାରା ହିଁ ମୋକ୍ଷ ହୁଏ ଏବଂ ସେ ସମ୍ୟଗ୍ ଜ୍ଞାନରୂପ ଅଟେ, କାରଣ-ସମ୍ୟଗଜ୍ଞାନ ବସ୍ତୁର ଅଧୀନ ଅଟେ । ତେଣୁ ସର୍ବଦା ଏକରୂପରେ ପଦାର୍ଥ ରହି ଯଥାର୍ଥଜ୍ଞାନ ଦିଏ ।

(ଙ) ତଦ୍ ବିଷୟକ ଜ୍ଞାନ ହିଁ ସମ୍ୟଗଜ୍ଞାନ ବୋଲି ସଂସାରରେ କୁହାଯାଇଅଛି । ଯଥା- ଅଗ୍ନି ହିଁ ଉଷ୍ଣ । ମୋକ୍ଷର ସାଧନ ସମ୍ୟଗ୍ ଜ୍ଞାନରେ ଏକ ହେଲେ ଯଥାର୍ଥଜ୍ଞାନର ବିଷୟରେ ପୁରୁଷର ବିପ୍ରତିପତ୍ତି ବିରୋଧ ଅନୁଜାପପନ୍ନ ହୁଏ ।

(୪) ମୂଳ-(କ) ତର୍କଜ୍ଞାନାନାଂ ତ୍ୱନ୍ୟୋନ୍ୟବିରୋଧାତ୍ ପ୍ରସିଦ୍ଧା ବିପ୍ରତିପତ୍ତିଃ । ଯଦ୍ଧି କେନଚିତ୍ତାର୍କିକେଣେଦମେବ ସମ୍ୟଗଜ୍ଞାନମିତି ପ୍ରତିପାଦିତଂ ତଦପରେଣ ବ୍ୟୁତ୍ଥାପ୍ୟତେ, ତେନାପି ପ୍ରତିଷ୍ଠାପିତଂ ତତୋଽପରେଣ ବ୍ୟୁତ୍ ଥାପ୍ୟତ ଇତି ପ୍ରସିଦ୍ଧଂ ଲୋକେ, କଥମେକରୂପାନବସ୍ଥିତ ବିଷୟଂ ତର୍କ ପ୍ରଭବଂ ସମ୍ୟଗଜ୍ଞାନଂ ଭବେତ ?

(ଖ) ନ ଚ ପ୍ରଧାନବାଦୀ ତର୍କବିଦାମୁତ୍ତମ ଇତି ସର୍ବୈସ୍ତାର୍କିକୈଃ ପରିଗୃହୀତୋ ଯେନ ତଦୀୟଂ ମତଂ ସମ୍ୟଗଜ୍ଞାନମିତି ପ୍ରତିପଦ୍ୟେମହି । ନ ଚ ଶକ୍ୟନ୍ତେଽତୀତାନାଗତ୍ ବର୍ତ୍ତମାନାସ୍ତାର୍କିକା । ଏକସ୍ମିନ୍ ଦେଶେ କାଳେ ଚ ସମାହଂର୍ତ୍ତୁ ଯେନ ତନ୍ ମତିରେକଂ ରୂପୈ୍ୟକାର୍ଥବିଷୟା ସମ୍ୟଙ୍ ମତିରିତି ସ୍ୟାତ୍ ।

(ଗ) ନ ଚ ବେଦସ୍ୟ ତୁ ନିତ୍ୟତ୍ୱେ ବିଜ୍ଞାନୋପତ୍ତିହେତୁତ୍ୱେ ଚ ସତି ବ୍ୟବସିତାର୍ଥ ବିଷୟତ୍ୱୋପପତ୍ତେଃ, ତନ୍ନିତସ୍ୟ ଜ୍ଞାନସ୍ୟ ସମ୍ୟକ୍ତ୍ୱମତୀତାନାଗତ ବର୍ତ୍ତମାନୈଃ ସର୍ବୈରପି ତାର୍କିକୈରପହ୍ନୋତୁମଶକ୍ୟମ୍ । ଅତଃ ସିଦ୍ଧମସ୍ୟୈବୌପନିଷଦସ୍ୟ ଜ୍ଞାନସ୍ୟ ସମ୍ୟଗଜ୍ଞାନତ୍ୱମ୍ ।

(ଘ) ଅତୋଽନ୍ୟତ୍ର ସମ୍ୟଗ୍‌ଜ୍ଞାନତ୍ୱାନୁପପତ୍ତେଃ ସଂସାରାବିମୋକ୍ଷ ଏବ ପ୍ରସଜ୍ୟେତ । ଅତ ଆଗମବଶେନାଗମାନୁସାରିତ ତର୍କ ବଶେନ ନ ଚେତନଂ ବ୍ରହ୍ମ ଜଗତଃ କାରଣଂ ପ୍ରକୃତିଶ୍ଚେତି ସ୍ଥିତମ୍ ।

(୪) ଭାଷାଂତର-(କ) ତର୍କଗୁଡ଼ିକ ମଧ୍ୟରେ ପରସ୍ପର ବିରୋଧ ହେଲେ ବିପ୍ରତିପତ୍ତି-ସିଦ୍ଧ ହୁଏ । କୌଣସି ଏକ ତାର୍କିକର ତର୍କଦ୍ୱାରା ଯାହା ସମ୍ୟଗ୍‌ଜ୍ଞାନ ବୋଲି ପ୍ରତିପାଦିତ ହୁଏ, ତାହା ମଧ୍ୟ ଅନ୍ୟଦ୍ୱାରା ଖଣ୍ଡନ କରାଯାଏ, ସେହିପରି ଅନ୍ୟ କୌଣସି ତାର୍କିକର ତର୍କଦ୍ୱାରା ପ୍ରମାଣିତ ହୋଇଥିବା ସମ୍ୟଗ୍‌ଜ୍ଞାନ ମଧ୍ୟ ଅନ୍ୟ ତର୍କଦ୍ୱାରା ଖଣ୍ଡନ କରାଯାଇଅଛି- ଏହିପରି ମଧ୍ୟ ସଂସାରରେ ଦେଖାଯାଏ । ତେବେ ଗୋଟିଏ ରୂପରେ ଅନବସ୍ଥିତ ବିଷୟକ ତର୍କଦ୍ୱାରା ଉତ୍ପନ୍ନଜ୍ଞାନ ସମ୍ୟଗ୍‌ଜ୍ଞାନ କିପରି ହେବ ?

(ଖ) ପ୍ରଧାନବାଦୀ ସାଂଖ୍ୟମାନେ ତର୍କଶାସ୍ତ୍ରଜ୍ଞଠାରୁ ଉତ୍ତମବୋଲି ତାର୍କିକମାନେ ସ୍ୱୀକାର କରନ୍ତି ନାହିଁ । ଆମ୍ଭେମାନେ ସେହି ମତକୁ ଉତ୍ତମ ବୋଲି ସ୍ୱୀକାର କରୁଁ । ଅତୀତ, ଭବିଷ୍ୟତ ଓ ବର୍ତ୍ତମାନକୁ ସ୍ୱୀକାର କରୁଥିବା ତାର୍କିକମାନେ ଏକଦେଶ ଓ ଏକ ସମୟରେ ଏକତ୍ରିତ କରିପାରନ୍ତି ନାହିଁ । ସେମାନଙ୍କର ବୁଦ୍ଧି ଏକରୂପ ଓ ଏକାର୍ଥ ବିଷୟକ ହୋଇ ସମ୍ୟଗ୍‌ଜ୍ଞାନ ହୋଇପାରିବ ।

(ଗ) ବେଦହିଁ ନିତ୍ୟ ଓ ସବୁଜ୍ଞାନର ଉତ୍ପତ୍ତିସ୍ଥଳ ହେଲେ ସେ ବ୍ୟବସ୍ଥିତ ଅର୍ଥ ବିଷୟକ ହୋଇପାରେ । ତାହାଦ୍ୱାରା ଉତ୍ପନ୍ନଜ୍ଞାନର ଯଥାର୍ଥତ୍ୱରେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନରେ ନିଷେଧ ସବୁ ତାର୍କିକ କରନ୍ତି ନାହିଁ । ତେଣୁ ଉପନିଷଦ୍ ଜ୍ଞାନ ହିଁ ସମ୍ୟଗ୍‌ଜ୍ଞାନ ବୋଲି ହୋଇଛି ।

(ଘ) ତେଣୁ ତଦ୍ ଭିନ୍ନ ଜ୍ଞାନ ସମ୍ୟଗ୍‌ଜ୍ଞାନ ନୁହେଁ ଏବଂ ସେହିହେତୁ ସଂସାରଠାରୁ ମୁକ୍ତିମିଳେ ନାହିଁ । ଆଗମ ବଳରେ ଏବଂ ଆଗମାନୁକୂଳ ତର୍କ ବଳରେ ଚେତନ ବ୍ରହ୍ମ ଜଗତର ନିମିତ୍ତକାରଣ ଓ ଉପାଦାନ କାରଣ ବୋଲି ସିଦ୍ଧ ହେଲା ।

## ४ शिष्टपरिग्रहाधिकरणम् । सूं० ॥१२॥

## ଶିଷ୍ଟପରିଗ୍ରହାଧିକରଣମ୍ - ୪

## एतेन शिष्टापरिग्रहा अपि व्याख्याताः ॥१२॥

## (୧) ଏତେନ ଶିଷ୍ଟାପରିଗ୍ରହା ଅପି ବ୍ୟାଖ୍ୟାତ ॥ ୨-୧-୧୨ ॥

ଏତେନ-ଦେବଳ ପ୍ରଭୃତି ମହର୍ଷିମାନଙ୍କ ଦ୍ୱାରା କୌଣସି ଅଂଶରେ ଗୃହୀତ ପ୍ରଧାନ କାରଣବାଦର ନିରାକରଣ ପରେ, ଶିଷ୍ଟାପରିଗ୍ରହା ଅପି-ମୁନିଋଷିମାନଙ୍କ ଦ୍ୱାରା ସ୍ୱୀକୃତ ଅପରିଗୃହୀତ ଅଣୁ ଆଦି କାରଣବାଦ ମଧ୍ୟ, ବ୍ୟାଖ୍ୟାତଃ-ନିରାକରଣ କରାଯିବ ।

(୨) ମୂଳ-(କ) ବୈଦିକସ୍ୟ ଦର୍ଶନସ୍ୟ ପ୍ରତ୍ୟାସନ୍ନତ୍ୱାଦ୍ ଗୁରୁତର ତର୍କ ବଳୋପେତତ୍ୱାଦ୍ ବେଦାନୁସାରିଭିଶ୍ଚ କୈଶ୍ଚିଚ୍ଛିଷ୍ଟୈଃ କେଚିତଦଂଶେନ ପରିଗୃହୀତତ୍ୱାତ୍ ପ୍ରଧାନକାରଣବାଦଂ ତାବଦ୍ ବ୍ୟାପାଶ୍ରିତ୍ୟ ଯସ୍ତର୍କନିମିତ୍ତ ଆକ୍ଷେପୋ ବେଦାନ୍ତବାକ୍ୟେଷୂଦ୍ ଭାବିତଃ ସ ପରିହୃତଃ ।

(ଖ) ଇଦାନୀମଣ୍ୱାଦିବାଦବ୍ୟାପାଶ୍ରୟେଣାପି କୈଶ୍ଚିନ୍ ମନ୍ଦମତିଭିଃ ବେଦାନ୍ତ-ବାକ୍ୟେଷୁ ପୁନସ୍ତର୍କନିମିତ୍ତ ଆକ୍ଷେପ ଆଶଙ୍କ୍ୟେତ ଇତ୍ୟତଃ ପ୍ରଧାନମଲ୍ଲନିର୍ବହଣନ୍ୟାୟେନାତି ଦିଶତି ।

(ଗ) ପରିଗୃହ୍ୟନ୍ତ ଇତି ପରିଗ୍ରହାଃ, ନ ପରିଗ୍ରହାଅପରିଗ୍ରହାଃ, ଶିଷ୍ଟାନାମପରିଗ୍ରହାଃ ଶିଷ୍ଟାପରିଗ୍ରହାଃ । ଏତେନ ପ୍ରକୃତେନ ପ୍ରଧାନାକାରଣବାଦନିରାକରଣତେନ ଶିଷ୍ଟୈର୍ମନୁବ୍ୟାସପ୍ରଭୃତିଭିଃ କେନଚିଦଂ ଶେନାପରିଗୃହୀତା ୟେଽଣ୍ୱାଦିକାରଣବାଦବାସ୍ତେଽପି ପ୍ରତିଷିଦ୍ଧତୟା ବ୍ୟାଖ୍ୟାତା ନିରାକୃତା ଦ୍ରଷ୍ଟବ୍ୟାଃ ତୁଲ୍ୟତ୍ୱାନ୍ନିରାକରଣକାରଣସ୍ୟ, ନାତ୍ର ପୁନରାଶଙ୍କିତବ୍ୟଂ କିଞ୍ଚିଦସ୍ତି ।

(ଘ) ତୁଲ୍ୟମତ୍ରାପି ପରମଗମ୍ଭୀରସ୍ୟ ଜଗତ୍ କାରଣସ୍ୟ ତର୍କାନବଗାହ୍ୟତ୍ୱଂ ତର୍କସ୍ୟାପ୍ରତିଷ୍ଠିତତ୍ୱମନ୍ୟଥାନୁମାନେଽପ୍ୟବିମୋକ୍ଷ ଆଗମବିରୋଧଶ୍ଚେତ୍ୟେବଂଜାତୀୟଙ୍କ ନିରାକରଣ କାରଣମ୍ ।

**(୨)ଭାଷାଂତର-** (କ) ବୈଦିକ ଦର୍ଶନରେ ଅତ୍ୟନ୍ତ ସମୀପବର୍ତ୍ତୀ ଅନେକ ପ୍ରବଳ ତର୍କ ସମନ୍ୱିତ, ବେଦାନୁସାରୀ ମହର୍ଷିଙ୍କଦ୍ୱାରା କେତେକ ସ୍ଥଳରେ ପରିଗୃହୀତ ହୋଇଥିବା, ପ୍ରଧାନକାରଣବାଦକୁ ଆଶ୍ରୟ କରିଥିବା ଯେଉଁ ତର୍କ ନିମିତ୍ତ ଆକ୍ଷେପ ବେଦାନ୍ତବାକ୍ୟଗୁଡ଼ିକ ଉପରେ କରାଯାଇଥିଲା, ସେହି ସବୁର ପରିହାର ବର୍ତ୍ତମାନ କରାଯାଉଛି । ବର୍ତ୍ତମାନ ଅଣୁ ପ୍ରଭୃତିକୁ ଆଶ୍ରୟ କରି କେତେକ ମନ୍ଦମତି ବେଦାନ୍ତବାକ୍ୟ ଉପରେ ତର୍କ ନିମିତ୍ତ ଆକ୍ଷେପ ଆଶଙ୍କା କରନ୍ତି, କିନ୍ତୁ ତାହା ପ୍ରଧାନମଲ୍ଲନିର୍ବହଣନ୍ୟାୟ ଅନୁସାରେ ଅତିଦେଶ କରେ ।

(ଖ) ଯାହା ନିର୍ବିବାଦରେ ଗ୍ରହଣ କରାଯାଏ, ସେହିଗୁଡ଼ିକ ପରିଗ୍ରହ । ଯାହା ପରିଗ୍ରହ ନୁହେଁ, ସେହିଗୁଡ଼ିକ ଅପରିଗ୍ରହ । ଯାହା ଶିଷ୍ଟମାନଙ୍କଦ୍ୱାରା ପରିଗୃହୀତ ନୁହେଁ, ତାହା ଶିଷ୍ଟାପରିଗ୍ରହ । ଶିଷ୍ଟ ଅର୍ଥାତ୍ ମନୁ, ବ୍ୟାସ ପ୍ରଭୃତି ମହର୍ଷିଙ୍କ ଦ୍ୱାରା ଯେଉଁସ୍ଥଳରେ ଅଣୁ ଇତ୍ୟାଦି କାରଣବାଦ ସ୍ୱୀକୃତ କରାଯାଇନାହିଁ ସେହି କାରଣ ବାଦ ଏଠାରେ ପ୍ରଧାନକାରଣବାଦର ନିରାକରଣର ପରେ ପରେ ନିରାକୃତ ହେଉଛି । ନିରାକରଣର କାରଣ ସମାନ ହେଲେ ମଧ୍ୟ ବି ଏଠାରେ ବେଦାନ୍ତ ବାକ୍ୟ ସମନ୍ୱୟପରକ ଅନ୍ୟକିଛି ଆଶଙ୍କା କରାଯାଏ ନାହିଁ ।

(ଗ) ଯେଉଁଠି ବୈଶେଷିକ ପ୍ରଭୃତି ମତରେ ପରମଗମ୍ଭୀର ଜଗତକାରଣର ତର୍କାଗମ୍ୟତ୍ୱ, ତର୍କର ଅପ୍ରତିଷ୍ଠାନ, ଅନ୍ୟପ୍ରକାରରେ ଅନୁମାନ କଲେ ମଧ୍ୟ ତାହା ମୋକ୍ଷାଭାବ ଓ ଆଗମବିରୋଧ ବୋଲି ନିରାକରଣ କରାଯାଇଛି ।



## भोक्त्रापत्त्यधिकरणम् । सू० ॥१३॥

## ଭୋକ୍ତ୍ରାପତ୍ୟଧୀକରଣ - ୫

**भोक्त्रापत्तेरविभागश्चेत्स्याल्लोकवत् ॥१३॥**

**- ଭୋକ୍ତ୍ରାପତ୍ତେରବିଭାଗଶ୍ଚେତ୍ ସ୍ୟାଲ୍ଲୋକବତ୍ ॥ ୨-୧-୧୩ ॥**

ଭୋକ୍ତ୍ରାପତ୍ତେଃ-ଅଦ୍ୱିତୀୟ ବ୍ରହ୍ମ ଯଦି ଜଗତ୍‌ର ଉପାଦାନ ହୁଏ, ତେବେ ସମସ୍ତ ପଦାର୍ଥ ବ୍ରହ୍ମଠାରୁ ଅଭିନ୍ନ ହୁଏ, ଭୋଗ୍ୟ ପଦାର୍ଥ ଭୋକ୍ତା ହୋଇଯିବ । ତେଣୁ ଓ ଅବିଭାଗଃ- ପ୍ରତ୍ୟକ୍ଷସିଦ୍ଧ ଭୋକ୍ତୃଭୋଗ୍ୟବିଭାଗ ରହିବ ନାହିଁ । ଚେତ୍-ଯଦି ଏହା ତୁମେ କହ, ତେବେ, ଲୋକବତ୍- ଯେପରି ଲୋକବ୍ୟବହାରରେ ଘଟାଦି କାର୍ଯ୍ୟ ମୃତ୍ତିକାଠାରୁ ଅଭିନ୍ନ ଓ ପରସ୍ପର ଭିନ୍ନ ହୁଏ, ସ୍ୟାତ୍-ସେହିପରି କାରଣଠାରୁ ଅଭିନ୍ନ ହେଲେ ମଧ୍ୟ ତାହା ଭୋକ୍ତା, ଭୋଗ୍ୟାଦି ପ୍ରପଞ୍ଚର ପରସ୍ପର ବିଭାଗ ହୁଏ ।

(୨) ମୂଳ-(କ) ଅନ୍ୟଥା ପୁନର୍ବ୍ରହ୍ମକାରଣବାଦସ୍ତର୍କବଳେନୈବାକ୍ଷିପ୍ୟତେ । ଯଦ୍ୟପି ଶ୍ରୁତିଃ ପ୍ରମାଣଂ ସ୍ୱବିଷୟେ ଭବତି ତଥାପି ପ୍ରମାଣାନ୍ତରେଣ ବିଷୟାପହାରେଽନ୍ୟପରା ଭବିତୁମର୍ହତି । ଯଥା ମନ୍ତ୍ରାର୍ଥବାଦୌ । ତର୍କୋଽପି ସ୍ୱବିଷୟାଦନ୍ୟତ୍ରାପ୍ରତିଷ୍ଠିତଃ ସ୍ୟାତ୍ ଯଥା ଧର୍ମାଧର୍ମୟୋଃ ।

(ଖ) କିମତୋ ଯଦ୍ୟେବମ୍ । ଅତ୍ ଇଦମଯୁକ୍ତଂ ଯତ ପ୍ରମାଣାନ୍ତର ପ୍ରସିଦ୍ଧାର୍ଥବାଧନଂ ଶ୍ରୁତେଃ । କଥଂ ପୁନଃ ପ୍ରମାଣାନ୍ତରପ୍ରସିଦ୍ଧୋଽର୍ଥଃ ଶ୍ରୁତ୍ୟା ବାଧ୍ୟତ ଇତି ।

(ଗ) ଅତ୍ରୋଚ୍ୟତେ- ପ୍ରସିଦ୍ଧୋ ହ୍ୟୟଂ ଭୋକ୍ତୃଭୋଗବିଭାଗୋ ଲୋକେଭୋକ୍ତା ଚେତନଃ, ଶାରୀରୋ ଭୋଗ୍ୟାଃ ଶବ୍ଦାଦୟୋ ବିଷୟା ଇତି । ଯଥା ଭୋକ୍ତା ଦେବଦତ୍ତୋ ଭୋଜ୍ୟ ଓଦନ ଇତି । ତସ୍ୟ ଚ ବିଭାଗସ୍ୟାଭାବଃ ପ୍ରସଜ୍ୟେତ ଯଦି ଭୋକ୍ତା ଭୋଗ୍ୟଭାବମାପଦ୍ୟେତ । ଭୋଗ୍ୟଂ ବା ଭୋକ୍ତୃଭାବମାପଦ୍ୟେତ । ତୟୋଶ୍ଚେତ-ରେତରଭାବାପତ୍ତିଃ ପରମକାରଣାଦ୍ ବ୍ରହ୍ମଣୋଽନନ୍ୟତ୍ୱାତ୍ ପ୍ରସଜ୍ୟେତ ।

(ଘ) ନଚାସ୍ୟ ପ୍ରସିଦ୍ଧସ୍ୟ ବିଭାଗସ୍ୟ ବାଧନଂ ଯୁକ୍ତମ୍ । ଯଥା ତ୍ୱଦ୍ୟତ୍ୱେ ଭୋକ୍ତୃଭୋଗ୍ୟୟୋର୍ବିଭାଗୋ ଦୃଷ୍ଟସ୍ତଥାତୀତାନାଗତୟୋରପି କଳ୍ପୟିତବ୍ୟଃ । ତସ୍ମାତ ପ୍ରସିଦ୍ଧସ୍ୟାସ୍ୟ ଭୋକ୍ତୃଭୋଗ୍ୟବିଭାଗସ୍ୟାଭାବପ୍ରସଙ୍ଗାଦଯୁକ୍ତମିଦଂ ବ୍ରହ୍ମକାରଣତାବଧାରଣମିତି ।

**(୨) ଭାଷାଂତର**-(କ) ପୁନର୍ବାର ଅନ୍ୟପ୍ରକାରରେ ବ୍ରହ୍ମକାରଣବାଦ ତର୍କ ବଳରେ ଆକ୍ଷେପ କରାଯାଉଛି । ଯଦ୍ୟପି ଶ୍ରୁତି ସ୍ୱବିଷୟରେ ପ୍ରମାଣ ଅଟେ, ତେବେ ତାହା ଅନ୍ୟପ୍ରମାଣ ଦ୍ୱାରା ବିଷୟର ବାଧକ ହେଲେ ମଧ୍ୟ ଗୌଣବିଷୟକ ହୁଏ । ଯଥା- ଧର୍ମ ଓ

ଅଧର୍ମ ଯଦି ହୁଏ, ତେବେ କାହିଁକି ହୁଏ ? ଅନ୍ୟପ୍ରମାଣ ଦ୍ୱାରା ପ୍ରସିଦ୍ଧ ଅର୍ଥ ଶ୍ରୁତିଠାରୁ ପୃଥକ୍ ହୁଏ ବୋଲି ଯୁକ୍ତିସଙ୍ଗତ କଥା କୁହାଯାଇନାହିଁ ।

ପୁନଶ୍ଚ ଅନ୍ୟପ୍ରମାଣଦ୍ୱାରା ଅର୍ଥର ଶ୍ରୁତିଦ୍ୱାରା ବାଧାପାଏ ବୋଲି କିପରି କୁହାଯାଇଅଛି ।

(ଖ) ତେଣୁ ଏହି ବିଷୟରେ କୁହାଯାଇଅଛି- ସଂସାରରେ ଭୋକ୍ତୃ-ଭୋଗ୍ୟ-ବିଭାଗ ପ୍ରସିଦ୍ଧ ଅଟେ ଭୋକ୍ତା ହେଉଛି ଚେତନ ଓ ଜୀବାତ୍ମା । ଶବ୍ଦାଦିବିଷୟ ଗୁଡ଼ିକ ଭୋଗ୍ୟ ଅଟନ୍ତି । ଉଦାହରଣସ୍ୱରୂପ- ଦେବଦତ୍ତ ଭୋକ୍ତା ଅଟେ ଓ ଭାତ ଭୋଜ୍ୟ ଅଟେ । ଯଦି ଭୋକ୍ତା ଭୋଗ୍ୟଭାବରେ ଓ ଭୋଗ୍ୟ ଭୋକ୍ତୃଭାବରେ ସ୍ୱୀକାର କରାଯାଏ, ତେବେ ବିଭାଗର ଅଭାବ ହୋଇପାରେ । ଏହି ଦୁଇଟି ପରମ କାରଣ ବ୍ରହ୍ମଠାରୁ ପୃଥକ ନ ହେବାରୁ ତାହା ପରସ୍ପର ମଧ୍ୟରେ ଅଭେଦ ହେବ ।

(ଗ) କିନ୍ତୁ ପ୍ରସିଦ୍ଧ ବିଭାଗଗୁଡ଼ିକ ଶ୍ରୁତିଦ୍ୱାରା ବାଧାପାଆନ୍ତି ନାହିଁ । ଯେପରି ବର୍ତ୍ତମାନ ଭୋକ୍ତୃ-ଭୋଗ୍ୟ-ବିଭାଗ ପ୍ରତ୍ୟକ୍ଷସିଦ୍ଧ ଅଟେ, ସେପରି ଭୂତ ଓ ଭବିଷ୍ୟତରେ ଏହାର କଳ୍ପନା କରିବା ଉଚିତ୍, ତେଣୁ ଏହି ପ୍ରସିଦ୍ଧ ଭୋକ୍ତୃଭୋଗ୍ୟ ବିଭାଗର ଅଭାବ ପ୍ରସଙ୍ଗ ହେବାରୁ ବ୍ରହ୍ମକାରଣତ୍ୱ ନିଶ୍ଚିତ ଭାବେ ଅଯୁକ୍ତ ଅଟେ ।

(୩) ମୂଳ-(କ) ଚେତ୍ କଶ୍ଚିଚ୍ଚୋଦୟେତ୍ତଂ ପ୍ରତି ବ୍ରୂୟାତ୍-ସ୍ୟାଲ୍ଲୋକବଦିତି । ଉପପଦ୍ୟତ ଏବମୟମସ୍ମତ୍ପକ୍ଷେଽପି ବିଭାଗଃ ଏବଂ ଲୋକେ ଦୃଷ୍ଟତ୍ୱାତ୍ ।

(ଖ) ତଥାହି-ସମୁଦ୍ରାଦୁକମ୍ବନୋଽନନ୍ୟତେଽପି ତଦ୍ବିକାରାଣାଂ ଫେନବିଚୀତରଙ୍ଗ ବୁଦ୍ବୁଦାଦୀନାମିତରେତରବିଭାଗ ଇତରେତରସଂଶ୍ଳେଷାଦିଲକ୍ଷଣଶ୍ଚ ବ୍ୟବହାର ଉପଲଭ୍ୟତେ ।

(ଗ) ନଚସମୁଦାଦୁଦକାମ୍ବନୋଽନନ୍ୟତ୍ୱେଽପି ତଦ୍ବିକାରାଣାଂଫେନତ-ରଙ୍ଗାଦୀନାମିତରେତରଭାବାପତ୍ତିର୍ଭବତି । ନଚ ତେଷାମିତରେତରଭାବାନାପତ୍ତାବପି ସମୁଦ୍ରାତ୍ମନ୍ନୋଽନନ୍ୟତ୍ୱଂ ଭବତି, ଏବମିହାପି ନଚ ଭୋକ୍ତୃଭୋଗ୍ୟୟୋରିତରେତର ଭାବାପତ୍ତିଃ, ନଚ ପରସ୍ମାଦ୍ ବ୍ରହ୍ମଣୋଽନ୍ୟତ୍ୱଂ ଭବିଷ୍ୟତି ।

(ଘ) ଯଦ୍ୟପି ଭୋକ୍ତାନବ୍ରହ୍ମଣୋ ବିକାରଃ । 'ତତ୍ ସୃଷ୍ଟ୍ୱା ତଦେବାନୁପ୍ରାବିଶତ୍' (ତୈ ୧-୬) ଇତି ସ୍ରଷ୍ଟୁରେବାବିକୃତସ୍ୟ କାର୍ଯ୍ୟାନୁନୁପ୍ରବେଶେନ ଭୋକ୍ତୃତ୍ୱଶ୍ରବଣାତ୍, ତଥାପି କାର୍ଯ୍ୟମନୁପ୍ରବିଷ୍ଟସା ସ୍ଥଃପାଧିନିମିତ୍ତୋ ବିଭାଗ ଆକାଶସ୍ୟେବ ଘଟାଦ୍ୟୁପାଧିନିମିତ୍ତ ଇତ୍ୟତଃ ପରମକାରଣାଦ୍ ବ୍ରହ୍ମଣୋଽନନ୍ୟତ୍ୱେଽପ୍ୟୁପପଦ୍ୟତେ ଭୋକ୍ତୃଭୋଗ୍ୟଲକ୍ଷଣୋ ବିଭାଗଃସମୁଦ୍ର ତରଙ୍ଗାଦିନ୍ୟାୟେନେତ୍ୟୁକ୍ତିମ୍ ।

**(୩) ଭାଷାଂତର-** (କ) ଉକ୍ତ ପ୍ରକାରରେ ଯଦି କେହି ଶଙ୍କାକରେ, ତାହାପ୍ରତି 'ସଂସାରରେ ସମାନ ବିଭାଗ ହେବ' ବୋଲି କହିବା ଉଚିତ୍ । ଆମ୍ଭମାନଙ୍କ ପକ୍ଷରେ



ଏହି ବିଭାଗ ଠିକ୍ ଅଟେ, କାରଣ-ସଂସାରରେ ଭୋକ୍ତୃଭୋଜ୍ୟବିଭାଗର ଦୃଷ୍ଟାନ୍ତ ରହିଛି । ଯେପରିକି ଜଳରାଶି ପୂର୍ଣ୍ଣ ସମୁଦ୍ର ଫେଣ, ତରଙ୍ଗ ଓ ଫୋଟକା ପ୍ରଭୃତି ଏହାର ବିକାରଠାରୁ ପୃଥକ୍ ନହୋଇ ସେମାନଙ୍କର ପରସ୍ପର ବିଭାଗ ଓ ସଂଶ୍ଳେଷାଦି ରୂପ ବ୍ୟବହାର କାର୍ଯ୍ୟରେ ଦେଖାଯାଏ ଏବଂ ଉଦକରୂପ ସମୁଦ୍ରଠାରୁ ପୃଥକ୍ ନହେଲେ ବି ଏହାର ବିକାର ଫେନ ତରଙ୍ଗାଦି ଅନ୍ୟୋନ୍ୟାତ୍ମକତା ହୁଏ ନାହିଁ । ଏହାର ଅନ୍ୟୋନ୍ୟାତ୍ମକତା ନ ହେଲେ ବି ସେମାନେ ସମୁଦ୍ର ରୂପରୁ ଭିନ୍ନ ନୁହଁନ୍ତି ।

(ଗ) ସେହିପରି ଏଠାରେ ଭୋକ୍ତା ଓ ଭୋଗ୍ୟର ଅନ୍ୟୋନ୍ୟଭାବାପତ୍ତି ହୁଏ ନାହିଁ, କିମ୍ବା ପରଂବ୍ରହ୍ମଠାରୁ ଭିନ୍ନ ହେବ ନାହିଁ । ଯଦ୍ୟପି ଭୋକ୍ତା ବ୍ରହ୍ମର ବିକାର ନୁହେଁ, କାରଣ-ତତ୍ସୃଷ୍ଟ୍ୱା' (ଏହାକୁ ରଚନା କରି ସେଠାରେ ଅନୁପ୍ରବେଶ କରେ) ଏହିପ୍ରକାର କାର୍ଯ୍ୟରେ ଅନୁପ୍ରବେଶ ଦ୍ୱାର ଅବିକୃତ ସ୍ରଷ୍ଟାରେ ଭୋକ୍ତୃତ୍ୱ ଶୁଣାଯାଏ । ତଥାପି ଘଟାଦି ଉପାଧିନିମିତ୍ତକ ଆକାଶପରି କାର୍ଯ୍ୟରେ ଭୋକ୍ତୃ ଭୋଗ୍ୟରୂପ ବିଭାଗ 'ସମୁଦ୍ର ତରଙ୍ଗନ୍ୟାୟ' ପରି ସୁସଙ୍ଗତ ଅଟେ ।

## ६ आरम्भणाधिकरणम् । सू० ॥१४-२० ॥

## ଆରମ୍ଭଣାଧିକରଣ - ୬

### तदनन्यत्वमारम्भणशब्दादिभ्यः ॥१४ ॥

### (୧) ତଦନନ୍ୟତ୍ୱମାରମ୍ଭଣ ଶବ୍ଦାଦିଭ୍ୟଃ ॥ ୧୧।୧।୪ ॥

ତଦନନ୍ୟତ୍ୱମ୍ - କାର୍ଯ୍ୟଜଗତର କାରଣ ବ୍ରହ୍ମ ମଧ୍ୟରେ ଭିନ୍ନତା କିଛି ନାହିଁ । ଆରମ୍ଭଣଶବ୍ଦାଦିଭ୍ୟଃ-କାରଣ-'ବାଚାରମ୍ଭଣଂ ବିକାରଃ' ଇତ୍ୟାଦିଶ୍ରୁତିବାକ୍ୟରୁ ଏହା ଅବଗତ ହୁଏ ।

(୨) ମୂଳ-(କ) ଅଭ୍ୟୁପଗମ୍ୟ ଚେମଂ ବ୍ୟାବହାରିକଂ ଭୋକ୍ତୃଭୋଗ୍ୟଲକ୍ଷଣଂ ବିଭାଗଂ ସ୍ୟାଲ୍ଲୋକବଦିତି ପରିହାରୋଽଭିହିତଃ । ନତ୍ୱୟଂ ବିଭାଗଃ ପରମାର୍ଥତୋଽସ୍ତି ଯସ୍ମାତ୍ତୟୋଃ କାର୍ଯ୍ୟକାରଣୟୋର ନନ୍ୟତ୍ୱମବଗମ୍ୟତେ । କାର୍ଯ୍ୟମକାଶାଦିକଂ ବହୁପ୍ରପଞ୍ଚଂ ଜଗତ । କାରଣଂ ପରଂବ୍ରହ୍ମ କସ୍ମାତ୍ କାରଣାତ୍ ପରମାର୍ଥତୋଽନନ୍ୟତ୍ୱଂ ବ୍ୟତିରେକେଣାଭବଃ କାର୍ଯ୍ୟସ୍ୟାବଗମ୍ୟତେ ।

(ଖ) କୁତଃ ? ଆରମ୍ଭଣଶବ୍ଦାଦିଭ୍ୟଃ । ଆରମ୍ଭଣଶବ୍ଦସ୍ତାବତ୍ । ଏକବିଜ୍ଞାନେନ ସର୍ବବିଜ୍ଞାନଂ ପ୍ରତିଜ୍ଞାୟ ଦୃଷ୍ଟାନ୍ତାପେକ୍ଷାୟାମୁଚ୍ୟତେ- 'ଯଥା ସୋମ୍ୟୈକେନ ମୃତ୍ପିଣ୍ଡେନ ସର୍ବଂ ମୃନ୍ମୟଂ ବିଜ୍ଞାତଂ ସ୍ୟାଦ୍ ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତ୍ତିକେତ୍ୟେବ ସତ୍ୟମ୍' (ଛା·୧-୧-୬) ଇତି ।

(ଗ) ଏତଦୁକ୍ତଂ ଭବତି- ଏକେନ ମୃତ୍ପିଣ୍ଡେନ ପରମାର୍ଥତୋ ମୃଦାତ୍ମନାବିଜ୍ଞାତେନ ସର୍ବଂ ମୃନ୍ମୟଂ ଘଟଶରାବୋଦଞ୍ଚନାଦିକଂ ମୃଦାତ୍ମକତ୍ୱାବିଶେଷାଦ୍ ବିଜ୍ଞାତଂ ଭବେତ୍ । ଯତୋ

ବାଚାରମ୍ଭଣଂ ବିକାରୋ ନାମଧେୟଂ ବାଚୈବ କେବଲମସ୍ତୀତ୍ୟାରଭ୍ୟତେ । ବିକାରୋ ଘଟଃ ଶରାବ ଉଦଞ୍ଚନଂ ଚେତି ନତୁ ବସ୍ତୁବୃତ୍ତେନ ବିକାରୋ ନାମ କଶ୍ଚିଦସ୍ତି । ନାମଧେୟମାତ୍ରଂ ହ୍ୟେତଦନୃତଂ ମୃତ୍ତିକେତ୍ୟେବଂ ସତ୍ୟମିତି । ଏଷ ବ୍ରାହ୍ମଣୋ ଦୃଷ୍ଟାନ୍ତ ଆମ୍ନାତଃ । ତତ୍ର ଶ୍ରୁତାଦ୍ ବାଚାରମ୍ଭଣଶବ୍ଦାଦାର୍ଷ୍ଟାନ୍ତିକେଽପି ବ୍ରହ୍ମବ୍ୟତିରେକେଣ କାର୍ଯ୍ୟଜାତସ୍ୟାଭାବ ଇତି ଗମ୍ୟତେ ପୁନଶ୍ଚ ତେଜୋବନ୍ନାନାଂ ବ୍ରହ୍ମକାର୍ଯ୍ୟତାମୁକ୍ତ୍ୱା ତେଜୋବନ୍ନକାର୍ଯ୍ୟାଣାଂ ତେଜୋବନ୍ନବ୍ୟତି-ରେକେଣାଭାବଂ ବ୍ରବୀତି-'ଅପାଗାଦଗ୍ନେରଗ୍ନିତ୍ୱଂ ବାଚାରମ୍ଭଣଂବିକାରୋ ନମଧେୟଂ ତ୍ରୀଣି ରୂପାଣୀତ୍ୟେବ ସତ୍ୟମ୍ (ଛା୬-୪-୧) ଇତ୍ୟାଦିନା ।

(ଘ) ଆରମ୍ଭଣଶବ୍ଦାଦିଭ୍ୟ ଇତ୍ୟାଦିଶବ୍ଦାତ୍ 'ଐତଦାତ୍ମ୍ୟମିଦଂ ସର୍ବଂ ତତ୍ ସତ୍ୟଂ ସ ଆତ୍ମା ତତ୍ତ୍ୱମସି' (ଛା ୬-୮-୭), 'ଇଦଂ ସର୍ବଂ ଯଦୟମାତ୍ମା' (ବୃ ୨-୪-୬) ବ୍ରହ୍ମୈବେଦଂ ସର୍ବମ୍' (ମୁ ୨-୨-୧୧), ଆତ୍ମୈବେଦଂ ସର୍ବଂ' (ଛା ୭-୨୫-୨), ନେହ ନାନାସ୍ତି କିଞ୍ଚନ (ବୃ ୪-୪-୧୯) ଇତ୍ୟେବମାଦ୍ୟପ୍ୟାତ୍ମୈକତ୍ୱପ୍ରତିପାଦନପରଂ ବଚନଜାତମୁଦାହର୍ତ୍ତବ୍ୟମ୍ ।

(ଙ) ନଚାନ୍ୟଥୈକବିଜ୍ଞାନେନ ସର୍ବବିଜ୍ଞାନଂ ସଂପଦ୍ୟତେ । ତସ୍ମାଦ୍ୟଥା ଘଟକରକାଦ୍ୟାକାଶାନାଂମହାଶାନନ୍ୟତ୍ୱଂ, ଯଥାଚ ମୃଗତୃଷ୍ଣିକୋଦକାଦୀନା ମୂଷରାଦିଭ୍ୟୋଽନନ୍ୟତ୍ୱଂ ଦୃଷ୍ଟନଷ୍ଟସ୍ୱରୂପତ୍ୱାତ୍ ସ୍ୱରୂପେଣାନୁପାଖ୍ୟତ୍ୱାତ୍, ଏବମସ୍ୟ ଭୋଗ୍ୟଭୋକ୍ତ୍ରାଦି ପ୍ରପଞ୍ଚଜାତସ୍ୟ ବ୍ରହ୍ମବ୍ୟତିରେକେଣାଭାବ ଇତି ଦ୍ରଷ୍ଟବ୍ୟମ୍ ।

**(୨) ଭାଷାଂତର-** (କ) ଏଠାରେ ବ୍ୟାବହାରିକ ଭୋକ୍ତୃ ଭୋଗ୍ୟ ରୂପ ବିଭାଗ ସ୍ୱୀକାର କରି 'ସ୍ୟାଲ୍ଲୋକବତ୍' (୨-୧-୧୩) ସୂତ୍ରଭାଗରେ ତାହା ଖଣ୍ଡନ କରାଯାଇଅଛି । ପରନ୍ତୁ ଏହି ବିଭାଗ ପରମାର୍ଥତଃ ନୁହେଁ । ଯଦ୍ୱାରା ସେମାନେ କାର୍ଯ୍ୟକାରଣଭାବର ଅଭିନ୍ନତାକୁ ସ୍ୱୀକାର କରନ୍ତି । ଆକାଶାଦି ବହୁତ ବିସ୍ତୃତ ସଂସାର କାର୍ଯ୍ୟ ଅଟେ ଏବଂ ପରଂବ୍ରହ୍ମ କାରଣ ଅଟେ । ସେହିହେତୁ କାର୍ଯ୍ୟର ପୃଥକ୍ତ୍ୱର ଅଭାବ ପ୍ରକୃତରେ କାରଣ ସହିତ କାର୍ଯ୍ୟର ଅଭିନ୍ନତା ବୋଲି ଜଣାପଡ଼େ ।

(ଖ) କିପରି ? ଆରମ୍ଭଶବ୍ଦାଦିହେତୁ । ଗୋଟିଏ ବିଜ୍ଞାନରୁ ସମସ୍ତ ବିଜ୍ଞାନକୁ ସ୍ୱୀକାର କରି ଦୃଷ୍ଟାନ୍ତର ଅପେକ୍ଷାରେ 'ଯଥା ସୌମ୍ୟୈକେନ' (ହେ ସୌମ୍ୟ ! ଶ୍ୱେତକେତୁ ! ଯେପରି ଗୋଟିଏ ମୃତ୍ତିକା ପିଣ୍ଡରୁ ସମସ୍ତ ମୃତ୍ତିକାର ଜଣାପଡ଼େ ଯେ- ବିକାର କେବଳ ବାଣୀର ଆଶ୍ରୟଭୂତ ନାମ ମାତ୍ର ଅଟେ, ସତ୍ୟ ମଧ୍ୟ କେବଳ ମୃତ୍ତିକା ଅଟେ) ଏହିପରି ଆରମ୍ଭଣଶବ୍ଦ କରାଯାଇଛି ।

(ଗ) ଏଠାରେ କୁହାଯାଇଅଛି ଯେ- ପ୍ରକୃତରେ ମୃତ୍ତିକା ରୂପରୁ ଜଣାପଡୁଥିବା ମୃତ୍ତିକାପିଣ୍ଡ ମୃତ୍ତିକାମୟଘଟ, ଶରା, କୁଞ୍ଚାପ୍ରଭୃତି ବିକାର କେବଳ ବାଣୀଦ୍ୱାରା ହୁଏ । କିନ୍ତୁ ଅନୁହତ୍ତିରୁ କୌଣସି ବିକାର ହୁଏ ନାହିଁ, ନାମମାତ୍ର ଏହିସବୁ ମିଥ୍ୟା ଅଟେ । କେବଳ ମୃତ୍ତିକା ହିଁ ସତ୍ୟ । ଠିକ୍ ସେହିପରି ବ୍ରହ୍ମରେ ମଧ୍ୟ ସେହି ଦୃଷ୍ଟାନ୍ତ କୁହାଯାଇଅଛି ।



ଯେଉଁଠାରେ ଶ୍ରୁତବାଚାରମ୍ଭଣଶବ୍ଦରୁ ଦାର୍ଷ୍ଟାନ୍ତିକଠାରେ କାରଣ-ବ୍ରହ୍ମରୁ କାର୍ଯ୍ୟସମୂହ ଭିନ୍ନ ନୁହେଁ ବୋଲି ଜଣାପଡ଼େ । ପୁନଶ୍ଚ ଶ୍ରୁତି ତେଜ, ବଳ ଓ ଅନ୍ନକୁ ବ୍ରହ୍ମର କାର୍ଯ୍ୟ ବୋଲି କହି ତେଜ, ଜଳ ଓ ଅନ୍ନକୁ କାର୍ଯ୍ୟଭୂତ ତେଜ ଜଳ ଓ ଅନ୍ନଠାରୁ ଭେଦାଭାବ ରୂପରେ 'ଅପାଗ ଦଗ୍ନେରଗ୍ନିତ୍ୱଂ' (ଏହି ପ୍ରକାର ଅଗ୍ନିରୁ ଅଗ୍ନିତ୍ୱ ନିବୃତ୍ତି ହେଲା, କାରଣ- ଅଗ୍ନିରୁଷ୍ଟବିକାର ବାଣୀଦ୍ୱାରା କହିବା ପାଇଁ ନାମମାତ୍ର ଅଟେ, ଏହା ତିନୋଟିରୂପ ଅଟେ, ଏହାହିଁ ସତ୍ୟ) ବୋଲି କୁହାଯାଇଅଛି ।

(ଘ) 'ଆରମ୍ଭଣଶବ୍ଦଦିଭ୍ୟଃ' ଏଠାରେ ଗଠିତ ଆଦିଶବ୍ଦ ଦ୍ୱାରା 'ଐତଦାତ୍ମ୍ୟ' (ଏହିସବୁ ଏତଦ୍ ରୂପ ଅଟେ, ସେ ସତ୍ୟ ଅଟେ ସେ ଆତ୍ମା ଅଟେ ଏବଂ ହେ ଶ୍ୱେତକେତୁ । ସେହିଁ ତୁମେ') 'ଇଦଂ ସର୍ବଂ' (ଏଠାରେ ଯାହା କିଛି ଅଛି, ସେ ସବୁ ଆତ୍ମା), ବ୍ରହ୍ମୈବେଦଂ ସର୍ବମ୍' (ଏହା ସବୁ ବ୍ରହ୍ମଅଟେ) 'ଆତ୍ମୈବେଦଂ' (ଆତ୍ମାହି ବ୍ରହ୍ମଅଟେ), ନେହ ନାନାସ୍ତି (ଏହି ବ୍ରହ୍ମରେ ଅନେକ କିଛି ନାହିଁ) ଇତ୍ୟାଦି ଆତ୍ମୈକତ୍ୱ ପ୍ରତିପାଦନପରକ ବାକ୍ୟସମୁଦାୟ ଉଦାହରଣରୂପରେ ଏଠାରେ ଗ୍ରହଣ କରାଯାଏ ।

(ଙ) ନୋଚେତ୍ ଗୋଟିଏ ବିଜ୍ଞାନରେ ସମସ୍ତ ବିଜ୍ଞାନ ସଂପନ୍ନ ହୁଅନ୍ତା ନାହିଁ । ତେଣୁ ଯେପରି ଘଟାକାଶ, କରକାକାଶାଦି ମହାକାଶଠାରୁ ଭିନ୍ନ ନୁହେଁ ଏବଂ ଯେପରି ମୃଗତୃଷ୍ଣା ଜଳାଦିବାଲୁକାମୟଠାରୁ ଭିନ୍ନ ନୁହେଁ । କାରଣ- ସେ ଦୃଷ୍ଟନଷ୍ଟସ୍ୱରୂପ ଅଟେ ଅର୍ଥାତ୍ ତାହାର ସ୍ୱରୂପ ଦୃଷ୍ଟିଗୋଚର ହୋଇ ନଷ୍ଟ ହୋଇଯାଏ ଅର୍ଥାତ୍ ଅଧିଷ୍ଠାନ ଜ୍ଞାନ ଦ୍ୱାରା ବାଧିତ ହୁଏ ଏବଂ ସେ ସ୍ୱରୂପରହିତ ହୁଏ । ସେହିପରି ଭୋକ୍ତୃଭୋଗ୍ୟାଦି ପ୍ରପଞ୍ଚସମୂହ ବ୍ରହ୍ମଠାରୁ ଭିନ୍ନନୁହେଁ ବୋଲି ଜାଣିବାକୁ ପଡ଼ିବ ।

(୩) ମୂଳ-(କ) ନନ୍ୱନେକାତ୍ମକଂ ବ୍ରହ୍ମ, ଯଥା ବୃକ୍ଷୋଽନେକଶାଖା ଏବମନେକ ଶକ୍ତି ପ୍ରବୃତ୍ତିଯୁକ୍ତଂ ବ୍ରହ୍ମ । ଅତ ଏକତ୍ୱଂ ନାନାତ୍ୱଂ ଚୋଭୟମପି ସତ୍ୟମେ ବ । ଯଥା ବୃକ୍ଷ ଇତ୍ୟକୃତ୍ୱଂ ଶାଖା ନାନତ୍ୱମ । ଯଥାଚ ସମୁଦ୍ରାତ୍ମନୈକତ୍ୱଂ ଫେନତରଙ୍ଗାଦ୍ୟାତ୍ମନା ନାନାତ୍ୱମ୍ ।

(ଖ) ତତ୍ରୈକତ୍ୱାଂଶେନ ଜ୍ଞାନାନ୍ମୋକ୍ଷବ୍ୟବହାରଃ ସେତ୍ସ୍ୟତ ଇତି । ଏବଞ୍ଚ ମୃଦାଦିଦୃଷ୍ଟାନ୍ତା ଅନୁରୂପା ଭବିଷ୍ୟନ୍ତୀତି ।

(ଗ) ନୈବଂ ସ୍ୟାତ୍ । 'ମୃତ୍ତିକେତ୍ୟେବ ସତ୍ୟମ୍' ଇତି ପ୍ରକୃତିମାତ୍ରସ୍ୟ ଦୃଷ୍ଟାନ୍ତେ ସତ୍ୟତ୍ୱାବଧାରଣାତ୍ । ବାଚାରମ୍ଭଣଶବ୍ଦେନ ଚ ବିକାରଜାତସ୍ୟାନୃତ୍ୱାଭିଧାନାତ୍ । ଦାର୍ଷ୍ଟାନ୍ତିକେଽପି 'ଐତଦାତ୍ମ୍ୟମିଦଂ ସର୍ବଂ ତତ୍ସ୍ୟତମ୍' ଇତି ଚ ପରମକାରଣସ୍ୟୈବେକସ୍ୟ ସତ୍ୟତ୍ୱାବଧାରଣାତ୍ 'ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ' ଇତି ଚ ଶାରୀରସ୍ୟ ବ୍ରହ୍ମଭାବୋପଦେଶାତ୍ ।

(ଘ) ସ୍ୱୟଂ ପ୍ରସିଦ୍ଧଂ ହ୍ୟେତଚ୍ଛାରୀରସ୍ୟ ବ୍ରହ୍ମାତ୍ମତ୍ୱମୁପଦିଶ୍ୟତେ ନ ଯତ୍ନାନ୍ତରପ୍ରସାଧ୍ୟମ୍ । ଅତଶ୍ଚେଦଂ ଶାସ୍ତ୍ରୀୟଂ ବ୍ରହ୍ମାତ୍ମତ୍ୱମବଗମ୍ୟମାନଂ ଶରୀରାତ୍ମତ୍ୱସ୍ୟ ସ୍ୱାଭାବିକସ୍ୟ ବାଧକଂ ସମ୍ପଦ୍ୟତେ, ରଜ୍ଜ୍ୱାଦିବୁଦ୍ଧୟ ଇବ ସର୍ପାଦିବୁଦ୍ଧୀନାମ୍ ।

(ଙ) ବାଧ୍ୟତେ ଚ ଶାରୀରାତ୍ମତ୍ୱେ ତଦାଶ୍ରୟଃ ସମସ୍ତଃ ସ୍ୱାଭାବିକୋ ବ୍ୟବହାରୋ ବାଧ୍ୟତେ ଭବତି ଯତ୍ ପ୍ରସିଦ୍ଧୟେ ନାନାତ୍ୱାଂଶୋଽପରୋ ବ୍ରହ୍ମଣଃ କଲ୍ପ୍ୟେତ ।

(୩) ଭାଷାଂତର- (କ) ବ୍ରହ୍ମ ଅନେକାତ୍ମକ ଅଟେ । ଯେପରି ବୃକ୍ଷର ଅନେକ ଶାଖା ରହିଛି, ସେପରି ବ୍ରହ୍ମ ମଧ୍ୟ ଅନେକ ଶକ୍ତିଦ୍ୱାରା ପ୍ରବୃତ୍ତ ହୁଏ । ତେଣୁ ଏକତ୍ୱ ଓ ନାନାତ୍ୱ- ଏହି ଦୁଇଟି ସତ୍ୟ ଅଟେ । ଯେପରି ବୃକ୍ଷ ଏହି ରୂପରେ ଏକ ଓ ନାନାରୂପରେ ଅନେକ, ଯେପରି ସମୁଦ୍ର ରୂପରେ ଏକ ଏବଂ ଫେନ ଓ ତରଙ୍ଗାଦିରୂପରେ ଅନେକ,

(ଖ) ସେହିପରି (ବ୍ରହ୍ମକାରଣ ରୂପରେ ଏକ ଓ ଭୋକ୍ତ୍ର ଭୋଗ୍ୟାଦିରୂପରେ ଅନେକ) ଏହି ଦୁଇଟି ଏକତ୍ୱାଂଶରର ଜ୍ଞାନକୁ ମୋକ୍ଷ ବ୍ୟବହାର ସିଦ୍ଧ ହୁଏ ଏବଂ ନାନାତ୍ୱଅଂଶର ଜ୍ଞାନଦ୍ୱାରା କର୍ମକାଣ୍ଡରେ ଆଶ୍ରୟ ନେଇଥିବା ଲୌକିକ ଓ ବୈଦିକ ବ୍ୟବହାର ସିଦ୍ଧ ହୁଏ । ସେହିପରି ମୃତ୍ତିକାଦିରୂପ ଦୃଷ୍ଟାନ୍ତ ଅନୁରୂପ ହୁଏ ।

(ଗ) କିନ୍ତୁ ଏହା ସମୀଚୀନ ନୁହେଁ । କାରଣ- 'ମୃତ୍ତିକେତ୍ୟେବ ସତ୍ୟମ୍' ଏହି ପ୍ରକାର ଦୃଷ୍ଟାନ୍ତରେ ପ୍ରକୃତି ମାତ୍ରର ସତ୍ୟତ୍ୱ ନିର୍ଣ୍ଣୟ କରାଯାଇଛି ଏବଂ ବିଚାରମ୍ଭଣ ଶବ୍ଦଦ୍ୱାରା ବିକାର ସମୁଦାୟରେ ଅନୃତତ୍ୱ ଅଭିଧାନ କରାଯାଇଅଛି । ଦାର୍ଷ୍ଟାନ୍ତିକରେ ମଧ୍ୟ 'ଐତଦାତ୍ମ୍ୟମିଦଂ ସର୍ବମ୍' ବାକ୍ୟରେ ଏକପରମ କାରଣରେ ସତ୍ୟତ୍ୱର ଅବଧାରଣ କରାଯାଇଛି ଏବଂ 'ସ ଆତ୍ମା ତତ୍ତ୍ୱମସି' ଶ୍ୱେତକେତୋ' ବାକ୍ୟରେ ମଧ୍ୟ ଜୀବାତ୍ମାକୁ ବ୍ରହ୍ମଭାବରେ ଉପଦେଶ ଦିଆଯାଇଅଛି ।

(ଘ) ଜୀବାତ୍ମାକୁ ଏହି ସ୍ୱୟଂ ପ୍ରସିଦ୍ଧ ବ୍ରହ୍ମାତତ୍ୱର ଉପଦେଶ ଦିଆଯାଇଅଛି । କିନ୍ତୁ ଅନ୍ୟ ଯତ୍ନ ସାଧ ବ୍ରହ୍ମାତ୍ମତ୍ୱର ଉପଦେଶ ଦିଆଯାଇ ନାହିଁ । ଯେପରି ରଜ୍ଜ୍ୱାଦି ବୁଦ୍ଧି କଳ୍ପିତ ସର୍ପପ୍ରଭୃତି ବୁଦ୍ଧି ବାଧକ ହୁଏ, ସେପରି ଏହି ଶାସ୍ତ୍ରୀୟ ଅବଶ୍ୟମାନ (ଅବଗତ ହେଉଥିବା) ବ୍ରହ୍ମାତ୍ମତ୍ୱ ନଥିବା ଜୀବାତ୍ମତ୍ୱର ବାଧକ ହୁଏ ।

(ଙ) ଜୀବାତ୍ମା ବାଧିତ ହେଲେ ତାହାର ଆଶ୍ରିତ ସମସ୍ତ ଅବିଦ୍ୟକ, ଲୌକିକ ବୈଦିକ ବ୍ୟବହାର, ଯାହାର ସିଦ୍ଧ ପାଇଁ ବ୍ରହ୍ମରେ ଏକତ୍ୱଠାରୁ ଭିନ୍ନ ନାନାତ୍ୱାଂଶରେ କଳ୍ପନା କରିବାକୁ ପଡ଼େ, ତାହାହିଁ ବାଧିତ ହୁଏ ।

(୪) ମୂଳ-(କ) ଦର୍ଶୟତି ଚ- 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍କେନ କଂ ପଶ୍ୟେତ୍' (ବୃ ୪-୫-୧୫) ଇତ୍ୟାଦିନା ବ୍ରହ୍ମାତ୍ୱଦର୍ଶିନଂ ପ୍ରତି ସମସ୍ତସ୍ୟ କ୍ରିୟାକାରକଫଳଲକ୍ଷଣସ୍ୟ ବ୍ୟବହାରସ୍ୟାଭାବମ୍ ।

(ଖ) ନଚାୟଂ ବ୍ୟବହାରାଭାବୋଽବସ୍ଥାବିଶେଷନିବଦ୍ଧୋଽଭିଧୀୟତ ଇତି ଯୁକ୍ତଂ ବକ୍ତୁମ୍, 'ତତ୍ତ୍ୱମସି' ଇତି ବ୍ରହ୍ମାତ୍ମଭାବସ୍ୟାନବସ୍ଥାବିଶେଷନିବନ୍ଧନତ୍ୱାତ୍ ।

(ଗ) ତସ୍କରଦୃଷ୍ଟାନ୍ତେନ ଚାନୃତାଭିସଂନ୍ଧସ୍ୟ ବନ୍ଧନଂ ସତ୍ୟାଭିସନ୍ଧସ୍ୟ ଚ ମୋକ୍ଷଂ ଦର୍ଶୟନ୍ନେକତ୍ୱମେବୈକଂ ପାରମାର୍ଥିକଂ ଦର୍ଶୟତି' (ଛା ୬-୧୬) । ମିଥ୍ୟାଭିଜ୍ଞାନ ବିଜୃମ୍ଭିତଂ



ଚ ନାନାତ୍ୱମ୍ । ଉଭୟସତ୍ୟତାୟାଂ ହି କଥଂ ବ୍ୟବହାରଗୋଚରୋଽପି ଜନ୍ତୁରନୃତାଭିସନ୍ଧ ଇତ୍ୟୁଚ୍ୟେତ । 'ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି' (ବୃ ୪-୪-୧୯) ଇତି ଚ ଭେଦଦୃଷ୍ଟିମପବଦନ୍ନେବୈତଦ୍ ଦର୍ଶୟତି ।

(ଘ) ନଚାସ୍ମିନ୍ ଦର୍ଶନେ ଜ୍ଞାନାତ୍ ମୋକ୍ଷ ଇତ୍ୟୁପପଦ୍ୟତେ । ସମ୍ୟଗ୍ଜ୍ଞାନାପନୋଦ୍ୟସ୍ୟ କସ୍ୟଚିନମିଥ୍ୟାଜ୍ଞାନସ୍ୟ ସଂସାରକାରଣତ୍ୱେନନ ଭ୍ୟୁପଗମାତ୍ । ଉଭୟୋ ସତ୍ୟତୟାଂହି କଥମେକତ୍ୱଜ୍ଞାନେନ ନାନାତ୍ୱଜ୍ଞାନମପନୁଦ୍ୟତ ଇତ୍ୟୁଚ୍ୟତେ ।

(ଙ) ନନ୍ୱେକତ୍ୱୈକାନ୍ତାଭ୍ୟୁପଗମେ ନାନାତ୍ୱାଭାବାତ୍ ପ୍ରତ୍ୟକ୍ଷାଦୀନି ଲୌକିକାନି ପ୍ରମାଣାନି ବ୍ୟାହନ୍ୟେରନ୍ନିର୍ବିଷୟତ୍ୱାତ୍, ସ୍ଥାଣ୍ୱାଦିଷ୍ୱିବ ପୁରୁଷାଦିଦିଜ୍ଞାନାନି । ତଥା ବିଧିପ୍ରତିଷେଧଶାସ୍ତ୍ରମପି ଭେଦାପେକ୍ଷତ୍ୱାତ୍ତଦଭାବେ ବ୍ୟାହନ୍ୟେତ, ମୋକ୍ଷଶାସ୍ତ୍ରସ୍ୟାପି ଶିଷ୍ୟଶାସିତ୍ରାଦିଭେଦାପେକ୍ଷତ୍ୱାତ୍ତଦଭାବେ ବ୍ୟାଘାତଃ ସ୍ୟାତ୍ । କଥଂ ଚାନୃତେନ ମୋକ୍ଷଶାସ୍ତ୍ରେଣ ପ୍ରତିପାଦିତସ୍ୟାତ୍ମୈକତ୍ୱସ୍ୟ ସତ୍ୟତ୍ୱମୁପପଦ୍ୟେତେତି ।

**(୪) ଭାଷାଂତର**-(କ) 'ଯତ୍ର ତ୍ୱସ୍ୟ' (ଯେଉଁ ଜ୍ଞାନାବସ୍ଥାରେ ବିଦ୍ୱାନ୍‌ମାନଙ୍କ ପାଇଁ ସବୁ ଆତ୍ମା ହେଲେ ସେହି ଅବସ୍ଥାରେ କାହାକୁ କେଉଁ ସାଧନରେ କିଏ ଦେଖେ) ଇତ୍ୟାଦି ଦ୍ୱାରା ବ୍ରହ୍ମାତ୍ମତ୍ୱଦର୍ଶୀ ପ୍ରତିଶ୍ରୁତି କ୍ରିୟା, କାରକ ଓ ଫଳରୂପ ସମସ୍ତ ବ୍ୟବହାରର ଅଭାବ ଦେଖାଏ ।

(ଖ) କିନ୍ତୁ ଏହିବାକ୍ୟ ଠିକ୍ ନୁହେଁ । ଏହି ବ୍ୟବହାରର ଅଭାବ ହେଲେ କୌଣସି ଅବସ୍ଥା (ମୋକ୍ଷ)ର ଅଧୀନ ବୋଲି କୁହାଯାଇଅଛି । କାରଣ- 'ତତ୍ତ୍ୱମସି'' ଏହି ବାକ୍ୟରେ ଜୀବନର ବ୍ରହ୍ମାତ୍ମବ କାହାର ବିଶେଷ ଅବସ୍ଥାର ଅଧୀନ ବୋଲି କୁହାଯାଇ ନାହିଁ ।

(ଗ) ଚୋରର ଦୃଷ୍ଟାନ୍ତରେ ମିଥ୍ୟାବସ୍ତୁକୁ ଆଗ୍ରହ କରୁଥିବା ବନ୍ଧନ ଓ ସତ୍ୟାଭିସନ୍ଧର ମୋକ୍ଷପରକଶ୍ରୁତି କେବଳ ଏକତ୍ୱ, ଏକ ପାରମାର୍ଥୀକକୁ ଦେଖାଏ । ମିଥ୍ୟଜ୍ଞାନଦ୍ୱାରା ନାନାତ୍ୱ କଳ୍ପିତ ରୂପରେ ଦେଖାଯାଏ । ଯଦି ଭେଦ ଓ ଅଭେଦ - ଏହି ଦୁଇଟି ସତ୍ୟ ହୁଅନ୍ତି, ତେବେ ଭେଦବ୍ୟବହାର କରୁଥିବା ପୁରୁଷ ଅନୃତାଭିସନ୍ଧ ବୋଲି କିପରି ସମ୍ଭବ ହୁଏ ? 'ମୃତ୍ୟୋଃ ସ ମୃତ୍ୟୁମା (ଯାହା ଏହି ଅଦ୍ୱିତୀୟ ବ୍ରହ୍ମରେ ନାନାରୂପରେ ଦେଖେ, ସେ ମୃତ୍ୟୁ ଦ୍ୱାରା ମୃତ୍ୟୁକୁ ପ୍ରାପ୍ତ ହୁଏ) ଏହିପ୍ରକାରର ଶ୍ରୁତି ଭେଦଦୃଷ୍ଟିକୁ ଅପବାଦ କରି ଅଭେଦକୁ ଦେଖାଏ ।

(ଘ) ଏହି ଭେଦ ଓ ଅଭେଦବାଦ ଦର୍ଶନରେ ଜ୍ଞାନରୁ ମୁକ୍ତି ଉପପନ୍ନ ହୁଏ ନାହିଁ । କାରଣ-ସେମାନେ ସମ୍ୟଗ୍ଜ୍ଞାନ ଦ୍ୱାରା ନିବାରଣ ଯୋଗ୍ୟ କୌଣସି ମିଥ୍ୟାଜ୍ଞାନକୁ ସଂସାରର କାରଣ ରୂପରେ ସ୍ୱୀକାର କରନ୍ତି ନାହିଁ । ଦୁଇଟି ଯାକ ସତ୍ୟ ହେଲେ ଏକତ୍ୱ ଜ୍ଞାନଦ୍ୱାରା ନାନାତ୍ୱଜ୍ଞାନ ନିବୃତ୍ତ ହେବା କିପରି ସମ୍ଭବ ହୁଏ ?

(ଙ) ପରନ୍ତୁ ଏକତ୍ୱକୁ ସ୍ୱୀକାର କଲାପରେ ନାନାତ୍ୱର ଅଭାବରୁ ପ୍ରତ୍ୟକ୍ଷାଦି ଲୌକିକ ପ୍ରମାଣ ନିର୍ବିଷୟକ ହୋଇ ବାଧିତ ହୁଏ । ଯେପରି ସ୍ଥାଣ୍ୱାଦିରେ ପୁରୁଷାଦିର ଜ୍ଞାନ ବାଧିତ ହୁଏ, ସେହିପରି ଭେଦକୁ ଅପେକ୍ଷା କରିବାକୁ ବିଧି, ପ୍ରତିଷେଧାଦିଶାସ୍ତ୍ରର ଭେଦାଭାବରେ ବାଧିତ ହେବେ । ଗୁରୁଶିଷ୍ୟ ପ୍ରଭୃତି ଭେଦକୁ ଅପେକ୍ଷା କରିବାରୁ ମୋକ୍ଷ ଶାସ୍ତ୍ର ମଧ ତା'ର ଅଭାବରେ ବାଧିତ ହୁଅନ୍ତି ଏବଂ ମିଥ୍ୟା ମୋକ୍ଷଶାସ୍ତ୍ରଦ୍ୱାରା ପ୍ରତିପାଦିତ ଆତ୍ମୈକତ୍ୱ କିପରି ସତ୍ୟ ହେବ ?

(୫) ମୂଳ-(କ) ଅତ୍ରୋଚ୍ୟତେ-ନୈଷ ଦୋଷାଃ ସର୍ବବ୍ୟବହାରାଣାମେବ ପ୍ରାଗ୍‌ବ୍ରହ୍ମାତ୍ମତାବିଜ୍ଞାନାତ୍‌ସତ୍ୟତ୍ୱୋପପତ୍ତେଃ । ସ୍ୱପ୍ନବ୍ୟବହାରସ୍ୟେବ ପ୍ରାକ୍‌ପ୍ରବୋଧାତ୍ ।

(ଖ) ଯାବଦ୍ଧି ନ ସତ୍ୟାତ୍ମୈକତ୍ୱପ୍ରତିପତ୍ତିସ୍ତାବତ୍‌ପ୍ରମାଣପ୍ରମେୟଫଳଲକ୍ଷଣେଷୁ ବିକାରେଷ୍ୱନୃତତ୍ୱବୁଦ୍ଧିର୍ନ କସ୍ୟଚିଦୁତ୍ପଦ୍ୟତେ । ବିକାରାନେବ ତ୍ୱହଂ ମମେତ୍ୟବିଦ୍ୟୟା-ତ୍ମାତ୍ମୀୟେନ ଭାବେନ ସର୍ବୋ ଜନ୍ତୁଃ ପ୍ରତିପଦ୍ୟତେ ସ୍ୱାଭାବିକୀଂ ବ୍ରହ୍ମାତ୍ମତାଂ ହିତ୍ୱା ।

(ଗ) ତସ୍ମାତ୍ ପ୍ରାଗ୍‌ବ୍ରହ୍ମାତ୍ମତାପ୍ରତିଷେଧାଦୁପପନ୍ନଃ ସର୍ବୋ ଲୌକିକୋ ବୈଦିକଶ୍ଚ ବ୍ୟବହାରଃ ।

**(୫) ଭାଷାଂତର-** (କ) ଆମ୍ଭର ବକ୍ତବ୍ୟ ଯେ- ଏଠାରେ କିଛି ଦୋଷ ନାହିଁ । କାରଣ- ଯେପରି ଜାଗ୍ରତ ହେବାର ପୂର୍ବରୁ ସବୁସ୍ୱପ୍ନ ବ୍ୟବହାର ସତ୍ୟରୂପରେ ପ୍ରତୀତ ହୁଅନ୍ତି, ସେପରି ବ୍ରହ୍ମାତ୍ମୈକତ୍ୱ ରୂପକ ଜ୍ଞାନର ପୂର୍ବରୁ ସମସ୍ତ ବ୍ୟବହାର ସତ୍ୟ ।

(ଖ) ଯେପର୍ଯ୍ୟନ୍ତ ସତ୍ୟ ଆତ୍ମୈକତ୍ୱ ପ୍ରତିପତ୍ତି ହୁଏ ନାହିଁ, ସେପର୍ଯ୍ୟନ୍ତ ପ୍ରମାଣ, ପ୍ରମେୟ ଓ ଫଳରୂପ ବିକାରରେ ମଧ କାହାକୁ ହେଲେ ମିଥ୍ୟାତ୍ୱବୁଦ୍ଧି ହୁଏ ନାହିଁ । ସ୍ୱାଭାବିକବ୍ରହ୍ମାତ୍ମତାକୁ ପରିତ୍ୟାଗ କରି ଅବିଦ୍ୟାଦ୍ୱାରା ସବୁପ୍ରାଣୀ ବିକାରରେ 'ମୁଁ ମୋର' ଇତ୍ୟାଦି ଆତ୍ମଭାବ ଏବଂ ଆତ୍ମୀୟଭାବକୁ ପାଆନ୍ତି ।

(ଗ) ତେଣୁ ବ୍ରହ୍ମାତ୍ମତ୍ୱଜ୍ଞାନରେ ପୂର୍ବରୁ ଲୌକିକ ଓ ବୈଦିକ ସବୁ ବ୍ୟବହାର ଉପପନ୍ନ ହୁଅନ୍ତି ।

(୬) ମୂଳ-(କ) ଯଥା ସୁପ୍ତସ୍ୟ ପ୍ରାକୃତସ୍ୟ ଜନସ୍ୟ ସ୍ୱପ୍ନ ଉଚ୍ଚାବାଚ୍ଚନ୍ ଭାବାନ୍‌ପଶ୍ୟତୋ ନିଶ୍ଚିତମେବ ପ୍ରତ୍ୟକ୍ଷାଭିମତଂ ବିଜ୍ଞାନଂ ଭବତି ପ୍ରାକ୍ ପ୍ରବୋଧାତ୍, ନଚ ପ୍ରତ୍ୟକ୍ଷାଭାସାଭିପ୍ରାୟସ୍ତତ୍ କାଳେ ଭବତି, ତଦ୍‌ବତ୍ ।

(ଖ) କଥଂ ତ୍ୱସତ୍ୟେନ ବେଦାନ୍ତବାକ୍ୟେନ ସତ୍ୟସ୍ୟ-ବ୍ରହ୍ମାତ୍ମତ୍ୱସ୍ୟ ପ୍ରତିପତ୍ତି ରୁପପଦ୍ୟେତ । ନ ହି ରଜ୍ଜୁସର୍ପେଣ ଦଷ୍ଟୋ ମ୍ରିୟତେ । ନାପି ମୃଗତୃଷ୍ଣିକାମ୍ଭସା ପାନାବଗାହନାଦିପ୍ରୟୋଜନଂ କ୍ରିୟତ ଇତି ।

(ଗ) ନୈଷ ଦୋଷଃ । ଶଙ୍କାବିଷାଦିନିମିତ୍ତ ମରଣାଦିକାର୍ଯ୍ୟୋପଲବ୍‌ଧେଃ । ସ୍ୱପ୍ନ ଦର୍ଶନାବସ୍ଥସ୍ୟ ଚ ସର୍ପଦର୍ଶନୋଦକସ୍ନାନାଦିକାର୍ଯ୍ୟଦର୍ଶନାତ୍ ।



(ଘ) ତତ୍ କାର୍ଯ୍ୟମପ୍ୟନୃତମେବେତି ଚେଦ୍‌ବ୍ରୂୟାତ୍ । ତତ୍ର ବ୍ରୂମା-ଯଦ୍ୟପି ସ୍ୱପ୍ନଦର୍ଶନାବସ୍ଥସ୍ୟ ସର୍ପ ଦଂଶନୋଦକସ୍ନାନାଦିକାର୍ଯ୍ୟମନୃତଂ ତଥାପି ତଦବଗତିଃ ସତ୍ୟମେବ ଫଳମ୍, ପ୍ରତିବୁଦ୍ଧସ୍ୟାପ୍ୟବାଧମାନତ୍ୱାତ୍ ।

(ଙ) ନହି ସ୍ୱପ୍ନାଦୁତ୍ ଥିତଃ ସ୍ୱପ୍ନଦୃଷ୍ଟଂ ସର୍ପଦଂଶନୋଦକସ୍ନାନାଦିକାର୍ଯ୍ୟଂ ମିଥ୍ୟେତି ମନ୍ୟମାନସ୍ତଦବଗତିମପି ମିଥ୍ୟେତି ମନ୍ୟତେ କଶ୍ଚିତ୍ ।

(ଚ) ଏତେନ ସ୍ୱପ୍ନ ଦୃଶୋଽବଗତ୍ୟବାଧନେନ ଦେହମାତ୍ରାତ୍ମବାଦୋ ଦୂଷିତୋ ବେଦିତବ୍ୟଃ । ତଥାଚ ଶ୍ରୁତିଃ-'ଯଦା କର୍ମସୁ କାମ୍ୟେଷୁ ସ୍ତ୍ରିୟଂ ସ୍ୱପ୍ନେଷୁ ପଶ୍ୟତି । ସମୃଦ୍ଧି ତତ୍ର ଜାନୀୟାତ୍ତ ସ୍ମିନ୍ ସ୍ୱପ୍ନନିଦର୍ଶନେ' (ଛା ୫-୨-୯) ଇତ୍ୟସତେଂନ ସ୍ୱପ୍ନ ଦର୍ଶନେନ ସତ୍ୟାୟାଃ ସମୃଦ୍ଧେଃ ପ୍ରତିପତ୍ତିଂ ଦର୍ଶୟତି ।

(ଛ) ତଥା ପ୍ରତ୍ୟକ୍ଷଦର୍ଶନେଷୁ କେଷୁଚିଦରିଷ୍ଟେଷୁ ଜାତେଷୁ 'ନ ଚିରମିବ ଜୀବିଷ୍ୟତୀତି ବିଦ୍ୟାତ୍' ଇତ୍ୟୁକ୍ତ୍ୱା 'ଅଥ ସ୍ୱପ୍ନାଃ ପୁରୁଷଂ କୃଷ୍ଣଂ କୃଷ୍ଣଦନ୍ତଂ ପଶ୍ୟତି, ସ ଏନଂ ହନ୍ତି' ଇତ୍ୟାଦିନା ତେନ ତେନାସତ୍ୟେନୈବ ସ୍ୱପ୍ନ ଦର୍ଶନେନ ସତ୍ୟଂ ମରଣଂ ସୂଚ୍ୟତ ଇତି ଦର୍ଶୟତି । ପ୍ରସିଦ୍ଧଂ ଚେଦଂ ଲୋକେଽନ୍ୱୟବ୍ୟତିରେକ-କୁଶଳାନାମୀଦୃଶେନ ସ୍ୱପ୍ନ ଦର୍ଶନେନ ସାଧ୍ୱାଗମଃ ସୂଚ୍ୟତ ଇଦୃଶେନାସାଧ୍ୱାଗମ ଇତି ।

**(୬) ଭାଷାଂତର** -(କ) ଯେପରି ସ୍ୱପ୍ନାବସ୍ଥାରେ ଭିନ୍ନଭିନ୍ନ ଅନେକ ପଦାର୍ଥ ଗୁଡ଼ିକୁ ଦେଖିଥିବା ସାଧାରଣ ସୁପ୍ତ ପୁରୁଷ ଜାଗ୍ରତ ହେବା ପୂର୍ବରୁ ତାହା ବିଜ୍ଞାନ ବୋଲି ପ୍ରତ୍ୟକ୍ଷଭାବେ ସ୍ୱୀକାର କରେ । ସେହି ସମୟରେ ତାହାକୁ ପ୍ରତ୍ୟକ୍ଷାଭାସକର ଅଭିପ୍ରାୟ ଜ୍ଞାନ ହୁଏ ନାହିଁ । ସେହିପରି ପ୍ରକୃତରେ ଜାଣିବା ଉଚିତ୍ ।

(ଖ) ପରନ୍ତୁ ଅସତ୍ୟ ବେଦାନ୍ତବାକ୍ୟଦ୍ୱାରା ସତ୍ୟବ୍ରହ୍ମାତ୍ମଜ୍ଞାନ କିପରି ଉପପନ୍ନ ହେବ ? କାରଣ-ରଜ୍ଜୁରେ କଳ୍ପିତ ସର୍ପର ଦଂଶନଦ୍ୱାରା କୌଣସି ବ୍ୟକ୍ତି ମରେ ନାହିଁ, ଏବଂ ମୃଗ ତୃଷ୍ଣାର ଜଳରେ କୌଣସି ପାନ ବା ସ୍ନାନାଦି କାର୍ଯ୍ୟର ପ୍ରୟୋଜନ ସିଦ୍ଧ ହୁଏ ନାହିଁ ।

(ଗ) କିନ୍ତୁ ତାହା ଏଠାରେ ଦୋଷ ନୁହେଁ । କାରଣ-ବିଷ ଭକ୍ଷଣ ନ କରି ବିଷର ଶଙ୍କା କଲେ ମରଣାଦି କାର୍ଯ୍ୟ ଉପଲବ୍ଧ ହୁଏ ଏବଂ ସ୍ୱପ୍ନାବସ୍ଥାରେ ପୁରୁଷକୁ ସର୍ପଦଂଶନ ଓ ଜଳ ସ୍ନାନାଦି କାର୍ଯ୍ୟ ଦେଖାଯାଏ ।

(ଘ) ଏହାର କାର୍ଯ୍ୟ ଯଦି ଅସତ୍ୟ ବୋଲି କହ, ତେବେ ସେହି ବିଷୟରେ ଆମ୍ଭେ କହୁଁ ଯେ- ଯଦ୍ୟପି ସ୍ୱପ୍ନାବସ୍ଥାରେ ଥିବା ପୁରୁଷକୁ ସର୍ପଦଂଶନ ଜଳସ୍ନାନାଦି କାର୍ଯ୍ୟ ଅସତ୍ୟ ହୁଏ, ତଥାପି ଏହି ଜ୍ଞାନରୂପ ଫଳ ସତ୍ୟ ଅଟେ । କାରଣ-ଜାଗ୍ରତ ପୁରୁଷର ଏହି ଜ୍ଞାନ ବାଧିତ ହୁଏ ନାହିଁ ।

(ଙ) ସ୍ୱପ୍ନରୁ ଉଠିଥିବା ପୁରୁଷ ସ୍ୱପ୍ନଦୃଷ୍ଟ ସର୍ପଦଂଶନ ଉଦକଦ୍ୱାରା ସ୍ନାନାଦି କାର୍ଯ୍ୟକୁ ମିଥ୍ୟାରୂପରେ ଜ୍ଞାନ କରିବା ହିଁ ମିଥ୍ୟାବୋଲି କୌଣସି ଲୋକ ସ୍ୱୀକାର କରେ ନାହିଁ ।

(ଚ) ଏହାଦ୍ୱାରା ସ୍ୱପ୍ନଦ୍ରଷ୍ଟା ବିଷୟକ ଜ୍ଞାନର ବାଧା ନ ହେବାଦ୍ୱାରା ଦେହମାତ୍ରକୁ ଆତ୍ମା ବୋଲି ସ୍ୱୀକାର କରିବା ମତ ଖଣ୍ଡନ ହେବା ଉଚିତ୍ । ସେହିପରି 'ଯଦା କର୍ମସୁ' (ଯେତେବେଳେ କାମକର୍ମକୁ କରୁଥିବା ପୁରୁଷ ସ୍ୱପ୍ନରେ ସୁନ୍ଦର ସ୍ତ୍ରୀକୁ ଦେଖେ, ସେତେବେଳେ ସ୍ୱପ୍ନଦର୍ଶନମାତ୍ରକେ ସେ କର୍ମ (କାମକର୍ମଜନିତ ଲମ୍ଭନାଦି)ର ସମୃଦ୍ଧ ଜାଣେ) ଏହି ଶ୍ରୁତି ଅସତ୍ୟ ସ୍ୱପ୍ନ ଦର୍ଶନ ଦ୍ୱାରା ସତ୍ୟସମୃଦ୍ଧିର ଜ୍ଞାନ ଦେଖାଏ ।

(ଛ) ଏହିପ୍ରକାର ହେଉଥିବା କିଛି ଅନିଷ୍ଟର ପ୍ରତ୍ୟକ୍ଷଦର୍ଶନ ହେଲେ 'ନ ଚିରମିବ' (ଚିରକାଳ ପର୍ଯ୍ୟନ୍ତ ଯାଏ ନାହିଁ-ଏହା ଜାଣିବା ଉଚିତ୍) ଏହା କହି 'ଯଃ ସ୍ୱପ୍ନେ' (ଯିଏ କିଛି ସ୍ୱପ୍ନରେ କାଳଦାନ୍ତ ଦେଖୁଥିବା କାଳପୁରୁଷକୁ ଦେଖେ, ସେହି କାଳପୁରୁଷ ତାକୁ ମାରେ) ଇତ୍ୟାଦି ଦ୍ୱାରା ସେହି ଅସତ୍ୟ ସ୍ୱପ୍ନ ଦର୍ଶନ ଦ୍ୱାରା ସତ୍ୟମରଣ ସୂଚିତ ହୁଏ- ଏହାହିଁ ଶ୍ରୁତି ଦେଖାଏ । ଅନ୍ୱୟବ୍ୟତିରେକରେ କୁଶଳ ପୁରୁଷକୁ ଏହି ପ୍ରକାର ସ୍ୱପ୍ନ ଦର୍ଶନ ଦ୍ୱାରା ଶୁଭପ୍ରାପ୍ତି ଓ ଏହି ସ୍ୱପ୍ନ ଦର୍ଶନ ଦ୍ୱାରା ଅଶୁଭ ପ୍ରାପ୍ତି ସୂଚିତ ହୁଏ ବୋଲି ସଂସାରରେ ପ୍ରସିଦ୍ଧ ଅଛି ।

(୭) ମୂଳ-(କ) ତଥାକାରାଦିସତ୍ୟାକ୍ଷରପ୍ରତିପତ୍ତିର୍ଦୃଷ୍ଟା ରେଖା ନୃତାକ୍ଷରପ୍ରତିପତ୍ତେଃ । ଅପି ଚାନ୍ତ୍ୟମିଦଂ ପ୍ରମାଣମାତ୍ମୈକତ୍ୱସ୍ୟ ପ୍ରତିପାଦକଂ ନାତଃ ପରଂ କିଞ୍ଚିଦାକାଙ୍କ୍ଷ୍ୟମସ୍ତି ।

(ଖ) ଯଥାହିଲୋକେ ଯଜେତେତ୍ୟୁକ୍ତେ କିଂ କେନ କଥମିତ୍ୟାକାଙ୍କ୍ଷ୍ୟତେ ନୈବଂ 'ତତ୍ତ୍ୱମସି', 'ଅହଂ ବ୍ରହ୍ମାସି' ଇତ୍ୟୁକ୍ତେ କିଞ୍ଚିଦନ୍ୟଦାକାଙ୍କ୍ଷ୍ୟମସ୍ତି, ସର୍ବାତ୍ମୈକତ୍ୱ-ବିଷୟତ୍ୱାବଗତେଃ । ସତି ହ୍ୟନ୍ୟସ୍ମିନ୍ନବଶିଷ୍ୟମାଣେଽର୍ଥେ ଆକାଂକ୍ଷା ସ୍ୟାତ୍ । ନତ୍ୱାତ୍ମୈକତ୍ୱବ୍ୟତିରେକେଣା ବଶିଷ୍ୟମାଣୋଽନ୍ୟୋଽର୍ଥୋଽସ୍ତି ଯ ଆକାଂକ୍ଷ୍ୟେତ ।

**(୭) ଭାଷାଂତର-** (କ) ଏପରି ରେଖାଗୁଡ଼ିକରେ ଅସତ୍ୟ ଅକ୍ଷରଗୁଡ଼ିକୁ ଜାଣିବା ଦ୍ୱାରା ଅକାରାଦି ସତ୍ୟ ଅକ୍ଷର ସମୂହର ଜ୍ଞାନ ଦେଖାଯାଏ ଏବଂ ଆତ୍ମୈକତ୍ୱ ପ୍ରତିପାଦକ ହିଁ ଅନ୍ତିମ ପ୍ରମାଣ ଅଟେ । ଏହାବ୍ୟତୀତ ଅନ୍ୟକିଛି ଆକାଂକ୍ଷା ନାହିଁ ।

(ଖ) ଯେପରି ସଂସାରରେ 'ଯଜେତ' ଏହା କହିଲେ କୌଣସି ଫଳପାଇଁ, କୌଣସି ସାଧନଦ୍ୱାରା ଅଥବା କୌଣସି ପ୍ରକାର ଆକାଂକ୍ଷା ହୁଏ, ସେପରି 'ତତ୍ତ୍ୱମସି' 'ଅହଂ ବ୍ରହ୍ମାସ୍ମି' ଇତ୍ୟାଦିରେ କିଛି କହିଲା ପରେ ଅନ୍ୟ କୌଣସି ଆକାଂକ୍ଷା ହୁଏ ନାହିଁ ।୧ କାରଣ- ସେ ସର୍ବାତ୍ମକତ୍ୱ ବିଷୟକ ଜ୍ଞାନ ଅଟେ । ଅନ୍ୟ ଅବଶିଷ୍ଟ ପଦାର୍ଥ ହେଲେ ଏହାର କିଛି ଅନ୍ୟ ଆକାଂକ୍ଷା ହୋଇଥା'ନ୍ତା । ପରନ୍ତୁ ଆତ୍ମୈକତ୍ୱଠାରୁ ଭିନ୍ନ ଅବଶେଷ ଅନ୍ୟପଦାର୍ଥ ହୁଏ ନାହିଁ । ଯାହାକି ଅନ୍ୟକୁ ଆକାଂକ୍ଷା କରିବ ।



(୮) ମୂଳ-(କ) ନ ଚେୟମବଗତିର୍ନୋତ୍ପଦ୍ୟତ ଇତି ଶକ୍ୟଂ ବକ୍ତୁମ୍, 'ତଦ୍ବାସ୍ୟ ବିଜଜ୍ଞୌ' (ଛା ୬-୧୬-୩) ଇତ୍ୟାଦି ଶ୍ରୁତିଭ୍ୟଃ । ଅବଗତିସାଧନାନାଂ ଚ ଶ୍ରବଣାଦୀନାଂ ବେଦାନୁ ବଚନାଦୀନାଂ ଚ ବିଧାନାତ୍ ।

(ଖ) ନ ଚେୟମବଗତିରନର୍ଥିକା ଭ୍ରାନ୍ତିର୍ବେତି ଶକ୍ୟଂ ବକ୍ତୁମ୍ । ଅବିଦ୍ୟାନିବୃତ୍ତିଫଳଦର୍ଶନାତ୍, ବାଧକଜ୍ଞାନାନ୍ତରାଭାବାଚ୍ଚ ।

**(୮) ଭାଷାଂତର-** (କ) ଏହି ଅବଗତି (ଜ୍ଞାନ) ଉତ୍ପନ୍ନ ହୁଏ ନାହିଁ ବୋଲି କୁହାଯାଇ ନ ପାରେ, କାରଣ - 'ତଦ୍ଧାଽସ୍ୟ' (ପିତାଙ୍କର ଉପଦେଶ ଦ୍ୱାରା ଶ୍ୱେତକେତୁ ସେହି ଆତ୍ମତତ୍ତ୍ୱକୁ ଯଥାର୍ଥରୂପରେ ଜାଣିଲା) ଇତ୍ୟାଦି ଶ୍ରୁତି ଅଟେ ଏବଂ ଅବଗତିର ସାଧନ ଶ୍ରବଣ ଓ ବେଦାଧ୍ୟୟନାଦିର ବିଧାନ ଅଟେ ।

(ଖ) କିନ୍ତୁ ଏହି ଅବଗତି ନିଷ୍ପ୍ରୟୋଜନ ଅଥବା ଭ୍ରାନ୍ତିମୂଳକ ବୋଲି କୁହାଯାଇ ନପାରେ; କାରଣ- ଅବିଦ୍ୟାର ନିବୃତ୍ତିରୂପ ଫଳ ଦେଖାଯାଏ । ପୁନଶ୍ଚ ଅନ୍ୟ ବାଧକ ଜ୍ଞାନ ମଧ୍ୟ ଏହାର ନାହିଁ ।

(୯) ମୂଳ-(କ) ପ୍ରାକ୍ଚାତ୍ମୈକତ୍ୱାବଗତେରବ୍ୟାହତଃ ସର୍ବଃ ସତ୍ୟାନ୍ତତବ୍ୟବହାରୋ ଲୌକିକୋ ବୈଦିକଶ୍ଚେତ୍ୟବୋଚାମ । ତସ୍ମାଦନ୍ତ୍ୟେନ ପ୍ରମାଣେନ ପ୍ରତିପାଦିତ ଆତ୍ମୈକତ୍ୱେ ସମସ୍ତସ୍ୟ ପ୍ରାଚୀନସ୍ୟ ଭେଦବ୍ୟବହାରସ୍ୟ ବାଧିତତ୍ୱାନ୍ନାନେକାତ୍ମକବ୍ରହ୍ମକଳ୍ପନାବକାଶୋଽସ୍ତି ।

(ଖ) ନନୁ ମୃଦାଦିଦୃଷ୍ଟାନ୍ତପ୍ରଣୟାତ୍ପରିଣାମବଦ୍ ବ୍ରହ୍ମ ଶାସ୍ତ୍ରସ୍ୟାଭିମତମିତି ଗମ୍ୟତେ । ପରିଣାମିନୋ ହି ମୃଦାଦୟୋଽର୍ଥା ଲୋକେ ସମଧିଗତା ଇତି ।

(ଗ) ନେତ୍ୟୁଚ୍ୟତେ । 'ସ ବା ଏଷ ମହାଜନ ଆତ୍ମାଽଜରୋଽମରୋଽମୃତୋଽଭୟୋ ବ୍ରହ୍ମ' (ବୃ ୪।୪।୨୫) 'ସ ଏଷ ନେତି ନେତ୍ୟାତ୍ମା' (ବୃ ୩-୯-୨୬), 'ଅସ୍ଥୁଲମନଣୁ'ର (ବୃ ୩-୮-୮-) ଇତ୍ୟାଦ୍ୟାଭ୍ୟଃ ସର୍ବବିକ୍ରିୟାପ୍ରତିଷେଧଶ୍ରୁତିଭ୍ୟୋ ବ୍ରହ୍ମଣଃ କୂଟସ୍ଥତ୍ୱାବଗମାତ୍ ।

(ଘ) ନ ହ୍ୟେକସ୍ୟ ବ୍ରହ୍ମଣଃ ପରିଣାମଧର୍ମତ୍ୱଂ ତଦ୍ରହିତତ୍ୱଂ ଚ ଶକ୍ୟଂ ପ୍ରତିପତ୍ତୁମ୍ । ସ୍ଥିତିଗତିବତ୍ସ୍ୟାଦିତି ଚେତ୍ । ନ । କୂଟସ୍ଥସ୍ୟେତି ବିଶେଷଣାତ୍ । ନହି କୂଟସ୍ଥସ୍ୟ ବ୍ରହ୍ମଣଃ ସ୍ଥିତିଗତିବଦନେକଧର୍ମାଶ୍ରିତତ୍ୱଂ ସମ୍ଭବତି ।

(ଙ) କୂଟସ୍ଥଞ୍ଚ ନିତ୍ୟଂ ବ୍ରହ୍ମ ସର୍ବବିକ୍ରିୟାପ୍ରତିଷେଧାଦିତ୍ୟବୋଚାମ । ନ ଚ ଯଥା ବ୍ରହ୍ମଣ ଆତ୍ମୈକତ୍ୱଦର୍ଶନଂ ମୋକ୍ଷସାଧନମେବଂ ଦିଃ ଜଗଦାକାର ପରିଣାମିତ୍ୱଦର୍ଶନମପି ସ୍ୱତନ୍ତ୍ରମେବ କସ୍ମୈଚିତ୍ ଫଳାୟାମଭିପ୍ରେୟତେ । ପ୍ରମାଣାଭାବାତ୍ । କୂଟସ୍ଥବ୍ରହ୍ମାତ୍ମତ୍ୱବିଜ୍ଞାନାଦେବ ହି ଫଳଂ ଦର୍ଶୟତି ଶାସ୍ତ୍ରମ୍- 'ସ ଏଷ ନେତି ନେତ୍ୟାତ୍ମା' ଉତ୍ୟୁପକ୍ରମ୍ୟ 'ଅଭୟଂ ବୈଜନକ ପ୍ରାପ୍ତୋଽସି (ବୃ୪-୨୪) ଇତ୍ୟେବଂ ଜାତୀୟକମ୍ ।

(୯) ଭାଷାଂତର-(କ) କିନ୍ତୁ ଆମ୍ଭମାନଙ୍କର ବକ୍ତବ୍ୟ ଯେ- ଆତ୍ମୈକତ୍ୱଜ୍ଞାନର ପୂର୍ବରୁ ଲୌକିକ ଓ ବୈଦିକ, ସତ୍ୟ ଓ ମିଥ୍ୟା ସବୁବ୍ୟବହାର ଅବାଧିତ ରହେ, କାରଣ- ସର୍ବୋତ୍କୃଷ୍ଟ ଅନ୍ତିମପ୍ରମାଣ ଦ୍ୱାରା ଆତ୍ମୈକତ୍ୱ ପ୍ରତିପାଦିତ ହେଲେ ତାହାର ପୂର୍ବରୁ ଭୋକ୍ତୃ ଭୋଗ୍ୟାତ୍ମକ ସମସ୍ତ ଭେଦ ବ୍ୟବହାର ବାଧିତ ହେବାରୁ ଅନେକାତ୍ମକ ବ୍ରହ୍ମର କଳ୍ପନାରେ ଅବକାଶ ରହେନାହିଁ ।

(ଖ) କିନ୍ତୁ ମୃଦାଦି ଦୃଷ୍ଟାନ୍ତ ଦେବାହେତୁ ଏଠାରେ ଏହିଜ୍ଞାନ ହୁଏ- କିପରିଣାମି ବ୍ରହ୍ମହିଁ ଶାସ୍ତ୍ରର ଅଭିମତ ଅଟେ । କାରଣ-ସଂସାରରେ ମୃତ୍ତିକାଦି ପଦାର୍ଥ ହିଁ ପରିଣାମୀ ବୋଲି ନିଶ୍ଚିତ କରାଯାଇଛି ।

(ଗ) ପରନ୍ତୁ ଏହିପରି ହୁଏ ନାହିଁ- 'ସ ବା ଏଷ' (ସେ ଏହି ମହାନ୍ ଅଜନ୍ମ, ଆତ୍ମା, ଅଜର, ଅମର ଅମୃତ ଏବଂ ଅଭୟ ବ୍ରହ୍ମ ଅଟେ) 'ସ ଏଷ' (ସେ ଏହା ନୁହେଁ, ଏହା ନୁହେଁ (ଏହିପରି ଅନ୍ୟର ନିଷେଧ ଦ୍ୱାରା ମଧୁକାଣ୍ଡରେ ଆତ୍ମା ନିର୍ଦ୍ଦିଷ୍ଟ ହୁଏ) 'ଅସ୍ଥୂଳଃ' 'ସ୍ଥୂଳ ନୁହେଁ କି ସୂକ୍ଷ୍ମ ନୁହେଁ' ଇତ୍ୟାଦି ସବୁ ବିକ୍ରିୟାର ପ୍ରତିଷେଧକ ଶ୍ରୁତିଗୁଡ଼ିକ ଦ୍ୱାରା ବ୍ରହ୍ମକୂଟସ୍ଥ ବୋଲି ଜଣାପଡ଼େ ।

(ଘ) ଏକ ବ୍ରହ୍ମକୁ ପରିଣାମଧର୍ମ ଯୁକ୍ତ ଓ ପରିଣାମ ଧର୍ମବିହୀନ ରୂପରେ ସ୍ୱୀକାର କରାଯାଏ ନାହିଁ । 'ଯଦି ଏହା ସ୍ଥିତି ଓ ଗତିରେ ସମାନ ବୋଲି ସମାନ ବୋଲି କୁହ, ତେବେ ମଧ ତାହା ଠିକ୍ ନୁହେଁ । କାରଣ- 'କୂଟସ୍ଥସ୍ୟ' (କୂଟସ୍ଥର) ବୋଲି ବିଶେଷଣ ଦିଆଯାଇଛି । କୂଟସ୍ଥ ବ୍ରହ୍ମର ସ୍ଥିତି ଓ ଗତି ସଦୃଶ ଅନେକ ଧର୍ମର ଆଶ୍ରୟ ହୁଏ ନାହିଁ ।

(ଙ) ଏଠାରେ ଆମ୍ଭେ ଏହା କହୁଁ ଯେ ଜନ୍ମାଦି ସବୁ ବିକ୍ରିୟାଗୁଡ଼ିକର ପ୍ରତିଷେଧ ଦ୍ୱାରା ବ୍ରହ୍ମକୂଟସ୍ଥ ଓ ନିତ୍ୟ ଅଟେ । ଯେପରି ବ୍ରହ୍ମର ଆତ୍ମୈକତ୍ୱଜ୍ଞାନ ମୋକ୍ଷର ସାଧନ ହୁଏ, ସେହିପରି ବ୍ରହ୍ମର ଜଗତ୍ ରୂପରେ ପରିଣାମିତ୍ୱଦର୍ଶନ ସ୍ୱତନ୍ତ୍ରଭାବରେ କୌଣସି ଫଳ ପାଇଁ ଅଭିପ୍ରେତ ନୁହେଁ । କାରଣ-ସେହି ବିଷୟରେ କୌଣସି ପ୍ରମାଣ ନାହିଁ । 'ସ ଏଷ ନେତି' ଏହି ଉପକ୍ରମ କରି 'ଅଭୟ ବୈ' (ଯାଜ୍ଞବଲ୍କ୍ୟ ହେ ଜନକ ତୁମ୍ଭେ ଅଭୟ ବ୍ରହ୍ମକୁ ପାଇଛ) ଏହି ପ୍ରକାର ଶାସ୍ତ୍ର କୂଟସ୍ଥ ବ୍ରହ୍ମାତ୍ମତ୍ୱ ବିଜ୍ଞାନ ଦ୍ୱାରା ମୋକ୍ଷରୂପ- ଫଳକୁ ଦେଖାଏ ।

(୧୦) ମୂଳ-(କ) ତତ୍ରୈତତ୍ସିଦ୍ଧଂ ଭବତିବ୍ରହ୍ମପ୍ରକରଣେ ସର୍ବଧର୍ମ ବିଶେଷ ରହିତ ବ୍ରହ୍ମଦର୍ଶନାଦେବ ଫଳସିଦ୍ଧୌ ସତ୍ୟାଂ ଯତ୍ତତ୍ରାଫଳଂ ଶ୍ରୂୟତେ ବ୍ରହ୍ମଣୋ ଜଗଦାକାର- ପରିଣାମିତ୍ୱାଦି ତଦ୍ ବ୍ରହ୍ମଦର୍ଶନୋପାୟତ୍ୱେନୈବ ବିନିଯୁଜ୍ୟତେ, ଫଳବତ୍ ସଂନିଧାବଫଳଂ ତଦଙ୍ଗଂମିତିବତ୍ । ନତୁ ସ୍ୱତନ୍ତ୍ରଂ ଫଳାୟକଳ୍ପ୍ୟତ ଇତି । ନହି ପରିଣାମ -ବତ୍ୱବିଜ୍ଞାନାତ୍ ପରିଣାମବତ୍ୱମାତ୍ମନଃ ଫଳଂ ସ୍ୟାଦିତି ବକ୍ତୁଂଯୁକ୍ତମ୍, କୂଟସ୍ଥନିତ୍ୟତ୍ୱାନ୍ ମୋକ୍ଷସ୍ୟ ।



(ଖ) କୂଟସ୍ଥବ୍ରହ୍ମାତ୍ମବାଦିନ ଏକତ୍ୱୈକାନ୍ତ୍ୟା ଦୀଶିତ୍ରୀଶିତବ୍ୟାଭାବ ଈଶ୍ୱର-କାରଣପ୍ରତିଜ୍ଞାବିରୋଧ ଇତି ଚେତ୍ । ନ । ଅବିଦ୍ୟାତ୍ମକନାମରୂପ ବୀଜବ୍ୟାକରଣା-ପେକ୍ଷତ୍ୱାତ୍ସର୍ବଜ୍ଞତ୍ୱସ୍ୟ ।

(ଗ) 'ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ' (ତୈ ୨-୧) ଇତ୍ୟାଦି ବାକ୍ୟେଭ୍ୟୋ ନିତ୍ୟଶୁଦ୍ଧବୁଦ୍ଧମୁକ୍ତସ୍ୱରୂପାତ୍ ସର୍ବଜ୍ଞାତ୍ ସର୍ବଶକ୍ତେରୀଶ୍ୱରଜ୍ଜଗଜ୍ଜନିସ୍ଥିତି ପ୍ରଳୟା ନାଚେତନାତ୍ ପ୍ରଧାନାଦନ୍ୟସ୍ମାଦ୍ ବେଦ୍ୟେଷୋଽର୍ଥଃ ପ୍ରତିଜ୍ଞତଃ 'ଜନ୍ମାଦ୍ୟସ୍ୟ ଯତଃ' (ବ୍ର-ସୂ ୧-୧-୨) ଇତି । ସା ପ୍ରତିଜ୍ଞା ତଦବସ୍ଥୈବନ ତଦ୍ବିରୁଦ୍ଧୋଽର୍ଥଃ ପୁନରିହୋଚ୍ୟତେ ।

(ଘ) କଥଂ ନୋଚ୍ୟତେଽତ୍ୟନ୍ତମାତ୍ମାନ ଏକତ୍ୱମଦ୍ୱିତୀୟତ୍ୱଂ ଚ ବ୍ରୁବତା । ଶୃଣୁ ଯଥା ନୋଚ୍ୟତେ । ସର୍ବ ଜ୍ଞସ୍ୟେଶ୍ୱରସ୍ୟାତ୍ମଭୂତ ଇବାବିଦ୍ୟାକଳ୍ପିତେ ନାମରୂପେ ତତ୍ତ୍ୱାନ୍ୟତ୍ୱାଭ୍ୟାମନିର୍ବଚନୀୟେ ସଂସାର ପ୍ରପଞ୍ଚବୀଜଭୂତେ ସର୍ବଜ୍ଞସ୍ୟେଶ୍ୱରସ୍ୟ ମାୟାଶକ୍ତିଃ ପ୍ରକୃତିରିତ ଚ ଶ୍ରୁତିସ୍ମୃତ୍ୟୋରଭିଳପ୍ୟେତେ ।

(ଙ) ତାଭ୍ୟାମନ୍ୟଃ ସର୍ବଜ୍ଞଃ ଈଶ୍ୱର ଆକାଶେ ବୈମରୂନାମରୂପୟୋର୍ନିର୍ବହିତା ଯଦନ୍ତପ 'ତଗବ୍ରହ୍ମ' (ଛ ୮-୧୪-୧) ଇତି ଶ୍ରୁତେଃ । ବନାମରୂପେ ବ୍ୟାକରବାଣି' (ଛ ୬-୩୨-) । ସର୍ବାଣି ରୂପାଣି ବିଚିନ୍ତ୍ୟ ଧୀରୋ ନାମାନୀ କୃତ୍ୱାଽଭିବଦନ୍ୟଦାସ୍ତେଂ (ତୌ.ଆ ୩-୧୨-୭) ଏକ ବୀଜଂ ବହୁଧା ଯଃ କରୋତି' (ଶ୍ୱେ-୩-୧୨) ଇତ୍ୟାଦିଶ୍ରୁତିଭ୍ୟଶ୍ଚ ।

(ଚ) ଏବମବିଦ୍ୟକୃତନାମରୂପୋପାଧ୍ୟନୁରୋଧୀଶ୍ୱରୋ ଭବତି, ବ୍ୟୋମେବା ଘଟକରକାଦ୍ୟୁପାଧ୍ୟନୁରୋଧି । ସ ଚ ସ୍ୱାତ୍ମଭୂତାନାନେବ ଘଟାକାଶସ୍ଥାନୀୟା-ନୁବିଦ୍ୟାପତ୍ୟୁପସ୍ଥା ପିତନାମରୂପକୃତ କର୍ଯ୍ୟକରଣଂ ଘୋତାନୁରୋଧିନୋ ଜୀବାଖ୍ୟାନ୍ ବିଜ୍ଞାନାତ୍ମନଃ ପ୍ରତୀଷ୍ଟେ ବ୍ୟବହାରବିଷୟେ ।

(ଛ) ତଦେବମବିଦ୍ୟାତ୍ମକୋପଧିପରିଚ୍ଛେଦାପେକ୍ଷମେବେଶ୍ୱରସ୍ୟେ ଶ୍ୱରତ୍ୱଂ ସର୍ବଜ୍ଞତ୍ୱଂ ସର୍ବଶକ୍ତିତ୍ୱଞ୍ଚନ ପରମାର୍ଥତୋ ବିଦ୍ୟୟା ପାସ୍ତସକର୍ବୋପାଧିସ୍ୱରୂପ ଆତ୍ମନୀଶିତ୍ରୀଶିତବ୍ୟସର୍ବଜ୍ଞାତ୍ୱାଦିବ୍ୟବହାର ଉପପଦ୍ୟତେ ।

**(୧୦) ଭାଷାଂତର**-(କ) ସେଠାରେ ଏହି ସିଦ୍ଧାନ୍ତ-ବ୍ରହ୍ମପ୍ରକରଣରେ ସବୁଧର୍ମ ବିଶେଷରହିତ ବ୍ରହ୍ମଜ୍ଞାନ ଦ୍ୱାରା ଫଳସିଦ୍ଧ ହେଲାପରେ ସେହି ପ୍ରକରଣରେ ବ୍ରହ୍ମର ଯେଉଁ ଅଫଳ ଜଗଦ୍ ରୂପଦ୍ୱାରା ପରିଣାମିତ୍ୱ ସିଦ୍ଧ ହୁଏ, ସେହି ବ୍ରହ୍ମରୂପ ଦର୍ଶନର ଉପାରୂପାନ୍ତର ଦ୍ୱାରା ହୁଏ । ଯେପରି ଫଳଯୁକ୍ତକର୍ମର ସନ୍ନିଧିରେ ଅଫଳ । ତାର ଅଙ୍ଗ ହୁଏ । ପରନ୍ତୁ ସ୍ୱତନ୍ତ୍ରରୂପରେ ଫଳଦେବା ପାଇଁ ତାହାର କଳ୍ପନା କରାଯାଏ ନାହିଁ । ପରିଣାମିବତ୍ତ୍ୱର ବିଜ୍ଞାନ ଦ୍ୱାରା ଆତ୍ମାରେ ପରିଣାମିବତ୍ୱ ଫଳ ହୁଏ ବୋଲି କହିବା ଠିକ୍ ନୁହେଁ । କାରଣ-ମୋକ୍ଷକୂଟସ୍ଥ ଓ ନିତ୍ୟ ଅଟେ ।

(ଖ) ଯଦି କହଯେ- କୂଟସ୍ଥ ବ୍ରହ୍ମାତ୍ମବାଦୀମତରେ ଏକାନ୍ତିକଭାବେ ଏକତ୍ୱ ହେଲେ ଈଶିତା ଓ ଈଶିତବ୍ୟର ଅଭାବ ହେଲେ ଈଶ୍ୱର ଜଗତ୍‌ର କାରଣ ହୁଏ । ତେଣୁ ଏହି ପ୍ରତିଜ୍ଞା ଦ୍ୱାରା କଣ ବିରୋଧ ହୁଏ ? ସେ ବିରୋଧ ହୁଏ ନାହିଁ, କାରଣ-ସର୍ବତତ୍ତ୍ୱକୁ ଅବିଦ୍ୟାତ୍ମକ ନାକରୂପ-ବୀଜକୁ ଅଭିବ୍ୟକ୍ତ କରିବା ପାଇଁ ସେ ଅପେକ୍ଷା କରେ ।

(ଗ) 'ତସ୍ମାଦ୍ ବା' (ଏହି ଆତ୍ମାଠାରୁ ଆକାଶ ଉତ୍ପନ୍ନ ହେଲା) ଇତ୍ୟାଦି ବାକ୍ୟଦ୍ୱାରା ନିତ୍ୟ, ଯୁଦ୍ଧ, ବୁଦ୍ଧ, ମୁକ୍ତସ୍ୱରୂପ, ସର୍ବଜ୍ଞ, ସର୍ବଶକ୍ତିଯୁକ୍ତ ଈଶ୍ୱରଠାରୁ ସଂସାରର ଜନ୍ମ, ସ୍ଥିତି ଓ ପ୍ରଳୟ ହୁଏ । କିନ୍ତୁ ଅଚେତନ ପ୍ରଧାନଠାରୁ ବା ଅନ୍ୟକାହାଠାରୁ ନୁହେଁ । ଏହି ଅର୍ଥ 'ଜନ୍ମାଦ୍ୟସ୍ୟ ଯତଃ' ସୂତ୍ରରେ ପ୍ରତିଜ୍ଞା କରାଯାଇଅଛି । ତାହାର ପ୍ରତିଜ୍ଞା ଠିକ୍ ସେହିପରି କରାଯାଇଅଛି । କିନ୍ତୁ ଆତ୍ମୈକତ୍ୱପ୍ରତିପାଦକଶ୍ରୁତିରେ ତାହାଠାରୁ କୌଣସି ବିରୋଧ କୁହାଯାଇନାହିଁ ।

(ଘ) ଆତ୍ମଶ ଅତ୍ୟନ୍ତ ଏକ ଓ ଅଦ୍ୱିତୀୟ ଅଟେ- ଏହି ପ୍ରକାର ପ୍ରମାଣ କରୁଥିବା ତୁମ୍ଭେମାନେ ଏହି ପ୍ରତିଜ୍ଞା କାହିଁକି ବିରୋଧ କରାତୁ ନଗଲା ବୋଲି କହୁଛ ? ତେବେ ଶୁଣ 'ସର୍ବଜ୍ଞ ଈଶ୍ୱର ହେଉଛି ଆତ୍ମଭୂତ, ଅବିଦ୍ୟାଦ୍ୱାରା କଳ୍ପିତ, ସତ୍ ଓ ଅସତ୍‌ଠାରୁ ବିଲକ୍ଷଣ, ଅନିର୍ବଚନୀୟ ଏବଂ ସଂସାରପ୍ରପଞ୍ଚର ବୀଜଭୂତ, ନାମ-ରୂପ-ସର୍ବଜ୍ଞ-ମାୟାଶକ୍ତି ପ୍ରକୃତିରେ ରୂପରେ ବିଦ୍ୟମାନ ବୋଲି ଶ୍ରୁତି ଓ ସ୍ମୃତି କହେ ବୋଲି କୁହାଯାଇପାରେ ନାହିଁ ।

(ଙ) ଏହି ଦୁଇଗୁଣଠାରୁ ସର୍ବଜ୍ଞ ଈଶ୍ୱର ଭିନ୍ନ ଅଟେ । କାରଣ 'ଆକାଶ ବୈ' (ଆକାଶ ନାମଦ୍ୱାରା ପ୍ରସିଦ୍ଧ ଆତ୍ମା ନାମ ଓ ରୂପର ବ୍ୟାକର୍ତ୍ତା ଅଟେ ଅର୍ଥାତ୍ ଏହାକୁ ସ୍ଥୁଳ ରୂପରେ ଅଭିବ୍ୟକ୍ତ କରେ । ସେହି ଦୁଇଟି ଯାହାର ଅଭ୍ୟନ୍ତର ଅଟେ ସେ ହିଁ ବ୍ରହ୍ମ) ବୋଲି ବେଦ କହେ । 'ନାମରୂପେ' । ମୁଁ ନାମ ଓ ରୂପକୁ ଅଭିବ୍ୟକ୍ତି କରିବ, 'ସର୍ବାଣି ଧୀରେ ପରମେଶ୍ୱର ସବୁରୂପକୁ ଉତ୍ପନ୍ନ କରି ସେହି ସମସ୍ତଙ୍କର ନାମ ରଖି ସେଠାରେ ପ୍ରବେଶକରି ବଦନାଦିକୁ ବ୍ୟବହାର କରି ସ୍ଥିରହୋଇ ରହେ ।' 'ଏକଂବୀଜମ୍' (ଯିଏ ଏକବୀଜ ସେ ଅନେକରୂପ କରେ) ଇତ୍ୟାଦି ବେଦବାକ୍ୟ ଅଛି ।

(ଚ) ଯେପରି ଘଟକରକାଦି ଉପାଧି ଅନୁରୋଧିର ଅନୁସାରେ ଆକାଶ ହୁଏ, ସେହିପରି ଅବିଦ୍ୟାକୃତ ନାମ ଓ ରୂପର ଅନୁରୋଧି ଈଶ୍ୱର ହୁଏ । ସେହି ଈଶ୍ୱର ଅବିଦ୍ୟା ଦ୍ୱାରା ଉପସ୍ଥାପିତ ନାମ ଓ ରୂପକୃତ ଶରୀରେନ୍ଦ୍ରିୟସଂଘାତର ଅନୁରୋଧି ଘଟାକାଶସ୍ଥାନୀୟ, ସ୍ୱାତ୍ମଭୂତ, ଜୀବାଖ୍ୟ, ବିଜ୍ଞାନାତ୍ମାଗୁଡ଼ିକ ଉପରେ ବ୍ୟବହାର ବିଷୟରେ ଶାସ କରେ ।

(ଛ) ଏହିପ୍ରକାର ଅବିଦ୍ୟାରୂପ- ଉପାଧିର ପରିଚ୍ଛେଦ ଅପେକ୍ଷ । ଈଶ୍ୱରଠାରେ ଈଶ୍ୱରତ୍ୱ, ସର୍ବଜ୍ଞତ୍ୱ ଓ ସର୍ବଶକ୍ତିମତ୍ୱ ହୁଏ । କିନ୍ତୁ ପ୍ରକୃତରେ ବିଦ୍ୟାଦ୍ୱାରା ନିରସ୍ତସମସ୍ତ ଉପାଧିସ୍ୱରୂପ ଆତ୍ମରେଈଶିତତ୍ୱ ଓ ଈଶିତବ୍ୟତ୍ୱ, ସର୍ବଜ୍ଞାତ୍ୱାଦି ବ୍ୟବହାର ଉପପନ୍ନ ହୁଏ ନାହିଁ ।



(୧୧) ମୂଳ-(କ) ତଥାଚୋକ୍ତମ୍-ଯତ୍ର ନାନ୍ୟତ୍ ପଶ୍ୟତି ନାନ୍ୟଚ୍ଛୃଣୋତି ନାନ୍ୟଦ୍ବିଜାନାତି ସ ଭୂମା' (ଛା ୭-୨୪-୧) ଇତି, 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍କେନ କଂ ପଶ୍ୟେତ୍' (ବୃ ୪-୫-୧୫) ଇତ୍ୟାଦିନା ଚ । ଏବଂ ପରମାର୍ଥାବସ୍ଥାୟାଂ ସର୍ବବ୍ୟବହାରଭାବଂ ବଦନ୍ତି ବେଦାନ୍ତାଃ ସର୍ବେ ।

(ଖ) ତଥେଶ୍ୱରଗୀତାସ୍ୱପି- 'ନ କର୍ତ୍ତୃତ୍ୱଂ ନ କର୍ମଣି ଲୋକସ୍ୟ ସୃଜତି ପ୍ରଭୂଃ । ନ କର୍ମଫଳସଂଯୋଗଂ ସ୍ୱଭାବସ୍ତୁ ପ୍ରବର୍ତ୍ତତେ । ନାଦତ୍ତେ କସ୍ୟଚିତ୍ପାପଂ ନ ଚୈବ ସୁକୃତଂ ବିଭୂଃ । ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ' (ଗୀ ୫-୧୪-୧୫) ଇତି, ପରମାର୍ଥାବସ୍ଥାୟାମୀଶିତ୍ରୀଶିତବ୍ୟାଦିବ୍ୟବହାରାଭାବଃ ପ୍ରଦର୍ଶ୍ୟତେ ।

(ଗ) ବ୍ୟବହାରାବସ୍ଥାୟାଂ ତ୍ୱକ୍ତଃ ଶ୍ରୁତାବପୀଶ୍ୱରାଦିବ୍ୟବହାରଃ 'ଏଷ ସର୍ବେଶ୍ୱର ଏଷ ଭୂତାଧିପତିରେଷ ଭୂତପାଳ ଏଷ ସେତୁର୍ବିଧରଣ ଏଷାଂ ଲୋକାନାମ ସଂଭେଦାୟ' (ବୃ ୪-୪-୨୨) ଇତି । ତଥା ଚେଶ୍ୱରଗୀତାସ୍ୱପି- 'ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜ୍ଜୁନ ତିଷ୍ଠତି । ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢାନି ମାୟୟା' (ଗୀ ୧୮-୬୧) ଇତି ।

(ଘ) ସୂତ୍ରକାରୋଽପି ପରମାର୍ଥାଭିପ୍ରାୟେଣ ତଦନନ୍ୟତ୍ୱମିତ୍ୟାହ । ବ୍ୟବହାରାଭିପ୍ରାୟେଣ ତୁ ସ୍ୟାଲ୍ଲୋକବଦିତି ମହାସମୁଦ୍ରସ୍ଥାନୀୟତାଂ ବ୍ରହ୍ମଣଃ କଥୟତି । ଅପ୍ରତ୍ୟାଖ୍ୟାୟୈବ କାର୍ଯ୍ୟପ୍ରପଞ୍ଚଂ ପରିଣାମପ୍ରକ୍ରିୟାଂ ଚାଶ୍ରୟତି ସଗୁଣେଷୂପାସନେଷୂ-ପଯୋକ୍ଷ୍ୟତ ଇତି ।

**(୧୧)** ଭାଷାଂତର-(କ) ଏହିପ୍ରକାର 'ଯତ୍ର ନାନ୍ୟତ୍ ପଶ୍ୟତି' (ସନତ୍ କୁମାର- 'ଯେଉଁଠାରେ କିଛି ଦେଖାଯାଏ ନାହିଁ, କିଛି ଶୁଣାଯାଏ କିଛି ଜାଣେ ନାହିଁ, ନାହିଁ, ସେହି ଭୂମା ବ୍ରହ୍ମ ଅଟେ) ଏବଂ 'ଯତ୍ର ତ୍ୱସ୍ୟ' (ଯେଉଁଠାରେ ଆତ୍ମବିତ୍ତ ପାଇଁ ସବୁ ଆତ୍ମା ହେଲେ ସେଠାରେ କେଉଁ ଇନ୍ଦ୍ରିୟଦ୍ୱାରା କଣ ଦେଖାଯାଏ) ଇତ୍ୟାଦି କୁହାଯାଇଛି । ଏହିପରି ପରମାର୍ଥ ଅବସ୍ଥାରେ ବେଦାନ୍ତଶାସ୍ତ୍ର ସମସ୍ତ ବ୍ୟବହାରର ଅଭାବକୁ କହେ ।

(ଖ) ଏହିପରି ଭଗଦ୍ବଗୀତାରେ 'ନ କର୍ତ୍ତୃତ୍ୱଂ' (ପରମେଶ୍ୱର ସଂସାରର କର୍ତ୍ତୃତ୍ୱ (କାର୍ଯ୍ୟ) ବା କର୍ମଫଳକୁ ସଂଯୋଗ କରେ ନାହିଁ । କିନ୍ତୁ ତାହାପାଇଁ ସ୍ୱଭାବମାୟା ହିଁ ପ୍ରବୃତ୍ତ ହୁଏ । ସେ ପରମେଶ୍ୱର କାହାର ପାପକର୍ମକୁ, କାହାର ପୁଣ୍ୟକର୍ମକୁ ଗ୍ରହଣ ଅଥବା ସଂହାର କରେ ନାହିଁ । କିନ୍ତୁ ଅଜ୍ଞାନଦ୍ୱାରା ଜ୍ଞାନ ଆବୃତ ହୁଏ, ତାହାଦ୍ୱାରା ଜୀବ ମୋହିତ ହୁଏ) ଏହିପ୍ରକାର ପରମାର୍ଥଅବସ୍ଥାରେ ଈଶତ୍ୱ ଓ ଈଶିତବ୍ୟତ୍ୱାଦିର ବ୍ୟବହାରର ଅଭାବ ଦେଖାଯାଏ ।

(ଗ) କିନ୍ତୁ ବ୍ୟବହାର ଅବସ୍ଥାରେ ଶ୍ରୁତିରେ ଈଶ୍ୱରାଦିବ୍ୟବହାର କୁହାଯାଇଅଛି- 'ଏଷଃ ସର୍ବେଶ୍ୱରଃ' (ଏହା ସର୍ବେଶ୍ୱର, ଏହିସବୁ ଭୂତଗୁଡ଼ିକର ଅଧିପତି ଏବଂ ଭୂତପାଳ) । ଏହି ଲୋକର ମର୍ଯ୍ୟାଦା ଭଙ୍ଗ ହୁଏ ନାହିଁ । ଏହି ପ୍ରୟୋଜନରେ ଏହାକୁ ଧାରଣ କରିବାହିଁ

ସେତୁ ଅଟେ) ସେପରି ଭଗବଦ୍ ଗୀତାରେ - 'ଈଶ୍ୱର ସର୍ବଭୂତାନାଂ (ହେ ଅର୍ଜ୍ଜୁନ ! ଶରୀରରୂପ ଯନ୍ତ୍ରରେ ଆରୂଢ଼ ହୋଇ ସବୁପ୍ରାଣୀମାନଙ୍କୁ ଅନ୍ତର୍ଯ୍ୟାମୀ ପରମେଶ୍ୱର ନିଜ ମାୟାରେ ତାହାର କର୍ମାନୁସାରେ ଭ୍ରମଣ କରାଇ ସବୁ ଭୂତ ପ୍ରାଣୀ ମାନଙ୍କର ହୃଦୟ ଦେଶରେ ରହେ) ।

(ଘ) ସୂତ୍ରକାର ପରମାର୍ଥର ଅଭିପ୍ରାୟ ଦ୍ୱାରା 'ତଦନନ୍ୟତ୍ୱମ୍' (କାର୍ଯ୍ୟ କାରଣର ଅନନ୍ୟତ୍ୱ (ଅଭିନ୍ନତ୍ୱ) ଅଟେ)- ଏହା କହିଛନ୍ତି । ବ୍ୟବହାରର ଅଭିପ୍ରାୟରେ କିନ୍ତୁ 'ସ୍ୟାଲ୍ଲୋକବତ୍' (ଲୋକଭଳି କାର୍ଯ୍ୟକାରଣ ବିଭାଗ ହେଉ) ଏହିପ୍ରକାର ବ୍ରହ୍ମକୁ ମହାସମୁଦ୍ରସ୍ଥାନୀୟ କୁହାଯାଇଛି ଏବଂ କାର୍ଯ୍ୟ ପ୍ରପଞ୍ଚର ପ୍ରତ୍ୟାଖ୍ୟାନ ନ କରି ସଗୁଣ ଉପାସନାଠାରେ ଉପଯୁକ୍ତ ହୁଏ । ଏହି ଅଭିପ୍ରାୟ ଦ୍ୱାରା ପରିଣାମପ୍ରକ୍ରିୟାର ଆଶ୍ରୟ ନିଅନ୍ତି ।

## भावे चोपलब्धे ॥१५॥

## ୧ । ଭାବେ ଚୋପଲବ୍ଧଃ ॥ ୨।୧।୧୫ ॥

ଚ-ଏବଂ ଭାବେ-କାରଣ ହେଲାପରେ ମଧ୍ୟ ଉପଲବ୍ଧେଃ-କାର୍ଯ୍ୟ ଉପଲବ୍ଧ ହୁଏ । ଏହାଦ୍ୱାରା କାର୍ଯ୍ୟ କାରଣଠାରୁ ଅନନ୍ୟ ବୋଲି ସିଦ୍ଧ ହୁଏ ।

(୨) ମୂଳ-(କ) ଇତଶ୍ଚ କାରଣାଦନନ୍ୟତ୍ୱଂ କାର୍ଯ୍ୟସ୍ୟ, ଯତ୍‌କାରଣଂ ଭାବ ଏବ କାରଣସ୍ୟ କାର୍ଯ୍ୟ ମୁପଲଭ୍ୟତେ ନାଭାବେ । ତଦ୍ୟଥା ସତ୍ୟାଂ ମୃଦି ଘଟ ଉପଲଭ୍ୟତେ ସତ୍ସୁଚ ତନ୍ତୁଷୁ ପଟଃ । ନ ଚ ନିୟମେନାନ୍ୟଭାବେଽନ୍ୟସ୍ୟୋପଲବ୍ଧିଃ ଦୃଷ୍ଟା । ନହ୍ୟଶ୍ୱୋ ପୋରନ୍ୟଃ ସନ୍ ଗୋର୍ଭାବ ଏବୋପଲଭ୍ୟତେ । ନ ଚ କୁଲାଳଭାବ ଏବ ଘଟ ଉପଲଭ୍ୟତେ । ସତ୍ୟପି ନିମିତ୍ତନୈମିତ୍ତିକଭାବେଽନ୍ୟତ୍ୱାତ୍ ।

(ଖ) ନନ୍ୱନ୍ୟସ୍ୟ ଭାବେଽପ୍ୟନ୍ୟସ୍ୟୋପଲବ୍ଧିର୍ନିୟତା ଦୃଶ୍ୟତେ; ଯଥାଗ୍ନି ଭାବେ ଧୂମସ୍ୟେତି । ନେତ୍ୟୁଚ୍ୟତେ । ଉଦ୍‌ବାପିତେଽପ୍ୟଗ୍ନୌ । ଗୋପାଳ ଘୁଟିକାଦିଧାରିତସ୍ୟ ଧୂମସ୍ୟ ଦୃଶ୍ୟମାନତ୍ୱାତ୍ । ଅଥ ଧୂମଂ କୟାଚିଦବସ୍ଥୟା ବିଶିଷ୍ୟାଦୀଦୃଶୋ ଧୂମୋ ନାସତ୍ୟଗ୍ନୌ ଭବତୀତି । ନୈବନାପି କଶ୍ଚିଦ୍‌ଦୋଷଃ ତଦ୍‌ଭାବାନୁରକ୍ତାଂ ହି ବୁଦ୍ଧିଂ କାର୍ଯ୍ୟକାରଣୟୋରନନ୍ୟତ୍ୱେ ହେତୁଂ ବୟଂ ବଦାମଃ । ନ ଚସାବଗ୍ନିଧୂମୟୋର୍ବିଦ୍ୟତେ ।

**(୨) ଭାଷାଂତର-** (କ) କାରଣର ଅସ୍ତିତ୍ୱରେ କାର୍ଯ୍ୟ ଉପଲବ୍ଧ ହୁଏ, ତେଣୁ କାରଣଠାରୁ କାର୍ଯ୍ୟ ଭିନ୍ନ ନୁହେଁ । କିନ୍ତୁ କାରଣର ଅଭାବରୁ କାର୍ଯ୍ୟ ଉପଲବ୍ଧି ହୁଏ ନାହିଁ । ଯଥା ମୃତ୍ତିକା ଥିବାପର୍ଯ୍ୟନ୍ତ ଘଟ ଉପଲବ୍ଧ ହୁଏ, ଏବଂ ତନ୍ତୁ ରହିଲେ ପଟ ଉପଲବ୍ଧ ହୁଏ । କିନ୍ତୁ ଅନ୍ୟ କୌଣସି କାରଣ ଥାଇ ଯେ କୌଣସି କାର୍ଯ୍ୟର ଉପଲବ୍ଧି ବିଷୟରେ କୌଣସି ନିୟମ ନାହିଁ । ଯଥା- ଅଶ୍ୱ ଗୌଠାରୁ ଭିନ୍ନ ହୋଇ ଗୌପରି ଉପଲବ୍ଧି



ହୁଏ ନାହିଁ । କୁମ୍ଭାର ନିମିତ୍ତକାରଣ ହେଲେ ମଧ୍ୟ ଘଟର ଉପଲବ୍ଧି ହୁଏ ନାହିଁ । କାରଣ-କାର୍ଯ୍ୟକାରଣଭାବ ହେଲେ ହିଁ ଦୁଇଟି (କୁମ୍ଭାର ଓ ଘଟ)ର ପରସ୍ପର ଭିନ୍ନ ହୁଏ ।

(ଖ) ପରନ୍ତୁ ଅନ୍ୟର ଅସ୍ତିତ୍ୱରେ ଅନ୍ୟର ଉପଲବ୍ଧ ନିୟମରେ ଦେଖାଯାଏ । ଯେପରି ଅଗ୍ନି ରହି ଧୂମର ଉପଲବ୍ଧ ହୁଏ । ତେଣୁ ଆମ୍ଭେ ଏଠାରେ କହୁଁ ଯେ- ଏହିପରି ହୁଏ ନାହିଁ । କାରଣ-ଅଗ୍ନିକୁ ଲିଭାଇଲା ପରେ ମଧ୍ୟ ଗୋପାଳ ଗୋଠରେ ଧୂମ ଦେଖାଯାଏ । ଯଦି ଧୂମକୁ ବିଶେଷ-ବିଶେଷଣ ଦ୍ୱାରା ବିଶ୍ଳେଷଣ କରାଗଲେ ଏହିପ୍ରକାର ଧୂମ ଅଗ୍ନିର ଅଭାବରେ ହୁଏ ନାହିଁ ବୋଲି ଜଣାଯାଏ ।

(ଗ) କିନ୍ତୁ ଏହିପରି ନିର୍ଦ୍ଦେଶ କଲେ କୌଣସି ଦୋଷ ହୁଏ ନାହିଁ, କାରଣ-କାର୍ଯ୍ୟ କାରଣର ସତ୍ତଦ୍ୱାରା ଅନୁରକ୍ତ ବୁଦ୍ଧକୁ ଆମ୍ଭେ କାର୍ଯ୍ୟ କାରଣର ଅନନ୍ୟତ୍ୱରେ ହେତୁ ବୋଲି କହୁଁ ।

(୩) ମୂଳ-(କ) 'ଭାବାଚ୍ଚୋପଲବ୍ଧେ' ଋିତି ବା ସୂତ୍ରମ୍ । ନ କେବଳଂ ଶବ୍ଦାଦେବ କାର୍ଯ୍ୟକାରଣୟୋରନ୍ୟତ୍ୱଂ, ପ୍ରତ୍ୟକ୍ଷୋପଲବ୍ଧିଭାବାଚ୍ଚ ତୟୋରନନ୍ୟତ୍ୱମିତ୍ୟର୍ଥଃ ।

(ଖ) ଭବତି ହି ପ୍ରତ୍ୟକ୍ଷୋପଲବ୍ଧିଃ କାର୍ଯ୍ୟକାରଣୟୋରନନ୍ୟତ୍ୱେ । ତଦ୍ୟଥାତନ୍ତୁ ସଂସ୍ଥାନେ ପଟେ ତନ୍ତୁ ବ୍ୟତିରେକେଣ ପଟୋ ନାମ କାର୍ଯ୍ୟଂ ନୈବୋପଲଭ୍ୟତେ କେବଳାସ୍ତୁ ତନ୍ତବ ଆତାବିତାନବନ୍ତଃ ପ୍ରତ୍ୟକ୍ଷମୁପଲଭ୍ୟନ୍ତେ, ତଥା ତନ୍ତୁଷ୍ୱଂଶବୋଽଂଶୁଷ୍ୱତଦବୟବାଃ ।

(ଗ) ଅନୟା ପ୍ରତ୍ୟକ୍ଷୋପଲବ୍ଧ୍ୟା ଲୋହିତଶୁକ୍ଳକୃଷ୍ଣାନି ତ୍ରୀଣି ରୂପାଣି ତତୋ ବାୟୁମାତ୍ର ମାକାଶମାତ୍ରଂ ଚେତ୍ୟନୁମେୟମ୍ (ଛା ୬-୪) ତତଃ ପରଂ ବ୍ରହ୍ମୈକମେବାଦ୍ୱିତୀୟଂ, ତତ୍ର ସର୍ବପ୍ରମାଣାନାଂ ନିଷ୍ଠାମବୋଚ୍ଚମ ।

**(୩) ଭାଷାଂତର-** (କ) ଅଥବା 'ଭାବେ ଚ୍ଚୋପଲବ୍ଧେଃ' ଏହି ସୂତ୍ର । କେବଳ ଶ୍ରୁତି ଦ୍ୱାରା ହିଁ କାର୍ଯ୍ୟକାରଣର ଅନନ୍ୟତ୍ୱ ହୁଏ ନାହିଁ; କିନ୍ତୁ ପ୍ରତ୍ୟକ୍ଷୋପଲବ୍ଧି ଭାବଦ୍ୱାରା ସେମାନଙ୍କର ଅନନ୍ୟତ୍ୱ ହୁଏ, ଏହାହିଁ ଅର୍ଥ ।

(ଖ) କାର୍ଯ୍ୟକାରଣର ଅନନ୍ୟତ୍ୱରେ ପ୍ରତ୍ୟକ୍ଷୋପଲବ୍ଧି ହୁଏ । ଯଥା- ତନ୍ତୁର ବିଶେଷରଚନାତ୍ମକ ପଟରେ ତନ୍ତୁଭିନ୍ନ ପଟନାମକ କାର୍ଯ୍ୟର ଉପଲବ୍ଧି ହୁଏ ନାହିଁ । କେବଳ ଆତାନବିତାନ (ଇତସ୍ତତଭାବେ ରହିଥିବା) ତନ୍ତୁ ହିଁ ପ୍ରତ୍ୟକ୍ଷଭାବରେ ଉପଲବ୍ଧ ହୁଏ । ଏହିପ୍ରକାର ଅବୟବୀ ତନ୍ତୁଗୁଡ଼ିକରେ ଅନେକ ଅବୟବରୂପ ଅଂଶ, ସେହି ଅଂଶରେ ସେମାନଙ୍କର ଅବୟବ ଉପଲବ୍ଧ ହୁଏ ।

(ଗ) ଏହି ପ୍ରତ୍ୟକ୍ଷ ଉପଲବ୍ଧ ଦ୍ୱାରା ଲୋହିତ, ଶୁକ୍ଳ ଓ କୃଷ୍ଣ- ଏହି ତିନିରୂପ ହୁଏ । ତାପରେ କେବଳ ବାୟୁ ଓ ଆକାଶମାତ୍ରା ହୁଏ- ଏହାହିଁ ଅନୁମାନ କରିବା ଉଚିତ ।

ଏହାପରେ କେବଳ ଅଦ୍ୱିତୀୟ ପରଂବ୍ରହ୍ମ ହିଁ ଶେଷରେ ରହେ । ସେଥିରେ ସବୁ ପ୍ରାଣୀର ପର୍ଯ୍ୟବସାନ (ବିଲୟ) ବୋଲି ଆମ୍ଭେ କହୁଁ ।

**सत्त्वाच्चावरस्य ॥१६॥**

**୧ । ସତ୍ତ୍ୱାଚ୍ଚାବରସ୍ୟ ॥ ୨।୧।୧୬ ॥**

ଅବରସ୍ୟ-କାର୍ଯ୍ୟର, ସତ୍ତ୍ୱାତ୍-'ଆତ୍ମା ବା ଇଦମ୍' ଇତ୍ୟାଦି ଶ୍ରୁତିଦ୍ୱାରା ଉତ୍ପତ୍ତିର ପୂର୍ବସତ୍ତା ହିଁ ପ୍ରତୀତ ହୁଏ । ଏହାଦ୍ୱାରା କାର୍ଯ୍ୟର ସତ୍ତା କାରଣଠାରୁ ପୃଥକ୍ ନୁହେଁ ବୋଲି ସିଦ୍ଧ ହୁଏ ।

(୨) ମୂଳ-(କ) ଇତଶ୍ଚ କାରଣାତ୍ କାର୍ଯ୍ୟସ୍ୟାନନ୍ୟତ୍ୱଂ, ଯତ୍କାରଣଂ ପ୍ରାଗୁତ୍ପତ୍ତେଃ, କାରଣାତ୍ମନୈବ କାରଣେ ସତ୍ତ୍ୱମବରକାଳୀନସ୍ୟ କାର୍ଯ୍ୟସ୍ୟ ଶ୍ରୂୟତେ । 'ସଦେବ ସୋମ୍ୟେଦମଗ୍ର ଅସୀତ୍' (ଛା ୬-୨-୧), 'ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍' (ଐ. ଆ-୨-୪-୧-୧) ଇତ୍ୟାଦାବିଦଂଶବ୍ଦଗୃହୀତସ୍ୟ କାର୍ଯ୍ୟସ୍ୟ କାରଣେନ ସାମାନାଧିକରଣ୍ୟାତ୍ ।

(ଖ) ଯଚ୍ଚ ଯଦାତ୍ମନା ଯତ୍ର ନ କର୍ତ୍ତତେ ନ ତତ୍ତତ ଉତ୍ପଦ୍ୟତେ, ଯଥା ସିକତାଭ୍ୟ ସ୍ତୈଳମ୍ । ତସ୍ମାତ୍ପ୍ରାଗୁତ୍ପତ୍ତେରନନ୍ୟତ୍ୱାଦୁତ୍ପନ୍ନମପ୍ୟନନ୍ୟଦେବ କାରଣାତ୍କାର୍ଯ୍ୟ ମିତ୍ୟବଗମିତେ । ମଥାଚ କାରଣଂ ବ୍ରହ୍ମ ତ୍ରିଷୁ କାଳେଷୁ ସତ୍ତ୍ୱଂ ନ ବ୍ୟଭିଚରତ୍ୟେବଂ କାର୍ଯ୍ୟମପି ଜଗତ୍ତ୍ରିଷୁ କାଳେଷୁ ସତ୍ତ୍ୱଂ ନ ଚ୍ୟଭିଚ୍ଚରତି । ଏକଞ୍ଚ ପୁନଃ ସତ୍ତ୍ୱମତୋଽପ୍ୟନନ୍ୟତ୍ୱଂ କାରଣାତ୍କାର୍ଯ୍ୟସ୍ୟ ।

**(୨) ଭାଷାଂତର-(କ)** ତେଣୁ କାରଣଠାରୁ କାର୍ଯ୍ୟ ଭିନ୍ନ ନୁହେଁ । କାରଣ- ଅର୍ବାଚୀନ କାର୍ଯ୍ୟର ଉତ୍ପତ୍ତି ପୂର୍ବରୁ କାରଣରୂପରେ କାରଣର ସତ୍ତା ଶୁଣାଯାଏ । 'ସଦେବ ସୋମ୍ୟ !! (ହେ ସୋମ୍ୟ ଉତ୍ପତ୍ତିର ପୂର୍ବରୁ ଏହି ଜଗତ୍ ସଦ୍ରୂପ ଥିଲା) ଏବଂ 'ଆତ୍ମାବାଽରେ' (ଉତ୍ପତ୍ତିର ପୂର୍ବରୁ ଏହିଜଗତ୍ କେବଳ ଆତ୍ମରୂପ ହିଁ ଥିଲା) ଇତ୍ୟାଦି ଶ୍ରୁତିଦ୍ୱାରା 'ଇଦମ୍' ଶବ୍ଦଦ୍ୱାରା ଗୃହୀତ କାର୍ଯ୍ୟର କାରଣ ସହିତ ସାମାନଧିକରଣ୍ୟ କୁହାଯାଇଛି ।

(ଖ) ଯାହା ଯେଉଁ ସ୍ୱରୂପଠାରୁ ଯେଉଁଠାରେ ହୁଏ ନାହିଁ, ସେ ତାହାଠାରୁ ଉତ୍ପନ୍ନ ହୁଏ ନାହିଁ । ଯେପରି ବାଲିରୁ ତେଲ ଜାତ ହୁଏ ନାହିଁ । ତେଣୁ ଏଠାରେ ଅବଗତ ହୁଏ କି ଉତ୍ପତ୍ତିର ପୂର୍ବରୁ ଅଭିନ୍ନ ହେଲେ ଉତ୍ପତ୍ତି ହେଉଥିବା କାର୍ଯ୍ୟ ମଧ୍ୟ କାରଣଠାରୁ ଅଭିନ୍ନ ହୁଏ । ଯେପରି କାରଣ ବ୍ରହ୍ମ ତିନିକାଳରେ ସତ୍ତାଠାରୁ ବ୍ୟଭିଚରିତ (ପାର୍ଥକ୍ୟ) ହୁଏ ନାହିଁ । ସେପରି କାର୍ଯ୍ୟ ଜଗତ୍ ମଧ୍ୟ ତିନିକାଳରେ ସତ୍ତାଠାରୁ ବ୍ୟଭିଚରିତ ହୁଏ ନାହିଁ । ଏହିପ୍ରକାର ସତ୍ତା ଏକ ଅଟେ । ତେଣୁ କାର୍ଯ୍ୟ କାରଣଠାରୁ ଭିନ୍ନ ନୁହେଁ ।



## असद्व्यपदेशान्नेति चेन्न धर्मान्तरेण वाक्यशेशात् ॥१७॥

## ୧ । ଅସଦ୍‌ବ୍ୟପଦେଶାନ୍ନେତି ଚେନ୍ନ ଧର୍ମାନ୍ତରେଣ ବାକ୍ୟଶେଷାତ୍ ॥୨ । ୧ । ୧୭ ॥

ଅସଦ୍‌ବ୍ୟପଦେଶାତ୍- 'ଅସଦ୍‌ବା ଇଦମଗ୍ର ଆସୀତ୍' ଇତ୍ୟାଦିଶ୍ରୁତି ଦ୍ୱାରା 'ଉତ୍ପତ୍ତିର ପୂର୍ବରୁ ଦୃଶ୍ୟମାନଜଗତ୍ ଅସତ୍ ଥିଲା ବୋଲି ପ୍ରତିପାଦିତ ହୁଏ । ନ-ତେଣୁ କାର୍ଯ୍ୟ କରଣରୂପରେ ସତ୍ତାଯୁକ୍ତ ନୁହେଁ । ଇତି ଚେନ୍ନ-ଏହା ଠିକ୍ ନୁହେଁ । କାରଣ-ଧର୍ମାନ୍ତରେଣ-ଏହି କଥନ ଅନ୍ୟଧର୍ମଠାରୁ ଅବ୍ୟାକୃତରୂପ ହୁଏ । ବାକ୍ୟଶେଷାତ୍-କାରଣ- 'ତତ୍‌ସତ୍ ଆସୀତ୍' ଇତ୍ୟାଦି ବାକ୍ୟଶେଷ ଅଟେ । ତେଣୁ କାର୍ଯ୍ୟର ସତ୍ତା କାରଣଠାରୁ ପୃଥକ୍ ନୁହେଁ ।

(୨) ମୂଳ-(କ) ନନୁ କ୍ୱଚିଦସତ୍ତ୍ୱମପି ପ୍ରାଗୁତ୍ପତ୍ତେଃ କାର୍ଯ୍ୟସ୍ୟ ବ୍ୟପଦିଶତି ଶ୍ରୁତିଃ 'ଅସଦେବେଦମଗ୍ର ଆସୀତ୍' (ଛା ୩-୧୯-୧) ଇତି; 'ଅସଦ୍‌ବା ଇଦମଗ୍ର ଆସୀତ୍' (ତୈ୍ତ୍ରି ୨-୭-୧) ଇତି ଚ । ତସ୍ମାଦସଦ୍‌ବ୍ୟପଦେଶାନ୍ନ ପ୍ରାଗୁତ୍ପତ୍ତେଃ କାର୍ଯ୍ୟସ୍ୟ ସତ୍ତ୍ୱମିତି ଚେତ୍ ।

(ଖ) ନେତି ବ୍ରୂମଃ । ନହ୍ୟୟମତ୍ୟନ୍ତାସତ୍ତ୍ୱାଭିପ୍ରାୟେଣ ପ୍ରାଗୁତ୍ପତ୍ତେଃ କାର୍ଯସ୍ୟାସଦ୍ ବ୍ୟପଦେଶଃ,

(ଗ) କିଂ ତର୍ହି ବ୍ୟାକୃତନାମରୂପତ୍ୱାଦ୍ ଧର୍ମାଦବ୍ୟାକୃତ ନାମରୂପତ୍ୱଂ ଧର୍ମାନ୍ତରଂ ତେନ ଧର୍ମାନ୍ତରେଣାୟମସଦ୍ ବ୍ୟପଦେଶଃ ପ୍ରାଗୁତ୍ପତ୍ତେଃ ସତ ଏବ କାର୍ଯ୍ୟସ୍ୟ କାରଣ ରୂପେଣାନନ୍ୟତ୍ୱସ୍ୟ ।

(ଘ) କଥମେତଦବଗମ୍ୟତେ । ବାକ୍ୟଶେଷାତ୍ । ଯଦୁପକ୍ରମେ ସଂଦିଗ୍‌ଧାର୍ଥଂ ବାକ୍ୟଂ ତଚ୍ଛେଷାନ୍ନିଶ୍ଚୀୟତେ । ଇହଚ ତାବତ୍ 'ଅସଦେବେଦମଗ୍ର ଆସୀତ୍' ଇତ୍ୟସଚ୍ଛବ୍ଦେନୋପକ୍ରମେ ନିର୍ଦ୍ଦିଷ୍ଟଂ ଯତ୍ତଦେବ ପୁନସ୍ତଚ୍ଛବ୍ଦେନ ପରାମୃଶ୍ୟ ସଦିତି ବିଶିନଷ୍ଟି 'ତତ୍‌ସଦାସୀତ୍' ଇତି । ଅସତଶ୍ଚ ପୂର୍ବାପରକାଲାସମ୍ବନ୍ଧାଦାସୀଚ୍ଛବ୍ଦାନୁପପତ୍ତେଶ୍ଚ ।

(ଙ) 'ଅସଦ୍ ବା ଇଦମଗ୍ନ ଆସସୀତ୍' ଇତ୍ୟତ୍ରାପି 'ତଦାତ୍ମାନଂ ସ୍ୱୟମକୁରୁତ' ଇତି ବାକ୍ୟଶେଷେ ବିଶେଷଣାନ୍ନାତ୍ୟନ୍ତାସତ୍ତ୍ୱମ୍ । ତସ୍ମାଦ୍ଧର୍ମାନ୍ତରେଣୈ ବୋୟମସଦ୍‌ବ୍ୟପେଦଶଃ ପ୍ରାଗୁତ୍ପତ୍ତେଃକାର୍ଯ୍ୟସ୍ୟ । ନାମରୂପ ବ୍ୟାକୃତଂ ହି ବସ୍ତୁ ସଚ୍ଛବ୍ଦାର୍ହଂ ଲୋକେ ପ୍ରସିଦ୍ଧମ୍ । ଅତଃ ପ୍ରାଙ୍ ନାମରୂପବ୍ୟାକରଣାଦସଦିବାସୀଦିତ୍ୟୁପଚର୍ଯ୍ୟତେ ।

**(୨) ଭାଷାଂତର-** (କ) ପରନ୍ତୁ କେଉଁଠାରେ 'ଅସଦେବ' 'ଉତ୍ପତ୍ତିର ପୂର୍ବରୁ ଜଗତ୍ ଅସତ୍ ଥିଲା ଏବଂ 'ଅସଦ୍ ବା' (ଆରମ୍ଭ ପୂର୍ବରୁ ଏହି ଜଗତ୍ ଅସତ୍ ଥିଲା) ଏହି ପ୍ରକାର ଶ୍ରୁତି ଉତ୍ପତ୍ତିର ପୂର୍ବକାର୍ଯ୍ୟରେ ଅସତ୍ତ୍ୱର ବ୍ୟପଦେଶ କରେ । ଏହା ଯଦି କହ ଯେ- ଅସତ୍‌ର ବ୍ୟପଦେଶରେ ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟର ସତ୍ତା ରହେନାହିଁ ।

(ଖ) ତେଣୁ ଆମ୍ଭେ କହୁଁ ଯେ- ଏହାନୁହେଁ, କାରଣ-ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟ ବିଷୟକ ଯାହା ଅସଦ୍ ବ୍ୟପଦେଶ, ସେ କିନ୍ତୁ ଅସତ୍‌ର ଅଭିପ୍ରାୟରେ ନୁହେଁ ।

(ଗ) କିନ୍ତୁ ବ୍ୟାକୃତ ନାମରୂପଧର୍ମଦ୍ୱାରା ଅବ୍ୟାକୃତନାମରୂପଧର୍ମ ଅନ୍ୟ ଅଟେ । ତଦ୍‌ଭିନ୍ନଧର୍ମଦ୍ୱାରା ଉତ୍ପତ୍ତି ପୂର୍ବରୁ କାରଣ ରୂପରେ ଅଭିନ୍ନ ହୋଇ କାର୍ଯ୍ୟର ଅସତ୍ ବ୍ୟପଦେଶ ହୁଏ । ଅର୍ଥାତ୍ ଅବସ୍ଥା ଭେଦରେ ସତ୍‌କାର୍ଯ୍ୟ ହିଁ ଅସତ୍‌କାର୍ଯ୍ୟରେ ବ୍ୟପଦେଶ ହୁଏ ।

(ଘ) ଏହା କିପରି ହୁଏ ? ବାକ୍ୟଶେଷଦ୍ୱାରା । ଉପକ୍ରମରେ ଯାହା ସଂଦିଗ୍ଧାର୍ଥ ବାକ୍ୟ, ତାହାର ବାକ୍ୟଶେଷରେ ନିଶ୍ଚିତ କରାଯାଇଅଛି । ଯେପରି ଏଠାରେ 'ଅସଦେବେଦଗ୍ର' ଏହି ଉପକ୍ରମରେ ଯାହା 'ଅସତ୍' ଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ, ତାହାପୁଣି 'ତତ୍' ଶବ୍ଦଦ୍ୱାରା ପରାମର୍ଶ କରି 'ତତ୍‌ସଦାସୀତ୍' (ସେ ସତ୍ ଥିଲା) ଏହିପ୍ରକାର ଏହାକୁ 'ସତ୍' ଏହି ବିଶେଷଣ ଦ୍ୱାରା ବିଶେଷିତ କରାଗଲା । 'ଅସତ୍'ର ପୂର୍ବୋତ୍ତର କାଳଦ୍ୱାରା ସମ୍ବନ୍ଧ ନ ହେଲେ 'ଆସୀତ୍' ଏହି ଶବ୍ଦର ଅନୁପପତ୍ତିହେବ ।

(ଙ) 'ଅସଦ୍ ବା ଇଦମଗ୍ର ଆସୀତ୍' ଏହିବାକ୍ୟରେ 'ତଦାତ୍ମାନଂ' ସେ ନିଜେ ନିଜକୁ ସୃଷ୍ଟି କଲା । ଏହି ପ୍ରକାର ବାକ୍ୟଶେଷରେ ବିଶେଷଣ ହେଲେ (ଏହିକାର୍ଯ୍ୟ) ଅତ୍ୟନ୍ତ ଅସତ୍ ନୁହେଁ । ନାମରୂପରେ ବ୍ୟାକୃତ ହୋଇଥିବା ବସ୍ତୁ 'ସତ୍' ଶବ୍ଦର ଯୋଗ୍ୟ ହୁଏ ବୋଲି ସଂସାରରେ କୁହାଯାଏ । ତେଣୁ ନାମରୂପରେ ବ୍ୟାକୃତ ବ୍ୟକ୍ତ ହେଲେ ପୂର୍ବରୁ ଅସତ୍ ହିଁ ଥିଲା, ଏହାର ଉତ୍ପତ୍ତି ପୂର୍ବରୁ ସତ୍‌କାର୍ଯ୍ୟରେ ଅସତ୍‌ଶବ୍ଦର ଉପଚାର ଗୌଣରୂପରେ ପ୍ରୟୋଗ କରାଯାଇଅଛି ।

## युक्तेः शब्दान्तराच्च ॥१८॥

## ୧ । ଯୁକ୍ତେଃ ଶବ୍ଦାନ୍ତରାଚ୍ଚ ॥ ୨-୧-୧୮ ॥

ଯୁକ୍ତେଃ-ଯୁକ୍ତିଦ୍ୱାରା, ଚ-ମଧ, ଶବ୍ଦାନ୍ତରାତ୍-'ସଦେବ ସୋମ୍ୟଦମଗ୍ର ଆସୀତ୍' ଏହିପ୍ରକାର ଅନ୍ୟଶ୍ରୁତିରେ ସୃଷ୍ଟିର ପୂର୍ବରୁ କାର୍ଯ୍ୟର ସଦ୍‌ଭାବ ଏବଂ କାରଣଠାରୁ ଅନନ୍ୟତ୍ୱ ପ୍ରତୀତି ହୁଏ ।

(୨) ମୂଳ-(କ) ଯୁକ୍ତେଶ୍ଚ ପ୍ରାଗୁତ୍ପତ୍ତେଃ କାର୍ଯ୍ୟସ୍ୟ ସତ୍ତ୍ୱମନନ୍ୟତ୍ୱଂ ଚ କାରଣାଦବଗମ୍ୟତେ, ଶବ୍ଦାନ୍ତରାଚ୍ଚ । ଯୁକ୍ତିସ୍ତାବଦ୍ ବର୍ଣ୍ଣ୍ୟତେ-ଦଧିଘଟରୁଚକାଦ୍ୟର୍ଥିଭିଃ ପ୍ରତିନିୟତାନି କାରଣାନି କ୍ଷୀରମୃତ୍ତିକାସୁବର୍ଣ୍ଣାଦୀନ୍ୟୁପାଦୀୟମାନାନି ଲୋକେ ଦୃଶ୍ୟନ୍ତେ । ନହି ଦଧ୍ୟର୍ଥିଭିର୍ମୃତ୍ତିକୋପାଦୀୟତେ ନ ଘଟାର୍ଥିଭିଃ କ୍ଷୀରଂ ତଦସତ୍‌କାର୍ଯ୍ୟବାଦେ ନୋପପଦ୍ୟେତ ।

(ଖ) ଅବିଶିଷ୍ଟେ ହି ପ୍ରାଗୁତ୍ପତେଃ ସର୍ବସ୍ୟ ସର୍ବତ୍ରାସତ୍ତ୍ୱେ କସ୍ମାତ୍ କ୍ଷୀରାଦେବ ଦଧ୍ୟୁତ୍ପଦ୍ୟତେ ନ ମୃତ୍ତିକାୟାଃ, ମୃତ୍ତିକାୟା ଏବ ଚ ଘଟ ଉତ୍ପଦ୍ୟତେ ନ କ୍ଷୀରାତ୍ ।



ଅଥାବିଶିଷ୍ଟେଽପି ପ୍ରାଗସତ୍ତ୍ୱେ କ୍ଷୀର ଏବ ଦଧ୍ନଃ କଶ୍ଚିଦତିଶୟୋ ନ ମୃତ୍ତିକାୟାଂ ବୃତ୍ତିକାୟାମେବ ଚ ଘଟସ୍ୟ କଶ୍ଚିଦତିଶୟୋ ନ କ୍ଷୀର ଇତ୍ୟୁଚ୍ୟେତ, ତର୍ହ୍ୟତିଶୟବତ୍ତ୍ୱାତ୍ ପ୍ରାଗବସ୍ଥାୟା ଅସତ୍କାର୍ଯ୍ୟବାଦହାନିଃ ସତ୍କାର୍ଯ୍ୟବାଦସିଦ୍ଧିଶ୍ଚ ।

(ଗ) ଶକ୍ତିଶ୍ଚ କାରଣସ୍ୟ କାର୍ଯ୍ୟନିୟମାର୍ଥା କଳ୍ପ୍ୟମାନା ନାନ୍ୟାଽସତୀ ବା କାର୍ଯ୍ୟଂ ନିୟଚ୍ଛେତ୍ । ଅସତ୍ତ୍ୱାବିଶେଷାଦନ୍ୟତ୍ୱାବିଶେଷାଚ୍ଚ । ତସ୍ମାତ୍ କାରଣସ୍ୟାତ୍ମଭୂତା ଶକ୍ତିଃ ଶକ୍ତେଶ୍ଚାତ୍ମଭୂତଂ କାର୍ଯ୍ୟମ୍ । ଅପିଚ କାର୍ଯ୍ୟକାରଣ ୟୋର୍ଦ୍ରବ୍ୟ ଗୁଣାଦୀନାଂ ଚାଶ୍ୱମହିଷବଦ୍ ଭେଦବୁଦ୍ଧ୍ୟଭାବାତ୍ତାଦାତ୍ମ୍ୟମଭ୍ୟୁପଗନ୍ତବ୍ୟମ୍ ।

**(୨) ଭାଷାଂତର**-(କ) ଯୁକ୍ତି ଓ ଅନ୍ୟଶ୍ରୁତି ଦ୍ୱାରା ଉତ୍ପତ୍ତି ପୂର୍ବରୁ କାର୍ଯ୍ୟର ସତ୍ତା ଏବଂ କାରଣଠାରୁ ଅନନ୍ୟତା ଅବଗତ ହୁଏ । ପ୍ରଥମଯୁକ୍ତିର ବର୍ଣ୍ଣନା କରାଯାଇଅଛି- ଲୋକବ୍ୟବହାରରେ ଦେଖାଯାଏ ଯେ- ଦଧି, ଘଟ ଓ ରୁଚକ (ଭୂଷଣ) ପ୍ରଭୃତିକୁ ଇଚ୍ଛା କରୁଥିବା ପୁରୁଷ ଯଥାକ୍ରମେ କ୍ଷୀର, ମୃତ୍ତିକା ଓ ସୁବର୍ଣ୍ଣାଦି ନିୟତକାରଣଗୁଡ଼ିକୁ ଗ୍ରହଣ କରେ । ଦହିକୁ ପାଇବାକୁ ଇଚ୍ଛା କରୁଥିବା ପୁରୁଷ କ୍ଷୀର ଖୋଜେ ନାହିଁ । ସେ ଅସତ୍କାର୍ଯ୍ୟବାଦରେ ଉପପନ୍ନ ହୁଏ ନାହିଁ ।

(ଖ) କାରଣ-ଉତ୍ପତ୍ତିର ପୂର୍ବରୁ ସମସ୍ତଙ୍କର ସବୁଠାରେ ସଦ୍ଭାବ ଅବଶିଷ୍ଟ ହେଲେ କ୍ଷୀରରୁ ଦଧି କାହିଁକି ଉତ୍ପନ୍ନ ହୁଅନ୍ତ ? କିନ୍ତୁ ବୃତ୍ତିକାଠାରୁ ନୁହେଁ । କାହିଁକି ? ମୃତ୍ତିକାରୁ କେବଳ ଘଟଜାତ ହୁଏ, କିନ୍ତୁ ଦଧିପ୍ରଭୃତି ନୁହେଁ କାହିଁକି ? ଯଦି ତୁମେ କହ ଯେ- ଉତ୍ପତ୍ତିର ପୂର୍ବରୁ ସଦ୍ଭାବ ସମାନ ହେଲେ ଦୁଧରେ ଦହି କୌଣସି ଅତିଶୟ ବିଶେଷ ହୁଏ । କିନ୍ତୁ ମୃତ୍ତିକାରେ ନୁହେଁ । ମୃତ୍ତିକାରେ ହିଁ ଘଟର ଅତିଶୟ ବିଶେଷ ଅଛି, କିନ୍ତୁ ଦହିରେ ନୁହେଁ । ତେବେ ଉତ୍ପତ୍ତିର ପୂର୍ବାବସ୍ଥାରେ ଅତିଶୟ ବିଶିଷ୍ଟ ହେଲେ ଅସତ୍କାର୍ଯ୍ୟବାଦର ହାନି ଓ ସତ୍କାର୍ଯ୍ୟବାଦର ସିଦ୍ଧ ହୁଏ ।

(ଗ) କାର୍ଯ୍ୟର ନିୟମନପାଇଁ କଳ୍ପ୍ୟମାନ କାରଣଶକ୍ତି କାର୍ଯ୍ୟ କାରଣଠାରୁ ଭିନ୍ନ ଅଥବା ଅସତ୍ ହେଲେ କାର୍ଯ୍ୟର ନିୟମନ କରିହେବ ନାହିଁ । କାରଣ-ସେଠାରେ ଅସତ୍ତ୍ୱ ସମାନ ଅଟେ ଏବଂ ଅନ୍ୟତ୍ୱ ସମାନ ଅଟେ । ତେଣୁ କାରଣର ଆତ୍ମଭୂତଶକ୍ତି ଅଛି, ଏବଂ ଶକ୍ତିର ଆତ୍ମଭୂତ କାର୍ଯ୍ୟ ମଧ୍ୟ ଅଛି । କାର୍ଯ୍ୟକାରଣରେ ତଥା ଦ୍ରବ୍ୟଗୁଣାଦିରେ ଅଶ୍ୱମହିଷାଦି ଭଳି ସମାନଭେଦବୁଦ୍ଧି ଅଭାବ ହେଲେ ତାଦାତ୍ମ୍ୟ ସ୍ୱୀକାର କରିବାକୁ ପଡ଼େ ।

(୩) ମୂଳ-(କ) ସମବାୟ କଳ୍ପନାୟାମପି ସମବାୟସ୍ୟ ସମବାୟିଭିଃ ସମ୍ବନ୍ଧେଽଭ୍ୟୁପଗମ୍ୟମାନେ ତସ୍ୟ ତସ୍ୟାନ୍ୟୋନ୍ୟଃ ସମ୍ବନ୍ଧଃ କଳ୍ପୟିତବ୍ୟ ଇତ୍ୟନବସ୍ଥାପ୍ରସଙ୍ଗଃ । ଅନଭ୍ୟୁପଗମ୍ୟମାନେ ଚ ବିଚ୍ଛେଦପ୍ରସଙ୍ଗଃ ।

(ଖ) ଅଥ ସମବାୟଃ ସ୍ୱୟଂସମ୍ବନ୍ଧରୂପତ୍ୱାଦନପେକ୍ଷ୍ୟୈବାପରଂ ସମ୍ବନ୍ଧଂ ସମ୍ବଧ୍ୟତେ, ସଂୟୋଗୋଽପି ତର୍ହି ସ୍ୱୟଂ ସମ୍ବନ୍ଧରୂପତ୍ୱାଦପେକ୍ଷ୍ୟୈବ ସମବାୟଂ ସମ୍ବଧ୍ୟେତେ ।

(ଗ) ତାଦାତ୍ମ୍ୟ ପ୍ରତୀତେଶ୍ଚ ଦ୍ରବ୍ୟଗୁଣାଦୀନାଂ ସମବାୟକଳ୍ପନାର୍ଥକ୍ୟମ୍ । କଥଞ୍ଚ କାର୍ଯ୍ୟମବୟବବିଦ୍ରବ୍ୟଂ କାରଣେଷ୍ୱ ବୟବଦ୍ରବ୍ୟେଷ୍ୱୁ ବର୍ତ୍ତମାନଂ ବର୍ତ୍ତତେ । କିଂ ସମସ୍ତେଷ୍ୱବୟବେଷ୍ୱୁ ବର୍ତ୍ତେତୋତ ପ୍ରତ୍ୟବୟବମ୍ ।

(ଘ) ଯଦି ତାବତ୍‌ସମସ୍ତେଷ୍ୱୁ ବର୍ତ୍ତେତ ତତୋଽବୟବ୍ୟନୁପଲବ୍ଧିଃ ପ୍ରସଜ୍ୟେତ, ସମସ୍ତାବୟବସଂନିକର୍ଷସ୍ୟାଶକ୍ୟତ୍ୱାତ୍ । ନହି ବହୁତ୍ୱଂ ସମସ୍ତଷ୍ୱଶ୍ରୟେଷ୍ୱୁ ବର୍ତ୍ତମାନଂ ବ୍ୟସ୍ତାଶ୍ରୟଗ୍ରହଣେନ ଗୃହ୍ୟତେ ।

(ଙ) ଅଥାବୟବଶଃ ସମସ୍ତେଷ୍ୱୁ ବର୍ତ୍ତେତ ତଦାପ୍ୟାରମ୍ଭକାବୟବ ବ୍ୟତିରେକିଣାବୟବିନୋଽବୟବାଃ କଳ୍ପ୍ୟେରନ୍ ଯୈରାମ୍ଭକେଷ ବୟବେଷ୍ୱ ବୟବଶୋଽବୟବୋ ବର୍ତ୍ତେତ କୋଶାବୟବବ୍ୟତିରିକ୍ତୈର୍ହ୍ୟବୟବୈରସିଃ କୋଶଂ ବ୍ୟାପ୍ନୋତି । ଅନବସ୍ଥା ଚୈବଂ ପ୍ରସଜ୍ୟେତ । ତେଷ୍ୱୁ ତେଷ୍ୱବୟବେଷ୍ୱୁବର୍ତ୍ତୟିତୁ-ମନ୍ୟେଷାମବୟବାନାଂ କଳ୍ପନୀୟତ୍ୱାତ୍ ।

**(୩) ଭାଷାଂତର-**(କ) ସମବାୟ କଳ୍ପନା କଲାପରେ ମଧ୍ୟ ସମବାୟି ସହ ସମବାୟର ସମ୍ବନ୍ଧ ସ୍ୱୀକାର କଲାପରେ ତତ୍‌ସମବାୟ ପାଇଁ ଭିନ୍ନ ଭିନ୍ନ ସମ୍ବନ୍ଧର କଳ୍ପନା କରିବାକୁ ପଡେ । ଏହି ପ୍ରକାର କଲେ ଅନବସ୍ଥାପ୍ରସଙ୍ଗ ହୋଇଯିବ ଏବଂ ସମ୍ବନ୍ଧ ସ୍ୱୀକାର ନକଲେ କାର୍ଯ୍ୟକାରଣ ତଥା ଦ୍ରବ୍ୟଗୁଣାଦିର ବିଚ୍ଛେଦ ହେବ ।

(ଖ) ଯଦି କହ ଯେ- ସମବାୟ ସ୍ୱୟଂ ସମ୍ବନ୍ଧରୂପ ହେଲେ ଅନ୍ୟ ସମ୍ବନ୍ଧକୁ ଅପେକ୍ଷା ନକରି ସମବାୟସହ ସମ୍ବନ୍ଧ ହେବ । କିନ୍ତୁ ସଂଯୋଗ ମଧ୍ୟ ସମବାୟରୂପ ହେଲେ ସମବାୟକୁ ଅପେକ୍ଷା ନ କରି ସମ୍ବନ୍ଧସହ ସମ୍ବନ୍ଧ ହୋଇଯିବ ।

(ଗ) ତାଦାତ୍ମ୍ୟପ୍ରତୀତି ହେଲେ ଦ୍ରବ୍ୟଗୁଣାଦିରେ ସମବାୟ କଳ୍ପନା ନିଷ୍ଫଳ ହୁଏ ଏବଂ କାର୍ଯ୍ୟ ଅବୟବୀଦ୍ରବ୍ୟ କାରଣ ଅବୟବଦ୍ରଦ୍ୟରେ କିପରି ରହି ଦେଖାଯାଏ ? ସେ ସମସ୍ତ ଅବୟବରେ ରହେ, କି ପ୍ରତ୍ୟେକ ଅବୟବରେ ?

(ଘ) ଯଦି ସମସ୍ତ ଅବୟବରେ ରହିବ, ତେବେ ଅବୟବୀର ଅନୁପଲବ୍ଧି ହେବ, କାରଣ-ସମସ୍ତ ଅବୟବରେ ଇନ୍ଦ୍ରିୟ ସହିତ ସନ୍ନିକର୍ଷ ହୋଇପାରେ ନାହିଁ, ଯେପରିକି ସମସ୍ତ ଆଶ୍ରୟରେ ରହିଥିବା ବହୁତ୍ୱର କୌଣସି ଗୋଟିଏ ଆଶ୍ରୟର ଗ୍ରହଣରେ ଗୃହୀତ ହୁଏ ନାହିଁ ।

(ଙ) ଯଦି ପ୍ରତ୍ୟେକ ଅବୟବରେ ରହି ସମସ୍ତ ଅବୟବରେ ରହିବ, ତେବେ ଯେଉଁ ଆରମ୍ଭକ ଅବୟବରେ ଅବୟବୀ ଅବୟ ବା ବିଚ୍ଛେଦକରେ ରହେ, ସେହି ଆରମ୍ଭକ ଅବୟବୀଦ୍ୱାରା ଭିନ୍ନଭିନ୍ନ ଅବୟବୀର ଅବୟବ କଳ୍ପନା କରିବାକୁ ପଡ଼େ । ଯେପରିକି କୋଶ (ଖୋଳ) ରୂପକ ଅବୟବ (ଅବୟବ ନହେଲେ ମଧ୍ୟ) ଅବୟବକଳ୍ପନାକରି ଖଣ୍ଡା

ତନ୍ମଧରେ ରହେ, ଏହି ଅବସ୍ଥାରେ ଦୋଷ ପ୍ରସକ୍ତ ହେବ, କାରଣ-ସେହି ଅବୟବରେ ରହିବା ପାଇଁ ଅନ୍ୟଅବୟବର କଳ୍ପନା କରିବାକୁ ପଡେ ।

(୪) ମୂଳ-(କ) ଅଥ ପ୍ରତ୍ୟବୟବଂ ବର୍ତ୍ତେତ ତଦୈକତ୍ର ବ୍ୟାପରେଽନ୍ୟତ୍ରାବ୍ୟାପାରଃ ସ୍ୟାତ୍ । ନହି ଦେବଦତ୍ତଃ ସ୍ରୁଘ୍ନେ ସଂନିଧୀୟମାନସ୍ତଦହରେବ ପାଟଳିପୁତ୍ରେଽପି ସଂନିଧୀୟେତ । ଯୁଗପଦନେକତ୍ର ବୃତ୍ତାବନେକତ୍ୱପ୍ରସଙ୍ଗଃସ୍ୟାତ୍ । ଦେବଦତ୍ତଯଜ୍ଞଦତ୍ତୟୋରିବ ସ୍ରୁଘ୍ନପାଟଳିପୁତ୍ରନିବାସିନୋଃ ।

(ଖ) ଗୋତ୍ୱାଦିବତ୍ ପ୍ରତ୍ୟେକଂ ପରିସମାପ୍ତେର୍ନ ଦୋଷ ଇତି ଚେତ୍ । ନ । ତଥା ପ୍ରତୀତ୍ୟଭାବାତ୍ । ଯଦି ଗୋତ୍ୱାଦିବତ ପ୍ରତ୍ୟେକଂ ପରିସମାପ୍ତୋଽବୟବୀ ସ୍ୟାଦ୍ୟଥା ଗୋତ୍ୱଂ ପ୍ରତିବ୍ୟକ୍ତି ପ୍ରତ୍ୟକ୍ଷଂ ଗୃହ୍ୟତ ଏବମବୟବ୍ୟପି ପ୍ରତ୍ୟବୟବଂ ପ୍ରତ୍ୟକ୍ଷଂ ଗୃହ୍ୟେତାନ ଚୈବଂ ନିୟତଂ ଗୃହ୍ୟତେ ।

(ଗ) ପ୍ରତ୍ୟେକ ପରିସମାପ୍ତୌ ଚାବୟବିନଃ କାର୍ଯ୍ୟେଣା ଧିକାରାତ୍ତସ୍ୟ ଚୈକତ୍ୱାଚ୍ଛୃଙ୍ଗେଣାପି ସ୍ତନକାର୍ଯ୍ୟଂ କୁର୍ଯ୍ୟାଦୁରସାଚପୃଷ୍ଠକାର୍ଯ୍ୟମ୍ । ନ ଚୈବଂ ଦୃଶ୍ୟତେ । ପ୍ରାଗୁତ୍ପତ୍ତେଶ୍ଚ କାର୍ଯ୍ୟସ୍ୟାସତ୍ତ୍ୱଂ ଉତ୍ପତ୍ତିରକର୍ତ୍ତୃକା ନିରାତ୍ମିକାଚ ସ୍ୟାତ୍ ।

(ଘ) ଉତ୍ପତ୍ତିଶ୍ଚ ନାମକ୍ରିୟା, ସା ସକର୍ତ୍ତୃକୈବ କଳ୍ପ୍ୟେତ ।

(ଙ) ତଥାଚ ସତି ଘଟ ଉତ୍ପଦ୍ୟତ ଇତ୍ୟୁକ୍ତେ କୁଲାଲାଦୀନାମପ୍ୟୁତ୍ପଦ୍ୟମାନତା ପ୍ରତିୟତେ । ଉତ୍ପନ୍ନତାପ୍ରତୀତେଶ୍ଚ ।

**(୪) ଭାଷାଂତର-** (କ) ଯଦି କାର୍ଯ୍ୟ (ଅବୟବୀ) ପ୍ରତ୍ୟେକ ଅବୟବରେ, ରହିବ ତେବେ ଗୋଟିଏ ସ୍ଥାନରେ କାର୍ଯ୍ୟ ହେଲେ ଅନ୍ୟସ୍ଥାନରେ ମଧ୍ୟ ସେହି କାର୍ଯ୍ୟ ହୁଅନ୍ତା ନାହିଁ, କାରଣ-ସ୍ରୁଘ୍ନ (ସ୍ଥାନରେ ନାମ) ରେ ରହି ଦେବଦତ୍ତ ସେହିଦିନ ପାଟଳିପୁତ୍ରରେ ରହନ୍ତା ନାହିଁ । ଯଦି ଯୁଗପତ୍ (ଏକ ସମୟରେ) ଅନେକ ସ୍ଥାନରେ ରହିବ, ତେବେ ସ୍ରୁଘ୍ନ ଓ ପଟଳିପୁତ୍ରନିବାସୀ ଦେବଦତ୍ତ ଏବଂ ଯଜ୍ଞଦତ୍ତପରି ସେଠାରେ ଅନେକତ୍ୱ ପ୍ରସଙ୍ଗ ହୋଇଯିବ ।

(ଖ) ଯଦି ଏହିପରି କହ ଯେ- ଗୋତ୍ୱାଦି ପରି ପ୍ରତ୍ୟେକରେ ପରିସମାପ୍ତି ହେଲେ ଦୋଷ ହୁଏ ନାହିଁ, ତେବେ ଏହା ଠିକ୍ ନୁହେଁ । କାରଣ-ଏହିପରି ପ୍ରତୀତ ହୁଏ ନାହିଁ । ଯଦି ଗୋତ୍ୱାଦିପରି ପ୍ରତ୍ୟେକରେ ଅବୟବର ଅବୟବୀ ପରିସମାପ୍ତି ହୁଏ, ତେବେ ଯେପରି ଗୋତ୍ୱ ପ୍ରତ୍ୟେକ ବ୍ୟକ୍ତିରେ ଗୃହୀତ ହୁଏ, ସେପରି ଅବୟବୀ ମଧ୍ୟ ପ୍ରତ୍ୟେକ ଅବୟବରେ ପ୍ରତ୍ୟେକ୍ଷଭାବରେ ଗୃହୀତ ହୁଏ । ପରନ୍ତୁ ଏତାଦୃଶନିୟମ ଗୃହୀତଯୋଗ୍ୟ ନୁହେଁ ।

(ଗ) ପ୍ରତ୍ୟେକ ଅବୟବରେ ଯଦି ପରସମାପ୍ତି ହୁଏ, ତେବେ ଅବୟବୀର କାର୍ଯ୍ୟ ସହିତ ଅଧିକାର (ସମ୍ବନ୍ଧ) ହେଲେ ଏବଂ ତାହାର ଏକହେଲେ ଗାଈର ଶିଙ୍ଘରେ ସ୍ତନକାର୍ଯ୍ୟ

ଓ ବକ୍ଷଦ୍ୱାରା ପୃଷ୍ଠକାର୍ଯ୍ୟ ହେବ । ତେଣୁ ଏହିପରି ଦେଖାଯାଏ ନାହିଁ । ଯଦି ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟ ଅସତ୍ ହୁଏ, ତେବେ ଉତ୍ପତ୍ତିକର୍ତ୍ତୃରହିତ ଏବଂ ନିରାତ୍ମକ (ଅକାରଣାତ୍ମକ) ହୋଇପାରେ ।

(ଘ) ଉତ୍ପତ୍ତି ଅର୍ଥ କ୍ରିୟା, ତାହା ଗତ୍ୟାଦି କ୍ରିୟାପରି ସକର୍ତ୍ତୃକ ହୁଏ । ତେଣୁ ଥରେ କ୍ରିୟା ସକର୍ତ୍ତୃକ ଓ ଥରେ ଅକର୍ତ୍ତୃକ ରୂପେ ସ୍ୱୀକାର କ'ଲେ ଉଭୟେ ବିରୁଦ୍ଧ ହେବେ । ଘଟର ଗ୍ରୁତ୍ୟମାନ ଉତ୍ପତ୍ତିଘଟକର୍ତ୍ତୃକ ନୁହେଁ । କିନ୍ତୁ ଅନ୍ୟକର୍ତ୍ତୃକ କଳ୍ପନା କରିବାକୁ ପଡ଼େ । ସେହିପ୍ରକାର ମଧ୍ୟ କପାଳପ୍ରଭୃତିର ଗ୍ରୁତ୍ୟମାନ ଉତ୍ପତ୍ତି ଅନ୍ୟ କର୍ତ୍ତୃକ ରୂପେ କଳ୍ପନା ହୁଏ ।

(ଙ) ଏହିପରି ଘଟ ଉତ୍ପନ୍ନ ହୁଏ, ଓ କୁଲାଳାଦିକାରଣ ଉତ୍ପନ୍ନ ହୁଅନ୍ତି, – ଏହାହିଁ କୁହାଯିବ । ପରନ୍ତୁ ସଂସାରରେ 'ଘଟଉତ୍ପନ୍ନ ହୁଏ' ଏହିକି ହେଲାପରେ କୁଲାଳାଦିର ଉତ୍ପଦ୍ୟମାନତା ପ୍ରତୀତ ହୁଏ ନାହିଁ । କିନ୍ତୁ ସେଥିରେ ଉତ୍ପନ୍ନତା ପ୍ରତୀତ ହୁଏ ।

(୫) ମୂଳ-(କ) ଅଥ ସ୍ୱକାରଣସତ୍ତାସମ୍ବନ୍ଧ ଏବୋତ୍ପତ୍ତିରାତ୍ମଲାଭଶ୍ଚ କାର୍ଯ୍ୟସ୍ୟେତି ଚେତ୍, କଥମଲବ୍ଧାତ୍ମକଂ ସମ୍ବଧ୍ୟେତେତି ବକ୍ତବ୍ୟମ୍ । ସତୋର୍ହି, ଦ୍ୱୟୋଃ ସମ୍ବନ୍ଧଃ ସମ୍ଭବତି ନ ସଦସତୋରସତୋର୍ବା ଅଭାବସ୍ୟ ଚ ନିରୁପାଖ୍ୟତ୍ୱାତ୍ ପ୍ରାଗୁତ୍ପତ୍ତେରିତି ମର୍ଯ୍ୟାଦାକରଣମନୁପପନ୍ନମ୍ ।

(ଖ) ସତାଂ ହି ଲୋକେ କ୍ଷେତ୍ରଗୃହାଦୀନାଂ ମର୍ଯ୍ୟାଦା ଦୃଷ୍ଟା ନାଭାବସ୍ୟ । ନହି ବନ୍ଧ୍ୟାପୁତ୍ରୋ ରାଜା ବଭୁବ ପ୍ରାକ୍‌ପୂର୍ଣ୍ଣବର୍ମଣୋଽଭିଷେକାଦିତ୍ୟେବଂଜାତୀୟକେନ ମର୍ଯ୍ୟା-ଦାକରଣେନ ନିରୂପାଖ୍ୟୋ ବନ୍ଧ୍ୟାପୁତ୍ରୋ ରାଜା ବଭୂବ ଭବତି ଭବିଷ୍ୟତୀତି ବା ବିଶେଷ୍ୟତେ ।

(ଗ) ଯଦି ଚ ବନ୍ଧ୍ୟାପୁତ୍ରୋଽପିକାରକବ୍ୟାପାରାଦୂର୍ଦ୍ଧ୍ୱଂ ଭବିଷ୍ୟତୀତି । ବୟଂ ତୁ ପଶ୍ୟାମୋ ବନ୍ଧ୍ୟାପୁତ୍ରସ୍ୟ କାର୍ଯ୍ୟାଭାବସ୍ୟ ଋଭାବତ୍ୱାବିଶେଷାଦ୍ୟଥା ବନ୍ଧ୍ୟାପୁତ୍ରଃ କାରକବ୍ୟାପାରାଦୂର୍ଦ୍ଧ୍ୱଂ ନ ଭବିଷ୍ୟତ୍ୟେବଂ କାର୍ଯ୍ୟଭାବୋଽପି କାରକବ୍ୟାପାରାଦୂର୍ଦ୍ଧ୍ୱଂ ନ ଭବିଷ୍ୟତୀତି ।

**(୫) ଭାଷାଂତର-** (କ) ଯଦି କହ ଯେ- ନିଜର କାରଣ ଅଥବା ନିଜର ସତ୍ତା ସହିତ କାର୍ଯ୍ୟର ଉତ୍ପତ୍ତି ଏବଂ ସ୍ୱରୂପପ୍ରାପ୍ତି ହୁଏ, ତେବେ ଏହା କହିବା ଉଚିତ ଯେ- ଯିଏ ଆତ୍ମଲାଭ ପାଇନାହିଁ, ତାହା ସଙ୍ଗରେ ସମ୍ପର୍କ କିପରି ହେବ ? କାରଣ-ଦୁଇଟି ସତ୍ ପଦାର୍ଥର ସମ୍ବନ୍ଧହିଁ ସମ୍ଭବ ଅଟେ । ସତ୍ ଓ ଅସତ୍ ଅଥବା ଦୁଇଟି ଅସତ୍ତର ସମ୍ବନ୍ଧ ସମ୍ଭବ ନୁହେଁ ଅଭାବର ଅସତ୍ ତୁଚ୍ଛ ହେଲେ ସେଠାରେ ଉତ୍ପତ୍ତିର ପୂର୍ବରୁ ରହିପରି ମର୍ଯ୍ୟାଦା କରିବା ଠିକ୍ ନୁହେଁ ।

(ଖ) କାରଣ- ସଂସାରରେ ସତ୍‌କ୍ଷେତ୍ର, ଗୃହାଦି ପଦାର୍ଥ ଗୁଡ଼ିକର (ଉତ୍ପତ୍ତିର ପୂର୍ବରୁ, ଅଥବା ପରେ) ମର୍ଯ୍ୟାଦା ଦେଖାଯାଇଛି । କିନ୍ତୁ ଅଭାବର ନୁହେଁ । ଯଥା- ପୂର୍ଣ୍ଣବର୍ମାର

ରାଜ୍ୟାଭିଷେକ ପୂର୍ବରୁ ବନ୍ଧ୍ୟାପୁତ୍ର ରାଜାଥିଲେ, - ଏହି ପ୍ରକାର ମର୍ଯ୍ୟାଦା କରିବାରେ 'ତୁଚ୍ଛ ବନ୍ଧ୍ୟାପୁତ୍ର ରାଜାଥିଲେ'- ଏହି ପ୍ରକାର ବିଶେଷଣରେ ବିଶେଷିତ ହୁଏ ନାହିଁ ।

(ଗ) ଯଦି ବନ୍ଧ୍ୟାପୁତ୍ର କାରକବ୍ୟାପାରର ପରେ ହୁଏ, ତେବେ ଅସତ୍‌କାର୍ଯ୍ୟ ମଧ୍ୟ କାରକବ୍ୟାପାରର ପରେ ହୁଏ ବୋଲି କହିବା ଠିକ୍ । କିନ୍ତୁ ଆମ୍ଭେ ଦେଖୁଁ ଯେ- ବନ୍ଧ୍ୟାପୁତ୍ର ଓ କାର୍ଯ୍ୟାଭାବରେ ଅଭାବତ୍ୱସମାନ ହେଲେ ଯେପରି କାରକବ୍ୟାପାର ବିନା ବନ୍ଧ୍ୟାପୁତ୍ର ହୁଏ ନାହିଁ, ସେପରି ଅସତ୍ କାର୍ଯ୍ୟ ମଧ୍ୟ କାରକବ୍ୟାପାର ବିନା ହେବନାହିଁ ।

(୬) ମୂଳ-(କ) ନନ୍ୱେବଂ ସତି କାରକବ୍ୟାପାରୋଽନର୍ଥକଃ ପ୍ରସଜ୍ୟେତ । ଯଥୈବ ହି ପ୍ରାକ୍‌ସିଦ୍ଧତ୍ୱାତ୍ କାରଣସ୍ୱରୂପସିଦ୍ଧୟେଽପି ନ କଶ୍ଚିଦ୍‌ବ୍ୟାପ୍ରିୟେତ । ବ୍ୟାପ୍ରିୟତେ ଚ ।

(ଖ) ଅତଃ କାରକବ୍ୟାପାରାର୍ଥବତ୍ତ୍ୱାୟ ମନ୍ୟାମହେ ପ୍ରାଗୁତ୍ପତ୍ତେରଭାବଃ କାର୍ଯ୍ୟସ୍ୟେତି । ନୈଷ ଦୋଷଃ । ଯତଃ କାର୍ଯ୍ୟକାରେଣ କାରଣଂ ବ୍ୟବସ୍ଥାପୟତଃ କାରବବ୍ୟାପାରସ୍ୟାର୍ଥବତ୍ତ୍ୱମୁପପଦ୍ୟତେ । କାର୍ଯ୍ୟା କାରୋଽପି କାରଣସ୍ୟାତ୍ମଭୂତ ଏବାନାତ୍ମଭୂତସ୍ୟାନାରଭ୍ୟତ୍ୱାଦିତ୍ୟଭାଣି ।

(ଗ) ନଚ ବିଶେଷଦର୍ଶନମାତ୍ରେଣ ବସ୍ତ୍ୱନ୍ୟତ୍ୱଂ ଭବତି । ନହି ଦେବଦତ୍ତଃ ସଙ୍କୋଚିତହସ୍ତପାଦଃ ପ୍ରସାରିତ ହସ୍ତପାଦଶ୍ଚ ବିଶେଷେଣ ଦୃଶ୍ୟମାନୋଽପି ବସ୍ତ୍ୱନ୍ୟତ୍ୱଂ ଗଚ୍ଛତି, ସ ଏବେତି ପ୍ରତ୍ୟଭିଜ୍ଞାନାତ୍ । ତଥା ପ୍ରତିଦିନମନେକସଂସ୍ଥାନାନାମପି ପିତ୍ରାଦୀନାଂ ନ ବସ୍ତ୍ୱନ୍ୟତ୍ୱଂ ଭବତି, ମମ ପିତା ମମ ଭ୍ରାତା ମମ ପୁତ୍ର ଇତି ପ୍ରତ୍ୟଭିଜ୍ଞାନାତ୍ ।

**(୬) ଭାଷାଂତର-** (କ) କିନ୍ତୁ ଏହିପରି ସ୍ୱୀକାର କଲେ ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟ ସତ୍ ହୁଏ, ତଦ୍ୱାରା କାରକବ୍ୟାପାର ନିଷ୍ଫଳ ହୁଏ । ଯେପରି ପୂର୍ବରୁ ଏହା ସିଦ୍ଧ ହେବାରୁ କାରଣ ସ୍ୱରୂପର ସିଦ୍ଧି ପାଇଁ କୌଣସି ବ୍ୟାପାର କରେ ନାହିଁ, ସେପରି ଉତ୍ପତ୍ତିର ପୂର୍ବରୁ ସିଦ୍ଧ ହେଲେ ଏବଂ କାରଣଠାରୁ ଭିନ୍ନ ନ ହେଲେ କାର୍ଯ୍ୟର ସ୍ୱରୂପସିଦ୍ଧି ପାଇଁ କୌଣସି ବ୍ୟପାର ହୁଏ ନାହିଁ ।

(ଖ) ପରନ୍ତୁ 'ବ୍ୟାପାର କରେ' ଏହାଦ୍ୱାରା କାରକବ୍ୟାପାରର ସାର୍ଥକତା ପାଇଁ ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟର ଅଭାବ' ଆମ୍ଭେ ସ୍ୱୀକାର କରୁଁ । ଏଠାରେ କିଛି ଦୋଷ ନାହିଁ । କାରଣ-କାର୍ଯ୍ୟରୂପରେ କାରଣକୁ ବ୍ୟବସ୍ଥାପିତ କରୁଥିବା କାରକବ୍ୟାପାରରେ ପ୍ରୟୋଜନବତ୍ତ୍ୱ ଉପପନ୍ନ ହୁଏ । କାର୍ଯ୍ୟର ଆକାର ମଧ୍ୟ କାରଣର ଆତ୍ମଭୂତ ଓ ସ୍ୱରୂପଭୂତ ହୁଏ, କାରଣ-ଯେଉଁ କାର୍ଯ୍ୟ କାରଣାତ୍ମକ ହୁଏ ନାହିଁ, ସେ ତାହାଦ୍ୱାରା ଆରଭ୍ୟ ହୁଏ ନାହିଁ ବୋଲି କୁହାଯାଇଅଛି ।

(ଗ) ବିଶେଷଦର୍ଶନମାତ୍ରରେ ପଦାର୍ଥ ଅନ୍ୟ କିଛି ହୁଏ ନାହିଁ । ସଙ୍କୁଚିତ ହସ୍ତପାଦ ଓ ପ୍ରସାରିତ ହସ୍ତପାଦବିଶିଷ୍ଟ ଦେବଦତ୍ତ କିଛି ବିଶେଷରୂପରେ ଦୃଶ୍ୟମାନ ହେଲେ ଅନ୍ୟବସ୍ତୁ ହୁଏ ନାହିଁ । କାରଣ- 'ସେ ଅଟେ' ଏହି ପ୍ରତ୍ୟଭିଜ୍ଞା ହୁଏ । ଏହିପ୍ରକାର ପିତା ପ୍ରଭୃତି ଅନେକ ଆକୃତିର କେତେକ ବିଶେଷଣ ଆଣିଲେ ମଧ୍ୟ ସେମାନେ ଅନ୍ୟବସ୍ତୁ ନୁହଁନ୍ତି । କାରଣ-ମୋର ପିତା, ମୋର ଭାଇ, ମୋର ପୁଅ, -ଏହିପରି ପ୍ରତିଭିଜ୍ଞା ହୁଏ ।

(୭) ମୂଳ-(କ) ଜନ୍ମୋଚ୍ଛେଦାନନ୍ତରିତତ୍ୱାତ୍ତତ୍ର ଯୁକ୍ତଂ ନାନ୍ୟତ୍ରେତି ଚେତ୍ । ନ । କ୍ଷୀରାଦୀନାମପି ଦଧ୍ୟାଦ୍ୟାକାରସଂସ୍ଥାନସ୍ୟ ପ୍ରତ୍ୟକ୍ଷତ୍ୱାତ୍ । ଅଦୃଶ୍ୟମାନାନାମପି ବଟଧାନାଦୀନାଂ ସମାନଜାତୀୟାବୟବାନ୍ତରୋପଚିତାନାମଙ୍କୁରାଦିଭାବେନ ଦର୍ଶନଗୋଚରତାପତ୍ତୌ ଜନ୍ମସଂଜ୍ଞା ।

(ଖ) ତେଷାମେବାବୟବାନାମପଚୟବଶାଦଦର୍ଶନାପ ତ୍ତାବୁଚ୍ଛେଦଂସଜ୍ଞା । ତତ୍ରେଦୃରାଜଜନ୍ମୋଚ୍ଛେଦାନ୍ତରିତଚ୍ଛେଦମସତଃ ସତ୍ୱାପତ୍ତିସ୍ତଥା ସତି ଗର୍ଭବାସିନ ଉତ୍ତାନଶାୟିନଶ୍ଚ ଭେଦପ୍ରସଙ୍ଗଃ ।

(ଗ) ତଥାଚ ବାଲ୍ୟ ଯୌବନସ୍ଥାବିରେଷ୍ୱପି ଭେଦପ୍ରସଙ୍ଗଃ, ପିତ୍ରାଦିବ୍ୟବହାର-ଲୋପପ୍ରସଙ୍ଗଶ୍ଚ । ଏତେନ କ୍ଷଣଭଙ୍ଗବାଦଃ ପ୍ରତିବଦିତବ୍ୟଃ ।

(ଘ) ଯସ୍ୟ ପୁନଃ ପ୍ରାଗୁତ୍ପତ୍ତେରସତ୍କାର୍ଯ୍ୟଂ ତସ୍ୟ ନିର୍ବିଷୟଃ କାରଣବ୍ୟାପାରଃ ସ୍ୟାତ୍ । ଅଭାବସ୍ୟ ବିଷୟତ୍ୱାନୁପପତ୍ତେରାକାଶହନନନପ୍ରୟୋଜନ ଖଡ୍ଗାଦ୍ୟନେକାୟୁଧ ପ୍ରଯୁକ୍ତିବତ୍ । ସମବାୟିକାରଣବିଷୟଃ କାରକବ୍ୟାପାରଃ ସ୍ୟାଦିତି ଚେତ୍ । ନା ଅନ୍ୟବିଷୟେଣ କାରକବ୍ୟାପାରେଣାନ୍ୟନିଷ୍ପତ୍ତେରତିପ୍ରସଙ୍ଗାତ୍ ।

**(୭) ଭାଷାଂତର-** (କ) ଯଦି କହ ଯେ- ଜନ୍ମ ଓ ମରଣର ବ୍ୟବଧାନ ହେଲେ 'ପିତା' ପ୍ରଭୃତିରେ ପ୍ରତ୍ୟଭିଜ୍ଞାନ ହୁଏ । କିନ୍ତୁ ଅନ୍ୟତ୍ର ନୁହେଁ । ଏହା କହିବା ଠିକ୍ ନୁହେଁ । କାରଣ- ଦୁଧ ପ୍ରଭୃତି ଦଧି ଇତ୍ୟାଦି ଆକାର ବିଶେଷରେ ପ୍ରତ୍ୟକ୍ଷ ହୁଏ । ଅଦୃଶ୍ୟମାନ ବଟବୀଜାଦିରେ ଅନ୍ୟ ସମାନଜାତୀୟଅବୟବଦ୍ୱାରା ବୃଦ୍ଧିକୁ ପାଇ ଅଙ୍କୁରାଦିଭାବରେ ଦୃଷ୍ଟିଗୋଚର ହେଲେ ତାହାକୁ 'ଜନ୍ମସଂଜ୍ଞା' କହନ୍ତି ।

(ଖ) ସେହି ଅବୟବ ଗୁଡ଼ିକର କ୍ଷୟ ହେଲେ ଅଦର୍ଶନତା ପ୍ରାପ୍ତ ହେଲା ପରେ ଉଚ୍ଛେଦମରଣସଂଜ୍ଞା ହୁଏ । ସେଠାରେ ଏତାଦୃଶ ଜନ୍ମ ଓ ମରଣ ବ୍ୟବଧାନ ହେଲେ ଯଦି ଅସତ୍‌କୁ ସତ୍‌ର ପ୍ରାସ ଓ ସତ୍‌କୁ ଅସତ୍ୱର ପ୍ରାପ୍ତି ହେବ । ତାହେଲେ ଗର୍ଭବାସୀ ଉତ୍ତାନ ହେଲେ ଶୟନ କରୁଥିବା ପ୍ରାଣୀଠାରେ ଭେଦପ୍ରସଙ୍ଗ ହେବ ।

(ଗ) ବାଲ୍ୟ, ଯୌବନ ବାର୍ଦ୍ଧକ୍ୟରେ ଭେଦର ପ୍ରସଙ୍ଗ ଆସିବ ଏବଂ ପିତା ଇତ୍ୟାଦି ବ୍ୟବହାରର ଲୋପପ୍ରସଙ୍ଗ ହେବ । ତେଣୁ କ୍ଷଣଭଙ୍ଗ ବାଦର ପ୍ରତ୍ୟାଖ୍ୟାନ ଜାଣିବା ଉଚିତ ।



(ଘ) ପରନ୍ତୁ ଯାହାମତରେ ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟ ଅସତ୍ ଅଟେ, ସେମାନଙ୍କ ମତରେ ଆକାଶକୁ ମାରିବା ପାଇଁ ଖଡ୍ଗାଦି ଅନେକ ଆୟୁଧଗୁଡ଼ିକର ପ୍ରୟୋଗ ପରି କାରକବ୍ୟାପାର ନିର୍ବିଷୟକ ହେବା ଉଚିତ୍ । କାରଣ ଅଭାବବିଷୟ ହୋଇପାରେ ନାହିଁ ।

(ଙ) ଯଦି କହ ଯେ- ସମବାୟିକାରଣବିଷୟକ କାରକବ୍ୟାପାର ହୁଏ, ଏହା ମଧ୍ୟ ଠିକ୍ ହୁଏ ନାହିଁ । କାରଣ-ଅନ୍ୟବିଷୟକ କାରକବ୍ୟାପାର ଦ୍ୱାରା ଅନ୍ୟର ନିଷ୍ପତ୍ତି ହେଲେ ଅତିପ୍ରସଙ୍ଗ ହେବ ।

(ଚ) ଯଦି ଏହା କହଯେ- ସମବାୟିକାରଣର ଆତ୍ମାତିଶୟ କାର୍ଯ୍ୟ ହୁଏ, ତେବେ ତାହା ମଧ୍ୟ ଠିକ୍ ନୁହେଁ । କାରଣ-ସତ୍ କାର୍ଯ୍ୟବାଦର ପ୍ରସକ୍ତ (ଅତିବ୍ୟାପ୍ତି) ହେବ ।

(୮) ମୂଳ-(କ) ତସ୍ମାତ୍ କ୍ଷୀରାଦୀନ୍ୟେବ ଦ୍ରବ୍ୟାଣି ଦଧ୍ୟାଦିଭାବେନାବତିଷ୍ଠମାନାନି କାର୍ଯ୍ୟାଖ୍ୟାଂ ଲଭନ୍ତ ଇତି ନ କାରଣାଦନ୍ୟତ୍କାର୍ଯ୍ୟଂ ବର୍ଷଶତେନାପି ଶକ୍ୟଂନିଶ୍ଚେତୁମ୍ । ତଥା ମୂଳକାରଣମେବାନ୍ତ୍ୟାତ୍କାର୍ଯ୍ୟାତ୍ତେନ ତେନ କାର୍ଯ୍ୟାକାରେଣ ନଟବତ୍ ସର୍ବବ୍ୟବହାରାସ୍ପଦତ୍ୱଂ ପ୍ରତିପଦ୍ୟତେ ।

(ଖ) ଏବଂ ଯୁକ୍ତେଃ କାର୍ଯ୍ୟସ୍ୟ ପ୍ରାଗୁତ୍ପତ୍ତେଃ ସତ୍ତ୍ୱମନନ୍ୟତ୍ୱଂ ଚ କାରଣାଦବଗମ୍ୟତେ । ଶବ୍ଦାନ୍ତରାଚ୍ଚୈତଦବଗମ୍ୟତେ । ପୂର୍ବସୂତ୍ରେଽସଦ୍ ବ୍ୟପଦେଶିନଃ ଶବ୍ଦସ୍ୟୋଦାହୃତତ୍ୱାତ୍ତତୋଽନ୍ୟଃ ସଦ୍ ବ୍ୟପଦେଶୀ ଶବ୍ଦଃ ଶବ୍ଦାନ୍ତରମ୍- 'ସଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍' ଇତ୍ୟାଦି ।

(ଗ) ତଦ୍ଧୈକ ଆହୁରସଦେବେଦମଗ୍ର ଆସୀତ୍' ଇତି ଚାସତ୍ ପକ୍ଷମୁପକ୍ଷିପ୍ୟ 'କଥମସତଃ ସଜ୍ଜାୟେତ' ଇତ୍ୟାକ୍ଷିପ୍ୟ 'ସଦେବ ସୋମ୍ୟେଦମଗ୍ର ଆସୀତ୍' (ଛା ୬-୨-୧) ଇତ୍ୟବଧାରୟତି ।

(ଘ) ତତ୍ରେଦଂଶବ୍ଦବାଚ୍ୟସ୍ୟ କାର୍ଯ୍ୟସ୍ୟ ପ୍ରାଗୁତ୍ପତ୍ତେଃ ସଚ୍ଛବ୍ଦବାଚ୍ୟେନ କାରଣେନ ସାମାନାଧିକରଣ୍ୟସ୍ୟ ଶ୍ରୂୟମାଣତ୍ୱାତ୍ ସତ୍ତ୍ୱାନନ୍ୟତ୍ୱେ ପ୍ରସିଧ୍ୟତ । ଯଦି ତୁ ପ୍ରାଗୁତ୍ପତ୍ତେରସତ୍କାର୍ଯ୍ୟଂ ସ୍ୟାତ୍ପଶ୍ଚାଚ୍ଚୋତ୍ପଦ୍ୟମାନଂ କାରଣେ ସମବେୟାତ୍ତଦାନ୍ୟତ୍କାରଣାତ୍ ସ୍ୟାତ୍ । ତତ୍ର 'ଯେନାଶ୍ରୁତଂ ଶ୍ରୁତଂ ଭବତି' (ଛା ୬-୧-୩) ଇତୀୟଂ ପ୍ରତିଜ୍ଞା ପୀଡ୍ୟେତ । ସତ୍ତ୍ୱାନନ୍ୟତ୍ୱାବଗତେସ୍ତ୍ୱିୟଂ ପ୍ରତିଜ୍ଞା ସମର୍ଥ୍ୟତେ ।

(୮) ଭାଷାଂତର- (କ) ତେଣୁ କ୍ଷୀର ପ୍ରଭୃତି ପଦାର୍ଥ ଦଧିପ୍ରଭୃତି ରୂପରେ ଅବସ୍ଥିତ ରହି କାର୍ଯ୍ୟସଂଜ୍ଞାକୁ ପ୍ରାପ୍ତ ହୁଏ, କାରଣଠାରୁ କାର୍ଯ୍ୟ ଭିନ୍ନ ଅଟେ- ଏହିପରି ଶହେବର୍ଷ ପରେ ମଧ୍ୟ ଏହାର ସ୍ଥିରତା ହେବ ନାହିଁ । ସେହିପରି ମୂଳକାରଣ ହିଁ ଅନ୍ତିମ କାର୍ଯ୍ୟପର୍ଯ୍ୟନ୍ତ ସେହି ସେହି କାର୍ଯ୍ୟରୂପରେ ସବୁବ୍ୟବହାରକୁ ଆଶ୍ରୟ କରନ୍ତି ।

(ଖ) ସେହିପରି ଉତ୍ପତ୍ତିର ପୂର୍ବରୁ କାର୍ଯ୍ୟର ସତ୍ତା ଓ କାରଣଠାରୁ ଅନନ୍ୟତା ଯୁକ୍ତିଦ୍ୱାରା ଅବଗତ ହୁଏ ଏବଂ 'ଶବ୍ଦାନ୍ତରାତ୍' ଅନ୍ୟଶ୍ରୁତିରେ ମଧ୍ୟ ଏପରି ଅଛି । ପୂର୍ବ ସୂତ୍ରରେ ଅସତ୍କୁ

କହୁଥିବା (ଅସଦେବେଦମଗ୍ର ଆସୀତ୍) ଶବ୍ଦଶ୍ରୁତି ଉଦାହୃତ ହୁଏ । ଏହାଦ୍ୱାରା ଅନ୍ୟସତ୍‌ର କଥନ କରୁଥିବା ଶ୍ରୁତି ମଧ୍ୟ 'ସଦେବ ସୋମ୍ୟ ! (ହେ ପ୍ରିୟଦର୍ଶନା ଉତ୍‌ପତ୍ତିର ପୂର୍ବରୁ ଏହି ଏକ ଅଦ୍ୱିତୀୟ ସତ୍ ଥିଲା) ଇତ୍ୟାଦି ଅନ୍ୟଶ୍ରୁତିଗୁଡ଼ିକ ଅଛି ।

(ଗ) 'ତଦ୍ଧୈକ' (କେତେକ କହନ୍ତି ଯେ- ଉତ୍‌ପତ୍ତିର ପୂର୍ବରୁ ଏହି ଅସଦ୍ରୂପ ଥିଲା) ଏହିପ୍ରକାର ଅସତ୍ ପକ୍ଷକୁ ଉପକ୍ଷେପ (ଉତ୍‌ଥାନ) କରି 'କଥମସତଃ' (ଅସତ୍‌ଠାରୁ ସତ୍ କିପରି ଉତ୍‌ପନ୍ନ ହୁଏ) ଏହି ପ୍ରକାର ଆକ୍ଷେପ କରି 'ସଦେବ ସୋମ୍ୟେଦମଗ୍ର ଆସୀତ୍' (ହେ ସୋମ୍ୟ ଉତ୍‌ପତ୍ତିର ପୂର୍ବରୁ ଏହି ସଦ୍ରୂପ ଥିଲା) ଏହି ପ୍ରକାର ଶ୍ରୁତି ମଧ୍ୟ ନିର୍ଣ୍ଣୟ କରେ ।

(ଘ) ଏହି ଶ୍ରୁତିରେ 'ଇଦମ୍' ଶବ୍ଦବାଚ୍ୟ କାର୍ଯ୍ୟର ପୂର୍ବରୁ 'ସତ୍' ଶବ୍ଦବାଚ୍ୟ କାରଣର ସହିତ ସାମାନାଧିକରଣ୍ୟ ଶୁଣାଯାଏ । ଏହାଦ୍ୱାରା ସତ୍ୱ ଓ ଅନନ୍ୟତ୍ୱ କାରଣର ସହିତ ସାମାନାଧିକରଣ୍ୟ ଶୁଣାଯାଏ । ଏହାଦ୍ୱାରା ସତ୍ୱ ଓ ଅନନ୍ୟତ୍ୱ ସ୍ପଷ୍ଟଭାବରେ ସିଦ୍ଧ ହୁଏ । ଯଦି ଉତ୍‌ପତ୍ତିର ପୂର୍ବରୁ କାର୍ଯ୍ୟ ଅସତ୍ ହୁଏ, ତେବେ କାରଣରୁ ଅନ୍ୟ କିଛି ଜାତ ହୋଇପାରେ । ଏହିପରି ହେଲେ 'ଯେନାଶ୍ରୁତଂ' (ଯାହାଦ୍ୱାରା ଅଶ୍ରୁତ ହିଁ ଶ୍ରୁତ ହୁଏ) ଏହି ପ୍ରତିଜ୍ଞା ବାଧିତ ହୁଏ । କାର୍ଯ୍ୟର ସତ୍ୱ ଓ ଅନନ୍ୟତ୍ୱର ଅବଗତି ଦ୍ୱାରା ଏହିଶ୍ରୁତିଜ୍ଞା ସମର୍ଥନ କରାଯାଏ ।

## ପଟବଚ୍ଚ ॥୧୯॥

## ୧ । ପଟବଚ୍ଚ ॥ ୨-୧-୧୯ ॥

ପଟବତ୍ ଚ = ଯେପରି ସଂବେଷ୍ଟିତ ଓ ପ୍ରସାରିତ ବସ୍ତ୍ରରେ ସେହି ସମୟରେ ବିଲକ୍ଷଣପ୍ରତୀତି ହେଲେ ମଧ୍ୟ ବସ୍ତ୍ରରେ କୌଣସି ଭେଦ ହୁଏ ନାହିଁ, ସେହିପରି ମୃତ୍ତିକା ଓ ଘଟରେ ଭେଦ ନାହିଁ ।

(୨) ମୂଳ-(କ) ଯଥା ଚ ସଂବେଷ୍ଟିତଃପଟୋ ନ ବ୍ୟକ୍ତଂ ଗୃହ୍ୟତେ କିମୟଂ ପଟଃ କିଂ ବାନ୍ୟତ୍‌ଦ୍ରବ୍ୟମିତି । ସ ଏବ ପ୍ରସାରିତୋ ଯତ୍‌ସଂବେଷ୍ଟିତଂ ଦ୍ରବ୍ୟଂ ତତ୍‌ପଟ ଏବେତି ପ୍ରସାରଣେନାଭିବ୍ୟକ୍ତୋ ଗୃତ୍ୟତେ ।

(ଖ) ଯଥାଚ ସଂବେଷ୍ଟନସମୟେ ପଟ ଇତି ଗୃହ୍ୟମାଣୋଽପି ନ ବିଶିଷ୍ଟାୟାମବିସ୍ତାରୋ ଗୃହ୍ୟତେ ସ ଏବ ପ୍ରସାରଣସମୟେବିଶିଷ୍ଟାୟାମବିସ୍ତାରୋ ଗୃହ୍ୟତେ ନ ସଂବେଷ୍ଟିତରୂପାଦନ୍ୟୋଽୟଂ ଭିନ୍ନଃ ପଟ ଇତି ।

(ଗ) ଏବଂ ତନ୍ତ୍ୱାଦିକାରଣାବସ୍ଥଂ ପଟାଦି କାର୍ଯ୍ୟମସ୍ପଷ୍ଟଂ ସତ୍ ତୁରୀବେମକୁବିନ୍ଦାଦି-କାରକ ବ୍ୟାପାରାଦିଭିର୍ବ୍ୟକ୍ତଂ ସ୍ପଷ୍ଟଂ ଗୃହ୍ୟତେ । ଅତଃ ସଂବେଷ୍ଟିତ ପ୍ରସାରିତପଟନ୍ୟା-ୟେନୈବାନନ୍ୟତ୍‌କାରଣାତ୍ କାର୍ଯ୍ୟମିତ୍ୟର୍ଥଃ ।



(୨) ଭାଷାଂତର- (କ) ଯେପରି ଗୁଡ଼ା ହୋଇଥିବା ଲୁଗା 'ଏହା ଲୁଗା ଅଥବା କୌଣସି ଅନ୍ୟ ପଦାର୍ଥ' ବୋଲି ସ୍ପଷ୍ଟଭାବରେ ଗୃହୀତ ହୁଏ କି ? ତାହା ଖୋଲିଦେଲା ପରେ ଯାହା ସଂବେଷ୍ଟିତ ଦ୍ରବ୍ୟପଦାର୍ଥ ଥିଲା, ସେହିଁ ବସ୍ତ୍ର-ଏହି ପ୍ରକାର ମେଲାଇଲା ପରେ ହିଁ ସ୍ପଷ୍ଟଭାବରେ ଜଣାପଡ଼େ ।

(ଖ) ଯେପରି ସଂବେଷ୍ଟନସମୟରେ 'ଏହାହିଁ ପଟ' ବୋଲି ଜଣାପଡ଼େ ନାହିଁ, ପରନ୍ତୁ ପ୍ରସାରଣ ସମୟରେ ଏହାର ବିସ୍ତାର ଜଣାପଡ଼େ, କିନ୍ତୁ ସଂବେଷ୍ଟିତ ରୂପ ଭିନ୍ନଲୁଗା ରୂପରେ ଗୃହୀତ ହୁଏ ନାହିଁ ।

(ଗ) ସେପରି ତନ୍ତୁ କାରଣ ରୂପରେ ସ୍ଥିତ ପଟାଦିକାର୍ଯ୍ୟ ଅସ୍ପଷ୍ଟ ହୋଇ ତୁରୀ, ବେମ, ତନ୍ତୀ ଇତ୍ୟାଦି କାରକବ୍ୟାପାରଦ୍ୱାରା ବସ୍ତ୍ରବ୍ୟକ୍ତ ହୋଇ ସ୍ପଷ୍ଟତଃ ଗୃହୀତ ହୁଏ । ତେଣୁ ସଂବେଷ୍ଟିତ ଓ ପ୍ରସାରିତ ପଟନ୍ୟାୟରେ କାର୍ଯ୍ୟ କାରଣଠାରୁ ଅଭିନ୍ନ ବୋଲି ଅର୍ଥ ପ୍ରତୀତି ହୁଏ ।

## यथा च प्राणादिः ॥१०॥

## (୧) ଯଥା ଚ ପ୍ରାଣାଦିଃ ॥୨-୧-୨୦॥

ଯଥା ଚ ପ୍ରାଣାଦିଃ=ଯେପରି ପ୍ରାଣାୟମ ପ୍ରଭୃତି ଦ୍ୱାରା ନିରୁଦ୍ଧ ପ୍ରାଣ, ଅପାନାଦି ଦ୍ୱାରା କାର୍ଯ୍ୟଭିନ୍ନ ହେଲେ ମଧ ସେମାନଙ୍କର ମଧରେ ଭେଦ ରହେ ନାହିଁ, ସେପରି କାର୍ଯ୍ୟରେ ଭେଦହେଲେ କାରଣରେ ଭିନ୍ନ ହୋଇ ବିରୁଦ୍ଧ ହୁଏ ।

(୨) ମୂଳ-(କ) ଯଥା ଚ ଲୋକେ ପ୍ରାଣାପାନାଦିଷୁ ପ୍ରାଣଭେଦେଷୁ ପ୍ରାଣାୟାମେନ ନିରୁଦ୍ଧେଷୁ କାରଣମାତ୍ରେଣ ରୂପେଣ ବର୍ତ୍ତମାନେଷୁ ଜୀବନମାତ୍ରଂ କାର୍ଯ୍ୟଂ ନିର୍ବର୍ତ୍ତ୍ୟତେ ନାକୁଞ୍ଚନପ୍ରସାରଣାଦିକଂ କାର୍ଯ୍ୟାନ୍ତରମ୍ । ତେଷ୍ୱେବ ପ୍ରାଣଭେଦେଷୁ ପୁନଃ ପ୍ରବୃତ୍ତେଷୁ ଜୀବନାଦଧିକମାକୁଞ୍ଚନ ପ୍ରସାରଣାଦିକମପି କାର୍ଯ୍ୟାନ୍ତରଂ ନିର୍ବର୍ତ୍ତ୍ୟତେ । ନଚ ପ୍ରାଣଭେଦାନାଂ ପ୍ରଭେଦବତଃ ପ୍ରାଣାଦନ୍ୟତ୍ୱଂ, ସମୀରଣସ୍ୱଭାବାବିଶେଷାତ୍ ।

(ଖ) ଏବଂ କାର୍ଯ୍ୟସ୍ୟ କାରଣାଦନନ୍ୟତ୍ୱମ୍ । ଅତଶ୍ଚ କୃତ୍ସ୍ନସ୍ୟ ଜଗତୋ ବ୍ରହ୍ମକାର୍ଯ୍ୟତ୍ୱାତ୍ତଦନନ୍ୟତ୍ୱାଚ୍ଚ ସିଦ୍ଧୈଷା ଶ୍ରୌତୀ ପ୍ରତିଜ୍ଞା 'ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମ୍' (ଛା ୬-୧-୧) ଇତି ।

(୨) ଭାଷାଂତର- (କ) ଯେପରି ସଂସାରରେ ପ୍ରାଣ, ଅପାନାଦିପ୍ରାଣଭେଦର ପ୍ରାଣାୟମଦ୍ୱାରା ନିରୁଦ୍ଧ ହେଲାପରେ ଓ କାରଣ ରୂପରେ ବିଦ୍ୟମାନ ହେଲା ପରେ ଜୀବନମାତ୍ର କାର୍ଯ୍ୟ ସଂପାଦିତ ହୁଏ, କିନ୍ତୁ ଆକୁଞ୍ଚନ ଓ ପ୍ରସାରଣାଦି ଅନ୍ୟ କାର୍ଯ୍ୟ ହୁଅନ୍ତି ନାହିଁ । ପରନ୍ତୁ ସେହି ପ୍ରାଣ ଭେଦରେ ପୁନଃ ପ୍ରବୃତ ହେଲେ ଜୀବନଠାରୁ ଅଧିକ ଆକୁଞ୍ଚନ, ପ୍ରସାରଣାଦି

ଅନ୍ୟକାର୍ଯ୍ୟ ସଂପାଦିତ ହୁଅନ୍ତି । ଭେଦବିଶିଷ୍ଟ ପ୍ରାଣଠାରୁ ତାହା ପ୍ରାଣଭେଦ ନୁହେଁ । କାରଣ- ସମୀରଣ ସ୍ୱଭାବ ବାୟୁର ସ୍ୱଭାବ ସମସ୍ତଙ୍କଠାରେ ସମାନ ଅଟେ ।

(ଖ) ଏହି ପ୍ରକାର କାର୍ଯ୍ୟ କାରଣଠାରୁ ଅନନ୍ୟ ହୁଏ । ତେଣୁ ସଂପୂର୍ଣ୍ଣ ଜଗତ୍ ବ୍ରହ୍ମର କାର୍ଯ୍ୟ ହେଲେ ଓ ତାହାଠାରୁ ଭିନ୍ନ ନ ହେଲେ 'ଯୋନଶ୍ରୁତଂ' (ଯାହାର ଶ୍ରବଣ ଦ୍ୱାରା ଅଶ୍ରୁତ ଶ୍ରୁତ ହୁଏ, ମନନ ନ ହୋଇ ମଧ୍ୟ ମନନ ହୁଏ, ଅବିଜ୍ଞାତ ବିଜ୍ଞାତ ହୁଏ) ଏହି ଶ୍ରୁତି ପ୍ରତିପାଦିତପ୍ରତିଜ୍ଞା ସିଦ୍ଧ ହୁଏ ।

## ଇତର ବ୍ୟପଦେଶାଧିକରଣ - ୭

## ७ इतरव्यपदेशाधिकरणम् । सू० ॥२१-२३॥

### ୧ । ଇତରବ୍ୟପଦେଶାଦ୍ ହିତାକରଣାଦିଦୋଷପ୍ରସକ୍ତିଃ ॥ ୨-୧-୨୧ ॥

ଇତରବ୍ୟପଦେଶାତ୍='ତତ୍ତ୍ୱମସି' ଇତ୍ୟାଦି ଶ୍ରୁତିଦ୍ୱାରା ଇତରଜୀବରେ ବ୍ରହ୍ମତ୍ୱ ବ୍ୟପଦେଶ ହୁଏ ଅଥବା 'ଅନେକ ଜୀବେନାତ୍ମନା' ଇତ୍ୟାଦି ଶ୍ରୁତିଦ୍ୱାରା ବ୍ରହ୍ମରେ ଜୀବତ୍ୱ ବ୍ୟପଦେଶ ହୁଏ । ତେଣୁ ବ୍ରହ୍ମ ହିଁ ସ୍ରଷ୍ଟା, ଜୀବସୃଷ୍ଟି କରେ । ହିତାକରଣାଦିଦୋଷ- ପ୍ରସକ୍ତିଃ = ବ୍ରହ୍ମକୁ ନିଜେ ଅହିତ, ମରଣାଦି ଅନେକଅନର୍ଥ କରଣରୂପଦୋଷର ପ୍ରସକ୍ତି ହେବ । ତେଣୁ ଚେତନ ବ୍ରହ୍ମ ଜଗତ୍‌ର କାରଣ ନୁହେଁ ।

(୨) ମୂଳ-(କ) ଅନ୍ୟଥା ପୁନଶ୍ଚେତନ କାରଣବାଦ ଆକ୍ଷିପ୍ୟତେ । ଚେତନାଦ୍ଧି ଜଗତ୍ ପ୍ରକ୍ରିୟାୟାମାଶ୍ରୀୟମାଣାୟାଂ ହିତକରଣାଦୟୋ ଦୋଷାଃ ପ୍ରସଜ୍ୟନ୍ତେ । କୁତଃ ଇତରବ୍ୟପଦେଶାତ୍ । ଇତରସ୍ୟ ଶାରୀରସ୍ୟ ବ୍ରହ୍ମାତ୍ମତ୍ୱଂ ବ୍ୟପଦିଶତି ଶ୍ରୁତିଃ- 'ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ' (ଛା ୬-୪-୭) ଇତି ପ୍ରତିବୋଧନାତ୍ ।

(ଖ) ଯଦ୍‌ବା । ଇତରସ୍ୟଚ ବ୍ରହ୍ମଣଃ ଶାରୀରାତ୍ମତ୍ୱଂ ବ୍ୟପଦିଶତି 'ତତ୍ ସୃଷ୍ଟ୍ୱା ତଦେବାନୁପ୍ରାବିଶତ୍' (ତୈ ୨-୬) ଇତି ସ୍ରଷ୍ଟୁରେବାବିକୃତସ୍ୟ ବ୍ରହ୍ମଣଃ କାର୍ଯ୍ୟାନୁପ୍ରବେ- ଶେନ ଶାରୀରାତ୍ମତ୍ୱପ୍ରଦର୍ଶନାତ୍ । 'ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣି' (ଛା ୬-୩-୧) ଇତିଚପରା ଦେବତା ଜୀବମାତ୍ମଶବ୍ଦେନ ବ୍ୟପଦିଶନ୍ତୀ ନ ବ୍ରହ୍ମଣୋ ଭିନ୍ନଃ ଶାରୀର ଇତି ପ୍ରଦର୍ଶୟତି । ତସ୍ମାଦ୍ୟଦ୍‌ବ୍ରହ୍ମଣଃ ସ୍ରଷ୍ଟୃତ୍ୱଂ ତଚ୍ଛାରୀରସ୍ୟୈବେତି ।

(ଗ) ଅତଃ ସ ସ୍ୱତନ୍ତ୍ରଃ କର୍ତ୍ତାସନ୍ ହିତମେବାତ୍ମନଃ ସୌମନସ୍ୟ କରଂ କୁର୍ଯ୍ୟାନ୍ନାହିତଂ ଜନ୍ମମରଣଜରାରୋଗାଦ୍ୟନେକାନର୍ଥଜାଲମ୍ । ନହି କଶ୍ଚିଦପରତନ୍ତ୍ରୋ ବନ୍ଧନାଗାରମାତ୍ମନଃ କୃତ୍ୱାନୁପ୍ରବିଶତି । ନ ଚ ସ୍ୱୟମତ୍ୟନ୍ତନିର୍ମଳଃ ସନ୍ନତ୍ୟନ୍ତମଳିନଂ ଦେହମାତ୍ମତ୍ୱେ ନୋପେୟାତ୍ । କୃତମପି କଥଂଚିଦ୍ ଯଦ ଦୁଃଖକରଂ ତଦିଚ୍ଛୟା ଜହ୍ୟାତ୍ । ସୁଖ କରଂ ଚୋପାଦଦୀତ । ସ୍ମରେଚ୍ଚ ମୟେଦଂ ଜଗଦ୍‌ବିମ୍ବଂ ବିଚିତ୍ରଂ ବିରଚିତମିତି ।



(ଘ) ସର୍ବୋହି ଲୋକଃ ସ୍ପଷ୍ଟଂ କାର୍ଯ୍ୟଂ କୃତ୍ୱା ସ୍ମରତି ମୟେଦଂକୃତମିତି । ଯଥାଚ ମାୟାବୀ ସ୍ୱୟଂ ପ୍ରସାରିତାଂ ମାୟାମିଚ୍ଛୟାନାପାୟା ସେନୈବୋପସଂହରତି, ଏବଂ ଶାରୀରୋଽପୀମାଂ ସୃଷ୍ଟିମୁପସଂହରେତ୍ । ସ୍ୱୟମପି ତାବଚ୍ଛରୀରଂ ଶାରୀରୋନଶକ୍ନୋତ୍ୟନାୟାସେନୋପସଂହର୍ତ୍ତୁମ୍, ଏବଂ ହିତକ୍ରିୟାଦ୍ୟଦର୍ଶନାଦନ୍ୟାୟା ଚେତନାଜ୍ଜଗତ ପ୍ରକ୍ରିୟେତି ଗମ୍ୟତେ ।

**(୨) ଭାଷାଂତର-** (କ) ଚେତନକାରଣବାଦ ପରପ୍ରକରଣଠାରୁ ପୁନର୍ବାର ଆକ୍ଷେପ କରାଯାଇଅଛି । ଚେତନରୁ ଜଗତ୍ ସୃଷ୍ଟି ଆଶ୍ରୟଣ କଲାପରେ ହିତାକରଣ ଇତ୍ୟାଦିଦୋଷପ୍ରସଙ୍ଗ ହେବେ । କିପରି ? ଇତରର ବ୍ୟପଦେଶ ହେତୁ । ଇତରଜୀବାତ୍ମାର ବ୍ରହ୍ମାତ୍ମସ୍ୱରୂପରେ ଶ୍ରୁତି ବ୍ୟପଦେଶ କରେ । ଯଥା- 'ଯ ଆତ୍ମା' (ସେ ଆତ୍ମା ଅଟେ ! ହେ ଶ୍ୱେତକେତୁ ! ସେ ତୁ ଆତ୍ମାଅଟୁ) ଏହାହିଁ ଜ୍ଞାନ କରାଏ ।

(ଖ) ଅଥବା ଇତର ବ୍ରହ୍ମର ଜୀବାତ୍ମାରୂପରେ ବ୍ୟପଦେଶ କରେ । କାରଣ- 'ତତ୍‌ସୃଷ୍ଟ୍ୱା' (ତାହାକୁ ରଚନା କରି ତନ୍ମଧରେ ପ୍ରବେଶ କଲା) ଏହିପ୍ରକାର ସ୍ରଷ୍ଟା ଆବିକୃତବ୍ରହ୍ମକୁ କାର୍ଯ୍ୟରେ ଅନୁପ୍ରବେଶ ଦ୍ୱାରା ଜୀବାତ୍ମା ଦେଖାଏ । 'ଅନେକ ଜୀବେନ' (ମୁଁ ଏହି ଜୀବାତ୍ମାରୂପରେ ତିନି ଦେବତାଙ୍କଠାରେ ଅନୁପ୍ରବେଶ କରି ନାମ ଓ ରୂପକୁ ଅଭିବ୍ୟକ୍ତି କରିବି) ଏହିପରି ପରଦେବତାଜୀବର ଆତ୍ମଶବ୍ଦଦ୍ୱାରା ବ୍ୟପଦେଶ କରୁଥିବା ଶାରୀର ବ୍ରହ୍ମଠାରୁ ଭିନ୍ନ ନୁହେଁ ବୋଲି ଦେଖାଯାଏ । ତେଣୁ (ଜୀବ ଓ ବ୍ରହ୍ମର ଅଭେଦ ହେଲେ) ସ୍ରଷ୍ଟୃତ୍ୱ ହୁଏ ଏବଂ ସେ ମଧ ଶାରୀରର ହୁଏ ।

(ଗ) ତେଣୁ ସେ ସ୍ୱତନ୍ତ୍ରକର୍ତ୍ତା ହୋଇ ମନୋଽନୁକୂଳ ନିଜର ଉପକାର କରେ ଜନ୍ମ, ମରଣ, ଜରା ରୋଗ ପ୍ରଭୃତି ଅନେକ ପ୍ରକାରର ଅନର୍ଥସମୂହରୂପ ଅହିତ କରେ ନାହିଁ, କାରଣ-ସ୍ୱତନ୍ତ୍ର ହୋଇ କିଏ ହେଲେ ନିଜ ନିଜ ପାଇଁ ବନ୍ଧନଘର ନିର୍ମାଣ କରି ସେହି କାରାଗାରରେ ପ୍ରବେଶ କରେ ନାହିଁ । କୌଣସି ପ୍ରକାର ଯଦି ଦୁଃଖରେ ସେ କିଛି କରେ, ସେ ମଧ ତାହାର ଇଚ୍ଛାନୁସାରେ ତ୍ୟାଗକରେ, ସୁଖକୁ ଗ୍ରହଣ କରେ ଏବଂ ମୁଁ ଏହି ବିଚିତ୍ରସଂସାରକୁ ସୃଷ୍ଟି କରିଛି ।

(ଘ) କାରଣ- ସେ (ଆତ୍ମା) ସମସ୍ତେ କାମ କରି 'ମୁଁ ଏହା କରିଛି' ବୋଲି ସ୍ମରଣ କରିବା ଦ୍ୱାରା ଏହା ସ୍ପଷ୍ଟ ଭାବରେ ଅନୁମିତ ହୁଏ । ଯେପରି ମାୟାବୀ ନିଜେ ବିସ୍ତାର ହୋଇ ତାର ଇଚ୍ଛାନୁସାରେ ବିନାପରିଶ୍ରମରେ ଉପସଂହାର କରେ, ସେପରି ଶାରୀର ମଧ ଏହି ସୃଷ୍ଟିର ଉପସଂହାର କରେ, ପରନ୍ତୁ ଶାରୀର ନିଜଶରୀରର ଅନାୟାସ ଉପସଂହାର କରିବାରେ ସମର୍ଥ ହୁଏ ନାହିଁ । ତେଣୁ ହିତକ୍ରିୟାଦିର ଅଦର୍ଶନରୁ ଏହି ଜ୍ଞାନ ହୁଏ- ଚେତନାଦ୍ୱାରା ଜଗତ୍‌ର ପ୍ରକ୍ରିୟା ସ୍ୱୀକାର କରିବା ସଂପୂର୍ଣ୍ଣତଃ ଅନ୍ୟାୟ ଅଟେ ।

## अधिकंतु भेदनिर्देशात् ॥२२॥

## ୧- ଅଧିକନ୍ତୁ ଭେଦନିର୍ଦ୍ଦେଶାତ୍ ॥ ୨-୧-୧୧ ॥

ତୁ=ଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି ପାଇଁ ଦିଆଯାଇଛି । ଅଧିକମ୍=ଜୀବଠାରୁ ସର୍ବଜ୍ଞ, ଭିନ୍ନ, ସର୍ବଶକ୍ତିମାନ୍ ବ୍ରହ୍ମ ଜଗତ୍‌ର ସ୍ରଷ୍ଟା ହୁଏ । ତେଣୁ ସେଥିରେ ହିତାକରଣାଦି ଦୋଷ ହୁଏ ନାହିଁ । ଭେଦନିର୍ଦ୍ଦେଶାତ୍=କାରଣ-'ଆତ୍ମା ବାରେ ଦ୍ରଷ୍ଟବ୍ୟଃ' ଇତ୍ୟାଦି ଶ୍ରୁତିଦ୍ୱାରା କଥିତ ଭେଦରେ ନିର୍ଦ୍ଦେଶ ହୁଏ ।

(୨) ମୂଳ-(କ) ତୁଶବ୍ଦଃ ପକ୍ଷଂ ବ୍ୟାବର୍ତ୍ତୟତି । ଯତ୍‌ସର୍ବଜ୍ଞଂ ସର୍ବଶକ୍ତି ବ୍ରହ୍ମନିତ୍ୟଶୁଦ୍ଧବୁଦ୍ଧମୁକ୍ତସ୍ୱଭାବଂ ଶାରୀରାଦଧିକମନ୍ୟତ୍, ତଦ୍ ବୟଂ ଜଗତଃ ସ୍ରଷ୍ଟୃ ବ୍ରୂମଃ । ନ ତସ୍ମିନ୍ ହିତାକରଣାଦୟୋ ଦୋଷାଃ ପ୍ରସଜ୍ୟନ୍ତେ । ନହି ତସ୍ୟ ହିତଂ କିଞ୍ଚିତ୍‌କର୍ତ୍ତବ୍ୟ-ମସ୍ତ୍ୟହିତଂ ବା ପରିହର୍ତ୍ତବ୍ୟଂ, ନିତ୍ୟମୁକ୍ତସ୍ୱଭାବତ୍ୱାତ୍ । ନ ଚ ତସ୍ୟ ଜ୍ଞାନପ୍ରତିବନ୍ଧଃ ଶକ୍ତିପ୍ରତିବନ୍ଧୋ ବା କ୍ୱଚିଦପ୍ୟସ୍ତି, ସର୍ବଜ୍ଞତ୍ୱାତ୍ ସର୍ବଶକ୍ତିତ୍ୱାଚ୍ଚ । ଶାରୀରସ୍ତ୍ୱନେବଂବିଧସ୍ତ-ସ୍ମିନ୍ ପ୍ରସଜ୍ୟନ୍ତେ ହିତାକରଣାଦୟୋ ଦୋଷାଃ । ନତୁ ତଂ ବୟଂ ଜଗତଃ ସ୍ରଷ୍ଟାରଂ ବ୍ରୂମଃ ।

(ଖ) କୁତ ଏତତ୍ । ଭେଦନିର୍ଦ୍ଦେଶାତ୍ । 'ଆତ୍ମା ବାଽରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ' (ବୃ ୨-୪-୫), 'ସୋଽନ୍ୱେଷ୍ଟବ୍ୟଃ ସ ବିଜିଜ୍ଞାସିତବ୍ୟଃ' (ଛା ୬-୭-୧), 'ସତାସୋମ୍ୟ ତଦା ସଂପନ୍ନୋ ଭବତି' (ଛା ୬-୮-୧) 'ଶାରୀର ଆତ୍ମା ପ୍ରାଜ୍ଞେନାତ୍ମନାରୂଢଃ' (ବୃ ୪-୩-୩୫) ଇତେବଂ ଜାତୀୟକଃ କର୍ତ୍ତୃକର୍ମାଦିଭେଦନିର୍ଦ୍ଦେଶୋ ଜୀବାଦଧିକଂ ବ୍ରହ୍ମ ଦର୍ଶୟତି ।

**(୨) ଭାଷାଂତର-** (କ) ତୁଶବ୍ଦ ପୂର୍ବପକ୍ଷକୁ ବ୍ୟାବୃତ୍ତି କରେ । ଯାହା ସର୍ବଜ୍ଞ, ସର୍ବଶକ୍ତିମାନ୍, ନିତ୍ୟ, ଶୁଦ୍ଧ, ବୁଦ୍ଧ ଓ ମୁକ୍ତସ୍ୱଭାବ ବ୍ରହ୍ମ ଜୀବଠାରୁ ଭିନ୍ନ ଅଟେ । ତେଣୁ ଆମ୍ଭେ ତାକୁ ସଂସାରର ସ୍ରଷ୍ଟା ବୋଲି କହୁଁ । ସେଥିରେ ହିତାକାରଣ ଦୋଷ ପ୍ରସକ୍ତ ହୁଏ ନାହିଁ । କାରଣ-ତାହାଠାରୁ ଅଧିକ କିଛି ହିତକାର୍ଯ୍ୟ କରିବାର ନାହିଁ, ଏବଂ ଅହିତକାର୍ଯ୍ୟ ପରିହାର୍ଯ୍ୟ ନୁହେଁ । କାରଣ-ସେହି ବ୍ରହ୍ମ ନିତ୍ୟ, ମୁକ୍ତ ସ୍ୱଭାବ ଅଟେ । ସେ ସର୍ବଜ୍ଞ ଓ ସର୍ବଶକ୍ତିମାନ୍ ହେଲେ ସେହି ଜ୍ଞାନର ପ୍ରତିବନ୍ଧ ଅଥବା ଶକ୍ତିର ପ୍ରତିବନ୍ଧ କେଉଁଠାରେ ହୁଏ ନାହିଁ । ତେଣୁ ବ୍ରହ୍ମରେ ଅହିତକରିବାଦି ଦୋଷ ପ୍ରସକ୍ତ ହୁଏ । ପରନ୍ତୁ ଆମ୍ଭେ ତାକୁ ଜଗତର ସ୍ରଷ୍ଟା ବୋଲି କହୁ ନାହୁଁ ।

(ଖ) କାହିଁକି ? କାରଣ-ତାହା ସୃଷ୍ଟିଦ୍ୱାରା ଭେଦନିର୍ଦ୍ଦେଶ କରାଯାଇଅଛି । ଯଥା- 'ଆତ୍ମା ବାଽରେ' ହେ ମୈତ୍ରେୟୀ ! ଆତ୍ମାକୁ ଦେଖିବା ଉଚିତ, ମନନ କରିବା ଉଚିତ୍, ନିଦିଧ୍ୟାସନ କରିବା ଉଚିତ, ('ସୋଽନ୍ୱେଷ୍ଟବ୍ୟଃ') ସେ ଅନ୍ୱେଷ୍ଟବ୍ୟ ଓ ବିଶେଷ ଭାବରେ ଜିଜ୍ଞାସିତବ୍ୟ ('ସତାସୋମ୍ୟ) ! ହେ ସୋମ୍ୟ ! ସୁଷୁପ୍ତିରେ ସତ୍ ସହିତ ସଂପନ୍ନ ହୁଏ



('ଶାରୀରଂ ଆତ୍ମା') ମରଣକାଳରେ ଏହି ଜୀବାତ୍ମା ପରମାତ୍ମା ଦ୍ୱାରା ଅଧିଷ୍ଠିତ ହୋଇଯାଏ (ଏହି ପ୍ରକାର କର୍ତ୍ତୃକର୍ମାଦି ଭେଦନିର୍ଦ୍ଦେଶ ଜୀବଠାରୁ ଭିନ୍ନବ୍ରହ୍ମକୁ ଦେଖାଏ ।)

(୩) ମୂଳ-(କ) ମନ୍ୱଭେଦନିର୍ଦ୍ଦେଲଶୋଽପି ଦର୍ଶିତଃ 'ତତ୍ତ୍ୱମସି' ଇତ୍ୟେବଂ-ଜାତୀୟକଃ । କଥଂ ଭେଦାଭେଦୌ ବିରୁଦ୍ଧୌ ସମ୍ଭବେୟାତାମ୍ । ନୈଷ ଦୋଷଃ । ଆକାଶ ଘଟାକାଶନ୍ୟାୟେନୋଭୟସମ୍ଭବସ୍ୟ ତତ୍ର ତତ୍ର ପ୍ରତିଷ୍ଠାପିତତ୍ୱାତ୍ ।

(ଖ) ଅପି ଚ ଯଦା ତତ୍ତ୍ୱମସୀତ୍ୟେବଂଜାତୀୟକେନାଭେଦନିର୍ଦ୍ଦେଶେନା ଭେଦଃ ପ୍ରତିବାଧିତୋ ଭବତ୍ୟପଗତଂ ଭବତି, ତଦା ଜୀବସ୍ୟ ସଂସାରିତ୍ୱଂ ବ୍ରହ୍ମଣଶ୍ଚ ସ୍ରଷ୍ଟୃତ୍ୱଂ, ସମସ୍ତ୍ୟ ମିଥ୍ୟାଜ୍ଞାନବିଜୃମ୍ଭିତସ୍ୟ ଭେଦବ୍ୟବହାରସ୍ୟ ସମ୍ୟଗ୍‌ଜ୍ଞାନେନ ବାଧିତତ୍ୱାତ୍ ।

(ଗ) ତତ୍ର କୁତ ଏବ ସୃଷ୍ଟିଃ କୁତୋ ବା ହିତାକରଣାଦୟୋ ଦୋଷାଃ । ଅବି-ଦ୍ୟାପ୍ରତ୍ୟୁପସ୍ଥାପିତ ନାମରୂପକୃତକାର୍ଯ୍ୟକରଣସଂଘାତୋପାଧିବିବେକକୃତା ହି ଭ୍ରାନ୍ତିର୍ହିତା-କରଣାଦିଲକ୍ଷଣଃ ସଂସାରୋ ନତୁ ପରମାର୍ଥତୋଽସ୍ତୀତ୍ୟ ସକୃଦବୋଚମ । ଜନ୍ମମରଣଚ୍ଛେଦନ ଭେଦନାଦ୍ୟଭିମାନବତ୍ ।

(ଘ) ଅବାଧିତେ ତୁ ଭେଦବ୍ୟବହାରେ 'ସୋଽନ୍ୱେଷ୍ଟବ୍ୟଃ ସ ବିଜିଜ୍ଞାସିତବ୍ୟଃ' ଇତ୍ୟେବଂଜାତୀୟକେନ ଭେଦ ନିର୍ଦ୍ଦେଶେନାବଗମ୍ୟମାନଂ ବ୍ରହ୍ମଣୋଽଧିକତ୍ୱଂ ହିତାକରଣା-ଦିଦୋଷପ୍ରସକ୍ତିଂ ନିରୁଣଦ୍ଧି ।

**(୩) ଭାଷାଂତର-** (କ) ପରନ୍ତୁ 'ତତ୍ୱମସି' ପରି ଅଭେଦନିର୍ଦ୍ଦେଶ କରାଯାଇଅଛି । କିନ୍ତୁ ପୁନର୍ବାର ପରସ୍ପର ବିରୁଦ୍ଧ ଅଭେଦ କିପରି ସମ୍ଭବ ହେବ ? ଏହା ଦୋଷ ନୁହେଁ । କାରଣ- ମହାକାଶ ଓ ଘଟାକାଶନ୍ୟାୟଭଳି ସେହିସେହି ସ୍ଥାନ ଗୁଡ଼ିକରେ ଦୁଇଟି ପଦାର୍ଥର ସମ୍ଭବ (ପ୍ରାପ୍ତି) ପ୍ରତିଷ୍ଠାପିତ କରାଗଲା ।

(ଖ) ଯେତେବେଳେ 'ତତ୍ତ୍ୱମସି'ପରି ଅଭେଦନିର୍ଦ୍ଦେଶଦ୍ୱାରା ଜୀବ ଅଭେଦ ପ୍ରତିବୋଧିତ ହୁଏ, ସେତେବେଳେ ଜୀବର ସଂସାରିତ୍ୱ ଓ ବ୍ରହ୍ମର ସ୍ରଷ୍ଟତ୍ୱ ନିବୃତ୍ତ ହୁଏ । କାରଣ- ମିଥ୍ୟାଜ୍ଞାନଦ୍ୱାରା ବିସ୍ତାର ହୋଇଥିବା ସମସ୍ତ ଭେଦ ବ୍ୟବହାରର ସମ୍ୟଗ୍‌ଜ୍ଞାନ ଦ୍ୱାରା ବାଧିତ ହୁଏ ।

(ଗ) ତେଣୁ ଏହିପରି ସ୍ଥିତିରେ ସୃଷ୍ଟି କିପରି ହିତାକରଣ ଦୋଷ ହୁଏ । ହିତାକରଣ ପ୍ରଭୃତି ରୂପ ସଂସାର ଅବିଦ୍ୟାଦ୍ୱାରା ପ୍ରତ୍ୟୁପସ୍ଥାପିତ ନାମ ଓ ସ୍ୱରୂପକୃତ ଶରୀର ଓ ଇନ୍ଦ୍ରିୟ ସଂଘାତ ରୂପ ଉପାଧିର ଅବିବେକଦ୍ୱାରା ଉତ୍ପନ୍ନ ହୋଇ ମିଥ୍ୟା ହୁଏ । କିନ୍ତୁ ପରମାର୍ଥତଃ ନୁହେଁ ବୋଲି ଆମ୍ଭେ ଅନେକଥର କହିଛୁ । ଯେପରି ଶରୀରର ଜନ୍ମ-ମରଣ, ଛେଦନ-ଭେଦନ ଇତ୍ୟାଦିର ଆତ୍ମାରେ ଅଭିମାନଦ୍ୱାରା ପ୍ରତୀତ ହୁଏ ।

(ଘ)· ପରନ୍ତୁ ଭେଦବ୍ୟବହାର ଅବାଧିତ ହେଲାପରେ 'ସୋଽନ୍ୱେଷ୍ଟବ୍ୟଃ' 'ସଃ ବିଜିଜ୍ଞାସିତବ୍ୟଃ' ଏହିପ୍ରକାରର ଭେଦନିର୍ଦ୍ଦେଶଦ୍ୱାରା ଅବଗତ ହୋଇ ବ୍ରଶଗତ ଭେଦ ହିତାକରଣାଦି ଦୋଷର ପ୍ରସକ୍ତିକୁ ବାଧାଦିଏ ।

## अश्मादिवच्च तदनुपपत्तिः ॥२३॥

## (୧) ଅଶ୍ମାଦିବଚ୍ଚ ତଦନୁପପତ୍ତିଃ ॥୨-୧-୨୩॥

ଅଶ୍ମାଦିବଚ୍ଚ - ଗୋଟିଏ ପୃଥିବୀଠାରୁ ଉତ୍ପନ୍ନ ହୋଇ ଯେପରି ବଜ୍ର, ବୈଡୁର୍ଯ୍ୟ ଇତ୍ୟାଦି ଭେଦରେ ପୃଥକ୍ ରୂପେ ପ୍ରତୀତି ହୁଏ, ସେପରି ବ୍ରହ୍ମରେ କାର୍ଯ୍ୟସ୍ୱରୂପ ଯୁକ୍ତ ହୁଏ । ତେଣୁ, ତଦନୁପପତ୍ତିଃ-ଅନ୍ୟକଳ୍ପିତ ଦୋଷର ଉପପତ୍ତି ହୁଏ ନାହିଁ ।

(୨) ମୂଳ-(କ) ଯଥା ଚ ଲୋକେ ପୃଥିବୀତ୍ୱସାମାନ୍ୟାନ୍ୱିତାନାମପ୍ୟଶ୍ମନାଂ କେଚିନ୍ମହାର୍ହା ମଣୟୋବଜ୍ରବୈଡୁର୍ଯ୍ୟାଦୟୋଽନ୍ୟେ ମଧ୍ୟମବୀର୍ଯ୍ୟାଃ ସୂର୍ଯ୍ୟକାନ୍ତା-ଦୟୋଽନ୍ୟେ ପ୍ରହୀଣାଃ ଶ୍ୱବାୟସପ୍ରକ୍ଷେପେଣାର୍ହାଃ ପାଷାଣା ଇତ୍ୟନେକବିଧଂ ବୈଚିତ୍ର୍ୟଂ ଦୃଶ୍ୟତେ ।

(ଖ) ଯଥା ଚୈକପୃଥିବୀବ୍ୟାପାଶ୍ରୟାଣାମପି ବୀଜାନାଂ ବହୁବିଧଂ ପତ୍ରପୁଷ୍ପଫଳ-ଗନ୍ଧରସାଦିବୈଚିତ୍ର୍ୟଂ ଚନ୍ଦନକିଂପାକାଦିଷୂପଲକ୍ଷ୍ୟତେ । ଯଥା ଚୈକସ୍ୟାପ୍ୟନ୍ନରସସ୍ୟ ଲୋହିତାଦୀନି କେଶଲୋମାଦୀନି ଚ ବିଚିତ୍ରାଣି କାର୍ଯ୍ୟାଣି ଭବନ୍ତି ।

(ଗ) ଏବମେକସ୍ୟାପି ବ୍ରହ୍ମଣୋ ଜୀବପ୍ରାଜ୍ଞ ପୃଥକତ୍ୱଂ କାର୍ଯ୍ୟବୈଚିତ୍ର୍ୟଂ ଚୋପପଦ୍ୟତ ଇତ୍ୟତସ୍ତଦନୁପପତ୍ତିଃ । ପରପରିକଳ୍ପିତଦୋଷାନୁପପତ୍ତିରିତ୍ୟର୍ଥଃ । ଶ୍ରୁତେଶ୍ଚ ପ୍ରମାଣ୍ୟାଦ୍ୱିକାରସ୍ୟ ଚ ବାଚାରମ୍ଭଣମାତ୍ରତ୍ୱାତ୍ ସ୍ୱପ୍ନଦୃଶ୍ୟଭାବବୈଚିତ୍ର୍ୟବଚ୍ଚେତ୍ୟଭ୍ୟୁଚ୍ଚୟଃ ।

**(୨) ଭାଷାଂତର**-(କ) ଯେପରି ବ୍ୟବହାରରେ ପୃଥିବୀତ୍ୱଗୁଣଯୁକ୍ତ ପଥରରେ କୌଣସି ପଥର ଯଥା-ବଜ୍ର, ବୈଡୁର୍ଯ୍ୟ ପ୍ରଭୃତି ବହୁ ମୂଲ୍ୟମଣି ଅଛନ୍ତି । କେତେକ ଅନ୍ୟ ସୂର୍ଯ୍ୟକାନ୍ତପ୍ରଭୃତି ମଧ୍ୟମ ମୂଲ୍ୟ ମଣି ରହନ୍ତି ଓ ଅନ୍ୟ ନିକୃଷ୍ଟ ପଥର କୁକୁରକୁ ଅଥବା କୁଅରେ ଫୋପାଡ଼ିବା ପାଇଁ ଯୋଗ୍ୟହେବା ଦେଖାଯାଏ । ସେହିପରି ପାଷାଣରେ ଅନେକପ୍ରକାର ବୈଚିତ୍ର୍ୟ ଦେଖାଯାଏ ।

(ଖ) ଯେପରି ଗୋଟିଏ ମାତ୍ର ପୃଥିବୀକୁ ଆଶ୍ରୟ କରିଥିବା ବୀଜକୁ ପାତ୍ର, ପୁଷ୍ପ, ଫଳ, ଗନ୍ଧ, ରସ, ଇତ୍ୟାଦି ଅନେକପ୍ରକାରର ବୈଚିତ୍ର୍ୟ ଚନ୍ଦନ, ତାଳ, ଚମ୍ପକାଦି ବୃକ୍ଷରେ ଉପଲକ୍ଷିତ ହୁଏ, ଯେପରି ଏକହିଁ ଅନ୍ନରସର ରୁଧିର ପ୍ରଭୃତି କେଶଲୋମାଦି ବୈଚିତ୍ର୍ୟ କାର୍ଯ୍ୟ ହୁଏ ।

(ଗ) ଠିକ୍ ସେହିପରି ଏକବ୍ରହ୍ମରୁ ଜୀବ ଓ ପ୍ରାଜ୍ଞରୂପରେ ପୃଥକତ୍ୱ ଓ କାର୍ଯ୍ୟବୈଚିତ୍ର୍ୟ ଉପପନ୍ନ ହୁଏ । ତେଣୁ ଏହିଦୋଷର ଅନୁପପତ୍ତି ହୁଏ ଅର୍ଥାତ୍ ଅନ୍ୟଦ୍ୱାରା ପରିକଳ୍ପିତ

ଦୋଷର ଅନୁପପତ୍ତି ହୁଏ ବୋଲି ବୁଝାଯାଏ । ଶ୍ରୁତିପ୍ରାମାଣ୍ୟହେଲେ ଓ ବିକାରର ବାଚାରମ୍ଭଣମାତ୍ରହେଲେ ସ୍ୱପ୍ନପଦାର୍ଥର ବିଚିତ୍ରତା ପରି ଏହା ପ୍ରତିଭାତ ହୁଏ; ସେହିପରି ଅନ୍ୟର ସଂଗ୍ରହ କରିବା ଉଚିତ ।

## ८ उपसंहारदर्शनाधिकरणम् । सु० ॥२४-२५ ॥

## ଉପସଂହାର ଦର୍ଶନାଧିକରଣ-୮

## उपसंहारदर्शनान्नेति चेन्न क्षीरवद्धि ॥२४ ॥

## (୧) ଉପସଂହାରଦର୍ଶନାନ୍ନେତି ଚେନ୍ନ କ୍ଷୀରବଦ୍ଧି ॥ ୨-୧-୨୪ ॥

ଉପସଂହାରଦର୍ଶନାତ୍-ସଂସାରରେ ଘଟାଦିର କର୍ତ୍ତା କୁମ୍ଭାରକୁ ଦଣ୍ଡ ଇତ୍ୟାଦି ଉପଯୋଗୀ ସାମଗ୍ରୀର ସଂଗ୍ରହ କରିବା କାର୍ଯ୍ୟ ଦେଖାଯାଏ । ସେହିପରି, ନ-ଅସହାୟ ବ୍ରହ୍ମ ଜଗତ୍‌ର ଉପାଦାନ ଅଥବା ନିମିତ୍ତକାରଣ ହେବା ଅସମ୍ଭବ । ଇତି ଚେନ୍ନ- ଯଦି ଏହା କୁହାଯାଏ, ତେବେ ଏହା ଅସମୀଚୀନ । କାରଣ-କ୍ଷୀରବଦ୍ଧି ଯେପରି ଦୁଧ ଅନ୍ୟ କାହାକୁ ଅପେକ୍ଷା ନ କରି ନିଜେ ଦଧିରୂପରେ ପରିଣତ ହୁଏ । ସେପରି ବ୍ରହ୍ମ ମଧ୍ୟ ଅନ୍ୟକାହାକୁ ଅପେକ୍ଷା ନକରି ସଂସାରକୁ ସୃଷ୍ଟି କରେ ।

(୨) ମୂଳ-(କ) ଚେତନଂ ବ୍ରହ୍ମୈକମଦ୍ୱିତୀୟଂ ଜଗତଃ କାରଣମିତି ଯଦୁକ୍ତଂ ତନ୍ନୋପଦ୍ୟତେ । କସ୍ମାତ୍ ? ଉପସଂହାରଦର୍ଶନାତ୍ । ଇହ ହି ଲୋକେ କୁଲାଳାଦୟୋ ଘଟପଟାଦୀନାଂ କର୍ତ୍ତାରୋ ମୃଦଣ୍ଡଚକ୍ରସୂତ୍ରାଦ୍ୟନେକ କାରକୋପସଂହାରେଣ ସଂଗୃହୀତ ସାଧନାଃ ସନ୍ତସତତକାର୍ଯ୍ୟଂ କୁର୍ବାଣା ଦୃଶ୍ୟନ୍ତେ ।

(ଖ) ବ୍ରହ୍ମ ଚାସହାୟଂ ତବାଭିପ୍ରେତଂ ତସ୍ୟ ସାଧନାନ୍ତରାନୁପସଂଗ୍ରହେ ସତି କଥଂ ସ୍ରଷ୍ଟୃତ୍ୱମୁପପଦ୍ୟେତ । ତସ୍ମାନ୍ନ ବ୍ରହ୍ମ ଜଗତ୍ କାରଣମିତି ଚେତ୍ । ନୈଷଦୋଷଃ ଯତଃ କ୍ଷୀରବଦ୍ର ବ୍ୟସ୍ୱଭାବବିଶେଷାଦୁପପଦ୍ୟତେ । ଯଥା ଲୋକେ କ୍ଷୀରଂଜଳଂ ବା ସ୍ୱୟମେବ ଦଧିହିମଭାବେନ ପରିଣମତେଽନପେକ୍ଷ୍ୟ ବାହ୍ୟଂ ସାଧନଂ ତଥେହାପି ଭବିଷ୍ୟତି । ତନୁ କ୍ଷୀରାଦ୍ୟପି ଦଧ୍ୟାଦିଭାବେନ ପରିଣାମମନପେକ୍ଷ୍ୟତ ଏବ ବାହ୍ୟଂ ସାଧନ ମୌଷ୍ଣାଦିକଂ କଥମୁଚ୍ୟତେ କ୍ଷୀରବଦ୍ଧୀତି ।

(ଗ) ନୈଷ ଦୋଷଃ । ସ୍ୱୟମପି ହି କ୍ଷୀରଂ ଯାଂ ଚ ଯାବତୀଂଚପରିଣାମମାତ୍ରାମନୁ ଭବତି ତାବତ୍ୟେବ ତ୍ୱାର୍ଯତେ ତ୍ୱୌଷ୍ୟଦିନା ଦଧିଭାବାୟ । ଯଦି ଚ ସ୍ୱୟଂ ବଧିଭାବଶୀଳତା ନ ସ୍ୟାନ୍ନୈବୌଷ୍ୟାଦିନାପି ବଳାଦ୍ଧଧିଭାବମାପଦ୍ୟେତ । ନହି ବାୟୁରାକାଶୋ ବୈଷ୍ୟାଦିନା ବଳାଦ୍ଧଧିଭାବମାପଦ୍ୟତେ । ସାଧନାସାମଗ୍ର୍ୟାଚ ତସ୍ୟ ପୂର୍ଣ୍ଣତା ସଂପାଦ୍ୟତେ । ପରିପୂର୍ଣ୍ଣଶକ୍ତିକଂ ତୁ ବ୍ରହ୍ମ । ନ ତସ୍ୟାନ୍ୟେନ କେନଚିତ୍ ପୂର୍ଣ୍ଣତା ସଂପାଦୟିତବ୍ୟା ।

(ଘ) ଶ୍ରୁତଶ୍ଚ ଭବତି - ନ ତସ୍ୟ କାର୍ଯ୍ୟଂ କରଣଂଚବିଦ୍ୟତେ, ନ ତତ୍‌ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ । ପରାସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟେତେ, ସ୍ୱଭାବିକୀ ଜ୍ଞାନବଳକ୍ରିୟା ଚ ॥, (ଶ୍ୱେ୬-୨) ଇତି । ତସ୍ମାଦେକସ୍ୟାପି ବ୍ରହ୍ମଣୋ ବିଚିତ୍ରଶକ୍ତିଯୋଗାତ୍ କ୍ଷୀରାଦିବଦ୍‌ବିଚିତ୍ର ପରିଣାମ ଉପପଦ୍ୟତେ ।

(୨) ଭାଷାଂତର-(କ) ଏକ ଅଦ୍ୱିତୀୟ ଚେତନ ବ୍ରହ୍ମଜଗତ୍‌ର କାରଣ ବୋଲି ଯାହା କୁହାଯାଇଛି, ତାହା ଉପପନ୍ନ ନୁହେଁ । କିପରି ? କାରଣ-ତାହା ଉପସଂହାରରେ ଦେଖାଯାଏ । ଏହିଲୋକରେ ଘଟ, ଘଟାଦି କର୍ତ୍ତା କୁମ୍ଭାର ପ୍ରଭୃତି ମୃତ୍ତିକା, ଦଣ୍ଡ, ଚକ୍ର, ସୂତା, ଜଳ ପ୍ରଭୃତି ଅନେକକାରକ ସାଧନଗୁଡ଼ିକର ସଂଗ୍ରହ ଦ୍ୱାରା ସଂଗୃହୀତ ସାଧନ ହୋଇ ସେହି ସେହି କାର୍ଯ୍ୟ କରିବାର ଦେଖାଯାଏ ।

(ଖ) ତୁମ୍ଭଙ୍କୁ ବ୍ରହ୍ମ ଅସହାୟ ଅଭିପ୍ରେତ ଅଟେ- ଏହି ପରିସ୍ଥିତିରେ ଅନ୍ୟସାଧନ ଗୁଡ଼ିକର ସାଧନସଂଗ୍ରହବ୍ୟତୀତ ତାହା କିପରି ସ୍ରଷ୍ଟା ହୁଏ ? ତେଣୁ ବ୍ରହ୍ମ ଜଗତର କାରଣ ନୁହେଁ- ଏହିପରି କୁହାଗଲେ କୌଣସି ଦୋଷ ହୁଏ ନାହିଁ । କାରଣ-କ୍ଷୀର ପରି ଦ୍ରବ୍ୟସ୍ୱଭାବ ବିଶେଷଭାବରେ ଉପପନ୍ନ ହୁଏ । ଯେପରି ଜଗତ୍‌ରେ ଦୁଧ କିମ୍ୱା ଜଳ କୌଣସିବାହ୍ୟସାଧନକୁ ଅପେକ୍ଷା ନକରି ନିଜେ ନିଜେ ଦଧି ବା ହିମକରକାଦିରୂପରେ ପରିଣତ ହୁଏ, ସେପରି ଏଠାରେ ବ୍ରହ୍ମ କୌଣସି ସାଧନକୁ ଅପେକ୍ଷା ନକରି ସଂସାରକୁ ସୃଷ୍ଟି କରେ । ପରନ୍ତୁ ଦୁଧ ଇତ୍ୟାଦି ଦଧିରୂପରେ ପରିଣାମକୁ ପ୍ରାପ୍ତ ହୋଇ ଉଷ୍ମତା ପ୍ରଭୃତି ବାହ୍ୟସାଧନକୁ ଅପେକ୍ଷା କରନ୍ତି । କିନ୍ତୁ କ୍ଷୀରଭଳି କିପରି କୁହାଯାଏ ?

(ଗ) ହଁ, ଏହା ମଧ୍ୟ ନିର୍ଦ୍ଦୋଷ । କାରଣ-ସ୍ୱୟଂ ଦୁଧ ଯେଉଁ ପରିଣାମ ବା ଯେତେ ପରିଣାମରେ ପରିଣାମକୁ ପ୍ରାପ୍ତ ହୁଏ, ଉଷ୍ମତାଦିରେ ମଧ୍ୟ ସେତେ ପରିମାଣ ମାତ୍ରାକୁ ପ୍ରାପ୍ତ ହୁଏ । କିନ୍ତୁ ଉଷ୍ମତାଦିଦ୍ୱାରା ସେଠାରେ ଦହି ଶୀଘ୍ର ହୁଏ । ଯଦି ତାହାର ଦଧିଭାବ ହେବାପାଇଁ ସ୍ୱଭାବ ନହୁଏ, ତେବେ ଉଷ୍ମତାଦିଦ୍ୱାରା ବଳପୂର୍ବକ ଦଧିଭାବ ପ୍ରାପ୍ତ ହୁଏ ନାହିଁ । ସେପରି ବାୟୁ ଓ ଆକାଶ ଉଷ୍ମତାଦିଦ୍ୱାରା ବଳପୂର୍ବକ ଦଧିଭାବକୁ ପ୍ରାପ୍ତ ହୁଅନ୍ତି ନାହିଁ । ସାଧନସାମଗ୍ରୀଦ୍ୱାର କେବଳ ତାହାର ପୂର୍ଣ୍ଣତାସଂପାଦନ କରାଯାଏ । ପରନ୍ତୁ ବ୍ରହ୍ମ ପୂର୍ଣ୍ଣଶକ୍ତିଶାଳୀ, ତେଣୁ ତାହାର ପୂର୍ଣ୍ଣତା କୌଣସି ଅନ୍ୟ ସଂପାଦନ କରିବାରେ ଯୋଗ୍ୟ ନୁହେଁ ।

(ଘ) ତେଣୁ ଏଠାରେ 'ନ ତସ୍ୟ' (ତାହାର ଶରୀର ଓ ଇନ୍ଦ୍ରିୟ ନାହିଁ । ତଦୃଶ ଓ ତାହାଠାରୁ ଅଧିକ ପଦାର୍ଥ କିଛି ଦେଖାଯାଏ ନାହିଁ । ତାହାର ପରାଶକ୍ତି (ମାୟା) ନାନାପ୍ରକାରରେ ଶୁଣାଯାଏ । ତାହା ସ୍ୱାଭାବୀର ଜ୍ଞାନକ୍ରିୟା ଓ ବଳକ୍ରିୟା ଅଟେ) । ଏହା ଶ୍ରୁତି କହେ ତେଣୁ ଏକବ୍ରହ୍ମର ବିଚିତ୍ର ପରିଣାମ ଦୁଧ ଇତ୍ୟାଦିର ପରିଣାମ ପରି ବିଚିତ୍ର ଶକ୍ତିବଳରୁ ସମ୍ଭବ ହୁଏ ।



## देवादिवदपि लोके ॥२५॥

## (୧) ଦେବାଦିବଦପି ଲୋକେ ॥ ୨-୧-୨୫ ॥

ଲୋକେ-ମନ୍ତ୍ର, ଅର୍ଥବାଦ, ଇତିହାସ, ଦିତ୍ପୁରାଣପ୍ରଭୃତିରେ, ଦେବାଦିବତ୍ ଯେପରି ଚେତନ ଦେବତା ଇତ୍ୟାଦି ବାହ୍ୟସାଧନର ବ୍ୟତୀତ ସଂକଳ୍ପମାତ୍ର ଦ୍ୱାରା ବିବିଧ କାର୍ଯ୍ୟ କରି ଉପଲବ୍ଧି ହୁଅନ୍ତି, ସେପରି ବ୍ରହ୍ମମଧ, ଅପି-ଅସହାୟ ହୋଇ ଏହି ବିଚିତ୍ର ଜଗତ୍‌ର ଉପାଦାନ ଓ ନିମିତ୍ତକାରଣ ହୁଏ ।

(୨) ମୂଳ-(କ) ସ୍ୟାଦେତତ୍ । ଉପପଦ୍ୟତେ କ୍ଷୀରାଦୀନାମଚେତନାନାମନପେକ୍ଷ୍ୟାପି ବାହ୍ୟଂ ସାଧନଂ ଦଧ୍ୟାଦିଭାବଃ, ଦୃଷ୍ଟତ୍ୱାତ୍ । ଚେତନାଃ ପୁନଃ କୁଲାଲାଦୟଃ ସାଧନସାମଗ୍ରୀମପେକ୍ଷୈବ ତସ୍ମୈ ତସ୍ମୈ କାର୍ଯ୍ୟାୟ ପ୍ରବର୍ତ୍ତମାନା ଦୃଶ୍ୟନ୍ତେ ।

(ଖ) କଥଂ ବ୍ରହ୍ମଚେତନଂ ସଦସହାୟଂ ପ୍ରବର୍ତ୍ତେତେତେ । ଦେବାଦିବଦିତି ବ୍ରୂମଃ । ଯଥାଲୋକେ ଦେବାଃ ପିତର ଋଷୟ ଇତ୍ୟେବମାଦୟୋ ମହାପ୍ରଭାବାଶ୍ଚେତନା ଅପି ସନ୍ତୋଽନପେକ୍ଷ୍ୟୈବ କୁଂଞ୍ଚିଦ୍ ବାହ୍ୟଂ ସାଧନମୈଶ୍ୱର୍ଯ୍ୟବିଶେଷଯୋଗାଦଭିଧ୍ୟାନମାତ୍ରେଣ ସ୍ୱତ ଏବ ବହୂନି ନାନାସଂସ୍ଥାନାନି ଶରୀରାଣି ପ୍ରାସାଦାଦୀନିଚ ରଥାଦୀନିଚ ନିର୍ମିମାଣା ଉପଲଭ୍ୟନ୍ତେ ମନ୍ତ୍ରାର୍ଥବାଦେତିହାସପୁରାଣପ୍ରମ୍ୟାଣ୍ୟାତ୍ ।

(ଗ) ତନ୍ତୁନାଭଶ୍ଚସ୍ୱତଃଏବ ତନ୍ତୁନ୍ ସୃଜତି । ବଳାକା ଚାନ୍ତରେଣୈବ ଶୁକ୍ରଂ ଗର୍ଭଂଧତ୍ତେ । ପଦ୍ମିନୀ ଚାନପେକ୍ଷ୍ୟ କିଞ୍ଚିତ୍ ପ୍ରସ୍ଥାନସାଧନଂ ସରୋନ୍ତରାତ୍ ସରୋନ୍ତରଂ ପ୍ରତିଷ୍ଠତେ ଏବଂ ଚେତନମପି ବ୍ରହ୍ମାନପେକ୍ଷ୍ୟ ବାହ୍ୟଂସାଧନଂସ୍ୱତ ଏବ ଜଗତଃ ସ୍ରକ୍ଷ୍ୟତି ।

(ଘ) ସ ଯଦି ବ୍ରୂୟାଦ୍ୟଏତେ ଦେବାଦୟୋ ବ୍ରହ୍ମଣୋ ଦୃଷ୍ଟାନ୍ତା ଉପାତ୍ତାସ୍ତେ ଦାର୍ଷ୍ଟାନ୍ତିକେନ ବ୍ରହ୍ମଣା ନ ସମାମାଭବନ୍ତି । ଶରୀରମେବ ହ୍ୟଚେତନଂ ଦେବାଦୀନାଂ ଶରୀରାନ୍ତରାଦିବିଭୂତ୍ୟୁତ୍ପାଦନ ଉପାଦାନଂ ନତୁ ଚେତନ ଆତ୍ମା । ତନ୍ତୁନାଭସ୍ୟଚକ୍ଷଦ୍ରତରଜନ୍ତୁଭକ୍ଷଣାତ୍ ଲାଲା କଠିନତାମାପଦ୍ୟମାନା ତନ୍ତୁର୍ଭବତି । ବାଲାକାଚସ୍ତନୟିତ୍ନୁରବଶ୍ରଣାଦ୍ ଗର୍ଭଂ ଧୃତ୍ତେ । ପଦ୍ମିନୀଚ ଚେତନପ୍ରଯୁକ୍ତା ସତ୍ୟ ଚେତନେନୈବ ଶରୀରେଣ ସରୋନ୍ତରାତ୍ ସରୋନ୍ତରସୁପସର୍ପତି । ବଲ୍ଲୀବ ବୃକ୍ଷଂ, ନ ତୁ ସ୍ୱୟମେବାଚେତନା ସରୋନ୍ତରୋପସର୍ପଣେ ବ୍ୟାପ୍ରିୟତେ । ତସ୍ମାନ୍ନୈତେ ବ୍ରହ୍ମଣୋ ଦୃଷ୍ଟାନ୍ତା ଇତି ।

(ଙ) ତଂ ପ୍ରତିବ୍ରୂୟାନ୍ନାୟଂ ଦୋଷଃ । କୁଲାଲାଦିଦୃଷ୍ଟାନ୍ତ ବୈଲକ୍ଷଣ୍ୟମାତ୍ରସ୍ୟ ବିବକ୍ଷିତତ୍ୱାଦିତି । ଯଥାହି କୁଲାଲାଦୀନାଂ ଦେବାଦୀନାଞ୍ଚ ସମାନେ ଚେତନତ୍ୱେ କୁଲାଲାଦୟଃ କାର୍ଯ୍ୟାରମ୍ଭେ ବାହ୍ୟଂ ସାଧନମପେକ୍ଷନ୍ତେ ନ ଦେବାଦୟଃ, ତଥାବ୍ରହ୍ମ ଚେତନମପିନବାହ୍ୟଂ ସାଧନମପେକ୍ଷିଷ୍ୟତ ଇତ୍ୟେତାବଦ୍ ବୟଂ ଦେବାଦ୍ୟୁଦାହରଣେନ ବିବକ୍ଷ୍ୟାମଃ । ତସ୍ମାଦ୍ୟଥୈକସ୍ୟ ସାମର୍ଥ୍ୟଂ ଦୃଷ୍ଟଂ ତଥା ସର୍ବେଷାମେବ ଭବିତୁମର୍ହତୀତି ନାସ୍ତ୍ୟେକାନ୍ତ ଇତ୍ୟଭିପ୍ରାୟଃ ।

(୨) ଭାଷାଂତର- (କ) ଅଚେତନ ଦୁଧପ୍ରଭୃତି ପଦାର୍ଥ ବାହ୍ୟସାଧନକୁ ଅପେକ୍ଷା ନ କରି ଦଧି ଇତ୍ୟାଦିଭାବକୁ ଉପପନ୍ନ କରିବାହିଁ ଠିକ୍ କାରଣ- ସେହିପରି ସଂସାରରେ ଦେଖାଯାଏ । ପରନ୍ତୁ ଚେତନଂ କୁମ୍ଭାର ପ୍ରଭୃତି ସାଧନସାମଗ୍ରୀକୁ ଅପେକ୍ଷା କରନ୍ତି ।

(ଖ) କିନ୍ତୁ ବ୍ରହ୍ମଚେତନ ହେଲେ ଅସହାୟ (ସାଧନସହାୟତାର ବ୍ୟତିତ) ହୋଇ କୌଣସି କାର୍ଯ୍ୟରେ ପ୍ରବୃତ୍ତ ହୁଏ କି ? ତେଣୁ ଆମ୍ଭେ କହୁଁ- ଦେବତାମାନଙ୍କ ପରି, ଯେପରି ସଂସାରରେ ଦେବଗଣ, ପିତୃଗଣ ଓ ଋଷିଗଣ ଇତ୍ୟାଦି ମହାପ୍ରଭାବଶାଳୀ ଚେତନ ହୋଇ ମଧ୍ୟ କୌଣସି ବାହ୍ୟସାମଗ୍ରୀକୁ ଅପେକ୍ଷା ନକରି ଐଶ୍ୱର୍ଯ୍ୟବିଶେଷ ବଳରେ କେବଳ ସଙ୍କଳ୍ପମାତ୍ରରୁ ସ୍ୱତଃ ଭିନ୍ନ ଭିନ୍ନ ଆକାରଯୁକ୍ତ ହୋଇ ବ୍ରହ୍ମଶରୀର, ପ୍ରାସାଦ ଓ ରଥାଦି ନିର୍ମାଣ କରିବା ଦେଖାଯାଏ । ମନ୍ତ୍ର ଅର୍ଥବାଦ, ଇତିହାସ ଓ ପୁରାଣଦ୍ୱାରା ଏହା ପ୍ରମାଣିତ ହୁଏ ।

(ଗ) ବୁଢ଼ିଆଣୀ ନିଜେ ନିଜର ତନ୍ତୁଗୁଡ଼ିକୁ ସୃଷ୍ଟି କରେ । ମାଈବଗ ଶୁକ୍ରବୀର୍ଯ୍ୟ ବିନା ମଧ୍ୟ ଗର୍ଭଧାରଣ କରେ । ପଦ୍ମିନୀସ୍ଥାନାନ୍ତରିତ ପାଇଁ କୌଣସି ସାଧନକୁ ଅପେକ୍ଷା ନକରି ଗୋଟିଏ ପୋଖରୀରୁ ଅନ୍ୟପୋଖରୀକୁ ଚାଲିଯାଏ । ସେପରି ମଧ୍ୟ ଚେତନ ବ୍ରହ୍ମ ବାହ୍ୟସାଧନକୁ ଅପେକ୍ଷା ନକରି ନିଜେ ସଂସାରକୁ ସୃଷ୍ଟି କରେ ।

(ଘ) ପୂର୍ବପକ୍ଷ- ଯଦି କହ ଯେ- ବ୍ରହ୍ମପାଇଁ ଯେଉଁ ଦେବତାମାନେ ଦୃଷ୍ଟାନ୍ତ ରୂପରେ ଗୃହୀତ, ସେମାନେ ଦାର୍ଷ୍ଟାନ୍ତିକ ବ୍ରହ୍ମ ସହିତ ସମାନ ନୁହଁନ୍ତି । କାରଣ- ଦେବତା ପ୍ରଭୃତିର ଅଚେତନ ଶରୀର ଅନ୍ୟ ଶରୀର ଇତ୍ୟାଦିର ବିଭୂତି ଉତ୍ପନ୍ନ କରିବାରେ ଉପାଦାନ ହୁଏ । କିନ୍ତୁ ଚେତନ ଆତ୍ମାର ଶରୀର ଉପାଦାନ ନୁହେଁ । ବୁଢ଼ିଆଣୀ ବହୁତ କ୍ଷୁଦ୍ରକ୍ଷୁଦ୍ର ପ୍ରାଣୀକୁ ଭକ୍ଷଣ କରେ, ତେଣୁ ସେହି ପ୍ରାଣୀମାନଙ୍କର ଲାଳ କଠିନ ହୋଇ ତନ୍ତୁ ହୁଏ । ମାଈବଗ ମେଘଗର୍ଜନ ଶୁଣିଲେ ଗର୍ଭଧାରଣ କରେ । ଯେପରି ଲତା ଗୋଟିଏ ବୃକ୍ଷରୁ ଅନ୍ୟ ବୃକ୍ଷକୁ ମାଡ଼େ, ସେପରି ପଦ୍ମିନୀ ଚେତନ ଯୁକ୍ତ ହୋଇ ଅଚେତନଶରୀର ରୂପକ ପୋଖରୀରୁ ଅନ୍ୟ ପୋଖରୀକୁ ଯାଏ । ପରନ୍ତୁ ସ୍ୱୟଂ ଅଚେତନ ହୋଇ ଅନ୍ୟ ପୋଖରୀକୁ ଯିବାପାଇଁ କାର୍ଯ୍ୟ କରେ ନାହିଁ, ସେମାନେ ବ୍ରହ୍ମର ଦୃଷ୍ଟାନ୍ତ ନୁହଁନ୍ତି ।

(ଙ) ସେମାନଙ୍କ ପ୍ରତି ଆମ୍ଭର ବକ୍ତବ୍ୟ ଯେ- ଏହା ଦୋଷ ନୁହେଁ । କାରଣ- କୁଲାଳାଦି ଦୃଷ୍ଟାନ୍ତଦ୍ୱାରା କେବଳ ବୈଲକ୍ଷଣ୍ୟ ମାତ୍ର ବିବକ୍ଷିତ ହୁଏ । ଯେପରି କୁଲାଳ ଓ ଦେବତାମାନଙ୍କଠାରେ ଚେତନ ସମାନ ହେଲେ ମଧ୍ୟ କୁଲାଳାକାଦିର୍ଯ୍ୟର ଆରମ୍ଭରେ ବାହ୍ୟ ସାଧନ (ମୃତ୍‌ଦଣ୍ଡାଦି)କୁ ଅପେକ୍ଷା କରେ । କିନ୍ତୁ ଦେବତାମାନେ ରଖନ୍ତି ନାହିଁ । ସେହିପରି ଚେତନ ବ୍ରହ୍ମବାହ୍ୟ ସାଧନକୁ ଅପେକ୍ଷା କରେ ନାହିଁ ବୋଲି ଆମ୍ଭେ ଦେବତାଦି ଉଦାହରଣରେ କହିବାକୁ ଚାହୁଁ । ତେଣୁ ଜଣକର ସାମର୍ଥ୍ୟ ଦେଖାଗଲେ ସମସ୍ତଙ୍କର ସାମର୍ଥ୍ୟ ଦେଖାଯିବା ଉଚିତ ବୋଲି ଏପରି ଅବ୍ୟଭିଚରିତ ନିୟମ ନାହିଁ- ଏହାହିଁ ଆମ୍ଭର ଅଭିପ୍ରାୟ ।



## ९ कृत्स्नप्रसत्क्यधिकरणम् । सू० ॥२६-२९॥

## କୃତ୍ସ୍ନପ୍ରସକ୍ତ୍ୟଧିକରଣ-୯

### कृत्स्नप्रसक्तिर्निरवत्वशब्दकोपो वा ॥२६॥

### (୧) କୃତ୍ସ୍ନପ୍ରସକ୍ତିର୍ନିରବୟବତ୍ୱଶବ୍ଦକୋପୋ ବା ॥ ୨-୧-୨୬ ॥

କୃତ୍ସ୍ନପ୍ରସକ୍ତିଃ=ଯଦି ନିରବୟବ ବ୍ରହ୍ମର ପରିଣାମ ହୁଏ, ତେବେ ସମ୍ପୂର୍ଣ୍ଣ ବ୍ରହ୍ମର କାର୍ଯ୍ୟରୂପରେ ପରିଣାମ ପ୍ରସକ୍ତ ହେବ । ନିରବୟବତ୍ୱଶବ୍ଦକୋପୋ ବା – ଯଦି ଏକ ଅଂଶରେ ପରିଣାମ ହୁଏ, ତେବେ ବ୍ରହ୍ମର ସାବୟବତ୍ୱ ହେଲେ 'ନିଷ୍କଳ' ଇତ୍ୟାଦି ବ୍ରହ୍ମକୁ ନିରବୟବ ପ୍ରତିପାଦକଶ୍ରୁତି ସହ ବିରୋଧ ବିରୋଧ ହେବ । ତେଣୁ ଦୁଇ ପ୍ରକାରରେ ବ୍ରହ୍ମ ଅନିତ୍ୟ ଅଟେ ଓ ବ୍ରହ୍ମ ଜଗତ୍ ଉପାଦାନକାରଣ ନୁହେଁ ।

(୨) ମୂଳ-(କ) ଚେତନମେକମଦ୍ୱିତୀୟଂ ବ୍ରହ୍ମ କ୍ଷୀରାଦିବଦ୍ଦେବାଦିବଚ୍ଚାନପେକ୍ଷ୍ୟ ବାହ୍ୟସାଧନଂ ସ୍ୱୟଂ ପରିଣମମାନଂ ଜଗତଃ କାରଣମିତି ସ୍ଥିତମ୍ । ଶାସ୍ତ୍ରାର୍ଥପରିଶୁଦ୍ଧୟେ ତୁ ପୁନରାକ୍ଷିପତି । କୃତ୍ସ୍ନପ୍ରସକ୍ତିଃ କୃତ୍ସ୍ନସ୍ୟ ବ୍ରହ୍ମଣଃ କାର୍ଯ୍ୟରୂପେଣ ପରିଣାମଃ ପ୍ରାପ୍ନୋତି ନିରବୟବତ୍ୱାତ୍ ।

(ଖ) ଯଦି ବ୍ରହ୍ମ ପୃଥିବ୍ୟାଦିବତ୍ସାବୟବମଭବିଷ୍ୟତ୍ତତୋଽସ୍ୟୈକଦେଶଃ ପର୍ଯ୍ୟଣସ୍ୟଦେକଦେଶଶ୍ଚାବାସ୍ଥାସ୍ୟତ୍ । ନିରବୟବଂ ତୁ ବ୍ରହ୍ମ ଶ୍ରୁତିଭ୍ୟୋଽବଗମ୍ୟତେ- 'ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଂଜନମ୍' (ଶ୍ୱେ ୬-୨୯), 'ଦିବ୍ୟୋହ୍ୟମୂର୍ତ୍ତଃ ପୁରୁଷଃ ସବାହ୍ୟାଭ୍ୟନ୍ତରୋ ହ୍ୟଜଃ' (ମୁ ୨-୧-୨), 'ଇଦଂ ମହଦ୍ଭୂତମନନ୍ତମପାରଂ ବିଜ୍ଞାନଘନଂ ଏବ' (ବୃ ୨-୪-୧୨) 'ସ ଏଷ ନେତି ନେତ୍ୟାତ୍ମା' (ବୃ ୩-୯-୨୬), 'ଅସ୍ଥୂଳମନଣୁଃ' (ବୃ ୩-୮-୮) ଇତ୍ୟାଦ୍ୟାଭ୍ୟଃ ସର୍ବବିଶେଷ-ପ୍ରତିଷେଧିନୀଭ୍ୟଃ ।

(ଗ) ତତଶ୍ଚୈକଦେଶପରିଣାମାସମ୍ଭବାତ୍ କୃତ୍ସ୍ନପରିଣାମପ୍ରସକ୍ତୌ ସତ୍ୟାଂ ମୂଳୋଚ୍ଛେଦଃ ପ୍ରସଜ୍ୟେତ । ଦ୍ରଷ୍ଟବ୍ୟତୋପଦେଶାନାର୍ଥକ୍ୟଂ ଚାପନ୍ନୟନତ୍ଦୃଷ୍ଟତ୍ୱାତ୍ କାର୍ଯ୍ୟସ୍ୟ, ତଦ୍ବ୍ୟତିରିକ୍ତସ୍ୟ ଚ ବ୍ରହ୍ମଣୋଽସମ୍ଭବାତ୍ ଅଜତ୍ୱାଦିଶବ୍ଦକୋପଶ୍ଚ ।

(ଘ) ଅଥୈତଦ୍ଦୋଷପରିଜିହୀର୍ଷୟା ସାବୟବମେବ ବ୍ରହ୍ମାଭ୍ୟୁପଗମ୍ୟେତେ ତଥାପି ଯେ ନିରବୟବତ୍ୱସ୍ୟ ପ୍ରତିପାଦକାଃ ଶବ୍ଦା ଉଦାହୃତାସ୍ତେ ପ୍ରକୁପ୍ୟେୟୁଃ । ସାବୟବତ୍ୱେ ଚାନିତ୍ୟତ୍ୱପ୍ରସଙ୍ଗ ଇତି । ସର୍ବଥାୟଂ ପକ୍ଷୋ ନ ଘଟୟିତୁଂ ଶକ୍ୟତ ଇତ୍ୟାକ୍ଷିପତି ।

(୨) ଭାଷାଂତର- (କ) ଦୁଧ ଓ ଦେବାଦି ପରି ଏକ ଅଦ୍ୱିତୀୟ ଚେତନବ୍ରହ୍ମ ବାହ୍ୟସାଧନକୁ ଅପେକ୍ଷା ନକରି ସ୍ୱୟଂ ପରିଣତ ହୋଇ ଜଗତ୍ର କାରଣ ହୁଏ । କିନ୍ତୁ ଶାସ୍ତ୍ରାର୍ଥର ପରିଶୁଦ୍ଧି ପାଇଁ ପୁନର୍ବାର ଆକ୍ଷେପ କରାଯାଇଛି ଯେ- କୃତ୍ସ୍ନପ୍ରସକ୍ତିଃ=ଯଦି ବ୍ରହ୍ମକୁ ଜଗତ୍ର କାରଣ ରୂପରେ ସ୍ୱୀକାର କରିବା, ତେବେ ସଂପୂର୍ଣ୍ଣ ବ୍ରହ୍ମର କାର୍ଯ୍ୟ ରୂପରେ ପରିଣାମ ପ୍ରାପ୍ତ ହୁଏ, କାରଣ- ସେ ନିରବୟବ ଅଟେ ।

(ଖ) ଯଦି ବ୍ରହ୍ମ ପୃଥିବୀ ପରି ସାବୟବ ହୁଏ, ତେବେ ତାହାର ଗୋଟିଏ ଦେଶରେ ପରିଣାମ ହୁଏ, ଏବଂ ଅନ୍ୟ ଦେଶରେ ପରିଣାମ ହୁଏ ନାହିଁ । ପରନ୍ତୁ ବ୍ରହ୍ମ 'ନିଷ୍କଳ' ଯିଏ କଳାହୀନ ଅବୟବରହିତ, ନିଷ୍କ୍ରିୟ, ଶାନ୍ତ, ଦୋଷରହିତ ଓ ନିରଞ୍ଜନ) ଦିବ୍ୟୋ' ('ସେ ଅକ୍ଷର ନିଶ୍ଚିତ ଭାବରେ ଦିବ୍ୟ, ଅମୂର୍ତ୍ତ, ପୁରୁଷ ବାହାରେ ଓ ଭିତରେ ବିଦ୍ୟମାନ ଏବଂ ଜନ୍ମରହିତ ଅଟେ), 'ଇଦଂ ମହତ୍' (ଏହା ମହାନ୍ ପରିନିଷ୍ପନ୍ନ, ଅନନ୍ତ, ଅପାର ଓ ବିଜ୍ଞାନଘନ), 'ଅସ୍ଥୂଳଂ (ଯାହା ସ୍ଥୂଳ ନୁହେଁ, ଅଣୁ ନୁହେଁ' ଇତ୍ୟାଦି ସବୁ ବିଶେଷପ୍ରତିଷେଧକ ଶ୍ରୁତିଗୁଡ଼ିକ ବ୍ରହ୍ମର ନିରବୟବତ୍ୱକୁ ଜଣାଇ ଦିଅନ୍ତି ।

(ଗ) ତେଣୁ ଏକ ଦେଶରେ ପରିଣାମ ଅସମ୍ଭବ ହେଲେ ସଂପୂର୍ଣ୍ଣ ବ୍ରହ୍ମର ପରିଣାମ ପ୍ରସକ୍ତି ହେଲେ ମୂଳୋଚ୍ଛେଦ ପ୍ରସକ୍ତ ହେବ । 'ଆତ୍ମା ବାଽରେ ଦ୍ରଷ୍ଟବ୍ୟଃ' ଇତ୍ୟାଦି ବାକ୍ୟରେ ଦ୍ରଷ୍ଟବ୍ୟତ୍ୱାଦିର ଉପଦେଶ ଅନର୍ଥକ ହେବ । କାରଣ- କାର୍ଯ୍ୟଯନ୍ତ୍ରର ବିନା ଦେଖାଯାଆନ୍ତି । କାର୍ଯ୍ୟଭିନ୍ନ ବ୍ରହ୍ମର ସମ୍ଭବ ନୁହେଁ, ଏବଂ ବ୍ରହ୍ମପାଇଁ ଅଜତ୍ୱ ପ୍ରତିପାଦିତ ଶ୍ରୁତି ବାଧ ହୁଅନ୍ତି ।

(ଘ) ଯଦି ଏହି ଦୋଷର ପରିହାର ଇଚ୍ଛା କରି ବ୍ରହ୍ମକୁ ସାବୟବରୂପରେ ସ୍ୱୀକାର କରାଯିବ, ତେବେ ବ୍ରହ୍ମକୁ ନିରବୟବରୂପରେ ପ୍ରତିପାଦନ କରୁଥିବା ଶ୍ରୁତିବାକ୍ୟ ବାଧିତ ହେବେ । ସାବୟବ ହେଲେ ଅନିତ୍ୟତ୍ୱ ପ୍ରସଙ୍ଗ ହେବ । ଏହିପରି 'ପୂର୍ବପକ୍ଷ' ଏହିପକ୍ଷ ସର୍ବଦା ସଙ୍ଗତ ନୁହେଁ ବୋଲି ଆକ୍ଷେପ କରନ୍ତି ।

## श्रुतेस्तु शब्दमूलत्वात् ॥२७॥

## (୧) ଶ୍ରୁତେସ୍ତୁ ଶବ୍ଦମୂଳତ୍ୱାତ୍ ॥ ୨-୧-୨୭ ॥

ତୁ-ଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତିନିମିତ୍ତ । ଶ୍ରୁତେଃ-'ସେୟଂ ଦେବତୈକ୍ଷତ' ଇତ୍ୟାଦି ଶ୍ରୁତିବାକ୍ୟରେ ବ୍ରହ୍ମଜଗତର ଉପାଦାନକାରଣ ବୋଲି କୁହାଯାଇଛି । 'ତାବାନସ୍ୟ ମହିମା' ଏହି ଶ୍ରୁତିବାକ୍ୟର କାର୍ଯ୍ୟଠାରୁ ବ୍ରହ୍ମର ସତ୍ତା ପୃଥକ୍ ବୋଲି କୁହାଯାଇଛି । ତେଣୁ ବ୍ରହ୍ମର ସର୍ବାତ୍ମନା କାର୍ଯ୍ୟରୂପରେ ପରିଣାମ ନାହିଁ, କାରଣ- ପୂର୍ବୋକ୍ତ ଯୁକ୍ତିରେ ଶ୍ରୁତିବାଧା ହିଁ ଅସମ୍ଭବ । ଶବ୍ଦମୂଳତ୍ୱାତ୍- କାରଣ-ବ୍ରହ୍ମ ଶବ୍ଦମୂଳକ ଅଟେ ।

(୨) ମୂଳ-(କ) ତୁଶବ୍ଦେନାକ୍ଷେପଂ ପରିହରତି, ନ ଖଲ୍ୱସ୍ମତ୍ପକ୍ଷେ କଶ୍ଚିଦପି ଦୋଷୋଽସ୍ତି । ନ ତାବତ୍କୃତ୍ସ୍ନପ୍ରସକ୍ତିରସ୍ତି । କୁତଃ ? ଶ୍ରୁତେଃ । ଯଥୈବ ହି ବ୍ରହ୍ମଣୋ ଜଗଦୁତ୍ପତ୍ତିଃ ଶ୍ରୂୟତ ଏବଂ ବିକାରବ୍ୟତିରେକେଣାପି ବ୍ରହ୍ମଣୋଽବସ୍ଥାନଂ ଶ୍ରୂୟତେ ।

(ଖ) ପ୍ରକୃତିବିକାରୟୋର୍ଭେଦେନ ବ୍ୟପଦେଶାତ୍ 'ସେୟଂ ଦେବତୈକ୍ଷତ ହନ୍ତାହମିମାସ୍ତିସ୍ରୋ ଦେବତା ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣି' (ଛା ୬-୩-୨) ଇତି, 'ତାବନସ୍ୟ ମହିମା ତତୋ ଜ୍ୟାୟାଂଶ୍ଚ ପୁରୁଷଃ । ପାଦୋଽସ୍ୟ



ସର୍ବାଭୂତାନି ତ୍ରିପାଦସ୍ୟାମୃତଂ ଦିବି' (ଛା ୩-୧୨-୬) ଇତି ଚୈବଂଜାତୀୟକାତ୍ । ତଥା ହୃଦୟାୟତନତ୍ୱବଚନାତ୍ ସଂତ୍ ସଂପତ୍ତିବଚନାଚ୍ଚ । ଯଦି ଚ କୃତ୍ସ୍ନଂ ବ୍ରହ୍ମ କାର୍ଯ୍ୟଭାବେ ନୋପଯୁକ୍ତଂ ସ୍ୟାତ୍ 'ସତା ସୋମ୍ୟ ତଦା ସଂପନ୍ନୋ ଭବତି' (ଛା ୬-୮-୧) ଇତି ସୁଷୁପ୍ତିଗତଂ ବିଶେଷଣମନୁପପନ୍ନଂ ସ୍ୟାତ୍ । ବିକୃତେନ ବ୍ରହ୍ମଣା ନିତ୍ୟସଂପନ୍ନତ୍ୱାଦବିକୃତସ୍ୟ ଚ ବ୍ରହ୍ମଣୋଽଭାବାତ୍ । ତଥେନ୍ଦ୍ରିୟଗୋଚରତ୍ୱପ୍ରତିଷେଧାଦ୍ ବ୍ରହ୍ମଣୋ ବିକାରସ୍ୟ ଚେନ୍ଦ୍ରିୟଗୋଚରତ୍ୱୋପପତ୍ତେଃ । ତସ୍ମାଦସ୍ତ୍ୟବିକୃତଂ ବ୍ରହ୍ମ ।

(ଗ) ନଚନିରବୟବତ୍ୱଶବ୍ଦକୋପୋଽସ୍ତି, ଶ୍ରୂୟମାଣତ୍ୱାଦେବ ନିରବୟବତ୍ୱାସ୍ୟାପ୍ୟଭ୍ୟୁପଗମ୍ୟମାନତ୍ୱାତ୍ । ଶବ୍ଦମୂଳଂ ଚ ବ୍ରହ୍ମ ଶବ୍ଦପ୍ରମାଣକଂ ନେନ୍ଦ୍ରିୟାଦିପ୍ରମାଣକଂ ତଦ୍ୟଥାଶବ୍ଦମଭ୍ୟୁପଗନ୍ତବ୍ୟମ୍ । ଶବ୍ଦଶ୍ଚୋଭୟମପି ବ୍ରହ୍ମଣଃ ପ୍ରତିପାଦୟତ୍ୟକୃତ୍ସ୍ନପ୍ରସକ୍ତିଂ ନିରବୟବତ୍ୱଞ୍ଚ ।

(ଘ) ଲୌକିକାନାମପି ମଣିମନ୍ତ୍ରୌଷଧିପ୍ରଭୃତୀନାଂ ଦେଶକାଳନିମିତ୍ତବୈଚିତ୍ର୍ୟବଶାଚ୍ଛକ୍ତୟୋ ବିରୁଦ୍ଧାନେକକାର୍ଯ୍ୟବିଷୟା ଦୃଶ୍ୟନ୍ତେ । ତା ଅପି ତାବନ୍ନୋପଦେଶମନ୍ତରେଣ କେବଳେନ ତର୍କେଣାବଗନ୍ତୁଂ ଶକ୍ୟନ୍ତେଽସ୍ୟ ବସ୍ତୁନ ଏତାବତ୍ୟ ଏତତ୍ସହାୟା ଏତଦ୍ ବିଷୟା ଏତତ୍ପ୍ରୟୋଜନାଶ୍ଚ ଶକ୍ତୟ ଇତି ।

(ଙ) କିମୁତାଚିନ୍ତ୍ୟସ୍ୱଭାବସ୍ୟ ବ୍ରହ୍ମଣୋ ରୂପଂ ବିନା ଶବ୍ଦେନ ନିରୂପ୍ୟେତ । ତଥାଚାହୁଃ ପୌରାଣିକାଃ- 'ଅଚିନ୍ତ୍ୟ ଖଲୁ ଯେ ଭାବା ନ ତାଂସ୍ତର୍କେଣ ଯୋଜୟେତ୍ । ପ୍ରକୃତିଭ୍ୟଃ ପରଂ ଯଚ୍ଚ ତଦଚିନ୍ତ୍ୟସ୍ୟ ଲକ୍ଷଣମ୍' ଇତି । ତସ୍ମାଚ୍ଛବ୍ଦମୂଳ ଏବାତୀନ୍ଦ୍ରିୟାର୍ଥଯାଥାତ୍ମ୍ୟାଧିଗମଃ ।

(ଚ) ନନୁ ଶବ୍ଦେନାପି ନ ଶକ୍ୟତେ ବିରୁଦ୍ଧୋଽର୍ଥଃ ପ୍ରତ୍ୟାୟୟିତୁଂ ନିରବୟବଂ ଚ ବ୍ରହ୍ମ ପରିଣମତେ ନଚ କୃତ୍ସ୍ନମିତି । ଯଦି ନିରବୟବଂ ବ୍ରହ୍ମସ୍ୟାନ୍ନୈବ ପରିଣମେତ । କୃତ୍ସ୍ନମେବ ବା ପରିଣମେତ । ଅଥ କେନଚିଦ୍ରୂପେଣ ପରିଣମେତ କେନଚିଚ୍ଚାବତିଷ୍ଠେତି ରୂପଭେଦକଳ୍ପନାତ୍ ସାବୟବମେବ ପ୍ରସଜ୍ୟେତ । କ୍ରିୟା ବିଷୟେ ହି 'ଅତିରାତ୍ରେ ଷୋଡଶିନଂ ଗୃହ୍ଣାତି' 'ନାତିରାତ୍ରେ ଷୋଡଶିନଂ ଗୃହ୍ଣାତି' ଇତ୍ୟେବଂଜାତୀୟକାୟାଂ ବିରୋଧପ୍ରତୀତାବପି ବିକଳ୍ପାଶ୍ରୟଣଂ ବିରୋଧପରିହାରକାରଣଂ ଭବତି ପୁରୁଷତନ୍ତ୍ରତ୍ୱାଚ୍ଚାନୁଷ୍ଠାନସ୍ୟ ।

(ଛ) ଇହ ତୁ ବିକଳ୍ପାଶ୍ରୟଣେନାପି ନ ବିରୋଧପରିହାରଃ ସମ୍ଭବତ୍ୟପୁରୁଷତନ୍ତ୍ରତ୍ୱାଦ୍ ବସ୍ତୁନଃ ତସ୍ମାଦ୍ ଦୁର୍ଘଟମେତଦିତି ।

**(୨) ଭାଷାଂତର-**(କ) ସୂତ୍ରକାର ତୁଶବ୍ଦଦ୍ୱାରା ପରିହାର କରନ୍ତି । ତେଣୁ ଆମ୍ଭ ପକ୍ଷରେ କୌଣସି ଦୋଷ ନାହିଁ, କାରଣ-ସମ୍ପୂର୍ଣ୍ଣ ବ୍ରହ୍ମର କାର୍ଯ୍ୟରୂପରେ ପରିଣାମ ପ୍ରସକ୍ତ ହୁଏ

ନାହିଁ । କିପରି ? ଶ୍ରୁତିବାକ୍ୟରେ ପ୍ରମାଣହେତୁ । ଯେପରି ବ୍ରହ୍ମଠାରୁ ଜଗତ୍‌ର ସୃଷ୍ଟି ବେଦରେ ଶୁଣାଯାଏ, ସେପରି କାର୍ଯ୍ୟଠାରୁ ଭିନ୍ନ ହୋଇ ବ୍ରହ୍ମର ଅବସ୍ଥିତି ବେଦରେ ଶୁଣାଯାଏ ।

(ଖ) କାରଣ- 'ସେୟଂ ଦେବତୈକ୍ଷତ' (ସେହି ସତ୍‌ସଂଜ୍ଞକଦେବତା ଈକ୍ଷଣକଲା ଯେ- ମୁଁ ଏହି ଜୀବାତ୍ମାରୂପରେ ଏହି ତିନିଦେବତାଙ୍କଠାରେ ଅନୁପ୍ରବେଶ କରି ନାମ ଓ ରୂପକୁ ଅଭିବ୍ୟକ୍ତ କରିବି), 'ତାବାନସ୍ୟ' (ସେହି ଗାୟତ୍ରୀସଂଜ୍ଞକ ବ୍ରହ୍ମର ମହିମା ଅଟେ, ନିର୍ବିକାରପୁରୁଷ ଏହାଠାରୁ ଉତ୍କୃଷ୍ଟ ଅଟେ । ସମ୍ପୂର୍ଣ୍ଣଭୂତ ଏହାର ଏକପାଦ ଏବଂ ଏହି ନିର୍ବିଶେଷପୁରୁଷର ତିନିପାଦ ଅମୃତ ପ୍ରକାଶମୟସ୍ୱାତ୍ମରେ ରହେ) ଏହିପ୍ରକାର ଶ୍ରୁତିବାକ୍ୟରୁ କାର୍ଯ୍ୟକାରଣଭେଦ ବ୍ୟପଦେଶ କରାଯାଇଅଛି । ସେପରି ମଧ୍ୟ ହୃଦୟ ଆୟତନତ୍ୱ ବଚନ (ସବାଏଷଆତ୍ମା ହୃଦି) ଦ୍ୱାରା ଓ ସତ୍‌ସହିତ ସମ୍ପତ୍ତି-ଐକ୍ୟବଚନ ହେଲେ କାର୍ଯ୍ୟକାରଣଭେଦର ବ୍ୟପଦେଶ ହୁଏ । ଯଦି ସମ୍ପୂର୍ଣ୍ଣ ବ୍ରହ୍ମ କାର୍ଯ୍ୟ ରୂପରେ ପରିଣତ ହୁଏ । ତେବେ 'ସତା ସୋମ୍ୟ' ! (ହେ ସୋମ୍ୟ ! ଏହି ସମୟରେ ଏହି ସତ୍ ବ୍ରହ୍ମ ସହିତ ସମ୍ପନ୍ନ ହୁଏ) ଏହି ସୁଷୁପ୍ତିଗତ ବିଶେଷଣ ଅନୁପପନ୍ନ ହୁଏ, କାରଣ-ବିକୃତ ବ୍ରହ୍ମ ସହିତ ନିତ୍ୟତ୍ୱ ସଂପନ୍ନ ହୁଏ ଏବଂ ଅବିକୃତ ବ୍ରହ୍ମର ଅଭାବ ହୁଏ । ସେହିପରି ବ୍ରହ୍ମରେ ଇନ୍ଦ୍ରିୟ ବିଷୟତ୍ୱର ପ୍ରତିଷେଧ କରାଯାଏ ଏବଂ ବିକାରରେ ଇନ୍ଦ୍ରିୟ ବିଷୟତ୍ୱର ଉପ୍ପତ୍ତି ହୁଏ, ତେଣୁ ଏଠାରେ ବ୍ରହ୍ମ ଅଦ୍ୱିତୀୟ ରୂପେ ସିଦ୍ଧ ହୁଏ ।

(ଗ) ସେହିପରି ବ୍ରହ୍ମକୁ ନିରବୟବରୂପରେ ପ୍ରତିପାଦନ କରୁଥିବା ବେଦବାକ୍ୟ ଗୁଡ଼ିକ ବାଧା ପାଆନ୍ତି ନାହିଁ । କାରଣ-ଏହା ଶ୍ରୁୟମାଣ ହେଲେ ନିରବୟବତ୍ୱକୁ ସ୍ୱୀକାର କରିବାକୁ ପଡେ । ବ୍ରହ୍ମହିଁ ଶ୍ରୁତିମୂଳକ ଓ ଶ୍ରୁତିପ୍ରମାଣକ ଅଟେ । କିନ୍ତୁ ଇନ୍ଦ୍ରିୟାଦି ବ୍ରହ୍ମର ପ୍ରମାଣକ ନୁହଁନ୍ତି । ତେଣୁ ଶ୍ରୁତି ଅନୁସାରେ ତାହାକୁ ସ୍ୱୀକାର କରିବା ଉଚିତ । ଶ୍ରୁତି ବ୍ରହ୍ମର ଅସଂପୂର୍ଣ୍ଣକାର୍ଯ୍ୟପ୍ରସକ୍ତି ଏବଂ ନିରବୟବତ୍ୱ - ଏହି ଦୁଇଟିକୁ ପ୍ରତିପାଦନ କରେ ।

(ଘ) ଲୌକିକ ମଣି, ମନ୍ତ୍ର, ଔଷଧି ପ୍ରଭୃତିର ଶକ୍ତିଗୁଡ଼ିକ ଦେଶ, କାଳ ଓ ନିମିତ୍ତର ବୈଲକ୍ଷଣ୍ୟ ଦ୍ୱାରା ପରସ୍ପର ବିରୁଦ୍ଧ, ଅନେକକାର୍ଯ୍ୟବିଷୟକ ଦେଖାଏ । ସେହି ଶକ୍ତିଗୁଡ଼ିକ ମଧ୍ୟ ଉପଦେଶ ବିନା କେବଳ ତର୍କରୁ ବସ୍ତୁରେ ରହିଥିବାରୁ ଜଣାପଡ଼େ ନାହିଁ । ଏହାର ତାହା ସହାୟକକାରଣ ଅଟନ୍ତି । ଏହା କାର୍ଯ୍ୟ ଓ ପ୍ରୟୋଜନ ଅଟେ ।

(ଙ) ଅଚିନ୍ତ୍ୟ ପ୍ରଭାବ ବିଶିଷ୍ଟ ବ୍ରହ୍ମସ୍ୱରୂପର ନିରୂପଣ ଶ୍ରୁତିବାକ୍ୟବିନା ନ ହେବାରେ ଆଶ୍ଚର୍ଯ୍ୟ କଣ ଅଛି ? ସେହିପରି 'ଅଚିନ୍ତ୍ୟାଃ ଖଲୁ' (ଯେଉଁ ପଦାର୍ଥ ଅଚିନ୍ତ୍ୟ ଅଟେ, ସେ ବିଷୟରେ ତର୍କ ଅନାବଶ୍ୟକ । ଯାହା ପ୍ରକୃତିଠାରୁ ଭିନ୍ନ, ସେହିଁ ଅଚିନ୍ତ୍ୟର ସ୍ୱରୂପ ଅଟେ) ବୋଲି ପୌରାଣିକମାନେ କହନ୍ତି । ତେଣୁ ଅତୀନ୍ଦ୍ରିୟ ଅର୍ଥର ଯଥାର୍ଥସ୍ୱରୂପକୁ ଜାଣିବା ପାଇଁ ଶ୍ରୁତି ହିଁ ଆବଶ୍ୟକ ।



(ଚ) ପରନ୍ତୁ ନିରବୟବରୂପେ ବ୍ରହ୍ମ ପରିଣତ ହୁଏ । କିନ୍ତୁ ସଂପୂର୍ଣ୍ଣ ଭାବେ ନୁହେଁ । ଏହିପରି ବିରୁଦ୍ଧଅର୍ଥର ପ୍ରତୀତି ଶ୍ରୁତିଦ୍ୱାରା କରାଯାଏ ନାହିଁ । ଯଦି ବ୍ରହ୍ମ ନିରବୟବ ହୁଏ, ତେବେ ପରିଣତ ହୁଏ । ଯଦ୍ୟପି ତାର ପରିଣାମ ହୁଏ, ତାହା ସଂପୂର୍ଣ୍ଣଭାବରେ ହୁଏ । ଯଦି କୌଣସି ଏକଦେଶରେ ପରିଣତ ହୁଏ, ଅନ୍ୟଦେଶରେ ଅବସ୍ଥିତ ରହେ, ତେବେ ଏହିପ୍ରକାର ରୂପଭେଦର କଳ୍ପନାଦ୍ୱାରା ବ୍ରହ୍ମ ସାବୟବ ହେବ । କ୍ରିୟାବିଷୟରେ କିନ୍ତୁ ଅତିରାତ୍ରନାମକଯାଗରେ ଷୋଡଶୀପାତ୍ରର ଗ୍ରହଣ କରେ, ଅତିରାତ୍ରରେ ଷୋଡଶୀକୁ ଗ୍ରହଣ କରେ ନାହିଁ । ଏହି ପ୍ରକାର ବିରୁଦ୍ଧ ପ୍ରତୀତିରେ ବିକଳ୍ପର ଆଶ୍ରୟ ବିରୋଧ ପରିହାରର କାରଣ ହୁଏ, କାରଣ-ଅନୁଷ୍ଠାନ ପୁରୁଷର ଅଧୀନ ଅଟେ ।

(ଛ) ଏଠାରେ କିନ୍ତୁ ବିକଳ୍ପର ଆଶ୍ରୟଣରେ ବିରୋଧ ପରିହାର ସମ୍ଭବ ନୁହେଁ । କାରଣ-ବସ୍ତୁ ପୁରୁଷର ଅଧୀନ ନୁହେଁ । ତେଣୁ ଏହି ଶ୍ରୁତିପ୍ରାମାଣ୍ୟ ଦୁର୍ଘଟ ଅଟେ ।

(୩) ମୂଳ-(କ) ନୈଷ ଦୋଷଃ । ଅବିଦ୍ୟାକଳ୍ପିତରୂପଭେଦାଭ୍ୟୁପଗମାତ୍ । ନହ୍ୟବିଦ୍ୟାକଳ୍ପିତେନ ରୂପଭେଦେନ ସାବୟବଂ ବସ୍ତୁ ସଂପଦ୍ୟତେ । ନହି ତିମିରୋପହତନୟନେନାନେକ ଇବ ଚନ୍ଦ୍ରମା ଦୃଶ୍ୟମାନୋଽନେକ ଏବ ଭବତି । ଅବିଦ୍ୟା-କଳ୍ପିତେନ ଚ ନାମରୂପଲକ୍ଷଣେନ ରୂପଭେଦେନ ବ୍ୟାକୃତାବ୍ୟାକୃତାତ୍ମକେନ ତତ୍ତ୍ୱାନ୍ୟତ୍ୱା-ଭ୍ୟାମନିର୍ବଚନୀୟେନ ବ୍ରହ୍ମ ପରିଣାମାଦିସର୍ବବ୍ୟବହାରାସ୍ପଦତ୍ୱଂ ପ୍ରତିପଦ୍ୟତେ ।

(ଖ) ପାରମାର୍ଥିକେନ ଚ ରୂପେଣ ସର୍ବବ୍ୟବହାରତୀତମପରିଣତମବତିଷ୍ଠତେ । ବାଚାରମ୍ଭଣମାତ୍ରତ୍ୱାଚ୍ଚାବିଦ୍ୟାକଳ୍ପିତସ୍ୟ ନାମରୂପଭେଦସ୍ୟେତି ନ ନିରବୟବତ୍ୱଂ ବ୍ରହ୍ମଣଃ କୁପ୍ୟତି ।

(ଗ) ନ ଚେୟଂ ପରିଣାମଶ୍ରୁତିଃ ପରିଣାମପ୍ରତିପାଦନାର୍ଥା, ତତ୍ପ୍ରତିପତ୍ତୌ ଫଳାନବଗମାତ୍ । ସର୍ବବ୍ୟବହାରହୀନବ୍ରହ୍ମାତ୍ମଭାବପ୍ରତି ପାଦନାର୍ଥା ତ୍ୱେଷା, ତତ୍ପ୍ରତି-ଫଳାବଗମାତ୍ । 'ସ ଏଷ ନେତି ନେତ୍ୟାତ୍ମା' ଇତ୍ୟୁପକ୍ରମ୍ୟାହ- 'ଅଭୟଂ ବୈ ଜନକ ପ୍ରାପ୍ତୋଽସି' (ବୃ ୪-୨-୪) ଇତି । ତସ୍ମାଦସ୍ମତ୍ପକ୍ଷେ ନ କଶ୍ଚିଦପି ଦୋଷପ୍ରସଙ୍ଗୋଽସ୍ତି ।

**(୩) ଭାଷାଂତର-** (୩) ସିଦ୍ଧାନ୍ତ-କିନ୍ତୁ ଏହା ଦୋଷ ନୁହେଁ । କାରଣ-ଏଠାରେ ଅବିଦାକଳ୍ପିତ ରୂପଭେଦ ସ୍ୱୀକାର କରାଯାଇଛି । ଅବିଦ୍ୟାକଳ୍ପିତ ରୂପ ଭେଦଦ୍ୱାରା ବସ୍ତୁ ସାବୟବ ହୁଏ ନାହିଁ । ଯେପରି ଅନ୍ଧକାରରୂପକ ଦୋଷଦ୍ୱାରା ଭୂଷିତ ହୋଇ ନେତ୍ର ଅନେକ ଚନ୍ଦ୍ରମା ଦେଖିଲା ପରି ଅନୁଭବ ହେଲେ ମଧ୍ୟ ଏହା ଅନେକ ନୁହେଁ । ସେପରି ଅବିଦ୍ୟାକଳ୍ପିତ ନାମ-ରୂପାତ୍ମକ ବ୍ୟକ୍ତ ଓ ଅବ୍ୟକ୍ତ ରୂପ, ସତ୍ ଓ ଅସତ୍ ରୂପଦ୍ୱାରା ବିଲକ୍ଷଣ ଓ ଅନିର୍ବଚନୀୟରୂଭେଦରେ ବ୍ରହ୍ମ ପରିଣାମାଦି ସମସ୍ତ ବ୍ୟବହାରକୁ ଅପେକ୍ଷା କରେ ।

(ଖ) ପରନ୍ତୁ ପରମାର୍ଥିକ ରୂପରେ ସବୁ ବ୍ୟବହାର ଦ୍ୱାରା ଅତୀତ ଓ ପରିମାଣ ରହିତ ହୋଇ ରହେ । ଅବିଦ୍ୟାକଳ୍ପିତ ନାମ ରୂପଭେଦ କେବଳ ବାଗ୍‌ରମ୍ଭଣ ମାତ୍ରକ । ତେଣୁ ବ୍ରହ୍ମରେ ନିରବୟତ୍ୱ କଳ୍ପନା କଲେ ବାଧିତ ହୁଏ ନାହିଁ ।

(ଗ) ଏହି ପରିଣାମ ଶ୍ରୁତି ପରିଣାମର ପ୍ରତିପାଦନ ପାଇଁ ନୁହେଁ । କାରଣ- ତାହାର କଳ୍ପନା ଦ୍ୱାରା ଫଳ ଅବଗତ ହୁଏ ନାହିଁ । କିନ୍ତୁ ଏହି ଶ୍ରୁତି ସର୍ବବ୍ୟବହାରଶୂନ୍ୟ ବ୍ରହ୍ମାତ୍ମଭାବକୁ ପ୍ରତିପାଦନ କରିବା ପାଇଁ ଅଛନ୍ତି । କାରଣ-ତାହାର ଜ୍ଞାନଦ୍ୱାରା ଫଳ ଅବଗତ ହୁଏ । 'ସ ଏଷ ନେତି' ଏହିପ୍ରକାର ଉପକ୍ରମ କରି 'ଅଭୟଂ ବୈଜନକ' (ହେ ଜନକ !) ନିଃସନ୍ଦେହରେ ତୁମେ ଅଭୟ ବ୍ରହ୍ମପଦକୁ ପାଇଛ) କୁହାଯାଇଛି । ତେଣୁ ଆତ୍ମପକ୍ଷରେ ଦୋଷପ୍ରସଙ୍ଗ ନାହିଁ ।

## आत्मानि चैवं विचित्राश्च हि ॥२८॥

## (୧) ଆତ୍ମନି ଚୈବ ବିଚିତ୍ରାଷ୍ଚହି ॥ ୨-୧-୨୮ ॥

ହି=କାରଣ, ଆତ୍ମନି='ନ ତତ୍ର ରଥା ନ ରଥଯୋଗାଃ' ଇତ୍ୟାଦି ଶ୍ରୁତିରେ ସ୍ୱପ୍ନଦ୍ରଷ୍ଟା ଏକ ଆତ୍ମାରେ 'ବିଚିତ୍ରାଃ=ଅନେକ ପ୍ରକାରର ସୃଷ୍ଟି କହିଅଛନ୍ତି । ଚ=ଏବଂ ସଂସାରରେ ଐନ୍ଦ୍ରଜାଲିକରେ ତାହାର ସ୍ୱରୂପ ନକରି ବିଚିତ୍ର ସୃଷ୍ଟି ଦେଖାଏ । ଏବମ୍=ଏହିପ୍ରକାର ବ୍ରହ୍ମରେ ମଧ୍ୟ ବିଚିତ୍ର ସୃଷ୍ଟି ହୁଏ ।

(୨) ମୂଳ-(କ) ଅପିଚ ନୈବାତ୍ର ବିବଦୟି ତବ୍ୟଂ କଥମେକସ୍ମିନ୍ ବ୍ରହ୍ମଣି ସ୍ୱରୂପାନୁମର୍ଦେନୈବାନେକାକାରା ସୃଷ୍ଟିଃ ସ୍ୟାଦିତି । ଯଦି ଆତ୍ମନ୍ୟପ୍ୟେକସ୍ମିନ୍ ସ୍ୱପ୍ନଦୃଶି ସ୍ୱରୂପାନୁମର୍ଦେନୈବାନେକକାରା ସୃଷ୍ଟିଃ ପଠ୍ୟତେ'- ନ ତତ୍ର ରଥା ନ ରଥଯୋଗା ନ ପନ୍ଥାନୋ ଭବନ୍ତ୍ୟଥ ରଥାନ୍ ରଥଯୋଗାନ୍ ପଥଃ ସୃଜତେ' (ବୃ ୪-୩-୧୦) ଇତ୍ୟାଦିନା ।

(ଖ) ଲୋକେଽପି ଦେବାଦିଷୁ ମାୟାବ୍ୟାଦିଷୁ ଚ ସ୍ୱରୂପାନୁମର୍ଦେନୈବ ବିଚିତ୍ରା ହସ୍ତ୍ୟଶ୍ୱାଦି ସୃଷ୍ଟୟୋ ଦୃଶ୍ୟନ୍ତେ । ତଥୈକସ୍ମିନ୍ନପି ବ୍ରହ୍ମଣି ସ୍ୱରୂପାନୁମର୍ଦେନୈବାନେକକାରା ସୃଷ୍ଟି ର୍ଭବିଷ୍ୟତୀତି ।

(୨) ଭାଷାଂତର- (କ) ବ୍ରହ୍ମର ସ୍ୱରୂପ ନାଶ ନ ହୋଇ ଏକ ବ୍ରହ୍ମରେ ଅନେକ ପ୍ରକାର ସୃଷ୍ଟି କିପରି ହେବ ? ଏହି ବିଷୟରେ ବିବାଦ କରିବା ଉଚିତ ନୁହେଁ । କାରଣ- 'ନ ତତ୍ର ରଥାଃ' (ସ୍ୱପ୍ନରେ ରଥ ନାହିଁ, ଅଶ୍ୱ ନାହିଁ, ମାର୍ଗ ନାହିଁ । କିନ୍ତୁ ସ୍ୱପ୍ନଦ୍ରଷ୍ଟାରଥ, ଅଶ୍ୱ ଏବଂ ତାହାର ମାର୍ଗକୁ ରଚନା କରେ) ଇତ୍ୟାଦି ଶ୍ରୁତିଦ୍ୱାରା ସ୍ୱପ୍ନଦ୍ରଷ୍ଟା ଏକ ଆତ୍ମାରେ ସ୍ୱରୂପନାଶ ନ କରି ଅନେକ ପ୍ରକାରର ସୃଷ୍ଟି ପ୍ରତିପାଦିତ ହୁଏ ।

(ଖ) ସଂସାରରେ ଦେବତା ଇତ୍ୟାଦି ଏବଂ ମାୟାବୀ ପ୍ରଭୃତି ସ୍ୱରୂପନାଶ ନହୋଇ ହସ୍ତୀ, ଅଶ୍ୱ ଇତ୍ୟାଦି ବିଚିତ୍ରସୃଷ୍ଟିକୁ ଦେଖେ । ସେପରି ମଧ୍ୟ ଏକ ବ୍ରହ୍ମରେ ସ୍ୱରୂପନାଶ ନହୋଇ ଅନେକ ପ୍ରକାର ସୃଷ୍ଟି ହୁଏ ।

## स्वपक्षदोषाच्च ॥२९॥

## (୧) ସ୍ୱପକ୍ଷଦୋଷାଚ୍ଚ ॥ ୨-୧-୨୯ ॥

ସ୍ୱପକ୍ଷଦୋଷାଚ୍ଚ = ସାଂଖ୍ୟାଦିପକ୍ଷରେ ଏହା ଦୋଷ । କେବଳ ଆତ୍ମପକ୍ଷରେ ଦୋଷ ଦେବା ଉଚିତ ନୁହେଁ । ତେଣୁ ବ୍ରହ୍ମକାରଣତ୍ୱବାଦ ଉପପନ୍ନ ହୁଏ ।

(୨) ମୂଳ-(କ) ପରେଷାମପ୍ୟେଷ ସମାନଃ ସ୍ୱପକ୍ଷେ ଦୋଷଃ । ପ୍ରଧାନବାଦିନୋଽପି ହି ନିରବୟବମପରିଚ୍ଛିନ୍ନଂ ଶବ୍ଦାହିହୀନଂ ପ୍ରଧାନଂ ସାବୟବସ୍ୟ ପରିଚ୍ଛିନ୍ନସ୍ୟ ଶବ୍ଦାଦିମତଃ କାର୍ଯ୍ୟସ୍ୟ କାରଣମିତି ସ୍ୱପକ୍ଷଃ । ତତ୍ରାପି କୃତ୍ସ୍ନପ୍ରସକ୍ତିର୍ନିରବୟବତ୍ୱାତ୍ ପ୍ରଧାନସ୍ୟ ପ୍ରାପ୍ନୋତି ନିରବୟବତ୍ୱାଭ୍ୟୁପ ମଗକୋପର୍ବା ।

(ଖ) ନନୁ ନୈବ ତୈର୍ନିରବୟବଂ ପ୍ରଧାନମଭ୍ୟୁପଗମ୍ୟତେ, ସତ୍ତ୍ୱରଜସ୍ତମାଂସି ତ୍ରୟୋ ଗୁଣା ନିତ୍ୟାସ୍ତେଷାଂ ସାମ୍ୟାବସ୍ଥା ପ୍ରଧାନଂ ତୈରେବାବୟବୈସ୍ତ-ତ୍ସାବୟବମିତି । ନୈବଂଜାତୀୟକେନ ସାବୟବତ୍ୱେନ ପ୍ରକୃତୋ ଦୋଷଃ ପରିହର୍ତ୍ତୁଂ ପାର୍ଯ୍ୟତେ । ଯତଃ ସତ୍ୱରଜସ୍ତମସାପ୍ୟେକୈକସ୍ୟ ସମାନଂ ନିରବୟବତ୍ୱମ୍ । ଏକୈକମେବ ଚେତରଦ୍ୱୟାନୁଗୃହୀତଂ ସଜାତୀୟସ୍ୟ ପ୍ରପଞ୍ଚସ୍ୟୋପାଦାନମିତି ସମାନତ୍ୱାତ୍ ସ୍ୱପକ୍ଷଦୋଷ ପ୍ରସଙ୍ଗସ୍ୟ ।

(ଗ) ତର୍କାପ୍ରତିଷ୍ଠାନାତ୍ ସାବୟବତ୍ୱମେବେତି ଚେତ୍ । ଏବମପ୍ୟନିତ୍ୟ-ତ୍ୱାଦିଦୋଷପ୍ରସଙ୍ଗଃ । ଅଥ ଶକ୍ତୟ ଏବ କାର୍ଯ୍ୟବୈଚିତ୍ର୍ୟସୂଚିତା ଅବୟବା ଇତ୍ୟଭିପ୍ରାୟଃ । ତାସ୍ତୁ ବ୍ରହ୍ମବାଦିନୋଽପ୍ୟବିଶିଷ୍ଟାଃ ।

**(୨) ଭାଷାଂତର**-(କ) ଅନ୍ୟବାଦି (ପୂର୍ବପକ୍ଷ)ର ପକ୍ଷରେ ଏହିଦୋଷ ସମାନ ଅଟେ । କାରଣ- ପ୍ରଧାନବାଦୀର ନିଜପକ୍ଷରେ ଏହି ଦୋଷ ଯେ- ନିରବୟବ (ଅପରିଚ୍ଛିନ୍ନ ଶବ୍ଦାଦିରହିତ) ପ୍ରଧାନସାବୟବ (ପରିଚ୍ଛିନ୍ନଶବ୍ଦାଦିଯୁକ୍ତ) କାର୍ଯ୍ୟର କାରଣ ହୁଏ । ସେମାନଙ୍କ ମତରେ ନିରବୟବ ହେଲେ ସଂପୂର୍ଣ୍ଣପ୍ରଧାନର କାର୍ଯ୍ୟରୂପରେ ପରିଣାମ ପ୍ରସକ୍ତ ହେବ, ଅଥବା ପ୍ରଧାନର ନିରବୟବତ୍ୱ ସ୍ୱୀକାରରେ ବାଧାହେବ ।

(ଖ) ପରନ୍ତୁ ସେମାନେ ପ୍ରଧାନକୁ ନିରବୟବରୂପରେ ସ୍ୱୀକାର କରନ୍ତି ନାହିଁ । ସତ୍ତ୍ୱ, ରଜ, ତମ- ଏହି ତିନୋଟି ନିତ୍ୟଗୁଣ ଅଟେ । ତିନିଗୁଣର ସାମ୍ୟାବସ୍ଥା ହିଁ ପ୍ରଧାନ । ତାର ଗୁଣ, ରୂପ ଅବୟବଗୁଡ଼ିକ ହେଲେ ପ୍ରଧାନ ସାବୟବ ହୁଏ । ଏହି ପ୍ରକାର ସାବୟବତ୍ୱଦ୍ୱାରା ପ୍ରକୃତଦୋଷର ପରିହାର କରାଯାଏ ନାହିଁ । କାରଣ- ସତ୍ତ୍ୱ, ରଜ,

ତମୋଗୁଣରେ ପ୍ରତ୍ୟେକର ନିରବୟବତ୍ୱ ସମାନ ଅଟେ । ଗୋଟିଏ ଗୋଟିଏ ଗୁଣ ଅନ୍ୟ ଦୁଇ ଗୁଣଦ୍ୱାରା ଅନୁଗୃହୀତ ହୋଇ ସଜାତୀୟପ୍ରପଞ୍ଚର ଉପାଦାନ ହୁଏ । ଏହିପରି ସ୍ୱପକ୍ଷରେ ଦୋଷ ପ୍ରସଙ୍ଗ ହୁଏ ।

(ଗ) ଯଦି କହଯେ- ତର୍କର ପ୍ରତିଷ୍ଠିତ ନ ହେଲେ ସାବୟବତ୍ୱ ହୁଏ, ତେବେ ଏହିପରି ହେଲେ ମଧ୍ୟ ଅନିତ୍ୟତ୍ୱଦୋଷପ୍ରସଙ୍ଗ ହୁଏ । ଯଦି ତର୍କ ପ୍ରତିଷ୍ଠିତ ହୁଏ, ତେବେ କାର୍ଯ୍ୟର ବୈଚିତ୍ର୍ୟଦ୍ୱାରା ସୂଚିତ ଶକ୍ତିଗୁଡ଼ିକ ଅବୟବ ହୁଏ, ସେମାନେ କିନ୍ତୁ ବ୍ରହ୍ମବାଦିଙ୍କ ପାଇଁ ସମାନ ଅଟନ୍ତି ।

(୩) ମୂଳ-(କ) ତଥାଣୁବାଦିନୋଽପ୍ୟଣୁରଣ୍ୱନ୍ତେରଣ ସଂଯୁଜ୍ୟମାନୋ ନିରବୟବତ୍ୱାଦ୍ୟଦି କାର୍ତ୍ସ୍ନ୍ୟେନ ସଂଯୁଜ୍ୟେତ ତତଃ ପ୍ରଥିମାନୁପପତ୍ତେରଣୁମାତ୍ରତ୍ୱପ୍ରସଙ୍ଗଃ ।

(ଖ) ଅଥୈକଦେଶେନ ସଂଯୁଜ୍ୟେତ ତଥାପି ନିରବୟବତ୍ୱାଭ୍ୟୁପଗମକୋପ ଇତି ସ୍ୱପକ୍ଷେଽପି ସମାନ ଏଷ ଦୋଷଃ । ସମାନତ୍ୱାଚ୍ଚ ନାନ୍ୟ ତରସ୍ମିନ୍ନେବ ପକ୍ଷ ଉପେକ୍ଷେପ୍ତବ୍ୟୋ ଭବତି । ପରିହୃତସ୍ତୁ ବ୍ରହ୍ମବାଦିନା ସ୍ୱପକ୍ଷେ ଦୋଷଃ ।

**(୩) ଭାଷାଂତର-** (କ) ସେହି ଅଣୁବାଦିର ମତରେ ଗୋଟିଏ ଅଣୁ ଅନ୍ୟଅଣୁ ସହିତ ସଂଯୁକ୍ତ ହୋଇ ନିରବୟବତ୍ୱାରା ଯଦି ସଂପୂର୍ଣ୍ଣ ରୂପରେ ସଂଯୁକ୍ତ ହୁଏ । ତେବେ ମଧ୍ୟ ପ୍ରଥିମା (ଅଧିକପରିଣାମ)ର ଅନୁପପତ୍ତି ହେବାରୁ ସେଥିରେ ଅଣୁମାତ୍ରତ୍ୱର ପ୍ରସଙ୍ଗ ହୁଏ ।

(ଖ) ଯଦି ଏକଦେଶରେ ସଂଯୁକ୍ତ ହୁଏ, ତେବେ ମଧ୍ୟ ନିରବୟବତ୍ୱାଭ୍ୟୁପଗମ ବାଧିତ ହେବ । ଏହିପ୍ରକାର ସ୍ୱପକ୍ଷରେ ଦୋଷ ସମାନ ଅଟେ । ଦୁଇଟିଯାକ ଦୋଷ ସମାନ ହେଲେ ଦୁଇଟି ଦୋଷରୁ ଗୋଟିଏ ପକ୍ଷ ଉପରେ ଆକ୍ଷେପ କରିବା ଉଚିତ୍ ନୁହେଁ । ବ୍ରହ୍ମବାଦିମାନେ ନିଜପକ୍ଷର ଦୋଷକୁ ପରିହାର କରିଛନ୍ତି ।

## १० सर्वापेताधिकरणम् । सू० ॥ ३०-३२ ॥
## ସର୍ବୋପେତାଧିକରଣ-୧୦

## सर्वापेता च तद्दर्शनात् ॥३० ॥
## (୧) ସର୍ବୋପେତା ଚ ତଦ୍ଦର୍ଶନାତ୍ ॥ ୨-୧-୩୦ ॥

ଚ-ଏବଂ, ସର୍ବୋପେତା= ପରା ଦେବତା, ସର୍ବଶକ୍ତିଯୁକ୍ତ ଅଟେ । ତଦ୍ଦର୍ଶନାତ୍- କାରଣ-'ସର୍ବକର୍ମା ସର୍ବକାମଃ' ଇତ୍ୟାଦି ଶ୍ରୁତିରେ ତାହାର ସର୍ବଶକ୍ତି ଯୋଗ ଦେଖାଯାଏ ।

(୨) ମୂଳ-(କ) ଏକସ୍ୟାପି ବ୍ରହ୍ମଣଃ ବିଚିତ୍ରଶକ୍ତିଯୋଗାଦୁପପଦ୍ୟତେ ବିଚିତ୍ରୋ ବିକାରେପ୍ରପଞ୍ଚ ଇତ୍ୟୁକ୍ତିମ୍ । ତତ୍ ପୁନଃ କଥମବଗମ୍ୟତେ ବିଚିତ୍ରଶକ୍ତିଯୁକ୍ତଂ ପରଂ ବ୍ରହ୍ମେତି । ତଦୁଚ୍ୟତେ । ସର୍ବୋପେତା ଚ ତଦ୍ଦର୍ଶନାତ୍ । ସର୍ବଶକ୍ତିଯୁକ୍ତା ଚ ପରା ଦେବତେତ୍ୟଭ୍ୟୁପଗନ୍ତବ୍ୟମ୍ ।

(ଖ) କୁତଃ । ତଦ୍ଦର୍ଶନାତ୍ । ଯଥାହି ଦର୍ଶୟତି ଶ୍ରୁତିଃ ସର୍ବଶକ୍ତିଯୋଗଂ ପରସ୍ୟା ଦେବତାୟାଃ-'ସର୍ବକର୍ମା ସର୍ବକାମଃ ସର୍ବଗନ୍ଧଃ ସର୍ବରସଃ ସର୍ବମିଦମଭ୍ୟା-ଭୋଽବାକ୍ୟନାଦରଃ' (ଛ ୩-୧୪-୪), 'ସର୍ବକାମଃ ସତ୍ୟସଙ୍କଳ୍ପ (ଛ ୮-୭-୧), 'ଯଃ ସର୍ବଜ୍ଞଃ ସର୍ବବିତ୍' (ମୁଣ୍ଡ ୧-୯-୯)' ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗିସୂର୍ଯ୍ୟାଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ (ବୃ ୩-୮-୯) ଇତ୍ୟେବଂଜାତୀୟକା ।

**(୨) ଭାଷାଂତର-** (କ) ଗୋଟିଏ ବ୍ରହ୍ମର ବିଚିତ୍ରଶକ୍ତି ଯୋଗବଳରେ ବିଚିତ୍ର କାର୍ଯ୍ୟ ପ୍ରପଞ୍ଚହେବା ଉପପନ୍ନ ହୁଏ ବୋଲି ଯାହା କୁହାଯାଇଛି, ତାହା କିପରି ପରଂବ୍ରହ୍ମ ବିଚିତ୍ରଶକ୍ତିଯୁକ୍ତି ହୁଏ ବୋଲି ଜଣାପଡ଼େ ? ତେଣୁ କୁହାଯାଇଛି-ସର୍ବୋପେତାଚତର୍ଦ୍ଦର୍ଶନାତ୍' ପରା ଦେବତା ସର୍ବଶକ୍ତିମାନ୍ ଅଟେ ବୋଲି ସ୍ୱୀକାର କରିବା ଉଚିତ ।

(ଖ) କିପରି ? ଏହା ଶ୍ରୁତି ଦ୍ୱାରା ଦେଖାଯାଏ, ଯଥା- 'ସର୍ବକର୍ମା ସର୍ବକାମଃ' (ଯାହା ସର୍ବକର୍ମା, ସର୍ବକାମ, ସର୍ବଗନ୍ଧ, ସର୍ବରସ । ଏହିସବୁକୁ ସବୁଦିଗରୁ ବ୍ୟାପ୍ତକରି ବାକ୍ ରହିତ ଓ ନିଷ୍କାମ ହୁଏ), 'ସତ୍ୟକାମଃ' (ଯାହା ସତ୍ୟକାମ ଓ ସତ୍ୟସଂକଳ୍ପ ଅଟେ), (ଯଃ ସର୍ବଜ୍ଞଃ' (ଯାହା ସର୍ବଜ୍ଞ ଓ ସର୍ବବିତ୍ ଏତସାଂ ବା' (ହେ ଗାର୍ଗି ! ଏହି ଅକ୍ଷର ବ୍ରହ୍ମର ଶାସନରେ ସୂର୍ଯ୍ୟ ଓ ଚନ୍ଦ୍ର ବିଧୃତହୋଇ ଅବସ୍ଥାନ କରନ୍ତି) ଏହିପ୍ରକାର ଶ୍ରୁତି ପରା ଦେବତାଠାରେ ସର୍ବଶକ୍ତିର ଯୋଗ ଦେଖାଏ ।

## विकरणत्वान्नेति चेत्तदुक्तम् ॥३२॥

## (୧) ବିକରଣତ୍ୱାନ୍ନେତି ଚେତ୍ତଦୁକ୍ତମ ॥ ୨-୧-୩୧ ॥

ବିକରଣତ୍ୱାତ୍-'ଅଚକ୍ଷୁଷ୍କଶ୍ରୋତ୍ରମ୍' ଏହି ଶ୍ରୁତିରେ ବ୍ରହ୍ମ ଇନ୍ଦ୍ରିୟରହିତ ପ୍ରତିପାଦିତ ହେଲେ, ନ-କର୍ତ୍ତା ହୁଏ ନାହିଁ । ଇତିଚେତ୍-ଏହାଯଦି କହ ତଦୁକ୍ତମ୍=ଏହି ବିଷୟରେ ଯାହା କହିବାର ଥିଲା, ତାହା 'ଦେବତାଦିବଦପି ଲୋକେ' ସୂତ୍ରକେ କୁହାଯାଇଅଛି ।

(୨) ମୂଳ-(କ) ସ୍ୟାଦେତତ୍ ବିକରଣାଂ ପରାଂ ଦେବତାଂ ଶାସ୍ତି ଶାସ୍ତ୍ରମ୍-'ଅଚକ୍ଷୁଷ୍କଶ୍ରୋତ୍ରମବାଗମନାଃ' (ବୃ ୩-୮-୮) ଇତ୍ୟେବଂଜାତୀୟକମ୍ । କଥଂ ସା ସର୍ବଶକ୍ତିଯୁକ୍ତା ଅପିସନ୍ତ । ଆଧାତ୍ମିକକାର୍ଯ୍ୟ କରଣସଂପନ୍ନା ଏବ ତସ୍ମୈ ତସ୍ମୈ କାର୍ଯ୍ୟାୟ ପ୍ରଭବନ୍ତେ ବିଜ୍ଞାୟନ୍ତେ ।

(ଖ) କଥଂ ଚ 'ନେତି ନେତି, (ବୃ-୩-୯-୨୬) ଇତି ପ୍ରତିଷିଦ୍ଧ-ସର୍ବବିଶେଷାୟା ଦେବାତାୟାଃ ସର୍ବଶକ୍ତିଯୋଗଃ ସମ୍ଭବେଦିତି ଚେତ୍ । ଯଦତ୍ର ବକ୍ତବ୍ୟଂ ତତ୍ପୁନସ୍ତାଦେବୋକ୍ତମ୍ । ଶ୍ରୁତ୍ୟବଗାହ୍ୟମେବେଦମତିଗମ୍ଭୀରଂ ବ୍ରହ୍ମ ନ ତର୍କାବଗାହ୍ୟମ୍ । ନ ଚ ଯଥୈକସ୍ୟ ସାମର୍ଥ୍ୟଂ ଦୃଷ୍ଟଂ ତଥାନ୍ୟସ୍ୟାପି ସାମର୍ଥ୍ୟେନ ଭବିତବ୍ୟମିତି ନିୟମୋଽସ୍ତୀତି ।

(ଗ) ପ୍ରତିଷିଦ୍ଧସର୍ବବିଶେଷସ୍ୟାପି ବ୍ରହ୍ମଣଃ ସର୍ବଶକ୍ତିଯୋଗଃ ସମ୍ଭବତୀତ୍ୟେ-ତଦପ୍ୟବିଦ୍ୟାକଳ୍ପିତରୂପଭେଦେ ପନ୍ୟାସନୋକ୍ତମେବ । ତଥା ଚ ଶାସ୍ତ୍ରମ୍- 'ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ନ ଶୃଣୋତ୍ୟକର୍ଣ୍ଣଃ' (ଶ୍ୱେ ୩- ୧ ୯) ଇତ୍ୟକରଣସ୍ୟାପି ବ୍ରହ୍ମଣଃ ସର୍ବସାମର୍ଥ୍ୟଯୋଗ୍ୟ ଦର୍ଶୟତି ।

(୨) ଭାଷାଂତର-(କ) ଏହାହିଁ ଠିକ୍ । ପରନ୍ତୁ 'ଅଚକ୍ଷୁଷ୍କ' (ସେ ନେତ୍ର ରହିତ ଶ୍ରୋତ୍ରରହିତ, ବାଣୀରହିତ ଓ ମନରହିତ ଅଟେ) ଏହିପ୍ରକାର ପରାଦେବତାକୁ ଇନ୍ଦ୍ରିୟ ରହିତ ରୂପରେ କହେ । ସେ ଦେବତା ସର୍ବଶକ୍ତିଯୁକ୍ତ ହେଲେ କାର୍ଯ୍ୟ କରିବା ପାଇଁ ତାର ସମାର୍ଥ୍ୟ ଅଛି କି ? ଦେବତା ପ୍ରଭୃତି ଚେତନ ଓ ସର୍ବଶକ୍ତିଯୁକ୍ତ ହୋଇ ଆଧାତ୍ମିକ ଶରୀର ଓ ଇନ୍ଦ୍ରିୟସଂପନ୍ନ ହୋଇ ସେହି କାର୍ଯ୍ୟ କରିବାରେ ସମର୍ଥ ହେବାର ଜଣାପଡେ ।

(ଖ) କିନ୍ତୁ 'ନେତି ନେତି' ଏହି ପ୍ରକାର ଶ୍ରୁତିରେ ଯେଉଁ ବିଶେଷର ପ୍ରତିଷେଧ କରାଯାଏ, ସେହି ଦେବତାଠାରେ ସର୍ବଶକ୍ତିଗୁଡ଼ିକର ଯୋଗ କିପରି ହେବ ? ଯଦି ଏହା କହ, ତେବେ ଏହି ବିଷୟରେ ଯାହା କହିବାର କଥା, ତାହା ପୂର୍ବରୁ କୁହାଯାଇଛି । ଏହା ଅତିଗମ୍ଭୀର ବ୍ରହ୍ମ ଶ୍ରୁତିଦ୍ୱାରା ଜ୍ଞାତବ୍ୟ ହୁଏ । କିନ୍ତୁ ତର୍କଦ୍ୱାରା ଜଣାଯାଏ ନାହିଁ । ଯେପରି ଗୋଟିକର ସାମର୍ଥ୍ୟ ଦେଖାଯାଏ ନାହିଁ, ସେପରି ଅନ୍ୟର ସାମର୍ଥ୍ୟ ହେବା ଉଚିତ ବୋଲି କୌଣସି ନିୟମ ନାହିଁ ।

(ଗ) ଯାହାପାଇଁ ସବୁବିଶେଷର ପ୍ରତିଷେଧ କରାଯାଇଅଛି, ସେହି ବ୍ରହ୍ମରେ ସର୍ବଶକ୍ତିଯୋଗ ସମ୍ଭବ ହୁଏ । ଏହି ଶକ୍ତିଯୋଗ ଅବିଦ୍ୟାଦ୍ୱାରା କଳ୍ପିତ ରୂପ ଭେଦର ଉପନ୍ୟାସରୁ କୁହାଯାଇଛି । ସେପରି 'ଅପାଣୀପାଦେ' (ସେ ହସ୍ତ ଓ ପାଦରହିତ ହୋଇ ବେଗବାନ୍ ଓ ଗ୍ରହୀତା ହୁଏ । ନେତ୍ର ନଥାଇ ଦେଖେ । କର୍ଣ୍ଣ ନ ଥାଇ ଶୁଣେ) ଏହି ଶ୍ରୁତିକରଣ ରହିତ, ଇନ୍ଦ୍ରିୟ ରହିତ ବ୍ରହ୍ମରେ ସର୍ବଶକ୍ତିର ଯୋଗସମ୍ଭବ ଦେଖାଏ ।

## ११ प्रयोजनवत्वधिकरणम् । सूं ॥३२-३३॥

## ନ ପ୍ରୟୋଜନବତ୍ୱାଧିକରଣ - ୧୧

### न प्रयोजनवत्त्वात् ॥३२॥

### (୧) ନ ପ୍ରୟୋଜନବତ୍ତ୍ୱାତ୍ ॥ ୨-୧-୩୨ ॥

ନ-ବ୍ରହ୍ମ ଜଗତ୍‌ର କର୍ତ୍ତା ନୁହେଁ । ପ୍ରୟୋଜନବତ୍ତ୍ୱାତ୍-କାରଣ-ପ୍ରବୃତ୍ତି ହିଁ ପ୍ରୟୋଜନ ଯୁକ୍ତ । ନିତ୍ୟ ତୃପ୍ତ ହେଲେ ବ୍ରହ୍ମର କୌଣସି ପ୍ରୟୋଜନ ନ ଥାଏ ।

(୨) ମୂଳ-(କ) ଅନ୍ୟଥା ପୁନଶ୍ଚେତନକର୍ତ୍ତୃତ୍ୱଂ ଜଗତ ଆକ୍ଷିପତି । ନ ଖଲୁ ଚେତନଃ ପରମାତ୍ମେଦଂ ଜଗଦ୍ ବିମ୍ବଂ ବିରଚୟିତୁମର୍ହତି । କୁତଃ । ପ୍ରୟୋଜନବତ୍ତ୍ୱା-

ତ୍ପ୍ରବୃତ୍ତୀନାମ୍ । ଚେତନୋ ହି ଲୋକେ ବୁଦ୍ଧିପୂର୍ବକାରୀ ପୁରୁଷଃ ପ୍ରବର୍ତ୍ତମାନୋ ନ ମନ୍ଦୋପକ୍ରମାମପି ତାବତ୍ ପ୍ରବୃତ୍ତିମାତ୍ମପ୍ରୟୋଜନାନୁପଯୋଗିନୀମାରଭମାଣୋ ଦୃଷ୍ଟଃ ।

(ଖ) କିମୁତ ଗୁରୁତରସଂରମ୍ଭାମ୍ । ଭବତି ଚ ଲୋକପ୍ରସିଦ୍ଧ୍ୟନୁବାଦିନୀ ଶ୍ରୁତିଃ-'ନ ବା ଅରେ ସର୍ବସ୍ୟ କାମାୟ ସର୍ବଂପ୍ରିୟଂ ଭବତ୍ୟାତ୍ମନସ୍ତୁ କାମାୟ ସର୍ବଂ ପ୍ରିୟଂ ଭବତି' (ବୃ ୨-୪-୫) ଇତି । ଗୁରୁତର ସଂରମ୍ଭା ଚେୟଂ ପ୍ରବୃତ୍ତିର୍ଯଦୁଚ୍ଚାବଚପ୍ରପଞ୍ଚଂ ଜଗଦ୍ ବିମ୍ବଂ ବିରଚୟିତବ୍ୟମ୍ ।

(ଗ) ଯଦୀୟମପି ପ୍ରବୃତ୍ତି ଶ୍ଚେତନସ୍ୟ ପରମାତ୍ମନ ଆତ୍ମପ୍ରୟୋଜନୋପଯୋଗିନୀ ପରିକଳ୍ପ୍ୟେତ ପରିତୃପ୍ତତ୍ୱଂ ପରମାତ୍ମନ ଶ୍ରୂୟମାଣଂ ବାଧ୍ୟେତ । ପ୍ରୟୋଜନାଭାବେ ବା ପ୍ରବୃତ୍ତ୍ୟଭାବୋଽପି ସ୍ୟାତ । ଅଥ ଚେତମେଽପି ସନ୍ନୁନ୍ମତୋ ବୁଦ୍ଧ୍ୟପରାଧାଦନ୍ତରେ-ଣୈବାତ୍ମପ୍ରୟୋଜନଂ ପ୍ରବର୍ତ୍ତମାନେ । ହୃଷ୍ଟସ୍ତଥା ପରମାତ୍ମାପି ପ୍ରବର୍ତ୍ତିଷ୍ୟତ ଇତ୍ୟୁଚ୍ୟେତ । ତଥାସତି ସର୍ବଜ୍ଞତ୍ୱଂ ପରମାତ୍ମନଃ ଶ୍ରୂୟମାଣଂ ବାଧ୍ୟେତ । ତସ୍ମାଦଶ୍ଲିଷ୍ଟା ଚେତନାତ୍ ସୃଷ୍ଟିରିତି ।

**(୨) ଭାଷାଂତର**-(କ) ଚେତନ ଜଗତ୍‌ର କର୍ତ୍ତା ଏହି ବିଷୟରେ କେତେକ ଆକ୍ଷେପ କରନ୍ତି । ଚେତନପରମାତ୍ମାରୁ ଏହି ଜଗନ୍ମଣ୍ଡଳ ସୃଷ୍ଟି କରିବା ଅସମ୍ଭବ, କାରଣ-ପ୍ରବୃତ୍ତି ପ୍ରୟୋଜନଯୁକ୍ତ ଅଟେ । ସଂସାରରେ ବୁଦ୍ଧିପୂର୍ବକ କାର୍ଯ୍ୟକରୁଥିବା ଚେତନ ପୁରୁଷ କାର୍ଯ୍ୟରେ ପ୍ରବୃତ୍ତ ହୋଇ ନିଜର ପ୍ରୟୋଜନ ଅନୁଯୋଗୀ ଅଳ୍ପଯତ୍ନ ସାଧ୍ୟ ପ୍ରବୃତ୍ତି କାମକୁ ଆରମ୍ଭ କରିବାର ଦେଖାଯାଏ ନାହିଁ ।

(ଖ) ପୁଣି ଗୁରୁତର ପ୍ରଯତ୍ନସାଧ୍ୟପ୍ରବୃତ୍ତିକୁ ଆରମ୍ଭ କରେ ନାହିଁ । କିନ୍ତୁ ଏହି ବିଷୟରେ କହିବା କଣ ଦରକାର ? ଲୋକପ୍ରସିଦ୍ଧର ଅନୁବାଦିନୀ 'ନ ବା ଅରେ' (ଅରେ ମୈତ୍ରେୟୀସବୁର ପ୍ରୟୋଜନ ପାଇଁ ସବୁପ୍ରିୟ ନୁହେଁ, ନିଜର ପ୍ରୟୋଜନ ପାଇଁ ସବୁପ୍ରିୟ) ଏହାହିଁ ଶ୍ରୁତି । ଯାହା ଅନେକପ୍ରକାର ପ୍ରପଞ୍ଚଯୁକ୍ତ ଜଗତ୍‌କୁ ରଚନା କରିବା ପାଇଁ ଯେହେଁ, ସେହି ପ୍ରବୃତ୍ତି ଗୁରୁତର ପ୍ରଯତ୍ନସାଧ୍ୟ ଅଟେ ।

(ଗ) ଯଦି ଏହି ପ୍ରବୃତ୍ତି ଚେତନ ପରମାତ୍ମାର ନିଜପ୍ରୟୋଜନର ଉପଯୋଗିନୀ କଳ୍ପନା କରେ, ତାହା ପରମାତ୍ମାରେ ଶ୍ରୂୟମାଣ ପରିତୃପ୍ତତ୍ୱବାଧିତ ହୁଏ, ଅଥବା ପ୍ରୟୋଜନର ଅଭାବରେ ପ୍ରବୃତ୍ତିର ଅଭାବ ହୁଏ । ଯଦି କହଯେ- ଚେତନ ହୋଇ ଉନ୍ମତ୍ତ ପୁରୁଷ ବୁଦ୍ଧିର ଅପରାଧ ବିନା ପ୍ରୟୋଜନରେ ପ୍ରବୃତ୍ତ ହେବାର ଦେଖାଯାଏ । ସେହିପ୍ରକାର ପରମାତ୍ମା ମଧ୍ୟ ପ୍ରବୃତ୍ତ ହେବ । କିନ୍ତୁ ତାଦୃଶହେଲେ ପରମାତ୍ମାରେ ଶ୍ରୂୟମାଣ ସର୍ବଜ୍ଞତ୍ୱର ବାଧାହେବ ଓ ଚେତନରୁ ସୃଷ୍ଟି ହେବା ସ୍ୱୀକାର କରିବା ଅସଙ୍ଗତ ହେବ ।

# लेकवत्तु लीलाकैवल्यम् ॥३३॥

## (୧) ଲୋକବତ୍ତୁ ଲୀଳା କୈବଲ୍ୟମ୍ ॥୨-୧-୩୩॥

ଲୋକବତ୍ତୁ-ତୁଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି ପାଇଁ ଅଛି, ଲୋକବତ୍ ତୁ-ଯେପରି ସଂସାରରେ କୌଣସି ବିଶିଷ୍ଟ ପୁରୁଷର ପ୍ରୟୋଜନ ନ ଥାଇ କ୍ରୀଡ଼ା ପ୍ରଭୃତିରେ ପ୍ରବୃତ୍ତ ହେବା ଦେଖାଯାଏ, ସେପରି ମଧ୍ୟ ପରମାତ୍ମାର ଏହି ବିଚିତ୍ର ରଚନା, ଲୀଳା କୈବଲ୍ୟମ୍-ପ୍ରୟୋଜନବ୍ୟତିତ ଲୀଳାମାତ୍ର ହୁଏ । ତେଣୁ ଉକ୍ତ ସମନ୍ୱୟର ବିରୋଧ ନାହିଁ ।

(୨) ମୂଳ-(କ) ତୁଶବ୍ଦେନାକ୍ଷେପଂ ପରିହରତି । ଯଥାଲୋକେ କସ୍ୟଚିଦାପ୍ତୈ-ଷଣସ୍ୟ ବା ବ୍ୟତିରିକ୍ତଂ କିଞ୍ଚିତ୍ ପ୍ରୟୋଜନମଭିସନ୍ଧାୟ କେବଳଂ ଲୀଳାରୂପାଃ ପ୍ରବୃତ୍ତୟଃ କ୍ରୀଡ଼ାବିହାରେଷୁ ଭବନ୍ତି । ଯଥା- ଉଚ୍ଛ୍ୱାସପ୍ରଶ୍ୱାସାଦୟୋଽନଭିସନ୍ଧାୟ ବାହ୍ୟଂ କିଞ୍ଚିତ୍ ପ୍ରୟୋଜନଂ ସ୍ୱଭାବାଦେବ ସମ୍ଭବନ୍ତି ଏବମୀଶ୍ୱରସ୍ୟାପ୍ୟନପେକ୍ଷ୍ୟ କିଞ୍ଚିତ୍ ପ୍ରୟୋଜନାନ୍ତରଂ ସ୍ୱଭାବାଦେବ କେବଳଂ ଲୀଳାରୂପା ପ୍ରବୃତ୍ତିର୍ଭବିଷ୍ୟତି ।

(ଖ) ନହୀଶ୍ୱରସ୍ୟ ପ୍ରୟୋଜନାନ୍ତରଂ ନିରୂପ୍ୟମାଣଂ ନ୍ୟାୟତଃ ଶ୍ରୁତିତୋ ବା ସମ୍ଭବତି । ନଚ ସ୍ୱଭାବଃପର୍ଯ୍ୟନୁଯୋକ୍ତୁଂ ଶକ୍ୟତେ । ଯଦ୍ୟପ୍ୟସ୍ମାକମିୟଂ ଜଗଦ୍‌ବିମ୍ବବିରଚନା ଗୁରୁତରସଂରମ୍ଭେବା ଭତି ତଥାପି ପରମେଶ୍ୱରସ୍ୟ ଲୀଳୈବ କେବଳେୟଂ, ଅପରିମିତଶକ୍ତିତ୍ୱାତ୍ ।

(ଗ) ଯଦି ନାମ ଲୋକେ ଲୀଳାସ୍ୱପି କିଞ୍ଚିତ୍ ସୂକ୍ଷ୍ମଂ ପ୍ରୟୋଜନମୁତ୍ ପ୍ରେକ୍ଷ୍ୟେତ ତଥାପି ନୈବାତ୍ର କିଞ୍ଚିତ୍‌ପ୍ରୟୋଜନମୁତ୍ ପ୍ରେକ୍ଷିତୁଂ ଶକ୍ୟତେ, ଆପ୍ତକାମଶ୍ରୁତେଃ । ନାପ୍ୟପ୍ରବୃତ୍ତି ରୁନ୍ମତ୍ତପ୍ରବୃତ୍ତିର୍ବା, ସୃଷ୍ଟିଶ୍ରୁତେଃ ସର୍ବଜ୍ଞଶ୍ରୁତେଶ୍ଚ । ନ ଚେୟଂ ପରମାର୍ଥ ବିଷୟା ସୃଷ୍ଟିଶ୍ରୁତିଃ, ଅବିଦ୍ୟାକଳ୍ପିତନାମରୂପବ୍ୟବହାରଗୋଚରତ୍ୱାତ୍; ବ୍ରହ୍ମାତ୍ମଭାବପ୍ରତି-ପାଦନପରତ୍ୱାଚ୍ଚେତ୍ୟେତଦପି ନୈବ ବିସ୍ମର୍ତ୍ତବ୍ୟମ୍ ।

**(୨) ଭାଷାଂତର-** (କ) ତୁଶବ୍ଦଦ୍ୱାରା ପୂର୍ବପକ୍ଷର ଆକ୍ଷେପ ପରିହାର କରାଯାଉଛି । ଯେପରି ଲୋକରେ ଆପ୍ତେଷଣକାରୀ (ପାଇବାକୁ ଇଚ୍ଛାକରୁଥିବା) ଯେ କୌଣସି ରାଜା ଓ ମନ୍ତ୍ରୀର କ୍ରୀଡ଼ାକ୍ଷେତ୍ରରେ ପ୍ରବୃତ୍ତଗୁଡ଼ିକ କୌଣସି ଅନ୍ୟ ପ୍ରୟୋଜନକୁ ଅଭିଳାଷ ନ କରି କେବଳ ଲୀଳାରୂପା ହୁଏ । ଯେପରି ଉଚ୍ଛ୍ୱାସ ଓ ପ୍ରଶାସାଦି କୌଣସି ବାହ୍ୟପ୍ରୟୋଜନର ଇଚ୍ଛାବ୍ୟତିତ ସ୍ୱତ ହୁଏ, ସେପରି କୌଣସି ଅନ୍ୟ ପ୍ରୟୋଜନକୁ ଅପେକ୍ଷା ନକରି ନିଜେ ନିଜେ ଈଶ୍ୱରର ଲୀଳାରୂପ ପ୍ରବୃତ୍ତ ହେବ ।

(ଖ) କାରଣ-ଯୁକ୍ତି ଓ ଶ୍ରୁତିରେ ଈଶ୍ୱରର ନିରୁପ୍ୟମାଣ ଅନ୍ୟପ୍ରୟୋଜନର ସମ୍ଭବ ହୁଏ ନାହିଁ । ସ୍ୱଭାବ ବିଷୟରେ ଆକ୍ଷେପ ମଧ୍ୟ କରାଯାଏ ନାହିଁ । ଅର୍ଥାତ୍ ଈଶ୍ୱରର ଏପରି



ସ୍ୱଭାବ କାହିଁକି ? କିନ୍ତୁ ଏପରି ଆକ୍ଷେପ କରିବା ଠିକ୍ ନୁହେଁ । ଯଦ୍ୟପି ଜଗନ୍ମଣ୍ଡଳର ବିରଚନା ଆମ୍ଭଙ୍କୁ ଅତ୍ୟଧିକ ସାଧ ରୂପରେ ପ୍ରତୀତ ହୁଏ, ତଥାପି ମଧ ଏହା ପରମେଶ୍ୱରର ଲୀଳାମାତ୍ର । କାରଣ ତାହାର ଶକ୍ତି ଅପରିମିତ ଓ ଅନନ୍ତ ।

(ଗ) ଯଦ୍ୟପି ଲୌକିକଲୀଳାରେ କୌଣସି ଲୀଳାପ୍ରୟୋଜନକୁ ପ୍ରୟୋଜନ କରାଯାଏ, ତଥାପି ଏଠାରେ ପରମାତ୍ମା ବିଷୟରେ କୌଣସି ପ୍ରୟୋଜନ କଳ୍ପନାଯୋଗ୍ୟ ନୁହେଁ । କାରଣ-ପରମେଶ୍ୱର ଆପ୍ତକାମ ବୋଲି ଶ୍ରୁତି କହେ । ଏହି ପ୍ରକାର ଅପ୍ରବୃତ୍ତି ଅଥବା ଉନ୍ନତର ପ୍ରବୃତ୍ତି ହୁଏ ନାହିଁ, କାରଣ-ସୃଷ୍ଟି ଓ ସର୍ବଜ୍ଞତ୍ୱ ବିଷୟରେ ଶ୍ରୁତି କହେ । ଏହି ସୃଷ୍ଟି ଶ୍ରୁତି ପାରମାର୍ଥିକ ବିଷୟବ ନୁହେଁ । କାରଣ- ଅବିଦ୍ୟା-କଳ୍ପିତ ନାମରୂପାତ୍ମକବ୍ୟବହାରର ବିଷୟକ ଅଟେ ଏବଂ ବ୍ରହ୍ମାତ୍ମଭାବ ପ୍ରତିପାଦନପରକ ଅଟେ । ଏହା ବିସ୍ମରଣ କରିବା ଉଚିତ ନୁହେଁ ।

## १२ वैषम्यनैर्घृण्याधिकरणम् । सू० ॥३४-३५॥

## ବୈଷମ୍ୟନୈର୍ଘୃଣ୍ୟାଧିକରଣ-୧୨

### वैषम्यनैर्घृणये न सापेक्षत्वात्तथाहि दर्शयति ॥३४॥

### (୧) ବୈଷମ୍ୟନୈର୍ଘୃଣ୍ୟେ ନ ସାପେକ୍ଷତ୍ୱାତ୍ତଥା ହିଦର୍ଶୟତି ॥୨-୧-୩୪॥

ବୈଷମ୍ୟନୈର୍ଘୃଣ୍ୟେ ନ = ବ୍ରହ୍ମରେ ବିଷମତା ଓ ନିଷ୍କରୁଣତାରୂପ ଗ୍ରହଣ କରିବା ଦୋଷନୁହେଁ । ସାପେକ୍ଷତ୍ୱାତ୍=କାରଣ-ସେ ଜୀବର କର୍ମାନୁସାରେ ଫଳଦିଏ ଅର୍ଥାତ୍ କର୍ମକୁ ଅପେକ୍ଷା କରେ । ତଥାହି ଦର୍ଶୟତି=ଏହି କଥାକୁ 'ଏଷ ହ୍ୟେବ ସାଧୁକର୍ମ କାରୟତି' ଏହି ଶ୍ରୁତି ମଧ ଦେଖାଏ ।

(୨) ମୂଳ-(କ) ପୁନଶ୍ଚ ଜଗଜ୍ଜନ୍ମାଦିହେତୁତ୍ୱମୀଶ୍ୱରସ୍ୟାକ୍ଷିପ୍ୟତେ ସ୍ଥୂଣାନିଖନ--ନନ୍ୟାୟେନ ପ୍ରତିଜ୍ଞା ତସ୍ୟାର୍ଥସ୍ୟ ଦୃଢୀକରଣାୟ । ନେଶ୍ୱରୋ ଜଗତଃ କାରଣମୁପ-ପଦ୍ୟତେ । କୁତଃ । ବୈଷମ୍ୟନୈର୍ଘୃଣ୍ୟପ୍ରସଙ୍ଗାତ୍ । କାଂଶ୍ଚିଦତ୍ୟନ୍ତସୁଖଭାଜଃ କରୋତି ଦେବାଦୀନ, କାଂଶ୍ଚିଦତ୍ୟନ୍ତଦୁଃଖଭାଜଃ ପଶ୍ୱାଦୀନ୍, କାଂଶ୍ଚିନ୍ମଧ୍ୟମଭୋଗଭାଜୋ ମନୁଷ୍ୟାଦୀନୀତ୍ୟେବଂ ବିଷମାଂସୃଷ୍ଟିଂ ନିର୍ମିମାଣସ୍ୟେଶ୍ୱରସ୍ୟପୃଥରାଜନସ୍ୟେବ ରାଗଦ୍ୱେଷୋପପତ୍ତେଃ । ଶ୍ରୁତିସ୍ମୃତ୍ୟ ବଧାରିତସ୍ୱଚ୍ଛତ୍ୱାଦୀଶ୍ୱରସ୍ୱଭାବ ବିଲୋପଃ ପ୍ରସଜ୍ୟେତ ।

(ଖ) ତଥା ଖଳଜନୈରପି ଜୁଗୁପ୍ସତଂ ନିର୍ଘୃଣତ୍ୱମତିକ୍ରୂରତ୍ୱଂ ଦୁଃଖଯୋଗ-ବିଧାନାତ୍ ସର୍ବପ୍ରଜୋପସଂହାରାଚ୍ଚ ପ୍ରସଜ୍ୟେତ । ତସ୍ମାଦ୍‌ବୈଷମ୍ୟ-ନୈର୍ଘୃଣ୍ୟପ୍ରସଙ୍ଗାନ୍ନେ-ଶ୍ୱରଃ କାରଣମ୍ ।

(୨) ଭାଷାଂତର-(କ) ଈଶ୍ୱର ଜଗତ୍‌ର ଉତ୍ପତ୍ତି-କାରଣ ଅଟେ । ଏହି ପ୍ରତିଜ୍ଞାତଅର୍ଥକୁ ସ୍ଥୁଣାନିଖନନ୍ୟାୟରେ ଦୃଢ଼ କରିବା ପାଇଁ ପୁନର୍ବାର ଆକ୍ଷେପ କରାଯାଉଛି । ଈଶ୍ୱର ଜଗତ୍‌ର କାରଣ ହେବା ଯୋଗ୍ୟ ନୁହେଁ, କାରଣ=ବୈଷମ୍ୟ ଓ ନୈର୍ଘୃଣ୍ୟର ପ୍ରସଙ୍ଗ ହୁଏ । ସେ କେତେକ ଦେବତାଙ୍କୁ ଅତ୍ୟନ୍ତସୁଖର ଭାଗୀ କରାଏ । କେତେକ ପଶୁଙ୍କୁ ଦୁଃଖଭୋଗ କରାଏ ଏବଂ କେତେକ ମନୁଷ୍ୟଙ୍କୁ ମଧ୍ୟଭାଗର ଭାଗୀ କରାଏ । ଏହିପରି ବିଷମସୃଷ୍ଟିକୁ ନିର୍ମାଣ କରୁଥିବା ଈଶ୍ୱରଠାରେ ସାଧାରଣ ଲୋକ ପରି ରାଗଦ୍ୱେଷର ଉତ୍ପତ୍ତି ହେଲେ ଶ୍ରୁତି, ସ୍ମୃତିଦ୍ୱାରା ଅବଧାରିତ ସ୍ୱଚ୍ଛତାଦି ଈଶ୍ୱର ସ୍ୱଭାବର ଲୋପ ପ୍ରସକ୍ତ ହେବ ।

(ଖ) ସେପରି ସମସ୍ତ ପ୍ରାଣୀଗୁଡ଼ିକୁ ଦୁଃଖଯୋଗର ବିଧାନ ଓ ସମଗ୍ର ପ୍ରଜାର ଉପସଂହାର କରିବାରେ ସେହି ଦୁଷ୍ଟଜନଠାରୁ ଅଧିକ ଅତିନିନ୍ଦିତ ଅତିକ୍ରୁରତ୍ୱ ପ୍ରସକ୍ତ ହେବ । ତେଣୁ ବିଷମତା ଓ ନିର୍ଘୃଣତାରୂପର ପ୍ରସଙ୍ଗ ହେତୁ ଈଶ୍ୱରକାରଣ ନୁହେଁ ।

(୩) ମୂଳ-(କ) ଇତ୍ୟେବଂ ପ୍ରାପ୍ତେ ବ୍ରୂମଃବୈଷମ୍ୟନୈର୍ଘୃଣ୍ୟେ ନେଶ୍ୱରସ୍ୟ ପ୍ରସଜ୍ୟେତେ । କସ୍ମାତ୍ । ସାପେକ୍ଷତ୍ୱାତ୍ । ଯଦି ହି ନିରପେକ୍ଷଃ କେବଳ ଈଶ୍ୱରୋ ବିଷମାଂ ସୃଷ୍ଟିଂ ନିର୍ମିମୀତେ ସ୍ୟାତାମେତୌ ଦୋଷୌ ବୈଷମ୍ୟଂ ନିର୍ଘୃଣ୍ୟଞ୍ଚ । ନତୁ ନିରପେକ୍ଷସ୍ୟ ନିର୍ମାତୃତ୍ୱମସ୍ତି । ସାପେକ୍ଷୋ ହୀଶ୍ୱରୋ ବିଷମାଂ ସୃଷ୍ଟିଂ ନିର୍ମିମୀତେ । କିମପେକ୍ଷତ ଇତି ଚେତ୍ । ଧର୍ମାଧର୍ମାବପେକ୍ଷତ ଇତି ବଦାମ ଚ । ଅତଃ ସୃଜ୍ୟମାନ ପ୍ରାଣୀଧର୍ମାଧର୍ମାପେକ୍ଷା ବିଷମା ସୃଷ୍ଟିରିତି ନାୟମୀଶ୍ୱରସ୍ୟାପରାଧଃ ।

(ଖ) ଈଶ୍ୱରସ୍ତୁ ପର୍ଜନ୍ୟବଦ୍ ଦ୍ରଷ୍ଟବ୍ୟଃ । ଯଥାହି ପର୍ଜନ୍ୟୋ ବ୍ରୀହିଯବାଦିସୃଷ୍ଟୌ ସାଧାରଣଂ କାରଣଂ ଭବତି, ବ୍ରୀହିଯବାଦିବୈଷମ୍ୟେ ତୁ ତତ୍ତଦ୍‌ବୀଜଗତାନ୍ୟେବା-ସାଧାରଣାନି ସାମର୍ଥ୍ୟାନି କାରଣାନି ଭବନ୍ତି । ଏବମୀଶ୍ୱରୋ ଦେବମନୁଷ୍ୟାଦିସୃଷ୍ଟୌ ସାଧାରଣଂ କାରଣଂ ଭବତି । ଦେବମନୁଷ୍ୟାଦି ବୈଷମ୍ୟେ ତୁ ତତ୍ତଜ୍ଜୀବଗତାନ୍ୟେବାସାଧାରଣାନି କର୍ମାଣି କାରଣାନି ଭବନ୍ତ୍ୟେବମୀଶ୍ୱର ସାପେକ୍ଷତ୍ୱାନ୍ନ ବୈଷମ୍ୟନୈର୍ଘୃଣ୍ୟାଭ୍ୟାଂ ଦୁଷ୍ୟତି ।

(ଗ) କଥଂ ପୁନରବଗମ୍ୟତେ ସାପେକ୍ଷ ଈଶ୍ୱରୋ ନୀଚ ମଧ୍ୟମୋତ୍ତମଂ ସଂସାରଂ ନିର୍ମିମୀତ ଇତି । ତଥାହି ଦର୍ଶୟତି ଶ୍ରୁତିଃ- 'ଏଷ ହ୍ୟେବ ସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଉନ୍ନିନୀଷତ ଏଷ ଉ ଏବାସାଧୁ କର୍ମ କାରୟତି ତଂ ଯମଧୋ ନିନୀଷତେ' (କୌ. ବ୍ରା ୩-୮) ଇତି । 'ପୁଣ୍ୟୋ ବୈ ପୁଣ୍ୟେକ କର୍ମଣା ଭବତି ପାପଃ ପାପେନ' (ବୃ ୩-୨-୧୩) ଇତି ଚ । ସ୍ମୃତିରପି ପ୍ରାଣିକର୍ମବିଶେଷାପେକ୍ଷ-ମେବେଶ୍ୱରସ୍ୟାନୁଗ୍ରହୀତୃତ୍ୱଂ ନିଗ୍ରହୀତୃତ୍ୱଂ ଚ ଦର୍ଶୟତି- 'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବଭଜାମ୍ୟହମ୍' (ଭ. ଗୀ. ୪-୧୧) ଇତ୍ୟେବଂଜାତୀୟକା ।



(ଘ) ଭାଷାଂତର- (କ) ସିଦ୍ଧାନ୍ତ-ବୈଷମ୍ୟ ଓ ନୈର୍ଘୃଣ୍ୟ ଈଶ୍ୱରଠାରେ ପ୍ରସକ୍ତ ନୁହେଁ । କାରଣ-ତଦ୍ଦ୍ୱାରା ସେ ସାପେକ୍ଷ ଅଟେ । ଯଦି ଈଶ୍ୱର କେବଳ ନିରପେକ୍ଷ ହୋଇ ବିଷମ ସୃଷ୍ଟିକୁ ନିର୍ମାଣ କରେ ଓ ବୈଷମ୍ୟ ନୈର୍ଘୃଣ୍ୟ ଦୋଷ ହୁଅନ୍ତି । ପରନ୍ତୁ ସେହି ନିରପେକ୍ଷ ହୋଇ ନିର୍ମାଣ କରେ ନାହିଁ । ପ୍ରତ୍ୟୁତଈଶ୍ୱର ସାପେକ୍ଷ ହୋଇ ବିଷମ ସୃଷ୍ଟିକୁ ନିର୍ମାଣ କରେ । ଯଦି ସେ କାହାକୁ ଅପେକ୍ଷା କରେ ବୋଲି କହ, ତେବେ ଆମ୍ଭେ କହୁଁ ଯେ- ଧର୍ମ ଓ ଅଧର୍ମକୁ ଅପେକ୍ଷା କରେ । ସୃଜ୍ୟମାନ ପ୍ରାଣୀର ଧର୍ମ ଓ ଅଧର୍ମକୁ ଅପେକ୍ଷା କରିବା ଦ୍ୱାରା ବିଷମ ସୃଷ୍ଟି ହୁଏ ।

(ଖ) ଈଶ୍ୱର କିନ୍ତୁ ପର୍ଜନ୍ୟପରି ବୋଲି ଜାଣିବା ଉଚିତ । ଯେପରି ବ୍ରୀହି ଯବାଦିର ସୃଷ୍ଟିରେ ପର୍ଜନ୍ୟ (ବର୍ଷା) ସାଧାରଣକାରଣ ହୁଏ, ଏବଂ ବ୍ରୀହି ଯବାଦିର ବିଷମତାରେ ସେହି ବୀଜଗତ ସାମର୍ଥ୍ୟ ଅସାଧାରଣ କାରଣ ହୁଏ, ସେହିପରି ଦେବ ଓ ମନୁଷ୍ୟାଦିର ସୃଷ୍ଟିରେ ଈଶ୍ୱର ସାଧାରଣକାରଣ ହୁଏ । ଦେବ ଓ ମନୁଷ୍ୟାଦିର ବିଷମତାରେ ସେହି ସେହି ଜୀବଗତକର୍ମ ଅସାଧାରଣ କାରଣ ହୁଏ । ଏହି ପ୍ରକାର ଈଶ୍ୱର ସାପେକ୍ଷ ହେଲେ ବୈଷମ୍ୟ ଓ ନିର୍ଘୃଣ୍ୟ ଦ୍ୱାରା ଦୂଷିତ ହୁଏ ନାହିଁ ।

(ଗ) ପରନ୍ତୁ ତାହା କିପରି ହୁଏ ଯେ- କର୍ମକୁ ଅପେକ୍ଷା କରି ଈଶ୍ୱର ନିମ୍ନ (ପଶୁ ଇତ୍ୟାଦି), ମଧ୍ୟମ (ମନୁଷ୍ୟାଦି) ଓ ଉତ୍ତମ (ଦେବତାଦି) ସଂସାରର ନିର୍ମାଣ କରେ । ସେହିପରି 'ଏଷଃ ହ୍ୟେବ' (ଯାହାକୁ ଏହିଲୋକଠାରୁ ଉପରକୁ ନେଇଯାଏ, ତାହାଦ୍ୱାରା ଏହି ଈଶ୍ୱର ପୁଣ୍ୟ କର୍ମ କରେ ଓ ଯଦି ନିକୃଷ୍ଟ ଲୋକକୁ ନେବାକୁ ଚାହେଁ, ସେ ପାପ କର୍ମ କରେ), 'ପୁଣ୍ୟୋ ବୈ' (ସେ ପୁଣ୍ୟକର୍ମ ଦ୍ୱାରା ପୁଣ୍ୟବାନ ଓ ପାପକର୍ମରୁ ପାପୀ ହୁଏ) ଏହାହିଁ ଶ୍ରୁତି କହେ । ପ୍ରାଣୀର କର୍ମବିଶେଷକୁ ଅପେକ୍ଷା କରି ଈଶ୍ୱର ଅନୁଗ୍ରହ ଓ ନିଗ୍ରହର କର୍ତ୍ତା ହୁଏ । 'ଯୋ ଯଥା ମାଂ' (ଯିଏ ମୋତେ ଯେପରି ଭଜନ କରେ, ମୁଁ ତାକୁ ସେପରି ଭଜନ କରେ) ଏହିପ୍ରକାର ସ୍ମୃତି ମଧ୍ୟ ଦେଖାଏ ।

## न कर्माविभागादिति चेन्नानादित्वात् ॥३५॥

## (୧) ନ କର୍ମବିଭାଗାଦିତ ଚେନ୍ନାନାଦିତ୍ୱାତ୍ ॥ ୨-୧-୩୫ ॥

ଅବିଭାଗାତ୍ = 'ସଦେବ ସୋମ୍ୟେଦମଗ୍ର' ଇତ୍ୟାଦିଶ୍ରୁତିରେ ସୃଷ୍ଟିର ପୂର୍ବରୁ ଭେଦର ଅଭାବ ପ୍ରତିପାଦିତ ହୋଇଛି, ତେଣୁ ସେହିସମୟ ପର୍ଯ୍ୟନ୍ତ, ନ କର୍ମ=କର୍ମ ନଥିଲା । କିନ୍ତୁ କର୍ମକୁ ଅପେକ୍ଷା କରି ବିଷମ ସୃଷ୍ଟି କିପରି ହୁଏ ? ଇତି ଚେନ୍ନ=ଏହା କହିବା ଠିକ୍ ନୁହେଁ । ଅନାଦିତ୍ୱାତ୍=କାରଣ-ସଂସାର ଅନାଦି ହେଲେ ସୃଷ୍ଟି ଓ କର୍ମର ଜୀବ ଓ ଅଙ୍କୁର ପରି କାର୍ଯ୍ୟକାରଣଭାବ ହୁଏ । ତେଣୁ କର୍ମକୁ ଅପେକ୍ଷା କରିବା ଦ୍ୱାରା ବିଷମତା ସୃଷ୍ଟି ହୁଏ ।

(୨) ମୂଳ-(କ) 'ସଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍' (ଛା ୬-୨-୧) ଇତି ପ୍ରାକ୍‌ସୃଷ୍ଟେରବିଭାଗାବଧାରଣାନ୍ନାସ୍ତି କର୍ମ ଯଦପେକ୍ଷ୍ୟ ବିଷମା ସୃଷ୍ଟିଃ ସ୍ୟାତ୍ । ସୃଷ୍ଟ୍ୟୁତ୍ତରକାଳଂ ହି ଶରୀରାଦିବିଭାଗାପେକ୍ଷଂ କର୍ମ, କର୍ମାପେକ୍ଷଶ୍ଚ ଶରୀରାଦିବିଭାଗ ଇତୀତରେତରାଶ୍ରୟତ୍ୱଂ ପ୍ରସଜ୍ୟେତ । ଅତୋ ବିଭାଗାଦୂର୍ଦ୍ଧ୍ୱଂ କର୍ମପେକ୍ଷ ଈଶ୍ୱରଃ ପ୍ରବର୍ତ୍ତତାଂ ନାମ ।

(ଖ) ପ୍ରାଗ୍‌ବିଭାଗାଦ୍ ବୈଚିତ୍ର୍ୟନିମିତସ୍ୟ କର୍ମଣୋଽଭବାତ୍ ତୁଲ୍ୟୈବ୍ୟତ୍ରା ସୃଷ୍ଟିଃ ପ୍ରାପ୍ନୋତୀତି ଚେତ୍ । ନୈଷ ଦୋଷଃ । ଅନାଦିତ୍ୱାତ୍‌ସଂସାରସ୍ୟ । ଭବେଦେଷ ଦୋଷୋ ଯଦ୍ୟଦିମାନ୍ ସଂସାରଃ ସ୍ୟାତ୍ । ଅନାଦୌ ତୁ ସଂସାର ବୀଜାଙ୍କୁରବଦ୍ ହେତୁମଦ୍‌ଭାବେନ କର୍ମଣଃ ସର୍ଗବୈଷମସ୍ୟ ଚ ପ୍ରବୃତ୍ତିର୍ନ ବିରୁଧ୍ୟତେ ।

**(୨) ଭଷାଂତର**-(କ) 'ସଦେବ ସୋମ୍ୟ' ହେ ପ୍ରିୟଦର୍ଶନ ! ସୃଷ୍ଟିର ପୂର୍ବରୁ ଏକମାତ୍ର ଅଦ୍ୱିତୀୟ ସତ୍ ଥିଲା । ଏହି ପ୍ରକାର ସୃଷ୍ଟିର ପୂର୍ବରୁ ଭେଦାଭାବସ୍ଥିର କରିବା ଦ୍ୱାରା ଯାହାକୁ ଅପେକ୍ଷା କରି ବିଷମସୃଷ୍ଟି ହୁଏ, ତାହାର କର୍ମ ନାହିଁ । ଶରୀରାଦି ବିଭାଗକୁ ଅପେକ୍ଷା କରି କର୍ମ ସୃଷ୍ଟିର ପରବର୍ତ୍ତୀକାଳରେ ଭେଦ ହୁଏ ।

(ଖ) ଶରୀରାଦିବିଭାଗ କର୍ମପେକ୍ଷିତ ହୁଏ । ଏହିପ୍ରକାର ଅନ୍ୟୋନ୍ୟାଶ୍ରୟ ପ୍ରସକ୍ତ ହୁଏ । ତେଣୁ ବିଭାଗ ପରେ କର୍ମକୁ ଅପେକ୍ଷା କରୁଥିବା ଈଶ୍ୱର ସୃଷ୍ଟିରେ ପ୍ରବୃତ ହୁଏ । ପରନ୍ତୁ ବିଭାଗ ପରେ ବୈଚିତ୍ର୍ୟ ନିମିତକକର୍ମର ଅଭାବ ହେଲେ ଆଦ୍ୟସୃଷ୍ଟି ଦୁଇପକ୍ଷରେ ହେବା ସମ୍ଭବ । ଯଦି ଏପରି କହ, ତେବେ ଦୋଷ ନାହିଁ । କାରଣ-ସଂସାର ଅନାଦି ଅଟେ । ଯେତେବେଳେ ସଂସାର ପ୍ରଥମେ ଜନ୍ମଲାଭ କଲେ, ସେତେବେଳେ ଏହି ଦୋଷ ହୁଏ । ପରନ୍ତୁ ସଂସାର ଅନାଦି ହେଲେ ବୀଜ ଓ ଅଙ୍କୁର ପରି କାର୍ଯ୍ୟକାରଣର ଉପରେ କର୍ମ ଓ ବିଷମ ସୃଷ୍ଟିର ପ୍ରବୃତ ବିରୋଧ ହୁଏ ନାହିଁ ।

(୧) କଥଂ ପୁନରବଗମ୍ୟତେଽନାଦିରେଷ ସଂସାର ଇତି । ଅତ ଉତ୍ତରଂ ପଠତି ।

**(୧) ଭାଷାଂତର**- (କ) ସଂସାର ଅନାଦି ବୋଲି କିପରି ଅବଗତ ହୁଏ, ଏହା ଆମ୍ଭେ ଉତ୍ତରରେ କହୁଁ ।

**उपपद्यते चाप्युपलतेभ्य च ॥३६॥**

**(୧) ଉପପଦ୍ୟତେ ଚାପ୍ୟୁପଲଭ୍ୟତେ ॥ ୨।୧।୩୬ ॥**

ଉପପଦ୍ୟତେ-ସଂସାରର ଅନାଦିତ୍ୱ କରିବା ଠିକ୍ । ଉପଲଭ୍ୟତେ ଚ- 'ଧାତା ଯଥା ପୂର୍ବମକଳ୍ପୟତ୍' ଇତ୍ୟାଦିଶ୍ରୁତି ଏବଂ 'ନ ରୂପ ମସ୍ୟେହ ତଥୋପଲଭ୍ୟତେ' ଇତ୍ୟାଦି ସ୍ମୃତିରେ ସଂସାରର ଅନାଦିତ୍ୱ ଉପଲବ୍ଧ ହୁଏ ।



(୨) ମୂଳ-(କ) ଉପପଦ୍ୟତେ ଚ ସଂସାରସ୍ୟାନାଦିତ୍ୱମ୍ । ଆଦିମତ୍ତ୍ୱେ ହି ସଂସାରସ୍ୟାକସ୍ମାଦ୍ ଉଦ୍‌ଭୂତେର୍ମୁକ୍ତାନାମପିପୁନଃ ସଂସାରୋଦ୍ ଭୂତିପ୍ରସଙ୍ଗଃ, ଅକୃତାଭ୍ୟାଗମପ୍ରସଙ୍ଗଶ୍ଚ, ସୁଖଦୁଃଖାଦିବୈଷମ୍ୟସ୍ୟ ନିର୍ନିମିତ୍ତତ୍ୱାତ୍ । ନଚେଶ୍ୱରୋ ବୈଷମ୍ୟହେତୁ ରିତ୍ୟୁକ୍ତମ୍ । ନଚାବିଦ୍ୟା କେବଳା ବୈଷମ୍ୟସ୍ୟ କାରଣଂ, ଏକରୂପତ୍ୱାତ୍ । (ଖ) ରାଗାଦିକ୍ଳେଶବାସନାକ୍ଷିପ୍ତକର୍ମାପେକ୍ଷା ତ୍ୱବିଦ୍ୟା ବୈଷମ୍ୟକରୀ ସ୍ୟାତ୍ । ନଚ କର୍ମାନ୍ତରେଣ ଶରୀରଂ ସମ୍ଭବତି । ନଚ ଶରୀରମନ୍ତରେଣ କର୍ମ ସମ୍ଭବତୀତୀତରେତରାଶ୍ରୟତ୍ୱପ୍ରସଙ୍ଗଃ । ଅନାଦିତ୍ୱେ ତୁ ବୀଜାଙ୍କୁରନ୍ୟାୟେନୋପପତ୍ତେର୍ନ କଶ୍ଚିଦ୍ଦୋଷୋ ଭବତି । ଉପଲଭ୍ୟତେ ଚ ସଂସାରସ୍ୟାନାଦିତ୍ୱଂ ଶ୍ରୁତିସ୍ମୃତ୍ୟୋଃ । (ଗ) ଶ୍ରୁତୌ ତାବତ୍ 'ଅନେନ ଜୀବେନାତ୍ମନା' (ଛା ୬-୩-୨) ଇତି ସ୍ୱର୍ଗପ୍ରମୁଖେ ଶାରୀରମାତ୍ମାନଂ ଜୀବଶବ୍ଦେନ ପ୍ରାଣଧାରଣନିମିତ୍ତେନାଭିଲପନ୍ନାନାଦିଃ ସଂସାର ଇତି ଦର୍ଶୟତି । ଆଦିମତ୍ତ୍ୱେ ତୁ ପ୍ରାଗନବ ଧାରିତପ୍ରାଣଃ ସନ୍ କଥଂ ପ୍ରାଣଧାରଣନିମିତ୍ତେନ ଜୀବଶବ୍ଦେନ ସ୍ୱର୍ଗପ୍ରମୁଖେଽଭିଲପ୍ୟେତ । ନ ଚ ଧାରୟିଷ୍ୟତୀତତୋଽଭିଲପ୍ୟେତ । ଅନାଗତାଦ୍ଧି ସମ୍ବନ୍ଧାଦତୀତଃ ସମ୍ବନ୍ଧୋ ବଳବାନ୍ ଭବତି, ଅଭିନିଷ୍ପନ୍ନତ୍ୱାତ୍ ।

(ଘ) ସୂର୍ଯ୍ୟାଚନ୍ଦ୍ର ମସୌ ଧାତା ଯଥାପୂର୍ବମକଳ୍ପୟତ୍' (ଋ.ସଂ ୧୦-୧୯୦-୩) ଇତି ଚ ମନ୍ତ୍ରବର୍ଣ୍ଣଃ ପୂର୍ବକଳ୍ପସଦ୍‌ଭାବଂ ଦର୍ଶୟତି । ସ୍ମୃତାବପ୍ୟନାଦିତ୍ୱଂ ସଂସାରସ୍ୟୋପଲଭ୍ୟତେ 'ନ ରୂପମସ୍ୟେହ ତଥୋପଲଭ୍ୟତେ ନାନ୍ତୋ ନ ଚାଦିର୍ନ ଚ ସଂପ୍ରତିଷ୍ଠା । (ଗୀ ୧୫-୩) ଇତି । ପୁରାଣେ ଚାତୀତାନାଗତାନାଂ ଚ କଳ୍ପାନାଂ ନ ପରିମାଣମସ୍ତୀତି ସ୍ଥାପିତମ୍ ।

**(୨) ଭାଷାଂତର-** (କ) ସଂସାରର ଅନାଦିତ୍ୱ ଉପପନ୍ନ ହୁଏ । ଯଦି ସଂସାର ପ୍ରଥମେ ଉତ୍ପତ୍ତି ହୁଏ, ତେବେ ତାହାର ଅକସ୍ମାତ ଉତ୍ପତ୍ତି ହେଲେ ମୁକ୍ତ ପୁରୁଷର ମଧ୍ୟ ପୁନର୍ଜନ୍ମ ପ୍ରସକ୍ତ ହେବ । ସାଦି ନ ହେଲେ କର୍ମଫଳ ପ୍ରାପ୍ତି ହୁଏ । କାରଣ-ଏପରି ପରିସ୍ଥିତିରେ ସୁଖ-ଦୁଖର ବିଷମତା ଅନିମିତ୍ତକ ହେବ । ଈଶ୍ୱର ବିଷମତା ହେତୁ ନୁହେଁ ବୋଲି ଏଠାରେ ଯାହା କୁହାଯାଇଛି, ତାହା ଏକରୂପ ହେଲେ କେବଳ ଅବିଦ୍ୟାବିଷମତାର କାରଣ ହୁଏ ନାହିଁ ।

(ଖ) ରାଗାଦିକ୍ଳେଶର ବାସନା ଦ୍ୱାରା ଆକୃଷ୍ଟକର୍ମକୁ ଅପେକ୍ଷା କରି ଅବିଦ୍ୟା ବୈଷମ୍ୟ କରିବାକୁ ସମର୍ଥ ହୁଏ । କର୍ମବ୍ୟତିତ ଈଶ୍ୱରର ସମ୍ଭବ ନୁହେଁ ଓ ଶରୀର ବ୍ୟତିତ କର୍ମ ମଧ୍ୟ ଅସମ୍ଭବ- ଏହିପରି ଅନ୍ୟୋନ୍ୟାଶ୍ରୟଦୋଷ ପ୍ରସକ୍ତ ହେବ । ପରନ୍ତୁ ସଂସାରକୁ ଅନାଦି ରୂପରେ ସ୍ୱୀକାର କଲେ ବୀଜାଙ୍କୁର ନ୍ୟାୟପରି ହୋଇ କୌଣସି ଦୋଷ ହୁଏ ।ନହିଁ । ସଂସାରର ଅନାଦିତ୍ୱ ଶ୍ରୁତିସ୍ମୃତିରେ ଉପଲବ୍ଧ ହୁଏ ।

(ଗ) ଶ୍ରୁତିରେ 'ଅନେକ ଜୀବେନାତ୍ମନା' ଏହିପ୍ରକାର ସୃଷ୍ଟିର ଆରମ୍ଭରେ ଜୀବାତ୍ମାଙ୍କୁ ପ୍ରାଣଧାରଣନିମିତ ଜୀବଶବ୍ଦଦ୍ୱାରା କହି ସଂସାରର ଅନାଦିତ୍ୱକୁ ଦେଖାଏ । ପରନ୍ତୁ ସଂସାର ସାଦି ହେଲେ ପୂର୍ବ ପ୍ରାଣଧାରଣ ନକଲେ ସର୍ଗର ଆରମ୍ଭରେ ତାହାର ପ୍ରାଣଧାରଣ ନିମିତ୍ତକ ଜୀବଶବ୍ଦଦ୍ୱାରା କିପରି ପ୍ରସଙ୍ଗ ହେବ ? 'ଧାରୟିଷ୍ୟତି' ଏହି ଅଭିପ୍ରାୟରେ ଏହିଶବ୍ଦ ପ୍ରୟୋଗ କରାଯାଇ ନପାରେ । କାରଣ-ଅତୀବ ସମ୍ବନ୍ଧ ଅଭିନିଷ୍ପନ୍ନ ହେଲେ ତାହା ଅନାଗତ ସମ୍ବନ୍ଧ ଦ୍ୱାରା ବଳବାନ ହୁଏ ।

(ଘ) ସୂର୍ଯ୍ୟାଚନ୍ଦ୍ରମସୌ ଧାତା' (ବିଧାତା ସୂର୍ଯ୍ୟ ଓ ଚନ୍ଦ୍ରର ପୂର୍ବକଳ୍ପାନାନୁସାରେ କଳ୍ପନା କଲେ) ଏହି ମନ୍ତ୍ର ପୂର୍ବକଳ୍ପର ସଦ୍‌ଭାବ ଦେଖାଏ । 'ନ ରୂପମସ୍ୟେହ'- (ପରନ୍ତୁ ଏହି ସଂସାର ବୃକ୍ଷସ୍ୱରୂପ ବୋଲି ଯେପରି ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି, ସେପରି ଏହି ବିଚାର କାଳରେ ଉପଲବ୍ଧ ହୁଏ ନାହିଁ । କାରଣ-ତାହାଠାରେ ସେ ଆଦି ନୁହେଁ । ଅନ୍ତ ନୁହେଁ, ଭଲଭାବରେ ସ୍ଥିତ ମଧ୍ୟ ନୁହେଁ) ଏହି ପ୍ରକାର ସ୍ମୃତି ମଧ୍ୟ ଅତୀତ ଅନାଗତ କଳ୍ପର ପରିମାଣ ନୁହେଁ ବୋଲି ବର୍ଣ୍ଣନା କରାଯାଇଅଛି ।

## १३ सर्वधर्मोपपत्त्यधिकरणम् । सु० ॥३७॥
## ସର୍ବଧର୍ମୋପପତ୍ତ୍ୟଧିକରଣ-୧୩

### सर्वधर्मोपपत्तेश्च ॥३७॥
### ୧ ସର୍ବଧର୍ମୋପପତ୍ତେଶ୍ଚ ॥ ୨-୧-୩୭ ॥

ସର୍ବଧର୍ମୋପପତ୍ତେଃଚ-ଜଗତ୍-କାରଣତ୍ୱ ସର୍ବଜ୍ଞତ୍ୱାଦି ସବୁଧର୍ମର ଉପପତ୍ତି ବ୍ରହ୍ମରେ ହେଲେ ଜଗତ୍ କାରଣହିଁ ବ୍ରହ୍ମରେ ହୁଏ ।

(୨) ମୂଳ-(କ) ଚେତନଂ ବ୍ରହ୍ମଜଗତଃ କାରଣଂ ପ୍ରକୃତିଶ୍ଚେତ୍ୟସ୍ମିନ୍ନବଧାରିତେ ବେଦାର୍ଥେ ପରୈରୁପକ୍ଷିପ୍ତାନ୍ୱିଲକ୍ଷଣତ୍ୱାଦୀନ୍ଦୋଷାନ୍ ପର୍ଯହାର୍ଷୀଦାଚାର୍ଯ୍ୟଃ । ଇଦାନୀଂ ପରପକ୍ଷପ୍ରତିଷେଧପ୍ରଧାନଂ ପ୍ରକାରଣଂ ପ୍ରରିପ୍ସମାଣଃ ସ୍ୱପକ୍ଷପରିଗ୍ରହପ୍ରଧାନଂ ପ୍ରକରଣମୁପସଂହରତି ।

(ଖ) ଯସ୍ମାଦସ୍ମିନ୍ ବ୍ରହ୍ମଣି କାରଣେ ପରିଗୃହ୍ୟମାଣେ ପ୍ରଦର୍ଶିତେନ ପ୍ରକାରେଣ ସର୍ବେ କାରଣଧର୍ମା ଉପପଦ୍ୟନ୍ତେ 'ସର୍ବଜ୍ଞଂ ସର୍ବଶକ୍ତି ମହାମାୟଂ ଚ ବ୍ରହ୍ମ' ଇତି, ତସ୍ମାଦନତିଶଙ୍କନୀୟମିଦମୌପନିଷଦଂ ଦର୍ଶନମିତି ।



(୨) ଭାଷାଂତର- (କ) ଚେତନ ବ୍ରହ୍ମଜଗତରେ ନିମିତ୍ତକାରଣ ଓ ଉପାଦାନ କାରଣ ଅଟେ । ଏହି ଅବଧାରିତବେଦାର୍ଥରେ ପ୍ରତିପକ୍ଷୀଦ୍ୱାରା ଆକ୍ଷେପ କରାଯାଇଥିବା ବିଲକ୍ଷଣତ୍ୱାଦିଦୋଷକୁ ଆଚାର୍ଯ୍ୟମାନେ ପୂର୍ବରୁ ପରିହାର କରିଛନ୍ତି । ବର୍ତ୍ତମାନ ଯେଉଁଠାରେ ପରପକ୍ଷପ୍ରତିଷେଧ ମୁଖ୍ୟହୁଏ, ସେହି ପ୍ରକରଣରେ ଆରମ୍ଭକୁ ଇଚ୍ଛା କରି ସୂତ୍ରକାର ଯେଉଁ ପକ୍ଷରେ ସ୍ୱପକ୍ଷପରିଗ୍ରହ ପ୍ରଧାନ ହୁଏ, ତାହାର ଉପସଂହାର କରିଛନ୍ତି ।

(ଖ) ଏହି ବ୍ରହ୍ମକୁ କାରଣ ରୂପରେ ସ୍ୱୀକାର କଲାପରେ ପ୍ରଦର୍ଶିତ ପୂର୍ବୋକ୍ତ ପ୍ରକାରରେ 'ବ୍ରହ୍ମ ସର୍ବଜ୍ଞ', ସର୍ବଶକ୍ତିମାନ୍ ଓ ମହାମାୟାବୀ' ରୂପରେ ସବୁ କାରଣ ଧର୍ମ ଉପପନ୍ନ ହୁଅନ୍ତି । ତେଣୁ ଏହି ଔପନିଷଦ୍ ଦର୍ଶନ ପରେ ଅଧିକ ଶଙ୍କା କରିବା ଉଚିତ୍ ନୁହେଁ ।

ଇତି ଶ୍ରୀ ଗୋବିନ୍ଦଭଗବତ୍ ପୂଜ୍ୟପାଦଶିଷ୍ୟଶଙ୍କରଭଗବତ୍ ପୂଜ୍ୟପାଦକୃତୌ ଶାରୀରିକଭାଷ୍ୟେ ଦ୍ୱିତୀୟ ଅଧ୍ୟାୟସ୍ୟ ପ୍ରଥମପାଦଃ ସମାପ୍ତଃ ।



# द्वितीयाध्याये - पाद:

## ଦ୍ୱିତୀୟ ଅଧ୍ୟାୟ - ଦ୍ୱିତୀୟପାଦ

### १ रचनानुपपत्यधिकरणम् । सू० ॥ १ - १० ॥

### ରଚନାନୁପପତ୍ତ୍ୟଧିକରଣ-୧

**रचनानुपपत्तेश्च नानुमानम् ॥१ ॥**

**୧- ରଚନାନୁପପତ୍ତେଶ୍ଚ ନାନୁମାନମ୍ ॥ ୨-୨-୧ ॥**

ଅନୁମାନମ୍-ସଂସାର ସୁଖଦୁଃଖମୋହାତ୍ମକବସ୍ତୁଠାରୁ ଉତ୍ପନ୍ନ ହୁଏ, କାରଣ-ସୁଖଦୁଃଖମୋହରୁ ଅନିତ୍ୱ ଅଟେ । ଯଥା-ଘଟ ମୃତ୍ତିକାରୁ ଉତ୍ପନ୍ନ ହୋଇ ସେହି ମୃତ୍ତିକାରେ ଅନ୍ୱିତ ହୁଏ । ତେଣୁ ଏହି ଅନୁମାନରୁ ସିଦ୍ଧ ହୁଏ ଯେ, ନ-ବ୍ରହ୍ମ ଜଗତ୍‌ର ଉପାଦାନକାରଣ ନୁହେଁ । ରଚନାନୁପପତ୍ତେଶ୍ଚ-କାରଣ-ଜଡ ପ୍ରଧାନଠାରୁ ବିଚିତ୍ର ଜଗତ୍ ରଚନା ହୁଏ ନାହିଁ ।

(୨) ମୂଳ-(କ) ଯଦ୍ୟପୀଦଂ ବେଦାନ୍ତବାକ୍ୟାନାମୈଦଂପର୍ଯ୍ୟଂ ନିରୂପୟିତୁଂ ଶାସ୍ତ୍ରଂ ପ୍ରବୃତ୍ତଂ ନ ତର୍କଶାସ୍ତ୍ରବତ୍ କେବଲାଭିର୍ଯୁକ୍ତିଭିଃ କଂଚିତ୍ ସିଦ୍ଧାନ୍ତଂ ସାଧୟିତୁଂ ଦୂଷୟିତୁଂ ବା ପ୍ରବୃତ୍ତମ୍, ତଥାପି ବେଦାନ୍ତବାକ୍ୟାନି ବ୍ୟାଚକ୍ଷାଣୈଃ ସମ୍ୟଗ୍ ଦର୍ଶନ ପ୍ରତିପକ୍ଷଭୂତାନି ସଂଖ୍ୟାଦିଦର୍ଶନାନି ନିରାକରଣୀୟାନୀତି ତଦର୍ଥଂ ପରଃ ପାଦ ପ୍ରବର୍ତ୍ତତେ । ବେଦାନ୍ତାର୍ଥନିର୍ଣ୍ଣୟସ୍ୟଚ ସମ୍ୟଗ୍ ଦର୍ଶନାର୍ଥତ୍ୱାତନ୍ନିର୍ଣ୍ଣୟେନ ସ୍ୱପକ୍ଷସ୍ଥାପନଂ ପ୍ରଥମଂ କୃତମ୍' ତଦଭ୍ୟର୍ହିତଂ ପରପକ୍ଷପ୍ରତ୍ୟାଖ୍ୟାନାଦିତି ।

(ଖ) ନନୁ ମୁମୁକ୍ଷୂଣାଂ ମୋକ୍ଷସାଧନତ୍ୱେନ ସମ୍ୟଗ୍‌ଦର୍ଶନନିରୂପଣାୟ ସ୍ୱପକ୍ଷସ୍ଥାପନମେବ କେବଲଂ କର୍ତ୍ତୁଂଯୁକ୍ତଂ ହି ପରପକ୍ଷନିରାକରଣେନ ପରଦ୍ୱେଷକରେଣ । ବାତମେବମ୍ । ତଥାପି ମହାଜନ ପରିଗୃହୀତାନି ମହାନ୍ତି ସାଂଖ୍ୟାଦିତନ୍ତ୍ରାଣି ସମ୍ୟଗ୍‌ଦର୍ଶନା ପଦେଶେନ ପ୍ରବୃତ୍ତାନ୍ୟୁପଲଭ୍ୟ ଭବେତ୍ କେଷାଂଚିନ୍ମନ୍ଦାମତୀନାମେତାନ୍ୟପି ସମ୍ୟଗ୍‌ଦର୍ଶନାୟୋପାଦେୟାନୀତ୍ୟପେକ୍ଷା ।

(ଗ) ତଥା ଯୁକ୍ତିଗାଢତ୍ୱସମ୍ଭବେନ ସର୍ବଜ୍ଞଭାଷିତତ୍ୱାଚ୍ଚ ଶ୍ରଦ୍ଧା ଚ ତେଷୁ । ଇତ୍ୟତସ୍ତଦସାରିତୋପପାଦନାୟ ପ୍ରୟତ୍ୟତେ । ନନୁ ଈକ୍ଷତେର୍ନାଶବ୍ଦମ୍ (ବ୍ର-ସୂ ୧-୧-୫) 'କାମାଚ୍ଚ ନାନୁମାନାପେକ୍ଷା' (ବ୍ର. ସୂ ୧-୧-୧୮), 'ଏତେନ ସର୍ବେ ବ୍ୟାଖ୍ୟାତାଃ



ବ୍ୟାଖ୍ୟାତାଃ' (ବ୍ର.ସୂ ୧-୪-୨୮) ଇତି ଚ ପୂର୍ବତ୍ରାପି ସାଂଖ୍ୟାଦିପକ୍ଷପ୍ରତିକ୍ଷେପଃ କୃତଃ କିଂ ପୁନଃ କୃତକରଣେନେତି ।

(୨) ଭାଷାଂତର-(କ) ଯଦ୍ୟପି ବ୍ୟାକରଣଶାସ୍ତ୍ର ବେଦାନ୍ତବାକ୍ୟଗୁଡ଼ିକର ଇଦଂପରତ୍ୱ (ବ୍ରହ୍ମପରତ୍ୱ) ନିରାକରଣ ପାଇଁ ପ୍ରବୃତ୍ତ ହୁଏ । ତର୍କଶାସ୍ତ୍ରପରି କେବଳ ଯୁକ୍ତିରେ କୌଣସି ପଦାର୍ଥକୁ ସିଦ୍ଧ ଓ ଦୂଷିତ କରିବା ପାଇଁ ପ୍ରବୃତ୍ତ ହୁଏ ନାହିଁ । ତଥାପି ମଧ୍ୟ ବେଦାନ୍ତବାକ୍ୟଗୁଡ଼ିକୁ ବ୍ୟାଖ୍ୟାନ କରୁଥିବା ସମ୍ୟଗ୍ ଦର୍ଶନର ପ୍ରତିପକ୍ଷଭୂତ ସାଂଖ୍ୟାଦିଦର୍ଶନର ନିରାକରଣ କରବା ଉଚିତ୍ । ତେଣୁ ଦ୍ୱିତୀୟପାଦ ପ୍ରବୃତ୍ତ ହୋଇଛି ବେଦାନ୍ତ ଦର୍ଶନରେ ତତ୍ତ୍ୱଜ୍ଞାନ ପାଇଁ ପ୍ରମାଣ ଅଛି । ଏହି ନିର୍ଣ୍ଣୟ ଦ୍ୱାରା ପ୍ରଥମ ସ୍ୱପକ୍ଷର ସ୍ଥାପନା କରାଯାଇଅଛି । କାରଣ-ଅନ୍ୟପକ୍ଷକୁ ଖଣ୍ଡନ କରିବା ଅପେକ୍ଷା ସେହି ଅଭ୍ୟର୍ହିତ ଅଧିକ ଅଭୀଷ୍ଟ ଅଟେ ।

(ଖ) ପରନ୍ତୁ ମୁମୁକ୍ଷୁର ମୋକ୍ଷପ୍ରାପ୍ତିର ସାଧନ ରୂପରେ ତତ୍ତ୍ୱଜ୍ଞାନ ନିରୂପଣ କରିବା ପାଇଁ କେବଳ ସ୍ୱପକ୍ଷରେ ସ୍ଥାପନା କରିବା ଠିକ୍ । ଅନ୍ୟ ସହିତ ଦ୍ୱେଷ କରି ଅନ୍ୟମତକୁ ଖଣ୍ଡନ କରିବାରେ ପ୍ରୟୋଜନ କଣ ? ଏହା ଠିକ୍ ଅଟେ । ତଥାପି ବଡ଼ ବଡ଼ ସାଂଖ୍ୟାଦିଶାସ୍ତ୍ରଗୁଡ଼ିକୁ ମହାଜନମାନେ ଗ୍ରହଣ କରନ୍ତି ଏବଂ ତତ୍ତ୍ୱଜ୍ଞାନର ଅପନିନ୍ଦା ପ୍ରବୃତ ହୋଇ ତାହାକୁ ପ୍ରାପ୍ତିକରି କେତେକ ମନ୍ଦମତିକୁ ଅପେକ୍ଷା କରି ସେମାନେ ତତ୍ତ୍ୱଜ୍ଞାନ ପାଇଁ ଉପାଦେୟ ବୋଲି କୁହାଯାଇଛି ।

(ଗ) ସେହିପରି ସେଠାରେ ଦୃଢତରଯୁକ୍ତିର ସମ୍ଭବ ହେଲେ ଏବଂ ସର୍ବଜ୍ଞଦ୍ୱାରା ଉପଦିଷ୍ଟହେଲେ ସେଥିରେ ଶ୍ରଦ୍ଧା ହୁଏ । ତେଣୁ ସେହି ଶାସ୍ତ୍ରଗୁଡ଼ିକ ଅସାର ଅଟେ । ସେହିପରି ପ୍ରମାଣ କରିବା ପାଇଁ ପ୍ରଯତ୍ନ କରାଯାଏ । ପରନ୍ତୁ 'ଈକ୍ଷତେର୍ନାଶବ୍ଦମ୍' 'କାମାଚ୍ଚ ନାନୁମାନାପେକ୍ଷା', 'ଏତେନ ସର୍ବେ ବ୍ୟାଖ୍ୟାତାଃ ବ୍ୟାଖ୍ୟାତାଃ ଇତ୍ୟାଦି ସୂତ୍ରରେ ପୂର୍ବରୁ ସଂଖ୍ୟପ୍ରଭୃତି ପକ୍ଷର ମତଖଣ୍ଡନ କରାଯାଇଅଛି । ତେଣୁ ପୁନର୍ବାର ଖଣ୍ଡନ କରି ଲାଭ ବା କଣ ଅଛି ?

(୩) ମୂଳ-(କ) ତଦୁଚ୍ୟତେ-ସାଂଖ୍ୟାଦୟଃ ସ୍ୱପକ୍ଷସ୍ଥାପନାୟ ବେଦାନ୍ତ ବାକ୍ୟାନ୍ୟପ୍ୟୁଦାହୃତ୍ୟ ସ୍ୱପକ୍ଷାନୁଗୁଣ୍ୟେନୈବ ଯୋଜୟନ୍ତୋ ବ୍ୟଚପକ୍ଷେ, ତେଷାଂ ଯଦ୍‌ବ୍ୟାଖ୍ୟାନାଂ ତଦ ବ୍ୟବଭାସଂ ନ ସମ୍ୟଗ୍‌ବ୍ୟାଖ୍ୟାନମିତ୍ୟେ ତାବତ୍‌ପୂର୍ବଂ କୃତମ୍ । ଇହତୁ ବାକ୍ୟନିରପେକ୍ଷଃ ସ୍ୱତନ୍ତ୍ରସ୍ତଦ୍‌ଯୁକ୍ତିପ୍ରତିଷେଧଃ କ୍ରିୟତ ଇତ୍ୟେଷ ବିଶେଷଃ ।

(ଖ) ତତ୍ର ସାଂଖ୍ୟା ମନ୍ୟନ୍ତେଯଥା ଘଟଶରାବାଦୟୋ ଭେଦାଃ ମୃଦାତ୍ମନାନୀୟମାନ ମୃଦାତ୍ମକାସାମାନ୍ୟ ପୂର୍ବକା ଲୋକେ ଦୃଷ୍ଟାଃ । ତଥା ସର୍ବ ଏବ ବାହ୍ୟାଧ୍ୟାତ୍ମିକା ଭେଦା ସୁଖଦୁଃଖମୋହାତ୍ମତୟାନ୍ୱୀୟମାନାଃ ସୁଖଦୁଃଖମୋହାତ୍ମକସାମାନ୍ୟପୂର୍ବକା ଭବିତୁମର୍ହନ୍ତି ।

(ଗ) ଯତ୍ ତତ୍ ସୁଖଦୁଃଖ ମୋହାତ୍ମକଂ ସାମାନ୍ୟଂ ତତ୍ତ୍ରିଗୁଣଂ ପ୍ରଧାନଂ ମୃଦ୍‌ବଦଚେତନଂ ଚେତନସ୍ୟ ପୁରୁଷାର୍ଥଂ ସାଧୟିତୁଂ ସ୍ୱଭାବେନୈବବିଚିତ୍ରେଣ ବିକାରାତ୍ମନା ବିବର୍ତ୍ତତ ଇତି । ତଥା ପରିମାଣାଦିଭିରପି ଲିଙ୍ଗୈସ୍ତଦେବ ପ୍ରଧାନମନୁମିମତେ ।

(୩) ଭାଷାଂତର-(କ) ଏହି ବିଷୟରେ କୁହାଯାଇଛି- ସାଂଖ୍ୟାଦିନିଜପକ୍ଷକୁ ସ୍ଥାପନ କରିବା ପାଇଁ ବେଦାନ୍ତବାକ୍ୟଗୁଡ଼ିକୁ ଉଦାହରଣ ଦେଇ ନିଜପକ୍ଷାନୁସାରେ ସେମାନଙ୍କର ଯୋଜନା କରି ବ୍ୟାଖ୍ୟାନ କରିଛନ୍ତି । ସେମାନେ ଯାହା ବ୍ୟାଖ୍ୟାନ କରିଛନ୍ତି, ତାହା ବ୍ୟାଖ୍ୟାନାଭାସ, କିନ୍ତୁ ବ୍ୟାଖ୍ୟାନ ସମ୍ୟକ୍ ରୂପରେ ନୁହେଁ । ଏହାହିଁ ପୂର୍ବରୁ ପ୍ରତିପାଦନ କରାଯାଇଛି । ଏହିପାଦରେ ବେଦାନ୍ତ ବାକ୍ୟଗୁଡ଼ିକୁ ଅପେକ୍ଷା ନ କରି ସ୍ୱତନ୍ତ୍ର ରୂପରେ ତାହାର ଯୁକ୍ତିଗୁଡ଼ିକୁ ପ୍ରିଷେଧ କରାଯାଇଛି- ଏହାହିଁ ବିଶେଷ ଅଟେ ।

(ଖ) ଏଠାରେ ସାଂଖ୍ୟମାନେ ସ୍ୱୀକାର କରନ୍ତି ଯେ- ଯେଉଁ ଲୋକରେ ଘଟଶରା-ବାଦିକାର୍ଯ୍ୟ ମୃତ୍ତିକା ରୂପରେ ଅନ୍ୱିତ ହୋଇ ମୃତ୍ତିକା ରୂପ ସାମାନ୍ୟକାରଣ ପୂର୍ବକ ଦେଖାଯା'ନ୍ତି । ସେହିପରି ସବୁ ବାହ୍ୟ ଓ ଆଧ୍ୟାତ୍ମିକ କାର୍ଯ୍ୟ ସୁଖଦୁଃଖମୋହ ରୂପରେ ଅନ୍ୱିତ ହୋଇ ସୁଖଦୁଃଖମୋହରୂପ ସାମାନ୍ୟକାରଣ ପୂର୍ବକ ହୁଅନ୍ତି ।

(ଗ) ଯାହା ସୁଖଦୁଃଖମୋହାତ୍ମକ ସାମାମ୍ୟକାରଣ ସେହିଁ ତ୍ରିଗୁଣାତ୍ମକ ପ୍ରଧାନ ମୃତ୍ତିକା ପରି ଅଚେତନ ଚେତନ ପୁରୁଷର ଭୋଗ ଓ ମୋକ୍ଷରୂପ ପ୍ରୟୋଜନକୁ ସିଦ୍ଧ କରିବା ପାଇଁ ସ୍ୱଭାବତଃ ବିଚିତ୍ରବିକାର ରୂପରେ ପ୍ରବୃତ୍ତ ହୁଏ । ସେହିପ୍ରକାର କାର୍ଯ୍ୟଗତ ପିରମାଣାଦିଲିଙ୍ଗ ଦ୍ୱାରା ପ୍ରଧାନର ଅନୁମାନ କରାଯାଏ ।

(୪) ମୂଳ-(କ) ତତ୍ର ବଦାମଃ-ଯଦି ଦୃଷ୍ଟାନ୍ତବଲେନୈବୈତନ୍ନିରୂପ୍ୟେତ, ନାଚେତନଂ ଲୋକେ ଚେତନାନଧିଷ୍ଠିତଂ ସ୍ୱତନ୍ତ୍ରଂ କିଞ୍ଚିଦ୍ ବିଶିଷ୍ଟ ପୁରୁଷାର୍ଥନିର୍ବର୍ତ୍ତନ ସମର୍ଥାନ୍ ବିକାରାନ୍ ବିରଚୟଦ୍ଦୃଷ୍ଟମ୍ । ଗେହ ପ୍ରାସାଦଶୟନାସନ ବିହାରଭୂମ୍ୟାଦୟୋ ହି ଲୋକେ ପ୍ରଜ୍ଞାବଦ୍ ଭିଃ ଶିଳ୍ପିଭିର୍ଯଥାକାଲଂ ସୁଖଦୁଃଖପ୍ରାପ୍ତି ପରିହାରଯୋଗ୍ୟା ରଚିତା ଦୃଶ୍ୟନ୍ତେ ।

(ଖ) ତଥେଦଂ ଜଗଦଖିଳଂ ପୃଥିବ୍ୟାଦି ନାନାକର୍ମଫଲୋପଭୋଗଯୋଗ୍ୟଂ ବାହ୍ୟମ୍ ଆଧ୍ୟାତ୍ମିକଞ୍ଚ ଶରୀରାଦି ନାନାଜାତ୍ୟନ୍ୱିତଂ ପ୍ରତିନିୟତାବୟବ ବିନ୍ୟାସମନେ-କକର୍ମଫଲାନୁଭବାଧିଷ୍ଠାନଂ ଦୃଶ୍ୟମାନଂ ପ୍ରଜ୍ଞାବଦ୍‌ଭିଃ ସମ୍ଭାବିତତମୈଃ ଶିଳ୍ପିଭିର୍ମନମାପ୍ୟା-ଲୋଚୟିତୁମଶକ୍ୟଂ ସତ୍ କଥମଚେତନଂ ପ୍ରଧାନଂ ରଚୟେତ୍ । ଲୋଷ୍ଟପାଷାଣାଦିଷ୍ୱ-ଦୃଷ୍ଟତ୍ୱାତ୍ । ମୃଦାଦିଷ୍ୱପି କୁମ୍ଭକାରାଦ୍ୟଧିଷ୍ଠିତେଷୁ ବିଶିଷ୍ଟାକାରା ରଚନା ଦୃଶ୍ୟତେ ତଦ୍‌ବତ୍ ପ୍ରଧାନସ୍ୟାପି ଚେତନାନ୍ତରାଧିଷ୍ଠିତତ୍ୱପ୍ରସଙ୍ଗଃ ।



(ଗ) ନ ଚ ମୃଦାଦ୍ୟୁପାଦାନସ୍ୱରୂପବ୍ୟାପାଶ୍ରୟେଣୈବ ଧର୍ମେଣ ମୂଳକାରଣ-ମବଧାରଣୀୟଂ ନ ବାହ୍ୟକୁମ୍ଭକାରାଦି ବ୍ୟାପାଶ୍ରୟେଣେତି କିଞ୍ଚିନ୍ନିୟାମକମସ୍ତି । ନଚୈବଂ ସତି କିଞ୍ଚିଦ୍ ବିରୁଧ୍ୟତେ, ପ୍ରତ୍ୟୁତ ଶ୍ରୁତିରନୁଗୃହ୍ୟତେ ଚେତନକାରଣ ସମର୍ପଣାତ୍ । ଅତୋ ରଚନାନୁପପତ୍ତେଶ୍ଚେତି ହେତୋର୍ନାଚେତନଂ ଜଗତ୍‌କାରଣମନୁମାତବ୍ୟଂ ଭବତି । ଅନ୍ୱୟାଦ୍ୟନୁପପତ୍ତେଶ୍ଚେତି ଚଶବ୍ଦେନ ହେତୋରସିଦ୍ଧିଂ ସମୁଚ୍ଚିନୋତି ।

(୪) ଭାଷାଂତର-(କ) ସିଦ୍ଧାନ୍ତ-ଯଦି ଦୃଷ୍ଟାନ୍ତ ବଳରେ ଏହା ନିରାକରଣ କରାଯିବ । ତେବେ ସଂସାରରେ ଚେତନଦ୍ୱାରା ଅଡଧିଷ୍ଠିତ ସ୍ୱତନ୍ତ୍ରରୂପରେ ଅଚେତନ ବିଶିଷ୍ଟ ପୁରୁଷାର୍ଥ ସଂପାଦନ କରିବାରେ ସମର୍ଥ ହୋଇଥିବା ବିକାରକୁ ରଚନା କରିବା ଦେଖାଯାଏ ନାହିଁ । ସଂସାରରେ ଘର, କୋଠାଘର, ଶୟନ, ଆସନ ବିହାର ଭୂମି ଇତ୍ୟାଦିକୁ ସମୟାନୁସାରେ ବୁଦ୍ଧିମାନଶିଳ୍ପୀ ସୁଖପ୍ରାପ୍ତି ଓ ଦୁଃଖପରିହାର ଯୋଗ୍ୟକୁ ରଚନା କରେ ।

(ଖ) ସେପରି ଭିନ୍ନ ଭିନ୍ନ କର୍ମଫଳର ଉପଭୋଗ ଯୋଗ୍ୟ ପୃଥିବୀପ୍ରଭୃତି ଏହି ସମଗ୍ର ଜଗତ୍‌କୁ ଅନେକପ୍ରକାର ଜାତି ଦ୍ୱାରା ସମ୍ବନ୍ଧ କରି ଅସାଧାରଣ ଅବୟବଦ୍ୱାରା ଯୁକ୍ତ ହୋଇ ଅନେକ କର୍ମଫଳକୁ ଅନୁଭବ କରି ଆଶ୍ରୟ ଦେଖୁଥିବା ଶରୀରାଦି ଆଧ୍ୟାତ୍ମିକ ଜଗତ୍, ଯାହାର କି ଆଲୋଚନା ମହାନ୍‌ଶିଳ୍ପୀମାନେ ମନରେ ମଧ୍ୟ କଳ୍ପନା କରିପାରନ୍ତି ନାହିଁ, ତାହାର ରଚନା ଅଚେତନ ପ୍ରଧାନ କିପରି ନିର୍ମାଣ କରିପାରିବ ? କାରଣ-ଅଚେତନ ଟେକା, ପଥର ପ୍ରଭୃତିରେ ରଚନାଶକ୍ତି ଦେଖାଯାଏ ।ନାହିଁ । କିନ୍ତୁ କୁମ୍ଭାର ପ୍ରଭୃତିରେ ଅଧିଷ୍ଠିତ ମୃତ୍ତିକା ଇତ୍ୟାଦିରେ ବିଶିଷ୍ଟ ଆକାର ରଚନା ହେବାର ଦେଖାଯାଏ । ଏହିପ୍ରକାର ପ୍ରଧାନକୁ ମଧ୍ୟ ଅନ୍ୟଚେତନ ଦ୍ୱାରା ଅଧିଷ୍ଠିତ ବୋଲି ମାନିବାକୁ ପଡ଼ିବ ।

(ଗ) ମୃତ୍ତିକା ପ୍ରଭୃତି ଉପାଦାନ ସ୍ୱରୂପର ବ୍ୟାପାଶ୍ରିତ ଧର୍ମଦ୍ୱାରା ମୂଳକାରଣକୁ ସ୍ଥିର କରିବା ଉଚିତ୍ । କିନ୍ତୁ ବାହ୍ୟକୁଲାଳାଦିର ବ୍ୟାପ୍ରାଶ୍ରିତଧର୍ମରୁ ନିଶ୍ଚିତ କରିବା ଠିକ୍ ନୁହେଁ । ଏହି ବିଷୟରେ କୌଣସି ନିୟମ ନାହିଁ ଅଥବା କୌଣସି ବିରୁଦ୍ଧ ପ୍ରମାଣ ନାହିଁ । ବରଂ ଶ୍ରୁତି ଏହାକୁ ଗ୍ରହଣ କରେ । କାରଣ-ଶ୍ରୁତି ଚେତନରେ କାରଣତ୍ୱ ସମର୍ପଣ କରେ । ଅତଏବ ରଚନାନୁପପତ୍ତିରୂପ ହେତୁ (ଅଚେତନ ଜଗତ୍)ର କାରଣ ହୁଏ ବୋଲି ଅନୁମାନ କରିବା ଉଚିତ୍ ନୁହେଁ ଏବଂ 'ଅନ୍ୱୟାଦ୍ୟନୁପପତ୍ତେଃ' (ଅନ୍ୱୟାଦିରେ ଅନୁପପତ୍ତି ହେଲେ) ଏହି କାରଣର ଅସିଦ୍ଧି (ସ୍ୱରୂପାସିଦ୍ଧି)ର 'ଚ' ଶବ୍ଦଦ୍ୱାରା ସମୁଚ୍ଚୟ କରେ ।

(୫) ମୂଳ-(କ) ନହି ବାହ୍ୟାଧ୍ୟାତ୍ମିକାନାଂ ଭେଦାନାଂ ସୁଖଦୁଃଖମୋହାତ୍ମକ ତୟାନ୍ୱୟ ଉପପଦ୍ୟତେ, ସୁଖାଦୀନାଂ ଋନ୍ତରତ୍ୱପ୍ରତୀତେଃ, ଶବ୍ଦାଦୀନାଂ ଋତଦ୍‌ରୂପତ୍ୱ ପ୍ରତୀତେଃ । ତନ୍ନିମିତ୍ତତ୍ୱପ୍ରତୀତେଶ୍ଚ । ଶବ୍ଦାଦ୍ୟବିଶେଷେଽପି ଚ ଭାବନାବିଶେଷାତ୍ ସୁଖାଦିବିଶେଷୋପଲବ୍ଧେଃ,

(ଖ) ତଥା ପରିମିତାନାଂ ଭେଦାନାଂ ମୂଳାଙ୍କୁରାଦୀନାଂ ସଂସର୍ଗପୂର୍ବକତ୍ୱଂ ଦୃଷ୍ଟ୍ୱା ବାହ୍ୟାଧ୍ୟାତ୍ମିକାନାଂ ଭେଦାନାଂ ପରିମିତତ୍ୱାତ୍ ସଂସର୍ଗପୂର୍ବକତ୍ୱ ମନୁମିମାନସ୍ୟ ସତ୍ତ୍ୱରଜସ୍ତମସାମପି ସଂସର୍ଗପୂର୍ବକତ୍ୱପ୍ରସଙ୍ଗଃ ପରିମିତତ୍ୱାବିଶେଷାତ୍ । କାର୍ଯ୍ୟକାରଣଭାବସ୍ତୁ ପ୍ରେକ୍ଷାପୂର୍ବକନିର୍ମିତାନାଂ ଶୟନାସନାଦୀନାଂ ଦୃଷ୍ଟ ଇତି ନ କାର୍ଯ୍ୟକାରଣଭାବାଦ୍ ବାହ୍ୟାଧ୍ୟାତ୍ମିକାନାଂ ଭେଦାନାମଚେତନ ପୂର୍ବକତ୍ୱଂ ଶକ୍ୟଂ କଳ୍ପୟିତୁମ୍ ।

**(୫) ଭାଷାଂତର**-(କ) ବାହ୍ୟ ଓ ଆଧ୍ୟାତ୍ମିକ ବିକାରଗୁଡ଼ିକର ସୁଖଦୁଃଖ ମୋହାତ୍ମକ ସହିତ ଅନ୍ୱୟ ଉପପନ୍ନ ହୁଏ ନାହିଁ । କାରଣ-ସୁଖ ପ୍ରଭୃତିର ଆନ୍ତରପ୍ରତୀତି ହୁଏ ଏବଂ ଶବ୍ଦାଦି ଅତଦ୍‌ରୂପର ବାହ୍ୟପ୍ରତୀତି ହୁଏ । ଶବ୍ଦାଦିବିଶେଷର ପ୍ରତୀତି ନ ହେଲେ ମଧ୍ୟ ଭାବନା ବିଶେଷର ସୁଖାଦିବିଶେଷ ଉପଲବ୍ଧି ହୁଏ ।

(ଖ) ଏହିପ୍ରକାର ମୂଳାଙ୍କୁରାଦିପରିମିତ ବିକାରର ସଂସର୍ଗ ପୂର୍ବକ ଦେଖି ବାହ୍ୟ ଓ ଆଧ୍ୟାତ୍ମିକ ବିକାର ପରିମିତ ହେଲେ ସଂସର୍ଗ ପୂର୍ବକ ହୁଏ- ଏହି ଅନୁମାନ କରୁଥିବା ଲୋକକୁ ସତ୍ତ୍ୱ, ରଜ, ତମ ମଧ୍ୟ ସଂସର୍ଗ ପୂର୍ବକ ରୂପେ ସ୍ୱୀକାର କରିବାକୁ ପଡେ । କାରଣ- ସେଠାରେ ପରିମିତତ୍ୱ ସମାନ ଅଟେ । ପ୍ରେକ୍ଷା (ବୁଦ୍ଧି) ପୂର୍ବକ ନିର୍ମିତ ଶୟନ, ଆସନାଦିର କାର୍ଯ୍ୟକାରଣଭାବ ଦେଖାଯାଏ । ତେଣୁ ବାହ୍ୟ ଓ ଆଧ୍ୟାତ୍ମିକବିକାରରେ ଅଚେତନ ପୂର୍ବକତ୍ୱର କଳ୍ପନା କରାଯାଏ ନାହିଁ ।

## प्रवृत्तेश्च ॥२॥

## (୧) ପ୍ରବୃତ୍ତେଶ୍ଚ ॥୨-୨-୨॥

ପ୍ରବୃତ୍ତେଃ ଚ-ଅଚେତନ ପ୍ରଧାନର ସାମ୍ୟାବସ୍ଥାର ପ୍ରଚ୍ୟୁତିରୂପ ପ୍ରବୃତ୍ତି ଚେତନ ବ୍ୟତିତ ଉପପନ୍ନ ହୁଏ ନାହିଁ । ତେଣୁ ପ୍ରଧାନ ଜଗତ୍‌ର କାରଣ ନୁହେଁ ।

(୨) ମୂଳ-(କ) ଆସ୍ତାଂ ତାବଦିୟଂ ରଚନା । ତତ୍ ସିଦ୍ଧ୍ୟର୍ଥା ଯା ପ୍ରବୃତ୍ତିଃ ସାମ୍ୟାବସ୍ଥାନାତ୍ ପ୍ରଚ୍ୟୁତିଃ ସତ୍ତ୍ୱରଜସ୍ତମସାମଙ୍ଗାଙ୍ଗିଭାବରୂପାପତ୍ତିଃ ବିଶିଷ୍ଟକାର୍ଯ୍ୟାଭିମୁଖ-ପ୍ରବୃତ୍ତିତା ସାପି ନାଚେତନସ୍ୟ ପ୍ରଧାନସ୍ୟ ସ୍ୱତନ୍ତ୍ରସ୍ୟୋପପଦ୍ୟତେ ମୃଦାଦିଷ୍ୱଦର୍ଶନାଦ୍ରଥାଦିଷୁ ଚ । ନହି ମୃଦାଦୟୋ ରଥାଦୟୋ ବା ସ୍ୱୟମଚେତନାଃ ସନ୍ତଶ୍ଚେତନୈଃ କୁଲାଳାଦିଭିରଶ୍ୱାଦିଭିର୍ବାନଧିଷ୍ଠିତା ବିଶିଷ୍ଟକାର୍ଯ୍ୟାଭିମୁଖପ୍ରବୃତ୍ତୟୋ ଦୃଶ୍ୟନ୍ତେ ଦୃଷ୍ଟାଚ୍ଚାଦୃଷ୍ଟସିଦ୍ଧିଃ ।

(ଖ) ନନୁ ଚେତନସ୍ୟାପି ପ୍ରବୃତ୍ତିଃ କେଳସ୍ୟ ନ ଦୃଷ୍ଟା । ସତ୍ୟମେତତ୍ । ତଥାପି ଚେତନସଂଯୁକ୍ତସ୍ୟ ରଥାଦେରଚେତନସ୍ୟ ପ୍ରବୃତ୍ତିର୍ଦୃଷ୍ଟା । ନତ୍ୱଚେତନସଂଯୁକ୍ତସ୍ୟ



ଚେତନସ୍ୟ ପ୍ରବୃତ୍ତିଦୃଷ୍ଟା । କିଂ ପୁନରତ୍ରଯୁକ୍ତମ୍ । ଯସ୍ମିନ ପ୍ରବୃତ୍ତିର୍ଦୃଷ୍ଟା- ତସ୍ୟ ସୋତ ଯତ୍ ସଂପ୍ରଯୁକ୍ତସ୍ୟ ଦୃଷ୍ଟା ତସ୍ୟ ସେତି ।

(ଗ) ନନୁ ଯସ୍ମିନ୍ ଦୃଶ୍ୟତେ ପ୍ରବୃତ୍ତିଃ ତସ୍ୟୈବ ସେତି ଯୁକ୍ତମୁଭୟୋଃ ପ୍ରତ୍ୟକ୍ଷତ୍ୱାତ୍ । ନତୁ ପ୍ରବୃତ୍ତ୍ୟାଶ୍ରୟତ୍ୱେନ କେବଲଶ୍ଚେତନୋ ରଥାଦିବତ୍ ପ୍ରତ୍ୟକ୍ଷଃ । ପ୍ରବୃତ୍ତ୍ୟାଶ୍ରୟଦେହାଦିସଂଯୁକ୍ତସ୍ୟୈବ ତୁ ଚେତନସ୍ୟ ସଦ୍‌ଭାବସିଦ୍ଧିଃ କେବଲାଚେତ-ରଥାଦିବୈଲକ୍ଷଣ୍ୟଂ ଜୀବଦ୍ଦେହସ୍ୟ ଦୃଷ୍ଟମିତି । ଅତଏବ ଚ ପ୍ରତ୍ୟକ୍ଷେ ଦେହେ ସତି ଦର୍ଶନାଦସତି ଚାଦର୍ଶନାଦ୍ଦେହସ୍ୟୈବ ଚୈତନ୍ୟମପୀତି ଲୌକାୟତିକାଃପ୍ରତିପନ୍ନାଃ । ତସ୍ମାଦଚେତନସ୍ୟୈବ ପ୍ରବୃତ୍ତିରିତି ।

**(୨) ଭାଷାଂତର**-(କ) ଏହି ବିଚିତ୍ର ରଚନାକୁ ରଖିଦିଅ । ସେହି ରଚନା ସିଦ୍ଧପାଇଁ ଯେଉଁ ପ୍ରଧାନର ସାମ୍ୟାବସ୍ଥାଦ୍ୱାରା ପ୍ରଚ୍ୟୁତିରୂପ ପ୍ରବୃତ୍ତି ଅର୍ଥାତ୍ ସତ୍ୱ, ରଜ, ତମ- ଏହି ତିନିଗୁଣର ଅଙ୍ଗାଙ୍ଗି ଭାବର ଆପତ୍ତି (ପ୍ରାପ୍ତିରୂପ) ବିଶେଷ କାର୍ଯ୍ୟର ସଂପାଦନା ପାଇଁ ଯେଉଁ ପ୍ରବୃତ୍ତିତା ହୁଏ, ସେ ମଧ୍ୟ ସ୍ୱତନ୍ତ୍ର ଅଚେତନ ପ୍ରଧାନର ନୁହେଁ । କାରଣ-ମୃତ୍ତିକା ପ୍ରଭୃତି ଓ ରଥାଦିରେ ସ୍ୱତନ୍ତ୍ର ପ୍ରବୃତ୍ତି ଦେଖାଯାଏ ନାହିଁ । ମୃତ୍ତିକା ଅଥବା ରଥାଦି ସ୍ୱୟଂ ଅଚେତନ ହେଲେ ଚେତନ କୁଲାଳ ପ୍ରଭୃତି ଅଥବା ଅଶ୍ୱ ପ୍ରଭୃତି ଦ୍ୱାରା ଅନଧିଷ୍ଠିତ ହୋଇ ବିଶିଷ୍ଟ କାର୍ଯ୍ୟର ଅଭିମୁଖ ପ୍ରବୃତ୍ତିଯୁକ୍ତ ହେବାର ଦୃଷ୍ଟାନ୍ତ ନାହିଁ ଏବଂ ଦୃଷ୍ଟଦ୍ୱାରା ଅଦୃଷ୍ଟର ମଧ୍ୟ ସିଦ୍ଧ ହୁଏ । ତେଣୁ ପ୍ରବୃତ୍ତିର ଅନୁପପତ୍ତି ରୂପ ହେତୁଦ୍ୱାରା ଅଚେତନ ଜଗତର କାରଣ ଅନୁମାତବ୍ୟ ହୁଏ ନାହିଁ ।

(ଖ) ପରନ୍ତୁ କେବଳ ଚେତନରେ ପ୍ରବୃତ୍ତି ହେବା ଜଣାଯାଏ ନାହିଁ କି ? ହଁ, ଏହା ଠିକ୍ । କିନ୍ତୁ ଚେତନସଂଯୁକ୍ତ ଅଚେତନ ରଥର ପ୍ରବୃତ୍ତି ଦେଖାଯାଏ । ପରନ୍ତୁ ଅଚେତନ ସଂଯୁକ୍ତ ଚେତନର ପ୍ରବୃତ୍ତି ଦେଖାଯାଏ ନାହିଁ । କିନ୍ତୁ ଏହି ଦୁଇଟିରେ କୌଣସି ପ୍ରମାଣ ନାହିଁ କି ? ଯାହାଠାରେ ପ୍ରବୃତ୍ତି ଦେଖାଯାଏ, ତାର ପ୍ରବୃତ୍ତି ଅଛି । ଅଥବା ଯାହାର ସଂସର୍ଗରୁ ଅଚେତନରେ ପ୍ରବୃତ୍ତି ଦେଖାଯାଏ, ତାହାର କଣ ହୁଏ କି ?

(ଗ) ପୂର୍ବପକ୍ଷ-ଯାହାଠାରେ ପ୍ରବୃତ୍ତି ଦେଖାଯାଏ, ସେହିଁ ତାର ଅଟେ, କାରଣ-ପ୍ରବୃତ୍ତି ଓ ଆଶ୍ରୟ ଏହି ଦୁଇଟି ପ୍ରତ୍ୟକ୍ଷ ଅଟେ । ପରନ୍ତୁ କେବଳ ଚେତନ ରଥାଦିପର ପ୍ରବୃତ୍ତିର ଆଶ୍ରୟ ରୂପରେ ପ୍ରତ୍ୟକ୍ଷ ନୁହେଁ । କିନ୍ତୁ ପ୍ରବୃତ୍ତିର ଆଶ୍ରୟଭୂତ ଦେହାଦିରେ ସଂଯୁକ୍ତ ହୋଇ ଚେତନର ଅସ୍ତିତ୍ୱ ପ୍ରମାଣିତ ହୁଏ । କାରଣ-ଜୀବିତ ଶରୀରରେ କେବଳ ଅଚେତନ ବୈଲକ୍ଷଣ୍ୟ ଦେଖାଯାଏ । ଅତଏବ ଦେହ ପ୍ରତ୍ୟକ୍ଷ ହେଲେ ଚୈତନ୍ୟ ଦେଖାଯାଏ । କିନ୍ତୁ ଦେହ ପ୍ରତ୍ୟକ୍ଷ ନ ହେଲେ ଚୈତନ୍ୟ ଦେଖାଯାଏ ନାହିଁ । ତେଣୁ ଦେହ ହିଁ ଚେତନ-ଏହା ଲୌକାୟତିକ (ଚାର୍ବାକ) ସ୍ୱୀକାର କରନ୍ତି । ଅତଃ ଅଚେତନର ପ୍ରବୃତ୍ତି ରହିଛି ।

(୩) ମୂଳ-(କ) ତଦଭିଧୀୟତେ-ନ ବ୍ରୂମୋ ଯସ୍ମିନ୍ନଚେତନେ ପ୍ରବୃତ୍ତିର୍ଦୃଶ୍ୟତେ ନ ତସ୍ୟ ସେତି । ଭବତୁ ତସ୍ୟୈବ ସା । ସା ତୁ ଚେତନାଦ୍ ଭବତୀତି ବ୍ରୂମଃ । ତଦ୍ଭାବେ ଭାବାତ୍ତଦଭାବେ ଽଭାବାତ୍ । ଯଥା କାଷ୍ଠାଦିବ୍ୟାପାଶ୍ରୟାପି ଦାହପ୍ରକାଶଲକ୍ଷଣା ବିକ୍ରିୟାନୁପଲଭ୍ୟମାନାପି ଚ କେବଳେ ଜ୍ୱଳନେ ଜ୍ୱଳନାଦେବ ଭବତି, ତତ୍ସଂଯୋଗେ ଦର୍ଶନାତ୍ତଦ୍ୱିୟୋଗେ ଽଦର୍ଶନାତ୍ତଦ୍ୱତ୍ । ଲୌକାୟତିକାନାମପି ଚେତନ ଏବ ଦେହୋଽଚେତନାନାଂ ରଥାଦୀନାଂ ପ୍ରବର୍ତ୍ତକୋ ଦୃଷ୍ଟ ଇତ୍ୟବିପ୍ରତିଷିଦ୍ଧଂ ଚେତନସ୍ୟ ପ୍ରବର୍ତ୍ତକତ୍ୱମ୍ ।

(ଖ) ନନୁ ତବ ଦେହାଦିସଂଯୁକ୍ତସ୍ୟାପ୍ୟାତ୍ମନୋ ବିଜ୍ଞାନସ୍ୱରୂପମାତ୍ରବ୍ୟତିରେକେଣ ପ୍ରବୃତ୍ତ୍ୟନୁପପତ୍ତେରନୁପପନ୍ନଂ ପବର୍ତ୍ତକତ୍ୱମିତି ଚେତ୍ । ନ ଅୟସ୍କାନ୍ତବଦ୍ ରୂପାଦିବଚ୍ଚ ପ୍ରବୃତ୍ତିରହିତସ୍ୟାପି ପ୍ରବର୍ତ୍ତକତ୍ୱୋପପତ୍ତେଃ । ଯଥାୟସ୍କାନ୍ତେ, ମଣିଃ ସ୍ୱୟଂ ପ୍ରବୃତ୍ତି ରହିତୋଽପ୍ୟୟସଃ ପ୍ରବର୍ତ୍ତକୋ ଭବତି, ଯଥା ବା ରୂପାଦୟୋ ବିଷୟାଃ ସ୍ୱୟଂ ପ୍ରବୃତ୍ତିରହିତା ଅପି ଚକ୍ଷୁରାଦିନାଂ ପ୍ରବର୍ତ୍ତକା ଭବନ୍ତି, ଏବଂ ପ୍ରବୃତ୍ତିରହିତୋଽପୀଶ୍ୱରଃ ସର୍ବଗତଃ ସର୍ବାତ୍ମା ସର୍ବଜ୍ଞଃ ସର୍ବଶକ୍ତିଶ୍ଚସନ୍ ସର୍ବଂ ପ୍ରବର୍ତ୍ତୟେଦିତ୍ୟୁପପନ୍ନମ୍ ।

(ଗ) ଏକତ୍ୱାତ୍ ପ୍ରବର୍ତ୍ତ୍ୟାଭାବେ ପ୍ରବର୍ତ୍ତକତ୍ୱାନୁପପତ୍ତିରିତି ଚେତ୍ । ନ । ଅବିଦ୍ୟାପ୍ରତ୍ୟୁପସ୍ଥାପିତନାମରୂପମାୟାବେଶବଶେନାସକୃତ୍ ପ୍ରତ୍ୟୁକ୍ତତ୍ୱାତ୍ । ତସ୍ମାତ୍ ସମ୍ଭବତି ପ୍ରବୃତ୍ତିଃ ସର୍ବଜ୍ଞକାରଣତ୍ୱେ ନତ୍ୱଚେତନକାରଣତ୍ୱେ ।

**(୩) ଭାଷାଂତର**-(କ) ସିଦ୍ଧାନ୍ତ-ଅଚେତନରେ ପ୍ରବୃତ୍ତି ଦେଖାଗଲେ ମଧ୍ୟ ପ୍ରବୃତ୍ତି ଅଚେତନର ନୁହେଁ ବୋଲି ଆମ୍ଭେ କହୁନାହୁଁ । ଅଚେତନରେ ପ୍ରବୃତ୍ତି ଦେଖାଗଲେ ବି ଚେତନଦ୍ୱାରା ପ୍ରବୃତ୍ତି ହୁଏ ବୋଲି ଆମ୍ଭେ କହୁଁ । କାରଣ ଚେତନର ହେଲେ ତାହାର ଅସ୍ତିତ୍ୱ ଅଛି । ଚେତନର ଅଭାବରେ ପ୍ରବୃତ୍ତିର ଅଭାବ ହୁଏ । ଯେପରି କାଷ୍ଠ ପ୍ରଭୃତିରେ ଆଶ୍ରୟ ନେଇଥିବା ଦାହ ଓ ପ୍ରକାଶରୂପ ବିକ୍ରିୟା କେବଳ ଅଗ୍ନିରେ ପ୍ରାପ୍ତ ନ ହେଲେ ବି ଅଗ୍ନିରେ ଆଶ୍ରୟ ନିଏ । କାରଣ-କାଷ୍ଠର ଅଗ୍ନିସହ ସଂଯୋଗ ହେଲେ ଦାହାଦିକାର୍ଯ୍ୟ ଦେଖାଯାଏ । ତାହା ବିଯୋଗ ହେଲେ ଅଗ୍ନି ଦେଖାଯାଏ ନାହିଁ । ସେହିପରି ଚେତନାଦିର ଶରୀର ସହ ସଂଯୋଗ ହେଲେ ପ୍ରବୃତ୍ତି ଦେଖାଯାଏ । ଶରୀର ସହ ବିଯୋଗ ହେଲେ ଏହା ଦେଖାଯାଏ ନାହିଁ । ଽର୍ବାକ୍‌ମାନଙ୍କ ମତରେ ଚେତନ ଦେହ ଅଚେତନ ରଥାଦିର ପ୍ରବର୍ତ୍ତକ ବୋଲି ସ୍ୱୀକାର କରାଯାଇଅଛି । ତେଣୁ ଚେତନର ପ୍ରବର୍ତ୍ତକ ପ୍ରବୃତ୍ତି ହେଲେ କୌଣସି ବିରୋଧ ହୁଏ ନାହିଁ ।

(ଖ) ଯଦି ଏହା କୁହାଯାଏ ଯେ- ତୁମ୍ଭରି ମତରେ ଦେହାଦି ଦ୍ୱାରା ସଂଯୁକ୍ତ ହେଲେ ଆତ୍ମାର ବିଜ୍ଞାନ ରୂପମାତ୍ରା ଦ୍ୱାରା ଅତିରିକ୍ତ ପ୍ରବୃତ୍ତିର ଅନୁପପତ୍ତି ହୋଇ ପ୍ରବର୍ତ୍ତକତ୍ୱ ଅନୁପପତ୍ତି ହୁଏ; ତାହା ଠିକ୍ ନୁହେଁ, କାରଣ-ଅୟସ୍କାନ୍ତମଣି ଓ ରୂପା ପ୍ରଭୃତି ପରି ସମାନ



ପ୍ରବୃତ୍ତି ରହିତ ବସ୍ତୁରେ ପ୍ରବର୍ତ୍ତକତ୍ୱ ହୁଏ । ଯେପରି ଅୟସ୍କାନ୍ତମଣି ସ୍ୱୟଂ ପ୍ରବୃତ୍ତିରହିତ ହୋଇ ମଧ ଏକ ଲୌହଖଣ୍ଡର ପ୍ରବର୍ତ୍ତକ ହୁଏ, ଅଥବା ଯେପରି ରୂପାଦି ବିଷୟ ସ୍ୱୟଂ ପ୍ରବୃତ୍ତିରହିତ ହୋଇ ଚକ୍ଷୁର ପ୍ରବର୍ତ୍ତକ ହୁଏ, ସେପରି ପ୍ରବୃତ୍ତି ରହିତ ହୋଇ ଈଶ୍ୱର ସର୍ବଗତ, ସର୍ବାତ୍ମା, ସର୍ବଜ୍ଞ, ସର୍ବଶକ୍ତିମାନ୍ ହୋଇ ସମସ୍ତଙ୍କୁ ପ୍ରବୃତ୍ତ କରେ । ଏହାହିଁ ଠିକ୍ ।

(ଗ) ଏକତ୍ୱରେ କାରଣ ପ୍ରବର୍ତ୍ତ୍ୟ ନ ହେଲେ ପ୍ରବର୍ତ୍ତକତ୍ୱ ଅନୁପପନ୍ନ ହୁଏ । ତେବେ ଏହା ଠିକ୍ ନୁହେଁ । କାରଣ-ଅବିଦ୍ୟାଦ୍ୱାରା ପରତ୍ୟୁପସ୍ଥାପିତ ନାମ ରୂପାତ୍ମକ ମାୟାର ଆବେଶବଳରେ (ଚେତନରେ ଈଶ୍ୱରଭାବ ଓ ପ୍ରବର୍ତ୍ତ୍ୟ-ପ୍ରବର୍ତ୍ତକଭାବ) ଉପପନ୍ନ ହୁଏ । ଏହିପରି ଅନେକଥର ନିରାକରଣ କରାଯାଇଛି । ତେଣୁ ସର୍ବଜ୍ଞଙ୍କୁ କାରଣ ବୋଲି ସ୍ୱୀକାର କଲେ ପ୍ରବୃତ୍ତି ସମ୍ଭବ ହୁଏ; କିନ୍ତୁ ଅଚେତନକୁ କାରଣ ରୂପରେ ସ୍ୱୀକାର କଲେ ପ୍ରବୃତ୍ତି ସମ୍ଭବ ହୁଏ ନାହିଁ ।

## पयोम्बुवच्चेत्तत्रापि ॥३॥

## (୧) ପୟୋମ୍ବୁବଚ୍ଚେତ୍ତତ୍ରାପି ॥ ୨-୨-୩ ॥

ପୟୋମ୍ବୁବତ୍-ଯେପରି ବାଛୁରୀ ଖାଇବା ପାଇଁ ଦୁଧ ଆପେ ଆପେ ପ୍ରବୃତ୍ତ ହୁଏ, ଜଳ ସ୍ୱୟଂ ପ୍ରବାହିତ ହୁଏ, ସେପରି ପ୍ରଧାନ ସ୍ୱୟଂ ପ୍ରବୃତ୍ତ ହୁଏ । ଚେତ୍-ଯଦି ଏହା କହ, ତଥାପି ତତ୍ରାପି-ସେଠାରେ ଚେତନଦ୍ୱାରା ଅଧିଷ୍ଠିତ ହୁଏ । କାରଣ- 'ଯୋଽୟସୁ ତିଷ୍ଠନ୍' ଇତ୍ୟାଦିଶ୍ରୁତିଦ୍ୱାରା ପ୍ରଧାନ ଜଗତ୍‌ର କାରଣ ହୁଏ ନାହିଁ ।

(୨) ମୂଳ-(କ) ସ୍ୟାଦେତତ୍ । ଯଥା କ୍ଷୀରମଚେତନଂ ସ୍ୱଭାବେନୈବ ବତ୍ସବିବୃଦ୍ଧ୍ୟର୍ଥେଂ ପ୍ରବର୍ତ୍ତତେ, ଯଥାଚ ଜଳମଚେତନଂ ସ୍ୱଭାବେନୈଞ୍ଚବ ଲୋକୋପକାରାୟ ସ୍ୱନ୍ଦିତ ଏବଂ ପ୍ରଧାମଚେତନଂ ସ୍ୱଭାବେନୈବ ଲୋକାପକାରାୟ ସ୍ୱନ୍ଦତ ଏବଂ ପ୍ରଧାନମଚେତନଂ ସ୍ୱଭାବେନିବ ପୁରୁଷାର୍ଥସିଦ୍ଧୟେ ପ୍ରବର୍ତ୍ତିଷ୍ୟତ ଇତି ।

(ଖ) ନୈତତ୍ ସାଧୁଚ୍ୟତେ । ଯତସ୍ତତ୍ରାପି ପୟୋମ୍ବୁନୋଶ୍ଚେତ-ନାଧିଷ୍ଠିତୟୋରବ ପ୍ରବୃତ୍ତିରିତ୍ୟନୁମିମୀମହେ । ଉଭୟବାଦିପ୍ରସିଦ୍ଧେ ରଥାଦାବଚେତନେ କେବଳେ ପ୍ରବୃତ୍ୟ ଦର୍ଶନାତ୍ । ଶାସ୍ତ୍ରଂ ଚ 'ଯୋଽପ୍ସୁ ତିଷ୍ଠନ୍ ଯୋଽପୋଽନ୍ତରୋ ଯମୟତି', (ବୃ ୩-୭-୪) 'ଏତସ୍ୟ ବା ଅକ୍ଷରସ୍ୟ ପ୍ରାଶାସନେଗାର୍ଗି ପ୍ରାଚ୍ୟୋଽନ୍ୟା ନଦ୍ୟଃ ସ୍ୱନ୍ଦନ୍ତେ' (ବୃ ୩-୮-୯) ଇତ୍ୟେବଂଜାତୀୟକଂ ସମସ୍ତସ୍ୟ ଲୋକପରିସ୍ୱନ୍ଦିତସ୍ୟେଶ୍ୱରାଧିଷ୍ଠିତତାଂ ଶ୍ରାୟବତି ।

(ଗ) ତସ୍ମାତ୍ ସାଧ୍ୟପକ୍ଷନିକ୍ଷିପ୍ତତ୍ୱାତ୍ ପୟୋମ୍ବୁବଦିତ୍ୟନୁପନ୍ୟାସଃ । ଚେତନାୟାଶ୍ଚ ଧେନ୍ୱାଃ ସ୍ନେହେଚ୍ଛୟା ପୟସଃ ପ୍ରବର୍ତ୍ତକତ୍ୱୋପପତ୍ତେଃ । ବତ୍ସଚୋଷଣେନ ନ ପୟସ

ଆକୃଷ୍ୟମାଣତ୍ୱାତ୍ । ତତ୍ରସୁମ୍ବୁନୋଽପ୍ୟତ୍ୟନ୍ତମନପେକ୍ଷାଂ, ନିମ୍ନଭୂମ୍ୟାଦ୍ୟପେକ୍ଷତ୍ୱାତ୍ ସ୍ୟନ୍ଦନସ୍ୟ ।

(ଘ) ଚେତନାପେକ୍ଷତ୍ୱଂ ତୁ ସର୍ବତ୍ରୋପଦର୍ଶିତମ୍ । 'ଉପସଂହାର ଦର୍ଶନାନ୍ନେତି ଚେନ୍ନ କ୍ଷୀରବଦ୍ଧି' (ବ୍ର. ସୂ. ୨।୧।୨୪) ଇତ୍ୟତ୍ର ତୁ ବାହ୍ୟନିମିତ୍ତନିରପେକ୍ଷମପି ସ୍ୱାଶ୍ରୟଂ କାର୍ଯ୍ୟଂ ଭବତୀତ୍ୟେତଲ୍ଲୋକଦୃଷ୍ଟ୍ୟା ନିଦର୍ଶିତମ୍ । ଶାସ୍ତ୍ରଦୃଷ୍ଟ୍ୟା ତୁ ପୁନଃ ସର୍ବତ୍ରୈବେଶ୍ୱରା ପେକ୍ଷତ୍ୱମାପଦ୍ୟମାନଂ ନ ପରାଣୁଦ୍ୟତେ ।

(୨) ଭାଷାଂତର-(କ) ପୂର୍ବପକ୍ଷ-ଏହା ହୋଇପାରେ ଯେ- ଯେପରି ଅଚେତନ ଦୁଧ ଆପେ ଆପେ ବାଛୁରୀର ବିଶେଷ ବୃଦ୍ଧି ପାଇଁ ପ୍ରବୃତ୍ତ ହୁଏ, ଏବଂ ଯେପରି ଅଚେତନ ଜଳ ନିଜେ ନିଜେ ସଂସାରର ଉପକାର ପାଇଁ ପ୍ରବାହିତ ହୁଏ । ସେହିପରି ଅଚେତନ ପ୍ରଧାନ ମଧ୍ୟ ସ୍ୱଭାବତଃ ପୁରୁଷାର୍ଥର ସିଦ୍ଧି ପାଇଁ ପ୍ରବୃତ୍ତ ହେବ ।

(ଖ) ସିଦ୍ଧାନ୍ତ ଏହା କିନ୍ତୁ ଠିକ୍ ଭାବେ କୁହାଯାଇନାହିଁ । କାରଣ-ଚେତନାଧିଷ୍ଠିତ ଦୁଧ ଓ ଜଳରେ ପ୍ରବୃତ୍ତ ହୁଏ । ଏପରି ଅନୁମାନ ଆମ୍ଭେ କରୁଁ । କାରଣ-ଉଭୟବାଦିର ପ୍ରସିଦ୍ଧ ଚେତନଦ୍ୱାରା ଅନଧିଷ୍ଠିତ କେବଳ ରଥାଦିରେ ପ୍ରବୃତ୍ତି ଜଣାପଡ଼େ ନାହିଁ । 'ଯୋଽପ୍ସୁ' (ଯାହା ଜଳରେ ରହେ, ଯାହା ଜଳର ଭିତରେ ରହି ଅନ୍ୟକୁ ନିୟମନ କରେ), 'ଏତସ୍ୟ ବା' (ହେ ଗାର୍ଗି ! ଏହି ଅକ୍ଷରର ପ୍ରଶାସନରେ ପୂର୍ବବାହିନୀ ଓ ଅନ୍ୟନଦୀଗୁଡ଼ିକ ଶ୍ୱେତପର୍ବ ତରୁ ପ୍ରବାହିତ ହେଉଛନ୍ତି) । ଏହିପ୍ରକାର ଶାସ୍ତ୍ର ସଂପୂର୍ଣ୍ଣ ଲୋକକ୍ରିୟାକୁ ଈଶ୍ୱର ଦ୍ୱାରା ଅଧିଷ୍ଠିତ କରାଏ ବୋଲି କୁହାଯାଇଅଛି ।

(ଗ) ତେଣୁ ଯେଉଁଠି ସାଧ ସିଦ୍ଧ କରାଯାଇଛି, ସେହି ପକ୍ଷକୁ ନିକ୍ଷିପ୍ତ ହେଲେ 'ପୟୋମ୍ବୁବତ୍' ଏହି ବ୍ୟଭିଚରସ୍ଥଳ ହୁଏ ନାହିଁ । କାରଣ-ଚେତନ ଗାଈର ସ୍ନେହ ଇଚ୍ଛାରେ ଦୁଧ ପ୍ରବୃତ୍ତ ହୁଏ । ବାଛୁରୀ ଚୁଚୁମିବା ଦ୍ୱାରା ଦୁଧ ବାହାରି ଆସେ । ସେପରି ଜଳ ମଧ୍ୟ କାହାରିକୁ ଅପେକ୍ଷା କରେ ନାହିଁ ବୋଲି କୁହାଯାଏ ନାହିଁ । କାରଣ-ଜଳର ବହନକ୍ରିୟା ନିମ୍ନଭୂମିକୁ ଅପେକ୍ଷା କରେ ।

(ଘ) ସେପରି ଚେତନ ଅନ୍ୟକାହାକୁ ଅପେକ୍ଷା କରିବା ଦେଖାଯାଏ । 'ଉପସଂହାର ଦର୍ଶନାନ୍ନେତି ଚେନ୍ନ କ୍ଷୀରବଦ୍ଧି' ସୂତ୍ରରେ ବାହ୍ୟନିମିତ୍ ତକକୁ ଅପେକ୍ଷା ନକରି ସ୍ୱାଶ୍ରୟକାର୍ଯ୍ୟ ହୁଏ । ଏହା ଲୋକଦୃଷ୍ଟିରେ ଜଣାଯାଏ । ପୁନଶ୍ଚ ଶାସ୍ତ୍ରଦୃଷ୍ଟିରେ ସବୁସ୍ଥାନରେ ଈଶ୍ୱର ପ୍ରାପ୍ତିକୁ ଅପେକ୍ଷା କରି ପରପକ୍ଷ ନିରାକରଣ କରାଯାଇଛି ।



**व्यतिरेकानवस्थितेश्चानपेक्षत्वात्  ॥४॥**

**(୧) ବ୍ୟତିରେକାନବସ୍ଥିତେଶ୍ଚାନପେକ୍ଷତ୍ୱାତ୍ ॥ ୨-୨-୪ ॥**

ବ୍ୟତିରେକାନବସ୍ଥିତେଃ-ପ୍ରଧାନର ଭିନ୍ନକର୍ମାଦି ସହକାରୀ ନହେଲେ, ଚ-ମଧ୍ୟ, ଅନପେକ୍ଷତ୍ୱାତ୍-ପୁରୁଷର ଅସଙ୍ଗତ୍ୱ ହେବାରୁ ପ୍ରବୃତ୍ତି ଓ ନିବୃତ୍ତିରେ ଅପେକ୍ଷା ସ୍ୱୀକାର ନହେଲେ ଅଚେତନ ପ୍ରଧାନ ଜଗତ୍‌ର କାରଣ ହୁଏ ନାହିଁ ।

(୨) ମୂଳ-(କ) ସାଂଖ୍ୟାନାଂ ତ୍ରୟୋ ଗୁଣାଃ ସାମ୍ୟେନାବତିଷ୍ଠମାନାଃ ପ୍ରଧାନମ୍ । ନତୁ ତଦ୍‌ବ୍ୟତିରେକେଣ ପ୍ରଧାନସ୍ୟ ପ୍ରବର୍ତ୍ତକଂ ନିବର୍ତ୍ତକଂ ବା କିଞ୍ଚିଦ୍ ବାହ୍ୟ-ମପେକ୍ଷ୍ୟମବସ୍ଥିତମସ୍ତି ।

(ଖ) ପୁରୁଷସ୍ତୁଦାସୀନୋ ନ ପ୍ରବର୍ତ୍ତକୋ ନ ନିବର୍ତ୍ତକ ଇତ୍ୟତୋଽନପେକ୍ଷଂ ପ୍ରଧାନମ୍, ଅନପେକ୍ଷତ୍ୱାଚ୍ଚ କଦାଚିତ୍ ପ୍ରଧାନଂ ମହାଦାଦ୍ୟାକାରେଣ ପରିଣମତେ କଦା-ଚିନ୍ନ ପରିଣମତ ଇତ୍ୟେତଦଯୁକ୍ତମ୍ । ଈଶ୍ୱରସ୍ୟ ତୁ ସର୍ବଜ୍ଞତ୍ୱାତ୍ ସର୍ବଶକ୍ତିତ୍ୱାନ୍ମହାମାୟତ୍ୱାଚ୍ଚ ପ୍ରବୃତ୍ତ୍ୟ ପ୍ରବୃତ୍ତୀ ନ ବିରୁଧ୍ୟେତେ ।

**(୨) ଭାଷାଂତର**-(କ) ସାଂଖ୍ୟମତରେ ତିନିଗୁଣର ସାମ୍ୟାବସ୍ଥାହିଁ ପ୍ରକୃତି । ପରନ୍ତୁ ତାହାଠାରୁ ଭିନ୍ନ ପ୍ରଧାନର ପ୍ରବର୍ତ୍ତକ ଅଥବା ନିବର୍ତ୍ତକ କୌଣସି ବାହ୍ୟକୁ ଅପେକ୍ଷା କରି ରହେ ନାହିଁ ।

(ଖ) ପୁରୁଷ କିନ୍ତୁ ଉଦାସୀନ ଅଟେ । ତାହା ପ୍ରବର୍ତ୍ତକ ନୁହେଁ କି ନିବର୍ତ୍ତକ ନୁହେଁ । ତେଣୁ ପ୍ରଧାନ ଅନପେକ୍ଷ ଅଟେ । ଅନପେକ୍ଷ ହେଲେ କେତେବେଳେ ପ୍ରଧାନ ମହଦାଦି ଆକାର ଦ୍ୱାରା ପରିଣତ ହେବ ଓ କେତେବେଳେ ହେବ ନାହିଁ ବୋଲି କହିବା ଅସଙ୍ଗତ । ଈଶ୍ୱର ସର୍ବଜ୍ଞ, ସର୍ବଶକ୍ତିମାନ୍ ଓ ମହାମାୟାମୟରୂପରେ ସ୍ୱୀକାର କଲେ ପ୍ରବୃତ୍ତି ଓ ନିବୃତ୍ତିରେ କିଛି ବିରୋଧ ହେବ ନାହିଁ ।

**अन्यत्राभावाच्च न तृणादिवत्  ॥ ५ ॥**

**(୧) ଅନ୍ୟତ୍ରାଭାବାଚ୍ଚ ନ ତୃଣାଦିବତ୍ ॥ ୨-୨-୫ ॥**

ଚ-ଏବଂ, ତୃଣାଦିବତ୍-ତୃଣପରି ପ୍ରଧାନର ସ୍ୱଭାବତଃ ପରିଣାମ ହୁଏ ନାହିଁ । ଅନ୍ୟତ୍ରାଭାବାତ୍-କାରଣ-ଅନ୍ୟତ୍ର ଦୁଧରୂପରେ ତୃଣପରିଣାମର ଅଭାବ ହୁଏ ।

(୨) ମୂଳ-(କ) ସ୍ୟାଦେତତ୍ । ଯଥା ତୃଣପଲ୍ଲବୋଦକାଦି ନିମିତ୍ତାନ୍ତରନିରପେକ୍ଷଂ ସ୍ୱଭାବାଦେବ କ୍ଷୀରାଦ୍ୟାକାରେଣ ପରିଣମତ ଏବଂ ପ୍ରଧାନମପି ମହଦାଦ୍ୟକାରେଣ

ପରିଣଂସ୍ୟତ ଇତି । କଥଂ ଚ ନିମିତ୍ତାନ୍ତରନିରପେକ୍ଷଂ ତୃଣାଦୀତି ଗମ୍ୟତେ । ନିମିତ୍ତାନ୍ତରାନୁପଲମ୍ଭାତ୍ ।

(ଖ) ଯଦି ହି କିଂଚିନ୍ନିମିତ୍ତମୁପଲଭେମହି ତତୋ ଯଥାକାମଂ ତେନ ତୃଣାଦ୍ୟୁପାଦାୟ କ୍ଷୀରଂ ସଂପାଦୟେମହି । ନତୁ ସଂପାଦୟାମହେ । ତସ୍ମାତ୍‌ସ୍ୱାଭାବିକସ୍ତୃଣାଦେଃ ପରିଣାମସ୍ତଥା ପ୍ରଧାନସ୍ୟାପି ସ୍ୟାଦିତି ।

(ଗ) ଅତ୍ରାଚ୍ୟତେ-ଭବେତ୍ତୃଣାଦିବତ୍ ସ୍ୱାଭାବିକଃ ପ୍ରଧାନସ୍ୟାପି ପରିଣାମୋ ଯଦି ତୃଣାଦେରପି ସ୍ୱାଭାବିକଃ ପରିଣାମୋଽଭ୍ୟୁପଗମ୍ୟେତ । ନତ୍ୱଭ୍ୟୁପଗମ୍ୟତେ, ନିମିତ୍ତାନ୍ତରୋପଲବ୍ଧେଃ । କଥଂ ନିମିତ୍ତାନ୍ତରୋପଲବ୍ଧିଃ, ଅନ୍ୟତ୍ରାଭାବାତ୍ । ଧେନ୍ୱୈବ ହ୍ୟୁପଯୁକ୍ତଂ ତୃଣାଦି କ୍ଷୀରୀଭବତି ନ ପ୍ରହୀଣମନଡୁଦାଦ୍ୟୁପଯୁକ୍ତଂ ବା । ଯଦି ହି ନିର୍ନିମିତ୍ତମେତସ୍ୟାତ୍ ଧେନୁଶରୀରସମ୍ବନ୍ଧାଦନ୍ୟତ୍ରାପି ତୃଣାଦି କ୍ଷୀରୀଭବେତ୍ ।

(ଘ) ନଚ ଯଥାକାମଂ ମାନୁଷୈର୍ନ ଶକ୍ୟଂ ସଂପାଦୟିତୁମିତ୍ୟେତାବତା ନିର୍ନିମିତ୍ତଂ ଭବତି । ଭବତି ହି କିଞ୍ଚିତ୍ କାର୍ଯ୍ୟଂ ମାନୁଷସଂପାଦ୍ୟଂ କିଞ୍ଚିଦ୍ଦେବସଂପାଦ୍ୟମ୍ । ମନୁଷ୍ୟା ଅପି ଶକ୍ନୁବନ୍ତ୍ୟେବୋଚିତେନୋପାୟେନ ତୃଣାଦ୍ୟୁପାଦାୟ କ୍ଷୀରଂ ସଂପାଦୟିତୁମ୍ । ପ୍ରଭୂତଂହି କ୍ଷୀରଂ କାମୟମାନାଃ ପ୍ରଭୂତଂ ଘାସଂ ଧେନୁମ୍ ଚାରୟନ୍ତି । ତତଶ୍ଚ ପ୍ରଭୂତଂ କ୍ଷୀରଂ ଲଭନ୍ତେ । ତସ୍ମାନ୍ନ ତୃଣାଦିବତ୍‌ସ୍ୱାଭାବିକାଃ ପ୍ରଧାନସ୍ୟ ପରିଣାମଃ ।

**(୨)** ଭାଷାଂତର-(କ) ପୂର୍ବପକ୍ଷ-ହଁ ଏହା ହୋଇପାରେ, କିନ୍ତୁ ଯେପରି ତୃଣ, ପଲ୍ଲବ, ଉଦକ ପ୍ରଭୃତି ଅନ୍ୟନିମିତ୍ତକୁ ଅପେକ୍ଷା ନ କରି ସ୍ୱଭାବତଃ କ୍ଷୀରାଦି ରୂପରେ ପରିଣତ ହୁଅନ୍ତି, ସେପରି ପ୍ରଧାନ ମହଦାଦିରୂପରେ ପରିଣତି ହୁଏ । ପରନ୍ତୁ ତୃଣ ପ୍ରଭୃତି ନିମିତ୍ତାନ୍ତରକୁ ଅପେକ୍ଷା କରେ ନାହିଁ ବୋଲି କିପରି ଜଣାପଡେ ? କାରଣ-ଅନ୍ୟନିମିତ୍ତ ଉପଲବ୍ଧ ହୁଏ ନାହିଁ ।

(ଖ) ଯଦି ଆମ୍ଭେ ଅନ୍ୟକୌଣସି ନିମିତ୍ତ ଉପଲବ୍ଧ କରୁଁ, ତେବେ ତାହାର ଇଚ୍ଛାନୁସାରେ ତୃଣ ପ୍ରଭୃତିକୁ ନେଇ ଦୁଧର ସଂପାଦନ କରୁଁ । କିନ୍ତୁ ନିଜେ ସଂପାଦନ କରିପାରୁ ନାହୁଁ । ତେଣୁ ତୃଣାଦିରେ ପରିଣାମ ସ୍ୱାଭାବିକ ଅଟେ । ଏହିପରି ପ୍ରଧାନର ପରିଣାମ ହୁଏ ।

(ଗ) ସିଦ୍ଧାନ୍ତ-ଯଦି ତୃଣପ୍ରଭୃତିର ସ୍ୱାଭାବିକ ପରିଣାମ, ସ୍ୱୀକାର କରାଯାଇଅଛି, କିନ୍ତୁ ତୃଣାଦିପରି ପ୍ରଧାନର ସ୍ୱାଭାବିକ ପରିଣାମ ହୁଏ । ପରନ୍ତୁ ଅନ୍ୟସ୍ଥଳରେ ତୃଣାଦିର ସ୍ୱାଭାବିକ ପରିଣାମ ସ୍ୱୀକାର କରାଯାଇନାହିଁ । କାରଣ-ଅନ୍ୟନିମିତ୍ତ ଉପଲବ୍ଧ ହୁଏ । ଅନ୍ୟନିମିତ୍ତ କୌଣସି ପ୍ରକାରେ ଉପଲବ୍ଧ ହୁଏ କି ? ହଁ, ଅନ୍ୟର ଅଭାବ ହୁଏ । କାରଣ-ଗାଇ ଘାସ ଖାଇବା ଦ୍ୱାରା କ୍ଷୀର ହୁଏ । କିନ୍ତୁ ବଳଦ ଖାଇଲେ ତୃଣରୁ ଦୁଧ ହୁଏ



ନାହିଁ । ତେଣୁ ଯଦି ନିମିତ୍ତ ବିନା ଏହା ହୁଏ । ତେଣୁ ଧେନୁ ଶରୀର ସମ୍ବନ୍ଧକୁ ଛାଡ଼ି ଅନ୍ୟତ୍ର ତୃଣ ଦୁଧରେ ପରିଣତ ହୁଏ ।

(ଘ) ମନୁଷ୍ୟ ଇଚ୍ଛାନୁସାରେ ତାହା ସଂପାଦନ କରିବାରେ ସମର୍ଥ ହୁଏ ନାହିଁ । ଏତେ ପରିମାଣରେ ନିର୍ନିର୍ମିତ ହୁଏ ନାହିଁ, କାରଣ- କୌଣସି କାର୍ଯ୍ୟ ମନୁଷ୍ୟ ଦ୍ୱାରା ନିର୍ମିତ, କୌଣସି କାର୍ଯ୍ୟ ଦେବତା ଦ୍ୱାରା ନିର୍ମାଣଯୋଗ୍ୟ । ମନୁଷ୍ୟ ଉଚିତ ଉପାୟରେ ଘାସ ଇତ୍ୟାଦି ନେଇ ଦୁଧକୁ ସଂପାଦନ କରିବାରେ ସମର୍ଥ ହୁଏ । ପୁଷ୍କଳକ୍ଷୀର ଚାହୁଁ ଥିବା ପୁରୁଷ ଗାଈକୁ ପୁଷ୍କଳଘାସ ଖୁଆଇ ଦିଏ, ତଦ୍ୱାରା ପୁଷ୍କଳଦୁଧ ମିଳେ । ତେଣୁ ତୃଣପରି ପ୍ରଧାନର ପରିଣାମ ସ୍ୱାଭାବିକ ନୁହେଁ ।

## अभ्युपगमेऽप्यर्थाभावात् ॥६॥
## (୧) ଅଭ୍ୟୁପଗମେଽପ୍ୟର୍ଥାଭାବାତ୍ ॥୨-୨-୬॥

ଅଭ୍ୟୁପଗମେ-ପ୍ରଧାନର ସ୍ୱତଃପ୍ରବୃତ୍ତି ତା ସ୍ୱୀକାର କରାଗଲେ ମଧ୍ୟ, ଅର୍ଥାଭାବାତ୍- ପ୍ରବୃତ୍ତିର କୌଣସି ପ୍ରୟୋଜନ ନ ହୋଇ ଦୋଷ ତଦବସ୍ଥ ହୋଇ ରହେ ।

(୨) ମୂଳ-(କ) ସ୍ୱାଭାବିକୀ ପ୍ରଧାନପ୍ରବୃତ୍ତିର୍ନ ଭବତୀତି ସ୍ଥାପିତମ୍ । ଅଥାପି ନାମ ଭବତଃ ଶ୍ରଦ୍ଧାମନୁରୁଧମାନାଃ ସ୍ୱାଭାବିକୀମେବ ପ୍ରଧାନସ୍ୟ ପ୍ରବୃତ୍ତିମଭ୍ୟୁପଗଚ୍ଛେମ ତଥାପି ଦୋଷୋଽନୁଷଜ୍ୟେତୈବ । କୁତଃ । ଅର୍ଥାଭାବାତ୍ ।

(ଖ) ଯଦି ତାବତ୍ ସ୍ୱାଭାବିକୀ ପ୍ରଧାନସ୍ୟ ପ୍ରବୃର୍ତ୍ତି ର୍ନ କିଞ୍ଚିଦନ୍ୟଦିହାପେକ୍ଷ୍ୟତ ଇତ୍ୟୁଚ୍ୟେତ ତତୋ ଯଥୈବ ସହକାରି କିଞ୍ଚିନ୍ନାପେକ୍ଷତ ଏବଂ ପ୍ରୟୋଜନମଧି କିଞ୍ଚିନ୍ନାପେକ୍ଷିଷ୍ୟତେ ଇତ୍ୟତଃ ପ୍ରଧାନଂ ପୁରୁଷସ୍ୟାର୍ଥଂ ସାଧୟିତୁଂ ପ୍ରବର୍ତ୍ତତ ଇତୀୟଂ ପ୍ରତିଜ୍ଞା ହୀୟେତ ।

(ଗ) ସ ଯଦି ବ୍ରୂୟାତ୍ ସହକାର୍ଯ୍ୟେବ କେବଳଂ ନାପେକ୍ଷତେ ନ ପ୍ରୟୋଜନମପୀତି । ତଥାପି ପ୍ରଧାନପ୍ରବୃତ୍ତେଃ ପ୍ରୟୋଜନଂ ବିବେକ୍ତବ୍ୟଂ ଭୋଗୋ ବା ସ୍ୟାଦପବର୍ଗୋ ବୋଭୟଂ ବେତି ।

(ଘ) ଭୋଗଶ୍ଚେତ୍କୀଦୃଶୋଽନାମଧେୟାତିଶୟସ୍ୟ ପୁରୁଷସ୍ୟ ଭୋଗୋ ଭବେତ୍ । ଅନିର୍ମୋକ୍ଷପ୍ରସଙ୍ଗଶ୍ଚ । ଅପବର୍ଗଶ୍ଚେତ୍ ପ୍ରାଗପି ପ୍ରବୃତ୍ ତେରପବର୍ଗସ୍ୟ ସିଦ୍ଧତ୍ୱାତ୍ ପ୍ରବୃତ୍ତିରନର୍ଥିକା ସ୍ୟାତ୍ । ଶବ୍ଦାଦ୍ୟନୁପଲବ୍ଧିପ୍ରସଙ୍ଗଶ୍ଚ । ଉଭୟାର୍ଥତା-ଭ୍ୟୁପଗମେଽପି ଭୋକ୍ତବ୍ୟାନାଂ ପ୍ରଧାନମାତ୍ରାଣାମନନ୍ତ୍ୟାଦନିର୍ମୋକ୍ଷପ୍ରସଙ୍ଗ ଏବ ।

(ଙ) ନ ଚୈତ୍ ସୁକ୍ୟନିବୃତ୍ତ୍ୟର୍ଥା ପ୍ରବୃତ୍ତିଃ । ନହି ପ୍ରଧାନସ୍ୟାଚେତନ ସ୍ୟୌସ୍ସୁକ୍ୟଂ ସମ୍ଭବତି । ନଚ ପୁରୁଷସ୍ୟ ନିର୍ମଳସ୍ୟ ନିଷ୍କଳସ୍ୟୌସୁକ୍ୟମ୍ । ଦୃକ୍ ଶକ୍ତି ସର୍ଗ ଶକ୍ତି ବୈୟର୍ଥ୍ୟଭୟାଚ୍ଚେତ୍ ପ୍ରବୃତ୍ତିସ୍ତର୍ହି ଦୃକ୍ ଶକ୍ତ୍ୟନୁଚ୍ଛେଦବତ୍ ସର୍ଗଶକ୍ତ୍ୟନୁଚ୍ଛେଦାତ୍ ସଂସାରୁନୁଚ୍ଛେଦାଦନିର୍ମୋକ୍ଷପ୍ରସଙ୍ଗ ଏବ । ତସ୍ମାତ୍ ପ୍ରଧାନସ୍ୟ ପୁରୁଷାର୍ଥା ପ୍ରବୃତ୍ତିରିତ୍ୟେତଦଯୁକ୍ତମ୍ ।

(୨) ଭାଷାଂତର- (କ) ପ୍ରଧାନଙ୍କ ପ୍ରବୃତ୍ତି ସ୍ୱାଭାବିକ ନୁହେଁ ବୋଲି ସିଦ୍ଧ କରାଯାଉଅଛି । ପରନ୍ତୁ ନିଜର ଶ୍ରଦ୍ଧାନୁସାରେ ଆମ୍ଭେ ପ୍ରଧାନର ସ୍ୱାଭାବିକ ପ୍ରବୃତ୍ତିକୁ ସ୍ୱୀକାର କରୁଛୁ । ତଥାପି ସେଠାରେ ଦୋଷପ୍ରସକ୍ତ ହୁଏ । କିପରି ? କାରଣ- ପ୍ରୟୋଜନର ଅଭାବ ହୁଏ ।

(ଖ) ଯଦି କୁହାଯାଏ ଯେ- ପ୍ରଧାନର ସ୍ୱାଭାବିକୀ ପ୍ରବୃତ୍ତି ଅଛି, ସେଥିରେ କୌଣସି ଅନ୍ୟକୁ ଅପେକ୍ଷା କରାଯାଏ ନାହିଁ । ତେବେ ଯେଉଁପରି ପ୍ରଧାନ କୌଣସି ସହକାରୀକୁ ଅପେକ୍ଷା କରେନାହିଁ, ସେପରି ସ୍ୱାଭାବିକୀ ପ୍ରବୃତ୍ତି କୌଣସି ସହକାରୀକୁ ଅପେକ୍ଷା କରେ ନାହିଁ । ତେଣୁ ପ୍ରଧାନ ପୁରୁଷର ଭୋଗ ଓ ମୋକ୍ଷରୂପଅର୍ଥକୁ ସିଦ୍ଧ କରିବା ପାଇଁ ପ୍ରବୃତ୍ତି ହୁଏ । ଅତଃ ପ୍ରତିଜ୍ଞାର ହାନି ଘଟେ ।

(ଗ) ପ୍ରଧାନ କେବଳ ସହକାରୀକୁ ଅପେକ୍ଷା କରେ ନାହିଁ ଏବଂ ପ୍ରୟୋଜନକୁ ମଧ୍ୟ ଅପେକ୍ଷା କରେ ନାହିଁ ବୋଲି ଯଦି କୁହାଯାଏ, ଏହା ଠିକ୍ ନୁହେଁ, କାରଣ- ସେ ପ୍ରୟୋଜନକୁ ଅପେକ୍ଷା କରେ । ତେଣୁ ପ୍ରଧାନ ପ୍ରବୃତ୍ତିର ପ୍ରୟୋଜନକୁ ବିବେଚନା କରିବା ଉଚିତ ଯେ- ଭୋଗ ବା ମୋକ୍ଷ ଅଥବା ଦୁଇ ପ୍ରବୃତ୍ତିର ପ୍ରୟୋଜନ ହୁଏ କି ?

(ଘ) ଯଦି ଭୋଗ ହୁଏ, ତେବେ ସୁଖାଦି ଅଧିକରଣର ଅତିଶୟ ନ ଥିବା ପୁରୁଷଠାରେ ଭୋଗ କିପରି ହେବ ? ମୋକ୍ଷଭାପ୍ରସଙ୍ଗ ମଧ୍ୟ ହେବ । ଯଦି ମୋକ୍ଷ ପ୍ରୟୋଜନ ହୁଏ, ତେବେ ପ୍ରବୃତ୍ତିର ପୂର୍ବରୁ ମୋକ୍ଷ ସିଦ୍ଧ ହେଲେ ପ୍ରବୃତ୍ତି ନିଷ୍ଫଳ ହେବ ଓ ଶବ୍ଦାଦିର ଅନୁଲବ୍ଧି ପ୍ରସଙ୍ଗ ହେବ । ଦୁଇଟି ପ୍ରୟୋଜନ ସ୍ୱୀକାର କଲେ ଭୋଗ୍ୟଯୋଗ୍ୟ ପ୍ରଧାନତନ୍ମାତ୍ର ଗୁଡ଼ିକର ଅନନ୍ତ ସ୍ୱୀକାର କରି ମୋକ୍ଷର ଅଭାବ ପ୍ରସଙ୍ଗ ହୁଏ ।

(ଙ) ଉତ୍ସୁକତାର ନିବୃତ୍ତି ପାଇଁ ପ୍ରବୃତ୍ତ ହୁଏ ନାହିଁ, କାରଣ- ଅଚେତନ ପ୍ରଧାନରେ ଉତ୍ସୁକତା ସମ୍ଭବ ନୁହେଁ ଏବଂ ନିର୍ମଳ, ନିଷ୍କଳ ପୁରୁଷଠାବେ ଉତ୍ସକତ ହୁଏ ନାହିଁ । ପୁରୁଷଠାରେ ଦୃତଶକ୍ତି ଓ ପ୍ରଧାନଠାରେ ସର୍ଗଶକ୍ତିର ବ୍ୟର୍ଥତା ଭୟରେ ଯଦି ପ୍ରବୃତ୍ତି ସ୍ୱୀକାର କରାଯିବ । ତେବେ ଦୃଢ଼ଶକ୍ତିର ଅନୁଚ୍ଛେଦ (ନିତ୍ୟ) ପରି ସର୍ବଶକ୍ତିର ଅନୁଚ୍ଛେଦ ହେଲେ



ସଂସାରର ଅନୁଚ୍ଛେଦ ହୋଇ ମୋକ୍ଷାଭାବ ପ୍ରସଙ୍ଗ ହେବ । ତେଣୁ ପ୍ରଧାନର ପ୍ରବୃତ୍ତି ପୁରୁଷର ପ୍ରୟୋଜନ ପାଇଁ ବୋଲି କହିବା ଅସଙ୍ଗତ ।

## पुरुषाश्मवदिति चेत्तथापि ॥७॥

## (୧) ପୁରୁଷାଶ୍ମବଦିତିଚେତ୍ତଥାପି ॥୨-୨-୭॥

ପୁରୁଷାଶ୍ମବତ୍-ଅନ୍ଧ ଓ ପଙ୍ଗୁ ପୁରୁଷ ପରି ଅଥବା ଅୟସ୍କାନ୍ତମଣିପରି ପୁରୁଷ ପ୍ରଧାନର ବିବର୍ତ୍ତକ ଅଟେ । ଇତି ଚେତ୍-ଯଦି ତୁମେ ଏପରିକହ; ତଥାପି-ତଥାପି ଦୋଷ ନିବୃତ୍ତ ହୁଏ ନାହିଁ ।

(୨) ମୂଳ-(କ) ସ୍ୟାଦେତତ୍ । ଯଥା କଶ୍ଚିତ୍ପୁରୁଷୋ ଦୃକ୍ ଶକ୍ତି ପପନ୍ନଃ ପ୍ରବୃତ୍ତିଶକ୍ତିବିହୀନଃ ପଙ୍ଗୁରପରଂ ପୁରୁଷଂତ୍ତିପ୍ରବୃତ୍ତି ଶକ୍ତିସଂପନ୍ନଂଦୃକ୍-ଶକ୍ତିବିହୀନମନ୍ଧଧିଷ୍ଠାୟ ପ୍ରବର୍ତ୍ତୟତେ । ଯଥା ବାଽୟସ୍କାନ୍ତୋଽଶ୍ମା ସ୍ୱୟମପ୍ରବର୍ତ୍ତମାନୋଽପ୍ୟୟଃ ପ୍ରବର୍ତ୍ତୟତି । ଏବଂ ପୁରୁଷ ପ୍ରଧାନଂ ପ୍ରବର୍ତ୍ତୟିଷ୍ୟତୀତି ଦୃଷ୍ଟାନ୍ତପ୍ରତ୍ୟୟେନ ପୁନଃ ପ୍ରତ୍ୟବସ୍ଥାନମ୍ ।

(ଖ) ଅତ୍ରୋଚ୍ୟତେ-ତଥାପି ନୈବ ଦୋଷା ର୍ନ୍ନର୍ମୋକ୍ଷୋଽସ୍ତି । ଅଭ୍ୟୁପେତହାନଂ ତାବଦ୍ଦୋଷ ଆପତତି ପ୍ରଧାନସ୍ୟ ସ୍ୱତନ୍ତ୍ରସ୍ୟ ପ୍ରବୃତ୍ତ୍ୟଭ୍ୟୁପଗମାତ୍, ପୁରୁଷ ଚ ପ୍ରବର୍ତ୍ତକତ୍ୱାନଭ୍ୟୁପଗମାତ୍ । କଥଂ ଚୋଦାସୀନଃ ପୁରୁଷଃ ପ୍ରଧାନଂ ପ୍ରବର୍ତ୍ତୟେତ୍ । ପଙ୍ଗୁରପି ହ୍ୟନ୍ଧଂ ବାଗାଦିଭିଃ ପୁରୁଷଂ ପ୍ରବର୍ତ୍ତୟତି ।

(ଗ) ନୈବଂ ପୁରୁଷସ୍ୟ କଶ୍ଚିଦପି ପ୍ରବର୍ତ୍ତନବ୍ୟାପାରୋଽସ୍ତି, ନିଷ୍କ୍ରିୟତ୍ୱାଚ୍ଚ । ନାପ୍ୟୟସ୍କାନ୍ତବତ୍ ସନ୍ନିଧିମାତ୍ରେଣ ପ୍ରବର୍ତ୍ତୟେତ୍ । ସନ୍ନିଧିନିତ୍ୟତ୍ୱେନ ପ୍ରବୃତ୍ତିନିତ୍ୟତ୍ୱପ୍ରସଙ୍ଗାତ୍ । ଅୟସ୍କାନ୍ତସ୍ୟ ତ୍ୱନିତ୍ୟସନ୍ନିଧେରସ୍ତି ସ୍ୱବ୍ୟାପାରଃ ସନ୍ନିଧିଃ, ପରିମାର୍ଜନାଦ୍ୟପେକ୍ଷା ଚାସ୍ୟାସ୍ତୀତ୍ୟନୁପନ୍ୟାସଃ ପୁରୁଷାଶ୍ମବଦିତି ।

(ଘ) ତଥା ପ୍ରଧାନସ୍ୟାଚୈତନ୍ୟାତ୍ପୁରୁଷସ୍ୟ ଚୌଦାସୀନ୍ୟାତ୍ ତୃତୀୟସ୍ୟ ଚ ତୟୋଃ ସଂବନ୍ଧୟିତୁରଭାବାତ୍ ସଂବନ୍ଧାନୁପପତ୍ତିଃ । ଯୋଗ୍ୟତାନିମିତ୍ତେ ଚ ସଂବନ୍ଧେ ଯୋଗ୍ୟତାନୁଚ୍ଛେଦାଦନିର୍ମୋକ୍ଷପ୍ରସଙ୍ଗଃ ପୂର୍ବବଚ୍ଚେହାପ୍ୟର୍ଥାଭାବୋ ବିକଳ୍ପୟିତବ୍ୟଃ । ପରମାତ୍ମନସ୍ତୁ ସ୍ୱରୂପବ୍ୟପାଶ୍ରୟ ମୌଦାସୀନ୍ୟଂ ମାୟାବ୍ୟାପାଶ୍ରୟଂ ଚ ପ୍ରବର୍ତ୍ତକତ୍ୱମିତ୍ୟସ୍ତ୍ୟତିଶୟଃ ।

(୨) ଭାଷାଂତର- (କ) ଏହା ହୋଇପାରେ । ଯେପରି ଦୃଷ୍ଟି ଶକ୍ତି ସଂପନ୍ନ ଓ ପ୍ରବୃତ୍ତିଗମନଶକ୍ତିହୀନ କୌଣସି ପଙ୍ଗୁପୁରୁଷ ପ୍ରବୃତ୍ତି ଶକ୍ତିସଂପନ୍ନ କିନ୍ତୁ ଦୃଷ୍ଟି ଶକ୍ତି ବିହୀନ ଅନ୍ୟ ପୁରୁଷର କାନ୍ଧରେ ବସି ପ୍ରବୃତ୍ତ କରେ ଅଥବା ଯେପରି ଅୟସ୍କାନ୍ତମଣି ସ୍ୱୟଂ ଅପ୍ରବର୍ତ୍ତ

ହୋଇ ଲୁହାକୁ ପ୍ରବୃତ୍ତ କରେ, ସେହିପରି ପୁରଷ ପ୍ରଧାନକୁ ପ୍ରବୃତ୍ତ କରେ ଏହିପ୍ରକାର ଦୃଷ୍ଟାନ୍ତବଳରେ ପୁନଃ ସାଂଖ୍ୟଶଙ୍କା କରେ ।

(ଖ) ସିଦ୍ଧାନ୍ତ- ତଥାପି ଏହି ଦୋଷରୁ ମୁକ୍ତନୁହେଁ; କାରଣ-ସ୍ୱୀକୃତ ସିଦ୍ଧାନ୍ତର ହାନି ପ୍ରଧାନର ସ୍ୱତନ୍ତ୍ର ରୂପରେ ପ୍ରବୃତ୍ତି ସ୍ୱୀକାର କରିବା ଦ୍ୱାରା ଓ ପୁରୁଷକୁ ପ୍ରବର୍ତ୍ତକ ରୂପରେ ସ୍ୱୀକାର ନ କରିବା ହେତୁ ଦୋଷ ହୁଏ । ଏହି ଅବସ୍ଥାରେ ବଦାସୀନ ପୁରୁଷ ପ୍ରଧାନକୁ ପ୍ରବୃତ୍ତ କରେକି ? ପଙ୍ଗୁପୁରୁଷ ମଧ୍ୟ ଅନ୍ଧ ପୁରୁଷକୁ ବାଣୀରେ ପ୍ରବୃତ୍ତ କରେ ।

(ଗ) ପରନ୍ତୁ ଏହିପ୍ରକାର ପୁରୁଷଠାରେ କୌଣସି ପ୍ରବୃତ୍ତି ଜନିତ ବ୍ୟାରାର ନାହିଁ । କାରଣ-ସେ ନିଷ୍କ୍ରିୟ ଓ ନିର୍ଗୁଣ ଅଟେ । ଅୟସ୍କାନ୍ତମଣି ପରି ସନ୍ନିଧିମାତ୍ରାରେ ପ୍ରବୃତ୍ତ ହୁଏ ନାହିଁ, କାରଣ-ସିନ୍ନିଧିନିତ୍ୟ ହେଲେ ପ୍ରବୃତ୍ତିରେ ମଧ୍ୟ ନିତ୍ୟତ ପ୍ରସକ୍ତ ହୁଏ । ଏବଂ ଅୟସ୍କାନ୍ତମଣିର ଅନିତ୍ୟ ସନ୍ନିଧି ହେଲେ ତାହାର ନିଜ ବ୍ୟାପାର ସନ୍ନିଧି ଅନିତ୍ୟ ହୁଏ । ତାହା ପରିମାର୍ଜ୍ଜନକୁ ଅପେକ୍ଷା କରେ । ତେଣୁ 'ପୁରୁଷାଶ୍ମବତ୍' ଏତାଦୃଶ ଦୃଷ୍ଟାନ୍ତ ଉପନ୍ୟାସ ନୁହେଁ ।

(ଘ) ତେଣୁ ପ୍ରଧାନକୁ ଅଚେତନ ଓ ପୁରୁଷକୁ ଉଦାସୀନରୂପରେ ସ୍ୱୀକାର କଲେ ଦୁଇଟିର ସମ୍ବନ୍ଧ କରାଯାଉଥିବା ତୃତୀୟର ଅଭାବ ହେଲେ ସମ୍ବନ୍ଧ ଅନୁପପତି ହୁଏ । ତାହାର ଯୋଗ୍ୟତା ନିମିତ୍ତକସମ୍ବନ୍ଧ ସ୍ୱୀକାର କରିବାକୁ ପଡେ । କିନ୍ତୁ ଯୋଗ୍ୟତାର ଅନୁଚ୍ଛେଦ ନିତ୍ୟ ହେଲେ ମୋକ୍ଷାଭାବ ପ୍ରସଙ୍ଗ ହୁଏ । ପୂର୍ବପରି ଏଠାରେ ମଧ୍ୟ ପ୍ରୟୋଜନ ଭୋଗ ଓ ମୋକ୍ଷର ଅଭାବକୁ ବିକଳ୍ପ କରିବା ଉଚିତ୍ । ପରମାତ୍ମା କିନ୍ତୁ ସ୍ୱରୂପ ବ୍ୟାପାଶ୍ରୟ ଉଦାସୀନ ଓ ମାୟାର ଆଶ୍ରୟ ଦ୍ୱାରା ପ୍ରବର୍ତ୍ତକ ହୁଏ । ତେଣୁ ସେହି ଅତିଶେଷ (ବିଶେଷ) ଅଟେ ।

## अङ्गित्वानुपपत्तेश्च ॥८॥

## (୧) ଅଙ୍ଗିତ୍ୱାନୁପପତ୍ତେଶ୍ଚ ॥୨-୨-୮ ॥

ଅଙ୍ଗିତ୍ୱାନୁପପତ୍ତିଃ ଚ - ଗୁଣର ଅଙ୍ଗାଙ୍ଗିଭାବର ଅନୁପପତ୍ତି ହେଲେ ପ୍ରଧାନର ପ୍ରବୃତ୍ତି ହୁଏ ନାହିଁ ।

(୨) ମୂଳ-(କ) ଇତଶ୍ଚ ନ ପ୍ରଧାନସ୍ୟ ପ୍ରବୃତ୍ତିରବକଳ୍ପତେ । ଯଦ୍ଧି ସତ୍ତ୍ୱରଜସ୍ତମସାମନ୍ୟୋନ୍ୟଗୁଣ ପ୍ରଧାନଭାବମୁତସୃଜ୍ୟ ସାମ୍ୟେନ ସ୍ୱରୂପମାତ୍ରେଣାବସ୍ଥାନଂ ସା ପ୍ରଧାନାବସ୍ଥା । ତସ୍ୟାମବସ୍ଥାୟାମନପେକ୍ଷସ୍ୱରୂପାଣାଂ ସ୍ୱରୂପପ୍ରଣାଶଭୟାତ୍ ପରସ୍ପରଂ ପ୍ରତ୍ୟଙ୍ଗାଙ୍ଗି ଭାବାନୁପପତ୍ତେଃ । ବାହ୍ୟସ୍ୟ ଚ କସ୍ୟଚିତ୍କ୍ଷୋଭୟିତୁରଭାବାଦ୍ ଗୁଣ ବୈଷମ୍ୟନିମିତ୍ତୋ ମହଦାଦ୍ୟୁତ୍ପାଦୋ ନ ସ୍ୟାତ୍ ।

**(୨) ଭାଷାଂତର-**(କ) ଏହି କାରଣରୁ ପ୍ରଧାନର ପ୍ରବୃତ୍ତି ନାହିଁ । କାରଣ- ସତ୍ତ୍ୱ, ରଜ, ତମର ପରସ୍ପରଗୁଣ ପ୍ରଧାନଭାବକୁ ଛାଡି ସମାନଭାବରେ କେବଳ ସ୍ୱରୂପ ମାତ୍ରାରେ ଅବସ୍ଥିତ ହିଁ ପ୍ରଧାନାବସ୍ଥା । ସେହି ସାମ୍ୟାବସ୍ଥାରେ ଜଣେ ଦ୍ୱିତୀୟର ସ୍ୱରୂପକୁ ଅପେକ୍ଷା ନକରି ସତ୍ତ୍ୱାଦିଗୁଣର ସ୍ୱକୀୟସ୍ୱରୂପ ବିନାଶ ହେବା ଭୟରେ ପରସ୍ପର ପ୍ରତି ଅଙ୍ଗାଙ୍ଗିଭାବ ହୁଅନ୍ତି ନାହିଁ । ସେଠାରେ କ୍ଷୋଭ ଉପପନ୍ନ କରୁଥିବା କୌଣସି ବାହ୍ୟ ପଦାର୍ଥର ନହୋଇ ଗୁଣର ବିଷମତା ନିମିତ୍ତକ ମହଦାଦିର ଉତ୍ପତ୍ତି ହୁଏ ନାହିଁ ।

## अन्यथानुमितौ च ज्ञशक्तिवियोगात् ॥९॥

## ଅନ୍ୟଥାନୁମିତୌ ଚ ଜ୍ଞଶକ୍ତିବିଯୋଗାତ୍ ॥୨-୨-୯॥

ଆମ୍ଭେ ଅନପେକ୍ଷଗୁଣର ଅନୁମାନ କରୁନାହିଁ । କିନ୍ତୁ ଅନ୍ୟଥାନୁମିତୌ-ପ୍ରକାରାନ୍ତରରେ ପରସ୍ପର ସାପେକ୍ଷଗୁଣର ଅନୁମାନ କରୁଁ । ଯଦ୍ୱାରା ପୂର୍ବୋକ୍ତ ଦୋଷ ପ୍ରସକ୍ତ ନହେବ । ଏହା ଠିକ୍ ନୁହେଁ । ଜ୍ଞଶକ୍ତିଯୋଗାତ୍ କାରଣ- ଏପରି ସ୍ୱୀକାର କଲେ ଗୁଣରେ ଜ୍ଞଶକ୍ତି ନରହିଲେ ସ୍ୱୟଂ ସାମ୍ୟାବସ୍ଥାରେ ବିଚ୍ୟୁତ ନ ହୋଇ ପରସ୍ପର ଅଙ୍ଗାଙ୍ଗିଭାବ ହୁଅନ୍ତି ନାହିଁ । ତେଣୁ ମହଦାଦିର ଅନୁତ୍ପତ୍ତିଦୋଷ ସେହି ଅବସ୍ଥାରେ ରହେ ।

(୨) ମୂଳ-(କ) ଅଥାପି ସ୍ୟାଦନ୍ୟଥା ବୟମନୁମିମୀମହେ ଯଥା ନାୟମନନ୍ତରୋ ଦୋଷଃ ପ୍ରସଜ୍ୟେତ । ନହ୍ୟ ନପେକ୍ଷସ୍ୱଭାବାଃ କୂଟସ୍ଥାଶ୍ଚାସ୍ମଭିର୍ଗୁଣା ଅଭ୍ୟୁପଗମ୍ୟନ୍ତେ ପ୍ରମାଣାଭାବାତ୍ । କାର୍ଯ୍ୟବଶେନ ତୁ ଗୁଣାନାଂ ସ୍ୱଭାବୋଽଭ୍ୟୁପଗମ୍ୟତେ । ଯଥା ଯଥା କାର୍ଯ୍ୟୋତ୍ପାଦ ଉପପଦ୍ୟତେ ତଥା ତଥୈଷାଂ ସ୍ୱଭାବୋଽଭ୍ୟୁପଗମ୍ୟତେ । ଚଳଂ ଗୁଣବୃତ୍ତମିତି ଚାସ୍ତ୍ୟଭ୍ୟୁପଗମଃ । ତସ୍ମାତ୍ ସାମ୍ୟାବସ୍ଥାୟାମପି ବୈଷମ୍ୟୋପଗମଯୋଗ୍ୟା ଏବ ଗୁଣା ଅବତିଷ୍ଠନ୍ତ ।

(ଖ) ଏକମପି ପ୍ରଧାନସ୍ୟ ଜ୍ଞଶକ୍ତିବିଯୋଗାଦ୍ ବଚନାନୁପପତ୍ୟାଦୟଃ ପୂର୍ବୋକ୍ତା ଦୋଷାସ୍ତଦବସ୍ଥା ଏବ । ଜ୍ଞଶକ୍ତିମପି ତ୍ୱନୁମିମାନଃ ପ୍ରତିବାଦିତ୍ୱାନ୍ନିବର୍ତ୍ତେତ । ଚେତନ-ମେକମନେକପ୍ରପଞ୍ଚସ୍ୟ ଜଗତ ଉପାଦାନମିତି ବ୍ରହ୍ମବାଦପ୍ରସଙ୍ଗାତ୍ ।

(ଗ) ବୈଷମ୍ୟୋପଗମଯୋଗ୍ୟା ଅପି ଗୁଣାଃ ସାମ୍ୟାବସ୍ଥାୟଂ ନିମିତ୍ତାବାନ୍ନୈବ ବୈଷମ୍ୟଂ ଭବେରନ୍ । ଭଜମାନା ବା ନିମିତ୍ତାଭାବାବିଶେଷାତ୍ସର୍ବଦୈବ ବୈଷମ୍ୟଂ ଭଜେରନ୍ନିତି ପ୍ରସଜ୍ୟେତ ଏବାୟମନନ୍ତରୋଽପି ଦୋଷଃ ।

**(୨) ଭାଷାଂତର-** (କ) ପୂର୍ବୋପକ୍ଷ-ଯେପରି ପୂର୍ବୋକ୍ତଦୋଷ ପ୍ରସକ୍ତ ନ ହୁଏ, ତାହାକୁ ଆମ୍ଭେ ଅନ୍ୟପ୍ରକାରରେ ଅନୁମାନ କରୁଁ । ଆମ୍ଭେ ଗୁଣକୁ ନିରପେକ୍ଷ ସ୍ୱଭାବ ତଥା

କୂଟସ୍ଥରୂପରେ ସ୍ୱୀକାର କରୁନାହୁଁ । କାରଣ-ଏପରି ସ୍ୱୀକାର କରିବାରେ କୌଣସି କାରଣ ନାହିଁ । କାର୍ଯ୍ୟାନୁସାରେ ଗୁଣରସ୍ୱଭାବ ସ୍ୱୀକାର କରାଯାଏ । ଯେପରି କାର୍ଯ୍ୟର ଉତ୍ପତ୍ତି ଉତ୍ପନ୍ନ ହୁଏ, ସେହିପରି ତାହାର ସ୍ୱଭାବ ସ୍ୱୀକାର କରାଯାଏ । ଗୁଣର ସ୍ୱଭାବ ହେଉଛି ଚଳନରୂପ ଏହା ଆମ୍ଭସିଦ୍ଧାନ୍ତ । ତେଣୁ ସାମ୍ୟାବସ୍ଥାରେ ଗୁଣ ବୈଷମ୍ୟପ୍ରାପ୍ତିର ଯୋଗ୍ୟ ରହେ ।

(ଖ) ସିଦ୍ଧାନ୍ତ-ଏହିପରି ଅନୁମାନ କଲାପରେ ପ୍ରଧାନରେ ଜ୍ଞାନଶକ୍ତିର ଅଭାବ ହେଲେ ରଚନାରେ ଅନୁପପତ୍ତି ଇତ୍ୟାଦି ପୂର୍ବୋକ୍ତଦୋଷ ସେହି ଅବସ୍ଥାରେ ରହେ । ସେହି ଦୋଷର ପରିହାର ପାଇଁ ଯଦି ସାଂଖ୍ୟ ପ୍ରଧାନଠାରେ ଅନୁମାନ କରନ୍ତି । ତେବେ ସେ କଣ ପ୍ରତିପକ୍ଷଦ୍ୱାରା ନିବୃତ୍ତ ହେବ । କାରଣ-ଏକଚେତନ ଅନେକ ପ୍ରପଞ୍ଚରୂପ ଜଗତ୍‌ର ଉପାଦାନ କାରଣ ହୁଏ । ଏହା ବ୍ରହ୍ମବାଦର ପ୍ରସଙ୍ଗ ହେବ ।

(ଗ) ବୈଷମ୍ୟପ୍ରାପ୍ତିର ଯୋଗ୍ୟଗୁଣ ସାମ୍ୟାବସ୍ଥାରେ ନିମିତ୍ତକ ନ ହେଲେ ବୈଷମ୍ୟ ପ୍ରାପ୍ତି ହେବ ନାହିଁ । ଯଦି ସେମାନେ ନିମିତ୍ତକ ବିନା ବିଷମତାକୁ ପ୍ରାପ୍ତ କରିବା ଯୋଗ୍ୟ ହେବ, ତେବେ ନିମିତ୍ତର ଅଭାବ ପରି ସର୍ବଦା ହିଁ ବିଷମତାକୁ ପ୍ରାପ୍ତ ହେବ- ଏହିପ୍ରକାର ପୂର୍ବୋକ୍ତଦୋଷ (କାର୍ଯ୍ୟର ଅନୁପପତ୍ତି) ପ୍ରସକ୍ତ ହୁଏ ।

**विप्रतिषेधाच्चासमञ्जसम् ॥१०॥**

**(୧) ବିପ୍ରତିଷେଧାଚ୍ଚସମଞ୍ଜସମ୍ ॥୨-୨୧୦॥**

ବିପ୍ରତିଷେଧାତ୍ ଚ-ପୁନଶ୍ଚ ସାଂଖ୍ୟ ଲୋକ କେତେବେଳେ ମହଦ୍‌ରୁ ତନ୍ମାତ୍ରାର ଉତ୍ପତ୍ତି ସ୍ୱୀକାର କରନ୍ତି । କେତେବେଳେ ଅହଙ୍କାରଠାରେ । ଏହିପରି ପରସ୍ପର ବିରୁଦ୍ଧ ହେଲେ, ଅସମଞ୍ଜସମ୍-ସାଂଖ୍ୟମତ ଅସଙ୍ଗତ ହୁଏ ।

(୨) ମୂଳ-(କ) ପରସ୍ପର ବିରୁଦ୍ଧଶ୍ଚାୟଂ ସାଂଖ୍ୟାନାମଭ୍ୟୁପଗମଃ । କ୍ୱଚିତ୍‌ସପ୍ତେନ୍ଦ୍ରିୟାଣ୍ୟନୁକ୍ରାମନ୍ତି, କ୍ୱଚିଦେକାଦଶଃ । ତଥା କ୍ୱଚିନ୍ମହତସ୍ତାନ୍ମାତ୍ରସର୍ଗମୁପ ଦିଶନ୍ତି । କ୍ୱଚିଦହଂକାରାତ୍ । ତଥା କ୍ୱଚିସ୍ତ୍ରୀଣ୍ୟନ୍ତଃକରଣାନି ବର୍ଣ୍ଣୟନ୍ତି କ୍ୱଚିଦେକମିତି । ପ୍ରସିଦ୍ଧ ଏବ ତୁ ଶ୍ରୁତ୍ୟେଶ୍ୱରକାରଣବାଦିନ୍ୟା ବିରୋଧସ୍ତଦନୁବର୍ତ୍ତିନ୍ୟା ଚ ସ୍ମୃତ୍ୟା । ତସ୍ମାଦପ୍ୟସମଞ୍ଜସଂ ସାଂଖ୍ୟାନାଂ ଦର୍ଶନମିତି ।

(ଖ) ଅତ୍ରାହ-ନନ୍ୱୌପନିଷଦାନାମପ୍ୟସମଞ୍ଜସମେବ ଦର୍ଶନଂ ତପ୍ୟତାପକୟୋଃ ଜାତ୍ୟନ୍ତରଭାବାନଭ୍ୟୁପଗମାତ୍ । ଏକଂ ହି ବ୍ରହ୍ମ ସର୍ବାତ୍ମକଂ ସର୍ବସ୍ୟ ପ୍ରପଞ୍ଚସ୍ୟ କାରଣମଭ୍ୟୁପଗଚ୍ଛତାମେକସ୍ୟୈବାତ୍ମନୋ ବିଶେଷୌ ତପ୍ୟତାପକୌ ନ ଜାତ୍ୟନ୍ତରଭୂତାବିତ୍ୟଭ୍ୟୁପଗନ୍ତବ୍ୟଃ ସ୍ୟାତ୍ ।



(ଗ) ଯଦି ଚୈତୌ ତପ୍ୟତାପକାବେସକସ୍ୟାତ୍ମନୋ ବିଶେଷୌ ସ୍ୟାତାଂ ସ ତାଭ୍ୟାଂ ତାପ୍ୟତାପକାଭ୍ୟାଂ ନ ନିର୍ମୁଚ୍ୟେତ ଇତି ତାପୋପଶାନ୍ତୟେ ସମ୍ୟଗ୍‌ଦର୍ଶନ-ମୁପଦିଶଚ୍ଛାସ୍ତ୍ରମନର୍ଥକଂ ସ୍ୟାତ୍ । ନହ୍ୟୌଷ୍ଣ୍ୟ ପ୍ରକାଶଧର୍ମକସ୍ୟ ପ୍ରକାଶସ୍ୟ ତଦବସ୍ଥୈବ ତାଭ୍ୟାଂ ନିର୍ମୋକ୍ଷ ଉପଦ୍ୟତେ ।

**(୨) ଭାଷାଂତର-** (କ) ସାଂଖ୍ୟର ଏହିମତ ପରସ୍ପର ବିରୋଧ ଅଟେ, କାରଣ- ସେମାନେ କେତେବେଳେ ସପ୍ତଇନ୍ଦ୍ରିୟକୁ (ମନ, ତ୍ୱକ ଓ ପଞ୍ଚକର୍ମେନ୍ଦ୍ରିୟ) କହନ୍ତି । କେତେବେଳେ ଏକାଦଶ ଇନ୍ଦ୍ରିୟ (ପଞ୍ଚ ଜ୍ଞାନେନ୍ଦ୍ରିୟ ପଞ୍ଚ କର୍ମେନ୍ଦ୍ରିୟ ଓ ମନ) ଏବଂ କେତେବେଳେ ମହତ୍‌ଠାରୁ ତନ୍ମାତ୍ରା ଗୁଡ଼ିକ (ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ)ର ଉତ୍ପତ୍ତିକୁ ଉପଦେଶ କରନ୍ତି । କେତେବେଳେ ଅହଙ୍କାରରୁ ତନ୍ମାତ୍ରାକୁ ବର୍ଣ୍ଣନା କରନ୍ତି । କେତେବେଳେ ବୁଦ୍ଧିରୁ ମଧ୍ୟ । ଈଶ୍ୱରଙ୍କୁ ଜଗତ୍‌ର କାରଣ ରୂପରେ କହି ଶ୍ରୁତି ଏବଂ ତାହାର ଅନୁବର୍ତ୍ତିନୀ ସ୍ମୃତି ଦ୍ୱାରା ବିରୋଧ ପ୍ରସିଦ୍ଧ ହୁଏ । ତେଣୁ ସାଂଖ୍ୟ ଦର୍ଶନ ଅସଙ୍ଗତ ଅଟେ ।

(ଖ) ପୂର୍ବପକ୍ଷ- ବେଦାନ୍ତ ଦର୍ଶନ ଅସଙ୍ଗତ ବୋଲି କୁହାଯାଇଅଛି । କାରଣ- ସେଠାରେ, ତପ୍ୟ ଅର୍ଥାତ୍ ଦୁଃଖ ଭୋକ୍ତାଜୀବ ଓ ତାପକ ଅର୍ଥାତ୍ ଦୁଃଖପ୍ରଦ ସଂସାର)ର ଜାତିଭେଦ ସ୍ୱୀକାର କରାଯାଇ ନାହିଁ । ବେଦାନ୍ତରେ ଏକ ହିଁ ବ୍ରହ୍ମ ସର୍ବାତ୍ମକ ଅଟେ ଏବଂ ସଂପୂର୍ଣ୍ଣପ୍ରପଞ୍ଚର କାରଣ ହୁଏ- ଏହିପ୍ରକାର ସ୍ୱୀକାର କରୁଥିବା ତପ୍ୟ ଓ ତାପକ ଏକହିଁ ଆତ୍ମାର ବିଶେଷ ଅଟେ । ତେଣୁ ସେମାନେ ଭିନ୍ନ ନୁହଁନ୍ତି ବୋଲି ସ୍ୱୀକାର କରିବାକୁ ପଡ଼େ ।

(ଗ) ଯଦି ଏହି ତପ୍ୟ ଓ ତାପକ ଏକ ହିଁ ଆତ୍ମାର ବିଶେଷ ଅଟେ, ତେବେ ସେ ଏହି ତପ୍ୟତାପକଙ୍କଠାରୁ ମୁକ୍ତ ହୋଇପାରେ ନାହିଁ । କିନ୍ତୁ ତାପର ନିବୃତ୍ତି ପାଇଁ ତତ୍ତ୍ୱଜ୍ଞାନର ଉପଦେଶ କରୁଥିବା ଉପନିଷଦ୍ ଶାସ୍ତ୍ର ବ୍ୟର୍ଥ ହେବ । ଉଷ୍ଣତା ଓ ପ୍ରକାଶ ଧର୍ମଯୁକ୍ତ ପ୍ରଦୀପ ଅଟେ । ତାହା ଯୁକ୍ତ ଦୀପକ ଉଷ୍ଣତା ଓ ପ୍ରକାଶଧର୍ମରୁ ମୁକ୍ତ ହୋଇ ପାରନ୍ତି ନାହିଁ ।

(୩) ମୂଳ- (କ) ଯୋଽପି ଜଳତରଙ୍ଗବୀଚୀଫେନାଦ୍ୟୁପନ୍ୟାସଃ, ତତ୍ରାପି ଜଳାତ୍ମନ ଏକସ୍ୟ ବୀଚ୍ୟାଦୟୋ ବିଶେଷା ଆବିର୍ଭାବତିରୋଭାବରୂପେଣ ନିତ୍ୟା ଏବେତି ସମାନୋ ଜଳାତ୍ମନୋ ବୀଚ୍ୟାଦିଭିରନିର୍ମୋକ୍ଷଃ । ପ୍ରସିଦ୍ଧଶ୍ଚାୟଂ ତପ୍ୟତାପକୟୋର୍ଜାତ୍ୟ-ନ୍ତରଭାବୋ ଲୋକେ ।

(ଖ) ତଥାହି-ଅର୍ଥୀ ଚାର୍ଥଶ୍ଚାନ୍ୟୋନ୍ୟଭିନ୍ନୌ ଲକ୍ଷ୍ୟେତେ । ଯଦ୍ୟର୍ଥିନଃ ସ୍ୱତୋଽନ୍ୟୋଽର୍ଥୋ ନ ସ୍ୟାତ୍, ଯସ୍ୟାର୍ଥିନୋ ଯଦ୍‌ବିଷୟମର୍ଥିତ୍ୱଂ ସ ତସ୍ୟାର୍ଥୋ ନିତ୍ୟସିଦ୍ଧ

ଏବେତି ନ ତସ୍ୟ ତଦ୍‌ବିଷୟମର୍ଥିତ୍ୱଂ ସ୍ୟାତ୍, ଯଥା ପ୍ରକାଶାତ୍ମନଃ ପ୍ରଦୀପସ୍ୟ ପ୍ରକାଶାଖ୍ୟୋଽର୍ଥୋ ନିତ୍ୟସିଦ୍ଧ ଏବେତି ନ ତସ୍ୟ ତଦ୍‌ବିଷୟମର୍ଥିତ୍ୱଂ ଭବତି । ଅପ୍ରାପ୍ତେହ୍ୟର୍ଥେଽର୍ଥିନୋଽର୍ଥିତ୍ୱଂ ସ୍ୟାଦିତି ।

(ଗ) ତଥାର୍ଥସ୍ୟାପ୍ୟର୍ଥସ୍ୟତ୍ୱଂ ନ ସ୍ୟାତ୍ । ଯଦି ସ୍ୟାତ୍ ସ୍ୱାର୍ଥତ୍ୱମେବ ସ୍ୟାତ୍ । ନ ଚୈତଦସ୍ତି । ସଂବନ୍ଧଶବ୍ଦୌ ହ୍ୟେତାବର୍ଥୀ ଶ୍ଚାର୍ଥଶ୍ଚେତି । ଦ୍ୱୟୋଶ୍ଚ ସମ୍ବନ୍ଧିନୋଃ ସମ୍ବନ୍ଧଃ ସ୍ୟାନ୍ନୈକସ୍ୟୈବ ତସ୍ମାଦ୍‌ଭିନ୍ନାବେତାବର୍ଥର୍ଥିନୌ । ତଥା ନର୍ଥାନର୍ଥିନାବପି ।

(ଘ) ଅର୍ଥିନୋଽନୁକୂଲୋଽର୍ଥଃ ପ୍ରତିକୂଳୋନର୍ଥସ୍ତାଭ୍ୟାମେକପର୍ଯ୍ୟାୟେଣୋଭାଭ୍ୟାଂ ସଂବଦ୍ଧ୍ୟତେ । ତତ୍ରାର୍ଥସ୍ୟାଳ୍ପୀୟସ୍ତ୍ୱାଦ୍ ଭୟସ୍ତ୍ୱାଚ୍ଚାନର୍ଥସ୍ୟୋଭାବପ୍ୟର୍ଥାନର୍ଥାବନର୍ଥ ଏବେତି ତାପକଃ ସ ଉଚ୍ୟତେ । ତପ୍ୟସ୍ତୁ ପୁରୁଷୋ ଯ ଏକଃ ପର୍ଯ୍ୟାୟେତିଣାଭାଭ୍ୟାଂ ସମ୍ବଦ୍ଧ୍ୟେତ ଇତି ତୟୋସ୍ତପ୍ୟତାପକୟୋରେକାତ୍ମତାୟାଂ ମୋକ୍ଷନୁପପତ୍ତିଃ ।

**(୩) ଭାଷାଂତର-** (କ) ଯାହା ଜଳର ତରଙ୍ଗ, ଢେଉ, ଫେଣ ଇତ୍ୟାଦିର ଉପନ୍ୟାସ, ସେଠାରେ ଏକହିଁ ଜଳସ୍ୱରୂପର ତରଙ୍ଗାଦିବିଶେଷ କେତେବେଳେ ବିଲୀନପ୍ରକଟ ଓ କେତେବେଳେ ରୂପରେ ଲୀନ ହୁଏ । ତେଣୁ ଜଳସ୍ୱରୂପ ତରଙ୍ଗାଦିରୁ ମୁକ୍ତ ନ ହୋଇ ସମାନ ହୋଇ ରହେ । ପରନ୍ତୁ ତପ୍ୟତାପକର ସଂସାରରେ ପାର୍ଥକ୍ୟ ପ୍ରସିଦ୍ଧ ଅଟେ । ସେପରି ମଧ୍ୟ ଅର୍ଥ ଓ ଅର୍ଥୀ ପରସ୍ପର ଭିନ୍ନଭାବରେ ଲକ୍ଷିତ ହୁଅନ୍ତି ।

(ଖ) ଯଦି ଅର୍ଥରୁ ସ୍ୱତଃ ଅନ୍ୟ ଅର୍ଥ ପ୍ରତୀତି ନହୁଏ, ଯେଉଁ ଅର୍ଥର ଯେଉଁ ବିଷୟରେ ଅର୍ଥିତ୍ୱ ଅଛି, ତାହାପାଇଁ ସେହି ଅର୍ଥନିତ୍ୟ ଅଟେ । ତେଣୁ ତାହାର ତଦ୍‌ବିଷୟକ ଅର୍ଥିତ୍ୱ ହୁଏ ନାହିଁ । କାରଣ-ଅପ୍ରାପ୍ତ ଅର୍ଥରେ ଅର୍ଥିର ଅର୍ଥିତ୍ୱ ହୁଏ ।

(ଗ) ତଦ୍‌ବତ୍ ଅର୍ଥିର ଅର୍ଥତ୍ୱ ମଧ୍ୟ ହେବ ନାହିଁ । ଯଦି ଅର୍ଥତ୍ୱ ହୁଏ, ତାହା ନିଜପାଇଁ ହେବ । ପରନ୍ତୁ ଏହିପରି ହୁଏ ନାହିଁ । କାରଣ- ଯାହା ଅର୍ଥି ଓ ଅର୍ଥସମ୍ବନ୍ଧି ଶବ୍ଦ, ତାହା ସେହି ଦୁଇଟି ସମ୍ବନ୍ଧର ସମ୍ବନ୍ଧ ହୁଏ, ଗୋଟିକର ନୁହେଁ । ତେଣୁ ଏହି ଦୁଇଟି ଅର୍ଥ ଓ ଅର୍ଥୀଭିନ୍ନ ଅଟେ । ସେପରି ଅନର୍ଥ ଓ ଅନର୍ଥୀ- ଉଭୟେ ଭିନ୍ନ ଅଟନ୍ତି । ତେଣୁ ଏହି ଦୁଇଟି ଅର୍ଥ ଓ ଅର୍ଥୀଭିନ୍ନ ଅଟେ । ସେପରି ଅନର୍ଥ ଓ ଅନର୍ଥୀ- ଉଭୟେ ଭିନ୍ନ ଅଟନ୍ତି ।

(ଘ) ଅର୍ଥୀର ଅନୁକୂଳ ଅର୍ଥ ଓ ପ୍ରତିକୂଳ ଅନର୍ଥ ହୁଏ । ଗୋଟିକର ଏହି ଦୁଇଟିର ସହିତ କ୍ରମରେ ସମ୍ବନ୍ଧ ହୁଏ । ସେଠାରେ ଅର୍ଥର ଅଳ୍ପ ଓ ଅନର୍ଥର ଅଧିକ ହେଲେ ଅର୍ଥ ଓ ଅନର୍ଥ ମିଶି ଅନର୍ଥ ହୁଏ । ତେଣୁ ତାକୁ ତାପକ କୁହାଯାଏ । ଯାହା ଏକ କ୍ରମରେ ଦୁଇଟି ସମ୍ବନ୍ଧ କରେ, ସେହି ପୁରୁଷ ତପ୍ୟ ଅଟେ । ସେହି ତପ୍ୟ ଓ ତାପକର ଏକରୂପ ହେଲେ ମୋକ୍ଷର ଉପପତ୍ତି ହୁଏ ନାହିଁ ।



(୪) ମୂଳ-(କ) ଜାତ୍ୟନ୍ତରଭାବେ ତୁ ତତ୍‌ସଂଯୋଗହେତୁ ପରିହାରତ୍‌ସ୍ୟାଦପି କଦାଚିନ୍‌ମୋକ୍ଷକ୍ଷପନ୍ନଗିତି । ଅତ୍ରୋଚ୍ୟତେନ । ଏକତ୍ୱାଦେବ ତପ୍ୟତାପକଭାବାନୁପପତ୍ତିଃ । ଭବେଦେଷ ଦୋଷୋ ଯଦ୍ୟେକାତ୍ମତାୟାଂ ତପ୍ୟତାପକାବନ୍ୟୋନ୍ୟସ୍ୟ ବିଷୟବିଷୟିଭାବଂ ପ୍ରତିପଦ୍ୟେୟାତାମ୍ନା ନତ୍ୱେତଦସ୍ତ୍ୟେକତ୍ୱାଦେବ । ତହ୍ୟଗ୍ନିରେକଃ ସନ୍‌ସ୍ୱମାତ୍ମାନଂ ଦହତି ପ୍ରକାଶୟତି ବା ସତ୍ୟପୌଷ୍ୟପ୍ରକାଶାଦିଧର୍ମଭେଦେ ପରିଣାମିତ୍ୱେ ଚ ।

(ଖ) କିଂ କୂଟସ୍ଥେ ବ୍ରହ୍ମଣ୍ୟେକସ୍ମିଂସ୍ତପ୍ୟତାପକଭାବଃ ସମ୍ଭବେତ୍ । କ୍ୱପୁନରୟଂ ତପ୍ୟତାପକଭାବଃ ସ୍ୟାଦିତି । ଉଚ୍ୟତେ-କିଂ ନ ପଶ୍ୟସି କର୍ମଭୂତୋ ଜୀବଦ୍ଦେହସ୍ତ-ପ୍ୟସ୍ତାପକଃ ସବିତେତି । ନନୁ ତପ୍ତିର୍ନାମ ଦୁଃଖଂ ସା ଚେତୟିତୁର୍ନାଚେତନସ୍ୟ ଦେହସ୍ୟ ।

(ଗ) ଯଦି ହି ଦେହସ୍ୟୈବ ତପ୍ତିଃ ସ୍ୟାତ୍ ସା ଦେହନାଶେ ସ୍ୱୟମେବ ନଶ୍ୟତୀତି ତନ୍ନାଶାୟ ସାଧନଂ ନୈଷିତବ୍ୟଂ ସ୍ୟାଦିତି । ଉଚ୍ୟତେ-ଦେହାଭାବେଽପି କେବଳସ୍ୟ ଚେତନସ୍ୟ ତପ୍ତିର୍ନଦୃଷ୍ଟା । ନ ଚ ତ୍ୱୟାପି ତପ୍ତିର୍ନାମ ବିକ୍ରିୟା ଚେତୟିତୁ! କେବଳସ୍ୟେଷ୍ୟତେ । ନାପି ଦେହଚେତନୟୋଃ ସଂହତତ୍ୱମଶୁଦ୍ଧ୍ୟାଦିଦୋଷପ୍ରସଙ୍ଗାତ୍ । ନଚତପ୍ତେରେବ ତପ୍ତିମଭ୍ୟୁପଗଚ୍ଛସି ।

(ଘ) କଥଂ ତବାପି ତପ୍ୟତାପକଭାବଃ ସତ୍ୱଂ ତପ୍ୟଂ ତାପକଂ ଚରଜ ଇତି ଚେତ୍ । ନା ତାଭ୍ୟାଂ ଚେତନସ୍ୟ ସଂହତତ୍ୱାନୁପପତ୍ତେଃ । ସତ୍ୱାନୁରୋ-ଧିତ୍ୱାଚ୍ଚେତନୋଽପି ତପ୍ୟତ ଇବେତି ଚେତ୍, ପରମାର୍ଥତସ୍ତର୍ହି ନୈବ ତପ୍ୟତ ଇତ୍ୟାପତତୀବଶବ୍ଦପ୍ରୟୋଗାତ୍ । ନ ଚେତ୍ ତପ୍ୟତେ ନେବଶବ୍ଦୋ ଦୋଷାୟ ।

(ଙ) ନହି ଡୁଣ୍ଡୁଭଃ ସର୍ପ ଇବେତ୍ୟୋତାବତା ସବିଷୋ ଭବତି । ସର୍ପୋ ବା ଡୁଣ୍ଡୁଭ ଇବେତ୍ୟେତାବତା ନିର୍ବିଷୋ ଭବତି । ଅତଶ୍ଚାବିଦ୍ୟାକୃତୋଽୟଂ ତପ୍ୟତା-ପକଭାବୋ ନ ପରମାର୍ଥିକ ଇତ୍ୟଭ୍ୟୁପଗନ୍ତବ୍ୟମିତି । ନୈବଂ ସତି ମମାପି କିଞ୍ଚିଦୁଷ୍ୟତି । ଅଥ ପରମାର୍ଥିକମେବ ଚେତନସ୍ୟ ତପ୍ୟତ୍ୱମଭ୍ୟୁପଗଚ୍ଛସି ତବୈବ ସୁତରାମନିର୍ମୋକ୍ଷଃ ପ୍ରସଜ୍ୟେତ, ନିତ୍ୟତ୍ୱାଭ୍ୟୁପଗମାଚ୍ଚ ତାପକସ୍ୟ ।

(୪) ଭାଷାଂତର-(କ) ଯଦି ସେଥିରେ ଭେଦ ହୁଏ, ତାହାଲେ ତାହା ସଂଯୋଗ ହେତୁର ପରିହାର ହେଲେ ବେଳେବେଳେ ମୋକ୍ଷ ପ୍ରସଙ୍ଗ ହୋଇପାରେ । ସିଦ୍ଧାନ୍ତ-ଏହି ବିଷୟରେ ଆମ୍ଭେ କହୁଁ ଯେ- ଏହା ନୁହେଁ । କାରଣ-ପରମାର୍ଥରେ ଏକତ୍ୱ ହେଲେ ତପ୍ୟତାପକଭାବ ହୁଏ ନାହିଁ । ଯଦି ଏକରୂପରେ ତପ୍ୟତାପକ ପରସ୍ପର ବିଷୟବିଷୟିଭାବକୁ

ପ୍ରାପ୍ତ ହୁଏ, ତେବେ ଏହା ଦୋଷ ହୁଏ । ପରନ୍ତୁ ଏଠାରେ ଏକତ୍ୱ ହେଲେ ଏହିପରି ହୁଏ ନାହିଁ । ଏକ ଅଗ୍ନି ଯଦ୍ୟପି ଉଷ୍ଣତା, ପ୍ରକାଶାଦିଭିନ୍ନ ଧର୍ମଯୁକ୍ତ ଓ ପରିଣାମଶୀଳ ହୁଏ, ତେବେ ସେ ନିଜକୁ ଜଳାଏ ନାହିଁ କି ପ୍ରକାଶିତ କରେ ନାହିଁ ।

(ଖ) ପୁନଶ୍ଚ ଏକକୂଟସ୍ଥ ବ୍ରହ୍ମରେ ତପ୍ୟତାପକଭାବ କିପରି ସମ୍ଭବ ହେବ ? ପୁଣି ଏହି ତପ୍ୟତାପକଭାବ କେଉଁଠି ହେବ ? ତେଣୁ କୁହାଯାଇଅଛି-କର୍ମରୂପ ଜୀବିତ ଦେହ ତପ୍ୟ ଓ ସୂର୍ଯ୍ୟ ତାପକ ବୋଲି କଣ ଦେଖେ ନାହିଁ କି ? ପରନ୍ତୁ ତପ୍ତି ଅର୍ଥ ଦୁଃଖ । ସେହିଁ ଚେତନର ହୁଏ । କିନ୍ତୁ ଅଚେତନ ଦେହର ନୁହେଁ ।

(ଗ) ଯଦି ଶରୀରକୁ ଦୁଃଖ ହୁଏ, ତେବେ ତାହା ଦେହରେ ବିନାଶ ହେଲା ପରେ ସ୍ୱୟଂ ନଷ୍ଟ ହୁଏ । ତାହାକୁ ନାଶ କରିବା ପାଇଁ ସାଧନକୁ ଖୋଜିବା ଆବଶ୍ୟକ ନୁହେଁ । ତେଣୁ କୁହାଯାଇଅଛି- ଦେହର ଅଭାବରେ କେବଳ ଚେତନ ଦୁଃଖ ଦେଖେ ନାହିଁ । ତପ୍ତିକ୍ରିୟା ଚେତନର ବୋଲି ତୁମେ ସ୍ୱୀକାର କର ଏବଂ ତାପକୁ ତାପହେବା ହିଁ ସ୍ୱୀକାର କରନାହିଁ ।

(ଘ) ତେବେ ତୁମ୍ଭମତରେ ତପ୍ୟତାପକଭାବ କିପରି ସିଦ୍ଧ ହେବ । ଯଦି କହଯେ ସତ୍ତ୍ୱଗୁଣ ଓ ରଜୋଗୁଣ ସହିତ ଚେତନର ସଂହତି ନାହିଁ । ଯଦି କହ ଯେ- ସତ୍ତ୍ୱର ଅନୁସାରେ ଚେତନ ନିଜେ ତପ୍ତ ହୁଏ ଏବଂ ଦୁଃଖ ଭୋଗକରେ । କିନ୍ତୁ ପରମାର୍ଥରେ ସେହି ଦୁଃଖ ନୁହେଁ । କାରଣ- 'ଇବ' ଶବ୍ଦର ପ୍ରୟୋଗ ହେଲେ ଏହାହିଁ ହୁଏ । ଯଦି ପରମାର୍ଥତଃ ଚେତନ ତପ୍ତ ହୁଏ ନାହିଁ, ତେବେ ଇବଶବ୍ଦ ଦୋଷନିମିତ୍ତକ ହୁଏ ନାହିଁ ।

(ଙ) 'ଡୁଣ୍ଡୁ ଭି ହିଁ ସର୍ପପରି' ଏହିପରି କହିଲେ ଡୁଣ୍ଡୁଭ ବିଷଯୁକ୍ତ ହୁଏ ନାହିଁ ଏବଂ ସର୍ପ ମଧ୍ୟ ଡୁଣ୍ଡୁଭ ପରି କହିଲେ ସର୍ପ ବିଷରହିତ ହୁଏ ନାହିଁ ତେଣୁ ତପ୍ୟତାପକ ଭାବ ଅବିଦ୍ୟାକୃତ ଅଟେ । ପରମାର୍ଥିକ ନୁହେଁ- ଏହାହିଁ ସ୍ୱୀକାର କରିବା ଉଚିତ । ଏପରି ସ୍ୱୀକାର କଲେ ଆମ୍ଭ ପକ୍ଷରେ କୌଣସି ଦୋଷ ହୁଏ ନାହିଁ । ଯଦି ତୁମେ ଚେତନକୁ ପାରମାର୍ଥିକତପ୍ୟ ବୋଲି କହ, ତେବେ ତୁମ୍ଭରିମତରେ ମୋକ୍ଷଭାବ ପ୍ରସକ୍ତ ହେବ । କାରଣ ତୁମ୍ଭ ସିଦ୍ଧାନ୍ତରେ ତାପକ (ରଜୋଗୁଣ) ନିତ୍ୟ ବୋଲି ସ୍ୱୀକାର କରାଯାଇଅଛି ।

(୫) ମୂଳ-(କ) ତପ୍ୟତାପକଶକ୍ତ୍ୟୋର୍ନି ତ୍ୟତ୍ୱେଽପି ସନିମିତ୍ତସଂଯୋଗପେକ୍ଷତ୍ୱାତ୍ ତପ୍ତେଃ ସଂଯୋଗନିମିତ୍ତାଦର୍ଶନନିବୃତ୍ତାବାତ୍ୟନ୍ତିକଃ ସଂଯୋଗୋପରମଃ, ତତଶ୍ଚାତ୍ୟନ୍ତିକୋ ମୋକ୍ଷ ଉପପନ୍ନ ଇତି ଚେତ୍ । ନା ଅଦର୍ଶନସ୍ୟ ତମସୋ ନିତ୍ୟତ୍ୱାଭ୍ୟୁପଗମାତ୍ ।



(ଖ) ଗୁଣାନାଂ ଚେଦ୍‌ଭବାଭିଭବୟୋରନିୟତତ୍ୱାଦନିୟତଃ ସଂୟୋଗନିମିତ୍ତୋପରମ ଇତି ବିୟୋଗସ୍ୟାପ୍ୟନିୟତତ୍ୱାତ୍ ସାଂଖ୍ୟସ୍ୟୈବାନିର୍ମୋକ୍ଷୋଽପରିହାର୍ଯ୍ୟ ସ୍ୟାତ୍ । ଔପନିଷଦସ୍ୟ ତ୍ୱାତ୍ମୈକତ୍ୱାଭ୍ୟୁପଗମାଦେକସ୍ୟ ଚ ବିଷୟବିଷୟି ଭାବାନୁପପତ୍ତେର୍ବିକାରଭେଦସ୍ୟ ଚ ବାଚାରମ୍ଭଣମାତ୍ରତ୍ୱଶ୍ରବଣାଦନିର୍ମୋକ୍ଷଶଙ୍କା ସ୍ୱପ୍ନେଽପି ନୋପଜାୟତେ । ବ୍ୟବହାରେ ତୁ ଯତ୍ର ଯଥା ଦୃଷ୍ଟସ୍ତପ୍ୟତାପକଭାବସ୍ତତ୍ର ତଥୈବ ସ ଇତି ନ ଚୋଦୟିତବ୍ୟଃ ପରିହର୍ତ୍ତବ୍ୟୋ ବା ଭବତି ।

**(୫) ଭାଷାଂତର-** (କ) ଯଦି କୁହାଯାଏ- ତପ୍ୟ ଓ ତାପକଶକ୍ତି ନିତ୍ୟ ହେଲେ ତାପ ନିମିତ୍ତ ସହ ସଂଯୋଗକୁ ଅପେକ୍ଷା କରେ, ତେଣୁ ସଂଯୋଗନିମିତ୍ତ ଅଜ୍ଞାରେ ନିବୃତ୍ତି ଜାଣିଲେ ସଂଯୋଗ ଆତ୍ୟନ୍ତିକ ଉପରତ ହୁଏ । ତେଣୁ ଆତ୍ୟନ୍ତିକ ମୋକ୍ଷ ଉପପନ୍ନ ହୁଏ-ଏହାହିଁ କହିବା ଠିକ୍ । କାରଣ-ଅଜ୍ଞାନରୂପ ତମୋଗୁଣ ସର୍ବଦା ସ୍ୱୀକାର କରାଯାଇଅଛି । ଗୁଣର ଉଦ୍‌ଭବ ଓ ଅଭିଭବ (ଲୟ) ଅନିୟତ ହେଲେ ସଂଯୋଗ ନିମିତର ଉପରମ ଅନିୟତ ହୁଏ । ସେପରି ସେମାନଙ୍କର ବିୟୋଗ ଅନିୟତ ହେଲେ ସାଂଖ୍ୟମତରେ ମୋକ୍ଷାଭାବ ଅପରିହାର୍ଯ୍ୟ ହୁଏ । ବେଦାନ୍ତରେ ଆତ୍ମୈକତ୍ୱ ସ୍ୱୀକାର କଲେ ଗୋଟିକରେ ବିଷୟବିଷୟି ଭାବ ହୁଏ ନାହିଁ । ବିକାରଭେଦ କିନ୍ତୁ ବାଚାରମ୍ଭଣମାତ୍ର ଅଟେ । ଏହିପରି ଶ୍ରୁତି ହେଲେ ମୋକ୍ଷଭାବର ଶଙ୍କା ସ୍ୱପ୍ନରେ ମଧ୍ୟ ଉପପନ୍ନ ହୁଏ ନାହିଁ । ପରନ୍ତୁ ବ୍ୟବହାରରେ ଯେଉଁଠି ଯେପରି ତପ୍ୟତାପକଭାବ ଦେଖାଯାଏ, ସେ ସେଠାରେ ସେହିପରି ହୁଏ । ତେଣୁ ଏହି ବିଷୟରେ ଶଙ୍କା କରିବା ଅଥବା ପରିହାର କରିବା ଉଚିତ ନୁହେଁ ।

## २ महद्दीर्घाधिकरम् । सु० ॥११॥
## ମହାଦୀର୍ଘାଧିକରଣ -୨

(୧) ମୂଳ - (କ) ପ୍ରଧାନକାରଣବାଦୋ ନିରାକୃତଃ । ପରମାଣୁ କାରଣବାଦ ଇଦାନୀଂ ନିରାକର୍ତ୍ତବ୍ୟଃ । ତତ୍ରାଦୌ ତାବଦ୍ୟୋଽଣୁ ବାଦିନା ବ୍ରହ୍ମବାଦିନି ଦୋଷ ଉତ୍ପ୍ରେକ୍ଷ୍ୟତେ ସ ପ୍ରତିସମାଧୀୟତେ । ତତ୍ରାୟଂ ବୈଶେଷିକାଣାମଭ୍ୟପଗମଃ – କାରଣ ଦ୍ରବ୍ୟ ସମବାୟିନୋ ଗୁଣାଃ କାର୍ଯ୍ୟଦ୍ରବ୍ୟେ ସମାନ ଜାତୀୟଂ ଗୁଣାନ୍ତର ମାରଭନ୍ତେ । ଶୁକ୍ଳେଭ୍ୟସ୍ତନ୍ତୁଭ୍ୟଃ ଶୁକ୍ଳସ୍ୟ ପଟସ୍ୟ ପ୍ରସବ ଦର୍ଶନାତ୍ତଦ୍‌ବିପର୍ଯ୍ୟୟାଦର୍ଶନାଚ୍ଚ ।

(ଖ) ତସ୍ମାଚ୍ଚେତନସ୍ୟ ବ୍ରହ୍ମଣୋ ଜଗତ୍ କାରଣତ୍ୱେଽଭ୍ୟୁପଗମ୍ୟମାନେ କାର୍ଯ୍ୟେଽପି ଜଗତି ଚୈତନ୍ୟଂ ସମବେୟାତ୍ । ତଦଦର୍ଶନାତ୍ତୁ ନ ଚେତନଂ ବ୍ରହ୍ମ ଜଗତ୍ କାରଣଂ ଭବିତୁମର୍ହତୀତି । ଇମମଭ୍ୟୁପଗମଂ ତଦୀୟୟୈବ ପ୍ରକ୍ରିୟାୟ ବ୍ୟଭିଚାରୟତି ।

(୧) ଭାଷାଂତର- (କ) ପ୍ରଧାନ କାରଣ ବାଦର ନିରାକରଣ କରାଗଲା ବର୍ତ୍ତମାନ ପରମାଣୁ କାରଣ ବାଦର ନିରାକରଣ କରାଯିବ । ଏହି ବିଷୟରେ ପ୍ରଥମେ ପରମାଣୁ କାରଣବାଦିମାନେ ବ୍ରହ୍ମବାଦୀଙ୍କ ଉପରେ ଯେଉଁ ଦୋଷ ଲଦି ଦେଇଛନ୍ତି, ତାହାର ସମାଧାନ କରାଯାଉଅଛି । ସେଠାରେ ବୈଶେଷିକଙ୍କର ସିଦ୍ଧାନ୍ତ ଯେ- କାରଣ ଦ୍ରବ୍ୟରେ ସମବାୟ ସମ୍ବନ୍ଧିରେ ବିଦ୍ୟମାନ । ଗୁଣ, କାର୍ଯ୍ୟ ଓ ଦ୍ରବ୍ୟରେ ସମାନ ଜାତୀୟ ଅନ୍ୟ ଗୁଣକୁ ଆରମ୍ଭ କରେ । ଯଥା-ଶୁକ୍ଳତନ୍ତୁ ଦ୍ୱାରା ଶୁକ୍ଳପଟର ଜନ୍ମ ଦେଖାଯାଏ । ତାହାର ବିପର୍ଯ୍ୟୟ ହେଲେ ଶୁକ୍ଳପଟ ଦେଖାଯାଏ ନାହିଁ ।

(ଖ) ତେଣୁ ଅଚେତନ ବ୍ରହ୍ମକୁ ଜଗତ୍‌ର କାରଣ ରୂପରେ ସ୍ୱୀକାର କଲେ କାର୍ଯ୍ୟ ଜଗତରେ ମଧ୍ୟ ଚେତନା ସମ୍ବନ୍ଧିତ ହେବା ଉଚିତ । କିନ୍ତୁ ଏହାର ଦର୍ଶନ ନ ହେଲେ ଚେତନ ବ୍ରହ୍ମ ଜଗତ୍‌ର କାରଣ ହୁଏ ନାହିଁ । ତାହାର ଏହି ସିଦ୍ଧାନ୍ତକୁ ନିଜର ପ୍ରକ୍ରିୟା ଦ୍ୱାରା ବ୍ୟଭିଚରିତ କରୁଛି ।

**महद्दीर्घवद्वा ह्रस्वपरिमण्डलाभ्याम् ॥११॥**

**(୨)-ମହଦ୍‌ଦୀର୍ଘ ବଦ୍‌ବା ହ୍ରସ୍ୱପରି ମଣ୍ଡଳାଭ୍ୟାମ୍ । ୨-୨-୧୧**

ହ୍ରସ୍ୱପରି ମଣ୍ଡଳଭ୍ୟାମ୍-ହ୍ରସ୍ୱ, ଦ୍ୟଣୁକ ଓ ପରମାଣୁଦ୍ୱାରା, ମହଦ୍‌ଦୀର୍ଘ ବଦ୍‌ବା ମହତ ଓ ଦୀର୍ଘ ଉତ୍ପନ୍ନ ହୁଏ । ସେହିପରି ଚେତନ ବ୍ରହ୍ମରୁ ଅଚେତନ ଜଗତ୍ ଉତ୍ପନ୍ନ ହୁଏ ।

(୩) ମୂଳ (କ) - ଏଷା ତେଷାଂ ପ୍ରକ୍ରିୟା - ପରିମାଣବଃ କିଳ କଂଚିତ୍ କାଳ ମନାରବ୍ଧ କାର୍ଯ୍ୟ ଯଥା ଯୋଗଂ ରୂପାଦିମନ୍ତଃ ପରିମାଣ୍ଡଲ୍ୟ ପରିମାଣାଶ୍ଚ ତିଷ୍ଠନ୍ତି । ତେ ଚ ପଶ୍ଚାଦଦୃଷ୍ଟାଦି ପୁରଃସରାଃ ସଂଯୋଗ ସଚିବାଶ୍ଚ ସନ୍ତୋ ଦ୍ୟଣୁକାଦିକ୍ରମେଣ କୃତ୍ସ୍ନଂ କାର୍ଯ୍ୟଜାତ ମାରଭନ୍ତେ । କାରଣ ଗୁଣାଶ୍ଚ କାର୍ଯ୍ୟେ ଗୁଣାନ୍ତରମ୍ ।

(ଖ) ଯଦା ଦ୍ୱୌ ପରମାଣୁ ଦ୍ୟଣୁକମାରଭେତେ, ତଦା ପରମାଣୁଗତା ରୂପାଦି ଗୁଣ ବିଶେଷାଃ ଶୁକ୍ଳାଦୟୋ ଦ୍ୟଣୁକେ ଶୁକ୍ଳାଦୀନ ପରାମାର ଭତେ, ଦ୍ୟଣୁକସ୍ୟ ପରିମାଣାନ୍ତର ଯୋଗାଭ୍ୟୁପଗମାତ୍ । ଅଣୁତ୍ୱ ହ୍ରସ୍ୱତ୍ୱେ ହି ଦ୍ୟଣୁକର୍ବର୍ତ୍ତିନୀ ପରିମାଣେ ବର୍ଣ୍ଣୟନ୍ତି ।

(ଗ) ଯଦାପି ଦ୍ୱେ ଦ୍ୟଣୁକେ ଚତୁରଣୁକମାରଭେତେ ତଦାପି ସମାନଂ ଦ୍ୟଣୁକ ସମବାୟିନାଂ ଶୁକ୍ଳାଦୀନାମାରମ୍ଭକତ୍ୱମ୍ । ଅଣୁତ୍ୱହ୍ରସ୍ୱତେ ତୁ ଦ୍ୟଣୁକ ସମବାୟିନୀ ଅପି ନୈବାରଭେତେ, ଚତୁରଣୁକସ୍ୟ ମହତ୍ୱ ଦୀର୍ଘତ୍ୱ ପରିମାଣ ଯୋଗାଭ୍ୟୁ ପଗମାତ୍ । ଯଦାପି ବହବଃ ପରମାଣବୋ ବହୂନି ବା ଦ୍ୟଣୁକାନି ଦ୍ୟଣୁକସହିତୋ ବା ପରମାଣୁଃ କାର୍ଯ୍ୟମାରଭତେ ତଦାପି ସମାନୈଷା ଯୋଜନା ।

 

(ଘ) ତଦେବଂ ଯଥା ପରିମାଣୋଃ ପରିମଣ୍ଡଳାତ ସତୋଽଣୁ ହ୍ରସ୍ୱଂ ଚ ଦ୍ୟଣୁକ୍ଂ ଜାୟତେ ବହାଦୀର୍ଘଂ ବ ତ୍ର୍ୟଣୁକାଦି ପରିମଣ୍ଡଳମ୍ ଯଥା ବା ଦ୍ୟଣୁକାଦଣୋର୍ହ୍ରସ୍ୱଦ୍ୱାଚ୍ଚ ସତୋ ମହଦ୍‌ଦୀର୍ଘଂ ଚ ତ୍ର୍ୟଣୁକଂ ଜାୟତେ ନାଣୁ ନୋ ହ୍ରସ୍ୱମ୍, ଏବଂ ଚେତନାଦ୍ ବ୍ରହ୍ମଣୋଃ ଚେତନଂ ଜଗର୍ଜ୍ଜନିଷ୍ୟତ ଇତ୍ୟଭ୍ୟୁପଗମେ କିଂ ତବ ଛିନ୍ନମ୍ ।

(ଙ) ଅଥ ମନ୍ୟସେ ବିରୋଧିନା ପରିମାଣାନ୍ତରେଣାକ୍ରାନ୍ତଂ କାର୍ଯ୍ୟଦ୍ରବ୍ୟଂ ଦ୍ୟଣୁକାଦୀତ୍ୟତୋ ନାରମ୍ଭକାଣି କାରଣଗତାନି ପାରିମାଣ୍ଡଲ୍ୟାଦାନୀ ତ୍ୟଭ୍ୟୁପଗଚ୍ଛାମି, ନତୁ ଚେତନା ବିରୋଧିନା ଗୁଣାନ୍ତରେଣ ଜଗତ ଆକ୍ରାନ୍ତତ୍ୱମସ୍ତି, ଯେନ କାରଣଗତା ଚେତନା କାର୍ଯ୍ୟେ ଚେତନାନ୍ତରଂ ଯରଭେତ । ନହ୍ୟ ଚେତନା ନାମ ଚେତନାବିରୋଧୀ କଶ୍ଚିଦ୍‌ଗୁଣୋଽସ୍ତି, ଚେତନାପ୍ରତିଷେଧମାତ୍ରତ୍ୱାତ୍ । ତସ୍ମାତ୍ ପାରିମାଣ୍ଡଲ୍ୟାଦି ବୈଷମ୍ୟାତ୍ ପ୍ରାପ୍ନୋତି ଚେତନାୟା ଆରମ୍ଭ କତ୍ୱମିତି ।

**(୩) ଭାଷାଂତର-** (କ) ସେମାନଙ୍କର ଏହି ପ୍ରକ୍ରିୟା ଯଥାଯୋଗରୂପାଦି ଯୁକ୍ତ ପାରିମାଣ୍ଡଲ୍ୟ ପରିମାଣ (ଅଣୁଗତ ପରିମାଣ) ବିଶିଷ୍ଟ ପରମାଣୁ କିଛି କାଳ ପର୍ଯ୍ୟନ୍ତ କାର୍ଯ୍ୟକୁ ଆରମ୍ଭ ନ କରି ରହେ । ପରେ ସେମାନେ ଅଦୃଷ୍ଟାଦୀ କାରଣ ପୂର୍ବକ ସଂଯୋଗ ସହକାରୀ ଯୁକ୍ତ ହେଲେ ଦ୍ୟଣୁକାଦି କ୍ରମରେ ସଂପୂର୍ଣ୍ଣ କାର୍ଯ୍ୟସମୂହ ଆରମ୍ଭ ହୁଏ । କାରଣର ଗୁଣଗୁଡ଼ିକ କାର୍ଯ୍ୟରେ ସମାନ ଜାତୀୟ ଅନ୍ୟ ଗୁଣକୁ ଆରମ୍ଭ କରେ ।

(ଖ) ବର୍ତ୍ତମାନ ଦୁଇଟି ପରମାଣୁ ଦ୍ୟଣୁକକୁ ଆରମ୍ଭ କରନ୍ତି । ପରନ୍ତୁ ପରମାଣୁ ଗତ ଗୁଣ ବିଶେଷ ପାରିମାଣ୍ଡଲ୍ୟ ଦ୍ୟଣୁକରେ ଅନ୍ୟ ପାରିମାଣ୍ଡେ ଆରମ୍ଭ କରେ ନାହିଁ । କାରଣଦ୍ୟଣୁକରେ ଅନ୍ୟ ପରିମାଣର ସମ୍ବନ୍ଧ ସ୍ୱୀକାର କରାଯାଇଛି । ଦ୍ୟଣୁକବର୍ତ୍ତୀ ପରିମାଣକୁ ଅଣୁତ୍ୱ ଓ ହସ୍ତତ୍ୱ ରୂପରେ ବର୍ଣ୍ଣନା କରାଯାଇଅଛି ।

(ଗ) ପରନ୍ତୁ ବର୍ତ୍ତମାନ ଦୁଇଟି ଦ୍ୟଣୁକ ଚତୁରଣୁକକୁ ଆରମ୍ଭ କରନ୍ତି ଏବଂ ଦ୍ୟଣୁକରେ ସମବାୟ ସମ୍ବନ୍ଧରେ ବିଦ୍ୟମାନ ଶୁକ୍ଳାଦିଗୁଣକୁ ଆରମ୍ଭ କରନ୍ତି । ପରନ୍ତୁ ଅଣୁତ୍ୱ ଓ ହ୍ରସ୍ତତ୍ୱ ଦ୍ୟଣୁକରେ ସମବାୟ ସମ୍ବନ୍ଧରେ ରହିଲେ ମଧ ସେମାନେ କାର୍ଯ୍ୟର ଆରମ୍ଭକ ନୁହଁନ୍ତି । କାରଣ-ଚତୁରଣୁବର ମହତ୍ୱ ଓ ଦୀର୍ଘତ୍ୱ ପରିମାଣ ଯୋଗ ବୋଲି ସ୍ୱୀକାର କରାଯାଇଛି । ପରନ୍ତୁ ଯେତେବେଳେ ବହୁତ ପରିମାଣ, ବହୁତ ଦ୍ୟଣୁକ ଅଥବା ଦ୍ୟଣୁକ ସହିତ ପରମାଣୁ କାର୍ଯ୍ୟ ଆରମ୍ଭ କରନ୍ତି, ସେତେବେଳେ ଏହାର ଯୋଜନା ସମାନ ପ୍ରକାର ହୁଏ ।

(ଘ) ତେଣୁ ଏହି ପ୍ରକାର ଯଦି ପରିମଣ୍ଡଳ ପରମାଣରୁ ଅଣୁହ୍ରସ୍ୱଦ୍ୟଣୁକ ଉତ୍ପନ୍ନ ହୁଏ, ତେବେ ମହତ ଓ ଦୀର୍ଘ ଦ୍ୟଣୁକ ପ୍ରଭୃତି ଉତ୍ପନ୍ନ ହୁଅନ୍ତି । କିନ୍ତୁ ପରିମଣ୍ଡଳ ଉତ୍ପନ୍ନ ହୁଅନ୍ତି ନାହିଁ । ଅଥବା ଯେପରି ଅଣୁ ଓ ହ୍ରସ୍ୱଦ୍ୟଣୁକରୁ ମହତ ଓ ଦୀର୍ଘ ତ୍ର୍ୟଣୁକ ଉତ୍ପନ୍ନ

ହୁଏ, ଅଣୁ ଓ ହ୍ରସ୍ୱ ଉତ୍ପନ୍ନ ହୁଅନ୍ତି ନାହିଁ । ଚେତନବ୍ରହ୍ମରୁ ଅଚେତନ ଜଗତ ଉତ୍ପନ୍ନ ହୁଏ । ଏହିପରି ସ୍ୱୀକାର କଲେ ତୁମ୍ଭର ହାନି କଣ ଅଛି ?

(ଙ) ଯଦି ତୁମ୍ଭେ ସ୍ୱୀକାର କର ଯେ ଦ୍ୟଣୁକାଦି କାର୍ଯ୍ୟଦ୍ରବ୍ୟ ବିରୋଧି ଅନ୍ୟ ପରିମାଣରୁ ଆକ୍ରାନ୍ତ ହୁଏ, ତେବେ ଆମ୍ଭେ ସ୍ୱୀକାର କରୁ ଯେ ତାହାଠାରୁ କାରଣ ଗତ ପାରିମାଣ୍ଡଲ୍ୟାଦି ଆରମ୍ଭକ ହୁଅନ୍ତି ନାହିଁ । ପରନ୍ତୁ ଚେତନର ବିରୋଧୀ ଅନ୍ୟ ଗୁଣରୁ ଜଗତ ଉତ୍ପନ୍ନ ହୁଏ ନାହିଁ । ଯେପରି ଗତ ଚେତନା କାର୍ଯ୍ୟରେ ଅନ୍ୟ ଚେତନକୁ ଆରମ୍ଭ କରେ ନାହିଁ, କାରଣ-ଅଚେତନା ନାମକ ଚେତନାର ବିରୋଧୀ କୌଣସି ଗୁଣ କେବଳ ଚେତନାର ଅଭାବ ମାତ୍ର ଅଛି । ତେଣୁ ପାରିମାଣ୍ଡଲ୍ୟ ଇତ୍ୟାଦିରୁ ଭିନ୍ନ ହେଲେ ଚେତନାରେ ଆରମ୍ଭକତ୍ୱ ପ୍ରାପ୍ତ ହୁଏ ।

(୪) ମୂଳ (କ)- ମୈବଂ ସଂସ୍ଥାଃ । ଯଥା କାରଣେ ବିଦ୍ୟମାନାନାମପି ପାରିମାଣ୍ଡଲ୍ୟା ଦୀନାମ୍ ନାରମ୍ଭକତ୍ୱମେବଂ ଚୈତନ୍ୟସ୍ୟାପୀତ୍ୟସ୍ୟାଂଶସ୍ୟ ସମାନତ୍ୱାତ୍ । ନ ଚ ପରିମାଣାନ୍ତରାକ୍ରାନ୍ତତ୍ୱଂ ପାରିମାଣ୍ଡାଲ୍ୟାଦୀନାମନାରମ୍ଭକତ୍ୱେ କାରଣମ୍, ପ୍ରାକ୍-ପରିମାଣାନ୍ତରାରମ୍ଭାତ୍ ପାରିମାଣ୍ଡଲ୍ୟାଦୀନାମାରମ୍ଭକତ୍ୱୋପପତ୍ତେଃ । ଆରବ୍ଧମପି କାର୍ଯ୍ୟଦ୍ରବ୍ୟଂ ପ୍ରାଗଗୁଣାରମ୍ଭାତ୍ କ୍ଷଣମାତ୍ରମଗୁଣଂ ତିଷ୍ଠତୀତ୍ୟଭ୍ୟୁପଗମାତ୍ ।

(ଖ) ନ ଚ ପରିମାଣାନ୍ତରାରମ୍ଭେ ବ୍ୟଗ୍ରାଣି ପାରିମାଣ୍ଡଲ୍ୟାଦୀନୀତ୍ୟତଃ ସ୍ୱସମାନ ଜାତୀୟଂ ପରିମାଣାନ୍ତରଂ ନାରଭନ୍ତେ ପରିମାଣାନ୍ତରସ୍ୟାନ୍ୟ ହେତୁ ତ୍ୱାଭ୍ୟୁପଗମାତ୍ । 'କାରଣ- ବହୁତ୍ୱାତ୍ କାରଣ ମହତ୍ୱାତ୍ ପ୍ରଚୟ ବିଶେଷାଚ୍ଚ ମହତ' (ବୈ.ସୂ. ୭-୧-୧୬ 'ତଦ୍ ବିପରୀତମଣୁ' (୭-୧-୧୦), 'ଏତେନ ଦୀର୍ଘତ୍ୱହ୍ରସ୍ୱତ୍ୱେ ବ୍ୟାଖ୍ୟାତେ' (୭-୧-୧୭) ଇତି ଚ କାରଣଭୁଜାନି ସୂତ୍ରାଣି ।

(ଗ) ଢ଼ ଚ ସଂନ୍ନିଧାନ ବିଶେଷାତ୍ କୁତଶ୍ଚିତ୍ କାରଣ ବହୁତ୍ୱାଦୀନ୍ୟେବାରଭନ୍ତେ ନ ପାରମାଣ୍ଡଲ୍ୟାଦୀନୀତ୍ୟୁଚ୍ୟେତ, ଦ୍ରବ୍ୟାନ୍ତରେ ଗୁଣାନ୍ତରେ ବାରଭ୍ୟମାଣେ ସର୍ବେଷାମେବ କାରଣ ଗୁଣାନାଂ ସ୍ୱାଶ୍ରୟସମବାୟା ବିଶେଷାତ୍ । ତସ୍ମାତ ସ୍ୱଭାବାଦେବ ପାରମାଲ୍ୟଦୀନା-ମନାରମ୍ଭକତ୍ୱମ୍, ତଥା ଚେନାୟା ଅପୀତି ଦ୍ରଷ୍ଟବ୍ୟମ୍ ।

(୪) ଭାଷାଂତର- (କ) ସିଦ୍ଧାନ୍ତ- ଏହିପରି ସ୍ୱୀକାର କର ନାହିଁ । କାରଣ-ଯେପରି କାରଣରେ ବିଦ୍ୟମାନ ପାରିମାଣ୍ଡଲ୍ୟାଦି ଅନାରମ୍ଭକ ହୁଅନ୍ତି, ସେପରି ଚୈତନ୍ୟ ମଧ୍ୟ ଏହି ଅଂଶରେ ଦୁଇଟି ପକ୍ଷରେ ପ୍ରଯୁଜ୍ୟ ହୁଏ । ପାରିମାଣ୍ଡଲ୍ୟାଦିର ଅନାରମ୍ଭକତ୍ୱରେ ଅନ୍ୟ ପରିମାଣ ଦ୍ୱାରା ଆକ୍ରାନ୍ତ ହେବାରେ କୌଣସି କାରଣ ନାହିଁ । କାରଣ- ଅନ୍ୟ ପରିମାଣ (ଅଣୁତ୍ୱ ଓ ହ୍ରସ୍ୱତ୍ୱ)ର ଆରମ୍ଭର ପୂର୍ବରୁ ପାରମାଣ୍ଡଣ୍ୟାଦି ଆରମ୍ଭକ ହୁଅନ୍ତି । ଆରବ୍ଧ କାର୍ଯ୍ୟଦ୍ରବ୍ୟ ମଧ୍ୟ ଗୁଣଗୁଡ଼ିକର ଆରମ୍ଭକ ପୂର୍ବରୁ କ୍ଷଣମାତ୍ର ଗୁଣରହିତ ହୁଏ ବୋଲି ସ୍ୱୀକାର କରାଯାଇଛି ।



(ଖ) ପାରିମାଣ୍ଡଲ୍ୟାଦି ଅନ୍ୟ ପରିମାଣର ଆରମ୍ଭରେ ବ୍ୟଗ୍ର ହେବା ହେତୁ ସମାନ ଜାତୀୟ ଅନ୍ୟ ପରିମାଣର ଆରମ୍ଭ ହୁଏ ନାହିଁ ବୋଲି କହିବା ଠିକ୍ ନୁହେଁ । କାରଣ-ପରିମାଣାନନ୍ତର ଅନ୍ୟ ହେତୁ (କାରଣ ଗତ ସଂଖ୍ୟା) ସ୍ୱୀକାର କରାଯାଇଅଛି । 'କାରଣ ହେତୁତ୍ୱାତ' (କାରଣର ବହୁତ ଯୋଗୁଂ, କାରଣର ମହତ୍ତ୍ୱରୁ ଓ ଅବୟବଗୁଡ଼ିକର ସଂଯୋଗ ବିଶେଷରୁ ମହତ୍ ପରିମାଣ ଉତ୍ପନ୍ନ ହୁଏ), 'ତଦ୍‌ବିପରୀତମଣୁଃ' (ତେଣୁ ତାହାର ବିପରୀତ ଅଣୁପରିମାଣ ଉତ୍ପନ୍ନ ହୁଏ, 'ଏତେନ' (ଏହାଠାରୁ ଦୀର୍ଘତ୍ୱ ଓ ହ୍ରସ୍ୱତ୍ୱ ବ୍ୟାଖ୍ୟାନ ହୋଇଛି) ବୋଲି କଣାଦଙ୍କର ସୂତ୍ର ।

(ଗ) କୌଣସି ସମାଧାନବିଶେଷରେ କାରଣବହୁତ୍ୱାଦି ଆରମ୍ଭକ ହୁଅନ୍ତି । ପାରିମାଣ୍ଡଲ୍ୟାଦି ନୁହେଁ ବୋଲି କୁହାଯାଏ ନାହିଁ । କାରଣ-ଅନ୍ୟଦ୍ରବ୍ୟ ଅଥବା ଅନ୍ୟଗୁଣକୁ ଆରମ୍ଭ କରିବାରେ ସବୁକାରଣଗୁଡ଼ିକର ସ୍ୱାଶ୍ରୟ ସମବାୟପରି ହୁଅନ୍ତି । ତେଣୁ ସ୍ୱଭାବରୁ ପାରିମାଣ୍ଡଲ୍ୟାଦି ଅନାରମ୍ଭକ ଅଟନ୍ତି ।ସେପରି ଚେତନା ଅନାରମ୍ଭକ ବୋଲି ଜାଣିବା ଉଚିତ୍ ।

(୫) ମୂଳ-(କ) ସଂଯୋଗାଚ୍ଚ ଦ୍ରବ୍ୟାଦୀନାଂ ବିଲକ୍ଷଣାନାମୁତ୍ପତ୍ତିଦର୍ଶନାତ୍ ସମାନଜାତୀୟୋତ୍ପତ୍ତିବ୍ୟଭିଚରଃ । ଦ୍ରବ୍ୟେ ପ୍ରକୃତେ ଗୁଣୋଦାହରଣମଯୁକ୍ତମିତି ଚେତ୍ । ନ । ଦୃଷ୍ଟାନ୍ତେନ ବିଲକ୍ଷଣାରମ୍ଭମାତ୍ରସ୍ୟ ବିବକ୍ଷିତତ୍ୱାତ୍ । ନଚ ଦ୍ରବ୍ୟସ୍ୟ ଦ୍ରବ୍ୟମେବୋଦାହର୍ତ୍ତବ୍ୟଂ ଗୁଣସ୍ୟ ବା ଗୁଣଂ ଏବେତି କଶ୍ଚିନ୍ନିୟମେ ହେତୁରସ୍ତି । ସୂତ୍ରକାରୋଽପି ଭବତାଂ ଦ୍ରବ୍ୟସ୍ୟ ଗୁଣମୁଦା ଜହାର-'ପ୍ରତ୍ୟକ୍ଷାପ୍ରତ୍ୟକ୍ଷାଣାମପ୍ରତ୍ୟକ୍ଷତ୍ୱାତ୍ ସଂଯୋଗସ୍ୟ ପଞ୍ଚାତ୍ମକ ନ ବିଦ୍ୟତେ' (ବୈ-ସୂ-୪-୨-୨) ଇତି ।

(ଖ) ଯଥା ପ୍ରତ୍ୟକ୍ଷାପ୍ରତ୍ୟକ୍ଷୟୋଃ ଭୂମ୍ୟାକାଶୟୋଃ ସମବୟନ୍ ସଂଯୋଗଽପ୍ରତ୍ୟକ୍ଷ ଏବଂ ପ୍ରତ୍ୟକ୍ଷାପ୍ରତ୍ୟକ୍ଷେଷୁ ପଞ୍ଚସୁ ଭୂତେଷୁ ସମବୟଚ୍ଛରୀରମପ୍ରତ୍ୟକ୍ଷଂ ସ୍ୟାତ୍ । ପ୍ରତ୍ୟେକ୍ଷଂ ହି ଶରୀରମ୍ । ତସ୍ମାନ୍ନ ପାଞ୍ଚଭୌତିକମିତି । ଏତଦୁକ୍ତଂଭବତିଗୁଣଶ୍ଚ ସଂଯୋଗା ଦ୍ରବ୍ୟଂ ଶରୀରମ୍ । 'ଦୃଶ୍ୟତେ ତୁ' (ବ୍ର. ସୂ ୨-୧-୬) ଇତି ଯତ୍ରାପି ବିଲକ୍ଷଣୋତ୍ପତ୍ତିଃ ପ୍ରପଞ୍ଚିତା ।

(ଗ) ନନ୍ୱେଂ ସତି ତେନୈବୈତଦ୍‌ଗତମ୍ । ନେତି ବ୍ରୂମଃ । ତତ୍ ସାଂଖ୍ୟଂ ପ୍ରତ୍ୟୁକ୍ତମ୍, ଏତତ୍ତୁ ବୈଶେଷିକଂ ପ୍ରତି । ନନ୍ୱତିଦେଶୋଽପି ସମାନନ୍ୟାୟତୟା କୃତଃ । 'ଏତେନ ଶିଷ୍ଟପରିଗ୍ରହା ଅପି ବ୍ୟାଖ୍ୟାତାଃ' (ବ୍ର-ସୂ ୨-୧-୧୨) ଇତି । ସତ୍ୟମେତତ୍ । ତସ୍ୟୈବ ତ୍ୱୟଂ ବୈଶେଷିକ ପ୍ରକ୍ରିୟାରମ୍ଭେ ତତ୍‌ପ୍ରକ୍ରିୟାନୁଗତେନ ନିଦର୍ଶନେନ ପ୍ରପଞ୍ଚଃ କୃତଃ ।

**(୫)** ଭାଷାଂତର- (କ) ତେଣୁ ସଂଯୋଗରୁ ବିଲକ୍ଷଣଦ୍ରବ୍ୟର ଉତ୍ପତ୍ତି ଦେଖାଯାଏ ନାହିଁ । ସମାନଜାତୀୟର ଉତ୍ପତ୍ତିରେ ବ୍ୟଭିଚାର ହୁଏ । ଯଦି କୁହାଯାଏ ଯେ- ପ୍ରକୃତ ଦ୍ରବ୍ୟରେ ଗୁଣର ଉଦାହରଣ ଅସମୀଚୀନ ଅଟେ, ତେବେ ତାହା ଠିକ୍ ନୁହେଁ । କାରଣ- ଦୃଷ୍ଟାନ୍ତରୁ କେବଳ ବିଲକ୍ଷଣ ଆରମ୍ଭ ମାତ୍ରରେ ବିବକ୍ଷିତ ହୁଏ । ଦ୍ରବ୍ୟର ଦ୍ରବ୍ୟ ଉଦାହରଣ ହେବା ଉଚିତ୍ ଅଥବା ଗୁଣର ଗୁଣବୋଲି ନିୟମରେ କୌଣସି କାରଣ ନାହିଁ । ତେଣୁ ଆପଣଙ୍କ (କଣାଦସୂତ୍ରରେ) ସୂତ୍ରକାର ଦ୍ରବ୍ୟର ଗୁଣ ଉଦାହରଣ ଦେଇଛନ୍ତି- 'ପ୍ରତ୍ୟକ୍ଷାପ୍ରତ୍ୟକ୍ଷାଣାମ୍' (ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷର ସଂଯୋଗ ପ୍ରତ୍ୟକ୍ଷ ନ ହେଲେ ଶରୀର ପଞ୍ଚଭୂତାତ୍ମକ ହୁଏ ନାହିଁ ।

(ଖ) ଯେପରି ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷଭୂମି ଓ ଆକାଶରେ ସମବାୟସମ୍ବନ୍ଧରେ ରହି ତାଙ୍କର ସଂଯୋଗ ଅପ୍ରତ୍ୟକ୍ଷ ହୁଏ, ସେହିପରି ପ୍ରତ୍ୟକ୍ଷ ମ୍ବ ଅପ୍ରତ୍ୟକ୍ଷ ପଞ୍ଚଭୂତରେ ସମବାୟ ସମ୍ବନ୍ଧରେ ରହି ଶରୀର ଅପ୍ରତ୍ୟକ୍ଷ ହୁଏ । ପରନ୍ତୁ ନିଶ୍ଚିତ ଭାବରେ ପ୍ରତ୍ୟକ୍ଷ ଅଟେ, କିନ୍ତୁ ପାଞ୍ଚ ଭୌତିକ ନୁହେଁ । ତେଣୁ ତାତ୍ପର୍ଯ୍ୟ ଏହିକି ଯେ- ସଂଯୋଗ ହିଁ ଗୁଣ ଓ ଶରୀର ଦ୍ରବ୍ୟ । 'ଦୃଶ୍ୟତେ ତୁ' ଏହି ସୂତ୍ରରେ ବିଲକ୍ଷଣ ଉତ୍ପତ୍ତିର ବିସ୍ତାର ରୂପରେ ବର୍ଣ୍ଣନା କରାଯାଇଛି ।

(ଗ) ପରନ୍ତୁ ଏହାଦ୍ୱାରା ଏହିସୂତ୍ର ଗତ୍ୟର୍ଥକ ହୁଏ ବୋଲି କୁହାଯାଇଛି । ତାହା କିନ୍ତୁ ଠିକ୍ ନୁହେଁ ବୋଲି ଆମ୍ଭେ କହୁଁ । ସେମାନେ ସାଂଖ୍ୟମାନଙ୍କ ପ୍ରତି ଯାହା କହିଛନ୍ତି, ଏହିସୂତ୍ରକୁ ଆମ୍ଭେ ବୈଶେଷିକମାନଙ୍କ ପ୍ରତି କହୁଛୁ । ପରନ୍ତୁ 'ଏତେନ ଶିଷ୍ଟା ପରିଗ୍ରହା ଅପି ବ୍ୟାଖ୍ୟାତାଃ' (ତେଣୁ ଶିଷ୍ଟମାନଙ୍କ ଦ୍ୱାରା ଅପରିଗୃହୀତର ପ୍ରତ୍ୟାଖ୍ୟାନ କରିବା ଉଚିତ) ଏହିପ୍ରକାର ସମାନନ୍ୟାୟରେ ଅତିଦେଶ କରାଯାଇଅଛି । ଏହା ସତ୍ୟ ଅଟେ । ପରନ୍ତୁ ତାହା ବୈଶେଷିକ ପ୍ରକ୍ରିୟାରେ ଆରମ୍ଭରେ ତାହାର ପ୍ରକ୍ରିୟା ଅନୁସାରେ ଦୃଷ୍ଟାନ୍ତ ଦ୍ୱାର ବିସ୍ତାର କରାଯାଇଅଛି ।

## ३ परमाणुजगदकारणत्वाधिकरणम् । सू० ॥१२-१७॥

## ପରମାଣୁ ଜଗଦକାରଣତ୍ୱାଧିକରଣ -୩

### उभयथापि न कर्मातस्तदभावः ॥१२॥

### ଉଭୟଥାପି ନ କର୍ମାତସ୍ତଦଭାବଃ ॥ ୨-୨-୧୨ ॥

ଉଭୟଥାପି-ଦୁଇପ୍ରକାରରେ ଏହି ପରମାଣୁରେ, ନ କର୍ମ = ଉତ୍ପତ୍ତିବିଷୟକକ୍ରିୟା ହୁଏ ନାହିଁ । ଅତଃ ତଦଭାବଃ-ତେଣୁ ପରମାଣୁରୁ ଦ୍ୟଣୁକ ପ୍ରଭୃତି କର୍ମଦ୍ୱାରା ସୃଷ୍ଟି ହୁଏ ନାହିଁ ।

 

(୨) ମୂଳ-(କ) ଇଦାନୀଂ ପରମାଣୁକାରଣବାଦଂ ନିରାକରୋତି । ସ ଚ ବାଦ ଇତ୍ଥଂ ସମୁତ୍ତିଷ୍ଠତେ-ପଟାଦୀନି ହି ଲୋକେ ସାବୟବାନି ଦ୍ରବ୍ୟାଣି ସ୍ୱାନୁଗତୈରେବ ସଂଯୋଗସଚିବୈସ୍ତନ୍ତ୍ୱାଦିଭିଃ ଦ୍ରବ୍ୟୈରାରମତ୍ତ୍ୟମାଣାନି ଦୃଷ୍ଟାନି । ତତ୍ସାମାନ୍ୟେନ ଯାବତ୍ କିଞ୍ଚିତ୍ ସାବୟବଂ ତତ୍ ସର୍ବଂ ସ୍ୱାନୁଗତୈରେବ ସଂଯୋଗସଚିବୈଃ ତୈସ୍ତୈର୍ଦ୍ରବ୍ୟୈରାରବ୍ଧମିତି ଗମ୍ୟତେ ।

(ଖ) ସ ଚାୟମବାୟବାବୟବିବିଭାଗୋ ଯତୋ ନିବର୍ତ୍ତତେ, ସୋଽପକର୍ଷପର୍ଯନ୍ତଗତଃ ପରମାଣୁଃ । ସର୍ବଂ ଚେଦଂ ଜଗଦ୍ ଗିରିସମୁଦ୍ରାଦିକଂ ସାବୟବଂ ସାବୟବତ୍ୱାଚ୍ଚାଦ୍ୟନ୍ତବତ୍ । ନ ଚାକାରଣେନ କାର୍ଯ୍ୟେଣ ଭବିତବ୍ୟମିତ୍ୟତଃ ପରମାଣବୋ ଜଗତଃ କାରଣମିତି କଣଭୁଗଭିପ୍ରାୟଃ ।

(ଗ) ତାନୀମାନି ଚତ୍ୱାରି ଭୂତାନି ଭୂମ୍ୟୁଦକତେଜଃପବନାଖ୍ୟାନି, ସାବୟବାନ୍ୟୁପଲଭ୍ୟାଚତୁର୍ବିଧାଃ ପରମାଣବଃ ପରିକଳ୍ପ୍ୟନ୍ତେ ତେଷାଂ ଚାପକର୍ଷ-ପର୍ଯ୍ୟନ୍ତଗତତ୍ୱେନ ପରତୋ ବିଭାଗାସମ୍ଭବାଦ୍ ବିନଶ୍ୟତାଂ ପୃଥିବ୍ୟାଦୀନାଂ ପରମାଣୁ ପର୍ଯ୍ୟନ୍ତୋ ବିଭାଗୋ ଭବତି ସ ପ୍ରଳୟକାଳଃ ।

(ଘ) ତତଃ ସର୍ଗକାଳେ ଚ ବାୟବୀୟେଷ୍ୱଣୁଷ୍ୱଦୃଷ୍ଟାପେକ୍ଷଂ କର୍ମୋତ୍ପଦ୍ୟତେ ତତ୍କର୍ମ ସ୍ୱାଶ୍ରୟମଣୁମଣ୍ୱନ୍ତରେଣ ସଂଯୁନକ୍ତି ତତୋ ଦ୍ୟଣୁକାଦିକ୍ରମେଣ ବାୟୁରୁତ୍ପଦ୍ୟତେ । ଏବମଗ୍ନିରେବମାପ ଏବଂ ପୃଥିବୀ ଏବମେବ ଶରୀରଂ ସେନ୍ଦ୍ରିୟମିତି । ଏବଂ ସର୍ବମିଦଂ ଜଗଦଣୁଭ୍ୟଃ ସମ୍ଭବତି । ଅଣୁଗତେଭ୍ୟଶ୍ଚ ରୂପାଦିଭ୍ୟୋ ଦ୍ୟଣୁକାଦିଗତାନି ରୂପାଦୀନି ସମ୍ଭବନ୍ତି ତନ୍ତୁପଟନ୍ୟାୟେନେତି କାଣାଦା ମନ୍ୟନ୍ତେ ।

(୨) ଭାଷାଂତର- (କ) ବର୍ତ୍ତମାନ ପରମାଣୁ କାରଣବାଦର ନିରାକର ନିରାକରଣ କରାଯାଉଛି-ସେହିବାଦ ଏହିପ୍ରକାର ଉପସ୍ଥିତ କରେ । ସଂସାରରେ ପଟାଦି ସାବୟବଦ୍ରବ୍ୟ ସ୍ୱାନୁଗତସଂଯୋଗ ସହକାରୀ ତନ୍ତୁପ୍ରଭୃତି ଦ୍ରବ୍ୟଦ୍ୱାରା ଉତ୍ପନ୍ନ ହେବାର ଦେଖାଯାଏ । ଏହି ସାମାନ୍ୟ ଉଦାହରଣ ଦ୍ୱାରା ଜଣାପଡ଼େ ଯେ- ଯେଉଁସବୁ ସାବୟବଦ୍ରବ୍ୟ ଅଛନ୍ତି, ସେସବୁ ନିଜେ ଅନୁଗତସଂଯୋଗସହକାରୀ ଯୁକ୍ତ ହୋଇ ସେହି ସେହିଦ୍ରବ୍ୟରୁ ଆରବ୍ଧ ହୁଅନ୍ତି ।

(ଖ) ଏହା ଯେଉଁ ଅବୟବଅବୟବିଭାଗ ଯେଉଁଠାରେ ନିବୃତ୍ତ ହୁଏ, ସେ ନ୍ୟୁନତମ ପରିମାଣକୁ ପ୍ରାପ୍ତ ହୋଇ ପରମାଣୁ ହୁଏ । ପର୍ବତ ସମୁଦ୍ରାଦି ଏହି ସଂପୂର୍ଣ୍ଣ ଜଗତ୍ ସାବୟବ ଅଟେ । ସାବୟବ ହେଲେ ତାହାର ଆଦି ଓ ଅନ୍ତ ରହେ । କାର୍ଯ୍ୟକାରଣ ବିନା ହୁଏ ନାହିଁ । ତେଣୁ ପରମାଣୁ ଜଗତ୍ର କାରଣ ଅଟେ- ଏହାହିଁ କଣାଦର ଆଶ୍ରୟ ଅଟେ ।

(ଗ) ପୃଥିବୀ, ଜଳ, ଅଗ୍ନି ଓ ବାୟୁ ଏହି ଚାରିଭୂତକୁ ସାବୟବ ଦେଖି ଚାରି ପ୍ରକାରର ପରମାଣୁକୁ କଳ୍ପନା କରାଯାଇଅଛି । ନ୍ୟୂନତମପରିମାଣ ପର୍ଯ୍ୟନ୍ତ ବିଭକ୍ତ ହେଲେ ପ୍ରଥମେ ଆଦି ହୁଏ । ବିଭାଗର ସମ୍ଭବ ନ ହେଲେ ବିନଷ୍ଟ ହୋଇ ସେହି ପୃଥିବୀ ପ୍ରଭୃତିର ପରମାଣୁ ପର୍ଯ୍ୟନ୍ତ ଯାହା ବିଭାଗ ହୋଇଅଛି, ସେହି ପ୍ରଳୟ କାଳ ।

(ଘ) ତାପରେ ସୃଷ୍ଟି ସମୟରେ ବାୟୁର ପରମାଣୁରେ ଜୀବର ଅଦୃଷ୍ଟକୁ ଅପେକ୍ଷା କରିବା ଦ୍ୱାରା କ୍ରିୟା ଉତ୍ପନ୍ନ ହୁଏ । ଏହିପରି ସାରାଜଗତ୍ ଅଣୁଗୁଡ଼ିକରୁ ଉତ୍ପନ୍ନ ହୁଏ । ଯେପରି ତନ୍ତୁରୂପର ପଟଗତ ରୂପ ଉତ୍ପନ୍ନ ହୁଏ, ସେପରି ପରମାଣୁ ଗତ ରୂପାଦିରୁ ଦ୍ୟଣୁକାଦିଗତରୂପାଦି ଜାତ ହୁଅନ୍ତି- ଏହାହିଁ ବୈଶେଷିକମାନେ ସ୍ୱୀକାର କରନ୍ତି ।

(୩) ମୂଳ-(କ) ତତ୍ରେଦମଭିଧୀୟତେ-ବିଭାଗାବସ୍ଥାନାଂ ତାବଦଣୂନାଂ ସଂଯୋଗଃ କର୍ମାପେକ୍ଷୋଽଭ୍ୟୁପଗନ୍ତବ୍ୟଃ, କର୍ମବତାଂ ତନ୍ତ୍ୱାଦୀନାଂ ସଂଯୋଗ ଦର୍ଶନାତ୍ । କର୍ମଣଷ୍ଟ କାର୍ଯ୍ୟତ୍ୱାନ୍ନିମିତ୍ତଂ କିମପ୍ୟଭ୍ୟୁପଗନ୍ତବ୍ୟମ୍ । ଅନଭ୍ୟୁପଗମେ ନିମିତ୍ତାଭାବାନ୍ନାଣୁଷ୍ୱାଦ୍ୟଂ କର୍ମ ସ୍ୟାତ୍ । ଅଭ୍ୟୁପଗମେଽପି ଯଦି ପ୍ରଯତ୍ନୋଽଭିଘାତାଦିର୍ବା ଯଥାଦୃଷ୍ଟଂ କିମପି କର୍ମଣୋ ନିମିତ୍ତମଭ୍ୟୁପଗମ୍ୟେତ ତସ୍ୟା ସମ୍ଭବାନ୍ନୈବାଣୁଷ୍ୱାଦ୍ୟଂ କର୍ମ ସ୍ୟାତ୍ ।

(ଖ) ନହି ତସ୍ୟାମବସ୍ଥାୟାମାତ୍ମଗୁଣଃ ପ୍ରଯତ୍ନଃ ସମ୍ଭବତି ଶରୀରଭାବାତ୍ । ଶରୀର ପ୍ରତିଷ୍ଠେ ହି ମନସ୍ୟାତ୍ମନଃ ସଂଯୋଗେ ସତ୍ୟାତ୍ମଗୁଣଃ ପ୍ରଯତ୍ନୋ ଜାୟତେ । ଏତେନାଭିଘାତାଦ୍ୟପି ନଷ୍ଟଂ ନିମିତ୍ତଂ ପ୍ରତ୍ୟାଖ୍ୟାତବ୍ୟମ୍ । ସର୍ଗୋତ୍ତରକାଳଂ ହି ତତ୍ସର୍ବଂ ନାଦ୍ୟସ୍ୟ କର୍ମଣୋ ନିମିତ୍ତଂ ସମ୍ଭବତି ।

(ଗ) ଅଥାଦୃଷ୍ଟମାଦ୍ୟସ୍ୟ କର୍ମଣେ ନିମିତ୍ତମିତ୍ୟୁଚ୍ୟେତ ତତ୍ପୁନରାତ୍ମସମବାୟି ବା ସ୍ୟାଦଣୁସମବାୟିବା । ଉଭୟଥାପି ନାଦୃଷ୍ଟନିମିତ୍ତମଣୁଷୁ କର୍ମାବକଳ୍ପେତାଦୃଷ୍ଟସ୍ୟା-ଚେତନତ୍ୱାତ୍ । ନହ୍ୟଚେତନଂ ଚେତନେନାନଧିଷ୍ଠିତଂ ସ୍ୱତନ୍ତ୍ରଂ ପ୍ରବର୍ତ୍ତତେ ପ୍ରବର୍ତ୍ତୟତି ବେତି ସାଂଖ୍ୟ ପ୍ରକ୍ରିୟାୟାମଭିହିତମ୍ । ଆତ୍ମନଶ୍ଚାନୁତ୍ପନ୍ନେଚୈତନ୍ୟସ୍ୟ ତସ୍ୟାମବସ୍ଥାୟା-ମଚେତନତ୍ୱାତ୍ ଆତ୍ମସମବାୟିତ୍ୱାଭ୍ୟୁପଗମାଚ୍ଚ ନାଦୃଷ୍ଟମଣୁଷୁ କର୍ମଣୋ ନିମିତ୍ତଂ ସ୍ୟାଦସମ୍ଭବାତ୍ ।

(ଘ) ଅଦୃଷ୍ଟବତାପୁରୁଷେଣାସ୍ତ୍ୟଣୂନାଂ ସମ୍ବନ୍ଧ ଇତି, ସମ୍ବନ୍ଧସାତତ୍ୟାତ୍ ପ୍ରବୃତ୍ତି-ସାତତ୍ୟପ୍ରସଙ୍ଗଃ ନିୟାମକାନ୍ତରାଭାବାତ୍ । ତଦେବଂ ନିୟତସ୍ୟ କସ୍ୟଚିତ୍କର୍ମନିମିତ୍ତସ୍ୟା-ଭାବାନ୍ନାଣୁଷ୍ୱାଦ୍ୟଂ କର୍ମ ସ୍ୟାତ୍ । କର୍ମାଭାବାତ୍ତନ୍ନିବନ୍ଧନଃ ସଂଯୋଗୋ ନ ସ୍ୟାତ୍ । ସଂଯୋଗାଭାବାଚ୍ଚ ତନ୍ନିବନ୍ଧନଂ ଦ୍ୟଣୁକାଦି କାର୍ଯ୍ୟଜାତଂ ନ ସ୍ୟାତ୍ ।

(୩) ଭାଷାଂତର- (କ) ସିଦ୍ଧାନ୍ତ- ବିଭାଗାବସ୍ଥାରେ ରହିଥିବା ପରମାଣୁର ସଂଯୋଗ କର୍ମକୁ ଅପେକ୍ଷା କରିବାକୁ ଆମ୍ଭେ ସ୍ୱୀକାର କରୁଁ । କାରଣ- ସେହି ଅବସ୍ଥାରେ



କର୍ମଯୁକ୍ତତନ୍ତୁ ଇତ୍ୟାଦିର ସଂଯୋଗ ଦେଖିବାକୁ ମିଳେ । କର୍ମ ହିଁ କାର୍ଯ୍ୟ ଅଟେ । ତେଣୁ ତାହାର କୌଣସି ନିମିତ୍ତକାରଣ ସ୍ୱୀକାର କରିବା ଉଚିତ୍ । ନିମିତ୍ତକାରଣ ସ୍ୱୀକାର ନ କଲେ ନିମିତ୍ତର ଅଭାବ ହେତୁ ପରମାଣୁର ଆଦ୍ୟକର୍ମ ହୁଏ ନାହିଁ । ଯଦି ସ୍ୱୀକାର କରାଯାଏ, ତେବେ ବ୍ୟବହାରରେ ଯେପରି କର୍ମର ନିମିତ୍ତ ପ୍ରଯତ୍ନ ଅଥବା ଅଭିଘାତ (ଶବ୍ଦଜନକସଂଯୋଗବିଶେଷ) ପ୍ରଭୃତିରେ ଦେଖାଯାଏ, ସେହି ପରିମାଣୁ କର୍ମର କୌଣସି ନିମିତ୍ତକାରଣ ସ୍ୱୀକାର କରିବାକୁ ପଡ଼ିବ । ତାହା ଅସମ୍ଭବ ହେଲେ ପରମାଣୁରେ ଆଦ୍ୟକର୍ମ ହୁଏ ନାହିଁ ।

(ଖ) କାରଣ- ସେହି ଅବସ୍ଥାରେ ଆତ୍ମାର ଗୁଣ, ପ୍ରଯତ୍ନ ସମ୍ଭବ ନୁହେଁ, କାରଣ- ସେହି ସମୟରେ ସେ ଶରୀର ନୁହେଁ । ଶରୀର ରହିଲେ ମନ ସହ ଆତ୍ମା ସଂଯୋଗ ହେଲେ ଆତ୍ମାର ଗୁଣ ଉତ୍ପନ୍ନ ହୁଏ । ଏହି ଉକ୍ତିରେ ଅଭିଘାତାଦିଦୃଷ୍ଟ ନିମିତ୍ତର ପ୍ରତ୍ୟାଖ୍ୟାନ କରିବା ଉଚିତ୍ । କାରଣ-ଏହିସବୁ ସୃଷ୍ଟିର ପରେ ଆଦ୍ୟକର୍ମ ନିମିତ୍ତ ହୁଏ ନାହିଁ ।

(ଗ) ଯଦି କୁହାଯାଏ ଯେ- ଅଦୃଷ୍ଟ ଆଦ୍ୟକର୍ମର ନିମିତ୍ତ ଅଟେ । ତେବେ ସେହି ଅଦୃଷ୍ଟ ଆତ୍ମାରେ ସମବାୟ ସମ୍ବନ୍ଧ ହେଲେ ରହେ କି ଅଣୁସମବାୟୀ ଅବସ୍ଥାରେ ରହେ ? ଏହି ଦୁଇ ପ୍ରକାରରେ ଅଦୃଷ୍ଟନିମିତ୍ତିକ ପରମାଣୁରେ କର୍ମର କଳ୍ପନା କରାଯାଏ ନାହିଁ, କାରଣ- ଅଦୃଷ୍ଟ ହିଁ ଅଚେତନ । ଚେତନ ଦ୍ୱାରା ଅନଧିଷ୍ଠିତ ଅଚେତନ ସ୍ୱତନ୍ତ୍ରରୂପରେ ପ୍ରବୃତ୍ତି ହୁଏ ନାହିଁ କି କାହାକୁ ପ୍ରବୃତ୍ତି କରେ ନାହିଁ- ଏହାହିଁ ସାଂଖ୍ୟପ୍ରକ୍ରିୟାରେ କୁହାଯାଇଛି । ଯେଉଁସ୍ଥାନରେ ଚୈତନ୍ୟ ଉତ୍ପନ୍ନ ହୁଏ ନାହିଁ, ସେହି ଆତ୍ମା ସେହି ଅବସ୍ଥାରେ ଅଚେତନ ଅଟେ । ଆତ୍ମାର ସମବାୟିତ୍ୱ ସ୍ୱୀକାର କଲେ ଅଦୃଷ୍ଟ ପରିମାଣୁରେ କର୍ମର ନିମିତ୍ତହେବ ନାହିଁ । କାରଣ- ତାହାର ଅଦୃଷ୍ଟ ସହ କୌଣସି ସମ୍ବନ୍ଧ ନାହିଁ ।

(ଘ) ଯଦି କୁହାଯାଏ ଯେ- ଅଦୃଷ୍ଟପୁରୁଷର ସହ ଅଣୁଗୁଡ଼ିକ ସମ୍ବନ୍ଧ ରହେ, ତେବେ ସମ୍ବନ୍ଧର ନିରନ୍ତର ହେଲେ ସର୍ବଦା ପ୍ରବୃତ୍ତିର ପ୍ରସଙ୍ଗ ହେବ । କାରଣ-ସେଠାରେ ଅନ୍ୟ ନିୟାମକର ଅଭାବ ଅଛି । ସେହିପରି କୌଣସି ନିୟତ କର୍ମ ନିମିତ୍ତକର ଅଭାବ ହେଲେ ଅଣୁରେ ଆଦ୍ୟକର୍ମ ହୁଏ ନାହିଁ । କର୍ମର ଅଭାବ ହେଲେ କର୍ମନିମିତ୍ତିକସଂଯୋଗ ହୁଏ ନାହିଁ । ସଂଯୋଗର ଅଭାବ ହେଲେ ତନ୍ନିମିତ୍ତକଦ୍ୟଣୁକାଦି କାର୍ଯ୍ୟସମୁଦାୟର ହୁଏ ନାହିଁ ।

(୪) ମୂଳ-(କ) ସଂଯୋଗଶ୍ଚାଣୋରଣ୍ୱନ୍ତରେଣ ସର୍ବାତ୍ମନା ବା ସ୍ୟାଦେକଦେଶେନ ବା । ସର୍ବାତ୍ମନା ଚେଦୁପଚୟାନୁପପତ୍ତେରଣୁମାତ୍ରତ୍ୱପ୍ରସଙ୍ଗୋ ଦୃଷ୍ଟବିପର୍ଯ୍ୟୟ ପ୍ରସଙ୍ଗଶ୍ଚ । ପ୍ରଦେଶବତୋ ଦ୍ରବ୍ୟସ୍ୟ ପ୍ରଦେଶବତା ଦ୍ରବ୍ୟାନ୍ତରରେଣ ସଂଯୋଗସ୍ୟ ଦୃଷ୍ଟତ୍ୱାତ୍ । ଏକଦେଶେନ ଚେତ୍ ସାବୟବତ୍ୱପ୍ରସଙ୍ଗଃ ।

(ଖ) ପରମାଣୁନାଂ କଳ୍ପିତାଃ ପ୍ରଦେଶାଃ ସ୍ୟୁରିତି ଚେତ୍, କଳ୍ପିତାନାମବସ୍ତୁତ୍ୱା-ଦବସ୍ତ୍ୱେବ ସଂଯୋଗ ଇତି ବସ୍ତୁନଃ କାର୍ଯସ୍ୟାସମବାୟିକାରଣଂ ନ ସ୍ୟାତ୍ । ଅସତି ଚାସମବାୟିକାରଣେ ଦ୍ୟଣୁକାଦି କାର୍ଯ୍ୟଦ୍ରବ୍ୟଂ ନୋତ୍ପଦ୍ୟେତ । ଯଥାଚାଦିସର୍ଗେ ନିମିତ୍ତାଭାବାତ୍ ସଂଯୋଗୋତ୍ପତ୍ତ୍ୟର୍ଥଂ କର୍ମ ନାଣୂନାଂ ସମ୍ଭବତ୍ୟେବଂ ମହାପ୍ରଳୟେଽପି ବିଭାଗୋତ୍ପତ୍ତ୍ୟର୍ଥଂ କର୍ମ ନୈବାଣୂନାଂ ସମ୍ଭବେତ୍ । ନହି ତତ୍ରାପି କିଞ୍ଚିନ୍ନିୟତଂ ତନ୍ନିମିତ୍ତଂ ଦୃଷ୍ଟମସ୍ତି ।

(ଗ) ଅଦୃଷ୍ଟମପି ଭୋଗପ୍ରସିଦ୍ଧ୍ୟର୍ଥଂ ନ ପ୍ରଳୟସିଦ୍ଧ୍ୟର୍ଥମିତ୍ୟତୋ ନିମିତ୍ତାଭାବାନ୍ନ ସ୍ୟାଦଣୂନାଂ ସଂଯୋଗୋତ୍ପତ୍ତ୍ୟର୍ଥଂ ବିଭାଗୋତ୍ପତ୍ତ୍ୟର୍ଥଂ ବା କର୍ମ । ଅତଶ୍ଚ ସଂଯୋଗବିଭାଗାଭାବାତ୍ତଦାୟତୟୋଃ ସର୍ଗପ୍ରଳୟୟୋରଭାବଃ ପ୍ରସଜ୍ୟେତ । ତସ୍ମାଦନୁପପନ୍ନୋଽୟଂ ପରମାଣୁ କାରଣବାଦଃ ।

**(୪) ଭାଷାଂତର** - (କ) ଗୋଟିଏ ପରମାଣୁର ଅନ୍ୟ ପରମାଣୁ ସହ ସଂଯୋଗ ସର୍ବାତ୍ମନା ହେବ କି ଏକଦେଶରେ ହେବ ? ଯଦି ସର୍ବାତ୍ମନା ହେବ, ତେବେ ଉପଚୟ (ସ୍ଥୁଳତା)ର ଅନୁପପତ୍ତି ହୋଇ ପରମାଣୁ ମାତ୍ରତ୍ୱପ୍ରସଙ୍ଗ ଓ ଦୃଷ୍ଟବିପର୍ଯ୍ୟୟପ୍ରସଙ୍ଗ ହେବ । କାରଣ - ପ୍ରଦେଶଯୁକ୍ତ ଦ୍ରବ୍ୟର ପ୍ରଦେଶଯୁକ୍ତ ଅନ୍ୟ ଦ୍ରବ୍ୟ ସହ ସଂଯୋଗ ଦେଖାଯାଏ । ଯଦି ଏକ ଦେଶରେ ହୁଏ ତାହେଲେ ପରମାଣୁରେ ସାବୟବତ୍ୱପ୍ରସଙ୍ଗ ହେବ ।

(ଖ) ଯଦି କୁହାଯାଏ ଯେ - ପରମାଣୁର କଳ୍ପିତ ପ୍ରଦେଶ ହେବ, ତେବେ କଳ୍ପିତଟି ଅବସ୍ତୁ ରୂପ ହେଲେ ତାହାର ସଂଯୋଗ ଅବସ୍ତୁରୂପ ହେବ । ତେଣୁ ସେହି ବସ୍ତୁ କାର୍ଯ୍ୟର ଅସମବାୟିକାରଣ ହୁଏ ନାହିଁ । ଅସମବାୟିକକାରଣ ନ ହେଲେ ଦ୍ୟଣୁକାଦି କାର୍ଯ୍ୟଦ୍ରବ୍ୟ ଉତ୍ପନ୍ନ ହୁଏ ନାହିଁ । ଯେପରି ଆଦିସୃଷ୍ଟିରେ ନିମିତ୍ତର ଅଭାବ ହେଲେ ସଂଯୋଗର ଉତ୍ପତ୍ତି ପାଇଁ ପରମାଣୁରେ କର୍ମ ହୁଏ ନାହିଁ । କାରଣ - ସେଠାରେ ଏହି ବିଭାଗର କୌଣସି ନିୟତନିମିତ୍ତ ହୁଏ ନାହିଁ ।

(ଗ) ଅଦୃଷ୍ଟ ଧର୍ମାଧର୍ମ ଭୋଗର ସିଦ୍ଧିପାଇଁ ଉଦ୍ଦିଷ୍ଟ । କିନ୍ତୁ ପ୍ରଳୟର ସିଦ୍ଧିପାଇଁ ନୁହେଁ । ତେଣୁ ନିମିତ୍ତର ଅଭାବରେ ପରମାଣୁରେ ସଂଯୋଗ ନିମିତ୍ତ ପାଇଁ ଅଥବା ବିଭାଗର ଉତ୍ପତ୍ତି ପାଇଁ କର୍ମ ନୁହେଁ । ଅତଏବ ସଂଯୋଗ ଓ ବିଭାଗର ଅଭାବରେ ତାହାର ଅଧୀନରେ ଥିବା ସର୍ଗ ଓ ପ୍ରଳୟର ଅଭାବ ପ୍ରସକ୍ତ ହେବ । ତେଣୁ ଏହି ପରମାଣୁ କାରଣବାଦ ଅନୁପପନ୍ନ (ଅସମୀଚୀନ) ହୁଏ ।

## समवायाभ्युपगमाच्च साम्यादनवस्थितेः ॥१३॥

## (୧) ସମବାୟାଭ୍ୟୁପଗମାଚ୍ଚ ସାମ୍ୟାଦନବସ୍ଥିତେ ॥ ୨-୨-୧୩ ॥

ଚ - ଏବଂ, ସମବାୟାଭ୍ୟୁପଗମାତ୍ - ଯେପରି ପରମାଣୁଠାରୁ ଅତ୍ୟନ୍ତ ଭିନ୍ନଦ୍ୟଣୁକ ସମବାୟ ସମ୍ବନ୍ଧରେ ତାହା ସହ ସମ୍ବନ୍ଧ ରହେ - ଏହା ହିଁ ସ୍ୱୀକାର କରିବା ଉଚିତ ।



ସେପରି ସମବାୟ ମଧ୍ୟ ସମବାୟୀଠାରୁ ଅତ୍ୟନ୍ତ ଭିନ୍ନ ହୋଇ ଅନ୍ୟ ସବବାୟ ସମ୍ବନ୍ଧଦ୍ୱାରା ତାହା ସହିତ ସମ୍ବନ୍ଧ ହେବ । ସାମ୍ୟାତ୍—କାରଣ—ଅତ୍ୟନ୍ତଭେଦ ଏହି ଦୁଇଟିରେ ସମାନ ଅଟେ । ଅନବସ୍ଥିତେଃ—ଏହିସ୍ଥିତିରେ ସମବାୟ ପାଇଁ ଅନ୍ୟ ସମବାୟର କଳ୍ପନା କରିବାକୁ ପଡ଼େ, ତେଣୁ ଅନବସ୍ଥା ହେଲେ ଦ୍ୟଣୁକାଦିକ୍ରମରେ ସୃଷ୍ଟି ହୁଏ ନାହିଁ ।

(୨) ମୂଳ - (କ) ସମବାୟାଭ୍ୟୁପଗମାଚ୍ଚ ତଦଭାବ ଇତି ପ୍ରକୃତେନାଣୁବାଦ-ନିରାକରଣେନ ସଂବଧ୍ୟତେ । ଦ୍ୱାଭ୍ୟାଂ ଚାଣୁଭ୍ୟାଂ ଦ୍ୟଣୁକମୁତ୍ପଦ୍ୟମାନମତ୍ୟନ୍ତଭିନ୍ନମଣୁଭ୍ୟାମଣ୍ୱୋଃ ସମବୈତୀତ୍ୟଭ୍ୟୁପଗମ୍ୟତେ ଭବତା । ନ ଚୈବଭ୍ୟୁପଗଚ୍ଛତା ଶକ୍ୟତେଽଣୁକାରଣତା ସମର୍ଥୟିତୁମ୍ ।

(ଖ) କୁତଃ । ସାମ୍ୟାଦିନବସ୍ଥିତେଃ । ଯଥୈବ ହ୍ୟଣୁଭ୍ୟାମତ୍ୟନ୍ତଭିନ୍ନଂ ସତ୍ ଦ୍ୟଣୁକଂ ସମବାୟଲକ୍ଷଣେନ ସମ୍ବନ୍ଧେନ ତାଭ୍ୟାଂ ସମ୍ବଧ୍ୟତ ଏବଂ ସମବାୟୋଽପି ସମବାୟିଭ୍ୟୋଽତ୍ୟନ୍ତଭିନ୍ନଃ ସନ୍ ସମବାୟଲକ୍ଷଣେନାନ୍ୟେନୈବ ସଂବନ୍ଧେନ ସମବାୟିଭିଃ ସମ୍ବଧ୍ୟେତତ୍ୟନ୍ତଭେଦସାମ୍ୟାତ୍ । ତତଶ୍ଚ ତସ୍ୟ ତସ୍ୟାନ୍ୟୋନ୍ୟଃ ସମ୍ବନ୍ଧଃ କଳ୍ପୟିତବ୍ୟ ଇତ୍ୟନବସ୍ଥୈବ ପ୍ରଜଜ୍ୟେତ ।

(ଗ) ନନ୍ୱିହ ପ୍ରତ୍ୟୟଗ୍ରାହ୍ୟଃ ସମବାୟୋ ନିତ୍ୟସମ୍ବନ୍ଧ ଏବ ସମବାୟିଭିର୍ଗୃହ୍ୟତେ ନାସମ୍ବନ୍ଧଃ ସମ୍ବନ୍ଧାନ୍ତରାପେକ୍ଷୋ ବା । ତତଶ୍ଚ ତସ୍ୟ ତସ୍ୟାନ୍ୟଃ ସମ୍ବନ୍ଧଃ କଳ୍ପୟିତବ୍ୟୋ ଯେନାବସ୍ଥା ପ୍ରସଜ୍ୟେତେତି ।

(ଘ) ନେତ୍ୟୁଚ୍ୟତେ । ସଂଯୋଗୋଽପ୍ୟେବଂ ସତି ସଂଯୋଗିଭିର୍ନିତ୍ୟସମ୍ବନ୍ଧଂ ଏବେତି ସମବାୟବନ୍ନାନ୍ୟଂ ସମ୍ବନ୍ଧମପେକ୍ଷେତ । ଅଥାର୍ଥାନ୍ତରତ୍ୱାତ୍ ସଂଯୋଗଃ ସମ୍ବନ୍ଧା-ନ୍ତରମପେକ୍ଷେତ, ସବବାୟୋଽପି ତର୍ହ୍ୟର୍ଥାନ୍ତରତ୍ୱାତ୍ ସମ୍ବନ୍ଧାନ୍ତରମପେକ୍ଷେତ । ନ ଚ ଗୁଣତ୍ୱାତ୍ ସଂଯୋଗଃ ସମ୍ବନ୍ଧାନ୍ତରମପେକ୍ଷତେ ନ ସମବାୟୋଽଗୁଣତ୍ୱାଦିତି ଯୁଜ୍ୟେତ ବକ୍ତୁମ୍ । ଅପେକ୍ଷାକାରଣସ୍ୟ ତୁଲ୍ୟତ୍ୱାତ୍ । ଗୁଣପରିଭାଷାୟାଶ୍ଚାତନ୍ତ୍ରତ୍ୱାତ୍ ।

(ଙ) ତସ୍ମାଦର୍ଥାନ୍ତରଂ ସମବାୟମଭ୍ୟୁପଗଚ୍ଛତଃ ପ୍ରସଜ୍ୟେତୈବାନବସ୍ଥା । ପ୍ରସଜ୍ୟମାନାୟାଂ ଚାନବସ୍ଥାୟାମେକାସିଦ୍ଧୌ ସର୍ବାସିଦ୍ଧେଃ ଦ୍ୱାଭ୍ୟା ମଣୁଭ୍ୟାଂ ଦ୍ୟଣୁକଂ ନୈବୋତ୍ପଦ୍ୟେତ । ତସ୍ମାଦପ୍ୟନୁପପନ୍ନଃ ପରମାଣୁ କାରଣବାଦଃ ।

(୨) ଭାଷାଂତର - (କ) ବୈଶେଷିକମାନେ ସମବାୟସ୍ୱୀକାର କଲେ ସୃଷ୍ଟି ଓ ପ୍ରଳୟର ଅଭାବ ହୁଏ । ତାହାର ପ୍ରକୃତ କାରଣବାଦର ଦ୍ୟଣୁକ ନିରାକରଣ ସହିତ ସମ୍ବନ୍ଧ ଅଛି । ଦୁଇଟି ପରମାଣୁ ଦ୍ୱାରା ଉତ୍ପଦ୍ୟମାନ ପରମାଣରୁ ଅତ୍ୟନ୍ତ ଭିନ୍ନ ହୋଇ ପରମାଣୁ ଗୁଡ଼ିକରେ ସମବେତ ହୁଏ ବୋଲି ଆପଣ ସ୍ୱୀକାର କରନ୍ତି । ପରନ୍ତୁ ଏପରି ସ୍ୱୀକାର କରି ଆପଣ ପରମାଣୁରେ କାରଣ ସମର୍ଥନ କରୁନାହାନ୍ତି କି ?

(ଖ) କାହିଁକି ? ସାମ୍ୟ ଓ ଅନବସ୍ଥିତକାରଣହେତୁ । ଯେପରି ପରମାଣୁରୁ ପୃଥକ୍ ନ ହୋଇ ଦ୍ୟଣୁକ ସମବାୟ ରୂପ ସମ୍ବନ୍ଧରୁ ସେମାନଙ୍କ ସହ ସମ୍ବନ୍ଧ ରଖେ, ସେହି ପ୍ରକାର ସମବାୟ ସମବାୟିଠାରୁ ଭିନ୍ନ ନ ହୋଇ ସମବାୟରୂପ ଅନ୍ୟ ସମ୍ବନ୍ଧରେ ସମବାୟି ସହିତ ସମ୍ବନ୍ଧ ରଖେ, କାରଣ - ସମବାୟ ଓ ସମବାୟି ମଧ୍ୟରେ ଭେଦ କିଛି ନାହିଁ । ତେଣୁ ସେହି ସମବାୟ ପାଇଁ ଅନ୍ୟ ସମ୍ବନ୍ଧ କଳ୍ପନା କରିବା ଉଚିତ । ତେଣୁ ଅନବସ୍ଥାହି ପ୍ରସକ୍ତ ହେବ ।

(ଗ) ପରନ୍ତୁ ଏଠାରେ 'ଇହ' ଶବ୍ଦର ପ୍ରତୀତଦ୍ୱାରା ବାହ୍ୟସମବାୟ ସମବାୟି ଦ୍ୱାରା ନିତ୍ୟସମ୍ବନ୍ଧରେ ଗୃହୀତ ହୁଏ । ଅସମ୍ବନ୍ଧ ବା ଅନ୍ୟସମ୍ବନ୍ଧକୁ ଅପେକ୍ଷା କରି ଗୃହୀତ ହୁଏ ନାହିଁ । ତେଣୁ ତାହାପାଇଁ ଅନ୍ୟସମ୍ବନ୍ଧକୁ କଳ୍ପନା କରିବା ଠିକ୍ ନୁହେଁ । ତଦ୍ୱାରା ଅନବସ୍ଥା ପ୍ରସକ୍ତ ହେବ ।

(ଘ) ସିଦ୍ଧାନ୍ତ - ଏହା ଠିକ୍ ନୁହେଁ । କାରଣ—ଏପରି ହେଲେ ସଂଯୋଗ ମଧ୍ୟ ସଂଯୋଗୀ ସହିତ ନିତ୍ୟ ସମ୍ବନ୍ଧ ହୁଏ । ତାହା ଦ୍ୱାରା ସମବାୟ ପରି ସଂଯୋଗ ଅନ୍ୟ ସମ୍ବନ୍ଧକୁ ଅପେକ୍ଷା କରି ରହେ ନାହିଁ । ଯଦି ସଂଯୋଗୀ ଭିନ୍ନ ଅନ୍ୟ ପଦାର୍ଥ ଦ୍ୱାରା ଅନ୍ୟ ସମ୍ବନ୍ଧକୁ ଅପେକ୍ଷା କରେ, ତଥାପି ସମବାୟ ମଧ୍ୟ ସମବାୟିଠାରୁ ଭିନ୍ନ ପଦାର୍ଥଦ୍ୱାରା ଅନ୍ୟ ସମ୍ବନ୍ଧକୁ ଅପେକ୍ଷା କରିବ । ଗୁଣ ହେଲେ ସଂଯୋଗ ଅନ୍ୟସମ୍ବନ୍ଧକୁ ଅପେକ୍ଷା କରେ ଏବଂ ଅଗୁଣ ହେଲେ ସବାୟକୁ ଅପେକ୍ଷା କରି ନାହିଁ ବୋଲି କହିବା ଅଯୌକ୍ତିକ । କାରଣ—ଦୁଇଟିରେ ଅପେକ୍ଷା କରିବାର କାରଣ ଅର୍ଥାତ୍ ସମ୍ବନ୍ଧରେ ସମ୍ବନ୍ଧିରୁ ଭିନ୍ନତା ସମାନ ଅଟେ ଓ ଗୁଣ ପରି ଭାଷା ଅଶାସ୍ତ୍ରୀୟ ଅଟେ ।

(ଙ) ତେଣୁ ସବବାୟକୁ ଅନ୍ୟ ପଦାର୍ଥରୂପରେ ସ୍ୱୀକାର କରୁଥିବା ବୈଶେଷିକ ମାନଙ୍କ ପକ୍ଷରେ ଅନବସ୍ଥା ପ୍ରସକ୍ତ ହେବ । ତେଣୁ ଅନବସ୍ଥାର ପ୍ରସକ୍ତ ହେଲେ ଗୋଟିକର ଅସିଦ୍ଧଦ୍ୱାରା ସମସ୍ତଙ୍କର ଅସିଦ୍ଧ ହୋଇ ପରମାଣୁ ଗୁଡ଼ିକରୁ ଦ୍ୟଣୁକ ଉତ୍ପନ୍ନ ହୁଏ ନାହିଁ । ତେଣୁ ପରମାଣୁ କାରଣବାଦ ଅନୁପପନ୍ନ ହୁଏ ।

## नित्यमेव च भावात् ॥१४॥

## ୧- ନିତ୍ୟମେବ ଚ ଭାବାତ୍ ॥ ୨-୨-୧୪ ॥

ପରମାଣୁର ପ୍ରବୃତ୍ତି ସ୍ୱରୂପ ସ୍ୱୀକାର କଲେ, ନିତ୍ୟମେବ—ପ୍ରବୃତ୍ତିର ନିତ୍ୟ ହେଲେ, ଭାବାତ୍-ପ୍ରଳୟାଭାବ ପ୍ରସଙ୍ଗ ହେବ । ଚ—ଏବଂ ପରମାଣୁର ନିବୃତ୍ତ ସ୍ୱରୂପ ସ୍ୱୀକାର କଲେ ନିବୃତ୍ତି ନିତ୍ୟ ହୁଏ । ସୃଷ୍ଟିର ଅଭାବପ୍ରସଙ୍ଗ ହେବ । ତେଣୁ ପରମାଣୁ କାରଣବାଦ୍ ଅନିତ୍ୟ ଅଟେ ।

(୨) ମୂଳ- (କ) ଅପିଚାଣବଃ ପ୍ରବୃତ୍ତିସ୍ୱଭାବା ବା ନିବୃତ୍ତି ସ୍ୱଭାବା ବୋଭୟସ୍ୱଭାବ ବାଽନୁଭୂୟସ୍ୱଭାବା ବାଽଭ୍ୟୁପଗମ୍ୟନ୍ତେ ଗତ୍ୟନ୍ତରାଭାବାତ୍ । ଚତୁର୍ଧାପି ନୋପପଦ୍ୟତେ । ପ୍ରବୃତ୍ତିସ୍ୱଭାବତ୍ୱେ ନିତ୍ୟମେବ ପ୍ରବୃତ୍ତେର୍ଭାବାତ୍ ପ୍ରଳୟାଭାବ ପ୍ରସଙ୍ଗଃ । ନିବୃତ୍ତିସ୍ୱଭାବତ୍ୱେଽପି ନିତ୍ୟମେବ ନିବୃତ୍ତେର୍ଭାବାତ୍ ସର୍ଗାଭାବପ୍ରସଙ୍ଗଃ ।

(ଖ) ଉଭୟସ୍ୱଭାବତ୍ୱଂ ଚ ବିରୋଧାଦସମଞ୍ଜସମ୍ । ଅନୁଭୟସ୍ୱଭାତ୍ୱେ ତୁ ନିମିତ୍ତ ବିଶାତ୍ ପ୍ରବୃତ୍ତିବୃତ୍ତିତ୍ୟୋରଭ୍ୟୁପରଗମ୍ୟମାନୟୋର ଦୃଷ୍ଟାନେର୍ନିମିତ୍ତସ୍ୟ ନିତ୍ୟସଂନିଧାନିନ୍ନି ତ୍ୟପ୍ରବୃତ୍ତି ପ୍ରସଙ୍ଗାତ୍ । ଅମନ୍ତତ୍ୱେଽପ୍ୟଦୃଷ୍ଟା ଦେର୍ନିତ୍ୟା ପ୍ରବୃତ୍ତି ପ୍ରସଙ୍ଗାତ୍ । ତସ୍ମାଦପ୍ୟନୁପପନ୍ନଃ ପରମାଣୁ କାରଣବାଦଃ ।

**(୨) ଭାଷାଂତର** - (କ) ପରମାଣୁ ପ୍ରବୃତ୍ତିସ୍ୱଭାବଯୁକ୍ତ, ନିବୃତ୍ତିସ୍ୱଭାବଯୁକ୍ତ ଉଭୟ ସ୍ୱଭାବଯୁକ୍ତ ଅଥବା ଅଥବା ଅନୁଭୟସ୍ୱଭାବଯୁକ୍ତ ବୋଲି ସ୍ୱୀକାର କରାଯାଏ କି ? କାରଣ- ଏମାନଙ୍କଠାରୁ ଅତିରିକ୍ତ ଗତି (ଅନ୍ୟପନ୍ଥା) ନାହିଁ । ଚାରିପ୍ରକାର ଏଠାରେ ପ୍ରଯୁଜ୍ୟ ନୁହେଁ । ପ୍ରବୃତ୍ତି ସ୍ୱଭାବତ୍ୱ ହେଲେ ନିତ୍ୟପ୍ରବୃତ୍ତି ହେଲେ ପ୍ରଳୟର ଅଭାବ ପ୍ରସଙ୍ଗ ହେବ । ନିବୃତ୍ତିସ୍ୱଭାବ ହେଲେ, ନିତ୍ୟ ନିବୃତ୍ତି ହେଲେ ସୃଷ୍ଟି ହେବା ଅସମ୍ଭବ ।

(ଖ) ପ୍ରବୃତ୍ତି ଓ ନିବୃତ୍ତି- ଏହି ଦୁଇଟି ସ୍ୱଭାବ ହେଲେ ପରସ୍ପର ବିରୋଧର କାରଣ ଅସଙ୍ଗତ ହୁଏ । ଯଦି ପ୍ରବୃତ୍ତି ବା ନିବୃତ୍ତି ଏହି ଉଭୟର ସ୍ୱୀକାର କରା ନ ଯାଏ, ତେବେ କୌଣସି କାରଣବଶତଃ ପ୍ରବୃତ୍ତି ଓ ନିବୃତ୍ତି ସ୍ୱୀକାର କଲେ ଅଦୃଷ୍ଟ ଓ ନିମିତ୍ତର ନିତ୍ୟ ସନ୍ନିହିତ ହେଲେ ନିତ୍ୟ ପ୍ରବୃତ୍ତିର ସ୍ୱୀକାର ହେବ । ଅଦୃଷ୍ଟାଦି ନିୟାମକ ହେଲେ ନିତ୍ୟ ଅପ୍ରବୃତ୍ତି ହେବ । ତେଣୁ ପରମାଣୁ କାରଣବାଦ ଅନୁପପନ୍ନ ହୁଏ ।

## रूपादिमत्वाच्च विपर्ययो दर्शनात् ॥२५॥

## (୧) ରୂପାଦିମତ୍ତ୍ୱାଚ୍ଚ ବିପର୍ଯ୍ୟୟୋ ଦର୍ଶନାତ୍ ॥ ୨-୨-୧୫ ॥

ଚ-ଏବଂ, ରୂପାଦିମତ୍ତ୍ୱାତ୍ - ବୈଶେଷିକ ମତରେ ପରମାଣୁ ରୂପାଦିମତ୍ତ୍ୱ ହେଲେ, ବିପର୍ଯ୍ୟୟଃ, -ସେଠାରେ ନିରବୟବତ୍ୱ ଅଣୁତ୍ୱାଦିର ବିପରୀତ ସାବୟବତ୍ୱାଦିର ପ୍ରସକ୍ତି ହେବ । ଦର୍ଶନାତ୍-କାରଣ- ବ୍ୟବହାରରେ ରୂପାଦି ଯୁକ୍ତ ଘଟାଦିରେ ଏହିପରି ଦେଖାଯାଏ ।

(୨) ମୂଳ - (କ) ସାବୟବାନାଂ ଦ୍ରବ୍ୟାଣାମବୟବଶୋ ବିଭଜ୍ୟମାନାନାଂ ଯତଃ ପରୋ ବିଭାଗେ ନ ସମ୍ଭବତି ତେ ଚତୁର୍ବିଧା ରୂପାଦିମନ୍ତଃ ପରମାଣବଶ୍ଚତୁର୍ବିଧସ୍ୟ ରୂପାଦିମତେ ଭୂତ ଭୌତିକସ୍ୟାରମ୍ଭକା ନିତ୍ୟାଶ୍ଚେତି ଯଦ୍ ବୈଶେଷିକା ଅଭ୍ୟୁପ ଗଚ୍ଛନ୍ତି ସ ତେଷାମଭ୍ୟୁପଗମୋ ନିରାଲମ୍ବନ ଏବ । ଯତୋ ରୂପାଦିମତ୍ତ୍ୱାତ ପରମାଣୁନାମମଣୁତ୍ୱ ନିତ୍ୟତ୍ୱ

ବିପର୍ଯ୍ୟାୟଃ ପ୍ରସଜ୍ୟେତ । ପରମକାରଣାପେକ୍ଷୟା ସ୍ଥୁଳତ୍ୱମନିତ୍ୟତ୍ୱଂ ଚ ତେଷାମଭିପ୍ରେତ ବିପରୀତମାପଦ୍ୟେତେତ୍ୟର୍ଥଃ ।

(ଖ) କୁତଃ ଏବଂ ଲୋକେ ଦୃଷ୍ଟତ୍ୱାତ । ଯଦି ଲୋକେ ରୂପାଦିମତ୍ ବସ୍ତୁ ତତ୍ ସ୍ୱକାରଣାପେକ୍ଷୟା ସ୍ଥୁଳ ମନିତ୍ୟଞ୍ଚ ଦୃଷ୍ଟମ୍ । ତଦ୍ୟଥା ପଟସ୍ତନ୍ତୂନପେକ୍ଷ୍ୟ ସ୍ଥୁଲୋଽନିତ୍ୟଶ୍ଚ ଭବତି ତନ୍ତବଶ୍ଚାଂଶୂନପେକ୍ଷ୍ୟ ସ୍ଥୁଳା ଅନିତ୍ୟାଶ୍ଚ ଭବନ୍ତି, ତଥାଚାମୀ ପରମାଣବୋ ରୂପାଦିମନ୍ତ ସ୍ତୈରଭ୍ୟୁପଗମ୍ୟନ୍ତେ, ତସ୍ମାତ୍ତେଽପି କାରଣବନ୍ତସ୍ତଦପେକ୍ଷୟା ସ୍ଥୁଳା ଅନିତ୍ୟାଶ୍ଚ ପ୍ରାପ୍ନୁବନ୍ତି ।

(୨) ଭାଷାଂତର - (କ) ଅବୟବ କ୍ରମରେ ବିଭଜ୍ୟମାନ ସାବୟବଦ୍ରବ୍ୟ ଗୁଡ଼ିକର ପ୍ରଥମେ ବିଭାଗ କରାଯାଏ ନାହିଁ । ସେହି ଚାରିପ୍ରକାରର ରୂପାଦି ଯୁକ୍ତ ପରମାଣୁ ରୂପାଦି ବିଶିଷ୍ଟ ଚାରିପ୍ରକାରର ଭୂତ ଓ ଭୌତିକର ଆରମ୍ଭକ ଓ ନିତ୍ୟ ଅଟେ.- ଏହା ଯାହା ବୈଶେଷିକମାନେ ସ୍ୱୀକାର କରନ୍ତି, ସେପରି ସ୍ୱୀକାର ନିରାଲମ୍ବନ ଓ ନିରାଧାର ଅଟେ, କାରଣ - ସେ ରୂପାଦି ବିଶିଷ୍ଟ ହେଲେ ପରମାଣୁ ଗୁଡ଼ିକୁ ଅଣୁତ୍ୱ ଓ ନିତ୍ୟତ୍ୱର ବିପର୍ଯ୍ୟୟ (ସ୍ଥୂଳତ୍ ଓ ଅନିତ୍ୟ)ର ପ୍ରସ୍ତୁକ୍ତି ହେବ । ପରମକାରଣର ଅପେକ୍ଷା ତାହାକୁ ଅଭିପ୍ରେତର ବିପରୀତ ସ୍ଥୁଳତ୍ୱ ଅନିତ୍ୟତ୍ୱ ପ୍ରସଙ୍ଗ ହେବ– ଏହି ଅର୍ଥ ହୁଏ ।

(ଖ) କଣ ? କାରଣ–ସଂସାରରେ ଏହିପ୍ରକାର ଦେଖାଯାଏ । ସଂସାରରେ ଯେଉଁ ରୂପାଦିଯୁକ୍ତ ବସ୍ତୁ ଅଛି, ସେ ନିଜର କାରଣକୁ ଅପେକ୍ଷା କରି ସ୍ଥୁଳ ଓ ଅନିତ୍ୟ ହେବାର ଦେଖାଯାଏ । ଯେପରି ପଟ ତନ୍ତୁଗୁଡ଼ିକୁ ଅପେକ୍ଷା କରି ସ୍ଥୁଳ ଓ ଅନିତ୍ୟ ହୁଏ ତନ୍ତୁ ନିଜେ ଅବୟବକୁ ଅପେକ୍ଷା କରି ସ୍ଥୁଳ ଓ ଅନିତ୍ୟ ହୁଏ ସେପରି ସେହି ପରମାଣୁ ମଧ୍ୟ ରୂପାଦି ହେବା ସେମାନେ ସ୍ୱୀକାର କରନ୍ତି । ତେଣୁ ସେମାନେ କାରଣଯୁକ୍ତ ଅଟନ୍ତି ଏବଂ ତାହାଙ୍କୁ ଅପେକ୍ଷା କରି ସ୍ଥୁଳ ଓ ଅନିତ୍ୟ ପ୍ରାପ୍ତ ହୁଏ ।

(୩) ମୂଳ - (କ) ଯଚ୍ଚନିତ୍ୟତ୍ୱେ କାରଣଂ ତୈରୁକ୍ତମ୍ – 'ସଦକାରଣବନ୍ନିତ୍ୟମ୍' (ବୈ.ସୂ ୪-୧-୧) ଇତି । ତଦପ୍ୟେବଂ ସତ୍ୟଣୁଷୁ ନ ସମ୍ଭବତି । ଉକ୍ତେନ ପ୍ରକାରେଣା ଣୁନାମପି କାରଣବତ୍ତ୍ୱୋପପତ୍ତେଃ ଯଦପି ନିତ୍ୟତ୍ୱେ ଦ୍ୱିତୀୟଂ କାରଣମୁକ୍ତମ୍ - 'ଅନିତ୍ୟମିତି ଚ ବିଶେଷତଃ ପ୍ରତିଷେଧାଭାବଃ' (ବୈ ୪-୧-୪) ଇତି । ତଦପି ନାବଶ୍ୟଂ ପରମାଣୁନାଂ ନିତ୍ୟତ୍ୱଂ ସାଧୟତି ।

(ଖ) ଅସତି ହି ଯସ୍ମିନ୍‌କସ୍ମିଂଶ୍ଚିନ୍ନିତ୍ୟେ ବସ୍ତୁନି ନିତ୍ୟଶବ୍ଦେନ ନଞଃ ସମାସୋ ନୋପପଦ୍ୟତେ । ନ ପୁନଃ ପରମାଣୁନିତ୍ୟତ୍ୱମେବାପେକ୍ଷ୍ୟତେ । ତଚ୍ଚାସ୍ତ୍ୟେବ ନିତ୍ୟଂ ପରମାକାରଣଂ ବ୍ରହ୍ମ । ନ ଚ ଶବ୍ଦାର୍ଥ ବ୍ୟବହାରମାତ୍ରେଣ କସ୍ୟଚିଦର୍ଥସ୍ୟ ପ୍ରସିଦ୍ଧିର୍ଭବତି ପ୍ରମାଣନ୍ତରସିଦ୍ଧୟୋଃ-ଶବ୍ଦାର୍ଥୟୋର୍ବ୍ୟବାହାରାବତାରାତ୍ ।



**(୩) ଭାଷାଂତର–** (କ) 'ସଦକାରଣବନ୍ନିତ୍ୟମ୍' (ସତ୍ ଅକାରଣ ହେଲେ ନିତ୍ୟ ହୁଏ) ଏହିପରି ପରମାଣୁର ନିତ୍ୟତ୍ୱ ବିଷୟରେ ସେମାନେ ଯେଉଁ କାରଣ କହିଲେ, ସେହି କାରଣ ପରମାଣୁ କାରଣ ହେଲେ ପରମାଣୁରେ ସମ୍ଭବ ହୁଏ ନାହିଁ । କାରଣ-ସ୍ୱର୍ଶବତ୍ ଓ ପରିଚ୍ଛିନ୍ନତ୍ୱଦ୍ୱାରା ପରମାଣୁ କାରଣଯୁକ୍ତ ହୁଏ । ପୁନଶ୍ଚ 'ଅନିତ୍ୟତ୍ୱମିତି' (ଏହା ଅନିତ୍ୟ ବୋଲି ବିଶେଷ ରୂପରେ ପ୍ରତିଷେଧର ଅଭାବ କୁହାଯାଇଛି । ଏହିପରି ପରମାଣୁର ଅନିତ୍ୟତ୍ୱବିଷୟ ଯାହା କୁହାଯାଇଛି, ତାହା ଅବଶ୍ୟ ପରମାଣୁଗୁଡ଼ିକରେ ନିତ୍ୟତ୍ୱ ସିଦ୍ଧ ହୁଏ ନାହିଁ ।

(ଖ) ଯଦି ତାହା କୌଣସି ନିତ୍ୟବସ୍ତୁ ନ ହୁଏ, ତେବେ ନିତ୍ୟଶବ୍ଦ ସହିତ ନଞ୍ସମାସ ଉପପନ୍ନ ହୁଏ ନାହିଁ । ତେଣୁ ଏଠାରେ ପରମାଣୁର ନିତ୍ୟତ୍ୱକୁ ଅପେକ୍ଷା କରାଯାଏ ନାହିଁ । ସେ ନିତ୍ୟ ପରମବ୍ରହ୍ମ ଅଟେ । ଶବ୍ଦ ଓ ଅର୍ଥର ବ୍ୟବହାର ମାତ୍ରରୁ କୌଣସି ଅର୍ଥ ପ୍ରସିଦ୍ଧି ହୁଏ ନାହିଁ, କାରଣ–ଅନ୍ୟପ୍ରମାଣଦ୍ୱାରା ସିଦ୍ଧଶବ୍ଦ ଓ ଅର୍ଥର ବ୍ୟବହାର ଓ ଅବତାରଣା କରାଯାଏ ।

(୪) ମୂଳ–(କ) ଯଦପି ନିତ୍ୟତ୍ୱେ ତୃତୀୟଂ କାରଣମୁକ୍ତମ୍ - 'ଅବିଦ୍ୟା ଚ' (ବୈ ୪-୧-୫) ଇତି, ତଦ୍ୟଦ୍ୟେବଂ ବିବ୍ରୀୟତେ ସତାଂ ପରିଦୃଶ୍ୟମାନକାର୍ଯ୍ୟାଣାଂ କାରଣାନାଂ ପ୍ରତ୍ୟକ୍ଷେଣାରହଣମବିଦ୍ୟେତି, ତତୋ ଦ୍ୟଣୁକନିତ୍ୟତାଽପ୍ୟାପଦ୍ୟେତ । ଅଥାଦ୍ରବ୍ୟତ୍ୱେ ସତୀତି ବିଶେଷ୍ୟେତ ତଥାପ୍ୟକାରଣବତ୍ତ୍ୱମେବ ନିତ୍ୟତାନିମିତ୍ତମାପଦ୍ୟେତ । ତସ୍ୟ ଚ ପ୍ରାଗେବୋକ୍ତତ୍ୱାତ୍ 'ଅବିଦ୍ୟା ଚ' ଇତି ପୁନରୁକ୍ତଂ ସ୍ୟାତ୍ ।

(ଖ) ଅଥାପି କାରଣବିଭାଗାତ୍ କାରଣବିନାଶାଚ୍ଚାନ୍ୟସ୍ୟ ତୃତୀୟସ୍ୟ ବିନାଶ-ହେତୋରସମ୍ଭବୋଽବିଦ୍ୟା ସା ପରମାଣୁନାଂ ନିତ୍ୟତ୍ୱଂ ଖ୍ୟାପୟତୀତି ବ୍ୟାଖ୍ୟାୟେତ । ସଂଯୋଗସଚିବେ ନାବଶ୍ୟଂ ବିନଶ୍ୟଦବସ୍ତୁ ଦ୍ୱାଭ୍ୟାମେବ ହେତୁଭ୍ୟାଂ ବିନଷ୍ଟୁମର୍ହତୀତି ନିୟମୋଽସ୍ତି । ହ୍ୟନେକସଂଶ୍ଚ ଦ୍ରବ୍ୟେ ଦ୍ରବ୍ୟାନ୍ତରସ୍ୟାରମ୍ଭକେଽଭ୍ୟୁପଗମ୍ୟମାନ ଏତଦେବଂ ସ୍ୟାତ୍ । ଯଦା ତ୍ୱପାସ୍ତବିଶେଷଂ ସାମାନ୍ୟାତ୍ମକଂ କାରଣଂ ବିଶେଷବଦବ-ସ୍ଥାନ୍ତରମାପଦ୍ୟମାନମାରମ୍ଭକମଭ୍ୟୁପଗମ୍ୟତେ ତଦା ଘୃତକାଠିନ୍ୟବିଲୟନବତ୍ ମୂର୍ତ୍ତ୍ୟବସ୍ଥାବିଲୟନେନାପି ବିଶ ଉପପଦ୍ୟତେ । ତସ୍ମାଦ୍ରୂପାଦିମତ୍ତ୍ୱାତ୍ ସ୍ୟାଦଭିପ୍ରେ-ତପର୍ଯ୍ୟୟଃ ପରମାଣୁ ନାମ୍ । ତସ୍ମାଦପ୍ୟନୁପପନ୍ନଃ ପରମାଣୁକାରଣବାଦଃ ।

**(୪) ଭାଷାଂତର–** (କ) 'ଅବିଦ୍ୟା ଚ' ଏହି ପ୍ରକାର ପରମାଣୁର ନିତ୍ୟତ୍ୱ-ବିଷୟରେ ଯେଉଁ ତୃତୀୟକାରଣ କୁହାଯାଇଅଛି, ତାହାର ଯଦି ''ଯାହାର କାର୍ଯ୍ୟ ପରିଦୃଶ୍ୟମାନ ଅଟେ, ସେପରି ବିଦ୍ୟମାନ କରଣକୁ ପ୍ରତ୍ୟେଭାବେ ଅଗ୍ରହଣ ଅବିଦ୍ୟା ଅଟେ'' ବୋଲି କୁହାଯାଏ, ତେବେ ଏହାଦ୍ୱାରା ଦ୍ୟଣୁକର ନିତ୍ୟତ୍ୱ ପ୍ରସଙ୍ଗ ହେବ । ଯଦି 'ଅଦ୍ରବ୍ୟତ୍ୱେ ସତି' ଅର୍ଥାତ୍ 'ଅକାରଣବତ୍ତ୍ୱେସତି' ଏହି ବିଶେଷଣ ଦିଅ; ତେବେ

ମଧ୍ୟ ଅକାରଣବତ୍ତ୍ୱ ନିତ୍ୟତ୍ୱର ନିମିତ୍ତତ ପ୍ରସକ୍ତ ହେବ । ତାହାର ପୂର୍ବରୁ କୁହାଗଲେ 'ଅବିଦ୍ୟା ଚ' ଏହି ପୁନରୁକ୍ତ ହୋଇଯିବ ।

(ଖ) ଯଦି କାରଣ–ବିଭାଗରୁ ଓ କାରଣର ବିନାଶ ଦ୍ୱାରା ଅନ୍ୟ ତୃତୀୟବିନାଶ ହେତୁର ଅସମ୍ଭବ ଅବିଦ୍ୟା ଅଟେ ଏବଂ ସେ ପରମାଣୁର ନିତ୍ୟତ୍ୱ କହେ ଏହିପରି ବ୍ୟାଖ୍ୟାନ କର, ତଥାପି ବିନାଶ ହୋଇ ବସ୍ତୁ ଅବଶ୍ୟ ଦୁଇଟି ହେତୁରେ ବିନଷ୍ଟ ହେବାର ଯୋଗ୍ୟ ହୁଏ ବୋଲି କୌଣସି ନିୟମ ନାହିଁ । କାରଣ- ସଂଯୋଗସଚିବ ଅନେକଦ୍ରବ୍ୟକୁ ଅନ୍ୟଦ୍ରବ୍ୟର ଆରମ୍ଭକ ସ୍ୱୀକାର କରିବା ନିୟମ ଥାଇପାରେ । ପରନ୍ତୁ ବିଶେଷ ନିବୃତ୍ତ ହେଲା, ତାହା ସାମାନ୍ୟାତ୍ମକ କାରଣ ବିଶେଷ ମୁକ୍ତ ଅନ୍ୟ ଅବସ୍ଥାକୁ ପ୍ରାପ୍ତ ହୋଇ ଆରମ୍ଭକ ସ୍ୱୀକାର କରାଯାଇ ଅଛି । ତେଣୁ ଘୃତର କାଠିନ୍ୟବିଲୟପରି ମୂର୍ତ୍ତ ଅବସ୍ଥାର ବିଲୟଦ୍ୱାରା ବିନାଶ ହେବା ସମ୍ଭବ । ତେଣୁ ପରମାଣୁ ରୂପାଦି ବିଶିଷ୍ଟ ହେଲେ ସେଠାରେ ଅଭିପ୍ରେତର ବିପର୍ଯ୍ୟୟ ହେବ । ତେଣୁ ପରମାଣୁ କାରଣବାଦ ଅନୁପପନ୍ନ ଅଟେ ।

## उभयथा च दोषात् ॥१६॥

## (୧) ଉଭୟଥା ଚ ଦୋଷାତ୍ ॥ ୨-୨-୧୬ ॥

ଉଭୟଥା– ପରମାଣୁ ଉପଚିତାପଚିତ ଗୁଣାତ୍ମକ ଅଟେ କି ନୁହେଁ ? ପ୍ରଥମ ପକ୍ଷରେ ଅଣୁତ୍ୱର ଭଙ୍ଗ ହେବ, ଏବଂ ଦ୍ୱିତୀୟ ପକ୍ଷରେ ସେମାନଙ୍କର କାର୍ଯ୍ୟ ପୃଥିବୀ- ଇତ୍ୟାଦିରେ ରୂପାଦିର ଅନୁପଲବ୍ଧ ପ୍ରସଙ୍ଗ ହେବ । ଏହିପରି ଦୁଇପ୍ରକାରରେ, ଚ– ମଧ୍ୟ, ଦୋଷାତ୍- ଦୋଷ ହେଲେ ପରମାଣୁ କାରଣବାଦ ଅନୁପପନ୍ନ ହୁଏ ।

(୨) ମୂଳ– (କ) ଗନ୍ଧରସରୂପସ୍ପର୍ଶଗୁଣାଃ ସ୍ଥୂଳା ପୃଥିବୀ, ରୂପରସସ୍ପର୍ଶଗୁଣାଃ ସୂକ୍ଷ୍ମା ଆପଃ, ରୂପସପର୍ଶଗୁଣଂ ସୂକ୍ଷ୍ମତମୋ ସୂକ୍ଷ୍ମତରଂ ତେଜଃ, ସ୍ପର୍ଶଗୁଣଃ ବାୟୁରିତ୍ୟେବଂମେତାନି ଚତ୍ୱାରି ଭୂତାନ୍ୟୁପଚିତାପଚିତ ଗୁଣାନି ସ୍ଥୂଳସୂକ୍ଷ୍ମସୂକ୍ଷ୍ମତରସୂକ୍ଷ୍ମତମମତତାରତମୋପ୍ୟେ- ତାନି ଚ ଲୋକେ ଲକ୍ଷ୍ୟନ୍ତେ, ତଦ୍‌ବତ୍ ପରମାଣବୋଽପ୍ୟୁପଚିତାପଚିତଗୁଣାଃ କଲ୍ପ୍ୟେରନ୍ନ ବା । ଉଭୟଥା ଚ ଦୋଷାନୁଷଙ୍ଗୋପରିହାର୍ଯ୍ୟ ଏବସ୍ୟାତ୍ । କଳ୍ପ୍ୟମାନେ ତାବଦୁପଚିତାପ- ଚିତଗୁଣତ୍ୱ ଉପଚିତଗୁଣାନାଂ ମୂର୍ତ୍ତ୍ୟୁପଚୟାଦପରମାଣୁତ୍ୱପ୍ରସଙ୍ଗଃ ।

(ଖ) ନଚାନ୍ତରେଣାପି ମୂର୍ତ୍ତ୍ୟୁପଚୟଂ ଗୁଣୋପଚୟୋ ଭବତୀତ୍ୟୁଚ୍ୟତେ, କାର୍ଯ୍ୟେଷୁ ଭୂତେଷୁ ଗୁଣୋପଚୟେ ମୂର୍ତ୍ତ୍ୟୁପଚୟଦର୍ଶନାତ୍ । ଅକଳ୍ପ୍ୟମାନେ ଭୂପଚିତାପଚିତଗୁଣତ୍ୱେ ପରମାଣୁ ତ୍ୱସାମ୍ୟପ୍ରସିଦ୍ଧୟେ ଯଦି ତାବତ୍ସର୍ବଂ ଏକୈଅକଗୁଣା ଏବ କଲ୍ପ୍ୟେରଂସ୍ତତ୍ତେଜସି ସ୍ପର୍ଶସ୍ୟୋପଲବ୍ଧିର୍ନ ସ୍ୟାତ, ଅପସୁ ରୂପସ୍ପର୍ଶୟୋଃ, ପୃଥିବ୍ୟାଞ୍ଚ ରସରୁପସ୍ପର୍ଶାନାଂ,



କାରଣଗୁଣପୂର୍ବକତ୍ୱାତ୍ କାର୍ଯ୍ୟଗୁଣାନାମ୍ । ଅଥ ସର୍ବେ ଚତୁର୍ଗୁଣ ଏବ କଲ୍ପ୍ୟେରନ୍, ତତୋଽପ୍ସ୍ୱପି ଗନ୍ଧସ୍ୟୋପଲବ୍ଧିଃ ସ୍ୟାତ୍ ତେଜସି ଗନ୍ଧରସୟୋଃ, ବାୟୌ ଗନ୍ଧରସରୂପାନାମ୍ । ନ ଚୈବଂ ଦୃଶ୍ୟତେ । ତସ୍ମାଦପ୍ୟନୁପପନ୍ନଃ ପରମାଣୁ କାରଣବାଦଃ ।

(୨) ଭାଷାଂତର - (କ) ଗନ୍ଧ, ରସ, ରୂପ, ଓ ସ୍ପର୍ଶ ଗୁଣଶାଳୀ ପୃଥିବୀ ଅଟେ । ରୂପ, ରସ ଓ ସ୍ପର୍ଶଗୁଣବିଶିଷ୍ଟ ଜଳ ସୂକ୍ଷ୍ମ ଅଟେ । ରୂପ ଓ ସ୍ପର୍ଶଗୁଣବାନ୍ ତେଜ ସୂକ୍ଷ୍ମତର ଏବଂ ସ୍ପର୍ଶଗୁଣବାନ୍ ସୂକ୍ଷ୍ମତମ ଅଟେ- ଏହିପ୍ରକାର ଏହି ଚାରିଭୂତ ଅଧିକ ଓ ନ୍ୟୂନଗୁଣବାନ୍ ସ୍ଥୁଳ, ସୂକ୍ଷ୍ମ, ସୂକ୍ଷ୍ମତର ଓ ସୂକ୍ଷ୍ମତମ ତାରତମ୍ୟ ଯୁକ୍ତ ହେବା ସଂସାରରେ ଦେଖାଯାଏ । ଏହିପ୍ରକାର ସ୍ଥୁଳ-ସୂକ୍ଷ୍ମ ପୃଥିବୀ ଜଳପରି ତାହାର ପରମାଣୁ ଉପଚିତ ଅର୍ଥାତ୍ ଅଧିକ, ଅପଚିତ ଅର୍ଥାତ୍ ନ୍ୟୂନଗୁଣଶାଳୀରୂପେ କଳ୍ପନା କରାଯାଏ କି ନୁହେଁ ? ଏହି ଦୁଇପ୍ରକାରରେ ଦୋଷର ପ୍ରସକ୍ତି ଅପରିହାର୍ଯ୍ୟ ହେବ । ଉପଚିତ ଅପଚିତଗୁଣବିଶିଷ୍ଟ ପରମାଣରୁ କଳ୍ପନା କଲାପରେ ଉପଚିତ ଗୁଣଶାଳୀ ପରମାଣୁର ମୂର୍ତ୍ତି (ଆକାର)ର ଉପଚୟ ହେଲେ ଅପରମାଣୁତ୍ୱର ପ୍ରସଙ୍ଗ ହେବ ।

(ଖ) ମୂର୍ତ୍ତିର ଉପଚୟ ବିନା ଗୁଣର ଉପଚୟ ହେବ ବୋଲି କୁହାଯାଇନପାରେ, କାରଣ-କାର୍ଯ୍ୟ ଭୂତଗୁଡ଼ିକରେ ଗୁଣର ଉପଚୟ ହେଲାପରେ ମୂର୍ତ୍ତିର ଉପଚୟ ଦେଖାଯାଏ । ଯଦି ଉପଚିତ ଓ ଅପଚିତଗୁଣତ୍ୱବିଶିଷ୍ଟ ପରମାଣୁର କଳ୍ପନା ନକରି ପରମାଣୁତ୍ୱର ସାମ୍ୟସିଦ୍ଧି ପାଇଁ ସବୁ ପରମାଣୁ ଗୋଟିଏ ଗୋଟିଏ ଗୁଣରେ ସମନ୍ୱିତ ହେବା ସ୍ୱୀକାରକରାଯାଏ । କିନ୍ତୁ ତେଜର ସ୍ପର୍ଶର ଜଳରେ ରୂପ ଓ ସ୍ପର୍ଶର, ପୃଥିବୀରେ ରସ, ରୂପ ଓ ସ୍ପର୍ଶର ଉପଲବ୍ଧି ହେବ ନାହିଁ । କାରଣ- କାର୍ଯ୍ୟର ଗୁଣ କାରଣ ଗୁଣ ପୂର୍ବକ ହୁଅନ୍ତି । ଯଦି ସମସ୍ତେ ଚାରିଗୁଣଯୁକ୍ତ ରୂପେ କଳ୍ପନା କରାଯାଏ, ତେବେ ଜଳରେ ଗନ୍ଧର, ତେଜର ଗନ୍ଧ ଓ ରସର, ବାୟୁରେ ଗନ୍ଧ, ରୂପ ଓ ରସର ଉପଲବ୍ଧି ହେବ । ପରନ୍ତୁ ଏହିପରି ଦେଖାଯାଏ ନାହିଁ । ତେଣୁ ଏଠାରେ ପରମାଣୁ କାରଣବାଦ ଅନୁପପନ୍ନ ହୁଏ ।

## अपरिग्रहाच्चात्यन्तमनपेक्ष ॥१७॥
## (୧) ଅପରିଗ୍ରହାଚ୍ଚାତ୍ୟନ୍ତମନପେକ୍ଷା ॥୨-୨-୧୭ ॥

ଅପରିଗ୍ରହାଚ୍ଚ - ପରମାଣୁ କାରଣବାଦକୁ ମନୁ ପ୍ରଭୃତି ସେମାନଙ୍କର କୌଣସି ଗ୍ରନ୍ଥରେ ଗ୍ରହଣ କରିନାହାନ୍ତି । ତେଣୁ ଅତ୍ୟନ୍ତମନପେକ୍ଷା-କଲ୍ୟାଣାର୍ଥୀ ପୁରୁଷକୁ ସେଠାରେ ଅତ୍ୟନ୍ତ ଅନପେକ୍ଷା କରିବା ଉଚିତ୍ ।

(୨) ମୂଳ-(କ) ପ୍ରଧାନ କାରଣବାଦୋ ଦେବବିଦ୍‌ଭିରପି କୈଶ୍ଚିଲ୍ ମନ୍ୱାଦିଭିଃ ସତ୍‌କାର୍ଯ୍ୟତ୍ୱାଦ୍ୟଂ ଶୋପଜୀବନାଭିପ୍ରାୟେଣୋ ପନିବଦ୍ଧଃ । ଅୟଂ ତୁ ପରମାଣୁକାରଣବାଦୋ

ନ କୈଶ୍ଚିଦପି ଶିଷ୍ଟୈଃ କେନଚିଦପ୍ୟଂଶେନ ପରିଗୃହୀତ ଇତ୍ୟତ୍ୟନ୍ତମେବାନାଦରଣୀୟୋ ବେଦବାଦିଭିଃ । ଅପି ଚ ବୈଶେଷିକାସ୍ତନ୍ତ୍ରାର୍ଥଭୂତାନ୍ ଷଡ୍‌ପଦାର୍ଥାନ୍ ଦ୍ରବ୍ୟଗୁଣକର୍ମସାମାନ୍ୟ ବିଶେଷ ସମବାୟାଖ୍ୟାନିତ୍ୟନ୍ତଭିନ୍ନାନ୍ ଭିନ୍ନ-ଲକ୍ଷଣାନ-ଭ୍ୟୁପଗଚ୍ଛନ୍ତି । ଯଥା ମନୁଷ୍ୟୋଽଶ୍ୱଃ ଶଶ ଇତି । ତଥାତ୍ୱଂ ଚାଭ୍ୟୁପଗମ୍ୟ ତଦ୍‌ବିରୁଦ୍ଧିଂ ଦ୍ରବ୍ୟାଧୀନତ୍ୱଂ ଶେଷାଣାମଭ୍ୟୁପଗଚ୍ଛନ୍ତି ।

(ଖ) ତନ୍ନୋପପଦ୍ୟତେ। କଥମ୍ । ଯଥା ହି ଲୋକେ ଶଶକୁଶପଲାଶ ପ୍ରଭୃତିନାମତ୍ୟନ୍ତଭିନ୍ନାନାଂ ସତାଂ ନେତରେତରାଧୀନତ୍ୱଂ ଭବତି, ଏବଂ ଦ୍ରବ୍ୟାଦୀନାମତ୍ୟନ୍ତଭିନ୍ନତ୍ୱାନ୍ନୈବ ଦ୍ରବ୍ୟାଧୀନତ୍ୱଂ ଗୁଣାଦୀନାଂ ଭବିତୁମର୍ହତି । ଅଥ ଭବତିଂ ଦ୍ରବ୍ୟାଧୀନତ୍ୱଂ ଗୁଣାଦୀନାଂ ତତୋ ଦ୍ରବ୍ୟଭାବେ ଭାବାଦ୍ ଦ୍ରବ୍ୟାଭାବେଽଭାବାଦ୍ ଦ୍ରବ୍ୟମେବ ସଂସ୍ଥାନାଦିଭେଦାଦନେକଶବ୍ଦପ୍ରତ୍ୟୟଭାରା ଭବତି ଜଦ୍‌ବତ୍ । ତଥା ସତି ସାଂଖ୍ୟସିଦ୍ଧାନ୍ତ ପ୍ରସଙ୍ଗଃ ସ୍ୱସିଦ୍ଧାନ୍ତ ବିରୋଧଶ୍ଚାପଦ୍ୟେୟାତାମ୍ ।

(ଗ) ନନ୍ୱଗ୍ନେରନ୍ୟସ୍ୟାପି ସତୋ ଧୂମସ୍ୟାଗ୍ନ୍ୟଧୀନତ୍ୱଂ ଦୃଶ୍ୟତେ । ସତ୍ୟଂ ଦୃଶ୍ୟତୋ ଭେଦପ୍ରତୀତେସ୍ତୁ ତତ୍ରାଗ୍ନିଧୂମୟୋରନ୍ୟତ୍ୱଂ ନିଶ୍ଚୀୟତେ । ଇହ ତୁ ଶୁକ୍ଳଃ କମ୍ବଳୋ ରୋହିଣୀ ଧେନୁର୍ନୀଳମୁତ୍ପଳମିତି ଦ୍ରବ୍ୟସ୍ୟୈବ ତସ୍ୟ ତସ୍ୟ ତେନ ତେନ ବିଶେଷଣେନ ପ୍ରତୀୟମାନତ୍ୱାନ୍ନୈବ ଦ୍ରବ୍ୟଗୁଣୟୋରଗ୍ନିଧୂମୟୋରିବ ଭେଦପ୍ରତୀ-ତିରସ୍ତି । ତସ୍ମାଦ୍ ଦ୍ରବ୍ୟାତ୍ମକତା ଗୁଣସ୍ୟ । ଏତେନ କର୍ମସାମାନ୍ୟ ବିଶେଷ ସମବାୟାନାଂ ଦ୍ରବ୍ୟାତ୍ମକତା ବ୍ୟାଖ୍ୟାତା ।

(ଘ) ଗୁଣାଦୀନାଂ ଦ୍ରବ୍ୟାଧୀନତ୍ୱଂ ଦ୍ରବ୍ୟଗୁଣୟୋରୟୁତ ସିଦ୍ଧତ୍ୱାଦିତି ଯଦୁଚ୍ୟେତ, ତତ୍‌ପୁନରୟୁତସିଦ୍ଧତ୍ୱମପୃଥଗ୍ ଦେଶତ୍ୱଂ ବା ସ୍ୟାଦପୃଥକ କାଲତ୍ୱଂ ବାଽପୃଥକସ୍ୱଭାବତ୍ୱଂ ବା । ସର୍ବଥାପି ନୋପପଦ୍ୟତେ । ଅପୃଥଗ୍ ଦେଶତ୍ୱେ ତାବତ୍‌ସ୍ୱାଭ୍ୟୁପଗମୋ ବିରୁଧ୍ୟେତ । କଥମ୍ । ତନ୍ତ୍ୱାରବୋଧ ହି ପଟସ୍ତନ୍ତୁଦେଶୋଽଭ୍ୟୁପଗମ୍ୟତେ ନ ପଟଦେଶଃ । ପଟସ୍ୟ ତୁ ଗୁଣାଃ ଶୁକ୍ଳତ୍ୱାଦୟଃ ପଟଦେଶା ଅଭ୍ୟୁପଗମ୍ୟନ୍ତେ ନ ତନ୍ତୁଦେଶାଃ । ତଥାପ୍ୟାହୁଃ- 'ଦ୍ରବ୍ୟାଣି ଦ୍ରବ୍ୟାନ୍ତରମାରଭନ୍ତେ ଗୁଣାଶ୍ଚ ଗୁଣାନ୍ତରମ୍' (ବୈ ୧-୧-୧୦) ଇତି । ତନ୍ତବୋ ହି କାରଣଦ୍ରବ୍ୟାଣି କାର୍ଯ୍ୟଦ୍ରବ୍ୟଂ ପଟମାରମ୍ଭନ୍ତେ । ତନ୍ତୁଗତାଶ୍ଚ ଗୁଣାଃ ଶୁକ୍ଳାଦୟଃ କାର୍ଯ୍ୟଦ୍ରବ୍ୟେ ପଟେ ଶୁକ୍ଳାଦିଗୁଣାନ୍ତରମାରଭନ୍ତି ଇତି ହି ତେଽଭ୍ୟୁପଗଚ୍ଛନ୍ତି । ସୋଽଭ୍ୟୁପଗମୋ ଦ୍ରବ୍ୟଗୁଣୟୋର ପୃଥଗ୍ ଦେଶତ୍ୱେଽଭ୍ୟୁପଗମ୍ୟମାନେ ବାଧ୍ୟେତ ।

**(୨) ଭାଷାଂତର** - (କ) କୌଣସି ଏକ ବେଦବିତ୍ ମନୁ ପ୍ରଭୃତି ପ୍ରଧାନ କାରଣବାଦକୁ ସତକାର୍ଯ୍ୟାଦିର ଅଂଶରୂପେ ଉପଜୀବନ କରନ୍ତି-ଏହି ଅଭିପ୍ରାୟରୁ ସେ



ନିଜେ ସ୍ମୃତିଗ୍ରନ୍ଥରେ ସ୍ଥାନ ଦେଇଅଛନ୍ତି । ପରନ୍ତୁ ଏହି ପରମାଣୁ କାରଣବାଦ କୌଣସି ଏକ ଅଂଶରେ କୌଣସି ଏକ ଶ୍ରେଷ୍ଠ ପୁରୁଷ ଦ୍ୱାରା ଗୃହୀତ ହୋଇନାହିଁ । ତେଣୁ ବେଦବାଦିମାନେ ସ୍ପଷ୍ଟଭାବେ ଅନାଦରଣୀୟ ଅଟନ୍ତି । ବୈଶେଷିକ ନିଜେ ଶାସ୍ତ୍ରର ଅର୍ଥଭୂତ ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ ନାମର ମନୁଷ୍ୟ, ଅଶ୍ୱ ଓ ଶଶକପରି ଅତ୍ୟନ୍ତ ଭିନ୍ନ ଓ ଭିନ୍ନଲକ୍ଷଣଯୁକ୍ତ ଛଅଟି ପଦାର୍ଥ ସ୍ୱୀକାର କରନ୍ତି । ସେହିପରି ସ୍ୱୀକାର କରି ତାହାର ବିରୁଦ୍ଧ ଶେଷ ସମସ୍ତ ପଦାର୍ଥ ଦ୍ରବ୍ୟର ଅଧୀନ ରୂପେ ମାନନ୍ତି ।

(ଖ) ପରନ୍ତୁ ତାହା ଉପପନ୍ନ ହୁଏ ନାହିଁ । କାରଣ- ଯେପରି ବ୍ୟବହାରରେ ଶଶକ, କୁଶ, ପଳାଶାଦି ଅତ୍ୟନ୍ତ ଭିନ୍ନ ହୋଇ ଜଣେ ଅନ୍ୟଜଣକର ଅଧିନ ହୁଏ ନାହିଁ, ସେହିପରି ଦ୍ରବ୍ୟାଦି ମଧ୍ୟ ଅତ୍ୟନ୍ତଭିନ୍ନ ହେଲେ ଗୁଣ ପ୍ରଭୃତି ଦ୍ରବ୍ୟର ଅଧୀନ ହୁଅନ୍ତି ନାହିଁ । ଯଦ୍ୟପି ଗୁଣ ପ୍ରଭୃତି ଦ୍ରବ୍ୟର ଅଧୀନ ହୁଅନ୍ତି, ତେବେ ଦ୍ରବ୍ୟ ଭାବରେ ଭାବ ଓ ଦ୍ରବ୍ୟର ଅଭାବରେ ଅଭାବ ସ୍ୱୀକାର କଲେ ଦ୍ରବ୍ୟ କେବଳ ସଂସ୍ଥାନାଦି ଭେଦରେ ଅନେକ ଶବ୍ଦ ଓ ପ୍ରତୀତିର ଭାଗୀ ହୁଏ । ସେହିପରି ସ୍ୱୀକାର କଲେ ସାଂଖ୍ୟ ବେଦାନ୍ତର ସିଦ୍ଧାନ୍ତ ଏବଂ ସ୍ୱସିଦ୍ଧାନ୍ତର ବିରୋଧ ପ୍ରସଙ୍ଗ ହେବ ।

(ଗ) ପରନ୍ତୁ ଅଗ୍ନିଠାରୁ ପୃଥକ୍ ହୋଇ ଧୂମ ଅଗ୍ନିର ଅଧୀନରୂପେ ଦେଖାଯାଏ । ଠିକ୍ ରୂପେ ଦେଖାଯାଏ, ଭେଦପ୍ରତୀତି ହେଲେ କିନ୍ତୁ ସେଠାରେ ଅଗ୍ନି ଓ ଧୂମର ଅନ୍ୟତ୍ୱ ନିଶ୍ଚିତ ହୁଏ । ପରନ୍ତୁ ଏଠାରେ ଶୁକ୍ଳ, କମ୍ବଳ, ନାଲିଗାଇ ଏବଂ ନୀଳକମଳ, ଏହି ପ୍ରକାର ତତ୍ ତତ୍ ଦ୍ରବ୍ୟରେ ତତ୍ ତତ୍ ବିଶେଷଣ ଦ୍ୱାରା ପ୍ରତୀୟମାନ ହେବାରୁ ଅଗ୍ନି ଓ ଧୂମ ସଦୃଶ ଦ୍ରବ୍ୟ ଓ ଗୁଣର ଭେଦପ୍ରତୀତି ହୁଏ ନାହିଁ । ତେଣୁ ଗୁଣ ଦ୍ରବ୍ୟାତ୍ମକ ଅଟେ, ତଦ୍ଦ୍ୱାରା କର୍ମ, ସାମାନ୍ୟ, ବିଶେଷ ଓ ସମବାୟ ଦ୍ରବ୍ୟାତ୍ମକ ବ୍ୟାଖ୍ୟାତ ହୁଅନ୍ତି ।

(ଘ) ଯଦି କହ ଯେ- ଦ୍ରବ୍ୟ ଓ ଗୁଣ ଅଯୁତସିଦ୍ଧ ଅଟେ । ତେଣୁ ଗୁଣ ପ୍ରଭୃତି ଦ୍ରବ୍ୟର ଅଧୀନ ଅଟେ । ତେବେ ସେ ଅଯୂତ ସିଦ୍ଧତ୍ୱ ଅପୃଥଗ୍ ଦେଶତ୍ୱ ଅଟେ । ଅଥବା ଅପୃଥକ୍ କାଳତ୍ୱ ଅଥବା ଅପୃଥକ ସ୍ୱଭାବତ୍ୱ ଅଟେ । ସର୍ବଦା ତାହା ଉପପନ୍ନ ନୁହେଁ । ଯଦି ଅପୃଥକ୍ ଦେଶତ୍ୱ ହୁଏ, ତେବେ ସ୍ୱସିଦ୍ଧାନ୍ତ ଦ୍ୱାରା ବିରୋଧ ହେବ, କାରଣ-ତନ୍ତୁ ଦ୍ୱାରା ଉତ୍ପନ୍ନ ହେଉଥିବା ପଟ ତନ୍ତୁ ଦେଶକୁ ସ୍ୱୀକାର କରନ୍ତି । କିନ୍ତୁ ପଟ ଦେଶ ନୁହେଁ ଏବଂ ପଟର ଶୁକ୍ଳତ୍ୱାଦି ଗୁଣ ପଟଦେଶରୂପେ ସ୍ୱୀକାର କରନ୍ତି । ତନ୍ତୁ ଦେଶ ଯୁକ୍ତ ନୁହଁନ୍ତି । ତେଣୁ ବୈଶେଷିକମାନେ କହନ୍ତି- 'ଦ୍ରବ୍ୟାଣି' (ଦ୍ରବ୍ୟ ଅନ୍ୟ ଦ୍ରବ୍ୟକୁ ଆରମ୍ଭ କରନ୍ତି ଏବଂ ଗୁଣ ଅନ୍ୟଗୁଣକୁ ମଧ୍ୟ ଆରମ୍ଭ କରନ୍ତି) ଏହିପରି କାରଣ ଦ୍ରବ୍ୟ ତନ୍ତୁ କାର୍ଯ୍ୟ ଦ୍ରବ୍ୟପଟକୁ ଆରମ୍ଭ କରନ୍ତି ଏବଂ ତନ୍ତୁଗତ ଶୁକ୍ଳାଦିଗୁଣ କାର୍ଯ୍ୟଦ୍ରବ୍ୟ ପଟରେ ଅନ୍ୟ ଶୁକ୍ଳାଦିଗୁଣକୁ ଆରମ୍ଭ କରନ୍ତି । ଦ୍ରବ୍ୟ ଓ ଗୁଣକୁ ଅପୃଥଗ୍ ଦେଶତ୍ୱରୂପ ସ୍ୱୀକାର କଲା ପରେ ସେହି ପ୍ରମାଣ ବାଧିତ ହେବ ।

(୩) ମୂଳ-(କ) ଅଥା ପୃଥକ୍ କାଳତ୍ୱମୟୁତସିଦ୍ଧତ୍ୱମୁଚ୍ୟେତ ସବ୍ୟଦକ୍ଷିଣୟୋରପି ଗୋବିଷାଣୟୋରୟୁତସିଦ୍ଧତ୍ୱଂ ପ୍ରସଜ୍ୟେତ । ତଥାଽପୃଥକ ସ୍ୱଭାବତ୍ୱେ ତ୍ୱୟୁତସିଦ୍ଧତ୍ୱେନ ଦ୍ରବ୍ୟ ଗୁଣୟୋରାତ୍ମଭେଦଃ ସମ୍ଭବତି, ତସ୍ୟ ତାଦାତ୍ମ୍ୟେନୈବ ପ୍ରତୀୟମାନତ୍ୱାତ୍ । ୟୁତସିଦ୍ଧୟୋଃ ସମ୍ବନ୍ଧଃ ସଂୟୋଗାଽୟୁତସିଦ୍ଧୟୋସ୍ତୁ ସମବାୟ ଇତ୍ୟୟମଭ୍ୟୁପଗମୋ ମୃଷୈବ ତେଷାମ୍, ପ୍ରାକ୍‌ସିଦ୍ଧସ୍ୟ କାର୍ଯ୍ୟାତ୍ କାରଣସ୍ୟାୟୁତସିଦ୍ଧତ୍ୱାନୁପପତ୍ତେଃ । ଅଥାନ୍ୟ ତରାପେକ୍ଷ ଏବାୟମଭ୍ୟୁପଗମଃ ସ୍ୟାଦୟୁତସିଦ୍ଧସ୍ୟ କାର୍ଯ୍ୟସ୍ୟ କାରଣେନ ସଂବନ୍ଧଃ ସମବାୟ ଇତି, ଏବମପି ପ୍ରାଗସିଦ୍ଧସ୍ୟାଲବଧାତ୍ମକସ୍ୟ କାର୍ଯ୍ୟସ୍ୟ କାରଣେନ ସମ୍ବନ୍ଧୋ ନୋପୋଦ୍ୟତେ ଦ୍ୱୟାୟତ୍ତତ୍ୱାତ୍ ସଂବନ୍ଧସ୍ୟ ।

(ଖ) ସିଦ୍ଧଂ ଭୂତ୍ୱା ସଂବଧ୍ୟତ ଇତି ଚେତ୍, ପ୍ରାକ୍ କାରଣ ସଂବନ୍ଧାତ୍ କାର୍ଯ୍ୟସ୍ୟ ସିଦ୍ଧାବଭ୍ୟୁପଗମ୍ୟମାନାୟମୟୁତସିଦ୍ଧ୍ୟଭାଚାତ୍ କାର୍ଯ୍ୟକାରଣୟୋଃ ସଂୟୋଗବିଭାଗୌ ଚ ବିଦ୍ୟେତେ ଇତୀବଂ ଦୁରୁକ୍ତଂ ସ୍ୟାତ୍ । ଯଥା ଚୈତ୍ପନ୍ନମାକ୍ରସ୍ୟକ୍ରିୟସ୍ୟ କାର୍ଯ୍ୟ ଦ୍ରବ୍ୟସ୍ୟ ବିଭୁଭିରାକାଶାଦିଭିଃ ଦ୍ରବ୍ୟାନ୍ତରୈଃ ସଂବନ୍ଧଃ ସଂୟୋଗ ଏବାଭ୍ୟୁପଗମ୍ୟତେ, ନ ସମବାୟଃ, ଏବଂ କାରଣଦ୍ରବ୍ୟେଣାପି ସଂଚନ୍ଧଃ ସଂୟୋଗ ଏବ ସ୍ୟାନ୍ନ ସମବାୟଃ । ନାପି ସଂୟୋଗସ୍ୟ ସମବାୟସ୍ୟ ବା ସଂବନ୍ଧସ୍ୟ ସଂବନ୍ଧି ବ୍ୟତିରେକେଣାସ୍ତିତ୍ୱଂ କିଞ୍ଚିତ୍ ପ୍ରମାଣମସ୍ତି ।

(ଗ) ସଂବନ୍ଧିଶବ୍ଦପ୍ରତ୍ୟୟବ୍ୟତିରେକେଣ ସଂୟୋଗ ସମବାୟଶବ୍ଦ ପ୍ରତ୍ୟୟଦର୍ଶନାତ୍ ତୟୋରସ୍ତିତ୍ୱମିତି ଚେତ୍ । ନା ଏକତ୍ୱେଽପି ସ୍ୱରୂପବାହ୍ୟରୂପାପେକ୍ଷୟା ନେକଶବ୍ଦପ୍ରତ୍ୟୟଦର୍ଶନାତ୍ । ଯଥୈକୋଽପି ସନ୍ ଦେବଦତ୍ତୋ ଲୋକେ ସ୍ୱରୂପଂ ସଂବନ୍ଧିରୂପଂ ଚାପେକ୍ଷାନେକ ଶବ୍ଦ ପ୍ରତ୍ୟୟଭାଗ୍ ଭବତି, ମନୁଷ୍ୟୋ ବ୍ରାହ୍ମଣଃ ଶ୍ରୋତ୍ରିୟୋ ବଦାନ୍ୟୋ ବାଲୋ ଯୁବା ସ୍ଥବିରଃ, ପିତା, ପୁତ୍ରଃ, ପୌତ୍ରୋ, ଭ୍ରାତ୍ରା, ଜାମାତେତି, ଯଥା ଚୈକାପି ସତୀରେଖା ସ୍ଥାନାନ୍ୟତ୍ୱେନ ନିବିଶମାନୈକ ଦଶଶତ ସହସ୍ରାଦି ଶବ୍ଦପ୍ରତ୍ୟୟଭେଦମନୁଭବତି, ତଥାସଂବନ୍ଧିନୋରେବ ସଂବନ୍ଧି ଶବ୍ଦପ୍ରତ୍ୟୟ ବ୍ୟତିରେକେଣ ସଂୟୋଗ ସମବାୟଶବ୍ଦପ୍ରତ୍ୟୟାର୍ହତ୍ୱଂ ନ ବ୍ୟତିରିକ୍ତ ବସ୍ତ୍ୱସ୍ତିତ୍ୱେନ, ଇତ୍ୟୁପଲବଧି ଲକ୍ଷଣ ପ୍ରାପ୍ତସ୍ୟାନୁପଲବ୍ଧେରଭାବୋ ବସ୍ତ୍ୱନ୍ତରସ୍ୟ ।

**(୩) ଭାଷାଂତର** - (କ) ଯଦି ଅପୃଥକ୍ କାଳତ୍ୱ ଅପୁତସିଦ୍ଧତ୍ୱ କୁହ, ତେବେ ଗାଈର ବାମ ଓ ଦକ୍ଷିଣ ଶିଙ୍ଘ ଅୟୁତସିଦ୍ଧ ହେବେ । ସେହି ପ୍ରକାର ଅପୃଥକ୍ ସ୍ୱଭାବତ୍ୱ ଅୟୁତସିଦ୍ଧତ୍ୱ ହେଉ, କିନ୍ତୁ ଦ୍ରବ୍ୟ ଓ ଗୁଣରୁ ସ୍ୱରୂପଭେଦ ଅସମ୍ଭବ ଅଟେ, କାରଣ-ଏହି ଗୁଣ ତାଦାତ୍ମ୍ୟରୁ ପ୍ରତୀୟମାନ ହୁଏ । ୟୁତସିଦ୍ଧ ପଦାର୍ଥ ଗୁଡ଼ିକର ସମ୍ବନ୍ଧ ସଂୟୋଗ ଅଟେ ଏବଂ ଅୟୁତସିଦ୍ଧ ପଦାର୍ଥଗୁଡ଼ିକର ସମ୍ବନ୍ଧ ସମବାୟ ଅଟେ । ଏହିପରି ସେମାନଙ୍କର ସିଦ୍ଧାନ୍ତ ମିଥ୍ୟା ଅଟେ । କାରଣ- କାର୍ଯ୍ୟର ପୂର୍ବସିଦ୍ଧ କାରଣ ଅୟୁତ ସିଦ୍ଧ ନୁହେଁ । ଯଦି କହ ଯେ- କାର୍ଯ୍ୟ କାରଣ ମଧ୍ୟରୁ ଗୋଟିଏ ଅପେକ୍ଷା ସ୍ୱୀକାର ହେବ, ତେଣୁ ଅୟୁତ ସିଦ୍ଧ କାର୍ଯ୍ୟର କାରଣ



ସହିତ ସମ୍ବନ୍ଧ ସମବାୟ । କିନ୍ତୁ ଏହିପରି ଅଙ୍ଗୀକାର କଲେ ଯିଏ ନିଜ ସ୍ୱରୂପକୁ ପାଆନ୍ତି ନାହିଁ, ତାହାର ପୂର୍ବ ଅସିଦ୍ଧ କାର୍ଯ୍ୟର କାରଣ ସହିତ ସମ୍ବନ୍ଧ ଉପପନ୍ନ ହୁଏ ନାହିଁ । କାରଣ-ସମ୍ବନ୍ଧ ଦୁଇଟିଯାକର ଅଧୀନ ଅଟେ ।

(ଖ) ଯଦି କହ ଯେ- କାର୍ଯ୍ୟ ସିଦ୍ଧ ହେଲେ କାରଣ ସହିତ ସମ୍ବନ୍ଧ ହୁଏ । କିନ୍ତୁ କାରଣ ସମ୍ବନ୍ଧରୁ ପ୍ରଥମେ କାର୍ଯ୍ୟ ସ୍ୱୀକାର କଲାପରେ ଅଯୁତସିଦ୍ଧର ଅଭାବ ହେଲେ କାର୍ଯ୍ୟ କାରଣର ବିଭାଗସଂଯୋଗ ହୁଏ ନାହିଁ । ଏହି ଉକ୍ତି ଅସଙ୍ଗତ ହେବ । ଯେପରି ଉତ୍ପନ୍ନ ମାତ୍ର କ୍ରିୟାରହିତ ଦ୍ରବ୍ୟର ବିଭୁ ଆକାଶ ପ୍ରଭୃତି ଅନ୍ୟଦ୍ରବ୍ୟ ସହିତ ସମ୍ବନ୍ଧ ସଂଯୋଗ ସ୍ୱୀକାର କରାଯାଏ, କିନ୍ତୁ ସମବାୟ ନୁହେଁ, ସେହିପରି କାରଣ ଦ୍ରବ୍ୟସହ ସଂବନ୍ଧସଂଯୋଗ ହେବ, ସମବାୟର ନୁହେଁ । ସମ୍ବନ୍ଧିମାନଙ୍କଠାରୁ ପୃଥକ୍ ସଂଯୋଗ ଅଥବା ସମବାୟ ସମ୍ବନ୍ଧର ଅସ୍ତିତ୍ୱ ବିଷୟରେ କୌଣସି ପ୍ରମାଣ ନାହିଁ ।

(ଗ) ଯଦି କହ ଯେ- 'ସମ୍ବନ୍ଧୀ' ଏହି ଶବ୍ଦ ଏବଂ ପ୍ରତ୍ୟୟର ଅତିରିକ୍ତ ସଂଯୋଗ ଅଥବା ସମବାୟ ଶବ୍ଦ ଏବଂ ପ୍ରତୀତିର ଦର୍ଶନରୁ ସେମାନଙ୍କର ପୃଥକ୍ ଅସ୍ତିତ୍ୱ ରହେ । ତାହା କିନ୍ତୁ ଠିକ୍ ନୁହେଁ । କାରଣ-ଗୋଟିକରେ ସ୍ୱରୂପ ଓ ବାହ୍ୟରୂପ ବ୍ୟତୀତ ଅନେକ ଶବ୍ଦ ଓ ପ୍ରତ୍ୟୟ ଦେଖାଯାଏ । ଯେପରି ଦେବଦତ୍ତ ଜଣେ ହୋଇ ବ୍ୟବହାରରେ ସ୍ୱରୂପ ଓ ସମ୍ବନ୍ଧରୂପକୁ ଅପେକ୍ଷା କରି ମନୁଷ୍ୟ, ବ୍ରାହ୍ମଣ, ଶ୍ରୋତ୍ରିୟ ଦାତା, ବାଳକ, ଯୁବା, ବୃଦ୍ଧ, ପିତା, ପୌତ୍ର, ଭ୍ରାତ୍ରା, ଜାମାତା-ଏହିପରି ଅନେକ ଶବ୍ଦ ଓ ପ୍ରତ୍ୟୟରେ ଭାଗୀ ହୁଅନ୍ତି । ଯେପରି ଏକ ରେଖା ସ୍ଥାନ ଭେଦରେ ନିୟୋଜିତ ହୋଇ ଏକ, ଦଶ, ଶତ, ସହସ୍ରାଦି ଶବ୍ଦ ଏବଂ ପ୍ରତ୍ୟୟ ବିଶେଷର ଅନୁଭବ ବିଷୟ ହୁଏ । ସେହିପରି ଦୁଇଟି ସମ୍ବନ୍ଧୀ ସଂବନ୍ଧର ଅନୁଯୋଗୀ ଓ ପ୍ରତିଯୋଗୀ ସଂବନ୍ଧୀ ଶବ୍ଦ ଏବଂ ପ୍ରତ୍ୟେକ ଭେଦରେ ସଂଯୋଗ ଓ ସମବାୟ- ଏହି ଶବ୍ଦ ଏବଂ ପ୍ରତ୍ୟୟ ଯୋଗ୍ୟ ହୁଅନ୍ତି । କିନ୍ତୁ ଅତିରିକ୍ତ ବସ୍ତୁତ୍ୱର ଅସ୍ତିତ୍ୱ ଦ୍ୱାରା ନୁହେଁ । ଏହିପରି ଉପଲବ୍ଧି ରୂପ ଲିଙ୍ଗରୁ ପ୍ରାପ୍ତ ଅନ୍ୟ ପଦାର୍ଥର (ସଂଯୋଗାଦି ସଂବନ୍ଧୀଠାରୁ ଭିନ୍ନ) ଅନୁପଲବ୍ଧିରୁ ଅଭାବ ସ୍ଥିର କରାଯାଏ ।

(୪) ମୂଳ-(କ) ନାପି ସଂବନ୍ଧିବିଷୟତ୍ୱେ ସମ୍ବନ୍ଧଶବ୍ଦ ପ୍ରତ୍ୟୟଯୋଃ ସଂତତଭାବପ୍ରସଙ୍ଗଃ । ସ୍ୱରୂପ ବାହ୍ୟରୂପାପେକ୍ଷୟେତ୍ୟୁକ୍ତୋତ୍ତରତ୍ୱାତ୍ । ତଥାଽଣ୍ୱାତ୍ମମନସାମପ୍ରଦେଶତ୍ୱାନ୍ନ ସଂଯୋଗଃ ସମ୍ଭବତି, ପ୍ରଦେଶବତୋ ଦ୍ରବ୍ୟସ୍ୟ ପ୍ରଦେଶବତା ଦ୍ରବ୍ୟାନ୍ତରେଣ ସଂଯୋଗ ଦର୍ଶନାତ୍ ।

(ଖ) କଳ୍ପିତାଃ ପ୍ରଦେଶାଃ ଅଣ୍ୱାତ୍ମମନସାଂ ଭବିଷ୍ୟନ୍ତୀତି ଚେତ୍ । ନ । ଅବିଦ୍ୟମାନାର୍ଥ କଳ୍ପନାୟାଂ ସର୍ବାର୍ଥସିଦ୍ଧପ୍ରସଙ୍ଗାତ୍ । ଇୟାନେବାବିଦ୍ୟମାନୋ ବିରୁଦ୍ଧୋଽବିରୁଦ୍ଧୋ ବାର୍ଥଃ କଳ୍ପନୀୟୋ ନାତୋଽଧିକଃ ଇତି ନିୟମହେତ୍ୱଭାବାତ୍ । କଳ୍ପନାୟାଶ୍ଚ ସ୍ୱାୟତ୍ତତ୍ୱାତ୍ ପ୍ରଭୂତତ୍ୱ

ସଂଭବାଚ୍ଚ । ନଚ ବୈଶେଷିକୈଃ କଳ୍ପିତେଭ୍ୟଃ ଷଡ଼୍‌ଭ୍ୟଃ ପଦାର୍ଥେଭ୍ୟୋଽନ୍ୟେଽଧିକାଃ ଶତଂ ସହସ୍ରଂ ବାର୍ଥା ନ କଳ୍ପୟିତବ୍ୟା ଇତି ନିବାରକୋ ହେତୁରସ୍ତି । ତସ୍ମାଦ୍ୟସ୍ମୈ ଯସ୍ମୈ ଯଦ୍ ଯଦ୍ ରୋଚତେ ତତ୍ତତ୍ ସିଧ୍ୟେତ୍ । କଶ୍ଚିତ୍ କୃପାଳୁଃ ପ୍ରାଣିନାଂ ଦୁଃଖବହୁଳଃ ସଂସାର ଏବ ମାଭୂଦିତି କଳ୍ପୟେତ୍ । ଅନ୍ୟୋ ବା ବ୍ୟସନୀ ମୁକ୍ତାନାମପି ପୁନରୁତ୍ପତ୍ତିଂ କଳ୍ପୟେତ୍ । କସ୍ତୟୋର୍ନିବାରକଃ ସ୍ୟାତ୍ ।

(ଗ) କିଞ୍ଚାନ୍ୟତ୍ । ଦ୍ୱାଭ୍ୟାଂ ପରମାଣୁଭ୍ୟାଂ ନିରବୟବାଭ୍ୟାଂ ସାବୟବସ୍ୟ ଦ୍ୱ୍ୟଣୁକସ୍ୟାକାଶେନେବ ସଂଶ୍ଳେଷାନୁପପତ୍ତିଃ । ନହ୍ୟାକାଶସ୍ୟ ପୃଥିବ୍ୟାଦୀନାଞ୍ଚ ଜତୁକାଷ୍ଠବତ୍ ସଂଶ୍ଳେଷୋଽସ୍ତି । କାର୍ଯ୍ୟକାରଣଦ୍ରବ୍ୟୟୋରାଶ୍ରିତାଶ୍ରୟଭାବୋଽନ୍ୟଥା ନୋପପଦ୍ୟତ ଇତ୍ୟବଶ୍ୟଂ କଳ୍ପ୍ୟଃ ସମବାୟ ଇତି ଚେତ୍ । ନା ଇତରେତରାଶ୍ରୟତ୍ୱାତ୍ । କାର୍ଯ୍ୟକାରଣୟୋର୍ହି ଭେଦସିଦ୍ଧାବାଶ୍ରିତା ଶ୍ରୟଭାବସିଦ୍ଧିରାରାଶ୍ରିତାଶ୍ରୟଭାବସିଦ୍ଧୌ ଚ ତୟୋର୍ଭେଦସିଦ୍ଧିଃ କୁଣ୍ଡବଦରବଦିତୀତରେତରାଶ୍ରୟତା ସ୍ୟାତ୍ । ନହି କାର୍ଯ୍ୟକାରଣୟୋର୍ଭେଦ ଆଶ୍ରିତାଶ୍ରୟଭାବୋ ବା ବେଦାନ୍ତବାଦିଭିରଭ୍ୟୁପଗମ୍ୟତେ, କାରଣସ୍ୟୈବ ସଂସ୍ଥାନମାତ୍ରଂ କାର୍ଯ୍ୟମିତ୍ୟଭ୍ୟୁପଗମାତ୍ ।

**(୪) ଭାଷାଂତର-** (କ) ସେହିପରି ସମ୍ବନ୍ଧଶବ୍ଦ ଏବଂ ପ୍ରତ୍ୟୟସମ୍ବନ୍ଧୀ ବିଷୟ ହେଲା ପରେ ତାହାର ସର୍ବଦା ଅସ୍ତିତ୍ୱପ୍ରସଙ୍ଗ ହେବ ନାହିଁ, କାରଣ-ସେହି ସ୍ୱରୂପ ଓ ପରରୂପର ଅପେକ୍ଷାରେ ହୁଏ । ଏହାର ଉତ୍ତର ଦିଆଯାଇଅଛି । ସେହିପରି ପରମାଣୁ, ଆତ୍ମା ଓ ମନର ପ୍ରବେଶ ନ ହେଲେ ସଂଯୋଗ ସମ୍ଭବ ହୁଏ ନାହିଁ । ପ୍ରଦେଶ ବିଶିଷ୍ଟ ସାବୟବ ଦ୍ରବ୍ୟର ପ୍ରଦେଶ ଯୁକ୍ତ ସାବୟବ ଅନ୍ୟଦ୍ରବ୍ୟ ସହିତ ସଂଯୋଗ ଦେଖାଯାଏ ।

(ଖ) ଯଦି କହ ଯେ- ଅଣୁ, ଆତ୍ମା ଓ ମନର କଳ୍ପିତ ପ୍ରବେଶ ହୁଅନ୍ତି, ତେବେ ତାହା ଠିକ୍ ନୁହେଁ, କାରଣ-ଅବିଦ୍ୟମାନ ପଦାର୍ଥ କଳ୍ପନା କଲାପରେ ସର୍ବାର୍ଥସିଦ୍ଧି ପ୍ରସଙ୍ଗ ହେବ । ଏଭଳି ଅବିଦ୍ୟାମାନ ବିରୁଦ୍ଧ ଅଥବା ଅବିରୁଦ୍ଧ ଅର୍ଥର କଳ୍ପନା କରିବା ଉଚିତ୍, ଅଧିକ ନୁହେଁ । ଏହି ବିଷୟରେ କୌଣସି ନିୟମ ନାହିଁ । କଳ୍ପନା କିନ୍ତୁ ନିଜର ଅଧିକ ଅଟେ । ତେଣୁ ତାହାଠାରୁ ଅଧିକ ହେବା ପାଇଁ କିଛି ସମ୍ଭାବନା ନାହିଁ । ବୈଶେଷିକ ଦ୍ୱାରା କଳ୍ପିତ ଛଅ ପଦାର୍ଥଠାରୁ ଭିନ୍ନ ଅତିରିକ୍ତ ଶତ, ଅଥବା ସହସ୍ର ପଦାର୍ଥର କଳ୍ପନା କରିବା ଉଚିତ ନୁହେଁ । ଏହାର କୌଣସି ନିବାରକ କାରଣ ନାହିଁ । ତେଣୁ ଯିଏ ଯାହାର ରୁଚିକର ହେବ, ସେ ସେପରି ସିଦ୍ଧ ହେବ । କୌଣସି ଦୟାଳୁ ପ୍ରାଣୀ ପାଇଁ ଦୁଃଖବହୁଳ ସଂସାର ନ ହେଉ, ଅଥବା ଅନ୍ୟ କୌଣସି ବ୍ୟସନ ଯୁକ୍ତ ପୁରୁଷର ପୁନରୁତ୍ପତ୍ତି କଳ୍ପନା ହେବ ବୋଲି କଳ୍ପନା କରିବ । ଏହି ସ୍ଥିତିରେ ସେମାନଙ୍କର କିଏ ନିବାରକ ହେବ ?



(ଗ) ଏହା ଭିନ୍ନ ଅନ୍ୟ ଦୋଷ ଅଟେ ଯେ- ଆକାଶ ସହିତ ସାବୟବ ଦ୍ୟଣୁକ ପରି ନିରବୟବ ଦୁଇଟି ପରମାଣୁରୁ ସଂଶ୍ଳେଷ ହୁଏ ନାହିଁ, ଆକାଶ ଓ ପୃଥିବୀ ପ୍ରଭୃତିର କଉ ଓ କାଷ୍ଠପରି ସଂଶ୍ଳେଷ ନୁହେଁ । କାର୍ଯ୍ୟ କାରଣ ଦ୍ରବ୍ୟର ଆଶ୍ରିତା ଶ୍ରୟଭାବ ଅନ୍ୟଥା ଉପପନ୍ନ ହେବ ନାହିଁ । ତେଣୁ ସମବାୟର କଳ୍ପନା କରିବା ଉଚିତ୍ । ଏହା ଯଦି କହ, ଯେବେ ତାହା ଠିକ୍ ନୁହେଁ । କାରଣ- ଅନ୍ୟୋନ୍ୟାଶ୍ରୟ ହେବ । କାର୍ଯ୍ୟ କାରଣର କୁଣ୍ଡବଦର ପରି ଭେଦସିଦ୍ଧ ହେଉ, କିନ୍ତୁ ଆଶ୍ରିତାଶ୍ରୟଭାବର ସିଦ୍ଧି ହେଉ । ଆଶ୍ରିତାଶ୍ରୟଭାବରୁ ସିଦ୍ଧି ହେଉ, କିନ୍ତୁ ସେମାନଙ୍କର ଭେଦ ହେଉ । ଏହି ପ୍ରକାର ଅନ୍ୟୋନ୍ୟାଶ୍ରୟ ହେବ । ବେଦାନ୍ତବାଦୀ କାର୍ଯ୍ୟକାରଣର ଭେଦ ଅଥବା ଆଶ୍ରିତାଶ୍ରୟଭାବ ସ୍ୱୀକାର କରନ୍ତି ନାହିଁ, କାରଣ-କାରଣର ସଂସ୍ଥାନ ମାତ୍ର କାର୍ଯ୍ୟ ଅଟେ- ଏହା ହିଁ ସ୍ୱୀକାର କରନ୍ତି ।

(୫) ମୂଳ-(କ) କିଞ୍ଚାନ୍ୟତ୍ । ପରମାଣୁନାଂ ପରିଚ୍ଛିନ୍ନତ୍ୱାଦ୍ୟାବତ୍ୟୋ ଦିଶଃ ଷଡ଼ଷ୍ଟୌ ଦଶ ବା ତାବଦ୍‌ଭିରବୟବୈଃ ସାବୟବାସ୍ତେ ସ୍ୟୁଃ ସାବୟବତ୍ୱାଦନିତ୍ୟା ଶ୍ଚେତି ନିତ୍ୟତ୍ୱନିରବୟବତ୍ୱାଭ୍ୟୁପଗମୋ ବାଧେତ । ଯାଂସ୍ତ୍ୱଂ ଦିଗ୍‌ଭେଦଭେଦିନୋଽବୟବାନ୍ କଳ୍ପୟସି ତ ଏବ ପରମାଣବ ଇତି ଚେତ୍ । ନ ସ୍ଥୂଳ ସୂକ୍ଷ୍ମତାରତମ୍ୟକ୍ରମେ-ଣାପରମକାରଣାଦ୍ ବିନାଶୋପପତ୍ତେଃ । ଯଥା ପୃଥିବୀ ଦ୍ୟଣୁକାଦ୍ୟପେକ୍ଷୟା ସ୍ଥୂଳତମା ବସ୍ତୁଭୂତାପି ବିନଶ୍ୟତି, ତତଃ ସୂକ୍ଷ୍ମଂ ସୂକ୍ଷ୍ମତରଂ ଚ ପୃଥିବ୍ୟେକଜାତୀୟକଂ ବିନଶ୍ୟତି, ତତୋ ଦ୍ୟଣୁକଂ, ତଥା ପରମାଣବୋଽପି ପୃଥିବ୍ୟେକଜାତୀୟକତ୍ୱାଦ୍ ବିନଶ୍ୟେୟୁଃ ।

(ଖ) ବିନଶ୍ୟନ୍ତୋଽପ୍ୟବୟବବିଭାଗେନୈବ ବିନଶ୍ୟନ୍ତୀତି ଚେତ୍ । ନାୟଂ ଦୋଷଃ । ଯତୋ ଘୃତକାଠିନ୍ୟବିଲୟନବଦପି ବିନାଶୋପପତ୍ତିମବୋଚମ । ଯଥାହି ଘୃତସୁବର୍ଣ୍ଣାଦୀନାମ ବିଭଜ୍ୟମାନାବୟବାନାମପ୍ୟଗ୍ନିସଂଯୋଗାଦ୍‌ଦ୍ରବଭାବାପତ୍ତ୍ୟା କାଠିନ୍ୟବିନାଶୋ ଭବତି ଏବଂ ପରମାଣୁନାମପି ପରମକାରଣଭାବାପତ୍ତ୍ୟା ମୂର୍ତ୍ତ୍ୟାଦିବିନାଶୋ ଭବିଷ୍ୟତି । ତଥା କାର୍ଯ୍ୟାରମ୍ଭୋଽପି ନାବୟବସଂଯୋଗେନୈବ କେବଳେନ ଭବତି, କ୍ଷୀରଜଳାଦୀନା ମନ୍ତରେଣାପ୍ୟବୟବସଂଯୋଗାନ୍ତରଂ ଦଧିହିମାଦିକାର୍ଯ୍ୟାରମ୍ଭଦର୍ଶନାତ୍ ।

(ଗ) ତଦେବ ମସାରତରତର୍କ ସଂଦୃବ୍ଧତ୍ୱାଦୀଶ୍ୱରକାରଣଶ୍ରୁତି ବିରୁଦ୍ଧତ୍ୱଚ୍ଛ୍ରୁତି ପ୍ରବଣୈଶ୍ଚ ଶିଷ୍ଟୈର୍ମନ୍ୱାଦିଭିର ପରିଗୃହୀତତ୍ୱାଦତ୍ୟନ୍ତମେବାନପେକ୍ଷାସ୍ମିନ୍ ପରମାଣୁ କାରଣବାଦେ କାର୍ଯ୍ୟା ଶ୍ରେୟୋର୍ଥିଭିରିତି ବାକ୍ୟଶେଷଃ ।

**(୫) ଭାଷାଂତର**- (କ) ଅନ୍ୟ ବୋଷ ଅଟେ-ପରମାଣୁଗୁଡ଼ିକ ପରିଛନ୍ନ ହେଲେ ଛଅ, ଆଠ, ଦଶ ଅଥବା ଦଶ ଦିଗ ଅଟନ୍ତି, ସେହି ଅବୟବରେ ସେମାନେ ସାବୟବ ହେବେ । ସାବୟବ ହେଲେ ଅନିତ୍ୟ ହେବେ । ତେଣୁ ସେମାନଙ୍କ ନିତ୍ୟତ୍ୱ ନିରବୟବତ୍ୱ

ସିଦ୍ଧାନ୍ତ ବାଧିତ ହେଉ । ଯଦି କହିବ ଯେ-ଦିଗଭେଦରେ ଭେଦବିଶିଷ୍ଟ ଯେଉଁ ଅବୟବର କଳ୍ପନା କରିବ, ସେ ସବୁ ଆମ୍ଭମତରେ ପରମାଣୁ ଅଟେ । ଏହି କଥା ଠିକ୍ ନୁହେଁ । କାରଣ-ସ୍ଥୁଳ, ସୂକ୍ଷ୍ମର ତାରତମ୍ୟ କ୍ରମରେ ପରମ କାରଣ ପର୍ଯ୍ୟନ୍ତ ବିନାଶ ଉପପନ୍ନ ହୁଏ । ଯେପରି ପୃଥିବୀ ଦ୍ୟଣୁକାଦି ଅପେକ୍ଷା ସ୍ଥୁଳତମ ଓ ବସ୍ତୁଭୂତ ହୋଇ ବିନଷ୍ଟ ହୁଏ । ତାହାଠାରୁ ସୂକ୍ଷ୍ମ ସୂକ୍ଷ୍ମତର ପୃଥିବୀ ରୂପ ଏକ ଜାତୀୟ ନଷ୍ଟ ହୁଏ, ଏବଂ ତାହା ପରେ ଦ୍ୟଣୁକ, ସେହପରି ପରମାଣୁ ମଧ୍ୟ ପୃଥିବୀତ୍ୱ ଏକ ଜାତୀୟ ହେଲେ ବିନଷ୍ଟ ହେବା ଉଚିତ୍ ।

(ଖ) ଯଦି କହ ଯେ- ବିନଷ୍ଟ ହୋଇ ଅବୟବ ବିଭାଗରୁ ତାହା ବିନଷ୍ଟ ହୁଅନ୍ତି, ଏହା କିନ୍ତୁ ଠିକ୍ ନୁହେଁ । କାରଣ-ଘୃତକାଠିନ୍ୟ ବିଲୟ ହେବା ପରି ସେ ବିନାଶ ହୁଏ ବୋଲି ଆମ୍ଭେ କହୁଁ । ଯେପରି ଅବିଭଜ୍ୟମାନ ଅବୟବବାନ୍ ଘୃତ ସୁବର୍ଣ୍ଣ ପ୍ରଭୃତି ଅଗ୍ନି ସଂଯୋଗରୁ ଦ୍ରବ୍ୟଭାବ ପ୍ରାପ୍ତି ହେବାରୁ କାଠିନ୍ୟ ବିନାଶ ହୁଏ । ସେହିପରି ପରମାଣୁ ଗୁଡ଼ିକର ପରମ କାରଣ ଭାବ ପ୍ରାପ୍ତି ଦ୍ୱାରା ମୂର୍ତ୍ତି ପ୍ରଭୃତି ବିନାଶ ହେବ । ସେହିପରି କାର୍ଯ୍ୟର ଆରମ୍ଭ କେବଳ ଅବୟବ ସଂଯୋଗରୁ ହୁଏ ନାହିଁ, କାରଣ-ଅନ୍ୟ ଅବୟବ ସଂଯୋଗ ବିନା କ୍ଷୀର, ଜଳାଦି ଦଧି, ହିମାଦି କାର୍ଯ୍ୟ ଆରମ୍ଭ ହେବା ଦେଖାଯାଏ ।

(ଗ) ସେହି ପ୍ରକାର ପରମାଣୁ କାରଣବାଦ ଅସାରତରତର୍କଠାରୁ ବିରଚିତ ତଥା ଈଶ୍ୱର କାରଣତ୍ୱ ପ୍ରତିପାଦକ ଶ୍ରୁତିରେ ବିରୁଦ୍ଧ ଶ୍ରୁତି ପ୍ରବଣଶିଷ୍ଟ ମନୁ ପ୍ରଭୃତି ଦ୍ୱାରା ଅସ୍ୱୀକୃତ ହେବାରୁ ଶ୍ରେୟକୁ ଚାହୁଁଥିବା ଆର୍ଯ୍ୟପୁରୁଷକୁ ପରମାଣୁ କାରଣ ବାଦରେ ଅତ୍ୟନ୍ତ ଉପେକ୍ଷା କରିବା ଉଚିତ୍-ଏହାହିଁ ବାକ୍ୟଶେଷ ଅଟେ ।

## ४ समुदायाधिकरणम् । सू० ॥२८-२७॥

## ସମୁଦାୟାଧିକରଣ - ୪

## समुदाय उभयहेतुकेऽपि तदप्राप्तिः ॥२८॥

## ସମୁଦାୟ ଉଭୟ ହେତୁ କେଽପି ତଦପ୍ରାପ୍ତିଃ ॥୨-୨-୧୮॥

ଉଭୟ ହେତୁକେଽପି ସମୁଦାୟେ-ପରମାଣୁ ହେତୁକ ବାହ୍ୟ ସମୁଦାୟ ଓ ସ୍କନ୍ଧହେତୁକ ଆଧ୍ୟାତ୍ମିକ ସମୁଦାୟରେ, ତଦପ୍ରାପ୍ତିଃ-ସମୁଦାୟର ପ୍ରାପ୍ତି ହୁଏ ନାହିଁ । କାରଣ-ଅଚେତନ ପରମାଣୁ ଓ ସ୍କନ୍ଧର ନିଜେ ନିଜେ ସମୁଦାୟର ସମ୍ଭବ ହୁଏ । ଅନ୍ୟ କୌଣସି କୂଟସ୍ଥ ଚେତନ ସଂଘାତକର୍ତ୍ତାର ଅଭାବ ରହିଛି । ତେଣୁ ସେମାନଙ୍କର ମତ ଭ୍ରାନ୍ତିମୂଳକ ଅଟେ ।



(୨) ମୂଳ-(କ) ବୈଶେଷିକରାଦ୍ଧାନ୍ତୋ ଦୁର୍ଯୁକ୍ତିଯୋଗାଦ୍ ବେଦବିରୋଧାଚ୍ଛିଷ୍ଟାପରିଗ୍ରହାଚ୍ଚ ନାପେକ୍ଷିତବ୍ୟ ଇତ୍ୟୁକ୍ତମ୍ । ସୋଽର୍ଧବୈନାଶିକ ଇତି ବୈନାଶିକତ୍ୱସାମ୍ୟାତ୍ ସର୍ବବୈନାଶିକରାଦ୍ଧାନ୍ତୋ ନେତରାମପେକ୍ଷିତବ୍ୟ ଇତୀଦମିଦାନୀଂମୁପପାଦୟାମଃ ।

(ଖ) ସ ଚ ବହୁପ୍ରକାରଃ ପ୍ରତିପତ୍ତିଭେଦାଦ୍ ବିନେୟଭେଦାଦ୍ୱା । ତତ୍ରୈତେ ତ୍ରୟୋ ବାଦିନୋ ଭବନ୍ତି-କେଚିତ୍ ସର୍ବାସ୍ତିତ୍ୱବାଦିନଃ କେଚିଦ୍ୱିଜ୍ଞାନାସ୍ତିତ୍ୱମାତ୍ରବାଦିନଃ, ଅନ୍ୟେ ପୁନଃ ସର୍ବଶୂନ୍ୟତ୍ୱବାଦିନ ଇତି । ତତ୍ର ତେ ସର୍ବାସ୍ତିତ୍ୱବାଦିନୋ ବାହ୍ୟମାନ୍ତରଂ ଚ ବସ୍ତ୍ୱଭ୍ୟୁପଗଚ୍ଛନ୍ତି ଭୂତଂ ଭୌତିକଂ ଚ ଚିତ୍ତଂ ଚୈତ୍ତଂ ଚ, ତାଂସ୍ତାବତ ପ୍ରତି ବ୍ରୂମଃ । ତତ୍ର ଭୂତଂ ପୃଥିବୀଧାତ୍ୱାଦୟଃ । ଭୌତିକଂ ରୂପାଦୟଶ୍ଚକ୍ଷୁରାଦୟଶ୍ଚ । ଚତୁଷ୍ଟୟେ ଚ ପୃଥିବ୍ୟାଦିପରମାଣବଃ ଖରସ୍ନେହୋଷ୍ଣେରଣ ସ୍ୱଭାବାସ୍ତେ ପୃଥିବ୍ୟାଦିଭାବେନ ସଂହନ୍ୟନ୍ତ ଇତି ମନ୍ୟନ୍ତେ । ତଥା ରୂପବିଜ୍ଞାନବେଦନାସଂଜ୍ଞା ସଂସ୍କାର ସଂଜ୍ଞକାଃ ପଞ୍ଚସ୍କନ୍ଧାଃ । ତେଽପ୍ୟାଧ୍ୟାତ୍ମଂ ସର୍ବବ୍ୟବହାରାସ୍ପଦଭାବେନ ସଂହନ୍ୟନ୍ତ ଇତି ମନ୍ୟନ୍ତେ ।

(ଗ) ତତ୍ରେଦମଭିଧୀୟତେଯୋଽୟମୁଭୟହେତୁକ ଉଭୟପ୍ରକାରଃ ସମୁଦାୟପରେଷାମଭିପ୍ରେତୋଽଣୁହେତୁକଶ୍ଚ ଭୂତଭୌତିକ ସଂହତିରୂପଃ ସ୍କନ୍ଧହେତୁକଶ୍ଚ ପଞ୍ଚସ୍କନ୍ଧୀରୂପଃ ତସ୍ମିନ୍ନୁଭୟହେତୁକେଽପି ସମୁଦାୟେଽଭିପ୍ରେୟମାଣେ ତଦପ୍ରାପ୍ତିଃ ସ୍ୟାତ୍ ସମୁଦାୟାପ୍ରାପ୍ତିଃ । ସମୁଦାୟଭାବାନୁପପତ୍ତିରିତ୍ୟର୍ଥଃ । କୁତଃ । ସମୁଦାୟିନାମ ଚେତନତ୍ୱାତ୍ । ଚିତ୍ତାଭିଜ୍ୱଳନସ୍ୟ ଚ ସମୁଦାୟ ସିଦ୍ଧ୍ୟଧୀନତ୍ୱାତ୍ । ଅନ୍ୟସ୍ୟ ଚ କସ୍ୟଚିଚ୍ଚେତନସ୍ୟ ଭୋକ୍ତୁଃ ପ୍ରଶାସିତୁର୍ବାସ୍ଥିରସ୍ୟ ସଂହନ୍ତୁରନଭ୍ୟୁପଗମାତ୍ ।

(ଘ) ନିରପେକ୍ଷପ୍ରବୃତ୍ତ୍ୟଭ୍ୟୁପଗମେ ଚ ପ୍ରବୃତ୍ତ ନୁପରମପ୍ରସଙ୍ଗାତ୍ । ଆଶୟସ୍ୟାପ୍ୟନ୍ୟତ୍ୱାନନ୍ୟତ୍ୱାଭ୍ୟାମନିରୂପ୍ୟତ୍ୱାତ୍ । କ୍ଷଣିକତ୍ୱାଭ୍ୟୁପଗମାଚ୍ଚ ନିର୍ବ୍ୟାପାରତ୍ୱାତ୍ ପ୍ରବୃତ୍ତ୍ୟନୁପପତ୍ତେଃ । ତସ୍ମାତ୍ ସମୁଦାୟାନୁପପତ୍ତିଃ । ସମୁଦାୟାନୁପପତ୍ତୌ ଚ ତଦାଶ୍ରୟା ଲୋକଯାତ୍ରା ଲୁପ୍ୟେତ ।

**(୨) ଭାଷାଂତର**-(କ) ପୂର୍ବପକ୍ଷରେ କୁହାଯାଇଅଛି ଯେ- କୁତର୍କର ଯୋଗ, ବେଦ ବିରୁଦ୍ଧ ଓ ଶିଷ୍ଟ ପୁରୁଷ ଦ୍ୱାରା ଅସ୍ୱୀକୃତ ବୈଶେଷିକଦର୍ଶନର ସିଦ୍ଧାନ୍ତ ଗୁଡ଼ିକୁ ଅପେକ୍ଷା କରିବା ଉଚିତ୍ ନୁହେଁ । ସେମାନେ ଅର୍ଦ୍ଧବୈନାଶିକ ଅଟନ୍ତି । ତେଣୁ ବୈନାଶିକତ୍ୱସାଦୃଶ୍ୟରୁ ସର୍ବବୈନାଶିକସିଦ୍ଧାନ୍ତ ଅତ୍ୟନ୍ତ ଅପେକ୍ଷା କରିବା ପାଇଁ ଯୋଗ୍ୟ ନୁହେଁ । ତେଣୁ ଆମ୍ଭେ ତାହାର ଉପପାଦନ କରିବୁ ।

(ଖ) ପ୍ରତିପତ୍ତିର ଭେଦରେ ଅଥବା ଶିଷ୍ୟ ଭେଦରେ ଏହା ବହୁତ ପ୍ରକାର । ଏଠାରେ ତିନି ବାଦୀ ଅଛନ୍ତି- କେତେକ ସର୍ବାସ୍ତିତ୍ୱବାଦୀ, ବିଜ୍ଞାନାସ୍ତିତ୍ୱବାଦୀ ଓ ସର୍ବଶୂନ୍ୟବାଦୀ । ସେଠାରେ ଯେଉଁ ସର୍ବାସ୍ତିତ୍ୱବାଦୀ ବାହ୍ୟଭୂତ ଓ ଭୌତିକ, ଆନ୍ତର

ଚିତ୍ତ ଓ ଚିତ୍ତ ସ୍ୱୀକାର କରନ୍ତି । ପ୍ରଥମେ ସେମାନଙ୍କ ସିଦ୍ଧାନ୍ତକୁ ଆମ୍ଭେ ନିରାକରଣ କରିବୁ । ସେଠାରେ ଭୂତ ପୃଥିବୀ ପ୍ରଭୃତି ଧାତୁ ଅଛନ୍ତି । ଭୌତିକ ରୂପାଦି ଓ ଚକ୍ଷୁ ପ୍ରଭୃତି ଅଛନ୍ତି । ପଥୃବୀ ପ୍ରଭୃତି ଚାରି ପ୍ରକାରର ପରମାଣୁ କଠିନ, ସ୍ନେହ, ଉଷ୍ଣ ଓ ଚଳନ ସ୍ୱଭାବ ଯୁକ୍ତ ହୁଅନ୍ତି । ସେମାନେ ପୃଥିବୀ ଇତ୍ୟାଦି ରୂପରେ ସଂଘଟିତ ହୁଅନ୍ତି ବୋଲି ସ୍ୱୀକାର କରାଯାଏ । ସେହିପରି ରୂପ, ବିଜ୍ଞାନ, ବେଦନା, ସଂଜ୍ଞା ଓ ସଂସ୍କାର ନାମକ ପାଞ୍ଚଟି ସ୍କନ୍ଧ ଅଛି । ସେମାନେ ମଧ୍ୟ ଆଧ୍ୟାତ୍ମିକ ଶରୀର ସମ୍ବନ୍ଧୀ ହୋଇ ସମସ୍ତ ବ୍ୟବହାରର ବିଷୟ ରୂପରେ ସଂଘଟିତ ହୁଅନ୍ତି - ଏହାହିଁ ସ୍ୱୀକାର କରାଯାଇଅଛି ।

(ଗ) ସିଦ୍ଧାନ୍ତ- ଏହି ବିଷୟରେ କୁହନ୍ତି-ଏହା ଯେଉଁ ଉଭୟହେତୁକ, ଉଭୟ ପ୍ରକାରର ସମୁଦାୟ ଅନ୍ୟ ବୌଦ୍ଧରୁ ଅଭିପ୍ରେତ ଅଟେ, ଯାହାର ଏହି ଭୂତ ଭୌତିକ ସଂଘାତ ରୂପ ଅଟେ, ସେ ଅଣୁ ଅଟେ । ଯାହାର ପାଞ୍ଚସ୍କନ୍ଧରୂପ ସେହି ଉଭୟହେତୁକ ସମୁଦାୟ ସ୍ୱୀକାର କଲାପରେ ତଦପ୍ରାପ୍ତି-ସମୁଦାୟର ଅପ୍ରାପ୍ତି ହୁଏ, ତାହା ସ୍କନ୍ଧ ଅଟେ । ସେହି ସମୁଦାୟଭାବର ଅନୁପପତ୍ତି ଏହିସ୍ଥାନର ଅର୍ଥ । କିପରି ? ତେଣୁ ସମୁଦାୟ ଅଚେତନ, କାରଣ-ଚିତ୍ତାଭିଜ୍ୱଳନ ସମୁଦାୟାଦିର ଅଧୀନ ଅଟେ ଏବଂ ଅନ୍ୟ କୌଣସି ସ୍ଥିରଂଚେତନ ଭୋକ୍ତା ବା ଶାସିତାକୁ ସଂଘାତ କର୍ତ୍ତାରୂପରେ ସ୍ୱୀକୃତ କରାଯାଏ ନାହିଁ ।

(ଘ) ଅପେକ୍ଷା ରହିତ ପ୍ରବୃତ୍ତି ସ୍ୱୀକାର କଲେ ପ୍ରବୃତ୍ତିର ଅନୁପରମ ପ୍ରସଙ୍ଗ ହେବ । ଆଶ୍ରୟ ଅର୍ଥାତ୍ ସନ୍ତାନ (ବିଜ୍ଞାନ ପ୍ରବାହ)ର ସନ୍ତାନଠାରୁ ଅନ୍ୟରୂପରେ ଅଥବା ଅନ୍ୟ ରୂପରେ ନିରୂପଣ କରାଯାଇ ନାହିଁ ଏବଂ ତାହାର କ୍ଷଣିକ ସ୍ୱୀକାର କଲେ ବ୍ୟାପାର ରହିତ ହେବାରୁ ଏହାର ପ୍ରବୃତ୍ତି ହୁଏ ନାହିଁ । ତେଣୁ ସମୁଦାୟର ଅନୁପପତ୍ତି ହୁଏ । ସମୁଦାୟର ଅନୁପପତ୍ତି ହେଲେ ତଦାଶ୍ରୟ ଲୋକଯାତ୍ରା (ବ୍ୟବହାର)ଲୁପ୍ତ ହେବ ।

## इतरेतरप्रत्ययत्वादिति चेन्नोत्पत्तिमात्रनिमित्तत्वात् ॥१९॥

## ୧- ଇତରେତର ପ୍ରତ୍ୟୟତ୍ୱାଦିତି ଚେନ୍ନୋତ୍ପତ୍ତି ମାତ୍ରନିମିତ୍ତତ୍ୱାତ୍ ॥୨-୨-୧୯॥

ଇତରେତର ପ୍ରତ୍ୟୟତ୍ୱାତ୍-ଅବିଦ୍ୟା ପ୍ରଭୃତିର ପରସ୍ପର କାରଣ ହେଲେ ଘଟୀ ଯନ୍ତ୍ରପରି ଅବିଦ୍ୟା ପ୍ରବୃତ୍ତିର ସର୍ବଦା ଭ୍ରମଦ୍ୱାରା ଆକ୍ଷିପ୍ତ ସଂଘାତର ଉପପତ୍ତି ହେବ । ଇତିଚେନ୍ନ-ଏହା ଯଦି କହ, ତାହା ଠିକ୍ ନୁହେଁ । ଉତ୍ପତ୍ତି ମାତ୍ର ନିମିତ୍ତତ୍ୱାତ୍ କାରଣ-ସେମାନେ କେବଳ ଉତ୍ପତ୍ତିରେ ନିମିତ୍ତ ଅଟନ୍ତି ।

(୨) ମୂଳ-(କ) ଯଦ୍ୟପି ଭୋକ୍ତା ପ୍ରଶାସିତା ବା କଶ୍ଚିଚ୍ଚେତନଃ ସଂହନ୍ତା ସ୍ଥିରୋ ନାଭ୍ୟୁପଗମ୍ୟନ୍ତେ ତଥାପ୍ୟବିଦ୍ୟାଦୀନାମିତରେତର କାରଣତ୍ୱାଦୁପପଦ୍ୟତେ ଲୋକଯାତ୍ରା ।



ତସ୍ୟାଂ ଚୋପପଦ୍ୟମାନାୟାଂ ନ କିଞ୍ଚିଦପରମପେକ୍ଷିତବ୍ୟମସ୍ତି । ତେ ଚାବିଦ୍ୟାଦୟୋଽବିଦ୍ୟା ସଂସ୍କାରୋ ବିଜ୍ଞାନଂ ନାମରୂପଂ ଷଡ଼ାୟତନଂ ସ୍ପର୍ଶୋ ବେଦନା ତୃଷ୍ଣା ଉପାଦାନଂ ଭବୋ ଜାତିର୍ଜରା ମରଣଂ ଶୋକଃ ପରିଦେବନା ଦୁଃଖଂ ଦୁର୍ମନସ୍ତେତ୍ୟେବଂଜାତୀୟକା ଇତରେତରହେତୁକାଃ ସୌଗତେ ସମୟେ କ୍ୱଚିତ୍ ସଂକ୍ଷିପ୍ତା ନିର୍ଦ୍ଦିଷ୍ଟାଃ କ୍ୱଚିତ୍ ପ୍ରପଞ୍ଚିତାଃ ।

(ଖ) ସର୍ବେଷାମପ୍ୟୟମବିଦ୍ୟାଦିକଲାପୋଽପ୍ରତ୍ୟାଖ୍ୟେୟଃ । ତଦେବମବିଦ୍ୟାଦିକଲାପେ ପରସ୍ପରନିମିତ୍ତନୈମିତ୍ତିକଭାବେନ ଘଟୀୟନ୍ତ୍ରବଦନିଶମାବର୍ତ୍ତମାନେଽର୍ଥାକ୍ଷିପ୍ତଃ ଉପପନ୍ନଃ ସଂଘାତ ଇତି ଚେତ୍ ।

**(୨) ଭାଷାଂତର**-(କ) ପୂର୍ବପକ୍ଷ-ଯଦ୍ୟପି ଭୋକ୍ତା ଅଥବା ପ୍ରଶାସିତା, ସଂଘାତକର୍ତ୍ତା କୌଣସି ସ୍ଥିର ଚେତନ ସ୍ୱୀକାର କରନ୍ତି ନାହିଁ ତଥାପି ଅବିଦ୍ୟା ପରସ୍ପର କାରଣ ହେଲେ ଲୋକଯାତ୍ରା ଅର୍ଥାତ୍ ଲୋକ ବ୍ୟବହାର ହୁଏ । ତାହା ସିଦ୍ଧ କରିବା ପାଇଁ ଅନ୍ୟ କୌଣସି ଅପେକ୍ଷିତବ୍ୟ ନାହିଁ । ଅବିଦ୍ୟା, ସଂସ୍କାର, ବିଜ୍ଞାନ, ନାମ, ରୂପ, ଷଡ଼ାୟତନ, ସ୍ପର୍ଶ, ବେଦନା, ତୃଷ୍ଣା, ଉପାଦାନ, ଭବ, ଜାତି, ଜରା, ମରଣ, ଶୋକ, ପରିଦେବନା ଦୁଃଖ ଓ ଦୁର୍ମନସ୍ତା-ଏହିପରି ପରସ୍ପର କାରଣ ଭୂତ ସେହି ଅବିଦ୍ୟାଦି ଓ ବୌଦ୍ଧସିଦ୍ଧାନ୍ତରେ କେତେକ ସ୍ଥାନରେ ସଂକ୍ଷେପରେ ଓ କେତେକ ସ୍ଥାନରେ ବିସ୍ତାର ରୂପରେ ନିର୍ଦ୍ଦିଷ୍ଟ କରାଯାଇଅଛି ।

(ଖ) ଏହି ଅବିଦ୍ୟାଦି କଲାପ ସମସ୍ତ ସିଦ୍ଧାନ୍ତ ଦ୍ୱାରା ପ୍ରତ୍ୟାଖ୍ୟାନ କରିବା ଯୋଗ୍ୟ ନୁହେଁ । ତେଣୁ ଯଦି କହ ଯେ- ଏହି ପ୍ରକାର ଅବିଦ୍ୟାଦି ସମୁଦାୟର ପରସ୍ପର ନିମିତ୍ତ ନୈମିତ୍ତିକଭାବ କାର୍ଯ୍ୟକାରଣରୂପରେ ଘଟୀଯନ୍ତ୍ର ପରି ସର୍ବଦା ଆବର୍ତ୍ତମାନ ହୋଇ ଅର୍ଥାକ୍ଷିପ୍ତ ସଂଘାତ ଉତ୍ପନ୍ନ ହୁଏ ।

(୩) ମୂଳ-(କ) ତନ୍ନ । କସ୍ମାତ୍ । ଉତ୍ପତ୍ତି ମାତ୍ରନିମିତ୍ତତ୍ୱାତ୍ । ଭବେଦୁପପନ୍ନଃ ସଂଘାତୋ ଯଦି ସଂଘାତସ୍ୟ କିଞ୍ଚିନ୍ନିମିତ୍ତମବଗମ୍ୟେତ । ନ ତ୍ୱବଗମ୍ୟତେ । ଯତ ଇତରେତରପ୍ରତ୍ୟୟତ୍ୱେଽପ୍ୟବିଦ୍ୟାଦୀନାଂ ପୂର୍ବପୂର୍ବମୁତ୍ତରୋତ୍ତରସ୍ୟୋତ୍ପତ୍ତିମାତ୍ରନିମିତ୍ତଂ ଭବଦ୍ଭବେନ୍ନ ତୁ ସଂଘାତୋତ୍ପତ୍ତେଃ କିଞ୍ଚିନ୍ନିମିତ୍ତଂ ସମ୍ଭବତି ।

(ଖ) ନନ୍ୱ ବିଦ୍ୟାଦିଭିରର୍ଥାଦାକ୍ଷିପ୍ୟତେ ସଂଘାତ ଇତ୍ୟୁକ୍ତମ୍ । ଅତ୍ରୋଚ୍ୟତେ-ଯଦି ତାବଦୟମଭିପ୍ରାୟୋଽବିଦ୍ୟାଦୟଃ ସଂଘାତମନ୍ତରେଣାତ୍ମାନମଲଭମାନା ଅପେକ୍ଷନ୍ତେ ସଂଘାତମିତି, ତତସ୍ତସ୍ୟ ସଂଘାତସ୍ୟ ନିମିତ୍ତଂ ବକ୍ତବ୍ୟମ୍ । ତଚ୍ଚ ନିତ୍ୟେଷ୍ୱପ୍ୟଣୁଷ୍ୱଭ୍ୟୁପଗମ୍ୟମାନେଷ୍ୱାଶ୍ରୟାଶ୍ରୟିଭୂତେଷୁ ଚ ଭୋକ୍ତୃଷୁ ସତ୍ସୁ ନ ସମ୍ଭବତୀତ୍ୟୁକ୍ତଂ ବୈଶେଷିକପରୀକ୍ଷାୟାମ୍ । କିମଙ୍ଗ ପୁନଃ କ୍ଷଣିକେଷ୍ୱପ୍ୟଣୁଷୁ ଭୋକ୍ତୃରହିତେଷ୍ୱାଶ୍ରୟାଶ୍ରୟିଶୂନ୍ୟେଷୁ ବାଭ୍ୟୁପଗମ୍ୟମାନେଷୁ ସମ୍ଭବେତ୍ ।

(ଗ) ଅଥାୟମଭିପ୍ରାୟୋଽବିଦ୍ୟାଦୟ ଏବ ସଂଘାତସ୍ୟ ନିମିତ୍ତମସ୍ତି । କଥଂ ତମେବାଶ୍ରିତ୍ୟାତ୍ମନଂ ଲଭମାନାସ୍ତସ୍ୟୈବ ନିମିତ୍ତଂସ୍ୟୁଃ । ଅଥ ମନ୍ୟସେ ସଂଘାତା ଏବାନାଦୌ ସଂସାରେ ସଂତତ୍ୟାନୁବର୍ତ୍ତନ୍ତେ ତଦାଶ୍ରୟାଶ୍ଚାବିଦ୍ୟାଦୟ ଇତି, ତଦପି ସଂଘାତାତ୍ ସଂଘାତାନ୍ତରମୁତ୍ପଦ୍ୟମାନଂ, ନିୟମେନ ବା ସଦୃଶମେବୋତ୍ପଦ୍ୟେତ, ଅନିୟମେନ ବା ସଦୃଶଂ ବିସଦୃଶଂ ବୋତ୍ପଦ୍ୟେତ ।

(ଘ) ନିୟମାଭ୍ୟୁପଗମେ ମନୁଷ୍ୟପୁଦ୍ଗଲସ୍ୟ ଦେବତିର୍ଯ୍ୟଗ୍ୟୋନିନାରକପ୍ରାପ୍ତ୍ୟଭାବଃ ପ୍ରାପ୍ନୁୟାତ୍ । ଅନିୟମାଭ୍ୟୁପଗମେଽପି ମନୁଷ୍ୟ ପୁଦ୍ଗଲଃ କଦାଚିତ୍ କ୍ଷଣେନ ହସ୍ତୀ ଭୂତ୍ୱା ଦେବୋ ବା ପୁନର୍ମନୁଷ୍ୟୋ ବା ଭବେଦିତି ପାପ୍ନୁୟାତ୍ । ଉଭୟମପ୍ୟଭ୍ୟୁପଗମବିରୁଦ୍ଧମ୍ । ଅପି ଚ ଯଦ୍ ଭୋଗାର୍ଥଃ ସଂଘାତଃ ସ୍ୟାତ୍ସ ନାସ୍ତି ସ୍ଥିରୋ ଭୋକ୍ତେତି ତବାଭ୍ୟୁପଗମଃ । ତତଶ୍ଚ ଭୋଗୋ ଭୋଗାର୍ଥ ଏବ ସ ନାନ୍ୟେନ ପ୍ରାର୍ଥନୀୟଃ । ଏବ ସ ନାନ୍ୟେନ ପ୍ରାର୍ଥନୀୟଃ । ତଥା ମୋକ୍ଷୋ ମୋକ୍ଷାର୍ଥ ଏବେତି ମୁମୁକ୍ଷୁଣା ନାନ୍ୟେନ ଭବିତବ୍ୟମ୍ । ଅନ୍ୟେନ ଚେତ୍ପ୍ରାର୍ଥେତୋଭୟଂ ଭୋଗମୋକ୍ଷକାଲାବସ୍ଥାୟିନା ତେନ ଭବିତବ୍ୟମ୍ । ଅବସ୍ଥାୟିତ୍ୱେ କ୍ଷଣିକତ୍ୱାଭ୍ୟୁପଗମବିରୋଧଃ । ତସ୍ମାଦିତରେତରୋତ୍ପତ୍ତିମାତ୍ରନିମିତ୍ତତ୍ୱମବିଦ୍ୟାଦୀନାଂ ଯଦି ଭବେଦ୍ ଭବତୁ ନାମ ନତୁ ସଂଘାତଃ ସିଦ୍ଧ୍ୟେତ୍ । ଭୋକ୍ତ୍ରଭାବାଦିତ୍ୟଭିପ୍ରାୟଃ ।

**(୩) ଭାଷାଂତର**-(କ) ସିଦ୍ଧାନ୍ତ-ଏହା ଠିକ୍ ନୁହେଁ । କିପରି ? କାରଣ ସେମାନେ ଏହି ଉତ୍ପତ୍ତିମାତ୍ରର ନିମିତ୍ତ ଅଟେ । ଯଦି ସଂଘାତର କୌଣସି ନିମିତ୍ତ ଅବଗତ ହୁଏ, ତଥାପି ସଂଘାତ ଉତ୍ପନ୍ନ ହେଉ । ପରନ୍ତୁ ତାହାର କୌଣସି ନିୟମ ଅବଗତ ନାହିଁ, କାରଣ-ଅବିଦ୍ୟାଦି ପରସ୍ପର କାରଣ ହେଲେ ପୂର୍ବପୂର୍ବ ଉତ୍ତରୋତ୍ତରର କେବଳ ଉତ୍ପତ୍ତିର ନିମିତ୍ତ ହେଉ, ପରନ୍ତୁ ସଂଘାତୋତ୍ପତ୍ତିର କୌଣସି ନିମିତ୍ତ ନାହିଁ ।

(ଖ) ପରନ୍ତୁ ଅବିଦ୍ୟାଦିଦ୍ୱାରା ଅର୍ଥାକ୍ଷିପ୍ତ ସଂଘାତ ହୁଏ । ଏହି ବିଷୟରେ ଯଦି କୌଣସି ଅଭିପ୍ରାୟ ହୁଏ, ଯାହାକି ଅବିଦ୍ୟାଦି ସଂଘାତ ବ୍ୟତିତ ନିଜସ୍ୱରୂପକୁ ପ୍ରାପ୍ତ ନ ହୋଇ ସଂଘାତକୁ ଅପେକ୍ଷା କରନ୍ତି । ତେବେ ତଦ୍ୱାରା ସଂଘାତ ନିମିତ୍ତ କହିବା ଉଚିତ୍ । ଏହି ବୈଶେଷିକ ପରୀକ୍ଷାରେ କୁହାଯାଇଛି ଯେ- ଅଣୁର ନିତ୍ୟତ୍ୱ ସ୍ୱୀକାର କଲେ ଏବଂ ଆଶ୍ରୟାଶ୍ରୟିଭୂତ ସ୍ଥାୟୀ ଭୋକ୍ତା ବିଦ୍ୟମାନ ହେଲେ ସଂଖାତ ହୁଏ ନାହିଁ । ଭୋକ୍ତୃରହିତ ଅଥବା ଆଶ୍ରୟାଶ୍ରୟିଭାବଦ୍ୱାରା ଶୂନ୍ୟ କ୍ଷଣିକ ପରମାଣୁର ବୋଲି ସ୍ୱୀକାର କରିବା କିପରି ସମ୍ଭବ ହେବ ?

(ଗ) ଅବିଦ୍ୟା ପ୍ରଭୃତି ସଂଘାତର ନିମିତ୍ତ ହୁଅନ୍ତି ବୋଲି ଏଠାରେ ଅଭିପ୍ରାୟ ହେଉ । ତେବେ ତାହାକୁ ଆଶ୍ରୟ କରି ନିଜସ୍ୱରୂପକୁ ପ୍ରାପ୍ତହୋଇ ତାହାର ନିମିତ୍ତ କିପରି ହେବ ? ତୁମ୍ଭେ ଯଦି ସଂଘାତ ଅନାଦି ସଂସାରରେ ନିରନ୍ତର ପ୍ରବାହରୂପରେ ଆବର୍ତ୍ତମାନ ହୁଏ



ଏବଂ ତାହାର ଆଶ୍ରୟରୁ ଅବିଦ୍ୟାଦି ହୁଏ' ବୋଲି କହ, ତଥାପି ସଂଘାତରୁ ଉତ୍ପନ୍ନ ହୋଇଥିବା ଅନ୍ୟସଂଘାତ ନିୟମରୁ ଏତାଦୃଶ ଉତ୍ପନ୍ନ ହେବ ଅଥବା ଅନିୟମ ଦ୍ୱାରା ସମାନ ଅଥବା ବିସଦୃଶ ଉତ୍ପନ୍ନ ହେବ ?

(ଘ) ନିୟମ ସ୍ୱୀକାର କଲେ ମନୁଷ୍ୟଶରୀର କେବେକେବେ ଅଳ୍ପ ସମୟ ମଧ୍ୟରେ ହସ୍ତୀ ହୋଇ, ଅଥବା ଦେବ ଅଥବା ମନୁଷ୍ୟ ହେବ-ଏହା ପ୍ରାପ୍ତ ହେବ । କିନ୍ତୁ ଏହି ଦୁଇଟି ସିଦ୍ଧାନ୍ତ ବିରୁଦ୍ଧ ହୁଏ । ଯାହାର ଭୋଗପାଇଁ ସଂଘାତ ହେବ, ସେହି ଭୋକ୍ତା ସ୍ଥିର ହୁଏ ନାହିଁ ବୋଲି ତୁମ୍ଭର ସିଦ୍ଧାନ୍ତ ହୁଏ । ତାହାଦ୍ୱାରା ଭୋଗ ଭୋଗପାଇଁ ହୁଏ ଅନ୍ୟର ପ୍ରାର୍ଥନୀୟ ହେବନାହିଁ । ସେହିପରି ମୋକ୍ଷ ମୋକ୍ଷପାଇଁ ହେବ । ତଦ୍ୱାରା ଅନ୍ୟ ମୁମୁକ୍ଷୁ ପାଇଁ ନୁହେଁ । ଯଦି ଏହି ଦୁଇଟି ଅନ୍ୟଦ୍ୱରା ପ୍ରାର୍ଥିତ ହୁଅନ୍ତି, ତେବେ ଭୋଗ ଓ ମୋକ୍ଷକାଳ ପର୍ଯ୍ୟନ୍ତ ଏହା ସ୍ଥାୟୀ ହେବା ଉଚିତ୍ । ସ୍ଥାୟିତ୍ୱ ସ୍ୱୀକାର କଲାପରେ କ୍ଷଣିକତ୍ୱ ସିଦ୍ଧାନ୍ତ ବିରୋଧ ହୁଏ । ତେଣୁ ଯଦି ଅବିଦ୍ୟାଦି କେବଳ ପରସ୍ପରର ଉତ୍ପତ୍ତିରେ ନିମିତ୍ତ ହେଉ, କିନ୍ତୁ ସ୍ଥାୟୀଭୋକ୍ତା ନ ହେଲେ ସଂଘାତ ସିଦ୍ଧ ହୁଏ ନାହିଁ ବୋଲି ଆମ୍ଭର ଅଭିପ୍ରାୟ ।

## उत्तरोत्पादे च पूर्वनिरोधात् ॥२०॥

## ଉତ୍ତରୋତ୍ପାଦେ ଚ ପୂର୍ବନିରୋଧାତ୍ ॥ ୨-୨-୨୦ ॥

ଚ-ଏବଂ, ଉତ୍ତରୋତ୍ପାଦେ-ଉତ୍ତର କାର୍ଯ୍ୟକ୍ଷଣର ଉତ୍ପତ୍ତି ସମୟରେ, ପୂର୍ବ-ନିରୋଧାତ୍-କାରଣ-କ୍ଷଣର ନାଶ ସ୍ୱୀକାର ହେଲେ ସୁଗତମତରେ ହେତୁର ଅଧିନ କାର୍ଯ୍ୟୋତ୍ପତ୍ତି ନୁହେଁ ।

(୨) ମୂଳ-(କ) ଉକ୍ତମେତଦ୍ବିଦ୍ୟାଦୀନାମୁତ୍ପତ୍ତିମାତ୍ରନିମିତ୍ତତ୍ୱାନ୍ନ ସଂଘାତ-ସିଦ୍ଧିରସ୍ତୀତି । ତଦପି ତ୍ୱୁତ୍ପତ୍ତିମାତ୍ରନିମିତ୍ତତ୍ୱଂ ନ ସମ୍ଭବତୀ ତୀଦମିଦାନୀମୁପପାଦ୍ୟତେ । କ୍ଷଣଭଙ୍ଗବାଦିନୋଽୟମଭ୍ୟୁପଗମ ଉତ୍ତରସ୍ମିନ୍‌କ୍ଷଣ ଉତ୍ପଦ୍ୟମାନେ ପୂର୍ବ କ୍ଷଣୋ ନିରୁଧ୍ୟତ ଇତି । ନଚୈବ ମଭ୍ୟୁପଗଚ୍ଛତା ପୂର୍ବୋତରୟୋକ୍ଷଣୟୋର୍ହେତୁଫଳଭାବଃ ଶକ୍ୟତେ ସଂପାଦୟିତୁମ୍ । ନିରୁଧମାନସ୍ୟ ନିରୁଦ୍ଧସ୍ୟ ବା ପୂର୍ବକ୍ଷଣସ୍ୟାଭାବଗ୍ରସ୍ତତ୍ୱା-ଦୁତ୍ତରକ୍ଷଣହେତୁତ୍ୱାନୁପପତ୍ତେଃ ।

(ଖ) ଅଥ ଭାବଭୂତଃ ପରିନିଷ୍ପନ୍ନାବସ୍ଥଃ ପୂର୍ବକ୍ଷଣ ଉତ୍ତରକ୍ଷଣସ୍ୟ ହେତୁରିତ୍ୟଭିପ୍ରାୟସ୍ତଥାପି ନୋପପଦ୍ୟତେ । ଭାବଭୂତସ୍ୟ ପୁନର୍ବ୍ୟାପାରକଳ୍ପନାୟାଂ କ୍ଷଣାନ୍ତରସମ୍ବନ୍ଧପ୍ରସଙ୍ଗାତ୍ । ଅଥଭାବ ଏବାସ୍ୟବାପାର ଇତ୍ୟଭିପ୍ରାୟସ୍ତଥାପି ନୈବୋ-ପପଦ୍ୟତେ । ହେତୁସ୍ୱଭାବାନୁପରକ୍ତସ୍ୟ ଫଳସ୍ୟୋତ୍ପତ୍ୟସମ୍ଭବାତ୍ । ସ୍ୱଭାବୋପ-ରାଗାଭ୍ୟୁପଗମେ ଚ ହେତୁସ୍ୱଭାବସ୍ୟ ଫଳକାଳାବସ୍ଥାୟିତ୍ୱେ ସତି କ୍ଷଣଭଙ୍ଗାଭ୍ୟୁପ-

ଗମତ୍ୟାଗପ୍ରସଙ୍ଗଃ ବିନୈବ ବା ସ୍ୱଭାବୋପରାଗେଣ ହେତୁଫଳଭାବମଭ୍ୟୁପଗଚ୍ଛତଃ ସର୍ବତ୍ର ତତ୍ପ୍ରାପ୍ତେରତିପ୍ରସଙ୍ଗଃ ।

(ଗ) ଅପି ଚୋତ୍ପାଦନିରୋଧୌ ନାମ ବସ୍ତୁନଃ ସ୍ୱରୂପମେବ ବା ସ୍ୟାତାମବସ୍ଥାନ୍ତରଂ ବା ବସ୍ତ୍ୱନ୍ତରମେବ ବା । ସର୍ବଥାପି ନୋପପଦ୍ୟତେ । ଯଦି ତାବଦ୍ ଯତ୍ ପୁନଃ ସ୍ୱରୂପମେବୋତ୍ପାଦନିରୋଧୌ ସ୍ୟାତାଂ ତତୋ ବସ୍ତୁଶବ୍ଦ ଉତ୍ପାଦନିରୋଧଶବ୍ଦୌ ଚ ପର୍ଯ୍ୟାୟାଃ ପ୍ରାପ୍ନୁୟୁଃ । ଅଥାସ୍ତି କଶ୍ଚିଦ୍‌ବିଶେଷ ଇତିମେନ୍ୟତୋତ୍ପାଦନିରୋଧଶବ୍ଦାଭ୍ୟାଂ ମଧ୍ୟବର୍ତ୍ତିନୋ ବସ୍ତୁନ ଆଦ୍ୟନ୍ତାଖ୍ୟେ ଅବସ୍ଥେ ଅଭିଲପ୍ୟେତେ ଇତି । ଏବମପ୍ୟାଦନ୍ତମଧ୍ୟକ୍ଷଣତ୍ରୟସମ୍ବନ୍ଧିତ୍ୱାଦ୍ ବସ୍ତୁନଃ ସ୍ୟାତାମଶ୍ୱମହିଷବତ୍; ତତୋବସ୍ତୁ ଉତ୍ପାଦନିରୋଧାଭ୍ୟାମସଂସୃଷ୍ଟମିତି ବସ୍ତୁନଃ ଶାଶ୍ୱତତ୍ୱପ୍ରସଙ୍ଗଃ । ଯଦି ଚ ଦର୍ଶନାଦର୍ଶନେ ବସ୍ତୁନ ଉତ୍ପାଦନିରୋଧୌ ସ୍ୟାତାମ୍ । ଏବମପି ଦ୍ରଷ୍ଟୃଧର୍ମୌ ତୌ ନ ବସ୍ତୁଧର୍ମାବିତି ବସ୍ତୁନଃ ଶାଶ୍ୱତପ୍ରସଙ୍ଗ ଏବ । ତସ୍ମାଦପ୍ୟସଂଗତଂ ସୌଗତଂ ମତମ୍ ।

(୨) ଭାଷାଂତର-(କ) ଏଠାରେ କୁହାଯାଇଛି ଯେ, ଅବିଦ୍ୟା ପ୍ରଭୃତି ପରସ୍ପର କେବଳ ଉତ୍ପତ୍ତିରେ ନିମିତ୍ତ ହେବାରୁ ସଂଘାତସିଦ୍ଧି ହୁଏ ନାହିଁ । ପରନ୍ତୁ ସେମାନେ ଉତ୍ପତ୍ତି ମାତ୍ରର ନିମିତ୍ତ ହୁଅନ୍ତି ନାହିଁ । ବର୍ତ୍ତମାନ ସେସବୁ ପ୍ରମାଣିତ ହେଉଛି । କ୍ଷଣଭଙ୍ଗ ବାଦୀମାନଙ୍କର ଏହି ସିଦ୍ଧାନ୍ତ ଯେ-ଉତ୍ପଦ୍ୟମାନ ଉତ୍ତରକ୍ଷଣରେ ପୂର୍ବକ୍ଷଣ ନାଶ ହୁଏ । ଏହିପରି ସ୍ୱୀକାର କରୁଥିବା.ତୁମ୍ଭେମାନେ ପୂର୍ବ ଓ ଉତ୍ତରକ୍ଷଣର କାର୍ଯ୍ୟକାରଣଭାବ ସଂପାଦନ କରାଯାଏ ନାହିଁ । ଏହା ପୂର୍ବରୁ ନଷ୍ଟ ହେଲେ ପୂର୍ବକ୍ଷଣ ଅଭାବଗ୍ରସ୍ତ ହେଲେ ଉତ୍ତରକ୍ଷଣର କାରଣ ହୁଏ ନାହିଁ ।

(ଖ) ତେଣୁ ଏଠାରେ ଅଭିପ୍ରାୟ ଯେ- ଭାବରୂପ ସିଦ୍ଧାବସ୍ଥାପନ୍ନ ପୂର୍ବକ୍ଷଣ ଉତ୍ତରକ୍ଷଣର ହେତୁ ଅଟେ । ତଥାପି ଏହା ଉତ୍ପନ୍ନ ନୁହେଁ, କାରଣ-ଭାବରୂପରେ ପୁନର୍ବାର ବ୍ୟାପାର କଳ୍ପନା କଲାପରେ ଅନ୍ୟକ୍ଷଣ ସହିତ ସମ୍ବନ୍ଧ ପ୍ରସଙ୍ଗ ହେବ । ଯଦି ଉତ୍ପତ୍ତି ତାହାର ବ୍ୟାପାର ହୁଏ ବୋଲି କହ, ତାହା ମଧ୍ୟ ଠିକ୍ ହେବନାହିଁ । କାରଣ-ହେତୁସ୍ୱଭାବରୁ ଉପରକ୍ତ (ସମ୍ବନ୍ଧ) ନ ହୋଇ କାର୍ଯ୍ୟର ଉତ୍ପତ୍ତି ସମ୍ଭବ ନୁହେଁ । ସ୍ୱଭାବରେ ଉପରାଗ ସ୍ୱୀକାର କଲେ ହେତୁସ୍ୱଭାବକୁ ଫଳପର୍ଯ୍ୟନ୍ତ ସ୍ଥାୟୀ ହେଲାପରେ କ୍ଷଣଭଙ୍ଗ ସିଦ୍ଧାନ୍ତର ତ୍ୟାଗପ୍ରସଙ୍ଗ ହେବ । ଅଥବା ହେତୁ ସ୍ୱଭାବଦ୍ୱାରା ଉପରକ୍ତ ହୋଇ କାର୍ଯ୍ୟକାରଣ ଭାବକୁ ସ୍ୱୀକାର କରୁନଥିବା ତୁମ୍ଭଙ୍କୁ ସବୁଠାରେ ତାହାର ପ୍ରାପ୍ତି ହେଲେ ଅତିପ୍ରସଙ୍ଗ ହେବ ।

(ଗ) ଉତ୍ପାଦ ଓ ନିରୋଧବସ୍ତୁର ସ୍ୱରୂପ ହେଉ ଅଥବା ଅନ୍ୟବ୍ୟବସ୍ଥା ହେଉ, ବା ଅନ୍ୟବସ୍ତୁ ହେଉ, କିନ୍ତୁ ତାହା ସବୁ ସମୟରେ ଉପପନ୍ନ ନୁହେଁ, ଯଦି ଉତ୍ପତ୍ତି ଓ ବିନାଶ



ବସ୍ତୁ ସ୍ୱରୂପ ହୁଏ, ତେବେ ତାହାଦ୍ୱାରା ବସ୍ତୁଶବ୍ଦ ଉତ୍ପତ୍ତି ଓ ବିନାଶ ଶବ୍ଦବାଚୀ ହେବ, ଅର୍ଥାତ୍ ଗୋଟିଏ ପଦାର୍ଥର ଦୁଇଟି ନାମ ହେବ । ଯଦି ଉତ୍ପତ୍ତି ଓ ବିନାଶ ଶବ୍ଦଦ୍ୱାରା ମଧ୍ୟବର୍ତ୍ତୀ ବସ୍ତୁର ଆଦି ଓ ଅନ୍ତିମ ଅବସ୍ଥା ଅଛି- ଏହା କୌଣସି ବିଶେଷ ବୋଲି ଯଦି ସ୍ୱୀକାର କର, ଏହା ହେଲାପରେ ବସ୍ତୁର ଆଦି ମଧ୍ୟ ଓ ଅନ୍ତ- ଏହି ତିନୋଟି କ୍ଷଣ ସହିତ ସମ୍ବନ୍ଧ ହେଲେ ସେଠାରେ କ୍ଷଣିକତ୍ୱ ସିଦ୍ଧାନ୍ତ ହାନି ହେବ । ଯଦି ଅଶ୍ୱ ଓ ମଇଁଷି ପରି ଉତ୍ପାଦ ଓ ନିରୋଧ ବସ୍ତୁଦ୍ୱାରା ଅଧିକ ଭିନ୍ନ ହୁଏ, ତେବେ ଉତ୍ପାଦ ବିନାଶଦ୍ୱାରା ବସ୍ତୁ ଅସମ୍ବନ୍ଧ ହେବ । ତେଣୁ ବସ୍ତୁର ଶାଶ୍ୱତ ହେବାର ପ୍ରସଙ୍ଗ ହେବ । ଯଦି ଦର୍ଶନ ଓ ଅଦର୍ଶନ ବସ୍ତୁର ଉତ୍ପାଦ ଓ ନିରୋଧ ହୁଏ, ତେବେ ଏହା ହେଲାପରେ ସେମାନେ ଦ୍ରଷ୍ଟାର ଧର୍ମ ହୁଅନ୍ତି, ବସ୍ତୁର ଧର୍ମ ନୁହଁନ୍ତି । ତେଣୁ ବସ୍ତୁର ଶାଶ୍ୱତ ହେବାର ପ୍ରସଙ୍ଗ ଆସିବ । ତେଣୁ ସୌଗତମତ ଅସଙ୍ଗତ ହେବ ।

## असति प्रतिज्ञोपरोधो यौगोपद्यमन्यथा ॥२१॥

## (୧) ଅସତି ପ୍ରତିଜ୍ଞୋପରୋଧୋ ଯୌଗପଦ୍ୟମନ୍ୟଥା ॥୨-୨-୨୧॥

ଅସତି-କାରଣ ବ୍ୟତିତ କାର୍ଯ୍ୟୋତ୍ପତ୍ତି ସ୍ୱୀକାର କଲେ, ପ୍ରତିଜ୍ଞୋପରୋଧଃପ୍ରତିଜ୍ଞା ବାଧା ପାଏ । ଅନ୍ୟଥା-କାର୍ଯ୍ୟପର୍ଯ୍ୟନ୍ତ କାରଣ ରହିଲେ, ଯୌଗପଦ୍ୟମ ଦୁଇଟିର ଏକ ସମୟରେ ବିଦ୍ୟମାନ ହେଲେ କ୍ଷଣିକତ୍ୱ ପ୍ରତିଜ୍ଞାର ହାନି ହେବ ।

(୨) ମୂଳ-(କ) କ୍ଷଣଭଙ୍ଗବାଦେ ପୂର୍ବକ୍ଷଣୋ ନିରୋଧଗ୍ରସ୍ତତ୍ୱନ୍ନୋତ୍ତରସ୍ୟ କ୍ଷଣସ୍ୟ ହେତୁର୍ଭବତୀତ୍ୟୁକ୍ତମ । ଅଥାସତ୍ୟେବ ହତୌ ଫଂଳୋତ୍ପତ୍ତିଂ ବ୍ରୂୟାତ୍ । ତତଃ ପ୍ରତିଜ୍ଞୋପରୋଧଃ ସ୍ୟାତ୍ । ଚତୁର୍ବିଧାନ୍ ହେତୂନ୍ ପ୍ରତୀତ୍ୟ ଚିତ୍ତଚୈତ୍ତା ଉତ୍ପଦ୍ୟନ୍ତ ଇତୀୟଂ ପ୍ରତିଜ୍ଞା ହୀୟେତ । ନିର୍ହେତୁକାୟାଂ ଚୋତ୍ପତ୍ତାବପ୍ରତିବନ୍ଧାତ୍ ସର୍ବଂ ସର୍ବତ୍ରୋତ୍ପଦ୍ୟତୋ । ଅଥୋତ୍ତରକ୍ଷଣୋତ୍ପର୍ତ୍ତିର୍ଯାବତ୍ତାବଦବତିଷ୍ଠତେ ପୂର୍ବକ୍ଷଣ ଇତି ବ୍ରୂୟାତ୍ତତୋ ଯୌଗପଦ୍ୟଂ ହେତୁଫଳୟୋଃ ସ୍ୟାତ୍ । ତଥାପି ପ୍ରତିଜ୍ଞୋପରୋଧେ ଏବ ସ୍ୟାତ୍ । କ୍ଷଣିକାଃ ସର୍ବେ ସଂସ୍କାର ଇତୀୟଂ ପ୍ରତିଜ୍ଞୋପରୁଧ୍ୟେତ ।

(୨) ଭାଷାଂତର- କ୍ଷଣଭଙ୍ଗବାଦରେ ପୂର୍ବକ୍ଷଣ ନିରୋଧ ଗ୍ରସ୍ତହେଲେ ଉତ୍ତରକ୍ଷଣ ହେତୁ ହୁଏ ନାହିଁ ବୋଲି ପୂର୍ବରୁ କୁହାଯାଇଅଛି । ଯଦି ହେତୁର ନ ହେଲେ କାର୍ଯ୍ୟୋତ୍ପତ୍ତି ବୋଲି ତୁମେ କହ, ନା, ତଦ୍ଦ୍ୱାରା ପ୍ରତିଜ୍ଞା ବାଧା ପାଇବ । ଚରିପ୍ରକାର ହେତୁକୁ ପ୍ରାପ୍ତକରି ଚିତ୍ତ ଓ ଚୈତ୍ତ ଉତ୍ପତ୍ତି ହୁଅନ୍ତି । ଏହି ପ୍ରତିଜ୍ଞାର ହାନି ଘଟେ । ନିର୍ହେତୁକ ପ୍ରତିଜ୍ଞା ସ୍ୱୀକାର କରିବାରୁ ତାହା ପ୍ରତିବନ୍ଧକ ନ ହେବାରୁ ସର୍ବତ୍ର ପ୍ରଯୁଜ୍ୟ ହୁଏ । ଯଦି କହ ଯେ-ଉତ୍ତରକ୍ଷଣର ଉତ୍ପତ୍ତି ପର୍ଯ୍ୟନ୍ତ ପୂର୍ବକ୍ଷଣ ଅବସ୍ଥିତ ରହେ, ତେବେ କାର୍ଯ୍ୟ ଓ କାରଣ ସମକାଳୀନ ହେବେ । ତାହା ପ୍ରତିଜ୍ଞାର ବାଧକ । ସମସ୍ତ ସଂସ୍କାର କ୍ଷଣିକ ଅଟେ- ଏହି ପ୍ରତିଜ୍ଞା ମଧ୍ୟ ବାଧାପ୍ରାପ୍ତ ହେବ ।

**प्रतिसंख्याऽप्रतिसंख्यानिरोधाप्राप्तिरविच्छेदात् ॥२२॥**

**(୧) ପ୍ରତିସଂଖ୍ୟାଽପ୍ରତିସଂଖ୍ୟାନିରୋଧାପ୍ରାପ୍ତିରବିଚ୍ଛେଦାତ୍ ॥୨-୨-୨୨॥**

ପ୍ରତିସଂଖ୍ୟାଽପ୍ରତିସଂଖ୍ୟା ନିରୋଧାପ୍ରାପ୍ତିଃ-ସନ୍ତାନ ଓ ସନ୍ତାତିଠାରେ ବୁଦ୍ଧି ପୂର୍ବକ ନାଶ ଓ ଅବୁଦ୍ଧିପୂର୍ବକ ନାଶର ସମ୍ଭବ ନୁହେଁ । ଅବିଚ୍ଛେଦାତ୍-କାରଣ-ସନ୍ତାନ ଓ ସନ୍ତାତିର ବିଚ୍ଛେଦ ହୁଏ ନାହିଁ । ତେଣୁ ସେହି ଦୁଇଟିର ନାଶ ହୁଏ ନାହିଁ ।

(୨) ମୂଳ-(କ) ଅପି ଚ ବୈନାଶିକାଃ କଳ୍ପଲନ୍ତି ବୁଦ୍ଧିବୋଧଂ ତ୍ରୟାଦନ୍ୟତ୍‌ସଂସ୍କୃତଂ କ୍ଷଣିକଂ ଚେତି । ତଦପି ଚତ୍ରୟଂ ପ୍ରତିସଂଖ୍ୟାନିରୋଧାବାକାଶଂ ଚେତାଚକ୍ଷତେ । ତ୍ରୟମପି ଚୈତଦବସ୍ତୁଭାବମାତ୍ରଂ ନିରୁପାଖ୍ୟମାତ୍ରଂ ନିରୂପାଚ୍ୟମିତି ମନ୍ୟନ୍ତେ । ବୁଦ୍ଧିପୂର୍ବକଃ କିଲ ବିନାଶୋ ଭାବନାଂ ପ୍ରତିସଂଖ୍ୟାନିରୋଧୋ ନାମ ଭାଷ୍ୟତେ; ତଦ୍‌ବିପରୀତୋଽପ୍ରତିସଂଖ୍ୟାନିରୋଧଃ, ଆବରଣାଭାବମାତ୍ରମାକାଶମିତି । ତେଷାମାକାଶଂ ପରସ୍ତାତ୍‌ପ୍ରତ୍ୟାଖ୍ୟାସ୍ୟତି । ନିରୋଧଦ୍ୱୟମିଦାନୀଂ ପ୍ରତ୍ୟାଚଷ୍ଟେ । ପ୍ରତିସଂଖ୍ୟାଽପ୍ରତିସଂଖ୍ୟା ନିରୋଧୟୋରପ୍ରାପ୍ତିଃ । ଅସମ୍ଭବ ଇତ୍ୟର୍ଥଃ ।

(ଖ) କସ୍ମାତ୍ । ଅବିଚ୍ଛେଦାତ୍ । ଏତୌ ହି ପ୍ରତିସଂଖ୍ୟାଽପ୍ରତିସଂଖ୍ୟାନିରୋଧୌ ସନ୍ତାନଗୋଚରୌ ବା ସ୍ୟାତାଂ ଭାବତୋଚରୌ ବା । ନ ତାବତ୍‌ସନ୍ତାନଗୋଚରୌ ସମ୍ଭବତଃ । ସର୍ବେଷ୍ୱପି ସନ୍ତାନେଷୁ ସନ୍ତାନିନାମବିଚ୍ଛିନ୍ନେନ ହେତୁ ଫଳଭାବେନ ସନ୍ତାନ ବିଚ୍ଛେଦସ୍ୟାସମ୍ଭବାତ୍ । ନାପି ଭାବଗୋଚରୌ ସମ୍ଭବତଃ । ନହିଭାବାନାଂ ନିରନ୍ୱୟୋ ନିରୂପାଖ୍ୟୋ ବିନାଶଃ ସମ୍ଭବତି, ସର୍ବାସ୍ୱପ୍ୟବସ୍ଥାସୁ ପ୍ରତ୍ୟଭିଜ୍ଞାନବଳେନାନ୍ୱୟ୍ୟବିଚ୍ଛେଦ-ଦଦର୍ଶନାତ୍ । ଅସ୍ପଷ୍ଟପ୍ରତ୍ୟଭିଜ୍ଞାନସ୍ୱପ୍ୟବସ୍ଥାସୁ କ୍ୱଚିଦ୍ଦୃଷ୍ଟେନାନ୍ୱୟ୍ୟବିଚ୍ଛେଦେନାନ୍ୟତ୍ରାପି ତଦନୁମାନାତ୍ । ତସ୍ମାତ୍ ପରପରିକଳ୍ପିତସ୍ୟ ବିରୋଧଦ୍ୱୟସ୍ୟାନୁପପତ୍ତିଃ ।

(୨) ଭାଷାଂତର-(କ) ପୁନଶ୍ଚ ବୈନାଶିକମାନେ କଳ୍ପନା କରନ୍ତି ଯେ-ବୁଦ୍ଧିବୋଧ, ଅର୍ଥାତ୍ ପ୍ରମେୟମାତ୍ର ଉପାଦ୍ୟ ପ୍ରଭୃତିଠାରୁ ଭିନ୍ନ କ୍ଷଣିକ ଅଟେ । ଏହି ତିନୋଟି ପ୍ରତି ସଂଖ୍ୟା ନିରୋଧ, ଅପ୍ରତିସଂଖ୍ୟା ନିରୋଧ ଓ ଆକାଶକୁ କହନ୍ତି । ଏହି ତିନୋଟିକୁ ଅଭାବମାତ୍ର ତୁଚ୍ଛ ଅଟେ ବୋଲି ସ୍ୱୀକାର କରନ୍ତି । ଭାବର ବୁଦ୍ଧିପୂର୍ବକ ବିନାଶ ହେଉଛି ପ୍ରତିସଂଖ୍ୟା ନିରୋଧ, ତାହାର ବିପରୀତ ଅପ୍ରତିସଂଖ୍ୟାନିରୋଧ ଏବଂ ଆବରଣର ଅଭାବ ମାତ୍ରକୁ ଆକାଶ କୁହାଯାଏ । ସେଠାରେ ଆକାଶର ପ୍ରଥମେ ପ୍ରତ୍ୟାଖ୍ୟାନ କରାଯାଇଛି । ଏହି ସମୟ ଦୁଇଟି ନିରୋଧକୁ ନିରାକରଣ କରେ-ପ୍ରତିସଂଖ୍ୟା ନିରୋଧ ଓ ଅପ୍ରତିସଂଖ୍ୟା ନିରୋଧର ଅସମ୍ଭବ । ଏହାହିଁ ସ୍ପଷ୍ଟାର୍ଥ ।



(ଖ) କିପରି ? କାରଣ-ତାହାର ଅବିଚ୍ଛେଦ ହୁଏ । ଏମାନେ ପ୍ରତିସଂଖ୍ୟାନିରୋଧ ଓ ଅପ୍ରତିସଂଖ୍ୟା ନିରୋଧ ସନ୍ତାନଗୋଚର ହୁଅନ୍ତି ଅଥବା ଭାବଗୋଚର ହୁଅନ୍ତି କି ? କିନ୍ତୁ ସନ୍ତାନଗୋଚର ହୁଅନ୍ତି ନାହିଁ, କାରଣ-ସମସ୍ତ ସନ୍ତାନରେ ସନ୍ତାନୀଗୁଡ଼ିକର ବିଚ୍ଛେଦରହିତ କାର୍ଯ୍ୟକାରଣଭାବ ହେଲେ ସନ୍ତାନର ବିଚ୍ଛେଦ ସମ୍ଭବ ହୁଏ ନାହିଁ । ସେହିପ୍ରକାର ଭାବଗୋଚର ମଧ୍ୟ ହୁଅନ୍ତି ନାହିଁ । କାରଣ-ଭାବର ନିରନ୍ୱୟ ଅବସ୍ଥା (ମିଥ୍ୟାବିନାଶ) ହୁଏ ନାହିଁ । ସବୁ ଅବସ୍ଥାରେ ପ୍ରତ୍ୟଭିଜ୍ଞାବଳରୁ ଅନ୍ୱୟୀର ବିଚ୍ଛେଦ ଦେଖାଯାଏ ନାହିଁ । ଅସ୍ପଷ୍ଟ ପ୍ରତ୍ୟଭିଜ୍ଞାନଶାଳୀ ଅବସ୍ଥାରେ କେତେକ ସ୍ଥଳରେ ଦେଖାଯାଇ ଅନ୍ୱୟର ଅବିଚ୍ଛେଦଦ୍ୱାରା ଅନ୍ୟତ୍ର ତାହାର ଅନୁମାନ ହୁଏ । ତେଣୁ ବୈନାଶିକ ପରିକଳ୍ପିତ ନିରୋଧ ଦ୍ୱୟର ଅନୁପପତ୍ତି ହୁଏ ।

## उभयथा च दोषात् ॥२३॥

## (୧) ଉଭୟଥା ଚ ଦୋଷାତ୍ ॥ ୨-୨-୨୩ ॥

ଉଭୟଥା ଚ-ଅବିଦ୍ୟାର ସମ୍ୟକ୍ ଜ୍ଞାନରୁ ବିନାଶ ହୁଏ । ଅଥବା ନିଜେ ନିଜେ ବିନାଶ ହୁଏ । ଏହି ଦୁଇ ପ୍ରକାରରେ ଦୋଷ ହେବାରୁ ସୌଗତମାନଙ୍କର ମତ ଅସଙ୍ଗତ ଅଟେ ।

(୨) ମୂଳ-(କ) ଯୋଽୟମବିଦ୍ୟାଦିନିରୋଧଃ ପ୍ରତିସଂଖ୍ୟାନିରୋଧାନ୍ତଃପାତୀ ପରପରିକଳ୍ପିତଃ, ସ ସମ୍ୟଗ୍‌ଜ୍ଞାନାଦ୍ ବା ସପରିକରାତ୍ ସ୍ୟାତ୍ ସ୍ୱୟମେବ ବା । ପୂର୍ବସ୍ମିନ୍‌ବିକଲ୍ପେ ନିର୍ହେତୁକବିନାଶାଭ୍ୟୁପଗମହାନି ପ୍ରସଙ୍ଗଃ । ଉତ୍ତରସ୍ମିଂସ୍ତୁ ମାର୍ଗୋ-ପଦେଶାନର୍ଥକ୍ୟ ପ୍ରସଙ୍ଗଃ । ଏବମୁଭୟଥାପି ଦୋଷପ୍ରସଙ୍ଗାଦସମଞ୍ଜସମିଦଂ ଦର୍ଶନମ୍ ।

**(୨) ଭାଷାଂତର** - ପ୍ରତିସଂଖ୍ୟା ନିରୋଧରେ ଅନ୍ତର୍ଭୂତ ହେଉଥିବା ଏହି ଅବିଦ୍ୟାଦି ନିରୋଧ ଉପରେ ପରିକଳ୍ପିତ କରାଯାଇଅଛି । ତାହା ସହାୟକ ସାଧନ ସହିତ ସମ୍ୟଗ୍‌ଜ୍ଞାନଦ୍ୱାରା ଅଥବା ସ୍ୱୟଂ ହୁଏ ? ପୂର୍ବ ବିକଳ୍ପରେ ନିର୍ହେତୁକ ବିନାଶର ଅଭ୍ୟୁପଗମହାନି ପ୍ରସଙ୍ଗ ହେବ । ଦ୍ୱିତୀୟ ବିକଳ୍ପରେ ମାର୍ଗୋପଦେଶର ଆନର୍ଥକ୍ୟ ପ୍ରସଙ୍ଗ ହେବ । ଏହିପରି ଦୁଇପ୍ରକାରରେ ଦୋଷପ୍ରସଙ୍ଗ ହେବାରୁ ଏହି ଦର୍ଶନ ଅସଙ୍ଗତ ହୁଏ ।

## आकाशे चाविशेषात् ॥२४॥

## (୧) ଆକାଶେ ଚାବିଶେଷାତ୍ ॥ ୨-୨-୨୪ ॥

ଆକାଶେ ଚ-'ଆତ୍ମନ ଆକାଶଃ ସଂଭୂତଃ' ଏହି ଶ୍ରୁତିରେ ଶବ୍ଦ ଗୁଣବିଶିଷ୍ଟ ହେଲେ ଆକାଶରେ ମଧ୍ୟ, ଅବିଶେଷାତ୍-ପୃଥିବୀତ୍ୱାଦିପରି ସମାନବସ୍ତୁତ୍ୱର ପ୍ରତୀତି ହୁଏ । ତେଣୁ ତାହା ଅବସ୍ତୁ ନୁହେଁ ।

(୨) ମୂଳ-(କ) ଯଚ୍ଚ ତେଷାମେବାଭିପ୍ରେତଂ ନିରୋଧଦ୍ୱୟମାକାଶଂ ଚ ନିରୂପାଖ୍ୟମିତି, ତତ୍ର ନିରୋଧଦ୍ୱୟସ୍ୟ ନିରୂପାଖ୍ୟତ୍ୱଂ ପୁନସ୍ତାନ୍ନିରାକୃତମ୍ । ଆକାଶ-ସ୍ୟେଦାନୀଂ ନିରାକ୍ରିୟତେ । ଆକାଶେ ଚାୟୁକ୍ତୋ ନିରୂପାଖ୍ୟତ୍ୱାଭ୍ୟୁପଗମଃ । ପ୍ରତିସଂଖ୍ୟା ଽପ୍ରତିସଂଖ୍ୟାନିରୋଧୟୋରିବ ବସ୍ତୁତ୍ୱପ୍ରତିପତ୍ତେରବିଶେଷାତ୍ । ଆଗମପ୍ରାମାଣ୍ୟାତ୍ତାବତ୍ 'ଆତ୍ମନଃ ଆକାଶଃ ସମ୍ଭୂତ' (ତୈ ୨-୧) ଇତ୍ୟାଦିଶ୍ରୁତିଭ୍ୟଃ ଆକାଶସ୍ୟ'ଚ ବସ୍ତୁତ୍ୱପ୍ରସିଦ୍ଧିଃ । ବିପ୍ରତିପନ୍ନାନ୍ ପ୍ରତି ତି ଶବ୍ଦଗୁଣାନୁମେୟତ୍ୱଂ ବକ୍ତବ୍ୟମ୍, ଗନ୍ଧାଦୀନାଂ ଗୁଣାନାଂ ପୃଥିବ୍ୟାଦିବସ୍ତ୍ୱାଶ୍ରୟତ୍ୱଦର୍ଶନାତ୍ । ଅପି ଚାବରଣା ଭାବମାତ୍ରମାକାଶମିଚ୍ଛତାମେକସ୍ମିନ୍ ସୁପର୍ଣ୍ଣେ ପତତ୍ୟାବରଣସ୍ୟ ବିଦ୍ୟମାନତ୍ୱାତ୍ ସୁପ-ର୍ଣ୍ଣାନ୍ତରସ୍ୟୋପିତ୍ସତୋଽନବକାଶତ୍ୱ ପ୍ରସଙ୍ଗଃ । ଯତ୍ରାବରଣାଭାବସ୍ତତ୍ର ପତିଷ୍ୟତୀତି ଚେତ୍ । ଯେନାବରଣା ଭାବୋ ବିଶେଷ୍ୟତେ ତତ୍ତର୍ହି ବସ୍ତୁଭୂତ ମେବାକାଶଂ ସ୍ୟାତ୍, ନାବରଣାଭାବମାତ୍ରମ୍ । ଅପିଚାବରଣାଭାବମାତ୍ରମାକାଶଂ ମନ୍ୟମାନସ୍ୟ ସୌଗତସ୍ୟ ସ୍ୱାଭ୍ୟୁପଗମବିରୋଧଃ ପ୍ରସଜ୍ୟେତ ।

(ଗ) ସୌଗତେ ହି ସମୟେ 'ପୃଥିବୀ ଭଗବଃ କିଂସଂନିଶ୍ରୟା ଇତ୍ୟସ୍ମିନ୍ ପ୍ରତିବଚନପ୍ରବାହେ ପୃଥିବ୍ୟାଦୀନାମନ୍ତେ 'ବାୟଃ କିଂସଂ ନିଶ୍ରୟଃ' ଇତ୍ୟସ୍ୟ ପ୍ରଶ୍ନସ୍ୟ ପ୍ରତିବଚନଂ ଭବତି 'ବାୟୁରାକାଶସଂନିଶ୍ରୟଃ' ଇତି । ତଦାକାଶସ୍ୟାବସ୍ତୁତ୍ୱେ ନ ସମଞ୍ଜସଂ ସ୍ୟାତ୍ । ତସ୍ମାଦପ୍ୟଯୁକ୍ତମାକାଶସ୍ୟାବସ୍ତୁତ୍ୱମ୍ । ଅପିଚ ନିରୋଧ ଦ୍ୱୟମାକାଶଂ ଚ ତ୍ରୟମପ୍ୟେତନ୍ନିରୂପାଖ୍ୟମବସ୍ତୁ ନିତ୍ୟଂଚେତି ନିତ୍ୟତ୍ୱଂ ବା ସମ୍ଭବତି, ବସ୍ତ୍ୱାଶ୍ରୟତ୍ୱାଦ୍ଧର୍ମଧର୍ମିବ୍ୟବହାରସ୍ୟ । ଧର୍ମଧର୍ମିଭାବେ ହି ଘଟାଦିବଦ୍ ବସ୍ତୁତ୍ୱମେବ ସ୍ୟାନ୍ନ ନିରୂପାଖ୍ୟତ୍ୱମ୍ ।

**(୨) ଭାଷାଂତର**-(କ) ଦୁଇଟି ନିରୋଧ ଓ ଆକାଶ ତୁଚ୍ଛ ଅଟେ ବୋଲି ବୌଦ୍ଧମାନଙ୍କର ଅଭିପ୍ରେତ ଅଟେ । ସେଠାରେ ଦୁଇଟି ନିରୋଧର ତୁଚ୍ଛତ୍ୱ ପ୍ରଥମେ ନିରାକରଣ କରାଯାଇଛି, ବର୍ତ୍ତମାନ ଆକାଶର ତୁଚ୍ଛତ୍ୱକୁ ନିରାକରଣ କରାଯାଉଅଛି । ଆକାଶରେ ତୁଚ୍ଛତ୍ୱସ୍ୱୀକାର ଅଯୁକ୍ତ ଅଟେ । କାରଣ-ସେଠାରେ ପ୍ରତିସଂଖ୍ୟାନିରୋଧ ଓ ଅପ୍ରତିସଂଖ୍ୟାନିରୋଧ ସଦୃଶ ବସ୍ତୁର ପ୍ରତିପତ୍ତି ହୁଏ । ସେଠାରେ ଆଗପ୍ରମାଣଦ୍ୱାରା ବସ୍ତୁତ୍ୱ ହୁଏ । 'ଆତ୍ମନଃ' (ଆତ୍ମାଠାରୁ ଆକାଶ ଉତ୍ପନ୍ନ ହେଲା) ଇତ୍ୟାଦି ଶ୍ରୁତିଦ୍ୱାରା ଆକାଶରେ ବସ୍ତୁତ୍ୱ ପ୍ରସିଦ୍ଧି ହୁଏ । ଆଗମ ପ୍ରାମାଣ୍ୟକୁ ସ୍ୱୀକାର କରୁ ନଥିବା ପ୍ରତିପକ୍ଷମାନଙ୍କ ପାଇଁ ଆକାଶ ଶବ୍ଦ ଗୁଣାନୁମେୟ ହୁଏ-ଏହାହିଁ କହିବା ଉଚିତ୍ ।

(ଖ) କାରଣ-ଗନ୍ଧ ପ୍ରଭୃତି ଗୁଣର ପୃଥିବୀ ପ୍ରଭୃତି ବସ୍ତୁ ଆଶ୍ରୟରୂପରେ ଦେଖାଯାଏ । ଆକାଶକୁ ଆବରଣାଭାବମାତ୍ର ରୂପେ ସ୍ୱୀକାର କରିବା ମତରେ ଗୋଟିଏ ପକ୍ଷୀ ଉଡ଼ିଗଲାପରେ ଆବରଣ ଥିଲେ ମଧ୍ୟ ବି ଉଡ଼ିବାକୁ ଅଭିଳାଷ କରୁଥିବା ଅନ୍ୟ ପକ୍ଷୀର ଅନବକାଶତ୍ୱପ୍ରସଙ୍ଗ ହେବ । ଯଦି କହଯେ-ଏଠାରେ ଆବରଣର ଅଭାବ ଅଛି; ସେଠାରେ



ଉଡ଼ିବ, ତେବେ ଯାହାଦ୍ୱାରା ଆବରଣ ଅଭାବ ବିଶେଷିତ ହୁଏ, ତେବେ ସେଠାରେ ବସ୍ତୁଭୂତ ଆକାଶ ରହେ । ଆବରଣର ଅଭାବମାତ୍ର ନୁହେଁ । ଆବରଣର ଅଭାବ ମାତ୍ରକୁ ଆକାଶରୂପରେ ସ୍ୱୀକାର କରୁଥିବା ବୌଦ୍ଧମାନଙ୍କୁ ନିଜେ ସ୍ୱୀକାର କଲେ ପ୍ରସକ୍ତ ହେବ ।

(ଗ) କାରଣ ବୌଦ୍ଧ ଦର୍ଶନରେ 'ପୃଥିବୀ ଭଗବ' (ହେ ଭଗବନ୍ ପୃଥିବୀ କେଉଁ ସ୍ଥାନରେ ଆଶ୍ରିତ ରହେ) ଏହିପ୍ରକାର ପ୍ରଶ୍ନୋତ୍ତର ପ୍ରବାହରେ ପୃଥିବୀ ପ୍ରଭୃତିର ଶେଷରେ 'ବାୟୁକିମ୍' (ବାୟୁ କେଉଁଠାରେ ଆଶ୍ରିତ ହୁଏ) ଏହି ପ୍ରକାର ପ୍ରଶ୍ନର 'ବାୟୁରାକାଶ' (ବାୟୁ ଆକାଶରେ ଆଶ୍ରିତ ହୁଏ) ଏହା ଉତ୍ତର । ଆକାଶକୁ ଅବସ୍ତୁରୂପେ ସ୍ୱୀକାର କଲେ ତାହା ସଂଗତ ହେବ ନାହିଁ । ତେଣୁ ଆକାଶର ଅବସ୍ତୁତ୍ୱ ଅଯୁକ୍ତ ଅଟେ । ଦୁଇଟି ନିରୋଧ ଏବଂ ଆକାଶ, - ଏହି ତିନୋଟି ନିରୂପାଖ୍ୟ, ଅବସ୍ତୁ ଓ ନିତ୍ୟ ଅଟେ । ଏହା ପରସ୍ପର ବିରୁଦ୍ଧ ଅଟେ । କାରଣ-ଅବସ୍ତୁ ନିତ୍ୟ ଅଥବା ଅନିତ୍ୟ ହୁଏ ନାହିଁ । ଧର୍ମଧର୍ମିବ୍ୟବହାର ବସ୍ତୁର ଆଶ୍ରିତ ଅଟେ । ଧର୍ମଧର୍ମିଭାବ ହେଲେ ଘଟାଦିପରି ବସ୍ତୁତ୍ୱ ହେବ । ତାହା ତୁଚ୍ଛ ନୁହେଁ ।

## अनुस्मृतेश्च ॥२५॥

## ୧-ଅନୁସ୍ମୃତେଶ୍ଚ ॥ ୨-୨-୨୫ ॥

ଉପଲବ୍ଧି ହେଲାପରେ ଉତ୍ପନ୍ନ ହୋଇଥିବା ସ୍ମରଣ ଅନୁସ୍ମୃତି ଅଟେ । ତଦ୍ୱାରା ପ୍ରତୀତ ହୁଏ ଯେ- ଅନୁଭବକର୍ତ୍ତା ଆତ୍ମା କ୍ଷଣିକ ନୁହେଁ ।

(୨) ମୂଳ-(କ) ଅପିଚ ବୈନାଶିକଃ ସର୍ବସ୍ୟ ବସ୍ତୁନଃ କ୍ଷଣିକତାମଭ୍ୟୁପ-ଯନ୍ନୁପଲବ୍ଧୁରପି କ୍ଷଣକତା ମଭ୍ୟୁପେୟାତ୍ । ନ ଚ ସା ସମ୍ଭବତି । ଅନୁସ୍ମୃତେଃ ଅନୁଭବମୁଲବ୍ଧିମନୁତ୍ପଦ୍ୟମାନଂ ସ୍ମରଣମେବାନୁସ୍ମୃତିଃ । ସା ଚୋପଲବ୍ଧ୍ୟେକକର୍ତ୍ତୃକା ସତୀ ସମ୍ଭବତି । ପୁରୁଷାନ୍ତରୋପଲବ୍ଧି ବିଷୟେ ପୁରୁଷାନ୍ତରସ୍ୟ ସ୍ମୃତ୍ୟଦର୍ଶନାତ୍ । କଥଂ ହ୍ୟହମଦୋଽଦ୍ରାକ୍ଷମିଦଂ ପଶ୍ୟାମୀତି ଚ ପୂର୍ବୋତ୍ତରଦର୍ଶନ୍ୟେକସ୍ମିନ୍ନସତି ପ୍ରତ୍ୟୟଃ ସ୍ୟାତ୍ ।

(ଖ) ଅପିଚ ଦର୍ଶନସ୍ମରଣୟୋଃ କର୍ତର୍ୟେକସ୍ମିନ୍ ପ୍ରତ୍ୟକ୍ଷଃ ପ୍ରତ୍ୟଭିଜ୍ଞା ପ୍ରତ୍ୟୟଃ ସର୍ବସ୍ୟ ଲୋକସ୍ୟ ପ୍ରସିଦ୍ଧୋଽହମଦୋଽଦ୍ରାକ୍ଷମିଦଂ ପଶ୍ୟାମୀତି । ଯଦି ହି ତୟୋର୍ଭିନ୍ନଃ କର୍ତ୍ତା ସ୍ୟାତ୍ତତୋଽହଂ ସ୍ମରାମ୍ୟଦ୍ରାକ୍ଷୀଦନ୍ୟ ଇତି ପ୍ରତୀୟାତ୍ । ନତ୍ୱେବଂ ପ୍ରତ୍ୟେତି କଶ୍ଚିତ୍ । ଯତ୍ରୈବଂ ପ୍ରତ୍ୟୟସ୍ତତ୍ର ଦର୍ଶନସ୍ମରଣୟୋର୍ଭିନ୍ନମେବ କର୍ତ୍ତାରଂ ସର୍ବଲୋକୋଽବଗଚ୍ଛତି । ସ୍ମରାମ୍ୟହମସା ।ଦୋଽଦ୍ରାକ୍ଷୀଦିତି । ଇହ ତ୍ୱହମଦୋଽଦ୍ରାକ୍ଷମିତି ଦର୍ଶନସ୍ମରଣୟୋର୍ବୈନାଶିକୋଽପ୍ୟାତ୍ମାନମେବୈକଂ କର୍ତ୍ତାରମବଗଚ୍ଛତି । ନ ନାହମିତ୍ୟାତ୍ମନୋ ଦର୍ଶନଂ ନିହ୍ନୁତଂ ନିହ୍ନୁତେ ଯଥାଗ୍ନିର ୁଷ୍ଣୋଽପ୍ରକାଶ ଇତି ବା । ତତ୍ରୈବଂ ସତ୍ୟେକସ୍ୟ ଦର୍ଶନସ୍ମରଣଲକ୍ଷଣ-କ୍ଷଣଦ୍ୱୟସମ୍ବନ୍ଧେ କ୍ଷଣିକତ୍ୱାଭ୍ୟୁ-ପଗମହାନିରପରିହାର୍ଯ୍ୟୋ ବୈନାଶିକସ୍ୟ ସ୍ୟାତ୍ ।

(୨) ଭାଷାଂତର-(କ) ଏହିଠାରୁ ଅତିରିକ୍ତ ବୈନାଶିକ ସମସ୍ତ ବସ୍ତୁର କ୍ଷଣିକତା ସ୍ୱୀକାର କରି ଉପଲବ୍ଧିର କ୍ଷଣିକତା ସ୍ୱୀକାର କରନ୍ତି । ତାହା କିନ୍ତୁ ସମ୍ଭବପର ନୁହେଁ । କାରଣ-ଅନୁସ୍ମୃତି ହିଁ ପ୍ରମାଣ । ଅନୁଭବ ହେବାପରେ ଉତ୍ପନ୍ନ ହେଉଥିବା ସ୍ମରଣକୁ ଅନୁସ୍ମୃତି କହନ୍ତି । ତାହାର ଓ ଉପଲବ୍ଧିର ଗୋଟିଏ କର୍ତ୍ତା ଅବସ୍ଥାନ କରନ୍ତି । କାରଣ-ଗୋଟିଏ ପୁରୁଷର ଅନୁଭବ ବିଷୟରେ ପୁରୁଷର ସ୍ମୃତି ଦେଖାଯାଏ ନାହିଁ । ମୁଁ ଏହା ଦେଖିଲି, ମୁଁ ଏହା ଦେଖୁଅଛି । ଏହି ପ୍ରତ୍ୟୟ ପୂର୍ବୋତ୍ତର ଏକ ଦ୍ରଷ୍ଟାରେ ନ ହେଲେ କିପରି ହେବ ?

(ଖ) କିନ୍ତୁ ଅନୁଭବ ଓ ସ୍ମରଣ ଗୋଟିଏ କର୍ତ୍ତା 'ହେଲେ ମୁଁ ଏହା ଦେଖିଥିଲି, ବର୍ତ୍ତମାନ ମଧ୍ୟ ଦେଖୁଅଛି' ଏହିପରି ପ୍ରତ୍ୟକ୍ଷ ପ୍ରତ୍ୟଭିଜ୍ଞାପ୍ରତ୍ୟୟ ସର୍ବଲୋକରେ ପ୍ରସିଦ୍ଧ ଅଟେ । ଯଦି ସେହି ଦୁଇଟି ଭିନ୍ନ କର୍ତ୍ତା ହୁଏ, ତେବେ ତାହାଦ୍ୱାରା 'ମୁଁ ସ୍ମରଣ କରୁଛି, ଅନ୍ୟଜଣେ ଦେଖିଥିଲା, ଏହିପ୍ରକାର ପ୍ରତ୍ୟୟ ହେବ । ପରନ୍ତୁ କାହାକୁ ଏପରି ପ୍ରତୀତି ହୁଏ ନାହିଁ । ଯେଉଁ ସ୍ଥାନରେ ଏପରି ପ୍ରତୀତି ହୁଏ, ସେଠାରେ ଜ୍ଞାନ ଓ ସ୍ମରଣଭିନ୍ନ କର୍ତ୍ତାକୁ ସମସ୍ତେ ଜାଣନ୍ତି ଯେ- ମୁଁ ସ୍ମରଣ କରୁଅଛି, ସେ ତାହା ଦେଖିଲା ।' ପରନ୍ତୁ ଏଠାରେ 'ମୁଁ ଏହା ଦେଖିଲି' ଏହି ଦର୍ଶନ ଓ ସ୍ମରଣର ଏକତ୍ୱ କର୍ତ୍ତାରୂପରେ ଆତ୍ମାକୁ ବୈନାଶିକମାନେ ସ୍ୱୀକାର କରନ୍ତି । ଯେଉଁଠି କର୍ତ୍ତା ରୂପରେ ଜ୍ଞାନ ହୁଏ, ତାହାର 'ମୁଁ ନୁହେଁ' ଏହା କହି ଅପଲାପ କରେ ନାହିଁ । ଯେପରି 'ଅଗ୍ନିର ଅନୁଷ୍ଣ ଓ ଅପ୍ରକାଶ ଅଟେ' ଏହା କହି ଅପଲାପ କରେ ନାହିଁ । ସେଠାରେ ଏପରି ହେଲେ ଗୋଟିକର ଦର୍ଶନ ଓ ସ୍ମରଣରୂପ ଦୁଇଟି କ୍ଷଣର ସହିତ ସମ୍ବନ୍ଧ ହେବାରୁ ବୈନାଶିକକୁ କ୍ଷଣିକତ୍ୱ ସିଦ୍ଧାନ୍ତ ହାନି ଅପରିହାର୍ଯ୍ୟ ହେବ ।

(୩) ମୂଳ-(କ) ତଥାଽନନ୍ତରାମନନ୍ତରାମାତ୍ମନ ଏବ ପ୍ରତିପତ୍ତିଂ ପ୍ରତ୍ୟଭିଜାନ-ନ୍ନେକକର୍ତ୍ତୃକାମୋତ୍ତମାଦୁଚ୍ଛ୍ୱାସାଦତୀତାଶ୍ଚ ପ୍ରତିପତ୍ତୀରାଜନ୍ମନ ଆତ୍ମୈକକର୍ତ୍ତୃକାଃ ପ୍ରତିସଂଦଧାନଃ କଥଂ କ୍ଷଣଭଙ୍ଗବାଦୀ ବୈନାଶିକୋ ନାପତ୍ରପେତ । ସ ଯଦି ବ୍ରୂୟାତ୍ସାଦୃଶ୍ୟାଦେତତ୍ ସଂପସ୍ୟତ ଇତି । ତଂ ପ୍ରତି ବ୍ରୂୟାତ୍ । ତେନେଦଂ ସଦୃଶମିତିଦ୍ୱୟାୟତ୍ତତ୍ୱାତ୍ ସାଦୃଶ୍ୟସ୍ୟ, କ୍ଷଣଭଙ୍ଗବାଦିନଃ ସଦୃଶୟୋର୍ଦ୍ୱୟୋଃ ବସ୍ତୁନୋର୍ଗ୍ରହୀତୁରେକସ୍ୟାଭାବାତ୍, ସାଦୃଶ୍ୟନିମିତ୍ତଂପ୍ରତିସଂଧାନମିତି ମିଥ୍ୟାପ୍ରଳାପ ଏବ ସ୍ୟାତ୍ ।

(ଖ) ସ୍ୟାଚ୍ଚେତ୍ପୂର୍ବୋତ୍ତରୟୋଃ କ୍ଷଣୟୋଃ ସାଦୃଶ୍ୟସ୍ୟ ଗ୍ରହୀତୈକଃ, ତଥାସତ୍ୟେକସ୍ୟ କ୍ଷଣଦ୍ୱୟାବସ୍ଥାନାତ୍ କ୍ଷଣିକତ୍ୱପ୍ରତିଜ୍ଞା ପୀଡ୍ୟେତେ । ତେନେଦଂ ସଦୃଶମିତି ପ୍ରତ୍ୟୟାନ୍ତରମେବେଦଂ ନ ପୂର୍ବୋତ୍ତରକ୍ଷଣଦ୍ୱୟଗ୍ରହଣନିମିତ୍ତମିତି ଚେତ୍ । ନ । ତେନେଦମିତି ଭିନ୍ନପଦାର୍ଥୋପାଦାନାତ୍ । ପ୍ରତ୍ୟୟାନ୍ତରମେବ ଚେତ୍ସାଦୃଶ୍ୟବିଷୟଂ ସ୍ୟାତ୍ ତେନେଦଂ ସଦୃଶମିତି ବାକ୍ୟପ୍ରୟୋଗୋଽନର୍ଥକଃ ସ୍ୟାତ୍ । ସାଦୃଶ୍ୟମେତ୍ୟେବ ପ୍ରୟୋଗଃ ପ୍ରାପ୍ନୁୟାତ୍ ।

(୩) ଭାଷାଂତର-(କ)ସେହିପରି ବର୍ତ୍ତମାନ ଦଶାଠାରୁ ଆରମ୍ଭ କରି ବର୍ତ୍ତମାନ କ୍ଷଣ ପର୍ଯ୍ୟନ୍ତ ବର୍ତ୍ତମାନ ହେଉଥିବା ପ୍ରତିପତ୍ତିଗୁଡ଼ିକ ଆତ୍ମକର୍ତ୍ତୃକ ପ୍ରତିସନ୍ଧାନ କରି କ୍ଷଣଭଙ୍ଗ ବାଦୀ ବୈନାଶିକ କାହିଁକି ଲଜ୍ଜିତ ହେଉ ନାହାନ୍ତି ? ଯଦି ସେମାନେ ଏପରି କହନ୍ତି ଯେ- ସାଦୃଶ୍ୟଦ୍ୱାରା ଏହି ପ୍ରତିସନ୍ଧାନ ହୁଏ, ତେବେ ସେମାନଙ୍କ ପ୍ରତି କହିବା କଥା ଯେ- 'ତେନେଦଂ ସଦୃଶମ୍' (ଏହି ତାଦୃଶ ଅଟେ) ଏହି ସାଦୃଶ୍ୟ ଦୁଇଟିର ଅଧୀନ ଅଟେ । ତେଣୁ ଏହି ଦୁଇଟି ସଦୃଶ ବସ୍ତୁଗୁଡ଼ିକର ଗ୍ରହୀତା କ୍ଷଣଭଙ୍ଗବାଦୀଙ୍କ ମତରେ ଜଣକର ନହୋଇ ସାଦୃଶ୍ୟନିମିତ୍ତକ ପ୍ରତିସଂଧାନ ହୁଏ । ଏହା ମିଥ୍ୟା ପ୍ରଳାପ ହେବ ।

(ଖ) ଯଦି ପୂର୍ବ ଓ ଉତ୍ତର କ୍ଷଣର ସାଦୃଶ୍ୟକୁ ଜଣେ ଗ୍ରହୀତା ରହେ, ତେବେ ଏହିପରି ହେବାରୁ ଗୋଟିକୁ କ୍ଷଣ ଦ୍ୱୟ ପର୍ଯ୍ୟନ୍ତ ଅବସ୍ଥିତ ହେବାରୁ କ୍ଷଣିକତ୍ୱ ପ୍ରତିଜ୍ଞା ବାଧିତ ହେବ । ଯଦି କହ ଯେ- 'ତେନେଦଂ ସଦୃଶମ୍' ଏହା ଭିନ୍ନ ପ୍ରତ୍ୟୟ ଅଟେ, କିନ୍ତୁ ପୂର୍ବ ଓ ଉତ୍ତର ଏହି କ୍ଷଣଦ୍ୱୟଗ୍ରହଣ ନିମିତ୍ତକ ନୁହେଁ, ତଥାପି ଏହା ଠିକ୍ ନୁହେଁ । କାରଣ 'ତେନେଦମ' ଏହିପ୍ରକାର ଭିନ୍ନ ପଦାର୍ଥର ଗ୍ରହଣ ହୁଏ । ଯଦି ଏହି ସାଦୃଶ୍ୟ ବିଷୟକ ଅନ୍ୟ ପ୍ରତ୍ୟୟ ହୁଏ, ତେବେ 'ତେନେଦଂ ସଦୃଶମ୍' ଏହି ବାକ୍ୟ ପ୍ରୟୋଗ ଅନର୍ଥକ ହେବ । 'ସାଦୃଶ୍ୟମ୍' ଏହି ପ୍ରୟୋଗ ପ୍ରାପ୍ତ ହେବ ।

(୪) ମୂଳ-(କ) ଯଦା ହି ଲୋକପ୍ରସିଦ୍ଧଃ ପଦାର୍ଥଃ ପରୀକ୍ଷକୈର୍ନ ପରିଗୃହ୍ୟତେ ତଦା ସ୍ୱପକ୍ଷସିଦ୍ଧିଃ ପରପକ୍ଷଦୋଷୋ ବୋଭୟମପ୍ୟୁଚ୍ୟମାନଂ ପରୀକ୍ଷକାଣାମାତ୍ମନଶ୍ଚ ଯଥାର୍ଥତ୍ୱେନ ନ ବୁଦ୍ଧିସନ୍ତାନମାରୋହତି । ଏବମେବୈଷୋଽର୍ଥଃ ଇତି ନିଶ୍ଚିତଂ ଯତ୍ତଦେବ ବକ୍ତବ୍ୟମ୍ । ତତୋଽନ୍ୟଦୁଚ୍ୟମାନଂ ବହୁପ୍ରଳାପିତ୍ୱମାତ୍ମନଃ କେବଳଂ ପ୍ରଖ୍ୟାପୟେତ୍ । ନଚାୟଂ ସାଦୃଶ୍ୟାତ୍ ସଂବ୍ୟବହାରୋ ଯୁକ୍ତଃ । ତଦ୍‌ଭାବାବଗମାତ୍ତ-ତସଦୃଶଭାବାନବଗମାଚ୍ଚ ।

(ଖ) ଭବେଦପି କଦାଚିଦ୍ ବାହ୍ୟବସ୍ତୁନି ବିପ୍ରଲମ୍ଭସମ୍ଭବାତ୍ତଦେବେଦଂ ସ୍ୟାତ୍ତତ୍‌ସଦୃଶଂ ବେତି ସନ୍ଦେହଃ । ଉପଲବ୍ଧରିହ ତୁ ସନ୍ଦେହୋଽପି ନ କଦାଚିଦ୍ ଭବତି ସ ଏବାହଂ ସ୍ୟାଂ ତତ୍‌ସଦୃଶୋ ବେତି । ଯ ଏବାହଂ ପୂର୍ବେଦ୍ୟୁରଦ୍ରାକ୍ଷଂ ସ ଏବାହମଦ୍ୟ ସ୍ମରାମୀତି ନିଶ୍ଚିତ ତଦ୍‌ଭାବୋପଲମ୍ଭାତ୍ । ତସ୍ମାଦପ୍ୟନୁପପନ୍ନୋ ବୈନାଶିକସମୟଃ ।

(୪) ଭାଷାଂତର-(କ) ଯେଉଁ ସମୟ ପର୍ଯ୍ୟନ୍ତ ଲୋକପ୍ରସିଦ୍ଧ ପଦାର୍ଥର ପରୀକ୍ଷକ ଦ୍ୱାରା ପରିଗ୍ରହଣ ନ ହେବ, ସେ ପର୍ଯ୍ୟନ୍ତ ସ୍ୱପକ୍ଷର ସିଦ୍ଧି ଓ ପରପକ୍ଷର ଦୋଷ ଏହି ଦୁଇଟି କହି ଯଥାର୍ଥରୂପରେ ପରୀକ୍ଷକର ଓ ନିଜବୁଦ୍ଧି ସନ୍ତାନରେ ଆସେ ନାହିଁ । ଏହି ପଦାର୍ଥ ଏପରି ଅଟନ୍ତି, ଏହା ଯାହା ନିଶ୍ଚିତ ଅଟେ, ତାହା କହିବା ଉଚିତ୍ । ତାହା ଭିନ୍ନକୁ କହି କେବଳ ନିଜେ ବହୁ ପ୍ରଳାପିତ୍ୱ ପ୍ରଖ୍ୟାପନ କରିବ । ଏହି ସଂବ୍ୟବହାର ସାଦୃଶ୍ୟରୁ ହେବା ଠିକ୍ ନୁହେଁ । କାରଣ- 'ସେ ଏହା' ଏହି ସଦ୍‌ଭାବର ଜ୍ଞାନହୁଏ ଏବଂ ତାହାର ସମାନ ଏହା' ସେହିପରି ତତ୍‌ସଦୃଶଭାବ ଅବଗତ ହୁଏ ନାହିଁ ।

(ଖ) ବାହ୍ୟବସ୍ତୁରେ ବିପ୍ରଲମ୍ଭକ ସମ୍ଭବ ହେଲେ 'ସେ ଏହା ଅଟେ' ଅଥବା 'ତାହା ସଦୃଶ ଅଟେ'- ଏହି ସନ୍ଦେହ କଦା ହୁଏ । ପରନ୍ତୁ ଉପଲବ୍ଧ ଆତ୍ମାରେ 'ସେ ମୁଁ ଅଟେ' ଅଥବା 'ତାହା ସଦୃଶ ମୁଁ' ଏହିପରି ସନ୍ଦେହ କଦାପି ହୁଏ ନାହିଁ । କାରଣ- ଯାହାକୁ ମୁଁ ପ୍ରଥମ ଦିନରେ ଦେଖିଥିଲି, ତାହାକୁ ଆଜି ସ୍ମରଣ କରୁଅଛି । ଏହି ପ୍ରକାର ନିଶ୍ଚିତ ତଦ୍‌ଭାବ ଜ୍ଞାନ ହୁଏ । ତେଣୁ ବୈନାଶିକଦର୍ଶନ ଅନୁପପନ୍ନ ନୁହେଁ ।

## नासतोऽदृष्टत्वात् ॥२६॥

## ୧-ନାସତୋଽଦୃଷ୍ଟତ୍ୱାତ୍ ॥ ୨-୨-୨୬ ॥

ଅସତଃ-ଅଭାବରୁ କାର୍ଯ୍ୟର ଉତ୍ପତ୍ତି, ନ-ହୁଏ ନାହିଁ । ଅଦୃଷ୍ଟତ୍ୱାତ୍-କାରଣ ଅସତ୍ ନରଶୃଙ୍ଗ ପ୍ରଭୃତିରୁ କାର୍ଯ୍ୟୋତ୍ପତ୍ତି ଦେଖାଯାଏ ନାହିଁ ।

(୨) ମୂଳ-(କ) ଇତଶ୍ଚାନୁପପନ୍ନୋ ବୈନାଶିକସମୟଃ, ଯତଃ ସ୍ଥିର ମନୁଯାୟି-କାରଣମନଭ୍ୟୁପଗଚ୍ଛତାମଭାବାଦ୍ ଭାବୋତ୍ପତ୍ତିରିତ୍ୟେତଦାପଦ୍ୟତେ । ଦର୍ଶୟନ୍ତି ଚାଭାବାଦ୍ ଭାବୋତ୍ପତ୍ତିମ୍-'ନାନୁପମୃଦ୍ୟ ପ୍ରାଦୁର୍ଭାବାତ୍' ଇତି । ବିନଷ୍ଟାଦ୍ ହି କିଲ ବୀଜାଦଙ୍କୁର ଉତ୍ପଦ୍ୟତେ, ତଥା ବିନଷ୍ଟାତ୍ କ୍ଷୀରାଦ୍ଦଧି । ମୃତ୍‌ପିଣ୍ଡାଚ୍ଚ ଘଟା । କୂଟସ୍ଥାଚ୍ଚେତ୍ କାରଣାତ୍ କାର୍ଯ୍ୟମୁତ୍ପଦ୍ୟେତାବିଶେଷାତ୍ ସର୍ବଂ ସର୍ବତ ଉତ୍ପଦ୍ୟେତ । ତସ୍ମାଦଭାବଗ୍ରସ୍ତେଭ୍ୟୋ ବୀଜାଦିଭ୍ୟୋଽଙ୍କୁରାଦୀନାମୁତ୍ପଦ୍ୟମାନତ୍ୱାଦଭାବାଦ୍ ଭାବୋତ୍ପତ୍ତିରିତି ମନ୍ୟନ୍ତେ ।

(ଖ) ତତ୍ରେଦମୁଚ୍ୟତେ-'ନାସ୍‌ତୋଽଦୃଷ୍ଟତ୍ୱାତ୍' ଇତି ନାଭାବାଦ୍ ଭାବ ଉତ୍ପଦ୍ୟତେ । ଯଦ୍ୟଭାବାଦଭାବ ଉତ୍ପଦ୍ୟେତାଭାବତ୍ୱା ବିଶେଷାତ୍ କାରଣବିଶେଷାଭ୍ୟୁପଗମୋଽନର୍ଥକଃ ସ୍ୟାତ୍ । ନହି ବୀଜାଦୀନାମୁପମୁଦିତାନାଂ ଯୋଽଭାବସ୍ତସ୍ୟାଭାବସ୍ୟ ଶଶବିଷାଣାଦୀନାଂ ଚ ନିଃସ୍ୱଭାବତ୍ୱାବିଶେଷାଦଭାବତ୍ୱେ କଶ୍ଚିଦ୍‌ବିଶେଷୋଽସ୍ତି, ଯେନ ବୀଜାଦେବାଙ୍କୁରୋ ଜାୟତେ କ୍ଷୀରାଦେବ ଦଧତୀତ୍ୟେବଂଜାତୀୟକଃ କାରଣ ବିଶେଷାଭ୍ୟୁପଗମୋଽର୍ଥବାନ୍ ସ୍ୟାତ୍ । ନିର୍ବିଶେଷସ୍ୟ ତ୍ୱଭାବସ୍ୟ କାରଣତ୍ୱାଭ୍ୟୁପଗମେ ଶଶବିଷାଣାରିଭ୍ୟୋପ୍ୟଙ୍କୁରାଦୟୋ ଜାୟେରନ । ନ ଚୈବଂ ଦୃଶ୍ୟତେ ।

(ଗ) ଯଦି ପୁନରଭାବସ୍ୟାପି ବିଶେଷୋଽଭ୍ୟୁପଗମ୍ୟେତୋତ୍ପଳାଦୀନାମିବ ନୀଳତ୍ୱାଦିସ୍ତତୋ ବିଶେଷବତ୍ତ୍ୱାଦେବାଭାବସ୍ୟ ଭାବତ୍ୱମୁତ୍ପଳାଦିବତ୍ ପ୍ରସଜ୍ୟେତ । ନାପ୍ୟଭାବଃ କସ୍ୟଚିଦୁତ୍ପତ୍ତି ହେତୁଃ ସ୍ୟାତ୍, ଅଭାବତ୍ୱାଦେବ, ଶଶବିଷାଣାଦିବତ୍ । ଅଭାବାଚ୍ଚ ଭାବୋତ୍ପତ୍ତାବଭାବାନ୍ୱିତମେବ ସର୍ବଂ କାର୍ଯ୍ୟଂ ସ୍ୟାତ୍ ନ ଚୈବଂ ଦୃଶ୍ୟତେ । ସର୍ବସ୍ୟ ଚ ବସ୍ତୁନଃ ସ୍ୱେନ ସ୍ୱେନ ରୂପେଣ ଭାବାତ୍ମନୈବୋପଲଭ୍ୟମାନତ୍ୱାତ୍ । ନଚ ମୃଦାନ୍ୱିତାଃ ଶରାବାଦୟୋ ଭାବାସ୍ତନ୍ତ୍ୱାଦିବିକାରାଃ କେନଚିଦଭ୍ୟୁପଗମ୍ୟନ୍ତେ । ମୃଦ୍ ବିକାରାନେବ ତୁ ମୃଦନ୍ୱିତାନ୍ ଭାବାଂଲୋକଃ ପ୍ରତ୍ୟେତି ।



(ଘ) ଯତ୍ତୁକ୍ତଂ ସ୍ୱରୂପୋପମର୍ଦମନ୍ତରେଣ କସ୍ୟଚିଦତ୍‌କୂଟସ୍ଥସ୍ୟ ବସ୍ତୁନଃ କାରଣତ୍ୱାନୁପପତ୍ତେରଭାବାଦ୍ ଭାବୋତ୍ପତ୍ତିର୍ଭବିତୁମର୍ହତୀତି । ତଦ୍‌ଦୁରୁକ୍ତମ୍ । ସ୍ଥିରସ୍ୱଭାବାନାମେବ ସୁବର୍ଣ୍ଣାଦୀନାଂ ପ୍ରତ୍ୟଭିଜ୍ଞାୟମାନାନାଂ ରୁଚକାଦିକାର୍ଯ୍ୟକାରଣଭାବଦର୍ଶନାତ୍ । ଯେଷ୍ୱପି ବୀଜାଦିଷୁ ସ୍ୱରୂପୋପମର୍ଦୋ ଲକ୍ଷ୍ୟତେ ତେଷ୍ୱପି ନାଽସାବୁପମୃଦ୍ୟମାନା ପୂର୍ବାବସ୍ଥୋତ୍ତରାବସ୍ଥାୟାଃ କାରଣମଭ୍ୟୁପଗମ୍ୟତେ, ଅନୁପମୃଦ୍ୟମାନାନମେବାନୁଯାୟିନାଂ ବୀଜାଦ୍ୟବୟବାନାମଙ୍କୁରାଦି କାରଣଭାବାଭ୍ୟୁପଗମାତ୍ । ତସ୍ମାଦ୍‌ସଦଭ୍ୟଃ ଶଶବିଷାଣାଦିଭ୍ୟଃ ସଦୁତ୍ପତ୍ତ୍ୟଦର୍ଶନାତ୍ ସଦଭ୍ୟଶ୍ଚ ସୁବର୍ଣ୍ଣାଦିଭ୍ୟଃ ସଦୁତ୍ପତ୍ତି ଦର୍ଶନାଦନୁପପନ୍ନୋଽୟମଭାବାଦ୍ ଭାବୋତ୍ପତ୍ତ୍ୟଭ୍ୟୁପଗମଃ ।

(ଙ) ଅପିଚ ଚତୁର୍ଭିଶ୍ଚିତ୍ତଚୈତ୍ତା ଉତ୍ପାଦ୍ୟନ୍ତେ, ପରମାଣୁଭ୍ୟଶ୍ଚ ଭୂତଭୌତିକଲକ୍ଷଣଃ ସମୁଦାୟ ଉତ୍ପଦ୍ୟତ ଇତ୍ୟଭ୍ୟୁପଗମ୍ୟ ପୁନରଭାବାଦ୍ ଭାବୋତ୍ପତ୍ତିଂ କଳ୍ପୟଦ୍ ଭିରଭ୍ୟୁପଗତମପହ୍ନୁବାନୈର୍ବୈନାଶିକୈଃ ସର୍ବୋ ଲୋକ ଆକୁଳୀକ୍ରିୟତେ ।

(୨) ଭାଷାଂତର-(କ) ତେଣୁ ବୈନାଶିକ ଦର୍ଶନ ଅଯୁକ୍ତ ଅଟେ, କାରଣ- ସ୍ଥିର ଓ ଅନୁଯାୟୀ (କାର୍ଯ୍ୟ) ଅନୁସ୍ୟୂତ କାରଣ ସ୍ୱୀକାର କରୁନଥିବା ମତରେ ଅଭାବରୁଭାବ ଉତ୍ପତ୍ତି ହେବ-ଏହି ପ୍ରସଙ୍ଗ ହେବ । 'ନାନୁପମୃଦ୍ୟ' (କାରଣ ନାଶ ହୋଇ ବିନାକାର୍ଯ୍ୟର ପ୍ରାଦୁର୍ଭାବ ହୁଏ ନାହିଁ, ତେଣୁ ଅଭାବରୁଭାବ ଉତ୍ପତ୍ତି ହୁଏ) ଏହି ପ୍ରକାର ସେ ଭାବର ଉତ୍ପତ୍ତି ଅଭାବରୁ ପ୍ରମାଣ କରନ୍ତି । ନିଶ୍ଚିତ ଭାବେ ବିନଷ୍ଟ ବୀଜରୁ ଅଙ୍କୁର, ବିନଷ୍ଟ ଦୁଧରୁ ଦଧି, ଓ ବିନଷ୍ଟ ମୃତ୍‌ପିଣ୍ଡରୁ ଘଟ ଉତ୍ପନ୍ନ ହୁଅନ୍ତି । ଯଦି କୂଟସ୍ଥ କାରଣରୁ କାର୍ଯ୍ୟ ଉତ୍ପନ୍ନ ହୁଏ, ତେବେ କୂଟସ୍ଥତ୍ୱ ସମାନ ହେଲେ ସମସ୍ତେ ସମସ୍ତଙ୍କଠାରୁ ଉତ୍ପନ୍ନ ହୁଅନ୍ତି । ତେଣୁ ଅଭାବଗ୍ରସ୍ତବୀଜାଦିରୁ ଅଙ୍କୁରାଦି ଉତ୍ପଦ୍ୟମାନ ହେଲେ ଭାବର ଉତ୍ପତ୍ତି ହୁଏ ବୋଲି ସ୍ୱୀକାର କରନ୍ତି ।

(ଖ) ସେହି ବିଷୟରେ ଏଠାରେ କୁହାଯାଇଅଛି- 'ନାସତୋଽଦୃଷ୍ଟତ୍ୱାତ୍' ଅଭାବରୁ ଭାବ ଉତ୍ପନ୍ନ ହୁଏ ନାହିଁ । ଯଦି ଅଭାବରୁଭାବ ଉତ୍ପନ୍ନ ହୁଏ, ତେବେ ଅଭାବତ୍ତ୍ୱର ସର୍ବତ୍ର ସମାଛି ହେବାର ବିଶେଷ ସ୍ୱୀକାର ନିଷ୍ଫଳ ହେବ । ଏହା ବିନଷ୍ଟ ହୋଇ ବୀଜାଦିର ଅଭାବ ହୁଏ । ସେହି ଅଭାବରେ ଏବଂ ଶଶବିଷାଣାଦିର ନିଃସ୍ୱଭାବତଃ ସମାନତା ହେଲେ ଅଭାବତ୍ୱ ଦ୍ୱାରା କିଛି ବିଶେଷ ହୁଏ ନାହିଁ । ଯେପରିକି ବୀଜରୁ ଅଙ୍କୁର, ଦୁଧରୁ ଦଧି ଉତ୍ପନ୍ନ ହୁଏ । ଏହି ପ୍ରକାରର କାରଣ ବିଶେଷର ସ୍ୱୀକାର ପ୍ରୟୋଜନବାନ୍ ହେବା ଉଚିତ, ନିର୍ବିଶେଷ ଅଭାବକୁ କାରଣ ରୂପ ସ୍ୱୀକୃତ କଲେ ଶଶବିଷାଣରୁ ଅଙ୍କୁରାଦି ଉତ୍ପନ୍ନ ହେବେ । ପରନ୍ତୁ ଏପରି ଦେଖାଯାଏ ନାହିଁ ।

(ଗ) ଯେପରି ନୀଳତ୍ୱାଦି କମଳାଦି ବିଶେଷ ଅଟେ, ସେପରି ଯଦି ଅଭାବର ବିଶେଷ ସ୍ୱୀକାର କରାଯାଏ, କିନ୍ତୁ ବିଶେଷତ୍ୱର ହେଲେ କମଳପରି ଅଭାବରେ ଭାବ ପ୍ରସକ୍ତ ହେବ ।

ଅଭାବ ମଧ୍ୟ କୌଣସି ଉତ୍ପତ୍ତିର ହେତୁ ହୁଏ ନାହିଁ, କାରଣ- ତାହା ଶଶବିଷାଣାଦି ପରି ଅଭାବ ହୁଏ । ଯଦି ଅଭାବରୁ ଭାବର ଉତ୍ପତ୍ତି ହୋଇଛି, ତେବେ ସବୁକାର୍ଯ୍ୟଭାବାନ୍ୱିତ ହୁଅନ୍ତି । ପରନ୍ତୁ ଏତାଦୃଶ ଦେଖାଯାଏ ନାହିଁ, କାରଣ-ସମସ୍ତ ପଦାର୍ଥ ନିଜର ସ୍ୱରୂପକୁ ଭାବରୂପରୁ ଉପଲବ୍ଧ କରନ୍ତି । ମୃତ୍ତିକାଠାରୁ ଅନ୍ୱିତ ଶରାବାଦି ପଦାର୍ଥକୁ ତନ୍ତୁ ପ୍ରଭୃତିର ବିକାରରୂପରେ କିଛି ସ୍ୱୀକୃତ କରେ ନାହିଁ । ଲୋକ ମୃତ୍ତିକାର ବିକାରକୁ ମୃତ୍ତିକା ଦ୍ୱାରା ଅନ୍ୱିତ କରି ଭାବ ରୂପରେ ଗ୍ରହଣ କରନ୍ତି ।

(ଘ) ସ୍ୱରୂପର ବିନାଶ ହେଲେ କୌଣସି କୂଟସ୍ଥ ବସ୍ତୁର କାରଣତ୍ୱ ଅନୁପପନ୍ନ ହୁଏ । ଅଭାବରୁ ଅଭାବ ଉତ୍ପନ୍ନ ହୁଏ ବୋଲି ଯାହା କୁହାଯାଇଅଛି, ତାହା ଠିକ୍ ନୁହେଁ । କାରଣ-ପ୍ରତ୍ୟଭିଜ୍ଞାର ବିଷୟଭୂତ ସ୍ଥିର ସ୍ୱଭାବଶୀଳ ସୁବର୍ଣ୍ଣାଦିର ରୁଚକାଦି ସହିତ କାର୍ଯ୍ୟକାରଣ ଭାବ ଦେଖାଯାଏ । ଯେଉଁ ବୀଜାଦିରେ ସ୍ୱରୂପନାଶ ଦେଖାଯାଏ, ସେଠାରେ ନଷ୍ଟ ମଧ୍ୟ ହୁଏ । ଏହି ପୂର୍ବାବସ୍ଥା ଉତ୍ତରାବସ୍ଥାର କାରଣ ସ୍ୱୀକାର କରନ୍ତି ନାହିଁ । ବିନଷ୍ଟ ହୋଇ ଅନୁଯାୟୀ ବୀଜାଦିର ଅବୟବକୁ ଅଙ୍କୁରାଦି ପ୍ରତି କାରଣ ଭାବ ସ୍ୱୀକାର କରାଯାଇଅଛି । ତେଣୁ ଅସତ୍ ଶଶବିଷାଣାଦୀରୁ ସତର ଉତ୍ପତ୍ତି ଦେଖାଯାଏ ନାହିଁ ଏବଂ ସତ୍ ସୁବର୍ଣ୍ଣାଦିରୁ ସତ୍‌ର ଉତ୍ପତ୍ତି ଦେଖାଯାଏ । ତେଣୁ ଅଭାବରୁ ଭାବର ଉତ୍ପତ୍ତି ସ୍ୱୀକାର କରିବା ଅନୁପପନ୍ନ ଅଟେ ।

(ଙ) ଅଧିପତି ପ୍ରଭୃତି ଚାରୋଟି କାରଣରୁ ଚିତ୍ତ (ବିଜ୍ଞାନ) ଓ ଚୈତ୍ତ (ସୁଖାଦି) ଉତ୍ପନ୍ନ ହୁଅନ୍ତି ଏବଂ ପରମାଣୁରୁ ଭୂତଭୌତିକ ସମୁଦାୟ ଉତ୍ପନ୍ନ ହୁଏ । ଏହା ସ୍ୱୀକାର କରି ପୁନଶ୍ଚ ଅଭାବରୁ ଭାବର ଉତ୍ପତ୍ତି କଳ୍ପନା କରୁଥିବା ଓ ପୂର୍ବ ସ୍ୱୀକୃତକୁ ନିଷେଧ କରୁଥିବା ବୌଦ୍ଧମାନେ ବିଶେଷ ଭାବରେ ବ୍ୟାକୁଳ ହୁଅନ୍ତି ।

## उदासीनानामपि चैवं सिद्धिः ॥ २७ ॥

## ୧ - ଉଦାସୀନାନାମପି ଚୈବଂ ସିଦ୍ଧିଃ ॥୨-୨-୨୭॥

ଚ-ଏବଂ, ଏବଂ-ଅଭାବରୁ ଭାବର ଉତ୍ପତ୍ତି ସ୍ୱୀକାର କଲେ, ଉଦାସୀନାନାମ୍ ଅପି-ସେହି କାର୍ଯ୍ୟସିଦ୍ଧିରେ ପ୍ରବୃତ୍ତ ନ ହୋଇ ଲୋକଙ୍କୁ, ସିଦ୍ଧିଃ-ନିଜ ନିଜ ଅଭୀଷ୍ଟ କାର୍ଯ୍ୟ ସିଦ୍ଧି ହେବ । ତେଣୁ ବୌଦ୍ଧମତ ଭ୍ରାନ୍ତି ମଳକ ଅଟେ ।

(୨) ମୂଳ-(କ) ଯଦି ଚାଭାବାଦ୍‌ଭାବୋତ୍ପତ୍ତିରଭ୍ୟୁପଗମ୍ୟେତ ଏବଂ ସତ୍ୟୁଦାସୀନାନାମନୀହମାନାନାମପି ଜନାନାମଭିମତସିଦ୍ଧିଃ ସ୍ୟାତ୍ । ଅଭାବସ୍ୟ ସୁଲଭତ୍ୱାତ୍ । କୃଷୀବଲସ୍ୟ କ୍ଷେତ୍ରକର୍ମଣ୍ୟପ୍ରଯତମାନସ୍ୟାପ୍ୟମତ୍ରୋତ୍ପତ୍ତିଃ । ତନ୍ତୁବାୟସ୍ୟାପି ତନ୍ତୁନ ତନ୍ୱାନସ୍ୟାପି ତନ୍ୱାନସ୍ୟେବ ବସ୍ତ୍ରଲାଭଃ । ସ୍ୱର୍ଗାପବର୍ଗୟୋଷ୍ଟ ନ କିଞ୍ଚିତ୍ କଥଂଚିତ୍ ସମୀ



ହେତ । ନ ଚୈତଦ୍ଦୃଜ୍ୟତେଽଭ୍ୟୁପଗମ୍ୟତେ ବା କେନଚିତ୍ । ତସ୍ମାଦପ୍ୟନୁପପନ୍ନୋଽୟମଭାବାଦ୍ ଭାବୋତ୍ପ୍ୟଭ୍ୟୁପଗମଃ ।

**(୨) ଭାଷାଂତର-** ଯଦି ଅଭାବରୁ ଭାବର ଉତ୍ପତ୍ତି ସ୍ୱୀକାର କରାଯାଏ, ତେବେ ଏହା ସ୍ୱୀକାର କଲେ ଚେଷ୍ଟାରହିତ ଉଦାସୀନ ପୁରୁଷର ଅଭିମତ ସିଦ୍ଧି ହେବ । କାରଣ- ଅଭାବ ସର୍ବତ୍ର ସୁଲଭ ହୁଏ । ଶସ୍ୟ କ୍ଷେତ୍ରରେ କାର୍ଯ୍ୟ କରୁନଥିବା କୃଷକ ମଧ୍ୟ ଧାନ ପାଇପାରେ । ମୃତ୍ତିକାର ସଂସ୍କାର କ୍ରିୟାରେ କାର୍ଯ୍ୟକରୁନଥିବା କୁମ୍ଭାରର ଉତ୍ପତ୍ତି ହୋଇପାରେ । ତନ୍ତୁକୁ କୁଣ୍ଡା କରୁନଥିବା ତନ୍ତୀକୁ ବସ୍ତ୍ରବୟନ ପରି ବସ୍ତ୍ର ଲାଭ ହେବ । ସେପରି ସ୍ୱର୍ଗ ଓ ମୋକ୍ଷ ପାଇଁ କୌଣ୍ସି ପୁରୁଷ କିଛି ପ୍ରଯତ୍ନ କରିବ ନାହିଁ । ଏହାକିନ୍ତୁ ଠିକ୍ ନୁହେଁ । କିଛି ମଧ୍ୟ ସ୍ୱୀକାର କରାଯାଏ ନାହିଁ । ତେଣୁ ଅଭାବରୁ ଭାବର ଉତ୍ପତ୍ତିର ସ୍ୱୀକାର କରିବା ଅନୁପପନ୍ନ ଅଟେ ।

## ५ अभावाधिकरणम् । सू० । २८-३२

## ଅଭାବାଧିକରଣ-୫

**नाभाव उपलब्धेः ॥२८॥**

**ନାଭାବ ଉପଲବ୍ଧେଃ ॥ ୨-୨-୨୮ ॥**

ଅଭାବଃ-ବିଜ୍ଞାନଠାରୁ ପୃଥକ୍ ପଦାର୍ଥର ଅଭାବ, ନ-ହୁଏ ନାହିଁ । ଉପଲବଧେଃ- କାରଣ-ବିଜ୍ଞାନଠାରୁ ଅତିରିକ୍ତ ପଦାର୍ଥର ଉପଲବ୍ଧି ହୁଏ ।

(୨) ମୂଳ-(କ) ଏବଂ ବାହ୍ୟାର୍ଥ ବାଦମାଶ୍ରିତ୍ୟଂ ସମୁଦାୟାପ୍ରାପ୍ତ୍ୟାଦିଷୁ ଦୂଷଣେଷୂଦ୍ଭାବିତେଷୁ ବିଜ୍ଞାନବାଦୀ ବୌଦ୍ଧ ଇଦାନୀଂ ପ୍ରତ୍ୟବିତଷ୍ଠତେ । କେଷାଞ୍ଚିତ୍ କିଲ ବିନେୟାମନାଂ ବାହ୍ୟେବସ୍ତୁନ୍ୟଭିନିବେଶମାଲକ୍ଷ୍ୟ ତଦନୁରୋଧେନ ବାହ୍ୟାର୍ଥବାଦପ୍ରକ୍ରିୟେୟଂ ବିରଚିତା । ନାସୌ ସୁଗତାଭିପ୍ରାୟଃ । ତସ୍ୟ ତୁ ବିଜ୍ଞାନୈ କସ୍କନ୍ଧବାଦ ଏବାଭିପ୍ରେତଃ । ତସ୍ମିଂଶ୍ଚ ବିଜ୍ଞାନବାଦେ ବୁଦ୍ଧ୍ୟାରୁଢେନ ରୂପେଣାନ୍ତସ୍ଥ ଏବ ପ୍ରମାଣପ୍ରମେୟ ଫଳବ ବହାରଃ ସର୍ବ ଉପପଦ୍ୟତେ । ସତ୍ୟପି ବାହ୍ୟେଽର୍ଥେ ବୁଦ୍ଧ୍ୟାରୋହମନ୍ତରେଣ ପ୍ରମାଣାଦିବ୍ୟବହାରାନବତାରାତ୍ ।

(ଖ) କଥଂ ପୁନରବଗମ୍ୟତେଽନ୍ତସ୍ଥ ଏବାୟଂ ସର୍ବବ୍ୟବହାରୋ ନ ବିଜ୍ଞାନ ବ୍ୟତିରିକ୍ତୋ ବାହ୍ୟୋଽର୍ଥୋଽସ୍ତୀତି । ତଦସମ୍ଭବାଦିତ୍ୟାହ । ସ ହି ବାହ୍ୟୋଽର୍ଥୋଽଭ୍ୟୁପଗମ୍ୟମାନଃ ପରମାଣବୋ ବା ସ୍ୟୁତସ୍ତ୍ ସମୂହା ବା ସ୍ତମ୍ଭାଦୟଃ ସ୍ୟୁଃ । ତତ୍ର ନା ତାବତ୍ପରମାଣବଃ ସ୍ତମ୍ଭାଦିପ୍ରତ୍ୟୟ ପରିଚ୍ଛେଦ୍ୟା ଭବିତୁମର୍ହନ୍ତି (ପରମାଣ୍ୱାଭା-

ସଞ୍ଜ୍ଞାନୁପପତ୍ତେଃ) । ନାପି ତତ୍ସମୂହା ସ୍ତମ୍ଭାଦୟଃ, ତେଷାଂ ପରମାଣୁଭ୍ୟୋନ୍ୟତ୍ୱାନନ୍ୟତ୍ୱାଭ୍ୟାଂ ନିରୂପୟିତୁମଶକ୍ୟତ୍ୱାତ୍ ଏବଂ ଜାତ୍ୟାଦୀନାପି ପ୍ରତ୍ୟାଚକ୍ଷୀତ ।

(ଗ) ଅପିଚାନୁଭାବ-ମାତ୍ରେଣ ସାଧାରଣାତ୍ମନୋ ଜ୍ଞାନସ୍ୟ ଜାୟମାନସ୍ୟ ଯୋଽୟଂ ପ୍ରତିବିଷୟଂ ପକ୍ଷପାତଃ ସ୍ତମ୍ଭଜ୍ଞାନଂ କୁଡ୍ୟଜ୍ଞାନଂ ଘଟଜ୍ଞାନଂ ପଟଜ୍ଞାନମିତି, ନାସୌ ଜ୍ଞାନଗତ ବିଶେଷ ମନ୍ତରେଣୋପପଦ୍ୟେତ ଇତ୍ୟବଶ୍ୟଂ ବିଷୟସାରୂପ୍ୟଂ ଜ୍ଞାନସ୍ୟାଙ୍ଗୀକର୍ତ୍ତବ୍ୟମ୍ । ଅଙ୍ଗୀକୃତେ ଚ ତସ୍ମିନ୍ ବିଷୟାକାରସ୍ୟ ଜ୍ଞାନେନୈବା ବରୁଦ୍ଧତ୍ୱାଦପାର୍ଥିକା ବାହ୍ୟାର୍ଥସଦ୍ଭାବକଳ୍ପନା । ଅପିଚ ସହୋପଲମ୍ଭନିୟମାଦଭେଦୋ ବିଷୟବିଜ୍ଞାନୟୋ-ରାପତତି । ନହ୍ୟନୟୋରେକ-ସ୍ୟାନୁପଲମ୍ଭେଽନ୍ୟସ୍ୟୋପଲମ୍ଭୋଽସ୍ତି । ନ ଚୈତତ୍ ସ୍ୱଭାବବିବେକେ ଯୁକ୍ତମ୍, ପ୍ରତିବନ୍ଧ କାରଣାଭାବାତ୍ । ତସ୍ମାଦପ୍ୟର୍ଥାଭାବଃ । ସ୍ୱପ୍ନା ଦିବଚ୍ଛେଦଂ ଦ୍ରଷ୍ଟବ୍ୟମ୍ । ଯଥାହି ସ୍ୱପ୍ନମାୟାମରୀଚ୍ୟୁଦକ ଗନ୍ଧର୍ବ ନଗରାଦିପ୍ରତ୍ୟୟା ବିନୈବ ବାହ୍ୟେନାର୍ଥେନ ଗ୍ରାହ୍ୟଗ୍ରାହକକାକାରା ଭବନ୍ତି, ଏବଂ ଜାଗରିତଗୋଚରା ଅପି ସ୍ତମ୍ଭାଦିପ୍ରତ୍ୟୟା ଭବିତୁମର୍ହନ୍ତୀତ୍ୟବଗମ୍ୟତେ । ପ୍ରତ୍ୟୟତ୍ୱାବିଶେଷାତ୍ ।

(ଘ) କଥଂ ପୁନରସତି ବାହ୍ୟାର୍ଥେ ପ୍ରତ୍ୟୟବୈଚିତ୍ର୍ୟମୁପପଦ୍ୟତେ । ବାସନା ବୈଚିତ୍ର୍ୟାଦିତ୍ୟାହ । ଅନାଦୌ ହି ସଂସାରେ ବୀଜାଙ୍କୁରବଦ୍ବିଜ୍ଞାନାଂ ବସନାନାଂ ଚାନ୍ୟୋନ୍ୟନିମିତ୍ତ ନୈମିତ୍ତିକ ଭାବେନ ବୈଚିତ୍ର୍ୟଂ ନ ବିପ୍ରତିଷିଧ୍ୟତେ । ଅପି ଚାନ୍ୱୟବ୍ୟତିରେକାଭ୍ୟାଂ ବାସନାନିମିତ୍ତମେବ ଜ୍ଞାନବୈଚିତ୍ର୍ୟମିତ୍ୟବଗମ୍ୟତେ । ସ୍ୱପ୍ନାଦିଷ୍ୱନ୍ତରେଣା ପ୍ୟର୍ଥଂ ବାସନାନିମିତ୍ତସ୍ୟ ଜ୍ଞାନାବୈଚିତ୍ର୍ୟ ସ୍ୟୋଭୟମମାପ୍ୟାବା-ଭ୍ୟାମଭ୍ୟୁପଗମ୍ୟମାନତ୍ୱାତ୍ । ଅନ୍ତରେଣ ତୁ ବାସନାମର୍ଥନିମିତ୍ତସ୍ୟ ଜ୍ଞାନବୈଚିତ୍ର୍ୟସ୍ୟ ମୟାନଭ୍ୟୁପଗମ୍ୟମାନତ୍ୱାତ୍ । ତସ୍ମାଦପ୍ୟଭାବୋ ବାହ୍ୟାର୍ଥ ସ୍ୟେତି ।

**(୨) ଭାଷାଂତର**-(କ) ଏହିପରି ବାହ୍ୟାର୍ଥବାଦକୁ ଆଶ୍ରୟ କରି ସମୁଦାୟର ଅପ୍ରାପ୍ତି ପ୍ରଭୃତି ଦୂଷଣକୁ ଉଦ୍ଭାବିତ କରି ବର୍ତ୍ତମାନ ବିଜ୍ଞାନବାଦୀ ବୌଦ୍ଧବିବାଦ ପାଇଁ ଉପସ୍ଥିତ ହେଉଛନ୍ତି-କୌଣସି ମନ୍ଦମତି ଶିଷ୍ୟମାନଙ୍କର ବାହ୍ୟପଦାର୍ଥରେ ଆଗ୍ରହ ଦେଖି ସେମାନଙ୍କର ଅନୁରୋଧ କ୍ରମେ ଏହି ବାହ୍ୟାର୍ଥ ପ୍ରକ୍ରିୟାକୁ ରଚନା କଲେ । ବସ୍ତୁତଃ ଏହା ସୁଗତର ଅଭିପ୍ରାୟ ନୁହେଁ । ତାହାକୁ କେବଳ ଏକ ବିଜ୍ଞାନସ୍କନ୍ଧବାଦ ଅଭିପ୍ରେତ ହୁଏ । ସେହି ବିଜ୍ଞାବାଦରେ ବୁଦ୍ଧିରେ ଆରୂଢ଼ ହୋଇ ଅନ୍ତଃସ୍ଥ ହୋଇଥିବା ସମସ୍ତ ପ୍ରମାଣ, ପ୍ରମେୟ ଓ ଫଳ ବ୍ୟବହାର ଉପପନ୍ନ ହୁଅନ୍ତି । କାରଣ-ବାହ୍ୟାର୍ଥର ହେଲେ ମଧ୍ୟ ବୁଦ୍ଧିରେ ଆରୂଢ ହୋଇ ବିନା ପ୍ରମାଣାଦିରେ ବ୍ୟବହାର ହୁଏ ନାହିଁ ।

(ଖ) ପରନ୍ତୁ ଏହି ସର୍ବବ୍ୟବହାର ଅନ୍ତଃସ୍ଥ ଅଟେ, ବିଜ୍ଞାନଭିନ୍ନ ବାହ୍ୟାର୍ଥ ନୁହେଁ ବୋଲି କିପରି ଜଣାପଡେ ? ତାହାର ବାହାର ସମ୍ଭବ ନ ହେଲେ କହନ୍ତି ଯେ- ସ୍ୱୀକାର କରାଯାଇଥିବା ତାହା ବାହ୍ୟାର୍ଥପରମାଣୁ ଅଟେ ଅଥବା ସେମାନଙ୍କର ସମୂହ ସ୍ତମ୍ଭାଦି



ହୁଅନ୍ତି କି ? ସେଠାରେ ପରମାଣୁ କିନ୍ତୁ ସ୍ତମ୍ଭାଦି ଜ୍ଞାନବିଷୟକ ହୁଏ ନାହିଁ । କାରଣ-ପରମାଣୁର ପ୍ରତୀତିରୂପଜ୍ଞାନ ହୁଏ ନାହିଁ । ସ୍ତମ୍ଭାବଦି ସେମାନଙ୍କର ସମୂହଁ ନୁହଁନ୍ତି । କାରଣ-ସେମାନଙ୍କର ପରମାଣୁ ଦ୍ୱାରା ଅନ୍ୟରୂପରେ ବା ଅନନ୍ୟ ରୂପରେ ନିରୂପଣ କରାଯାଇ ନାହିଁ । ସେହିପରି ଜାତି ପ୍ରଭୃତିର ପ୍ରତ୍ୟାଖ୍ୟାନ କରିବା ଉଚିତ୍ ।

(ଗ) ପୁନଶ୍ଚ ଅନୁଭବମାତ୍ରରୁ ଜାୟମାନ ସାଧାରଣରୂପ ଜ୍ଞାନର ସ୍ତଂଭଜ୍ଞାନ, କୁଡ୍ୟଜ୍ଞାନ, ଘଟଜ୍ଞାନ, ପଟଜ୍ଞାନ ଏହା ଯେଉଁ ପ୍ରତ୍ୟେକ ବିଷୟରେ ପକ୍ଷପାତ ହୁଏ, ତାହା ଜ୍ଞାନଗତ ବିଶେଷବିନା ହୁଏ ନାହିଁ । ତେଣୁ ଜ୍ଞାନରେ ବିଷୟର ସାରୂପ୍ୟ ଅବଶ୍ୟ ସ୍ୱୀକାର କରିବା ଉଚିତ୍ । ଜ୍ଞାନରେ ବିଷୟର ସାରୂପ୍ୟ ଅଙ୍ଗୀକାର କଲାପରେ ବିଷୟାକାରକୁ ଜ୍ଞାନଦ୍ୱାରା ଅବରୁଦ୍ଧ ହେଲେ ବାହ୍ୟାର୍ଥର ସଦ୍‌ଭାବ କଳ୍ପନା ବ୍ୟର୍ଥ ହୁଏ । ପୁଣି ସହୋପଲଂଭର ନିୟମରୁ ବିଷୟ ଓ ବିଜ୍ଞାନର ଅଭେଦ ପ୍ରାପ୍ତ ହୁଏ । କାରଣ-ସେଠାରେ ଗୋଟିକରେ ଉପଲଂଭ ନ ହେଲେ ଅନ୍ୟର ଉପଲଂଭ ହୁଏ ନାହିଁ । ଏହା ସ୍ୱଭାବ ଭେଦରେ ଠିକ୍ ନୁହେଁ, କାରଣ-ପ୍ରତିବନ୍ଧର କୌଣସି କାରଣ ନାହିଁ । ତେଣୁ ଅର୍ଥର ଆଭବ ହୁଏ । ଏହି ସ୍ୱପ୍ନାଦିପରି ଜାଣିବା ଉଚିତ୍ । ଯେପରି ସ୍ୱପ୍ନ, ମାୟା, ମରୀଚ୍ୟୁକଦକ, ଗନ୍ଧର୍ବନଗର ପ୍ରଭୃତି ଜ୍ଞାନ ବାହ୍ୟର୍ଥକ ବିନା ଗ୍ରାହ୍ୟ ଓ ଗ୍ରାହକରୂପରେ ହୁଅନ୍ତି, ସେପରି ଜାଗ୍ରତ୍ ବିଷୟକ ସ୍ତଂଭାଦି ଜ୍ଞାନ ମଧ୍ୟ ହୁଅନ୍ତି । ଏହା ଅବଗତ ହୁଏ । କାରଣ-ଦୁଇଟି ଜ୍ଞାନରେ ଜ୍ଞାନତ୍ୱ ସମାନ ଅଟେ ।

(ଘ) ପରନ୍ତୁ ବାହ୍ୟ ଅର୍ଥର ନ ହେଲେ ମଧ୍ୟ ଜ୍ଞାନରେ ବୈଚିତ୍ର୍ୟ କିପରି ଉପପନ୍ନ ହେବ ? ବାସନାଗୁଡ଼ିକର ବୈଚିତ୍ର୍ୟ ଦ୍ୱାରା ହୁଏ ବୋଲି କହନ୍ତି । କାରଣ-ଅନାଦି ସଂସାରରେ ବୀଜାଙ୍କୁର ପରି ବିଜ୍ଞାନ ଓ ବାସନାର ପରସ୍ପର ନିମିତ୍ତ ନୈମିତ୍ତିକ ବା କାର୍ଯ୍ୟକାରଣଭାବରେ ବୈଚିତ୍ର୍ୟର ପ୍ରତିଷେଧ କରାଯାଇ ନାହିଁ ଏବଂ ଅନ୍ୱୟବ୍ୟତିରେକରୁ ଜ୍ଞାନ ବୈଚିତ୍ର୍ୟ ବାସନା ନିମିତ୍ତକ ବୋଲି ଅବଗତ ହୁଏ । କାରଣ- ସ୍ୱପ୍ନାଦିରେ ଅର୍ଥ ବିନା ବାସନା ନିମିତ୍ତକ ଜ୍ଞାନବୈଚିତ୍ର୍ୟକୁ ଆଂଭେ ଦୁଇଟି ସ୍ୱୀକାର କରୁଁ । କିନ୍ତୁ ବାସନା ବିନା ଅର୍ଥନିମିତ୍ତକ ଜ୍ଞାନବୈଚିତ୍ର୍ୟକୁ ମୁଁ ସ୍ୱୀକାର କରୁନାହିଁ । ତେଣୁ ବାହ୍ୟାର୍ଥର ଅଭାବ ହୁଏ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-'ନାଭାବ ଉପଲବ୍‌ଧେଃ' ଇତି । ନ ଖଲ୍‌ଭାବୋ ବାହ୍ୟାର୍ଥସ୍ୟାର୍ଥସ୍ୟାଧ୍ୟବସାତୁଂ ଶକ୍ୟତେ । କସ୍ମାତ୍ । ଉପଲବ୍‌ଧେଃ । ଉପଲଭ୍ୟତେ ହି ପ୍ରତିପ୍ରତ୍ୟୟଂ ବାହ୍ୟୋଽର୍ଥଃ ସ୍ତମ୍ଭଃ କୁଡ୍ୟଂ ଘଟଃ ପଟ ଇତି । ନ ଚୋପଲଭ୍ୟମାନ ସ୍ୟୈବାଭାବୋ ଭବିତୁମର୍ହତି । କଶ୍ଚିଦ୍‌ଭୁଞ୍ଜାନୋ ଭୁଜିସାଧ୍ୟାୟାଂ ତୃପ୍ତୌ ସ୍ୱୟମନୁଭୂୟମାନାୟାନେବଂ ବ୍ରୂୟାନ୍ନାହଂ ଭୁଂଜେ ନ ବା ତୃପ୍ୟମିତି; ତଦ୍‌ବଦିନ୍ଦ୍ରୟସଂ-ନିକର୍ଷେଣ ସ୍ୱୟମୁପଲଭମମାନ ଏବ ବାହ୍ୟମର୍ଥଂ ନାହମୁପଲଭେ ନଚ ସୋଽସ୍ତୀତି ବ୍ରୁବନ୍ କଥମୁପାଦେୟବଚନଃ ସ୍ୟାତ୍ ।

(ଖ) ନନୁ ନାହମେବ ବ୍ରବୀମି ନ କିଂଚିଦର୍ଥମୁପଲଭ ଇତି କିଂ ତ୍ୱପଲବ୍ଧି ବ୍ୟତିରିକ୍ତଂ ନୋପଲଭ ଇତି ବ୍ରବୀମି । ବାଢମିବ ବ୍ରବୀଷି ନିରଙ୍କୁଶତ୍ୱାତ୍ତେ ତୁଣ୍ଡସ୍ୟ । ନତୁ ଯୁକ୍ତ୍ୟୁପେତଂ ବ୍ରବୀଷି । ଯତ ଉପଲବ୍ଧିବ୍ୟତିରେକୋଽପି ବଳାଦର୍ଥସ୍ୟାଭ୍ୟୁପଗନ୍ତବ୍ୟ ଉପଲବ୍ଧେରେବ । ନହି କଶ୍ଚିଦୁପଲବ୍ଧିମେବ ସ୍ତମ୍ଭଃ କୁଡ୍ୟଂ ଚେତ୍ୟୁପଲଭନ୍ତେ । ଉପଲବ୍ଧ ବିଷୟତ୍ୱେନୈବ ତୁ ସ୍ତମ୍ଭକୁଡ୍ୟାଦୀନ ସର୍ବେ ଲୌକିକା ଉପଲଭନ୍ତେ । ଅତିଶ୍ଚୈବମେବ ସର୍ବେ ଲୌକିକା ଉପଲଭନ୍ତେ ଯତ୍ପ୍ରତ୍ୟାଚକ୍ଷାଣା ଅପି ବାହ୍ୟାର୍ଥମେବ ବ୍ୟାଚକ୍ଷତେ ଯଦନ୍ତଃ ଜ୍ଞେୟରୂପଂ ତଦ୍ବହିର୍ବଦବଭାସତ୍ ଇତି ।

(ଗ) ତେଽପି ସର୍ବଲୋକପ୍ରସିଦ୍ଧାଂ ବହିରବଭାସମାନାଂ ସଂବିଦଂ ପ୍ରତିଲମମାନାଃ ପ୍ରତ୍ୟାଖ୍ୟାତୁକାମାଶ୍ଚ ବାହ୍ୟମର୍ଥଂ ବହିର୍ବଦିତି ବତ୍କାରଂ କୁର୍ବନ୍ତି । ଇତରଥା ହି କସ୍ମାଦ୍ବହିର୍ବଦିତି ବ୍ରୂୟୁଃ । ନହି ବିଷ୍ଣମିତ୍ରୋ ବନ୍ଧ୍ୟାପୁତ୍ରବଦ୍ବଭାସତ ଇତି କଶ୍ଚିଦାଚକ୍ଷୀତ । ତସ୍ମାଦ୍ୟଥାନୁଭବଂ ତତ୍ତ୍ୱମଭ୍ୟୁପଗଚ୍ଛଦ୍ଭିଃ ବହିରେବାବଭାସତ ଇତି ଯୁକ୍ତମଭ୍ୟୁପଗନ୍ତୁଂ ନତୁ ବହିର୍ବଦବଭାସତ ଇତି ।

(ଘ) ନନୁ ବାହ୍ୟସ୍ୟାର୍ଥସ୍ୟାସମ୍ଭବାଦ୍ ବହିର୍ବଦବଭାସତ ଇତ୍ୟଧ୍ୟବସିତମ୍ । ନାୟଂ ସାଧୁରଧ୍ୟବସାୟୋ ଯତଃ ପ୍ରମାଣ ପ୍ରବୃତ୍ତ୍ୟପ୍ରବୃତ୍ତିପୂର୍ବକୌ ସମ୍ଭବାସମ୍ଭବାବବଧାର୍ଯ୍ୟେତେ ନ ପୁନଃ ସମ୍ଭବାସମ୍ଭବପୂର୍ବିକେ ପ୍ରମାଣ ପ୍ରବୃତ୍ତ୍ୟପ୍ରବୃତ୍ତୀ । ଯଦ୍ ହି ପ୍ରତ୍ୟକ୍ଷାଦୀନାମନ୍ୟତମେନାପି ପ୍ରମାଣେନୋପଲଭ୍ୟତେ ତତ୍ସମ୍ଭବତି । ଯତ୍ତୁ ନ କେନଚିଦପି ପ୍ରମାଣେନୋପଲଭ୍ୟତେ ତନ୍ନ ସମ୍ଭବତି ।

(ଙ) ଇହତ୍ତୁ ଯଥାସ୍ୱଂ ସର୍ବୈରେବ ପ୍ରମାଣୈର୍ବାହ୍ୟୋଽର୍ଥ ଉପଲଭ୍ୟମାନଃ କଥଂ ବ୍ୟତିରେକାବ୍ୟତିରେକାଦିବିକଳ୍ପୈର୍ନ ସମ୍ଭବତୀତ୍ୟୁଚ୍ୟେତୋପଲବ୍ଧେରେବ । ନଚ ଜ୍ଞାନସ୍ୟ ବିଷୟସାରୂପ୍ୟାଦ୍ ବିଷୟନାଶୋ ଭବତି, ଅସତି ବିଷୟେ ବିଷୟସା-ରୂପ୍ୟାନୁପପତ୍ତେଃ, ବହିରୂପଲବ୍ଧେଶ୍ଚ ବିଷୟସ୍ୟ । ଅତଏବ ସହୋପଲମ୍ଭନିୟମୋଽପି ପ୍ରତ୍ୟୟବିଷୟୟୋରୂପା ୟୋପେୟଭାବହେତୁକୋ ନାଭେଦହେତୁକ ଇତ୍ୟଭ୍ୟୁପଗନ୍ତବ୍ୟମ୍ । ଅପିଚ ଘଟଜ୍ଞାନଂ ପଟଜ୍ଞାନମିତି ବିଶେଷଣୟୋରେବ ଘଟପଟୟୋର୍ଭେଦୋ ନ ବିଶେଷ୍ୟସ୍ୟ ଜ୍ଞାନସ୍ୟ । ଯଥା ଶୁକ୍ଳୋ ଗୌଃ କୃଷ୍ଣୋ ଗୌରିତି ଶୌକ୍ଲ୍ୟକାର୍ଷ୍ଣ୍ୟୟୋରେବ ଭେଦୋ ନ ଗୋତ୍ୱସ୍ୟ । ଦ୍ୱାଭ୍ୟାଂ ଚ ଭେଦ ଏକସ୍ୟ ସିଦ୍ଧୋ ଭବତ୍ୟେକସ୍ମାଚ୍ଚ ଦ୍ୱୟୋଃ । ତସ୍ମାଦର୍ଥଜ୍ଞାନୟୋର୍ଭେଦଃ । ତଥା ଘଟଦର୍ଶନଂ ଘଟସ୍ମରଣମିତ୍ୟତ୍ରାପି ପ୍ରତିପତ୍ତବ୍ୟମ୍ । ଅତ୍ରାପି ହି ବିଶେଷ୍ୟୟୋରେବ ଦର୍ଶନସ୍ମରଣୟୋର୍ଭେଦୋ ନ ବିଶେଷଣସ୍ୟ ପଟସ୍ୟ । ଯଥା କ୍ଷୀରଗନ୍ଧଃ କ୍ଷୀରରସ ଇତି ବିଶେଷ୍ୟୟୋରେବ ଗନ୍ଧରସୟୋର୍ଭେଦୋ ନ ବିଶେଷଣସ୍ୟ କ୍ଷୀରସ୍ୟ ତଦ୍ବତ୍ ।

(ଚ) ଅପିଚ ଦ୍ୱୟୋର୍ବିଜ୍ଞାନୟୋଃ ପୂର୍ବୋତ୍ତରକାଳୟୋଃ ସ୍ୱସଂ ବେଦନେ-ନୈବୋପକ୍ଷୀଣୟୋରିତରେତର ଗ୍ରାହ୍ୟଗ୍ରାହକତ୍ୱାନୁପପତ୍ତିଃ । ତତଶ୍ଚ ବିଜ୍ଞାନଭେଦପ୍ରତିଜ୍ଞା



କ୍ଷଣିକତ୍ୱାଦିଧର୍ମପ୍ରତିଜ୍ଞା ସ୍ୱଲକ୍ଷଣସାମାନ୍ୟଲକ୍ଷଣବାସ୍ୟ ବାସକତ୍ୱାଽବିଦ୍ୟୋପପ୍ଳବ ସଦସଦ୍‌ଧର୍ମବନ୍ଧମୋକ୍ଷାଦିପ୍ରତିଜ୍ଞାଶ୍ଚ ସ୍ୱଶାସ୍ତ୍ରଗତାସ୍ତା ହୀୟେରନ୍ । କିଞ୍ଚାନ୍ୟତ୍ । ବିଜ୍ଞାନଂ ବିଜ୍ଞାନମିତ୍ୟଭ୍ୟୁପଗଚ୍ଛତା ବାହ୍ୟୋଽର୍ଥଃ ସ୍ତମ୍ଭଃ କୁଡ଼୍ୟମିତ୍ୟେବଂଜାତୀୟକଃ କସ୍ମାନ୍ନାଭ୍ୟୁପଗମ୍ୟତ ଇତି ବକ୍ତବ୍ୟମ୍ । ବିଜ୍ଞାନମନୁଭୂୟତ ଇତି ଚେତ୍ । ବାହ୍ୟୋଽପର୍ଥୋଽନୁଭୂୟତ ଏବେତି ଯୁକ୍ତମଭ୍ୟୁପଗନ୍ତୁମ୍ । ଅଥ ବିଜ୍ଞାନଂ ପ୍ରକାଶାତ୍ମକତ୍ୱାତ୍ ପ୍ରଦୀପବତ୍ ସ୍ୱୟମେବାନୁ-ଭୂୟତେ ନ ତଥା ବାହ୍ୟୋଽପ୍ୟର୍ଥ ଇତି ଚେତ୍ । ଅତ୍ୟନ୍ତ ବିରୁଦ୍ଧାଂ ସ୍ୱାତ୍ମନି କ୍ରିୟାମଭ୍ୟୁ-ପଗଚ୍ଛସ୍ୟଗ୍ନିରାତ୍ମାନାଂ ଦହତୀତିବତ୍; ଅବିରୁଦ୍ଧଂ ତୁ ଲୋକପ୍ରସିଦ୍ଧଂ ସ୍ୱାତ୍ମବ୍ୟତିରିକ୍ତେନ ବିଜ୍ଞାନେନ ବାହ୍ୟୋଽର୍ଥୋଽନୁଭୂୟତ ଇତି ନେଚ୍ଛସଂହୋ ପାଣ୍ଡିତ୍ୟଂ ମହଦର୍ଶିତମ୍ । ନଚାର୍ଥାବ୍ୟତରିକ୍ତମପି ବିଜ୍ଞାନଂ ସ୍ୱୟମେବାନୁଭୂୟତେ, ସ୍ୱାତ୍ମନି କ୍ରିୟାବିରୋଧାଦେବ ।

**(୩) ଭାଷାଂତର-** (କ) ସିଦ୍ଧାନ୍ତ-ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- 'ନାଭାବଃ ଉପଲବ୍‌ଧେଃ' । ଏହି ବାହ୍ୟ ଅର୍ଥର ସ୍ଥିର କରାଯାଏ କିପରି ? ତାହାର ଉପଲବ୍‌ଧି ହୁଏ । ପ୍ରତ୍ୟେକ ଜ୍ଞାନରେ ସ୍ତମ୍ଭ, କୁଡ଼୍ୟ ଘଟ, ପଟ ଏହିପ୍ରକାର ବାହ୍ୟ ଅର୍ଥ ଉପଲବ୍‌ଧ ହୁଏ । ଉପଲଭ୍ୟମାନ ଅର୍ଥର ଅଭାବ ହୁଏ ନାହିଁ । ଯେପରି କୌଣସି ଲୋକ ଭୋଜନ କରିସାରି ଭୋଜନ ସାଧ୍ୟ ସ୍ୱୟଂ ଅନୁଭୂୟମାନ ତୃପ୍ତି ହେଲାପରେ ନିଜେ କହେ ଯେ- ଭୋଜନ କରିନାହିଁ ଅଥବା ମୁଁ ଆନନ୍ଦିତ ନୁହେଁ । ସେପରି ଇନ୍ଦ୍ରିୟର ସନ୍ନିକର୍ଷ (ସଂଯୋଗାଦି ସମ୍ବନ୍ଧ)ରୁ ବାହ୍ୟ ଅର୍ଥର ଉପଲବ୍‌ଧ ହୋଇ ମୁଁ ଉପଲବ୍‌ଧ କରୁନାହିଁ ଏବଂ ସେ ଏହା ନୁହେଁ- ଏହା କହି ପୁରୁଷ ଉପାଦେୟବଚନ କିପରି ହୁଏ ?

(ଖ) ପୂର୍ବପକ୍ଷ-ମୁଁ ଏହା କହୁ ନାହିଁ ଯେ-କୌଣସି ଅର୍ଥକୁ ମୁଁ ଉପଲବ୍‌ଧ କରେ ନାହିଁ । କିନ୍ତୁ ଉପଲବ୍‌ଧ ଭିନ୍ନ ଉପଲବ୍‌ଧ କରାଯାଏ ନାହିଁ ବୋଲି କହେ । ଠିକ୍ ତୁମେ ଏହାହିଁ କହୁଛ । କାରଣ-ତୁମର ମୁଖ ନିରଙ୍କୁଶ ଅଟେ । ପରନ୍ତୁ ତୁମେ ଯୁକ୍ତି ଯୁକ୍ତ କଥା କହୁ ନାହଁ, କାରଣ-ଉପଲବ୍‌ଧ ଦ୍ୱାରା ଅର୍ଥର ଭେଦ ବଳପୂର୍ବକ ସ୍ୱୀକାର କରିବାକୁ ପଡ଼ିବ, କାରଣ-ଏହିପରି ଅର୍ଥର ଉପଲବ୍‌ଧି ହୁଏ । କୌଣସି ଉପଲବ୍‌ଧକୁ ସ୍ତମ୍ଭ ଓ କୁଡ଼୍ୟରୂପରେ ଉପଲବ୍‌ଧ ହୁଏ ନାହିଁ । କିନ୍ତୁ ସ୍ତମ୍ଭ ଓ କୁଡ଼୍ୟାଦିକୁ ଉପଲବ୍‌ଧିର ବିଷୟ ରୂପରେ ସବୁଲୋକ ଉପଲବ୍‌ଧ କରୁଛନ୍ତି । ତେଣୁ ଏହିପ୍ରକାର ସବୁଲୋକ ଉପଲବ୍‌ଧ କରନ୍ତି ଯେ- ବାହ୍ୟାର୍ଥ ପ୍ରତ୍ୟାଖ୍ୟାନ କରି ତାହାର ବ୍ୟାଖ୍ୟା କରନ୍ତି ଯାହା ଅନ୍ତର୍ଜ୍ଞେୟରୂପ ତାହା 'ବହିର୍ବତ୍' ଅବଭାସିତ ହୁଏ ।

(ଗ) ସମସ୍ତେ ସର୍ବଲୋକପ୍ରସିଦ୍ଧ ବହିରବଭାସମାନ ସଂବିତ୍‌କୁ ଉପଲବ୍‌ଧ କରି ଏବଂ ବାହ୍ୟ ଅର୍ଥକୁ ପ୍ରତ୍ୟାଖ୍ୟାନ ପାଇଁ ଇଚ୍ଛା କରି ବହିର୍ବତ୍' ଏହିପରି 'ବତ୍'ର ପ୍ରୟୋଗ କରନ୍ତି । ନୋଚେତ୍ 'ବହିର୍ବତ୍' ଏପରି ପ୍ରୟୋଗ କିପରି କହିବ ? ବିଷ୍ଣୁମିତ୍ର ବନ୍ଧ୍ୟାପୁତ୍ର

ପରି ପ୍ରତୀତ ହୁଏ ବୋଲି କୌଣସି ଲୋକ କହେ ନାହିଁ । ତେଣୁ ଅନୁଭବ ଅନୁସାରେ ତତ୍ତ୍ୱକୁ ସ୍ୱୀକାର କରୁଥିବା ଲୋକଦ୍ୱାରା ପଦାର୍ଥ ବହିଃ ଅବଭାସ ହୁଏ । ଏହା ସ୍ୱୀକାର କରିବା ଠିକ୍ ଅଟେ । ନୋଚେତ୍ 'ବହିର୍ବତ୍' ଅବଭାସିତ ହୁଏ ।

(ଘ) ପରନ୍ତୁ ବାହ୍ୟାର୍ଥର ଅସମ୍ଭବ ହେଲେ ବହିର୍ବତ୍' ଅବଭାସିତ ହୁଏ-ଏହା ନିଶ୍ଚୟ କରାଯାଇଅଛି । କିନ୍ତୁ ଏହା ଠିକ୍ ନୁହେଁ, କାରଣ-ପ୍ରମାଣ ପ୍ରବୃତ୍ତି ଓ ଅପ୍ରବୃତ୍ତି, ପୂର୍ବକ ସମ୍ଭବ ଅସମ୍ଭବର ନିଶ୍ଚିତ କରାଯାଏ । କିନ୍ତୁ ସଂଭବ ଓ ଅସଂଭବ ପୂର୍ବକ ପ୍ରମାଣର ପ୍ରବୃତ୍ତି ଓ ଅପ୍ରବୃତ୍ତିର ନୁହେଁ । ପ୍ରତ୍ୟକ୍ଷାଦି ପ୍ରମାଣଦ୍ୱାରା ଏକ ପ୍ରମାଣରୁ ଯାହା ଉପଲବ୍ଧ ହୁଏ, ତାହା ସଂଭବ ନୁହେଁ । ଯାହା କୌଣସି ପ୍ରମାଣରୁ ଉପଲବ୍ଧ ହୁଏ ନାହିଁ, ତାହାର ସଂଭବ ହୁଏ ନାହିଁ ।

(ଙ) ଏଠାରେ କିନ୍ତି ସ୍ୱଭାବର ଅନୁସାରେ ପ୍ରମାଣଦ୍ୱାରା ଉପଲଭ୍ୟମାନ ବାହ୍ୟାର୍ଥର ଭେଦ ଓ ଅଭେଦାଦି ବିକଳ୍ପରୁ ଅସଂଭବ ହୁଏ-ଏହା କିପରି କୁହାଯାଇଛି ? କାରଣ-ବାହ୍ୟାର୍ଥର ଉପଲବ୍ଧ ହୁଏ । ଜ୍ଞାନରେ ବିଷୟର ସାରୂପ୍ୟ ହେଲେ ବିଷୟର ନାଶ ହୁଏ ନାହିଁ । କିନ୍ତୁ ବିଷୟ ନ ହେଲେ ବିଷୟର ସାରୂପ୍ୟ ହୁଏ ନାହିଁ, କାରଣ-ବିଷୟର ବହିଃ ଉପଲବ୍ଧି ହୁଏ । ଅତଏବ ଜ୍ଞାନ ଓ ବିଷୟର ସହୋପଲଂଭ ନିୟମ ମଧ୍ୟ ଉପାୟୋପେୟଭାବ ଅଟେ । କିନ୍ତୁ ଅଭେଦହେତୁକ ନୁହେଁ ବୋଲି ସ୍ୱୀକାର କରିବା ଉଚିତ୍ । ଘଟଜ୍ଞାନ, ପଟଜ୍ଞାନ-ଏଠାରେ ଘଟପଟର ବିଶେଷଣ ମଧ୍ୟରେ ଭେଦ ଅଛି, କିନ୍ତୁ ବିଶେଷ୍ୟଜ୍ଞାନର ପାର୍ଥକ୍ୟ ନାହିଁ । ଯେପରି 'ଶୁକ୍ଳ ଗୌ, କୃଷ୍ଣ ଗୌ' ଏଠାରେ ଶୁକ୍ଳତ୍ୱ ଓ କୃଷ୍ଣତ୍ୱର ଭେଦ ଅଛି, କିନ୍ତୁ ଗୋତ୍ୱରେ ଭେଦ ନାହିଁ । ଗୋଟିକର ଭେଦ ଦୁଇଟିରେ ସିଦ୍ଧ ହୁଏ ଏବଂ ଗୋଟିଏ ଦ୍ୱାରା ଦୁଇଟିର ଭେଦ ସିଦ୍ଧ ହୁଏ-ଏହିପରି ଅର୍ଥ ଓ ଜ୍ଞାନର ଭେଦ ଅଛି । ସେହିପରି ଘଟଜ୍ଞାନ ଓ ଘଟସ୍ମରଣ ବିଷୟରେ ଜାଣିବା ଉଚିତ୍ । ଏଠାରେ ବିଶେଷ୍ୟଜ୍ଞାନ ଓ ସ୍ମରଣର ଭେଦ ଅଛି । ବିଶେଷଣ ଘଟ ନୁହେଁ । ଯେପରି କ୍ଷୀରଗନ୍ଧ, କ୍ଷୀରରସ-ଏଠାରେ ବିଶେଷ୍ୟଗନ୍ଧ ଓ ରସ ମଧ୍ୟରେ ଭେଦ ଅଛି, ସେହିପରି ବିଶେଷଣକ୍ଷୀରରେ ଭେଦ ନାହିଁ । ସ୍ୱସଂବେଦନରେ ଉପକ୍ଷୀଣ ପୂର୍ବ ଓ ଉତ୍ତର କାଳୀନ-ଏହି ଦୁଇଟି ବିଜ୍ଞାନର ପରସ୍ପର ଗ୍ରାହ୍ୟ ଗ୍ରାହକଭାବ ହୁଏ ନାହିଁ ।

(ଚ) ତେଣୁ ବିଜ୍ଞାନଭେଦର ପ୍ରତିଜ୍ଞା, କ୍ଷଣିକତ୍ୱାଦି ଧର୍ମର ପ୍ରତିଜ୍ଞା, ସ୍ୱଲକ୍ଷଣ, ସାମାନ୍ୟଲକ୍ଷଣ, ବାସ୍ୟବାସକଭାବ, ଅବିଦ୍ୟାର ସଂସର୍ଗରୁ ସଦସଦ୍ଧର୍ମ ଏବଂ ବନ୍ଧ, ମୋକ୍ଷାଦି ସ୍ୱଶାସ୍ତ୍ରଗତ ପ୍ରତିଜ୍ଞା ସେମାନଙ୍କର ହାନି ହେବ । ପରନ୍ତୁ ବିଜ୍ଞାନ, ବିଜ୍ଞାନ ଏହା ସ୍ୱୀକାର କରି ତୁଂଭେ ସ୍ତଂଭ, କୁଡ୍ୟ-ଏହି ପ୍ରକାରର ବାହ୍ୟାର୍ଥକୁ କାହିଁକି ସ୍ୱୀକାର କରାଯାଇଛି ? ଯଦି କହ ଯେ- ବିଜ୍ଞାନର ଅନୁଭବ ହୁଏ । କିନ୍ତୁ ବାହ୍ୟାର୍ଥର ଅନୁଭବ ହୁଏ ନାହିଁ-ବୋଲି ସ୍ୱୀକାର କରିବା ଉଚିତ୍ । ଯଦି କହ ଯେ- ବିଜ୍ଞାନ ପ୍ରକାଶାତ୍ମକ



ହେଲେ ପ୍ରଦୀପ ପରି ସ୍ୱତଃ ଅନୁଭବର ବିଷୟ ହୁଏ । ସେହିପରି ବାହ୍ୟାର୍ଥ ଅନୁଭବରେ ଆସେ ନାହିଁ । କିନ୍ତୁ ଅଗ୍ନି ନିଜକୁ ଜଳାଏ-ଏହିପରି ନିଜେ ଆତ୍ମାରେ ଅତ୍ୟନ୍ତ ବିରୁଦ୍ଧ କର୍ମକର୍ତ୍ତୃଭାବ ସ୍ୱୀକାର କରନ୍ତି । ପରନ୍ତୁ ବସ୍ତୁଭିନ୍ନ ବିଜ୍ଞାନରୁ ବାହ୍ୟାର୍ଥର ଅନୁଭବର ବିଷୟ ହୁଏ-ଏହିପରି ଅବିରୁଦ୍ଧ ଲୋକ ପ୍ରସିଦ୍ଧ କଥାକୁ ତୁଂଭେ ସ୍ୱୀକାର କରନାହିଁ । ହଁ । ତୁଂଭେନିଜର ମହାନ୍ ପାଣ୍ଡିତ୍ୟକୁ ଦେଖାଇଛି । ଅର୍ଥରେ ଏହା ଅଭିନ୍ନ ହୁଏ ଯେ- ବିଜ୍ଞାନ ସ୍ୱୟଂ ହି ଅନୁଭବର ବିଷୟ ନୁହେଁ । କାରଣ-ନିଜେ କ୍ରିୟାର ବିରୋଧ ଅଟେ ।

(୪) ମୂଳ-(କ) ନନୁ ବିଜ୍ଞାନସ୍ୟ ସ୍ୱରୂପବ୍ୟତିରିକ୍ତ ଗ୍ରାହ୍ୟତ୍ୱେ ତଦପ୍ୟନ୍ୟେନ ଗ୍ରାହ୍ୟଂ ତଦପ୍ୟନ୍ୟେନେତ୍ୟନବସ୍ଥା ପ୍ରାପ୍ନୋତି । ଅପି ଚ ପ୍ରଦୀପବଦବଭାସାତ୍ମକତ୍ୱାତ୍ ଜ୍ଞାନସ୍ୟ ଜ୍ଞାନାନ୍ତରଂ କଳ୍ପୟତଃ ସମତ୍ୱାଦବଭାସ୍ୟାବଭାସକଭାବାନୁପପତ୍ତେଃ କଳ୍ପାନର୍ଥକ୍ୟମିତି ।

(ଖ) ତଦୁଭୟମପ୍ୟସତ୍ । ବିଜ୍ଞାନ ଗ୍ରହଣମାତ୍ର ଏବ ବିଜ୍ଞାନ୍‌ସାକ୍ଷିଣୋ ଗ୍ରହଣ କାଙ୍‌କ୍ଷାନୁତ୍ପାଦାଦନବସ୍ଥାଶଙ୍କାନୁପପତେଃ । ସ୍ୱୟଂସିଦ୍ଧସ୍ୟ ଚ ସାକ୍ଷିଣୋଽପ୍ରତ୍ୟା-ଖ୍ୟେୟତ୍ୱାତ୍ ।

(ଗ) କିଞ୍ଚନ୍ୟାତ୍ ପ୍ରଦୀପବଦବିଜ୍ଞାନମବଭାସକାନ୍ତରନିରପେକ୍ଷଂ ସ୍ୱୟମେବ ପ୍ରଥତ ଇତି ବ୍ରୁବତାଽପ୍ରମାଣଗମ୍ୟଂ ବିଜ୍ଞାନ ମନବର୍ଗନ୍ତୃକମିତ୍ୟୁକ୍ତଂ ସ୍ୟାତ୍ । ଶିଳାଘନ ମଧ୍ୟସ୍ଥପ୍ରଦୀପସହସ୍ରପ୍ରଥନବତ୍ ।

(ଘ) ବାଢମେବମ୍, ଅନୁଭବରୂପତ୍ୱାତ୍ତୁ ବିଜ୍ଞାନସ୍ୟେଷ୍ଟା ନଃ ପକ୍ଷସ୍ତ୍ୱୟାଽନୁଜ୍ଞାୟତ ଇତି ଚେତ୍ । ନ । ଅନ୍ୟସ୍ୟାବଗନ୍ତୁଶ୍ଚକ୍ଷୁଃସାଧନସ୍ୟ ପ୍ରଦୀପାଦିପ୍ରଥମର୍ଶନାତ୍ । ଅତୋ ବିଜ୍ଞାନସ୍ୟାପ୍ୟବଭାସ୍ୟତ୍ୱାବିଶେଷାତ୍ ସତ୍ୟେବାନ୍ୟସ୍ମିନ୍ନବଗନ୍ତରି ପ୍ରଥନଂ ପ୍ରଦୀପବଦିତ୍ୟ ବଗମ୍ୟତେ ।

(ଙ) ସାକ୍ଷିଣୋଽବଗନ୍ତୁଃ ସ୍ୱୟଂସିଦ୍ଧତାମୁପକ୍ଷିପତା ସ୍ୱୟଂ ପ୍ରଥତେ ବିଜ୍ଞାନମିତ୍ୟେଷ ଏକ ମମ ପକ୍ଷସ୍ତ୍ୱୟା ବାଚୋୟୁକ୍ତ୍ୟନ୍ତରେଣାଶ୍ରିତ ଇତି ଚେତ୍ । ନ ବିଜ୍ଞାନସ୍ୟୋତ୍ପତ୍ତିପ୍ରଧ୍ୱଂସାନେକତ୍ୱାଦିବିଶେଷବତ୍ତ୍ୱାଭ୍ୟୁପଗମାତ୍ । ଅତଃ ପ୍ରଦୀପବଦ୍ ବିଜ୍ଞାନ୍‌ସ୍ୟାପି ବ୍ୟତିରିକ୍ତା ବଗମ୍ୟତ୍ୱମସ୍ମାଭିଃ ପ୍ରସାଧିତମ୍ ।

(୪) ଭାଷାଂତର-(କ) ପରନ୍ତୁ ବିଜ୍ଞାନ ନିଜଠାରୁ ଭିନ୍ନ ହୋଇ ଗ୍ରାହ୍ୟ ହୁଏ । ସେ ଅନ୍ୟ ଦ୍ୱାରା କିନ୍ତୁ ଗ୍ରାହ୍ୟ ହେବ ନାହିଁ । ତାହା ଅନ୍ୟଦ୍ୱାରା ଗୃହୀତ ହୁଏ ବୋଲି ଅନବସ୍ଥାପ୍ରାପ୍ତ ହେବା ଜ୍ଞାନକୁ ପ୍ରଦୀପଭଳି ଅବଭାସାତ୍ମକ ହେଲେ ଜ୍ଞାନର ଅନ୍ୟ ଜ୍ଞାନକଳ୍ପନା କରୁଥିବା ମତରେ ଅବଭାସାତ୍ମକ ଜ୍ଞାନ ହେଲେ ସେଠାରେ ଅବଭାସ୍ୟ ଓ ଅବଭାସକଭାବ ଅନୁପପନ୍ନ ହୁଏ । ତେଣୁ କଳ୍ପନା ଅନର୍ଥକ ହେବ ।

(ଖ) ସିଦ୍ଧାନ୍ତ-ପରନ୍ତୁ ଏହି ଦୁଇଟି ଶଙ୍କା ଠିକ୍ ନୁହେଁ, କାରଣ-ବିଜ୍ଞାନର ଗ୍ରହଣମାତ୍ରରୁ ବିଜ୍ଞାନର ସାକ୍ଷୀ ଗ୍ରହଣ ଆକାଂକ୍ଷା ଉତ୍ପନ ନ'ହେଲେ ଅନବସ୍ଥାଶଙ୍କା ହୁଏ ନାହିଁ । ସାକ୍ଷୀ ଓ ଜ୍ଞାନରେ ସ୍ୱଭାବର ବୈଷମ୍ୟରୁ ଉପଲବ୍ଧ ଓ ଉପଲବ୍ଧମାନ ଉପପନ୍ନ ହୁଏ । କାରଣ-ସ୍ୱୟଂସିଦ୍ଧ ସାକ୍ଷୀର ପ୍ରତ୍ୟାଖ୍ୟାନ ହୁଏ ନାହିଁ ।

(ଗ) ପୁଣି ଦ୍ୱିତୀୟ ପ୍ରମାଣ ଯେ- ପ୍ରଦୀପପରି ବିଜ୍ଞାନ ଅନ୍ୟ ଅବଭାସକୁ ଅପେକ୍ଷା ନକରି ସ୍ୱୟଂ ପ୍ରକାଶିତ ହୁଏ । ସେହିପରି ପ୍ରମାଣ କରୁଥିବା ତୁମ୍ଭେମାନେ 'ବିଜ୍ଞାନ ଅପ୍ରମାଣଗମ୍ୟ ଓ ଅବଗନ୍ତା ରହିତ ଅଟେ ବୋଲି କହିବ । ଯେପରି ଶିଳାଘନର ଭିତରେ ସହସ୍ର ପ୍ରଦୀପ ରହେ । ସେହିପରି ।

(ଘ) ପରନ୍ତୁ ବିଜ୍ଞାନର ଅନୁଭବରୂପ ହେବାରୁ ଆମ୍ଭର ଅଭିମତ ପକ୍ଷ ତୁମ୍ଭେ ସ୍ୱୀକାର କଲ । ଯଦି ଏହା କହ, ତେବେ ଏହା ଠିକ୍ । କାରଣ ନେତ୍ର ଯାହାର ସାଧନ ଅଟେ,-ଏହିପରି ଅନ୍ୟଜ୍ଞାନର ପ୍ରଦୀପାଦି ପ୍ରକାଶ ଦେଖାଯାଏ । ସେହିପରି ବିଜ୍ଞାନରେ ଅବଭାସ୍ୟତ୍ୱ ସମାନହେଲେ ଅନ୍ୟଅବଗନ୍ତାର ହେବାରୁ ପ୍ରଦୀପପରି ତାହା ପ୍ରକାଶ ହୁଏ । ଏହା ସୁସ୍ପଷ୍ଟ ଅଟେ ।

(ଙ) ଅବଗନ୍ତା ସାକ୍ଷୀର ସ୍ୱୟଂସିଦ୍ଧତାକୁ ସମର୍ଥନ କରୁଥିବା ତୁମ୍ଭେମାନେ 'ବିଜ୍ଞାନ ସ୍ୱୟଂ ପ୍ରକାଶିତ ହୁଏ । ଏହିପ୍ରକାର ମୋର ପକ୍ଷକୁ ଅନ୍ୟଶବ୍ଦ ବିଶେଷ ଦ୍ୱାରା ଆଶ୍ରୟ କରାଯାଇଛି । ଏହା ଯଦି କହ, ତେବେ ତାହା ଠିକ୍ ନୁହେଁ, କାରଣ-ବିଜ୍ଞାନରେ ଉତ୍ପତ୍ତି ନାଶ, ଏବଂ ଅନେକତ୍ୱାଦିବିଶେଷ ସ୍ୱୀକାର କରାଯାଏ । ତେଣୁ ପ୍ରଦୀପପରି ବିଜ୍ଞାନ ଅନ୍ୟଦ୍ୱାରା ଅବଗମ୍ୟ ହୁଏ ବୋଲି ଆମ୍ଭେ ପ୍ରମାଣ କରୁଁ ।

**वैधर्म्याच्च न स्वप्नादिवत् ॥ २९ ॥**

**ବୈଧର୍ମାଚ୍ଚ ନ ସ୍ୱପ୍ନାଦିବତ୍ ॥ ୨-୨-୨୯ ॥**

ବୈଧର୍ମ୍ୟାତ୍ ଚ=ସ୍ୱପ୍ନବିଜ୍ଞାନ ଓ ଜାଗ୍ରତ ବିଜ୍ଞାନର ବାଧିତ ଓ ଅବାଧିତ ବିଷୟରୂପ ବୈଧର୍ମ୍ୟରୁ ନ ସ୍ୱପ୍ନାଦିବତ୍=ସ୍ୱପ୍ନାଦିର ଦୃଷ୍ଟାନ୍ତବଳରେ ଜାଗ୍ରତ ଜ୍ଞାନ ନିରାଧାର ହୁଏ ନାହିଁ ।

(୨) ମୂଳ-(କ) ଯଦୁକ୍ତଂ ବାହ୍ୟାର୍ଥାପଲାପିନା ସ୍ୱପ୍ନାଦିପ୍ରତ୍ୟୟବଜ୍ଜାଗରିତଗୋଚରା ଅପି ସ୍ତମ୍ଭାଦିପ୍ରତ୍ୟୟା ବିନୈବ ବାହ୍ୟେନାର୍ଥେନ ଭବେୟୁଃ ପ୍ରତ୍ୟୟତ୍ୱାବିଶେଷାଦିତି । ତତ୍ପ୍ରତି ବକ୍ତବ୍ୟମ୍ । ଅତ୍ରୋଚ୍ୟତେନ ସ୍ୱପ୍ନାଦିପ୍ରତ୍ୟୟବଜ୍ଜାଗ୍ରତ୍ପ୍ରତ୍ୟୟ । ଭବିତୁମର୍ହନ୍ତି । କସ୍ମାତ୍ । ବୌଧର୍ମ୍ୟାତ୍ । ବୈଧର୍ମ୍ୟଂ ହି ଭବତି ସ୍ୱପ୍ନଜାଗରିତୟୋଃ ।

 

(ଖ) କିଂ ପୁନର୍ବୈଧର୍ମ୍ୟମ୍ । ବାଧାବାଧାବିତି ବ୍ରୂମଃ । ବାଧ୍ୟତେ ହି ସ୍ୱପ୍ନୋପଲବ୍ଧଂ ବସ୍ତୁ ପ୍ରତିବୁଦ୍ଧସ୍ୟ ମିଥ୍ୟା ମୟୋପଲବୋଧ ମହାଜନସମାଗମ ଇତି, ନହ୍ୟସ୍ତି ମମ ମହାଜନମାଗମୋ ନିଦ୍ରାଗ୍ଲାନଂ ତୁ ମେ ମନୋ ବଭୂବ ତେନୈଷା ଭ୍ରାନ୍ତିରୁଦ୍‌ବର୍ଭୂବେତି । ଏବଂ ମାୟାଦିଷ୍ୱପିଭବତି ଯଥାଯଥଂ ବାଧଃ । ନୈବଂ ଜାଗରିତେପଲବ୍ଧଂ ବସ୍ତୁ ସ୍ତମ୍ଭାଦିକଂ କସ୍ୟାଂଚିଦପ୍ୟବସ୍ଥାୟାଂ ବାଧ୍ୟତେ ।

(ଗ) ଅପିଚ ସ୍ମୃତିରେଷ । ଯତ୍‌ସ୍ୱପ୍ନଦର୍ଶନମ୍ । ଉପଲବ୍‌ଧିସ୍ତୁ ଜାଗରିତଦର୍ଶନମ୍ । ସ୍ମୃତ୍ୟୁପଲବ୍ୟୋଧଶ୍ଚ ପ୍ରତ୍ୟକ୍ଷମନ୍ତରଂ ସ୍ୱୟମନୁଭୂୟତେଽର୍ଥବିପ୍ରୟୋଗସଂପ୍ରୟୋଗାତ୍ମକମିଷ୍ଟଂ ପୁତ୍ର ସ୍ମରାମି ନୋପଲଭ ଉପଲବ୍‌ଧୁ ମିଛାମୀତି । ତତ୍ରୈବଂସତି ନ ଶକ୍ୟତେ ବକ୍ତୁଂ ମିଥ୍ୟା ଜାଗରିତୋପଲବ୍‌ଧିରୂପଲବ୍‌ଧିତ୍ୱାତ୍ ସ୍ୱପ୍ନୋପଲବ୍‌ଧି ବଦିତ୍ୟୁଭୟୋନ୍ତରଂ ସ୍ୱୟମନୁଭାବତା । ନଚ ସ୍ୱାନୁଭବାପଲାପଃ ପ୍ରାଜ୍ଞମାନିଭିର୍ଯୁକ୍ତଃ କର୍ତ୍ତୁମ୍ ।

(ଘ) ଅପିଚାନୁଭବବିରୋଧପ୍ରସଙ୍ଗାଜ୍ଜାଗରିତ ପ୍ରତ୍ୟୟାନାଂ ସ୍ୱତୋ ନିରାଲମ୍ବନତାଂ ବକ୍ତୁମଶକ୍ନୁବତା ସ୍ୱପ୍ନପ୍ରତ୍ୟୟସାଧର୍ମ୍ୟାଦ୍ ବକ୍ତୁମିଷ୍ୟଷ୍ୟତେ । ନଚ ଯୋ ଯସ୍ୟ ସ୍ୱତୋ ଧର୍ମୋ ଧର୍ମୋ ନ ସମ୍ଭବତି ସୋଽନ୍ୟସ୍ୟ ସାଧର୍ମ୍ୟାତ୍ତସ୍ୟ ସମ୍ଭବିଷ୍ୟତି । ନହ୍ୟଗ୍ନିରୁଷ୍ଣୋଽନୁଭୂୟମାନ ଉଦକସାଧର୍ମ୍ୟାଚ୍ଛୀତୋ ଭବିଷ୍ୟତି । ଦର୍ଶିତଂ ତୁ ବୈଧର୍ମ୍ୟଂ ସ୍ୱପ୍ନଜାଗରିତୟୋଃ ।

(୨) ଭାଷାଂତର- ସ୍ୱପ୍ନ ପ୍ରଭୃତି ଜ୍ଞାନପରି ଜାଗ୍ରତ ବିଷୟକ ସ୍ତଂଭାଦି ଜ୍ଞାନ ବାହ୍ୟାର୍ଥବିନା ହେବା ଉଚିତ୍ ନୁହେଁ । କାରଣ-ଦୁଇଟି ଜ୍ଞାନରେ ଜ୍ଞାନତ୍ୱ ସମାନ ହୁଏ । ଏହି ବାହ୍ୟ ଅର୍ଥର ପ୍ରତିଷେଧ କରୁଥିବା ଲୋକକୁ ଯାହା କୁହାଯାଇଅଛି, ତାହାର ପରିହାର କରିବା ବିଧେୟ । ଏହି ବିଷୟରେ ଆଂଭେ କହୁଁ ଯେ-ଜାଗ୍ରତ୍ ଜ୍ଞାନ ସ୍ୱପ୍ନାଦିଜ୍ଞାନ ପରିହୁଏ ନାହିଁ । କିପରି ? ଏଠାରେ ଦୁଇଟିରେ ବୈଧର୍ମ୍ୟ ଅଛି । ସ୍ୱପ୍ନ ଓ ଜାଗ୍ରତ୍ ଅବସ୍ଥାର ଜ୍ଞାନରେ ବୈଧର୍ମ୍ୟ ଅଛି ।

(ଖ) ପୁଣି ସେହି ବୈଧର୍ମ କଣ ? ଆଂଭେ କହୁଁ-ବାଧ ଓ ଅବାଧ ଅଟେ । କାରଣ-ସ୍ୱପ୍ନାବସ୍ଥାରେ ଉପଲବ୍ଧ ବସ୍ତୁ ଜାଗ୍ରତ ପୁରୁଷକୁ ବାଧିତ କରେ- 'ମୋତେ ଯେଉଁ ମହାଜନ ସମାଗମ ଉପଲବ୍ଧ ହୋଇଅଛି, ତାହା ମିଥ୍ୟା ଅଟେ । ମୋତେ ମହାଜନ ସମାଗମ ହୋଇନାହିଁ, ମୋର ମନ ନିଦ୍ରାରେ ଦୁଃଖପୂର୍ଣ୍ଣ ହୋଇଛି, ଯେଉଁଠିକି ଏହି ଭ୍ରାନ୍ତି ଉତ୍ପନ୍ନ ହୋଇଛି । ଏହି ପ୍ରକାର ମାୟାଦିରେ ଯଥାଯୋଗ ବାଧା ହୋଇଛି । ପରନ୍ତୁ ଜାଗ୍ରତରେ ଉପଲବ୍ଧ ସଂଭାଦିବସ୍ତୁ କୌଣସି ଅବସ୍ଥାରେ ଏହିପ୍ରକାର ବାଧିତ ହୁଏ ନାହିଁ ।

(ଗ) ଯାହା ସ୍ୱପ୍ନଜ୍ଞାନ ଅଟେ, ତାହାହିଁ ସ୍ମୃତି । ଜାଗରିତ ଦର୍ଶନ ଉପଲବ୍ଧି (ଅନୁଭବ) ଅଟେ । ଯେପରି ଇଷ୍ଟପୁତ୍ରର ସ୍ମରଣ କରୁଛି, କିନ୍ତୁ ଉପଲବ୍ଧ କରୁନାହିଁ ।

ଉପଲବ୍ଧ କରିବାକୁ ଚାହୁଁଛି । ଏହି ପ୍ରକାର ସ୍ମୃତି ଓ ଉପଲବ୍ଧିରେ ଅର୍ଥ ବିପ୍ରୟୋଗ ଓ ସଂପ୍ରୟୋଗାତ୍ମକ ପ୍ରତ୍ୟକ୍ଷ ରୂପରେ ଭେଦ ସ୍ୱୟଂ ଅନୁଭବ ହୁଏ । ସେପରି ବୈଧର୍ମ୍ୟସିଦ୍ଧି ହେଲାପରେ ଦୁଇଟି ମଝିରେ ସ୍ୱୟଂ ଅନୁଭବ କରୁଥିବା ତୁଂ ଭେ 'ଜାଗରିତ ଉପଲବ୍ଧି ମିଥ୍ୟା ହୁଏ, ଉପଲବ୍ଧି ହେଲେ ସ୍ୱପ୍ନ ଉପଲବ୍ଧିପରି ହୁଏ' ବୋଲି କରିପାରିବ ନାହିଁ । ବୁଦ୍ଧିମାନ ଲୋକ ଅନୁଭବର ଅପାଲାପ କରିବା ଉଚିତ୍ ନୁହେଁ ।

(ଘ) ଅନୁଭବ ସହିତ ବିରୋଧ ପ୍ରସଙ୍ଗ ଭୟରେ ଜାଗ୍ରତ ପ୍ରତ୍ୟୟ ଗୁଡ଼ିକକୁ ନିଜେ ନିରାଲମ୍ବନତା କରିବାରେ ଅସମର୍ଥ ହୋଇ ସ୍ୱପ୍ନ ପ୍ରତ୍ୟୟର ସାଧର୍ମ୍ୟରୁ ତାହାର ଧର୍ମ ହେବ ନାହିଁ । ଅଗ୍ନି, ଉଷ୍ଣ, ଅନୁଭୟମାନ ହେଲେ ଜଳର ସାଧର୍ମ୍ୟରୁ ଶୀତଳ ହୁଏ ନାହିଁ । ସ୍ୱପ୍ନ ଓ ଜାଗ୍ରତ ପ୍ରତ୍ୟୟର ବୈଧର୍ମ୍ୟ କିନ୍ତୁ ଦେଖାଇଦିଆଗଲା ।

## न भावोऽनुपलब्धेः ॥ ३० ॥

## ୧- ନଭାବୋଽନୁପଲବ୍ଧେଃ ॥ ୨-୨-୩୦ ॥

ଅନୁପଲବଧେଃ-ତୁଂଭମତରେ ବାହ୍ୟ ଅର୍ଥର ଉପଲବ୍ଧି ନହେବାରୁ, ନ ଭାବଃ-ତଜ୍ଜନ୍ୟ ବାସନା ହୁଏ ନାହିଁ ।

(୨) ମୂଳ-(କ) ଯଦପ୍ୟୁକ୍ତଂ ବିନାପ୍ୟର୍ଥେନ ଜ୍ଞାନବୈଚିତ୍ର୍ୟଂ ବାସନା ବୈଚିତ୍ର୍ୟାଦେବାବକଳ୍ପ୍ୟତ ଇତି । ତତ୍ ପ୍ରତିବକ୍ତବ୍ୟମ୍ । ଅତ୍ରୋଚ୍ୟତେ-ନ ଭାବୋ ବାସନାନାମୁପପଦ୍ୟେତ ତ୍ୱତ୍ପକ୍ଷେଽନୁପଲବଧେର୍ବାହ୍ୟାନାମର୍ଥାନାମ୍ । ଅର୍ଥୋ-ପଲବ୍ଧିନିମିତ୍ତା ହି ପ୍ରତ୍ୟର୍ଥଂ ନାନାରୂପା ବାସନା ଭବନ୍ତି । ଅନୁପଲଭ୍ୟମାନେଷୁ ତ୍ୱର୍ଥେଷୁ କିଂନିମିତ୍ତା ବିଚିତ୍ରା ବାସନା ଭବେୟୁଃ । ଅନାଦିତ୍ୱେଽପ୍ୟନ୍ଧପରଂ-ପରାନ୍ୟାୟେନା ପ୍ରତିଷ୍ଠୈବାନବସ୍ଥା ବ୍ୟବହାରଲାପିନୀ ସ୍ୟାନ୍ନାଭିପ୍ରାୟସିଦ୍ଧିଃ । ଯାବପ୍ୟନ୍ୱୟବ୍ୟତିରେକା-ବର୍ଥାପଲାପିନୋପନ୍ୟସ୍ତୌ ବାସନାନିମିତ୍ତମେବେଦଂ ଜ୍ଞାନଜାତଂ ନାର୍ଥନିମିତ୍ତମିତି ତାବପ୍ୟେବଂସତି ପ୍ରତ୍ୟୁକ୍ତୌ ଦ୍ରଷ୍ଟବ୍ୟୌ । ବିନାର୍ଥୋପଲବଧ୍ୟା ବାସନାନୁପପତ୍ତେଃ ।

(ଖ) ଅପିଚ ବିନାପି ବାସନାଭିରର୍ଥୋପଲବଧ୍ୟା ବାସନୋତ୍ପତ୍ତ୍ୟ ନଭ୍ୟୁପଗମାଦର୍ଥ ସଦ୍ଭାବମେବାନ୍ୱୟବ୍ୟତିରେକାବପି ପ୍ରତିଷ୍ଠାପୟତଃ । ଅପିଚ ବାସନା ନାମ ସଂସ୍କାର ବିଶେଷାଃ । ସଂସ୍କାରାଶ୍ଚ ନାଶ୍ରୟମନ୍ତରେଣାବକଳ୍ପ୍ୟନ୍ତେ ଏବଂ ଲୋକେ ଦୃଷ୍ଟତ୍ୱାତ୍ । ନଚ ତବ ବାସନାଶ୍ରୟଃ କଶ୍ଚିଦସ୍ତି ପ୍ରମାଣତୋଽନୁପଲବ୍ଧେଃ ।

**(୨) ଭାଷାଂତର-**(କ) ବାହ୍ୟାର୍ଥ ବିନା ଜ୍ଞାନବୈଚିତ୍ର୍ୟ ବାସନାର ବୈଚିତ୍ର୍ୟରୁ ହୁଏ- ଏହା ଯେଉଁ କୁହାଯାଇଅଛି, ତାହା ପ୍ରତ୍ୟାଖ୍ୟାନ କରିବା ଉଚିତ୍ । ଏହି ବିଷୟ ଉପରେ କୁହାଯାଇଅଛି । ବାସନାଗୁଡ଼ିକର ଅସ୍ତିତ୍ୱ ଉପପନ୍ନ ହୁଏ ନାହିଁ । କାରଣ-ତୁମ୍ଭ



ମତରେ ବାହ୍ୟାର୍ଥର ଉପଲବ୍ଧ ହୁଏ ନାହିଁ । ଅର୍ଥର ଉପଲବ୍ଧି ଦ୍ୱାରା ପ୍ରତ୍ୟେକ ଅର୍ଥରେ ଅନେକ ପ୍ରକାରର ବାସନା ଉତ୍ପନ୍ନ ହୁଏ ଅର୍ଥ ଅନୁପଲଭ୍ୟମାନ ହେଲା ପରେ ବିଚିତ୍ର ବାସନାଗୁଡ଼ିକ କାହାର ନିମିତ୍ତଦ୍ୱାରା ହେବେ ? ବାସନାଗୁଡ଼ିକ ଅନାଦି ହେଲା ପରେ ଅନ୍ଧ ପରମ୍ପରା ନ୍ୟାୟରେ ବ୍ୟବହାରଲୋପିନୀ ଅପ୍ରତିଷ୍ଠାରୂପ ଅନବସ୍ଥା ହେବ । ତେଣୁ ଏହି ଅଭିପ୍ରାୟ ସିଦ୍ଧ ହୁଏ ନାହିଁ । ଏହି ଜ୍ଞାନ ବାସନା ନିମିତ୍ତକ ଅଟେ, କିନ୍ତୁ ଅର୍ଥନିମିତ୍ତକ ନୁହଁନ୍ତି । ଏହି ପ୍ରକାର ବାହ୍ୟାର୍ଥର ନିଷେଧକ ଦ୍ୱାରା ଯାହା ଅନ୍ୱୟ ବ୍ୟତିରେକର ଉପନ୍ୟାସ କରାଯାଏ, ଏହା ହେଲାପରେ ଅର୍ଥାତ୍ ଅର୍ଥନିମିତ୍ତକ ବାସନା ହେଲାପରେ ଏହି ଦୁଇଟି ନିରାକୃତ ହୁଏ ବୋଲି ଜଣାଯାଏ । କାରଣ-ଅର୍ଥର ଉପଲବ୍ଧି ବିନା ବାସନା ହୁଏ ନାହିଁ ।

(ଖ) ପରନ୍ତୁ ବାସନା ବ୍ୟତିତ ଅର୍ଥର ଉପଲବ୍ଧି ସ୍ୱୀକାର କରାଯାଇଅଛି । ଅର୍ଥର ଉପଲବ୍ଧି ବିନା ବାସନା ସ୍ୱୀକାର କରାଯାଏ ନାହିଁ । ତେଣୁ ଏହି ଅନ୍ୱୟ-ବ୍ୟତିରେକ ଅର୍ଥର ସଦ୍‌ଭାବକୁ ପ୍ରତିଷ୍ଠାପିତ କରନ୍ତି । ଅନ୍ୟ ବାସନାଗୁଡ଼ିକ ସଂସ୍କାରବିଶେଷ ଅଟେ ଏବଂ ସଂସ୍କାର ଆଶ୍ରୟ ବିନା ହୁଏ ନାହିଁ । କାରଣ-ବ୍ୟବହାରରେ ଏହା ଦେଖାଯାଏ । ତୁମ୍ଭର ମତରେ ବାସନାର ଆଶ୍ରୟ କିଛି ନାହିଁ । କାରଣ-ତାହାର ପ୍ରମାଣ ଦ୍ୱାରା ଉପଲବ୍ଧି ହୁଏ ନାହିଁ ।

## क्षणिकत्वाच्च ॥ ३२ ॥

## (୧) କ୍ଷଣିକତ୍ୱାଚ୍ଚ ॥୨-୨-୩୧ ॥

ଆଳୟବିଜ୍ଞାନକୁ କ୍ଷଣିକ ବୋଲି ସ୍ୱୀକାର କଲେ ତାହା ବାସନାର ଆଶ୍ରୟ ହୁଏ ନାହିଁ ।

(୨) ମୂଳ-(କ) ଯଦପ୍ୟାଳୟବିଜ୍ଞାନଂ ନାମ ବାସନାଶ୍ରୟତ୍ୱେନ ପରିକଳ୍ପିତଂ ତଦପି କ୍ଷଣିକତ୍ୱାଭ୍ୟୁପଗମାଦନବସ୍ଥିତସ୍ୱରୂପଂ ସତ୍‌ପ୍ରବୃତ୍ତିବିଜ୍ଞାନବନ୍ନ ବାସନାନାମଧିକରଣଂ ଭବିତୁମର୍ହତି । ନହି କାଳତ୍ରୟସମ୍ବନ୍ଧିନେ କସ୍ମିନ୍ନନ୍ୱୟିନଂସତି କୂଟସ୍ଥେ ବା ସର୍ବାର୍ଥଦର୍ଶିନି ଦେଶକାଳନିମିତ୍ତାପେକ୍ଷବାସନାଧାନସ୍ମୃତିପରତିସନ୍ଧାନାଦିବ୍ୟବହାରଃସମ୍ଭବତି । ସ୍ଥିରସ୍ୱରୂପତ୍ୱେ ତ୍ୱାଳୟବିଜ୍ଞାନସ୍ୟ ସିଦ୍ଧାନ୍ତହାନିଃ । ଅପିଚ ବିଜ୍ଞାନାବାଦେଽପି କ୍ଷଣିକତ୍ୱାଭ୍ୟୁପଗମସ୍ୟ ସମାନତ୍ୱାଦ୍ୟାନି ବାହ୍ୟାର୍ଥବାଦେ କ୍ଷଣିକତ୍ୱନିବନ୍ଧନାନି ଦୂଷଣାନ୍ୟୁଦ୍ ଭାବିତାନି 'ଉତ୍ତରୋତ୍ପାଦେ ଚ ପୂର୍ବନିରୋଧାତ୍' ଇତ୍ୟେବମାଦୀନି ତାନୀହାପ୍ୟନୁସନ୍ଧାତବ୍ୟାନି ।

(ଖ) ଏବମେତୌ ଦ୍ୱାବପି ବୈନାଶିକପକ୍ଷୌ ନିରାକୃତୌ ବାହ୍ୟାର୍ଥବାଦିପକ୍ଷୋ ବିଜ୍ଞାନବାଦିପକ୍ଷଶ୍ଚ । ଶୂନ୍ୟବାଦିପକ୍ଷସ୍ତୁ ସର୍ବପ୍ରମାଣବିପ୍ରତିଷିଦ୍ଧଂ ଇତି ତନ୍ନିରାକରଣାୟ ନାଦରଃ

କ୍ରିୟତେ, ନହ୍ୟୟଂ ସର୍ବପ୍ରମାଣସିଦ୍ଧୋ ଲୋକବ୍ୟବହାରୋଽନ୍ୟତତ୍ତ୍ୱମନଧିଗମ୍ୟ ଶକ୍ୟତେଽପହ୍ନୋତୁମପବାଦାଭାବ ଉତ୍ସର୍ଗପ୍ରସିଦ୍ଧେଃ ।

(୨) ଭାଷାଂତର-(କ) ଯାହା ଆଳୟବିଜ୍ଞାନର କଳ୍ପନା ବାସନାର ଆଶ୍ରୟ ରୂପରେ କରାଯାଇଛି, ତାହା ମଧ୍ୟ କ୍ଷଣିକତ୍ୱର ସ୍ୱୀକାର କରିବା ଦ୍ୱାରା ଅନବସ୍ଥିତ ସ୍ୱରୂପ ହୋଇ ପ୍ରବୃତ୍ତିବିଜ୍ଞାନ ପରି ବାସନାଗୁଡ଼ିକ ଆଶ୍ରୟ ହୁଅନ୍ତି ନାହିଁ । କାଳତ୍ରୟରେ ସମ୍ବନ୍ଧ ରଖୁଥିବା ଏକ ଅନ୍ୱୟୀ କୂଟସ୍ଥ ଅଥବା ସର୍ବାର୍ଥଦର୍ଶୀର ନ ହେଲାପରେ ଦେଶ, କାଳ ଓ ନିମିତ୍ତର ଅପେକ୍ଷାରେ ବାସନାର ଅଧୀନ ସ୍ମୃତି ଓ ପ୍ରତ୍ୟଭିଜ୍ଞାଦି ବ୍ୟବହାର ହୁଏ ନାହିଁ । ଯଦି ଆଳୟବିଜ୍ଞାନର ସ୍ଥିର ସ୍ୱରୂପ ହୁଏ, ତେବେ କ୍ଷଣିକତ୍ୱ ସିଦ୍ଧାନ୍ତ ହାନି ହେବ ଏବଂ ବିଜ୍ଞାନବାଦୀରେ କ୍ଷଣିକତ୍ୱ ସିଦ୍ଧାନ୍ତ ସମାନ ହେଲେ ବାହ୍ୟଅର୍ଥବାଦ୍‌ରେ କ୍ଷଣିକତ୍ୱର ଅଧୀନ 'ଉତ୍ତରୋତ୍ପାଦେ ଚ ପୂର୍ବନିରୋଧାତ୍' ଇତ୍ୟାଦି ଯେଉଁ ଦୂଷଣ ଉଦ୍‌ଭାବିତ କରାଯାଇଅଛି, ତାହାର ଏଠାରେ ଅନୁସନ୍ଧାନ କରିବା ଉଚିତ ।

(ଖ) ଶୂନ୍ୟବାଦୀ ପକ୍ଷ କିନ୍ତୁ ସର୍ବପ୍ରମାଣ-ବିରୁଦ୍ଧ ଅଟେ । ତେଣୁ ତାହାର ନିରାକରଣରେ ଆଦର କରାଯାଏ ନାହିଁ । ସର୍ବପ୍ରମାଣସିଦ୍ଧ ଏହି ଲୋକ ବ୍ୟବହାର କୌଣସି ଭିନ୍ନତତ୍ତ୍ୱ ସ୍ୱୀକାର କରି ବିନାନିଷେଧରେ କରାଯାଏ ନାହିଁ । କାରଣ-ଅପବାଦର ଅଭାବରେ ଉତ୍ସର୍ଗ ବିରୁଦ୍ଧ ହୁଏ ।

## सर्वथानुपपत्तेश्च ॥ ३२ ॥

## (୧) ସର୍ବାର୍ଥାନୁପପତ୍ତେଶ୍ଚ ॥୨-୨-୩୨ ॥

ସର୍ବଥା-ବୌଦ୍ଧଦର୍ଶନ ସବୁପ୍ରକାରରେ, ଅନୁପପତ୍ତେଃ-ଅସଂଗତ ହେଲେ, ଚ-ମଧ୍ୟ ମୁମୁକ୍ଷୁର ଆଦରଣୀୟ ହୁଏ ନାହିଁ ।

(୨) ମୂଳ-(କ) କିଂ ବହୁନା । ସର୍ବପ୍ରକାରେଣ ଯଥାଯଥାୟଂ ବୈନାଶିକସମୟ ଉପପତ୍ତିମତ୍ତ୍ୱାୟ ପରୀକ୍ଷ୍ୟତେ ତଥାତଥା ସିକତାକୂପବଦ୍ ବିଦୀର୍ଯ୍ୟତେ ଏବ । ନ କିଞ୍ଚିଦପ୍ୟତ୍ରୋପପତ୍ତିଂ ପଶ୍ୟାମଃ । ଅତଶ୍ଚାନୁପପନ୍ନୋ ବୈନାଶିକତନ୍ତ୍ରବ୍ୟବହାରଃ । ଅପିଚ ବାହ୍ୟାର୍ଥ ବିଜ୍ଞାନଶୂନ୍ୟବାଦତ୍ରୟମିତରେତର ବିରୁଦ୍ଧମୁପଦିଶତା ସୁଗତେନ ସ୍ପଷ୍ଟୀକୃତମାତ୍ମନୋସଂବଦ୍ଧପ୍ରଳାପିତ୍ୱଂ, ପ୍ରଦ୍ୱେଷୋ ବା ପ୍ରଜାସୁ ବିରୁଦ୍ଧାର୍ଥପ୍ରତିପତ୍ତ୍ୟା ବିମୁହ୍ୟେୟୁରିମାଃ ପ୍ରଜା ଇତି । ସର୍ବଥାପ୍ୟ ନାଦରଣୀୟୋଽୟଂ ସୁଗତସମୟଃ ଶ୍ରେୟସ୍କାମୈରିତ୍ୟଭିପ୍ରାୟଃ ।

(୨) ଭାଷାଂତର-(କ) ଅଧିକ କହିବାରେ ପ୍ରୟୋଜନ କଣ ଅଛି ? ଏହି ବୈନାଶିକ ସିଦ୍ଧାନ୍ତର ଉପପତ୍ତି କରିବା ପାଇଁ ଯାହା ଯାହା ପରୀକ୍ଷା କରାଯାଏ, ସିକତା କୂପପରି ବିଦୀର୍ଣ୍ଣ ହୁଏ । ତେଣୁ ଆମ୍ଭେ କୌଣସି ଉପପତ୍ତି ଦେଖୁନାହୁଁ । ଅତଃ ବୈନାଶିକ

ତନ୍ତ୍ର ବ୍ୟବହାର ଅନୁପପନ୍ନ ହୁଏ । ବାହ୍ୟାର୍ଥବାଦ, ବିଜ୍ଞାନବାଦ ଓ ଶୂନ୍ୟବାଦ ପରସ୍ପର ବିରୁଦ୍ଧ ଏହି ତିନୋଟି ବାଦର ଉପଦେଶ ଦେଇ ବୁଦ୍ଧ ନିଜେ ଅସମ୍ବନ୍ଧ ପ୍ରଳାପିତ୍ୱକୁ ଅସ୍ପଷ୍ଟ କରନ୍ତି । ଅଥବା ବିରୁଦ୍ଧାର୍ଥ ପ୍ରତିପତ୍ତି ଦ୍ୱାରା ଏହି ପ୍ରଜା ଗୁଡ଼ିକ ମୋହକୁ ପ୍ରାପ୍ତ ହୁଅନ୍ତି । ଏହି ପ୍ରକାର ପ୍ରଜାପତି ଅତି ବିଦ୍ୱେଷ କରାଯାଇଅଛି । ତେଣୁ ଶ୍ରେୟଃ ଅଭିଳାଷୀ ପୁରୁଷ ଦ୍ୱାରା ସବୁ ପ୍ରକାରର ଏହି ସୁଗତ ସିଦ୍ଧାନ୍ତ ଅନାଦରଣୀୟ ଅଟେ ବୋଲି ଅଭିପ୍ରାୟ ଆମ୍ଭର ।

## ६ एकस्मिन्नसंभवाधिकरणम् । सू० ३३-३३

## ଏକସ୍ମିନ୍ନସମ୍ଭବାଧିକରଣ-୬

## नैकस्मिन्नसंभवात् ॥ ३३ ॥

## ୧-ନୈକସ୍ମିନ୍ନସମ୍ଭବାତ୍ ॥ ୨-୨-୩୩ ॥

ଏକସ୍ମିନ୍-ଏକ ପରାମର୍ଥରୂପ ବସ୍ତୁରେ, ଅସମ୍ଭବାତ୍-ବିରୁଦ୍ଧଧର୍ମର ସମ୍ଭବ ନ ହେଲେ, ନ-ବସ୍ତୁରେ ଅନେକରୂପତା ହୁଏ ନାହିଁ ।

(୨) ମୂଳ-(କ) ନିରସ୍ତଃ ସୁଗତସମୟଃ । ବିବସନସମୟ ଇଦାନୀଂ ନିରସ୍ୟତେ । ସପ୍ତ ଚୈଷାଂ ପଦାର୍ଥାଃ ସଂମତା ଜୀବଜ୍ୱୀବାସ୍ରବସଂବରନିର୍ଜରବନ୍ଧମୋକ୍ଷା ନାମ ସଂକ୍ଷେପତସ୍ତୁ ଦ୍ୱାବେବ ପଦାର୍ଥୌ । ଜୀବାଜୀବାଖ୍ୟୌ । ଯଥାଯୋଗଂ ତୟୋରେବେତରାନ୍ତର୍ଭାବାଦିତ ମନ୍ୟନ୍ତେ । ତୟୋରିମମପରଂ ପ୍ରପଞ୍ଚମାଚକ୍ଷତେ ପଞ୍ଚାସ୍ତିକାୟା ନାମ ଜୀବାସ୍ତିକାୟଃ ପୁଦ୍‌ଗଲାସ୍ତିକାୟୋ ଧର୍ମାସ୍ତିକାୟୋଽଧର୍ମାସ୍ତିକାୟ ଆକାଶାସ୍ତିକାୟଶ୍ଚେତି । ସର୍ବେଷାମପ୍ୟେଷାମବାନ୍ତରପ୍ରଭେଦାନ୍ ବହୁବିଧାନ୍ ସ୍ୱସମୟପରିକଳ୍ପିତାନ୍ ବର୍ଣ୍ଣୟନ୍ତି ।

(ଖ) ସର୍ବତ୍ର ଚେମଂ ସପ୍ତଭଙ୍ଗନୟଂ ନାମ ନ୍ୟାୟମବତାରୟନ୍ତି । ସ୍ୟାଦସ୍ତି, ସ୍ୟାନ୍ନାସ୍ତି, ସ୍ୟାଦସ୍ତି ଚ ନାସ୍ତିଚ, ସ୍ୟାଦବକ୍ତବ୍ୟଃ, ସ୍ୟାଦସ୍ତି ଚାବକ୍ତବ୍ୟଶ୍ଚ, ସ୍ୟାନ୍ନାସ୍ତି ଚାବକ୍ତବ୍ୟଶ୍ଚ, ସ୍ୟାଦସ୍ତି ଚ ନାସ୍ତି, ଚାବକ୍ତବ୍ୟଶ୍ଚେତି । ଏବମେବୈକତ୍ୱନିତ୍ୟତ୍ୱାଦିଷ୍ୱପୀମଂ ସପ୍ତଭଙ୍ଗନୟଂ ଯୋଜୟନ୍ତି ।

(ଗ) ଅତ୍ରାଚକ୍ଷ୍ମହେନାୟମଭ୍ୟୁପଗମୋ ଯୁକ୍ତ ଇତି । କୁତଃ । ଏକସ୍ମିନ୍ନ ସମ୍ଭବାତ୍ । ନ ହ୍ୟେକସ୍ମିନ୍‌ଧର୍ମିଣି ଯୁଗପତ୍ ସଦସତ୍ତ୍ୱାଦିବିରୁଦ୍ଧଧର୍ମସମାବେଶଃ ସମ୍ଭବତି ଶୀତୋଷ୍ଣବତ୍ । ଯ ଏତେ ସପ୍ତପଦାର୍ଥା ନିର୍ଧାରିତା ଏତାବନ୍ତ ଏବଂ ରୂପାଶ୍ଚେତି ତେ ତଥୈବ ବା ସ୍ୟୁର୍ନୈବ ବା ତଥା ସ୍ୟୁଃ । ଇତରଥା ହି ତଥା ବା ସ୍ୟୁର ତଥା ବେତ୍ୟନିର୍ଧାରିତରୂପଂ ଜ୍ଞାନଂ ସଂଶୟଜ୍ଞାନବଦପ୍ରମାଣମେବ ସ୍ୟାତ୍ ।

(ଘ) ନନ୍ୱନେକାତ୍ମକଂ ବସ୍ତ୍ୱିତି ନିର୍ଦ୍ଧାରିତରୂପମେବ ଜ୍ଞାନମୁତ୍ପଦ୍ୟମାନଂ ସଂଶୟଜ୍ଞାନବନ୍ନାପ୍ରମାଣଂ ଭବିତୁମର୍ହତି । ନେତି ବ୍ରୂମଃ । ନିରଙ୍କୁଶଂ ହ୍ୟନେକାନ୍ତତ୍ୱଂ ସର୍ବବସ୍ତୁଷୁ ପ୍ରତିଜାନାନସ୍ୟ ନିର୍ଦ୍ଧାରଣସ୍ୟାପି ବସ୍ତ୍ୱାଦିବିଶେଷାତ୍ ସ୍ୟାଦସ୍ତି ସ୍ୟାନ୍ନାସ୍ତୀତ୍ୟାଦିବିକଳ୍ପୋପନିପତାଦନିର୍ଦ୍ଧାରଣାତ୍ମକତୟୈବ ସ୍ୟାତ୍ । ଏବଂ ନିର୍ଦ୍ଧାରୟିତୁ ର୍ନିର୍ଦ୍ଧାରଣଫଳସ୍ୟ ଚ ସ୍ୟାତ୍ପକ୍ଷେଽସ୍ତିତା ସ୍ୟାଚ୍ଚ ପକ୍ଷେ ନାସ୍ତିତେତି ।

(ଙ) ଏବଂ ସତି କଥଂ ପ୍ରମାଣଭୂତଃ ସଂସ୍ତୀର୍ଥକରଃ ପ୍ରମାଣପ୍ରମେୟ ପ୍ରମାତୃପ୍ରମିତି ଷ୍ୱନିର୍ଦ୍ଧାରିତାସୂପଦେଷ୍ଟୁଂ ଶକ୍ନୁୟାତ୍ । କଥଂବା ତଦଭିପ୍ରାୟାନୁସାରିଣସ୍ତଦୁପଦିଷ୍ଟେ ର୍ଥେଽନିର୍ଦ୍ଧାରିତରୂପେ ପ୍ରବର୍ତ୍ତେରନ୍ । ଐକାନ୍ତିକଫଳତ୍ୱନିର୍ଦ୍ଧାରଣେ ହି ସତି ତତ୍ସାଧନାନୁଷ୍ଠାନାୟ ସର୍ବୋ ଲୋକୋଽନାକୁଳଃ ପ୍ରବର୍ତ୍ତତେ ନାନ୍ୟଥା । ଅତଶ୍ଚାନିର୍ଦ୍ଧାରିତାର୍ଥଂ ଶାସ୍ତ୍ରଂ ପ୍ରଣୟନ୍ ମତୋନ୍ମତ୍ତବଦନୁପାଦେୟବଚନଃ ସ୍ୟାତ୍ । ତଥା ପଞ୍ଚାନାମସ୍ତିକାୟାନାଂ ପଞ୍ଚତ୍ୱସଂଖ୍ୟାସ୍ତି ବା ନାସ୍ତିବେତି ବିକଳ୍ପ୍ୟମାନା ସ୍ୟାତ୍ତାବଦେକସ୍ମିନ୍ ପକ୍ଷେ ପକ୍ଷାନ୍ତରେତୁ ନ ସ୍ୟାଦିତ୍ୟତୋ ନ୍ୟୁନସଂଖ୍ୟାତ୍ୱମଧିକସଂଖ୍ୟାତ୍ୱଂ ବା ପ୍ରାପ୍ନୁୟାତ୍ ।

(ଚ) ନଚୈଷାଂ ପଦାର୍ଥାନାମବକ୍ତବ୍ୟତ୍ୱଂ ସମ୍ଭବତି । ଅବକ୍ତବ୍ୟାଶ୍ଚେନ୍ନୋଚ୍ୟେରନ୍ । ଉଚ୍ୟନ୍ତେ ଚାବକ୍ତବ୍ୟାଶ୍ଚେତି ବିପ୍ରତିଷିଦ୍ଧମ୍ । ଉଚ୍ୟମାନାଶ୍ଚ ତଥୈବାବଧାର୍ଯ୍ୟନ୍ତେ ନାବଧାର୍ଯ୍ୟନ୍ତ ଇତି ଚ । ତଥା ତଦବଧାରଣଫଳଂ ସମ୍ୟଗ୍ ଦର୍ଶନମସ୍ତି ବା ନାସ୍ତିବା, ଏବଂ ତଦ୍ ବିପରୀତମସମ୍ୟଗ୍ ଦର୍ଶନମପ୍ୟସ୍ତି ବା ନାସ୍ତି ବେତି ପ୍ରଲପନ୍ ମତ୍ତୋନ୍ମତ୍ତପକ୍ଷସ୍ୟୈବ ସ୍ୟାନ୍ନ ପ୍ରତ୍ୟାୟିତବ୍ୟପକ୍ଷସ୍ୟ । ସ୍ୱର୍ଗାପବର୍ଗୟୋଶ୍ଚ ପକ୍ଷେଭାବଃ ପକ୍ଷେ ଚାଭାବସ୍ତଥା ପକ୍ଷେ ନିତ୍ୟତା ପକ୍ଷେ ଚାନିତ୍ୟତେତ୍ୟନବଧାରଣାୟାଂ ପ୍ରବୃତ୍ତ୍ୟନୁପପତ୍ତିଃ ।

(ଛ) ଅନାଦିସିଦ୍ଧଜୀବ ପ୍ରଭୃତୀନାଂ ଚ ସ୍ୱଶାସ୍ତ୍ରବଧୃତସ୍ୱଭାବାନାମଯଥାବଧୃତ ସ୍ୱଭାବତ୍ୱ ପ୍ରସଙ୍ଗଃ । ଏବଂ ଜୀବାଦିଷୁ ପଦାର୍ଥେଷ୍ୱେକସ୍ମିନ୍ ଧର୍ମିଣିସତ୍ୱାସତ୍ୱୟୋର୍ବିରୁଦ୍ଧୟୋଃ ଧର୍ମୟୋରସମ୍ଭବାତ୍ସତ୍ତ୍ୱେ ଚୈକସ୍ମିନ୍ ଧର୍ମେଽସତ୍ତ୍ୱସ୍ୟ ଧର୍ମାନ୍ତରସ୍ୟାସମ୍ଭବାଦସତ୍ତ୍ୱେ ଚୈବଂ ସତ୍ତ୍ୱସ୍ୟାସମ୍ଭବାଦସଂଗତମିଦମାର୍ହତଂ ମତମ୍ । ଏତେନୈକାନେକନିତ୍ୟାନିତ୍ୟବ୍ୟତିରିକ୍ତାବ୍ୟ-ତିରିକ୍ତାଦ୍ୟନେକାନ୍ତାଭ୍ୟୁପଗମା ନିରାକୃତା ମନ୍ତବ୍ୟାଃ । ଯତ୍ତୁ ପୁଦଗଲସଂଜ୍ଞକେଭ୍ୟୋଽଣୁଭ୍ୟଃ ସଂଘାତାଃ ସମ୍ଭବନ୍ତୀତି କଳ୍ପୟନ୍ତି ତତ୍ପୂର୍ବେଣୈବାଣୁବାଦନିରାକରଣେନ ନିରାକୃତଂ ଭବତୀତ୍ୟତୋ ନ ପୃଥକ୍ତନ୍ନିରାକରଣାୟ ପ୍ରଯତ୍ୟତେ ।

(୨) ଭାଷାଂତର- (କ) ସୁଗତ (ବୌଦ୍ଧ) ମତକୁ ନିରାକରଣ କରାଯାଇଛି । ବର୍ତ୍ତମାନ ଜୈନମତ ନିରାକରଣ କରାଯିବ । ତାହାକୁ ଜୀବ, ଅଜୀବ, ଆସ୍ରବ, ସମ୍ବର, ନିର୍ଜ୍ଜର, ବନ୍ଧ ଓ ମୋକ୍ଷ- ଏହିପରି ସାତପ୍ରକାର ଅଭିମତ ରହିଛି । ସଂକ୍ଷେପରେ ଜୀବ ଓ ଅଜୀବ ନାମକ ଦୁଇଟି ପଦାର୍ଥ ଅଟେ । କାରଣ-ଅନ୍ୟର ସେହି ଦୁଇଟିରେ ଯଥାଯୋଗ



ଅନ୍ତର୍ଭାବ ହୁଏ ବୋଲି ସେମାନେ ସ୍ୱୀକାର କରନ୍ତି । ଜୀବାସ୍ତିକାୟ, ପୁଦ୍‌ଗଳାସ୍ତିକାୟ, ଧର୍ମାସ୍ତିକାୟ, ଅଧର୍ମାସ୍ତିକାୟ ଓ ଆକାଶାସ୍ତିକାୟ-ଏହି ପାଞ୍ଚଟି ଅସ୍ତିକାୟ ଜୀବାଜୀବ ମଧ୍ୟରେ ବିସ୍ତାରପୂର୍ବକ କୁହାଯାଇଅଛି । ସେହି ସମସ୍ତଙ୍କୁ ସ୍ୱଶାସ୍ତ୍ରରେ ପରିକଳ୍ପିତ ବହୁତ ପ୍ରକାର ଅବାନ୍ତର ପ୍ରଭେଦ ବର୍ଣ୍ଣନା କରନ୍ତି ।

(ଖ) ସର୍ବତ୍ର ଏହି ସପ୍ତଭଙ୍ଗୀ ନୟନାମକ ନ୍ୟାୟର ଅବତରଣ କରନ୍ତି । ସ୍ୟାଦସ୍ତି, ସ୍ୟାନ୍ନାସ୍ତି, ସ୍ୟାଦସ୍ତି ଚ ନାସ୍ତି ଚ, ସ୍ୟାଦବକ୍ତବ୍ୟଃ, ସ୍ୟାଦସ୍ତି ଚାବକ୍ତବ୍ୟଶ୍ଚ, ସ୍ୟାନ୍ନାସ୍ତି ଚାବ୍ୟକ୍ତବ୍ୟଶ୍ଚ, ସ୍ୟାଦସ୍ତି ଚ ନାସ୍ତି ଚାବକ୍ତବ୍ୟ ଏହି ପ୍ରକାର ଏକତ୍ୱ ଓ ନିତ୍ୟତ୍ୱାଦିରେ ଏହି ସପ୍ତଭଙ୍ଗୀ ସିଦ୍ଧାନ୍ତ ଯୋଜନା କରିଛି ।

(ଗ) ସିଦ୍ଧାନ୍ତ-ଏହି ବିଷୟରେ ଆମ୍ଭେ କହୁଁ ଯେ- ଏହି ଜୈନ ସିଦ୍ଧାନ୍ତ ଠିକ୍ ନୁହେଁ । କାରଣ-ଗୋଟିକରେ ତାହା ସମ୍ଭବ ନୁହେଁ । ଗୋଟିଏ ଧର୍ମରେ ଏକ ସମୟରେ ସତ୍ୱ ଓ ସତ୍ତ୍ୱାଦି ବିରୁଦ୍ଧଧର୍ମର ଶୀତୋଷ୍ଣ ପରି ସମାବେଶ ସଂଭବ ନୁହେଁ । ଯାହା ଏହି ସାତୋଟି ପଦାର୍ଥ ଏତେ ପରିମାଣ ଓ ଏତେରୂପବାନ୍ ରୂପେ ନିର୍ଦ୍ଧାରିତ ହୁଏ, ସେମାନେ ସେହିପରି ହୁଅନ୍ତୁ ଅଥବା ସେପରି ନ ହୁଅନ୍ତୁ, ଅନ୍ୟଥା ସେହି ପ୍ରକାରର ହେଉ ଅଥବା ନ ହେଉ, - ଏହିପରି ଅନିର୍ଦ୍ଧାରିତଜ୍ଞାନ ସଂଶୟଜ୍ଞାନ ପରି ଅପ୍ରମାଣ ହେବ ।

(ଘ) ପରନ୍ତୁ ବସ୍ତୁ ଅନେକାତ୍ମକ ଅଟେ । ଏଠାରେ ନିର୍ଦ୍ଧାରିତ ରୂପରେ ଉତ୍ପନ୍ନ ହୋଇ ଜ୍ଞାନ ସମ୍ୟଗ୍‌ଜ୍ଞାନ ପରି ଅପ୍ରମାଣ ନୁହେଁ । ଆଂଭେ କହୁଁ ଯେ-ଏହା ନୁହେଁ, କାରଣ-ସମସ୍ତ ବସ୍ତୁରେ ନିରଙ୍କୁଶ ଅନେକାନ୍ତତ୍ୱର ପ୍ରତିଜ୍ଞା କରିବା ମତରେ ନିର୍ଦ୍ଧାରଣକୁ ବସ୍ତୁପରି ହେଲାପରେ 'ସ୍ୟାଦସ୍ତି, ସ୍ୟାନ୍ନାସ୍ତି ଏହିପ୍ରକାର ବିକଳ୍ପର ପ୍ରାପ୍ତ ହେଲା ପରେ ତାହା ଅନିର୍ଦ୍ଧାରଣାତ୍ମକତ୍ୱ ହେବ । ଏହି ପ୍ରକାର ନିର୍ଦ୍ଧାରଣ କରୁଥିବା ଓ ନିର୍ଦ୍ଧାରଣ ପକ୍ଷରେ ଅସ୍ତିତ୍ୱ ହେବ, ଏବଂ ପକ୍ଷରେ ନାସ୍ତିତ୍ୱ ହେବ ।

(ଙ) ଏହା ହେଲେ ପ୍ରମାଣଭୂତ ହୋଇ ତୀର୍ଥାଙ୍କୁର ପ୍ରମାଣ, ପ୍ରମେୟ, ପ୍ରମାତା ଏବଂ ପ୍ରମିତିର ଅନିର୍ଦ୍ଧାରିତ ହେଲାପରେ ଉପଦେଶଦେବାରେ କିପରି ସମର୍ଥ ହେବ ? ଅଥବା ତାହାର ଅଭିପ୍ରାୟ ଅନୁସରଣ କରୁଥିବା ଶିଷ୍ୟ ତାହାର ଉପଦିଷ୍ଟ ଅନିର୍ଦ୍ଧାରିତ ରୂପ ଅର୍ଥରେ କିପରି ପ୍ରବୃତ୍ତ ହୁଅନ୍ତି ? ପରନ୍ତୁ ଅବ୍ୟଭିଚରିତଫଳର ନିର୍ଦ୍ଧାରଣ ହେଲା ପରେ ତାହାର ସାଧନାନୁଷ୍ଠାନ ପାଇଁ ସବୁଲୋକ ନିଃସନ୍ଦେହରେ ପ୍ରବୃତ୍ତ ହୁଅନ୍ତି । ନୋଚେତ୍ ହୁଅନ୍ତି ନାହିଁ । ତେଣୁ ନିର୍ଧାରିତ ଅର୍ଥଯୁକ୍ତଶାସ୍ତ୍ର ପ୍ରଣୟନ କରି ମତ୍ତ ଓ ଉନ୍ମତ୍ତ ପରି ଅନୁପାଦେୟ ବଚନ ହେବ । ସେହିପରି ପଞ୍ଚାସ୍ତିକାୟର ବିକଳ୍ପିତ ହୋଇ ପଞ୍ଚତ୍ୱସଂଖ୍ୟା ହୁଏ ଅଥବା ହୁଏ ନାହିଁ । ଏକପକ୍ଷରେ 'ସ୍ୟାତ୍', ଓ ଅନ୍ୟ ପକ୍ଷରେ, ନ ସ୍ୟାତ୍ ଦ୍ୱାରା ନ୍ୟୂନ ସଂଖ୍ୟାତ୍ୱ ଅଥବା ଅଧିକ ସଂଖ୍ୟାତ୍ୱ ପ୍ରାପ୍ତ ହେବ ।

(ଚ) ଏହି ପଦାର୍ଥଗୁଡ଼ିକରେ ଅବକ୍ତବ୍ୟତ୍ୱ ସଂଭବ ନୁହେଁ । ଯଦି ଅବକ୍ତବ୍ୟତ୍ୱ ହୁଏ, ତେବେ ତାହା କୁହାଯାଏ ନାହିଁ । ପରନ୍ତୁ କୁହାଯାଏ ଏବଂ ପୁଣି ଅବକ୍ତବ୍ୟ ଅଟେ ଏବଂ ଏହା ଅବିରୁଦ୍ଧ ଅଟେ । ଏହି ଉଚ୍ୟମାନ ପଦାର୍ଥ ସେହିପରି ଅବଧାରିତ ହୁଅନ୍ତି । ପୁଣି ହୁଅନ୍ତି ନାହିଁ ଏବଂ ଏହିପରି ତାହାର ଅବଧାରଣଫଳ ସମ୍ୟଗ୍ ଦର୍ଶନ ହୁଏ, ଅଥବା ହୁଏ ନାହିଁ । ଏହି ପ୍ରକାର ପ୍ରଳାପ କରୁଥିବା ମତ୍ତୋନ୍ମତ୍ତ ପକ୍ଷର ହେବ । କିନ୍ତୁ ନିଶ୍ଚୟାତ୍ମକପକ୍ଷର ନୁହେଁ । ସ୍ୱର୍ଗ ଓ ଅପବର୍ଗ ପକ୍ଷରେ ଭାବ ଓ ଅନ୍ୟପକ୍ଷରେ ଅଭାବ ହୁଏ । ସେହିପରି କୌଣସିପକ୍ଷରେ ନିତ୍ୟତା ଓ ଅନ୍ୟ ପକ୍ଷରେ ଅନିତ୍ୟତା ପ୍ରାପ୍ତ ହେବ । ଏହିପରି ଅବଧାରଣ ନ ହେବାରୁ ସେଠାରେ ପ୍ରବୃତ୍ତି ହୁଏ ନାହିଁ ।

(ଛ) ସେପରି ଅନାଦିସିଦ୍ଧ ଜୀବାଦି ଯାହାର ସ୍ୱଭାବ ନିଜଶାସ୍ତ୍ରରେ ନିଶ୍ଚିତ କରାଯାଏ, ତାହାକୁ ମଧ୍ୟ ସେହି ବସ୍ତୁଠାରୁ ବିପରୀତସ୍ୱଭାବ ହେବାର ପ୍ରସଙ୍ଗ ହେବ ଏବଂ ଜୀବାଦି ପଦାର୍ଥଠାରୁ ଏକଧର୍ମରେ ବିରୁଦ୍ଧ ଧର୍ମସତ୍ୱ ଓ ଆସତ୍ତ୍ୱର ଅସଂଭହେବାରୁ ସତ୍ୱରୂପ, ଏକଧର୍ମରେ ଅନ୍ୟ ଅସତ୍ୱ ଧର୍ମର ଅସଂଭବ ହେତୁ ଏବଂ ଏହି ପ୍ରକାର ଅସତ୍ତ୍ୱରେସତ୍ୱର ସଂଭବ ନ ହେବାରୁ ଏହି ଆର୍ହତମତ ଅସଙ୍ଗତ ଅଟେ । ଏହିପରି ସତ୍ୱ ଓ ଅସତ୍ୱର ନିରାକରଣଦ୍ୱାରା ଏକ, ଅନେକ, ନିତ୍ୟ, ଅନିତ୍ୟ, ଭିନ୍ନ ଓ ଅଭିନ୍ନାଦି ଅନେକ ସ୍ୱୀକାରକୁ ନିରାକରଣ କରିବାକୁ ଜାଣିବା ଉଚିତ । ପୁଦ୍‌ଗଳସଂଜ୍ଞକ ଅଣୁଠାରୁ (ପୃଥିବୀ ପ୍ରଭୃତି) ସଂଘାତ ଉତ୍ପନ୍ନ ହୁଅନ୍ତି ବୋଲି ଯାହା କଳ୍ପନା କରନ୍ତି, ତାହାର ପୂର୍ବରୁ ଅଣୁବାଦର ନିରାକ୍ରଣଦ୍ୱାରା ତାହା ନିରାକୃତ ହୋଇଛି । ଅତଏବ ସେମାନଙ୍କର ନିରାକରଣ ପାଇଁ ପୃଥକ୍ ଯତ୍ନ କରାଯାଇଅଛି ।

**एवं चात्माऽकात्स्न्यर्म् ॥ ३४ ॥**

**୧-ଏବଂ ଚାତ୍ମାଽକାର୍ତ୍ସ୍ନ୍ୟମ୍ ॥୨-୨-୩୪ ॥**

ଏବଂ ଚ - ଏହିପ୍ରକାର ଜୈନମତରେ, ଆତ୍ମା-ଆତ୍ମାଠାରେ, ଅକାର୍ତ୍ସ୍ନ୍ୟମ୍-ପରିଚ୍ଛିନ୍ନତ୍ୱ ଦୋଷ ପ୍ରସକ୍ତ ହେବ । ତେଣୁ ଆତ୍ମାଘଟାଦିପରି ଅନିତ୍ୟ ହେବ ।

(୨) ମୂଳ-(କ) ଯଥୈକସ୍ମିନ୍‌ଧର୍ମିଣି ବିରୁଦ୍ଧଧର୍ମାସମ୍ଭବୋ ଦୋଷଃ ସ୍ୟାଦ୍‌ବାଦେ ପ୍ରସକ୍ତ ଏବମାତ୍ମନୋଽପି ଜୀବସ୍ୟାକାର୍ତ୍ସ୍ନ୍ୟେନାପରୋ ଦୋଷଃ ପ୍ରସଜ୍ୟେତ । କଥମ୍ । ଶରୀରପରିମାଣୋ ହି ଜୀବ ଇତ୍ୟାର୍ହତା ମନ୍ୟନ୍ତେ । ଶରୀରପରିମାଣତାୟାଂ ଚ ସତ୍ୟାମକୃତ୍ସ୍ନୋଽସର୍ବଗତ୍ୟଃ ପରିଚ୍ଛିନ୍ନ ଆତ୍ମେତ୍ୟତୋ ଘଟାଦିବଦନିତ୍ୟତ୍ୱମାତ୍ମନଃ ପ୍ରସଜ୍ୟେତ । ଶରୀରାଣାଂ ଚାନବସ୍ଥିତପରିମାଣତ୍ୱାନ୍ମନୁଷ୍ୟଜୀବୋ ମନୁଷ୍ୟଶରୀର-ପରିମାଣୋ ଭୂତ୍ୱା ପୁନଃ କେନଚିତ୍ କର୍ମବିପାକେନ ହସ୍ତିଜନ୍ମପ୍ରାପ୍ନୁବନ୍ନ କୃତ୍ସ୍ନଃ ପୁତ୍ତିକାଶରୀରେ ସମୀୟେତ । ସମାନ ଏଷ ଏକସ୍ମିନ୍ନପି ଜନ୍ମନି କୌମାରଯୌବନସ୍ଥବିରେଷୁ ଦୋଷଃ ।

 

(ଖ) ସ୍ୟାଦେତତ୍ । ଅନନ୍ତାବୟବୋ ଜୀବସ୍ତସ୍ୟ ତ ଏବାବୟବା ଅଳ୍ପେଶରୀରେ ସଙ୍କୁଚେୟୁର୍ମହତି ଚ ବିକସେୟୁରିତି । ତେଷାଂ ପୁନରନନ୍ତାନାଂ ସମାନ ଦେଶତ୍ୱଂ ପ୍ରତିହନ୍ୟତେ ବା ନ ବେତି ବକ୍ତବ୍ୟମ୍ । ପ୍ରତିଘାତେ ତାବନ୍ନାନନ୍ତାବୟବାଃ ପରିଚ୍ଛିନ୍ନେ ଦେଶେ ସମୀୟେରନ୍ । ଅପ୍ରତିଘାତେଽପ୍ୟେକାବୟବଦେଶତ୍ୱୋପପତ୍ତେଃ ସର୍ବେଷାମବୟବାନାଂ ପ୍ରଥିମାନୁପପତ୍ତେର୍ଜୀବସ୍ୟାଣିମାତ୍ରତ୍ୱପ୍ରସଙ୍ଗଃ ସ୍ୟାତ୍ । ଅପିଚ ଶରୀରମାତ୍ର ପରିଚ୍ଛିନ୍ନାନାଂ ଜୀବାବୟବାନାମାନନ୍ତ୍ୟଂ ନୋତ୍ପ୍ରେକ୍ଷିତୁମପି ଶକ୍ୟମ୍ ।

**(୨) ଭାଷାଂତର-** ଯେପରି ସ୍ୟାଦ୍‌ବାଦରେ ଏକଧର୍ମୀରେ ବିରୁଦ୍ଧ ଧର୍ମୀ ଅର୍ଥାତ୍ ସତ୍ୱ ଓ ଅସତ୍ୱର ଅସମ୍ଭବ ଦୋଷ ପ୍ରସକ୍ତ ହୁଏ, ଏବଂ ଜୀବାତ୍ମାର ପରିଚ୍ଛିନ୍ନତ୍ୱ ଅନ୍ୟ ଦୋଷ ପ୍ରସକ୍ତ ହେବ । କିପରି ? ସେପରି ଜୀବ ଶରୀର ପରିମାଣଯୁକ୍ତ ଅଟେ ବୋଲି ଆର୍ହତମାନେ ସ୍ୱୀକାର କରନ୍ତି । ଶରୀର ପରିମାଣତ୍ୱ ହେଲେ ଆତ୍ମା ଅକୃତ୍ସ୍ନ ଅର୍ଥାତ୍ ଅସର୍ବଗତ ପରିଚ୍ଛିନ୍ନ ହୁଏ । ତେଣୁ ଆତ୍ମାକୁ ଘଟପରି ଅନିତ୍ୟତ୍ୱ ପ୍ରସଙ୍ଗ ହେବ । ଶରୀର ଅନିଶ୍ଚିତ ପରିମାଣ ହେଲେ ମନୁଷ୍ୟ ଜୀବ ମନୁଷ୍ୟ ଶରୀର ପରିମାଣ ହୋଇ ପୁନଃ କୌଣସି କର୍ମବିପାକଦ୍ୱାରା ହସ୍ତିଜନ୍ମକୁ ପ୍ରାପ୍ତହୋଇ ସଂପୂର୍ଣ୍ଣ ହସ୍ତୀଶରୀରକୁ ବ୍ୟାପ୍ତ କରିବ ନାହିଁ । ପିମ୍ପୁଡ଼ି ଜନ୍ମ ପାଇ ପୂର୍ଣ୍ଣ ରୂପରେ ପିମ୍ପୁଡ଼ିର ଶରୀରରେ ପ୍ରବେଶ କରିବ ନାହିଁ । ଏକ ଜନ୍ମରେ କୌମାର, ଯୌବନ ଓ ବାର୍ଦ୍ଧକ୍ୟରେ ଏହି ଦୋଷ ସମାନ ହୁଏ ।

(ଖ) ପୂର୍ବପକ୍ଷ-ପରନ୍ତୁ ଜୀବ ଅନନ୍ତ ଅବୟବଯୁକ୍ତ ହୁଏ । ତାହାର ସେମାନେ ହୁଅନ୍ତି । ଅବୟବ ଅଳ୍ପ ଶରୀରରେ ସଙ୍କୁଚିତ ହେବେ ଏବଂ ବିଶାଳଶରୀରରେ ବିକସିତ ହୁଅନ୍ତି । ଯଦି ଏହା ହୁଏ, ତେବେ ପୁଣି ଜୀବର ସେହି ଅନନ୍ତ ଅବୟବର ଏକଦେଶତ୍ୱ ପ୍ରତିଘାତ ହୁଏ କି ନାହିଁ ? ଏହା ପଚାରିବା ଉଚିତ । ପ୍ରତିଘାତ ହେଲେ ଅନନ୍ତ ଅବୟବ ପରିଚ୍ଛିନ୍ନ ଦେଶରେ ମିଳିତ ହୁଅନ୍ତି ନାହିଁ । ଅପ୍ରତିଘାତ ହେଲେ ଗୋଟିଏ ଅବୟବ ଦେଶତ୍ୱର ଉପପତ୍ତି ହୁଏ ଓ ସମସ୍ତ ଅବୟବରେ ସ୍ଥୂଳତା ଅନୁପପନ୍ନ ହୁଏ । ତେଣୁ ଜୀବକୁ ଅଣୁମାତ୍ରତ୍ୱ ପ୍ରସଙ୍ଗ ହେବ ଏବଂ ଶରୀର ମାତ୍ର ପରିଚ୍ଛିନ୍ନ ଜୀବ ଅବୟବର ଆନନ୍ତ୍ୟକୁ କଳ୍ପନା କରିବ ନାହିଁ ।

(୧) ମୂଳ-ଅଥ ପର୍ଯ୍ୟାୟେଣ ବୃହଚ୍ଛରୀରପ୍ରତିପତ୍ତୌ କେଚିଜ୍ଜୀବାବୟବୋ ଉପଗଚ୍ଛନ୍ତି ତନୁଶରୀରପ୍ରତିପତ୍ତୌ ଚ କେଚିଦପଗଚ୍ଛନ୍ତୀତ୍ୟୁଚେତ, ତତ୍ରାପ୍ୟୁଚ୍ୟତେ-

**(୧) ଭାଷାଂତର-** ଯଦି କହ ଯେ- କ୍ରମରୁ ବୃହତ୍ ଶରୀର ପ୍ରାପ୍ତ ହେଲାପରେ କିଛି ଜୀବାବୟବ ପାଖକୁ ଆସେ ଏବଂ ଅଳ୍ପଶରୀର ପ୍ରାପ୍ତହେବାରୁ ଜୀବାବୟବ ଦୂର ହୋଇଯାଏ । ତେଣୁ ଏହି ବିଷୟରେ କୁହାଯାଇଛି-

## न च पर्यायादप्यविरोधो विकारादिभ्य: ॥ ३५ ॥

## ନ ଚ ପର୍ଯ୍ୟାୟାଦପ୍ୟବିରୋଧୋ ବିକାରାଦିଭ୍ୟଃ ॥୨-୨-୩୫॥

ପର୍ଯ୍ୟାୟଦପି-କ୍ରମଶଃ ଅବୟବଗୁଡ଼ିକ ବିଚ୍ୟୁତି ଓ ପ୍ରାପ୍ତ ହେଲାପରେ, ନ ବିରୋଧଃ- ଶରୀର ପରିମାଣତ୍ୱର ଅବିରୋଧ ହୁଏ ନାହିଁ । ବିକାରାଦିଭ୍ୟଃ-କାରଣ- ସାବୟବ ହେଲେ ବିକାରାଦି ଦୋଷପ୍ରସକ୍ତ ହେବ ଏବଂ ଆତ୍ମାର ଅନିତ୍ୟହେଲେ ବନ୍ଧ ଓ ମୋକ୍ଷବ୍ୟବସ୍ଥା ବାଧିତ ହେବ ।

(୨) ମୂଳ-(କ) ନଚ ପର୍ଯ୍ୟାୟେଣାପ୍ୟବୟବୋପଗମାପଗମାଭ୍ୟାମେତ-ଦ୍ଦେହପରିମାଣତ୍ୱଂ ଜୀବସ୍ୟାବିରୋଧେନୋପପାଦୟିତୁଂ ଶକ୍ୟତେ । କୁତଃ ? ବିକାରାଦିଦୋଷପ୍ରସଙ୍ଗାତ୍ । ଅବୟବୋପଗମାପଗମାଭ୍ୟାଂ ହ୍ୟନିଶମା-ପୂର୍ଯ୍ୟମାଣସ୍ୟା-ପକ୍ଷୀୟମାଣସ୍ୟ ଚ ଜୀବସ୍ୟବିକ୍ରିୟାବତ୍ୱଂ ତାବଦପରିହାର୍ଯ୍ୟମ୍, ବିକ୍ରିୟାବତ୍ତ୍ୱେ ଚ ଚର୍ମାଦିବ-ନିତ୍ୟତ୍ୱଂ ପ୍ରସଜ୍ୟେତ । ତତଶ୍ଚ ବନ୍ଧମୋକ୍ଷାଭ୍ୟୁପଗମୋ । ବାଧତେ କର୍ମାଷ୍ଟକପରିବେଷ୍ଟିତସ୍ୟ ଜୀବସ୍ୟାଲାବୁବତ୍ ସଂସାରସାଗରେ ନିମଗ୍ନସ୍ୟ ବନ୍ଧନୋଚ୍ଛେଦାଦୂର୍ଦ୍ଧ୍ୱଗାମିତ୍ୱଂ ଭବତୀତି ।

(ଖ) କିଞ୍ଚାନ୍ୟତ୍ । ଆଗଚ୍ଛତାମପଗଚ୍ଛତାଂ ଚାବୟବାନାମାଗମାପାୟଧର୍ମବତ୍ତ୍ୱା-ଦେବାନାତ୍ମତ୍ୱଂ ଶରୀରାଦିବତ୍ । ତତଶ୍ଚାବସ୍ଥିତଃ କଶ୍ଚିଦବୟବ ଆତ୍ମେତି ସ୍ୟାତ୍ । ନଚ ସ ନିରୂପୟିତୁ ଶକ୍ୟତେଽୟମସାବିତି । କିଞ୍ଚାନ୍ୟତ୍ । ଆଗଚ୍ଛନ୍ତଶ୍ଚୈତେ ଜୀବାବୟବାଃ କୁତଃ ପ୍ରାଦୁର୍ଭବନ୍ତ୍ୟପଗଚ୍ଛନ୍ତଶ୍ଚ କ୍ୱ ବା ଲୀୟନ୍ତ ଇତି ବକ୍ତବ୍ୟମ୍ । ନହି ଭୂତେଭ୍ୟଃ ପ୍ରାଦୁର୍ଭବେୟୁର୍ଭୂତେଷୁ ଚ୍ ନିଲୀୟେରନ୍, ଅଭୌତିକତ୍ୱାଜ୍ଜୀବସ୍ୟ । ନାପି କଶ୍ଚିଦନ୍ୟଃ ସାଧାରଣୋଽସାଧାରଣୋ ବା ଜୀବାନାମବୟବାଧାରୋ ନିରୂପ୍ୟତେ ପ୍ରମାଣାଭାବାତ୍ ।

(ଗ) କିଞ୍ଚାନ୍ୟାତ୍ । ଅନବଧୃତସ୍ୱରୂପଶ୍ଚୈବଂସତ୍ୟାତ୍ମା ସ୍ୟାତ୍ । ଆଗଚ୍ଛତାମପ-ଗଚ୍ଛତାଂ ଚାବୟବାନାମନିୟତପରିଣାମତ୍ୱାତ୍ । ଅତ ଏବମାଦିଦୋଷପ୍ରସଙ୍ଗାନ୍ନ ପର୍ଯ୍ୟାୟେଣାପ୍ୟବୟବୋପଗମାପଗମାବାତ୍ମନଃ ଆଶ୍ରୟିତୁଂ ଶକ୍ୟେତେ ।

(ଘ) ଅଥବା ପୂର୍ବେଣ ସୂତ୍ରେଣ ଶରୀରପରିମାଣସ୍ୟାତ୍ମନ ଉପଚିତାପଚିତଶରୀରା-ନ୍ତରପ୍ରତିପତ୍ତାବକାର୍ତ୍ସ୍ନ୍ୟପ୍ରସଞ୍ଜନଦ୍ୱାରେଣାନିତ୍ୟତାୟାଂ ଚୋଦିତାୟାଂ ପୁନଃ ପର୍ଯ୍ୟାୟେଣ ପରିମାଣାନବସ୍ଥାନେଽପି ସ୍ରୋତଃସନ୍ତାନନିତ୍ୟତାନ୍ୟାୟେନାତ୍ମନୋ ନିତ୍ୟତା ସ୍ୟାତ୍ ଯଥା ରକ୍ତପଟାନାଂ ବିଜ୍ଞାନାନବସ୍ଥାନେଽପି ତତ୍ ସନ୍ତାନନିତ୍ୟତା ତଦ୍ୱଦ୍ ବସିରମପୀତ୍ୟାଶଙ୍କ୍ୟାନେନ ସୂତ୍ରେଣୋତ୍ତରମୁଚ୍ୟତେ । ସନ୍ତାନସ୍ୟ ତାବଦବସ୍ତୁତ୍ୱେ ନୈରାତ୍ମ୍ୟବାଦପ୍ରସଙ୍ଗଃ । ବସ୍ତୁତ୍ୱେଽ-ପ୍ୟାତ୍ମନୋ ବିକାରାଦିଦୋଷପ୍ରସଙ୍ଗାଦସ୍ୟ ପକ୍ଷସ୍ୟାନୁପପତ୍ତିରିତି ।



(୨) ଭାଷାଂତର-(କ) କ୍ରମଶଃ ଅବୟବ ଗୁଡ଼ିକର ଆଗମନ ଅଥବା ଗମନ ଦ୍ୱାରା ଜୀବରେ ଦେହଗତ ପରିମାଣତ୍ୱର ଅବିରୋଧରୁ ଉପପାଦନ କରାଯାଇନପାରେ । କିପରି ? ତେଣୁ ବିକାରାଦି ଦୋଷର ପ୍ରସଙ୍ଗ ହୁଏ । ଅବୟବଗୁଡ଼ିକର ଆଗମନ ଓ ଗମନଦ୍ୱାରା ସର୍ବଦା ପୂର୍ଣ୍ଣ ଓ ଅପକ୍ଷୟ ହେଲେ ଜୀବର ବିକାରବତ୍ୱ ଅପରିହାର୍ଯ୍ୟ ହେବ ଏବଂ ବିକାରଯୁକ୍ତ ହେଲେ ଚର୍ମପରି ସେଠାରେ ଅନିତ୍ୟତ୍ୱ ପ୍ରସଙ୍ଗ ହେବ । ତାହାଦ୍ୱାରା ବନ୍ଧ ମୋକ୍ଷର ବାଧିତ ହେବ । ଆଠପ୍ରକାରର କର୍ମଦ୍ୱାରା ପରିବେଷ୍ଟିତ ସଂସାର ସାଗରରେ ନିମଗ୍ନଜୀବ ବନ୍ଧନର ଉଚ୍ଛେଦ ହେଲେ ପାଣିକଖାରୁ ପରି ଉର୍ଦ୍ଧ୍ୱଗାମୀ ହୁଏ ।

(ଖ) ଏହା ଏକ ଅନ୍ୟ କଥା ଯେ- ଆଗମନ ଓ ଗମନଶୀଳ ଅବୟବ ଆପମ ଓ ଅପାୟ ଧର୍ମଯୁକ୍ତ ହେଲେ ଶରୀରପରି ଅନାତ୍ମା ହେବ । ତେଣୁ ଅବସ୍ଥିତ କୌଣସି ଅବୟବ ଆତ୍ମା ହେବ । ଏସେ ଏହା ଅଟେ-ଏହିପରି ତାହାର ନିରୂପଣ କରାଯାଇଅଛି । ପୁନଶ୍ଚ ଆସୁଥିବା ଏତେ ଜୀବାବୟବ କେଉଁଠୁ ପ୍ରାଦୁର୍ଭୂତ ହୁଅନ୍ତି, ଏବଂ ଗମନ କରି କେଉଁଠି ବିଲୀନ ହୁଏ- ଏହା କଣ କହିବା ଉଚିତ କି ? ଭୂତରୁ ଆବିର୍ଭୂତ ହେବେ ଏବଂ ଭୂତରେ ଲୀନ ହେବେ ବୋଲି କହିବା ଠିକ୍ ନୁହେଁ । କାରଣ-ଜୀବ ଅଭୌତିକ ଅଟେ । ଏହିପ୍ରକାର ଜୀବର ଅବୟବଗୁଡ଼ିକ ସାଧାରଣ ଅଥବା ଅସାଧାରଣ କୌଣସି ଅନ୍ୟ ଆଧାରରେ ନିରୂପଣ କରାଯାଇ ନାହିଁ । କାରଣ-ସେଠାରେ କୌଣସି ପ୍ରମାଣ ନାହିଁ ।

(ଗ) ପୁନଶ୍ଚ ଏହାହେଲେ ଆତ୍ମାର ସ୍ୱରୂପ ଅନିଶ୍ଚିତ ହେବ । କାରଣ-ଆଗମନ ଓ ଗମନଶୀଳ ଅବୟବର ଅନିୟତ ପରିମାଣ ଅଛି । ଅତଏବ ଇତ୍ୟାଦି ଦୋଷର ପ୍ରସଙ୍ଗ ହେତୁ ଓ କ୍ରମରୁ ଅବୟବଗୁଡ଼ିକର ଆଗମନ ଓ ଗମନ ଆତ୍ମାରେ ସ୍ୱୀକାର କରାଯାଏ ନାହିଁ ।

(ଘ) ଅଥବା ପୂର୍ବସୂତ୍ରରେ ଶରୀର ପରିମାଣବାନ୍ ଆତ୍ମାର ଉପଚିତ, ଅପଚିତ ଅନ୍ୟ ଶରୀରର ପ୍ରାପ୍ତ ହେଲାପରେ ଅକୃତ୍ସ୍ନ ପ୍ରସଙ୍ଗ ହେବ । ତେଣୁ ଅନିତ୍ୟତାର ଶଙ୍କା ହେଲାପରେ ପୁନଶ୍ଚ କ୍ରମଦ୍ୱାରା ପରିମାଣ ଅନିଶ୍ଚିତ ହୁଏ । ଯେପରି ସ୍ରୋତର ସନ୍ତାନ ଅର୍ଥାତ୍ ପ୍ରବାହ ନିତ୍ୟ ଅଟେ, ସେହି ନ୍ୟାୟରେ ସେପରି ଆତ୍ମା ନିତ୍ୟ ହେବ । ଅଥବା ଯେପରି ରକ୍ତବସ୍ତ୍ରରେ ବୌଦ୍ଧ ବିଜ୍ଞାନର ଅବସ୍ଥିତି ନ ହେଲେ ମଧ୍ୟ ତାହାର ସନ୍ତାନ ନିତ୍ୟ ଅଟେ, ସେହିପରି ଦିଗମ୍ବରର ସନ୍ତାନ ନିତ୍ୟ ଅଟେ । ଏହିପରି ଶଙ୍କାକରି ଏହି ସୂତ୍ରରେ ଉତ୍ତର କୁହାଯାଇଅଛି । ସନ୍ତାନର ଅବସ୍ତୁ ହେଲେ ନୈରାତ୍ମ୍ୟବାଦ ପ୍ରସଙ୍ଗ ହେବ । ସନ୍ତାନର ବସ୍ତୁ ହେଲେ ଆତ୍ମାର ବିକାରାଦି ଦୋଷର ପ୍ରସଙ୍ଗ ହୋଇ ଏହି ପକ୍ଷର ଅନୁପପତ୍ତି ହୁଏ ।

'अन्त्यावस्थितेश्चोभयनित्यत्वादविरोषः ॥ ३६ ॥

୧- ଅନ୍ତ୍ୟାବସ୍ଥିତେଶ୍ଚୋଭୟ ନିତ୍ୟତ୍ୱାଦବିଶେଷଃ ॥୨-୨-୩୬॥

ଅନ୍ତ୍ୟାବସ୍ଥିତେଃ-ମୋକ୍ଷାବସ୍ଥାପନ୍ନ ଜୀବ-ପରିମାଣ ନିତ୍ୟ ହେବାରୁ, ଉଭୟ-ନିତ୍ୟତ୍ୱାତ୍-ଆଦି ଓ ମଧ୍ୟ ପରିମାଣରେ, ଚ-ମଧ୍ୟ ନିତ୍ୟତ୍ୱ ପ୍ରସଙ୍ଗ ହେବ । ତେଣୁ, ଅବିଶେଷଃ-ତିନୋଟି ପରିମାଣରେ ସାମ୍ୟ ହେବ । ଅତଃ ବୌଦ୍ଧମତ ପରି ଏହିମତ ଅପ୍ରାମାଣିକ ଅଟେ ।

(୨) ମୂଳ-(କ) ଅପି ଚାନ୍ତ୍ୟସ୍ୟ ମୋକ୍ଷାବସ୍ଥାଭାବିନୋ ଜୀବପରିମାଣସ୍ୟ ନିତ୍ୟତ୍ୱମିଷ୍ୟତେ ଜୈନୈଃ । ତଦ୍ ବତ୍ ପୂର୍ବୟୋରପ୍ୟାଦ୍ୟ ମଧ୍ୟମୟୋର୍ଜୀବ ପରିମାଣ ୟୋର୍ନିତ୍ୟତ୍ୱପ୍ରସଙ୍ଗାଦବିଶେଷପ୍ରସଙ୍ଗଃ ସ୍ୟାତ୍ । ଏକଶରୀରପରିମାଣତୈବ ସ୍ୟାନ୍ନୋପଚିତାପଚିତଶରୀରାନ୍ତର ପ୍ରାପ୍ତିଃ । ଅଥବାନ୍ତ୍ୟସ୍ୟ ଜୀବପରିମାଣସ୍ୟା ବସ୍ଥିତତ୍ୱାତ୍ ପୂର୍ବାୟୋରପ୍ୟବସ୍ଥୟୋରବସ୍ଥିତ ପରିମାଣ ଏବ ଜୀବଃ ସ୍ୟାତ୍, ତତଶ୍ଚା ବିଶେଷେଣ ସର୍ବଦୈବାଣୁର୍ମହାନ୍ ବା ଜୀବୋଽଭ୍ୟୁପଗନ୍ତବ୍ୟୋ ନ ଶରୀରପରିମାଣଃ । ଅତଶ୍ଚ ସୌଗତବଦାର୍ହତମପି ମତମସଂଗତମିତ୍ୟୁପେକ୍ଷିତବ୍ୟମ୍ ।

(୨) ଭାଷାଂତର-(କ) ଶେଷରେ ମୋକ୍ଷବସ୍ଥାଭାବୀ ଜୀବପରିମାଣକୁ ଜୈନ ନିତ୍ୟ ବୋଲି ସ୍ୱୀକାର କରନ୍ତି । ସେହିପରି ପୂର୍ବରୁ ଆଦି ଓ ମଧ୍ୟ ଜୀବପରିମାଣକୁ ନିତ୍ୟତ୍ୱ ପ୍ରସଙ୍ଗ ହେଲେ ତିନୋଟିଯାକ ପରିମାଣ ସମାନ ହୋଇଯିବେ । ଯଦି ଗୋଟିଏ ଶରୀର ପରିମାଣର ପରି ଆତ୍ମା ହେବ, ତେବେ ସେ ଅନ୍ୟ ସ୍ଥୂଳ ଓ ସୂକ୍ଷ୍ମ ଶରୀରକୁ ପ୍ରାପ୍ତ ହେବ ନାହିଁ । ଅଥବା ଅନ୍ତିମ ଜୀବପରିମାଣର ଅବସ୍ଥିତ ହେଲେ ପୂର୍ବାବସ୍ଥାରେ ମଧ୍ୟ ଜୀବ ଅବସ୍ଥିତ ପରିମାଣଶୀଳ ହେବ । ତାହାଦ୍ୱାରା ସମାନରୂପରେ ସର୍ବଦା ଜୀବ ଅଣୁ ଅଥବା ମହାନ୍ ରୂପେ ସ୍ୱୀକାର କରିବା ଉଚିତ । ଶରୀର ପରିମାଣବାନ୍ ନୁହେଁ । ତେଣୁ ବୌଦ୍ଧମତ ପରି ଆର୍ହତମତ ଅସଂଗତ ଅଟେ । ତେଣୁ ସେ ଉପେକ୍ଷଣୀୟ ହୁଏ ।

## ७ पत्यधिकरणम् । सू० ३७ - ४१

## ପତ୍ୟଧିକରଣ-୭

पत्युरसामञ्जस्यात् ॥ ३७ ॥

୧- ପତ୍ୟୁରସାମଞ୍ଜସ୍ୟାତ୍ ॥୨-୨-୩୭॥

ପତ୍ୟୁଃ-ଈଶ୍ୱର ପ୍ରଧାନାଦି ଉପାଦାନର ପ୍ରେରକ ହେଲେ ଜଗତର ନିମିତ୍ତ କାରଣ ହୁଏ ନାହିଁ । ଅସାଞ୍ଜସ୍ୟାତ୍-କାରଣ-ବିଷମ ସୃଷ୍ଟିରେ ପ୍ରବୃତ୍ତ ହେଲେ ରାଗ, ଦ୍ୱେଷାଦି ପ୍ରସଙ୍ଗ ତାହା ଅସଂଗତ ହୁଏ ।



(୨) ମୂଳ-(କ) ଇଦାନୀଂ କେବଳାଧିଷ୍ଠାତ୍ରୀଶ୍ୱରକାରଣବାଦଃ ପ୍ରତିଷିଧ୍ୟତେ । ତତ୍ କଥମବଗମ୍ୟତେ । 'ପ୍ରକୃତିଶ୍ଚ ପ୍ରତିଜ୍ଞାଦୃଷ୍ଟାନ୍ତାନୁପରୋଧାତ୍', 'ଅଭିଧ୍ୟୋପଦେଶାଚ୍ଚ' (ବ୍ର ୧-୪-୨୩, ୨୪) ଇତ୍ୟତ୍ର ପ୍ରକୃତିଭାବେନାଧିଷ୍ଠାତୃ-ଭାବେନ ଚୋଭୟସ୍ୱଭାବସ୍ୟେଶ୍ୱରସ୍ୟ ସ୍ୱୟମେବାଚାର୍ଯ୍ୟେଣ ପ୍ରତିଷ୍ଠାପିତତ୍ୱାତ୍ । ଯଦି ପୁନରବିଶେଷଣେଶ୍ୱର କାରଣବାଦମାତ୍ରମିହ ପ୍ରତିଷିଧ୍ୟେତ ପୂର୍ବୋତ୍ତରବିରୋଧାଦ୍ ବ୍ୟାହତାଭିବ୍ୟାହାରଃ ସୂତ୍ରକାରଃ ଇତ୍ୟେତଦାପଦ୍ୟେତ । ତସ୍ମାଦପ୍ରକୃତିରଧିଷ୍ଠାତା କେବଳଂ ନିମିତ୍ତକାରଣମୀଶ୍ୱର ଇତ୍ୟେଷ ପକ୍ଷୋ ବେଦାନ୍ତବିହିତ ବ୍ରହ୍ମୈକତ୍ୱପ୍ରତିପକ୍ଷତ୍ୱାଦ୍ୟନ୍ନେନାତ୍ର ପ୍ରତିଷିଧ୍ୟତେ । ସା ଚେୟଂ ବେଦବାହ୍ୟେଶ୍ୱରକଳ୍ପନାନେକପ୍ରକାରା ।

(ଖ) କେଚିତ୍ତାବତ୍ସାଂଖ୍ୟ ଯୋଗବ୍ୟାପାଶ୍ରୟାଃ କଳ୍ପୟନ୍ତି ପ୍ରଧାନପୁରୁଷୟୋରଧିଷ୍ଠାତା କେବଳଂ ନିମିତ୍ତକାରଣମୀଶ୍ୱର ଇତିରେତରବିଲକ୍ଷଣାଃ ପ୍ରଧାନପୁରୁଷେଶ୍ୱରା ଇତି । ମାହେଶ୍ୱରାସ୍ତୁ ମନ୍ୟନ୍ତେ କାର୍ଯ୍ୟକାରଣଯୋଗବିଧିଦୁଃଖାନ୍ତାଃ ଏଞ୍ଚ ପଦାର୍ଥାଃ ପଶୁପତିନେଶ୍ୱରେଣ ପଶୁପାଶବିମୋକ୍ଷଣାୟୋପଦିଷ୍ଟାଃ ପଶୁପତିରୀଶ୍ୱରୋ ନିମିତ୍ତକାରଣମିତି ବର୍ଣ୍ଣୟନ୍ତି । ତଥା ବୈଶେଷିକାଦୟୋଽପି କେଚିତ୍ କଥଂଚିତ୍ ସ୍ୱପ୍ରକ୍ରିୟାନୁସାରେଣ ନିମିତ୍ତକାରଣମୀଶ୍ୱର ଇତି ବର୍ଣ୍ଣୟନ୍ତି ।

(ଗ) ଅତ ଉତ୍ତରମୁଚ୍ୟତେ-'ପତ୍ୟୁରସାମଞ୍ଜସ୍ୟାମ୍' ଇତି । ପତ୍ୟୁରୀଶ୍ୱରସ୍ୟ ପ୍ରଧାନପୁରୁଷୟୋରଧିଷ୍ଠାତୃତ୍ୱେନ ଜଗତ୍କାରଣତ୍ୱଂ ନୋପପଦ୍ୟତେ କସ୍ମାତ୍ । ଅସମାଞ୍ଜସ୍ୟାତ୍ । କିଂ ପୁନରସାମଞ୍ଜସ୍ୟମ୍ । ହୀନମଧମୋତ୍ ତମଭାବେନ ହି ପ୍ରାଣିଭେଦାନ୍ୱିଦଧତ ଈଶ୍ୱରସ୍ୟ ରାଗଦ୍ୱେଷାଦିଦୋଷପ୍ରସକ୍ତେରସ୍ମଦାଦିବଦନୀଶ୍ୱରତ୍ୱଂ ପ୍ରସଜ୍ୟେତ । ପ୍ରାଣିକର୍ମାପେକ୍ଷିତତ୍ୱାଦଦୋଷ ଇତି ଚେତ୍ । ନ । କର୍ମେଶ୍ୱରୟୋଃ ପ୍ରବର୍ତ୍ତ୍ୟ ପ୍ରବର୍ତ୍ତୟିତୃତ୍ୱେ ଇତରେତରାଶୟଦୋଷପ୍ରସଙ୍ଗାତ୍ । ନାନାଦିତ୍ୱାଦିତି ଚେତ୍ । ନ । ବର୍ତ୍ତମାନ କାଳବଦତୀତେଷ୍ୱପି କାଳେଷ୍ୱିତରେତରାଶ୍ରୟଦୋଷା-ବିଶେଷାଦନ୍ଧପରମ୍ପରାନ୍ୟାୟାପତ୍ତେଃ । ଅପି ଚ 'ପ୍ରବର୍ତ୍ତନାଲକ୍ଷଣା ଦୋଷାଃ' (ନ୍ୟା. ସୂ ୧-୧-୧୮) ଇତି ନ୍ୟାୟବିତ୍ସମୟଃ । ନହି କଶ୍ଚିଦଦୋଷପ୍ରସକ୍ତଃ ସ୍ୱାର୍ଥେ ପରାର୍ଥେ ବା ପ୍ରବର୍ତ୍ତମାନୋ ଦୃଶ୍ୟତେ । ସ୍ୱାର୍ଥପ୍ରୟୁକ୍ତ ଏବ ଚ ସର୍ବୋ ଜନଃ ପରାର୍ଥେଽପି ପ୍ରବର୍ତ୍ତତ ଇତ୍ୟେବମପ୍ୟସାମଞ୍ଜସ୍ୟଂ, ସ୍ୱାର୍ଥବତ୍ତ୍ୱାଦୀଶ୍ୱରସ୍ୟାନୀଶ୍ୱରତ୍ୱପ୍ରସଙ୍ଗାତ୍ । ପୁରୁଷବିଶେଷାଭ୍ୟୁପଗମାଚ୍ଚେଶ୍ୱରସ୍ୟ ପୁରୁଷସ୍ୟ ଚୌଦାସୀନ୍ୟାଭ୍ୟୁପଗମାଦସାମଞ୍ଜସ୍ୟମ୍ ।

(୨) ଭାଷାଂତର- (କ) ବର୍ତ୍ତମାନ କେବଳ ଅଧିଷ୍ଠାତା (ନିମିତ୍ତ) ଈଶ୍ୱର କାରଣବାଦର ପ୍ରତିଷେଧ କରାଯାଏ । ସେ କିପରି ଅବଗତ ହୁଅନ୍ତି ? କାରଣ- 'ପ୍ରକୃତିଶ୍ଚ' 'ଅଭିଧ୍ୟୋପଦେଶାଚ୍ଚ' ଏହି ସୂତ୍ରରେ ପ୍ରକୃତି ରୂପରେ ଓ ଅଧିଷ୍ଠାତୃ ରୂପରେ ଉଭୟସ୍ୱଭାବ ଈଶ୍ୱରଙ୍କୁ ଆଚାର୍ଯ୍ୟ ସ୍ୱୟଂ ପ୍ରତିଷ୍ଠାପିତ କରିଛନ୍ତି । ଯଦି ଏଠାରେ ସମାନ ରୂପରେ ଈଶ୍ୱର

କାରଣବାଦମାତ୍ରକୁ ପ୍ରତିଷେଧ କରନ୍ତି, ତେବେ ପୂର୍ବୋତ୍ତରର ବିରୋଧ ହେଲେ ସୂତ୍ରକାର ପରସ୍ପର ବିରୁଦ୍ଧ ବଚନ କହନ୍ତି- ଏହା ହିଁ ପ୍ରସକ୍ତ ହେବ । ତେଣୁ ଈଶ୍ୱର ପ୍ରକୃତି ନୁହେଁ । ଅଧିଷ୍ଠାତା କେବଳ ନିମିତ୍ତ କାରଣ ହୁଏ । ଏହି ପକ୍ଷର ବେଦାନ୍ତ ବିହିତ ବ୍ରହ୍ମୈକତ୍ୱର ବିରୋଧୀ ହେଲେ ଏଠାରେ ଯତ୍ନ ସହକାରେ ପ୍ରତିଷେଧ କରାଯାଏ । ସେହି ବେଦବାହ୍ୟ ଈଶ୍ୱର କଳ୍ପନା ଅନେକ ପ୍ରକାରର ଅଟେ ।

(ଖ) କେତେକ ଲୋକ ସାଂଖ୍ୟଯୋଗକୁ ଆଶ୍ରୟ କରି କଳ୍ପନା କରନ୍ତି ଯେ- ପ୍ରଧାନ ଓ ପୁରୁଷର ଅଧିଷ୍ଠାତା ଈଶ୍ୱର କେବଳ ନିମିତ୍ତକାରଣ ଅଟେ, ପ୍ରଧାନ, ପୁରୁଷ ଓ ଈଶ୍ୱର-ଏମାନେ ପରସ୍ପର ବିଲକ୍ଷଣ ଅଟନ୍ତି । ମାହେଶ୍ୱର ସ୍ୱୀକାର କରନ୍ତି ଯେ- କାର୍ଯ୍ୟ, କାରଣ, ଯୋଗ, ବିଧି ଓ ଦୁଃଖାନ୍ତ ମୋକ୍ଷ-ଏହି ପାଞ୍ଚୋଟି ପଦାର୍ଥ ପଶୁପତି ଈଶ୍ୱରଠାରୁ ଜୀବବନ୍ଧନର ବିନାଶ ପାଇଁ ଉପଦିଷ୍ଟ ହୁଅନ୍ତି । ପଶୁପତି ଈଶ୍ୱର ନିମିତ୍‌କାରଣ ଅଟେ, - ଏହା ବର୍ଣ୍ଣନ କରାଯାଇଅଛି । ସେହିପରି କୌଣସି ବୈଶେଷିକାଦି ମଧ ବେଳେବେଳେ ନିଜର ପ୍ରକ୍ରିୟା ଅନୁସାରେ ଈଶ୍ୱର ନିମିତ୍ତକାରଣ ଅଟେ ବୋଲି ବର୍ଣ୍ଣନା କରାଯାଇଅଛି ।

(ଗ) ସିଦ୍ଧାନ୍ତ-ତେଣୁ ଏହାର ଉତ୍ତରରେ କୁହାଯାଇଅଛି ଯେ- ପତ୍ୟୁର-ସାମଞ୍ଜସ୍ୟାତ୍' ପତି ଅର୍ଥାତ୍ ଈଶ୍ୱର ପ୍ରଧାନ ଓ ପୁରୁଷର ଅଧିଷ୍ଠାତୃ ରୂପରେ ଜଗତ୍‌କାରଣ ହୁଏ ନାହିଁ । କିପରି ? ତେଣୁ ଏହା ଅସାମଞ୍ଜସ୍ୟ ଅଟେ । ପୁନଶ୍ଚ ସେହି ଅସାମଞ୍ଜସ୍ୟ କାହିଁକି ହୁଏ ? ହୀନ, ମଧ୍ୟମ ଓ ଉତ୍ତମଭାବରୁ ଭିନ୍ନ ଭିନ୍ନ ପ୍ରାଣୀମାନଙ୍କୁ ଉତ୍ପନ୍ନ କରୁଥିବା ଈଶ୍ୱରଠାରେ ରାଗ, ଦ୍ୱେଷାଦି ଦୋଷର ପ୍ରସଙ୍ଗ ହେବାରୁ ଅନୀଶ୍ୱରତ୍ୱ ପ୍ରସଙ୍ଗ ହେବ । ଯଦି କହ ଯେ- ପ୍ରାଣୀମାନେ କର୍ମକୁ ଅପେକ୍ଷା କଲେ ଦୋଷ ହୁଏ ନାହିଁ । ତେବେ ଏହା ଠିକ୍ ନୁହେଁ । କାରଣ-କର୍ମ ଓ ଈଶ୍ୱରର ପ୍ରବର୍ତ୍ତ୍ୟ ଓ ପ୍ରବର୍ତ୍ତୟିତୃଭାବ ହେଲାପରେ ଅନ୍ୟୋନ୍ୟାଶ୍ରୟଦୋଷ ପ୍ରସଙ୍ଗ ହେବ ।

(ଘ) ଏହା ନୁହେଁ, କାରଣ-ସେ ଅନାଦି ଅଟେ । ଏହା ଯଦି ତୁମେ କୁହ, ତେବେ ମଧ ଠିକ୍ ନୁହେଁ, କାରଣ-ବର୍ତ୍ତମାନ କାଳପରି ଅତୀତକାଳରେ ମଧ ଅନ୍ୟୋନ୍ୟାଶ୍ରୟ ଦୋଷ ସମାନ ହେଲେ ଅନ୍ଧପରଂପରା ନ୍ୟାୟ ପ୍ରସକ୍ତ ହେବ । 'ପ୍ରବର୍ତ୍ତନା ଲକ୍ଷଣା ଦୋଷାଃ' (ପ୍ରବୃତ୍ତିର ହେତୁଭୂତ ଦୋଷ ନୁହେଁ) ଏହା ନ୍ୟାୟବେତ୍ତାର ସିଦ୍ଧାନ୍ତ ଅଟେ । କୌଣସି ଲୋକ ଦୋଷ ବିନା ସ୍ୱାର୍ଥ ଅଥବା ପରାର୍ଥରେ ପ୍ରବୃତ୍ତ ହେବା ଦେଖାଯାଏ ନାହିଁ । ସ୍ୱାର୍ଥରେ ପ୍ରଯୁକ୍ତ ହୋଇ ସବୁଲୋକ ପରାର୍ଥରେ ପ୍ରବୃତ୍ତ ହୁଅନ୍ତି । ଏହି ଅସାମଞ୍ଜସ୍ୟ (ଅସଂଗତ) ହୁଏ । କାରଣ-ସ୍ୱାର୍ଥଯୁକ୍ତ ହେଲେ ଈଶ୍ୱରଠାରେ ଅନୀଶ୍ୱର ପ୍ରସଙ୍ଗ ହେବ । ଈଶ୍ୱରଙ୍କୁ ପୁରୁଷବିଶେଷ ସ୍ୱୀକାର କରାଯାଇଛି ଏବଂ ପୁରୁଷରେ ଔଦାସୀନ୍ୟ ସ୍ୱୀକାର କରିବା ସଂପୂର୍ଣ୍ଣତଃ ଅସଂଗତ ଅଟେ ।



## संबन्धानुपपत्तेश्च ॥ ३८ ॥

## ୧- ସମ୍ବନ୍ଧାନୁପପତ୍ତେଶ୍ଚ ॥୨-୨-୩୮॥

ପ୍ରେର୍ଯ୍ୟ ପ୍ରଧାନାଦି ସହିତ ପ୍ରେରକ ଈଶ୍ୱରର ସମ୍ବନ୍ଧ ଅନୁପପତ୍ତି ହେଲେ ଈଶ୍ୱର ପ୍ରେରକ ହୁଏ ନାହିଁ ।

(୨) ମୂଳ-(କ) ପୁନରସ୍ୟସାମଞ୍ଜସ୍ୟମେବ । ନହି ପ୍ରଧାନପୁରୁଷବ୍ୟତିରିକ୍ତ ଈଶ୍ୱରୋଽନ୍ତରେଣ ସମ୍ବନ୍ଧଂ ପ୍ରଧାନପୁରୁଷୟୋରୀଶିଷ । ନ ତାବତ୍ ସଂଯୋଗଲକ୍ଷଣଃ ସମ୍ବନ୍ଧଃ ସମ୍ଭବତି, ପ୍ରଧାନପୁରୁଷେଶ୍ୱରାଣାଂ ସର୍ବଗତତ୍ୱାନ୍ନିରବୟବତ୍ୱାଚ୍ଚ । ନାପି ସମବାୟଲକ୍ଷଣଃ ସମ୍ବନ୍ଧଃ, ଆଶ୍ରୟାଶ୍ରୟିଭାବାନିରୂପଣାତ୍ । ନାପ୍ୟନ୍ୟଃ କଶ୍ଚିତକାର୍ଯ୍ୟଗମ୍ୟଃ ସମ୍ବନ୍ଧଃ, ଶକ୍ୟତେ କଳ୍ପୟିତୁମ୍, କାର୍ଯ୍ୟକାରଣଭାବସ୍ୟୈବାଦ୍ୟାପ୍ୟସିଦ୍ଧତ୍ୱାତ୍ । ବ୍ରହ୍ମବାଦିନଃ କଥମିତି ଚେତ୍ । ନ । ତସ୍ୟ ତାଦାତ୍ମ୍ୟଲକ୍ଷଣସମ୍ବନ୍ଧୋପପତ୍ତେଃ । ଅପିଚଆଗମବଳେନ ବ୍ରହ୍ମବାଦୀ କାରଣାଦିସ୍ୱରୂପଂ ନିରୂପୟତୀତି ନାବଶ୍ୟଂ ତସ୍ୟ ଯଥାଦୃଷ୍ଟମେବ ସର୍ବମଭ୍ୟୁପଗନ୍ତବ୍ୟମିତି ନିୟମୋଽସ୍ତି ।

(ଖ) ପରସ୍ୟ ତୁ ଦୃଷ୍ଟାନ୍ତବଳେନ କାରଣାଦିସ୍ୱରୂପ ନିରୂପୟେତା ଯଥାଦୃଷ୍ଟମେବ ସର୍ବମଭ୍ୟୁପଗନ୍ତବ୍ୟମିତ୍ୟୟମସ୍ତ୍ୟତିଶୟଃ । ପରସ୍ୟାପି ସର୍ବଜ୍ଞପ୍ରାଣୀତାଗମସଦ୍ ଭାବାତ୍ ସମାନମାଗମବଳମିତି ଚେତ୍ । ନ । ଇତରେତର । ଶ୍ରୟତ୍ୱ-ପ୍ରସଙ୍ଗାଦାଗମପ୍ରତ୍ୟୟାତ୍ ସର୍ବଜ୍ଞତ୍ୱସିଦ୍ଧିଃ ସର୍ବଜ୍ଞପ୍ରତ୍ୟୟାଚ୍ଚଗମସିଦ୍ଧିରିତି । ତସ୍ମାଦନୁପପନ୍ନାଃ ସାଂଖ୍ୟଯୋଗବା-ଦିନାମୀଶ୍ୱରକଳ୍ପନା । ଏବମନ୍ୟାସ୍ୱପି ବେଦବାହ୍ୟସ୍ୱୀଶ୍ୱରକଳ୍ପନାସୁ ଯଥାସମ୍ଭବ ମସାମଞ୍ଜସ୍ୟଂ ଯୋଜୟିତବ୍ୟମ୍ ।

**(୨) ଭାଷାଂତର**-(କ) ପୁନଶ୍ଚ ଅସମାଞ୍ଜସ୍ୟ ହୁଏ । କାରଣ-ପ୍ରଧାନ ଓ ପୁରୁଷଭିନ୍ନ ଈଶ୍ୱର ସମ୍ବନ୍ଧ ବିନା ପ୍ରଧାନ ଓ ପୁରୁଷର ଈଶିତା ନାହିଁ । ସେମାନଙ୍କର ସଂଯୋଗରୂପ ସମ୍ବନ୍ଧ ହୋଇପାରେ ନାହିଁ । କାରଣ-ଆଶ୍ରୟାଶ୍ରୟିଭାବର ନିରୂପଣ ନୁହେଁ । ସେହିପରି କାର୍ଯ୍ୟଗମ୍ୟ ଅନ୍ୟ କୌଣସି ସମ୍ବନ୍ଧ ସ୍ୱୀକାର କରାଯାଏ ନାହିଁ । କାରଣ-ବର୍ତ୍ତମାନ ପର୍ଯ୍ୟନ୍ତ କାର୍ଯ୍ୟ-କାରଣଭାବ ଅସିଦ୍ଧ ହୁଏ । ଯଦି କହ ଯେ- ବ୍ରହ୍ମବାଦୀର ମତରେ କିପରି ହୁଏ ? ତେବେ ତାହା ଠିକ୍ ନୁହେଁ, କାରଣ-ତାହାର ମତରେ ତାଦାତ୍ମ୍ୟରୂପ ସଂବନ୍ଧ ଉପପନ୍ନ ହୁଏ । ବ୍ରହ୍ମବାଦୀ କିନ୍ତୁ ଆଗମବଳରେ କାରଣ ପ୍ରଭୃତିର ସ୍ୱରୂପ ନିରୂପଣ କରନ୍ତି । ତେଣୁ ସେମାନଙ୍କ ପାଇଁ ଏହି ନିୟମ ନାହିଁ । ଯଥାସମ୍ଭବ ସେ ସବୁକୁ ସ୍ୱୀକାର କରିବା ଉଚିତ୍ ।

(ଖ) ଦୃଷ୍ଟାନ୍ତବଳରେ କାରଣ ପ୍ରଭୃତିର ସ୍ୱରୂପ ନିରୂପଣ କରି ପୂର୍ବପକ୍ଷକୁ ଯଥାଦୃଷ୍ଟ ସବୁ ସ୍ୱୀକାର କରିବା ଉଚିତ୍ । ଏହା ବିଶେଷ ଅଟେ । ଯଦି କହ ଯେ- ପ୍ରତି ପକ୍ଷକୁ ସର୍ବଜ୍ଞ ପ୍ରଣୀତ ଆଗମର ସଦ୍‌ଭାବରୁ ଆଗମବଳ ସମାନ ଅଟେ, ଏହା କିନ୍ତୁ ଠିକ୍

ନୁହେଁ, କାରଣ-ଆଗମଜ୍ଞାନରୁ ସର୍ବଜ୍ଞତ୍ୱସିଦ୍ଧି ଓ ସର୍ବଜ୍ଞତ୍ୱ ଜ୍ଞାନଦ୍ୱାରା ଆଗମସିଦ୍ଧି ଏହି ପ୍ରକାର ଅନ୍ୟୋନ୍ୟଶ୍ରୟ ପ୍ରସଙ୍ଗ ହେବ । ତେଣୁ ସାଂଖ୍ୟଯୋଗବାଦୀର ଈଶ୍ୱର କଳ୍ପନା ଠିକ୍ ନୁହେଁ । ଏହିପରି ବେଦ ବାହ୍ୟ ଅନ୍ୟ ଈଶ୍ୱର କଳ୍ପନାରେ ଯଥାସମ୍ଭବ ଅସାମଞ୍ଜସ୍ୟର ଯୋଜନା କରିବା ଉଚିତ୍ ।

**अधिष्ठानानुपपत्तेश्च ॥ ३६ ॥**

**୧-ଅଧିଷ୍ଠାନାନୁପପତ୍ତେଶ୍ଚ ॥୨-୨-୩୯ ॥**

ଈଶ୍ୱର ରୂପାଦିହୀନ ପ୍ରଧାନର ପ୍ରେରକ ନ ହେଲେ **ନିମିତ୍**କାରଣ ହୁଏ ନାହିଁ ।

(୨) ମୂଳ- ଇତଶ୍ଚାନୁପପତ୍ତିସ୍ତାର୍କିକ ପରିକଳ୍ପିତସ୍ୟେଶ୍ୱରସ୍ୟ । ସ ହି ପରିକଳ୍ପ୍ୟମାନଃ କୁଂଭକାର ଇବ ମୃଦାଦୀନିପ୍ରଧାନାଦୀନ୍ୟଧିଷ୍ଠାୟ ପ୍ରବର୍ତ୍ତୟେତ୍ । ନ ଚୈବମୁପପଦ୍ୟତେ । ନହ୍ୟପ୍ରତ୍ୟକ୍ଷଂ ରୂପାଦିହୀନଞ୍ଚ ପ୍ରଧାନମୀଶ୍ୱରସ୍ୟାଧିଷ୍ଠେୟଂ ସଂଭବତି ମୃଦାଦି ବୈଲକ୍ଷଣ୍ୟାତ୍ ।

**(୨) ଭାଷାଂତର-** ତେଣୁ ତାର୍କିକ ପରିକଳ୍ପିତ ଈଶ୍ୱର ଅନୁପପତ୍ତି ହୁଏ । ଯେପରି କୁମ୍ଭାର ମୃତ୍ତିକା ପ୍ରଭୃତିକୁ ଅଧିଷ୍ଠିତ କରି ପ୍ରବୃତ୍ତ କରେ, ସେପରି ସେ ପରିକଳ୍ପିତ ହୋଇ ପ୍ରଧାନାଦିକୁ ଅଧିଷ୍ଠିତ କରି ପ୍ରବୃତ୍ତ କରିବ । ପରନ୍ତୁ ସେହିପରି ଉପପନ୍ନ ହୁଏ ନାହିଁ । କାରଣ-ଅପ୍ରତ୍ୟକ୍ଷ ଓ ରୂପାଦିହୀନ ପ୍ରଧାନ ଈଶ୍ୱରର ଅଧିଷ୍ଠେୟ ହୁଏ ନାହିଁ । କାରଣ-ସେ ମୃତ୍ତିକା ପ୍ରଭୃତିର ବିଲକ୍ଷଣ ଅଟେ ।

**करणवच्चेन्न भोगादिभ्यः ॥ ४० ॥**

**୧-କରଣବଚ୍ଚେନ୍ନ ଭୋଗାଦିଭ୍ୟଃ ॥୨-୨-୪୦॥**

କରଣବତ୍-ଅପ୍ରତ୍ୟକ୍ଷ ହେଲେ ଯେପରି ଇନ୍ଦ୍ରିୟଗୁଡ଼ିକ ଜୀବଦ୍ୱାରା ପ୍ରେରିତ ହୁଅନ୍ତି, ସେହିପରି ଅପ୍ରତ୍ୟକ୍ଷ ପ୍ରଧାନ ଈଶ୍ୱରଦ୍ୱାରା ପ୍ରେରିତ ହୁଅନ୍ତି । ଚେନ୍ନ-ଏହା କିନ୍ତୁ ଠିକ୍ ନୁହେଁ । ଭୋଗାଦିଭିଃ-କାରଣ-ଏହିପରି ସ୍ୱୀକାର କଲେ ଜୀବରପି ଈଶ୍ୱରଠାରେ ଭୋଗାଦି ପ୍ରସକ୍ତ ହେବ ।

(୨) ମୂଳ-(କ) ସ୍ୟାଦେତତ୍ । ଯଥା କରଣଗ୍ରାମଂ ଚକ୍ଷୁରାଦିକମପ୍ରତ୍ୟକ୍ଷଂ ରୂପାଦିହୀନଂ ଚ ପୁରୁଷୋଽଧିତିଷ୍ଠତ୍ୟେବଂ ପ୍ରଧାନମପୀଶ୍ୱରୋଽଧିଷ୍ଠାସ୍ୟତୀତି । ତଥାପି ନୋପପଦ୍ୟତେ । ଭେଗାଦିଦର୍ଶନାଦ୍ଧି କରଣଗ୍ରାମସାଧିଷ୍ଠିତତ୍ୱଂ ଗମ୍ୟତେ । ନଚାତ୍ର ଭୋଗାଦୟୋ ଦୃଶ୍ୟନ୍ତେ । କରଣଗ୍ରାମସାମ୍ୟେ ବାଭ୍ୟୁପଗମ୍ୟମାନେ ସଂସାରିଣା-ମିବେଶ୍ୱରସ୍ୟାପି ଭୋଗାଦୟଃ ପ୍ରସଜ୍ୟେରନ୍ ।



(ଖ) ଅନ୍ୟଥା ବା ସୂତ୍ରଦ୍ୱୟଂ ବ୍ୟାଖ୍ୟାୟତେ- 'ଅଧିଷ୍ଠାନାନୁପପତ୍ତେଶ୍ଚ' ଇତଶ୍ଚାନୁପପତ୍ତି ସ୍ତାର୍କିକପରିକଳ୍ପିତସ୍ୟେଶ୍ୱରସ୍ୟ । ସାଧିଷ୍ଠାନୋ ହି ଲୋକେ ସଶରୀରୋ ରାଜା ରାଷ୍ଟ୍ରସ୍ୟେଶ୍ୱରଃ ଦୃଶ୍ୟତେ ନ ନିରଧିଷ୍ଠାନଃ । ଅତଶ୍ଚ ତଦ୍ଦୃଷ୍ଟାନ୍ତବଶେନାଦୃଷ୍ଟମୀଶ୍ୱରଂ କଳ୍ପୟିତୁମିଚ୍ଛତଃ ଈଶ୍ୱରସ୍ୟାପି କିଞ୍ଚିଚ୍ଛରୀରଂ କରଣାୟତନଂ ବର୍ଣ୍ଣୟିତବ୍ୟଂ ସ୍ୟାତ୍ । ନଚ ତଦ୍ ବର୍ଣ୍ଣୟିତୁଂ ଶକ୍ୟତେ । ସୃଷ୍ଟ୍ୟୁତ୍ତରକାଲଭାବିତ୍ୱାତ୍ ଶରୀରସ୍ୟ ପ୍ରାକ୍ସୃଷ୍ଟେସ୍ତଦନୁପପତ୍ତେଃ ।

(ଗ) ନିରଧିଷ୍ଠାନତ୍ୱେ ଚେଶ୍ୱରସ୍ୟ ପ୍ରବର୍ତ୍ତକତ୍ୱାନୁପପତ୍ତିଃ । ଏବଂ ଲୋକେ ଦୃଷ୍ଟତ୍ୱାତ୍ । 'କରଣବଚ୍ଚେନ୍ନ ଭୋଗାଦିଭ୍ୟଃ' । ଅଥ ଲୋକଦର୍ଶନାନୁସାରେଣେଶ୍ୱରସ୍ୟାପି କିଞ୍ଚିତ୍ କରଣାନାମାୟତନଂ ଶରୀରଂ କାମେନ କଳ୍ପ୍ୟେତ । ଏବମପି ନୋପପଦ୍ୟତେ । ସଶରୀରତ୍ୱେ ହି ସତି ସଂସାରିବଦ୍ ଭୋଗାଦିପ୍ରସଙ୍ଗାଦୀଶ୍ୱରସ୍ୟାପ୍ୟନୀଶ୍ୱରତ୍ୱଂ ପ୍ରସଜ୍ୟେତ ।

(୨) ଭାଷାଂତାର- (କ) ଏହା ହୋଇପାରେ, କିନ୍ତୁ ଯେପରି ଅପ୍ରତ୍ୟକ୍ଷ, ରୂପାଦି ରହିତ (ଉଦ୍‌ଭୂତରୂପାଦି ରହିତ) ନେତ୍ରାଦି କରଣ ସମୁଦାୟକୁ ପୁରୁଷ ଅଧିଷ୍ଠିତ କରେ, ସେପରି ଈଶ୍ୱର ପ୍ରଧାନକୁ ଅଧିଷ୍ଠିତ କରିବ ସେପରି ମଧ୍ୟ ଉପପନ୍ନ ହୁଏ ନାହିଁ । କାରଣ-ଭୋଦିର ଦର୍ଶନରୁ କରଣ ସମୁଦାୟର ଅଧିଷ୍ଠିତତ୍ୱ ଅବଗତ ହୁଏ । ପରନ୍ତୁ ଏଠାରେ (ଈଶ୍ୱରଠାରେ) ଭୋଗାଦି ଦେଖାଯାଏ ନାହିଁ । ଇନ୍ଦ୍ରିୟ ସମୁଦାୟର ସହ ପ୍ରଧାନର ସାମ୍ୟ ସ୍ୱୀକାର କଲାପରେ ସଂସାରୀପରି ଈଶ୍ୱରକୁ ଭୋଗପ୍ରଭୃତି ପ୍ରସକ୍ତ ହେବ ।

(ଖ) ଅଥବା ଏହି ଦୁଇଟି ସୂତ୍ରର ଅନ୍ୟରୀତିରେ ବ୍ୟାଖ୍ୟାନ କରାଯାଇଅଛି- 'ଅଧିଷ୍ଠାନାନୁପପତ୍ତେଶ୍ଚ' ଏହାଦ୍ୱାରା ତାର୍କିକପରିକଳ୍ପିତ ଈଶ୍ୱର ଅନୁପପତ୍ତି ହୁଏ । କାରଣ-ସଂସାରରେ ଅଧିଷ୍ଠାନ ସହିତ ସଶରୀର ରାଜା ରାଷ୍ଟ୍ରର ଈଶ୍ୱରରୂପେ ଦେଖାଯାଏ । କିନ୍ତୁ ଅଧିଷ୍ଠାନ ରହିତ ନୁହେଁ । ତେଣୁ ସେହି ଦୃଷ୍ଟାନ୍ତ ବଳରେ ଅଦୃଷ୍ଟ ଈଶ୍ୱରକୁ କଳ୍ପନା କରୁଥିବାକୁ ଇଚ୍ଛା କରୁଥିବା ଈଶ୍ୱର ଇନ୍ଦ୍ରିୟଗୁଡ଼ିକର ଆୟତନ କୌଣସି ଶରୀର ବର୍ଣ୍ଣନା ଯୋଗ୍ୟ ହେବ ।

(ଗ) ପରନ୍ତୁ ଏହାର ବର୍ଣ୍ଣନା କରାଯାଇନାହିଁ । କାରଣ-ଶରୀର ସୃଷ୍ଟିର ଉତ୍ତର କାଳଭାବୀ ଅଟେ । ସୃଷ୍ଟିର ପୂର୍ବରୁ ତାହାର ଅନୁପପତ୍ତି ହୁଏ ।

(ଘ) ନିରଧିଷ୍ଠାନ ହେଲେ ଈଶ୍ୱର ପ୍ରବର୍ତ୍ତକ ହୁଏ ନାହିଁ । କାରଣ-ସଂସାରରେ ସେପରି ଦେଖାଯାଏ । 'କରଣବଚ୍ଚେନ୍ନ ଭୋଗାଦିଭ୍ୟଃ' ଯଦି ଲୋକ୍ ଦର୍ଶନାନୁସାରେ ଈଶ୍ୱରର ଇନ୍ଦ୍ରିୟଗୁଡ଼ିକର ଆଶ୍ରୟ କୌଣସି ଶରୀର ନିଜ ଇଚ୍ଛାରେ କଳ୍ପନା କର । ତେବେ ଏହିପ୍ରକାର ଉପପନ୍ନ ହୁଏ ନାହିଁ । କାରଣ-ସଶରୀର ହେଲେ ସଂସାରୀସଦୃଶ ଭୋଗପ୍ରସଙ୍ଗ ହେବାର ଈଶ୍ୱରରୂପରେ ଅନୀଶ୍ୱରତ୍ୱ ପ୍ରସକ୍ତ ହେବ ।

## अन्तवत्त्वमसर्वज्ञाता वा ॥ ४१ ॥

## ୧- ଅନ୍ତବତ୍ତ୍ୱମସର୍ବଜ୍ଞତା ବା ॥ ୨-୨-୪୧ ॥

ପ୍ରଧାନ, ଜୀବ ଓ ନିଜର ସଂଖ୍ୟା, ବା-ଅଥବା ପରିମାଣରେ ନିଶ୍ଚିତ ଭାବେ ଈଶ୍ୱର କରେ କି ନୁହେଁ । ପ୍ରଥମ ପକ୍ଷରେ ଅନ୍ତବତ୍ତ୍ୱମ୍-ପରିଚ୍ଛିନ୍ନ ସଂଖ୍ୟା ଓ ପରିଚ୍ଛିନ୍ନ ପରିମାଣ ହେଲେ ତିନୋଟି ଘଟ ସଦୃଶ ବିନାଶ ହେବେ । ଦ୍ୱିତୀୟ ପକ୍ଷରେ 'ଅସର୍ବଜ୍ଞତା' ଈଶ୍ୱରଠାରେ ଅସର୍ବଜ୍ଞତ୍ୱ ସିଦ୍ଧ ହେବ । ତେଣୁ ମାହେଶ୍ୱର ସିଦ୍ଧାନ୍ତ ଭ୍ରାନ୍ତିମୂଳକ ଅଟେ ।

(୨) ମୂଳ (କ)- ଇତଶ୍ଚାନୁପପତ୍ତିସ୍ତାର୍କିକପରିକଳ୍ପିତସ୍ୟେଶ୍ୱରସ୍ୟ । ସ ହି ସର୍ବଜ୍ଞସ୍ତୈରଭ୍ୟୁପଗମ୍ୟତେଽନନ୍ତଶ୍ଚ । ଅନନ୍ତଂ ଚ ପ୍ରଧାନମନନ୍ତାଶ୍ଚ ପୁରୁଷା ମିଥୋ ଭିନ୍ନା ଅଭ୍ୟୁପଗମ୍ୟନ୍ତେ । ତତ୍ର ସର୍ବଜ୍ଞେନେଶ୍ୱରେଣ ପ୍ରଧାନସ୍ୟ ପୁରୁଷାଣାମାତ୍ମନଶ୍ଚେୟତ୍ତା ପରିଚ୍ଛିଦ୍ୟେତ ବା ନ ବା ପରିଚ୍ଛିଦ୍ୟେତ । ଉଭୟଥାପି ଦୋଷୋଽନୁଷକ୍ତ ଏବ । କଥମ୍ । ପୂର୍ବସ୍ମିନ୍ ତାବଦ୍‌ବିକଳ୍ପ ଇୟତ୍ତାପରିଚ୍ଛିନ୍ନତ୍ୱାତ୍ ପ୍ରଧାନ ପୁରୁଷେଶ୍ୱରାଣାମନ୍ତବତ୍ତ୍ୱମବଶ୍ୟଭାବୋବଂ ଲୋକେ ଦୃଷ୍ଟତ୍ୱାତ୍ । ଯଦ୍ଧି ଲୋକ ଇୟତ୍ତାପରିଚ୍ଛିନ୍ନଂ ବସ୍ତୁ ଘଟାଦି ତଦନ୍ତବଦ୍ଦୃଷ୍ଟଂ ତଥା ପ୍ରଧାନପୁରୁଷେଶ୍ୱର-ତ୍ରୟମପୀୟତ୍ତାପରିଚ୍ଛିନ୍ନତ୍ୱାଦନ୍ତବତ୍ ସ୍ୟାତ୍ ।

(ଖ) ସାଂଖ୍ୟ ପରିମାଣଂ ତାବତ୍ ପ୍ରଧାନପୁରୁଷେଶ୍ୱରତ୍ରୟରୂପେଣଃ ପରିଚ୍ଛିନ୍ନମ୍ । ସ୍ୱରୂପପରିମାଣମପି ତଦ୍‌ଗତମୀଶ୍ୱରେଣ ପରିଚ୍ଛିଦ୍ୟେତେତି । ପୁରୁଷଗତା ଚ ମହାସଂଖ୍ୟା । ତତଶ୍ଚେୟତ୍ତାପରିଛିନ୍ନାନାଂ ମଧ୍ୟେ ଚ ସଂସାରିଣଃ ସଂସାରାନମୁଚ୍ୟନ୍ତେ ତେଷାଂ ସଂସାରୋଽନ୍ତବାନ୍ ସଂସାରିତ୍ୱଂ ଚ ତେଷାମନ୍ତବତ୍ । ଏବମିତରେଷ୍ୱପି କ୍ରମେଣ ମୁଚ୍ୟମାନେଷୁ ସଂସାରସ୍ୟ ସଂସାରିଣାଂ ଚାନ୍ତବତ୍ତ୍ୱଂ ସ୍ୟାତ୍ ।

(ଗ) ପ୍ରଧାନଂ ଚ ସବିକାରଂ ପୁରୁଷାର୍ଥମୀଶ୍ୱରସ୍ୟାଧିଷ୍ଠେୟଂ ସଂସାରିତ୍ୱେ ନାଭିମତଂ ତଚ୍ଛୂନ୍ୟତାୟାମୀଶ୍ୱରଃ କିମଧିତିଷ୍ଠେତ୍ । କିଂବଷୟେ ବା ସର୍ବଜ୍ଞତେଶ୍ୱରତେ ସ୍ୟାତାମ୍ । ପ୍ରଧାନପୁରୁଷେଶ୍ୱରାଣାଂ ଚୈବମନ୍ତବତ୍ତ୍ୱେ ସତ୍ୟାଦିମତ୍ତ୍ୱପ୍ରସଙ୍ଗଃ । ଆଦ୍ୟନ୍ତବତ୍ତ୍ୱେ ଚ ଶୂନ୍ୟବାଦପ୍ରସଙ୍ଗଃ । ଅଥ ମା ଭୂଦେଷ ଦୋଷ ଇତ୍ୟୁତ୍ତରୋ ବିକଳ୍ପୋଽଭ୍ୟୁପଗମ୍ୟେତ ନ ପ୍ରଧାନସ୍ୟ ପୁରୁଷାଣାମାତ୍ମନଶ୍ଚେୟତ୍ତେଶ୍ୱରେଣ ପରିଚ୍ଛିଦ୍ୟତ ଇତ, ତତ୍ ଈଶ୍ୱରସ୍ୟ ସର୍ବଜ୍ଞତ୍ୱାଭ୍ୟୁପଗମହାନିରପରୋ ଦୋଷଃ ପ୍ରସଜ୍ୟେତ । ତସ୍ମାଦପ୍ୟସଂଗତସ୍ତାର୍କିକପରିଗୃହୀତ ଈଶ୍ୱରକାରଣବାଦଃ ।

**(୨) ଭାଷାଂତର-** (କ) ତେଣୁ ତାର୍କିକ ପରିକଳ୍ପିତ ଈଶ୍ୱର ଅନୁପପତ୍ତି ହୁଏ । କାରଣ- ସେହି ଈଶ୍ୱର ସର୍ବଜ୍ଞ ଓ ଅନନ୍ତ ଅଟେ । ଏହା ସେମାନେ ସ୍ୱୀକାର କରନ୍ତି । ପ୍ରଧାନ ଅନନ୍ତ ଅଟେ, ପୁରୁଷ ମଧ୍ୟ ଅନନ୍ତ ଓ ଏହିବୁହେଁ ପରସ୍ପର ଭିନ୍ନ ଅଟନ୍ତି ବୋଲି



ସେମାନେ ସ୍ୱୀକାର କରନ୍ତି । ସେଠାରେ ଈଶ୍ୱରଠାରୁ ପ୍ରଧାନ, ପୁରୁଷ ଏବଂ ନିଜର ଇୟତା (ସଂଖ୍ୟା ଅଥବା ପରିମାଣ) ଜଣାଯାଏ ଅଥବା ଜଣାଯାଏ ନୁହେଁ କି ? ଦୁଇ ପ୍ରକାରରେ ଦୋଷପ୍ରସଙ୍ଗ ହୁଏ କାହିଁକି ? ପୂର୍ବ ବିକଳ୍ପରେ ଇୟତା ପରିଚ୍ଛିନ୍ନ ହେଲେ ପ୍ରଧାନ, ପୁରୁଷ ଓ ଈଶ୍ୱରର ଅନ୍ତବତ୍ୱ ଅବଶ୍ୟମ୍ଭାବୀ ହୁଏ । କାରଣ-ବ୍ୟବହାରରେ ଏହା ଦେଖାଯାଏ । ସଂସାରରେ ଇୟତ୍ତା ପରିଚ୍ଛିନ୍ନ ଘଟାଦିବସ୍ତୁ ଅଟେ । ସେ ଅନ୍ତବାନ ଦେଖାଯାଏ । ସେହିପରି ପ୍ରଧାନ, ପୁରୁଷ ଓ ଈଶ୍ୱର-ଏହି ତିନୋଟି ଇୟତ୍ତା ପରିଚ୍ଛିନ୍ନ ହେଲେ ଅନ୍ତବାନ୍ ହେବେ ।

(ଖ) ସଂଖ୍ୟା ପରିମାଣ କିନ୍ତୁ ପ୍ରଧାନ, ପୁରୁଷ ଓ ଈଶ୍ୱରତ୍ରୟରୂପରେ ପରିଚ୍ଛିନ୍ନ ହୁଏ । ସେଠାରେ ସ୍ଥିତ ସ୍ୱରୂପପରିମାଣ ଈଶ୍ୱରଦ୍ୱାରା ଜଣାଯାଏ । ପୁରୁଷଗତ ମହାସଂଖ୍ୟା ଅଟେ । ତେଣୁ ଇୟତ୍ତାପରିଚ୍ଛିନ୍ନର ମଧ୍ୟରେ ଯେଉଁ ସଂସାରୀ ସଂସାରରୁ ମୁକ୍ତ ହୋଇଯାଏ, ସେମାନଙ୍କର ସଂସାର ଅନ୍ତବାନ୍ ଓ ସେମାନଙ୍କର ସଂସାରିତ୍ୱ ଅନ୍ତବାନ ହେବ । ଏହି ପ୍ରକାର କ୍ରମରେ ଅନ୍ୟଟି ମୁକ୍ତ ହେଲାପରେ ସଂସାର ସଂସାରୀର ଅନ୍ତବତ୍ୱ ହେବ ।

(ଗ) ବିକାର ସହିତ ପ୍ରଧାନ ପୁରୁଷର ଭୋଗ ଓ ମୋକ୍ଷ ପାଇଁ ଈଶ୍ୱର ଅଧିଷ୍ଠେୟ ହୁଏ ତଥା ସଂସାର ରୂପରେ ଅଭିପ୍ରେତ ହୁଏ । ତାହାର ଶୂନ୍ୟ ହେଲାପରେ ଈଶ୍ୱର କାହାକୁ ଅଧିଷ୍ଠିତ କରିବ ଅଥବା କେଉଁ ବିଷୟରେ ସର୍ବଜ୍ଞତ୍ୱ ଓ ଈଶ୍ୱରତ୍ୱ ହେବ ? ପ୍ରଧାନ, ପୁରୁଷ ଓ ଈଶ୍ୱରର ଏହିପ୍ରକାର ଅନ୍ତବତ୍ୱ ହେଲେ ଆଦିମାନ୍ ହେବାର ପ୍ରସଙ୍ଗ ହେବ ଏବଂ ଆଦି ଓ ଅନ୍ତବାନ ହେଲେ ଶୂନ୍ୟବାଦ ପ୍ରସଙ୍ଗ ହେବ । ଏହା ଦୋଷ ନ ହୋଇପାରେ । ତେଣୁ ଯଦି ପ୍ରଧାନ, ପୁରୁଷ ଓ ନିଜର ଇୟତ୍ତା ଈଶ୍ୱରଦ୍ୱାରା ଅବଗତ ହୁଏ ନାହିଁ, ଏହି ଦ୍ୱିତୀୟ ବିକଳ୍ପକୁ ସ୍ୱୀକାର କରାଯାଏ । ତେବେ ଈଶ୍ୱରର ସର୍ବଜ୍ଞତ୍ୱ ସ୍ୱୀକାର ତ୍ୟାଗ ଅନ୍ୟ ପ୍ରସକ୍ତ ହେବ । ତେଣୁ ତାର୍କିକ ପରିଗୃହୀତ ଈଶ୍ୱର କାରଣବାଦ ଅସଙ୍ଗତ ।

## ८ उत्पत्त्यसंभवाधिकरणम् । सू० ४२-४५

## ଉତ୍ପତ୍ତ୍ୟସମ୍ଭବାଧିକରଣ-୮

### उत्पत्त्यसंभवात् ॥ ४२ ॥

### ଉତ୍ପତ୍ତ୍ୟସମ୍ଭବାତ୍ ॥୨-୨-୪୨॥

ବାସୁଦେବ ଦ୍ୱାରା ଜୀବର ଉତ୍ପତ୍ତି ସମ୍ଭବ ନହେଲେ ଭାଗବତ ମତ ଅସଂଗତ ହୁଏ ।

(୨) ମୂଳ-(କ) ଯେଷାମପ୍ରକୃତିରଧିଷ୍ଠାତା କେବଳନିମିତ୍ତକାରଣମୀଶ୍ୱରୋଽଭିମତସ୍ତେଷାଂ ପକ୍ଷଃ ପ୍ରତ୍ୟାଖ୍ୟାତଃ । ଯେଷାଂ ପୁନଃ ପ୍ରକୃତିଶ୍ଚାଧିଷ୍ଠାତା ଚୋଭୟାତ୍ମକଂ

କାରଣମୀଶ୍ୱରୋଽଭିମତସ୍ତେଷାଂ ପକ୍ଷଃ ପ୍ରତ୍ୟାଖ୍ୟାୟତେ । ନନୁଶ୍ରୁତିସମାଶ୍ରୟଣେନାପ୍ୟେବଂରୂପ ଏବେଶ୍ୱରଃ ପ୍ରାଙ୍‌ନିର୍ଦ୍ଧାରିତଃ ପ୍ରକୃତିଶ୍ଚାଧିଷ୍ଠାତା ଚେତି । ଶ୍ରୁତ୍ୟନୁସାରିଣୀ ଚ ସ୍ମୃତିଃ ପ୍ରମାଣମିତି ସ୍ଥିତିଃ । ତତ୍‌କସ୍ୟ ହେତୋରେଷ ପକ୍ଷଃ ପ୍ରତ୍ୟାଚିଖ୍ୟାସିତ ଇତି ।

(ଖ) ଉଚ୍ୟତେ-ଯଦ୍ୟପ୍ୟେଏବଂ ଜାତୀୟକୋଂଽଶଃ ସମାନତ୍ୱାନ୍ନ ବିସମ୍ବାଦଗୋଚରୋ ଭବତ୍ୟସ୍ତିତ୍ୱଂଶାନ୍ତରଂ ବିସମ୍ବାଦସ୍ଥାନମିତ୍ୟତସ୍ତତ୍ ପ୍ରତ୍ୟାଖ୍ୟାନାୟାରମ୍ଭଃ । ତତ୍ର ଭାଗବତା ମନ୍ୟନ୍ତେ । ଭଗବାନୈବୈକୋ ବାସୁଦେବୋ ନିରଂଜନଜ୍ଞାନ ସ୍ୱରୂପଃ ପରମାର୍ଥତତ୍ତ୍ୱଂ ସ ଚତୁର୍ଧାତ୍ମନଂ ପ୍ରବିଭଜ୍ୟ ପ୍ରତିଷ୍ଠିତୋ ବାସୁଦେବବ୍ୟୂହରୂପେଣ ସଂକର୍ଷଣବ୍ୟୂହରୂପେଣ ପ୍ରଦ୍ୟୁମ୍ନବ୍ୟହରୂପେଣାନିରୁଦ୍ଧବ୍ୟୂହରୂପେଣ ଚ । ବାସୁଦେବୋ ନାମ ପରମାତ୍ମୋଚ୍ୟତେ । ସଙ୍କର୍ଷଣୋ ନାମ ଜୀବଃ । ପ୍ରଦ୍ୟୁମ୍ନୋ ନାମ ମନଃ । ଅନିରୁଦ୍ଧୋ ନାମାହଂକାରଃ । ତେଷାଂ ବାସୁଦେବଃ ପରା ପ୍ରକୃତିରିତରେ ସଙ୍କର୍ଷଣାଦୟଃ କାର୍ଯ୍ୟମ୍ । ତମିତ୍‌ଥଂଭୂତଂ ପରମେଶ୍ୱରଂ ଭଗବନ୍ତମଭିଗମନୋପାଦାନେଜ୍ୟାସ୍ୱାଧ୍ୟାୟଯୋଗୈର୍ବର୍ଷଶତମିଷ୍ଟ୍ୱ । କ୍ଷୀଣକ୍ଲେଶୋ ଭଗବନ୍ତମେବ ପ୍ରତିପଦ୍ୟତ ଇତି ।

(ଗ) ଯତ୍ର ଯତ୍ତା ବନ୍ଧୁଚ୍ୟେତ ଯୋଽସୌ ନାରାୟଣଃ ପରୋଽବ୍ୟକ୍ତାତ୍ ପ୍ରସିଦ୍ଧଃ ପରମାତ୍ମା ସର୍ବାତ୍ମା ସ ଆତ୍ମନାତ୍ମାନମନେକଧା ବ୍ୟୂହ୍ୟାବସ୍ଥିତ ଇତି ତନ୍ନ ନିରାକ୍ରିୟତେ, 'ସ ଏକଧା ଭବତି ତ୍ରିଧାଭବତି' (ଛା ୭-୨୬-୨) ଇତ୍ୟାଦିଶ୍ରୁତିଭ୍ୟଃ ପରମାତ୍ମନୋଽନେକାଭାବସ୍ୟାଧିଗତତ୍ୱାତ୍ । ଯଦପି ତସ୍ୟ ଭଗବତୋଽଭିଗମନାଦିଲକ୍ଷଣମାରାଧନମଜସ୍ର ମନନ୍ୟଚିତ୍ତତୟାଭିପ୍ରେୟତ, ତଦପି ନ ପ୍ରତିଷିଧ୍ୟତେ । ଶ୍ରୁତିସ୍ମୃତ୍ୟୋରୀଶ୍ୱରପ୍ରଣିଧାନସ୍ୟ ପ୍ରସିଦ୍ଧତ୍ୱାତ୍ । ଯତ୍ ପୁନରିଦମୁଚ୍ୟତେ ବାସୁଦେବାତ୍‌ସଙ୍କର୍ଷଣ ଉତ୍ପଦ୍ୟତେ ସଙ୍କର୍ଷଣାଚ୍ଚ ପ୍ରଦ୍ୟୁମ୍ନଃ ପ୍ରଦ୍ୟୁମ୍ନାଚ୍ଚାନିରୁଦ୍ଧ ଇତି ।

(ଘ) ଅତ୍ର ବ୍ରୁମଃ ନ ବାସୁଦେବସଂଜ୍ଞକାତ୍ ପରମାତ୍ମନଃ ସଙ୍କର୍ଷଣସଂଜ୍ଞକସ୍ୟ ଜୀବସ୍ୟୋତ୍ପତ୍ତିଃ ସମ୍ଭବତି । ଅନିତ୍ୟତ୍ୱାଦିଦୋଷପ୍ରସଙ୍ଗାତ୍ । ଉତ୍ପତ୍ତିମତ୍ତ୍ୱେ ହି ଜୀବସ୍ୟାନିତ୍ୟତ୍ୱାଦୟୋ ଦୋଷାଃ ପ୍ରସଜ୍ୟେରନ୍ । ତତଶ୍ଚ ନୈବାସ୍ୟ ଭଗବତପ୍ରାପ୍ତି ମୋକ୍ଷସ୍ୟାତ୍ । କାରଣପ୍ରାପ୍ତୌ କାର୍ଯ୍ୟସ୍ୟ ପ୍ରବିଲୟପ୍ରସଙ୍ଗାତ୍ । ପ୍ରତିଷେଧିଷ୍ୟତ ଚାର୍ଯ୍ୟୋ ଜୀବସ୍ୟୋତ୍ପତ୍ତିମ୍- 'ନାତ୍ମାଽଶ୍ରୁତେର୍ନିତ୍ୟତ୍ୱାଚ୍ଚ ତାଭ୍ୟଃ । (ବ୍ର-ସୂ ୨-୩-୧୭) ଇତି । ତସ୍ମାଦସଂଗତେ ଷା କଲ୍‌ପନା ।

(୨) ଭାଷାଂତର- (କ) ଯାହାକୁ ଈଶ୍ୱର ଅପ୍ରକୃତ ବା ଅନୁପାଦାନ, ଅଧିଷ୍ଠାତା କେବଳ ନିମିତ୍ତ କାରଣରୂପରୁ ଅଭିମତ ହୁଏ, ସେମାନଙ୍କର ପକ୍ଷକୁ ନିରାକରଣ କରାଯାଇଅଛି । ପରନ୍ତୁ ଯାହାକୁ ପ୍ରକୃତି ଏବଂ ଅଧିଷ୍ଠାତା-ଏହି ଦୁଇପ୍ରକାର କାରଣେ ରୂପରେ ଈଶ୍ୱର ଅଭିମତ ହୁଏ, ବର୍ତ୍ତମାନ ସେହିପକ୍ଷର ନିରାକରଣ କରାଯାଉଅଛି । ପରନ୍ତୁ ଶ୍ରୁତିର



ଆଶ୍ରୟରୁ ଏହିପ୍ରକାରର ଈଶ୍ୱର ପ୍ରକୃତି ଓ ଅଧିଷ୍ଠାତାରୂପରେ ପୂର୍ବରୁ ନିର୍ଦ୍ଧାରଣ କରାଯାଇଛି । ଶ୍ରୁତିଅନୁସାରିଣୀ ସ୍ମୃତି ମଧ୍ୟ ପ୍ରମାଣ ଅଛି । ଏହା ସ୍ଥିତି ଅଟେ । କିନ୍ତୁ କେଉଁ ହେତୁରୁ ଏହିପକ୍ଷକୁ ନିରାକରଣ କରିବାକୁ ଇଚ୍ଛା ଅଛି ?

(ଖ) କୁହାଯାଇଛି- ଯଦ୍ୟପି ଏହି ପ୍ରକାରର ଅଂଶ ସମାନ ହେଲେ ବିସଂବାଦର ବିଷୟ ହୁଏ ନାହିଁ । ତଥାପି ଅନ୍ୟ ଅଂଶ ବିସଂବାଦ ସ୍ଥାନ ହୁଏ । ତେଣୁ ତାହାର ନିରାକରଣ ପାଇଁ ଏହା ଆରମ୍ଭ ଅଟେ । ଏହି ବିଷୟରେ ଭାଗବତ ସ୍ୱୀକାର କରେ- କେବଳ ଏକ ଭଗବାନ୍ ବାସୁଦେବ ନିରଞ୍ଜନ, ଜ୍ଞାନସ୍ୱରୂପ, ପରମାର୍ଥତତ୍ତ୍ୱ ଅଟେ । ସେ ନିଜେ ଚାରିପ୍ରକାରରେ ବିଭକ୍ତ ହୋଇ ଯଥା- ବାସୁଦେବବ୍ୟୂହରୂପ, ସଙ୍କର୍ଷଣବ୍ୟୂହରୂପ, ପ୍ରଦ୍ୟୁମ୍ନବ୍ୟୂହରୂପ ଓ ଅନିରୁଦ୍ଧବ୍ୟୂହରୂପ ଏହି ରୂପରେ ପ୍ରତିଷ୍ଠିତ ହୁଅନ୍ତି । ବାସୁଦେବ ପରମାତ୍ମା କୁହାଯାଏ । ସଙ୍କର୍ଷଣ ଅର୍ଥାତ୍ ଜୀବ । ପ୍ରଦ୍ୟୁମ୍ନ ଅର୍ଥାତ୍ ମନ । ଅନିରୁଦ୍ଧ ଅର୍ଥ ଅହଙ୍କାର ଅଟେ । ସେଠାରେ ବାସୁଦେବ ପରାପ୍ରକୃତି ଅଟେ । ଅନ୍ୟ ସଙ୍କର୍ଷଣାଦି କାର୍ଯ୍ୟ ଅଟେ । ଏହି ପ୍ରକାର ସେହି ଭଗବାନ୍ ପରମେଶ୍ୱରର ଅଭିଗମନ, ଉପାଦାନ, ଇଜ୍ୟା, ସ୍ୱାଧ୍ୟାୟ ଓ ଯୋଗଦ୍ୱାରା ଶହେ ବର୍ଷ ପୂଜା କରି କ୍ଷୀଣକ୍ଲେଶ ହୋଇ ଜୀବ ଭଗବାନକୁ ପ୍ରାପ୍ତ ହୁଏ ।

(ଗ) ସେଠାରେ ଯାହା କୁହାଯାଇଛି ଯେ- ଯାହା ସେହି ନାରାୟଣ ଅବ୍ୟକ୍ତରୁ ପରପ୍ରସିଦ୍ଧ ପରମାତ୍ମା ସର୍ବାତ୍ମା ଅଟେ, ସେ ନିଜକୁ ନିଜେ ଅନେକ ପ୍ରକାରର ବ୍ୟୂହ ରଚନା କରି ରହେ, ତାହାର ନିରାକରଣ କରାଯାଇ ନାହିଁ । କାରଣ- 'ସ ଏକଧା ଭବତି' (ସେ ଏକରୂପ ହୁଏ, ତିନିରୂପ ହୁଏ) ଇତ୍ୟାଦି ଶ୍ରୁତିଦ୍ୱାରା ପରମାତ୍ମାର ଅନେକ ପ୍ରକାରଭାବ ଅଧିଗତ ହୁଏ । ଯିଏ ଭଗବାନଙ୍କୁ ସର୍ବଦା ଅନନ୍ୟ ଚିତ୍ତରେ ଅଭିଗମନାଦି ରୂପ ଆରାଧନ ଅଭିପ୍ରେତ ହୁଏ, ତାହାର ପ୍ରତିଷେଧ କରାଯାଏ ନାହିଁ । କାରଣ-ଶ୍ରୁତି ଓ ସ୍ମୃତିରେ ଈଶ୍ୱର ପ୍ରଣିଧାନ ପ୍ରସିଦ୍ଧ ଅଟେ । ପରନ୍ତୁ ଯାହା ପୁଣି କୁହାଯାଇଛି ଯେ- ବାସୁଦେବଠାରୁ ସଙ୍କର୍ଷଣ ଉତ୍ପନ୍ନ ହୁଏ । ସଙ୍କର୍ଷଣଠାରୁ ପ୍ରଦ୍ୟୁମ୍ନ ଓ ପ୍ରଦ୍ୟୁମ୍ନଠାରୁ ଅନିରୁଦ୍ଧ ଉତ୍ପନ୍ନ ହୁଅନ୍ତି ।

(ଘ) ଏହି ବିଷୟରେ ଆମ୍ଭେ କହୁଁ ଯେ- ବାସୁଦେବ ସଂଜ୍ଞକ ପରମାତ୍ମାଠାରୁ ସଙ୍କର୍ଷଣନାମକ ଜୀବର ଉତ୍ପତ୍ତି ସମ୍ଭବ ନୁହେଁ । କାରଣ- ଅନିତ୍ୟତ୍ୱାଦି ଦୋଷର ପ୍ରସଙ୍ଗ ହେବ । ଜୀବ ଉତ୍ପତ୍ତିମାନ ହେଲାପରେ ନିଶ୍ଚିତ ଭାବେ ଅନିତ୍ୱାଦି ଦୋଷ ପ୍ରସକ୍ତ ହେବ । ତେଣୁ ତାହାର ଭଗବତ ପ୍ରାପ୍ତି ରୂପ ମୋକ୍ଷ ହେବ ନାହିଁ । କାରଣ-କାରଣର ପରାପ୍ତିରେ କାର୍ଯ୍ୟର ପ୍ରବିଲୟ ପ୍ରସଙ୍ଗ ହେବ । 'ନାତ୍ମାଽଶ୍ରୁତେଃ' (ଆତ୍ମା ଉତ୍ପନ୍ନ ହୁଏ ନାହିଁ । କାରଣ- ଉତ୍ପତ୍ତିପ୍ରକରଣରେ ତାହାର ଉତ୍ପତ୍ତି ଶ୍ରୁତି ନାହିଁ । ପୁନଶ୍ଚ ତାହାର ବିପରୀତ ଶ୍ରୁତି ଗୁଡ଼ିକଦ୍ୱାରା ତାହାର ନିତ୍ୟତା ଅବଗତ ହୁଏ) ଏହି ସୂତ୍ରରେ ଆଚାର୍ଯ୍ୟ ଜୀବର ଉତ୍ପତ୍ତି ପ୍ରତିଷେଧ କରିବେ । ତେଣୁ ଏହି କଳ୍ପନା ଅସଂଗତ ଅଟେ ।

## नच कर्तुः करणम् ॥ ४३ ॥

## ୧-ନ ଚ କର୍ତ୍ତୃଃକରଣମ୍ ॥୨-୨-୪୩॥

ଚ=ଏବଂ କର୍ତ୍ତୃଃ=କର୍ତ୍ତାର, କରଣମ୍=କରଣର, ନ=ଉତ୍ପତ୍ତି ଦେଖାଯାଏ ନାହିଁ । ତେଣୁ ଜୀବଦ୍ୱାରା ମନର ଉତ୍ପତ୍ତି ଅସଙ୍ଗତ ହୁଏ ।

(୨) ମୂଳ-(କ) ଇତଶ୍ଚାସଙ୍ଗତୈଷା କଳ୍ପନା । ଯସ୍ମାନ୍ନ ହି ଲୋକେ କର୍ତ୍ତୃର୍ଦେବଦତ୍ତାଦେଃ କରଣଂ ପରଶ୍ୱାଦ୍ୟୁତ୍ପଦ୍ୟମାନଂ ଦୃଶ୍ୟତେ । ବର୍ଣ୍ଣୟନ୍ତି ଚ ଭାଗବତାଃ କର୍ତ୍ତୃର୍ଜୀବାତ୍ସଂକର୍ଷଣସଂଜ୍ଞକାତ୍ କରଣଂ ମନଃ ପ୍ରଦ୍ୟୁମ୍ନସଂଜ୍ଞକମୁତ୍ପଦ୍ୟତେ । କର୍ତ୍ତୃଜାଚ୍ଚ ତସ୍ମାଦନିରୁଦ୍ଧସଂଜ୍ଞକୋଽହଂକାର ଉତ୍ପଦ୍ୟତ ଇତି । ନ ଚୈତଦ୍ଦୃଷ୍ଟାନ୍ତମନ୍ତରେଣାଧ୍ୟବସାତୁଂ ଶକ୍ନୁମଃ । ନ ଚୈବଂଭୂତାଂ ଶ୍ରୁତିମୁପଲଭାମହେ ।

**(୨) ଭାଷାଂତର-** ତେଣୁ ଏହି କଳ୍ପନା ଅସଂଗତ ଅଟେ, କାରଣ-ସଂସାରରେ କର୍ତ୍ତା ଦେବଦତ୍ତଇତ୍ୟାଦିଦ୍ୱାରା କୁଠାର ପ୍ରଭୃତି କରଣ ଉତ୍ପଦ୍ୟମାନ ଦେଖାଯାଏ ନାହିଁ । ଭାଗବତ ବର୍ଣ୍ଣନା କରନ୍ତି ଯେ- ସଙ୍କର୍ଷଣ ନାମକ କର୍ତ୍ତାଜୀବରୁ ପ୍ରଦ୍ୟୁମ୍ନସଂଜ୍ଞକ କରଣ ମନ ଉତ୍ପନ୍ନ ହୁଏ । କର୍ତ୍ତାଦ୍ୱାରା ଉତ୍ପନ୍ନ ସେହିମନରୁ ଅନିରୁଦ୍ଧସଂଜ୍ଞକ ଅହଙ୍କାର ଉତ୍ପନ୍ନ ହୁଏ । ପରନ୍ତୁ ଦୃଷ୍ଟାନ୍ତବିନା ତାହାର ସ୍ଥିର କରିବାରେ ଆମ୍ଭେ ସମର୍ଥ ନୋହୁଁ ଏବଂ ଏହି ପ୍ରକାର ଆମ୍ଭେ ଶ୍ରୁତି ଉପଲବ୍ଧ କରୁନାହୁଁ ।

## विज्ञानादिभावे वा तदप्रतिषेधः ॥ ४४ ॥

## ୧-ବିଜ୍ଞାନାଦିଭାବେ ବା ତଦପ୍ରତିଷେଧଃ ॥ ୨-୨-୪୪ ॥

ବିଜ୍ଞାନାଦିଭାବେ ବା=ସଙ୍କର୍ଷଣାଦି ତିନୋଟିରେ ବାସୁଦେବପରି ବିଜ୍ଞାନାଦି ଅଥବା ଭାବ (ସ୍ୱରୂପ) ହେଲେ ମଧ୍ୟ ତଦ ପ୍ରତିଷେଧଃ=ଉତ୍ପତ୍ତି ଅସମ୍ଭବ ଦୋଷର ପ୍ରତିଷେଧ ହୁଏ ନାହିଁ ।

(୨) ମୂଳ-(କ) ଅଥାପି ସ୍ୟାନ୍ନ ଚୈତେ ସଂକର୍ଷଣାଦୟୋ ଜୀବାଦିଭାବେନାଭିପ୍ରେୟନ୍ତେ କିଂ ତର୍ହୀଶ୍ୱରା ଏ ବୈତେ ସର୍ବେ ଜ୍ଞାନୈଶ୍ୱର୍ଯ୍ୟ-ଶକ୍ତିବଳବୀର୍ଯତେଜୋଭିରୈଶ୍ୱରେର୍ଧର୍ମୈରନ୍ୱିତା ଅଭ୍ୟୁପଗମ୍ୟନ୍ତେ ବାସୁଦେବା ଏ ବୈତେ ସର୍ବେ ନିର୍ଦୋଷା ନିରଧିଷ୍ଠାନା ନିରବଦ୍ୟାଶ୍ଚେତି । ତସ୍ମାନ୍ନାୟଂ ଯଥାବର୍ଣ୍ଣିତ ଉତପତ୍ତ୍ୟସମ୍ଭବୋ ଦୋଷଃ ପ୍ରାପ୍ନୋତୀତି । ଅତ୍ରୋଚ୍ୟତେ-ଏବମପି ତଦପ୍ରତିଷେଧ ଉତ୍ପତ୍ୟସମ୍ଭକସ୍ୟାପ୍ରତିଷେଧଃ ପ୍ରାପ୍ନୋତ୍ୟେବାୟମୁତ୍ପତ୍ତ୍ୟସମ୍ଭବୋ ଦୋଷଃ ପ୍ରକାରାନ୍ତରେଣେତ୍ୟଭିପ୍ରାୟଃ । କଥମ୍ ।



(ଖ) ଯଦି ତାବଦୟମଭିପ୍ରାୟଃ ପରସ୍ପରଭିନ୍ନା-ଏବୈତେ ବାସୁଦେବାଦୟଶ୍ଚତ୍ୱାର ଈଶ୍ୱରାସ୍ତୁଲ୍ୟଧର୍ମାଣୋ ନୈଷାମେକାତ୍ମକତ୍ୱମସ୍ତୀତି, ତତୋଽନେକେଶ୍ୱର କଳ୍ପନାନର୍ଥକ୍ୟମ୍; ଏକେନୈବେଶ୍ୱରେଣେଶ୍ୱରକାର୍ଯ୍ୟସିଦ୍ଧେଃ । ସିଦ୍ଧାନ୍ତହାନିଶ୍ଚ । ଭଗବାନେବୈକୋ ବାସୁଦେବଃ ପରମାର୍ଥତତ୍ତ୍ୱମିତ୍ୟଭ୍ୟୁପଗମାତ୍ । ଅଥାୟମଭିପ୍ରାୟ ଏକସ୍ୟୈବ ଭଗବତ ଏତେ ଚତ୍ୱାରୋ ବ୍ୟୂହାଃ ତୁଲ୍ୟଧର୍ମାଣ ଇତି, ତଥାପି ତଦବସ୍ଥ ଏବୋତ୍ପତ୍ ତ୍ୟସମ୍ଭବଃ । ନହି ବାସୁଦେବାତ୍ସଂକର୍ଷଣସ୍ୟୋତ୍ପତ୍ତିଃ ସଂଭବତି, ସଙ୍କର୍ଷଣାଚ୍ଚ ପ୍ରଦ୍ୟୁମ୍ନସ୍ୟ ପ୍ରଦ୍ୟୁମ୍ନାଚ୍ଚାନିରୁଦ୍ଧସ୍ୟ ଅତିଶୟାଭାବାତ୍ ।

(ଗ) ଭବିତବ୍ୟଂ ହି କାର୍ଯ୍ୟକାରଣୟୋରତିଶ୍ରୟେନ ଯଥା ମୃଦ୍ଘଟୟୋଃ । ନହ୍ୟସତ୍ୟତିଶୟେ କାର୍ଯ୍ୟଂ କାରଣମିତ୍ୟବକଳ୍ପତେ । ନ ଚ ପଞ୍ଚରାତ୍ର ସିଦ୍ଧାନ୍ତିଭିର୍ବାସୁ-ଦେବାଦିଷ୍ୱେକସ୍ମିନ୍ ସର୍ବେଷୁ ବା ଜ୍ଞାନୈଶ୍ୱର୍ଯ୍ୟାଦିତାରତମ୍ୟ କୃତଃ କଶ୍ଚିଦ୍ଭେଦୋଽଭ୍ୟୁପଗମ୍ୟତେ । ବାସୁଦେବା ଏବ ହି ସର୍ବେ ବ୍ୟୂହା ନିର୍ବିଶେଷା ଇଷ୍ୟନ୍ତେ । ନଚୈତେ ଭଗବଦ୍ବ୍ୟୂହାଶ୍ଚତୁଃସଂଖ୍ୟାୟାମେବାବତିଷ୍ଠେରନ୍, ବ୍ରହ୍ମାଦିସ୍ତଂଭବପର୍ଯ୍ୟନ୍ତସ୍ୟ ସମସ୍ତସ୍ୟୈବ ଜଗତୋ ଭଗବଦ୍ବ୍ୟୂହତ୍ୱାବଗମାତ୍ ।

**(୨) ଭାଷାଂତର**-(କ) ଯଦି ତୁମେ କହ ଯେ- ଏହି ସଙ୍କର୍ଷଣାଦି ଜୀବାଦିଭାବରେ ଅଭିପ୍ରେତ ନୁହଁନ୍ତି । କିନ୍ତୁ ଏମାନେ ସବୁଜ୍ଞାନ, ଐଶ୍ୱର୍ଯ୍ୟ, ଶକ୍ତି, ବଳ, ବୀର୍ଯ୍ୟ ଓ ତେଜରୂପ ଈଶ୍ୱରସମ୍ବନ୍ଧୀ ଧର୍ମରେ ସମନ୍ୱିତ ହୋଇ ଈଶ୍ୱର ସ୍ୱୀକାର କରନ୍ତି । ଏହି ସବୁ ନିର୍ଦୋଷ, ନିରଧିଷ୍ଠାନ ଓ ନିରବଦ୍ୟ ବାସୁଦେବ ଅଟେ । ତେଣୁ ଯଥାବର୍ଣ୍ଣିତ ଉତ୍ପତ୍ତିର ଅସଂଭବ ଦୋଷ ପ୍ରାପ୍ତ ହୁଏ ନାହିଁ । ତେଣୁ ଏହି ବିଷୟ କୁହାଯାଇଅଛି ଯେ- ଏହା ହେଲେ ତଦପ୍ରତିଷେଧ ସେହି ଉତ୍ପତ୍ତିର ଅସଂଭବ ଅପ୍ରତିଷେଧ ହୁଏ । ଏହି ଉତ୍ପତ୍ତିର ଅସଂଭବ ଦୋଷ ଅନ୍ୟ ପ୍ରକାରରେ ପ୍ରାପ୍ତ ହୁଏ- ଏହା ହିଁ ଅଭିପ୍ରାୟ । କିପରି ?

(ଖ) ଯଦି ଏହି ଅଭିପ୍ରାୟ ହୁଏ ଯେ- ପରସ୍ପର ଭିନ୍ନ ହୋଇ ଏହି ବାସୁଦେବାଦି ଚାରୋଟି ଈଶ୍ୱର ତୁଲ୍ୟ ଧର୍ମଯୁକ୍ତ ହୁଅନ୍ତି । ଏଠାରେ ଏକାତ୍ମକତ୍ୱ ନୁହେଁ । ତେବେ ତାହା ଦ୍ୱାରା ଅନେକ ଈଶ୍ୱର କଳ୍ପନା ନିଷ୍ଫଳ ହୁଏ । କାରଣ- ଗୋଟିଏ ଈଶ୍ୱରଠାରୁ ଈଶ୍ୱର କାର୍ଯ୍ୟ ସିଦ୍ଧ ହେଉ । ଏକହିଁ ଭଗବାନ୍ ବାସୁଦେବ ପରମାର୍ଥତତ୍ତ୍ୱ ଅଟେ । ଏହିପ୍ରକାର ସ୍ୱୀକାର କଲେ ସିଦ୍ଧାଂତର ହାନି ହୁଏ । ଯଦି ଏହି ଅଭିପ୍ରାୟ ହୁଏ ଯେ- ଏକ ହିଁ ଭଗବାନ୍, ତା'ର ଚାରୋଟି ବ୍ୟୂହ ସମାନଧର୍ମୀ ଅଟନ୍ତି, ତଥାପି ଉତ୍ପତ୍ତିର ଅସଂଭବ ସେପରି ହେବ । କାରଣ- ଅତିଶୟବିଶେଷଭେଦର ଅଭାବରୁ ବାସୁଦେବଙ୍କଠାରୁ ସଙ୍କର୍ଷଣ, ସଙ୍କର୍ଷଣଠାରୁ ପ୍ରଦ୍ୟୁମ୍ନ, ପ୍ରଦ୍ୟୁମ୍ନଠାରୁ ଅନିରୁଦ୍ଧର ଉତ୍ପତ୍ତି ସଂଭବ ନୁହେଁ ।

(ଗ) କାର୍ଯ୍ୟକାରଣରେ ଅତିଶୟ ହେବା ଉଚିତ୍ । ଯେପରିକି ମୃତ୍ତିକା ଓ ଘଟର ହୁଏ । ଅତିଶୟ ନ ହେଲେ 'ଏହା କାର୍ଯ୍ୟ ଅଟେ, ଏହା କାରଣ ଅଟେ'- ଏହିପରି ହୋଇପାରେ ନାହିଁ । ପଞ୍ଚରାତ୍ରସିଦ୍ଧାନ୍ତୀ ବାସୁଦେବାଦିରେ ଏକରେ ବା ସମସ୍ତଙ୍କଠାରେ ଜ୍ଞାନ, ଐଶ୍ୱର୍ଯ୍ୟାଦିତାରତମ୍ୟକୃତ କୌଣସି ଭେଦ ସ୍ୱୀକାର କରନ୍ତି ନାହିଁ । ବାସୁଦେବ ହିଁ ସମସ୍ତ ବ୍ୟୂହ ଓ ନିର୍ବିଶେଷ ଅଟନ୍ତି- ଏହା ସ୍ୱୀକାର କରନ୍ତି । ପରନ୍ତୁ ଭଗବାନ୍ଙ୍କର ଏହି ବ୍ୟୂହ ଚରୋଟି କେବଳ ସଂଖ୍ୟାରେ ଅବସ୍ଥିତ ରହନ୍ତି ନାହିଁ । କାରଣ-ବ୍ରହ୍ମାଦିଠାରୁ ସ୍ତମ୍ବ ପର୍ଯ୍ୟନ୍ତ ସମସ୍ତ ଜଗତ୍ ଭଗବଦ୍ ବ୍ୟୂହରୂପରେ ଅବଗତ ହୁଏ ।

## विप्रतिषेधच्च ॥ ४५ ॥

## ୧-ବିପ୍ରତିଷେଧଚ୍ଚ ॥୨-୨-୪୫॥

ବିପ୍ରତିଷେଧାଚ୍ଚ - ପରସ୍ପର ବିରୁଦ୍ଧ କଥନରେ ଏହି ମତ ଅସଂଗତ ହୁଏ ।

(୨) ମୂଳ-(କ) ବିପ୍ରତିଷେଧଶ୍ଚାସ୍ମିନ୍ ଶାସ୍ତ୍ରେ ବହୁବିଧ ଉପଲଭ୍ୟତେ ଗୁଣଗୁଣିତ୍ୱ କଳ୍ପନାଦିଲକ୍ଷଣମଃ । ଜ୍ଞାନୈଶ୍ୱର୍ଯ୍ୟଶକ୍ତିବଳବୀର୍ଯ୍ୟତେଜାଂସି ଗୁଣାଃ, ଆତ୍ମାନ ଏବୈତେ ଭଗବନ୍ତୋ ବାସୁଦେବା ଇତ୍ୟାଦିଦର୍ଶନାତ୍ । ବେଦବିପ୍ରତିଷେଧଶ୍ଚ ଭବତି । ଚତୁର୍ଷୁ ବେଦେଷୁ ପରଂଶ୍ରେୟୋଽଲବ୍ଧ୍ୱା ଶାଣ୍ଡିଲ୍ୟ ଇଦଂ ଶାସ୍ତ୍ରମଧିଗତବାନିତ୍ୟାଦି ବେଦନିନ୍ଦାଦର୍ଶନାତ୍ । ତସ୍ମାଦସଂଗତୈଷା କଳ୍ପନେତି ସିଦ୍ଧମ୍ ।

**(୨) ଭାଷାଂତର-** (କ) ଏହି ଶାସ୍ତ୍ରରେ ଗୁଣ-ଗୁଣିତ୍ୱକଳ୍ପନାଦିରୂପ ଅନେକ ପ୍ରକାରର ବିରୋଧ ଉପଲବ୍ଧ ହୁଏ । କାରଣ-ଜ୍ଞାନ, ଐଶ୍ୱର୍ଯ୍ୟ, ଶକ୍ତି, ବଳ, ବୀର୍ଯ୍ୟ ଓ ତେଜ ଭଗବାନଙ୍କର ଗୁଣ ଅଟେ ଏମାନେ ଆତ୍ମାରଗୁଣ ହୋଇ ଭଗବାନଙ୍କର ବାସୁଦେବଙ୍କର ହୁଅନ୍ତି- ଏହାହିଁ ଦେଖାଯାଏ । ସେହିପରି ବେଦ ବିରୋଧ ହୁଏ । କାରଣ-ଚାରି ବଦରେ ପରମଶ୍ରେୟ ନ ମିଳିବାର କାରଣ-ଶାଣ୍ଡିଲ୍ୟ ସେହି ଶାସ୍ତ୍ରକୁ ଅଧ୍ୟୟନ କରିଛନ୍ତି । ଅର୍ଥାତ୍ ପଞ୍ଚରାତ୍ରରେ ଶରଣ ନେଇଛନ୍ତି ଇତ୍ୟାଦି ବେଦନିନ୍ଦାର ଦର୍ଶନ ହୋଇଛି । ତେଣୁ ଏହି କଳ୍ପନା ଅସଙ୍ଗତ ବୋଲି ସିଦ୍ଧ ହୁଏ ।

ଇତି ଦ୍ୱିତୀୟ ଅଧ୍ୟାୟ ଦ୍ୱିତୀୟ ପାଦ ସମାପ୍ତ





# ଦ୍ୱିତୀୟ ଅଧ୍ୟାୟ - ତୃତୀୟ ପାଦ

## द्वितीयाध्याये तृतीयः पादः

### १ वियदधिकरणम् । स० १-७

### ବିୟଦଧିକରଣ-୧

**न वियदश्रुतेः ॥ १ ॥**

**୧- ନ ବିୟଦଶ୍ରୁତେଃ ॥୨-୩-୧॥**

ବିୟଦ-ଆକାଶ, ନ-ଉତ୍ପନ୍ନ ହୁଏ ନାହିଁ । ଅଶ୍ରୁତେଃ-କାରଣ-ତାହାର ଉତ୍ପତ୍ତି ପ୍ରତିପାଦକ ଶ୍ରୁତି ନାହିଁ ।

(୨) ମୂଳ-(କ) ବେଦାନ୍ତେଷୁ ତତ୍ର ତତ୍ର ଭିନ୍ନ ପ୍ରସ୍ଥାନା ଉତ୍ପତ୍ତିଶ୍ରୁତୟ ଉପଲଭ୍ୟନ୍ତେ । କେଚିଦାକାଶସ୍ୟୋତ୍ପତ୍ତିମାମନନ୍ତି । କେଚିନ୍ନ । ତଥା କେଚିଦ୍‌ବାୟୋରୁତ୍ପତ୍ତିମାମନନ୍ତି, କେଚିନ୍ନ ଏବଂ ଜୀବସ୍ୟ ପ୍ରାଣାନାଞ୍ଚ । ଏବମେବ କ୍ରମାଦିଦ୍ୱାରକୋଽପି ବିପ୍ରତିଷେଧଃ ଶ୍ରୁତ୍ୟନ୍ତରେଷୂପଲକ୍ଷ୍ୟତେ । ବିପ୍ରତିଷେଧାଚ୍ଚ ପରପକ୍ଷାଣାମନପେକ୍ଷିତତ୍ୱଂ ସ୍ଥାପିତଂ ତଦ୍‌ବତ୍‌ସ୍ୱପକ୍ଷସ୍ୟାପି ବିପ୍ରତିଷେଧାଦେବାନପେକ୍ଷିତତ୍ୱମାଶଙ୍କ୍ୟେତେତ୍ୟତଃ ସର୍ବବେଦାନ୍ତ ଗତସୃଷ୍ଟି ଶ୍ରୁତ୍ୟର୍ଥନିର୍ମଳତ୍ୱାୟ ପରଃ ପ୍ରପଞ୍ଚ ଆରଭ୍ୟତେ । ତଦର୍ଥନିର୍ମଳତ୍ୱେ ଚ ଫଳଂ ଯଥୋକ୍ତାଶଙ୍କାନିବୃତ୍ତିରେବ ।

(ଖ) ତତ୍ର ପ୍ରଥମଂ ତାବଦାକାଶମାଶ୍ରିତ୍ୟ ଚିନ୍ତ୍ୟତେ କିମସ୍ୟାକାଶସ୍ୟୋତ୍ପତ୍ତିରସ୍ତ୍ୟୁତ ନାସ୍ତିତି । ତତ୍ରତାବତ୍ ପ୍ରତିପଦ୍ୟତେ- 'ନ ବିୟଦଶ୍ରୁତେଃ' ଇତି । ନ ଖଲ୍ୱାକାଶମୁତ୍ପଦ୍ୟତେ । କସ୍ମାତ୍ । ଅଶ୍ରୁତେଃ । ନହ୍ୟସ୍ୟୋତ୍ପତ୍ତିପ୍ରକରଣେ ଶ୍ରବଣମସ୍ତି । ଛାନ୍ଦୋଗ୍ୟେ ହି 'ସଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍' (ଛା ୬-୨-୧) ଇତି ସଚ୍ଛବ୍ଦବାଚ୍ୟଂ ବ୍ରହ୍ମ ପ୍ରକୃତ୍ୟ 'ତଦୈକ୍ଷତ' 'ତତ୍ତେଜୋଽସୃଜତ' (ଛା ୩-୨-୩) ଇତି ଚ ପଞ୍ଚାନାଂ ମହାଭୂତାନାଂ ମଧ୍ୟମଂ ତେଜ ଆଦିଂକୃତ୍ୱାତ୍ରୟାଣାଂ ତେଜୋବନ୍ନାନାମୁତ୍ପତ୍ତିଃ ଶ୍ରାବ୍ୟତେ । ଶ୍ରୁତିଶ୍ଚନଃ ପ୍ରମାଣମତୀନ୍ଦ୍ରିୟାର୍ଥବିଜ୍ଞାନୋତ୍ପତ୍ତୌ । ନଚାତ୍ର ଶ୍ରୁତିରସ୍ତ୍ୟାକାଶସ୍ୟୋତ୍ପତ୍ତି ପ୍ରତିପାଦିନୀ । ତସ୍ମାନ୍ନାସ୍ତ୍ୟାକାଶସ୍ୟୋତ୍ପତ୍ତିରିତି ।

(୨) ଭାଷାଂତର- (କ) ବେଦାନ୍ତରେ ସେହି ସେହି ସ୍ଥାନରେ ଭିନ୍ନ ପ୍ରକରଣସ୍ଥ ଉତ୍ପତ୍ତି ଶ୍ରୁତିବାକ୍ୟ ଗୁଡ଼ିକ ଉପଲବ୍ଧ ହୁଅନ୍ତି । କେତେକ ଶ୍ରୁତିବାକ୍ୟ ଆକାଶର ଉତ୍ପତ୍ତି ବିଷୟରେ କହନ୍ତି କେତେକ କହନ୍ତି ନାହିଁ । ସେପରି କେତେକ ଶ୍ରୁତିବାକ୍ୟ ବାୟୁର ଉତ୍ପତ୍ତି ବିଷୟରେ କହନ୍ତି ଏବଂ କେତେକ ମଧ୍ୟ କହନ୍ତି ନାହିଁ । କେତେକ ଶ୍ରୁତିବାକ୍ୟ ଜୀବ ଓ ପ୍ରାଣର ଉତ୍ପତ୍ତି କହନ୍ତି, କେତେକ ପ୍ରମାଣିତ କରନ୍ତି ନାହିଁ । ସେହିପରି କ୍ରମ ପ୍ରଭୃତି ଦ୍ୱାରକ ମଧ୍ୟ ଅନ୍ୟଶ୍ରୁତିରେ ବିରୋଧ ଉପଲକ୍ଷିତ ହୁଏ ଏବଂ ବିରୋଧ ହେଲେ ପରପକ୍ଷକୁ ଅନପେକ୍ଷତ୍ୱ ସ୍ଥାପନ କରାଯାଇଅଛି । ସେହିପରି ସ୍ୱପକ୍ଷରେ ଅନପେକ୍ଷତ୍ୱର ଆଶଙ୍କା କରାଯାଏ । ତେଣୁ ସମସ୍ତ ବେଦାନ୍ତଗତ ଶ୍ରୁତିର ଅର୍ଥ ନିର୍ମଳତା ପାଇଁ ପରେ ଆରମ୍ଭ କରାଯିବ ଏବଂ ସେହି ଅର୍ଥର ନିର୍ମଳ ହେଲେ ଯଥୋକ୍ତ ଶଙ୍କାର ନିବୃତ୍ତି ଫଳ ହୁଏ ।

(ଖ) ସେଠାରେ ପ୍ରଥମେ ଆକାଶକୁ ଆଶ୍ରୟ କରି ବିଚାର କରାଯାଇଅଛି- ଏହି ଆକାଶର ଉତ୍ପତ୍ତି ଅଛି କି ନାହିଁ ? ସେଠାରେ ପ୍ରଥମେ 'ନ ବିୟଦଶ୍ରୁତେଃ' ପ୍ରାପ୍ତ ହୁଏ । ଆକାଶ କିପରି ଉତ୍ପନ୍ନ ହୋଇନାହିଁ । କାରଣ-ଶ୍ରୁତିବାକ୍ୟ ତାହା ପାଇଁ ନାହିଁ । ତାହାର ଉତ୍ପତ୍ତିର ପ୍ରକରଣରେ ଶ୍ରୁତି ନାହିଁ । କାରଣ-ଛାନ୍ଦୋଗ୍ୟରେ 'ସଦେବ' (ହେ ସୋମ୍ୟ ! ଆରଂଭରେ ଏହି ଏକମାତ୍ର ଅଦ୍ୱିତୀୟ ସତ୍ ଥିଲା) ଏହିପରି ସତ୍ ଶବ୍ଦବାଚ୍ୟ ବ୍ରହ୍ମକୁ ପ୍ରସ୍ତୁତ କରି 'ତଦୈକ୍ଷତ' (ସେ ଈକ୍ଷଣ କଲା । ତାହାଦ୍ୱାରା ତେଜ ଉତପନ୍ନ ହୋଇଛି) ଏହିପ୍ରକାର ପାଞ୍ଚମହାଭୂତରେ ମଧ୍ୟମ ତେଜକୁ ଆରଂଭ କରି ତେଜ, ଜଳ ଓ ଅନ୍ନ - ଏହି ତିନୋଟିକୁ ଉତ୍ପନ୍ନ କରିବା ଶୁଣାଯାଏ । ଅତୀନ୍ଦ୍ରିୟ ଅର୍ଥର ବିଜ୍ଞାନ ଉତ୍ପତ୍ତିରେ ଆଂଭପକ୍ଷର ଶ୍ରୁତି ପ୍ରମାଣ ରହିଛି । ପରନ୍ତୁ ଏଠାରେ ଆକାଶର ଉତ୍ପତ୍ତି ପ୍ରତିପାଦକ ଶ୍ରୁତି ନାହିଁ । ତେଣୁ ଆକାଶର ଉତ୍ପତ୍ତି ନାହିଁ ।

## अस्ति तु ॥ २ ॥

## ଅସ୍ତିତୁ ॥୨-୩-୨॥

ତୁ ଶବ୍ଦ ପକ୍ଷାନ୍ତରର ପରିଗ୍ରହ ଅର୍ଥରେ ଅଛି । ଅସ୍ତି-ଛାନ୍ଦୋଗ୍ୟରେ ଆକାଶର ଉତ୍ପତ୍ତି-ପ୍ରତିପାଦକଶ୍ରୁତି ନଥିଲେ ମଧ୍ୟ ତୈତେରୀୟରେ ଅଛି । ତେଣୁ ଏହିପରି ବିରୋଧ ଅଛି ।

(୨) ମୂଳ-(କ) ତୁଶବ୍ଦଃ ପକ୍ଷାନ୍ତର ପରିଗ୍ରହେ । ମା ନାମାକାଶସ୍ୟ ଛାନ୍ଦୋଗ୍ୟେ ଭୂଦୁତ୍ପତ୍ତିଃ, ଶ୍ରୁତ୍ୟନ୍ତରେ ତ୍ୱସ୍ତି । ତୈତ୍ତିରୀୟକାହି ସମାମନନ୍ତି-'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଇତି ପ୍ରକୃତ୍ୟ 'ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସଂଭୂତଃ' (ତୈ ୨-୧) ଇତି । ତତଶ୍ଚ ଶ୍ରୁତ୍ୟୋର୍ବିପ୍ରତିଷେଧଃ କ୍ୱଚିତ୍ତେଜଃ ପ୍ରମୁଖା ସୃଷ୍ଟିଃ କ୍ୱଚିଦାକାଶପ୍ରମୁଖ୍ୟେତି ।



(ଖ) ନନ୍ୱେକ ବାକ୍ୟତାନୟୋଃ ଶ୍ରୁତ୍ୟୋର୍ଯୁକ୍ତା । ସତ୍ୟମ୍' ସା ଯୁକ୍ତା ନତୁ ସାବଗନ୍ତୁଂ ଶକ୍ୟତେ । କୁତଃ । 'ତତ୍ତେଜୋଽସୃଜତ' (ଛା ୩-୨-୩) ଇତି ସକୃଚ୍ଛ୍ରୁତସ୍ୟ ସ୍ରଷ୍ଟୁଃସ୍ରଷ୍ଟବ୍ୟଦ୍ୱୟେନ ସମ୍ବନ୍ଧାନୁପପତ୍ତେଃ 'ଇତ୍ତେଜୋଽସୃଜତ' 'ତଦାକାଶମସୃଜତି' ଇତି ।

(ଗ) ନନୁ ସକୃଚ୍ଛ୍ରୁତସ୍ୟାପି କର୍ତ୍ତୁଃ କର୍ତ୍ତବ୍ୟଦ୍ୱୟେନ ସମ୍ବନ୍ଧୋ ଦୃଶ୍ୟତେ, ଯଥା ସୂପଂ ପକ୍ତ୍ୱୌଦନଂ ପଚତୀତି, ଏବଂ ତଦାକାଶଂ ସୃଷ୍ଟ୍ୱା ତତ୍ତେଜୋଽସୃଜତେତି ଯୋଜୟିଷ୍ୟାମି । ନୈବଂ ଯୁଜ୍ୟତେ । ପ୍ରଥମଜତ୍ୱଂ ହି ଛାନ୍ଦୋଗ୍ୟେ ତେଜସୋଽବଗମ୍ୟତେ ତୈତ୍ତିରୀୟକେ ଋକାଶସ୍ୟ । ନଚୋଭୟୋଃ ପ୍ରଥମଜଂ ସଂଭବତି ।

(ଘ) ଏତେନେତରଶ୍ରୁତ୍ୟକ୍ଷରବିରୋଧୋଽପି ବ୍ୟାଖ୍ୟାତଃ । 'ତସ୍ମାଦ୍‌ବା ଏତସ୍ମାଦାତ୍ମନ ଆକାଶଃ ସଂଭୂତଃ' (ତୈ ୨-୧) ଇତ୍ୟତ୍ରାପି ତସ୍ମାଦାକାଶଃ ସମ୍ଭୂତସ୍ତସ୍ମାତ୍ତେଜଃ ସଂଭୂତମିତି ସକୃଚ୍ଛ୍ରୁତସ୍ୟାପାଦାନସ୍ୟ ସମ୍ଭବନସ୍ୟ ଚ ବିୟତ୍ତେଜୋଭ୍ୟାଂ ଯୁଗପତ୍‌ସମ୍ବନ୍ଧାନୁପପତ୍ତେଃ । 'ବାୟୋରଗ୍ନିଃ' (ତୈ ୨-୧) ଇତି ଚ ପୃଥଗାମ୍ନାନାତ୍ ।

**(୨) ଭାଷାଂତର**-(କ) ତୁଶବ୍ଦ ଅନ୍ୟପକ୍ଷର ଗ୍ରହଣ କରିବା ପାଇଁ ଅଛି । ଆକାଶର ଉତ୍ପତ୍ତି ଛାନ୍ଦୋଗ୍ୟ ମତରେ ନ ଥାଇପାରେ । କିନ୍ତୁ ଅନ୍ୟ ଶ୍ରୁତିରେ ତ ଅଛି । 'ସତ୍ୟଂ ଜ୍ଞାନମାନନ୍ତଂ ବ୍ରହ୍ମ' ଏହା ପ୍ରସ୍ତୁତ କରି ତସ୍ମାଦ୍ ବା' (ଏହି ପ୍ରତ୍ୟଗଭିନ୍ନ ସେହି ପରମାତ୍ମଠାରୁ ଆକାଶ ଉତ୍ପନ୍ନ ହୋଇଛି) ଏହି ପ୍ରକାର ତୈତେରୀୟଶାଖା କହନ୍ତି । ତେଣୁ କେଉଁଠି ତେଜ ସମୂହ ସୃଷ୍ଟି ହୁଏ, କେଉଁଠି ଆକାଶ ପ୍ରମୁଖ ସୃଷ୍ଟି ହୁଏ, କେଉଁଠି ଆକାଶ ପ୍ରମୁଖ ସୃଷ୍ଟି ହୁଏ-ଏହିପରି ଶ୍ରୁତିଦ୍ୱୟରେ ବିରୋଧ ହୁଏ ।

(ଖ) ପରନ୍ତୁ ଏହି ଶ୍ରୁତିବାକ୍ୟରେ ଏକବାକ୍ୟତା ଅଛି କି ? ହଁ ଅଛି । କିନ୍ତୁ ତାହା ଅବଗତ ହୁଏ ନାହିଁ । କାରଣ- 'ତତ୍ତେଜୋ' (ଏହିଠାରୁ ଆକାଶ ଉତ୍ପନ୍ନ ହୋଇଛି) ଏହିପରି ଥରେମାତ୍ର ଶ୍ରୁତି ସ୍ରଷ୍ଟାର 'ତତ୍ତେଜୋଽସୃଜତ' 'ତଦାକାଶମସୃଜତ' ଏହିପରି ଦୁଇଟି ସ୍ରଷ୍ଟବ୍ୟର ସହିତ ସମ୍ବନ୍ଧ ହୁଏ ନାହିଁ ।

(ଗ) ପରନ୍ତୁ ଥରେମାତ୍ର ଶ୍ରୁତିବାକ୍ୟ କର୍ତ୍ତାର ଦୁଇଟି କର୍ତ୍ତବ୍ୟ ସହିତ ସମ୍ବନ୍ଧ ଦେଖାଏ । ଯେପରି 'ଡାଲି ପକାଇ ଚାଉଳ ପଢ଼େ', ସେପରି 'ସେ ଆକାଶକୁ ଉତ୍ପନ୍ନ କରି ପରେ ତେଜକୁ ସୃଷ୍ଟି କଲା)-ଏହିପରି ଯୋଜନା କରିବୁ କି ? ନା, ତାହା ନୁହେଁ, କାରଣ-ଛାନ୍ଦୋଗ୍ୟରେ ତେଜର ପ୍ରଥମ ଉତ୍ପତ୍ତି ଅବଗତ ହୋଇଛି ଏବଂ ତୈତିରୀୟରେ ଆକାଶର ଉତ୍ପତ୍ତି ଜଣାଯାଏ । କିନ୍ତୁ ଆକାଶ ଓ ତେଜ-ଏହି ଉଭୟର ଏକ ସମୟରେ ଉତ୍ପନ୍ନ ହେବା ଅସମ୍ଭବ ।

(ଘ) ଏହିପରି ବିରୋଧ କଥାରେ ଅନ୍ୟଶ୍ରୁତି ବାକ୍ୟର ସହ ବିରୋଧ ମଧ୍ୟ ବ୍ୟାଖ୍ୟାନ କରାଯାଇଅଛି । କାରଣ- 'ତସ୍ମାଦ୍‌ବା ଏତସ୍ମାଦାତ୍ମନ ଆକାଶଃ ସଂଭୂତଃ'- ଏଠାରେ ମଧ୍ୟ 'ଏହାଠାରୁ ଆକାଶ ଉତ୍ପନ୍ନ ହୋଇଛି ।' ଏହାଠାରୁ ତେଜ ଉତ୍ପନ୍ନ ହୋଇଛି' ଏହିପରି ଥରେମାତ୍ର ଶ୍ରୁତିବାକ୍ୟ ଅପାଦାନ (ତସ୍ମାତ୍ ପଞ୍ଚମୀ ବିଭକ୍ତି) ଏବଂ ସମ୍ଭବନ (ଉତ୍ପତ୍ତି)ର ଆକାଶ ଓ ତେଜ ସହ ଏକ ସମୟରେ ସମ୍ବନ୍ଧ ହୁଏ ନାହିଁ । 'ବାୟୋରଗ୍ନିଃ' (ବାୟୁଠାରୁ ଅଗ୍ନି ଉତ୍ପନ୍ନ ହୁଏ) ଏହି ପୃଥକ୍ ଶ୍ରୁତି ଅଛି ।

(୧) ମୂଳ-ଅସ୍ମିନ୍ ବିପ୍ରତିଷେଧେ କଶ୍ଚିଦାହ ।

**(୧) ଭାଷାଂତର**-ଏହାର ବିରୋଧ ହେଲାପରେ କେତେକ କହନ୍ତି-

## गौण्यसंभवात् ॥ ३ ॥

## ଗୌଣ୍ୟ ସମ୍ଭବାତ୍ ॥ ୨-୩-୩ ॥

ଗୌଣୀ-ଆକାଶର ଉତ୍ପତ୍ତିବିଷୟକ ଶ୍ରୁତି ଗୌଣୀ ଅଟେ । କିନ୍ତୁ ମୁଖ୍ୟ ନୁହେଁ । ଅସମ୍ଭବାତ୍-କାରଣ-ଆକାଶର ଉତ୍ପତ୍ତିରେ ସମବାୟିକାରଣ ପ୍ରଭୃତି ଅଭାବ ଅଟେ । ତାହା ବ୍ୟାପକ ହେଲେ ସେଠାରେ ନିତ୍ୟତ୍ୱର ଅନୁମାନ ହୁଏ । ତେଣୁ ଆକାଶର ଉତ୍ପତ୍ତି ହୁଏ ନାହିଁ ।

(୨) ମୂଳ-(କ) ନାସ୍ତି ବିୟତ ଉତ୍ପତ୍ତିରଶ୍ରୁତେରେବ । ଯା ତ୍ୱିତରା ବିୟଦୁତ୍ପତ୍ତିବାଦିନୀ ଶ୍ରୁତିରୁଦାହୃତା ସା ଗୌଣୀ ଭବିତୁମର୍ହତି । କସ୍ମାତ୍ । ଅସମ୍ଭବାତ୍ । ନହ୍ୟାକାଶସ୍ୟୋତ୍ପତ୍ତିଃ ସମ୍ଭାବୟିତୁଂ ଶକ୍ୟା ଶ୍ରୀମତ୍ କଣଭୁଗଭିପ୍ରାୟାନୁସାରିଷୁ ଜୀବତ୍ସୁ । ତେ ହି କାରଣସାମଗ୍ର୍ୟସମ୍ଭବାଦାକାଶସ୍ୟୋତ୍ପତ୍ତିଂ ବାରୟନ୍ତି । ସମବାୟ୍ୟସମବାୟି ନିମିତ୍ତକାରଣେଭ୍ୟୋ ହି କିଲ ସର୍ବମୁତ୍ପଦ୍ୟମାନଂ ସମୁତ୍ପଦ୍ୟତେ । ଦ୍ରବ୍ୟସ୍ୟ ଚୈକଜାତୀୟକମନେକଂ ଚ ଦ୍ରବ୍ୟଂ ସମବାୟ କାରଣଂ ଭବତି ।

(ଖ) ନ ତ୍ୱାକାଶସ୍ୟୈକଜାତୀୟକମନେକଂ ଚ ଦ୍ରବ୍ୟମାରମ୍ଭକମସ୍ତି, ଯସ୍ମିନ୍ ସମବାୟିକାରଣେ ସତ୍ୟସମବାୟିକାରଣେ ଚ ତତ୍ସଂଯୋଗ ଆକାଶ ଉତ୍ପଦ୍ୟେତ । ତଦଭାବାତତୁ ତଦନୁଗ୍ରହପ୍ରବୃତ୍ତଂ ନିମିତ୍ତକାରଣଂ ଦୂରାପେତମେବାକାଶସ୍ୟ ଭବତି । ଉତ୍ପତ୍ତିମତାଂ ଚ ତେଜଃପ୍ରଭୃତୀନାଂ ପୂର୍ବୋତ୍ତରକାଲୟୋର୍ବିଶେଷଃ ସମ୍ଭାବ୍ୟତେ ପ୍ରାଗୁତ୍ପତ୍ତେଃ ପ୍ରକାଶାଦିକାର୍ଯ୍ୟଂ ନ ବଭୂବ ପଶ୍ଚାଚ୍ଚ ଭବତୀତି । ଆକାଶସ୍ୟ ପୁନର୍ନ ପୂର୍ବୋତ୍ତରକାଲୟୋର୍ବିଶେଷଃ ସମ୍ଭାବୟିତୁଂ ଶକ୍ୟତେ ।

(ଗ) କିଂ ହି ପ୍ରାଗୁତ୍ପତ୍ତେରନବକାଶମସୁଷିରମଚ୍ଛିଦ୍ରଂ ବଭୂବେତି ଶକ୍ୟତେଽଧ୍ୟବସାତୁମ୍ । ପୃଥିବ୍ୟାଦିବୈଧର୍ମ୍ୟାଚ୍ଚ ବିଭୁତ୍ୱାଦିଲକ୍ଷଣାଦାକାଶସ୍ୟାଜତ୍ୱସିଦ୍ଧିଃ । ତସ୍ମାଦ୍ୟଥା ଲୋକ ଆକାଶଂ କୁର୍ବାକାଶୋ ଜାତ ଇତ୍ୟେବଂଜାତୀୟକୋ ଗୌଣଃ ପ୍ରୟୋଗୋ ଭବତି । ଯଥାଚ ଘଟାକାଶଃ



କରକାକାଶୋ ଗୃହାକାଶ ଇତ୍ୟେକସ୍ୟାପ୍ୟାକାଶ-ସ୍ୟୈବଂଜାତୀୟକୋ ଭେଦବ୍ୟପଦେଶୋ ଗୌଣୋ ଭବତି, ବେଦେପି 'ଆରଣ୍ୟାନାକାଶେଷ୍ୱାଲଭେରନ' ଇତି ଏବମୁତ୍ପତ୍ତିଶ୍ରୁତିରପି ଗୌଣୀ ଦ୍ରଷ୍ଟବ୍ୟା ।

(୨) ଭାଷାଂତର- (କ) ଆକାଶର ଉତ୍ପତ୍ତି ନାହିଁ, କାରଣ-ସେହି ବିଷୟରେ ଶ୍ରୁତି ପ୍ରମାଣ ନାହିଁ । ଯାହା ଆକାଶର ଉତ୍ପତ୍ତି ପ୍ରତିପାଦକ ଅନ୍ୟଶ୍ରୁତି ଉଦାହୃତ ଅଟନ୍ତି, ସେହି ସବୁ ଗୌଣୀ ହେବା ଉଚିତ୍, କାରଣ-ଆକାଶର ଉତ୍ପତ୍ତି ଅସଂଭବ ଅଟେ । କଣାଦମତକୁ ଅନୁସରଣ କରୁଥିବା ଦାର୍ଶନିକ ବଞ୍ଚିଥିଲେ ମଧ୍ୟ ଆକାଶର ଉତ୍ପତ୍ତି ସଂଭାବନା କରିପାରିବେ ନାହିଁ, କାରଣ-ସେମାନେ କାରଣ ସମୂହର ଅସଂଭବରୁ ଆକାଶର ଉତ୍ପତ୍ତିକୁ ବାରଣ କରନ୍ତି । ସଂପୂର୍ଣ୍ଣ ଉତ୍ପଦ୍ୟମାନ କାର୍ଯ୍ୟ ସମବାୟୀ, ଅସମବାୟୀ ଓ ନିମିତ୍ତ କାରଣରୁ ଉତ୍ପନ୍ନ ହୁଏ । ଏକଜାତୀୟ ଅନେକ ଦ୍ରବ୍ୟ ଦ୍ରବ୍ୟର ସମବାୟି କାରଣ ହୁଏ ।

(ଖ) ପରନ୍ତୁ ଆକାଶର ଏକ ପ୍ରକାର ଅନେକ ଆରଂଭକ ଦ୍ରବ୍ୟ ନାହିଁ, ଯେପରିକି ସମବାୟି କାରଣ ହେଲେ ବି ଏବଂ ତାହା ସହ ସଂଯୋଗ ଅସମବାୟି କାରଣ ହେଲା ପରେ ଆକାଶ ଉତ୍ପନ୍ନ ହେଉ । ସେହି କାରଣ ନହେଲେ ତାହାର ଅନୁଗ୍ରହରୁ ପ୍ରବୃତ୍ତ ଆକାଶର ନିମିତ୍ତ କାରଣ ଦୂରରେ ରହିପାରେ । ତେଜର ଉତ୍ପତ୍ତି ପୂର୍ବରୁ ତାର ପ୍ରକାଶ ପ୍ରଭୃତି କାର୍ଯ୍ୟ ନଥିଲା । ତେଜର ଉତ୍ପତ୍ତି ପରେ ତେଜ ଉତ୍ପନ୍ନ ହେଲା । ସେହିପରି ଉତ୍ପତ୍ତିମତ୍ ତେଜଃ ପ୍ରଭୃତିରେ ପୂର୍ବୋତ୍ତର କାଳରେ ବିଶେଷର ସଂଭାବନା କରିଯାଏ ନାହିଁ ।

(ଗ) ଉତ୍ପତ୍ତିର ପୂର୍ବରୁ ଅନବକାଶ, ଅସୁଷିର (ବଡ଼ଗାତଶୂନ୍ୟ) ଓ ଅଛିଦ୍ର ଥିଲା ବୋଲି କଣ ନିଶ୍ଚୟ କରାଯାଇପାରେ ? ପୃଥିବୀ ପ୍ରଭୃତିଠାରୁ ବିରୁଦ୍ଧ ଧର୍ମ ଓ ବିଭୂତ୍ୱାଦି ରୂପ ହେଲେ ଆକାଶ ଅଜରୂପେ ସିଦ୍ଧ ହୁଏ । ତେଣୁ ଯେପରି ସଂସାରରେ 'ଆକାଶ କର' ଆକାଶ ଉତ୍ପନ୍ନ ହେଲା' ଏହି ପ୍ରକାର ଗୌଣ ପ୍ରୟୋଗ ହେଉଛି, ଯେପରି ଘଟାକାଶ, କରକାକାଶ, ଗୃହାକାଶ-ଏହିପ୍ରକାର ଏକ ଆକାଶରେ ଭେଦବ୍ୟପଦେଶ ଗୌଣ ହୁଏ । ସେହିପରି ବେଦରେ 'ଅରଣ୍ୟବାସୀ ପଶୁ ଆକାଶରେ ଆଲମ୍ବନ କରେ' – ଏହିପରି ଗୌଣ ବ୍ୟବହାର ହୁଏ । ସେପରି ଆକାଶର ଉତ୍ପତ୍ତି ବିଷୟକ ଶ୍ରୁତିକୁ ଗୌଣରୂପେ ଗ୍ରହଣ କର ।

**ଶବ୍ଦାଚ୍ଚ ॥ ୪ ॥**

**୧- ଶବ୍ଦାଚ୍ଚ ॥ ୨-୩-୪ ॥**

ବାୟୁଶ୍ଚାନ୍ତରିକ୍ଷଂ ଚୈତଦମୃତମ୍' ଇତ୍ୟାଦି ଶ୍ରୁତିରେ ଆକାଶଠାରେ ଅମୃତଶବ୍ଦର ପ୍ରୟୋଗ ଦେଖାଯାଏ । ତେଣୁ ଆକାଶର ଉତ୍ପତ୍ତି ହୁଏ ନାହିଁ ।

(୨) ମୂଳ-(କ) ଶବ୍ଦଃ ଖଲ୍ୱାକାଶସ୍ୟାଜତ୍ୱଂ ଖ୍ୟାପୟତି । ଯତ ଆହ 'ବାୟଶ୍ଚାନ୍ତରିକ୍ଷଂ ଚୈତଦମୃତମ୍' (ବୃ ୨-୩-୩) ଇତି । ନହ୍ୟମୃତସ୍ୟୋତ୍ପତ୍ତିରୁପପଦ୍ୟତେ । 'ଆକାଶବତ୍ ସର୍ବଗତଶ୍ଚ ନିତ୍ୟଃ' ଇତି ଚାକାଶେନ ବ୍ରହ୍ମ ସର୍ବଗତତ୍ୱନିତ୍ୟତ୍ୱାଭ୍ୟାଂ ଧର୍ମାଭ୍ୟାମୁପଗମିମାନ ଆକାଶସ୍ୟାପି ତୌ ଧର୍ମୌ ସୂଚୟତି । ନ ଚ ତାଦୃଶସ୍ୟୋତ୍ପତ୍ତିରୁପପଦ୍ୟତେ ।

(ଖ) 'ସ ଯଥାନନ୍ତୋଽୟମାକାଶ ଏବାନନ୍ତ ଆତ୍ମା ବେଦିତବ୍ୟଃ' ଇତି ଚୋଦାହରଣମ୍ । 'ଆକାଶଶରୀରଂ ବ୍ରହ୍ମ' (ତୈ ୧-୬-୨), 'ଆକାଶ ଆତ୍ମା' (ତୈ ୧-୭-୧) ଇତି ଚ । ନହ୍ୟାକାଶସ୍ୟୋତ୍ପତ୍ତିମତ୍ତ୍ୱେ ବ୍ରହ୍ମଣସ୍ତେନ ବିଶେଷଣଂ ସମ୍ଭବତି ନୀଳେନେବୋତ୍ପଳସ୍ୟ । ତସ୍ମାନ୍ନିତ୍ୟମେବାକାଶେନ ସାଧାରଣଂ ବ୍ରହ୍ମେତି ଗମ୍ୟତେ ।

(୨) ଭାଷାଂତର- ଆକାଶ ଅଜ ଅଟେ ବୋଲି ଶ୍ରୁତି କହେ । କାରଣ- 'ବାୟୁଶ୍ଚାନ୍ତରିକ୍ଷଂ' (ବାୟୁ ଏବଂ ଅନ୍ତରିକ୍ଷ (ଏମାନେ ଅମୃତ ଅଟନ୍ତି) ଏହା ଶ୍ରୁତି କହେ । ଅମୃତର ଉତ୍ପତ୍ତି ଉପପନ୍ନ ହୁଏ ନାହିଁ । 'ଆକାଶବତ୍ସର୍ବଗତଶ୍ଚ' (ଆକାଶ ପରି ସର୍ବଗତ ଓ ନିତ୍ୟ ଅଟେ) ଏହିପରି ଆକାଶଦ୍ୱାରା ସର୍ବଗତତ୍ୱ ଓ ନିତ୍ୟତ୍ୱଧର୍ମ ବ୍ରହ୍ମକୁ ଉପମା ଦେଇ ଶ୍ରୁତି ସେହି ଧର୍ମଗୁଡ଼ିକୁ ଆକାଶରେ ସୂଚିତ କରାଏ । ତେଣୁ ସେହି ପ୍ରକାର ସର୍ବଗତ ଓ ନିତ୍ୟର ଉତ୍ପତ୍ତି ଉପପନ୍ନ ହୁଏ ନାହିଁ ।

(ଖ) 'ସ ଯଥା' (ଯେପରି ଏହି ଆକାଶ ଅନନ୍ତ ଅଟେ, ସେପରି ଆତ୍ମା ଅନନ୍ତ ଅଟେ ବୋଲି ଜାଣ) ଏବଂ 'ଆକାଶଶରୀରଂ ବ୍ରହ୍ମ', 'ଆକାଶ ଆତ୍ମା' ଏହିପରି ଉଦାହରଣ ଅଛି । ଯେପରି ନୀଳ ଉତ୍ପଳର ବିଶେଷଣ ଅଟେ, ସେହିପରି ଆକାଶ ଉତ୍ପତ୍ତିକାରୀ ହେଉ କିନ୍ତୁ ତାହା ବ୍ରହ୍ମର ବିଶେଷଣ ନୁହେଁ । ଏହାଦ୍ୱାରା ଜଣାପଡେ- ନିତ୍ୟ ହିଁ ଆକାଶର ତୁଲ୍ୟ ବ୍ରହ୍ମ ଅଟେ ।

**स्याच्चैकस्य ब्रह्मशब्दवत् ॥ ५ ॥**

**୧-ସ୍ୟାଚ୍ଚୈକସ୍ୟ ବ୍ରହ୍ମଶବ୍ଦବତ୍ ॥୨-୩-୫॥**

ବ୍ରହ୍ମଶବ୍ଦବତ୍ = ଯେପରି ଗୋଟିଏ ପ୍ରକରଣରେ ବିଷୟଭେଦରେ 'ଅନ୍ନଂ ବ୍ରହ୍ମ' ଏଠାରେ ବ୍ରହ୍ମଶବ୍ଦ ଗୌଣ ଅଟେ, ଏବଂ 'ଆନନ୍ଦୋ ବ୍ରହ୍ମ' ଏଠାରେ ମୁଖ୍ୟ ଅଟେ, ସେହିପରି ପ୍ରକୃତରେ ବିଷୟ ଭେଦରୁ, ଏକସ୍ୟ=ଏକ ହିଁ 'ସଂଭୂତଃ' ଶବ୍ଦ ଗୌଣ ଓ ମୁଖ୍ୟ, ସ୍ୟାତ୍=ହୁଏ ।

(୨) ମୂଳ-(କ) ଇଦଂ ପଦୋତ୍ତରଂ ସୂତ୍ରମ୍ । ସ୍ୟାଦେତତ୍ । କଥଂ ପୁନରେକସ୍ୟ ସମ୍ଭୂତଶବ୍ଦସ୍ୟ ତସ୍ମାଦ୍‌ବା ଏ 'ତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ' (ତୈ ୨-୧)



ଇତ୍ୟସ୍ମିନ୍ନଧିକାରେ ପରେଷୁ ତେଜଃପ୍ରଭୃତି ଷ୍ୱନୁବର୍ତ୍ତମାନସ୍ୟ ମୁଖ୍ୟତ୍ୱଂ ସମ୍ଭବତ୍ୟାକାଶେ ଚ ଗୌଣତ୍ୱମିତି ।

(ଖ) ଅତ ଉତ୍ତରମୁଚ୍ୟତେ-ସ୍ୟାଚ୍ଚୈକସ୍ୟାପି ସଂଭୂତଶବ୍ଦସ୍ୟ ବିଷୟବିଶେଷଣାଦ୍ ଗୌଣୋ ମୁଖ୍ୟଶ୍ଚ ପ୍ରୟୋଗୋ ବ୍ରହ୍ମଶବ୍ଦବତ୍ । ଯଥୈକସ୍ୟାପି ବ୍ରହ୍ମଶବ୍ଦସ୍ୟ 'ତପସା ବ୍ରହ୍ମ ବିଜିଜ୍ଞାସସ୍ୱ, ତପୋ ବ୍ରହ୍ମ' (ତୈ ୩-୨) ଇତ୍ୟାସ୍ମିନ୍ନଧିକାରେଽନ୍ନାଦିଷୁ ଗୌଣଃ ପ୍ରୟୋଗ ଆନନ୍ଦେ ଚ ମୁଖ୍ୟଃ । ଯଥାଚ ତପସି ବ୍ରହ୍ମବିଜ୍ଞାନସାଧନେ ବ୍ରହ୍ମଶବ୍ଦୋ ଭକ୍ତ୍ୟା ପ୍ରଯୁଜ୍ୟତେଽଞ୍ଜସା ତୁ ବିଜ୍ଞେୟେ ବ୍ରହ୍ମଣି ତଦ୍‌ବତ୍ । କଥଂ ପୁନରନୁତ୍ପତ୍ତୌ ନଭସଃ 'ଏକମେବା ଦ୍ୱିତୀୟମ୍' (ଛା ୬-୨-୧) ଇତୀୟଂ ପ୍ରତିଜ୍ଞା ସମର୍ଥ୍ୟତେ ।

(ଗ) ନନୁ ନଭସା ଦ୍ୱିତୀୟେନ ସଦ୍‌ଦ୍ୱିତୀୟଂ ବ୍ରହ୍ମ ପ୍ରାପ୍ନୋତି । କଥଂ ଚ ବ୍ରହ୍ମଣି ବିଦିତେ ସର୍ବଂ ବିଦିତଂ ସ୍ୟାଦିତି । ତଦୁଚ୍ୟତେଏକମେବେତି ତାବତ୍‌ସ୍ୱକାର୍ଯ୍ୟାପେ-କ୍ଷୟୋପପଦ୍ୟତେ । ଯଥା ଲୋକେ କଶ୍ଚିତ୍‌କୁମ୍ଭକାରକୁଳେ ପୂର୍ବେଦ୍ୟୁର୍ମୃଦ୍‌ଦଣ୍ଡଚକ୍ରାଦୀନି ଚୋପଲଭ୍ୟାପରେଦ୍ୟୁଶ୍ଚ ନାନାବିଧାନ୍ୟମତ୍ରାଣି ପ୍ରସାରିତାନ୍ୟୁପଲଭ୍ୟ ବ୍ରୂୟାନ୍ମୃଦେବୈକାକିନୀ ପୂର୍ବେଦ୍ୟୁରାସୀଦିତି ସ ଚ ତୟାବଧାରଣୟା ମୃତ୍‌କାର୍ଯ୍ୟଜାତମେବ ପୂର୍ବେଦ୍ୟୁର୍ନାସୀଦିତ୍ୟଭିପ୍ରାୟାନ୍ନ ଦଣ୍ଡଚକ୍ରାଦି, ତଦ୍‌ବଦଦ୍ୱିତୀୟଶ୍ରୁତିରଧିଷ୍ଠାତ୍ରନ୍ତରଂ ବାରୟତି । ଯଥା ମୃଦୋଽମତ୍ରପ୍ରକୃତେଃ କୁମ୍ଭକାରୋଽଧିଷ୍ଠାତା ଶକ୍ୟତେ ନୈବଂ ବ୍ରହ୍ମଣୋ ଜଗତ୍‌ପ୍ରକୃତେରନ୍ୟୋଽଧିଷ୍ଠାତାସ୍ତୀତି ।

(ଘ) ନଚନଭସାପି ଦ୍ୱିତୀୟେନ ସଦ୍‌ଦ୍ୱିତୀୟଂ ବ୍ରହ୍ମ ପ୍ରସଜ୍ୟତେ । ଲକ୍ଷଣାନ୍ୟ-ତ୍ୱନିମିତ୍ତଂ ହି ନାନାତ୍ୱମ୍ । ନଚ ପ୍ରାଗୁତ୍ପତ୍ତେର୍ବ୍ରହ୍ମନଭସୋର୍ଲକ୍ଷଣାନ୍ୟତ୍ୱମସ୍ତି କ୍ଷୀରୋଦକ-ୟୋରିବ ସଂସୃଷ୍ଟୟୋର୍ବ୍ୟାପିତ୍ୱାମର୍ତ୍ତତ୍ୱାଦିଧର୍ମସାମାନ୍ୟାତ୍ । ସର୍ଗକାଳେ ତୁ ବ୍ରହ୍ମ ଜଗଦୁତ୍ପାଦୟିତୁଂ ଯତତେ ସ୍ତିମିତମିତରବତ୍ ତିଷ୍ଠତି । ତେନାନ୍ୟତ୍ୱମବସୀୟତେ । ତଥାଚ 'ଆକାଶଶରୀରଂ ବ୍ରହ୍ମ' (ତୈ ୧-୬-୨) ଇତ୍ୟାଦିଶ୍ରୁତିଭ୍ୟୋଽପି ବ୍ରହ୍ମାକାଶୟୋରଭେଦୋପଚାର ସିଦ୍ଧିଃ । ଅତଏବ ଚ ବ୍ରହ୍ମବିଜ୍ଞାନେନ ସର୍ବ ବିଜ୍ଞାନସିଦ୍ଧିଃ ।

(ଙ) ଅପିଚ ସର୍ବଂ କାର୍ଯ୍ୟମୁତ୍ପଦ୍ୟମାନମାକାଶେନାବ୍ୟତିରିକ୍ତଦେଶକାଳ-ମେବୋତ୍ପଦ୍ୟତେ, ବ୍ରହ୍ମଣା ଚାବ୍ୟତିରିକ୍ତଦେଶକାଳମେବାକାଶଂ ଭବତୀତି, ଅତୋ ବ୍ରହ୍ମଣା ତତ୍‌କାର୍ଯ୍ୟେଣ ଚ ବିଜ୍ଞାତେନ ସହ ବିଜ୍ଞାତମେବାକାଶଂ ଭବତି । ଯଥା କ୍ଷୀରପୂର୍ଣ୍ଣେ ଘଟେ କତିଚିଦବ୍‌ବିନ୍ଦବଃ ପ୍ରକ୍ଷିପ୍ତାଃ ସନ୍ତଃ କ୍ଷୀରଗ୍ରହଣେନୈବ ଗୃହୀତା ଭବନ୍ତି, ନହି କ୍ଷୀରଗ୍ରହଣାଦବ୍‌ବିନ୍ଦୁ ଗ୍ରହଣଂ ପରିଶିଷ୍ୟତେ, ଏବଂ ବ୍ରହ୍ମଣା ତତ୍‌କାର୍ଯ୍ୟୈଶ୍ଚାବ୍ୟତିରିକ୍ତ-ଦେଶକାଳତ୍ୱାଦ୍ ଗୃହୀତମେବ ବ୍ରହ୍ମଗ୍ରହଣେନ ନଭୋଭବତି । ତସ୍ମାଦ୍ ଭାକ୍ତଂ ନଭସଃ ସମ୍ଭବଶ୍ରବଣମିତି ।

(୨) ଭାଷାଂତର- (କ) ଏହି ସୂତ୍ରଟି ଏକ ଶଙ୍କାନିବାରଣ ପାଇଁ ଉତ୍ତର ରୂପ । 'ତସ୍ମାଦ୍ ବା ଏତସ୍ମାଦାତ୍ମନଃ ଆକାଶଃ ସଂଭୂତଃ' ଏହି ଅଧିକାର (ପ୍ରକରଣ)ରେ ଅନୁକ୍ରମାନ ଏକହିଁ 'ସଂଭୂତଃ' ଶବ୍ଦ ଅନନ୍ତରୋକ୍ତ ତେଜ ପ୍ରଭୃତିରେ ମୁଖ୍ୟ ଓ ଆକାଶରେ ଗୌଣ କିପରି ହୁଏ ? ଏଠାରେ ଶଙ୍କା ହୁଏ ।

(ଖ) ତେଣୁ ତାହାର ଉତ୍ତରରେ କୁହାଯାଇଅଛି ଯେ- 'ସଂଭୂତଃ' ଶବ୍ଦ ଯଦ୍ୟପି ଏକ ଅଟେ, ତଥାପି ବିଷୟ ବିଶେଷର କାରଣ ବ୍ରହ୍ମ ଶବ୍ଦର ସହିତ ତାହାର ଗୌଣ ଓ ମୁଖ୍ୟପ୍ରୟୋଗ ହୁଏ । ଯେପରି ଏକ ବ୍ରହ୍ମଶବ୍ଦର ମଧ 'ତପସା ବ୍ରହ୍ମ' (ତପସ୍ୟା ଦ୍ୱାରା ବ୍ରହ୍ମକୁ ଜାଣିବାକୁ ଇଚ୍ଛାକରି ତପ ହିଁ ବ୍ରହ୍ମଅଟେ) ଏହି ପ୍ରକାର ଅଧିକାରରେ ଅନ୍ନାଦିରେ ଗୌଣ ଓ ଆନନ୍ଦରେ ମୁଖ୍ୟ ପ୍ରୟୋଗ ହୁଏ । ଯେପରି ବ୍ରହ୍ମବିଜ୍ଞାନର ସାଧନ ତପସ୍ୟାରେ ବ୍ରହ୍ମଶବ୍ଦ ଗୌଣବୃତ୍ତିରେ ପ୍ରଯୁକ୍ତ ହୁଏ, କିନ୍ତୁ ମୁଖ୍ୟରୂପରେ ବିଜ୍ଞେୟ ବ୍ରହ୍ମରେ ପ୍ରଯୁକ୍ତ ହୁଏ, ସେପରି ଏଠାରେ ଜାଣିବା ଉଚିତ । ପରନ୍ତୁ ଆକାଶର ଉତ୍ପତ୍ତି ନ ହେଲେ 'ଏକମେବ' (ଏକ ହିଁ ଅଦ୍ୱିତୀୟ ଅଟେ) ଏହି ପ୍ରତିଜ୍ଞାର କେଉଁପ୍ରକାରେ ସମର୍ଥନ ହେବ ?

(ଗ) ପରନ୍ତୁ ଦ୍ୱିତୀୟ ଆକାଶଦ୍ୱାରା ବ୍ରହ୍ମ ସଦ୍ୱିତୀୟ ପ୍ରାପ୍ତ ହୁଏ । ବ୍ରହ୍ମ ବିଦିତ ହେଲେ ସମସ୍ତ ପଦାର୍ଥ କିପରି ଜଣାପଡ଼େ ? ଏହାକୁ ଆମ୍ଭେ କହୁଁ ଯେ- 'ଏକମେବ'- ଏହା ସ୍ୱକାର୍ଯ୍ୟର ଅପେକ୍ଷାରେ ଉପପନ୍ନ ହୁଏ । ଯେପରି ଲୋକରେ କୁମ୍ଭାରର ଘରେ ପ୍ରଥମ ଦିନରେ ମୃତ୍ତିକା, ଦଣ୍ଡ, ଚକ୍ରପ୍ରଭୃତିକୁ ଦେଖି ଏବଂ ଦ୍ୱିତୀୟ ଦିନରେ ବହୁପ୍ରକାରର ରହିଥିବା ପାତ୍ରକୁ ଉପଲବ୍ଧି କରି କିଏ କହେ ଯେ- ପ୍ରଥମଦିନ ମୃତ୍ତିକା ଥିଲା ଏବଂ ସେହିଦିନ ମୃତ୍ତିକାର କାର୍ଯ୍ୟ (ଘଟାଦି) ନ ଥିଲା । କିନ୍ତୁ ଦଣ୍ଡ ଚକ୍ରାଦି ନ ଥିଲା- ଏହାକୁ ଅଭିପ୍ରାୟ କରେ ନାହିଁ । ସେହିପରି ଅଦ୍ୱିତୀୟ ଶ୍ରୁତି ଅନ୍ୟଅଧିଷ୍ଠାତାର ନିଷେଧ କରେ । ଯେପରି ଘଟାଦିପାତ୍ରଗୁଡ଼ିକର ପ୍ରକୃତି (ଉପାଦାନ କାରଣ) ମୃତ୍ତିକାର କୁମ୍ଭକାର ଅଧିଷ୍ଠାତାରୂପରେ ଦେଖାଯାଏ, ସେହିପରି ଜଗତ୍‌ର ଉପାଦାନକାରଣ ବ୍ରହ୍ମର ଅନ୍ୟ ଅଧିଷ୍ଠାତା ନୁହେଁ ।

(ଘ) ଦ୍ୱିତୀୟ ଆକାଶଦ୍ୱାରା ବ୍ରହ୍ମ ସଦ୍ୱିତୀୟ ହୁଏ ବୋଲି ପ୍ରସକ୍ତ ହୁଏ ନାହିଁ । କାରଣ-ଲକ୍ଷଣଭେଦରେ ତାହା ନାନାତ୍ୱ ଅଟେ । ପରନ୍ତୁ ଉତ୍ପତ୍ତିର ପୂର୍ବରୁ ବ୍ରହ୍ମ ଓ ଆକାଶରେ ଲକ୍ଷଣଭେଦ ନଥାଏ, କାରଣ-କ୍ଷୀର ଓ ଉଦକପରି ସଂସୃଷ୍ଟରେ ବ୍ୟାପିତ୍ୱ ଓ ଅମୃତତ୍ୱ ଧର୍ମ ସମାନ ଅଟେ । ପରନ୍ତୁ ସୃଷ୍ଟିକାଳରେ ବ୍ରହ୍ମ ଜଗତ୍‌କୁ ଉତ୍ପନ୍ନ କରିବା ପାଇଁ ଯତ୍ନ କରେ ଏବଂ ଅନ୍ୟ ଆକାଶ ନିଶ୍ଚଳ ରହେ । ତାହାଦ୍ୱାରା ଦୁହିଁଙ୍କର ଭେଦ ମଧ ସ୍ଥିର ରହେ । ସେହିପରି 'ଆକାଶଶରୀରଂ ବ୍ରହ୍ମ' ଇତ୍ୟାଦି ଶ୍ରୁତିବାକ୍ୟରେ ବ୍ରହ୍ମ ଏବଂ ଆକାଶର ଅଭେଦୋପଚାର ସିଦ୍ଧ ହୁଏ । ଅତଏବ ବ୍ରହ୍ମବିଜ୍ଞାନଦ୍ୱାରା ସର୍ବବିଜ୍ଞାନର ସିଦ୍ଧି ହୁଏ ।



(ङ) ପୁନଶ୍ଚ ଉତ୍ପଦ୍ୟମାନ ସମସ୍ତ କାର୍ଯ୍ୟ ଆକାଶଦ୍ୱାରା ଅବ୍ୟତିରିକ୍ତ ଦେଶକାଳରେ ଉତ୍ପନ୍ନ ହୁଏ ଏବଂ ବ୍ରହ୍ମଠାରୁ ଅଭିନ୍ନ ଦେଶ କାଳରେ ଆକାଶ ଜାତ ହୁଏ । ତେଣୁ ବ୍ରହ୍ମ ଓ ତାହାର କାର୍ଯ୍ୟର ବିଜ୍ଞାନ ହେବା ସହିତ ଆକାଶ ବିଜ୍ଞାତ ହୁଏ । ଯେପରି ଦୁଗ୍ଧପୂର୍ଣ୍ଣ ଘଟରେ କିଛି ଜଳବିନ୍ଦୁ ପ୍ରକ୍ଷିପ୍ତ ହେଲେ ଦୁଗ୍ଧପାନ କଲାବେଳେ ଜଳ ମଧ୍ୟ ପାନ କରାଯାଏ । ଦୁଗ୍ଧ ଗ୍ରହଣ କଲା ସମୟରେ ଜଳବିନ୍ଦୁକୁ ପରିତ୍ୟାଗ କରି ହୁଏ ନାହିଁ । ସେପରି ବ୍ରହ୍ମ ଏବଂ ତାର କାର୍ଯ୍ୟ ସହିତ (ଆକାଶ) ଅଭିନ୍ନ ଦେଶକାଳ ହେଲେ ବ୍ରହ୍ମକୁ ଗ୍ରହଣ କଲାବେଳେ ଆକାଶ ମଧ୍ୟ ଗୃହୀତ ହୁଏ । ତେଣୁ ଆକାଶର ସମ୍ଭବ ଶ୍ରୁତିରେ ଗୌଣ ଅଟେ ।

୧-ମୂଳ-ଏବଂ ପ୍ରାପ୍ତ ଇଦମାହ-

ଏହା ପ୍ରାପ୍ତ ହେଲାପରେ ଏଠାରେ କୁହାଯାଇଅଛି ଯେ-

**प्रतिज्ञाऽहानिरव्यतिरेकाच्छब्देभ्यः ॥ ६ ॥**

**ପ୍ରତିଜ୍ଞାଽହାନିରବ୍ୟତିରେକାଚ୍ଛବ୍ଦେଭ୍ୟଃ ॥ ୨-୩-୬ ॥**

ଅବ୍ୟତିରେକାତ୍-ଉପନିଷଦ୍ ପ୍ରତିପାଦିତ ବ୍ରହ୍ମରେ ସମସ୍ତ ପଦାର୍ଥ ଅଭେଦ ହେଲେ, ପ୍ରତିଜ୍ଞାଽହାନିଃ-ଗୋଟିଏ ବିଜ୍ଞାନଠାରୁ ସମସ୍ତ ବିଜ୍ଞାକର ପ୍ରତିଜ୍ଞା ବାଧିତ ହୁଏ ନାହିଁ । ଶବ୍ଦେଭ୍ୟଃ-'ସଦେବ ସୋମ୍ୟ', 'ଐତଦାତ୍ମ୍ୟମିଦଂ' ଏହିପ୍ରକାର କାର୍ଯ୍ୟ କାରଣର ଅଭେଦ ପ୍ରତିପାଦନପରକ ଶ୍ରୁତିବାକ୍ୟଠାରୁ ପ୍ରତିଜ୍ଞାସିଦ୍ଧି ଅବଗତ ହୁଏ ।

(୨) ମୂଳ-(କ) ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମ୍ (ଛା ୬-୧-୧) ଇତି, 'ଆତ୍ମନି ଖଲ୍ୱରେ ଦୃଷ୍ଟେ ଶ୍ରୁତେମତେବିଜ୍ଞାତ ଇଦଂ ସର୍ବଂ ବିଦିତମ୍' (ବୃ ୪-୫-୬) ଇତି । 'କସ୍ମିନ୍ନୁଭଗବୋ ବିଜ୍ଞାତେ ସର୍ବମିଦଂ ବିଜ୍ଞାତଂ ଭବତି' (ମୁଣ୍ଡ ୧-୧-୩) ଇତି, 'ନ କାଚନ ମଦ୍‌ବହିର୍ଧା ବିଦ୍ୟାସ୍ତି' ଇତି ଚୈବଂରୂପା ପ୍ରତିବେଦାନ୍ତଂ ପ୍ରତିଜ୍ଞା ବିଜ୍ଞାୟତେ । ତସ୍ୟାଃ ପ୍ରତିଜ୍ଞାୟା ଏବମହାନିରନୁପରୋଧଃ ସ୍ୟାତ୍, ଯଦ୍ୟବ୍ୟତିରେକଃ କୃତ୍ସ୍ନସ୍ୟ ବସ୍ତୁଜାତସ୍ୟ ବିଜ୍ଞେୟାଦ୍ ବ୍ରହ୍ମଣଃ ସ୍ୟାତ୍ । ବ୍ୟତିରେକେ ହି ସତ୍ୟୈକବିଜ୍ଞାନେନ ସର୍ବଂବିଜ୍ଞାୟତ ଇତୀୟଂ ପ୍ରତିଜ୍ଞା ହୀୟେତ ।

(ଖ) ସ ଚାବ୍ୟତିରେକ ଏବମୁପପଦ୍ୟତେ ଯଦି କୃତ୍ସ୍ନଂ ବସ୍ତୁଜାତମେକସ୍ମାଦ୍ ବ୍ରହ୍ମଣଃ ଉପଦ୍ୟେତ । ଶବ୍ଦେଭ୍ୟଶ୍ଚ ପ୍ରକୃତିବିକାରାବ୍ୟତିରେକନ୍ୟାୟେନୈବ ପ୍ରତିଜ୍ଞାସିଦ୍ଧିରବଗମ୍ୟତେ । ତଥାହି- 'ଯେନାଶ୍ରୁତଂ ଶ୍ରୁତଂ ଭବତି' ଇତି ପ୍ରତିଜ୍ଞାୟ ମୃଦାଦିଦୃଷ୍ଟାନ୍ତୈଃ କାର୍ଯ୍ୟକାରଣାଭେଦପ୍ରତିପାଦନପରୈଃ ପ୍ରତିଜ୍ଞୈଷା ସମର୍ଥ୍ୟତେ । ତତ୍‌ସାଧନାୟୈବ ଚୋତ୍ତରେ ଶବ୍ଦାଃ 'ସଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍' (ଛା୬-୨-୧), 'ତଦୈକ୍ଷତ,

ତତ୍ତେଜୋଽସୃଜତ' (ଛା ୬-୨-୩) ଇତ୍ୟେବଂ କାର୍ଯ୍ୟଜାତଂ ବ୍ରହ୍ମଣଃ ପ୍ରଦର୍ଶ୍ୟାବ୍ୟତିରେକଂ ପ୍ରଦର୍ଶୟନ୍ତି- 'ଐତାଦାତ୍ମ୍ୟମିଦଂ ସର୍ବମ୍' (ଛା ୬-୮-୭) ଇତ୍ୟାରଭ୍ୟାପ୍ରପାଠକପରିସମାପ୍ତେଃ । ତଦ୍ୟଦ୍ୟାକାଶଂ ନ ବ୍ରହ୍ମକାର୍ଯ୍ୟଂ ସ୍ୟାନ୍ନ ବ୍ରହ୍ମଣି ବିଜ୍ଞାତ ଆକାଶଂ ବିଜ୍ଞାୟେତ, ତତଶ୍ଚ ପ୍ରତିଜ୍ଞାହାନିଃ ସ୍ୟାତ୍ । ନଚ ପ୍ରତିଜ୍ଞାହାନ୍ୟା ବେଦସ୍ୟାପ୍ରାମାଣ୍ୟଂ ଯୁକ୍ତଂ କର୍ତୁମ୍ । ତଥାହି-ପ୍ରତିବେଦାନ୍ତଂ ତେ ତେ ଶବ୍ଦାସ୍ତେନ ତେନ ଦୃଷ୍ଟାନ୍ତେନ ତାମେବ ପ୍ରତିଜ୍ଞାଂ ଖ୍ୟାପୟନ୍ତି 'ଇଦଂ ସର୍ବଂ ଯଦୟମାତ୍ମା' (ବୃ ୨-୪-୬) 'ବ୍ରହ୍ମୈବେଦମମୃତଂ ପୁରସ୍ତାତ୍, (ମୁଣ୍ଡ ୨-୨-୧୧) ଇତ୍ୟେବମାଦୟଃ ତସ୍ମାଜ୍ଜ୍ୱଳନାଦିବଦେବ ଗଗନମପ୍ୟୁପପଦ୍ୟତେ ।

(ଗ) ଯଦୁକ୍ତମଶ୍ରୁତେର୍ନ ବିୟଦୁତ୍ପଦ୍ୟତ ଇତି, ତଦୟୁକ୍ତମ୍, ବିୟଦୁତ୍ପତ୍ତିବିଷୟଶ୍ରୁତ୍ୟନ୍ତରସ୍ୟ ଦର୍ଶିତତ୍ୱାତ୍ 'ତସ୍ମାଦ୍ୱା ଏତସ୍ମାଦାତ୍ମନଃ ଆକାଶଃ ସମ୍ଭୂତଃ (ତୈ ୨-୧) ଇତି । ସତ୍ୟଂ ଦର୍ଶିତମ୍ । ବିରୁଦ୍ଧନ୍ତୁ 'ତତ୍ତେଜୋଽସୃଜତ' ଇତ୍ୟନେନ ଶ୍ରୁତ୍ୟନ୍ତରେଣା ନ । ଏକବାକ୍ୟତ୍ୱାତ୍ ସର୍ବଶ୍ରୁତୀନାମ୍ । ଭବତ୍ୱେକବାକ୍ୟତ୍ୱମବିରୁଦ୍ଧାନାମ୍ । ଇହ ତୁ ବିରୋଧ ଉକ୍ତଃ ସକୃଚ୍ଛ୍ରୁତସ୍ୟସ୍ରଷ୍ଟୁଃ ସ୍ରଷ୍ଟୃ ବ୍ୟଦ୍ୱୟସମ୍ବନ୍ଧାସମ୍ଭବାଦଦ୍ୱୟୋଶ୍ଚ ପ୍ରଥମଜତ୍ୱାସମ୍ଭବାଦ୍ ବିକଳ୍ପସମ୍ଭବାଚ୍ଚେତି ।

(ଘ) ନୈଷ ଦୋଷଃ । ତେଜଃସର୍ଗସ୍ୟ ତୈତ୍ତିରୀୟକେ ତୃତୀୟତ୍ୱଶ୍ରବଣାତ୍ 'ତସ୍ମାଦ୍ୱା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ । ଆକାଶାଦ୍ ବାୟୁଃ । 'ବାୟୋରଗ୍ନିଃ' (ତୈ ୨-୧) ଇତି । ଅଶକ୍ୟା ହୀୟଂ ଶ୍ରୁତିରନ୍ୟଥା ପରିଣେତୁମ୍ । ଶକ୍ୟା ତୁ ପରିଣେତୁମ୍ ଛାନ୍ଦୋଗ୍ୟଶ୍ରୁତିସ୍ତଦାକାଶଂ ବାୟୁଂ ଚ ସୃଷ୍ଟ୍ୱା 'ତତ୍ତେଜୋଽସୃଜତ ଇତି ।

(ଙ) ନହୀୟଂ ଶ୍ରୁତିସ୍ତେଜୋଜନିପ୍ରଧାନା ସତୀ ଶ୍ରୁତ୍ୟନ୍ତର ପ୍ରସିଦ୍ଧାମାକାଶ୍ୟୋ-ତ୍ପତ୍ତିଂ ବାରୟିତୁଂ ଶକ୍ନୋତି । ଏକସ୍ୟ ବାକ୍ୟସ୍ୟ ବ୍ୟାପାରଦ୍ୱୟାସମ୍ଭବାତ । ସ୍ରଷ୍ଟା ତ୍ୱେକୋଽପି କ୍ରମେଣାନେକଂ ସ୍ରଷ୍ଟବ୍ୟ ସୃଜେତ୍ । ଇତ୍ୟେକବାକ୍ୟକଳ୍ପନାୟାଂ ସମ୍ଭବନ୍ତ୍ୟା ନ ବିରୁଦ୍ଧାର୍ଥତ୍ୱେନ ଶ୍ରୁତିଃ ହାତବ୍ୟା । ନଚସ୍ମାଭିଃ ସକୃଚ୍ଛ୍ରୁତସ୍ୟ ସ୍ରଷ୍ଟୁଃ ସ୍ରଷ୍ଟବ୍ୟଦ୍ୱୟସମ୍ବନ୍ଧୋଽଭିପ୍ରେୟତେ ଶ୍ରୁତ୍ୟନ୍ତରବଶେନ ସ୍ରଷ୍ଟବ୍ୟାନ୍ତରୋପସଂଗ୍ରହାତ୍ । ଯଥାଚ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ ତଜ୍ଜଲାତ୍' (ଛା ୩-୧୪-୧) ଇତ୍ୟତ୍ର ସାକ୍ଷାଦେବ ସର୍ବସ୍ୟ ବସ୍ତୁଜାତସ୍ୟ ବ୍ରହ୍ମଜତ୍ୱଂ ଶ୍ରୂୟମାଣଂ ନ ପ୍ରଦେଶାନ୍ତର ବିହିତଂ ତେଜଃପ୍ରମୁଖମୁତ୍ପତ୍ତିକ୍ରମଂ ବାରୟତି, ଏବଂ ତେଜସୋଽପି ବ୍ରହ୍ମଜତ୍ୱଂ ଶ୍ରୂୟମାଣଂ ନ ପ୍ରଦେଶାନ୍ତର ବିହିତଂ ତେଜଃପ୍ରମୁଖମୁତ୍ପତ୍ତିକ୍ରମଂ ବାରୟତି, ଏବଂ ତେଜସୋଽପି ବ୍ରହ୍ମଜତ୍ୱଂ ଶ୍ରୂୟମାଣଂ ନ ଶ୍ରୁତ୍ୟନ୍ତରବିହିତଂ ନଭଃପ୍ରମୁଖମୁତ୍ପତ୍ତିକ୍ରମଂ ବାରୟିତୁମର୍ହତି ।

(୨) ଭାଷାଂତର- (କ) 'ଯେନାଶ୍ରୁତଂ ଶ୍ରୁତମ୍' (ଯାହାଦ୍ୱାରା ଅଶ୍ରୁତ ଶ୍ରୁତ, ଅମତ ମତ, ଏବଂ ଅବିଜ୍ଞାତ ବିଜ୍ଞାତ ହୁଏ) 'ଆତ୍ମନି ଖଲ୍ୱରେ' (ହେ ମୈତ୍ରେୟୀ ନିଶ୍ଚିତ ଭାବରେ ଆତ୍ମାର ଦର୍ଶନ, ଶ୍ରବଣ, ମନନ ଓ ବିଜ୍ଞାନ ହେଲାପରେ ସେସବୁ ବିଦିତ



ହୁଏ), କସ୍ମିନ୍ନୁ ଭଗବୋ' (ହେ ଭଗବାନ୍ ! କାହାକୁ ବିଜ୍ଞାତ ହେଲେ ସେ ସବୁ ବିଜ୍ଞାତ ହୋଇଯାଏ), ଏବଂ 'ନ କାଚନ' (ମୋଠାରୁ ଭିନ୍ନ ଏବଂ କୌଣସି ବିଦ୍ୟା ନାହିଁ) ଏହି ପ୍ରକାର ପ୍ରତିଜ୍ଞା ପ୍ରତ୍ୟେକ ବେଦାନ୍ତରେ ଜଣାପଡ଼େ । ଯଦି ସଂପୂର୍ଣ୍ଣ ବସ୍ତୁ ସମୂହ ବିଜ୍ଞେୟବ୍ରହ୍ମଠାରୁ ଅଭିନ୍ନ ହୁଏ, ତେବେ ସେହି ପ୍ରତିଜ୍ଞାକୁ ସେହିପ୍ରକାର ଅହାନି (ଅବାଧ) ହେବ । ଭିନ୍ନ ହେଲେ କିନ୍ତୁ 'ଏକର ବିଜ୍ଞାତ ହେଲେ ସମସ୍ତର ବିଜ୍ଞାତ ହୁଏ' ଏହି ପ୍ରତିଜ୍ଞାର ହାନି ହୁଏ ।

(ଖ) ସେହି ଅବ୍ୟତିରେକ (ଅଭିନ୍ନତ୍ୱ) ଏହି ପ୍ରକାର ଉପପନ୍ନ ହୁଏ କି ? ଯଦି ସଂପୂର୍ଣ୍ଣବସ୍ତୁସମୂହ ଏକ ବ୍ରହ୍ମଠାରୁ ଉତ୍ପନ୍ନ ହେଉ ଏବଂ ଶ୍ରୁତିବାକ୍ୟଗୁଡ଼ିକଠାରୁ 'ପ୍ରକୃତି ବିକାର' ଅର୍ଥାତ୍ ଅବ୍ୟତିରେକନ୍ୟାୟରେ ପ୍ରତିଜ୍ଞାର ସିଦ୍ଧି ଅବଗତ ହୁଏ । ଯେପରି 'ଯେନାଶ୍ରୁତଂ ଶ୍ରୁତଂ ଭବତି' ଏହିପ୍ରକାର ପ୍ରତିଜ୍ଞା କରି କାର୍ଯ୍ୟ-କାରଣ-ଅଭେଦ ପ୍ରତିପାଦନ ପରକ ମୃତ୍ତିକାଦି ଦୃଷ୍ଟାନ୍ତ ଦ୍ୱାରା ଏହା ପ୍ରତିଜ୍ଞାକୁ ସମର୍ଥନ କରାଯାଇଅଛି ଏବଂ ଏହାକୁ ସିଦ୍ଧ କରିବା ପାଇଁ ଉତ୍ତର ଶବ୍ଦ (ଶ୍ରୁତି) 'ସଦେବ ସୋମ୍ୟ ! (ହେ ସୋମ୍ୟ ! ଆରମ୍ଭରେ ଏକମାତ୍ର ଅଦ୍ୱିତୀୟ ସତ୍ ଥିଲା), 'ତଦୈକ୍ଷତ' (ସେହି ସତ୍ ଇକ୍ଷଣ କଲା । ସେ ତେଜ ଉତ୍ପନ୍ନ କଲା) ଏହି ପ୍ରକାର ବ୍ରହ୍ମଠାରୁ କାର୍ଯ୍ୟସମୂହର ଉତ୍ପତ୍ତି ଦେଖାଇ 'ଐତଦାତ୍ମ୍ୟମିଦଂ ସର୍ବମ୍' (ଛା ୬-୮-୭) ଏହା ଆରମ୍ଭ କରି ଅଧ୍ୟାୟର ସମାପ୍ତି ପର୍ଯ୍ୟନ୍ତ ଅବ୍ୟତିରେକ (ଅଭେଦ) ଦେଖାଏ । ତେଣୁ ଯଦି ଆକାଶ ବ୍ରହ୍ମଣ କାର୍ଯ୍ୟ ନ ହୁଏ, ତେବେ ବ୍ରହ୍ମ ବିଜ୍ଞାତ ହେଲାପରେ ମଧ୍ୟ ଆକାଶ ବିଜ୍ଞାତ ହେବ ନାହିଁ ଏବଂ ତଦ୍ଦ୍ୱାରା ପ୍ରତିଜ୍ଞାର ବାଧ ହେବ । ପ୍ରତିଜ୍ଞାହାନି ହେଲେ ବେଦର ଅପ୍ରାମାଣ୍ୟ ସ୍ୱୀକାର କରିବା ଠିକ୍ ନୁହେଁ । କାରଣ- 'ଇଦଂ ସର୍ବଂ ଯଦୟମାତ୍ମା' (ଏହା ସବୁ ଆତ୍ମା ଅଟେ(, 'ବ୍ରହ୍ମୈବେଦମମୃତଂ ପୁରସ୍ତାତ୍ (ଏହି ଅମୃତ ବ୍ରହ୍ମ ସମସ୍ତଙ୍କ ସମ୍ମୁଖରେ ଅଛି) ଇତ୍ୟାଦି ସେହି ସେହି ଶ୍ରୁତିବାକ୍ୟଗୁଡ଼ିକ ପ୍ରତ୍ୟେକ ଉପନିଷଦରେ ସେହି ସେହି ଦୃଷ୍ଟାନ୍ତଦ୍ୱାରା ପ୍ରତିଜ୍ଞାଜ୍ଞାପନ କରନ୍ତି । ତେଣୁ ଅଗ୍ନି ପରି ଆକାଶ ମଧ୍ୟ ଉତ୍ପନ୍ନ ହୁଏ ।

(ଗ) ଶ୍ରୁତି ନ ହେଲେ ଆକାଶ ଉତ୍ପନ୍ନ ହୁଏ ନାହିଁ ବୋଲି ଯାହା କୁହାଯାଇଅଛି, ତାହା ଠିକ୍ ନୁହେଁ କାରଣ- 'ତସ୍ମାଦବା ଏତସ୍ମାଦାତ୍ମନଃ ଆକାଶଃ ସଂଭୂତଃ' ଏହି ପ୍ରକାର ଆକାଶର ଉତ୍ପତ୍ତି ବିଷୟକ ଅନ୍ୟ ଶ୍ରୁତି ଦେଖାଯାଏ । ହଁ, ଦେଖାଯାଏ । ପରନ୍ତୁ 'ତତ୍ତେଜୋଽସୃଜତ' (ସେ ତେଜ ଉତ୍ପନ୍ନ କଲା) ଏହି ଅନ୍ୟ ଶ୍ରୁତିଦ୍ୱାରା ତାହା ବିରୁଦ୍ଧ ହୁଏ ନାହିଁ । କାରଣ- ସମସ୍ତ ଶ୍ରୁତିର ଏକବାକ୍ୟତା ଅଛି । ପୂର୍ବପକ୍ଷ-ଅବିରୁଦ୍ଧ ବାକ୍ୟଗୁଡ଼ିକର ଏକବାକ୍ୟତା ହୋଇପାରେ । କିନ୍ତୁ ଏଠାରେ ତାହା ବିରୋଧ କରାଯାଇଛି, କାରଣ-ଥରେ ମାତ୍ର ଶ୍ରୁତି ବିଷୟକ ସ୍ରଷ୍ଟାର ଦୁଇଟି ସ୍ରଷ୍ଟବ୍ୟର ସହିତ ସମ୍ବନ୍ଧ ସମ୍ଭବ ହୁଏ ନାହିଁ । ଦୁଇଟିର ପ୍ରଥମୋତ୍ପତ୍ତିର ଅସମ୍ଭବ ଏବଂ ବିକଳ୍ପର ଅସମ୍ଭବ ହୁଏ ।

(ଘ) ସିଦ୍ଧାନ୍ତ-ନା, ତାହା ଦୋଷ ନୁହେଁ । କାରଣ- 'ତସ୍ମାଦ୍ ବା ଏତସ୍ମାଦାତ୍ମନଃ' (ଏହି ପ୍ରତ୍ୟଗଭିନ୍ନ ସେହି ଆତ୍ମାଠାରୁ ଆକାଶ ଉତ୍ପନ୍ନ ହୋଇଛି । ଆକାଶରୁ ବାୟୁ ଏବଂ ବାୟୁରୁ ଅଗ୍ନି) ଏହି ପ୍ରକାର ତୈତ୍ତିରୀୟକରେ ତେଜର ସୃଷ୍ଟି ତିନିଥର ଶୁଣାଯାଏ । ତେଣୁ ଏହି ଶ୍ରୁତି କଦାପିପରିଣତ ହୁଏ ନାହିଁ । ପରନ୍ତୁ 'ତଦାକାଶଃ' (ସେ ଆକାଶ ଓ ବାୟୁକୁ ଉତ୍ପନ୍ନ କରି ସେ ତେଜ ଉତ୍ପନ୍ନ କଲା)- ଏହି ପ୍ରକାର ଛାନ୍ଦୋଗ୍ୟଶ୍ରୁତି ପରିଣତ ହୁଏ ।

(ଙ) ଏହି ଶ୍ରୁତି ତେଜର ଉତ୍ପତ୍ତି ପ୍ରଧାନ ହୋଇ ଅନ୍ୟ ଶ୍ରୁତିରେ ପ୍ରସିଦ୍ଧ ଆକାଶର ଉତ୍ପତ୍ତିକୁ ନିବାରଣ କରିବାରେ ସମର୍ଥ ହୁଏ ନାହିଁ, କାରଣ-ଗୋଟିଏ ବାକ୍ୟରେ ଦୁଇଟି ବ୍ୟାପାର ସମ୍ଭବ ନୁହେଁ । ସ୍ରଷ୍ଟା ଗୋଟିଏ ହେଲେ ମଧ୍ୟ ତାହା କ୍ରମଦ୍ୱାରା ଅନେକ ସ୍ରଷ୍ଟବ୍ୟକୁ ଉତ୍ପନ୍ନ କରେ । ଏହିପରି ଏକବାକ୍ୟତାକୁ କଳ୍ପନା ସମ୍ଭବ ହେଲେ ବିରୁଦ୍ଧାର୍ଥ ଦ୍ୱାରା ଶ୍ରୁତିର ହାନି କରାଯାଏ ନାହିଁ । ଥରେ ମାତ୍ର ଶ୍ରୁତିଶ୍ରୁତିପାଦକ ସ୍ରଷ୍ଟାର ଦୁଇଟି ସ୍ରଷ୍ଟବ୍ୟ ସହିତ ସମ୍ବନ୍ଧ ଆମ୍ଭେମାନେ ଗ୍ରହୁଁ ନାହୁଁ । କାରଣ-ଅନ୍ୟ ଶ୍ରୁତିରେ ପ୍ରମାଣଦ୍ୱାରା ଅନ୍ୟ ସ୍ରଷ୍ଟବ୍ୟର ସଂଗ୍ରହ କରାଯାଏ । ଯେପରି 'ସର୍ବଂଖଲ୍ୱିଦଂ (ନିଶ୍ଚିତ ଭାବରେ ସେ ସବୁ ବ୍ରହ୍ମ ଅଟେ । ଏହା ତାହାଠାରୁ ଉତ୍ପନ୍ନ ହୋଇ ସେଠାରେ ଲୀନ ହୋଇଯାଏ ଏବଂ ସେଠାରେ ଚେଷ୍ଟା କରେ) ଏଠାରେ ସମସ୍ତ କାର୍ଯ୍ୟ ସମୁଦାୟର ବ୍ରହ୍ମଦ୍ୱାରା ସାକ୍ଷାତ୍ ଉତ୍ପତ୍ତି ଶ୍ରୂୟମାଣ ହୁଏ । ସେ ଅନ୍ୟ ସ୍ଥାନରେ ବିହିତ ତେଜ ପ୍ରମୁଖ ଉତ୍ପ୍ତି କ୍ରମର ବାରଣ କରେ ନାହିଁ । ଯେପରି ତେଜର ବ୍ରହ୍ମଠାରୁ ଶ୍ରୂୟମାଣ ଉତ୍ପତ୍ତି ଅନ୍ୟ ଶ୍ରୁତିରେ ବିହିତ ଆକାଶ ପ୍ରମୁଖ ଉତ୍ପତ୍ତିକ୍ରମକୁ ବାରଣ କରିବାରେ ସମର୍ଥ ହୁଏ ନାହିଁ ।

(୩) ମୂଳ-(କ) ନନୁ ଶମବିଧାନାର୍ଥମେତଦ୍ ବାକ୍ୟମ୍, 'ତଜ୍ଜଲାନିତି ଶାନ୍ତି ଉପାସୀତ' ଇତି ଶ୍ରୁତେଃ ନେତତ୍ ସୃଷ୍ଟିବାକ୍ୟଂ ତସ୍ମାଦେତନ୍ନପ୍ରଦେଶାନ୍ତର ପ୍ରସିଦ୍ଧଂ କ୍ରମମୁପରୋଦ୍ଧୁମର୍ହତୀତି । 'ତତ୍ତେଜୋଽସୃଜତ' ଇତ୍ୟେତତ୍ ସୃଷ୍ଟିବାକ୍ୟମ୍ । ତସ୍ମାଦତ୍ର ଯଥାଶ୍ରୁତି କ୍ରମୋ ଗ୍ରହତବ୍ୟ ଇତି ।

(ଖ) ନେତ୍ୟୁଚ୍ୟତେ । ନହି ତେଜଃପ୍ରାଥମ୍ୟାନୁରୋଧେନ ଶ୍ରୁତ୍ୟନ୍ତରପ୍ରସିଦ୍ଧୋ ବିୟତ୍‌ପଦାର୍ଥ ପରିତ୍ୟକ୍ତବ୍ୟୋ ଭବତି, ପଦାର୍ଥଧର୍ମତ୍ୱାତ୍ କ୍ରମସ୍ୟ । ଅପିଚ 'ତତ୍ତେଜୋଽସୃଜତ' ଇତି ନାତ୍ର କ୍ରମସ୍ୟ ବାଚକଃ କଶ୍ଚିଚ୍ଛବ୍ଦୋଽସ୍ତି । ଅର୍ଥାତ୍ତୁ କ୍ରମୋଽବଗମ୍ୟତେ । ସ ଚ 'ବାୟୋରଗ୍ନିଃ' ଇତ୍ୟନେନ ଶ୍ରୁତ୍ୟନ୍ତରପ୍ରସିଦ୍ଧେନ କ୍ରମେଣ ନିବାର୍ଯ୍ୟତେ । ବିକଳ୍ପସମୁଚ୍ଚୟୌ ତୁ ବିୟତ୍ତେଜସୋଃ ପ୍ରଥମଜତ୍ୱବିଷୟାବସମ୍ଭବାନଭ୍ୟୁପଗମାଭ୍ୟାଂ ନିବାରିତୌ । ତସ୍ମାନ୍ନାସ୍ତି ଶ୍ରୁତ୍ୟୋର୍ବିପ୍ରତିଷେଧଃ ।



(ଗ) ଅପିଚ ଛାନ୍ଦୋଗ୍ୟେ 'ଯେନାଶ୍ରୁତଂ ଶ୍ରୁତଂ ଭବତି' ଇତ୍ୟେତାଂ ପ୍ରତିଜ୍ଞାଂ ବାକ୍ୟୋପକ୍ରମେ ଶ୍ରୁତାଂ ସମର୍ଥୟିତୁମସମାମ୍ନାତମପି ବିୟଦୁତ୍ପତ୍ତାବୁପସଂଖ୍ୟାତବ୍ୟଂ, କିମଙ୍ଗ ପୁନସ୍ତୈତ୍ତିରୀୟକେ ସମାମ୍ନାତଂ ନଭୋ ନ ସଂଗୃହ୍ୟତେ । ଯଚ୍ଚୋକ୍ତମାକାଶସ୍ୟ ସର୍ବେଣାନନ୍ୟ ଦେଶକାଲତ୍ୱାଦ୍ ବ୍ରହ୍ମଣା ତତ୍‌କାର୍ଯ୍ୟୈଶ୍ଚ ସହ୍‌ବିଦିତମେବ ତଦ୍ ଭବତ୍ୟତୋ ନ ପ୍ରତିଜ୍ଞା ହୀୟତେ, ନଚ 'ଏକମେବାଦ୍ୱିତୀୟମ୍' ଇତି ଶ୍ରୁତିକୋପୋ ଭବତି କ୍ଷୀରୋଦକବଦ୍ ବ୍ରହ୍ମନଭସୋର ବ୍ୟତିରେକୋପପତ୍ତେରିତି ।

(ଘ) ଅତ୍ରୋଚ୍ୟତେ । ନ କ୍ଷୀରୋଦକନ୍ୟାୟେନେଦମେକବିଜ୍ଞାନେନ ସର୍ବବିଜ୍ଞାନଂ ନେତବ୍ୟମିତି ଗମ୍ୟତେ । କ୍ଷୀରୋଦକନ୍ୟାୟେନ ଚ ସର୍ବବିଜ୍ଞାନଂ କଳ୍ପ୍ୟମାନଂ ନ ସମ୍ୟଗ୍‌ବିଜ୍ଞାନଂ ସ୍ୟାତ୍ । ନହି କ୍ଷୀରଜ୍ଞାନଗୃହୀତସ୍ୟୋଦକସ୍ୟ ସମ୍ୟଗ୍‌ବିଜ୍ଞାନ ଗୃହୀତବ୍ୟମସ୍ତି । ନ ଚ ବେଦସ୍ୟ ପୁରୁଷାଣାମିବ ମାୟାଲୀକବଞ୍ଚନା-ଦିଭିରର୍ଥାବଧାରଣମୁପପଦ୍ୟତେ । ସାବଧାରଣା ଚେୟମ୍ 'ଏକମେବାଦ୍ୱିତୀୟମ୍' ଇତି ଶ୍ରୁତିଃ କ୍ଷୀରୋଦକନ୍ୟାୟେନ ନୀୟମାନା ପୀଡ୍ୟେତ ।

(ଙ) ନଚ ସ୍ୱକାର୍ଯ୍ୟାପେକ୍ଷୟେଦଂ ବସ୍ତ୍ୱେକଦେଶବିଷୟଂ ସର୍ବବିଜ୍ଞାନମେକମେ ବାଦ୍ୱିତୀୟତାବଧାରଣଂ ଚେତି ନ୍ୟାୟମ୍, ମୃଦାଦିଷ୍ୱପି ହି ତତସମ୍ଭବାନ୍ନ ତଦପୂର୍ବ ବଦୁପନ୍ୟସିତବ୍ୟଂ ଭବତି 'ଶ୍ୱେତକେତୋ ଯନ୍ନୁ ସୋମ୍ୟେଦଂ ମହାମନା ଅନୂଚାନମାନୀ ସ୍ତବ୍‌ଧୋଽସ୍ୟୁତ ତମାଦେଶ-ପ୍ରାକ୍ଷ୍ୟୋ ଯେନଶ୍ରୁତଂ ଶ୍ରୁତିଂ ଭବତି, (ଛା୬-୧-୧) ଇତ୍ୟାଦିନା । ତସ୍ମାଦଶେଷବସ୍ତୁବିଷୟମେବେଦଂ ସର୍ବବିଜ୍ଞାନଂ ସର୍ବସ୍ୟ ବ୍ରହ୍ମକାର୍ଯ୍ୟତାପେକ୍ଷୟୋପନ୍ୟସ୍ୟୁତ ଇତି ଦ୍ରଷ୍ଟବ୍ୟମ୍ ।

**(୩) ଭାଷାଂତର**-(କ) ପରନ୍ତୁ 'ତଜ୍ଜଲାନିତ ଶାନ୍ତ ଉପାସୀତ' ତାହାଠାରୁ ଉତ୍ପନ୍ନ ହେଉଥିବା, ତାହାଠାରେ ଲୀନ ହେଉଥିବା, ସେଠାରେ ଚେଷ୍ଟା କରୁଥିବା ବ୍ରହ୍ମକୁ ଶାନ୍ତହୋଇ ଉପାସନା କରିବା ଉଚିତ୍ । ଏହି ଶ୍ରୁତିରେ ଏହିବାକ୍ୟ ଶମକୁ ବିଧାନ କରେ । ତେଣୁ ଏହା ସୃଷ୍ଟିବାକ୍ୟ ନୁହେଁ । ତେଣୁ ଏହାର ଅନ୍ୟ ପ୍ରଦେଶରେ ପ୍ରସିଦ୍ଧକ୍ରମର ବିରୋଧ କରେ ନାହିଁ । 'ତତ୍ତେଜୋଽସୃଜତ' ଏହା ସୃଷ୍ଟିବାକ୍ୟ ଅଟେ । ତେଣୁ ଏଠାରେ ଶ୍ରୁତି ଅନୁସାରେ କ୍ରମ ଗ୍ରହଣ କରିବା ଉଚିତ୍ ।

(ଖ) ସିଦ୍ଧାନ୍ତ-ନାହିଁ । କିନ୍ତୁ କୁହାଯାଇଛି ଯେ- ତେଜକୁ ପ୍ରଥମତାର ଅନୁରୋଧରୁ ତୈତ୍ତିରୀୟ ଶ୍ରୁତି ପ୍ରସିଦ୍ଧ ଆକାଶ ପଦାର୍ଥ ପରିତ୍ୟାଗ କରିବା ପାଇଁ ଯୋଗ୍ୟ ହୁଏ ନାହିଁ । କାରଣ-କ୍ରମ ପଦାର୍ଥର ଧର୍ମ ଅଟେ । 'ତତ୍ତୋଜୋଽସୃଜତ' ଏହି ଶ୍ରୁତିରେ କ୍ରମବାଚକ କୌଣସି ଶବ୍ଦ ନାହିଁ । ପରନ୍ତୁ ଅର୍ଥତଃ କ୍ରମ ଅବଗତ ହୁଏ ନାହିଁ କି ? ତେଣୁ ତାହାର 'ବାୟୋରଗ୍ନିଃ (ବାୟୁରୁ ଅଗ୍ନିଜାତ ହେଲା) ଏହି ଅନ୍ୟଶ୍ରୁତି ପ୍ରସିଦ୍ଧ କ୍ରମରେ ନିବାରଣ କରାଯାଇଛି । ଆକାଶ

ଓ ତେଜର ପ୍ରଥମୋତ୍ପତ୍ତିବିଷୟକ ବିକଳ୍ପ ଓ ସମୁଚ୍ଚୟ ଅସମ୍ଭବ ହୁଏ ଏବଂ ଅସ୍ୱୀକାର କଲେ ନିରସ୍ତ ହୁଏ । ତେଣୁ ଶ୍ରୁତିଗୁଡ଼ିକରେ ତାହା ବିରୋଧ ହୁଏ ନାହିଁ ।

(ଗ) ଛାନ୍ଦୋଗ୍ୟରେ 'ଯେନାଶ୍ରୁତଂ' (ଯାହାଦ୍ୱାରା ଅଶ୍ରୁତ ଶ୍ରୁତ ହୁଏ) ଏହି ବାକ୍ୟୋପକ୍ରମରେ ଏହି ଶ୍ରୁତିପ୍ରତିଜ୍ଞାର ସମର୍ଥନ ପାଇଁ ଅଶ୍ରୁତ ଆକାଶର ମଧ୍ୟ ଉତ୍ପତ୍ତି ପ୍ରକରଣରେ ଉପସଂଖ୍ୟାନ (ଗ୍ରହଣ) କରାଯିବା ଉଚିତ୍ କି ? କିନ୍ତୁ ହେ ଅଙ୍ଗ ! ତୈତ୍ତିରୀୟଉପନିଷଦ୍‌ରେ ପଠିତ ଆକାଶର ସଂଗ୍ରହ କଣ ହୁଏ ନାହିଁ କି ? ଆକାଶର ସମସ୍ତଙ୍କ ସହ ଅନନ୍ୟଦେଶକାଳ ହେବାର କାରଣ ବ୍ରହ୍ମ ଓ ତାହାର କାର୍ଯ୍ୟସହିତ ସେ ବିଦିତ ହୁଏ ବୋଲି ଯାହା କୁହାଯାଇଅଛି, ତଦ୍ୱାରା ପ୍ରତିଜ୍ଞା ହାନି ହୁଏ ନାହିଁ । 'ଏକମେବା-ଦ୍ୱିତୀୟମ୍' ଏହି ଶ୍ରୁତିବାକ୍ୟର ବାଧ ମଧ୍ୟ ହୁଏ ନାହିଁ । କାରଣ-ଦୁଗ୍ଧ ଓ ଜଳପରି ବ୍ରହ୍ମ ଓ ଆକାଶର ଅଭେଦ ଉପପନ୍ନ ହୁଏ ।

(ଘ) ସିଦ୍ଧାନ୍ତ-ଏହି ବିଷୟରେ କୁହାଯାଇଛି ଯେ- କ୍ଷୀରୋଦକନ୍ୟାୟରେ 'ଗୋଟିଏ ବିଜ୍ଞାନଦ୍ୱାରା ସମସ୍ତବିଜ୍ଞାନ' ଗ୍ରହଣ କରିବା ଉଚିତ୍ ନୁହେଁ । କିନ୍ତୁ ମୃତ୍ତିକାଦି ଦୃଷ୍ଟାନ୍ତ ଗ୍ରହଣ କରିବାରେ ପ୍ରକୃତିବିକାରନ୍ୟାୟରେ ଏହି ସବୁ ବିଜ୍ଞାନକୁ ଗ୍ରହଣ କରିବା ଉଚିତ୍, ଏହାହିଁ ଜଣାପଡେ । କ୍ଷୀରୋଦକନ୍ୟାୟରେ କଥ୍ୟମାନ ସର୍ବବିଜ୍ଞାନ ସମ୍ୟଗ୍ ଜ୍ଞାନ ହେବନାହିଁ । କାରଣ-କ୍ଷୀରଜ୍ଞାନଦ୍ୱାରା ଗୃହୀତ ଜଳର ଯଥାର୍ଥଜ୍ଞାନ ଗ୍ରହଣ ହୁଏ ନାହିଁ । ବେଦ ଅର୍ଥନିଶ୍ଚୟ ପୁରୁଷପରି ମାୟାଦ୍ୱାରା ମିଥ୍ୟାଭାଷଣ ଓ ତଦ୍ୱାରା ବଞ୍ଚନାଦିଠାରୁ ଉପପନ୍ନ ହୁଏ ନାହିଁ । କିନ୍ତୁ 'ଏକମେବାଦ୍ୱିତୀୟମ୍' ଏହି ସାବଧାରଣ ଶ୍ରୁତି କ୍ଷୀରୋଦକନ୍ୟାୟବଳରେ ଗ୍ରହଣ କଲେ, ତାହା ପୁରାପୁରି ବାଧିତ ହେବ ।

(ଙ) 'ସର୍ବବିଜ୍ଞାନଂ' ଏବଂ 'ଏକ ହି ଅଦ୍ୱିତୀୟ' ଏହି ନିଶ୍ଚୟ କାର୍ଯ୍ୟକୁ ଅପେକ୍ଷା କରି ବସ୍ତୁ ଏକଦେଶ ବିଷୟକ ହୁଏ ବୋଲି କହିବା ଠିକ୍ ନୁହେଁ । କାରଣ- ମୃତ୍ତିକାଦିରେ ତାହା ସମ୍ଭବପର । 'ଶ୍ୱେତାକେତୋ ଯନ୍ନୁ' (ଉଦ୍ଦାଳକ-ହେ ସୋମ୍ୟ ଶ୍ୱେତକେତୁ ! ତୁ ଯାହା ମହାମନା, ପଣ୍ଡିତମନ୍ୟ ଏବଂ ଅବିନୀତ ହୁଅ, ସେହି ଆଦେଶରେ ଅଶ୍ରୁତ ଶ୍ରୁତ ହୁଏ, ସେହି ଆଦେଶକୁ ତୁମ୍ଭେ ଆଚାର୍ଯ୍ୟକୁ ପଚାରୁଅଛି କି ? ଇତ୍ୟାଦି ଦ୍ୱାରା ତାହାର ଅପୂର୍ବପରି ଉପନ୍ୟାସ କରିବା ନ୍ୟାୟ ସଙ୍ଗତ ନୁହେଁ । ତେଣୁ ସମସ୍ତ ବସ୍ତୁ ବିଷୟକ ଏହି ସର୍ବବିଜ୍ଞାନ ସମସ୍ତବ୍ରହ୍ମ କାର୍ଯ୍ୟକୁ ଅପେକ୍ଷାକରି ଉପନ୍ୟସ୍ତ ହୋଇଛି ବୋଲି ଜାଣିବା ଉଚିତ୍ ।

(୧) ମୂଳ- ଯତ୍‌ପୁନରେତଦୁକ୍ତମସମ୍ଭବାଦ୍ ଗୌଣୀ ଗଗନସ୍ୟୋତ୍ପତ୍ତି-ଶ୍ରୁତିରିତି । ଅତ୍ର ବ୍ରୂମଃ-

**(୧) ଭାଷାଂତର-** ଉତ୍ପତ୍ତିର ଅସମ୍ଭବ ହେଲେ ଆକାଶର ଉତ୍ପତ୍ତି ବିଷୟକ ଶ୍ରୁତି ଗୌଣୀ ହୁଏ । ତେଣୁ ଏହା ଉପରେ ଆମ୍ଭେ କହୁ ଯେ-

## यावद्विकारं तु विभागो लोकवत् ॥ ७ ॥

## ଯାବଦ୍‌ବିକାରଂ ତୁ ବିଭାଗୋ ଲୋକବତ୍ ॥୨-୩-୭॥

ତୁ ଶବ୍ଦ ପୂର୍ବପକ୍ଷନିବାରଣ ପାଇଁ ଉଦ୍ଦିଷ୍ଟ । ଯାବଦ୍ ବିକାରମ୍-ଯେତେଗୁଡ଼ିଏ ଘଟ ଓ ଶରବାଦି ବିକାର ଅଛନ୍ତି, ବିଭାଗଃ-ସେ ସବୁର ଅଟେ ଏବଂ ବିଭକ୍ତ ହେଲେ ସେମାନେ ସବୁକାର୍ଯ୍ୟ ହୁଅନ୍ତି । ଲୋକବତ୍-ସେହି ଲୌକିକ ପଦାର୍ଥପରି ଆକାଶ ବିଭକ୍ତ ହେଲେ କାର୍ଯ୍ୟ ହୁଏ ।

(୨) ମୂଳ-(କ) ତୁଶବ୍ଦୋଽସମ୍ଭବାଶଙ୍କା ବ୍ୟାବୃତ୍ତ୍ୟର୍ଥଃ । ନ ଖଲ୍ୱାକାଶୋତ୍ପତ୍ତ୍ୟା-ବସମ୍ଭବାଶଙ୍କା କର୍ତ୍ତବ୍ୟ । ଯତୋ ଯାବତ୍‌କିଞ୍ଚିଦ୍‌ବିକାରଜାତଂ ଦୃଶ୍ୟତେ ଘଟ ଘଟି କୋଦଞ୍ଚନାଦି ବା କଟକକେୟୂରକୁଣ୍ଡଳାଦି ବା ସୂଚୀନାକ୍ଷରଚନିସ୍ତୁଂଶାଦି ବା ତାବନେବ ବିଭାଗୋ ଲୋକେ ଲକ୍ଷ୍ୟତେ । ନତ୍ୱବିକୃତଂକୃତଶ୍ଚିଦ୍ ବିଭକ୍ତମୁପଲଭ୍ୟତେ । ବିଭାଗଃ ଚାକାଶସ୍ୟ ପୃଥିବ୍ୟାଦିଭ୍ୟୋଽବଗମ୍ୟତେ । ତସ୍ମାତ୍‌ସୋଽପି ବିକାରୋ ଭବିତୁମର୍ହତି । ଏତେନ ଦିକ୍‌କାଳମନଃପରମାଣ୍ୱାଦୀନାଂ କାର୍ଯ୍ୟତ୍ୱଂ ବ୍ୟାଖ୍ୟାତମ୍ ।

(ଖ) ନନ୍ୱାତ୍ମାପ୍ୟାକାଶାଦିଭ୍ୟୋ ବିଭକ୍ତ ଇତି ତସ୍ୟାପି କାର୍ଯ୍ୟତ୍ୱଂ ଘଟାଦିବତ୍ ପ୍ରାପ୍ନୋତି । ନ । 'ଆତ୍ମନ ଆକାଶଃ ସମ୍ଭୂତଃ' (ତୈ ୨-୧) ଇତି ଶ୍ରୁତେଃ । ଯଦି ହ୍ୟାତ୍ମାପି ବିକାରଃ ସ୍ୟାତ୍ତସ୍ମାତ୍ ପରମନ୍ୟନ୍ନ ଶ୍ରୁତମିତ୍ୟାକାଶାଦି ସର୍ବଂ କାର୍ଯ୍ୟଂ ନିରାତ୍ମକମାତ୍ମନଃ କାର୍ଯ୍ୟତ୍ୱେ ସ୍ୟାତ୍ । ତଥାଚ ଶୂନ୍ୟବାଦଃ ପ୍ରସଜ୍ୟେତ । ଆତ୍ମତ୍ୱାଚ୍ଚାତ୍ମନୋ ନିରାକରଣଶଙ୍କାନୁପପତ୍ତିଃ । ନହ୍ୟାତ୍ମାଗନ୍ତୁକଃ କସ୍ୟଚିତ୍, ସ୍ୱୟଂସିଦ୍ଧତ୍ୱାତ୍ ।

(ଗ) ନହ୍ୟାତ୍ମାତ୍ମନଃ ପ୍ରମାଣପକ୍ଷ୍ୟ ସିଧ୍ୟତି । ତସ୍ୟହି ପ୍ରତ୍ୟକ୍ଷାଦୀନି ପ୍ରମାଣାନ୍ୟ-ପ୍ରସିଦ୍ଧପ୍ରମେୟସିଦ୍ଧୟ ଉପାଦୀୟନ୍ତେ । ନହ୍ୟାକାଶାଦୟଃ ପଦାର୍ଥାଃ ପ୍ରମାଣନିରପେକ୍ଷାଃ ସ୍ୱୟଂସିଦ୍ଧାଃ କେନଚିଦଭ୍ୟୁପଗମ୍ୟନ୍ତେ । ଆତ୍ମା ତୁ ପ୍ରମାଣାଦିବ୍ୟବହାରାଶ୍ରୟତ୍ୱାତ୍ ପ୍ରାଗେବ ପ୍ରମାଣାଦିବ୍ୟ ବହାରାତ୍ ସିଧ୍ୟତି । ନଚୈଦୃଶସ୍ୟ ନିରାକରଣଂ ସମ୍ଭବତି । ଅଗନ୍ତୁକଂହିବସ୍ତୁ ନିରାକ୍ରିୟତେ ନ ସ୍ୱରୂପମ୍ । ଯ ଏବ ହି ନିରାକର୍ତ୍ତା ତଦେବ ତସ୍ୟ ସ୍ୱରୂପମ୍ । ନହାଗ୍ନେ-ରୌଷ୍ୟମଗ୍ନିନା ନିରାକ୍ରିୟତେ ।

(ଘ) ତଥାହମେବେଦାନୀଂ ଜାନାମି ବର୍ତ୍ତମାନଂ ବସ୍ତ୍ୱହମେବାତୀତମତୀତତରଂ ଚାଜ୍ଞାସିଷମହମେବାନାଗତମନାଗତତରଂ ଚ ଜ୍ଞାସ୍ୟାମୀତ୍ୟତାନାଗତବର୍ତ୍ତମାନଭା-ବେନଽନ୍ୟଥା ଭବତ୍ୟପି ଜ୍ଞାତବ୍ୟେ ନ ଜ୍ଞାତୁରନ୍ୟଥାଭାବୋଽସ୍ତି । ସର୍ବଦା ବର୍ତ୍ତମାନ ସ୍ୱଭାବାତ୍ତ୍ୱାତ୍ । ତଥା ଭସ୍ମୀଭବତ୍ୟପି ଦେହେ ନାତ୍ମନ ଉଚ୍ଛେଦୋ ବର୍ତ୍ତମାନ ସ୍ୱଭାବାଦ-ନ୍ୟଥାସ୍ୱଭାବତ୍ୱଂ ବା ନା ସମ୍ଭାବୟିତୁଂ ଶକ୍ୟମ୍ । ଏବମପ୍ରତ୍ୟା-ଖ୍ୟେୟସ୍ୱଭାବ-ତ୍ୱାଦେବାକାର୍ଯ୍ୟତ୍ୱମାତ୍ମନଃ କାର୍ଯ୍ୟତ୍ୱଂ ଚାକାଶସ୍ୟ ।

(୨) ଭାଷାଂତର- (କ) ତୁ ଶବ୍ଦ ଅସମ୍ଭବର ଆଶଙ୍କା ନିବୃତ୍ତିପାଇଁ ଅଛି । ଆକାଶର ଉତ୍ପତ୍ତିରେ ଅସଂଭବ ଆଶଙ୍କା କରିବା ଉଚିତ୍ ନୁହେଁ । କାରଣ-ଯାହା କିଛି ଘଟ, ଘଟିକା, ଉଦଞ୍ଚନ ଆଦି ଅଥବା କଟକ, କେୟୂର କୁଣ୍ଡଳ ପ୍ରଭୃତି ଅଥବା ଛୁଞ୍ଚ, ବାଣ, ଖଡ୍ଗ ପ୍ରଭୃତି ବିକାର ସମୂହ ଦେଖାଯାଏ, ସେସବୁ ସଂସାରରେ ବିଭକ୍ତ ରୂପରେ ଦେଖିବାକୁ ମିଳେ ଏବଂ ଅବିକୃତ ପଦାର୍ଥ କାହାକୁ କିଞ୍ଚିତ୍ ବିଭକ୍ତ ହୋଇ ଉପଲବ୍ଧ ହୁଏ ନାହିଁ । ଆକାଶର ପୃଥିବୀ ପ୍ରଭୃତିରୁ ବିଭାଗ ଅବଗତ ହୁଏ । ତେଣୁ ଏହିପରି କାର୍ଯ୍ୟହେବା ଉଚିତ୍ । ଏହି ବିଭାଗ ସିଦ୍ଧିରୁ ଦିଗ, କାଳ, ମନ, ପରମାଣୁ ପ୍ରଭୃତି କାର୍ଯ୍ୟରୂପରେ ବ୍ୟାଖ୍ୟାତ ହୋଇଛନ୍ତି ।

(ଖ) ପରନ୍ତୁ ଆତ୍ମା ଆକାଶ ପ୍ରଭୃତିଠାରୁ ଭିନ୍ନ ଅଟନ୍ତି । ତେଣୁ ତାହାକୁ ଘଟ ପ୍ରଭୃତି ପରି କାର୍ଯ୍ୟତ୍ୱପ୍ରାପ୍ତ ହୁଏ କି ? ତାହା ନୁହେଁ । କାରଣ- 'ଆତ୍ମନଃ ଆକାଶଃ ସଂଭୂତଃ' ଏହି ଶ୍ରୁତିବାକ୍ୟ ଅଛି । ଯଦି ଆତ୍ମା କାର୍ଯ୍ୟ ହୁଏ, ତଥାପି ତାହା ଉପରେ ଅନ୍ୟକୌଣସି ଶ୍ରୁତି ପ୍ରତିପାଦନ କରିନାହିଁ, ତେଣୁ ଆତ୍ମାର କାର୍ଯ୍ୟ ହେଲାପରେ ଆକାଶ ପ୍ରଭୃତି ସବୁକାର୍ଯ୍ୟ ନିରାତ୍ମକ ହୋଇଯିବେ ଏବଂ ତାହାଦ୍ୱାରା ଶୂନ୍ୟବାଦ ପ୍ରସକ୍ତ ହେବ । ସମସ୍ତଙ୍କର ଆତ୍ମାସ୍ୱରୂପ ହେଲେ ଆତ୍ମାର ନିରାକରଣ-ଶଙ୍କା ଅନୁପପନ୍ନ ହୁଏ । ଆତ୍ମା କୌଣସି କାରଣର କାର୍ଯ୍ୟ ନୁହେଁ । କାରଣ-ସେ ସ୍ୱୟଂସିଦ୍ଧ ଅଟେ ।

(ଗ) ନିଜର ପ୍ରମାଣକୁ ଅପେକ୍ଷାକରି ଆତ୍ମା ସିଦ୍ଧ ହୁଏ । ତାହାର ପ୍ରତ୍ୟକ୍ଷାଦି ପ୍ରମାଣ ଅପ୍ରସିଦ୍ଧ ପ୍ରମେୟର ସିଦ୍ଧିପ୍ରାଇଁ ଗୃହୀତ ହୁଅନ୍ତି, କାରଣ-ଆକାଶାଦି ପଦାର୍ଥ ପ୍ରମାଣ-ନିରପେକ୍ଷ ସ୍ୱୟଂ ସିଦ୍ଧି ହୁଏ-ଏହି କଥା କିଏ ହେଲେ ସ୍ୱୀକାର କରିନାହାନ୍ତି । ଆତ୍ମା କିନ୍ତୁ ପ୍ରମାଣାଦିବ୍ୟବହାରର ଆଶ୍ରୟ ହେଲେ ପ୍ରମାଣାଦି ବ୍ୟବହାରରେ ପୂର୍ବରୁ ସିଦ୍ଧ ହୁଅନ୍ତି । ଏହିପରି ସ୍ୱୟଂସିଦ୍ଧ ଆତ୍ମାର ନିରାକରଣ ହୁଏ ନାହିଁ । ଆଗନ୍ତୁକ ବସ୍ତୁର ନିରାକରଣ ହୁଏ, କିନ୍ତୁ ସ୍ୱରୂପର ନିରାକରଣ ହୁଏ ନାହିଁ । ଯିଏ ନିରାକର୍ତ୍ତା, ସେହିଁ ତାହାର ସ୍ୱରୂପ ଅଟେ । ଯଥା-ଅଗ୍ନିର ଔଷ୍ଣ୍ୟ ଅଗ୍ନିଦ୍ୱାରା ନିରାକରଣ କରାଯାଏ ନାହିଁ ।

(ଘ) ସେପରି ମୁଁ ସେହି ସମୟରେ ବର୍ତ୍ତମାନ ବସ୍ତୁକୁ ଜାଣେ । ମୁଁ ଅତୀତ ଓ ଏହାର ପୂର୍ବବସ୍ତୁକୁ ଜାଣେ । ମୁଁ ଭବିଷ୍ୟତ ଓ ତାହାଠାରୁ ଦୂରଭବିଷ୍ୟତ ବସ୍ତୁକୁ ଜାଣେ । ଏହିପ୍ରକାର ଅତୀତ, ଅନାଗତ ଓ ବର୍ତ୍ତମାନରୂପରେ ଜ୍ଞାତବ୍ୟବସ୍ତୁର ଅନ୍ୟଥାଭାବ ହେଲା ପରେ ଜ୍ଞାତାର ଅନ୍ୟଥାଭାବ ହୁଏ ନାହିଁ । କାରଣ- ସେ ସର୍ବଦା ବର୍ତ୍ତମାନ ସ୍ୱଭାବ ଅଟେ । ସେହିପ୍ରକାର ଦେହ ଭସ୍ମୀଭୂତ ହେଲେ, ମଧ୍ୟ ବି ବର୍ତ୍ତମାନ ସ୍ୱଭାବ ହେଲେ ଆତ୍ମାର ଉଚ୍ଛେଦ (ବିନାଶ) ତଥା ଅନ୍ୟଥାସ୍ୱଭାବତ୍ୱକୁ ସଂଭାବନା କରେ ନାହିଁ । ଏହି ପ୍ରକାର ନିରାକରଣର ଅଯୋଗ୍ୟ ସ୍ୱଭାବ ହେଲେ ଆତ୍ମା ଅକାର୍ଯ୍ୟ ହୁଏ ଏବଂ ଆକାଶ କାର୍ଯ୍ୟ ହୁଏ ।



(୩) ମୂଳ-(କ) ଯଦୁକ୍ତଂ ସମାନଜାତୀୟମନେକଂ କାରଣଦ୍ରବ୍ୟଂ ବ୍ୟାପ୍ତୌ ନାସ୍ତୀତି, ତତ୍ପ୍ରତ୍ୟୁଚ୍ୟତେ-ନ ତାବତ୍ସମାନଜାତୀମେବାରଭତେ ନ ଭିନ୍ନଜାତୀୟ-ମିତି ନିୟମୋଽସ୍ତି । ନହି ତନ୍ତୂନାଂ ତତ୍ସଂଯୋଗାନାଂ ଚ ସମାନଜାତୀୟତ୍ୱମସ୍ତି, ଦ୍ରବ୍ୟଗୁଣତ୍ୱାଭ୍ୟୁପଗମାତ୍ । ନଚ ନିମିତ୍ତକାରଣାନାମପି ତୁରୀ ବେମାଦୀନାଂ ସମାନଜାତୀୟତ୍ୱନିୟମୋଽସ୍ତି ।

(ଖ) ସ୍ୟାଦେତତ୍ । ସମବାୟିକାରଣବିଷୟ ଏବ ସମାନଜାତୀୟତ୍ୱାଭ୍ୟୁ-ପଗମୋ ନ କାରଣାନ୍ତରିବିଷୟ ଇତି । ଦପ୍ୟନୈକାନ୍ତିକମ୍ । ସୂତ୍ରଗୋବାଳୈର୍ହ୍ୟ-ନେକଜାତୀୟୈରେକା ରଜ୍ଜୁଃ ସୃଚ୍ୟମାନା ଦୃଶ୍ୟତେ । ତଥା ସୂତ୍ରୈରୁର୍ଣାଦିଭିଶ୍ଚ ବିଚିତ୍ରାନ୍ କମ୍ବଳାନ୍ ବିତନ୍ୱତେ ।

(ଗ) ସତ୍ତ୍ୱଦ୍ରବ୍ୟତ୍ୱାଦ୍ୟପେକ୍ଷା ବା ସମାନଜାତୀୟତ୍ୱେ କଳ୍ପ୍ୟମାନେ ନିୟମାନର୍ଥକ୍ୟଂ, ସର୍ବସ୍ୟ ସର୍ବେଣ ସମାନଜାତୀୟକତ୍ୱାତ୍ । ନାପ୍ୟନେକମେବାରଭତେ ନୈକମିତି ନିୟମୋଽସ୍ତି । ଅଣୁମନସୋରାଦ୍ୟକକର୍ମାରତ୍ତ୍ୟାରମ୍ଭାଭ୍ୟୁପଗମାତ୍ । ଏକୈକୋ ହି ପରମାଣୁର୍ମନଶ୍ଚାଦ୍ୟଂ କର୍ମାରଭତେ ନ ଦ୍ରବ୍ୟାନ୍ତରୈଃ ସଂହତ୍ୟେତ୍ୟଭ୍ୟୁପଗମ୍ୟତେ ।

**(୩) ଭାଷାଂତର-** (କ) ସମାନଜାତୀୟ ଅନେକ କାରଣ ଦ୍ରବ୍ୟ ଆକାଶରେ ନାହିଁ ବୋଲି ଯାହା କୁହାଯାଇଅଛି, ତାହାର ନିରାକରଣ କରାଯାଇଅଛି- ସମାନଜାତୀୟ ହେଲେ ଆରମ୍ଭକ ହୁଏ । ଭିନ୍ନଜାତୀୟ ହେଲେ ଆରମ୍ଭକ ହୁଏ ନାହିଁ ବୋଲି କହିବାରେ କୌଣସି କାରଣ ବା ନିୟମ ନାହିଁ । ତନ୍ତୁ ଏବଂ ତାହାର ସଂଯୋଗ ସମାନଜାତୀୟ ନୁହେଁ, କାରଣ-ସେମାନଙ୍କୁ ଦ୍ରବ୍ୟ ଓ ଗୁଣରୂପରେ ସ୍ୱୀକାର କରାଯାଇଛି । ସେହିପରି ତୁରୀ, ବେମାଦି ନିମିତ୍ତକାରଣର ସମାନଜାତୀୟତ୍ୱ ନିୟମ ନାହିଁ ।

(ଖ) ଆଚ୍ଛା, ପୁନଶ୍ଚ ହୋଇପାରେ- ସମାବୟିକାରଣ ବିଷୟକ ହିଁ ସମାନ ଜାତୀୟତ୍ୱ ସ୍ୱୀକାର ହୋଇପାରେ, ଏହାପାଇଁ ଅନ୍ୟ କାରଣ ବିଷୟକ ନୁହେଁ । ଏହା ମଧ୍ୟ ବ୍ୟଭିଚରିତ ହୁଏ, କାରଣ-ଅନେକଜାତୀୟ ସୂତ୍ରର ସମନ୍ୱୟରେ ଗୋଟିଏ ରଜ୍ଜୁ ନିଷ୍ପନ୍ନ ହେବାର ଦେଖାଯାଏ । ସେହିପରି ଲୋକମାନଙ୍କ ସୂତ୍ର ଓ ବୁଢ଼ୀଆଣି ଦ୍ୱାରା ନିର୍ମିତ ଏକବିଚିତ୍ର କମ୍ବଳ ବୁଣାଯାଏ ।

(ଗ) ଅଥବା ସତ୍ୱ ଓ ଦ୍ରବ୍ୟକୁ ଅପେକ୍ଷାକରି ସମାନଜାତୀୟତ୍ୱର କଳ୍ପନା କରାଗଲେ ନିୟମ ନିଷ୍ଫଳ ହୁଏ । କାରଣ-ସମସ୍ତେ ସମସ୍ତଙ୍କ ସହିତ ସମାନଜାତୀୟ ଅଟନ୍ତି । ଅନେକ କେବଳ ଆରମ୍ଭକ ଅଟେ' କିନ୍ତୁ ଏକ ନୁହେଁ ବୋଲି କୌଣସି ନିୟମ ନାହିଁ । କାରଣ-ପରମାଣୁ ଓ ମନ ଆଦ୍ୟକର୍ମର ଆରମ୍ଭକକୁ ସ୍ୱୀକାର କରନ୍ତି ।

(୪) ମୂଳ-(କ) ଦ୍ରବ୍ୟାରମ୍ଭ ଏବାନେକାରମ୍ଭକତ୍ୱନିୟମ ଇତି ଚେତ୍ । ନ । ପରିଣାମାଭ୍ୟୁପଗମାତ୍ । ଭବେଦେଷ ନିୟମୋ ଯଦି ସଂଯୋଗ ସଚିବଂ ଦ୍ରବ୍ୟଂ ଦ୍ରବ୍ୟାନ୍ତରସ୍ୟାରମ୍ଭକମଭ୍ୟୁପଗମ୍ୟତ । ତଦେବ ତୁ ଦ୍ରବ୍ୟଂ ବିଶେଷବଦବସ୍ଥାନ୍ତରମାପଦ୍ୟମାନଂ କାର୍ଯ୍ୟଂ ନାମାଭ୍ୟୁପଗମ୍ୟତେ । ତଚ୍ଚ କ୍ୱଚିଦନେକଂ ପରିଣମତେ ମୃଦବୀଜାଦ୍ୟଙ୍କୁରାଦିଭାବେନ । କ୍ୱଚିଦେକଂ ପରିଣମତେ କ୍ଷୀରାଦିଦଧ୍ୟାଦିଭାବେନ । ନେଶ୍ୱରଶାସନସସ୍ତ୍ୟନେକମେବ କାରଣଂ କାର୍ଯ୍ୟଂ ଜନୟତୀତି । ଅତଃ ଶ୍ରୁତିପ୍ରାମାଣ୍ୟାଦେକସ୍ମାଦବ୍ରହ୍ମଣଃ ଆକାଶାଦି ମହାଭୂତୋତ୍ପତ୍ତିକ୍ରମେଣ ଜଗଜ୍ଜାତମିତି ନିଶ୍ଚୀୟତେ ।

(ଖ) ତଥାଚୋକ୍ତମ୍-'ଉପସଂହାରଦର୍ଶନାନ୍ନେତି ଚେନ୍ନ କ୍ଷୀରବଦ୍ଧି' (ବ୍ର.ସୂ ୨-୧-୨୪) ଇତି । ଯଚ୍ଚୋକ୍ତମାକାଶସ୍ୟୋତ୍ପତ୍ତୌ ପୂର୍ବୋତ୍ତରକାଲୟୋର୍ବିଶେଷଃ ସମ୍ଭାବୟିତୁଂ ଶକ୍ୟତ ଇତି । ତଦଯୁକ୍ତମ୍ ଯେନୈବ ହି ବିଶେଷେଣ ପୃଥିବ୍ୟାଦିଭ୍ୟୋ ବ୍ୟତିରିଚ୍ୟମାନଂ ନଭଃ ସ୍ୱରୂପ ବଦିଦାନୀମଧ୍ୟବସୀୟତେ ସ ଏବ ବିଶେଷଃ ପ୍ରାଗୁତ୍ପତ୍ତେର୍ନାସୀଦିତି ଗମ୍ୟତେ । ଯଥା ଚ ବ୍ରହ୍ମ ନ ସ୍ଥୁଳାଦିଭିଃ ପୃଥିବ୍ୟାଦି ସ୍ୱଭାବୈଃ ସ୍ୱଭାବବତ୍ ।

(ଗ) 'ଅସ୍ଥୁଳମନଣ୍ୱଃ' (ବୃ ୩-୮-୮) ଇତ୍ୟାଦିଶ୍ରୁତିଭ୍ୟଃ ଏବମାକାଶସ୍ୱଭାବେନାପି ନ ସ୍ୱଭାବବଦନାକାଶମିତି ଶ୍ରୁତେରବଗମ୍ୟତେ । ତସ୍ମାତ୍ ପ୍ରାଗୁତ୍ପତ୍ତେରନାକାଶମିତି ସ୍ଥିତମ୍ ।

**(୪)** ଭାଷାଂତର-(କ) ଦ୍ରବ୍ୟର ଆରମ୍ଭରେ ସେ ଅନେକ ଆରମ୍ଭକତ୍ୱ ନିୟମ ଅଛି ବୋଲି ତୁମେ କହ, ତେବେ ତାହା ମଧ୍ୟ ଠିକ୍ ନୁହେଁ । କାରଣ-ଏଠାରେ ପରିଣାମକୁ ସ୍ୱୀକାର କରାଯାଏ । ଏହି ନିୟମ ହୁଏ, ଯଦି ସଂଯୋଗସଚିବ ଦ୍ରବ୍ୟ ଅନ୍ୟ ଦ୍ରବ୍ୟର ଆରମ୍ଭକ ସ୍ୱୀକାର କରାଯାଏ । ପରନ୍ତୁ ସେହି ଦ୍ରବ୍ୟ ସବିଶେଷ ଅନ୍ୟ ବସ୍ଥୁଗୁଡ଼ିକୁ ପ୍ରାପ୍ତ ହୋଇ କାର୍ଯ୍ୟନାମରେ ସ୍ୱୀକାର କରାଯାଏ । ସେ କେଉଁଠି ଅନେକ ମୃତ୍ତିକାବୀଜାଦି ଅଙ୍କୁରାଦିଭାବରେ ପରିଣତ ହୁଏ ଏବଂ କେଉଁଠି ଗୋଟିଏ ଦୁଗ୍ଧାଦି ଦଧି ପ୍ରଭୃତି ଭାବରେ ପରିଣତ ହୁଏ । ଏହା କିନ୍ତୁ ଈଶ୍ୱରଙ୍କର ଆଦେଶ ନୁହେଁ । କାରଣ-ଅନେକ କାରଣ ଗୋଟିଏ କାର୍ଯ୍ୟକୁ ଉତ୍ପନ୍ନ କରନ୍ତି । ଅତଃ ଶ୍ରୁତି ପ୍ରାମାଣ୍ୟରୁ ଏକବ୍ରହ୍ମଠାରୁ ଆକାଶାଦି ମହାଭୂତର ଉତ୍ପତ୍ତିକ୍ରମରେ ଜଗତ ଉତ୍ପନ୍ନ ହୁଏ ବୋଲି ନିଶ୍ଚିତ କରାଯାଇଅଛି ।

(ଖ) ତେଣୁ କୁହାଯାଇଅଛି- ଉପସଂହାରଦର୍ଶନାତ୍' (ଉପସଂହାର ଦେଖିଲେ ବ୍ରହ୍ମଜଗତର କାରଣ ହୁଏ ନାହିଁ ବୋଲି ଯଦି କୁହ, ତେବେ ତାହା ଠିକ୍ ନୁହେଁ । କାରଣ- ତାହା କ୍ଷୀରପରି ଉପପନ୍ନ ହୁଏ) । ଆକାଶର ଉତ୍ପତ୍ତିରେ ପୂର୍ବ ଓ ଉତ୍ତର କାଳରେ କେତେକ ବିଶେଷ (ବୈଲକ୍ଷଣ୍ୟ) ସମ୍ଭାବିତ ହୁଏ ନାହିଁ ବୋଲି ବ୍ୟତିରିକ୍ତ



ହୋଇ ଆକାଶ ସ୍ୱରୂପବତ୍ ବର୍ତ୍ତମାନରେ ନିଶ୍ଚିତ ହୁଏ, ସେ ବିଶେଷ ଉତ୍ପତ୍ତିର ପୂର୍ବରୁ ନଥିଲା ବୋଲି ଜଣାଯାଏ ।

(ଗ) ଯେପରିକି 'ଅସ୍ଥୁଳମନଣ୍ୱଃ' (ସେ ସ୍ଥୁଳ ନୁହେଁ କି ଅଣୁ ନୁହେଁ) ଇତ୍ୟାଦି ଶ୍ରୁତିରେ ବ୍ରହ୍ମ ସ୍ଥୁଳାଦି ପୃଥିବୀ ପ୍ରଭୃତି ସ୍ୱଭାବରୁ ସ୍ୱଭାବଯୁକ୍ତ ହୁଏ ନାହିଁ, ସେପରି ଆକାଶର ସ୍ୱଭାବରୁ ସେ ସ୍ୱଭାବଯୁକ୍ତ ହୁଏ ନାହିଁ । ସେହିପରି 'ଅନାକାଶମ୍' (ଆକାଶରହିତ) ଏହି ଶ୍ରୁତିରେ ଅବଗତ ହୁଏ । ତେଣୁ ଆକାଶର ଉତ୍ପତ୍ତି ପୂର୍ବରୁ ବ୍ରହ୍ମ ଅନାକାଶ ଥିଲା ବୋଲି ନିଶ୍ଚିତ କରାଯାଇଛି ।

(୫) ମୂଳ-(କ) ଯଦପ୍ୟୁକ୍ତଂ ପୃଥିବ୍ୟାଦିବୈଧର୍ମ୍ୟାଦାକାଶସ୍ୟାଜତ୍ୱମିତି । ତଦପ୍ୟସତ୍ । ଶ୍ରୁତିବିରୋଧେ ସତ୍ୟୁତ୍ପତ୍ୟସମ୍ଭବାନୁମାନସ୍ୟାଭାସତ୍ୱୋପପତ୍ତେଃ । ଉତ୍ପତ୍ୟ-ନୁମାନସ୍ୟ ଚ ଦର୍ଶିତତ୍ୱାତ୍ । ଅନିତ୍ୟମାକାଶମନିତ୍ୟଗୁଣାଶ୍ରୟତ୍ୱାଦ୍ ଘଟାଦିବଦିତ୍ୟାଦି ପ୍ରୟୋଗସମ୍ଭବାଚ୍ଚ । ଆତ୍ମନ୍ୟ ନୈକାନ୍ତିକମିତି ଚେତ୍ । ନ । ତସ୍ୟୌପନିଷଦଂ ପ୍ରତ୍ୟନିତ୍ୟଗୁଣାଶ୍ରୟତ୍ୱାସିଦ୍ଧେଃ । ବିଭୁତ୍ୱାଦୀନାଂ ଚାକାଶସ୍ୟୋତ୍ପତ୍ତିବାଦିନଂ ପ୍ରତ୍ୟସିଦ୍ଧତ୍ୱାତ୍ ।

(ଖ) ଯଚ୍ଚୋକ୍ତମେତଚ୍ଛବ୍ଦାଚ୍ଚେତି, ତତ୍ରାମୃତତ୍ୱଶ୍ରୁତିସ୍ତାବଦ୍‌ବିୟତ୍ୟମୃତା ଦିବୌକସ ଇତିବଦ୍‌ଦ୍ରଷ୍ଟବ୍ୟା । ଉତ୍ପତ୍ତିପ୍ରଳୟୟୋରୁପପାଦିତ୍ୱାତ୍ । 'ଆକାଶବତ୍‌ସର୍ବଗତଶ୍ଚ ନିତ୍ୟଃ, ଇତ୍ୟାପି ପ୍ରସିଦ୍ଧମହତ୍ତ୍ୱେନାକାଶେନୋପମାନଂ କ୍ରିୟତେ ନିରତିଶୟମହତ୍ତ୍ୱାୟ ନାକାଶସମତ୍ୱାୟ । ଯଥେଷୁରିବ ସବିତା ଧାବତୀତି କ୍ଷିପ୍ରଗତିତ୍ୱାୟୋଚ୍ୟତେ ନେଷୁ ତୁଲ୍ୟଗତିତ୍ୱାୟ ତଦ୍‌ବତ୍ । ଏତେନାନନ୍ତତ୍ୱୋପମାନ ଶ୍ରୁତିର୍ବ୍ୟାଖ୍ୟାତା ।

(ଗ) ଜ୍ୟାୟାନାକାଶାତ୍ ଇତ୍ୟାଦି ଶ୍ରୁତିଭ୍ୟଶ୍ଚ ବ୍ରହ୍ମଣ ଆକାଶସ୍ୟୋନ-ପରିମାଣତ୍ୱସିଦ୍ଧିଃ । 'ନ ତସ୍ୟ ପ୍ରତିମାସ୍ତି' (ଶ୍ୱେ ୪-୧ ୯) ଇତିଚବ୍ରହ୍ମଣୋ-ଽନୁପମାନତ୍ୱଂ ଦର୍ଶୟତି । 'ଅତୋଽନ୍ୟଦାର୍ତ୍ତମ୍' (ବୃ ୩-୪-୨) ଇତି ଚ ବ୍ରହ୍ମଣୋ-ଽନ୍ୟେଷାମାକାଶା-ଦୀନାମାର୍ତ୍ତତ୍ୱଂ ଦର୍ଶୟତି । ତପସି ବ୍ରହ୍ମଶବ୍ଦବଦାକାଶସ୍ୟ ଜନ୍ମଶ୍ରୁତେର୍ଗୌଣତ୍ୱମିତ୍ୟେ-ତଦାକାଶସମ୍ଭବଶ୍ରୁତ୍ୟନୁମାନାଭ୍ୟାଂ ପରିହୃତମ୍ । ତସ୍ମାଦ୍ ବ୍ରହ୍ମକାର୍ଯ୍ୟଂ ବିୟଦିତି ସିଦ୍ଧମ୍ ।

**(୫) ଭାଷାଂତର-** (କ) ପୃଥିବୀ ଇତ୍ୟାଦିଠାରୁ ବିରୁଦ୍ଧ ଧର୍ମ (ବିଭୁତ୍ୱ, ନିରବୟବତ୍ୱାବଚ୍ଛେକ) ହେଲେ ଆକାଶ ଉତ୍ପତ୍ତିରହିତ ହୁଏ, ବୋଲି ଯାହା କୁହାଯାଇଛି ତାହା କିନ୍ତୁ ଠିକ୍ ନୁହେଁ । କାରଣ-ଶ୍ରୁତି ସହିତ ବିରୋଧ ହେଲେ ଉତ୍ପତ୍ତିର ଅସମ୍ଭବାନୁମାନଟ ଆଭାସମାତ୍ର ଉପପନ୍ନ ହୁଏ ଏବଂ ଉତ୍ପତ୍ତିର ଅନୁମାନ କରାଯାଏ- 'ଆକାଶ ଅନିତ୍ୟ ଅଟେ କାରଣ-ତାହା ଅନିତ୍ୟଗୁଣର ଆଶ୍ରୟ ଘଟ ପରି' ଇତ୍ୟାଦି ପ୍ରୟୋଗର ସମ୍ଭବ ହୁଏ ।

(ଖ) ଅନିତ୍ୟ ଗୁଣାଶ୍ରୟତ୍ୱ ହେତୁର ଆତ୍ମାରେ ବ୍ୟଭିଚାର ବୋଲି ଯଦି କହ, ତେବେ ତାହା ଠିକ୍ ନୁହେଁ । କାରଣ-ଔପନିଷଦ୍‌ବାଦୀଙ୍କ ମତରେ ଆତ୍ମାରେ ଅନିତ୍ୟ, ଗୁଣାଶ୍ରୟତ୍ୱ ଅସିଦ୍ଧ ଅଟେ । ଆକାଶର ଉତ୍ପତ୍ତିକୁ ସମର୍ଥ କରୁଥିବା ଲୋକଙ୍କ ମତରେ ଆକାଶରେ ବିଭୂତ୍ୱ ପ୍ରଭୃତି ଗୁଣ ଅସିଦ୍ଧ ଅଟେ । 'ଶବ୍ଦାଚ' (ଶବ୍ଦଦ୍ୱାରା) ବୋଲି ଯାହା କୁହାଯାଇଅଛି- ସେଠାରେ ଅମୃତତ୍ୱଶ୍ରୁତି 'ସ୍ୱର୍ଗରେ ଦେବତା ଅମୃତ ଅଟେ ଓ ତାହାପରି ଜାଣିବା ଉଚିତ୍ । କାରଣ-ଆକାଶର ଉତ୍ପତ୍ତି ଏବଂ ପ୍ରଳୟର ଉପାଦାନ କରାଯାଇ ଅଛି । 'ଆକାଶବତ୍ ସର୍ବଗତଶ୍ଚ ନିତ୍ୟଃ' (ଆକାଶ ପରି ସର୍ବଗତ ଓ ନିତ୍ୟ ଅଟେ) ଏହା ପ୍ରସିଦ୍ଧ ବ୍ରହ୍ମରେ ନିରତିଶୟ ମହତ୍ୱ ଦେଖାଇବା ପାଇଁ ଆକାଶର ସହିତ ଉପମାନ କରାଯାଇଅଛି । କିନ୍ତୁ ଆକାଶର ସମତ୍ୱ ପାଇଁ ନୁହେଁ । ଯେପରି ବାଣପରି ସବିତା ଦୌଡ଼େ, ଏହା କ୍ଷିପ୍ରଗତିପାଇଁ କୁହାଯାଇଅଛି, କିନ୍ତୁ ବାଣର ତୁଲ୍ୟଗତି ପାଇଁ ନୁହେଁ, ତେଣୁ ଅନନ୍ତତ୍ୱ ଉପମାନଥିବା ଶ୍ରୁତି ବ୍ୟାଖ୍ୟାନ ହୋଇଛି ।

(ଗ) 'ଜ୍ୟାୟାନାକାଶାତ୍ (ଆକାଶରୁ ବଡ) ଇତ୍ୟାଦି ଶ୍ରୁତି ବାକ୍ୟଠାରୁ ଆକାଶର ପରିମାଣ ବ୍ରହ୍ମଠାରୁ କ୍ଷୁଦ୍ରରୂପ ପ୍ରମାଣିତ ହୁଏ । 'ନ ତସ୍ୟ' (ତାହାର ଉପମା ହୁଏ ନାହିଁ) ଏହି ଶ୍ରୁତି ବ୍ରହ୍ମକୁ ଅନୁପମତ୍ୱ ପ୍ରତିପାଦନ କରେ । 'ଅତୋଽନ୍ୟଦାର୍ତ୍ତମ୍' (ତେଣୁ ଅନ୍ୟ ସବୁ ଅନିତ୍ୟ ଅଟେ) ଏହି ଶ୍ରୁତି ବ୍ରହ୍ମଭିନ୍ନ ଅନ୍ୟ ଆକାଶ ପ୍ରଭୃତିର ଅନିତ୍ୟତ୍ୱ ଦେଖାଏ ଯେପରି ତପରେ ବ୍ରହ୍ମଶବ୍ଦ ଗୌଣ ଅଟେ, ସେହିପରି ଆକାଶର ଉତ୍ପତ୍ତିଶ୍ରୁତି ଗୌଣ ଅଟେ । ତାହା ଆକାଶର ଉତ୍ପତ୍ତି ବିଷୟକ ଶ୍ରୁତି ଓ ଅନୁମାନ ଦ୍ୱାରା ପରିହାର କରାଯାଇଛି । ତେଣୁ ଆକାଶ ବ୍ରହ୍ମର କାର୍ଯ୍ୟ ବୋଲି ପ୍ରମାଣିତ ହୁଏ ।

## २ मातरिश्वाधिकरणम् । सू० ८

## ମାତରିଶ୍ୱାଧିକରଣ-୨

### एतेन मातरिश्वा व्याख्यात: ॥ ८ ॥

### ୧-ଏତେନ ମାତରିଶ୍ୱା ବ୍ୟାଖ୍ୟାତଃ ॥୨-୩-୮॥

ଏତେନ-ଆକାଶ ଉତ୍ପତ୍ତିଶୀଳ ଅଟେ-ଏହିପରି କଥାରେ, ମାତରିଶ୍ୱା-ବାୟୁ ମଧ୍ୟ ଆକାଶୋପାଧିକ ବ୍ରହ୍ମଠାରୁ ଉତ୍ପନ୍ନ ହୁଏ । ବ୍ୟାଖ୍ୟାତଃ-ଏହା ବ୍ୟାଖ୍ୟାନ କରାଯାଇଅଛି ।

(୨) ମୂଳ-(କ) ଅତିଦେଶୋଽୟମ୍ । ଏତେନ ବିୟଦ୍ ବ୍ୟାଖ୍ୟାନେବ ମାତରିଶ୍ୱାପି ବିୟଦାଶ୍ରୟୋ ବାୟୁର୍ବ୍ୟାଖ୍ୟାତଃ । ତତ୍ରାପ୍ୟେତେ ଯଥାଯୋଗଂ ପକ୍ଷା ରଚୟିତବ୍ୟାଃ । ନ ବାୟୁରୁତ୍ପଦ୍ୟତେ ଛାନ୍ଦୋଗାନାମୁତ୍ପତ୍ତି ପ୍ରକରଣେଽନାମ୍ନାନାଦିତ୍ୟେକଃ ପକ୍ଷଃ । ଅସ୍ତିତୁ



ତୈତ୍ତିରୀୟାଣାମୁତ୍ପତ୍ତି ପ୍ରକରଣ ଆମ୍ନାନମ୍ 'ଆକାଶାଦ୍‌ବାୟୁଃ' (ତୈ ୨-୧) ଇତି ପକ୍ଷାନ୍ତରମ୍ । ତତଶ୍ଚ ଶ୍ରୁତ୍ୟୋର୍ବିପ୍ରତିଷେଧେ ସତି ଗୌଣୀ ବାୟୋରୁତ୍ପତ୍ତିଶ୍ରୁତିରସଂଭବାଦିତ୍ୟପରୋଽଭିପ୍ରାୟଃ ।

(ଖ) ଅସଂଭବସ୍ତ୍ୱ ସୈଷାଽନସ୍ତମିତା ଦେବତା ଯଦ୍‌ବାୟୁଃ' (ବୃ ୧-୫-୨୨) ଇତ୍ୟସ୍ତମୟପ୍ରତିଷେଧାତ୍, ଅମୃତତ୍ୱାଦିଶ୍ରବଣାଚ୍ଚ । ପ୍ରତିଜ୍ଞାନୁପରୋଧାଦ୍ୟାବଦ୍‌ବିକାରଂ ଚ ବିଭାଗାଭ୍ୟୁପଗମାଦୁତ୍ପଦ୍ୟତେ ବାୟୁରିତି ସିଦ୍ଧାନ୍ତଃ । ଅସ୍ତମୟପ୍ରତିଷେଧୋଽପରବିଦ୍ୟାବିଷୟ ଆପେକ୍ଷିକଃ ଅଗ୍ନ୍ୟାଦୀନାମିବ ବାୟୋରସ୍ତମୟାଭାବାତ୍ । କୃତି ପ୍ରତି ବିଧାନଂ ତ୍ୱମୃତତ୍ୱାଦିଶ୍ରବଣମ୍ ।

(ଗ) ନନୁ ବାୟୋରାକାଶସ୍ୟ ଚ ତୁଲ୍ୟୟୋରୁତ୍ପତ୍ତିପ୍ରକରଣେ ଶ୍ରବଣାଶ୍ରବଣୟୋରେକମେବାଧିକରଣମୁଭୟବିଷୟମସ୍ତୁ କିମତିଦେଶେନାସତି ବିଶେଷ ଇତି । ଉଚ୍ୟତେସତ୍ୟମେବମେତତ୍ । ତଥାପି ମନ୍ଦଧିୟାଂ ଶବ୍ଦମାତ୍ରକୃତାଶଙ୍କାନିବୃତ୍ତ୍ୟର୍ଥୋଽୟମତିଦେଶଃ କ୍ରିୟତେ । ସଂବର୍ଗବିଦ୍ୟାଦିଷୁ ହ୍ୟପାସ୍ୟତୟା ବାୟୋର୍ମହାଭାଗତ୍ୱଶ୍ରବଣାତ୍ । ଅସ୍ତମୟ ପ୍ରତିଷେଧାଦିଭ୍ୟଶ୍ଚ ଭବତି ନିତ୍ୟତ୍ୱାଶଙ୍କା କସ୍ୟଚିଦିତି ।

**(୨) ଭାଷାଂତର-** (କ) ଏହା ଅତିଦେଶ ଅଟେ । ଏହି ଆକାଶ ବ୍ୟାଖ୍ୟାନରେ ମାତରିଶ୍ୱାପି (ଆକାଶାଶ୍ରୟ ବାୟୁ) ମଧ ବ୍ୟାଖ୍ୟାତ ହୋଇଛି । ସେଠାରେ ଯଥାଯୋଗ୍ୟ ଏହି ପକ୍ଷକୁ ରଚନା କରିବା ଉଚିତ । ବାୟୁ ଉତ୍ପନ୍ନ ହୁଏ ନାହିଁ । କାରଣ-ଛାନ୍ଦୋଗ୍ୟର ଉତ୍ପତ୍ତି ପ୍ରକରଣରେ ଏହା ପଠିତ ନୁହେଁ । ଏହା ଏକ ପକ୍ଷ ଅଟେ । ତାହାଠାରୁ ଶ୍ରୁତିବାକ୍ୟର ବିରୋଧ ହେଲେ ବାୟୁର ଉତ୍ପତ୍ତି ବିଷୟକ ଶ୍ରୁତି ଗୌଣ ହୁଏ, କାରଣ-ଉତ୍ପତ୍ତିର ଅସଂଭବ ହେବ । ଏହା ଏକ ଅନ୍ୟ ଅଭିପ୍ରାୟ ।

(ଖ) 'ସୈଷାଽନସ୍ତମିତା, (ଏହା ଯେଉଁ ବାୟୁ ଅଟେ, ସେ ଅବିନାଶୀ ଦେବତା) ଏହିପ୍ରକାର ଅସ୍ତମୟ ପ୍ରତିଷେଧ ଓ ଅମୃତତ୍ୱାଦିର ଶ୍ରବଣଦ୍ୱାରା ବାୟୁର ଉତ୍ପତ୍ତି ଅସମ୍ଭବ ହୁଏ । ପ୍ରତିଜ୍ଞାର ବାଧା ନ ହେଲେ ଏବଂ ସଂପୂର୍ଣ୍ଣବିକାରର ବିଭାଗ ସ୍ୱୀକୃତ ହେଲେ ବାୟୁ ଉତ୍ପନ୍ନ ହୁଏ- ଏହା ହିଁ ସିଦ୍ଧାନ୍ତ ।

(ଗ) ଅସ୍ତମୟର ପ୍ରତିଷେଧ ଅପରବିଦ୍ୟାବିଷୟକ ଏବଂ ଆପେକ୍ଷିକ ଅଟେ, କାରଣ- ଅଗ୍ନି ପ୍ରଭୃତି ପରି ବାୟୁ ଅସ୍ତ ହୁଅନ୍ତି ନାହିଁ । ଅମୃତ ପ୍ରଭୃତି ଶ୍ରୁତିର ସମାଧାନ କରାଯାଇ ଅଛି । ପରନ୍ତୁ ଉତ୍ପତ୍ତି ପ୍ରକରଣରେ ବାୟୁ ଓ ଆକାଶର ତୈତ୍ତିରୀୟକ ଉପନିଷଦ୍‌ରେ ଏବଂ ଅଶ୍ରବଣ ଛାନ୍ଦୋଗ୍ୟ ଉପନିଷଦ୍‌ରେ ସବୁ ସମାନ ଅଟେ । କିନ୍ତୁ ଉଭୟବିଷୟକ ଏକ ଅଧିକରଣ ହେଉ, ବିଶେଷର ନ ହେଲେ ଅତିଦେଶର ପ୍ରୟୋଜନ କଣ ଅଛି ? ତେଣୁ ଆମ୍ଭେ କହୁଁ ଯେ- ଏହା ସତ୍ୟ ଅଟେ । ତଥାପି ସ୍ୱଳ୍ପବୁଦ୍ଧି ଯୁକ୍ତ ପୁରୁଷର ଶବ୍ଦ

ମାତ୍ରରୁ ଉତ୍ପନ୍ନ ହୋଇ ଆଶଙ୍କାର ନିବୃତ୍ତି ପାଇଁ ଏହା ଅତିଦେଶ କରାଯାଇଅଛି, କାରଣ- ସଂବର୍ଗବିଦ୍ୟା ପ୍ରଭୃତିରେ ଉପାସ୍ୟରୂପରେ ବାୟୁରେ ମହାଭାଗତ୍ୱ ଶୁଣାଯାଏ । ଅସ୍ତମୟର ପ୍ରତିଷେଧାଦିରେ କାହାର ହେଲେ ନିତ୍ୟତ୍ୱର'ଆଶଙ୍କା ହୁଏ ।

## ३ असंभवाधिकरणम् । सू० ६

## ଅସମ୍ଭବାଧିକରଣ-୩

## असंभवस्तु सतोऽनुपपत्तेः ॥ ९ ॥

## ୧-ଅସମ୍ଭବସ୍ତୁ ସତୋଽନୁପପତ୍ତେଃ ॥୨-୩-୯॥

ତୁଶବ୍ଦ ଆଶଙ୍କାକୁ ନିବାରଣ କରିବା ପାଇଁ ଅଛି । ସତଃ=ସତ୍‌ସ୍ୱରୂପବ୍ରହ୍ମର, ଅସମ୍ଭବଃ-ଉତ୍ପତ୍ତି ଅସମ୍ଭବ ଅଟେ । ଅନୁପପତ୍ତେଃ-କାରଣ-ସତ୍‌ସାମାନ୍ୟଦ୍ୱାରା ସତ୍‌ସାମାନ୍ୟର ଉତ୍ପତ୍ତି ଅନୁପପତ୍ତି ହୁଏ ।

(୨) ମୂଳ-(କ) ବିୟତ୍‌ପବନୟୋରସଂଭାବ୍ୟମାନଜନ୍ମନୋରପ୍ୟୁତ୍ପତ୍ତିମୁପଶ୍ରୁତ୍ୟ ବ୍ରହ୍ମଣୋଽପି ଭବେତ୍ କୁତଶ୍ଚିଦୁତ୍ପତ୍ତିରିତି ସ୍ୟାତ୍ କସ୍ୟଚିନ୍ମତିଃ । ତଥା ବିକାରେଭ୍ୟ ଏବାକାଶାଦିଭ୍ୟ ଉତ୍ତରେଷାଂ ବିକାରାଣାମୁତ୍ପତ୍ତିମୁପଶ୍ରୁତ୍ୟାକାଶସ୍ୟାପି ବିକାରାଦେବ ବ୍ରହ୍ମଣ ଉତ୍ପତ୍ତିରିତି କଶ୍ଚିନ୍ମନ୍ୟେତ । ତାମାଶଙ୍କାମପନେତୁମିଦଂ ସୂତ୍ରମ୍- 'ଅସମ୍ଭବସ୍ତୁ' ଇତି ।

(ଖ) ନଖଲୁ ବ୍ରହ୍ମଣଃ ସଦାତ୍ମକସ୍ୟ କୁତଶ୍ଚିଦନ୍ୟତଃ ସମ୍ଭବ ଉତ୍ପତ୍ତିରାଶଙ୍କିତବ୍ୟା । କସ୍ମାତ୍ । ଅନୁପପତ୍ତେଃ । ସନ୍ମାତ୍ରଂ ହି ବ୍ରହ୍ମ । ନ ତସ୍ୟ ସନ୍ମାତ୍ରାଦେବୋତ୍ପତ୍ତିଃ ସମ୍ଭବତି, ଅସତ୍ୟତିଶୟେ ପ୍ରକୃତିବିକାରଭାବାନୁପପତ୍ତେଃ । ନାପି ସଦ୍‌ବିଶେଷାଦ୍ ଦୃଷ୍ଟବିପର୍ଯ୍ୟାତ୍ । ସାମାନ୍ୟାଦ୍ଧି ବିଶେଷା ଉତ୍ପଦ୍ୟମାନା ଦୃଶ୍ୟନ୍ତେ ଘଟାଦୟୋ ନତୁ ବିଶେଷେଭ୍ୟଃ ସାମାନ୍ୟମ୍ । ନାପ୍ୟସତୋ ନିରାତ୍ମକତ୍ୱାତ୍ ।

(ଗ) 'କଥମସତଃ ସଜ୍ଜାୟେତ' (ଛା ୮-୬-୧) ଇତି ଚାକ୍ଷେପଶ୍ରବଣାତ୍ । 'ସ କାରଣଂ କରଣାଧିପାଧିପୋ ନ ଚାସ୍ୟ କଶ୍ଚଜ୍ଜନିତା ନ ଚାଧିପଃ' (ଶ୍ୱେ ୬-୯) ଇତି ଚ ବ୍ରହ୍ମଣେ ଜନୟିତାରଂ ବାରୟତି । ବିୟତ୍‌ପବନୟୋଃ ପୁନରୁତ୍ପତ୍ତିଃ ପ୍ରଦର୍ଶିତା ନ ତୁ ବ୍ରହ୍ମଣଃ ସାସ୍ତୀତି ବୈଷମ୍ୟମ୍ । ନ ଚ ବିକାରେଭ୍ୟୋ ବିକାରାନ୍ତରୋତ୍ପତ୍ତିଦର୍ଶନାଦ୍ ବ୍ରହ୍ମଣୋଽପି ବିକାରତ୍ୱଂ ଭବିତୁମର୍ହତୀତି ମୂଳପ୍ରକୃତ୍ୟନଭ୍ୟୁପଗମେଽନବସ୍ଥାପ୍ରସଙ୍ଗାତ୍ । ଯା ମୂଳପ୍ରକୃତିରଭ୍ୟୁପଗମ୍ୟତେ ତଦେବ ଚ ନୋ ବ୍ରହ୍ମେତ୍ୟବିରୋଧଃ ।

(୨) ଭାଷାଂତର- (କ) ଯାହାର ଉତ୍ପତ୍ତି ହେବାର ସମ୍ଭାବନା ନାହିଁ, ସେମାନେ ଆକାଶ ଏବଂ ବାୟୁର ଉତ୍ପତ୍ତି ଶୁଣି ବ୍ରହ୍ମର ଉତ୍ପତ୍ତି କିପରି ହେବ, ଏହା କାହାରବୁଦ୍ଧି ?



ଏହିପ୍ରକାର ଆକାଶାଦି ବିକାରରୁ ବାୟୁ ବିକାରର ଉତ୍ପତ୍ତି କଥା ଶ୍ରବଣ କରି ଆକାଶର ଉତ୍ପତ୍ତି ବ୍ରହ୍ମଠାରୁ ହେବ ବୋଲି କେତେକ ସ୍ୱୀକାର କରନ୍ତି । ଏହି ଶଙ୍କାକୁ ଖଣ୍ଡନ କରିବାପାଇଁ 'ଅସମ୍ଭବସ୍ତୁ' ଏହିସୂତ୍ର କୁହାଯାଇଛି ।

(ଖ) କୌଣସି ଅନ୍ୟଠାରୁ ଉତ୍ପତ୍ତିର ଆଶଙ୍କା କରିବା ଉଚିତ୍ ନୁହେଁ । କିପରି ? କାରଣ-କୌଣସି ଉପପତ୍ତି ନାହିଁ । ସନ୍‌ମାତ୍ର ହିଁ ବ୍ରହ୍ମ । ତାହାର ସନ୍‌ମାତ୍ର ଦ୍ୱାରା ଉତ୍ପତ୍ତି ସମ୍ଭବ ହୁଏ ନାହିଁ । କାରଣ-ତାହା ଅତିଶୟ ନ ହେଲେ ପ୍ରକୃତିବିକାର ଭାବ ହୁଏ ନାହିଁ । ସଦ୍‌ବିଶେଷରେ ଉତ୍ପତ୍ତି ମଧ୍ୟ ହୁଏ ନାହିଁ, କାରଣ-ପ୍ରତ୍ୟକ୍ଷଦ୍ୱାରା ତାହା ବିରୋଧ ଅଟେ । ସାମାନ୍ୟରୁ ବିଶେଷ ଉତ୍ପନ୍ନ ହେବାର ଦେଖାଯାଏ । ଯଥା-ମୃତ୍ତିକାଠାରୁ ଘଟ । ପରନ୍ତୁ ବିଶେଷର ସାମାନ୍ୟ ଉତ୍ପନ୍ନ ହେବା ଦେଖାଯାଏ ନାହିଁ । ସେପରି ଅସତ୍‌ଠାରୁ ମଧ୍ୟ ସତ୍‌ର ଉତ୍ପତ୍ତି ହୁଏ ନାହିଁ । କାରଣ- ସେ ନିରାତ୍ମକ ଅଟେ ।

(ଗ) କଥମସତଃ ସଜ୍ଜାୟତେ (ଅସତ୍‌ଠାରୁ ସତ୍ କେଉଁ ପ୍ରକାରେ ଉତ୍ପନ୍ନ ହୁଏ ?) ଏହିପରି ଆକ୍ଷେପ ଶୁଣାଯାଏ । 'ସ କାରଣଂ' (ସେ ସମସ୍ତଙ୍କର କାରଣ ଅଟେ ଏବଂ ଇନ୍ଦ୍ରିୟାଧିଷ୍ଠାତାଜୀବର ସ୍ୱାମୀ ଅଟେ) ଏହି ଶ୍ରୁତି ବ୍ରହ୍ମର ଉତ୍ପତ୍ତି କର୍ତ୍ତାକୁ ବାରଣ କରେ । ଆକାଶ ଏବଂ ବାୟୁର ଉତ୍ପତ୍ତି ମଧ୍ୟ ଦେଖାଏ । ପରନ୍ତୁ ବ୍ରହ୍ମନୁହେଁ- ଏହାହିଁ ବୈଷମ୍ୟ ଅଟେ । ବିକାରଠାରୁ ଭିନ୍ନ ଅନ୍ୟବିକାରର ଉତ୍ପତ୍ତି ଦେଖିବାରେ ବ୍ରହ୍ମ ବିକାର ହେଉ ବୋଲି ନ ହୋଇପାରେ । କାରଣ-ମୂଳପ୍ରକୃତି ସ୍ୱୀକାର ନକଲେ ଅନବସ୍ଥାପ୍ରସଙ୍ଗ ହେବ । ଯାହା ମୂଳପ୍ରକୃତି ରୂପେ ସ୍ୱୀକାର୍ଣ୍ଣ କରାଯାଏ, ସେହିଁ ଆରମ୍ଭ ବ୍ରହ୍ମ । ତେଣୁ କୌଣସି ବିରୋଧ ନାହିଁ ।

## ४ तेजोऽधिकरणम् ॥ सू० ॥ २०

## ତେଜୋଧିକରଣ-୪

## तेजोऽतस्तथा ह्याह ॥ २० ॥

## ୧-ତେଜୋଽତସ୍ତଥା ହ୍ୟାହ ॥ ୨-୩-୧୦ ॥

ତେଜଃ-ତେଜ, ଅତଃ-ବାୟୁରୁ ଉତ୍ପନ୍ନ ହୁଏ । ହି-କାରଣ, ତଥା-ଏହିପରି, ଆହ-ବାୟୋରଗ୍ନି ଏହି ଶ୍ରୁତି କହେ ।

(୨) ମୂଳ-(କ) ଛାନ୍ଦୋଗ୍ୟେ ସନ୍‌ମୂଳତ୍ୱଂ ତେଜସଃ ଶ୍ରାବିତମ୍, ତୈତ୍ତିରୀୟକେ ତୁ ବାୟୁମୂଳତ୍ୱଂ, ତତ୍ର ତେଜୋଯୋନିଂ ପ୍ରତି ଶ୍ରୁତିବିପ୍ରତିପତ୍ତୌ ସତ୍ୟାଂ ପ୍ରାପ୍ତଂ ତାବଦ୍ ବ୍ରହ୍ମଯୋନିକଂ ତେଜ ଇତି । କୁତଃ । 'ସଦେବ' ଇତ୍ୟୁପକ୍ରମ୍ୟ 'ତତ୍ତେଜୋଽସଜତ' ଇତ୍ୟୁପଦେଶାତ୍ । ସର୍ବବିଜ୍ଞାନପ୍ରତିଜ୍ଞାୟାଶ୍ଚ ବ୍ରହ୍ମପ୍ରଭବତ୍ୱେ ସର୍ବସ୍ୟ ସମ୍ଭବାତ୍ । 'ତଜ୍ଜଲାନ୍'

(ଛା ୮-୭-୧) ଇତି ଋବିଶେଷଶ୍ରୁତେଃ 'ଏତସ୍ମାଜ୍ଜାୟତେ ପ୍ରାଣଃ' (ମୁଣ୍ଡ ୨-୧-୩) ଇତି ଋେପକ୍ରମ୍ୟ ଶ୍ରୁତ୍ୟନ୍ତରେ ସର୍ବସ୍ୟାବିଶେଷେଣ ବ୍ରହ୍ମଜତ୍ୱୋପଦେଶାତ୍ । ତୈତ୍ତିରୀୟକେ ଚ 'ସ ତପସ୍ତପ୍ତ୍ୱା । ଇଦଂ ସର୍ବମସୃଜତ । ଯଦିଦଂ କିଞ୍ଚ' (ତୈ ୩-୬-୧) ଇତ୍ୟବିଶେଷଶ୍ରବଣାତ୍ । ତସ୍ମାତ୍ 'ବାୟୋରଗ୍ନିଃ' ଇତି କ୍ରମୋପଦେଶୋ ଦ୍ରଷ୍ଟବ୍ୟୋ ବାୟୋରନନ୍ତରମଗ୍ନିଃ ସମ୍ଭୂତି ଇତି ।

(ଖ) ଇତି ପ୍ରାପ୍ତ ଉଚ୍ୟତେ - 'ତେଜୋଽତୋ ମାତରିଶ୍ୱନୋ ଜାୟତ ଇତି । କସ୍ମାତ୍ । ତଥାହ୍ୟାହ-'ବାୟୋରଗ୍ନିଃ ଇତି' । ଅବ୍ୟାହିତେ ହି ତେଜସୋ ବ୍ରହ୍ମଜତ୍ୱେ ସତ୍ୟସତି ବାୟୁଜତ୍ୱେ ବାୟୋରଗ୍ନିରିତୀୟଂ ଶ୍ରୁତିଃ କଦର୍ଥିତା ସ୍ୟାତ୍ । ନନୁ କ୍ରମର୍ଥୈଷା ଭବିଷ୍ୟତୀତ୍ୟୁକ୍ତମ୍ । ନେତି ବ୍ରୂମଃ-ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ' (ତୈ ୨-୧-୧) ଇତି ପୁରସ୍ତାତ୍ ସମ୍ଭବତ୍ୟପାଦାନସ୍ୟାତ୍ମନଃ ପଞ୍ଚମୀନିର୍ଦ୍ଦେଶାତ୍, ତସ୍ୟୈବେ ଚ ସମ୍ଭବତେରିହାଧିକାରାତ୍, ପରସ୍ତାଦପି ଚ ତଦଧିକାରେ 'ପୃଥିବ୍ୟା ଔଷଧୟଃ (ତୈ ୨-୧-୧ ଇତ୍ୟପାଦାନପଞ୍ଚମୀଦର୍ଶନାଦ୍ ବାୟୋରଗ୍ନିରିତ୍ୟାପାଦା-ନପଞ୍ଚମ୍ୟୋବୈଷେତ ଗମ୍ୟତେ । ଅପି ଚ ବାୟୋରୁର୍ଦ୍ଧ୍ୱମଗ୍ନିଃ ସମ୍ଭୂତ ଇତି କଳ୍ପ୍ୟ ଉପପଦାର୍ଥଯୋଗଃ କ୍ଳୃପ୍ତ କାରକାର୍ଥ ଯୋଗୋ ବାୟୋରଗ୍ନିଃ ସମ୍ଭୂତ ଇତି । ତସ୍ମାଦେଷା ଶ୍ରୁତିର୍ବାୟୁଯୋନିତ୍ୱଂ ତେଜସୋଽବମୟତି ।

(ଗ) ନନ୍ୱିତିରୋପି ଶ୍ରୁତିର୍ବ୍ରହ୍ମଯୋନିତ୍ୱଂ ତେଜସୋଽବଗମୟତି 'ତତ୍ତେଜୋଽସୃଜତ' ଇତି । ନ । ତସ୍ୟାଃ ପାରମ୍ପର୍ଯ୍ୟଜତ୍ୱେଽପ୍ୟ ବିରୋଧାତ୍ । ଯଦାପି ହ୍ୟାକାଶଂ ବାୟୁଞ୍ଚ ସୃଷ୍ଟ୍ୱା ବାୟୁଭାବାପନ୍ନଂ ବ୍ରହ୍ମ ତେଜୋଽସୃଜତେତି କଳ୍ପ୍ୟତେ, ତଦାପି ବ୍ରହ୍ମଜତ୍ୱଂ ତେଜସୋ ନ ବିରୁଧ୍ୟତେ । ଯଥା ତସ୍ୟାଃ ଶୃତଂ ତସ୍ୟା ଦଧି ତସ୍ୟ ଆମିକ୍ଷେତ୍ୟାଦି । ଦର୍ଶୟତି ଚ ବ୍ରହ୍ମଣୋ ବିକାରାତ୍ମନାବସ୍ଥାନଂ 'ତଦାତ୍ମାନଂ ସ୍ୱୟମକୁରୁତ' (ତୈ ୨-୭-୧) ଇତି । ତଥା ଋେଶ୍ୱର ସ୍ମରଣଂ ଭବନ୍ତି- 'ବୁଦ୍ଧିର୍ଜ୍ଞାନମସଂମୋହଃ, (ଭ.ଗୀ ୧୦-୪) ଇତ୍ୟାଦ୍ୟନୁକ୍ରମ୍ୟ 'ଭବନ୍ତି ଭାବା ଭୂତାନାଂ ମତ୍ତ ଏବ ପୃଥଗ୍‌ବିଧାଃ' (ଭ.ଗୀ ୧୦-୫) ଇତି । ଯଦ୍ୟପି ବୁଦ୍ଧ୍ୟାଦୟଃ ସ୍ୱକାରଣେଭ୍ୟଃ ପ୍ରତ୍ୟକ୍ଷଂ ଭବନ୍ତୋ ଦୃଶ୍ୟନ୍ତେ, ତଥାପି ସର୍ବସ୍ୟ ଭାବଜାତସ୍ୟ ସାକ୍ଷାତ୍ ପ୍ରାଣାଡ୍ୟା ବେଶ୍ୱରବଂଶ୍ୟତ୍ୱାତ୍ । ଏତେନାକ୍ରମବତ୍ ସୃଷ୍ଟି ବାଦିନ୍ୟଃ ଶ୍ରୁତୟୋ ବ୍ୟାଖ୍ୟାତାଃ । ତାସାଂ ସର୍ବଥୋପପତ୍ତେଃ । କ୍ରମବତ୍‌ସୃଷ୍ଟିବାଦିନୀନାଂ ତ୍ୱନ୍ୟଥାନୁପପତ୍ତେଃ । ପ୍ରତିଜ୍ଞାପି ସଦ୍ ବଂଶ୍ୟତ୍ୱମାତ୍ରମପେକ୍ଷତେ ନାବ୍ୟବହିତଜନ୍ୟତ୍ୱମିତ୍ୟ ବିରୋଧଃ ।

(୨) ଭାଷାଂତର- (କ) ଛାନ୍ଦୋଗ୍ୟ ଉପନିଷଦରେ ତେଜକୁ ସତ୍‌ମୂଳତ୍ୱ ବୋଲି ଶୁଣାଯାଏ । ଅର୍ଥାତ୍ ତେଜର ମୂଳ ସତ୍ ଅଟେ । କିନ୍ତୁ ତୈତ୍ତିରୀୟକରେ ବାୟୁ ମୂଳତ୍ୱ ଅର୍ଥାତ୍ ତେଜର ମୂଳ ବାୟୁ ବୋଲି କୁହାଯାଇଅଛି । ଏହି ଦୁଇଟିରେ ତେଜର କାରଣ ପ୍ରତିଶ୍ରୁତିବାକ୍ୟର ପରସ୍ପର ବିରୋଧ ହେବାରୁ ବ୍ରହ୍ମକାରଣକ ତେଜ ଅଟେ ବୋଲି ପ୍ରାପ୍ତ

ହୁଏ । କାରଣ- 'ସଦେବ ସତ୍' ଏହିପ୍ରକାର ଆରମ୍ଭ କରି 'ତତ୍ତେଜୋଽସୃଜତ' (ସେ ତେଜ ଉତ୍ପନ୍ନ କଲା) ଏହା ହିଁ ଉପଦେଶ ଅଟେ । 'ତଜ୍ଜଲାନ୍' ଏହି ଅବିଶେଷ ଶ୍ରୁତିଦ୍ୱାରା ସମସ୍ତେ ବ୍ରହ୍ମଜନ୍ୟ ହେବାରୁ ସର୍ବବିଜ୍ଞାନ ପ୍ରତିଜ୍ଞାର ସମ୍ଭବ ହୁଏ । 'ଏତସ୍ମାଜ୍ଜାୟତେ' (ଏହାଠାରୁ ପ୍ରାଣ ଉତ୍ପନ୍ନ ହୁଏ) ଏହା ଉପକ୍ରମ କରି ଅନ୍ୟଶ୍ରୁତିରେ ସବୁ ସମାନରୂପରେ ବ୍ରହ୍ମଠାରୁ ଉତ୍ପନ୍ନ ହୁଅନ୍ତି'- ଏହିପ୍ରକାର ଉପଦେଶ ଦିଆଯାଇଛି । 'ତୈତ୍ତିରୀୟକରେ ସ ତପସ୍ତପ୍ତ୍ୱା' (ସେ ତପସ୍ୟା କରି ଏହା ଯାହା କିଛି, ସେସବୁକୁ ରଚନା କଲା) ଏହା ଅବିଶେଷ ଶ୍ରୁତି ଅଟେ । ତେଣୁ 'ବାୟୋରଗ୍ନିଃ' (ବାୟୁଠାରୁ ଅଗ୍ନି ଉତ୍ପନ୍ନ ହେଲା) ଏହିପରି ବାୟୁପରେ ଅଗ୍ନି ଉତ୍ପନ୍ନ ହେଲା- ଏହିପରି କ୍ରମୋପଦେଶ ଦିଆଯାଇଛି ।

(ଖ) ସିଦ୍ଧାନ୍ତ-ଏହାପ୍ରାପ୍ତ ହେବାରୁ ଆମ୍ଭେ କହୁଁ- 'ତେଜଃ ଅତଃ' ବାୟୁରୁ ଉତ୍ପନ୍ନ ହେଲା । କିପରି ? କାରଣ- 'ବାୟୋରଗ୍ନିଃ' ବୋଲି କୁହାଯାଇଅଛି । ତେଜର ବ୍ରହ୍ମଠାରୁ ପ୍ରତ୍ୟକ୍ଷଭାବେ ଉତ୍ପତ୍ତି ହେବାରୁ ଏବଂ ବାୟୁରୁ ଉତ୍ପତ୍ତି ନ ହେବାରୁ 'ବାୟୋରଗ୍ନିଃ, ଏହିସୂତ୍ର ବାଧାପ୍ରାପ୍ତ ହେଲା । ପରନ୍ତୁ ଏହି ଶ୍ରୁତି କ୍ରମପାଇଁ ହେବ ବୋଲି ଯାହା କୁହାଯାଇଛି, ତାହା କିନ୍ତୁ ନୁହେଁ । କାରଣ- 'ତସ୍ମାଦବା ଏତସ୍ମାଦାତ୍ମନଃ ଆକାଶଃ ସଂଭୂତଃ' ଏହିପ୍ରକାର ପ୍ରଥମେ ଉତ୍ପତ୍ତିକ୍ରିୟାର ଅପାଦାନ ଆତ୍ମାର ପଞ୍ଚମୀଦ୍ୱାରା ନିର୍ଦ୍ଦେଶ ହୁଏ । ସେହି ଉତ୍ପତ୍ତିକ୍ରିୟାର ଏଠାରେ ଅଧିକାର ରହିଛି । ପ୍ରଥମେ ତାହାର ଅଧିକାରରେ 'ପୃଥିବ୍ୟାଂ ଔଷଧୟଃ' (ପୃଥିବୀଠାରୁ ଔଷଧ ଗୁଡ଼ିକ ଉତ୍ପନ୍ନ ହୋଇଛନ୍ତି) ଏହିପ୍ରକାର ଅପାଦାନ ପଞ୍ଚମୀକୁ ନିର୍ଦ୍ଦେଶ କରେ । ତେଣୁ 'ବାୟୋରଗ୍ନିଃ'- ଏହା ଅପାଦାନ ପଞ୍ଚମୀ ବୋଲି ଜଣାଯାଏ । ପୁନଶ୍ଚ, ବାୟୋରୁର୍ଦ୍ଧ୍ୱମଗ୍ନିଃ' (ବାୟୁର ପରେ ଅଗ୍ନି ଉତ୍ପନ୍ନ ହୋଇଅଛି) ଏହିପରି ଉପପଦକୁ ଅର୍ଥରେ ଯୋଗ କରାଯାଏ । 'ବାୟୋରଗ୍ନିଃ' ଏଠାରେ କାରକ ଅର୍ଥରେ ଯୋଗ କରାଯାଇଛି । ତେଣୁ ଏହି ଶ୍ରୁତି ତେଜ ବାୟୁକାରକ ବୋଧ କରାଏ ଅର୍ଥାତ୍ ତେଜର ବାୟୁ କାରଣ ଅଟେ ।

(ଗ) ପରନ୍ତୁ 'ତତ୍ତେଜୋଽସୃଜତ' ଏହି ଅନ୍ୟଶ୍ରୁତି ତେଜର ବ୍ରହ୍ମକାରଣତ୍ୱକୁ ବୋଧ କରାଏ-ଏହାହିଁ କଳ୍ପନା କରାଯାଇଅଛି । ତେଜ ବ୍ରହ୍ମଠାରୁ ଉତ୍ପନ୍ନ ହୋଇଛି,- ଏଥିରେ କୌଣସି ବିରୋଧ ନାହିଁ । ଯେପରି-'ତସ୍ୟାଃଶୃତଂ' (ଗାଈର ଦୁଧ ଗରମ କଲେ ତାହାର ଦହି, ତାହାର ଛେନା) ଇତ୍ୟାଦି । 'ତଦାତ୍ମାନଂ ସ୍ୱୟମକୁରୁତ' (ସେ ନିଜେ ତାହାକୁ ରଚନା କରିଛି) ଏହିଶ୍ରୁତି ବ୍ରହ୍ମର ବିକାରରୂପରେ ଅବସ୍ଥିତ ଦେଖାଏ । ସେପରି ଭଗବଦ୍ ଗୀତାରେ କୁହାଯାଇଅଛି- 'ବୁଦ୍ଧିର୍ଜ୍ଞାନମସଂମୋହଃ (ବୁଦ୍ଧି, ଜ୍ଞାନ ଓ ଅମୂଢ଼ତା) ଇତ୍ୟାଦି ଉପକ୍ରମ କରି 'ଭବନ୍ତି ଭାବା' (ପ୍ରାଣୀମାନଙ୍କର ନାନା ପ୍ରକାର ବୁଦ୍ଧି ଇତ୍ୟାଦି ମୋଠାରୁ ଜନ୍ମ ନେଇଛନ୍ତି) । ଯଦ୍ୟପି ବୁଦ୍ଧି ପ୍ରଭୃତି ସ୍ୱକରଣଦ୍ୱାରା ପ୍ରତ୍ୟକ୍ଷଭାବେ ଉତ୍ପନ୍ନ ହୋଇ ଦେଖାଯା'ନ୍ତି, ତଥାପି ସଂପୂର୍ଣ୍ଣପଦାର୍ଥ

ସାକ୍ଷାତ୍ ବା ପରମ୍ପରାରେ ଈଶ୍ୱରଠାରୁ ଉତ୍ପନ୍ନ ହୁଅନ୍ତି । ଏହା କହିବା ଦ୍ୱାରା କ୍ରମରହିତ ସୃଷ୍ଟି ପ୍ରତିପାଦକ ଶ୍ରୁତି ବ୍ୟାଖ୍ୟାନ ହୋଇଛି । କାରଣ-ସେମାନଙ୍କର ସର୍ବପ୍ରକାର ଉପପତ୍ତି ଅଛି । ପରନ୍ତୁ କ୍ରମପ୍ରତି ଶ୍ରୁତିଗୁଡ଼ିକ ଅନ୍ୟଥା ଅନୁପପନ୍ନ ଅଟନ୍ତି । ତେଣୁ ପ୍ରତିଜ୍ଞା ସତ୍ଗୁଉତ୍ପତ୍ତିକୁ ଅପେକ୍ଷା କରେ । ଅବ୍ୟବହିତ ଉତ୍ପତ୍ତିକୁ ନୁହେଁ । ତେଣୁ ତାହା ଅବିରୋଧ ଘଟେ ।

## ५ अवधिकरणम् । स० ११

## ଅବଧିକରଣ-୫

## आप: ॥ ११ ॥

## ୧-ଆପଃ ॥୨-୩-୧୧॥

ଜଳ ତେଜଠାରୁ ଉତ୍ପନ୍ନ ହୁଏ, କାରଣ ଅଗ୍ନେରାପଃ ଶ୍ରୁତିପ୍ରମାଣ ଅଛି ।

(୨) ମୂଳ- 'ଅତସ୍ତଥା ହ୍ୟାହ' ଇତ୍ୟନୁବର୍ତ୍ତତେ । ଆପୋଽତସ୍ତେଜସୋ ଜାୟନ୍ତେ । କସ୍ମାତ୍ । ତଥା ହ୍ୟାହ-'ତଦ୍ପୋଽସୃଜତ' ଇତି 'ଅଗ୍ନେରାପଃ' ଇତି ଚ ସତି ବଚନେ ନାସ୍ତି ସଂଶୟଃ । ତେଜସସ୍ତୁ ସୃଷ୍ଟିଂ ବ୍ୟାଖ୍ୟାୟ ପୃଥିବ୍ୟା ବ୍ୟାଖ୍ୟାସ୍ୟନ୍ନପୋ-ଽନ୍ତରିୟାମିତ୍ୟାପ ଇତି ସୂତ୍ରୟାଂବଭୂବ ।

(୨) ଭାଷାଂତର- 'ଅତସ୍ତଥାହ୍ୟାହ' ଏହା ପୂର୍ବସୂତ୍ରର ଅନୁବୃତ୍ତି ଅଟେ । ଜଳ ତେଜଠାରୁ ଉତ୍ପନ୍ନ ହୋଇଛି । କାରଣ- 'ତଦପୋଽସୃଜତ' (ତାହାଠାରୁ ଜଳ ଉତ୍ପନ୍ନ ହେଲା) ଏବଂ 'ଅଗ୍ନେରାପଃ' (ଅଗ୍ନିରୁ ଜଳ ଉତ୍ପନ୍ନ ହେଲା) ଏହିପ୍ରକାର ଶ୍ରୁତି କହେ । ଶ୍ରୁତିବାକ୍ୟହେତୁ ସଂଶୟ ହୁଏ ନାହିଁ । ତେଜକୁ ସୃଷ୍ଟିରୂପେ ବ୍ୟାଖ୍ୟାନ କରି ପୃଥିବୀର ସୃଷ୍ଟିକୁ ବ୍ୟାଖ୍ୟାନ କରି ସୂତ୍ରକାର ଦ୍ୱାରା ଜଳର ମଝିରେ ସୃଷ୍ଟି କରାଯାଇଛି । ତେଣୁ 'ଆପଃ' ଏହିସୂତ୍ର ରଚନା କରାଯାଇଛି ।

## ६ पृथिाब्यधिकाराधिकरणम् । सू० ११

## ପୃଥିବ୍ୟଧିକରଣ-୬

## पृथिब्यधिकाररूपशब्दान्तरेभ्य ॥ १२ ॥

## ୧-ପୃଥିବ୍ୟଧିକାରରୂପଶବ୍ଦାନ୍ତରେଭ୍ୟଃ ॥୨-୩-୧୨॥

ପୃଥିବୀ-ଅନ୍ନଶବ୍ଦଦ୍ୱାରା ଏଠାରେ ପୃଥିବୀ ବିବକ୍ଷିତ ଅଟେ । କିନ୍ତୁ ଓଦନ ପ୍ରଭୃତି ନୁହେଁ । ଅଧିକାରରୂପଶବ୍ଦାନ୍ତରେଭ୍ୟଃ-କାରଣ-'ତତ୍ତେଜୋଽସୃଜତ' ଏହିପ୍ରକାର ମହାଭୂତର ଉତ୍ପତ୍ତି ପ୍ରକରଣ ଅଛି । 'ଯତ୍କୃଷ୍ଣଂ ତଦନ୍ନସ୍ୟ' (ଯାହା କୃଷ୍ଣରୂପ, ତାହା ହିଁ ଅନ୍ନ) ଏହିପ୍ରକାର

ପୃଥିବୀତ୍ୱର ଜ୍ଞାପକ କୃଷ୍ଣରୂପର ଶ୍ରବଣ ଅଟେ ଏବଂ 'ଅଦ୍‌ଭ୍ୟଃ ପୃଥିବୀ' ଏହିପ୍ରକାର ଅନ୍ୟଶ୍ରୁତି ଅଟେ ।

(୨) ମୂଳ-(କ) 'ତା ଆପ ଐକ୍ଷନ୍ତ ବହ୍ୱ୍ୟଃ ସ୍ୟାମ ପ୍ରଜାୟେମହୀତି ତା ଅନ୍ନମସୃଜନ୍ତ' (ଛା ୬-୨-୪) ଇତି ଶ୍ରୂୟତେ । ତତ୍ର ସଂଶୟଃ-କିମନେନାନ୍ନଶବ୍ଦେନ ବ୍ରୀହିଯବାଦ୍ୟଭ୍ୟବହାର୍ଯ୍ୟ ମୋଦନାଦ୍ୟୁଚ୍ୟତେ କିଂ ବା ପୃଥିବୀତି । ତତ୍ର ପ୍ରାପ୍ତଂ ତାବଦ୍-ବ୍ରୀହିଯବାଦ୍ୟୋଦନାଦି ବା ପରିଗ୍ରହୀତବ୍ୟମିତି । ତତ୍ର ହ୍ୟନ୍ନଶବ୍ଦଃ ପ୍ରସିଦ୍ଧୋ ଲୋକେ ବାକ୍ୟଶେଷୋଽପ୍ୟେତମର୍ଥମୁପୋଦ୍‌ବଲୟତି । 'ତସ୍ମାଦ୍ୟତ୍ର କ୍ୱଚ ବର୍ଷତି ତଦେବ ଭୂୟିଷ୍ଠମନ୍ନଂ ଭବତୀ'ତି । ବ୍ରୀହିଯବାଦ୍ୟେବ ହି ସତି ବର୍ଷଣେ ବହୁ ଭବତି ନ ପୃଥିବୀତି ।

(ଖ) ଏବଂ ପ୍ରାପ୍ତେ ବ୍ରୂମଃ-ପୃଥିବ୍ୟେବେୟମନ୍ନଶବ୍ଦେନାଦ୍‌ଭ୍ୟୋ ଜାୟମାନା ବିବକ୍ଷ୍ୟତ ଇତି । କସ୍ମାତ୍ । ଅଧିକାରାଦ୍‌ରୂପାଚ୍ଛବ୍ଦାନ୍ତରାଚ୍ଚ । ଅଧିକାରସ୍ତାବତ୍ 'ତତ୍ତେଜୋଽସୃଜତ', 'ତଦପୋଽସୃଜତ' ଇତି ମହାଭୂତବିଷୟୋ ବର୍ତ୍ତତେ । ତତ୍ର କ୍ରମପ୍ରାପ୍ତାଂ ପୃଥିବୀଂ ମହାଭୂତଂ ବିଲଂଘ୍ୟ ନାକସ୍ମାଦ୍ ବ୍ରୀହ୍ୟାଦିପରିଗ୍ରହୋ ନ୍ୟାଯ୍ୟଃ । ତଥା ରୂପମପି ବାକ୍ୟ ଶେଷେ ପୃଥିବ୍ୟନୁଗୁଣଂ ଦୃଶ୍ୟତେ 'ଯତ୍‌କୃଷ୍ଣଂ ତଦନ୍ନସ୍ୟ' ଇତି । ନହ୍ୟୋଦନାଦେରଭ୍ୟବହାର୍ଯ୍ୟସ୍ୟ କୃଷ୍ଣତ୍ୱନିୟମୋଽସ୍ତି । ନାପି ବ୍ରୀହ୍ୟାଦୀନାମ୍ ।

(ଗ) ନନୁ ପୃଥିବ୍ୟା ଅପି ନୈବ କୃଷ୍ଣତ୍ୱନିୟମୋଽସ୍ତି ପୟଃପାଣ୍ଡୁରସ୍ୟାଙ୍ଗାର-ରୋହିତସ୍ୟ ଚ କ୍ଷେତ୍ରସ୍ୟ ଦର୍ଶନାତ୍ । ନାୟଂ ଦୋଷଃ । ବାହୁଲ୍ୟାପେକ୍ଷତ୍ୱାତ୍ । ଭୂୟିଷ୍ଠଂ ହି ପୃଥିବ୍ୟାଃ କୃଷ୍ଣଂ ରୂପଂ ନ ତଥା ଶ୍ୱେତରୋହିତେ । ପୌରାଣିକା ଅପି ପୃଥିବୀଚ୍ଛାୟାଂ ଶର୍ବରୀମୁପଦିଶନ୍ତି । ସା ଚ କୃଷ୍ଣାଭାସେତ୍ୟତଃ କୃଷ୍ଣଂ ରୂପଂ ପୃଥିବ୍ୟା ଇତି ଶ୍ଳିଷ୍ୟତେ । ଶ୍ରୁତ୍ୟନ୍ତରମପି ସମାନାଧିକାରମଦ୍‌ଭ୍ୟଃ ପୃଥିବୀତି ଭବତି । ତଦ୍ୟଦପାଂ ଶର ଆସୀତ୍ତତ୍ ସମହନ୍ୟତ ସା ପୃଥିବ୍ୟଭବତ୍' (ବୃ ୧-୨-୨) ଇତି ଚ । ପୃଥିବ୍ୟାସ୍ତୁ ବ୍ରୀହ୍ୟାଦେରୁତ୍ପତ୍ତିଂ ଦର୍ଶୟତି- 'ପୃଥିବ୍ୟା ଔଷଧୟଃ ଔଷଧିଭ୍ୟୋଽନ୍ନମ୍' ଇତି ଚ । ଏବମଧିକାରାଦିଷୁ ପୃଥିବ୍ୟାଃ ପ୍ରତିପାଦକେଷୁ ସତ୍ସୁ କୁତୋ ବ୍ରୀହ୍ୟାଦିପ୍ରତିପତ୍ତିଃ । ପ୍ରସିଦ୍ଧିରପ୍ୟଧିକାରାଦିଭିରେବ ବାଧ୍ୟତେ । ବାକ୍ୟଶେଷୋଽପି ପାର୍ଥିବତ୍ୱାଦନ୍ନାଦ୍ୟସ୍ୟ ତଦ୍ଦ୍ୱାରେଣ ପୃଥିବ୍ୟା ଏବାଦ୍‌ଭ୍ୟଃ ପ୍ରଭବତ୍ୱଂ ସୂଚୟତୀତି ଦ୍ରଷ୍ଟବ୍ୟମ୍ । ତସ୍ମାତ୍ ପୃଥିବୀୟମନ୍ନଶବ୍ଦେତି ।

(୨) ଭାଷାଂତର- (କ) 'ତା ଆପ ଐକ୍ଷତ' (ସେହି ଜଳରେ ଈକ୍ଷଣ କଲା-ଆମେ ବହୁତ ହେବୁ, ଅନେକରୂପରେ ଉତ୍ପନ୍ନ ହେବୁ' ସେ ଅନ୍ନକୁ ରଚନା କଲା) ଏହି ଶ୍ରୁତି । ଏଠାରେ ସଂଶୟ ହୁଏ ଯେ- ଏହି ଅନ୍ନଶବ୍ଦଦ୍ୱାରା ବ୍ରୀହି, ଯବ ପ୍ରଭୃତି କୁହାଯାଇଛି, କି ଭକ୍ଷ୍ୟ ଓଦନକୁ, କି ପୃଥିବୀକୁ ? ପୂର୍ବପକ୍ଷ- ହଁ, ବ୍ରୀହି, ଯବାଦି ଅଥବା ଓଦନ ପ୍ରଭୃତିକୁ ଗ୍ରହଣ କରାଯାଇଛି, ଏହା ପ୍ରାପ୍ତ ହୁଏ । କାରଣ- ସଂସାରରେ ଅନ୍ନଶବ୍ଦ ସେଠାରେ ପ୍ରସିଦ୍ଧ

ଅଟେ ଏବଂ 'ତସ୍ମାଦ୍ୟତ୍ର' (ତେଣୁ ଯେଉଁଠି କେଉଁଠି ବୃଷ୍ଟି ହୁଏ, ସେହି ସ୍ଥାନରେ ବହୁତ ଅନ୍ନ ହୁଏ) । ଏହି ବାକ୍ୟଶେଷ ଏହି ଅର୍ଥକୁ ବଳବାନ୍ କରେ କାରଣ- ବୃଷ୍ଟି ହେଲାପରେ ବ୍ରୀହି, ଯବାଦି ବହୁତ ହୁଏ, କିନ୍ତୁ ପୃଥିବୀ ନୁହେଁ ।

(ଖ) ସିଦ୍ଧାନ୍ତ- ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁ ଯେ- ଜଳଠାରୁ ଜାତ ହୋଇଥିବା ଏହି ପୃଥିବୀ ଅନ୍ନଶବ୍ଦ ଦ୍ୱାରା ବିବକ୍ଷିତ ହୁଏ, କିପରି ? କାରଣ- ତାହା ଅଧିକାର (ପ୍ରକରଣ) ଅଟେ । ରୂପ ଅଟେ ଏବଂ ଅନ୍ୟଶ୍ରୁତି ଅଟେ । 'ତତ୍ତେଜୋଽସୃଜତ' (ସତେଜ ସୃଷ୍ଟି କଲା । ସେ ଜଳ ସୃଷ୍ଟି କଲା) ଏହିପରି ମହାଭୂତବିଷୟକ ଅଧିକାର ଅଟେ । ସେଠାରେ କ୍ରମପ୍ରାପ୍ତ ମହାଭୂତ ପୃଥିବୀକୁ ଉଲ୍ଲଂଘନ କରି ଅକସ୍ମାତ୍ ବ୍ରୀହି, ଯବାଦିର ଗ୍ରହଣ କରିବା ଉଚିତ୍ ନୁହେଁ । ଏହିପରି 'ଯତ୍‌କୃଷ୍ଣଂ (ଯାହା କୃଷ୍ଣରୂପ ଅଟେ, ତାହା ଅନ୍ନର) ଏହି ବାକ୍ୟଶେଷରେ ରୂପ ମଧ୍ୟ ପୃଥିବୀର ଅନୁକୂଳ ଦେଖାଯାଏ, କାରଣ ଭକ୍ଷ୍ୟ ଓଦନାଦିରେ କୃଷ୍ଣରୂପ ହେବାର ନିୟମ ନାହିଁ ।

(ଗ) ପରନ୍ତୁ ପୃଥିବୀର କୃଷ୍ଣରୂପ ହେବାର ନିୟମ ନାହିଁ, କାରଣ- ଦୁଗ୍ଧ ହିଁ ଧବଳ, ଅଙ୍ଗାର ରକ୍ତବର୍ଣ୍ଣ ଦେଖାଯାଏ । ଏହା ଦୋଷ ନୁହେଁ । କାରଣ-ସେ ବହୁଳତାକୁ ଅପେକ୍ଷା କରେ । ପୃଥିବୀର ବହୁସ୍ଥାନରେ କୃଷ୍ଣରୂପ ଦେଖାଯାଏ । ତେଣୁ ପୃଥିବୀର ରୂପ କୃଷ୍ଣ-ଏହା ସଂଗତ ଅଟେ । ସେହିପରି 'ଅଦ୍‌ଭ୍ୟୋ ପୃଥିବୀ' (ପୃଥିବୀଠାରୁ ଔଷଧ ଓ ଔଷଧଠାରୁ ଅନ୍ନଜାତ ହୁଏ) ଏହି ଶ୍ରୁତି ପୃଥିବୀଠାରୁ ବ୍ରୀହିପ୍ରଭୃତିର ଉତ୍ପତ୍ତିକୁ ଦେଖାଏ । ସେପରି ମଧ୍ୟ ପୃଥିବୀର ପ୍ରତିପାଦକ ଅଧିକାର ହୋଇ ଅନ୍ନଶବ୍ଦରୁ ବ୍ରୀହିଆଦିର ପ୍ରତିପତ୍ତି କିପରି ହେବ ? ପ୍ରସିଦ୍ଧି ପ୍ରକରଣ ଦ୍ୱାରା ବାଧିତ ହୁଏ । ବାକ୍ୟଶେଷ ମଧ୍ୟ ଅନ୍ନପ୍ରଭୃତି ପାର୍ଥିବ ହେଲେ ତାହାଦ୍ୱାରା ପୃଥିବୀର ଜଳପ୍ରଭବତ୍ୱ ସୂଚିତ କରେ ବୋଲି ଜାଣିବା ଉଚିତ । ତେଣୁ ଏହି ପୃଥିବୀ ଅନ୍ନଶବ୍ଦ ବାଚ୍ୟ ଅଟେ ।

## ७ तदभिध्यानाधिकरणम् । सू० १३

## ତଦଭିଧ୍ୟାନାଧିକରଣ-୭

## तदभिध्यानादेव तु तल्लिङ्गात्सः ॥ १३ ॥

## ତଦଭିଧ୍ୟାନାଦେବ ତୁ ତଲ୍ଲିଙ୍ଗାତ୍ ସଃ ॥୨-୩-୧୩॥

ତୁଶବ୍ଦ ଶଙ୍କାନିବାରଣ ପାଇଁ ଅଛି । ସଃ-ସେହି ଈଶ୍ୱର, ତଦଭିଧ୍ୟାନାଦେବ-ସେହି କାର୍ଯ୍ୟ ବିଷୟକ ଈକ୍ଷଣାତ୍ମକ ଅଭିଧ୍ୟାନରୁ ଈକ୍ଷିତ ଭୂତଗୁଡ଼ିକର ଅଧିଷ୍ଠାତା ହୋଇ ସେହି କାର୍ଯ୍ୟକୁ ଉତ୍ପନ୍ନ କରେ । ତଲ୍ଲିଙ୍ଗାତ୍-କାରଣ-'ଯଃ ପୃଥିବ୍ୟାଂ ତିଷ୍ଠତ୍' ଇତ୍ୟାଦି ଶ୍ରୁତିବାକ୍ୟରେ ସେହି ପରମାତ୍ମା ସର୍ବତ୍ରନିୟନ୍ତୃରୂପେ ଶୁଣାଯାଏ । ତେଣୁ ପରମେଶ୍ୱରରୁ ଅଧିଷ୍ଠିତଭୂତ ସଷ୍ଟା ହୁଏ । ତେଣୁ ଶ୍ରୁତିର ଏକବାକ୍ୟତା ଅଛି ।

 

(୨) ମୂଳ-(କ) କିମିମାନି ବିୟଦାଦୀନି ଭୂତାନି ସ୍ୱୟମେବ ସ୍ୱବିକାରାନ୍ ସୃଜନ୍ତ୍ୟାହୋସ୍ୱିତ୍‌ପରମେଶ୍ୱର ଏବ ତେନ ତେନାତ୍ମନାବତିଷ୍ଠମାନୋଽଭିଧ୍ୟାୟଂସ୍ତଂ ତଂ ବିକାରଂ ସୃଜତୀତି ସନ୍ଦେହେ ସତି ପ୍ରାପ୍ତଂ ତାବତ୍‌ସ୍ୱୟମେବ ସୃଜନ୍ତୀତି । କୁତଃ । 'ଆକାଶାଦ୍‌ବାୟୁର୍ବାୟୋରଗ୍ନିଃ' ଇତ୍ୟାଦି ସ୍ୱାତନ୍ତ୍ର୍ୟଶ୍ରବଣାତ୍ । ନନ୍ୱଚେତନାନାଂ ସ୍ୱତନ୍ତ୍ରାଣାଂ ପ୍ରବୃତ୍ତିଃ ପ୍ରତିଷିଦ୍ଧା । ନୈଷ ଦୋଷଃ । 'ତତ୍ତେଜ ଐକ୍ଷତ ତା ଆପ ଐକ୍ଷନ୍ତ' (ଛା ୬-୨-୪) ଇତି ଚ ଭୂତାନାମପି ଚେତନତ୍ୱଶ୍ରବଣାଦିତି ।

(ଖ) ଏବଂ ପ୍ରାପ୍ତେଽଭିଧୀୟତେ-ସ ଏବ ପରମେଶ୍ୱରସ୍ତେନ ତେନାତ୍ମନାବତିଷ୍ଠମାନୋଽଭିଧ୍ୟାୟଂସ୍ତଂ ତଂ ବିକାରଂ ସୃଜତୀତି । କୁତଃ । ତଲ୍ଲିଙ୍ଗାତ୍ । ତଥାହି ଶାସ୍ତ୍ରମ୍ 'ଯଃ ପୃଥିବ୍ୟାଂ ତିଷ୍ଠନ୍ ପୃଥିବ୍ୟା ଅନ୍ତରୋ ଯଂ ପୃଥିବ୍ୟା ନ ବେଦ ଯସ୍ୟ ପୃଥିବୀ ଶରୀରଂ ଯଃ ପୃଥିବୀମନ୍ତରୋ ଯମୟତି' (ବୃ ୩-୭-୩) ଇତ୍ୟେବଂଜାତୀୟକଂ ସାଅକ୍ଷାଣାମେବ ଭୂତାନାଂ ପ୍ରବୃତ୍ତିଂ ଦର୍ଶୟତି ।

(ଗ) ତଥା 'ସୋଽକାମୟତ ବହୁସ୍ୟାଂ ପ୍ରଜାୟେୟ' ଇତି ପ୍ରସ୍ତୁତ୍ୟ 'ସଚ୍ଚ ତ୍ୟଚ୍ଚାଭବତ୍' । ତଦାତ୍ମାନଂ ସ୍ୱୟମକୁରୁତ' (ତୈ ୨-୬-୧) ଇତି ଚ ତସ୍ୟୈବ ଚ ସର୍ବାତ୍ମଭାବଂ ଦର୍ଶୟତି । ଯ ତୁ ଈକ୍ଷଣଶ୍ରବଣମପ୍ତେଜୋସ୍ତତ୍‌ପରମେଶ୍ୱରା ବେଶବଶା ଦେବ ଦ୍ରଷ୍ଟବ୍ୟମ୍ 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' (ବୃ ୩-୭-୨୩) ଇତୀକ୍ଷିତ୍ରନ୍ତରପ୍ରତିଷେଧାତ୍, ପ୍ରକୃତତ୍ୱାଚ୍ଚ ସତ ଈକ୍ଷିତୁଃ 'ତଦୈକ୍ଷତ ବହୁ ସ୍ୟାଂ ପ୍ରଜାୟେୟ' ଇତ୍ୟତ୍ର ।

**(୨) ଭାଷାଂତର-** (କ) ଏହି ଆକାଶ ପ୍ରଭୃତି ଭୂତସ୍ୱୟଂ ନିଜବିକାରକୁ ଉତ୍ପନ୍ନ କରନ୍ତି କି ? ଅଥବା ପରମେଶ୍ୱର ତତ୍‌ସ୍ୱରୂପରେ ଅବସ୍ଥିତ ହୋଇ ଈକ୍ଷଣକରି ସେହି ସେହି ବିକାରକୁ ଉତ୍‌ପନ୍ନ କରନ୍ତି ? ଏହି ପ୍ରକାର ସନ୍ଦେହ ହେବାରୁ ପୂର୍ବପକ୍ଷି ଏହି ଭୂତ ସ୍ୱୟଂ ନିଜନିଜର ବିକାର ଗୁଡ଼ିକୁ ଉତ୍‌ପନ୍ନ କରନ୍ତି- ଏହାହିଁ ପ୍ରାପ୍ତ ହୁଏ କାହିଁକି ? କାରଣ- 'ଆକାଶାଦ୍ ବାୟୁଃ' ବାୟୁଠାରୁ (ଆକାଶଠାରୁ ବାୟୁ ଏବଂ ଅଗ୍ନି ଉତ୍‌ପନ୍ନ ହୋଇଛନ୍ତି) ଇତ୍ୟାଦି ସ୍ୱତନ୍ତ୍ରତା ଶୁଣାଯାଏ । ପରନ୍ତୁ ସ୍ୱତନ୍ତ୍ର ଅଚେତନର ପ୍ରବୃତ୍ତି ନିଷିଦ୍ଧ ଅଟେ । ଏହା ଦୋଷ ନୁହେଁ । କାରଣ- 'ତତ୍ତେଜୋ ଐକ୍ଷତ' ସେ ତେଜଦ୍ୱାରା ଈକ୍ଷଣ କଲା, ସେ ଜଳଦ୍ୱାରା ଈକ୍ଷଣ କଲା) ଏହି ପ୍ରକାର ଭୂତଗୁଡ଼ିକରେ ଚେତନତ୍ୱ ଶୁଣାଯାଏ ।

(ଖ) ଏହା ପ୍ରାପ୍ତ ହେବାରୁ କୁହାଯାଇଛି- ଏହି ପରମେଶ୍ୱର ସେହି ସେହି ରୂପରେ ଅବସ୍ଥିତ ହୋଇ ଈକ୍ଷଣ କରି ସେହି ସେହି ବିକାରକୁ ଉତ୍‌ପନ୍ନ କରନ୍ତି । କିପରି ? କାରଣ-ତାହାର ଲିଙ୍ଗ ଅଛି । ଯଥା 'ଯଃ ପୃଥିବ୍ୟାଂ' (ଯାହା ପୃଥିବୀରେ ରହି ପୃଥିବୀର ଆଭ୍ୟନ୍ତର ହୁଏ, ଯାହାକୁ ପୃଥିବୀ ଜାଣେ ନାହିଁ । ଯାହାର ପୃଥିବୀ ଶରୀର ଅଟେ ଏବଂ ତାହା ଭିତରେ ରହି ପୃଥିବୀକୁ ନିୟମନ କରେ) ଏହିପ୍ରକାର ଶ୍ରୁତି ସାଧ୍ୟକ୍ଷ ଭୂତ ଗୁଡ଼ିକର ପ୍ରବୃତ୍ତି ଦେଖାଏ ।

(ଗ) ସେହି ପ୍ରକାର 'ସୋଽକାମୟତ' (ସେ ବହୁତ ଇଚ୍ଛାକଲେ ଯେ ମୁଁ ବହୁତ ହେବି । ଉତ୍ପନ୍ନ ହେବି) ଏହିପରି ପ୍ରସ୍ତୁତ କରି 'ସଚ୍ଚ ତ୍ୟଚ୍ଚାମବତ୍' (ସେ ମୂର୍ତ୍ତ ଓ ଅମୂର୍ତ୍ତ ହେଲା । ସେ ସ୍ୱୟଂ ନିଜକୁ ରଚନା କଲା) ଏହି ଶ୍ରୁତି ତାହାର ସର୍ବାତ୍ମଭାବ ଦେଖାଏ । ଜଳ ଓ ତେଜକୁ ଈକ୍ଷଣ ବିଷୟରେ ଯାହା ଶ୍ରୁତି ଅଛି, ତାହା ପରମେଶ୍ୱର ସମ୍ବନ୍ଧର ଅଧିନ ଅଟେ । କାରଣ 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' (ତାହାଠାରୁ ଅନ୍ୟ କେହି ଦ୍ରଷ୍ଟାନାହିଁ) ଏହାଦ୍ୱାରା ଅନ୍ୟ ଈକ୍ଷିତାର ପ୍ରତିଷେଧ କରାଯାଇଛି ଏବଂ 'ତଦୈକ୍ଷତ' ଏଠାରେ ସତ୍ ଇକ୍ଷଣ କର୍ତ୍ତା ପ୍ରକୃତ ଅଟେ ।

## ८ विपर्ययाधिकरणम् । सू० १४

## ବିପର୍ଯ୍ୟୟାଧିକରଣ -୧୪

## विपर्ययेण तु क्रमोऽत उपपद्यते च

## ୧- ବିପର୍ଯ୍ୟୟେଣ ତୁ କ୍ରମୋତ ଉପପଦ୍ୟତେ ଚ ॥୨-୩-୧୪ ॥

ତୁ-କିନ୍ତୁ, ଅତଃ-ଉତ୍ପତ୍ତି କ୍ରମରେ, ବିପର୍ଯ୍ୟୟେଣ-ବିପରୀତକ୍ରମରେ, କ୍ରମଃ-ପ୍ରଳୟ କ୍ରମ ହୁଏ । କାରଣ-ନିଜେ କାରଣର କାର୍ଯ୍ୟ ଲୟ ହୁଏ । ଉପପଦ୍ୟତେ ଚ-ଏହା ଉପପନ୍ନ ହୁଏ ।

(୨) ମୂଳ-(କ) ଭୂତାନାମୁତ୍ପତ୍ତିକ୍ରମଶ୍ଚିନ୍ତିତଃ । ଅଥେଦାନୀମପ୍ୟୟ-କ୍ରମଶ୍ଚିନ୍ତ୍ୟତେ । କିମନିୟତେନ କ୍ରମେଣାପ୍ୟୟ ଉତୋତ୍ପତ୍ତିକ୍ରମେଣାଥବା ତଦ୍‌ବିପରୀତେନେତି । କ୍ରୟୋଽପି ଚୋତ୍ପତ୍ତିସ୍ଥିତି ପ୍ରଳୟାଃ ଭୂତାନାଂ ବ୍ରହ୍ମାୟତାଃ ଶ୍ରୂୟନ୍ତେ 'ଯତୋ ବା ଇମାନି ଭୂତାନି ଜାୟନ୍ତେ । ଯେନ ଜାତାନି ଜୀବନ୍ତି । ଯତ୍ପ୍ରୟନ୍ତ୍ୟଭିସଂବିଶନ୍ତି' (ତୈ ୩-୧-୧) ଇତି । ତତ୍ରାନିୟମୋଽବିଶେଷାଦିତି ପ୍ରାପ୍ତମ୍ । ଅଥବୋତ୍ପତ୍ତେଃ କ୍ରମସ୍ୟ ଶ୍ରୁତତ୍ୱାତ୍ ପ୍ରଳୟସ୍ୟାପି କ୍ରମାକାଙ୍କ୍ଷିଣଃ ସ ଏବ କ୍ରମଃ ସ୍ୟାଦିତି ।

(ଖ) ଏବଂ ପ୍ରାପ୍ତଂ ତତୋ ବ୍ରୂମଃ-ବିପର୍ଯ୍ୟୟେଣ ତୁ ପ୍ରଳୟୋକ୍ରମୋଽତ ଉତ୍ପତ୍ତିକ୍ରମାଦ୍ ଭବିତୁମର୍ହତି । ତଥାହି ଲୋକେ ଦୃଶ୍ୟତେ ଯେନ କ୍ରମେଣ ସୋପାନମାରୂଢ଼ସ୍ତତୋ ବିପରୀତେନ କ୍ରମେଣାବରୋହୟତୀତି । ଅପି ଚ ଦୃଶ୍ୟତେ ମୃଦୋଜାତଂ ଘଟଶରାବାଦ୍ୟପ୍ୟୟକାଳେ ମୃଦ୍ଭାବମପ୍ୟେତ୍ୟଦ୍ଭ୍ୟଶ୍ଚ ଜାତଂ ହିମକରକାଦ୍ୟବ୍‌ଭାବମପ୍ୟେତୀତି । ଅତଶ୍ଚୋପପଦ୍ୟତ ଏତତ୍ । ଯତ୍ ପୃଥିବ୍ୟଦ୍‌ଭ୍ୟୋ ଜାତା ସତ୍ୟସ୍ତେଜୋଽପୀୟୁଃ । ଏବଂ କ୍ରମେଣ ସୂକ୍ଷ୍ମଂ ସୂକ୍ଷ୍ମତର ଅନନ୍ତରମନନ୍ତରଂ କାରଣମପୀତ୍ୟ ସର୍ବଂ କାର୍ଯ୍ୟଜାତଂପରମକାରଣଂ ପରମସୂକ୍ଷ୍ମଂ ବ୍ରହ୍ମାପ୍ୟେତୀତି ବେଦିତବ୍ୟମ୍ ।

(ଗ) ନହି ସ୍ୱକାରଣବ୍ୟତିକ୍ରମେଣ କାରଣକାରଣେ କାର୍ଯ୍ୟାପ୍ୟୟୋ ନ୍ୟାଯ୍ୟଃ । ସ୍ମୃତାବପ୍ୟୁତ୍ପତ୍ତିକ୍ରମବିପର୍ଯ୍ୟୟେଣୈବାପ୍ୟୟକ୍ରମସ୍ତତ୍ର ତତ୍ର ଦର୍ଶିତଃ-'ଜଗତପ୍ରତିଷ୍ଠା ଦେବର୍ଷେ

 

ପୃଥିବ୍ୟପ୍ ସୁ ପ୍ରଲୀୟତେ । ଜ୍ୟୋତିଷ୍ୟାପଃ ପ୍ରଲୀୟନ୍ତେ ଜ୍ୟୋତିର୍ବାୟୌ ପ୍ରଲୀୟତେ' ଇତ୍ୟେବମାଦୌ । ଉତ୍ପତ୍ତିକ୍ରମସ୍ତୁତ୍ପତ୍ତାବେବ ଶ୍ରୁତତ୍ୱାନ୍ନାପ୍ୟୟେ ଭବିତୁମର୍ହତି । ନଚାସାବଯୋଗ୍ୟତ୍ୱାଦପ୍ୟୟେନାକାଙ୍କ୍ୟତେ । ନ ହି କାର୍ଯ୍ୟେ ଧୀୟମାଣେ କାରଣସ୍ୟାପ୍ୟୟୋ ଯୁକ୍ତଃ କାରଣାପ୍ୟୟେ କାର୍ଯ୍ୟସ୍ୟାବସ୍ଥାନୁପପତ୍ତେଃ । କାର୍ଯ୍ୟାପ୍ୟୟେ ତୁ କାରଣସ୍ୟାବସ୍ଥାନାଂ ଯୁକ୍ତଂ ମୃଦାଦିଷ୍ୱେବଂ ଦୃଷ୍ଟତ୍ୱାତ୍ ।

(୨) ଭାଷାଂତର-(କ) ଭୂତଗୁଡ଼ିକର ଉତ୍ପତ୍ତିକ୍ରମ ବିଷୟରେ ବିଚାର କରାଯାଇଅଛି । ବର୍ତ୍ତମାନ ପ୍ରଳୟକ୍ରମର ବିଚାର କରାଯାଉଅଛି । ଅନିୟତ କ୍ରମରେ ପ୍ରଳୟ ହୁଏ, କି ଉତ୍ପତ୍ତିକ୍ରମଦ୍ୱାରା, କି ସେମାନଙ୍କର ବିପରୀତ କ୍ରମରେ ? 'ଯତୋ ବା' (ଏହା ନିଶ୍ଚିତ ଯେ- ଏହି ସବୁ ଭୂତ ଉତ୍ପନ୍ନ ହୋଇଅଛନ୍ତି, ଉତ୍ପନ୍ନ ହୋଇ ଯାହାଙ୍କର ଆଶ୍ରୟରେ ଜୀବିତ ରହନ୍ତି ଏବଂ ପ୍ରବେଶ କରି ଯେଉଁଠାରେ ସେମାନେ ଲୀନ ହୁଅନ୍ତି) ଏହି ଶ୍ରୁତି ଭୂତଗୁଡ଼ିକର ଉତ୍ପତ୍ତି, ସ୍ଥିତି ଓ ଲୟ – ଏହି ତିନୋଟି ବ୍ରହ୍ମର ଅଧୀନ ବୋଲି କହେ । କିନ୍ତୁ ଶ୍ରୁତିରେ କୌଣସି ପ୍ରକାରର ବିଶେଷ ନ ହେଲେ ବି ପ୍ରଳୟ ବିଷୟରେ କୌଣସି ନିୟମ ନାହିଁ ବୋଲି ପ୍ରାପ୍ତ ହୁଏ । ଅଥବା ଉତ୍ପତ୍ତିକ୍ରମ ଶ୍ରୁତିରେ ପ୍ରତିପାଦିତ ହେଲେ କ୍ରମାକାଂକ୍ଷା ପ୍ରଳୟର ସୃଷ୍ଟି କ୍ରମ ହେବା ଉଚିତ୍ ।

(ଖ) ସିଦ୍ଧାନ୍ତ- ଏହା ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ- ପ୍ରଳୟକ୍ରମ ଉତ୍ପତ୍ତି କ୍ରମଠାରୁ ବିପରୀତ ହେବା ବିଧେୟ । ଯେପରି ସଂସାରରେ 'ଯେଉଁ କ୍ରମରେ ଶିଡ଼ିଉପରକୁ ଚଢ଼ାଯାଏ, ତାହାର ବିପରୀତ କ୍ରମରେ ତଳକୁ ଓହ୍ଲାଯାଏ' ଏପରି ଦେଖାଯାଏ । ପୁନଶ୍ଚ ମୃତ୍ତିକାରୁ ଉତ୍ପନ୍ନ ହୋଇ ଘଟ, ଶରାବାଦି ଲୟକାଳରେ ମୃତ୍ତିକା ଅବସ୍ଥାକୁ ଗତି କରନ୍ତି ଏବଂ ଜଳରୁ ଉତ୍ପନ୍ନ ହୋଇ ହିମ କରକାଦି ଜଳଭାବକୁ ପ୍ରାପ୍ତ ହୁଅନ୍ତି- ଏହା ମଧ୍ୟ ସଂସାରକ୍ରମ । ତେଣୁ ଜଳରୁ ଉତ୍ପନ୍ନ ହୋଇ ପୃଥିବୀ ସ୍ଥିତିକାଳର ଅବସାନ ହେଲାପରେ ଜଳରେ ଲୀନ ହୁଅନ୍ତି ବୋଲି କହିବା ଠିକ୍ । ତେଜରୁ ଉତ୍ପନ୍ନ ହୋଇ ଜଳ ତେଜରେ ଲୀନ ହୁଏ । ଏହିପରି କ୍ରମଶ୍ଚ ଅନନ୍ତର ଅନନ୍ତରତର, ସୂକ୍ଷ୍ମ, ସୂକ୍ଷ୍ମତର କାରଣରେ ଲୀନ ହୋଇ ସଂପୂର୍ଣ୍ଣ କାର୍ଯ୍ୟ ସମୁଦାୟ ପରମକାରଣ ପରମ ସୂକ୍ଷ୍ମବ୍ରହ୍ମରେ ଲୟ ହୁଏ । ଏହାହିଁ ଜାଣିବା ଉଚିତ୍ ।

(ଗ) କାରଣ- ନିଜେ କାରଣକୁ ବ୍ୟତିକ୍ରମ କରି କାରଣର କାରଣରେ କାର୍ଯ୍ୟର ଲୟ ଉଚିତ୍ ନୁହେଁ, ଯଥା- 'ଜଗତ୍ ପ୍ରତିଷ୍ଠା' (ହେ ଦେବର୍ଷି । ଜଗତ୍‌ର ଆଧାର ଭୂତ ପୃଥିବୀ ଜଳରେ ପ୍ରଲୀନ ହୁଏ ଏବଂ ଜଳ ତେଜରେ ଲୀନହୁଏ ଏବଂ ତେଜ ବାୟୁରେ ଲୀନ ହୁଏ) ଇତ୍ୟାଦି ସ୍ମୃତିରେ ମଧ୍ୟ ଉତ୍ପତ୍ତି କ୍ରମରେ ବିପରୀତ ରୂପରେ କ୍ରମ ସେହି ସେହି ସ୍ଥଳରେ ଦେଖାଯାଏ । ଉତ୍ପତ୍ତିକ୍ରମ କିନ୍ତୁ ଉତ୍ପତ୍ତିରେ ଶୁଣାଯାଏ । ତେଣୁ ସେ ପ୍ରଳୟରେ ଯୁକ୍ତ ହେବା ଠିକ୍ ନୁହେଁ । ଅଯୋଗ୍ୟହେଲେ ସେହି ଉତ୍ପତ୍ତିକ୍ରମ ପ୍ରଳୟ ଦ୍ୱାରା ଆକାଙ୍କ୍ଷିତ ହୁଏ ନାହିଁ । କାର୍ଯ୍ୟରେ ରହିଲା ପରେ କାରଣର ବିନାଶ ମିଶେ ନାହିଁ; କାରଣ-କାରଣର

ବିନାଶ ହେଲେ କାର୍ଯ୍ୟର ଅବସ୍ଥିତି ରହେ ନାହିଁ । କାର୍ଯ୍ୟର ପ୍ରଳୟ ହେଲେ କାରଣର ଅବସ୍ଥିତି ହୁଏ । କାରଣ ମୃତ୍ତିକା ପ୍ରଭୃତି ସେହିପରି ଦେଖାଯାଏ ।

## ६ अन्तराविज्ञानाधिकरणम् । सू० २५

## ଅନ୍ତରାବିଜ୍ଞାନାଧିକରଣ -୧୫

## अन्तरा विज्ञानमनसी क्रमेण तल्लिङ्गादिति चेन्नाबिसेषात् । १५

## ୧- ଅନ୍ତରା ବିଜ୍ଞାନମନସୀ କ୍ରମେଣ ତଲ୍ଲିଙ୍ଗାଦିତି ଚେନ୍ନାବିଶେଷାତ୍ ॥୨-୩-୧୫ ॥

ଅନ୍ତରା=ଆତ୍ମା ଏବଂ ଭୂତ ଗୁଡ଼ିକ ମଧ୍ୟରେ, ତଲ୍ଲିଙ୍ଗାତ୍='ଏତସ୍ମାଜ୍ଜାୟତେ ପ୍ରାଣଃ' ଇତ୍ୟାଦି ସୃଷ୍ଟି ବୋଧକବାକ୍ୟରୁ, ବିଜ୍ଞାନମନସୀ=ବୁଦ୍ଧି ଇନ୍ଦ୍ରିୟ ଓ ମନର ଅନୁକ୍ରମ ହୁଏ । ତେଣୁ ଆତ୍ମାରୁ ବୁଦ୍ଧି, ଇନ୍ଦ୍ରିୟ ଓ ମନ ଉତ୍ପନ୍ନ ହୁଅନ୍ତି । କ୍ରମେଣ=ଏହିକ୍ରମର ସୃଷ୍ଟି କ୍ରମର ବିରୋଧ ଅଟେ, ଇତି ଚେନ୍ନ=ଏହା କିନ୍ତୁ ଠିକ୍ ନୁହେଁ । ଅବିଶେଷାତ୍=କାରଣ-ଇନ୍ଦ୍ରିୟ, ବୁଦ୍ଧି, ମନର ଭୌତିକ ହେଲେ ଭୂତୋତ୍ପତ୍ତିକ୍ରମରେ ଇନ୍ଦ୍ରିୟାଦିର ଉତ୍ପତ୍ତିକ୍ରମ ସାମ୍ୟ ଅଟେ । ତେଣୁ ଏଠାରେ କୌଣସି ବିରୋଧ ନାହିଁ ।

(୨) ମୂଳ-(କ) ଭୂତାନାମୁତ୍ପତ୍ତିପ୍ରଳୟାବନୁଲୋମପ୍ରତିଲୋମାଭ୍ୟାଂ ଭବତ ଇତ୍ୟୁକ୍ତମ୍ । ଆତ୍ମାଦିରୁତ୍ପତ୍ତିଃ ପ୍ରଳୟଶ୍ଚାତ୍ମାନ୍ତ ଇତ୍ୟପ୍ୟୁକ୍ତମ୍ । ସେନ୍ଦ୍ରିୟସ୍ୟ ତୁ ମନସୋ ବୁଦ୍ଧେଶ୍ଚ ସଦ୍‌ଭାବଃ ପ୍ରସିଦ୍ଧଃ ଶ୍ରୁତିସ୍ମୃତ୍ୟୋଃ । 'ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବ ଚ । ଇନ୍ଦ୍ରିୟାଣି ହୟନାହୁଃ' (କଂ ୩-୩) ଇତ୍ୟାଦିଲିଙ୍ଗେଭ୍ୟଃ । ତୟୋରପି କସ୍ମିଂଶ୍ଚ ଦନ୍ତରାଳେ କ୍ରମେଣୋତ୍ପତ୍ତି ପ୍ରଳୟାବୁପସଂଗ୍ରାହ୍ୟୌ, ସର୍ବସ୍ୟ ବସ୍ତୁଜାତସ୍ୟ ବ୍ରହ୍ମଜତ୍ୱାଭ୍ୟୁପଗମାତ୍ । ଅପିଚାଥର୍ବଣ ଉତ୍ପତ୍ତି ପ୍ରକରଣେ ଭୂତାନାମାତ୍ମନଶ୍ଚାନ୍ତରାଳେ କରଣାନ୍ୟନୁ କ୍ରମ୍ୟନ୍ତେ । ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ । ଖଂ ବାୟୁର୍ଜ୍ୟୋତିରାପଃ ପୃଥିବୀ ବିଶ୍ୱସ୍ୟ ଧାରିଣୀ' (ମୁଣ୍ଡ ୨-୧-୩) ଇତି ।

(ଖ) ତସ୍ମାତ୍ ପୂର୍ବୋକ୍ତୋତ୍ପତ୍ତି ପ୍ରଳୟକ୍ରମଭଙ୍ଗ ପ୍ରସଙ୍ଗୋ ଭୂତାନାମିତି ଚେତ୍ । ନ । ଅବିଶେଷାତ । ଯଦି ତାବଦ୍‌ଭୌତିକାନି କରଣାନି ତତୋ ଭୂତୋତ୍ପତ୍ତି ପ୍ରଳୟାଭ୍ୟାମେବୈଷାମୁତ୍ପତ୍ତି ପ୍ରଳୟୌ ଭବତ ଇତି ନୈତୟୋଃ କ୍ରମାନ୍ତରଂ ମୃଗ୍ୟମ୍ । ଭବତି ଚ ଭୌତିକତ୍ୱେ ଲିଙ୍ଗମ୍ କରଣାନାମ୍ । 'ଅନ୍ନମୟଂ ହି ସୋମ୍ୟ ନ ଆପୋମୟଃ ପ୍ରାଣସ୍ତେଜୋମୟୀ ବାକ୍' (ଛା ୬-୫-୪) ଇତ୍ୟୋବଂଜାତୀୟକମ୍ । ବ୍ୟପଦେଶୋଽପି କ୍ୱଚିଦ୍‌ଭୂତାନାଂ କରଣାନାଞ୍ଚ ବ୍ରାହ୍ମଣ ପରିବ୍ରାଜକନ୍ୟାୟେନ ନେତବ୍ୟଃ ।



(ଗ) ଅଥ ତ୍ୱଭୌତିକାନି କରଣାନି ତଥାପି ଭୂତୋତ୍ପତ୍ତିକ୍ରମୋ ନ କରଣୈର୍ବିଶେଷ୍ୟତେ ପ୍ରଥମଂ କରଣାନ୍ୟୁତ୍ପଦ୍ୟନ୍ତେ ଚରମଂ ଭୂତାନି ପ୍ରଥମଂ ବା ଭୂତାନ୍ୟୁତ୍ପଦ୍ୟନ୍ତେ ଚରମଂ ବା କରଣାନୀତି । ଆଥର୍ବଣେ ତୁ ସମାମ୍ନାୟକ୍ରମମାତ୍ରଂ କରଣାନାଂ ଭୂତାନାଞ୍ଚ । ନ ତତ୍ରୋତ୍ପତ୍ତିକ୍ରମ ଉଚ୍ୟତେ । ତଥାନ୍ୟତ୍ରାପି ପୃଥଗେବ ଭୂତକ୍ରମାତ୍କରଣକ୍ରମ ଆମ୍ନାୟତେ ପ୍ରଜାପତିର୍ବା ଇଦମଗ୍ର ଆସୀତ୍ସ ଆତ୍ମାନ ମୈକ୍ଷତ ସ ମନୋଽସୃଜତ ତନ୍ମନ ଏବାସୀତ୍ତଦାତ୍ମାନମୈକ୍ଷତ ତଦ୍ବାଚମସୃଜତ' ଇତ୍ୟାଦିନା । ତସ୍ମାନ୍ନାସ୍ତି ଭୂତୋତ୍ପତ୍ତିକ୍ରମସ୍ୟ ଭଙ୍ଗଃ ।

**(୨) ଭାଷାଂତର**-(କ) ଭୂତଗୁଡ଼ିକର ଉତ୍ପତ୍ତି ଏବଂ ପ୍ରଳୟ ଯାହାକି ଅନୁଲୋମ ଓ ପ୍ରତିଲୋମ କ୍ରମରେ ରହୁଅଛି, ସେ ସବୁ କୁହାଯାଇଅଛି ଏବଂ ଆତ୍ମାଠାରୁ ଉତ୍ପତ୍ତି ପ୍ରଭୃତି ଓ ଆତ୍ମାପର୍ଯ୍ୟନ୍ତ ପ୍ରଳୟ ହୁଏ ବୋଲି କୁହାଯାଇଛି । 'ବୁଦ୍ଧିଂ ତୁ' (ବୁଦ୍ଧିକୁ ସାରଥି ବୋଲି ଜାଣ, ମନକୁ ଲଗାମ ବୋଲି ଜାଣ, ବିବେକୀପୁରୁଷ ଇନ୍ଦ୍ରିୟକୁ ଅଶ୍ୱ କହନ୍ତି) ଇତ୍ୟାଦି ଲିଙ୍ଗରୁ ଇନ୍ଦ୍ରିୟ ସହିତ ମନ ଓ ବୁଦ୍ଧିର ସଦ୍ଭାବ ଶ୍ରୁତି ଓ ସ୍ମୃତିରେ ପ୍ରସିଦ୍ଧ ଅଛି । ସମସ୍ତ ପଦାର୍ଥକୁ ବ୍ରହ୍ମଜନ୍ୟ ବୋଲି ସ୍ୱୀକାର କଲେ ତାହାର କ୍ରମରେ ଉତ୍ପତ୍ତି ଓ ପ୍ରଳୟର କାହା ମଧ୍ୟରେ ସଂଗ୍ରହ କରିବା ଉଚିତ୍ । 'ଏତସ୍ମାଜ୍ଜାୟତେ ପ୍ରାଣଃ' (ତାହାଠାରୁ ପ୍ରାଣ ଉତ୍ପନ୍ନ ହେଲା । ମନ, ସମସ୍ତ ଇନ୍ଦ୍ରିୟ, ଆକାଶ, ବାୟୁ, ତେଜ, ଜଳ ଏବଂ ସଂସାରକୁ ଧାରଣ କରିଥିବା ପୃଥିବୀ ଉତ୍ପନ୍ନ ହୁଅନ୍ତି) ଏହି ପ୍ରକାର ଆଥର୍ବଣରେ ଉତ୍ପତ୍ତି ପ୍ରକରଣରେ ଭୂତ ଓ ଆତ୍ମାରେ ଇନ୍ଦ୍ରିୟ ଗୁଡ଼ିକର ଅନୁକ୍ରମ ହୁଏ ।

(ଖ) ଇନ୍ଦ୍ରିୟଗୁଡ଼ିକର ପୂର୍ବୋକ୍ତ ଉତ୍ପତ୍ତି ଏବଂ ପ୍ରଳୟ କ୍ରମର ଭଙ୍ଗ ହେବ ବୋଲି ଯଦି କହ, ତାହା କିନ୍ତୁ ଠିକ୍ ନୁହେଁ । କାରଣ-ତାହା ଅବିଶେଷ ଅଟେ-ଯଦି ଇନ୍ଦ୍ରିୟଗୁଡ଼ିକ ଭୌତିକ ଅଟନ୍ତି, କିନ୍ତୁ ଭୌତିକର ଉତ୍ପତ୍ତି ଓ ପ୍ରଳୟରୁ ସେମାନଙ୍କର ଉତ୍ପତ୍ତି ଓ ପ୍ରଳୟ ହୁଏ । ତେଣୁ ସେମାନଙ୍କ ପାଇଁ ଅନ୍ୟକ୍ରମର ଅନୁସନ୍ଧାନ କରିବା ଉଚିତ୍ ନୁହେଁ । 'ଅନ୍ନମୟ ହିଁ' (ହେ ସୋମ୍ୟ ! ମନ ଅନ୍ନମୟ, ପ୍ରାଣ ଜଳମୟ, ଏବଂ ବାଣୀ ତେଜୋମୟ ଅଟେ) ଏହି ପ୍ରକାର ଇନ୍ଦ୍ରିୟଗୁଡ଼ିକର ଭୌତିକତ୍ୱରେ ଲିଙ୍ଗ ହୁଏ । କେଉଁଠି ଭୂତ ଏବଂ ଇନ୍ଦ୍ରିୟଗୁଡ଼ିକର ବ୍ୟପଦେଶ (ଶବ୍ଦପ୍ରୟୋଗ) ବ୍ରାହ୍ମଣ-ପରିବ୍ରାଜକନ୍ୟାୟରେ ଗ୍ରହଣ କରିବା ଉଚିତ୍ ।

(ଗ) କେତେକ ସ୍ଥାନରେ ଇନ୍ଦ୍ରିୟ ଗୁଡ଼ିକର ଅଭୌତିକ ଅଟନ୍ତି । କିନ୍ତୁ ଭୂତର ଉତ୍ପତ୍ତି କ୍ରମ ଇନ୍ଦ୍ରିୟଠାରୁ ପୃଥକ ହୁଏ ନାହିଁ- ପ୍ରଥମେ ଇନ୍ଦ୍ରିୟ ଉତ୍ପନ୍ନ ହୁଏ, ତାପରେ ଭୂତ । ଅଥବା ଭୂତ ଗୁଡ଼ିକ ପ୍ରଥମେ ଉତ୍ପନ୍ନ ହୋଇ ତାପରେ ଇନ୍ଦ୍ରିୟଗୁଡ଼ିକ । ଆଥର୍ବଣରେ କିନ୍ତୁ ଭୂତ ଓ କରଣର ପାଠକ୍ରମ ହୁଏ । ସେଠାରେ ଉତ୍ପତ୍ତିକ୍ରମ କୁହାଯାଇନାହିଁ । ଏହିପରି 'ପ୍ରଜାପତିର୍ବା ଇଦମଗ୍ର' (ଆରମ୍ଭରେ ଏହି ପ୍ରଜାପତି ଥିଲେ । ସେ ନିଜ ବିଷୟରେ

ଈକ୍ଷଣ କଲେ । ସେ ମନ ରଚନା କଲେ । ସେହି ମନହିଁ ଥିଲା । ସେ ନିଜ ବିଷୟରେ ଈକ୍ଷଣ କଲେ । ସେ ବାଣୀ ରଚନା କଲେ) ଏହି ପ୍ରକାର ଅନ୍ୟସ୍ଥଳରେ କରଣକ୍ରମ ଭୂତକ୍ରମଠାରୁ ପୃଥକ୍ ବୋଲି କୁହାଯାଇଛି । ତେଣୁ ଭୂତୋତ୍ପତ୍ତିକ୍ରମ ଭଙ୍ଗ ନୁହେଁ ।

## १० चराचरव्यपाश्रयाधिकरणम् । सू० १६

## ଚରାଚରବ୍ୟପାଶ୍ରୟାଧିକରଣ - ୧୬

**चराचरव्यपाश्रयस्तु स्यात्तद्व्यपदेशो**

**भाक्तस्तद्भावभाबित्वात् ॥ १६॥**

**୧- ଚରାଚରବ୍ୟପାଶ୍ରୟସ୍ତୁ ସ୍ୟାତ୍ତଦ୍ବ୍ୟପଦେଶୋ ଭାକ୍ତସ୍ତଦ୍ଭାବ ଭାବିତ୍ୱାତ୍ ॥୨-୩-୧୬ ॥**

ତଦ୍‌ବ୍ୟପଦେଶୋ=ଜନ୍ମମରଣର ଯାହାକି ଲୌକିକବ୍ୟବହାର ଅଟେ; ଚରାଚର ବ୍ୟାପାଶ୍ରୟସ୍ତୁ=ସେ ସ୍ଥାବର ଓ ଜଙ୍ଗମ ଦେହ ବିଷୟକ ମୁଖ୍ୟ ଅଟେ । ଭାକ୍ତଃ=ଜୀବରେ ଗୌଣ ଅଟେ । ତଦ୍‌ଭାବଭାବିତ୍ୱାତ୍-କାରଣ-ଜନ୍ମମରଣର ବ୍ୟପଦେଶ ଦେହର ଉତ୍ପତ୍ତି ଓ ନାଶର ଅନ୍ୱୟ ଓ ବ୍ୟତିରେକକୁ ଅନୁସରଣ କରେ । ଦେହର ପ୍ରାଦୁର୍ଭାବ ହେଲେ ଜାତକର୍ମାଦିର ବିଧାନ ହୁଏ । ତେଣୁ ଜୀବର ନିତ୍ୟତ୍ୱ-ପ୍ରତିପାଦକଶାସ୍ତ୍ରର କିଛି ବିରୋଧ ନାହିଁ ।

(୨) ମୂଳ-(କ) ସ୍ତୋ ଜୀବସ୍ୟାପ୍ୟୁତ୍ପତ୍ତିପ୍ରଳୟୌ, ଜାତୋ ଦେବଦତ୍ତୋ ମୃତୋ ଦେବଦତ୍ତ ଇତ୍ୟେବଂଜାତୀ କାୟଲ୍ଲୌକିକବ୍ୟପଦେଶାତ୍ ଜାତକର୍ମାଦିସଂସ୍କାର ବିଧାନାଚ୍ଚେତି ସ୍ୟାତ୍ କସ୍ୟଚିଦ୍ ଭ୍ରାନ୍ତିଃ ତାମପନୁଦାମଃ । ନ ଜୀବସ୍ୟୋତ୍ପତ୍ତିପ୍ରଳୟୌ ସ୍ତଃ, ଶାସ୍ତ୍ରଫଳସମ୍ବନ୍ଧୋପପତ୍ତେଃ । ଶରୀରାନୁବିନାଶିନି ହି ଜୀବେ ଶରୀରାନ୍ତରଗତେଷ୍ଟା-ନିଷ୍ଟପ୍ରାପ୍ତିପରିହାରାର୍ଥୌ । ବିଧିପ୍ରତିଷେଧାବନର୍ଥକୌ ସ୍ୟାତାମ୍ । ଶ୍ରୂୟତେ ଚ ଜୀବପେତଂ ବାବ କିଲେଦଂ ମ୍ରିୟତେ ନ ଜୀବୋ ମ୍ରିୟତେ' (ଛା ୬-୧୧-୩) ଇତି ।

(ଖ) ନନୁ ଲୌକିକୋ ଜନ୍ମମରଣ ବ୍ୟପଦେଶୋ ଜୀବସ୍ୟ ଦର୍ଶିତଃ । ସତ୍ୟଂ ଦର୍ଶିତଃ । ଭାକ୍ତସ୍ୱେଷ ଜୀବସ୍ୟ ଜନ୍ମମରଣ ବ୍ୟପଦେଶଃ । କିମାଶ୍ରୟଃ ପୁନରୟଂ ମୁଖ୍ୟୋ ଯଦପେକ୍ଷୟା ଭାକ୍ତ ଇତି । ଉଚ୍ୟତେଚରାଚର ବ୍ୟାପାଶ୍ରୟଃ । ସ୍ଥାବରଜଙ୍ଗମଶରୀରବିଷୟୌ ଜନ୍ମମରଣଶବ୍ଦୌ । ସ୍ଥାବର ଜଙ୍ଗମାନି ହି ଭୂତାନି ଜାୟନ୍ତେ ଚ ମ୍ରିୟନ୍ତେ ଋତସ୍ତଦ୍ ବିଷୟୌ ଜନ୍ମମରଣଶବ୍ଦୌ ମୁଖ୍ୟୌ ସନ୍ତୌ ତତ୍‌ସ୍ଥେ ଜୀବାତ୍ମନ୍ୟୁପଚର୍ୟ୍ୟେତେ, ତଦ୍‌ଭାବଭାବିତ୍ୱାତ୍ । ଶରୀରପ୍ରାଦୁର୍ଭାବତିରୋଭାବୟୋର୍ହି ସତୋର୍ଜନ୍ମମରଣଶବ୍ଦୌ ଭବତୋ ନାସତୋଃ ।

 

(ଗ) ନହି ଶରୀରସମ୍ବନ୍ଧାଦନ୍ୟତ୍ର ଜୀବ ଜାତୋ ମୃତୋ ବା କେନଚିଲ୍ଲକ୍ଷ୍ୟତେ । 'ସବା ଅୟଂ ପୁରୁଷୋ ଜାୟମାନଃ ଶରୀରମଭିସଂପଦ୍ୟମାନଃ ସ ଉତ୍କ୍ରାମନ୍ ମ୍ରିୟମାଣଃ' (ବୃ ୪-୩-୮) ଇତି ଚ ଶରୀରସଂଯୋଗବିଯୋଗ ନିମିତ୍ତାବେବ ଜନ୍ମମରଣଶବ୍ଦୌ ଦର୍ଶୟତି । ଜାତକର୍ମାଦିବିଧାନମପ ଦେହପ୍ରାଦୁର୍ଭାବାପେକ୍ଷମେବ ଦ୍ରଷ୍ଟବ୍ୟମ୍ । ଅଭାବାଜ୍ଜୀବପ୍ରାଦୁର୍ଭାବସ୍ୟ । ଜୀବସ୍ୟ ପରସ୍ମାଦାତ୍ମନ ଉତ୍ପତ୍ତିର୍ବିୟଦାଦୀନାମିବାସ୍ତି ନାସ୍ତି ବେତ୍ୟେତଦୁତ୍ତରେଣ ସୂତ୍ରେଣ ବକ୍ଷ୍ୟତି । ଦେହାଶ୍ରୟୌ ତାବଜ୍ଜୀବସ୍ୟ ସ୍ଥୂଳାବୁତ୍ପତ୍ତିପ୍ରଳୟୌ ନ ସ୍ତ ଇତ୍ୟେତଦନେନ ସୂତ୍ରେଣାବୋଚତ୍ ।

**(୨) ଭାଷାଂତର-** (କ) ଜୀବର ଉତ୍ପତ୍ତି ଓ ପ୍ରଳୟ ହୁଏ । କାରଣ ଦେବଦତ୍ତ ଜନ୍ମ ହୋଇ ମରିଗଲା-ଏହିପ୍ରକାର ଲୌକିକ ବ୍ୟବହାର ହୁଏ । ଜାତକର୍ମ ପ୍ରଭୃତି ସଂସ୍କାରର ବିଧାନ ହୁଏ । କାହାକୁ କିପ୍ରକାର ଭ୍ରମ ହେଉ ନା କାହିଁକି । ସେ ସବୁକୁ ଆମ୍ଭେ ନିବୃତ୍ତ କରୁଁ । ଜୀବର ଉତ୍ପତ୍ତି ଓ ପ୍ରଳୟ ହୁଏ ନାହିଁ । କାରଣ- ଶାସ୍ତ୍ରଫଳର ସମ୍ବନ୍ଧ ନୋଚେତ୍ ଉପପତ୍ତି ହେବ । ଶରୀରର ବିନାଶ ସହ ଜୀବର ମଧ୍ୟ ବିନାଶ ହେଉ । ଅନ୍ୟ ଶରୀରଗତ ଇଷ୍ଟପ୍ରାପ୍ତି ଓ ଅନିଷ୍ଟ ପରିହାର ପାଇଁ ବିଧି ଓ ନିଷେଧ ବ୍ୟର୍ଥ ହେବେ । 'ଜୀବାପେ୍ୟତଂ' (ଜୀବରହିତ ଏହି ଶରୀର ମରେ, ଜୀବ ମରେ ନାହିଁ) ଏହି ହିଁ ଶ୍ରୁତି ଅଟେ ।

(ଖ) ପରନ୍ତୁ ଲୌକିକ ଜନ୍ମମରଣର ବ୍ୟପଦେଶ ଜୀବରେ ଦେଖାଯାଏ । ଏହାହିଁ ସତ୍ୟ । ଏହି ଜନ୍ମ ମରଣ ବ୍ୟପଦେଶ ଜୀବରେ ଗୌଣ ଅଟେ, କିନ୍ତୁ ପୁନର୍ବାର ଏହି ମୁଖ୍ୟବ୍ୟପଦେଶର ଆଶ୍ରୟ କିଏ, ଯାହାର କି ଅପେକ୍ଷାରେ ଏହା ଗୌଣ ହୁଏ । ତେଣୁ କୁହାଯାଇଛି- 'ଚର' (ଜଙ୍ଗମ) ଓ ସ୍ଥାବର ଶରୀରରେ ଆଶ୍ରିତ ମୁଖ୍ୟ ଅଟେ । ସ୍ଥାବର ଓ ଜଙ୍ଗମ ଶରୀର ବିଷୟକ ଜନ୍ମ ମରଣ ଶବ୍ଦ ଅଟେ, କାରଣ-ସ୍ଥାବର ଓ ଜଙ୍ଗମ ଭୂତ ଉତ୍ପନ୍ନ ହୁଅନ୍ତି ଓ ମରନ୍ତି । ତେଣୁ ସେଠାରେ ଜନ୍ମମରଣଶବ୍ଦ ମୁଖ୍ୟହୋଇ ରହିଥିବା ଜୀବାତ୍ମାରେ ଗୌଣ ଅଟନ୍ତି । କାରଣ-ତଦ୍ ଭାବ ଭାବୀ ଅଟେ । ଶରୀରର ଆବିର୍ଭାବ ଓ ତିରୋଭାବ ହୋଇ ଜନ୍ମ ମରଣଶବ୍ଦ ହୁଅନ୍ତି । ତାହା ନହେଲେ ଜନ୍ମ ମରଣ ହୁଏ ନାହିଁ ।

(ଗ) ଶରୀର ସମ୍ବନ୍ଧ ବ୍ୟତିତ ଅନ୍ୟତ୍ର 'ଜୀବ ଜାତ୍ହୋଇ ମରେ' – ଏହା କିଏ ହେଲେ ଦେଖିନାହାନ୍ତି । 'ସ ବା ଅୟଂ (ସେ ଏହି ପୁରୁଷ ଜନ୍ମ ନେବା ସମୟରେ ଶରୀରକୁ ଆତ୍ମଭାବରେ ପ୍ରାପ୍ତ ହୁଏ । ସେ ଶରୀରରୁ ବାହାରି ମରା ହେଉଛି) ଏହି ଶ୍ରୁତି ଶରୀରର ସଂଯୋଗ ଓ ବିଯୋଗ ନିମିତ୍ତକ ଜନ୍ମମରଣଶବ୍ଦ ଦେଖାଏ । ଜାତକର୍ମାଦିର ବିଧାନ ଦେହର ଆବିର୍ଭାବକୁ ଅପେକ୍ଷା କରେ । କାରଣ-ଜୀବର ପ୍ରାଦୁର୍ଭାବ ଅଭାବ ଅଟେ । ଜୀବ ପରମାତ୍ମାଠାରୁ ଆକାଶ ପରିଜନ୍ମ ହୁଏ କି ନୁହେଁ- ଏହା ଆମ୍ଭେ ଆଗ ସୂତ୍ରରେ କହିବୁ । ଦେହାଶ୍ରୟସ୍ଥୁଳ ଉତ୍ପତ୍ତି ଓ ପ୍ରଳୟ ଜୀବରେ ହୁଏ ନାହିଁ । ଏହା ସୂତ୍ରକାର ଏହି ସୂତ୍ରରେ କହିଛନ୍ତି ।

## ११ आत्माधिकरणम् ॥ सू० २७ ॥

## ଆତ୍ମାଧିକରଣ - ୧୭

## नात्माऽश्रुतेर्नित्यत्वाच्च ताभ्यः ॥ १७ ॥

## ୧- ନାତ୍ମାଽଶ୍ରୁତେର୍ନିତ୍ୟତ୍ୱାଚ୍ଚ ତାଭ୍ୟଃ ॥୨-୩-୧୭ ॥

ଆତ୍ମା-ଜୀବ, ନ-ଉତ୍ପନ୍ନ ହୁଏ ନାହିଁ । ଅଶ୍ରୁତେଃ-କାରଣ-ତାହାର ଉତ୍ପତ୍ତି ବିଷୟକ ଶ୍ରୁତି ନାହିଁ । ତାଭ୍ୟଃ-'ସ ବାଏଷ ମହାନଜ ଆତ୍ମା' ଓ 'ଅଜୋନିତ୍ୟଃ' ଇତ୍ୟାଦିଶ୍ରୁତି ସ୍ମୃତିରେ ଜୀବ ନିତ୍ୟରୂପେ ପ୍ରତୀତ ହୁଏ ।

(୨) ମୂଳ-(କ) ଅସ୍ତ୍ୟାତ୍ମା ଜୀବାଖ୍ୟଃ ଶରୀରେନ୍ଦ୍ରିୟ ପଞ୍ଜରାଧ୍ୟକ୍ଷଃ କର୍ମଫଳସମ୍ବନ୍ଧୀ । ସ କିଂ ବ୍ୟୋମାଦି ବଦୁତ୍ପଦ୍ୟତେ ବ୍ରହ୍ମଣ ଆହୋସ୍ୱିଦବ୍ରହ୍ମବଦେବ ନୋତ୍ପଦ୍ୟତେ ଇତି ଶ୍ରୁତିବିପ୍ରତିପତ୍ତେଃ ବିଷୟଃ । କାସୁଚିଚ୍ଛ୍ରୁତିଷ୍ୱଗ୍ନିବିସ୍ଫୁଲିଙ୍ଗାଦିନିଦର୍ଶନୈର୍ଜୀବାତ୍ମନଃ ପରସ୍ମାଦ୍‌ବ୍ରହ୍ମଣଃ । ଉତ୍ପତ୍ତିରାମ୍ନାୟତେ । କାସୁଚିତ୍ତ୍ୱବିକୃତସ୍ୟୈବ ପରସ୍ୟ ବ୍ରହ୍ମଣଃ କାର୍ଯ୍ୟପ୍ରବେଶେନ ଜୀବଭାବୋ ବିଜ୍ଞାୟତେ ନଚୈତ୍ପତ୍ତିରାମ୍ନାୟତ ଇତି ।

(ଖ) ତତ୍ର ପ୍ରାପ୍ତଂ ତାବଦୁତ୍ପଦ୍ୟତେ ଜୀବ ଇତି । କୁତଃ । ପ୍ରତିଜ୍ଞାନୁପରୋଧା-ଦେବ । ଏକସ୍ମିନ୍‌ବିଦିତେସର୍ବମିଦଂ ବିଦିତମ୍ । ଇତୀୟଂ ପ୍ରତିଜ୍ଞା ସର୍ବସ୍ୟ ବସ୍ତୁଜାତସ୍ୟ ବ୍ରହ୍ମପ୍ରଭବତ୍ୱେ ସତି ନୋପରୁଧ୍ୟେତ । ତତ୍ତ୍ୱାନ୍ତରତ୍ୱେ ତୁ ଜୀବସ୍ୟ ପ୍ରତିଜ୍ଞେୟମୁପରୁଧ୍ୟେତ । ନଚାଽବିକୃତଃ ପରମାତ୍ମୈବ ଜୀବ ଇତି ଶକ୍ୟତେ ବିଜ୍ଞାତୁଂ ଲକ୍ଷଣଭେଦାତ୍ । ଅପହତପାପ୍ମତ୍ୱା-ଦିଧର୍ମକୋ ହି ପରମାତ୍ମା, ତଦ୍‌ବିପରୀତୋ ହି ଜୀବଃ । ବିଭାଗାଚ୍ଚାସ୍ୟ ବିକାରତ୍ୱସିଦ୍ଧିଃ । ଯାବାନ୍ ହ୍ୟାକାଶାଦିଃ ପ୍ରବିଭକ୍ତଃ ସ ସର୍ବୋ ବିକାରସ୍ତସ୍ୟ ଚାକାଶାଦେରୁତ୍ ପତ୍ତିଃ ସମଧିଗତା । ଜୀବାତ୍ମାପି ପୁଣ୍ୟାପୁଣ୍ୟକର୍ମା ସୁଖଦୁଃଖ ଯୁକ୍‌ପ୍ରତିଶରୀରଂ ପ୍ରବିଭକ୍ତ ଇତି । ତସ୍ୟାପି ପ୍ରପଞ୍ଚୋତ୍ ପତ୍ତ୍ୟବସର ଉତ୍ପତ୍ତିର୍ଭବିତୁମର୍ହତି ।

(ଗ) ଅପିଚ 'ଯଥାଽଗ୍ନେଃ କ୍ଷୁଦ୍ରା ବିସ୍ଫୁଲିଙ୍ଗା ବ୍ୟୁଚ୍ଚରନ୍ତ୍ୟେବମେବାସ୍ମାଦାତ୍ମନଃ ସର୍ବେପ୍ରାଣାଃ' (ବୃ ୨-୧-୨୦) ଇତି ପ୍ରାଣାଦେର୍ଭୋଗ୍ୟଜାତସ୍ୟ ସୃଷ୍ଟିଂ ଶିଷ୍ଟ୍ୱା 'ସର୍ବ ଏବ ଆତ୍ମାନୋ ବ୍ୟୁଚ୍ଚରନ୍ତି ଇତି ଭୋକ୍ତୃଣାମାତ୍ମନାଂ ପୃଥକସୃଷ୍ଟିଂ ଶାସ୍ତି । ଯଥା ସୁଦୀପ୍ତାତ୍ପାବକାଦ୍ ବିସ୍ଫୁଲିଙ୍ଗାଃ ସହସ୍ରଶଃ ପ୍ରଭବନ୍ତେ ସ୍ୱରୂପାଃ । ତଥାଽକ୍ଷରାଦ୍ ଦ୍ୱିବିଧାଃ ସାମ୍ୟ ଭାବାଃ ପ୍ରଜାୟନ୍ତେ, ତତ୍ର ଚୈବାପିୟନ୍ତି' (ମୁଣ୍ଡ ୨-୧-୧) ଇତି ଚ ଜୀବାତ୍ମନାମୁତ୍ ପତ୍ତିପ୍ରଳୟାବୁଚ୍ୟେତେ । ସରୂପବଚନାତ୍ ଜୀବାତ୍ମାନୋ ହି ପରମାତ୍ମନା ସ୍ୱରୂପା ଭବନ୍ତି ଚୈତନ୍ୟଯୋଗାତ୍ । ନଚ କ୍ୱଚିଦଶ୍ରବଣମନ୍ୟତ୍ର ଶ୍ରୁତଂ ବାରୟିତୁମର୍ହତି । ଶ୍ରୁତ୍ୟନ୍ତରଗତସ୍ୟା-ପ୍ୟବିରୁଦ୍ଧସ୍ୟାଧିକସ୍ୟାର୍ଥସ୍ୟ ସର୍ବତ୍ରୋପସଂହର୍ତ୍ତବ୍ୟତ୍ୱାତ୍ । ପ୍ରବେଶଶ୍ରୁତିରପ୍ୟେବଂ ସତି



ବିକାରଭାବାପତ୍ତ୍ୟୈବ ବ୍ୟାଖ୍ୟାତବ୍ୟା, 'ତଦାତ୍ମାନଂ ସ୍ୱୟମକୁରୁତ' ଇତ୍ୟାଦିବତ୍ । ତସ୍ମାଦୁତ୍ପଦ୍ୟତେ ଜୀବ ଇତି ।

(୨) ଭାଷାଂତର-(କ) ଶରୀର ଓ ଇନ୍ଦ୍ରିୟରୂପୀ ପଂଜରର ସ୍ୱାମୀ ଓ କର୍ମ ଫଳର ସମ୍ବନ୍ଧୀ ଜୀବ ନାମକ ଆତ୍ମା ଅଟେ । ସେହି ଆକାଶପରି ବ୍ରହ୍ମରେ ଉତ୍ପନ୍ନ ହୁଏ ଅଥବା ବ୍ରହ୍ମ ପରି ଉତ୍ପନ୍ନ ହୁଏ ନାହିଁ ? ଏହିପ୍ରକାର ଶ୍ରୁତିରେ ପରସ୍ପର ବିରୋଧ ହେଲେ ସଂଶୟ ହୁଏ । କୌଣସି ଶ୍ରୁତିରେ ଅଗ୍ନି ବିସ୍ଫୁଲିଙ୍ଗାଦିଦୃଷ୍ଟାନ୍ତ ଦ୍ୱାରା ଜୀବାତ୍ମା ପରଂବ୍ରହ୍ମଠାରୁ ଉତ୍ପତି ବୋଲି କୁହାଯାଇଛି । କୌଣସି ଶ୍ରୁତିରେ ଅବିକୃତ ପରଂବ୍ରହ୍ମର କାର୍ଯ୍ୟରେ ପ୍ରବେଶ କରିବା ଦ୍ୱାରା ଜୀବଭେଦରେ ଜଣାପଡ଼େ । ପରନ୍ତୁ ଉତ୍ପତ୍ତି କୁହାଯାଇନାହିଁ ।

(ଖ) ଏହିପରି ସଂଶୟ ହେବାରୁ ଜୀବ ଉତ୍ପନ୍ନ ହୁଏ ବୋଲି ପ୍ରାପ୍ତ ହୁଏ । କିପରି ? ଏହାଦ୍ୱାରା ପ୍ରତିଜ୍ଞାର ଅବାଧ ହୁଏ । 'ଏକସ୍ମିନ୍ ବିଦିତେ' (ଜଣେ ଜଣା ପଡ଼ିଲେ ସମସ୍ତେ ଜଣାଯା'ନ୍ତି) ଏହି ପ୍ରତିଜ୍ଞା ବସ୍ତୁସମୂହ ବ୍ରହ୍ମଜନ୍ୟ ହେଲେ ବାଧିତ ହେବେ ନାହିଁ । ଜୀବର ଅନ୍ୟତତ୍ତ୍ୱ ହେଲେ ଏହିପ୍ରତିଜ୍ଞା ବାଧିତ ହେବେ । ଅବିକୃତ ପରମାତ୍ମା ହିଁ ଜୀବ ବୋଲି ଜଣାଯାଏ ନାହିଁ । କାରଣ-ତାହା ଲକ୍ଷଣଭେଦ ଅଟେ । ପରମାତ୍ମା ପାପରହିତ, ଧର୍ମଯୁକ୍ତ ଅଟେ । ଜୀବ ତାହାର ବିପରୀତ । କିନ୍ତୁ ବିଭାଗଦ୍ୱାରା ଜୀବରେ ବିକାରତ୍ୱ ସିଦ୍ଧ ହୁଏ । ଯେଉଁ ଆକାଶାଦି ପ୍ରବିଭକ୍ତ ଅଟେ, ସେ ସବୁ ବିକାର ଅଟେ । ସେହି ଆକାଶାଦିର ଉତ୍ପତ୍ତି ନିଶ୍ଚିତଭାବେ ଅଛି । ଏହିପ୍ରକାର ଜୀବାତ୍ମା ପୁଣ୍ୟପାପକର୍ମଯୁକ୍ତ, ସୁଖଦୁଃଖରେ ରହି ପ୍ରତ୍ୟେକ ଶରୀରରେ ବିଭକ୍ତ ହୋଇଛି । ତେଣୁ ପ୍ରପଞ୍ଚର ଉତ୍ପତ୍ତି ବେଳେ ତାହାର ମଧ୍ୟ ଉତ୍ପତ୍ତି ହେବ ।

(ଗ) ପୁନଶ୍ଚ 'ଯଥାଗ୍ନେଃ' (ଯେପରି ଅଗ୍ନିଦ୍ୱାରା ଛୋଟ ଛୋଟ ଅଗ୍ନିକଣା ବାହାରନ୍ତି, ସେପରି ଆତ୍ମାରୁ ମଧ୍ୟ ପ୍ରାଣ ବାହାରେ) ଏହିପ୍ରକାର ପ୍ରାଣାଦି ଭୋଗ୍ୟ ସମୁଦାୟର ସୃଷ୍ଟି କହି 'ସର୍ବ ଏବ' (ଏହି ସବୁ ଆତ୍ମାରୁ ବାହାରିଛନ୍ତି) ଏହି ପ୍ରକାର ଶ୍ରୁତି ଭୋକ୍ତା ଜୀବାତ୍ମାର ପୃଥକ ସୃଷ୍ଟିକୁ ବ୍ୟପଦେଶ କରେ । ଯଥା ସୁଦୀପ୍ତାତ୍, (ଯେପରି ଅତ୍ୟନ୍ତ ପ୍ରଦୀପ୍ତ ଅଗ୍ନିରୁ ତାହା ସଦୃଶ ତାସହସ୍ର ଅଗ୍ନିକଣା ବାହାରେ, ହେ ସୋମ୍ୟ ! ସେହିପରି ଏହି ଅକ୍ଷରରୁ ଅନେକଭାବ ଉତପନ୍ନ ହୁଅନ୍ତି । ସେଠାରେ ଅନେକ ଭାବ ଲୀନ ହୁଅନ୍ତି) ଏହିପ୍ରକାର ଜୀବାତ୍ମାର ଉତ୍ପତ୍ତି ଓ ପ୍ରଳୟ କୁହାଯାଇଛି । କାରଣ-ଶ୍ରୁତିରେ ସ୍ୱରୂପବଚନ ଅଛି । ଜୀବାତ୍ମା ପରମାତ୍ମା ପରି ସମାନ । କାରଣ- ସେଠାରେ ଚୈତନ୍ୟ ଯୋଗ ହୋଇଛି । କେଉଁଠି ଅଶ୍ରବଣ ଅନ୍ୟର ଶ୍ରୁତିକୁ ବାରଣ କରେ ନାହିଁ, କାରଣ-ଅନ୍ୟ ଶ୍ରୁତିଗତ ଅବିରୁଦ୍ଧ ଅଧିକ ଅର୍ଥ ସର୍ବତ୍ର ଉପସଂହାର କରେ । ଏହା ହେବାରୁ 'ତଦାତ୍ମାନଂ ସ୍ୱୟମକୁରୁତ' ଇତ୍ୟାଦି ଶ୍ରୁତିପରି ପ୍ରବେଶ ରୂପ ଶ୍ରୁତିର ବିକାର ଭାବାପତ୍ତି ଦ୍ୱାରା ବ୍ୟାଖ୍ୟାନ କରିବା ଉଚିତ୍ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ନାତ୍ମା ଜୀବ ଉତ୍ପଦ୍ୟତ ଇତି । କସ୍ମାତ୍ । ଅଶ୍ରୁତେଃ । ନହ୍ୟସ୍ୟୋତ୍ପତ୍ତିପ୍ରକରଣେ ଶ୍ରବଣମସ୍ତି ଭୂୟଃସୁ ପ୍ରଦେଶେଷୁ । ନନୁ କ୍ୱଚିଦଶ୍ରବଣମନ୍ୟତ୍ର ଶ୍ରୁତଂ ନ ବାରୟତୀତ୍ୟୁକ୍ତମ୍ । ସତ୍ୟମୁକ୍ତମ୍ । ଉତ୍ପତ୍ତିରେବ ତ୍ୱସ୍ୟ ନ ସମ୍ଭବତୀତି ବଦାମଃ । କସ୍ମାତ୍ । ନିତ୍ୟତ୍ୱାଚ୍ଚ ତାଭ୍ୟଃ, ତଶବ୍ଦାଦଜତ୍ୱାଦିଭ୍ୟଶ୍ଚ । ନିତ୍ୟତ୍ୱଂ ହ୍ୟସ୍ୟ ଶ୍ରୁତି ଭ୍ୟୋଽବମନ୍ୟତେ ତଥାଜତ୍ୱମବିକାରିତ୍ୱମବିକୃତସ୍ୟୈବ ବ୍ରହ୍ମଣୋ ଜୀବାତ୍ମନା ବସ୍ଥାନଂ ବ୍ରହ୍ମାତ୍ମା ଚେତି । ନ ଚୈବଂରୂପସ୍ୟୋତପତ୍ତିରୂପପଦ୍ୟତେ ।

(ଖ) ତାଃ କାଃ ଶ୍ରୁତୟଃ । 'ନ ଜୀବୋ ମ୍ରିୟତେ' (ଛା ୬-୧୧-୩) 'ସ ବା ଏଷ ମହାନଜ ଆତ୍ମାଽଜରୋଽମରୋଽମୃତୋଽଭୟୋ ବ୍ରହ୍ମ' (ବୃ ୪-୪-୨୨) 'ନ ଜାୟତେ ମ୍ରିୟତେ ବା ବିପଶ୍ଚିତ୍' (କଠ ୨-୧୮) 'ଅଜୋଶାଶ୍ୱତୋଽୟଂ ପୁରାଣଃ' (କଠ ୨-୧୮) 'ତତ୍ସୃଷ୍ଟ୍ୱା ତଦେବାନୁପ୍ରାବିଶତ୍' (ତୈ ୨-୬-୧), 'ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣି' (ଛା ୬-୩-୨), 'ସ ଏଷ ଇଦ ପ୍ରବିଷ୍ଟ ଆ ନଖାଗ୍ରେଭ୍ୟଃ' (ବୃ ୧-୪-୭) 'ତତ୍ତ୍ୱମସି' (ଛା ୬-୮-୭), 'ଅହଂ ବ୍ରହ୍ମାସି' (ବୃହ ୧-୪-୧୦) 'ଅୟମାତ୍ମା ବ୍ରହ୍ମ ସର୍ବାନୁଭୂଃ' (ବୃ ୨-୫-୧୯) ଇତ୍ୟେବମାଦ୍ୟା ନିତ୍ୟତ୍ୱବାଦିନ୍ୟଃ ସତ୍ୟୋ ଜୀବସ୍ୟୋତ୍ପତ୍ତିଂ ପ୍ରତିବଧ୍ନନ୍ତି ।

(ଗ) ନନୁ ପ୍ରବିଭକ୍ତତ୍ୱାଦ୍ବିକାରୋ ବିକାରତ୍ୱାଚ୍ଚୋତ୍ପଦ୍ୟତ ଇତ୍ୟୁକ୍ତମ୍ । ଅତ୍ରୋଚ୍ୟତେ ନାସ୍ୟ ପ୍ରବିଭାଗଃ ସ୍ୱତୋଽସ୍ତି । 'ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ' । ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା' (ଶ୍ୱେ ୬-୧୧) ଇତି ଶ୍ରୁତେଃ । ବୁଦ୍ଧ୍ୟାଦ୍ୟୁପାଧିନିମିତ୍ତଂ ତ୍ୱସ୍ୟ ପ୍ରବିଭାଗ ପ୍ରତିଭାନମାକାଶସ୍ୟେବ ଘଟାଦିସଂବନ୍ଧନିମିତ୍ତମ୍ । ତଥାଚ ଶାସ୍ତ୍ରମ୍- 'ସ ବା ଅୟମାତ୍ମାବ୍ରହ୍ମ ବିଜ୍ଞାନମୟୋ ମନୋମୟଃ ପ୍ରାଣମୟଶ୍ଚକ୍ଷୁର୍ମୟଃ ଶ୍ରୋତ୍ରମୟଃ' (ବୃ ୪-୪-୫) ଇତ୍ୟେବମାଦି ବ୍ରହ୍ମଣ ଏବାବିକୃତସ୍ୟ ସତୋଽପ୍ୟେକସ୍ୟାନେକବୁଦ୍ଧ୍ୟାଦିମୟତ୍ୱଂ ଦର୍ଶୟତି । ତନ୍ମୟତ୍ୱଂ ଚାସ୍ୟ ବିବିକ୍ତସ୍ୱରୂପାନଭିବ୍ୟକ୍ତ୍ୟା ତଦୁପରକ୍ତସ୍ୱରୂପତ୍ୱଂ ତଦପତ୍ୟ ଏବୋପାଧିସମ୍ବନ୍ଧାନ୍ନେତବ୍ୟମ୍ ।

**(୩) ଭାଷାଂତର-** (କ) ସିଦ୍ଧାନ୍ତ - ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁ- ଜୀବ ଉତ୍ପନ୍ନ ହୁଏ ନାହିଁ । କିପରି ? କାରଣ-ସେହି ବିଷୟରେ କୌଣସି ପ୍ରମାଣ ନାହିଁ । ଅନେକ ସ୍ଥାନରେ ଉତ୍ପତ୍ତି ପ୍ରକରଣରେ କିଛି ଶ୍ରୁତି ନାହିଁ । କେତେକସ୍ଥଳରେ ଅଶ୍ରବଣ ଅନ୍ୟଶ୍ରୁତିକୁ ବାରଣ କରେ ନାହିଁ ବୋଲି ଯାହା କୁହାଯାଇଅଛି, ତାହା ଠିକ ନୁହେଁ । କିନ୍ତୁ ଆମ୍ଭେ କହୁ ଯେ- ତାହାର ଉତ୍ପତ୍ତି ହୁଏ ନାହିଁ । କିପରି ? ଶ୍ରୁତିଦ୍ୱାରା ତାହାର ନିତ୍ୟତା ପ୍ରତିପାଦିତ ହୁଏ । ଅଜତ୍ୱାଦିଧର୍ମଶବ୍ଦଦ୍ୱାରା ତାହା ଅବଗତ ହୁଏ । ତାହାର ନିତ୍ୟତ୍ୱ ତଥା ଅଜତ୍ୱ, ଅବକାରିତ୍ୱ ଏବଂ ଅବିକୃତ ବ୍ରହ୍ମର ଜୀବରୂପରେ ଓ ବ୍ରହ୍ମରୂପରେ ଶ୍ରୁତିଦ୍ୱାରା ଅବତ ହୁଏ । ତେଣୁ ଏହିପରି ରୂପଯୁକ୍ତ ଜୀବର ଉତ୍ପତ୍ତି ଠିକ ନୁହେଁ ।



(ଖ) ସେଗୁଡ଼ିକ କେଉଁ ଶ୍ରୁତିରେ ଅଛି ? 'ନ ଜୀବୋ ମ୍ରିୟତେ (ଜୀବ ମରେ ନାହିଁ), 'ସ ବା ଏଷି' (ସେ ଏହି ମହାନ୍ ଅଜ ଆତ୍ମା ଅଟେ, ଅଜର, ଅମର, ଅମୃତ ଏବଂ ଅଭୟ ବ୍ରହ୍ମ ଅଟେ), 'ନ ଜାୟତେ' (ବିଦ୍ୱାନ୍ ଜନ୍ମେ ବା ମରେ ନାହିଁ), 'ଅଜୋ (ସେ ଜନ୍ମ ରହିତ, ନିତ୍ୟ, ଶାଶ୍ୱତ, ଓ ଅଭୟ ବ୍ରହ୍ମ ଅଟେ), 'ତତସୃଷ୍ଟ୍ୱ' (ସେ ଉତ୍ପନ୍ନ କରି ସେଠାରେ ପ୍ରବେଶ କରେ), 'ଅନେନ' (ସେ ଜୀବ ରୂପରେ ଅନୁପ୍ରବେଶ କରି ନାମ ଓ ରୂପକୁ ଅଭିବ୍ୟକ୍ତ କରିବି), 'ସ ଏଷ ଇହ' (ସେ ଏହି ସେଠାରେ ନଖାଗ୍ରପର୍ଯ୍ୟନ୍ତ ପ୍ରବେଶ କରେ), 'ତତ୍ତ୍ୱମସି' (ସେ ତୁମେ ଅଟ), 'ଅହଂ ବ୍ରହ୍ମାସ୍ମି' (ମୁଁ ବ୍ରହ୍ମ ଅଟେ), 'ଅୟମାତ୍ମା' (ଏହି ଆତ୍ମା ସମସ୍ତଙ୍କର ଅନୁଭବ ଯୋଗ୍ୟ ବ୍ରହ୍ମ) ଇତ୍ୟାଦି ଶ୍ରୁତିଗୁଡ଼ିକ ଜୀବର ନିତ୍ୟତ୍ୱ-ପ୍ରତିପାଦନ କରି ଜୀବର ଉତ୍ପତ୍ତିକୁ ନିଷେଧ କରେ ।

(ଗ) ଏହି ବିଷୟରେ କୁହାଯାଇଅଛି- ତାହାର ବିଭାଗ ସ୍ୱତଃ ନୁହେ । କାରଣ- 'ଏକୋ ଦେବଃ' (ଜଣେ ଦେବତା ସମସ୍ତ ଭୂତରେ ଗୂଢ଼ । ସର୍ବବ୍ୟାପୀ ଓ ଏବଂ ଭୂତର ଅନ୍ତରାତ୍ମା ଅଟନ୍ତି) ଏହା ହିଁ ଶ୍ରୁତି କହେ । ଯେପରି ଆକାଶର ବିଭାଗ ଘଟାଦିସମ୍ବନ୍ଧ ନିମିତ୍ତକରୂପରେ ରହେ, ସେପରି ବୁଦ୍ଧି ପ୍ରଭୃତି ନିମତ୍ତଦ୍ୱାରା ଜୀବରେ ପ୍ରବିଭାଗ ପ୍ରତିଭାସ ହୁଏ । ଯେପରି 'ସ ବା ଅୟମାତ୍ମା' (ସେ ଏହି ଆତ୍ମା ବ୍ରହ୍ମ ଅଟେ, ସେ ବିଜ୍ଞାନମୟ, ମନୋମୟ, ପ୍ରାଣମୟ, ଚକ୍ଷୁର୍ମୟ ଓ ଶ୍ରୋତ୍ରମୟ ଅଟେ) ଇତ୍ୟାଦି ଶାସ୍ତ୍ର ଅବିକୃତ ଏକ ହୋଇ ବ୍ରହ୍ମର ଅନେକ ବୁଦ୍ଧିମୟତ୍ୱକୁ ଦେଖାଏ । ସ୍ତ୍ରୀପରତନ୍ତ୍ର କାମୀ ପୁରୁଷକୁ ଯେପରି ସ୍ତ୍ରୀମୟକାମାସକ୍ତ ବୋଲି କୁହାଯାଏ, ସେହିପରି ବିବିକ୍ତସ୍ୱରୂପର ଅନଭିବ୍ୟକ୍ତିଦ୍ୱାରା ସେହିବୁଦ୍ଧିରୁ ଉପର୍ଯ୍ୟୁକ୍ତ ସ୍ୱରୂପତ୍ୱ ଅର୍ଥାତ୍ ତାଦାତ୍ମ୍ୟାପନ୍ନତ୍ୱ ତାହାର ତନ୍ମୟମତ୍ୱ ହୁଏ ବୋଲି ଜାଣିବା ଉଚିତ ।

(୪) ମୂଳ-(କ) ଯଦ୍ୟପି କ୍ୱଚିଦସ୍ୟୋତ୍ପତ୍ତିପ୍ରଳୟଶ୍ରବଣଂ ତଦପ୍ୟତ ଏବୋପାଧିସମ୍ବନ୍ଧାନ୍ନେତବ୍ୟମ୍ । ଉପାଧ୍ୟୁତ୍ପତ୍ତ୍ୟାସ୍ୟୋତପତିପ୍ରଳୟେନ ଚ ପ୍ରଳୟ ଇତି । ତଥାଚ ଦର୍ଶୟତି ପ୍ରଜ୍ଞାନଘନ ଏବୈତେଭ୍ୟାଃଭୂତେଭ୍ୟଃ ସମୁତଥାୟ ତାନ୍ୟେବାନୁ ବିନଶ୍ୟତି ନ ପ୍ରେତ୍ୟ ସଂଜ୍ଞାଽସ୍ତି' (ବୃ ୪-୫-୧୩) ଇତି । ତଥୋପାଧିପ୍ରଳୟ ଏବାୟଂ ନାତ୍ମବିଲୟ ଇତ୍ୟେତଦପ୍ୟତ୍ରୈବ 'ମା ଭଗବାନ୍ ମୋହାନ୍ତମାପୀପଦନ୍ନ ବା ଅହମିମଂ ବିଜନାମି ନ ପ୍ରେତ୍ୟ ସଂଜ୍ଞାଽସ୍ତି' (ବୃ ୪-୫-୧୩) ଇତି ପ୍ରଶ୍ନପୂର୍ବକଂ ପ୍ରତିପାଦୟତି - 'ନ ବା ଅରେଽହଂ ମୋହଂ ବ୍ରବୀମ୍ୟବିନାଶୀ ବା ଅରେଽୟମାତ୍ମାଽନୁଚ୍ଛି ତତିଧର୍ମା ମାତ୍ରାଽସଂସର୍ଗସ୍ତ୍ୱସ୍ୟ ଭବତି' (ବୃ ୪-୫-୧୪) ଇତି । ପ୍ରତିଜ୍ଞାନୁପରୋଧୋଽପ୍ୟ ବିକୃତସ୍ୟୈବ ବ୍ରହ୍ମଣୋ ଜୀବାଭାବାଭ୍ୟୁପଗମାତ୍ ।

(ଖ) ଲକ୍ଷଣଭେଦୋଽପ୍ୟନୟୋରୁପାଧିନିମିତ୍ତ ଏବ । 'ଅତ ଊର୍ଦ୍ଧ୍ୱଂ ବିମୋକ୍ଷାୟୈବ ବ୍ରୂହି' (ବୃ ୪-୩-୧୫ ଇତି ଚ ପ୍ରକୃତସ୍ୟୈବ ବିଜ୍ଞାନମୟସ୍ୟାତ୍ମନଃ ସର୍ବସଂସାର-ଧର୍ମପ୍ରତ୍ୟାଖ୍ୟାନେନ ପରମାତ୍ମଭାବପ୍ରତିପାଦନାତ୍ । ତସ୍ମାନ୍ନୈବାତ୍ମୋତପଦ୍ୟତେ ପ୍ରବିଲୀୟତେ ଚେତି ।

(୪) ଭାଷାଂତର- (କ) ଯାହା ଯେ କୌଣସି ସ୍ଥାନରେ ଏହାର ଉତ୍‌ପତତି ଓ ପ୍ରଳୟର ଶ୍ରବଣ କରେ, ସେହିଁ ଏହି ଉପାଧିର ସ୍ୱରୂପସମ୍ବନ୍ଧରୁ ବୋଲି ଜାଣିବା ଉଚିତ । ଉପାଧିର ଉତ୍‌ପତତିଦ୍ୱାରା ତାହାର ଉତ୍ପତି ଓ ତାହାର ପ୍ରଳୟରୁ ପ୍ରଳୟ ଜାତହୁଏ । ଯେପରି 'ପ୍ରଜ୍ଞାନଘନ' (ଭୂତଦ୍ୱାରା ଏହିପ୍ରଜ୍ଞାଘନ ଅଭିବ୍ୟକ୍ତ ହୋଇ ଏହିଭୂତଗୁଡ଼ିକୁ ବିନାଶ କରି ତାହା ସହିତ ନଷ୍ଟ ହୋଇଯାଏ । ମରଣାନନ୍ତର ସଂଜ୍ଞାମଧ୍ୟ ରହେ ନାହିଁ) ଏହି ଶ୍ରୁତି ଦେଖାଏ । ଏପରି ଉପାଧିର ପ୍ରଳୟ ଏପରି ହୁଏ । କିନ୍ତୁ ଆତ୍ମାର ନୁହେଁ । ଏଠାରେ 'ଅତ୍ରୈବ ମା' (ହେ ଭଗବାନ ଏହା ମୋତେ ମୋହକୁ ପ୍ରାପ୍ତ କଲା । ମୁଁ ଏହାକୁ ବିଶେଷରୂପରେ ଜାଣି ନାହିଁ କି ମରଣାନନ୍ତର ସଂଜ୍ଞ, ନୁହେଁ) ଏହିପରି ପ୍ରଶ୍ନ ପୂର୍ବକ ପ୍ରତିପାଦନ କରନ୍ତି । 'ନ ବାଽରେଽହଂ' (ଯାଜ୍ଞବଲକ୍ୟ ହେ ମୈତ୍ରେୟୀ ! ମୁଁ ମୋହ ବିଷୟରେ କହୁନାହିଁ । ଅରୀ । ଏହି ଆତ୍ମା ନିଶ୍ଚିତଭାବେ ଅବିନାଶୀ ଅଟେ । କୌଣସି ବିଷୟର ସହ ତାହାର ସମ୍ବନ୍ଧ ନାହିଁ) ଏହିପ୍ରକାର ଅବିକୃତବ୍ରହ୍ମର ଜୀବ ଭାବ ସ୍ୱୀକାର କଲେ ପ୍ରତିଜ୍ଞାର ଅବାଧ ହୁଏ ।

(ଖ) ଜୀବ ଓ ବ୍ରହ୍ମର ଲକ୍ଷଣ ଭେଦ ଉପାଧିନିମିତ୍ତକ ଅଟେ । କାରଣ- 'ଅତ ଉର୍ଦ୍ଧ୍ୱଂ' (ତାହାର ଆଗରେ ବିମୋକ୍ଷ ପାଇଁ ଉପଦେଶ ଦିଅ) ଏଠାରେ ପ୍ରକୃତ ବିଜ୍ଞାନମୟ ଆତ୍ମାର ସବୁଧର୍ମର ନିରାକରଣ ପାଇଁ ପରମାତ୍ମଭାବ ପ୍ରତି ପାଦିତ କରେ । ତେଣୁ ଆତ୍ମା ଉତ୍‌ପନ୍ନ ହୁଏ ନାହିଁ, ଏବଂ ପ୍ରବିଲୟ ହୁଏ ନାହିଁ ।

## १२ ज्ञाधिकरणम् । सू० २८

## ଜ୍ଞାଧିକରଣ - ୧୨

## ज्ञोऽत एव ॥ १८ ॥

## ୧- ଜ୍ଞୋଽତ ଏବ ॥୨-୩-୧୮ ॥

ଜୀବ, ଜ୍ଞ=ସ୍ୱୟଂ ଜ୍ୟୋତିଃସ୍ୱରୂପ ଅଟେ । ଅତଏବ=କାରଣ-ତାହାର ଉତ୍ପତ୍ତି ହୁଏ ନାହିଁ ।

(୨) ମୂଳ-(କ) ସ କିଂ କଣଭୁଜାନାମିବାଗନ୍ତୁକଚୈତନ୍ୟଃ ସ୍ୱତୋଽଚେତନ ଆହୋସ୍ୱିତ୍‌ସାଂଖ୍ୟାନାମିବ ନିତ୍ୟଚୈତନ୍ୟସ୍ୱରୂପ ଏବେତି ବାଦିବିପ୍ରତିପତ୍ତେଃ ସଂଶୟଃ । କିଂ ତାବତ୍‌ପ୍ରାପ୍ତମ୍ । ଆଗନ୍ତୁକମାତ୍ମନଶ୍ଚୈତନ୍ୟମାତ୍ମନଃ ସଂଯୋଗଜମଗ୍ନି ଘଟସଂଯୋଗଜ-ରୋହିତାଦିଗୁଣବଦିତି ପ୍ରାପ୍ତମ୍ । ନିତ୍ୟଚୈତନ୍ୟତ୍ୱେ ହି ସୁପ୍ତମୂର୍ଚ୍ଛିତଗ୍ରହାବିନଷ୍ଟାନାମପି ଚୈତନ୍ୟଂ ସ୍ୟାତ୍ । ତେ ପୃଷ୍ଟାଃ ସନ୍ତୋ ନ କିଞ୍ଚିଦ୍‌ବୟମଚେତନାୟାମହାତି ଜଳ୍ପୟନ୍ତି ସ୍ୱସ୍ଥାଶ୍ଚ ଚୈତନ୍ୟମାନା ଦୃଶ୍ୟନ୍ତେ । ଅତଃ କାଦାଚିତ୍‌କଚୈତନ୍ୟତ୍ୱାଦାଗନ୍ତୁକ ଚୈତନ୍ୟ ଆତ୍ମେତି ।



(ଖ) ଏବଂ ପ୍ରାପ୍ତେଽଭିଧୀୟତେ-ଜ୍ଞୋ ନିତ୍ୟଚୈତନ୍ୟୋଽୟମାମ୍ନାତ ଏବ, ଯସ୍ମାଦେବ ନୋତ୍ପଦ୍ୟତେ ପରମେବ ବ୍ରହ୍ମାବିକୃତମୁପାଧିସଂପର୍କାଜ୍ଜୀବ ଭାବେନାବତିଷ୍ଠତେ । ପରସ୍ୟ ହି ବ୍ରହ୍ମଣଶ୍ଚୈତନ୍ୟସ୍ୱରୂପତ୍ୱମାମ୍ନାତମ୍-'ବିଜ୍ଞାନମାନନ୍ଦଂ ବ୍ରହ୍ମ' (ବୃ ୩-୯-୨୮) ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' (ତୈ ୨-୧-୧), 'ଅନନ୍ତରୋଽବାହ୍ୟଃ କୃତ୍ସ୍ନଃ ପ୍ରଜ୍ଞାନଘନ ଏବ' (ବୃ ୪-୫-୧୩), ଇତ୍ୟାଦିଷୁ ଶ୍ରୁତିଷୁ । ତଦେବ ଚେତ୍ ପରଂବ୍ରହ୍ମ ଜୀବସ୍ତସ୍ମାଜ୍ଜୀବସ୍ୟାପି ନିତ୍ୟଚୈତନ୍ୟସ୍ୱରୂପତ୍ୱ-ମଗ୍ନ୍ୟୌଷ୍ଣପ୍ରକାଶବଦିତି ଗମ୍ୟତେ । ବିଜ୍ଞାମୟପ୍ରକ୍ରିୟାୟାଂ ଚ ଶ୍ରୁତୟୋ ଭବନ୍ତି-'ଅସୁପ୍ତଃ ସୁପ୍ତାନଭିଚାକଶୀତି' (ବୃ ୪-୩-୧୧), 'ଅତ୍ରାୟଂ ପୁରୁଷଃ ସ୍ୱୟଂଜ୍ୟୋତିର୍ଭବତି' (ବୃ ୪-୩-୯), 'ନହି ବିଜ୍ଞାତୁର୍ବିଜ୍ଞାତେଃ ବିପରିଲୋପୋ ବିଦ୍ୟତେ' (ବୃ ୪-୩-୩୦) ଇତ୍ୟେବଂରୂପାଃ । 'ଅଥ ଯୋ ବେଦେଦଂ ଜିଘ୍ରାଣୀତି ସ ଆତ୍ମା' (ଛା ୬-୧୨-୪) ଇତି ଚ ସର୍ବୈଃ କରଣଦ୍ୱାରୈରିଦଂ ବେଦେଦଂ ବେଦେତି ବିଜ୍ଞାନେନାନୁସନ୍ଧାନାତ୍ତଦ୍ରୂପତ୍ୱସିଦ୍ଧିଃ ।

(ଗ) ନିତ୍ୟସ୍ୱରୂପଚୈତନ୍ୟତେ ଘ୍ରାଣାଦ୍ୟାନର୍ଥକ୍ୟମିତି ଚେତାନ୍ । ଗନ୍ଧାଦିବିଷୟ-ବିଶେଷପରିଚ୍ଛେଦାର୍ଥତ୍ୱାତ୍ । ତଥାହି ଦର୍ଶୟତି - 'ଗନ୍ଧାୟ ଘ୍ରାଣମ୍' ଇତ୍ୟାଦି । ଯତ୍ତୁ ସୁପ୍ତାଦୟୋ ନ ଚେତୟନ୍ତ ଇତି ତସ୍ୟ ଶ୍ରୁତ୍ୟୈବ ପରିହାରୋଽଭିହିତଃ । ସୁଷୁପ୍ତଂ ପ୍ରକୃତ୍ୟ 'ଯଦ୍‌ବୈ ତନ୍ନ ପଶ୍ୟନ୍‌ବୈ ତନ୍ନ ପଶ୍ୟତି-ନହି ଦ୍ରଷ୍ଟୁର୍ଦୃଷ୍ଟେର୍ବିପରିଲୋପୋ ବିଦ୍ୟତେଽବିନାଶିତ୍ୱାନ୍ନ ତୁ ତଦ୍‌ଦ୍ୱିତୀୟ ମସ୍ତି ତତୋଽନ୍ୟଦ୍‌ବିଭକ୍ତଂ ଯତ୍ ପଶ୍ୟେତ୍' (ବୃ ୪-୩-୨୩) ଇତ୍ୟାଦିନା ।

(ଘ) ଏତଦୁକ୍ତଂ ଭବତି- ବିଷୟାଭାବାଦିୟ ମଚେତୟମାନତା ନ ଚୈତନ୍ୟାଭାବାଦିତି । ଯଥା ବିୟଦାଶ୍ରୟସ୍ୟ ପ୍ରକାଶସ୍ୟ ପ୍ରକାଶ୍ୟାଭାବାଦନବିବ୍ୟକ୍ତିର୍ନ ସ୍ୱରୂପଭାଦାତ୍ତଦ୍‌ବତ୍ । ବୈଶେଷିକାଦିତର୍କଶ୍ଚ ଶ୍ରୁତିବିରୋଧ ଆଭାସୀଭବତି । ତସ୍ମାନ୍ନିତ୍ୟଚୈତନ୍ୟସ୍ୱରୂପଃ ଏବାତ୍ମେତି ନିଶ୍ଚିନୁମଃ ।

(୨) ଭାଷାଂତର- (କ) ସେହି ଜୀବାତ୍ମା କଣାଦମତ ପରି ଆଗନ୍ତୁକ ଚୈତନ୍ୟ ହୋଇ ସ୍ୱତଃ ଅଚେତନ ହୁଏ । ଅଥବା ସାଂଖ୍ୟ ମତରେ ନିତ୍ୟ ଚୈତନ୍ୟ ସ୍ୱରୂପ ଅଟେ କି ? ଏହିପ୍ରକାର ବାଦୀମାନଙ୍କର ବିପ୍ରତିପତ୍ତିରୁ ସଂଶୟ ହୁଏ । କିନ୍ତୁ ଏଠାରେ କଣ ପ୍ରାପ୍ତ ହୁଏ ? ଅଗ୍ନି ଓ ଘଟର ସଂଯୋଗଦ୍ୱାରା ଘଟରେ ଉତ୍ପନ୍ନ ହୋଇ ରକ୍ତାଦିଗୁଣପରି ଜୀବାତ୍ମାରେ ଆତ୍ମା ଓ ମନର ସଂଯୋଗକୁ ଜନ୍ୟ ଆଗନ୍ତୁକ ଚୈତନ୍ୟ ଅଟେ । ଏହା ହିଁ ପ୍ରାପ୍ତ ହୁଏ । ଚୈତନ୍ୟ ନିତ୍ୟ ହେଲେ ସୁପ୍ତ, ମୂର୍ଚ୍ଛିତ ଓ ଗ୍ରହାବିଷ୍ଟ ନିଜେ ନିଜେ ଚୈତନ୍ୟ ହୋଇଯିବେ । ପରନ୍ତୁ ସେମାନଙ୍କୁ ପଚାରିବାରୁ 'ଆମ୍ଭେମାନେ କିଛି ଜାଣିନାହୁଁ ବୋଲି ସେମାନେ କହନ୍ତି

ଏବଂ ସେମାନେ ସ୍ୱସ୍ଥ ହେଲେ ଚେତନତ୍ୱ ସହ ଦେଖାଯାନ୍ତି । ତେଣୁ ବେଳେବେଳେ ଚୈତନ୍ୟ ହେଲେ ଜୀବାତ୍ମା ଆଗନ୍ତୁକ ଚୈତନ୍ୟ ହୁଏ ।

(ଖ) ସିଦ୍ଧାନ୍ତ- ଏହାପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- ଏହି ଆତ୍ମା ଜ୍ଞ ଅର୍ଥାତ୍ ନିତ୍ୟ ଚୈତନ୍ୟରୂପ ଅଟେ । ତେଣୁ ସେ ଉତ୍ପନ୍ନ ହୁଏ ନାହିଁ ଓ ଅବିକୃତ ପରବ୍ରହ୍ମ ଉପାଧିସମ୍ବନ୍ଧରୁ ଜୀବଭାବଦ୍ୱାରା ଅବସ୍ଥାନ କରେ । କାରଣ- 'ବିଜ୍ଞାନମାନନ୍ଦଂ ବ୍ରହ୍ମ' (ବ୍ରହ୍ମବିଜ୍ଞାନ ଏବଂ ଆନନ୍ଦସ୍ୱରୂପ ଅଟେ), 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' 'ଅନନ୍ତରୋ' (ଅନ୍ତରହିତ, ବାହ୍ୟରହିତ, କୃତ୍ସ୍ନ ବିଜ୍ଞାନେ କରମ ଅଟେ) ଇତ୍ୟାଦି ଶ୍ରୁତିରେ ପରବ୍ରହ୍ମର ଚୈତନ୍ୟସ୍ୱରୂପ କୁହାଯାଇଅଛି । ଯଦି ଏହି ପରଂବ୍ରହ୍ମ ଜୀବ ଅଟେ, ତେବେ ଏହାଠାରୁ ଅଗ୍ନିର ଉଷ୍ଣତା ଓ ପ୍ରକାଶପରି ଜୀବର ନିତ୍ୟ ଚୈତନ୍ୟ ସ୍ୱରୂପ ଜଣାପଡ଼େ । 'ଅସୁପ୍ତଃ ସୁପ୍ତାନାମ୍' (ସ୍ୱୟଂ ନ ଶୋଇ ସୁପ୍ତସମସ୍ତ ପଦାର୍ଥକୁ ପ୍ରକାଶିତ କରେ) 'ଅତ୍ରାୟଂ' (ସ୍ୱପ୍ନାବସ୍ଥାରେ ଏହି ପୁରୁଷ ସ୍ୱୟଂ ଜ୍ୟୋତିଃ ସ୍ୱରୂପ ହୁଏ), 'ନହି ବିଜ୍ଞାତୁଃ' (ବିଜ୍ଞାତାର ବିଜ୍ଞାନଶକ୍ତି କଦାପି ଲୋପ ହୁଏ ନାହିଁ) ଏହି ପ୍ରକାରର ଶ୍ରୁତିଗୁଡ଼ିକ ବିଜ୍ଞାନମୟପ୍ରକରଣରେ ଅଛି । 'ଅଥ ଯୋ ବେଦେଦଂ' (ଯାହା ଏହାକୁ ଅନୁଭବ କରେ ଯେ- ମୁଁ ଶୁଙ୍ଘିବି, ସେ ଆତ୍ମା ଅଟେ) ଏହିପ୍ରକାର ସମସ୍ତ ଇନ୍ଦ୍ରିୟ ଗୁଡ଼ିକ ଦ୍ୱାରା ତାହା ଜଣାପଡ଼େ । ତାହାକୁ ଜାଣେ- ଏହି ପ୍ରକାର ବିଜ୍ଞାନ ସହିତ ଅନୁସନ୍ଧାନ ହେଲେ ଜ୍ଞାନରୂପତ୍ୱ ସିଦ୍ଧ ହୁଏ ।

(ଗ) ନିତ୍ୟ ଚୈତନ୍ୟସ୍ୱରୂପ ହେଲେ ଘ୍ରାଣ ପ୍ରଭୃତି ବ୍ୟର୍ଥ ହେବେ ବୋଲି ଯଦି କୁହ, ତାହା ଠିକ୍ ନୁହେଁ । କାରଣ-ସେମାନେ ଗନ୍ଧାଦିବିଷୟ ବିଶେଷାକାର ବୃତ୍ତି ପାଇଁ ଅଛି । ସେହିପରି 'ଗନ୍ଧାୟ ଘ୍ରାଣମ୍' (ଗନ୍ଧବିଷୟକ ଅନ୍ତଃକରଣବୃତ୍ତି ନିମିତ୍ ତ ଘ୍ରାଣ ଅଛି) ଇତ୍ୟାଦି ଶ୍ରୁତିବାକ୍ୟ ଅଛି । ସୁପ୍ତ ପ୍ରଭୃତି ଜାଣନ୍ତି ନାହିଁ- ଏହା ଯାହା କୁହାଯାଇଛି, ସେହି ସୁପ୍ତର ଉପକ୍ରମ କରି 'ଯଦ୍‌ବୈ ତନ୍ନ ପଶ୍ୟତି' (ସୁପ୍ତାବସ୍ଥାରେ ସେ ଯାହା ଦେଖେ ନାହିଁ, ସେ ନିଜେ ଦେଖାହୋଇ ଦେଖିହୁଏ ନାହିଁ । ଦ୍ରଷ୍ଟାର ଦୃଷ୍ଟି କଦାପି ଲୋପ ହୁଏ ନାହିଁ । କାରଣ-ସେ ଅବିନାଶୀ । ସେତେବେଳେ ତାହାଠାରୁ ଅନ୍ୟ ବିଭକ୍ତି ଦ୍ୱିତୀୟ କେହି ନାହିଁ, ଯେପରିକି ସେ ଦେଖେ) ଇତ୍ୟାଦି ଶ୍ରୁତିଦ୍ୱାରା ପରିହାର କରାଯାଇଅଛି ।

(ଘ) ଏଠାରେ ତାତ୍ପର୍ଯ୍ୟ ଯେ- ବିଷୟର ଅଭାବରୁ ଏହି ଚୈତନ୍ୟର ଅଭାବ ହୁଏ । କିନ୍ତୁ ଚୈତନ୍ୟ ଅଭାବରୁ ନୁହେଁ । ଯେପରି ଆକାଶ ଆଶ୍ରୟ ପ୍ରକାଶର ପ୍ରାକାଶ୍ୟର ଅଭାବରୁ ଅନଭିବ୍ୟକ୍ତି ହୁଏ, ସ୍ୱରୂପର ଅଭାବରୁ ନୁହେଁ । ବୈଶେଷିକ ପ୍ରଭୃତିର ତର୍କ ଶ୍ରୁତି ବିରୋଧ ହେଲେ ଅଭାବ ହୁଏ । ତେଣୁ ଆମ୍ଭେ ଏହା ନିଶ୍ଚିତ କରୁ ଯେ- ନିତ୍ୟ ଚୈତନ୍ୟ ସ୍ୱରୂପ ହିଁ ଆତ୍ମା ।



१३ उत्क्रान्तिगत्यधिकरणम् । सू० १६ - ३२

ଉତ୍କ୍ରାନ୍ତିଗତ୍ୟଧିକରଣ -୧୩

उत्क्रान्तिगत्यगतीनाम् ॥ १३ ॥

୧- ଉତ୍କ୍ରାନ୍ତିଗତ୍ୟଗତୀନାମ୍ ॥୨-୩-୧୯ ॥

'ଅସ୍ମାତ୍ ଶରୀରାଦୁତ୍କ୍ରାମତି' 'ଚନ୍ଦ୍ର ମସମେବ ସର୍ବେ ଗଚ୍ଛନ୍ତି', 'ତସ୍ମାଲ୍ଲୋକାତ୍ ପୁନରେତି' ଏହିପ୍ରକାର ଉତ୍କ୍ରମଣ, ଗତି ଓ ଆଗତିର ଶ୍ରବଣରୁ ଜୀବ ଅଣୁ ଅଟେ । ତେଣୁ ଜୀବର ସର୍ବବ୍ୟାପକତ୍ୱ ପ୍ରତିପାଦକ ସର୍ବବ୍ୟାପୀ ଶ୍ରୁତିର 'ଏଷୋଽଣୁରାତ୍ମା' ଏହିଶ୍ରୁତି ସହ ବିରୋଧ ହୁଏ ।

(୨) ମୂଳ-(କ) ଇଦାଦୀନ୍ତୁଂ କିଂ ପରିମାଣୋ ଜୀବ ଇତି ଚିନ୍ତ୍ୟତେ । କିମଣୁପରିମାଣ ଉତ ମଧ୍ୟମପରିମାଣ ଆହୋସ୍ୱିନ୍ମହାପରିମାଣ ଇତି । ନନୁ ଚ ନାତ୍ମୋତ୍ପଦ୍ୟତେ ନିତ୍ୟଚୈତନ୍ୟଶ୍ଚାୟମିତ୍ୟୁକ୍ତମ୍ । ଅତଶ୍ଚ ପର ଏବାତ୍ମା ଜୀବ ଇତ୍ୟାପତତି । ପରସ୍ୟ ଚାତ୍ମନୋଽନନ୍ତତ୍ୱମାମ୍ନାତଂ, ତତ୍ର କୁତୋ ଜୀବସ୍ୟ ପରିମାଣଚିନ୍ତାବତାର ଇତି । ଉଚ୍ୟତେସତ୍ୟମେତତ୍ । ଉତକ୍ରାନ୍ତିଗତ୍ୟାଗତି ଶ୍ରବଣାନି ତୁ ଜୀବସ୍ୟ ପରିଚ୍ଛେଦଂ ପ୍ରାପୟନ୍ତି । ସ୍ୱଶବ୍ଦେନ ଚାସ୍ୟ କ୍ୱଚିଦଣୁ ପରିମାଣତ୍ୱମାମ୍ନାୟତେ । ତସ୍ୟ ସର୍ବସ୍ୟାନାକୁଳତ୍ୱୋପପଦା-ଦନାୟାମୟମାରମ୍ଭଃ ।

(ଖ) ତତ୍ର ପ୍ରାପ୍ତଂ ତାବଦୁତ୍କ୍ରାନ୍ତି ଗତ୍ୟାଗତୀନାଂ ଶ୍ରବଣାତ୍ ପରିଚ୍ଛିନ୍ନୋଽଣୁପରିମାଣେ ଜୀବ ଇତି । ଉତ୍ କ୍ରାନ୍ତିସ୍ତାବତ୍-'ସ ଯଦାସ୍ମାଚ୍ଛରୀରାଦୁତକ୍ରାମତି ସହୈବୈତୈଃ ସର୍ବୈରୁତ୍କ୍ରାମତି' (କୌଷୀ ୩-୩) ଇତି । ଗତିରପି 'ଯେ ବୈ କେ ଚାସ୍ମାଲ୍ଲୋକାତ୍ ପ୍ରଯନ୍ତି ଚନ୍ଦ୍ରମସମେବ ତେ ସର୍ବେ ଗଚ୍ଛନ୍ତି (କୌଷୀ ୧-୨) ଇତି । ଆଗତିରପି 'ତସ୍ମାଲ୍ଲୋକାତ୍ ପୁନରେତ୍ୟସ୍ମୈ ଲୋକାୟ କର୍ମଣେ' (ବୃ ୪-୪-୬) ଇତି । ଆସାମୁତ୍କ୍ରାନ୍ତିଗତ୍ୟାଗତୀନାଂ ଶ୍ରବଣାତ୍ ପରିଚ୍ଛିନ୍ନାସ୍ତାବଜ୍ଜୀବ ଇତି ପାପ୍ନୋତି । ନହି ବିଭୋଶ୍ଚଲନମଂବକଳ୍ପତ ଇତି । ସତି ଚ ପରିଚ୍ଛେଦେ ଶରୀରପରିମାଣତ୍ୱସ୍ୟାର୍ହତ ପରୀକ୍ଷାୟାଂ ନିରସ୍ତତ୍ୱାଦଣୁରାତ୍ମେତି ଗମ୍ୟତେ ।

(୨) ଭାଷାଂତର- (କ) ଜୀବ କଣ ପରିମାଣଶୀଳ ? ବର୍ତ୍ତମାନ ତାହା ବିଚାର କରାଯାଉଅଛି- କଣ ଜୀବ ଅଣୁଦ୍ୱାରା ପରିମାଣଶୀଳ, କି ମଧ୍ୟମ ଧରଣର ପରିମାଣଶୀଳ ? ଅଥବା ମହାନ୍ ପରିମାଣଶୀଳ ? ପରନ୍ତୁ ଏଠାରେ କୁହାଯାଉଅଛି ଯେ- ଏହି ଆତ୍ମା ଉତ୍ପନ୍ନ ହୁଏ ନାହିଁ ଏବଂ ଆତ୍ମା ନିତ୍ୟଚୈତନ୍ୟ ଅଟେ । ତେଣୁ ଜୀବ ପରମାତ୍ମା ବୋଲି ଜଣାଯାଏ । ପରମାତ୍ମା ଅନନ୍ତ ଅଟେ - ଏହି ଶ୍ରୁତିରେ ଯାହା କୁହାଯାଇଅଛି, ତାହା ପୁଣି ଜୀବର ପରିମାଣ ବିଷୟକ ବିଚାର କିପରି ଅବତରଣ କରେ ? କୁହାଯାଇଛି - ଏହା

ଠିକ୍ ଅଟେ । କିନ୍ତୁ ଉତ୍କ୍ରାନ୍ତି, ଗତି, ଅଗତିର ଶ୍ରବଣ ଜୀବର ପରିଛିନ୍ନତ୍ୱ ପ୍ରାପ୍ତ କରାଏ । କେତେକସ୍ଥଳରେ ଶ୍ରୁତି ସ୍ୱଶବ୍ଦ ଦ୍ୱାରା ଏହାକୁ ଅଣୁ ପରିମାଣ କହେ । ଏହି ସବୁ ଅନାକୁଳତ୍ୱ ବା ଅବାଧତ୍ୱ ଉପପାଦନ କରିବାପାଇଁ ଏହା ଆରମ୍ଭ କରାଯାଇଅଛି ।

(ଖ) ପୂର୍ବପକ୍ଷ - ଜୀବ ପରିଚ୍ଛିନ୍ନ ଓ ଅଣୁ ପରିମାଣ ଅଟେ । କାରଣ- ଉତ୍କ୍ରାନ୍ତି, ଗତି, ଅଗତି ବିଷୟରେ ଶ୍ରୁତି କହେ । ଯଥା- 'ସଃ ଯଦାସ୍ମାତ୍' (ସେ.ଯେତେବେଳେ ମରଣ ସମୟରେ ଏହି ଶରୀରଠାରୁ ଉତ୍କ୍ରମଣ କରେ, ସେତେବେଳେ ସେ ସମସ୍ତଙ୍କ ସହ ଉତ୍କ୍ରମଣ କରେ) - ଏହା ଉତ୍କ୍ରାନ୍ତି ବିଷୟକ ଶ୍ରୁତି । 'ଯେ ବୈ କେ' (ଯିଏ ଏହି ଲୋକରୁ ପ୍ରୟାଣ କରନ୍ତି, ସେ ସବୁ ଚନ୍ଦ୍ର ଲୋକକୁ ଯା'ନ୍ତି) - ଏହି ଶ୍ରୁତି ଗତିବିଷୟକ । 'ତସ୍ମାଲ୍ଲୋକାତ୍' (ସେହିଲୋକଠାରୁ ପୁଣି ଏହା କର୍ମଲୋକକୁ ଯାଏ)- ଏହା ଆଗତିବିଷୟକଶ୍ରୁତି । ଏହି ଉତ୍କ୍ରାନ୍ତି, ଗତି ଏବଂ ଅଗତି ବିଷୟକ ଶ୍ରୁତିବାକ୍ୟରୁ ଜୀବ ପରିଚ୍ଛିନ୍ନ ଅଟେ- ଏହାହିଁ ପ୍ରାପ୍ତ ହୁଏ । କାରଣ- ବିଭୁର ଗତି ନ ହୋଇ ପାରେ । ପରିଚ୍ଛିନ୍ନତ୍ୱ ପ୍ରାପ୍ତ ହେଲାପରେ ଶରୀର ପରିମାଣର ଅର୍ହତ ମତକୁ ପରୀକ୍ଷା ଦ୍ୱାରା ନିରାକରଣ କରି ଆତ୍ମା ଅଣୁ ହୁଏ - ଏହାହିଁ ଜଣାଯାଏ ।

## स्वात्मना चोत्तरयो: ॥ २० ॥

## ୧- ସ୍ୱାତ୍ମନା ଚୋତ୍ତରୟୋଃ ॥ ୨-୩-୨୦ ॥

ଉତ୍ତରୟୋଃ-ଉତ୍କ୍ରମଣପରେ ଗମନ ଓ ଆଗମନର (ସ୍ୱାତ୍ମନା) ସ୍ୱାତ୍ମକର୍ତ୍ତାର ସହିତ ସମ୍ବନ୍ଧ ହେଲେ ଆତ୍ମାର ଅଣୁତ୍ୱ ସିଦ୍ଧ ହୁଏ ।

(୨) ମୂଳ-(କ) ଉତ୍କ୍ରାନ୍ତିଃ କଦାଚିଦଚଳତୋଽପି ଗ୍ରାମ୍ୟସ୍ୱାମ୍ୟନିବୃତ୍ତିବ- ଦ୍ଦେହସ୍ୱାମ୍ୟନିବୃତ୍ତ୍ୟା କର୍ମକ୍ଷୟେଣାବକଳ୍ପେତ । ଉତ୍ତରେତ୍ତୁ ଗତ୍ୟାଗତୀ ନାଚଳତଃ ସମ୍ଭବତଃ । ସ୍ୱାତ୍ମନା ହି ତୟୋଃ ସମ୍ବନ୍ଧୋ ଭବତି, ଗମେଃ କର୍ତ୍ତୃସ୍ଥକ୍ରିୟାତ୍ୱାତ୍ । ଅମଧ୍ୟମ ପରିମାଣସ୍ୟ ଚ ଗତ୍ୟଗତୀ ଅଣୁତ୍ୱ ଏବ ସମ୍ଭବତଃ । ସତ୍ୟୋଶ୍ଚ ଗତ୍ୟାଗତ୍ୟୋରୁତ୍କ୍ରାନ୍ତିରପ୍ୟପସୃପ୍ତିରେବ ଦେହାଦିତି ପ୍ରତୀୟତେ । ନହ୍ୟନପସୃପ୍ତସ୍ୟ ଦେହାଦ୍ଗତ୍ୟାଗତୀ ସ୍ୟାତାମ୍ । ଦେହପ୍ରଦେଶାନାଂ ଚୈତ୍ କ୍ରାନ୍ତାବପାଦାନତ୍ୱ ବଚନାତ୍ ।

(ଖ) ଚକ୍ଷୁଷୋ ବା ମୂର୍ଦ୍ଧ୍ନୋ ବାନେଭ୍ୟୋ ବା ଶରୀର ଦେଶେଭ୍ୟଃ (ବୃ ୪-୪-୨) ଇତି । 'ସ ଏତା ସ୍ତେଜୋମାତ୍ରାଃ ସମଭ୍ୟାଦଦାନୋ ହୃଦୟମେବାନ୍ୱବକ୍ରାମତି' (ବୃ- ୪-୪-୧), 'ଶୁକ୍ରମାଦାୟ ପୁ ନରେତି ସ୍ଥାନମ୍' (ବୃ ୪-୩-୧୧) ଇତି ଚାନ୍ତରେଽପି ଶରୀରେ ଶରୀରସ୍ୟ ଗତ୍ୟାଗତୀ ଭବତଃ । ତସ୍ମାଦପ୍ୟସ୍ୟାଣୁତ୍ୱସିଦ୍ଧିଃ ।

(୨) ଭାଷାଂତର- (କ) ବେଳେବେଳେ ଉତକ୍ରାନ୍ତି ଅଚଳଆତ୍ମାର ଗ୍ରାମର ସ୍ୱାମିତ୍ୱନିବୃତ୍ତପରି ଦେହର ସ୍ୱତ୍ୱାମି ନିବୃତ୍ତିଦ୍ୱାରା କର୍ମ କ୍ଷୟହେବାରୁ ସମ୍ଭବ ହୁଏ । ପରନ୍ତୁ



ଆଗରେ ଥିବା ଗତି ଓ ଆଗତି ଅଚଳ ଆତ୍ମାର ହୁଏ ନାହିଁ, କାରଣ - ତାହାର ସମ୍ବନ୍ଧ ଆତ୍ମାର ସହ ହୁଏ । କାରଣ - 'ଗମ୍' ଧାତୁ କର୍ତ୍ତୃନିଷ୍ଠ କ୍ରିୟା ଅଟେ । ମଧ୍ୟମ ପରିମାଣ ରହିତ ଜୀବ ଅଣୁ ହେବାରୁ ଗତି ଓ ଆଗତି ହୁଏ । ଗତି ଓ ଅଗତି ହେଲେ ଶରୀରରୁ ବାହାରି ଯିବାକୁ ଉତ୍‌କ୍ରାନ୍ତି କୁହାଯାଏ । ଶରୀରରୁ ନ ବାହାରିଲେ ଗତି କି ଆଗତି ହୁଏ ନାହିଁ ।

(ଖ) 'ଚକ୍ଷୁଷ୍ଟୋ ବା' (ତାହା ଦ୍ୱାରା ଏହି ଆତ୍ମା ଚକ୍ଷୁରୁ, ମସ୍ତକରୁ ଅଥବା ଶରୀରର ଅନ୍ୟ ଯେ କୌଣସି ସ୍ଥାନରୁ ବାହାରେ) ଏହି ପ୍ରକାର ଦେହ ପ୍ରଦେଶ ଉତ୍‌କ୍ରାନ୍ତିରେ ଅପାଦାନ ରୂପରେ କୁହାଯାଇଛି । 'ଏତାସ୍ତେଜୋ' ସେହି ଆତ୍ମା ଏହି ଇନ୍ଦ୍ରିୟ ସମୂହକୁ ପ୍ରକାର ରୂପରେ ଗ୍ରହଣ କରି ହୃଦୟରେ ଅଭିବ୍ୟକ୍ତ ଜ୍ଞାନବାନ୍ ହୁଏ)' 'ଶୁକ୍ରମାଦାୟ (ପ୍ରକାଶକ ଇନ୍ଦ୍ରିୟ ମାତ୍ରକୁ ନେଇ ପୁଣି ଜାଗରିତ ସ୍ଥାନକୁ ଆସେ) ଏହିପରି ଶରୀରର ଅନ୍ତର ଜୀବାତ୍ମାର ଗତି ଓ ଆଗତି ହୁଏ । ତେଣୁ ଜୀବର ଅଣୁତ୍ୱ ସିଦ୍ଧ ହୁଏ ।

## नाणुरतच्छ्रुतेरिति चेन्नेतराधिकारात् ॥ २१ ॥

## ୧- ନାଣୁରତଚ୍ଛ୍ରୁତେରିତି ଚ୍ଛେତରାଧିକାରାତ୍ ॥୨-୩-୨୧॥

ନାଣୁଃ=ଜୀବ ଅଣୁପରିମାଣ ନୁହେଁ । ଅତଚ୍ଛ୍ରୁତେଃ = କାରଣ - ସର୍ବବ୍ୟାପୀ ଇତ୍ୟାଦି ଶ୍ରୁତି ଜୀବକୁ ସର୍ବଗତ କହେ । ଇତି ଚେନ୍ନ = ଯଦି ଏହା ତୁମେ କହ, ତାହା ଠିକ୍ ନୁହେଁ । ଇତରାଧିକାରାତ୍ = କାରଣ - ତାହା ଇତର ବ୍ରହ୍ମର ପ୍ରକରଣ ଅଟେ ।

(୨) ମୂଳ - (କ) ଅଥାପି ସ୍ୟାନ୍ନାଣୁରୟମାତ୍ମା । କସ୍ମାତ୍ । ଅତଚ୍ଛ୍ରୁତେଃ । ଅଣୁତ୍ୱବିପରୀତ ପରିମାଣ ଶ୍ରବଣାଦିତ୍ୟର୍ଥଃ । ସବା ଏଷ ମହାନଜ ଆତ୍ମା ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ' (ବୃ-୪-୦-୧୨) 'ଆକାଶବତ୍‌ସର୍ବଗତଶ୍ଚ ନିତ୍ୟଃ', 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' (ତୈ ୨-୧-୧) ଇତ୍ୟେବଂଜାତୀୟକା ହି ଶ୍ରୁତିରାତ୍ମନୋଽଣୁତ୍ୱେ ବିପ୍ରତିଷିଧ୍ୟେତେତି ଚେତ୍ ।

(ଖ) ନୈଷ ଦୋଷଃ । କସ୍ମାତ୍ । ଇତରାଧିକାରାତ୍ । ପରସ୍ୟ ହ୍ୟାତ୍ମନଃ ପ୍ରକ୍ରିୟାୟାମେଷା ପରିମାଣାନ୍ତରଶ୍ରୁତିଃ । ପରସ୍ୟୈ ବତ୍ମଃ ପ୍ରାଧାନ୍ୟେନ ବେଦାନ୍ତେଷୁ ବେଦିତବ୍ୟତ୍ୱେନ ପ୍ରକୃତତ୍ୱାତ୍ । ବିରଜଃ ପର ଆକାଶାଦିତ୍ୟେବଂବିଧାଚ୍ଚ ପରସୈବାତ୍ମନଃ ତତ୍ର ବିଶେଷାଧିକାରାତ୍ ।

(ଗ) ନନୁ 'ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ' (ବୃ ୪-୪-୨୨) ଇତି ଶାରୀର ଏବ ମହତ୍ୱସମ୍ବନ୍ଧିତ୍ୱେନ ପ୍ରତିନିର୍ଦ୍ଦିଶ୍ୟତେ । ଶାସ୍ତ୍ରଦୃଷ୍ଟ୍ୟା ତ୍ୱେଷ ନିର୍ଦ୍ଦେଶୋ ବାମଦେବଦ୍ର ଷ୍ଟବ୍ୟଃ । ତସ୍ମାତ୍ ପ୍ରାଜ୍ଞବିଷୟତ୍ୱାତ୍ ପରିମାଣାନ୍ତରଶ୍ରବଣସ୍ୟ ନ ଜୀବସ୍ୟାଣୁତ୍ୱଂ ବିରୁଧ୍ୟତେ ।

**(୨) ଭାଷାଂତର** - (କ) ଏଠାରେ ଶଙ୍କା ହୁଏ ଯେ - ଏହି ଜୀବାତ୍ମା ଅଣୁ ନୁହେଁ । କିପରି ? କାରଣ - ତାହାର ଅତତ୍‌ଶ୍ରୁତି ଅଛି, ଅର୍ଥାତ୍ ଅଣୁ ପରିମାଣର ବିପରୀତ ପରିମାଣ ଶୁଣାଯାଏ । 'ସ ବା ଏଷ' (ଏହି ମହାନ୍ ଅଜ ଆତ୍ମା ଅଟେ । ଯାହା ପ୍ରାଣୀଠାରେ ବିଜ୍ଞାନମୟ ଅଟେ), 'ଆକାଶବତ୍' (ଆକାଶ ପରି ସର୍ବଗତ ଓ ନିତ୍ୟ ଅଟେ), 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଏହି ପ୍ରକାର ଶ୍ରୁତିଗୁଡ଼ିକ ଆତ୍ମାକୁ ଅଣୁ ରୂପେ ସ୍ୱୀକାର କରିବାକୁ ବିରୋଧ ହୁଏ । ଯଦି ଏହା କହ,

(ଖ) ତେବେ ଏହା ଦୋଷ ନୁହେଁ । କାରଣ - ଏଠାରେ ଇତରର ଅଧିକାର ଅଛି । ପରମାତ୍ମା ପ୍ରକରଣରେ ଏହା ଅନ୍ୟ ପରିମାଣର ଶ୍ରୁତି ଅଟେ । କାରଣ - ପରମାତ୍ମା ମୁଖ୍ୟ ରୂପରେ ବେଦାନ୍ତଶାସ୍ତ୍ରରେ ବେଦିତବ୍ୟ ରୂପରେ ପ୍ରକୃତ ହୁଏ । ଯଥା 'ବିରଜଃ' (ସେ ଏହି ବିରଜ ଅଟେ, ଏବଂ ଆକାଶଠାରୁ ଭିନ୍ନ ଅଟେ) ଏହି ପ୍ରକାର ବାକ୍ୟରୁ ସେହି ସ୍ଥଳରେ ପରମାତ୍ମାର ବିଶେଷ ଅଧିକାର ହୁଏ ।

(ଗ) ପରନ୍ତୁ 'ଯୋଽଶଂ ବିଜ୍ଞାନମୟଃ ପ୍ରାଣେଷୁ' ଏହା ଶରୀର (ଜୀବାତ୍ମା)ର ମହତ୍ୱ ସମ୍ବନ୍ଧ ରୂପର ପ୍ରତିନିର୍ଦ୍ଦେଶ କରାଯାଏ । ଏହି ନିର୍ଦ୍ଦେଶ ଶାସ୍ତ୍ର ଦୃଷ୍ଟିରେ ବାମଦେବ ପରି ଜାଣିବା ଉଚିତ । ତେଣୁ ଅନ୍ୟ ପରିମାଣ ବିଷୟକ ଶ୍ରୁତି ପରମାତ୍ମା ବିଷୟକ ହେବାରୁ ଜୀବର ଅଣୁତ୍ୱ ବିରୁଦ୍ଧ ନୁହେଁ ।

## स्वशब्दोन्मानाभ्यां च ॥ २२ ॥

## ୧- ସ୍ୱଶବ୍ଦୋନ୍ମାନାଭ୍ୟାଂ ଚ ॥୨-୩-୨୨॥

'ଏଷୋଽଣୁରାତ୍ମା' ଏହି ଅଣୁତ୍ୱବାଚକ ଶ୍ରୁତି ଏବଂ 'ବାଲାଗ୍ରଶତଭାଗସ୍ୟ' ଏହି ଶ୍ରୁତିରେ ଅତ୍ୟନ୍ତ ଅପକୃଷ୍ଟ ପରିମାଣରୁ ଜୀବ ଅଣୁ ହୁଏ ।

(୨) ମୂଳ - (କ) ଇତଶ୍ଚାଣୁରାତ୍ମା ଯତଃ ସାକ୍ଷାଦେବାସ୍ୟାଣୁତ୍ୱବାଚୀ ଶବ୍ଦଃ ଶ୍ରୂୟତେ - 'ଏଷୋଽଣୁରାତ୍ମା ଚେତସା ବେଦିତବ୍ୟୋ ଯସ୍ମିନ୍ ପ୍ରାଣଃ ପଞ୍ଚଧା ସଂବିବେଶ' (ମୁଣ୍ଡ ୩-୧-୯) ଇତି । ପ୍ରାଣ ସମ୍ବନ୍ଧାଚ୍ଚ ଜୀବ ଏବାୟମଣୁରଭିହିତଂ ଇତି ଗମ୍ୟତେ । ତଥୋନ୍ମାନମପି ଜୀବସ୍ୟାଣିମାନଂ ଗମୟତି - 'ବାଲାଗ୍ରଶତଭାଗସ୍ୟ ଶତଧା କଳ୍ପିତସ୍ୟ ଚ । ଭାଗୋ ଜୀବଃ ସଃ ବିଜ୍ଞେୟଃ' (ଶ୍ୱେ - ୫-୮) ଇତି । 'ଆରାଗ୍ରମାତ୍ରୋ ହ୍ୟବରୋଽପି ଦୃଷ୍ଟ' (ଶ୍ୱେ ୫-୮) ଇତି ଚୋନ୍ମାନାନ୍ତରମ୍ ।

**(୨) ଭାଷାଂତର** - (କ) ଏହି ପ୍ରମାଣରୁ ଜୀବାତ୍ମା ଅଣୁ ଅଟେ । କାରଣ - 'ଏଷଽଣୁରାତ୍ମା (ଏହି ଅଣୁ ଆତ୍ମା କେବଳ ବିଶୁଦ୍ଧ ବିଜ୍ଞାନରୁ ଜଣାପଡ଼େ, ଯେଉଁ ଶରୀରରେ ପ୍ରାଣ ପାଞ୍ଚ ପ୍ରକାର ହୋଇ ପ୍ରବେଶ କରେ) ଏହିପରି ସାକ୍ଷାତ୍ ତାହାର



ଅଣୁତ୍ୱ ବାଚକଶବ୍ଦ ଶୁଣାଯାଏ । ଏଠାରେ ଜଣାଯାଏ ଯେ- ପ୍ରାଣସମ୍ବନ୍ଧରୁ ଏହିଜୀବକୁ ଅଣୁ କୁହାଯାଏ । ସେହିପରି 'ବାଳାଗ୍ରଶତଭାଗସ୍ୟ' (ମସ୍ତକରେ ବାଳ ଶତଭାଗରେ ବିଭକ୍ତ ହୋଇ ତାର ଅଗ୍ରଭାଗକୁ ଶହେଭାଗ କଲେ, ତାହାର ପରିମାଣ ଆତ୍ମା ବୋଲି ଜାଣ) ଏହି ଉନ୍ମାନ (ଅତ୍ୟନ୍ତ ସୂକ୍ଷ୍ମପରିମାଣ) ଜୀବକୁ ଅଣୁ କୁହାଯାଏ । 'ଆରାଗ୍ରମାତ୍ର' (ଚକ୍ରର ଅରରେ ଲାଗିଥିବା ଲୁହାକଣ୍ଟାର ଆକାର ପରିମିତ ସ୍ଥାନ ପରି ଆତ୍ମା ଦେଖାଯାଏ) ଏହି ଅନ୍ୟ ଉନ୍ମାଦ (ଅତ୍ୟନ୍ତ ଅପକୃଷ୍ଟ) ପରିମାଣ ଅଟେ ।

(୧) ମୂଳ-ନନୁଣୁତ୍ୱେ ସତ୍ୟେକଦେଶସ୍ଥସ୍ୟ ସକଳଦେହଗତୋପଲବ୍ଧିର୍ବିରୁ-ଧ୍ୟତେ । ଦୃଶ୍ୟତେ ଚ ଜାହ୍ନବୀହ୍ରଦନିମଗ୍ନାନାଂସର୍ବାଙ୍ଗଶୈତ୍ୟୋପଲବ୍ଧିର୍ନିଦାଘସମୟେ ଚ ସକଳଶ-ରୀରପରିତାପୋପଲବ୍ଧିରିତି ।ଅତ ଉତ୍ତରଂ ପଠତି ।

**(୧) ଭାଷାଂତର-** (କ) ପରନ୍ତୁ ଜୀବର ଅଣୁତ୍ୱ ସ୍ୱୀକାର କଲେ ଶରୀରର ଏକଦେଶସ୍ଥିତ ଜୀବକୁ ସଂପୂର୍ଣ୍ଣ ଶରୀରଗତ ଉପଲବ୍ଧି ବିରୋଧ ହୁଏ । କାରଣ-ଗଙ୍ଗା ଅଥବା ପୁଷ୍କରିଣୀରେ ସ୍ନାନ କରୁଥିବା ଲୋକକୁ ସମସ୍ତ ଶରୀରରେ ଶୈତ୍ୟ ଅନୁଭବ ଓ ଉଷ୍ଣକାଳରେ ପରିତାପ ଉପଲବ୍ଧ ହୁଏ । ତେଣୁ ତାହାର ଉତ୍ତରରେ କୁହାଯାଇଛି-

## अविरोधश्चन्दनवत् ॥ २३ ॥

## ୨- ଅବିରୋଧଶ୍ଚନ୍ଦନବତ୍ ॥୨-୩-୨୩॥

ଚନ୍ଦନବତ୍ = ଯେପରି ଶରୀରର ଗୋଟିଏ ଅବୟବରେ ଥିବା ଚନ୍ଦନବିନ୍ଦୁ ଶରୀରବ୍ୟାପୀ ସୁଖ ଉତ୍ପନ୍ନ କରେ । ସେପରି ଅଣୁ ମଧ୍ୟ ଦେହବ୍ୟାପୀ ଶୀତାଦିତାପ ଉପଲବ୍ଧି କରିବ । ଅତଃ, ଅବିରୋଧଃ=କୌଣସି ବିରୋଧ ନାହିଁ ।

(୩) ମୂଳ-(କ) ଯଥାହି ହରିଚନ୍ଦନବିନ୍ଦୁଃ ଶରୀରୈକଦେଶସମ୍ବନ୍ଧୋଽପି ସନ୍‌ସକଳ ଦେହବ୍ୟାପିନମାହ୍ଲାଦଂ କରୋତ୍ୟେବମାତ୍ମାପି ଦେହୈକଦେଶସ୍ଥଃ ସକଳଦେହବ୍ୟାପିମୁପଲବ୍ଧିଂ କରିଷ୍ୟତି । ତ୍ୱକ୍‌ସମ୍ବନ୍ଧନାଚ୍ଚସ୍ୟ ସକଳଶରୀରଗତ ବେଦନା ନ ବରୁଧ୍ୟତେ । ତ ଗାତ୍ମନୋର୍ହି ସଂବନ୍ଧଃ କୃସ୍ନୟାଂ ତ୍ୱଚି ବର୍ତ୍ତତେ ତ୍ୱକ୍ ଚ କୃସ୍ନ ଶରୀରବ୍ୟାପିନୀତି ।

**(୩) ଭାଷାଂତର-** ଯେପରି ଶରୀରର ଏକଦେଶରେ ସଂଲଗ୍ନ ଥିବା ହରିଚନ୍ଦନବିନ୍ଦୁ ସମସ୍ତ ଶରୀରରକୁ ସୁଖ ପ୍ରଦାନ କରେ, ସେପରି ଆତ୍ମା ଦେହର ଏକଦେଶରେ ରହି ସକଳ ଦେହବ୍ୟାପୀ ଉପଲବ୍ଧି କରିବ । ତାହାର ଚର୍ମସମ୍ବନ୍ଧରୁ ସଂପୂର୍ଣ୍ଣ ଶରୀରଗତ ବେଦନା ବିରୁଦ୍ଧ ହୁଏ ନାହିଁ । କାରଣ-ତ୍ୱକ୍ ଓ ଆତ୍ମାର ସମ୍ବନ୍ଧ ପୂରାପୂରି ଚର୍ମରେ ରହିଛି ଏବଂ ଚର୍ମ ସମ୍ପୂର୍ଣ୍ଣ ଶରୀରବ୍ୟାପୀ ହୋଇଛି ।

अवस्थितिवैशेष्यादिति चेन्नाभ्युपगमाद्धृदि हि ॥ २४ ॥

୧-ଅବସ୍ଥିତି ବୈଶେଷ୍ୟାଦିତି ଚେନ୍ନାଭ୍ୟୁପଗମାଦ୍ଧୃଦିହି ॥୨-୩-୨୪॥

ଅବସ୍ଥିତିବୈଶେଷ୍ୟାତ୍ = ପ୍ରତ୍ୟକ୍ଷରୂପରେ ଚନ୍ଦନବିନ୍ଦୁ ଶରୀରର ଏକପ୍ରଦେଶରେ ଦେଖାଯାଏ । ପରନ୍ତୁ ଜୀବର ସେହିପ୍ରକାର ଦେଖାଯାଏ ନାହିଁ । ତେଣୁ ତାହା ଅତୁଲ୍ୟ ହେଲେ ଚନ୍ଦନଦୃଷ୍ଟାନ୍ତ ଠିକ୍ ହୁଏ ନାହିଁ । ଇତି ଚେନ୍ନ=ଏହିପ୍ରକାର କହିବା ଠିକ୍ ନୁହେଁ । ଅଭ୍ୟୁପଗମାତ୍=କାରଣ-ଜୀବର ଅଣୁତ୍ୱ ସ୍ୱୀକାର କରାଯାଇଛି । ହୃଦି=ଅଳ୍ପପରିମାଣ ହୃଦୟରେ 'ହୃଦ୍ୟନ୍ତାର୍ଜ୍ୟୋତିଃ' ଇତ୍ୟାଦି ଶ୍ରୁତିରେ ଜୀବ ପାଠ କରାଯାଇଛି, ହି=ତେଣୁ ଜୀବର ଅଣୁତ୍ୱ ସ୍ୱୀକାର କରାଯାଇଛି । ଏହିପ୍ରକାର ଦୃଷ୍ଟାନ୍ତରେ କୌଣସି ପାର୍ଥକ୍ୟ ନାହିଁ ।

(୨) ମୂଳ-(କ) ଅତ୍ରାହ ଯଦୁକ୍ତମବିରୋଧଶ୍ଚନ୍ଦନବଦିତି, ତଦଯୁକ୍ତଂ ଦୃଷ୍ଟାନ୍ତଦାର୍ଷ୍ଟାନ୍ତିକୟୋରତୁଲ୍ୟତ୍ୱାତ୍ । ସିଦ୍ଧେ ହ୍ୟାତ୍ମନୋ ଦେହୈକଦେଶସ୍ଥତ୍ୱେ ଚନ୍ଦନଦୃଷ୍ଟାନ୍ତୋ ଭବତି । ପ୍ରତ୍ୟକ୍ଷଂ ତୁ ଚନ୍ଦନସ୍ୟାବସ୍ଥିତି ବୈଶେଷ୍ୟମେକଦେଶସ୍ଥତ୍ୱଂ ସକଳଦେହାହ୍ଲାଦନଂ ଚ । ଆତ୍ମନଃ ପୁନଃ ସକଳଦେହୋପଲବ୍ଧ ମାତ୍ରଂ ପ୍ରତ୍ୟକ୍ଷଂ ନୈକଦେଶବର୍ତ୍ତିତ୍ୱମ୍ । ଅନୁମେୟଂ ତୁ ତଦିତି ଯଦପ୍ୟୁଚ୍ୟେତ । ନଚାତ୍ରାନୁମାନଂ ସମ୍ଭବତି । କିମାତ୍ମନଃ ସକଳ ଶରୀରଗତା ବେଦନା ତ୍ୱଗିନ୍ଦ୍ରିୟସ୍ୟେବ ସକଳଦେହବ୍ୟାପିନଃ ସତଃ କିମ୍ବା ବିଭୋର୍ନଭସଃ ଇବାହୋସ୍ୱିଚ୍ଚନ୍ଦନବିନ୍ଦୋରିବାଣୋରେକଦେଶସ୍ଥସ୍ୟେତି ସଂଶୟାନତିବୃତ୍ତେରିତି ।

(ଖ) ଅତ୍ରୋଚ୍ୟତେ-ନାୟଂ ଦୋଷଃ । କସ୍ମାତ୍ । ଅଭ୍ୟୁପଗମାତ୍ । ଅଭ୍ୟୁପଗମ୍ୟତେ ହ୍ୟାତ୍ମନୋଽପି ଚନ୍ଦନସ୍ୟେବ ଦେହୈକଦେଶ ବୃତ୍ତିତ୍ୱମବସ୍ଥିତିବୈଶେଷ୍ୟମ୍ । କଥମିତ୍ୟୁଚ୍ୟତେ । ହୃଦି ହ୍ୟେଷଆତ୍ମା ପଠ୍ୟତେ ବେଦାନ୍ତେଷୁ । 'ହୃଦି ହ୍ୟେଷ ଆତ୍ମା' (ପ୍ରଶ୍ନ ୩-୬), 'ସ ବା ଏଷ ଆତ୍ମା ହୃଦି' (ଛା ୮-୩-୩), 'କତମ ଆତ୍ମେତି ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ ହୃଦ୍ୟନ୍ତଂର୍ଜ୍ୟୋତିଃ ପୁରୁଷଃ' (ବୃ ୪-୩-୭) ଇତ୍ୟାଦ୍ୟୁପଦେଶେଭ୍ୟଃ । ତସ୍ମାଦ୍ ଦୃଷ୍ଟାନ୍ତଦାର୍ଷ୍ଟାନ୍ତିକୟୋରବୈଷମ୍ୟାଦ୍ୟୁକ୍ତମେବୈତଦ ବିରୋଧଶ୍ଚନ୍ଦନ ବଦିତି ।

**(୨) ଭାଷାଂତର-** (କ) ଏଠାରେ କୁହାଯାଇଛି-ଚନ୍ଦନ ପରି ଅବିରୋଧ ଅଟେ ବୋଲି ଯାହା କୁହାଯାଇଛି, ତାହା ଅଯୁକ୍ତ ଅଟେ । କାରଣ-ଦୃଷ୍ଟାନ୍ତ ଓ ଦାର୍ଷ୍ଟାନ୍ତିକରେ ସମାନତା ନାହିଁ । ଆତ୍ମର ଦେହରେ ଏକଦେଶସ୍ଥ ସିଦ୍ଧ ହେଲାପରେ ଚନ୍ଦନଦୃଷ୍ଟାନ୍ତ ସମ୍ଭବପର ହୁଏ । ପରନ୍ତୁ ଚନ୍ଦନର ଅବସ୍ଥିତିବିଶେଷ ଗୋଟିଏ ଦେଶରେ ସ୍ଥିତି ଏବଂ ସଂପୂର୍ଣ୍ଣ ଦେହରେ ଆହ୍ଲାଦ ହିଁ ପ୍ରତ୍ୟକ୍ଷ ଅଟେ । ପୁଣି ଆତ୍ମାର ସମଗ୍ର ଦେହରେ ଉପଲବ୍ଧି ହୁଏ । କିନ୍ତୁ ଏକଦେଶବର୍ତ୍ତିତ୍ୱ ନୁହେଁ । ଯଦି କହ ଯେ- ସେ ଅନୁମେୟ ଅଟେ, ପରନ୍ତୁ ଏଠାରେ ଅନୁମାନ ହୁଏ ନାହିଁ । କାରଣ-ଆତ୍ମାର ସକଳଶରୀରରେ ପ୍ରାପ୍ତ ବେଦନା



ତ୍ୱଗିନ୍ଦ୍ରିୟପରି ସକଳଶରୀରବ୍ୟାପୀ ଆତ୍ମାର ଅଥବା ଆକାଶ ପରି ବ୍ୟାପକ ଆତ୍ମାର ହୁଏ । ଅଥବା ହରିଚନ୍ଦନ ବିନ୍ଦୁ ପରି ଏକଦେଶସ୍ଥ ଅଣୁ ଆତ୍ମାର ଅଟେ । ଏହିପରି ସଂଶୟ ହେବାରୁ ତାହାର ନିବୃତ୍ତି କରାଯାଇନାହିଁ ।

(ଖ) ପୂର୍ବପକ୍ଷ ଏହି ବିଷୟରେ କହନ୍ତି ଯେ- ଏହା ଦୋଷ ନୁହେଁ । କାରଣ- ଅଭ୍ୟୁପଗମ କରାଯାଇଛି । ଆତ୍ମାର ଚନ୍ଦନପରି ଦେହର ଏକଦେଶରେ ଅବସ୍ଥିତି ବିଶେଷତ୍ୱ ସ୍ୱୀକାର କରାଯାଇଛି । କିପରି ? କୁହାଯାଇଅଛି- ହୃଦି ହ୍ୟେଷ ଆତ୍ମା' (ଏହି ଆତ୍ମା ହୃଦୟରେ ଅଛି) 'ସ ବା' (ସେ ଏହି ଆତ୍ମା ହୃଦୟରେ ଅଛି), 'କତମ ଆତ୍ମେତି' (ଆତ୍ମା କିଏ) ଏହା ଯେଉଁ ପ୍ରାଣଗୁଡ଼ିକରେ ବୁଦ୍ଧିବୃତ୍ତିର ମଧ୍ୟରେ ରହିଥିବା ବିଜ୍ଞାନମୟ ଅଟେ, ହୃଦୟର ମଧ୍ୟ ଜ୍ୟୋତିଃସ୍ୱରୂପ ଅଟେ) ଇତ୍ୟାଦି ଉପଦେଶଦ୍ୱାରା ବେଦାନ୍ତବାକ୍ୟରେ ହୃଦୟରେ ଏହି ଆତ୍ମା ପଢ଼ାଯାଏ । ତେଣୁ ଦୃଷ୍ଟାନ୍ତ ଓ ଦାର୍ଷ୍ଟାନ୍ତିକରେ ବୈଷମ୍ୟ ନହେଲେ ଚନ୍ଦନପରି ଏହି ଅବିରୋଧ ହୁଏ ।

## गुणाद्वा लोकवत् ॥ २० ॥

## ୧- ଗୁଣାଦ୍ ବା ଲୋକବତ୍ ॥୨-୩-୨୫॥

ବା = ଅଥବା, ଲୋକବତ୍=ଯେପରି ସଂସାରରେ ଗୃହ ମଧ୍ୟରେ ଥିବା ଦୀପ କ୍ଷୁଦ୍ର ହେଲେ ମଧ୍ୟ ବି, ଗୁଣାତ୍=ତାହାର ପ୍ରଭାରୂପ ଗୁଣରେ ଗୃହବ୍ୟାପୀ ପ୍ରକାଶାଦି କାର୍ଯ୍ୟ ହୁଅନ୍ତି । ସେପରି ଆତ୍ମା ଅଣୁ ହେଲେ ମଧ୍ୟ ବି ଆତ୍ମନିଷ୍ଠଚୈତନ୍ୟ ଗୁଣକୁ ବ୍ୟାପକରୂପେ ସ୍ୱୀକାର କଲେ ବ୍ୟାପୀ ଗୁଣଠାରୁ ବ୍ୟାପୀକାର୍ଯ୍ୟ ଜାତ ହେବ ।

(୨) ମୂଳ-(କ) ଚୈତନ୍ୟଗୁଣବ୍ୟାପ୍ତେର୍ବାଽଣୋରପିସତୋ ଜୀବସ୍ୟ ସକଳ ଦେହବ୍ୟାପୀ କାର୍ଯ୍ୟଂ ନ ବିରୁଧ୍ୟତେ । ଯଥା ଲୋକେ ମଣି ପ୍ରଦୀପ ପ୍ରଭୃତୀନାମପବରକୈକଦେଶାବର୍ତ୍ତିନାମପି ପ୍ରଭାଽପବରକବ୍ୟାପିନୀ ସତୀ କୃତ୍ସ୍ନେଽପବରକେ କାର୍ଯ୍ୟଂ କରୋତି ତଦ୍ୱତ୍ । ସ୍ୟାତ୍ କଦାଚିଚ୍ଚନ୍ଦନସ୍ୟ ସାବୟବତ୍ୱାତ୍ ସୂକ୍ଷ୍ମାବୟବବିସର୍ପଣେନାପି ସକଳଦେହ ଆହ୍ଲାଦୟିତୃତ୍ୱଂ ନ ତ୍ୱଣୋର୍ଜୀବସ୍ୟାବୟବାଃ ସନ୍ତି ଯୈରୟ ସକଳଦେହଂ ବିପ୍ରସର୍ପେଦିତ୍ୟାଶଙ୍କ୍ୟ ଗୁଣାଦ୍ ବା ଲୋକବଦିତ୍ୟୁକ୍ତମ୍ ।

**(୨) ଭାଷାଂତର**-ଅଥବା ଚୈତନ୍ୟ ଗୁଣର ବ୍ୟାପ୍ତିରୁ ଜୀବର ଅଣୁ ହେଲେ ବି ସମସ୍ତ ଦେହବ୍ୟାପୀ କାର୍ଯ୍ୟ ବିରୁଦ୍ଧ ନୁହେଁ । ଯେପରି ସଂସାରରେ ଗୃହର ଗୋଟିସ୍ଥାନରେ ଥିବା ମଣି, ପ୍ରଦୀପ ପ୍ରଭୃତିର ଆଲୋକ ଗୃହବ୍ୟାପୀ ହୋଇ ସଂପୂର୍ଣ୍ଣଗୃହରେ ପ୍ରକାଶିତ

କରେ । ଏହି ପ୍ରକରଣରେ ସେପରି ଜାଣିବା ଉଚିତ୍ । ଚନ୍ଦନ ସାବୟବ ଅଟେ । ତେଣୁ ସୂକ୍ଷ୍ମାବୟବ ପଡ଼ିବାଦ୍ୱାରା ବେଳେବେଳେ ସମଗ୍ର ଶରୀରରେ ଆହ୍ଲାଦ କରାଯାଏ । ପରନ୍ତୁ ଅଣୁ ଜୀବର ଅବୟବ ନୁହେଁ । ଯେପରିକି ସେ ସକଳଦେହରେ ପ୍ରତିଫଳିତ ହୁଏ । ଏହି ପ୍ରକାର ଆଶଙ୍କା କରି 'ଗୁଣାଦ୍ ବା ଲୋକବତ୍ ବୋଲି କୁହାଯାଇଅଛି ।

(୧) ମୂଳ-(କ) କଥଂ ପୁନର୍ଗୁଣୋ ଗୁଣିବ୍ୟତିରେକେଣାନ୍ୟତ୍ର ବର୍ତ୍ତେତ । ନହି ପଟସ୍ୟ ଶୁକ୍ଳୋ ଗୁଣଃ ପଟବ୍ୟତିରେକେଣାନ୍ୟତ୍ର ବର୍ତ୍ତମାନୋ ଦୃଶ୍ୟତେ । ପ୍ରଦୀପପ୍ରଭାବବଦ୍ ଭବେଦିତି ଚେତ୍ । ନ । ତସ୍ୟା ଅପି ଦ୍ରବ୍ୟତ୍ୱାଭ୍ୟୁପଗମାତ୍ । ନିବିଡ଼ାବୟବଂ ହି ତେଜୋଦ୍ରବ୍ୟଂ ପ୍ରଦୀପଃ । ପ୍ରବିରଳାବୟବଂ ତୁ ତେଜୋଦ୍ରବ୍ୟମେବ ପ୍ରଭେତି । ଅତି ଉତ୍ତରଂ ପଠତି -

**(୧) ଭାଷଂତର-(କ)** ପରନ୍ତୁ ଗୁଣ ଗୁଣିକୁ ପରିତ୍ୟାଗ କରି ଅନ୍ୟସ୍ଥାନରେ କିପରି ରହିବ ? କାରଣ-ବସ୍ତ୍ରର ଶୁକ୍ଳରୂପ ପଟବ୍ୟତିତ ଅତ୍ୟତ୍ର ରହିବାର ଦେଖାଯାଏ ନାହିଁ । ଯଦି କହ ଯେ- ପ୍ରଦୀପପରି ହେବ, ତେବେ ତାହା ଠିକ୍ ନୁହେଁ । କାରଣ-ସେ ମଧ ଦ୍ରବ୍ୟରୂପେ ସ୍ୱୀକାର କରାଯାଇଅଛି । ଘନାବୟବ ତେଜଦ୍ରବ୍ୟ ହିଁ ପ୍ରଦୀପ ଅଟେ ଏବଂ ପ୍ରବିରଳ ଅବୟବ ତେଜୋଦ୍ରବ୍ୟ ହିଁ ପ୍ରଭା ଅଟେ । ଏହାର ଉତ୍ତରରେ ତେଣୁ କୁହାଯାଇଅଛି-

**व्यतिरेको गन्धवत् ॥ २६ ॥**

**(୨) ବ୍ୟତିରେକୋ ଗନ୍ଧବତ୍ ॥୨-୩-୨୬॥**

ଗନ୍ଧବତ୍-ଯେପରି ଗୁଣ ହୋଇ ମଧ ଗନ୍ଧର ଅଧାର ଦ୍ରବ୍ୟଠାରୁ ପୃଥକ୍ ରୂପେ ଉପଲବ୍ଧ ହୁଏ, ସେପରି ଆତ୍ମାର ଗୁଣ ଚୈତନ୍ୟର ଆତ୍ମାଠାରୁ, ବ୍ୟତିରେକଃ-ପୃଥକ୍ ରୂପେ ଅବସ୍ଥାନ କରେ ।

(୩) ମୂଳ-(କ) ଯଥା ଗୁଣସ୍ୟାପି ସତୋ ଗନ୍ଧସ୍ୟ ଗନ୍ଧବଦ୍ଦ୍ରବ୍ୟ ବ୍ୟତିରେକେଣ ବୃତ୍ତିର୍ଭବତି । ଅପ୍ରାପ୍ତେଷ୍ୱପି କୁସୁମାଦିଷ୍ୱ ଗନ୍ଧବସ୍ତୁ କୁସୁମଗନ୍ଧୋପଲବ୍ଧେଃ । ଏବମଣୋରପି ସତୋ ଜୀବସ୍ୟ ଚୈତନ୍ୟ ଗୁଣବ୍ୟତିରେକୋ ଭବିଷ୍ୟତି । ଅତଶ୍ଚାନୈକାନ୍ତିକମେତଦ୍‌ଗୁଣତ୍ୱାଦ୍ ରୂପାଦିବଦାଶ୍ରୟ ବିଶ୍ଳେଷାନୁପପତ୍ତିରିତି । ଗୁଣସ୍ୟୈବ ସତୋ ଗନ୍ଧସ୍ୟାଶ୍ରୟବିଶ୍ଳେଷଦର୍ଶନାତ୍ ।

(ଖ) ଗନ୍ଧସ୍ୟାପି ସହୈବାଶ୍ରୟେଣ ବିଶ୍ଳେଷ ଇତି ଚେତ୍ । ନ । ଯସ୍ମାନ୍ ମୂଳ ଦ୍ରବ୍ୟାଦ୍ ବିଶ୍ଳେଷସ୍ତସ୍ୟ କ୍ଷୟପ୍ରସଙ୍ଗାତ୍ । ଅକ୍ଷୀୟମାଣମପି ତତ୍ପୂର୍ବାବସ୍ଥାତୋ ଗମ୍ୟତେ । ଅନ୍ୟଥା ତତ୍ପୂର୍ବାବସ୍ଥୈର୍ଗୁରୁ ତ୍ୱାଦିଭିର୍ହୀୟେତ । ସ୍ୟାଦେତତ୍, ଗନ୍ଧାଶ୍ରୟାଣାଂ ବିଶ୍ଳିଷ୍ଟା ନାମବୟବାନାମଳ୍ପତ୍ୱାତ୍ ସନ୍ନପି ବିଶେଷୋ ନୋପଲକ୍ଷ୍ୟତେ । ସୂକ୍ଷ୍ମା ହି ଗନ୍ଧପରିମାଣବଃ



ସର୍ବତୋ ବିପ୍ରସୃପ୍ତା ଗନ୍ଧବୁଦ୍ଧିମୁତ୍ପାଦୟନ୍ତି ନାସିକାପୁଟମନୁପ୍ରବିଶନ୍ତ ଇତି ଚେତ୍ । ନ । ଅତୀନ୍ଦ୍ରିୟତ୍ୱାତ୍ ପରମାଣୁନାଂ ସ୍ଫୁଟ ଗନ୍ଧୋପଲବ୍ଧେଶ୍ଚ ନାଗକେସରାଦିଷୁ ।

(ଗ) ନ ଚ ଲୋକେ ପ୍ରତୀତିର୍ଗନ୍ଧବଦ୍ଦ୍ରବ୍ୟ ମାଘ୍ରାତମିତି । ଗନ୍ଧ ଏବାଘ୍ରାତ ଡୁ ଲୌକିକାଃ ପ୍ରତିୟନ୍ତି । ରୂପାଦିଷ୍ୱାଶ୍ରୟବ୍ୟତିରେକାନୁପଲବ୍ଧେଃ ଗନ୍ଧସ୍ୟାପ୍ୟଯୁକ୍ତ ଆଶ୍ରୟବ୍ୟତିରେକ ଇତି ଚେତ୍ । ନ । ପ୍ରତ୍ୟକ୍ଷତ୍ୱାଦନୁମାନା ପ୍ରବୃତ୍ତେଃ । ତସ୍ମାଦ୍ୟଦ୍ୟଥା ଲୋକେ ଦୃଷ୍ଟଂତେତ୍ତଥବାନୁମନ୍ତବ୍ୟଂ ନିରୂପକୈର୍ନାନ୍ୟଥା । ନହି ରସୋ ଗୁଣୋ ଜିହ୍ୱୟୋପଲଭ୍ୟତ ଇତ୍ୟତୋ ରୂପାଦୟୋଽପିଗୁଣା ଜିହ୍ୱୟେବୋପଲଭ୍ୟେରନ୍ନିତି ନିୟନ୍ତୁଂ ଶକ୍ୟତେ ।

**(୩) ଭାଷାଂତର**-(କ) ଯେପରି ଗୁଣ ହୋଇ ମଧ୍ୟ ଗନ୍ଧର ଗନ୍ଧବତ୍ ଦ୍ରବ୍ୟଠାରୁ ଅତିରିକ୍ତ ବୃତ୍ତି ହୁଏ, କାରଣ-ଗନ୍ଧଯୁକ୍ତ କୁସୁମାଦି ଅପ୍ରାପ୍ତ ହେବାପରେ ମଧ୍ୟ କୁସୁମଗନ୍ଧର ଉପଲବ୍ଧି ହୁଏ । ସେପରି ଜୀବ ଅଣୁ ହେଲେ ବି ଚୈତନ୍ୟ ଗୁଣର ବ୍ୟତିରେକ ହେବ । ତେଣୁ 'ଗୁଣହୀନରେ ରୂପାଦିପରି ଆଶ୍ରୟରେ ତାହାର ବିଶ୍ଳେଷ ଅନୁପପନ୍ନ ହୁଏ'- ଏହା ଏକ ବ୍ୟଭିଚରିତ । କାରଣ-ଗୁଣ ହୋଇ ଗନ୍ଧର ଆଶ୍ରୟରୁ ବିଶ୍ଳେଷ ଦେଖାଯାଏ ।

(ଖ) ଯଦି କହ ଯେ- ଗନ୍ଧ ତାହାର ଆଶ୍ରୟ ସହ ବିଶ୍ଳେଷ ହୁଏ । ତାହା କିନ୍ତୁ ଠିକ୍ ନୁହେଁ । କାରଣ-ଯାହା ପ୍ରଧାନଦ୍ରବ୍ୟରୁ ବିଶ୍ଳେଷ ହୁଏ, ତାହାର କ୍ଷୟପ୍ରସଙ୍ଗ ହେବ । ପରନ୍ତୁ ସେ ମୂଳଦ୍ରବ୍ୟ ପୂର୍ବାବସ୍ଥାରୁ ଅକ୍ଷୀଣ ହୋଇ ଜଣାଯାଏ । ନୋଚେତ୍ ସେ ପୂର୍ବାବସ୍ଥିତି ଗୁରୁତ୍ୱ ପ୍ରଭୃତିରୁ ପୃଥକ୍ ହେବ । ଏହା ସିଦ୍ଧି ହେଲାପରେ ପୃଥକ୍ ଭାବେ ଗନ୍ଧର ଆଶ୍ରୟ ସ୍ୱଳ୍ପ ହେବାରୁ ବିଶେଷ ହୋଇ ତାହା ଜଣାପଡେ ନାହିଁ । କାରଣ-ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୋଇଥିବା ସୂକ୍ଷ୍ମ ଗନ୍ଧପରମାଣୁ ନାସିକାପଟୁରେ ପ୍ରବେଶ କରି ଗନ୍ଧଜ୍ଞାନ ଉତ୍ପନ୍ନ କରନ୍ତି ବୋଲି ଯଦି ତୁମ୍ଭେ କହ, ତାହା ସମୀଚୀନ ନୁହେଁ । କାରଣ-ପରମାଣୁ ଅତୀନ୍ଦ୍ରିୟ ଅଟେ ଏବଂ ପୁଷ୍ପକେଶରରେ ଥିବା ସ୍ପଷ୍ଟଗନ୍ଧର ଉପଲବ୍ଧି ହୁଏ ।

(ଗ) ସଂସାରରେ 'ଗନ୍ଧବତ୍ ଦ୍ରବ୍ୟକୁ ମୁଁ ଆଘ୍ରାଣ କଲି' ଏହି ଜ୍ଞାନ ପ୍ରତୀତି ହୁଏ ନାହିଁ । ପ୍ରତ୍ୟୁତ ଗନ୍ଧକୁ ମୁଁ ଶୁଙ୍ଘିଲି' ଏହା ସଂସାରରେ ଅନୁଭବ କରାଯାଏ । ରୂପାଦିର ଆଶ୍ରୟ ବ୍ୟତିରିକ୍ତ ଦ୍ରବ୍ୟରେ ଗନ୍ଧାଦି ଉପଲବ୍ଧି ହୁଏ, ତେବେ ଏପରି ଗନ୍ଧର ଆଶ୍ରୟ ନ କରିବା ଅଯୁକ୍ତ ଅଟେ ବୋଲି ଯଦି କହ, ତାହା ମଧ୍ୟ ଠିକ୍ ନୁହେଁ । କାରଣ-ତାହା ପ୍ରତ୍ୟକ୍ଷ ହେଲେ ଅନୁମାନ ପ୍ରବୃତ୍ତ ହେବ ନାହିଁ । ତେଣୁ ଯାହା ଯେପରି ସଂସାରରେ ଦେଖାଯାଏ, ତାହା ତଦନୁସାରେ ନିରୂପକରେ ଅନୁମାନ କରିବା ଉଚିତ୍ । ଅନ୍ୟସ୍ଥାନରେ କିନ୍ତୁ ନୁହେଁ । ରସଗୁଣ ଜିହ୍ୱାରେ ଜଣାପଡେ, କିନ୍ତୁ ରୂପାଦିଗୁଣ ରସନେନ୍ଦ୍ରିୟରେ ଉପଲବ୍ଧି ହେବା ବିଷୟରେ କୌଣସି ନିୟମ ନାହିଁ ।

तथा च दर्शयति ॥ २७ ॥

ତଥା ଚ ଦର୍ଶୟତି ॥୨-୩-୨୭॥

ଚ-ଏବଂ 'ଆ ଲୋମେଭ୍ୟଃ, ଆ ନଖାଗ୍ରେଭ୍ୟଃ' ଇତ୍ୟାଦିଶ୍ରୁତି, ତଥା-ଆତ୍ମାର ଜ୍ଞାନରୁ ସଂପୂର୍ଣ୍ଣ ଶରୀରବ୍ୟାପିତ୍ୱ, ଦର୍ଶୟତି=ପ୍ରତିପାଦିତକରେ ।

(୨) ମୂଳ-ହଦୟାୟତନତ୍ୱମଣୁପରିମାଣତ୍ୱଂ ଚାତ୍ମନୋଽଭିଧାୟ ତସ୍ୟୈବ 'ଆ ଲୋମଭ୍ୟ ଆ ନଖାଗ୍ରେତ୍ ତ୍ୟଃ' (ଛା ୮-୮-୧) ଇତି ଚୈତନ୍ୟେନ ଗୁଣେନ ସମସ୍ତଶରୀରବ୍ୟାପିତ୍ୱଂ ଦର୍ଶୟତି ।

**(୨) ଭାଷାଂତର**-ଆତ୍ମାର ହୃଦୟରେ ସ୍ଥାନ ଓ ଅଣୁପରିମାଣ କହି ତାହାର 'ଆ ଲୋମେଭ୍ୟଃ' (ଆମ୍ଭେ ନିଜେ ଏହି ଆତ୍ମାକୁ ଲୋମପର୍ଯ୍ୟନ୍ତ ଓ ନଖପର୍ଯ୍ୟନ୍ତ ଯାହାକୁ ବୋଲି ତାହାକୁ ଦେଖେ) ଏହି ଶ୍ରୁତି ଚୈତନ୍ୟ ଗୁଣରେ ସମସ୍ତ ଶରୀର ବ୍ୟାପିତ୍ୱ ଦେଖାଏ ।

पृथगुपदेशात् ॥ २८ ॥

୧-ପୃଥଗୁପଦେଶାତ୍ ॥୨-୩-୨୮॥

'ପ୍ରଜ୍ଞୟା ଶରୀରଂ ସମାରୂହ୍ୟ' ଏହି ଶ୍ରୁତି ବଳରେ ଆତ୍ମା ଓ ଜ୍ଞାନର କର୍ତ୍ତୃକରଣ ରୂପରେ ପୃଥକ୍ ପୃଥକ୍, ଉପଦେଶାତ୍-ଉପଦେଶ ଦିଆଯାଇଛି । ତେଣୁ ଜୀବର ସମସ୍ତ ଶରୀର ଗୁଣଦ୍ୱାରା ବ୍ୟାପିତ୍ୱ ହୁଏ ।

(୨) ମୂଳ- 'ପ୍ରଜ୍ଞୟା ଶରୀରଂ ସମାରୁହ୍ୟ' (କୌଷୀ ୩-୬) ଇତି ଚାତ୍ମପ୍ରଜ୍ଞୟୋଃ କର୍ତ୍ତୃକରଣଭାବେନ ପୃଥଗୁପଦେଶାଚ୍ଚୈତନ୍ୟଗୁଣେନୈବାସ୍ୟ ଶଣୀରବ୍ୟାପିତା ଗମ୍ୟତେ । 'ତଦେଷାଂ ପ୍ରାଣାନାଂ ବିଜ୍ଞାନେନ ବିଜ୍ଞାନମାଦାୟ' (ବୃ ୨-୧-୧୭) ଇତି ଚ କର୍ତ୍ତୁଃ ଶାରୀରାତ୍ ପୃଥଗ୍‌ବିଜ୍ଞାନସ୍ୟୋପଦେଶ ଏତମେବାଭିପ୍ରାୟମୁପୋଦ୍ ବଳୟତି ତସ୍ମାଦଣୁରାତ୍ମେତି ।

**(୨) ଭାଷାଂତର**- 'ପ୍ରଜ୍ଞୟା ଶରୀରଂ' (ପ୍ରଜ୍ଞାଦ୍ୱାରା ଶରୀର ଉପରେ ସମ୍ୟଗ୍‌ରୂପରେ ଆରୂଢ଼ ହୋଇ ସୁଖ, ଦୁଃଖ ଅନୁଭବ କରେ) ଏହିପ୍ରକାର ଆତ୍ମା ପ୍ରଜ୍ଞା କର୍ତ୍ତୃକରଣ ଭାବରେ ପୃଥକ୍ ରୂପେ ବ୍ୟପଦିଷ୍ଟ ହୋଇ ତାହାର ଚୈତନ୍ୟଗୁଣଦ୍ୱାରା ଶରୀର ବ୍ୟାପିତା ଜଣାଯାଏ । 'ତଦେଷାଂ' (ସୁଷୁପ୍ତିରେ ଏହି ବାଗାଦି ପ୍ରାଣୀର ବିଷୟ ଗ୍ରହଣ କରିବା ପାଇଁ ସାମର୍ଥ୍ୟ ନିଜ ଚୈତନ୍ୟ ଗୁଣରେ ଗ୍ରହଣ କରେ) ଏହିପ୍ରକାର କର୍ତ୍ତା ଜୀବାତ୍ମାଠାରୁ ପୃଥକ୍ ହୋଇ ବିଜ୍ଞାନର ଉପଦେଶ ଦେଇ ଚୈତନ୍ୟଗୁଣ ବ୍ୟାପ୍ତିବିଷୟକ ଅଭିପ୍ରାୟକୁ ବଳବାନ୍ କରେ । ତେଣୁ ଆତ୍ମା ଅଣୁ ଅଟେ ।

(୧) ମୂଳ-ଏବଂ ପ୍ରାପ୍ତେ ବୟଂ ବ୍ରୂମଃ-

(୧) ଭାଷାଂତର- ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ-

**तद्गुणसारत्वात्तु तद्व्यपदेशः प्राज्ञवत् ॥ २९ ॥**

**ତଦ୍‌ଗୁଣସାରତ୍ୱାତ୍ତୁ ତଦ୍ ବ୍ୟପଦେଶଃ ପ୍ରାଜ୍ଞବତ୍ ॥୨-୩-୨୯॥**

ତୁ-ଶବ୍ଦ ପୂର୍ବପକ୍ଷ ବ୍ୟାବୃତ୍ତି କରେ । ତଦ୍‌ଗୁଣସାରତ୍ୱାତ୍-ବୁଦ୍ଧି ଓ ଆତ୍ମାର ତାଦାତ୍ମ୍ୟହେଲେ ଜୀବଠାରେ ବୁଦ୍ଧିର ଅଣୁତ୍ୱ, ଉତ୍କ୍ରମଣ, ଗମନ, ଆଗମନ, ସୁଖଦୁଃଖାଦିଗୁଣ ପ୍ରଧାନ ହୁଏ । ତଦ୍ୱାରା ସେଠାରେ, ତଦ୍‌ବ୍ୟପଦେଶଃ-ଅଣୁତ୍ୱ ବ୍ୟପଦେଶ ହୋଇଛି । ତାହା କିନ୍ତୁ ସ୍ୱାଭାବିକ ନୁହେଁ । ପ୍ରାଜ୍ଞବତ୍-ଯେପରି ପରମାତ୍ମାର ସଗୁଣୋପାସନାରେ ଦହରାଦି ଉପାଧିଗୁଡ଼ିକହେତୁ ସେଠାରେ ଅଣୁତ୍ୱାଦି ବ୍ୟବହାର ହୁଏ ।

(୨) ମୂଳ-(କ) ତୁଶବ୍ଦଃ ପକ୍ଷଂ ବ୍ୟାବର୍ତ୍ତୟତି । ନୈତଦସ୍ତ୍ୟଣୁରାତ୍ମେତି । ଉତ୍ପତ୍ତ୍ୟଶ୍ରବଣାଦ୍ଧି ପରସ୍ୟୈବ ତୁ ବ୍ରାହ୍ମଣଃ ପ୍ରବେଶଶ୍ରବଣାତ୍ତାଦାତ୍ମ୍ୟୋପଦେଶାଚ୍ଚ ପରମେବ ବ୍ରହ୍ମଜୀବ ଇତ୍ୟୁକ୍ତମ୍ ପରମେବ ଚେତ୍ ବ୍ରହ୍ମ ଜୀବସ୍ତସ୍ମାଦ୍ୟାବତ୍ ପରଂବ୍ରହ୍ମ ତାବାନେବ ଜୀବୋ ଭବିତୁମର୍ହତି । ପରସ୍ୟ ଚ ବ୍ରହ୍ମଣୋ ବିଭୂତ୍ୱମାମ୍ନାତମ୍ । ତସ୍ମାଦ୍‌ବିଭୁର୍ଜୀବଃ । ତଥାଚ 'ସ ବା ଏଷ ମହାନଜ ଆତ୍ମା ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ' (ବୃ ୪-୪-୨୨) ଇତ୍ୟେବଂଜାତୀୟକା ଜୀବବିଷୟା ବିଭୁତ୍ୱବାଦାଃ ଶ୍ରୌତାଃସ୍ମାର୍ତ୍ତାଶ୍ଚ ସମର୍ଥିତା ଭବନ୍ତି । ନଚାଣୋର୍ଜୀବସ୍ୟ ସକଳଶରୀରଗତା ବେଦନୋପପଦ୍ୟତେ ।

(ଖ) ତ୍ୱକ୍ ସମ୍ବନ୍ଧାତ୍ ସ୍ୟାଦିତି ଚେତ୍ । ନ । କଣ୍ଟକତୋଦନେଽପି ସକଳଶରୀର ଗତୈବ ବେଦନା ପ୍ରସଜ୍ୟେତ । ତ୍ୱକ୍‌କଣ୍ଟକୟୋର୍ହି ସଂଯୋଗଃ କୃତ୍ସ୍ନାୟାଂ ତ୍ୱଚି ବର୍ତ୍ତତେ ତ୍ୱକ୍‌ଚ କୃତ୍ସ୍ନ ଶରୀରବ୍ୟାପିନୀତି । ପାଦତଳ ଏବ ତୁ କଣ୍ଟକନୁନ୍ନୋ ବେଦନାଂ ପ୍ରତିଲଭତେ । ନଚାଣୋର୍ଗୁଣ ବ୍ୟାପ୍ତିରୁପପଦ୍ୟତେ, ଗୁଣସ୍ୟ ଗୁଣିଦେଶତ୍ୱାତ୍ । ଗୁଣତ୍ୱମେବ ହି ଗୁଣିନମନାଶ୍ରିତ୍ୟ ଗୁଣସ୍ୟ ହୀୟେତ । ପ୍ରଦୀପପଭାୟାଶ୍ଚ ଦ୍ରବ୍ୟାନ୍ତରତ୍ୱଂ ବ୍ୟାଖ୍ୟାତମ୍ ।

(ଗ) ଗନ୍ଧୋଽପି ଗୁଣତ୍ୱାଭ୍ୟୁପଗମାତ୍ ସାଶ୍ରୟ ଏବ ସଞ୍ଚରିତୁମର୍ହତି । ଅନ୍ୟଥା ଗୁଣତ୍ୱହାନିପ୍ରସଙ୍ଗାତ୍ । ତଥାଚୋକ୍ତଂ ଦ୍ୱୈପାୟନେନ-ଉପଲଭ୍ୟାପ୍‌ସୁ ଚେଦ୍‌ଗନ୍ଧଂ କେଚିଦ୍ ବ୍ରୂୟୁରନୈପୁଣାଃ । ପୃଥିବ୍ୟାମେବତଂ ବିଦ୍ୟାଦପୋ ବାୟୁଞ୍ଚ ସଂଶ୍ରିତମ୍' ଇତି । ଯଦି ଚ ଚୈତନ୍ୟଂ ଜୀବସ୍ୟ ସମସ୍ତଂ ଶରୀରଂ ବ୍ୟାପ୍ନୁୟାନ୍ନାଣୁର୍ଜୀବଃ ସ୍ୟାତ୍ । ଚୈତନ୍ୟମେବ ହ୍ୟସ୍ୟ ସ୍ୱରୂପମଗ୍ନେରିବୌଷନ୍ୟ ପ୍ରକାଶୌ । ନାତ୍ର ଗୁଣଗୁଣି ବିଭାଗୋ ବିଦ୍ୟତ୍ ଇତି ଶରୀରପରିମାଣତ୍ୱଂ ଚ ପ୍ରତ୍ୟାଖ୍ୟାତମ୍ । ପରିଶେଷାଦ୍ ବିଭୁର୍ଜୀବଃ ।

(ଘ) କଥଂ ତର୍ହ୍ୟଣୁତ୍ୱାଦିବ୍ୟପଦେଶ ଇତ୍ୟତ ଅହ-ତଦ୍ ଗୁଣ ସାରତ୍ୱାତ୍ତୁ ତଦ୍‌ବ୍ୟପଦେଶ ଇତି । ତସ୍ୟା ବୁଦ୍ଧେର୍ଗୁଣାସ୍ତଦ୍‌ଗୁଣା ଇଚ୍ଛା ଦ୍ୱେଷଃ ସୁଖଂଦୁଃଖମିତ୍ୟେବ-ମାଦୟସ୍ତଦ୍ ଗୁଣାଃ ସାରଃ ପ୍ରଧାନଂ ଯସ୍ୟାତ୍ମନଃ ସଂସାରିତ୍ୱେ ସମ୍ଭବତି, ସ ତଦ୍‌ଗୁଣସାରସ୍ତସ୍ୟ ଭାବସ୍ତଦ୍‌ଗୁଣସାରତ୍ୱମ୍ । ନହି ବୁଦ୍ଧେର୍ଗୁଣୈର୍ବିନା କେବଳସ୍ୟାତ୍ମନଃ ସଂସାରିତ୍ୱମସ୍ତି । ବୁଦ୍ଧ୍ୟୁପାଧିଧର୍ମାଧ୍ୟାସନିମିତ୍ତଂ ହି କର୍ତୃତ୍ୱଭୋକ୍ତୃତ୍ୱାଦିଲକ୍ଷଣଂ ସଂସାରିତ୍ୱମକର୍ତ୍ତୃ-ରଭୋକ୍ତୁଶ୍ଚାସଂସାରିଣୋ ନିତ୍ୟମୁକ୍ତସ୍ୟ ସତ ଆତ୍ମନଃ । ତସ୍ମାତ୍ତଦ୍ ଗୁଣସାରତ୍ୱାଦ୍ ବୁଦ୍ଧିପରିମାଣେନାସ୍ୟ ପରିମାଣବ୍ୟପଦେଶଃ । ତଦୁତ୍‌କ୍ରାନ୍ତ୍ୟାଦିଭିଶ୍ଚାସ୍ୟୋତ୍‌କ୍ରାନ୍ତ୍ୟା-ଦିବ୍ୟପଦେଶୋ ନ ସ୍ୱତଃ ।

(୨) ଭାଷାଂତର-(କ) ତୁଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି କରେ । ଆତ୍ମା ଅଣୁ ଅଟେ । ଏହା ଠିକ୍ ନୁହେଁ । କାରଣ-ଆତ୍ମାର ଉତ୍ପତ୍ତିବିଷୟରେ ଶ୍ରୁତିବାକ୍ୟ ପ୍ରମାଣ ନ ଥିଲେ, ପରଂବ୍ରହ୍ମର ପ୍ରବେଶ ବିଷୟକ ଶ୍ରୁତି ବାକ୍ୟ ଓ ତାଦାତ୍ମ୍ୟ ଉପଦେଶ ଦ୍ୱାରା ପରବ୍ରହ୍ମ ଜୀବ ଅଟେ ବୋଲି କୁହାଯାଇଅଛି । ଯଦି ପରବ୍ରହ୍ମ ଜୀବ ଅଟେ, ତଦ୍ୱାରା ଯେତେବଡ଼ ପରବ୍ରହ୍ମ, ସେତେପରିମାଣର ଜୀବ ହୁଏ । ପରବ୍ରହ୍ମକୁ ଶ୍ରୁତିବାକ୍ୟରେ ବିଭୁ ବୋଲି କୁହାଯାଇଛି । ତଦ୍ୱାରା ଜୀବ ବୁଭୁ ହୁଏ । ସେହିପରି 'ସ ବା ଏଷଃ' (ସେ ଏହି ମହାନ୍ ନିଜ ଆତ୍ମା ଅଟେ । ଯାହାକୁ ଏହି ପ୍ରାଣରେ ବିଜ୍ଞାନମୟ) ଏହି ପ୍ରକାର ଜୀବବିଷୟକ ଶ୍ରୌତ ଓ ସ୍ମାର୍ତ୍ତ ବିଭୁତ୍ୱବାଦକୁ ସମର୍ଥନ କରନ୍ତି। ଅଣୁ ଜୀବରେ ସଂପୂର୍ଣ୍ଣ ଶରୀରଗତ ବେଦନା ଉପପନ୍ନ ହୁଏ ନାହିଁ ।

(ଖ) ତ୍ୱକ୍‌ସମ୍ବନ୍ଧରୁ ହୁଏ ବୋଲି ଯଦି କହ, ଏହା ଠିକ୍ ନୁହେଁ । କାରଣ- ତ୍ୱକ୍‌ରେ କଣ୍ଟା ଫୋଡ଼ିହେଲେ ସମଗ୍ର ଶରୀରରେ ବେଦନା ପ୍ରସକ୍ତ ହେବ । କାରଣ-ତ୍ୱକ୍ ଓ କଣ୍ଟାର ସଂଯୋଗ ସଂପୂର୍ଣ୍ଣ ତ୍ୱଚାରେ ରହେ ଏବଂ ତ୍ୱକ୍ ସମସ୍ତ ଶରୀର ବ୍ୟାପୀ ଥାଏ । ପରନ୍ତୁ କଣ୍ଟା କୁଦିଥିବା ଲୋକର ପାଦକୁ ବେଦନା ଉପଲବ୍ଧ ହୁଏ । ଅଣୁଗୁଣରବ୍ୟାପ୍ତି ଉପପନ୍ନ ହୁଏ ନାହିଁ । କାରଣ-ଗୁଣର ଗୁଣୀ ପ୍ରଦେଶ ଅଟେ । ଯଦିଗୁଣ ଗୁଣୀର ଅନାଶ୍ରିତ ହୋଇ ରହେ, ତେବେ ଗୁଣୀର ଗୁଣତ୍ୱ ରହେ ନାହିଁ । ପ୍ରଭା କିନ୍ତୁ ଅନ୍ୟ ଦ୍ରବ୍ୟ ଅଟେ, - ଏହି ବିଷୟ ବ୍ୟାଖ୍ୟାନ କରାଯାଇଅଛି ।

(ଗ) ଗନ୍ଧ ମଧ୍ୟ ଗୁଣସ୍ୱୀକାର କରିବାରେ ଆଶ୍ରୟ ସହିତ ସଂଚର ଯୋଗ୍ୟ ହୁଏ । ନୋଚେତ୍ ଗୁଣତ୍ୱର ହାନି ପ୍ରସକ୍ତ ହେବ । ଏହି ପ୍ରକାର ଭଗବାନ ଦ୍ୱୈପାୟନ କରିଛନ୍ତି 'ଉପଲମ୍ଭାପ୍ସୁ' (ଜଳରେ ଗନ୍ଧ ଉପଲବ୍ଧ ହୋଇ କୌଣସି ଅନିପୁଣ ପୁରୁଷ ସେଠାରେ ଗନ୍ଧ ବୋଲି କହନ୍ତି । ପରନ୍ତୁ ଜଳ ଓ ବାୟୁରେ ରହି ମଧ୍ୟ ଗନ୍ଧ ପୃଥିବୀର ବୋଲି ଜାଣିବା ଉଚିତ୍) । ଯଦି ଜୀବର ଚୈତନ୍ୟ ସମଗ୍ର ଶରୀରକୁ ବ୍ୟାପ୍ତ କରିବ, ତେବେ ଜୀବ ଅଣୁହେବ ନାହିଁ । କାରଣ- ଯେପରି ଔଷ୍ଣ୍ୟ ଓ ପ୍ରକାଶ ଅଗ୍ନିର ସ୍ୱରୂପ ଅଟେ, ସେପରି



ଚୈତନ୍ୟ ଜୀବର ସ୍ୱରୂପ ଅଟେ । ଏଠାରେ ଗୁଣଗୁଣିବିଭାଗ ନାହିଁ । ଜୀବର ଶରୀର ପରିମାଣ କିନ୍ତୁ ପୂର୍ବରୁ ଖଣ୍ଡନ କରାଯାଇଛି । ପରିଶେଷରେ ଜୀବ ବିଭୁ ଅଟେ ।

(ଘ) କିନ୍ତୁ ସେଠାରେ ଅଣୁତ୍ୱାଦି ବ୍ୟପଦେଶ କିପରି ହୁଏ । ଏହି ବିଷୟରେ କୁହାଯାଇଅଛି- 'ତଦ୍‌ଗୁଣ ସାରତ୍ୱାତ୍ ତଦ୍‌ବ୍ୟପଦେଶଃ' । ତାହାର ବୁଦ୍ଧିଗୁଣତଦ୍ ଗୁଣ ଅର୍ଥାତ୍ ଇଛା, ଦ୍ୱେଷ, ସୁଖସୁଖାଦି, ତଦ୍‌ଗୁଣ ସାର ଯେଉଁ ଆତ୍ମାରେ ସଂସାରିତ୍ୱରେ ସମ୍ଭବ ହୁଏ, ସେ ତଦ୍‌ଗୁଣସାର, ତାହାର ଭାବ ତଦ୍‌ଗୁଣସାରତ୍ୱ ଅଟେ । କାରଣ- ବୁଦ୍ଧିର ଗୁଣବ୍ୟତିତ କେବଳ ଆତ୍ମାରେ ସଂସାରିତ୍ୱ ନାହିଁ । ଅକର୍ତ୍ତା, ଅଭୋକ୍ତା, ଅସଂସାରୀ, ନିତ୍ୟ ମୁକ୍ତ ହୋଇ ଆତ୍ମାର କର୍ତ୍ତୃତ୍ୱ, କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦିରୂପ ସଂସାରିତ୍ୱବୁଦ୍ଧି ଉପାଧି ଧର୍ମର ଅଧ୍ୟାସର କାରଣ ହୁଏ । ତେଣୁ ତଦ୍‌ଗୁଣସାରତ୍ୱ ହେଲେ ବୁଦ୍ଧିର ପରିମାଣରୁ ତାହାର ପରିମାଣବ୍ୟପଦେଶ ହୁଏ ଏବଂ ବୁଦ୍ଧିର ଉତ୍କ୍ରାନ୍ତି ଦ୍ୱାରା ଜୀବର ଉତ୍କ୍ରାନ୍ତି ପ୍ରଭୃତି ବ୍ୟପଦେଶ ହୁଏ । ତାହାର ପିରମାଣ ଓ ଉତ୍କ୍ରମଣ ପ୍ରଭୃତି ସ୍ୱାଭାବିକ ନୁହେଁ ।

(୩) ମୂଳ-(କ)- ତଥା ଚ - 'ବାଲାଗ୍ରଶତଭାଗସ୍ୟ ଶତଧା କଳ୍ପିତସ୍ୟ ଚ । ଭାଗୋ ଜୀବଃ ସ ବିଜ୍ଞେୟଃସ ଚାନନ୍ତ୍ୟାୟ କଳ୍ପତେ' (ଶ୍ୱେ ୫-୯) ଇତ୍ୟଣୁତ୍ୱଂ ଜୀବସ୍ୟୋକ୍ତ୍ୱା ତସ୍ୟୈବ ପୁନରାନନ୍ତ୍ୟମାହ । ତଚ୍ଚୈବମେବ ସମଞ୍ଜସଂ ସ୍ୟାଦ୍ୟଦ୍ୟୌପଚାରିକମଣୁତ୍ୱଂ ଜୀବସ୍ୟ ଭବେତ୍ ପାରମାର୍ଥିକଂ ଚାନନ୍ତ୍ୟମ୍ । ନହ୍ୟୁଭୟଂ ମୁଖ୍ୟମବକଳ୍ପେତ, ନଚାନନ୍ତ୍ୟମୌପଚାରିକମିତି ଶକ୍ୟଂ ବିଜ୍ଞାତୁମ୍, ସର୍ବୋପନିଷତ୍ସୁ ବ୍ରହ୍ମାତ୍ମଭାବସ୍ୟ ପ୍ରତିପିପାଦୟିଷିତତ୍ୱାତ୍ । ତଥେତରସ୍ମିନ୍ନପ୍ୟୁନ୍ମାନେ 'ବୁଦ୍ଧେର୍ଗୁଣେନାତ୍ମଗୁଣେନ ଚୈ ବ ଆରାଗ୍ରମାତ୍ରୋ ହ୍ୟବରୋଽପି ଦୃଷ୍ଟଃ, (ଶ୍ୱେ ୬-୮) ଇତି ଚ ବୁଦ୍ଧିଗୁଣ ସମ୍ବନ୍ଧେନୈବାରାଗ୍ରମାତ୍ରାଂ ଶାସ୍ତି ନ ସ୍ୱେନୈବାତ୍ମନା' ।

(ଖ) 'ଏଷୋଽଣୁରାତ୍ମା ଚେତସା ବେଦିତବ୍ୟଃ' (ମୁଣ୍ଡ ୩-୧-୯) ଇତ୍ୟତ୍ରାପି ନ ଜୀବସ୍ୟାଣୁ ପରିମାଣତ୍ୱଂ ଶିଷ୍ୟତେ, ପରସ୍ୟୈବାତ୍ମନଶ୍ଚକ୍ଷୁରାଦ୍ୟନବଗ୍ରାହ୍ୟତ୍ୱେନ ଜ୍ଞାନପ୍ରସାଦଗମ୍ୟତ୍ୱେନ ଚ ପ୍ରକୃତତ୍ୱାତ୍ । ଜୀବସ୍ୟାପି ଚ ମୁଖ୍ୟାଣୁ ପରିମାଣତ୍ୱାନୁପପତ୍ତେଃ । ତସ୍ମାଦ୍ ଦୁର୍ଜ୍ଞାନତ୍ୱାଭିପ୍ରାୟମିଦମଣୁତ୍ୱ ବଚନମୁପାଧ୍ୟଭିପ୍ରାୟଂ ବା ଦ୍ରଷ୍ଟବ୍ୟମ୍ । ତଥା 'ପ୍ରଜ୍ଞୟା ଶରୀରଂ ସମାରୁହ୍ୟ' (କୌଷୀ ୩-୬) ଇତ୍ୟେବଂଜାତୀୟକେଷ୍ୱପି ଭେଦୋପଦେଶେଷୁବୁଦ୍ଧ୍ୟୈବୋପାଧିଭୂତୟା ଜୀବଃ ଶରୀରଂ ସମାରୁହ୍ୟେତ୍ୟେବଂ ଯୋଜୟିତବ୍ୟମ୍ ।

(ଗ) ବ୍ୟପଦେଶମାତ୍ରଂ ବା, ଶିଳାପୁତ୍ରକସ୍ୟ ଶରୀରମିତ୍ୟାଦିବତ୍ । ନହ୍ୟତ୍ର ଗୁଣଗୁଣିବିଭାଗୋଽପି ବିଦ୍ୟତ ଇତ୍ୟୁକ୍ତମ୍ । ହୃଦୟାୟତନତ୍ୱବଚନମପି ବୁଦ୍ଧେରେବ ତଦାୟତନତ୍ୱାତ୍ । ତଥୋତ୍ କ୍ରାନ୍ତ୍ୟାଦୀନାମ ପ୍ୟୁପାଧ୍ୟାୟତ୍ତାତାଂ ଦର୍ଶୟତି- 'କସ୍ମିନ୍ନହମୁତ୍ କ୍ରାନ୍ତ ଉତ୍କ୍ରାନ୍ତୋ ଭବିଷ୍ୟାମି କସ୍ମିନ୍ ବା ପ୍ରତିଷ୍ଠିତେ ପ୍ରତିଷ୍ଠାସ୍ୟାମୀତି' (ପ୍ରଶ୍ନ ୬-୩), 'ସ

ପ୍ରାଣମସୃଜତ' (ପ୍ର ୬-୪) ଇତି । ଉତ୍ କ୍ରାନ୍ତ୍ୟଭାବେ ହି ଗତ୍ୟାଗତ୍ୟୋରପ୍ୟଭାବୋ ବିଜ୍ଞାୟତେ । ନହ୍ୟନପସୃପ୍ତସ୍ୟ ଦେହାଦ୍ ଗତ୍ୟାଗତୀ ସ୍ୟାତାମ୍ ।

(ଘ) ଏବମୁପାଧି ଗୁଣସାରତ୍ୱାଜ୍ଜୀବସ୍ୟାଣୁତ୍ୱାଦିବ୍ୟପଦେଶଃ ପ୍ରାଜ୍ଞବତ୍ । ଯଥା ପ୍ରାଜ୍ଞସ୍ୟ ପରମାତ୍ମନଃ ସଗୁଣେଷୂ ପାସନେଷୂପାଧିଗୁଣସାରତ୍ୱାଦଣୀୟସ୍ତ୍ୱାଦିବ୍ୟପଦେଶଃ- 'ଅଣୀୟାନ୍ ବ୍ରୀହିର୍ବା ଯବାଦ୍‌ବା, (ଛା ୩-୧-୧୪-୧) 'ମନୋମୟଃ ପ୍ରାଣଶରୀରଃ ସର୍ବଗନ୍ଧଃ ସର୍ବରସଃ ସତ୍ୟକାମଃ ସତ୍ୟସଙ୍କଳ୍ପଃ' (ଛା ୩-୧୪-୨) ଇତ୍ୟେବଂ ପ୍ରକାରସ୍ତଦ୍‌ବତ୍ । ସ୍ୟାଦେତଦ୍ୟଦି ବୁଦ୍ଧିଗୁଣସାରତ୍ୱାଦାତ୍ମନଃ ସଂସାରିତ୍ୱଂ କଲ୍ପ୍ୟେତ, ତତୋ ବୁଦ୍ଧ୍ୟାତ୍ମନୋର୍ଭିନ୍ନୟୋଃ ସଂଯୋଗାବସାନମବଶ୍ୟଂଭାବୀତ୍ୟତୋ ବୁଦ୍ଧିବିୟୋଗେ ସତ୍ୟାତ୍ମନୋ ବିଭକ୍ତସ୍ୟାନାଲକ୍ଷତ୍ୱାଦସତ୍ୱମସଂସାରିତ୍ୱଂ ବା ପ୍ରସଜ୍ୟେତେତି ।

**(୩) ଭାଷାଂତର-** (କ) ସେହି ପ୍ରକାର 'ବାଳାଗ୍ରଶତଭାଗସ୍ୟ' (ଶହେ ଭାଗରେ ବିଭକ୍ତ ହୋଇଥିବା କେଶର ଅଗ୍ରଭାଗ ଶତଭାଗରେ ବିଭକ୍ତ କରାଯାଏ । ସେତିକି ପରିମାଣବିଶିଷ୍ଟ ଜୀବ ବୋଲି ଜାଣିବା ଉଚିତ୍ । କିନ୍ତୁ ତାହା ସ୍ୱତଃଭାବରେ ଅନନ୍ତ ପାଇଁ ଉଦ୍ଦିଷ୍ଟ) ଏହିପରି ଜୀବକୁ ଅଣୁ ରୂପେ କହି ପୁଣି ତାହାକୁ ଅନନ୍ତ ବୋଲି ଶ୍ରୁତି କହେ । ଯେତେବେଳେ ଜୀବଠାରେ ଅଣୁତ୍ୱ ଗୌଣ ହୁଏ, ଏବଂ ଆନନ୍ତ୍ୟ ପାରମାର୍ଥିକ ହୁଏ, ସେତେବେଳେ ଏହା ସଙ୍ଗତ ହୁଏ । କିନ୍ତୁ ଦୁଇଟିଯାକ ମୁଖ୍ୟ ହୁଅନ୍ତି ନାହିଁ ଏବଂ ଆନନ୍ତ୍ୟ ଗୌଣ ଅଟେ ବୋଲି ଜାଣିବାକୁ ସମର୍ଥ ନାହିଁ । ସମସ୍ତ ଉପନିଷଦରେ ବ୍ରହ୍ମାତ୍ମଭାବ ପ୍ରତିପାଦନ କରିବା ଅଭିଳଷିତ ଅଟେ । ସେହିପରି 'ବୁଦ୍ଧେର୍ଗୁଣେନ' (ବୁଦ୍ଧି ଗୁଣନିମିତ୍ତକ ଆତ୍ମାରେ ଅଧ୍ୟସ୍ତ ଗୁଣରୁ (ଅଧ୍ୟସ୍ତଆତ୍ମଗୁଣ) ଜୀବ ଅରର ଅଗ୍ରଭାଗପରି ଆକାର ଦେଖାଯାଏ) ଏହିପରି ଅନ୍ୟ ଉନ୍ମାନରେ ବୁଦ୍ଧି ଗୁଣର ସମ୍ବନ୍ଧରୁ ଅରାଗ୍ରପରିମାଣକୁ ଉପଦେଶ କରେ । କିନ୍ତୁ ନିଜ ସ୍ୱରୂପକୁ ନୁହେଁ ।

(ଖ) 'ଏଷୋଽଣୁରାତ୍ମା' (ଏହି ଆତ୍ମା ଅଣୁ ଅଟେ, ବିଶୁଦ୍ଧଜ୍ଞାନ ଦ୍ୱାରା ଜଣାଯାଏ) ଏଠାରେ ଜୀବର ଅଣୁ ପରିମାଣ ଉପଦେଶ ନୁହେଁ, କାରଣ-ପରମାତ୍ମା ଚକ୍ଷୁ ପ୍ରଭୃତି ଦ୍ୱାରା ଅଗ୍ରାହ୍ୟ ଓ ଜ୍ଞାନପ୍ରସାଦଗମ୍ୟ ହେଲେ ପ୍ରକୃତ ହୁଏ । ଜୀବର ଅଣୁ ପରିମାଣ ମୁଖ୍ୟ ହୁଏ ନାହିଁ । ଜୀବରେ ଅଣୁତ୍ୱ ବଚନ ଦୁର୍ବିଜ୍ଞେୟତ୍ୱ ଅଭିପ୍ରାୟରୁ ଅଥବା ଉପାଧିର ଅଭିପ୍ରାୟରୁ ଜାଣିବା କଥା । ଏହିପରି 'ପ୍ରଜ୍ଞୟା' ପ୍ରଜ୍ଞାଦ୍ୱାରା ଶରୀର ଉପରେ ସମାରୂଢ ହୋଇ ସୁଖ ଦୁଃଖକୁ ଅନୁଭବ କରେ) ଏହିପ୍ରକାର ଭେଦୋପଦେଶରେ ଉପାଧିରୂପବୁଦ୍ଧିରୁ ଜୀବ ଶରୀର ଉପରେ ସମାରୋହଣ କରେ ବୋଲି ସ୍ୱୀକୃତ ।

(ଗ) ଅଥବା 'ଶିଳାପୁତ୍ରର ଶରୀର' ଇତ୍ୟାଦିପରି ଏହା ବ୍ୟପଦେଶ ହୁଏ । ଏଠାରେ ଗୁଣଗୁଣି ବିଭାଗ ନାହିଁ ବୋଲି କୁହାଯାଇଛି । 'ଜୀବର ସ୍ଥାନ ହୃଦୟ' ଏହି କଥା ବୁଦ୍ଧିର ଅଭିପ୍ରାୟରୁ ହୁଏ । କାରଣ-ବୁଦ୍ଧିର ସ୍ଥାନ ହୃଦୟ ଅଟେ । ଏହିପରି 'କସ୍ମିନ୍ନୁମ୍' (କାହାକୁ



ଉତ୍କ୍ରାନ୍ତ ହେଲାପରେ ମୁଁ ଉତ୍କ୍ରାନ୍ତ ହେବି ଏବଂ କିଛି ପ୍ରତିଷ୍ଠିତ ହେଲାପରେ ମୁଁ ପ୍ରତିଷ୍ଠିତ ହେବି), 'ସପ୍ରାଣମ୍' (ସେ ପ୍ରାଣ ଉତ୍ପନ୍ନ କଲା) ଏହିପ୍ରକାର ଉତ୍କ୍ରାନ୍ତି ପ୍ରଭୃତି ଉପାଧିର ଅଧୀନ ବୋଲି ଶ୍ରୁତି କହେ । ଉତ୍କ୍ରାନ୍ତିର ଅଭାବରେ ଗତି ଓ ଆଗତିର ଅଭାବ ଜଣାଯାଏ । ଦେହରୁ ନ ବାହାରି ଗତି ଓ ଅଗତି ହୁଏ ନାହିଁ ।

(ଘ) ଏହିପ୍ରକାର ଉପାଧି ଗୁଣର ପ୍ରଧାନ ଦ୍ୱାରା ପ୍ରାଜ୍ଞପରି ଜୀବରେ ଅଣୁତ୍ୱାଦି ବ୍ୟପଦେଶ ହୁଏ । ଯେପରି 'ଅଣୀୟାନ୍ ବ୍ରୀହିବା' (ହୃଦୟ କମଳ ଭିତରେ ଥିବା ଏହି ମୋର ଆତ୍ମା ଧାନଠାରୁ ଓ ଯବଠାରୁ ମଧ୍ୟ ସୂକ୍ଷ୍ମ ଅଟେ) 'ମନୋମୟଃ' (ସେହି ବ୍ରହ୍ମ ମନୋମୟ, ପ୍ରାଣଶରୀର, ସର୍ବଗନ୍ଧ, ସର୍ବରସ, ସତ୍ୟକାମ ଓ ସତ୍ୟସଂକଳ୍ପ ଅଟେ) । ଏହିପ୍ରକାର ସଗୁଣ ଉପାସନାରେ ଉପାଧିର ଗୁଣ ପ୍ରଧାନତାରୁ ପରମାତ୍ମାଠାରେ ଅଣୁତ୍ୱାଦିର ବ୍ୟପଦେଶ ହୁଏ । ସେପରି ଏଠାରେ ଜାଣିବା ଉଚିତ୍ ।

(ଙ) ଯଦି ଏହା ହୁଏ, ବୁଦ୍ଧିର ଗୁଣ ପ୍ରାଧାନ୍ୟରୁ ଆତ୍ମା ଠାରେ ସଂସାରିତ୍ୱ କଳ୍ପନା କର । ତେବେ ପରସ୍ପର ଭିନ୍ନ ବୁଦ୍ଧି ଓ ଆତ୍ମାସଂଯୋଗର ଅବସାନ ଅବଶ୍ୟଂଭାବୀ ହୁଏ । ତେଣୁ ବୁଦ୍ଧିର ବିୟୋଗ ହେଲେ ବିଭକ୍ତ ଆତ୍ମାର ଅନାଲକ୍ଷ୍ୟ ହୋଇ ତାହାର ଅସତ୍ୱ ଅଥବା ଅସଂସାରିତ୍ୱ ପ୍ରସକ୍ତ ହେବ କି ? ତେଣୁ ଏହାର ଉତ୍ତରରେ କୁହାଯାଇଛି-

(୧) ମୂଳ- ଅତ ଉତ୍ତରଂ ପଠତି-

**(୧) ଭାଷାଂତର-ଏହାର ଉତ୍ତର କୁହାଯାଇଛି-**

## यावदात्मभावित्वाच्च न दाषस्तद्दर्शनात् ॥ २० ॥

## ଯାବଦାତ୍ମଭାବିତ୍ୱାଚ୍ଚ ନ ଦୋଷସ୍ତଦ୍ଦର୍ଶନାତ୍ ॥ ୨-୩-୩୦॥

ବୁଦ୍ଧିର ସଂଯୋଗ, ଯାବଦାତ୍ମଭାବିତ୍ୱାତ୍ - ଯେପର୍ଯ୍ୟନ୍ତ ଆତ୍ମଜ୍ଞାନ ଦ୍ୱାରା ସଂସାରର ନିବୃତ୍ତି ନ ହୋଇ ସେହିପରି ରହେ, ନ ଦୋଷଃ=ତେଣୁ ତାହା ଦୋଷ ନୁହେଁ । କାରଣ, ତଦ୍ଦର୍ଶନାତ୍=ଦେହର ବିୟୋଗ ହେଲେ ବୁଦ୍ଧିର ସଂଯୋଗ 'ସମାନ ସନ୍ନୁଭୌ ଲୋକାବନୁସଞ୍ଚରତି' ଇତ୍ୟାଦି ଶ୍ରୁତିରେ ଦେଖାଯାଏ ।

(୨) ମୂଳ-(କ) ନେୟମନନ୍ତର ନିର୍ଦ୍ଦିଷ୍ଟ ଦୋଷପ୍ରାପ୍ତିରଶଙ୍କନୀୟା । କସ୍ମାତ୍ । ଯାବଦାତ୍ମଭାବିତ୍ୱାଦ୍ ବୁଦ୍ଧିସଂଯୋଗସ୍ୟ । ଯାବଦୟମାତ୍ମା ସଂସାରୀ ଭବତି, ଯାବଦସ୍ୟ ସମ୍ୟଗ୍ଦର୍ଶନେନ ସଂସାରିତ୍ୱଂ ନ ନିବର୍ତ୍ତତେ, ତାବଦସ୍ୟ ବୁଦ୍ଧ୍ୟା ସଂଯୋଗା ନଶାମ୍ୟତି । ଯାବଦେବ ଚାୟଂ ବୁଦ୍ଧ୍ୟୁପାଧିସମ୍ବନ୍ଧସ୍ତାବଜ୍ଜୀବସ୍ୟ ଜୀବତ୍ୱଂ ସଂସାରିତ୍ୱଂ ଚ । ପରମାର୍ଥତସ୍ତୁ ନ ଜୀବୋ ନାମ ବୁଦ୍ଧ୍ୟୁପାଧି ସମ୍ବନ୍ଧ ପରିକଳ୍ପିତସ୍ୱରୂପ ବ୍ୟତିରେକେଣାସ୍ତି । ନହି ନିତ୍ୟମୁକ୍ତସ୍ୱରୂପାତ୍ ସର୍ବଜ୍ଞାଦୀଶ୍ୱରା ଦନ୍ୟଶ୍ଚେତନୋ ଧାତୁ ଦ୍ୱିତୀୟୋ ବେଦାନ୍ତାର୍ଥ ନିରୂପଣାୟାମୁପଲଭ୍ୟତେ ।

(ଖ) 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା ଶ୍ରୋତା ମନ୍ତା ବିଜ୍ଞାତା' (ବୃ ୩-୭-୨୩), 'ନାନ୍ୟଦତୋଽସ୍ତି ଦ୍ରଷ୍ଟୃ ଶ୍ରୋତୃ ମନ୍ତୃ ବିଜ୍ଞାତୃ '(ଛା-୩-୮-୭)' ତତ୍ତ୍ୱମସି (ଛା ୬-୧-୬)

'ଅହଂ ବ୍ରହ୍ମାସ୍ମି' (ବୃ ୧-୪-୭) ଇତ୍ୟାଦି ଶ୍ରୁତିଶତେଭ୍ୟଃ । କଥଂ ପୁରେବଗମ୍ୟତେ ଯାବଦାତ୍ମଭାବୀ ବୁଦ୍ଧି ସଂଯୋଗ ଇତି ।

(ଗ) ତଦ୍ଦର୍ଶନାଦିତ୍ୟାହ । ତଥାହି ଶାସ୍ତ୍ରଂ ଦର୍ଶୟତି- 'ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ ହୃଦ୍ୟନ୍ତଃ ଜ୍ୟୋତିଃ ପୁରୁଷଃ ସମାନଃ ସନ୍ନୁଭୌ ଲୋକାବନୁ ସଞ୍ଚରତି ଧ୍ୟାୟତୀବ ଲେଲାୟତୀବ' (ବୃ ୪-୩-୪) ଇତ୍ୟାଦି । ତତ୍ର ବିଜ୍ଞାନମୟ ଇତି ବୁଦ୍ଧିମୟ ଇତ୍ୟେତଦୁକ୍ତଂ ଭବତି । ପ୍ରଦେଶାନ୍ତରେ 'ବିଜ୍ଞାନମୟୋ ମନୋମୟଃ ପ୍ରାଣମୟଶ୍ଚକ୍ଷୁର୍ମୟଃ ଶ୍ରୋତ୍ରମୟଃ ଇତି ବିଜ୍ଞାନମୟସ୍ୟ ମନ ଆଦିଭିଃ ସହ ପାଠାତ୍ । ବୁଦ୍ଧିମୟତ୍ୱଂ ଚ ତଦ୍‌ଗୁଣସାରତ୍ୱମେବାଭିପ୍ରେୟତେ । ଯଥା ଲୋକେ ସ୍ତ୍ରୀମୟୀ ଦେବଦତ୍ତ ଇତି ସ୍ତ୍ରୀ ଭୋଗାଦି ପ୍ରଧାନୋଽଭିଧୀୟତେ । ତଦ୍‌ବତ୍ ।

(ଘ) 'ସ ସମାନଃ ସନ୍ନୁଭୌ ଲୋକାବନୁସଞ୍ଚରତି' ଇତି ଚ ଲୋକାନ୍ତରଗମନେଽପ୍ୟ ବିୟୋଗଂ ବୁଦ୍ଧ୍ୟା ଦର୍ଶୟତି । କେନ ସମାନସ୍ତୟୈବ ବୁଦ୍ଧ୍ୟେତି ଗମ୍ୟତେ ସଂନିଧାନାତ୍ । ତଚ୍ଚ ଦର୍ଶୟତି-ଧ୍ୟାୟତୀବ ଲେଲାୟତୀବ' (ବୃ ୪-୩-୭) ଇତି । ଏତଦୁକ୍ତଂ ଭବତି - ନାୟଂ ସ୍ୱତୋ ଧ୍ୟାୟତି, ନାପି ଚଳତି, ଧ୍ୟାୟନ୍ତ୍ୟାଂ ବୁଦ୍ଧୌ ଧ୍ୟାୟତୀବ ଚଳନ୍ତ୍ୟାଂ ବୁଦ୍ଧୌ ଚଳତୀବେତି । ଅପିଚ ମିଥ୍ୟାଜ୍ଞାନପୁରଃସରୋଽୟମାତ୍ମନୋ ବୁଦ୍ଧ୍ୟୁପାଧି ସମ୍ବନ୍ଧଃ ।

(ଙ) ନଚ ମିଥ୍ୟାଜ୍ଞାନସ୍ୟ ସମ୍ୟଗ୍‌ଜ୍ଞାନଦନ୍ୟତ୍ର ନିବୃତ୍ତିରସ୍ତୀତ୍ୟତୋ ଯାବଦ୍ ବ୍ରହ୍ମାତ୍ମତାନବବୋଧସ୍ତାବଦୟଂ ବୁଦ୍ଧ୍ୟୁପାଧିସମ୍ବନ୍ଧୋ ନ ଶାମ୍ୟତି । ଦର୍ଶୟତି ଚବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ । ତମେବ ବିଦିତ୍ୱାତିମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ' (ଶ୍ୱେ ୩-୮) ଇତି ।

**(୨) ଭାଷାଂତର-** (କ) ପୂର୍ବରୁ କୁହାଯାଇଥିବା ଏହିଦୋଷର ଶଙ୍କା କରିବା ଉଚିତ୍ ନୁହେଁ । କିପରି ? ବୁଦ୍ଧିର ସଂଯୋଗ ଯାବଦାତ୍ମଭାବୀ ଅଟେ । ଯେତେବେଳେ ଏହା ଆତ୍ମା ସଂସାରୀ ହୁଏ, ଯେତେବେଳେ ତାହାର ତତ୍ତ୍ୱଜ୍ଞାନରୁ ସଂସାରିତ୍ୱ ନିବୃତ୍ତ ହୁଏ ନାହିଁ, ସେତେବେଳେ ତାହାର ବୁଦ୍ଧି ସହିତ ସମ୍ବନ୍ଧ ନିବୃତ୍ତ ହୁଏ ନାହିଁ । ଯେତେବେଳେ ଏହି ବୁଦ୍ଧି ରୂପଉପାଧିର୍ ସମ୍ବନ୍ଧ ହୁଏ, ସେତେବେଳେ ଜୀବରେ ଜୀବତ୍ୱ ଓ ସଂସାରିତ୍ୱ ରହେ । ବାସ୍ତବରେ ବୁଦ୍ଧି ଉପାଧିସମ୍ବନ୍ଧରୁ ପରିକଳ୍ପିତ ସ୍ୱରୂପରୁ ପୃଥକ୍ ହୋଇ ଜୀବର ନାମ ହୁଏ ନାହିଁ,

(ଖ) କାରଣ- 'ନାନ୍ୟୋଽତଃ' (ଏହାଠାରୁ ଅନ୍ୟଦ୍ରଷ୍ଟା, ଶ୍ରୋତା, ମନ୍ତା ଏବଂ ବିଜ୍ଞାତା କେହି ନାହାନ୍ତି) 'ନାନ୍ୟଦତୋଽସ୍ତି ଦ୍ରଷ୍ଟୃ, ଶ୍ରୋତୃ, ମନ୍ତୃ, ବିଜ୍ଞାତୃ'' 'ତତ୍ତ୍ୱମସି' 'ଅହଂ ବ୍ରହ୍ମାସ୍ମି' ଇତ୍ୟାଦି ଶତଶତିଶ୍ରୁତିବାକ୍ୟରୁ ନିତ୍ୟ, ମୁକ୍ତ ସ୍ୱରୂପ, ସର୍ବଜ୍ଞ, ଈଶ୍ୱରଠାରୁ ପୃଥକ୍, ଅନ୍ୟ ଦ୍ୱିତୀୟ ଚେତନ, ଇତ୍ୟାଦି ତତ୍ତ୍ୱ ବେଦାନ୍ତ ଅର୍ଥକୁ ନିରୂପଣ କଲାପରେ ଉପଲବଧି ହୁଏ ନାହିଁ । ପରନ୍ତୁ ବୁଦ୍ଧିର ସଂଯୋଗ ଯାବଦାତ୍ମଭାବୀ ଅଟେ ବୋଲି ଏଠାରେ କିପରି ଜଣାଯାଏ ?

(ଗ) ତାହାର ଉତ୍ତରରେ 'ସେ ଶ୍ରୁତିରେ ପ୍ରତିପାଦିତ ଅଟେ' ଏହା ସୂତ୍ରକାର କହିଛନ୍ତି । ଯେପରି 'ଯୋଽୟଂ ବିଜ୍ଞାନମୟଃ' (ଯାହା ଏହି ପ୍ରାଣରେ ବିଜ୍ଞାନମୟ ଅଟେ, ବୁଦ୍ଧିରେ ଜ୍ୟୋତିଃ ସ୍ୱରୂପ ପୁରୁଷ, ସେ ବୁଦ୍ଧି ସାଦୃଶହୋଇ ଏହିଲୋକ ଏବଂ ପରଲୋକରେ ସଞ୍ଚାର କରେ । ବୁଦ୍ଧି ବୃତ୍ତିର ଅନୁସାରେ ଧ୍ୟାନ କରେ । ପ୍ରାଣବୃତ୍ତି ହୋଇ ଅନ୍ୟର କାର୍ଯ୍ୟ କରେ) ଇତ୍ୟାଦି ଶାସ୍ତ୍ର ଦେଖାଏ । ଏଠାରେ 'ବିଜ୍ଞାନମୟଃ' ଏହିପଦରେ 'ବୁଦ୍ଧିମୟଃ, ଏହା କୁହାଯାଇଛି, କାରଣ ଅନ୍ୟସ୍ଥଳରେ 'ବିଜ୍ଞାନମୟଃ' (ବିଜ୍ଞାନମୟ, ମନୋମୟ, ପ୍ରାଣମୟ, ଚକ୍ଷୁର୍ମୟ, ଶ୍ରୋତ୍ରମୟ) ଏହି ପ୍ରକାର ବିଜ୍ଞାନମୟର ମନ ପ୍ରଭୃତି ସହିତ ପାଠ ହୁଏ । ବୁଦ୍ଧିମୟତ୍ୱରୁ ତଦ୍‌ଗୁଣସାରତ୍ୱ ଅଭିପ୍ରେତ ହୁଏ । ଯେପରି ସଂସାରରେ ସ୍ତ୍ରୀଠାରେ ରାଗାଦି ପ୍ରଧାନତାରୁ 'ଦେବଦତ୍ତ ସ୍ତ୍ରୀବଶ' ବୋଲି କୁହାଯାଇଛି ।

(ଘ) 'ସ ସମାନଃ' (ସେ ବୁଦ୍ଧିପରି ହୋଇ ଦୁଇଲୋକପରେ ସଞ୍ଚରଣ କରେ) ଏହି ଶ୍ରୁତି ଲୋକାନ୍ତର ଗମନ କରିବାରେ ଆତ୍ମାର ବୁଦ୍ଧି ସହିତ ଅବିଯୋଗ ପ୍ରତିପାଦିତ କରେ । କିପରି ସମାନ ହୁଏ ? ସାନ୍ନିଧ୍ୟରୁ ଏହା ବୁଦ୍ଧିପରି ଜଣାପଡେ । ସେହି ସମାନତ୍ୱକୁ 'ଧ୍ୟାୟତୀବ ଲେଲାୟତୀବ' (ଧ୍ୟାନ କରିବା ପ୍ରତୀତ ହୁଏ, ଚଳନ କରିବା ପ୍ରତୀତ ହୁଏ) ଏହା ଶ୍ରୁତି ଦେଖାଏ । ଏଠାରେ ତାତ୍ପର୍ଯ୍ୟ ଏହିଯେ- ଏହି ଆତ୍ମା ସ୍ୱତଃ ଧ୍ୟାନ କରେ ନାହିଁ, କି ଚଳେ ନାହିଁ । ପରନ୍ତୁ ବୁଦ୍ଧି ଧ୍ୟାନସ୍ଥ ହେଲେ ପ୍ରତୀତି ହୁଏ ଏବଂ ବୁଦ୍ଧିର ଚଳନ ପରେ ସେ ସଂଚରଣ କରିବା ଜଣାପଡ଼େ । ଆତ୍ମାର ଏହି ବୁଦ୍ଧିରୂପ ଉପାଧି ସହିତ ସମ୍ବନ୍ଧ ମିଥ୍ୟାଜ୍ଞାନ ପୁରଃସର ଅଟେ ।

(ଙ) ମିଥ୍ୟାଜ୍ଞାନର ନିବୃତ୍ତି ଯଥାର୍ଥଜ୍ଞାନ ବ୍ୟତିତ ହୁଏ ନାହିଁ । ତେଣୁ ଯେତେବେଳେ ବ୍ରହ୍ମାତ୍ମ ଅଜ୍ଞାନ ହୁଏ, ସେତେବେଳେ ଏହି ବୁଦ୍ଧି ରୂପ ଉପାଧି ସମ୍ବନ୍ଧ ନିବୃତ୍ ହୁଏ ନାହିଁ । ଏପରି 'ବେଦାହମେତଂ' (ମୁଁ ଏହି ଅଜ୍ଞାନାତୀତ ପ୍ରକାଶସ୍ୱରୂପ ମହାନ୍ ପୁରୁଷକୁ ଜାଣେ । ତାହାକୁ ଜାଣି ମୃତ୍ୟୁକୁ ପାରହୁଏ । ଏହାକୁ ଛାଡ଼ି ପରମପଦପ୍ରାପ୍ତି ନିମିତ୍ତ ଅନ୍ୟ କୌଣସି ମାର୍ଗ ନାହିଁ) ।

(୧) ମୂଳ-ନନୁ ସୁଷୁପ୍ତପ୍ରଳୟଯୋର୍ନ ଶକ୍ୟତେ ବୁଦ୍ଧି ସମ୍ବନ୍ଧ ଆତ୍ମନୋଽଭ୍ୟୁପଗତମ୍ । 'ସତା ସୋମ୍ୟ ତଦା ସଂପନ୍ନୋ ଭବତି ସ୍ୱମପୀତୋ ଭବତି' (ଛା ୬-୮-୧) ଇତି ବଚନାତ୍ । କୃତ୍ସ୍ନବିକାରପ୍ରଳୟାଭ୍ୟୁପଗମାଚ୍ଚ । ତତ୍‌କଥଂ ଯାବଦାତ୍ମଭାବିତ୍ୱଂ ବୁଦ୍ଧି ସଂବନ୍ଧସ୍ୟେତ୍ୟତ୍ରୋଚ୍ୟତେ-

**(୧) ଭାଷାଂତର-** ସୁଷୁପ୍ତି ଓ ପ୍ରଳୟ ସମୟରେ ଆତ୍ମାର ବୁଦ୍ଧି ସହିତ ସମ୍ବନ୍ଧସ୍ୱୀକାର କରାଯାଏ ନାହିଁ, କାରଣ-ସତା ସୋମ୍ୟ ! ହେ ସୋମ୍ୟ ! ସୁଷୁପ୍ତିରେ ଏହି ସତ୍‌ପରବ୍ରହ୍ମ ସହିତ ସଂପନ୍ନ ହୁଏ । ସେ ନିଜସ୍ୱରୂପକୁ ପ୍ରାପ୍ତ ହୁଏ, ଏହା

ଶ୍ରୁତିବଚନ ଅଟେ । ସଂପୂର୍ଣ୍ଣବିକାରର ପ୍ରଳୟସ୍ୱୀକାର କରାଯାଏ; କିନ୍ତୁ ବୁଦ୍ଧି ସମ୍ବନ୍ଧ ଯାବଦାତ୍ମଭାବୀ କିପରି ? ତେଣୁ କୁହାଯାଇଅଛି-

**पुंस्त्वादिवत्त्वस्य सतोऽभिव्यक्तियोगात् ॥ ३१ ॥**

**୨- ପୁଂସ୍ତ୍ୱାଦିବତ୍ତ୍ୱସ୍ୟ ସତୋଽଭିବ୍ୟକ୍ତି ଯୋଗାତ୍ ॥୨-୩-୩୧॥**

ପୁଂସ୍ତ୍ୱାଦିବତ୍ = ଯେପରି ବାଲ୍ୟାବସ୍ଥାରେ ରହିଥିବା ପୁଂସ୍ତ୍ୱାଦି ଯୌବନରେ ବିକସିତ ହୁଏ, ସେହିପରି, ସତଃ = ସୁଷୁପ୍ତି ଅବସ୍ଥାରେ ସୂକ୍ଷ୍ମସ୍ୱରୂପରେ ରହିଥିବା, ଅସ୍ୟ=ବୁଦ୍ଧି ସଂଯୋଗଜାଗ୍ରଦାଦି ଅବସ୍ଥାରେ, ଅଭିବ୍ୟକ୍ତି ଯୋଗାତ୍ = ଅଭିବ୍ୟକ୍ତ ହୁଏ । ତେଣୁ ବୁଦ୍ଧି ସମ୍ବନ୍ଧ ଯାବଦାତ୍ମଭାବୀ ଅଟେ ।

(୩) ମୂଳ-(କ) ଯଥା ଲୋକେ ପୁସ୍ତ୍ୱାଦୀନି ବୀଜାତ୍ମନା ବିଦ୍ୟମାନାନ୍ୟେବ ବାଲ୍ୟାଦିଷ୍ୱନୁପଲଭ୍ୟମାନାନ୍ୟ ବିଦ୍ୟମାନବଦଭିପ୍ରେୟମାଣାନି ଯୌବନାଦିଷ୍ୱାବର୍ତ୍ତବନ୍ତି, ନାବିଦ୍ୟମାନାନ୍ୟୁତ୍ପଦ୍ୟନ୍ତେ ଷଣ୍ଢାଦୀନାମପି ତଦୁତ୍ପତ୍ତି ପ୍ରସଙ୍ଗାତ୍, ଏବମୟମପି ବୁଦ୍ଧି ସମ୍ବନ୍ଧଃ ଶକ୍ତ୍ୟାତ୍ମନା ବିଦ୍ୟମାନ ଏବ ସୁଷୁପ୍ତିପ୍ରଳୟଯୋଃ ପୁନଃ ପ୍ରବୋଧପ୍ରସବଯୋରାବିର୍ଭବତି । ଏବଂ ହ୍ୟେତଦ୍ୟୁଜ୍ୟତେ ।

(ଖ) ନହ୍ୟାକସ୍ମିକୀ କସ୍ୟଚିଦୁତ୍ପତ୍ତିଃ ସମ୍ଭବତି । ଅତିପ୍ରସଙ୍ଗାତ୍ । ଦର୍ଶୟତି ଚ ସୁଷୁପ୍ତା ଦୁତ୍‌ଥାନମବିଦ୍ୟାତ୍ମକବୀଜ ସଦ୍‌ଭାବକାରିତମ୍ - 'ସତି ସଂପଦ୍ୟ ନ ବିଦୁଃ ସତି ସଂପଦ୍ୟାମହ' ଇତି' 'ତଇହ ବ୍ୟାଘ୍ରୋ ବା ସିଂହୋ ବା' (ଛା ୬-୯-୩) ଇତ୍ୟାଦିନା । ତସ୍ମାତ୍ ସିଦ୍ଧମେତଦ୍ୟାବଦାତ୍ମଭାବୀ ବୁଦ୍ଧ୍ୟାଦ୍ୟୁପାଧିସଂବନ୍ଧଃ ଇତି ।

**(୩) ଭାଷାଂତର**- (କ) ଯେପରି ସଂସାରରେ ପୁଂସ୍ତ୍ୱାଦି ବୀଜରୂପରେ ବିଦ୍ୟମାନ ବାଲ୍ୟାଦିପ୍ରଭୃତିରେ ଅନୁପଲବ୍ଧ ଏବଂ ଅବିଦ୍ୟମାନର ପରି ଅଭିପ୍ରେତ ହେଲାପରେ ଯୌବନାଦିରେ ଆବିର୍ଭୂତ ହୁଅନ୍ତି । ଅବିଦ୍ୟମାନ ଉତ୍ପନ୍ନ ହୁଅନ୍ତି ନାହିଁ, କାରଣ- ନପୁଂସକରେ ତାହାର ଉତ୍ପତ୍ତି ପ୍ରସଙ୍ଗ ହେବ । ସେପରି ଏହି ବୁଦ୍ଧି ସମ୍ବନ୍ଧ ମଧ୍ୟ ସୁଷୁପ୍ତି ଓ ପ୍ରଳୟରେ ଶକ୍ତିରୂପରେ ବିଦ୍ୟମାନ ହୋଇ ପୁଣି ପ୍ରବୋଧ (ଜାଗ୍ରତ) ଓ ପ୍ରସବ (ସୃଷ୍ଟିକାଳ)ରେ ଆବିର୍ଭୁତ ହୁଅନ୍ତି । କାରଣ-ଏହା ଯୁକ୍ତିସଂଗତ ଅଟେ ।

(ଖ) କୌଣସି ପଦାର୍ଥ ବିନାକାରଣରେ ଉତ୍ପତ୍ତି ହୁଏ ନାହିଁ । କାରଣ-ତାହାର ଅତିପ୍ରସଙ୍ଗ ହେବ । 'ସତି ସଂପଦ୍ୟ' (ସୁଷୁପ୍ତିରେ ଏହି ସଂପୂର୍ଣ୍ଣ ପ୍ରଜା ସତ୍‌କୁ ପ୍ରାପ୍ତ ହୋଇ ଏହା ଜାଣେ ନାହିଁ ଯେ- ଆମ୍ଭେ ବ୍ରହ୍ମକୁ ପ୍ରାପ୍ତ ହେଲୁ । ତଦ୍ୱାରା 'ତ ଇହ' (ସେମାନେ ଏହି ଲୋକରେ ବ୍ୟାଘ୍ର ବା ସିଂହ ଯାହାକି ସୁଷୁପ୍ତିର ପୂର୍ବରୁ ହୋଇଥାନ୍ତି, ସେ ସବୁପୁଣି ହୁଅନ୍ତି)



ଇତ୍ୟାଦି ଶ୍ରୁତିଦ୍ୱାରା ଅବିଦ୍ୟାତ୍ମକ ବୀଜର ସଦ୍‌ଭାବ କରାଯାଇ ସୁଷୁପ୍ତିରେ ଉତ୍‌ଥାନ ଦେଖାଏ । ତେଣୁ ବୁଦ୍ଧି ପ୍ରଭୃତି ରୂପେ ଉପାଧିର ସମ୍ବନ୍ଧ ଯାବଦାତ୍ମଭାବୀ ହୁଏ ବୋଲି ସିଦ୍ଧ ହୁଏ ।

**नित्योपलब्ध्यनुपलब्धिप्रसङ्गोऽन्यतरनियमो वाऽन्यथा ॥३२ ॥**

**୧- ନିତ୍ୟୋପଲବ୍‌ଧ୍ୟନୁପଲବ୍‌ଧିପ୍ରସଙ୍ଗୋଽନ୍ୟତର ନିୟମୋ ବାଽନ୍ୟଥା ॥୨-୩-୩୨॥**

ଅନ୍ତଃକରଣର ଅସ୍ତିତ୍ୱ ଅବଶ୍ୟ ସ୍ୱୀକାର କରାଯାଇଛି । ଅନ୍ୟଥା- ଏହା ସ୍ୱୀକାର କରାନଯାଏ, ତେବେ ନିତ୍ୟୋପଲବ୍‌ଧ୍ୟନୁପଲବ୍‌ଧିପ୍ରସଙ୍ଗଃ-ଆତ୍ମା, ଇନ୍ଦ୍ରିୟାଦି ସାଧନ ବିଦ୍ୟମାନ ହେଲେ ନିତ୍ୟୋପଲବଧିର ପ୍ରସଙ୍ଗ ହେବ । ଯଦି ସାଧନ ହୋଇ ଅନୁପଲବ୍‌ଧି ସ୍ୱୀକାର କରାଯାଏ, ତେବେ ନିତ୍ୟାନୁପଲବଧିର ପ୍ରସଙ୍ଗ ହେବ । ବା-ଅଥବା, ଅନ୍ୟ-ତରନିୟମଃ-ଆତ୍ମା ବା ଇନ୍ଦ୍ରିୟର ପ୍ରତିବନ୍ଧ ସ୍ୱୀକାର କରାଯିବ, କିନ୍ତୁ ଏହା ଠିକ୍ ନୁହେଁ । କାରଣ-ଆତ୍ମା ଅବିକ୍ରିୟ ଅଟେ ଏବଂ ଇନ୍ଦ୍ରିୟର ଅକସ୍ମାତ୍ ଶକ୍ତିକୁ ପ୍ରତିବନ୍ଧ କରେ ନାହିଁ, ତେଣୁ ଉପଲବ୍‌ଧିର ସାମାନ୍ୟକାରଣ ଅନ୍ତଃକରଣକୁ ସ୍ୱୀକାର କରିବା ଉଚିତ ।

(୨) ମୂଳ-(କ) ତଚ୍ଚାତ୍ମନ ଉପାଧିଭୂତମନ୍ତଃକରଣଂ ମନୋ ବୁଦ୍ଧିର୍ବିଜ୍ଞାନଂ ଚିତ୍ତମିତି ଚାନେକଧା ତତ୍ର ତତ୍ରାଭିଲପ୍ୟତେ । କ୍ୱଚିଚ୍ଚ ବୃତ୍ତିବିଭାଗେନ ସଂଶୟାଦିବୃତ୍ତିକଂ ମନ ଇତ୍ୟୁଚ୍ୟତେ, ନିଶ୍ଚୟାଦିବୃତ୍ ତିକଂ ବୁଦ୍ଧିରିତି । ତଚ୍ଚୈବଂଭୂତମନ୍ତଃକରଣମବଶ୍ୟମସ୍ତୀତ୍ୟ-ଭ୍ୟୁପଗନ୍ତବ୍ୟମ୍ । ଅନ୍ୟଥା ହ୍ୟନଭ୍ୟୁପଗମ୍ୟମାନେ ତସ୍ମିନ୍ନିତ୍ୟୋପଲବ୍‌ଧ୍ୟନୁପଲବ୍‌ଧିପ୍ରସଙ୍ଗଃ ସ୍ୟାତ୍ । ଆତ୍ମେନ୍ଦ୍ରିୟବିଷୟାଣାମୁପଲବ୍‌ଧିସାଧନାନାଂ ସନ୍ନିଧାନେ ସତି ନିତ୍ୟମେବୋ-ପଲବ୍‌ଧିଃ ପ୍ରସଜ୍ୟେତ । ଅଥ ସତ୍ୟପି ହେତୁସମବଧାନେ ଫଂଲାଭାବସ୍ତତୋ ନିତ୍ୟମେବା-ନୁପଲବ୍‌ଧିଃ ପ୍ରସଜ୍ୟେତ ।

(ଖ) ନ ଚୈବ ଦୃଶ୍ୟତେ । ଅଥାବାନ୍ୟତରସ୍ୟାତ୍ମନ ଇନ୍ଦ୍ରିୟସ୍ୟ ବା ଶକ୍ତିପ୍ରତିବନ୍ଧୋଽଭ୍ୟୁପଗନ୍ତବ୍ୟଃ । ନଚାତ୍ମନଃ ଶକ୍ତିପ୍ରତିବନ୍ଧଃ ସମ୍ଭବତି । ଅବିକ୍ରିୟତ୍ୱାତ୍ । ନାପୀନ୍ଦ୍ରିୟସ୍ୟ । ନହି ତସ୍ୟ ପୂର୍ବୋତ୍‌ତରୟୋଃ କ୍ଷଣୟୋରପ୍ରତିବଦ୍ଧଶକ୍ତିକସ୍ୟ ସତୋଽକସ୍ମାଚ୍ଛକ୍ତିଃ ପ୍ରତିବଧ୍ୟେତ । ତସ୍ମାଦ୍ୟସ୍ୟାବଧାନ । ନବଧାନାଭ୍ୟାମୁପଲବ୍-ଧ୍ୟନୁପଲବ୍‌ଧୀ ଭବତସ୍ତନ୍ମନଃ । ତଥା ଚ ଶ୍ରୁତିଃ- 'ଅନ୍ୟତ୍ରମତା ଅଭୂବଂ ନାଦର୍ଶମ-ନ୍ୟତ୍ରମନା ଅଭୂବଂ ନାଶ୍ରୌଷମ୍' (ବୃ ୧-୫-୩) ଇତି, 'ମନସା ହ୍ୟେବ ପଶ୍ୟତି ମନସା ଶୃଣୋତି' (ବୃ ୧-୫-୩) ଇତି । କାମାଦୟଶ୍ଚାସ୍ୟବୃତ୍ତୟ ଇତି ଦର୍ଶୟତି 'କାମଃ ସଙ୍କଳ୍ପୋ ବିଚିକିତ୍ସା ଶ୍ରଦ୍ଧାଽଶ୍ରଦ୍ଧା ଧୃତିରଧୃତିର୍ହ୍ରୀର୍ଧୀର୍ଭୀରିତ୍ୟେତତ୍ସର୍ବଂମନଃ ଏବ' (ବୃ ୧-୫-୩) ଇତି । ତସ୍ମାଦ୍ୟୁକ୍ତମେତତ୍ ତଦ୍‌ଗୁଣସାରତ୍ୱାତ୍ତଦ୍‌ବ୍ୟପଦେଶଃ ।

(୨) ଭାଷାଂତର-(କ) ଆତ୍ମାର ଉପାଧିଭୂତ ଏହି ଅନ୍ତଃକରଣ ଭିନ୍ନ ଭିନ୍ନ ସ୍ଥାନରେ ମନ, ବୁଦ୍ଧି, ବିଜ୍ଞାନ ଓ ଚିତ୍ତ-ଏହିପରି ଅନେକ ପ୍ରକାରରେ କୁହାଯାଇଛି । କେତେକ ସ୍ଥଳରେ ବୃତ୍ତି ବିଭାଗ ଦ୍ୱାରା ସଂଶୟପ୍ରଭୃତି ବୃତ୍ତିକୁ ମନ କହନ୍ତି ଏବଂ ନିଶ୍ଚୟାଦି ବୃତ୍ତିକୁ ବୁଦ୍ଧି କହନ୍ତି । ଏହିପ୍ରକାର ସେହି ଅନ୍ତଃକରଣ ଅବଶ୍ୟ ଅଟେ- ଏହା ସ୍ୱୀକାର କରିବା ଉଚିତ୍ । ଉପଲବ୍ଧିର ସାଧନଭୂତ ଆତ୍ମା, ଇନ୍ଦ୍ରିୟ ଓ ବିଷୟର ସନ୍ନିଧାନ ହେଲା ପରେ ନିତ୍ୟ ଉପଲବ୍ଧି ପ୍ରସକ୍ତ ହେବ । ଯଦି ଅହେତୁକ ସନ୍ନିଧାନ ହେଲାପରେ ଫଳର ଅଭାବ ହୁଏ, ତେବେ ନିତ୍ୟ ଅନୁପଲବ୍ଧିର ପ୍ରସକ୍ତ ହୁଏ ।

(ଖ) ପରନ୍ତୁ ଏହା ଦେଖାଯାଏ ନାହିଁ । ଅଥବା ଆତ୍ମା ବା ଇନ୍ଦ୍ରିୟ ଦୁଇଟିରେ ଗୋଟିଏ ଶକ୍ତିର ପ୍ରତିବନ୍ଧ ସ୍ୱୀକାର କରିବା ଉଚିତ । ଆତ୍ମାର ଶକ୍ତି ପ୍ରତିବନ୍ଧ ସମ୍ଭବ ନୁହେଁ । କାରଣ- ଏହି ଅବିକ୍ରିୟ ଅଟେ । ଇନ୍ଦ୍ରିୟର ଶକ୍ତି ପ୍ରତିବନ୍ଧ ସମ୍ଭବ ନୁହଁ । କାରଣ- ପୂର୍ବ ଓ ଉତ୍ତରକ୍ଷଣରେ ଅପ୍ରତିବନ୍ଧ ଶକ୍ତିଯୁକ୍ତର ଶକ୍ତି ଅକସ୍ମାତ୍ ପ୍ରତିବନ୍ଧ ହୁଏ ନାହିଁ । ତେଣୁ ଯାହାର ସାବଧାନୀ ଓ ଅସାବଧାନୀରୁ ଉପଲବ୍ଧି ଓ ଅନୁପଲବ୍ଧି ହୁଏ, ତାହା ମନ ଅଟେ । 'ଅନ୍ୟତ୍ର ମନଃ' (ଅନ୍ୟତ୍ର ମନ ଥିଲା । ତେଣୁ ମୁଁ ଦେଖିପାରିଲି ନାହିଁ । ଅନ୍ୟତ୍ର ମନ ଥିଲା, ତେଣୁ ଶୁଣିପାରିଲି ନାହିଁ । ଏହିପ୍ରକାର ମନରେ ଦେଖାଯାଏ ଓ ଶୁଣାଯାଏ) ଏହା ଶ୍ରୁତି ଅଟେ । 'କାମଃ ସଙ୍କଳ୍ପଃ' (କାମ, ସଙ୍କଳ୍ପ, ସଂଶୟ, ଶ୍ରଦ୍ଧା, ଅଶ୍ରଦ୍ଧା, ଧୃତି, ଲଜ୍ଜା, ପ୍ରଜ୍ଞା, ଭୟ - ଏସବୁ ମନ ଅଟେ) ଏହି ଶ୍ରୁତି କାମାଦି ମନର ବୃତ୍ତି ଅଟନ୍ତି - ଏହା ଦେଖାଯାଏ । ତେଣୁ ତଦ୍‌ଗୁଣସାରତ୍ୱାତ୍ ତଦ୍ ବ୍ୟପଦେଶଃ ଏହା ଠିକ୍ ଅଟେ ।

## १४ कर्त्रधिकरणम् । सू० ॥ ३३-४० ॥

## କର୍ତ୍ରଧିକରଣ - ୧୪

## कर्ता शास्त्रार्थवत्वात् ॥ ३३ ॥

## ୧-କର୍ତ୍ତା ଶାସ୍ତ୍ରାର୍ଥାତ୍ତ୍ୱବାତ୍ ॥ ୨-୩-୩୩ ॥

କର୍ତ୍ତା - ଆତ୍ମା କର୍ତ୍ତା ଅଟେ, ବୁଦ୍ଧି ନୁହେଁ । ଶାସ୍ତ୍ରାର୍ଥତ୍ୱାତ୍ - କାରଣ- ଏହା ସ୍ୱୀକାର କରାଗଲେ ବିଧିପ୍ରଭୃତି ଶାସ୍ତ୍ର ସାର୍ଥକ ହୁଏ ।

(୨) ମୂଳ-ତଦ୍‌ଗୁଣସାରତ୍ୱାଧିକାରେଣୈବାପରୋଽପି ଜୀବଧର୍ମଃ ପ୍ରପଞ୍ଚ୍ୟତେ । କର୍ତ୍ତା ଚାୟଂ ଜୀବଃ ସ୍ୟାତ୍ । କସ୍ମାତ୍ । ଶାସ୍ତ୍ରାର୍ଥବତ୍ତ୍ୱାତ୍ । 'ଏବଞ୍ଚ ଯଜେତ' 'ଜୁହୁୟାତ' 'ଦଦ୍ୟାତ୍' ଇତ୍ୟେବଂବିଧଂ ବିଧିଶାସ୍ତ୍ରମର୍ଥବଦ୍ ଭବତି । ନଚାଽସତି କର୍ତ୍ତୃତ୍ୱେ ତଦୁପ ପଦ୍ୟେତ । ତଥେଦମପି ଶାସ୍ତ୍ରମର୍ଥବଦ୍ ଭବତି 'ଏଷ ହି ଦ୍ରଷ୍ଟା ଶ୍ରୋତା ମନ୍ତା ବୋଦ୍ଧା କର୍ତ୍ତା ବିଜ୍ଞାନାତ୍ମା ପୁରୁଷଃ' (ପ୍ର ୪-୯) ଇତି ।



**(୨) ଭାଷାଂତର-** ତଦ୍‌ଗୁଣସାରତ୍ୱପ୍ରକରଣରେ ଜୀବବ୍ୟତିତ ଅନ୍ୟଧର୍ମ ବିସ୍ତୃତ ଭାବେ ବିଚାର କରାଯାଇଛି । ଏଠାରେ ଜୀବ କର୍ତ୍ତା ହେବା ଉଚିତ୍ । କାରଣ-ଏହାଦ୍ୱାରା ଶାସ୍ତ୍ର ସାର୍ଥକ ହୁଏ । ଏହିପରି ଯଜେତ (ଯାଗ କରିବା ଉଚିତ) 'ଜୁହୁୟାତ୍' (ହୋମ କରିବା ଉଚିତ) 'ଦଦ୍ୟାତ୍' (ଦାନ କରିବା ଉଚିତ) ଏହି ପ୍ରକାର ବିଧିଶାସ୍ତ୍ର ପ୍ରୟୋଜନ ଯୁକ୍ତ ହୁଏ । ନୋଚେତ୍ ସେ ନିରର୍ଥକ ହେବ । କାରଣ-ସେହି ଶାସ୍ତ୍ରକର୍ତ୍ତା ହେଲେ କର୍ତ୍ତବ୍ୟବିଶେଷ ଉପଦେଶ କରେ । ତାହା କର୍ତ୍ତା ନ ହେଲେ ସେ ଉପପନ୍ନ ହୁଏ ନାହିଁ । ଏହିପ୍ରକାର 'ଏଷ ହି ଦ୍ରଷ୍ଟା' (ଏହି ଆତ୍ମା ଦ୍ରଷ୍ଟା, ଶ୍ରୋତା, ମନ୍ତା, ବୋଦ୍ଧା, କର୍ତ୍ତା ଓ ବିଜ୍ଞାନରୂପ ହୁଏ) ଏହି ଶାସ୍ତ୍ର ସାର୍ଥକ ହୁଏ ।

## विहारोपदेशात् ॥ ३४ ॥

## ୧- ବିହାରୋପଦେଶାତ୍ ॥ ୨-୩-୩୪ ॥

ବିହାରୋପଦେଶାତ୍ - ଜୀବକର୍ତ୍ତା ଅଟେ, କାରଣ-ତାହାର ବିଷୟରେ ବିହାର ଉପଦେଶ ଦିଆଯାଇଛି ।

(୨) ମୂଳ-ଇତଶ୍ଚାସ୍ୟ କର୍ତ୍ତୃତ୍ୱଂ, ଯଜ୍ଜୀବପ୍ରକ୍ରିୟାୟାଂ ସନ୍ଧ୍ୟେ ସ୍ଥାନେ ବିହାରମୁପଦିଶତ - 'ସ ଈୟତେଽମୃତୋ ଯତ୍ର କାମମ୍' (ବୃ ୪-୩-୧୨) ଇତି 'ସ୍ୱେ ଶରୀରେ ଯଥାକାମଂ ପରିବର୍ତ୍ତେତେ' (ବୃ ୨-୧-୧୮) ଇତି ଚ ।

**(୨) ଭାଷାଂତର-** ତେଣୁ ଜୀବ କର୍ତ୍ତା ଅଟେ, କାରଣ- 'ସ ଈୟତେ' (ସେ ଏକାକୀ ବିଚାର କରି ଅମୃତ ଜୀବ ଯାହା ଇଚ୍ଛା ହୁଏ, ସେ ତାହା ଚଳାଏ) ଏବଂ 'ସ୍ୱେ ଶରୀରେ' (ସେହିପରି ପ୍ରାଣକୁ ଗ୍ରହଣ କରି ସେ ନିଜ ଶରୀରରେ ଯଥେଷ୍ଟ ବିଚରଣ କରେ) ଏହିପରି ଶ୍ରୁତି ଜୀବର ପ୍ରକ୍ରିୟାରେ ସ୍ୱପ୍ନାବସ୍ଥାରେ ବିହାରକୁ ଉପଦେଶ କରେ ।

## उपादानात् ॥ ३५ ॥

## ୧- ଉପାଦାନାତ୍ ॥ ୨-୩-୩୫ ॥

ଉପାଦାନାତ୍ - ଜୀବ କର୍ତ୍ତା ଅଟେ । କାରଣ-ଶ୍ରୁତିରେ ତାହାଦ୍ୱାରା ଇନ୍ଦ୍ରିୟ ଗ୍ରହଣ କରାଯାଏ ।

(୨) ମୂଳ-ଇତଶ୍ଚାସ୍ୟ କର୍ତ୍ତୃତ୍ୱଂ, ଯଜ୍ଜୀବପ୍ରକ୍ରିୟାୟାମେବ କରଣାନାମୁପାଦାନଂ ସଙ୍କୀର୍ତ୍ତୟତି- 'ତଦେଷାଂ ପ୍ରାଣାନାଂ ବିଜ୍ଞାନେନ ବିଜ୍ଞାନମାଦାୟ' (ବୃ ୨୧-୧-୧୭) ଇତି, 'ପ୍ରାଣାନ୍ ଗୃହୀତ୍ୱା' (ବୃ ୨-୧-୧୮) ଇତି ଚ ।

(୨) ଭାଷାଂତର- ତେଣୁ ଜୀବ କର୍ତ୍ତା ଅଟେ । କାରଣ- 'ତଦେଷାଂ' ସେହି ବୁଦ୍ଧିଦ୍ୱାରା ଏହିବାଗାଦି ଇନ୍ଦ୍ରିୟର ଶକ୍ତିକୁ ଗ୍ରହଣ କରି ଶୟନ କରେ ଏବଂ 'ପ୍ରାଣାନ୍ ଗୃହୀତ୍ୱା' (ସେହିପରି ଏହି ପ୍ରାଣକୁ ଗ୍ରହଣକରି ନିଜେ ଶରୀରରେ ଯଥେଷ୍ଟ ବିଚରଣ କରେ) ଏହି ପ୍ରକାର ଶ୍ରୁତି ଜୀବପ୍ରକରଣରେ ଇନ୍ଦ୍ରିୟର ଗ୍ରହଣ ବର୍ଣ୍ଣନା କରେ ।

## व्यपदेशाच्च क्रियायां न चेन्निर्देशविपर्यय: ॥ ३६ ॥

## ୧- ବ୍ୟପଦେଶାଚ୍ଚ କ୍ରିୟାୟାଂ ନ ଚେନ୍ନିର୍ଦ୍ଦେଶବିପର୍ଯ୍ୟୟଃ

## ॥ ୨-୩-୩୬ ॥

ଚ - ଏବଂ, ବ୍ୟପଦେଶାତ୍ = 'ବିଜ୍ଞାନଂ ଯଜ୍ଞଂ ତନୁତେ' ଏଠାରେ ବିଜ୍ଞାନ ଶବ୍ଦବାଚ୍ୟ ଜୀବ, କ୍ରିୟାୟାମ୍ - ଲୌକିକାଦି କ୍ରିୟାରେ କର୍ତ୍ତାରୂପେ କୁହାଗଲା । ନଚେତ୍ - ଯଦି ବିଜ୍ଞାନଶବ୍ଦ ଜୀବପରକ ସ୍ୱୀକାର ନ କରି ବୁଦ୍ଧିପରକ ସ୍ୱୀକାର କରାଯାଏ, ତେବେ, ନିର୍ଦ୍ଦେଶବିପର୍ଯ୍ୟୟଃ-ତେବେ ନିର୍ଦ୍ଦେଶ ବିପର୍ଯ୍ୟୟ ହୁଏ । ଅର୍ଥାତ୍ ବୁଦ୍ଧି କରଣ ହେଲେ ତଦ୍‌ବାଚକ ବିଜ୍ଞାନ ପଦରେ ପ୍ରଥମାପେକ୍ଷା 'ବିଜ୍ଞାନେନ' ବୋଲି ତୃତୀୟାବିଭକ୍ତି ହୁଏ ।

(୨) ମୂଳ-(କ) ଇତଶ୍ଚ ଜୀବସ୍ୟ କର୍ତ୍ତୃତ୍ୱଂ ଯଦସ୍ୟ ଲୌକିକୀଷୁ ବୈଦିକୀଷୁ ଚ କ୍ରିୟାସୁ କର୍ତ୍ତୃତ୍ୱଂ ବ୍ୟପଦିଶତି ଶାସ୍ତ୍ରମ୍ - 'ବିଜ୍ଞାନଂଯଜ୍ଞଂ ତନୁତେ କର୍ମାଣି ତନୁତେଽପି ଚ' (ତୈ ୨-୫-୧) ଇତି । ନନୁ ବିଜ୍ଞାନଶବ୍ଦୋ ବୁଦ୍ଧୌ ସମଧିଗତଃ । କଥମନେନ ଜୀବସ୍ୟ କର୍ତ୍ତୃତ୍ୱଂ ସୂଚ୍ୟେତ ଇତି । ନେତ୍ୟୁଚ୍ୟତେ । ଜୀବସ୍ୟୈବେଷ ନିର୍ଦ୍ଦେଶୋ ନ ବୁଦ୍ଧେଃ ।

(ଖ) ନ ଚେତ୍ ଜୀବସ୍ୟ ସ୍ୟାନ୍ନିର୍ଦ୍ଦେଶବିପର୍ଯ୍ୟୟଃ । ସ୍ୟାତ୍ । ବିଜ୍ଞାନେନେତ୍ୟେବଂ ନିରଦ୍ରେକ୍ଷ୍ୟତ୍ । ତଥା ହ୍ୟନ୍ୟତ୍ର ବୁଦ୍ଧିବିବକ୍ଷାୟାଂ ବିଜ୍ଞାନଶବ୍ଦସ୍ୟ କରଣବିଭକ୍ତିନିର୍ଦ୍ଦେଶୋ ଦୃଶ୍ୟତେ 'ତଦେଷାଂ ପ୍ରାଣାନାଂ ବିଜ୍ଞାନେନ ବିଜ୍ଞାନାମାଦାୟ' (ବୃ ୨-୧-୧୭) ଇତି । ଇହ ତୁ 'ବିଜ୍ଞାନଂ ଯଜ୍ଞଂ ତନୁତେ' (ତୈ ୨-୫-୧) ଇତି କର୍ତ୍ତୃସାମାନାଧିକରଣ୍ୟନିର୍ଦ୍ଦେଶାଦ୍ ବୁଦ୍ଧିବ୍ୟତିରକ୍ତିସ୍ୟୈବାତ୍ମନଃ କର୍ତ୍ତୃତ୍ୱଂ ସୂଚ୍ୟତ ଇତ୍ୟଦୋଷଃ ।

(୨) ଭାଷାଂତର- (କ) ତେଣୁ ଜୀବ କର୍ତ୍ତା ଅଟେ । କାରଣ- 'ବିଜ୍ଞାନଂ ଯଜ୍ଞଂ ତନୁତେ' (ବିଜ୍ଞାନ ଜୀବ ଯଜ୍ଞ ବିସ୍ତାର କରେ ଏବଂ କର୍ମକୁ ମଧ୍ୟ ବିସ୍ତାର କରେ) ଏହି ପ୍ରକାର ଶ୍ରୁତି ଜୀବର ଲୌକିକ ଓ ବୈଦିକ କ୍ରିୟାରେ କର୍ତ୍ତୃତ୍ୱବ୍ୟପଦେଶ କରେ । ପରନ୍ତୁ ବିଜ୍ଞାନଶବ୍ଦ ବୁଦ୍ଧିରେ ସ୍ଥିର କରାଯାଏ । ପୁନଶ୍ଚ ତଦ୍ଦ୍ୱାରା ଜୀବ କର୍ତ୍ତା ହୁଏ ବୋଲି କିପରି ସୂଚିତ କରାଯାଏ ? ନୁହେଁ । ଏହା କୁହାଯାଇଅଛି - ସେ ଜୀବକୁ ନିର୍ଦ୍ଦେଶ କରେ, ବୁଦ୍ଧିକୁ ନୁହେଁ ।

(ଖ) ଯଦି ଏହା ନିର୍ଦ୍ଦେଶ ଜୀବର ନ ହୁଏ, ତେବେ ନିର୍ଦ୍ଦେଶ ବିପର୍ଯ୍ୟୟ ହେବ । 'ବିଜ୍ଞାନେନ' (ବିଜ୍ଞାନ ଦ୍ୱାରା) -ଏହିପରି ନିର୍ଦ୍ଦେଶ ହେବ । ଏହିପରି 'ତଦେଷା' (ବୁଦ୍ଧିଦ୍ୱାରା ଇନ୍ଦ୍ରିୟ ଗୁଡ଼ିକର ଶକ୍ତିକୁ ଗ୍ରହଣ କରି ସେ ଶୟନ କରେ) ଏଙ୍କରି ଅନ୍ୟ ଶ୍ରୁତିରେ ବିଜ୍ଞାନ ଶବ୍ଦରୁ ବୁଦ୍ଧିବିବକ୍ଷାରେ ବିଜ୍ଞାନ ଶବ୍ଦର କରଣ ବିଭକ୍ତି ଦ୍ୱାରା ନିର୍ଦ୍ଦେଶ ହୁଏ । କିନ୍ତୁ ଏଠାରେ 'ବିଜ୍ଞାନ ଯଜ୍ଞଂ ତନୁତେ' ଏହି ପ୍ରକାର କର୍ତ୍ତାର ସାମାନାଧିକରଣ୍ୟ ନିର୍ଦ୍ଦେଶରୁ ବୁଦ୍ଧିବିନା ଆତ୍ମାର କର୍ତ୍ତୃତ୍ୱ ସୂଚିତ ହୁଏ, ତାହା ଦୋଷ ନୁହେଁ ।

(୧) ମୂଳ - ଅତ୍ରାହ- ଯଦ ବୁଦ୍ଧି ବ୍ୟତିରିକ୍ତୋ ଜୀବଃ କର୍ତ୍ତା ସ୍ୟାତ୍‌ଯଃ ସ୍ୱତନ୍ତ୍ରଃ ସନପ୍ରିୟଂ ହିତଂ ଚୈବାତ୍ମନୋ ନିୟମେନ ସଂପାଦୟେନ୍ନ ବିପରୀତମ୍ । ବିପରୀତମପି ତୁ ସଂପାଦୟନ୍ନୁ ପଲଭ୍ୟତେ । ନ ଚ ସ୍ୱତନ୍ତ୍ରସ୍ୟାତ୍ମନ ଇଦୃଶୋ ପ୍ରବୃତ୍ତିରନିୟମେନୋପପଦ୍ୟତେ ଇତି । ଅତ ଉତ୍ତରଂ ପଠତି-

**(୧) ଭାଷାଂତର** -ଏହିପରି କୁହାଯିଛି - ଯଦି ବୁଦ୍ଧିଭିନ୍ନ ଜୀବ କର୍ତ୍ତା ହୁଏ, ତେବେ ସେହି ସ୍ୱତନ୍ତ୍ର ହୋଇ ପ୍ରିୟ ଓ ହିତନିୟମରୁ ସଂପାଦନ କରିବ । କିନ୍ତୁ ବିପରୀତ କ୍ରିୟା ନୁହେଁ । କିନ୍ତୁ ବିପରୀତ କ୍ରିୟା ସଂପାଦନ କରି ଉପଲବ୍‌ଧ ହୁଏ । ସ୍ୱତନ୍ତ୍ର ଆତ୍ମା ଅନିୟମରୁ ଏହି ପ୍ରବୃତ୍ତି ଉପପନ୍ନ ହୁଏ ନାହିଁ । ଅତଃ ଉତ୍ତରରେ କୁହାଯାଇଛି-

**उपलब्धिवदनियम: ॥ ३७० ॥**

**୨- ଉପଲବ୍‌ଧିବଦନିୟମଃ ॥ ୨-୩-୩୭ ॥**

ଉପଲବ୍‌ଧିବତ୍ - ଯେପରି ଉପଲବ୍‌ଧିରେ ସ୍ୱତନ୍ତ୍ର ସଂପାଦନ ହୋଇ ଇଷ୍ଟ ଓ ଅନିଷ୍ଟ ଉପଲବ୍‌ଧ କରେ, ସେହିପରି, ଅନିୟମଃ-ଇଷ୍ଟ ଓ ଅନିଷ୍ଟ ଅନିୟମରୁ ସଂପାଦନ ହୁଏ ।

(୨) ମୂଳ - (କ) ଯଥାୟମାତ୍ମୋପଲବ୍‌ଧିଂ ପ୍ରତି ସ୍ୱତନ୍ତ୍ରୋଽପ୍ୟନିୟମେନେଷ୍ଟମନିଷ୍ଟଂ ଚୋପଲଭତ ଏବମନିୟମେନୈବେଷ୍ଟମନିଷ୍ଟଞ୍ଚ ସମ୍ପାଦୟିଷ୍ୟାତି । ଉପଲବ୍‌ଧାବପ୍ୟସ୍ୱାତନ୍ତ୍ର୍ୟ-ମୁପଲବ୍‌ଧିହେତୁପାଦାନୋପଲମ୍ଭାଦିତି ଚେତ୍‌ନ । ବିଷୟପ୍ରକଳ୍ପନାମାତ୍ରପ୍ରୟୋଜନତ୍ୱାଦୁପ-ଲବ୍‌ଧିହେତୁନାମ । ଉପଲବ୍‌ଧୌ ତ୍ୱନନ୍ୟାପେକ୍ଷତ୍ୱମାତ୍ମନଶ୍ଚୈତନ୍ୟ ଯୋଗାତ୍ ।

(ଖ) ଅପି ଚାର୍ଥକ୍ରିୟାୟାମପି ନାତ୍ୟନ୍ତମାତ୍ମନଃ ସ୍ୱାତନ୍ତ୍ର୍ୟମସ୍ତି ଦେଶକାଳନିମିତ୍ତ ବିଶେଷାପେକ୍ଷତ୍ୱାତ୍ । ନଚ ସହାୟାପେକ୍ଷ୍ୟ କର୍ତ୍ତୃଃ କର୍ତ୍ତୃତ୍ୱଂ ନିବର୍ତ୍ତତେ । ଭବତି ହ୍ୟେଧୋଦ କାଦ୍ୟପେକ୍ଷସ୍ୟାପି ପକ୍ତୁଃ ପକ୍ତୃତ୍ୱମ୍ । ସହାକାରିବୈଚିତ୍ର୍ୟାଚ୍ଚେଷ୍ଟାର୍ଥ-କ୍ରିୟାୟାମନିୟମେନ ପ୍ରବୃତ୍ତିରାତ୍ମନୋ ନ ବିରୁଦ୍ଧତେ ।

(୩) ଭାଷାଂତର- (କ) ଯେପରି ଆତ୍ମା ଉପଲବ୍ଧି ପ୍ରତି ସ୍ୱତନ୍ତ ହୋଇ ଅନିୟମଦ୍ୱାରା ଇଷ୍ଟ ଓ ଅନିଷ୍ଟ ଉପଲବ୍ଧ କରେ, ସେପରି ଅନିୟମରୁ ଇଷ୍ଟ ଓ ଅନିଷ୍ଟର ସଂପାଦନ ହେବ । ଉପଲବ୍ଧିରେ ଆତ୍ମା ସ୍ୱତନ୍ତ୍ର ନୁହେଁ, କାରଣ- ଉପଲବ୍ଧିହେତୁର ଉପାଦାନ ଉପଲବ୍ଧ ଅଟେ ବୋଲି 'ଯଦି କହ, ତାହା ଠିକ୍ ନୁହେଁ । କାରଣ- ଉପଲବ୍ଧହେତୁର ପ୍ରୟୋଜନ କେବଳ ବିଷୟକଳ୍ପନା ମାତ୍ର ଅଟେ । ଉପଲବ୍ଧିରେ ଆତ୍ମା ଅନ୍ୟକୁ ଅପେକ୍ଷା କରେ ନାହିଁ । କାରଣ-ଚୈତନ୍ୟ ଯୁକ୍ତ ହୋଇଛି ।

(ଖ) ଅର୍ଥକ୍ରିୟାରେ ଆତ୍ମା ଅତ୍ୟନ୍ତ ସ୍ୱତନ୍ତ୍ରତା ନୁହେଁ । କାରଣ- ଦେଶକାଳ ଏବଂ ନିମିତ୍ତବିଶେଷକୁ ଅପେକ୍ଷା କରେ । ସହକାରୀକୁ ଅପେକ୍ଷା କରୁଥିବା କର୍ତ୍ତାର କର୍ତ୍ତୃତ୍ୱ ନିବୃତ୍ତ ହୁଏ ନାହିଁ । କାରଣ-କାଷ୍ଠ, ଜଳାଦିକୁ ଅପେକ୍ଷା କରୁଥିବା ପାଚକର ପାକକର୍ତ୍ତୃତ୍ୱ ବ୍ୟବହାର ହୁଏ । ସହକାରୀ ବୈଚିତ୍ର୍ୟରୁ ଇଷ୍ଟ ଓ ଅନିଷ୍ଟ ଅର୍ଥକ୍ରିୟାରେ ନିୟମବିନା ଆତ୍ମା ପ୍ରବୃତ୍ତି ବିରୁଦ୍ଧ ନୁହେଁ ।

## शक्तिविपर्ययात् ॥ ३८ ॥

## ୧- ଶକ୍ତିବିପର୍ଯ୍ୟୟାତ୍ ॥୨-୩-୩୮॥

ବୁଦ୍ଧିକୁ କର୍ତ୍ତା ରୂପରେ ସ୍ୱୀକାର କଲେ କରଣଶକ୍ତିର ବିପର୍ଯ୍ୟୟ ହେବ ।

(୨) ମୂଳ- (କ) ଇତଶ୍ଚ ବିଜ୍ଞାନବ୍ୟତିରିକ୍ତୋ ଜୀବଃ କର୍ତ୍ତା ଭବିତୁମର୍ହତି । ଯଦି ପୁନର୍ବିଜ୍ଞାନଶବ୍ଦବାଚ୍ୟା ବୁଦ୍ଧିରେବ କର୍ତ୍ତ୍ରୀସ୍ୟାତ୍ ତତଃ ଶକ୍ତିବିପର୍ଯ୍ୟୟଃ ସ୍ୟାତ୍ । କରଣ-ଶକ୍ତିର୍ବୁଦ୍ଧେର୍ହୀୟେତ କର୍ତ୍ତୃଶକ୍ତିଶ୍ଚାପଦ୍ୟେତ । ସତ୍ୟାଂ ଚ ବୁଦ୍ଧେଃ କର୍ତ୍ତୃଶକ୍ତୌ ତସ୍ୟା ଏବାହଂପ୍ରତ୍ୟୟବିଷୟତ୍ୱମଭ୍ୟୁପଗନ୍ତବ୍ୟମ୍ । ଅହଙ୍କାରପୂର୍ବିକାୟା ଏବ ପ୍ରବୃତ୍ତେଃ ସର୍ବତ୍ର ଦର୍ଶନାତ୍ । ଅହଂ ଗଚ୍ଛାମ୍ୟହମାଗଚ୍ଛମ୍ୟହଂ ଭୁଞ୍ଜେଽହଂ ପିବାମୀତି ଚ ।

(ଖ) ତସ୍ୟାଶ୍ଚ କର୍ତ୍ତୃଶକ୍ତିଯୁକ୍ତାୟାଃ ସର୍ବାର୍ଥକାରି କରଣମନ୍ୟତ୍ କଳ୍ପୟିତବ୍ୟମ୍ । ଶକ୍ତୋଽପି ହି ସନ୍‌କର୍ତ୍ତା କରଣମୁପାଦାୟ କ୍ରିୟାସୁ ପ୍ରବର୍ତ୍ତମାନୋ ଦୃଶ୍ୟତ ଇତି । ତତଶ୍ଚ ସଂଜ୍ଞାମାତ୍ରେ ବିବାଦଃ ସ୍ୟାନ୍ନ ବସ୍ତୁଭେଦଃ କଶ୍ଚିତ୍ । କରଣବ୍ୟତିରିକ୍ତସ୍ୟ କର୍ତ୍ତୃତ୍ୱାଭ୍ୟୁପଗମାତ୍ ।

(୨) ଭାଷାଂତର - (କ) ତେଣୁ ବିଜ୍ଞାତ ବ୍ୟତିରିକ୍ତ ଜୀବ କର୍ତ୍ତା ଅଟେ । ପୁଣି ଯଦି ବିଜ୍ଞାନ ଶବ୍ଦବାଚ୍ୟ ବୁଦ୍ଧି କର୍ତ୍ତା ହେବ, ତେବେ ଶକ୍ତିର ବିପର୍ଯ୍ୟୟ ହେବ । ବୁଦ୍ଧିର କରଣଶକ୍ତି ନାଶ ହୁଏ ଏବଂ ତାହା ଉପରେ କର୍ତ୍ତୃଶକ୍ତି ପ୍ରସକ୍ତ ହେବ । ବୁଦ୍ଧିରେ କର୍ତ୍ତୃଶକ୍ତି ହେଲେ ସେଠାରେ ଅହଂପ୍ରତ୍ୟୟବିଷୟତା ସ୍ୱୀକାର କରିବାକୁ ପଡ଼େ । କାରଣ- 'ମୁଁ ଯାଉଛି' 'ମୁଁ ଆସୁଛି' 'ମୁଁ ପିଉଛି' ଏହିପରି ଅହଙ୍କାର ପୂର୍ବକ ପ୍ରବୃତ୍ତି ସର୍ବତ୍ର ଦେଖାଯାଏ ।



(ଖ) କର୍ତୃଶକ୍ତି ସହିତ ବୁଦ୍ଧିକୁ ସର୍ବାର୍ଥକାରୀ ଅନ୍ୟକରଣ କଳ୍ପନା କରାଯିବ । କର୍ତ୍ତା ସମର୍ଥ ହୋଇ କରଣକୁ ଗ୍ରହଣକରି କ୍ରିୟାଗୁଡ଼ିକରେ ପ୍ରବୃତ୍ତ ହେବାର ଦେଖାଯାଏ । ତେଣୁ କେବଳ ନାମରେ ବିବାଦ ହୁଏ, ବସ୍ତୁରେ କିଛି ଭେଦ ନାହିଁ । କାରଣ- କରଣ ବିନା କର୍ତ୍ତା ସ୍ୱୀକାର କରାଯାଇଛି ।

## समाध्यभावाच्च ॥ ३९ ॥

## ସମାଧ୍ୟଭାବାଚ୍ଚ ॥୨-୩-୩୯॥

ଆତ୍ମା କର୍ତ୍ତା ନ ହେଲେ ବେଦାନ୍ତରେ ପ୍ରତିପାଦିତ ବ୍ରହ୍ମରସାକ୍ଷାତ୍ କାର ସାଧନଭୂତ ସମାଧିର ଅଭାବ ହେବ । ତେଣୁ ଆତ୍ମା କର୍ତ୍ତା ଅଟେ ।

(୨) ମୂଳ- ଯୋଽପ୍ୟୟମୌପନିଷଦାତ୍ମପ୍ରତିପତ୍ତିପ୍ରୟୋଜନଃ ସମାଧିରୁପଦିଷ୍ଟୋ ବେଦାନ୍ତେଷୁ - 'ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ, ସୋଽନ୍ୱେଷ୍ଟବ୍ୟଃ ସ ବିଜିଜ୍ଞାସିତବ୍ୟଃ' (ବୃ ୨-୪-୫) 'ଓମିତ୍ୟେବଂ ଧ୍ୟାୟଥ ଆତ୍ମାନାମ୍' (ମୁଣ୍ଡ ୨-୨-୬) ଇତ୍ୟେବଂଲକ୍ଷଣଃ, ସୋଽପ୍ୟୟସତ୍ୟାତ୍ମନଃ କର୍ତୃତ୍ୱେ ନୋପପଦ୍ୟେତ । ତସ୍ମାଦପ୍ୟସ୍ୟ କର୍ତୃତ୍ୱସିଦ୍ଧିଃ ।

(୨) ଭାଷାଂତର- 'ଆତ୍ମା ବାଽରେ' (ହେ ମୈତ୍ରେୟୀ ! ଆତ୍ମା ଦର୍ଶନ କରିବାର ଯୋଗ ଅଟେ । ତେଣୁ ତାହାକୁ ଶୁଣିବା ଉଚିତ, ଚିନ୍ତା କରିବା ଉଚିତ୍, ନିଦିଧ୍ୟାସନ କରିବା ଉଚିତ, ଅନ୍ୱେଷଣ କରିବା ଉଚିତ । ତାହାକୁ ବିଶେଷଭାବେ ଜିଜ୍ଞାସା କରିବା ଉଚିତ) ଏବଂ 'ଓମିତ୍ୟେବ' (ଓଁ-ଏହିପ୍ରକାର ଆତ୍ମାକୁ ଧ୍ୟାନ କର) ଏହିପ୍ରକାର ଯେଉଁ ଔପନିଷଦ୍ ଆତ୍ମପ୍ରତିପତ୍ତିରୂପ ପ୍ରୟୋଜନାବାନ୍ ନିଦିଧ୍ୟାସନ ବେଦାନ୍ତବାକ୍ୟଗୁଡ଼ିକରେ ଉପଦିଷ୍ଟ ହୁଏ । ତାହା ମଧ୍ୟ ଆତ୍ମାର କର୍ତ୍ତା ନ ହେଲେ ଉପପନ୍ନ ହୁଏ ନାହିଁ । ତେଣୁ ଆତ୍ମା କର୍ତ୍ତା ବୋଲି ସିଦ୍ଧ ହୁଏ ।

## १५ तक्षाधिकरणम् । सू० ॥ ४० ॥

## ତକ୍ଷାଧିକରଣ-୧୫

## यथा च तक्षोभयथा ॥ ४० ॥

## ୧-ଯଥା ଚ ତକ୍ଷୋଭୟଥା ॥୨-୩-୪୦॥

ଚ-ପରନ୍ତୁ, ଯଥା-ଯେପରି ସଂସାରରେ, ତକ୍ଷଃ-ବଢ଼େଇ, ଉଭୟଥା-କରଣ ବା ଉପକରଣ ଅପେକ୍ଷା ନିଜେ କର୍ତ୍ତା ହୋଇ ଦୁଃଖୀ ହୁଏ ଏବଂ ତାହା ଅପେକ୍ଷା ନକରି

ଅକର୍ତ୍ତା ସୁଖୀ ହୁଏ, ସେହିପରି ଆତ୍ମା ବୁଦ୍ଧି ପ୍ରଭୃତି କରଣକୁ ଅପେକ୍ଷା କରି କର୍ତ୍ତା ସଂସାରୀ ହୁଏ, ତାହାକୁ ଅପେକ୍ଷା ନ କରି ସ୍ୱରୂପରୁ ଅକର୍ତ୍ତା ଓ ପରମାନନ୍ଦଘନ ହୁଏ ।

(୨) ମୂଳ-(କ) ଏବଂ ତାବଚ୍ଛାସ୍ତ୍ରାର୍ଥବତ୍ତ୍ୱାଦିଭିର୍ହେତୁଭିଃ କର୍ତ୍ତୃତ୍ୱଂ ଶାରୀରସ୍ୟ ପ୍ରଦର୍ଶିତଂ, ତତ୍ପୁନଃ ସ୍ୱାଭାବିକଂ ବା ସ୍ୟାଦୁପାଧିନିମିତ୍ତଂ ବେତି ଚିନ୍ତ୍ୟତେ । ତତ୍ରୈତୈରେବ ଶାସ୍ତ୍ରାର୍ଥବତ୍ତ୍ୱାଦିଭିହେତୁଭିଃ ସ୍ୱାଭାବିକଂ କର୍ତ୍ତୃତ୍ୱମପବାଦହେତ୍ୱଭାବାଦିତି । ଏବଂ ପ୍ରାପ୍ତେ ବ୍ରୂମଃ । ନ ସ୍ୱାଭାବିକଂ କର୍ତ୍ତୃତ୍ୱମାତ୍ମନଃ ସମ୍ଭବତି, ଅନିର୍ମୋକ୍ଷପ୍ରସଙ୍ଗାତ୍ । କର୍ତ୍ତୃତ୍ୱସ୍ୱଭାବତ୍ୱେହ୍ୟାତ୍ମନୋ ନ କର୍ତ୍ତୃତ୍ୱାନ୍ନିର୍ମୋକ୍ଷଃ ସମ୍ଭବତି ଅଗ୍ନେରିବୌଷ୍ଣ୍ୟାତ୍ । ନଚ କର୍ତ୍ତୃତ୍ୱାଦନିର୍ମୁକ୍ତସ୍ୟାସ୍ତି ପୁରୁଷାର୍ଥସିଦ୍ଧିଃ । କର୍ତ୍ତୃତ୍ୱସ୍ୟ ଦୁଃଖସ୍ୱରୂପତ୍ୱାତ୍ ।

(ଖ) ନନୁ ସ୍ଥିତାୟାମପି କର୍ତ୍ତୃତ୍ୱଶକ୍ତୌ କର୍ତ୍ତୃତ୍ୱକାର୍ଯ୍ୟପରିହାରାତ୍ ପୁରୁଷାର୍ଥଃ ସେତ୍ସ୍ୟତି । ତତ୍ପରିହାରଶ୍ଚ ନିମିତ୍ତପରିହାରାତ୍ । ଯଥାଗ୍ନେର୍ଦହନଶକ୍ତିଯୁକ୍ତସ୍ୟାପି କାଷ୍ଠବିୟୋଗାଦହନକାର୍ଯ୍ୟାଭାବସ୍ତଦ୍ୱତ୍ । ନ । ନିମିତ୍ତାନାମପି ଶକ୍ତିଲକ୍ଷଣେନ ସମ୍ବନ୍ଧେନ ସଂବନ୍ଧାନାମତ୍ୟନ୍ତପରିହାରାସମ୍ଭବାତ୍ ।

(ଗ) ନନୁ ମୋକ୍ଷସାଧନ ବିଧାନ୍ମୋକ୍ଷଃ ସେତ୍ସ୍ୟତି । ନ । ସାଧନାୟତ୍ତସ୍ୟାନିତ୍ୟତ୍ୱାତ୍ । ଅପିଚ ନିତ୍ୟଶୁଦ୍ଧବୁଦ୍ଧମୁକ୍ତାତ୍ମପ୍ରତିପାଦନାନ୍ମୋକ୍ଷସିଦ୍ଧିରଭିମତା । ତାଦୃଗାତ୍ମପ୍ରତିପାଦନଂ ଚ ନ ସ୍ୱାଭାବିକେ କର୍ତ୍ତୃତ୍ୱେଽବକଳ୍ପେତ । ତସ୍ମାଦୁପାଧିଧର୍ମାଧ୍ୟାସେନୈବାତ୍ମନଃ କର୍ତ୍ତୃତ୍ୱଂ ନ ସ୍ୱାଭାବିକମ୍ । ତଥାଚ ଶ୍ରୁତିଃ- ଧ୍ୟାୟତୀବ ଲେଲାୟତୀବ' (ବୃ ୪-୩-୭) ଇତି । 'ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ' (କଣ୍ଠ ୩-୪) ଚୋପାଧିସଂପୃକ୍ତସ୍ୟୈବାତ୍ମନୋ ଭୋକ୍ତୃତ୍ୱାଦି ବିଶେଷଲାଭଂ ଦର୍ଶୟତି ।

(୨) ଭାଷାଂତର- (କ) ଏହିପରି ଶାସ୍ତ୍ରାର୍ଥବତ୍ତ୍ୱାଦିହେତୁ ଦ୍ୱାରା ଜୀବାତ୍ମାର କର୍ତ୍ତୃତ୍ୱଂ ପ୍ରମାଣିତ ହୁଏ । କିନ୍ତୁ ସେ ସ୍ୱାଭାବିକ, ଅଥବା ଉପାଧିନିମିତ୍ତକ ବୋଲି ଏହି ବିଷୟରେ ବିଚାର କରାଯାଏ । ସେହି ବିଚାରରେ ଏହି ଶାସ୍ତ୍ରର୍ଥବତ୍ତ୍ୱାଦିହେତୁରୁ ସ୍ୱାଭାବିକ କର୍ତ୍ତୃତ୍ୱ ହୁଏ । କାରଣ-ତାହାର ଅପବାଦକ ବିଷୟରେ କୌଣସି ନିୟମ ନାହିଁ । ସିଦ୍ଧାନ୍ତ-ଏହାପ୍ରାପ୍ତ ହେବାରୁ ଆମ୍ଭେ କହୁଁ- ଆତ୍ମାରେ ସ୍ୱାଭାବିକକର୍ତ୍ତୃତ୍ୱ ସମ୍ଭବ ନୁହେଁ, କାରଣ-ଏପରି ପ୍ରମାଣ କଲେ ଆତ୍ମାର ମୋକ୍ଷାଭାବପ୍ରସଙ୍ଗ ହେବ । ଆତ୍ମାର କର୍ତ୍ତୃତ୍ୱ ସ୍ୱାଭାବିକ ହେଲେ ଯେପରି ଅଗ୍ନିର ଔଷ୍ଣ୍ୟରୁ ମୋକ୍ଷ ମିଳେ ନାହିଁ, ସେହିପରି ଆତ୍ମାର କର୍ତ୍ତୃତ୍ୱ ଦ୍ୱାରା ମୋକ୍ଷ ହୁଏ ନାହିଁ । କର୍ତ୍ତୃତ୍ୱରୁ ମୋକ୍ଷ ନ ହେଲେ ପୁରୁଷାର୍ଥସିଦ୍ଧି ହୁଏ ନାହିଁ, କାରଣ- କର୍ତ୍ତୃତ୍ୱ ଦୁଃଖରୂପ ଅଟେ ।

(ଖ) ପରନ୍ତୁ କର୍ତ୍ତୃତ୍ୱ ଶକ୍ତିର ସ୍ଥିତି ହେଲେ କର୍ତ୍ତୃତ୍ୱ କାର୍ଯ୍ୟର ପରିହାରଦ୍ୱାରା ପୁରୁଷାର୍ଥସିଦ୍ଧ ହେବ ଏବଂ ତାହାର ପରିହାର କାରଣର ପରିହାରଦ୍ୱାରା ସମ୍ଭବପର । ଯେପରି ଦାହଶକ୍ତି ସହ ଅଗ୍ନିରେ କାଷ୍ଠ ବିୟୋଗ ହେଲେ ଦହନ କାର୍ଯ୍ୟର ଅଭାବ ହୁଏ,



ସେହିପରି ଏଠାରେ ଜାଣିବା ଉଚିତ । କିନ୍ତୁ ଏହା ଠିକ୍ ନୁହେଁ । କାରଣ-ଶକ୍ତିରୂପ ସମ୍ବନ୍ଧରୁ ସମ୍ବନ୍ଧ ନିମିତ୍ତର ପରିହାର ହୋଇପାରେ ନାହିଁ ।

(ଗ) ପରନ୍ତୁ ମୋକ୍ଷସାଧନର ବିଧାନଦ୍ୱାରା ମୋକ୍ଷ ସିଦ୍ଧ ହେବ କି ? ନୁହେଁ, କାରଣ-ଯିଏ ସାଧନର ଅଧୀନ ଅଟେ, ସେ ଅନିତ୍ୟ ଏବଂ ନିତ୍ୟ, ଶୁଦ୍ଧ, ମୁକ୍ତ, ବୁଦ୍ଧ ଆତ୍ମାକୁ ପ୍ରତିପାଦନ କରିବାରେ ମୋକ୍ଷସିଦ୍ଧି ଅଭିପ୍ରେତ ହୁଏ । ସେହିପରି ଆତ୍ମପ୍ରତିପାଦନ ସ୍ୱାଭାବିକ କର୍ତ୍ତୃତ୍ୱରେ ହୁଏ ନାହିଁ । ତେଣୁ ଉପାଧି ଧର୍ମର ଅଧ୍ୟାସରୁ ଆତ୍ମାରେ କର୍ତ୍ତୃତ୍ୱ ହୁଏ, କିନ୍ତୁ ସ୍ୱାଭାବିକ ନୁହେଁ । ଯେପରି 'ଧ୍ୟାୟତୀବ' (ଧ୍ୟାନ କରେ ଓ ଚଳନ ହୁଏ) ଏହି ଶ୍ରୁତି ଅଟେ । 'ଆତ୍ମେନ୍ଦ୍ରିୟମନୋଯୁକ୍ତମ୍' (ଶରୀର, ଇନ୍ଦ୍ରିୟ ଓ ମନଯୁକ୍ତ ବିବେକୀଲୋକ ଭୋକ୍ତା ସଂସାରୀ ହୁଏ) ଏହି ପ୍ରକାର ଶ୍ରୁତି ଉପାଧି ସମ୍ବନ୍ଧଆତ୍ମାରେ ଭୋକ୍ତୃତ୍ୱାଦି ବିଶେଷ ଲାଭ ଦେଖାଏ ।

(୩) ମୂଳ-(କ) ନହି ବିବେକିନାଂ ପରସ୍ମାଦନ୍ୟୋ ଜୀବୋ ନାମ କର୍ତ୍ତା ଭୋକ୍ତା ବା ବିଦ୍ୟତେ । 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' (ବୃ ୪-୩-୨୩) ଇତ୍ୟାଦି-ଶ୍ରବଣାତ୍ । ପର ଏବ ତର୍ହି ସଂସାରୀ କର୍ତ୍ତା ଭୋକ୍ତା ଚ ପ୍ରସଜ୍ୟେତ, ପରସ୍ମାଦନ୍ୟଶ୍ଚେ-ଚ୍ଛିତିମାଂଜୀବଃ କର୍ତ୍ତା ବୁଦ୍ଧ୍ୟାଦିସଂଘାତବ୍ୟତିରିକ୍ତୋ ନ ସ୍ୟାତ୍ । ନ । ଅବିଦ୍ୟାପ୍ରତ୍ୟୁପ-ସ୍ଥାପିତତ୍ୱାତ୍ କର୍ତ୍ତୃତ୍ୱ ଭୋକ୍ତୃତ୍ୱୟୋଃ ।

(ଖ) ତଥାଚ ଶସ୍ତ୍ରାମ୍ - 'ଯତ୍ର ହି ଦ୍ୱୈତମିବ ଭବତି, ତଦିତର ଇତରଂ ପଶ୍ୟତି' (ବୃ ୨-୪-୧୪) ଇତ୍ୟବିଦ୍ୟାବସ୍ଥାୟାଂ କର୍ତ୍ତୃତ୍ୱଭୋକ୍ତୃତ୍ୱେ ଦର୍ଶୟିତ୍ୱା ବିଦ୍ୟାବସ୍ଥାୟାଂ ତେ ଏବ କର୍ତ୍ତୃତ୍ୱଭୋକ୍ତୃତ୍ୱେ ନିବାରୟତି - 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍ କେନ କଂ ପଶ୍ୟେତ୍' (ବୃ ୨-୪-୧୪) ଇତି । ତଥା ସ୍ୱପ୍ନଜାଗରିତୟୋରାତ୍ମନ ଉପାଧିସଂପର୍କକୃତଂ ଶ୍ରମଂ ଶ୍ୟେନସ୍ୟେବାକାଶେ ବିପରିପତତଃ ଶ୍ରାବୟିତ୍ୱ । ତଦଭାବଂ ସୁଷୁପ୍ତୌ ପ୍ରାଜ୍ଞେନାତ୍ମନା ସଂପରିଷ୍ୱକ୍ତସ୍ୟ ଶ୍ରାବୟତି - 'ତଦ୍‌ବା ଅସୌତଦାପ୍ତକାମମାତ୍ମକାମମକାମଂ ରୂପଂ ଶୋକାନ୍ତରମ୍' (ବୃ ୪-୩-୨୧) ଇତ୍ୟାରଭ୍ୟ 'ଏବାସ୍ୟ ପରମା ଗତିରେଷାସ୍ୟ ପରମା ସଂପଦେଷୋଽସ୍ୟ ପରମୋ ଲୋକ ଏଷୋଽସ୍ୟ ପରମ ଆନନ୍ଦଃ' (ବୃ ୪-୩-୩୨) ଇତ୍ୟୁପସଂହାରାତ୍ ।

**(୩) ଭାଷାଂତର-** (କ) କାରଣ- 'ନାନ୍ୟୋଽତୋଽସ୍ତି (ତାହାବ୍ୟତିତ ଅନ୍ୟ କେହି ଦ୍ରଷ୍ଟା ନାହିଁ) ଇତ୍ୟାଦି ଶ୍ରୁତିବାକ୍ୟରେ ବିବେକ ଦୃଷ୍ଟିରେ ପରଂବ୍ରହ୍ମ ବ୍ୟତିତ ଅନ୍ୟ କର୍ତ୍ତା ଭୋକ୍ତା ନାମକ ଜୀବ କେହି ନାହାନ୍ତି । କିନ୍ତୁ ତଦ୍ଦ୍ୱାରା ପରମାତ୍ମା ସଂସାରୀ, କର୍ତ୍ତା, ଭୋକ୍ତାରୂପେ ପ୍ରସକ୍ତ ହେବ । ଚେତନଯୁକ୍ତ କର୍ତ୍ତା ଜୀବ ଯଦି ପରମାତ୍ମା ଠାରୁ ପୃଥକ୍ ହୁଏ, ତେବେ ବୁଦ୍ଧି ପ୍ରଭୃତି ସଂଘାତ ବ୍ୟତିରିକ୍ତ ହୁଏ ନାହିଁ ବୋଲି କହିବା ଠିକ୍ ନୁହେଁ । କାରଣ-କର୍ତ୍ତୃତ୍ୱ ଭୋକ୍ତୃତ୍ୱ ଅବିଦ୍ୟାଦ୍ୱାରା ପ୍ରତ୍ୟୁପସ୍ଥାପିତ ହୁଏ ।

(ଖ) ତଥା 'ଯତ୍ର ହି ଦ୍ୱୈତମେବ' (ଯେଉଁ ଅବସ୍ଥାରେ ଦ୍ୱୈତ ହୁଏ, ସେ ନିଜେ ଅନ୍ୟକୁ ଦେଖେ) ଏହିପ୍ରକାର ଅବିଦ୍ୟା ଅବସ୍ଥାରେ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ ଦେଖାଇ 'ଯତ୍ର ତ୍ୱସ୍ୟ' (କିନ୍ତୁ ଯେଉଁଠି ଏହା ପାଇଁ ସବୁ ଆତ୍ମା ହୋଇଗଲା ସେଠାରେ କିଏ କାହାକୁ ଦେଖିବ) ଏହିପ୍ରକାର ବିଦ୍ୟା ଅବସ୍ଥାରେ କର୍ତ୍ତୃତ୍ୱ, ଭୋକ୍ତୃତ୍ୱକୁ ଶ୍ରୁତି ନିବାରଣ କରେ । ସେହିପରି ସ୍ୱପ୍ନ ଓ ଜାଗରିତ ଅବସ୍ଥାରେ ଆକାଶରେ ଉଡୁଥିବା ଶ୍ୟେନ (ବାଜପେୟୀ) ପକ୍ଷୀ ସଦୃଶ ଆତ୍ମାର ଉପାଧି ସଂପର୍କରେ ଉତ୍ପନ୍ନ ହୋଇଥିବା ଶ୍ରମର ଶ୍ରବଣ କରି ଶ୍ରୁତି ସୁଷୁପ୍ତିରେ ପ୍ରାଜ୍ଞ ଆତ୍ମାର ଉପାଧିସଂପର୍କରେ ଉତ୍ପନ୍ନ ହୋଇଥିବା ଶ୍ରମର ଶ୍ରବଣ କରି ଶ୍ରୁତି ସୁଷୁପ୍ତିରେ ପ୍ରାଜ୍ଞ ଆତ୍ମାର ସହ ସମ୍ୟଗ୍ ଐକ୍ୟପ୍ରାପ୍ତ କରି ଶ୍ରମାଭାବ ଶ୍ରବଣ କରାଏ । 'ତଦ୍ ବା' (ଏହି ଜ୍ୟୋତିଃ ସ୍ୱରୂପ ଆତ୍ମାର ଆପ୍ତକାମ, ଆତ୍ମକାମ, ଅକାମ ଓ ଶୋକଶୂନ୍ୟ ସ୍ୱରୂପ ହୁଏ) ଏହିପରି ଆରମ୍ଭ କରି 'ଏଷାସ୍ୟ' (ଏହା ଏହି ପୁରୁଷର ପରଗତି ଅଟେ, ଏହା ତାହାର ପରମସଂପତ୍ତି ଅଟେ । ଏହା ତାହାର ପରମ ଲୋକ ଅଟେ । ଏହା ତାହାର ପରମ ଆନନ୍ଦ ଅଟେ) ଏହା ହିଁ ଉପସଂହାର କରେ ।

(ଗ) ତେଣୁ ଆଚାର୍ଯ୍ୟ 'ଯଥା ଚ ତକ୍ଷୋଭୟଥା' ବୋଲି କହିଛନ୍ତି । ସୂତ୍ରସ୍ଥ ଏହି 'ଚ' ଶବ୍ଦ 'ତୁ' ଅର୍ଥରେ ପଢ଼ାଯାଇଛି । କିନ୍ତୁ ଅଗ୍ନିର ଉଷ୍ଣତାପରି ଆତ୍ମାର କର୍ତ୍ତୃତ୍ୱ ସ୍ୱାଭାବିକ ଅଟେ ବୋଲି ସ୍ୱୀକାର କରିବା ଉଚିତ ନୁହେଁ । ପରନ୍ତୁ ଯେପରି ସଂସାରରେ ବଢ଼େଇ ବାରେଶୀ (କାଷ୍ଠଛେଦନ କରଣ) ପ୍ରଭୃତି ଉପକରଣକୁ ହସ୍ତରେ ଧରି କର୍ତ୍ତା ହୋଇ ଦୁଃଖୀ ହୁଏ, ସେ ନିଜ ଘରକୁ ଯାଇ ବାରେଶୀ ଇତ୍ୟାଦି କରଣକୁ ପରିତ୍ୟାଗ କରି ସ୍ୱସ୍ଥ, ଶାନ୍ତ, ବ୍ୟାପାରଶୂନ୍ୟ ଓ ସୁଖୀ ହୁଏ, ସେହିପରି ଅବିଦ୍ୟାଦ୍ୱାରା ପ୍ରତ୍ୟୁପସ୍ଥାପିତ ଦ୍ୱୈତସମ୍ବନ୍ଧ ଆତ୍ମା ସ୍ୱପ୍ନ ଓ ଜାଗରିତ ଅବସ୍ଥାରେ କର୍ତ୍ତା ହୋଇ ଦୁଃଖୀ ହୁଏ, ସେହି ଆତ୍ମା ଶ୍ରମରୁ ନିବୃତ୍ତ ହେବାପାଇଁ ସ୍ୱସ୍ୱରୂପ ପରଂବ୍ରହ୍ମରେ ପ୍ରବେଶ କରି କାର୍ଯ୍ୟକାରଣର ସଂଘାତରୁ ମୁକ୍ତ ହୋଇ ସୁଖୀ ହୁଏ ।

(ଘ) ସେହିପରି ମୁକ୍ତି ଅବସ୍ଥାରେ ଅବିଦ୍ୟା ଅନ୍ଧକାରକୁ ବିଦ୍ୟାପ୍ରଦୀପଦ୍ୱାରା ନିବୃତ୍ତ କରି ଆତ୍ମା କେବଳ ଶାନ୍ତ ଓ ସୁଖୀ ହୁଏ । ତକ୍ଷରଦୃଷ୍ଟାନ୍ତ ଏତିକିସ୍ଥାନରେ ଜାଣିବା ଉଚିତ । ତକ୍ଷ କେବଳ ଛେଦନାବିଶିଷ୍ଟ ବ୍ୟାପାରରେ ପ୍ରତିନିୟତ ବାରେଶୀ ପ୍ରଭୃତି କରଣକୁ ଅପେକ୍ଷା କରି କର୍ତ୍ତା ହୁଏ । ନିଜଶରୀରରୁ ଅକର୍ତ୍ତା ହୁଏ । ସେହିପରି ଏହି ଆତ୍ମା ସମସ୍ତ ବ୍ୟାପାରରେ ମନପ୍ରଭୃତି କରଣକୁ ଅପେକ୍ଷା କରି କର୍ତ୍ତା ହୁଏ । ନିଜ ସ୍ୱରୂପରେ ଅକର୍ତ୍ତା ହୁଏ । ତକ୍ଷ ସଦୃଶ ଆତ୍ମାର ଅବୟବ ନାହିଁ । ଯେପରି ତକ୍ଷ ହସ୍ତାଦିଦ୍ୱାରା ବାରେଶୀକୁ ଗ୍ରହଣ ଓ ତ୍ୟାଗକରେ, ସେପରି ଆତ୍ମା ମଧ୍ୟ ମନ ପ୍ରଭୃତି କରଣକୁ ଗ୍ରହଣ କରେ ଅଥବା ତ୍ୟାଗ କରେ ।

(୪) ମୂଳ-(କ) ଯତ୍ତୁକ୍ତଂ ଶାସ୍ତ୍ରାର୍ଥବତ୍ତ୍ୱାଦିଭିଃ ହେତୁଭିଃ ସ୍ୱାଭାବିକମାତ୍ମନଃ କର୍ତ୍ତୃତ୍ୱମିତି । ତନ୍ନ । ବିଧିଶାସ୍ତ୍ରଂ ତାବଦ୍ୟଥାପ୍ରାପ୍ତଂ କର୍ତ୍ତୃତ୍ୱମୁପାଦାୟ କର୍ତ୍ତବ୍ୟବିଶେଷମୁପଦିଶତି ନ କର୍ତ୍ତୃତ୍ୱମାତ୍ମନଃ ପ୍ରତିପାଦୟତି । ନଚ ସ୍ୱାଭାବିକମସ୍ୟ କର୍ତ୍ତୃତ୍ୱମସ୍ତି ବ୍ରହ୍ମାତ୍ମତ୍ୱୋପଦେଶାଦିତ୍ୟବୋଚମ ।



ତସ୍ମାଦବିଦ୍ୟାକୃତଂ କର୍ତ୍ତୃତ୍ୱମୁପାଦାୟ ବିଧିଶାସ୍ତ୍ରଂ ପ୍ରବର୍ତ୍ତିଷ୍ୟତେ । କର୍ତ୍ତା ବିଜ୍ଞାନାତ୍ମା ପୁରୁଷ ଇତ୍ୟେବଂଜାତୀୟକମପି ଶାସ୍ତ୍ରମନୁବାଦରୂପତ୍ୱାଦ୍ୟଥାପ୍ରାପ୍ତମେବାବିଦ୍ୟାକୃତଂ କର୍ତ୍ତୃତ୍ୱମନୁବଦିଷ୍ୟତି । ଏତେନ ବିହାରୋପାଦାନେ ପରିହୃତେ । ତୟୋରପ୍ୟନୁବାଦରୂପତ୍ୱାତ୍ ।

(ଖ) ନନୁ ସନ୍ଧ୍ୟେ ସ୍ଥାନେ ପ୍ରସୁପ୍ତେଷୁ କରଣେଷୁ ସ୍ୱେଶରୀରେ ଯଥାକାମଂ ପରିବର୍ତ୍ତତ ଇତି ବିହାର ଉପଦିଶ୍ୟମାନଃ କେବଲସ୍ୟାତ୍ମନଃ କର୍ତ୍ତୃତ୍ୱମାବହତି । ତଥୋପାଦାନେଽପି 'ତଦେଷାଂ ପ୍ରାଣାନାଂ ବିଜ୍ଞାନେନ ବିଜ୍ଞାନମାଦାୟ' ଇତି କରଣେଷୁ କର୍ମକରଣବିଭକ୍ତୀ ଶ୍ରୂୟମାଣେ କେବଲସ୍ୟାତ୍ମନଃ କର୍ତ୍ତୃତ୍ୱଂ ଗମୟତ ଇତି ।

(ଗ) ଅତ୍ରୋଚ୍ୟତେ- ନ ତାବତ୍ସନ୍ଧେ ସ୍ଥାନେଽତ୍ୟନ୍ତମାତ୍ମନଃ କରଣବିରମଣମସ୍ତି । ସଧୀଃ ସ୍ୱପ୍ନୋ ଭୂତ୍ୱେମଂ ଲୋକମତିକ୍ରାମତି' (ବୃ ୪-୩-୭) ଇତି ତତ୍ରାପି ଧୀସମ୍ବନ୍ଧଶ୍ରବଣାତ୍ । ତଥାଚ ସ୍ମରନ୍ତି - 'ଇନ୍ଦ୍ରିୟାଣାମୁପରମେ ମନୋଽନୁପରତଂ ଯଦି । ସେବତେ ବିଷୟାନେବ ତଦ୍‌ବିଦ୍ୟାତ୍ ସ୍ୱପ୍ନଦର୍ଶନମ୍' ଇତି । 'କାମାଦୟଶ୍ଚ ମନସୋ ବୃତ୍ତୟଃ' ଇତି ଶ୍ରୁତି । ତାଶ୍ଚସ୍ୱପ୍ନେଦୃଶ୍ୟନ୍ତେ । ତସ୍ମାତ୍ ସମନା ଏକ ସ୍ୱପ୍ନେ ବିହରତି ।

**(୪) ଭାଷାଂତର**-(କ) ଶାସ୍ତ୍ରାର୍ଥବତ୍ତ୍ୱାଦି ହେତୁଦ୍ୱାରା ଆତ୍ମାର ସ୍ୱାଭାବିକକର୍ତ୍ତୃତ୍ୱ ହୁଏ ବୋଲି ଯାହା କୁହାଯାଇଅଛି, ତାହା ଠିକ୍ ନୁହେଁ । କାରଣ-ବିଧିଶାସ୍ତ୍ର କିନ୍ତୁ ଲୋକପ୍ରସିଦ୍ଧ କର୍ତ୍ତୃତ୍ୱକୁ ନେଇ କର୍ତ୍ତବ୍ୟ ବିଶେଷର ବ୍ୟପଦେଶ କରେ । ଆତ୍ମାରେ କର୍ତ୍ତୃତ୍ୱର ପ୍ରତିପାଦନ କରେ ନାହିଁ । ଆତ୍ମାର କର୍ତ୍ତୃତ୍ୱ ସ୍ୱାଭାବିକ ନୁହେଁ । କାରଣ- ସେଥିରେ ବ୍ରହ୍ମାତ୍ମତ୍ୱର ଉପଦେଶକୁ ଆମ୍ଭେ କହିଅଛୁ । ତେଣୁ ଅବିଦ୍ୟାକୃତ କର୍ତ୍ତୃତ୍ୱକୁ ନେଇ ବିଧିଶାସ୍ତ୍ର ପ୍ରବୃତ୍ତ ହେବ । 'କର୍ତ୍ତା ବିଜ୍ଞାନାତ୍ମା ପୁରୁଷଃ' ଏହିପ୍ରକାର ଶାସ୍ତ୍ର ଅନୁବାଦ ରୂପହେଲେ ଯଥାପ୍ରାପ୍ତ ଅବିଦ୍ୟାକୃତ କର୍ତ୍ତୃତ୍ୱର ଅନୁବାଦ କରିବ । ତେଣୁ ବିହାର ଓ ଉପାଦାନର ପରିହାର ହୋଇଛି । କାରଣ- ସେମାନେ ଅନୁବାଦରୂପ ଅଟନ୍ତି ।

(ଖ) ପରନ୍ତୁ ସ୍ୱପ୍ନାବସ୍ଥାରେ କରଣ ପ୍ରସୁପ୍ତ ହେଲେ ନିଜଶରୀରରେ ଯଥେଷ୍ଟ ପରିବର୍ତ୍ତନ କରେ । ଏହିପ୍ରକାର ଉପଦେଶ ଦିଆଯାଇଥିବା ବିହାର କେବଳ ଆତ୍ମାରେ କର୍ତ୍ତୃତ୍ୱ ସିଦ୍ଧି କରେ ଏବଂ ଉପାଦାନରେ ମଧ୍ୟ 'ତଦେଷାଂ ପ୍ରାଣାନାମ୍' (ସେ ବୁଦ୍ଧି ଦ୍ୱାରା ଏହି ଇନ୍ଦ୍ରିୟଗୁଡ଼ିକୁ ଶକ୍ତିରୂପେ ଗ୍ରହଣ କରି ଶୟନ କରେ) ଏହିପ୍ରକାର କରଣରେ ତୃଶ୍ରୂୟମାଣକର୍ମ ଓ କରଣ ବିଭକ୍ତି କେବଳ ଆତ୍ମାର କର୍ତ୍ତୃତ୍ୱ ଜ୍ଞାନ କରେ ।

(ଗ) ତେଣୁ ଏହି ବିଷୟରେ କୁହାଯାଇଅଛି- ସ୍ୱପ୍ନାବସ୍ଥାରେ ଆତ୍ମା କରଣଠାରୁ ସଂପୂର୍ଣ୍ଣତଃ ବିରାମ ହୁଏ ନାହିଁ । କାରଣ- 'ସଧୀଃ ସ୍ୱପ୍ନ' (ବୁଦ୍ଧି ସହିତ ସ୍ୱପ୍ନ ହୋଇ ଏହି ଲୋକକୁ ଅତିକ୍ରମଣ କରେ) ଏହିପ୍ରକାର ସ୍ୱପ୍ନରେ ବୁଦ୍ଧି ସହିତ ସମ୍ବନ୍ଧ ଶ୍ରବଣ କରାଯାଏ । ଯେପରିକି 'ଇନ୍ଦ୍ରିୟାଣାମୁପରମେ' (ଇନ୍ଦ୍ରିୟର ଉପରତ ହେଲେ ଯଦି ମନ ଉପରତ ନ

ହୋଇ ବିଷୟଗୁଡ଼ିକୁ ସେବନ କରେ, ତେବେ ତାହାକୁ ସ୍ୱପ୍ନଦର୍ଶନ ବୋଲି ଜାଣିବା ଉଚିତ) - ଏହାହିଁ ସ୍ମୃତିରେ ନିହତ ଅଛି । 'କାମାଦୟଃ ମନସଃ' (କାମ ପ୍ରଭୃତି ମନର ବୃତ୍ତି ଅଟନ୍ତି) - ଏହା ଶ୍ରୁତିରେ ଅଛି । ସେହି ବୃତ୍ତିଗୁଡ଼ିକ ସ୍ୱପ୍ନରେ ଦେଖାଯା'ନ୍ତି । ତେଣୁ ଆତ୍ମା ସ୍ୱପ୍ନରେ ମନ ସହିତ ବିହାର କରେ ।

(୫) ମୂଳ-(କ) ବିହାରୋଽପି ଚ ତତ୍ରତ୍ୟୋ ବାସନାମୟ ଏବ ନତୁ ପାରମାର୍ଥିକୋଽସ୍ତି । ତଥା ଚ ଶ୍ରୁତିରିବାକାରାନୁବଦ୍ଧମେବ ସ୍ୱପ୍ନବ୍ୟାପାରଂ ବର୍ଣ୍ଣୟତି - 'ଉତେବ ସ୍ତ୍ରୀଭିଃ ସହ ମୋଦମାନୋ ଜକ୍ଷୁଦୁତେବାପି ଭୟାନି ପଶ୍ୟନ୍' (ବୃ ୪-୩-୧୩) ଇତି । ଲୌକିକା ଅପି ତଥୈବ ସ୍ୱପ୍ନଂ କଥୟନ୍ତି-ଆରୁକ୍ଷମିବ ଗିରିଶୃଙ୍ଗମଦ୍ରାକ୍ଷମିବ ବନରାଜିମିତି । ତଥୋପାଦାନେଽପି ଯଦ୍ୟପି କରଣେଷୁ କର୍ମକରଣବିଭକ୍ତିନିର୍ଦ୍ଦେଶସ୍ତଥାପି ତତ୍‌ସଂପୃକ୍ତସ୍ୟୈବାତ୍ମନଃ କର୍ତ୍ତୃତ୍ୱଂ ଦ୍ରଷ୍ଟବ୍ୟମ୍ । କେବଳେ କର୍ତ୍ତୃତ୍ୱାସମ୍ଭବସ୍ୟ ଦର୍ଶିତତ୍ୱାତ୍ ।

(ଖ) ଭବତି ଚ ଲୋକେଽନେକପ୍ରକାରା ବିବକ୍ଷା ଯୋଧା ଯୁଧ୍ୟନ୍ତେ ଯୋଧୈଃ ରାଜା ଯୁଧ୍ୟତ ଇତି । ଅପିଚାସ୍ମିନ୍ନୁପାଦାନେ କରଣବ୍ୟାପାରୋପରମାମତ୍ରଂ ବିବକ୍ଷ୍ୟତେ ନ ସ୍ୱାତନ୍ତ୍ର୍ୟଂ କସ୍ୟଚିଦବୁଦ୍ଧିପୂର୍ବକସ୍ୟାପି ସ୍ୱାପେ କରଣବ୍ୟାପାରୋପରମସ୍ୟ ଦୃଷ୍ଟତ୍ୱାତ୍ । ଯସ୍ତ୍ୱୟଂ ବ୍ୟପଦେଶୋ ଦର୍ଶିତଃ 'ବିଜ୍ଞାତଂ ଯଜ୍ଞଂ ତନୁତେ ଇତି, ସ ବୁଦ୍ଧେରେବ କର୍ତ୍ତୃତ୍ୱଂ ପ୍ରାପୟତି । ବିଜ୍ଞାନଶବ୍ଦସ୍ୟ ତତ୍ର ପ୍ରସିଦ୍ଧତ୍ୱାତ୍ । ମନୋନନ୍ତରଂ ପାଠାଚ୍ଚ । 'ତସ୍ୟ ଶ୍ରଦ୍ଧୈବ ଶିରଃ' (ତୈ ୨-୪) ବୁଦ୍ଧି ଇତି ଚ ବିଜ୍ଞାନମୟସ୍ୟାତ୍ମନଃ ଶ୍ରଦ୍ଧାଦ୍ୟବୟବତ୍ୱସଙ୍କୀର୍ତ୍ତନାତ୍ । ଶ୍ରଦ୍ଧାଦୀନାଞ୍ଚ ବୁଦ୍ଧଧର୍ମତ୍ୱପ୍ରସିଦ୍ଧେଃ ।

(ଗ) 'ବିଜ୍ଞାନଂ ଦେବାଃ ସର୍ବେ ବ୍ରହ୍ମ ଜ୍ୟେଷ୍ଠମୁପାସତେ' (ତୈ ୨-୫-୧) ଇତି ଚ ବାକ୍ୟଶେଷାତ୍ । ଜ୍ୟେଷ୍ଠତ୍ୱସ୍ୟ ଚ ପ୍ରଥମଜତ୍ୱସ୍ୟ ବୁଦ୍ଧୌ ପ୍ରସିଦ୍ଧତ୍ୱାତ୍ । 'ସ ଏଷ ବାଚଶ୍ଚିତ୍ତସ୍ୟୋତ୍ତରୋତ୍ତରକ୍ରମୋ ଯଦ୍ୟଜ୍ଞଃ' ଇତି ଶ୍ରୁତ୍ୟନ୍ତରେ ଯଜ୍ଞସ୍ୟ ବାଗ୍‌ବୁଦ୍ଧିସାଧତ୍ୱାବ-ଧାରଣାତ୍ । ନ ଚ ବୁଦ୍ଧେଃ ଶକ୍ତିବିପର୍ଯ୍ୟୟଃ କରଣାନାଂ କର୍ତ୍ତୃତ୍ୱାଭ୍ୟୁପଗମେ ଭବତି । ସର୍ବକାରକାଣାମେବ ସ୍ୱସ୍ୱବ୍ୟାପାରେଷୁ କର୍ତ୍ତୃତ୍ୱସ୍ୟାବଶ୍ୟଂଭାବିତ୍ୱାତ୍ । ଉପଲବ୍ଧ୍ୟପେକ୍ଷଂ ତ୍ୱେଷାଂ କରଣାନାଂ କରଣତ୍ୱଂ, ସା ଚାତ୍ମନଃ । ନ ଚ ତସ୍ୟାମପ୍ୟସ୍ୟ କର୍ତ୍ତୃତ୍ୱମସ୍ତି । ନିତ୍ୟୋପଲବ୍ଧିସ୍ୱରୂପତ୍ୱାତ୍ ।

(ଘ) ଅହଙ୍କାରପୂର୍ବକମପି କର୍ତ୍ତୃତ୍ୱଂ ନୋପଲବ୍ଧୁର୍ଭବିତୁମର୍ହତି । ଅହଙ୍କାରସ୍ୟା ପ୍ୟୁପଲଭ୍ୟମାନତ୍ୱାତ୍ । ନ ଚୈବଂ ସତି କରଣାନ୍ତରକଳ୍ପନାପ୍ରସଙ୍ଗଃ । ବୁଦ୍ଧେଃ କରଣତ୍ୱାଭ୍ୟୁପଗମାତ୍ । ସମାଧଭାବସ୍ତୁ ଶାସ୍ତ୍ରାର୍ଥବତ୍ତ୍ୱେନୈବ ପରିହୃତଃ । ଯଥାପ୍ରାପ୍ତମେବ କର୍ତ୍ତୃତ୍ୱମୁପାଦାୟ ସମାଧିବିଧାନାତ୍ । ତସ୍ମାତ୍ କର୍ତ୍ତୃତ୍ୱମପ୍ୟାତ୍ମନ ଉପାଧିନିମିତ୍ତମେବେତି ସ୍ଥିତମ୍ ।

**(୫) ଭାଷାଂତର-** (କ) ସ୍ୱପ୍ନାବସ୍ଥାରେ ବିହାର ବାସନାମୟ ଅଟେ, କିନ୍ତୁ ପାରମାର୍ଥିକ ନୁହେଁ । ତେଣୁ 'ଉତେବ ସ୍ତ୍ରୀଭିଃ' (ସ୍ତ୍ରୀ ସହିତ ଆନନ୍ଦରେ ମାତେ । ମିତ୍ର

ସହିତ ହସେ । ତଥା ବ୍ୟାଘ୍ରକୁ ଦେଖି ଭୟକରି ରହେ) ଏହିଶ୍ରୁତି 'ଇବ' (ପରି) ଶବ୍ଦଦ୍ୱାରା ଅନୁବଦ୍ଧ ହୋଇ ସ୍ୱପ୍ନବ୍ୟାପାରକୁ ବର୍ଣ୍ଣନା କରେ । ଲୋକ ମଧ୍ୟ ସେପରି ସ୍ୱପ୍ନକୁ ବର୍ଣ୍ଣନା କରନ୍ତି- ମନେକର ମୁଁ ପର୍ବତର ଶିଖରପ୍ରଦେଶକୁ ଚଢ଼ିଲି, ମୁଁ ଅରଣ୍ୟକୁ ଦେଖିଲି । ସେହିପରି ଉପାଦାନରେ ଯଦ୍ୟପି କରଣରେ କର୍ମ ଓ କରଣ ବିଭକ୍ତି ନିର୍ଦ୍ଦେଶ ହୁଏ, ତେବେ ତଦ୍ୱାରା ସମ୍ବନ୍ଧିତ ଆତ୍ମାର କର୍ତ୍ତୃତ୍ୱ ଜଣାପଡ଼େ । କାରଣ-କେବଳ ଆତ୍ମାରେ କର୍ତ୍ତୃତ୍ୱର ଅସମ୍ଭବ ଦେଖାଯାଏ ।

(ଖ) 'ସୈନିକମାନେ ଯୁଦ୍ଧ କରନ୍ତି, କିନ୍ତୁ ସୈନିକମାନଙ୍କ ଦ୍ୱାରା ରାଜା ଯୁଦ୍ଧ କରେ, ଏହି ପ୍ରକାର ସଂସାରେ ଅନେକ ପ୍ରକାରର ବିବକ୍ଷା ହୁଏ ଏବଂ ଏହି ଉପାଦାନରେ କରଣ ବ୍ୟାପାରର ବିରାମମାତ୍ର ବିବକ୍ଷିତ ହୁଏ, କାହାର ସ୍ୱାତନ୍ତ୍ର୍ୟ ବିବକ୍ଷିତ ନୁହେଁ, କାରଣ-ସ୍ୱପ୍ନରେ ଅବୁଦ୍ଧିପୂର୍ବକ କରଣର ବ୍ୟାପାର ଉପରମ ଦେଖାଯାଏ । 'ବିଜ୍ଞାନଂ ଯଜ୍ଞଂ ତନୁତେ' (ବିଜ୍ଞାନ ଯଜ୍ଞକୁ ବିସ୍ତାର କରେ) ଏଠାରେ ଏହି ଯେଉଁ ବ୍ୟପଦେଶ ଦେଖାଦେଇଛି, ସେହି ବୁଦ୍ଧିରେ କର୍ତ୍ତୃତ୍ୱ ପ୍ରାପ୍ତ କରାଏ, କାରଣ-ବିଜ୍ଞାନ ଶବ୍ଦ ସେଠାରେ ପ୍ରସିଦ୍ଧ ଅଟେ ଏବଂ ମନ ପରେ ଏହା ପାଠ କରାଯାଇଛି । 'ତସ୍ୟ ଶ୍ରଦ୍ଧୈବ ଶିରଃ' (ତାହାର ଶ୍ରଦ୍ଧାହିଁ ମସ୍ତକ ଅଟେ) ବିଜ୍ଞାନମୟ ଆତ୍ମାର ଶ୍ରଦ୍ଧାଦି ଅବୟବ କୁହାଯାଇଛି ଏବଂ ଶ୍ରଦ୍ଧା ପ୍ରଭୃତି ବୁଦ୍ଧିର ଧର୍ମ ରୂପରେ ପ୍ରସିଦ୍ଧ ଅଟେ ।

(ଗ) ତଥା 'ବିଜ୍ଞାନଂ ଦେବାଃ' (ସମସ୍ତ ଦେବତା ବିଜ୍ଞାନକୁ ବ୍ରହ୍ମରୂପରେ ଜ୍ୟେଷ୍ଠ ରୂପରେ ଉପାସନା କରନ୍ତି) ଏହା ବାକ୍ୟଶେଷ ଅଟେ । ଜ୍ୟେଷ୍ଠତ୍ୱ ଓ ପ୍ରଥମଜତ୍ୱ ବୁଦ୍ଧିରେ ପ୍ରସିଦ୍ଧ ଅଟେ । କାରଣ- 'ସ ବା ଏଷ, (ଯେଉଁ ବାଣୀ ଓ ଚିତ୍ତର ଉତ୍ତରୋତ୍ତର କ୍ରମ ଅଟେ, ସେ ଏହି ଯଜ୍ଞ) ଏହିପରି ଅନ୍ୟଶ୍ରୁତିରେ ଯଜ୍ଞ ବାଣୀ ଓ ବୁଦ୍ଧିଦ୍ୱାରା ସାଧ୍ୟରୂପେ ଅବଧାରିତ ହୁଏ । କରଣରେ କର୍ତ୍ତୃତ୍ୱ ସ୍ୱୀକାର କଲାପରେ ବୁଦ୍ଧିର ଶକ୍ତି ବିପର୍ଯ୍ୟୟ ହୁଏ ନାହିଁ । କାରଣ- ସମସ୍ତ କାରକର ନିଜେ ନିଜେ ବ୍ୟାପାରରେ କର୍ତ୍ତୃତ୍ୱ ଅବଶ୍ୟମ୍ଭାବୀ ହୁଏ । ପରନ୍ତୁ ସେହି କରଣରେ କରଣତ୍ୱ ଉପଲବ୍ଧିର ଅପେକ୍ଷାରୁ ହୁଏ ଏବଂ ସେହି ଉପଲବ୍ଧି ଆତ୍ମାର ଅଟେ । ସେଠାରେ ଏହାର କର୍ତ୍ତୃତ୍ୱ ନାହିଁ । କାରଣ- ସେ ନିତ୍ୟ ଉପଲବ୍ଧିସ୍ୱରୂପ ଅଟେ ।

(ଘ) ଅହଙ୍କାରପୂର୍ବକ କର୍ତ୍ତୃତ୍ୱ ହିଁ ଉପଲବ୍ଧିର ହୁଏ ନାହିଁ । କାରଣ- ଅହଙ୍କାର ଉପଲଭ୍ୟମାନ ଅଟେ । ଏହା ହେଲାପରେ ଅନ୍ୟକରଣର କଳ୍ପନା ପ୍ରସଙ୍ଗ ନୁହେଁ, କାରଣ-ବୁଦ୍ଧିକୁ କରଣରୂପରେ ସ୍ୱୀକୃତ କରାଯାଇଛି । ସମାଧିର ଅଭାବରେ ଶାସ୍ତ୍ରାର୍ଥବତ୍ତ୍ୱ ଦ୍ୱାରା ତାହାର ପରିହାର କରାଯାଇଛି । ତେଣୁ ଆତ୍ମାରେ କର୍ତ୍ତୃତ୍ୱ ଉପାଧିନିମିତ୍ତକ ଅଟେ ବୋଲି ପ୍ରମାଣିତ ହୁଏ ।

## ୧୬ परायत्ताधिकरणम् । सू० ॥ ४१-४२ ॥

## ପରାୟତ୍ତାଧିକରଣ - ୧୬

### परात्तु तच्छ्रुतेः ॥ ४१ ॥

### ୧- ପରାତ୍ତୁ ତଚ୍ଛ୍ରୁତେଃ ॥ ୨-୩-୪୧ ॥

ତୁ-ଶବ୍ଦ ଶଙ୍କାର ନିବୃତ୍ତିପାଇଁ ଅଛି । ଜୀବର କର୍ତ୍ତୃତ୍ୱାଦି ସ୍ୱଭାବତଃ ନୁହେଁ । ପରାତ୍-ପରମାତ୍ମାଠାରୁ ପ୍ରାପ୍ତ ହୁଏ । ତଚ୍ଛ୍ରୁତେଃ-କାରଣ- 'ଏଷ ହ୍ୟେବ' ଇତ୍ୟାଦି ଶ୍ରୁତିରେ ପ୍ରତିପାଦିତ ହୁଏ ।

(୨) ମୂଳ- (କ) ଯଦିଦମବିଦ୍ୟାବସ୍ଥାୟାମୁପାଧିନିବନ୍ଧନଂ କର୍ତ୍ତୃତ୍ୱଂ ଜୀବସ୍ୟାଭିହିତମ୍, ତତ୍କିମନପେକ୍ଷ୍ୟେଶ୍ୱରଂ ଭବତ୍ୟାହୋସ୍ୱିଦୀଶ୍ୱରାପେକ୍ଷମିତି ଭବତି ବିଚାରଣା । ତତ୍ର ପ୍ରାପ୍ତଂ ତାବନ୍ନେଶ୍ୱରମପେକ୍ଷତେ ଜୀବଃ କର୍ତ୍ତୃତ୍ୱ ଇତି । କସ୍ମାତ୍ । ଅପେକ୍ଷାପ୍ରୟୋଜନାଭାବାତ୍ । ଅୟଂ ହି ଜୀବଃ ସ୍ୱୟମେବ ରାଗଦ୍ୱେଷାଦିଦୋଷପ୍ରସକ୍ତଃ କାରକାନ୍ତର ସାମଗ୍ରୀସଂପନ୍ନଃ କର୍ତ୍ତୃତ୍ୱମନଭବିତୁଂ ଶକ୍ନୋତି । ତସ୍ୟ କିମୀଶ୍ୱରଃ କରିଷ୍ୟତି । ନଚ ଲୋକେ ପ୍ରସିଦ୍ଧିରସ୍ତି କୃଷ୍ୟାଦିକାସୁ କ୍ରିୟାସ୍ୱନଡୁହାଦିବଦୀଶ୍ୱରୋଽପ-ରୋଽପେକ୍ଷିତବ୍ୟ ଇତି । କ୍ଲେଶାତ୍ମକେନ ଚ କର୍ତ୍ତୃତ୍ୱେନ ଜନ୍ତୂନ୍ ସଂସୃଜତ ଈଶ୍ୱରସ୍ୟ ନୈର୍ଘୃଣ୍ୟଂ ପ୍ରସଜ୍ୟେତ, ବିଷମଫଲଂ ଚୈଷା କର୍ତ୍ତୃତ୍ୱଂ ବିଦଧତୋ ବୈଷମ୍ୟମ୍ ।

(ଖ) ନନୁ 'ବୈଷମ୍ୟନୈର୍ଘୃଣ୍ୟେନ ସାପେକ୍ଷତ୍ୱସମ୍ଭବେ । ସାପେକ୍ଷତ୍ୱଂ ଚେଶ୍ୱରସ୍ୟ ସମ୍ଭବତି ସତୋର୍ଜନ୍ତୂନାଂ ଧର୍ମାଧର୍ମୟୋସ୍ତୟୋଶ୍ଚସଦ୍ଭାବଃ ସତି ଜୀବସ୍ୟ କର୍ତ୍ତୃତ୍ୱେ । ତଦେବ ଚେତ୍ କର୍ତ୍ତୃତ୍ୱମୀଶ୍ୱରାପେକ୍ଷଂ ସ୍ୟାତ୍ କିଂ ବିଷୟମୀଶ୍ୱରସ୍ୟ ସାପେକ୍ଷତ୍ୱମୁଚ୍ୟେତ । ଅକୃତାଭ୍ୟାଗମଶ୍ଚୈବଂ ଜୀବସ୍ୟ ପ୍ରସଜ୍ୟେତ । ତସ୍ମାତ୍ ସ୍ୱତ ଏବାସ୍ୟ କର୍ତ୍ତୃତ୍ୱମିତି ।

**(୨) ଭାଷାଂତର-** (କ) ଅବିଦ୍ୟା ଅବସ୍ଥାରେ ଯାହା ଉପାଧିନିମିତ୍ତକ ଜୀବରେ କର୍ତ୍ତୃତ୍ୱ ବୋଲି କୁହାଯାଇଅଛି; ସେ କଣ ଈଶ୍ୱରଙ୍କୁ ଅପେକ୍ଷା ନକରି ହୁଏ, ଅଥବା ଈଶ୍ୱରଙ୍କୁ ଅପେକ୍ଷା କରି ହୁଏ ? ଏହିପ୍ରକାର ବିଚାର ହୁଏ । ଏଠାରେ ପୂର୍ବପକ୍ଷ ପ୍ରାପ୍ତ ହୁଏ ଯେ-ଜୀବ ନିଜ କର୍ତ୍ତୃତ୍ୱରେ ଈଶ୍ୱରଙ୍କୁ ଅପେକ୍ଷା କରେ ନାହିଁ; କିପରି ? ଏଠାରେ ଅପେକ୍ଷାକୁ ପ୍ରୟୋଜନ କରେ ନାହିଁ । ଏହି ଜୀବ ସ୍ୱୟଂ ରାଗ, ଦ୍ୱେଷାଦିଦୋଷ ଦ୍ୱାରା ପ୍ରସକ୍ତ ହୋଇ କାରକସାମଗ୍ରୀ ଦ୍ୱାରା ସଂପନ୍ନ ହୋଇ କର୍ତ୍ତୃତ୍ୱ ଅନୁଭବ କରିବା ପାଇଁ ସମର୍ଥ ହୁଏ । ତାହାକୁ ଈଶ୍ୱର କଣ କରିବେ ? ସଂସାରରେ କୃଷିକର୍ମରେ ବଳଦର ଆବଶ୍ୟକତା ପରି ଈଶ୍ୱର ଅପେକ୍ଷିତବ୍ୟ ହୁଏ ବୋଲି ସଂସାରରେ ପ୍ରସିଦ୍ଧ ଅଛି, କ୍ଲେଶାତ୍ମକ କର୍ତ୍ତୃତ୍ୱ ଦ୍ୱାରା

ଜନ୍ତୁ ପ୍ରଭୃତିକୁ ଉତ୍ପନ୍ନ କରୁଥିବା ଈଶ୍ୱରଠାରେ ନୈର୍ଘୃଣ୍ୟ ପ୍ରସକ୍ତ ହେବ ଏବଂ ପ୍ରାଣୀର ବିଷମଫଳ କର୍ତ୍ତୃତ୍ୱକୁ ଉତ୍ପନ୍ନ କରୁଥିବା ଈଶ୍ୱରଠାରେ ବୈଷମ୍ୟ ପ୍ରସକ୍ତ ହେବ ।

(ଖ) ପରନ୍ତୁ ଏଠାରେ 'ବୈଷମ୍ୟ ନୈର୍ଘୃଣ୍ୟେ ସାପେକ୍ଷତ୍ୱାତ୍' (ପ୍ରାଣୀମାନେ କର୍ମକୁ ଅପେକ୍ଷା କଲେ ବୈଷମ୍ୟ ଓ ନୈର୍ଘୃଣ୍ୟ ହୁଏ) ବୋଲି ଯାହା କୁହାଯାଇଛି, ତାହା ଠିକ୍ ନୁହେଁ । ପରନ୍ତୁ ଈଶ୍ୱରଠାରେ ସାପେକ୍ଷତ୍ୱ ହେଲେ ଏହା ଉପପନ୍ନ ହେବ । ପ୍ରାଣୀମାନଙ୍କର ଧର୍ମାଧର୍ମ ହେଲେ ଈଶ୍ୱରଠାରେ ସାପେକ୍ଷତ୍ୱ ସମ୍ଭବ ହୁଏ । ଜୀବର କର୍ତ୍ତୃତ୍ୱ ହେଲେ ଧର୍ମ ଓ ଅଧର୍ମର ସଦ୍‌ଭାବ ହୁଏ । ଯଦି ଏହି କର୍ତ୍ତୃତ୍ୱ ଈଶ୍ୱରାପେକ୍ଷ ହୁଏ, ତେବେ ଈଶ୍ୱରର ସାପେକ୍ଷତ୍ୱ କେଉଁ ବିଷୟରେ କୁହାଯିବ, ଏହା ହେଲାପରେ ଜୀବକୁ ଅକୃତାଭ୍ୟାଗମ ପ୍ରସକ୍ତ ହେବ । ତେଣୁ ଜୀବର ସ୍ୱତଃଭାବ କର୍ତ୍ତୃତ୍ୱ ଅଛି ।

(୩) ମୂଳ- (କ) ଏତାଂ ପ୍ରାପ୍ତିଂ ତୁଶବ୍ଦେନ ବ୍ୟାବର୍ତ୍ତ୍ୟ ପ୍ରତିଜାନୀତେ 'ପରାତ୍' ଇତି । ଅବିଦ୍ୟାବସ୍ଥାୟାଂ କାର୍ଯ୍ୟକାରଣସଂଘାତାବିବେକଦର୍ଶିନୋ ଜୀବସ୍ୟାବିଦ୍ୟାତିମିରାନ୍ଧସ୍ୟ ସତଃ ପରସ୍ମାଦାତ୍ମନଃ କର୍ମାଧ୍ୟକ୍ଷାତ୍ ସର୍ବଭୂତାଧିବାସାତ୍ ସାକ୍ଷିଣଶ୍ଚେତୟିତୁରୀଶ୍ୱ ରାତ୍ତଦନୁଜ୍ଞୟା କର୍ତ୍ତୃତ୍ୱଭୋକ୍ତୃତ୍ୱଲକ୍ଷଣସ୍ୟ ସଂସାରସ୍ୟ ସିଦ୍ଧିଃ, ତଦନୁଗ୍ରହ ହେତୁକେନୈବ ଚ ବିଜ୍ଞାନେନ ମୋକ୍ଷ ସିଦ୍ଧିର୍ଭବିତୁମର୍ହତି । କୁତଃ । ତଚ୍ଛ୍ରୁତେଃ ।

(ଖ) ଯଦ୍ୟପି ଦୋଷପ୍ରଯୁକ୍ତଃ ସାମଗ୍ରୀ ସଂପନ୍ନଶ୍ଚାଜୀବଃ ଜୀବଃ ଯଦ୍ୟପି, ଚ ଲୋକେ କୃଷ୍ୟାଦିଷୁ କର୍ମସୁ ନେଶ୍ୱରକାରଣତ୍ୱଂ ପ୍ରସିଦ୍ଧଂ, ତଥାପି ସର୍ବାସ୍ୱେବ ପ୍ରବୃତ୍ତିଷ୍ୱୀଶ୍ୱରୋ ହେତୁକର୍ତ୍ତେତି ଶ୍ରୁତେରବସୀୟତେ । ତଥାହି ଶ୍ରୁତିଃ ଭବତି- ଏଷ ହ୍ୟେବସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଉନ୍ନିନୀଷତେ । ଏଷ ହ୍ୟେବାସାଧୁ କର୍ମ କାରୟତି ତଂ ଯମଧୋନିନୀଷତେ' (କୌଷୀ ୩-୮) ଇତ । 'ଯ ଆତ୍ମନି ତିଷ୍ଠନ୍ନାତ୍ମାନମନ୍ତରୋ ଯମୟତି' ଇତି ଚୈବଂଜାତୀୟକା ।

**(୩) ଭାଷାଂତର-** (କ) ଏହି ପୂର୍ବପକ୍ଷପ୍ରାପ୍ତିକୁ 'ତୁ' ଶବ୍ଦଦ୍ୱାରା ନିରାକରଣ କରି ସୂତ୍ରକାର ପ୍ରତିଜ୍ଞା କରନ୍ତି ଯେ- 'ପରାତ୍' ଇତ୍ୟାଦି । ଅବିଦ୍ୟାବସ୍ଥାରେ କାର୍ଯ୍ୟକାରଣ ସଂଘାତ ସହିତ ଅଭେଦଦର୍ଶୀ ଓ ଅବିଦ୍ୟାରୂପ ଅନ୍ଧକାର ଦ୍ୱାରା ଅନ୍ଧ ହୋଇ ଜୀବର କର୍ତ୍ତୃତ୍ୱ, ଭୋକ୍ତୃତ୍ୱରୂପ, ସଂସାରର ସିଦ୍ଧକର୍ମର ଅଧ୍ୟକ୍ଷ, ସମସ୍ତ ଭୂତଗୁଡ଼ିକର ଅଧିଷ୍ଠାନ ସାକ୍ଷୀ, ଚେତୟିତା ପରମାତ୍ମା ଈଶ୍ୱରଠାରୁ ତାହାର ଅନୁଜ୍ଞାଦ୍ୱାରା ହୁଏ । ଏହାର ଅନୁଗ୍ରହହେତୁକ-ବିଜ୍ଞାନରୁ ମୋକ୍ଷସିଦ୍ଧି ହୁଏ । କିପରି ? ତାହାର ଶ୍ରୁତି ଅଛି ।

(ଖ) ଯଦ୍ୟପି ରାଗାଦିଦୋଷରେ ପ୍ରଯୁକ୍ତ ହୋଇ ସାମଗ୍ରୀ ସଂପନ୍ନ ଜୀବ ହୁଏ । ଯଦ୍ୟପି ସଂସାରରେ କୃଷିକର୍ମରେ ଈଶ୍ୱର କାରଣରୂପରେ ପ୍ରସିଦ୍ଧ ନୁହେଁ, କିନ୍ତୁ ସଂପୂର୍ଣ୍ଣ ପ୍ରବୃତ୍ତିରେ

ଈଶ୍ୱର ହେତୁ କର୍ତ୍ତା ହୁଏ, ଏପରି ଶ୍ରୁତିରେ ସ୍ଥିର ହୁଏ । ଯେପରିକି 'ଏଷ ହ୍ୟେବ' (ସେ ଯାହାକୁ ଉପରକୁ ନେବାକୁ ଚାହେଁ, ତାହାଦ୍ୱାରା ସାଧୁକର୍ମ କରାଯାଏ । ଯାହାକୁ ନିମ୍ନକୁ ନେଇଯାଏ, ସେ ଅଶୁଭ କର୍ମ କରେ) ଏବଂ 'ଯ ଆତ୍ମନି' ଆତ୍ମାରେ ଯାହା ରହି ଆତ୍ମାକୁ ନିୟନ୍ତ୍ରଣ କରେ) ଏହି ପ୍ରକାର ଶ୍ରୁତିବାକ୍ୟ ଅଛି ।

(୧) ମୂଳ-ନନ୍ୱେବମୀଶ୍ୱରସ୍ୟ କାରୟିତୃତ୍ୱେ ସତି ବୈଷମ୍ୟନୈର୍ଘୃଣ୍ୟେ ସ୍ୟାତାମକୃତାଭ୍ୟାଗମଶ୍ଚ ଜୀବସ୍ୟେତି । ନେତ୍ୟୁଚ୍ୟତେ-

**(୧) ଭାଷାଂତର-** ପରନ୍ତୁ ଏହିପରି ଈଶ୍ୱରକୁ କାରୟିତୃତ୍ୱରୂପେ ସ୍ୱୀକାର କଲେ ବୈଷମ୍ୟ ଓ ନୈର୍ଘୃଣ୍ୟ ପ୍ରସକ୍ତ ହେବ ଏବଂ ଜୀବ ଅକୃଭ୍ୟାଗମ ପ୍ରସକ୍ତ ହେବ । ନୁହେଁ । ତେଣୁ କୁହାଯାଇଅଛି-

## କୃତପ୍ରଯତ୍ନାପେକ୍ଷସ୍ତୁ ବିହିତପ୍ରତିଷିଦ୍ଧା ବୈୟର୍ଥ୍ୟାଦିଭ୍ୟଃ ।। ୨-୩-୪୨ ।।

## कृतप्रयत्नापेक्षस्तु बिहितप्रतिषिद्धावैयर्थ्यादिभ्यः ।। ४२ ।।

ତୁ ଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି ପାଇଁ ଅଛି । ବିହିତପ୍ରତିଷିଦ୍ଧାବୈୟାର୍ଥ୍ୟାଦିଭ୍ୟଃ ବେଦରେ ବିହିତ ଓ ପ୍ରତିଷିଦ୍ଧ କର୍ମ ବ୍ୟର୍ଥ ନ ହୁଏ । ତେଣୁ ଈଶ୍ୱର ନିଜେ କାରୟିତ୍ୱତ୍ୱରେ, କୃତପ୍ରଯତ୍ନାପେକ୍ଷ-ଜୀବକୃତ ପ୍ରଯତ୍ନ ଅପେକ୍ଷା କରେ ।

(୨) ମୂଳ-(କ) ତୁଶବ୍ଦଶ୍ଚୋଦିତଦୋଷବ୍ୟାବର୍ତ୍ତ ନାର୍ଥଃ । କୃତୋ ଯଃ ପ୍ରଯତ୍ନୋ ଜୀବସ୍ୟ ଧର୍ମାଧର୍ମଲକ୍ଷଣ ସ୍ତଦପେକ୍ଷଏବୈନମୀଶ୍ୱରଃ କାରୟତି । ତତଶ୍ଚୈତେ ଚ୍ଚୋଦିତା ଦୋଷା ନ ପ୍ରସଜ୍ୟନ୍ତେ । ଜୀବକୃତଧର୍ମାଧର୍ମ ବୈଷମ୍ୟାପେକ୍ଷ ଏବ ତତ୍ତତ୍‌ଫଳାନି ବିଷମଂ ବିଭଜେତ୍ ପର୍ଜନ୍ୟବଦୀଶ୍ୱରୋ ନିମିତ୍ତତ୍ୱମାତ୍ରେଣ । ଯଥା ଲୋକେ ନାନାବିଧାନାଂ ଗୁଚ୍ଛକୁଲ୍ମାଦୀନାଂ ବ୍ରୀହିଯବାଦୀନାଂ ଚ୍ଚସାଧାରଣେଭ୍ୟଃ ସ୍ୱସ୍ୱବୀଜେଭ୍ୟୋ ଜାୟମାନାନାଂ ସାଧାରଣଂ ନିମିତ୍ତଂ ଭବତି ପର୍ଜନ୍ୟଃ । ନହ୍ୟସତି ପର୍ଜନ୍ୟେ ରସପୁଷ୍ପପଲାଶାଦିବୈଷମ୍ୟଂ ତେଷାଂ ଜାୟତେ । ନାପ୍ୟସତ୍ସୁ ସ୍ୱସ୍ୱବୀଜେଷ୍ଣୁ, ଏବଂ ଜୀବକୃତପ୍ରଯତ୍ନାପେକ୍ଷଂ ଈଶ୍ୱରସ୍ତେଷାଂ ଶୁଭାଶୁଭଂ ବିଦଧ୍ୟାଦିତି ଶ୍ଳିଷ୍ୟତେ ।

(ଖ) ନନ୍ୱ କୃତପ୍ରଯତ୍ନାପେକ୍ଷତ୍ୱମେବ ଜୀବସ୍ୟ ପରାୟର୍ତ୍ତେ କର୍ତ୍ତୃତ୍ୱେ ନୋପପଦ୍ୟତେ । ନୈଷଦୋଷଃ । ପରାୟତ୍ତେଽପି ହି କର୍ତ୍ତୃତ୍ୱେ କରୋତ୍ୟେବ ଜୀବଃ । କୁର୍ବନ୍ତଂ ହି ତମୀଶ୍ୱରଃ କାରୟତି । ଅପି ଚ ପୂର୍ବପ୍ରଯତ୍ନମପେକ୍ଷ୍ୟଦାନୀଂ କାରୟତି ପୂର୍ବତରଞ୍ଚ ପ୍ରଯତ୍ନସପେକ୍ଷ୍ୟ ପୂର୍ବମକାରୟଦିତ୍ୟନାଦିତ୍ୱାତ୍ ସଂସାରସ୍ୟେତ୍ୟନବଦ୍ୟମ୍ ।

(ଗ) କଥଂ ପୁନରବଗମ୍ୟତେ କୃତପ୍ରଯତ୍ନାପେକ୍ଷ ଈଶ୍ୱର ଇତି । ବିହିତ ପ୍ରତିଷିଦ୍ଧା ବୈୟର୍ଥ୍ୟାଦିଭ୍ୟ ଇତ୍ୟାହ । ଏବଂ ହି 'ସ୍ୱର୍ଗକାମୋ ଯଜେତ' 'ବ୍ରାହ୍ମଣୋ ନ ହନ୍ତବ୍ୟଃ'



ଇତ୍ୟେବଂ ଜାତୀୟକସ୍ୟ ବିହତସ୍ୟ ପ୍ରତିଷିଦ୍ଧସ୍ୟ ଚବୈୟର୍ଥ୍ୟଂ ଭବତି । ଅନ୍ୟଥା ତଦନର୍ଥକଂ ସ୍ୟାତ୍ । ଈଶ୍ୱର ଏବ ବିଧିପ୍ରତିଷେଧୟୋନିଯୁଜ୍ୟେତ । ଅତ୍ୟନ୍ତପରତନ୍ତ୍ରତ୍ୱାଜ୍ଜୀବସ୍ୟ ।

(ଘ) ତଥା ବିହିତାକାରିଣମପ୍ୟନର୍ଥେନ ସଂସୃଜେତ୍ ପ୍ରତିଷିଦ୍ଧ କାରିଣ ମପ୍ୟର୍ଥେନ । ତତଶ୍ଚ ପ୍ରାମାଣ୍ୟଂ ବେଦସ୍ୟା ସ୍ତମିୟାତ୍ । ଈଶ୍ୱରସ୍ୟ ଚତ୍ୟନ୍ତାନପେକ୍ଷତ୍ୱେ ଲୌକିକସ୍ୟାପି ପୁରୁଷ କାରସ୍ୟ ବୈୟର୍ଥ୍ୟଂ ତଥା ଦେଶକାଳନିମିତ୍ତାନାଂ ପୂର୍ବୋକ୍ତ ଦୋଷପ୍ରସଙ୍ଗଶ୍ଚେତ୍ୟେବଂ ଜାତୀୟକଂ ଦୋଷଜାତମାଦିଗ୍ରହଣେନ ଦର୍ଶୟତି ।

**(୨) ଭାଷାଂତର-** (କ) ତୁ ଶବ୍ଦ ଶଙ୍କିତଦୋଷର ବ୍ୟାବୃତ୍ତିନିମିତ୍ତ ଅଛି । ଜୀବଦ୍ୱାରା କରାଯାଇଥିବା ଯେଉଁ ଧର୍ମାଧର୍ମରୂପ ପ୍ରଯତ୍ନ ଅଟେ, ତାହାକୁ ଅପେକ୍ଷା କରିଥିବା ଈଶ୍ୱର ତାହାକୁ ଅପେକ୍ଷା କରାଏ । ତେଣୁ ସେଗୁଡ଼ିକ ଶଙ୍କିତଦୋଷର ପ୍ରସକ୍ତ ନୁହନ୍ତି । ଜୀବ କୃତ ଧର୍ମାଧର୍ମ ବୈଷମ୍ୟକୁ ଅପେକ୍ଷା କରୁଥିବା ଈଶ୍ୱର ମେଘପରି କେବଳ ନିମିତ୍ତରୂପରେତତ୍ ତତ୍‌ଫଳକୁ ବିଷମରୂପରେ ବିଭକ୍ତ କରେ । ଯେପରି ସଂସାର ମଧରେ ନିଜନିଜ ଅସାଧାରଣ କାରଣ ପର୍ଜନ୍ୟ (ମେଘ) ହୁଏ । ପର୍ଜନ୍ୟ ନ ହେଲେ ରସ, ପୁଷ୍ପ, ଫଳ, ପତ୍ରାଦିର ବୈଷମ୍ୟ ଉତ୍ପନ୍ନ ହୁଏ ନାହିଁ ଏବଂ ନିଜେ ବୀଜଗୁଡ଼ିକ ନହେଲେ ବୈଷମ୍ୟ ଉତ୍ପନ୍ନ ହୁଏ ନାହିଁ । ସେହିପରି ଜୀବକୃତ ପ୍ରଯତ୍ନକୁ ଅପେକ୍ଷା କରୁଥିବା ଈଶ୍ୱର ତାହାର ଶୁଭ ଓ ଅଶୁଭର ବିଧାନ କରେ ବୋଲି କହିବା ଠିକ୍ ।

(ଖ) ପରନ୍ତୁ ଜୀବର ପରମେଶ୍ୱର ଅଧିନ କର୍ତ୍ତୃତ୍ୱ ହେଲେ ଈଶ୍ୱରଠାରେ ଜୀବକୃତ ପ୍ରଯତ୍ନକୁ ଅପେକ୍ଷା କରିବା ଉପପନ୍ନ ନୁହେଁ । ଏହା କିନ୍ତୁ ଦୋଷ ନୁହେଁ । କାରଣ-ଈଶ୍ୱର ଦ୍ୱାରା କର୍ତ୍ତୃତ୍ୱ ପ୍ରାପ୍ତ ହେଲାପରେ ଜୀବ କର୍ମ କରେ । ସେ ନିଜେ କଲେ ଈଶ୍ୱର କର୍ମ କରାନ୍ତି । ପୂର୍ବପ୍ରଯତ୍ନକୁ ଅପେକ୍ଷା କରି ଏହି ସମୟ ପର୍ଯ୍ୟନ୍ତ ସେ କରାଏ, ଏବଂ ପୂର୍ବତର ପ୍ରଯତ୍ନକୁ ଅପେକ୍ଷା କରି ପ୍ରଥମେ କରାଏ-ଏହିପରି ସଂସାରରେ ଅନାଦି ହେବାରୁ ଦୋଷ ନୁହେଁ ।

(ଗ) ପରନ୍ତୁ ଏଠାରେ ଈଶ୍ୱର ଜୀବକୃତ ପ୍ରଯତ୍ନକୁ ଅପେକ୍ଷା କରେ ବୋଲି କିପରି ଜଣାଯାଏ ? 'ବିହିତ ପ୍ରତିଷିଦ୍ଧା ବୈୟର୍ଥାଦିଭ୍ୟଃ' ବୋଲି କୁହାଯାଇଅଛି । ଏହା ହେଲାପରେ 'ସ୍ୱର୍ଗକାମୋ ଯଜେତ' (ସ୍ୱର୍ଗକୁ କାମନା କରୁଥିବା ପୁରୁଷ ଯାଗ କରିବା ଉଚିତ) ବ୍ରାହ୍ମଣୋ ନ ହନ୍ତବ୍ୟଃ', (ବ୍ରାହ୍ମଣଙ୍କୁ ମାରିବା ଉଚିତ୍ ନୁହେଁ) ଏହିପ୍ରକାର ବିହିତ ଓ ପ୍ରତିଷିଦ୍ଧ ବ୍ୟର୍ଥ ନୁହେଁ । ନୋଚେତ୍ ସେମାନେ ନିରର୍ଥକ ହେବେ । ଈଶ୍ୱର ବିଧି ଓ ପ୍ରତିଷେଧରେ ନିଯୁକ୍ତ କରନ୍ତୁ, କାରଣ-ଜୀବ ଅତ୍ୟନ୍ତ ପରତନ୍ତ୍ର ଅଟେ ।

(ଘ) ସେପରି ବେଦ ବିହିତ କର୍ମ କରୁଥିବା ଅନର୍ଥର ସହ ଏବଂ ପ୍ରତିଷିଦ୍ଧ କରୁଥିବା ଅର୍ଥର ସହିତ ସମ୍ବନ୍ଧ ହୋଇଯିବ, କିନ୍ତୁ ତାହା ଦ୍ୱାରା ବେଦର ପ୍ରାମାଣ୍ୟ ବିନାଶ ହେବେ । ଈଶ୍ୱରର ଅତ୍ୟନ୍ତ ଅନପେକ୍ଷା ହେଲେ ଲୌକିକ ପୁରୁଷାର୍ଥ ବ୍ୟର୍ଥ ହେବ । ସେହିପରି ଦେଶ, କାଳ ଓ ନିମିତ୍ତର ପୂର୍ବୋକ୍ତ ଦୋଷପ୍ରସଙ୍ଗ ଏହି ପ୍ରକାର ଦୋଷସମୁଦାୟର ଗ୍ରହଣରୁ ଦେଖାଯାଏ ।

## २७ अंशाधिकरणम् । सु० ॥ ४३-४४ ॥

## ଅଂଶାଧିକରଣ - ୧୭

## अंशो नानाव्यपदेशादन्यथा चापि दाशकितवादित्वमभिधीयत एके ॥ ४३ ॥

## ୧- ଅଂଶୋ ନାନାବ୍ୟପଦେଶାଦନ୍ୟଥା ଚାପି ଦାଶକିତବାଦିତ୍ୱମଭିଧୀୟତ ଏକେ ॥ ୨-୩-୪୩ ॥

ଅଂଶଃ-ଜୀବ ଈଶ୍ୱରର କଳ୍ପିତ ଅଂଶ ଅଟେ । ନାନାବ୍ୟପଦେଶାତ୍-କାରଣ-'ଯ ଆତ୍ମନି ତିଷ୍ଠନ୍' ଇତ୍ୟାଦିଶ୍ରୁତିରେ ଦୁଇଟିର ଭେଦ ବ୍ୟପଦେଶ ହୁଏ । ଅନ୍ୟଥା ଚାପି-ସେହିପ୍ରକାର ଅଭେଦର ବ୍ୟପଦେଶ ହୁଏ । କାରଣ,-ଏକେ-ଏକଶାଖାଯୁକ୍ତ, ଦାଶକତିବାଦିତ୍ୱମ୍-'ବ୍ରହ୍ମ ଦାଶା' ଏହିପ୍ରକାର ବ୍ରହ୍ମରେ ଦାଶକିତବତ୍ୱ ପ୍ରଭୃତିର, ଅଭିଧୀୟତେ=ପାଠ କରାଯାଇଛି ।

(୨) ମୂଳ-(କ) ଜୀବେଶ୍ୱରୟୋରୁପକାର୍ଯ୍ୟୋପକାରକଭାବଃ ଉକ୍ତଃ । ସ ଚ ସଂବନ୍ଧୟୋରେବ ଲୋକେ ଦୃଷ୍ଟୋ ଯଥା ସ୍ୱାମିଭୃତ୍ୟୟୋର୍ଯଥା ବାଗ୍ନିବିସ୍ଫୁଲିଙ୍ଗୟୋଃ । ତତଶ୍ଚ ଜୀବେଶ୍ୱରୟୋର ପ୍ୟୁପକାର୍ଯ୍ୟୋକାରକଭାବାଭ୍ୟୁପଗମାତ୍ କିଂ ସ୍ୱାମିଭୃତ୍ୟବତ୍ ସଂବନ୍ଧ ଆହୋସ୍ୱିଦଗ୍ନିବିସ୍ଫୁଲିଙ୍ଗବଦିତ୍ୟସ୍ୟାଂ ବିଚିକିତ୍ସାୟାମନିୟମୋ ବା ପ୍ରାପ୍ନୋତି । ଅଥବା ସ୍ୱାମିଭୃତ୍ୟପ୍ରକାରେଷ୍ୱେବେଶିତ୍ରୀଶିତବ୍ୟଭାବସ୍ୟ ପ୍ରସିଦ୍ଧତ୍ୱାତ୍ ତଦ୍‌ବିଧ ଏବ ସମ୍ବନ୍ଧ ଇତି ପ୍ରାପ୍ନୋତି । ଅତୋ ବ୍ରବୀତ୍ୟଂଶ ଇତି ।

(ଖ) ଜୀବ ଈଶ୍ୱରସ୍ୟାଂଶୋ ଭବିତୁମର୍ହତି । ଯଥାଗ୍ନେର୍ବିସ୍ଫୁଲିଙ୍ଗଃ । ଅଂଶ ଏବାଂଶଃ । ନହି ନିରବୟବସ୍ୟ ମୁଖ୍ୟୋଽଂଶଃ ସମ୍ଭବତି । କସ୍ମାତ୍ ପୁନର୍ନିରବୟବତ୍ୱାତ୍ ସ ଏବ ନ ଭବତି । ନାନାବ୍ୟପଦେଶାତ୍ । 'ସୋଽନ୍ୱେଷ୍ଟବ୍ୟଃ ସ ବିଜିଜ୍ଞାସିତବ୍ୟଃ' (ଛା ୮-୭-୧) 'ଏତମେବ ବିଦିତ୍ୱା ମୁନିର୍ଭବତି', 'ଯ ଆତ୍ମନି ତିଷ୍ଠନ୍ନାତ୍ମାନମନ୍ତରୋ ଯମୟତି' ଇତି ଚୈବଂଜାତୀୟକୋ ଭେଦନିର୍ଦ୍ଦେଶୋ ନାସତି ଭେଦେ ଯୁଜ୍ୟତେ ।

(ଗ) ନନୁ ଚାୟଂ ନାନାବ୍ୟପଦେଶଃ ସୁତରାଂ ସ୍ୱାମିଭୃତ୍ୟସାରୂପ୍ୟେ ଯୁଜ୍ୟତ ଇତ୍ୟତ ଆହ-ଅନ୍ୟଥା ଚାପୀତି । ନଚ ନାନାବ୍ୟପଦେଶାଦେବ କେବଲାଦଂଶତ୍ୱପ୍ରତିପତ୍ତିଃ । କିଂ ତର୍ହ୍ୟନ୍ୟଥା ଚାପି ବ୍ୟପଦେଶୋ ଭବତ୍ୟନାନାତ୍ୱସ୍ୟ ପ୍ରତିପାଦକଃ । ତଥାହିଏକେ ଶାଖିନୋ ଦାଶକିତବାଦିଭାବଂ ବ୍ରହ୍ମଣ ଆମନନ୍ତ୍ୟାଥର୍ବଣିକା ବ୍ରହ୍ମସୂକ୍ତେ - 'ବ୍ରହ୍ମ ଦାଶା ବ୍ରହ୍ମ ଦାସା ବ୍ରହ୍ମୈବେମେ କିତବାଃ' ଇତ୍ୟାଦିନା । ଦାଶା ଯ ଏତେ କୈବର୍ତ୍ତାଃ ପ୍ରସିଦ୍ଧାଃ, ଯେ ଚାମୀ



ଦାସାଃ ସ୍ୱାମିଷ୍ୱାମ୍ନାନମୁପକ୍ଷପୟନ୍ତି, ଯେ ଚାନ୍ୟେ କିତବାଃ ଦ୍ୟୂତକୃତସ୍ତେ ସର୍ବେ ବ୍ରହ୍ମୈବେତି ହୀନଜନ୍ତୁଦାହରଣେନ ସର୍ବେଷାମେବ ନାମରୂପକୃତକାର୍ଯ୍ୟ କରଣସଂଘାତ ପ୍ରବିଷ୍ଟାନାଂ ଜୀବାନାଂ ବ୍ରହ୍ମତ୍ୱମାହ ।

(ଘ) ତଥାନ୍ୟତ୍ରାପି ବ୍ରହ୍ମପ୍ରକ୍ରିୟାୟାମେବାୟମର୍ଥଃ ପ୍ରପଞ୍ଚ୍ୟତେ- 'ତ୍ୱଂ ସ୍ତ୍ରୀ, ତ୍ୱଂ ପୁମାନସି ତ୍ୱଂ କୁମାର ଉତ ବା କୁମାରୀ । ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି ତ୍ୱଂ ଜାତୋ ଭବସି ବିଶ୍ୱତୋମୁଖଃ' (ଶ୍ୱେ ୪-୩) ଇତି । 'ସର୍ବାଣି ରୂପାଣି ବିଚିତ୍ୟ ଧୀରୋ ନାମାନି କୃତ୍ୱାଽଭିବଦନ୍ୟଦାସ୍ତେ' ଇତି ଚ । 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' (ବୃ ୩-୭-୨୩) ଇତ୍ୟାଦିଶ୍ରୁତିଭ୍ୟାଶ୍ଚାସ୍ୟାର୍ଥସ୍ୟସିଦ୍ଧିଃ । ଚୈତନ୍ୟଂ ଚାବିଶିଷ୍ଟଂ ଜୀବେଶ୍ୱରୟୋର୍ଯଥାଽଗ୍ନିବିସ୍ଫୁଲିଙ୍ଗୟୋ ରୌଷ୍ୟମ୍ । ଅତୋ ଭେଦାଭେଦାବଗମାଭ୍ୟାମଂଶତ୍ୱାବଗମଃ ।

**(୨) ଭାଷାଂତର-** (କ) ଜୀବ ଓ ଈଶ୍ୱରର ଉପକାର୍ଯ୍ୟଉପକାରକଭାବ ବିଷୟରେ କୁହାଯାଇଅଛି । ସଂସାରରେ ଏହି ସମ୍ବନ୍ଧର ବିଚାର ଦେଖାଯାଏ । ଯେପରି ସ୍ୱାମୀ ଓ ସେବକମଧ୍ୟରେ ଅଥବା ଅଗ୍ନି ଓ ବିସ୍ଫୁଲିଙ୍ଗ ମଧ୍ୟରେ । ତେଣୁ ଜୀବ ଓ ଈଶ୍ୱରର ଉପକାର୍ଯ୍ୟୋପକାରକଭାବ ସ୍ୱୀକାର କରାଗଲେ ସେ କଣ ସ୍ୱାମୀ ଓ ସେବକ ସଦୃଶ ଅଟେ କି ? ଅଥବା ଅଗ୍ନି ଓ ବିସ୍ଫୁଲିଙ୍ଗ ସମାନ ? ଏହିପରି ସଂଶୟ ହେବାରୁ ଅନିୟମପ୍ରାପ୍ତ ହୁଏ । ଅଥବା ସ୍ୱାମୀ ଓ ସେବକପ୍ରକାରରେ ଯେପରି ଈଶିତ୍ୱ ଓ ଈଶିତବ୍ୟଭାବ ଜଣାଯାଏ, ସେହିପରି ମଧ୍ୟ ସମ୍ବନ୍ଧ ପ୍ରାପ୍ତ ହୁଏ । ତେଣୁ କୁହାଯାଇଛି- 'ଅଂଶଃ' ଇତ୍ୟାଦି ।

(ଖ) ଜୀବ ଈଶ୍ୱରର ଅଂଶବିଶେଷ ଅଟେ । ଯେପରି ଅଗ୍ନିର ଅଂଶ ବିସ୍ଫୁଲିଙ୍ଗ ଅଂଶର ସଦୃଶ ଅଂଶ । କାରଣ-ନିରବୟବର ମୁଖ୍ୟ ଅଂଶ ସମ୍ଭବ ନୁହେଁ । ପରନ୍ତୁ ନିରବୟବ ହେଲେ ପରମାତ୍ମା ଜୀବ କାହିଁକି ନ ହୁଏ ? 'ନାନାବ୍ୟପଦେଶାତ୍' (ଭେଦର ବ୍ୟପଦେଶ ହୁଏ) 'ସୋଽନ୍ୱେଷ୍ଟବ୍ୟଃ' (ତାହାକୁ ଅନ୍ୱେଷଣ କରିବା ଉଚିତ ଏବଂ ତାହାର ବିଶେଷ ଜିଜ୍ଞାସା କରିବା ଉଚିତ୍), 'ଏତମେବ' (ତାହାକୁ ଜାଣିଲେ ମୁନିରଷି ହୁଅନ୍ତି) 'ଯ ଆତ୍ମନି, (ଯାହା ଆତ୍ମାଭିତରେ ରହି ଆତ୍ମାକୁ ନିୟମନ କରେ) ଏହିପରି ଭେଦନିର୍ଦ୍ଦେଶ ନ ହେଲେ ତାହା ଘଟେ ନାହିଁ ।

(ଗ) ପରନ୍ତୁ ଏହି ଭେଦବ୍ୟପଦେଶ ସ୍ୱାମୀ ଓ ସେବକ ସାଦୃଶ୍ୟ ପରି ଘଟେ । ଏହି ବିଷୟରେ କୁହାଯାଇଅଛି - 'ଅନ୍ୟଥା ଚାପି' - ଅନ୍ୟପ୍ରକାରରେ ହୁଏ । କେବଳ ଭେଦବ୍ୟପଦେଶରୁ ଅଂଶତ୍ୱଜ୍ଞାନ ହୁଏ ନାହିଁ, କିନ୍ତୁ ଅନ୍ୟ ପ୍ରକାରରେ ଅଭେଦପ୍ରତିପାଦକର ବ୍ୟପଦେଶ ହୁଏ । ଯେପରି ଏକ ଆଥର୍ବଣଶାଖାଯୁକ୍ତ ପୁରୁଷ 'ବ୍ରହ୍ମଦାଦେଶା' (ବ୍ରହ୍ମଧୀବର ଅଟେ । ବ୍ରହ୍ମ ହିଁ ସେବକ ଅଟେ, ବ୍ରହ୍ମ ମଧ୍ୟ ପଶାଖେଳାଳୀ ଅଟେ) ଇତ୍ୟାଦି ଦ୍ୱାରା ବ୍ରହ୍ମସୂକ୍ତରେ ବ୍ରହ୍ମର ଦାଶ ଓ କତବାଦି ଭାବକୁ କହେ । ଦାଶା ଅର୍ଥାତ୍ ଯିଏ କୈତବ ରୂପରେ ପ୍ରସିଦ୍ଧ ଅଟେ । ସେମାନେ ଯେଉଁ ଦାସ ଅଟନ୍ତି - ସ୍ୱାମୀପାଇଁ

ନିଜକୁ ଉନକ୍ଷୟ କରନ୍ତି । ଯାହା ଅନ୍ୟ ପଶା ଖେଳାଳୀ, ସେସବୁ ବ୍ରହ୍ମ ଅଟେ । ଏହିପରି ନିକୃଷ୍ଟ ପ୍ରାଣୀମାନଙ୍କ ଉଦାହରଣରେ ନାମରୂପକୃତ କାର୍ଯ୍ୟକାରଣ ସଂଘାତରୁ ପ୍ରବିଷ୍ଟ ଜୀବକୁ ବ୍ରହ୍ମ କୁହାଯାଏ ।

(ଘ) ସେହିପରି ଅନ୍ୟତ୍ର ବ୍ରହ୍ମପ୍ରକରଣରେ ଏହି ଅର୍ଥ ବିସ୍ତୃତ କରାଯାଇଅଛି -'ତ୍ୱଂ ସ୍ତ୍ରୀ' (ତୁମେ ସ୍ତ୍ରୀ ଅଟ । ତୁମେ ପୁରୁଷ ଅଟ । ତୁମେ କୁମାର ଅଟ ଅଥବା କୁମାରୀ ଅଟ ଏବଂ ତୁମେ ବୃଦ୍ଧ ହୋଇ ବାଡ଼ିକୁ ଆଶ୍ରୟ କରି ଚାଲୁଛ, ତୁମେ ମଧ୍ୟ ପ୍ରପଞ୍ଚରୂପରେ ଉତ୍ପନ୍ନ ହୋଇ ଅନେକ ରୂପ ହେଉଛ), ଏବଂ 'ସର୍ବାଣି ରୂପାଣି' (ସମସ୍ତ ରୂପକୁ ନିର୍ମାଣ କରି ନାମ ଦେଇ ଶବ୍ଦ ବ୍ୟବହାର କରି ରହିଛି), 'ନାନଷ୍ଟ' (ତାହାଠାରୁ ଅନ୍ୟ କେହି ଦ୍ରଷ୍ଟା ନାହିଁ) ଇତ୍ୟାଦି ଶ୍ରୁତିଦ୍ୱାରା ଏହି ଅର୍ଥ ସିଦ୍ଧ ହୁଏ । ଯେପରି ଅଗ୍ନି ଓ ବିସ୍ଫୁଲିଙ୍ଗର ଔଷ୍ଣ୍ୟ ଅନୁଭବ ହୁଏ, ସେହିପରି ଜୀବ ଓ ଈଶ୍ୱରର ଚୈତନ୍ୟ ସମାନ ଅଟେ । ତେଣୁ ଭେଦ ଓ ଅଭେଦର ଅବଗମରୁ ଅଂଶ୍ୱ ଅବଗମ ହୁଏ ।

**(୧) ଭାଷାଂତର - ଜୀବରେ ଅଂଶତ୍ୱର ଅବଗମ କିପରି ହୁଏ ?**

**मन्त्रवर्णाच्च ॥ ୪୪ ॥**

**ମନ୍ତ୍ରବର୍ଣ୍ଣାଚ୍ଚ ॥ ୨-୩-୪୪ ॥**

'ପାଦୋଽସ୍ୟ ସର୍ବାଭୂତାନି' ଏହି ମନ୍ତ୍ରରେ ଜୀବଠାରେ ଅଂଶତ୍ୱ ଅବଗମ ହୁଏ ।

(୨) ମୂଳ - ମନ୍ତ୍ରବର୍ଣ୍ଣଶ୍ଚୈତମର୍ଥମବଗୟତି 'ତାବାନସ୍ୟ ମହିମା ତତୋ ଜ୍ୟାୟାଂଶ୍ଚ ପୁରୁଷଃ । ପାଦୋଽସ୍ୟ ସର୍ବଭୂତାନି ତ୍ରିପାଦସ୍ୟାମୃତଂ ଦିବି' (ଛା ୩-୧୨-୬) ଇତି । ଅତ୍ର ଭୂତଶବ୍ଦେନ ଜୀବ ପ୍ରଧାନାନି ସ୍ଥାବରଜଙ୍ଗମାନି ନିର୍ଦିଶତି । 'ଅହିଂସନ-ସର୍ବଭୂତାନ୍ୟନ୍ୟତ୍ର ତୀର୍ଥେଭ୍ୟଃ' ଇତି ପ୍ରୟୋଗାତ୍ । ଅଂଶଃପାଦୋ ଭାଗ ଇତ୍ୟନର୍ଥାନ୍ତରମ୍ ତସ୍ମାଦପ୍ୟଂଶତ୍ୱାବଗମଃ ।

(୨) ଭାଷାଂତର - 'ତାବାନସ୍ୟ' (ଏହିପରି ଗାୟତ୍ରାଖ୍ୟ ବ୍ରହ୍ମର ମହିମା ବହୁତ । ତାହାଦ୍ୱାରା ସେ ନିର୍ବିକାରପୁରୁଷ ଉତ୍କୃଷ୍ଟ ହୁଏ । ସଂପୂର୍ଣ୍ଣଭୂତ ତାହାର ଏକ ପାଦ ଅଟେ । ଏହାର ପାଦତ୍ରୟ ଅମୃତ ଅଟେ । ତାହା ପ୍ରକାଶମୟ ସ୍ୱାତ୍ମରେ ସ୍ଥିତ ହୁଏ) ଏହି ମନ୍ତ୍ରବର୍ଣ୍ଣ ସେହି ଅର୍ଥକୁ ଅବଗମ କରାଏ । ଏଠାରେ ଶ୍ରୁତି ଭୂତଶବ୍ଦରୁ ଜୀବପ୍ରଧାନ ସ୍ଥାବର ଓ ଜଙ୍ଗମକୁ ନିର୍ଦ୍ଦେଶ କରେ । କାରଣ - 'ଅହିଂସନ୍' (ଶାସ୍ତ୍ରାନୁମୋଦିତ କର୍ମ ଦ୍ୱାରା ଅନ୍ୟ ସ୍ଥାନରେ ସମସ୍ତ ପ୍ରାଣୀ ଅହିଂସା କରନ୍ତି) ଏହା ପ୍ରୟୋଗ ହୁଏ । ଅଂଶ, ପାଦ, ଭାଗ - ଏହିମାନଙ୍କର ଅନ୍ୟ ଅର୍ଥ ନୁହେଁ । ଅର୍ଥାତ୍ ଏହି ଗୁଡ଼ିକ ଏକାର୍ଥବାଚୀଶବ୍ଦ । ତେଣୁ ଜୀବଠାରେ ଅଂଶତ୍ୱ ଅବଗମ ହୁଏ ।



(୧) ମୂଳ - କୁତଶ୍ଚାଂଶତ୍ୱାବଗମଃ

**(୧) ଭାଷାଂତର** - ଜୀବଠାରେ ଅଂଶତ, ଅବଗମ କିପରି ହୁଏ ?

**अपिच स्मर्यते ॥ ४५ ॥**

**ଅପି ଚ ସ୍ମର୍ଯ୍ୟତେ ॥୨-୩-୪୫ ॥**

ଅପି ଚ-ମଧ୍ୟ, ସ୍ମର୍ଯ୍ୟତେ-'ମମୈବାଂଶୋ' ଏହି ସ୍ମୃତିରେ ଜୀବ ଈଶ୍ୱରର ଅଂଶରୂପେ କୁହାଯାଇଛି ।

(୨) ମୂଳ-(କ) ଈଶ୍ୱରଗୀତାସ୍ୱପି ଚେଶ୍ୱରାଂଶତ୍ୱଂ ଜୀବସ୍ୟ ସ୍ମର୍ଯ୍ୟତେ- ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ (୧୫-୭) ଇତି । ତସ୍ମାଦପ୍ୟଂଶତ୍ୱାବଗମଃ । ଯତ୍ତୁକ୍ତଂ ସ୍ୱାମିଭୃତ୍ୟାଦିଷ୍ୱେବଶିତ୍ରୀଶିତବ୍ୟଭାବୋ ଲୋକେ ପ୍ରସିଦ୍ଧଏବ ଇତି । ଯଦ୍ୟପ୍ୟେଷା ଲୋକେ ପ୍ରସିଦ୍ଧିସ୍ତଥାପି ଶାସ୍ତ୍ରତ୍ୱାତ୍ରାଂଶାଂଶିତ୍ୱମୀଶିତ୍ରୀ-ଶିତବ୍ୟଭାବଶ୍ଚ ନିଶ୍ଚୀୟତେ । ନିରତିଶୟୋପାଧିସଂପନ୍ନଶ୍ଚେଶ୍ୱରୋ ନିହୀନୋପାଧିସଂପନ୍ନା-ଜୀବାନ୍ ପ୍ରଶାସ୍ତୀତି ନ କିଞ୍ଚିଦ୍ ବିପ୍ରତିଷିଧ୍ୟତେ ।

**(୨) ଭାଷାଂତର**- 'ମମୈବାଂଶୋ' (ଏହି ଜୀବ ଲୋକରେ ଏହି ସନାତନ ଜୀବାତ୍ମା ମୋର ଅଂଶ ଅଟେ) ଏହିପରି ଭଗବଦ୍ ଗୀତାରେ ଜୀବକୁ ଈଶ୍ୱରର ଅଂଶରୂପେ ସ୍ମରଣ କରାଯାଇଛି । ତେଣୁ ଅଂଶତ୍ୱର ଅବଗମ ହୁଏ । ସ୍ୱାମୀ ଓ ସେବକଠାରେ ଈଶିତୃ ଓ ଈଶିତବ୍ୟଭାବ ସଂସାରରେ ପ୍ରସିଦ୍ଧ ବୋଲି ଯାହା କୁହାଯାଇଛି । ଯଦ୍ୟପି ଲୋକରେ ଏହିପରି ପ୍ରସିଦ୍ଧି ରହିଛି, ତଥାପି ଏଠାରେ ଶାସ୍ତ୍ରଦ୍ୱାର ଅଂଶାଶିତ୍ୱ, ଈଶିତୃ ଓ ଈଶିତବ୍ୟଭାବ ସ୍ଥିର କରାଯାଇଛି । ନିରତିଶୟ ଏବଂ ଉପାଧି ସଂପନ୍ନ ଈଶ୍ୱର ହୀନଉପାଧି ସଂପନ୍ନ ଜୀବର ଉପରେ ଶାସନ କରେ । ତେଣୁ ଏଠାରେ କିଛି ବିରୁଦ୍ଧ ନାହିଁ ।

(୧) ମୂଳ-ଅତ୍ରାହ-ନନୁ ଜୀବସ୍ୟେଶ୍ୱରାଂଶତ୍ୱାଭ୍ୟୁପଗମେ ତଦୀୟେନ ସଂସାରଦୁଃ-ଖାପଭୋଗେନାଂଶିନଃ ଈଶ୍ୱରସ୍ୟାପି ଦୁଃଖିତ୍ୱଂ ସ୍ୟାତ୍ । ଯଥା ଲୋକେ ହସ୍ତପାଦାଦ୍ୟନ୍ୟତମାଙ୍ଗ ଗତେନ ଦୁଃଖେନାଙ୍ଗିନୋ ଦେବଦତ୍ତସ୍ୟ ଦୁଃଖିତ୍ୱଂ ତଦ୍‌ବତ୍ । ତତଶ୍ଚ ତତପ୍ରାପ୍ତାନାଂ ମହତ୍ତରଂ ଦୁଃଖଂ ପ୍ରାପ୍ନୁୟାତ୍ । ଅତୋପରଂ ପୂର୍ବାବସ୍ଥଃ ସଂସାର ଏବାସ୍ତିତି ସମ୍ୟଗ୍ ଦର୍ଶନାନର୍ଥକ୍ୟପ୍ରସଙ୍ଗଃ ସ୍ୟାଦିତି । ଅତ୍ରୋଚ୍ୟତେ-

**(୧) ଭାଷାଂତର**- ଏଠାରେ କୁହାଯାଇଅଛି ଯେ- ଯେପରି ସଂସାରରେ ହସ୍ତ ପାଦାଦିରେ କୌଣସି ଗୋଟିଏ ଅଙ୍ଗରୁ ଦୁଃଖଦ୍ୱାରା ଅଙ୍ଗୀ ଦେବଦତ୍ତ ଦୁଃଖୀ ହୁଏ, ସେହିପରି ଜୀବ ଈଶ୍ୱରର ଅଂଶରୂପେ ସ୍ୱୀକାର କଲାପରେ ତାହାର ସଂସାରଦୁଃଖର ଉପଭୋଗରୁ ଅଂଶୀଈଶ୍ୱର ଦୁଃଖୀ ହୁଏ । ତେଣୁ ବ୍ରହ୍ମକୁ ପାଇଥିବା

ପୁରୁଷ ମହାନ୍ ଦୁଃଖ ପାଏ । ତେଣୁ ପୂର୍ବାବସ୍ଥାକୁ ସଂସାର କିନ୍ତୁ ଶ୍ରେଷ୍ଠ ହୁଏ । ସମ୍ୟଗ ଜ୍ଞାନ ନିରର୍ଥକ ପ୍ରସଙ୍ଗ ହେବ । ତେଣୁ କୁହାଯାଇଛି-

**प्रकाशादिवन्नैवं पर: ॥ ४६ ॥**

**୨- ପ୍ରକାଶାଦିବନ୍ନୈବଂ ପରଃ ॥୨-୩-୪୬ ॥**

ଯେପରି ଜୀବାତ୍ମା ଦୁଃଖୀ ହୁଏ, ଏବଂ-ସେପରି ପରଃ-ପରମାତ୍ମା, ପ୍ରକାଶାଦିବତ୍-ପ୍ରକାଶାଦି ପରି, ନ-ଦୁଃଖୀ ନୁହେଁ ।

(୩) ମୂଳ-(କ) ଯଥା ଜୀବଃ ସଂସାରଦୁଃଖମନୁଭବତି ନୈବଂ ପରଂ ଈଶ୍ୱରୋଽନୁଭବତୀତି ପ୍ରତିଜାନୀମହେ । ଜୀବୋ ହ୍ୟବିଦ୍ୟାବେଶାଦ୍ଦେହାଦ୍ୟାତ୍ମଭାବମିବ ଗତ୍ୱା ତତ୍କୃତେନ ଦୁଃଖେନ ଦୁଃଖ୍ୟହମିତ୍ୟବିଦ୍ୟୟା କୃତଂ ଦୁଃଖୋପଭୋଗମଭିମନ୍ୟନ୍ତେ । ନୈବଂ ପରମେଶ୍ୱରସ୍ୟ ଦେହାଦ୍ୟାତ୍ମଭାବୋ ଦୁଃଖାଭିମାନୋ ବାସ୍ତି । ଜୀବସ୍ୟାପ୍ୟବିଦ୍ୟା-କୃତନାମରୂପନିବୃତ୍ତ ଦେହେନ୍ଦ୍ରିୟାଦ୍ୟୁପାଧ୍ୟବିବେକଭ୍ରମନିମିତ୍ ତ ଏବ ଦୁଃଖାଭିମାନୋ ନତୁ ପରମାର୍ଥିକୋଽସ୍ତି । ଯଥାଚ ସ୍ୱଦେହଗତଦାହଚ୍ଛେଦାଦିନିମିତ୍ତଂ ଦୁଃଖଂ ତଦଭିମାନଭ୍ରାନ୍ତ୍ୟାନୁଭବତି ତଥା ପୁତ୍ରମିତ୍ରାଦିଗୋଚରମପି ଦୁଃଖଂ ତଦ୍ଭିମାନଭ୍ରାନ୍ତ୍ୟୈବାନୁଭବତ୍ୟହମେବ ପୁତ୍ରୋଽହମେବ ମିତ୍ରମିତ୍ୟେବଂ ସ୍ନେହବଶେନ ପୁତ୍ରମିତ୍ରାଦିଷ୍ୱଭିନିବିଶ ମାନଃ ।

(ଖ) ତତଶ୍ଚ ନିଶ୍ଚିତମେତଦବଗମ୍ୟତେମିଥ୍ୟାଭିମାନଭ୍ରମନିମିତ୍ତ ଏବ ଦୁଃଖାନୁଭବ ଇତି । ବ୍ୟତିରେକଦର୍ଶନାଚ୍ଚୈବମବଗମ୍ୟତେ । ତଥାହି-ପୁତ୍ରମିତ୍ରାଦିମତ୍ସୁ ବହୁଷୂପବିଷ୍ଟେଷୁ ତତ୍ସମ୍ବନ୍ଧାଭିମାନିଷ୍ୱିବତରେଷୁ ଚ ପୁତ୍ରୋମୃତୋ ମିତ୍ରଂ ମୃତମିତ୍ୟେବମାଦ୍ୟୁଦେବାଷିତେ ଯେଷାମେବ ପୁତ୍ରମିତ୍ରାଦିମତ୍ୱାଭିମାନସ୍ତେଷାମେବ ତନ୍ନିମିତ୍ତଂ ଦୁଃଖମୁତ୍ପଦ୍ୟତେ, ନାଭିମାନହୀନତାଂ ପରିବ୍ରାଜକାଦୀନାମ୍ । ଅତଶ୍ଚ ଲୌକିକସ୍ୟାପି ପୁଂସଃ ସମ୍ୟଗ୍ ଦର୍ଶନାର୍ଥବତ୍ତ୍ୱଂ ଦୃଷ୍ଟ୍ୟ, କିମୁତ ବିଷୟଶୂନ୍ୟାଦାତ୍ମନୋଽନ୍ୟଦ୍ ବସ୍ତ୍ୱନ୍ତରମପଶ୍ୟତୋ ନିତ୍ୟଚୈ-ତନ୍ୟମାତ୍ରସ୍ୱରୂପସ୍ୟେତି । ତସ୍ମାନ୍ନାସ୍ତି ସମ୍ୟଗ୍ଦର୍ଶନାନର୍ଥକ୍ୟପ୍ରସଙ୍ଗଃ ।

(ଗ) ପ୍ରକାଶାଦିବଦିତି ନିଦର୍ଶନୋପନ୍ୟାସଃ । ଯଥା ପ୍ରକାଶଃ ସୌରଶ୍ଚାନ୍ଦ୍ରମସୋ ବା ବିୟଦ୍ବ୍ୟାପ୍ୟାବତିଷ୍ଠମାନୋଽଙ୍ଗୁଲ୍ୟାଦ୍ୟୁପାଧିସମ୍ବନ୍ଧାତ୍ ତେଷ୍ୱୃଜୁବକ୍ରାଦିଭାବଂ ପ୍ରତିପଦ୍ୟମାନେଷୁ ତତ୍ତଦ୍ଭାବମିବ ପ୍ରତିପଦ୍ୟମାନୋଽପି ନ ପରମାର୍ଥତସ୍ତଦ୍ଭାବଂ ପ୍ରତିପଦ୍ୟତେ । ଯଥା ଚାକାଶୋ ଘଟାଦିଷୁ ଗଚ୍ଛତ୍ସୁ ଗଚ୍ଛନ୍ନିବ ବିଭାବ୍ୟମାନୋଽପି ନ ପରମାର୍ଥତୋ ଗଚ୍ଛତି, ଯଥା ଚୋଦଶରବାଦିକମ୍ପନାତ୍ତଦ୍ଗତେ ସୂର୍ଯ୍ୟପ୍ରତିବିମ୍ବେ କମ୍ପମାନେଽପି ନ ତଦ୍ବାନ୍ସୂର୍ଯ୍ୟଚ କମ୍ପତେ, ଏବମବିଦ୍ୟାପ୍ରତ୍ୟୁପସ୍ଥାପିତେ ବୁଦ୍ଧ୍ୟାଦ୍ୟୁପହିତେ

ଜୀବାଖ୍ୟେଽଂଶ ଦୁଃଖାୟମାନେଽପି ନ ତଦ୍‌ବାନୀଶ୍ୱରୋ ଦୁଃଖାୟତେ । ଜୀବସ୍ୟାପି ତୁ ଦୁଃଖପ୍ରାପ୍ତିରବିଦ୍ୟାନିମିତ୍ତୈବେତ୍ୟୁକ୍ତମ୍ । ତଥାଚାବିଦ୍ୟାନିମିତ୍ତଜୀବଭାବବ୍ୟୁଦାସେନ ବ୍ରହ୍ମଭାବମେବ ଜୀବସ୍ୟ ପ୍ରତିପାଦୟନ୍ତି ବେଦାନ୍ତାଃ 'ତତ୍ତ୍ୱମସି' ଇତ୍ୟେବମାଦାୟଃ ତସ୍ମାନ୍ନାସ୍ତି ଜୈବେନ ଦୁଃଖେନ ପରମାତ୍ ମନୋ ଦୁଃଖିତ୍ୱପ୍ରସଙ୍ଗଃ ।

**(୩) ଭାଷାଂତର-** (କ) ଯେପରି ଜୀବ ସଂସାରଦୁଃଖକୁ ଅନୁଭବ କରେ, ସେହିପରି ପରମେଶ୍ୱର ଅନୁଭବ କରନ୍ତି ନାହିଁ ବୋଲି ଆମ୍ଭେ ପ୍ରତିଜ୍ଞା କରୁ । ଜୀବ ଅବିଦ୍ୟାର ଆବେଶବଳରେ ଦେହାଦିରେ ଆତ୍ମଭାବ ପ୍ରାପ୍ତ କରି ତତ୍ କୃତଦୁଃଖରେ 'ମୁଁ ଦୁଃଖୀ ଅଟେ' ଏହିପ୍ରକାର ଅବିଦ୍ୟାକୃତ-ଦୁଃଖର ଉପଭୋଗ ଅଭିମାନ କରେ । ସେହିପରି ପରମାତ୍ମାଙ୍କୁ ଦେହପ୍ରଭୃତିରେ ଆତ୍ମଭାବ ଅଥବା ଦୁଃଖାଭିମାନ ହୁଏ ନାହିଁ । ଜୀବର ମଧ୍ୟ ଅବିଦ୍ୟାକୃତ ନାମରୂପରୁ ନିର୍ବୃତ୍ତ (ସଂପାଦିତ) ଦେହ, ଇନ୍ଦ୍ରିୟାଦି ଉପାଧିର ଭ୍ରମନିମିତ୍ତକ ଦୁଃଖାଭିମାନ ହୁଏ । କିନ୍ତୁ ପାରମାର୍ଥିକ ନୁହେଁ । ଯେପରି ନିଜର ଦେହଗତ ଦାହ ଛେଦନାଦି ନିମିତ୍ତକ ଦୁଃଖର ସେହିଦେହର ଆତ୍ମାଭିମାନୀ ଭ୍ରାନ୍ତିରୁ ଅନୁଭବ କରେ । ଯେପରି 'ମୁଁ ଏହି ପୁତ୍ର ଅଟେ' 'ମୁଁ ମିତ୍ର ଅଟେ' ଏହିପରି ସ୍ନେହବଶ ପୁତ୍ର ମିତ୍ରାଦିରେ ଅଭିନିବେଶ କରି ପୁତ୍ରମିତ୍ରାଦିବିଷୟକ ଦୁଃଖର ସେହି ଅଭିମାନଭ୍ରାନ୍ତିଦ୍ୱାରା ଅନୁଭବ କରେ ।

(ଖ) ତାହାଦ୍ୱାରା ଏହା ନିଶ୍ଚିତଭାବେ ଅବଗତ ହୁଏ ଯେ- ମିଥ୍ୟାଭିମାନ ଭ୍ରମନିମିତ୍ତକ ଦୁଃଖକୁ ଅନୁଭବ କରେ । ବ୍ୟତିରେକ ଦର୍ଶନଦ୍ୱାରା ଏହା ଅବଗତ ହୁଏ । ଯେପରି ପୁତ୍ର, ମିତ୍ର ପ୍ରଭୃତି ପରିବାରଯୁକ୍ତ ହୋଇ ସେଠାରେ ସମ୍ବନ୍ଧର ଅଭିମାନୀ ଓ ସେହି ସମ୍ବନ୍ଧ ଅଭିମାନରହିତ ହୋଇ ମଧ୍ୟ ଲୋକ ବାସ କରେ । ସେଠାରେ ପୁତ୍ର ମରିଗଲା, ମିତ୍ର ମୃତ ହେଲା ଇତ୍ୟାଦି ପ୍ରଚାର ହେଲା ପରେ ସେମାନଙ୍କୁ ତଜ୍ଜନିତ ଦୁଃଖ ଅନୁଭବ ହୁଏ । ଯାହାପାଖରେ ପୁତ୍ରମିତ୍ରାଦିମତ୍ତ୍ୱର ଅଭିମାନ ଅଛି, ସେମାନେ ଅଭିମାନ ରହିତ ହୋଇ ସନ୍ନ୍ୟାସୀ ହୁଅନ୍ତି ନାହିଁ । ତେଣୁ ଲୌକିକ ପୁରୁଷର ସମ୍ୟଗ୍‌ଦର୍ଶନ ସାର୍ଥକ ଦେଖାଯାଏ । କିନ୍ତୁ ବିଷୟଶୂନ୍ୟ ଆତ୍ମାଭିନ୍ନ ବସ୍ତୁକୁ ଦେଖେ ନାହିଁ । ନିତ୍ୟ ଚୈତନ୍ୟ ମାତ୍ର ସ୍ୱରୂପରେ ରହି ପୁରୁଷବିଷୟରେ ଆଉ କଣ କହିବ ? ତେଣୁ ସମ୍ୟଗ୍ ଦର୍ଶନ ଅନର୍ଥକପ୍ରସଙ୍ଗ ନୁହେଁ ।

(ଗ) 'ପ୍ରକାଶାଦି ସଦୃଶ'- ଏହି ଦୃଷ୍ଟାନ୍ତ ଉପନ୍ୟାସ କରାଯାଏ । ଯେପରି ସୂର୍ଯ୍ୟ ଅଥବା ଚନ୍ଦ୍ରମାର ଆଲୋକ ଆକାଶରେ ବ୍ୟାପ୍ତ ହୋଇ ଅବସ୍ଥାନ କରି ଅଙ୍ଗୁଳି ପ୍ରଭୃତି ଉପାଧିସମ୍ବନ୍ଧରୁ ସେଠାରେ ଋଜୁ, ବକ୍ରଭାବ ପ୍ରାପ୍ତ ହେଲାପରେ ସେହିଭାବକୁ ପ୍ରାପ୍ତହୋଇ ମଧ୍ୟ ପରମାର୍ଥରୁ ସେହିଭାବକୁ ପ୍ରାପ୍ତ ହୁଏ ନାହିଁ, ଅଥବା ଯେପରି ଘଟପ୍ରଭୃତି ଗମନ କଲେ ଗମନ କରୁଥିବା ଆକାଶ ପରମାର୍ଥତଃ ଗମନ କରେ ନାହିଁ, ଅଥବା ଯେପରି ଜଳପାତ୍ରାଦି କମ୍ପନରୁ ତଦ୍‌ଗତ ସୂର୍ଯ୍ୟ ପ୍ରତିବିମ୍ବ ପ୍ରକମ୍ପିତ ହେଲେ ମଧ୍ୟ ବିପ୍ରତିବିମ୍ବଥିବା

ସୂର୍ଯ୍ୟର କମ୍ପନ ହୁଏ ନାହିଁ । ସେହିପରି ଅବିଦ୍ୟା ଦ୍ୱାରା ପ୍ରତ୍ୟୁପସ୍ଥାପିତ, ବୁଦ୍ଧି ପ୍ରଭୃତିରୁ ଉପହିତ, ଜୀବନାମକ ଅଂଶ ଦୁଃଖିତ ହେଲାପରେ ମଧ ସେହି ଅଂଶଯୁକ୍ତ ଈଶ୍ୱର ଦୁଃଖୀ ହୁଏ ନାହିଁ । ଜୀବର ଦୁଃଖପ୍ରାପ୍ତି ମଧ ଅବିଦ୍ୟାନିମିତ୍ତକ ଅଟେ ବୋଲି କୁହାଯାଇଅଛି । ଏହିପ୍ରକାର 'ତତ୍ତ୍ୱମସି' ଇତ୍ୟାଦି ବେଦାନ୍ତ ଅବିଦ୍ୟାନିମିତ୍ତ ଜୀବଭାବକୁ ନିରସନ (ଖଣ୍ଡନ) କରି ଜୀବର ବ୍ରହ୍ମଭାବକୁ ପ୍ରତିପାଦନ କରେ । ତେଣୁ ଜୀବ ସମ୍ବନ୍ଧୀଦୁଃଖରୁ ପରମାତ୍ମାଠାରେ ଦୁଃଖିତ୍ୱ ପ୍ରସଙ୍ଗ ହୁଏ ନାହିଁ ।

## स्मरन्ति च ॥ ४७ ॥

## ୧- ସ୍ମରନ୍ତି ଚ ॥୨-୩-୪୭ ॥

ଜୀବର ଦୁଃଖରୁ ପରମେଶ୍ୱର ଦୁଃଖୀ ହୁଏ ନାହିଁ । ଏହି ବିଷୟରେ 'ତତ୍ର ଯଃ ପରମାତ୍ମା-ଏହି ସ୍ମୃତି କହେ ।

(୨) ମୂଳ-(କ) ସ୍ମରନ୍ତି ଚ ବ୍ୟାସାଦୟୋ ଯଥା ଜୈବେନ ଦୁଃଖେନ ନ ପରମାତ୍ମା'- ଦୁଃଖାୟତ ଇତି । 'ତତ୍ର ଯଃ ପରମାତ୍ମା ହି ସ ନତ୍ୟୋ ନିର୍ଗୁଣଃ ସ୍ମୃତଃ । ନ ଲିପ୍ୟତେ ଫଲୈଶ୍ଚାପି ପଦ୍ମପତ୍ରସିବାମ୍ଭସା । କର୍ମାତ୍ମା ତ୍ୱପରୋ ଯୋଽସୌ ମୋକ୍ଷବନ୍ଧୈଃ ସ ଯୁଜ୍ୟତେ । ସ ସପ୍ତଦଶକେନାପି ରାଶିନା ଯୁଜ୍ୟତେ ପୁନଃ' ଇତି । ଚଶବ୍ଦାତ୍ ସମାମନନ୍ତି ଚେତି ବାକ୍ୟଶେଷଃ । 'ତୟୋରନ୍ୟଃ ପିପ୍ପଲଂ ସ୍ୱାଦ୍ୱତ୍ୟନ୍ନନ୍ୟୋ ଅଭିଚକଶିତି' (ଶ୍ୱେ ୪-୬) ଇତି । 'ଏକସ୍ତଥା ସର୍ବଭୂତାନ୍ତରାତ୍ମା ନ ଲିପ୍ୟେତେ ଲୋକ ଦୁଃଖେନ ବାହ୍ୟଃ' (କଂ ୫-୧୧) ଇତି ଚ ।

**(୨) ଭାଷାଂତର-** ତତ୍ର ଯଃ ପରମାତ୍ମା' (ଏହି ଦୁଇଟିରେ ଯେଉଁ ପରମାତ୍ମା ଅଛି, ସେ ନିତ୍ୟ ନିର୍ଗୁଣ ରୂପେ କୁହାଯାଇଅଛି । ଯେପରି ପଦ୍ମପତ୍ର ଜଳରେ ଲିପ୍ତ ରହେ ନାହିଁ, ସେହିପରି ଏହା କର୍ମଫଳ ଦ୍ୱାରା ଲିପ୍ତ ହୁଏ ନାହିଁ । ଯାହା ଅନ୍ୟ ଜୀବାତ୍ମା, କର୍ମାତ୍ମା ବା ସେ ବନ୍ଧ ଓ ମୋକ୍ଷଯୁକ୍ତ ହୁଏ । ସେ ଏହି ସତର ରାଶିଦ୍ୱାରା ପୁନର୍ବାର ଯୁକ୍ତ ହୁଏ ଏହି ପ୍ରକାର ଜୀବ ସମ୍ବନ୍ଧୀଦୁଃଖରୁ ପରମାତ୍ମା ଦୁଃଖୀ ହୁଏ ନାହିଁ ବୋଲି ବ୍ୟାସ ପ୍ରଭୃତି କହିଅଛନ୍ତି । 'ଚ' ଶବ୍ଦରୁ 'ସମାମନନ୍ତି' (ଶ୍ରୁତିବାକ୍ୟ କହେ) ଏହା ଏକ ବାକ୍ୟଶେଷ ଅଟେ । 'ତୟୋରନ୍ୟଃ' (ସେଠାରେ ଜଣେ ଜଣକସ୍ୱାଦିଷ୍ଟ ଫଳକୁ ଓ ଉପଭୋଗ କରେ, ଏବଂ ଅନ୍ୟ ଜଣେ ଉପଭୋଗ ନ କରି କେବଳ ଦର୍ଶନ କରେ), 'ଏକସ୍ତଥା' (ସେହିପ୍ରକାର ସଂପୂର୍ଣ୍ଣ ଭୂତଗୁଡ଼ିକର ଏକ ଅନ୍ତରାତ୍ମା ସଂସାରର ଦୁଃଖରେ ଲିପ୍ତ ରହେ ନାହିଁ, କିନ୍ତୁ ତାହାଦ୍ୱାରା ସେ ବାହାରେ ରହେ) ଏହାହିଁ ଶ୍ରୁତି କହେ ।

(୧) ମୂଳ-(କ) ଅତ୍ରାହ-ଯଦି ତର୍ହ୍ୟେକ ଏବ ସର୍ବେଷାଂ ଭୂତାନାମନ୍ତରାତ୍ମା ସ୍ୟାତ୍କଥମନୁ ଜ୍ଞାପରିହରୌ ସ୍ୟାତାଂ ଲୌକିକୌ ବୈଦିକୌ ଚେତି । ନନୁ ଚାଂଶୋ

ଜୀବ ଈଶ୍ୱରସ୍ୟେତ୍ୟୁକ୍ତମ୍ । ତଦ୍ ଭେଦାଶ୍ରନୁଜ୍ଞାପରିହାରୌ ତଦାଶ୍ରୟାବବ୍ୟତିକୀର୍ଣ୍ଣାବୁ-ପପଦ୍ୟତେ କିମତ୍ର ଚୋଦ୍ୟତ ଇତି । ଉଚ୍ୟତେ-ନୈତଦେବମ୍ । ଅନଂଶତ୍ୱମପି ହି ଜୀବସ୍ୟାଭେଦବାଦିନ୍ୟଃ ଶ୍ରୁତୟଃ ପ୍ରତିପାଦୟନ୍ତି- 'ତତ୍ସୃଷ୍ଟ୍ୱା ତଦେବାନୁପ୍ରାବିଶତ୍' (ତୈ ୨-୬-୧) 'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' (ବୃ ୩-୭-୨୩), 'ମୃତ୍ୟୋଃ ସଃ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି (ବୃ ୪-୪-୧୯), 'ତତ୍ତ୍ୱମସି' (ଛା ୬-୮-୭), 'ଅହଂ ବ୍ରହ୍ମାସ୍ମି' (ବୃ ୧-୪-୧୦) ଇତେବଂ ଜାତୀୟକାଃ ।

(ଖ) ନନୁ ଭେଦାଭେଦା-ବଗମାଭ୍ୟାମଂ ଶତ୍ୱଂ ସିଦ୍ଧ୍ୟତୀତ୍ୟୁକ୍ତମ୍ । ସ୍ୟାଦେତଦେବଂ ଯଦ୍ୟୁଭାବପି ଭେଦାଭେଦୌ ପ୍ରତିପିପାଦୟିଷିତୌ ସ୍ୟାତାମ୍, ଅଭେଦ ଏବ ତ୍ୱତ୍ର ପ୍ରତିପିପାଦୟିଷିତୋ ବ୍ରହ୍ମାତ୍ମତ୍ୱପ୍ରତିପତ୍ତୌ ପୁରୁଷାର୍ଥସିଦ୍ଧେଃ । ସ୍ୱଭାବପ୍ରାପ୍ତସ୍ତୁ ଭେଦୋଽନୁଦ୍ୟତେ । ନଚ ନିରବୟବସ୍ୟ ବ୍ରହ୍ମଣୋ ସଖ୍ୟୋଂଽଶୋ ଜୀବଃ ମୁଖ୍ୟବତୀତ୍ୟୁକ୍ତମ୍ । ତସ୍ମାତ୍ପର ଏବୈକଃ ସର୍ବେଷାଂ ଭୂତାନାମନ୍ତରାତ୍ମା ଜୀବଭାବେନାବସ୍ଥିତ ଇତ୍ୟତୋ ବକ୍ତବ୍ୟାଽନୁଜ୍ଞାପରିହାରୋପପତ୍ତିଃ । ତାଂ ବ୍ରୁମଃ-

**(୧) ଭାଷାଂତର-** (କ) ଏହି ବିଷୟରେ ଆମ୍ଭେ କହୁଁ ଯେ- ଯଦି ଏକ ହୋଇ ସମସ୍ତ ପ୍ରାଣୀମାନଙ୍କର ଅନ୍ତରାତ୍ମା ହୁଏ, ତେବେ ଲୌକିକ ଓ ବୈଦିକବିଧି କିପରି ନିଷେଧ ହେବ ? ପରନ୍ତୁ ଜୀବ ଈଶ୍ୱରର ଏକ ଅଂଶବିଶେଷ ବୋଲି କୁହାଯାଇଅଛି । ଜୀବ ଓ ଈଶ୍ୱରଠାରେ ଭେଦ ହେଲେ ତଦାଶ୍ରୟ ବିଧି ଓ ପ୍ରତିଷେଧ ଅସଙ୍କର ହୋଇ ଉପପନ୍ନ ହେବ । କିନ୍ତୁ ଏଠାରେ କେଉଁ ପ୍ରକାର ଶଙ୍କା ହୁଏ ? କୁହାଯାଇଛି- ଏହା ଠିକ୍ ନୁହେଁ । କାରଣ- 'ତତ୍ସୃଷ୍ଟ୍ୱା' (ତାହାଠାରୁ ଉତ୍ପନ୍ନ ହୋଇ ସେଥିରେ ଅନୁପ୍ରବେଶ କରେ), 'ନାନ୍ୟଃ' (ତାହାବ୍ୟତିତ ଅନ୍ୟଦ୍ରଷ୍ଟା କିଏ ନାହିଁ) 'ମୃତ୍ୟୋଃ ସଃ' (ଯିଏ ଏଠାରେ ନାନାରୂପରେ ଦେଖେ, ସେ ମୃତ୍ୟୁଦ୍ୱାରା ମୃତ୍ୟୁକୁ ପ୍ରାପ୍ତହୁଏ । 'ତତ୍ତ୍ୱମସି' 'ଅହଂ ବ୍ରହ୍ମାସି' ଏହିପରି ଅଭେଦ ପ୍ରତିପାଦକ ଶ୍ରୁତିବାକ୍ୟ ଜୀବକୁ ଅନଂଶରୂପେ ପ୍ରତିପାଦିତ କରେ ।

(ଖ) ପରନ୍ତୁ ଭେଦ ଓ ଅଭେଦର ଅବଗମ ଦ୍ୱାରା ଅଂଶତ୍ୱ ସିଦ୍ଧ ହୁଏ ବୋଲି କୁହାଯାଇଛି । ଯଦି ଭେଦ ଓ ଅଭେଦ ଏହି ଦୁଇଟିର ପ୍ରତିପାଦନ କରିବା ଇଷ୍ଟ ହୁଏ, ବୋଲି ଏଠାରେ ହୋଇପାରେ । ପରନ୍ତୁ ଅଭେଦ ପ୍ରତିପାଦନ କରିବା ଅଭୀଷ୍ଟ ଅଟେ; କାରଣ- ବ୍ରହ୍ମାତ୍ମତ୍ୱ ପ୍ରତିପତ୍ତି ହେଲେ ପୁରୁଷାର୍ଥର ସିଦ୍ଧି ହୁଏ । ଅବିଦ୍ୟାକୃତ ଭେଦର କିନ୍ତୁ ଅନୁବାଦ କରାଯାଇଛି ଏବଂ ନିରବୟବବ୍ରହ୍ମର ମୁଖ୍ୟଅଂଶ ଜୀବନୁହେଁ ବୋଲି ଏଠାରେ କୁହାଯାଇଛ । ତେଣୁ ପରମାତ୍ମାହିଁ ସମସ୍ତଭୂତର ଅନ୍ତରାତ୍ମା ଜୀବରୂପରେ ରହିଛି । ତେଣୁ ଅନୁଜ୍ଞା ଓ ପରିହାରର ଅନୁପପତ୍ତି କରିବା ଉଚିତ୍ କି ? ସେମାନଙ୍କୁ ତେଣୁ ଆମ୍ଭେ କହୁଁ ଯେ-

## अनुज्ञापरिहारौ देहसंबन्धंज्योतिरादिवत् ॥ ४८ ॥

## (୨) ଅନୁଜ୍ଞା ପରିହାରୌ ଦେହସଂବନ୍ଧାଜ୍ଜ୍ୟୋତିରାଦିବତ୍ ॥୨-୩-୪୮॥

ଅନୁଜ୍ଞାପରିହାରୌ-'ମିତ୍ରଂ ସେବ୍ୟମ୍' 'ଶତ୍ରୁଃ ପରହିର୍ତ୍ତବ୍ୟଃ, ଏହିପ୍ରକାର ଅନୁଜ୍ଞା ଓ ପରିହାର ଗୋଟିଏ ଆତ୍ମାରେ ଦେହସମ୍ବନ୍ଧାତ୍ - ଦେହସହିତ ତାଦାତ୍ମ୍ୟ ସମ୍ବନ୍ଧରୁ ଉପପନ୍ନ ହୁଏ । ଜ୍ୟୋତିରାଦିବତ୍-ଯେପରି ଅଗ୍ନି ଏକ ହେଲେ ମଧ୍ୟ ଶ୍ମଶାନର ଅଗ୍ନି ପରିହରଣୀୟ, କିନ୍ତୁ ଅନ୍ୟ ଅଗ୍ନି ଗ୍ରହଣୀୟ ।

(୩) ମୂଳ-(କ) 'ଋତୌ ଭାର୍ଯ୍ୟା ମୁପେୟାତ୍' ଇତ୍ୟନୁଜ୍ଞା । 'ଗୁର୍ବଙ୍ଗନାଂ ନୋପଗଚ୍ଛେତ୍' ଇତି ପରିହାରଃ । ତଥା 'ଅଗ୍ନୀଷୋମୀୟଂ ପଶୁଂସଂଜ୍ଞପୟେତ୍' ଇତ୍ୟନୁଜ୍ଞା । 'ନ ହିଂସ୍ୟାତ୍ ସର୍ବା ଭୂତାନି' ଇତି ପରିହାରଃ । ଏବଂ ଲୋକେଽପି ମିତ୍ରମୁପସେବିତବ୍ୟମି-ତ୍ୟନୁଜ୍ଞା । ଶତ୍ରୁଃ ପରିହର୍ତ୍ତବ୍ୟଃ ଇତି ପରିହାରଃ । ଏବଂ ପ୍ରକାରାବନୁଜ୍ଞାପରିହାରାବେକ-ତ୍ୱେଽପ୍ୟାତ୍ମାନୋ ଦେହସମ୍ବନ୍ଧାତ୍ ସ୍ୟାତାମ୍ । ଦେହୈଃ ସଂବନ୍ଧୋ ଦେହସମ୍ବନ୍ଧଃ ।

(ଖ) କଃ ପୁନର୍ଦେହ ସଂବନ୍ଧଃ । ଦେହାଦିରୟଂ ସଂଘାତୋଽହମେବେତ୍ୟାତ୍ମନି ବିପରୀତ ପ୍ରତ୍ୟୟୋତ୍ପତ୍ତିଃ । ଦୃଷ୍ଟା ଚ ସା ସର୍ବପ୍ରାଣିନାମହଂ ଗଚ୍ଛାମ୍ୟହମଗଚ୍ଛାମ୍ୟହମନ୍ଧୋଽହମନନ୍ଧୋଽହଂମୂଢୋଽହମମୂଢଂ ଇତୀତ୍ୟେବମାତ୍ମିକା । ତହ୍ୟସ୍ୟାଃ ସମ୍ୟଗ୍ ଦର୍ଶନାଦନ୍ୟନ୍ନିବାରକମସ୍ତି । ପ୍ରାକ୍ତୁ ସମ୍ୟଗ୍ଦର୍ଶନାତ୍ ପ୍ରତତୈଷା ଭ୍ରାନ୍ତିଃ ସର୍ବଜନ୍ତୁଷୁ । ତଦେବମବିଦ୍ୟାତମିତ୍ତଦେହାଦ୍ୟୁପାଧି ସମ୍ବନ୍ଧକୃତାଦ୍ ବିଶେଷାଦୈକାତ୍ମ୍ୟାଭ୍ୟୁପଗମେଽପ୍ୟନୁଜ୍ଞା ପରିହାରାବକଳ୍ପ୍ୟେତେ । ସମ୍ୟଗ୍ଦର୍ଶନସ୍ତର୍ହ୍ୟନୁଜ୍ଞାପରିହାରା-ନର୍ଥକ୍ୟଂ ପ୍ରାପ୍ତମ୍ । ନ । ତସ୍ୟ କୃତାର୍ଥତ୍ୱାନ୍ନି ଯୋଜ୍ୟତ୍ୱାନୁପପତ୍ତେଃ । ହେୟାମୁପା-ଦେୟୟୋର୍ହି ନିୟୋଜ୍ୟୋ ନିୟୋକ୍ତବ୍ୟଃ ସ୍ୟାତ୍ ।

(ଗ) ଆତ୍ମନସ୍ତ୍ୱତିରିକ୍ତଂ ହେୟମୁପାଦେୟଂ ବା ବସ୍ତ୍ୱପଶ୍ୟନ୍‌କଥଂ ନିଯୁଜ୍ୟତେ । ନଋତ୍ମାତ୍ମନ୍ୟେବ ନିୟୋଜ୍ୟଃ ସ୍ୟାତ୍ । ଶରୀରବ୍ୟତିରେକ ଦର୍ଶନ ଏବ ନିୟୋଜ୍ୟତ୍ୱମିତିଚେତ୍ । ନ । ତତ୍‌ସଂହତତ୍ୱାଭିମାନାତ୍ । ସତ୍ୟଂ ବ୍ୟତିରେକ ଦର୍ଶନୋ ନିୟୋଜ୍ୟତ୍ୱଂ, ତଥାପି ବ୍ୟୋମାଦିବଦ୍ଦେହାଦ୍ୟସଂହତତ୍ୱମପଶ୍ୟତ ଏବାତ୍ ମାନୋ ନିୟୋଜ୍ୟତ୍ୱଭିମାନଃ । ନହି ଦେହାଦ୍ୟୁସଂହତତ୍ୱଦର୍ଶନଃ କସ୍ୟଚିଦପି ନିୟୋଗା ଦୃଷ୍ଟଃ । କିମୁତୈକାତ୍ମ୍ୟଦର୍ଶନଃ ।

(ଘ) ନଚ ନିୟୋଗାଭାବାତ୍ ସମ୍ୟଗ୍ଦର୍ଶନୋ ଯଥେଷ୍ଟ ଚେଷ୍ଟା ପ୍ରସଙ୍ଗଃ । ସର୍ବତ୍ରାଭିମାନସ୍ୟୈବ ପ୍ରବର୍ତ୍ତକତ୍ୱାଦଭିମାନାଭାବାଚ୍ଚ ସମ୍ୟଗ୍ଦର୍ଶନଃ । ତସ୍ମାଦ୍ଦେହସମ୍ବନ୍ଧା-ଦେବାନୁଜ୍ଞାପରିହାରୌ । ଜ୍ୟୋତିରାଦିବାତ୍ । ଯଥା ଜ୍ୟୋତିଷ ଏକତ୍ୱେଽପ୍ୟଗ୍ନିଃ କ୍ରବ୍ୟାତ୍ ପରିହ୍ରିୟତେ ନେତରଃ । ଯଥାଚ ପ୍ରକାଶ ଏକସ୍ୟାପି ସବିତୁରମେଧ୍ୟ ଦେଶ ଦେଶ ସଂବନ୍ଧଃ



ପରିହ୍ରିୟତେ ନେତରଃ ଶୁଚିଭୂମିଷ୍ଠଃ । ଯଥା 'ଭୌମାଃ ପ୍ରଦେଶା ବଜ୍ରବୈଡୁର୍ଯ୍ୟାଦୟ ଉପାଦୀୟନ୍ତେ । ଭୌମା ଅପି ସନ୍ତୋ ନରକଳେବରାଦୟଃ ପରିହ୍ରିୟନ୍ତେ । ଯଥା ମୂତ୍ରପୁରୀଷଂ ଗବାଂ ପବିତ୍ରତୟା ପରିଗୃହ୍ୟତେ ତଦେବ ଜାତ୍ୟନ୍ତିରେ ପରବର୍ଜ୍ୟତେ ତଦ୍‌ବତ୍ ।

**(୩) ଭାଷାଂତର-** (କ) 'ଋତୌ-ଭାର୍ଯ୍ୟାମୁପେୟାତ୍' (ମାସିକଧର୍ମର ଶୁଦ୍ଧି ପରେ ସ୍ତ୍ରୀ ସହିତ ସହବାସ କରିବା ଉଚିତ୍)- ଏହା ବିଧି ଅଟେ । 'ଗୁର୍ବଙ୍ଗନା' (ଗୁରୁପତ୍ନୀଙ୍କ ସହିତ ସହବାସ ପ୍ରସଙ୍ଗ ହେବା ଉଚିତ୍ ନୁହେଁ)- ଏହା ହେଉଛି ନିଷେଧ । 'ଅଗ୍ନୀଷୋମୀୟମ୍' (ଅଗ୍ନୀଷୋମୀୟ ପଶୁକୁ ବଧ କରିବା ଉଚିତ୍) – ଏହା ହେଉଛି ବିଧି ଏବଂ 'ନ ହିଂସ୍ୟାତ୍' (କୌଣସିପ୍ରାଣୀକୁ ହିଂସା କରିବା ଉଚିତ୍)- ଏହା ହେଉଛି ନିଷେଧ ବିଧି । ଏହିପ୍ରକାର ଲୋକରେ 'ମିତ୍ରମୁପସେବିତବ୍ୟମ୍' (ମିତ୍ରର ଉପସେବନ କରିବା ଉଚିତ୍') – ଏହା ହେଉଛି ବିଧି ଏବଂ 'ଶତ୍ରୁଃ ପରିହର୍ତ୍ତବ୍ୟଃ' (ଶତ୍ରୁକୁ ତ୍ୟାଗ କରିବା ଉଚିତ୍)- ଏହା ହେଉଛି ନିଷେଧ । ଏହିପ୍ରକାର ବିଧି ଓ ପ୍ରତିଷେଧ ଆତ୍ମା ଗୋଟିଏ ହେଲେ ମଧ୍ୟ ବି ଶରୀର ସମ୍ବନ୍ଧରୁ ହୁଏ । ଦେହ ସହିତ ସମ୍ବନ୍ଧ ଦେହସମ୍ବନ୍ଧ ।

(ଖ) ପରନ୍ତୁ ଦେହସମ୍ବନ୍ଧ କଣ ? ଏହି ଦେହାଦି ସଂଘାତ 'ମୁଁ ଅଟେ' ଏହି ପ୍ରକାର ଆତ୍ମାରେ ବିପରୀତ ପ୍ରତ୍ୟୟର ଉତ୍ପତ୍ତି । ତାହା 'ମୁଁ ଯାଏ', 'ମୁଁ ଆସେ', 'ମୁଁ ଅନ୍ଧ', 'ମୁଁ ଅନ୍ଧ ନୁହେଁ', 'ମୁଁ 'ମୂଢ଼' 'ମୁ ମୂଢ଼ ନୁହେଁ', – ଏହି ରୂପରେ ସମସ୍ତ ପ୍ରାଣୀରେ ଦେଖାଯାଏ । ତାହା ସମ୍ୟଗ୍‌ଦର୍ଶନଭିନ୍ନ କୌଣସି ନିବାରକ ନାହିଁ । ତତ୍ତ୍ୱଜ୍ଞାନପୂର୍ବରୁ ଏହି ଭ୍ରାନ୍ତି ସବୁ ପ୍ରାଣୀମାନଙ୍କ ପାଖରେ ନିରନ୍ତର ଥାଏ । ଏହି କାରଣ ଅବିଦ୍ୟା ନିମିତ୍ତ ଦେହାଦିଉପାଧି ସମ୍ବନ୍ଧରୁ କରାଯାଇ 'ବିଶେଷ ଅର୍ଥାତ୍ ଭେଦଦ୍ୱାରା ଏକାତ୍ମତ୍ୱ ସ୍ୱୀକାର କଲାପରେ ବିଧି ଓ ପ୍ରତିଷେଧ ହୁଅନ୍ତି । ତେବେ ସମ୍ୟଗ୍‌ଦର୍ଶୀଙ୍କ ବିଧି ଓ ପ୍ରତିଷେଧ ବ୍ୟର୍ଥ ହେବ । ନା, ତାହା ନୁହେଁ । କାରଣ-ଏହା କୃତାର୍ଥ ହେଲେ ନିଯୋଜ୍ୟ ହୁଏ ।

(ଗ) ପରନ୍ତୁ ଆତ୍ମାଭିନ୍ନ ହେୟ ଏବଂ ଉପାଦେୟ ବସ୍ତୁକୁ ନ ଦେଖି ସେ କିପରି ନିଯୁକ୍ତ ହୁଏ ? କିନ୍ତୁ ଆତ୍ମା ନିଜେ ନିଯୋଜ୍ୟ ହୁଏ ନାହିଁ । ଯଦି କହ ଯେ- ଶରୀର ଠାରୁ ପୃଥକ୍ ନିଜକୁ ଜାଣିଥିବା ଏହି ନିଯୋଜ୍ୟ ଅଟେ, ତାହା ମଧ୍ୟ ଠିକ୍ ନୁହେଁ । କାରଣ-ଦେହାଦି ସଂଘାତରେ ତାହା ଅଭିମାନୀ ହୁଏ । ଦେହାଦିସଂଘାତ ଭିନ୍ନ ନିଜକୁ ଜାଣିଥିବା ନିଯୋଜ୍ୟ ଅଟେ ବୋଲି ଯଦ୍ୟପି ଠିକ୍ ଅଟେ । ତଥାପି ଆକାଶ ପରି ଦେହଦ୍ୱାରା ଅସଙ୍ଗତ, ନିଜକୁ ନ ଜାଣି ନିଯୋଜ୍ୟଠାରେ ନିଯୋଜତ୍ୱ ଅଭିମାନ ହୁଏ । ଦେହାଦି ଦ୍ୱାରା ଅସଂହତତ୍ୱର ଦ୍ରଷ୍ଟା କାହାର ନିଯୋଗ ଦେଖେ ନାହିଁ । ତାହେଲେ ଆତ୍ମୈକତ୍ୱ ଦର୍ଶୀବିଷୟରେ କଣ କୁହାଯାଇପାରେ ?

(ଘ) ନିଯୋଗ ନ ହେଲେ ସମ୍ୟଗ୍‌ଦର୍ଶୀଠାରେ ଯଥେଷ୍ଟ ଚେଷ୍ଟାର ପ୍ରସଙ୍ଗ ହୁଏ ନାହିଁ; କାରଣ-ସର୍ବତ୍ର ଅଭିମାନୀହିଁ ପ୍ରବର୍ତ୍ତକ ଅଟେ, କିନ୍ତୁ ସମ୍ୟଗ୍‌ଦର୍ଶୀ ଅଭିମାନୀ ନୁହେଁ । ତେଣୁ ଦେହସମ୍ବନ୍ଧରୁ ଜ୍ୟୋତି ପ୍ରଭୃତି ସଦୃଶ ବିଧି ଓ ନିଷେଧ ହୁଏ । ଯେପରି 'ଜ୍ୟୋତି ଏକ ହେଲେ 'ବି କ୍ରବ୍ୟାତ୍ ଅଗ୍ନି' (ଶ୍ମଶାନର ଅଗ୍ନି)ର ପରିହାର କରାଯାଇଛି । କିନ୍ତୁ ଅନ୍ୟର ନୁହେଁ । ଅଥବା ଯେପରି ଗୋଟିଏ ସୂର୍ଯ୍ୟର ଅପବିତ୍ରଦେଶ ସମ୍ବନ୍ଧ ପ୍ରକାଶ ପରିହୃତ ହୁଏ, ଅନ୍ୟପବିତ୍ର ଭୂମିସ୍ଥ ପ୍ରକାଶ ପରିହୃତ ହୁଏ ନାହିଁ । ବଜ୍ର, ବୈଡୁର୍ଯ୍ୟାଦି ଭୂମି ପ୍ରଦେଶର ଉପାଦାନ ଅଟେ । ପରନ୍ତୁ ନରକଳେବର ଇତ୍ୟାଦି ଭୌମ ହୋଇ ପରିହୃତ ହୁଅନ୍ତି । ଯେପରିକି ଗାଈର ମୂତ୍ର ଓ ମଳ ପବିତ୍ରରୂପରେ ଗ୍ରହଣ କରାଯାଏ, କିନ୍ତୁ ଅନ୍ୟପ୍ରାଣୀର ମଳ ମୂତ୍ର ତ୍ୟାଗ କରାଯାଏ । ଏହି ପ୍ରକରଣରେ ଏତାଦୃଶ ଜାଣିବା ଉଚିତ୍ ।

## असंततेश्चाव्यतिकरः ॥ ४९ ॥

## ୧- ଆସଂତତେଶ୍ଚା ବ୍ୟାତିକରଃ ।୨-୩-୪୯॥

ଚ-ପରନ୍ତୁ, ଅସନ୍ତତେଃ-ଜୀବାତ୍ମାର ସବୁଶରୀର ସହିତ ସମ୍ବନ୍ଧ ନ ହେଲେ, ଅବ୍ୟତିକରଃ-କର୍ମଫଳର ସଙ୍କର ହେବ ନାହିଁ ।

(୨) ମୂଳ-(କ) ସ୍ୟାତାଂ ନମାନୁଜ୍ଞାପରିହାରାବେକସ୍ୟାପ୍ୟାତ୍ମନୋ ଦେହବିଶେଷଯୋଗାତ୍ । ନାସ୍ତ୍ୱୟଂ କର୍ମଫଳସମ୍ବନ୍ଧଃ ସଃ ଚୈକାତ୍ମ୍ୟାଭ୍ୟୁପଗମେ ବ୍ୟତିକୀର୍ଯ୍ୟେତ ସ୍ୱାମ୍ୟେକତ୍ୱାଦିତି ଚେତ୍ । ନୈତଦେବମ୍, ଅସନ୍ତତେଃ । ନହି କର୍ତ୍ତୁର୍ଭୋକ୍ତୁଶ୍ଚାତ୍ମନଃ ସଂତତଃ ସର୍ବୈ ଶରୀରୈଃ ସଂବନ୍ଧୋଽସ୍ତି । ଉପାଧିତନ୍ତ୍ରୋ ହି ଜୀବ ଇତ୍ୟୁକ୍ତମ୍ । ଉପାଧସନ୍ତାନାଚ୍ଚ ନାସ୍ତି ଜୀବସନ୍ତାନଃ । ତତଶ୍ଚ କର୍ମବ୍ୟତିକରଃ ଫଳବ୍ୟତିକରୋ ବା ନ ଭବିଷ୍ୟତି ।

**(୨) ଭାଷାଂତର-** ଆତ୍ମା ଏକହେଲେ ଦେହ ବିଶେଷସମ୍ବନ୍ଧରୁ ବିଧି ଓ ନିଷେଧ ହୁଅନ୍ତି । ପରନ୍ତୁ ଯିଏ ଏଠାରେ କର୍ମଫଳସମ୍ବନ୍ଧ, ସେହି ଏକ ଆତ୍ମାର ସ୍ୱରୂପ ସ୍ୱୀକାର କରିବାରେ ସଙ୍କର ହେବ ନାହିଁ । କାରଣ-ସ୍ୱାମୀ ଏକ ଅଟେ । ଏହା ଯଦି କହ, ତେବେ ଅସଙ୍ଗତ ହେବ । କାରଣ-ତାହା ଅସନ୍ତତି ଅଟେ । କର୍ତ୍ତା ଭୋକ୍ତା ଆତ୍ମାର ସବୁ ଶରୀର ସହିତ ସମ୍ବନ୍ଧ ନୁହେଁ । ଜୀବ ଉପାଧିର ଅଧୀନ ବୋଲି କୁହାଯାଇଅଛି । ଉପାଧିର ସନ୍ତତ ନ ହେଲେ ଜୀବ ସନ୍ତତ ହୁଏ ନାହିଁ । ତେଣୁ କର୍ମ ସଙ୍କର ଅଥବା ଫଳ ସଙ୍କର ହୁଏ ନାହିଁ ।



## आभास एव च ॥ ५० ॥

## ୧- ଆଭାସ ଏବ ଚ ॥୨-୩-୫୦॥

ଚ-ଏବଂ, ଆଭାସ ଏବ-ଜୀବ ପରମାତ୍ମାର ଆଭାସ ହୁଏ । ତେଣୁ କର୍ମ ଅଥବା କର୍ମଫଳ ସଙ୍କର ନୁହେଁ ।

(୨) ମୂଳ-(କ) ଆଭାସ ଏବ ଚୈଷ ଜୀବଃ ପରମାତ୍ମାନୋ ଜଳସୂର୍ଯ୍ୟ କାଦିବତ୍ ପ୍ରତିପତ୍ତବ୍ୟଃ । ନ ସ ଏବ ସାକ୍ଷାତ୍ । ନାପି ବସ୍ତ୍ୱନ୍ତରମ୍ । ଅତଶ୍ଚ ଯଥା ନୈକସ୍ମିନ୍ ଜଳସୂର୍ଯ୍ୟକେ କମ୍ପମାନେ ଜଳସୂର୍ଯ୍ୟକାନ୍ତରଂ କମ୍ପତେ, ଏବଂ ନୈକସ୍ମିନ୍ ଜୀବେ କର୍ମଫଳ ସମ୍ବନ୍ଧିନିଜୀବାନ୍ତରସ୍ୟ ତତ୍ସଂବନ୍ଧଃ । ଏବମପ୍ୟବ୍ୟତିକର ଏବ କର୍ମଫଳୟୋଃ । ଆଭାସସ୍ୟ ଚାବିଦ୍ୟାକୃତତ୍ୱାତ୍ତଦାଶ୍ରୟସ୍ୟ ସଂସାରସ୍ୟାବିଦ୍ୟାକୃତତ୍ୱୋ ପପତ୍ତିରିତି । ତଦ୍ବ୍ୟୁଦାସେନ ଚ ପାରମାର୍ଥିକସ୍ୟ ବ୍ରହ୍ମାତ୍ମଭାବସ୍ୟୋପଦେଶୋପପତ୍ତିଃ ।

(ଖ) ଯେଷାଂ ତୁ ବହବ ଆତ୍ମାନ୍ୟସ୍ତେ ଚ ସର୍ବେ ସର୍ବଗତାସ୍ତେଷାମେବୈଷ ବ୍ୟତିକରଃ ପ୍ରାପ୍ନୋତି । କଥମ୍ । ବହବୋ ବିଭବଶ୍ଚାତ୍ମାନଶ୍ଚୈତନ୍ୟ ମାତ୍ରସ୍ୱରୂପା ନିର୍ଗୁଣା ନିରତିଶୟାଶ୍ଚ ତଦର୍ଥଂ ସାଧାରଣଂ ପ୍ରଧାନଂ ତନ୍ନିମିତ୍ତୈଷାଂ ଭୋଗାପବର୍ଗୌ ସିଦ୍ଧିରିତି ସାଂଖ୍ୟାଃ ।

(ଗ) ସତି ବହୁତ୍ୱେ ବିଭୁତ୍ୱେ ଚ ଘଟକୁଡ୍ୟାଦିସମାନା ଦ୍ରବ୍ୟମାତ୍ରସ୍ୱରୂପା ସ୍ୱତୋଽଚେତନା ଆତ୍ମନସ୍ତଦୁପକରଣାନି ଚାଣୂନି ମନାଂସ୍ୟ ଚେତନାନି । ତତ୍ରାତ୍ମଦ୍ରବ୍ୟାଣାଂ ମନୋଦ୍ରବ୍ୟାଣାଂ ଚ ସଂଯୋଗାନ୍ନବେଚ୍ଛାଦୟୋ ବୈଶେଷିକ । ଆତ୍ମଗୁଣା ଉତ୍ପଦ୍ୟନ୍ତେ । ତେ ଚାବ୍ୟତିକରେଣ ପ୍ରତ୍ୟେକ ମାତ୍ମସୁ ସମବୟନ୍ତି ସ ସଂସାରଃ । ତେଷାଂ ନବାନାମାତ୍ମଗୁଣାନାମତ୍ୟନ୍ତାନୁତ୍ପାଦୋ ମୋକ୍ଷ ଇତି କାଣାଦାଃ ।

(ଘ) ତତ୍ର ସାଂଖ୍ୟାନାଂ ତାବଚ୍ଚୈତନ୍ୟ ସ୍ୱରୂପତ୍ୱାତ୍ସର୍ବାତ୍ମନାଂ ସଂନିଧାନାଦ୍ୟବିଶେଷାଚ୍ଚୈକସ୍ୟ ସୁଖଦୁଃଖ ସମ୍ବନ୍ଧେ ସର୍ବେଷାଂ ସୁଖଦୁଃଖ ସମ୍ବନ୍ଧଃ ପ୍ରାପ୍ନୋତି । ସ୍ୟାଦେତତ୍ । ପ୍ରଧାନପ୍ରବୃତ୍ତେଃ ପୁରୁଷ କୈବଲ୍ୟାର୍ଥତ୍ୱାଦ୍ ବ୍ୟବସ୍ଥା ଭବିଷ୍ୟତି । ଅନ୍ୟଥାହି ସ୍ୱବିଭୂତିଖ୍ୟାପନାର୍ଥା ପ୍ରଧାନପ୍ରବୃତ୍ତିଃ ସ୍ୟାତ୍ । ତଥା ଚାନିର୍ମୋକ୍ଷଃ ପ୍ରସଜ୍ୟେତତି ।

(ଙ) ନୈତତ୍ସାରମ୍ । ନହ୍ୟଭିଳଷିତସିଦ୍ଧିନିବନ୍ଧନା ବ୍ୟବସ୍ଥା ଶକ୍ୟା ବିଜ୍ଞାତୁମ୍ । ଉପପତ୍ତ୍ୟା ତୁ କୟାଚିଦ୍ ବ୍ୟବସ୍ଥୋଚ୍ୟେତ । ଅସତ୍ୟାଂ ପୁନରୁପପତ୍ତୌ କାମଂ ମା ଭୂଦଭିଳଷିତଂ ପୁରୁଷ କୈବଲ୍ୟଂ, ପ୍ରାପ୍ନୋତି ତୁ ବ୍ୟବସ୍ଥା ହେତ୍ୱଭାବାଦ୍ ବ୍ୟତିକରଃ କାଣାଦାନାମପି ଯଦୈକେନାତ୍ ମନା ମନଃ ସଂଯୁଜ୍ୟତେ, ତଦାତ୍ମାନ୍ତରୈରପି ନାନ୍ତରୀୟକଃ ସଂଯୋଗଃ

ସ୍ୟାତ୍ ସଂନିଧାନାଦ୍ୟବିଶେଷାତ୍ । ତତଶ୍ଚ ହେତ୍ୱବିଶେଷାତ୍ ଫଳାବିଶେଷ ଇତ୍ୟେକସ୍ୟାତ୍ ମନଃ ସୁଖଦୁଃଖ ଯୋଗେ ସର୍ବାତ୍ମନାମପି ସମାନଂ ସୁଖଦୁଃଖିତ୍ୱଂ ପ୍ରସଜ୍ୟେତ ।

(୨) ଭାଷାଂତର- (କ) ଜଳଗତ ସୂର୍ଯ୍ୟ ପ୍ରତିବିମ୍ବ ସଦୃଶ ଏହି ଜୀବ ପରମାତ୍ମାର ପ୍ରତିବିମ୍ବ ବୋଲି ଜାଣିବା ଉଚିତ୍ । ତାହା ସାକ୍ଷାତ୍ ପରମାତ୍ମା ନୁହେଁ ଏବଂ ଅନ୍ୟବସ୍ତୁ ନୁହେଁ । ତେଣୁ ଯେପରି ଗୋଟିଏ ଜଳଗତ ସୂର୍ଯ୍ୟ ପ୍ରତିବିମ୍ବର କମ୍ପନ ଦ୍ୱାରା ଅନ୍ୟ ଜଳ ସୂର୍ଯ୍ୟର କମ୍ପନ ହୁଏ ନାହିଁ, ସେହିପରି ଏକଜୀବ କର୍ମଫଳ ସମ୍ବନ୍ଧ ହେଲେ ଅନ୍ୟଜୀବର କର୍ମଫଳ ସହିତ ସମ୍ବନ୍ଧ ହୁଏ ନାହିଁ । ସେହିପରି କର୍ମ ଓ ଫଳର ଅସଙ୍କର ହୁଏ ଏବଂ ଆଭାସ ଅବିଦ୍ୟାକୃତ ହେଲେ ତାହାର ଆଧାର ସଂସାରରେ ମଧ୍ୟ ଅବିଦ୍ୟାକୃତତ୍ୱ ଉପପନ୍ନ ହୁଏ । ତାହାର ନିରାକରଣରେ ପାରମାର୍ଥିକ ବ୍ରହ୍ମତ୍ୱଭାବର ଉପଦେଶ ଉପପନ୍ନ ହୁଏ ।

(ଖ) ପରନ୍ତୁ ଯାହାମତରେ ଆତ୍ମା ଅନେକ ଅଟେ, ସେ ସବୁ ବ୍ୟାପକ ଅଟନ୍ତି । ସେମାନଙ୍କ ମତରେ ଏହି ସଙ୍କର ପ୍ରାପ୍ତ ହୁଏ । କିପରି ? ଆତ୍ମା ବହୁତ, ବିଭୁ, ଚୈତନ୍ୟମାତ୍ର ସ୍ୱରୂପ, ନିର୍ଗୁଣ ଓ ନିରତିଶୟ ଅଟେ । ସେମାନଙ୍କ ପାଇଁ ପ୍ରଧାନ ସାଧାରଣ ଅଟେ । ତନ୍ନିମିତ୍ତିକ ସେମାନଙ୍କର ରୋଗ ଓ ଅପବର୍ଗ ସିଦ୍ଧ ହୁଏ ବୋଲି ସାଂଖ୍ୟମାନେ ସ୍ୱୀକାର କରନ୍ତି ।

(ଗ) ଆତ୍ମା ଅନେକ ଓ ବିଭୁ ହେଲେ ଘଟ ଓ କୋଠରୀ ସଦୃଶ ଦ୍ରବ୍ୟମାତ୍ର ସ୍ୱରୂପ ଓ ମନୋଦ୍ରବ୍ୟର ସଂଯୋଗରୁ ଇଚ୍ଛା ପ୍ରଭୃତି ନଅଟି ଆତ୍ମାର ବିଶେଷ ଗୁଣ ଉତ୍ପନ୍ନ ହୁଅନ୍ତି । ସେମାନେ ସଙ୍କର ବିନା ପ୍ରତ୍ୟେକ ଆତ୍ମାରେ ସମବାୟସମ୍ବନ୍ଧରେ ରହନ୍ତି । ଏହା ହିଁ ସଂସାର ଅଟେ ଏବଂ ଏହି ନଅଟି ଆତ୍ମଗୁଣର ଅତ୍ୟନ୍ତ ଅନୁତ୍ପତ୍ତି ମୋକ୍ଷ ଅଟେ ବୋଲି କଣାଦଙ୍କର ମତ ।

(ଘ) ଏହି ସାଂଖ୍ୟମତରେ ଆତ୍ମା ଚୈତନ୍ୟ ସ୍ୱରୂପ ହେଲେ ସବୁ ଆତ୍ମାର ସନ୍ନିଧାନାଦିଅବିଶେଷ ହେତୁ ଗୋଟିଏ ଆତ୍ମାର ସୁଖଦୁଃଖାଦି ସହିତ ସମ୍ବନ୍ଧ ହେଲାପରେ ସମସ୍ତଙ୍କୁ ସୁଖଦୁଃଖ ପ୍ରାପ୍ତ ହୁଏ । ଏହା ହୋଇପାରେ । ପରନ୍ତୁ ପ୍ରଧାନର ପ୍ରବୃତ୍ତି ପୁରୁଷର କୈବଲ୍ୟ ପାଇଁ ରହିଥିବାରୁ ସୁଖଦୁଃଖର ବ୍ୟବସ୍ଥା ହେବ, ଅନ୍ୟଥା ପ୍ରଧାନର ପ୍ରବୃତ୍ତି ନିଜର ବିଭୂତିପ୍ରସିଦ୍ଧ ପାଇଁ ହେବ । କିନ୍ତୁ ତଦ୍ଦ୍ୱାରା ମୋକ୍ଷାଭାବ ପ୍ରସକ୍ତ ହେବ ।

(ଙ) ଏହା କିନ୍ତୁ ଠିକ୍ ନୁହେଁ କାରଣ- ଅଭିଳଷିତ ସିଦ୍ଧର ଅଧୀନ ବ୍ୟବସ୍ଥା ଅବଗତ ହୁଏ ନାହିଁ । କାହାର ଉପପତ୍ତି ବ୍ୟବସ୍ଥା ହେବ ବୋଲି ଯଦି କହ ତେବେ ଉପପତ୍ତି ନ ହେଲେ ଯଥେଷ୍ଟ ଅଭିଳଷିତ ପୁରୁଷ କୈବଲ୍ୟ ହେବ ନାହିଁ । ପୁନଶ୍ଚ ବ୍ୟବସ୍ଥାର

ହେତୁ ନ ହେଲେ ସଙ୍କର ପ୍ରାପ୍ତ ହେବ । କଣାଦଅନୁଯାୟୀଙ୍କ ମତରେ ଯେତେବେଳେ ଏକ ଆତ୍ମାର ସହ ମନ ସଂଯୋଗ ହୁଏ, ସେତେବେଳେ ଅନ୍ୟ ଆତ୍ମା ସହିତ ନିଶ୍ଚିତ ଭାବେ ସଂଯୋଗ ହେବ । କାରଣ-ସନ୍ନିଧାନ ପ୍ରଭୃତି ସମାନ ଅଟେ । ତାହାର ହେତୁ ଅର୍ଥାତ୍ ମନୋ ସଂଯୋଗର ଅବିଶେଷ ହେଲେ ଫଳର ମଧ୍ୟ ଅବିଶେଷ ହୁଏ । କିନ୍ତୁ ଏହିପରି ଗୋଟିଏ ଆତ୍ମାରେ ସୁଖଦୁଃଖର ସମ୍ବନ୍ଧ ହେଲେ ସମସ୍ତ ଆତ୍ମାରେ ସମାନ ପ୍ରକାରର ସୁଖଦୁଃଖ ପ୍ରସକ୍ତ ହେବ ।

(୧) ମୂଳ-ସ୍ୟାଦେତତ୍ ! ଅଦୃଷ୍ଟନିମିତ୍ତୋ ନିୟମୋ ଭବିଷ୍ୟତୀତି । ନେତ୍ୟାହ-

**(୧) ଭାଷାଂତର-** ଅଦୃଷ୍ଟ ନିମିତ୍ତକ ନିୟମ ହେବ ବୋଲି ଯଦି କହ ତାହା ବିଷୟରେ କୁହାଯାଇଛି ଯେ- ଏହା ନୁହେଁ ।

## अदृष्टानियमात् ॥ ४१ ॥
## ଅଦୃଷ୍ଟାନିୟମାତ୍ ॥୨-୩-୫୧॥

ଅଦୃଷ୍ଟର ନିୟମ ନ ହେଲେ କର୍ମଫଳ ସଙ୍କର ହୁଏ ।

(୨) ମୂଳ-ବହୁଷ୍ୱାତ୍ମସ୍ୱାକାଶବତ୍ ସର୍ବଗତେଷୁ ପ୍ରତିଶରୀରଂ ବାହ୍ୟାଭ୍ୟନ୍ତରାବିଶେଷେଣ ସଂନିହିତେଷୁ ମନୋବାକ୍ କାର୍ଯ୍ୟୈର୍ଧର୍ମାଧର୍ମଲକ୍ଷଣ ମଦୃଷ୍ଟ ମୁପାର୍ଜ୍ୟତେ । ସାଂଖ୍ୟାନାଂ ତାବତ୍ତଦନାତ୍ମସମବାୟି ପ୍ରଧାନବର୍ତ୍ତି ପ୍ରଧାନସାଧାରଣ୍ୟାନ୍ନ ପ୍ରତ୍ୟାତ୍ମଂ ସୁଖଦୁଃଖୋପଭୋଗସ୍ୟ ନିୟାମକ ମୁପଦ୍ୟତେ । କାଣାଦାନାମପି ପୂର୍ବବତ ସାଧାରଣେନାତ୍ମମନଃ ସଂଯୋଗେନ ନିବର୍ତ୍ତିତସ୍ୟାଦୃଷ୍ଟସ୍ୟାପ୍ୟସ୍ୟୈବାତ୍ମନ ଇଦମଦୃଷ୍ଟମିତି ନିୟମେ ହେତ୍ୱଭାବାଦେଷ ଏବ ଦୋଷଃ ।

**(୨) ଭାଷାଂତର-** ଆକାଶ ପରି ସର୍ବଗତ ପ୍ରତ୍ୟେକ ଶରୀରରେ ଅନ୍ତର ଓ ବାହାର ସମାନରୂପରେ ସନ୍ନିହତ ଅନେକ ଆତ୍ମାରେ ମନ, ବାଣୀ ଓ ଶରୀର ଦ୍ୱାରା ଧର୍ମାଧର୍ମରୂପ ଅଦୃଷ୍ଟ ଉପାର୍ଜନ କରାଯାଇଛି । ସାଂଖ୍ୟମତରେ ଏହି ଅଦୃଷ୍ଟ ଅନାତ୍ମସମବାୟୀ ପ୍ରଧାନବର୍ତ୍ତୀ ହୁଏ । ପ୍ରଧାନ ସାଧାରଣ ହେଲେ ପ୍ରତ୍ୟେକ ଆତ୍ମାରେ ଏହି ସୁଖ ଦୁଃଖର ଉପଭୋଗନିୟାମକ ଉପପନ୍ନ ହୁଏ ନାହିଁ । କଣାଦମତରେ ପୂର୍ବପରି ସାଧାରଣ ଆତ୍ମା ଏବଂ ମନସଂଯୋଗରୁ ସଂପାଦିତ ଅଦୃଷ୍ଟର 'ଏହି ଅଦୃଷ୍ଟ ଆତ୍ମାର ଅଟେ' ଏହି ନିୟମରେ ହେତୁରେ ନ ହେଲେ ଦୋଷ ହୁଏ ନାହିଁ ।

(୧) ମୂଳ-ସ୍ୟାଦେତତ୍ । ଅହମିଦଂ ଫଳଂ ପ୍ରାପ୍ତବାନୀଦଂ ପରିହରାଣୀତ୍ ଥଂ ପ୍ରୟତା ଇତ୍ଥଂ କରବାଣୀତ୍ୟେବିଂବିଧା ଅଭିସନ୍ଧ୍ୟାଦୟଃ ପ୍ରତ୍ୟାତ୍ମଂ ପ୍ରବର୍ତ୍ତମାନା ଅଦୃଷ୍ଟସ୍ୟାତ୍ମନାଂ ଚ ସ୍ୱସ୍ୱାମିଭାବଂ ନିୟସ୍ୟନ୍ତୀତି ନେତ୍ୟାହ-

**(୧) ଭାଷାଂତର-** ଏହା ହୋଇପାରେ, ପରନ୍ତୁ ମୁଁ ଏହି ଫଳକୁ ପାଇବି- ଏହାର ପରିହାର କରୁଁ । ଏହିପରି ପ୍ରଯତ୍ନକରି ଏତାଦୃଶ କରୁଁ - ଏହିପ୍ରକାର ସଂକଳ୍ପାଦି ପ୍ରତ୍ୟେକରେ ପ୍ରବର୍ତ୍ତମାନ ହୋଇ ଅଦୃଷ୍ଟ ଏବଂ ଆତ୍ମାର ସ୍ୱସ୍ୱାମିଭାବର ନିୟମନ କରିବୁ । ତେଣୁ ଆମ୍ଭେ କହୁଁ ଯେ-

**अभिसंध्यादिष्वपि चैवम् ॥ ५२ ॥**

**ଅଭିସନ୍ଧ୍ୟାଦିଷ୍ୱପି ଚୈବମ୍ ॥୨-୩-୫୨॥**

ଅଭିସନ୍ଧ୍ୟାଦିଷୁ ଅପି-ସଂକଳ୍ପାଦିରେ, ଚୈବମ୍-ଅଦୃଷ୍ଟର ନିୟାମକତ୍ୱ ନାହିଁ । ତେଣୁ ପୂର୍ବୋକ୍ତ ଦୋଷ ଏହିପରି ହୁଏ ।

(୨) ମୂଳ-ଅଭିସଂଧ୍ୟାଦୀନାମପି ସାଧାରଣେନୈବାତ୍ମମନଃ ସଂଯୋଗେନ ସର୍ବାତ୍ମସଂନିଧୌ କ୍ରିୟମାଣାନାଂ ନିୟମହେତୁତ୍ୱାନୁପପତ୍ତେରୁକ୍ତଦୋଷାନୁଷଙ୍ଗ ଏବ ।

**(୨) ଭାଷାଂତର-** ସାଧାରଣ ଆତ୍ମସଂଯୋଗରୁ ସଂପୂର୍ଣ୍ଣ ଆତ୍ମାର ସନ୍ନିଧିରେ ଉତ୍ପନ୍ନ ହୋଇ ସଂକଳ୍ପାଦିରେ ନିୟମର ହେତୁ ହୁଏ ନାହିଁ । ତେଣୁ ଉକ୍ତ ଅନିୟମଦୋଷ ତଦବସ୍ଥ ହୁଏ ।

**प्रदेशादिति चान्नान्तर्भावात् ॥ ५३ ॥**

**(୧) ପ୍ରଦେଶାଦିତି ଚେନ୍ନାନ୍ତର୍ଭାବାତ୍ ॥୨-୩-୫୩॥**

ପ୍ରଦେଶାତ୍-ଆତ୍ମା ବିଭୁ ହେଲେ ବି ଶରୀରାବିଚ୍ଛିନ୍ନ ଆତ୍ମପ୍ରଦେଶରେ ମନ ସଂଯୋଗ ହୁଏ । ସେହି ଆତ୍ମପ୍ରଦେଶରୁ ସଂକଳ୍ପାଦି ନିୟମ ହେବ । ଇତିଚେନ୍ନ ଏହା ନୁହେଁ । ଅନ୍ତର୍ଭାବାତ୍= କାରଣ-ସମସ୍ତ ଶରୀରରେ ସେହି ଆତ୍ମା ଅନ୍ତର୍ଭାବ ହୁଏ । ତେଣୁ ଏହିଦୋଷ ଯାହାର ବୋଲି ତାହାର ହୋଇପାରେ ।

(୨) ମୂଳ- (କ) ଅଥୋଚ୍ୟେତ ବିଭୁତ୍ୱେଽପ୍ୟାତ୍ମନଃ ଶରୀରପ୍ରତିଷ୍ଠେନ ମନସା ସଂଯୋଗଃ ଶରୀରାବଚ୍ଛିନ୍ନ ଏବାତ୍ମପ୍ରଦେଶେ ଭବିଷ୍ୟତି ଅତଃ ପ୍ରଦେଶକୃତା ବ୍ୟବସ୍ଥାଽଭିସଂଧ୍ୟାଦୀନାମଦୃଷ୍ଟାସ୍ୟ ସୁଖଦୁଃଖୟୋଷ୍ଟ ଭବିଷ୍ୟତୀତି । ତଦପି ନୋପପଦ୍ୟତେ



କସ୍ମାତ୍ । ଅନ୍ତର୍ଭାବାତ୍ । ବିଭୁତ୍ୱା ବିଶେଷାଦ୍ଧି ସର୍ବେ ଏବାତ୍ମାନଃ ସର୍ବଶରୀରେଷ୍ୱନ୍ତର୍ଭବନ୍ତି । ତତ୍ର ନ ବୈଶେଷିକୈଃ ଶରୀରାବଚ୍ଛିନ୍ନୋଽପ୍ୟାତ୍ମନଃ ପ୍ରଦେଶଃ କଳ୍ପୟିତୁଂ ଶକ୍ୟଃ । କଳ୍ପ୍ୟମାନୋଽପ୍ୟୟଂ ନିଷ୍ପ୍ରଦେଶସ୍ୟାତ୍ମନଃ ପ୍ରଦେଶଃ କାଳ୍ପନିକତ୍ୱାଦେବ ନ ପାରମାର୍ଥିକଂ କାର୍ଯ୍ୟଂ ନିୟନ୍ତୁଂ ଶକ୍ନୋତି ।

(ଖ) ଶରୀରମପି ସର୍ବାତ୍ ମସଂନିଧାବୁତ୍ପଦ୍ୟମାନମସ୍ୟୈବାତ୍ ମନୋ ନେତରେଷାମିତି ନ ନିୟନ୍ତୁଂ ଶକ୍ୟମ୍ । ପ୍ରଦେଶବିଶେଷାଭ୍ୟୁପଗମେଽପି ଚ ଦ୍ୱୟୋରତ୍ମନୋଃ ସମାନସୁଖଦୁଃଖଭାଜୋଃ କଦାଚିଦେକେନୈବ ତାବଚ୍ଛରୀରେଣୋପଭୋଗସିଦ୍ଧିଃ ସ୍ୟାତ୍ । ସମାନପ୍ରଦେଶସ୍ୟାପି ଦ୍ୱୟୋରାତ୍ମନୋରଦୃଷ୍ଟସ୍ୟ ସମ୍ଭବାତ୍ । ତଥାହି-ଦେବଦତ୍ତୋ ଯସ୍ମିନ୍ ପ୍ରଦେଶେ ସୁଖଦୁଃଖମନ୍ୱଭୂତ୍ତସ୍ମାତ୍ ପ୍ରଦେଶାଦପକ୍ରାନ୍ତେ ତଚ୍ଛରୀରେ ଯଜ୍ଞଦତ୍ତଶରୀରେ ଚ ତଂ ପ୍ରଦେଶମନୁପ୍ରାପ୍ତେ ତସ୍ୟାପୀତରେଣସମାନଃ ସୁଖଦୁଃଖାନୁଭବୋ ଦୃଶ୍ୟତେ ସ ନ ସ୍ୟାଦି ଦେବଦତ୍ତଯଜ୍ଞଦତ୍ତୟୋଃ ସମାନପ୍ରଦେଶମଦୃଷ୍ଟଂ ନ ସ୍ୟାତ୍ । ସ୍ୱର୍ଗାଦ୍ୟନୁପଭୋଗପ୍ରସଙ୍ଗଶ୍ଚ ପ୍ରଦେଶବାଦିନଃ ସ୍ୟାତ୍ । ବ୍ରାହ୍ମଣାଦିଶରୀରପ୍ରଦେଶେଷ୍ୱଦୃଷ୍ଟନିଷ୍ପତ୍ତେଃ ପ୍ରଦେଶାନ୍ତରବର୍ତ୍ତିତ୍ୱାଚ୍ଚ । ସ୍ୱର୍ଗାଦ୍ୟୁପଭୋଗସ୍ୟ । ସର୍ବଗତତ୍ୱାନୁପପତ୍ତିଶ୍ଚ ବହୂନାମାତ୍ମନାଂ, ଦୃଷ୍ଟାନ୍ତାଭାବାତ୍ ।

(ଗ) ବଦ ତାବତ୍ତ୍ୱଂ କେ ବହବଃ ସମାନପ୍ରଦେଶାଶ୍ଚେତି । ରୂପାଦୟ ଇତି ଚେତ୍ । ନ । ତେଷାମପି ଧର୍ମ୍ୟଂଶେନାଭେଦାଲ୍ଲକ୍ଷଣଭେଦାଚ୍ଚ । ନ ତୁ ବହୂନାମାତ୍ ମନାଂ ଲକ୍ଷଣଭେଦୋଽସ୍ତି । ଅନ୍ତ୍ୟବିଶେଷବିଶାଦ୍ ଭେଦୋପପତ୍ତିରିତି ଚେତ୍ । ନ । ଭେଦକଳ୍ପନାୟ ଅନ୍ତ୍ୟବିଶେଷୟାକଳ୍ପନାୟାଶ୍ଚେତରେତରାଶ୍ରୟତ୍ୱାତ୍ । ଆକାଶାଦୀନାମପି ବିଭୁତ୍ୱଂବ୍ରହ୍ମବାଦିନୋଽସିଦ୍ଧଂ କାର୍ଯ୍ୟତ୍ୱାଭ୍ୟୁପଗମାତ୍ ତସ୍ମାଦାତ୍ମୈକତ୍ୱପକ୍ଷ ଏବ ସର୍ବଦୋଷାଭାବ ଇତି ସିଦ୍ଧମ୍ ।

(୨) ଭାଷାଂତର- (କ) ଆତ୍ମା ବିଭୁ ହେଲେ ଶରୀରରେ ରହିଥିବା ମନର ସହିତ ତାହାର ସଂଯୋଗ ଶରୀରାବିଚ୍ଛିନ୍ନ ଆତ୍ମପ୍ରଦେଶରେ ହେବ । ତେଣୁ ସଙ୍କଳ୍ପାଦିର, ଅଦୃଷ୍ଟର, ସୁଖଦୁଃଖର ପ୍ରଦେଶକୃତ ବ୍ୟବସ୍ଥା ହେବ ବୋଲି ଯଦି କହ, ସେ ମଧ୍ୟ ଉପପନ୍ନ ହେବ ନାହିଁ । କିପରି ? ଏହାଦ୍ୱାରା ତାହା ଅନ୍ତର୍ଭାବ ହୁଏ । ସମସ୍ତ ଆତ୍ମାର ବିଭୁତ୍ୱ ସମାନ ହେଲେ ତାହା ସମସ୍ତଶରୀରରେ ଅନ୍ତର୍ଭାବ ହୁଏ । ସେହିପରି ସମସ୍ତ ଆତ୍ମାର ସମସ୍ତ ଶରୀରରେ ଅନ୍ତର୍ଭାବ ହେଲାପରେ ବୈଶେଷିକମାନେ ଶରୀରାବଚ୍ଛିନ୍ନ ପ୍ରଦେଶ କାଳ୍ପନିକ ହେବାରୁ ପାରମାର୍ଥିକ କାର୍ଯ୍ୟର ନିୟମନ କରିବା ପାଇଁ ସମର୍ଥ ହୁଅନ୍ତି ନାହିଁ ।

(ଖ) ସମସ୍ତ ଆତ୍ମାର ସନ୍ନିଧିରେ ଜାତ ହୋଇଥିବା ଶରୀର ମଧ୍ୟ ସେହି ଆତ୍ମାର ଶରୀର ଅଟେ । ଅନ୍ୟର ନୁହେଁ- ଏହିପ୍ରକାର ନିୟମ କରାଯାଇ ନାହିଁ । ପ୍ରଦେଶ ବିଶେଷସ୍ୱୀକାର କଲାପରେ ସମାନ ସୁଖଦୁଃଖର ଭାଗୀ ଦୁଇଟି ଆତ୍ମାର ଉପଭୋଗ କେତେବେଳେ ଗୋଟିଏ ଶରୀରରେ ସିଦ୍ଧହେବ, କାରଣ-ଦୁଇଟି ଆତ୍ମାର ଅଦୃଷ୍ଟ ଗୋଟିଏ ପ୍ରଦେଶ ସମ୍ଭବ ହୁଏ । ଯେପରିକି ଯେଉଁସ୍ଥାନରେ ଦେବଦତ୍ତ ସୁଃଖଦୁଃଖକୁ ଅନୁଭବ କରେ, ସେହିଶରୀର ଅନ୍ୟପ୍ରଦେଶଠାରୁ ଦୂରେଇ ରହୁ ଏବଂ ଯଜ୍ଞଦତ୍ତଶରୀର ସେହିସ୍ଥାନକୁ ପ୍ରାପ୍ତ ହେଉ, ତେବେ ତାହାକୁ ଅନ୍ୟପରି ସୁଖଦୁଃଖ ଅନୁଭବ ଦେଖାଯାଏ । ସେହି ଅନୁଭବ ଯଦି ଦେବଦତ୍ତ ଓ ଯଜ୍ଞଦତ୍ତର ଅଦୃଷ୍ଟପରି ପ୍ରଦେଶ ଯୁକ୍ତ ନହୁଏ, ତେବେ ହେବ ନାହିଁ । ପ୍ରଦେଶବାଦୀକୁ ସ୍ୱର୍ଗାଦିର ଅନୁପଭୋଗପ୍ରସଙ୍ଗ ହେବ ? କାରଣ- ବ୍ରାହ୍ମଣାଦିଶରୀର ପ୍ରଦେଶରେ ଅଦୃଷ୍ଟ ନିଷ୍ପନ୍ନ ହୁଏ ଏବଂ ସ୍ୱର୍ଗାଦି ଉପଭୋଗ ପ୍ରଦେଶାନ୍ତବର୍ତ୍ତୀ ହୁଏ । ଅନେକ ଆତ୍ମା ସର୍ବଗତ ହେବା ଠିକ୍ ନୁହେଁ, କାରଣ-ସେଠାରେ କିଛି ଦୃଷ୍ଟାନ୍ତ ନାହିଁ ।

(ଗ) ବହୁତ ଓ ସମାନ ପ୍ରଦେଶଯୁକ୍ତ କେଉଁ ପଦାର୍ଥ ବୋଲି ଯଦି ତୁମେ କହ, ରୂପାଦି ଅଟନ୍ତି ବୋଲି ଯଦି ତୁମେ କହ, ତେବେ ଏହା ଠିକ୍ ନୁହେଁ । କାରଣ ସେମାନଙ୍କର ଧର୍ମର ଅଂଶରୂପରେ ଅଭେଦ ଓ ଲକ୍ଷଣଭେଦ ଅଛି । ପରନ୍ତୁ ବହୁତ ଆତ୍ମାରେ ଲକ୍ଷଣଭେଦ ନାହିଁ । ଯଦି କହ ଯେ- ଅନ୍ତ୍ୟବିଶେଷବଳରୁ ଭେଦ ଉପପତ୍ତି ହୁଏ, ଏହା ଠିକ୍ ନୁହେଁ, କାରଣ-ଭେଦ କଳ୍ପନା ଓ ଅନ୍ତ୍ୟବିଶେଷର କଳ୍ପନାରେ ଅନ୍ୟୋନ୍ୟାଶ୍ରୟ ହୁଏ । ବ୍ରହ୍ମବାଦୀମତରେ ଆକାଶପ୍ରଭୃତିର ବିଭୁତ୍ୱ ଅସିଦ୍ଧ ହୁଏ, କାରଣ-ସେଠାରେ କାର୍ଯ୍ୟତ୍ୱ ସ୍ୱୀକାର ହୁଏ । ଆତ୍ମାର ଏକତ୍ୱ ପକ୍ଷରେ ସମସ୍ତ ଦୋଷ ଅଭାବ ହୁଏ ବୋଲି ସିଦ୍ଧ ହୁଏ ।

## ଇତି ଦ୍ୱିତୀୟ ଅଧ୍ୟାୟ ତୃତୀୟପାଦ ସମାପ୍ତଃ



# द्वितीयाध्याये चतुर्थः पादः ।

# ଦ୍ୱିତୀୟ ଅଧ୍ୟାୟ ଚତୁର୍ଥ ପାଦ

## १ प्राणोत्पत्यधिकरणम् । सू० ॥ २-४ ॥

## ପ୍ରାଣୋତ୍ପତ୍ତ୍ୟଧିକରଣ

### तथा प्राणाः ॥ १ ॥

### ୧- ତଥା ପ୍ରାଣାଃ ॥ ୨-୪-୧ ॥

'ଏତସ୍ମାଜ୍ଜାୟତେ ପ୍ରାଣଃ' ଯେଉଁ ପ୍ରକାରରେ ଆକାଶାଦି ଉତ୍ପତ୍ତି ହୋଇଛି । ତଥା- ସେହିପରି, ପ୍ରାଣାଃ-ପ୍ରାଣେନ୍ଦ୍ରିୟର ଉତ୍ପତ୍ତିବିଷୟରେ କୁହାଯାଇଅଛି । ତେଣୁ ଇନ୍ଦ୍ରିୟଗୁଡ଼ିକ ଉତ୍ପନ୍ନଶୀଳ ଅଟନ୍ତି ।

(୨) ମୂଳ- (କ) ବିୟଦାଦିବିଷୟଃ ଶ୍ରୁତିବିପ୍ରତିଷେଧସ୍ତୃତୀୟେନ ପାଦେନ ପରିହୃତଃ । ଚତୁର୍ଥେନେଦାନୀଂ ପ୍ରାଣବିଷୟଃ ପରିହ୍ରୀୟତେ । ତତ୍ର ତାବତ୍ 'ତତ୍ତେଜୋଽସୃଜତ' (ଛା ୬-୨-୩) ଇତି, 'ତସ୍ମାଦବା ଏତସ୍ମାଦାତ୍ମନଃ ଆକାଶଃ ସମ୍ଭୂତଃ' (ତୈତ୍ତି ୨-୧-୧) ଇତି ଚୈବମାଦିଷୁତ୍ପତ୍ତିପ୍ରକରଣେଷୁ ପ୍ରାଣାନାମୁତ୍ପତ୍ତିର୍ନାମ୍ନାୟତେ କ୍ୱଚିଚ୍ଚାନୁତ୍ପତ୍ତିରେବୈଷାମାମ୍ନାୟତେ 'ଅସଦ୍ ବା ଇଦମଗ୍ର ଆସୀତ୍' (ତୈ୍ରେ ୨-୭) 'ତଦାହୁଃ କିଂ ତଦସଦାସୀଦିତ୍ୟୃଷୟୋ ବାବ ତେଽଗ୍ରେଽସଦାସୀତ୍' । ତଦାହୁଃ କେ ତେ ଋଷୟ ଇତି । ପ୍ରାଣ ବାବ ଋଷୟଃ ଇତ୍ୟତ୍ର ପ୍ରାଗୁତ୍ପତ୍ତେଃ ପ୍ରାଣାନାଂ ସଦ୍‌ଭାବଶ୍ରବଣାତ୍ ।

(ଖ) ଅନ୍ୟତ୍ର ତୁ ପ୍ରାଣାନାମପ୍ୟୁତ୍ପତ୍ତିଃ ପଠ୍ୟତେ- 'ଯଥାଗ୍ନେର୍ଜ୍ୱଲତଃ କ୍ଷୁଦ୍ରା ବିସ୍ଫୁଲିଙ୍ଗା ବ୍ୟୁଚ୍ଚରନ୍ତ୍ୟେବମେବୈତସ୍ମାଦାତ୍ମନଃ ସର୍ବେପ୍ରାଣାଃ ଇତି, 'ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ' (ମୁଣ୍ଡ ୨-୧-୩) ଇତି, 'ସପ୍ତପ୍ରାଣାଃ ପ୍ରଭବନ୍ତି ତସ୍ମାତ୍ (ମୁ ୨-୧୮) ଇତି, 'ସ ପ୍ରାଣମସୃଜତ ପ୍ରାଣାଚ୍ଛ୍ରଦ୍ଧାଂ ଖଂ ବାୟୁର୍ଜ୍ୟୋତିରାପଃ ପୃଥିବୀନ୍ଦ୍ରିୟଂ ମନୋଽନ୍ନମ୍' (ପ୍ର ୬-୪) ଇତି ଚୈବମାଦିପ୍ରଦେଶେଷୁ ।

(ଗ) ତତ୍ର ତତ୍ର ଶ୍ରୁତିବିପ୍ରତିଷେଧାଦନ୍ୟତରନିର୍ଦ୍ଧାରଣକାରଣାନିରୂପଣାଚ୍ଚାପ୍ରତିପତ୍ତିଃ ପ୍ରାପ୍ନୋତି । ଅଥବା ପ୍ରାଗୁତ୍ପତ୍ତେଃ ସଦ୍‌ଭାବଶ୍ରବଣାଦ୍ ଗୌଣୀ ପ୍ରାଣାନାମୁତ୍ପତ୍ତିଶ୍ରୁତିରିତି ପ୍ରାପ୍ନୋତି ।

(୨) ଭାଷାଂତର- (କ) ଆକାଶାଦି ଭୂତବିଷୟକ ଶ୍ରୁତିବାକ୍ୟର ପରସ୍ପର ବିରୋଧର ପରିହାର ତୃତୀୟପାଦରେ କରାଯାଇଅଛି । ବର୍ତ୍ତମାନ ଚତୁର୍ଥପାଦରେ ଇନ୍ଦ୍ରୟବିଷୟକ ଶ୍ରୁତିବାକ୍ୟଗୁଡ଼ିକର ବିରୋଧ ପରିହାର କରାଯାଇଅଛି । ସେଠାରେ 'ତତ୍ତେଜୋଽସୃଜତ', ତସ୍ମାଦ୍ ବା ଏତସ୍ମାଦାତ୍ମନଃ ଆକାଶଃ ସମ୍ଭୂତଃ ପ୍ରଭୃତି ଉତ୍ପତ୍ତି ପ୍ରକରଣରେ ପ୍ରାଣର ଉତ୍ପତ୍ତିବିଷୟରେ କୁହାଯାଇ ନାହିଁ । କିନ୍ତୁ କେତେକସ୍ଥଳରେ ସେମାନଙ୍କର ଅନୁତ୍ପତ୍ତି ବିଷୟରେ ଶୁଣାଯାଏ । ଯଥା- 'ଅସଦ୍ ବା' (ସର୍ବ ପ୍ରଥମେ ଏହି ଅସଦ୍ ଅବ୍ୟାକୃତ ଥିଲା), 'ତଦାହୁଃ' (ସେମାନେ କହନ୍ତି ଯେ- ସେହି ଅସତ୍ କଣ ଥିଲା କି ? ଉତ୍ପତ୍ତିର ପୂର୍ବରୁ ସେହି ଋଷିମାନେ ଅସତ୍ ଥିଲେ । ସେମାନେ କହନ୍ତି ଯେ- ସେହି ଋଷିମାନେ କିଏ ? ପ୍ରାଣ ହିଁ ଋଷି ଥିଲେ) ଏହିପ୍ରକାର ଉତ୍ପତ୍ତିର ପୂର୍ବରୁ ପ୍ରାଣର ସଦ୍‌ଭାବ ବିଷୟରେ ଶ୍ରୁତିପ୍ରମାଣ ଅଛି ।

(ଖ) ଅନ୍ୟସ୍ଥଳରେ 'ଯଥାଽଗ୍ନେର୍ଜ୍ୱଳତଃ' (ଯେପରି ଜଳୁଥିବା ଅଗ୍ନିରେ କ୍ଷୁଦ୍ର କ୍ଷୁଦ୍ର ଅଗ୍ନିକଣା ବାହାରେ, ସେହିପରି ଏହି ଆତ୍ମାରୁ ପ୍ରାଣ ସଂପୂର୍ଣ୍ଣଭାବେ ନିଷ୍କାସିତ ହୁଏ), 'ଏତସ୍ମାଜ୍ଜାୟତେ' (ଏହିଠାରୁ ପ୍ରାଣ, ମନ ଓ ଇନ୍ଦ୍ରିୟ ଉତ୍ପନ୍ନ ହୁଅନ୍ତି), 'ସପ୍ତପ୍ରାଣାଃ' (ତାହାଠାରୁ ସାତୋଟି ପ୍ରାଣ ଉତ୍ପନ୍ନ ହୁଅନ୍ତି), 'ସ ପ୍ରାଣମସୃଜତ' (ସେହି ପୁରୁଷ ଦ୍ୱାରା ପ୍ରାଣ ହିରଣ୍ୟଗର୍ଭଙ୍କୁ ଜାତ କରେ, ପ୍ରାଣଠାରୁ ଶ୍ରଦ୍ଧା, ଆକାଶ, ବାୟୁ, ତେଜ, ଜଳ, ପୃଥିବୀ, ଇନ୍ଦ୍ରିୟ, ମନ ଓ ଅନ୍ନକୁ ଜାତ କଲା) ଇତ୍ୟାଦି ସ୍ଥାନରେ ପ୍ରାଣର ଉତ୍ପତ୍ତି ପାଠ କରାଯାଏ ।

(ଗ) ପୂର୍ବପକ୍ଷ- ସେହି ସେହି ସ୍ଥଳରେ ଶ୍ରୁତିର ପରସ୍ପର ବିରୋଧ ହେଲେ ଏବଂ ଦୁଇଟିରେ ଗୋଟିଏ ପକ୍ଷର ନିର୍ଦ୍ଧାରଣ କାରଣର ଅନିରୂପିତ ହେଲେ ପ୍ରାଣର ଉତ୍ପତ୍ତି ବିଷୟକ ଶ୍ରୁତିବାକ୍ୟ ଗୌଣ ହୁଏ ବୋଲି ଜଣାପଡ଼େ ।

(୩) ମୂଳ-(କ) ଅତ ଉତ୍ତରମିଦଂ ପଠତି- 'ତଥା ପ୍ରାଣଃ' ଇତି । କଥଂ ପୁନରତ୍ର ତଥେତ୍ୟକ୍ଷରାନୁଲୋମ୍ୟଂ ପ୍ରକୃତୋପମାନାଭାବାତ୍ । ସର୍ବଗତାତ୍ମବହୁତ୍ୱବାଦି-ଦୂଷଣମ-ତୀତାନାନନ୍ତରପାଦାନ୍ତେ ପ୍ରକୃତଂ ତତ୍ତାବନ୍ନୋପମାନଂ ସମ୍ଭବତି ସାଦୃଶ୍ୟା ଭାବାତ୍ ।

(ଖ) ସାଦୃଶ୍ୟେହ ସତ୍ୟୁପମାନଂ ସ୍ୟାତ୍ । ଯଥା ସିଂହସ୍ତଥା ବଳବର୍ମେତି । ଅଦୃଷ୍ଟସାମ୍ୟ ପ୍ରତିପାଦନାର୍ଥମିତି ଯଦ୍ୟୁଚ୍ୟେତ, ଯଥାଽଦୃଷ୍ଟସ୍ୟ ସର୍ବାତ୍ମସଂନିଧା-ବୁତ୍ପଦ୍ୟମାନସ୍ୟା ନିୟତତ୍ୱମେବଂ ପ୍ରାଣାନାମପି ସର୍ବାତ୍ମନଃ ପ୍ରତ୍ୟନିୟତତ୍ୱମିତି । ତଦପି ଦେହାନିୟମେନୈବୋକ୍ତତ୍ୱାତ୍ ପୁନରୁକ୍ତଂ ଭବେତ୍ । ନଚ ଜୀବେନ ପ୍ରାଣା ଉପମୀୟେରନ୍ ସିଦ୍ଧାନ୍ତବିରୋଧାତ୍ ।

(ଗ) ଜୀବସ୍ୟ ହ୍ୟନୁତ୍ପତ୍ତିରାଖ୍ୟାତା । ପ୍ରାଣାନଂ ତୁତ୍ପତ୍ତିର୍ବ୍ୟାଚିଖ୍ୟାସିତା । ତସ୍ମାତ୍ତଥେତ୍ୟ ସମ୍ବନ୍ଧମିବ ପ୍ରତିଭାତି । ନ । ଉଦାହରଣୋପାତ୍ତେନାପ୍ୟୁପମାନେନ ସଂବନ୍ଧୋପପତ୍ତେଃ । ଅତ୍ର ପ୍ରାଣୋତ୍ପତ୍ତିବାଦିବାକ୍ୟଜାତଉଦାହରଣମ୍- 'ଏତସ୍ମାଦାତ୍ମନଃ ସର୍ବେପ୍ରାଣାଃ ସର୍ବେ ଲୋକାଃ ସର୍ବେ ଦେବାଃ ସର୍ବାଣି ଭୂତାନି ବ୍ୟୁଚ୍ଚରନ୍ତି' (ବୃ ୨-୧-୨୦) ଇତ୍ୟେବଂଜାତୀୟକମ୍ ।

(ଘ) ତତ୍ର ଯଥା ଲୋକାଦୟଃ ପରସ୍ମାଦ୍ ବ୍ରହ୍ମଣ ଉତ୍ପଦ୍ୟନ୍ତେ ତଥା ପ୍ରାଣା ଅପୀତ୍ୟର୍ଥଃ । ତଥା- 'ଏତସ୍ମାଜ୍ ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ । ଖଂ ବାୟୁର୍ଜ୍ୟୋତିରାପଃ ପୃଥିବୀ ବିଶ୍ୱସ୍ୟ ଧାରିଣୀ' (ମୁଣ୍ଡ ୨-୧-୩) ଇତ୍ୟେବ ମାଦିଷ୍ୱପି ସ୍ୱାଦିବତ୍ପ୍ରାଣାନାମୁତ୍ପତ୍ତି-ରିତି ଦ୍ରଷ୍ଟବ୍ୟମ୍ ।

**(୩) ଭାଷାଂତର-** ସିଦ୍ଧାନ୍ତ - (କ) ଏଠାରେ ଉତ୍ତର ପଢ଼ାଯାଏ- 'ତଥା ପ୍ରାଣାଃ' ପରନ୍ତୁ ଏହି ସୂତ୍ରରେ ତଥା ଏହି ଅକ୍ଷର କିପରି ଅନୁକୂଳ ହେବ ? କାରଣ- ପ୍ରକୃତ ଉପମାନର ଅଭାବ ହୁଏ । ସର୍ବଗତ ଅନେକ ଆତ୍ମା ଅଟେ- ଏହାକୁ ସ୍ୱୀକାର କରୁଥିବା ମତର ଦୂଷଣଗତ ପାଦର ଶେଷରେ ପ୍ରକୃତ ଅଟେ । ପରନ୍ତୁ ସାଦୃଶ୍ୟ ନ ହେଲେ ସେହି ଦୂଷଣ ପ୍ରାଣର ଉପମାନ ହୁଏ ନାହିଁ ।

(ଖ) ଯେପରି ସିଂହ, ସେପରି ବଳବର୍ମା ଏହିପ୍ରକାର ସାଦୃଶ୍ୟ ହେଲେ ତାହା ଉପମାନ ହୁଏ । ଯେପରି ସମସ୍ତ ଆତ୍ମାର ସମୀପରେ ଉତ୍ପନ୍ନ ହୋଇ ଅଦୃଷ୍ଟ ଅନିୟତ ହୁଏ, ସେପରି ପ୍ରାଣ ସମସ୍ତ ଆତ୍ମା ପାଇଁ ଅନିୟତ ହୁଏ । ସେହିପ୍ରକାର ଯଦି ତୁମେ କହ ଯେ- ଅଦୃଷ୍ଟର ସହିତ ସାମ୍ୟପ୍ରତିପାଦନ କରିବା ପାଇଁ ପ୍ରାଣ ଉପମାନ ହୁଏ, କିନ୍ତୁ ସେ ଦେହର ଅନିୟତ କୁହାଯିବାଦ୍ୱାରା ପୁନରୁକ୍ତ ହେବ । ସିଦ୍ଧାନ୍ତର ସହ ବିରୋଧ ହେଲେ ଜୀବ ସହିତ ପ୍ରାଣ ଉପମିତ କରାଯାଏ ନାହିଁ ।

(ଗ) କାରଣ-ଜୀବର ଅନୁତ୍ପତ୍ତି ବିଷୟରେ କୁହାଯାଇଅଛି ଏବଂ ପ୍ରାଣର ଉତ୍ପତ୍ତି ବିଷୟରେ କହିବା ପାଇଁ ଇଚ୍ଛା ଅଛି । ତେଣୁ 'ତଥା' ଏହି ଅସମ୍ବନ୍ଧ ହିଁ ପ୍ରତୀତି ହୁଏ । ପରନ୍ତୁ ଏହିପରି ଆକ୍ଷେପ ଠିକ୍ ନୁହେଁ । କାରଣ-ଉଦାହରଣରେ ଗୃହୀତ ଉପମାନରୁ ସମ୍ବନ୍ଧ ଉପପନ୍ନ ହୁଏ । ଏହି ବିଷୟରେ - 'ଏତସ୍ମାଦାତ୍ମନଃ' (ସେହି ଆତ୍ମାରୁ ସମସ୍ତ ପ୍ରାଣୀ, ସବୁ ଲୋକ, ସମସ୍ତ ଦେବତା ଓ ସମସ୍ତ ଭୂତ ବିବିଧରୂପରେ ବାହାରେ ଉତ୍ପନ୍ନ ହୁଏ) ସେହିପ୍ରକାରର ପ୍ରାଣୋତ୍ପତ୍ତିବାଦୀ ବାକ୍ୟସମୁଦାୟ ଉଦାହରଣ ଅଟେ ।

(ଘ) ସେଠାରେ ଯେପରି ସଂସାର ପ୍ରଭୃତି ପରଂବ୍ରହ୍ମଠାରୁ ଉତ୍ପନ୍ନ ହୁଅନ୍ତି, ସେହିପରି ପ୍ରାଣ ମଧ୍ୟ ପରଂବ୍ରହ୍ମଠାରୁ ଉତ୍ପନ୍ନ ହୁଏ ବୋଲି ଅର୍ଥ ହୁଏ । ସେହିପ୍ରକାର 'ଏତସ୍ମାଜ୍ଜାୟତେ, (ଏଠାରୁ ପ୍ରାଣ ଉତ୍ପନ୍ନ ହୁଏ । ମନ ଇନ୍ଦ୍ରିୟ ଆକାଶ, ବାୟୁ, ଅଗ୍ନି, ଜଳ ଓ ବିଶ୍ୱକୁ ଧାରଣ

କରୁଥିବା ପୃଥିବୀ ଉତ୍ପନ୍ନ ହୁଏ) ଇତ୍ୟାଦି ବେଦବାକ୍ୟରେ ଆକାଶ ପରି ପ୍ରାଣର ଉତ୍ପତ୍ତି ହୁଏ ବୋଲି ଜାଣିବା ଉଚିତ ।

(୪) ମୂଳ-(କ) ଅଥବା 'ପାନବ୍ୟାପଶ୍ଚ ତଦ୍‌ବତ୍' (ଜୈ. ଅ ୩-୪-୧୫) ଇତ୍ୟେବମାଦିଷ୍ଣୁ ବ୍ୟବହିତୋପମାନସଂବନ୍ଧସ୍ୟାପ୍ୟାଶ୍ରିତତ୍ୱାତ୍ । ଯଥାଽତୀତାନନ୍ତରପାଦାଦ୍ୟୁକ୍ତା ବିୟଦାଦୟଃ ପରସ୍ୟ ବ୍ରହ୍ମଣୋ ବିକାରାଃ ସମଧିଗତାସ୍ତଥା ପ୍ରାଣା ଅପି ପରସ୍ୟ ବ୍ରହ୍ମଣୋ ବିକାରା ଇତି ଯୋଜୟିତବ୍ୟମ୍ । କଃ ପୁନଃ ପ୍ରାଣାନାଂ ବିକାରତ୍ୱେ ହେତୁଃ । ଶ୍ରୁତତ୍ୱମେବ ।

(ଖ) ନନୁ କେଷୁଚିତ୍‌ପ୍ରଦେଶେଷୁ ନ ପ୍ରାଣାନାମୁତ୍ପତ୍ତିଃ ଶ୍ରୂୟତ ଇତ୍ୟୁକ୍ତଂ ତଦଯୁକ୍ତମ୍ । ପ୍ରଦେଶାନ୍ତରେଷୁ ଶ୍ରବଣାତ୍ । ନହି କ୍ୱଚିଦଶ୍ରବଣମନ୍ୟତ୍ର ଶ୍ରୁତଂ ନିବାରୟିତୁମୁତ୍ସହତେ । ତସ୍ମାଚ୍ଛ୍ରୁତତ୍ୱାବିଶେଷାଦାକାଶାଦିବତ୍ ପ୍ରାଣାଃ ଅପ୍ୟୁତ୍ପଦ୍ୟନ୍ତ ଇତି ଯୁକ୍ତମ୍ ।

(୪) ଭାଷାଂତର- (କ) ଅଥବା 'ପାନବ୍ୟାପଚ୍ଚ' (ସୋମପାନ କଲେ ବାନ୍ତି ହୁଏ, ଠିକ୍ ସେହିପରି) ଇତ୍ୟାଦି ସ୍ଥଳରେ ବ୍ୟବହିତ ଉପମାନର ସମ୍ବନ୍ଧ ଆଶ୍ରୟଣ କରାଯାଏ । ଯେପରି ଗତପାଦର ଆରମ୍ଭରେ ଉକ୍ତ ଆକାଶାଦି ପରଂବ୍ରହ୍ମର ବିକାର ନିଶ୍ଚିତ ହୁଏ । ସେହିପରି ପ୍ରାଣ ମଧ୍ୟ ପରଂବ୍ରହ୍ମର ବିକାର ଅଟେ । ସେପରି ଯୋଜନା କରିବା ଉଚିତ୍ । ପୁନଶ୍ଚ ପ୍ରାଣର ବିକାରତ୍ୱରେ ହେତୁ କିଏ ?

(ଖ) ବିକାର ପ୍ରତିପାଦକ ଶ୍ରୁତି ହିଁ ହେତୁ ଅଟେ । କିନ୍ତୁ ଏହା ଅଯୁକ୍ତ ଅଟେ । କାରଣ-ଅନ୍ୟସ୍ଥଳରେ ତାହା ଶୁଣାଯାଏ । କେତେକ ସ୍ଥାନରେ ଅଶ୍ରବଣ ଅନ୍ୟ ସ୍ଥାନରେ ଶ୍ରୁତି ନିବାରଣ କରିବାରେ ଉତ୍ସାହ କରେ ନାହିଁ । ତେଣୁ ଏହିକଥା ସୁସଙ୍ଗତ ଅଟେ ଯେ-ଶ୍ରୁତିପରି ସମାନ ହେଲେ ଆକାଶପରି ଆତ୍ମା ଉତ୍ପନ୍ନ ହୁଏ ।

## गौण्यसंभवात् ॥ २ ॥

## ୧- ଗୌଣ୍ୟ ସମ୍ଭବାତ୍ ॥ ୨-୪-୨ ॥

ଗୌଣ୍ୟସମ୍ଭବାତ୍-ଇନ୍ଦ୍ରିୟର ଉତ୍ପତ୍ତିପ୍ରତିପାଦକ ଶ୍ରୁତି ଗୌଣୀ ନୁହେଁ । ତେଣୁ ଇନ୍ଦ୍ରିୟଗୁଡ଼ିକ ଉତ୍ପନ୍ନ ମଧ୍ୟ ହୁଅନ୍ତି ।

(୨) ମୂଳ-(କ) ଯତ୍‌ପୁନରୁକ୍ତଂ ପ୍ରାଗୁତ୍ପତ୍ତେଃ ତଦ୍‌ଭାବଶ୍ରବଣାଦ୍ ଗୌଣୀ ପ୍ରାଣାନାମୁତ୍ପତ୍ତିଶ୍ରୁତିରିତି । ତତ୍‌ପ୍ରତ୍ୟାହ ଗୌଣ୍ୟସମ୍ଭବାଦିତି । ଗୌଣ୍ୟା ଅସମ୍ଭବୋ ଗୌଣ୍ୟସମ୍ଭବଃ । ନହି ପ୍ରାଣାନାମୁତ୍ପତ୍ତିଶ୍ରୁତି ଗୌଣୀ ସମ୍ଭବତି । ପ୍ରତିଜ୍ଞାହାନିପ୍ରସଙ୍ଗାତ୍ । 'କସ୍ମିନ୍ନୁ ଭଗବୋ ବିଜ୍ଞାତେ ସର୍ବମିଦଂ ବିଜ୍ଞାତଂ ଭବତି' (ମୁଣ୍ଡ ୧-୧-୩) ଇତି



ହ୍ୟେକବିଜ୍ଞାନେନ ସର୍ବବିଜ୍ଞାନଂ ପ୍ରତିଜ୍ଞାୟ ତତ୍‌ସାଧନାୟେଦମାମ୍ନାୟତେ 'ଏତସ୍ମାଜ୍ଜାୟତେ' (ମୁଣ୍ଡ ୨।୧।୩ ଇତ୍ୟାଦି ।

(ଖ) ସା ଚ ପ୍ରତିଜ୍ଞା ପ୍ରାଣାଦେଃ ସମସ୍ତସ୍ୟ ଜଗତୋ ବ୍ରହ୍ମବିକାରତ୍ୱେ ସତି ପ୍ରକୃତିବ୍ୟତିରେକେଣ ବିକାରାଭାବାତ୍ ସିଧ୍ୟତି । ଗୌଣ୍ୟାଂ ତୁ ପ୍ରାଣାନାମୁତ୍ପତ୍ତିଶ୍ରୁତୌ ପ୍ରତିଜ୍ଞେୟଂ ହୀୟତେ । ତଥାଚ ପ୍ରତିଜ୍ଞାତାର୍ଥମୁପସଂହରତି- 'ପୁରୁଷ ଏବେଦଂ ବିଶ୍ୱଂ କର୍ମ ତପୋ ବ୍ରହ୍ମ ପରାମୃତମ୍'.(ମୁଣ୍ଡ ୨।୧।୧୦) ଇତି । 'ବ୍ରହ୍ମୈବେଦଂ ବିଶ୍ୱମିଦଂ ବରିଷ୍ଠମ୍' (ମୁଣ୍ଡ ୨।୨।୧୨) ଇତି ଚ ।

(ଗ) ତଥା 'ଆତ୍ମନୋ ବାଽରେ ଦର୍ଶନେନ ଶ୍ରବଣେନ ମତ୍ୟା ବିଜ୍ଞାନେନେଦଂ ସର୍ବଂ ବିଦିତମ୍' ଇତ୍ୟେବଂ ଜାତୀୟକାସୁ ଶ୍ରୁତିଷ୍ୱେଷୈବ ପ୍ରତିଜ୍ଞା ଯୋଜୟିତବ୍ୟ ।

**(୨)** ଭାଷାଂତର- (କ) ଉତ୍ପତ୍ତିର ପୂର୍ବରୁ ପ୍ରାଣୀମାନଙ୍କର ସଦ୍‌ଭାବଶ୍ରବଣ ଦ୍ୱାରା ପ୍ରାଣୀର ଉତ୍ପତ୍ତି ବିଷୟକ ଶ୍ରୁତି ବାକ୍ୟଗୁଡ଼ିକ ଗୌଣ ଅଟନ୍ତି ବୋଲି ଯାହା କୁହାଯାଇଅଛି, ସେହି ବିଷୟରେ ଆମ୍ଭେ କହୁ- ଗୌଣୀର ଅସମ୍ଭବ ହୁଏ । ପ୍ରାଣୀର ଉତ୍ପତ୍ତି ବିଷୟକ ଶ୍ରୁତି ଗୌଣୀ ହେବା ଅସମ୍ଭବ, କାରଣର ପ୍ରତିଜ୍ଞାହାନି ହୁଏ । ଯଥା- 'କସ୍ମିନ୍ନୁ' (ହେ ଭଗବନ୍ ! ଯାହାକୁ ବିଜ୍ଞାତ ହୁଏ ସେ ସବୁ ବିଜ୍ଞାତ ହୁଏ) ଏହିପରି ଗୋଟିଏ ବିଜ୍ଞାନରୁ ସମସ୍ତ ବିଜ୍ଞାନକୁ ପ୍ରତିଜ୍ଞା କରି ତାହାର ସାଧନ ପାଇଁ ଏତସ୍ମାତ୍ ଜାୟତେ ତାହାଠାରୁ ପ୍ରାଣ ଉତ୍ପନ୍ନ ହୁଏ) ଇତ୍ୟାଦି ଶ୍ରୁତିବାକ୍ୟ ଅଛି ।

(ଖ) ସେହି ପ୍ରତିଜ୍ଞା ପ୍ରାଣୀ ପ୍ରଭୃତି ସମସ୍ତ ଜଗତ ବ୍ରହ୍ମର ବିକାର ହେଲେ ପ୍ରକୃତି ବ୍ୟତିତ ବିକାରର ଅଭାବ ପ୍ରମାଣିତ ହୁଏ । ପରନ୍ତୁ ପ୍ରାଣୀର ଉତ୍ପତ୍ତିବିଷୟକ ଶ୍ରୁତି ଗୌଣୀ ହେଲାପରେ ସେ ପ୍ରତିଜ୍ଞା ବାଧିତ ହୁଏ । ଏହିପରି ପୁରୁଷ ଏବୈଦଂ' (ଏହି ସମସ୍ତ ସଂସାର କର୍ମ ଓ ତତରୂପୀ ପୁରୁଷ । ସେ ପରରୂପ ଓ ଅମୃତରୂପ ବ୍ରହ୍ମ ଅଟେ) ଏବଂ 'ବ୍ରହ୍ମୈବେଦଂ' (ଏହି ସମସ୍ତ ଜଗତ ବରିଷ୍ଠ ବ୍ରହ୍ମ ଅଟେ) ଏହି ଶ୍ରୁତି ପ୍ରତିଜ୍ଞାତ ଅର୍ଥକୁ ଉପସଂହାର କରେ ।

(ଗ) ଏହିପରି 'ଆତ୍ମନୋ ବାଽରେ' (ହେ ମୈତ୍ରେୟୀ । ଆତ୍ମାର ଦର୍ଶନ ଶ୍ରବଣ, ମନନ ଓ ବିଜ୍ଞାନଠାରୁ ସମସ୍ତ ବସ୍ତୁ ବିଷୟ ଜଣାପଡେ) ଏହିପରି ଶ୍ରୁତିବାକ୍ୟରେ ପ୍ରତିଜ୍ଞା ଯୋଜନା କରିବା ଉଚିତ ।

(୩) ମୂଳ-(କ) କଥଂ ପୁନଃ ପ୍ରାଗୁତ୍ପତ୍ତେଃ ପ୍ରାଣାନାଂ ସଦ୍‌ଭାବଶ୍ରବଣାତ୍ । ନୈତନ୍ମୂଳ ପ୍ରକୃତିବିଷୟମ୍ । 'ଅପ୍ରାଣୋ ହ୍ୟମନାଃ ଶୁଭ୍ରୋ ହ୍ୟକ୍ଷରାତ୍ ପରତଃ ପରଃ' (ମୁଣ୍ଡ ୨।୧।୧) ଇତି ମୂଳପ୍ରକୃତେଃ ପ୍ରାଣାଦିସମସ୍ତବିଶେଷରହିତତ୍ୱାବଧାରଣାତ୍ ।

(ଖ) ଅବାନ୍ତରପ୍ରକୃତିବିଷୟଂ ତ୍ୱେତତ୍ ସ୍ୱବିକାରାପେକ୍ଷଂ ପ୍ରାଗୁତ୍ପତ୍ତେଃ ପ୍ରାଣାନାଂ ସଦ୍‌ଭାବାବଧାରଣମିତି ଦ୍ରଷ୍ଟବ୍ୟମ୍ । ବ୍ୟାକୃତବିଷୟାଣାମପି ଭୂୟସୀନାମବସ୍ଥାନାଂ ଶ୍ରୁତିସ୍ମୃତ୍ୟୋଃ ପ୍ରକୃତି ବିକାରଭାବପ୍ରସିଦ୍ଧେଃ । ବିୟଦଧିକରଣେ ହି 'ଗୌଣ୍ୟ ସମ୍ଭବାତ୍' ଇତି ପୂର୍ବପକ୍ଷସୂତ୍ରତ୍ୱାଦ୍ ଗୌଣୀ ଜନ୍ମଶ୍ରୁତିରସମ୍ଭବାଦିତି ବ୍ୟାଖ୍ୟାତମ୍ । ପ୍ରତିଜ୍ଞାହାନ୍ୟା ଚ ତତ୍ର ସିଦ୍ଧାନ୍ତୋଽଭିହିତଃ । ଇହ ତୁ ସିଦ୍ଧାନ୍ତସୂତ୍ରତ୍ୱାଦ୍ ଗୌଣ୍ୟା ଜନ୍ମଶ୍ରୁତେରସମ୍ଭବାଦିତି ବ୍ୟାଖ୍ୟାତମ୍ । ତଦନୁରୋଧେନ ତ୍ୱିହାପି ଗୌଣୀ ଜନ୍ମଶ୍ରୁତିରସମ୍ଭବାଦିତି ବ୍ୟାଚକ୍ଷାଣୈଃ ପ୍ରତିଜ୍ଞାହାନିରୁପେକ୍ଷିତା ସ୍ୟାତ୍ ।

**(୩) ଭାଷାଂତର-** (କ) କିନ୍ତୁ ଉତ୍ପତ୍ତିର ପୂର୍ବରୁ ପ୍ରାଣୀର ସଦଭାବବିଷୟକ ଶ୍ରୁତିବାକ୍ୟ କେଉଁ ପ୍ରକାର ହୁଏ ? ଏହି ମୂଳ ପ୍ରକୃତି ବିଷୟକ ନୁହେଁ । କାରଣ- 'ଅପ୍ରାଣ ହ୍ୟମନାଃ' (ଅପ୍ରାଣ, ମନୋହୀନ, ବିଶୁଦ୍ଧ-ଓ ଶ୍ରେଷ୍ଠ ଅକ୍ଷରଠାରୁ ଉତ୍କୃଷ୍ଟ ହୁଏ) ଏହିପରି ମୂଳପ୍ରକୃତି ପ୍ରାଣପ୍ରଭୃତି ସମସ୍ତ ବିଶେଷ ରହିତ ରୂପେ ଅବଧାରିତ ହୁଏ ।

(ଖ) ଉତ୍ପତ୍ତିର ପୂର୍ବରୁ ପ୍ରାଣୀ ସଦଭାବର ଅବଧାରଣ ସ୍ୱବିକାର ଅପେକ୍ଷା ଅବାନ୍ତରପ୍ରକୃତି ବିଷୟକ ଅଟେ ବୋଲି ଜାଣିବା ଉଚିତ । କାରଣ-ବ୍ୟାକୃତ ବିଷୟ ଓ ତାର ବହୁତ ଅବସ୍ଥାବିଷୟରେ ବିକାରଭାବ ଶ୍ରୁତି ଓ ସ୍ମୃତିରେ ଦେଖାଯାଏ । ବିୟଦଧିକରଣରେ 'ଗୌଣ୍ୟସମ୍ଭବାତ୍'- ଏହା ପୂର୍ବପକ୍ଷସୂତ୍ର ହେଲେ ଜନ୍ମଶ୍ରୁତି ଗୌଣୀ ହୁଏ, କାରଣ-ମୁଖ୍ୟଶ୍ରୁତି ଏଠାରେ ସମ୍ଭବ ନୁହେଁ ବୋଲି ଏଠାରେ କୁହାଯାଇଅଛି ଏବଂ ପ୍ରତିଜ୍ଞାର ହାନି ହେତୁ ଏଠାରେ ସିଦ୍ଧାନ୍ତ କୁହାଯାଇଛି । ଏହା ସିଦ୍ଧାନ୍ତସୂତ୍ର ହେବାରୁ ଗୌଣୀ ଜନ୍ମ ଶ୍ରୁତିର ଅସମ୍ଭବ ବୋଲି ବ୍ୟାଖ୍ୟାନ କରାଯାଇଛି । ପରନ୍ତୁ ଏହାପାଇଁ ଏଠାରେ ଅସମ୍ଭବ ହେଲେ ଜନ୍ମଶ୍ରୁତି ଗୌଣୀ ଅଟେ ବୋଲି କହିଲେ ପ୍ରତିଜ୍ଞାହାନିର ଉପେକ୍ଷା ହୁଏ ।

## तत्प्राक्श्रुतेश्च ॥ ३ ॥

## ୧- ତତ୍ପ୍ରାକ୍ଶ୍ରୁତେଶ୍ଚ ॥ ୨-୪-୩ ॥

'ଜାୟତେ' ଏହି ଜନ୍ମବାଚକପଦ ଆକାଶପଦ ବ୍ୟତିତ ପ୍ରାଣରେ ଶୁଣାଗଲେ ପ୍ରାଣର ଉତ୍ପତ୍ତି ମୁଖ୍ୟ ହୁଏ ।

(୨) ମୂଳ-(କ) ଇତଶ୍ଚା କାଶାଦୀନାମିବ ପ୍ରାଣାନାମପି ମୁଖ୍ୟୈବ ଜନ୍ମଶ୍ରୁତିଃ । ଯଜ୍ଜାୟତ ଇତ୍ୟେକଂ ଜନ୍ମବାଚିପଦଂ ପ୍ରାଣେଷୁ ପ୍ରାକ୍ ଶ୍ରୁତଂ ସଦୁତ୍ତରେଷ୍ୱପ୍ୟାକା-ଶାଦିଷ୍ୱନୁବର୍ତ୍ତତେ । 'ଏତସ୍ମାଜ୍ଜାୟତେ ପ୍ରାଣଃ' (ମୁ ୨-୧-୩) 'ଇତ୍ୟତ୍ରାକାଶାଦିଷୁ ମୁଖ୍ୟଂ ଜନ୍ମେତି ପ୍ରତିଷ୍ଠାପିତଂ ତତ୍‌ସାମାନ୍ୟାତ୍ପ୍ରାଣେଷ୍ୱପି ମୁଖ୍ୟମେବ ଜନ୍ମ ଭବିତୁମର୍ହତି । ନହ୍ୟେକସ୍ମିନ୍ପ୍ରକରଣ ଏକସ୍ମିଂଶ୍ଚ ବାକ୍ୟ ଏକଃ ଶବ୍ଦ ସକୃଦୁଚ୍ଚରିତୋ ବହୁଭିଃ ସମ୍ବଧ୍ୟମାନଃ କ୍ୱଚିନ୍ମୁଖ୍ୟଃ କ୍ୱଚିଦ୍ ଗୌଣ ଇତ୍ୟଧ୍ୟବସାତୁଂ ଶକ୍ୟମ୍ । ବୈରୂପ୍ୟପ୍ରସଙ୍ଗାତ୍ ।



(ଖ) ତଥା 'ସ ପ୍ରାଣମସୃଜତ ପ୍ରାଣାଚ୍ଛ୍ରଦ୍ଧାମ୍' (ପ୍ରଶ୍ନ ୬-୪) ଇତ୍ୟତ୍ରାପି ପ୍ରାଣେଷୁ ଶ୍ରୁତଃ ସୃଜତିଃ ପରେ ଷ୍ୱପ୍ୟୁତ୍ପତ୍ତିମପ୍ସୁ ଶ୍ରଦ୍ଧାଦିଷ୍ୱନୁଷଜ୍ୟତେ । ଯତ୍ରାପି ପଶ୍ଚାଚ୍ଛ୍ରୁତ ଉତ୍ପତ୍ତି ବଚନଃ ଶବ୍ଦଃ ପୂର୍ବୈଃ ସମ୍ବଧ୍ୟତେ ତତ୍ରାପ୍ୟେଷ ଏବ ନ୍ୟାୟଃ । ଯଥା 'ସର୍ବାଣି ଭୂତାନି ବ୍ୟୁଚ୍ଚରନ୍ତି । ଇତ୍ୟୟମନ୍ତେ ପଠିତୋ ବ୍ୟୁଚ୍ଚରନ୍ତି ଶବ୍ଦଃ ପୂର୍ବୈରପି ପ୍ରାଣାଦିଭିଃ ସମ୍ବଧ୍ୟତେ

(୨) ଭାଷାଂତର- (କ) ଏଠାରେ ଆକାଶପରି ପ୍ରାଣର ଜନ୍ମଶ୍ରୁତି ମୁଖ୍ୟ ଅଟେ । କାରଣ- 'ଜାୟତେ' ଏହି ଉତ୍ପତ୍ତିବାଚକପଦ ପ୍ରାଣରେ ପ୍ରଥମେ ଶୁଣାଯାଏ । ଏହାପରେ ଆକାଶ ପ୍ରଭୃତିରେ 'ଏତସ୍ମାଜ୍ଜାୟତେ ପ୍ରାଣଃ' ବୋଲି ଅନୁବୃତ୍ତି ହୁଏ । ଆକାଶ ପ୍ରଭୃତିର ଜନ୍ମମୁଖ୍ୟ ଅଟେ । ଏହା ପ୍ରତିଷ୍ଠାପିତ କରାଯାଇଅଛି । ତାହାର ସାଦୃଶ୍ୟରୁ ପ୍ରାଣର ଜନ୍ମ ମୁଖ୍ୟ ହୁଏ । କାରଣ-ଗୋଟିଏ ପ୍ରକରଣରେ ଓ ଗୋଟିଏ ବାକ୍ୟରେ ଥରେମାତ୍ର ଉଚ୍ଚରିତ ହୋଇ ଏବଂ ବହୁତ ଦ୍ୱାରା ସମ୍ବନ୍ଧିତ ହୋଇ ଗୋଟିଏ ଶବ୍ଦ କେତେବେଳେ ମୁଖ୍ୟ ବା ଗୌଣ ହୁଏ ବୋଲି ନିଶ୍ଚିତ କରାଯାଇନାହିଁ । କାରଣ-ଏହିପରି ସ୍ୱୀକାର କଲେ ବାକ୍ୟ ବିରୂପ ବା ଭେଦ ପ୍ରସଙ୍ଗ ହେବ ।

(ଖ) ସେହିପରି 'ସ ପ୍ରାଣମ୍' (ତାହାଠାରୁ ପ୍ରାଣ ଉତ୍ପନ୍ନ ହୋଇଛି, ପ୍ରାଣରୁ ଶ୍ରଦ୍ଧା) ଏଠାରେ ପ୍ରାଣରେ ଶ୍ରୁତ 'ସୃଜ' ଧାତୁ ପରେ ଉତ୍ପନ୍ନ ହେଲେ ଅନ୍ୟଶ୍ରଦ୍ଧାଦିରେ ଅନୁବୃତ୍ତ ହୁଏ । ଯେଉଁଠି ପରେ ଶ୍ରୁତିବାକ୍ୟ ଉତ୍ପତ୍ତି ବାଚକ ଶବ୍ଦର ପୂର୍ବରୁ ସମ୍ବନ୍ଧିତ ହୁଏ, ସେଠାରେ ଏହି ନ୍ୟାୟ ସଙ୍ଗତ ଅଟେ । ଯଥା- 'ସର୍ବାଣି ଭୂତାନି' ଶ୍ରୁତି ଶେଷରେ ପଠିତ 'ବ୍ୟୁଚ୍ଚରନ୍ତି' ଶବ୍ଦପୂର୍ବରୁ ପ୍ରାଣାଦିରେ ସମ୍ବନ୍ଧିତ ହୁଏ ।

## तत्पूर्वकत्वाद्वाचः ॥ ४ ॥

## (୧) ତତ୍ପୂର୍ବକତ୍ୱାଦ୍ବାଚଃ ॥ ୨-୪-୪ ॥

ବାଚଃ='ଅନ୍ନମୟଂ ହି ସୌମ୍ୟ ! 'ଇତ୍ୟଶବ୍ଦିରେ ମନ ଓ ପ୍ରାଣ ସହିତ ବାଣୀରେ, ତତ୍ପୂର୍ବକତ୍ୱାତ୍-ବ୍ରହ୍ମ ପ୍ରକୃତିକ ତେଜ, ଜଳ ଓ ଅନ୍ନ ପୂର୍ବକତ୍ୱ କୁହାଯାଇଛି । ତେଣୁ ଇନ୍ଦ୍ରିୟର ଉତ୍ପତ୍ତିର ଶ୍ରୁତିବାକ୍ୟରେ ନିହିତ ଅଛି ।

(୨) ମୂଳ-(କ) ଯଦ୍ୟପି 'ତତ୍ତେଜୋଽସୃଜତ' (ଛା ୬-୨-୩) ଇତ୍ୟେତସ୍ମିନ୍ ପ୍ରକରଣେ ପ୍ରାଣାନାମୁତ୍ପତ୍ତିର୍ନ ପଠ୍ୟତେ, ତେଜୋବନ୍ନାନାମେବ ଚ ତ୍ରୟାଣାଂ ଭୂତାନାମୁତ୍ପତ୍ତି- ଶ୍ରବଣାତ୍ । ତଥାପି ବ୍ରହ୍ମପ୍ରକୃତିକତେଜୋବନ୍ନ ପୂର୍ବକ ତ୍ୱାଭିଧାନାଦ୍ ବାକ୍ ପ୍ରାଣମନସାଂ ତତ୍ସାମାନ୍ୟାଚ୍ଚ ସର୍ବେଷାମେବ ପ୍ରାଣାନାଂ ବ୍ରହ୍ମପ୍ରଭବତ୍ୱଂ ସିଦ୍ଧଂ ଭବତି । ତଥାହି- 'ଅସ୍ମିନ୍ନେବ ପ୍ରକରଣେ ତେଜୋବନ୍ନ ପୂର୍ବକତ୍ୱଂ ବାକ୍ ପ୍ରାଣମନମାମାମ୍ନାୟତେ- 'ଅନ୍ନମୟଂ ହି ସୋମ୍ୟ ମନଃ ଆପୋମୟଃ ପ୍ରାଣସ୍ତେଜୋମୟୀ ବାକ୍' (ଛା ୬-୫-୪) ଇତି ।

(ଖ) ତତ୍ର ଯଦି ତାବନ୍ମୁଖ୍ୟମେବୈଷାମନ୍ନାଦିମୟତ୍ୱଂ ତତୋ ବର୍ତ୍ତତ ଏବ ବ୍ରହ୍ମପ୍ରଭବତ୍ୱମ୍ । ଅଥ ଭାକ୍ତଂ ତଥାପି ବ୍ରହ୍ମକର୍ତ୍ତୃକାୟାଂ ନାମରୂପବ୍ୟାକ୍ରିୟାୟାଂ ଶ୍ରବଣାତ୍ 'ଯେନାଶ୍ରୁତଂ ଶ୍ରୁତଂ ଭବତି (ଛା ୬-୧-୩) ଇତି ଚୈପକ୍ରମାତ୍ 'ଐତଦାତ୍ମ୍ୟମିଦଂ ସର୍ବମ୍' (ଛା ୬-୮-୭) ଇତି ଚୈପସଂହାରାଚ୍ଛ୍ରୁତ୍ୟନ୍ତରପ୍ରସିଦ୍ଧେଶ୍ଚ ବ୍ରହ୍ମକାର୍ଯ୍ୟତ୍ୱପ୍ରପଞ୍ଚନାର୍ଥମେବ ମନ ଅଦୀନାମନ୍ନାଦି ମୟତ୍ୱ ବଚନମିତି ଗମ୍ୟତେ । ତସ୍ମାଦପି ପ୍ରାଣାନାଂ ବ୍ରହ୍ମବିକାରତ୍ୱସିଦ୍ଧିଃ ।

(୨) ଭାଷାଂତର- (କ) ଯଦ୍ୟପି 'ତତ୍ତେଜୋଽସୃଜତ' ଏହି ପ୍ରକରଣରେ ପ୍ରାଣୀର ଉତ୍ପତ୍ତି ପଠାଯାଇ ନାହିଁ, କାରଣ-ତେଜ, ଜଳ ଓ ଅନ୍ନ- ଏହି ତିନୋଟି ଭୂତର ଉତ୍ପତ୍ତି ଶ୍ରବଣ ହୁଏ । ତଥାପି ବାକ୍, ପ୍ରାଣ ଓ ମନର ବ୍ରହ୍ମପ୍ରକୃତିକ ତେଜ, ଜଳ ଓ ଅନ୍ନପୂର୍ବକ ଅଭିଧାନ ହେଲେ ଏବଂ ସେମାନଙ୍କର ସାଦୃଶ୍ୟରୁ ସମସ୍ତ ଇନ୍ଦ୍ରିୟ ବ୍ରହ୍ମ ପ୍ରଭବତ୍ୱରୂପେ ସିଦ୍ଧ ହୁଅନ୍ତି । ଯଥା- 'ଅନ୍ନମୟଂ ହି' (ହେ ସୌମ୍ୟ ! ମନ ଅନ୍ନମୟ, ପ୍ରାଣ ଜଳମୟ, ଏବଂ ବାଣୀ ତେଜୋମୟ ଅଟେ) ଏହି ପ୍ରକରଣରେ ବାଣୀ, ପ୍ରାଣ ଓ ମନ ତେଜ, ଜଳ ଓ ଅନୁପୂର୍ବକ ରୂପେ କୁହାଯାଇଅଛି ।

(ଖ) ସେଠାରେ ଯଦି ସେମାନଙ୍କର ଅନ୍ନମୟ ପ୍ରଭୃତି ମୁଖ୍ୟ ହୁଏ, ତେବେ ସେଠାରେ ବ୍ରହ୍ମ ଜନ୍ୟତ୍ୱ ହୁଏ ଏବଂ ଯଦି ସେଥିରେ ଅନ୍ନମୟତ୍ୱ ଗୌଣ ହୁଏ, ତେବେ ବ୍ରହ୍ମ କର୍ତ୍ତୃକ ନାମ ରୂପର ଅଭିବ୍ୟକ୍ତିରେ ଶୁଣାଯାଇ 'ଯେନାଶ୍ରୁତଂ ଶ୍ରୁତଂ ଭବତି' ଏହିପରି ଉପକ୍ରମ ହୋଇ 'ଐତଦାତ୍ମ୍ୟମ୍' (ଏତଦ୍‌ରୂପ ଆତ୍ମରୂପ ସବୁ ସେ ଅଟେ) ଏହିପରି ଉପସଂହାର ହେବାରୁ ଓ ଅନ୍ୟଶ୍ରୁତିରେ ପ୍ରସିଦ୍ଧ ହେବାରୁ ମନପ୍ରଭୃତିରେ ଅନ୍ନମୟତ୍ୱାଦି ବଚନ ବ୍ରହ୍ମକାର୍ଯ୍ୟତ୍ୱ ବିସ୍ତାର ପାଇଁ ଉଦ୍ଦିଷ୍ଟ । ଏହାଦ୍ୱାରା ପ୍ରାଣ ବ୍ରହ୍ମର ବିକାର ବୋଲି ସିଦ୍ଧ ହୁଏ ।

## २ सप्तगत्यधिकरणम् । सू० ॥ ५-६ ॥

## ସପ୍ତଗତ୍ୟଧିକରଣ -୨

## सप्त गतेर्विशेषितत्वाच्च ॥ ५ ॥

## (୧) ସପ୍ତ ଗତେର୍ବିଶେଷିତତ୍ୱାଚ୍ଚ ॥୨-୪-୫ ॥

ସପ୍ତ-ଇନ୍ଦ୍ରିୟ ସାତୋଟି । ଗତେଃ-କାରଣ-ଶ୍ରୁତିରେ ସପ୍ତଇନ୍ଦ୍ରିୟର ଜ୍ଞାତ ହୁଏ । ଚ ବିଶେଷାତ୍-ଏବଂ 'ସପ୍ତ ବୈଶୀର୍ଷଣ୍ୟାଃ ପ୍ରାଣାଃ' ଏହି ଶାସ୍ତ୍ରରୁ ସେମାନେ ଇନ୍ଦ୍ରିୟ ବିଶେଷିତ ଅଟନ୍ତି ।

(୨) ମୂଳ-(କ) ଉତ୍ପତ୍ତିବିଷୟଃ ଶ୍ରୁତିବିପ୍ରତିଷେଧଃ ପ୍ରାଣାନାଂ ପରିହୃତଃ । ସଂଖ୍ୟାବିଷୟ ଇଦାନୀଂ ପରିହ୍ରିୟତେ । ତତ୍ର ମୁଖ୍ୟଂ ପ୍ରାଣମୁପପରିଷ୍ଟାଦ୍ ବକ୍ଷ୍ୟତି । ସଂପ୍ରତି



ତୁ କତୀତରେ ପ୍ରାଣା ଇତି ସଂପ୍ରଧାରୟତି । ଶ୍ରୁତିବିପ୍ରତି ପତେଶ୍ଚାତ୍ର ବିଷୟଃ । କ୍ୱଚିତ୍‌ସପ୍ତ ପ୍ରାଣାଃ ସଙ୍କୀର୍ତ୍ତ୍ୟନ୍ତେ- 'ସପତ୍‌ପ୍ରାଣାଃ ପ୍ରଭୁବନ୍ତି ତସ୍ମାତ୍' (ମୁଣ୍ଡ ୨-୧-୮) ଇତି । କ୍ୱଚିଦଷ୍ଟୌ ପ୍ରାଣା ଗ୍ରହତ୍ୱେନ ଗୁଣେନ ସଙ୍କୀର୍ତ୍ତ୍ୟନ୍ତେ'- 'ଅଷ୍ଟୌ ଗ୍ରହା ଅଷ୍ଟାବତିଗ୍ରହାଃ '(ବୃ ୩-୨-୧) ଇତି । କ୍ୱଚିନ୍ନବ- 'ସପ୍ତ ବୈଶୀର୍ଷଣ୍ୟାଃ ପ୍ରାଣା ଦ୍ୱର୍ବିବାଞ୍ଚୌ । (ତୈ ସଂ ୫-୧-୭-୧) ଇତି । କ୍ୱଚିଦ୍ଦଶ- 'ନବ ଚୈ ପୁରୁଷେ ପ୍ରାଣା ନାଭିର୍ଦଶମୀ' ଇତି । କ୍ୱଚିଦ୍‌ଦ୍ୱାଦଶ-ସର୍ବେଷାଂ ସ୍ପର୍ଶାନାଂ ତ୍ୱଗେକାୟନମ୍' (ବୃ ୨-୪-୧୧) ଇତ୍ୟତ୍ର । ଏବଂ ହି ବିପ୍ରତିପନ୍ନାଃ ପ୍ରାଣେୟତ୍ତାଂ ପ୍ରତି ଶ୍ରୁତୟଃ ।

(ଖ) କିଂ ତାବତ୍ ପ୍ରାପ୍ତମ୍ । ସପ୍ତୈବ ପ୍ରାଣା ଇତି । କୁତଃ । ଗତେଃଯତସ୍ତାବନ୍ତୋଽ- ଗମ୍ୟନ୍ତେ- 'ସପ୍ତ ପ୍ରାଣାଃ ପ୍ରଭବନ୍ତି ତସ୍ମାତ୍' (ମୁଣ୍ଡ ୨-୧-୮) ଇତ୍ୟେବଂବିଧାସୁଶ୍ରୁତିଷୁ । ବିଶେଷିତାଶ୍ଚେତେ 'ସପ୍ତ ବୈ ଶୀର୍ଷଣ୍ୟାଃ ପ୍ରାଣାଃ' ଇତ୍ୟତ୍ର ।

(ଗ) ନନୁ 'ପ୍ରାଣା ଗୁହାଶୟା ନିହିତାଃ ସପ୍ତ ସପ୍ତ' (ମୁଣ୍ଡ ୨।୧।୮) ଇତି ବୀପ୍‌ସା ଶ୍ରୂୟତେ, ସା ସପ୍ତଭ୍ୟୋଽତିରିକ୍ତାନ୍ ପ୍ରାଣାନ୍ ଗମୟତୀତି । ନୈଷ ଦୋଷଃ । ପୁରୁଷଭେଦାଭିପ୍ରାୟେବଂ ବୀପ୍‌ସା ପ୍ରତିପୁରୁଷଂ ସପ୍ତ ସପ୍ତ ପ୍ରାଣାଂ ଇତି, ନ ତତ୍ତ୍ୱଭେଦାଭି ପ୍ରାୟା ସପ୍ତ ସପ୍ତାନ୍ୟେଽନ୍ୟେ ପ୍ରାଣା ଇତି ।

(ଘ) ନନ୍ୱଷ୍ଟତ୍ୱାଦିକାପି ସଂଖ୍ୟା ପ୍ରାଣେଷୁଦାହୃତା କଥଂ ସପ୍ତୈବ ସ୍ୟୁଃ । ସତ୍ୟମୁଦାହୃତା । ବିରୋଧାତ୍ତ୍ୱନ୍ୟତମା ସଂଖ୍ୟାଧ୍ୟବସାତବ୍ୟା । ତତ୍ର ସ୍ତୋକକଳ୍ପନାନୁରୋଧାତ୍ ସପ୍ତସଂଖ୍ୟାଧ୍ୟବସାନମ୍ । ବୃତ୍ତିଭେଦାପେକ୍ଷଂ ଚ ସଂଖ୍ୟାନ୍ତର ଶ୍ରବଣମିତି ମନ୍ୟତେ ।

(୨) ଭାଷାଂତର- (କ) ପ୍ରାଣର ଉତ୍ପତ୍ତିବିଷୟ ଶ୍ରୁତିରେ ପରସ୍ପର ବିରୋଧର ପରିହାର କରାଯାଇଅଛି । ବର୍ତ୍ତମାନ ସଂଖ୍ୟାବିଷୟକ ଶ୍ରୁତିବିରୋଧର ପରିହାର କରାଯାଉଛି । ସେଠାରେ ମୁଖପ୍ରାଣ ବିଷୟରେ ସୂତ୍ର ପରେ କହିବେ । ବର୍ତ୍ତମାନ କିନ୍ତୁ ଅନ୍ୟ ଇନ୍ଦ୍ରିୟ କେତୋଟି ଅଛନ୍ତି, ସେହି ବିଷୟରେ ନିର୍ଣ୍ଣୟ କରାଯାଉଛି । ଶ୍ରୁତିବାକ୍ୟର ବିରୋଧ ହେତୁ ଏଠାରେ ସଂଶୟ ହୁଏ । 'ସପ୍ତପ୍ରାଣାଃ' (ତାହାଠାରୁ ସପ୍ତପ୍ରାଣ ଉତ୍ପନ୍ନ ହୋଇଛନ୍ତି) ଏହିପରି କେତେକ ସ୍ଥାନରେ ସାତୋଟି ପ୍ରାଣ କୁହାଯାଇଛି, 'ଏବଂ 'ଅଷ୍ଟୌ ଗ୍ରହାଃ' (ଗ୍ରହ ଆଠ ଓ ଆଠ ଅତିଗ୍ରହ) ଏହିପରି କେଉଁଠି ଅଷ୍ଟ ପ୍ରାଣ ଓ ଅଷ୍ଟ ଅତି ଗ୍ରହତ୍ୱରୂପେ ଗୁଣଦ୍ୱାରା ବର୍ଣ୍ଣନା କରାଯାଇଛି । 'ସପ୍ତ ଶୀର୍ଷ୍ୟଣ୍ୟାଃ' ସାତୋଟି ଶୀର୍ଷଣ୍ୟା ପ୍ରାଣ ଅଛି ଏବଂ ଦୁଇଟି ନିଚ ପାଇଁ) ଏହିପରି କେଉଁଠାରେ ନଅଟି ପ୍ରାଣ କୁହାଯାଇଅଛି । କେତେକ ସ୍ଥାନରେ 'ନବ ବୈ ପୁରୁଷଃ' (ପୁରୁଷ ଦେହରେ ନଅଟି ପ୍ରାଣ ଓ ଦଶଟି ନାଭି ରହିଛି) - ଏହିପରି ଦଶଟି ପ୍ରାଣ ଗଢ଼ାଯାଏ । 'ଦଶମେ ପୁରୁଷେ' (ଦେହରେ ଦଶଟି ପ୍ରାଣ ଓ ଏକାଦଶଟି ମନ ରହିଛି । ସେହିପରି 'ସର୍ବେଷାଂସ୍ପର୍ଶାନାଂ (ସମସ୍ତ ସ୍ପର୍ଶର ତ୍ୱକ୍ ଏକ ଅୟନ ସ୍ଥାନ ଅଟେ) ଏହି ପ୍ରକାର କେଉଁଠି ଦ୍ୱାଦଶଟି ପ୍ରାଣ ଓ କେଉଁଠି 'ଚକ୍ଷୁଷ୍ଚ

ଦ୍ରଷ୍ଟବ୍ୟମ୍' (ଚକ୍ଷୁ ଓ ଦ୍ରଷ୍ଟବ୍ୟ) ଏହିପରି ତ୍ରୟୋଦଶଟି ପ୍ରାଣ ରହିଛି । ସେହିପରି ପ୍ରାଣର ସଂଖ୍ୟାବିଷୟରେ ଶ୍ରୁତିଗୁଡ଼ିକ ପରସ୍ପର ବିରୋଧ ଅଟନ୍ତି ।

(ଖ) ତାହେଲେ ଏଠାରେ କଣ ହେବ ? ପୂର୍ବପକ୍ଷ – ପ୍ରାଣ ସାତୋଟି । କିପରି ? ଶ୍ରୁତିବାକ୍ୟରୁ ଜଣାପଡ଼େ । ଯଥା – 'ସପ୍ତ ପ୍ରାଣାଃ' (ତାହାଠାରୁ ସାତୋଟି ପ୍ରାଣ ଉତ୍ପନ୍ନ ହୁଏ) ଏହିପ୍ରକାର ଶ୍ରୁତିରେ ଜଣାପଡେ । 'ସପ୍ତ ବୈ ଶୀର୍ଷଣ୍ୟାଃ' (ମସ୍ତକରେ ରହିଥିବା ପ୍ରାଣ ସାତୋଟି) ଏହି ଶ୍ରୁତିରେ ସେମାନେ ବିଶେଷିତ ଅଟନ୍ତି ।

(ଗ) ପରନ୍ତୁ 'ପ୍ରାଣା ଗୁହାଶୟା' (ହୃଦୟରେ ରହିଥିବା ପ୍ରାଣ ନିଜସ୍ଥାନରେ ସାତୋଟି ସାତୋଟି ସ୍ଥାପିତ ଅଟନ୍ତି) ଏହିପ୍ରକାର ଆକାଂକ୍ଷା ଶୁଣାଯାଏ । ଏହା ସାତୋଟିଠାରୁ ଅଧିକପ୍ରାଣ ବୋଧ କରାଏ । ଏହା କିନ୍ତୁ ଦୋଷ ନୁହେଁ । କାରଣ- ଏହି ପ୍ରକାର ଆକାଂକ୍ଷା ପ୍ରତ୍ୟେକ ପୁରୁଷଠାରେ ସପ୍ତ ସପ୍ତ ପ୍ରାଣ ଅଟେ । ଏହି ପ୍ରକାର ପୁରୁଷ ଭେଦର ଅଭିପ୍ରାୟରୁ ହୁଏ । ସାତ ସାତ ଅନ୍ୟ ଅନ୍ୟ ପ୍ରାଣ ଅଟେ । ସେପରି ତତ୍ତ୍ୱଭେଦର ଅଭିପ୍ରାୟରୁ ନୁହେଁ ।

(ଘ) ପରନ୍ତୁ ଅଷ୍ଟମସଂଖ୍ୟା ପ୍ରାଣରେ ଉଦାହୃତ ଅଟନ୍ତି । ତେବେ ପୁଣି ସାତୋଟି କେଉଁ ପ୍ରକାର ହୁଏ । ଏହା ଠିକଭାବେ କୁହାଯାଇଅଛି । ପରନ୍ତୁ ସଂଖ୍ୟାବିଷୟକ ଶ୍ରୁତି ବିରୋଧ ହେଲେ କୌଣସି ଗୋଟିଏ ସଂଖ୍ୟାକୁ ସ୍ଥିର କରାଯାଏ । ସେଠାରେ ଅଳ୍ପ କଳ୍ପନାର ଅନୁସାରେ ସାତୋଟି ସଂଖ୍ୟା ନିଶ୍ଚିତ ଅଟେ । ଅନ୍ୟସଂଖ୍ୟାର ଶ୍ରବଣ ପ୍ରାଣର ବୃତ୍ତିଭେଦକୁ ଅପେକ୍ଷା କରେ ବୋଲି ସ୍ୱୀକାର କରାଯାଇଛି ।

(୧) ମୂଳ-ଅତ୍ରୋଚ୍ୟତେ-

**(୧) ଭାଷାଂତର-** ଏଠାରେ କୁହାଯାଇଛି-

**हस्तादयस्तु स्थितेऽतो नैवम् ॥ ६ ॥**

**ହସ୍ତାଦୟସ୍ତୁ ସ୍ଥିତେଽତୋ ନୈବମ୍ ॥ ୨-୪-୬ ॥**

ତୁ – ପୂର୍ବପକ୍ଷର ନିରାକରଣ ପାଇଁ ଅଛି । ହସ୍ତାଦୟଃ – 'ହସ୍ତୋ ବୈ ଗ୍ରହଃ ସ କର୍ମଣାଽତିଗ୍ରହେଣ' ଇତ୍ୟାଦି ଶ୍ରୁତିରେ ହସ୍ତପ୍ରଭୃତି ଅଧିକ ପ୍ରାଣ ପ୍ରତିପାଦିତ ହୁଏ । ସ୍ଥିତେ-କିନ୍ତୁ ସାତଟିରୁ ଅଧିକ ପ୍ରାଣ ହେଲେ ଅତଃ ନୈବମ୍-ତାହା କିନ୍ତୁ ସାତୋଟିରୁ ଅଧିକ ପ୍ରାଣ ହୁଏ ନାହିଁ ।

(୨) ମୂଳ-(କ) ହସ୍ତାଦୟସ୍ତ୍ୱପରେ ସପ୍ତଭ୍ୟୋଽତିରିକ୍ତାଃ ପ୍ରାଣାଃ ଶ୍ରୂୟନ୍ତେ- ହସ୍ତୋ ବୈ ଗ୍ରହଃ ସ କର୍ମଣାଽତିଗ୍ରହେଣ ଗୃହୀତୋ ହସ୍ତାଭ୍ୟାଂ ହି କର୍ମ କରୋତି' (ବୃ ୩-୨-୮) ଇତ୍ୟେବମାଦ୍ୟାସୁ ଶ୍ରୁତିଷୁ । ସ୍ଥିତେ ଚ ସପ୍ତତ୍ୱାତିରେକେ ସପ୍ତତ୍ୱମନ୍ତର୍ଭାବାଚ୍ଛକ୍ୟତେ



ସମ୍ଭାବୟିତୁମ୍ । ହୀନାଧିକସଂଖ୍ୟାବିପ୍ରତିପତ୍ତୌ ହ୍ୟଧିକା ସଂଖ୍ୟା ସଂଗ୍ରାହ୍ୟା ଭବତି ତସ୍ୟାଂ ହୀନାନ୍ତର୍ଭବତି ନତୁ ହୀନାୟାମଧିକା । ଅତଶ୍ଚ ନୈବଂ ମନ୍ତବ୍ୟଂ ସ୍ତୋକକଳ୍ପନାନୁରୋଧାତ୍ ସପ୍ତୈବ ପ୍ରାଣାଃ ସ୍ୟୁରିତି । ଉତ୍ତର ସଂଖ୍ୟାନୁରୋଧାତ୍ତ୍ୱେକାଦଶୈବ ତେ ପ୍ରାଣାଃ ସ୍ୟୁଃ । ତଥା ଚୋଦାହୃତା ଶ୍ରୁତିଃ-ଦଶମେ ପୁରୁଷେ ପ୍ରାଣା ଆତ୍ମୈକାଦଶଃ' (ବୃ ୩-୯-୪) ଇତି ।

(ଖ) ଆତ୍ମଶବ୍ଦେନ ଚାନ୍ତଃକରଣଂ ପରିଗୃହ୍ୟତେ, କରଣାଧିକାରାତ୍ । ନନ୍ୱେକାଦଶତ୍ୱାଦପ୍ୟଧିକେ ଦ୍ୱାଦଶତ୍ରୟୋଦଶତ୍ୱେ ଉଦାହୃତେ । ସତ୍ୟମୁଦାହୃତେ । ନତ୍ୱେକାଦଶଭ୍ୟଃ କାର୍ଯ୍ୟଜାତେଭ୍ୟୋଧିକଂ କାର୍ଯ୍ୟଜାତମସ୍ତି ଯଦର୍ଥମଧିକଂ କରଣଂ କଳ୍ପ୍ୟେତ । ଶବ୍ଦସ୍ପର୍ଶରୂପରସଗଂଧବିଶେଷାଃ ପଞ୍ଚ ବୁଦ୍ଧି ଭେଦାସ୍ତଦର୍ଥାନି ପଞ୍ଚ ବୁଦ୍ଧିନ୍ଦ୍ରିୟାଣି । ବଚନାଦବିହରଣୋତ୍ସର୍ଗାନନ୍ଦାଃ ପଞ୍ଚ କର୍ମଭେଦାସ୍ତଦର୍ଥାନି ଚ ପଞ୍ଚ କର୍ମେନ୍ଦ୍ରିୟାଣି । ସର୍ବାର୍ଥବିଷୟଂ ତ୍ରୈକାଲ୍ୟବୃତ୍ତି ମନସ୍ତ୍ୱେକମନେକବୃତ୍ତିକମ୍ । ତଦେବ ବୃତ୍ତିଭେଦାତ୍ କ୍ୱଚିଦ୍ ଭିନ୍ନବଦ୍ ବ୍ୟପଦିଶ୍ୟତେ- 'ମନୋ ବୁଦ୍ଧିରହଙ୍କାରଶ୍ଚିତ୍ତଂ ଚ' ଇତି । ତଥାଚ ଶ୍ରୁତିଃ କାମାଦ୍ୟା । ନାନାବିଧା ବୃତ୍ତିରନୁକ୍ରମ୍ୟାହ - 'ଏ ତତ୍ସର୍ବଂ ମନ ଏବ' (ବୃ ୧-୫-୩) ଇତି ।

(୨) ଭାଷାଂତର- (କ) ପରନ୍ତୁ 'ହସ୍ତୌ ବୈଗ୍ରହଃ' (ହସ୍ତ ହି ଗ୍ରହ ଅଟେ; କର୍ମରୂପ ଅତି ଗ୍ରହରେ ଗୃହୀତ ହୁଏ, କାରଣ-ପ୍ରାଣୀ ହସ୍ତଦ୍ୱାରା କର୍ମ କରେ) ଇତ୍ୟାଦି ଶ୍ରୁତିବାକ୍ୟରେ ଅନ୍ୟହସ୍ତାଦି ସାତୋଟି ଅତିରିକ୍ତ ପ୍ରାଣୀ ଶୁଣାଯାଏ । ପ୍ରାଣ ସାତୋଟିଠାରୁ ଅଧିକ ହେଲେ ସେଠାରେ ସପ୍ତପ୍ରାଣର ଅନ୍ତର୍ଭାବ ସମ୍ଭାବ୍ୟ ଅଟେ । କାରଣ-ନ୍ୟୁନ ଓ ଅଧିକ ସଂଖ୍ୟାର ବିପ୍ରତିପତ୍ତି ହେଲେ ଅଧିକ ସଂଖ୍ୟା ଗୃହୀତ ହୁଏ । ଅଧିକ ସଂଖ୍ୟା ଗ୍ରହଣ କଲେ ନ୍ୟୁନସଂଖ୍ୟା ତନ୍ମଧ୍ୟରେ ଅନ୍ତର୍ଭାବ ହୁଅନ୍ତି । ପରନ୍ତୁ କମ୍ ସଂଖ୍ୟା ଗ୍ରହଣ କଲେ ଅଧିକ ସଂଖ୍ୟା ଗୃହୀତ ହୁଅନ୍ତି ନାହିଁ । ତେଣୁ କମ୍ କଳ୍ପନା କଲେ ସପ୍ତ ପ୍ରାଣ ହେବ ବୋଲି ସ୍ୱୀକାର କରିବା ଉଚିତ ନୁହେଁ । କିନ୍ତୁ ଉତ୍ତର ସଂଖ୍ୟା ବିଚାର କଲେ ଏକାଦଶଟି ପ୍ରାଣ ହୁଏ । ଯଥା- 'ଦଶେମେ ପୁରୁଷେ'' (ଦେହରେ ଦଶଟି ପ୍ରାଣ ଓ ମନ ଏକାଦଶ ପ୍ରାଣ ରୂପେ ଅଛି) ଏହିପରି ଶ୍ରୁତିବାକ୍ୟ ଉଦାହରଣ ରୂପରେ ଦିଆଯାଇଛି ।

(ଖ) ଏଠାରେ ଅତ୍ମଶବ୍ଦରୁ ଅନ୍ତଃକରଣ ଗ୍ରହଣ କରାଯାଏ । କାରଣ-ଏହା ହେଉଛି କରଣ ପ୍ରକରଣ । ପରନ୍ତୁ ଏକାଦଶଠାରୁ ଅଧିକ ଦ୍ୱାଦଶ, ତ୍ରୟୋଦଶ ଇନ୍ଦ୍ରିୟ କୁହାଯାଇଅଛି କି ? ହଁ, କୁହାଯାଇଅଛି । କିନ୍ତୁ ଏକାଦଶ କାର୍ଯ୍ୟକୁ ଅଧିକ କାର୍ଯ୍ୟ ନାହିଁ । ଯାହାପାଇଁ କି ଅଧିକ କରଣ ସ୍ୱୀକାର କରାଯାଇ ପାରିବ । ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗଂଧ ବିଷୟକ ପାଞ୍ଚପ୍ରକାରର ବୁଦ୍ଧି ଅଛି । ଏହି ପାଞ୍ଚୋଟି ବିଷୟ ପାଇଁ ପାଞ୍ଚୋଟି ଜ୍ଞାନେନ୍ଦ୍ରିୟ ରହିଛି । ବଚନ, ଗ୍ରହଣ, ବିହରଣ, ଉତ୍ସର୍ଗ ଓ ଆନନ୍ଦ - ଏହି ପାଞ୍ଚୋଟି କର୍ମଭେଦ ରହିଛି । ଏହାପାଇଁ ମଧ୍ୟ ପାଞ୍ଚୋଟି କର୍ମେନ୍ଦ୍ରିୟ ଅଛି । ତାହାର 'ମନୋବୁଦ୍ଧିଃ' (ମନ, ବୁଦ୍ଧି, ଅହଙ୍କାର ଏବଂ

ଚିତ୍ତ) ଏହିପ୍ରକାର ବୃତ୍ତି ଭେଦରେ କେତେକ ସ୍ଥାନରେ ଭିନ୍ନ ଭିନ୍ନ ବ୍ୟପଦେଶ କରାଯାଇଅଛି । ତେଣୁ ଶ୍ରୁତି ଅନେକ ପ୍ରକାରର କାମାଦିବୃତ୍ତିକୁ ଅନୁକ୍ରମ କରି କହେ ଯେ- 'ଏତତ୍‌ସର୍ବଂ ମନ ଏବ' (ଏହି ସବୁ ମନ)

(୩) ମୂଳ-(କ) ଅପି ଚ ସପ୍ତୈବ ଶୀର୍ଷଣ୍ୟାନ୍ ପ୍ରାଣାନଭିମନ୍ୟମାନସ୍ୟ ଚତ୍ୱାର ଏବ ପ୍ରାଣା ଅଭିମତାଃ ସ୍ୟୁଃ । ସ୍ଥାନଭେଦାଦ୍ ହ୍ୟେତେ ଚତ୍ୱାରଃ ସନ୍ତଃ ସପ୍ତ ଗଣ୍ୟନ୍ତେ 'ଦ୍ୱେ ଶ୍ରୋତ୍ରେ ଦ୍ୱେ ଚକ୍ଷୁଷୀ ଦ୍ୱେ ନାସିକେ ଏକା ବାକ୍' ଇତି । ନ ଚ ତାବତାମେବ ବୃତ୍ତିଭେଦା ଇତରେ ପ୍ରାଣା ଇତି ଶକ୍ୟତେ ବକ୍ତୁମ୍, ହସ୍ତାଦିବୃତ୍ତିନାମତ୍ୟନ୍ତବିଜାତୀୟତ୍ୱାତ୍ । ତଥା 'ନବ ବୈ ପୁରୁଷେ ପ୍ରାଣାଃ ନାଭିର୍ଦଶମୀ ଇତ୍ୟତ୍ରାପି ଦେହଚ୍ଛିଦ୍ର ଭେଦାଭିପ୍ରାୟେଣୈବ ଦଶ ପ୍ରାଣା ଉଚ୍ୟନ୍ତେ ନ ପ୍ରାଣତତ୍ତ୍ୱଭେଦାଭିପ୍ରାୟେଣ । ନାଭିର୍ଦଶମୀତି ବଚନାତ୍ ।

(ଖ) ନହି ନାଭିର୍ନାମ କଶ୍ଚିତ୍ ପ୍ରାଣଃ ପ୍ରସିଦ୍ଧୋଽସ୍ତି । ମୁଖ୍ୟସ୍ୟ ତୁ ପ୍ରାଣସ୍ୟ ଭବତି ନାଭିରପ୍ୟେକଂ ବିଶେଷାୟତନମିତ୍ୟତୋ ନାଭିର୍ଦଶମୀତ୍ୟୁଚ୍ୟତେ । କ୍ୱଚିଦୁପାସନାର୍ଥଂ କତିଚିତ୍ ପ୍ରାଣା ଗଣ୍ୟନ୍ତେ, କ୍ୱଚିତ୍‌ପ୍ରଦର୍ଶନାର୍ଥମ୍ । ତଦେବଂ' ବିଚିତ୍ରେ ପ୍ରାଣେୟତ୍ତାମ୍ନାୟେସତି କ୍ୱ କିଂପରମାମ୍ନାନମିତି ବିବେକ୍ତବ୍ୟମ୍ । କାର୍ଯ୍ୟଜାତବଶାତ୍ତ୍ୱେକାଦଶତ୍ୱାମ୍ନାନଂ ପ୍ରାଣବିଷୟଂ ପ୍ରମାଣମିତି ସ୍ଥିତମ୍ ।

(ଗ) ଇୟମପରା ସ୍ୱତ୍ରଦ୍ୱୟଯୋଜନା । ସପ୍ତୈବ ପ୍ରାଣାଃ ସ୍ୟୁର୍ଯତଃ ସପ୍ତାନାମେବ ଗତିଃ ଶ୍ରୂୟତେ- 'ତତ୍ରତ୍ କ୍ରାମନ୍ତଂ ପ୍ରାଣୋଽନୁତ୍କ୍ରାମତି ପ୍ରାଣାମନୁତ୍କ୍ରାମନ୍ତଂ ସର୍ବେ ପ୍ରାଣା ଅନୁତ୍କ୍ରାମନ୍ତି' (ବୃ ୪-୪-୨) ଇତ୍ୟନ୍ତ ।

(ଘ) ନନୁ ସର୍ବଶବ୍ଦୋଽପ୍ୟତ୍ର ପଠ୍ୟତେ, ତତ୍‌କଥଂ ସପ୍ତାନାମେବ ଗତିଃ ପ୍ରତିଜ୍ଞାୟତ ଇତି । ବିଶେଷିତତ୍ୱାଦିତ୍ୟାହ । ସପ୍ତୈବ ହି ପ୍ରାଣାଶ୍ଚକ୍ଷୁରାଦୟସ୍ତ୍ୱକ୍‌ପର୍ଯନ୍ତା ବିଶେଷିତା ଇହ ପ୍ରକୃତାଃ 'ସଃ ଯତ୍ରୈଷ ଚକ୍ଷୁଷଃ ପୁରୁଷଃ ପରାଙ୍ପର୍ଯ୍ୟାବର୍ତ୍ତତେଽଥାରୂପଜ୍ଞୋ ଭବତି' (ବୃ ୪-୪-୧) 'ଏକୀଭବତି ନ ପଶ୍ୟତୀତ୍ୟାହୁଃ' (ବୃ ୪-୪-୨) ଇତ୍ୟେବମାଦିନାନୁକ୍ରମଣେନ । ପ୍ରକୃତଗାମୀ ଚ ସର୍ବଶବ୍ଦୋ ଭବତି ଯଥା- ସର୍ବେ ବ୍ରାହ୍ମଣା ଭୋଜୟିତବ୍ୟା ଇତି ଯେ ନିମନ୍ତ୍ରିତାଃ ପ୍ରକୃତା ବ୍ରାହ୍ମଣାସ୍ତ ଏବ ସର୍ବଶବ୍ଦେନୋଚ୍ୟନ୍ତେ ନାନ୍ୟେ । ଏବମିହାପି ଯେ ପ୍ରକୃତାଃ ସପ୍ତ ପ୍ରାଣାସ୍ତ ଏବ ସର୍ବଶବ୍ଦେନୋଚ୍ୟନ୍ତେ ନାନ୍ୟ ଇତି । ନନୂତ୍ର ବିଜ୍ଞାନମଷ୍ଟମମନୁକ୍ରାନ୍ତଂ, କଥଂ ସପ୍ତାନାମେବାନୁକ୍ରମଣମ୍ । ନୈଷ ଦୋଷଃ । ମନୋବିଜ୍ଞାନୟୋସ୍ତତ୍ତ୍ୱାଭେଦାଦ୍ ବୃତ୍ତିଭେଦେଽପି ସପ୍ତତ୍ୱୋପପତ୍ତେଃ ତସ୍ମାତ୍ ସପ୍ତୈବ ପ୍ରାଣା ଇତି ।

**(୩) ଭାଷାଂତର-** (କ) ସାତୋଟି ଶୀର୍ଷଣ୍ୟପ୍ରାଣକୁ ସ୍ୱୀକାର କରୁଥିବା ଚାରୋଟି ପ୍ରାଣ ଅଭିମତ ହେବେ । ଏହି ଚାରୋଟି ହୋଇ ମଧ୍ୟ ସ୍ଥାନ ଭେଦରେ ସାତୋଟି ରୂପେ

ଗଣନା ହୁଅନ୍ତି । (କର୍ଣ୍ଣ-୨, ନେତ୍ର-୨, ନାସିକା-୨, ବାଣୀ-୧-୭) । ତେବେ ମଧ୍ୟ ଅନ୍ୟ ପ୍ରାଣ ସେମାନଙ୍କର ବୃତ୍ତିଭେଦ ଅଟନ୍ତି ବୋଲି କୁହାଯାଇପାରିବ ନାହିଁ । କାରଣ-ହସ୍ତପ୍ରଭୃତିର କର୍ମଗୁଡ଼ିକ ଅତ୍ୟନ୍ତ ବିଜାତୀୟ ଅଟନ୍ତି । ତେଣୁ 'ନବ ବୈ ପୁରୁଷେ' (ଦେହରେ ନଅଟି ମନ ଓ ଦଶଟି ନାଭି ଅଛି) ଏଠାରେ ଦେହର ଛିଦ୍ର ଭେଦର ଅଭିପ୍ରାୟ ଦ୍ୱାରା ଦଶଟି ପ୍ରାଣ କୁହାଯାଏ । କିନ୍ତୁ ପ୍ରାଣ ଉତ୍ତ୍ୱଭେଦରେ ଅଭିପ୍ରାୟ ନାହିଁ । କାରଣ-ନାଭି ଦଶଟି ବୋଲି କୁହାଯାଇଛି ।

(ଖ) ନାଭି ନାମକ କୌଣସି ପ୍ରାଣ ପ୍ରସିଦ୍ଧ ନାହିଁ । କିନ୍ତୁ ମୁଖ୍ୟପ୍ରାଣର ନାଭି ଏକ ବିଶେଷ ସ୍ଥାନ ଅଟେ । ତେଣୁ ନାଭି ଦଶଟି ବୋଲି କୁହାଯାଏ । କେଉଁଠି କେଉଁଠି ଉପାସନା ପାଇଁ ଅଥବା ପ୍ରଦର୍ଶନ ପାଇଁ ପ୍ରାଣ ଗଣା ହୋଇଛି । ଏହିପରି ପ୍ରାଣର ସଂଖ୍ୟା ବିଷୟରେ ଭିନ୍ନ ଭିନ୍ନ ଶ୍ରୁତି ଥିଲେ ମଧ୍ୟ ବି କେତେକ ସ୍ଥଳରେ କେଉଁ ଅର୍ଥ ବିଷୟକ ଶ୍ରୁତି ବୋଲି ବିଚାର କରିବା ଉଚିତ । କାର୍ଯ୍ୟ ସମୁଦାୟରୁ ପ୍ରାଣବିଷୟକ ଏକାଦଶତ୍ୱ ପ୍ରତିପାଦକ ଶ୍ରୁତିପ୍ରମାଣ ଅଛି ।

(ଗ) ଦୁଇଟି ସୂତ୍ରର ଦୁଇଟି ଯୋଜନା ଅଛି- ପ୍ରାଣ ସାତୋଟି ହେବ । କାରଣ-'ତମୁତ୍କ୍ରାମନ୍ତଂ' (ସେହି ଜୀବ ଶରୀରଠାରୁ ଉତ୍କ୍ରମଣ ହେଲାପରେ ତାହାପରେ ପ୍ରାଣ ଉତ୍କ୍ରମଣ କରେ । ପ୍ରାଣପରେ ଉତ୍କ୍ରମଣ ହେଲେ ସମ୍ପୂର୍ଣ୍ଣପ୍ରାଣ (ଇନ୍ଦ୍ରିୟସମୂହ) ଉତ୍କ୍ରମଣ କରନ୍ତି । ଏହି ଶ୍ରୁତିରେ ସାତୋଟି ଗତି ଶୁଣାଯାଏ ।

(ଘ) ପରନ୍ତୁ ଏହି ଶ୍ରୁତିରେ ସବୁଶବ୍ଦ ପଢ଼ାଯାଏ । କିନ୍ତୁ ସାତୋଟି ଗତିର କୌଣସି ପ୍ରକାର ପ୍ରତିଜ୍ଞା କରାଯାଇଛି କି ? ଚକ୍ଷୁ ପ୍ରଭୃତି ତ୍ୱକ ପର୍ଯ୍ୟନ୍ତ ଉତ୍କ୍ରମଣ ହେବା ଦ୍ୱାରା କାରଣ-'ସ ଯତ୍ରୈଷଃ' (ଯେତେବେଳେ ଏହି ଚକ୍ଷୁଷ ପୁରୁଷ ସବୁଦିଗରେ ବ୍ୟାବୃତ ହୋଇଛି । ସେତେବେଳେ ମୁମୂର୍ଷୁ ରୂପଜ୍ଞାନ ହୁଏ । ଚକ୍ଷୁଇନ୍ଦ୍ରିୟ ଲିଙ୍ଗାତ୍ମାଠାରୁ ଏକରୂପ ହୁଏ । କିନ୍ତୁ ଲୋକ ଦେଖିନାହିଁ ବୋଲି କହେ ।) ଇତ୍ୟାଦି ଅନୁକ୍ରମଣରୁ ଚକ୍ଷୁ ପ୍ରଭୃତିଠାରୁ ଆରମ୍ଭ କରି ତ୍ୱକ୍ ପର୍ଯ୍ୟନ୍ତ ସାତୋଟି ବିଶେଷିତପ୍ରାଣ ଏଠାରେ ପ୍ରକୃତ ଅଟେ । 'ସର୍ବେ ପ୍ରାଣାଃ' ପଠାରେ ସର୍ବଶବ୍ଦ ପ୍ରକୃତଗାମୀ ହୁଏ । ଅର୍ଥାତ୍ ସପ୍ତ ଇନ୍ଦ୍ରିୟକୁ ବିଷୟ କରେ । ଯେପରି 'ସମସ୍ତ ବ୍ରାହ୍ମଣଙ୍କୁ ଭୋଜନ କରାଇବା ଉଚିତ୍' ବାକ୍ୟରେ ଯେଉଁମାନେ ନିମନ୍ତ୍ରିତ ପ୍ରକୃତ ବ୍ରାହ୍ମଣ, ସେମାନେ ସର୍ବ ଶବ୍ଦଦ୍ୱାରା କୁହାଯା'ଆନ୍ତି, ଅନ୍ୟଠାରୁ ନୁହେଁ । ସେହପରି ଏଠାରେ ଯେଉଁ ପ୍ରକୃତ ସାତୋଟି ପ୍ରାଣ ଅଛନ୍ତି, ସେମାନେ ସର୍ବଶବ୍ଦଦ୍ୱାରା କୁହାଯାଇଛନ୍ତି । କିନ୍ତୁ ଅନ୍ୟଦ୍ୱାରା ନୁହେଁ । ପରନ୍ତୁ ଏଠାରେ ଆଠଟି ବିଜ୍ଞାନକୁ ଅତିକ୍ରମଣ କରାଯାଇଛି, କିନ୍ତୁ ସାତଟିର ଅନୁକ୍ରମଣ କିପରି କହୁଛ ? ଏହା କିନ୍ତୁ ଦୋଷ ନୁହେଁ । କାରଣ-ମନ ଓ ବିଜ୍ଞାନ ମଧ୍ୟରେ ଅଭେଦ ଅଛି । କିନ୍ତୁ ବୃତ୍ତିଭେଦ ହେଲେବି ସାତଟିର ଉପପତ୍ତି ହୁଏ । ତେଣୁ ସାତଟି ହିଁ ପ୍ରାଣ ।

(୪) ମୂଳ- (କ) ଏବଂ ପ୍ରାପ୍ତେ ବ୍ରୂମଃ- ହସ୍ତାଦୟସ୍ତୂପରେ ସପ୍ତେଭ୍ୟୋ ୫ତିରିକ୍ତାଃ ପ୍ରାଣାଃ ପ୍ରତୀୟନ୍ତେ-ହସ୍ତୋ ବୈଗ୍ରହଃ' (ବୃ ୩-୨-୮) ଇତ୍ୟାଦିଶ୍ରୁତିଷ୍ଣୁ । ଗ୍ରହଣତ୍ୱଂ ଚ ବନ୍ଧମଭାବୋ ଗୃହ୍ୟତେ; ବଧ୍ୟତେ କ୍ଷେତ୍ରଜ୍ଞୋଽନେନ ଗ୍ରହସଂଜ୍ଞକେନ ବନ୍ଧନେତି । ସଚ କ୍ଷେତ୍ରଜ୍ଞୋ ନୈକସ୍ମିନ୍ନେବ ଶରୀରେ ବଧ୍ୟତେ, ଶରୀରାନ୍ତରେଷ୍ୱପି ତୁଲ୍ୟତାଦ୍ ବନ୍ଧନସ୍ୟ । ତସ୍ମାଚ୍ଛରୀରାନ୍ତରସଞ୍ଚାରୀଦଂ ଗ୍ରହସଂଜ୍ଞକଂ ବନ୍ଧନମିତ୍ୟର୍ଥାଦୁକ୍ତଂ ଭବତି ।

(ଖ) ତଥା ଚ ସ୍ମୃତିଃ- 'ପୁର୍ଯଷ୍ଟକେନ ଲିଙ୍ଗେନ ପ୍ରାଣାଦ୍ୟେନ ସ ଯୁଜ୍ୟତେ । ତେନ ବଦ୍ଧସ୍ୟ ବୈ ବନ୍ଧୋ ମୋକ୍ଷୋ ମୁକ୍ତସ୍ୟ ତେନ ଚ' ଇତି ପ୍ରାଙ୍ ମୋକ୍ଷାଦ୍ ଗ୍ରହସଂଜ୍ଞକେନାନେନ ବନ୍ଧନେନାବିଯୋଗଂ ଦର୍ଶୟତି । ଆଥର୍ବଣେ ଚ ବିଷୟେନ୍ଦ୍ରିୟାନୁକ୍ରମଣେ 'ଚକ୍ଷଶ୍ଚ ଦ୍ରଷ୍ଟବ୍ୟଞ୍ଚ' ଇତ୍ୟତ୍ର ତୁଲ୍ୟବଦ୍ ହସ୍ତାଦୀନୀନ୍ଦ୍ରିୟାଣି ସର୍ବିଷୟାଣ୍ୟନୁକ୍ରାମତି - 'ହସ୍ତୌ ଚାଦାତବ୍ୟଂ ଚୋପସ୍ଥଶ୍ଚାନନ୍ଦୟିତବ୍ୟଂ ଚ ପାୟୁଶ୍ଚ ବିସର୍ଜୟିତବ୍ୟଂ ଚ ପାଦୌ ଚ ଗନ୍ତବ୍ୟଞ୍ଚ' (ପ୍ର ୪-୮) ଇତି । ତଥା 'ଦଶମେ ପୁରୁଷେ ପ୍ରାଣା ଆତ୍ମୈକାଦଶସ୍ତେ ଯଦାସ୍ମାଚ୍ଛରୀରାନ୍ମର୍ତ୍ତ୍ୟାଦୁତ୍କ୍ରାମନ୍ତ୍ୟଥ ରୋଦୟନ୍ତି' (ବୃ ୩-୯୪) ଇତ୍ୟେକାଦଶାନାଂ ପ୍ରାଣାନାମୁତ୍କ୍ରାନ୍ତିଂ ଦର୍ଶୟତି ।

**(୪) ଭାଷାଂତର-** (କ) କିନ୍ତୁ ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- 'ହସ୍ତୌ ବୈ ଗ୍ରହଃ' (ହସ୍ତ ହିଁ ଗ୍ରହ ଅଟେ) ଇତ୍ୟାଦି ଶ୍ରୁତିରେ ଅନ୍ୟର ହସ୍ତ ଇତ୍ୟାଦି ସାତଟି ଅତିରିକ୍ତ ପ୍ରାଣ ଜଣାପଡ଼େ । ଗ୍ରହତ୍ୱରୁ ବନ୍ଧନଭାବ ଗୃହୀତ ହୁଏ । ଜୀବ ସେହି ଗ୍ରହ ନାମକ ବଂଧନଦ୍ୱାରା ବଂଧା ହୋଇଛି ଏବଂ ସେହି କ୍ଷେତ୍ରଜ୍ଞ ଗୋଟିଏ ଶରୀରରେ ବଂଧା ହୋଇ ରହିନାହିଁ, କାରଣ-ଅନ୍ୟଶରୀରରେ ବଂଧନ ସମାନ ଅଟେ । ତେଣୁ ଏହି ଗ୍ରହ ସଂଜ୍ଞକବଂଧନ ଅନ୍ୟଶରୀରରେ ସଂଚାରଣ କରେ ବୋଲି ଅର୍ଥ କରିବା ଯୁକ୍ତିଯୁକ୍ତ ।

(ଖ) ତେଣୁ ସ୍ମୃତିରେ କୁହାଯାଇଛି- ପୁର୍ଯ୍ୟଷ୍ଟକେନ ଲିଙ୍ଗେନ' (ଏହି ପ୍ରାଣାଦି ପୁର୍ଯ୍ୟଷ୍ଟକ ଲିଙ୍ଗଯୁକ୍ତ ହୁଏ, ତଦ୍ଦ୍ୱାରା ବଦ୍ଧର ବଂଧନ ଓ ମୁକ୍ତିର ମୋକ୍ଷ ହୁଏ) । ଏଠାରେ ମୋକ୍ଷର ପୂର୍ବ ଏହି ଗ୍ରହସଂଜ୍ଞକ ବଂଧନଦ୍ୱାରା ଅବିଯୋଗ ଦେଖାଯାଏ । ଆଥର୍ବଣରେ ବିଷୟ ଓ ଇନ୍ଦ୍ରିୟର ଅନୁକ୍ରମଣରେ 'ଚକ୍ଷୁ ଓ ଦ୍ରଷ୍ଟବ୍ୟ' ସମାନ ରୂପରେ ସବିଷୟ ହସ୍ତାଦି ଇନ୍ଦ୍ରିୟକୁ 'ହସ୍ତୌ ଚାଦତବ୍ୟଂ' (ହସ୍ତଗ୍ରହଣ ଓ ଯୋଗ୍ୟ ବସ୍ତୁ, ଉପସ୍ଥ ଓ ଆନନ୍ଦୟିତ୍ବ୍ୟ, ବାୟୁ ଓ ବିସର୍ଜନୀୟ, ପାଦ ଓ ଗନ୍ତବ୍ୟ ସ୍ଥାନ) ଏହିପ୍ରକାର ଗଣାଯାଏ । ଅତଏବ 'ଦଶମେ ପୁରୁଷେ' (ଦେହରେ ଏହି ଦଶଟି ପ୍ରାଣ ଅଛି । ମନ ଏକାଦଶ ଅଟେ, ଯାହାକି ଯେଉଁ ସମୟରେ ଏହି ମର୍ତ୍ତ୍ୟ ଶରୀରରେ ଉତ୍କ୍ରମଣ କରନ୍ତି, ସେହି ସମୟରେ ସମ୍ବନ୍ଧିୟକୁ କନ୍ଦାଏ, ତେଣୁ ତାହାକୁ ରୁଦ୍ର କହନ୍ତି) ଏହି ଶ୍ରୁତି ପ୍ରାଣର ଉତ୍କ୍ରାନ୍ତି ଦେଖାଯାଏ ।



(୫) ମୂଳ-(କ) ସର୍ବଶବ୍ଦୋଽପି ଚ ପ୍ରାଣଶବ୍ଦେନ ସଂବଧ୍ୟମାନୋଽଶେଷାନ ପ୍ରାଣାନ୍ ଭିଦଧାନୋ ନ ପ୍ରକରଣବଶେନ ସପ୍ତ ସ୍ୱେବାତସ୍ଥାପୟିତୁଂ ଶକ୍ୟତେ, ପ୍ରକରଣାଚ୍ଛବ୍ଦସ୍ୟ ବଳୀୟସ୍ତ୍ୱାତ୍ । ସର୍ବେ ବ୍ରାହ୍ମଣା ଭୋଜୟିତବ୍ୟା ଇତ୍ୟତ୍ରାପି ସର୍ବେଷାମେବାବନି ବର୍ତ୍ତିନାଂ ବ୍ରାହ୍ମଣାନାଂ ଗ୍ରହଣଂ ନ୍ୟାୟ୍ୟମ୍, ସର୍ବଶବ୍ଦସାମର୍ଥ୍ୟାତ୍ ।

(ଖ) ସର୍ବ ଭୋଜନାସମ୍ଭବାତ୍ତ୍ୱ ତତ୍ର ନିମନ୍ତ୍ରିତମାତ୍ରବିଷୟା ସର୍ବଶବ୍ଦସ୍ୟ ବୃତ୍ତିରାଶ୍ରିତା ଇହ ତୁ ନ କିଞ୍ଚିତ୍ ସର୍ବଶବ୍ଦାର୍ଥ ସଙ୍କୋଚନେ କାରଣମସ୍ତି । ତସ୍ମାତ୍ ସର୍ବଶବ୍ଦେନାତ୍ର ଶେଷାଣାଂ ପ୍ରାଣାନାଂ ପରିଗ୍ରହଃ । ପ୍ରଦର୍ଶନାର୍ଥଂ ଚ ସପ୍ତାନାମନୁକ୍ରମଣମିତ୍ୟ ମବଦ୍ୟମ୍ । ତସ୍ମାଦେକାଦଶୈବ ପ୍ରାଣାଃ ଶବ୍ଦତଃ କାର୍ଯ୍ୟତଶ୍ଚେତି ସିଦ୍ଧମ୍ ।

**(୫) ଭାଷାଂତର୍-** (କ) ସର୍ବଶବ୍ଦ ପ୍ରାଣଶବ୍ଦ ସହିତ ସମ୍ବନ୍ଧିତ ହୋଇ ଅଶେଷ ପ୍ରାଣୀକୁ ଅଭିଧାନ କରି ପ୍ରକରଣ ବଳରେ ସପ୍ତ ପ୍ରାଣରେ ଅବସ୍ଥାପିତ କରାଯାଇ ନ ପାରେ । କାରଣ- ପ୍ରକରଣଠାରୁ ଶ୍ରୁତି ବଳବତୀ ଅଟେ । ସମସ୍ତ ବ୍ରାହ୍ମଣକୁ ଭୋଜନ ଦେବା ଉଚିତ' ଏଠାରେ ପୃଥିବୀରେ ବାସ କରିଥିବା ସମସ୍ତ ବ୍ରାହ୍ମଣଙ୍କର ଗ୍ରହଣ ଯୁକ୍ତିଯୁକ୍ତ' କାରଣ-ଏଠାରେ ସର୍ବଶବ୍ଦ ପ୍ରୟୋଗ ହୋଇଅଛି ।

(ଖ) ପରନ୍ତୁ ସମସ୍ତଙ୍କର ଭୋଜନ ସମ୍ଭବପର ନ ହେଲେ ମଧ୍ୟ ସେଠାରେ ସର୍ବଶବ୍ଦର ବୃତ୍ତି ନିମନ୍ତ୍ରିତ ବ୍ରାହ୍ମଣ ମାତ୍ର ବିଷୟକ ବୋଲି ଗ୍ରହଣ କରାଯାଏ । ପରନ୍ତୁ ଏଠାରେ ସର୍ବଶବ୍ଦର ଅର୍ଥ ସଙ୍କୋଚ ଅର୍ଥରେ ବ୍ୟବହାର କରିବା ପାଇଁ କୌଣସି କାରଣ ନାହିଁ । ତେଣୁ ଏଠାରେ ସର୍ବଶବ୍ଦ ଦ୍ୱାରା ସବୁ ପ୍ରାଣୀମାନଙ୍କର ପରିଗ୍ରହ ହୁଏ ଏବଂ ପ୍ରଦର୍ଶନ ପ୍ରାଣ ସାତୋଟିର ଅନୁକ୍ରମଣ ହୁଏ । ଏହା ଦୋଷଶୂନ୍ୟ । ଅତଏବ ଶବ୍ଦ ବା ଶ୍ରୁତି ଓ କାର୍ଯ୍ୟରୁ ପ୍ରାଣ ଏକାଦଶଟି ବୋଲି ପ୍ରମାଣିତ ହେଲା ।

## ३ प्राणाणुत्वाधिकरणम् । सू० ७ ।

## ପ୍ରାଣାଣୁତ୍ୱାଧିକରଣ-୩

## अणवश्च ॥ ७ ॥

## ୧- ଅଣବଶ୍ଚ ॥୨-୪-୭ ॥

ଅଣବଃ ଚ = ପ୍ରାଣ ବା ଇନ୍ଦ୍ରିୟ ଅଣୁମାତ୍ର ସୂକ୍ଷ୍ମ ଅଟେ । କାରଣ-ସେମାନେ ଇନ୍ଦ୍ରିୟଗୁଡ଼ିକଠାରୁ ଅଗ୍ରାହ୍ୟ ଅଟନ୍ତି ।

(୨) ମୂଳ- (କ) ଅଧୁନା ପ୍ରାଣାନାମେବ ସ୍ୱଭାବାନ୍ତରମଭ୍ୟୁଚ୍ଚିନୋତି । ଅଣବଶ୍ଚୈତେ ପ୍ରକୃତାଃ ପ୍ରାଣାଃ ପ୍ରତିପତ୍ତବ୍ୟାଃ । ଅଣୁତ୍ୱଂ ଚୈଷାଂ ସୌକ୍ଷ୍ମ୍ୟପରିଚ୍ଛେଦୌ ଚ ପରମାଣୁତୁଲ୍ୟତ୍ୱଂ

କୃସ୍ନଦେହବ୍ୟାପିକାର୍ଯ୍ୟାନୁପପତ୍ତିପ୍ରସଙ୍ଗାତ୍ । ସୂକ୍ଷ୍ମା ଏତେ ପ୍ରାଣାଃ ସ୍ଥୂଳାଶ୍ଚେତ୍ ସ୍ୟୁର୍ମରଣକାଳେ ଶରୀରାନ୍ନିର୍ଗଚ୍ଛନ୍ତୋ ବିଳାଦହିରିବୋପଲଭ୍ୟେରନ ମ୍ରିୟମାଣସ୍ୟ ପାର୍ଶ୍ୱସ୍ଥୈଃ । ପରିଚ୍ଛିନ୍ନାଶ୍ଚୈତେ ପ୍ରାଣାଃ ସର୍ବଗତାଶ୍ଚେତ୍ସ୍ୟୁରୁତ୍କ୍ରାନ୍ତିଗତ୍ୟାଗତିଶ୍ରୁତିବ୍ୟାକୋପଃ ସ୍ୟାତ୍ । ଦଦ୍‌ଗୁଣସାରତ୍ୱଂ ଚ ଜୀବସ୍ୟ ନ ସିଧ୍ୟେତ୍ ।

(ଖ) ସର୍ବଗତାନାମପି ବୃତ୍ତିଲାଭଃ ଶରୀରଦେଶେ ସ୍ୟାଦିତି ଚେତ୍ । ନ । ବୃତ୍ତିମାତ୍ରସ୍ୟ କରତ୍ୱୋପପତ୍ତେଃ । ଯଦେବ ହ୍ୟୁପଲବ୍ଧିସାଧନଂ ବୃତ୍ତିରନ୍ୟଦ୍‌ବା ତସ୍ୟୈବ ନଃ କରଣତ୍ୱଂ ସଂଜ୍ଞାମାତ୍ରେ ବିବାଦ ଇତି କରଣାନାଂ ବ୍ୟାପିତ୍ୱକଳ୍ପନା ନିରର୍ଥିକା । ତସ୍ମାତ୍‌ସୂକ୍ଷ୍ମାଃ ପରିଚ୍ଛିନ୍ନାଶ୍ଚ ପ୍ରାଣାଃ ଇତ୍ୟଧବସ୍ୟାମଃ ।

(୨) ଭାଷାଂତର- (କ) ବର୍ତ୍ତମାନ ସୂତ୍ରକାର ଇନ୍ଦ୍ରିୟଗୁଡ଼ିକର ଅନ୍ୟ ସ୍ୱଭାବ କହୁଅଛନ୍ତି । ସେମାନେ ପ୍ରକୃତ ପ୍ରାଣ ଅଣୁ ବୋଲି ଜାଣିବା ଉଚିତ । ଏହି ପ୍ରାଣଗୁଡ଼ିକର ସୂକ୍ଷ୍ମତା ଓ ପରିଚ୍ଛିନ୍ନତା ଅଛି, କିନ୍ତୁ ପରମାଣୁ ତୁଲ୍ୟତା ନାହିଁ । କାରଣ- ଏହିପରି ସ୍ୱୀକାର କଲାପରେ ସମସ୍ତ ଦେହବ୍ୟାପୀ କାର୍ଯ୍ୟର ଅନୁପପତ୍ତି ପ୍ରସଙ୍ଗ ହେବ । ସେହିପ୍ରାଣ ସୂକ୍ଷ୍ମ ଅଟନ୍ତି । ଯଦି ସେଗୁଡ଼ିକ ସ୍ଥୁଳ ହୁଅନ୍ତି, ତେବେ ମରଣ ସମୟରେ ଗାତରୁ ବାହାରୁଥିବା ସର୍ପର କ୍ଷୀଣ ଶରୀରପରି ମ୍ରିୟମାଣପୁରୁଷର ଶରୀରରୁ ବାହାରି ସେମାନେ ସମୀପରେ ଥିବା ଲୋକ ପାଖରେ ଦେଖାହେବେ ଏବଂ ସେହି ପ୍ରାଣ ପରିଚ୍ଛିନ୍ନ ଅଟନ୍ତି । ଯଦି ସେହି ପ୍ରାଣଗୁଡ଼ିକ ସର୍ବଗତ ହୁଅନ୍ତି, ତେବେ ଉତ୍କ୍ରାନ୍ତି, ଗତି ଓ ଆଗତି ଶ୍ରୁତିର ବିରୋଧ ହେବ ଏବଂ ଜୀବରେ ଅନ୍ତଃକରଣଗୁଣ ପ୍ରମାଣିତ ହେବ ନାହିଁ ।

(ଖ) ଯଦି ତୁମେ କହ ଯେ- ଶରୀର ପ୍ରଦେଶରେ ସର୍ବଗତର ବୃତ୍ତି ଲାଭ ହେବ, ତେବେ ତାହା ମଧ୍ୟ ଠିକ୍ ନୁହେଁ । କାରଣ-ବୃତ୍ତିମାତ୍ରରେ କରଣତ୍ୱ ହୁଏ । ବୃତ୍ତି ହେଉ ଅଥବା ଅନ୍ୟ କିଛି ହେଉ, ଯାହା ଉପଲବ୍ଧିର ସାଧନ ହୁଏ, ତାହହିଁ ଆମ୍ଭମତରେ କରଣ । କିନ୍ତୁ ସଂଜ୍ଞାମାତ୍ରରେ ତାହା ବିବାଦ ପୂର୍ଣ୍ଣ । ତେଣୁ କରଣଗୁଡ଼ିକରେ ବ୍ୟାପିତ୍ୱ କଳ୍ପନା ନିରର୍ଥକ ଅଟେ । ଶେଷରେ ଇନ୍ଦ୍ରିୟ ସୂକ୍ଷ୍ମ ଓ ପରିଚ୍ଛିନ୍ନ ବୋଲି ଆମ୍ଭେ ସ୍ଥିର କରିଅଛୁଁ ।

## ୪ प्राणश्रैष्ठयाधिकरणम् । सू० ८

## ପ୍ରାଣଶ୍ରେଷ୍ୟାଧିକରଣ-୪

**श्रेष्ठश्च ॥ ८ ॥**

**୧-ଶ୍ରେଷ୍ଠଶ୍ଚ ॥ ୨-୪-୮ ॥**

ଶ୍ରେଷ୍ଠଃ ଚ = ମୁଖ୍ୟପ୍ରାଣ ମଧ୍ୟ ଇନ୍ଦ୍ରିୟପରି ବ୍ରହ୍ମଠାରୁ ଉତ୍ପନ୍ନ ହୋଇଛି ।

(୨) ମୂଳ-(କ) ମୁଖ୍ୟଶ୍ଚ ପ୍ରାଣ ଇତରପ୍ରାଣବଦ୍ ବିକାର ଇତ୍ୟତିଦିଶତି । ତତ୍ର ବିଶେଷେଣୈବ ସର୍ବପ୍ରାଣାନାଂ ବ୍ରହ୍ମବିକାରତ୍ୱମାଖ୍ୟାତମ୍ । 'ଏତସ୍ମାଜ୍ଜାୟେତ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ' (ମୁଣ୍ଡ ୨-୧-୩) ଇତି ସେନ୍ଦ୍ରିୟମନୋ ବ୍ୟତିରେକେଣ ପ୍ରାଣସ୍ୟୋତ୍ପତ୍ତିଶ୍ରବଣାତ୍ । 'ସ ପ୍ରାଣମସୃଜତ' (ପ୍ର ୬।୪) ଇତ୍ୟାଦି ଶ୍ରବଣେଭ୍ୟଶ୍ଚ ।

(ଖ) ନିମର୍ଥଃ ପୁନରତିଦେଶଃ, ଅଧିକାଶଙ୍କା ପାକରଣାର୍ଥଃ, ନାସଦାସୀୟେ ହି ବ୍ରହ୍ମପ୍ରଧାନେ ସୂକ୍ତେ ମନ୍ତ୍ରବର୍ଣ୍ଣୋ ଭବତି 'ନ ମୃତ୍ୟୁରାସୀଦମୃତଂ ନ ତର୍ହିନ ରାତ୍ର୍ୟା ଅହ୍ନ ଆସାତ୍ ପ୍ରକେତଃ । ଆନୀଦବାତଂ ସ୍ୱଧୟା ତଦେକଂ ତସ୍ମାଦ୍ ବାନ୍ୟନ୍ନ ପରଃ କିଂ ଚ ନାସ' (ଋ-ସଂ ୮-୭-୧୭) ଇତି । ଆନୀଦିତି ପ୍ରାଣକର୍ମୋପାଦାନାତ୍ ପ୍ରାଗୁତ୍ପତ୍ତେଃ ସନ୍ତମିବ ପ୍ରାଣ ସୂଚୟତି । ତସ୍ମାଦଜଃ ପ୍ରାଣ ଇତି ଜାୟତେ କସ୍ୟଚିନ୍ନତିଃ । ତାମତିଦେଶେନାପନୁଦତି ।

(ଗ) ଆନୀଛବ୍ଦୋଽପି ପ୍ରାଗୁତ୍ପତ୍ତେଃ ପ୍ରାଣସଦ୍‌ଭାବଂ ସୂଚୟତି । ଅବାତମିତି ବିଶେଷଣାତ୍ । 'ଅପ୍ରାଣୋ ହ୍ୟମନାଃ ଶୁଭ୍ରଃ' ଇତି ଚ ମୂଳ ପ୍ରକୃତେଃ ପ୍ରାଣାଦିସମସ୍ତବିଶେଷ-ରହିତତ୍ୱସ୍ୟ ଦର୍ଶିତତ୍ୱାତ୍ । ତସ୍ମାତ୍ କାରଣସଦ୍ ଭାବପ୍ରଦର୍ଶନାର୍ଥ ଏବାୟମାନୀଛବ୍ଦ ଇତି

(ଘ) ଶ୍ରେଷ୍ଠ ଇତି ଚ ମୁଖ୍ୟଂ ପ୍ରାଣମଭିଦଧାତି- 'ପ୍ରାଣୋ ବାବ ଜ୍ୟେଷ୍ଠଶ୍ଚ ଶ୍ରେଷ୍ଠଶ୍ଚ (ଛା ୫-୧-୧) ଇତି ଶ୍ରୁତିନିର୍ଦ୍ଦେଶାତ୍ । ଜ୍ୟେଷ୍ଠଶ୍ଚ ପ୍ରାଣଃ ଶୁକ୍ର ନିଷେକାଳାଦାରଭ୍ୟତସ୍ୟ ବୃତ୍ତିଲାଭାତ୍ । ନ ଚେତ୍ତସ୍ୟ ତଦାନୀଂ ବୃତ୍ତିଲାଭଃ ସ୍ୟାଦ୍ୟୋନୌ ନିଷିକ୍ତଂ ଶୁକ୍ରଂ ପୂୟେତ ନ ସମ୍ଭବେଦ୍ ବା । ଶ୍ରୋତ୍ରାଦୀନାଂ ତୁ କର୍ଣ୍ଣଶଷ୍କୁଲ୍ୟାଦିସ୍ଥାନ ବିଭାଗ ନିଷ୍ପତ୍ତୌ ବୃତ୍ତିଲାଭାନ୍ନ ଜ୍ୟେଷ୍ଠତ୍ୱମ୍ । ଶ୍ରେଷ୍ଠଶ୍ଚ ପ୍ରାଣୋ ଗୁଣାଧିକ୍ୟାତ୍ । 'ନ ବୈ ଶକ୍ଷ୍ୟାମସ୍ତ୍ୱଦୃତେ ଜୀବିତୁମ୍ (ବୃ ୩-୧-୧୩) ଇତି ଶ୍ରୁତେଃ ।

**(୨) ଭାଷାଂତର-** (କ) ମୁଖ୍ୟପ୍ରାଣ ଅନ୍ୟପ୍ରାଣପରି ବ୍ରହ୍ମର ବିକାର ଅଟେ । ଏହି ପ୍ରକାର ସୂତ୍ରକାର ଅତିଦେଶ କରନ୍ତି । ସେହି ବ୍ରହ୍ମବିକାରତ୍ୱ ସବୁପ୍ରାଣୀମାନଙ୍କର ରସମାନ ରୂପରେ କୁହାଯାଇଅଛି । 'ଏତସ୍ମାଜ୍ଜାୟତେ' (ଏହାଠାରୁ ପ୍ରାଣ, ମନ ଓ ସମସ୍ତ ଇନ୍ଦ୍ରିୟ ଉତ୍ପନ୍ନ ହୋଇଅଛନ୍ତି), ଏବଂ 'ସ ପ୍ରାଣମ୍' (ତାହାରି ପ୍ରାଣକୁ ଉତ୍ପନ୍ନ କରେ) ଇତ୍ୟାଦି ଶ୍ରୁତିବାକ୍ୟରେ ଇନ୍ଦ୍ରିୟ ସହିତ ମନ ବ୍ୟତିତ ପ୍ରାଣର ଉତ୍ପତ୍ତି ଶୁଣାଯାଏ ।

(ଖ) କିନ୍ତୁ ପୁଣି ଏଠାରେ ଅତିଦେଶ କାହିଁକି ? ଅଧିକ ଶଙ୍କା ପରିହାର ନିମିତ୍ତ ଅତିଦେଶ । କାରଣ-ନାସଦାସୀୟ ନାମକ ବ୍ରହ୍ମ ପ୍ରଧାନ ସୂକ୍ତରେ 'ନ ମୃତ୍ୟୋରାସୀତ୍' (ମହାପ୍ରଳୟ କାଳରେ ମୃତ୍ୟୁ ନ ଥିଲା କି ଅମୃତ ନ ଥିଲା । ରାତ୍ରି ଓ ଦିବସର ସୂଚକ ଚନ୍ଦ୍ର ଓ ସୂର୍ଯ୍ୟ ନ ଥିଲେ । ସ୍ୱଧା ଅର୍ଥାତ୍ ପିତୃଦେୟ ଶ୍ରାଦ୍ଧ ନ ଥିଲା । ସେ କେବଳ ବ୍ୟାପାର ରହିତ ବ୍ରହ୍ମ ଥିଲା । ତାହା ବ୍ୟତିତ ଅନ୍ୟ କିଛି ନ ଥିଲା) ଏହି ମନ୍ତ୍ରବର୍ଣ୍ଣିତ ଅଛି । 'ଆନୀତ୍' (ସେ ଚେଷ୍ଟାଯୁକ୍ତ ଅଟେ) ଏହି ଶବ୍ଦ ପ୍ରାଣ କର୍ମକୁ ଗ୍ରହଣ କରି ଉତ୍ପତ୍ତିର ପୂର୍ବରୁ

ପ୍ରାଣକୁ ରଖି ଭୟସୂଚିତ କରେ । ତେଣୁ ପ୍ରାଣ ଉତ୍ପତ୍ତି ରହିତ । ସେ କାହାର ବୁଦ୍ଧିକୁ ଉତ୍ପନ୍ନ କରେ ଓ ତାହାର ଅତିଦେଶ ନିରାକରଣ କରେ ।

(ଗ) ଆନୀତ୍ ଶବ୍ଦ ଉତ୍ପତ୍ତିର ପୂର୍ବରୁ ପ୍ରାଣର ସଦ୍‌ଭାବ ସୂଚିତ କରେ ନାହିଁ । କାରଣ- 'ଅବାତ୍ମ '(ବାତରହିତ)' ଅପ୍ରାଣୋ' (ସେ ଅପ୍ରାଣ, ମନରହିତ ଓ ଶୁଦ୍ଧ ଅଟେ) ଏହି ପ୍ରକାର ମୂଳ ପ୍ରକୃତି ପ୍ରାଣ ଇତ୍ୟାଦି ସମସ୍ତ ବିଶେଷ ରହିତ ବୋଲି ସୂଚିତ କରେ । ତେଣୁ ଆନୀତ ଶବ୍ଦ ସଦ୍‌ଭାବ ପ୍ରଦର୍ଶନ ପାଇଁ ରହିଛି ।

(ଘ) 'ପ୍ରାଣୋ ବା' (ପ୍ରାଣ ହିଁ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଅଟେ) ଏହି ଶ୍ରୁତିର ନିର୍ଦ୍ଦେଶରେ ଶ୍ରେଷ୍ଠ ଏହିଶବ୍ଦ ମୁଖ୍ୟପ୍ରାଣକୁ କହେ । ପ୍ରାଣ ଜ୍ୟେଷ୍ଠ ଅଟେ, କାରଣ-ବୀର୍ଯ୍ୟ ଗର୍ଭାଧାନ ସମୟରୁ ତାହାର ବୃତ୍ତି ଲାଭ କରେ । ଯଦି ସେହି ସମୟ ବୃତ୍ତିଲାଭ ନ ହୁଏ, ତେବେ ଗର୍ଭାଶୟରେ ନିଷିକ୍ତ ଶୁକ୍ର ଦୂଷିତ ହୁଏ ଅଥବା ତାହାର ସମ୍ଭବ ହୁଏ ନାହିଁ । ଶ୍ରୋତ୍ରାଦି କିନ୍ତୁ ଜ୍ୟେଷ୍ଠ ନୁହେଁ, କାରଣ-କର୍ଣ୍ଣ ଶଷ୍କୁଳି ପ୍ରଭୃତି ସ୍ଥାନବିଭାଗ ନିଷ୍ପନ୍ନ ହେଲା ପରେ ବୃତ୍ତି ଲାଭ ହୁଏ ଏବଂ ଗୁଣର ଆଧିକ୍ୟରୁ ପ୍ରାଣ ଶ୍ରେଷ୍ଠ ଅଟେ, କାରଣ- 'ନ ବୈ' (ତୁମ୍ଭ ବ୍ୟତୀତ ଆମ୍ଭେ ଜୀବିତ ରହିବା ସମ୍ଭବ ନୁହେଁ)-ଏହା ଶ୍ରୁତି ପ୍ରମାଣ ।

## ५ वायुक्रियाधिकरणम् । सू० ६-१२

## ବାୟୁକ୍ରିୟାଧିକରଣ-୫

## न वायुक्रिये पृथगुपदेशात् ॥ ६ ॥

## ନ ବାୟୁକ୍ରିୟେ ପୃଥଗୁପଦେଶାତ୍ ॥ ୨-୪-୯ ॥

ନ ବାୟୁକ୍ରିୟେ - ମୁଖ୍ୟପ୍ରାଣ ବାୟୁ ନୁହେଁ କି ଇନ୍ଦ୍ରିୟର ବ୍ୟାପାର ନୁହେଁ, କିନ୍ତୁ ବାୟୁବିଶେଷ ଅଟେ । ପୃଥଗୁପଦେଶାତ୍-କାରଣ- 'ସ ବାୟୁନା ଜ୍ୟୋତିଷା' ଉତ୍ୟାଦି ଶ୍ରୁତିରେ ତାହାର ପୃଥକ ଉପଦେଶ ହୁଏ ।

(୨) ମୂଳ-(କ) ନ ପୁନର୍ମୁଖ୍ୟଃ ପ୍ରାଣଃ କିଂସ୍ୱରୂପ ଇତୀଦାନୀଂ ଜିଜ୍ଞାସ୍ୟତେ । ତତ୍ର ପ୍ରାପ୍ତଂ ତାବଚ୍ଛ୍ରୁତେର୍ବାୟୁଃ ପ୍ରାଣ ଇତି । ଏବଂ ହି ଶ୍ରୂୟତେ- 'ଯଃ ପ୍ରାଣଃ ସ ବାୟୁଃ ସ ଏଷ ବାୟୁଃ ପଞ୍ଚବିଧଃ ପ୍ରାଣୋଽପାନୋ ବ୍ୟାନ ଉଦାନଃ ସମାନଃ ଇତି । ଅଥବା ତନ୍ତ୍ରାନ୍ତରୀୟାଭିପ୍ରାୟାତ୍ ସମସ୍ତକରଣବୃତ୍ତିଃ ପ୍ରାଣ ଇତି ପ୍ରାପ୍ତ । ଏବଂ ହି ତନ୍ତ୍ରାନ୍ତରୀୟା ଆଚକ୍ଷତେ- 'ସାମାନ୍ୟା କରଣବୃତ୍ତିଃ ପ୍ରାଣାଦ୍ୟା ବାୟବଃ ପଞ୍ଚେ'ତି ।

(ଖ) ଅତ୍ରୋଚ୍ୟତେ- ନ ବାୟୁଃ ପ୍ରାଣୋନାପି କରଣବ୍ୟାପାରଃ । କୁତଃ- ପୃଥଗୁପଦେଶାତ୍ । ବାୟୋସ୍ତାବତ୍ପ୍ରାଣସ୍ୟ ପୃଥଗୁପଦେଶୋ ଭବତି - 'ପ୍ରାଣ ଏକ

ବ୍ରହ୍ମଣଶ୍ଚତୁର୍ଥ ପାଦଃ ସ ବାୟୁନା ଜ୍ୟୋତିଷା ଭାତି ଚ ତପତି ଚ' (ଛା ୩-୧୮-୪) ଇତି । ନହି ବାୟୁରେବ ସନ୍‌ବାୟୋଃ ପୃଥଗୁପଦିଶ୍ୟେତ । ତଥା କରଣବୃତ୍ତେରପି ପୃଥଗୁପଦେଶୋ ଭବତି, ବାଗାଦୀନି କରଣାନ୍ୟନୁକ୍ରମ୍ୟ ତତ୍ର ତତ୍ର ପୃଥକପ୍ରାଣସ୍ୟାନୁକ୍ରମଣାତ୍ । ବୃତ୍ତି ବୃତ୍ତିମତୋଶ୍ଚାଭେଦାତ୍ । ନହି କରଣବ୍ୟାପାର ଏବସନ୍ କରଣେଭ୍ୟ ପୃଥଗୁପଦିଶତେ ।

**(୨) ଭାଷାଂତର-** (କ) ସେହି ମୁଖ୍ୟପ୍ରାଣର ସ୍ୱରୂପ କିପରି ? ଏହି ପ୍ରକାର ଜିଜ୍ଞାସା ହୁଏ । ଶ୍ରୁତିବାକ୍ୟରେ ପ୍ରାଣ ହିଁ ବାୟୁ ବୋଲି ପ୍ରମାଣିତ ହୁଏ । କାରଣ- 'ଯଃ ପ୍ରାଣଃ ସଃ ବାୟୁଃ' (ଯାହା ପ୍ରାଣ, ସେ ହିଁ ବାୟୁ । ସେହି ବାୟୁ ପ୍ରାଣ, ଅପାନ, ବ୍ୟାନ, ଉଦାନ ଏବଂ ରସଭେଦରେ ପାଞ୍ଚ ପ୍ରକାର)- ଏହାହିଁ ଶ୍ରୁତି । ଅଥବା ସାଂଖ୍ୟାଶାସ୍ତ୍ରର ଅଭିପ୍ରାୟ ଅନୁସାରେ ପ୍ରାଣ ସମସ୍ତପ୍ରକରଣର ବୃତ୍ତି ଅଟେ; କାରଣ-ଇନ୍ଦ୍ରିୟର ସାମାନ୍ୟବୃତ୍ତି ପ୍ରାଣ ପ୍ରଭୃତି ପାଞ୍ଚୋଟି ବାୟୁ ଅଟେ, ବୋଲି ଅନ୍ୟ ତାନ୍ତ୍ରିକମାନେ କହନ୍ତି ।

(ଖ) ଏହି ବିଷୟରେ କୁହାଯାଇଛି- ପ୍ରାଣ ବାୟୁ ନୁହେଁ ଏବଂ ସେହି କରଣଗୁଡ଼ିକର ବ୍ୟାପାର ମଧ୍ୟ ନୁହେଁ କିପରି ? ପ୍ରାଣର ପୃଥକ୍ ଭାବେ ଉପଦେଶ ଦିଆଯାଇଅଛି । 'ପ୍ରାଣ ଏବ' (ପ୍ରାଣ ହିଁ ମନୋମୟବ୍ରହ୍ମର ଚତୁର୍ଥପାଦ ଅଟେ । ସେହି ବାୟୁରୂପ ଜ୍ୟୋତିରେ ପ୍ରକାଶିତ ହୁଏ ଓ ଉତ୍ତପ୍ତ କରେ) ଏହିପରି ବାୟୁଠାରୁ ପ୍ରାଣ ପୃଥକ୍ ଭାବେ ଉପଦିଷ୍ଟ ହୋଇଛି । ପ୍ରାଣ ବାୟୁ ହୋଇ ବାୟୁଠାରୁ ପୃଥକ୍ ଭାବେ ଉପଦିଷ୍ଟ ହେବା ଉଚିତ ନୁହେଁ । ଏହିପରି ପ୍ରାଣର ଇନ୍ଦ୍ରିୟ ବ୍ୟାପାରଠାରୁ ପୃଥକ ଭାବେ ଉପଦେଶ ହୋଇଛି, କାରଣ-ବାଣୀ ପ୍ରଭୃତି ଇନ୍ଦ୍ରିୟଗୁଡ଼ିକର ଅନୁକ୍ରମ କରି ସେହି ସେହି ପ୍ରକରଣରେ ପ୍ରାଣର ପୃଥକ ଅନୁକ୍ରମ ହୁଏ । ବୃତ୍ତି ଓ ବୃତ୍ତିମାନ୍‌ର ଅଭେଦ ହୁଏ । କରଣର ବ୍ୟାପାର ହୋଇ ତାହା କରଣଠାରୁ ପୃଥକ୍ ଭାବେ ଉପଦେଶହେବା ଉଚିତ ନୁହେଁ ।

(୩) ମୂଳ-(କ) ତଥା 'ଏତସ୍ମାଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ । ଖଂ ବାୟୁଃ' (ମୁ ୨-୧-୩) ଇତ୍ୟେବମାଦୟୋଽପି ବ୍ରାୟୋଃ କରଣେଭ୍ୟଶ୍ଚ ପ୍ରାଣସ୍ୟ ପୃଥଗୁପଦେଶା ଅନୁସର୍ତ୍ତବ୍ୟାଃ । ନ ଚ ସମସ୍ତାନାଂ କରଣାନାମେକା ବୃତ୍ତିଃ ସମ୍ଭବତି, ପ୍ରତ୍ୟେକମେକୈକବୃତ୍ତିତ୍ୱାତ୍ ସମୁଦାୟସ୍ୟ ଚାକାରକତ୍ୱାତ୍ ।

(ଖ) ନନୁ ପଞ୍ଜରଚାଳନନ୍ୟାୟେନୈତଦ୍ ଭବିଷ୍ୟତି । ଯଥୈକ ପଞ୍ଜରବର୍ତ୍ତିନ ଏକାଦଶପକ୍ଷିଣଃ ପ୍ରତ୍ୟେକଂ ପ୍ରତିନିୟତ ବ୍ୟାପାରାଃ ସନ୍ତଃ ସମ୍ଭୂୟୈକଂ ପଞ୍ଜରଂ ଚାଳୟନ୍ତି, ଏବମେକଶରୀରବର୍ତ୍ତିନ ଏକାଦଶ ପ୍ରାଣାଃ ପ୍ରତ୍ୟେକଂ ପ୍ରତିନିୟତବୃତ୍ତୟଃ ସନ୍ତଃ ସମ୍ଭୂୟୈକାଂ ପ୍ରାଣାଖ୍ୟାଂ ବୃତ୍ତିଂ ପ୍ରତିଲପ୍ସ୍ୟନ୍ତ ଇତି । ନେତ୍ୟୁଚ୍ୟନ୍ତେ । ଯୁକ୍ତଂ ତତ୍ର ପ୍ରତ୍ୟେକବୃତ୍ତିଭିରେବାନ୍ତର ବ୍ୟାପାରୈଃ ପଞ୍ଜରଚାଳନାନୁରୂପୈରେ ବୋପେଘଃ ଦକ୍ଷିଣଃ ସମ୍ଭୂୟୈକଂ ପଞ୍ଜରଂ ଚାଳୟେୟୁରିତି । ତଥା ଦୃଷ୍ଟତ୍ୱାତ୍ । ଇହ ତୁ ଶ୍ରବଣାଦ୍ୟବାନ୍ତର

ବ୍ୟାପାରୋପେତାଃ ପ୍ରାଣାଃ ନ ସମ୍ଭୂୟ ପ୍ରାଣ୍ୟୁରିତି ଯୁକ୍ତମ୍ ପ୍ରମାଣାଭାବାତ୍ । ଅତ୍ୟନ୍ତବିଜାତୀୟତ୍ୱାଚ୍ଚ ଶ୍ରବଣାବିଭ୍ୟଃ ପ୍ରାଣନସ୍ୟ ।

(ଗ) ତଥା ପ୍ରାଣସ୍ୟ ଶ୍ରେଷ୍ଠତ୍ୱାଦ୍ୟୁଦ୍ଘୋଷଣଂ ଗୁଣାଭାବୋପଗମଶ୍ଚ ତଂ ପ୍ରତି ବାଗାଦୀନାଂ ନ କରଣବୃତ୍ତିମାତ୍ରେ ପ୍ରାଣେଽବକଳ୍ପତେ । ତସ୍ମାଦନ୍ୟୋ ବାୟୁକ୍ରିୟାଭ୍ୟାଂ ପ୍ରାଣଃ କଥଂ ତର୍ହୀୟଂ ଶ୍ରୁତିଃ 'ଯଃ ପ୍ରାଣଃ ସ ବାୟୁଃ ଇତି । ଉଚ୍ୟତେ ବାୟୁରେ ବାୟ ମଧ୍ୟାତ୍ମମାପନ୍ନଃ ପଞ୍ଚବ୍ୟୂହୋ ବିଶେଷାତ୍ମନା ବତିଷ୍ଠମାନଃ ପ୍ରାଣୋନାମ ଭଣ୍ୟତେ ନ ତତ୍ତ୍ୱାନ୍ତରଂ ନାପି ବାୟୁମାତ୍ରମ୍ । ଅତଶ୍ଚୋଭେ ଅପି ଭେଦାଭେଦଶ୍ରୁତୀ ନ ବିରୁଧ୍ୟତେ ।

**(୩) ଭାଷାଂତର-** (କ) ସେହିପରି 'ଏତସ୍ମାଜ୍ଜାୟତେ' (ଏହାଠାରୁ ପ୍ରାଣ, ମନ ତଥା ସମସ୍ତ ଇନ୍ଦ୍ରିୟ ଗୁଡ଼ିକ ଆକାଶ ଓ ବାୟୁ ଉତ୍ପନ୍ନ ହୋଇଛନ୍ତି) ଇତ୍ୟାଦି ଶ୍ରୁତିଗୁଡ଼ିକର ଯେଉଁଠି ପ୍ରାଣର ବାୟୁ ଓ ଇନ୍ଦ୍ରିୟଠାରୁ ପୃଥକ୍ ଭାବେ ଉପଦେଶ ହୁଏ, ତାହାକୁ ଅନୁକରଣ କରିବା ବିଧେୟ । ସମସ୍ତକରଣର ଗୋଟିଏ ବୃତ୍ତି ହେବା ଅସମ୍ଭବ । କାରଣ- ପ୍ରତ୍ୟେକ ଇନ୍ଦ୍ରିୟର ସ୍ୱତନ୍ତ୍ରଭାବେ ଗୋଟିଏ ଗୋଟିଏ ବୃତ୍ତି ରହିଛି, କିନ୍ତୁ ସମସ୍ତ କାରକ ନୁହେଁ ।

(ଖ) ପିଞ୍ଜରଚାଳନନ୍ୟାୟାନୁସାରେ ଏହା ସମ୍ଭବ । ଯେପରି ଗୋଟିଏ ପିଞ୍ଜରରେ ଏଗାରଟି ପକ୍ଷୀ ପ୍ରତ୍ୟେକ ପ୍ରତିନିୟୁତ ବ୍ୟାପାରୀ ହୋଇ ସମସ୍ତ ମିଶି ଗୋଟିଏ ପିଞ୍ଜରାକୁ ଚଳାନ୍ତି, ସେହିପରି ଏକଶରୀରବର୍ତ୍ତୀ ଏକାଦଶଟି ପ୍ରାଣ ପ୍ରତ୍ୟେକେ ପ୍ରତିନିୟତ ଭାବେ ବ୍ୟାପାରୀ ହୋଇ ଏକ ପ୍ରାଣ ନାମକ ବୃତ୍ତିକୁ ପ୍ରାପ୍ତ ହେବେ କି ? ନୁହେଁ । କୁହାଯାଇଅଛି ଯେ- ପ୍ରତ୍ୟେକଠାରେ ରହିଥିବା ପିଞ୍ଜରା ସଞ୍ଚାଳନର ଅନୁରୂପ ଅବାନ୍ତର ବ୍ୟାପାର ସହିତ ମିଶି ସେହି ପିଞ୍ଜରାକୁ ହଲାଇ ଦିଅନ୍ତି- ଏହା ପ୍ରସଙ୍ଗପୂର୍ଣ୍ଣ । କାରଣ- ଏହା ସଂସାରରେ ଦେଖାଯାଏ । ଏଠାରେ କିନ୍ତୁ ଶ୍ରବଣାଦି ଅବାନ୍ତର ବ୍ୟାପାର ଯୁକ୍ତ ଇନ୍ଦ୍ରିୟଗୁଡ଼ିକ ମିଳିକରି ପ୍ରାଣନ ବ୍ୟାପାର କରିବେ ବୋଲି କହିବା ଠିକ୍ ନୁହେଁ । କାରଣ-ଏହି ବିଷୟରେ କୌଣସି ପ୍ରମାଣ ମିଳେ ନାହିଁ ଏବଂ ପ୍ରାଣନ ବ୍ୟାପାର ଶ୍ରବଣାଦିଠାରୁ ଅତ୍ୟନ୍ତ ବିଲକ୍ଷଣ ଅଟେ ।

(ଗ) ସେହି ପ୍ରକାର ପ୍ରାଣରେ ଶ୍ରେଷ୍ଠତ୍ୱାଦି ଉଦ୍‌ଘୋଷ ଏବଂ ତାହାପ୍ରତି ବାଗାଦିର ଗୁଣ ଭାବସ୍ୱୀକାର ଏହି କରଣବୃତ୍ତି ମାତ୍ର ପ୍ରାଣରେ ହୁଏ ନାହିଁ । ତେଣୁ ପ୍ରାଣବାୟୁ ଓ ଇନ୍ଦ୍ରିୟର ବ୍ୟାପାରଠାରୁ ଭିନ୍ନ ଅଟେ । କିନ୍ତୁ 'ଯଃ ପ୍ରାଣଃ' (ଯାହା ପ୍ରାଣ ଅଟେ, ତାହା ବାୟୁ ଅଟେ)- ଏହି ଶ୍ରୁତିବାକ୍ୟ କିପରି ଉପପନ୍ନ ହୁଏ ? ତେଣୁ କୁହାଯାଇଅଛି- ଏହି ବାୟୁ ଅଧ୍ୟାତ୍ମଭାବାପନ୍ନ ପାଞ୍ଚ ପ୍ରକାର ହୋଇ ବିଶେଷରୂପରେ ଅବସ୍ଥାନ କରି ପ୍ରାଣ ନାମରେ କୁହାଯାଏ । ସେ କିନ୍ତୁ ଅନ୍ୟତତ୍ତ୍ୱ କିଛି ନୁହେଁ) ବାୟୁମାତ୍ର ନୁହେଁ । ତେଣୁ ଭେଦଶ୍ରୁତି ଓ ଅଭେଦଶ୍ରୁତି ଦୁଇଟିଯାକ ବିରୋଧ ନୁହେଁ ।



(୧) ମୂଳ-(କ) ସ୍ୟାଦେତତ୍ । ପ୍ରାଣୋଽପି ତର୍ହି ଜୀବବଦସ୍ମିଞ୍ଛରୀରେ ସ୍ୱାତନ୍ତ୍ର୍ୟଂ ପ୍ରାପ୍ନୋତି । ଶ୍ରେଷ୍ଠତ୍ୱାଦଗୁଣଭାବୋପଗମାଚ୍ଚ ତଂ ପ୍ରତି ବାଗାଦୀନାମିନ୍ଦ୍ରିୟାଣାମ୍ । ତଥାହ୍ୟନେକବିଧା ବିଭୂତିଃ ପ୍ରାଣସ୍ୟ ଶ୍ରାବ୍ୟତେ- 'ସୁପ୍ତେଷୁ ବାଗାଦିଷୁ ପ୍ରାଣ ଏକୋ ହି ଜାଗର୍ତ୍ତି ପ୍ରାଣ ଏକୋ ମୃତ୍ୟୁନାଽନାପ୍ତଃ ପ୍ରାଣଃ ସଂବର୍ଗୋ ବାଗାଦୀନ୍ ସଂବୃଙ୍କ୍ତେ ପ୍ରାଣ ଇତରାନ୍ ପ୍ରାଣାନ୍ ରକ୍ଷତି ମାତେବ ପୁତ୍ରାତ୍' ଇତି । ତସ୍ମାତ୍ପ୍ରାଣସ୍ୟାପି ଜୀବବତ୍ସ୍ୱାତନ୍ତ୍ର୍ୟପ୍ରସଙ୍ଗଃ । ତଂ ପରିହରତି-

**(୧) ଭାଷାଂତର-** ଏହା ହୋଇପାରେ । ପରନ୍ତୁ ପ୍ରାଣକୁ ଏହି ଶରୀରରେ ଜୀବପରି ସ୍ୱାତନ୍ତ୍ର୍ୟ ମିଳିପାରେ । କାରଣ-ସେ ଶ୍ରେଷ୍ଠ ଅଟେ ଏବଂ ବାଣୀ ପ୍ରଭୃତି ଇନ୍ଦ୍ରିୟ ଗୁଡ଼ିକ ତାହାର ଅଙ୍ଗରୂପରେ ସ୍ୱୀକାର କରାଯାଇଛି । ତେଣୁ 'ସୁପ୍ତେଷୁ' (ବାଗାଦି ଇନ୍ଦ୍ରିୟଗୁଡ଼ିକ ସୁପ୍ତ ହେଲେ ମଧ୍ୟ ବି କେବଳ ପ୍ରାଣ ଜାଗ୍ରତ ହୋଇ ରହେ । ପ୍ରାଣ ମଧ୍ୟ ମୃତ୍ୟୁଦ୍ୱାରା ସଂକ୍ରମିତ ହୁଏ ନାହିଁ । ବାଗାଦି ନିଜମଧ୍ୟରେ ସଂହରଣ କରେ । ତେଣୁ ପ୍ରାଣ ସଂବର୍ଗ ଅଟେ । ଯେପରି ମା ପୁତ୍ରକୁ ରକ୍ଷାକରେ, ସେହିପରି ପ୍ରାଣ ଅନ୍ୟଇନ୍ଦ୍ରିୟକୁ ରକ୍ଷା କରେ) ଏହିପରି ପ୍ରାଣର ଅନେକପ୍ରକାର ବିଭୁତି ଶୁଣାଯାଏ । ତେଣୁ ପ୍ରାଣରେ ଜୀବପରି ସ୍ୱାତନ୍ତ୍ରପ୍ରସଙ୍ଗ ଅଛି । ତାହାର ପରିହାର କରନ୍ତୁ-

## चक्षुरादिवत्तु तत्सहशिष्ट्यादिभ्य ॥ १० ॥

## (୨) ଚକ୍ଷୁରାଦିବତ୍ତୁ ତତ୍ସହଶିଷ୍ଟ୍ୟାଦିଭ୍ୟଃ ॥ ୨-୪-୧୦ ॥

ତୁଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତିନିମିତ୍ତ ଅଛି । ପ୍ରାଣ ଜୀବାତ୍ମାପରି ସ୍ୱାତନ୍ତ୍ର ନୁହେଁ । ଚକ୍ଷୁରାଦିବତ୍ = ଚକ୍ଷୁ ପ୍ରଭୃତିର ସମାନଭାବେ ପରାଧୀନ ହୁଏ । କାରଣ- ପ୍ରାଣସମ୍ବାଦ-ପ୍ରକରଣ୍ରେ, ତତ୍ସହଶିଷ୍ଟ୍ୟାଦିଭ୍ୟଃ=ଚକ୍ଷୁପ୍ରଭୃତି ସହିତ ପ୍ରାଣର ଉପଦେଶ ହୁଏ ଏବଂ ସେଠାରେ ଅଚେତନତ୍ୱ ପ୍ରଭୃତି ପ୍ରତିପାଦିତ ହୋଇଛି ।

(୩) ମୂଳ-(କ) ତୁଶବ୍ଦଃ ପ୍ରାଣସ୍ୟ ଜୀବବତ୍ସ୍ୱାତନ୍ତ୍ର୍ୟଂ ବ୍ୟାବର୍ତ୍ତୟତି । ଯଥା ଚକ୍ଷୁରାଦୀନି ରାଜପ୍ରକୃତିବଜ୍ଜୀବସ୍ୟ କର୍ତ୍ତୃତ୍ୱଂ ଭୋକ୍ତୃତ୍ୱଞ୍ଚ ପ୍ରତ୍ୟୁପକରଣାନି ସ୍ୱାତନ୍ତ୍ର୍ୟାଣି । ତଥା ମୁଖ୍ୟୋଽପି ପ୍ରାଣୋ ରାଜମନ୍ତ୍ରିବଜ୍ଜୀବସ୍ୟ ସର୍ବାର୍ଥ କରତ୍ୱେନୋପକରଣଭୂତୋ ନ ସ୍ୱତନ୍ତ୍ରଃ । କୁତଃ ।

(ଖ) ତତ୍ସହଶିଷ୍ଟ୍ୟାଦିଭ୍ୟଃ । ତୈଶ୍ଚକ୍ଷୁରାଦିଭିଃ ସହୈବ ପ୍ରାଣଃ ଶିଷ୍ୟତେ ପ୍ରାଣସମ୍ବାଦାଦିଷୁ । ସମାନଧର୍ମାଣାଂ ଚ ସହ ଶାସନଂ ଯୁକ୍ତଂ ବୃହଦ୍ରଥଂତରାଦିବତ୍ । ଆଦିଶବ୍ଦେନ ସଂହତତ୍ୱାଚେତନତ୍ୱାଦୀନ୍ ପ୍ରାଣସ୍ୟ ସ୍ୱାତନ୍ତ୍ର୍ୟନିରାକରଣହେତୂନ୍ ଦର୍ଶୟତି ।

(ግ) ଭାଷାଂତର- (କ) ତୃଶଦ୍ଧ ଜୀବପରି ପ୍ରାଣର ସ୍ୱତନ୍ତ୍ରତାକୁ ବ୍ୟାବୃତ୍ତି କରେ । ଯେପରି ଚକ୍ଷୁପ୍ରଭୃତି ଇନ୍ଦ୍ରିୟଗୁଡ଼ିକ ରାଜାଙ୍କର ଭୃତ୍ୟପରି ଜୀବର କର୍ତ୍ତୃତ୍ୱ, ଭୋକ୍ତୃତ୍ୱ ପ୍ରତି ଉପକରଣ ଅଟେ, ସ୍ୱତନ୍ତ୍ର ନୁହେଁ । ସେହିପରି ମୁଖ୍ୟପ୍ରାଣ ରାଜାମନ୍ତ୍ରୀଙ୍କ ପରି ଜୀବର ସର୍ବାର୍ଥସାଧକ ହେଲେ ଉପକରଣ ଭୂତ ହୁଏ । ସ୍ୱତନ୍ତ୍ର ନୁହେଁ । କିପରି ?

(ଖ) ସେମାନଙ୍କର ସହିତ ଉପଦେଶାଦି ରହିଛି । ପ୍ରାଣସମ୍ବାଦାଦିରେ ସେହି ଚକ୍ଷୁ ପ୍ରଭୃତିଙ୍କର ସହ ପ୍ରାଣର ଉପଦେଶ ଦିଆଯାଇଅଛି । ସମାନଧର୍ମୀର ବୃହତ୍ (ବୃହଦାଦିତ୍ୟେ ପ୍ରୋତମ୍ ଛା ୨-୧୪-୧) ରଥାନ୍ତର (ରଥନ୍ତରମଗ୍ନୌ ପ୍ରୋତମ୍ ଛା ୨-୧ ୨-୧) ପ୍ରଭୃତି ପରି ଜଣକ ସହ ଉପଦେଶ ଯୁକ୍ତ ହୁଏ । ସୂତ୍ରସ୍ଥ ଆଦିଶବ୍ଦରୁ ସଂହତତ୍ୱ, ଅଚେତନତ୍ୱାଦି ପ୍ରାଣର ସ୍ୱାତନ୍ତ୍ର୍ୟନିବାରକ ହେତୁକୁ ଦେଖାଏ ।

(୧) ମୂଳ- ସ୍ୟାଦେତତ୍ । ଯଦି ଚକ୍ଷୁରାଦିବତ୍ପ୍ରାଣସ୍ୟ ଜୀବଂ ପ୍ରତି କରଣଭାବୋଽଭ୍ୟୁଗମ୍ୟେତ, ବିଷୟାନ୍ତରଂ ରୂପାଦିବତ୍ ପ୍ରସଜ୍ୟେତ । ରୂପାଦ୍ୟାଲୋଚନାଦିଭିଃ ବୃତ୍ତିଭିର୍ଯଥାସ୍ୱଂ ଚକ୍ଷୁରାଦୀନାଂ ଜୀବଂ ପ୍ରତି କରଣଭାବୋ ଭବତି । ଅପିଚୈକାଦଶୈବ କାର୍ଯ୍ୟଜାତାନି ରୂପାଲୋଚନାଦୀନି ପରିଗଣିତାନି ଯଦର୍ଥମେକାଦଶ ପ୍ରାଣାଃ ସଂଗୃହୀତାଃ, ନ ତୁ ଦ୍ୱାଦଶମପରଂ କାର୍ଯ୍ୟଜାତମଧିଗମ୍ୟତେ ଯଦର୍ଥମୟଂ ଦ୍ୱାଦଶଃ ପ୍ରାଣଃ ପ୍ରତିଜ୍ଞାୟେତେତି । ଅତ ଉତ୍ତରଂ ପଠତି-

(୧) ଭାଷାଂତର- ଏହା ହୋଇପାରେ । ଯଦି ପ୍ରାଣର ନେତ୍ରପ୍ରଭୃତି ସହିତ ଜୀବ ପ୍ରତି କରଣଭାବ ସ୍ୱୀକାର କରାଯାଏ, ତେବେ ତାହାର ମଧ୍ୟ ରୂପାଦି ପରି ଅନ୍ୟ ବିଷୟ ପ୍ରସକ୍ତ ହେବ ।। ରୂପାଦିର ଆଲୋଚନା ନିଜବୃତ୍ତିଗୁଡ଼ିକ ଦ୍ୱାରା ଚକ୍ଷୁରାଦିର ଜୀବପ୍ରତି କରଣଭାବ ହୁଏ ଏବଂ ରୂପ ଆଲୋଚନାଦି ଏକାଦଶ କାର୍ଯ୍ୟ ସମୁଦାୟର ଗଣନା ହୋଇଛି । ଯାହାପାଇଁ ଏକାଦଶ ଇନ୍ଦ୍ରିୟର ସଂଗ୍ରହ କରାଯାଏ, କିନ୍ତୁ ଦ୍ୱାଦଶ ଅନ୍ୟ କାର୍ଯ୍ୟ ସମୁଦାୟ ଅଧିଗତ ହୁଅନ୍ତି ନାହିଁ । ଯାହାପାଇଁ କି ଦ୍ୱାଦଶ ଇନ୍ଦ୍ରିୟ ପ୍ରତିଜ୍ଞା ହୋଇଛନ୍ତି । ତେଣୁ ଏହାର ଉତ୍ତରରେ କୁହାଯାଇଛି ।

## अकरणत्वाच्च न दोषस्तथाहि दर्शयति ॥ ११ ॥

## ୨-ଅକରଣତ୍ୱାଚ୍ଚ ନ ଦୋଷସ୍ତଥା ହି ଦର୍ଶୟତି ॥ ୨-୪-୧୧ ॥

ଅକରଣତ୍ୱାତ୍ ଚ-ପ୍ରାଣ ଜ୍ଞାନରେ କରଣ ନ ହେଲେ, ନ ଦୋଷଃ ଚକ୍ଷୁପ୍ରଭୃତି ପରି ଅନ୍ୟ ବିଷୟ ପ୍ରସଙ୍ଗରେ ଦୋଷ ନୁହେଁ । ହି କାରଣ- ତଥା-ସେହିପରି ତାନ୍‌ବରିଷ୍ଠଃ' ଇତ୍ୟାଦି ଶ୍ରୁତି ଶରୀର ଓ ଇନ୍ଦ୍ରିୟର ଧାରଣରୂପ କାର୍ଯ୍ୟ ପ୍ରାଣରେ, ଦର୍ଶୟତି-ଦେଖାଏ ।



(୩) ମୂଳ-(କ) ନ ତାବଦ୍‌ବିଷୟାନ୍ତରପ୍ରସଙ୍ଗୋ ଦୋଷଃ । ଅକରଣତ୍ୱାତ୍ ପ୍ରାଣସ୍ୟ । ନହି ଚକ୍ଷୁରାଦିବତ୍ ପ୍ରାଣସ୍ୟ ବିଷୟପରିଛେଦେନ କରଣତ୍ୱମଭ୍ୟୁପଗମ୍ୟତେ । ନ ଚାସ୍ୟୈତାବତା । କାର୍ଯ୍ୟାଭାବ ଏବ । କସ୍ମାତ୍ । ତଥାହି ଶ୍ରୁତି ପ୍ରାଣାନ୍ତରେଷ୍ୱସମ୍ଭାବ୍ୟମାନଂ ମୁଖ୍ୟପ୍ରାଣସ୍ୟ ବୈଶେଷିକଂ କାର୍ଯ୍ୟଂ ଦର୍ଶୟତି ପ୍ରାଣସମ୍ବାଦାଦିଷୁ - 'ଅଥ ହ ପ୍ରାଣା ଅହଂ ଶ୍ରେୟସି ବ୍ୟୂଦିରେ' ଇତ୍ୟୁପକ୍ରମ୍ୟ 'ଯସ୍ମିନ୍ ବ ଉତକ୍ରାନ୍ତେ ଶରୀରଂ ପାପିଷ୍ଠତିରମିବ ଦୃଶ୍ୟତେ ସ ବଃ ଶ୍ରେଷ୍ଠ' (ଛା ୫-୨-୬/୭) ଇତି ଚୋପକ୍ରମ୍ୟ ପ୍ରତ୍ୟେକଂ ବାଗାଦ୍ୟୁତ୍‌କ୍ରମଣେନ ତଦ୍‌ବୃତ୍ତିମାତ୍ରହୀନଂ ଯଥାପୂର୍ବଂ ଜୀବନଂ ଦର୍ଶୟିତ୍ୱା ପ୍ରାଣୋଚ୍ଚିକ୍ରମିଷାୟାଂ ବାଗାଦିଶୈଥିଲ୍ୟାପତ୍ତିଂ ଶରୀରପାତପ୍ରସଙ୍ଗଞ୍ଚ ଦର୍ଶୟନ୍ତୀ ଶ୍ରୁତିଃ ପ୍ରାଣନିମିତ୍ତାଂ ଶରୀରେନ୍ଦ୍ରିୟସ୍ଥିତିଂ ଦର୍ଶୟତି ।

(ଖ) 'ତାନ୍ ବରିଷ୍ଠଃ ପ୍ରାଣ ଉବାଚ ମା ମୋହମାପଦ୍ୟଥାହମେବୈତତ୍ ପଞ୍ଚଧାତ୍ମାନଂ ପ୍ରବିଭଜ୍ୟୈତଦ୍ ବାଣମବଷ୍ଟଭ୍ୟ ବିଧାରୟାମି, ଇତି ଚ ସୁପ୍ତେଷୁ ଚକ୍ଷୁରାଦିଷୁ ପ୍ରାଣନିମିତ୍ତାଂ ଶରୀରରକ୍ଷାଂ ଦର୍ଶୟତି ।

(ଗ) ଯସ୍ମାତ୍ କସ୍ମାଚ୍ଚାଙ୍ଗାତ୍ ପ୍ରାଣ ଉତ୍‌କ୍ରାମତି ତଦେବ ତଚ୍ଛୁଷ୍ୟତି' (ବୃ ୧-୩-୧୯) 'ତେନ ଯଦଶ୍ନାତି ଯତ୍ପିବତି, ତେନେତରାନ ପ୍ରାଣାନବତି' ଇତି ଚ ପ୍ରାଣନିମିତ୍ତାଂ ଶରୀରେନ୍ଦ୍ରିୟପୁଷ୍ଟିଂ ଦର୍ଶୟତି । 'କସ୍ମିନ୍ନହମୁତ୍ କ୍ରାନ୍ତୋ ଭବିଷ୍ୟାମି କସ୍ମିନ୍ ବା ପ୍ରତିଷ୍ଠତେ ପ୍ରତିଷ୍ଠାସ୍ୟାମି' ଇତି, 'ସ ପ୍ରାଣମସୃଜତ' ଇତି ଚ ପ୍ରାଣନିମିତ୍ତେ ଜୀବସ୍ୟୋତ୍‌କ୍ରାନ୍ତିପ୍ରତିଷ୍ଠେ ଦର୍ଶୟତି ।

**(୩) ଭାଷାଂତର**- (କ) ଏଠାରେ ଅନ୍ୟବିଷୟ ପ୍ରସଙ୍ଗ ଦୋଷ ନୁହେଁ । କାରଣ- ପ୍ରାଣ ଅକରଣ ଅଟେ । ପ୍ରାଣର ଚକ୍ଷୁ ଇତ୍ୟାଦି ପରି ବିଷୟ ନିଶ୍ଚିତ ରୂପରେ କରଣତ୍ୱ ସ୍ୱୀକାର କରାଯାଇନାହିଁ । ଏତିକି ମାତ୍ରରେ ଏହାର କାର୍ଯ୍ୟଭାବ ନାହିଁ । କାରଣ-ଶ୍ରୁତି ଅନ୍ୟ ପ୍ରାଣରେ ନ ରହି ମୁଖ୍ୟପ୍ରାଣର ବିଶେଷ କାର୍ଯ୍ୟ ପ୍ରାଣସମ୍ବାଦାଦିରେ ଦେଖାଯାଏ- 'ଅଥ ହ ପ୍ରାଣା' (ପରେ ପ୍ରାଣ ନିଜର ଶ୍ରେଷ୍ଠତ୍ୱବିଷୟରେ ବିବାଦ କଲା) ଏହିପରି ଆରମ୍ଭ କରି 'ଯସ୍ମିନ୍ ବ (ପ୍ରଜାପତି - ତୁମେ ଯାହାକୁ ଉତ୍‌କ୍ରାନ୍ତି ହେଲା ପରେ ଶରୀର ଅତ୍ୟନ୍ତ ପାପିଷ୍ଠରୂପେ ଦେଖାଯାଏ । ତାହା ତୁମ୍ଭଠାରୁ ଶ୍ରେଷ୍ଠ ଅଟେ) ଏହା ଉପନସ୍ୟା କରି ପ୍ରତ୍ୟେକ ବାଗାଦିର ଉତ୍‌କ୍ରମଣରୁ କେବଳ ତାହାର ବୃତ୍ତିମାତ୍ର ହୀନପୂର୍ବକ ଜୀବନକୁ ଦେଖାଇ ପ୍ରାଣର ଉତକ୍ରମଣ ଇଚ୍ଛା ହେଲାପରେ ବାକ ପ୍ରଭୃତିର ଶୈଥିଲ୍ୟପ୍ରାପ୍ତି ଏବଂ ଶରୀର ପାତ ପ୍ରସଙ୍ଗକୁ ଦେଖାଇ ହୋଇ ଶ୍ରୁତି ପ୍ରାଣ ନିମିତ୍ତକ ଶରୀର ଓ ଇନ୍ଦ୍ରିୟର ସ୍ଥିତି ଦେଖାଏ ।

(ଖ) 'ତାନ୍ ବରିଷ୍ଠଃ' (ସେହି ମୁଖ୍ୟପ୍ରାଣରେ କୁହାଯାଇଅଛି ଯେ- ମୋହକୁ ମତ ପ୍ରାପ୍ତ ହେଉ । ମୁଁ ନିଜକୁ ପାଞ୍ଚପ୍ରକାରରେ ବିଭକ୍ତ କରି ଏହି କାର୍ଯ୍ୟକାରଣ ସଂଘାତ ରୂପ ଶରୀରକୁ ଅବଲମ୍ବନ କରି ଧାରଣ କରୁଅଛି) - ଏହି ଶ୍ରୁତି ବାକ୍ୟ ମଧ୍ୟ ଅର୍ଥକୁ ପ୍ରକାଶ

କରେ । 'ପ୍ରାଣେନ' (ଏହି ନିକୃଷ୍ଟ ଶରୀର ନାମକ ଗୃହ ପ୍ରାଣଦ୍ୱାରା ରକ୍ଷା କରେ) ଏହି ପ୍ରକାର ଶ୍ରୁତି ସୁଷୁପ୍ତି କାଳରେ ନୟନ ପ୍ରଭୃତି ସୁପ୍ତ ହେଲେ ବି ପ୍ରାଣ ନିମିତ୍ତକ ଶରୀରକୁ ରକ୍ଷା କରିବା ଦେଖାଏ ।

(ଗ) 'ଯସ୍ମାତ୍‌କସ୍ମାତ୍' (ଯେ କୌଣସି ଅଙ୍ଗରୁ ପ୍ରାଣ ଉତ୍କ୍ରମଣ କରେ । ସେହି ରସ ସେହିସ୍ଥାନରେ ଶୁଷ୍କ ହୋଇଯାଏ) ଏବଂ 'ତେନ ଯଦଶ୍ନାତି' (ସେହି ପ୍ରାଣ ଦ୍ୱାରା ଜୀବ ଯାହା ଭକ୍ଷଣ କରେ, ଯାହା ପାନ କରେ, ତାହାଦ୍ୱାରା ସେ ଅନ୍ୟପ୍ରାଣକୁ ରକ୍ଷା କରେ) ଏହି ପ୍ରକାର ଶ୍ରୁତି ପ୍ରାଣନିମିତ୍ତକ ଶରୀର ଓ ଇନ୍ଦ୍ରିୟର ପୁଷ୍ଟି ଦେଖାଏ । 'କସ୍ମିନ୍‌ବହ-ମୁତ୍କ୍ରାନ୍ତମ୍' (କୌଣସି ଦେହରେ ଉତ୍କ୍ରାନ୍ତ ହେଲେ ମୁଁ ଉତ୍କ୍ରାନ୍ତ ହେବି ଏବଂ କୌଣସି ଦେହରେ ପ୍ରତିଷ୍ଠିତ ହେଲାପରେ ମୁଁ ପ୍ରତିଷ୍ଠିତ ହେବି) ଏହି ବିଚାର କରି 'ସ ପ୍ରାଣମ୍' (ସେ ପ୍ରାଣକୁ ଜାତ କଲା) ଏହିପ୍ରକାର ଶ୍ରୁତି ଜୀବର ଉତ୍କ୍ରାନ୍ତି ଓ ପ୍ରତିଷ୍ଠା ପ୍ରାଣନିମିତ୍ତକ ଦେଖାଏ ।

## पञ्चवृत्तिर्मनोवद्व्यपदिश्यते ॥ १२ ॥

## ୧- ପଞ୍ଚବୃତ୍ତିର୍ମନୋବଦ୍ବ୍ୟପଦିଶ୍ୟତେ ॥ ୨-୪-୧୨ ॥

ପ୍ରାଣକୁ 'ପ୍ରାଣୋଽପାନୋ' ଇତ୍ୟାଦି ଶ୍ରୁତିଦ୍ୱାରା, ମନୋବତ୍-ମନପରି, ପଞ୍ଚବୃତ୍ତିଃ-ପାଞ୍ଚବୃତ୍ତିଯୁକ୍ତ ହୋଇ, ବ୍ୟପଦିଶ୍ୟତେ-କୁହାଯାଏ ।

(୨) ମୂଳ-(କ) ଇତଶ୍ଚାସ୍ତି ମୁଖ୍ୟସ୍ୟ ପ୍ରାଣସ୍ୟ କାର୍ଯ୍ୟଂ ଯତ୍କାରଣଂ ପଞ୍ଚବୃତ୍ତିରୟଂ ବ୍ୟପଦିଶ୍ୟତେ ଶ୍ରୁତିଷୁ 'ପ୍ରାଣୋଽପାନୋ ବ୍ୟାନ ଉଦାନଃ ସମାନଃ' (ବୃ ୧-୫-୩) ଇତି । ବୃତ୍ତିଭେଦାଶ୍ଚାୟଂ କାର୍ଯ୍ୟଭେଦାପେକ୍ଷଃ । ପ୍ରାଣଃ ପ୍ରାଗ୍‌ବୃତ୍ତିରୁଚ୍ଛ୍ୱାସାଦିକର୍ମା । ଅପାନୋଽର୍ବାଗ୍‌ବୃତ୍ତିଃ ନିଶ୍ୱାସାଦିକର୍ମା । ବ୍ୟାନସ୍ତୟୋଃ ସଂଘୌବର୍ତ୍ତମାନୋ ବୀର୍ଯ୍ୟବତ୍‌କର୍ମହେତୁଃ । ଉଦାନ ଊର୍ଦ୍ଧ୍ୱରୁତ୍କ୍ରାନ୍ତ୍ୟାଦିହେତୁଃ । ସମାନଃ ସମଂ ସର୍ବେଷ୍ୱଙ୍ଗେଷୁ ଯୋଽନ୍ନରସାନ୍ନୟତୀତି । ଏବଂ ପଞ୍ଚବୃତ୍ତିଃ ପ୍ରାଣୋ ମନୋବତ୍ ।

(ଖ) ଯଥା ମନସଃ ପଞ୍ଚବୃତ୍ତୟ ଏବଂ ପ୍ରାଣସ୍ୟାପୀତ୍ୟର୍ଥଃ । ଶ୍ରୋତ୍ରାଦିନିମିତ୍ତାଃ ଶବ୍ଦାଦିବିଷୟାମନସଃ ପଞ୍ଚବୃତ୍ତୟଃ ପ୍ରସିଦ୍ଧାଃ, ନତୁ କାମଃ ସଙ୍କଳ୍ପ ଇତ୍ୟାଦ୍ୟାଃ ପରିପଠିତାଃ ପରିଗୃହ୍ୟେରନ୍ । ପଞ୍ଚସଂଖ୍ୟାତିରେକାତ୍ । ନନ୍ୱତ୍ରାପି ଶ୍ରୋତ୍ରାଦି ନିରପେକ୍ଷା ଭୂତଭବିଷ୍ୟଦାଦିବିଷୟାଽପରା ମନସୋ ବୃତ୍ତିରସ୍ତୀତି ସମାନଃ ପଞ୍ଚସଂଖ୍ୟାତିରେକଃ ।

(ଗ) ଏବଂ ତର୍ହି 'ପରମତପ୍ରତିଷିଦ୍ଧମନୁଗତଂଭବତି' ଇତି ନ୍ୟାୟାଦିହାପି ଯୋଗ ପ୍ରସିଦ୍ଧା ମନସଃ ପଞ୍ଚବୃତ୍ତୟଃ ପରିଗୃହ୍ୟନ୍ତେ ପ୍ରମାଣବିପର୍ଯ୍ୟୟବିକଳ୍ପନିଦ୍ରାସ୍ମୃତୟଃ' (ପା ଯୋ



୧-୧-୬) ନାମ । ବହୁବୃତ୍ତିତ୍ୱମାତ୍ରେଣ ବା ମନଃ ପ୍ରାଣସ୍ୟ ନିଦର୍ଶନମିତି ଦ୍ରଷ୍ଟବ୍ୟମ୍ । ଜୀବୋପକରଣତ୍ୱମପି ପ୍ରାଣସ୍ୟ ପଞ୍ଚବୃତ୍ତିତ୍ୱାନ୍ମନୋବଦିତି ଯୋଜୟିତବ୍ୟମ ।

(୨) ଭାଷାଂତର- (କ) ଏହି କାରଣରୁ ମୁଖ୍ୟ ପ୍ରାଣର ବିଶେଷକାର୍ଯ୍ୟ ଅଛି । କାରଣ- 'ପ୍ରାଣୋଽପାନଃ' (ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ) ଏହିପ୍ରକାର ଶ୍ରୁତିବାକ୍ୟରେ ଏହିପ୍ରାଣ ପାଞ୍ଚବୃତ୍ତି ଯୁକ୍ତ ବୋଲି କୁହାଯାଇଛି । ପ୍ରାଣ ଅର୍ଥାତ୍ ପ୍ରାଗ୍ ବୃତ୍ତି ଯାହାର ବ୍ୟାପାର ବାହାର ଉଚ୍ଛ୍ୱାସାଦି ଦେହଧାରଣ କର୍ମ ଅଟେ । ଅପାନ ଅର୍ଥାତ୍ ଅର୍ବାଗ୍ ବୃତ୍ତି, ଯାହାର ବ୍ୟାପାର ଭିତର ଆକର୍ଷଣ ଓ ନିଶ୍ୱାସ କର୍ମ ଅଟେ । ବ୍ୟାନ ଅର୍ଥାତ୍ ଏହି ଦୁଇଟି ବାୟୁମଧ୍ୟରେ ବର୍ତ୍ତମାନ ହୋଇ ବୀର୍ଯ୍ୟବାନ୍ କର୍ମହେତୁ ହୁଏ । ଉଦାନ ଊର୍ଦ୍ଧ୍ୱଗତିଶୀଳ ଓ ଉତ୍କ୍ରାନ୍ତି ପ୍ରଭୃତିର ହେତୁ ଅଟନ୍ତି । ଯେଉଁ ଜୀବ ଅଙ୍ଗରେ ସମାନ ରୂପରେ ଅନ୍ନରସକୁ ନେଇଯାଏ, ସେ ସମାନ ବାୟୁ ଅଟେ । ଏହିପ୍ରକାର କାର୍ଯ୍ୟଭେଦ ଅପେକ୍ଷା ଏହା ବୃତ୍ତିଭେଦ ଅଟେ । ଏହି ମନପରି ପ୍ରାଣ ମଧ୍ୟ ପାଞ୍ଚବୃତ୍ତିଯୁକ୍ତ ଅଟେ ।

(ଖ) ଯେପରି ମନର ପାଞ୍ଚୋଟି ବୃତ୍ତି ଅଛି । ସେହିପରି ପ୍ରାଣର ମଧ୍ୟ ପାଞ୍ଚୋଟି ବୃତ୍ତି ଅଛି । ଶ୍ରୋତ୍ରାଦି ନିମିତ୍ତରୁ ଶବ୍ଦାଦିବିଷୟକ ମନର ପାଞ୍ଚବୃତ୍ତି ପ୍ରସିଦ୍ଧ ଅଟେ । ପରନ୍ତୁ 'କାମଃସଙ୍କଳ୍ପଃ' ଇତ୍ୟାଦି ଶ୍ରୁତିବାକ୍ୟରେ ପଠିତ କାମ, ସଂକଳ୍ପାଦି ବୃତ୍ତି ଏଠାରେ ଗ୍ରହଣ କରାଯାଏ ନାହିଁ । କାରଣ-ସେମାନଙ୍କର ଗ୍ରହଣଦ୍ୱାରା ପାଞ୍ଚସଂଖ୍ୟାରୁ ଅଧିକ ହେବ । ପରନ୍ତୁ ଏଠାରେ ଶ୍ରୋତ୍ରାଦିନିରପେକ୍ଷ ଭୂତ ଓ ଭବିଷ୍ୟତାଦିବିଷୟକ ମନର ଅନ୍ୟବୃତ୍ତି ଅଛନ୍ତି । ସେପରି ପାଞ୍ଚସଂଖ୍ୟାରୁ ଅଧିକ ହୁଏ ।

(ଗ) ଯଦି ଏହା ହୁଏ, ତେବେ ପରମତରେ ଅବିରୁଦ୍ଧ ଅନୁମତ ହୁଏ - ଏହି ନ୍ୟାୟରେ ଏଠାରେ ଯୋଗ୍‌ଶାସ୍ତ୍ରପ୍ରସିଦ୍ଧମନର ପାଞ୍ଚବୃତ୍ତି ଗ୍ରହଣ କରାଯାଇଅଛି । 'ପ୍ରମାଣ' (ପ୍ରମିତି, ଭ୍ରମ, ବିକଳ୍ପ ନିଦ୍ରା ଓ ସ୍ମୃତି) ଅଥବା ଅନେକ ବୃତ୍ତିଯୁକ୍ତ ହେଲେ ମନ ପ୍ରାଣର ଦୃଷ୍ଟାନ୍ତ ହୁଏ ବୋଲି ଜାଣିବା ଉଚିତ । ଅଥବା 'ପ୍ରାଣ ଜୀବର ଉପକରଣ ଅଟେ ସେ ପାଞ୍ଚବୃତ୍ତିଯୁକ୍ତ ହେଲେ ମନପରି ହୁଏ, ବୋଲି ଜାଣିବା ଉଚିତ୍ ।

### ६ श्रेष्ठाणुत्वाधिकरणम् । सू० १३

### ଶ୍ରେଷ୍ଠାଣୁତ୍ୱାଧିକରଣ-୬

**अणुश्च ॥ १३ ॥**

**୧-ଅଣୁଶ୍ଚ ॥ ୨।୪।୧୩ ॥**

ଅଣୁଃ ଚ = ମୁଖ୍ୟ ପ୍ରାଣ ସୂକ୍ଷ୍ମ ଓ ପରିଚ୍ଛିନ୍ନ ଅଟେ ।

(୨) ମୂଳ- (କ) ଅଣୁଶ୍ଚାୟଂ ମୁଖ୍ୟଃ ପ୍ରାଣଃ ପ୍ରତ୍ୟେତବ୍ୟଃ ଇତରପ୍ରାଣବତ୍ । ଅଣୁତ୍ୱଂ ଚେହାପି ସୌକ୍ଷ୍ମ୍ୟପରିଚ୍ଛେଦୌ ନ ପରମାଣୁତୁଲ୍ୟତ୍ୱମ୍ । ପଞ୍ଚବୃତ୍ତିଭିଃ କୃତ୍ସ୍ନଶରୀରବ୍ୟା-ପିତ୍ୱାତ୍ । ସୂକ୍ଷ୍ମଃ ଉତ୍କ୍ରାନ୍ତୌ ପାର୍ଶ୍ୱସ୍ଥେନାନୁପଲଭ୍ୟମାନତ୍ୱାତ୍ । ପରିଚ୍ଛିନ୍ନଶ୍ଚୋତ୍କ୍ରାନ୍ତିଗତ୍ୟା-ଗତିଶ୍ରୁତିଭ୍ୟଃ ।

(ଖ) ନନୁ ବିଭୁତ୍ୱମପି ପ୍ରାଣସ୍ୟ ସମାମ୍ନାୟତେ- 'ସମଃ ପ୍ଲୁଷିଣା ସମୋ ମଶକେନ ସମୋ ନାଗେନ ସମ ଏଭିସ୍ତ୍ରିଭିର୍ଲୋକୈଃ ସମୋଽନେନ ସର୍ବେଣ (ବୃ ୧।୩।୨୨) ଇତ୍ୟେବମାଦିପ୍ରଦେଶେଷୁ ।

(ଗ) ତଦୁଚ୍ୟତେ- ଆଧିଦୈବିକେନ ସମଷ୍ଟିବ୍ୟଷ୍ଟିରୂପେଣ ହୈରଣ୍ୟ ଗର୍ଭେଣ ପ୍ରାଣାତ୍ମନୈବୈତଦ୍‌ବିଭୁତ୍ୱମାମ୍ନାୟତେ ନାଧ୍ୟାତ୍ମିକେନ । ଅପିଚ ସମଃ ପ୍ଲୁଷିଣେତ୍ୟାଦିନା ସାମ୍ୟବଚନେନ ପ୍ରତିପ୍ରାଣିବର୍ତ୍ତିନଃ ପ୍ରାଣସ୍ୟ ପରିଚ୍ଛେଦ ଏବ ପ୍ରଦର୍ଶ୍ୟତେ ତସ୍ମାଦଦୋଷଃ ।

**(୨) ଭାଷାଂତର-** (କ) ଏହି ମୁଖ୍ୟ ପ୍ରାଣ ଅନ୍ୟର ପ୍ରାଣ ପରି ସୂକ୍ଷ୍ମ ବୋଲି ଜାଣିବା ଉଚିତ୍ । ଏଠାରେ ଅଣୁତ୍ୱ ସୂକ୍ଷ୍ମ ଓ ପରିଚ୍ଛିନ୍ନ ଅଟେ । ପରମାଣୁ ତୁଲ୍ୟ ନୁହଁନ୍ତି । ପ୍ରାଣ ସୂକ୍ଷ୍ମ ଅଟେ, କାରଣ-ପାଞ୍ଚବୃତ୍ତି ଦ୍ୱାରା ସଂପୂର୍ଣ୍ଣଶରୀରରେ ବ୍ୟାପ୍ତ ଓ ଉତ୍କ୍ରାନ୍ତି ସମୟରେ ପାର୍ଶ୍ୱସ୍ଥ ଲୋକ ଅନୁଭବ କରନ୍ତି । ପରିଚ୍ଛିନ୍ନ ମଧ୍ୟ ଅଛି । କାରଣ-ଉତ୍କ୍ରାନ୍ତି, ଗତି ଓ ଆଗତି ବିଷୟରେ ଶ୍ରୁତିପ୍ରମାଣ ରହିଛି ।

(ଖ) ପରନ୍ତୁ 'ସମଃ ପ୍ଲୁଷିଣା' (ପୂତିକା ଅର୍ଥାତ୍ ମାଛଠାରୁ କ୍ଷୁଦ୍ର ପରି, ମାଛପରି ହସ୍ତୀପରି ଏହି ତିନିଲୋକରେ ସମାନ ଓ ସମସ୍ତଙ୍କ ପରି) ଇତ୍ୟାଦିସ୍ଥଳରେ ପ୍ରାଣର ବିଭୁତ୍ୱପ୍ରତିପାଦକ ଶ୍ରୁତି ଅଟେ ।

(ଗ) ଏହି ବିଷୟରେ କୁହାଯାଇଛି ଆଧିଦୈବିକ ସମଷ୍ଟି ବ୍ୟଷ୍ଟିରୂପ ହିରଣ୍ୟଗର୍ଭର ପ୍ରାଣରୂପରେ ଏହି ବିଭୁତ୍ୱ ଶ୍ରୁତି ଅଛି । କିନ୍ତୁ ଆଧ୍ୟାତ୍ମିକରୂପରେ ନୁହେଁ । 'ପୂତିକାପରି' ଇତ୍ୟାଦି ସାମ୍ୟବଚନଦ୍ୱାରା ପ୍ରତ୍ୟେକପ୍ରାଣୀଠାରେ ପ୍ରାଣ ପରିଚ୍ଛିନ୍ନ ହୋଇ ଦେଖାଯାଏ । ତେଣୁ ଦୋଷ ନୁହେଁ ।

## ७ ज्योतिराद्यधिकरणम् । सू० १४-१६

## ଜ୍ୟୋତିରାଦ୍ୟଧିକରଣ

**ज्योतिराद्यधिष्ठानं तु तदामननात् ॥ १४ ॥**

**୧-ଜ୍ୟୋତିରାଦ୍ୟଧିଷ୍ଠାନଂ ତୁ ତଦାମନନାତ୍ ।୨।୪।୧୪।**

ତୁଶବ୍ଦ ପୂର୍ବପକ୍ଷର ନିରାସନିମିତ୍ତ ଅଛି । ଜ୍ୟୋତିରାଦ୍ୟଧିଷ୍ଠାନମ୍ ଚକ୍ଷୁପ୍ରଭୃତି ଇନ୍ଦ୍ରିୟର ଆଦିତ୍ୟାଦିଦେବତାର ଅଧୀନ ହୋଇ କାର୍ଯ୍ୟକରେ । ତଦାମନନାତ୍=କାରଣ- 'ଅଗ୍ନିର୍ବାଗ୍‌ଭୂତ୍ୱା' ଇତ୍ୟାଦି ଶ୍ରୁତି ବାକ୍ୟ ଅଛି ।



(୨) ମୂଳ-(କ) ତେ ପୁନଃ ପ୍ରକୃତାଃ ପ୍ରାଣାଃ କିଂ ସ୍ୱସ୍ମୈ ସ୍ୱସ୍ମୈ କାର୍ଯ୍ୟାୟ ପ୍ରଭବନ୍ତ୍ୟାହୋସ୍ୱିଦ୍ଦୈବତାଧିଷ୍ଠାତାଃ ପ୍ରଭବନ୍ତୀତି ବିଚାର୍ଯ୍ୟତେ-ତତ୍ର ପ୍ରାପ୍ତଂ ତାବଦ୍ୟଥା ସ୍ୱକାର୍ଯ୍ୟଶକ୍ତିଯୋଗାତ୍ ସ୍ୱମହିମ୍ନୈବ ପ୍ରାଣାଃ ପ୍ରବର୍ତ୍ତେରନ୍ନିତି । ଅପିଚ ଦେବତାଧିଷ୍ଠିତାନାଂ ପ୍ରାଣାନାଂ ପ୍ରବୃତ୍ତାବଭ୍ୟୁପଗମ୍ୟ ମାନାୟାଂ ତାସାମେବାଧିଷ୍ଠାତ୍ରୀଣାଂ ଦେବତାନାଂ ଭୋକ୍ତୃତ୍ୱପ୍ରସଙ୍ଗାଚ୍ଛରୀରସ୍ୟ ଭୋକ୍ତୃତ୍ୱଂ ପ୍ରଲୀୟତେ । ଅତଃ ସ୍ୱମହିମ୍ନୈବୈଷାଂ ପ୍ରବୃତ୍ତିରିତି ।

(ଖ) ଏବଂ ପ୍ରାପ୍ତ ଇଦମୁଚ୍ୟତେ - ଜ୍ୟୋତିରାଦ୍ୟଧିଷ୍ଠାନଂ ତୁ ଇତି । ତୁଶବ୍ଦେନ ପୂର୍ବପେକ୍ଷା ବ୍ୟାବର୍ତ୍ତ୍ୟତେ । ଜ୍ୟୋତିରାଦିଭିରଗ୍ନ୍ୟାଦ୍ୟଭିମାନିନୀଭିର୍ଦେବତାଭିରଧିଷ୍ଠିତଂ ବାଗାଦି କରଣଜାତଂ ସ୍ୱକାର୍ଯ୍ୟେଷୁ ପ୍ରବର୍ତ୍ତତ ଇତି ପ୍ରତିଜାନୀତେ । ହେତୁଂ ବ୍ୟାଚଷ୍ଟେ ତଦାମନନାଦିତି ।

(ଗ) ତଥାହ୍ୟାମନନ୍ତି- 'ଅଗ୍ନିର୍ବାଗ୍‌ଭୂତ୍ୱା ମୁଖଂ ପ୍ରାବିଶତ୍' । (ଐତ ୨।୪) ଇତ୍ୟାଦି । ଅଗ୍ନେଶ୍ଚାୟଂ ବାଗ୍ ଭାବୋ ମୁଖପ୍ରବେଶଶ୍ଚ ଦେବତାତ୍ମନାଧିଷ୍ଠାତୃତ୍ୱମଙ୍ଗୀକୃତ୍ୟୋ-ଚ୍ୟତେ । ନହି ଦେବତାସମ୍ବନ୍ଧଂ ପ୍ରତ୍ୟାଖ୍ୟାୟାଗ୍ନେର୍ବାଚି ମୁଖେ ବା କଶ୍ଚିଦ୍‌ବିଶେଷସମ୍ବନ୍ଧୋ ଦୃଶ୍ୟତେ । ତଥା 'ବାୟୁଃ ପ୍ରାଣୋ ଭୂତ୍ୱା ନାସିକେ ପ୍ରାବିଶତ୍' (ଐ ତ ୨।୪) ଇତ୍ୟେବମାଦ୍ୟପି ଯୋଜୟିତବ୍ୟମ୍ ।

(୨) ଭାଷାଂତର- (କ) ସେମାନେ ପ୍ରକୃତ ପ୍ରାଣ ନିଜମହିମାଦ୍ୱାରା ନିଜେ ନିଜର କାମ ପାଇଁ କଣ ସମର୍ଥ ହୁଅନ୍ତି କି ଦେବତାମାନଙ୍କଦ୍ୱାରା ଅଧିଷ୍ଠିତ ହୋଇ ସମର୍ଥ ହୁଅନ୍ତି ? ଏହି ବିଷୟରେ ବିଚାର କରାଯାଉ ଅଛି । ପୂର୍ବପକ୍ଷ- ନିଜ କାର୍ଯ୍ୟଶକ୍ତି ପ୍ରଭାବରୁ ନିଜମହିମା ଦ୍ୱାରା ପ୍ରାଣ ନିଜ କାର୍ଯ୍ୟରେ ପ୍ରବୃତ୍ତ ହେବା ଉଚିତ୍ ? କାରଣ- ଦେବତାଦ୍ୱାରା ଅଧିଷ୍ଠିତ ପ୍ରାଣର ପ୍ରବୃତ୍ତି ସ୍ୱୀକାର କଲାପରେ ସେହି ଅଧିଷ୍ଠାତୃ ଦେବତାଙ୍କୁ ଭୋକ୍ତୃତ୍ୱପ୍ରସଙ୍ଗ ହେଲେ ଶାରୀର (ଆତ୍ମା)ର ଭୋକ୍ତୃତ୍ୱପ୍ରସଙ୍ଗ ଲୋପ ପାଇବ । ତେଣୁ ନିଜର ମହିମାରୁ ତାହାର ପ୍ରବୃତ୍ତି ହୁଏ, ବୋଲି ଏଠାରେ ପ୍ରାପ୍ତ ହୁଏ ।

(ଖ) ସିଦ୍ଧାନ୍ତ- ଏହା ପ୍ରାପ୍ତ ହେଲା ପରେ କୁହାଯାଇଛି ଯେ- 'ଜ୍ୟୋତିରାଦ୍ୟଧିଷ୍ଠାନଂ ତୁଂ' ଏଠାରେ ତୁ ଶବ୍ଦଦ୍ୱାରା ପୂର୍ବପକ୍ଷର ବ୍ୟାବୃତ୍ତି ହୁଏ । ଜ୍ୟୋତି ପ୍ରଭୃତି ଅଗ୍ନି ଇତ୍ୟାଦି ଅଭିମାନୀ ଦେବତାଙ୍କ ଦ୍ୱାରା ଅଧିଷ୍ଠିତ ବାଣୀ ପ୍ରଭୃତି କରଣସମୁଦାୟ ନିଜକାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି; ବୋଲି ପ୍ରତିଜ୍ଞା କରାଯାଉଛି । ବର୍ତ୍ତମାନ ହେତୁର ବ୍ୟାଖ୍ୟାନ କରାଯାଇଛି- 'ତଦାମନନାତ୍' ।

(ଗ) ଏହିପରି 'ଅଗ୍ନିର୍ବାଗ୍‌ଭୂତ୍ୱା' (ଅଗ୍ନି ବାକ୍ ହୋଇ ମୁଖରେ ପ୍ରବେଶ କରେ), ଅଗ୍ନିର ଏଠାରେ ବାକ୍‌ଭାବ ଓ ମୁଖ ପ୍ରବେଶ ଦେବତାରୂପରେ ଅଧିଷ୍ଠାତୃତ୍ୱ ଅଙ୍ଗୀକାର କରି କୁହାଯାଇଛି । କାରଣ- ଦେବତାସମ୍ବନ୍ଧକୁ ନିରାକରଣ କରି ଅଗ୍ନିର ବାଣୀ ଓ ମୁଖରେ

କୌଣସି ବିଶେଷ ସମ୍ବନ୍ଧ ଦେଖାଇ ଦିଏ ନାହିଁ । ଏହିପରି 'ବାୟୁଃ ପ୍ରାଣଃ' (ବାୟୁପ୍ରାଣ ହୋଇ ନାସିକାରେ ପ୍ରବେଶ କଲା) ଇତ୍ୟାଦିର ଯୋଜନା କରିବା ଉଚିତ୍ ।

(୩) ମୂଳ-(କ) ତଥାନ୍ୟତ୍ରାପି 'ବାଗେବ ବ୍ରହ୍ମଣଶ୍ଚତୁର୍ଥଃ ପାଦଃ ସୋଽଗ୍ନିନା ଜ୍ୟୋତିଷା ଭାତି ଚ ତପତି ଚ' (ଛା ୩।୧୮।୩) ଇତ୍ୟେବମାଦିନା ବାଗାଦୀନାମଗ୍ନ୍ୟାଦି-ଜ୍ୟୋତିଷ୍ଟ୍ୱାଦିବଚନେନୈତମେବାର୍ଥଂ ଦ୍ରତୟତି । 'ସ ବୈ ବାଚମେବ ପ୍ରଥମାମତ୍ୟବହତ୍ ସା ଯଦା ମୃତ୍ୟୁମତ୍ୟମୁଚ୍ୟତ ସୋଽଗ୍ନିରଭବତ୍' (ବୃ ୧।୩।୧୨) ଇତି ଚୈବମାଦିନା ବାଗାଦୀନାମଗ୍ନ୍ୟାଦିଭାବାପତ୍ତି ବଚନେନୈତମେବାର୍ଥଂ ଦ୍ୟୋତୟତି । ସର୍ବତ୍ର ଚାଧ୍ୟାତ୍ମାଧିଦୈବତବିଭାଗେନ ବାଗାଦ୍ୟଗ୍ନ୍ୟାଦ୍ୟନୁକ୍ରମଣମନୟୈବ ପ୍ରତ୍ୟାସତ୍ତ୍ୟା ଭବତି ।

(ଖ) ସ୍ମୃତାବପି-ବାଗଧ୍ୟାତ୍ମମିତି ପ୍ରାହୁର୍ବ୍ରାହ୍ମଣାସ୍ତତ୍ତ୍ୱଦର୍ଶିନଃ । ବକ୍ତବ୍ୟମଧିଭୂତଂ ତୁ ବହ୍ନି ସ୍ତୋତ୍ରାଧିଦୈବତମ୍' । ଇତ୍ୟାଦିନା ବାଗାଦୀନାମଗ୍ନ୍ୟାଦିଦେବତାଧିଷ୍ଠିତତ୍ୱଂ ସ ପ୍ରପଞ୍ଚ ଦର୍ଶିତମ୍ ।

(ଗ) ଯଦୁକ୍ତମ୍-ସ୍ୱକାର୍ଯ୍ୟଶକ୍ତିଯୋଗାତ୍ ସ୍ୱମହିମ୍ନୈବ ପ୍ରାଣଃ ପ୍ରବର୍ତ୍ତେରନ୍ନିତି । ତଦଯୁକ୍ତମ୍ । ଶକ୍ତାନାମପି ଶକଟାଦୀନାମନଡୁଦାଦ୍ୟଧିଷ୍ଠିତାନାଂ ପ୍ରବୃତ୍ତି ଦର୍ଶନାତ୍ । ଉଭୟଥୋପପତ୍ତୌ ଚାଗମାଦ୍ଦେବତାଧିଷ୍ଠିତତ୍ୱମେବ ନିଶ୍ଚୀୟତେ ।

**(୩) ଭାଷାଂତର-** (କ) ସେହିପରି ଅନ୍ୟସ୍ଥାନରେ ମଧ୍ୟ 'ବାଗେବ (ବାଣୀ ବ୍ରହ୍ମର ଚତୁର୍ଥପାଦ ଅଟେ । ସେ ଅଗ୍ନିରୂପ ଜ୍ୟୋତିରେ ଦୀପ୍ତ ହୁଏ, ଏବଂ ନିଜେ କାର୍ଯ୍ୟ କରେ) ଇତ୍ୟାଦି ବାକ୍‌ପ୍ରଭୃତି ଜ୍ୟୋତି ଅଟେ । ଆଦିପଦଦ୍ୱାରା ଏହି ଅର୍ଥର ଶ୍ରୁତି ଦୃଢ଼ କରେ । 'ସ' ହ ବୈ' (ସେହି ପ୍ରସିଦ୍ଧପ୍ରାଣଦ୍ୱାରା ଉଦ୍‌ଗୀଥ କର୍ମରେ ପ୍ରଧାନ ବାଗ୍‌ଦେବତାକୁ ମୃତ୍ୟୁର ଅନ୍ୟ ପାରକୁ ନେଇଯାଏ) ସେହି ବାକ୍ ଯେତେବେଳେ ମୃତ୍ୟୁଠାରୁ ମୁକ୍ତ ହୁଏ, ସେତେବେଳେ ସେ ଅଗ୍ନି ହେଲା) ଇତ୍ୟାଦି ଶ୍ରୁତିବାକ୍ୟ ପାଗାଦିରେ ଅଗ୍ନିପ୍ରଭୃତି ଭାବକୁ ପ୍ରାପ୍ତି ବଚନଦ୍ୱାରା ଏହି ଅର୍ଥକୁ ସୂଚିତ କରେ ଏବଂ ସର୍ବତ୍ର ଅଧ୍ୟାତ୍ମ ଓ ଅଧିଦୈବତ ବିଭାଗରୁ ବାଣୀ ଓ ଅଗ୍ନି ପ୍ରଭୃତି ଅନୁକ୍ରମଣ ଏହି ପ୍ରତ୍ୟାସତ୍ତି ସମ୍ବନ୍ଧରୁ ହୁଏ ।

(ଖ) ସ୍ମୃତିରେ ମଧ୍ୟ କୁହାଯାଇଛି- 'ବାଗଧ୍ୟାତ୍ମମିତି' (ତତ୍ତ୍ୱଦର୍ଶୀ ବ୍ରାହ୍ମଣ ବାଣୀକୁ ଅଧ୍ୟାତ୍ମ କହେ । ବକ୍ତବ୍ୟକୁ ଅଧିଭୂତ ଓ ସେଠାରେ ଅଧିଦୈବତ କହନ୍ତି) । ବାଗାଦି, ଅଗ୍ନି ପ୍ରଭୃତି ଦ୍ୱାରା ଅଧିଷ୍ଠିତ ହୁଅନ୍ତି । ଏହିପରି ବିଚାରପୂର୍ବକ ଦେଖାଯାଏ ।

(ଗ) ପ୍ରାଣ ନିଜ କାର୍ଯ୍ୟବଳରେ ନିଜର ମହିମାରେ ପ୍ରବୃତ ହେବ ବୋଲି ଯାହା କୁହାଯାଇଅଛି, ତାହା ଠିକ୍ ନୁହେଁ, କାରଣ-ରଥାଦି ସମର୍ଥ ହେଲା ପରେ ବଳଦ ଗୁଡ଼ିକ

ଅଧିଷ୍ଠିତ ହୋଇ ସେଠାରେ ପ୍ରବୃତ୍ତ ହେବାର ଦେଖାଯାଏ । ଏହି ଦୁଇପ୍ରକାରରେ ଉପପତ୍ତି ହେଲା ପରେ ମଧ୍ୟ ଆଗମଦ୍ୱାରା ବାଣୀ ପ୍ରଭୃତିର ଦେବତା ଅଧିଷ୍ଠାତୃତ୍ୱ ନିଶ୍ଚିତ ହୁଏ ।

(୧) ମୂଳ-(କ) ଯଦପ୍ୟୁକ୍ତଂ ଦେବତାନାମେବାଧିଷ୍ଠାତ୍ରୀଣାଂ ଭୋକ୍ତୃତ୍ୱପ୍ରସଙ୍ଗୋ ନ ଶାରୀରସ୍ୟେତି ତତ୍ପରିହ୍ରିୟତେ-

(୧) ଭାଷାଂତର- (କ) ଅଧିଷ୍ଠାତୃଦେବତାର ଭୋକ୍ତୃତ୍ୱ ପ୍ରସଙ୍ଗ ହେବ, କିନ୍ତୁ ଜୀବର ନୁହେଁ ବୋଲି ଯାହା କୁହାଯାଇଛି, ତାହାର ପରିହାର କରାଯାଉଛି-

**प्राणवता शब्दात् ॥ १५ ॥**

**ପ୍ରାଣବତା ଶବ୍ଦାତ୍ ॥ ୨-୪-୧୫ ॥**

ପ୍ରାଣବତା = ପ୍ରାଣବାନ୍ ଜୀବସହିତ ଇନ୍ଦ୍ରିୟର ସ୍ୱସ୍ୱାମିଭାବସମ୍ବନ୍ଧ ଅଛି । ତେଣୁ ସେ ହିଁ ଭୋକ୍ତା । ଶବ୍ଦାତ୍ = କାରଣ-ସେଠାରେ 'ସ ଋକ୍ଷୁଷଃ ପୁରୁଷଃ' ଇତ୍ୟାଦି ଶ୍ରୁତି ଅଛି ।

(୨) ମୂଳ-(କ) ସତୀଷ୍ୱପି ପ୍ରାଣାନାମଧିଷ୍ଠତ୍ରୀଷୁ ଦେବତାସୁ ପ୍ରାଣବତା କାର୍ଯ୍ୟକରଣସଂଘାତସ୍ୱାମିନା ଶାରୀରେଣୈବୈଷାଂ ପ୍ରାଣାନାଂ ସମ୍ବନ୍ଧଃ ଶ୍ରୁତେରବଗମ୍ୟତେ । ତଥାହି ଶ୍ରୁତିଃ 'ଅଥ ଯତ୍ରୈତଦାକାଶମନୁବିଷର୍ଣ୍ଣଂ ଚକ୍ଷୁଃ ସ ଋକ୍ଷୁଷଃ ପୁରୁଷୋ ଦର୍ଶନାୟ ଚକ୍ଷୁରଥ ଯୋ ବେଦେଦଂ ଜିଘ୍ରାଣୀତି ସ ଆତ୍ମା ଗନ୍ଧାୟ ଘ୍ରାଣମ୍' (ଛା ୮-୧୨-୪) ଇତ୍ୟେବଂ ଜାତୀୟକା ଶାରୀରେଣୈବ ପ୍ରାଣାନାଂ ସମ୍ବନ୍ଧଂ ଶ୍ରାବୟତି ।

(ଖ) ଅପିଋନେକତ୍ୱାତ୍ ପ୍ରତିକରଣମଧିଷ୍ଠାତ୍ରୀଣାଂ ଦେବତାନାଂ ନ ଭୋକ୍ତୃତ୍ୱମସ୍ମିଞ୍ଚଶରୀରେଽବକଳ୍ପତେ । ଏକୋ ହ୍ୟେବମସ୍ମିଞ୍ଚଶରୀରେ ଶାରୀରୋ ଭୋକ୍ତା ପ୍ରତିସଂଧାନାଦିସମ୍ଭବାଦବଗମ୍ୟତେ ।

**(୨) ଭାଷାଂତର-** (କ) ପ୍ରାଣ ଅଧିଷ୍ଠାତୃ ଦେବତା ହେଲେ ପ୍ରାଣବାନ କାର୍ଯ୍ୟକରଣ ସଂଘାତର ସ୍ୱାମୀ ଜୀବଦ୍ୱାରା ଏହିପ୍ରାଣ ସମ୍ବନ୍ଧ ବେଦରେ ଅବଗତ କରାଏ । ଯେପରି 'ଅଥ ଯତ୍ରୈତଦ୍' (ଯେଉଁଠି ଏହି ଚକ୍ଷୁ କୃଷ୍ଣତାରାଦ୍ୱାରା ଉପଲକ୍ଷିତ ଆକାଶ ଅନୁଗତ ହୁଏ । ସେହି ଋକ୍ଷୁଷୁ ପୁରୁଷ ଅଟେ । ତାହାର ରୂପ ଗ୍ରହଣ କରିବା ପାଇଁ ଚକ୍ଷୁଇନ୍ଦ୍ରିୟ ଅଛି । ଯିଏ ଏପରି ଜାଣେ, ଯେ- ମୁଁ ତାକୁ ଆଘ୍ରାଣ କରିବି ଯେ ସେ ଆତ୍ମା ଅଟେ । ତାହାର ଗନ୍ଧ ଗ୍ରହଣ ପାଇଁ ଘ୍ରାଣ ଅଛି) ଏହି ପ୍ରକାର ଶ୍ରୁତି ଜୀବାତ୍ମାର ସହିତ ପ୍ରାଣର ସମ୍ବନ୍ଧ ଶ୍ରବଣ କରାଏ ।

(ଖ) ପ୍ରତ୍ୟେକ କରଣରେ ଅଧିଷ୍ଠାତୃ ଦେବତା ଅଧିକ ହେଲେ ସେମାନେ ଶରୀରରେ ଭୋକ୍ତା ହୁଅନ୍ତି ନାହିଁ । କାରଣ-ଏହି ଶରୀରରେ ଏହି ଗୋଟିଏ ଜୀବାତ୍ମା ପ୍ରତିସଂଧାନାଦି ସମ୍ଭବରୁ ଭୋକ୍ତା ରୂପେ ଅବଗତ ହୁଏ ।

## तस्य च नित्यत्वात् ॥ १६ ॥

## ୧-ତସ୍ୟ ଚ ନିତ୍ୟତ୍ୱାତ୍ ॥ ୨-୪-୧୬ ॥

ତସ୍ୟ=ଜୀବର ସ୍ୱକର୍ମ ଉପାର୍ଜିତ ଶରୀରରେ କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱଦ୍ୱାରା, ନିତ୍ୟତ୍ୱାତ୍=ନିତ୍ୟ ହେବାରୁ ଦେବତାମାନଙ୍କଠାରେ ଭୋକ୍ତୃତ୍ୱ ହୁଏ ନାହିଁ ।

(୨) ମୂଳ-(କ) ତସ୍ୟ ଚ ଶାରୀରସ୍ୟାସ୍ମିଞ୍ଛରୀରେ ଭୋକ୍ତୃତ୍ୱେନ ନିତ୍ୟତ୍ୱଂ ପୁଣ୍ୟପାପୋପଲେପସମ୍ଭବାତ୍ ସୁଖଦୁଃଖୋପଭୋଗସମ୍ଭବାଚ୍ଚ ନ ଦେବତାନାମ୍ । ତା ହି ପରସ୍ମିଂନୈଶ୍ୱର୍ଯ୍ୟ ପଦେଽବତିଷ୍ଠମାନା ନ ହୀନେଽସ୍ମିଂଞ୍ଛରୀରେ ଭୋକ୍ତୃତ୍ୱଂ ପ୍ରତିଲବ୍ଧୁ ମର୍ହନ୍ତି । ଶ୍ରୁତିଶ୍ଚ ଭବତି- ପୁଣ୍ୟମେବାମୁଂ ଗଚ୍ଛତି ନ ହ ବୈଦେବାନ୍ ପାପଂ ଗଚ୍ଛତି' (ବୃ ୧-୫-୩) ଇତି ।

(ଖ) ଶାରୀରେଣୈବ ଚ ନିତ୍ୟଃ ପ୍ରାଣାନାଂ ଉତ୍କ୍ରାନ୍ତ୍ୟାଦିଷୁ ତଦନୁବୃତ୍ତିଦର୍ଶନାତ୍ । 'ତମୁତ୍କ୍ରମନ୍ତଂ ପ୍ରାଣୋଽନୁକ୍ରାମତି ପ୍ରାଣମନୁତ୍କ୍ରାମନ୍ତଂ ସର୍ବେ ପ୍ରାଣାଃ ଅନୁତ୍କ୍ରାମତି' (ବୃ ୪-୪-୨) ଇତ୍ୟାଦିଶ୍ରୁତିଭ୍ୟଃ । ତସ୍ମାତ୍ସତୀଷ୍ୱପି କରଣାନାଂ ନିୟନ୍ତ୍ରୀଷୁ ଦେବତାସୁ ନ ଶାରୀରସ୍ୟ ଭୋକ୍ତୃତ୍ୱମପଗଚ୍ଛତି । କରଣପକ୍ଷସ୍ୟୈବ ହି ଦେବତା ନ ଭୋକ୍ତୃପକ୍ଷସ୍ୟେତି ।

**(୨) ଭାଷାଂତର-** (କ) ସେହି ଜୀବ ଏହି ଶରୀରରେ ଭୋକ୍ତାରୂପରେ ନିତ୍ୟ ଅଟେ । କାରଣ-ସେଠାରେ ପୁଣ୍ୟ ପାପର ସମ୍ବନ୍ଧ ସମ୍ଭବ ହୁଏ ଏବଂ ସୁଖ ଦୁଃଖର ଉପଭୋଗ ସମ୍ଭବ ହୁଏ । କିନ୍ତୁ ଦେବତାଠାରେ ନୁହେଁ । କାରଣ-ସେମାନେ ପରମ ଐଶ୍ୱର୍ଯ୍ୟ ପଦ ଉପରେ ଅବସ୍ଥାପିତ ହୋଇ ଏହି ଦୂଷିତ ଶରୀରରେ ଭୋକ୍ତୃତ୍ୱ ପ୍ରାପ୍ତ କରିବା ପାଇଁ ଯୋଗ୍ୟ ନୁହେଁ । 'ପୁଣ୍ୟମେବ' (ପ୍ରଜାପତ୍ୟ ପଦରେ ରହିଥିବା ଦେବତାଗୁଡ଼ିକୁ ପୁଣ୍ୟ ପ୍ରାପ୍ତି ହୁଏ । କିନ୍ତୁ ପାପ ପ୍ରାପ୍ତ ହୁଏ ନାହିଁ) ଏହା ହିଁ ଶ୍ରୁତିବାକ୍ୟ ।

(ଖ) ଜୀବାତ୍ମା ସହିତ ପ୍ରାଣର ନିତ୍ୟସମ୍ବନ୍ଧ ହୁଏ, କାରଣ- 'ତମୁତ୍କ୍ରାମନ୍ତ (ତାହା ଉତ୍କ୍ରାନ୍ତ ହେଲାପରେ ପ୍ରାଣ ଉତ୍କ୍ରମଣ କରେ । ପ୍ରାଣର ଉତ୍କ୍ରାନ୍ତ ହେଲାପରେ ତାହାର ପଛରେ ସବୁପ୍ରାଣ ଉତ୍କ୍ରମଣ କରନ୍ତି) ଇତ୍ୟାଦି ଶ୍ରୁତିଦ୍ୱାରା ଉତ୍କ୍ରାନ୍ତି ଆଦିରେ ତାହାର ଅନୁବୃତ୍ତି ଦେଖାଯାଏ । ତେଣୁ ଇନ୍ଦ୍ରିୟ ଗୁଡ଼ିକ ନିୟାମକ ଦେବତା ହେଲେ ବି ଜୀବର ଭୋକ୍ତୃତ୍ୱ ନଷ୍ଟ ହୁଏ ନାହିଁ, କାରଣ-କରଣପକ୍ଷରେ ଦେବତା ରହେ, ଭୋକ୍ତୃ ପକ୍ଷରେ ନୁହେଁ ।



## ८ ईन्द्रियाधिकरणम् । सू० १७-१६

## ଇନ୍ଦ୍ରିୟାଧିକରଣ-୮

### त ईन्द्रियाणि तदव्यपदेशादन्यत्र श्रेष्ठात् ॥ १७ ॥

### ୧- ତ ଇନ୍ଦ୍ରିୟାଣି ତଦ୍ ବ୍ୟପଦେଶାଦନ୍ୟତ୍ର ଶ୍ରେଷ୍ଠାତ୍ ॥ ୨-୪-୧୭ ॥

ଶ୍ରେଷ୍ଠାତ୍-ମୁଖ୍ୟପ୍ରାଣରୁ, ଅନ୍ୟତ୍ର-ଅନ୍ୟସ୍ଥାନରେ, ତେ-ସେହିବାଗାଦି, ଇନ୍ଦ୍ରିୟାଣି-ଇନ୍ଦ୍ରିୟଶବ୍ଦ ଦ୍ୱାରା କୁହାଯାଇଛି । ତଦ୍‌ବ୍ୟପଦେଶାତ୍-କାରଣ-'ଏତସ୍ମାଜ୍ଜାୟତେ' ଇତ୍ୟାଦି ଶ୍ରୁତିରେ ତାହାର ଭେଦ ବ୍ୟପଦେଶ ହୁଏ ।

(୨) ମୂଳ-(କ) ମୁଖ୍ୟଶ୍ଚୈକ ଇତିରେ ବୈକାଦଶ ପ୍ରାଣା ଅନୁକ୍ରାନ୍ତାଃ । ତତ୍ରେଦମପରଂ ସନିହ୍ୟତେ । କିଂ ମୁଖ୍ୟସ୍ୟୈବ ପ୍ରାଣସ୍ୟ ବୃତ୍ତିଭେଦା ଇତରେ ପ୍ରାଣା ଆହୋସ୍ୱିତ୍ତତ୍ତ୍ୱାନ୍ତରାଣୀତି । କିଂ ତାବତ୍ ପ୍ରାପ୍ତମ୍, ମୁଖ୍ୟସ୍ୟୈବେଶ୍ୱତରେ ବୃତ୍ତିଭେଦା ଇତି । କୁତଃ-ଶ୍ରୁତେଃ । ତଥାହି ଶ୍ରୁତି ମୁଖ୍ୟମିତରାଂଶ୍ଚ ପ୍ରାଣାନ୍‌ସଂନିଧାପ୍ୟ ମୁଖ୍ୟାତ୍ମତାମିତ ରେଷାଂ ଖ୍ୟାପୟତି-ହନ୍ତା ସ୍ୟୈବଂ ସର୍ବେ ରୂପମା ସାମେତି ତ ଏତସ୍ୟୈବ ସର୍ବେ ରୂପମଭବନ୍' (ବୃ ୧-୫-୨୧) ଇତି । ପ୍ରାଣୈକ ଶବ୍ଦାତ୍ତ୍ୱାଚ୍ଚୈକତ୍ୱାଧବସାୟଃ । ଇତରଥା ହ୍ୟନ୍ୟାର୍ଯ୍ୟ ମନେକାର୍ଥତ୍ୱଂ ପ୍ରାଣଶବ୍ଦସ୍ୟ ପ୍ରସଜ୍ୟେତ । ଏକତ୍ର ବା ସଂଖ୍ୟତ୍ୱମତରତ୍ର ବା ଲକ୍ଷଣିକତ୍ୱମାପଦ୍ୟେତ । ତସ୍ମାଦ୍ୟଥୈକସ୍ୟୈବ ପ୍ରାଣସ୍ୟ ପ୍ରାଣାଦ୍ୟାଃ ପଞ୍ଚ ବୃତ୍ତୟ ଏବଂ ବାଗାଦ୍ୟା ଅପ୍ୟେକାଦଶେତି ।

(ଗ) ଏବଂ ପ୍ରାପ୍ତେ ବ୍ରୂମଃ-ତତ୍ତ୍ୱାନ୍ତରାଣ୍ୟେବ ପ୍ରାଣାଦ୍ ବାଗାଦୀନୀତି । କୁତଃ ବ୍ୟପଦେଶଭେଦାତ୍ । କୋଽୟଂବ୍ୟପଦେଶଭେଦଃ । ତେ ପ୍ରାକୃତାଃ ପ୍ରାଣାଃ ଶ୍ରେଷ୍ଠଂ ବର୍ଜୟିତ୍ୱାବଶିଷ୍ଟା ଏକାଦଶେନ୍ଦ୍ରିୟାଣୀତ୍ୟୁଚ୍ୟନ୍ତେ । ଶ୍ରୁତାଦେବଂ ବ୍ୟପଦେଶ ଦର୍ଶନାତ୍ 'ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ' (ମୁ ୨-୧-୩) ଇତି ହ୍ୟେବଂଜାତୀୟକେଷୁ ପ୍ରଦେଶେଷୁ ପୃଥକ୍ ପ୍ରାଣୋ ବ୍ୟପଦିଶ୍ୟତେ ପୃଥକ୍ ଚେନ୍ଦ୍ରିୟାଣି ।

(ଘ) ନନୁ ମନସୋଽପ୍ୟେବଂ ସତି ବର୍ଜନମିନ୍ଦ୍ରୟତ୍ୱେନ ପ୍ରାଣବତ୍ ସାତ୍, 'ମନଃ ସର୍ବେନ୍ଦ୍ରିୟାଣି ଚ' ଇତି ପୃଥଗ୍‌ବ୍ୟପଦେଶ ଦର୍ଶନାତ୍ । ସତ୍ୟମେତତ୍ । ସ୍ମୃତୌ ତ୍ୱେକାଦଶେନ୍ଦ୍ରିୟାଣୀତି ମନୋଽପୀନ୍ଦ୍ରିୟତ୍ୱେନ ଶ୍ରୋତ୍ରାଦିବତ୍ ସଂଗୃହ୍ୟତେ । ପ୍ରାଣସ୍ୟ ତ୍ୱିନ୍ଦ୍ରିୟତ୍ୱଂ ନ ଶ୍ରୁତୌ ସ୍ମୃତୌ ବା ପ୍ରସିଦ୍ଧମସ୍ତି । ବ୍ୟପଦେଶଭେଦଶ୍ଚାୟଂ ତତ୍ତ୍ୱଭେଦ ପକ୍ଷ ଉପପଦ୍ୟତେ । ତତ୍ତ୍ୱୈକତ୍ୱେ ତୁ ସ ଏବୈକଃ ସନ୍‌ପ୍ରାଣ ଇନ୍ଦ୍ରିୟବ୍ୟପଦେଶଂ ଲଭତେ ନ ଲଭତେ ଚେତି ବିପ୍ରତିଷିଦ୍ଧମ୍ । ତସ୍ମାତ୍ତତ୍ତ୍ୱାନ୍ତରଭୂତା ମୁଖ୍ୟାଦିତରେ ।

(୨) ଭାଷାଂତର- (କ) ମୁଖ୍ୟ ପ୍ରାଣ ଏକ ଏବଂ ଅନ୍ୟ ଏକାଦଶ ପ୍ରାଣ ଉତ୍କ୍ରାନ୍ତ ଅଟେ । ସେ ଏକାଦଶେ ପ୍ରାଣ ବିଷୟରେ ଏକ ଅନ୍ୟ ସନ୍ଦେହ କରାଯାଏ ଯେ- ଅନ୍ୟ ପ୍ରାଣ କଣ ମୁଖ୍ୟ ପ୍ରାଣର ବୃତ୍ତିଭେଦ ଅଟେ କି ? ଅଥବ୍ୟ ଅନ୍ୟତତ୍ତ୍ୱ ଅଟେ । ଏଠାରେ କଣ ହୁଏ ।

(ଖ) ଅନ୍ୟପ୍ରାଣ ମୁଖ୍ୟପ୍ରାଣର ବୃତ୍ତିଭେଦ ଅଟେ । କିପରି ? ଶ୍ରୁତିଦ୍ୱାରା ଯେପରିକି 'ହନ୍ତାସ୍ୟୈବ' (ଆଛା ଆମ୍ଭେ ସମସ୍ତେ ଏହିପ୍ରାଣରୂପ ହୋଇଯିବୁ- ଏହା ନିଶ୍ଚିତ କରି ସେହି ବାଗାଦି ସବୁ ତାହାର ରୂପ ହୋଇଗଲେ) ଏହି ଶ୍ରୁତି ମୁଖ୍ୟ ଓ ଅନ୍ୟପ୍ରାଣର ଏକ ସମୀପସ୍ଥ ସ୍ଥାପନ କରି ଅନ୍ୟପ୍ରାଣର ମୁଖ୍ୟ ପ୍ରାଣରୂପତ୍ୱ ସ୍ଥାପନ କରନ୍ତି । ସେହିପରି ସେହି ସମସ୍ତଙ୍କୁ ଉଦ୍ଦେଶ୍ୟ କରି 'ପ୍ରାଣ' ଏହି ଏକଶବ୍ଦର ପ୍ରୟୋଗ କଲେ ତାହାର ଏକତ୍ୱ ନିଶ୍ଚୟ ହୁଏ । ନୋଚେତ୍ ପ୍ରାଣଶବ୍ଦକୁ ଅନେକାର୍ଥତ୍ୱ ଅନ୍ୟାୟ (ବାକ୍ୟଭେଦ) ପ୍ରସକ୍ତ ହେବ । ଅଥବା ଏକରେ ମୁଖ୍ୟତ୍ୱ ଓ ଅନ୍ୟସ୍ଥାନରେ ଲକ୍ଷଣିକତ୍ୱ ପ୍ରସକ୍ତ ହେବ । ତେଣୁ ଯେପରି ଗୋଟିଏ ପ୍ରାଣର ପ୍ରାଣଭୂତ ପାଞ୍ଚୋଟି ବୃତ୍ତି ଅଛନ୍ତି, ସେହିପରି ବାକ୍ ପ୍ରଭୃତି ଏକାଦଶପ୍ରାଣରବୃତ୍ତି ମଧ୍ୟ ଅଛି ।

(ଗ) ସିଦ୍ଧାନ୍ତ–ଏହା ପ୍ରାପ୍ତହେଲା ପରେ ଆମ୍ଭେ କହୁଁ ଯେ- ବାଗାଦି ମୁଖ୍ୟ ପ୍ରାଣରେ ଅନ୍ୟତତ୍ତ୍ୱ ଅଛି । କିପରି ? ବ୍ୟପଦେଶଭେଦଦ୍ୱାରା । ତା ହେଲେ ଏହି ବ୍ୟପଦେଶ ଭେଦ କଣ ? ଶ୍ରେଷ୍ଠ ପ୍ରାଣକୁ ଛାଡ଼ି ସେମାନେ ଅବଶିଷ୍ଟ ପ୍ରକୃତ ପ୍ରାଣ ଏକାଦଶ ଇନ୍ଦ୍ରିୟ ଗୁଡ଼ିକ ଅଟନ୍ତି ବୋଲି କୁହାଯାଏ । କାରଣ-ଶ୍ରୁତିରେ ଏହିପରି ଭେଦବ୍ୟପଦେଶ ଦେଖାଯାଏ 'ଏତସ୍ମାଜ୍ଜାୟତେ' (ତାହାଠାରୁ ପ୍ରାଣ, ମନ ଏବଂ ସମସ୍ତ ଇନ୍ଦ୍ରିୟଗୁଡ଼ିକ ଉତ୍ପନ୍ନ ହୁଅନ୍ତି) ଏହିପ୍ରକାର ଶ୍ରୁତିବାକ୍ୟରେ ପ୍ରାଣର ପୃଥକ୍ ବ୍ୟପଦେଶ କରାଯାଇଛି । ସେହିପରି ଇନ୍ଦ୍ରିୟମାନଙ୍କର ମଧ୍ୟ ପୃଥକ୍‌ଭାବେ ବ୍ୟପଦେଶ ହୋଇଛି ।

(ଘ) ପରନ୍ତୁ ଏହିପରି ହେବାରୁ ମନମଧ୍ୟ ପ୍ରାଣପରି ଇନ୍ଦ୍ରିୟ ହୁଏ ନାହିଁ । କାରଣ- 'ମନଃ ସର୍ବେନ୍ଦ୍ରିୟାଣି' ଏହାଦ୍ୱାରା ମନର ପୃଥକ୍ ଭାବେ ବ୍ୟପଦେଶ ଶୁଣାଯାଏ । ଏହା ଠିକ୍ ଅଟେ । କିନ୍ତୁ ସ୍ମୃତିଶାସ୍ତ୍ରରେ 'ଏକାଦଶେନ୍ଦ୍ରିୟାଣି' ବାକ୍ୟରେ ମନର ଶ୍ରୋତାଦିପରି ଇନ୍ଦ୍ରିୟ ରୂପରେ ସଂଗ୍ରହ କରାଯାଏ । ପରନ୍ତୁ ପ୍ରାଣ ଇନ୍ଦ୍ରିୟ ଅଟେ, ଏହିପ୍ରକାର ଶ୍ରୁତି ଓ ସ୍ମୃତି ପ୍ରସିଦ୍ଧ ନୁହେଁ । ଏହି ବ୍ୟପଦେଶଭେଦ ତତ୍ତ୍ୱଭେଦପକ୍ଷରେ ଉପପନ୍ନ ହୁଏ । ତତ୍ତ୍ୱପଦାର୍ଥ ଏକ ହେଲେ 'ସେ ପ୍ରାଣ ଏକ ହୋଇ ଇନ୍ଦ୍ରିୟବ୍ୟପଦେଶକୁ ପ୍ରାପ୍ତ ହୁଏ ଓ ପ୍ରାପ୍ତ ହୁଏ ନାହିଁ-ଏହି ବିରୁଦ୍ଧ ଅଟେ । ତେଣୁ ଅନ୍ୟାବାଗାଦି ଇନ୍ଦ୍ରିୟଗୁଡ଼ିକ ମୁଖ୍ୟପ୍ରାଣ ଦ୍ୱାରା ଅନ୍ୟତତ୍ତ୍ୱଭୂତ ଅଟନ୍ତି ।



୧- ବାଗାଦି ଇନ୍ଦ୍ରିୟ କାହିଁକି ତତ୍ତ୍ୱାନ୍ତରଭୂତ ଅଟନ୍ତି ।

**भेदश्रुतेः ॥ १८ ॥**

**ଭେଦଶ୍ରୁତେଃ ॥ ୨-୪-୧୮ ॥**

'ଅଥ ହୈମମାସନ୍ୟଂ ପ୍ରାଣମୁଚୁଃ' ଇତ୍ୟାଦି ଶ୍ରୁତିରେ ପ୍ରାଣ ଇନ୍ଦ୍ରିୟଠାରୁ ପୃଥକ୍ ଭାବେ ଶୁଣାଯାଏ । ତେଣୁ ବାଗାଦି ଇନ୍ଦ୍ରିୟଗୁଡ଼ିକ ପ୍ରାଣଠାରୁ ପୃଥକ୍‌ତତ୍ତ୍ୱ ଅଟେ ।

(୨) ମୂଳ-(କ) ଭେଦେନ ବାଗାଦିଭ୍ୟଃ ପ୍ରାଣଃ ସର୍ବତ୍ର ଶ୍ରୂୟତେ- 'ତେ ହ ବାଚମୁଚୁଃ' (ବୃ୧।୩।୨) ଇତ୍ୟୁପକ୍ରମ୍ୟ ବାଗାଦୀନ ସୁରପପ୍ମବିଧ୍ୱସ୍ତାନୁପନ୍ୟସ୍ୟୋପସଂହୃତ୍ୟ ବାଗାଦିପ୍ରକରଣମ୍' 'ଅଥ ହେମମାସନ୍ୟଂ ପ୍ରାଣମୁଚୁଃ' ଇତ୍ୟସୁରବିଧ୍ୱଂସିନୋ ମୁଖ୍ୟସ୍ୟ ପ୍ରାଣସ୍ୟ ପୃଥଗୁପକ୍ରମଣାତ୍ । ତଥା 'ମନୋ ବାଚଂ ପ୍ରାଣଂ ତାନ୍ୟାତ୍ମନେଽକୁରୁତ' ଇତ୍ୟେବମାଦ୍ୟ ଅପି ଭେଦଶ୍ରୁତୟଃ ଉଦାହର୍ତ୍ତବ୍ୟାଃ । ତସ୍ମାଦପି ତତ୍ତ୍ୱାନ୍ତରଭୂତା ମୁଖ୍ୟାଦିତରେ ।

**(୨) ଭାଷାଂତର-** (କ) ବାଗାଦିଦ୍ୱାରା ସର୍ବତ୍ରଭେଦରେ ପ୍ରାଣ ଶ୍ରବଣ ହୁଏ । 'ତେ ହ ବାଚମୁଚୁଃ' (ଦେବତାମାନେ ବାଣୀରେ କହିଲେ) ଏହିପ୍ରକାର ଉପକ୍ରମ କରି ଅସୁରମାନଙ୍କଦ୍ୱାରା ପାପବିଦ୍ଧ ହୋଇଥିବା ବାଗାଦି ଇନ୍ଦ୍ରିୟଗୁଡ଼ିକୁ କହି ଏବଂ ବାପାଦି ପ୍ରକରଣକୁ ସମାପ୍ତକରି 'ଅଥ ହୋମମାସନ୍ୟଂ' (ଏହାପରେ ମୁଖସ୍ଥ ଏହିପ୍ରାଣକୁ କହିଲେ) ଏହିପ୍ରକାର ଅସୁରକୁ ନାଶ କରୁଥିବା ମୁଖ୍ୟପ୍ରାଣର ପୃଥକ୍‌ଭାବେ ଉପକ୍ରମ ହୋଇଛି । ତେଣୁ 'ମନୋ ବାଚ' (ମନ, ବାକ୍ ଓ ପ୍ରାଣ ଏମାନଙ୍କୁ ପ୍ରଜାପତି ନିଜପାଇଁ ନେଲେ) ଇତ୍ୟାଦି ଶ୍ରୁତିବାକ୍ୟ ଉଦାହରଣରୂପରେ ଦିଆଯାଏ । ତେଣୁ ଅନ୍ୟ ବାଗାଦି ଇନ୍ଦ୍ରିୟ ମୁଖ୍ୟପ୍ରାଣଠାରୁ ଭିନ୍ନତତ୍ତ୍ୱ ଅଟେ ।

(୧) ମୂଳ- (କ) କୁତଶ୍ଚ ତତ୍ତ୍ୱାନ୍ତରଭୂତାଃ ।

**(୧) ଭାଷାଂତର-** ବାଗାଦି ଇନ୍ଦ୍ରିୟ କଣ ଅନ୍ୟତତ୍ତ୍ୱ କି ?

**वैलक्षण्याच्च ॥ १९ ॥**

**ବୈଲ୍ୟଣ୍ୟାଚ୍ଚ ॥ ୫।୪।୧୯ ॥**

ସୁଷୁପ୍ତି ପ୍ରାଣର ସ୍ଥିତି ହୁଏ, କିନ୍ତୁ ବାଗାଦି ଇନ୍ଦ୍ରିୟର ନୁହେଁ । ଏହି ବୈଲକ୍ଷଣ୍ୟରେ ବାଗାଦି ଇନ୍ଦ୍ରିୟ ମୁଖ୍ୟପ୍ରାଣଠାରୁ ଭିନ୍ନତତ୍ତ୍ୱ ।

(୨) ମୂଳ-(କ) ବୈଲକ୍ଷଣ୍ୟାଞ୍ଚ ଭବତି ମୁଖ୍ୟସ୍ୟେତରେଷାଂ ଚ । ସୁଷୁପ୍ତେଷୁ ବାଗାଦିଷୁ ମୁଖ୍ୟ ଏକୋ ଜାଗର୍ତ୍ତି ସ ଏବ ଚୈକୋ ମୃତ୍ୟୁନାଽନାପ୍ତ ଆପ୍ତାସ୍ତିତରେ । ତସ୍ୟୈବ ଚ ସ୍ଥିତ୍ୟୁତ୍କ୍ରାନ୍ତିଭ୍ୟାଂ ଦେହଧାରଣପତନହେତୁତ୍ୱଂ ନେନ୍ଦ୍ରିୟାଣାମ୍ । ବିଷୟାଲୋଚନ ହେତୁତ୍ୱଂ ଚେନ୍ଦ୍ରିୟାଣାଂ ନ ପ୍ରାଣସ୍ୟେତ୍ୟେବଂଜାତୀୟକୋ ଭୂୟାଂଲ୍ଲକ୍ଷଣଭେଦଃ ପ୍ରାଣେନ୍ଦ୍ରିୟାଣାମ୍ । ତସ୍ମାଦପ୍ୟେଷାଂ ତତ୍ତ୍ୱାନ୍ତରଭାବସିଦ୍ଧିଃ ।

(ଖ) ଯଦୁକ୍ତମ୍- 'ତ ଏତସ୍ୟୈବ ସର୍ବେ ରୂପମଭବନ୍' (ବୃ ୧।୫।୨୧) ଇତି ଶ୍ରୁତେଃ ପ୍ରାଣ ଏବେନ୍ଦ୍ରିୟାଣୀତି, ତଦପ୍ୟଯୁକ୍ତମ୍ । ତତ୍ରାପି ପୌର୍ବାପର୍ଯ୍ୟାଲୋଚନାଦ୍ ଭେଦପ୍ରତୀତେଃ । ତଥାହି- 'ବଦିଷ୍ୟାମ୍ୟେବାହମିତି ବାଗଦଧ୍ରେ' (ବୃ ୧-୫-୨୧) ଇତି ବାଗାଦୀନୀନ୍ଦ୍ରିୟାଣ୍ୟନୁକ୍ରମ୍ୟ 'ତାନି ମୃତ୍ୟୁଃ ଶ୍ରମୋ ଭୂତ୍ୱୋପନୋନେ ତସ୍ମାଚ୍ଛ୍ରାମ୍ୟତ୍ୟେବ୍ ବାକ୍' ଇତି ଚ ଶ୍ରମରୂପେଣ ମୃତ୍ୟୁନା ଗ୍ରସ୍ତତ୍ୱଂ ବାଗାଦୀନାମଭିଧାୟ 'ଅଥେମମେବ ନାପ୍ନୋଦ୍ୟୋଽୟଂ ମଧ୍ୟମଃ ପ୍ରାଣଃ (ବୃ ୧।୫।୨୧) ଇତି ପୃଥକ୍ ପ୍ରାଣ ମୃତ୍ୟୁନାନଭିଭୂତଂ ତମନୁକ୍ରମତି । 'ଅୟଂ ବୈନଃ ଶ୍ରେଷ୍ଠଃ' ବୃ ୧।୫।୨୧) ଇତି ଚ ଶ୍ରେଷ୍ଠତା ମସ୍ୟାବଧାରୟତି ।

(ଗ) ତସ୍ମାତ୍ତଦବିରୋଧେନ ବାଗାଦିଷୁ ପରିସ୍ପନ୍ଦଲାଭସ୍ୟ ପ୍ରାଣୟତ୍ତତ୍ୱଂ ତଦ୍‌ରୂପ ଭବନଂ ବାଗାଦୀନାମିତି ମନ୍ତବ୍ୟଂ ନ ତାଦାତ୍ମ୍ୟମ୍ । ଅତଏବ ଚ ପ୍ରାଣଶବ୍ଦସ୍ୟେନ୍ଦ୍ରିୟେଷୁ ଲାକ୍ଷଣିକତ୍ୱସିଦ୍ଧିଃ । ତଥା ଚ ଶ୍ରୁତିଃ- 'ତ ଏତସ୍ୟୈବ ସର୍ବେ ରୂପମଭବନ୍ । ତସ୍ମାଦେତ ଏତେନାଖ୍ୟାୟନ୍ତେ ପ୍ରାଣଃ' (ବୃ ୧।୫।୨୧) ଇତି ମୁଖ୍ୟପ୍ରାଣବିଷୟତ୍ୱେନ ପ୍ରାଣଶବ୍ଦସ୍ୟେନ୍ଦ୍ରିୟେଷୁ ଲକ୍ଷଣିକୀଂ ବୃତ୍ତିଂ ଦର୍ଶୟତି । ତସ୍ମାତ୍ତତ୍ତ୍ୱାନ୍ତରାଣି ପାଣାଦିନ୍ଦ୍ରିୟାଣୀତି ।

**(୨) ଭାଷାଂତର-** (କ) ମୁଖ୍ୟ ପ୍ରାଣ ଏବଂ ଅନ୍ୟ ବାଗାଦିରେ ବୈଲକ୍ଷଣ୍ୟ ରହିଛି । ବାଗାଦି ଇନ୍ଦ୍ରିୟ ସୁଷୁପ୍ତ ହେଲାପରେ ଏକାକୀ ମୁଖ୍ୟପ୍ରାଣ ଜାଗରିତ ହୁଏ ଏବଂ ସେ ଗୋଟିଏ ମୃତ୍ୟୁରେ ବ୍ୟାପ୍ତ ହୁଏ ନାହିଁ ଏବଂ ଅନ୍ୟ ପ୍ରାଣ କିନ୍ତୁ ଆକ୍ରାନ୍ତ ହୁଅନ୍ତି । ଏହିପରି ସ୍ଥିତି ଓ ଉତ୍କ୍ରାନ୍ତିରୁ ଦେହଧାରଣ ଓ ପତନର ହେତୁ କିଏ, କିନ୍ତୁ ଇନ୍ଦ୍ରିୟ ନୁହଁନ୍ତି । ଇନ୍ଦ୍ରିୟଗୁଡ଼ିକ ବିଷୟଜ୍ଞାନରେ କାରଣ ଅଟନ୍ତି, କିନ୍ତୁ ପ୍ରାଣ ନୁହେଁ । ଏହିପ୍ରକାର ପ୍ରାଣ ଓ ଇନ୍ଦ୍ରିୟରେ ବଡ଼ ଲକ୍ଷଣଭେଦ ଅଛି । ତେଣୁ ସେମାନେ ଅନ୍ୟତତ୍ତ୍ୱରୂପେ ସିଦ୍ଧ ହୁଅନ୍ତି ।

(ଖ) 'ତେ ଏତସ୍ୟୈବ' (ସେମାନେ ସମସ୍ତେ ତାହାର ରୂପ ହୁଅନ୍ତି) ଏହି ଶ୍ରୁତିବାକ୍ୟରେ ଇନ୍ଦ୍ରିୟଗୁଡ଼ିକ ପ୍ରାଣ ଅଟନ୍ତି । ଏହା କିନ୍ତୁ ଠିକ୍ ନୁହେଁ । କାରଣ- ସେଠାରେ ପୂର୍ବାପରର ପର୍ଯ୍ୟାଲୋଚନା ଦ୍ୱାରା ଭେଦ ଜଣାପଡ଼େ । ଯେପରିକି 'ବଦିଷ୍ୟାମ୍ୟେବାହମିତି' (କଥାରେ ବ୍ରତ କରାଯାଇଛି ଯେ- ମୁଁ କହି ରହିବି) ଏହିପ୍ରକାର ବାଗାଦି ଇନ୍ଦ୍ରିୟର



ଅନୁକ୍ରମ କରି 'ତାନି ମୃତ୍ୟୁଃ' (ମୃତ୍ୟୁ ପରିଶ୍ରମ କରି ସେମାନଙ୍କୁ ବ୍ୟାପ୍ତ କଲା) ଏହାଦ୍ୱାରା ବାଣୀ କ୍ଳାନ୍ତ ହେଲା) ଏହିପ୍ରକାର ବାଗାଦି ଇନ୍ଦ୍ରିୟଗୁଡ଼ିକ ଶ୍ରମରୂପ ମୃତ୍ୟୁରେ ଗ୍ରସ୍ତ ହୁଏ । ଏହାକହି 'ଅଥମମେବ' (ପରନ୍ତୁ ଏହି ମଧ୍ୟମପ୍ରାଣ ମୃତ୍ୟୁରେ ଆକ୍ରାନ୍ତ ହୁଏ ନାହିଁ) ଏହିପ୍ରକାର ଶ୍ରୁତି ମୃତ୍ୟୁଦ୍ୱାରା ଅନଭିଭୂତ ଏହିପ୍ରାଣର ପୃଥକ୍‌ଭାବେ ଅନୁକ୍ରମ କରେ । 'ଅଥ ବୈ' (ନିଶ୍ଚିତ ଭାବେ ତାହା ଆମ୍ଭର ଶ୍ରେଷ୍ଠ ଅଟେ) ଏହିପ୍ରକାର ଶ୍ରୁତି ତାହାର ଶ୍ରେଷ୍ଠତାକୁ ଅବଧାରଣ କରେ ।

(ଗ) ତେଣୁ ତାହା ସହିତ ବିରୋଧ ନ ହେଲେ ବାଗାଦିରେ ନିଜ ବ୍ୟାପାର ଲାଭ ପ୍ରାଣୀ ଅଧୀନ ଅଟେ । ଏହିପରି ବାବାଦିର ପ୍ରାଣରୂପ ହୁଏ ବୋଲି ଜାଣିବା ଉଚିତ୍, କିନ୍ତୁ ତଦାତ୍ମ୍ୟ ଦ୍ୱାରା ନୁହେଁ । ଅତଏବ ପ୍ରାଣଶବ୍ଦ ଇନ୍ଦ୍ରିୟଠାରେ ଲକ୍ଷଣିକ ରୂପେ ସିଦ୍ଧ ହୁଏ । ଯେପରି କି' ତ ଏତସ୍ୟୈବ' (ସେମାନେ ସମସ୍ତେ ତାହାର ରୂପ ହୋଇଗଲେ । ଅତଃ ତାହାର ନାମରେ 'ପ୍ରାଣ' ବୋଲି କହିଲେ) ଏହିଶ୍ରୁତି ମୁଖ୍ୟପ୍ରାଣ ବିଷୟକ ପ୍ରାଣଶବ୍ଦର ଇନ୍ଦ୍ରିୟରେ ଲକ୍ଷଣିକବୃତ୍ତି ଦେଖାଏ । ତେଣୁ ବାଗାଦିଇନ୍ଦ୍ରିୟ ଗୁଡ଼ିକ ପ୍ରାଣଠାରୁ ପୃଥକ୍‌ତତ୍ତ୍ୱ ଅଟନ୍ତି ।

## ६ संज्ञामूर्त्तिक्लुप्त्यधिकरणम् । सू० २०-२२

## ସଂଜ୍ଞାମୂର୍ତ୍ତିକ୍ଳୃପ୍ତ୍ୟଧିକରଣମ୍-୯

### संज्ञामूर्तिक्लुप्तिस्तु त्रिवृत्कुर्वत उपदेशात् ॥ २० ॥

### ୧-ସଂଜ୍ଞାମୂର୍ତ୍ତିକ୍ଳୃପ୍ତିସ୍ତୁ ତ୍ରିବୃତ୍‌କୁର୍ବତ ଉପଦେଶାତ୍ ॥ ୨-୪-୨୦ ॥

ତୁ ଶବ୍ଦ ପୂର୍ବପକ୍ଷକୁ ବ୍ୟାବୃତ୍ତି ପାଇଁ ରହିଛି । 'ତ୍ରିବୃତ୍‌କୁର୍ବତଃ' = 'ତାସାଂ ତ୍ରିବୃତମ୍' ଏହି ଶ୍ରୁତିରେ ପ୍ରତିପାଦିତ ତ୍ରିବୃତ୍ କର୍ତ୍ତା ପରମେଶ୍ୱର ଅଟନ୍ତି । ସଂଜ୍ଞାମୂର୍ତ୍ତିକ୍ଳୃପ୍ତି=ସଂଜ୍ଞା ଅର୍ଥାତ୍ ନାମ, ମୂର୍ତ୍ତି ଅର୍ଥାତ୍ ରୂପର ବ୍ୟାକର୍ତ୍ତା ଅଟେ, ଜୀବନୁହେଁ । ଉପଦେଶାତ୍=କାରଣ- 'ବ୍ୟାକରବାଣି' ଇତ୍ୟାଦି ଶ୍ରୁତିରେ ତାହାଠାରେ ବ୍ୟାକରଣ କର୍ତ୍ତୃତ୍ୱର ଉପଦେଶ ଦିଆଯାଇଛି ।

(୨) ମୂଳ-(କ) ସତ୍‌ପ୍ରକ୍ରିୟାୟାଂ ତେଜୋବନ୍ନାନାଂ ସୃଷ୍ଟିମଭିଧାୟୋପଦିଶ୍ୟତେ– 'ସେୟଂ ଦେବତୈକ୍ଷତ ହନ୍ତାହମିମାସ୍ତିସ୍ରୋ ଦେବତା ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣୀତି । ତାସାଂ ତ୍ରିବୃତଂ ତ୍ରିବୃତମେକୈକାଂ କରବାଣୀତି' (ଛା ୬-୩-୨)

(ଖ) ତତ୍ର ସଂଶୟଃ-କିଂ ଜୀବର୍ତ୍ତୃକମିଦଂ ନାମରୂପବ୍ୟାକରଣମାହୋସ୍ୱିତ୍ ପରମେଶ୍ୱର କର୍ତ୍ତୃକମିତି । ତତ୍ର ପ୍ରାପ୍ତଂ ତାବଜ୍ଜୀବକର୍ତ୍ତୃକମେବେବଂ ନାମରୂପ-

ବ୍ୟାକରଣମିତି । କୁତଃ–'ଅନେନ ଜୀବେନାତ୍ମନା' ଇତି ବିଶେଷଣାତ୍ । ଯଥା ଲୋକେ ଚରେଣାହଂ ପରସୈନ୍ୟମନୁପ୍ରବିଶ୍ୟ ସଙ୍କଳୟାନୀତ୍ୟେବଂଜାତୀୟକେ ପ୍ରୟୋଗେ ଚରକର୍ତ୍ତୃକମେବ ସତ୍ସୈନ୍ୟସଙ୍କଳନଂ ହେତୁକର୍ତ୍ତୃତ୍ୱାଦ୍ ରାଜାତ୍ମନ୍ୟଧ୍ୟାରୋପୟତି ସଙ୍କଳୟାନୀତ୍ୟୁତ୍ତମପୁରୁଷପ୍ରୟୋଗେଣ' ଏବଂ ଜୀବକର୍ତ୍ତୃକମେବ ସନ୍ନାମରୂପବ୍ୟାକରଣଂ ହେତୁକର୍ତ୍ତୃତ୍ୱାଦ୍ଦେବତାତ୍ମନ୍ୟଧ୍ୟାରୋପୟତି ବ୍ୟାକରବାଣୀତ୍ୟୁତ୍ତମପୁରୁଷପ୍ରୟୋଗେଣ ।

(ଗ) ଅପିଚ ଡିତ୍ଥଡବିତ୍ଥାଦିଷୁ ନାମସୁ ଘଟାଶରାବାଦିଷୁ ଚ ରୂପେଷୁ ଜୀବସ୍ୟୈବ ବ୍ୟାକର୍ତ୍ତୃତ୍ୱଂ ଦୃଷ୍ଟମ୍ । ତସ୍ମାଜ୍ଜୀବକର୍ତ୍ତୃକମେବେଦଂ ନାମରୂପବ୍ୟାକରଣମ୍ ଇତି ।

**(୨) ଭାଷାଂତର–** (କ) ସପ୍ତପ୍ରକରଣରେ ତେଜ, ଜଳ ଓ ଅନ୍ନର ସୃଷ୍ଟି କହି 'ସେୟଂ ଦେବତୈକ୍ଷତ' (ସେହି ସତ୍ ନାମକ ଦେବତା ଈକ୍ଷଣ କଲେ ଯେ- ମୁଁ ଏହି ଜୀବ ସ୍ୱରୂପରେ' ଏହି ତିନୋଟି ଦେବତାଙ୍କଠାରେ ଅନୁପ୍ରବେଶ କରି ନାମ ଓ ରୂପକୁ ଅଭିବ୍ୟକ୍ତି କରିବି ଏବଂ ତାହାଠାରେ ଏକ ଏକ ଦେବତାକୁ ତ୍ରିବୃତ୍ କରିବି) ଏହିପ୍ରକାର ଉପଦେଶ କରାଯାଇଛି ।

(ଖ) କିନ୍ତୁ ଏଠାରେ ସଂଶୟ ହୁଏ ଯେ- 'ଏହି ନାମ ରୂପର ବ୍ୟାକରଣ ଜୀବକର୍ତ୍ତୃକ କି ? ଅଥବା ପରମେଶ୍ୱର କର୍ତ୍ତୃକ ? ପୂର୍ବପକ୍ଷ ଏଠାରେ ଏହି ନାମରୂପର ବ୍ୟାକରଣ (ରଚନା) ଜୀବକର୍ତ୍ତୃକ ଅଟେ ବୋଲି ପ୍ରାପ୍ତ ହୁଏ । କିପରି ? ଯଥା- 'ଅନେନ ଜୀବେନାତ୍ମନା' (ଏହି ଜୀବ ରୂପରେ) ଏହା ବିଶେଷଣ ଅଟେ । ଯେପରି ସଂସାରରେ' 'ଦୂତ ଦ୍ୱାରା ଶତ୍ରୁପକ୍ଷର ସୈନ୍ୟଙ୍କୁ ପ୍ରବେଶ କରି ମୁଁ ଗଣନା କରିବି' ବୋଲି ପ୍ରୟୋଗରେ ସୈନ୍ୟମାନଙ୍କର ଗଣନା ଦୂତ ଦ୍ୱାରା ହେଲେ ମଧ୍ୟବି ପ୍ରୟୋଜନ କର୍ତ୍ତା ହୋଇ ରାଜା 'ମୁଁ ଗଣନା କରିବି' ଏହିପ୍ରକାର ଉତ୍ତମ ପୁରୁଷର ପ୍ରୟୋଗ ଦ୍ୱାରା ତାହାର ନିଜ ମଧ୍ୟରେ ଅଧ୍ୟାରୋପ କରେ, ଠିକ୍ ସେହିପରି ନାମ ରୂପର ରଚନା କରି ଜୀବକର୍ତ୍ତୃକ ହୋଇ ମଧ୍ୟ ପ୍ରୟୋଜକ କର୍ତ୍ତାଦ୍ୱାରା ଦେବତା 'ବ୍ୟାକରବାଣି' (ନିର୍ମାଣ କରିବି) ଏହିପ୍ରକାର ଉତ୍ତମ ପୁରୁଷର ପ୍ରୟୋଗଦ୍ୱାରା ନିଜ ଉପରେ ଅଧ୍ୟାରୋପ କରେ ।

(ଗ) ପୁନଶ୍ଚ ଡିତ୍ଥ, ଡବିତ୍ଥାଦିନାମରେ ଏବଂ ଘଟଶରାବାଦି ରୂପରେ ଜୀବର ବ୍ୟାକରଣ କର୍ତ୍ତୃତ୍ୱ ଦେଖାଯାଏ । ତେଣୁ ଏହି ନାମ ରୂପ-ବ୍ୟାକରଣ ଜୀବ କର୍ତ୍ତୃକ ହୁଏ ।

(୩) ମୂଳ– (କ) ଏବଂ ପ୍ରାପ୍ତେଽଭିଧତ୍ତେ–'ସଂଜ୍ଞା ମୂର୍ତ୍ତିକ୍ଳୃପ୍ତିସ୍ତୁ' ଇତି । ତୁଶବ୍ଦେନ ପକ୍ଷଂ ବ୍ୟାବର୍ତ୍ତୟତି । ସଂଜ୍ଞା ମୂର୍ତ୍ତିକ୍ଳୃପ୍ତିରିତି ନାମରୂପବ୍ୟାକ୍ରିୟେତ୍ୟେତତ୍ ତ୍ରିବୃତ୍କୁର୍ବତ ଇତି ପରମେଶ୍ୱରଂ ଲକ୍ଷୟତି । ତିବୃତ୍କରଣେ ତସ୍ୟ ନିରପବାଦକର୍ତ୍ତୃତ୍ୱ ନିର୍ଦ୍ଦେଶାତ୍ । ଯେୟଂ



ସଂଜ୍ଞାକ୍ଳୃପ୍ତିର୍ମୂର୍ତ୍ତିକ୍ଳୃପ୍ତିଶ୍ଚାଗ୍ନିରାଦିତ୍ୟଶ୍ଚନ୍ଦ୍ରମା ବିଦ୍ୟୁଦିତି, ତଥା କୁଶକାଶପଲାଦିଷୁ ପଶୁମୃଗମନୁଷ୍ୟାଦିଷୁଚ ପ୍ରତ୍ୟାକୃତି ପ୍ରତିବ୍ୟକ୍ତି ଋନେକପ୍ରକାରୀ । ସା ଖଲୁ ପରମେଶ୍ୱରସ୍ୟୈବ ତେଜୋବନ୍ନାନାଂ ନିର୍ମାତୁଃ କୃତିର୍ଭବିତୁମର୍ହତି । କୁତଃବ୍ୟପଦେଶାତ୍ ।

(ଖ) ତଥାହି-'ସେୟଂ ଦେବତୈକ୍ଷତ' ଇତ୍ୟୁପକ୍ରମ୍ୟ 'ବ୍ୟାକରଣି' ଇତ୍ୟୁତ୍ତମପୁରୁଷ ପ୍ରୟୋଗେଣ ପରସ୍ୟୈବ ବ୍ରହ୍ମଣୋ ବ୍ୟାକର୍ତ୍ତୃତ୍ୱମିହୋ ପଦିଶ୍ୟତେ । ନନୁ ଦୀବେନେତି ବିଶେଷଣାଜ୍ଜୀବକର୍ତ୍ତୃତ୍ୱଂ ବ୍ୟାକରଣସ୍ୟାଧବମିତୁମ୍ । ନୈତଦେବମ୍ । ଜୀବେ-ନେତ୍ୟେତଦନୁପ୍ରବିଶ୍ୟେତ୍ୟନେନ ସମ୍ବଧତ ଅନନ୍ତର୍ଯ୍ୟାତ୍ । ନ ବ୍ୟାକରବାଣୀତ୍ୟନେନ । ତେନ ହି ସମ୍ବନ୍ଧେ ବ୍ୟାକରତଣୀବ୍ୟୟଂ ଦେବତାବିଷୟ ଉତ୍ତମପୁରୁଷ ଔପଋରିକଃ କଳ୍ପ୍ୟେତ ।

(ଗ) ନଚ ଗିରି ନଦୀସମୁଦ୍ରାଦିଷୁ ନାନାବିଧେଷୁ ନାମରୂପେଷ୍ୱନୀଶ୍ୱରସ୍ୟ ଜୀବସ୍ୟ ବ୍ୟାକରଣସାମର୍ଥ୍ୟମସ୍ତି । ଯେଷ୍ୱପି ଋସ୍ତି ସାମର୍ଥ୍ୟଂ ତେଷ୍ୱପ୍ତି ପରମେଶ୍ୱରାୟତ୍ତମେବତତ୍ । ନଚ ଜୀବୋ ନାମ ପରମେଶ୍ୱରାଦତ୍ୟନ୍ତଭିନ୍ନଶ୍ଚାର ଇବ ରାଜ୍ଞଃ, ଆତ୍ମନେତି ବିଶେଷଣାତ୍ । ଉପାଧିମାତ୍ରନିବନ୍ଧନାଚ୍ଚ ଜୀବଭାବସ୍ୟ । ତେନ, ତତ୍କୃତମପି ନାମରୂପବ୍ୟାକରଣଂ ପରମେଶ୍ୱରକୃତମେବ ଭବତି । ପରମେଶ୍ୱର ଏବ ଚ ନାମରୂପୟୋର୍ବ୍ୟାକର୍ତ୍ତେତି ସର୍ବୋପନିଷତ୍ସିଦ୍ଧାନ୍ତଃ । 'ଆକାଶୋ ହ ବୈ ନାମ ନାମରୂପୟୋର୍ନି ର୍ବହିତା' (ଛା ୮-୧୪-୧) ଇତ୍ୟାଦିଶ୍ରୁତିଭ୍ୟଃ । ତସ୍ମାତ୍ ପରମେଶ୍ୱରସ୍ୟୈବ ତ୍ରିବୃତ୍କୁର୍ବତଃ କର୍ମ ନାମରୂପୟୋବ୍ୟାକରଣମ୍' ।

(ଘ) ତ୍ରିବୃତ୍କରଣପୂର୍ବକମେବେଦମିହ ନାମରୂପବ୍ୟାକରଣଂ ବିବକ୍ଷ୍ୟତେ, ପ୍ରତ୍ୟେକଂ ନାମରୂପବ୍ୟାକରଣସ୍ୟ ତେଜୋବନ୍ନୋତ୍ପତ୍ତିବଚନେନୈବୋକ୍ତତ୍ୱାତ୍ । ତଚ୍ଚ ତ୍ରିବୃତ୍କରଣମଗ୍ନ୍ୟାଦିତ୍ୟଚନ୍ଦ୍ର ବିଦ୍ୟୁତ୍ସୁ ଶ୍ରୁତିର୍ଦର୍ଶୟତି-ଯଦଗ୍ନେ ରୋହିତଂ ରୂପଂ ତେଜସସଦ୍ରୂପଂ ଯଚ୍ଛ କ୍ଳଂ ତଦପାଂ ଯତ୍କୃଷ୍ଣଂ ତଦନ୍ନସ୍ୟ' (ଛା ୬-୪-୧) ଇତ୍ୟାଦିନା । ତତ୍ରାଗ୍ନିରିତୀଦଂ ରୂପଂ ବ୍ୟାକ୍ରିୟତେ । ସତି ଚ ରୂପବ୍ୟାକରଣେ ବିଷୟପ୍ରତିଲମ୍ଭାଦଗ୍ନିରିତୀଦଂ ନାମ ବ୍ୟାକ୍ରିୟତେ । ଏବମେବାଦିତ୍ୟଚନ୍ଦ୍ରବିଦ୍ୟୁତ୍ସ୍ୱପି ଦ୍ରଷ୍ଟବ୍ୟମ୍ ।

(ଙ) ଅନେନ ଋଗ୍ନ୍ୟାଦ୍ୟୁଦାହରଣେନ ଭୌମାମ୍ଭସତୈଜସେଷୁ ତ୍ରିଷ୍ୱପି ଦ୍ରବ୍ୟେଷ୍ୱ ବିଶେଷେଣ ତ୍ରିବୃତ୍କରଣଯୁକ୍ତଂ ଭବତି । ଉପକ୍ରମୋପସଂହାରୟୋଃ ସାଧାରଣତ୍ୱାତ୍ । ତଥାହ୍ୟବିଶେଷଣୈବୋପକ୍ରମଃ- 'ଇମାସ୍ତିସ୍ରୋ ଦେବତାସ୍ତ୍ରିବୃତ୍ ତ୍ରିବୃଞ୍ଚେକୈକା ଭବତି' (ଛା ୬-୩-୪) ଇତି । ଅବିଶେଷେଣୈବ ଋେପସଂହାରଃ - 'ଯଦୁ ରୋହିତସିବାଭୂଦିତି ତେଜସସ୍ତଦ୍ରୂପମ୍' ଇତ୍ୟେବମାଦିଃ, 'ଯଦବିଜ୍ଞାନମିବାଭୂଦିତ୍ୟେତାସାମେବ ଦେବତାନାଂ ସମାସ ଇତି । (ଛା ୬-୪-୬-୭) ଏବମନ୍ତଃ ।

(ୟ) ଭାଷାଂତର- (କ) ଏହିପରି ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁ ଯେ- ସଂଜ୍ଞାମୂର୍ତ୍ତିକ୍ଳୃପ୍ତିସ୍ତୁ' । ତୁଶବ୍ଦ ଦ୍ୱାରା ପୂର୍ବପକ୍ଷର ବ୍ୟାବୃତ୍ତ ହୁଏ । 'ସଂଜ୍ଞାମୂର୍ତ୍ତିକ୍ଳୃପ୍ତି ଅର୍ଥାତ୍ ନାମ ଓ ରୂପର ବ୍ୟାକରଣ ତଥା କୁଶ, କାଶ, ପଳାଶ ପ୍ରଭୃତିରେ, ଏବଂ ପଶୁ, ମୃଗ, ମନୁଷ୍ୟାଦିରେ ପ୍ରତ୍ୟେକ ଜାତି ଓ ପ୍ରତ୍ୟେକ ବ୍ୟକ୍ତିରେ ଅନେକ ପ୍ରକାରର ଯେଉଁରୂପ ବ୍ୟାକରଣ ଅଟେ, ସେ ତେଜ, ବଳ ଓ ଅନ୍ନର ନିର୍ମାତା ପରମେଶ୍ୱରର କୃତି ହୁଏ । କିପରି ? ଉପଦେଶଦ୍ୱାରା ।

(ଖ) ଯେପରି 'ସେୟଂ ଦେବତୈକ୍ଷତ' (ସେହି ଦେବତା ଈକ୍ଷଣ କଲା) ଏହିପ୍ରକାର ଉପକ୍ରମ କରି 'ବ୍ୟାକରବାଣି' (ବ୍ୟାକରଣ କରିବୁ) ଏହିପରି ଉତ୍ତମ ପୁରୁଷର ପ୍ରୟୋଗ ଦ୍ୱାରା ପରବ୍ରହ୍ମର ବ୍ୟାକରଣ କର୍ତ୍ତୃତ୍ୱ ଏଠାରେ ଉପଦେଶ ଦିଆଯାଏ । ପରନ୍ତୁ 'ଜୀବେନ' ଏହି ବିଶେଷଣ ଦ୍ୱାରା ବ୍ୟାକରଣ ଜୀବକର୍ତ୍ତୃକ ସ୍ଥିର କରାଯାଇଛି । ପରନ୍ତୁ 'ଜୀବେନ' ତାହାର ଅନୁପ୍ରବିଶ୍ୟ ପଦସହିତ ସମ୍ବନ୍ଧ ରହିଛି । ପରନ୍ତୁ ଅନନ୍ତର୍ଯ୍ୟ ହେବାରୁ 'ବ୍ୟାକରଣବାଣି' ଦ୍ୱାରା ସେ ସମ୍ବନ୍ଧିତ ହୁଏ ନାହିଁ । ତାହାଠାରେ ସମ୍ବନ୍ଧ ହେଲେ 'ବ୍ୟାକରଣବାଣି' ଏହି ଦେବତା ବିଷୟକ-ଉତ୍ତମପୁରୁଷ ଔପଚାରିକ ରୂପେ କଳ୍ପନା କରିବାକୁ ହୁଏ ।

(ଗ) ଗିରି, ନଦୀ, ସମୁଦ୍ରାଦି ନାନାପ୍ରକାରର ନାମ ଓ ରୂପକୁ ରଚନା କରିବା ପାଇଁ ଅନୀଶ୍ୱର ଜୀବରେ ସାମର୍ଥ୍ୟ ନାହିଁ । କିନ୍ତୁ ଯେଉଁଠି ସାମର୍ଥ୍ୟ ଅଛି, ସେଠାରେ ସେ ପରମେଶ୍ୱରର ଅଧିନ ଅଟେ । ଯେପରି ଦୂତ ରାଜାଠାରୁ ସଂପୂର୍ଣ୍ଣ ଭାବେ ପୃଥକ୍ ଅଟେ, ସେହିପରି ଜୀବ ପରମେଶ୍ୱରଠାରୁ ଅତ୍ୟନ୍ତ ଭିନ୍ନ ନୁହେଁ । କାରଣ- 'ଆତ୍ମନା' ଏହି ବିଶେଷଣ ଅଛି । କିନ୍ତୁ ଜୀବଭାବ କେବଳ ଉପାଧିନିମିତ୍ତକ ଅଟେ । ତେଣୁ ଏହାଦ୍ୱାରା ଜୀବ କୃତ ନାମ, ରୂପ ବ୍ୟାକରଣ ମଧ୍ୟ ପରମେଶ୍ୱରକୃତ ହୁଏ । 'ଆକାଶଃ ବୈ' (ଆକାଶ ନାମରୁ ପ୍ରସିଦ୍ଧ ଆତ୍ମା ନାମ ଓ ରୂପର ନିର୍ବାହକ ଅଟେ) ଇତ୍ୟାଦି ଶ୍ରୁତିରେ ପରମେଶ୍ୱର ନାମ ଓ ରୂପର ବ୍ୟାକର୍ତ୍ତା ଅଟେ । ଏହି ସବୁ ଉପନିଷଦର ସିଦ୍ଧାନ୍ତ ଅଟେ । ତେଣୁ ନାମ, ରୂପର ବ୍ୟାକରଣ ତ୍ରିବୃତ୍ କରୁଥିବା ପରମେଶ୍ୱରର କର୍ମ ଅଟେ ।

(ଘ) ଏଠାରେ ଏହି ନାମ, ରୂପର ବ୍ୟାକରଣ ତ୍ରିବୃତ୍କରଣପୂର୍ବକ ବିବକ୍ଷିତ ହୁଏ । କାରଣ-ପ୍ରତ୍ୟେକ ନାମ, ରୂପର ବ୍ୟାକରଣ, ତେଜ, ଜଳ ଓ ଅନ୍ନର ଉତ୍ପତ୍ତି ଶ୍ରୁତିରେ କୁହାଯାଇଅଛି । ସେହି ତ୍ରିବୃତ୍କରଣକୁ ଅଗ୍ନି, ଆଦିତ୍ୟ, ଚନ୍ଦ୍ର ଏବଂ ବିଦ୍ୟୁତରେ 'ଯଦଗ୍ନେ ରୋହିତଂ' (ଅଗ୍ନିର ଯାହା ରୋହିତ ରୂପ ଅଟେ, ସେ ତେଜର ରୂପ ଅଟେ, ଯାହା ଶୁକ୍ଳରୂପ ଅଟେ, ତାହା ଜଳର ଅଟେ । ଯାହା କୃଷ୍ଣରୂପ, ତାହା ଅନ୍ନର ଅଟେ) ଇତ୍ୟାଦି ଶ୍ରୁତି ପ୍ରମାଣ କରେ । ସେଠାରେ 'ଅଗ୍ନି' ଏହିରୂପର ବ୍ୟାକରଣ କରାଯାଇଛି । ରୂପର ବ୍ୟାକରଣ ହେଲେ ବିଷୟର ଉପଲମ୍ଭଦ୍ୱାରା 'ଅଗ୍ନି' ଏହା ନାମର ବ୍ୟାକରଣ କରାଯାଇଅଛି । ସେହିପରି ଆଦିତ୍ୟ, ଚନ୍ଦ୍ର ଓ ବିଦ୍ୟୁତ୍‌ରେ ହୁଏ ବୋଲି ଜାଣିବା ଉଚିତ୍ ।



(ଙ) ଏହି ଅଗ୍ନି ପ୍ରଭୃତି ଉଦାହରଣରୁ ପାର୍ଥିବ, ଜଳୀୟ ଏବଂ ତୈଜସ- ଏହି ତିନୋଟି ଦ୍ରବ୍ୟରେ ସମାନରୂପରେ ତ୍ରିବୃତ୍‌କରଣ ଉକ୍ତ ହୋଇଛି । କାରଣ-ଉପକ୍ରମ ଓ ଉପସଂହାର ସେହି ତିନୋଟି ଦ୍ରବ୍ୟରେ ସାଧାରଣ ଅଟନ୍ତି । ଯେପରିକି 'ଇମାଃ ତ୍ରିସଃ' (ଏହି ତିନୋଟି ଦେବତା ପ୍ରତ୍ୟେକ ତ୍ରିବୃତ୍ ହୁଅନ୍ତି) ଏହିପ୍ରକାର ସମାନରୂପଦ୍ୱାରା ଉପକ୍ରମ ହୁଏ ଏବଂ ସମାନରୂପରେ ଉପସଂହାର ହୁଏ । 'ଯଦୁ ରୋହିତ' ଯାହାକିଛି ରୋହିତ ଅଟେ, ତାହା ତେଜର ରୂପ ଅଟେ) ଏହି ପ୍ରକାର ଆଦି ଏବଂ 'ଯଦବିଜ୍ଞାତଂ' (ଯାହା କିଛି ଅବିଜ୍ଞାତ, ତାହା ଏହି ଦେବତାମାନଙ୍କର ସମୁଦାୟ ଅଟେ) ଏହାହିଁ ଅନ୍ତ ଅଟେ ।

(୧) ମୂଳ-(କ) ତାସାଂ ତିସୃଣାଂ ଦେବତାନାଂ ବହିସ୍ତ୍ରିବୃତ୍‌କୃତାନାଂ ସତୀନାମଧ୍ୟାତ୍ମମପରଂ ତ୍ରିବୃତ୍‌କରଣମୁକ୍ତମ୍- 'ଇମାସ୍ତିସ୍ରୋ ଦେବତାଃ ପୁରୁଷଂ ପ୍ରାପ୍ୟ ତ୍ରିବୃତତ୍ରିବୃଦେକୈକା ଭବତି' (ଛା ୬।୪।୭) ଇତି । ତଦିଦାନୀ ମାଚାର୍ଯ୍ୟୋ ଯଥାଶ୍ରୁତ୍ୟେବୋପଦର୍ଶୟତ୍ୟାଶଙ୍କିତଂ କଂଚିଦ୍‌ଦୋଷଂ ପରିହରିଷ୍ୟନ୍-

(୧) ଭାଷାଂତର- 'ଇମାସ୍ତିସ୍ରୋ' (ଏହି ତିନୋଟି ଦେବତା ପୁରୁଷକୁ ପ୍ରାପ୍ତ ହେଲେ ସେଠାରେ ପ୍ରତ୍ୟେକ ତ୍ରିବୃତ୍ ତ୍ରିବୃତ୍ ହୁଏ) ଏହିପରି ବାହ୍ୟପଦାର୍ଥରେ ତ୍ରିବୃତ୍ କୃତ ତିନୋଟି ଦେବତାର ଅନ୍ୟପ୍ରକାର ଆଧ୍ୟାତ୍ମିକ ତ୍ରିବୃତ୍‌କରଣ କୁହାଯାଇଅଛି । ବର୍ତ୍ତମାନ ଆଚାର୍ଯ୍ୟ ଆଶଙ୍କା କରୁଥିବା କୌଣସି ଦୋଷକୁ ପରିହାର କରିବାକୁ ଇଚ୍ଛା କରି ତାହାକୁ ଶ୍ରୁତିର ଅନୁସାରେ ଦେଖାଏ-

**मांसादि भौमं यथाशब्दमितरयोश्च ॥ २१ ॥**

**୨- ମାଂସାଦି ଭୌମଂ ଯଥାଶବ୍ଦମିତରୟୋଶ୍ଚ ॥୨।୪।୨୧॥**

ମାଂସାଦି-ମାଂସ ପୁରୁଷପ୍ରଭୃତି, ଭୌମମ୍-ତ୍ରିବୃତ୍‌କୃତ ଅନାତ୍ମକଭୂମିର କାର୍ଯ୍ୟ ଅଟେ । ଚ-ସେହିପରି, ଯଥା ଶବ୍ଦମ୍-'ମୂତ୍ରଂଲୋହିତଂ' ଇତ୍ୟାଦି ଶ୍ରୁତିର ଅନୁସାରେ, ଇତରୟୋଶ୍ଚ-ମୂତ୍ର ଲୋହିତାଦି ଜଳ ପ୍ରଭୃତିର କାର୍ଯ୍ୟ ଅଟେ ।

(୩) ମୂଳ-(କ) ଭୂମେସ୍ତ୍ରିବୃତ୍‌କୃତାୟାଃ ପୁରୁଷେଣୋପଭୁଜ୍ୟମାନାୟା ମାଂସାଦିକାର୍ଯ୍ୟ ଯଥାଶବ୍ଦଂ ନିଷ୍ପଦ୍ୟତେ । ତଥାହି ଶ୍ରୁତିଃ- 'ଅନ୍ନମଶିତଂ ତ୍ରେଧା ବିଧୀୟତେ ତସ୍ୟ ଯଃ ସ୍ଥବିଷ୍ଠୋ ଧାତୁସ୍ତତ୍‌ପୁରୀଷଂ ଭବତି ଯୋ ମଧ୍ୟମସ୍ତନ୍ ମାଂସ ଯୋଽଣିଷ୍ଠସ୍ତନ୍‌ମନଃ' (ଛା୬।୫।୧) ଇତି । ତ୍ରିବୃତ୍‌କୃତା ଭୂମିରେବୈଷା ବ୍ରୀହିଯବାଦ୍ୟନ୍ନରୂପେଣାଦ୍ୟତ ଇତ୍ୟଭିପ୍ରାୟଃ ।

(ଖ) ତସ୍ୟାଶ୍ଚ ସ୍ଥବିଷ୍ଠଂ ରୂପଂ ପୁରୀଷଭାବେନ ବହିର୍ନିଗଚ୍ଛତି । ମଧ୍ୟମମଧ୍ୟାତ୍ମଂମାସଂ ବର୍ଦ୍ଧୟତି । ଅଣିଷ୍ଠଂ ତୁ ମନଃ । ଏବମିତରୟୋରପ୍ତେଜସୋର୍ୟଥାଶବ୍ଦଂ କାର୍ଯ୍ୟମବଗନ୍ତବ୍ୟମ୍ । ଏବଂ ମୂତ୍ରଂ ଲୋହିତଂ ପ୍ରାଣଶ୍ଚାପାଂ କାର୍ଯ୍ୟମ୍ । ଅସ୍ଥି ମଜ୍ଜା ବାକ୍ତେଜସ ଇତି ।

**(୩) ଭାଷାଂତର-** (କ) ପୁରୁଷର ତ୍ରିବୃତ୍ ଉପଭୋଗ ହୋଇ ଭୂମିର ମାଂସାଦି କାର୍ଯ୍ୟ ଶ୍ରୁତି ଅନୁସାରେ ନିଷନ୍ନ ହୁଏ । ଯେପରି 'ଅନ୍ନମଶିତଂ' (ଭକ୍ଷଣ କରାଯାଇଥିବା ଅନ୍ନ ତିନିପ୍ରକାର ହୋଇଯାଏ । ତାହାର ଯାହା ଖୁବ୍ ସ୍ଥୁଳଭାଗ, ସେ ମଳ ହୁଏ । ଯାହା ମଧ୍ୟମ ଭାଗ, ତାହା ମାଂସ ହୁଏ । ଯାହା ଅତ୍ୟନ୍ତ ସୂକ୍ଷ୍ମଭାଗ, ତାହା ମନ ହୁଏ) ଏହା ଶ୍ରୁତି ଅଟେ । ଏହି ତ୍ରିବୃତ୍ କୃତ ଭୂମି ବ୍ରୀହିଯବାଦି ଅନ୍ନରୂପରେ ଭକ୍ଷଣ କରାଯାଏ- ଏହାହିଁ ଅଭିପ୍ରାୟ ଅଟେ ।

(ଖ) ତାହାର ସ୍ଥୁଳତମରୂପ ପୁରୁଷଭାବରୁ ବାହାରିଯାଏ । ମଧ୍ୟମରୂପ ଅଧ୍ୟାତ୍ମମାଂସକୁ ବୃଦ୍ଧି କରାଏ । କିନ୍ତୁ ଅତ୍ୟନ୍ତ ସୂକ୍ଷ୍ମ ମନ ହୁଏ । ଏହିପ୍ରକାର ଅନ୍ୟଜଳ ଏବଂ ତେଜର ଶ୍ରୁତି ଅନୁସାରେ କାର୍ଯ୍ୟ ଜାଣିବା ଉଚିତ । ଏହିପରି ମୂତ୍ର, ରକ୍ତ ଏବଂ ଜଳର କାର୍ଯ୍ୟ ହୁଏ । ହାଡ଼, ମଜା ଓ ବାକ୍ ତେଜର କାର୍ଯ୍ୟ ହୁଏ ।

(୧) ମୂଳ-(କ) ଅତ୍ରାହ-ଯଦି ସର୍ବମେବ ତ୍ରିବୃତ୍କୃତଂ ଭୂତଭୌତିକମ ବିଶେଷଶ୍ରୁତେଃ । 'ତାସାଂ ତ୍ରିବୃତଂ ତ୍ରିବୃତମେକୈକାମକରୋତ୍ ଇତି । କିଂକୃତସ୍ତର୍ହ୍ୟୟଂ ବିଶେଷବ୍ୟପଦେଶଃ 'ଇଦଂ ତେଜ ଇମା ଆପ ଇଦମନ୍ନମ୍' ଇତି । ତଥା ଅଧ୍ୟାତ୍ମମିଦମନ୍ନସ୍ୟାଶିତସ୍ୟ କାର୍ଯ୍ୟଂ ମାଂସାଦି । ଇଦମପାଂ ପୀତାନାଂ କାର୍ଯ୍ୟଂ ଲୋହିତାଦି । ଇଦଂ ତେଜସୋଽଶିତସ୍ୟ କାର୍ଯ୍ୟମସ୍ଥ୍ୟାଦି, ଇତି । ଅତ୍ରୋଚ୍ୟତେ-

**(୧) ଭାଷାଂତର-** ଏଠାରେ କୁହାଯାଇଅଛି- 'ତାସାଂ' (ସେଠାରେ ପ୍ରତ୍ୟେକକୁ ତ୍ରିବୃତ୍ ତ୍ରିବୃତ୍ କରାଗଲା) ଏହି ସାମାନ୍ୟ ଶ୍ରୁତିରେ ଯଦି ଭୂତ ଭୌତିକ ସମସ୍ତେ ତ୍ରିବୃତ୍ ଅଟନ୍ତି, କିନ୍ତୁ 'ତେଜ' (ଏହି ତେଜ, ଏହା ଜଳ ଏବଂ ଏହା ଅନ୍ନ ଅଟେ) ଏବଂ 'ଅଧ୍ୟାତ୍ମମିଦମନ୍ନଂ' (ଶରୀରରେ ଯାହା ମାଂସାଦି ହୁଏ, ତାହା ଭକ୍ଷଣକଲେ ଅନ୍ନର କାର୍ଯ୍ୟ ହୁଏ, ଏହି ଲୋହିତ ପ୍ରଭୃତି ପାନ କଲେ ଜଳର କାର୍ଯ୍ୟ ଏବଂ ଅସ୍ଥି ପ୍ରଭୃତି ଭକ୍ଷ କଲେ ତେଜ (ଘୃତ, ତୈଳାଦି)ର କାର୍ଯ୍ୟ ହୁଏ- ଏହି ଶ୍ରୁତିରେ ଏହା ବିଶେଷ ବ୍ୟାପଦେଶ କଣ କରାଯାଇଅଛି କି ? ଏହି ବିଷୟରେ କୁହାଯାଇଅଛି-



**वैशेष्यात्तु तद्वादस्तद्वद ॥ २२ ॥**

**୨- ବୈଶେଷ୍ୟାତ୍ତୁ ତଦ୍‌ବାଷ୍ତଦ୍‌ବଦଃ ॥୨।୪।୨୨॥**

ତୁଶବ୍ଦ ଶଙ୍କିତ ଦୋଷର ନିବୃତ୍ତ କରାଏ । ପୃଥିବୀ ପ୍ରଭୃତିର ତ୍ରିବୃତକରଣତ୍ୱ ସମାନ ହେଲେ ମଧ୍ୟ ବି ବୈଶେଷ୍ୟାତ୍-ପୃଥିବୀଇତ୍ୟାଦିର ଆଧିକ୍ୟହେତୁ, ତଦବାଦଃ-ଏହା ପୃଥିବୀ ଅଟେ । ଏହା ଜଳ ଅଟେ ଇତ୍ୟାଦି ବ୍ୟବହାର ହୁଏ । ସୂତ୍ରସ୍ଥ ଦ୍ୱିତୀୟ 'ତଦ୍‌ବାଦଃ' ପଦ ଅଧ୍ୟାୟର ସମାପ୍ତି ସୂଚକ ଅଟେ ।

(୩) ମୂଳ-(କ) ତୁଶବ୍ଦେନ ଶ୍ଚେଦିତଂ ଦୋଷମପନୁଦତି । ବିଶେଷସ୍ୟଭାବୋ ବୈଶେଷ୍ୟମ୍ । ଭୂୟସ୍ତ୍ୱମିତି ଯାବତ୍ । ସତ୍ୟପି ତ୍ରିବୃତକରେଣ କ୍ୱଚିତ୍‌କସ୍ୟଚିଦ ଭୂତଧାତୋର୍ଭୂୟସ୍ତ୍ୱମୁପଲଭ୍ୟତେ । ଅଗ୍ନେସ୍ତେଜୋଭୂୟସ୍ତ୍ୱମୁଦକସ୍ୟାବ୍‌ଭୂୟସ୍ତ୍ୱଂ ପୃଥିବ୍ୟା ଅନ୍ନଭୂୟସ୍ତ୍ୱମ ଇତି । ବ୍ୟବହାରପ୍ରସିଦ୍ଧ୍ୟର୍ଥଂ ଶ୍ଚେଦଂ ତ୍ରିବୃତ୍‌କରଣମ୍ ।

(ଖ) ବ୍ୟବହାରଶ୍ଚ ତ୍ରିବୃତକୃତରଜ୍ଜୁ ବଦେକତ୍ୱାପତ୍ତୌ ସତ୍ୟାଂ ନ ଭେଦେନ ଭୂତ ତ୍ରୟଗୋଚରୋ ଲୋକସ୍ୟ ପ୍ରସିଦ୍ଧ୍ୟେତ୍ । ତସ୍ମାତ୍‌ସତ୍ୟପି ତ୍ରିବୃତକରଣେ ବୈଶେଷ୍ୟାଦେବ ତେଜୋବନ୍ନବିଶେଷବାଦୋ ଭୂତଭୌତିକବିଷୟ ଉପପଦ୍ୟତେ । ତଦ୍‌ବାଦସ୍ତଦ୍‌ବାଦ ଇତି ପଦାଭ୍ୟାସୋଽଧ୍ୟାୟପରିସମାପ୍ତିଂ ଦ୍ୟୋତୟତି ।

**(୩) ଭାଷାଂତର-** (କ) ତୁଶବ୍ଦଦ୍ୱାରା ଶଙ୍କିତ ଦୋଷର ନିରାକରଣ କରାଯାଇଛି । ବିଶେଷର ଭାବ ବୈଶେଷ୍ୟ, ଅର୍ଥାତ୍ ଭୂୟସ୍ତ୍ୱାତ୍ରିବୃତକରଣ ହେଲେ ମଧ୍ୟ ବି 'ଅଗ୍ନେସ୍ତୋଜୋ-ଭୂୟସ୍ତ୍ୱମ୍' (ଅଗ୍ନିରେ ତେଜ ଭୂୟସ୍ତ୍ୱ ଅଟେ । ଉଦକରେ ଜଳ ଭୂୟସ୍ତ୍ୱ ଅଟେ । ଏହିପ୍ରକାର ବ୍ୟବହାର ପ୍ରସିଦ୍ଧ ପାଇଁ ଅଛି ।

(ଖ) ଏଠାରେ ତ୍ରିବୃତକୃତ ରଜ୍ଜୁପରି ଏକତ୍ୱର ପ୍ରସଙ୍ଗ ହେଲେ ଲୋକରେ ଭୂତତ୍ରୟ-ବିଷୟକଭେଦରେ ବ୍ୟବହାର ସିଦ୍ଧ ହେବ ନାହିଁ । ତେଣୁ ତ୍ରିବୃତକରଣ ହେଲେ ଭୂତଭୌତିକ ବିଷୟକ ତେଜ, ଜଳ, ଅନ୍ନ - ଏପରି ବିଶେଷବାଦ ବିଶେଷ୍ୟଠାରୁ ଉପପନ୍ନ ହୁଏ । 'ତଦ୍‌ବାଦଃ', 'ତଦ୍‌ବାଦଃ' ଏହି ପଦର ଅଭ୍ୟାସ କଥନ ଅଧ୍ୟାୟର ପରିସମାପ୍ତିକୁ ସୂଚିତ କରାଏ ।

## ଇତି ଦ୍ୱିତୀୟ ଅଧ୍ୟାୟ ସମାପ୍ତ



ବେଦବ୍ୟାସ ବିରଚିତ

# ବ୍ରହ୍ମସୂତ୍ର

# ଶାଙ୍କରଭାଷ୍ୟ

ପଣ୍ଡିତ ମାର୍କଣ୍ଡ ଦାସ

## ଦ୍ୱିତୀୟ ଖଣ୍ଡ

ପ୍ରକାଶକ ଓ ପ୍ରାପ୍ତିସ୍ଥାନ




ଧର୍ମଗ୍ରନ୍ଥ ଷ୍ଟୋର

ପ୍ରତିଷ୍ଠାତା - ଶ୍ରୀ ବିଦ୍ୟାଧର ସାହୁ

ପରିଚାଳକ : ଶ୍ରୀ ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୨

ଫୋନ୍ ନଂ- (୦୬୭୧) ୨୫୦୮୨୯୬

ବେଦବ୍ୟାସ ବିରଚିତ

# ବ୍ରହ୍ମସୂତ୍ର ଶାଙ୍କରଭାଷ୍ୟ (ଦ୍ୱିତୀୟ ଭାଗ)


ଲେଖକ :

**ପଣ୍ଡିତ ମାର୍କଣ୍ଡ ଦାସ**

କୁଆପୁଟ, ହଳଦିଆ, ଜି : ପୁରୀ



*ପ୍ରକାଶକ :*

ଧର୍ମଗ୍ରନ୍ଥ ଷ୍ଟୋର

ଅଲିଶା ବଜାର, କଟକ-୨

ନୂତନ ମୁଦ୍ରଣ -୨୦୧୪

*ଅକ୍ଷର ସଜ୍ଜା :*

ଲିଜା ଡି.ଟି.ପି ସେଣ୍ଟର

ବିଡ଼ାନାସୀ, କଟକ

*ମୁଦ୍ରାକର :*

ବିଶ୍ୱବିଦ୍ୟା ପ୍ରେସ୍

ଅଲିଶା ବଜାର  କଟକ-୨

# ମୁଖବନ୍ଧ

ଯାବତ୍ ଗଙ୍ଗା ଚ ଗୋଦା ଚ, ଯାବତ୍ ବିନ୍ଧ୍ୟହିମାଚଳୌ ।
ଯାବତ୍ ଭାରତବର୍ଷଂ ସ୍ୟାତ୍, ତାବଦିଦଂ ହି ସଂସ୍କୃତମ୍ ।

ଅତ୍ୟାଧୁନିକ-ଯୁଗରେ ଭାରତବର୍ଷର ଧନସମ୍ପତ୍ତି ଅନ୍ୟ ଦେଶ ତୁଳନାରେ କମ୍ ହୋଇପାରେ, କିନ୍ତୁ ଏହାର ଦୁଇଟି ଶାଶ୍ୱତ ପଦାର୍ଥ ରହିଛି, ଯାହାକି ଅନ୍ୟ ଦେଶରେ ଦେଖିବାକୁ ବିରଳ । ତାହା ହେଉଛି ସଂସ୍କୃତ ଓ ସଂସ୍କୃତି । ସଂସ୍କୃତ ବ୍ୟତୀତ ଭାରତ ବର୍ଷର ସଂସ୍କୃତି ନିରର୍ଥକ ଓ ଭିତ୍ତିହୀନ । ତେଣୁ ପ୍ରତ୍ୟେକ କ୍ଷେତ୍ରରେ ସଂସ୍କୃତ ଭାଷାର ଆବଶ୍ୟକତା ରହିଛି; କିନ୍ତୁ ସଂସ୍କୃତ ଭାଷାର ବିଦ୍ୱାନ ଓ ପୃଷ୍ଠପୋଷକ ସଂଖ୍ୟା ଆମ ଦେଶରେ ବହୁତ କମ୍ ହେତୁ ସର୍ବଦା ତା'ର ଅନୁବାଦ ଅତ୍ୟନ୍ତ ପ୍ରୟୋଜନ । ଅତଃ ଯେଉଁ ବେଦାନ୍ତଦର୍ଶନର ତତ୍ତ୍ୱରାଜିକୁ ବିଶ୍ଳେଷଣ ଓ ପ୍ରଚାର କରି ଶ୍ରୀ ଶଙ୍କର ଓ ବିବେକାନନ୍ଦ ସମଗ୍ର ପୃଥିବୀକୁ ଚମତ୍କୃତ କରି ଦେଇଛନ୍ତି, ସେହି ଦର୍ଶନାନ୍ତର୍ଗତ ବ୍ରହ୍ମସୂତ୍ର ଶାଙ୍କର ଭାଷ୍ୟର ଉତ୍କଳ ଭାଷାନୁବାଦ କରାଯାଇ ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟକୁ ନେଇ ପ୍ରଥମ ଖଣ୍ଡ ପ୍ରକାଶିତ ହେବ ।

ଏହି ପୁସ୍ତକର ରଚୟିତା ଯୁଗାନ୍ତକାରୀ ବିପ୍ଳବୀ, ଅଦ୍ୱୈତ ବେଦାନ୍ତର ନୂତନ ପଥପ୍ରଦର୍ଶକ ଓ ପ୍ରତିଷ୍ଠାତା ଶ୍ରୀ ଶଙ୍କରାଚାର୍ଯ୍ୟ । ସେ କେରଳ ପ୍ରଦେଶାନ୍ତର୍ଗତ କାଲଟୀ ଗ୍ରାମର 'ଶିବଗୁରୁ' ନାମକ ଜଣେ ବୈଦିକ ନୈଷ୍ଠିକ ବ୍ରାହ୍ମଣଙ୍କ ଔରସରୁ ଜନ୍ମଗ୍ରହଣ କରିଥିଲେ । ତାଙ୍କର ମାତାଙ୍କ ନାମ ବିଷୟରେ ବିଭିନ୍ନମତ ଶ୍ରୁତ ହୁଏ । ମାଧବାଚାର୍ଯ୍ୟ ବିରଚିତ 'ଶଙ୍କର ଦିଗ୍‌ବିଜୟ' ନାମକ କାବ୍ୟରେ ସତୀ ଓ ଅନ୍ୟାନ୍ୟ କେତେ ଗ୍ରନ୍ଥରେ 'ଆର୍ଯ୍ୟାମ୍ବା' ବୋଲି ପ୍ରମାଣିତ ଓ ବର୍ଣ୍ଣିତ ହୋଇଅଛିଂ। ବହୁଦିନ ଅତିକ୍ରାନ୍ତ ହେଲେ ମଧ ଶିବଗୁରୁ କୌଣସି ସନ୍ତାନ ସନ୍ତତି ଲାଭ କରିପାରି ନଥିଲେ, ଫଳରେ ଦମ୍ପତି ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥିଲେ । ଦିନେ ଅତ୍ୟନ୍ତ ବ୍ୟାକୁଳିତ ମନରେ ଅସହାୟ ଅବସ୍ଥାରେ ଶିବଗୁରୁ ନିଜର ପତ୍ନୀସହ ସ୍ୱକୀୟ ଗ୍ରାମ ନିକଟସ୍ଥ ବୃଷନାମକ ପର୍ବତର ଶିଖର ପ୍ରଦେଶରେ ଅବସ୍ଥାନ କରିଥିବା ଚନ୍ଦ୍ରମୌଳୀଶ୍ୱର ମହାଦେବଙ୍କ ଦ୍ୱାରସ୍ଥ ହୋଇ କଠୋର ତପସ୍ୟା ଆଚରଣ କଲେ । ଫଳରେ ପିନାକପାଣି ଶିବ ତାଙ୍କର ତପସ୍ୟାରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କହିଲେ –

ଦଦ୍ୟାଂ ମୁଦୀରିତପଦଂ ତନୟଂ ତପୋ ଦ୍ୱାମ୍,
ପୂର୍ଣ୍ଣୋ ଭବିଷ୍ୟସି ଗୃହଂ ଦ୍ୱିଜ ଗଚ୍ଛ ଦାରୈଃ ।

ଏହା ଶ୍ରବଣ କରି ଶିବଗୁରୁ ପତ୍ନୀଙ୍କର ନିଜ ଗୃହକୁ ଆନନ୍ଦ ମନରେ ପ୍ରତ୍ୟାବର୍ତ୍ତନ କଲେ । କିଛିଦିନ ଉତ୍ତାରୁ ବୈଶାଖ ଶୁକ୍ଲପକ୍ଷ ପଞ୍ଚମ ତିଥିରେ ସତୀଙ୍କ ଗର୍ଭରୁ ଏକ ପୁତ୍ର ଜନ୍ମଲାଭ କଲା । ଶଙ୍କରଙ୍କ ଅପାର କରୁଣାରୁ ପୁତ୍ରଲାଭ ହେତୁ ତାହାର ନାମ ଶଙ୍କର ହେଲା । ତେଣୁ କୁହାଯାଇଛି–

ସଥ୍ ପଶ୍ୟତାଂ ଶିଶୁରସୌ କୁରୁତେ ଶଗଗ୍ୟମ୍,
ତେନାକୃତାସ୍ୟ ଜନକଃ କିଳ ଶଙ୍କରାଖ୍ୟାମ୍ ।
ଯଦ୍‌ବା ବିରାୟ କିଳ ଶଙ୍କର ସଂପ୍ରସାଦାତ୍,
ଜାତସ୍ତତୋ ବ୍ୟଧିତ ଶଙ୍କର ନାମଧେୟମ୍ ॥

**ଶଙ୍କରଙ୍କର ସମୟ :**

ଶଙ୍କରାଚାର୍ଯ୍ୟଙ୍କର ସମୟ ନିର୍ଦ୍ଧାରଣରେ ପ୍ରଖ୍ୟାତ ଐତିହାସିକମାନେ ଅଦ୍ୟାବଧବ ସନ୍ଦିହମାନ ଅବସ୍ଥାରେ ରହିଛନ୍ତି । ଅତଏବ ଆମ୍ଭମାନଙ୍କ ପକ୍ଷରେ ତାଙ୍କର କାଳ ନିରୂପଣ ଦୂରୁହ ବ୍ୟାପାର ହୋଇଛି । ଯାହାହେଉ ବିଭିନ୍ନ ଐତିହାସିକ ମାନଙ୍କର ମତାମତକୁକ ନିମ୍ନରେ ପ୍ରଦତ୍ତ କରାଗଲା ।

୧। ମେକେଞ୍ଜିଙ୍କ ମତରେ – ଖ୍ରୀ ୫୦୦
୨। କେ.ଟି. ତେଲଙ୍ଗ ଓ ବାଲଗଙ୍ଗାଧର ତିଳକଙ୍କ ମତରେ – ଖ୍ରୀ ୬୮୮
୩। ରାଜେନ୍ଦ୍ର ଘୋଷଙ୍କ ମତରେ – ଖ୍ରୀ ୬୯୬
୪। ରାମାବତାର ଶର୍ମାଙ୍କ ମତରେ – ଖ୍ରୀ ୭୭୯ରୁ ଖ୍ରୀ ୮୪୩
୫। ମାକସ୍‌ମୁଲର୍, କୃଷ୍ଣସ୍ୱାମୀ ଆୟାର, କେ.ବି. ପାଠକଙ୍କ ମତରେ – ଖ୍ରୀ ୭୮୮
୬। ହଗସନ୍‌ଙ୍କ ମତରେ – ଖ୍ରୀ ୮୦୦
୭। ଭେଙ୍କେଟେଶ୍ୱର ସ୍ୱାମୀଙ୍କ ମତରେ – ଖ୍ରୀ ୮୦୫ରୁ ଖ୍ରୀ ୮୯୭
୮। ଉଇଲସନ ଓ କୋଲବ୍ରୁକ୍‌ଙ୍କ ମତରେ – ଖ୍ରୀ ୮୦୦ରୁ ଖ୍ରୀ ୯୦୦
୯। ଟେଲରଙ୍କ ମତରେ – ଖ୍ରୀ ୯୦୦

କିନ୍ତୁ ଆଚାର୍ଯ୍ୟଙ୍କର ସମୟ ସତାବ୍ଦୀର ଅନ୍ତିମ ଭାଗରୁ ଅଷ୍ଟମ ଶତାବ୍ଦୀର ପ୍ରଥମ ଭାଗ ମଧ୍ୟରେ ବୋଲି ସ୍ଥିର କରାଯାଇଅଛି । ତାହା ପ୍ରସଙ୍ଗକ୍ରମେ ଅନ୍ୟତ୍ର ପ୍ରକାଶ କରାଯିବ ।

**ଭାଷ୍ୟ ରଚନା ସମୟ :**

ସନନ୍ଦନ ପ୍ରଭୃତି ବହୁଶିଷ୍ୟମାନଙ୍କ ଗହଣରେ ଶଙ୍କର ବିଦ୍ରାକାଶ୍ରମରେ ପହଞ୍ଚିଲେ । ସେତେବେଳେ ଆଚାର୍ଯ୍ୟ ଏକାଦଶ ବର୍ଷ ବୟସରେ ଆରୂଢ଼ ହୋଇଥିଲେ ।

ଚନ୍ଦ୍ରିକା ମନ୍ଦିରର ଅନତିଦୂର ନିମ୍ନପ୍ରଦେଶରେ ସଂସ୍ଥାପିତ ଜ୍ୟୋତିର୍ମଠ ଆଚାର୍ଯ୍ୟଙ୍କ କୃତି ବୋଲି ପ୍ରମାଣ ମିଳେ ।

ଗତ୍ୱୈକା ଦଶବାର୍ଷିକୋ ବଦରିକାରଣ୍ୟେ ସୁପୁଣ୍ୟାଶ୍ରମେ,
ପଞ୍ଚଦ୍ୱାନ୍ତରକୁଣ୍ଡୟା ନିଜଧିୟା ଭାଷ୍ୟାଣି ଯା ଷୋଡ଼ଶେ ।
ନିର୍ମାୟ ପ୍ରଥୟାଞ୍ଚକାର ବଦରୀ ନାରାୟଣାର୍ଚ୍ଚାଂ ତଥା,
ଶ୍ରୀଜ୍ୟୋତିର୍ମଠ ମାବବନ୍ଧ ସଗୁରୁ ଶ୍ରୀଶଙ୍କରୋ ବନ୍ଦ୍ୟତେ ॥

- ଶଙ୍କର ବିଜୟ

ଉକ୍ତ ମଠରେ ତାଙ୍କର ପ୍ରଧାନ ଶିଷ୍ୟ ତୋଟକାଚାର୍ଯ୍ୟଙ୍କୁ ମଠାଧୀଶ ରୂପେ ନିଯୁକ୍ତ କରି ତତ୍‌ସମୀପସ୍ଥ ବ୍ୟାସାଶ୍ରମରେ ଉପସ୍ଥିତ ହେଲେ । ପ୍ରମାଣ ମିଳେ– ବ୍ୟାସଦେବ ସେହି ଆଶ୍ରମରେ ଅବସ୍ଥାନ ପୂର୍ବକ ମହାଭାରତ, ଅଷ୍ଟାଦଶ ପୁରାଣ ଓ ବ୍ରହ୍ମସୂତ୍ର ରଚନା କରିଥିଲେ । ସେହି ପୀଠର ପ୍ରାକୃତିକ ଶୋଭା ଓ ପବିତ୍ର ଭାବ ଅନୁଭବ କରି ଆଚାର୍ଯ୍ୟ ଶଙ୍କର ବ୍ରହ୍ମସୂତ୍ରର ଏକ କ୍ରାନ୍ତିକାରୀ ନୂତନ ତତ୍ତ୍ୱକୁ ପରିପ୍ରକାଶ କରିବାକୁ ମନସ୍ଥ କରିଥିଲେ । ଅତଏବ ସେ ଭବ୍ୟ, ଗମ୍ଭୀର ଓ ମଧୁମୟ ଭାଷ୍ୟ ରଚନା କଲେ । ସେହି ସମୟକୁ ତାଙ୍କର ବୟସ ଦ୍ୱାଦଶ ବର୍ଷ ବୋଲି ମାଧବାଚାର୍ଯ୍ୟ କହନ୍ତି; ଯଥା -

ସ ଦ୍ୱାଦଶେ ବୟସି ତତ୍ର ସାମଧି ନିଷ୍ଟୈ.
ବ୍ରହ୍ମର୍ଷିଭିଃ ଶ୍ରୁତିଶିରୋ ବହୁଧା ବିଚାର୍ଯ୍ୟ ।
ଷଡ଼୍‌ଭିଷ୍ଟ ସପ୍ତଭିରଥୋ ନବଭିଷ୍ଟ ଖିନ୍ନୈଃ,
ଭବ୍ୟଂ ଗମ୍ଭୀର ମଧୁରଂ ଫଣତି ସ୍ମ ଭାଷ୍ୟମ୍ ॥

କିନ୍ତୁ ଏହି ଶ୍ଳୋକର ତୃତୀୟ ପାଦରେ ଲିଖଇତ ‘‘ଷଡ଼୍‌ଭିଷ୍ଟ ସପ୍ତଭିର ତଥା ନବଭିଷ୍ଟ ଖିନ୍ନୈଃ’’ ପଦାବଳୀକୁ ମନୀଷୀମାନେ ବହୁଧା ଅର୍ଥ ପ୍ରତିପାଦନ କରିଛନ୍ତି । ତାହା ବିଷଦ୍ ଭାବେ ଆଲୋନା ନିମ୍ନରେ କରାଗଲା । (କ) ଧନପତି - ସୁରି ପ୍ରଣୀତ ଡିଣ୍ଡିମ ନାମକ ଟୀକାର ଷଟ୍‌ପଦାର୍ଥକୁ କ୍ଷୁଧା, ତୃଷା, ଜରା, ମୃତ୍ୟୁ, ଶୋକ ଓ ମୋହ ରୂପରେ, ସପ୍ତପଦାର୍ଥକୁ ତ୍ୱକ୍, ଚର୍ମ, ମାଂସ, ଅସ୍ଥି, ମେଦ, ମଜ୍ଜା ଓ ଶୁକ୍ର ରୂପରେ, ନବପଦାର୍ଥକୁ ପଞ୍ଚଜ୍ଞାନେନ୍ଦ୍ରିୟ, ମନ, ଅହଙ୍କାର, ବୁଦ୍ଧି ଓ ଚିତ୍ତ ରୂପରେ ଉଲ୍ଲେଖ କରିଛନ୍ତି । (ଖ) ଅଦ୍ୱିତ ରାଜଲକ୍ଷ୍ମୀ ଟୀକାକାର ମତରେ - ଷଟ୍ ପଦର ଅର୍ଥ ହେଉଛି - ଚାର୍ବାକ୍, ଜୈନ, ବୈଭାଷିକ, ସୌତ୍ରାନ୍ତିକ, ଯୋଗାଚାର ସ ମାଧ୍ୟମିକ ଦର୍ଶନ । ସପ୍ତପଦର ଅର୍ଥ - ନ୍ୟାୟ, ବୈଶେଷିକ, ସାଂଖ୍ୟ, ଯୋଗ, କର୍ମମୀମାଂସା, ଶାକ୍ତ ଦର୍ଶନ ଓ ଭାସ୍କର ଦର୍ଶନ । ନବ ଶବ୍ଦର ଅର୍ଥ - ଜୀବେଶ୍ୱରଭେଦ, ଈଶ୍ୱର ଜଗଦ୍‌ଭେଦ, ଜୀବନ ପରସ୍ପରଭେଦ, ଜଗତ ପରସ୍ପରଭେଦ, ଜୀବଜଗତ୍

ଭେଦ, ଅବିଦ୍ୟା, କାମ, କର୍ମ ଓ ବାସନା । (ଗ) କିନ୍ତୁ ଉପଯୁକ୍ତ ଶବ୍ଦାନୁଶୀଳନଗୁଡ଼ିକ ଯଥାଯଥ ଭାବେ ପ୍ରତିପାଦିତ ହୋଇନାହିଁ । ଖଣ୍ଡନ ପଦର ଦୁଇଟି ଅର୍ଥ ଅଛି - ପରାଜିତ କରିବା ଓ ସଂକ୍ଷିପ୍ତ କରିବା । ଶାଙ୍କରଭାଷ୍ୟରେ ଚାର୍ବାକ୍ ଦର୍ଶନ, ଜୈନ୍ୟଦର୍ଶନ, ବୌଦ୍ଧଦର୍ଶନ, ବୈଶେଷିକ ଦର୍ଶନ, ସାଂଖ୍ୟଦର୍ଶନ ଓ ମୀମାଂସା ଦର୍ଶନଗୁଡ଼ିକ ବିଶେଷଭାବେ ଆଲୋଚନା କରାଯାଇ ଖଣ୍ଡନ କରାଯାଇଥିବାରୁ ଏହି ଷଟ୍‌ପଦ ଉକ୍ତଷଡ୍‌ଦର୍ଶନର ଅର୍ଥକୁ ସାର୍ଥକ କରେ । ଦ୍ୱିତୀୟଟି ହେଲା - ସପ୍ତଭିଃ ଓ ନବଭିଃ ପଦଦ୍ୱୟ ଦ୍ୱାରା ବ୍ରହ୍ମସୂତ୍ରର (୭+୯ = ୧୬) ଷୋଡ଼ଶ ପାଦକୁ ସ୍ପଷ୍ଟଭାବରେ ପ୍ରମାଣିତ କରେ ବୋଲି ମଧ୍ୟ ଆମ୍ଭେ ପ୍ରମାଣ କରୁଛୁ ।

**ଶଙ୍କର ରଚନାବଳୀ :**

ଦ୍ୱାତ୍ରିଂଶତ୍ ବର୍ଷୀୟାନ୍ ଆଚାର୍ଯ୍ୟ ଶଙ୍କର ସ୍ୱଳ୍ପଜୀବନ କାଳ ମଧ୍ୟରେ ଅଗାଧଜ୍ଞାନ ରାଶିକୁ ମନ୍ଥନ କରି ଅଦ୍ୱୈତ ବେଦାନ୍ତ ତତ୍ତ୍ୱରାଶିକୁ ବିଷମଜଞ୍ଜାଳମୟ ସଂସାରରେ ପ୍ରଚାର ସ ପ୍ରସାର କରି ନଥିଲେ ଆଜି ସମଗ୍ର ପୃଥିବୀ ବେଦାନ୍ତ ଶାସ୍ତ୍ରର ବ୍ରହ୍ମବାଦ ଓ ଈଶ୍ୱର ବାଦକୁ ବିସ୍ମରଣ କରିଥାନ୍ତା । ଆଚାର୍ଯ୍ୟଙ୍କର ଲେଖନୀ ନିସୃତ ବିଧ୍ୟାସମ୍ଭାର ଅଦ୍ୟାବଧି ବହୁଳଭାବେ ପ୍ରଚାର ହୋଇନଥିଲେ ମଧ୍ୟ ତାଙ୍କର ରଚନାବଳୀର କିୟଦଂଶ ପ୍ରକାଶିତ ହୋଇଅଛି । ତାଙ୍କର କୃତି ସାଧାରଣତଃ ତିନିଭାଗରେ ବିଭକ୍ତ କରାଯାଇଅଛି । (୧) ଭାଷ୍ୟଗ୍ରନ୍ଥ, (୨) ସ୍ତୋତ୍ରଗ୍ରନ୍ଥ, (୩) ପ୍ରକରଣ ଗ୍ରନ୍ଥ । ଏହାର ଆଭାସମାତ୍ର ବ୍ରହ୍ମସୂତ୍ର ଶାଙ୍କର ଭାଷ୍ୟର ପ୍ରଥମ ଖଣ୍ଡର ମୁଖବନ୍ଧରେ ଦିଆଯାଇଛି । ସଂପ୍ରତି ଅଦ୍ୟାବଧି ମିଳିଥିବା ରଚନାବଳୀ ନିମ୍ନଲିଖିତ ମତେ ଉଲ୍ଲେଖ କରାଗଲା ।

**ଭାଷ୍ୟଗ୍ରନ୍ଥ :**

ଶଙ୍କରାଚାର୍ଯ୍ୟ ଅନେକ ଉପନିଷଦ୍, ଗୀତ ପ୍ରଭୃତି ଉପାଦେୟପୁସ୍ତକ ଗୁଡ଼ିକର ଭାଷ୍ୟ ରଚନା କରିଛନ୍ତି । ମୁଖ୍ୟତଃ ସେଗୁଡ଼ିକ ଦୁଇଭାଗରେ ବିଭାଜିତ । ଯଥା - (କ) ପ୍ରସ୍ଥାନତ୍ରୟୀ ଭାଷ୍ୟ (ଖ) ଅନାନ୍ୟ ଗ୍ରନ୍ଥର ଭାଷ୍ୟ । ଏଠାରେ ଶ୍ରୁତି ବା ଉପନିଷଦ୍ ସ୍ମୃତିଶାସ୍ତ୍ର ବା ଶ୍ରୀମଦ୍‌ଭଗବଦ୍‌ଗୀତା ଓ ବ୍ରହ୍ମସୂତ୍ରକୁ ସାଧାରଣଃ ପ୍ରସ୍ଥାନତ୍ରୟୀ କୁହାଯାଏ । ଏହି ଗ୍ରନ୍ଥଗୁନିଙ୍କର ଭାଷ୍ୟ ଓ ରଚନା କରିଥିଲେ । ସାଂପ୍ରତିକଦର୍ଶନ ଶାସ୍ତ୍ରରେ ଦ୍ୱାଦଶ ଉପନିଷଦର ଶାଙ୍କରଭାଷ୍ୟ ଦେଖିବାକୁ ମିଳେ । ତାହା ନିମ୍ନରେ ପ୍ରଦତ୍ତ କରାଗଲା ।

୧। ଈଶାବାସ୍ୟୋପନିଷଦ୍ ଭାଷ୍ୟ
୨। କଠୋପନିଷଦ୍ ଭାଷ୍ୟ
୩। ମୁଣ୍ଡକୋପନିଷଦ୍ ଭାଷ୍ୟ
୪। ତୈତ୍ତରୀୟୋପନିଷଦ୍‌ଭାଷ୍ୟ
୫। ଛାନ୍ଦୋଗ୍ୟୋପନିଷଦ୍‌ଭାଷ୍ୟ
୬। ଶ୍ୱେତାଶ୍ୱେତୋପନିଷଦ୍‌ଭାଷ୍ୟ
୭ । କେନୋପନିଷଦ୍‌ଭାଷ୍ୟ
୮ । ପ୍ରଶ୍ନୋପନିଷଦ୍‌ଭାଷ୍ୟ
୯ । ମାଣ୍ଡୁକ୍ୟୋପନିଷଦ୍‌ଭାଷ୍ୟ
୧୦ । ଐତରୀୟୋନିଷଦ୍‌ଭାଷ୍ୟ
୧୧ । ବୃହଦାରଣ୍ୟକୋପନିଷଦ୍‌ଭାଷ୍ୟ
୧୨ । ନୃସିଂହ ତାପିନୀ ଉପନିଷଦ୍‌ଭାଷ୍ୟ

ସେହିପରି ଶ୍ରୀମଦ୍‌ଭଗବତ୍‌ଗୀତାର ଭାଷ୍ୟକୁ 'ଗୀତା ଶାଙ୍କର ଭାଷ୍ୟ' ଓ ବ୍ରହ୍ମସୂତ୍ରର ଭାଷ୍ୟକୁ ମଧ୍ୟ 'ବ୍ରହ୍ମସୂତ୍ର ଶାଙ୍କର ଭାଷ୍ୟ' କହନ୍ତି ।

ଅନ୍ୟାନ୍ୟ ଉପଲବ୍ଧ ଉପନିଷଦ୍ ମଧ୍ୟରୁ ୩୭ଟି ପୁସ୍ତକ ତଥା ଗ୍ରନ୍ଥର ଭାଷ୍ୟ ଶଙ୍କର ରଚନା କରିଛନ୍ତି । କିନ୍ତୁ କେତେକ ଦାର୍ଶନିକଙ୍କ ମତରେ ୩୬ଟି ପୁସ୍ତକ ଭାଷା ସ୍ୱୟଂ ଶଙ୍କର କରି ନାହାନ୍ତି, ତାହା ଅନ୍ୟ କୌଣସି ବ୍ୟକ୍ତିଙ୍କଦ୍ୱାରା ବିରଚିତ ହୋଇ ଶଙ୍କରଙ୍କ ନାମରେ ଲିଖଇତ ହୋଇ ରହିଛି ।

୧। ବିଷ୍ଣୁ ସହସ୍ର ନାମଭାଷ୍ୟ
୨। ଲଳିତା ତ୍ରିଶତୀଭାଷ୍ୟ
୩। ସନତ୍ସୁ ଜାତୀୟ ଭାଷ୍ୟ
୪। ମାଣ୍ଡୁକ୍ୟ କାରିକା ଭାଷ୍ୟ
୫। ମୈତ୍ରାୟଣୀୟ ଉପନିଷଦ୍ ଭାଷ୍ୟ
୬। ଗାୟତ୍ରୀ ଭାଷ୍ୟ
୭। ଅପରୋକ୍ଷାନୁଭବ୍ୟାଖ୍ୟା
୮। ଆନନ୍ଦ ଲହରୀ ଟୀକା
୯। ଏକ ଶ୍ଳୋକ ବ୍ୟାଖ୍ୟା
୧୦। ଦକ୍ଷିଣା ମୂର୍ତ୍ତି ଅଷ୍ଟକଟୀକା
୧୧। କୌଷତକୀ ୁପନିଷଦ୍ ଭାଷ୍ୟ
୧୨। କୈବଲ୍ୟ ଉପନିଷଦ୍ ଭାଷ୍ୟ
୧୩। ମହାନାରାୟଣ ଉପନିଷଦ୍ ଭାଷ୍ୟ
୧୪। ହସ୍ତାମଳକ ସ୍ତୋତ୍ର
୧୫। ଅଧ୍ୟାତ୍ମପଟଲାଭାଷ୍ୟ
୧୬। ସନ୍ଧ୍ୟାଭାଷ୍ୟ
୧୭। ଅମରୁଶତକଟୀକା
୧୮। ଉତ୍ତର ଗୀତାଟୀକା
୧୯। ଗୋପାଳତାପନୀୟ ଭାଷ୍ୟ
୨୦। ପଞ୍ଚପଦୀ ପ୍ରକରଣୀ ଟୀକା
୨୧। ପରମହଂସ ଉପନିଷଦ୍ ହୃଦୟ
୨୨। ବ୍ରହ୍ମଗୀତା ଟୀକା
୨୩। ରାଜଯୋଗ ଭାଷ୍ୟ
୨୪। ଲଳିତା ସହସ୍ର ନାମ ଭାଷ୍ୟ
୨୫। ଶତଶ୍ଳୋକୀ ବ୍ୟାଖ୍ୟା
୨୬। ଶିବଗୀତା ଭାଷ୍ୟ
୨୭। ଶିବଗୀତା ଭାଷ୍ୟ
୨୮। ଜୟମଙ୍ଗଳା ଟୀକା
୨୯। ପଞ୍ଚୀକରଣ ପ୍ରକ୍ରିୟା ବ୍ୟାଖ୍ୟା
୩୦। ପାତଞ୍ଜଳି ଯୋଗସୂତ୍ର ଭାଷ୍ୟ ବିବରଣ
୩୧। ଭଚ୍ଚିକାବ୍ୟ ଟୀକା
୩୨। ଲଘୁବାକ୍ୟ ବୃତ୍ତିଟୀକା
୩୩। ବିଜୃମ୍ଭିତ ଯୋଗ ସୂତ୍ର ଭାଷ୍ୟ
୩୪। ଶକଟାୟନ ଉପନିଷଦ୍ ଭାଷ୍ୟ
୩୫। ଷଟ୍‌ପଦୀଟୀକା
୩୬। ସୂତ୍ରସଂହତିଭାଷ୍ୟ
୩୭। ଆତ୍ମବୋଧ ଟୀକା

ଏ ତନ୍ମଧ୍ୟରୁ ପ୍ରଥମ ଚାରୋଟି ଗ୍ରନ୍ଥର ଭାଷ୍ୟ ଶଙ୍କରାଚାର୍ଯ୍ୟଙ୍କର ଦ୍ୱାରା ବିରଚିତ ବୋଲି ନିଶ୍ଚିତ ଭାବରେ କୁହାଯାଇପାରିବ; କିନ୍ତୁ ଅନ୍ୟ ୩୩ଟି ପୁସ୍ତକର ଲେଖକ କର୍ତ୍ତା ସ୍ୱୟଂ ଶଙ୍କର କି ନୁହନ୍ତି – ଏହି ବିଷୟରେ ବହୁ ମତାମତ ରହିଛି । ଅନ୍ୟ କେତେକଙ୍କ ମତରେ ସେ କେବଳ ଦ୍ୱାଦଶ ଉପନିଷଦ୍‌ର ରଚୟିତା ବୋଲି ପ୍ରମାଣିତ ହୁଏ ।

**ସ୍ତୋତ୍ରଗ୍ରନ୍ଥ :**

ଶଙ୍କରାଚାର୍ଯ୍ୟ ଜଣେ ଶୈବ ଧର୍ମାବଲମ୍ବୀ ବୋଲି କେତେକ ରକ୍ଷଣଶୀଳ ପରିବାର ପ୍ରମାଣ କରନ୍ତି, କିନ୍ତୁ ତାହା ଆଦୌ ସମୀଚୀନ ବା ଗ୍ରହଣୀୟ ନୁହେଁ । କାରଣ ଶଙ୍କର

ବିଭିନ୍ନ ଦେବତାମାନଙ୍କୁ ଆରାଧନା କରୁଥିଲେ ଏବଂ ତାଙ୍କ ରଚିତ ସ୍ତୋତ୍ରାବଳୀ ଗୁଡ଼ିକ ମଧ୍ୟ କେବଳ ଶିବଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ବିଷ୍ଣୁ, ରାମ, ଶକ୍ତି ଦେବୀ ପ୍ରଭୃତିଙ୍କ ବିଷୟରେ ରଚନା ହେବାର ଦୃଷ୍ଟାନ୍ତ ମିଳେ । ଅଦ୍ୟାବଧି ସମସ୍ତ ସ୍ତୋତ୍ର ଗୁଡ଼ିକର ସଙ୍କଳନ କରାଯାଇନାହିଁ । ବର୍ତ୍ତମାନ ଉପଲବ୍ଧ ବିଭିନ୍ନ ସ୍ତୋତ୍ରାବଳୀ ନିମ୍ନଲିଖିତ ମତେ ଦିଆଗଲା ।

## ବିଷ୍ଣୁ ସ୍ତୋତ୍ର :

୧। ଅଚ୍ୟୁତାଷ୍ଟକ
୨। ଆର୍ତ୍ତତ୍ରଣ ନାରାୟଣଷ୍ଟାଦଶକ
୩। କାମଭୁଜଙ୍ଗ ପ୍ରୟାତସ୍ତୋତ୍ର
୪। କୃଷ୍ଣାଷ୍ଟକ
୫। ଗୋବିନ୍ଦାଷ୍ଟକ
୬। ଜଗନ୍ନାଥାଷ୍ଟକ
୭। ଦଶାବତାର ସ୍ତୋତ୍ର
୮। ନାରାୟଣ ସ୍ତୋତ୍ର
୯। ପାଣ୍ଡୁ ରଙ୍ଗାଷ୍ଟକ
୧୦। ବିଷ୍ଣୁଭୁଜଙ୍ଗ ପ୍ରୟାତ
୧୧। ବିଷ୍ଣୁପାପାଦିକେଶାନ୍ତ
୧୨। ଭଗବନ୍ ମାନସ ପୂଜା
୧୩। ଷଟ୍‌ପଦୀ ସ୍ତୋତ୍ର
୧୪। ହରମୀଡେସ୍ତୋତ୍ର

## ଗଣେଶ ସ୍ତୋତ୍ର :

୧। ଗଣେଶ-ପଞ୍ଚରନ୍
୨। ଗଣେଶ ଭୂଜଙ୍ଗ ପ୍ରୟାତ
୩। ଗଣେଷାଷ୍ଟକ
୪। ବରଦ ଗଣେଶ ସ୍ତୋତ୍ର

## ଶିବ ସ୍ତୋତ୍ର :

୧। ଶିବଭୁଜଙ୍ଗ ସ୍ତୋ
୨। ଶିବଭୁଜଙ୍ଗ ପ୍ରୟାତସ୍ତୋତ୍ର
୩। ଶିବାନନ୍ଦ ଲହରୀ
୪। ଶିବପାଦାଦି କେଶାନ୍ତ ସ୍ତୋତ୍ର
୫। ଶିବକେଶାଦି ପାଦାନ୍ତ ସ୍ତୋତ୍ର
୬। ବେଦସାର ଶିବସ୍ତୋତ୍ର
୭। ଶିବମାନସ ପୂଜା
୮। ଶିବପରାଧ କ୍ଷମାପନ ସ୍ତୋତ୍ର
୯। ସୁବର୍ଣ୍ଣମାଳାସ୍ତୁତି
୧୦। ଦକ୍ଷିଣା ମୂର୍ତ୍ତିବର୍ଣ୍ଣମାଳା
୧୧। ଦକ୍ଷିଣା ମୂର୍ତ୍ତ୍ୟଷ୍ଟକ
୧୨। ମୃତ୍ୟୁଞ୍ଜୟ ମାନସ ପୂଜା
୧୩। ଶିବନାମାବଲ୍ୟାଷ୍ଟକ
୧୪। ଶିବପଞ୍ଚାକ୍ଷର ସ୍ତୋତ୍ର
୧୫। ଦକ୍ଷିଣାମୂର୍ତ୍ତି ସ୍ତୋତ୍ର
୧୬। କାଶୀବିଶ୍ୱନାଥ ସ୍ତୋତ୍ର
୧୭। କାଳ ଭୈରବାଷ୍ଟକ
୧୮। ଶିବପଞ୍ଚାକ୍ଷର ନକ୍ଷତ୍ର ମାଳା
୧୯। ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ସ୍ତୋତ୍ର
୨୦। ଦଶଶ୍ଳୋକୀ ସ୍ତୁତି

## ଶକ୍ତିସ୍ତୋତ୍ର :

୧। ଅନ୍ନପୂର୍ଣ୍ଣା ସ୍ତୋତ୍ର
୨। ଆନନ୍ଦଲହରୀ ସ୍ତୋତ୍ର
୩। କନକ ରାଧାସ୍ତବ
୪। କଲ୍ୟାଣ ଦୃଷ୍ଟିସ୍ତବ

୫। ଆନନ୍ଦ ଲହରୀ
୬। ଗୌରୀ ଦଶକ
୭। ତ୍ରିପୁର ସୁନ୍ଦରୀ ଅଷ୍ଟକ
୮। ତ୍ରିପୁର ସୁନ୍ଦରୀ ମାନସ ପୂଜା
୯। ତ୍ରିପୁରା ସୁନ୍ଦରୀ ବେଦପାଠ
୧୦। ଦେବୀ ଚତୁଃଷଷ୍ଠ୍ୟୁପଚାର ପୂଜା
୧୧। ଦେବୀ ଭୁଜଙ୍ଗ ସ୍ତୋତ୍ର
୧୨। ନବରତ୍ନମାଳିକା
୧୩। ଭବାନୀ ଭୁଜଙ୍ଗ ସ୍ତୋତ୍ର
୧୪। ଭ୍ରମରାମ୍ବାଷ୍ଟକମ୍
୧୫। ମନ୍ତ୍ର ମାତୃକା ପୁଷ୍ପମାଳା
୧୬। ମୀନାକ୍ଷି ପଞ୍ଚରତ୍ନ
୧୭। ମୀନାକ୍ଷି ସ୍ତୋତ୍ର
୧୮। ଲଳିତା ପଞ୍ଚରତ୍ନ
୧୯। ଶାରଦାଭୁଜଙ୍ଗ ପ୍ରୟତାଷ୍ଟକ
୨୦। ସୌନ୍ଦର୍ଯ୍ୟ ଲହରୀ
୨୧। ଦେବୀ ପୁଷ୍ପାଞ୍ଜଳି ସ୍ତୋତ୍ର
୨୨। ଭବାନ୍ୟଷ୍ଟକ

## ଯୁଗଳ ଦେବତା ସ୍ତୋତ୍ର :

୧। ଅର୍ଦ୍ଧନାରୀଶ୍ୱର ସ୍ତୋତ୍ର
୨। ଉମାମହେଶ୍ୱର ସ୍ତୋତ୍ର
୩। ଲକ୍ଷ୍ମୀନୃସିଂହ ପଞ୍ଚରତ୍ନ
୪। ଲକ୍ଷ୍ମୀନୃସିଂହ କରୁଣରସ ସ୍ତୋତ୍ର
୫। ହରିଗୌର୍ଯ୍ୟଷ୍ଟକ ସ୍ତୋତ୍ର

## ନଦୀତୀର୍ଥ ସ୍ତୋତ୍ର :

୧। କାଶୀପଞ୍ଚକ ସ୍ତୋତ୍ର
୨। କାଶୀ ସ୍ତୋତ୍ର
୩। ଗଙ୍ଗାଷ୍ଟକ
୪। ଗଙ୍ଗା ସ୍ତୋତ୍ର
୫। ନର୍ମଦାଷ୍ଟକ
୬। ମଣିକର୍ଣ୍ଣିକାଷ୍ଟକ
୭। ଯମୁନାଷ୍ଟକ
୮। ଶ୍ରୀ ଯମୁନାଷ୍ଟକ

## ବିବିଧ ସ୍ତୋତ୍ର :

୧। ଗୁର୍ବାଷ୍ଟକ
୨। ପ୍ରାତଃସ୍ମରଣ ସ୍ତୋତ୍ର
୩। ସୁବ୍ରହ୍ମଣ୍ୟ ଭୁଜଙ୍ଗ ସ୍ତୋତ୍ର
୪। ହନୁମତ୍ ପଞ୍ଚରତ୍ନ.
୫। ଦ୍ୱାଦଶ ପଞ୍ଜରିକା
୬। ନିର୍ବାଣ ଦଶକ
୭। ସୋପାନ ପଞ୍ଚକ
୮। ଚପଟ ପଞ୍ଜରିକା ସ୍ତୋତ୍ର

## ପ୍ରକରଣ ଗ୍ରନ୍ଥ :

ଅଦ୍ୱୈତବେଦାନ୍ତର ତତ୍ତ୍ୱମୀମାଂସା ଭାରତୀୟ ଦର୍ଶନ ଶାସ୍ତ୍ରର ଏକ ମୁର୍ଦ୍ଧନ୍ୟଭୂତ ଅଧ୍ୟାୟ । ଏହି ବିଷୟରେ ଆଚାର୍ଯ୍ୟ ଶଙ୍କର କେତେକ କ୍ଷୁଦ୍ର ରଚନା ପ୍ରଣୟନ କରିଛନ୍ତି । ଏହି ପୁସ୍ତକ ଗୁଡ଼ିକ ପ୍ରକରଣ ଗ୍ରନ୍ଥର ଅନ୍ତର୍ଗତ । ପ୍ରକରଣ ଗ୍ରନ୍ଥର ୩୯ଟି ପୁସ୍ତକ ନିମ୍ନଲିଖିତ ମତେ ଅବଶ ପାଠକଙ୍କ ଅବଗତି ନିମନ୍ତେ ପ୍ରଦତ୍ତ କରାଗଲା ।

୧। ଅଦ୍ୱୈତ ପଞ୍ଚରତ୍ନ
୨। ଅଗଦ୍ୱିତାନୁଭୂତି
୩। ଅନାତ୍ମ ଶ୍ରୀବିଗର୍ହଣ ପ୍ରକରଣ
୪। ଅପରୋକ୍ଷାନୁଭୂତି
୫। ଆତ୍ମବୋଧ
୬। ଉପଦେଶ ପଞ୍ଚକ
୭। ଉପଦେଶ ସାହସ୍ରୀ
୮। ଏକଶ୍ଳୋକୀ
୯। କୌପୀନ ପଞ୍ଚକ
୧୦। ଜୀବନ୍ମୁକ୍ତାନନ୍ଦ ଲହରୀ
୧୧। ତତ୍ତ୍ୱବୋଧ
୧୨। ତତ୍ତ୍ୱୋପଦେଶ
୧୩। ଧନ୍ୟାଷ୍ଟକ
୧୪। ନିର୍ଗୁଣ ମାନସ ପୂଜା
୧୫। ନିର୍ବାଣ ମଞ୍ଜରୀ
୧୬। ନିର୍ବାଣଷଟ୍କ
୧୭। ପଞ୍ଚୀକରଣ ପ୍ରକରଣ
୧୮। ପରାପୂଜା
୧୯। ପ୍ରବୋଧ ସୁଧାକର
୨୦। ପ୍ରଶ୍ନୋତ୍ତର ରତ୍ନ ମାଳିକା
୨୧। ପ୍ରୌଢ଼ାନୁଭୂତି
୨୨। ବ୍ରହ୍ମନାମାବଳୀମାଳା
୨୩। ବ୍ରହ୍ମାନୁ ଚିନ୍ତନ
୨୪। ମାୟାପଞ୍ଚକ
୨୫। ମଣିରତ୍ନମାଳା
୨୬। ମୁମୁକ୍ଷୁପଞ୍ଚକ
୨୭। ଯୋଗତାରାବଳୀ
୨୮। ଲଘୁବାକ୍ୟ ବୃତ୍ତି
୨୯। ବାକ୍ୟବୃତ୍ତି
୩୦। ବାକ୍ୟସୁଧା
୩୧। ବିଜ୍ଞାନନୌକା
୩୨। ବିବେକ ଚୂଡ଼ାମଣି
୩୩। ବୈରାଗ୍ୟପଞ୍ଚକ
୩୪। ଶତଶ୍ଳୋକୀ
୩୫। ସଦାଚାରାନୁସନ୍ଧାନ
୩୬। ସର୍ବବେଦାନ୍ତ ସିଦ୍ଧାନ୍ତସାର ସଂଗ୍ରହ
୩୭। ସର୍ବସିଦ୍ଧାନ୍ତସାର ସଂଗ୍ରହ
୩୮। ସ୍ୱାତ୍ମନିରୂପଣ
୩୯। ସ୍ୱାତ୍ମପ୍ରକାଶିକା

**ତନ୍ତ୍ରଗ୍ରନ୍ଥ :**

୨। ସୌନ୍ଦର୍ଯ୍ୟ ଲହରୀ
୨। ପ୍ରପଞ୍ଚସାର

**ଶଙ୍କରଙ୍କର ଦେହତ୍ୟାଗ:**

ଆଚାର୍ଯ୍ୟଶଙ୍କର ୩୨ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ । ଉକ୍ତବିଷୟରେ କେତେକ ପଣ୍ଡିତ ବିଭିନ୍ନ ମତ ପୋଷଣ କରିଥିଲେ ମଧ୍ୟ ତନ୍ମଧ୍ୟରେ ଅଧିକ ପ୍ରାମାଣ୍ୟ ନଥିବାରୁ ଆମ୍ଭେ ସେହି ମତାମତକୁ ଗ୍ରହଣ କରିବା ଉଚିତ ନୁହେଁ । ବିଭିନ୍ନ ଗ୍ରନ୍ଥର ଆଲୋଚନା ଓ ସିଦ୍ଧାନ୍ତକୁ ପର୍ଯ୍ୟାଲୋଚନା କରି ତା'ର ନିଷ୍କର୍ଷ ନିମ୍ନରେ ଉଲ୍ଲେଖ କରାଗଲା । ଅଦ୍ୟାବଧି ଶଙ୍କରଙ୍କର ସମାଧିବିଷୟରେ ତିନୋଟି ମତ ପରିଦୃଷ୍ଟ ହୁଏ ।

ପ୍ରଥମତଃ ମାଧବାଚାର୍ଯ୍ୟ ବିରଚିତ 'ଶଙ୍କର ବିଜୟ କାବ୍ୟର' ବର୍ଣ୍ଣନାନୁଯାୟୀ ଶଙ୍କର ବଦ୍ରିନାରାୟଣପୀଠରେ କିଛିଦିନ ଅବସ୍ଥାନ କରି ଦତ୍ତାତ୍ରେୟ ନାମକ ଋଷିଙ୍କୁ ଦର୍ଶନ କରିବାକୁ ଗମନ କଲେ । ସେଠାରେ ଦତ୍ତାତ୍ରେୟଙ୍କ ସହ ସାକ୍ଷାତ୍କାର ପୂର୍ବକ କୈଳାସକୁ ଯାତ୍ରା କରି ନିଜର ସ୍ଥୁଳଶରୀରକୁ ତ୍ୟାଗ କଲେ । ଏହି ପରମ୍ପରାକୁ ବହୁ ବିଦ୍ୱାନମଣ୍ଡଳୀ ସ୍ୱୀକାର କରି ଗୁରୁବଂଶ କାବ୍ୟରେ ଲକ୍ଷ୍ମଣଶାସ୍ତ୍ରୀ କହନ୍ତି -

ଦତ୍ତାତ୍ରେୟଂ ଭୁବନବିନୁତଂ ବୀକ୍ଷ୍ୟ ନତ୍ୱାନ୍‌ଗାଦୀତ୍;
ବୃତ୍ତଂ ସ୍ୱୀୟଂ ସକଳମପିତାନ୍ ପ୍ରେଷିତାନ୍ ଦିକ୍ଷୁଶିଷ୍ୟାନ୍
ସୋଽପିଶ୍ରତ୍ୱା ମୁନିପତିରଦାଦାଶିଷୋ ବିଶ୍ୱରୂପା,
ଚାର୍ଯ୍ୟାଦିଭ୍ୟଃ ସୁଖମବସତାଂ ତତ୍ର ତୌ ଭାଷମାଣୌ ॥

ଏହି ମତକୁ ଚିଦ୍‌ବିଳାସ ଯତିଙ୍କ ରଚିତ ଶଙ୍କର ବିଜୟରେ ଉଲ୍ଲିଖିତ ହୋଇ ରହିଛି -

ଇତ୍ୟୁକ୍ତ୍ୱା ଶଙ୍କରାର୍ଯ୍ୟଃ ପରପ୍ଲବମାଦଗରାତ୍
ଅବଲମ୍ବ୍ୟ କରାଗ୍ରେଣ ଦତ୍ତାତ୍ରେୟଃ ସ ତାପସଃ ॥
ପ୍ରବିବେଶ ଗୁହାଦ୍ୱାରଂ ଦତ୍ତ୍ୱାଜ୍ଞାଂ ଜନସନ୍ତତେଃ ।
କ୍ରମାନୁଗାମ କୈଳାସଂ ପ୍ରମଥୈଃ ପରିବେଷ୍ଟିତମ୍ ॥

ଦ୍ୱିତୀୟ ମତଟି ହେଲା ଗୋବିନ୍ଦ ଯତିଙ୍କ ଚରିତ ଶଙ୍କରାଚାର୍ଯ୍ୟଚରିତମ୍ । ଉକ୍ତ ପୁସ୍ତକର ମତାନୁଯାୟୀ ଶଙ୍କରାଚାର୍ଯ୍ୟଙ୍କ ଦେହାବସାନ କେରଳ ପ୍ରଦେଶରେ ହୋଇଥିଲା । ସେ ରାମେଶ୍ୱର ଦର୍ଶନ କରିବା ପରେ କେରଳ ପ୍ରଦେଶସ୍ଥ ପ୍ରସିଦ୍ଧ ଶୈବସ୍ଥଳୀ ବୃଷାଚଳ ପର୍ବତରେ ଶିବଙ୍କୁ ଆରାଧନା କରିଥିଲେ ଏବଂ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଶ୍ରୀମୂଳ ନାମକ ସ୍ଥାନରେ କୃଷ୍ଣ ଓ ଭାର୍ଗବଙ୍କୁ ପୂଜା କରିଥିଲେ । ତ୍ରିଚୁର ମନ୍ଦିର ଅବସ୍ଥାନ କଲାବେଳେ ନିଜର ସମାଧିସ୍ଥ ହୋଇଥିଲା । ଅତଏବ ବର୍ତ୍ତମାନ ଉକ୍ତ ମନ୍ଦିର ପ୍ରାଙ୍ଗଣରେ ଶଙ୍କରଙ୍କର ଏକ ସମାଧି ରହିଛି । ତାହା 'ମହାବିଷ୍ଣୁ ଚଉତରା' ନାମରେ ପ୍ରସିଦ୍ଧି ଲାଭ କରିଛି ।

ଅନ୍ତିମ ମତଟି କାଞ୍ଚିକାମକ୍ୱୋଟି ପୀଠର ପଣ୍ଡିତମାନେ ଅଭିମତ ପ୍ରଦାନ କରିଛନ୍ତି । ସେମାନଙ୍କ ମତରେ ଶଙ୍କରଙ୍କର ପଞ୍ଚତ୍ୱପ୍ରାପ୍ତି କାଞ୍ଚୀ ପୀଠରେ ନିଷ୍ଚିତ ଭାବରେ ହୋଇଥିଲା । ସଦାଶିବ ବ୍ରହ୍ମେନ୍ଦ୍ରକୃତ ଗୁରୁରତ୍ନମାଳିକା ଟୀକା ଓ ଗୁରୁ ପରମ୍ପରା ସ୍ତୋତ୍ର ମତରେ ତାଙ୍କର ଶେଷ ଜୀବନ କାଞ୍ଚୀ ପୀଠରେ ଅତିବାହିତ ହୋଇଥିଲା । ସେହିପରି ଆନନ୍ଦଗିରି ରଚିତ ଶଙ୍କର ବିଜୟ କାବ୍ୟରେ ଶଙ୍କର କାଞ୍ଚୀ ପୀଠରେ ସ୍ୱର୍ଗାରୋହଣ କରିଥିଲେ ବୋଲି ପ୍ରମାଣ ମିଳେ । କଥିତ ଅଛି ଆଚାର୍ଯ୍ୟ ନିଜେ କୈଳାସ ପର୍ବତରୁ ପାଞ୍ଚଗୋଟି ସ୍ଫଟିକଲିଙ୍ଗ ଯୋଗ ବଳରେ ପାଇଥିଲେ । ତନ୍ମଧ୍ୟରୁ ଶୃଙ୍ଗେରୀରେ ଭୋଗଲିଙ୍ଗ, ଚିଦମ୍ବରରେ ମୋକ୍ଷଲିଙ୍ଗ,

ନେବାଳର ନୀଳକଣ୍ଠ କ୍ଷେତ୍ରରେ ବୀରଲିଙ୍ଗ ଓ ବଦ୍ରିନାରାୟଣଠାରେ ମୁକ୍ତିଲିଙ୍ଗ ସ୍ଥାପନ କରିଥିଲେ । କିନ୍ତୁ ତାଙ୍କର ଦେହତ୍ୟାଗ ସମୟରେ କାଞ୍ଚିରେ ଶାରଦା ପୀଠର ଭାର ଅର୍ପଣ କରି ଯୋଗଲିଙ୍ଗଙ୍କୁ ସ୍ଥାପନା କରିଥିଲେ, ଯେଉଁ ଲିଙ୍ଗ ଅଦ୍ୟାବଧି କାଞ୍ଚିପୀଠ ପୂଜାପାଉଛି ଏବଂ ତାପରେ ଶଙ୍କର ଅନ୍ତର୍ଦ୍ଧାନ ହୋଇଗଲେ ବୋଲି ଶିବ ରହସ୍ୟ ବର୍ଣ୍ଣନା କରେ । ସେହିପରି ରାମଭଦ୍ର ଦୀକ୍ଷିତ ସ୍ୱିରଚିତ ପାତଞ୍ଜଳି ଚରିତରେ ଶଙ୍କରଙ୍କର ମୃତ୍ୟୁ କାଞ୍ଚୀପୀଠରେ ବୋଲି ପ୍ରମାଣ ମିଳେ ।

ଉପର୍ଯ୍ୟୁକ୍ତ ମତରେ ପର୍ଯ୍ୟାଲୋଚନା କରି କୁହାଯାଇପାରେ ଯେ ଉକ୍ତ ପ୍ରମାଣ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଆନନ୍ଦଗିରିଙ୍କ ମତ ଅଧିକ ପ୍ରାମାଣିକ । କାରଣ ଆନନ୍ଦଗିରି ଶଙ୍କରଙ୍କ ସମୟଠାରୁ ନାତିକାଳ । ଅତଃ ପ୍ରମାଣ କରାଯାଏ ଯେ ଶଙ୍କରଙ୍କର ଦେହାବସାନ କାଞ୍ଚିପୀଠରେ ହୋଇଥିଲା ।

ସୁକୋମମତି ବିଦ୍ୱାନମାନଙ୍କ ସୁଖାବବୋଧ ନିମିତ୍ତ ଏହି ପୁସ୍ତକଟି ଉତ୍ସର୍ଗୀକୃତ । ଏହି ଗ୍ରନ୍ଥଟିର ପ୍ରକାଶନରେ ସର୍ବଦା ଅନେକ ବାଧାବିଘ୍ନ ଉପସ୍ଥିତ ହୋଇଛି ଯାହାକି ମୋର ମନେବଳକୁ ଅତିମାତ୍ରାରେ ଦୁର୍ବଳ କରିଥିଲା । ପରମେଶ୍ୱରଙ୍କ ଅପାର କରୁଣାରୁ ପ୍ରଥମେ ଏହି ପୁସ୍ତକର ପ୍ରଥମଖଣ୍ଡ ପ୍ରକାଶିତ ହୋଇଛି । ଦ୍ୱିତୀୟ ଖଣ୍ଡର ପ୍ରକାଶନକାର୍ଯ୍ୟ ସମାପ୍ତ ହେଲା କେବଳ ଧର୍ମଗ୍ରନ୍ଥ ଷ୍ଟୋରର ପରିଚାଳକ ଶ୍ରୀ ବିଦ୍ୟାଧର ସାହୁଙ୍କ ଅର୍ଥ ଓ ଶ୍ରମ ବଳରୁ । ପ୍ରଥମ ଖଣ୍ଡର ପ୍ରକାଶଜନିତ ତିକ୍ତ ଅନୁଭୂତି ଦ୍ୱାରା ଦ୍ୱିତୀୟ ଅନୁବାଦ ନ କରିବା ପାଇଁ ପ୍ରଥମେ ମୁଁ ସ୍ଥିର କରିଥିଲି; କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ମୁଖ୍ୟାଧାପକ ଡକ୍ଟର ଅନାମ ଚରଣ ସ୍ୱାଇଁଙ୍କର ଉପଦେଶ ଓ ସଦିଚ୍ଛା ମୋତେ ପଦେ ପଦେ ଉତ୍ସାହିତ କରିଥିଲା । ତା'ପରେ ମୁଁ କ୍ରମଶଃ ଦ୍ୱିତୀୟ ଖଣ୍ଡର କାର୍ଯ୍ୟ ସମାପ୍ତ କଲି । ପୁସ୍ତକର କଳେବର ବୃଦ୍ଧିକରି ଅଧିକ ଟିପ୍‌ପଣୀ ଓ ବିଶ୍ଳେଷଣ କରିଥିଲେ ପାଠକମାନଙ୍କ ଅବବୋଧ ଆଉ ସୁଗମ ହୋଇପାରିଥା'ନ୍ତା; ପରନ୍ତୁ ପ୍ରକାଶନ ପାଇଁ ପ୍ରକାଶକମାନଙ୍କର ଅନିଚ୍ଛାକୁ ଭୟ କରି ପୁସ୍ତକର ପୃଷ୍ଠା ସଂଖ୍ୟା କମାଇବାକୁ ବାଧ୍ୟ ହେଲି । ଅତ୍ୟନ୍ତ ପରିତାପର ବିଷୟ ଯେ - ବହୁ ଦୂରରେ ମୋର ଅବସ୍ଥାନ ହେତୁ ମୁଦ୍ରଣ କାର୍ଯ୍ୟରେ ଅନେକ ସ୍ଥାନରେ ମୁଦ୍ରଣଗତ ବହୁ ଭ୍ରମ ରହିଯାଇଛି । ତେଣୁ ମୋର ପାଠକମାନଙ୍କୁ ବିଶେଷ ଅନୁରୋଧ ଯେ ସେମାନେ ଭ୍ରମ ସଂଶୋଧନପୂର୍ବକ ପୁସ୍ତକକୁ ପଠନ କରିବେ ଏବଂ ଭ୍ରମସ୍ଥଳଗୁଡ଼ିକ ଲେଖକଙ୍କୁ ଅବଗତ କରାଇଲେ ତାହା ଦ୍ୱିତୀୟ ସଂସ୍କରଣ ସମୟରେ ପରିଷ୍କରଣ କରିବାରେ ମୋତେ ସହାୟକ ହେବ ।

ସଂସ୍କୃତଦିବସ
୧୩।୮।୯୨

ନାଳମତି ସଂକ୍ଷେପେଣ
ପଣ୍ଡିତ ମାର୍କଣ୍ଡ ଦାସ

अथ तृतीयोऽध्यायः

# ତୃତୀୟ ଅଧ୍ୟାୟ - ପ୍ରଥମପାଦ

## ତଦନନ୍ତରପ୍ରତିପତ୍ତ୍ୟଧିକରଣ - ୧

## तदन्तरप्रत्तिपत्याधिकरणम् । सू० १-७ ।

**(୧) ତଦନ୍ତରପ୍ରତିପତ୍ତୌ ରଂହତି ସଂପରିଷ୍ୱକ୍ତଃ ପ୍ରଶ୍ନନିରୂପଣାଭ୍ୟାମ୍ ॥୩-୧-୧॥**

**तदन्तरप्रतिपत्तौ रंहति संपरिष्वक्तः प्रश्ननि-रूपणाभ्याम् ॥ १ ॥**

ତଦନ୍ତରପ୍ରତିପତ୍ତୌ = ଜୀବ ଅନ୍ୟଦେହରେ ପ୍ରାପ୍ତି ବିଷୟରେ ଦେହର ବୀଜଭୂତ ସୂକ୍ଷ୍ମଭୂତରେ, ସଂପରି... = ପରିବେଷ୍ଟିତ ହୋଇ ଧୂମାଦିପଥଦ୍ୱାରା ସ୍ୱର୍ଗଲୋକକୁ, ରଂହତି = ଯାଏ । ପ୍ରଶନି.... ୟାସ=କାରଣ- 'ନେତ୍ଥଂ ଯଥା' ଏହି ପ୍ରଶ୍ନ ଓ 'ଇତି ତୁ ପଞ୍ଚମ୍ୟାହୁତୌ' ଇତ୍ୟାଦି ନିରୂପଣ ଦ୍ୱାରା ପ୍ରମାଣ ଜଣାଯାଏ ।

(୨) ମୂଳ-(କ) ଦ୍ୱିତୀୟେଽଧ୍ୟାୟେ ସ୍ମୃତିନ୍ୟାୟବିରୋଧୋ ବେଦାନ୍ତବିହିତେ ବ୍ରହ୍ମଦର୍ଶନେ ପରିହୃତଃ । ପରପକ୍ଷାଣା ଚାନପେକ୍ଷତ୍ୱଂ ପ୍ରପଞ୍ଚିତଂ । ଶ୍ରୁତିବିପ୍ରତିଷେଧଶ୍ଚ ପରିହୃତଃ । ତତ୍ର ଚ ଜୀବବ୍ୟତିରିକ୍ତାନି ତତ୍ତ୍ୱାନି ଜୀବୋପକରଣାନି ବ୍ରହ୍ମଣୋ ଜାୟନ୍ତ ଇତ୍ୟୁକ୍ତମ୍ ।

(ଖ) ଅଥେଦାନୀମୁପକରଣୋପହିତସ୍ୟ ଜୀବସ୍ୟ ସଂସାରଗତିପ୍ରକାରସ୍ତଦବସ୍ଥାନ୍ତରାଣି ବ୍ରହ୍ମତତ୍ତ୍ୱଂ ବିଦ୍ୟା ଭେଦାଭେଦୌ ଗୁଣୋପସଂହାରାନୁପସଂହାରୌ ସମ୍ୟଗ୍ଦର୍ଶନାତ୍ପୁରୁଷାର୍ଥସିଦ୍ଧିଃ ସମ୍ୟଗ୍ଦର୍ଶନୋପାୟବିଧିଭେଦୋ ମୁକ୍ତିଫଲାନିୟମଶ୍ଚେତ୍ୟେ ତଦର୍ଥଜାତଂ ତୃତୀୟେଽଧ୍ୟାୟେ ନିରୂପୟିଷ୍ୟତେ ପ୍ରସଙ୍ଗାଗତଂ ଚ କିମପ୍ୟନ୍ୟତ୍ ।

(ଗ) ତତ୍ର ପ୍ରଥମେ ତାବତ୍ପାଦେ ପଞ୍ଚାଗ୍ନିବିଦ୍ୟାମାଶ୍ରିତ୍ୟ ସଂସାରଗତିପ୍ରଭେଦଃ ପ୍ରଦର୍ଶ୍ୟତେ ବୈରାଗ୍ୟହେତୋଃ, 'ତସ୍ମାଜ୍ଜୁଗୁପ୍ସେତ' ଇତି ଚାନ୍ତେ ଶ୍ରବଣାତ୍ । ଜୀବୋ ମୁଖ୍ୟପ୍ରାଣସଚିବଃ ସେନ୍ଦ୍ରିୟଃ ସମନସ୍କୋଽବିଦ୍ୟାକର୍ମପୂର୍ବପ୍ରଜ୍ଞାପରିଗ୍ରହଃ ପୂର୍ବଦେହଂ ବିହାୟ ଦେହାନ୍ତରଂ ପ୍ରତିପଦ୍ୟତ ଇତ୍ୟେତଦବଗତମ୍ ।

(ଘ) 'ଅଥୈନମେତେ ପ୍ରାଣା ଅଭିସମାୟନ୍ତି' ଇତ୍ୟେବମାଦେଃ 'ଅନ୍ୟନ୍ନବତରଂ କଲ୍ୟାଣତରଂ ରୂପଂ କୁରୁତେ' (ବୃହ ୪-୪-୧୪) ଇତ୍ୟେବମନ୍ତାତ୍ ସଂସାରପ୍ରକରଣ-ସ୍ଥାଛବାତ୍, ଧର୍ମାଧର୍ମଫଲୋପଭୋଗସଂଭାବାଚ୍ଚ ।



(୨) ଭାଷାଂତର- (କ) ଦ୍ୱିତୀୟ ଅଧ୍ୟାୟରେ ବେଦାନ୍ତପ୍ରତିପାଦିତ ବ୍ରହ୍ମଦର୍ଶନରେ ସ୍ମୃତି ଓ ନ୍ୟାୟର ପରିହାର କରାଯାଇଅଛି । ପରପକ୍ଷ ହିଁ ଅନପେକ୍ଷିତ- ଏହି ବିଷୟର ବିସ୍ତାର ପୂର୍ବକ ବର୍ଣ୍ଣନା ଓ ଶ୍ରୁତିବିରୋଧର ପରିହାର କରାଯାଇଅଛି ଏବଂ ସେଗୁଡ଼ିକରେ ଜୀବଭିନ୍ନ ଜୀବର ଉପକରଣତତ୍ତ୍ୱ ବ୍ରହ୍ମରୁ ଉତ୍ପନ୍ନ ହୁଏ ବୋଲି କୁହାଯାଇଅଛି ।

(ଖ) ବର୍ତ୍ତମାନ ଉପକରଣୋପହିତଜୀବର ସଂସାରଗତିପ୍ରକାର, ତାହାର ଅନ୍ୟଅବସ୍ଥା ବ୍ରହ୍ମତତ୍ତ୍ୱ, ବିଦ୍ୟାର ଭେଦ ଓ ଅଭେଦ, ଗୁଣର ଉପସଂହାର ଓ ଅନୁପସଂହାର ସମ୍ୟଗ୍ଜ୍ଞାନରୁ ପୁରୁଷାର୍ଥସିଦ୍ଧି, ସମ୍ୟଗ୍‌ଜ୍ଞାନରୂପଉପାୟବିଧିର ଭେଦ ଓ ମୁକ୍ତିଫଳର ଅନିୟମ, ଇତ୍ୟାଦି ତୃତୀୟଅଧ୍ୟାୟରେ ନିରୂପଣ କରାଯିବ ଓ ପ୍ରସଙ୍ଗକ୍ରମେ ଆସୁଥିବା କେତେକ ବିଷୟ ମଧ୍ୟ କୁହାଯିବ ।

(ଗ) ସେହି ପ୍ରଥମପାଦରେ ପଞ୍ଚାଗ୍ନିବିଦ୍ୟାକୁ ଆଶ୍ରୟକରି 'ତସ୍ମାତ୍ ଜୁଗୁପ୍ସତେ' (ତେଣୁ ଗମନାଗମନରେ ଦୁଃଖ ହେଲେ ମଧ୍ୟ ସ୍ୱର୍ଗାଦିରେ ଘୃଣା କରାଯାଏ) ଏହିପ୍ରକାର ସମାପ୍ତରେ ଶ୍ରବଣରୁ ସଂସାରଗତିର ପ୍ରଭେଦ ଓ ବୈରାଗ୍ୟହେତୁ ଦେଖାଯାଉଅଛି । ମୁଖ୍ୟପ୍ରାଣ-ସଚିବ, ଜୀବ, ଇନ୍ଦ୍ରିୟ, ମନ, ଅବିଦ୍ୟା, କର୍ମ ଓ ପୂର୍ବପ୍ରଜ୍ଞା ଜନ୍ମାନ୍ତର ସଂସ୍କାର ସହିତ ଦେହ ପରିତ୍ୟାଗ କରି ଅନ୍ୟଦେହକୁ ଯାଏ- ଇତ୍ୟାଦି ଜଣାପଡ଼େ ।

(ଘ) କାରଣ- 'ଅଥୈନମେତେ' (ମରଣ ସମୟରେ ଏହି ବାଗାଦି ଇନ୍ଦ୍ରିୟଗୁଡ଼ିକ ଜୀବର ହୃଦୟରେ ଏକତ୍ରିତ ହୋଇଯାଆନ୍ତି) ଏହିଠାରୁ ଆରମ୍ଭ କରି 'ଅନ୍ୟନ୍ନବତରଂ' (ଅନ୍ୟ ଅଧିକ ସୁନ୍ଦର ଓ କଲ୍ୟାଣତର ରୂପାଦିଦେହର ରଚନା କରେ) ଏହି ବାକ୍ୟପର୍ଯ୍ୟନ୍ତ ସଂସାର ପ୍ରକରଣସ୍ଥ ଶ୍ରୁତି ଅଟେ ଓ ଧର୍ମ ଓ ଅଧର୍ମର ଫଳ ଉପଭୋଗର ସମ୍ଭବ ହୁଏ ।

(୩) ମୂଳ- (କ) କିଂ ଦେହବୀଦୈର୍ଭୂତସୂକ୍ଷ୍ମୈରସଂପରିଷ୍ୱକ୍ତୋ ଗଚ୍ଛତ୍ୟାହୋସ୍ୱିତ୍ ସଂପରିଷ୍ୱକ୍ତ ଇତି ଚିନ୍ତ୍ୟତେ । କିଂ ତାବତ୍ ପ୍ରାପ୍ତମ୍ ? ଅସଂପରିଷ୍ୱକ୍ତ ଇତି । କୁତଃ ? କାରଣୋପାଦାନବଦ୍‌ଭୂତୋପାଦାନସ୍ୟାଶ୍ରୁତତ୍ୱାତ ।

(ଖ) 'ସ ଏତାସ୍ତେଜୋମାତ୍ରାଃ ସମଭ୍ୟାଦଦାନଃ' (ବୃହ ୪-୪-୧) ଇତି ହ୍ୟତ୍ର ତେଜୋମାତ୍ରାଶବ୍ଦେନ କରଣାନାମୁପାଦାନଂ ସଙ୍କୀର୍ତ୍ତୟତି । ବାକ୍ୟଶେଷେ ଚକ୍ଷୁରାଦିସଂଙ୍କୀର୍ତ୍ତନାତ୍' ନୈବଂ ଭୂତମାତ୍ରୋପାଦାନସଙ୍କୀର୍ତ୍ତନମସ୍ତି ।

(ଗ) ସୁଲଭାଷ୍ଟ ସର୍ବତ୍ର ଭୂତମାତ୍ରାଃ । ଯତ୍ରୈବ ଦେହ ଆରବ୍ଧସ୍ତତତ୍ରିବସନ୍ତି, ତତଶ୍ଚ ତାସାଂ ନୟନଂ ନିଷ୍ ପ୍ରୟୋଜନମ୍ । ତସ୍ମାଦସଂପରିଷ୍ୱକ୍ତୋ ଯାତୀତି ।

(ଘ) ଏବଂ ପ୍ରାପ୍ତେ ପଠତ୍ୟାଚାର୍ଯ୍ୟଃ-ତଦନନ୍ତରପ୍ରତିପତ୍ତୌ ରଂହତି ସଂପରିଷ୍ୱକ୍ତ' ଇତି । ତଦନ୍ତରପ୍ରତିପତ୍ତୌ ଦେହବୀଦେ ର୍ଭୂତସୂକ୍ଷ୍ମୈଃ ସଂପରିଷ୍ୱକ୍ତୋ ରଂହତି ଗଚ୍ଛତୀତ୍ୟବଗନ୍ତବ୍ୟମ୍ । କୁତଃ ? ପ୍ରଶ୍ନନିରୂପଣାଭ୍ୟାମ୍ ।

(ଙ) ତଥା ହି ପ୍ରଶ୍ନଃ- 'ବେଦ୍‌ଥ ଯଥା ପଞ୍ଚମ୍ୟାମାହୁତାବାପଃ ପୁରୁଷବଚସୋ ଭବନ୍ତି' (ଛା ୫-୩-୩) ଇତି ନିରୂପଣଞ୍ଚ ପ୍ରତି ବଚନଂ ଦ୍ୟୁପର୍ଜନ୍ୟପୃଥିବୀ-ପୁରୁଷଯୋଷିତସୁ ପଞ୍ଚସ୍ୱଗ୍ନିସୁ ଶ୍ରଦ୍ଧାସୋମବୃଷ୍ଟ୍ୟନ୍ନରେତୋରୂପାଃ ପଞ୍ଚାହୃତୀର୍ଦର୍ଶୟିତ୍ୱା 'ଇତି ତୁ ପଞ୍ଚମ୍ୟାମାହୁତାବାପଃ ପୁରୁଷବଚସୋ ଭବନ୍ତି' (ଛା ୫-୯-୧) ଇତି ତସ୍ମାଦଦ୍‌ଭିଃ ପରିବେଷ୍ଟିତୋ ଜୀବୋ ରଂହତି ବ୍ରଜତୀତି ଗମ୍ୟତେ ।

**(୩) ଭାଷାଂତର-** (କ) ସେହି ଜୀବ ଦେହର ବୀଜଭୂତ ସୂକ୍ଷ୍ମଭୂତରେ ଅସମ୍ବନ୍ଧ ହୁଏ କି ସମ୍ବନ୍ଧିତ ହୁଏ ? ଏହି ବିଷୟରେ ବିଚାର କରାଯାଏ । ତେବେ କଣ ପ୍ରାପ୍ତ ହୁଏ ? ଅସମ୍ବନ୍ଧିତ ହୁଏ, କିପରି ? ଇନ୍ଦ୍ରିୟଗୁଡ଼ିକର ଗ୍ରହଣପରି ଭୂତଗୁଡ଼ିକର ଗ୍ରହଣ ଶୁଣାଯାଏ ନାହିଁ ।

(ଖ) 'ସ ଏତାସ୍ତେଜୋମାତ୍ରାଃ' (ସେ ଏହି ପ୍ରାଣୀର ତେଜୋମାତ୍ରାକୁ ସମ୍ୟଗ୍ ପ୍ରକାରରେ ଗ୍ରହଣକରି ହୃଦୟରେ ଅନୁତ୍କ୍ରାନ୍ତ ହୁଏ) ଏହିଠାରେ 'ତେଜୋମାତ୍ରାଃ' ଶବ୍ଦଦ୍ୱାରା ଶ୍ରୁତିକରଣଗୁଡ଼ିକର ଗ୍ରହଣ ବିଷୟରେ କହେ । କାରଣ-ବାକ୍ୟଶେଷରେ ଚକ୍ଷୁରାଦିର କଥନ ହୁଏ । ଏହିପ୍ରକାରେ କିନ୍ତୁ ଭୂତମାତ୍ରାର ଗ୍ରହଣ କଥନ ନୁହେଁ ।

(ଗ) କିନ୍ତୁ ଭୂତମାତ୍ରା ସର୍ବତ୍ର ସୁଲଭ ଅଟେ । ଯେଉଁଠାରେ ଦେହର ଆରମ୍ଭ ହୁଏ ସେଠାରେ ସେ ହିଁ ରହେ । ସେଠାରେ ସେମାନଙ୍କ ସହ ଗ୍ରହଣ କରିବା ନିଷ୍ପ୍ରୟୋଜନ ଅଟେ । ତେଣୁ ଜୀବ ଅସମ୍ବନ୍ଧିତ ହୋଇଯାଏ ।

(ଘ) ଏହିପ୍ରକାର ପ୍ରାପ୍ତହେବାରୁ ଆଚାର୍ଯ୍ୟ କହନ୍ତି- 'ତଦନ୍ତରପ୍ରତିପତ୍ତୌ ରଂହତି ସଂପରିଷ୍ୱକ୍ତଃ ତଦନ୍ତର ପ୍ରତିପତ୍ତୌ' ଅର୍ଥାତ୍ ଦେହଦ୍ୱାରା ଅନ୍ୟଦେହର ପ୍ରାପ୍ତି ପବିଷୟରେ ଦେହର କାରଣ ସୂକ୍ଷ୍ମଭୂତାଦ୍ୱାରା ଅସମ୍ବନ୍ଧିତ ହୋଇଯାଏ, ଏହି ପ୍ରକାର ଜାଣିବା ଉଚିତ୍ । କାରଣ-ଏହାହିଁ ପ୍ରଶ୍ନ ଓ ନିରୂପଣ ଦ୍ୱାରା ସମ୍ବନ୍ଧିତ ହୁଏ ।

(ଙ) ଯେପରି 'ବେତ୍ଥଂ ଯଥା' (ପ୍ରହାଣ-ହେ ଶ୍ୱେତକେତୁ ! ତୁ କଣ ଜାଣିଛୁ ? ପଞ୍ଚାହୁତିର ହବନ କଳାପରେ ଜଳ (ସୋମ, ଘୃତାଦି ରସ) 'ପୁରୁଷ-ଶରୀର ସଂଜ୍ଞାକୁ କିପରି ପ୍ରାପ୍ତ ହୁଏ) ଏହି ପ୍ରଶ୍ନ ହୁଏ, ସ୍ୱର୍ଗ, ପର୍ଜନ୍ୟ, ପୃଥିବୀ, ପୁରୁଷ ଓ ସ୍ତ୍ରୀ – ଏହି ପଞ୍ଚ ଅଗ୍ନିରେ ଶ୍ରଦ୍ଧା, ସୋମ, ବୃଷ୍ଟି, ଅନ୍ନ ଓ ଶୁକ୍ରରୂପ ଏହି ପାଞ୍ଚ ଆହୁତିକୁ ଦେଖାଇ 'ଇତି ତୁ ପଞ୍ଚମ୍ୟା (ଏହିପ୍ରକାର ପଞ୍ଚଆହୁତିର ପ୍ରକ୍ଷେପ ହୋଇ ଜଳ 'ପୁରୁଷ' ଶବ୍ଦବାଚୀ ହୁଏ) ଏହା ହିଁ ନିରୂପଣ (ପ୍ରତିବଚନ) ତେଣୁ ଜୀବ ଜଳଦ୍ୱାରା ପରିବେଷ୍ଟିତ ବୋଲି ଜ୍ଞାନ ହୁଏ ।

ମୂଳ-(କ) ନନ୍ୱନ୍ୟା ଶ୍ରୁତିଃ ଜଳୁକାବତ୍ ପୂର୍ବଦେହଂ ନ ମୁଞ୍ଚତି ଯାବନ୍ନ ଦେହାନ୍ତ-ରମାତ୍ରମତୀତିଦର୍ଶୟତିତଦ୍ୟଥା ତୃଣଜଳାୟୁକା' (ବୃହ ୪-୪-୩) ଇତି । ତତ୍ରାପ୍ୟ-ପ୍ପରିବେଷ୍ଟିତସ୍ୟୈବ ଜୀବସ୍ୟ କର୍ମୋପସ୍ଥାପିତପ୍ରତିପତ୍ତବ୍ୟଦେହ ବିଷୟ ଭାବନାଦୀର୍ଘୀ-ଭାବାମାତ୍ରଂ ଜଳୁକୟୋପମୀୟତ ଇତ୍ୟବିରୋଧଃ ।

(ଖ) ଏବଂ ଶ୍ରୁତ୍ୟୁକ୍ତେ ଦେହାନ୍ତରପ୍ରତିପତ୍ତିପ୍ରକାରେ ସତି ଯାଃ ପୁରୁଷମତି ପ୍ରଭାବାଃ କଳ୍ପନା ବ୍ୟାପିନାଂ କରଣାନାମାତ୍ମନଶ୍ଚ ଦେହାନ୍ତରପ୍ରତିପତ୍ତୌ କର୍ମବଶାଦ୍‌ବୃତ୍ତିଲାଭସ୍ତତ୍ର ଭବତି । କେବଳ ସୈ୍ୟକାତ୍ମନୋ ବୃତ୍ତିଲାଭସ୍ତତ୍ର ଭବତି । ଇନ୍ଦ୍ରିୟାଣି ତୁ ଦେହବଦତ୍ତିନବାନ୍ୟେବ ତତ୍ର ତତ୍ର ଭୋଗସ୍ଥାନ ଉତ୍ପଦ୍ୟନ୍ତେ ।

(ଗ) ମନ ଏବ ବା କେବଳଂ ଭୋଗସ୍ଥାନମଭିପ୍ରତିଷ୍ଠତେ । ଜୀବ ଏବୋତ୍‌ପ୍ଲୁତ୍ୟ ଦେହାଦ୍ଦେହାନ୍ତରଂ ପ୍ରତିପଦ୍ୟତେ, ଶୁକ ଇବ ବୃକ୍ଷାଦ୍ ବୃକ୍ଷାନ୍ତରମ୍, ଇତ୍ୟେବମାଦ୍ୟାଃ, ତା ସର୍ବା ଏବାନାଦର୍ତ୍ତବ୍ୟାଃ ଶ୍ରୁତିବିରୋଧାତ୍ ।

**(୪) ଭାଷାଂତର-** (କ) ପରନ୍ତୁ 'ତଦ୍ୟଥା ତୃଣଜଳବାୟୁକା' (ସେହି ଦେହସଞ୍ଚାରରେ ଯେପରି ତୃଣଜଳାୟୁକା ଅର୍ଥାତ୍ ଘାସ ଜାତୀୟ କୀଟବିଶେଷ) ଏହି ପ୍ରକାର ଅନ୍ୟଶ୍ରୁତି ଜଳୁକା (କୀଟ) ପରି ଯେତେବେଳେ ଜୀବ ଅନ୍ୟ ଦେହକୁ ପ୍ରାପ୍ତ ହୁଏ ନାହିଁ । ସେତେବେଳେ ପୂର୍ବଦେହକୁ ତ୍ୟାଗ କରେ ନାହିଁ ବୋଲି ଶ୍ରୁତିବାକ୍ୟ କହେ । ସେଠାରେ ଜଳଦ୍ୱାରା ପରିବେଷ୍ଟିତ ଜୀବର କର୍ମଦ୍ୱାରା ଉପସ୍ଥାପିତ (ପାଇବା ଯୋଗ୍ୟ) ଦେହବିଷୟକ ଭାବନାର ଦୀର୍ଘ ଭାବମାତ୍ର ଜଳୁକାଦ୍ୱାରା ଉପମିତ ହୁଏ, ତେଣୁ ଏଥିରେ କୌଣସି ବିରୋଧ ନାହିଁ ।

(ଖ) ଏହିପରି ଅନ୍ୟଦେହର ପ୍ରାପ୍ତି ପ୍ରକାର ଶ୍ରୁତିଦ୍ୱାରା ଏହା କୁହାଗଲା ପରେ ପୁରୁଷ ବୁଦ୍ଧିଦ୍ୱାରା ଏହି କଳ୍ପନା ଉତ୍ପନ୍ନ ହୁଏ । ଯଥା- ଆତ୍ମା ଓ ଇନ୍ଦ୍ରିୟଗୁଡ଼ିକ ବ୍ୟାପକ । ଅନ୍ୟ ଦେହ ପ୍ରାପ୍ତ ହେଲେ କର୍ମବଶ ହୋଇ ସେଥିରେ ହିଁ ବୃତ୍ତିଲାଭ ହୁଏ । ସେହି ଦେହରେ କେବଳ ଆତ୍ମାର ହିଁ ବୃତ୍ତିଲାଭ ହୁଏ । ଇନ୍ଦ୍ରିୟ କିନ୍ତୁ ଦେହପରି ସେହି ସେହି ଭୋଗ ସ୍ଥାନରେ ନୂଆ ହୋଇ ଉତ୍ପନ୍ନ ହୁଏ ।

(ଗ) ଅଥବା କେବଳ ମନହିଁ ଭୋଗସ୍ଥାନ ପ୍ରତି ଯାଏ, ଅଥବା ଯେପରି ଶୁକ ଗୋଟିଏ ବୃକ୍ଷରୁ ଅନ୍ୟ ବୃକ୍ଷକୁ ଡ଼େଇଁଯାଏ, ଇତ୍ୟାଦି ଦ୍ୱାରା ସବୁକଳ୍ପନା ଅନାଦରଣୀୟ ହୁଏ, କାରଣ-ଶ୍ରୁତି ସହିତ ତାହାର ବିରୋଧ ହୁଏ ।

(୧) ମୂଳ-(କ) ନନୂଦାହୃତାଭ୍ୟାଂ ପ୍ରଶ୍ନପ୍ରତିବଚନାଭ୍ୟାଂ କେବଳାଭିରଦ୍‌ଭିଃ ସଂପରିଷ୍ୱକ୍ତୋ ରଂହତୀତି ପ୍ରାପ୍ନୋତି, ଅପଶବ୍ଦଶ୍ରବଣସାମର୍ଥ୍ୟାତ୍ । ତତ୍ର କଥଂ ପ୍ରତିଜ୍ଞାୟତେ, ସର୍ବୈରେବ ଭୂତସୂକ୍ଷ୍ମୈଃ ସଂପରିଷ୍ୱକ୍ତୋ ରଂହତୀତି ? ଅତଃ ଉତ୍ତରଂ ପଠତି-

**(୧) ଭାଷାଂତର-** (କ) ପରନ୍ତୁ ଉଦାହୃତ ପ୍ରଶ୍ନ ଓ ପ୍ରତିବଚନ ଦ୍ୱାରା କେବଳ ଜଳରେ ପରିବେଷ୍ଟିତ ହୋଇ ଜୀବ ଯାଏ, ଏହିପରି ପ୍ରାପ୍ତ ହୁଏ । କାରଣ- ଜଳ ଶବ୍ଦର ଶ୍ରବଣ ରୂପ ସାମର୍ଥ୍ୟ ଅଛି । କିନ୍ତୁ ସବୁ ସୂକ୍ଷ୍ମଭୂତରେ ପରିବେଷ୍ଟିତ ହୋଇ ରହେ । ଏପରି ସାମାନ୍ୟ ରୂପରେ ପ୍ରତିଜ୍ଞା କିପରି ହୁଏ ? ତେଣୁ ତାର ଉତ୍ତର ହେଉଛି-

**त्र्यात्मकत्वात्तु भूयस्त्वात् ॥ २ ॥**

**(୨) ତ୍ର୍ୟାତ୍ମକତ୍ୱାତ୍ତୁ ଭୂୟସ୍ତ୍ୱାତ୍ ॥ ୩-୧-୨ ॥**

ତୁ=ତୁଶବ୍ଦ ଶଙ୍କାନିବୃତ୍ତି କରିବା ପାଇଁ ପ୍ରଯୁଜ୍ୟ ତ୍ର୍ୟାତ୍ମକତ୍ୱାତ୍-ତ୍ରିବୃତ୍ କରଣଶ୍ରୁତି ଦ୍ୱାରା ଅନ୍ୟ ଦୁଇଭୂତ ଦ୍ୱାରା ଯୋଗ ହୋଇ ଜଳ ତ୍ର୍ୟାତ୍ମକ ହୁଏ । ତେଣୁ ଜଳଦ୍ୱାରା ଅନ୍ୟ ଦୁଇ ଭୂତର ଗମନ ସମ୍ବନ୍ଧ ସିଦ୍ଧ ହୁଏ । ଭୂୟସ୍ତ୍ୱାତ୍=କାରଣ-ତେଜ ଇତ୍ୟାଦିକୁ ଅପେକ୍ଷା କରି ଶରୀରରେ ଜଳ ଭୂୟସ୍ତ୍ୱ ହୁଏ ।

(୩) ମୂଳ-(କ) ତୁଶବ୍ଦେନ ଚୋଦିତାମାଶଙ୍କାମୁଚ୍ଛିନ୍ନତି । ତ୍ର୍ୟାତ୍ମିକା ହ୍ୟାପଃ, ତ୍ରିବୃତ୍-କରଣଶ୍ରୁତେଃ । ତାସ୍ୱାରମ୍ଭିସ୍ୱକାଭ୍ୟୁପଗତାସ୍ୱିତରଦପି ଭୂତଦ୍ୱୟମବଶ୍ୟମଭ୍ୟୁପଗନ୍ତବ୍ୟଂ ଭବତି । ତ୍ର୍ୟାତ୍ମକଶ୍ଚ ଦେହସ୍ତ୍ରୟାଣାମପି ତେଜୋବନ୍ନାନାଂ ତସ୍ମିନ୍ କାର୍ଯ୍ୟୋପଲବ୍ଧେଃ, ପୁନଶ୍ଚ ତ୍ର୍ୟାତ୍ମିକସ୍ତ୍ରିଧାତୁତ୍ୱାତ୍ ତ୍ରିଭିର୍ବାତପିତ୍ତଶ୍ଳେଷ୍ମଭିଃ । ନ ସ ଭୂତାନ୍ତରାଣି ପ୍ରତ୍ୟାଖ୍ୟାୟ କେବଳାଭିରଦ୍ଭିରାରବ୍ଧୁଂ ଶକ୍ୟତେ ।

(ଖ) ତସ୍ମାଦ୍ ଭୂୟସ୍ତ୍ୱାପେକ୍ଷୋଽୟମାପଃ ପୁରୁଷବଚସ ଇତି । ପ୍ରଶ୍ନପ୍ରତି ବଚନୟୋର ପଂଶବ୍ଦୋ ନ କୈବଲ୍ୟାପେକ୍ଷଃ । ସର୍ବଦେହେଷୁ ହି ରସଲୋହିତାଦିଦ୍ରବଦ୍ରବ୍ୟଭୂୟସ୍ତ୍ୱଂ ଦୃଶ୍ୟତେ । ନନୁ ପାର୍ଥିବୋ ଧାତୁର୍ଭୂୟିଷ୍ଠୋ ଦେହେଷୂପଲକ୍ଷ୍ୟତେ, ନୈଷୋ ଦୋଷଃ ଇତରାପେକ୍ଷୟାପ୍ୟପାଂ ବାହୁଲ୍ୟଂ ଭବିଷ୍ୟତି । ଦୃଶ୍ୟତେ ଚ ଶୁକ୍ରଶୋଣିତଲକ୍ଷଣେଽପି ଦେହବୀଜେ ଦ୍ରବ୍ୟବାହୁଲ୍ୟମ୍ । କର୍ମ ଚ ନିମିତ୍ତକାରଣଂ ଦେହାନ୍ତରାରମ୍ଭେ ।

(ଗ) କର୍ମାଣି ଚାଗ୍ନିହୋତ୍ରାଦୀନି ସୋମାଜ୍ୟପୟଃ ପ୍ରଭୃତି ଦ୍ରବଦ୍ରବ୍ୟବ୍ୟାପ୍ରାଶ୍ରୟାଣି, କର୍ମସମବାୟିନ୍ୟଶ୍ଚାପଃ ଶ୍ରଦ୍ଧାଶବ୍ଦୋଦିତାଃ ସହ କର୍ମଭିଃ ଦ୍ୟୁଲୋକାଖ୍ୟେଽଗ୍ନୌ ହୂୟନ୍ତ ଇତି ବକ୍ଷ୍ୟତି । ତସ୍ମାଦପ୍ୟପାଂ ବାହୁଲ୍ୟ ପ୍ରସିଦ୍ଧିଃ । ବାହୁଲ୍ୟାଶ୍ଚାପ୍ ଶବ୍ଦେନ ସର୍ବେଷାମେବ ଦେହବୀଜାନାଂ ଭୂତସୂକ୍ଷ୍ମାଣାମୁପାଦାନମିତି ନିରବଦ୍ୟମ୍ ।

**(୩) ଭାଷାଂତର-** (କ) ତୁଶବ୍ଦଦ୍ୱାରା ପୂର୍ବୋକ୍ତଶଙ୍କାର ଉଚ୍ଛେଦ କରାଯାଏ । ତ୍ରିବୃତ୍କରଣଶ୍ରୁତିଦ୍ୱାରା ଜଳ ତ୍ର୍ୟାତ୍ମକ ହୁଏ । ସେହି ଜଳକୁ ଦେହର ଆରମ୍ଭକ ସ୍ୱୀକାର କଲାପରେ ଅନ୍ୟଦୁଇଟି ଭୂତ ତେ୍ୟନ, ଜଳ ଓ ଅନ୍ନ- ଏହି ତିନୋଟିରେ କାର୍ଯ୍ୟ ଉପଲବ୍ଧ ହୁଏ । ସେହି ଜଳକୁ ଦେହର ଆରମ୍ଭକ ସ୍ୱୀକାର କରିବା ଉଚିତ୍ । ଦେହ ତ୍ର୍ୟାତ୍ମକ ଅଟେ । କାରଣ-ତେଜ, ଜଳ ଓ ଅନ୍ନ-ଏହି ତିନୋଟିରେ କାର୍ଯ୍ୟ ଉପଲବ୍ଧ ହୁଏ । ପୁଣି ଦେହ ତ୍ର୍ୟାତ୍ମକ ଅଟେ । କାରଣ-ବାତ, ପିତ୍ତ ଓ କଫରେ ତ୍ରିଧାତୁ ଅଟେ ।

(ଖ) ଅନ୍ୟ ଭୂତଗୁଡ଼ିକର ପ୍ରତ୍ୟାଖ୍ୟାନ କରି କେବଳ ଜଳଠାରୁ ଏହା ଆରମ୍ଭ ହୋ ସମ୍ଭବ ନୁହେଁ । ତେଣୁ ଜଳ ପୁରୁଷାତ୍ମକ ହୁଏ । ଏହି ପ୍ରଶ୍ନ ଓ ପ୍ରତିବଚନରେ



ଅପେକ୍ଷା ଦ୍ୱାରା ହୁଏ । କାରଣ- ସବୁଦେହରେ ରସ- ଲୋହିତ ଇତ୍ୟାଦି ଦ୍ରବୀଭୂତଦ୍ରବ୍ୟଗୁଡ଼ିକର ହୁଏ କି ? ଏହା ଦୋଷ ନୁହେଁ । କାରଣ-ଅନ୍ୟକୁ ଅପେକ୍ଷା କଲେ ଜଳର ବହୁଳ ହେବ । ଶୁକ୍ରଶୋଣିତରୂପ ଦେହର କାରଣରେ ମଧ୍ୟ ଦ୍ରବବାହୁଲ୍ୟ ଦେଖିବାରେ ଆସେ । ଅନ୍ୟ ସ୍ୱର୍ଗୀୟ ଦେହର ଆରମ୍ଭରେ କର୍ମ ନିମିତ୍ତକାରଣ ହୁଏ ।

(ଗ) ଅଗ୍ନି ହୋତ୍ରାଦିକର୍ମ ସାମ, ପୁତ, ପୟାଦି ଦ୍ରବଦ୍ରବ୍ୟରେ ଆଶ୍ରିତ ହୁଅନ୍ତି ଏବଂ କର୍ମସମ୍ବନ୍ଧୀ ଜଳ ଶ୍ରଦ୍ଧାଶବ୍ଦରେ କୁହାଗଲା । ତାହା କର୍ମସହିତ ସ୍ୱର୍ଗଲୋକନାମକ ଅଗ୍ନିରେ ଆହୁତ କରାଯିବା କଥା ଆଗରେ କୁହାଯିବ । ତେଣୁ ଜଳର ବାହୁଲ୍ୟ ପ୍ରସିଦ୍ଧ ଅଟେ । ବାହୁଲ୍ୟ ହେଲେ ଅପଶବ୍ଦଦ୍ୱାରା ସମସ୍ତ ଦେହବୀଜ ସୂକ୍ଷ୍ମଭୂତର ଗ୍ରହଣ ହୁଏ ବୋଲି କହିଲେ ଦୋଷ ଶୂନ୍ୟ ହେବ ।

**प्राणगतेश्च ॥ २० ॥**

**(୧) ପ୍ରାଣଗତେଷ୍ଚ ॥ ୩-୧-୩ ॥**

ପ୍ରାଣଗତେଶ୍ଚଃ ଚ = 'ତମୁତ୍କ୍ରାମନ୍ତଂ ପ୍ରାଣୋଽନୂତ୍କ୍ରାମନ୍ତି' ଏହି ଶ୍ରୁତିରେ ଜୀବ ସହିତ ଇନ୍ଦ୍ରିୟର ଗତି ପ୍ରତିପାଦିତ ହୁଏ । ତେଣୁ ଜୀବ ସୂକ୍ଷ୍ମଭୂତଦ୍ୱାରା ପରିବେଷ୍ଟିତ ହୁଏ ।

(୨) ମୂଳ-(କ) ପ୍ରାଣାନାଂ ଚ ଦେହାନ୍ତର ପ୍ରତିପତ୍ତୌ ଗତିଃ ଶ୍ରାବ୍ୟତେ- 'ତମୁତ୍କ୍ରାନ୍ତଂ ପ୍ରାଣୋଽନୂତ୍କ୍ରାମତି ପ୍ରାଣମନୂତ୍କ୍ରାମନ୍ତଂ ସର୍ବେ ପ୍ରାଣା ଅନୂତ୍କ୍ରାମନ୍ତି' (ବୃହ ୪-୪-୨) ଇତ୍ୟାଦିଶ୍ରୁତିଭ୍ୟଃ । ସା ଚ ପ୍ରାଣାନାଂ ଗତିର୍ନାଶ୍ରୟମନ୍ତରେଣ ସମ୍ଭବତୀତ୍ୟତଃ ପ୍ରାଣଗତିପ୍ରଯୁକ୍ତା ତଦାଶ୍ରୟଭୂତାନାମପାମପି ଭୂତାନ୍ତରୋପସୃଷ୍ଟାନାଂ ଗତିରର୍ଥାଦବଗମ୍ୟତେ । ନ ହି ନିରାଶ୍ରୟାଃ ପ୍ରାଣାଃ କ୍ୱଚିଦ୍‌ଗଚ୍ଛନ୍ତି ତିଷ୍ଠନ୍ତି ବା ଜୀବତୋ ଦର୍ଶନାତ୍ ।

**(୨) ଭାଷାଂତର-** (କ) ଅନ୍ୟଦେହର ପ୍ରାପ୍ତିରେ 'ତମୁତ୍କ୍ରାନ୍ତଂ' (ସେହି ଜୀବର ଉତ୍କ୍ରାନ୍ତି ହେଲାପରେ ପ୍ରାଣ ଉତ୍କ୍ରମଣ କରେ, ପ୍ରାଣର ଉତ୍କ୍ରାନ୍ତ ହେଲାପରେ ସବୁପ୍ରାଣ ଇନ୍ଦ୍ରିୟଗୁଡ଼ିକର ଉତ୍କ୍ରମଣ କରେ) ଇତ୍ୟାଦି ଶ୍ରୁତିବାକ୍ୟଦ୍ୱାରା ପ୍ରାଣରଗତି ଶୁଣାଯାଏ । ପ୍ରାଣର ସେହିଗତି ବିନା ଆଶ୍ରୟରେ ଉପପନ୍ନ ହୁଏ ନାହିଁ । ତେଣୁ ପ୍ରାଣର ଗତିଦ୍ୱାରା ପ୍ରଯୁକ୍ତପ୍ରାଣର ଆଶ୍ରୟଭୂତ ଅନ୍ୟଭୂତଦ୍ୱାରା ସମ୍ବନ୍ଧ ଜଳର ଗତି ଅର୍ଥତଃ ଅବଗତ ହୁଏ । କାରଣ- ନିରାଶ୍ରୟ ପ୍ରାଣ କେଉଁଠାରେ ହେଲେ ହୁଏ ନାହିଁ ଅଥବା କେଉଁଠାରେ ହେଲେ ରହେନାହିଁ । ଏହିପରି ଦେହରେ ପ୍ରାଣ ସାଶ୍ରୟ ରୂପରେ ଦେଖାଯାଏ ।

**अग्न्यादिगतिश्रुतेरिति चेन्न भाक्तत्वात् ॥ ४॥**

**(୧) ଅଗ୍ନ୍ୟାଦିଗତିଶ୍ରୁତେରିତି ଚେନ୍ନ ଭାକ୍ତତ୍ୱାତ୍ ॥ ୩-୧-୪ ॥**

ଅଗ୍ନ୍ୟାଦିଗତିଶ୍ରୁତେଃ='ଅଗ୍ନିଂ ବାଗପ୍ୟେତି' ଇତ୍ୟାଦି ବେଦବାକ୍ୟରେ ବାଗ୍ ପ୍ରଭୃତିର ଅଗ୍ନି ଇତ୍ୟାଦିରେ ଗମନ ପ୍ରତିପାଦିତ ହୁଏ । କିନ୍ତୁ ତଦ୍ଦ୍ୱାରା ଜୀବର ସହିତ ଇନ୍ଦ୍ରିୟଗୁଡ଼ିକ

ନୁହେଁ । ଇତି ଚେନ୍ନ = ଏହିପରି କହିବା ଠିକ୍ ନୁହେଁ । ଇତି ଚେନ୍ନ ଏହିପରି କହିବା ଠିକ୍ ନୁହେଁ । ଭା୍କ୍ତତ୍ୱାତ୍ = କାରଣ-'ତମୁତ୍କ୍ରାନ୍ତଂ' ଇତ୍ୟାଦି ବେଦବାକ୍ୟ ସହିତ ବିରୋଧ ହେଲେ ଅଗ୍ନି ଇତ୍ୟାଦିରେ ଗତିପ୍ରତିପାଦକଶ୍ରୁତିଗୌଣ ହୁଏ ।

(୨) ମୂଳ-(କ) ସ୍ୟାଦେତତ୍ । ନୈବ ପ୍ରାଣା ଦେହାନ୍ତରପ୍ରତିପତ୍ତୌ ସହ ଜୀବନେ ଗଚ୍ଛନ୍ତି । ଅଗ୍ନ୍ୟାଦିଗତିଶ୍ରୁତେଃ । ତଥାହି ଶ୍ରୁତିର୍ମରଣକାଳେ ବାଗାଦୟଃ ପ୍ରାଣା ଅଗ୍ନ୍ୟାଦୀନ୍ ଦେବାନ୍ ଗଚ୍ଛନ୍ତୀତି ଦର୍ଶୟତି । 'ଯତ୍ରାସ୍ୟ ପୁରୁଷସ୍ୟ ମୃତସ୍ୟାଗ୍ନିଂ ବାଗପ୍ୟେତି ବାତଂ ପ୍ରାଣଃ' (ବୃହ ୩-୨-୧୩) ଇତ୍ୟାଦିନେତି ଚେତ୍-

(ଖ) ନ, ଭାକ୍ତତ୍ୱାତ୍ ବାଗାଦୀନାମଗ୍ନ୍ୟାଦିଗତିଶ୍ରୁତିଗୌଣୀ; ଲୋମସୁ କେଶେଷୁ ଚଦର୍ଶନାତ୍ । 'ଔଷଧୀର୍ଲୋମାନି ବନସ୍ପତୀନ୍ କେଶାଃ' (ବୃହ ୩-୨-୧୩) ଇତି ହି ତତ୍ରାମ୍ନାୟତେ । ନ ହି ଲୋମାନି କେଶାଶ୍ଚୋତ୍ପତ୍ୟୌଷଧୀର୍ବନସ୍ପତୀଂଶ୍ଚ ଗଚ୍ଛନ୍ତୀତି ସମ୍ଭବନ୍ତି ।

(ଗ) ନ ଚ ଜୀବସ୍ୟ ପ୍ରାଣୋପାଧିପ୍ରତ୍ୟାଖ୍ୟାନେ ଗମନମବକଳ୍ପ୍ୟେତୋ । ନାପି ପ୍ରାଣୈର୍ବିନା ଦେହାନ୍ତର ଉପଭୋଗ ଉପପଦ୍ୟତେ ।

(ଘ) ବିସ୍ପଷ୍ଟଂ ଚ ପ୍ରାଣାନାଂ ସହ ଜୀବେନ ଗମନମନ୍ୟତ୍ର ଶ୍ରାବିତମ୍ । ଅତୋ ବାଗାଦ୍ୟଧିଷ୍ଠିତ୍ରୀଣାମଗ୍ନ୍ୟାଦିଦେବତାନାଂ ବାଗାଦ୍ୟୁପକାରିଣୀନାଂ ମରଣକାଳଉପକାରନିବୃତ୍ତି-ମାତ୍ରମପେକ୍ଷ୍ୟ ବାଗାଦୟୋଽଗ୍ନ୍ୟାଦୀନ୍ ଗଚ୍ଛନ୍ତୀତ୍ୟୁପଚର୍ଯ୍ୟତେ ।

**(୨) ଭାଷାଂତର** - (କ) ଏହା ହୋଇପାରେ, ପରନ୍ତୁ ପ୍ରାଣ ଦେହାନ୍ତର ପ୍ରାପ୍ତିରେ ଜୀବ ସହିତ ହୁଏ ନାହିଁ, କାରଣ-ଅଗ୍ନ୍ୟାଦିରେ ଗତିଶ୍ରୁତି ଅଛି । ଯେପରି 'ଯତ୍ରାସ୍ୟ' (ଯେଉଁ ସ୍ଥାନରେ ଏହି ମୃତପୁରୁଷର ବାକ୍ ଅଗ୍ନିରେ ଲୀନ ହୋଇଯାଏ ଏବଂ ବାୟୁରେ ପ୍ରାଣ ଲୀନ ହୁଏ) ଇତ୍ୟାଦି ଶ୍ରୁତିରେ ମରଣ ସମୟରେ ବାଣୀ ପ୍ରଭୃତି ପ୍ରାଣ ଅଗ୍ନି ଇତ୍ୟାଦି ଦେବତାକୁ ପ୍ରାପ୍ତହେବା ଦେଖାଯାଏ ।

(ଖ) ଏହିପରି ଯଦି କହ, ଏହା କିନ୍ତୁ ଠିକ୍ ନୁହେଁ, କାରଣ-ସେ ଗୌଣ ଅଟେ । ବାକ୍ ଇତ୍ୟାଦି ଇନ୍ଦ୍ରିୟଗୁଡ଼ିକର ଅଗ୍ନି ପ୍ରଭୃତି ଗତିଶ୍ରୁତି ଅଟେ, କାରଣ - ଲୋମ ଓ କେଶରେ ଏହିପରି ଦେଖାଯାଏ ନାହିଁ । 'ଔଷଧିର୍ଲୋମାନି' (ଲୋମ ଓ ଔଷଧିରେ ଓ କେଶରେ ବନସ୍ପତିରେ ଲୀନ ହୁଅନ୍ତି) ଇତ୍ୟାଦି ଏଠାରେ ବେଦବାକ୍ୟ ଅଛି । କେଶ ଓ ଲୋମକୁ ଛାଡ଼ିଲେ ଉପାଧି ଓ ବନସ୍ପତିକୁ ପାଇବା ସମ୍ଭବ ନୁହେଁ ।

(ଗ) ତେଣୁ ଜୀବର ପ୍ରାଣ ଉପାଧି ପରିତ୍ୟାଗ କଲାପରେ ଯାଇପାରେ ନାହିଁ ଏବଂ ପ୍ରାଣବିନା ଅନ୍ୟଦେହର ଉପଯୋଗ ଉପପନ୍ନ ହୁଏ ନାହିଁ ।



(ଘ) ପ୍ରାଣର ଜୀବ ସହ ଅନ୍ୟସ୍ଥାନକୁ ଯିବା (ତମୁତ୍କ୍ରାମନ୍ତି) ସ୍ପଷ୍ଟଭାବେ ଶୁଣାଯାଏ । ତେଣୁ ବାଣୀ ଇତ୍ୟାଦିର ଅଧିଷ୍ଠାତୃ ଓ ବାଗାଦିର ଉପକାରକ ଅଗ୍ନି ଇତ୍ୟାଦି ଦେବତାମାନଙ୍କର ମରଣକାଳରେ ଉପକାରର ନିବୃତ୍ତକୁ ଅପେକ୍ଷାଦ୍ୱାରା ବାଗାଦି ଅଗ୍ନିରେ ଲୀନ ହୁଅନ୍ତି - ଏହିପରି ଉପଚାର କରାଯାଇଛି ।

**प्रथमेऽश्रवणादित चेन्न ता एव ह्युपपत्ते ॥ ५ ॥**

**ପ୍ରଥମେଽଶ୍ରବଣାଦିତ ଚେନ୍ନ ତା ଏବ ହ୍ୟୁପପତ୍ତେଃ ॥ ୩-୧-୫ ॥**

ଦ୍ୟୁଲୋକ ଆଦି ପାଞ୍ଚ ଅଗ୍ନିରେ, ପ୍ରଥମେ = ପ୍ରଥମେ ଦ୍ୟୁଲୋକ ନାମକ ଅଗ୍ନିରେ, ଅଶ୍ରବଣାତ୍ = 'ତସ୍ମିନ୍ନେତସ୍ମିନ୍ନଗ୍ନୌ' ଇତ୍ୟାଦି ଶ୍ରୁତିଦ୍ୱାରା ଶ୍ରଦ୍ଧାର ଆହୁତିତ୍ୱ ଶ୍ରବଣ ହୁଏ । ଜଳର ନୁହେଁ । ଇତି ଚେନ୍ନ = ଏହା ଯଦି କହ, ତାହା ଯୁକ୍ତିଯୁକ୍ତ ନୁହେଁ । ହି କାରଣ 'ଆପୋ ଭାସ୍ମୈ' ଇତ୍ୟାଦି ଶ୍ରୁତିଦ୍ୱାରା ଜଳ ଲକ୍ଷିତ ହୁଏ । ଉପପତ୍ତେଃ କାରଣ ଏପରି ପ୍ରଶ୍ନ ଓ ପ୍ରତିବଚନର ଉପପତ୍ତି ହୁଏ ।

(୨) ମୂଳ-(କ) ସ୍ୟାଦେତତ୍-କଥମ୍ ପୁନଃ 'ପଞ୍ଚମ୍ୟାମାହୁତାବାପଃ ପୁରୁଷବଚସୋ ଭବନ୍ତି' (ଛା ୫-୩-୩) ଇତ୍ୟେତନ୍ନିର୍ଧାରୟିତୁଂ ପାର୍ଯ୍ୟତେ ? ଯାବତା ନୈବ ପ୍ରଥମେଽଗ୍ନାବପାଂ ଶ୍ରବଣମସ୍ତି ।

(ଖ) ଇହ ହି ଦ୍ୟୁଲୋକପ୍ରଭୃତୟଃ ପଞ୍ଚାଗ୍ନୟଃ ପଞ୍ଚାନାମାହୁତିମାଧରତ୍ୱେନାଧୀତାଃ, ନୈଷାଂ ଚ ପ୍ରମୁଖେ 'ଅସୌବାବ ଲୋକେ । ଗୌତମାଗ୍ନିଃ' (ଛା ୫-୪-୧) ଇତ୍ୟୁପନ୍ୟସ୍ୟ 'ତସ୍ମିନ୍ନେତସ୍ମିନ୍ନଗ୍ନୌ ଦେବାଃ ଶ୍ରଦ୍ଧାଂ ଜୁହ୍ୱତି' (ଛା ୫-୪-୨) ଇତି ଶ୍ରଦ୍ଧା ହୌମ୍ୟଦ୍ରବ୍ୟତେନା ବେଦିତା । ନ ତତ୍ରାପୋ ହୌମ୍ୟଦ୍ରବ୍ୟତୟା ଶ୍ରୁତାଃ ।

(ଗ) ଯଦି ନାମ ପର୍ଜନ୍ୟାଦିଷୁତ୍ତରେଷୁ ଚତୁର୍ଷ୍ୱଗ୍ନିଷ୍ୱପାଂ ହୌମ୍ୟଦ୍ରବ୍ୟତା ପରିକଳ୍ପେତ, ପରିକଳ୍ପ୍ୟତାଂ ନାମ, ତେଷୁ ହୋତବ୍ୟତୟୋପାତ୍ତାନାଂ ସୋମାଦୀନାମବ୍ ବହୁଳତ୍ୱୋପପତ୍ତେଃ । ପ୍ରଥମେ ତ୍ୱଗ୍ନୌ ଶ୍ରୁତାଂ ଶ୍ରଦ୍ଧାଂ ପରିତ୍ୟଜ୍ୟାଶ୍ରୁତା ଆପଃ ପରିକଳ୍ପ୍ୟନ୍ତ ଇତି ସାହସମେତତ୍ ।

(ଘ) ଶ୍ରଦ୍ଧା ଚ ନାମ ପ୍ରତ୍ୟୟବିଶେଷଃ, ପ୍ରସିଦ୍ଧସାମର୍ଥ୍ୟାତ୍ । ତସ୍ମାଦଯୁକ୍ତଃ ପଞ୍ଚମ୍ୟାମାହୁତାବପାଂ ପୁରୁଷଭାବ ଇତି ଚେତ୍ ।

(୨) ଭାଷାଂତର- (କ) ଏହି ଶଙ୍କା ହୁଏ ଯେ- ଯଦି ପ୍ରଥମ ଅଗ୍ନିରେ ଜଳର ଶ୍ରବଣ ନୁହେଁ, ତେବେ 'ପଞ୍ଚମ୍ୟାମାହୁତାବାପଃ' (ପାଞ୍ଚଆହୁତିରେ ଜଳ ପୁରୁଷସଞ୍ଜ୍ଞକ ହୁଏ) ଏହି ନିର୍ଦ୍ଧାରଣ କେଉଁ ପ୍ରକାରରେ ହୁଏ ?

(ଖ) କାରଣ- ଏଠାରେ ଦ୍ୟୁଲୋକ ପ୍ରଭୃତି ପାଞ୍ଚଆହୁତିର ଆଧାରରୂପରେ ଅଧିନ ହୁଏ । ସେଠାରେ ପ୍ରଥମେ 'ଅସୌ ବାବ' (ହେ ଗୌତମ । ଏହି ଦ୍ୟୁଲୋକ ଅଗ୍ନି

ଅଟେ) ଏହିପ୍ରକାର ଉପନ୍ୟାସ କରି 'ତସ୍ମିନ୍ନେତସ୍ମିନ୍' (ଏହି ଦ୍ୟୁଲୋକରୂପ ଅଗ୍ନିରେ ଦେବଯଜମାନ ଶ୍ରଦ୍ଧାର ହବନ କରନ୍ତି) ଏହିପ୍ରକାର ଶ୍ରଦ୍ଧା ହୌମ୍ୟ ଦ୍ରବ୍ୟରୂପରେ ପ୍ରତିପାଦିତ ହୁଏ । କିନ୍ତୁ ସେଠାରେ ହୌମ୍ୟଦ୍ରବ୍ୟରୂପରେ ଜଳ ଶ୍ରୁତ ନୁହେଁ ।

(ଗ) ପର୍ଜନାଦି ଉତ୍ତର ଚାରି ଅଗ୍ନିରେ ଜଳର ହୌମ୍ୟଦ୍ରବ୍ୟରୂପରେ କରିବା ହିଁ ଉତ୍ତମମାତ୍ର । କାରଣ-ସେଥିରେ ହବନୀୟରୂପରେ ଗୃହୀତ ହେଉଥିବା ସୋମ ଇତ୍ୟାଦି ଜଳର ଆଧିକ୍ୟ ଯୁକ୍ତିଯୁକ୍ତ ଅଟେ । କିନ୍ତୁ ପ୍ରଥମ ଅଗ୍ନିରେ ଶ୍ରୁତଶବ୍ଦର ପରିତ୍ୟାଗ କରି ଅଶ୍ରୁତ ଜଳର କଳ୍ପନା କରିବା ସାହାସମାତ୍ର । ଏହି ପ୍ରକାର ପ୍ରସିଦ୍ଧିର ସାମର୍ଥ୍ୟରୁ ଶ୍ରଦ୍ଧା ପ୍ରତ୍ୟୟ (ବିଶ୍ୱାସ) ବିଶେଷ ଅଟେ । ତେଣୁ ପାଞ୍ଚଆହୁତିରେ ଜଳର ପୁରୁଷଭାବ ଠିକ୍ ନୁହେଁ ବୋଲି ଯଦି କହ ।

(୩) ମୂଳ-(କ) ନୈଷୋ ଦୋଷଃ । ଯତ୍ରସ୍ତତ୍ରାପି ପ୍ରଥମେଽଗ୍ନୌ ତା ଏବାପଃ ଶ୍ରଦ୍ଧାଶବ୍ଦେନାଭିପ୍ରେୟନ୍ତେ । କୁତଃ ? ଉପପତ୍ତେଃ । ଏବଂ ହ୍ୟାଦିମଧ୍ୟାବସାନସଂଗାମଦନା-ଦନା କୁଳମେତଦେବବାକ୍ୟ ମୁପପଦ୍ୟନ୍ତେ ।

(ଖ) ଇତରଥା ପୁନଃ ପଞ୍ଚମ୍ୟାମାହୁତାବପାଂ ପୁରୁଷବଚସ୍ତ୍ୱପ୍ରକାରେ ପୃଷ୍ଟେ ପ୍ରତିବଚ ନାବସରେ ପ୍ରଥମାହୁତିସ୍ଥାନେ ଯଦ୍ୟନପୋ ହୌମ୍ୟଦ୍ରବ୍ୟ ଶ୍ରଦ୍ଧାଂ ନାମାବତାରୟେତ୍ତତୋଽ-ନ୍ୟଥା ପ୍ରଶ୍ନୋଽନ୍ୟଥା ପ୍ରତିବଚନମିତ୍ୟେକବାକ୍ୟତା ନ ସ୍ୟାତ୍ । 'ଇତି ତୁ ପଞ୍ଚମ୍ୟା ହୁତାବାପଃ ପୁରୁଷବଚସୋ ଭବନ୍ତି' ଇତି ଚୋପସଂହରନ୍ନେତ ଦେବ ଦର୍ଶୟତି ।

(ଗ) ଶ୍ରଦ୍ଧାକାର୍ଯ୍ୟଂ ଚ ସୋମବୃଷ୍ଟ୍ୟାଦି ସ୍ଥୁଳୀଭବଦବ୍‌ବହୁଳଂ ଲକ୍ଷ୍ୟତେ । ସା ଚ ଶ୍ରଦ୍ଧାୟା ଅପ୍ତ୍ୱେମୁକ୍ତିଃ । କାରଣାନୁରୂପଂ ହି କାର୍ଯ୍ୟଂ ଭବତି । ନ ଚ ଶ୍ରଦ୍ଧାଖ୍ୟଃ ପ୍ରତ୍ୟୟୋ ମନସୋ ଜୀବସ୍ୟ ବା ଧର୍ମଃ ସନ୍ ଧର୍ମିଣୋ ନିଷ୍କୃଷ୍ୟ ହୋମାୟୋ ପାଦାତୁଂ ଶକ୍ୟତେ, ପଶ୍ୱାଦିଭ୍ୟ ଇବ ହୃଦୟାଦୀନୀତ୍ୟାପ ଏବ ଶ୍ରଦ୍ଧାଶବ୍ଦା ଭବେୟୁଃ ।

(ଘ) ଶ୍ରଦ୍ଧାଶବ୍ଦଶ୍ଚାପ୍‌ସୂପପଦ୍ୟତେ, ବୈଦିକପ୍ରୟୋଗଦର୍ଶନାତ୍ 'ଶ୍ରଦ୍ଧା ବା ଆପଃ ଇତି । ତନୁତ୍ୱଂ ଶ୍ରଦ୍ଧାସାରୂପ୍ୟଂ ଗଚ୍ଛନ୍ତ୍ୟ ଆପୋ ଦେହବୀଜଭୂତା ଇତ୍ୟତଃ ଶ୍ରଦ୍ଧାଶବ୍ଦାସ୍ୟୁଃ ଯଥା ସିଂହପରାକ୍ରମୋ ନରଃ ସିଂହଶବ୍ଦୋ ଭବତି ।

(ଙ) ଶ୍ରଦ୍ଧାପୂର୍ବକକର୍ମସମବାୟାଚ୍ଚାପ୍‌ସୁ ଶ୍ରଦ୍ଧାଶବ୍ଦ ଉପପଦ୍ୟତେ, ମଞ୍ଚଶବ୍ଦ ଇବ ପୁରୁଷେଷୁ । ଶ୍ରଦ୍ଧାହେତୁତ୍ୱାଚ୍ଚ ଶ୍ରଦ୍ଧାଶବ୍ଦୋପପତ୍ତିଃ, 'ଆପୋ ହାସ୍ମୈ ଶ୍ରଦ୍ଧାଂ ସଂନମନ୍ତେ ପୁଣ୍ୟାୟ କର୍ମଣେ' ଇତି ଶ୍ରୁତେଃ ।



(୩) ଭାଷାଂତର- (କ) ତେବେ ସେ ଦୋଷ ନୁହେଁ, କାରଣ-ସେଠାରେ ପ୍ରଥମ ଅଗ୍ନିରେ ଶଦ୍ଧାଶଦ୍ଦଦ୍ୱାରା ସେହିଜଳ ଅଭିପ୍ରେତ ହୁଏ । କିପରି ? ତେଣୁ ଏହା ଠିକ୍ । ଏହିପରି ଆଦି, ମଧ୍ୟ ଓ ଶେଷରେ ସଙ୍ଗାନ (ଏକାର୍ଥତା) ନ ହେଲେ ଆୟାସର ଏକବାକ୍ୟ ଉପପନ୍ନ ହୁଏ ।

(ଖ) ନୋଚେତ୍ ପାଞ୍ଚଆହୁତିରେ 'ଜଳ ପୁରୁଷସଂଜ୍ଞକ କିପରି ହୁଏ ? ଏହି ପ୍ରଶ୍ନ କଳାପରେ ପ୍ରତିବଚନର ଅବସରରେ ଯଦି ପ୍ରଥମଆହୁତିର ସ୍ଥାନରେ ଜଳଭିନ୍ନ ହୌମ୍ୟଦ୍ରବ୍ୟ ରୂପରୁ ଶ୍ରଦ୍ଧା ନିଆଯିବ, ତେବେ ପ୍ରଶ୍ନ ଏହିପ୍ରକାରର ଓ ପ୍ରତିବଚନ ଅନ୍ୟପ୍ରକାରର ଏକବାକ୍ୟତା ହେବ ନାହିଁ । 'ଇତି ତୁ' (ଏହିପରି ପାଞ୍ଚଆହୁତିରେ ଜଳ ପୁରୁଷସଂଜ୍ଞକ ହୁଏ ଏହିପରି ଉପସଂହାର କରୁଥିବା ଶ୍ରୁତି ଏଠାରେ ଦେଖାଯାଏ ।

(ଗ) ଶ୍ରଦ୍ଧାର କାର୍ଯ୍ୟ ସୋମ, ବୃଷ୍ଟି ଆଦି ଉତ୍ତରୋତ୍ତର ସ୍ଥୂଳ ହେଉଥିବା ଜଳଭୂୟସ୍ତ୍ୱ ଦେଖାଇବାରେ ଆସେ । ଏହି ଶ୍ରଦ୍ଧାର ଜଳହେବା ପାଇଁ ଯୁକ୍ତି ଅଛି । କାରଣର ଅନୁରୂପ କାର୍ଯ୍ୟ ହୁଏ । ଯେପରି ପଶୁ ଇତ୍ୟାଦି ଦ୍ୱାରା ହୃଦୟାଦି ଅବୟବ ବାହାର କରି ହୋମ ପାଇଁ ଗ୍ରହଣ କରାଯାଏ, ସେପରି ଶ୍ରଦ୍ଧାନାମକ ପ୍ରତ୍ୟୟ (ବିଶ୍ୱାସ) ମନ ଅଥବା ଜୀବର ଧର୍ମ ହୋଇଥିବା ଧର୍ମୀରୁ ବାହାରକରି ଗ୍ରହଣ କରାଯାଇପାରେ ନାହିଁ । ତେଣୁ ଜଳ, ଶଦ୍ଧାଶଦ୍ଦବାଚ୍ୟ ହେବା ଉଚିତ୍ ।

(ଘ) ଶ୍ରଦ୍ଧାଶଦ୍ଦ ଜଳରେ ଉପପନ୍ନ ହୁଏ । କାରଣ- 'ଶ୍ରଦ୍ଧା ବା' (ନିଶ୍ଚିତଭାବରେ ଶ୍ରଦ୍ଧା ଜଳ ଅଟେ) ଏହିପରି ବୈଦିକ ପ୍ରୟୋଗ ଦେଖାଯାଏ । ଶ୍ରଦ୍ଧାର ସୂକ୍ଷ୍ମତ୍ୱସାଦୃଶ୍ୟ ଜୀବର ସହିତ ଜାଣିଥିବା ଦେହର ବୀଜଭୂତ ଜଳରେ ହୁଏ । ତେଣୁ ଜଳରେ ଶ୍ରଦ୍ଧାଶବ୍ଦ ପ୍ରୟୋଗ ହୁଏ । ଯେପରି ସିଂହ ପରାକ୍ରମଶାଳୀ ପୁରୁଷ ଗୌଣରୂପରେ ସିଂହଶବ୍ଦବାଚ୍ୟ ହୁଏ । ଶ୍ରଦ୍ଧାପୂର୍ବକ କର୍ମରେ ଜଳର ସମ୍ବନ୍ଧ ହେଲେ ମଧ୍ୟ ଶ୍ରଦ୍ଧାଶବ୍ଦ ଜଳରେ ଉପପନ୍ନ ହୁଏ । ଯେପରି ପୁରୁଷଠାରେ ମଞ୍ଚଶବ୍ଦ ଉପପନ୍ନ ହୁଏ । 'ଆପୋ ହ୍ୟସ୍ମୈ' (ନିଶ୍ଚିତ ଭାବରେ ଏହି ଯଜମାନର ପୁଣ୍ୟକର୍ମପାଇଁ ଜଳ ଶ୍ରଦ୍ଧା ଉପପନ୍ନ କରେ) ଏହିପରି ଶ୍ରୁତିଦ୍ୱାରା ଶ୍ରଦ୍ଧାର ହେତୁ ଦ୍ୱାରା ଜଳରେ ଶ୍ରଦ୍ଧାଶବ୍ଦର ଉପପତ୍ତି ହୁଏ ।

## अश्रुतत्वादिति चेन्नेष्टादिकारिणां प्रतीतेः ॥ ६ ॥

## (୧) ଅଶ୍ରୁତତ୍ୱାଦିତି ଚେନ୍ନେଷ୍ଟାଦିକାରିଣାଂପ୍ରତୀତେଃ ॥ ୩-୧-୬ ॥

ଶ୍ରଦ୍ଧାଶଦ୍ଦିତ ଜଳରେ ପୁରୁଷ ବଚସ୍କ ହେଲେ ମଧ୍ୟ ଜଳରେ ବେଷ୍ଟିତ ହୋଇ ଜୀବ ଯାଏ ବୋଲି କହିବା ଠିକ୍ ନୁହେଁ । ଅଶ୍ରୁତତ୍ୱାତ୍=କାରଣ-ଜଳ ପ୍ରଭୃତି ପରି ଜୀବର କିନ୍ତୁ ଶୁଣାଯାଏ ନାହିଁ । ଇତି ଚେନ୍ନ = ଏହା ଯଦି କହ, ତେବେ ମଧ୍ୟ ଠିକ୍ ନୁହେଁ । ଇଷ୍ଟାଦିକାରିଣାଂ ପ୍ରତୀତେଃ=କାରଣ- 'ଅଥ ଯ ଇମେ' ଇତ୍ୟାଦି ବାକ୍ୟଶେଷଦ୍ୱାରା ଇଷ୍ଟାପୂର୍ତ୍ତକର୍ମକାରୀଗୁଡ଼ିକର ପ୍ରତୀତି ହୁଏ ।

(୨) ମୂଳ-(କ) ଅଥାପି ସ୍ୟାତ୍ ପ୍ରଶ୍ନପ୍ରତିବଚନାଭ୍ୟାଂ ନାମାପଃ ଶ୍ରଦ୍ଧାଦିକ୍ରମେଣ ପଞ୍ଚମ୍ୟାମାହୁତୌ ପୁରୁଷାକାରଂ ପ୍ରତିପଦ୍ୟେରନ୍ । ନ ତୁ ତତ୍ସଂପରିଷ୍ୱକ୍ତା ଜୀବା ରଂହେୟୁଃ, ଅଶ୍ରୁତ୍ୱାତ୍ । ନ ହ୍ୟତ୍ରାପାମିବ ଜୀବାନାଂ ଶ୍ରାବୟିତା କଶ୍ଚିଚ୍ଛବ୍ଦୋଽସ୍ତି । ତସ୍ମାଦ୍‌ରଂହତି ସଂପରିଷ୍ୱକ୍ତ ଇତ୍ୟଯୁକ୍ତମିତି ଚେତ୍ ।

(ଖ) ନୈଷ ଦୋଷଃ, କୁତଃ ? ଇଷ୍ଟାଦିକାରିଣାଂ ପ୍ରତ୍ୟଭେଃ । 'ଅଥ ଯ ଇମେ ଗ୍ରାମ ଇଷ୍ଟାପୂର୍ତ୍ତେ ଦତ୍ତମିତ୍ୟୁ ପାସତେ । ତେ ଧୂମମଭିସଂବିଶନ୍ତି' (ଛା ୫-୧୦-୩) ଇତ୍ୟୁପକ୍ରମ୍ୟେ ଷ୍ଟାଦିକାରିଣାଂ ଧୂମାଦୀନାଂ ପିତୃଯାନେନ ପଥା ଚନ୍ଦ୍ରପ୍ରାପ୍ତିଂ କଥୟତି- 'ଆକାଶଚନ୍ଦ୍ରମସମେଷସୋମୋ ରାଜା' (ଛା ୫-୧୦-୪) ଇତି ।

(ଗ) ତି ଏବେହାପି ପ୍ରତୀୟନ୍ତେ 'ତସ୍ମିନ୍ନେତସ୍ମିନ୍ନଗ୍ନୌ ଦେବାଃ ଶ୍ରଦ୍ଧାଂ ଜୁହ୍ୱତି ତସ୍ୟା ଆହୁତେଃ ସୋମୋ ରାଜା ସମ୍ଭବତି' (ଲା ୫-୪-୨) ଇତି, ଶ୍ରୁତିସାମାନ୍ୟାତ୍ । ତେଷାଂ ଋଗ୍ନିହୋତ୍ରଦର୍ଶପୂର୍ଣ୍ଣମାସାଦିକର୍ମସାଧନଭୂତା ଦଧିପୟଃ ପ୍ରଭୃତୟୋ ଦ୍ରବଦ୍ରବ୍ୟ ଭୂୟସ୍ତ୍ୱାତ୍ ପ୍ରତ୍ୟକ୍ଷମେବାପଃ ସନ୍ତି । ତା ଆହବନୀୟେ ହୁତାଃ ସୂକ୍ଷ୍ମା ଆହୁତ୍ୟୋଽପୂର୍ବରୂପା ସତ୍ୟସ୍ତାନଷ୍ଟାଦି କାରିଣ ଆଶ୍ରୟନ୍ତି ।

(ଘ) ତେଷାଂ ଚ ଶରୀରଂ ନଧେନେନ ବିଧାନେନାନ୍ତ୍ୟେଽଗ୍ନାବୃ-ତ୍ୱିଜୋ ଜୁହ୍ୱତିଅସୌ ସ୍ୱର୍ଗାୟ ଲୋକାୟ ସ୍ୱାହା' ଇତି । ତତସ୍ତାଃ ଶ୍ରଦ୍ଧାପୂର୍ବକ କର୍ମସମବାୟିନ୍ୟ ଆହୁତିମୟ ଆପୋଽପୂର୍ବରୂପାଃ ସତ୍ୟସ୍ତାନିଷ୍ଟାଦିକାରିଣୋ ଜୀବାତି ପରିବେଷ୍ଟ୍ୟାମୁଂ ଲୋକଂ ଫଳଦାନାୟ ନୟନ୍ତୀତି ଯତ୍ତଦ ଜୁହୋତି ନାଭିଧୀୟତେ- 'ଶ୍ରଦ୍ଧାଂ ଜୁହୋତି' (ବୃହ ୬-୨-୯) ଇତି ।

(ଙ) ତଥା ଋଗ୍ନିହୋତ୍ରେ ଷଟ୍‌ପ୍ରଶ୍ନୀନିର୍ବଚନନରୂପେଣ ବାକ୍ୟଶେଷେଣ 'ତା ବା ଏତେ ଆହୁତୀ ହୁତେ ଉତ୍କ୍ରାମତଃ' ଇତ୍ୟେବମାଦିନାଗ୍ନି ହୋତ୍ରାହୁତ୍ୟୋଃ ଭଳାରମ୍ଭାୟ ଲୋକାନ୍ତରପ୍ରାପ୍ତିଃ ପ୍ରଦର୍ଶିତା । ତସ୍ମାଦାହୁତୀମୟୀରଦ୍‌ଭିଃ ସଂପରିଷ୍ୱକ୍ତା ଜୀବା ରଂହନ୍ତି ସ୍ୱକର୍ମଫଳୋପଭୋଗାୟେତିଶ୍ଲିଷ୍ୟତେ ।

**(୨) ଭାଷାଂତର-** (କ) ପ୍ରଶ୍ନ ଓ ପ୍ରତି ବଚନ ଦ୍ୱାରା ପାଞ୍ଚ ଆହୁତିରେ ଶ୍ରଦ୍ଧାଦି କର୍ମ ଦ୍ୱାରା ଜଳ ପୁରୁଷାକାର ପ୍ରାପ୍ତି କରିପାରେ । ପରନ୍ତୁ ସେହିଜଳରେ ପରିବେଷ୍ଟିତ ହୋଇ ଜୀବ ଯାଏ ନାହିଁ । କାରଣ-ତାହାହିଁ ଅଶ୍ରୁତ ଅଟେ । ଏଠାରେ ଜଳପରି ଜୀବକୁ ଶୁଣାଇଲା ଭଳି କୌଣସି ଶ୍ରୁତିବାକ୍ୟ ନାହିଁ । ତେଣୁ ଜଳରେ ପରିବେଷ୍ଟିତ ହୋଇ ଜୀବ ଗମନ କରେ ବୋଲି କହିବା ଯଦି ଅଯୌକ୍ତିକ ବୋଲ କହ ।

(ଖ) ତେବେ ଏହା ଅସମୀଚୀନ । କିପରି ? ଏହାଦ୍ୱାରା ଇଷ୍ଟାଦିକାରୀମାନଙ୍କର ପ୍ରତୀତ ହୁଏ । 'ଅଥ ଯ ଇମେ' (ତଥା ଯିଏ ଗୃହସ୍ଥ ଲୋକ ଗ୍ରାମରେ ଇଷ୍ଟ ପୂର୍ତ୍ତ ଓ ଦତ୍ତ



ଏହି ତିନି ପ୍ରକାର କର୍ମ କରନ୍ତି, ସେମାନେ ଧୂମାଭମାନୀ ଦେବତାକୁ ପ୍ରାପ୍ତ ହୁଅନ୍ତି) ଏହିପରି ଉପକ୍ରମ କରି 'ଆକାଶାଇନ୍ଦ୍ରମସ' (ସେମାନେ ଆକାଶଠାରୁ ଚନ୍ଦ୍ର ଲୋକକୁ ଯା'ନ୍ତି ସେହି ଚନ୍ଦ୍ର ମାରରାଜା ସୋମ ଅଟେ) ଏହିପ୍ରକାର ଶ୍ରୁତିଇଷ୍ଟାଦିକର୍ମ କରୁଥିବା ଧୂମାଦି ପିତୃ ଯାଣ ମାର୍ଗରେ ଚନ୍ଦ୍ରାପ୍ରାପ୍ତି କହେ ।

(ଗ) 'ତସ୍ମିନ୍ନେତସ୍ମିନ୍' (ସେହି ଦ୍ୟୁଲୋକ ଅଗ୍ନିରେ ଦେବଗଣ ଶ୍ରଦ୍ଧାର ହୋମ କରନ୍ତି । ସେହି ଆହୁତି ଦ୍ୱାରା ସୋମରାଜା ଉତ୍ପନ୍ନ ହୁଏ) ସେହି ସାମାନ୍ୟ ଶ୍ରୁତିଦ୍ୱାରା ସେମାନେ ଏଠାରେ ପ୍ରତୀତ ହୁଅନ୍ତି ଏବଂ ସେହି ଜୀବର ଅଗ୍ନିହୋତ୍ର, ଦର୍ଶପୂର୍ଣ୍ଣମାସାଦି କର୍ମର ସାଧନଭୂତ ବଧି, ପୟାଦି ଦ୍ରବୀଭୂତ ଦ୍ରବ୍ୟର ଆଧିକ୍ୟଦ୍ୱାରା ଜଳହିଁ ପ୍ରତ୍ୟକ୍ଷ ହୁଏ । ଆହବନୀୟ ଅଗ୍ନିରେ ହୁତ ଏହି ସୂକ୍ଷ୍ମଭୂତ ଆହୁତି ଗୁଡ଼ିକର ଅପୂର୍ବରୂପ ହୋଇ ରହିଥିବା ଓ ସେହି ଇଷ୍ଟାଦି କର୍ମ କରୁଥିବାକୁ ଆଶ୍ରୟଣ କରନ୍ତି ।

(ଘ) ଋତ୍ୱିକଲୋକ ସେହି ଶରୀରର ମରଣବିଧାନ କରି ଅନ୍ତ୍ୟଅଗ୍ନିରେ 'ଅସୌ ସ୍ୱର୍ଗାୟ ଲୋକାୟ ସ୍ୱାହା' ଏହା କହି ହୋମ କରେ । ଏହାପରେ ଶ୍ରଦ୍ଧା ପୂର୍ବକ କର୍ମର ସହ ସମ୍ବନ୍ଧିତ ଆହୁତିମୟ ସେହି ଜଳ ଅପୂର୍ବରୂପ ହୋଇ ସେହି ଇଷ୍ଟାଦି କର୍ମ କରୁଥିବା ଜୀବକୁ ପରିବେଷ୍ଟିତ କରି ଫଳ ଦେବା ପାଇଁ ସେହି ଲୋକକୁ ଯାଏ- ଏହି ପ୍ରକାର କୁହାଯାଇଅଛି, ତାହାକୁ ଏଠାରେ 'ଶ୍ରଦ୍ଧାଂ ଜୁହୋତି' ଏହି ଶ୍ରୁତିଦ୍ୱାରା ହୁ ଧାତୁର ଅଭିଧାନ ହୋଇଛି ।

(ଙ) ଏହିପ୍ରକାର ଅଗ୍ନିହୋତ୍ରରେ ଛଅପ୍ରଶ୍ନର ନିର୍ବଚନରୂପ 'ତେ ବା ଏତେ' (ସେ ଏହି ଦୁଇ ଆହୁତିର ଉତ୍କ୍ରମଣ କରନ୍ତି) ଇତ୍ୟାଦି ବାକ୍ୟଶେଷବଳରେ ଦୁଇ ଅଗ୍ନି ହୋତ୍ର ଆହୁତିରେ ଫଳାରମ୍ଭକ ପାଇଁ ଅନ୍ୟଲୋକର ପ୍ରାପ୍ତି ଦେଖାଯାଏ । ତେଣୁ ଆହୁତିମୟ ଜଳଦ୍ୱାରା ପରିବେଷ୍ଟିତ ଜୀବ ନିଜେ କର୍ମଫଳୋପଭୋଗ ପାଇଁ ଯାଏ ବୋଲି କହିବା ଠିକ୍ ।

(୧) ମୂଳ-(କ) କଥଂ ପୁନରିଦମିଷ୍ଟାଦିକାରିଣାଂ ସ୍ୱକର୍ମଫଳୋପଭୋଗାୟ ରଂହଣ ପ୍ରତିଜ୍ଞାୟତେ ? ଯାବତ ତେଷାଂ ଧୂମପ୍ରତୀକେନ ବତ୍ମନା ଚନ୍ଦ୍ରମସମଧିରୂଢାନାମନ୍ନଭାବଂ ଦର୍ଶୟତି- ଏଷ ସୋମୋ ରାଜା 'ତଦ୍ଦେବାନାମନ୍ନଂ ତଂ ଦେବା ଭକ୍ଷୟନ୍ତି' (ଛା ୫-୧୦-୪) ଇତି ।

(ଖ) ତେ ଚନ୍ଦ୍ରପ୍ରାପ୍ୟନ୍ନଂ ଭବନ୍ତି ତାସ୍ତତ୍ର ଦେବା ଯଥା ସୋମଂ ରାଜାନମପ୍ୟାୟସ୍ୱାପକ୍ଷୀୟସ୍ୱେତ୍ୟେବମେନାଂସ୍ତତ୍ର ଭକ୍ଷୟନ୍ତି' (ବୃହ ୬-୨-୧୬) ଇତି ଚ ସମାନବିଷୟଂ ଶ୍ରୁତ୍ୟନ୍ତରମ୍ ନ ଚ ବ୍ୟାଘ୍ରାଦିଭିରିବ ବେବୈର୍ଭକ୍ଷ୍ୟମାଣାନାମୁପଭୋଗଃ ସମ୍ଭବତୀତି ଅତ ଉତ୍ତରଂ ପଠତି ।

(୧) ଭାଷାଂତର-(କ) ପରନ୍ତୁ ଇଷ୍ଟକାମାଦି କର୍ମକାରୀମାନଙ୍କର ନିଜର କର୍ମଫଳ ଭୋଗ ପାଇଁ ଗମନବିଷୟ ପ୍ରତିଜ୍ଞା କିପରି ହୁଏ ? କାରଣ- 'ଏଷ ସୋମେ' (ଏହି ସୋମ ରାଜା ଅଟେ) ଏହା ଦେବତାର ଅନ୍ନ ଅଟେ । ଦେବତା ଲୋକ ତାହାକୁ ଭକ୍ଷଣ କରେ) ଏହିପ୍ରକାର ଶ୍ରୁତି ଧୂମପ୍ରତୀକମାର୍ଗଦ୍ୱାରା ସେହି ଚନ୍ଦ୍ରଲୋକରେ ଆରୂଢ଼ ହୋଇ ଅନୁଭବକୁ ଦେଖାଏ ।

(ଖ) 'ତେ ଚନ୍ଦଂ ପ୍ରାପ୍ୟାନ୍ନଂ' (ସେମାନେ ଚନ୍ଦ୍ରମାକୁ ପାଇ ଅନ୍ନ ହୁଅନ୍ତି । ଏଠାରେ ଯେପରି ଋତ୍ୱିଗ୍‌ଗଣ ସୋମରାଜାଙ୍କୁ 'ଆପ୍ୟାୟସ୍ୱ ଅପକ୍ଷୀୟସ୍ୱ' ଏହା କହି ଭକ୍ଷଣ କରନ୍ତି, ସେପରି ସେମାନଙ୍କର ଦେବଗଣ ଭକ୍ଷଣ କରନ୍ତି) ଏହିପରି ସମାନବିଷୟକ ଅନ୍ୟଶ୍ରୁତି ମଧ୍ୟ ଅଛି । କିନ୍ତୁ ବ୍ୟାଘ୍ରାଦିଦ୍ୱାରା ଭକ୍ଷ୍ୟମାଣ ପରି ଦେବତାଠାରୁ ଭକ୍ଷ୍ୟମାଣ ଉପଭୋଗ ହୁଏ ନାହିଁ । ତେଣୁ ଏହାର ଉତ୍ତରରେ କୁହାଯାଇଅଛି-

**भाक्तं वानात्मवित्त्वात्तथाहि दर्शयति ॥ २० ॥**

**(୨) ଭାକ୍ତଂ ବାଽନାତ୍ମବିତ୍ତ୍ୱାତ୍‌ତଥା ହି ଦର୍ଶୟତି ॥ ୩-୧-୭ ॥**

ବା-ବାଶବ୍ଦ ଶଙ୍କା ନିରାସାର୍ଥ ପାଇଁ ଉଦ୍ଦିଷ୍ଟ । ଇଷ୍ଟାଦି କର୍ମକାରୀମାନଙ୍କରେ ଅନ୍ନତ୍ୱ, ଭାକ୍ତମ୍-ଗୌଣ ଅଟେ । ଅନ୍ୟଥା 'ସ୍ୱର୍ଗକାମୋ ଯଜେତ' ଇତ୍ୟାଦି ଶ୍ରୁତିଦ୍ୱାରା ବିରୋଧ ତାହା ହେବ । ଅନାତ୍ମବତ୍ତ୍ୱାତ୍-ଅତଃ ଅନାତ୍ମବିତ୍ ହେଲେ ସେଠାରେ ଦେବତାମାନଙ୍କର ଉପଭୋଗଯୋଗ୍ୟ ଅନ୍ନତ୍ୱ ବିବକ୍ଷିତ ହେଉଛି । ତଥା ଦର୍ଶୟତି- ସେପରି ମଧ୍ୟ 'ଅଥ ଯୋଽନ୍ୟାମ୍' ଇତ୍ୟାଦି ଶ୍ରୁତି ଦେଖାଯାଏ ।

(୨) ମୂଳ-(କ) ବାଶବ୍ଦଶ୍ଚୋଦିତ ଦୋଷବ୍ୟାବର୍ତ୍ତନାର୍ଥଃ । ଭାକ୍ତମେଷାମନ୍ନତ୍ୱଂ ନ ମୁଖ୍ୟମ୍ । ମୁଖ୍ୟେ ହ୍ୟନ୍ନତ୍ୱେ ସ୍ୱର୍ଗ କାମୋ ଯଜେତ' ଇତ୍ୟେବଂ ଜାତୀୟକାଧିକାରଣଶ୍ରୁତି-ରୂପରୁଧ୍ୟତେ । ଚନ୍ଦ୍ରମଣ୍ଡଳେ ଚେଦିଷ୍ଟାଦି କାରିଣାମୁପଭୋଗୋ ନ ସ୍ୟାତ୍ କିମର୍ଥମଧିକାରିଣ ଇଷ୍ଟାଦ୍ୟୟାସବହୁଳଂ କର୍ମ କୁର୍ଯ୍ୟୁଃ ।

(ଖ) ଅନ୍ନଶବ୍ଦଶ୍ଚୋପଭୋଗହେତୁତ୍ୱସାମାନ୍ୟାଦନନ୍ନେଽପ୍ୟୁଚର୍ଯ୍ୟମାଣୋ ଦୃଶ୍ୟତେ, ଯଥା ବିଶୋଽନ୍ନଂ ରାଜ୍ଞାଂ ପଶବୋଽନ୍ନଂ ବିଶାମିତି । ତସ୍ମାଦିଷ୍ଟ ସ୍ତ୍ରୀ ପୁତ୍ରମିତ୍ରଭୃତ୍ୟାଦିଭିରିବ ଗୁଣଭାବୋପଗତୈରିଷ୍ଟାଦିକାରିଭିର୍ଯତ୍ ସୁଖବିହରଣଂ ଦେବାନାଂ ତଦେବୈଷାଂ ଭକ୍ଷଣମଭିପ୍ରେତଂ ନ ମୋଦକାଦିବଚ୍ଚର୍ବଣଂ ନଗରଣଂ ବା ।

(ଗ) 'ନ ହ ବୈ ଦେବା ଅଶ୍ନନ୍ତି ନ ପିବନ୍ତ୍ୟେ ତଦେବାମୃତଂ ଦୃଷ୍ଟ୍ୱା ତୃପ୍ୟନ୍ତି' (ଛା ୩-୬-୧) ଇତି ଚ ଦେବାନାଂ ଚର୍ବଆଦିବ୍ୟାପାରଂ ବାରୟତି । ତେଷାଂ ଚେଷ୍ଟାଦି-କାରିଣା ଦେବାନ୍ ପ୍ରତି ଗୁଣଭବୋପଗତାନାମପଭୋଗ ଉପପଦ୍ୟତେ ରାଜୋପଜୀବିନାମିବ



ପରିଜନାନାମ୍ । ଅନାତ୍ମବତ୍ତ୍ୱାଚ୍ଚେଷ୍ଟାଦିକାରିଣାଂ ଦେବୋପଭୋଗ୍ୟଭାବ ଉପପଦ୍ୟତେ ।

(ଘ) ତଥାହି ଶ୍ରୁତିରନାତ୍ମବିଦାଂ ଦେବୋପଭୋଗ ତାଂ ଦର୍ଶୟତି- 'ଅଥ ଯୋଽନ୍ୟାଂ ଦେବତାମୁପାସ୍ତେଽନ୍ୟୋଽସାବନ୍ୟୋଽହମସ୍ମୀତି ନ ସ ବେଦ ଯଥା ପଶୁରେବଂ ସ ଦେବାନାମ୍' (ବୃହ ୧-୪-୧୦) ଇତି । ସ ଚାସ୍ମିନ୍ନପି ଲୋକ ଇଷ୍ଟାଦିଭିଃ କର୍ମଭିଃ ପ୍ରୀଣୟନ୍ ପଶୁବଦ୍ ଦେବାନାମୁପକରୋତ୍ୟମୁଷ୍ମିନ୍ନପି ଲୋକେ ତଦୁପଜୀବ ତଦାଦିଷ୍ଟଂ ଭଳମୁପଭୁଞ୍ଜାନଃ ପଶୁବଦେବ ଦେବାନାମୁପକରୋତୀତି ଗମ୍ୟତେ ।

**(୩) ଭାଷାଂତର-** (କ) ବାଶବ୍ଦ ଶଙ୍କିତଦୋଷର ବ୍ୟାବର୍ତ୍ତନ ପାଇଁ କୁହାଯାଇଅଛି । ଏହି ଇଷ୍ଟାଦିକାରୀମାନଙ୍କରେ ଆନ୍ନତ୍ୱ ଗୌଣ ଅଟେ; କିନ୍ତୁ ମୁଖ୍ୟ ନୁହେଁ । ମୁଖ୍ୟ ଅନତ୍ୱ ହେଲେ 'କିନ୍ତୁ 'ସ୍ୱର୍ଗକାମେ ଯଜେତ' ଏହିପ୍ରକାର ଅଧିକାରଣଶ୍ରୁତି ବାଧିତ ହେବ । ଯଦି ଇଷ୍ଟାଦିକାରୀଗୁଡ଼ିକର ଚନ୍ଦ୍ର ମଣ୍ଡଳରେ ଉପଭୋଗ ନ ହୁଏ, ତେବେ ଅଧିକାରୀ ଅଧିକ ପରିଶ୍ରମ ସାଧ ଇଷ୍ଟାଦିକର୍ମଗୁଡ଼ିକ କାହାପାଇଁ କରିବା ?

(ଖ) ଅନ୍ନଶବ୍ଦ ଉପଭୋଗହେତୁତ୍ୱ ଅଟେ । ଏହି ସାମାନ୍ୟଧର୍ମରୁ ଅନ୍ନଭିନ୍ନଠାରେ ମଧ୍ୟ ଉପଚର୍ଯ୍ୟମାଣ (ଉପଚର୍ଯ୍ୟ ହେବା) ଦେଖାଯାଏ । ଯେପରି ବୈଶ୍ୟ ରାଜାମାନଙ୍କର ଅନ୍ନ ଅଟେ, ପଶୁ ବୈଶ୍ୟମାନଙ୍କର ଅନ୍ନ ଅଟେ- ଏହିପରି କୁହାଯାଇଅଛି । ତେଣୁ ଇଷ୍ଟ ସ୍ତ୍ରୀ, ପୁତ୍ର, ମିତ୍ର, ସେବକାଦି ପରି ଗୌଣଭାବକୁ ପାଇ ଇଷ୍ଟାଦିକାରୀଗୁଡ଼ିକର ଯେଉଁ ଦେବତାମାନଙ୍କର ସୁଖ ବିହରଣ ହୁଏ, ସେହିମାନଙ୍କର ଏଠାରେ ଭକ୍ଷଣ ଅଭିପ୍ରେତ ହୁଏ । କିନ୍ତୁ ମୋଦକାଦି ପରି ଚୋବାଇବା ଓ ବାହାର କରିବା ଅଭିପ୍ରେତ ନୁହେଁ, କାରଣ-

(ଗ) 'ନ ହଚ୍ଛେ' (ଦେବଗଣ ଖାଆନ୍ତି ନାହିଁ, ପାନ କରନ୍ତି ନାହିଁ, ସେମାନେ ଏହି ଅମୃତକୁ ଦେଖି ତୃପ୍ତ ହୁଅନ୍ତି) ଏହି ଶ୍ରୁତି ଦେବତାମାନଙ୍କର ଚର୍ବଣାଦିବ୍ୟପାରକୁ ନିଷେଧ କରେ । ଦେବତାମାନଙ୍କ ପ୍ରତି ଗୁଣଭାବକୁ ପାଇ ଏହି ଇଷ୍ଟାଦିକାରିମାନଙ୍କର ମଧ୍ୟ ରାଜାକୁ ଆଶ୍ରୟ କରି ଜୀବନ ନିର୍ବାହ କରୁଥିବା ପରିଜନ ସଦୃଶ ଉପଭୋଗ ଉପପନ୍ନ ହୁଏ ।

(ଘ) ଯେପରିକି 'ଅଥ ଯୋଽନ୍ୟାଂ' (ଯିଏ ଅନ୍ୟ ଦେବତାର 'ଏହା ଅନ୍ୟ ଅଟେ । ମୁଁ ଅନ୍ୟ ଅଟେ' ଏହିପ୍ରକାର ଉପାସନା କରେ, ସେ କିନ୍ତୁ ଜାଣେ ନାହିଁ । ଯେପରି ପଶୁ ହୁଏ, ସେପରି ଦେବତାମାନଙ୍କର ପଶୁ ମଧ୍ୟ ହୁଏ) ଏହି ଶ୍ରୁତି ଅନାତ୍ମବେତ୍ତାର ଦେବୋପଭୋଗ୍ୟତା ଦେଖାଏ ଅର୍ଥାତ୍ ଯେପରି ପଶୁ ମନୁଷ୍ୟମାନଙ୍କର ଭୋଗ୍ୟ ଅଟେ, ସେପରି ଅଜ୍ଞ ଜୀବ ଦେବତାମାନଙ୍କର ଉପକାରକ ହୁଏ । ସେ ଏହି ଲୋକରେ ମଧ୍ୟ ଇଷ୍ଟାଦିକର୍ମ ଦ୍ୱାରା ଦେବତାକୁ ପ୍ରସନ୍ନ ହୋଇ ପଶୁପରି ଦେବତାର ଉପକାରକ ହୁଏ ଓ ପରଲୋକରେ ସେମାନଙ୍କର ଉପଜୀବୀ ହୋଇ ସେଥିରେ ଆଦିଷ୍ଟଫଳର ଉପଭୋଗ କରି ପଶୁ ପରି ଦେବତାମାନଙ୍କର ଉପକାରକ ବୋଲି ଜଣାପଡ଼େ ।

(୪) ମୂଳ-(କ) ଅନାତ୍ମବିତ୍ତ୍ୱାତ୍ତଥା ହି ଦର୍ଶୟତୀତ୍ୟସ୍ୟା ପରାବ୍ୟାଖ୍ୟା- ଅନାତ୍ମବିଦୋ ହ୍ୟେତେ କେବଳକର୍ମିଣ ଇଷ୍ଟାଦି କାରିଣୋ ନ ଜ୍ଞାନକର୍ମ ସମୁଚ୍ଚୟାନୁଷ୍ଠାୟିନଃ । ପଞ୍ଚାଗ୍ନିବିଦ୍ୟାମିହାତ୍ମବିଦ୍ୟେତ୍ୟୁପଚରନ୍ତି, ପ୍ରକରଣାତ୍ । ପଞ୍ଚାଗ୍ନିବିଜ୍ଞାନବିହୀନତ୍ୱାଚ୍ଛେଦମିଷ୍ଟାଦି କାରିଣାଂ ଗୁଣବାଦେନାନ୍ନତ୍ୱମୁଦ୍‌ଭାବ୍ୟତେ ପଞ୍ଚାଗ୍ନିଜ୍ଞାନପ୍ରଶଂସାୟୈ ।

(ଖ) ପଞ୍ଚାଗ୍ନିବିଦ୍ୟା ହୀହ ବିଧିତ୍ସିତା, ବାକ୍ୟତାତ୍ପର୍ଯ୍ୟାବଗମାତ୍ । ତଥାହି ଶ୍ରୁତ୍ୟନ୍ତରଂ ଚନ୍ଦ୍ରମଣ୍ଡଳେ ଭୋଗସଦ୍ଭାବଂ ଦର୍ଶୟତି- 'ସ ସୋମଲୋକେ ବିଭୂତିମନୁଭୂୟ ପୁନିରାବର୍ତ୍ତତେ' (ପ୍ର ୫-୪) ଇତି । ତଥାନ୍ୟଦପିଶ୍ରୁତ୍ୟନ୍ତରମ୍ । 'ଅଥ ଯେ ଶତଂ ପିତୃଣାଂ ଜିତଲୋକାନାମାନନ୍ଦାଃ ସ ଏକୋ ଗନ୍ଧର୍ବଲୋକେ ଆନନ୍ଦୋଽଥ ଯେ ଶତଂ ଗନ୍ଧର୍ବଲୋକ, ଆନନ୍ଦାଃ ସ ଏକଃ କର୍ମଦେବାନାମାନନ୍ଦୋ ଯେ କର୍ମଣା ଦେବତ୍ୱମଭିସଂପଦ୍ୟନ୍ତେ' (ବୃହ ୪-୩-୩୩) ଇତୀଷ୍ଟାଦିକାରିଣାଂ ଦେବୈଃ ସହ ସଂବସତାଂ ଭୋଗପ୍ରାପ୍ତିଂ ଦର୍ଶୟତି ।

(ଗ) ଏବଂ ଭାକ୍ତତ୍ୱାଦନ୍ନଭାବି ବଚନସ୍ୟେଷ୍ଟାଦିକାରିଣୋଽତ୍ର ଜୀବ ରଂହନ୍ତୀତି ପ୍ରତୀୟତେ । ତସ୍ମାଦ୍‌ରଂହତି ସଂପରିଷ୍ୱକ୍ତ ଇତି ଯୁକ୍ତମେବୋକ୍ତମ୍ ।

**(୪) ଭାଷାଂତର-** (କ) 'ଅନାତ୍ମବିତ୍ତ୍ୱାତ୍ତଥା ହି ଦର୍ଶୟତି' ଏହି ସୂତ୍ରାଂଶର ଏହା ଅନ୍ୟବ୍ୟାଖ୍ୟା ଯେ- କେବଳ କର୍ମୀ ଯେଉଁମାନେ ଇଷ୍ଟାଦିକାରୀ ଅନାତ୍ମବିତ୍ ଅଟନ୍ତି, ସେମାନେ ଉପାସନା ଓ କର୍ମୀସମୁଚ୍ଚୟର ଅନୁଷ୍ଠାନକର୍ମୀ ଅଟନ୍ତି । ଏଠାରେ ପ୍ରକରଣଠାରୁ, ପଞ୍ଚାଗ୍ନିବିଦ୍ୟା ରହିତ ହେଲେ ଇଷ୍ଟାଦିକାରୀ ଦେବତାମାନଙ୍କର ଅନ୍ନ ହୁଏ । ଏହି ପଞ୍ଚାଗ୍ନିବିଦ୍ୟାର ପ୍ରଶଂସା ପାଇଁ ଗୁଣବାଦରେ କୁହାଯାଇଅଛି ।

(ଖ) ଏଠାରେ ପଞ୍ଚାଗ୍ନିବିଦ୍ୟାର ବିଧାନ କରିବା ଅଭୀଷ୍ଟ ନୁହେଁ, କାରଣ- ବାକ୍ୟର ତାତ୍ପର୍ଯ୍ୟ ଏହିପରି ଅବଗତ ହୁଏ । ଯେପରି କି 'ସ ସୋମଲୋକ' (ସୋମଲୋକରେ ବିଭୂତିରଂ ଅନୁଭବ କରି ସେ ପୁଣି ପ୍ରତ୍ୟାବର୍ତ୍ତନ କରେ) ଏହିପ୍ରକାର ପଞ୍ଚାଗ୍ନି ବିଦ୍ୟାକୁ ଗୌଣରୂପରେ ଆତ୍ମବିଦ୍ୟା କୁହାଯାଏ । ତାହା ଅନ୍ୟଶ୍ରୁତି ଚନ୍ଦ୍ରମଣ୍ଡଳରେ ଭୋଗର ସଦ୍‌ଭାବ ଦେଖାଏ, ସେପରି ମଧ୍ୟ 'ଅଥ ଯେ' (ଯେଉଁମାନେ ପିତୃଲୋକକୁ ଜୟ କରନ୍ତି, ସେମାନେ ପିତୃଗଣର ଶହେଗୁଣ ଆନନ୍ଦ ହୁଅନ୍ତି ଓ ଗନ୍ଧର୍ବଲୋକର ଏକଗୁଣ ଆନନ୍ଦ ହୁଅନ୍ତି ଏବଂ ଗନ୍ଧର୍ବଲୋକର ଶହେଗୁଣ ଆନନ୍ଦ ହେଲେ ସେ କର୍ମ ଦେବତାମାନଙ୍କର ଯାହାକି କର୍ମଦ୍ୱାରା ଦେବତାମାନଙ୍କୁ ପ୍ରାପ୍ତି ହୁଅନ୍ତି, ସେ ଏକ ଗୁଣ ଆନନ୍ଦ ହୁଅନ୍ତି । ଏହି ଦ୍ୱିତୀୟ ଶ୍ରୁତି ମଧ୍ୟ ଦେବତାମାନଙ୍କ ସହିତ ବାସ କରୁଥିବା ଇଷ୍ଟାଦିକାରୀମାନଙ୍କର ଭୋଗପ୍ରାପ୍ତି ଦେଖାଏ ।



(ଗ) ସେପରି ଅନ୍ନଭାବ ବଚନ ଗୌଣ ହେଲେ ଏଠାରେ ଇଷ୍ଟାଦିକାରୀ ଜୀବ ଯା'ନ୍ତି ବୋଲି ଜଣାଯାଏ । ତେଣୁ ରଂହତି ସଂପରିଷ୍ୱକ୍ତଃ (ଜୀବ ପରିବେଷ୍ଟିତ ହୁଏ) ଏହା କହିବା ଠିକ୍ ଅଟେ ।

## २ कृतात्ययाधिकरणम् । सू० ८ -११

## କୃତାତ୍ୟୟାଧିକରଣ-୨

## कृतात्ययेऽनुशयवान्दृष्ठस्मृतिभ्यां यथेयमनेबं च ॥ ८ ॥

## (୧) କୃତାତ୍ୟୟେଽନୁଶୟବାନ୍‌ଦୃଷ୍ଟସ୍ମୃତିଭ୍ୟଂ ଯଥେତମନେବଂ ଚ ।୩-୧।

କୃତାତ୍ୟୟେ-କର୍ମକୁ ଉପଭୋଗ କଲାପରେ ଅନୁଶୟବାନ୍=ସେହି କର୍ମଠାରୁ ଅତିରିକ୍ତ କର୍ମଯୁକ୍ତ ହୋଇ ଜୀବ ଏହି ଲୋକକୁ ଆସେ । ଦୃଷ୍ଟସ୍ମୃତିଭ୍ୟାସ = କାରଣ-'ତଦ୍ୟ ଇହ ରମଣୀୟଚରଣାଃ' ଏବଂ 'ପ୍ରେତ୍ୟ କର୍ମଫଳ ମନୁଭୂୟ' ଇତ୍ୟାଦି ଶ୍ରୁତି ଏବଂ ସ୍ମୃତିବଚନ ଅଛି । ଏବଂ ଯଥେତମ୍' = ଯେଉଁ ଧୂମାଦିମାର୍ଗ ଦ୍ୱାରା ସେମାନେ ଯାଇଥିଲେ, ଅଥବା, ଅନେବମ୍ ଚ = ତଦ୍ୱାରା ବିପରୀତ ବକ୍ଷ୍ୟମାଣ ଅଭ୍ରାଦିମାର୍ଗ ଦ୍ୱାରା ଏହି ଲୋକକୁ ଆସନ୍ତି ।

(୨) ମୂଳ - (କ) ଇଷ୍ଟାଦିକାରିଣାଂ ଧୂମାଦିନା ବର୍ତ୍ମନା ଚନ୍ଦ୍ରମଣ୍ଡଳ ମଧିରୂଢାନାଂ ଭୁକ୍ତଭୋଗାନାଂ ତତଃ ପ୍ରତ୍ୟବରୋହ ଅମ୍ନାୟତେ 'ତସ୍ମିନ୍ୟାବତ୍‌ସଂପାତସୁଷିତ୍ୱାଥୈତ-ମେବାଧ୍ୱାନଂ ପୁନର୍ନିବର୍ତ୍ତନ୍ତେ ଯଥେତମ୍' (ଛା ୫-୧୦-୫) ଇତ୍ୟାରଭ୍ୟ ଯାବତ୍ ରମଣୀୟଚରଣା ବ୍ରାହ୍ମଣାଦି ଯୋନିମାପଦ୍ୟନ୍ତେ କପୂୟଚରଣାଃ ଶ୍ୱାଦି ଯୋନିମିତ ।

(ଖ) ତତ୍ରେଦଂ ବିଚାର୍ଯ୍ୟତେ କିଂ ନିରନୁଶୟା ଇତି । କିଂ ତାବତ୍‌ପ୍ରାପ୍ତମ୍ ? ନିରନୁଶୟା ଇତି । କୁତଃ । ଯାବତ୍‌ସାଂପାତମିତି ବିଶେଷଣାତ୍ । ସଂପାତଶବ୍ଦେନାତ୍ର କର୍ମାଶୟ ଉଚ୍ୟତେ-ସଂପତନ୍ତ୍ୟନେନାସ୍ମାଲ୍ଲୋକାଦମୁଂ ଲୋକ ଫଂଲୋପଭୋଗାୟେତି ।

(ଗ) ଯାବତ୍ ସମ୍ପାତମୁଷିତ୍ୱେତି ଚ କୃତ୍ସ୍ନସ୍ୟ ତସ୍ୟ କୃତସ୍ୟ ତତ୍ରୈବ ଭୁକ୍ତତାଂ ଦର୍ଶୟତି 'ତେଷାଂ ଯଦା ତତ୍‌ପର୍ଯବେତି' (ବୃହ ୬-୧-୧) ଇତିଚ ଶ୍ରୁତ୍ୟନ୍ତରେଣୈଷ ଏବାର୍ଥଃ ପ୍ରଦର୍ଶ୍ୟତେ । ସ୍ୟାଦେତତ୍‌ଯାବଦମୁଷ୍ମିଲ୍ଲୋକେ ଉପଭୋକ୍ତବ୍ୟଂ କର୍ମ ତାବଦୁପଭୁଙ୍‌କ୍ତ ଇତି କଳ୍ପୟିଷ୍ୟାମୀତି ।

(ଘ) ନୈବଂ କଳ୍ପୟିତୁଂ ଶକ୍ୟତେ, ଯତ୍‌କିଞ୍ଚିତ୍ୟନ୍ୟତ୍ର ପରାମର୍ଶାତ୍ । 'ପ୍ରାପ୍ୟାନ୍ତଂ କର୍ମଣସ୍ତସ୍ୟ ଯତ୍ କିଞ୍ଚେହ କରୋତ୍ୟୟମ୍ । ତସ୍ମାଲ୍ଲୋକାତ୍ ପୁନରେତ୍ୟସ୍ମୈ ଲୋକାୟ କର୍ମଣେ' (ବୃହ ୪-୪-୬) ଇତି ହ୍ୟପରାଶ୍ରୁତିର୍ଯତ୍ କିଞ୍ଚେତ୍ୟବିଶେଷପରାମର୍ଶେନ କୃତ୍ସ୍ନସ୍ୟେହ କୃତସ୍ୟ କର୍ମଣସ୍ତତ୍ର କ୍ଷୟିତତାଂ ଦର୍ଶୟତି ।

(୨) ଭାଷାଂତର- (କ) ଧୂମାଦିମାର୍ଗଦ୍ୱାରା ଚନ୍ଦ୍ରମଣ୍ଡଳରେ ଆରୂଢ ଇଷ୍ଟ ପ୍ରଭୃତିକାରୀ ଭୁକ୍ତଭୋର ସେହିଠାରୁ ପ୍ରତ୍ୟାବରୋହଣ ଶ୍ରୁତିରେ କୁହାଯାଇଛି- 'ତସ୍ମିନ୍ ଯାବତ୍' (ସେଠାରେ କର୍ମରକ୍ଷୟ ହେବା ପର୍ଯ୍ୟନ୍ତ ରହି ପୁଣି ସେହି ମାର୍ଗରେ ଯେଉଁ ପ୍ରକାରେ ଯାଇଥିଲେ, ସେହି ପ୍ରକାର ପ୍ରତ୍ୟାବର୍ତ୍ତନ କରିଥିଲେ) ଏହିଠାରୁ ଆରମ୍ଭ କରି 'ରମଣୀୟଚରଣାଃ' (ରମଣୀୟ ଆଚରଣ କରୁଥିବା (ଆତ୍ମା) ବ୍ରାହ୍ମଣାଦିଯୋନିକୁ ପ୍ରାପ୍ତ ହୁଅନ୍ତି ଏବଂ ପାପ ଆଚରଣ କରୁଥିବା (ଆତ୍ମା) ଶ୍ୱାନ ପ୍ରଭୃତି ଯୋନିକୁ ପ୍ରାପ୍ତ ହୁଅନ୍ତି) ଏହି ପର୍ଯ୍ୟନ୍ତ ।

(ଖ) ଏଠାରେ ବିଚାର କରାଯାଏ ଯେ- ଯାହଦ୍ୱାରା ସମ୍ପୂର୍ଣ୍ଣ କର୍ମର ଉପଭୋଗ କରାଯାଇଅଛି କି ସେମାନେ ଅନୁଶୟ (କର୍ମ) ରହିତ ଅବରୋହଣ କରନ୍ତି କି ଅନୁଶୟ ସହିତ ଅବରୋହଣ କରନ୍ତି ? ଏଠାରେ କଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ-ଅନୁଶୟରହିତ ଅବରୋହଣ କରନ୍ତି । କିପରି ? ତାହାଦ୍ୱାରା 'ଯାବତ ସଂପାତମ୍' (ସଂପାତ ପର୍ଯ୍ୟନ୍ତ) ଏହି ବିଶେଷଣ ଅଛି । ଏଠାରେ ସଂପାତ ଶବ୍ଦଦ୍ୱାରା କର୍ମାଶୟ କୁହାଯାଇଅଛି । କାରଣ- ଏହି ଲୋକରୁ ସେହି ଲୋକ ପର୍ଯ୍ୟନ୍ତ କର୍ମଫଳର ଉପଭୋଗ ପାଇଁ ଏହି କର୍ମରୁ ଯା'ନ୍ତି ।

(ଗ) 'ଯାବତ୍‌ସଂପାତମୁଷିତ୍ୱା' (ସଂପାତପର୍ଯ୍ୟନ୍ତ ରହି) ଶ୍ରୁତି ସେଠାରେ ତାହାର ସମଗ୍ର କୃତିକର୍ମର ଭୁକ୍ତତା ଦେଖାଏ । 'ତେଷାଂ ଯଦା' (ଯେତେବେଳେ ତାହାର କର୍ମକ୍ଷୀଣ ହୋଇଯାଏ, ସେତେବେଳେ ସେମାନେ ସେହି ଆକାଶକୁ ପ୍ରାଣପ୍ତ ହୁଅନ୍ତି) ଏହିପରି ଅନ୍ୟଶ୍ରୁତି ଦ୍ୱାରା ମଧ୍ୟ ଏହି ଅର୍ଥ ଦେଖାଏ । ଏହା କିନ୍ତୁ ହୋଇପାରେ ଯେ- ପରନ୍ତୁ ଯେତେବେଳ ପର୍ଯ୍ୟନ୍ତ ସେହିଲୋକରେ ଉପଭୋଗ ଯୋଗ୍ୟ ହୁଏ, ସେତେବେଳେ ଜୀବ ତାହାର ଉପଭୋଗ କରେ ବୋଲି ମୁଁ କଳ୍ପନା କରେ ।

(ଘ) କିନ୍ତୁ ଏପରି କଳ୍ପନା କରାଯାଇନପାରେ କାରଣ- ଯତ୍କିଞ୍ଚିତ୍ (ଯାହାକିଛି) - ଏପରି ଅନ୍ୟସ୍ଥାନରେ ପରାମର୍ଶ ଅଛି 'ପ୍ରାପ୍ୟାନ୍ତଂ (ଏହିଲୋକରେ ଏହା ଯାହାକିଛି କରେ, ସେହିକର୍ମରେ ଫଳ ଖାଇ ସେହି କର୍ମଦ୍ୱାରା କର୍ମ କରିବା ପାଇଁ ପୁନଷ୍ଚ ଏହି ଲୋକକୁ ଆସେ ୬ ଏହି ଅନୁଶ୍ରୁତି ଯାହାକିଛି ଅବିଶେଷ ପରାମର୍ଶ ଦ୍ୱାରା ଏଠାରେ କରାଯାଇଥିବା ସମସ୍ତ କର୍ମର ସେଠାରେ କ୍ଷୟିତ୍ୱ ଦେଖାଏ ।

(୩) ମୂଳ- (କ) ପ୍ରାୟଣମନାରବ୍ଧଫଳସ୍ୟ କର୍ମଣୋଽଭିବ୍ୟଞ୍ଜକମ୍ । ପ୍ରାକ୍‌ପ୍ରାୟଣାଦାରବ୍ଧଫଳେନ କର୍ମଣା ପ୍ରତିବଦ୍ଧସ୍ୟାଭିବ୍ୟକ୍ତ୍ୟନୁପପତ୍ତେଃ । 'ତଚ୍ଚାବିଶେଷାଦ୍ୟାବତ୍ କିଞ୍ଚିଦନାରବ୍ଧଫଳଂ ତସ୍ୟ ସର୍ବସ୍ୟାଭିବ୍ୟଞ୍ଜକମ୍ ।

(ଖ) ନହି ସାଧାରଣେ ନିମିତ୍ତେ ନୈମିତ୍ତିକମସାଧାରଣଂ ଭବିତୁମର୍ହତି, ନ ହ୍ୟବିଶିଷ୍ଟେ ପ୍ରଦୀପସଂନିଧୌ ଘଟୋଽଭିବ୍ୟଜ୍ୟତେ ନ ପଟ ଇତ୍ୟୁପପଦ୍ୟତେ । ତସ୍ମାନ୍ନିରନୁଶୟା ଅବରୋହନୀତ୍ୟେବଂ ପ୍ରାପ୍ତେ କ୍ରୂମଃ-କୃତାତ୍ୟୟେଽନୁଶୟବାନିତି ।



(ଗ) ଯେନ କର୍ତ୍ତୃବୃନ୍ଦେନ ଚନ୍ଦ୍ର ମସମାରୂଢ଼ାଃ ଫଳୋପଭୋଗାୟ ତସ୍ମିନ୍ନୁପଭୋଗେନ କ୍ଷୟିତେ ତେଷାଂ ଯଦମ୍ମୟଂ ଶରୀରଂ ଚନ୍ଦ୍ରମସ୍ୟୁପଭୋଗାୟାରବ୍ଧଂ ତଦୁପଭୋଗକ୍ଷୟ-ଦର୍ଶନଶୋକାଗ୍ନି ସଂପର୍କାତ୍ ପ୍ରବିଲୀୟତେ । ସବିତୃକିରଣସଂପର୍କାଦିବ ହିମକାରକାଃ ହୁତଭୁଗର୍ଚିସଂପର୍କାଦିବ ଚ ଘୃତକାଠିନ୍ୟମ୍ । ତତଃ କୃତାତ୍ୟୟେ କୃତସ୍ୟେଷ୍ଟାଦେଃ କର୍ମଣଃ ଫଳୋପଭୋଗେନାପକ୍ଷୟେ ସତି ସାନୁଶୟା ଏବେଷମମବରୋହନ୍ତି ।

(ଘ) କେନ ହେତୁନା ? ଦୃଷ୍ଟସ୍ମୃତିଭ୍ୟାମିତ୍ୟହ । ତଥାହି ପ୍ରତ୍ୟକ୍ଷା ଶ୍ରୁତି ସାନୁଶୟାନାମବରୋହଂ ଦର୍ଶୟତି- 'ତଦ୍ୟ ଇହ ରମଣୀୟଚରଣା ଅଭ୍ୟାଶୋ ହ ଯତ୍ତେ ରମଣୀୟାଂ ଯୋନିମାପଦ୍ୟେରନ୍ ବ୍ରାହ୍ମଣଯୋନିଂ ବା କ୍ଷତ୍ରିୟଯୋନିଂ ବା ବୈଶ୍ୟଯୋନିଂ ବାଽଥ ଯ ଇହ କପୂୟଚରଣା ଅଭ୍ୟାଶୋ ହ ଯତ୍ତେ କପୂୟାଂ ଯୋନିମାପଦ୍ୟେରନ୍ ଶ୍ୱଯୋନିଂ ବା ସୁକରଯୋନିଂ ବା ଚଣ୍ଡାଳଯୋନିଂ ବା' (ଛା ୫-୧୦-୭) ଇତିଃ ଚରଣଶବ୍ଦେ-ନାନୁଶୟଃ ସୂଚ୍ୟତ ଇତି ବର୍ଣ୍ଣୟିଷ୍ୟତି ।

**(୩) ଭାଷାଂତର-** (କ) ପୁନଶ୍ଚ ମରଣ ମଧ ଅନାରବ୍ଧଫଳବାନ୍ କର୍ମର ଅଭିବ୍ୟଞ୍ଜକ ଅଟେ । କାରଣ-ମରଣଠାରୁ ପୂର୍ବ ଆରବ୍ଧ ଫଳବାନ୍ କର୍ମଦ୍ୱାରା ପ୍ରତିବନ୍ଧକର୍ମର ଫଳପାଇଁ ଅଭିବ୍ୟକ୍ତି ସମ୍ଭବ ନୁହେଁ । ତାହା ବିଶେଷ ନ ହେଲେ ସେହି ମରଣ ଯେ କୌଣସି କର୍ମର ଫଳାରମ୍ଭକ ହୁଏ ନାହିଁ । ସେହି ସମସ୍ତ କର୍ମର ଅଭିବ୍ୟଞ୍ଜକ ହୁଏ । କାରଣ-

(ଖ) ସାଧାରଣ ନିମିତ୍ତକ ହେଲେ ନୈମିତ୍ତକ ଅସାଧାରଣ ହୋଇପାରେ ନାହିଁ । ପ୍ରଦୀପର ଅବଶିଷ୍ଟ (ସାମାନ୍ୟ) ସନ୍ନିଧିରେ ଘଟ ଅଭିବ୍ୟକ୍ତ ହୁଏ । କିନ୍ତୁ ପଟ ନୁହେଁ ବୋଲି କହିବା ଠିକ୍ ନୁହେଁ । ତେଣୁ ଜୀବ ଅନୁଶୟରହିତ ଅବରୋହଣ କରେ । ଏହା ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ- 'କୃତାତ୍ୟୟେଽନୁଶୟବାନ୍' (କର୍ମକ୍ଷୟ ହେଲାପରେ ଅନୁଶୟବାନ୍) ।

(ଗ) ଯେଉଁ କର୍ମ ସମୂହଦ୍ୱାରା ଫଳର ଉପଭୋଗ ପାଇଁ ଚନ୍ଦ୍ରମଣ୍ଡଳରେ ଆରୂଢ଼ ହୋଇ ସେହି କର୍ମ ସମୁଦାୟର ଉପଭୋଗଦ୍ୱାରା କ୍ଷୟ ହେଲାପରେ ସେମାନଙ୍କର ଉପଭୋଗ ପାଇଁ ଚନ୍ଦ୍ରମଣ୍ଡଳରେ ଯେଉଁ ଜଳମୟ ଶରୀର ଆରବ୍ଧ ହୋଇଛି । ସେ ଉପଭୋଗ ପାଇଁ କ୍ଷୟଦର୍ଶନରୁ ଉତ୍ପନ୍ନ ହୋଇ ଶାକାଗ୍ନିର ସମ୍ପର୍କଦ୍ୱାରା ବିଲୀନ ହୋଇଯାଏ । ଯେପରି ସୂର୍ଯ୍ୟ କିରଣର ସଂପର୍କରୁ ହିମ ଓ କରକ ଏବଂ ଅଗ୍ନିର ଜ୍ୱାଳା ସଂପର୍କରୁ ଘୃତର କାଠିନ୍ୟ ବିଲୀନ ହୋଇଯାଏ । ତେଣୁ 'କୃତାତ୍ୟୟେ' କରାଯାଇଥିବା ଇଷ୍ଟାଦି କର୍ମଫଳର ଉପଭୋଗରୁ ଉପକ୍ଷୟ ହେଲାପରେ ଅନୁଶୟ ସହିତ ଜୀବ ଏହି ଲୋକରେ ଅବରୋହଣ କରନ୍ତି ।

(ଘ) କିନ୍ତୁ କିପରି ? ଇଷ୍ଟଶ୍ରୁତି ଓ ସ୍ମୃତିଦ୍ୱାରା କୁହାଯାଇଅଛି । ଯେପରି- 'ତଦ୍ୟ ଇହ' (ସେହି ଅନୁଶୟୀଜୀବଠାରେ ଯେଉଁ ପୁଣ୍ୟବାନ୍ ଅଛନ୍ତି, ସେମାନେ ଶୀଘ୍ର ଉତ୍ତମଯୋନିକୁ ପ୍ରାପ୍ତ ହୁଅନ୍ତି । ସେମାନେ ବ୍ରାହ୍ମଣଯୋନି, କ୍ଷତ୍ରିୟଯୋନି ଅଥବା ବୈଶ୍ୟ ଯୋନିକୁ ପ୍ରାପ୍ତ ହୁଅନ୍ତି । ପୁନଶ୍ଚ ଯାହା ଅଶୁଭ ଆଚରଣ (ପାପକର୍ମ) ବାନ୍ ହୁଅନ୍ତି, ସେମାନେ୍ ତତ୍କାଳ ଅଶୁଭଯୋନିକୁ ପ୍ରାପ୍ତ ହୁଅନ୍ତି । ସେମାନେ ଶ୍ୱାନଯୋନି, ଶୁକର ଯୋନି, ଅଥବା ଚଣ୍ଡାଳଯୋନିକୁ ପା'ନ୍ତି । ଏହି ପ୍ରତ୍ୟକ୍ଷ ଶ୍ରୁତି ଅନୁଶୟ ସହିତ ଜୀବର ଅବରୋହଣକୁ ଦେଖାଏ । ଏଠାରେ ଚରଣଶବ୍ଦଦ୍ୱାରା ଅନୁଶୟ (କର୍ମ) ସୂଚିତ ହୁଏ ବୋଲି ବର୍ଣ୍ଣନା କରିବୁ ।

(୪) ମୂଳ-(କ) ଦୃଷ୍ଟଶ୍ଚାୟଂ ଜନ୍ମନୈବ ପ୍ରତିପ୍ରାଣ୍ୟୁଚ୍ଚବଚନରୂପି ଉପଭୋଗଃ ପ୍ରବିଭଜ୍ୟମାନ ଆକସ୍ମିକତାସମ୍ଭବାଦନୁଶୟସଦ୍ଭାବଂ ସୂଚୟତି, ଅଭ୍ୟୁଦୟପ୍ରତ୍ୟବାୟୟୋଃ ସୁକୃତଦୂଷ୍କୃତହେତୁତ୍ୱସ୍ୟ ସାମାନ୍ୟତଃ ଶାସ୍ତ୍ରେଣାବର୍ଗମିତତ୍ୱାତ୍ ।

(ଖ) ସ୍ମୃତିରପି 'ବର୍ଣ୍ଣା ଆଶ୍ରମାଶ୍ଚ ସ୍ୱକର୍ମନିଷ୍ଠାଃ ପ୍ରେତ୍ୟ କର୍ମଫଳମନୁଭୂୟ ତତଃ ଶେଷେଣ ବିଶିଷ୍ଟଦେଶଜାତିକୁଳରୂପାୟୁଃ ଶ୍ରୁତବୃତ୍ତବିତ୍ତସୁଖମେଧସୋ ଜନ୍ମ ପ୍ରତିପଦ୍ୟନ୍ତେ' ଇତି ସାନୁଶୟାନାମେବବରୋହଂ ଦର୍ଶୟତି ।

(ଗ) କଃ ପୁନରନୁଶୟୋ ନାମେତି ? କେଚିତ୍ତାବଦାହୁଃ-ସ୍ୱର୍ଗାର୍ଥସ୍ୟ କର୍ମଣୋ ଭୁକ୍ତଫଳସ୍ୟାବେଶେଷଃ କଶ୍ଚିଦବଶେଷୋ ନାମ, ଭଣ୍ଡାନୁସାରିସ୍ନେହବତ୍ । ଯଥାହି ସ୍ନେହଭାଣ୍ଡଂ ରିଚ୍ୟମାନଂ ନ ସର୍ବାତ୍ମନା ରିଚ୍ୟତେ ଭାଣ୍ଡାନୁସାର୍ଯ୍ୟେବ କଶ୍ଚିତ୍ସ୍ନେହଶେଷୋଽ-ତିଷ୍ଠତେ ତଥାଽନୁଶୟୋଽପୀତି ।

(ଘ) ନନୁ କାର୍ଯ୍ୟବିରୋଧିତ୍ୱାଦଦୃଷ୍ଟସ୍ୟ ନ ଭୁକ୍ତଫଳସ୍ୟାବିଶେଷସ୍ଥାନଂ ନ୍ୟାର୍ଯ୍ୟମ୍ । ନୈଷ ଦୋଷଃ ନହି ସର୍ବାତ୍ମନା ଭୁକ୍ତଫଳତ୍ୱଂ କର୍ମଣଃ ପ୍ରତିଜାନୀମହେ । ନନୁ ନିରବଶେଷ-କର୍ମଫଳୋପଭୋଗାୟ ଚନ୍ଦ୍ର ମଣ୍ଡଳମାରୁତଃ । ବାଡମ୍, ତଥାପି ସ୍ୱଳ୍ପକର୍ମାବଶେଷମାତ୍ରେଣ ତତ୍ରାବସ୍ଥାତୁଂ ନ ଲଭ୍ୟତେ ।

(ଙ) ଯଥା କିଲକଶ୍ଚିତ୍ ସେବକଃ ସକଲୈଃ ସେବୋପକରଣୈଃ ରାଜକୁଳମୁପସୃପ୍ତ ଶ୍ଚିରପ୍ରବାସାତ୍ ପରିକ୍ଷୀଣବହୁପକରଣଚ୍ଛତ୍ରପାଦୁକାଦିମାତ୍ରାବଶେଷୋ ନ ରାଜକୁଳେଽବସ୍ଥାତୁଂ ଶକ୍ନୋତି । ଏବମନୁଶୟମାତ୍ରପରିଗ୍ରହୋ ନ ଚନ୍ଦ୍ରମଣ୍ଡଳେଽବସ୍ଥାତୁଂ ଶକ୍ନୋତି । ନ ଚୈତଦ୍ୟୁକ୍ତମିବ, ନ ହି ସ୍ୱର୍ଗାର୍ଥଣସ୍ୟ କର୍ମଣୋ ଭୁକ୍ତଫଳସ୍ୟାବଶେଷାନୁବୃତ୍ତିରୁପପଦ୍ୟତେ, କାର୍ଯ୍ୟବିରୋଧିତ୍ୱାଦିତ୍ୟୁକ୍ତମ୍ ।

(ଚ) ନନ୍ୱେତଦପ୍ୟୁକ୍ତମ୍-ନ ସ୍ୱର୍ଗଫଳସ୍ୟ କର୍ମଣୋ ନିଖିଳସ୍ୟ ଭୁକ୍ତଭଲତ୍ୱଂ ଭବିଷ୍ୟତୀତି । ତଦେତଦପେଶଳମ୍-ସ୍ୱର୍ଗାର୍ଥଂ କିଳ କର୍ମ ସ୍ୱର୍ଗସ୍ଥସ୍ୟୈବ ସ୍ୱର୍ଗଫଳଂ ନିଖିଳଂ



ନ ଜଳୟତି ସ୍ୱର୍ଗଚ୍ୟୁତସ୍ୟାପି କିଞ୍ଚିତ୍‌ଫଳଲେଶଂ ଜନୟତୀତି । ନ ଶବ୍ଦପ୍ରମାଣକାନାମୀଦୃଶୀ କଳ୍ପନାଽବକଳ୍ପତେ, ସ୍ନେହଭାଣ୍ଡେ ତୁ ସ୍ନେହଲେଶାନୁବୃତ୍ତିର୍ଦୃଷ୍ଟତ୍ୱାଦୁପପଦ୍ୟତେ । ତଥା ସେବକସ୍ୟୋପକରଣଲେଶାନୁବୃତ୍ତିଶ୍ଚ ଦୃଶ୍ୟତେ, ନ ତ୍ୱିହ ତଥା ସ୍ୱର୍ଗଫଳସ୍ୟ କର୍ମଣୋ ଲେଶାନୁବୃତ୍ତିର୍ଦୃଶ୍ୟତେ, ନାପି କଳ୍ପୟିତୁଂ ଶକ୍ୟତେ ସ୍ୱର୍ଗଫଳତ୍ୱସ୍ୱବିରୋଧାତ୍ ।

(୪) ଭାଷାଂତର- (କ) ଜନ୍ମଦ୍ୱାରା ପ୍ରତ୍ୟେକ ପ୍ରାଣୀରେ ଭିନ୍ନ ଭିନ୍ନ ରୂପରେ ବିଭକ୍ତ ହୋଇ ଏହି ଉପଯୋଗ ଦେଖାଯାଏ । ସେ ଆକସ୍ମିକତ୍ୱର ଅସମ୍ଭବରୁ ଅନୁଶୟର ସଦ୍‌ଭାବକୁ ସୂଚିତ କରେ । କାରଣ ଅଭ୍ୟୁଦୟ ଓ ପ୍ରତ୍ୟବାୟ (ଦୁଃଖର ହାନି)ର ସୁକୃତ ଓ ଦୁଷ୍କୃତ ହେତୁ ବୋଲି ସାମାନ୍ୟରୀତିରୁ ଶାସ୍ତ୍ରଦ୍ୱାରା ଅବଗତ ହୁଏ ।

(ଖ) 'ବର୍ଣ୍ଣା ଆଗମାଶ୍ଚ' (ବର୍ଣ୍ଣ ଓ ଆଶ୍ରମରେ ଥିବା ଲୋକ ନିଜନିଷ୍ଠାରେ ରହି ମରାଣନନ୍ତର କର୍ମଫଳକୁ ଅନୁଭବ କରି ତଦ୍ଧାରା (ଶେଷକର୍ମ ଦ୍ୱାରାନୁଶୟ ନାମକ କର୍ମଦ୍ୱାରା) ବିଶିଷ୍ଟ ଦେଶ, ଜାତି, କୁଳ, ରୂପ, ଆୟୁ, ଜ୍ଞାନ, ଆଚାର, ବିତ୍ତ, ସୁଖ ଓ ଜ୍ଞାନ ଯୁକ୍ତ ହୋଇ ଜନ୍ମ ପାଏ) ଏହି ସ୍ମୃତି ମଧ୍ୟ ଅନୁଶୟ ସହିତ ଜୀବର ଅବରୋହଣ ଦେଖାଏ ।

(ଗ) ପରନ୍ତୁ ଏହି ଅନୁଶୟ କଣ ? କେତେକ ଲୋକ ପାତ୍ରରେ ଥିବା ସ୍ନେହା (ତୈଳାଦି)ପରି ସ୍ୱର୍ଗ ପାଇଁ କରାଯାଇଥିବା କର୍ମ ଯାହାରକି ଫଳଭୋଗ ନିଆଯାଇଛି । ତେଣୁ ତାହାର କେତେକ ଅବଶେଷ ଅନୁଶୟ ରହେ । ଯେପରି ତୈଳପାତ୍ରରୁ ଖାଲି ହେଲେ ମଧ୍ୟ ସର୍ବାତ୍ମନା ଖାଲି ହୁଏ ନାହିଁ, ଭଣ୍ଡାନୁସାରୀ କେତେକ ଅବଶିଷ୍ଟ ସ୍ନେହ ରହେ ସେହିପରି ଅନୁଶୟ ମଧ୍ୟ ଜୀବର ସହିତ ଅବସ୍ଥିତ ରହେ ବୋଲି ଆମ୍ଭେ କହୁଁ ।

(ଘ) ପରନ୍ତୁ କାର୍ଯ୍ୟଫଳବିରୋଧି ହେଲେ ଭୁକ୍ତଫଳ ଅଦୃଷ୍ଟର ଅବଶେଷରେ ଅବସ୍ଥିତି ନ୍ୟାୟଯୁକ୍ତ ନୁହେଁ କି ? ଏହା ଦୋଷ ନୁହେଁ । କାରଣ-କର୍ମ ସର୍ବାତ୍ମନା ଭୁକ୍ତଫଳ ଅଟେ ବୋଲି ପ୍ରମାଣ କରୁନାହୁଁ । ପରନ୍ତୁ ସଂପୂର୍ଣ୍ଣ କର୍ମଫଳର ଉପଭୋଗ ପାଇଁ ଜୀବ ଚନ୍ଦ୍ରମଣ୍ଡଳରେ ଆରୂଢ଼ ହେବାହିଁ ଯୁକ୍ତିଯୁକ୍ତ । ତଥାପି ସ୍ୱଳ୍ପକର୍ମର ଅବଶେଷଦ୍ୱାରା ସେଠାରେ ଅବସ୍ଥିତି ପ୍ରାପ୍ତ ହୋଇପାରେ ନାହିଁ ।

(ଙ) ଯେପରି କୌଣସି ସେବକ ସେବାର ସଂପୂର୍ଣ୍ଣ ଉପକରଣଦ୍ୱାରା ରାଜକୁଳକୁ ଯାଏ, ସେଠାରେ ତାହାର ସମସ୍ତ ଉପକରଣ ହେୟ ହୁଏ, କିନ୍ତୁ ଛତ୍ରପାଦୁକାଦି ଉପକରଣ ଶେଷରେ ରହିଯାଏ । ମାତ୍ରକ ସେ ରାଜକୁଳରେ ରହିବାପାଇଁ ସମର୍ଥ ହୁଏ ନାହିଁ, ସେହିପ୍ରକାର ଅନୁଶୟମାତ୍ରାକୁ ପରିଗ୍ରହ କରି ଚନ୍ଦ୍ରମଣ୍ଡଳରେ ଅବସ୍ଥିତ ରହେ ନାହିଁ । ପରନ୍ତୁ ଏହା ଯୁକ୍ତି ବଳରେ ପ୍ରତୀତ ହୁଏ ନାହିଁ । କାରଣ-ସ୍ୱର୍ଗପାଇଁ କରାଯାଇଥିବା କର୍ମ ଯାହା ଭୁକ୍ତଫଳ ଅଟେ, ତାହାର ଅବଶେଷରୁ ଅନୁବୃତ୍ତି ଫଳର ବିରୋଧୀ ହେଲେ ଏହା ଉପପନ୍ନ ହୁଏ ବୋଲି କୁହାଯାଇଅଛି ।

(ଚ) ପରନ୍ତୁ ଏହା କୁହାଯାଇଅଛି ଯେ- ସ୍ୱର୍ଗଫଳବାନ୍ ପୁରୁଷ ସମସ୍ତ କର୍ମର ଫଳକୁ ଭୋଗ କରେ ନାହିଁ । ଏହା କିନ୍ତୁ ଅଯୁକ୍ତ ଅଟେ, କାରଣ-ସ୍ୱର୍ଗ ପାଇଁ କରାଯାଇଥିବା କର୍ମ ସ୍ୱର୍ଗସ୍ଥକୁ ସମ୍ପୂର୍ଣ୍ଣ ସ୍ୱର୍ଗଫଳ ଉତ୍ପନ୍ନ କରେ ନାହିଁ, କିନ୍ତୁ ସ୍ୱର୍ଗରୁ ବିଚ୍ୟୁତ ହେଲେ ବି ଅଳ୍ପକିଛି ଉତ୍ପନ୍ନ କରେ । ପରନ୍ତୁ ଶ୍ରୁତିପ୍ରମାଣକୁ ସ୍ୱୀକାର କରୁଥିବା କଳ୍ପନା ସମ୍ଭବ ନୁହେଁ । ଯେପରି ତୈଳପାତ୍ରରେ ଅଳ୍ପତୈଳର ଅନୁବୃତ୍ତି କଳ୍ପନା କରାଯାଏ, ସେପରି ସେବକମାନଙ୍କ ପାଖରେ ଉପକରଣମାତ୍ରର ଅନୁବୃତ୍ତି ଦେଖାଯାଏ । ପରନ୍ତୁ ସେହିପ୍ରକାର ଏଠାରେ ସ୍ୱର୍ଗ ଫଳକାମୀ କର୍ମପାତ୍ରର ଅନୁବୃତ୍ତି ଦେଖେନାହିଁ ଏବଂ କଳ୍ପନା ମଧ୍ୟ କରିପାରେ ନାହିଁ; କାରଣ-ସ୍ୱର୍ଗଫଳ ପ୍ରତିପାଦକ ଶାସ୍ତ୍ର ବିରୋଧ ଅଟେ ।

ମୂଳ-(୫) ଅବଶ୍ୟଂ ଚୈତଦେବଂ ବିଜ୍ଞେୟସା ନ ସ୍ୱର୍ଗଫଳସ୍ୟେଷ୍ଟାଦେଃ କର୍ମଣୋ ଭଣ୍ଡାନୁସାରି ସ୍ନେହବଦେକ ଦେଶୋଽନୁବର୍ତ୍ତମା ନୋଽନୁଶୟ ଇତି । ଯଦି ହି ଯେନ ସୁକୃତେନ କର୍ମଣେଷ୍ଟାଦିନା ସ୍ୱର୍ଗମନ୍ୱଭୂବଂସ୍ତ ସ୍ୟୈବ କଶ୍ଚିଦେକଦେଶୋଽନୁଶୟଃ କଲ୍ପ୍ୟେତ, ତତୋ ରମଣୀୟ ଏବୈକୋଽନୁଶୟଃ ସ୍ୟାନ୍ନ ବିପରୀତଃ । ତତ୍ରେୟମନୁଶୟବିଭାଗ ଶ୍ରୁତି ରୁପରୁଧ୍ୟେତ- 'ତଦ୍ୟ ଇହ ରମଣୀୟଚରଣା ଅଥ ଯ ଇହ କପୂୟଚରଣାଃ' (ଛା ୫-୧୦-୭) ଇତି । ତସ୍ମାଦାମୁଷ୍ମିକଫଳେ କର୍ମଜାତ ଉପଭୁକ୍ତେଽବଶିଷ୍ଟ ମେ ହିକଫଳଂ କର୍ମାନ୍ତରଜାତମନୁଶୟସ୍ତଦ୍ୱନ୍ତୋଽବରୋହନ୍ତୀତି ।

(ଖ) ଯଦୁକ୍ତମ୍-ଯତ୍ କି ଞ୍ଚେତ୍ୟବିଶେଷ ପରାମର୍ଶାତ୍ ସର୍ବସ୍ୟେହ କୃତସ୍ୟ କର୍ମଣଃ ଫଳୋପଭୋଗେନାନ୍ତଂ ପ୍ରାପ୍ୟ ନିରନୁଶୟା ଅବରୋହନ୍ତୀତିନୈତଦେବମ୍, 'ଅନୁଶୟସହ-ଭାବସ୍ୟା ବଗମିତତ୍ୱାତ୍ । ଯତ୍କିଞ୍ଚିଦିହ କୃତମାମୁଷ୍ମିକଫଳଂ କର୍ମାରବ୍ଧଭୋଗଂ ତତ୍ସର୍ବଂ ଫଳୋପଭୋଗେନ କ୍ଷପୟିତ୍ୱେତି ଗମ୍ୟତେ ।

(ଗ) ଯଦପ୍ୟୁକ୍ତମ୍ ପ୍ରାୟଣମବିଶେଷାଦନାରବ୍ଧଫଳଂ କୃତ୍ସ୍ନମେବ କର୍ମାଭିବ୍ୟନକ୍ତି; ତତ୍ର କେନଚିତ୍ କର୍ମଣାଽମୁଷ୍ମିଂଲ୍ଲୋକେ ଫଳମାରଭ୍ୟତେ, କେନଚିଦସ୍ମିନ୍ନିତ୍ୟୟଂ ବିଭାଗୋ ନ ସମ୍ଭବତୀତିତଦପ୍ୟନୁଶୟସହଭାବ ପ୍ରତିପାଦନେନୈବ ପ୍ରତ୍ୟୁକ୍ତମ୍ । ଅପି ଚ କେନ ହେତୁନା ପ୍ରାୟଣମନାରବ୍ଧଫଳସ୍ୟ କର୍ମଣୋଽଭିବ୍ୟଞ୍ଜକଂ ପ୍ରତିଜ୍ଞାୟତ ଇତି ବକ୍ତବ୍ୟମ୍ ।

(ଘ) ଆରବ୍ଧଫଳେନ କର୍ମାଣ ପ୍ରତିବଦ୍ଧସ୍ୟେତରସ୍ୟ ବୃତ୍ତ୍ୟୁହଭାବାନୁପପତ୍ତେସ୍ତଦୁ-ପଶମାତ୍ ପ୍ରାୟଣକାଳେ ବୃତ୍ତ୍ୟୁଦ୍ଭାବୋ ଭବତୀତ ଯଦ୍ୟୁଚ୍ୟେତ, ତତୋ ବବ୍ୟକ୍ତମ୍ ଯଥୈବ ତର୍ହିପ୍ରାକ୍ ପ୍ରାୟଣାଦାରବ୍ଧଫଳେନକର୍ମଣା ପ୍ରତିବଦ୍ଧସ୍ୟେତରସ୍ୟ ବୃତ୍ତ୍ୟୁଦ୍ଭବାନୁପପତ୍ତି-ରିତ୍ୟେବଂ ପ୍ରାୟଣକାଳେଽପି ବିରୁଦ୍ଧଫଳସ୍ୟାନେକସ୍ୟ କର୍ମଣେ ଯୁଗପତ୍ଫଳାରମ୍ଭାସମ୍ଭବାଦ୍ ବଳବତା ପ୍ରତିବଦ୍ଧସ୍ୟ ଦୁର୍ବଳସ୍ୟବୃତ୍ତ୍ୟୁଦ୍ଭବାନୁ ପପତ୍ତିରିତି ।



(ଙ) ନ ହ୍ୟନାରବ୍ଧଫଳତ୍ୱସାମାନ୍ୟେନ ଜାତ୍ୟନ୍ତରୋପଭୋଗ୍ୟଫଳମପ୍ୟନେକଂ କର୍ମୈକସ୍ମିନ୍‌ପ୍ରାୟଣେ ଯୁଗବଦଭିବ୍ୟକ୍ତଂ ସଦେକାଂ ଜାତିମାରଭତ ଇତି ଶକ୍ୟଂ ବକ୍ତୁମ୍-ପ୍ରତିନିୟତଫଳତ୍ୱ ବିରୋଧାତ୍ । ନାପକିସ୍ୟଚିତ୍ କର୍ମଣଃ ପ୍ରାୟଣେଽଭିବ୍ୟକ୍ତିଃ କସ୍ୟଚିଦୁଚ୍ଛେଦ ଇତି ଶକ୍ୟତେ ବକ୍ତୁମ୍ 'ଐକାନ୍ତିକଫଳତ୍ୱବିରୋଧାତ୍ । ନହି ପ୍ରାୟଶ୍ଚିତ୍ତାଦିଭିର୍ହେତୁଭିର୍ବିନା କର୍ମଣାମୁଚ୍ଛେଦଃ ସମ୍ଭାବ୍ୟତେ ।

**(୫) ଭାଷାଂତର-** (କ) ଅବଶ୍ୟ ଏହିପରି ଜାଣିବା ଉଚିତ ଯେ- ସ୍ୱର୍ଗ ଫଳବାନ୍ ଇଷ୍ଟାଦିକର୍ମର ପାତ୍ରାନୁସାରୀ ତୈଳପରି ଅନୁବର୍ତ୍ତମାନ ହୋଇ ଏକଦେଶ ଅନୁଶୟ ହୁଏ ନାହିଁ । ଯଦି ଯେଉଁ ଇଷ୍ଟାଦିସୁକୃତ୍ କର୍ମଦ୍ୱାରା ଜୀବ ସ୍ୱର୍ଗକୁ ଅନୁଭବ କରି ତାହାର କୌଣସି ଏକାଦେଶ ଅନୁଶୟ କଳ୍ପନା କରିପାରେ, ତେବେ କେବଳ ଏକ ରମଣୀୟ ହିଁ ଅନୁଶୟ ହୁଏ । ତଦ୍ଧ୍ୱାରା ବିପରୀତକପୂୟ ହୁଏ ନାହିଁ । ପୁନଶ୍ଚ 'ତଦ୍ୟ ଇହ ରମଣୀୟଚରଣା ଅଥ ଯ ଇହ କପୂୟଚରଣା' ଅହି ଅନୁଶୟ ବିଭାଗର ଶ୍ରୁତି ହିଁ ବାଧିତ ହେବ । ତେଣୁ ପରଲୋକରେ କର୍ମଦାତା ସମସ୍ତ କର୍ମର ଉପଭୁକ୍ତ ହେଲାପରେ ଏହି ଲୋକରେ ଫଳଦାତା ଅବଶିଷ୍ଟ ଯାହା ଅନ୍ୟକର୍ମ ସମୁଦାୟ, ସେ ଅନୁଶୟ ହୁଅନ୍ତି । ସେହି କର୍ମଯୁକ୍ତ ହୋଇ ଅବରୋହଣ କରନ୍ତି ।

(ଖ) 'ଯତ୍ କିଞ୍ଚିତ୍' ଏହି ଅବିଶେଷର ପରାମର୍ଶଦ୍ୱାରା ଏଠାରେ କରାଯାଇଥିବା ସମସ୍ତ କର୍ମର ଫଳୋପଭୋଗରୁ ଶେଷପର୍ଯ୍ୟନ୍ତ ପାଇ ଅନୁଶୟ ରହିତ ହୋଇ ଅବରୋହଣ କରନ୍ତି ବୋଲି ଯାହା କୁହାଯାଇଅଛି ଏହା କିନ୍ତୁ ଠିକ୍ ନୁହେଁ । କାରଣ-ଅନୁଶୟର ସଦ୍‌ଭାବ ଅବଗମିତ ଅଟେ । ଯାହାକିଛି ଏଠାରେ ଆମୁଷ୍ମିକ (ପରଲୋକ) ଫଳବାନ୍ କର୍ମ କରାଯାଇଛି, ଏବଂ ଆରବ୍ଧ ଭୋଗଯୁକ୍ତ କର୍ମ ଅଛି, ସେହି ସମସ୍ତଙ୍କର ଉପଭୋଗ ଦ୍ୱାରା କ୍ଷପଣ କରିବା ଅର୍ଥ ଅବଗତ ହୁଏ ।

(ଗ) ମରଣ ଅବିଶେଷ ସମାନରୂପରେ ଅନାରବ୍ଧ ଫଳବାନ୍ ସମସ୍ତ କର୍ମର ଅଭିବ୍ୟକ୍ତି କରେ ବୋଲି ଯାହା କୁହାଯାଇଅଛି, ତେବେ ମଧ୍ୟ ଗୋଟିଏ କର୍ମରୁ ପରଲୋକରେ ଏପରି ବିଭାଗ ଅସମ୍ଭବ ଅଟେ । ସେହି ଅନୁଶୟସଦ୍‌ଭାବର ପ୍ରତିପାଦିନ ଦ୍ୱାରା ତାହା ନିରାକରଣ କରାଯାଇଅଛି ଏବଂ ମରଣ ଅନାରବ୍ଧ ଫଳଯୁକ୍ତ କର୍ମରୁ ଅଭିବ୍ୟଞ୍ଜକ ଅଟେ- ଏହିପରି ପ୍ରତିଜ୍ଞା କେଉଁ କାରଣରୁ କରାଯାଇଛି ବୋଲି କହିବା ଉଚିତ ।

(ଘ) ଯଦି ତୁମେ କହଯେ- ଯାହାର ଫଳ ଆରବ୍ଧ କରାଯାଇଅଛି, ସେହି କର୍ମଦ୍ୱାରା ପ୍ରତିବନ୍ଧ ଅନ୍ୟକର୍ମର ବୃତ୍ତି (ଫଳ)ର ଉଦ୍‌ବକ ଅନୁପପନ୍ନ ହେଲେ ତାହା ଶାନ୍ତ ହେଲାପରେ ମରଣ ସମୟରେ ବୃତ୍ତିର ଉଦ୍‌ଭବ ହୁଏ । ତାହେଲେ ଆମ୍ଭେ ଏହି ବିଷୟରେ କହୁ ଯେ- ଯେପରି ମରଣର ପୂର୍ବରୁ ଯାହାର ଫଳ ଆରବ୍ଧ ହୁଏ ଓ କର୍ମଦ୍ୱାରା ପ୍ରତିବନ୍ଧ ଅନ୍ୟକର୍ମର ବୃତ୍ତ୍ୟୁଦ୍ଭବର ଅନୁପପତ୍ତି ହୁଏ, ସେପରି ମଧ୍ୟ ମରଣ କାଳରେ ବିରୁଦ୍ଧ

ଫଳରେ ଅନେକ କର୍ମରେ ଯୁଗପତ୍ କର୍ମ ଆରମ୍ଭ ଅସମ୍ଭବ ହେତୁ ଫଳବାନ୍ କର୍ମରୁ ପ୍ରତିବନ୍ଧ ହୋଇ ଦୁର୍ବଳ ବୃତ୍ତ୍ୟୁଦ୍‌ଭବକୁ ଅନୁପପତ୍ତି ହୁଏ ।

(ଙ) ଅନ୍ୟ ଜାତିରେ ଉପଭୋଗଫଳ ଯୁକ୍ତ ଅନେକ କର୍ମ ମଧ୍ୟ ଏକ ମରଣ ସମୟରେ ଯୁଗପତ୍ ଅଭିବ୍ୟକ୍ତି ହୋଇ ଅନାରବ୍ଧ ଫଳତ୍ୱର ସମାନ ଧର୍ମଦ୍ୱାରା ଏକଜାତିକୁ ଆରମ୍ଭ କରେ ବୋଲି କୁହାଯାଇ ନପାରେ । କାରଣ-ତାହା ପ୍ରତିନିୟତ ଫଳତ୍ୱର ବିରୋଧ ଅଟେ । ଅର୍ଥାତ୍ ପ୍ରତ୍ୟେକ କର୍ମର ଭିନ୍ନ ଭିନ୍ନ ଫଳର ବିରୋଧ' ମରଣ ସମୟରେ କୌଣସି ଗୋଟିଏ କର୍ମର ଅଭିବ୍ୟକ୍ତି ଓ କୌଣସି କର୍ମର ଉଚ୍ଛେଦକୁ କୁହାଯାଇ ନପାରେ । କାରଣ-ଏହା ଐକାନ୍ତିକ ଫଳତ୍ୱର ବିରୋଧ ଅଟେ ଏବଂ ପ୍ରାୟଶ୍ଚିତଭାବେ ହେତୁବିନା କର୍ମର ଉଚ୍ଛେଦ ସମ୍ଭବ ନୁହେଁ ।

(୬) ମୂଳ-(କ) ସ୍ମୃତିରପି ବିରୁଦ୍ଧଫଳେନ କର୍ମଣା ପ୍ରତିବଦ୍ଧସ୍ୟ କର୍ମାନ୍ତରସ୍ୟ ଚିରମବସ୍ଥାନଂ ଦର୍ଶୟତି- 'କଦାଚିତ୍ ମୁକ୍ତତୁଂ କର୍ମ କୂଟସ୍ଥମିହ ତିଷ୍ଠତି । ମଜ୍ଜମାନସ୍ୟ ସଂସାରେ ଯାବଦ୍‌ଦୁଃଖାଦ୍ ବିମୁଚ୍ୟତେ' - ଇତ୍ୟେବଂଜାତୀୟକା ।

(ଖ) ଯଦି ଚ କୃତ୍ସ୍ନମନାରବ୍ଧଫଳଂ କର୍ମୈକସ୍ମିନ୍ ପ୍ରାୟଣେଽଭିବ୍ୟକ୍ତଂ ସଦେକାଂ ଜାତିମାରଭେତ, ତତଃ ସ୍ୱର୍ଗନରକତିର୍ଯ୍ୟଗ୍ୟୋନିଷ୍ୱଧିକାରାନବଗମାଦ୍ ଧର୍ମାଧର୍ମାନୁପପତ୍ତି ନିମତ୍ତାଭାବେନ୍ନୋତ୍ତରା ଜାତିରୁପପଦ୍ୟେତ । ବ୍ରହ୍ମହତ୍ୟାଦୀନାଂ ଚୈକୈକସ୍ୟ କର୍ମଣୋଽ-ନେକଜନ୍ମନିମିତ୍ତତ୍ୱଂ ସ୍ମର୍ଯ୍ୟମାଣରୁପରୁଧ୍ୟେତ ।

(ଗ) ନ ଚ ଧର୍ମାଧର୍ମୟୋଃ ସ୍ୱରୂପଫଳସାଧନାଦିସମଧିଗମେ ଶାସ୍ତ୍ରାଦତିରିକ୍ତଂ କାରଣଂ ଶକ୍ୟଂ ସମ୍ଭାବୟିତୁମ୍ । ନ ଚ ଦୃଷ୍ଟଫଳସ୍ୟ କର୍ମଣଃ କାରୀର୍ଯ୍ୟାଦେଃ ପ୍ରାୟଣମଭିବ୍ୟଞ୍ଜକଂ ସମ୍ଭବତୀତ୍ୟବ୍ୟାପିକାଽପୀୟଂ ପ୍ରାୟଣସ୍ୟାଭିବ୍ୟଞ୍ଜକତ୍ୱକଳ୍ପନା । ପ୍ରଦୀପୋପନ୍ୟାସୋଽପି କର୍ମବଲାବଲପ୍ରଦର୍ଶନେନୈବ ପତିନୀତଃ । ସ୍ଥୁଳ ସୂକ୍ଷ୍ମରୂପାଭିବ୍ୟକ୍ତ୍ୟ ନଭିବ୍ୟକ୍ତିବଦ୍ଦେଦଂ ଦ୍ରଷ୍ଟବ୍ୟମ୍ ।

(ଘ) ଯଥାହି ପ୍ରଦୀପଃସମାନେଽପି ସନ୍ନିଧାନେ ସ୍ଥୁଳଂ ରୂପମଭିବ୍ୟନକ୍ତି, ନ ସୂକ୍ଷ୍ମମ୍ ଏବଂ ପ୍ରାୟଣଂ ସମାନେଽପ୍ୟନାରବ୍ଧଫଳସ୍ୟ କର୍ମଜାତସ୍ୟ ପ୍ରାପ୍ତାବସରତ୍ୱେ ବଲବତଃ କର୍ମଣୋ ବୃତ୍ତିମୁଦ୍‌ଭାବୟତି, ନ ଦୁର୍ବଲସ୍ୟେତି । ତସ୍ମାଚ୍ଛ୍ରୁତିସ୍ମୃତିନ୍ୟାୟବିରୋଧାଦଶ୍ଲିଷ୍ଟୋଽୟ-ମଶେଷକର୍ମାଭିବ୍ୟକ୍ତ୍ୟଭ୍ୟୁପଗମଃ ।

**(୬) ଭାଷାଂତର-** (କ) 'କଦାଚିତ୍ ସୁକୃତଂ କର୍ମ' (କେତେବେଳେ ସଂସାରରେ ମଜ୍ଜି ଯାଇଥିବା ପୁରୁଷ ଯେ ପର୍ଯ୍ୟନ୍ତ ଦୁଃଖରୁ ବିମୁକ୍ତ ହୋଇ ରହେ, ସେ ସମୟ ପର୍ଯ୍ୟନ୍ତ ତାର ସୁକୃତ କର୍ମ କୂଟସ୍ଥ ରୂପରେ ରହେ) ଏହି ପ୍ରକାର ସ୍ମୃତି ମଧ୍ୟ ବିରୁଦ୍ଧ ଫଳଯୁକ୍ତ କର୍ମରେ ପ୍ରତିବଦ୍ଧ ହୋଇ ଅନ୍ୟକର୍ମର ଅବସ୍ଥିତି ଦେଖାଏ ।

 

(ଖ) ଯଦି ଅନାରବ୍ଧ ଫଳର ସବୁକର୍ମ ଏକ ମରଣ ସମୟରେ ଅଭିବ୍ୟକ୍ତ ହୋଇ ଗୋଟିଏ ଜାତି (ଜନ୍ମ) ଉତ୍ପନ୍ନ କରେ, ତଥାପି ସ୍ୱର୍ଗ ନରକ ସର୍ପାଦି ଯୋନିରେ ଅଧିକାର ଅପ୍ରାପ୍ତ ହେଲେ ଧର୍ମ ଓ ଅଧର୍ମର ଉତ୍ପନ୍ନ ନ ହୋଇ ମଧ୍ୟ ନିମିତ୍ତର ଅଭାବରୁ ଉତ୍ତରଜନ୍ମ ଉପପନ୍ନ ହେବନାହିଁ ଏବଂ ବ୍ରହ୍ମହତ୍ୟା ଇତ୍ୟାଦି ଗୋଟିଏ ଗୋଟିଏ କର୍ମ ଅନେକ ଜନ୍ମର ନିମିତ୍ତ ଇତ୍ୟାଦି ସ୍ମୃତିବାକ୍ୟ ବାଧିତ ହେବ ।

(ଗ) ଧର୍ମ ଓ ଅଧର୍ମର ସ୍ୱରୂପ, ଫଳସାଧନାଦିର ଜ୍ଞାନପାଇଁ ଶାସ୍ତ୍ର ଭିନ୍ନକାରଣର ସମ୍ଭାବନା କରାଯାଏ ନାହିଁ । ମରଣଦୃଷ୍ଟଫଳଯୁକ୍ତ କାରୀର୍ଯ୍ୟାଦି କର୍ମର ଅଭିବ୍ୟଞ୍ଜକ ହୁଏ ନାହିଁ ଏବଂ ମରଣରେ ଏହି ଅଭିବ୍ୟଞ୍ଜକତ୍ୱ କଳ୍ପନା ହେଉଛି ଅବ୍ୟାପକ । ପ୍ରଦୀପର ଉପନ୍ୟାସ ମଧ୍ୟ କର୍ମର ବଳାବଳ ପ୍ରଦର୍ଶନ ଦ୍ୱାରା ନିରାକରଣ କରାଯାଇଅଛି । ସ୍ଥୁଳ ଓ ସୂକ୍ଷ୍ମରୂପର ଅଭିବ୍ୟକ୍ତି ଓ ଅନଭିବ୍ୟକ୍ତି ପରି ଏହା ଜାଣିବା ଉଚିତ୍ ।

(ଘ) ଯେପରି ସନ୍ନିଧିର ସମାନ ହେଲେ ମଧ୍ୟ ପ୍ରଦୀପ ସ୍ଥୁଳରୂପକୁ ଅଭିବ୍ୟକ୍ତି କରେ, କିନ୍ତୁ ସୂକ୍ଷ୍ମକୁ ନୁହେଁ, ସେପରି ଅନାରବ୍ଧ ଫଳଯୁକ୍ତ କର୍ମ ସମୁଦାୟକୁ ସମାନ ଅବସର ପ୍ରାପ୍ତ ହେଲେ ମଧ୍ୟ ମରଣ ବଳବାନ୍ କର୍ମର ବୃତ୍ତି (ବ୍ୟାପାର)କୁ ଉଦ୍ଭବ କରେ । କିନ୍ତୁ ଦୁର୍ବଳ ବୃତ୍ତିର ନୁହେଁ । ତେଣୁ ଶ୍ରୁତି (ରମଣୀୟଚରଣାଃ), ସ୍ମୃତି (ତତଃ ଶେଷେଣ) ଓ ନ୍ୟାୟ (ପ୍ରବଳପ୍ରତିବନ୍ଧାତ୍)ର ବିରୋଧ ହେଲେ ଅଶେଷକର୍ମର ଅଭିବ୍ୟକ୍ତିରୂପ ସ୍ୱୀକାର ଅସମ୍ବନ୍ଧ ଓ ଅଯୁକ୍ତ ହୁଏ ।

(୭) ମୂଳ-(କ) ଶେଷକର୍ମ ସଦ୍‌ଭାବେଽନିର୍ମୋକ୍ଷ ପ୍ରସଙ୍ଗ ଇତ୍ୟୟମପ୍ୟସ୍ଥାନେ ସଂଭ୍ରମଃ ସମ୍ୟଗ୍‌ଦର୍ଶନାଦଶେଶକର୍ମକ୍ଷୟଶ୍ରୁତେଃ । ତସ୍ମାତ୍ ସ୍ଥିତମେତଦେବାନୁଶୟବନ୍ତୋଽବରୋହନ୍ତୀତି । ତେ ଚାବରୋହନ୍ତୋ ଯଥେତମନେବଂ ଚାବରୋହନ୍ତି । ଯଥେତମିତି ଯଥାଗତମିତ୍ୟର୍ଥଃ ।

(ଖ) ଅନେକମିତି ତଦ୍‌ବିପର୍ଯ୍ୟୟେଣେତ୍ୟର୍ଥଃ ଧୂମାକାଶୟୋଃ ପିତୃଯାଣେଽଧ୍ୱନ୍ୟୁପାତ୍ତୟୋରବରୋହେ ସଙ୍କୀର୍ତ୍ତନାଦ୍ୟଥେତଂଶବ୍ଦାଚ୍ଚ ଯଥାଗତାମିତି ପ୍ରତୀୟତେ । ରାତ୍ରାଦ୍ୟସଙ୍କୀର୍ତ୍ତନାଦଭ୍ରଦ୍ୟୁପସଂଖ୍ୟାନାଚ୍ଚ ବିପର୍ଯ୍ୟୟୋଽପି ପ୍ରତୀୟତେ ।

**(୭) ଭାଷାଂତର-** (କ) ଶେଷକର୍ମର ସଦ୍‌ଭାବ ହେଲେ ମୋକ୍ଷାଭାବର ପ୍ରସଙ୍ଗ ସ୍ୱୀକାର କରିବା ହିଁ ଅସ୍ଥାନରେ ସଂଭ୍ରମ । କାରଣ-ସମ୍ୟଗ୍ ଦର୍ଶନଦ୍ୱାରା ସମସ୍ତ କର୍ମ କ୍ଷୟ ହୁଏ ବୋଲି ଶ୍ରୁତି କହେ, ତେଣୁ ଏଠାରେ 'ଅନୁଶୟ ସହିତ ଜୀବ ଅବରୋହଣ କରି ବୋଲି ସିଦ୍ଧ ହେଲା । ସେମାନେ ଅବରୋହଣ କରି ଯେଉଁ ମାର୍ଗରେ ଯାଇଛନ୍ତି, ସେହି ମାର୍ଗରେ ଅଥବା ତାହାର ବିପରୀତ ମାର୍ଗରେ ସେମାନେ ଅବରୋହଣ କରନ୍ତି । 'ଯଥେତ୍‌ମ' (ଯେପରି ଯାଇଅଛନ୍ତି ସେପରି) ।

(ଖ) 'ଅନେବମ୍' (ବିପର୍ଯ୍ୟୟ ଦ୍ୱାରା) । ଧୂମ ଓ ଆକାଶ ଯାହାକି ପିତୃଯାଣମାର୍ଗ ରୂପରେ ଗୃହୀତ ହେଉଛି, ତାହାର ଅବରୋହଣ କହିବା ମାତ୍ରେ 'ଯଥେତମ୍' ଏହି ଶବ୍ଦରୁ ଯେପରି ଆସିଥିଲେ ବୋଲି ପ୍ରତୀତି ହୁଏ । ରାତ୍ର ଇତ୍ୟାଦିର ସଂକୀର୍ତ୍ତନ ନହେଲେ ଓ ଅଭ୍ରାଦିର ଗ୍ରହଣ ନ ହେଲେ ବିପର୍ଯ୍ୟୟ ପ୍ରତୀତ ହୁଏ ।

## चरणादिति चेन्नोपलक्षणार्थेति कार्ष्णाजिनिः ॥ ९ ॥

## ଚରଣାଦିତି ଚେନ୍ନାପଲକ୍ଷଣାର୍ଥେତି କାର୍ଷ୍ଣାଜିନିଃ ॥୩-୧-୯॥

ଚରଣାତ୍-'ରମଣୀୟଚରଣାଃ' ଇତ୍ୟାଣଶ୍ରୁତି ଚରଣ (ଚରିତ୍ର୍ୟ) ଦ୍ୱାରା ଯୋନିପ୍ରାପ୍ତି କହେ । କିନ୍ତୁ ଅନୁଶୟଦ୍ୱାରା ନୁହେଁ । ଇତି ଚେନ୍ନ-ଯଦି ଏହା କହ, ତାହା ମଧ୍ୟ ଠିକ୍ ନୁହେଁ । କାରଣ- କାର୍ଷ୍ଣାଜିନିଃ=କାର୍ଷ୍ଣାଜିନି ଆଚାର୍ଯ୍ୟ ଚରଣ ଶ୍ରୁତିକୁ, ଉପଲକ୍ଷଣାବିର୍ଥେତିତି- ଅନୁଶୟର ଉପଲକ୍ଷଣାର୍ଥକୁ ସ୍ୱୀକାର କରିଛନ୍ତି ।

(୨) ମୂଳ-(କ) ଅଥାପି ସ୍ୟାତ୍-ଯାଶ୍ରୁତିରନୁଶୟସଦ୍‌ଭାବ ପ୍ରତିପାଦନାୟୋ- ଦାହୃତା- 'ତଦ୍ୟ ଇହ ରମଣୀୟଚରଣାଃ' (ଛା ୫-୧୦-୭) ସା ଖଲୁ ଚରଣାଦ୍ୟୋନ୍ୟା- ପତ୍ତିଂ ଦର୍ଶୟତି ନାନୁଶୟାତ୍ ଅନ୍ୟଚ୍ଚରଣମନ୍ୟୋଽନୁଶୟଃ । ଚରଣଂ ଚରିତ୍ରମାଚରଃ ଶୀଳମିତ୍ୟନର୍ଥାନ୍ତରମ୍ । ଅନୁଶୟସ୍ତୁ ଭୁକ୍ତଫଳାତ୍ କର୍ମଣୋଽତିରିକ୍ତ କର୍ମାଭିପ୍ରେତମ୍ ।

(ଖ) ଶ୍ରୁତିଶ୍ଚ କର୍ମଚରଣେ ଭେଦେନ ବ୍ୟପଦିଶତି 'ଯଥାକାରୀ ଯଥାଚରୀ ଯଥା ଭବତି' (ବୃହ ୪-୪-୫) ବୃତି । 'ଯାନ୍ୟ ନବଦ୍ୟାନି କର୍ମାଣି ତାନି ସେବିତବ୍ୟାନି ନୋ ଇତରାଣି, ଯାନ୍ୟସ୍ମାକଂ ସୁଚରିତାନି ତାନି ତ୍ୱୟୋପାସ୍ୟାନି' (ତୈ ୧-୧୧-୨) ଇତି ଚ । ତସ୍ମାଚ୍ଚରଣାଦ୍ୟୋନ୍ୟାପତ୍ତିଶ୍ରୁତେର୍ନାନୁଶୟସିଦ୍ଧିରିତି ଚେତ୍‌ନୈଷ ଦୋଷଃ । ଯତୋଽନୁଶୟୋପଲକ୍ଷଣାର୍ଥୈବୈଷା ଚରଣାର୍ଥୈବୈଷା ଚରଣଶ୍ରୁତିରିତି କାର୍ଷ୍ଣାଜିନିରାଚର୍ଯ୍ୟୋ ମନ୍ୟତେ ।

(୨) ଭାଷାଂତର- (କ) ଯାହାହେଉନା କାହିଁକି, 'ତଦ୍ୟ ଇହ ରମଣୀୟଚରଣାଃ, ଏହି ପ୍ରକାର ଯେଉଁ ଶ୍ରୁତି ଅନୁଶୟସଦ୍‌ଭାବର ପ୍ରତିପାଦନ ପାଇଁ କୁହାଯାଇଛି, ସେହି ଚରଣରୁ ଯୋନିପ୍ରାପ୍ତ ଦେଖାଏ, କିନ୍ତୁ ଅନୁଶୟରୁ ନୁହେଁ । ଚରଣ ହେଉଛି ଅନ୍ୟ ଓ ଅନୁଶୟ ତାହାଠାରୁ ପୃଥକ । ଚରଣ ଚାରିତ୍ର, ଆଚର ଓ ଶୀଳ ଏମାନେ ଏକାର୍ଥକ ପର୍ଯ୍ୟାୟ ଶବ୍ଦ । କିନ୍ତୁ ଅନୁଶୟ ଭୁକ୍ତଫଳକର୍ମଠାରୁ ଭିନ୍ନପ୍ରେତ ହୁଏ ।

(ଖ) ଯେପରି 'ଯଥାକାରୀ' (ଯେପରି କର୍ମ ଆଚରଣ କରେ, ସେପରି ସେ ହୁଏ) ଏବଂ 'ଯାନ୍ୟନବଦ୍ୟାନି' (ଯାହା ଅନିନ୍ଦ୍ୟକର୍ମ, ସେମାନଙ୍କୁ ସେବନ କରିବା



ଉଚିତ୍, କିନ୍ତୁ ଅନ୍ୟର ନୁହେଁ । ଆମ୍ଭେ ଗୁରୁଜନଙ୍କୁ ଯାହା ମଙ୍ଗଳମୟ କାମନା କରୁ, ସେ ସବୁକୁ ସେବନ କରିବା ଉଚିତ) ଏହିପ୍ରକାର ଶ୍ରୁତି କର୍ମ ଓ ଚରଣଭେଦରେ ବ୍ୟପଦେଶ କରେ । ତେଣୁ ଚରଣରୁ ଯୋନି ପ୍ରାପ୍ତିର ପ୍ରତିପାଦକ ଶ୍ରୁତି ଦ୍ୱାରା ଅନୁଶୟସିଦ୍ଧି ହୁଏ ନାହିଁ ବୋଲି ଯଦି କହ, ତେବେ ଏହା ଦୋଷ ନୁହେଁ । କାରଣ-ଏହି ଚରଣ- ଶ୍ରୁତି ଅନୁଶୟର ଉପଲକ୍ଷଣ ପାଇଁ ବୋଲି କାର୍ଷ୍ଣାଜିନି ଆଚାର୍ଯ୍ୟ ସ୍ୱୀକାର କରନ୍ତି ।

## आनर्थक्यमिति चेन्न तदपेक्षत्वात् ॥ १० ॥

## (୧) ଆନର୍ଥକ୍ୟମିତି ଚେନ୍ନ ତଦପେକ୍ଷତ୍ୱାତ୍ ॥୩-୧-୧୦॥

ଚରଣ ଶ୍ରୁତି ନିଜର ମୁଖ୍ୟାର୍ଥକୁ ତ୍ୟାଗ କରି ଅନୁଶୟକୁ କହେ । କିନ୍ତୁ ଚରଣ ଶ୍ରୁତିରେ ଆନର୍ଥକ୍ୟମ୍-ଆନର୍ଥକ୍ୟ ପ୍ରସକ୍ତ ହେବ । ଇତି ଚେନ୍ନ-ଏହା ଯଦି କହ, ତେବେ ମଧ୍ୟ ଠିକ୍ ନୁହେଁ ତଦପେକ୍ଷତ୍ୱାତ୍-କାରଣ-କର୍ମକୁ ଆଚାର ଅପେକ୍ଷା କରେ ତେଣୁ ଚରଣ ଶ୍ରୁତି ସାର୍ଥକ ଅଟେ ।

(୨) ମୂଳ-(କ) ସ୍ୟାଦେତତ୍-କସ୍ମାତ୍ ପୁନଶ୍ଚରଣଶବ୍ଦେନ ଶ୍ରୌତଶୀଳଂ ବିହାୟ ଲାକ୍ଷଣିକୋଽନୁଶୟଃ ପ୍ରତ୍ୟାୟତେ ? ନନୁ ଶୀଳସ୍ୟୈବ ଶ୍ରୌତସ୍ୟ ବିହିତପ୍ରତିଷିଦ୍ଧସ୍ୟ ସାଧ୍ୱସାଧ୍ୱରୂପସ୍ୟ ଶୁଭାଶୁଭଯୋନ୍ୟାପତ୍ତିଃ ଫଳଂ ଭବିଷ୍ୟତି । ଅବଶ୍ୟଂଚ ଶୀଳସ୍ୟାପି କିଞ୍ଚିତ୍ ଫଳମଭ୍ୟୁପଗନ୍ତବ୍ୟମ୍ । ଅନ୍ୟଥା ହ୍ୟାନର୍ଥକ୍ୟମେବ ଶୀଳସ୍ୟ ପ୍ରସଜ୍ୟେତେତି ଚେତ୍-

(ଖ) ନୈଷ ଦୋଷଃ, କୁତଃ ? ତଦପେକ୍ଷତ୍ୱାତ୍ । ଇଷ୍ଟାଦି ହି କର୍ମଜାତଂ ଚରଣାପେକ୍ଷମ୍ ନହି ସଦାଚାରହୀନଃ କଶ୍ଚିଦଧିକୃତଃ ସ୍ୟାତ୍, 'ଆଚାରହୀନଂ ନ ପୁନନ୍ତି ବେଦାଃ' ଇତ୍ୟାଦିସ୍ମୃତିଭ୍ୟଃ । ପୁରୁଷାର୍ଥତ୍ୱେଽପ୍ୟାଚାରସ୍ୟ ନାନର୍ଥକ୍ୟମ୍ । ଇଷ୍ଟାଦୌ ହି କର୍ମଜାତେ ଫଳମାରଭମାଣେ ତଦାପେକ୍ଷ ଏବାଚାରସ୍ତତ୍ରୈବ କିଞ୍ଚିଦତିଶୟମାରପ୍ସ୍ୟତେ ।

(ଗ) କର୍ମ ଚ ସର୍ବାର୍ଥକାରୀତି ଶ୍ରୁତିସ୍ମୃତି ପ୍ରସିଦ୍ଧିଃ । ତସ୍ମାତ୍ କର୍ମୈବ ଶୀଳୋପଲକ୍ଷିତମନୁଶୟଭୂତଂ ଯୋନ୍ୟାପତ୍ତୌ କାରଣମିତି କାର୍ଷ୍ଣାଜିନେର୍ମତମ୍ । ନହି କର୍ମଣି ସମ୍ଭବତିଶୀଳାଦ୍ୟୋନ୍ୟାପତ୍ତିର୍ଯୁକ୍ତା । ନହି ପଦ୍‌ଭ୍ୟ ପଳାୟିତୁଂ ପାରୟମାଣୋ ଜାନୁଭ୍ୟା ରଂହିତମର୍ହତୀତି ।

(୨) ଭାଷାଂତର- (କ) ଏହା ହୋଇପାରେ, କିନ୍ତୁ ଚରଣ ଶବ୍ଦଦ୍ୱାରା ଶ୍ରୁତି ପ୍ରତିପାଦିତଶୀଳକୁ ତ୍ୟାଗକରି ଲାକ୍ଷଣିକ ଅନୁଶୟର ପ୍ରତୀତି କିପରି ହୁଏ ? ପରନ୍ତୁ ଶ୍ରୌତବହିତ ବା ପ୍ରତିଷିଦ୍ଧ, ସାଧୁ ବା ଅସାଧୁରୂପଶୀଳର ହିଁ ଶୁଭାଶୁଭ ଯୋନି ପ୍ରାପ୍ତି ରୂପଫଳ ହେବ ।

ଶୀଳର କିନ୍ତୁ ଅବଶ୍ୟ ଫଳସ୍ୱୀକାର କରିବା ଉଚିତ୍ । ନୋଚେତ୍ ଶୀଳରେ ଆନର୍ଥକ୍ୟ ପ୍ରସକ୍ତ ହେବ କି ? ଯଦି ଏହା କହ,

(ଖ) ତେବେ ମଧ୍ୟ ଏହା ଠିକ୍ ନୁହେଁ । କିପରି ? କାରଣ- ଏହାଦ୍ୱାରା ତାହାକୁ ଅପେକ୍ଷା କରେ ଅର୍ଥାତ୍ ଇଷ୍ଟାଦି କର୍ମସମୁଦାୟକୁ ଚରଣ ଅପେକ୍ଷା କରେ । 'ଆଚାରହୀନଂ ନ' (ଆଚାର ହୀନ ଲୋକମାନେ ବେଦ-(ଯଜ୍ଞାଦିକର୍ମ)କୁ ପବିତ୍ର କରନ୍ତି ନାହିଁ) ଇତ୍ୟାଦି ସ୍ମୃତି ଦ୍ୱାରାଂସଦାଚାରହୀନ କୌଣସି ସ୍ଥାନରେ ଅଧିକୃତ ହୁଏ ନାହିଁ । ପୁରୁଷାର୍ଥତ୍ୱ ବା ପୁରୁଷ ସଂସାରତ୍ୱରେ ଆଚାର ଆନକର୍ଥ୍ୟ ନୁହେଁ । କାରଣ- ଇଷ୍ଟାଦିକର୍ମ ସମୁଦାୟର ଫଳାରମ୍ଭ କଲାପରେ ତାହାକୁ ଅପେକ୍ଷା କରୁଥିବା ଆଚାର ସେଠାରେ ମଧ୍ୟ କିଛି ଅତିଶୟ ବିଶେଷ ଆରମ୍ଭ କରେ ।

(ଗ) କିନ୍ତୁ କର୍ମ ସବୁପ୍ରକାର ଅର୍ଥ କରେ ବୋଲି ଶ୍ରୁତି ଓ ସ୍ମୃତିରେ ପ୍ରସିଦ୍ଧ ଅଛି । ତେଣୁ କର୍ମ ହିଁ ଶୀଳଦ୍ୱାରା ଉପଲକ୍ଷିତ ଅନୁଶୟ ରୂପ ହୋଇ ଜନ୍ମ ପ୍ରାପ୍ତିର କାରଣ ହୁଏ- ଏହା ହିଁ କାର୍ଷ୍ଣାଦିନି ଆଚାର୍ଯ୍ୟଙ୍କର ମତ ଏବଂ କର୍ମର ସମ୍ଭବ ହେଲେ ଶୀଳ ଦ୍ୱାରା ଜନ୍ମପ୍ରାପ୍ତି ଠିକ୍ ହୁଏ ନାହିଁ, ଯେପରି କି ପାଦରେ ପଳାଇ ଯାଉଥିବା ଲୋକକୁ ଜଙ୍ଗଲରେ ଦଉଡ଼ିଯାଇ ଅତିକ୍ରମ କରିହୁଏ ନାହିଁ ।

## सुकृतदुष्कृते एवेति तु बादरिः ॥ ११ ॥

## (୧) ସୁକୃତଦୁଷ୍କୃତେ ଏବେତି ତୁ ବାଦରିଃ ॥୩-୧-୧୧॥

ତୁ-ପରନ୍ତୁ ଚରଣଶବ୍ଦର ଅର୍ଥ, ସୁକୃତଦୁଷ୍କୃତେ ଏବ-ସୁକୃତ ଓ ଦୁଷ୍କୃତ ଅଟେ । ଇତି-ବୋଲି ବାଦରିଃ-ବାଦରି ଆଚାର୍ଯ୍ୟଙ୍କର ମତ ।

(୨) ମୂଳ-(କ) ବାଦରିସ୍ତ୍ୱାଚାର୍ଯ୍ୟଃ ସୁକୃତ ଦୁଷ୍କୃତେ ଏବ ଚରଣଶବ୍ଦେନ ପ୍ରତ୍ୟାୟେତେ ଇତି ମନ୍ୟତେ । ଚରଣମନୁଷ୍ଠାନଂ କର୍ମେତ୍ୟନର୍ଥାନ୍ତରମ୍, ତଥାହି ଅବିଶେଷେଣ କର୍ମମାତ୍ରେ ଚରତିଃ ପ୍ରଯୁଜ୍ୟମାନୋ ଦୃଶ୍ୟତୋ ଯୋ ଦୀକ୍ଷାଦିଲକ୍ଷଣଂ ପୁଣ୍ୟଂ କର୍ମ କରୋତି ତଂ ଲୋକିକାଃ ଆଚକ୍ଷତେ- ଧର୍ମଂ ଚରତ୍ୟେଷ ମହାତ୍ମେତି । ଆଚାରୋଽପି ଧର୍ମ ବିଶେଷ ଏବ ।

(ଖ) ଭେଦବ୍ୟପଦେଶସ୍ତୁ କର୍ମଚରଣୟୋର୍ବ୍ରାହ୍ମଣ ପରିବ୍ରାଜକ ନ୍ୟାୟେନାପ୍ୟୁପପଦ୍ୟତେ । ତସ୍ମାଦ୍ରମଣୀୟଚରଣାଃ ପ୍ରଶସ୍ତକର୍ମାଣଃ କପୂୟଚରଣାଃ ନିନ୍ଦିର୍ମାଣ ଇତି ନିର୍ଣ୍ଣୟଃ ।



(୨) ଭାଷାନ୍ତର- (କ) ପରନ୍ତୁ ଚରଣଶବ୍ଦଦ୍ୱାରା ସୁକୃତ ଓ ଦୁଷ୍କୃତ ପ୍ରତୀତ ହୁଅନ୍ତି ବୋଲି ବାଦରି ଆଚାର୍ଯ୍ୟ ସ୍ୱୀକାର କରନ୍ତି । ଚରଣ, ଅନୁଷ୍ଠାନ ଓ କର୍ମ- ଏମାନେ ହେଲେ ଏକାର୍ଥବାଚୀଶବ୍ଦ । ସେପରି 'ଚର୍' ଧାତୁ ଅବିଶେଷରୂପରେ କର୍ମମାତ୍ରରେ ପ୍ରଯୁକ୍ତ ହୋଇ ଦେଖାଯାଏ । ତେଣୁ ଯାହା ଇଷ୍ଟାଦି ରୂପ ପୁଣ୍ୟ କର୍ମ କରେ, ତାହାକୁ ଲୋକମାନେ 'ଏହା ମହାତ୍ମାଧର୍ମକୁ ଆଚରଣ କରେ ଓ ଆଚାର ଧର୍ମବିଶେଷ ଅଟେ' ବୋଲି କହନ୍ତି ।

(ଖ) କର୍ମ ଓ ଆଚାର ମଧ୍ୟରେ ଭେଦବ୍ୟପଦେଶ 'ବ୍ରାହ୍ମଣ ପରିବ୍ରାଜକ ନ୍ୟାୟରେ ଉପପନ୍ନ ହୁଏ । ତେଣୁ 'ରମୀୟଚଣରଣାଃ' ପଶସ୍ତ କର୍ମଲୋକ ଓ 'କପୂୟଚରଣାଃ ନିନ୍ଦିତ କର୍ମଲୋକରୂପରେ ନିର୍ଣ୍ଣୟ କରାଯାଇଅଛି ।

## ३ अनिष्टादिकार्यधिकरणम् । सू० १२-२१

## ଅନିଷ୍ଟାଦିକାର୍ଯ୍ୟଧିକରଣ-୩

## अनिष्टादिकारिणामपि च श्रुतम् ॥ १२ ॥

## (୧) ଅନିଷ୍ଟାଦିକାରିଣାମପି ଚ ଶ୍ରୁତମ୍ ॥୩-୧-୧୨॥

ଅନିଷ୍ଟାଦି କାରିଣାମପି = 'ଯେ ବୈ କେ ଚାସ୍ମାଲ୍ଲୋକାତ୍ ପ୍ରୟନ୍ତି' ଇତ୍ୟାଦି ଶ୍ରୁତିଦ୍ୱାରା ଅନିଷ୍ଟାଦି କର୍ମକରୁଥିବା ଲୋକର ମଧ୍ୟ, ଶ୍ରୁତମ୍=ଚନ୍ଦ୍ରଲୋକ ଗମନ ଶୁଣାଯାଏ

(୨) ମୂଳ-(କ) ଇଷ୍ଟାଦିକାରିଣଶ୍ଚନ୍ଦ୍ରମସଂ ଗଚ୍ଛନ୍ତୀତୀତ୍ୟୁକ୍ତମ୍ । ଯେ ତ୍ୱିତରେଽନିଷ୍ଟା-ଦିକାରିଣସ୍ତେଽପି କିଂ ଚନ୍ଦ୍ରମସଂ ଗଚ୍ଛନ୍ତ୍ୟୁତ ନ ଗଚ୍ଛନ୍ତୀତି ଚିନ୍ତ୍ୟତେ । ତତ୍ର ତାବଦାହୁଃଇଷ୍ଟା-ଦିକାରିଣ ଏବ ଚନ୍ଦ୍ରମସଂ ଗଚ୍ଛନ୍ତୀତ୍ୟେତନ୍ନାକସ୍ମାତ୍ ? ଯତୋଽନିଷ୍ଟାଦିକାରିଣାମପି ଚନ୍ଦ୍ରମଣ୍ଡଳଂ ଗନ୍ତବ୍ୟତ୍ୱେନ ଶ୍ରୁତମ୍ ।

(ଖ) ତଥା ହ୍ୟବିଶେଷେଣ କୌଷୀତକିନଃ ସମାନାନନ୍ତି- 'ଯେ ବୈ କେ ଚାସ୍ମାଲ୍ଲୋକାତ୍ ପ୍ରୟନ୍ତି ଚନ୍ଦ୍ରମସମେବ ତେ ସର୍ବେ ଗଚ୍ଛନ୍ତି' (କୌଷୀ ୧-୨) ଇତି । ଦେହାରମ୍ଭୋଽପି ଚ ପୁନର୍ଜାୟମାନାନାଂ ନାନ୍ତରେଣ ଚନ୍ଦ୍ରପ୍ରାପ୍ତିମବକଳ୍ପତେ, ପଞ୍ଚମ୍ୟାମାହୁତା-ବିତ୍ୟାହୁତି ସଂଖ୍ୟାନିୟମାତ୍ । ତସ୍ମାତ୍ ସର୍ବଂ ଏବ ଚନ୍ଦ୍ରମସମାସୀଦେୟୁଃ । ଇଷ୍ଟାଦିକାରିଣାମିତରେଷାଂ ଚ ସମାନଗତିତ୍ୱଂ ନ ଯୁକ୍ତମିତି ଚେତ୍ ନ, ଇତରେଷାଂ ଚନ୍ଦ୍ରମଣ୍ଡଳେ ଭୋଗାଭାବାତ୍ ।

(୨) ଭାଷାଂତର- (କ) ଇଷ୍ଟାଦି କର୍ମ କରୁଥିବାଲୋକ ଚନ୍ଦ୍ରଲୋକକୁ ଯାଏ ବୋଲି କୁହାଯାଇଅଛି । ପରନ୍ତୁ ତାହାଭିନ୍ନ ଯେଉଁ ଅନିଷ୍ଟାଦି କର୍ମକରୁଥିବାଲୋକ ଅଛନ୍ତି, ସେମାନେ କଣ ଚନ୍ଦ୍ରଲୋକକୁ ଯାଆନ୍ତି ଅଥବା ଯା'ନ୍ତି ନାହିଁ- ଏହା ଉପରେ ବିଚାର

କରାଯାଇଅଛି । ଏହି ବିଷୟରେ ପୂର୍ବପକ୍ଷ କହନ୍ତି ଯେ- ଇଷ୍ଟାଦିକର୍ମ କରୁଥିବା ଲୋକ ଚନ୍ଦ୍ରକୁ ଲୋକକୁ ଯାଏ ବୋଲି କୌଣସି ନିୟମ ନାହିଁ । କିପରି ? କାରଣ-ଅନିଷ୍ଟାଦି କର୍ମ କରୁଥିବା ଲୋକର ମଧ୍ୟ ଚନ୍ଦ୍ରଲୋକକୁ ଗନ୍ତବ୍ୟରୂପରେ ଶ୍ରବଣ ଅଛି ।

(ଖ) ଯେପରି କୌଷୀତିକୀ ଶାଖାରେ ଅବିଶେଷରୂପରେ 'ଯେ ବୈ କେ' (ଯେ କୌଣସି ଲୋକ ଏହିଲୋକରେ ପ୍ରାୟଣ କରନ୍ତି, ସେହିଲୋକ ଚନ୍ଦ୍ର ଲୋକକୁ ଯା'ନ୍ତି) କୁହାଯାଇଅଛି । ପୁନର୍ଜନ୍ମ ପାଉଥିବା ଲୋକର ଦେହୋତ୍ପତ୍ତି ମଧ୍ୟ ଚନ୍ଦ୍ରଲୋକପ୍ରାପ୍ତି ବିନାହୁଏ ନାହିଁ, କାରଣ-'ପଞ୍ଚମ୍ୟାମାହୁତୌ' (ପଞ୍ଚମୀ ଆହୁତିରେ) ଏହି ପ୍ରକାର ଆହୁତି ସଂଖ୍ୟାର ନିୟମ ଅଛି । ତେଣୁ ଚନ୍ଦ୍ରଲୋକର ପ୍ରାପ୍ତି ହେବା ଉଚିତ୍ । ଯଦି କହ ଯେ- ଇଷ୍ଟାଦିକାରୀ ଓ ତାହାଠାରୁ ଅନ୍ୟପରି ଗତି ଠିକ୍ ନୁହେଁ, ତାହା ମଧ୍ୟ ଉଚିତ୍ ନୁହେଁ, କାରଣ- ଅନ୍ୟର ଚନ୍ଦ୍ରମଣ୍ଡଳରେ ଭୋଗାଭାବ ହୁଏ ।

**संयमने त्वनुभुयेनरेषामारोहपरोहौ तद्ति दर्शनात् ॥ १३ ॥**

## (୧) ସଂଯମନେ ତ୍ୱନୁଭୂୟେତରେଷାମାରୋହାବରୋହୌ ତଦ୍‌ଗତି-ଦର୍ଶନାତ୍ ॥ ୩-୧-୧୩ ॥

ତୁ=ତୁଶବ୍ଦ ପୂର୍ବପକ୍ଷବ୍ୟାବୃତ୍ତିନିମିତ୍ତ । ସଂଯମନେ=ଯମାଳୟରେ, ଅନୁଭୂୟ=ଯମଯାତନା ଅନୁଭବ କରି ଏହିଲୋକକୁ ପ୍ରତ୍ୟାବର୍ତ୍ତନ କରନ୍ତି । ସେପରି, ଇତରେଷାମ୍=ଅନିଷ୍ଟାଦିକାରୀଗୁଡ଼ିକର, ଆରୋହାବରୋହୌ=ଆରୋହ ଓ ଅବରୋହ ହୁଅନ୍ତି । ତଦ୍‌ଗତିଦର୍ଶନାତ୍= କାରଣ='ଅୟଂ ଲୋକେ ନାସ୍ତି' ଇତ୍ୟାଦି ଶ୍ରୁତିରେ ତାହାରଗତି ଦର୍ଶନ ହୁଏ ।

ମୂଳ-(କ) ତୁଶବ୍ଦଃ ପକ୍ଷଂ ବ୍ୟାବର୍ତ୍ତୟତି । ନୈତଦସ୍ତି-ସର୍ବେ ଚନ୍ଦ୍ରମସଂ ଗଚ୍ଛନ୍ତୀତି । ଏତତ୍ କସ୍ମାତ୍ ? ଯତୋ ଭୋଗାୟୈବ ଚନ୍ଦ୍ରାରୋହଣଂ ନ ନିଷ୍ପ୍ରୟୋଜନମ୍ ନାପି ପ୍ରତ୍ୟବରୋହାୟୈବ-ଯଥା କଶ୍ଚିଦ୍‌ବୃକ୍ଷମାରୋହତି ପୁଷ୍ପଫଲୋପାଦାନାୟୈବ, ନ ନିଷ୍ପ୍ରୟୋଜନମ୍, ନାପି ପତନାୟୈବ ।

(ଖ) ଭୋଗଶ୍ଚାନିଷ୍ଟାଦିକାରିଣାଂ ଚନ୍ଦ୍ରମସି ନାସ୍ତୀତ୍ୟୁକ୍ତମ୍ । ତସ୍ମାଦନିଷ୍ଟାଦିକାରିଣ ଏବ ଚନ୍ଦ୍ରମସମାରୋହନ୍ତି, ନେତରେ । ତେ ତୁ ସଂଯମନଂ ଯମାଳୟମବଗାହ୍ୟ ସ୍ୱଦୁଷ୍କୃତାନୁରୂପା ଯାମୀର୍ଯାତନା ଅନୁଭୂୟ ପୁନରେବେମ ଲୋକଂ ପ୍ରତ୍ୟବରୋହନ୍ତି । ଏବଂ ଭୂତୌ ତେଷାମାରୋହାବରୋହୌ ଭବତଃ । କୁତଃ ?



(ଗ) ତଦ୍‌ଗତିଦର୍ଶନାତ୍ । ତଥାହି ଯମବଚନସ୍ୱରୂପା ଶ୍ରୁତିଃ ପ୍ରୟତାମନିଷ୍ଟାଦିକାରଣାଂ ଯମବଶ୍ୟତାଂ ଦର୍ଶୟତି- 'ନ ସାଂପରାୟଃ ପ୍ରତିଭାତି ବାଲଂ ପ୍ରମାଦ୍ୟନ୍ତଂ ବିତ୍ତମୋହେନ ମୂଢମ୍ । ଅୟଂ ଲୋକୋନାସ୍ତି ପର ଇତି ମାନୀ ପୁନଃ ପୁନର୍ବଶମାପଦ୍ୟତେ ମେ' (କ ୨-୬) ଇତି । 'ବୈବସ୍ୱତଂ ସଂଗମନଂ ଜନାନାମ୍' ଇତ୍ୟେବଜାତୀୟକଂ ଚ ବହ୍ୱେବ ଯମବଶ୍ୟତାପ୍ରାପ୍ତିଲିଙ୍ଗମ୍ ଭବତି ।

**(୨) ଭାଷାଂତର-** (କ) ତୁଶବ୍ଦ ପକ୍ଷବ୍ୟାବୃତ୍ତି କରେ । ସମସ୍ତେ ଚନ୍ଦ୍ରମଣ୍ଡଳକୁ ଯିବା ପାଇଁ କୌଣସି ନିୟମ ନାହିଁ । ଏହା କିପରି ହୁଏ ? ତଦ୍ୱାରା ଭୋଗପାଇଁ ଚନ୍ଦ୍ରମଣ୍ଡଳ ସେ ଆରୋହଣ କରିବା ନିଷ୍ପ୍ରୟୋଜନ ନୁହେଁ ଏବଂ କେବଳ ପ୍ରତ୍ୟାବର୍ତ୍ତନ କରିବା ପାଇଁ ମଧ୍ୟ ନୁହେଁ । ଯେପରି କୌଣସି ପୁଷ୍ପ ଓ ଫଳକୁ ଗ୍ରହଣ କରିବା ପାଇଁ ବୃକ୍ଷରେ ଚଢିବା ଓ ସେଠାରୁ ଓହ୍ଲାଇବା ପ୍ରୟୋଜନ ଅଟେ ।

(ଖ) ତେଣୁ ଅନିଷ୍ଟାଦିକାରୀଗୁଡ଼ିକର ଚନ୍ଦ୍ର ଲୋକରେ ଭୋଗନାହିଁ ବୋଲି କୁହାଯାଇଅଛି, ସେପରି ମଧ୍ୟ ଇଷ୍ଟାଦିକାରୀ ମଧ୍ୟ ଚନ୍ଦ୍ରଲୋକରେ ଆରୋହଣ କରନ୍ତି, ଅନ୍ୟ କୌଣସିଠାରେ ନୁହେଁ । ସେମାନେ ଅନିଷ୍ଟାଦିକାରୀ ସଂଯମନ ଅର୍ଥାତ୍ ଯମାଳୟରେ ପ୍ରବେଶ କରି ନିଜେ ନିଜର ଦୁଷ୍କୃତ ଅନୁସାରେ ଯମଯାତନାକୁ ପ୍ରତ୍ୟାବର୍ତ୍ତନ କରେ । ସେପରି ଏହାର ଆରୋହଣ ଓ ଅବରୋହଣ ହୁଏ । କିପରି ? ଏହାର ଗତିଦର୍ଶନ ଦ୍ୱାରା ।

(ଗ) ଯେପରି 'ନ ସାଂପରାୟଃ' (ଧନ ମୋହଦ୍ୱାରା ମୂଢ଼, ତଥା ବିପଦ କରୁଥିବା ବ୍ୟକ୍ତି ସେହି ଅଜ୍ଞକୁ ପରଲୋକର ସାଧନ ପାଇଁ ମୁକ୍ତି କରେ ନାହିଁ । ସ୍ତ୍ରୀ, ପୁତ୍ର ପ୍ରଭୃତି ବିଶିଷ୍ଟ ଲୋକ, ଏହାର ପରଲୋକ ନାହିଁ,-ଏହିପରି ମନେକରୁଥିବା ପୁରୁଷ ବାରମ୍ବାର ମୋର ବଶତାସ୍ୱୀକାର କରିଥାଏ) ଏହିପରି ଯମ ବଚନରୂପଶ୍ରୁତିମରଣକୁ ପ୍ରାପ୍ତ ହୋଇ ଅନିଷ୍ଟାଦିକାରୀଗୁଡ଼ିକୁ ଯମର ଅଧୀନତାରୂପରେ ଦେଖାଏ । 'ବୈବଶ୍ୱତଂ ସଂଗମନଂ, (ଯମଲୋକ ପାପୀଜନର ଗମ୍ୟସ୍ଥାନ ଅଟେ) ଏହିପରି ବହୁତ ଯମର ଅଧୀନତାପ୍ରାପ୍ତି ରୂପର ଲିଙ୍ଗବୋଧକ ଶ୍ରୁତିବାକ୍ୟ ଅଛି ।

## स्मरन्ति च ॥ १४ ॥

## (୧) ସ୍ମରନ୍ତି ଚ ॥ ୩-୧-୧୪ ॥

ସ୍ମରନ୍ତି ଚ = ସ୍ମୃତିକାରମାନେ ଏହା ମଧ୍ୟ ସ୍ମରଣ କରନ୍ତି ।

(୨) ମୂଳ-(କ) ଅପି ଚ ମନୁବ୍ୟାସପ୍ରଭୃତୟଃ ଶିଷ୍ଟାଃ ସଂଯମନେ ପୁରେ ଯମାୟତ୍ତଂ କପୂୟକର୍ମବିପାକଂ ସ୍ମରନ୍ତି ନାଚିକେତୋପାଖ୍ୟାନାଦିଷୁ ।

(୨) ଭାଷାଂତର - (କ) ମନୁ, ବ୍ୟାସ ପ୍ରଭୃତି ମହର୍ଷିମାନେ ସଂଯମନ (ଯମଲୋକ) ରେ ପାପକର୍ମଗୁଡ଼ିକର ବିପାକ ଯମର ଅଧୀନ ଅଟେ ବୋଲି ନଚିକେତା ଉପାଖ୍ୟାନ ଇତ୍ୟାଦିରେ ମନେପକାଇ ଦେଇଛନ୍ତି ।

## अपिच सप्त ॥ १५ ॥

## (୧) ଅପି ଚ ସପ୍ତ ॥୩-୧-୧୫॥

ଅପି ଚ=ପୁଣି ପୌରାଣିକମାନେ, ସପ୍ତ=ରୌରବ ଇତ୍ୟାଦି ସପ୍ତନରକ ପାପ-କର୍ମଫଳର ଉପଭୋଗରୂପକ ଭୂମି ବୋଲି କହନ୍ତି ।

ମୂଳ-(କ) ଅପି ଚ ସପ୍ତ ନରକା ରୌରବପ୍ରମୁଖାଃ ଦୁଷ୍କୃତଫଲୋପଭୋଗଭୂମିତ୍ୱେନ ସ୍ମର୍ଯ୍ୟନ୍ତେ ପୌରାଣିକୈଃ । ତାନନିଷ୍ଟାଦୀକାରିଣଃ ପ୍ରାପ୍ନୁବନ୍ତି । କୁତସ୍ତେ ଚନ୍ଦ୍ରଂ ପ୍ରାପ୍ନୁୟୁରିତ୍ୟଭିପ୍ରାୟଃ ।

(୨) ଭାଷାଂତର- (କ) ରୌରବପ୍ରମୁଖ ସପ୍ତନରକ ପାପଫଳର ଉପଭୋଗ ଭୂମି ରୂପରେ ପୌରାଣିକଲୋକେ ସ୍ୱୀକାର କରନ୍ତି, ସେମାନଙ୍କୁ ଅନିଷ୍ଟାଦିକାରୀ ପ୍ରାପ୍ତ ହୁଅନ୍ତି । ତେଣୁ ସେମାନେ ଚନ୍ଦ୍ରଲୋକକୁ କିପରି ଯିବା ସମ୍ଭବ ବୋଲି ଏମାନଙ୍କର ଅଭିପ୍ରାୟ ।

(୧) ମୂଳ-(କ) ନନୁ ବିରୁଦ୍ଧମିଦମ୍-ଯମାୟତ୍ତା ଯାତନାଃ ପାପକର୍ମାଣୋଽ-ନୁଭବନ୍ତିତି ଯାବତା ତେଷୁ ରୌରବାଦିଭି-ଷ୍ୱନ୍ୟେ ଚିତ୍ରଗୁପ୍ତାଦୟୋ ନାନାଧିଷ୍ଠାତାରଃ ସ୍ମର୍ଯ୍ୟନ୍ତେ ଇତି । ନେତ୍ୟାହ-

(୧) ଭାଷାଂତର- (କ) ପରନ୍ତୁ ଏହା ବିରୁଦ୍ଧ ଯେ- ପାପକର୍ମ କରୁଥିବା ବ୍ୟକ୍ତି ଯମର ଅଧୀନ ହୋଇ ଯାତନାକୁ ଅନୁଭବ କରନ୍ତି । କାରଣ-ସେହି ରୈରବାଦି ନରକଗୁଡ଼ିକରେ ଅନ୍ୟଚିତ୍ରଗୁପ୍ତାଦି ଅନେକ ଅଧିଷ୍ଠାତା ସ୍ମରଣ କରାଯାଏ କି ? ନା, ତାହା ନୁହେଁ ।

## तत्रापि च तद्‌वापारादविरोध: ॥ १६ ॥

## (୨) ତତ୍ରାପି ଚ ତଦ୍‌ବ୍ୟାପାରାଦବିରୋଧଃ ॥ ୩-୧-୧୬ ॥

ତତ୍ରାପି = ସେହି ରୌରବାଦି ନରକଗୁଡ଼ିକରେ ତଦ୍‌ବ୍ୟାପାରାତ୍ = ଯମ ପ୍ରଯୁକ୍ତ ଶାସନ ହେଲେ, ଅବିରୋଧ = ବିରୋଧ ହୁଏ ନାହିଁ ।

ମୂଳ - (୩) (କ) ତେଷ୍ୱପି ସପ୍ତସୁ ନରକେଷୁ ତସ୍ୟୈବ ଯମସ୍ୟାଧିଷ୍ଠାତୃତ୍ୱ ବ୍ୟାପାରାଭ୍ୟୁପଗମା ଦବିରୋଧଃ । ଯମପ୍ରଯୁକ୍ତାଃ ଏବ ହି ତେ ଚିତ୍ରଗୁପ୍ତା ଦୟୋ ୬ ଧିଷ୍ଠାତାରଃ ସ୍ମର୍ଯ୍ୟନ୍ତେ ।

**(୩) ଭାଷାଂତର-** (କ) ଏହି ସପ୍ତନର୍କରେ ମଧ୍ୟ ସେହି ଯମର ଅଧିଷ୍ଠାତୃରୂପରେ ବ୍ୟାପାର ସ୍ୱୀକୃତ ହୋଇଛି । ତେଣୁ ଏହା ବିରୋଧ ନୁହେଁ । କାରଣ-ସେମାନେ ଚିତ୍ରଗୁପ୍ତାଦି ଯମ ଦ୍ୱାରା ପ୍ରଯୁକ୍ତ ହୋଇ ଅଧିଷ୍ଠାତାରୂପରେ ସ୍ମରଣ କରାଯାଇଛନ୍ତି ।

## विद्याकर्मणोरति तु प्रकृतत्यात् ॥ १७ ॥

## (୧) ବିଦ୍ୟାକର୍ମଣୋରିତି ତୁ ପ୍ରକୃତତ୍ୱାତ୍ ॥୩-୧-୧୭॥

ତୁ ତୁଶବ୍ଦ ଶଙ୍କାନିବୃତ୍ତି ନିମିତ୍ତ ଅଛି । 'ଅର୍ଥୈତୟୋଃ ପଥୋର୍ନ' ଇତ୍ୟାଦି ଶ୍ରୁତିରେ 'ଏତୟୋଃ' ଶବ୍ଦଦ୍ୱାରା, ବିଦ୍ୟାକର୍ମଣୋଃ-ବିଦ୍ୟା ଓ କର୍ମ ଗୃହୀତ ହୁଏ । ପ୍ରକୃତତ୍ୱାତ୍-କାରଣ-ସେମାନେ ଦେବଯାନ ଓ ପିତୃଯାନ ରୂପରେ ପ୍ରକୃତ ଅଟନ୍ତି ।

ମୂଳ-(୨) (କ) ପଞ୍ଚାଗ୍ନିବିଦ୍ୟାୟାମ୍ 'ବେତ୍ଥ ଯଥାଽସୌ ଲୋକେ ନ ସଂପୂର୍ଯ୍ୟତେ' (ଛା ୫-୩-୩) ଇତ୍ୟସ୍ୟ ପ୍ରଶ୍ନସ୍ୟ ପ୍ରତିବଚନାବସରେ ଶ୍ରୂୟତେ-'ଅଥୈତୟୋଃ ପଥୋର୍ନ କତରେଣଚନ ତାନୀମାନି କ୍ଷୁଦ୍ରାଣ୍ୟସକୃଦାବର୍ତ୍ତୀନି ଭୂତାନି ଭବନ୍ତି । ଜାୟସ୍ୱ ମ୍ରିୟସ୍ୱେତ୍ୟେତତ୍ତୃତୀୟଂ ସ୍ଥାନଂ ତେନାସୌ ଲୋକୋନ ସଂପୂର୍ଯ୍ୟତେ, (ଛା ୫-୧୦-୮) ଇତି ।

(ଖ) ତତ୍ରୈତୟୋଃ ପଥୋରିତି ବିଦ୍ୟାକର୍ମଣୋରିତ୍ୟେତତ୍ । କସ୍ମାତି ? ପ୍ରକୃତତ୍ୱାତ୍ । ବିଦ୍ୟାକର୍ମଣୀ ହି ଦେବଯାନପିତୃଯାନୟୋଃ ପାଥୋରିତି ପ୍ରତିତ୍ତୌ ପ୍ରକୃତେ । 'ତଦ୍ୟ ଇତ୍ଥଂ ବିଦ୍ୟୁ' (ଛା ୫-୧୦-୧) ଇତି ବିଦ୍ୟା, ତୟା ପ୍ରତିପତ୍ତବ୍ୟୋ ଦେବଯାନଃ ପନ୍ଥାଃ ପ୍ରକୀର୍ତ୍ତିତଃ ।

(ଗ) 'ଇଷ୍ଟାପୂର୍ତ୍ତେ ଦତ୍ତମ୍' (ଛା ୫-୧୦-୩) ଇତି କର୍ମ, ତେନ ପ୍ରତିପତ୍ତବ୍ୟଃ ପିତୃଯାଣଃ ପନ୍ଥାଃ ପ୍ରକୀର୍ତ୍ତିତଃ । ତତ୍ପ୍ରକ୍ରିୟାମ୍-'ଅଥୈତୟୋ ପାଥୋର୍ନ କତରେଣଚନ' ଇତି ଶ୍ରୁତମ୍ ।

(ଘ) ଏତଦୁକ୍ତଂ ଭବତି- ଯେ ନ ବିଦ୍ୟାସାଧନେନ ଦେବଯାନେ ପଥ୍ୟଧିକୃତାଃ, ନାପି କର୍ମଣା ପିତୃଯାଣେ, ତେଷାମେଷ କ୍ଷୁଦ୍ରଜନ୍ତୁଲକ୍ଷଣୋଽସକୃଦାବର୍ତ୍ତୀ ତୃତୀୟଃ ପନ୍ଥା ଭବତୀତି । ତସ୍ମାଦପି ନାନିଷ୍ଟାଦିକାରିଭିଶ୍ଚନ୍ଦ୍ରମାଃ ପ୍ରାପ୍ୟତେ ।

(୨) ଭାଷାଂତର- (କ) ପଞ୍ଚାଗ୍ନିବିଦ୍ୟାରେ 'ବେତ୍ଥ ଯଥା' (ପ୍ରବାହଣ- ଏହି ସଂସାର ଯେଉଁ କାରଣରୁ ପୂର୍ଣ୍ଣ ନୁହେଁ, ତାହା ତୁ କଣ ଜାଣୁ ? ଏହି ପ୍ରଶ୍ନର ପ୍ରତିବଚନ (ଉତ୍ତର) ଅବସରରେ 'ଅଥୈତୟୋଃ ପଥୋର୍ନ (ଯାହା ଏହି ଅଟେ ଓ ଧୂସର କୌଣସି ଏହି ମାର୍ଗ ଦ୍ୱାରା ଯା'ନ୍ତି ନାହିଁ । ସେ ହିଁ ଏହି କ୍ଷୁଦ୍ର ଓ ବାରମ୍ବାର ଯାତାୟତ କରୁଥିବା ପ୍ରାଣୀ ନୁହନ୍ତି । ଉତ୍ପନ୍ନ ହେଉ ବା ମରଣ ହେଉ, ଏହା ତାହାର ତୃତୀୟ ସ୍ଥାନ ଅଟେ । ତେଣୁ ଏହି ଲୋକ ପୂର୍ଣ୍ଣ ନୁହେଁ ୬ ଏହା ହିଁ ଶ୍ରୁତି ପ୍ରମାଣ ।

(ଖ) ସେଠାରେ ଏହି ଦୁଇଟି (ବିଦ୍ୟା ଓ କର୍ମ)ର ବୋଲି ଅଭିଧାନ ଅଛି । କିପରି ? କାରଣ-ସେମାନେ ପ୍ରକୃତ ଅଟନ୍ତି ବିଦ୍ୟା । ଓ କର୍ମ ଦେବଯାନ ଓ ପିତୃଯାଣ ମାର୍ଗର ପ୍ରାପ୍ତିରେ କର୍ମ ଅଟନ୍ତି । 'ତଦ୍ୟ ଇତ୍ଥଂ' (ସେମାନେ ଯେକି ଏହି ପ୍ରକାର ଜାଣନ୍ତି) ଏହି ବିଦ୍ୟା ଅଟେ । ତେଣୁ ପ୍ରାପ୍ତବ୍ୟ ଦେବଯାନ ମାର୍ଗ କୁହାଯାଇଛି ।

(ଗ) ଇଷ୍ଟାପୂର୍ତ୍ତେ ଦତ୍ତମ୍ (ଇଷ୍ଟ, ପୂର୍ତ୍ତ ଓ ଦତ୍ତ) ଏହି କର୍ମ ଅଟନ୍ତି । ତେଣୁ ପ୍ରାପ୍ତବ୍ୟ ପିତୃଯାଣ ମାର୍ଗ କୁହାଯାଇଅଛି । ସେହି ପ୍ରକରଣରେ 'ଅଥୈତୟୋ ପଥୋଃ' (ଏହି ଦୁଇଟି ମାର୍ଗରେ କୌଣସି ଏକ ମାର୍ଗ ଦ୍ୱାରା ମଧ୍ୟ ନୁହେଁ) ଏହି ପ୍ରକାର ଶ୍ରୁତି ବାକ୍ୟ ଅଛି ।

(ଘ) ତେଣୁ ଏହାର ତାତ୍ପର୍ଯ୍ୟ ହେଲା- ଯାହାକୁ ବିଦ୍ୟାସାଧନ ଦ୍ୱାରା ଦେବଯାନ ମାର୍ଗରେ ଅଧିକୃତ ହୁଏ ନାହିଁ ଏବଂ କର୍ମଦ୍ୱାରା ପିତୃଯାଣ ମାର୍ଗରେ ଅଧିକୃତ ହୁଏ ନାହିଁ, ତାହାକୁ ଏହି କ୍ଷୁଦ୍ର ଜନ୍ତୁରୂପ ବାରମ୍ବାର ଆବୃତ୍ତିରୂପ ତୃତୀୟମାର୍ଗ ହୁଏ । ତେଣୁ ଅନିଷ୍ଟାଦିକାରୀଗୁଡ଼ିକ ଦ୍ୱାରା ଚନ୍ଦ୍ର ଲୋକପ୍ରାପ୍ତ କରାଯାଏ ନାହିଁ ।

ମୂଳ-(୩) (କ) ସ୍ୟାଦେତତ୍-ତେଽପି ଚନ୍ଦ୍ରବିମ୍ବମାରୁହ୍ୟ ତତୋଽବରୁହ୍ୟ କ୍ଷୁଦ୍ରଜନ୍ତୁତ୍ୱଂ ପ୍ରତିପତ୍ସ୍ୟନ୍ତ ଇତି । ତଦପି ନାସ୍ତି, ଆରୋହାନାର୍ଥକ୍ୟାତ୍ । ଅପିଚ ସର୍ବେଷ୍ୱପ୍ରୟତ୍ସୁ ଚନ୍ଦ୍ରଲୋକଂ ପ୍ରାପ୍ନୁବତ୍ସ୍ୱସୌ ଲୋକଃ ପ୍ରୟଦ୍ଭିଃ ସମ୍ପୂର୍ଯ୍ୟେତେତ୍ୟତଃ ପ୍ରଶ୍ନବିରୁଦ୍ଧଂ ପ୍ରତିବଚନଂ ପ୍ରସଜ୍ୟେତ । ତଥାହି ପ୍ରତିବଚନଂ ଦାତବ୍ୟଂ ଯଥାଽସୌ ଲୋକୋ ନ ସମ୍ପୂର୍ଯ୍ୟତେ ।

(ଖ) ଅବରୋହାଭ୍ୟୁପଗମା ଦସମ୍ପୂର୍ଣ୍ଣୋପପତ୍ତିରିତି ଚେତ, -ନ, ଅଶ୍ରୁତତ୍ୱାତ୍ । ସତ୍ୟମବରୋହାଦପ୍ୟସମ୍ପୂରଣମୁପପଦ୍ୟତେ, ଶ୍ରୁତିସ୍ତୁ ତୃତୀୟସ୍ଥାନସଙ୍କୀର୍ତ୍ତନେନା ସଂପୂର୍ଣ୍ଣରଣଂ ଦର୍ଶୟତି-ଏତତ୍ତୃତୀୟଂ ସ୍ଥାନଂ ତେନାଦୌ ଲୋକୋ ନ ସଂପୂର୍ଯ୍ୟତେ' (ଛା ୫-୧୦-୮) ଇତି । ତେନାନାରୋହାଦେବାସଂପୂରଣମିତି ଯୁକ୍ତମ୍, ଅବରୋହସ୍ୟେଷ୍ଟଦିକାରିଷ୍ୱପ୍ୟ ବିଶିଷ୍ଟତ୍ୱେ ସତି ତୃତୀୟସ୍ଥାନୋକ୍ତ୍ୟାନର୍ଥକ୍ୟ ପ୍ରସଙ୍ଗାତ୍ ।



(ଗ) ତୁଶବ୍ଦସ୍ତୁ ଶାଖାନ୍ତରୀୟବାକ୍ୟ ପ୍ରଭାବାମଶେଷଗମନାଶଙ୍କାମୁଚ୍ଛିନତ୍ତି । ଏବଂ ସତ୍ୟଧିକୃତାପେକ୍ଷଃଶାଖାନ୍ତରୀୟବାକ୍ୟେ ସର୍ବଶବ୍ଦୋଽବତିଷ୍ଠତେ 'ଯେ ବୈ କେଚିଦଧିକୃତା ଅସ୍ମାଲ୍ଲୋକାତ୍ ପ୍ରୟନ୍ତି ଚନ୍ଦ୍ରମସମେବ ତେ ସର୍ବେ ଗଚ୍ଛନ୍ତୀତି ।

**(୩) ଭାଷାଂତର-** (କ) ସେମାନେ ମଧ୍ୟ ଚନ୍ଦ୍ରଲୋକରେ ଚଢି ସେଠାରୁ ଅବରୋହଣ କରି କ୍ଷୁଦ୍ରଜନ୍ତୁତ୍ୱକୁ ପ୍ରାପ୍ତ ହୋଇପାରିବେ ବୋଲି କୁହାଯାଇପାରେ କି ? ନା ଏହା ମଧ୍ୟ ଠିକ୍ ନୁହେଁ । କାରଣ-ଏହାହେଲେ ଆରୋହଣ ଅନର୍ଥକ ହୁଏ ଓ ସମସ୍ତେ ମରିବାକୁ ଜାଣି ଚନ୍ଦ୍ର ଲୋକକୁ ପାଇବାକୁ ଇଚ୍ଛା କରି ଏହି ଲୋକରେ ମରିଲାପରେ ପୂରଣ ହୋଇପାରେ- ଏହି ପ୍ରଶ୍ନର ବିରୁଦ୍ଧ ଉତ୍ତର ପ୍ରସକ୍ତ ହୋଇଯିବ । ଯେପରି ଏହିଲୋକ ପୂରଣ ହୋଇପାରେ ନାହିଁ, ସେପରି ମଧ୍ୟ ଉତ୍ତର ଦେବା ଉଚିତ୍ ।

(ଖ) ଯଦି କହ ଯେ- ଅବରୋହ ସ୍ୱୀକାର କରିବାରେ ଉତପତ୍ତି ହେବ ତଥାପି ତାହା ମଧ୍ୟ ଠିକ୍ ନୁହେଁ, କାରଣ-ଏହା ଅଶ୍ରୁତ ଅଟେ ଅବରୋହ ଦ୍ୱାରା ଅସଂପୂର୍ଣ୍ଣତା ଉପପନ୍ନ ହୁଏ ବୋଲି କହିବା ଠିକ୍ । ପରନ୍ତୁ 'ଏ ତତ୍ତୃତୀୟଂସ୍ଥାନମ୍' (ଏହା ତୃତୀୟସ୍ଥାନ ଅଟେ, ତେଣୁ ଏହି ଲୋକ ପୂରଣ ହୋଇନାହିଁ) ଏହି ଶ୍ରୁତି କିନ୍ତୁ ତୃତୀୟସ୍ଥାନକୁ କହିବା ଦ୍ୱାରା ଅସଂପୂର୍ଣ୍ଣତା ଦେଖାଏ । ଯେ ଅନାରୋହ ହେଲେ ଅସଂପୂର୍ଣ୍ଣ ବୋଲି କହିବା ଠିକ୍ । କାରଣ-ଇଷ୍ଟାଦିଗୁଡ଼ିକର ଅବରୋହ ସମାନ ହେଲେ ତୃତୀୟସ୍ଥାନର ଉକ୍ତିରେ ଅନର୍ଥକ୍ୟ ପ୍ରସଙ୍ଗ ହେବ ।

(ଗ) ତୁଶବ୍ଦ କିନ୍ତୁ ଅନ୍ୟଶାଖାର ବାକ୍ୟଦ୍ୱାରା ଉତ୍ପନ୍ନ ହୋଇ ସମସ୍ତଗମନର ଆଶଙ୍କା ଉଚ୍ଛେଦ କରେ । ଏହା ହେଲା ପରେ 'ଯେ ବୈ' (ଯେ କୌଣସି ଅଧିକୃତ ହୋଇ ଏହି ଲୋକରୁ ପ୍ରୟଣ (ମୃତ୍ୟୁ) କରନ୍ତି, ସେ ସମସ୍ତ ଚନ୍ଦ୍ର ଲୋକକୁ ଯାଆନ୍ତି) ଏହି ପ୍ରକାର ଅନ୍ୟଶାଖାର ବାକ୍ୟରେ ସମସ୍ତଶବ୍ଦ ଚନ୍ଦ୍ରଲୋକରେ ଅଧିକୃତକୁ ଅପେକ୍ଷା କରି ଅବସ୍ଥାନ କରନ୍ତି ।

(୧) ମୂଳ-(କ) ଯତ୍ପୁନରୁକ୍ତମ୍ ଦେହଲୋଭୋପପତ୍ତୟେ ସର୍ବେ ଚନ୍ଦ୍ରମସଂ ଗନ୍ତୁମର୍ହନ୍ତି ପଞ୍ଚମ୍ୟାୟାହୁତିସଂଖ୍ୟାନିୟମାଦିତି ତତ୍ପ୍ରତ୍ୟୁଚ୍ୟତେ ।

**(୧) ଭାଷାଂତର-** (କ) ଦେହଲାଭ ଉପପତ୍ତି ନିମିତ୍ତ ସମସ୍ତେ ଚନ୍ଦ୍ରଲୋକକୁ ଯା'ନ୍ତି, କାରଣ- 'ପଞ୍ଚମ୍ୟାୟାମାହୁତୌ' ଏହି ଆହୁତି ସଂଖ୍ୟାର ନିୟମ ବୋଲି ଯାହା କୁହାଯାଇଅଛି ସେମାନଙ୍କ ପ୍ରତି କୁହାଯାଏ-

## न तृतीये तथोपलब्धेः ॥ २० ॥

## (୨) ନ ତୃତୀୟେ ତଥୋପଲବ୍ଧେଃ ॥୩-୧-୧୮॥

ତୃତୀୟେ-ତୃତୀୟ ମାର୍ଗରେ ପ୍ରବେଶ କରିଥିବା ପାପୀ ଲୋକର ଦେହପ୍ରାପ୍ତି ପାଇଁ ଆହୁତିସଂଖ୍ୟାରେ ନିୟମ, ନ-ନାହିଁ, ତଥୋପଲବ୍ଧେଃ-କାରଣ- 'ଜାୟସ୍ତ ମ୍ରିୟସ୍ୱ' ଇତ୍ୟାଦି ଶ୍ରୁତିରେ ସେପରି ଉପଲବ୍ଧ ହୁଏ ।

(୩) ମୂଳ-(କ) ନ ତୃତୀୟେ ସ୍ଥାନେ ଦେହଲାଭାୟ ପଞ୍ଚସଂଖ୍ୟାନିୟମଃ ଆହୁତୀନାମାଦର୍ତ୍ତବ୍ୟଃ । କୁତଃ ? ତଥୋପଲବ୍ଧେଃ । ତଥା ହ୍ୟନ୍ତରେଣୈବାହୁତି ସଂଖ୍ୟାନିୟମଂ ବର୍ଣ୍ଣିତେନ ପ୍ରକାରେଣ ତୃତୀୟ ସ୍ଥାନପ୍ରାପ୍ତିରୁପଲଭ୍ୟତେ- 'ଜାୟସ୍ୱ ମ୍ରିୟସ୍ୱେତ୍ୟେତତ୍ତୃତିୟଂ ସ୍ଥାନମ୍' (ଛା ୫-୧୦-୧) ଇତି ।

(ଖ) ଅପି ଚ ପଞ୍ଚମ୍ୟାମାହୁତା ବାପଃ ପୁରୁଷବଚସା ଭବନ୍ତି' (ଛା ୫-୩-୩) ଇତି ମନୁଷ୍ୟଶରୀରହେତୁତ୍ୱେନା ହୁଦିସଂଖ୍ୟା, ସଂକୀର୍ତ୍ତ୍ୟତେ, ନ କୀଟ ପତଙ୍ଗାଦିଶରୀର-ହେତୁତ୍ୱେନ, ପୁରୁଷଶବ୍ଦସ୍ୟ ମନୁଷ୍ୟଜାତି ବଚନତ୍ୱାତ୍ ।

(ଗ) ଅପି ଚ ପଞ୍ଚମ୍ୟାମାହୁତାବପାଂ ପୁରୁଷବଚସ୍ତ୍ୱମୁପଦିଶ୍ୟତେ, ନାପଞ୍ଚମ୍ୟାହୁତୌ ପୁରୁଷବଚସ୍ତ୍ୱଂ ପ୍ରତିଷିଧ୍ୟତେ, ବାକ୍ୟସ୍ୟ ଦ୍ୱ୍ୟର୍ଥତାଦୋଷାତ୍ । ତତ୍ର ଯେଷାମାରୋହାବରୋହୌ ସମ୍ଭବ ତ ସ୍ତେଷାଂ ପଞ୍ଚମ୍ୟମାହୁତୌ ଦେହ ଉଦ୍‌ଭବିଷ୍ୟତି, ଅନ୍ୟେଷାଂ ତୁ ବିନୈବାହୁତିସଂଖ୍ୟୟା ଭୂତାନ୍ତରୋପସୃଷ୍ଟାଭିରଦ୍‌ଭିର୍ଦେହ ଆରପ୍ସ୍ୟତେ ।

**(୩) ଭାଷାଂତର** - (କ) ତୃତୀୟ ମାର୍ଗରେ ଦେହଲାଭ ପାଇଁ ଆହୁତିର ପଞ୍ଚସଂଖ୍ୟାର ନିୟମ ଆଦରଣୀୟ ନୁହେଁ । କିପରି ? ତେଣୁ ସେପରି ଉପଲବ୍ଧି ହୁଏ । ଯଥା- 'ଜାୟସ୍ୱ ମିୟସ୍ୱେତ୍ୟେତତୃତୀୟସ୍ଥାନମ୍' (ଏହିପ୍ରକାର ଆହୁତି ସଂଖ୍ୟାର ନିୟମ ବିନା ବର୍ଣ୍ଣିତ ପ୍ରକାରରେ ତୃତୀୟ ସ୍ଥାନ ପ୍ରାପ୍ତିର ଉପଲବ୍ଧ ହୁଏ ।

(ଖ) ପୁଣି 'ପଞ୍ଚମ୍ୟାହୁଃ' (ପଞ୍ଚମ ଆହୁତିରେ ଅପ୍ ଅର୍ଥାତ୍ ଜଳ ପୁରୁଷ ସଂଜ୍ଞକ ହୁଏ) ଏହି ମନୁଷ୍ୟ ଶରୀର ହେତୁରୂପରେ ଆହୁତି ସଂଖ୍ୟା ବୋଲି କୁହାଯାଇଅଛି । କୀଟ ପତଙ୍ଗାଦି ଶରୀରର କିନ୍ତୁ ହେତୁରୂପରେ କୁହାଯାଇନାହିଁ, କାରଣ-ପୁରୁଷଶବ୍ଦ ମନୁଷ୍ୟଜାତି ବାଚକ ଅଟେ ।

(ଗ) ପଞ୍ଚମ ଆହୁତିରେ ଜଳ ପୁରୁଷ ସଂଜ୍ଞକ ହୁଏ ବୋଲି ଉପଦେଶ ଦିଆଯାଇଅଛି । କିନ୍ତୁ ପଞ୍ଚମ ଆହୁତି ନ ହେଲେ ଜଳ ପୁରୁଷସଂଜ୍ଞକ ହୁଏ ନାହିଁ ବୋଲି କୌଣସି ସ୍ଥଳରେ ନିଷେଧ କରାଯାଇ ନାହିଁ । କାରଣ-ଏପରି ହେଲେ ବାକ୍ୟରେ ଦୁଇପ୍ରକାର ଅର୍ଥରୂପକ ଦୋଷ ହେବ । ସେହି ଚନ୍ଦ୍ରମଣ୍ଡଳରେ ଯାହାର ଆରୋହ, ଅବରୋହ ସମ୍ଭବ ହୁଏ, ସେମାନଙ୍କର ଶରୀରେ ପଞ୍ଚମ ଆହୁତିରେ ଉତ୍ପନ୍ନ ହୁଏ । ଅନ୍ୟର ଶରୀର କିନ୍ତୁ ଆହୁତି ସଂଜ୍ଞା ବିନା ଅନ୍ୟଭୂତରେ ସମ୍ବନ୍ଧ ହୋଇ ଜଳରୁ ଆରମ୍ଭ ହେବ ।

**स्मर्यतेऽपि चलोके ॥ १९ ॥**

**(୨) ସ୍ମର୍ଯ୍ୟତେଽପି ଚ ଲୋକେ ॥୩-୧-୧୯॥**

ଚ-ଏବଂ, ଲୋକେ-ସଂସାରେ, ଅପି-ମଧ୍ୟ ଏହିପ୍ରକାର, ସ୍ମର୍ଯ୍ୟତେ-ସ୍ମରଣ କରାଯାଏ ।



(୨) ମୂଳ-(କ) ଅପି ଚ ସ୍ମର୍ଯ୍ୟତେ ଲୋକେଦ୍ରୋଣଧୃଷ୍ଟଦ୍ୟୁମ୍ନପ୍ରଭୃତୀନାଂ ସୀତାଦ୍ରୋପଦୀପ୍ରଭୃତୀନାଂ ଋଯୋନିଜତ୍ୱମ୍ । ତତ୍ର ଦ୍ରୋଣାଦୀନାଂ ଯୋଷିଦ୍‌ବିଷୟୈକାହୁତିର୍ନାସ୍ତି । ଧୃଷ୍ଟଦ୍ୟୁମ୍ନାଦୀନାଂ ତୁ ଯୋଷିତ୍ ପୁରୁଷବିଷୟେଦ୍ୱେ ଅପ୍ୟାହୁତୀ ନ ସ୍ତଃ ।

(ଖ) ଯଥା ଚ ତତ୍ରାହୁତି ସଂଖ୍ୟାନିୟମନାଦରୋ ଭବତ୍ୟେ ବମନ୍ୟତ୍ରାପି ଭବିଷ୍ୟତି । ବଳାକାପ୍ୟନ୍ତରେଣୈବ ରେତଃ ସେକଂ ଗର୍ଭଂ ଧତ୍ତ ଇତି ଲୋଭରୂଢିଃ ।

**(୨) ଭାଷାଂତର-** (କ) ପୁନଶ୍ଚ ଲୋକ (ମହାଭାରତ)ରେ ଦ୍ରୋଣ, ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ତଥା ସୀତା, ଦୌପଦୀ ଇତ୍ୟାଦିଙ୍କର ଅଯୋନିଜତ୍ୱ ସ୍ମରନ କରାଯାଇଅଛି । ସେଠାରେ ଦ୍ରୋଣ ପ୍ରଭୃତିର ସ୍ତ୍ରୀ ବିଷୟକ ଏକ ଆହୁତ ନାହିଁ ଏବଂ ଧୃଷ୍ଟଦ୍ୟୁମ୍ନ ପ୍ରଭୃତିର ସ୍ତ୍ରୀ ଓ ପୁରୁଷ ବିଷୟକ ଆହୁତି ଦ୍ୱୟ ନାହିଁ ।

(ଖ) ଯେପରି ସେଥିରେ ଆହୁତି ସଂଖ୍ୟାର ନିୟମନ ଆଦର ନାହିଁ, ସେପରି ଅନ୍ୟତ୍ର (ଅନିଷ୍ଟାଦିକାରୀର ଦେହୋତ୍ପତ୍ତିରେ) ମଧ୍ୟ ହୁଏ ନାହିଁ । ବଳାକା ମଧ୍ୟ ଶୁକ୍ର ସିଞ୍ଚନ ନ କରି ଗର୍ଭଧାରଣ କରେ । ଏହି ପ୍ରକାର ଲୋକ ପ୍ରସିଦ୍ଧ ଅଛି ।

## दर्शनाच्च ॥ २० ॥

## (୧) ଦର୍ଶନାଚ୍ଚ ॥୩-୧-୨୦॥

ଦର୍ଶନାତ୍ ଚ-କାରନ-ସଂସାରରେ ଏହିପ୍ରକାର ଦେଖାଯାଏ ।

(୨) ମୂଳ-(କ) ଅପି ଚ ଚତୁର୍ବିଧ ଭୂତଗ୍ରାମେ ଜରାୟୁଜାଣ୍ଡଜ ସ୍ୱେଦଜୋଦ୍‌ଭିଦ୍‌ଜ୍ଜଲକ୍ଷଣେ ସ୍ୱେଦଜୋଦ୍ ଭିଜ୍ଜୟୋରନ୍ତରେଣୈବ ଗ୍ରାମ୍ୟଧର୍ମମୁତ୍ପତ୍ତି ଦର୍ଶନାଦାହୁତି ସଂଖ୍ୟାନାଦରୋ ଭବତି । ଏବମନ୍ୟତ୍ରାପି ଭବିଷ୍ୟତି ।

**(୨) ଭାଷାଂତର-** (କ) ପୁନଶ୍ଚ ଚାରିପ୍ରକାର ଭୂତ ସମୂହରେ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଜ୍ଜ ରୂପରେ ଥିବା ସ୍ୱେଦଜ ଓ ଉଦ୍‌ଭିଜ-ଏହି ଦୁଇଟିରେ ଗ୍ରାମଃଧର୍ମ (ସ୍ତ୍ରୀ ପୁରୁଷ ସଂପର୍କ) ବିନା ହିଁ ଉତ୍ପତ୍ତି ଦେଖିବାରୁ ଆହୁତି ସଂଖ୍ୟାର ଆଦର ହୁଏ ନାହିଁ । ତେଣୁ ଅନିଷ୍ଟାଦିକାରୀର ଦେହୋତ୍ପତ୍ତିରେ ମଧ୍ୟ ହେବ ।

(୧) ମୂଳ-(କ) ନ୍ନନୁ ତେଷାଂ ଖଲ୍ୱେଷାଂ ଭୂତାନାଂ ତ୍ରୀଣ୍ୟେବ ବୀଜାନୀ ଭବନ୍ତି 'ଆଣ୍ଡଜଂ ଜୀବଜମୁଦ୍‌ଭିଜମ୍' (ଛା ୬-୩-୧) ଇତ୍ୟତ୍ର ତ୍ରିବିଧ ଏକ ଭୂତଗ୍ରାମଃ ଶ୍ରୂୟତେ, କଥଂ ଚତୁର୍ବିଧତ୍ୱଂ ଭୂତଗ୍ରାମସ୍ୟ ପ୍ରତିଜ୍ଞାତମିତି ? ଅତ୍ରୋଚ୍ୟତେ-

(୨) ଭାଷାଂତର- (କ) ପରନ୍ତୁ 'ତେଷାଂ ଖଲ୍ୱେଷାଂ' (ସେହି ପକ୍ଷୀ ପ୍ରଭୃତି ପ୍ରସିଦ୍ଧ ତିନି ବୀଜ ହୁଅନ୍ତି' - ଅଣ୍ଡଜ, ଜୀବଜ, (ଜରାୟୁଜ) ଓ ଉଦ୍‌ଭିଜ - ଏହି ଶ୍ରୁତିରେ ତିନିପ୍ରକାରର ଭୂତିସମୁଦାୟ ଶୁଣାଯାଏ । ପୁନଶ୍ଚ ଏଠାରେ ଭୂତସମୁଦାୟ ଚାରିପ୍ରକାର ବୋଲି କିପରି ପ୍ରତିଜ୍ଞା କରାଯାଇଅଛି ? ତେଣୁ ଏହି ବିଷୟରେ କୁହାଯାଇଛି ।

**वृतीय शब्दावरोध: शंशोकजस्य ॥ २१ ॥**

**(୧) ତୃତୀୟ ଶବ୍ଦାବରୋଧଃ ସଂଶୋକଜସ୍ୟ ॥ ୩-୫-୨୧ ॥**

ସଂଶୋକଜସ୍ୟ-ସଂଶୋକଜ (ସ୍ୱେଦଜ) ପ୍ରାଣୀଗୁଡ଼ିକର, ତୃତୀୟଶବ୍ଦାବରୋଧଃ- ତୃତୀୟ.ଶବ୍ଦଦ୍ୱାରା (ଉଦ୍‌ଭିଜ) ଶବ୍‌ଦରୁ ଉପସଂଗ୍ରହ କଲେ ବିରୋଧ ହୁଏ ନାହିଁ ।

(୩) ମୂଳ-(କ) ଆଣ୍ଡଜଂ ଜୀବଜମୁଦ୍‌ଭିଜମ' (ଛା ୬-୩-୧) ଇତ୍ୟତ୍ର ତୃତୀୟେନୋଦ୍ ଭିଜ୍‌ଜବେ୍ ଦେନୈବ ସ୍ୱେଦଶୋପ୍ରସଂଗ୍ରହଃ କୃତଃ ପ୍ରତ୍ୟେତବ୍ୟଃ, ଉଭୟୋ ରପି ସ୍ୱେଦଯୋଦ୍‌ଭିଜ୍‌ଜୟୋର୍ଭୂମ୍ୟୁଦକୋଦ୍‌ଭେଦପ୍ରଭବତ୍ୱସ୍ୟ ତୁଲ୍ୟତ୍ୱାତ୍ ।

(ଖ) ସ୍ଥାବରଭେଦାରୁ ବିଲକ୍ଷଣେ । ଜଙ୍ଗମୋଦ୍ ଭେଦ ଇତ୍ୟନ୍ୟତ୍ର ସ୍ୱେଦଜୋଦ୍‌ଭିଜୟୋ ର୍ଭେଦବାଦ ଇତ୍ୟବିରୋଧଃ ।

(୩) ଭାଷାଂତର- (କ) 'ଆଣ୍ଡଜଂ ଜୀବଜଂ' (ଆଣ୍ଡଜପକ୍ଷୀ ଇତ୍ୟାଦି, ଜୀବଜ ମନୁଷ୍ୟ ପ୍ରଭୃତି, ଉଦ୍‌ଭିଜ୍‌ଜ-ବୃକ୍ଷାଦି) ଏଠାରେ ତୃତୀୟ ଉଦ୍‌ଭିଜ ଶବ୍‌ଦରୁ ସ୍ୱେଦଜର ଉପସଂଗ୍ରହ କରାଯାଇଛି ବୋଲି ବୁଝିବାକୁ ପଡ଼ିବ, କାରଣ-ସ୍ୱେଦଜ ଓ ଉଦ୍‌ଭିଜ-ଏହି ଦୁଇଟିରେ ମଧ୍ଯ ଭୂମି ଓ ଉଦରକୁ ଭେଦକରି ଉତ୍ପନ୍ନ ହେବା ଏକାପରି ।

(ଖ) ସ୍ଥାବରର ଉଦ୍‌ଭିଜଠାରୁ ଜଙ୍ଗମର ଉଦ୍‌ଭିଜ ବିଲକ୍ଷଣ ଅଟେ । ତେଣୁ ସ୍ୱେଦଜ ଓ ଉଦ୍‌ଭିଜର ଭେଦବାଦ ଅନ୍ୟତ୍ର ବର୍ଣ୍ଣିତ ଅଛି । ତେଣୁ ଏହା ବିରୋଧ ନୁହେଁ ।

**४ साभाव्यापत्यधिकरणम् । सू० २२**

**ସାଭାବ୍ୟାପତ୍ୟଧିକରଣ-୪**

**साभाव्यापत्तिरुपपत्त: ॥ २२ ॥**

**୧-ସାଭାବ୍ୟାପତ୍ତିରୁପପତ୍ତେଃ ॥ ୩-୧-୨୨ ॥**

ଏହି ସଂସାରରେ ପ୍ରତ୍ୟାବର୍ତ୍ତନ ସମୟରେ ଜୀବକୁ, ସଭାବ୍ୟାପତ୍ତିଃ=ଆକାଶାଦିରୁ ସାମ୍ୟପ୍ରାପ୍ତି ହୁଏ, ଉପପତ୍ତେଃ=କାରଣ-ଏହା ଉପପନ୍ନ ହୁଏ ।

 

(୨) ମୂଳ-(କ) ଇଷ୍ଟାଦିକାରିଣଶ୍ଚନ୍ଦ୍ରମସମାରୁହ୍ୟ ତସ୍ମିନ୍ୟାବତ୍‌ସଂପାତସୁଷିତ୍ୱା ତତଃ ସାନୁଶୟା ଅବରୋହନ୍ତୀତ୍ୟୁକ୍ତମ୍ । ଅଥାବରୋହ ପ୍ରକାରଃ ପରୀକ୍ଷ୍ୟତେ । ତତ୍ରେୟମବରୋହଶ୍ରୁତିର୍ଭବତି- 'ଅଥୈତମେବାଧ୍ୱାନଂ ପୁନର୍ନିବର୍ତ୍ତନ୍ତେ ଯଥେତମାକାଶମାକାଶାଦ୍ ବାୟୁଂ ବାୟୁର୍ଭୂତ୍ୱା ଧୂମୋ ଭବତି, ଭୂତ୍ୱାଽଭ୍ରଂ ଭବତ୍ୟଭ୍ରଂ ଭୂତ୍ୱା ମେଘେ ଭବତି ମେଘୋ ଭୂତ୍ୱା ପ୍ରବର୍ଷତି' (ଛା-୧୦-୫) ଇତି ।

(ଖ) ତତ୍ର ସଂଶୟଃ କିମାକାଶାଦି ସ୍ୱରୂପମେବାବରୋହନ୍ତଃ ପ୍ରତିପଦ୍ୟନ୍ତେ କିଂ ବାକାଶାଦିସାମ୍ୟମିତି । ତତ୍ର ପ୍ରାପ୍ତଂ ତାବତ୍‌-ଆକାଶାଦିସ୍ୱରୂପମେବ ପ୍ରତିପଦ୍ୟନ୍ତ ଇତି । କୁତଃ ? ଏବଂ ହି ଶ୍ରୁତିର୍ଭବତି ।

(ଗ) ଇତରଥା ଲକ୍ଷ୍ୟଣା ସ୍ୟାତ୍ । ଶ୍ରୁତିଲକ୍ଷଣାବିଷୟେ ଚ ଶ୍ରୁତିନ୍ୟାର୍ଯ୍ୟା ନ ଲକ୍ଷଣା । ତଥା ଚ 'ବାୟୁର୍ଭୂତ୍ୱା ଧୂମୋ ଭବତି' ଇତ୍ୟେବମାଦୀନ୍ୟକ୍ଷରାଣି ତତ୍ତତ୍‌ସ୍ୱରୂପୋପପତ୍ତାବାଞ୍ଜସ୍ୟେବାଞ୍ଜସ୍ୟେବାବକଳ୍ପନ୍ତେ । ତସ୍ମାଦାକାଶାଦିସ୍ୱରୂପପ୍ରତିପତ୍ତିରିତି ।

**(୩) ଭାଷାଂତର-** (କ) ଇଷ୍ଟାଦିକାରୀ ଚନ୍ଦ୍ରଲୋକରେ ଆରୋହଣ କରି ସେଠାରେ କର୍ମଫଳୋପଭୋଗ ପର୍ଯ୍ୟନ୍ତ ରହି ସେଠାରୁ ଅନୁଶୟ ସହିତ ଅବରୋହଣ କରନ୍ତି ବୋଲି କୁହାଯାଇଅଛି । ବର୍ତ୍ତମାନ ଅବରୋହ ପ୍ରକାରର ପରୀକ୍ଷା କରାଯାଉଅଛି । ସେଠାରେ 'ଅଥୈତମେବାଧ୍ୱାନଂ' (କର୍ମଫଳ ଭୋଗପରେ ପୁନର୍ବାର ଏହିମାର୍ଗରେ ଯେପରି ଯାଇଛନ୍ତି, ସେହିପରି ପ୍ରତ୍ୟାବର୍ତ୍ତନ କରନ୍ତି, ସେମାନେ ପ୍ରଥମେ ଆକାଶକୁ ଯାଆନ୍ତି, ଆକାଶରୁ ବାୟୁକୁ, ବାୟୁରୁ ସେ ଧୂମ ହୁଏ, ଓ ଧୂମହୋଇ ଅଭ୍ର ହୁଏ । ଅଭ୍ର ହୋଇ ମେଘ ହୁଏ । ମେଘ ହୋଇ ବରଷେ) ଏହା ଅବରୋହ ଶ୍ରୁତି ଅଟେ ।

(ଖ) ଏଠାରେ ସଂଶୟ ହୁଏ ଯେ- ଅବରୋହଣ ଆକାଶର ସ୍ୱରୂପକୁ ପ୍ରାପ୍ତ ହୁଏ କି ଆକାଶାଦିର ସାମ୍ୟକୁ ? କିନ୍ତୁ ଏଠାରେ ଆକାଶର ସ୍ୱରୂପକୁ ପ୍ରାପ୍ତ ହୁଅନ୍ତି ନାହିଁ ବୋଲି କୁହାଯାଇଅଛି । କିପରି ? କାରଣ- ଏହି ବିଷୟରେ ଶ୍ରୁତି କହେ ।

(ଗ) ନୋଚେତ୍ ଲକ୍ଷଣା ହେବ । ଶ୍ରୁତି ଓ ଲକ୍ଷଣାର ଶ୍ରୁତିକୁ ଗ୍ରହଣ କରିବା ଉଚିତ୍ । କିନ୍ତୁ ଲକ୍ଷଣାକୁ ନୁହେଁ । ତେଣୁ 'ବାୟୁଭୂତ୍ୱା' ବାୟୁ ଭୂତ୍ୱା' (ବାୟୁ ହୋଇ ଧୂମ ହୁଏ) ଇତ୍ୟାଦି ଅକ୍ଷର ମଧ୍ୟ ସେହିସେହି ସ୍ୱରୂପର ପ୍ରାପ୍ତିରେ ଅନାୟାସ ଉପପନ୍ନ କରନ୍ତି । ତେଣୁ ଆକାଶାଦିସ୍ୱରୂପକୁ ପ୍ରାପ୍ତ ହୁଅନ୍ତି ।

(୨) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ଓକାଶାଦିସାମ୍ୟଂ ପ୍ରତିପଦ୍ୟନ୍ତ ଇତି । ଚନ୍ଦ୍ରମଣ୍ଡଳେ ଯଦମ୍ମୟଂ ଶରୀରସୁପଭୋଗାର୍ଥମାରବ୍‌ଧ ତଦୁପଭୋଗକ୍ଷୟେ ସତି ପ୍ରବିଲୀୟମାନଂ ସୂକ୍ଷ୍ମମାକାଶସମଂ ଭବତି, ତତୋ ବାୟୋର୍ବଶମେତି, ତତୋ ଧୂମାଦିଭିଃ ସଂପୃଚ୍ୟତେ ଇତି ।

(ଖ) ତଦେତଦୁଚ୍ୟତେ- 'ଯଥେତମାକାଶ ମାକାଶାଦ୍‌ବାୟୁମ୍' (ଛା ୫-୨୦-୫) ଇତ୍ୟୋବମାଦିନା । କୁତ ଏ ତତ୍ ? ଉପପତ୍ତେଃ । ଏବଂ ହ୍ୟେତଦୁପପଦ୍ୟତେ । ନ ହ୍ୟନ୍ୟସ୍ୟାନ୍ୟଭାବୋ ମୁଖ୍ୟ ଉପପଦ୍ୟତେ । ଆକାଶସ୍ୱରୂପପ୍ରତିପତ୍ତୌ ଚ ବାୟ୍ୱାଦିକ୍ରମେଣାବରୋହୋ ନୋପପଦ୍ୟତେ ।

(ଗ) ବିଭୁତ୍ୱାଚ୍ଚାକାଶେନ ନିତ୍ୟସମ୍ବନ୍ଧତ୍ୱାନ୍ନ ତତ୍‌ସାଦୃଶ୍ୟପତ୍ତେରନ୍ୟସ୍ତତ୍ ସମ୍ବନ୍ଧେ ଘଟତେ । ଶ୍ରୁତିସମ୍ଭବେ ଚ ଲକ୍ଷଣାଶ୍ରୟଣଂ ନାର୍ଯ୍ୟମେବ । ଅତ ଆକାଶାଦିତୁଲ୍ୟପପତ୍ତିରେ-ବାତ୍ରାକାଶାଦିଭବ ଇତ୍ୟୁପଚର୍ଯ୍ୟତେ ।

**(ଗ) ଭାଷାଂତର-** ସିଦ୍ଧାନ୍ତ (କ) ଏହିପରି ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ-ଆକାଶାଦିର ସାଦୃଶ୍ୟକୁ ପ୍ରାପ୍ତ ହୁଅନ୍ତି । ଚନ୍ଦ୍ରମଣ୍ଡଳରେ ଯେଉଁ ଜଳମୟଶରୀର ଉପଭୋଗ ପାଇଁ ଆରମ୍ଭ ହୋଇଥିଲା, ଉପଭୋଗର କ୍ଷୟ ହେଲାପରେ ସେ ପ୍ରବିଲୀନ ହୋଇ ଆକାଶପରି ସୂକ୍ଷ୍ମ ହୁଏ, ତାପରେ ବାୟୁର ଅଧୀନ ହୁଏ, ତାପରେ ଧୂମାଦିରେ ସମ୍ବନ୍ଧ ହୁଏ ।

(ଖ) ଯେ 'ଯଥେତମା' (ଯେଉଁପ୍ରକାରେ ଯାଇଥିଲା, ସେହିପ୍ରକାର ଫେରି ପ୍ରଥମେ ଆକାଶକୁ ଯାଇ ଆକାଶରୁ ବାୟୁକୁ ପ୍ରାପ୍ତ ହୁଏ) ଇତ୍ୟାଦି ଶ୍ରୁତି କୁହାଯାଇଛି । ଏହା କିପରି ? ଉପପତ୍ତି କାରଣରୁ । ଏହା ଏହିପରି ଉପପନ୍ନ ହୁଏ । ଅନ୍ୟର ଅନ୍ୟଭାବ ମୁଖ୍ୟଭାବେ ଉପପନ୍ନ ହୁଏ ନାହିଁ ଓ ଆକାଶ ସ୍ୱରୂପକୁ ପାଇସାରିଲା ପରେ ବାୟୁ ପ୍ରଭୃତି କ୍ରମରେ ଅବରୋହ ଉପପନ୍ନ ହୁଏ ନାହିଁ ।

(ଗ) ଆକାଶ ବିଭୁ ହେଲେ ଓ ତାହା ସହିତ ନିତ୍ୟସମ୍ବନ୍ଧ ହେଲେ ଆକାଶର ସାଦୃଶ୍ୟପ୍ରାପ୍ତିଦ୍ୱାରା ଭିନ୍ନସମ୍ବନ୍ଧ ଘଟେ ନାହିଁ ଏବଂ ଶ୍ରୁତିର ଅସମ୍ଭବରେ ଲକ୍ଷଣାର ଆଶ୍ରୟଣ ହେବା ଠିକ୍ । ତେଣୁ ଆକାଶାଦିସାଦୃଶ୍ୟ ପ୍ରାପ୍ତି ହିଁ ଆକାଶାଦିର ଭାବ ହୁଏ ବୋଲି ଉପଚାର କରାଯାଇଅଛି ।

## ५ नातिचिराधिकरणम् । सू० २३

## ନାତିଚିରାଧିକରଣ-୫

## नातिचिरेण विशेषात् ॥ २३ ॥

## ୧-ନାତିଚିରେଣ ବିଶେଷାତ୍ ॥ ୩-୧-୨୩ ॥

ଜୀବ, ନାତିଚିରେଣ-ସ୍ୱଳ୍ପକାଳ ହିଁ ଆକାଶାଦିର ସହିତ ସମାନରୂପରେ ରହି ପୃଥିବୀରେ ପ୍ରବେଶ କରେ । ବିଶେଷାତ୍ କାରଣ- 'ଅତୋ ବୈ ଦୁନିଷ୍ପ୍ରପତରମ୍' ଇତ୍ୟାଦି ଶ୍ରୁତିରେ ବିଶେଷଭାବେ ଦେଖାଯାଏ ।



## ६ अन्याधिष्ठिताधिकरणम् । सू० २४-२७ ॥

## ଅନ୍ୟାଧିଷ୍ଠାତାଧିକରଣ-୬

## अन्याधिष्ठिनेषु पूर्बवदभिलापात् । २४ ॥

## (୧) ଅନ୍ୟାଧିଷ୍ଠିତେଷୁ ପୂର୍ବବଦଭିଳାପାତ୍ ॥୩-୧-୨୪॥

ଅନୁଶାୟୀ ଜୀବ ପୂର୍ବପରି, ଅନ୍ୟାଧିଷ୍ଠି ତେଷ-ଅନ୍ୟ ଜୀବ ଦ୍ୱାରା ଅଧିଷ୍ଠିତବ୍ରୀହି ପ୍ରଭୃତିରେ କେବଳ ସମ୍ବନ୍ଧିତ ହୁଅନ୍ତି । ପୂର୍ବବଦଭିଳାପାତ୍=କାରଣ ଆକାଶ ପ୍ରଭୃତି ଭାବପରି ଏହା କୁହାଯାଇଅଛି ।

(୨) ମୂଳ-(କ) ତିସ୍ମିନ୍ନେବାବରୋହେ ପ୍ରବର୍ଷଣାନନ୍ତରଂ ପଠ୍ୟତେ- ତ ଇହ ବ୍ରୀହିଯବା ଔଷଧିବନସ୍ପତୟସ୍ତିଳମାଷା ଇତି ଜାୟନ୍ତେ' (ଛା ୫-୧୦-୬) ଇତି । ତତ୍ରସଂଶୟଃ-କିମସ୍ମିନ୍ନବଧୌ ସ୍ଥାବରଜାତ୍ୟାପନ୍ନାଃ ସ୍ଥାବର ସୁଖଦୁଃଖ ଭାଜୋଽନୁଶୟିନୋ ଭବନ୍ତ୍ୟାହୋସ୍ୱିତ୍ କ୍ଷେତ୍ରଜ୍ଞାନ୍ତରାଧିଷ୍ଠିତେଷୁ ସ୍ଥାବରଶରୀରେଷୁ ସଂଶ୍ଳେଷମାତ୍ରଂ ଗଚ୍ଛନ୍ତୀତି ।

(ଖ) କିଂ ତାବତ୍ ପ୍ରାପ୍ତମ୍ ? ସ୍ଥାବରଜାତ୍ୟାପନ୍ନାସ୍ତତ ସୁଖ ଦୁଃଖ ଭାଜୋଽନୁଶୟିନୋ ଭବନ୍ତୀତି । କୁତ ଏତତ୍ ? ଜନେର୍ମୁଖ୍ୟାର୍ଥତ୍ୱୋପପତ୍ତେଃ ସ୍ଥାବରଭାବସ୍ୟ ଚ ଶ୍ରୁତିସ୍ମୃତିୟୋରୂପଭୋଗସ୍ଥାନତ୍ୱ ପ୍ରସିଦ୍ଧେଃ, ପଶୁହଂସାଦି ଯୋଗାଚ୍ଚୋଷ୍ଟାଦେଃ କର୍ମଜାତସ୍ୟାନିଷ୍ଟଫଳତ୍ୱୋପପତ୍ତେଃ ।

(ଗ) ତସ୍ମାନ୍ମୁଖ୍ୟମେବେଦନମନୁଶୟିନାଂବ୍ରୀହ୍ୟାଦିଜନ୍ମ, ଶ୍ୱାଦିଜନ୍ମବତ୍ । ଯଥା ଶ୍ୱଯୋନିଂ ବା ସୁକର ଯୋନିଂବା ଚଣ୍ଡାଳଯୋନିଂ ବେତି ମୁଖ୍ୟମେବାନୁଶୟିନାଂ ଶ୍ୱାଦିଜନ୍ମ ତତ୍ସୁଖଦୁଃଖାନ୍ବିତଂ ଭବତି ଏବଂ ବ୍ରୀହ୍ୟାଦିଜନ୍ମାପୀତି ।

(୨) ଭାଷାଂତର - (କ) ସେହିଅବରୋହ ବିଷୟରେ ପ୍ରବର୍ଷଣବୃଷ୍ଟିର ପରେ ପଢ଼ାଯାଉଅଛି- 'ତ ଇହ' (ସେତେବେଳେ ସେ ଜୀବ ଏହି ଲୋକରେ ଧାନ, ଯବ, ଔଷଧ, ବନସ୍ପତି, ତିଳ ଓ ରାଶରୂପ ହୋଇ ଉତ୍ପନ୍ନ ହୁଅନ୍ତି) । ଏଠାରେ ସଂଶୟ ହୁଏ ଯେ- ଅନୁଶୟୀ ଜୀବ ଏହି ଅବଧିରେ ସ୍ଥାବର ଜାତି ହୋଇ ସ୍ଥାବରଶରୀରେ କେବଳ ସଂଶ୍ଳେଷ (ସଂସର୍ଗ) ମାତ୍ର କଣ ପାଆନ୍ତି ?

(ଖ) ତାହେଲେ ତେବେ କଣ ? ପୂର୍ବପକ୍ଷ-ଅନୁଶୟୀଜୀବ ସ୍ଥାବରଜାତିକୁ ପ୍ରାପ୍ତ ହୋଇ ତାହାର ସୁଖଦୁଃଖର ଭାଗୀ ହୁଅନ୍ତି । ଏହା କିପରି ସମ୍ଭବ ? କାରଣ-ଏଠାରେ ଜନ (ଜନ୍ମହେବା) ଧାତୁର ମୁଖ୍ୟାର୍ଥ ଉତ୍ପନ୍ନ ହୁଏ ଓ ସ୍ଥାବର ଭାବ ଶ୍ରୁତି ଓ ସ୍ମୃତିରେ

ଉପଭୋଗର ସ୍ଥାନରୂପରେ ପ୍ରସିଦ୍ଧ ହୁଏ । ପଶୁହିଂସାଦିର ଯାଗଦ୍ୱାରା ଇଷ୍ଟାଦିକର୍ମସମୂହରେ ଅନିଷ୍ଟଫଳତ୍ୱ ଉପପନ୍ନ ହୁଏ ।

(ଗ) ତେଣୁ ଅନୁଶୟୀଜୀବର ଏହି ବ୍ରୀହି ପ୍ରଭୃତି ରୂପରେ ଜନ୍ମ ହେବା କୁକୁର ପ୍ରଭୃତିର ଜନ୍ମ ପରି ମୁଖ୍ୟ ଅଟେ । ଯେପରିକି କୁକୁର ଯୋନି, ମୁକର ଯୋନି, ଅଥବା ଚଣ୍ଡାଳ ଯୋନି-ଏହି ପ୍ରକାର ଅନୁଶୟୀ ଜୀବର ଶ୍ୱାନାଦି ଜନ୍ମ ମୁଖ୍ୟ ଅଟେ ଏବଂ ତାହାର ସୁଖ ଦୁଃଖରେ ଅନ୍ୱିତ ହୁଏ, ସେହିପରି ବ୍ରୀହିର ମଧ୍ୟ ଜନ୍ମ ସଙ୍ଗମ ଅଟେ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ଅନ୍ୟୈର୍ଜୀବୈରଧିଷ୍ଠିତେଷ୍ଟୁ ବ୍ରୀହ୍ୟାଦିଷ୍ଟୁ ସଂସର୍ଗମାତ୍ରମନୁଶୟିନଃ ପ୍ରତିପଦ୍ୟନ୍ତେ, ନ ତତ୍‌ସୁଖଭାଜୋ ଭବନ୍ତି, ପୂର୍ବବତ୍ । ଯଥା ବାୟୁଧୂମାଦିଭାଜୋଽନୁଶୟିନାଂ ତତ୍‌ସଂଶ୍ଳେଷମାତ୍ରମ୍, ଏବଂ ବ୍ରୀହ୍ୟାଦିଭାବୋଽପି ଜାତି ସ୍ଥାବରୈଃ ସଂଶ୍ଳେଷମାତ୍ରମ୍ ।

(ଖ) କୃତ ଏତତ୍ ? ତଦ୍‌ବଦେବେହାପ୍ୟଭିଳାପାତ୍, କୋଭିଳାପସ୍ୟ ତଦ୍‌ବଦ୍‌ଭାବଃ ? କର୍ମବ୍ୟାପାରମନ୍ତରେଣ ସଂକୀର୍ତ୍ତନମ୍, ଯଥାକାଶାଦିଷ୍ଟୁ ପ୍ରବର୍ଷଣାନ୍ତେଷ୍ଟୁ ନାଞ୍ଚିତ୍‌କର୍ମବ୍ୟାପାରଂ ପରାମୃଶତ୍ୟେବଂ ବ୍ରୀହ୍ୟାଦିଜନ୍ମନ୍ୟପି, ତସ୍ମାନ୍ନାସ୍ତ୍ୟତ୍ର ସୁଖ ଦୁଃଖ ଭାକ୍‌ତ୍ୱମନୁଶୟିନାମ୍ । ଯତ୍ର ତୁ ସୁଖଦୁଃଖଭାକ୍‌ତ୍ୱମଭିପ୍ରେତି, ପରାମୃଶତି ତତ୍ରକର୍ମବ୍ୟାପରମ୍-ରମଣୀୟଚରଣାଃ କପୂୟଚରଣା ଇତି ଚ ।

(ଗ) ଅପି ଚ ମୁଖ୍ୟେଽନୁଶୟିନାଂ ବ୍ରୀହ୍ୟାଦିଜନ୍ମନି ବ୍ରୀହ୍ୟାଦିଷ୍ଟୁଲୂୟମାନେଷ୍ଟୁ କଣ୍ଡ୍ୟମାନେଷ୍ଟୁ ପଚ୍ୟମାନେଷ୍ଟୁ ଭକ୍ଷ୍ୟମାଣେଷ୍ଟୁ ଚ ତଦଭିମାନିନୋନୁଶୟିନଃ ପ୍ରବସେୟୁଃ । ଯୋହି ଜୀବୋ ଯଚ୍ଛରୀରମଭିମନ୍ୟତେ ସ ତସ୍ମିନପୀଡ୍ୟମାନେ ପ୍ରବସତୀତି ପ୍ରସିଦ୍ଧମ୍ । ତତ୍ର ବ୍ରୀହ୍ୟାଦ୍ରେତଃସିରାଭାବୋଽନୁଶୟିନାଂ ନାଭିଲପ୍ୟତେ । ଅତଃ ସଂସର୍ଗମାତ୍ରମନୁଶୟି ନାମବ୍ୟାଧିଷ୍ଠିତେଷ୍ଟୁ ବ୍ରୀହ୍ୟାଦିଷ୍ଟୁ ଭବତି ।

(ଘ) ଏତେନ ଜନେର୍ମୁଖ୍ୟାର୍ଥତ୍ୱଂ ପ୍ରତିବ୍ରୂୟାଦୁପଭୋଗସ୍ଥାନତ୍ୱଂ ଚ ନ ଚ ବୟମୁପଭୋଗ ସ୍ଥାନତ୍ୱଂ ସ୍ଥାବରଭାବସ୍ୟାବଜାନୀମହେ । ଭବତ୍ୱନ୍ୟେଷ୍ୟାଂ-ପଭୋଗସ୍ଥାମମ୍ । ଚନ୍ଦ୍ର ମସସ୍ତ୍ୱବରୋହନ୍ତୋଽନୁଶୟିନୋ ନ ସ୍ଥାବରଭାବମୁପଭୁଞ୍ଜତ ଇତ୍ୟାଚକ୍ଷ୍ମହେ ।

**(୩) ଭାଷାଂତର-** (କ) ସିଦ୍ଧାନ୍ତ-(କ) ଏପରି ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁ-ଅନୁଶୟୀ ଜୀବ ଅନ୍ୟ ଜୀବ ଦ୍ୱାରା ଅଧିଷ୍ଠିତ ବ୍ରୀହି ଆଦିରେ ସଂସର୍ଗ ମାତ୍ର ପାଆନ୍ତି କିନ୍ତୁ ସେମାନଙ୍କର ସୁଖ ଦୁଃଖର ଭାଗୀ ହୁଅନ୍ତି ନାହିଁ । ପୂର୍ବପରି ଅର୍ଥାତ୍ ଯେପରି ଆକାଶାଦି ଭାବ ହୁଅନ୍ତି । ଯେପରି ଅନୁଶୟୀ ଜୀବଗୁଡ଼ିକର ବାୟୁ ଧୂମ୍ର ପ୍ରଭୃତି ଭାବ ସେମାନଙ୍କ



ସହିତ କେବଳ ସଂସର୍ଗମାତ୍ର ଅଟନ୍ତି, ସେହିପରି ବ୍ରୀହି ପ୍ରଭୃତିଭାବ ମଧ୍ୟ ସ୍ଥାବର ଜାତି ସହିତ ସଂସର୍ଗ ମାତ୍ର ହୁଅନ୍ତି ।

(ଖ) ଏହା କିପରି ହୁଏ ? କାରଣ-ତାହାର ସଦୃଶ ଅନ୍ୟର କଥନ ଅଛି । ଅଭିଳାପର ସେମାନଙ୍କର ସହିତ ଭାବ କରାଯାଇଅଛି କି ? ହଁ, କର୍ମବ୍ୟାପାର ବ୍ୟତିତ ଏହା କୁହାଯାଇଅଛି । ଯେପରି ଆକାଶାଦିଠାରୁ ଆରମ୍ଭ କରି ବୃଷ୍ଟି ପର୍ଯ୍ୟନ୍ତ ଶ୍ରୁତି କୌଣସି କର୍ମ ବ୍ୟାପାରର ପରାମର୍ଶ କରେ ନାହିଁ, ସେପରି ବ୍ରୀହି ପ୍ରଭୃତି ଜନ୍ମରେ ମଧ୍ୟ ପରାମର୍ଶ ହୁଏ ନାହିଁ । ଏଠାରେ କିନ୍ତୁ ସୁଖ ଓ ଦୁଃଖ ଭାଗୀତ୍ୱ ରୂପ ଶ୍ରୁତି ହିଁ ଅଭିପ୍ରେତ । ସେଠାରେ ରମଣୀୟଚରଣାଃ କପୁୟଚରଣାଃ-ଏହି ପ୍ରକାର କର୍ମବ୍ୟାପାରର ପରାମର୍ଶ ଶ୍ରୁତି କରେ ।

(ଗ) ଅନୁଶୟୀ ଜୀବର ବ୍ରୀହି ପ୍ରଭୃତି ଜନ୍ମ ମୁଖ୍ୟ ହେଲେ ମଧ୍ୟ ସେଗୁଡ଼ିକୁ ବାଛିଲେ, କାଟିଲେ, ସିଝାଇଲେ ଓ ଖାଇସାରିଲା ପରେ ଅଭିମାନୀ ଅନୁଶୟୀ ଜୀବର ପ୍ରବାସ ହୁଏ, କାରଣ-ଜୀବ ଯେଉଁ ଶରୀରର ଅଭିମାନୀ ହୁଏ, ସେ ସେହି ଶରୀରକୁ ପୀଡ଼ା ଦେଇ ପ୍ରବାସ କରେ ବୋଲି ପ୍ରସିଦ୍ଧି ଅଛି ଏବଂ ସେଠାରେ ଅନୁଶୟୀଗୁଡ଼ିକର ବ୍ରୀହି ପ୍ରଭୃତି ଭାବରୁ ରେତର ସିଞ୍ଚନଭାବ କୁହାଯିବା ଉଚିତ ନୁହେଁ । ତେଣୁ ଅନୁଶୟୀ ଜୀବର ଅନ୍ୟ ଜୀବ ଦ୍ୱାରା ଅଧିଷ୍ଠିତ ହୋଇ ବ୍ରୀହିରେ ସଂସର୍ଗ ମାତ୍ର ହୁଏ ।

(ଘ) ତେଣୁ 'ଜନ୍' ଧାତୁର ମୁଖ୍ୟାର୍ଥତ୍ୱ ଓ ସ୍ଥାବର ଭାବର ଉପଭୋଗ ସ୍ଥାନତ୍ୱର ନିରାକରଣ କରିବା ଉଚିତ । ସ୍ଥାବର ଭାବର ଉପଭୋଗ ସ୍ଥାନତ୍ୱକୁ ଆମ୍ଭେ ଅବଜ୍ଞାଂ କରୁନାହୁଁ । କିନ୍ତୁ ଅପୁଣ୍ୟର ସାମର୍ଥ୍ୟ ବଳରେ ସ୍ଥାବର ଭାବକୁ ପାଇ ଅନ୍ୟ ଜୀବ ଉପଭୋଗର ସ୍ଥାନ ହେଉ । କିନ୍ତୁ ଚନ୍ଦ୍ରଲୋକରୁ ଅବରୋହଣ କରି ଅନୁଶୟୀ ଜୀବ ସ୍ଥାବର ଭାବର ଉପଭୋଗ କରେ ନାହିଁ ବୋଲି ଆମ୍ଭେ କହୁଁ ।

## अशुद्धमित चेन्न शब्दात् ॥ २५ ॥

## (୧) ଅଶୁଦ୍ଧମିତ ଚେନ୍ନ ଶବ୍ଦାତ୍ ॥୩-୧-୨୫॥

ଅଗ୍ନିଷ୍ଟୋମାଦି ଯାଗ ପଶୁହିଂସାଦିଯାଗଦ୍ୱାରା, ଅଶୁଦ୍ଧମ୍=ଅଶୁଦ୍ଧ ଅଟେ । ଇତି ଚେନ୍ନ = ଯଦି ଏହା କହ, ତେବେ ମଧ୍ୟ ଏହା ଠିକ୍ ନୁହେଁ । ଶବ୍ଦାତ୍ - କାରଣ- ସେହି ଶ୍ରୁତି ପ୍ରମାଣକ ନୁହେଁ ।

(୨) ମୂଳ-(କ) ଯତ୍ ପୁନରୁକ୍ତମ୍-ପଶୁହିଂସାଦି ଯୋଗାଦଶୁଦ୍ଧମାଧ୍ୱରିକଂ କର୍ମ, ତସ୍ୟାନିଷ୍ଟମପି ଫଳମବକଳ୍ପତ ଇତ୍ୟତୋ ମୁଖ୍ୟମେବାନୁଶୟିନାଂ ବ୍ରୀହ୍ୟାଦିଜାନ୍ମସ୍ତୁ; ତତ୍ର ଗୌଣୀ କଳ୍ପନାଽନର୍ଥିକେତି ତତ୍ପରିହ୍ରୀୟତେ-ନ, ଶାସ୍ତ୍ରହେତୁତ୍ୱାଦ ଧର୍ମାଧର୍ମବିଜ୍ଞାନସ୍ୟ ।

(ଖ) ଅୟଂ ଧର୍ମୋଽୟମଧର୍ମ ଇତି ଶାସ୍ତ୍ରମେବ ବିଜ୍ଞାନେ କାରଣମ୍, ଅତିନ୍ଦ୍ରିୟତ୍ୱାତ୍ତୟୋଃ, ଅନିୟତ ଦେଶକାଳନିମିତ୍ତତ୍ୱାଚ୍ଚ-ଯସ୍ମିନ୍ ଦେଶେ କାଳେ ନିମିତ୍ତେ ଚ ଯୋ ଧର୍ମୋଽନୁଷ୍ଠୀୟତେ, ସ ଏବ ଦେଶକାଳନିମିତ୍ତାନ୍ତରେ ଷ୍ୱଧର୍ମୋ ଭବତି, ତେନ ଶାସ୍ତ୍ରାଦୃତେ ଧର୍ମାଧର୍ମବିଷୟଂ ବିଜ୍ଞାନଂ ନ କସ୍ୟଚିଦସ୍ତି ।

(ଗ) ଶାସ୍ତ୍ରାଚ୍ଚ ହିଂସାନୁଗ୍ରହାଦ୍ୟାତ୍ମକୋ ଜ୍ୟୋତିଷ୍ଟୋମୋ ଧର୍ମ ଇତ୍ୟବଧାରିତଃ, ସ କଥମଶୁଦ୍ଧ ଇତି ଶକ୍ୟତେ ବକ୍ତୁମ୍ ? ନନୁ 'ନ ହିଂସ୍ୟାତ୍ ସର୍ବା ଭୂତାନି' ଇତି ଶାସ୍ତ୍ରମେବ ଭୂତବିଷୟାଂ ହିଂସାମଧର୍ମ ଇତ୍ୟବଗମୟତି । ବାଢମ୍, ଉପସର୍ଗସ୍ତୁ ସଃ । ଅପବାଦଃ- 'ଅଗ୍ନୀଷୋମୀୟଂ ପଶୁମାଲଭେତ' (ଯଜୁ) ଇତି । ଭୂତସର୍ଗାପାବାଦୟୋଶ୍ଚ ବ୍ୟବସ୍ଥିତ ବିଷୟତ୍ୱମ୍ । ତସ୍ମିନ୍‌ବିଶୁଦ୍ଧଂ କର୍ମ ବୈଦିକମ୍, ଶିଷ୍ଟୈରନୁଷ୍ଠୀୟମାନତ୍ୱାଦନିନ୍ଦ୍ୟମାନତ୍ୱାଚ୍ଚ ।

(ଘ) ତେନ ନ ତସ୍ୟ ପ୍ରତିରୂପଂ ଫଳଂ ଜାତିସ୍ଥାବରତ୍ୱମ୍ । ନ ଚ ଶ୍ୱାଦିଜନ୍ମବଦପି ବ୍ରୀହ୍ୟାଦିଜନ୍ମ ଭବିତୁମର୍ହତି । ତଦ୍ଧି କପୂୟଚରଣାନଧିକୃତ୍ୟୋଚ୍ୟତେ, ନୈବମିହ ବୈଶେଷିକଃ କଶ୍ଚିଦଧିକାରୋଽସ୍ତି । ଅତଶ୍ଚନ୍ଦ୍ରମଣ୍ଡଳସ୍ଖଳିତାନାମତିଶୟିନାଂ ବ୍ରୀହ୍ୟାହିସଂ-ଶ୍ଳେଷମାତ୍ରଂମ୍ ତଦ୍‌ଭାବ ଇତ୍ୟୁପଚର୍ଯ୍ୟତେ ।

(୨) ଭାଷାଂତର- (କ) ପଶୁହିଂସାପ୍ରଭୃତି ହେତୁଗୁଡ଼ିକ ଯଜ୍ଞକର୍ମ ଅଶୁଦ୍ଧ ଅଟେ, ଏହାର ଅନିଷ୍ଟଫଳ ମଧ୍ୟ ହୋଇପାରେ, ତେଣୁ ଅନୁଶୟୀଜୀବର ବ୍ରୀହ୍ୟାଦିଜନ୍ମ ମୁଖ୍ୟ ହୋଇପାରେ, କିନ୍ତୁ ସେଠାରେ ଗୌଣାଦି କଳ୍ପନା ଅନର୍ଥକ ହେବ ବୋଲି ଯାହା କୁହାଯାଇଅଛି; ତାହାର ପରିହାର କରାଯାଏ- ଏହା ଅନର୍ଥକ ନୁହେଁ, କାରଣ-ଧର୍ମ ଓ ଅଧର୍ମବିଜ୍ଞାନ ଶାସ୍ତ୍ରହେତୁକ ଅଟେ ।

(ଖ) ଏହା ଧର୍ମ, ଏହା ଅଧର୍ମ - ଏହି ବିଜ୍ଞାନରେ ଶାସ୍ତ୍ର ହିଁ କାରଣ ଅଟେ; କାରଣ- ସେମାନେ ନୁହେଁ ହିଁ ଅତୀନ୍ଦ୍ରିୟ ଏବଂ ସେମାନଙ୍କର ଦେଶ, କାଳ ଓ ନିମିତ୍ତ ଅନିୟମିତ ଅଟନ୍ତି । ଯେଉଁ ଦେଶ, କାଳ ଓ ନିମିତ୍ତରେ ଯେଉଁ ଧର୍ମ ପ୍ରତିଷ୍ଠା କରାଯାଏ, ସେହି ଅନ୍ୟ ଦେଶ, କାଳ ଓ ନିମିତ୍ତରେ ଅଧର୍ମ ହୁଏ । ତେଣୁ ଶାସ୍ତ୍ରଜ୍ଞାନ ବିନା ଧର୍ମାଧର୍ମବିଷୟ ଜ୍ଞାନ କାହାର ହେଲେ ହୁଏ ନାହିଁ ।

(ଗ) ହିଂସା ଅନୁଗ୍ରହାଦିରୂପ ଜ୍ୟୋତିଷ୍ଟୋମ ଧର୍ମରୂପରେ ଶାସ୍ତ୍ରଦ୍ୱାରା ନିଶ୍ଚିତ ହୁଏ ବୋଲି କୁହାଯାଇଅଛି । ତେଣୁ ସେ ଅଶୁଦ୍ଧ ବୋଲି କିପରି କୁହାଯାଇଅଛି ? ପରନ୍ତୁ 'ନ



ହିଂସ୍ୟାତ୍ ସର୍ବା ଭୂତାନି' ଏହି ଶାସ୍ତ୍ର ହିଁ ଭୂତବିଷୟକ ହିଂସା ଅଧର୍ମ ବୋଲି ଜଣାଏ । କିନ୍ତୁ ଏହା ଅଯୁକ୍ତ । କାରଣ-ଏହା ଉତ୍ସର୍ଗ । 'ଅଗ୍ନୀଷୋମୀୟଂ ପଶୁମାଲଭେତ' ହେଉଛି ଏହା ଅପବାଦ । ଉତ୍ସର୍ଗ ଓ ଅପବାଦବିଷୟକ ଭିନ୍ନଭିନ୍ନ ଅଟେ । (ଏହା ଶିଷ୍ଟପୁରୁଷ ତାହା ଅନୁଷ୍ଠାନ କରନ୍ତି, ଓ ସେ ନିନ୍ଦାର ପାତ୍ର ନୁହେଁ) ତେଣୁ ବୈଦିକ କର୍ମ ବିଶୁଦ୍ଧ ଅଟେ ।

(ଘ) ତଦ୍ଦ୍ୱାରା ସ୍ଥାବର ରୂପର ପ୍ରତିକୂଳଜନ୍ମ ତାହାର ଫଳ ନୁହେଁ । ଶ୍ୱାନାଦି ଜନ୍ମପରି ମଧ୍ୟ ବ୍ରୀହ୍ୟାଦିଜନ୍ମ ହୁଏ ନାହିଁ, କାରଣ-ଯେପରି ସେହି ଶ୍ୱାନାଦିଜନ୍ମ କପୂୟଚରଣକୁ ଅଧିକାର କରିଛି, ସେପରି ଏହି ବ୍ରୀହ୍ୟାଦିରୂପଜନ୍ମରେ କୌଣସି ବିଶେଷ ଅଧିକାର ନାହିଁ । ତେଣୁ ଚନ୍ଦ୍ରମଣ୍ଡଳରେ ସ୍ଖଳିତ ଅନୁଶୟୀଜୀବର ବ୍ରୀହ୍ୟାଦିଭାବ ସଂସର୍ଗ ମାତ୍ର ବୋଲି ଉପଚାର କରାଯାଏ ।

## रेतःसिग्योगोऽथ ॥ २६ ॥

## (୧) ରେତଃ ସିଗ୍ ଯୋଗୋଽଥ ॥ ୩-୧-୨୬ ॥

ରେତଃ ସିଗ୍ ଯୋଗୋଽଥ=ବ୍ରୀହ୍ୟାଦିଭାବ ପରେ ଅନୁଶୟୀ ଜୀବର ରେତଃସିଗ୍ ଭାବ ହୁଏ । କାରଣ-ଯୋ ରେତଃ ସିଞ୍ଚତି' ଇତ୍ୟାଦିଶ୍ରୁତିରେ ଏହା କୁହାଯାଉଅଛି ।

ମୂଳ-(କ) ଇତଶ୍ଚ ବ୍ରୀହ୍ୟାଦିସଂଶ୍ଳେଷମାତ୍ରଂ ତଦ୍‌ଭାବୋ ଯତ୍ କାରଣଂ ବ୍ରୀହ୍ୟାଦିଭାବସ୍ୟା ନନ୍ତରମନୁଶୟିନାଂ ରେତଃସିଗ୍‌ଭାବି ଆମ୍ନାୟତେ- 'ଯୋ ଯୋ ହ୍ୟନ୍ନମତ୍ତି ଯୋ ରତଃ ସିଞ୍ଚତି ତଦ୍‌ଭୂୟ ଏବ ଭବତି' (ଛା ୫-୧୦-୬) ଇତି । ନ ଚାତ୍ର ରେତଃସିଗ୍‌ଭାବଃ ସମ୍ଭବତି । ଚିରଜାତୋ ହି ପ୍ରାପ୍ତଯୌବନୋ ରେତଃସିଗ୍ ଭବତି ।

(ଖ) କଥମିବାନୁପଚରିତଂ ତଦ୍‌ଭାବମଦ୍ୟମାନାନ୍ନାନୁଗତୋଽନୁଶୟୀ ପ୍ରତିପଦ୍ୟତେ ? ତତ୍ର ତାବଦବଶ୍ୟଂ ରେତଃସିଗ୍ ଯୋଗ ଏବ ରେତଃସିଗ୍‌ଭାବୋଽଭ୍ୟୁପଗନ୍ତବ୍ୟଃ । ତଦ୍‌ବଦ୍ ବ୍ରୀହ୍ୟାଦିଭାବୋଽପି ବ୍ରୀହ୍ୟାଦିଯୋଗ ଏବେତ୍ୟବିରୋଧଃ ।

**(୨)** ଭାଷାଂତର-(କ) ଏହି ହେତୁ ଦ୍ୱାରା ବ୍ରୀହ୍ୟାଦିଭାବ ବ୍ରୀହ୍ୟାଦିସଂଶ୍ଳେଷ (ସଂସର୍ଗ) ମାତ୍ର ହୁଏ । କାରଣ- 'ଯୋ ଯୋ' (ଯାହ ଯାହା ଅନୁଶୟୀ ସମ୍ବନ୍ଧିତ, ସେହି ଅନ୍ନ ଭକ୍ଷଣ କରେ, ଯାହା ଯାହା ବୀର୍ଯ୍ୟ ସେଚନ (ଆଧାନ) କରେ, ରୂପହି ସେ ଅନୁଶୟୀଜୀବ ହୁଏ) ଏହି ପ୍ରକାର ବ୍ରୀହ୍ୟାଦିଭାବର ପରେ ଅନୁଶୟୀଭାବର ରେତଃସିଗ୍‌ଭାବ ଶ୍ରୁତି କହେ । ଏଠାରେ ରେତଃସିଗ୍‌ଭାବ ମୁଖ୍ୟ ହୁଏ ନାହିଁ, କାରଣ-ଚିରକାଳରୁ ଉତ୍ପନ୍ନ ଓ ପ୍ରାପ୍ତଯୌବନ ଲୋକ ରେତଃସିଗ୍ (ବୀର୍ଯ୍ୟର ଆଧାନ କର୍ତ୍ତା) ହୁଏ ।

(ଖ) ଖିଆଯାଉଥିବା ଅନ୍ନର ସହିତ ଅନୁଗତ ହୋଇ ଅନୁଶୟୀ ଜୀବ ଆଧାନ କ୍ରିୟା ଓ କର୍ତ୍ତାର ଭାବ ଉପଚରିତ ବିନା କିପରି ହୁଏ ? ତେଣୁ ଏଠାରେ ରେତଃ ସେଚନ କର୍ତ୍ତା ସହିତ ସମ୍ବନ୍ଧ ହୋଇ ରେତଃସିଗ୍‌ଭାବ ହୁଏ ବୋଲି ଅବଶ୍ୟ ସ୍ୱୀକାର କରିବା ଉଚିତ୍ । ତେଣୁ ବ୍ରୀହ୍ୟାଦି ଭାବ ମଧ୍ୟ ବ୍ରୀହ୍ୟାଦି ସହିତ ସମ୍ବନ୍ଧ ହେତୁ ଏହା ବିରୋଧ ନୁହେଁ ।

## तृतीयाध्याये द्वितीयः पादः ॥ २० ॥

## (୧) ଯୋନେଃ ଶରୀରମ୍ ।।୩୧-୨୭ ।।

ଯୋନେଃ = ଯୋନିରେ ବୀର୍ଯ୍ୟ ସେଚନ ପରେ ସେହି ଯୋନିରୁ ସୁଖଦୁଃଖ ଫଳୋପଭୋଗପାଇଁ, ଶରୀରମ୍ = ଯୋଗ୍ୟଶରୀର ଉତ୍ପନ୍ନ ହୁଏ, କାରଣ - 'ରମଣୀୟ-ଚରଣାଃ' ଇତ୍ୟାଦି ଶାସ୍ତ୍ର କହେ ।

ମୂଳ - ଅତଃ ରେତଃସିଗ୍‌ଭାବସ୍ୟାନନ୍ତରଂ ଯୋନୌ ବିଷିକ୍ତେ ରେତସି ଯୋନେ ଧିଶରୀରମନୁଶୟିନାମନୁଶୟଫଳୋପଭୋଗାୟ ଜାୟତ ଇତ୍ୟାହ ଶାସ୍ତ୍ରମ୍- 'ତଦ୍ୟଇହ ରମଣୀୟ ଚରଣା' (ଛା ୫-୧୦ -୭) ଇତ୍ୟାଦି ।

(ଖ) ତସ୍ମାଦପ୍ୟବଗମ୍ୟତେ ନାବରୋହେ ବ୍ରୀହ୍ୟାଦିଭାବାବସରେ ତଚ୍ଛରୀରମେବ ସୁଖଦୁଃଖାନ୍ୱିତଂ ଭବତୀତି । ତସ୍ମାଦ୍ ବ୍ରୀହ୍ୟାଦିସଂଶ୍ଳେଷ ମାତ୍ର ମନୁଶୟିନାଂ ତଜ୍ଜନ୍ମେତି ସିଦ୍ଧିମ୍ ।

(୨) ଭାଷାଂତର - (କ) ରେତଃସେଚତନ କର୍ତ୍ତାର ସହ ସମ୍ବନ୍ଧ ହେଲାପରେ ଯୋନିରେ ବୀର୍ଯ୍ୟପ୍ରକ୍ଷେପ ହେଲାପରେ ଅନୁଶୟିଜୀବର ଅନୁଶୟ - କର୍ମଫଳର ଭୋଗପାଇଁ ଯୋନିର ଆଶ୍ରିତ (ଶରୀର) ଉତ୍ପନ୍ନ ହୁଏ । ତେଣୁ 'ତଦ୍ୟ ଇହ' (ସେହି ଅନୁଶୟୀ ଜୀବ ଠାରେ ଯାହା ପୁଣ୍ୟଶାଳୀ) ଇତ୍ୟାଦି ଶ୍ରୁତି କହେ ।

(ଖ) ତେଣୁ ଏଠାରେ ଅବରୋହ ହେଲାପରେ ବ୍ରୀହ୍ୟାଦିଭାବର ଅବସରରେ ସେହି ଅନୁଶୟୀଜୀବର ଶରୀର ସୁଖ ଦୁଃଖରେ ଅନ୍ୱିତ ହୁଏ ନାହିଁ । ତେଣୁ ଅନୁଶୟୀ ଜୀବର ବ୍ରୀହି ଇତ୍ୟାଦି ଜନ୍ମବ୍ରୀହ୍ୟାଦି ସଂଶ୍ଳେଷମାତ୍ର ଅଟେ ବୋଲି ସିଦ୍ଧ ହୁଏ ।

**ଇତି ତୃତୀୟ ଅଧ୍ୟାୟ ପ୍ରଥମ ପାଦ ସମାପ୍ତଃ**



# ତୃତୀୟ ଅଧ୍ୟାୟ ଦ୍ୱିତୀୟ ପାଦ

## १ संध्याधिकरणम् । सू० १-६

## ସନ୍ଧ୍ୟାଧି କରଣ -୧ ।।୩-୨-୧ ।।

## संध्ये सृष्टिराह हि ॥ १ ॥

## (୧) ସନ୍ଧ୍ୟେ ସୃଷ୍ଟିରାହ ହି ॥ ୩-୨-୧ ॥

ସନ୍ଧ୍ୟେ = ସ୍ୱପ୍ନାବସ୍ଥାରେ ସୃଷ୍ଟି = ସୃଷ୍ଟି ବ୍ୟାବହାରିକ ସତ୍ୟ ଅଟେ, ହି = କାରଣ ଆହ = 'ଅଥରଥାନ୍' ବୋଲି ଶ୍ରୁତି କହେ ।

ମୂଳ - (କ) ଅତିକ୍ରାନ୍ତେ ପାଦେ ପଞ୍ଚାଗ୍ନି ବିଦ୍ୟାମୁଦାହୃତ୍ୟ ଜୀବସ୍ୟ ସଂସାରଗତିପ୍ରଭେଦଃ ପ୍ରପଞ୍ଚିତ । ଇଦାନୀଂତୁ ତସ୍ୟୈବାବସ୍ଥାଭେଦଃ ପ୍ରପଞ୍ଚ୍ୟତେ । ଇଦମାମନନ୍ତି 'ସ ତନ୍ତ୍ର ପ୍ରସ୍ୱପିତି (ବୃହ ୪-୩-୯) ଇତ୍ୟୁପକ୍ରମ୍ୟ' ନତନ୍ତ୍ର ରଥା ନ ରଥଯୋଗା ନ ପନ୍ଥାନୋ ଭବନ୍ତ୍ୟଥ ରଥାନ୍‌ରଥଯୋନ୍ ପଥଃ ସୃଜତେ' ବୃହ ୪-୩-୧୯ ଇତ୍ୟାଦି ।

(ଖ) ତନ୍ତ୍ର ସଂଶୟଃକିଂ ପ୍ରବୋଧ ଇବ ସ୍ୱପ୍ନେଽପି ପାରମାର୍ଥିକୀ ସୃଷ୍ଟିହୋସ୍ୱିନ୍ ମାୟାମୟୀତି ? ତନ୍ତ୍ର ତାବତ୍ ପ୍ରତିପଦ୍ୟତେ-ସନ୍ଧ୍ୟେ ତଥ୍ୟ ରୂପା ସୃଷ୍ଟିରିତି । ସନ୍ଧ୍ୟମିତି ସ୍ୱପ୍ନସ୍ଥାନମାଚଷ୍ଟେ, ବେଦେ ପ୍ରତିଯୋଗଦର୍ଶନାତ୍, 'ସଂଧ୍ୟଂ ତୃତୀୟଂ ସ୍ୱପ୍ନସ୍ଥାନମ୍' (ବୃହ ୪-୩-୯) ଇତି । ଦ୍ୱୟୋର୍ଲୋକସ୍ଥାନୟୋ ପ୍ରବୋଧସଂସ୍ଥାସାଦସ୍ଥାନୟୋର୍ବା ସଂଧୌ ଭବତୀତି ସଂଧ୍ୟମ୍ ।

(ଗ) ତସ୍ମିନ୍ ସଂଧ୍ୟେ ସ୍ଥାନେ ତଥ୍ୟରୂପୈବ ସୃଷ୍ଟି ଭବିତୁମର୍ହିତ । କୁତଃ ? ଯତଃ ପ୍ରୟାଣଭୂତା ଶ୍ରୁତିରେବମାହ 'ଅଥ ରଥାନ୍ ରଥଯୋଗାନ୍ ପଥଃ ସୃଜତେ' (ବୃହ ୪-୩-୧୦) ଇତ୍ୟାଦି । 'ସହି କର୍ତ୍ତା 'ଇତି ଚୋପସଂହାରାଦେବମେବାବଗମ୍ୟତେ ।

(୨) ଭାଷାଂତର - (କ) ପୂର୍ବାପାଦରେ ପାଞ୍ଚାଗ୍ନିବିଦ୍ୟାର ଉଦାହରଣ ଦେଇ ଜୀବର ଗତିସଂସାରପ୍ରଭେଦ ବିସ୍ତୃତରୂପରେ କୁହାଯାଇଛି, ବର୍ତ୍ତମାନ କିନ୍ତୁ ତାର ଭିନ୍ନ ଭିନ୍ନ ଅବସ୍ଥାଗୁଡ଼ିକ ବିସ୍ତୃତରୂପରେ କୁହାଯିବ । 'ସ୍ୱତନ୍ତ୍ର' (ସେ ଯେଉଁଠାରେ ଶୟନ କରେ) ଏହିପ୍ରକାର ଉପକ୍ରମ କରି 'ନ ତନ୍ତ୍ର ରଥା' (ସେହି ଅବସ୍ଥାରେ ରଥ ରହେ ନାହିଁ, ରଥରେ ଯୋଗ ହୋଇଥିବା ଅଶ୍ୱ ମଧ୍ୟ ରହେ ନାହିଁ, ମାର୍ଗ ମଧ୍ୟ ରହେ ନାହିଁ, ମାର୍ଗ ମଧ୍ୟ ରହେ ନାହିଁ । ପରନ୍ତୁ ସେ ରଥ, ରଥରେ ଯୋଗ ହୋଇଥିବା ଅଶ୍ୱଗୁଡ଼ିକୁ ନିର୍ମାଣ କରେ ।) ଇତ୍ୟାଦି ଶ୍ରୁତି କହେ ।

(ଖ) ସେଠାରେ ସଂଶୟ ଯେ - ଜାଗ୍ରତପରି ସ୍ୱପ୍ନରେ ମଧ୍ୟ ପାରମାର୍ଥିକ (ବା ବ୍ୟବହାରିକ) ସୃଷ୍ଟି କି ମାୟାମୟୀ ସୃଷ୍ଟି ହୁଏ ? ପୂର୍ବପକ୍ଷ - ସ୍ୱପ୍ନାବସ୍ଥାରେ ତଥ୍ୟରୂପ ସୃଷ୍ଟି ହୁଏ ବୋଲି ପ୍ରତିପାଦନ କରାଯାଉଛି । ସନ୍ଧ୍ୟେ ଅର୍ଥାତ୍ ସ୍ୱପ୍ନାବସ୍ଥା । କାରଣ - ସଂଧ୍ୟ ତୃତୀୟ' (ତୃତୀୟ ସ୍ୱପ୍ନ ସ୍ଥାନ ହି ସଂନ୍ଧ୍ୟ)ଏହିପ୍ରକାର ବେଦରେ ପ୍ରୟୋଗ ଅଛି । ଦୁଇ ଲୋକର ସ୍ଥାନ ଅଥବା ପ୍ରବୋଧ ଓ ସୁଷୁପ୍ତି ଅବସ୍ଥାର ସ୍ଥାନକୁ ମଧ୍ୟ ସନ୍ଧ୍ୟ କୁହାଯାଏ ।

(ଗ) ସେହି ସନ୍ଧ୍ୟ ଅବସ୍ଥାରେ ସତ୍ୟରୂପର ସୃଷ୍ଟି ହୁଏ । କିପରି ? କାରଣ - 'ଅଥ ରଥାନ୍'(ସେହି ରଥ, ରଥରେ ଯୋଗ ହୋଇଥିବା ଅଶ୍ୱ ଓ ରଥମାର୍ଗକୁ ସୃଷ୍ଟି କରେ ।) ଇତ୍ୟାଦି ପ୍ରମାଣଭୂତ ଶ୍ରୁତି ଅଛି । କାରଣ - 'ସହି କର୍ତ୍ତା ' ଏହିପ୍ରକାରର ଉପସଂହାରେ ଏହା ହିଁ ଅବଗତ ହୁଏ ।

## निर्मातारं चैके पुत्रादयश्च ॥ २ ॥

## (୧) ନିର୍ମାତାଂର ଚୈକେ ପୁତ୍ରାଦୟଶ୍ଚ ।।୩-୨-୨ ।।

ଚ = ଏବଂ, ଏକେ = କେତେକ ସମ୍ପ୍ରଦାୟ ସ୍ୱପ୍ନରେ, ନିର୍ମାତାରଂ = କାମର ନିର୍ମାତା ପରମାତ୍ମା ବୋଲି କହନ୍ତି । ଏଠାରେ, ପୁତ୍ରାଦୟଃ = ପୁତ୍ରଗଣ କାମଶବ୍ଦ ଦ୍ୱାରା ଅଭିପ୍ରେତ ହୁଅନ୍ତି, କାରଣ - ଶ୍ରୁତିରେ କାମଶବ୍ଦରୁ ଏହା କୁହାଯାଏ ।

ମୂଳ - (କ) ଅପି ଚୈକେ ଶାଖିନୋଽସ୍ମିନ୍ନେବ ସନ୍ଧ୍ୟେ ସ୍ଥାନେ କାମାନାଂ ନିର୍ମାତାରମାସ୍ନାନନ୍ତି - 'ଯ ଏଷ ସୁପ୍ତେଷୁ ଜାଗର୍ତ୍ତି କାମଂକାମଂ ପୁରୁଷୋ ନିର୍ମିମାଣଃ' (କଂ - ୫-୮) ଇତି । ପୁତ୍ରାଦୟଶ୍ଚ ତତ୍ର କାମା ଅଭିପ୍ରେୟନ୍ତେ - କାମ୍ୟନ୍ତ ଇତି ।

(ଖ) ନନୁ କାମଶବ୍ଦେନେଚ୍ଛାବିଶେଷା ଏବୋ ଚ୍ୟେରନ୍ ନ, 'ଶତାୟୁଷଃ ପୁତ୍ରପୌତ୍ରାନ୍ ବୃଣୀଷ୍ୱ'(କ ୧-୩୩)ଇତି । ପ୍ରକୃତ୍ୟାନ୍ତେ କାମାନାଂ ତ୍ୱା କାମଭାଜଂ କରୋମି' (କ୧-୨୪) ଇତି । ପ୍ରକୃତେଷ୍ଟୁ ତନ୍ତ୍ର ତନ୍ତ୍ର ପୁତ୍ରାଦିଷୁ କାମଶବ୍ଦସ୍ୟ ପ୍ରଯୁକ୍ତତ୍ୱାତ୍ ।

(ଗ) ପ୍ରାଜ୍ଞଂ ଚୈନଂ ନିର୍ମାତାରଂ ପ୍ରକରଣବାକ୍ୟଶେଷାଭ୍ୟାଂ ପ୍ରତୀମଃ । ପ୍ରାଜ୍ଞସ୍ୟ ହୀଦଂ ପ୍ରକରଣଂ 'ଅନ୍ୟନ୍ତ୍ର ଧର୍ମାଦନ୍ୟତ୍ରଧର୍ମାତି' (କ ୨-୨୪) ଇତ୍ୟାଦି ତଦ୍‌ବିଷୟ ଏବ ଚ ବାକ୍ୟଶେଷୋଽପି 'ତଦେବ ଶୁକ୍ରଂ ତଦ୍‌ବ୍ରହ୍ମ ତଦେବା ମୃତମୁଚ୍ୟତେ ।' ତସ୍ମିଁଲ୍ଲୋକାଃ ଶ୍ରିତାଃ ସର୍ବେ ତଦୁ ନାତ୍ୟେତି କଶ୍ଚନ (୫-୮) ଇତି ।

(ଘ) ପ୍ରାଜ୍ଞକର୍ତ୍ତୃକା ଚସୃଷ୍ଟିସ୍ତଥାରୂପା ସମଧିଗତା ଜାଗରିତାଶ୍ରୟା, ତଥା ସ୍ୱପ୍ନାଶ୍ରୟାଽପି ସୃଷ୍ଟି ର୍ଭବିତୁମର୍ହତି । ତଥା ଚ ଶ୍ରୁତି - 'ଅଥ ଖଲ୍ୱାହୁର୍ଜାଗରିତଦେଶ ଏବା ସୌଷ ଇତି ଯାନି ହ୍ୟେବ ଜାଗ୍ରତ୍ ପଶ୍ୟତି ତାନି ସୁପ୍ତଃ' (ବୃହ - ୪-୩-୧୪) ଇତି ସ୍ୱପ୍ନଜାଗରିତୟୋଃ ସମାନନ୍ୟାୟତାଂ ଶ୍ରାବୟତି । ତସ୍ମାତ୍ତଥ୍ୟରୂପୈବ ସନ୍ଧ୍ୟେ ସୃଷ୍ଟି ରାହି ।



(୨) ଭାଷାଂତର - (କ) କେତେକ ସଂପ୍ରଦାୟ ଏହି ସ୍ୱପ୍ନାବସ୍ଥାରେ 'ଯ ଏଷ ସୁପ୍ତେଷୁ' (ଇନ୍ଦ୍ରିୟ ପ୍ରଭୃତି ସୁପ୍ତ ହେଲାପରେ ଯେଉଁ ପୁରୁଷ ନିଜର ଈପ୍‌ସିତ ପଦାର୍ଥକୁ ରଚନାକରି ଜାଗ୍ରତ ରହେ) ଏହି ପ୍ରକାର କାମର ନିର୍ମାତା ଆତ୍ମାକୁ ସ୍ୱୀକାର କରେ । ଏଠାରେ ପୁତ୍ର ପ୍ରଭୃତି କାମଶବ୍ଦଦ୍ୱାରା ଅଭିପ୍ରେତ ହୁଏ, କାରଣ - ସେନାଙ୍କର କାମନା କରାଯାଇଅଛି ।

(ଖ) ପରନ୍ତୁ କାମଶବ୍ଦରୁ ଇଚ୍ଛାବିଶେଷ କହିବା ଉଚିତ୍ କି ? ନୁହେଁ, କାରଣ - 'ଶତାୟୁଷଃ' (ହେ ନ ବିକେତା ତୁମେ ଶହେବର୍ଷ ଆୟୁଷଥିବା ପୁତ୍ର ଓ ପୌତ୍ରମାନଙ୍କୁ ମାଗ) ଏହା ପ୍ରସ୍ତୁତ କରି 'କାମାନାଂ' (ମୁଁ ତୁମକୁ କାମନା ଇଚ୍ଛାନୁସାରେ ସୁଖଭାକ୍ କରି ଦେଉଛି) । ଏହିପ୍ରକାର ସେହି ସେହି ସ୍ଥାନକୁ ପ୍ରକୃତପୁତ୍ର ପ୍ରଭୃତିରେ କାମଶବ୍ଦ ହିଁ ପ୍ରଯୁକ୍ତି କରାଯାଇଅଛି ।

(ଗ) ଏହାର ନିର୍ମାଣ ଏହି ପ୍ରାଜ୍ଞକୁ ଆମ୍ଭେ ପ୍ରକରଣ ଓ ବାକ୍ୟଶେଷଦ୍ୱାରା ପ୍ରତୀତ କରୁ । କାରଣ - 'ଅନ୍ୟତ୍ର ଧର୍ମାତ୍' (ଏହି ଧର୍ମଠାରୁ ପୃଥକ୍ ଓ ଅଧର୍ମଠାରୁ ପୃଥକ୍)ଇତ୍ୟାଦି ପ୍ରାଜ୍ଞର ପ୍ରରଣ ଅଧେ । 'ତଦେବଂ ଶୁକ୍ର' (ସେ ଶୁଦ୍ଧ ଅଟେ, ସେ ବ୍ରହ୍ମ ଏବଂ ସେ ହିଁ ଅମୃତ ବୋଲି କୁହାଯାଇଅଛି । ସେଥିରେ ସମସ୍ତଲୋକ ହିଁ ଆଶ୍ରିତ । କୌଣସି ହେଲେ ପ୍ରାଣୀ ଏହାକୁ ଉଲ୍ଲଂଘନ କରିପାରେନାହିଁ) ।ଏହି ବାକ୍ୟଶେଷ ମଧ୍ୟ ତଦ୍‌ବିଷୟକ ଅଟେ ।

(ଘ) ଯେପରି ପ୍ରାଜ୍ଞକର୍ତ୍ତୃକ ଜାଗ୍ରତ ଆଶ୍ରୟସୃଷ୍ଟି ସତ୍ୟରୂପରେ ନିଶ୍ଚିତ କରାଯାଇଅଛି ସେପରି ସ୍ୱପ୍ନକୁ ଆଶ୍ରୟ ସୃଷ୍ଟି ମଧ୍ୟ ହୁଏ। ସେହିପରି 'ଅଥ ଖଲ୍ୱାହୁଃ'(ତେଣୁ ଅବଶ୍ୟ କୌଣସି ଲୋକ ଏପରି କହନ୍ତି ଯେ - ଏହି ସ୍ୱପ୍ନସ୍ଥାନ ତାହାର ଜାଗରିତ ଦେଶ ଅଟେ, କାରଣ - ଯେଉଁ ପଦାର୍ଥକୁ ସେ ଜାଗ୍ରତ ହେବେ ଦେଖେ, ତାହାକୁ ଶୋଇକରି ଦେଖେ) ଏହାଶ୍ରୁତି ସ୍ୱପ୍ନ ଓ ଜାଗ୍ରତ ଅବସ୍ଥାପରି ରୀତିକୁ ଶୁଣେ। ତେଣୁ ସ୍ୱପ୍ନରେ ସତ୍ୟ ରୂପ ହିଁ ସୃଷ୍ଟି ।

(୧) ଏବଂ ପ୍ରାପ୍ତେ ପ୍ରତ୍ୟାହ = ଏପରି ପ୍ରାପ୍ତ ହୁଅନ୍ତି ତାଙ୍କୁ କୁହାଯାଇଅଛି।

**मायामत्रं तु कात्स्न्र्येनानभिव्यक्तस्वरूपत्वात् ॥ ३ ॥**

**ମାୟାମାତ୍ରଂ ତୁକାତ୍ସ୍ନ ର୍ୟେନାନଭିବ୍ୟକ୍ତ ସ୍ୱରୂପତ୍ୱାତ୍ ।।୩-୨୩ ।।**

ତୁ = ତୁଶବ୍ଦ ପୂର୍ବପକ୍ଷ ବ୍ୟାବୃତ କରେ । ମାୟାମାତ୍ରମ୍ = ସ୍ୱପ୍ନ ସୃଷ୍ଟି ହିଁ ମାୟା । କାରଣ - କାର୍ତ୍ସ୍ୟେନ = ଦେଶ, କାଳଦି ସମସ୍ତ ଧର୍ମରୁ, ଅନଭିବ୍ୟକ୍ତ ସ୍ୱର୍‌ପତ୍ୱାତ୍ = ଅଭିବ୍ୟକ୍ତି ସ୍ୱରୂପ ନୁହେଁ ।

(୨) ମୂଳ - (କ) ତନ୍ତ୍ରାକାଶାଦିପ୍ରତିପତ୍ତୌ ପ୍ରାଗବ୍ରୀହ୍ୟାଦିପ୍ରତିପତ୍ତେର୍ଭବତି - କିଂ ଦୀର୍ଘକାଳଂ ପୂର୍ବପୂର୍ବସାଦୃଶ୍ୟେନାବସ୍ଥାୟୋତ୍ତରୋତ୍ତରସାଦ୍ୟଶ୍ୟଂ ଗଚ୍ଛନ୍ତ୍ୟୁତାହ୍ଲମହ୍ଲମିତ । ତନ୍ତ୍ରାନିୟମଃ ନିୟମକାରିଣଃ ଶାସ୍ତ୍ରସ୍ୟାଭବାଦିତି ।

(ଖ) ଏବଂ ପ୍ରାପ୍ତେ ଇଦମାହ - ନାତିଚିରେଣେତି । ଅଲ୍ପମଲ୍ପଂ କାଳମାକାଶାଦି ଭାବେନାବସ୍ଥାୟ ବର୍ଷଧାରାଭିଃ ସହେମାଂ ଭୁବମାପତନ୍ତି । କୁତଃ ଏତତ୍ ? ବିଶେଷ ଦର୍ଶନାତ୍ । ତଥାହି ବ୍ରୀହ୍ୟାଦିଭାବାପତ୍ତେରନନ୍ତରଂ ବିଶିନଷ୍ଟି 'ଅତୋବୈ ଖଲୁ ଦୁର୍ନି-ଷ୍ପ୍ର ପତରମ୍ ' (ଛା - ୫-୧୦-୬) ଇତି ।

(ଗ) ତକାର ଏକଶ୍ଛାନ୍ଦସ୍ୟାଂ ପ୍ରକ୍ରିୟାୟାଂ ଲପ୍ତୋ ମନ୍ତବ୍ୟଃ' ଦୁର୍ନିଷ୍ପ୍ର ପତରଂ ଦୁନିଷ୍କ୍ର ମତରଂ ଦୁଃଖତରମସ୍ମାଦ୍‌ବ୍ରୀହ୍ୟାଦିଭାବାନ୍ନିଃସରଣଂ ଭବତୀତ୍ୟର୍ଥଃ । ତଦନ୍ତ ଦୁଃଖଂ ନିଷ୍ପ୍ରପତନଂ ପ୍ରଦର୍ଶୟନ୍ ପୂର୍ବେଷୁ ସୁଖଂ ନିଷ୍ପ୍ରପତନଂ ଦର୍ଶୟତି ସୁଖଦୁଃଖ ତାବିଶେଷଣାୟଂ ନିଷ୍ପ୍ରପତନସ୍ୟ କାଳାଲ୍ପତ୍ୱଦୀର୍ଘତ୍ୱ ନିମିତ୍ତଃ । ତସ୍ମିନ୍ନବଧୌ ଶରୀରାନିଷ୍ପତ୍ତେରୁପଭୋଗାସମ୍ଭବାତ୍ । ତସ୍ମାଦ୍‌ବ୍ରୀହ୍ୟାଦିଭାବାପତ୍ତେଃ ପ୍ରାଗଲ୍ପେନୈବ କାଳେନାବରୋହଃସ୍ୟାଦିତି ।

(୨) ଭାଷାଂତର - (କ) ଏଠାରେ ବ୍ରୀହିପ୍ରଭୃତିଭାବକୁ ପ୍ରାପ୍ତରେ ସଂଶୟ ହୁଏ ଯେ- ଏହା କଣ ଦୀର୍ଘକାଳ ପୂର୍ବାପୂର୍ବସାଦୃଶ୍ୟଦ୍ୱାରା ଅବସ୍ଥିତ ହୋଇ ଉତ୍ତରୋତ୍ତର ସାଦୃଶ୍ୟକୁ ପ୍ରାପ୍ତ ହୁଅନ୍ତି କି ଅଳ୍ପଅଳ୍ପକାଳ ହୁଅନ୍ତି ? ଏଥିରେ କିନ୍ତୁ କୌଣସି ନିୟମ ନାହିଁ । କାରଣ - ଯେ ନିୟମ କରେ, ସେ ଶାସ୍ତ୍ର ନୁହେଁ ।

(ଖ) ଏହିପରି ପ୍ରାପ୍ତ ହୁଅନ୍ତେ ଏଠାରେ କୁହାଯାଇଅଛି ଯେ - 'ନାତିଶରେଣ ଅଳ୍ପଅଳ୍ପ କାଳ ଆକାଶାଦିରୂପରେ ଅବସ୍ଥିତ ହୋଇ ବୃଷ୍ଟିଧାରାର ସହିତ ଏହି ପୃଥିବୀ ଉପରେ ପଡ଼େ ।' ଏହା କିପରି ? ବିଶେଷଦର୍ଶନ ହେତୁ । ଯଥା - 'ବ୍ରୀହି' ଇତ୍ୟାଦି ଭାବପ୍ରାପ୍ତି ପରେ 'ଅତୋ ବୈ ଖଲୁ' (ଏହିପ୍ରକାର ଏହି ନିଷ୍କ୍ରମଣ ନିଶ୍ଚିତ ଭାବରେ ଅତ୍ୟନ୍ତ କଷ୍ଟପ୍ରଦ) ଏହିପ୍ରକାର ବିଶେଷ କୁହାଯାଇଅଛି ।

(ଗ) ଏଠାରେ ଏକ 'ତ' ଛାନ୍ଦସପ୍ରକିୟାରେ ଲୁପ୍ତହେବାର ଜଣାଯାଏ । ଦୁର୍ନିଷ୍ପ, ପତର (ଦୁନିଷ୍କ୍ର ମତର) ଏହି ବ୍ରୀହିପ୍ରଭୃତି ଭାବରେ ନିଃସରଣ ଦୁଃଖତର ହୁଏ ବୋଲି ଅର୍ଥ ଏଠାରେ ସେହି ବଚନ ଦୁଃଖ ପୂର୍ବକ ନିଃସରଣ ଦେଖାଇ ପୂର୍ବଭାବରେ ସୁଖପୂର୍ବକ ନିଃସରଣ ଦେଖାଏ । ନିଷ୍କ୍ରମଣରେ ସୁଖତ୍ୱ ଓ ଦୁଃଖତ୍ୱର ଏହି ବିଶେଷକାଳର ଅଳ୍ପତ୍ୱ ଓ ଦୀର୍ଘତ୍ୱନିମିତ୍ତକ ହୁଏ । କାରଣ - ସେହି ଅବଧିରେ ଶରୀରର ନିଷ୍ପତ୍ତି (ଉପପତ୍ତି)ନ ହେଲେ ଉପଭୋଗର ଅସମ୍ଭବ ହୁଏ । ତେଣୁ ବ୍ରୀହି ପ୍ରଭୃତି ଭବପ୍ରାପ୍ତିରୁ ପୂର୍ବ ଅଳ୍ପ କାଳରେ ମଧ ଅବରୋହଣ ହେବା ଉଚିତ୍ ।



(ଗ) ଏହାର ନିର୍ମାଣ ଏହି ପ୍ରାଜ୍ଞକୁ ଆମ୍ଭେ ପ୍ରକରଣ ଓ ବାକ୍ୟଶେଷ ଦ୍ୱାରା ପ୍ରତିକ କରୁଁ । କାରଣ -ଅ ' ଅନ୍ୟତ୍ର ଧର୍ମାତ୍' (ଏହି ଧର୍ମଠାରୁ ପୃଥକ୍ ଓ ଅଧର୍ମଠାଃରୁ ପୃଥକ୍ ଇତ୍ୟାଦି ପ୍ରାଜ୍ଞର ପ୍ରରଣ ଅଧେ। 'ତଦେବ ଶୁକ୍ରା' (ସେ ଶୁଦ୍ଧ ଅଟେ, ସେ ବ୍ରହ୍ମ ଏବଂ ସେ ହିଁ ଅମୃତ ବୋଲି କୁହାଯାଇଅଛି । ସେଥିରେ ସମସ୍ତଲୋକ ହିଁ ଆଶ୍ରିତ । କୌଣସି ହେଲେ ପ୍ରାଣୀ ଏହାକୁ ଉଲ୍ଲଘଂନ କରିପାରେନାହିଁ) ।ଏହି ବାକ୍ୟଶେଷ ମଧ ତଦ୍‌ବିଷୟକ ଅଟେ ।

(ଘ) ଯେପରି ପ୍ରାଜ୍ଞକର୍ତ୍ତୃକ ଜାଗ୍ରତ୍ ଆଶ୍ରୟ ସୃଷ୍ଟି ସତ୍ୟ ରୂପରେ ନିଶ୍ଚିତ କରାଯାଇଅଛି । ସେପରି ସ୍ୱପ୍ନକୁ ଆଶ୍ରୟ ସୃଷ୍ଟି ମଧ ହୁଏ। ସେହିପରି 'ଅଥ ଖଲ୍ୱାହୁଃ' (ତେଣୁଅବଶ୍ୟ କୌଣସି ଲୋକ ଏପରି କହନ୍ତି ଯେ - ସ୍ୱପ୍ନସ୍ଥାନ ତାହାର ଜାଗରିତ ଦେଶ ଅଟେ, କାରଣ - ଯେଉଁ ପଦାର୍ଥକୁ ସେ ହେଲେ ଦେଖେ, ତାହାକୁ ଶୋଇକରି ଦେଖେ) ଏହି ଶ୍ରୁତି ସ୍ୱପ୍ନ ଓ ଝାଗ୍ରତ ଅବସ୍ଥାପରି ରାତିକୁ ଶୁଣେ। ତେଣୁ ସ୍ୱପ୍ନରେ ସତ୍ୟ ରୂପ ହି ସୃଷ୍ଟି ।

(୧) ଏବଂ ପ୍ରାପ୍ତେ ପ୍ରତ୍ୟାହ - ଏପରି ପ୍ରାପ୍ତ ହୁଅନ୍ତେ ତାଙ୍କୁ କୁହାଯାଇଛି ।

## मायामात्रं तु कार्त्स्न्येनानभिव्यक्तस्वरूपतात् ॥ ३ ॥

## ମାୟାମାତ୍ରଂ ତୁକାସ୍ନ ର୍ଯେନାନଭିବ୍ୟକ୍ତ ସ୍ୱରୁତାତ୍ ।। ୩-୪-୩ ।।

ତୁ = ତୁଶବ୍ଦ ପୂର୍ବପକ୍ଷ ବ୍ୟାବୃତ କରେ । ମାୟାମାତମ୍ = ସ୍ୱପ୍ନ ସୃଷ୍ଟି ହିଁ ମାୟା । କାରକ୍ଷ- କାର୍ସ୍ନେଭିନ୍ନ - ଦେଶ, କାଳଦି ସମସ୍ତ ଧର୍ମରୁ, ଅନଧବ୍ୟକ୍ତି ସ୍ୱରୂପତ୍ୱାତ୍ - ଅଭିବ୍ୟକ୍ତି ସ୍ୱରୂପ ନୁହେଁ ।

(୨) ମୂଳ - (କ) ତୁଶବ୍ଦଃ ପକ୍ଷଂ ବାବର୍ତ୍ତୟତି ନୈତଦସ୍ତି - ଯଦୁକ୍ତଂ ସନ୍ଧ୍ୟେ ସୃଷ୍ଟିଃ ପାରମାର୍ଥିକୀତି । ମାୟୈବ ସନ୍ଧ୍ୟେ ସୃଷ୍ଟି ର୍ନ ପରମାର୍ଥଗନ୍ଧୋଽପ୍ୟସ୍ତି । କୁତଃ ? କାତ୍ସ୍ନ୍ୟେନାନଭିବ୍ୟକ୍ତସ୍ୱରୂପତ୍ୱାତ୍ । ନହି କାର୍ତ୍ସ୍ନ୍ୟେନ ପରମାର୍ଥ ବସ୍ତ୍ୱ ଧର୍ମେଣାଭିବ୍ୟକ୍ତ-ସ୍ୱରୂପଃ ସ୍ୱପ୍ନଃ । କିଂ ପୁନରତ୍ର କାର୍ସ୍ନ୍ୟମଭିପ୍ରେତଂ ଦେଶକାଳ ନିମିତ୍ତ ସଂପତ୍ତି ରବାଧିଶ୍ଚ ।

(ଖ) ନହି ପରମାର୍ଥବସ୍ତ୍ୱବିଷପାଣି ଦେଶକାଳ ନିସିତ୍ତାନ୍ୟ ବାଧଶ୍ଚ ସ୍ୱପ୍ନେ ସମ୍ଭାବ୍ୟନ୍ତେ । ନ ତାବତ୍ ସ୍ୱପ୍ନେ ରଥାଦୀ ନାମୁଚିତୋ ଦେଶଃ ସମ୍ଭବତି । ନହି ସଂବୃତେ ଦେହଦେଶେ ରଥାଦୟୋଽବକାଶଂ ଲଭେରନ୍ । ସ୍ୟାଦେତତ୍ - ବହି ର୍ଦେହାତ୍ ସ୍ୱପ୍ନଂ ଦ୍ରକ୍ଷ୍ୟତି ଦେଶାନ୍ତରିତ ଦ୍ରବ୍ୟ ଗ୍ରହଣାତ୍ । ଦର୍ଶୟତି ଚ ଶ୍ରୁତିର୍ବହିର୍ଦେ ହାତ ସ୍ୱପ୍ନମ୍ - 'ବହିଷ୍କୁଳାୟା ଦମୃତଶ୍ଚରିତ୍ୱା । ସୋ ଈୟଽତେମୃତୋ ଯନ୍ତ୍ର କାମମ୍'(ବୃହ - ୪-୩-୧) ଇତି ।

(ଗ) ସ୍ଥିତି ଗତି ପ୍ରତ୍ୟୟଭେଦଶ୍ଚ ନାନିଷ୍ଟ୍ରୋନ୍ତେ ଜନ୍ତୌ ସାମସ୍ୟମଶ୍ନମବୀତେଡ଼ି ନେତ୍ୟୁଚ୍ୟତେ - ନ ହିସୁପ୍ତସ୍ୟଦାନ୍ତୋଃ କ୍ଷଣମାତ୍ରେ ଯୋଜନଶତାନ୍ତରିତଂ ଦେଶଂ ପର୍ଯ୍ୟେଂତୁ

ହିଯେତୁଞ୍ଚ ତତଃ ସାମର୍ଥ୍ୟଂ ସମ୍ଭାବ୍ୟତେ । କ୍ୱଚିତ୍ ପ୍ରତ୍ୟାଗମନବଜର୍ତେଂ ସ୍ୱପ୍ନଂ ଶ୍ରାବୟତିକୁରୁଷ୍ୱେ ମହିମଦ୍ୟ ଶୟାନୋ ନିଦ୍ରୟାଽଭପ୍ଲୁତଃ ସ୍ୱପ୍ନେ ଚଞ୍ଚଳା ନଭିଗିତଷ୍ଠାସ୍ମିନ୍ ପ୍ରତିବୁଦ୍ଧଶ୍ଚେତି ।

(ଘ) ଦେହାକୋଦପେୟାତ୍ ପଞ୍ଚାଳେଷ୍ୱେବ ପତିବୁଧ୍ୟେତ,ତାନସାବଭିଗତ ଇତି, କୁରୁଷ୍ୱେବତୁ ପ୍ରତିବୁଧ୍ୟତେ, ଯେନ ଋଷଂ ଦେହେନ ଦେଶାନ୍ତରମୃଣ୍ଣବାନୋ ମନ୍ୟତେ ତ୍ମନ୍ୟେ ପାର୍ଶ୍ୱସ୍ଥାଃ ଶୟନଦେଶଃ ଏବ ପଶ୍ୟନ୍ତି । ଯଥାଭୂତାନି ଋୟଂ ଦେଶାନ୍ତରାଣି ସ୍ୱପ୍ନେ ପଶ୍ୟତି ଚ ତାନି ତଥାଭୁତାନ୍ୟେବ ଭବନ୍ତି । ପରିଧାବଂଶ୍ଚେତ୍ ପଶ୍ୟେତ୍ ଜାଗ୍ରଦ୍ - ବସ୍ତ୍ୱଭୁତମର୍ଥମାକାଳୟେତ ।

**(୧) ଭାଷାଂତର** - (କ) ତୁଶଦ୍ଦ ପୂର୍ବପକ୍ଷକୁ ବ୍ୟାବୃତ୍ତ କରେ । ସ୍ୱପ୍ନରେ ସୃଷ୍ଟି ପାରମାର୍ଥିକ ଅଟେ ବୋଲି ଯାହା କୁହାଯାଇଛି ତାହା ନୁହେଁ । ସ୍ୱପ୍ନରେ ସୃଷ୍ଟି ହିଁ ମାୟାରୂପ । ସେଠାରେ ପରମାର୍ଥର ଗନ୍ଧଲେଶ ମଧ ନାହିଁ । କିପରି ? କାରଣ - ତାହାର ସର୍ବାତ୍ମନାସ୍ୱରୂପ ଅଭିବ୍ୟକ୍ତି ନୁହେଁ । ସମସ୍ତ ପରମାର୍ଥ ବସ୍ତ୍ୱର ଧର୍ମରୁ ସ୍ୱପ୍ନ ଅଭିବ୍ୟକ୍ତି ସ୍ୱରୂପ ନୁହେଁ । ପରନ୍ତୁ ଏଠାରେ କାର୍ସ୍ୟରୁ କଣ ଅଭିପ୍ରେତ ହୁଏ ? ଦେଶ କାଳ ନିମିତ୍ତ ରୂପ ସଂପତ୍ତି ଏବଂ ଅବାଧ ଅଭିପ୍ରେତ ଅଟେ ।

(ଖ) କିନ୍ତୁ ପରମାର୍ଥ ବସ୍ତ୍ୱ ବିଷୟକ ଦେଶ, କାଳ, ନିର୍ମିତ୍ତ ଓ ଅବାଧ ସ୍ୱପ୍ନରେ ସମ୍ଭାବ୍ୟ ନୁହେଁ । ରଥ ଇତ୍ୟାଦିର ସ୍ୱପ୍ନରେ ପ୍ରକୃତ ଦେଶ ସମ୍ଭବ ନୁହେଁ । କାରଣ -ସଂକୀର୍ଣ୍ଣ ଦେହ ଦେଶରେ ରଥାଦି ଅବକାଶ ପ୍ରାପ୍ତ ହେବା ସମ୍ଭବ ନୁହେଁ । ଏଠାରେ ଶଙ୍କାଦେହରୁ ତାହାର ସ୍ୱପ୍ନହେବ, କାରଣ - ଦେହରୁ ବ୍ୟବଧାନଥିବା ପଦାର୍ଥ ଗ୍ରହଣ କରାଯାଏ । ଯଥା - 'ବହିଷ୍କ ଲାୟାତ୍' (ସେହି ଅମୃତଧର୍ମା ଶରୀରରୁ ବାହାରି ବିଚରଣ କରେ । ଯେଉଁଠାରେ ବାସନା ହୁଏ ସେଠାକୁ ଚାଲିଯାଏ) ଏହିଶ୍ରୁତି ଦେହରୁ ବାହାରି ସ୍ୱପ୍ନ ଦେଖାଏ ।

(ଗ) ସେପରି ସ୍ଥିତି ଗତି ଓ ପ୍ରତୀତିର ଭେଦ ଜୀବର ଶରୀରରୁ ବାହାରି ନ ଯାଇ ସଙ୍ଗତ ହୁଏନାହିଁ ବୋଲି କହିବା ଉଚିତ୍ ନୁହେଁ, କାରଣ - ସୁପ୍ତଜୀବରେ ଶହ ଶହ ଯୋଜନାର ବ୍ୟବଧାନ ଦେଶରେ କ୍ଷଣମାତ୍ରରେ ପହଞ୍ଚିବା ଏବଂ ସେଠାରୁ ପ୍ରତ୍ୟାବର୍ତ୍ତନ କରିଆସିବାର ସମ୍ଭାବନା କରାଯାଇ ନ ପାରେ । କେଉଁଠାରୁ ମଧ 'ମୁଁ ଏହି କୁରୁଦେଶରେ ଶୟନ କରି ନିଦ୍ରାରେ ଅଭିଭୂତ ହୋଇ ସ୍ୱପ୍ନରେ ପଞ୍ଚାଳଦେଶକୁ ଗଲି ଏବଂ ସେଠାରେ ଜାଗ୍ରତ ହେଲି ।' ଏହିପରି ପ୍ରବୃଦ୍ଧ ପୁରୁଷ ପ୍ରତ୍ୟାଗାତ୍ମ ବିନା ପାର୍ଶ୍ୱସ୍ଥ ଲୋକକୁ ସ୍ୱପ୍ନ ଶୁଣାଏ ।

(ଘ) ଯଦି ଦେହରୁ ବାହାରିଯାଏ, ତେବେ ପାଞ୍ଚାଳ ଦେଶରେ ଜାଗ୍ରତ ହୁଏ, କାରଣ - ଏହା ସେହି ଦେହକୁ ଗଲା, କିନ୍ତୁ କୁରୁଦେଶରେ ଜାଗ୍ରତ ହୁଏ, ଯେଉଁ ଦେହରୁ



ସେ ନିଜକୁ ଅନ୍ୟ ଦେଶବ୍ୟାପ୍ତ ଭୂପେ ସ୍ୱୀକାର କରେ, ସେହି ଦେହିରୁ ଅନ୍ୟ ସମୀପସ୍ଥ ଲୋକ ଶୟନ୍ କ୍ଷେତ୍ରରେ ଦେଖେ । ଏହିପରି ଯେଉଁ ଦେଶାନ୍ତର ସ୍ୱପ୍ନରେ ଦେଖାଯାଏ, ତାହା ସେହି ପ୍ରକାର ପ୍ରକୃତରେ ନୁହେଁ । ଯଦି ସେ ଧାଇଁଯାଇ ସେହି ପଦାର୍ଥକୁ ଦେଖେ ତେବେ ଜାଗରିତ ପରି ଯଥାର୍ଥ ଅର୍ଥକୁ ଗ୍ରହଣ କରିବା ଉଚିତ୍ ।

(୩) ମୂଳ - (କ) ଦର୍ଶୟତି ଚ ଶ୍ରୁତି ଚିରନ୍ତରେବ ଦେହେ ସ୍ୱପ୍ନମ୍- 'ସ ଯତ୍ରୈତତ୍ ସ୍ୱପ୍ନ୍ୟାୟା ଚରତି' ଇତ୍ୟୁପକ୍ରମ୍ୟ 'ସ୍ୱେ ଶରୀରଂ ଯଥାକାମଂ ପରିବର୍ତ୍ତତେ'(ବୃହ - ୨-୧-୧୮) ଇତି । ଅତଶ୍ଚ ଶ୍ରୁତ୍ୟୁପପତ୍ତି ବିରୋଧାବ୍ ବହିଷ୍କୁଳାୟଶ୍ରୁତି ଗୌଣୀ ବ୍ୟାଖ୍ୟା ତବ୍ୟାବହିରିବ କୁଳାଦମୃତଶ୍ଚରିତ୍ୱେତି ।

(ଖ) ଯୋହି ବସନ୍ନପି ଶରୀରେ ନ ତେନ ପ୍ରୟୋଜନଂ କରୋତି ସ ବହିରିବ ଶରୀରାଦ୍ ଭବତୀତି । ସ୍ଥିତିଗତି ପ୍ରତ୍ୟୟଭେଦୋଽପେବଂ ସତି ବିପ୍ରଲମ୍ଭ ଏବାଭ୍ୟୁପ - ଗନ୍ତବ୍ୟଃ । କାଳବିସମ୍ବାଦୋଽପି ଚ ସ୍ୱପ୍ନେ ଭବତି ରଜନ୍ୟାଂ ସୁପ୍ତୋ ବାସରଂ ଭାରତବର୍ଷେ ମନ୍ୟତେ । ତଥା ମୁହୂର୍ତ୍ତମାତ୍ରବର୍ତ୍ତିନି ସ୍ୱପ୍ନେ କଦାଚିଦ୍ ବହୁବର୍ଷ ପୁଗାନିତ ବାହୟତି ।

(ଗ) ନିମିତ୍ତାନ୍ୟାପି ଚ ସ୍ୱପ୍ନେ ନ ବୁଦ୍ଧୟେ କର୍ମଣେ ବୋଚିତାନି ବିଦ୍ୟନ୍ତେ । କରଣୋପସଂହାରାଦ୍ଧି ନାସ୍ୟ ରଥାଦିଗ୍ରହଣାୟ ଚକ୍ଷୁରାଦୀନି ସନ୍ତି । ରଥାଦିନିବର୍ତ୍ତନେଽପି କୁତୋଽସ୍ୟ ନିମେଷମାତ୍ରେଣ ସାମର୍ଥ୍ୟଂ ଦାରୁଣି ବା । ବାଧନ୍ତେ ଚୈତେ ରଥାଦୟଃ ସ୍ୱପ୍ନଦୃଷ୍ଟାଃ ପ୍ରବୋଧେ । ସ୍ୱପ୍ନ ଏବ ଚୈତେ ସୁଲଭବାଧା ଭବନ୍ତି, ଆଦ୍ୟନ୍ତୟୋର୍ବ୍ୟଭିଚ୍ଚାର ଦର୍ଶନାତ୍ ।

(ଘ) ରଥୋଽୟମିତି ହି କଦାଚିତ୍ ସ୍ୱପ୍ନେ ଦିର୍ଦ୍ଧାରିତଃ, କ୍ଷଣେନ ମନୁଷ୍ୟଃ ସଂପଦ୍ୟତେ ମନୁଷ୍ୟେଽୟମିତି ନିର୍ଦ୍ଧାରିତଃ କ୍ଷଣେନ ବୃକ୍ଷ । ସ୍ୱଷ୍ଟଂ ଚଭାବଂ ରଥାଦୀନାଂ ସ୍ୱପ୍ନେ ଶ୍ରାବୟତି ଶାସ୍ତ୍ରମ୍ - 'ନ ତନ୍ତ୍ର ରଥା ନ ରଥଯୋଗା ନ ପନ୍ଥାନୋ ଭବନ୍ତି'(ବୃହ - ୪-୩-୧୦) ଇତ୍ୟାଦି । ତସ୍ମାନ୍‌ମାୟାମାତ୍ରଂ ସ୍ୱପ୍ନଦର୍ଶନମ୍ ।

**(୩) ଭାଷାଂତର** - (କ) 'ସ ଯତ୍ରୈତତ୍ (ଯେଉଁ ସମୟରେ ଏହି ଆତ୍ମା ସ୍ୱପ୍ନ ବୃତ୍ତିଦ୍ୱାରା ବିଚରଣ କରେ) ଏହା ଉପକ୍ରମ କରି 'ସ୍ୱେଶରୀରେ' (ଏହି ନିଜଶରୀରେ ମନଇଚ୍ଛା ବିଚରଣ କରେ) ଏହି ପ୍ରକାର ଶ୍ରୁତି ଶରୀର ଭିତରେ ସ୍ୱପ୍ନ ଦେଖେ । ତେଣୁ ଶ୍ରୁତି ଓ ଉପପତ୍ତିରୁ ବିରୋଧ ହେଲେ 'ବହିଷ୍କୁଳାୟ' ଏହି ଶ୍ରୁତି ଗୌଣ ହୁଏ । ଅତଏବ ଏହାର ବ୍ୟାଖ୍ୟା କରାଯାଏ - ଦେହରୁ ବାହାରି ଅମୃତଧର୍ମୀ ଭ୍ରମଣ କରେ ।

(ଖ) ଶରୀରରେ ଯାହା ତହି ସେଥିରେ ପ୍ରୟୋଜନ ରଖେ ନାହିଁ, ସେହି ଶରୀରରୁ ବାହାରି ତାହାହିଁ ହୁଏ । ଏହା ହେଲାପରେ ସ୍ଥିତି,ଗତି ଓ ପ୍ରତ୍ୟୟ ଭେଦର ବିଭ୍ରମ ସ୍ୱୀକାର

କରାଯାଏ । ସ୍ୱପ୍ନ ସମୟରେ ତାହା ବିରୋଧ ହୁଏ, ରାତ୍ରିରେ ଶୋଇ ଭାରତ ବର୍ଷରେ ଦିନ ମନେକରେ) ଏହି ପ୍ରକାର ମୂହୁର୍ତ୍ତ ମାତ୍ର ବର୍ତ୍ତି ସ୍ୱପ୍ନରେ ବହୁ ବର୍ଷ ସମୁଦାୟର ଅତି ବହନ କରେ ।

(ଗ) ସ୍ୱପ୍ନରେ ଜ୍ଞାନ ଅଥବା କର୍ମପାଇଁ ଆବଶ୍ୟକ ନିମିତ୍ତ ମଧ୍ୟ ବିଦ୍ୟମାନ ହୁଏ ନାହିଁ। କାରଣ - ଇନ୍ଦ୍ରିୟଗୁଡ଼ିକର ଉପସଂହାର ହେଲେ ରଥ ପ୍ରଭୃତି ଗ୍ରହଣ କଲାପରେ ସେମାନେ ଚକ୍ଷୁ ଇତ୍ୟାଦି ହୁଅନ୍ତି ନାହିଁ । ସେପରି ନିମତ୍ତମାତ୍ରରେ ରଥାଦିନିର୍ମାଣ ପାଇଁ ସେହି ପ୍ରକାର ସାମର୍ଥ୍ୟ ବା କାଠ କେଉଁଠାରେ ବିଦ୍ୟମାନ ହୁଏ ? ସ୍ୱପ୍ନଦୃଷ୍ଟ ଏହି ରଥ ପ୍ରଭୃତି ଜାଗ୍ରତ ହେଲା ପରେ ବାଧିତ ହୁଅନ୍ତି । ଏହାର ବାଧା ସୁଲଭ ଅଟେ କାରଣ - ସ୍ୱପ୍ନର ଆଦି ଓ ଅନ୍ତରେ ଏହାର ବ୍ୟଭିଚର ଦେଖାଯାଏ ।

(ଘ) ଏହା ରଥ ଅଟେ - ଏହିପରି କେତେବେଳେ ହେଲେ ସ୍ୱପ୍ନରେ ନିଶ୍ଚିତ ହୋଇ ପଦାର୍ଥ କ୍ଷଣକ ମଧ୍ୟରେ ମନୁଷ୍ୟ ହୋଇଯାଏ, ଏହିପରି ନିର୍ଦ୍ଧାରଣ କରି କ୍ଷଣକ ମଧ୍ୟରେ ମଧ୍ୟ ବୃକ୍ଷ ହୋଇଯାଏ ତେଣୁ 'ନ ତନ୍ତ୍ରରଥା' (ସ୍ୱପ୍ନାବସ୍ଥାରେ ତାହା ରଥ ନୁହେଁ, ରଥରେ ଯୋଗହୋଇଥିବା ଅଶ୍ୱ ମଧ୍ୟ ହୁଅନ୍ତି କା ତାହା ମଧ୍ୟ ମାର୍ଗ ନୁହେଁ) ଇତ୍ୟାଦି ଶାସ୍ତ୍ରରେ ରଥାଦିର ଅଭାବ ସ୍ୱଷ୍ଟଭାବେ ଶ୍ରବଣ କରାଏ । ତେଣୁ ସ୍ୱପ୍ନଦର୍ଶନ ମାୟାମାତ୍ର ଅଟେ ।

## सूचकश्च हि श्रुतेराचक्षते तद्विदः ॥ ४ ॥

## ସୂଚକଶ୍ଚ ହି ଶ୍ରୁତେରାଚକ୍ଷତେ ଚ ତଦ୍‌ବିଦଃ ॥ ୩-୨-୪ ॥

ସୂଚକ - ସ୍ୱପ୍ନ ଭବିଷ୍ୟତର ଶୁଭ ଓ ଅଶୁଭର ସୂଚକ ଅଟେ । ହି = କାରଣ, ଶ୍ରୁତେଃ - 'ଯଦାର୍କମସ୍ଥ' ଇତ୍ୟାଦି ଶ୍ରୁତିଦ୍ୱାରାଂ ଏହା ଅବଗତ ହୁଏ, ଚ ଏବଂ = ସ୍ୱପ୍ନଶାସ୍ତ୍ର ଦେବିଦ ବେତ୍ତା, ଆଚକ୍ଷତେ - ସ୍ୱପ୍ନକୁ ଶୁଭାଶୁଭ ସୂଚକ ବୋଲି କହନ୍ତି ।

ମୂଳ - (କ) ମାୟାମାତ୍ରତ୍ୱାର୍ତ୍ତର୍ହି ନ କଶ୍ଚିତ୍ ସ୍ୱପ୍ନେ ପରମାର୍ଥଗନ୍ଧୋଽସ୍ତୀତି ନେତ୍ୟୁଚ୍ୟତେ ସ୍ୱଚକଶ୍ଚ ହି ସ୍ୱପ୍ନୋ ଭବତି, ଭବିଷ୍ୟତୋଃ ସାଧ୍ୱସାଧୁନୋଃ । ତଥାହି ଶ୍ରୁୟତେ 'ଯଦା କର୍ମସୁ କାମେଷୁସ୍ତ୍ରିୟଂ ସ୍ୱପ୍ନେଷୁ ପଶ୍ୟତ । ସମୃଦ୍ଧିଂ ତନ୍ତ୍ର ଜାନୀଯାତ୍ତସ୍ମିନ୍ ସ୍ୱପ୍ନାନଦର୍ଶନେ' (ଛା ୫-୨-୮) ତଥା 'ପୁରୁଷଂ କୃଷ୍ଣଂ କୃଷ୍ଣଦନ୍ତଂ ପଶ୍ୟତି ସ ଏନଂ ହନ୍ତି' ଇତ୍ୟବମାଦିଭିଃ ସ୍ୱପ୍ନୈ ରଚିରଜୀବିତ୍ୱମାବେଦ୍ୟତି ଇତି ଶ୍ରାବୟତି ।

(ଖ) ଆଚକ୍ଷ୍ୟତେ ଚ ସ୍ୱପ୍ନାଧାୟବିଦଃ- କୁଞ୍ଜରାରୋହଣାଦୀନି ସ୍ୱପ୍ନେ ଧନ୍ୟାନି ଖରଯାନାଦୀନ୍ୟଧାନାନି' ଇତି। ମନ୍ତ୍ରଦେବତାଦ୍ରବ୍ୟବିଶେଷନିମିତ୍ତାଶ୍ଚ କେଚିତ୍ ସ୍ୱପ୍ନା, ସତ୍ୟାର୍ଥଗନ୍ଧନୋ ଭବନ୍ତୀତ ମନ୍ୟନ୍ତେ, ତଥାପି ଭବତୁ ନାମ ସୂଚ୍ୟମାନସ୍ୟ ବସ୍ତ୍ରନଃ ସତ୍ୟତ୍ୱଂ, ସୂଚକସ୍ୟ ତୁ ସ୍ତ୍ରୀଦର୍ଶନାଦେର୍ଭବତ୍ୟେବ ବୈତଥ୍ୟଂ ବାଧମାନତ୍ୱାଦିତ୍ୟଭିପ୍ରାୟଃ ।

(ଗ) ତସ୍ମାଦୁପପନ୍ନଂସ୍ୱ ପ୍ନସ୍ୟ ମାୟାମାତ୍ରତ୍ୱମ୍ । ଯଦୁକ୍ତଂ 'ଆହହି' ଇତି, ତଦେବଂ ସତି ଭାକ୍ତଂ ବ୍ୟାଖ୍ୟାତବ୍ୟମ୍ । ଯଥା ଲାଙ୍ଗଲଂ ଗବାଦୀନୁଦ୍ ବହତୀତି ନିମିତ୍ତମାତ୍ରତ୍ୱାଦେବ ମୁଚ୍ୟତେ, ନ ପ୍ରତ୍ୟକ୍ଷମେବ ଲାଙ୍ଗଳ ଗବାଦୀନୁଦ୍ ବହତି । ଏବଂ ନିମିତ୍ତମତ୍ରତ୍ୱାତ୍ ସୁପ୍ତୋ ରଥାଦୀନ୍ ସୃଜତି, କର୍ତ୍ତେତି ଚେଚ୍ୟତେ, ନ ତୁ ପ୍ରତ୍ୟକ୍ଷମେବ ସୁପ୍ତୋ ରଥାଦୀନ୍ ସଜତି ।

(ଘ) ନିମିତ୍ତତ୍ୱଂ ତ୍ୱସ୍ୟ ରଥାଦିପ୍ରତିଭାନନିମିତ୍ତମୋଦନ୍ତ୍ରାସାଦି ଦର୍ଶନାତ୍ତନ୍ନିମିତ୍ତ ଭୂତୟୋଃ ସୁକୃତଦୁଷ୍କୃତୟୋଃ କର୍ତ୍ତୃତ୍ୱେନେତି ବକ୍ତବ୍ୟମ୍ । ଅପି ଚ ଜାଗରିତେ ବିଷୟେନ୍ଦ୍ରିୟସଂଯୋଗାଦାଦିତ୍ୟ ଜ୍ୟୋତି ବ୍ୟତିକରାତ୍ମନଃ ସ୍ୱୟଂ ଜ୍ୟୋତିଷ୍ଟଂ ଦୁର୍ବିବେଚନମିତି ତଦ୍‌ବିବେଚନାୟ ସ୍ୱପ୍ନ ଉପନ୍ୟସ୍ତଃ । ତତ୍ ଯଦି ରଥାଦିସୃଷ୍ଟବଚନଂ ଶ୍ରୁତ୍ୟା ନୀୟେତ, ତଦା ସ୍ୱୟଂ ଜ୍ୟୋଷିଷ୍ଟ୍ୱଂ ନ ନିର୍ଣ୍ଣୀତଂ ସ୍ୟାତ୍ । ତସ୍ମାଦ୍ରଥାଦ୍ୟ ଭାବବଚନଂ ଶ୍ରୁତ୍ୟା, ରଥାଦିସୃଷ୍ଟିବଚନଂ ତୁ ଭକ୍ତ୍ୟେତି ବ୍ୟାଖ୍ୟେୟମ୍ । ଏତେନ ନିର୍ମାଣଶ୍ରବଣଂ ବ୍ୟାଖ୍ୟାତମ୍ ।

**(୨) ଭାଷାଂତର** – (କ) ମାୟାମାତ୍ର ହେଲେ ମଧ୍ୟ ସ୍ୱପ୍ନରେ ପରମାର୍ଥର କୌଣସି ଗନ୍ଧ ନାହିଁ ବୋଲି କହିବା ଠିକ୍ ନୁହେଁ । ସ୍ୱପ୍ନ ଭବିଷ୍ୟର ଶୁଭ ଓ ଅଶୁଭର ସୂଚକ ଅଟେ । ଯେପରି 'ଯଦା କର୍ମସୁ' (ପୁରୁଷ ଯେଉଁ ସମୟରେ କାମ୍ୟକର୍ମରୂପକ କର୍ମରେ ସ୍ତ୍ରୀ କୁ ଦେଖେ, ସେହିସମୟରେ ସ୍ୱପ୍ନଦର୍ଶନ ହେଲାପରେ ସେହିକର୍ମର ସମୃଦ୍ଧି ହୁଏ) ।ଏହାହିଁ ଶ୍ରୁତିବାକ୍ୟ ଏବଂ 'ପୁରୁଷ କୃଷ୍ଣଂ' (କଳାଦାନ୍ତଥିବା କୃଷ୍ଣପୁରୁଷକୁ ସ୍ୱପ୍ନରେ ଦେଖେ, ସେ ଦୃଷ୍ଟସ୍ୱପ୍ନ ସେହି ସ୍ୱପ୍ନଦ୍ରଷ୍ଟାକୁ ହତ୍ୟାକରେ) ଇତ୍ୟାଦି ସ୍ୱପ୍ନଦ୍ୱାରା ଅଂଙ୍କ ଜୀବିତ୍ୱ ସ୍ୱଚିତ ହୁଏ ବୋଲି ମଧ୍ୟ ଶ୍ରୁତି ଶ୍ରବଣ କରାଏ ।

(ଖ) ସ୍ୱପ୍ନଶାସ୍ତ୍ରବେତ୍ତା କହେ ଯେ – ସ୍ୱପ୍ନରେ ହସ୍ତୀ ଉପରେ ଆରୋହଣ କରି ଇତ୍ୟାଦି ଧନ୍ୟ (ଶୁଭ) ସୂଚକ ଓ ଗଧ ଉପରେ ସବାରୀ ପ୍ରଭୃତି ଅଧନ୍ୟ ବା ଅଶୁଭ ଅଟେ । ମନ୍ତ୍ର , ଦେବତା, ଦ୍ରବ୍ୟବିଶେଷ ନିମିତ୍ତକ କୌଣସି କୌଣସି ସ୍ୱପ୍ନ ସତ୍ୟ ଅର୍ଥରେ ଯୁକ୍ତହୁଏ ବୋଲି ସ୍ୱୀକାର କରାଯାଏ । ସ୍ୱପ୍ନରେ ସୂଚିତ ହେଉଥିବା ବସ୍ତୁ ସତ୍ୟ ହୋଇପାରେ । ପରନ୍ତୁ ସୂଚକ ସ୍ତ୍ରୀ ଦର୍ଶନାଦି କିନ୍ତୁ ଅସତ୍ୟ ହୁଏ, କାରଣ – ସେମାନେ ବାଧମାନ ଅଟନ୍ତି ବୋଲି ଅଭିପ୍ରାୟ ହୁଏ ।

(ଗ) ତର୍ଦ୍ଦ୍ୱାରା ସ୍ୱପ୍ନରେ ମାୟାମାତ୍ରତ୍ୱ ଉପପନ୍ନ ହୁଏ । 'ଆହ ହି' (କାହିଁକି ଶ୍ରୁତି କହେ) ଏହାହେଲେ ଶ୍ରୁତି ଓ ଯୁକ୍ତିଦ୍ୱାରା ସ୍ୱପ୍ନର ମାୟାମାତ୍ରାତ୍ୱ ସିଦ୍ଧ ହେଲାପରେ ସେ ଗୌଣ ହୁଏ ବୋଲି ଯାହା କୁହାଯାଇଛି, ତାହା ବ୍ୟାଖାନ କରିବା ଉଚିତ୍ । ଯେପରି ହଳ ବଳଦକୁ ଆୟତ କରି ରଖେ ବୋଲି ନିମିତ୍ତମାତ୍ର କୁହାଯାଇଛି ପରନ୍ତୁ ହଳ

ପ୍ରତ୍ୟକ୍ଷରୂପରେ ବଳଦପ୍ରଭୃତିକୁ ଆୟତ କରି ରଖେ ନାହିଁ । ସେପରି ନିମିତ୍ତମାତ୍ରରୁ ହି ସୁପ୍ତପୁରୁଷ ପ୍ରତ୍ୟେକ୍ଷରୂପରେ ରଥ ପ୍ରଭୃତିକୁ ନିର୍ମାଣ କରେ ନାହିଁ ।

(ଘ) ତାର ନିମିତ୍ତତ୍ୱ କିନ୍ତୁ ରଥାଦିର ପ୍ରତୀତିଦ୍ୱାରା ଉତ୍ପନ୍ନ ହେଉଥିବା ହର୍ଷ ଓ ତ୍ରାସାଦି ଦର୍ଶନରୁ ଅନେକ ନିମିତ୍ତତ୍ୱରୂପ ସୁକୃତ ଓ ଦୁଷ୍କୃତର କର୍ତ୍ତାରୂପରେ ହୁଏ ବୋଲି କହିବା ଉଚିତ୍ । ଜାଗ୍ରତରେ ବିଷୟ ଓ ଇନ୍ଦ୍ରିୟଗୁଡ଼ିକର ସଂଯୋଗରୁ ଓ ଆଦିତ୍ୟାଦି ଜ୍ୟୋତିର ସଙ୍କର ଦ୍ୱାରା ଆତ୍ମାତ ସ୍ୱୟଂ ଜ୍ୟୋତିଷ୍ଟ୍ୱର ବିବେଚନ ଦୁଷ୍କର ଅଟେ । ତେଣୁ ତାହାର ବିବେଚନ ପାଇଁ ସ୍ୱପ୍ନର ଉପନ୍ୟାସ କରାଯାଇଛି । ସେଠାରେ ଯଦି ରଥ ପ୍ରଭୃତି ସୃଷ୍ଟିବଚନ ଶ୍ରୁତିଦ୍ୱାରା ମୁଖ୍ୟବୃତ୍ତିରେ ତତ୍ ପରକରୂପେ ନିଆଯାଏ, ତେବେ ଆତ୍ମାର ସ୍ୱୟଂ ଜ୍ୟୋତିଷ୍ଟ୍ୱଂ ନିର୍ଣ୍ଣୀତ ହେବନାହିଁ । ତେଣୁ ରଥାଦି ଅଭାବବଚନ ମୁଖ୍ୟ ବୃତ୍ତିଦ୍ୱାରା ଓ ରଥାଦିର ସୃଷ୍ଟିବଚନ ଗୌଣବୃତ୍ତିଦ୍ୱାରା ସମ୍ଭବ ବୋଲି ବ୍ୟାଖ୍ୟାନ କରାଯିବା ଉଚିତ୍ । ତେଣୁ ନିର୍ମାଣ ଶ୍ରୁତିର ବ୍ୟାଖାନ ହେଲା ।

(୩) ମୂଳ - (କ) ଯଦପ୍ୟୁକ୍ତମ୍- ପ୍ରାଜ୍ଞମେନଂ ନିର୍ମାତାରମାନନ୍ତି ଇତି - ତଦପ୍ୟସତ୍ । ଶ୍ରୁତାନ୍ତରେ 'ସ୍ୱୟଂ ବିହତ୍ୟ ସ୍ୱୟଂ ନିର୍ମାୟ ସ୍ୱେନ ଭାଷା ସ୍ୱେନ ଜ୍ୟୋଦିଷା ପ୍ରସୂପିତି, (ବୃହ ୫-୩-୯) ଇତି ଜୀବବ୍ୟାପାର ଶ୍ରବଣାତ୍ ।'

(ଖ) ଇହାପି 'ଯ ଏଷ ସୁପ୍ତେଷୁ ଜାଗର୍ତ୍ତି' (କ ୫-୮) ଇତି ପ୍ରସିଦ୍ଧାନୁବାଦାଜ୍ଜୀବ ଏବାୟଂ କାମାନାଂ ନିର୍ମାତା ସଂକୀର୍ତ୍ତ୍ୟତେ । ତସ୍ୟ ତୁ ବାକ୍ୟଶେଷେଣ, ତଦେବଂ ଶୁକ୍ର ତତ୍ ବ୍ରହ୍ମେତି ଜୀବଭାବଂ ବ୍ୟାବର୍ତ୍ତ୍ୟ ବ୍ରହ୍ମଭାବ ଉପଦିଶ୍ୟତେ - 'ତତ୍ତ୍ୱମସି' (ଛା ୬-୯-୪) ଇତ୍ୟାଦିବଦିତି ନ ବ୍ରହ୍ମପ୍ରକରଣଂ ବିରୁଧ୍ୟତେ ।

(ଗ) ନ ଚସ୍ମାଭିଃ ସ୍ୱପ୍ନେଽପି ପ୍ରାଜ୍ଞବ୍ୟବହାରଃ ପ୍ରତିଷିଧ୍ୟତେ । ତସ୍ୟ ସର୍ବେଶ୍ୱରତ୍ୱାତ୍ ସର୍ବାସ୍ୱବସ୍ଥାସ୍ୱଧିଷ୍ଠାତୃତ୍ୱୋପପତ୍ତେଃ । ପାରମାର୍ଥିକସ୍ତୁ ନାୟଂ ସଂଧ୍ୟାଶ୍ରୟ ସର୍ଗୋ ବିୟଦାଦି ସର୍ଗବଦିତ୍ୟେତାବତ୍ ପ୍ରତିବାଦ୍ୟତେ । ନ ଚ ବିୟଦାଦିସର୍ଗସ୍ୟାପ୍ୟାତ୍ୟନ୍ତିକଂ ସତ୍ୟତ୍ୱମସ୍ତି ।

(ଘ) ପ୍ରତିପାଦିତଂ ହି ତଦନନ୍ୟତ୍ୱମାରମ୍ଭଣଶବ୍ଦାଦିଭ୍ୟଃ' (ବ୍ର ସୂ - ୨-୧-୧୪) ଇତ୍ୟାତ୍ର ସମସ୍ତସ୍ୟ ପ୍ରପଞ୍ଚସ୍ୟ ମାୟାମାତ୍ରତ୍ୱମ୍ । ପ୍ରାକ୍ତୁ ବ୍ରହ୍ମାତ୍ମତ୍ୱଦର୍ଶନାଦ୍ ବିୟଦାଦି ପ୍ରପଞ୍ଚୋ ବ୍ୟବସ୍ଥିତରୂପ ଭବତି । ସନ୍ଧ୍ୟାଶ୍ରୟସ୍ତୁ ପ୍ରପଞ୍ଚଃ ପ୍ରତିଦିନଂ ବାଧ୍ୟତ ଇତି । ଅତୋ ବୈଶେଷିକମିଦଂ ସଂଧ୍ୟସ୍ୟ ମାୟାମାତ୍ରତ୍ୱମୁଦିତମ୍ ।

**(୩) ଭାଷାଂତର** - (କ) ଏହି ପ୍ରାଜ୍ଞକୁ ସ୍ୱପ୍ନ ନିର୍ମାଣ କରେ ବୋଲି ଯାହା କୁହାଯାଇଛି,ତାହା କିନ୍ତୁ ଠିକ୍ ନୁହେଁ । କାରଣ - 'ସ୍ୱୟଂ ବିହତ୍ୟ' (ନିଜେହିଁ ସ୍ଥୁଳ ଶରୀରକୁ ଅଚେତ୍ କରି ତଥା ନିଜେ ବାସନାମୟ ଦେହକୁ ରଚନା କରି ଅନ୍ତଃକରଣ



ବୃତ୍ତିର ପ୍ରକାଶ ଦ୍ୱାରା ଓ ସ୍ୱୟଂ ଜ୍ୟୋତିଃ ସ୍ୱରୂପରୁ ଏହି ବାସନାମୟକୁ ବିଷୟରୂପେ କରି ଶୟନ କରେ) ଏହି ପ୍ରକାର ଅନ୍ୟ ଶ୍ରୁତିରେ ବ୍ୟାପାରକୁ ଶ୍ରବଣ କରେ ।

(ଖ) 'ଯ ଏଷ' (ଯେଉଁ ଏହି ଇନ୍ଦ୍ରିୟ ସୁପ୍ତ ହେଲାରେ ଜାଗ୍ରତ ହୁଏ) ଏଠାରେ ମଧ୍ୟ ପ୍ରସିଦ୍ଧର ଅନୁବାଦଦ୍ୱାରା ଏହି ଜୀବହିଁ କାମର ନିର୍ମାତା ରୂପେ କୁହାଯାଏ । କିନ୍ତୁ ତାହାର 'ତଦେବ ଶୁକ୍ରଂ' (ସେହି ଶୁକ୍ରଂ ଅଟେ ଓ ସେ ବ୍ରହ୍ମ ଅଟେ) ଏହି ବାକ୍ୟଶେଷଦ୍ୱାରା ଜୀବର ଭାବ ବ୍ୟାବୃତକରି 'ତତ୍ତ୍ୱମସି' ଇତ୍ୟାଦିପରି ବ୍ରହ୍ମଭାବ ଉପଦେଶ କରାଯାଏ । ତେଣୁ ବ୍ରହ୍ମପକରଣର ବିରୋଧ ହୁଏ ନାହିଁ ।

(ଗ) ଆମ୍ଭେ ମଧ୍ୟ ସ୍ୱପ୍ନରେ ପ୍ରାଜ୍ଞର ବ୍ୟାପାରକୁ ପ୍ରତିଷେଧ କରୁନାହୁଁ । କାରଣ - ସେ ସମସ୍ତଙ୍କର ଈଶ୍ୱର ହେଲେ ସବୁ ଅବସ୍ଥାରେ ଅଧିଷ୍ଠାତା ହୁଏ । ପରନ୍ତୁ ଆକାଶାଦି ସୃଷ୍ଟି ପରି ଏହିସ୍ୱପ୍ନ ଆଶ୍ରୟସୃଷ୍ଟି ପାରମାର୍ଥିକ ନୁହେଁ । କେବଳ ଏତିକିହିଁ ପ୍ରତିପାଦନ କରାଯାଉଛି ଏବଂ ଆକାଶାଦିସୃଷ୍ଟି ମଧ୍ୟ ଆତ୍ୟନ୍ତିକ ସତ୍ୟ ନୁହେଁ ।

(ଘ) କାରଣ - 'ତଦନନ୍ୟତ୍ୱ ମାରମ୍ଭଣ ଶବ୍ଦାଦିଭ୍ୟଃ' ଏହି ସୁତ୍ରରେ ସମଗ୍ରପ୍ରପଞ୍ଚରେ ମାୟାମାତ୍ରତ୍ୱ ପ୍ରତିପାଦିତ ହୋଇଅଛି । ବ୍ରହ୍ମାତ୍ମତ୍ୱ ଜ୍ଞାନର ପୂର୍ବରୁ ଆକାଶାଦି ପ୍ରପଞ୍ଚ ବ୍ୟବସ୍ଥିତ ରୂପ ହୁଏ ଓ ସ୍ୱପ୍ନାଶ୍ରୟ ପ୍ରପଞ୍ଚ ମଧ୍ୟ ସର୍ବଦା ବାଧିତ ହୁଏ । ତେଣୁ ସ୍ୱପ୍ନରେ ଏହି ବିଷେଶ ମାୟାମାତ୍ରତ୍ୱ କୁହାଯାଇଛି ।

## पराभिध्यानात्तु तिरोहितं ततो ह्यस्य बन्धविपर्ययौ ॥ ५ ॥

## (୧) ପରାଭିଧ୍ୟାନାତ୍ତୁ ତିରୋହିତଂ ତତୋ ହ୍ୟସ୍ୟ ବନ୍ଧବିପର୍ଯ୍ୟୟୌ ॥ ୩-୨୫ ॥

ତୁ = ପରନ୍ତୁ, ଅସ୍ୟ= ଜୀବର, ତିରୋହିତମ୍ = ଅବିଦ୍ୟାଦିଦ୍ୱାରା ବ୍ୟାବୃତ, ଐଶ୍ୱର୍ଯ୍ୟ, ପରାଭିଧାନାତ୍= ପରମାତ୍ମାର ଧ୍ୟାନରୁ ଅଭିବ୍ୟକ୍ତ ହୁଏ । ତଦୋହି = କାରଣ -ବନ୍ଧ ବିପର୍ଯ୍ୟୟୌଈଶ୍ୱର ଜ୍ଞାନ ନ ହେଲେ ଜୀବର ବନ୍ଧ ଓ ଜ୍ଞାନ ହେଲେ ମୋକ୍ଷ ହୁଏ । ଏହିପରି 'ଜ୍ଞାତ୍ୱା ଦେବଂ' ଇତ୍ୟାଦି ଶ୍ରୁତିରେ ପ୍ରତିପାଦିତ ହୋଇଛି ।

ମୂଳ - (କ) ଅଥାପି ସ୍ୟାତ୍ ପରସୈବ ତାବଦାତ୍ମନୋଽଂଶୋ ଜୀବୋଽଗ୍ନେରିବ ବିସ୍ଫୁଲିଙ୍ଗଃ, ତତ୍ରୈବ ସତି ଯଥାଗ୍ନିବିସ୍ଫୁଲିଙ୍ଗୟୋଃ ସମାନେ ଦହନ ପ୍ରକାଶନ ଶକ୍ତି ଭବତଃ,ଏବଂ ଜୀବେଶ୍ୱରୟୋରପି ଜ୍ଞନେଶ୍ୱର୍ଯ୍ୟ ଶକ୍ତୀ, ତତଶ୍ଚ ଜୀବସ୍ୟ ଜ୍ଞାନୈଶ୍ୱର୍ଯ୍ୟବଶାତ୍ ସାଙ୍କଳ୍ପିକୀ ସ୍ୱପ୍ନେ ରଥାଦିସୃଷ୍ଟି ର୍ଭବିଷ୍ୟତୀତ ।

(ଖ) ଅତ୍ରୋଚ୍ୟତେ ସତ୍ୟପି ଜୀବେଶ୍ୱର ବିପରୀତଧର୍ମତ୍ୱମ୍ । କିଂ ପୁନର୍ଜୀବ - ସ୍ୟେଶ୍ୱରସମାନ ଧର୍ମତ୍ୱଂ ନାସ୍ତ୍ୟେବ ? ନ ନାସ୍ତ୍ୟେବ, ବିଦ୍ୟମାନମପି ତତ୍ତିରୋହିତମବିଦ୍ୟା - ଦିବ୍ୟବଧାନାତ୍ ।

(ଗ) ତତ୍ପୁନସ୍ତିରୋହିତଂ ସତ୍ ପରମେଶ୍ୱରମଭିଧ୍ୟାୟତୋ ଯତମାନସ୍ୟ ଜନ୍ତୋର୍ବି-ଧୂତଧ୍ୱାନ୍ତସ୍ୟ ତିମିରତିରସ୍କୃତେବ ଦୃକ୍ଶକ୍ତି ରୌଷଧବୀର୍ଯ୍ୟାଦୀଶ୍ୱରପ୍ରସାଦାତ୍ ସଂସିଦ୍ଧସ୍ୟ କସ୍ୟଚିଦେବାବିର୍ଭବତି, ନ ସ୍ୱଭାବତ ଏବ ସର୍ବେଷାଂ ଜନ୍ତୁନାମ୍ ।

(ଘ) କୁତଃ ତତୋ ହୀଶ୍ୱରାଦ୍ଧେତୋରସ୍ୟ ଜୀବସ୍ୟ ବନ୍ଧମୋକ୍ଷୌ ଭବତଃ । ଈଶ୍ୱର ସ୍ୱରୂପା ପରିଜ୍ଞାନାଦ୍ ବନ୍ଧଃ, ତତ୍ ସ୍ୱରୂପ ପରିଜ୍ଞାନାତ୍ତୁ ମୋକ୍ଷଃ । ତଥା ଚ ଶ୍ରୁତିଃ – 'ଜ୍ଞାତ୍ୱା ଦେବଂ ସର୍ବପାଶାପହାନିଃ କ୍ଷୀଣୈ କ୍ଲେଶୈର୍ଜନ୍ମମୃତ୍ୟୁ ପ୍ରହାଣିଃ । ତସ୍ୟାଭିଧ୍ୟା'–ନାତ୍ତୃତୀୟଂ ଦେହଭେଦେ ବିଶ୍ୱୈଶ୍ୱର୍ଯ୍ୟଂ କେବଳ ଆପ୍ତକାମଃ' (ଶ୍ୱେ – ୧–୧୧) ଇତ୍ୟେ – ବମାଦ୍ୟା ।

(୨) ଭାଷାଂତର – (କ) ପରନ୍ତୁ ଯେପରି ବିସ୍ଫୁଲିଙ୍ଗ ଅଗ୍ନିର ଅଂଶ ଅଟେ, ସେପରି ଜୀବ ପରମାତ୍ମାର ଅଂଶ ଅଟେ ବୋଲି ହୋଇପାରେ । ଏହିପରି ହେଲେ ଯେପରି ଅଗ୍ନି ଓ ବିସ୍ଫୁଲିଙ୍ଗରେ ଦହନ ଓ ପ୍ରକାଶନଶକ୍ତି ସମାନ ଅଟେ, ସେପରି ଜୀବ ଓ ଈଶ୍ୱରଠାରେ ମଧ୍ୟ ଜ୍ଞାନ ଓ ଐଶ୍ୱର୍ଯ୍ୟଶକ୍ତି ସମାନ ହେବ; ତେଣୁ ଜୀବର ଜ୍ଞାନ ଓ ଐଶ୍ୱର୍ଯ୍ୟର ବଳରୁ ସ୍ୱପ୍ନରେ ସାଙ୍କଳ୍ପିକୀ ରଥ ପ୍ରଭୃତି ସୃଷ୍ଟି ହେବ ।

(ଖ) ତେଣୁ ଏହି ବିଷୟରେ ଆମ୍ଭେ କହୁଁ ଯେ – ଜୀବ ଓ ଈଶ୍ୱରର ଅଶାଂଶିଭାବ ହେଲେ ମଧ୍ୟ ପ୍ରତ୍ୟକ୍ଷରୂପରେ ଜୀବଠାରେ ଈଶ୍ୱରର ବିପରୀତ ଧର୍ମ ହୁଏ । କିନ୍ତୁ କ'ଣ ଜୀବଠାରେ ଈଶ୍ୱରର ଗୁଣଗୁଡ଼ିକ ନାହିଁ କି? ନା, ନାହିଁ ବୋଲି କହିବା ଠିକ୍ ନୁହେଁ । କାରଣ – ସାମାନଧର୍ମ ବିଦ୍ୟାମାନ ହୋଇ ଅବିଦ୍ୟାର ବ୍ୟବଧାନରୁ ସେ ତିରୋହିତ ହୁଏ ।

(ଗ) ସେ ତିରୋହିତ ହୋଇ ମଧ୍ୟ ପରମେଶ୍ୱରଙ୍କୁ ଧ୍ୟାନ କରି ଯତ୍ନଶୀଳ ବିନଷ୍ଟ ଅଜ୍ଞାନ ନିଷ୍ପାପ କୌଣସି ଏବ ପୁରଷଠାରେ ଈଶ୍ୱରର ଅନୁଗ୍ରହ ଯୋଗୁ ପୁନଃ ଆବିର୍ଭୁତ ହୁଏ, ଯେପରି ଔଷଧର ବଳରୁ କୌଣସି ଏକପ୍ରାଣୀର ରତୌଷଧିରୁ ତିରସ୍କୃତ ଦୃକ୍ଶକ୍ତି ଆବିର୍ଭୁତ ହୁଏ । ସ୍ୱଭାବତଃ ସବୁପ୍ରାଣୀଙ୍କର ଜ୍ଞାନ ଐଶ୍ୱର୍ଯ୍ୟଶକ୍ତି ଆବିର୍ଭୁତ ହୁଅନ୍ତି ନାହିଁ ।

(ଘ) କିପରି ? 'ତତୋ ହି ଅର୍ଥାତ୍ ଈଶ୍ୱର, ଅସ୍ୟ ଅର୍ଥାତ୍ ଜୀବର ବନ୍ଧ ଓ ମୋକ୍ଷ ହୁଏ। ଈଶ୍ୱରରୂପରପରିଜ୍ଞାନ ନ ହେଲେ ବନ୍ଧ ଓ ତାହାର ସ୍ୱରୂପ ପରିଜ୍ଞାନ ଦ୍ୱାରା ମୋକ୍ଷ ହୁଏ, କାରଣ – 'ଜ୍ଞାନଦେବଂ' 'ଏହା ମୁଁ ଅଟେ' ଏହିପ୍ରକାର ପରମାତ୍ମାର ଜ୍ଞାନ ହେଲେ ଅବିଦ୍ୟାଦି ସଂପୂର୍ଣ୍ଣ କ୍ଲେଶର ନାଶ ହୋଇଯାଏ ଓ କ୍ଲେଶର କ୍ଷୟ ହେଲାପରେ ଜନ୍ମ ଓ ମୃତ୍ୟୁରୁ ନିବୃତ୍ତି ହୋଇଯାଏ, ତଥା ତାହାର ଧ୍ୟାନ କଲେ ଶରୀରପାତର ପରେ (ବିରାଟ ଓ ହିରଣ୍ୟ ଗର୍ଭଙ୍କୁ ଅପେକ୍ଷା) କାରଣ, ବ୍ରହ୍ମରୂପ ସର୍ବୈଶ୍ୱର୍ଯ୍ୟମୟୀ ତୃତୀୟ ଅବସ୍ଥାକୁ ପ୍ରାପ୍ତ ହୁଏ ଏବଂ ପୁଣି ଆପ୍ତକାମ ହୋଇ କୈବଲ୍ୟପଦକୁ ପ୍ରାପ୍ତ ହୁଏ) ଇତ୍ୟାଦିଶ୍ରୁତିବାକ୍ୟ ମଧ୍ୟ ଅଛି ।



## देहयोगाद्वा सोऽपि ॥ ६ ॥

## (୧) ଦେହଯୋଗାଦ୍ ବା ସୋଽପି ।। ୩-୨-୬ ।।

ସୋଽପି = ଜୀବର ଐଶ୍ୱର୍ଯ୍ୟ ତିରୋଭାବ ମଧ୍ୟ ଦେହଯୋଗାତ୍ = ଦେହ ଇତ୍ୟାଦିର ଯୋଗରୁ ହୁଏ ବା, = ବା ଶବ୍ଦ ଶଙ୍କା ନିବାରଣ ପାଇଁ ଅଛି ।

ମୂଳ - (କ) କସ୍ମାତ୍ ପୁନର୍ଜୀବଃ ପରମାତ୍ମାଂଶ ଏବ ସଂସ୍ତିରସ୍କୃତ ଜ୍ଞାନୈଶ୍ୱର୍ଯ୍ୟୋ ଭବତି ? ଯୁକ୍ତଂ ତୁ ଜ୍ଞାନୈଶ୍ୱର୍ଯ୍ୟ ୟୋରତିରସ୍କୃତତ୍ୱଂ ବିସ୍ଫୁଲିଙ୍ଗସ୍ୟେବ ଦହନ ପ୍ରକାଶନ-ୟୋରିତ ଉଚ୍ୟତେ - ସତ୍ୟମେବୈତତ୍, ସୋଽପି ତୁ ଜୀବସ୍ୟ ଜ୍ଞାନୈଶ୍ୱର୍ଯ୍ୟତିରୋଭବୋ ଦେହଯୋଗାଦ୍ଦେହେନ୍ଦ୍ରିୟ ମନୋବୁଦ୍ଧି ବିଷୟବେଦନାଦି ଯୋଗାଦ୍ ଭବତି ।

(ଖ) ଅସ୍ତି ଚୈପମା - ଯଥାଽଗ୍ନେର୍ଦହନପ୍ରକାଶନ ସଂପନ୍ନସ୍ୟାପ୍ୟ ରଣିଗତସ୍ୟ ଦହନପ୍ରକାଶନେ ତିରୋହିତେ ଭବତୋ, ଯଥା ବା ଭସ୍ମଛନ୍ନସ୍ୟ ଏବମବିଦ୍ୟା ପ୍ରଲିପସ୍ଥାପିତ ନାମରୂପକୃତ ଦେହାଦ୍ୟୁପାଧିଯୋଗାତ୍ତଦବିବେକ ଭ୍ରମକୃତୋ ଜୀବସ୍ୟ ଜ୍ଞାନୈଶ୍ୱର୍ଯ୍ୟତିରୋ- ଭାବଃ ।

(ଗ) ବାଶବ୍ଦୋ ଜୀବେଶ୍ୱରୟୋରନ୍ୟତ୍ୱାଶଙ୍କା ଚ୍ୟାବୃତ୍ତ୍ୟର୍ଥଃ । ନନ୍ୱନ୍ୟ ଏବ ଜୀବ ଈଶ୍ୱରାଦସ୍ତୁ, ତିରସ୍କୃତ ଜ୍ଞାନୈଶ୍ୱର୍ଯ୍ୟତ୍ୱାତ୍, କିଂ ଦେହଯୋଗକଳ୍ପନୟା ? ନେତ୍ୟୁ- ଚ୍ୟତେ - ନ ହ୍ୟନ୍ୟତ୍ୱଂ ଜୀବସ୍ୟେଶ୍ୱରାଦୁପପଦ୍ୟତେ, 'ସେୟଂ ଦେବତୈକ୍ଷତ'(ଛା ୬-୩-୨) ଇତ୍ୟୁପତ୍ରମ 'ଅନେକ ଜୀବେନାତ୍ମନାଽନୁପ୍ରବିଶ୍ୟ' (ଛା - ୨-୩-୨) ଇତ୍ୟାତ୍ମଶବ୍ଦେନ ଜୀବସ୍ୟ ପରାମର୍ଶାତ୍ ।

(ଘ) 'ତତ୍ ସତ୍ୟଂ ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ'(ଛା - ୬-୯-୪) ଇତି ଚ ଜୀବାୟୋପଦିଶତୀଶ୍ୱରାତ୍ମତ୍ୱମ୍ । ଅତୋଽନନ୍ୟ ଏବେଶ୍ୱରାଜ୍ଜୀବଃ ସନ୍ ଦେହଯୋଗାତ୍ତି-ରୋହିତ ଜ୍ଞାନୈଶ୍ୱର୍ଯ୍ୟୋ ଭବତି । ଅତଶ୍ଚ ନ ସାଙ୍କଳ୍ପିକୀ ଜୀବସ୍ୟ ସ୍ୱପ୍ନେ ରଥାଦି ସୃଷ୍ଟି ଘଟତେ ।

(୨) ଭାଷାଂତର - (କ) ପରମାତ୍ମାର ଅଂଶ ହୋଇ ମଧ୍ୟ ଜୀବତିରସ୍କୃତ ଜ୍ଞାନୈଶ୍ୱର୍ଯ୍ୟବାନ୍ କାହିଁକି ହୁଏ ? ପୁନଶ୍ଚ ଯେପରି ବିସ୍ଫୁଲିଙ୍ଗର ଦହନ ଓ ପ୍ରକାଶନ ଅତିରସ୍କୃତ ହୁଏ, ସେପରି ଈଶ୍ୱରାଂଶ ଜୀବର ଜ୍ଞାନ ଓ ଐଶ୍ୱର୍ଯ୍ୟ ଅତିରସ୍କୃତ ହେବା ବିଧେୟ ବୋଲି କୁହାଯାଇଅଛି । ଏହା ସତ୍ୟ ଅଟେ, କିନ୍ତୁ ଜୀବର 'ସୋଽପି' ଅର୍ଥାତ୍ ଜ୍ଞାନୈଶ୍ୱର୍ଯ୍ୟ ତିରୋଭାବ ମଧ୍ୟ, ଦେହଯୋଗାତ୍ ଅର୍ଥାତ୍ ଦେହ, ଇନ୍ଦ୍ରିୟ, ମନ ବୁଦ୍ଧିବିଷୟ, ବେଦନା ପ୍ରଭୃତିର ଯୋଗରୁ ହୁଏ ।

(ଖ) ଏଠାରେ ମଧ୍ୟ ଯଥୋଚିତଦୃଷ୍ଟାନ୍ତ ଅଛି । ଯେପରି ଅରଣ୍ୟର ଅଗ୍ନି ତାହାର ଦହନ ଓ ପ୍ରକାଶନ ସଂପନ୍ନ କରି ନିଜେ ଦହନ ଓ ପ୍ରକାଶନରୁ ତିରୋହିତ ହୁଏ 'ସେପରି

ବିଦ୍ୟାରୁ ପ୍ରତ୍ୟୁପସ୍ଥାପିତ (ଠିଆ ହୋଇଥିବା) ନାମ ଓ ରୂପରୁ ହେବାକୁ ଥିବା ଦେହାଦି ଉପାଧିର ସହ ସମ୍ବନ୍ଧ ହୋଇ ଜୀବୋପାଧିର ଅବିବେକଭ୍ରମରୁ ହେବାକୁଥିବା ଜ୍ଞାନ ଓ ଐଶ୍ୱର୍ଯ୍ୟ ତିରୋହିତ ହୁଅନ୍ତି ।'

(ଗ) ବା ଶବ୍ଦ ଜୀବ ଓ ଈଶ୍ୱରଠାରେ ଅନ୍ୟତ୍ୱଶଙ୍କା ବ୍ୟାବୃତ୍ତି ନିମିତ୍ତ ଅଛି । ପରନ୍ତୁ ଜୀବ ଈଶ୍ୱରଠାରୁ ଅନ୍ୟ ଘଟେ, କାରଣ - ତାହାର ଜ୍ଞାନ ଓ ଐଶ୍ୱର୍ଯ୍ୟ ତିରୋସ୍କୃତ ହୁଏ ଦେହଯୋଗର କଳ୍ପନାରୁ କି ପ୍ରୟୋଜନରୁ ? ନୁହେଁ, ଏହା କୁହାଯାଏ ନାହିଁ । ଜୀବରେ ଈଶ୍ୱରର ଅନ୍ୟତ୍ୱ ଉପପନ୍ନ ହୁଏ ନାହିଁ । କାରଣ - 'ସେୟଂ ଦେବତୈକ୍ଷତ' (ସେହି ଦେବତା ଦେଖିଲା) ଏହି ପ୍ରକାର ଆରମ୍ଭ କରି- 'ଅନେନ ଜୀବେନ'(ମୁଁ ଏହି ଜୀବାତ୍ମା-ରୂପରେ ସେହି ତିନି ଦେବତାଙ୍କଠାରେ ଅନୁପ୍ରବେଶ କରି ନାମ ଓ ରୂପର ବ୍ୟାକରଣ (ବିଶ୍ଳେଷଣ) କରିବ । ଏହି ପ୍ରକାର ଆତ୍ମଶବ୍ଦରୁ ଜୀବର ପରାମର୍ଶ ହୁଏ ।

(ଘ) 'ତ ସତ୍ୟଂ' (ସେ ସତ୍ୟ ଅଟେ, ସେ ଆତ୍ମା ଅଟେ, ହେ ଶ୍ୱେତକେତୁ । ସେ ତୁ ଅଟୁ) ଏହି ଶ୍ରୁତି ଜୀବକୁ ଈଶ୍ୱରାତ୍ମତ୍ୱ ଉପଦେଶ କରେ । ତେଣୁ ଜୀବ ଈଶ୍ୱରଙ୍କଠାରୁ ଅନନ୍ୟ ହୋଇ ଦେହ ସମ୍ବନ୍ଧଦ୍ୱାରାତିରୋହିତ ହୋଇ ଜ୍ଞାନୀ ଓ ଐଶ୍ୱର୍ଯ୍ୟବାନ୍ ହୁଏ । ଏହାଦ୍ୱାରା ଜୀବର ସ୍ୱପ୍ନରେ ସଙ୍କଳ୍ପଜନ୍ୟ ରଥାଦି ସୃଷ୍ଟି ହୁଏନାହିଁ ।

ମୂଳ - (କ) ଯଦି ଚ ସାଙ୍କଳ୍ପିକୀ ସ୍ୱପ୍ନେ ରଥାଦିସୃଷ୍ଟିଃ ସ୍ୟାନ୍ନୈବାନିଷ୍ଟଂ କଶ୍ଚିତ୍ ସ୍ୱପଂ ପଶ୍ୟେତ୍ ,ନହି କଶ୍ଚିଦନିଷ୍ଟଂ ସଙ୍କଳ୍ପୟତେ । ଯତ୍ ପୁନରୁକ୍ତମ୍ - ଜାଗରିତଦେଶ-ଶ୍ରୁତିଃ ସ୍ୱପ୍ନସ୍ୟ ସତ୍ୟତ୍ୱଂ ସ୍ଥାପୟତୀତି ନ ତତ୍ ସାମ୍ୟବଚନଂ ସତ୍ୟତ୍ୱାଭିପ୍ରାୟଂ ସ୍ୱୟଂ-ଜ୍ୟୋତିଷ୍ଟ୍ୱାବିରୋଧାତ୍, ଶ୍ରୁତ୍ୟୈବ ଚ ସ୍ୱପ୍ନେ ରଥାଦ୍ୟଭବସ୍ୟ ଦର୍ଶିତତ୍ୱାତ୍ ।

(ଖ) ଜାଗରି ତ ପ୍ରଭବ ବାସନାନିର୍ମିତତ୍ୱାତ୍ତୁ ସ୍ୱପ୍ନସ୍ୟ ତତ୍ତୁ ଲ୍ୟନିର୍ଭାସତ୍ୱାଭିପ୍ରାୟଂ ତତ୍ । ତସ୍ମାଦୁପପନ୍ନଂ ସ୍ୱପ୍ନସ୍ୟ ମାୟାମାତ୍ରତ୍ୱମ୍ ।

**(୩) ଭାଷାଂତର** - (କ) ଯଦି ସ୍ୱପ୍ନରେ ସଙ୍କଳ୍ପଜନ୍ୟରଥପ୍ରଭୃତି ସୃଷ୍ଟି ହେଲେ ମଧ୍ୟ କୌଣସି ଅନିଷ୍ଟ ସ୍ୱପ୍ନ ଦେଖେ ନାହିଁ, କାରଣ - ଯେ କୌଣସି ଅନିଷ୍ଟ ସଂପର୍କ କରେ ନାହିଁ । ଯାହାପୁଣି କୁହାଯାଇଅଛି - ଜାଗରିତ ଦେଶଶ୍ରୁତି ସ୍ୱପ୍ନରେ ସତ୍ୟତ୍ୱକୁ କହେ । କିନ୍ତୁ ଯେପରି ସାମ୍ୟବଚନ୍ ସତ୍ୟତ୍ୱର ଅଭିପ୍ରାୟରୁ ନୁହେଁ । କାରଣ - ଆତ୍ମାରେ ସ୍ୱୟଂ ଜ୍ୟୋତିଷ୍ଟ୍ୱର ବିରୋଧ ହୁଏ ଓ ଶ୍ରୁତି ଦ୍ୱାରା ରଥାଦିର ଅଭାବକୁ ଦେଖାଏ ।

(ଖ) ଜାଗ୍ରତ ଅବସ୍ଥାରେ ଉତ୍ପନ୍ନ ହେଉଥିବା ବାସନା ନିର୍ମିତ ହେବାରୁ ସ୍ୱପ୍ନମଧ୍ଯ ଜାଗ୍ରତପରି ଅବଭାସ ହୁଏ । ଏହି ଅଭିପ୍ରାୟରୁ ଏହା ସାମ୍ୟବଚନ ଅଟେ । ତେଣୁ ସ୍ୱପ୍ନରେ ମାୟାମାତ୍ରତ୍ୱ ଠିକ୍ ଅଟେ ।



## २ तदभावाधिकरणम् । ८सू० ७-८

## तदभावो नाडीषु तच्छ्रुतेरात्मनि च ॥ ७ ॥

## ତଦଭାବାଧିକରଣ - ୨

## (୧) ତଦଭାବୋ ନାଡ଼ୀଷୁ ତଚ୍ଛ୍ରୁତେରାତ୍ମନି ଚ ।। ୩-୨-୭-)

ତଦଭାବଃ = ପ୍ରକତ ସ୍ୱପ୍ନର ଅଭାବରୂପ ସୁଷୁପ୍ତି, ନାଡ଼ୀଷୁ = ପ୍ରବେଶ ହେବାଦ୍ୱାରା ଆତ୍ମନି = ଆତ୍ମାରେ ହୁଏ । ତଚ୍ଛ୍ରୁତେଃ = କାରଣ - ଶ୍ରୁତିରେ ତାହା ହିଁ କୁହାଯାଇଅଛି ।

(୨) ମୂଳ - (କ) ସ୍ୱପ୍ନାବସ୍ଥା ପରୀକ୍ଷିତା, ସୁଷୁପ୍ତାବସ୍ଥେଦାନୀଂ ପରୀକ୍ଷ୍ୟତେ । ତତ୍ରୈତାଃସୁପ୍ତ ବିଷୟାଃଶ୍ରୁତୟୋ ଭବନ୍ତି । କ୍ୱଚିଚ୍ଛ୍ରୂୟତେ - 'ତଦ୍ୟତ୍ରୈ ତତ୍ସୁପ୍ତଃ ସମସ୍ତ ସଂପ୍ରସନ୍ନଃ ସ୍ୱପ୍ନଂ ନ ବିଜାନୀୟତ୍ ଯାସୁ ତଦା ନାଡ଼ୀଷୁ ସୁପ୍ତୋ ଭବତି' (ଛା ୮-୬-୩) ଇତି ।

(ଖ) ଅନ୍ୟତ୍ର ନାଡ଼ୀରେବାନୁକ୍ରମ ଶ୍ରୂୟତେ - 'ତାଭିଃ ପ୍ରତ୍ୟବସୃପ୍ୟ ପୁରୀତତି ଶେତେ'(ବୃହ ୨-୧-୧୯) ଇତି । ତଥାନ୍ୟତ୍ର ନାଡ଼ୀରେବାନୁକ୍ରମ୍ୟ ତାସୁ ତଦା ଭବତି, ଯଦା ସୁପ୍ତଃସ୍ୱପ୍ନଂ ନ କଂଚନ ପଶ୍ୟତ୍ୟଥସ୍ମିନ୍ ପ୍ରାଣ ଏ ବୈକଧା ଭବତି'(କୈଷୀ- ୪-୧୯); ଭବତି ଇତି । ତଥାନତ୍ର - 'ଯ ଏଷୋଽନ୍ତର୍ହୃଦୟ ଆକାଶସ୍ତସ୍ମିଞ୍ଛେତେ (ବୃହ - ୨-୧-୧୭) ଇତି ।'

(ଗ) ତଥାନ୍ୟତ୍ର - ସତା ସୋମ୍ୟ ତଦା ସଂପନ୍ନୋ ଭବତ ସ୍ୱମପୀତୋ ଭବତି । (ଛା ୬-୮-୧) ଇତି । ତଥା 'ପ୍ରାଜ୍ଞେନାତ୍ମନା ପଂପରିଷ୍ୱକ୍ତୋନ ବାହ୍ୟଂ କିଂଚନ ବେଦ ନାନ୍ତରମ୍ '(ବୃହ - ୪-୩-୨୧) ଇତି ।

**(୨) ଭାଷାଂତର** - (କ) ସ୍ୱପ୍ନାବସ୍ଥାର ପରୀକ୍ଷା କରାଯାଇଅଛି । ବର୍ତ୍ତମାନ ସୁଷୁପ୍ତି ଅବସ୍ଥାରେ ପରୀକ୍ଷା କରାଯିବ । ଏଠାରେ ସୁଷୁପ୍ତି ବିଷୟକ ଶ୍ରୁତିବାକ୍ୟଗୁଡ଼ିକ ଅଛି । କେଉଁଠାରେ 'ତଦ୍ୟତ୍ରୈତତ୍ ସୁପ୍ତଃ'(ଯେଉଁ ସମୟରେ ସମସ୍ତ କରଣବୃତ୍ତିର ଉପସଂହାର କରି ଜୀବ ଶୟନକରେ, ଠିକ୍ ସେହିସମୟରେ (ବାହ୍ୟବିଷୟକ କାଲୁଷ୍ୟ ରହିତ) ସପନ୍ନ ହୋଇ ସ୍ୱପ୍ନଜାଣେ ନାହିଁ କାରଣ - ସେହି ସମୟରେ ଏହା ଏହି ନାଡିରେ ପ୍ରବେଶ କରେ)ଏହା ହିଁ ଶ୍ରୁତି ବାକ୍ୟ ।

(ଖ) ଅନ୍ୟଠାରେ ''ତାଭିଃ ପ୍ରତ୍ୟବସ୍ଥାପ୍ୟ''(ସେହି ନାଡ଼ିଦ୍ୱାରା ପୁରୀତରେ ବୃଦ୍ଧି ସହିତ ଯାଇ ସେ ଶରୀରରେ ବ୍ୟାପ୍ତ ହୋଇ ଶୟନ କରେ ) ଏହିପରି ନାଡ଼ିର ଅନୁକ୍ରମଣ ଶୁଣାଯାଏ । ସେହିପରି ଅନ୍ୟଠାରେ ନାଡ଼ୀର ଅନୁକ୍ରମଣ କରି ସୁପ୍ତ କୌଣସି ସ୍ୱପ୍ନ ଦେଖେ ନାହିଁ । ପରେ ସେ ଏହି ପ୍ରାଣରେ ଏକ ହୁଏ । ଏହାହିଁ ଶ୍ରୁତି । ଏହିପରି ମଧ୍ୟ ଅନ୍ୟତ୍ର

'ଯ ଏଷୋ' (ଯାହା ଏହିହୃଦୟରେ ଆକାଶ ଅଟେ, ସେଠାରେ ସେ ଶୟନ କରେ) ଏହହିଁ ଶ୍ରୁତି ।

(ଗ) ଏହିପରି ଅନ୍ୟତ୍ର 'ସତାସୋମ୍ୟ'( ସେହି ସମୟରେ ହେ ସୋମ୍ୟ !)ଏହା ସତ୍ତା ଦ୍ୱାରା ଉତ୍ପନ୍ନ ହୁଏ, ଏହାନିଜେ ସ୍ୱରୂପକୁ ପ୍ରାପ୍ତ ହୁଏ) ଏହାହିଁ ଶ୍ରୁତି ଅଟେ । ତଥା 'ପ୍ରାଜ୍ଞେନାତ୍ମନା' (ଏହିପରି ଏହି ପୁରୁଷ ପ୍ରଜ୍ଞାତ୍ମାରୁ ଆଲିଙ୍ଗିତ ହେଲାପରେ କୌଣସି ବାହାର ବିଷୟକୁ ଜାଣେ ନାହିଁ କି ଭିତର ବିଷୟକୁ) ଏହାହିଁ ଶ୍ରୁତି କହେ ।

ମୂଳ - (କ) ତନ୍ତ୍ର ସଂଶୟଃ - କିମୋତନି ନାଡ଼୍ୟାଦୀନି ପରସ୍ପରନିରପେକ୍ଷାଣି ଭିନ୍ନାନି ସୁପ୍ତସ୍ଥାନାନ୍ୟାହୋସ୍ୱିତ୍ ପରସ୍ପରାପେକ୍ଷୟୈକଂ ସୁଷୁପ୍ତି ସ୍ଥାନମିତ । କିଂ ତାବତ୍ପ୍ରାପ୍ତମ୍ ? ଭିନ୍ନାନୀତି କୁତଃ ? ଏକାର୍ଥତ୍ୱାତ୍ ।

(ଖ) ନ ହ୍ୟେକାର୍ଥାନାଂ କ୍ୱଚିତ୍ପରସ୍ପରାପେକ୍ଷତ୍ୱଂ ଦୃଶ୍ୟତେ ବ୍ରୀହିଯବାଦୀନାଂ । ତ୍ୱେକାର୍ଥତା ସୁଷୁପ୍ତୌ ଦୃଶ୍ୟତେ - 'ନାଡ଼ୀଷୁ ସୁପ୍ତୋ ଭବତି' (ଛା - ୮-୬-୩) 'ପୁରୀତତି ଶେତେ' (ବୃହ ୨-୧-୧୯) ଇତି ଚ ତନ୍ତ୍ର ତନ୍ତ୍ର ସପ୍ତମୀନିର୍ଦ୍ଦେଶସ୍ୟ ତୁଲ୍ୟତ୍ୱାତ୍ ।

(ଗ) ନନୁ ନୈବଂ ସତି ସପ୍ତମୀ ନିର୍ଦ୍ଦେଶୋ ଦୃଶ୍ୟତେ - 'ସତାସୋମ୍ୟ ତଦା ସଂପନ୍ନୋ ଭବତି' (ଛା - ୬-୧-)ଇତି, ନୈଷଦୋଷଃ, ତତ୍ରାପି ସପ୍ତମ୍ୟର୍ଥସ୍ୟ ଗମ୍ୟମାନ-ତ୍ୱାତ୍ । ବାକ୍ୟଶେଷୋହି ତତ୍ରାୟତନୈଷୀଜୀବଃ ସଦୁପସର୍ପତୀତ୍ୟାହ = 'ଅନ୍ୟତ୍ରାୟତ ନମଲବ୍ଧା ପ୍ରାଣମେବୋପଶ୍ରୟତେ' (ଛା - ୬-୮-୨) ଇତି । ପ୍ରାଣଶବ୍ଦେନ ତତ୍ର ପ୍ରକୃତସ୍ୟ ସତ ଉପାଦାନାତ୍ । ଆୟତନଂ ଚ ସପ୍ତମ୍ୟର୍ଥଃ ।

(ଘ) ସପ୍ତମୀନୁର୍ଦ୍ଦେଶୋଽପି ତତ୍ର ବାକ୍ୟଶେଷେ ଦୃଶ୍ୟତେ - ସତି ସଂପଦ୍ୟ ନ ବିଦୁଃ ସତି ସଂପଦ୍ୟାମହେ '(ଛା ୬-୯-୨) ଇତି । ସର୍ବତ୍ର ଚ ବିଶେଷବିଜ୍ଞାନୋପରମ୍ ଲକ୍ଷଣଂ ସୁଷୁପ୍ତଂ ନ ବିଶିଷ୍ୟତେ । ତସ୍ମାଦେକାର୍ଥତ୍ୱନାଡ଼୍ୟାଜୀନାଂ ବିକଲ୍ପେନ କଦାଚିତ୍ କିଞ୍ଚତସ୍ଥାନଂ ସ୍ୱାପାୟୋପସର୍ପତୀତି ।

**(୩) ଭାଷାଂତର** - (କ) ସେଠାରେ ସଂଶୟ ଯେ ସେହି ନାଡ଼ୀ ଇତ୍ୟାଦି ପରସ୍ପର ନିରପେକ୍ଷ ହୋଇ ପୃଥକ୍ ଭାବେ ସୁଷୁପ୍ତି ସ୍ଥାନ ହୁଅନ୍ତି କି ପରସ୍ପରକୁ ଅପେକ୍ଷା କରିଗୋଟିଏ ସୁଷୁପ୍ତିସ୍ଥାନ ହୁଏ । ତେବେ କ'ଣ ପ୍ରାପ୍ତ ହୁଏ ? ପୂର୍ବ ପ୍ରକ୍ଷ - ଭିନ୍ନସ୍ଥାନହୁଏ

କିପରି ? କାରଣ - ଏକର୍ଥତ୍ୱ ହେତୁ ।

(ଖ) ଏକାର୍ଥକ ବ୍ରୀହି ଯବ ପ୍ରଭୃତିର କୌଣସିଠାରେ ପରଷ୍ପର ସାପେକ୍ଷତ୍ୱ ଦେଖା ଯାଏନାହିଁ । ନାଡୀପ୍ରଭୃତିର ଏକାର୍ଥତା କିନ୍ତୁ ସୁଷୁପ୍ତିରେ ଦେଖାଯାଏ - 'ନାଡ଼ୀଷୁ

 

ସୁପ୍ତୋଭବତି' 'ପୁରୀତତି ଶେତେ' ଏହିପ୍ରକାର ସେହିଶ୍ରୁତିରେ ସପ୍ତମୀର ନିର୍ଦ୍ଦେଶତୁଲ୍ୟ ଅଟେ ।

(ଗ) ପରନ୍ତୁ 'ସତାସୋମ୍ୟ' (ହେ ସୋମ୍ୟ! ସେହି ସମୟରେ ଏହି ସତରୁ ସଂପନ୍ନ ହୋଇଯାଏ) ଏଠାରେ 'ସତ୍ ରେ' ଏହିପରି ସପ୍ତମୀର ନିର୍ଦ୍ଦେଶ ଦେଖାଯାଏ ନାହିଁ । ଏହା କିନ୍ତୁ ଦୋଷ ନୁହେଁ । କାରଣ - ସେଠାରେ ସପ୍ତମୀର ଅର୍ଥ ଗମ୍ୟମାନ ଅଟେ । ସେଠାରେ 'ଆୟତନାଭିଳାଷୀ ଜୀବ ସତ୍‌ରେ ପ୍ରବିଷ୍ଟ ହୁଏ' ଏହି ପ୍ରକାର ବାକ୍ୟଶେଷ ମଧ୍ୟ କହେ । କାରଣ - ଅନ୍ୟତ୍ର (ଅନ୍ୟତ୍ର ସ୍ଥାନ ନ ପାଇ ପ୍ରାଣର ଆଶ୍ରୟ ନିଏ) ଏହିପରି ଏଠାରେ ପ୍ରାଣଶବ୍ଦରୁ ପ୍ରକୃତ ସତ୍ ହିଁ ଗ୍ରହଣ ହୁଏ ଓ ସପ୍ତମୀର ଅର୍ଥ ଆୟତନ ହୁଏ ।

(ଘ) 'ସତିସଂପଦ୍ୟ'(ସତ୍‌କୁ ପ୍ରାପ୍ତ ହୋଇ ସତ୍ ପ୍ରାପ୍ତ ହେଲା ବୋଲି ସେ ଜାଣେ ନାହିଁ) ଏହିପରି ସେଠାରେ ସପ୍ତମୀ ନିର୍ଦ୍ଦେଶ ମମି ବାକ୍ୟଶେଷରେ ଦେଖାଯାଏ । ବିଶେଷ ବିଜ୍ଞାନର ଉତ୍ତମରୂପ ସୁଷୁପ୍ତ ସବୁଠାରେ ସମାନ ହୁଏ । ତେଣୁ ନାଡୀ ପ୍ରଭୃତି ଏକାର୍ଥକ ହେଲେ ଜୀବ ବିକଳ୍ପରେ କେତେବେଳେ କୌଣସି ସ୍ଥାନରେ ଶୟନ ପାଇଁ ପ୍ରବେଶ କରେ ।

ମୂଳ-(କ) ଏବଂ ପ୍ରାପ୍ତେ ପ୍ରତିପାଦ୍ୟତେତଦଭାବୋ ନାଡ଼ୀଷ୍ୱାତ୍ମନି ଚେତି । ତଦଭାବ ଇତି ତସ୍ୟ ପ୍ରକୃତସ୍ୟ ସ୍ୱପ୍ନଦର୍ଶନସ୍ୟାଭାବଃ ସୁଷୁପ୍ତମିତ୍ୟର୍ଥଃ । ନାଡ଼ୀଷ୍ୱାତ୍ମନି ଚେତି ସମୁଚ୍ଚୟେନୈତାନି ନାଡ଼୍ୟାଦୀନି ସ୍ୱାପ୍ନାୟୋପସର୍ପତି ନ ବିକଳ୍ପେନେତ୍ୟର୍ଥଃ । କୁତଃ ? ତଚ୍ଛ୍ରୁତେଃ । ତଥାହି ସର୍ବେଷାମେବ ନାଡ୍ୟାଦୀନାଂ ତତ୍ର ତତ୍ର ସୁଷୁପ୍ତିସ୍ଥାନତ୍ୱଂ ଶ୍ରୂୟତେ ।

(ଖ) ତଚ୍ଚ ସମୁଚ୍ଚୟେ ସଂଗୃହୀତଂ ଭବତି । ବିକଳ୍ପେ ହ୍ୟେଷାଂ ପକ୍ଷେ ବାଧଃ ସ୍ୟାତ୍ । ନନ୍ୱେକାର୍ଥତ୍ୱାଦ୍ ବିକଳ୍ପୋ ନାଡ୍ୟାଦୀନାଂ ବ୍ରୀହିଯବାଦିବଦିତ୍ୟୁକ୍ତମ୍, ନେତ୍ୟୁଚ୍ୟତେ ନ ହ୍ୟେକବିଭକ୍ତି ନିର୍ଦ୍ଦେଶମାତ୍ରର୍ଥେ ଣୈକାର୍ଥକତ୍ୱଂ ବିକଳ୍ପଶ୍ଚାପତତି ।

(ଗ) ନାନାର୍ଥତ୍ୱସମୁଚ୍ଚୟୋରପ୍ୟେକବିଭକ୍ତିନିର୍ଦ୍ଦେଶଦର୍ଶନାତ୍ ପ୍ରାସାଦେ ଶେତେ ପର୍ଯ୍ୟଙ୍କେ ଶେତେ ଇତ୍ୟେବଂସାଦିଷ୍ଟୁ । ତଥେହାପି ନାଡୀଷୁ ପୁରୀତତି ବ୍ରହ୍ମଣି ଚ ସ୍ୱପିତୀତ୍ୟେ-ତଦୁପପଦ୍ୟତେ ସମୁଚ୍ଚୟଃ । ତଥା ଚ ଶ୍ରୁତିଃ-'ତାସୁ ତଦା ଭବତି, ଯଦା ସୁପ୍ତଃ ସ୍ୱପ୍ନଂ ନ କଞ୍ଚନ ପଶ୍ୟତ୍ୟଥାସ୍ମିନ୍ ପ୍ରାଣ ଏବୈକଧା ଭବତି' (କୌଷୀ ୪-୧୯) ଇତ ସମୁଚ୍ଚୟଂ ନାଡୀନାଂ ପ୍ରାଣସ୍ୟ ସୁଷୁପ୍ତୌ ଶ୍ରାବୟତ୍ୟେକ ବାକ୍ୟୋ ପାଦାନାତ୍ ।

(୪) ଭାଷାଂତର- ସିଦ୍ଧାନ୍ତ-(କ) ଏହିପରି ପ୍ରାପ୍ତ ହୁଅନ୍ତେ ପ୍ରତିପାଦନ କରାଯାଇଅଛି- 'ତଦଭାବେ ନଡ଼ୀଷ୍ୱାତ୍ମନି ଚେତି, ତଦଭାବ ସେହି ପ୍ରକୃତ ସ୍ୱପ୍ନ ଦର୍ଶନର

ଅଭାବ ସୁଷୁପ୍ତି ହିଁ ପ୍ରକୃତ ଅର୍ଥ । ନାଡ଼ୀ ଓ ଆତ୍ମାରେ - ଏହି ନାଡ଼ୀ ଆଦିରେ ସମୁଚ୍ଚୟରୁ ଜୀବଶୟନ ପାଇଁ ପ୍ରବେଶ କରେ । କିନ୍ତୁ ବିକଳ୍ପରେ ନୁହେଁ । କିପରି ? ତାହାର ଶ୍ରୁତିର ହେତୁ । ଯେପରି ସମସ୍ତ ନାଡୀର ସେହି ସେହି ଶ୍ରୁତି ଗୁଡ଼ିକରେ ସୁଷୁପ୍ତି ସ୍ଥାନତ୍ୱ ଗ୍ରହଣ ହୁଏ ।

(ଖ) ସେ ସମୁଚୟ ହେଲା ପରେ ସଂଗୃହୀତ ହୁଏ । ବିକଳ୍ପ ହେଲେ ଏହାର ପକ୍ଷରେ ବାଧକ ହେବ । ଏକାର୍ଥକ ହେଲେ ବ୍ରୀହି ଯବାଦିପରି ନାଡୀ ପ୍ରଭୃତିର ବିକଳ୍ପ ଯାହା କୁହାଯାଇଅଛି, ତାହା କିନ୍ତୁ ଠିକ୍ ନୁହେଁ । ସମାନ ବିଭକ୍ତିର ନିର୍ଦ୍ଦେଶମାତ୍ରାରୁ ଏକାର୍ଥକ ଓ ବିକଳ୍ପର ପ୍ରସଙ୍ଗ ହୁଏ ନାହିଁ, କାରଣ-ନାନାର୍ଥତ୍ୱ ଓ ସମୁଚ୍ଚୟରେ ମଧ୍ୟ ସମାନ ବିଭକ୍ତିର ନିର୍ଦ୍ଦେଶ 'ପ୍ରାସାଦରେ ଶୋଇଛି' ପଲଙ୍କ ଉପରେ ଶୋଇଛି, ଇତ୍ୟାଦି ଦେଖାଯାଏ । ଏହିପରି ଏଡି ନାଡ଼ୀରେ ପୁରୀତରେ ଓ ବ୍ରହ୍ମରେ ଶୋଇଛି-ଏହିପରି ସମୁଚ୍ଚୟ ଉପପନ୍ନ ହୁଏ । 'ତାସୁ ସଦା' (ସେହି ନାଡ଼ୀରେ ଯେତେବେଳ ପର୍ଯ୍ୟନ୍ତ ଶୋଇ କୌଣସି ସ୍ୱପ୍ନ ଦେଖେ ନାହିଁ, ସେ ପର୍ଯ୍ୟନ୍ତ ଜୀବ ରହିଥାଏ, ପରେ ଏହି ନାଡ଼ୀରେ ଏକରୂପ ହୁଏ) ଏହିପ୍ରକାର ଶ୍ରୁତି ନାଡ଼ୀ ଓ ପ୍ରାଣର ସୁଷୁପ୍ତିରେ ସମୁଚ୍ଚୟ ଶ୍ରବଣ କରେ, କାରଣ-ଏହା ଏକବାକ୍ୟରେ ଗୃହୀତ ହୋଇଅଛି ।

(୫) ମୂଳ-(କ) ପ୍ରାଣସ୍ୟ ଚ ବ୍ରହ୍ମତ୍ୱଂ ସମଧିଗତମ୍-'ପ୍ରାଣସ୍ତଥାନୁଗମାତ୍' (ବ୍ରସୂ ୧-୧୨୮) ଇତାତ୍ର । ଯଦ୍ୟପି ନିରପେକ୍ଷା ଇବ ନାଡୀଃ ସୁଷୁପ୍ତିସ୍ଥାନତ୍ୱେନ ଶ୍ରାବୟତି 'ଆସୁ ତଦା ନାଡୀଷୁ ସୁପ୍ତୋ ଭବତି' (ଛା ୮-୬-୩) ଇତି, ତତ୍ରାପି ପ୍ରଦେଶାନ୍ତର ପ୍ରସିଦ୍ଧସ୍ୟ ବ୍ରହ୍ମଣୋଽପ୍ରତିଷେଧାନ୍ନାଡୀ ଦ୍ୱାରେଣୈବ ବ୍ରହ୍ମଣ୍ୟେବାବତିଷ୍ଠତ ଇତି ପ୍ରତୀୟତେ ।

(ଖ) ନ ଚୈବମପି ନାଡୀଷୁ ସପ୍ତମୀ ବିରୁଧତେ ନାଡ଼ୀଦ୍ୱାରାପି ବ୍ରହ୍ମୋପସର୍ପନ୍ ସୁପ୍ତ ଏବ ନାଡୀଷୁ ଭବତି । ଯୋହି ଗଙ୍ଗୟା ସାଗରଂ ଗଚ୍ଛତି ଗତ ଏବ ସ ଗଙ୍ଗାୟାଂ ଭବତି । ଅପି ଋତ୍ର ରଶ୍ମିନାଡୀଦ୍ୱାରାତ୍ମକସ୍ୟ ବ୍ରହ୍ମଲୋକମାର୍ଗସ୍ୟ ବିବକ୍ଷିତତ୍ୱାନ୍ନାଡୀସ୍ତୁତ୍ୟର୍ଥଂ ସୁପ୍ତିସଙ୍କୀର୍ତ୍ତନମ୍ ।

(ଗ) 'ନାଡୀଷୁ ସୁପ୍ତୋ ଭବତି' (ଛା ୮-୬-୩) ଇତ୍ୟୁକ୍ତ୍ୱା 'ତଂ ନ କଶ୍ଚନ ପାପ୍ମା ସ୍ପୃଶତି' (ଛା ୮-୬-୩) ଇତି ବ୍ରୁବନ୍ନାଡ଼ୀଃ ପ୍ରଶଂସତି ବ୍ରବୀତି ଚ ପାପ୍ମସ୍ପର୍ଶାଭାବେ ହେତୁମ୍ତେଜସା ହି ତଦା ସଂପନ୍ନୋ ଭବତି' (ଛା ୮-୬-୩) ଇତି । ତେଜସା ନାଡୀଗତେନ ପିତ୍ତାଖ୍ୟେନାଭିବ୍ୟାପ୍ତକରଣୋ ନ ବାହ୍ୟାନ୍ ବିଷୟାନୀକ୍ଷତ ଇତ୍ୟର୍ଥଃ ।

**(୫) ଭାଷାଂତର-** (କ) 'ପ୍ରାଣସ୍ତଥାନୁଗମାତ୍' ଏହ ସୂତ୍ରରେ ପ୍ରାଣରେ ବ୍ରହ୍ମତ୍ୱ ନିଶ୍ଚୟ କରାଯାଏ । 'ଆସୁ ତଦା' (ସେହି ସମୟରେ ଏହି ନାଡୀରେ ପ୍ରବେଶ କରେ) ଏହି ଶ୍ରୁତି ଯେଉଁଠାରେ ଅନ୍ୟକୁ ଅପେକ୍ଷା ନ କରି ନାଡ଼ୀରେ ସୁଷୁପ୍ତିସ୍ଥାନତ୍ୱ ଶ୍ରବଣ



କରାଏ ସେଠାରେ ମଧ୍ୟ ଅନ୍ୟଶ୍ରୁତିରେ ପ୍ରସିଦ୍ଧ ବ୍ରହ୍ମର ପ୍ରତିଷେଧ ନ ହୋଇ ନାଡ଼ୀଦ୍ୱାରା ବ୍ରହ୍ମରେ ଜୀବ ଅବସ୍ଥିତ ହେବା ପ୍ରତୀତ ହୁଏ ।

(ଖ) ଏହା ହେଲାପରେ ନାଡ଼ିରେ ସପପମୀ ବିରୁଦ୍ଧ ହୁଏ ନାହିଁ । କାରଣ-ନାଡ଼ୀ ଦ୍ୱାରା ମଧ୍ୟ ବ୍ରହ୍ମରେ ପ୍ରବେଶ କରି ଜୀବ ନାଡ଼ୀରେ ପ୍ରବେଶ ହୁଏ; ଯାହା ଗଙ୍ଗାଦ୍ୱାରା ସାଗରକୁ ଯାଏ, ସେ ଗଙ୍ଗାରେ ଯାଇ ସାଗରକୁ ଯାଏ । ପୁନଶ୍ଚ ଏଠାରେ ରଶ୍ମିନାଡ଼ୀ ଦ୍ୱାରାତ୍ମକ ବ୍ରହ୍ମଲୋକମାର୍ଗର ବିବକ୍ଷିତ ହେତୁ ନାଡ଼ିର ସ୍ତୁତିପାଇଁ ହିଁ କୁହାଯାଇଅଛି ।

(ଗ)'ନାଡ଼ୀଷୁ ସୁପ୍ତୋ' (ନାଡ଼ିରେ ପ୍ରବେଶ କରେ) ଏହା କହି 'ତଂ ନ କଷ୍ଚନ' (ସେତେବେଳେ କୌଣସି ପାପ ସ୍ପର୍ଶ କରେ ନାହିଁ) ଏହି ପ୍ରକାର କହି ଶ୍ରୁତି ନାଡ଼ୀର ପ୍ରଶଂସା କରେ । 'ତେଜସା ହିଁ' (ତେଜରେ ବ୍ୟାପ୍ତ ହୋଇଯାଏ) ଏହିପରି ଶ୍ରୁତି ପାପ ସ୍ପର୍ଶର ଅଭାବରେ ହେତୁକୁ କହେ । ନାଡ଼ୀ ନାମକ ପିତ୍ତ ନାମକ ତେଜରେ ଅଭିବ୍ୟାପ୍ତ ହୋଇଥିବା ଇନ୍ଦ୍ରିୟ ବାହ୍ୟବିଷୟକୁ ଦେଖେ ନାହିଁ ବୋଲି ଅର୍ଥ ହୁଏ ।

(୬) ମୂଳ-(କ) ଅଥବା-ତେଜସେତି ବ୍ରହ୍ମଣ ଏବାୟଂ ନିର୍ଦ୍ଦେଶଃ, ଶ୍ରୁତ୍ୟନ୍ତରେ 'ବ୍ରହ୍ମୈବ ତେଜ ଏବ' (ବୃହ ୪-୪-୭) ଇତି ତେଜଃଶବ୍ଦସ୍ୟ ବ୍ରହ୍ମଣି ପ୍ରଯୁକ୍ତତ୍ୱାତ୍ । ବ୍ରହ୍ମଣା ହି ତଦା ସଂପନ୍ନୋ ଭବତି ନାଡ଼ୀଦ୍ୱାରେଣାତସ୍ତଂ ନ କଷ୍ଚନ ପାପ୍ମା ସ୍ପର୍ଶତୀତ୍ୟର୍ଥଃ

(ଖ) ବ୍ରହ୍ମସଂପତ୍ତିଶ୍ଚ ପାପ୍ମସ୍ପର୍ଶାଭାବେ ହେତୁଃ ସମଧିଗତଃ-'ସର୍ବେ ପାପ୍ମାନୋଽତ ନିବର୍ତ୍ତନ୍ତେଽପହତପାପ୍ମା ହ୍ୟେଷ ବ୍ରହ୍ମଲୋକଃ (ଛା ୮-୪-୧) ଇତ୍ୟାଦିଶ୍ରୁତିଭ୍ୟଃ । ଏବଂ ଚ ସତି ପ୍ରଦେଶାନ୍ତର ପ୍ରସିଦ୍ଧେନ ବ୍ରହ୍ମଣା ସୁଷୁପ୍ତିସ୍ଥାନେନାନୁଗତୋ ନାଡ଼ୀନାଂ ସମୁଚ୍ଚୟଃ ସମଧିଗତୋ ଭବତି ।

(ଗ) ତଥା ପୁରୀତତୋଽପି ବ୍ରହ୍ମପ୍ରକ୍ରିୟାୟାଂ ସଙ୍କୀର୍ତ୍ତନାତ୍ତଦନୁଗୁଣମେବ ସୁଷୁପ୍ତି-ସ୍ଥାନତ୍ୱଂ ବିଜ୍ଞାୟତେ- 'ଯ ଏଷୋଽନ୍ତର୍ହୃଦୟ ଆକାଶସ୍ତସ୍ମିଂ ଛେତେ' (ବୃହ ୨-୧-୧୭) ଇତି ହୃଦୟାକାଶେ ସୁଷୁପ୍ତିସ୍ଥାନେ ପ୍ରକୃତ ଇଦମୁଚ୍ୟତେ ଇତି ହୃଦୟାକାଶେ ସୁଷୁପ୍ତି ସ୍ଥାନେ ପ୍ରକୃତ ଇଦମୁଚ୍ୟତେ 'ପୁରୀତତି ଶେତେ' (ବୃହ ୨-୧-୧୯) ଇତି ।

(ଘ) ପୁରୀତଦିତି ହୃଦୟ ପରିବେଷ୍ଟନମୁଚ୍ୟତେ । ତଦନ୍ତବର୍ତ୍ତିନ୍ୟପି ହୃଦୟାକାଶେ ଶୟାନଃ ଶକ୍ୟତେ ପୁରୀତତି ଶେତେ ଇତି ବକ୍ତୁମ୍ । ପ୍ରାକାର ପରିକ୍ଷିପ୍ତେଽପି ପୁରେ ବର୍ତ୍ତମାନଃ ପ୍ରାକାରେ ବର୍ତ୍ତତ ଇତ୍ୟୁଚ୍ୟତେ । ହୃଦୟାକାଶସ୍ୟ ଚ ବ୍ରହ୍ମତ୍ୱଂ ସମଧିଗତମ୍ 'ଦହର ଉତ୍ତରେଭ୍ୟଃ' (ବ୍ରସୂ ୧-୩-୧୪) ଇତ୍ୟତ୍ର ।

(ଙ) ତଥା ନାଡ଼ୀପୁରୀତତ୍ ସମୁଚ୍ଚୟୋପି'-ତାଭିଃ ପ୍ରତ୍ୟବସୃପ୍ୟ ପୁରୀତତି ଶେତେ' (ବ୍ରହ୍ମ ୨-୧-୧୯) ଇତ୍ୟେକ ବା କ୍ୟୋପାଦାନାଦବଥମ୍ୟତେ ସତ୍ପ୍ରାଜ୍ଞୟୋଶ୍ଚ ପ୍ରସିଦ୍ଧମେବ ବ୍ରହ୍ମତ୍ୱମ୍ । ଏବମେତାସୁ ଶ୍ରୁତିଷୁ ତ୍ରୀଣ୍ୟେବ ସୁଷୁପ୍ତିସ୍ଥାନାନି ସଙ୍କୀର୍ତ୍ତିତାନି

ନାଡ୍ୟଃ ପୁରୀତଦ୍‌ବ୍ରହ୍ମ ଚେତି । ତତ୍ରାପି ଦ୍ୱାରମାତ୍ରଂ ନାଡ୍ୟ ପୁରୀତଚ୍ଚ, ବ୍ରହ୍ମୈବ ତ୍ୱେକମନପାୟି ସୁଷୁପ୍ତିସ୍ଥାନମ୍ ।

(୬) ଭାଷାଂତର - (କ) ଅଥବା 'ତେଜସା' (ତେଜଦ୍ୱାରା) ବ୍ରହ୍ମକୁ ନିର୍ଦ୍ଦେଶ କରେ । କାରଣ- ଅନ୍ୟଶ୍ରୁତିରେ 'ବ୍ରହ୍ମୈବ ତେଜ ଏବ' (ଏହା ବ୍ରହ୍ମ ଅଟେ, ତେଜ ଅଟେ) ଏହି ପ୍ରକାର ତେଜଃଶବ୍ଦ ବ୍ରହ୍ମରେ ପ୍ରଯୁକ୍ତ ହୁଏ । ସେତେବେଳେ ଜୀବ ନାଡ଼ୀ ଦ୍ୱାରା ବ୍ରହ୍ମସହିତ ସଂପନ୍ନ ହୁଏ, ତେଣୁ ତାହାକୁ କୌଣସି ପାପ ସ୍ପର୍ଶ କରେ ନାହିଁ ବୋଲି ଅର୍ଥ ପ୍ରତୀତି ହୁଏ ।

(ଖ) 'ସର୍ବେ ପାପ୍ମାନୋ (ସଂପୂର୍ଣ୍ଣ ପାପ ତେଣୁ ନିବୃତ୍ତ ହୋଇଯାଏ, କାରଣ- ଏହି ବ୍ରହ୍ମଲୋକ ପାପଶୂନ୍ୟ ଅଟେ) ଇତ୍ୟାଦି ଶ୍ରୁତିଦ୍ୱାରା ବ୍ରହ୍ମସଂପତ୍ତି ପାପସ୍ପର୍ଶର ଅଭାବରୁ ହେତୁ ରୂପରେ ଜଣାଯାଏ । ଏହା ହେଲା ପରେ ଅନ୍ୟ ଶ୍ରୁତିରେ ସୁଷୁପ୍ତି ସ୍ଥାନ ରୂପରେ ପ୍ରସିଦ୍ଧ ବ୍ରହ୍ମଲୋକ ସହିତ ଆନୁଗତନାଡ଼ୀ ପ୍ରଭୃତିର ସମୁଚ୍ଚୟ ଜଣାଯାଏ ।

(ଗ) ଏହିପରି ପୁରୀତତ୍‌ର ମଧ୍ୟ ବ୍ରହ୍ମପ୍ରକରଣରେ ସଙ୍କୀର୍ତ୍ତନ ହେବାରୁ ବ୍ରହ୍ମର ଅନୁଗୁଣ ହିଁ ସୁଷୁପ୍ତି ସ୍ଥାନ ରୂପରେ ଜଣାଯାଏ - 'ଯ ଏଷୋଽନ୍ତହୃଦୟ' (ଏହି ଯାହା ହୃଦୟ ଭିତର ଆକାଶ ଅଟେ, ସେଥିରେ ଶୟନ କରେ) ଏହିପରି ସୁଷୁପ୍ତିସ୍ଥାନ ରୂପ ଦ୍ୱାରା ପ୍ରକୃତ ହୃଦୟାକାଶ ବିଷୟରେ 'ପୁରୀତତି ଶେତେ' (ପୁରୀତତ୍‌ରେ ଶୟନ କରେ) ବୋଲି କୁହାଯାଇଅଛି ।

(ଘ) ହୃଦୟର ପରିବେଷ୍ଟନକୁ 'ପୁରୀତତ୍' କୁହାଯାଏ । ତାହାର ଅନ୍ତର୍ବର୍ତ୍ତୀ ମଧ୍ୟ ହୃଦୟ ଆକାଶରେ ଶୟନ କରି ପୁରୀତତ୍‌ରେ ଶୟନ କରେ ବୋଲି କୁହାଯାଇପାରେ । ଗୃହପରିକ୍ଷିପ୍ତ ହୋଇଥିବା ନଗରରେ ରହି ମଧ୍ୟ ଗୃହ ହୋଇ ରହିବା ହିଁ କୁହାଯାଇଅଛି ଏବଂ 'ଦହର ଉତ୍ତରେଭ୍ୟଃ' ଏଠାରେ ହୃଦୟାକାଶକୁ ବ୍ରହ୍ମତ୍ୱରୂପେ ସ୍ଥିର କରାଯାଇଅଛି ।

(ଙ) ସେପରି 'ତାଭିଃ ପ୍ରତ୍ୟବସ୍ତପ୍ୟ' (ନାଡ଼ୀଦ୍ୱାରା ପ୍ରବେଶ କରି ପୁରୀତତ୍‌ରେ ଶୟନ କରେ) ଏହି ଶ୍ରୁତିଦ୍ୱାରା ନାଡୀ ଓ ପୁରୀତତ୍‌ର ସମୁଚ୍ଚୟ ଏହି ବାକ୍ୟରେ ଉପାଦାନ ହେତୁ ଅବଗତ ହୁଏ । ସତ୍ ଓ ପ୍ରାଜ୍ଞ ବ୍ରହ୍ମବୋଲି ଜଣାଶୁଣା କଥା । ଏହିପ୍ରକାର ଶ୍ରୁତିରେ ନାଡୀ, ପୁରୀତତ୍ ଓ ବ୍ରହ୍ମ ଏହି ତିନୋଟି ସୁଷୁପ୍ତିସ୍ଥାନ କୁହାଯାଇଛି ।

(୭) ମୂଳ-(କ) ଅପି ଚ ନାଡ୍ୟଃ ପୁରୀତଦ୍ ବା ଜୀବସ୍ୟୋପାଧ୍ୟାଧ,ର ଏବ ଭବତି, ତତ୍ରାସ୍ୟ କରଣାନି ବର୍ତ୍ତନ୍ତି ଇତି । ନ ହ୍ୟୁପାଧିସମ୍ବନ୍ଧମନ୍ତରେଣ ସ୍ୱତ ଏବ ଜୀବସ୍ୟାଧାରଃ କଶ୍ଚିତ୍ ସମ୍ଭବତ, ବ୍ରହ୍ମାବ୍ୟତିରେକେଣ ସ୍ୱମହିମ ପ୍ରତିଷ୍ଠିତତ୍ୱାତ୍ । ବ୍ରହ୍ମାଧାରତ୍ୱମପ୍ୟସ୍ୟ ସୁଷୁପ୍ତେ ନୈବାଧାରାଧେୟଭେଦାଭି ପ୍ରାୟେ ଣୋଚ୍ୟତେ, କଥଂ ତର୍ହି ? ତାଦାତ୍ମ୍ୟାଭିପ୍ରା ୟେଣ ।

(ଖ) ଯତ ଆହ- 'ସତା ସୋମ୍ୟ ତଦାସଂପନ୍ନୋ ଭବତି ସ୍ୱମପୀତୋ ଭବତି', (ଛା୬-୮-୧) ଇତି । ସ୍ୱଶବ୍ଦେନାତ୍ମାଭିଲପ୍ୟତେ, ସ୍ୱରୂପମାପନ୍ନଃ ସୁପ୍ତୋ ଭବତୀତ୍ୟର୍ଥଃ । ଅପି ଚ ନ କଦାଚିଜ୍ଜୀବସ୍ୟ ବ୍ରହ୍ମଣା ସଂପତ୍ତିର୍ନାସ୍ତି, ସ୍ୱରୂପସ୍ୟାନପାୟିତ୍ୱାତ୍ । ସ୍ୱପ୍ନଜାଗରିତୟୋସ୍ତୂପାଧିସଂପର୍କବଶାତ୍ ପରରୂପାପତ୍ତିମିବାପେକ୍ଷ ତଦୁପଶନାତ୍ ସୁଷୁପ୍ତେଃ ସ୍ୱରୂପାପତ୍ତିର୍ବିବକ୍ଷ୍ୟତେ 'ସ୍ୱମପୀତୋ ଭବତି' ଅତଶ୍ଚ ସୁଷୁପ୍ତାବସ୍ଥାୟାଂ କଦାଚିତ୍ ସତ୍ତା ସଂପଦ୍ୟତେ, କଦାଚିତ୍ ନ ସଂପଦ୍ୟତ ଇତ୍ୟଯୁକ୍ତମ୍ ।

(ଗ) ଅପି ଚ ସ୍ଥାନ ବିକଳ୍ପାଭ୍ୟୁପଗମେଽପି ବିଶେଷବିଜ୍ଞାନୋପଶମଲକ୍ଷଣଂ ତାବତ୍ ସୁଷୁପ୍ତଂ ନ କ୍ୱଚିଦ୍ ବିଶିଷ୍ୟତେ । ତତ୍ର ସତି ସଂପନ୍ନସ୍ତାବତ୍ତଦେକତ୍ୱାନ୍ନ ବିଜାନାତୀତି ଯୁକ୍ତମ୍, 'ତତ୍କେନ କଂ ବିଜାନୀୟାତ୍' (ବୃହ ୨-୪-୧୪) ଇତିଶ୍ରୁତେଃ । ନାଡ଼ୀଷୁ ପୁରୀତତି ଶୟାନସ୍ୟ ନ କିଞ୍ଚିଦବିଜ୍ଞାନେ କାରଣଂ ଶକ୍ୟଂ ବିଜ୍ଞତୁମ୍, ଭେଦବିଷୟତ୍ୱାତ୍ । 'ଯତ୍ର ବା ଅନ୍ୟଦିବ ସ୍ୟାତ୍ତତ୍ରାନ୍ୟୋଽନ୍ୟତ୍ ପଶ୍ୟେତ୍' (ବୃହ ୪-୩-୩୧) ଇତିଶ୍ରୁତେଃ ।

(ଘ) ନନୁ ଭେଦବିଷୟସ୍ୟାପ୍ୟତିଦ୍ୱାରାଦି କାରଣ- ମ ବିଜ୍ଞାନେ ସ୍ୟାତ୍ । ବାଢମ୍, ଏବଂ ସ୍ୟାଦ୍ୟଦି ଜୀବଃ ସ୍ୱତଃ ପରିଚ୍ଛିନ୍ନୋଽଭ୍ୟୁପଗମ୍ୟେତ,-ଯଥା ବିଷ୍ଣମିତ୍ରଃ ପ୍ରବାସୀ ସ୍ୱଗୃହଂ ନ ପଶ୍ୟତି, ନ ତୁଜୀବସ୍ୟୋପାଧିବ୍ୟତିରେକେଣ ପରିଚ୍ଛେଦୋ ବିଦ୍ୟତେ । ଉପାଧିଗତମେବା ତିଦୂରାଦିକାରଣମବିଜ୍ଞାନ ଇତି । ତଦୁଚ୍ୟେତ, ତଥାପ୍ୟୁପାଧେରୁପଶାନ୍ତତ୍ୱାତ୍ ସତ୍ୟମେବ ସଂପନ୍ନେ'ନ ବିଜାନାତୀତ ଯୁକ୍ତମ୍ ।

**(୭) ଭାଷାଂତର-** (କ) ନାଡ଼ୀ ଅଥବା ପୁରୀତତ୍ ଜୀବର ଉପାଧି ଆଧାର ଅଟେ କାରଣ-ସେଥିରେ କରଣ ଅଛି । ଉପାଧିସମ୍ବନ୍ଧ ବିନା ଜୀବର ସ୍ୱତଃ କୌଣସି ଆଧାର ହୋଇପାରେ ନାହିଁ । କାରଣ-ଜୀବ ବ୍ରହ୍ମର ଅଭିନ୍ନ ହୋଇ ସ୍ୱମହିମାରେ ପ୍ରତିଷ୍ଠିତ ହୁଏ ଏବଂ ସେହି ଜୀବର ସୁଷୁପ୍ତିରେ ବ୍ରହ୍ମାଧାରତ୍ୱ ମଧ୍ୟ ଆଧାର ଅଧେୟ ଭେଦର ଅଭିପ୍ରାୟରୁ କୁହାଯାଉନାହିଁ । କିନ୍ତୁ ତାଦାତ୍ମ୍ୟ ଅଭିପ୍ରାୟ ଦ୍ୱାରା କୁହାଯାଉଛି ।

(ଖ) କାରଣ- 'ସ ତା ସେମ୍ୟ ! (ହେ ସୋମ ସେହି ସମୟରେ ଏହି ସତ୍‌ର ସହିତ ସଂପନ୍ନ ହୋଇଯାଏ- ଏହା ନିଜର ସ୍ୱରୂପକୁ ପ୍ରାପ୍ତ ହୋଇଯାଏ) ଏହା ହିଁ ଶ୍ରୁତି କହେ । ସ୍ୱଶବ୍ଦରୁ ଆତ୍ମା କୁହାଯାଏ । ଶୟନ କରି ସ୍ୱରୂପକୁ ପ୍ରାପ୍ତ ହୁଏ ବୋଲି ଜଣାଯାଏ । ବେଳେବେଳେ ଜୀବର ବ୍ରହ୍ମସହିତ ସଂପତ୍ତି ହୁଏ ନାହିଁ, କାରଣ-ତାହାର ସ୍ୱରୂପ ଅବିନାଶୀ ଅଟେ । ସ୍ୱପ୍ନ ଓ ଜାଗ୍ରତ୍ ଅବସ୍ଥାରେ ଉପାଧିର ସଂପର୍କରୁ ଭିନ୍ନରୂପତା ପ୍ରାପ୍ତି ହୁଏ ତାହାକୁ ଅପେକ୍ଷା କରି ସୁଷୁପ୍ତିରେ ତାହାର ଉପଶମ ହେଲେ ସ୍ୱପରୂପ୍ରାପ୍ତି 'ସ୍ୱମପୀତେ ଭବତି' (ଏହିପ୍ରକାର ବିବକ୍ଷିତ ହୁଏ । ତେଣୁ ସୁଷୁପ୍ତି ଅବସ୍ଥାରେ ବେଳେବେଳେ ସତ୍‌ଦ୍ୱାରା ସଂପନ୍ନ ହୁଏ, କେତେବେଳେ ମଧ୍ୟ ସଂପନ୍ନ ହୁଏ ନାହିଁ ବୋଲି କହିବା ଠିକ୍ ନୁହେଁ ।

(ଗ) ଯଦି ସ୍ଥାନ ବିକଳ୍ପ ସ୍ୱୀକାର କରାଯାଏ, ତେବେ ମଧ୍ୟ ବିଶେଷବିଜ୍ଞାନର ଅଭାବରୂପ ସୁଷୁପ୍ତିର କୌଣସିଠାରେ ଭେଦରହେ ନାହିଁ । ସୁଷୁପ୍ତିରେ ସତ୍ ସହିତ 'ସଂପନ୍ନ ହୋଇ ତାହାସହ ଏକତ୍ୱ ହୋଇ ମଧ୍ୟ ଜାଣେ ନାହିଁ । କାରଣ- 'ତତ୍ କେନକଂ (ସେଠାରେ କିଏ କାହାକୁ ଜାଣେ) ଏହା ହିଁ ଶ୍ରୁତି । ନାଡ଼ି ଓ ପୁରୀତତ୍‌ରେ ଶୟନ କରୁଥିବା ଜୀବର ଅଜ୍ଞାନରେ କୌଣସି କାରଣରୁ ଜାଣିହୁଏ ନାହିଁ, କାରଣ- 'ଯତ୍ର ବା' (ଜାଗ୍ରତ ଓ ସ୍ୱପ୍ନାବସ୍ଥାରେ ଆତ୍ମାଠାରୁ ଭିନ୍ନ ହୋଇ ରହେ ଓ ନିଜେ ଅନ୍ୟକୁ ଦେଖେ) ଏହି ଶ୍ରୁତିଭେଦ ବିଷୟକ ଅଟେ ।

(ଘ) ପରନ୍ତୁ ଭେଦବିଷୟକ ଅଜ୍ଞାନରେ ମଧ୍ୟ ଅତିଦୂରାଦି କାରଣ ହେବା ଉଚିତ୍, ଏହା ଠିକ୍ । ଯଦି ଜୀବ ସ୍ୱତଃ ପରିଚ୍ଛିନ୍ନ ଭାବେ ସ୍ୱୀକାର କରାଯାଏ, ଯେପରି ପ୍ରବାସୀ ବିଷ୍ଣୁମିତ୍ର ନିଜଘରକୁ, ଦେଖେ ନାହିଁ । ପରନ୍ତୁ ଜୀବ ଉପାଧିବିନା ପରିଚ୍ଛେଦ ନୁହେଁ । ଯଦି କହ ଯେ- ଉପାଧିଗତ ଅତିପୂର ଇତ୍ୟାଦି ଅଜ୍ଞାନର କାରଣ ହୁଏ, ତଥାପି ଉପାଧି ଉପଶାନ୍ତ ହେଲେ ତାହା ସତ୍‌ରେ ସଂପନ୍ନ ହୋଇ ଜାଣେ ନାହିଁ ବୋଲି କହିବା ଠିକ୍ ।

(୮) ମୂଳ-(କ) ନ ଚ ବୟମିହ ତୁଲ୍ୟବନ୍ନାଡ୍ୟାଦି ସମୁଚ୍ଚୟଂ ପ୍ରତିପାଦୟାମଃ । ନ ହି ନାଡ୍ୟଃ ସୁପ୍ତିସ୍ଥାନଂ ପୁରୀତଦ୍ ବେତ୍ୟନେନ ବିଜ୍ଞନେନ କିଞ୍ଚିତ୍ ପ୍ରୟୋଜନମସ୍ତି, ତଦ୍ଧ୍ୟେତଦ୍‌ବିଜ୍ଞାନପ୍ରତିବଦ୍ଧଂ କିଞ୍ଚିତ୍ ଫଳଂ ଶ୍ରୂୟତେ ।

(ଖ) ନାପ୍ୟେତଦ୍‌ବିଜ୍ଞାନଂ ଫଳବତଃ କସ୍ୟଚିଦଙ୍ଗମୁପଦିଶ୍ୟତେ, ବ୍ରହ୍ମ ତ୍ୱନପାୟି ସୁପ୍ତିସ୍ଥାନମିତ୍ୟେତତ୍ ପ୍ରତିପାଦୟାମଃ । ତେନ ତୁ ବିଜ୍ଞାନେନ ପ୍ରୟୋଜନମସ୍ତି ଜୀବସ୍ୟ ବ୍ରହ୍ମାତ୍ମତ୍ୱାବଧାରଣଂ ସ୍ୱପ୍ନଜାଗରିତ ବ୍ୟବହାରବିମୁକ୍ତତ୍ୱାବଧାରଣଞ୍ଚ । ତସ୍ମାଦାତ୍ମୈବ ସୁପ୍ତିସ୍ଥାନମ୍ ।

(୮) ଭାଷାଂତର-(କ) ଏଠାରେ ଆମ୍ଭେ ବ୍ରହ୍ମ ପରି ନାଡ଼ୀ ପ୍ରଭୃତି ସମୁଚ୍ଚୟର ପ୍ରତିପାଦନ କରୁନାହୁଁ । କାରଣ-ନାଡ଼ି ଓ ପୁରୀତତ୍ ସୁଷୁପ୍ତିସ୍ଥାନ ଅଟେ, ଏହି ବିଜ୍ଞାନଦ୍ୱାରା କିଛି ପ୍ରୟୋଜନ ହୁଏ ନାହିଁ ।

(ଖ) ଏହି ବିଜ୍ଞାନ କୌଣସି ଫଳବାନ୍ (ଅଙ୍ଗୀର) ଅଙ୍ଗରୂପରେ ଉପଦିଷ୍ଟ ନୁହେଁ, ଅବିନାସୀ ବ୍ରହ୍ମ କିନ୍ତୁ ସୁଷୁପ୍ତିସ୍ଥାନ ଅଟେ ବୋଲି ଆମ୍ଭେ ପ୍ରତିପାଦନ କରୁଁ । ଏହି ବିଜ୍ଞାନରୁ କିନ୍ତୁ ଜୀବର ବ୍ରହ୍ମାତ୍ମତ୍ୱ ନିଶ୍ଚୟ ଓ ସ୍ୱପ୍ନଜାଗରିତ ବ୍ୟବହାରରୁ ବିମୁକ୍ତତ୍ୱ ନିଶ୍ଚିତ ଭାବେ ପ୍ରୟୋଜନ ହୁଏ, ତେଣୁ ଆତ୍ମା ସୁଷୁପ୍ତିରସ୍ଥାନ ଅଟେ ।

## अत: प्रवोधोऽस्मात् ॥ ८ ॥

## (୧) ଅତଃ ପ୍ରବୋଧୋଽସ୍ମାତ୍ ॥ ୩-୨-୮॥

ପରମାତ୍ମା ସୁଷୁପ୍ତିସ୍ଥାନ ଅଟେ । ଅତଃ = ଅତଏବ; ଅସ୍ମାତ୍ = ପରମାତ୍ମାରୁ ଜୀବର ପ୍ରବୋଧ= ଉତ୍‌ଥାନସ୍ୱାପପ୍ରକରଣରେ 'ସତଦ୍ ଆଗମ୍ୟ ଇତ୍ୟାଦି ଶ୍ରୁତିଦ୍ୱାରା ଉପଦିଷ୍ଟ ହୁଏ ।



(୨) ମୂଳ - (କ) ଯସ୍ମାତଦ୍ବୈବସ୍ଵତିସ୍ଥାନମତ ଏବ ଚକାରଣାନ୍ନିତ୍ୟବଦେବାସ୍ମାକାମୃନଃ ପ୍ରବୋଧଃ ସ୍ଵାପାଧିକାରେ ଶିଷ୍ୟତେ 'କୁତ ଏତଦାଗାତ୍' (ବୃହ-୨-୧-୨୬) ଇତ୍ୟସ୍ୟ ପ୍ରଶ୍ନସ୍ୟ ପ୍ରତିବଚନାବସରେ 'ଯଥାଗ୍ନେଃ କ୍ଷୁଦ୍ରା ବିସ୍ଫୁଲିଙ୍ଗାଃ ବ୍ୟୁଚରନ୍ତ୍ୟେବମେବୈତସ୍ମା-ଦାତ୍ମନଃ ସର୍ବେ ପ୍ରାଣାଃ' (ଛା ୬-୧୦-୨) ଇତି ଚ । ବିକଳ୍ପ୍ୟମାନେଷ୍ବୁ ତୁ ସୁଷପ୍ତିସ୍ଥାନେ କଦାଚିନ୍ନାଡୀଭ୍ୟଃ ପ୍ରତିବୁଧ୍ୟତେ କଦାଚିତ୍ ପୁରୀତତଃ କଦାଚିଦାମ୍ନନ ଇତ୍ୟଶାସିଷ୍ୟତ୍ । ତସ୍ମାଦପ୍ୟାତ୍ମୈବ ସୁଷପ୍ତିସ୍ଥାନମିତି ।

**(୨) ଭାଷାଂତର**-(କ) କାରଣ-ପରମାତ୍ମା ସୁଷୁପ୍ତିସ୍ଥାନ ଅଟେ । ତେଣୁ ସ୍ଵାପପ୍ରକରଣରେ କୁତ 'ଏତଦ୍ ଗାତ୍' (ଏହା କେଉଁଠାରୁ ଆସିଲା) ଏହି ପ୍ରଶ୍ନର ଉତ୍ତରର ଅବସରରେ 'ଯଥାଗ୍ନେଃ' (ଯେପରି ଅଗ୍ନିରୁ ଅନେକ କ୍ଷୁଦ୍ର ବିସ୍ଫୁଲିଙ୍ଗ ବାହାରନ୍ତି, ସେପରି ମଧ୍ୟ ଏହି ଆତ୍ମାରୁ ସମସ୍ତ ପ୍ରାଣ ବାହାରନ୍ତି) ଇତ୍ୟାଦି ଶ୍ରୁତିରୁ ନିତ୍ୟ ପ୍ରତିପାଦନଜୀବର ପ୍ରବୋଧରୂପକ ଉପଦେଶ ଦିଆଯାଇଅଛି ।

(ଖ) 'ସତ ଆଗମ୍ୟ' (ଯେଉଁ ପ୍ରଜାମାନେ ସତ୍‌ରୁ ଆସି ମଧ୍ୟ ସତ୍‌ରୁ ଆସିଛନ୍ତି ବୋଲି ଜାଣନ୍ତି ନାହିଁ) ଏହା ହିଁ ଶ୍ରୁତିରେ ଅଛି । ସୁଷୁପ୍ତି ଅବସ୍ଥାର ବିକଳ୍ପ ହେଲେ କେତେବେଳେ ନାଡୀରୁ, କେଳେବେଳେ ପୁରୀତତ୍‌ରୁ ଏବଂ କେତେବେଳେ ପରମାତ୍ମାରୁ ଜୀବର ପ୍ରବୋଧ ହୁଏ ବୋଲି ଶ୍ରୁତି ଉପଦେଶ କରେ । ତେଣୁ ପରମାତ୍ମାର ହିଁ ସୁଷୁପ୍ତି ସ୍ଥାନ ଅଟେ ।

## ३ कर्मानुस्मृतिशब्दविध्याधिकरणम् । ॥ सू० ९ ॥

## କର୍ମାନୁସ୍ମୃତିଶବ୍ଦବିଧ୍ୟଧିକରଣ - ୩

## स एव तु कर्मानुस्मृतिशब्दविधिभ्यः ॥ ९ ॥

## (୯) ସ ଏବ ତୁ କର୍ମାନୁସ୍ମୃତିଶବ୍ଦବିଧିଭ୍ୟଃ ॥୩-୨-୯॥

ସ ଏବ ତୁ = ଯେଉଁ ଜୀବ ଶୋଇଥାଏ, ସେ ଉଠେ । କର୍ମାନୁସ୍ମୃତିଶବ୍ଦବିଧିଭ୍ୟଃ = କାରଣ-ଅବିଶେଷକର୍ମ ଆତ୍ମାର ଅନୁସ୍ମୃତି ଓ ବିଧିରୁ ହିଁ ଜଣାପଡ଼େ ।

ମୂଳ-(କ) ତସ୍ୟାଃ ପୁନଃ ସତ୍ ସଂପତ୍ତେଃ ପ୍ରତିବୁଧ୍ୟମାନ କିଂ ଯ ଏବ ସତ୍ ସଂପନ୍ନ ସ ଏବ ପ୍ରତିବୁଧ୍ୟତ ଉତ ସ ବାଽନ୍ୟୋ ବେତି ଚିନ୍ତ୍ୟତେ । ତତ୍ପ୍ରାପ୍ତଂ ତାବଦନିୟମ ଇତି । କୁତଃ ? ଯଦା ହି ଜଳରାଶୌ କଶ୍ଚିଜ୍ଜଳବିନ୍ଦୁଃ ପ୍ରକ୍ଷିପ୍ୟତେ, ଜଳରାଶିରେବ ସ ତଦା ଭବତି, ପୁନରୁଦ୍ଧରଣେ ଚ ସ ଏବ ଜଳବିନ୍ଦୁର୍ଭବତୀତି ଦୁଃସଂପାଦମ୍ ।

(ଖ) ତଦ୍ ବତ୍ ସୁପ୍ତଃ ପରେଣୈକତ୍ୱମାପନ୍ନଃ ସଂପସୀଦତୀତି ନ ସ ଏବ ପୁନରୁତ୍ଥାହିମର୍ହତି । ତସ୍ମାତ୍ ସ ଏବେଶ୍ୱରୋ ବାଽନ୍ୟୋ ବାଜୀବଃ ପ୍ରତିବୁଧ୍ୟତ ଇତ୍ୟେବଂ

ପ୍ରାପ୍ତ ଇଦମାହ-ସ ଏବ ତୁଜୀବଃ ସୁପ୍ତଃ ସ୍ୱାସ୍ଥ୍ୟଂ ଗତଃ ପୁନରୁତ୍ତିଷ୍ଠତି, ନାନ୍ୟଃ । କସ୍ମାତ୍ ? କର୍ମାନୁଶବ୍ଦବିଧିଭ୍ୟଃ ।

(ଗ) ବିଭଜ୍ୟହେତୁଂ ଦର୍ଶୟିଷ୍ୟାମି । କର୍ମଶେଷାନୁଷ୍ଠାନ ଦର୍ଶନାତ୍ତାବାତ୍ ସ ଏବୋତ୍ଥାତୁମର୍ହତି, ନାନ୍ୟଃ । ତଥାହି-ପୂର୍ବେଦ୍ୟୁରନୁଷ୍ଠିତସ୍ୟ କର୍ମଣୋଽପରେଦ୍ୟୁଃ ଶେଷମନୁତିଷ୍ଠନ୍ ଦୃଶ୍ୟତେ । ନ ଚାନ୍ୟେନ ସାମିକୃତସ୍ୟ କର୍ମଣୋଽନ୍ୟଃ ଶେଷକ୍ରିୟାୟାଂ ପ୍ରବର୍ତ୍ତିତୁମର୍ହତି, ଅତିପ୍ରସଙ୍ଗାତ୍ । ତସ୍ମାଦେକ ଏବ ପୂର୍ବେଦ୍ୟୁଶରେଦ୍ୟୁଶ୍ଚୈକସ୍ୟ କର୍ମଣଃ କର୍ତ୍ତେତି ଗମ୍ୟତେ ।

(ଘ) ଇତଶ୍ଚ ସ ଏବୋତ୍ତିଷ୍ଠତି ଯତ୍ କାରଣମତୀତେଽହନ୍ୟହମଦୋଽଦ୍ରାକ୍ଷମିତି ପୂର୍ବାନୁଭୂତସ୍ୟ ପଶ୍ଚାତ୍ସ୍ମରଣମନ୍ୟସ୍ୟୋତ୍ଥାନେ ନୋପପଦ୍ୟତେ । ନହ୍ୟନ୍ୟଦୃଷ୍ଟମନ୍ୟୋଽ-ନୁସ୍ମର୍ତ୍ତୁମର୍ହତି । ସୋଽହମିତି ଚାତ୍ମାନୁସ୍ମରଣମାତ୍ମାନ୍ତରୋତ୍ଥାନେ ନାବକଳ୍ପତେ ।

**(୨) ଭାଷାଂତର-** (କ) ସେହି ସତ୍‌ସଂପ୍ରତିରୁ ପୁଣି କିଏ ଜାଗି ଉଠେ ? ଯିଏ ସତ୍‌ସଂପନ୍ନ ହୁଏ, ସେ କାହିଁକି ଜାଗ୍ରତ ହୁଏ ଅଥବା ତାହାଠାରେ ସେ କାହିଁକି ଭିନ୍ନ ଅଟେ ? ବୋଲି ବିଚାର କରାଯାଇଅଛି । ପୂର୍ବପକ୍ଷ-ଏହା ଅନିୟମ ଅଟେ । ଏହିପରି ପ୍ରାପ୍ତ ହୁଅନ୍ତେ ଏହା କିପରି ବୋଲି କୁହାଯାଇଅଛି । ଯେତେବେଳେ ଜଳରାଶିରେ କୌଣସି ଜଳବିନ୍ଦୁକୁ ପ୍ରକ୍ଷିପତ୍ ହୁଏ, ସେତେବେଳେ ସେ ଜଳରାଶି ହୋଇଯାଏ । ପୁଣି ଉଦ୍ଧିରଣ କଲାପରେ ସେ ଜଳବିନ୍ଦୁ ବୋଲି କହିବା ଯୁକ୍ତି ସଂଗତ ।

(ଖ) ତେଣୁ ସୁପ୍ତପୁରୁଷ ପରମାତ୍ମା ସହ ଏକତ୍ରକୁ ପ୍ରାପ୍ତ ହୋଇ ଅତ୍ୟନ୍ତ ପ୍ରସନ୍ନ ହୁଅନ୍ତି, ଅତଃ ସେ ପୁଣି ଉତ୍‌ଥାନ ପାଇଁ ଯୁକ୍ତ ନୁହେଁ । ତେଣୁ ସେହି ଈଶ୍ୱର ଅଥବା ଅନ୍ୟଜୀବ ପ୍ରତିବୁଦ୍ଧ ହୁଏ । ସିଦ୍ଧାନ୍ତ-ଏହା ଉପରେ କୁହାଯାଇଛି- ସେହି ଜୀବ ସୁପ୍ତସ୍ୱାସ୍ଥ୍ୟ (ସ୍ୱରୂପପ୍ରାପ୍ତି) ପ୍ରାପ୍ତ କରି ପୁଣି ଉଠେ, ଅନ୍ୟ କିଏ ନୁହେଁ । କିପରି ? କର୍ମ ଅନୁସ୍ମୃତି ଶବ୍ଦ ଓ ବିଧିଦ୍ୱାରା ଉଠେ ।

(ଗ) ବିଭାଗ କରି ହେତୁକୁ ଦେଖାଯିବ । କର୍ମ-ଶେଷର ଅନୁଷ୍ଠାନ ଦର୍ଶନରୁ ସେ ଜୀବ ଉଠିବା ପାଇଁ ସମର୍ଥ ହୁଏ । ଅନ୍ୟ କିଏ ନୁହେଁ । ଯେପରି ପୂର୍ବଦିନରେ ଅନୁଷ୍ଠିତ କର୍ମର ଅବଶିଷ୍ଟ ଅଂଶକୁ ଅନ୍ୟଦିନରେ ଅନୁଷ୍ଠିତ କରିବାର ଦେଖାଯାଏ । ଏକରୁ ଅଧେ କରି କର୍ମର ଶେଷକ୍ରିୟାରେ ଅନ୍ୟକିଛି ପ୍ରବୃତ୍ତି ହେଲେ ଅତି-ପ୍ରସଙ୍ଗ ହେତୁ ସମର୍ଥ ହୁଏ ନାହିଁ । ତେଣୁ ଏକ ହିଁ ପୂର୍ବ ଓ ଅପର (ପର) ଦିନ ଏକକର୍ମର କର୍ତ୍ତା ଅଟେ ବୋଲି ଜଣାଯାଏ ।

(ଘ) ତେଣୁ ସେ ସୁଷୁପ୍ତିରୁ ଉଠେ । କାରଣ-ପୂର୍ବଦିନରେ 'ମୁଁ ଏହା ଦେଖିଥିଲି, ଏହିପ୍ରକାର ପୂର୍ବାନୁଭୂତର ପଶ୍ଚାତ୍ସ୍ମରଣ ଅନ୍ୟଜଣେ ଉଠିଲାପରେ ଉପପନ୍ନ ହୁଏ ନାହିଁ ।



କାରଣ- ଅନ୍ୟଦୃଷ୍ଟ ପଦାର୍ଥର ଅନ୍ୟକୁ ଅନୁସ୍ମରଣ କରିବା ଠିକ୍ ନୁହେଁ । ତେଣୁ 'ସୋଽହମ୍' ଏହିପରି ନିଜର ଅନୁସ୍ମରଣ ଆସାଂର ଉଠିଲା ପରେ ସମ୍ଭବ ନୁହେଁ ।

(୩) ମୂଳ-(କ) ଶବ୍ଦେଭ୍ୟଶ୍ଚ ତସ୍ୟୈବୋତ୍ଥାନମବଗମ୍ୟତେ । ତଥାହି-ପୁନଃ, ପ୍ରତିନ୍ୟାୟଂ ପ୍ରତିଯୋନ୍ୟାଦ୍ରବତି ବୁଦ୍ଧାନ୍ତାୟୈବ' (ବୃହ ୪-୩-୧୬), 'ଇମାଃ ସର୍ବାଃ ପ୍ରଜା ଅହରହର୍ଗଚ୍ଛନ୍ତ୍ୟଂ ଏତଂ ବ୍ରହ୍ମଲୋକଂ ନ ବିନ୍ଦତି' (ଛା ୮-୩-୨), 'ତ ଇହ ବ୍ୟାଘ୍ରୋ ବା ସିଂହୋବା ବୃକୋ ବା ବରାହୋ ବା ପତଙ୍ଗୋ ବା ଦଂଶୋ ବା ମଶକୋ ବା ଯଦ୍ୟଦ୍ ଭବନ୍ତି ତଦା ଭବନ୍ତି' (ଛା ୬-୯-୩) ଇତ୍ୟେବମାଦୟଃ ଶବ୍ଦାଃ ସ୍ୱାପପ୍ରବୋଧାଧିକାରେ ପଠିତା ନାମାନ୍ତରୋତ୍ଥାନେ ସାମଞ୍ଜସ୍ୟମୀୟୁଃ ।

(ଖ) କର୍ମବିଦ୍ୟା ବିଧିଭ୍ୟଶ୍ଚୈବମେବାବଗ୍ୟତେ । ଅନ୍ୟଥାହି କର୍ମବିଦ୍ୟାବିଧୟୋଽନର୍ଥକାଃ ସ୍ୟୁଃ । ଅନ୍ୟୋତ୍ତାନପକ୍ଷେ ହି ସୁପ୍ତମାତ୍ରୋମୁଚ୍ୟେତ ଇତ୍ୟାପଦ୍ୟେତ । ଏବଂ ଚେତ୍ ସ୍ୟାଦ୍ ବଦ କିଂ କାଲାନ୍ତରଫଳେ କର୍ମଣା ବିଦ୍ୟାୟା ବା କିନ୍ତୁ ସ୍ୟାତ୍, ଅପି ଚାନ୍ୟୋତ୍ଥାନପକ୍ଷେ ଯଦି ତାବଚ୍ଛରୀରାନ୍ତରେ ବ୍ୟବହାରମାଣୋ ଜୀବଉତ୍ତିଷ୍ଠେତ୍ ତତ୍ରତ୍ୟବ୍ୟବହାର ଲୋପ ପ୍ରସଙ୍ଗଃ ସ୍ୟାତ୍ ।

(ଗ) ଅଥ ତତ୍ର ସୁପ୍ତ ଉତ୍ତିଷ୍ଠେତ କାଳ୍ପନାନର୍ଥକ୍ୟଂ ସ୍ୟାତ୍ । ଯୋହି ଯସ୍ମିଂଚ୍ଛରୀରେ ସୁପ୍ତଃ ସ ତସ୍ମିନ୍ନୋତ୍ତିଷ୍ଠନ୍ ଯସ୍ମିଂଚ୍ଛରୀରେ ସୁପ୍ତୋଽନ୍ୟସ୍ମିନ୍ ଉତ୍ତିଷ୍ଠୀତି କୋଽସ୍ୟାଂ କଳ୍ପନାୟାଂ ଲାଭଃ ସ୍ୟାତ୍ । ଅଥ ମୁକ୍ତ ଉତ୍ତିଷ୍ଠେଦନ୍ତବାନ୍ ମୋକ୍ଷ ଆପଦ୍ୟେତ । ନିବୃତ୍ତା ବିଦ୍ୟସ୍ୟ ଚ ପୁନରୁତ୍ଥାନମନୁଦପନ୍ନମ୍ । ଏତେନେଶ୍ୱରସ୍ୟୋତ୍ଥାନଂ ପ୍ରତ୍ୟୁକ୍ତମ୍, ନିତ୍ୟନିବୃତ୍ତାବିଦ୍ୟାତ୍ୱତ୍ । ଅକୃତାଭ୍ୟାଗମକୃତବିପ୍ରଣାଶୌ ଚ ଦୁର୍ନିବାରାବନ୍ୟୋତ୍ ଥାନପକ୍ଷେ ସ୍ୟାତ । ତସ୍ମାତ୍ ସ ବାତ୍ତିଷ୍ଠତ୍, ନାନା ଇତି ।

**(୩) ଭାଷାନ୍ତର-** (କ) ଶ୍ରୁତିବାକ୍ୟରୁ ପୁଣି ତାହାର ଉତ୍ଥାନ ଅବଗତ ହୁଏ । କାରଣ-ପୁନଃ ପ୍ରତିନ୍ୟାୟଃ (ପୁଣି ଯେଉଁ ପ୍ରକାରର ଆସିଥାଏ ଓ ଯେଉଁଠାରୁ ଆସିଥାଏ, ସେ ପ୍ରତି ଯୋନିଜୀବ ସେହି ଜାଗରିତ ସ୍ଥାନକୁ ଫେରିଯାଏ) 'ଇମାଃ ସର୍ବାଃ' (ସେ ସମସ୍ତ ପ୍ରଜା ପ୍ରତିଦିନ ଯାଇ ମଧ୍ୟ ବ୍ରହ୍ମଲୋକକୁ ଜାଣେ ନାହିଁ । 'ତ ଇହ' (ସେମାନେ ଏହି ଲୋକରେ ବ୍ୟାଘ୍ର, ସିଂହ, ଗଧ, ବରାହ, କୀଟପତଙ୍ଗ, ମାଛି ବା ମଶା ଯିଏ ଯାହା ସୁଷୁପ୍ତ ପୂର୍ବରୁ ହୋଇଥାଏ, ସେ ତାହାହିଁ ହୁଏ) ଇତ୍ୟାଦି ସୁଷୁପ୍ତି ଓ ଜାଗରିତର ପ୍ରକରଣରେ ପଠିତ ଶ୍ରୁତିଗୁଡ଼ିକ ଅନ୍ୟ ଆତ୍ମାର ଉତ୍ଥାନରେ ସଙ୍ଗତ ହେବେ ନାହିଁ ।

(ଖ) କର୍ମବିଧି ଓ ବିଦ୍ୟାବିଧିରୁ ଏହା ଅବଗତ ହୁଏ, ନୋଚେତ୍, କର୍ମବିଧି ଓ ବିଦ୍ୟାବିଧି ଅନର୍ଥକ ହେବ । ଅନ୍ୟର ଉତ୍ଥାନପକ୍ଷରେ ଶୋଇଥିବା ସମସ୍ତେ ମୁକ୍ତ ହେବା ହିଁ ପ୍ରସକ୍ତ ହେବ । ଯଦି ଏପରି ହୁଏ, ତେବେ ଏହାର ଉତ୍ତର ଦିଆଯାଇ ପାରେ ଯେ-

କାଳାନ୍ତରେ ଫଳ ଦେଉଥିବା କର୍ମ ଓ ବିଦ୍ୟାର ପ୍ରୟୋଜନ କଣ ହେବ ? ଅନ୍ୟ ଉତ୍‌ଥାନ ପକ୍ଷରେ ଯଦି ଅନ୍ୟଶରୀରରେ ବ୍ୟବହାର କରୁଥିବା ଜୀବ (ସେହି ଶରୀରରେ) ଉଠେ, ସେଠାରେ ହେବାକୁ ଥିବା ବ୍ୟବହାର ଲୋପ ହେବ ।

(ଗ) ଯଦି ସେଠାରେ ଶୋଇ କରି ଉଠେ, ତେବେ କଳ୍ପନା ମଧ୍ୟ ବ୍ୟର୍ଥ ହେବ, କାରଣ-ଯାହା ଯେଉଁ ଶରୀରରେ ସୁପ୍ତ, ସେ ସେଠାରୁ ଉଠେ ନାହିଁ । ଅନ୍ୟ ଶରୀରରେ ଶୋଇ ଅନ୍ୟ ଶରୀରରେ ଉଠେ । କିନ୍ତୁ ଏହା କଳ୍ପନା କରିବା ଦ୍ୱାରା ଲାଭ କଣ ହେବ ? ଯଦି ମୁକ୍ତ ଜୀବ ଉଠେ, ତେବେ ଅନିତ୍ୟର ମୋକ୍ଷ ପ୍ରସଙ୍ଗ ହେବ ? କାରଣ-ନିବୃତ୍ତ ଅବିଦ୍ୟାପ୍ରାଣୀର ପୁନରୁତ୍‌ଥାନ ହେବ ନାହିଁ । ତେଣୁ ଈଶ୍ୱରର ଉତ୍‌ଥାନ ନିରାକରଣ ହୋଇଛି । କାରଣ-ସେ ନିତ୍ୟ ଅବିଦ୍ୟାରୁ ନିବୃତ୍ତ ହୁଏ । ଅନ୍ୟର ଉତ୍‌ଥାନ ପକ୍ଷରେ ଅକୃତାଭ୍ୟାଗମ ଓ କୃତକର୍ମର ହାନି ଦୁର୍ନିବାର ହେବ । ତେଣୁ ସେ ଉଠେ, ଅନ୍ୟ କିଏ ଉଠେ ନାହିଁ ।

(୪) ମୂଳ-(କ) ଯତ୍ ପୁନରୁକ୍ତମ-ଯଥା ଜଳରାଶୌ ପ୍ରକ୍ଷିପ୍ତୋ ଜଳବିନ୍ଦୁର୍ନୋଦ୍ଧର୍ତ୍ତୁଂ ଶକ୍ୟତ ଏବଂ ସତି ସଂପନ୍ନୋ ଜୀବୋ ନୋତ୍‌ପତିତୁମର୍ହତୀତି, ତତ୍ ପରିହୀୟତେ-ଯୁକ୍ତଂ ତତ୍ର ବିବେକକାରଣାଭାବାଜ୍ଜଳବିନ୍ଦୋରନୁଦ୍ଧରଣମ୍, ଇହ ତୁ ବିଦ୍ୟତେ ବିବେକକାରଣଂ କର୍ମ ଚାବିଦ୍ୟା ଚେତି ବୈଷମ୍ୟମ୍ ।

(ଖ) ଦୃଷ୍ୟତେ ଚ ଦୁର୍ବେବେଚୟୋରପ୍ୟସ୍ମଜ୍ଜାତୀୟୈଃ ସଂସୃଷ୍ଟୟୋ ହଂସେନ ବିବେଚନମ୍ ଅପି ଚ ନ ଜୀବୋ ନାମ କଶ୍ଚିତ୍ ପରସ୍ମାଦନ୍ୟୋ ବିଦ୍ୟତେ ଯୋ ଜଳ ବିନ୍ଦୁରିବ ଜଳରାଶେଃ ସତୋ ବିବିଚ୍ୟେତ ।

(ଗ) ସଦେବ ତୂପାଧିସଂପର୍କାଜ୍ଜୀବ ଇତ୍ୟୁପଚର୍ଯ୍ୟତ ଇତ୍ୟସକୃତ୍ ପ୍ରପଞ୍ଚିତମ୍ । ଏବଂ ସତି ଯାବଦେକୋପାଧିଗତା ବନ୍ଧାନୁବୃତ୍ତିସ୍ତାବଦେକ ଜୀବ ବ୍ୟବହାରଃ । ଉପାଧ୍ୟାନ୍ତର ଗତାୟାଂ ତୁ ବନ୍ଧାନୁ ବନ୍ଧାନୁବୃତ୍ତୌ ଜୀବାନ୍ତର ବ୍ୟବହାରଃ । ସ ଏବାୟମୁପାଧିଃ ସ୍ୱାପ-ପ୍ରବୋଧୟୋର୍ବୀଜାଙ୍କୁରନ୍ୟାୟେନେତ୍ୟତଃ ସ ଏବ ଜୀବଃ ପ୍ରତିବୁଧ୍ୟତ ଇତି ଯୁକ୍ତମ୍ ।

(୪) ଭାଷାଂତର - (କ) ଯାହା ପୁଣି କୁହାଯାଇଅଛି ଯେ - ଯେପରି ଜଳରାଶିରେ ପ୍ରକ୍ଷିପ୍ତ ଜଳବିନ୍ଦୁ ପୃଥକ ହୋଇପାରେ ନାହିଁ, ସେପରି ସତ୍ (ବ୍ରହ୍ମ)ରେ ସଂପନ୍ନ ହୋଇ ଜୀବ ଉଠିପାରେ ନାହିଁ । ତାହାର ପରିହାର କରାଯାଇଅଛି- ବିବେକ (ଭେଦ) କାରଣର ଅଭାବରୁ ଏଠାରେ ଜଳବିନ୍ଦୁର ଅନୁଦ୍ଧରଣ ହୁଏ । ପରନ୍ତୁ ବିବେକ ହେତୁ ଏଠାରେ କର୍ମ ଓ ଅବିଦ୍ୟା ହୁଏ - ଏହାହିଁ ବୈଷମ୍ୟ ।

(ଖ) ଯଦ୍ୟପି ମିଶିଯାଇଥିବା ଜଳ ଓ କ୍ଷୀରର ଭେଦ ଆମ୍ଭପକ୍ଷରେ ଦୁଷ୍କର ଅଟେ, ତଥାପି ସେଗୁଡ଼ିକୁ ହଂସ ବିବେଚନ କରିପାରେ । କିନ୍ତୁ ଜୀବ କଦାପି

 

ପରମାତ୍ମାଠାରୁ ଭିନ୍ନ ନୁହେଁ । ଯେଉଁ ଜଳରାଶିରେ ଜଳବିନ୍ଦୁ ପରି ସତ୍‌ରୁ ବିବିକ୍ତ (ପୃଥକ) କରାଯାଏ ।

(ଗ) ସଦ୍‌ବ୍ରହ୍ମ କିନ୍ତୁ ଉପାଧିର ସଂବନ୍ଧରୁ ଜୀବ ହୁଏ ବୋଲି ଉପଚାର କରାଯାଏ । ଏହା ମଧ୍ୟ ବାରମ୍ବାର କୁହାଯାଇଛି । ଏହିପରି ହେଲେ ସେତେବେଳେ ଏକ ଉପାଧିଗତ ବନ୍ଧର ଅନୁବୃତ୍ତି ହୁଏ, ଯେତେବେଳେ ଏକ ଜୀବର ବ୍ୟବହାର ହୁଏ । ସୁଷୁପ୍ତି ଓ ଜାଗରିତରେ ଏହି ଉପାଧି ବୀଜାଙ୍କୁର ନ୍ୟାୟରେ ହିଁ ସମ୍ଭବ । ତେଣୁ ସେହି ଜୀବ ପ୍ରତି ବୁଦ୍ଧ ହୁଏ ବୋଲି କହିବା ଠିକ୍ ।

## ४ मुग्धेऽर्द्धसंपत्त्याधिकरणम् । सू० १०

## ମୁଗ୍‌ଧେଽର୍ଦ୍ଧସଂପତ୍ତ୍ୟାଧିକରଣମ୍-

**मुग्धेऽर्धसंपत्तिः परिशेषात् ॥ १० ॥**

**(୧) ମୁଗ୍‌ଧେଽର୍ଦ୍ଧସଂପତ୍ତିଃ ପରିଶେଷାତ୍ ॥୩-୨-୧୦॥**

ମୁଗ୍‌ଧେ-ମୂର୍ଚ୍ଛାବସ୍ଥାରେ ଜୀବର ଅର୍ଦ୍ଧସମ୍ପତ୍ତିଃ=ଅର୍ଦ୍ଧସୁଷୁପ୍ତି ହୁଏ । କାରଣ-ପରିଶେଷାତ୍=ପରିଶେଷରେ ଏହା ଜଣାପଡ଼େ ।

(୨)-ମୂଳ (କ) ଅସ୍ତିମୁଗ୍‌ଧୋ ନାମ ଯଂ ମୂର୍ଚ୍ଛିତ ଇତି ଲୌକିକାଃ କଥୟନ୍ତି, ସ ତୁ କିମବସ୍ଥ ଇତି ପରୀକ୍ଷାୟା ମୁଚ୍ୟତେ - ତିସ୍ରବାବଦବସ୍ଥାଃ ଶରୀରସ୍ଥସ୍ୟ ଜୀବସ୍ୟ ପ୍ରସିଦ୍ଧାଃ-ଜାଗରିତଂ ସ୍ୱପ୍ନଂ ସୁଷୁପ୍ତମିତି । ଚତୁର୍ଥୀ ଶରୀରାଦପସୃପ୍ତିଃ, ନ ତୁ ପଞ୍ଚମୀ କାଚିଦାବସ୍ଥା ଜୀବସ୍ୟଶ୍ରୁତୌ ସ୍ମୃତୌ ବା ପ୍ରସିଦ୍ଧାସ୍ତି ।

(ଖ) ତସ୍ମାଚ୍ଚତସୃଣାମେବା ବସ୍ଥାନାମନ୍ୟତମାବସ୍ଥା ମୂର୍ଚ୍ଛାତ୍ୟେବଂ ପ୍ରାପ୍ତେ କ୍ରମଃ-=ନତାବନ୍‌ମୁଗ୍‌ଧୋ ଜାଗରିତାବସ୍ଥୋ ଭବିତୁମର୍ହତି । ନ ହ୍ୟୟମିନ୍ଦ୍ରିୟୈର୍ବିଷୟାନୀକ୍ଷତୋ ସ୍ୟାଦେତତ୍-ଇଷୁକାରନ୍ୟାୟେନ ମୁଗ୍‌ଧୋ ଭବିଷ୍ୟତି । ଯଥେଷୁ କାରୋ ଜାଗ୍ରଦ ପୀଷ୍ୱାସକ୍ତମନସ୍ତୟା ନାନ୍ୟାନ୍ ବିଷୟାନୀକ୍ଷତ ଇତି, ନ, ଅଚେତୟମାନତ୍ୱାତ୍ ।

(ଗ) ଇଷୁକାରୋ ହି ବ୍ୟାପୃତମନା ବ୍ରବୀତି-ଇଷୁମେବାହମେତାବନ୍ତଂ କାଲମୁପ-ଲଭମାନୋଽଭୂବମିତି । ମୁଗ୍‌ଧସ୍ତ ଲବ୍‌ଧସଂଜ୍ଞୋବ୍ରବୀତି-ଅନ୍ଧେ ତମସ୍ୟହମେତାବନ୍ତଂ କାଲଂ ପ୍ରକ୍ଷିପ୍ତୋଽଭୁବନଂ କିଞ୍ଚିନ୍ମୟା ଚେତି ତମିତି । ଜାଗ୍ରତଶ୍ଚୈକବିଷୟକ୍ତଚେସୋଽପି ଦେହୋ ବିଧ୍ରିୟତେ, ମୁଗ୍‌ସ୍ୟ ତୁ ଦେହୋ ଧରଣ୍ୟାଂ ପତତି ।

(୨) ଭାଷାଂତର- (କ) ଯେଉଁ ଲୋକ ମୂର୍ଚ୍ଛିତ ତାହାକୁ 'ମୁଗ୍‌ଧ' କହନ୍ତି । ତାହାର ଅବସ୍ଥା କିପରି ? ତେଣୁ ଏହି ପରୀକ୍ଷାରେ କୁହାଯାଇଅଛି ଯେ- ଶରୀରରେ

ରହିଥିବା ଜୀବର ତିନୋଟି ଅବସ୍ଥା ପ୍ରସିଦ୍ଧ ଅଟେ । ଯଥା-ଜାଗରିତ, ସ୍ୱପ୍ନ ଓ ସୁଷୁପ୍ତି । ଚତୁର୍ଥ ଅବସ୍ଥା ହେଉଛି - ଶରୀରରୁ ଉତ୍‌କ୍ରାନ୍ତି । କିନ୍ତୁ ଜୀବର ପଞ୍ଚମ ଅବସ୍ଥା ଶ୍ରୁତି ବା ସ୍ମୃତିରେ ପ୍ରସିଦ୍ଧ ନାହିଁ ।

(ଖ) ତେଣୁ ମୂର୍ଚ୍ଛା ଚାରୋଟି ଅବସ୍ଥା ମଧ୍ୟରୁ ଗୋଟିଏ ଅବସ୍ଥା ବୋଲି ପୂର୍ବପକ୍ଷ କହନ୍ତେ ତାହାର ଉତ୍ତରରେ ଆମ୍ଭେ କହୁଁ କି - ମୂର୍ଚ୍ଛିତ ଜାଗରିତ ଅବସ୍ଥା ଯୁକ୍ତ ନୁହେଁ । କାରଣ-ଏହି ଇନ୍ଦ୍ରିୟଠାରୁ ବିଷୟଗୁଡ଼ିକର ଲକ୍ଷଣ କରାଯାଇ ନାହିଁ । ପରନ୍ତୁ ଏଠାରେ ମୂର୍ଚ୍ଛିତ ଇଷୁକାରନ୍ୟାୟରେ ହୁଏ ବୋଲି ଶଙ୍କା ହୁଏ । ଯେପରି ବାଣର ନିର୍ମାଣ ସାବଧାନ ହୋଇ ମନୋନିବେଶ କରେ ଓ ଅନ୍ୟ ବିଷୟକୁ ଦେଖେ ନାହିଁ, ସେପରି ପ୍ରହାର ଦ୍ୱାରା ଉତ୍ପନ୍ନ ହେଉଥିବା ଦୁଃଖ ଅନୁଭବଦ୍ୱାରା ମନରେ ବ୍ୟଗ୍ର ହେବାରୁ ତାହା ଜାଗ୍ରତ ହୋଇ ମଧ୍ୟ ମୁଗ୍ଧ ଅନ୍ୟବିଷୟକୁ ଦେଖେ ନାହିଁ, କାରଣ - ସେ ଚେତନ ରହିତ ଅଟେ ।

(ଗ) କିନ୍ତୁ ଇଷୁକାର ବ୍ୟାପୃତମନା ହୋଇ କହେ - ମୁଁ ଏହିକାଳ ପର୍ଯ୍ୟନ୍ତେ ବାଣକୁ ଉପଲବ୍ଧ କରିଥିଲି । ମୂର୍ଚ୍ଛିତ କିନ୍ତୁ ଚେତନା ପାଇ କହେ ଯେ - ଏ ପର୍ଯ୍ୟନ୍ତ ମୁଁ ଘୋର ଅନ୍ଧକାରରେ ପଡ଼ିଥିଲି, ମୁଁ କିଛି ଜାଣି ନଥିଲି, ଗୋଟିଏ ବିଷୟରେ ଆସକ୍ତ ଚିତ୍ତବାନ୍‌ଜାଗ୍ରତ-ପୁରୁଷର ମଧ୍ୟ ଦେହ ଦଣ୍ଡାୟମାନ ରହେ । କିନ୍ତୁ ମୂର୍ଚ୍ଛିତର ଦେହ ପୃଥିବୀ ଉପରେ ପଡ଼ିରହେ ।

(୩) ମୂଳ-(କ) ତସ୍ମାନ୍ ଜାଗର୍ତ୍ତିଃ, ନାପି ସ୍ୱପ୍ନାନ୍ ପଶ୍ୟତି, ନିଃସଂଜ୍ଞକତ୍ୱାତ୍ ନାପି ମୃତଃ ପ୍ରାଣୋଷ୍ମଣୋର୍ଭାବାତ୍ । ମୁଗ୍ଧେ ହି ଜନ୍ତୌ ମୃତୋଽୟଂ ସ୍ୟାନ୍ନ ବା ମୃତ ଇତି ସଂଶୟାନା ଉଷ୍ମାସ୍ତି ନାସ୍ତୀତି ହୃଦୟଦେଶମାଲଭନ୍ତେ ନିଶ୍ଚୟାର୍ଥଂ ପ୍ରାଣୋଽସ୍ତି ନାସ୍ତୀତି ଚ ନାସିକାଦେଶମ୍ ।

(ଖ) ଯଦି ପ୍ରାଣୋଷ୍ମଣୋରସ୍ତିତ୍ୱଂ ନାବଗଚ୍ଛନ୍ତି, ତତୋ ମୃତୋଽୟମିତ୍ୟଧ୍ୟବସାୟ ଦହନାୟାରଣ୍ୟଂ ନୟନ୍ତି । ଅଥ ତୁ ପ୍ରାଣମୁଷ୍ମାଣଂ ବା ପ୍ରତିପଦ୍ୟନ୍ତେ ତତୋ ନାୟଂ ମୃତ ଇତ୍ୟଧ୍ୟବସାୟ ସଂଜ୍ଞାଲାଭାୟ ଭିଷଜ୍ୟନ୍ତି । ପୁରୁଷରୁତ୍ଥାନାଚ୍ଚ ନ ଦିଷ୍ଟଂ ଗତଃ । ନହି ଯମଂ ଗତୋ ଯମରାଷ୍ଟ୍ରାତ୍ ପ୍ରତ୍ୟାଗଚ୍ଛନ୍ତି ।

(ଗ) ଅସ୍ତୁ ତର୍ହିସୁଷୁପ୍ତଃ ନିଃସଂଜ୍ଞ ତ୍ୱାଦମୃତତ୍ୱାଚ୍ଚ, ନ ବୈଲକ୍ଷଣ୍ୟାତ୍ । ମୁଗ୍ଧଃ କଦାଚିଚ୍ଚିରମପି ନୋଚ୍ଛ୍ୱସିତି ସବେପଥୁରସ୍ୟ ଦେହୋ ଭବତି, ଭୟାନକଂ ଚ ବଦନଂ ବିସ୍ଫାରିତେ ନେତ୍ରେ । ସୁଷୁପ୍ତସ୍ତୁ ପ୍ରସନ ବଦନସ୍ତୁଲ୍ୟକାଳଂ ପୁନଃ ପୁନରୁଚ୍ଛ୍ୱସିତି, ନିମୀଲିତେ ଅସ୍ୟ ନେତ୍ରେ ଭବତଃ, ନ ଋସ୍ୟ ଦେହା ବେପତେ । ପାଣିପେଷଣମାତ୍ରେଣ ଚ ସୁଷୁପ୍ତମୁତଥାପୟନ୍ତି ।

 

(ଘ) ନ ତୁ ମୁଗ୍ଧ ମୁଦ୍‌ଗରଘାତେନାପି । ନିମିତ୍ତଭେଦଶ୍ଚ ଭବତିମୋହସ୍ୱାପୟୋଃ, ମୁସଳସଂପାତାଦିନିମିତ୍ତତ୍ୱାନ ମୋହସ୍ୟ, ଶ୍ରମାଦିନିମିତ୍ତତ୍ୱାଚ୍ଚ ସ୍ୱାପସ୍ୟ । ନ ଚ ଲେକେଽସ୍ତି ପ୍ରସିଦ୍ଧିର୍ମୁଗ୍ଧଃ ସୁପ୍ତ ଇତି । ପରିଶେଷଦର୍ଦ୍ଧସଂପତ୍ତିଃ ମୁଗ୍ଧତେତ୍ୟବଗଚ୍ଛାମାଃ ନିଃସଙ୍ଗତ୍ୱାତ୍ ସଂପନ୍ନ ଇତରସ୍ମାଦ୍ ବୈଲକ୍ଷଣ୍ୟାଦସଂପନ୍ନ ଇତି ।

(ଙ) କଥଂ ପୁନରର୍ଦ୍ଧସଂପତ୍ତି ର୍ମୁଗ୍ଧତେତି ଶକ୍ୟତେ ବକ୍ତୁମ୍ ? ଯାବତା ସୁପ୍ତଂ ପ୍ରତି ତାବଦୁକ୍ତଂଶ୍ରୁତ୍ୟା-'ସତା ସୋମ୍ୟ ତଦା ସଂପନ୍ନୋ ଭବତି' (ଛା-୬-୩-୧) ଇତି । ଅତ୍ର ସ୍ତେନୋଽସ୍ତେନୋ ଭବତି' (ବୃହ ୪-୩-୨୨), 'ନୈତଂ ସେତୁମହୋରାତ୍ରେ ତରଣେ ନ ଜରା ନ ମୃତ୍ୟୁର୍ନ ଶୋକୋ ନ ସୁକୃତଂ ନ ଦୁଷ୍କୃତମ' (ଛା ୮-୪-୧) ଇତ୍ୟାଦି ।

**(୩) ଭାଷାଂତର-** (କ) ତେଣୁ ମୁଗ୍ଧ ଜାଗ୍ରତ ନୁହେଁ, ଓ ସେ ସ୍ୱପ୍ନ ଦେଖେ ନାହିଁ । କାରଣ-ସେ ଚେତନାରହିତ ଅଟେ । ମୃତକ ମଧ୍ୟ ସ୍ୱପ୍ନ ଦେଖେ ନାହିଁ, କାରଣ-ତାହାଠାରେ ପ୍ରାଣ ଓ ଉଷ୍ମ ବିଦ୍ୟମାନ ଅଛି । ମୁଗ୍ଧ ପ୍ରାଣୀର ବିଷୟରେ ସେ ମରିଗଲା ଅଥବା ମରେ ନାହିଁ - ଏହି ପ୍ରକାର ସଂଶୟ କରି ଲୋକ ସେଠାରେ ଗରମ ହୁଏ କି ନାହିଁ - ଏହା ନିଶ୍ଚିତ କରିବା ପାଇଁ ହୃଦୟ ଭାଗ ସ୍ପର୍ଶ କରେ, ନାହିଁ । ପ୍ରାଣ କି ନୁହେଁ - ଏହି ବିଷୟରେ ନାସ୍ତିକା ଦେଶ ସ୍ପର୍ଶ କରେ ନାହିଁ ।

(ଖ) ଯଦି ପ୍ରାଣ ଓ ଉଷ୍ମର ଅସ୍ତିତ୍ୱ ଅନୁଭବ ନ କରାଯିବ, ତେବେ ସେ ମରି ନାହିଁ ବୋଲି ସ୍ଥିର କରି ଚେତନା ପାଇ ବା ପାଇଁ ଚିକିତ୍ସା କରନ୍ତି । ପୁନଶ୍ଚ ସେ ଉଠିଲେ ମୁଗ୍ଧ ମୃତ ହୁଏ ନାହିଁ, କାରଣ ଯମକୁ ପାଇ ଆଉଥରେ ଯମଲୋକରୁ ଫେରିଆସେ ନାହିଁ ।

(ଗ) ତେବେ ମୁଗ୍ଧ ସୁଷୁପ୍ତ ହେଉ, କାରଣ-ସେ ଚେତନରହିତ ଓ ଅମୃତ ଅଟେ । ଏହା ମଧ୍ୟ ନୁହେଁ କାରଣ-ଦୁଇଟି ଯାକରେ ବୈଷମ୍ୟ ରହିଛି । ମୁଗ୍ଧ ପ୍ରାଣୀ କେତେବେଳେ ହେଲେ ଚିରକାଳ ପର୍ଯ୍ୟନ୍ତ ଉଚ୍ଛ୍ୱାସ ନିଏ ନାହିଁ । ତାହାର ଶରୀର କମ୍ପେ, ମୁଖ ବିଖରିତ ଭୟାନକର ହୁଏ । କିନ୍ତୁ ସୁଷୁପ୍ତ ପ୍ରସନ୍ନବଦନ ଓ ସମକାଳରେ ଠିକ୍ ଉଚ୍ଛ୍ୱାସ ନିଏ । ତାହାର ନେତ୍ର ନିମୀଳିତ ହୁଏ । ତାହାର ଶରୀର ନାହିଁ, ହାତର ସ୍ପର୍ଶରେ ସେହି ଲୋକ ଉଠେ ।

(ଘ) ପରନ୍ତୁ ମୁଗ୍ଧକୁ ମୁଦ୍‌ଗର ପ୍ରହାର କଲେ ମଧ୍ୟ ଉଠେ ନାହିଁ । ମୂର୍ଚ୍ଛା ଓ ସୁଷୁପ୍ତିର କାରଣ ଗୁଡ଼ିକ ଭିନ୍ନ ଭିନ୍ନ ଅଟନ୍ତି, କାରଣ- ମୂର୍ଚ୍ଛାର ମୂସଳ ପ୍ରହାର ପ୍ରଭୃତି ନିମିତ୍ତ ହୁଏ ଓ ସୁଷୁପ୍ତିର ପରିଶ୍ରମ ହିଁ କାରଣ ହୁଏ, କିନ୍ତୁ ମୁଗ୍ଧ ସୁପ୍ତ ହେବା ସଂସାରରେ ପ୍ରସିଦ୍ଧ ନାହିଁ ତେଣୁ ପରିଶେଷରେ ମୂର୍ଚ୍ଛା ଅର୍ଦ୍ଧ ସୁଷୁପ୍ତ ଅଟେ ବୋଲି ଆମ୍ଭେ ବୁଝୁଁ । ଏହା ଚେତନା ରହିତ ହେଲେ ସେ ସମ୍ପନ୍ନ ହୁଏ, ଓ ସୁଷୁପ୍ତ ଠାରୁ ବୈଲକ୍ଷଣ୍ୟ ହେଲେ ଅସମ୍ପନ୍ନ ହୁଏ । ପରନ୍ତୁ ମୂର୍ଚ୍ଛା ଅର୍ଦ୍ଧସୁଷୁପ୍ତି ବୋଲି କିପରି କୁହାଯାଇଅଛି ? କାରଣ- 'ସତା ସୋମ୍ୟ (ହେ

ସୋମ୍ୟ, ସେହି ସମୟରେ ସତ୍ ସହ ସଂପନ୍ନ ହୁଏ) 'ଅତଃ ସ୍ତେନୋଽସ୍ତେନୋ' (ଏହି ସୁଷୁପ୍ତିରେ ଚୋର ମଧ୍ୟ ଭଲ ଲୋକ ହୁଏ । ଏହି ହେତୁରୂପ ଆତ୍ମା ଦିନରାତି ଅତିକ୍ରମଣ କରେ ନାହିଁ । ଏହାଠାରୁ ଅଜର, ଅମୃତ୍ୟୁ, ଅଶୋକ ଓ ସୁକୃତି ବା ଦୁଷ୍କୃତ ପ୍ରାପ୍ତ ହୁଅନ୍ତି ନାହିଁ) ଇତ୍ୟାଦି ଶ୍ରୁତି ଦ୍ୱାରା ସୁଷପ୍ତି ପ୍ରତି କୁହାଯାଇଛି ।

ମୂଳ-(କ) ଜୀବେ ହି ସୁକୃତଦୁଷ୍କୃତୟୋଃ ପ୍ରାପ୍ତିଃ ସୁଖିତ୍ୱ ଦୁଃଖିତ୍ୱ ପ୍ରତ୍ୟୟୋତ୍ପାଦନେନ ଭବତି । ନ ଚ ସୁଖିତ୍ୱ ପ୍ରତ୍ୟୟୋ ଦୁଃଖିତ୍ୱ ପ୍ରତ୍ୟୟୋ ବା ସୁଷୁପ୍ତେ ବିଦ୍ୟତେ ମୁଗେଧେଽପି ପ୍ରତ୍ୟୟୌ ନୈବ ବିଦ୍ୟେତେ । ତସ୍ମାଦୁପାଧ୍ୟୁପଶମାତ୍ ସୁଷୁପ୍ତବନ୍ମୁଗ୍ଧେଽପି କୃତ୍ସ୍ନସଂପତ୍ତିରେବ ଭବିତୁମର୍ହତି, ନାର୍ଦ୍ଧସଂପତ୍ତିରିତି ।

(ଖ) ଅତ୍ରୋଚ୍ୟତେ-ନ, ବ୍ରୂମୋ ମୁଗ୍ଧେଽର୍ଦ୍ଧସଂପତ୍ତି ର୍ଜୀବସ୍ୟ ବ୍ରହ୍ମଣା ଭବତୀତି । କିଂ ତର୍ହି ? ଅର୍ଦ୍ଧେନ ସୁଷୁପ୍ତପକ୍ଷସ୍ୟ ଭବତି ମୁଗ୍ଧତ୍ୱମର୍ଦ୍ଧେନାବସ୍ଥାନ୍ତ୍ରପକ୍ଷସ୍ୟେତିବ୍ରୂମଃ । ଦର୍ଶିତେ ଚ ମୋହସ୍ୟ ସ୍ୱାପେନ ସାମ୍ୟ ବୈଷମ୍ୟେ । ଦ୍ୱାରଂ ଚୈତନ୍ମରଣସ୍ୟ । ଯଦାଽସ୍ୟ ସାବଶେଷଂ କର୍ମ ଭବତି, ତଦା ବାଙ୍ମନସେ ପ୍ରତ୍ୟାଗଚ୍ଛତଃ । ଯଦାତୁ ନିରବଶେଷଂ କର୍ମ ଭବତି, ତଦା ପ୍ରାଣୋଷ୍ମାଣାବପଗଚ୍ଛତଃ । ତସ୍ମାଦର୍ଦ୍ଧ ସଂପତ୍ତିଂ ବ୍ରହ୍ମବିଦ ଇଚ୍ଛନ୍ତି ।

(ଗ) ଯତ୍ତୂକ୍ତମ - ନ ପଞ୍ଚମୀ କାଚିଦବସ୍ଥା ପ୍ରସିଦ୍ଧାସ୍ତୀତି ନ ପ୍ରସିଦ୍ଧା ସ୍ୟାତ୍ । ପ୍ରସିଦ୍ଧା ଚୈଷା ଲୋକାୟୁର୍ବେଦୟୋଃ । ଅର୍ଦ୍ଧସଂପତ୍ତ୍ୟଭ୍ୟୁପଗମାଛ ନପଞ୍ଚମୀ ଗଣ୍ୟତ ଇତ୍ୟନବଦ୍ୟମ୍ ।

(୪) ଭାଷାଂତର- (କ) ଜୀବଠାରେ ସୁଖିତ୍ୱ ଓ ଦୁଃଖିତ୍ୱ ପ୍ରତୀତର ଉପପତ୍ତି ହେଲେ ସୁକୃତ ଓ ଦୁଷ୍କୃତ ପ୍ରାପ୍ତି ହୁଏ । ସୁଖିତ୍ୱ ପ୍ରତ୍ୟୟ ଅଥବା ଦୁଃଖିତ୍ୱପ୍ରତ୍ୟୟ ସୁଷୁପ୍ତିରେ ନ ଥାଏ । ସେପରି ମୁଗ୍ଧରେ ସେ ଦୁହେଁ ପ୍ରତ୍ୟୟ ନୁହଁନ୍ତି । ତେଣୁ ସୁଷୁପ୍ତି ପରି ମୁଗ୍ଧରେ ମଧ୍ୟ ଉପାଧି ଉପଶମ ହେଲେ ସଂପୂର୍ଣ୍ଣ ସୁଷୁପ୍ତି ହୁଏ ।

(ଖ) ଏହି ବିଷୟରେ ତେଣୁ କୁହାଯାଇଛି, ମୂର୍ଚ୍ଛାରେ ବ୍ରହ୍ମର ସହିତ ଜୀବର ଅର୍ଦ୍ଧ ସଂପତ୍ତି ହୁଏ ବୋଲି ଆମ୍ଭେ କହୁନାହୁଁ । ମୁଗ୍ଧତ୍ୱ ଅର୍ଦ୍ଧସୁଷୁପ୍ତପକ୍ଷରେ ଓ ଅର୍ଦ୍ଧନ୍ୟାୟ ଅବସ୍ଥାପକ୍ଷରେ ହୁଏ । ମୂର୍ଚ୍ଛାର ସୁଷୁପ୍ତିଦ୍ୱାରା ସାମ୍ୟ ଓ ବୈଷମ୍ୟ ଦେଖାଯାଏ । ଏହା ମରଣର ଦ୍ୱାର ଅଟେ । ଯେତେବେଳେ ସେହି ମୂର୍ଚ୍ଛାର ଅବଶେଷ କର୍ମ ହୁଏ, ସେତେବେଳେ ବାଣୀ ଓ ମନ ନିଜନିଜ ସ୍ଥାନକୁ ଫେରିଯା'ନ୍ତି । ଏବଂ ଯେତେବେଳେ ଏହାର ଅବଶେଷ କର୍ମ ହୁଏ ନାହିଁ, ସେତେବେଳେ ପ୍ରାଣ ଓ ଊଷ୍ମ ଚାଲି ଆସନ୍ତି । ତେଣୁ ବ୍ରହ୍ମବେତ୍ତା ମୂର୍ଚ୍ଛାକୁ ଅର୍ଦ୍ଧସୁଷୁପ୍ତି ଅବସ୍ଥା କହନ୍ତି ।



(ଖ) ଯାହା ଏଠାରେ କୁହାଯାଇଛି ଯେ- କୌଣସି ପଞ୍ଚମୀ ଅବସ୍ଥା ପ୍ରସିଦ୍ଧ ନୁହେଁ ବୋଲି କହିଲେ ଦୋଷନାହିଁ, କାରଣ ଏହି ଅବସ୍ଥା କାଦାଚିତ୍କ (କେତେବେଳେ) ହେଲେ ଭଲଭାବରେ ପ୍ରସିଦ୍ଧ ହୁଏ ନାହିଁ । ପରନ୍ତୁ ଲୋକ ଓ ଆୟୁର୍ବେଦ ଗ୍ରନ୍ଥରେ ଏହା ଜଣାଶୁଣା କଥା । ଅର୍ଦ୍ଧସଂପତ୍ତି ସ୍ୱୀକାର ହେଲେ ପଞ୍ଚମ ଅବସ୍ଥା ଗଣାଯାଏ ନାହିଁ । ତେଣୁ ଏଠାରେ କୌଣସି ଦୋଷ ନାହିଁ ।

## ५ उभयाल्लिङ्गाधिकरणम् । सू० ११-१२ ॥

## ଉଭୟଲିଙ୍ଗାଧିକରଣ-୫

## न स्थानतोऽपि परस्योभयाल्लिङ्ग सर्वत्र हि ॥ ११ ॥

## (୧) ନ ସ୍ଥାନତୋଽପି ପରସ୍ୟୋଭୟଲିଙ୍ଗମ୍ ସର୍ବତ୍ର ହି ॥୩-୨-୧୧॥

ସ୍ଥାନତଃ=ସ୍ୱଭାବରୁ ଅଥବା ଉପାଧିଭେଦରୁ ମଧ, ପରସ୍ୟ=ପରଂବ୍ରହ୍ମ, ଉଭୟଲିଙ୍ଗମ୍=ସବିଶେଷ ଓ ନିର୍ବିଶେଷ ଦୁଇଟି ରୂପ ଉପପନ୍ନ, ନ=ହୁଅନ୍ତି ନାହିଁ । ହି=କାରଣ-, ସର୍ବତ୍ର='ଅଶବ୍ଦମ୍' ଇତ୍ୟାଦି ସବୁ ଉପନିଷଦରେ ନିର୍ବିଶେଷ ବ୍ରହ୍ମରେ ଉପଦେଶ ହୁଏ ।

ମୂଳ-(କ) ଯେନ ବ୍ରହ୍ମଣା ସୁଷୁପ୍ତ୍ୟାଦିଷୁ ଜୀବନ ଜୀବ ଉପାଧପଶମାତ୍ ସଂପଦ୍ୟତେ, ତସ୍ୟେଦାନୀଂ ସ୍ୱରୂପଂ ଶ୍ରୁତି ବଶେନ ନିର୍ଦ୍ଧାର୍ଯ୍ୟତେ । ସନ୍ତ୍ୟୁଭୟଲିଙ୍ଗାଃଶ୍ରୁତୟୋ ବ୍ରହ୍ମବିଷୟାଃ- 'ସର୍ବକର୍ମା ସବିକାମଃ ସର୍ବଗନ୍ଧଃ ସର୍ବରସଃ' (ଛା ୩-୧୪:୨ ଇତ୍ୟେବମାଦ୍ୟା ସବିଶେଷଲିଙ୍ଗାଃ । 'ଅସ୍ଥୁଳମନଣ୍ୱହ୍ରସ୍ୱମଦୀର୍ଘମ୍') ବୃହ୍ମ ୩-୮-୮ ଇତ୍ୟେବମାଦ୍ୟାଶ୍ଚ ନିର୍ବିଶେଷଲିଙ୍ଗାଃ ।

(ଖ) କିମାସୁ ଶ୍ରୁତିଷୂଭୟଲିଙ୍ଗମ୍ ବ୍ରହ୍ମ ପ୍ରତିପତ୍ତବ୍ୟମୁତାନ୍ୟତିରଲିଙ୍ଗମ୍ ? ଯଦାପ୍ୟ ନ୍ୟତରଲିଙ୍ଗମ୍, ତଦାପି କିଂ ସବିଶେଷମୁତ ନିର୍ବିଶେଷମିତି ମୀମାଂସଂତୋ' ତତ୍ରୋଭୟଲିଙ୍ଗ- ଶ୍ରୁତ୍ୟନୁଗ୍ରହାଦୁଭୟଲିଙ୍ଗ ମେବ ବ୍ରହ୍ମତ୍ୟେବଂ ପ୍ରାପ୍ତେ ବ୍ରୂହଃ- ନ ତାବତ୍ ସ୍ୱତ ଏବ ପରସ୍ୟ ବ୍ରହ୍ମଣ ଉଭୟଲିଙ୍ଗତ୍ୱମୁପପଦ୍ୟତେ । ନ ହ୍ୟେକଂ ବସ୍ତୁ ସ୍ୱତ ଏବ ରୂପାଦି ବିଶେଷୋପେତଂ ତଦ୍ବିପରୀତଂ ଚୈତ୍ୟଦବଧାରିୟିତୁଂ ଶକ୍ୟମ୍, ବିରୋଧାତ୍ ।

(ଗ) ଅସ୍ତୁ ତର୍ହି ସ୍ଥାନତଃ ପୃଥିବ୍ୟାଦ୍ୟୁପାଧିଯୋଗାଦିତି, ତଦପି ନୋପପଦ୍ୟତେନ ହ୍ୟୁପାଧିଯୋଗାଦପ୍ୟନ୍ୟାଦୃଶସ୍ୟ ବସ୍ତୁନୋଽନ୍ୟାଦୃଶଃ ସ୍ୱଭାବଃ ସମ୍ଭବତି । ନ ହି ସ୍ୱଚ୍ଛଃ ସନ୍ ସ୍ଫଟିକୋଽଲକ୍ତକାଦ୍ୟୁପାଧିଯୋଗାଦସ୍ୱଚ୍ଛୋ ଭବତି, ଭ୍ରମମାତ୍ରତ୍ୱାଦସ୍ୱଚ୍ଛତାଭିନିବେଶସ୍ୟ ଉପାଧୀନାଂ ଚାବିଦ୍ୟା ପ୍ରତ୍ୟୁପସ୍ଥାପିତ୍ୱାତ୍ ।

(ଘ) ଅତଶ୍ଚାନ୍ୟତରଲିଙ୍ଗପରିଗ୍ରହେଽପି ସମସ୍ତବିଶେଷରହିତଂ ନିର୍ବିକଳ୍ପକମେବ ବ୍ରହ୍ମ ପ୍ରତି ପତ୍ତବ୍ୟଂ, ନ ତଦ୍ ବିପରୀତମ୍ । ସର୍ବତ୍ର ହି ବ୍ରହ୍ମସ୍ୱରୂପପ୍ରତିପାଦନ ପରେଷୁ 'ଅଶବ୍ଦମସ୍ପର୍ଶମରୂପମବ୍ୟୟମ' (କଂ ୩-୧୫, ମୁକ୍ତିକେ ୨-୭୨) ଇତ୍ୟେବମାଦିଷ୍ୱପାସ୍ତ ସମସ୍ତବିଶେଷମେକ ବ୍ରହ୍ମୋପଦିଶ୍ୟତେ ।

(୨) ଭାଷାଂତର- (କ) ସୁଷୁପ୍ତି ପ୍ରଭୃତିରେ ଉପାଧି ଉପଶାନ୍ତ ହେଲେ ଜୀବ ଯେଉଁ ବ୍ରହ୍ମ ସହିତ ସଂପନ୍ନ ହୋଇଥାଏ, ବର୍ତ୍ତମାନ ତାହାର ସ୍ୱରୂପ ଶ୍ରୁତିର ସାମର୍ଥ୍ୟରୁ ନିର୍ଦ୍ଧାରିତ କରାଯାଇଅଛି । ବ୍ରହ୍ମବିଷୟକ ଶ୍ରୁତିଗୁଡ଼ିକ ଦୁଇଟି ଲିଙ୍ଗବିଶେଷ ଅଟନ୍ତି - 'ସର୍ବକାମାଃ' (ସମଗ୍ର ବିଶ୍ୱ ତାହାର କର୍ମ ଅଟେ, ସବୁକାମ ଦୋଷରହିତ ଅଟେ, ସମସ୍ତ ଗନ୍ଧ ତାହାର ସୁଖକର; ଏବଂ ସେ ସର୍ବରସ ଅଟେ) ଇତ୍ୟାଦି ଶ୍ରୁତି ସବିଶେଷଲିଙ୍ଗକ ଏବଂ 'ଅସ୍ଥୂଳ' (ସେ ସ୍ଥୂଳ ନୁହେଁ, ଅଣୁ ନୁହେଁ, ହ୍ରସ୍ୱ ନୁହେଁ, ଏବଂ ଦୀର୍ଘ ନୁହେଁ) ଇତ୍ୟାଦି ଶ୍ରୁତି ନିର୍ବିଶେଷଲିଙ୍ଗକ ଅଟେ ।

(ଖ) ଏହି ଶ୍ରୁତିରେ ଦୁଇଟି ଲିଙ୍ଗ ଥାଇ ବ୍ରହ୍ମକୁ ବୁଝାଏ, କି ଦୁଇଟି ମଧ୍ୟରୁ ଗୋଟିଏ ଲିଙ୍ଗ ଥିଲେ ବୁଝାଏ ? ଯଦି ଦୁଇଟି ମଧ୍ୟରୁ ଗୋଟିଏ ଲିଙ୍ଗ ଥାଇ ବୁଝାଏ, ତେବେ ସେ ସବିଶେଷ ହୁଏ, ଅଥବା ନିର୍ବିଶେଷ ବିଚାର କରାଯାଏ । ତନ୍ମଧ୍ୟରୁ ଦୁଇଟି ଲିଙ୍ଗ ଥିବାଁ ଶ୍ରୁତିର ଅନୁଗ୍ରହରୁ ବ୍ରହ୍ମର ଦୁଇଟିଲିଙ୍ଗ ବୋଲି ଜଣାପଡ଼େ । ସିଦ୍ଧାନ୍ତ-ଏହିପରି ପ୍ରାପ୍ତ ହେବାରୁ ଆମ୍ଭେ କହୁଁ- ପରଂବ୍ରହ୍ମର ସ୍ୱତଃ ଉଭୟଲିଙ୍ଗତ୍ୱ ଉପପନ୍ନ ହୁଏ ନାହିଁ । ସ୍ୱଭାବତଃ ଗୋଟିଏ ବସ୍ତୁ ରୂପାଦିବିଶେଷଯୁକ୍ତ ଓ ରୂପାଦିବିଶେଷରହିତ ହେଲା । ତେଣୁ ଏହା ବିରୋଧ ହେଲେ ଅବଧାରଣ କରାଯାଏ ନାହିଁ ।

(ଗ) ଯଦି ଏହା କହ ଯେ- ପୃଥିବୀ ପ୍ରଭୃତି ଉପାଧିଯୋଗରୁ ହିଁ ହୁଏ, କାରଣ- ଉପାଧିଯୋଗରୁ ଅନ୍ୟପ୍ରକାର ସ୍ୱଭାବତଃ ସ୍ୱଚ୍ଛ ହୋଇ ସ୍ଫଟିକ ଲାଖ ପ୍ରଭୃତି ଉପାଧିଗୁଡ଼ିକ ଅବିଦ୍ୟାଦ୍ୱାରା ଉପସ୍ଥାପିତ ହୁଅନ୍ତି । ସେଥିରେ ଅସ୍ୱଚ୍ଛର ଅହିନିବେଶ ଭ୍ରମମାତ୍ର ଅଟେ, କାରଣ-ଉପାଧିଗୁଡ଼ିକ ଅବିଦ୍ୟାରେ ପ୍ରତ୍ୟୁପସ୍ଥାପିତ ହୁଅନ୍ତି ।

(ଘ) ତେଣୁ ଅନ୍ୟତର ଲିଙ୍ଗର ପରିଗ୍ରହ କଲାପରେ ମଧ୍ୟ ସମସ୍ତ ବିଶେଷ ରହିତ ନିର୍ବିଶେଷ ବ୍ରହ୍ମକୁ ବୁଝାଯାଏ । କିନ୍ତୁ ତାହାର ବିପରୀତ ନୁହେଁ । କାରଣ-ବ୍ରହ୍ମସ୍ୱରୂପ ପ୍ରତିପାଦନପରକ 'ଅଶବ୍ଦମସ୍ପର୍ଶ' (ସେ ଶବ୍ଦରହିତ, ସ୍ପର୍ଶରହିତ ଓ ରୂପରହିତ ଅବ୍ୟୟ ଅଟେ) ଇତ୍ୟାଦିବାକ୍ୟରେ ସର୍ବତ୍ର ସମସ୍ତବିଶେଷରହିତ ବ୍ରହ୍ମ ଉପଦିଷ୍ଟ ହୁଏ ।

**न भेदादिति चेन्न प्रत्येकमतद्वचनात् ॥ १२ ॥**

**(୧) ନ ଭେଦାଦିତି ଚେନ୍ନ ପ୍ରତ୍ୟେକମତଦ୍‌ବଚନାତ୍ ॥୩-୨-୧୨॥**

ପୂର୍ବପକ୍ଷ-ସମସ୍ତ ବେଦାନ୍ତବାକ୍ୟରୁ ନିର୍ବିଶେଷ ବ୍ରହ୍ମ ଉପଦିଷ୍ଟ ହୁଏ, ନ=ଏହା କହିବା ଠିକ୍ ନୁହେଁ । ଭେଦାତ୍ = କାରଣ- 'ଚତୁଷ୍ପାଦ ବ୍ରହ୍ମ' ଏହି ପ୍ରକାର ଶ୍ରୁତିରେ



ଭେଦ କୁହାଯାଇଅଛି, ଇତି ଚେନ୍ନ=ଏହା ଯଦି କହ, ତଥାପି ମଧ ସମୀଚୀନ ନୁହେଁ । ସିଦ୍ଧାନ୍ତ,=କାରଣ-'ପ୍ରତ୍ୟେକମ୍' ପ୍ରତ୍ୟେକ ଉପାଧିରେ ଅତଦ୍‌ବଚନାତ୍ = 'ଯଶ୍ଚାୟମସ୍ୟାଂ' ଇତ୍ୟାଦି ଶ୍ରୁତିରେ ବ୍ରହ୍ମଶ ଅଭେଦ ଶୁଣାଯାଏ ।

ମୂଳ-(କ) ଅଥାପି ସ୍ୟାଦ୍ୟଯୁକ୍ତ ନିର୍ବିକଳ୍ପକମେବଲିଙ୍ଗମେବ ବ୍ରହ୍ମ, ନାସ୍ୟ ସ୍ୱତଃ ସ୍ଥାନତୋ ଋେଭୟଲିଙ୍ଗତ୍ୱମସ୍ତୀତି, ତନ୍ନୋପପଦ୍ୟତେ । କସ୍ମାତ୍ ? ଭେଦାତ୍ । ଭିନ୍ନା ହି ପ୍ରତିବିଦ୍ୟଂ ବ୍ରହ୍ମଣ ଆକାରା ଉପଦିଶ୍ୟନ୍ତୋ, ଚତୁଷ୍ପାଦ ବ୍ରହ୍ମ ଷୋଡ଼ଶକଳଂ ବ୍ରହ୍ମା ବାମନୀତ୍ୱାଦିଲକ୍ଷଣଂ ବ୍ରହ୍ମ ତ୍ରୈଲୋକ୍ୟଶରୀର ବୈଶ୍ୱାନରଶବ୍ଦୋଦିତଂ ବ୍ରହ୍ମେତ୍ୟେବଂଜାତୀୟକାଃ । ତସ୍ମାତ୍ ସବିଶେଷତ୍ୱମପି ବ୍ରହ୍ମଣୋଽଭ୍ୟୁପଗନ୍ତବ୍ୟମ୍ ।

(ଖ) ନନୂକ୍ତଂ ନୋଭୟଲିଙ୍ଗତ୍ୱ ବ୍ରହ୍ମଣଃ ସମ୍ଭବତୀତି ଅୟମପ୍ୟବିରୋଧଃ, ଉପାଧିକୃତ ତ୍ୱାଦାକାରଭେଦସ୍ୟ । ଅନ୍ୟଥା ହି ନିର୍ବିଷୟମେବ ଭେଦଶାସ୍ତ୍ରଂ ପ୍ରସଜ୍ୟେତେତି ଚେତ୍ ନେତି ବ୍ରୂମଃ; କସ୍ମାତ୍ ? ପ୍ରତ୍ୟେକମତଦ୍ ବଚନାତ୍ ।

(ଗ) ପ୍ରତ୍ୟୁପାଧିଭେଦଂ ହ୍ୟଭେଦମେବ ବ୍ରହ୍ମଣଃ ଶ୍ରାବୟତି ଶାସ୍ତ୍ରମ୍ - 'ଯଶ୍ଚାୟମସ୍ୟାଂ ପୃଥିବ୍ୟାଂ ତେଜୋମୟୋଽମୃତମୟଃ ପୁରୁଷୋ ଯଶ୍ଚାୟମଧ୍ୟାତ୍ମଂ ଶରୀରସ୍ତେଜୋମୟଃ ପୁରୁଷୋଽୟମେବ ସ ଯୋଽୟମାତ୍ମା' (ବୃହ ୨-୫-୧ ଇତ୍ୟାଦି । ଅତଶ୍ଚ ନ ଭିନ୍ନାକାର-ଯୋଗୋବ୍ରହ୍ମଣଃ ଶାସ୍ତ୍ରୀୟ ଇତି ଶକ୍ୟତେ ବକ୍ତୁମ୍, ଭେଦସ୍ୟୋପାସନାର୍ଥତ୍ୱାଭେଦେ ତାତ୍ପର୍ଯ୍ୟାତ୍ ।

(୨) ଭାଷାଂତର- (କ) ଏହା ହୋଇପାରେ, କିନ୍ତୁ ଯାହା କୁହାଯାଇଅଛି ଯେ-ବ୍ରହ୍ମ ନିର୍ବିଶେଷ ଏକଲିଙ୍ଗ ଅଟେ, ଏବଂ ସ୍ୱତଃ ଅଥବା ଉପାଧିଦ୍ୱାରା ଉଭୟଲିଙ୍ଗ ନୁହେଁ, ତାହା କିନ୍ତୁ ଠିକ୍ ନୁହେଁ । କିପରି ? କାରଣ-ଭେଦରୁ । 'ବ୍ରହ୍ମ ଚତୁଷ୍ପାଦ ଅଟେ, ବ୍ରହ୍ମ ଷୋଡ଼ଶକଳାଯୁକ୍ତ, ବ୍ରହ୍ମ ବାମନୀୟତ୍ୱ, ଆଦିରୂପ, ବ୍ରହ୍ମତ୍ରୈଲୋକ୍ୟ ଶରୀର ଯୁକ୍ତ, ବ୍ରହ୍ମ ବୈଶ୍ୱାନରଶବ୍ଦରୁ କଥିତ ହୁଏ) ଏହିପରି ଆକାର ବ୍ରହ୍ମର ଉପଦିଷ୍ଟ ହୁଏ । ତେଣୁ ବ୍ରହ୍ମ ସବିଶେଷ ବୋଲି ସ୍ୱୀକାର କରିବା ଉଚିତ୍ ନୁହେଁ ।

(ଖ) ପରନ୍ତୁ ବ୍ରହ୍ମ ଉଭୟ ଲିଙ୍ଗଯୁକ୍ତ ନୁହେଁ ବୋଲି ଯାହା କୁହାଯାଇଛି, - ତାହାର ବିରୋଧ କରିବା ଠିକ୍ ନୁହେଁ । କାରଣ-ଆକାରଭେଦ ହିଁ ଉପାଧିକୃତ ଅଟେ, ଅନ୍ୟଥା ଭେଦଶାସ୍ତ୍ର ନିର୍ବିଶେଷ ହିଁ ପ୍ରସକ୍ତ ହେବ । ସିଦ୍ଧାନ୍ତ- ଏହା ଯାହା କୁହାଯାଇଅଛି- ତାହା କିନ୍ତୁ ଆମ୍ଭେ କହୁଁ ନାହୁଁ । କିପରି ? କାରଣ-ପ୍ରତ୍ୟେକରେ

(ଗ) ପ୍ରତ୍ୟେକରେ ଅତଦଦ୍‌ବଚନ (ଏହା ନୁହେଁ) ବୋଲି କୁହାଯାଇଅଛି 'ଯଶ୍ଚାୟ-ମସ୍ୟାଂ' (ଏହି ପୃଥିବୀରେ ଯାହା ଏହି ତେଜୋମୟ ଅମୃତମୟ ପୁରୁଷ ଏବଂ

ଶରୀରରେ ଯାହା ଏହି ତେଜୋମୟ ଅମୃତମୟ ପୁରୁଷ-ଏହା ସେ ଅଟେ, ଯାହାକି ଏହି ଆତ୍ମା) ଇତ୍ୟାଦି ଶାସ୍ତ୍ର ପ୍ରତ୍ୟେକ ଉପାଧି ଭେଦରେ ବ୍ରହ୍ମର ଅଭେଦକୁ ଶ୍ରବଣ କରାଏ । ତେଣୁ ବ୍ରହ୍ମରେ ଭିନ୍ନ ଆକାରର ଯୋଗ ଶାସ୍ତ୍ରୀୟ ବୋଲି କୁହାଯାଇ ନ ପାରେ । କାରଣ- ଭେଦ ଉପାସନା ପାଇଁ ଅଭେଦରେ ତାତ୍ପର୍ଯ୍ୟ ଅଛି ।

**अपचैवमेके ॥ १३ ॥**

**ଅପି ଚୈବମେକେ ॥୩-୨-୧୩॥**

ଅପିଚୈକେପୁନଶ୍ଚ କୌଣସି ସଂପ୍ରଦାୟ 'ମୃତ୍ୟୁମାପ୍ନୋତି' 'ନେହ ନାନାସ୍ତି କିଞ୍ଚନ', ଏବମ୍ ଏହିପରି ଶ୍ରୁତିବାକ୍ୟରୁ ଭେଦର ନିନ୍ଦାପୂର୍ବକ ପରମାତ୍ମାର ଅଭେଦ କହେ ।

ମୂଳ-(କ) ଅପି ଚୈବଂ ଭେଦଦର୍ଶନ-ନିନ୍ଦାପୂର୍ବକମଦେବମାପ୍ତବ୍ୟ ନେହ ନାନାସ୍ତି କିଞ୍ଚନ' । ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯଇହ ନାନେବ ପଶ୍ୟତି' (କ୪-୧୧) ଇତି ।

(ଖ) ତଥା ଋନ୍ୟେପି 'ଭୋକ୍ତ' ଭୋଗ୍ୟଂ ପ୍ରେରିତାରଂ ଚ ମତ୍ୱା, ସର୍ବଂ ପ୍ରୋକ୍ତଂ ତ୍ରିବିଧଂ ବ୍ରହ୍ମମେ ତତ୍' (ଶ୍ୱେ ୧-୧୨) ଇତି ସମସ୍ତସ୍ୟ ଭୋଗ୍ୟ ଭୋକ୍ତୃନିୟନ୍ତୃଷଲଣସ୍ୟ ପ୍ରପଞ୍ଚସ୍ୟ ବ୍ରହ୍ମୈକ ସ୍ୱଭାବ ତା ମଧୀୟତେ ।

**(୧) ଭାଷାଂତର-** (କ) ଏହିପରି ଭେଦଦର୍ଶନର ନିନ୍ଦାପୂର୍ବକ ଅଭେଦଦର୍ଶନର କେତେକ ସମ୍ପ୍ରଦାୟ ଶ୍ରବଣ କରାଏ - 'ମନ ସୈବେଦଂ' (ମନର ଏହି ତତ୍ତ୍ୱକୁ ପାଇବା ଉଚିତ । ଏହି ବ୍ରହ୍ମତତ୍ତ୍ୱରେ ଅଧିକ କିଛି ନାହିଁ । ଯେଉଁ ପୁରୁଷ ଏଠାରେ ଭେଦ ଦେଖେ ସେ ମୃତ୍ୟୁଦ୍ୱାରା ମୃତ୍ୟୁକୁ ପାଏ) ।

(ଖ) ଏହିପରି ଅନ୍ୟ ଶାଖାମାନେ ମଧ୍ୟ 'ଭୋକ୍ତା ଭୋଗ୍ୟଂ' (ଭୋକ୍ତା ଜୀବ) ଭୋଗ୍ୟ (ଜଗତ୍) ଏବଂ ପ୍ରେରକ (ଈଶ୍ୱର)ର ବିଚାର କରି ଏହି ତିନିପ୍ରକାର କହି ଏହା ସବୁ ବ୍ରହ୍ମ ଅଟେ) ଏହିପରି ଭୋଗ୍ୟ ଭୋକ୍ତା ଓ ନିୟନ୍ତାରୂପ ସଂପୂର୍ଣ୍ଣ ପ୍ରପଞ୍ଚ ବ୍ରହ୍ମୈକ ସ୍ୱରୂପ ଅଟେ ବୋଲି ଅଧ୍ୟୟନ କରାଯାଇଅଛି ।

ମୂଳ-(କ) କଥଂ ପୁନରାକାର ବଦୁପଦେଶିନୀଷ୍ୱନାକାରୋପଦେଶିନୀଷୁ ଚ ବ୍ରହ୍ମବିଦ୍ୟାସ୍ମ ଶ୍ରୁତିଷ ସତୀଷ୍ୱନାକାରମେ୍ବ ବ୍ରହ୍ମାବଧାର୍ଯ୍ୟତେ, ନ ପୁନର୍ବିପରୀତମିତି ? ଅତ ଉତ୍ତରଂ ପଠତି-

**(୧) ଭାଷାଂତର-** ପରନ୍ତୁ ସାକାରକୁ ଓ ନିରାକାରକୁ ଉପଦେଶ ଦେଉଥିବା ବ୍ରହ୍ମବିଷୟ ଶ୍ରୁତିଗୁଡ଼ିକ ହେଲେ ନିରାକାର ବ୍ରହ୍ମର କିପରି ଅବଧାରଣ କରାଗଲା,



କିନ୍ତୁ ତାହାର ବିପରିତ ସାକାର ବ୍ରହ୍ମର ନୁହେଁ କି ? ତେଣୁ ତାହାର ଉତ୍ତରରେ କୁହାଯାଇଛି ।

## अरूपवदेव हि तत्प्रधानत्वात् ॥ १४ ॥

## ଅରୂପବଦେବ ହି ତତ୍ପ୍ରଧାନତ୍ୱାତ୍ ॥୩-୨-୧୪॥

ଅରୂପବଦେବ=ରୂପାଦି ଆକାରରହିତ ବ୍ରହ୍ମର ମଧ୍ୟ ଅବଧାରଣ କରିବା ଉଚିତ୍ । ତତ୍ ପ୍ରଧାନତ୍ୱାତ୍ = କାରଣ ଅସ୍ଥୁଳମ୍' ଇତ୍ୟାଦି ଶ୍ରୁତିରେ ନିର୍ବିଶେଷ ବ୍ରହ୍ମ ପ୍ରଧାନ ଅଟେ ।

ମୂଳ-ରୂପାଦ୍ୟାକାରହିତମେବ ବ୍ରହ୍ମାବଧାରୟିତବ୍ୟଂ ନ ରୂପାଦିମତ୍ । କସ୍ମାତ୍ ? ତତ୍ପ୍ରଧାନତ୍ୱାତ । 'ଅସ୍ଥୂଳମନଣ୍ୱହ୍ରସ୍ୱମଦୀର୍ଘମ୍' (ବୃହ ୩-୮-୮), 'ଅଶବ୍ଦମସ୍ପର୍ଶମରୂପମ-ବ୍ୟୟମ୍', (କଠ ୩-୧୫, ମୁକ୍ତି-୨-୭୨), 'ଆକାଶୋ ବୈନାମ ନାମରୂପୟୋର୍ନିର୍ବହିତା ତେ ଯଦନ୍ତରା ତଦ୍ବ୍ରହ୍ମ' (ଛା ୮-୧୪-୧), 'ଦେବ୍ୟୋ ହ୍ୟମୂର୍ତ୍ତଃ ସବାହ୍ୟାଭ୍ୟନ୍ତରୋ ହ୍ୟଜଃ (ମୁଣ୍ଡ ୨-୧-୨), 'ତଦେତଦ୍ବ୍ରହ୍ମାପୂର୍ବମନପରମକନ୍ତରମବାହ୍ୟମୟମାତ୍ମା ବ୍ରହ୍ମ ସର୍ବାନୁଭୂଃ' (ବୃହ ୨-୫-୧୯) ଇତ୍ୟେବମାଦୀନି ବାକ୍ୟାନି ନିଷ୍ପ୍ରପଞ୍ଚବାହ୍ମ୍ୟାତ୍ମତତ୍ତ୍ୱ ପ୍ରଧାନାନି ନାର୍ଥାନ୍ତରପ୍ରଧାନାନୀତ୍ୟେତତ୍ ପ୍ରତିଷ୍ଠାପିତଂ 'ତତ୍ତୁ ସମନ୍ୱୟାତ୍' (ବ୍ରସୂ ୧-୧-୪) ଇତ୍ୟତ୍ର ।

(ଖ) ତସ୍ମାଦେବଂଜାତୀୟକେଷୁ ବାକ୍ୟେଷୁ ଯଥାଶ୍ରୁତଂ ନିରାକାରମେବ ବ୍ରହ୍ମାବଧାରୟିତବ୍ୟମ୍ । ଇତରାଣି ତ୍ୱାକାରବଦ୍ ବ୍ରହ୍ମବିଷୟାଣି ବାକ୍ୟାନି, ନ ତତ୍ ପ୍ରଧାନାନି । ଉପାସନା ବିଧିପ୍ରଧାନାନି ହି ତାନି, ତେଷ୍ୱସତି ବିରୋଧେ ଯଥାଶ୍ରୁତମାଶ୍ରୟିତବ୍ୟମ ।

(ଗ) ସତି ବିରୋଧେ ତତ୍ପ୍ରଧାନାନ୍ୟ ତତ୍ ପ୍ରଧାନେଭ୍ୟୋ ବଲୀୟାଂସି ଭବନ୍ତୁ- ଇତ୍ୟେଷ ବିନିଗମନାୟାଂ ହେତୁଃ । ଯେନୋଭୟୀଷ୍ୱପି ଶ୍ରୁତିଷୁ ସତୀଷ୍ୱନାକାରମେବ ବ୍ରହ୍ମାବଧୀୟତେ, ନ ପୁନର୍ବିପରୀତମିତି ।

(୩) ଭାଷାଂତର- (କ) ରୂପାଦି ଆକାର ରହିତ ବ୍ରହ୍ମର ଅବଧାରଣା କରିବା ଉଚିତ୍ । କିନ୍ତୁ ରୂପାଦି ବୋଲି କହିବା ଠିକ୍ ନୁହେଁ । କିପରି ? ତାହାର ପ୍ରଧାନତ୍ୱ ହେତୁ । ଯେପରି 'ଅସ୍ଥୁଳମ୍ (ସେ ସ୍ଥୁଳ ନୁହେଁ, ହ୍ରସ୍ୱ ନୁହେଁ ଦୀର୍ଘ ନୁହେଁ 'ଅଶବ୍ଦମ୍' (ସେ ଶବ୍ଦରହିତ, ସ୍ପର୍ଶରହିତ, ରୂପରହିତ ଓ ଅବ୍ୟୟ ଅଟେ), ଆକାଶୋ ବୈ (ଆକାଶ ନାମ ଓ ରୂପାତ୍ମକ ପ୍ରପଞ୍ଚର ନିର୍ବାହକ ଅଟେ, ସେହି ନାମ ଓ ରୂପ ଯାହାର ଭିତରେ ଅଛି, ସେ ବ୍ରହ୍ମ ଅଟେ),

'ଦିବ୍ୟୋ ହ୍ୟମୂର୍ତ୍ତଃ' (ଏହା ନିଶ୍ଚିତଭାବେ ସ୍ୱୟଂପ୍ରକାଶ, ଅମୂର୍ତ୍ତ, ବାହାରେ ଓ ଭିତରେ ବିଦ୍ୟମାନ ଓ ଅଜପୁରୁଷ ଅଟେ), 'ତଦେତଦ୍‌ବ୍ରହ୍ମ' (ସେ ଏହି ବ୍ରହ୍ମ କାରଣ ରହିତ, କାର୍ଯ୍ୟରହିତ, ବିଜାତୀୟଶବ୍ଦରହିତ ଓ ଅବାହ୍ୟ ଅଟେ ସେହି ଆତ୍ମା ସମସ୍ତଙ୍କ ଦ୍ୱାରା ଅନୁଭବ କରୁଥିବା ବ୍ରହ୍ମ ଇତ୍ୟାଦି ବାକ୍ୟ ନିଷ୍ପ୍ରପଞ୍ଚ ବ୍ରହ୍ମାତ୍ମକ ପ୍ରଧାନକ ହୁଏ, ଅନ୍ୟ ଅର୍ଥରୂପ ପ୍ରଧାନକ ନୁହେଁ ବୋଲି 'ତତ୍ତୁ ସମନ୍ୱୟାତ୍' ଏହି ସୂତ୍ରରେ ପ୍ରତିଷ୍ଠାପିତ କରାଯାଇଅଛି ।

(ଖ) ତେଣୁ ଏହି ପ୍ରକାରର ବାକ୍ୟ ଗୁଡ଼ିକରେ ଶ୍ରୁତି ଅନୁସାରେ ନିରାକାର ବ୍ରହ୍ମ ପ୍ରଧାନ ନୁହେଁ । ପରନ୍ତୁ ଉପାସନା ବିଧିପରକ ଅଟନ୍ତି । ସେମାନଙ୍କର ସେ ବିରୋଧ ନ ହେଲେ ମଧ୍ୟ ଶ୍ରୁତି ଅନୁସାରେ ଆଶ୍ରୟ କରିବା ଉଚିତ୍ ।

(ଗ) ବିରୋଧ ହେଲେ ବି ତତ୍‌ପ୍ରଧାନ (ନିରାକାର ପ୍ରଧାନ) ବାକ୍ୟଗୁଡ଼ିକ ଅତତ୍ ପ୍ରଧାନ (ନିରାକାର ଅପ୍ରଧାନବାକ୍ୟ ଠାରୁ ବଳବାନ ହୁଅନ୍ତି । ସେହି ହିଁ ବିନିଗମନରେ କାରଣ ଅଟେ । ଯଦ୍ୱାରା ଦୁଇପ୍ରକାର ଶ୍ରୁତିରେର ବିଦ୍ୟମାନ ହେଲେହେଁ ନିରାକରଣ ବ୍ରହ୍ମ ହିଁ ଅବଧାରିତ ହୁଏ, ତେଣୁ ବିପରୀତ ସାକାର ବ୍ରହ୍ମ ଅବଧାରିତ ହୁଏ ନାହିଁ ।

(୧) ମୂଳ-(କ) କା ତର୍ହ୍ୟାକାରବଦ୍‌ବିଷୟାଣାଂ ଶ୍ରୁତୀନାଂ ଗତିରିତ୍ୟତ ଆହ-

**(୧) ଭାଷାନ୍ତର**-(କ) ତେବେ ସାକାର ବ୍ରହ୍ମବିଷୟକ ଶ୍ରୁତିର ଗତି କଣ ହେବ ? ଏହା ଉପରେ ତେଣୁ କୁହାଯାଇଅଛି-

**प्रकाशवच्च वैयर्थ्यम् ॥ १५ ॥**

**ପ୍ରକାଶବଚ୍ଚ ବୈୟର୍ଥ୍ୟମ୍ ॥ ୩-୨-୧୫ ॥**

ପ୍ରକାଶବତ୍ - ସୂର୍ଯ୍ୟାଦିର ପ୍ରକାଶ ବକ୍ରଅଙ୍ଗୁଳି, ଇତ୍ୟାଦି ଉପଧିରୁ ବକ୍ରରୂପରେ ପ୍ରତୀତ ହୁଏ, ସେପରି ବ୍ରହ୍ମ, ଚ=ମଧ୍ୟ ପୃଥିବୀ ପ୍ରଭୃତି ଉପାଧିର ସମ୍ବନ୍ଧରୁ ସେହି ଆକାର ହୋଇଯାଏ । ସେହି ଆକାର ଉପାସନା ପାଇଁ ଏହାହିଁ ଉଦ୍ଦିଷ୍ଟ । ଅବୈୟର୍ଥ୍ୟମ୍=ତେଣୁ ସାକାରବିଷୟକ ଶ୍ରୁତିଗୁଡ଼ିକ ବ୍ୟର୍ଥ ନୁହଁନ୍ତି ।

(୨) ମୂଳ-(କ) ଯଥା ପ୍ରକାଶଃ ସୈରଶ୍ଚାନ୍ଦ୍ରମସୋ ବା ବିୟଦ୍‌ବ୍ୟାପ୍ୟବତିଷ୍ଠମାନୋଽଙ୍ଗୁଲ୍ୟାଦ୍ୟୁ ପାଧିସମ୍ବନ୍ଧାତ୍ତେଷ୍ୱଜୁ ବକ୍ରାଦିଭାବଂ ପ୍ରତିପଦ୍ୟମାନେଷୁ ତଦ୍ ଭାବମିବ ପ୍ରତିପଦ୍ୟତେ, ଏବଂ ବ୍ରହ୍ମାପି ପୃଥିବ୍ୟୁପାଧିସମ୍ବନ୍ଧା ଉଦାକାରଣମିବ ପ୍ରତିପଦ୍ୟତେ, ତଦାଲମ୍ବନୋ ବ୍ରହ୍ମଣ ଆକାର ବିଶେଷୋପଦେଶ ଉପାସନାର୍ଥୋ ନ ବିରୁଧ୍ୟତେ ।

(ଖ) ଏବମବୈୟର୍ଥମାକାରବଦ୍ ବ୍ରହ୍ମ ବିଷୟଣାମପି ବାକ୍ୟାନାଂ ଭବିଷ୍ୟତି । ନହି ବେଦବାକ୍ୟାନାଂ କସ୍ୟଚିଦର୍ଥବତ୍ତ୍ୱଂ କସ୍ୟଚିଦନର୍ଥ ବତ୍ତ୍ୱମିତି ଯକ୍ତଂ ପ୍ରତିପତ୍ତୁମ୍ ।



ପ୍ରମାଣତ୍ୱାବିଶେଷାତ୍ । ନନ୍ୱେବମପି ତତ୍ପୁରସ୍ତାତ୍ ପ୍ରତିଜ୍ଞାତମ୍-ନୋପାଧିଯୋଗାଦପ୍ୟୁ-ଭୟଲିଙ୍ଗତ୍ୱ ବ୍ରହ୍ମଣୋଽସ୍ତୀତିତଦ୍ ବିରୁଧ୍ୟତେ ।

(ଗ) ନେତିବ୍ରୂମଃ-ଉପାଧିନିମିତ୍ତସ୍ୟ ବସ୍ତୁ ଧର୍ମତାନୁପପତ୍ତେଃ, ଉପାଧିନାଂଚାବିଦ୍ୟା-ପ୍ରତ୍ୟୁପ ସ୍ଥାପିତତ୍ୱାତ୍ । ସତ୍ୟାମେବ ଚ ନୈସର୍ଗିକ୍ୟମବିଦ୍ୟାୟାଂ ଲୋକବେଦବ୍ୟ ବହାରାବତାର ଇତି ତତ୍ର ତତ୍ରାବୋଚାମ ।

**(୨) ଭାଷାନ୍ତର-** (କ) ଯେପରି ଆକାଶକୁ ବ୍ୟାପି କରି ରହି ସୂର୍ଯ୍ୟ ଅଥବା ଚନ୍ଦ୍ରର ଆକାଶ ଅଙ୍ଗୁଳି ପ୍ରଭୃତି ଉପାଧିର ସମ୍ବନ୍ଧରୁ ସେହି ଅଙ୍ଗୁଳି ପ୍ରଭୃତି ସିଧା, ବକ୍ର ପ୍ରଭୃତି ଭାବକୁ ପ୍ରାପ୍ତ ହେଲେ ତଦ୍‌ଭାବ ପ୍ରାପ୍ତ ହୁଏ, ସେହିପରି ବ୍ରହ୍ମ ମଧ୍ୟ ପୃଥିବୀ ପ୍ରଭୃତି ଉପାଧି ସମ୍ବନ୍ଧରୁ ତାହାର ଆକାରକୁ ପ୍ରାପ୍ତ ହୁଏ ଏବଂ ତାହାର ଆଲମ୍ବନ ଉପାସନା ପାଇଁ ବ୍ରହ୍ମରେ ଆକାର ବିଶେଷର ଉପଦେଶ ବିରୁଦ୍ଧ ନୁହେଁ ।

(ଖ) ସେହିପରି ଆକାର ପରି ବ୍ରହ୍ମ ବିଷୟକ ବାକ୍ୟ ମଧ୍ୟ ପ୍ରୟୋଜନରହିତ ହେବେ ନାହିଁ । ବେଦ ବାକ୍ୟରେ କେଉଁ ବାକ୍ୟର ସାର୍ଥକ ଓ କେଉଁ ବାକ୍ୟର ନିରର୍ଥକ ଅଛି ବୋଲି ଭାବିବା ଉଚିତ୍ ନୁହେଁ । କାରଣ-ସାର୍ଥକ ଓ ନିରର୍ଥକରେ ପ୍ରମାଣତ୍ୱ ସମାନ ଅଟେ । ପରନ୍ତୁ ଏପରି ସ୍ୱୀକାର କଲାପରେ ଯାହା ପ୍ରଥମେ ପ୍ରତିଜ୍ଞା କରାଯାଇଅଛି ଯେ- ଉପାଧି ଯୋଗରୁ ମଧ୍ୟ ବ୍ରହ୍ମ ଉଭୟଲିଙ୍ଗ ନୁହେଁ, ସେ କଣ ନୁହେଁ କି ?

(ଗ) ନା, ଏହା ନୁହେଁ । ଆମ୍ଭେ କହୁଁ ଯେ- ଉପାଧି ନିମିତ୍ତକ ବସ୍ତୁର ଧର୍ମ ନାହିଁ, କାରଣ ଉପାଧି ଗୁଡ଼ିକ ଅବିଦ୍ୟା ଦ୍ୱାରା ଲୌକିକ ଓ ବୈଦିକ ବ୍ୟବହାର ଗୁଡ଼ିକର ଅବତାର ହୁଏ । ଏହା ଆମ୍ଭେ ଆବଶ୍ୟକ ସ୍ଥଳରେ କହିଅଛୁ ।

## आह च तन्मात्राम् ॥ १६ ॥

## (୧) ଆହ ଚ ତନ୍ମାତ୍ରମ୍ ॥୩-୨-୧୬॥

ଚ = ତେଣୁ ଯଥା 'ସୈନ୍ଧବଘନଃ' ଇତ୍ୟାଦିଶ୍ରୁତି, ତନ୍ମାତ୍ରମ୍ = ନିର୍ବିଶେଷବ୍ରହ୍ମକୁ ଆହ = କହେ ।

(୨) ମୂଳ-(କ) ଆହ ଚ ଶ୍ରୁତିଶ୍ଚୈତନ୍ୟମାତ୍ରଂ ବିଲକ୍ଷଣରୂପାନ୍ତରରହିତଂ ନିର୍ବିଶେଷଂ ବ୍ରହ୍ମ - 'ସ ଯଥା ସୈନ୍ଧବଘନୋଽନନ୍ତରୋଽବାହ୍ୟଃ କୃତ୍ସ୍ନୋ ରସଘନ ଏବୈବଂ ବା ଅରେଽୟମାତ୍ମାଽନନ୍ତରୋଽବାହ୍ୟଃ କୃତ୍ସ୍ନଃ ପ୍ରଜ୍ଞାନ ଘନ ଏବ' (ବୃହ ୪-୫-୧୩) ଇତି ।

(ଖ) ଏତଦୁକ୍ତଂ ଭବତି - ନାସ୍ୟାତ୍ମନୋଽନ୍ତର୍ବହିର୍ବା ଚୈତନ୍ୟାଦନ୍ୟଦ୍ରୂପନସ୍ତି, ଚୈତନ୍ୟମେବ ତୁ ନିରନ୍ତରମସ୍ୟ ସ୍ୱରୂପମ୍ । ଯଥା ସୈନ୍ଧବଘନସ୍ୟାନ୍ତର୍ବହିଶ୍ଚ ଲବଣରସ ଏବ ନିରନ୍ତରୋ ଭବତି, ନ ରସାନ୍ତରଂ ତଥୈବେତି ।

**(୨) ଭାଷାଂତର-** (କ) 'ସ ଯଥା ସୈନ୍ଧବଘନଃ' ଯେପରି ଲବଣ ପିଣ୍ଡ ଭିତରେ ଓ ବାହାରେ ନ ରହି ସମ୍ପୂର୍ଣ୍ଣ ରସଘନ ହୁଏ, ହେ ମୈତ୍ରେୟୀ ! ସେହିପରି ଆତ୍ମା ଆନ୍ତରବାହ୍ୟଭେଦଠାରୁ ଶୂନ୍ୟ ହୋଇ ସଂପୂର୍ଣ୍ଣ ପ୍ରଜ୍ଞାନ ଘନ ହିଁ ହୁଏ । ଏହି ପ୍ରକାର ଶ୍ରୁତି ରୂପାନ୍ତର ରହିତ, ଚୈତନ୍ୟମାତ୍ର, ନିର୍ବିଶେଷବ୍ରହ୍ମକୁ କହେ ।

(ଖ) ତାତ୍ପର୍ଯ୍ୟ ଏହିକି- ଏହି ଆତ୍ମାର ଅନ୍ତର ଓ ବାହ୍ୟ ଚୈତନ୍ୟରୂପରେ ଅନ୍ୟ ରୂପ କିଛି ନାହିଁ, କିନ୍ତୁ ଚୈତନ୍ୟ ହିଁ ତାହାର ନିରନ୍ତର ସ୍ୱରୂପ ଅଟେ । ଯେପରି ଲବଣ ପିଣ୍ଡର ଆନ୍ତର ଓ ବାହାର ଲବଣ ରସ ନିରନ୍ତର ହୁଏ, ଅନ୍ୟରସ ହୁଏ ନାହିଁ, ସେହିପରି ଏହା ହିଁ ।

**दर्शयति चाथो अपि स्मर्यते ॥ १७ ॥**

**ଦର୍ଶୟତ ଚଥୋ ଅପିସ୍ମର୍ଯ୍ୟତେ ॥୩-୨-୧୭॥**

'ଅଥାତୋ ଆଦେଶ' ଇତ୍ୟାଦି ଶ୍ରୁତି ନିଷେଧ ମୁଖରେ ନିର୍ବିଶେଷ ବ୍ରହ୍ମକୁ, ଦର୍ଶୟତି - ଦେଖାଏ । ଅଥଃ - ଏବଂ ସ୍ମର୍ଯ୍ୟତେ - 'ଅନାଦିମତପରଂ ବ୍ରହ୍ମ' ଇତ୍ୟାଦି ଶ୍ରୁତିରେ ଅପି-ମଧ୍ୟ ଏହା ଉପଦେଶ ଦିଆଯାଇଛି ।

(୨) ମୂଳ-(କ) ଦର୍ଶୟତି ଚ ଶ୍ରୁତିଃ ପରରୂପପ୍ରତିଷେଧେନୈବ ବ୍ରହ୍ମ, ନିର୍ବିଶେଷତ୍ୱାତ୍-ଅର୍ଥାତ୍ ଆଦେଶୋ 'ନେତି ନେତି' (ବୃହ ୨।୩।୬୭) ଇତି । ଅନ୍ୟଦେବ ତଦ୍‌ବିଦିତାଦଥୋ ଅବିଦିତାଦଧି' (କେ ୧।୩), 'ଯତୋ ବାଚେ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ' (ତୈ ୨।୪।୧) ଇତ୍ୟେବମାହଦ୍ୱା ।

(ଖ) ବାଷ୍କଲିନା ଚ ବାଧ୍ୱଃ ପୃଷ୍ଟଃ ସନ୍ନବଚନେନୈବ ବ୍ରହ୍ମ ପ୍ରୋବାଚେତି ଶ୍ରୂୟତେ- 'ସହୋବାଚାଧିହି ଭୋ ଇତି ସ ତୃଷ୍ଣୀଂ ବଭୁବ ତଂ ହ ଦ୍ୱିତୀୟେ ବା ତୃତୀୟେ ବଚନ ଉବାଚ ବ୍ରୂମଃ ଖଳ ତ୍ୱଂ ତୁ ନ ବିଜାନାସି । ଉପଦେଶାନ୍ତୋ ଽୟମାତ୍ମା, ଇତି ।

(ଗ) ତଥା ସ୍ମୃତିଷ୍ୱପି ପରିପ୍ରତିଷେଧେନୈବୋପଦି ଶ୍ୟତେ-ଜ୍ଞେୟଂ ଯତ୍ତତ୍ପ୍ରବକ୍ଷ୍ୟାମି ଯଜଜ୍ଞାତ୍ୱାଽମୃତମଶ୍ନୁତେ । ଅନାଦିମତ୍ ପରଂ ବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ (ଗୀ ୧୩-୧୨) ଇତ୍ୟେବମାଦ୍ୟାସୁ । ତଥା ବିଶ୍ୱରୂପଧରୋ ନାରାୟଣୋ ନାରଦମୁବାଚେତି ସ୍ମର୍ଯ୍ୟତେ 'ମାୟା ହ୍ୟେଷା ମୟା ସୃଷ୍ଟା ଯନ୍ମାଂ ପଶ୍ୟସି ନାରଦ । ସର୍ବଭୂତଗୁଣୈର୍ଯୁକ୍ତଂ ନୈବଂ ମାଂ ଜ୍ଞାତୁମର୍ହସି' ଇତି ।

**(୨) ଭାଷାଂତର -** (କ) 'ଅଥାତ ଆଦେଶେ' ଏହାପରେ ବ୍ରହ୍ମମୂର୍ତ୍ତ ନୁହେଁ ଏବଂ ଅମୂର୍ତ୍ତ ନୁହେଁ ଏହା ହିଁ ଉପଦେଶ 'ଅନ୍ୟ ଦେବ' ସେ ବିଦିତ କାର୍ଯ୍ୟରୁ ପୃଥକ୍ ଓ ଅବିଦିତରୁକାର୍ଯ୍ୟ ଭିନ୍ନ ଅଟେ ଏବଂ 'ଯତୋ ବାଚେ' ଯେଉଁ ସ୍ଥାନରୁ ମନ ସହିତ ବାଣୀ

 

ତାହାକୁ ନପାଇ ଫେରି ଆସେ ଇତ୍ୟାଦି ବେଦବାକ୍ୟ ପରରୂପ ଅନାତ୍ମରୂପକୁ ପ୍ରତିଷେଧ କରି ବ୍ରହ୍ମକୁ ଦେଖାଏ । କାରଣ ବ୍ରହ୍ମ ହିଁ ନିର୍ବିଶେଷରୂପ ।

(ଖ) ବାଷ୍କଳିନ ବଧୂଙ୍କୁ ପଚାରିବାରୁ ବଧୂ କଥା ନ କହି ବ୍ରହ୍ମ ବିଷୟରେ କହିଲେ 'ସହୋବାଚ' ସେ କହିଲେ - ହେ ଭଗବାନ ବଧୂ ! ମୋତେ ବ୍ରହ୍ମବିଷୟରେ କିଛି କହନ୍ତୁ । ଏହା ପଚାରିବାରୁ ବଧୁ ତୁନି ରହିଲେ । ସେ ଦ୍ୱିତୀୟ ବା ତୃତୀୟ ଥର ପଚାରିବାରୁ ବଧୁ କହିଲେ- ଆମ୍ଭେ କହୁଅଛୁଁ, କିନ୍ତୁ ଏହି ଆତ୍ମା ଉପଶାନ୍ତ ଦ୍ୱୈତରହିତ ବୋଲି ଆମ୍ଭେ ଜାଣିପାରୁନାହୁଁ ଏହାହିଁ ବେଦବାକ୍ୟ -

(ଗ) ଏହିପରି 'ଜ୍ଞେୟଂଯତ୍ ତତ୍ ପ୍ରବକ୍ଷ୍ୟମି' (ଯାହା ଜ୍ଞେୟ ଅଟେ, ତାହାକୁ ପୂର୍ବପରି କହିବି) ଯାହାକୁ ଜାଣି ମନୁଷ୍ୟ ପରମାନନ୍ଦକୁ ପାଏ, ସେ ଅନାଦିମତ୍ ପରଂ ବ୍ରହ୍ମସତ୍ (ଇନ୍ଦ୍ରିୟବେଦ୍ୟ) ନୁହେଁ କି ଅସତ୍ (ପରୋକ୍ଷ) ନୁହେଁ, ଇତ୍ୟାଦି ସ୍ମୃତିରେ ପରର ପ୍ରତିଷୋଧରୁ ତାହାର ଉପଦେଶ ଦିଆଯାଇଅଛି । ବିଶ୍ୱରୂପଧାରଣ କରିଥିବା ନାରଦ କହିଲେ - 'ମାୟା ହ୍ୟେଷା' (ହେ ନାରଦ ! ଏହି ମାୟା ମୁଁ ରଚନା କରିଛି । ଯାହାକି ତମେ ମୋତେ ସର୍ବଭୂତଗୁଣଯୁକ୍ତ ରୂପରେ ଦେଖୁଛ କିନ୍ତୁ ସେପରି ମୋତେ ଦ୍ୱୈତ ରୂପରେ ଦେଖିବା ପାଇଁ ତୁମ୍ଭେ ଯୋଗ୍ୟ ନୁହଁ ଏହାହିଁ ସ୍ମୃତି ।

## अतएव चोपमा सूर्यकादिवत् ॥ १८ ॥

## (୧) ଅତଏବ ଚୋପମା ସୂର୍ଯ୍ୟକାଦିବତ୍ ॥୩-୨-୧୮॥

ଅତଏବ = କାରଣ-ଏହି ଚୈତନ୍ୟ ସ୍ୱରୂପ ଆତ୍ମାର ପରପ୍ରତିଷେଧ ଦ୍ୱାରା ଉପଦେଶ କରାଯାଇଅଛି । ତେଣୁ ତାହାର ସୂର୍ଯ୍ୟକାଦିବତ୍ ଜଳଗତ ସୂର୍ଯ୍ୟର ପ୍ରତିବିମ୍ବ ସହିତ, ଉପମା=ଉପମା ଦିଆଯାଇଅଛି ।

(୨) ମୂଳ-(କ) ଯତ ଏବ ଚାୟମାତ୍ମା ଚୈତନ୍ୟରୂପୋ ନିର୍ବିଶେଷୋ ବାଙ୍‌ମନସାତୀତଃ ପରପ୍ରତିଷେଧୋପଦିଶ୍ୟୋଽତ ଏବ ଚାସ୍ୟୋଽପାଧିନିମିତ୍ତାମପାରମାର୍ଥିକଂ ବିଶେଷବତ୍ତାମଭିପ୍ରେତ୍ୟ ଜଳସୂର୍ଯ୍ୟକାଦିବତ୍ୟୁପମୋପାଦୀୟତେ ମୋକ୍ଷଶାସ୍ତ୍ରେଷୁ- 'ଯଥା ହ୍ୟୟଂ ଜ୍ୟୋତିରାତ୍ମା ବିବିସ୍ୱାନପୋ ଭିନ୍ନା ବହୁଧୈକୋଽନୁଗଚ୍ଛନ୍ । ଉପାଧିନା କ୍ରିୟତେ ଭେଦରୂପୋ କ୍ଷେତ୍ରେଷ୍ୱେବମଜୋଽୟମାତ୍ମା' ଇତି । 'ଏକ ଏବହି ଭୂତାତ୍ମା ଭୂତେ ଭୂତେ ବ୍ୟବସ୍ଥିତଃ । ଏକଧା ବହୁଧା ଚୈବଦୃଶ୍ୟତେ ଜଳଚନ୍ଦ୍ରବତ୍' (ବ୍ର ବି ୧ ୨) ଇତ୍ୟେବମାଦିଷୁ ।

**(୨) ଭାଷାଂତର-** (କ) କାରଣ ଏହି ଆତ୍ମା ଚୈତନ୍ୟରୂପ; ନିର୍ବିଶେଷବାଣୀ ଓ ମଢର ଅବିଶୟ ପର (ଦ୍ୱୈତ) ପ୍ରତିଷେଧ ଦ୍ୱାରା ଉପଦେଶ୍ୟ ଅଟେ । ତେଣୁ ଏଠାରେ ଉପାଧି ନିମିତ୍ତକ ଅପାରମାର୍ଥିକ ସବିଶେଷର ଅଭିପ୍ରାୟ ଦ୍ୱାରା 'ଯଥା ହ୍ୟୟଂ' ଯେପରି ଏହି ଜ୍ୟୋତିଃସ୍ୱରୂପ ସୂର୍ଯ୍ୟ ସ୍ୱତଃ ଗୋଟିଏ ହେଲେ ମଧ୍ୟ ଭିନ୍ନ ଭିନ୍ନ ଜଳରେ ପ୍ରତିବିମ୍ବିତ ହୋଇ ଉପାଧି ଦ୍ୱାରା ଅନେକ ପ୍ରକାର ରୂପେ ପ୍ରତିଭାତ ହୁଏ, ସେପରି ମଧ୍ୟ ଏହି ସ୍ୱୟଂ ପ୍ରକାଶରୂପ ଅଜ ଆତ୍ମା ଶରୀରରେ ଉପାଧି ଦ୍ୱାରା ଅନେକ ଓ ଭିନ୍ନ ଭିନ୍ନ ଆକାରରେ ପ୍ରକାଶିତ ହୁଏ । 'ଏକ ଦେବ' (ଏକ ହିଁ ଭୂତାତ୍ମା ପ୍ରତ୍ୟେକ ଭୂତରେ ଅବସ୍ଥିତ ହୋଇ ଜଳଗତଚନ୍ଦ୍ର-ପ୍ରତିବିମ୍ବ ପରି ଏକଧା ଓ ଅନେକଧା ଦେଖାଯାଏ) ଇତ୍ୟାଦି ମୋକ୍ଷ ଶାସ୍ତ୍ରରେ ଜଳଗତ ସୂର୍ଯ୍ୟର ପ୍ରତିବିମ୍ବ ପରି ଉପାଧିର ଗ୍ରହଣ କରାଯାଏ ।

(୧) ଏଠାରେ ଶଙ୍କା ହୁଏ ଯେ-

**अम्बुवदग्रहणात्तु न तथात्वम् ॥ १९ ॥**

**ଅମ୍ବୁବଦ୍‌ଗ୍ରହଣାତ୍ତୁ ନ ତଥାତ୍ୱମ୍ ॥୩-୨-୧୯॥**

ଅମ୍ବୁବତ୍=ଯେପରି ଜଳକୁ ସୂର୍ଯ୍ୟାଠାରୁ ପୃଥକ୍ ରୂପରେ ଗ୍ରହଣ କରାଯାଏ, ସେପରି ଏଠାରେ ଉପାଧିର ପୃଥକ, ଅଗ୍ରହଣାତ=ଗ୍ରହଣ ହୁଏ ନାହିଁ । ତେଣୁ, ନ ତଥାତ୍ୱମ୍=ଏହି ସୂର୍ଯ୍ୟର ଦୃଷ୍ଟାନ୍ତ ଠିକ୍ ନୁହେଁ ।

(୨) ମୂଳ-(କ) ନ ଜଳସୂର୍ଯ୍ୟ କାଦିତୁଲ୍ୟତ୍ୱମିହୋପପଦ୍ୟତେ, ତଦ୍‌ବଦ ଗ୍ରହଣାତ୍ । ସୂର୍ଯ୍ୟାଦିଭ୍ୟୋ ହି ମୂର୍ତ୍ତେଭ୍ୟଃ ପୃଥଗ୍‌ଭୂତଂ ବିକୃଷ୍ଟାଦେଶଂ ମୂର୍ତ୍ତଃ ଜଳଂ ଗୃହ୍ୟତେ ତତ୍ର ଯୁକ୍ତଃ ସୂର୍ଯ୍ୟାଦି ପ୍ରତିବିମ୍ବୋଦୟଃ, ନ ତ୍ୱାତ୍ମା ମୂର୍ତ୍ତୋ ନ ଚସ୍ମାତ୍‌ପୃଥରାଭୂତା ବିପ୍ରକୃଷ୍ଟଦେଶାଶ୍ଚୋପାଧୟଃ, ସର୍ବଗତତ୍ୱାତ୍ ସର୍ବନନ୍ୟତ୍ୱାଚ୍ଚ । ତସ୍ମାଦଯୁକ୍ତୋଽୟଂ ଦୃଷ୍ଟାନ୍ତ ଇତି ।

**(୨) ଭାଷାଂତର-** (କ) ଯେପରି ଜଳଗତସୂର୍ଯ୍ୟର ବିମ୍ବ ସହିତ ସମାନତା ଉପପନ୍ନ ହୁଏ ନାହିଁ, କାରଣ ଆତ୍ମାର ତାହା ସହିତ ସମାନତା ଗ୍ରହଣ ହୁଏ ନାହିଁ । ମୂର୍ତ୍ତ ସୂର୍ଯ୍ୟାଦି ପୃଥଗ୍‌ଭୂତ ଦୂରଦେଶସ୍ଥ ମୂର୍ତ୍ତ ଜଳକୁ ଗ୍ରହଣ କରେ, ତେଣୁ ସେଠାରେ ସୂର୍ଯ୍ୟାଦି ପ୍ରତିବିମ୍ବର ଉଦୟ ହେବା ଠିକ୍ । ପରନ୍ତୁ ଆତ୍ମା ମୂର୍ତ୍ତ ନୁହେଁ, ଏବଂ ଉପାଧିଗୁଡ଼ିକ ତାହାଠାରୁ ପୃଥରାଭୂତ ଓ ଦୂରଦେଶସ୍ଥ ନୁହେଁ । କାରଣ-ଆତ୍ମା ସର୍ବଗତ ଓ ସବୁଠାରୁ ଅଭିନ୍ନ । ତେଣୁ ଏହି ଦୃଷ୍ଟାନ୍ତ ଠିକ୍ ନୁହେଁ ।

(୧) ଏଠାରେ ସେହି ଶଙ୍କାର ସମାଧାନ ହୁଏ ଯେ-



**वृद्धिह्रसभाक्त्वमन्तर्भावादुभयसामञ्जस्यादेवम् ॥ २० ॥**

**ବୃଦ୍ଧିହ୍ରାସ ଭାକ୍ତ୍ୱମନ୍ତର୍ଭାବାଦୁଭୟସାମଞ୍ଜସ୍ୟାଦେବମ୍ ॥୩-୧-୨୦॥**

ଯେପରି ଜଳଗତ ସୂର୍ଯ୍ୟ-ପ୍ରତିବିମ୍ବ ଜଳଗତ ବୃଦ୍ଧି ଓ ହ୍ରାସର ଭାଗୀ (ଭକ୍ଷକ) ହୁଏ, ଏବଂ=ସେପରି ନିର୍ବିଶେଷ ବ୍ରହ୍ମ ମଧ ଉପାଧିର ଅନ୍ତର୍ଭାବାତ୍=ଅନ୍ତର୍ଭାବରୁ; ବୃଦ୍ଧିହ୍ରାସଭାକ୍ତ୍ୱମ୍=ଉପାଧିଗତ ବୃଦ୍ଧି ଓ ହ୍ରାସର ଭାଗୀ ହୁଏ ସେହିପରି, ଉଭୟ ସାମଞ୍ଜସ୍ୟାତ୍=ଦୃଷ୍ଟାନ୍ତ ଓ ଦାର୍ଷ୍ଟାନ୍ତିକ ଦୁଇଟିରେ ସାମଞ୍ଜସ୍ୟ ରହେ ।

(୨) ମୂଳ-(କ) ଯୁକ୍ତଂ ଏବ ତ୍ୱୟଂ ଦୃଷ୍ଟାନ୍ତଃ, ବିବକ୍ଷିତାଂଶସମ୍ଭବାତ୍ । ନହି ଦୃଷ୍ଟାନ୍ତଦାର୍ଷ୍ଟାନ୍ତିକୟୋଃ କ୍ୱଚିତ୍ କଶ୍ଚିଦ୍ ବିବକ୍ଷିତାଂଶମୁକ୍ତ୍ୱା ସର୍ବସାରୂପ୍ୟଂ କେନଚିଦ୍ ଦର୍ଶୟିତୁଂ ଶକ୍ୟତେ । ସର୍ବସାରୂପ୍ୟେ ହି ଦୃଷ୍ଟାନ୍ତଦାର୍ଷ୍ଟାନ୍ତିକଭାବୋଚ୍ଛେଦ ଏବ ସ୍ୟାତ୍ । ନ ଚେଦଂ ସ୍ୱମନୀଷୟା ଜଳସୂର୍ଯ୍ୟକାଦି ଦୃଷ୍ଟାନ୍ତପ୍ରଣୟନମ୍, ଶାସ୍ତ୍ରପ୍ରଣୀତସ୍ୟ ତୃସ୍ୟ ପ୍ରୟୋଜନ ମାତ୍ର ମୁପନ୍ୟସ୍ୟତେ ।

(ଖ) କିଂ ପୁନରତ୍ର ବିବକ୍ଷିତଂ ସାରୂପ୍ୟମିତି ? ତଦୁଚ୍ୟତେ ବୃଦ୍ଧିହ୍ରାସଭାକ୍ତ୍ୱମିତି । ଜଳଗତଂ ହି ସୂର୍ଯ୍ୟ ପ୍ରତିବିମ୍ବଂ ଜଳବୃଦ୍ଧୌ ବର୍ଦ୍ଧତେ, ଜଳହ୍ରାସେହସତି, ଜଳଚଳନେ ଚଳତି, ଜଳଭେଦେ ଭିଦ୍ୟତେ ଇତ୍ୟେବଂ ଜଳଧର୍ମାନୁଯାୟୀ ଭବତି, ନ ତୁ ପରମାର୍ଥତଃ ସୂର୍ଯ୍ୟସ୍ୟ ତଥାତ୍ୱମିତି ।

(ଗ) ଏବଂ ପରମାର୍ଥତୋଽବିକୃତମେକରୂପମପି ସଦ୍‌ବ୍ରହ୍ମ ଦେହାଦ୍ୟପାଧ୍ୟନ୍ତର୍ଭାବାଦ୍ ଭଜତ ଇବୋପାଧିଧର୍ମାନ୍ ବୃଦ୍ଧହ୍ରାସାଦିନ୍ । ଏବମୁଭୟୋଦୃଷ୍ଟାନ୍ତଦାର୍ଷ୍ଟାନ୍ତିକୟୋଃ ସାମଞ୍ଜସ୍ୟାଦବିରୋଧଃ ।

(୨) ଭାଷାଂତର- (କ) ଏହି ଦୃଷ୍ଟାନ୍ତ ଠିକ୍ ନୁହେଁ । କାରଣ-ସେଥିରେ ବିବକ୍ଷିତାଂଶର ସମ୍ଭବ ହୁଏ । ଦୃଷ୍ଟାନ୍ତ ଓ ଦାର୍ଷ୍ଟାନ୍ତିକରେ କେଉଁଠି କେତେକ ବିବକ୍ଷିତାଂଶକୁ ଛାଡ଼ି ସମସ୍ତ ସ୍ୱରୂପରେ ସାଦୃଶ୍ୟ କୌଣସି ହେଲେ ଦେଖେ ନାହିଁ । ସଂପୂର୍ଣ୍ଣ ରୂପରେ ସାଦୃଶ୍ୟ ହେଲେ ମଧ ଦୃଷ୍ଟାନ୍ତ ଦାର୍ଷ୍ଟାନ୍ତିକ ଭାବର ଉଚ୍ଛେଦ ହେବ ଏବଂ ଏହି ବଳ ସୂର୍ଯ୍ୟାଦି ଦୃଷ୍ଟାନ୍ତ ନିଜର ବୁଦ୍ଧିରୁ ରଚନା କରାଯାଏ ନାହିଁ । କିନ୍ତୁ ଶାସ୍ତ୍ର ରଚିତ ଏହି ପ୍ରୟୋଜନର ଉପନ୍ୟାସ କରାଯାଇଛି ।

(ଖ) ଏଠାରେ ବିବକ୍ଷିତ ସାରୂପ୍ୟ କଣ ଅଛି ? ତେଣୁ କୁହାଯାଇଅଛି ଯେ- ବୃଦ୍ଧି ଓ ହ୍ରାସର ଭାଗୀ ହେବା ସାରୂପ୍ୟ ଅଟେ । ଜଳଗତ ସୂର୍ଯ୍ୟ ପ୍ରତିବିମ୍ବ ଜଳର ବୃଦ୍ଧି ହେଲେ ବୃଦ୍ଧି ପାଏ, ଜଳର ହ୍ରାସ ହେଲେ ସେ କମିଯାଏ । ପାଣି ହଲିଲେ ସେ ମଧ ହେଲେ ଜଳର ପୃଥକ୍ ହେଲେ ସେ ମଧ ପୃଥକ୍ ହୁଏ । ଏହି ପ୍ରକାର ସୂର୍ଯ୍ୟର ପ୍ରତିବିମ୍ବ; ଜଳ ଧର୍ମ ଅନୁଯାୟୀ ହୁଏ । ପରନ୍ତୁ ପରମାର୍ଥତଃ ସୂର୍ଯ୍ୟ ସେପରି ନୁହେଁ ।

(ଗ) କିନ୍ତୁ ଯେପରି ପରମାର୍ଥତଃ ଅବିକୃତ ଏକ ରୂପ ହୋଇ ମଧ୍ୟ ବ୍ରହ୍ମ ଦେହାଦି ଉପାଧିର ଅନ୍ତର୍ଭାବରୁ ବୃଦ୍ଧି ଓ ହ୍ରାସାଦି ଉପାଧିର ଧର୍ମକୁ ପ୍ରାପ୍ତ ହୁଏ ସେପରି ଦୃଷ୍ଟାନ୍ତ ଓଦାର୍ଷ୍ଟାନ୍ତିକ-ଏହି ଦୁଇଟିର ସାମଞ୍ଜସ୍ୟରେ ଅବିରୋଧ ରହେ ।

## ଦର୍ଶନାଚ୍ଚ ॥ ୨୧ ॥

## (୧) ଦର୍ଶନାଚ୍ଚ ॥୩-୧-୨୧॥

ଦର୍ଶନାତ ଚ = ପ୍ରତିବିମ୍ବ ରୂପ ଦେହାନ୍ତରାନୁପ୍ରବେଶ ପରଂବ୍ରହ୍ମର 'ପୁରଶ୍ଚକ୍ରେ ଦ୍ୱିପଦଃ' ଇତ୍ୟାଦି ଶ୍ରୁତିରେ ଦେଖାଯାଏ । ତେଣୁ ନିର୍ବିଶେଷ ବ୍ରହ୍ମ ସିଦ୍ଧି ହୁଏ ।

(୨) ମୂଳ (କ) ଦଶୟତି ଚ ଶ୍ରୁତିଃ ପରସ୍ୟୈବ ବ୍ରହ୍ମଣୋ ଦେହାଦିଷୂପାଧିଷ୍ୱନ୍ତର ମନୁ ପ୍ରବେଶମ୍ - 'ପୁରଶ୍ଚକ୍ରେ ଦ୍ୱିପଦଃ' 'ପୁରଶ୍ଚକ୍ରେ ଚତୁଷ୍ପଦଃ' ପୁରଃ ସ ପକ୍ଷୀ ଭୂତ୍ୱା ପୁରଃ ପୁରୁଷ ଆବିଶତ୍' (ବୃହ ୨।୫।୧୮) ଇତି । 'ଅନେନ ଜୀବେନାତ୍ମନାଽନୁପ୍ରବିଶ୍ୟ' (ଛୁ ୬।୩।୨) ଇତି ଚ । ତସ୍ମାଦ୍ ଯୁକ୍ତ ମେତତ୍ 'ଅତ ଏବ ଚୋପମା ସୂର୍ଯ୍ୟକାଦିବତ୍' (ବୃ-ମୂ ୩।୨।୧୮) ଇତି ।

(ଖ) ତସ୍ମାନ୍ନିର୍ବିକଳ୍ପ କୈକଲିଙ୍ଗମେବ ବ୍ରହ୍ମ ଉଭୟଲିଙ୍ଗମ୍ ବିପରୀତଲିଙ୍ଗମ୍ ଚେତି ସିଦ୍ଧମ୍ । ଅତ୍ର କ୍ୱଚିତ୍ ଦ୍ୱେ ଅଧିକରଣେ କଳ୍ପୟନ୍ତି । ପ୍ରଥମଂ ତବତ୍-କିଂ ପ୍ରତ୍ୟସ୍ତ ମିତା ଶେଷ ପ୍ରପଞ୍ଚ ମେକାକାରଂ ବ୍ରହ୍ମୋତ ପ୍ରପଞ୍ଚବଦନେକାକାଲରୋ ପେତମିତି ? ଦ୍ୱିତୀୟଂ ତୁ-ସ୍ଥିତେ ପ୍ରତ୍ୟସ୍ତମିତପ୍ରପଞ୍ଚତ୍ୟେ କିଂ ସଲକ୍ଷଣଂ ବ୍ରହ୍ମୋତ ବୋଧ ଲକ୍ଷଣମୁତୋଭୟଲକ୍ଷଣମିତି ।

**(୨) ଭାଷାଂତର** - (କ) ପରୁଶ୍ଚକ୍ରେ ଦ୍ୱିପଦଃ (ପରମେଶ୍ୱର ପାଦଥିବା ପୁର (ମନୁଷୀ) ଇତ୍ୟାଦି ଶରୀରକୁ ନିର୍ମାଣ କଲେ । ଚାରିପାଦଥିବା ପଶୁର ଶରୀରକୁ ସୃଷ୍ଟି କଲେ ପ୍ରଥମେ ଏହି ପୁରୁଷ ପକ୍ଷୀ (ଲିଙ୍ଗଶରୀରୀ) ହୋଇ ଶରୀରରେ ପ୍ରବେଶ କଲେ) 'ଅନେନ ଜୀବେନ' (ସେହି ଜୀବରୂପରେ ପ୍ରବେଶ କରି) ଏହି ପ୍ରକାର ଶ୍ରୁତି ପରଂବ୍ରହ୍ମର ଦେହପ୍ରଭୃତି ଉପାଧିରେ ଅନୁପ୍ରବେଶ କରିବାର ଦେଖାଯାଏ । ତେଣୁ ଅତଏବ ଚୋପମା ସୂର୍ଯ୍ୟକାଦିବତ୍' ଏହି ବ୍ରହ୍ମସୂତ୍ର ଯୁକ୍ତିଯୁକ୍ତ ଅଟେ ।

(ଖ) ତେଣୁ ସିଦ୍ଧ ହେଲାଯେନିର୍ବିଶେଷ ଏକଲିଙ୍ଗ ହି ବ୍ରହ୍ମ । କିନ୍ତୁ ଉଭୟଲିଙ୍ଗୀ ନୁହେଁ କି ବିପରୀତଲିଙ୍ଗୀ ନୁହେଁ । ଏଠାରେ କୌଣସି ଦୁଇଟି ଅଧିକରଣର କଳ୍ପନା କରନ୍ତି । ପ୍ରଥମଟି ହେଲା- ସଂପୂର୍ଣ୍ଣ ପ୍ରପଞ୍ଚରୁ ଶୂନ୍ୟ ଏକାକାର ବ୍ରହ୍ମ କି ପ୍ରପଚଂଯୁକ୍ତ ଅନେକାକାର ବ୍ରହ୍ମ । ଦ୍ୱିତୀୟଟି ହେଲା - ସବୁପ୍ରପଞ୍ଚ ଶୂନ୍ୟସ୍ଥିତ ହେଲେ କଣ ସଦ୍ରୂପ ବ୍ରହ୍ମ ହୁଏ କି ବୋଧ ରୂପ ହୁଏ, କି ଉଭୟ ରୂପ ହୁଏ ।



(୩) ମୂଳ-(କ) ଅତ୍ର ବୟଂ ବଦାମଃ ସର୍ବଥାପ୍ୟାନର୍ଥକ୍ୟ ମଧିକରଣାନ୍ତରାମ୍ଭସ୍ୟେତି । ଯଦି ତାବଦନେକଲିଙ୍ଗତ୍ୱଂ ପରସ୍ୟ ବ୍ରହ୍ମଣୋ ନିରାକର୍ତ୍ତବ୍ୟମିତ୍ୟୟଂ ପ୍ରୟାସପ୍ରସ୍ତତ୍ ପୂର୍ବେଣୈବ 'ନ ସ୍ଥାନତୋଽପି' (ବ୍ର ସୂ ୩-୨-୧୧) ଇତ୍ୟନେନାଧିକରଣେନ ନିରାକୃତମିତ୍ୟୁତ୍ତରମଧିକରଣଂ 'ପ୍ରକାଶବଚ୍ଚ' (ବ୍ର ସୂ ୩-୨-୧୫) ଏତଦ୍‌ବ୍ୟର୍ଥମେବ ଭବେତ୍ ।

(ଖ) ନ ଚ ସଲ୍ଲକ୍ଷଣମେବ ବ୍ରହ୍ମ ନ ବୋଧ ଲକ୍ଷଣମିତି ଶକ୍ୟଂ ବକ୍ତୁମ୍ ? 'ବିଜ୍ଞାନ-ଘନ ଏବ' ଇତ୍ୟାଦି ଶ୍ରୁତିବୈୟର୍ଥ୍ୟ ପ୍ରସଙ୍ଗାତ । କଥଂ ବା ନିରସ୍ତଚୈତନ୍ୟଂ ବ୍ରହ୍ମ ଚେତନସ୍ୟ ଜୀବସ୍ୟାତ୍ମତ୍ୱେନୋପଦିଶ୍ୟେତ ? ନାପି ବୋଧଲକ୍ଷଣମେବ ବ୍ରହ୍ମ ନ ସଲ୍ଲକ୍ଷଣମିତି ଶକ୍ୟଂ ବକ୍ତୁମ୍, 'ଅସ୍ତୀତ୍ୟେବୋପଲବଧିବ୍ୟଃ' (କଠ ୬-୧୩) ଇତ୍ୟାଦି ଶ୍ରୁତି ବୈୟର୍ଥ୍ୟପ୍ରସଙ୍ଗାତ୍ । କଥଂ ବା ନିରସ୍ତଭାକୋ ବୋଧୋଽଭ୍ୟୁପଗମ୍ୟେତ ?

(ଗ) ନାପ୍ୟୁଭୟଲକ୍ଷଣମେବ ବ୍ରହ୍ମେତି ଶକ୍ୟଂ ବ୍ରହ୍ମ ବକ୍ତୁମ୍; ପୂର୍ବାଭ୍ୟୁପଗମବିରୋଧ ପ୍ରସଙ୍ଗାତ୍ । ସତ୍ତାବ୍ୟାବୃତ୍ତେନ ଚ ବୋଧେନ ବୋଧବ୍ୟାବୃତ୍ତୟା ଚ ସତ୍ତୟୋପେତଂ ବ୍ରହ୍ମ ପ୍ରତିଜାନାନସ୍ୟ ତଦେବ ପୂର୍ବାଧିକରଣ ପ୍ରତିସିଦ୍ଧ ସପ୍ରପଞ୍ଚତ୍ୱଂ ବ୍ରହ୍ମଣଃ ପ୍ରସଜ୍ୟେତ ।

(ଘ) ଶ୍ରୁତତ୍ୱାଦଦୋଷଃ ଇତି ଚେତ୍ - ନ, ଏକସ୍ୟାନେକ ସ୍ୱଭାବତ୍ୱାନୁପପତ୍ତେଃ । ଅଥ ସର୍ତ୍ତେବ ବୋଧୋ ବୋ୍ଧ ଏବ ଚ ସତ୍ତା, ନାନୟୋଃ ପରସ୍ପରବ୍ୟାବୃତ୍ତିରସ୍ତୀତି ଯଦୁଚ୍ୟେତ, ତଥାପି କିଂ ସଲ୍ଲକ୍ଷଣ ବ୍ରହ୍ମୋତ ବୋଧଲକ୍ଷଣ ମୁତୋ ଭୟଲକ୍ଷଣମିତ୍ୟୟଂ ବିକଳ୍ପୋ ନିରାଲମ୍ବନ ଏବ ସ୍ୟାତ୍ । ସୂତ୍ରାଣି ତ୍ୱେକାଧିକରଣ ତ୍ୱେନୈବା ସ୍ମାଭିର୍ନୀତାନି ।

(୩) ଭାଷାଂତର- (କ) ଏହି ବିଷୟରେ ଆମ୍ଭେ କହୁଁ ଯେ- ଅନ୍ୟ ଅଧିକରଣର ଆରମ୍ଭ ସର୍ବଦା ଅନର୍ଥକ ଅଟେ । ଯଦି ପରଂବ୍ରହ୍ମର ଅନେକ ଲିଙ୍ଗତ୍ୱ ନିରାକର୍ତ୍ତବ୍ୟ ହୁଏ, ତେଣୁ ଏହି ପ୍ରୟାସର 'ନ ସ୍ଥାନତୋଽପି' ଏହି ପୂର୍ବଅଧିକରଣରେ ନିରାକରଣ କରାଯାଇଅଛି । ତେଣୁ 'ପ୍ରକାଶବଚ୍ଚ' ଏହି ଅଗ୍ରିମ ଅଧିକରଣ ବ୍ୟର୍ଥ ହେବ ।

(ଖ) ବ୍ରହ୍ମ ସଦ୍ରୂପ ହିଁ ଜ୍ଞାନରୂପ ନୁହେଁ ବୋଲି ଏହିପରି କୁହାଯାଇ ନପାରେ, କାରଣ- 'ବିଜ୍ଞାନଘନ ଏବ' ଇତ୍ୟାଦି ଶ୍ରୁତିରେ ବୈୟର୍ଥ୍ୟ (ବ୍ୟର୍ଥ) ପ୍ରସଙ୍ଗ ଆସିଯିବ । ଅଥବା ଚୈତନ୍ୟରହିତ ବ୍ରହ୍ମ ଚୈତନ୍ୟ ଜୀବର ଆତ୍ମ ରୂପରେ କିପରି ଉପଦିଷ୍ଟ ହେବ ? ବ୍ରହ୍ମ ହିଁ ଜ୍ଞାନରୂପ କିନ୍ତୁ ସଦ୍ରୂପ ନୁହେଁ ବୋଲି ମଧ କୁହାଯିବ ନାହିଁ, କାରଣ-ଅସ୍ତୀତ୍ୟେବୋପଲବ୍ଧ (ହଁ, ଏହିପରି ଉପଲବ୍ଧ କରିବା ଉଚିତ) ଇତ୍ୟାଦି ଶ୍ରୁତିଗୁଡ଼ିକର ବେୟର୍ଥ୍ୟ ହେବ । ଯାହାର ସତ୍ତା ନାହିଁ, ତାହାର ପ୍ରମାଣ କିପରି ସ୍ୱୀକାର କରାଯିବ ?

(ଗ) ଏହିପ୍ରକାର ବ୍ରହ୍ମ ମଧ ଉଭୟ ଲକ୍ଷଣ ବୋଲି କୁହାଯାଇ ନପାରେ, କାରଣ- 'ନ ସ୍ଥାନତୋଽପି' ଏହି ସୂତ୍ରରେ ପୂର୍ବକୁ ସ୍ୱୀକାର କରିବା ସହିତ ବିରୋଧପ୍ରସଙ୍ଗ ହେବ ।

ସତ୍ତାରହିତ-ଜ୍ଞାନ ବିହୀନ ହିଁ ବ୍ରହ୍ମ ଏହିପରି ପ୍ରତିଜ୍ଞା କରୁଥିବା ପୂର୍ବ ଅଧିକରଣରେ ପ୍ରତିଷିଦ୍ଧ ଏହି ସପ୍ତ ଯଜ୍ଞଯୁକ୍ତ ହିଁ ବ୍ରହ୍ମ ହେବ ।

(ଘ) ଯଦି କହିବ ଯେ-ବେଦରେ ବ୍ରହ୍ମ ପ୍ରପଞ୍ଚଯୁକ୍ତ ବୋଲି ପ୍ରତିପାଦିତ ହେଲେ ଏହା ଭ୍ରମ ହୁଏ ନାହିଁ । ତେବେ ମଧ୍ୟ ଏହା ଠିକ୍ ନୁହେଁ । କାରଣ - ଗୋଟିଏ ଅନେକ ସ୍ୱଭାବ ହୁଏ ନାହିଁ । ଯଦି କହିବ ଯେ-ସତ୍ତା ହିଁ ଜ୍ଞାନ ହିଁ ସତ୍ତା- ଏହି ଦୁଇଟିର ପରସ୍ପର ବ୍ୟାବୃତ୍ତି ନାହିଁ, ତଥାପି କଣ ବ୍ରହ୍ମ ସଦ୍‌ରୂପ କି ବୋଧରୂପ, ବା ଉଭୟ ରୂପ ହୁଏକି ? ପହି ବିକଳ୍ପ ନିରାଶ୍ରୟ ହେବ । ସୂତ୍ରର ଯୋଜନା ଆମ୍ଭେ ଗୋଟିଏ ଅଧିକରଣରେ କରିଛୁ ।

(୪) ମୂଳ- (କ) ଅପିଃ ବ୍ରାବିଷୟାସୁଶ୍ରୁତି ଷ୍ୱକାର ବଦନାକାର ପ୍ରତିପାଦନେନ ବିପ୍ରତିପନ୍ନାସ୍ୱନାକାରେ ବ୍ରହ୍ମଣି ପରିଗୃହୀତେଽବଶ୍ୟଂ ବକ୍ତବ୍ୟେତରାସାଂ ଶ୍ରତୀନାଂ ଗତିଃ । ତାଦାର୍ଥ୍ୟେନ ପ୍ରକାଶବତ୍ୟୋଦୀନାଂ ସୂତ୍ରାଣ୍ୟର୍ଥବତ୍ତରାଣି ସଂପଦ୍ୟନ୍ତେ । ଯଦ୍ୟପ୍ୟାହୁରାକାର ପ୍ରତିପତ୍ତ୍ୟାର୍ଥା ଏବ ନ ପୃଥଗର୍ଥା ଇତି ତଦପି ନ ସମୀଚୀନମିବ ଲକ୍ଷ୍ୟତେ ।

(ଖ) କଥମ୍ ଯେଦି ପରବିଦ୍ୟାଧିକାରେ କେଚିତ ପ୍ରପଞ୍ଚା ଉଚ୍ୟନ୍ତେ, ଯଥା- 'ଯୁକ୍ତ' ହ୍ୟସ୍ୟ ହରୟଃ ଶତାଦଶେତ୍ୟୟଂ ବୈ ହରୟୋ ବୈ ଦଶ ଚ ସହସ୍ରାଣି ବହ୍ମନି ଚାନନ୍ତାନି ଚ' (ବୃହ ୨।୫।୧୯) ଇତ୍ୟେବମାଦୟସ୍ତେ ଭବନ୍ତି ପ୍ରବିଲୟାର୍ଥାଃ, 'ତଦେ ତଦ୍‌ବ୍ରହ୍ମା ପୂର୍ବମନପର ମନନ୍ତମବାହ୍ୟମ' (ବୃହ ୨।୫।୧୯।) ଇତ୍ୟୁପସଂରାରାତ୍ ।

(ଗ) ଯେ ପୁନରୁପାସନାବିଧାନାଧିକାରେ ପ୍ରପଞ୍ଚା ଉତ୍ୟନ୍ତେ, ଯଥା 'ମନୋମୟଃ ପ୍ରାଣଶରୀରୋ ଭାରୁପଃ (ଛା୩।୧୪।୨।) ଇତ୍ୟେବମାଦୟୋନ ତେଷାଂ ପ୍ରବିଲୟାର୍ଥତ୍ୱଂ ନ୍ୟାୟମ୍, 'ସକ୍ରତୁଂ କୁର୍ବୀତ' (ଛା୩।୧୪।୧) ଇତ୍ୟେବଂ ଜାତୀୟକେନ ପ୍ରକୃତେନ ବୋପାସନାବିଧିନା ତେଷାଂ ସମ୍ବନ୍ଧାତ୍ । ଶ୍ରୁତ୍ୟା ଚୈବଂ ଜାତିୟକାନାଂ ଗୁଣାନାମୂପାସନାର୍ଥତ୍ୱେଃ ବିକଳ୍ପ୍ୟମାନେ ନ ଲକ୍ଷଣୟୋ ପ୍ରବିଲୟାଞ୍ଚ ତ୍ୱମବକଳ୍ପତେ ।

**(୪) ଭାଷାନ୍ତର** - (କ) ପୁଣି ବ୍ରହ୍ମ ବିଷୟକ ଶ୍ରୁତିର ସାକାର ଓ ନିରାକାର ବ୍ରହ୍ମର ପ୍ରତିପାଦନ କରିବାରେ ପରସ୍ପର ବିରୋଧ ହେବାରୁ ନିରାକାର ବ୍ରହ୍ମର ପରିଗୃହୀତ ହେଲାପରେ ଅନ୍ୟଶ୍ରୁତିରେ ଗତି ଅବଶ୍ୟ କହିବା ଉଚିତ । ଏହିଗତି ପାଇଁ 'ପ୍ରକାଶବଚ୍ଚ' ଇତ୍ୟାଦିସୂତ୍ର ଗୁଡ଼ିକର ଅଧିକ ଅର୍ଥସଂଗତ ହୁଏ । ସାକାରବାଦିନୀ ଶ୍ରୁତିଗୁଡ଼ିକ ପ୍ରପଞ୍ଚ ବିଲୟ ଦ୍ୱାରା ନିରାକର ବ୍ରହ୍ମର ଜ୍ଞାନପାଇଁ ଉଦ୍ଦିଷ୍ଟ । ସେମାନଙ୍କର ପୃଥକ ଶ୍ରୟୋଜନ ନାହିଁ ବୋଲି ଯେଉଁ ଲୋକ କହନ୍ତି, ତାହା ସମୀଚୀନ ରୂପରେ ଦେଖାଯାଏ ନାହିଁ,

(ଖ) କିପରି ? ଯାହାସବୁ ପରବିଦ୍ୟାର ପ୍ରକରଣରେ 'ଯୁକ୍ତା ହ୍ୟସ୍ୟ' (ଯେପରି ରଥରେ ଯୋଗ ହୋଇଥିବା ଅଶ୍ୱ) ଶହେ ଦଶ ଅଟନ୍ତି । ଏହି ପରମେଶ୍ୱର ହରି



(ଇନ୍ଦ୍ରିୟରୂପ ଅଶ୍ୱ) ଦଶ, ସହସ୍ର, ଅନେକ ଓ ଅନନ୍ତ ଅଟନ୍ତି ଇତ୍ୟାଦି ବିସ୍ତୃତ ରୂପରେ କୁହାଯାଇଅଛି, ସେ ସବୁ ପ୍ରବିଲୟ ପାଇଁ ଉଦ୍ଦିଷ୍ଟ । କାରଣ-'ତଦେତଦ୍ ବ୍ରହ୍ମ' ସେହି ଏହି ବ୍ରହ୍ମ କାରଣ ରହିବ, କାର୍ଯ୍ୟରହିତ ବିଜାତୀୟ ଦ୍ରବ୍ୟ ରହିତ ଓ ଅବାହ୍ୟ ଅଟେ, ଏହି ଉପସଂହାର ରୂପେ କରାଯାଇଅଛି ।

(ଗ) ପରନ୍ତୁ 'ମନୋମୟଃ' 'ମନୋମୟଃ' ମନୋମୟ (ପ୍ରାଣଶରୀର ଓ ଚୈତନ୍ୟରୂପ ଅଟେ) ଇତ୍ୟାଦି ଯାହା ଉପାସନାପ୍ରକରଣରେ ବିସ୍ତାର ରୂପରେ କୁହାଯାଇଅଛି, ସେ ସବୁ ପ୍ରଳୟାର୍ଥକରୂପେ ସ୍ୱୀକାର କରିବା ଠିକ୍ ନୁହେଁ, କାରଣ-'ସକ୍ରତୁଂ କୁର୍ବୀତ' (ସେ ଧ୍ୟାନ କରିପାରେ) ଏହି ପ୍ରକାରର ପ୍ରକୃତ ଉପାସନା ବିଧି ସହିତ ସେହି ସାକାର ବାକ୍ୟ ଗୁଡ଼ିକର ଅନ୍ୱୟ ହୁଏ । ଶ୍ରୁତିରୁ ଅଭିଧାବୃତ୍ତିଦ୍ୱାର ଏହି ପ୍ରକାରଗୁଣ ଉପାସନାର୍ଥକ ସମ୍ଭବ ହେଲେ ସେମାନଙ୍କର ଲକ୍ଷଣା ବୃତ୍ତିଦ୍ୱାରା ପ୍ରଳୟାର୍ଥତ୍ୱ ସମ୍ଭବ ହୁଏ ନାହିଁ ।

(୫) ମୂଳ- (କ) ସର୍ବେଷାଂ ଚ ସାଧାରଣେ ପ୍ରବିଲୟାର୍ତତ୍ୱେ 'ସତି ଅରୂପବଦେବ ହିଁ ତତ୍ପ୍ରଧାନତ୍ୱତ୍' (ବ୍ର.ସୂ ୩।୨।୧୪) ଇତି ବିନିଗମନ କାରଣ ବଚନମନବିକାଶଂ ସ୍ୟାତ । ଫଳମ୍ପ୍ୟେଷାଂ ଯଥୋପଦେଶଂ କ୍ୱଚିତ୍ଦୁରିତକ୍ଷୟଃ କ୍ୱଚିଦୈଶ୍ୱର୍ଯ୍ୟପ୍ରାପ୍ତିଃ କ୍ୱଚିତକ୍ରମମୁକ୍ତିରିତ୍ୟବଗମ୍ୟତ ଏତେତ୍ୟତଃ ପାର୍ଥଗର୍ଥ୍ୟ ମେବୋପାସନା ବାକ୍ୟାନାଚ ନାର୍ଯ୍ୟଂ ନୈକବାକ୍ୟତ୍ୱମ ।

(ଖ) କଥଂ ଚୈଷାମେକବାକ୍ୟତୋତ୍ ପ୍ରେକ୍ଷ୍ୟତ ଇତି ବକ୍ତବ୍ୟସ । ଏକ ଯୋଗପ୍ରତୀତେଃ ପ୍ରୟାଜଦର୍ଶପୂର୍ଣ୍ଣମାସବାକ୍ୟବିଦିତ ଚେତ୍ ନ, ବ୍ରହ୍ମବାକ୍ୟେଷୁ ନିଯୋଗାଭାବାତ୍ । ବସ୍ତମାତ୍ରର୍ଯ୍ୟବସାୟିନୀ ହି ବ୍ରହ୍ମବାକ୍ୟାନି ନ ନିଯୋଗପ ଦେଶୀନୀତ୍ୟେତଦ୍ ବିସ୍ତରେଣ ପ୍ରତିଷ୍ଠାପିତସ - 'ତତ୍ତୁ ସମନ୍ୱୟାତୃ' (ବ୍ର-ସୂ ୧।୧।୪) ଇତ୍ୟତ୍ର ।

(ଗ) କିଂ ବିଷୟଶ୍ଚାତ୍ର ନିଯୋଗାଽଭିପ୍ରେୟତ ଇତି ବକ୍ତବ୍ୟମ୍ । ପୁରୁଷୋ ହି ନିଯୁଜ୍ୟମାନଃ କୁର୍ବିତ ସ୍ୱବ୍ୟାପାରେ କସ୍ମିଂଶ୍ଚିନ୍ନୟୁଜ୍ୟତେ । ନନୁ ଦ୍ୱୈତପ୍ରପଞ୍ଚ ବିଲୟୋ ନିଯୋଗବିଲୟୋ ଭବିଷ୍ୟତି । ଅପ୍ରବିଳାପିତେ ହି ଦ୍ୱୈତପ୍ରପଞ୍ଚେ ବ୍ରହ୍ମତିତ୍ତ୍ୱାବବୋଧୋ ନ ଭବତି, ଅତୋ ବ୍ରହ୍ମତତ୍ତ୍ୱାବବୋଧି ପ୍ରତ୍ୟନୀକଭୂତୋ ଦ୍ୱୈତପ୍ରପଞ୍ଚ ପ୍ରବିଳାପ୍ୟଃ ।

(ଘ) ଯଥା ସ୍ୱର୍ଗକାମସ୍ୟ ଯାଗୋଽନୁଷ୍ଠାତବ୍ୟ ଉପଦିଶ୍ୟତ ଏବମପବର୍ଗକାମସ୍ୟ ପ୍ରପଞ୍ଚ ପ୍ରବିଲୟଃ । ଯଥା ଚ

ତମସି ବ୍ୟବସ୍ଥିତଂ ଘଟଦିତ୍ତ୍ୱମବବୁଭୁସମାନେନ ତତ୍ପ୍ରତ୍ୟନୀକଭୂତଂ ତମଃ ପ୍ରବିଲାପ୍ୟତ ଏବଂ ବ୍ରହ୍ମତତ୍ତ୍ୱମବମୁସମାନେନ ତତ୍ପ୍ରତ୍ୟେନୀକଭୂତଃ ପ୍ରପଞ୍ଚଃସ୍ୱଭାବଂ ବ୍ରହ୍ମ, ତେନ ନାମରୂପ ପ୍ରପଞ୍ଚ ପ୍ରବିଳାପନେନ ବ୍ରହ୍ମତତ୍ତ୍ୱାବବୋଧୋ ଭବତୀତି ।

**(୫) ଭାଷାଂତର**- (କ) ଯଦି ସମସ୍ତ ଉପାସନା ସାକାର ବାକ୍ୟ ଗୁଡ଼ିକର ସାଧାରଣ ପ୍ରବିଲୟାର୍ଥ ସ୍ୱୀକାର କରାଯାଏ ତେବେ 'ଅରୂପବଦେବ ହି ତତ୍' ଏହି ବିନିଗମନ (ନିୟାମକ) କାରଣ ବଚନର ଅନବକାଶତ୍ୱ ହେବ ଏବଂ ସେମାନଙ୍କର ଫଳ ମଧ୍ୟ ଉପଦେଶ ଅନୁସାରେ କେଉଁଠାରେ ପାପକ୍ଷୟ, କେଉଁଠାରେ ଐଶ୍ୱର୍ଯ୍ୟ ପ୍ରାପ୍ତି ଏବଂ କେଉଁଠାରେ କ୍ରମମୁକ୍ତି - ଏହିପରି ଅବଗତ ହୁଏ । ତେଣୁ ଉପାସନାବାକ୍ୟ ଗୁଡ଼ିକ ଓବ୍ରହ୍ମବାକ୍ୟ ଗୁଡ଼ିକର ପୃଥକ ପୃଥକ ଅର୍ଥ ଠିକ୍ ଅଟେ । କିନ୍ତୁ ଏକବାକ୍ୟତା (ଏକାର୍ଥବତ୍ତା) ନୁହେଁ ।

(ଖ) ସେମାନଙ୍କର ଏକାର୍ଥ ବାକ୍ୟାର୍ଥର କଳ୍ପନା କେଉଁ ପ୍ରକାରେ ହୁଏ ବୋଲି କହିବା ଉଚିତ । ଯଦି କହ-ପ୍ରୟାଜ ଓ ଦର୍ଶ ପୂର୍ଣ୍ଣମାସ ବାକ୍ୟଗୁଡ଼ିକ ପରି ଏକ ନିଯୋଗର ପ୍ରତୀତି ହେଲେ ଏକବାକ୍ୟତା ହୁଏ, ତାହା କିନ୍ତୁ ଠିକ ନୁହେଁ । କାରଣ ବ୍ରହ୍ମବାକ୍ୟରେ ନିଯୋଗର ଅଭାବ ହୁଏ । ବ୍ରହ୍ମବାକ୍ୟ ବସ୍ତୁମାତ୍ରର ପର୍ଯ୍ୟବସାୟୀ ଅଟେ, କିନ୍ତୁ ନିଯୋଗକୁ ଉପଦେଶ କରେ ନାହିଁ । ଏହା 'ତତ୍ତୁ ସମନ୍ୱୟାତ୍' ଏହି ସୂତ୍ରରେ ବିସ୍ତାର ରୂପରେ ପ୍ରତିଷ୍ଠାପିତ ହୋଇଅଛି ।

(ଗ) ଏଠାରେ କେଉଁ ବିଷୟକ ନିଯୋଗ ଅଭିପ୍ରେତ ଅଟେ ବେଲି କହିବା ଉଚିତ୍ କାରଣ- ଯାହା ପୁରୁଷକୁ ନିଯୁକ୍ତି କରି କୌଣସି ନିଜ ବ୍ୟାପାରେ 'ଏହା କର' ବୋଲି ନିଯୁକ୍ତ କରେ, ତାହାହିଁ ନିଯୋଗ ଅଟେ । ଦ୍ୱୈତ ପ୍ରପଞ୍ଚର ପ୍ରବିଲାପିତ ନକରେ ବ୍ରହ୍ମତତତ୍ୱର ଜ୍ଞାନ ହୁଏ ନାହିଁ, ତେଣୁ ବ୍ରହ୍ମ ତତ୍ତ୍ୱର ଜ୍ଞାନରେ ପ୍ରତିବନ୍ଧକୀଭୂତ ଦ୍ୱୈତପ୍ରପଞ୍ଚର ପ୍ରବିଲାପନ କରିବା ଉଚିତ ।

(ଘ) ଯେପରି ସ୍ୱର୍ଗକାମନା କରୁଥିବା ଲୋକ ଯାଗ ଅନୁଷ୍ଠାନ କରିବ ଉଚିତ୍ ବୋଲି ଉପଦେଶ ଦିଆଯାଏ, ସେପରି ମୁମୁକ୍ଷୁ ପାଇଁ ପ୍ରପଞ୍ଚ ବିଲୟର ଉପଦେଶ ଦିଆଯାଏ ଯେପରି ଅନ୍ଧକାରରେ ରହିଥିବା ଘଟାଦି ପଦାର୍ଥକୁ ଜାଣିବାକୁ ଇଛା କରୁଥିବା ପୁରୁଷ ତାହାର ପ୍ରତିବନ୍ଧକୀଭୂତ ତମର ପ୍ରବିଲୟ କରେ, ସେପରି ବ୍ରହ୍ମତତ୍ତ୍ୱକୁ ଜାଣିବାକୁ ଇଚ୍ଛା କରୁଥିବା ପୁରୁଷ ସେହି ତତ୍ତ୍ୱର ପ୍ରତିବନ୍ଧକୀଭୂତ ପ୍ରପଞ୍ଚର ପ୍ରବିଲୟ କରିବା ଉଚିତ୍ । କାରଣ - ବ୍ରହ୍ମସ୍ୱଭାବ ସଂପନ୍ନ ବ୍ୟକ୍ତି ପ୍ରପଞ୍ଚ ଅଟେ । କିନ୍ତୁ ପ୍ରପଞ୍ଚସ୍ୱଭାବଯୁକ୍ତ ବ୍ରହ୍ମ ନୁହେଁ ।

(୬) ମୂଳ - (କ) ଅତ୍ର ବୟଂ ପୃଚ୍ଛାମଃ କୋଽୟ, ପ୍ରପଞ୍ଚ ପ୍ରବିଲୟୋ ନାମ ? କିମଗ୍ନି ପ୍ରତାପସଂପର୍କାଦ ଘୃତକାଠିନ୍ୟ ପ୍ରବିଲୟ ଇବ ପ୍ରପଞ୍ଚବିଲ୍ୟଃ କର୍ତ୍ତବ୍ୟ ଆହୋସ୍ୱି ନେକସ୍ମିଂଶ୍ଚନ୍ଦ୍ରେ ତିମିରକୃତାନେକ ଚନ୍ଦ୍ର ପ୍ରପଞ୍ଚ ବଦବିଦ୍ୟାକୃତେ ବ୍ରହ୍ମଣି ନାମରୂପ ପ୍ରପଞ୍ଚୋ ବିଦ୍ୟୟା ପ୍ରବିଲାପୟିତବ୍ୟ ଇତି ?

(ଖ) ତତ୍ର ଯଦି ତାବଦ୍‌ବିଧ୍ୟମାନେଽୟଂ ପ୍ରପଞ୍ଚୋ ଦେହାଦିଲକ୍ଷଣ ଆଧ୍ୟାତ୍ମିକୋ ବାହ୍ୟଶ୍ଚ ପୃଥିବ୍ୟାଦିଲକ୍ଷଣଃ ପ୍ରବିଲାପୟିତବ୍ୟ ଇତ୍ୟୁଚ୍ୟେତ ସ ପୁରୁଷମାତ୍ରେଣାଶକ୍ୟଃ



ପ୍ରବିଳାପୟିତୁମିତ ତତ୍ପ୍ରବିଲଦ୍ରୋପଦେଶୋଽଶକ୍ୟ ବିଷୟ ଏବ ସ୍ୟାତ । ଏକେନ ଚାଦିମୁକ୍ତେନ ପୃଥିବ୍ୟାଦିମୁକ୍ତେନ ପୃଥିବ୍ୟାଦିପ୍ରବିଲୟଃ କୁତ ଇତୀଦାନୀଂ ପୃଥିବ୍ୟାଦିଶୂନ୍ୟଂ ଜଗଦଭବିଷ୍ୟତ୍ ।

**(୬) ଭାଷାଂତର** - (କ) ଏହି ବିଷୟରେ ଆମ୍ଭେ କହୁଁ ଯେ - ଏହି ପ୍ରପଞ୍ଚ ପ୍ରବିଲୟ ଅର୍ଥ କଣ ? ଯେପରି ଅଗ୍ନି ଉଷ୍ଣତାର ସଂପର୍କରୁ ଘୃତର କାଠିନ୍ୟ ପ୍ରବିଲୟ ହୁଏ । ସେପରି କଣ ପ୍ରପଞ୍ଚର ପ୍ରବିଲୟ କରିବା ଉଚିତ ଅଥବା ଏକ ଚନ୍ଦ୍ରରେ ନେତ୍ର ଦୋଷକୃତ ଅନେକ ଚନ୍ଦ୍ରର ପ୍ରପଞ୍ଚ ପରି ବ୍ରହ୍ମରେ ଅବିଦ୍ୟାକୃତ ନାମରୂପପ୍ରପଞ୍ଚର ବିଦ୍ୟାଦ୍ୱାରା ପ୍ରବିଲୟ କରିବା ଉଚିତ କି ?

(ଖ) ସେଥିରେ ତୁମେ ଯଦି କହ - ବିଦ୍ୟମାନ ଏହି ଦେହାଦିରୂପ ଅଧ୍ୟାତ୍ମିକ ପ୍ରପଞ୍ଚ ଓ ପୃଥିବୀ ଇତ୍ୟାଦିରୂପ ବାହ୍ୟ ପ୍ରପଞ୍ଚର ପ୍ରବିଲୟ କରିବା ଉଚିତ୍, ତେବେ ସେମାନଙ୍କର ପ୍ରବିଲୟ କରିବାରେ ପୁରୁଷ ମାତ୍ର ଅସମର୍ଥ ହୁଏ, ତେଣୁ ତାହାର ପ୍ରବିଲୟ ଉପଦେଶ ଅଶକ୍ୟବିଷୟକ ହେବ ଏବଂ ଏକ ପ୍ରଭୃତି ମୁକ୍ତପୁରୁଷକୁ ପୃଥିବୀ ପ୍ରଭୃତି ପ୍ରବଲୟ କରାଯାଇଥାଏ, କିନ୍ତୁ ସେହି ସମୟରେ ଜଗତ୍ ପୃଥିବୀ ଇତ୍ୟାଦିରୁ ଶୂନ୍ୟ ହୁଏ ।

**(୭) ମୂଳ**- (କ) ଅଥା-ବିଦ୍ୟାଧାସ୍ତୋ ବ୍ରହ୍ମଣ୍ୟେକସ୍ମିନ୍ନୟଂ ପ୍ରପଞ୍ଚୋ ବିଦ୍ୟୟାପ୍ରବିଲାପ୍ୟତ ଇତି ବ୍ରୟାତ, ତତୋ ବ୍ରହ୍ମୈବାବିଦାଧସ୍ତପ୍ରପଞ୍ଚ ପ୍ରତ୍ୟାଖ୍ୟାନେନାବେଦୟିତବ୍ୟମ୍ । ଏକମେବାଦ୍ୱିତୀୟଂ ବ୍ରହ୍ମ, 'ତତ୍ସତ୍ୟଂ ସ ଆତ୍ମା ତତ୍ତ୍ୱମସି' (ଛା୬-୮-୭) ଇତି । ତସ୍ମିନ୍ନବେଦିତେ ବିଦ୍ୟା ସ୍ୱୟମେବୋତ୍ପଦ୍ୟତେ, ତୟା ଚାବିଦ୍ୟା ବାଧତେ, ତତଶ୍ଚାବିଦ୍ୟାଧସ୍ତଃ ସକଳୋଽୟଂ ନାମରୂପପ୍ରପଞ୍ଚଃ ସ୍ୱପ୍ନପ୍ରପଞ୍ଚବତ୍ ପ୍ରବିଲୀୟତେ ।

(ଖ) ଅନାବିଦିରେ ତୁ ବ୍ରହ୍ମଣି ବ୍ରହ୍ମବିଜ୍ଞାନଂ କୁରୁ ପ୍ରପଞ୍ଚପ୍ରବିଲୟଂ ଚେତି ଶତକୃତ୍ୱୋଽପ୍ୟୁକ୍ତେ ନ ବ୍ରହ୍ମବିଜ୍ଞାନଂ ପ୍ରପଞ୍ଚପ୍ରବିଲୟୋ ବା ଜାୟେତ । ନନ୍ୱାବେଦିତେ ବ୍ରହ୍ମଣି ତଦ୍‌ବିଜ୍ଞାନବିଷୟଃ ପ୍ରପଞ୍ଚବିଷୟୋ ବା ନିୟୋଗଃ ସ୍ୟାତ୍, ନ ନିଷ୍ପ୍ରପଞ୍ଚ ବ୍ରହ୍ମାତ୍ମତ୍ୱା ବେଦନେନୈବୋଭୟସିଦ୍ଧେଃ । ରଜ୍ଜୁସ୍ୱରୂପପ୍ରକାଶନେନୈବ ହି ତତ୍ସ୍ୱରୂପବିଜ୍ଞାମବିଦ୍ୟାଧସ୍ତସର୍ପାଦିପ୍ରପଞ୍ଚବିଲୟଶ୍ଚ ଭବତି । ନଚ କୃତମେବ ପୁନଃ କ୍ରିୟତେ ।

**(୭) ଭାଷାଂତର** - (କ) ଯଦି କହ ଯେ -ଏକବ୍ରହ୍ମରେ ଅବିଦ୍ୟାଦ୍ୱାରା ଅଧସ୍ତ ଏହି ପ୍ରପଞ୍ଚବିଦ୍ୟାରୁ ପ୍ରବିଳାପିତ କରାଯାଏ, ତେବେ 'ଏକମେବାଦ୍ୱିତୀୟଂ' (ଏକ ହିଁ ଅଦ୍ୱିତୀୟ ବ୍ରହ୍ମ ଅଟେ), 'ତତ୍ ସତ୍ୟଂ ( ସେ ସତ୍ୟ ଅଟେ, ସେ ହି ତୁମେ) ଏହି ପ୍ରକାର ଅବିଦ୍ୟାରୁ ଅଧସ୍ତପ୍ରପଞ୍ଚର ପ୍ରତ୍ୟାଖ୍ୟାନଦ୍ୱାରା ବ୍ରହ୍ମ ଜଣାପଡ଼େ । ଏହି ବ୍ରହ୍ମବିଷୟରେ ଜ୍ଞାନହେଲେ ବିଦ୍ୟା ଆପେ ଆପେ ଉତ୍ପନ୍ନ ହୁଏ । ତଦ୍ଦ୍ୱାରା ଅବିଦ୍ୟାର ବାଧ୍ୟ ହୁଏ । ଏହି ଅବିଦ୍ୟାରୁ ଅଧସ୍ତ ଏହି ସଂପୂର୍ଣ୍ଣ ନାମରୂପାତ୍ମକ ପ୍ରପଞ୍ଚର ସଦୃଶ ପ୍ରବିଲୟ ହୋଇଯାଏ ।

(ଖ) ବ୍ରହ୍ମ ଅନବିଦିତ ହେଲେ 'ବ୍ରହ୍ମଜ୍ଞାନ କର, ପ୍ରପଞ୍ଚର ପ୍ରବିଲୟ କର' ଏହିପରି ଶହେଥର କହିଲାପରେ ମଧ୍ୟ ବ୍ରହ୍ମର ବିଜ୍ଞାନ ଅଥବା ପ୍ରପଞ୍ଚର ପ୍ରବିଲୟ ହୁଏ ନାହିଁ । ପରନ୍ତୁ ବ୍ରହ୍ମବିଦିତ ହେଲେ ତାହାର ଜ୍ଞାନବିଷୟକ ବା ପ୍ରପଞ୍ଚ ପ୍ରଳୟ ବିଷୟକ ନିଯୋଗ ହେବ କି ? ନା, କାରଣ- ନିଷ୍ପ୍ରପଞ୍ଚ ବ୍ରହ୍ମାତ୍ମତତ୍ତ୍ୱର ବିଜ୍ଞାନରୁ ଏହି ଦୁଇଟି ସିଦ୍ଧ ହୁଏ । ରଜ୍ଜୁସ୍ୱରୂପର ପ୍ରକାଶ ଦ୍ୱାରା ରଜ୍ଜୁସ୍ୱରୂପର ଜ୍ଞାନ ଓ ଅବିଦ୍ୟାରୁ ଅଧ୍ୟସ୍ତ ସର୍ପାଦିପ୍ରପଞ୍ଚର ପ୍ରବିଲୟ ହୁଏ, କାରଣ-ଯାହାସିଦ୍ଧ ହୁଏ, ତାହାକୁ ପୁନର୍ବାର ସିଦ୍ଧ କରାଯାଏ ନାହିଁ ।

(୮) ମୂଳ-(କ) ନିଯୋଜ୍ୟୋଽପି ଚ ପ୍ରପଞ୍ଚାବସ୍ଥାୟାଂ ଯୋଽବଗମ୍ୟତେ ଜୀବୋ ନାମ, ସ ପ୍ରପଞ୍ଚପକ୍ଷସ୍ୟୈବ ବା ସ୍ୟାଦ୍ ବ୍ରହ୍ମପକ୍ଷସ୍ୟୈବ ବା ? ପ୍ରଥମେ ବିକଳ୍ପେ ନିଷ୍ପ୍ରପଞ୍ଚବ୍ରହ୍ମ-ତତ୍ତ୍ୱପ୍ରତିପାଦନେନ ପୃଥିବ୍ୟାଦିବଜ୍ଜୀବସ୍ୟାପି ପ୍ରବିଲାପିତତ୍ୱାତ୍କସ୍ୟ ପ୍ରପଞ୍ଚବିଲୟେ ନିଯୋଗ ଉଚ୍ୟେତେ ? କସ୍ୟ ବା ନିଯୋଗନିଷ୍ଠତୟା ମୋକ୍ଷୋଽବାପ୍ତବ୍ୟ ଉଚ୍ୟେତ ।

(ଖ) ଦ୍ୱିତୀୟେଽପି ବ୍ରହ୍ମୈବାନିଯୋଜ୍ୟସ୍ୱଭାବଂ ଜୀବସ୍ୟ ସ୍ୱରୂପଂ ଜୀବତ୍ୱଂ ତ୍ୱବିଦ୍ୟା-କୃତମେବେତି ପ୍ରତିପାଦିତେ ବ୍ରହ୍ମଣି ବିନିଯୋଜ୍ୟାଭାବାନ୍ନିଯୋଗାଭାବ ଏବ । ଦ୍ରଷ୍ଟବ୍ୟାଦିଶବ୍ଦା ଅପି ପରବିଦ୍ୟାଧିକାରପଠିତାସ୍ତତ୍ତ୍ୱାଭିମୁଖୀକରଣପ୍ରଧାନା ନ ତତ୍ତ୍ୱାବବୋଧବିଧିପ୍ରଧାନା ଭବନ୍ତି ।

(ଗ) ଲୋକେଽପୀଦଂ ପଶ୍ୟେଦମାକର୍ଣ୍ଣୟେତି ଚୈବଂଜାତୀୟକେଷୁ ନିର୍ଦ୍ଦେଶେଷୁ ପ୍ରଣିଧାନମାତ୍ରଂ କୁର୍ବିତ୍ୟୁଚ୍ୟତେ, ନ ସାକ୍ଷାଦ୍ ଜ୍ଞାନମେବ କୁର୍ବିତି ଜ୍ଞେୟାଭିମୁଖସ୍ୟାପି ଜ୍ଞାନଂ କଦାଚିଜ୍ଜାୟତେ, କଦାଚିନ୍ନ ଜାୟତେ, ତସ୍ମାନ୍ନ ପ୍ରତି ଜ୍ଞାନବିଷୟ ଏବ ଦର୍ଶୟିତବ୍ୟୋ ଜ୍ଞାପୟିତୁକାମେନ । ତସ୍ମିନ୍ ଦର୍ଶିତେ ସ୍ୱୟମେବ ଯଥାବିଷୟଂ ଯଥାପ୍ରମାଣଞ୍ଚ ଜ୍ଞାନମୁତ୍ପଦ୍ୟତେ ।

(ଘ) ଯଦି ପୁନର୍ନିଯୁକ୍ତୋଽହମିତ୍ୟନ୍ୟଥା ଜ୍ଞାନଂ କୁର୍ଯ୍ୟାନ୍ନ ତୁ ତଜ୍ଜ୍ଞାନଂ, କିଂ ତର୍ହି ? ମାନସୀ ସା କ୍ରିୟା । ସ୍ୱୟମେବ ଚେଦନ୍ୟଥୋତ୍ପଦ୍ୟତେ, ଭ୍ରାନ୍ତିରେବ ସ୍ୟାତ୍ । ଜ୍ଞାନଂ ତୁ ପ୍ରମାଣଜନ୍ୟଂ ଯଥାଭୂତବିଷୟଂ ଚ, ନ ତନ୍ନିଯୋଗଶତେନାପି କାରୟିତୁଂ ଶକ୍ୟତେ । ନ ଚ ପ୍ରତିଷେଧଶତେନାପି ବାରୟିତୁଂ ଶକ୍ୟତେ । ନହି ତତ୍ପୁରୁଷତନ୍ତ୍ରଂ; ବସ୍ତୁତନ୍ତ୍ରମେବହି ତତ୍ । ଅତୋଽପି ନିଯୋଗାଭାବଃ ।

(୮) ଭାଷାଂତର- (କ) ଯେଉଁ ଜୀବ ପ୍ରପଞ୍ଚାବସ୍ଥାରେ ନିଯୋଜ୍ୟରୂପେ ଅବଗତ ହୁଏ, ସେ ପ୍ରପଞ୍ଚକ୍ଷର ହୁଏ କି ବ୍ରହ୍ମପକ୍ଷର ? ପ୍ରଥମ ବିକଳ୍ପରେ ପ୍ରପଞ୍ଚରହିତ ବ୍ରହ୍ମତତ୍ତ୍ୱର ପ୍ରତିପାଦନ ଦ୍ୱାରା ପୃଥିବୀ ପ୍ରଭୃତି ପରି ଜୀବର ମଧ୍ୟ ପ୍ରବିଲୟ ହେଲେ କାହାର ପ୍ରପଞ୍ଚ ବିଲୟରେ ନିଯୋଗ କୁହାଯାଇଅଛି, ଅଥବା କାହାକୁ ନିଯୋଗ ନିଷ୍ଠତ୍ୱରୁ ମୋକ୍ଷପ୍ରାପ୍ତି କୁହାଯାଇଅଛି ।



(ଖ) ଦ୍ୱିତୀୟ ବିକଳ୍ପରେ ମଧ୍ୟ ଅନିଯୋଜ୍ୟ ସ୍ୱଭାବ ବ୍ରହ୍ମ ହିଁ ଜୀବର ସ୍ୱରୂପ ଅଟେ । ଏହା ପ୍ରତିପାଦନ ହେଲାପରେ ବ୍ରହ୍ମରେ ନିଯୋଜ୍ୟର ଅଭାବ ହେଲେ ନିଯୋଗର ହିଁ ଅଭାବ ହୁଏ ଏବଂ ପରବିଦ୍ୟାର ପ୍ରକରଣରେ ପଠିତ୍ 'ଦ୍ରଷ୍ଟବ୍ୟ' ଆଦି ଶବ୍ଦଗୁଡ଼ିକର ମଧ୍ୟ ତତ୍ତ୍ୱର ଅଭିମୁଖ କରିବାରେ ଅଛି, କିନ୍ତୁ ସେମାନେ ତତ୍ତ୍ୱଜ୍ଞାନରେ ବିଧିପ୍ରଧାନ ନୁହଁନ୍ତି ।

(ଗ) ଲୋକ ବ୍ୟବହାରରେ ମଧ୍ୟ 'ଏହା ଦେଖ, ଏହାଶୁଣ' ଏହିପ୍ରକାର ନିର୍ଦ୍ଦେଶରେ 'ଏକାଗ୍ରମନ କର' ଏହା ହିଁ କୁହାଯାଇଛି । 'ଜ୍ଞାନକୁ ସାକ୍ଷାତ୍କାର କର' ବୋଲି କୁହାଯାଇନାହିଁ । ଜ୍ଞେୟର ଅଭିମୁଖ କେତେବେଳେ ଜ୍ଞାନ ଉତ୍ପନ୍ନ କରେ, କେତେବେଳେ ବା ଜ୍ଞାନ ଉତ୍ପନ୍ନ କରେ ନାହିଁ । ତେଣୁ ଯିଏ ଜ୍ଞାନ କରାଇବାକୁ ଚାହେଁ, ତାହାଠାରୁ ସେ ଜ୍ଞାନାର୍ଥୀକୁ ଜ୍ଞାନବିଷୟ ଦେଖାଇବା ଉଚିତ୍ । ତାହାକୁ ଦେଖାଇଲା ପରେ ବିଷୟ ଓ ପ୍ରମାଣର ଅନୁସାରେ ତାହାକୁ ସ୍ୱତଃ ଜ୍ଞାନ ଉତ୍ପନ୍ନ ହୁଏ । ଅନ୍ୟପ୍ରମାଣରୁ ଅନ୍ୟପ୍ରକାର୍ ଦ୍ୱାରା ପ୍ରସିଦ୍ଧ ଅର୍ଥରେ ନିଯୁକ୍ତକୁ ମଧ୍ୟ ଅନ୍ୟଥାଜ୍ଞାନ ଉତ୍ପନ୍ନ ହୁଏ ନହିଁ ।

(ଘ) ଯଦି 'ମୁଁ ନିଯୁକ୍ତ ଅଟେ' ଏହା ଭାବି ଅନ୍ୟଥା ଜ୍ଞାନ କରାଯାଏ, ତେବେ ମଧ୍ୟ ସେ ଜ୍ଞାନ ନୁହେଁ, କିନ୍ତୁ ସେ ମାନସୀକ୍ରିୟା । ଯଦି ସ୍ୱୟଂ ହିଁ ଅନ୍ୟଥା ଉପପନ୍ନ ହୁଏ, ତେବେ ସେ ଭ୍ରାନ୍ତି ହେବ । ଜ୍ଞାନ କିନ୍ତୁ ପ୍ରମାଣଜନ୍ୟ ଓ ତଥାଭୂତ ବିଷୟକ ହୁଏ । ସେ ଏକଶତନିଯୋଗରୁ ମଧ୍ୟ କରାଯାଏ ନାହିଁ ଓ ଏକଶତବାର ପ୍ରତିଷେଧରୁ ତାହାର ନିବାରଣ କରାଯାଇପାରେ ନାହିଁ, କାରଣ-ପୁରୁଷର ତାହା ଅଧୀନ ନୁହେଁ । ସେ କିନ୍ତୁ ବସ୍ତୁର ଅଧୀନ ଅଟେ ।

(୯) ମୂଳ-(କ) କିଞ୍ଚାନ୍ୟନ୍ନି ଯୋଗନିଷ୍ଠତୟୈବ ପର୍ଯ୍ୟବସ୍ୟତ୍ୟାମ୍ନାୟେ ଯଦଭ୍ୟୁପଗତମନିଯୋଜ୍ୟବ୍ରହ୍ମାତ୍ମତ୍ୱଂ ଜୀବସ୍ୟ, ତଦପ୍ରମାଣକମେବ ସ୍ୟାତ୍ । ଅଥ ଶାସ୍ତ୍ରମେବାନିଯୋଜ୍ୟ ବ୍ରହ୍ମାସଂତ୍ୱମପ୍ୟାଚକ୍ଷୀତ ତଦବବୋଧେ ଚ ପୁରୁଷଂ ନିଯୁଞ୍ଜୀତ, ତତୋ ବ୍ରହ୍ମଶାସ୍ତ୍ରସ୍ୟୈକସ୍ୟ ସ୍ୱାର୍ଥପରତା ବିରୁଦ୍ଧାର୍ଥପରତା ଚ ପ୍ରସଜ୍ୟେୟାତାମ୍ ।

(ଖ) ନିଯୋଗପରତାୟାଂ ଚ ଶ୍ରୁତହାନିରଶ୍ରୁତକଳ୍ପନା କର୍ମଫଳବନ୍ ମୋକ୍ଷସ୍ୟା-ଦୃଷ୍ଟଫଳତ୍ୱମନିତ୍ୟତ୍ୱଂ ଚେତ୍ୟେବସାଦୟୋ ଦୋଷା ନ କେନଚିତ୍ ପରିହର୍ତ୍ତୁଂ ଶକ୍ୟାଃ । ତସ୍ମାଦବଗତିନିଷ୍ଠାନ୍ୟେବ ବ୍ରହ୍ମବାକ୍ୟାନି, ନ ନିଯୋଗନିଷ୍ଠାନି । ଅତଶ୍ଚୈକନିଯୋଗ ପ୍ରତୀତେରେକବାକ୍ୟତେତ୍ୟଯୁକ୍ତମ୍ ।

(ଗ) ଅଭ୍ୟୁପଗମ୍ୟାମାଗେଽପି ଚ ବ୍ରହ୍ମବାକ୍ୟେଷୁ ନିଯୋଗସଦ୍ଭାବେ ତଦେକତ୍ୱଂ ନିଷ୍ପ୍ରପଞ୍ଚୋପଦେଶେଷୁ ଚ ସିଦ୍ଧମ୍ । ନ ହି ଶବ୍ଦାନ୍ତରାଦିଭିଃ ପ୍ରମାଣୈର୍ନିଯୋଗଭେଦୋଽବ-କ୍ୟେଷୁ ତ୍ୱଧିକାରାଂଶେନାଭେଦାଦ୍ୟୁକ୍ତମେକତ୍ୱମ୍; ନ ତ୍ୱିହ ସଗୁଣ ନିର୍ଗୁଣଭେଦେନାସୁ କଣ୍ଠିକେଦଦ୍ୱାଧିକାରାଂଶୋଽସ୍ତି ।

(ଘ) ନ ହି ଭାରୂପାଦୟୋ ଗୁଣାଃ ପ୍ରପଞ୍ଚ ପ୍ରବିଲୟୋପକାରିଣଃ, ନାପି ପ୍ରପଞ୍ଚପ୍ରବିଲୟୋ, ଭାରୁପତ୍ୱାଦିଗୁଣୋପକାରୀ, ପରସ୍ପରବିରୋଧତ୍ୱାତ୍ । ନହି କୃତ୍ସ୍ନପ୍ରପଞ୍ଚପ୍ରବିଲାପନଂ ପ୍ରପଞ୍ଚୈକଦେଶାପେକ୍ଷଣଂ ଚୈକସ୍ମିନ୍ ଧର୍ମିଣି ଯୁକ୍ତଂ ସମାବେଶୟିତୁମ୍ । ତସ୍ମାଦ୍‌ସୁଦୂକ୍ତ ଏହି ବିଭାଗ ଅଁକାରବଦନାକାରୋପଦେଶାନାଂ ଯୁକ୍ତତର ଇତି ।

**(୯) ଭାଷାଂତର-** (କ) ପୁନଶ୍ଚ ଅନ୍ୟ କଥା ଯେ- ଯଦି ବେଦବାକ୍ୟର ନିଯୋଗ ନିଷ୍ଠାରୂପରେ ପର୍ଯ୍ୟବସାନ ହୁଏ, ତେବେ ଜୀବ ଅନିଯୋଜ୍ୟ ବ୍ରହ୍ମସ୍ୱରୂପ ବୋଲି ଯଦି ସ୍ୱୀକାର କରାଯାଏ, ସେ ତେବେ ଅପ୍ରମାଣକ ହେବ । ଯଦି ଶାସ୍ତ୍ର ହିଁ ଜୀବରୁ ଅନିଯୋଜ୍ୟ ବ୍ରହ୍ମସ୍ୱରୂପ କହେ ଓ ତାହାର ଜ୍ଞାନରେ ପୁରୁଷକୁ ନିଯୁକ୍ତ କରେ, ତେବେ ଗୋଟିଏ ବ୍ରହ୍ମଶାସ୍ତ୍ରରେ ଦୁଇଟି ଅର୍ଥର ପ୍ରତିପାଦକତା ଓ ବିରୁଦ୍ଧ ଅର୍ଥର ପ୍ରତିପାଦକତା ପ୍ରସକ୍ତ ହେବ ।

(ଖ) ବ୍ରହ୍ମଶାସ୍ତ୍ରରେ ତାତ୍ପର୍ଯ୍ୟ ଯଦି ନିଯୋଗରେ ହୁଏ, ତେବେ ଶ୍ରୁତିର ହାନି ଓ ଅଶ୍ରୁତର କଳ୍ପନା କର୍ମଫଳ ସଦୃଶ ମୋକ୍ଷଫଳରେ ଅଦୃଷ୍ଟଫଳତ୍ୱ ଓ ଅନିତ୍ୟାଦି ଦୋଷ କାହାଦ୍ୱାରା ବାରଣ କରାଯାଏ ନାହିଁ । ତେଣୁ ବ୍ରହ୍ମବାକ୍ୟ ଅବଗତ ନିଷ୍ଠ ଅଟେ; କିନ୍ତୁ ନିଯୋଗନିଷ୍ଠ ନୁହେଁ । ତେଣୁ ଗୋଟିଏ ନିଯୋଗର ପ୍ରତୀତିଦ୍ୱାରା ସେମାନଙ୍କର ଏକବାକ୍ୟତା କହିବା ଠିକ୍ ନୁହେଁ ।

(ଗ) ବ୍ରହ୍ମବାକ୍ୟରେ ନିଯୋଗସଦ୍‌ଭାବ ସ୍ୱୀକାର କଲାପରେ ମଧ୍ୟ ନିଷ୍ପ୍ରପଞ୍ଚ ଉପଦେଶଗୁଡ଼ିକରେ ଓ ସପ୍ରପଞ୍ଚ ଉପଦେଶରେ ତାହାର ଏକତ୍ୱ ଅସିଦ୍ଧ ହୁଏ, କାରଣ- ଅନ୍ୟଶବ୍ଦାଦି ପ୍ରମାଣରୁ ନିଯୋଗର ଭେଦ ଅବଗତ ହେଲା ପରେ ସବୁସ୍ଥଳରେ ଗୋଟିଏ ନିଯୋଗ ହୁଏ-ଏପରି ଆଶ୍ରୟ କରାଯାଏ ନାହିଁ । ପ୍ରୟୋଜବାକ୍ୟ ଓ ଦର୍ଶପୂର୍ଣ୍ଣମାସ ବାକ୍ୟଗୁଡ଼ିକରେ ଅଧିକାର ଅଂଶରେ ଅଭେଦ ହେଲେ ଏକତ୍ୱ ଠିକ୍ ହୁଏ । ପରନ୍ତୁ ଏଠାରେ ସଗୁଣ ଓ ନିର୍ଗୁଣ ବିଧିବାକ୍ୟଗୁଡ଼ିକରେ ଏକତ୍ୱର କୌଣସି ଅଧିକାରାଂଶ ନାହିଁ ।

(ଘ) ଭାରୂପତ୍ୱ ପ୍ରଭୃତି ଗୁଣ ପ୍ରପଞ୍ଚର ପ୍ରବିଲୟ କରିବାରେ ଉପକାରୀ ନୁହେଁ ଏବଂ ପ୍ରପଞ୍ଚବିଲୟ ମଧ୍ୟ ଭାରୂପତ୍ୱାଦିଗୁଣର ଉପକାରୀ ନୁହେଁ, କାରଣ-ସେମାନେ ପରସ୍ପର ବିରୋଧି ଅଟନ୍ତି । ଗୋଟିଏ ଧର୍ମୀରେ ସଂପୂର୍ଣ୍ଣ ପ୍ରପଞ୍ଚର ପ୍ରବିଲୟ ଓ ପ୍ରପଞ୍ଚର ଏକଦେଶକୁ ଅପେକ୍ଷା କରେ- ଏହି ଦୁଇଟିର ସମାବେଶ କରିବା ଉଚିତ୍ ନୁହେଁ । ତେଣୁ ଆମ୍ଭେ କହିଥିବା ସାକାର ଓ ନିରାକାର ଉପଦେଶଗୁଡ଼ିକର ବିଭାଗ ଯୁକ୍ତିଯୁକ୍ତ ଅଟେ ।



## ६ प्रकृतैतावत्त्वाधिकरणम् ॥ सू० २२-३० ॥

## ପ୍ରକୃତୈତାବତ୍ତ୍ୱାଧିକରଣ-୬

### प्रकृतैतावत्त्वं हि प्रतिषेधति ततो ब्रवीति च भूयः ॥ २२ ॥

### (୧) ପ୍ରକୃତୈତାବତ୍ତ୍ୱଂ ହି ପ୍ରତିଷେଧତି ତତୋ ବ୍ରବୀତି ଚ ଭୂୟଃ ॥୩-୨-୨୨॥

ହି=କାରଣ-, ପ୍ରକୃତୈତାବତ୍ତ୍ୱମ୍=ପ୍ରକରଣରେ ପ୍ରତିପାଦିତ ବ୍ରହ୍ମର ଇୟତତ୍ତା **ପରିଚ୍ଛିନ୍ନ** ମୂର୍ତ୍ତ ଓ ଅମୂର୍ତ୍ତର ପ୍ରତିଷେଧତି=‘ନେତି ନେତି’ ଏହି ଶବ୍ଦ ପ୍ରତିଷେଧ କରେ **ଚ=ଏବଂ** ତତଃ=ସେହି ପ୍ରତିଷେଧରୁ ଆଗେ, ଭୂୟଃ=ପୁଣି, ବ୍ରବୀତି=‘ଅନ୍ୟତ୍ ପରମସ୍ତି’ **ଏହିପ୍ରକାର** କହେ । ତେଣୁ ଶୂନ୍ୟବାଦର ପ୍ରସଙ୍ଗ ଠିକ୍ ନୁହେଁ ।

(୨) ମୂଳ-(କ) ଦ୍ୱେ ବାବ ବ୍ରହ୍ମଣୋ ରୂପେ ମୂର୍ତ୍ତଂ ଚୈବାମୂର୍ତ୍ତଂ ଚ’ (ବୃହ ୨-୩-୧) ଇତ୍ୟୁପକ୍ରମ୍ୟ ପଞ୍ଚମହାଭୂତାନି ଦ୍ୱୈରାଶ୍ୟେନ ପ୍ରବିଭ୍ୟାମୂର୍ତ୍ତରସସ୍ୟ ଚ **ପୁରୁଷଶବ୍ଦୋ**-ଦିତସ୍ୟ ମହାରଜନାଦୀନି ରୂପାଣି ଦର୍ଶୟିତ୍ୱା ପୁନଃ ପଠ୍ୟତେ-ଅଥାତ ଆଦେଶୋ **ନେତି** ନେତି ନ ହ୍ୟେତସ୍ମାଦିତି ନେତ୍ୟନ୍ୟତ୍ପରମସ୍ତି’ (ବୃହ ୨-୩-୬) ଇତି ।

(ଖ) ତତ୍ର କୋଽସ୍ୟ ପ୍ରତିଷେଧସ୍ୟ ବିଷୟ ଇତି ଜିଜ୍ଞାସାମହେ ? ନ **ହ୍ୟେତ୍ରେବଂ** ତଦିତି ବିଶେଷିତଂ କିଞ୍ଚିତ୍ ପ୍ରତିଷେଧମୁପଲଭ୍ୟତେ । ଇତିଶବ୍ଦେନ ତ୍ୱତ୍ର ପ୍ରତିଷେଧ୍ୟଂ **କିମପି** ସମର୍ପ୍ୟତେ-‘ନେତି ନେତି’ ଇତି ପରତ୍ୱାନ୍ନଞ୍ ପ୍ରୟୋଗସ୍ୟ । ଇତିଶବ୍ଦଶ୍ଚାୟଂ **ସନ୍ନିହିତାଲମ୍ବନ** ଏବଂ ଶବ୍ଦସମାନବୃତ୍ତିଃ ପ୍ରଯୁଜ୍ୟମାନୋ ଦୃଶ୍ୟତେ ‘ଇତି ହି ସ୍ମୋପାଧ୍ୟାୟଃ **କଥୟତି’** ଇତ୍ୟେବମାଦିଷ୍ଣ । ସନ୍ନିହିତଂ ଚତ୍ରଂ ପ୍ରକରଣସାମର୍ଥ୍ୟାଦ୍ରୂପଦ୍ୱୟଂ ସପ୍ରପଞ୍ଚଂ ବ୍ରହ୍ମଣସ୍ତଚ **ବ୍ରହ୍ମ** ଯସ୍ୟୈତେ ଦ୍ୱେ ରୂପେ ।

(ଗ) ତତ୍ର ନଃ ସଂଶୟ ଉପଜାୟତେକିମୟଂ ପ୍ରତିଷେଧୋ ରୂପେ **ରୂପବଚ୍ଚୋଭୟମପି** ପ୍ରତିଷେଧତ୍ୟାହୋସ୍ୱିଦେକତରମ୍ ? ଯଦାପ୍ୟେକତରଂ ତଦାପି କିଂ ବ୍ରହ୍ମ **ପ୍ରତିଷେଧତି,** ରୂପେ ପରିଶିନଷ୍ଟି ଆହୋସ୍ୱିଦ୍ରୂପେ ପ୍ରତିଷେଧତି, ବ୍ରହ୍ମ ପରିଶିନଷ୍ଟୀତି ? **ତତ୍ର** ପ୍ରକୃତତ୍ୱାବିଶେଷାଦୁଭୟମପି ପ୍ରତିଷେଧତ୍ୟାଶଙ୍କାମହେ ।

(ଘ) ଦ୍ୱୌ ତୌ ପ୍ରତିଷେଧୌ, ଦ୍ୱିର୍ନେତି ଶବ୍ଦ ପ୍ରୟୋଗାତ୍ । **ତୟୋରେକେନ** ସପ୍ରପଞ୍ଚଂ ବ୍ରହ୍ମଣୋ ରୂପଂ ପ୍ରତିଷିଧ୍ୟତେ, ଅପରେଣ ରୂପବତ୍ ବ୍ରହ୍ମେତି ଭବତି **ମତି ଅଥବା** ବ୍ରହ୍ମୈବ ରୂପବତ୍ ପ୍ରତିଷିଧ୍ୟତେ, ତଦ୍ଧି ବାଙ୍ମନସାତୀତିତ୍ୱାଦସମ୍ଭାବ୍ୟମାନସଦ୍**ଭାବଂ** ପ୍ରତିଷେଧାର୍ହମ୍, ନ ତୁ ରୂପପ୍ରପଞ୍ଚଃ ପ୍ରତ୍ୟକ୍ଷାଦିଗୋଚରତ୍ୱାତ୍ **ପ୍ରତିଷେଧାର୍ହଃ ।** ଅଭ୍ୟାସସ୍ତ୍ୱାଦରାର୍ଥ ଇତି ।

(୨) ଭାଷାଂତର- (କ) 'ଦ୍ୱେ ବାବ ବ୍ରହ୍ମଣୋ' (ବ୍ରହ୍ମର ଦୁଇଟିରୂପ ହେଉଛି ମୂର୍ତ୍ତ ଓ ଅମୂର୍ତ୍ତ) ଏହିପ୍ରକାର ଉପକ୍ରମ କରି ପାଞ୍ଚ ମହାଭୂତ ଦୁଇଟି ରାଶିରେ ବିଭକ୍ତ କରି ପୁରୁଷଶବ୍ଦରୁ କୁହାଯାଇଥିବା ଅମୂର୍ତ୍ତସାରର ମହାରଜନ (ହଳଦୀ ପରି) ପ୍ରଭୃତି ରୂପକୁ ଦେଖାଇ 'ଅଥାତ ଆଦଶଃ' (ବର୍ତ୍ତମାନ ଏହାପରେ 'ନେତି ନେତି' ଏହି ବ୍ରହ୍ମର ଆଦେଶ ହୁଏ । ନେତି ନେତି ଏହିଠାରୁର ଅଧିକ କୌଣସି ଉତ୍କୃଷ୍ଟ ଆଦେଶ ନାହିଁ । ତେଣୁ ସେ ବ୍ରହ୍ମ ଅଟେ) ଏହି ପ୍ରକାର ଶ୍ରୁତି ପୁଣି କହେ ।

(ଖ) ସେଠାରେ ଏହି ପ୍ରତିଷେଧର ବିଷୟ (ପ୍ରତିଷେଧ୍ୟ) କଣ ବୋଲି ଆମ୍ଭେ ଜିଜ୍ଞାସା କରୁଁ । କାରଣ-ଏଠାରେ 'ଏହି ସେ' ଏହି ବିଶେଷିତ କୌଣସି ପ୍ରତିଷେଧ୍ୟ ଉପଲବ୍ଧ ହୁଏ ନାହିଁ । 'ଇତି' ଶବ୍ଦ କିନ୍ତୁ ଏଠାରେ କୌଣସି ପ୍ରତିଷେଧ୍ୟକୁ ସମର୍ପଣ କରେ । କାରଣ- ନେତି ନେତି' ଏଠାରେ ନଞ୍' ପ୍ରୟୋଗ ଇତି' ପରକ ଅଟେ ଏବଂ ସଂନିହିତର ଆଲମ୍ବନ କରି ଏହି ଇତି' ଶବ୍ଦ ଏବଂ ଶବ୍ଦର ତୁଲ୍ୟାର୍ଥକ 'ଇତି ହ' ସ୍ମୋପାଧ୍ୟାୟଃ' (ଏହା ଉପାଧ୍ୟା କହିଛନ୍ତି) ଇତ୍ୟାଦିରେ ପ୍ରଯୁକ୍ତ ହେବାର ଦେଖାଯାଏ ଏବଂ ଏଠାରେ ପ୍ରକରଣର ସାମର୍ଥ୍ୟରୁ ପ୍ରପଞ୍ଚଯୁକ୍ତ ବ୍ରହ୍ମର ଦୁଇଟି ରୂପ ସନ୍ନିହିତ ହୁଏ । ଯାହାର ଏହି ଦୁଇଟି ରୂପ ଅଛି ସେ ବ୍ରହ୍ମ ଅଟେ ।

(ଗ) ଏଠାରେ ଆମ୍ଭମାନଙ୍କର ସଂଶୟ ହୁଏ ଯେ ଏହି ପ୍ରତିଷେଧ କଣ ଦୁଇ ରୂପକୁ ଓ ରୂପବତ୍ ଏହି ଦୁଇଟିର ପ୍ରତିଷେଧ କରେ କି ଏହି ଦୁଇଟିରୁ ଗୋଟିକର ପ୍ରତିଷେଧ କରେ ? ଯଦ୍ୟପି ଗୋଟିଏର ପ୍ରତିଷେଧ କରେ ତଥାପି କଣ ବ୍ରହ୍ମର ପ୍ରତିଷେଧ କରେ ଓ ଦୁଇ ରୂପର ଅବଶିଷ୍ଟ ରଖେ କି ଦୁଇଟି ରୂପକୁ ପ୍ରତିଷେଧ କରି ବ୍ରହ୍ମକୁ ଅବଶିଷ୍ଟ ରଖେ । ପୂର୍ବପକ୍ଷ-ପ୍ରକୃତତ୍ତ୍ୱର ସଦୃଶ ହେଲେ ଏଠାରେ ଦୁଇଟିଯାକର ପ୍ରତିଷେଧ କରେ ବୋଲି ଆମ୍ଭେ ଶଙ୍କା କରୁଁ ।

(ଘ) ଏହି ଦୁଇଟି ପ୍ରତିଷେଧ ଅଟେ କାରଣ-ନେତି ଶବ୍ଦର ଦୁଇଥର ପ୍ରୟୋଗ ହୋଇଛି । ସେ ଦୁଇଟି ଶବ୍ଦରେ ଗୋଟିକ ଦ୍ୱାରା ପ୍ରପଞ୍ଚଯୁକ୍ତ ବ୍ରହ୍ମର ରୂପକୁ ପ୍ରତିଷେଧ କରାଯାଇଅଛି ଏବଂ ଅନ୍ୟଦ୍ୱାରା ରୂପବଦ୍ ବ୍ରହ୍ମର ବୋଲି ମତ । ଅଥବା ରୂପବଦ୍ ବ୍ରହ୍ମର ପ୍ରତିଷେଧ ହୁଏ କାରଣ-ବାଣୀଓ ମନରୁ ଅତୀତ ହେଲେ ତାହାର ଅସ୍ତିତ୍ୱ ରହେ ନାହିଁ । ତେଣୁ ସେ ପ୍ରତିଷେଧ ଯୋଗ୍ୟ ଅଟେ । କିନ୍ତୁ ରୂପପ୍ରଞ୍ଚ ପ୍ରତ୍ୟକ୍ଷାଦିପ୍ରମାଣ ଗୁଡ଼ିକର ବିଷୟ ହେଲେ ପ୍ରତିଷେଧଯୋଗ୍ୟ ହୁଏ ନାହିଁ । ନେତି ନେତି' ଏହି ଅଭ୍ୟାସ (ଦୁଇଥର ଉକ୍ତି) ହିଁ ଆଦର ପାଇଁ ଅଛି ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ନ ତାଦବଦୁଭୟ ପ୍ରତିଷେଧ ଉପପଦ୍ୟତେ ଶୂନ୍ୟବାଦପ୍ରସଙ୍ଗାତ୍ । କିଂ ଚିଦ୍ଧି ପରମାର୍ଥମାଲମ୍ବ୍ୟା ପରମାର୍ଥଃ ପ୍ରତିଷିଧ୍ୟତେ ଯଥା ରଜ୍ଜ୍ୱାଦିଷୁ ସର୍ପାଦୟଃ । ତଚ୍ଚ ପରିଶିଷ୍ୟମାଣେ କସ୍ମିଂଶ୍ଚିଦ୍ଭାବେଽବକଳ୍ପ୍ୟତେ ଉଭୟ ପ୍ରତିଷେଧେ ତୁ



କୋଽନ୍ୟୋ ଭାବଃ ପରିଶିଷ୍ୟେତ ? ଅପରିଶିଷ୍ୟମାଣେ ଚାନ୍ୟସ୍ମିନ୍ୟ ଇତରଃ ପ୍ରତିଷେଦ୍ଧୁମାରଭ୍ୟେତେ ପ୍ରତିଷେଦ୍ଧୁମଶକ୍ୟତ୍ୱାତ୍ତସ୍ୟୈବ ପରମାର୍ଥତ୍ୱାପତ୍ତେଃ ପ୍ରତିଷେଧନୁ ପପତ୍ତିଃ ।

(ଖ) ନା ପି ବ୍ରହ୍ମ ପ୍ରତିଷେଧଃ ଉପପଦ୍ୟତେ ବ୍ରହ୍ମ ତେଦ୍ରବାଣି (ବୃହ ୨-୧୧) ଇତ୍ୟାଦ୍ୟୁପକ୍ରମବିରୋଧାତ୍ । ଅସନ୍ନେବ ସ ଭବତି' ଅସଦ୍ ବ୍ରହେ ତି ବେଦଚେତ୍ (ତୈତ୍ତି ୨-୬-୧) ଇତ୍ୟାଦିନିନ୍ଦାବି-

(ଗ) ବାଙ୍ମନସା ତୀତତ୍ୱମ ବ୍ରହ୍ମଣୋ ନାଭାବାଭିପ୍ରାୟେଣାଭିଧୀୟତେ । ନହି ମହତ ରିକର ବନ୍ଧନେ 'ବ୍ରହ୍ମବିଦ୍ୟାପ୍ନୋତି ପରମ୍' (ତୈ ୨-୧୧) ସତ୍ୟଂ ଜ୍ଞାନମତନ୍ତଂ ବ୍ରହ୍ମ' ତୈ ୨-୨-୧ ଇତ୍ୟେବମାଦିନା ବେଦାନ୍ତେଷୁବ୍ରହ୍ମ ପ୍ରତିବିଦ୍ୟ ତସ୍ୟୈବ ପୁନରଭାବୋଽଭିଲପ୍ୟେତ । ପ୍ରକ୍ଷାଳନାଦ୍ଧି ପଙ୍କସ୍ୟ ଦୂରାଦସ୍ପର୍ଶନଂ ବରମ୍' ଇତି ନ୍ୟାୟଃ ।

**(୩) ଭାଷାଂତର - ସିଦ୍ଧାନ୍ତ** (କ) ଏହିପରି ହୁଅନ୍ତେ ଆମ୍ଭେ କହୁଁ ଯେ- ଶୂନ୍ୟବାଦର ପ୍ରସଙ୍ଗ ହେଲେ ଦୁହିଙ୍କର ପ୍ରତିଷେଧ ଉପପନ୍ନ ହୁଏ ନାହିଁ, କାରଣ କୌଣସି ପରମାର୍ଥକୁ ଆଶ୍ରୟ କରି ଅପରମାର୍ଥର ପ୍ରତିଷେଧ କରାଯାଇଛି । ଯେପରି ରଜ୍ଜୁ ପ୍ରଭୃତିରେ ସର୍ପର ଜ୍ଞାନ ହୁଏ । ପରନ୍ତୁ ସେ କୌଣସି ଭାବର ପରିଶିଷ୍ଟ ହେଲେ ହେଁ ତାହା ସମ୍ଭବ ହୁଏ । କିନ୍ତୁ ଦୁଇଟିର ପ୍ରତିଷେଧ ହେଲେ କେଉଁ ଅନ୍ୟଭାବ ଅବଶିଷ୍ଟ ରହିବ ? ଅନ୍ୟଭାବ ଅବଶିଷ୍ଟ ନହେଲେ ଯେ କୌଣସି ଅନ୍ୟଭାବର ପ୍ରତିଷେଧ ଆରମ୍ଭ କରାଯାଏ । ତାହାର ପ୍ରତିଷେଧ ମଧ୍ୟ ନହେବାରୁ ସେଥିରେ ପରମାର୍ଥତ୍ୱ ପ୍ରସକ୍ତ ହୋଇ ପ୍ରତିଷେଧର ଅନୁତ୍ପତ୍ତି ହୁଏ ।

(ଖ)ପୁଣି ବ୍ରହ୍ମ ପ୍ରତିଷେଧ କରିବା ଠିକ୍ ନୁହେଁ । କାରଣ 'ବ୍ରହ୍ମ ତେ ବ୍ରବାଣି' (ମୁଁ ତୁମ୍ଭଙ୍କୁ ବ୍ରହ୍ମର ଉପଦେଶ ଦେବି) ଇତ୍ୟାଦି ଉପକ୍ରମ ଦ୍ୱାରା ବିରୋଧ ହୁଏ ଏବଂ 'ଅସନ୍ନେବ' (ଯଦି ପୁରୁଷ ବ୍ରହ୍ମ ଅସତ ହୁଏ' ବୋଲି ଜାଣେ, ତେବେ ସେ ସ୍ୱୟଂ ଅସତ୍ ହୋଇ ରହେ) ଇତ୍ୟାଦି ନିନ୍ଦାର ବିରୋଧ ହୁଏ ଆବଂ 'ଅସ୍ତୀ ତ୍ୟେ' (ଏହାର ଏହିପରି ଉପଲବ୍ଧ କରିବା ଉଚିତ) ଇତ୍ୟାଦି ଅବଧାରଣାର ବିରୋଧ ହୁଏ । ଓ ସମସ୍ତ ବେଦାନ୍ତର ବିରୋଧ ପ୍ରସଙ୍ଗ ଆସେ । ବ୍ରହ୍ମ ବାଣୀ ଓ ମନର ଅବିଷୟ ଅଟେ । ତଥାପି ସେହି ଅଭାବର ଅଭିପ୍ରାୟ ଏଠାରେ କୁହାଯାଇନାହିଁ । କାରଣ- ବ୍ରହ୍ମବିଦାପ୍ନୋତି ପରମ' (ବ୍ରହ୍ମବେତ୍ତା ପରବ୍ରହ୍ମକୁ ଜାଣେ), 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଇତ୍ୟାଦିରୁ ବାକ୍ୟର ବେଦାନ୍ତରେମହାନ ଚେଷ୍ଟା ଦ୍ୱାରା ବ୍ରହ୍ମକୁ ପ୍ରତିପାଦନ କରି ତାର ଅଭାବକୁ ସ୍ୱୀକାର କରାଯାଇ ନାହିଁ କାରଣ- 'ପ୍ରକ୍ଷାଳନାତ୍' (ପଙ୍କକୁ ନିଜ ଦେହରେ ଲଗାଇ ତାପରେ ଧୋଇବା ଅପେକ୍ଷା ଏହାର ଦ୍ୱରରେ ଅସ୍ପର୍ଶଭାବେ ରହିବା ବରଂ ଭଲ) ଏହି ନ୍ୟାୟ ।

(୪) ମୂଳ-ସିଦ୍ଧାନ୍ତ (କ) ପ୍ରତିପାଦନ ପ୍ରକ୍ରିୟା ଦ୍ୱେଷା 'ଯତୋ ବାଚୋ ନିବର୍ତ୍ତନ୍ତେ' ଅପ୍ରାପ୍ୟ ମନସା ସହ (ତୈ ୨।୪।୧) ଇତି । ଏତଦୁକ୍ତଂ ଭବତି 'ବାଙ୍‌ମନସାତୀତମ-ବିୟୟାନ୍ତଃପାତିଃ ପ୍ରତ୍ୟାଗତ୍ମଭୂତଂ ନିତ୍ୟଶୁଦ୍ଧ ବୁଦ୍ଧ ମୁକ୍ତସ୍ୱଭାବଂ ବ୍ରହ୍ମେତି । ତସ୍ମାଦ ବ୍ରହ୍ମଣୋ ରୂପପ୍ରପଞ୍ଚଂ ପ୍ରତିଷେଧତି-ପରିଶିନଷ୍ଟି ବ୍ରହ୍ମେତ୍ୟଭ୍ୟୁପଗନ୍ତବ୍ୟମ୍ ।

(ଖ) ତଦେତଦୁଚ୍ୟତେ-ପ୍ରକୃତୈତାବତ୍ତ୍ୱଂ ହି ପ୍ରତିଷେଧତୀତି । ପ୍ରକୃତଂ ଯଦେତା-ବଦିୟତ୍ତା ପରିଚ୍ଛିନ୍ନଂ ମୂର୍ତ୍ତାମୂର୍ତ୍ତଲକ୍ଷଣ ବ୍ରହ୍ମଣୋ ରୂପଂ ତଦେବ୍ ଶବ୍ଦଃ, ପ୍ରତିଷେଧତି । ତଦ୍ଧି ପ୍ରକୃତଂ ପ୍ରପଞ୍ଚିତଂ ଚ ସର୍ବସ୍ମିନ ଗ୍ରନ୍ଥେଽଧିଦୈବତ ମଧ୍ୟାତ୍ମଞ୍ଚ ତଦ୍‌ନିତମେବ ଚ ବାସନା-ଲକ୍ଷଣମପରଂ ରୂପମୂର୍ତ୍ତରସଭୂତଂ ପୁରୁଷଶବ୍ଦୋଦିତଂ ଲିଙ୍ଗାତ୍ମବ୍ୟାପାଶ୍ରୟଂ ମହାରଜନାଦ୍ୟୁପମାଭିଃ ଦର୍ଶିତସ, ଅମୂର୍ତ୍ତରମସ୍ୟ ପୁରୁଷସ୍ୟ ଚକ୍ଷୁର୍ଗ୍ରାହ୍ୟରୂପଯୋଗିତ୍ୱାନୁପପତ୍ତେଃ ।

(ଗ) ତଦେତତ୍‌ପ୍ରପଞ୍ଚ ବ୍ରହ୍ମଣୋ ରୂପଂ ସନ୍ନିହିତାଲମ୍ବନେନେତି କରଣେନ ପ୍ରତିଷେଧଙ୍କ ନଅଂ ପ୍ରତ୍ୟୁପନୀୟତ ଇତି ଗମ୍ୟତେ । ବ୍ରହ୍ମତୁ ରୂପବିଶେଷଣତ୍ୱେନ ଷଷ୍ଠ୍ୟା ନିର୍ଦ୍ଦିଷ୍ଟଂ ପୂର୍ବସ୍ମିନ୍‌ଗ୍ରନ୍ଥେ, ନ ସ୍ୱପ୍ରଧାନତ୍ୱେନ । ପ୍ରପଞ୍ଚିତେ ଚ ତଦୀୟେ ରୂପଦ୍ୱୟେ ରୂପବତଃ ସ୍ୱରୂପଜିଜ୍ଞସାୟାମିଦମୁପକ୍ରାନ୍ତମ୍- 'ଅର୍ଥାତ୍ ଆଦେଶୋ ନେତି ନେତି' ୨।୩।୬ ବୃହ ଇତି ।

(ଘ) ତତ୍ର କଳ୍ପିତରୂପପ୍ରତ୍ୟାଖ୍ୟାନେନ । ବ୍ରହ୍ମଣଃ ସ୍ୱରୂପାବେଦନମିଦମିତି ନିର୍ଣ୍ଣୀୟତେ । ତଦାସ୍ପଦଂ ହୀଦଂ ସମସ୍ତକାର୍ଯ୍ୟଂ ନେତି ନେତୀତି ପ୍ରତିଷିଦ୍ଧମ । ଯୁକ୍ତଞ୍ଚ କାର୍ଯ୍ୟସ୍ୟ ବାଚରମ୍ଭଣଶବ୍ଦାଦିଭ୍ୟୋଽସତ୍ତ୍ୱମିତି ନେତି ନେତୀତି ପ୍ରତିଷେଧନଂ ନ ତୁ ବ୍ରହ୍ମଣଃ, ସର୍ବକଳ୍ପନା ମୂଳତ୍ୱାତ୍ ।

**(୪) ଭାଷାଂତର-** କ 'ଯତୋ ବାଚୋ' (ଯେଉଁଠାରୁ ମନ ସହିତ୍ ବାଣୀ ତାହାକୁ ନପାଇ ଫେରିଆସେ । ଏହା କିନ୍ତୁ (ବ୍ରହ୍ମର) ପ୍ରତିପାଦନ କରିବା ପାଇଁ ପ୍ରକ୍ରିୟା ମାତ୍ର ଏହାର ନିଷ୍କର୍ଷ ଯେ ବ୍ରହ୍ମ ବାଣୀ ଓ ମନଠାରୁ ଅତୀତ ଅଟେ । ଏହାଦ୍ୱାରା ସେ ବିଷୟଗୁଡ଼ିକର ଅନ୍ତର୍ଭୁକ୍ତ ନୁହେଁ । ତେଣୁ ପ୍ରତାଗାତ୍ମରୂପ, ନିତ୍ୟ, ଶୁଦ୍ଧ, ବୁଦ୍ଧ ଓ ମୁକ୍ତସ୍ୱଭାବ ଅଟେ । ଅତଏବ ଶ୍ରୁତି ବ୍ରହ୍ମର ରୂପପ୍ରପଞ୍ଚକୁ ପ୍ରତିଷେଧ କରେ ଏବଂ ବ୍ରହ୍ମକୁ ଅବଶିଷ୍ଟ ରଖେ ବୋଲି ସ୍ୱୀକାର କରିବା ଉଚିତ ।

(ଖ) ଏହାଦ୍ୱାରା କୁହାଯାଇଅଛି 'ପ୍ରକୃତୈତାବତ୍ତ୍ୱଂ ହି ପ୍ରତିଷେଧତି' ପ୍ରକୃତ ବ୍ରହ୍ମର ଯାହାଇୟତ୍ତା ଦ୍ୱାରା ପରିଚ୍ଛିନ୍ନ ମୂର୍ତ୍ତ ଓ ଅମୂର୍ତ୍ତରୂପ, ତାହାର ଏହି ଶ୍ରୁତି ପ୍ରତିଷେଧ କରେ କାରଣ ଏହି ପ୍ରକୃତ ଅଧିଦୈବତ ଓ ଅଧ୍ୟାତ୍ମର ପୂର୍ବଗ୍ରନ୍ଥରେ ବିସ୍ତୃତ ରୂପେ ବର୍ଣ୍ଣନା କରାଯାଇଅଛି । ସେଠାରୁ ଉତ୍ପନ ହୋଇ ବାସନା ଲକ୍ଷଣ ଅନ୍ୟର ରୂପ ଅମୂର୍ତ୍ତସାରଭୂତ ଯାହା ପୁରୁଷଶବ୍ଦ ଦ୍ୱାରା କୁହାଯାଇଅଛି' ତାହା ଲିଙ୍ଗାତ୍ମବ୍ୟାପାଶ୍ରୟ ଅଟେ ଓ ମହାରଜନାଦି



ଉପାସନାରୁ ଦେଖାଯାଏ କାରଣ - ଅମୂର୍ତ୍ତର ସାରଭୂତ ପୁରୁଷ ଚକ୍ଷୁର ଗ୍ରାହ୍ୟରୂପ ଦ୍ୱାରା ଯୁକ୍ତ ହୁଏ ନାହିଁ ।

(ଗ) ବ୍ରହ୍ମର ସେହି ସପ୍ରପଞ୍ଚ ରୂପ ସନ୍ନିହିତକୁ ଆଶ୍ରୟଣ କରୁଥିବା 'ଇତି' ଦ୍ୱାରା ପ୍ରତିଷେଧକ ନଞ୍ ପ୍ରତି ବିଷୟରୂପରେ ସ୍ଥାପନ କରିବା ବିଷୟ ଜଣାଯାଏ । ବ୍ରହ୍ମ କିନ୍ତୁ ରୂପର ବିଶେଷଣ ରୂପରେ ଷଷ୍ଠୀଦ୍ୱାରା ପୂର୍ବଗ୍ରନ୍ଥରେ ନିର୍ଦ୍ଦିଷ୍ଟ ହୁଏ, ପରନ୍ତୁ ସ୍ୱପ୍ରଧାନରୂପରେ ନୁହେଁ । ତାହାର ରୂପଦ୍ୱୟକୁ ବିସ୍ତାର ପୂର୍ବକ ବର୍ଣ୍ଣନା କଲ ରୂପବତ୍ ସ୍ୱରୂପର ଜିଜ୍ଞାସା ହେଲାପରେ 'ଅଥାତୋ ଆଦେଶୋ ନେତି' ଏହି ଉପକ୍ରମ କରାଯାଇଅଛି ।

(ଘ) ଏଠାରେ କଳ୍ପିତ ରୂପର ପ୍ରତ୍ୟାଖ୍ୟାନଦ୍ୱାରା ବ୍ରହ୍ମର ଏହି ସ୍ୱରୂପ ଜ୍ଞାନ ହୁଏ ବୋଲି ନିର୍ଣ୍ଣିତ ଅଛି । କାରଣ- 'ତଦ୍ ବିଷୟକସମସ୍ତ କାର୍ଯ୍ୟ 'ନେତି ନେତି' ଏହାଦ୍ୱାରା ପ୍ରତିଷିଦ୍ଧ ହୁଏ ଓ ବାଚାରମ୍ଭଣ ଶବ୍ଦାଦିଦ୍ୱାରା କାର୍ଯ୍ୟ ମିଥ୍ୟା ହୁଏ ତେଣୁ 'ନେତି ନେତି' ଏହାଦ୍ୱାରା ପ୍ରତିଷିଦ୍ଧ ହେବା ଠିକ୍ କିନ୍ତୁ ବ୍ରହ୍ମ ପ୍ରତିଷିଧ ନୁହେଁ କାରଣ- ସେ ସର୍ବ କଳ୍ପନାର ମୂଳ ଅଟେ ।

(୫) ମୂଳ-(କ) ନ ଚକ୍ରେୟମାଶଙ୍କା କର୍ତ୍ତବ୍ୟାକଥଂ ହି ଶାସ୍ତ୍ରଂ ସ୍ୱୟମେବ ବ୍ରହ୍ମଣୋ ରୂପଦ୍ୱୟଂ ଦର୍ଶୟିତା ସ୍ୱୟମେବ ପୁନଃ ପ୍ରତିଷେଧତି 'ପ୍ରକ୍ଷାଳନାଦ୍ଧି ପଙ୍କସ୍ୟ ଦୂରାଦସ୍ପର୍ଶନଂ ବରମ୍' ଇତି । ଯତୋ ନେଦଂ ଶାସ୍ତ୍ରଂ ପ୍ରତିପାଦ୍ୟତ୍ୱେନ ବ୍ରହ୍ମଣୋ ରୂପଦ୍ୱୟଂ ନିର୍ଦ୍ଦିଶତି, ଲୋକପ୍ରସଙ୍ଗ ତ୍ୱିଦଂ ରୂପଦ୍ୱୟଂ ବ୍ରହ୍ମଣି କଳ୍ପିତଂ ପରାମୃଶତି ପ୍ରତିଶୋଧତ୍ୱାୟ ଶୁଦ୍ଧବ୍ରହ୍ମସ୍ୱରୂପ-ପ୍ରତିପାଦନାୟ ଚେତି ନିରବଦ୍ୟମ୍ ।

(ଖ) ଦ୍ୱୌ ଚେତୌ ପ୍ରତିଷେଧୌ ଯଥା ସଖ୍ୟ ନ୍ୟାୟେନ ଦ୍ୱେ ଅପି ମୂର୍ତ୍ତାମୂର୍ତ୍ତେ ପ୍ରତିଷେଧତଃ । ଯଦବା-ପୂର୍ବଃ ପ୍ରତିଷେଧୋ ଭୂତରାଶିଂ ପ୍ରତିଷେଧତି, ଉତ୍ତରୋ ବାସନାରାଶିମ୍, ଅଥବା-'ନେତି ନେତି' (ବୃହ ୨।୩।୬) ଇତି ବୀପସେୟମିତୀତି ଯାବତ କିଥିଦୁତ୍ପ୍ରେକ୍ଷ୍ୟତେ, ତତସର୍ବଂ ନ ଭବତୀ ତ୍ୟର୍ଥଃ ।

(ଗ) ପରିଗଣିତପ୍ରତିଷେଧେ ହି କ୍ରିୟମାଣୋ ଯଦି ନୈତଦ୍ବ୍ରହ୍ମ କିମନ୍ୟଦ୍ ବ୍ରହ୍ମ ଭବେଦିତି ଜିଜ୍ଞାସା ସ୍ୟାତ୍ । ବୀପ୍ସାୟାଂ ତୁସତ୍ୟାଂ ସମସ୍ତମ୍ୟ ବିଷୟଜାତସ୍ୟ ପ୍ରତିଷେଧା-ଦବିଷୟଃ ପ୍ରତ୍ୟଗାତ୍ମା ବ୍ରହ୍ମେତି ଜିଜ୍ଞାସା ନିବର୍ତ୍ତତୋ ତସ୍ମାତ୍ ପ୍ରପଞ୍ଚମେବ ବ୍ରହ୍ମଣି କଳ୍ପିତଂ ପ୍ରତିଶେଧତି ପରିଶିନଷ୍ଟି ବ୍ରହ୍ମେତି ନିର୍ଣ୍ଣୟଃ ।

**(୫) ଭାଷାଂତର-** (କ) ସ୍ୱୟଂ ହି ଶାସ୍ତ୍ର ବ୍ରହ୍ମର ଦୁଇଟି ରୂପ ଦେଖାଇ ପୁଣି ନିଜେ 'ପ୍ରକ୍ଷାଳନାଦ୍ଧି ପଙ୍କସ୍ୟ ଦୂରାଦସ୍ପର୍ଶନଂ ବରମ୍' ଏହିପରି ତାହାର ପ୍ରତିଷେଧ କିପରି କରେ ବୋଲି ଶଙ୍କା କରିବା ଅନୁଚିତ । କାରଣ-ଏହି ଶାସ୍ତ୍ର ବ୍ରହ୍ମର ଦୁଇଟି ରୂପକୁ ପ୍ରତିପାଦ୍ୟ ରୂପରେ ନିର୍ଦ୍ଦେଶ କରେ ନାହିଁ । କିନ୍ତୁ ଲୋକପ୍ରସିଦ୍ଧ ଓ ବ୍ରହ୍ମରେ କଳ୍ପିତ ଏହି ଦୁଇଟି

ରୂପରେ ପ୍ରତିଷେଧଦ୍ୱ ଓ ଶୁଦ୍ଧ ବ୍ରହ୍ମସ୍ୱରୂପ ପ୍ରତିଦାନ କରିବା ପାଇଁ ପରାମର୍ଶ କରେ । ଏଥିରେ କୌଣସି ଦୋଷ ନାହିଁ ।

(ଖ) ଯେଉଁ ଦୁଇଟି ପ୍ରତିଷେଧ ମୂର୍ତ୍ତ ଓ ଅମୂର୍ତ୍ତ ଦୁଇ ରୂପକୁ ପ୍ରତିଷେଧ କରନ୍ତି ଅଥବା ପୂର୍ବ (ନେତି) ପ୍ରତିଷେଧ ଭୂତସମୁଦାୟର ପ୍ରତିଷେଧ କରେ ଏବଂ ଅନ୍ୟର ପ୍ରତିଷେଧ ବାସନାରାଶିର ପ୍ରତିଷେଧକରେ ଅଥବା 'ନେତି ନେତି' ଏହି ବୀପ୍‌ସା ହୁଏ ତେଣୁ ଯାହାର କୌଣସି କଳ୍ପନା କରିବା ସମ୍ଭବ, ସେ ସବୁ ବ୍ରହ୍ମ ନୁହେଁ ।

(ଗ) କାରଣ-ପରିଗଣିତ ପ୍ରତିଷେଧ କଲାପରେ ଯଦି ଏହା ବ୍ରହ୍ମ ନୁହେଁ, ତାହା କଣ ଅନ୍ୟ କିଛି ବୋଲି ଜିଜ୍ଞାସା ହେବ ଓ ବୀପ୍‌ସା ହେଲାପରେ ସଂପୂର୍ଣ୍ଣ ବିଷୟର ପ୍ରତିଷେଧ ହେଲେ ପ୍ରତ୍ୟଗାତ୍ମା ବ୍ରହ୍ମ ଅବିଷୟ ହୁଏ । ଏହା ଜାଣି ସାରିଲା ପରେ ଜିଜ୍ଞାସା ନିବୃତ୍ତ ହୁଏ । ତେଣୁ ଏହି ନିଷେଧଶାସ୍ତ୍ର ବ୍ରହ୍ମରେ କଳ୍ପିତ ପ୍ରପଞ୍ଚର ପ୍ରତିଷେଧ କରେ ଏବଂ ବ୍ରହ୍ମର ପରିଶେଷ (ଅବଶିଷ୍ଟ) କରେ ବୋଲି ନିର୍ଣ୍ଣୟ କରାଯାଇଅଛି ।

(୬) ମୂଳ-(କ) ଇତଶ୍ଚୈଷ ଏବ ନିର୍ଣ୍ଣୟଃ ଯତସ୍ତତଃ ପ୍ରତିଷେଧାଦ ଭୂୟୋ ବ୍ରବୀତି 'ଅନ୍ୟତ୍ ପରମସ୍ତି' ବୃହ ୨।୩।୬ ଇତି ଅଭାବାବସାନେ ହି ପ୍ରତିଷେଧ କ୍ରିୟମାଣେ କିମନ୍ୟତ ପରମସ୍ତୀତି ବ୍ରୂୟାତ୍ । ତତ୍ରୈଷାକ୍ଷରଯୋଜନା-ନେତି ନେତୀତି ବ୍ରହ୍ମାଦିଶ୍ୟ ତମେବାଦେଶଂ ପୁନର୍ନିର୍ବକ୍ତି । ନେତି ନେତୀତ୍ୟସ୍ୟ କୋଽର୍ଥଃ ? ନ ହ୍ୟେତସ୍ମାଦବ୍ରହ୍ମଣୋ ବ୍ୟତିରିକ୍ତମସ୍ତୀତ୍ୟତୋ ନେତି ନେତୀତ୍ୟୁତେ ନ ପୁନଃ ସ୍ୱୟମେବ ନାସ୍ତୀତ୍ୟର୍ଥଃ ।

(ଖ) ତଚ୍ଚ ଦର୍ଶୟତି-ଅନ୍ୟତ୍ରପରମପ୍ରତିଷିଦ୍ଧଂ ବ୍ରହ୍ମାସ୍ତୀଦି । ଯଦା ପୁନରେବମକ୍ଷରାଣି ଯୋଜ୍ୟନ୍ତେ ନ ହ୍ୟେତସ୍ମାଦିତି ନେତି ନେତି, ନହି ପ୍ରପଞ୍ଚ ପ୍ରତିଷେଧ ରୂପାଦାଦେଶନାଦନ୍ୟତ୍ ପରମାଦେଶନଂ ବ୍ରହ୍ମଣୋଽସ୍ତୀତି, ତଦା ତତୋ ବ୍ରବୀତି ଚ ଭୂୟ' ଇତ୍ୟେତନ୍ନାମଧେୟ-ବିଷୟଂ ଯୋଜୟିତବ୍ୟମ୍ ।

(ଗ) ଅଥ ନାମଧେୟମ୍ - 'ସତ୍ୟସ୍ୟ ସତ୍ୟମିତି ପ୍ରାଣା ବୈ ସତ୍ୟଂ ତେଷାମେଷ ସତ୍ୟମ୍' (ବୃହ ୨।୧।୨୦) ଇତି ହି ବ୍ରବୀତୀତି । ତଚ୍ଚ ବ୍ରହ୍ମାବସାନେ ପ୍ରତିଷେଧେ ସମଞ୍ଜସଂ ଭବତି । ଅଭାବାବସାନେ ତୁ ପ୍ରତିଷେଧ କିଂ ସତ୍ୟସ୍ୟ ସତ୍ୟମିତ୍ୟୁଚ୍ୟେତ ତସ୍ମାଦ୍ ବ୍ରହ୍ମାବସାନୋଽୟଂ ପ୍ରତିଷେଧୋ ନାଭାବାବସାନ ଇତ୍ୟଧବସ୍ୟାମଃ ।

(୬) ଭାଷାଂତର- (କ) ଏହାଦ୍ୱାରା ଏହା ହିଁ ନିର୍ଣ୍ଣୟ ହୁଏ, କାରଣ-ତାହାର ପ୍ରତିଷେଧରୁ 'ଅନ୍ୟତ୍ ପରମସ୍ତି' (ଅନ୍ୟଟି ପରମ ଅଟେ) ଏହି ଶ୍ରୁତି ପୁଣି କହେ । ପ୍ରତିଷେଧର ଅଭାବରେ ପର୍ଯ୍ୟବସାନ କଲାପରେ ଶ୍ରୁତି 'ଅନ୍ୟତ୍ ପରମସ୍ତି' ଏହା କାହିଁକି କହିଛି ? କିନ୍ତୁ ଏଠାରେ ଏପରି ଅକ୍ଷର ଯୋଜନା ଅଛି ଯେ 'ନେତି ନେତି' ଏହିଁ ପ୍ରକାର



ବ୍ରହ୍ମର ଆଦେଶ କରି ପୁଣି ସେହି ଆଦେଶର ନିର୍ବଚନ କରେ । 'ନେତି ନେତି' ଏହାର ଅର୍ଥ କଣ ? ତାହା ବ୍ରହ୍ମବ୍ୟତିତ ଅନ୍ୟ କିଛି ନୁହେଁ ବୋଲି ଅର୍ଥ କରାଯାଏ ନାହିଁ ।

(ଖ) ଅନ୍ୟ ପରମ ଅପ୍ରତିଷିଦ୍ଧ ବ୍ରହ୍ମ ଅଟେ । ଏହା ଅବଶିଷ୍ଟ ସେହି ବ୍ରହ୍ମକୁ ଦେଖାଏ । ଯଦି ଏହିପ୍ରକାର ଅକ୍ଷର ଯୋଜନା କରାଯାଏ; ତେବେ ନେତି ନେତି (ଏହା ନୁହେଁ) ଏହି ଉପଦେଶରୁ ବ୍ରହ୍ମ ଉପଦିଷ୍ଟ ହେବ ନାହିଁ । ପ୍ରପଞ୍ଚ ପ୍ରତିଷେଧରୂପ ଆଦେଶ ଦ୍ୱାରା 'ଅନ୍ୟତ ପରମପ୍ତି' ଏହି ଆଦେଶ ବ୍ରହ୍ମର ନୁହେଁ । କିନ୍ତୁ 'ତତୋ ବ୍ରବୀତି ଚ ଭୂୟଃ' ଏହି ସୂତ୍ରାଂଶର ନାମ ବିଷୟକଯୋଜନା କରିବା ଉଚିତ୍ ।

(ଗ) 'ସତ୍ୟସ୍ୟ ସତ୍ୟମିତି' (ସତ୍ୟର ସତ୍ୟ ପ୍ରାଣ ହିଁ ସତ୍ୟ ଅଟେ । ସେମାନଙ୍କର ଏହି ସତ୍ୟ ଅଟେ) ଏହି ପ୍ରକାର ନାମଧେୟକୁ ଶ୍ରୁତି କହେ ଏବଂ ସେ ନାମଧେୟ ପ୍ରତିଷେଧର ବ୍ରହ୍ମରେ ପର୍ଯ୍ୟବସାନ ହେଲାପରେ ସଙ୍ଗତ ହୁଏ ଏବଂ ପ୍ରତିଷେଧର ଅଭାବରେ ପର୍ଯ୍ୟବସାନ ହେଲେ ମଧ ସତ୍ୟର ସତ୍ୟ କଣ କୁହାଯିବ ? ତେଣୁ ପ୍ରତିଷେଧର ଅବସାନକ ହିଁ ବ୍ରହ୍ମ ଅଟେ । କିନ୍ତୁ ଅଭାବ ଅବସାନକ ନୁହେଁ ନୁହେଁ ବୋଲି ଆମ୍ଭେ ସ୍ଥିର କରୁଁ ।

## तदव्यक्तमाह हि ॥ २३ ॥

## (୧) ତଦବ୍ୟକ୍ତମାହ ହି ॥୩-୨-୨୩॥

ତଦବ୍ୟକ୍ତମ୍ ସେହି ବ୍ରହ୍ମ ଅବ୍ୟକ୍ତ ଅଟେ ହି କାରଣ-ଅହ 'ନଚକ୍ଷୁଷା ଗୃହ୍ୟତେ ଇତ୍ୟାଦି ଶ୍ରୁତି ଏହିପରି କହେ ।

(୧) ମୂଳ-(କ) ଯତ୍ ପ୍ରତିଷିଦ୍ଧାତ୍ ପ୍ରପଞ୍ଚଜାତାଦନ୍ୟତ ପରଂବ୍ରହ୍ମ ତଦସ୍ତି ଚେତ୍ କସ୍ମାନ ଗୃହ୍ୟତି ଇତି । ଉଚ୍ୟତେ ତଦବ୍ୟକ୍ତ ମନିନ୍ଦ୍ରିୟଗ୍ରାହ୍ୟଂ ସର୍ବଦୃଶ୍ୟସାକ୍ଷିତ୍ୱାତ୍ । ଅହ ହ୍ୟେବଂ ଶ୍ରୁତିଃ 'ନ ଚକ୍ଷୁଷା ଗୃହ୍ୟତେ ନାପି ବାଚ ନା ନୈର୍ଦେବୈସ୍ତପସା କର୍ମଣା ବାଁ' (ମୁଣ୍ଡ ୩।୨୮) ସ ଏଷ 'ନେତି ନେତ୍ୟାତ୍ମାଃ ଗୃହ୍ୟୋ ନହି ଗୃହ୍ୟତେ' (ବୃହ ୩।୯।୨୬) 'ଯତ୍ତଦଦ୍ରେଶ୍ୟ ମଗ୍ରାହ୍ୟମ୍' (ମୁଣ୍ଡ ୧।୧।୬), 'ଯଦାହ୍ୟେବୈଷ ଏତସ୍ମିନ୍ନଦୃଶ୍ୟେଽନା ତ୍ମ୍ୟେଃ ନିରୂକ୍ତେଽ ନିଳୟନେ' ତୈ ୨।୬।୧୬ ଇତ୍ୟାଦ୍ୟା । ସୃତିରପି ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟ-ମବିକାର୍ଯ୍ୟୋଃ ଯମୁଚ୍ୟତେ' (ଭ ଗୀ ୨।୨୫) ଇତ୍ୟାଦ୍ୟା ।

(୧) ଭାଷାଂତର- (କ) ପ୍ରତିଷିଦ୍ଧ ପ୍ରପଞ୍ଚସମୂହରୁ ଅନ୍ୟଯାହା ପରଂବ୍ରହ୍ମ ଅଛି ଯଦି ସେ ରହେ, ତେବେ ସେ କାହିଁକି ପ୍ରମାଣରୂପରେ ଗୃହୀତ ହେବ ନାହିଁ ? ତେଣୁ କୁହାଯାଇଅଛି - ସେ ଅବ୍ୟକ୍ତ ଅଟେ ଓ ଇନ୍ଦ୍ରିୟର ଆଗ୍ରାହ୍ୟ ଅଟେ କାରଣ-ସେ ସଂପୂର୍ଣ୍ଣ ଦୃଶ୍ୟର ସାକ୍ଷୀ ଏବଂ 'ନ ଚକ୍ଷୁଷା' (ସେ ଆତ୍ମାକୁ ନେତ୍ରଦ୍ୱାରା ଗ୍ରହଣ କରାଯାଏ ନାହିଁ କି

ବାଣୀଦ୍ୱାରା ନୁହେଁ କି ଅନ୍ୟ ଉକ୍ତି ଦ୍ୱାରା ନୁହେଁ କି ତପସ୍ୟାଦ୍ୱାରା ଅଥବା କର୍ମଦ୍ୱାରା ଗୃହୀତ ନୁହେଁ 'ସ ଏଷାଃ 'ନେତି ନେତି' ଏହା କହି ମଧୁକାଣ୍ଡରେ ନିରୂପଣ କରାଯାଇଅଛି ଯେ ସେ ଆତ୍ମା ଅଗ୍ରାହ୍ୟ ଅଟେ, କାରଣ-ତାହାର ଗ୍ରହଣ କରାଯାଏ ନାହିଁ) 'ଯତ୍ତଦଦ୍ରେଶ୍ୟମ୍' (ଏହା ଯାହା ଅଦୃଶ୍ୟ ଓ ଅଗ୍ରାହ୍ୟ ଅଟେ) 'ଯଦା ହି' ଯେତେବେଳେ ସେ ସାଧକ ଏହି ଅଦୃଶ୍ୟ, ଅଶରୀର, ଅନିର୍ବାଚ୍ୟେ ଓ ନିରାଧାର ବ୍ରହ୍ମରେ ଅଭୟସ୍ଥିତି ପ୍ରାପ୍ତ କରେ, ସେତେବେଳେ ଏହା ଅଭୟକୁ ପ୍ରାପ୍ତ ହୁଏ । ଇତ୍ୟାଦିଶ୍ରୁତି ଏହି ପ୍ରକାର କହେ । 'ଅବ୍ୟକ୍ତୋଽୟମ୍' (ଏହି ଆତ୍ମା ଅବ୍ୟକ୍ତ, ଅଚିନ୍ତ୍ୟ, ଅବିକାର ବୋଲି କୁହାଯାଇଅଛି) ଇତ୍ୟାଦି ସ୍ମୃତି ଶାସ୍ତ୍ର ମମିକହେ) ।

## अपि च संराधने प्रत्यक्षानुमानाभ्याम् ॥ २४ ॥

## ଅପି ଚ ସଂରାଧନେ ପ୍ରତ୍ୟକ୍ଷ୍ୟନୁମାନାଭ୍ୟାମ୍ ॥୩-୨-୨୪॥

(୧) ଅପିଚ ଯୋଗିମାନେ ସେହି ଅବ୍ୟକ୍ତଆତ୍ମାକୁ, ସଂରାଧନେ-ଧ୍ୟାନ ସମୟରେ ଦେଖନ୍ତି । ପ୍ରତ୍ୟକ୍ଷାନୁମାନାଭ୍ୟାମ୍, କାରଣ- 'କଶ୍ଚିଦ୍ ଧୀରଃ' ଯଂ ବିନିଦ୍ରା' ଇତ୍ୟାଦି ଶ୍ରୁତି ଓ ସ୍ମୃତିଦ୍ୱାରା ଜଣାପଡ଼େ ।

(୨) ମୂଳ-(କ) ଅପି ଚୈନମାତ୍ମାନଂ ନିରସ୍ତସମସ୍ତପ୍ରପଞ୍ଚମବ୍ୟକ୍ତଂ ସଂରାଧନକାଳେ ପଶ୍ୟନ୍ତି ଯୋଗିନଃ । ସଂରାଧନଞ୍ଚ ଭକ୍ତିଧ୍ୟାନ ପ୍ରଣିଧାନାଦ୍ୟନୁଷ୍ଠାନମ୍ । କଥଂ ପୁନରବଗମ୍ୟତେ ସଂରାଧନକାଳେ ପଶ୍ୟନ୍ତୀତି । ପ୍ରତ୍ୟକ୍ଷାନୁମାନାଭ୍ୟାଂ ଶ୍ରୁତିସ୍ମୃତି ଭ୍ୟାମିତ୍ୟର୍ଥଃ ।

(ଖ) ତଥାହି ଶ୍ରୁତିଃ-ପରାଞ୍ଚି ଖାନି ବ୍ୟତୃଣତ୍ ସ୍ୱୟମ୍ଭୁସ୍ତସ୍ମାତପରାଙ୍ ପଶ୍ୟତି ମନ୍ତରାତ୍ମନ । କଶ୍ଚିଦ୍ ଧିରଃ ପ୍ରତ୍ୟଗାତ୍ମାନ ମୈକ୍ଷଦାବୃତ୍ତ ଚକ୍ଷୁରମୃତ୍ତ୍ୱମି ଛନ୍' (କଂ ୪।୧) ଇତି । 'ଜ୍ଞାନପ୍ରସାଦେନ ବିଶୁଦ୍ଧସତ୍ତ୍ୱସ୍ତତସ୍ତୁ ତଂ ପଶ୍ୟତେ ନିଷ୍କଳଂ ଧ୍ୟାୟମାନଃ' (ମୁ ୩।୧।୮) ଇତି ଚୈବମାଦ୍ୟା । ସ୍ମୃତିରପି 'ଯଂ ବିନିଦ୍ରା ବିତଶ୍ୱାସାଃ ସଂତୁଷ୍ଟାଃ ସଂଯତେନ୍ଦ୍ରିୟାଃ ଜ୍ୟୋତିଃ ପଶ୍ୟନ୍ତି ଯୁଞ୍ଜାନାସ୍ତସ୍ମୈ ଯୋଗାତ୍ମନେ ନମଃ । ଯୋଗିନସ୍ତଂ ପ୍ରପଶ୍ୟନ୍ତି ଭଗବନ୍ତ ସନାତନମ' ଇତି ଚୈବମାଦ୍ୟା ।

(୨) ଭାଷାଂତର- (କ) ସମସ୍ତପ୍ରପଞ୍ଚ ରହିତ, ଅବ୍ୟକ୍ତ ଆତ୍ମାକୁ ଯୋଗିମାନେ ସଂରାଧନସମୟରେ ଦେଖନ୍ତି, ଭକ୍ତି, ଧ୍ୟାନ, ପ୍ରଣିଧାନ ଇତ୍ୟାଦିର ଆଚରଣ ହେଉଛି ସଂରାଧନ । ଯୋଗିମାନେ ସେହି ଆତ୍ମାକୁ ଧ୍ୟାନସମୟରେ ଦେଖନ୍ତି ବୋଲି କିପରି ଜଣାଯାଏ ? ପ୍ରତ୍ୟକ୍ଷ ଓ ଅନୁମାନଦ୍ୱାରା ଅର୍ଥାତ୍ ଶ୍ରୁତି ଓ ସ୍ମୃତି ଦ୍ୱାରା ।

(ଖ) ଯେପରି 'ପରାଞ୍ଚି ଖାନି' (ସ୍ୱୟମ୍ଭୁ ଈଶ୍ୱର ବିଦ୍ରୋପଲକ୍ଷିତ ଇନ୍ଦ୍ରିୟ ଗୁଡ଼ିକୁ ବହିର୍ମୁଖ କରି ହିଂସା କଲେ ତେଣୁ ଜୀବ ବାହ୍ୟଜଗତକୁ ଦେଖେ, କିନ୍ତୁ ଅନ୍ତରାତ୍ମାକୁ



ନୁହେଁ, ଯାହାଦ୍ୱାରା ମୋକ୍ଷର ଇଚ୍ଛା କରି ନିଜ ଇନ୍ଦ୍ରିୟକୁ ବନ୍ଦକରି ଦିଆଯାଏ) ସେପରି କୌଣସି ଧୀରପୁରୁଷ ପ୍ରତ୍ୟଗାତ୍ମାକୁ ଦେଖିବାକୁ ପାଏ ଏବଂ ଜ୍ଞାନପ୍ରସାଦେନ' (ଜ୍ଞାନପ୍ରସାଦରୁ ପୁରୁଷ ବିଶୁଦ୍ଧ ଚିତ ହୁଏ ଏବଂ ଧ୍ୟାନ କରି ସେ ନିଷ୍କଳ ଆତ୍ମାତତ୍ତ୍ୱର ସାକ୍ଷାତକାର କରେ) ଇତ୍ୟାଦି ଶ୍ରୁତିବାକ୍ୟ । 'ଯଂ ବିନିଦ୍ରା' (ନିଦ୍ରା ରହିତ, ତମୋଗୁଣରହିତ' ଶ୍ୱାସକୁ ଜୟ କରୁଥିବା ସନ୍ତୁଷ୍ଟ ଓ ସଂଯତେନ୍ଦ୍ରିୟ ପୁରୁଷଧ୍ୟାନ କରି ଯେଉଁ ଜ୍ୟୋତିକୁ ଦେଖେ, ସେହି ଯୋଗଲଭ୍ୟ ଆତ୍ମାକୁ ନମସ୍କାର । ସେହି ସନାତନ ଭଗବାନଙ୍କୁ ଯୋଗିଲୋକ ସମ୍ୟଗରୂପରେ ଦେଖେ) ଇତ୍ୟାଦି ସ୍ମୃତି ମଧ୍ୟ ଅଛି ।

(୧) ମୂଳ-(କ) ନନ ସଂରାଧ୍ୟ ସଂରାଧକଭାବାଭ୍ୟୁପଗମାତ୍ ପରାପରାତ୍ମନୋ ରନ୍ୟ ତ୍ୱଂ ସ୍ୟାଦିତି ନେତ୍ୟୁଚ୍ୟତେ

**(୧) ଭାଷାଂତର-** (କ) ପରନ୍ତୁ ସଂରାଧ୍ୟ ଓ ସଂରାଧକଭାବ ସ୍ୱୀକାର କଲେ ପର ଓ ଅପର ଆତ୍ମାରେ ଭେଦ ସୃଷ୍ଟି ହେବ ।

**प्रकाशादिवच्चावैशेर्ष्यं प्रकाशश्च कर्मण्यभ्यासात् ॥ २४ ॥**

**୨ । ପ୍ରକାଶାଦିବଚ୍ଚାବୈଶେଷ୍ୟଂ ପ୍ରକାଶଶ୍ଚ କର୍ମଣ୍ୟଭ୍ୟାସାତ୍ ୩।୨।୨୪ ।**

ପ୍ରକାଶାଦିବତ୍ ଯେପରି ପ୍ରକାଶାଦି ଅଙ୍ଗୁଳି ଇତ୍ୟାଦି ଉପାଧିରେ ଭିନ୍ନ ରୂପରେ ପ୍ରତୀତ ହେଲେ ମଧ୍ୟ ବସ୍ତୁତ ତାହା ଏକରୂପ, ସେପରି, ପ୍ରକାଶଃ-ପରମାତ୍ମା ମଧ୍ୟ କର୍ମଣି-ଧ୍ୟାନ ପ୍ରଭୃତିରେ ଭିନ୍ନ ରୂପରେ ପ୍ରତିଭାତ ହୋଇ, ଅବୈଶେଷ୍ୟମ-ବସ୍ତୁତଃ ଏକରୂପ ହୁଏ । ଅଭ୍ୟାସାତ କାରଣ-'ତତ୍ତ୍ୱମସି' ଇତ୍ୟାଦିବାକ୍ୟ ଅଭେଦଶ୍ରୁତିରେ ଅଭ୍ୟାସ ହୁଏ ।

(୩) ମୂଳ-(କ) ଯଥା ପ୍ରକାଶାକାଶ ସବିତୃପ୍ରଭୃତୟୋଽଙ୍ଗୁଳି କରକୋଦକ ପ୍ରଭୃତିଷୁ କର୍ମ ସ୍ୱପାଧି ଭୂତେଷୁ ସବିଶେଷା ଇବାବ ଭାସନ୍ତୋ ନ ସ୍ୱାଭାବିକୀମବିଶେଷାତ୍ମତାଂ ବହତି, ଏବମୁପାଧିନିମିତ୍ତା ଏବାୟମାତ୍ମଭେଦଃ ସ୍ୱତସ୍ତ୍ୱୈକାତ୍ମ୍ୟମେବ । ତଥାହି ବେଦାନ୍ତେଷ୍ୱ-ଭ୍ୟାସେନା ସକୃଦ୍ଜୀବପ୍ରାଜ୍ଞୟୋରଭେଦଃ ପ୍ରତିପାଦ୍ୟତେ ।

**(୩) ଭାଷାଂତର-** (କ) ଯେପରି ପ୍ରକାଶ, ଆକାଶ, ସବିତା ଆଦି ଅଙ୍ଗୁଳି କମଣ୍ଡଳୁଜଳ ଇତ୍ୟାଦି ଉପାଧିଭୂତ କର୍ମଦ୍ୱାରା ସବିଶେଷ ରୂପରେ ପ୍ରତିଭାସ ହୁ, ପରନ୍ତୁ ନିଜେ ସ୍ୱଭାବିକ ସାଧାରଣରୂପକୁ ପରିତ୍ୟାଗ କରେ ନାହିଁ ସେହିପରି ଏହି ଆତ୍ମାଭେଦ ଉପାଧି ନିମିତ୍ତକ ହୁଏ, ସ୍ୱତଃ ହିଁ ଏକରୂପ ହୁଏ, କାରଣ-ବେଦାନ୍ତବାକ୍ୟରେ ଅନେକ ବାର ଜୀବ ଓ ପ୍ରାଜ୍ଞର ଅଭେଦ ପ୍ରତିପାଦିତ କରାଯାଇଛି ।

## अतोऽनन्तेन तथाहि लिङ्गम् ॥ २६ ॥

## (୧) ଅତୋଽନନ୍ତେନ ତଥାହି ଲିଙ୍ଗମ୍ ॥୩-୨-୨୬॥

ଅତଃ=ଭେଦର ଔପାଧିକ ହେଲେ ବିଦ୍ୟାଦ୍ୱାରା ତାହାର ନିବୃତ୍ତି ହେଲାପରେ ଜୀବ, ଅନନ୍ତେନ=ଅନନ୍ତପରମାତ୍ମାର ସହିତ ଏକ ହୋଇଯାଏ, କାରଣ-ତଥାହି ଲିଙ୍ଗମ ଏହିପରି ଲିଙ୍ଗ (ଜ୍ଞାପକ) ହୁଏ; ଅର୍ଥାତ୍-= ସଯୋହବୈ ଇତ୍ୟାଦି ଶ୍ରୁତି ଅଟେ ।

(୨) ମୂଳ - (କ) ଅତଶ୍ଚ ସ୍ୱାଭାବିକତ୍ୱାଦଭେଦସ୍ୟାବିଦ୍ୟାକୃତତ୍ୱାଚ୍ଚ ଭେଦସ୍ୟ ବିଦ୍ୟୟାଽ ଽବିଦ୍ୟାଂ ବିଧୂୟଜୀବଃ ପରେଣାନନ୍ତେ ପ୍ରାଜ୍ଞେନାତ୍ମନୈକତାଂ ଗଚ୍ଛତି । ତଥାହି ଲିଙ୍ଗମ 'ସ ଯୋ ବୈତତ୍ ପରମଂ ବ୍ରହ୍ମ ବେଦ ବ୍ରହ୍ମୈବ ଭବତି' (ମୁ ୩।୨।୯), ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି' ବୃହ ୪।୪।୬ ଇତ୍ୟାଦି ।

**(୨)** ଭାଷାଂତର- (କ) ତେଣୁ ଅଭେଦ ସ୍ୱାଭାବିକ ହେଲେ ଓ ଭେଦ ଅବିଦ୍ୟାକୃତ ହେଲେ ବିଦ୍ୟାଦ୍ୱାରା ଅବିଦ୍ୟାକୁ ନିବୃତ୍ତ କରି ଜୀବ ପର (ଅନନ୍ତ) ପ୍ରଜ୍ଞାତ୍ମାର ସହିତ ଏକତାକୁ ପ୍ରାପ୍ତି ହୁଏ । କାରଣ- 'ସ ଯୋ' (ଯେ ଏହି ବ୍ରହ୍ମକୁ ଜାଣେ ସେହି ବ୍ରହ୍ମ ହୋଇଟାଏ,) 'ବ୍ରହ୍ମୈବ (ବ୍ରହ୍ମ ହୋଇ ବ୍ରହ୍ମକୁ ପ୍ରାପ୍ତ ହୁଏ) ଇତ୍ୟାଦି ଲିଙ୍ଗ (ଜ୍ଞାପକ) ଅଟେ ।

## उभमव्यपदेशात्त्वाहिकुण्डलवत् ॥ २७ ॥

## (୧) ଉଭୟ ବ୍ୟପଦେଶାତ୍ତ୍ୱହିକୁଣ୍ଡଳ ବତ୍ ॥୩।୨।୨୭॥

ଅହିକୁଣ୍ଡଳବତ୍-ଯେପରି ସର୍ପରୂପରେ ଅଭେଦ ଓ କୁଣ୍ଡଳାଦି ରୂପରେ ଭେଦ ଅଛି, ସେହିପରି ଉଭୟ ବ୍ୟପଦେଶାତ୍-ଧ୍ୟାତୃ ଓ ଧ୍ୟେୟଭାବେ ଏବଂ 'ତତ୍ତ୍ୱମସି' ଦ୍ୱାରା ଜୀବ ଓ ଈଶ୍ୱରଠାରେ ଭେଦ ଓ ଅଭେଦ ଦୁଇଟିର ବ୍ୟପଦେଶ ହୁଏ । ତୁ-ତୁଶବ୍ଦ ବିଲକ୍ଷଣତାର ଦ୍ୟୋତକ ଅଟେ ।

(୨) ମୂଳ- (କ) ତସ୍ମିନ୍ନେବ ସଂରାଧସଂ-ରୋଧକଭାବେ ମତାନ୍ତର ମୁପନ୍ୟସ୍ୟତି ସ୍ୱମତବିଶୁଦ୍ଧୟେ । କ୍ୱଚିଜ୍ଜୀବପ୍ରାଜ୍ଞୟୋ ଭେଦୋ ବ୍ୟପଦିଶ୍ୟତେ 'ତତସ୍ତୁ ପଶ୍ୟତେ ନିଷ୍କଳଂ ଧ୍ୟାୟମାନଃ' (ମୁ ୩।୧।୮) ଇତି ଧ୍ୟାତୃଧ୍ୟାତବ୍ୟତ୍ୱେନ ଦ୍ରଷ୍ଟ୍ର ଦ୍ରଷ୍ଟବ୍ୟତ୍ୱେନ ଚ । 'ପରାତ୍ପରଂ ପୁରୁଷସୁପୈତିଦିବ୍ୟମ୍' (ମୁଣ୍ଡ ୩।୨।୮) ଇତି ଗ୍ରନ୍ତ ଗନ୍ତବ୍ୟତ୍ୱେନ ।

'ଯଃ ସର୍ବାଣି ଭୂତାଯ୍ୟନ୍ତରୋ ଯମୟତି' ଇତି, ନିୟନ୍ତନିୟନ୍ତବ୍ୟ ତ୍ୱେନତ ।

(ଖ) କ୍ୱଚିତ୍ତୁ ତୟୋରେବାଭେଦୋ ବ୍ୟପଦିଶ୍ୟତେ 'ତତ୍ତ୍ୱନସି' ଛା ୬।୮।୭, 'ଅହଂ ବ୍ରହ୍ମସ୍ମି, ବୃହ ୧।୪।୧୦, 'ଏଷତ ଆତ୍ମା ସର୍ବାନ୍ତରଃ' ବୃହ ୩।୪।୧୬, ଏଷତ



ଆତ୍ମାନ୍ତର୍ଯ୍ୟାମ୍ୟ ମୃତଃ ବୃହ ୩।୭।୩ ଇତି । ତଦ୍ୱୈବମୁଭୟବ୍ରପଦେଶେ ସତି ଯଦ୍ୟଭେଦ ଏବୈକାନ୍ତତୋ ଗୃହ୍ୟତେ ଭେଦବ୍ୟପଦେଶୋ ନିରାଲମ୍ବନ ଏବ ସ୍ୟାତ । ଅତ ଉଭୟ ବ୍ୟପଦେଶ ଦର୍ଶନାଦହିକୁଣ୍ଡଳବଦତ୍ର ତତ୍ତ୍ୱଂ ଭବିତୁମର୍ହତି । ଯଥାହି-ରିତ୍ୟଭେଦଃ କୁଣ୍ଡଳା ଭୋଗପ୍ରାଂଶୁତ୍ୱାଦୀନୀତି । ତୁ ଭେଦ ଏବମିହାପୀତି ।

**(୨) ଭାଷାନ୍ତର** (କ) ତାହା ସଂରାଧ = ସଂରାଧକଭାବରେ ନିଜମତର ବିଶୁଦ୍ଧ ପାଇଁ ଅନ୍ୟମତକୁ ଉପନ୍ୟାସ କରନ୍ତି । 'ତତସ୍ତୁତଂ' (ତେଣୁ ସେ ଧ୍ୟାନ କରି ସେ ନିଷ୍କଳ୍ ଆତ୍ମାତତ୍ତ୍ୱକୁ ସାକ୍ଷାତ୍‌କାର କରେ) ଏହିପରି କେଉଁଠାରେ ଧାତୃଧାତବ୍ୟରୂପରେ ଏବଂ ଦ୍ରଷ୍ଟ ଦ୍ରଷ୍ଟବ୍ୟ ରୂପରେ ଉପଦେଶ ଦିଆଯାଇଅଛି । 'ପରାତ୍ପରଂ' ପରାତ୍ପର ଦିବ୍ୟ ପୁରୁଷକୁ ପାଇଯାଏ ଏହିପରି କେଉଁଠାରେ ଗନ୍ତୃ-ଗନ୍ତବ୍ୟରୁ ରେଂ ଏବଂ 'ଯଃ ସର୍ବାଣି' (ଯିଏ ସବୁ ଭୂତର ତାହାର ଭିତରେ ରହି ନିୟମନ କରେ ଏହିପରି କେଉଁଠାରେ ନିୟନ୍ତୁ-ନିୟନ୍ତ-ବ୍ୟରୂପରେ ଜୀବ ଓ ପରମାତ୍ମାର ଭେଦବ୍ୟ ଦେଶ କରାଯାଇଅଛି ।

**प्रकाशाश्रयवद्वा तेजस्त्वात् ॥ २८ ॥**

**ପ୍ରକାଶାଶ୍ରୟବଦବା ତେଜସ୍ତ୍ୱାତ୍ ॥୩।୨।୨୮॥**

ବା=ଅଥବା, ପ୍ରକାଶାଶ୍ରୟବଦ୍=ଯେପରି ପ୍ରକାଶ ଓ ତାହାର ଆଶ୍ରୟ ସୂର୍ଯ୍ୟ ଏହି ଦୁଇଟିରେ ଅତ୍ୟନ୍ତ ଭେଦ ନାହିଁ, ତେଜସ୍ତ୍ୱାତ୍=କାରଣ- ଦୁଇଟିରେ ତେଜସ୍ତ୍ୱ ସମାନ ଅଟେ । ସେପରି ଜୀବ ଓ ଈଶ୍ୱରଠାରେ ଭେଦ ଓ ଅଭେଦ ଜାଣିବା ଉଚିତ ।

(୨) ମୂଳ- (କ) ଅଥବା ପ୍ରକାଶାଶ୍ରୟବଦେତତ୍ ପ୍ରତିପତ୍ତବ୍ୟମ୍ । ଯଥା ପ୍ରକାଶଃ ସାବିତ୍ରସ୍ତଦାଶ୍ରୟଶ୍ଚ ସର୍ବିତା ନାତ୍ୟନ୍ତଭିନ୍ନାବୁଭୟୋରପି ତେଜସ୍ତ୍ୱାବିଶେଷାତ୍ । ଅଥଚ ଭେଦବ୍ୟପ ଦେଶଭାଜୌ ଭବତ ଏବମିହାପୀତି ।

**(୨) ଭାଷାଂତର-** (କ) ଅଥବା ପ୍ରକାଶ ଓ ତାହାର ଆଶ୍ରୟ ପରି ଜୀବ ଓ ପରମାତ୍ମାର ଅଭେଦ ଯେପରି ଆଗରୁ କୁହାଯାଇଅଛି, କାରଣ-ଦୁଇଟି ସ୍ଥଳରେ ତେଜସ୍ତ୍ୱ ପରି କିନ୍ତୁ ଦୁଇଟିଯାକ ଭେଦବ୍ୟପଦେଶରେ ଭାଗୀ ଅଟନ୍ତି, ସେପରି ଏଠାରେ ଜାଣିବା ଉଚିତ୍ ।

**पूर्ववद्वा ॥ २९ ॥**

**(୧) ପୂର୍ବବଦ ବା ॥ ୩।୨।୨୯ ॥**

ବା-ଅଥବା, ପୂର୍ବବତ୍=ପ୍ରକାଶାଦିବଚୌବୈଶେଷ୍ୟମ୍' ଏହି ସୂତ୍ରରେ ପ୍ରଥମ ଭେଦ କାଳ୍ପନିକ ଓ ଅଭେଦ ପାରମାର୍ଥିକ ରୂପେ କୁହାଯାଇଅଛି । ସେହିପରି ଏଠାରେ ବୁଝିବା ଉଚିତ୍ ।

(୨) ମୂଳ-(କ) ଯଥା ବା ପୂର୍ବ ବଦୁ ପନ୍ୟଶ୍ରୀଂ ପ୍ରକାଶାଦିବଚ୍ଚା ବୈଶେଷ୍ୟମିତି ତଥୈ ବୈତଦଭବିତୁମର୍ହତି । ତଥା ହ୍ୟବିଦ୍ୟାକ୍ତତତ୍ତ୍ୱାଦ ବନ୍ଧିସ୍ୟ ବିଦ୍ୟୟା ମୋକ୍ଷ ଉପପଦ୍ୟତେ । ଯଦି ପୁନଃ ପରମାର୍ଥତ ଏବ ବନ୍ଧଃ କଣ୍ଟିଦାମ୍ମାହିକୁଣ୍ଡଳନ୍ୟାୟେନ ପରସ୍ୟାତ୍ମନଃ ସଂସ୍ଥାନଭୂତଃ ପ୍ରକାଶାଶ୍ରୟନ୍ୟାୟେନ ଚୈକଦେଶଭୂତୋଽ ଭ୍ୟୁପଗମ୍ୟେତ, ତତଃ ପାରମାର୍ଥିକସ୍ୟ ବନ୍ଧସ୍ୟ ତିରସ୍କର୍ତ୍ତୁମଶକ୍ୟତାନ୍ ମୋକ୍ଷଶାସ୍ତ୍ର ବୈୟର୍ଥ୍ୟଂ ପ୍ରସଜ୍ୟେତ, ନ ଚ଼ତ୍ରୋଭାବପି ଭେଦାଭେଦୌ ଶ୍ରୁତିସ୍ତୁଲ୍ୟବଦ୍ ବ୍ୟପଦିଶତି ।

(ଖ) ଅଭେଦମେବ ହି ପ୍ରତିପାଦ୍ୟତ୍ୱେନ ନିର୍ଦିଶତି, ଭେଦନ୍ତୁ ପୂର୍ବପ୍ରସିଦ୍ଧମେବାନୁ-ବଦତ୍ୟର୍ଥାନ୍ତରବିବକ୍ଷୟା । ତସ୍ମାତ୍ ପ୍ରକାଶାଦିବଚ୍ଚାବୈଶେଷଂମିତ୍ୟେଷ ଏବ ସିଦ୍ଧାନ୍ତଃ ।

**(୨) ଭାଷାଂନ୍ତର-** (କ) ଅଥବା ପ୍ରକାଶାଦିପରି ଜୀବ ଓ ପରମାତ୍ମାର ଅଭେଦ ଯେପରି ପୂର୍ବରୁ କୁହାଯାଇଅଛି, ସେପରି ଏହା ମଧ୍ୟ ହୁଏ, କାରଣ-ବନ୍ଧ ଅବିଦ୍ୟାକୃତ ହେଲେ ବିଦ୍ୟାରୁ ମୋକ୍ଷ ଉତ୍ପନ୍ନ । ଯଦି ପୁଣି ପରମାର୍ଥରୁ ଅହିକୁଣ୍ଡଳ ନ୍ୟାୟରେ ପରମାତ୍ମାର ସଂସ୍ଥାନଭୂତ ଅଥବା ପ୍ରକାଶା ଶ୍ରୟନ୍ୟାୟରେ ଏକଦେଶଭୂତ କୌଣସି ବନ୍ଧ ଜୀବାତ୍ମା ସ୍ୱୀକାର କରାଯାଏ, ତେବେ ଏଠାରେ ଭେଦ ଓ ଅଭେଦ- ଏହି ଦୁଇଟିର ଶ୍ରୁତି ସମାନ ରୂପରେ ବ୍ୟପଦେଶ କରେନାହିଁ ।

(ଖ) ଶ୍ରୁତି ଅଭେଦର ମଧ୍ୟ ପ୍ରତିପାଦ୍ୟରୂପରେ ନିର୍ଦ୍ଦେଶ କରେ ଏବଂ ପୂର୍ବପ୍ରସିଦ୍ଧ ଭେଦର କିନ୍ତୁ ଅନ୍ୟ ଅର୍ଥର ବିବକ୍ଷାରେ ଅନୁବାଦ କରେ । ତେଣୁ 'ପ୍ରକାଶାଦିବଚ୍ଚବୈ-ଶେଷ୍ୟସ' ଏହାହିଁ ସିଦ୍ଧାନ୍ତ ।

## प्रतिषेधांच्च ॥ ३० ॥

## (୧) ପ୍ରତିଷେଧାଚ୍ଚ ॥ ୩।୨।୩୦ ॥

'ନାନ୍ୟୋଽତୋଽସ୍ତି ଦ୍ରଷ୍ଟା' ଇତ୍ୟାଦି ଶ୍ରୁତିଦ୍ୱାରା ପରମାତ୍ମାରୁ ଭିନ୍ନ ଚେତନର ଓ ନେତି ନେତି' ଇତ୍ୟାଦି ଶ୍ରୁତିଦ୍ୱାରା ବ୍ରହ୍ମବ୍ୟତିରିକ୍ତ ଦୃଶ୍ୟମାନ ପ୍ରପଞ୍ଚର ପ୍ରତିଷେଧ ହେଲେ ଅଦ୍ୱିତୀୟ ବ୍ରହ୍ମ ଅବଶିଷ୍ଟ ରହେ ।

(୨) ମୂଳ-(କ) ଇତଶ୍ଚୈଷ ଏବ ସିଦ୍ଧାନ୍ତଃ । ଯତ୍କାରଣଂ ପରସ୍ମାଦାତ୍ମନୋଽନ୍ୟଂ ଚେତନଂ ପ୍ରତିଷେଧତି ଶାସ୍ତ୍ରମ୍ 'ନାନ୍ୟ ତୋଽସ୍ତି ଦ୍ରଷ୍ଟା' ବୃହ ୩।୭।୨୩ ଇତ୍ୟେବମାଦି 'ଅଥାତ ଅଦେଶୋ ରେତି ନେତି' ବୃହ ୨।୩।୬, ତଦେତଦ୍ ବ୍ରହ୍ମାପୂର୍ବମନପରମନନ୍ତର-ମବାହ୍ୟମ୍' ବୃହ ୨।୫।୨୯ ଇତି ଚ ବ୍ରହ୍ମବ୍ୟତିରିକ୍ତ ପ୍ରପଞ୍ଚନିରାକରଣାଦ୍ ବ୍ରହ୍ମମାତ୍ରପରିଶେ-ଷାଚ୍ଚୈଷ ଏବ ସିର୍ଦ୍ଧାନ୍ତ ଇତି ଗମ୍ୟତେ ।

**(୨) ଭାଷାଂତର-** (କ) ତେଣୁ ଏହା ସିଦ୍ଧାନ୍ତ । କାରଣ- 'ନାନ୍ୟତୋଽସ୍ତି' (ପରମାତ୍ମା-ଭିନ୍ନ ଅନ୍ୟଦ୍ରଷ୍ଟା କିଏ ନାହିଁ) ଇତ୍ୟାଦିଶାସ୍ତ୍ର ପରମାତ୍ମାବ୍ୟତିତ ଅନ୍ୟଚେତନକୁ

ପ୍ରତିଷେଧ କରେ, 'ଅଥାତ' (ବର୍ତ୍ତମାନ ଏହାପରେ ନେତି' ଏହି ବ୍ରହ୍ମର ଆଦେଶ) 'ତଦେତଦବ୍ରହ୍ମ' (ସେ ଏହି ବ୍ରହ୍ମ କାରଣରହିତ, କାର୍ଯ୍ୟରହିତ ବିଜାତୀୟଦ୍ରବ୍ୟରହିତ ଓ ଅବାହ୍ୟ ଅଟେ ଏହିପରି ବ୍ରହ୍ମବ୍ୟତିରିକ୍ତ ପ୍ରପଞ୍ଚର ନିରାକରଣ ହେଲେ ବ୍ରହ୍ମମାତ୍ରାର ପରିଶେଷ ହେଲେ ଏହି ସିଦ୍ଧାନ୍ତ ହୁଏ ବୋଲି ଜଣାପଡ଼େ ।

## ७ पराधिकरणम् ॥ सू० ३२-३७ ॥

## ପରାଧୀକରଣ -୭

## परमतः सेतून्मनर्संबन्धमेदव्यपदेशेभ्यः ॥ ३२ ॥

## ପରମତଃ ସେତନ୍ମାନସମ୍ବନ୍ଧ ଭେଦବ୍ୟପଦେଶେଭ୍ୟଃ ॥୩।୨।୩୧

ଅତଃ =ଏହି ବ୍ରହ୍ମରୁ, ପରମ = ଅବ୍ୟବସ୍ଥୁ ସୃଷ୍ଟି ହୁଏ, କାରଣ-ସେତ୍ୱନ୍ ମାନ ସମ୍ବନ୍ଧଭେଦବ୍ୟପଦେଶେଭ୍ୟଃ = ସେତୁ, ଉନ୍ମାନ, ସମ୍ବନ୍ଧ ଓ ଭେଦର ବ୍ୟପ ଦେଶରୁ ଏହା ଜଣାଯାଏ ।

(୨) ମୂଳ- (କ) ଯେତେତନ୍ନିରସ୍ତସମସ୍ତପ୍ରପଞ୍ଚ ବ୍ରହ୍ମ ନିର୍ଦ୍ଧାରିତମ୍, ଅସ୍ମାତ୍ ପରମନ୍ୟତ୍ତ୍ୱମସ୍ତି ନାସ୍ତୀତି ଶ୍ରୁତିପ୍ରତ୍ତିପତ୍ତେଃ ସଂଶୟଃ ।.କାନିଚିଦ୍ଧି ବାକ୍ୟାନ୍ୟାପାତେନୈବ ପ୍ରତିଭାସମାନାନି ବ୍ରହ୍ମଣୋଽପି ପରମନ୍ୟତତ୍ତ୍ୱଂ ପ୍ରତିପାଦୟନ୍ତୀବ । ତେଷାଂହି ପରିହାର ମଭିଧାତୁମୟମୁପକ୍ରମଃ କ୍ରିୟତେ ପରମତୋ ବ୍ରହ୍ମଣୋଽ ନ୍ୟତିତ୍ତ୍ୱଂ ଭବିତୁମର୍ହତି । କୁତଃ ? ସେତୁବ୍ୟପଦେଶାଦୁନ୍ମାନବ୍ୟପଦେଶାତ୍, ସମ୍ବନ୍ଧବ୍ୟପଦେଯାଦ୍, ଭେଦବ୍ୟପଦେଶାଚୋତି ।

(ଖ) ସେତୁବ୍ୟପଦେଶସ୍ତାବତ୍ 'ଅଥ ଆତ୍ମା ସ ସେତୁର୍ବିଧୃତିଃ' (ଛା ୮।୪।୧) ଇତ୍ୟାତ୍ମଶବ୍ଦାଭିହିତସ୍ୟ ବ୍ରହ୍ମଣ୍ୟ ସେତୁତ୍ୱଂ ସଙ୍କୀର୍ତ୍ତୟତି । ସେତୁଶବ୍ଦଶ୍ଚ ହି ଲୋକେ ଜଳ ସନ୍ତାନବିଚ୍ଛେଦକରେ, ମୃଦ୍ଦାର୍ବାଦିପ୍ରଚୟେ ପ୍ରସିଦ୍ଧଃ, ଇହ ଚ ସେତୁଶବ୍ଦ ଆତ୍ମନି ପ୍ରଯୁକ୍ତ ଇତି ଲୋକିକ ସେତୋରିବାତ୍ମସେତୋରନ୍ୟସ୍ୟ ବସ୍ତୁନୋଽସ୍ତିତ୍ୱଂ ଗମୟତି, 'ସେତୁଂ ତୀର୍ତ୍ତ୍ୱ' (ଛା ୮-୪-୨) ଇତି ଚ ତରିତିଶବ୍ଦ ପ୍ରୟୋଗତାତ୍ ଯଥା ଲୌକିକଂ ସେତୁଂତୀର୍ତ୍ତ୍ୱା । ଜାଙ୍ଗଳମସେତୁଂ ପ୍ରାପ୍ନୋ ତ୍ୟେବମାତ୍ମାନଂ ସେତୁଂ ତୀର୍ତ୍ତ୍ୱାଽନାତ୍ମନମସେତୁଂ ପ୍ରାପ୍ନୋତୀତି ଗମ୍ୟତେ ।

**(୨) ଭାଷାଂତର** - (କ) ସମସ୍ତ ପ୍ରପଞ୍ଚ ଶୂନ ଏହି ବ୍ରହ୍ମର ଯାହା ନିର୍ଦ୍ଧାରଣ କରାଗଲା, ତାହା ବ୍ୟତିରିକ୍ତ ଅନ୍ୟତତ୍ତ୍ୱ କିଛି ନାହିଁ କି ? ଏହିପ୍ରକାର ଶ୍ରୁତି ପୁଡ଼ିକର ବି ପ୍ରତିପତି ହେତୁ ସଂଶୟ ହୁଏ । ଆପାତତଃ କୌଣସି ପ୍ରତିଭାସମାନ ବାକ୍ୟ ବ୍ରହ୍ମଠାରୁ ଭିନ୍ନହୋଇ ଅନ୍ୟତତ୍ତ୍ୱକୁ ପ୍ରତିପାଦନ କରେ । ସେମାନଙ୍କର ପରିହାର ପାଇଁ ଏହି ଉପକ୍ରମ

କରାଯାଇଅଛି । ପୂର୍ବପକ୍ଷ ଏହିବ୍ରହ୍ମଠାରୁ ପର (ଅନ୍ୟ) ତତ୍ତ୍ୱ କିଛି ଅଛି । କିପରି ? ସେତୁର ବ୍ୟପଦେଶ, ଉନ୍ମାଦର ବ୍ୟପଦେଶ, ସମ୍ବନ୍ଧରେ ବ୍ୟପଦେଶ ଓ ଭେଦର ବ୍ୟବଦେଶ ହୁଏ ।

(ଖ) 'ଅଥ ଯ ଆତ୍ମା' 'ଯାହା ଆତ୍ମା ଅଟେ' ସେ ବିଧାରକ ସେହି ଅଟେ ଏହି ପ୍ରକାର ହେତୁ ବ୍ୟପଦେଶ ଆତ୍ମଶବ୍ଦ ଦ୍ୱାରା ଅଭିହିତ ବ୍ରହ୍ମ ସେତୁ ବୋଲି କୁହାଯାଇଅଛି । ସଂସାରରେ ସେତୁ ଶବ୍ଦ ଜଳପ୍ରବାହକୁ ବିଚ୍ଛେଦ କରୁଥିବା ମୃତ୍ତିକା, କାଠ ଇତ୍ୟାଦି ସମୂହ ପ୍ରସିଦ୍ଧ ହୁଏ । ଏଠାରେ କିନ୍ତୁ ସେତୁ ଶବ୍ଦ ଆତ୍ମାରେ ପ୍ରଯୁକ୍ତ ହୁଏ ତେଣୁ ସେ ଲୌକିକ ସେତୁ ପରି ଆତ୍ମସେତ୍ ଦ୍ୱାରା ଅନ୍ୟବସ୍ତୁର ଅସ୍ତିତ୍ୱକୁ ବୁଝାଏ । କାରଣ – ସେତୁକୁ ପାରି ହୋଇ' ଏହିପରି ତରତି ଶବ୍ଦରୁ ପ୍ରୟୋଗ ହୁଏ । ଯେପରି ଲୌକିକ ସେତୁକୁ ପାରିହୋଇ ଅସେତୁ ଜାଙ୍ଗଳ (ବାୟୁପ୍ରଧାନ) ସ୍ଥଳକୁ ପ୍ରାପ୍ତ ହୁଏ, ସେପରି ଆତ୍ମସେତୁକୁ ପାରିହୋଇ ଅସେତୁ ଅନାତ୍ମାକୁ ପ୍ରାପ୍ତ ହୁଏ ବୋଲି ଜଣାଯାଏ ।

(୩) ମୂଳ – (କ) ଉନ୍ମାନବ୍ୟପଦେଶଶ୍ଚ ଭବତି–ତଦେତଦ୍ ବ୍ରହ୍ମ ଚତୁଷ୍ପାଦଶଫମ୍ ଷୋଡଶକଳମିତି । ଯଚ୍ଚ ଲୋକେ ଉନ୍ମିତମେତାବଦିଦମିତି ପରିଚ୍ଛିନ୍ନଂ କାର୍ଷାପଣାଦି, ତତୋଽନ୍ୟଦ୍‌ବସ୍ତ୍ୱସ୍ତୀତି ପ୍ରସିଦ୍ଧମ୍ । ତଥା ବ୍ରହ୍ମଣୋଽପ୍ୟୁନ୍ମାନାଉତୋଽନ୍ୟେନ ବସ୍ତୁନା ଭବିତବ୍ୟମିତି ଗମ୍ୟତେ ।

(ଖ) ତଥା ସମ୍ବନ୍ଧବ୍ୟପଦେଶୋଽପି ଭବତି –'ସତା ସୋମ୍ୟ ତଦା ସଂପନ୍ନୋ ଭବତି' (ଛା ୬–୮–୧) ଇତି, 'ଶାରୀର ଆତ୍ମା' (ତୈ ୨–୩–୧) ପ୍ରାଜ୍ଞେନାତ୍ମନା ନା ସଂପରି ଷ୍ୱକ୍ତଃ' (ବୃହ ୪–୩–୨୧) ଇତି । ମିତାନଂ ଚ ମିତେନ ସମ୍ବନ୍ଧୋ ଦୃଷ୍ଟୋ ଯଥା ନରାଣାଂ ନଗରେଣ । ଜୀବନାଚଂ ବ୍ରହ୍ମଣା ସମ୍ବନ୍ଧ ବ୍ୟପଦିଶତି ସୁଷୁପ୍ତୌ । ଅତସ୍ତତଃ ପରମନ୍ୟଦମିତମସ୍ତୀତି ଗମ୍ୟତେ ।

(ଗ) ଭେଦ ବ୍ୟପଦେଶ ଶ୍ଚୈନମେବାର୍ଥଂ ଗମୟତି । ତଥାହି–ଅଥ ଯ ଏଷୋଽନ୍ତରାଦିତ୍ୟ ହିରନ୍ମୟ–ପୁରୁଷୋ ଦୃଶ୍ୟତେ' (ଛା ୧–୬–୬) ଇତ୍ୟାଦିତ୍ୟାଧାରମୀଶ୍ୱରଂ ବ୍ୟପାଦିଶ୍ୟ ତତୋ ଭେଦେନା କ୍ଷ୍ୟାଧାରମୀଶ୍ୱରଂ ବ୍ୟପଦିଶତି 'ଅଥଚ ଏଷୋଽନ୍ତରାକ୍ଷିଣି ପୁରୁଷୋଽ ଦୃଶ୍ୟତେ' (ଛା ୧–୭–୫) ଇତି । ଅତିଦେଶଂ ଚାସ୍ୟାମୁନା ରୂପାଦିଶ କରୋତି– 'ତସ୍ୟୈତସ୍ୟ ତଦେବ ରୂପଂ ଯଦମୁଷ୍ୟ ରୂପଂ ଯାବଦମୁଷ୍ୟ ଗେଷ୍ଣୌ ତ୍ରୌ, ଗେଷ୍ଣୌମ ଯନ୍ନାମ' (ଛା ୧–୭–୫) ଇତି ।

(ଘ) ସାବଧିକଂ ଚୋଶ୍ୱରତ୍ୱଭୟୋର୍ବ୍ୟପଦିଶତି – 'ଯେଚାମୁଷ୍ମାତ୍ ପରାଚୋଂ ଲୋକାସ୍ତେଷାଂ ଚେଷ୍ଟେ ଦେବକାମାନଂ ଚ' (ଛା ୧–୬–୮) ଇତ୍ୟେକସ୍ୟ । 'ଯେ ଚୈତସ୍ମାଦବାଚୋଂ ଲୋକାସ୍ତେଷାଂ ଚେଷ୍ଟେ ମୁନଷ୍ୟକାମାନାଚଂ' (ଛା–୧–୭–୬) ଇତ୍ୟେକସ୍ୟ । ଯଥେବଂ ମାଗଧସ୍ୟ ରାଜ୍ୟମିଦଂ ବୈଦେହସ୍ୟେତି ଏବମେତେଭ୍ୟଃ ସେତ୍ୱାଦିବ୍ୟପ ଦେଶେଭ୍ୟୋ ବ୍ରହ୍ମଣଃ ପରମସ୍ତୀତି ।



(ଗ) ଭାଷାଂତର- ଉନ୍ମାନର ବ୍ୟପଦେଶ ହୁଏ – 'ତଦେତଦ୍ ବ୍ରହ୍ମ' (ସେହି ବ୍ରହ୍ମ ଚାରିପାଦଯୁକ୍ତ' ଆଠଟି ଖୁରାଯୁକ୍ତ ଓ ଷୋଡ଼ଶ ଅବୟବଯୁକ୍ତ ଅଟେ) ସଂସାରରେ ଯେଉଁ ଉନ୍ମିତ ଅଛି; ଏହା ଏତେ ବିଶାଳକାୟ ଯେ ଏହିପ୍ରକାର ପରିଛିନ୍ନ ଯେଉଁ କାର୍ଷାପଣାଦି ଅଛି, ସେସବୁ ଅନ୍ୟ ବସ୍ତୁ । ସେହିପରି ବ୍ରହ୍ମର ଉନ୍ମାନରୁ ଅନ୍ୟବସ୍ତୁ ହେବା ଉଚିତ୍ ବୋଲି ଜଣାଯାଏ ।

(ଖ) ତଥା 'ସତା ସୋମ୍ୟ' ହେ ସୋମ୍ୟ ସେହିସମୟରେ ସତ୍ ସହିତ ସଂପନ୍ନ ହୁଏ ? ଓ 'ଶାରୀର ଆତ୍ମ' (ଅନ୍ନମୟରେ ଏହି ଆତ୍ମା ରହେ) 'ପ୍ରାଜ୍ଞେନାତ୍ମନ !' (ଏହି ପୁରୁଷ ପ୍ରଜ୍ଞାତ୍ମାର ସହିତ ସଂସୃଷ୍ଟ ହୋଇଅଛି) ଏହିପରି ସମ୍ବନ୍ଧର ବ୍ୟପଦେଶ ହୋଇଛି । ମିତ (ପରିଛିନ୍ନର) ପରିଛିନ୍ନର ସହିତ ସମ୍ବନ୍ଧ ଦେଖାଯାଏ ଯେପରି ମନୁଷ୍ୟର ନଗର ସହିତ ସମ୍ବନ୍ଧ ରହିଛି । ଶ୍ରୁତି ସୁଷୁପ୍ତିରେ ଜୀବର ବ୍ରହ୍ମ ସହିତ ସମ୍ବନ୍ଧ କହେ, ତେଣୁ ଏହାଦ୍ୱାର ଏହା ଅନ୍ୟ ଅପରିଚ୍ଛିନ୍ନ ବୋଲି ଜଣାଯାଏ ।

(ଗ) ଭେଦବ୍ୟ ଦେଶ ମଧ ଏହି ଅର୍ଥକୁ ବୁଝାଏ କାରଣ – 'ଅଥ ଯ ଏଷୋ' ତଥା ଏହି ଯେଉଁ ଆଦିତ୍ୟ ମଣ୍ଡଳର ଅନ୍ତର୍ଗତ ସୁବର୍ଣ୍ଣମୟ ପୁରୁଷ ଦେଖାଯାଏ) ଏହିପରି ଆଦିତ୍ୟ ଆଧାରଥିବା ଈଶ୍ୱରର ବ୍ୟଥଦେଶ କରି ତାହାପରେ' 'ଅଥ ଯ ଏଷ' (ଏହା ଯେଉଁ ନେତ୍ର ଅନ୍ତର୍ଗତ ପୁରୁଷ ଦେଖାଏ) ଏହିପ୍ରକାର ଭେଦରେ ନେତ୍ରର ଆଧାରଯୁକ୍ତ ପୁରୁଷର ବ୍ୟପଦେଶ କରେ । 'ତତ୍ୟୈତସ୍ୟ (ସେ ଏହି ପୁରୁଷର ସେହିରୂପ ଅଟେ) ଯାହା ସେହି ଆଦିତ୍ୟାନ୍ତର୍ଗତ ପୁରୁଷର ରୂପ, ଯାହା ତାହାର ପର୍ବ, ସେହି ଏହାରପର୍ବ ଅଟେ । ଯାହା ତାହାର ନାମ, ସେହି ତାହାର ନାମ ଅଟେ । ଏହିପ୍ରକାର ଅକ୍ଷିସ୍ଥପୁରୁଷର ଏହି ଆଦିତ୍ୟସ୍ଥ ପୁରୁଷ ସହିତ ରୂପାଦିରେ ଅତଦେଶ କରେ ।

(ଘ) ଯେ ଚାମୁଷ୍ମତ୍ (ଯାହା ଆଦିଲୋକର ଉପରଲୋକ ଏବଂ ଯାହା ଦେବତା ମାନଙ୍କର କାମନା ଅଟନ୍ତି, ସେ ସେମାନଙ୍କୁ ହିଁ ଶାସନ କରେ) ଏହି ପ୍ରକାର ଏକର ଏବଂ 'ଯେ ଚତୁଷ୍ପାଦ' ଯାହା ଏହି ଅଧାତ୍ମ ଆତ୍ମାରୁ ନିଚଲୋକ ଅଟନ୍ତି ଦଶ ମାନବୀୟ-କାମନାକୁ ଶାସନ କରେ । ଏହିପରି ଅସ୍ୟର ଏହିପରି ଦୁଇଟିଯାକର ଈଶ୍ୱରଦ୍ୱମର୍ଯ୍ୟାଦିତ ବ୍ୟପଦେଶ କରେ । ଯେପରି ଏହି ମୁଗ୍ଧର ରାଜ୍ୟ ଅଟେ ଓ ଏହି ବୈଦେହର ସେପରି ସେତୁଗୁଡ଼ିକର ବ୍ୟପଦେଶରୁ ବ୍ରହ୍ମ ହିଁ ଅନ୍ୟବସ୍ତୁ ଅଟେ ।

(୧) ଏହାପ୍ରପ୍ତ ହେଲାପରେ ପ୍ରତିପାଦନ କରାଯାଇଅଛି ।

## सामान्यात्तु ॥ ३२ ॥

## ସାମାନ୍ୟତ୍ତୁ ॥ ୩-୨-୩୨ ॥

ସାମାନ୍ୟାତ୍ ତୁ = ପରନ୍ତୁ ଯେପରି ଲୌକିକ ସେତୁ ଜଳର ବ୍ୟବସ୍ଥାପକ ହୁଏ, ସେପରି ବ୍ରହ୍ମ ଜଡ୍ ମର୍ଯ୍ୟାଦାର ହ୍ୟବସ୍ଥାପକ । ଏହିପରି ସାଦୃଶ୍ୟରୁ ବ୍ରହ୍ମରେ ସେତୁତ୍ୱ ଉପଦିଷ୍ଟ ହୁଏ ।

(୨) ମୂଳ - (କ) ତୁଶବ୍ଦେନ ପ୍ରଦର୍ଶିତାଂ ପ୍ରାପ୍ତିଂ ନିରୁଣଦ୍ଧି । ନ ବ୍ରହ୍ମଣୋଽନ୍ୟେତ୍ କିଞ୍ଚିଦ୍ ଭବିତୁମର୍ହତି, ପ୍ରମାଣାଭାବାତ୍ । ନ ହ୍ୟନ୍ୟସ୍ୟାସ୍ତିତ୍ୱେ କିଞ୍ଚିତ୍ପ୍ରମାଣମୁପାଲଭାମହେ । ସର୍ବସ୍ୟ ହି ଜନିମତୋ ବସ୍ତୁଜାତସ୍ୟ ଜନ୍ମାଦି ବ୍ରହ୍ମଣୋ ଭବତୀତ ନିର୍ଧାରିତମ୍ । ଅନନ୍ୟତ୍ୱଞ୍ଚ କାରଣାତ୍ କାର୍ଯ୍ୟସ୍ୟ । ନବ ବ୍ରହ୍ମବ୍ୟତିରିକ୍ତଂ କିଞ୍ଚିଦଜଂ ସମ୍ଭବତି, 'ତଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ' (ଛା ୬-୨-୧) ଇତ୍ୟବଧାରଣାତ୍ । ଏକବିଜ୍ଞାନେନ ଚ ସର୍ବବିଜ୍ଞାନ ପ୍ରତିଜ୍ଞାନାନ୍ନ ବ୍ରହ୍ମବ୍ୟତିରିକ୍ତବସ୍ତୁସ୍ତିତ୍ୱମବକଳ୍ପତେ ।

(ଖ) ନନୁ ସେତ୍ୱାଦିବ୍ୟପଦେଶା ବ୍ରହ୍ମ ବ୍ୟତିରିକ୍ତଂ ତତ୍ତ୍ୱଂ ସୂଚୟନ୍ତୀତ୍ୟୁକ୍ତମ୍, ନେତ୍ୟୁଚ୍ୟତେ - ସେତୁବ୍ୟପଦେଶସ୍ତାବନ୍ନ ବ୍ରହ୍ମଣୋ ବାହ୍ୟସ୍ୟ ସଦ୍ଭାବଂ ପ୍ରତିପାଦୟିତୁଂ କ୍ଷମତେ । ସେତୁରାତ୍ମେତି ହ୍ୟାହ, ନ ତତଃ ପରମସ୍ତିତି । ତତ୍ର ପରସ୍ମିନ୍ନସତି ସେତୁତ୍ୱଂ ନାବକଳ୍ପତି ଇତିପରଂ କିମପି କଳ୍ପେତ । ନ ଚୈତନ୍ନ୍ୟାୟମ ହଠୋ ହ୍ୟପ୍ରସିଦ୍ଧ କଳ୍ପନା ।

(ଗ) ଅପି ଚ ସେତୁବ୍ୟପଦେଶାଦାତ୍ମନୋ ଲୌକିକ ସେତୁନିଦର୍ଶନେନ ସେତୁବାହ୍ୟବସ୍ତୁତାଂ ପ୍ରସଞ୍ଜୟତା ମୃଦାରୁମୟତାପି ପ୍ରାସଂକ୍ଷ୍ୟତ, ନ ଚୈତନ୍ନ୍ୟାୟମ୍, ଅଜତ୍ୱାଦଶ୍ରୁତିବିରୋଧାତ୍ । ସେତୁ ସାମାନ୍ୟାତ୍ତୁ ସେତୁଶବ୍ଦ ଆତ୍ମନି ପ୍ରଯୁକ୍ତ ଇତି ଶ୍ଲିଷ୍ୟତେ । ଜଗତସ୍ତନ୍ମର୍ଯ୍ୟାଦାନାଂ ଚ ବିଧାରକତ୍ୱଂ ସେତୁସାମାନ୍ୟମାତ୍ମନଃ । ଅତଃ ସେତୁରିବ ସେତୁରିତି ପ୍ରକୃତ ଆତ୍ମା ସ୍ତୂୟତେ । ସେତୁଂ ତୀର୍ତ୍ୱେତ୍ୟପି ତରତେରତିକ୍ରମାସମ୍ଭବାତ୍ ପ୍ରାପ୍ୟୋତ୍ୟର୍ଥ ଏବ ବର୍ତ୍ତତେ । ଯଥା ବ୍ୟାକରଣଂ ତୀର୍ଣ୍ଣ ଇତି ପ୍ରାପ୍ତ ଇତ୍ୟୁଚ୍ୟତେ ନାତିକାନ୍ତସ୍ତଦ୍ୱତ୍ ।

(୨) **ଭାଷାଂତର-** ସିଦ୍ଧାନ୍ତ- (କ) ତୁ ଶବ୍ଦଦ୍ୱାରା ପ୍ରଦର୍ଶିତପ୍ରାପ୍ତି ନିରୋଧ କରାଯାଇଅଛି । ବ୍ରହ୍ମ ବ୍ୟତୀତ ଅନ୍ୟ କିଛିନାହିଁ, କାରଣ-ସେହି ବିଷୟରେ ପ୍ରମାଣ ଦେଖାଯାଏନାହିଁ । ଅନ୍ୟର ସଦ୍ଭାବରେ ଆମ୍ଭେ କୌଣସି ପ୍ରମାଣ ଉପଲବ୍ଧି କରୁନାହୁଁ ଉତ୍ପତ୍ତିମତ୍ ସଂପୂର୍ଣ୍ଣ;ବସ୍ତୁସମୁଦାୟର ଜନ୍ମ ପ୍ରଭୃତି ବ୍ରହ୍ମରୁ ହୁଏ ବୋଲି ସ୍ଥିର କରାଯାଇଅଛି । କାରଣଠାରୁ କାର୍ଯ୍ୟ ଅନନ୍ୟ ହୁଏ । 'ସଦେବ ସୋମ୍ୟ (ହେ ସୋମ୍ୟ ଆରମ୍ଭରେ ଏହା ଏକମାତ୍ର ଅଦ୍ୱିତୀୟ ସତ୍ ଥିଲା । ଏହି ଅବଧାରଣାରୁ ବ୍ରହ୍ମ ବ୍ୟତୀତ କୌଣସିବସ୍ତୁ ଅଜ (ଜନ୍ମବିହିନ) ନୁହେଁ । ଗୋଟିଏ ବିଜ୍ଞାନରୁ ସମସ୍ତ ବିଜ୍ଞାନର ପ୍ରତିଜ୍ଞା ହେବାରୁ ବ୍ରହ୍ମ ଭିନ୍ନ ଅତିରିକ୍ତ ବସ୍ତୁ ଅସ୍ତିତ୍ୱ ନ ଥାଏ ।

(ଖ) ସେତୁ ପ୍ରକୃତି ବ୍ୟପଦେଶ ବ୍ରହ୍ମର ଅତିରିକ୍ତ ତତ୍ତ୍ୱ ପଦାର୍ଥକୁ ସୂଚିତ କରେ ବୋଲି ଯାହା କୁହାଯାଇଅଛି, ତାହା କିନ୍ତୁ ନୁହେଁ । ତେଣୁ କୁହାଯାଇଅଛି ସେତୁବ୍ୟପ-ଦେଶ କିନ୍ତୁ ବ୍ରହ୍ମଦ୍ୱାରା ବାହ୍ୟବସ୍ତୁର ସଦ୍ଭାବର ପ୍ରତିପାଦନ କରିବାରେ ସମର୍ଥ ନୁହେଁ । କାରଣ-ଆତ୍ମା ସେତୁ ବୋଲି କୁହାଯାଇଅଛି । ପୁଣି ତାହାଠାରୁ ସେ ଅନ୍ୟ ବୋଲି



କୁହାଯାଇଛି । ସେଠାରରେ ଅନ୍ୟର ନ ହେଲେ ସେତୁତ୍ୱ ହୁଏ ନାହିଁ, ତେଣୁ କୌଣସିର ଗୋଟିଏ ଅନ୍ୟକଳ୍ପନା କରିବା ମଧ୍ୟ ଉଚିତ୍ ନୁହେଁ, କାରଣ – ଅପ୍ରସିଦ୍ଧର କଳ୍ପନା କେବଳ ଦୁରାଗ୍ରହମାତ୍ର ।

(ଗ) ସେତୁର ବ୍ୟପଦେଶରୁ ଲୌକିକ ସେତୁଦୃଷ୍ଟାନ୍ତ ଦ୍ୱାରା ଆତ୍ମା ସେତୁଦ୍ୱାରା ବାହ୍ୟବସ୍ତୁର ପ୍ରସଙ୍ଗ ଆଣି ମୃଣ୍ମୟତା ଓ କାଷ୍ଠମୟତାର ପ୍ରସଙ୍ଗ ଆସିବ । ପରନ୍ତୁ ଏହା ନ୍ୟାୟସଙ୍ଗତ ନୁହେଁ । କାରଣ – 'ଆତ୍ମାଅଜ ଅଟେ' ଇତ୍ୟାଦି ପ୍ରତିପାଦକ ଶ୍ରୁତିଦ୍ୱାରା ଏହା ବିରୋଧ ହୁଏ । ସେତୁ ସାମାନ୍ୟରୁ ଆତ୍ମାରେ ସେତୁଶବ୍ଦ ପ୍ରଯୁକ୍ତ ହେବା ନ୍ୟାୟସଙ୍ଗତ। ଜଗତ୍ ଓ ତାହାର ମର୍ଯ୍ୟାଦାର ବିଧାରକତ୍ୱ ସେତୁ ଆତ୍ମାରେ ଅଛି । ତେଣୁ 'ସେତୁ ପରି ସେତୁ' ଏହିପ୍ରକାର ପ୍ରକୃତ ଆତ୍ମାର ସ୍ତୁତି କରାଯାଇଛି । 'ସେତୁଂ ତୀର୍ତ୍ତ୍ୱା' (ସେତୁକୁ ପାର ହୋଇ) ଏଠାରେ 'ତ୍ୱ' ଧାତୁ ଅତିକ୍ରମଣରୂପ ଅର୍ଥରେ ସମ୍ଭବ ନ ହେଲେ ମଧ୍ୟ ପ୍ରାପ୍ତକରଣରୂପ ଅର୍ଥରେ ହୁଏ । ଯେପରି 'ବ୍ୟାକରଣ ପାରି ହେଲା' ଅର୍ଥାତ୍ ବ୍ୟାକରଣଶାସ୍ତ୍ରକୁ ଉତ୍ତୀର୍ଣ୍ଣ ହେଲା ବୋଲି କୁହାଯାଏ, କିନ୍ତୁ ଅତିକ୍ରାନ୍ତ ହେଲା ବୋଲି କୁହାଯାଏନାହିଁ, ସେପରି ଏଠାରେ ମଧ୍ୟ ବୁଝିବାକୁ ପଡ଼ିବ ।

## बुद्ध्यर्थः पादवत् ॥ ३३ ॥

## (୧) ବୁଦ୍ଧ୍ୟର୍ଥଃ ପାଦବତ୍ ॥ ୩-୨-୩୩ ॥

ପାଦବତ୍ = ଯେପରି ବ୍ରହ୍ମର ପ୍ରତୀକ ମନର ଉପାସଦାପାଇଁ ବାଣୀ ପ୍ରଭୃତିର ପାଦରୂପରେ କଳ୍ପନା କରାଯାଇଛି । ସେପରି 'ଚତୁଷ୍ପାଦ ବ୍ରହ୍ମ' ଇତ୍ୟାଦିଶ୍ରୁତିରେଉନ୍ମାନର ବୁଦ୍ଧ୍ୟର୍ଥଃ = ଉପାସନା ପାଇଁ କଳ୍ପନା କରାଯାଇଅଛି ।

ମୂଳ-ଯଦପ୍ୟୁକ୍ତମ୍-ଉନ୍ମାନବ୍ୟପଦେଶାଦସ୍ତି ପରମିତି । ତତ୍ରାଭିଧୀୟତେ- ଉନ୍ମାନବ୍ୟପଦେଶୋଽପି ନ ବ୍ରହ୍ମବ୍ୟତିରିକ୍ତ ବସ୍ତ୍ୱସ୍ତିତ୍ୱପ୍ରତିପତ୍ତ୍ୟର୍ଥଃ । କିମର୍ଥସ୍ତର୍ହି ? ବୁଦ୍ଧ୍ୟର୍ଥ ଉପାସନାର୍ଥ ଇତି ଯାବତ୍ । ଚତୁଷ୍ପାଦଶଫମ୍ ଷୋଡ଼ଶକଳମିତ୍ୟେର୍ବରୂପା ବୁଦ୍ଧିଃ କଥଂ ନୁ ନାମ ବ୍ରହ୍ମଣି ସ୍ଥିରାସ୍ୟାଦିତି - ବିକାରଦ୍ୱାରେଣ ବ୍ରାହ୍ମଣ ଉନ୍ମାନକଳ୍ପନୈବକ୍ରିୟତେ । ନହ୍ୟବିକାରେଽନନ୍ତେ ବ୍ରହ୍ମଣିସର୍ବୈଃ ପୁଂଭିଃ ଶକ୍ୟା ବୁଦ୍ଧିଃ ସ୍ଥାପୟିତୁମ୍, ମନ୍ଦମଧ୍ୟମୋତ୍ତମବୁଦ୍ଧିତ୍ୱାତ୍ ପୁଂସାମିତି ।

(ଖ) ପାଦବତ୍ - ଯଥା ମନ - ଆକାଶୟୋରଧ୍ୟାତ୍ମମଧିଦୈବତଂ ଚ ବ୍ରହ୍ମପ୍ରତୀକୟୋରମ୍ନାତୟୋଶ୍ଚତ୍ୱାରୋ ବାଗାଦୟୋ ମନଃ ସମ୍ବନ୍ଧିନଃ ଆଧ୍ୟାନାୟି ତଦ୍ ବତ୍ । ଅଥବା ପାଦାଦିତ ଯଥା - କାର୍ଷାପଣେ ପାଦବିଭାଗୋ ବ୍ୟବହାର ପ୍ରାଚୁର୍ଯ୍ୟାୟ କଳ୍ପନ୍ତେ, ନହି ସକଳନୈବ କାର୍ଷାପଣେନ ସର୍ବଦା ସର୍ବେ ଜନାଃ ବ୍ୟବହର୍ତ୍ତୁମୀଶତେ, କ୍ରୟବିକ୍ରୟେ ପରିମାଣାନିୟମାଭଦ୍‌ବହତ୍ୟର୍ଥଃ ।

(୨) ଭାଷାଂନ୍ତର - (କ) ଉନ୍ମାନବ୍ୟପଦେଶରୁ ବ୍ରହ୍ମଠାରୁ ଅନ୍ୟକିଛି ନାହିଁ ବୋଲି ଯାହା କୁହାଯାଇଅଛି, ସେହି ବିଷୟରେ ଆମ୍ଭେ କହୁଁ-ଉନ୍ମାନ ଉପଦେଶ ମଧ୍ୟ ବହ୍ମ ବ୍ୟତିରିକ୍ତ ବସ୍ତୁର ଅସ୍ତିତ୍ୱପ୍ରତିପତ୍ତି ପାଇଁ ନୁହେଁ, ତେବେ କାହାପାଇଁ ? ମୁଦ୍ଧ୍ୟର୍ଥଃ ଅର୍ଥାତ୍ ଉପାସନାପାଇଁ । ଚାରିପାଦଯୁକ୍ତ, ଆଠଖୁରାଯୁକ୍ତ ସ ଷୋହଳ ଅବୟବଯୁକ୍ତ- ଏହିପ୍ରକାର ବୁଦ୍ଧି ବ୍ରହ୍ମରେ କୌଣସି ପ୍ରକାରେ ସ୍ଥିର ହେବ । ତେଣୁ ବିକାରଦ୍ୱାରା ବ୍ରହ୍ମରେ ଉନ୍ମାନର କଳ୍ପନା କରାଯାଏ, କାରଣ -ବିକାରରହିତ ଅନନ୍ତ ବ୍ରହ୍ମରେ ସମସ୍ତ ପୁରୁଷ ବୁଦ୍ଧିର ସ୍ଥାପନ ପାଇଁ, କିନ୍ତୁ ତାର ମନ୍ଦ ମଧ୍ୟମ ଓ ଉତ୍ତମ ବୁଦ୍ଧି ହେତୁ ସମର୍ଥ ନୁହେଁ ।

(ଖ) ପାଦବତ୍ ଅର୍ଥାତ୍ ପାଦପରି । ଯେପରି ମନ ଓ ଆକାଶ ଆଧ୍ୟାତ୍ମ ଓ ଅଧିଦୈବତବ୍ରହ୍ମର ପ୍ରତୀକରୂପରେ ଶ୍ରୁତିରେ ପଠିତ ହୋଇଛି, ସେଠାରେ ମନସମ୍ବନ୍ଧୀ ବାକ୍ ପ୍ରଭୃତି ଚାରିପାଦ ଓ ଆକାଶ ସମ୍ବନ୍ଧୀ ଅଗ୍ନି ପ୍ରଭୃତି ଚାରିପାଦ ଧ୍ୟାନ ପାଇଁ କଳ୍ପିତ କରାଯାଏ, ସେହିପରି ପାଦବତ ଅର୍ଥାତ୍ ପାଦପରି । ଯେପରି କାର୍ଷାପଣରେ ପାଦ ବିଭାଗ ବ୍ୟବହାର ପ୍ରାଚୁର୍ଯ୍ୟପାଇଁ କଳ୍ପିତ କରାଯାଇଅଛି, କାରଣ-ସମସ୍ତକାର୍ଷାପଣରୁ ସବୁଲୋକ ସର୍ବଦା ବ୍ୟବହାର କରନ୍ତି ନାହିଁ, କାରଣ-କ୍ରୟ ଓ ବିକ୍ରୟରେ ପରିମାଣନିୟମ ନାହିଁ, ସେହିପରି ଅର୍ଥ ହୁଏ ।

## स्थानविशेषात्प्रकाशादिवत् ॥ ३४ ॥

## (୧) ସ୍ଥାନବିଶେଷାତ୍ ପ୍ରକାଶାଦିବତ୍ ॥ ୩-୨-୩୪ ॥

ପ୍ରକାଶାଦିବତ୍ = ପ୍ରକାଶ ପରି । ସ୍ଥାନବିଶେଷାତ୍ = ଉପାଧିଯୋଗରୁ ବ୍ରହ୍ମରେ ସମ୍ବନ୍ଧ ଓ ଭେଦବ୍ୟପଦେଶ ଉପଚରିତ ହୁଅନ୍ତି ।

(୨) ମୂଳ - (କ) ଇହ ସୂତ୍ରେ ଦ୍ୱୟେରପି ସମ୍ବନ୍ଧଦେଶବ୍ୟପଦେଶୟୋଃ ପରିହାରୋ ବିଧୀୟତେ । ଯଦପ୍ୟୁକ୍ତମ୍ - ସମ୍ବନ୍ଧବ୍ୟପଦେଶାଦ୍ ଭେଦବ୍ୟପଦେଶାଚ୍ଚ ପରମତଃ ସ୍ୟାଦିତି ତଦପ୍ୟସତ୍, ଯତ ଏକସ୍ୟାପି ସ୍ଥାନବିଶେଷାପେୟୟୈତୌ ବ୍ୟପଦେଶାବୁପପଦ୍ୟେତେ ।

(ଖ) ସମ୍ବନ୍ଧ ବ୍ୟପଦେଶେ ତାବଦୟରପି ବୁଦ୍ଧ୍ୟାଦ୍ୟୁପାଧିସ୍ଥାନ ବିଶେଷ ଯୋଗାଦୁଦ୍ ଭୂତସ୍ୟ ବିଶେଷବିଜ୍ଞାନ ସ୍ୟୋପାଧ୍ୟୁ ପଶତମ ଯ ଉପଶମଃ ପରିମାତ୍ମନା ସମ୍ବନ୍ଧ ଇତ୍ୟୁପାଧ- ପେକ୍ଷୟୈବୋପଚର୍ଯ୍ୟତେ, ନ ପରିମିତତ୍ୱାପେକ୍ଷୟା ।

(ଗ) ତଥା ଭେଦବ୍ୟପଦେଶୋଽପି ବ୍ରହ୍ମଣ ଉପାଧିଭେଦାପେକ୍ଷୟାପଚର୍ଯ୍ୟତେ, ନ ସ୍ୱରୂପଭେଦାପେକ୍ଷୟା । ପ୍ରକାଶାଦିବଦିତ୍ୟୁ ପମୋପାଦାନାତ୍ । ଯଥୈକସ୍ୟ ପ୍ରକାଶସ୍ୟ ସୌର୍ଯ୍ୟସ୍ୟ ଛନ୍ଦ୍ରମସସ୍ୟ ବୋପାଧିଯୋଗାଦୁପଜାତବିଶେଷସ୍ୟୋ ପାଧ୍ୟୁ ପଶମାତ ସମ୍ବନ୍ଧବ୍ୟପଦେଶୋ ଭବତ୍ୟୁପାଧିଭେଦାଚ୍ଚ ଭେଦବ୍ୟପଦେଶଃ । ଯଥା ସୂଚୀପାଶାକାଶାଦି- ଷ୍ୱୁପାଧ୍ୟୁ ପେକ୍ଷୟୈବୈତୌ ସମ୍ବନ୍ଧଭେଦବ୍ୟପଦେଶୌ ଭବତସ୍ତଦ୍ବତ୍ ।



(୨) ଭାଷାଂତର (କ) ଏହି ସୂତ୍ରରେ ସମ୍ବନ୍ଧବ୍ୟପଦେଶ ଓ ଭେଦବ୍ୟପଦେଶ- ଏହି ଦୁଇଟିର ପରିହାର କରାଯାଇଅଛି । ସମ୍ବନ୍ଧବ୍ୟପଦେଶ ଓ ଭେଦବ୍ୟପଦେଶରୁ ବ୍ରହ୍ମଭିନ୍ନ ଅନ୍ୟ କିଛି ନାହିଁ ବୋଲି ଯାହା କୁହାଯାଇଅଛି, ତାହା କିନ୍ତୁ ଠିକ୍ ନୁହେଁ କାରଣ - ସ୍ଥାନବିଶେଷର ଅପେକ୍ଷାରୁ ଗୋଟିକରେ ଏହି ବ୍ୟପଦେଶ ଉପପନ୍ନ ହୁଏ ।

(ଖ) ସମ୍ବନ୍ଧବ୍ୟପଦେଶରେ ଏହି ଅର୍ଥ ଅଭିପ୍ରାୟ ଯେ - ବୁଦ୍ଧି ପ୍ରଭୃତି ଉପାଧିରୂପ ସ୍ଥାନବିଶେଷର ଯୋଗରୁ ଆବିର୍ଭୁତ ବିଶେଷବିଜ୍ଞାନରେ ଉପାଧି ଉପଶମ (ଲୟ) ହେଲାପରେ ଯାଇ ଯାହା ଉପଶମ ହୁଏ, ଯାହା ପରମାତ୍ମାର ସହ ସମ୍ବନ୍ଧ ହୁଏ । ଏହିପରି ଉପାଧିକୁ ଅପେକ୍ଷା କରି ଉପଚାର କରାଯାଏ । କିନ୍ତୁ ପରିମିତତ୍ୱକୁ ଅପେକ୍ଷା କରି ନୁହେଁ ।

(ଗ) ଏହିପରି ବ୍ରହ୍ମରେ ଭେଦବ୍ୟପଦେଶ ମଧ ଉପାଧିକୁ ଅପେକ୍ଷା କରି ଉପଚରିତ ହୁଏ । ସ୍ୱରୂପଭେଦକୁ ଅପେକ୍ଷା କରି ନୁହେଁ । ପ୍ରକାଶାଦିବତ୍ ଅର୍ଥାତ୍ ପ୍ରକାଶାଦି ପରି ଏହି ଉପାସନାକୁ ଗ୍ରହଣ କରାଯାଏ । ଯେପରି ସୂର୍ଯ୍ୟ ଅଥବା ଚନ୍ଦ୍ରମାର ଗୋଟିକର ପ୍ରକାଶରେ ଉପାଧି ଯୋଗରୁ ଉତ୍ପନ୍ନ ହୋଇ ବିଶେଷ ଉପାଧିର ଉପଶମରୁ ସମ୍ବନ୍ଧବ୍ୟପଦେଶ ଓ ଉପାଧି ଭେଦରେ ଭେଦବ୍ୟପଦେଶ ହୁଏ, ଅଥବା ଯେପରି ଛୁଞ୍ଚିର ଛିଦ୍ର ପାଶ, ଆକାଶ ପ୍ରଭୃତିରେ ଉପାଧିକୁ ଅପେକ୍ଷାକରି ଯେଉଁ ସମ୍ବନ୍ଧବ୍ୟପଦେଶ ଓ ଭେଦବ୍ୟପଦେଶ ହୁଅନ୍ତି, ସେ ସବୁ ଏଠାରେ ମଧ ଜାଣିବା ଉଚିତ୍ ।

## उपपत्तेश्च ॥ ३५ ॥

## (୧ ) ଉପପତ୍ତେଶ୍ଚ ॥ ୩-୨-୩୫ ॥

ଉପପତ୍ତେଶ ଚ = ସମ୍ବନ୍ଧ ଓ ଭେଦବ୍ୟପଦେଶ ମୁଖ୍ୟ ନୁହେଁ; କାରଣ 'ସ୍ୱମପୀତୋ ଭବତି' ଶ୍ରୁତିଦ୍ୱାରା ଏହା ଉପପତ୍ତି ହୁଏ ।

(୨) ମୂଳ- (କ) ଉପପଦ୍ୟତେ ଚତ୍ରେଦୃଶ ଏବ ସମ୍ବନ୍ଧୋ ନାନ୍ୟଦୃଶ୍ୟଃ 'ସ୍ୱମପୀତୋ ଭବତି' (ଛା ୬-୮-୧) ଇତି ହି ସ୍ୱରୂପ ସରିନ୍ଧମେନାମାମନନ୍ତ ସ୍ୱରୂପସ୍ୟ ଚାନପାୟିତତ୍ୱାତ୍ । ନ ନରନଗରନ୍ୟାୟେନ ସମ୍ବନ୍ଧୋ ଘଟତେ । ଉପାଧିକୃତ- ସ୍ୱରୂପତିରୋଭାବାତ୍ତୁ- 'ସ୍ୱମପୀତୋ ଭବତି' (ଛା ୬-୮-୨) ଇତ୍ୟୁପପଦ୍ୟତେ ।

(ଖ) ତଥା ଭେଦୋଽପି ନାନ୍ୟାଦୃଶଃ ସମ୍ଭବତି, ବହୁତର ଶ୍ରୁତିପ୍ରସିଦ୍ଧୈକେଶ୍ୱରତ୍ୱ ବିରୋଧାତ୍ । ତଥା ଚ ଶ୍ରୁତିରେକସ୍ୟାପ୍ୟାକାଶସ୍ୟ ସ୍ଥାନକୃତଂ ଭେଦବ୍ୟପଦେଶସୁପପାଦ- ୟତି । ଯୋଽୟଂ ବହିର୍ଧା ପୁରୁଷାଦାକାଶଃ (ଛା ୩-୨୧-୯) ଇତି ।

(୨) ଭାଷାଂତର - (କ) ଏଠାର ଏହି ପ୍ରକାରର ସମ୍ବନ୍ଧ ଉପପନ୍ନ ହୁଏ, ଅନ୍ୟ ପ୍ରକାରର ନୁହେଁ, କାରଣ - 'ସ୍ୱମପୀତୋ (ନିଜକୁ ପ୍ରାପ୍ତି ହୁଏ) ଏହିପରି ଶ୍ରୁତି ଏହି

ସ୍ୱରୂପସମ୍ବନ୍ଧକୁ କହେ, କାରଣ - ସ୍ୱରୂପ ଅବନାଶୀ ଅଟେ; ତେଣୁ ନରନଗରନ୍ୟାୟ ଅନୁସାରେ ସମ୍ବନ୍ଧ ସ୍ଥାପନ ହୁଏ ନାହିଁ । ଉପାଧିକୃତ ସ୍ୱରୂପର ତିରୋଭାବର 'ସ୍ୱମପୀତୋଭବତି' ଏହା ଉପପନ୍ନ ହୁଏ ।

(ଖ) ଏହିପରି ଭେଦମଧ ଅନ୍ୟପ୍ରକାରେ ହୁଏ ନାହିଁ, କାରଣ- ଅଧିକତର ଶ୍ରୁତିଦ୍ୱାରା ପ୍ରସିଦ୍ଧ ଅଦ୍ୱିତୀୟ ଈଶ୍ୱରତ୍ୱର ବିରୋଧ ହୁଏ । 'ଯୋଽୟଂ ବହିର୍ଧା' (ଏହି ପୁରୁଷ ଦେହ ଭିତରେ ଯେଉଁ ଆକାଶ ଅଛି), 'ଯୋଽୟଂ' (ହୃଦୟ ଭିତରେ ଯେଉଁ ଆକାଶ ରହିଛି) ଏହି ପ୍ରକାର ଶ୍ରୁତି ଗୋଟିଏ ଆକାଶରେ ସ୍ଥାନକୃତ ଭେଦବ୍ୟପଦେଶର ଉପପାଦନ କରେ ।

## तथान्यप्रतिषेधात् ॥ ३६ ॥

## (୧) ତଥାନ୍ୟପ୍ରତିଷେଧାତ୍ ॥ ୩-୨-୩୬ ॥

ଯେପରି ସେତୁତ୍ୱ ପ୍ରଭୃତି ବ୍ୟପଦେଶରୁ ଅନ୍ୟ ବସ୍ତୁର ଅପ୍ରତିପତ୍ତି ହୁଏ, ତଥା = ସେପରି ଆତ୍ମୈବାଧସ୍ତାତ୍' ଇତ୍ୟାଦିଶ୍ରୁତି ବାକ୍ୟରୁ, ଅନ୍ୟପ୍ରତିଷେଧାତ୍ = ଅନ୍ୟବସ୍ତୁର ପ୍ରତିଷେଧ ହେଲେ ଅଦ୍ୱିତୀୟ ବ୍ରହ୍ମ ଅବଧାରିତ ହୁଏ ।

(୨) ମୂଳ- (କ) ଏବଂ ସେତ୍ୱାଦିବ୍ୟପଦେଶାନ୍ ପରପକ୍ଷହେତୂନୁନ୍ମଥ୍ୟ ସଂପ୍ରତି ସ୍ୱପକ୍ଷଂ ହେତ୍ୱନ୍ତରେଣୋପ ସଂହରତି । ତଥାନ୍ୟ ପ୍ରତିଷେଧାଦପି ନ ବ୍ରହ୍ମଣଃ ପରଂ ବାସ୍ତୁନ୍ତରମସ୍ତୀତି ଗମ୍ୟତେ ତଥାହି - 'ସ ଏବାଧସ୍ତାତ୍' (ଛା ୭-୨୫-୧) 'ଅହମେବାଧସ୍ତାତ୍' (ଛା ୭-୨୫-୩), ଆତ୍ମୈବାଧସ୍ତାତ୍ (ଛା ୭-୨୫-୨), ସର୍ବ ତଂ ପରାଦ୍ୟଦ୍ୟୋଽନ୍ୟତ୍ରାତ୍ମନଃ ସର୍ବଂ ବେଦ' (ବୃହ ୨-୪-୬), 'ବ୍ରହ୍ମୈବେଦଂ ସର୍ବମ୍, 'ଆତ୍ମୈବେଦଂ ସର୍ବମ' ( ଛା ୭-୨୫-୨), 'ନେହ ନାନାସ୍ତି କିଞ୍ଚନ' (ବୃହ-୪-୧୯) ଯସ୍ମାତ୍ ବରଂ ନାପରମସ୍ତି କିଞ୍ଚିତ' (ଶ୍ୱେ ୩-୯), 'ତଦେତଦ୍‌ବ୍ରହ୍ମାପୂର୍ବ-ମନପରମନନ୍ତରମବାହ୍ୟମ' (ବୃହ ୨-୫-୧୯) ଇତ୍ୟେବମାଦିବାକ୍ୟାନି ସ୍ୱପ୍ରକରଣ ସ୍ଥାନ୍ୟନ୍ୟାର୍ଥେତ୍ୱନ ପରିଣେତମୃଶକ୍ୟାନି ବ୍ରହ୍ମବ୍ୟତୀରିକ୍ତଂ ବସ୍ତୁନ୍ତରଂ ବାରୟନ୍ତି ସର୍ବାନ୍ତରଶ୍ରୁତେଶ୍ଚ ନ ପରମାତ୍ମନାଽନ୍ୟୋଽନ୍ତରାତ୍ମାଽସ୍ତୀତ୍ୟବଧାର୍ଯ୍ୟତେ ।

**(୨) ଭାଷାଂତର** - (କ) ଉକ୍ତ ନିୟମାନୁସାରେ ପରପକ୍ଷର ହେତୁଭୂତ ସେତୁ ପ୍ରଭୃତି ବ୍ୟପଦେଶର ଉନ୍ମମଥନ କରି ବର୍ତ୍ତମାନ ସ୍ୱପକ୍ଷର ଅନ୍ୟ ହେତୁ ଦ୍ୱାରା ଉପ-ସଂହାର କରନ୍ତି । ସେହିପରି ଅନ୍ୟର ପ୍ରତିଷେଧରେ ମଧ୍ୟ ବ୍ରହ୍ମଭିନ୍ନ ଅନ୍ୟ ବସ୍ତୁ କିଛି ନାହିଁ ବୋଲି କୁହାଯାଇଛି । ଯେପରିକି 'ସ ଏବ' ସେ (ସେ ମଧ୍ୟ ତଳେ ଅଛି), 'ଆହମେବ' 'ମୁଁ ମଧ୍ୟ ତଳେ ଅଛି), 'ଆତ୍ମୈବ (ଆତ୍ମା ମଧ୍ୟ ତଳେ ଅଛି), 'ସର୍ବଂ ତଂ' (ସମସ୍ତେ ଏହାକୁ ପରାସ୍ତ କରି ଦିଅନ୍ତି ଯାହା ସମସ୍ତଙ୍କୁ ଆତ୍ମାଠାରୁ ଭିନ୍ନ ରୂପରେ ଦେଖେ), 'ବ୍ରହ୍ମଦେବଂ' (ଏହା ସବୁ ବ୍ରହ୍ମ ଅଟେ) 'ଆତ୍ମୈବେଦଂ'



(ଏହି ସବୁ ଆତ୍ମା) 'ନେହ ନାନାସ୍ତି' (ଏହି ବ୍ରହ୍ମରେ ନାନାପ୍ରକାର କିଛି ନାହିଁ), 'ଯସ୍ମାତ୍ ପରଂ' (ଯେଉଁ ପୁରୁଷଠାରୁ ଅନ୍ୟ କିଛି ଉତ୍କୃଷ୍ଟ ନାହିଁ) 'ତଦେତଦ୍ ବ୍ରହ୍ମ' (ସେ ଏହି ବ୍ରହ୍ମ କାରଣ ରହିତ, କାର୍ଯ୍ୟ ରହିତ, ଅନ୍ତର ରହିତ ଓ ଅବାହ୍ୟ ଅଟେ) ଇତ୍ୟାଦି ସ୍ୱପ୍ରକରଣସ୍ଥିତ ବାକ୍ୟ ଅନ୍ୟର ଅର୍ଥ ରୂପରେ ନିଆଯାଇ ପାରିବ ନାହିଁ । ସେମାନେ ବ୍ରହ୍ମଠାରୁ ଭିନ୍ନ ବସ୍ତୁର ନିବାରଣ କରନ୍ତି ଏବଂ ସର୍ବାନ୍ତରଶ୍ରୁତିଦ୍ୱାରା ପରମାତ୍ମାଭିନ୍ନ ଅନ୍ତରାତ୍ମା ନାହିଁ ବୋଲି ଅବଧାରଣା ହୋଇଛି ।

## अनेन सर्वगतत्वमायामशब्ददिभ्य: ॥ ३७ ॥

## (୧ ) ଅନେନ ସର୍ବଗତତ୍ୱମାୟାଶବ୍ଦାଦିଭ୍ୟଃ ॥ ୩-୨-୩୭ ॥

ଅନେନ - ସେତୁ ପ୍ରଭୃତି ବ୍ୟପଦେଶରେ ମୁଖ୍ୟତ୍ୱ ଓ ଅନ୍ୟବସ୍ତୁର ନିଷେଧରୁ ବ୍ରହ୍ମରେ, ସର୍ବଗତତ୍ୱଂ - ସର୍ବଗତତ୍ୱ ସିଦ୍ଧ ହୁଏ ଏବଂ ଆୟାମଶବ୍ଦାଦିଭ୍ୟଃ – ଆକାଶବତ୍ ସର୍ବଗତସ୍ତୁ ନିତ୍ୟଃ' ଏହିପ୍ରକାର ବ୍ୟାପକ ବାଚକଶବ୍ଦାଦିଠାରୁ ମଧ୍ୟ ବ୍ରହ୍ମରେ ସର୍ବଗତତ୍ୱ ସିଦ୍ଧ ହୁଏ ।

(୨) ମୂଳ - (କ) ଅନେନ ସେତ୍ୱାଦିବ୍ୟପଦେଶନିରାକରଣେନାନ୍ୟ ପ୍ରତିଷେଧ ସମାଶ୍ରୟଣେନ ଚ ସର୍ବଗତତ୍ୱମପ୍ୟାତ୍ମନଃ ସିଦ୍ଧଂ ଭବତି । ଅନ୍ୟଥା ହି ତନ୍ନ ସିଧ୍ୟେତ୍ । ସେତ୍ୱାଦିବ୍ୟପଦେଶେଷୁ ହି ମୁଖ୍ୟେଷ୍ୱଙ୍ଗୀକ୍ରୀୟମାଣେଷୁ ପରିଚ୍ଛେଦଃ ଆତ୍ମନଃ ପ୍ରସଜ୍ୟେତ, ସେତ୍ୱାଦିନାମେବମାତ୍ମକତ୍ୱାତ୍ । ତଥାଽନ୍ୟପ୍ରତିଷେଧେଽପ୍ୟସତି, ବସ୍ତୁ ବସ୍ତ୍ୱନ୍ତରାଦ୍ ବ୍ୟାବର୍ତ୍ତତ ଇତି ପରିଚ୍ଛେଦ ଏ ବାତ୍ମନଃ ପ୍ରସଜ୍ୟେତ ।

(ଖ) ସର୍ବଗତତ୍ୱଂ ଽସ୍ୟାୟାମଶବ୍ଦାଦିଭ୍ୟୋ ବିଜ୍ଞାୟତେ । ଆୟାମ୍‌ଶବ୍ଦୋ ବ୍ୟାପ୍ତିବଚନଃ ଶବ୍ଦଃ । 'ଯାବାନ୍ ବା ଅୟମାକାଶସ୍ତାବନେଷୋଽନ୍ତହୃଦ ଆକାଶଃ' (ଛା ୬-୮-୩), 'ଆକାଶବତ୍ ସର୍ବଗତଶ୍ଚ ନିତ୍ୟଃ' 'ଜ୍ୟାୟାନ୍ ଦିବଃ' (ଛା ୩-୧୪-୩) 'ଜ୍ୟାୟାନାକାଶାତ୍', 'ନିତ୍ୟଃ ସର୍ବରତଃ ସ୍ଥାଣୁରଚଲୋଽୟଂ ସନାତନଃ' (ଭ.ଗୀ; ୨-୨୪) ଇତ୍ୟେବମାଦୟୋ ହି ଶ୍ରୁତିସ୍ମୃତିନ୍ୟାୟାଃ ସର୍ବଗତତ୍ୱମାତ୍ମନୋଽବବୋଧୟନ୍ତି ।

(୨) ଭାଷାଂତର - (କ) ତେଣୁ ସେତୁ ପ୍ରଭୃତି ବ୍ୟପଦେଶର ନିରାକରଣ ଓ ଅନ୍ୟବସ୍ତୁର ପ୍ରତିଷେଧର ଆଶ୍ରୟଣଦ୍ୱାରା ଆତ୍ମାରେ ସର୍ବଗତତ୍ୱ ମଧ୍ୟ ସିଦ୍ଧ ହୁଏ । ନଚେତ୍ ସେ ସିଦ୍ଧ ହୁଏ ନାହିଁ । ସେତୁ ଇତ୍ୟାଦି ବ୍ୟପଦେଶ ମୁଖ୍ୟାର୍ଥ (ମୃନ୍ମୟତ୍ୱାଦି)ରେ ଅଙ୍ଗୀକାର କରାଯାଇଅଛି । କିନ୍ତୁ ଆତ୍ମାରେ ପରିଚ୍ଛିନ୍ନତ୍ୱ ପ୍ରସକ୍ତ ହୁଏ, କାରଣ- ସେତୁ ପ୍ରଭୃତି ଏକାତ୍ମକ (ପରିଚ୍ଛନ୍ନାତ୍ମକ) ଅଟେ । ତେଣୁ ଅନ୍ୟବସ୍ତୁର ପ୍ରତିଷେଧ ନହେଲେ ଗୋଟିଏ ପଦାର୍ଥ ଅନ୍ୟ ପଦାର୍ଥକୁ ବ୍ୟାବୃତ ହୁଏ । ଏହାଦ୍ୱାରା ଆତ୍ମାରେ ପରିଚ୍ଛିନ୍ନ ପ୍ରସକ୍ତ ହେବ ।

(ଖ) ଆତ୍ମାରେ ସର୍ବଗତତ୍ୱ ଆୟାମଶବ୍ଦାଦି ଦ୍ୱାରା ବିଜ୍ଞାତ ହୁଏ । ଆୟାମଶବ୍ଦ ବ୍ୟାପ୍ତିବାଚନକ ଶବ୍ଦ ଅଟେ । 'ଯାବାନ ବା' (ଯେତିକି ଏହି ଭୌତିକ ଆକାଶ ଅଟେ' ସେତିକି ଏହା ହୃଦୟାନ୍ତର୍ଗତ ଆକାଶ ଅଟେ, 'ଆକାଶବତ୍' (ଆତ୍ମା ଆକାଶପରି ସର୍ବଗତ ଓ ନିତ୍ୟ ଅଟେ), 'ଜାୟାନ୍' (ଆତ୍ମାଦ୍ୟୁଲୋକଠାରୁ ବୃହତ୍ତର ଅଟେ), 'ଜ୍ୟାୟାନାକାଶାତ୍' (ଆତ୍ମା ଆକାଶଠାରୁ ବିଶାଳ) 'ନିତ୍ୟଃ ସର୍ବଗତଃ' (ଏହି ଆତ୍ମା ନିତ୍ୟ ସର୍ବଗତ, ସ୍ଥାଣୁ, ଅଚଳ ଓ ସନାତନ ଅଟେ) ଇତ୍ୟାଦି ଶ୍ରୁତି ସ୍ମୃତି ନ୍ୟାୟ ଆତ୍ମାରେ ସର୍ବଗତତ୍ୱକୁ ଅବରୋଧ କରନ୍ତି ।

## ७ फलाधिकरणम् ॥ सू० ३७-४१ ॥

## ଫଳାଧିକରଣ-

## फलमत उपपत्ते ॥ ३८ ॥

## (୧) ଫଳମତ ଉପପତ୍ତେଃ ॥ ୩-୨-୩୮ ॥

ଫଳମ୍-କର୍ମର ଫଳ, ଅତଃ-ଏହି ଈଶ୍ୱରଠାରୁ ସମସ୍ତଙ୍କୁ ପ୍ରାପ୍ତ ହୁଏ । ଉପପତ୍ତେ-କାରଣ – ଏହିପ୍ରକାର ଉପପନ୍ନ ହୋଇଛି ।

(୨) ମୂଳ-(କ) ତସ୍ୟୈବ ବ୍ରହ୍ମଣୋ ବ୍ୟାବହାରିକ୍ୟାମୀଶିତ୍ରିତବ୍ୟବିଭାଗାବସ୍ଥାୟା-ମୟମନ୍ୟଃ ସ୍ୱଭାବୋ ବର୍ଣ୍ଣ୍ୟତେ । ଯଦେତଦିଷ୍ଟାନିବ୍ୟାମିଶ୍ରଲକ୍ଷଣଂ କର୍ମଫଳ ସଂସାର ଗୋଚରଂ ତ୍ରିବିଧଂ ପ୍ରସିଦ୍ଧଂ ଜନ୍ତୁନାମ୍, କିମେତତ୍ କର୍ମଣୋ ଭବତ୍ୟାହୋସ୍ୱିଦୀଶ୍ୱରାଦିତି ଭବତି ବିଚାରଣା । ତତ୍ର ତାବତ୍ ପ୍ରତିପାଦ୍ୟତେ-ଫଳମତ ଈଶ୍ୱରାଦ୍‌ଭବିତୁମର୍ହତି ।

(ଖ) କୁତଃ ? ଉପପତ୍ତେଃ । ସ ହି ସର୍ବାଧ୍ୟକ୍ଷଃ ସୃଷ୍ଟି ସ୍ଥିତିସଂହାରାନ୍ ବିଚିତ୍ରାନ ବିଦଧଦ୍ଦେଶକାଳବିଶେଷଭିଜ୍ଞତ୍ୱାତ୍ କର୍ମିଣାଂ କର୍ମନାରୂପଂ ଫଳଂ ସମ୍ପାଦୟତୀତ୍ୟୁପ-ପଦ୍ୟତେ । କର୍ମଣସ୍ତୁନୁକ୍ଷଣବିନାଶିନଃ କାଳାନ୍ତରଭାବିଫଳଂ ଭବତୀତ୍ୟନୁପପନ୍ନମ୍, ଅଭାବାଦ୍‌ଭବାନୁପପତ୍ତେଃ ।

(ଗ) ସ୍ୟାଦେତତ୍ – କର୍ମ ବିନଶ୍ୟତ୍ ସ୍ୱକାଳମେବ ସ୍ୱାନୁରୂପଂ ଫଳଂ ଜନୟିତ୍ୱା ବିନଶ୍ୟତି, ତତ୍‌ଫଳଂ କାଳାନ୍ତରିତଂ କର୍ତ୍ତ୍ରା ଭୋକ୍ଷ୍ୟତ ଇତି । ତଦପି ନ ପରିଶୁଦ୍ଧ୍ୟତି, ପ୍ରାଗଭୋକ୍ତୃ ସମ୍ବନ୍ଧାତ ଫଳତ୍ୱାନୁପପତ୍ତେଃ । ଯତକାଂ ହି ଯତ୍‌ସୁଖଂ ଦୁଃଖଂବାଽତ୍ମନା ଭୁଜ୍ୟତେ ଯସୈବ ଲୋକେ ଫଳତ୍ୱଂ ପ୍ରସିଦ୍ଧମ୍ । ନହ୍ୟସମ୍ବନ୍ଧସ୍ୟାତ୍ମନା ସୁଖସ୍ୟ ଦୁଃଖସ୍ୟ ବା ଫଳତ୍ୱଂ ପ୍ରତିୟନ୍ତି ଲୌକିକାଃ ।



(ଘ) ଅଥୋଚ୍ୟତେ- ମା ଭୂତ କର୍ମାନନ୍ତରଂ ଫଲୋତ୍ପାଦଃ । କର୍ମକାର୍ଯ୍ୟାଦପୂର୍ବାତ୍ ଫଳମୁତ୍ପତ୍ସ୍ୟତ ଇତି, ତଦପି ନୋପପଦ୍ୟତେ, ଅପୂର୍ବସ୍ୟାଚେତନସ୍ୟ କାଷ୍ଠଲୋଷ୍ଟସମସ୍ତସ୍ୟ ଚେତନାପ୍ରବର୍ତ୍ତିତସ୍ୟ ପ୍ରବୃତ୍ତ୍ୟନୁପପତ୍ତେଃ । ତଦସ୍ତିତ୍ୱେ ଚ ପ୍ରମାଣାଭାବାତ ଅର୍ଥାପତ୍ତିଃ ପ୍ରମାଣମିଚେତ୍ - ନ, ଈଶ୍ୱରସିଦ୍ଧେରର୍ଥାପତ୍ତିକ୍ଷୟାତ ।

**(୨) ଭାଷାଂତର** - (କ) ସେହି ବ୍ରହ୍ମର ବ୍ୟବହାରିକ ଈଶିତ୍ରଈଶତବ୍ୟୁତିବ୍ୟରୂପ ବିଭାଗ ଅବସ୍ଥାରେ ଏହି ଅନ୍ୟସ୍ୱଭାବ ଫଳ ହେତୁତ୍ୱ ବର୍ଣ୍ଣନା କରାଯାଇଅଛି । ଜୀବର ଇଷ୍ଟ, ଅନିଷ୍ଟ ଓ ମିଶ୍ରିତ ରୂପ ସଂସାର ବିଷୟକ ତ୍ରିବିଧ ଯାହା କର୍ମଫଳ ରୂପରେ ପ୍ରସିଦ୍ଧ ଅଛି, ତାହା କଣ କର୍ମରୁ ହୁଏ କି ଈଶ୍ୱରଠାରୁ ଜାତ ହୁଏ । ଏହା ବିଚର କରାଯାଇଛି । ଉକ୍ତ ବିଷୟରେ ସିଦ୍ଧାନ୍ତ ପ୍ରତିପାଦନ କରନ୍ତି ଯେ ଫଳ ଅତଃ (ଈଶ୍ୱରଙ୍କଠାରୁ) ଜାତ ହୁଏ ।

(ଖ) କିପରି ? କାରଣ - ଏହାର ଉପପତ୍ତି ହେତୁ । ସେହି ଈଶ୍ୱର କର୍ମାଧ୍ୟକ୍ଷ ବିଚିତ୍ର ସୃଷ୍ଟି, ସ୍ଥିତି ଓ ସଂହାରର କର୍ତ୍ତା ଅଟନ୍ତି କାରଣ - ଦେଶ ବିଶେଷ ଓ କାଳବିଶେଷର ଅଭିଜ୍ଞତା ଅଟନ୍ତି । ତେଣୁ କର୍ମକର୍ତ୍ତା ଜୀବମାନଙ୍କର କର୍ମାନୁସାରରେ ଫଳ ସମ୍ପାଦନ କରେ ବୋଲି ଉପପନ୍ନ ହୁଏ । ପ୍ରତିକ୍ଷଣରେ ବିନାଶଶୀଳ କର୍ମରୁ କାଳାନ୍ତରଭାବୀ ଫଳ ହୁଏ । ଏହାହିଁ ଅନୁପପନ୍ନ, କାରଣ-ଅଭାବରୁ ଭାବର ଉତ୍ପତ୍ତି ହୁଏ ନାହିଁ ।

(ଗ) ହଁ, ଏହା ମଧ୍ୟ ହୋଇପାରେ, ପରନ୍ତୁ ବିନଷ୍ଟ ହୋଇ କର୍ମ ନିଜେ ସ୍ଥିତିକାଳରେ ନିଜର ଅନୁରୂପ କର୍ମଫଳ ଉତ୍ପନ୍ନ କରି ବିନଷ୍ଟ ହୋଇଯାଏ ଓ କର୍ତ୍ତା କାଳାନ୍ତରରେ ସେହି କର୍ମଫଳକୁ ଭୋଗ କରେ । ସେ ମଧ୍ୟ ପରିଶୁଦ୍ଧି (ଦୋଷରହିତ) ନୁହେଁ । କାରଣ - ଭୋକ୍ତାର ସମ୍ବନ୍ଧର ପ୍ରଥମରେ ଫଳତ୍ୱ ଅନୁପପନ୍ନ ହୁଏ । ଯେହେତୁ ଯେଉଁକାଳରେ ଯେଉଁ ସୁଖ ବା ଦୁଃଖ ଆତ୍ମାରେ ଉପଭୁକ୍ତ ହୁଏ ସେ ସଂସାରରେ ଫଳରୂପରେ ପ୍ରସିଦ୍ଧ ହୁଏ । ଆତ୍ମାରେ ଅସମ୍ବନ୍ଧ ହୋଇ ସେ ଲୋକ ସୁଖ ଅଥବା ଦୁଃଖକୁ ଫଳରୂପରେ ଜାଣେ ନାହିଁ ।

(ଘ) ଯଦି କର୍ମ ପରେ ଫଳର ଉତ୍ପତ୍ତି ନ ହେଉ ବୋଲି କହ, ତେବେ କର୍ମଜନ୍ୟ ଅପୂର୍ବରୁ ଫଳ ଉତ୍ପନ୍ନ ହେବ କି ? ତେବେ ମଧ୍ୟ ତାହା ଠିକ ନୁହେଁ । କାରଣ - ଚେତନାଠାରୁ ଅପ୍ରବର୍ତ୍ତିତ କାଷ୍ଠ ଓ ପଥର ପରି ଅଚେତନ ଅପୂର୍ବର ପ୍ରବୃତ୍ତି ହୁଏ ନାହିଁ ଓ ତାହାର ଅସ୍ତିତ୍ୱ ବିଷୟରେ କୌଣସି ପ୍ରମାଣ ନାହିଁ । ଯଦି କହ ଯେ- ଅର୍ଥାପତ୍ତି ପ୍ରମାଣ ହୁଏ, ତାହା ମଧ୍ୟ ଠିକ୍ ନୁହେଁ, କାରଣ-ଈଶ୍ୱରର ସିଦ୍ଧିରୁ ଅର୍ଥାପତ୍ତିର କ୍ଷୟ ହେବ ।

## श्रुतत्वाच्च ॥ ३९ ॥

## (୧) ଶ୍ରୁତତ୍ୱାଚ୍ଚ ॥ ୩-୨-୨୯॥

ଶ୍ରୁତତ୍ୱାତ-'ସ ବା ଏଷ ମହାନଜ' ଇତ୍ୟାଦି ଶ୍ରୁତିରୁ ଈଶ୍ୱରଙ୍କଠାରେ ଫଳଦାତୃତ, ଶୁଣାଗଲେ ଈଶ୍ୱର ମଧ୍ୟ ଫଳଦାତା ହୁଅନ୍ତି ।

(୨) ମୂଳ-(କ) ନ କେବଲମୁପପତ୍ତେରେଶ୍ୱରଂ ଫଳହେତୁଂ କଳ୍ପୟାମଃ କିଂ ତର୍ହି ? ଶ୍ରୁତତ୍ୱାଦପୀଶ୍ୱରମେବ ଫଳହେତୁଂ ମନ୍ୟାମହେ । ତଥା ଚ ଶ୍ରୁତିର୍ଭବତି-'ସ ବା ଏଷ ମହାନଜ ଆତ୍ମାନ୍ନାଦୋ ବସୁଦାନଃ' (ବୃହ ୪-୪-୨୪) ଇତ୍ୟେବଂ ଜାତୀୟକା ।

(୨) ଭାଷାଂତର - (କ) ଆମ୍ଭେ କେବଳ ଉପପତ୍ତି (ଯୁକ୍ତି) ଦ୍ୱାରା ଈଶ୍ୱରଙ୍କୁ ଫଳହେତୁ ବୋଲି କହୁନାହୁଁ । କିନ୍ତୁ ଶ୍ରୁତି ପ୍ରତିପାଦିତ ହେଲେ ମଧ୍ୟ ଈଶ୍ୱରଙ୍କୁ ଫଳହେତୁ ବୋଲି ସ୍ୱୀକାର କରୁଁ । କାରଣ- 'ସ ବା ଏଷ' (ସେ ଏହି ମହାନ ଅଜ ଆତ୍ମା ଅନ୍ନଭକ୍ଷଣ ଘରେ ଓ କର୍ମଫଳ ଦିଏ) ଏହି ପ୍ରକାର ଶ୍ରୁତି ଅଛି ।

## धर्मं जैमिनिरत एव ॥ ४० ॥

## (୧) ଧର୍ମଂ ଜୈମିନିରତ ଏବ ॥୩-୨-୪୦॥

ଯେଉଁ ଶ୍ରୁତିର ଉପପତ୍ତିରୁ ସିଦ୍ଧାନ୍ତୀ ଈଶ୍ୱରଙ୍କୁ ଫଳଦାତା ରୂପେ ସ୍ୱୀକାର କରନ୍ତି, ଅତଏବ-ସେହି ଶ୍ରୁତି ଓ ଉପପତ୍ତି ଦ୍ୱାରା, ଜୈମିନିଃ-ଜୈମିନି ଆଚାର୍ଯ୍ୟ ଧର୍ମମ୍-ଯାଗାଦିକୁ ଫଳଦାତା ବୋଲି ସ୍ୱୀକାର କରନ୍ତି ।

(୨) ମୂଳ- (କ) ଜୈମିନିସ୍ତ୍ୱାଚାର୍ଯ୍ୟୋ ଧର୍ମଂ ଫଳସ୍ୟ ଦାତାରଂ ମନ୍ୟନ୍ତେ । ଅତଏବ ହେତୋଃ ଶ୍ରୁତେରୂପପତ୍ତେଶ୍ଚ । ଶ୍ରୂୟତେ ତାବଦୟମର୍ଥଃ 'ସ୍ୱର୍ଗକାମୋ ଯଜେତ' ଇତ୍ୟେବମାଦିଷୁ ବାକ୍ୟେଷୁ । ତତ୍ର ଚ ବିଧିଶ୍ରୁତେଃ ବିଷୟଭାବୋପଗମାଦ୍ ଯାଗଃ ସ୍ୱର୍ଗସ୍ୟୋତ୍ପାଦକ ଇତି ଗମ୍ୟତେ । ଅନ୍ୟଥା ହ୍ୟନନୁଷ୍ଠାତୃକୋ ଯାଗ ଆପଦ୍ୟେତ ତତ୍ରାସ୍ୟୋପଦେଶବୈୟର୍ଥ୍ୟଂ ସ୍ୟାତ୍ ।

(ଖ) ନନ୍ୱନୁକ୍ଷଣ ବିନାଶିନଃ କର୍ମଣଃ ଫଳ ନୋପପଦ୍ୟତ ଇତି, ପରିତ୍ୟକ୍ତୋଽୟଂ ପକ୍ଷଃନୈଷୋ ଦୋଷଃ ଶ୍ରୁତିପ୍ରାମାଣ୍ୟାତ୍ । ଶ୍ରୁତେଶ୍ଚତ୍ ପ୍ରମାଣଂ ଯଥାଽୟଂ କର୍ମଫଳସମ୍ବନ୍ଧଃ ଶ୍ରୁତି ଉପପଦ୍ୟତେ ତଥା କଳ୍ପିତବ୍ୟଃ । ନ ହ୍ୟନୁତ୍ପାଦ୍ୟ କିମପ୍ୟପୂର୍ବଂ କର୍ମ ବିନଶ୍ୟତ୍ କାଳାନ୍ତରିତଂ ଫଳଂ ଦାତୁଂ ଶକ୍ନୋତି ।

(ଗ) ଅତଃ କର୍ମଣୋ ବା ସୂକ୍ଷ୍ମା କାଚିଦୁତ୍ତରାବସ୍ଥା ଫଳସ୍ୟ ବା ପୂର୍ବାବସ୍ଥାଽପୂର୍ବଂ ନାମାସ୍ତୀତି ତର୍କ୍ୟତେ । ଉପପଦ୍ୟତେ ହ୍ୟୟମର୍ଥ ଉକ୍ତେନ ପ୍ରକାରେଣ । ଉଶ୍ୱରସ୍ତୁ ଫଳଂ



ଦଦାତୀତ୍ୟନୁପପନ୍ନମ୍, ଅବିଚିତ୍ରସ୍ୟ କାରଣସ୍ୟ ବିଚିତ୍ରକାର୍ଯ୍ୟାନୁ, ତେଃ ବୈଷମ୍ୟନୈର୍ଘୃଣ୍ୟ-ପ୍ରସଙ୍ଗାନନୁଷ୍ଠାନବୈୟର୍ଥ୍ୟା ତେଷ୍ଣା ତସ୍ମାଦ ଧର୍ମାଦେବ ଫଳମିତି ।

(୨) ଭାଷାଂତର- (କ) ଜୈମିନି ଆଚାର୍ଯ୍ୟ କିନ୍ତୁ 'ଅତଏବ' ଏହି ହେତୁରୁ ଶ୍ରୁତି ଓ ଉପପତ୍ତିରୁ ଧର୍ମକୁ ଫଳଦାତା ରୂପେ ଦେଖାଏ ଏବଂ ଏହି ଅର୍ଥ 'ସ୍ୱର୍ଗକାମୋ ଯଜେତ' (ସ୍ୱର୍ଗକୁ କାମନା କରୁଥିବା ପୁରୁଷ ଯାଗ କରିପାରେ) ଇତ୍ୟାଦି ବାକ୍ୟରେ ଶୁଣାଯାଏ । କାରଣ-ଏହି ବିଧି ଶ୍ରୁତି ବିଷୟଭାବର ଅବଗତି ଦ୍ୱାରା 'ଯାଗ ସ୍ୱର୍ଗର ଉତ୍ପାଦକ ଅଟେ' ବୋଲି ଜଣାଯାଏ । ନୋଚେତ୍ ଅନୁଷ୍ଠାତା ନ ହୋଇ ଯାଗ ହୁଅନ୍ତା । ତେଣୁ ଏପରି ହେଲେ ଯାଗର ଉପଦେଶ ବ୍ୟର୍ଥ ହେବ ।

(ଖ) ପରନ୍ତୁ ଅନୁଷ୍ଠାନ ବିନାଶୀ କର୍ମରୁ ଫଳ ଉତ୍ପନ୍ନ ହୁଏ ନାହିଁ, ତେଣୁ ଏହି ପକ୍ଷ ପରିତ୍ୟକ୍ତ ହୁଏ । ଏହା କିନ୍ତୁ ଦୋଷ ନୁହେଁ, କାରଣ-ଏହାର ଶ୍ରୁତି ପ୍ରମାଣ ଅଛି । ଯଦି ଶ୍ରୁତି ପ୍ରମାଣ ହୁଏ, ତେବେ ଯେଉଁ ପ୍ରକାର ଏହି ଶ୍ରୁତି ପ୍ରତିପାଦିତ୍ କର୍ମଫଳ ସମ୍ବନ୍ଧକୁ ଉତ୍ପନ୍ନ ହୋଇ କର୍ମ କାଳାନ୍ତରରେ ଫଳଦେବାରେ ସମର୍ଥ ହୁଏ ନାହିଁ ।

(ଗ) ତେଣୁ କର୍ମର କୌଣସି ଏକ ସୂକ୍ଷ୍ମ ଉତ୍ତରାବସ୍ଥା ଅଥବା ଫଳର ପୂର୍ବାବସ୍ଥା ଅପୂର୍ବ ନାମକ ହୁଏ । ଏହା ହିଁ ତର୍କ କରାଯାଇଅଛି । ଏହି ଅର୍ଥ ଉକ୍ତ ପ୍ରକାରରେ ଉତ୍ପନ୍ନ ହୁଏ । ଈଶ୍ୱର ଫଳଦାତା ଅଟେ ବୋଲି କହିବା ଅନୁଚିତ କାରଣ ଅବିଚିତ୍ର କାରଣର ବିଚିତ୍ର କାର୍ଯ୍ୟ ଅନୁପପନ୍ନ ହୁଏ ଏବଂ 'ବୈଷମ୍ୟ ଓ ନୈର୍ଘୃଣ୍ୟ' ପ୍ରସଙ୍ଗ ଓ ଅନୁଷ୍ଠାନ ବୈୟର୍ଥ୍ୟାପତ୍ତି ହେବ । ତେଣୁ ଧର୍ମରୁ ଫଳ ହୁଏ ।

## पूर्वं तु बादरायणो हेतुव्यपदेशात् ॥ २० ॥

## (୧) ପୂର୍ବଂ ତୁ ବାଦରାୟଣୋ ହେତୁବ୍ୟପଦେଶାତ୍ ॥୩-୨-୪୧॥

ତୁ=ଶଙ୍କା ନିବାରଣ ପାଇଁ । ବାଦରାୟଣଃ=ବାଦରାୟଣ ଆଚାର୍ଯ୍ୟ କିନ୍ତୁ, ପୂର୍ବଂ=ପୂର୍ବୋକ୍ତ ଈଶ୍ୱରକୁ ଫଳାଦାତା ରୂପେ ସ୍ୱୀକାର କରନ୍ତି । କାରଣ-, ହେତୁ ବ୍ୟପଦେଶାତ୍ ='ଏଷ ହ୍ୟେବ ସାଧୁ କର୍ମ କାରୟତି', 'ଅନ୍ନାଦୋ ବସୁଦାନଃ', 'ଲଭତେ ଚ ତତଃ କାମାନ୍' ଇତ୍ୟାଦି ଶ୍ରୁତି ଓ ସ୍ମୃତିରେ ଈଶ୍ୱରର ହେତୁ ରୂପରେ ବ୍ୟପଦେଶ ହୁଏ ।

(୨) ମୂଳ- (କ) ବାଦରାୟଣସ୍ତ୍ୱାଚାର୍ଯ୍ୟଃ ପୂର୍ବୋକ୍ତମେବେଶ୍ୱରଂ ଫଳହେତୁଂ ମନ୍ୟତେ । କେବଳାତ୍ କର୍ମଣୋଽପୂର୍ବାଦ୍ ବା କେବଳାତ୍ ଫଳମିତ୍ୟୟଂ ପକ୍ଷସ୍ତୁ ଶବ୍ଦେନ ବ୍ୟାବର୍ତ୍ତ୍ୟତେ । କର୍ମାପେକ୍ଷାଦପୂର୍ବାପେକ୍ଷାଦ୍ ବା ଯଥା ତଥାଽସ୍ତୀଶ୍ୱରାତ୍ ଫଳମିତି ସିଦ୍ଧାନ୍ତ । କୁତଃ ? ହେତୁ ବ୍ୟପଦେଶାତ୍ । ଧର୍ମାଧର୍ମୟୋରପି ହି କାରୟିତୃତ୍ୱେନେଶ୍ୱରୋ ହେତୁ ର୍ବ୍ୟପଦିଶ୍ୟତେ, ଫଳସ୍ୟ

ଚ ଦାତୃତ୍ୱେନ 'ଏଷ ହ୍ୟେବ ସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଉନ୍ନିନୀପତେ । ଏଷ ଉ ଏବାସାଧୁକର୍ମ କାରୟତି ତଂ ଯମଧୋ ନିନୀଷତେ' ଇତି ।

(ଖ) ସୂର୍ଯ୍ୟତେ ଋୟମର୍ଥୋ ଭଗବଦଗୀତାସୁ 'ଯୋ ଯୋ ଯଂ ଯଂ ତନୁ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି । ତସ୍ୟା ତସ୍ୟାଚଲାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍ । ସ ତୟା ଶ୍ରଦ୍ଧୟା ଯୁକ୍ତସ୍ତସ୍ୟାରାଧନମୀହତେ । ଲଭତେ ଚ ତତଃ କାମାନ୍ ମୟୈବ ବିହିତାନ୍ ॥ (ଭ ଗୀ ୭-୧୧) ଇତି । ସର୍ବବେଦାନ୍ତେଷୁ ଋେଶ୍ୱରହେତୁକା ଏବ ସ୍ରଷ୍ଟୟୋ ବ୍ୟପଦିଶ୍ୟନ୍ତେ । ତଦେବ ଋେଶ୍ୱରସ୍ୟ ଫଳହେତୁତ୍ୱଂ ଯତ୍ସ୍ୱକର୍ମାନୁରୂପାଃ ପ୍ରଜାଃ ସଜତୀତି । ବିଚିତ୍ରକାର୍ଯ୍ୟାନୁପପତ୍ୟାଦୟୋଽପି ଦେଷାଃ କୃତପ୍ରଯତ୍ନାପେକ୍ଷତ୍ୱାଦୀଶ୍ୱରସ୍ୟ ନ ପ୍ରସଜ୍ୟନ୍ତେ ।

(୨) ଭାଷାଂତର- (କ) ବାଦରାୟଣ ଆଚାର୍ଯ୍ୟ କିନ୍ତୁ ପୂର୍ବୋକ୍ତ ଈଶ୍ୱରଙ୍କୁ ଫଳର ହେତୁରୂପେ ସ୍ୱୀକାର କରିଛନ୍ତି । କେବଳ କର୍ମରୁ ଫଳ ହୁଏ । ଏହିପକ୍ଷର 'ତୁ' ଶବ୍ଦ ବ୍ୟାବୃତ୍ତି କରେ । କର୍ମକୁ ଅପେକ୍ଷା କରିଥିବା ଅଥବା ଅପୂର୍ବକୁ ଅପେକ୍ଷା କରୁଥିବା ଈଶ୍ୱରଠାରୁ ଯେପରି ଫଳ ହେବା କଥା, ସେପରି ଫଳ ଏହାର ହୁଏ ବୋଲି ସିଦ୍ଧାନ୍ତ କରାଯାଇଅଛି । କିପରି ? ହେତୁ ରୂପରେ ବ୍ୟପଦେଶହେତୁ । ଧର୍ମ ଓ ଅଧର୍ମର ମଧ୍ଯ କାରୟିତୃରୂପରେ ଓ ଫଳାଦତୃ ରୂପରେ ଈଶ୍ୱରର ହେତୁ କୁହାଯାଇଅଛି । 'ଏଷ ହ୍ୟେବ' (ଏହା ଯାହା ଉପରକୁ ନେବାକୁ ଚାହେଁ, ତଦ୍ୱାରା ସାଧୁକର୍ମ କରାଏ, ସେ ଯାହାକୁ ତଳକୁ ନେବାକୁ ଚାହେଁ, ସେ ଅସାଧୁକର୍ମ କରାଏ ।

(ଖ) 'ଯୋ ଯୋ' (ଯିଏ ସକାମୀ ଭକ୍ତ ଯେଉଁ ଯେଉଁ ବିଗ୍ରହର ଶ୍ରଦ୍ଧାଦ୍ୱାରା ପୂଜା କରିବାକୁ ଚାହେଁ, ସେହି ସେହି ଭକ୍ତର ମୁଁ ତାହା ପ୍ରତି ଅଚଳଶ୍ରଦ୍ଧା ଉତ୍ପନ୍ନ କରେ । ତଥା ସେ ସେହି ଶ୍ରଦ୍ଧା ଯୁକ୍ତହୋଇ ସେହି ଦେବତାର ଆରାଧନାକୁ ଚେଷ୍ଟା କରେ ଏବଂ ସେହି ଦେବତାଠାରୁ ମୋ ଦ୍ୱାରା ବିଧାନ କରାଯାଇଥିବା ସେହି ଉଚ୍ଛିତ ଭୋଗ ନିଃସନ୍ଦେହରେ ପ୍ରାପ୍ତ ହୁଏ ।) ଏହିପରି ଭଗବଦ୍‌ଗୀତାରେ କୁହାଯାଇଅଛି । ସେହିପରି ସଂପୂର୍ଣ୍ଣ ବେଦାନ୍ତରେ ଈଶ୍ୱର ହେତୁକ ସୃଷ୍ଟିର ବ୍ୟପଦେଶ ହୁଏ । ଯାହା ପ୍ରଜାମାନଙ୍କୁ ନିଜର କର୍ମ ଅନୁରୂପ ସୃଷ୍ଟି କରେ, ସେହିଁ ଈଶ୍ୱରଠାରେ ଫଳହେତୁତ୍ୱ ହୁଏ । ଜୀବକୃତ ପ୍ରଯତ୍ନର ଅପେକ୍ଷା ହେଲେ ଈଶ୍ୱରଙ୍କୁ ବିଚିତ୍ର କାର୍ଯ୍ୟ ଅନୁପପତ୍ତି ପ୍ରଭୃତି ଦୋଷମଧ୍ଯ ପ୍ରସକ୍ତ ହୁଅନ୍ତି ନାହିଁ ।





## ତୃତୀୟ ଅଧ୍ୟାୟ ତୃତୀୟ ପାଦ

### सर्ववेदान्तप्रत्ययाधिकरणम् ॥ २-४ ॥

### ସର୍ବବେଦାନ୍ତ ପ୍ରତ୍ୟୟାଧିକରଣ-୧

### सर्ववेदान्तप्रत्ययं चोदनाद्यविशेषात् ॥ २ ॥

### (୧) ସର୍ବବେଦାନ୍ତ ପ୍ରତ୍ୟୟଂ ଚୋଦନାଦ୍ୟବିଶେଷାତ୍ ॥୩-୩-୧॥

ସର୍ବବେଦାନ୍ତପ୍ରତ୍ୟୟଂ=ସବୁବେଦାନ୍ତଶାସ୍ତ୍ରରେ ବିହିତ ଉପାସନା ଭିନ୍ନ ନୁହେଁ, ଚୋଦନାଦ୍ୟବିଶେଷାତ୍=କାରଣ-ଚୋଦନା ପ୍ରଭୃତିର ଅବିଶେଷତା (ସମାନତା ବା ଏକତା) ଅଛି ।

(୨) ମୂଳ-(କ) ବ୍ୟାଖ୍ୟାତଂ ବିଜ୍ଞେୟସ୍ୟ ବ୍ରହ୍ମଣସ୍ତତ୍ତ୍ୱମ୍, ଇଦାନୀଂ ତୁ ପ୍ରତିବେଦାନ୍ତଂ ବିଜ୍ଞାନାନି ଭିଦ୍ୟନ୍ତେ ନ ବେତି ବିଚାର୍ଯ୍ୟନ୍ତେ । ନନୁ ବିଜ୍ଞେୟଂ ବ୍ରହ୍ମ ପୂର୍ବାପରାଦିଭେଦରହିତ-ମେକରସଂ ସୈନ୍ଧବଘନବଦବଧାରିତମ୍, ତତ୍ର କୁତୋ ବିଜ୍ଞାନ ଭେଦାଭେଦଚିନ୍ତାବସରଃ ? ନହି କର୍ମବହୁତ୍ୱବଦଦ୍ ବ୍ରହ୍ମ ବହୁତ୍ୱମପି ବେଦାନ୍ତେଷୁ ପ୍ରତିପିପାଦୟିଷିତମିତି ଶକ୍ୟଂ ବୁକ୍ତମ୍ ।

(ଖ) ବ୍ରହ୍ମଣ ଏକତ୍ୱାଦେକରୂପତାଚ୍ଚ । ନ ଚୈକରୂପେ ବ୍ରହ୍ମଣ୍ୟ ନେକରୂପାଣି ବିଜ୍ଞାନାନି ସମ୍ଭବନ୍ତି । ନହ୍ୟନଥାଽର୍ଥୋଽନ୍ୟଥା ଜ୍ଞାନମିତ୍ୟଭ୍ରାନ୍ତଂ ଭବତି । ଯଦି ପୁନରେ-କସ୍ମିନ୍ ବ୍ରହ୍ମଣି ବହୂନି ବିଜ୍ଞାନାନି ବେଦାନ୍ତାନ୍ତରେଷୁ ପ୍ରତିପିପାଦୟିଷିତାନି, ତେଷାମେ-କମଭ୍ରାନ୍ତମ୍, ଭ୍ରାନ୍ତାନୀତରାଣୀତ୍ୟନା ଶ୍ୱାସପ୍ରସଙ୍ଗୋ ବେଦାନ୍ତେଷୁ । ତସ୍ମାନ ତାବତ୍ ପ୍ରତିବେଦାନ୍ତଂ ବ୍ରହ୍ମବିଜ୍ଞାନଭେଦ ଆଶଙ୍କି ତୁଂ ଶକ୍ୟତେ ।

**(୨) ଭାଷାଂତର-** (କ) ବିଜ୍ଞେୟବ୍ରହ୍ମର ତତ୍ତ୍ୱଗୁଡ଼ିକ ବ୍ୟାଖ୍ୟାନ ହୋଇସାରିଛି । ବର୍ତ୍ତମାନ ପ୍ରତ୍ୟେକ ବେଦାନ୍ତରେ ବିଜ୍ଞାନ (ଉପାସନା) ଭିନ୍ନ ଅଟେ କି ନୁହେଁ ? ଏହାର ବିଚାର କରାଯାଉଛି । ପରନ୍ତୁ ପୂର୍ବାପର ଇତ୍ୟାଦି ଭେଦରହିତ, ସୈନ୍ଧବଘନ ପରି ଏକରସ ବିଜ୍ଞେୟ ବ୍ରହ୍ମର ଅବଧାରଣା କରାଯାଇଛି । ସେଥିରେ ବିଜ୍ଞାନଭେଦ ଅଥବା ଭେଦର ବିଚାରସ୍ଥାନ କେଉଁଠାରେ ଅଛି ? କାରଣ ବ୍ରହ୍ମର ଏକ ଓ ଏକରୂପ ହେଲେ କର୍ମ ବହୁତପରି ବ୍ରହ୍ମ ବହୁତ୍ୱର ପ୍ରତିପାଦନ ବେଦାନ୍ତ ଶାସ୍ତ୍ରରେ ଅଭୀଷ୍ଟ ଅଟେ ବୋଲି କୁହାଯାଇନପାରେ ।

(ଖ) ଏକରୂପ ବ୍ରହ୍ମରେ ଅନେକପ୍ରକାର ବିଜ୍ଞାନ ସମ୍ଭବ ନୁହେଁ, କାରଣ-ଅନ୍ୟ ପ୍ରକାରର ଅର୍ଥ ଓ ଅନ୍ୟପ୍ରକାରର ବିଜ୍ଞାନ ଅଭ୍ରାନ୍ତ ଯଥାର୍ଥ ନୁହେଁ । ଯଦି ଏକ ବ୍ରହ୍ମରେ ଅନେକବିଜ୍ଞାନର ଭିନ୍ନଭିନ୍ନବେଦାନ୍ତଶାସ୍ତ୍ରରେ ପ୍ରତିପାଦନ ଅଭୀଷ୍ଟ ହୁଏ, ତେବେ ସେଠାରେ

ମଧ୍ୟ ଅଭ୍ରାନ୍ତ ଓ ଅନ୍ୟଭ୍ରାନ୍ତ ହେବ । ଏହିପରି ବେଦାନ୍ତରେ ଅବିଶ୍ୱାସ ପ୍ରସଙ୍ଗ ଆସିବ । ଅତଏବ ପ୍ରତ୍ୟେକ ବେଦାନ୍ତରେ ବ୍ରହ୍ମ ବିଜ୍ଞାନଭେଦର ଆଶଙ୍କା କରାଯାଏ ନାହିଁ ।

(୨) ମୂଳ-(କ) ନାପ୍ୟସ୍ୟ ଚୋଦନାଦ୍ୟ ବିଶେଷାଦଭୋଦ ଉଚ୍ୟେତ, ବ୍ରହ୍ମବିଜ୍ଞାନ-ସ୍ୟାଚୋଦନା ଲକ୍ଷଣତ୍ୱାତ୍ । ଅବଧ୍ୱ ପ୍ରଧାନୈର୍ହି ବସ୍ତୁପର୍ଯ୍ୟବସାୟିଭିଃ ବ୍ରହ୍ମବାକ୍ୟୈଃ ବ୍ରହ୍ମ ବିଜ୍ଞାନଂ ଜନ୍ୟତ ଇତ୍ୟବୋଚଦାଚାର୍ଯ୍ୟଃ, 'ତତ୍ତୁ ସମନ୍ୱୟାତ୍' (ବ୍ର ସୂ ୧।୧।୪) ତ୍ୟତ୍ର । ତତ୍‌କଥମିମାଂ ଭେଦାଭେଦଚିନ୍ତାମାରଭତ ଇତି ?

(ଖ) ତଦୁଚ୍ୟତେ-ସଗୁଣ ବ୍ରହ୍ମବିଷୟା ପ୍ରାଣାଦିବିଷୟା ଚେୟଂ ବିଜ୍ଞାନଭେଦାଭେଦ ଚିନ୍ତ୍ୟେତଦୋଷଃ । ତତ୍ର ହି କର୍ମବଦୁପାସନାନାଂ ଭେଦାଭେଦୌ ସମ୍ଭବତଃ କର୍ମବଦେବ ଚୋପାସନାନି ଦୃଷ୍ଟଫଳାନ୍ୟଦୃଷ୍ଟଫଳାନି ଚୋଚ୍ୟନ୍ତେ, କର୍ମମୂକ୍ତିଫଳାନି ଚ କାନିଚିତ୍ ସମ୍ୟଗଜ୍ଞାନୋପ୍ ତ୍ତିଦ୍ୱାରେଣ ।

(ଗ) ତେଷ୍ୱେଷା ଚିନ୍ତା ସମ୍ଭବତି କିଂ ପ୍ରତିବେଦାନ୍ତଂ ବିଜ୍ଞାନଭେଦ ଆହୋସ୍ୱିନ୍ନେତି ? ତତ୍ର ପୂର୍ବପକ୍ଷହେତବସ୍ତାବହୁପନ୍ୟସ୍ୟନ୍ତେ ନାମ୍ନସ୍ତାବଦ୍ ଭେଦପ୍ରତିପତ୍ତିହେତୁତ୍ୱଂ ପ୍ରସିଦ୍ଧଂ ଜ୍ୟୋତିରାଦିଷୁ । ଅସ୍ତି ଚତ୍ର ବେଦାନାନ୍ତର ବିହିତେଷୁ ବିଜ୍ଞାନେଷ୍ୱନ୍ୟଦନ୍ୟନ୍ନାମ ତୈତ୍ତିରୀୟକଂ ବାଜସନେୟକଂ କୌଥୁମକଂ କୌଷୀତକଂ ଶାଟ୍ୟାୟନକମିତ୍ୟେବମାଦି ।

(ଘ) ତଥା ରୂପଭେଦୋଽପି କର୍ମଭେଦସ୍ୟ ପ୍ରତିପାଦକଃ ପ୍ରସିଦ୍ଧୋ ବୈଶ୍ୱଦେବ୍ୟାମିକ୍ଷା ବାଜିଭ୍ୟୋ ବାଜିନମିତ୍ୟେବମାଦିଷୁ ଅସ୍ତିଚତ୍ର ରୂପଭେଦଃ । ତଦ୍ୟଥା କେଚିଚ୍ଛାଖିନଃ ପଞ୍ଚାଗ୍ନିବିଦ୍ୟାୟାଂ ଷଷ୍ଠମପରମଗ୍ନିମାମନନ୍ତ୍ୟପରେ ପୁନଃ ପଞ୍ଚୈବ ପଠନ୍ତି । ତଥା ପ୍ରାଣସମ୍ବାଦଗୁଦିଷୁ କେଚିଦୁନାନ୍ ବାଗାଦୀନାମନନ୍ତି, କେଚିଦଧିକାନ୍ ।

(ଙ) ଧର୍ମବିଶେଷୋଽପି କର୍ମଭେଦସ୍ୟ ପ୍ରତିପାଦକ ଆଶଙ୍କିତଃ କାରୀର୍ଯ୍ୟାଦିଷୁ । ଅସ୍ତି ଚତ୍ର ଧର୍ମବିଶେଷଃ ଯଥାଥର୍ବଣିକାନାଂ ଶିରୋବ୍ରତମିତି । ଏବଂ ପୁନରୁକ୍ତ୍ୟାଦୟୋଽପି ଭେଦ-ହେତବୋ ଯଥାସମ୍ଭବଂ ବେଦାନ୍ତାନ୍ତରେଷୁ ଯୋଜୟିତବ୍ୟାଃ । ତସ୍ମାତ୍ ପ୍ରତିବେଦାନ୍ତଂ ବିଜ୍ଞାନଭେଦ ଇତି ।

**(୨) ଭାଷାଂତର-** (କ) ଚୋଦନା ପ୍ରଭୃତିର ଅବିଶେଷରୁ ବିଜ୍ଞାନର ଅଭେଦ କୁହାଯାଏ ନାହିଁ, କାରଣ-ବ୍ରହ୍ମବିଜ୍ଞାନ ଅଚୋଦନାତ୍ମକ ଅଟେ । ଅବଧ୍ୱ (ପ୍ରଧାନ) ଏବଂ ବସ୍ତୁପର୍ଯ୍ୟବସାୟୀ ବ୍ରହ୍ମବାକ୍ୟରୁ ବ୍ରହ୍ମବିଜ୍ଞାନ ଉତ୍ପନ୍ନ କରାଯାଏ, ତେଣୁ ଆଚାର୍ଯ୍ୟ 'ତତ୍ତୁ ସମନ୍ୱୟାତ୍' ଏହି ସୂତ୍ରରେ କହିଛନ୍ତି । ପୁଣି ଏହି ଭେଦ ଓ ଅଭେଦ ବିଚାରକୁ କାହିଁକି ଆରମ୍ଭ କରିଛନ୍ତି ।

(ଖ) ସିଦ୍ଧାନ୍ତ ଏହି ବିଷୟରେ କହନ୍ତି ଯେ- ଏହି ବିଜ୍ଞାନର ଭେଦ ଓ ଅଭେଦର ବିଚାର ସଗୁଣବ୍ରହ୍ମ ବିଷୟକ ଓ ପ୍ରାଣାଦି ବିଷୟକ ଅଟେ । ତେଣୁ ଏଠାରେ କୌଣସି



ଦୋଷନାହିଁ । ଏଠାରେ କର୍ମପରି ଉପାସନା ଗୁଡ଼ିକର ଭେଦ ଓ ଅଭେଦ ସମ୍ଭବ ହୁଏ, କାରଣ-ଉପାସନାଗୁଡ଼ିକର କର୍ମସଦୃଶ ଦୃଷ୍ଟଫଳ ଓ ଅଦୃଷ୍ଟଫଳବାନ ବୋଲି କୁହାଯାଇଛି । କୌଣସି ଗୋଟିଏ ତତ୍ତ୍ୱଜ୍ଞାନର ଉତ୍ପତ୍ତି ଦ୍ୱାରା କ୍ରମମୁକ୍ତି ଫଳବାନ୍ ବୋଲି ମଧ୍ୟ କୁହାଯାଇଛି ।

(ଗ) ସେହି ସ୍ଥଳ ଗୁଡ଼ିକରେ ପ୍ରତ୍ୟେକବେଦାନ୍ତରେ କଣ ବିଜ୍ଞାନ ଭେଦ ଅଛି କି ନାହିଁ ବୋଲି ବିଚାର କରାଯାଇଅଛି । ଏଠାରେ ପୂର୍ବପକ୍ଷର ହେତୁଗୁଡ଼ିକୁ ଉପନ୍ୟାସ କରାଯାଇଛି । ପୂର୍ବପକ୍ଷ-ନାମ ଭେଦପ୍ରତିପତ୍ତିର ହେତୁ ରୂପରେ ଜ୍ୟୋତିରାଦିରେ ପ୍ରସିଦ୍ଧ ଅଟେ । ଅନ୍ୟ ବେଦାନ୍ତଶାସ୍ତ୍ରରେ ବିହିତ ବିଜ୍ଞାନରେ ତୈତ୍ତିରୀୟକ, ବାଜସନେୟକ, କୌଥମୁକ, କୌଷୀତକ ଓ ଶାଟ୍ୟାୟନ ଇତ୍ୟାଦି ଭିନ୍ନଭିନ୍ନ ନାମ ଅଛି ।

(ଘ) ସେପରି 'ବୈଶ୍ୱଦେବ୍ୟା ମିକ୍ଷା' ଇତ୍ୟାଦିର ରୂପଭେଦ ମଧ୍ୟ କର୍ମଭେଦର ପ୍ରତିପାଦକ ରୂପେ ପ୍ରସିଦ୍ଧ । ଏଠାରେ କୌଣସି ଶାଖାଯୁକ୍ତ ପଞ୍ଚାଗ୍ନିବିଦ୍ୟାରେ ଅନ୍ୟଷଷ୍ଠ ଅପର ଅଗ୍ନି କହନ୍ତି ଏବଂ ପୁଣି ପଞ୍ଚାଗ୍ନିକୁ ପାଠ କରନ୍ତି । ସେହିପରି ମଧ୍ୟ ଏଠାରେ ରୂପଭେଦ ସ୍ୱୀକାର କରାଯାଏ । ତଦ୍‌ବତ୍ ପ୍ରାଣ ସଂବାଦାଦିରେ କୌରସି ଶାଖାବାନକୁ ଗାଦି କହନ୍ତି ଏବଂ କେତେକ ମଧ୍ୟ ଅଧିକବାଗାଦିରୂପେ ପାଠ କରନ୍ତି ।

(ଙ) ସେହିପରି ଧର୍ମ ବିଶେଷ କର୍ମଭେଦର ପ୍ରତିପାଦକ କାରୀର୍ଯ୍ୟାଦିରେ ଆଶଙ୍କିତ ହୁଏ । ଯେପରି ଅଥର୍ବଣିକର ଶିରୋବ୍ରତ ହୁଏ, ସେପରି ଏଠାରେ ଧର୍ମବିଶେଷର ମଧ୍ୟ ହୁଏ । ପୁନଶ୍ଚ ସେହିପରି ପୁନରୁକ୍ତ୍ୟାଦିଭେଦର ହେତୁଗୁଡ଼ିକ ବେଦାନ୍ତ ବାକ୍ୟରେ ଯଥାସମ୍ଭବ ଯୋଜନା କରିବା ଉଚିତ୍ । ତେଣୁ ପ୍ରତ୍ୟେକ ବେଦାନ୍ତରେର ବିଜ୍ଞାନରେ ଭେଦ ଅଛି ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ ସର୍ବବେଦାନ୍ତପ୍ରତ୍ୟୟାନି ବିଜ୍ଞାନାନି ତସ୍ମିଂସ୍ତସ୍ମିନ ବେଦାନ୍ତେ ନ ତାନି ତାନ୍ୟେବ ଭବିତୁମର୍ହନ୍ତି । କୁତଃ ? ଚୋଦନାଦ୍ୟ ବିଶେଷାତ୍ । ଆଦିଗ୍ରହଣେନ ଶାଖାନ୍ତରାଧିକରଣସିଦ୍ଧାନ୍ତ ସୂତ୍ରୋଦିତା ଅଭେଦହେତବ ଇହାକୃଷ୍ୟନ୍ତେ । ସଂଯୋଗରୂପଚୋଦନାଖ୍ୟାବିଶେଷାଦିତ୍ୟର୍ଥଃ ।

(ଖ) ଯଥୈକସ୍ମିନ୍ନଗ୍ନିହୋତ୍ରେ ଶାଖାଭେଦେଽପି ପୁରୁଷପ୍ରଯନ୍ତସ୍ତାଦୃଶ ଏବ ଚୋଦ୍ୟତେ ଜୁହୁୟାଦିତି । ଏବମ- 'ଯୋ ହ ବୈ ଜ୍ୟେଷ୍ଠଂ ଚ ଶ୍ରେଷ୍ଠ ଚ ବେଦ' (ବୃହ ୬।୧।୧, ଛା ୫।୧୧) ଇତି ବାଜସନେୟିନାଂ ଛନ୍ଦୋଗାନାଂ ଚ ତାଦୃଶ୍ୟେବ ଚୋଦନା । ପ୍ରୟୋଜନସଂଯୋଗାଽପ୍ୟବିଶିଷ୍ଟ ଏବ 'ଜ୍ୟେଷ୍ଠଶ୍ଚ ଶ୍ରେଷ୍ଠଶ୍ଚ ସ୍ୱାନାଂ ଭବତି' (ବୃ ହ ୬-୧-୧) ଇତି ।

(ଗ) ରୂପମପ୍ୟୁଭୟତ୍ର ତଦେବ ବିଜ୍ଞାନସ୍ୟ-ଯଦୁତ ଜ୍ୟେଷ୍ଠଶ୍ରେଷ୍ଠାଦିଗୁଣ-ବିଶେଷଣାନ୍ୱିତଂ ପ୍ରାଣତତ୍ତ୍ୱମ୍ । ଯଥା ଚ ଦ୍ରବ୍ୟଦେବତେ ଯାଗସ୍ୟ ରୂପମ୍, ଏବଂ ବିଜ୍ଞେୟଂ ରୂପଂ ବିଜ୍ଞାନସ୍ୟ ତେନ ହି ତଦ୍ରୂପ୍ୟତେ । ସମାଖ୍ୟାଽ ପି ସୈବ ପ୍ରାଣବିଦ୍ୟେତି । ତସ୍ମାତ୍ ସର୍ବବେଦାନ୍ତ ପ୍ରତ୍ୟୟତ୍ୱଂ ବିଜ୍ଞାନାନାମ୍ ।

(ଘ) ଏବଂ ପଞ୍ଚାଗ୍ନି ବିଦ୍ୟା ବୈଶ୍ୱାନର ବିଦ୍ୟା ଶାଣ୍ଡିଲ୍ୟବିଦ୍ୟେତ୍ୟେବମାଦିଷ୍ପୁ ଯୋଜୟିତବ୍ୟମ୍ । ଯେ ତୁ ନାମରୂପାଦୟୋ ଭେଦହେତ୍ୱାଭାସାସ୍ତେ ପ୍ରଥମ ଏବ କାଣ୍ଡେ 'ନ ନାମ୍ନା ସ୍ୟାଦଚୋଦନାଭିଧାନତ୍ୱାତ୍' ଇତ୍ୟାରଭ୍ୟ ପରିହୃତାଃ ।

**(୩) ଭାଷାଂତର-** ସିଦ୍ଧାନ୍ତ (କ) ଏହିପରି ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ- ସମସ୍ତ ବେଦାନ୍ତ ପ୍ରତ୍ୟୟ-ବିଜ୍ଞାନ ସେହି ସେହି ବେଦାନ୍ତରେ ସେହିମାନେ ହିଁ ସମର୍ଥ ହୁଅନ୍ତି କିପରି ? ତେଣୁ ଚୋଦନା ପ୍ରଭୃତ ଅବିଶେଷରୂପ ଅଟେ । ଆଦିପଦରେ ଗ୍ରହଣଦ୍ୱାରା ଶାଖାନ୍ତରଅଧିକରଣରେ ସିଦ୍ଧାନ୍ତ ସୂତ୍ରରେ ପ୍ରତିପାଦିତ ଅଭେଦ ହେତୁର ଏଠାରେ ଆକର୍ଷଣ କରାଯାଏ, କାରଣ ସଂଯୋଗ, ରୂପ ଚୋଦନା ଓ ସମାଖ୍ୟାର ପ୍ରତ୍ୟେକ ଶାଖାରେ ବୈଲକ୍ଷଣ୍ୟ ନଥାଏ ବୋଲି ଅର୍ଥ କରାଯାଏ ।

(ଖ) ଯେପରି ଗୋଟିଏ ଅଗ୍ନିହୋତ୍ରରେ ଶାଖାଭେଦ ହେଲେ 'ଦୃହୁୟାତ୍' ଏହିପରି ପୁରୁଷପ୍ରଯତ୍ନ ବିହିତ ହୁଏ, ସେପରି ମଧ୍ୟ 'ଯୋ ହ ବୈ' (ଯିଏ ଜ୍ୟେଷ୍ଠତ୍ୱ ଓ ଶ୍ରେଷ୍ଠତ୍ୱ ଗୁଣବିଶେଷକୁ ଜାଣେ) ଏହିପ୍ରକାର ବାଜସନେୟୀ ଓ ଛାନ୍ଦୋଗ୍ୟର ଏକରୂପ ଚୋଦନା ହୁଏ । 'ଜ୍ୟେଷ୍ଠଶ୍ଚ' (ସେ ନିଜର ଜ୍ଞାତିରେ ଜ୍ୟୈଷ୍ଠ ଓ ଶ୍ରେଷ୍ଠ ହୁଏ ଏହିପରି ପ୍ରୟୋଜନର ସଂଯୋଗ ସମାନ ଅଟେ ।

(ଗ) ଏହି ଦୁଇଟି ସ୍ଥଳରେ ବିଜ୍ଞାନର ରୂପ ମଧ୍ୟ ସେ ଅଟେ । ଯାହା ଜ୍ୟେଷ୍ଠ ଓ ଶ୍ରେଷ୍ଠ ପ୍ରଭୃତି ଗୁଣରୂପ ବିଶେଷଣ ଦ୍ୱାରା ଯୁକ୍ତପ୍ରାଣତତ୍ତ୍ୱ ଅଟେ ସେପରି ବିଜ୍ଞାନର ବିଜ୍ଞେୟ ରୂପ ଅଟେ, କାରଣ ତଦ୍ୱାରା ବିଜ୍ଞାନର ନିରୂପଣ କରାଯାଇଅଛି । ସେହିପରି ମଧ୍ୟ ବିଜ୍ଞାନଗୁଡ଼ିକରେ ସର୍ବ ବେଦାନ୍ତ ପ୍ରତ୍ୟୟତ୍ୱ ହୁଏ ।

(ଘ) ଏହିପରି ପଞ୍ଚାଗ୍ନି ବିଦ୍ୟା ବୈଶ୍ୱାନରବିଦ୍ୟା, ଶାଣ୍ଡିଲ୍ୟବିଦ୍ୟା ଭୃତିରେ ଯୋଜନା କରିବା ଉଚିତ୍ । ଯାହା ନାମ ରୂପାଦି ଭେଦହେତୁରୁ ହୁଏ, ସେସବୁ ପ୍ରଥମ କାଣ୍ଡରେ ହିଁ 'ନ ନାମ୍ନ' (ନାମରୁ ଭେଦ ହୁଏ ନାହିଁ, କାରଣ ଚୋଦନା ଦ୍ୱାରା ଏହା ଅଭିଧାନ ନୁହେ) ଏହା ଆରମ୍ଭ କରି ପରିହାର କରାଯାଇଛି ।

୧-(କ) ଏଠାରେ ମଧ୍ୟ କୌଣସି ବିଶେଷକୁ ଆଶଙ୍କା କରି ପରିହାର କରନ୍ତି ।

## भेदान्नेति चेन्नैकस्यामपि ॥ २ ॥

## (୧) ଭେଦାନ୍ନେତି ଚେନ୍ନୈକସ୍ୟାମପି ॥ ୩-୩-୨ ॥

ଇତିଚେତ୍=ଯଦି ଏପରି କହ, ଭେଦାତ୍=ଯେପରି ଦ୍ରବ୍ୟ ଓ ଦେବତା ଭେଦରେ ଯାଗର ଭେଦ ହୁଏ, ସେପରି ବେଦ୍ୟର ବିଦ୍ୟାର ଭେଦ ହେବ । ନ,- ଏହା କିନ୍ତୁ



ଠିକ୍ ନୁହେଁ । କାରଣ-, ଏକସ୍ୟାପି=ଗୋଟିଏ ବିଦ୍ୟାରେ ମଧ୍ୟ ଏହିପ୍ରକାର ଗୁଣଭେଦ ଉପପନ୍ନ ହୁଏ ।

(୨) ମୂଳ- (କ) ସ୍ୟାଦେତତ୍-ସର୍ବବେଦାନ୍ତ ପ୍ରତ୍ୟୟତ୍ୱଂ ବିଜ୍ଞାନାନାଂ ଗୁଣଭେଦାନ୍ନୋପପଦ୍ୟତେ । ତଥାହି ବାଜସନେୟିନଃ ପଞ୍ଚାଗ୍ନିବିଦ୍ୟାଂ ପ୍ରସ୍ତୁତ୍ୟ ଷଷ୍ଠମପରମଗ୍ନିମାମନନ୍ତି - 'ତସ୍ୟାଗ୍ନିରେ ର୍ଭବତି' (ବୃହ ୬-୨-୧୪) ଇତ୍ୟାଦିନା । ଛନ୍ଦୋଗାସ୍ତୁ ତଂ ନାମନନ୍ତି- ପଞ୍ଚସଙ୍ଖ୍ୟୟୈବ ଚ ତ ଉପସଂହରନ୍ତି- 'ଅଥ ହ ଯ ଏତାନେବଂ ପଞ୍ଚାଗ୍ନୀନ୍ ବେଦ' (ଛା ୫-୧୦-୧୦) ଇତି ।

(ଖ) ଯେଷାଞ୍ଚ ସ ଗୁଣୋଽସ୍ତି, ଯେଷାଞ୍ଚ ନାସ୍ତି, କଥମୁଭୟେଷ୍ୟମେକା ବିଦ୍ୟୋପପଦ୍ୟତେ ? ନ ଋତ୍ର ଗୁଣୋପସଂହାରଃ ଶକ୍ୟତେ ପ୍ରତ୍ୟେତୁମ୍, ପଞ୍ଚସଖାବିରୋଧାତ୍ । ତଥା ପ୍ରାଣସମ୍ବାଦେ ଶ୍ରେଷ୍ଠାଦନ୍ୟାଂଶ୍ଚତୁରଃ ପ୍ରାଣାନ୍ ବାକ୍‌ଚକ୍ଷୁଃ ଶ୍ରୋତ୍ରମନାଂସି ଛନ୍ଦୋଗାଃ ଆମନନ୍ତି । ବାଜସନେୟିନସ୍ତୁ ପଞ୍ଚମପ୍ୟାନନ୍ତି- 'ରେତୌ ବୈପ୍ରଜାପତିଃ ପ୍ରଜାୟତେ ହ ପ୍ରଜୟା ପଶୁଭିର୍ଯ ଏବଂ ବେଦ' (ବୃହ ୬-୧-୬) ଇତି ।,

(ଗ) ଆବୋପୋଦ୍‌ବାପଭେଦାଚ୍ଚ ବେଦ୍ୟଭେଦୋ ଭବତି, ବେଦ୍ୟଭେଦାଚ୍ଚ ବିଦ୍ୟାଭେଦଃ ଦ୍ରବ୍ୟ ଦେବତାଭେଦାଦିବ ଯାଗସ୍ୟେତି ଚେତ୍‌ନୈଷ ଦୋଷଃ ।, ଯତ ଏକସ୍ୟାପି ବିଦ୍ୟାୟାମେବଂଜାତୀୟକୋ ଗୁଣଭେଦ ଉପପଦ୍ୟତେ । ଯଦ୍ୟପି ଷଷ୍ଠସ୍ୟାଗ୍ନେରୁପସଂହାରୋ ନ ସମ୍ଭବତି, ତଥାପି ଦ୍ୟୁପ୍ରଭୃତୀନାଂ ପଞ୍ଚାନାମଗ୍ନୀନାମୁଭୟତ୍ର ପ୍ରତ୍ୟଭିଜ୍ଞୟମାନତ୍ୱାନ୍ନ ବିଦ୍ୟାଭେଦୋ ଭବିତୁମର୍ହତି । ନ ହି ଷୋଡ଼ଶିଗ୍ରହଣାଗ୍ରହଣୟୋ-ରତିରାତ୍ରୋ ଭିଦ୍ୟତେ । ପଠ୍ୟତେଽପି ଚ ଷଷ୍ଠୋଽଗ୍ନିଛନ୍ଦୋଗୈଃ- 'ତଂ ପ୍ରେତଂ ଦିଷ୍ଟମିତୋଽଗ୍ନୟ ଏବଂ ହରନ୍ତି' (ଛା ୫-୯-୨) ଇତି ।

(୨) **ଭାଷାଂତର-** (କ) ଯାହାହେଉ, ପରନ୍ତୁ ବିଜ୍ଞାନଗୁଡ଼ିକରେ ସମସ୍ତବେଦାନ୍ତ ପ୍ରତ୍ୟୟତ୍ୱ ଗୁଣଭେଦରେ ଉପପନ୍ନ ହୁଅନ୍ତି ନାହିଁ; କାରଣ-ବାଜସନେୟୀ ଶାଖାବାନ୍ ପଞ୍ଚାଗ୍ନିବିଦ୍ୟାକୁ ପ୍ରସ୍ତୁତ କରି 'ତସ୍ୟାଗ୍ନିରେବ' (ସେହି ଆହୁତିଭୂତ ପୁରୁଷର ପ୍ରସିଦ୍ଧ ଅଗ୍ନି ହିଁ ଅଗ୍ନି ଅଟେ) ଇତ୍ୟାଦି ଦ୍ୱାରା ଅନ୍ୟ ଷଷ୍ଠ ଅଗ୍ନି କହନ୍ତି । ଛାନ୍ଦୋଗ କିନ୍ତୁ ତାହାର କଥନ କରେ ନାହିଁ ଓ 'ଅଥ ଯ' (କିନ୍ତୁ ଯାହା ଏହିପ୍ରକାର ଏହି ପାଞ୍ଚଅଗ୍ନିକୁ ଜାଣେ) ଏହିପରି ପାଞ୍ଚୋଟି ସଂଖ୍ୟାଦ୍ୱାରା ଉପସଂହାର କରେ ।

(ଖ) ଯାହାଙ୍କ ମତରେ ସେ ସବୁ ଗୁଣ ଅଟନ୍ତି ଓ ଯାହାଙ୍କ ମତରେ ସେ ସବୁଗୁଣ ନୁହଁନ୍ତି, ସେ ସବୁ ଦୁଇଟିର ଏ ବିଦ୍ୟା କିପରି ଉପପନ୍ନ ହେବ ? କିନ୍ତୁ ଏଠାରେ ଗୁଣର ଉପସଂହାର କରାଯାଏ ନାହିଁ, କାରଣ-ଏଠାରେ ପାଞ୍ଚୋଟି ସଂଖ୍ୟାର ବିରୋଧ ହୁଏ । ଏହିପରି ପ୍ରାଣସମ୍ବନ୍ଧରେ ଶ୍ରେଷ୍ଠ ପ୍ରାଣରୁ ଅନ୍ୟବାକ୍, ଚକ୍ଷୁ, ଶ୍ରୋତ୍ର ଓ ମନ - ଏହି ଚାରୋଟି ପ୍ରାଣର ଛାନ୍ଦୋଗ କରନ୍ତି, ବାଜସନେୟୀ କିନ୍ତୁ 'ରେତୋ ବୈ' (ରେତ ହିଁ ପ୍ରଜାପତି),

ଏହାକୁ ଯିଏ ଜାଣେ, ସେ ପ୍ରଜା ଓ ପଶୁମାନଙ୍କଦ୍ୱାରା ସଂପନ୍ନ ହୁଏ) ଏହିପରି ପଞ୍ଚମର କଥନ କରନ୍ତି ।

(ଗ) ଅବାପ (ପକାଇବା), ଉଦ୍‌ବାପ (ଉଠାଇବା) ଭେଦରେ ବେଦ୍ୟରେ ଭେଦ ହୁଏ । ବେଦ୍ୟର ଭେଦ ହେଲେ ବିଦ୍ୟାର ମଧ୍ୟ ଭେଦ ହୁଏ । ଯେପରି ଦ୍ରବ୍ୟ ଓ ଦେବଦାର ଭେଦରେ ଯାଗର ଭେଦ ହୁଏ । ଯଦି ଏହା କହ, ତଥାପି ଏହା ଠିକ୍ ନୁହେଁ କାରଣ- ଗୋଟିଏ ବିଦ୍ୟାରେ ଏହିପ୍ରକାରର ଗୁଣଭେଦ ଉପପନ୍ନ ହୁଏ । ଯଦ୍ୟପି ଷଷ୍ଠ ଅଗ୍ନିର ଉପସଂହାର ସମ୍ଭବ ନୁହେଁ, ତେବେ ମଧ୍ୟ ଦ୍ୟୁ ଇତ୍ୟାଦି ପାଞ୍ଚୋଟି ଅଗ୍ନିର ଦୁଇଟି ସ୍ଥଳ (ବାଜସନେୟୀ ଓ ଛାନ୍ଦୋଗ) ରେ ଜ୍ଞାନ ହେଲେ ବିଦ୍ୟାର ଭେଦ ହୁଏ ନାହିଁ ଅତି ରାତ୍ର ଯାଗରେ ଷୋଡ଼ଶିପାତ୍ରର ଗ୍ରହଣ ଓ ଅଗ୍ରହଣ ଦ୍ୱାରା ଅତ୍ରି ରାତ୍ରଯାଗର ଭେଦ ହୁଏ ନାହିଁ, ତଂ ପ୍ରେତ' (କର୍ମବଶ ପରଲୋକରେ ପ୍ରସ୍ଥିତ ହୋଇ ଏହି ମୃତକକୁ ଜ୍ଞାତିବାନ୍ ଅଗ୍ନିପାଖକୁ ନେଇ ଯାଆନ୍ତି । ଏହିପରି ଛାନ୍ଦୋଗ ଷଷ୍ଠ ଅଗ୍ନିକୁ ପଢ଼ନ୍ତି ।

(୩) ମୂଳ-(କ) ବାଜସନେୟିନସ୍ତୁ ସାଂପାଦିକେଷ୍ୱୁ ପଞ୍ଚସ୍ୱଗ୍ନିଷ୍ୱନୁବୃତାୟାଃ ସମିଦ୍‌ଧୂମାଦିକଳ୍ପନାୟା ନିବୃତ୍ତୟେ 'ତସ୍ୟାଗ୍ନିରେବାଗ୍ନିର୍ଭବତି ସମିତ୍' (ବୃହ ୬-୨-୧୪) ଇତ୍ୟାଦି ସମାମନନ୍ତି, ସ ନିତ୍ୟାନୁବାଦଃ । ଅଥାପ୍ୟୁପାସନାର୍ଥ ଏବ ବାଦସ୍ତଥାପି ସ ଗୁଣଃ ଶକ୍ୟତେ ଛାନ୍ଦୋର୍ଗୈରପ୍ୟୁସଂହର୍ତ୍ତୁମ୍ ।

(ଖ) ନ ଚାତ୍ର ପଞ୍ଚସଖାବିରୋଧ ଆଶଙ୍କ୍ୟ, ସାଂପାଦିକାଗ୍ନ୍ୟଭିପ୍ରାୟା ହ୍ୟେଷ୍ୟ ପଞ୍ଚସଖା ନିତ୍ୟାନୁବାଦଭୂତା ନ ବିଧିସମବାୟିନୀତ୍ୟଦୋଷଃ । ଏବଂ ପ୍ରାଣସମ୍ବାଦାଦିଷ୍ୱପ୍ୟଧିକସ୍ୟ ଗୁଣସ୍ୟେତରତ୍ରୋପସଂହାରୋ ନ ବିରୁଧ୍ୟତେ । ନ ଚାବାପୋଦ୍‌ବାପଭେଦାଦ୍ ବେଦ୍ୟଭେଦୋ ବିଦ୍ୟାଭେଦଶ୍ଚାଶଙ୍କ୍ୟ, କସ୍ୟଚିଦ୍‌ବିଦ୍ୟାଂଶସ୍ୟାବାପୋଦ୍ ବାପୟୋରପି ଭୂୟସୋବେଦ୍ୟରା- ଶେରଭେଦାବଗମାତ୍ । ତସ୍ମାଦୈକବିଦ୍ୟମେବ ।

**(୩) ଭାଷାଂତର-** (କ) ବାଜସନେୟୀ କିନ୍ତୁ ଉପାସନା ପାଇଁ ସାଂପାଦିକ (ଆରୋପିତ) ପାଞ୍ଚଅଗ୍ନିରେ ଅନୁବୃତ୍ତ ସମିଧ, ଧୂମାଦି କଳ୍ପନାର ନିବୃତ୍ତ ପାଇଁ 'ତସ୍ୟାଗ୍ନିରେବ' (ସେହି ମୃତକ ପୁରୁଷର ଦାହପାଇଁ ପ୍ରସିଦ୍ଧ ଅଗ୍ନି ହିଁ ଅଗ୍ନି ଏବଂ ପ୍ରସିଦ୍ଧ ସମିଧ ହିଁ ସମିଧ ଅଟେ) ଇତ୍ୟାଦି କହନ୍ତି । ସେ ନିତ୍ୟ ଅନୁବାଦ (ଲୋକ ପ୍ରଚଳନ ଅଟେ) ଯଦି ଏହି ବାଦ(କଥନ) ଉପାସନା ପାଇଁ ହୁଏ, ଛାନ୍ଦୋଗ ସେହିଗୁଣର ଉପସଂହାର କରେ ।

(ଖ) ତେଣୁ ଏଠାରେ ପଞ୍ଚସଖାର ବିରୋଧ ଆଶଙ୍କା କରିବା ଉଚିତ୍ ନୁହେଁ, କାରଣ- ଏହି ପାଞ୍ଚସଂଖ୍ୟା ଉପାସନା ପାଇଁ ଆରୋପିତ ଅଗ୍ନିର ଅଭିପ୍ରାୟରୁ ନିତ୍ୟ ଅନୁବାଦ ରୂପ ହୁଏ । ବିଧିସମ୍ବନ୍ଧୀ କିନ୍ତୁ ନୁହେଁ । ତେଣୁ ଏଠାରେ କୌଣସି ଦୋଷ ନାହିଁ ସେହିପରି ପ୍ରାଣସମ୍ବାଦ ପ୍ରଭୃତିରେ ଅଧିକ ଗୁଣର ଅନ୍ୟତ୍ର ଉପସଂହାର ମଧ୍ୟ ବିରୁଦ୍ଧ ନୁହେଁ । ନ



ଆବାପ ଉଦ୍ ବାପ ଭେଦରେ ବେଦ୍ୟଭେଦ ଓ ବିଦ୍ୟାଭେଦର ଆଶଙ୍କା କରିବା ଉଚିତ୍, କାରଣ-କୌଣସି ବିଦ୍ୟାଂଶର ଅବାପ ଓ ଉଦ୍‌ବାପରେ ମହାନ୍ ବେଦ୍ୟରାଶିର ଅଭେଦ ଅବଗତ ହୁଏ । ତେଣୁ ଏହା ଗୋଟିଏ ବିଦ୍ୟା ।

## स्वध्यायस्य तथात्वेन हि समाचारेऽधिकाराच्च सववच्च तन्नियमः ॥ ३ ॥

## (୧) ସ୍ୱାଧ୍ୟାୟସ୍ୟ ତଥାତ୍ୱେନ ହି ସମାଚରେଽଧିକାରାଚ୍ଚ ସବବଚ୍ଚ ତନ୍ନିୟମଃ ॥ ୩-୩-୩ ॥

ସ୍ୱାଧ୍ୟାୟସ୍ୟ = ଏହି ଶିରୋବ୍ରତ ସ୍ୱାଧ୍ୟାୟର ଧର୍ମ ହୁଏ, ବିଦ୍ୟାର ନୁହେଁ । ହି= କାରଣ-, ସମାଚରେ=ବେଦବ୍ରତୋପ ଦେଶକସୂତ୍ରଗ୍ରନ୍ଥରେ, ତଥାତ୍ୱେ ନ=ଏହି ଏହି ସ୍ୱାଧ୍ୟାୟର ଧର୍ମରୂପରେ ବିହିତ ଅଛି । ଅଧିକାରାତ୍=କାରଣ- 'ନୈତଦଚୀର୍ଣ୍ଣବ୍ରତୋଽଧୀତେ' ତାହାର ପ୍ରକରଣ ଅଟେ । ଚ=ଏବଂ ଏହିପରି', ତନ୍ନିୟମଃ=ଏହା ଆଥର୍ବଣିକର ନିୟମ ଅଟେ ।

ମୂଳ-(କ) ଯଦପ୍ୟୁକ୍ତମ୍-ଆଥର୍ବଣିକାନାଂ ବିଦ୍ୟାଂ ପ୍ରତି ଶିରୋବ୍ରତାଦ୍ୟପେକ୍ଷଣାଦ-ନ୍ୟେଷାଂ ଚ ତଦନପେକ୍ଷଣାଦ୍ ବିଦ୍ୟାଭେଦ ଇତି, ତତ୍ପ୍ରତ୍ୟୁଚ୍ୟତେ ସ୍ୱାଧ୍ୟାୟସ୍ୟୈଷ ଧର୍ମୋ ନ ବିଦ୍ୟାୟାଃ କଥମିଦମବଗମ୍ୟତେ ? ଯତସ୍ତଥାତ୍ୱେନ ସ୍ୱାଧ୍ୟାୟଧର୍ମତ୍ୱେନ ସମାଚରେ ବେଦବ୍ରତୋପଦେଶପରେ ଗ୍ରନ୍ଥେ, ଆଥର୍ବଣିକା ଇଦମପି ବେଦବ୍ରତତ୍ୱେନ ବ୍ୟାଖ୍ୟାତମପି ସମାମନନ୍ତି । ନୈତଦଚୀର୍ଣ୍ଣବ୍ରତୋଽଧୀତେ' (ମୁ ୩-୨-୧୧) ଇତି ଋଧିକୃତବିଷୟାଦେତ ଛବ୍ଦଦଧ୍ୟୟନଶବ୍ଦାଚ୍ଚ ସ୍ୱୋପନିଷର୍ଦ୍ଧ୍ୟୟନଧର୍ମ ଏବୈଷ ନିର୍ଦ୍ଧାର୍ଯ୍ୟତେ ।

(ଖ) ନନୁ ଚ 'ତେଷାମେବୈତାଂ ବ୍ରହ୍ମବିଦ୍ୟାଂ ବଦେତ ଶିରୋବର୍ଦ୍ଧ୍ୟସ୍ତୁ ଚୀର୍ଣ୍ଣମ୍' (ମୁଣ୍ଡ ୩-୨-୧୦) ଇତି । ବ୍ରହ୍ମବିଦାସଂଯୋଗଶ୍ରବଣାଦେକୈବ ସର୍ବତ୍ର ବ୍ରହ୍ମବିଦ୍ୟେତି ସଙ୍କୀର୍ଯେତେଷ ଧର୍ମଃ, ନ ତତ୍ରାପ୍ୟେତାମିତିପ୍ରକୃତପ୍ରତ୍ୟବମର୍ଶାତ୍ । ପ୍ରକୃତତ୍ୱଞ୍ଚ ବ୍ରହ୍ମବିଦ୍ୟାୟ ଗ୍ରନ୍ଥବିଶେଷ୍ୟପେକ୍ଷମିତି ଗ୍ରନ୍ଥବିଶେଷସଂଯୋଗ୍ୟେ ବୈଷ ଧର୍ମଃ ।

(ଗ) ସବବଚ୍ଚ ତନ୍ନିୟସ୍ୱ ଇତି ନିଦର୍ଶନନିର୍ଦ୍ଦେଶଃ । ଯଥା ଚ ସବାଃ ସପ୍ତ ସୌର୍ଯ୍ୟାଦୟଃ ଶତୌଦନପର୍ଯ୍ୟନ୍ତ ବେଦାନ୍ତରୋଦିତତ୍ରେତାଗ୍ନ୍ୟନଭିସମ୍ବନ୍ଧାଦାଥର୍ବଣୋଦି-ତୈକାଗ୍ନ୍ୟଭିସମ୍ବନ୍ଧାଚ୍ଚଥର୍ବଣିକାକାମେବ ନିୟମ୍ୟନ୍ତେ, ତଥୈବାୟମପି ଧର୍ମଃ ସ୍ୱାଧ୍ୟାୟବିଶେ-ଷସମ୍ବନ୍ଧାତ୍ତତ୍ରୈବ ନିୟମ୍ୟତେ । ତସ୍ମାଦପ୍ୟନବଦ୍ୟଂ ବିଦ୍ୟୈକତ୍ୱମ୍ ।

(୨) ଭାଷାଂତର- (କ) ଆଥର୍ବଧିକାକୁ ବିଦ୍ୟା ପାଇଁ ଶିରୋବ୍ରତପ୍ରଭୃତିକୁ ଅପେକ୍ଷା କରେ ଓ ଅନ୍ୟ ଛାନ୍ଦୋଗାକୁ ସେ ଅପେକ୍ଷା କରେ ନାହିଁ । ତେଣୁ ବିଦ୍ୟାର ଭେଦ ଅଛି ବୋଲି ଯାହା କୁହାଯାଇଅଛି, ତାହାର ନିରାକରଣ କରାଯାଇଛି - ଏହି ଶିରୋବ୍ରତାଦି

ସ୍ୱାଧ୍ୟୟର ଧର୍ମ ଅଟେ, କିନ୍ତୁ ବିଦ୍ୟାର ନୁହେଁ । ଏହା କିପରି ଜଣାପଡ଼େ ? ଏହିପ୍ରକାର ସ୍ୱାଧ୍ୟାୟର ଧର୍ମରୂପଦ୍ୱାରା ସମାଚାରରେ (ବେଦର ବ୍ରତୋପଦେଶପରକ ସୂତ୍ରଗ୍ରନ୍ଥରେ) ଏହା ମଧ୍ୟ ବ୍ରତରୂପରେ କୁହାଯାଇଅଛି । ଏହା ଆଥର୍ବଣିକ ଲୋକ କହନ୍ତି । 'ନୈତଦଚୀର୍ଣ୍ଣବ୍ରତୋଽଧୀତେ' (ଶିରୋବ୍ରତର ଅନୁଷ୍ଠାନ କରାଯାଇନାହିଁ, ସେ ଏହାର ଅଧ୍ୟୟନ କରିପାରିବ ନାହିଁ ।) ଏହିପ୍ରକାର ଅଧିକୃତ ବିଷୟକ 'ଏତତ୍ ଶବ୍ଦରୁ ଏବଂ ଅଧ୍ୟୟନଶବ୍ଦରୁ ଏହା ନିଜ ଉପନିଷଦ୍ ଅଧ୍ୟୟନର ଧର୍ମ ଅଟେ ବୋଲି ନିର୍ଦ୍ଧାରଣ କରାଯାଇଅଛି ।

(ଖ) ପରନ୍ତୁ 'ତେଷାମେବୈତାମ୍' (ଯାହାଦ୍ୱାରା ବିଧିବତ୍ ଶିରୋବ୍ରତର ଅନୁଷ୍ଠାନ କରାଯାଇଅଛି, ସେହି ଗୁଡ଼ିକରେ ଏହି ବ୍ରହ୍ମବିଦ୍ୟା କରିବା ଉଚିତ୍) ଏହିପରି ବ୍ରହ୍ମବିଦ୍ୟାର ସଂଯୋଗର ଶ୍ରବଣ ହେଲେ ସମସ୍ତ ଶାଖାରେ ଏକ ହିଁ ବ୍ରହ୍ମବିଦ୍ୟା ହୁଏ । ତେଣୁ ଏହି ଶିରୋବ୍ରତ ଧର୍ମ ମଧ୍ୟ ସବୁ ସ୍ଥାନରେ କଣ ସମ୍ବନ୍ଧିତ ହେବ ?

(ଗ) ସବବଚ୍ଚ ତନ୍ନିୟମଃ ଏହି ଦୃଷ୍ଟାନ୍ତର ନିର୍ଦ୍ଦେଶ ଅଛି । ଯେପରି ଶତୌଦିନ ପର୍ଯ୍ୟନ୍ତ ସୌର୍ଯ୍ୟାଦି ସପ୍ତହୋମର ଅନ୍ୟବେଦରେ କଥିତ ନେତ୍ରାଗ୍ନି (ଦସିଣାଗ୍ନି, ଗାର୍ହପତ୍ୟ ଓ ଆହବନୀୟ) ଅଗ୍ନିର ସହିତ ସମ୍ବନ୍ଧ ନ ହେଲେ ଏବଂ ଆଥର୍ବଣିକରେ (ସେହି ହୋମ ଅଟେ) ଏହି ନିୟମ କରାଯାଇଅଛି । ସେପରି ମଧ୍ୟ ଏହି ଧର୍ମ ସ୍ୱାଧ୍ୟାୟବିଶେଷର ସମ୍ବନ୍ଧରୁ ଆଥର୍ବଣିକରେ ନିୟମିତ ହୁଏ । ତେଣୁ ବିଦ୍ୟାର ଏକତ୍ୱ ନିର୍ଦ୍ଦୋଷ ଅଟେ ।

## दर्शयति च ॥ ४॥

## (୧) ଦର୍ଶୟତି ଚ ॥ ୩-୩-୪ ॥

ଦର୍ଶୟତି ଚ='ସର୍ବେ ବେଦାଃ' ଏହିପ୍ରକାର ବେଦ ମଧ୍ୟ ସମସ୍ତ ବେଦାନ୍ତରେ ବିଦ୍ୟାର ଏକତ୍ୱ ଦେଖାଯାଏ ।

(୧) ମୂଳ-(କ) ଦର୍ଶୟତି ଚ ବେଦୋଽପି ବିଦ୍ୟୈକତ୍ୱଂ ସର୍ବବେଦାନ୍ତେଷୁ ? ବେଦ୍ୟୈକତ୍ୱୋପଦେଶାତ୍ 'ସର୍ବେ ବେଦା ଯତ୍ପଦମାମନନ୍ତି' (କ ୨-୧୫) ଇତି । ତଥା 'ଏତଂ ହ୍ୟେବ ବହବୃଚ ମହତ୍ୟୁକ୍ଥେ ମୀମାଂସନ୍ତ ଏତମଗ୍ନାବଧ୍ୱର୍ଯବ ଏତଂ ମହାବ୍ରତେ ଛାନ୍ଦୋଗାଃ' ଇତି ଚ । ତଥା 'ମହଦଭୟଂ ବଜ୍ରମୁଦ୍ୟତମ୍' (କ ୬-୨) ଇତି କାଠକ ଉକ୍ତସ୍ୟେଶ୍ୱରପୁଣସ୍ୟ ଭୟହେତୁତ୍ୱସ୍ୟ ତୈତ୍ତିରୀୟକେ ଭେଦଦର୍ଶନନିନ୍ଦାର୍ଥେ ପରାମର୍ଶୋ ଦୃଶ୍ୟତେ-'ଯଦା ହ୍ୟେବୈଷ ଏତସ୍ମିନ୍ନୁଦରମନ୍ତରଂ କୁରୁତେ । ଅଥ ତସ୍ୟ ଭୟଂ ଭବତି । ତତ୍ତ୍ୱେବ ଭୟଂ ଭବତି । ତତ୍ତ୍ୱେବ ଭୟଂ ବିଦୂଷୋଽମନ୍ୱାନସ୍ୟ' (ତୈ ୨-୭-୯) ଇତି ।

(ଖ) ତଥା ବାଜସନେୟକେ ପ୍ରାଦେଶମାତ୍ରସଂପାଦିତସ୍ୟ ବୈଶ୍ୱାନରସ୍ୟ ଛାନ୍ଦୋଗ୍ୟେ ସିଦ୍ଧବଦୁପାଦାନମ୍-ଯସ୍ତ୍ୱେତମେବଂ ପ୍ରଦେଶମାତ୍ରମଭିବି ମାନମାତ୍ମାନଂ



ବୈଶ୍ୱାନରମୁପାସ୍ତେ' (ଛା ୫-୧୮-୧) ଇତି । ତଥା ସର୍ବବେଦାନ୍ତପ୍ରତ୍ୟୟତ୍ୱେନାନ୍ୟତ୍ର ବିହିତାନାମୁକ୍‌ଥାଦୀନାମନ୍ୟତ୍ରୋପାସନବିଧାନାୟୋପାଦାନାତ୍‌ପ୍ରାୟ ଦର୍ଶନନ୍ୟାୟେନୋ-ପାସନାନାମପି ସର୍ବବେଦାନ୍ତପ୍ରତ୍ୟୟତ୍ୱସିଦ୍ଧିଃ ।

(୨) ଭାଷାଂତର- (କ) ବେଦ ମଧ୍ୟ ବିଦ୍ୟାର ଏକତ୍ୱକୁ ପ୍ରତିପାଦନ କରେ; କାରଣ- 'ସର୍ବେ ବେଦାଃ' (ସମସ୍ତ ବେଦ ଯେଉଁ ପଦକୁ ପ୍ରତିପାଦନ କରନ୍ତି । ଏହିପରି ସମସ୍ତ ବେଦାନ୍ତରେ ବିଦ୍ୟାର ଏକତ୍ୱ ଉପଦେଶ ଦିଆଯାଇଛି, 'ଏତଂ ହ୍ୟେବଂ' (ଏହାର ବୃହବୃଚ୍‌ଋଗ୍‌ବେଦୀ ମହାନ୍) ଉକ୍‌ଥରେ ବିଚାର କରନ୍ତି । ଅଧ୍ୱର୍ଯ୍ୟୁ ଏହି ଅଗ୍ନିରେ ଓ ଛାନ୍ଦୋଗ ଏହି ମହାବ୍ରତରେ ବିଚାର କରନ୍ତି) ତଥା 'ମହଦ୍‌ଭୟଂ' (ସେହି ବ୍ରହ୍ମ ମହାନ୍ ଭୟରୂପ ଓ ଉପରକୁ ଉଠୁଥିବା ବଜ୍ର ସଦୃଶ ଅଟେ) ଏହିପ୍ରକାର କାଠକରେ ଉକ୍ତ ଭୟହେତୁତ୍ୱ ଈଶ୍ୱରଗୁଣର 'ଯଦା ହ୍ୟେବୈଷ (ଯେତେବେଳେ ଏହି ଅଜ୍ଞାନୀ ଏହି ଅଦ୍ୱୟ ଆତ୍ମାରେ କିଛି ହିଁ ଭେଦ ସୃଷ୍ଟି କରେ, ତାହାଦ୍ୱାରା ଭୟପ୍ରାପ୍ତ ହୁଏ। କାରଣ- ସେହି ବ୍ରହ୍ମ ଭୟଦର୍ଶୀ ଓ ବିଦ୍ୱାନ୍‌ଙ୍କ ପାଇଁ ଭୟରୂପ) ଏହିପରି ତୈତ୍ତିରୀୟକରେ ଭେଦଦର୍ଶନର ନିନ୍ଦାପାଇଁ ପରାମର୍ଶ ଦେଖାଯାଏ ।

(ଖ) ବାଜସନେୟକରେ ପ୍ରାଦେଶମାତ୍ରରୁ ସଂପାଦିତ ବୈଶ୍ୱାନରର 'ଯସ୍ତ୍ୱେତଂ' (ଯେ କୌଣସି ଏହି ମୁଁ ଅଟେ) ଏହିପ୍ରକାର ଅଭିମାନର ବିଷୟ ହେବାକୁ ଥିବା ଏହି ପ୍ରଦେଶମାତ୍ର ବୈଶ୍ୱାନର ଆତ୍ମାର ଉପାସନା କରେ) ଏହିପରି ଛାନ୍ଦୋଗ୍ୟରେ ସିଦ୍ଧ ହେଲା ପରି ଉପାସନା ହୁଏ । ଏହିପରି ମଧ୍ୟ ସମସ୍ତ ବେଦାନ୍ତ ପ୍ରତ୍ୟୟରୂପରେ ଅନ୍ୟତ୍ର ବିହିତ ଉକ୍‌ଥାଦିପରି ଅନ୍ୟତ୍ର ଉପାସନା ବିଧାନ ପାଇଁ ଗ୍ରହଣ ହେଲେ ପ୍ରାୟଦର୍ଶନ ନ୍ୟାୟରେ ଉପାସନାରେ ମଧ୍ୟ ସମସ୍ତବେଦାନ୍ତ ପ୍ରତ୍ୟୟର ସିଦ୍ଧ ହୁଏ ।

## उपसंहाराधिकरणम् ॥ सू० ५ ॥

## ଉପସଂହାରାଧିକରଣ-୨

## उपसंहारेऽर्थाभेदाद्विधिशेषवत्समाने च ॥ ५ ॥

### (୧) ଉପସଂହାରୋଽର୍ଥାଭେଦାଦ୍‌ବିଧିଶେଷବତ୍ ସମାନେ ଚ ।୩-୩-୫।

ବିଧିଶେଷବତ୍=ଯେପରି ସବୁସ୍ଥଳରେ ଅଗ୍ନିହୋତ୍ର ଗୋଟିଏ ହେଲେ ତାହାର ଶେଷଗୁଣଗୁଡ଼ିକର ଉପସଂହାର ହୁଏ । ସେପରି ମଧ୍ୟ, ସମାନେ=ଉପାସନାରେ ମଧ୍ୟ, ଉପସଂହାରଃ=ଗୁଣୋପସଂହାର କରିବା ଉଚିତ୍ । ଅର୍ଥାଭେଦାତ୍=କାରଣ-ଉପାସ୍ୟର ଗୁଣଗୁଡ଼ିକ ଦ୍ୱାରା ପ୍ରାପ୍ୟ ଉପାସନା ରୂପ ଅର୍ଥର ସବୁ ଶାଖାଗୁଡ଼ିକରେ ଅଭେଦ ଥାଏ ।

(୨) ମୂଳ-(କ) ଇଦଂ ପ୍ରୟୋଜନସୂତ୍ରମ୍ । ସ୍ଥିତେ ଚୈବଂ ସର୍ବବେଦାନ୍ତ-ପ୍ରତ୍ୟୟତ୍ୱେ ସର୍ବବିଜ୍ଞାନାନାମନ୍ୟତ୍ରୋଦିତାନାଂ ବିଜ୍ଞାନଗୁଣାନାମନ୍ୟତ୍ରାପି ସମାନେ ବିଜ୍ଞାନ

ଉପସଂହାରୋ ଭବତି, ଅର୍ଥାଭେଦାତ୍ । ଯ ଏବ ହି ତେଷାଂ ଗୁଣାନାମେକତ୍ରାର୍ଥୋ ବିଶିଷ୍ଟବିଜ୍ଞାନୋପକାରକଃ ସ ଏବାନ୍ୟତ୍ରାପି । ଉଭୟତ୍ରାପି ହି ତଦେବୈକଂ ବିଜ୍ଞାନମ୍, ତସ୍ମାଦୁପସଂହାରଃ ।

(ଖ) ବିଧିଶେଷବତ୍ । ଯଥା ବିଧିଶେଷାଣାମଗ୍ନିହୋତ୍ରାଦିଧର୍ମାଣାଂ ତଦେବୈକମଗ୍ନିହୋତ୍ରାଦି କର୍ମସର୍ବତ୍ରେତ୍ୟର୍ଥାଭୋଦୁପସଂହରଣମେବିହାପି । ଯଦି ହି ବିଜ୍ଞାନଭେଦୋ ଭବେତ୍ତତୋ ବିଜ୍ଞାନାନ୍ତରନିବଦ୍ଧତ୍ୱାଦ୍ ଗୁଣାନାଂ ପ୍ରକୃତିବିକୃତିଭାବାଭାବାଚ୍ଚ ନ ସ୍ୟାଦୁପସଂହାରଃ । ବିଜ୍ଞାନୈକତ୍ୱେ ତୁ ନୈବମିତି । ଅସ୍ୟୈବ ତୁ ପ୍ରୟୋଜନସୂତ୍ରସ୍ୟ ପ୍ରପଞ୍ଚଃ ସର୍ବାଭେଦାଦିତ୍ୟାରଭ୍ୟ ଭବିଷ୍ୟତି ।

**(୨) ଭାଷାଂତର-** (କ) ଏହା ଗୋଟିଏ ପ୍ରୟୋଜନ ସୂତ୍ର । ଏହିପରି ସମଗ୍ର ବିଜ୍ଞାନରେ ସର୍ବବେଦାନ୍ତ ପ୍ରତ୍ୟୟତ୍ୱ ସିଦ୍ଧ ହେଲାପରେ ଅନ୍ୟଶାଖାଗୁଡ଼ିକରେ ଉକ୍ତ ବିଜ୍ଞାନ ଗୁଣଗୁଡ଼ିକର ଅନ୍ୟଶାଖାରେ ମଧ୍ୟ ସମାନବିଜ୍ଞାନରେ ଉପସଂହାର ହୁଏ, କାରଣ-ଏହାର ଅର୍ଥରେ କିଛି ପ୍ରଭେଦ ନାହିଁ । ସେହିଗୁଡ଼ିକର ଏକଶାଖାରେ ବିଶିଷ୍ଟ ବିଜ୍ଞାନର ଉପକାରକ ଯାହା ଏକପ୍ରୟୋଜନ ସେହି ଅନ୍ୟଶାଖାରେ ଅଛି । ଦୁଇଟିସ୍ଥଳରେ ମଧ୍ୟ ସେ ଏକ ବିଜ୍ଞାନ ଅଟେ, ତେଣୁ ଗୁଣର ଉପସଂହାର ହୁଏ ।

(ଖ) ବିଧିଶେଷବତ୍ । ଯେପରି ବିଧିର ଅଙ୍ଗ ଅଗ୍ନିହୋତ୍ରାଦିଧର୍ମର ସେହି ଅଗ୍ନି ହୋତ୍ରାଦିକର୍ମ ସର୍ବତ୍ର ଏକ ହୁଏ, ସେହିପରି ଅର୍ଥପ୍ରୟୋଜନର ଅଭେଦ ହେଲେ ସେହିପରି ଅର୍ଥପ୍ରୟୋଜନର ଅଭେଦ ହେଲେ ସେହିସବୁ ଧର୍ମର ଉପସଂହାର ହୁଏ । ସେହିପରି ପ୍ରୟୋଜନର ଅଭିନ୍ନ ହେଲେ ଏଠାରେ ମଧ୍ୟ ଧର୍ମର ଉପସଂହାର ହୁଏ । ଯଦି ଶାଖାଭେଦରେ ବିଜ୍ଞାନର ଭେଦ ହୁଏ, ତାହାଲେ ସେହି ବିଜ୍ଞାନଭିନ୍ନ ଅନ୍ୟ ବିଜ୍ଞାନରେ ଗୁଣର ନିରୁଦ୍ଧ ହେଲେ ଏବଂ ପ୍ରକୃତି ବିକୃତିଭାବ ନହେଲେ ଉପସଂହାର ହୁଏ ନାହିଁ । କିନ୍ତୁ ବିଜ୍ଞାନ ଏକ ହେଲେ ଏହା କିନ୍ତୁ ହୁଏ ନାହିଁ । ଏହି ପ୍ରୟୋଜନ ସୂତ୍ରର ବିସ୍ତାର 'ସର୍ବାଭେଦାତ୍' (ବ୍ର ସୂ ୩।୩।୨୫) ସୂତ୍ରର ଆରମ୍ଭରେ କୁହାଯିବ ।

## ३ अन्यथात्वाधिकरणम् ॥ सू० ६ -८ ॥

## ଅନ୍ୟଥାତ୍ୱାଧିକରଣ-୩

**अन्यथात्वं शब्दादिति चेन्नाविशेषात् ॥ ३ ॥**

### (୧) ଅନ୍ୟଥାତ୍ୱଂ ଶବ୍ଦାଦିତି ଚେନ୍ନାବିଶେଷାତ୍ ।୩-୩-୬॥

ଶବ୍ଦାତ୍= 'ତ୍ୱଂ ନ ଉଦ୍‌ଗାୟ' 'ତମୁଦ୍ ଗୀଥମୁପାସାଞ୍ଚକ୍ରିରେ' ଇତ୍ୟାଦି ଶ୍ରୁତିଦ୍ୱାରା, ଅନ୍ୟଥାତ୍ୱମ୍= ବିଦ୍ୟାର ଭେଦ ହେବା ଉଚିତ । ଇତି ଚେନ୍ନ = ଯଦି ଏହା



କହ ତେବେ ଏହା ଠିକ୍ ନୁହେଁ ଅବିଶେଷାତ୍ = କାରଣ - ଶ୍ରୁତି ଅଭିପ୍ରାୟରେ ବିଶେଷତା ନାହିଁ, ତେଣୁ ବିଦ୍ୟାର ଭେଦ ହୁଏ ନାହିଁ ।

(୨) ମୂଳ- (କ) ବାଜସନେୟକେ 'ତେହ ଦେବା ଊଚୁର୍ହନ୍ତାସୁରାନ୍ୟଜ୍ଞ ଉଦ୍‌ଗୀଥେନା ତ୍ୟୟାମେତି' (ବୃ ହ ୧-୩-୧୧ 'ତେ ହ ବାଚମ୍ୟୁଚୁସ୍ତ୍ୱଂନ ଉଦ୍‌ଗାୟ' (ବୃହ ୧।୩।୨) ଇତି ପ୍ରକ୍ରମ୍ୟ ବାଗାଦୀନ୍ ପ୍ରାଣାନସୁରପାପ୍ମବିଦ୍ଧତ୍ୱେବ ନିଚିଦ୍ୱା ମୁଖ୍ୟପ୍ରାଣ ପରିଗ୍ରହଃ ପଠ୍ୟତେ 'ଅଥ ହେମାମସନ୍ୟଂ ପ୍ରାଣମୁଚୁସ୍ତ୍ୱଂ ନ ଉଦ୍‌ଗାୟେତି ତଥେତି ତେଭ୍ୟ ଏଷ ପ୍ରାଣ ଉଦଗାୟତ୍' (ବୃ ହ ୧।୩।୭) ଇତି ।

(ଖ) ତଥା ଛାନ୍ଦୋଗ୍ୟେଽପି 'ତଦ୍ଧ ଦେବ ଉଦଗୀଥମଜହ୍ରୁରନେନୈନାନ ମଭି ଭବିଷ୍ୟାମଃ' (ଛା ୧।୨।୧) ଇତି ପ୍ରକ୍ରମ୍ୟୋରାନ୍ ପ୍ରାଣନସୁରପାପୁବିଦ୍ଧତ୍ୱେନ ନିନିଦ୍ୱା ତଥୈବ ମୁଖ୍ୟପ୍ରାଣପରିଗ୍ରହଃ ପଠ୍ୟତେ 'ଅଥହ ଯ ଏବାୟଂ ମୁଖ୍ୟଃ ପ୍ରାଣସ୍ତମୁଦ୍‌ଗୀଥ ମୁପାସାଞ୍ଚକାର' (ଛା ୧।୨।୭) ଇତି । ଇଭୟତ୍ରାପି ଚ ପ୍ରାଣପ୍ରଶଂସୟା ପ୍ରାଣବିଦ୍ୟାବିଧିର-ଧ୍ୟବସୀୟତେ ।

(୨) ଭାଷାଂତର-(କ) ବାସଜନେୟକରେ 'ତେ ହ' 'ସେହି ଦେବତାମାନେ କହିଲେ, ଆମ୍ଭେ ଏହି ଯଜ୍ଞରେ ଉଦ୍‌ଗୀଥ ଦ୍ୱାରା ଅସୁରମାନଙ୍କୁ ଅତିକ୍ରମଣ କରିବୁ, 'ତେ ହ ବାଚ' 'ସେହି ଦେବତାମାନେ କଥାରେ କହିଲେ, ତୁମ୍ଭେ ଆମ୍ଭ ପାଇଁ ଉଦ୍‌ଗାନ କର, ବାଣୀ ବହୁତ ଭଲ) ଏହିପରି ଉପକ୍ରମ କରି ବାଗାଦି ପ୍ରାଣ ଅସୁର ପାପଦ୍ୱାରା ଆକ୍ରାନ୍ତ ହୋଇଛି ।) ଏହିପରି ନିନ୍ଦାକରି 'ଅଥ ହେମମାସନ୍ୟଂ' (ପୁଣି ନିଜମୁଖରେ ରହି ପ୍ରାଣ କହିଲା, ତୁମେ ମୋପାଇଁ ଉଦ୍‌ଗାନ କର, ତେବେ ବହୁତ ଭଲ ହେବ । ଏହା କହି ଏହି ପ୍ରାଣ ତାହାପାଇଁ ଉଦ୍‌ଗାନ କଲା) ଏହିପ୍ରକାର କାର ମୁଖ୍ୟପ୍ରାଣର ପରିଗ୍ରହ କରନ୍ତି ।

(ଖ) ସେହିରି ଛାନ୍ଦୋଗ୍ୟରେ ମଧ 'ତଦ୍ଧ ଦେବା' ସେଥିରେ ଦେବତାମାନେ ଏହା ଶୋଚନା କରି ତାହାଦ୍ୱାରା ଏହାର ପରାଭବ କରିବୁ, ଉଦ୍‌ଗୀଥର ମଧ ଅନୁଷ୍ଠାନ କରାଯାଇଛି) ଏହିପରି ଉପକ୍ରମ କରି ଅନ୍ୟପ୍ରାଣ ଅସୁର ପାପଦ୍ୱାରା ଆକ୍ରାନ୍ତ ହେଲେ ତାହାକୁ ନିନ୍ଦାକରି ସେପରି ମଧ 'ଅଥ ହ ଯ' (ପୁଣି ଏହି ଯାହା ପ୍ରସିଦ୍ଧ ମୁଖ୍ୟ ପ୍ରାଣ ଅଟେ ତାହାର ରୂପରେ ଉଦ୍‌ଗୀଥର ଉପାସନ (ତାହାର ଉଦ୍‌ଗୀଥ ରୂପରେ ଉପାସନା କଲେ) ଏହି ପ୍ରକାର ମୁଖ୍ୟପ୍ରାଣର ପରିଗ୍ରହ କରନ୍ତି । ବାଜସନେୟନ ଓ ଛାନ୍ଦୋଗ୍ୟ ଏହି ଦୁଇଟିରେ ପ୍ରାଣର ସଂସାରୁ ଣବିଦ୍ୟା ବିଧିର୍ ନିଶ୍ଚିତ ହୁଏ ।

(୩) ମୂଳ- (କ) ତତ୍ର ସଂଶୟଃ କିମତ୍ର ବିଦ୍ୟାଭେଦଃ ସ୍ୟାଦାହୋସ୍ୱିଦ୍ ବିଦ୍ୟେକ ତ୍ୱମିତି ? କିଂ ତାବତ୍ ପ୍ରାପ୍ତମ୍ ? ପୂର୍ବେଣ ନ୍ୟାୟେନ ବିଦ୍ୟେକତ୍ୱମିତି । ନନୁ ନ ଯୁକ୍ତଂ

ବିଦ୍ୟୈକତ୍ୱଂ ପ୍ରକ୍ରମଭେଦାତ୍ । ଅନ୍ୟଥା ହି ପ୍ରକ୍ରମନ୍ତେ ବାଜସନେୟିନୋଽନ୍ୟଥା ଛାନ୍ଦୋଗାଃ- 'ତ୍ୱଂ ନ ଉଦ୍‌ଗାୟ' ବୃ ୧-୩-୨ ଇତି ବାଜସନେୟିନ ଉଦଗୀଥସ୍ୟ କର୍ତ୍ତୃତ୍ୱେନ ପ୍ରଣମାମନନ୍ତି ଛାନ୍ଦୋଗାସ୍ତୂଦ୍‌ଗୀଥତ୍ୱେନ 'ତମୁଦ୍‌ଗୀଥମୁପାସାଂଚକ୍ରିରେ ଛା ୧।୨।୭ ଇତି ।

(ଖ) ତତ୍ କଥଂ ବିଦ୍ୟୈକତ୍ୱଂ ସ୍ୟାଦିତି ଚେତ୍ - ନୈଷ ଦୋଷଃ ନ ହ୍ୟେତାବତା ବିଶେଷେଣ ବିଦ୍ୟୈକତ୍ୱମପଗଚ୍ଛତି, ଅବିଶେଷସ୍ୟାପି ବହୁତରସ୍ୟ ପ୍ରତୀୟମାନତ୍ୱାତ୍ ତଥାହି ଦେବାସୁରସଂଗ୍ରାମୋପ୍ରକ୍ରମତ୍ୱମସୁରାତ୍ୟୟାଭିପ୍ରାୟ ଉଦ୍‌ଗୀଥୋ ନ୍ୟାସୋ ବାଗାଦିସଙ୍କୀର୍ତ୍ତନଂ ତନ୍ନିନ୍ଦୟା ମୁଖ୍ୟପ୍ରାଣବ୍ୟାପାଶ୍ରୟସ୍ତଦ୍ ବୀର୍ଯ୍ୟାଚାସୁରବିଧ୍ୱଂସନଷ୍ଟଲୋଷ୍ଟନିଦର୍ଶନେନେତ୍ୟେବଂ ବହବୋଽର୍ଥ । ଉଭୟତ୍ରାପ୍ୟବିଶିଷ୍ଟାଃ ପ୍ରତୀୟନ୍ତେ ।

(ଗ) ବାଜସନେୟକେଽପି ଚୋଦ୍‌ଗୀଥସାମାନାଧିକରଣ୍ୟଂ ପ୍ରାଣସ୍ୟ ଶ୍ରୁତମ୍- 'ଏଷଉବା ଉଦ୍‌ଗୀଥଃ' (ବୃହ ୧।୩।୨୩) ଇତି । ତସ୍ମାଚ୍ଛାନୋଗ୍ୟେଽପି କର୍ତ୍ତୃତ୍ୱଂ ଲକ୍ଷୟିତବ୍ୟମ୍ ତସ୍ମାଚ୍ଚ ବିଦ୍ୟୈକତ୍ୱମିତି ।

**(୩) ଭାଷାଂତର-** (କ) ଏଠାରେ ସଂଶୟ ହୁଏ ଯେ ଏଠାରେ କଣ ବିଦ୍ୟାର ଭେଦ ହୁଏ, ଅର୍ଥବା ବିଦ୍ୟା ଏକ ଅଟେ କି ? ଏଠାରେ କଣ ପ୍ରାପ୍ତ ହେବ ? ପୂର୍ବନ୍ୟାୟରେ ବିଦ୍ୟା ଏକ ବୋଲି ପ୍ରାପ୍ତ ହୁଏ । ଉନ୍ତୁ ପକ୍ରମ ଭେଦରେ ବିଦ୍ୟାର ଏକତ୍ୱ ଠିକ୍‌ନୁହଁ କାରଣ- ବାଜସନେୟୀ ଅନ୍ୟପ୍ରକାରେ ଉପକ୍ରମ କରନ୍ତି ଏବଂ ଛାନ୍ଦୋଗ ଅନ୍ୟଗତିରେ 'ତ୍ୱଂ ନ ଉଦ୍‌ଗାୟ' (ଏହିପରି ବାଜସନେୟୀ ପ୍ରାଣକୁ ଉଦ୍‌ଗାଥାର କର୍ତ୍ତା ରୂପରେ କହନ୍ତି । ଛାନ୍ଦୋଗ କିନ୍ତୁ ତମୁଦ୍‌ଗୀତଥ') ତାହାକୁ ଉଦ୍‌ଗୀଥ ରୂପରେ ଉପାସନା କରିଥିଲେ) ଏହିପରି ପ୍ରାଣକୁ ଉଦ୍‌ଗୀଥ ରୂପରେ କର୍ମରୂପରେ କହନ୍ତି ।

(ଖ) କିନ୍ତୁ ତଦ୍ୱାରା ବିଦ୍ୟାର ଏକତ୍ୱ କିପରି ହେବ ? ପୂର୍ବପକ୍ଷ - ଯଦି ତୁମେ ଏହା କହ, ତାହା ଏଠାର ଦୋଷଯୁକ୍ତ ତେବେ ହେବା କାରଣ 'ଏତେ' ବିଶେଷରେ ବିଦ୍ୟାର ଏକତ୍ୱ ନିବୃତ୍ତ ହୁଏ ନାହିଁ, କାରଣ-ବହୁତ ଅବିଶେଷ ମଧ୍ୟ ପ୍ରତୀତ ହୁଏ । ଯେପରି ଦେବା ସୁର ସଂଗ୍ରାମର ଉପକ୍ରମ, ଅସୁରମାନଙ୍କର ପରାଭବ ପାଇଁ ସମ୍ବାଦ, ଉଦ୍‌ଗୀଥର ଉପନ୍ୟାସ, ବାଗାଦିସଙ୍କୀର୍ତ୍ତନ, ତାହାର ନିନ୍ଦାରୁ ମୁଖ୍ୟପ୍ରାଣର ଆଶ୍ରୟ ଏବଂ ପାଷାଣ ଦୃଷ୍ଟାନ୍ତରୁ ସେହି ପ୍ରାଣର ବୀର୍ଯ୍ୟପରାକ୍ରମ ଦ୍ୱାରା ଅସୁରମାନଙ୍କର ବିଧ୍ୱଂସ, ଏହି ପ୍ରକାରରେ ବହୁତ ଅର୍ଥ ଦୁଇଟି ଶାଖାରେ ସମାନ ରୂପରେ ପ୍ରତୀତ ହୁଏ ।

(ଗ) 'ଏଷଉବା' (ଏହା ଉଦଗୀଥ ଅଟେ) ଏହିପ୍ରକାର ବାଜସନେୟକରେ ପ୍ରାଣର ଉଦ୍‌ଗୀଥ ସାମାନାଧିକରଣ୍ୟଶ୍ରୁତି ହୁଏ । ଏହାଦ୍ୱାରା ଛାନ୍ଦୋଗ୍ୟରେ ପ୍ରାଣର କର୍ତ୍ତୃତ୍ୱଲକ୍ଷଣା କରିବା ଉଚିତ୍ । ତେଣୁ ବିଦ୍ୟା ଏକ ଅଟେ ।



## न वा प्रकरणभेदात्परोवरीयस्त्वादिवत् ॥ ७ ॥
## (୧) ନ ବା ପ୍ରକରଣଭେଦାତପରୋବରୀୟସ୍ତ୍ୱାଦିବତ ॥ ୩-୩-୭ ॥

ପ୍ରକରଣଭେଦାତ୍ = ପ୍ରକରଣଭେଦରୁ, ନ ବା = ବିଦ୍ୟା ଏକ ନୁହେଁ । ପରୋ-ବରୀୟସ୍ତ୍ୱାନୁଦଗୀଥଃ = ଏହି ଶ୍ରୁତି ଦ୍ୱାରା ବିହିତ ପରୋବରୀୟସ୍ତ୍ୱାଦି ଗୁଣବିଶିଷ୍ଟ ଉଦ୍‌ଗୀଥ ଉପାସନାରୁ ଚକ୍ଷୁ ଆଦିତ୍ୟାଦିଗତ ହିରଣ୍ମୟଶ୍ମଶ୍ରୁ ଆଦି ଗୁଣ ବିଶିଷ୍ଟ ଉଦ୍‌ଗୀଥ ଉପାସନାରୁ ଭିନ୍ନ ଅଟେ ।

ମୂଳ- (କ) ନ ବା ବିଦ୍ୟୈକତ୍ୱମତ୍ର ନ୍ୟାୟଃ, ବିଦ୍ୟାଭେଦ ଏବାତ୍ର ନ୍ୟାୟଃ, କସ୍ମାତ ? ପ୍ରକରଣଭେଦାଦିତି, ପ୍ରକ୍ରମଭେଦାଦିତ୍ୟର୍ଥଃ । ତଥାହି – ଇହ ପ୍ରକ୍ରମଭେଦୋ ଦୃଶ୍ୟତେ, ଛାନ୍ଦୋଗ୍ୟେ ତାବତ୍ 'ଓମିତ୍ୟେତଦକ୍ଷରମୁଦ୍‌ଗୀଥମୂପାସୀତ' (ଛା ୧।୧।୧) ଇତ୍ୟେବମୁଦ୍‌ଗୀଥାବୟବ ସ୍ୟୋଂକାରସ୍ୟୋପାସ୍ୟତ୍ୱଂ ପ୍ରସ୍ତୁତ୍ୟ ରସତମାଦିଗୁଣୋପବ୍ୟାଖ୍ୟାନଂ ତତ୍ରକୃତ୍ୱା 'ଅଥ ଖଲ୍ୱେତସ୍ୟୈବାକ୍ଷରସ୍ୟୋପବ୍ୟାଖ୍ୟାନଂ ଭବତି' (ଛା ୧।୧।୧୦) ଇତି ।

(ଖ) ପୁନରପି ତମେବୋହଗୀଥାବୟବମୋଂକାରମନୁବର୍ତ୍ତ୍ୟ ଦେବାସୁରଖ୍ୟାୟିକା-ଦ୍ୱାରେଣ ତମ୍ 'ପ୍ରାଣମୁଦ୍‌ଗୀଥମୁପାସାଂଚକ୍ରିରେ, ଛା୧।୨।୨ ଇତ୍ୟାହା ତତ୍ର ଯଦ୍ୟୁଦ୍-ଗୀଥଶବ୍ଦେନ ସକଳା ଭକ୍ତିରଭିପ୍ରେୟେତ ତସ୍ୟାଶ୍ଚ କର୍ତ୍ତୋଦ୍‌ଗାତର୍ତ୍ତ୍ୱିକତତ୍ ଉପକ୍ରମ ଶ୍ଚୋପରୁଧ୍ୟେତ ଲକ୍ଷଣା ଚ ପ୍ରସଜ୍ୟେତ । ଉପକ୍ରମମତନ୍ତ୍ରେଣ ଚୈକସ୍ମିନ ବାକ୍ୟ ଉପସଂହାରେଣ ଭବିତବ୍ୟମ୍ । ତସ୍ମାଦତ୍ର ତାବଦୁଦ୍‌ଗୀଥାବୟବ ଓଁକାରେ ପ୍ରାଣଦୃଷ୍ଟିରୁ ପଦିଶ୍ୟତେ ।

(ଗ) ବାଜସନେୟକେ ତ୍ୱଦ୍‌ଗୀଥଶବ୍ଦେନାବୟବ ଗ୍ରହଣେ କାରଣ । ଭାବାତ୍ ସକଳୈବ ଭକ୍ତି ରାବେଦ୍ୟତେ । 'ତ୍ୱଂ ନ ଉଦ୍‌ଗାୟ' ବୃହ ୧।୩।୨ ଇତ୍ୟପି ତ୍ସ୍ୟାଃ କର୍ତ୍ତାଦ୍‌ଗାତର୍ତ୍ତ୍ୱିକ ପ୍ରାଣତ୍ୱେନ ନିରୁପ୍ୟତ ଇତି ପ୍ରସ୍ଥାନାନ୍ତରମ୍ । ଯଦପି ତତ୍ରୋଦ୍‌ଗୀଥ ସାମାନାଧିକରଣ୍ୟଂ ପ୍ରାଣସ୍ୟ ତଦପ୍ୟୁଦ୍‌ଗାତୃତ୍ୱେନୈବ ଦିଦର୍ଶୟିଷତସ୍ୟ ପ୍ରାଣସ୍ୟ ସର୍ବାତ୍ମତ୍ୱ ପ୍ରତିପାଦନାର୍ଥମିତି ନ ବିଦୈକତ୍ୱମାବହତି । ସକଳ ଭକ୍ତି ବିଷୟ ଏବ ଚ ତତ୍ରାପ୍ୟୁଦ୍‌ଗୀ-ଥଶବ୍ଦ ଇତି ବୈଷମ୍ୟମ୍ ।

(୨) ଭାଷାଂତର – ସିଦ୍ଧାନ୍ତ (କ) ଏଠାରେ ବିଦ୍ୟାର ଏକତ୍ୱ ଉଚିତ୍ ନୁହେଁ କିନ୍ତୁ ବିଧ୍ୟାର ଭେଦ କହିବା ଠିକ୍ । କିପରି ? ପ୍ରକରଣ ଭେଦରେ ଉପକ୍ରମ ଭେଦରେ ଏହାହିଁ ଅର୍ଥ ହୁଏ । ଯେପରିକି 'ଓଁ ମିତ୍ୟେତଦକ୍ଷରସ' 'ଓଁ ଏହି ଅକ୍ଷର ଉଦ୍‌ଗୀଥ ଅଟେ, ତାହାର ଉପାସନା କରିବା ଉଚିତ୍ । ଏହିପରି ଉଦ୍‌ଗୀଥର ଅବୟବ ଅକାରରେ ଉପାସ୍ୟତ୍ୱ ପ୍ରସ୍ତୁତ

କରି ଏବଂ ସେଠାରେ ରସତମାଦିଗୁଣର ଉପବ୍ୟାଖ୍ୟାନ କରି 'ଖେଲ୍ୱେତସୈବ' ନିଶ୍ଚିତ ଭାବେ ଏହି ପ୍ରକୃତ ଉଦ୍‌ଗୀଥ ଅକ୍ଷରର ଉପବ୍ୟାଖ୍ୟାନ ହୁଏ) ଏହିପରି ଏହାରେ ଛାନ୍ଦୋଗ୍ୟରେ ଉପକ୍ରମଭେଦ ଦେଖାଯାଏ ।

(ଖ) ପୁନଶ୍ଚ ସେହି ଉଦ୍‌ଗୀଥାବୟବ ଓଁକାରର ଅନୁବୃତ୍ତି କରି ଦେବାସୁର ଆଖ୍ୟାୟିକାଦ୍ୱାରା ତାହାକୁ 'ପ୍ରାଣମୁଦ୍‌ଗୀଥ' ସେହି ଦେବତା ନାସିକାର ଅଗ୍ରଭାଗରେ ପ୍ରାଣ ରୂପରେ ଉଦ୍‌ଗୀଥକୁ ଉପାସନା କଲେ) ଏହିପରି ଶ୍ରୁତି କହେ । ଏହି ଛାନ୍ଦୋଗ୍ୟରେ ଯଦି ଉଦ୍‌ଗୀଥ ଶବ୍ଦରୁ ସଂପୂର୍ଣ୍ଣ ସାମଭକ୍ତି ଅଭିପ୍ରେତ ହୁଏ ଏବଂ ତାହାର କର୍ତ୍ତା ଉଦ୍‌ଗାତା ଋତ୍ୱିକ ହୁଏ, ତେବେ ଉପକ୍ରମର ବାଧା ହେବ ଓ ଲକ୍ଷଣା ପ୍ରସକ୍ତ ହେବ । ଗୋଟିଏ ବାକ୍ୟରେ ଉପକ୍ରମ ଅନୁସାରେ ଉପସଂହାର ହେବା ଉଚିତ୍ । ତେଣୁ ଏଠାରେ ଉଦ୍‌ଗୀ ଥାଦି ଅବୟବ ଓଁକାରରେ ପ୍ରାଣ ଦୃଷ୍ଟିର ଉପଦେଶ ହୁଏ ।

(ଗ) ବାଜସନେୟକରେ ଉଦ୍‌ଗୀଥଶବ୍ଦଦ୍ୱାରା ଅବୟବ ଗ୍ରହଣ କରିବାର କାରଣ ନହେଲେ ସଂପୂର୍ଣ୍ଣ ସାମଭକ୍ତି କୁହାଯାଏ । 'ତ୍ୱଂ ନ ଉଦ୍‌ଗାୟ' ଏଠାରେ ମଧ୍ୟ ତାହାର କର୍ତ୍ତା ଉଦ୍‌ଗାତ ଋତ୍ୱିକ ପ୍ରାଣ ରୂପରେ ନିରୂପଣ କରାଯାଇଅଛି, ତେଣୁ ଏହା ଅନ୍ୟ ପ୍ରସ୍ଥାନ ଅଟେ । ସେଠାରେ ଯାହା ପ୍ରାଣର ଉଦ୍‌ଗୀଥ ସହିତ ସାମାନାଧିକରଣଂ ହୁଏ, ସେହି ହିଁ ଉଦ୍‌ଗାତୃ ରୂପରେ ଦେଖାଇବା ପାଇଁ ଅଭିଳଷିତ ପ୍ରାଣରେ ସର୍ବାତ୍ମତ୍ୱ ପ୍ରତିପାଦନ ପାଇଁ ରହେ । କିନ୍ତୁ ବିଦ୍ୟାର ଏକତ୍ୱକୁ ବହନ କରିବା ପାଇଁ ନୁହେଁ ସେହି ବାହିସହନୟକରେ ମଧ୍ୟ ଉଦ୍‌ଗୀଥ ଶବ୍ଦ ସମସ୍ତ ଭକ୍ତି ବିଷୟକ ହୁଏ । ତେଣୁ ଦୁଇଟି ଶାଖାରେ ବୈଲକ୍ଷଣ୍ୟ ଅଛି । ଅର୍ଥାତ୍ ଭେଦ ଅଛି ।

(୩) ମୂଳ- (କ) ନ ଚ ପ୍ରାଣସ୍ୟୋଦ୍ ଗାତୃତ୍ୱମସମ୍ଭବେନ ହେତୁନା । ପରିତ୍ୟଜ୍ୟତେ, ଉଦ୍‌ଗୀଥଭାବବଦୁଦ୍ ଗାତୃଭାବସ୍ୟାପ୍ୟୁପାସନାର୍ଥତ୍ୱେନୋପଦିଶ୍ୟମାନତ୍ୱାତ୍ । ପ୍ରାଣବୀର୍ଯ୍ୟେଣୈବ ଚୋଦ୍‌ଗାତୌଦ୍‌ଗାତ୍ରଂ କରୋତୀତି ନାସ୍ତ୍ୟସମ୍ଭବଃ । ତଥା ଚ ତତ୍ରୈବ ଶ୍ରାବିତମ୍ – 'ବାଚା ନ ହ୍ୟେବ ସ ପ୍ରାଣେନ ଚୋଦ୍‌ଗାୟତ୍' (ବୃହ ୧-୩-୨୪) ଇତି ।

(ଖ) ନ ଚ ବିବକ୍ଷିତାର୍ଥଭେଦେଽବଗମ୍ୟମାନେ ବାକ୍ୟଛାୟାନୁକାରମାତ୍ରେଣ ସମାନାର୍ଥତ୍ୱମଧ୍ୟବସାତୁଂ ଯୁକ୍ତମ୍ । ତଥାହ୍ୟଭ୍ୟୁଦୟବାକ୍ୟେ ପଶୁକାମବାକ୍ୟେ ଚ – 'ତ୍ରେଧା ତଣ୍ଡୁଳାନ୍ ବିଭଜେଦ୍ୟେ ମଧ୍ୟମାଃ ସ୍ୟୁସ୍ତାନଗ୍ନୟେଦାତ୍ରେ ପୁରୋଡାଶମଷ୍ଟାକପାଲଂ କୁର୍ଯ୍ୟାତ୍' ଇତ୍ୟାଦି ନିର୍ଦ୍ଦେଶସାମ୍ୟେଽପ୍ୟୁପକ୍ରମଭେଦାଦଭ୍ୟୁଦୟବାକ୍ୟେ ଦେବତାପନୟୋଽଧ୍ୟବସିତଃ, ପଶୁକାମବାକ୍ୟେ ତୁ ଯାଗବିଧିଃ । ତଥେହାପ୍ୟୁପକ୍ରମଭେଦାଦ୍ ବିଦ୍ୟାଭେଦଃ ।

(ଗ) ପରୋବରୀୟସ୍ତ୍ୱାଦିବତ୍ । ଯଥା ପରମାତ୍ମଦୃଷ୍ଟ୍ୟଧ୍ୟସମାମ୍ୟେଽପି 'ଆକାଶୋ ହ୍ୟେବୈଭ୍ୟୋ ଜ୍ୟାୟାନାକାଶଃ ପରାୟଣମ୍' (ଛା ୧-୯-୧), 'ସ ଏଷ ପରୋବରୀୟା-



ନୁଦ୍‌ଗୀଥସ ଏଷୋଽନନ୍ତଃ' (ଛା ୧-୯-୨) ଇତି ପରୋବରୀୟସ୍ତ୍ୱଗୁଣବିଶିଷ୍ଟମୁଦ୍‌ଗୀ-ଥୋପାସନମକ୍ଷ୍ୟାଦିତ୍ୟାଦିଗତହିରଣ୍ୟଶ୍ମଶ୍ରୁତ୍ୱାଦିଗୁଣବିଶିଷ୍ଟୋଦଘଗୀଥୋପାସନାଦ୍ ଭିନ୍ନମ୍ । ନ ଚେତରେତରଗୁଣୋସସଂହାର ଏକସ୍ୟାମପି ଶାଖାୟାଂ ତଦ୍‌ବଚ୍ଛାଖାନ୍ତରସ୍ଥେଷ୍ୱ-ପ୍ୟେବଂଜାତୀୟକେଷୁପାସନେଷ୍ୱିତି ।

(୩) ଭାଷାଂତର - (କ) ପ୍ରାଣରେ ଉଦ୍‌ଗାତତ୍ୱର ଅସମ୍ଭବ ହେତୁ ତ୍ୟାଗ କରାଯାଇନାହିଁ, କାରଣ- ଉଦ୍‌ଗୀଥଭାବ ପରି ଉଦ୍‌ଗାତୃଭାବ ଉପାସନା ପାଇଁ ଉପଦିଶ୍ୟମାନ ହୁଏ ଏବଂ ଉଦ୍‌ଗାତା ପ୍ରାଣର ସାମର୍ଥ୍ୟରୁ ହିଁ ଔଦଗାତ୍ରକର୍ମ କରେ । ତେଣୁ ପ୍ରାଣରେ ଉଦ୍‌ଗାତୃତ୍ୱର ଅସମ୍ଭବ ନୁହେଁ । 'ବାଚା ଚ ହ୍ୟେବ' (ଉଦ୍‌ଗାତା ପ୍ରାଣପ୍ରଧାନବାଣୀ ଦ୍ୱାରା ଓ ଆମ୍ଭଭୁତି ପ୍ରାଣଦ୍ୱାରା ଉଦ୍‌ଗାନ କରେ) ଏହିପରି ସେଠାରେବାଜସନେୟକରେ ଶ୍ରବଣ କରାଏ ।

(ଖ) ଏହିପରି ବିବକ୍ଷିତ ଅର୍ଥର ଭେଦ ଜଣାପଡ଼ିଲେ ବାକ୍ୟ-ଛାୟାର ସାଦୃଶ୍ୟରୁ ସମାନାର୍ଥତ୍ୱ (ଏକାର୍ଥତ୍ୱ)କୁ ନିଶ୍ଚୟ କରିବା ଠିକ୍ ନୁହେଁ । କାରଣ – ଅଭ୍ୟୁଦୟେଷ୍ଟି ବାକ୍ୟରେ ଓ ପଶୁକାମେଷ୍ଟବିଧାୟକବାକ୍ୟରେ 'କ୍ରେଧା ତଣ୍ଡୁଲାନ୍' (ତଣ୍ଡୁଳକୁ ତିତିଭାଗ କରି ସେଥିରେ ଯାହା ମଧ୍ୟମ ହୁଏ, ତାହାର ଦାତୃତ୍ୱ ଗୁଣବିଶିଷ୍ଟ ଅଗ୍ନିପାଇଁ ଅଷ୍ଟକପାଳ ପୁରୋଡ଼ାଶ କରେ) ଇତ୍ୟାଦି ନିର୍ଦ୍ଦେଶର ସାମ୍ୟ ହେଲେ ମଧ ବି ଉପକ୍ରମଭେଦରେ ଅଭ୍ୟୁଦୟବାକ୍ୟରେ (ହବିର) ପୂର୍ବଦେବତାଦ୍ୱାରା ଅପନୟ (ବିୟୋଗ) ନିଶ୍ଚିତ କରାଯାଇଅଛି । ପଶୁକାମ ବାକ୍ୟରେ କିନ୍ତୁ ଯାଗବିଧି ନିଶ୍ଚିତ କରାଯାଇଛି । ସେପରି ଏଠାରେ ମଧ ଉପକ୍ରମ ଭେଦରେ ବିଦ୍ୟାର ଭେଦ ହୁଏ ।

(ଗ) ପରୋବରୀୟସ୍ତ୍ୱାଦିର ପରି । ଯେପରି ପରମାତ୍ମାଦୃଷ୍ଟିର ଅଧ୍ୟାସ ସମାନ ହେଲାପରେ 'ଆକାଶୋ ହ୍ୟେବୈଭ୍ୟୋ' (ଆକାଶହିଁ ଏହି ପୃଥିବୀଠାରୁ ବଡ଼ । ତେଣୁ ଆକାଶ ହିଁ ଏହାର ଆଶ୍ରୟ) 'ସ ଏସ' ସେହି ସେହି ଉଦ୍‌ଗୀଥ ପରମଉତ୍କୃଷ୍ଟ ଅଟେ ? ଏହା ଅନନ୍ତ' ଏହିପରି ପରୋବରୀୟସ୍ତ୍ୱଗୁଣବିଶିଷ୍ଟ ଉଦ୍‌ଗୀଥ ଉପାସନା ଅକ୍ଷି, ଆଦିତ୍ୟାଦିଗତ ହିରଣ୍ମୟଶ୍ମଶ୍ରୁତ୍ୱାଦିଗୁଣବିଶିଷ୍ଟ ଉଦ୍‌ଗୀଥ ଉପାସନାରୁ ଭିନ୍ନ ଅଟେ ଓ ଯେପରି ଗୋଟିଏ ଶାଖାରେ ଅନ୍ୟୋନ୍ୟ ଗୁଣର ଉପସଂହାର ହୁଏ ନାହିଁ, ସେପରି ଅନ୍ୟଶାଖାରେ ରହିଥିବା ଏହିପ୍ରକାରର ଉପାସନାରେ ମଧ ଜାଣିବା ଉଚିତ୍ ।

**संज्ञातश्चेत्तदुक्तमस्ति तु तदपि ॥ ८ ॥**

**(୧) ସଂଜ୍ଞାତଶ୍ଚେତ୍ତଦୁକ୍ତମସ୍ତି ତୁ ତଦପି ॥୩-୩-୮॥**

ଚେତ୍-ଯଦି କହ ଯେ, ସଂଜ୍ଞାତଃ-ଦୁଇଟି ସ୍ଥଳରେ 'ଉଦ୍‌ଗୀଥବିଦ୍ୟା' ଏହି ଗୋଟିଏ ସଂଜ୍ଞାରେ ବିଦ୍ୟା ଏକ ଅଟେ, କିନ୍ତୁ, ତଦୁକ୍ତମ୍ - 'ନ ବା ପ୍ରକରଣଭେଦାତ୍' ଏହି

ସୂତ୍ରରେ କୁହାଯାଇଅଛି । 'ଅସ୍ତି ତୁ ତଦପି - ଏବଂ ଯାହା ଭିନ୍ନ ରୂପରେ ଅଗ୍ନି ହୋତ୍ରାଦି ପ୍ରସିଦ୍ଧ ଅଟେ, ତାହାର ମଧ୍ୟ କାଠକଗ୍ରନ୍ଥରେ ପଠିତ ହେଲେ ଏକ କାଠକ ସଂଜ୍ଞା ହୁଏ ।

(୨) ମୂଳ- (କ) ଅଥୋଚ୍ୟେତ - ସଂଜ୍ଞୈକତ୍ୱାଦ୍‌ବିଦ୍ୟୈକତ୍ୱମତ୍ର ନ୍ୟାଯ୍ୟମୁଦ୍‌ଗୀଥବିଦ୍ୟେତ୍ୟୁଭୟତ୍ରାପ୍ୟେକା ସଞ୍ଜ୍ଞେତିତଦପି ନୋପପଦ୍ୟତେ, ଉକ୍ତଂ ହ୍ୟେତତ୍ - 'ନ ବା ପ୍ରକରଣଭେଦାତ୍ ପରୋବରୀୟସ୍ତ୍ୱାଦିବତ୍' (ବ୍ର ସୂ ୩-୩-୭) ଇତି । ତଦେବ ଚାତ୍ର ନ୍ୟାଯ୍ୟତରଂ ଶ୍ରୁତ୍ୟକ୍ଷରାନୁଗତଂ ହି ତତ୍‌ସଂଜ୍ଞୈକତ୍ୱ ତୁ ଶ୍ରୁତ୍ୟକ୍ଷରବାହ୍ୟମୁଦ୍‌ଗୀଥ-ଶବ୍ଦମାତ୍ରପ୍ରୟୋଗାଲ୍ଲୌକି କୈର୍ବ୍ୟବହତୃଭିରୂପଚର୍ଯ୍ୟତେ ।

(ଖ) ଅସ୍ତି ଚେତତ୍ ସଂଜ୍ଞୈକତ୍ୱଂ ପ୍ରସିଦ୍ଧଭେଦେଷ୍ୱପି ପରୋବରୀୟସ୍ତ୍ୱାଦ୍ୟୁପାସ-ନେଷୁଦ୍‌ଗୀତବିଦ୍ୟେତି । ତଥା ପ୍ରସିଦ୍ଧଭେଦାନାମପ୍ୟଗ୍ନି ହୋତ୍ରଦର୍ଶପୂର୍ଣ୍ଣମାସାଦୀନାଂ କାଠକୈକଗ୍ରନ୍ଥପରିପଠିତାନାଂ କାଠକସଂଜ୍ଞୈକତ୍ୱ ଦୃଶ୍ୟତେ, ତଥେହାପି ଭବିଷ୍ୟତି । ଯତ୍ର ତୁ ନାସ୍ତି କଶ୍ଚିଦେବଂଜାତୀୟକେ ଭେଦହେତୁସ୍ତତ୍ର ଭବତୁ ସଂଜ୍ଞୈକତ୍ୱତ୍ୱାଦ୍ ବିଜ୍ଞୈକତ୍ୱଂ ଯଥା ସଂବର୍ଗବିଦ୍ୟାଦିଷୁ ।

**(୨) ଭାଷାଂତର-** (କ) ଦି କହ ଯେ --ସଂଜ୍ଞାର ଏକତ୍ୱଦ୍ୱାରା ବିଦ୍ୟାର ଏକତ୍ୱ ଏଠାରେ ନ୍ୟାୟସଙ୍ଗତ ଅଟେ; କାରଣ- ଉଭୟତ୍ର 'ଉଦ୍‌ଗୀଥବିଦ୍ୟା' ଏହିପ୍ରକାର ଏକସଂଜ୍ଞା ହୁଏ ଏହା ମଧ୍ୟ ଠିକ୍ ନୁହେଁ, କାରଣ ତାହାର 'ନ ବା ପ୍ରକରଣଭେଦାତ୍' ଏହି ସୂତ୍ରରେ ନିର୍ଣ୍ଣୟ କରାଯାଇଅଛି । ସେହି ଏହା ପ୍ରକୃତରେ ଯୁକ୍ତତର, କାରଣ ତାହାହିଁ ଶ୍ରୁତିର ଅକ୍ଷରଦ୍ୱାରା ଅନୁଗତ ଅଟେ ଏବଂ ସଂଜ୍ଞା ଏକତ୍ୱ କିନ୍ତୁ ଶ୍ରୁତିର ଅକ୍ଷରଠାରୁ ବାହ୍ୟ ଅଟେ, ଉଦ୍‌ଗୀଥ ଶବ୍ଦମାତ୍ରର ପ୍ରୟୋଗ ଦ୍ୱାରା ବ୍ୟବହାର କରୁଥିବା ଲୌକିକ ତାହାର ଉପଚାର କରନ୍ତି ।

(ଖ) ସେହିପରି ପ୍ରସିଦ୍ଧଭେଦଯୁକ୍ତ ପରୋବରୀୟସ୍ତ୍ୱ ଆଦି ଉପାସନାରେ 'ଉଦ୍‌ଗୀଥବିଦ୍ୟା' ସଂଜ୍ଞାର ଏକତ୍ୱହୁଏ । କାଠକଗ୍ରନ୍ଥରେ ପଠିତ ପ୍ରସିଦ୍ଧ ଭେଦଥିବା ଅଗ୍ନିହୋତ୍ର, ଦର୍ଶ, ପୂର୍ଣ୍ଣମାସ ପ୍ରଭୃତିର ଏକତ୍ୱ ସଂଜ୍ଞା ଦେଖାଯାଏ, ସେପରି ଏଠାରେ ମଧ୍ୟ ହେବା । ପରନ୍ତୁ ଯେଉଁଠାରେଏହିପ୍ରକାର କୌଣସି ଭେଦ ନାହିଁ ସେଠାରେ ସଂଜ୍ଞାର ଏକତ୍ୱରୁ ବିଧ୍ୟାର ଏକତ୍ୱ ହେଉ, ଯେପରିକି ସଂବର୍ଗ ଇତ୍ୟାଦିରେ ହୁଏ ।

## ४ व्याप्त्यधिकरणम् ॥ सु० ९ ॥

## ବ୍ୟାପ୍ତ୍ୟଧିକରଣ -୪

## व्याप्तेश्च समञ्जसम् ॥ ९ ॥

## (୧) ବ୍ୟାପ୍ତେଶ୍ଚ ସମଞ୍ଜସମ୍ ॥ ୩-୩-୭ ॥

ବ୍ୟାପ୍ତେଃ = ଋକ୍, ଯଜୁ ଓ ସାମରେ ଓଁକାରର ବ୍ୟାପ୍ତି କୁହାଯାଇଅଛି, ତେଣୁ ଯେ କୌଣସି ଓଁକାରର ଉପାସନା କରିବା ଉଚିତ୍ । ଏହା ଜାଣି ସାରିଲା ପରେ 'ଉଦ୍‌ଗୀଥାବୟବ

ପ୍ରକୃତରେ ଓଁ କାରର' ଏହିପ୍ରକାର ଉଦ୍‌ଗୀଥ ଓଁ କାରଣ ବିଶେଷଣ ଅଟେ । ସମଞ୍ଜସମ୍ - ଏହି ପକ୍ଷ ଦୋଷ ରହିତ ଅଟେ । 'ଚ' ଶବ୍ଦ କିନ୍ତୁ ଶବ୍ଦର ଅର୍ଥରେ ରହେ । ତେଣୁ ଅଧ୍ୟାସ ଅପବାଦ ଓ ଐକ୍ୟପକ୍ଷକୁ ନିରାସ କରେ ।

ମୂଳ -(କ) 'ଓଁ ମିତ୍ୟେତଦକ୍ଷର ମୁଦ୍‌ଗୀଥମୁପାସୀତ' (ଛା ୧-୧-୧) ଇତ୍ୟତ୍ରା କ୍ଷରୋଦ୍‌ଗୀଥଶବ୍ଦୟୋଃ ସାମାନାଧିକରଣ୍ୟେ ଶ୍ରୂୟମାଣେଽଧ୍ୟାସାପବାଦୈକତ୍ୱବିଶେଷଣ ପକ୍ଷାଣାଂ ପ୍ରତିଭାସନାତ୍ କତମୋଽତ୍ର ପକ୍ଷୋ ନ୍ୟାୟଃସ୍ୟାଦିତି ବିଚାରଃ । ତତ୍ରାଧ୍ୟାସୋ ନାମ -ଦ୍ୱୟୋର୍ବସ୍ତୁନୋରନିବର୍ତ୍ତିତାୟାମେବାନ୍ୟତର ବୁଦ୍ଧାନ୍ୟତରବୁଦ୍ଧିରଧ୍ୟସ୍ୟତେ, ଯସ୍ମିନ୍ନିତରବୁଦ୍ଧିରଧ୍ୟସ୍ୟତେଽନୁବର୍ତ୍ତତ ଏତ ତସ୍ମିଂସ୍ତଦ୍‌ବୁଦ୍ଧିରଧ୍ୟସ୍ତେତରବୁଦ୍ଧାବପି ।

(ଖ)ଯଥା ନାମ୍ନି ବ୍ରହ୍ମବୃଦ୍ଧା ବଧ୍ୟସ୍ୟ ମାନାୟମ ପ୍ୟନୁବର୍ତ୍ତନ ଏବ ନାମବୁଦ୍ଧିର୍ନ ବ୍ରହ୍ମବିଦ୍ୟା ନିବର୍ତ୍ତତେ । ଯଥା ବା ପ୍ରତିମାଦିଷୁ ବିଷ୍ଣ୍ୱାଦିବୁଦ୍ଧ୍ୟଧ୍ୟାସଃ । ଏବ ମିହାପ୍ୟକ୍ଷର ଉଦ୍‌ଗୀଥବୁଦ୍ଧିରଧ୍ୟସ୍ୟେତ, ଉଦ୍‌ଗୀଥେ ବାଽକ୍ଷରବୃଦ୍ଧିରିତି । ଅପବାଦୋ ନାମ ଯତ୍ର କସ୍ମିଂଶ୍ଚିଦ୍ ବସ୍ତୁନି ପୂର୍ବନିବିଷ୍ଟାୟାଂ ମିଥ୍ୟାବୁଦ୍ଧୌ ନିଶ୍ଚିତାୟାଂ ପଶ୍ଚାଦୁପଜାୟମାନା ଯଥାର୍ଥା ବୁଦ୍ଧିଃ ପୂର୍ବନିବିଷ୍ଟାୟା ମିଥ୍ୟାବୁଦ୍ଧେର୍ନିବର୍ତ୍ତିକା ଭବତି ।

(ଗ) ଯଥା ଦେହେନ୍ଦ୍ରିୟସଂଘାତେ ଆତ୍ମବୁଦ୍ଧିରାତ୍ମନ୍ୟେବାତ୍ମବୁଦ୍ଧ୍ୟା ପଶ୍ଚାଦ୍ ଭାବିନ୍ୟା ତତ୍ତ୍ୱମସି' (ଛା ୬-୮-୭) ଇତ୍ୟନୟା ଯଥାର୍ଥବୁଦ୍ଧ୍ୟା ନିବର୍ତ୍ତ୍ୟତେ । ଯଥା ବା ଦିଗ୍‌ଭ୍ରାନ୍ତି-ବୁଦ୍ଧିଦି 'ଗଯାଥାତ୍ମବୁଦ୍ଧ୍ୟା ନିବର୍ତ୍ତ୍ୟତେ । ଏବମିହାପ୍ୟକ୍ଷରବୁଦ୍ଧ୍ୟୋଦ୍‌ଗୀଥବୁଦ୍ଧିର୍ନିବର୍ତ୍ତ୍ୟେତ, ଉଦ୍‌ଗୀଥବୁଦ୍ଧ୍ୟାବାଽକ୍ଷରବୁଦ୍ଧିରିତ ।

**(୨) ଭାଷାଂତର-** (କ) 'ଓମିତ୍ୟେତଦ୍ (ଏହି ଉଦ୍‌ଗୀଥର ଅବୟବ ଓଁ ଅକ୍ଷରର ଉପାସନା କରିବା ଉଚିତ୍) ଏଠାରେ ଅକ୍ଷର ଏବଂ ଉଦ୍‌ଗୀଥ ଶବ୍ଦର ସାମନାଧିକରଣ୍ୟେଶ୍ରୂୟମାଣ ହେଲେ ଅଧ୍ୟାସ, ଅପବାଦ, ଏକତ୍ୱ ଓ ବିଶେଷଣ – ଏହିପକ୍ଷର ପ୍ରତିଭାସ ହେଲେ କେଉଁପକ୍ଷ ହୁଏ - ତାହାହିଁ ବିଚାର କରାଯାଉଛି । ସେହି ଦୁଇଟି ବସ୍ତୁରେ ଗୋଟିଏ ବସ୍ତୁର ବୁଦ୍ଧି ନିବୃତ୍ତି ନ ହୋଇ ଅନ୍ୟର ବୁଦ୍ଧି ଯଦି ଯଦି ଅଧ୍ୟସ୍ତ ହୁଏ, ତାହାହିଁ ଅଧ୍ୟାସ । ଯେଉଁଠାରେ ଅନ୍ୟବୁଦ୍ଧି ଅଧ୍ୟସ୍ତ ହୁଏ, ସେଠାରେ ବୁଦ୍ଧିର ଅଧ୍ୟସ୍ତ ହେଲାପରେ ସେହିବସ୍ତୁର ବୁଦ୍ଧି ଅନୁବୃତ୍ତି ହୁଏ ।

(ଖ) ବ୍ରହ୍ମ ବୁଦ୍ଧିର ଅଧ୍ୟାସ ହେଲା ପରେ ନାମବୁଦ୍ଧି ଅନୁବୃତ୍ତ ହୁଏ ଓ ସେହି ବ୍ରହ୍ମ ବୁଦ୍ଧିଦ୍ୱାରା ନିବୃତ୍ତ ହୁଏ ନାହିଁ । ଅଥବା ଯେପରି ପ୍ରତିମା ପ୍ରଭୃତିରେ ବିଷ୍ଣୁ ଇତ୍ୟାଦି ବୁଦ୍ଧିର ଅଧ୍ୟାସ ହେଲେ ସେହି ବିଷ୍ଣୁ ପ୍ରଭୃତି ବୁଦ୍ଧିରୁ ନିବୃତ୍ତ ହୁଏ ନାହିଁ, ସେହିପରି ପ୍ରକୃତିରେ ଓ ଅକ୍ଷରରେ ଉଦ୍‌ଗୀଥ ବୁଦ୍ଧିର ଅଧ୍ୟାସ ହୁଏ ଅଥବା ଉଦ୍‌ଗୀଥରେ ଅକ୍ଷର ବୁଦ୍ଧିର ଅଧ୍ୟାସ ହୁଏ । ଯେ କୌଣସି ବସ୍ତୁରେ ପୂର୍ବନିବିଷ୍ଟମିଥ୍ୟା ବୁଦ୍ଧିର ନିଶ୍ଚିତ

ହେଲାପରେ ପଛରେ ଉତ୍ପନ୍ନ ହେବାକୁ ଥିବା ଯଥାର୍ଥବୁଦ୍ଧି ପୂର୍ବନିବିଷ୍ଟ ମିଥ୍ୟାବୁଦ୍ଧିର ନିବର୍ତ୍ତକ ହୁଏ, ସେହିଁ ଅପବାଦ ।

(ଗ) ଯେପରି ଦେହ ଇନ୍ଦ୍ରିୟସଂଘାତରେ ଆତ୍ମବୁଦ୍ଧି 'ତତ୍ତ୍ୱମସି' ଏହାପରେ ଉତ୍ପନ୍ନ ହେଉଥିବା ଆତ୍ମାରେ ଆତ୍ମବୁଦ୍ଧି ଅନ୍ୟ ଯଥାର୍ଥ ବୃଦ୍ଧି ଦ୍ୱାରା ନିବୃତ୍ତ ହୁଏ, ଅଥବା ଯେପରି ଦେଶର ଭ୍ରାନ୍ତି ବୃଦ୍ଧି, ଦେଶର ଯଥାର୍ଥ ବୁଦ୍ଧିଦ୍ୱାରା ନିବୃତ୍ତ ହୋଇଯାଏ, ସେହିପରି ଏଠାରେ ମଧ୍ୟ ଅକ୍ଷର ବୁଦ୍ଧିରୁ ଉଦ୍‌ଗୀଥବୁଦ୍ଧି ନିବୃତ୍ତି ହୁଏ, ଅଥବା ଉଦ୍‌ଗୀଥବୁଦ୍ଧିଦ୍ୱାରା ଅକ୍ଷର ବୁଦ୍ଧି ନିବୃତ୍ତ ହୁଏ ।

ମୂଳ-(କ) ଏକତ୍ୱଂ ତ୍ୱକ୍ଷରୋଦ୍‌ଗୀଥଶବ୍ଦୟୋରନତିରିକ୍ତାର୍ଥବୃତ୍ତିତ୍ୱମ୍-ଯଥା ଦ୍ୱିମୋତ୍ତମୋ ବ୍ରହ୍ମଣୋ ଭୂମିଦେବ ଇତି । ବିଶେଷଣଂ ପୁନଃ ସର୍ବ ବେଦବ୍ୟାପିନ ଓମିତ୍ୟେତସ୍ୟ ଗ୍ରହଣପ୍ରସଙ୍ଗ ଔଦ୍‌ଗାତ୍ରବିଶେଷସ୍ୟ ସମର୍ପଣମ୍ ଯଦୁତ୍ପଲଂ ତଦାନୟେତି । ଏବମିହାପ୍ୟୁଦ୍‌ଗୀଥୋ ଯ ଓଁକାର ସ୍ତମୁପାସୀତେତି ।

(ଖ) ଏବମେତସ୍ମିନ୍ ସାମନାଧିକରଣ୍ୟବାକ୍ୟେ ବିମୃଶ୍ୟମାନ ଏତେ ପକ୍ଷାଃ ପ୍ରତିଭ୍ରାନ୍ତି, ତତ୍ରାନ୍ୟତମନିର୍ଦ୍ଧାରଣକାରଣାଭାବାଦନିର୍ଦ୍ଧାରଣ ପ୍ରାପ୍ତୋବିଦମୁଚ୍ୟତେ -ବ୍ୟାପ୍ତେଶ୍ଚ ସମଞ୍ଜସମିତି । 'ଚ'ଶବ୍ଦୋଽୟଂ 'ତୁ' ଶବ୍ଦସ୍ଥାନନିବେଶୀ ପକ୍ଷତ୍ରୟବ୍ୟାବର୍ତ୍ତନପ୍ରୟୋଜନଃ ।

(ଗ) ତଦିହ ତ୍ରୟଃ ପକ୍ଷାଃ ସାବିଦ୍ୟା ଇତି ପର୍ଯ୍ୟୁଦସ୍ୟନ୍ତେ । ବିଶେଷଣପକ୍ଷ ଏବୈକୋ ନିରବଦ୍ୟ ଇତ୍ୟୁପାଦୀୟତେ । ତତ୍ରାଧ୍ୟାସେ ତା ବିଦ୍ୟା ବୁଦ୍ଧିରିତରତ୍ରାଧ୍ୟସ୍ୟତେ ତଚ୍ଛବ୍ଦସ୍ୟ ଲକ୍ଷଣାବୃତ୍ତିତ୍ୱଂ ପ୍ରସଜ୍ୟେତ, ତତ୍‌ଫଳଞ୍ଚ କଳ୍ପ୍ୟେତ । ଶ୍ରୂୟତ ଏବ ଫଳମ୍- 'ଆପୟିତା ହ ବୈ କାମାନାଂ ଭବତି' (ଛା ୧-୧-୭) ଇତ୍ୟାଦୀତି ଚେତ୍-ନ, ତସ୍ୟାନ୍ୟ ଫଳତ୍ୱାତ୍ । ଅପ୍ତ୍ୟାଦିଦୃଷ୍ଟିଫଳଂ ହି ତନ୍ନୋଦ୍‌ଗୀଥାଧ୍ୟାସଫଳମ୍ ।

(ଘ) ଅପବାଦେଽପି ସମାନଃ ଫଳାଭାବଃ, ମିଥ୍ୟାଜ୍ଞାନ ନିବୃତ୍ତିଃ ଫଳମିତି ଚେତ୍-ନ ପୁରୁଷାର୍ଥୋ ଯୋଗାନବଗମାତ୍ । ନ ଚ କଦାଚିଦପ୍ୟୋଁକାରବୁଦ୍ଧିଃ ନିବର୍ତ୍ତତେ, ଉଦ୍‌ଗୀଥାଦ୍ ବୋଦ୍‌ଗୀଥବୁଦ୍ଧିଃ । ନଚୋଦଁ ବାକ୍ୟଂ ବସ୍ତୁତତ୍ତ୍ୱପ୍ରତିପାଦର ପରମ୍, ଉପାମନାବିଧିପରତ୍ୱାତ୍ ।

**(୩) ଭାଷାଂତର** - (କ) ଯେପରି ଦ୍ୱିଜୋତ୍ତମ, ବ୍ରାହ୍ମଣ ଓ ଭୂମିଦେବ ପ୍ରଭୃତି ବିଶେଷଣ ଅର୍ଥ ବୃତ୍ତିରେ ସମାନ, ସେପରି ଏକତ୍ୱ ହିଁ ଅକ୍ଷର ଏବଂ ଉଦ୍‌ଗୀଥ ଶବ୍ଦର ଅଭିନ୍ନ ଅର୍ଥରେ ବୃତ୍ତିତ୍ୱ ହୁଏ । ବିଶେଷଣ ଅର୍ଥାତ୍ ଉଦ୍‌ଗୀଥ ବିଶେଷଣ, ସର୍ବବ୍ୟାପୀ ଓଁ ଏହି ଅକ୍ଷର ଗ୍ରହଣରେ ପ୍ରସଙ୍ଗର ଉଦ୍‌ଗାତାର କର୍ମବିଶେଷର ସମର୍ପଣ କରେ । ଯେପରି ନୀଳ ଯାହାକି ଉତ୍ପଳ (କଇଁ) ତାହାକୁ ନେଇଯାଅ, ଅର୍ଥାତ୍ ନୀଳବିଶିଷ୍ଟ କମଳକୁ ନେଇଯାଅ, ସେପରି ଏଠାରେ ମଧ୍ୟ ଉଦ୍‌ଗୀଥ ଯାହାକି ଓଁକାର, ତାହାର ଉପାସନା କରିବା ଉଚିତ୍ ।

(ଖ) ସେହିପରି ଏହା ସାମାନ୍ୟାଧିକରଣ୍ୟ ବାକ୍ୟର ବିଚାର ହେଲାପରେ ସେହିପକ୍ଷଗୁଡ଼ିକ ପ୍ରତୀତ ହୁଅନ୍ତି । ସେଠାରେ କୌଣସି ଗୋଟିଏର ନିର୍ଧାରଣ କାରଣ ନ ହେଲେ ଅନିର୍ଧାରଣ ପ୍ରାପ୍ତ ହେଲାପରେ ସିଦ୍ଧାନ୍ତିମାନେ କହନ୍ତିଯେ – 'ବ୍ୟାପ୍ତେଶ୍ଚ ସମଞ୍ଜସମ୍' – 'ଚ' ଶବ୍ଦ ତୁ ଶବ୍ଦର ସ୍ଥାନରେ ପ୍ରୟୋଗ ହୋଇଛି ।

(ଗ) ତିନୋଟି ପକ୍ଷର ବ୍ୟାବୃତ୍ତି ପ୍ରୟୋଜନଯୁକ୍ତ ଅଟେ । ତେଣୁ ଏଠାରେ ଏହି ତିନୋଟିପକ୍ଷ ସଦୋଷ ଓ ସେମାନେ ପର୍ଯ୍ୟୁଦସ୍ତ । କେବଳ ଗୋଟିଏ ବିଶେଷପକ୍ଷ ହିଁ ନିର୍ଦୋଷ ହୁଏ, ତେଣୁ ତାହାର ଗ୍ରହଣ କରାଯାଇଅଛି । ସେଥିମଧ୍ୟରୁ ପ୍ରଥମ ଅଧ୍ୟାୟରେ ଯେଉଁବୁଦ୍ଧି ଅନ୍ୟତ୍ର ଅଧ୍ୟସ୍ତ ହୁଏ, ସେହି ଶବ୍ଦର ଲକ୍ଷଣାବୃତ୍ତି ପ୍ରସକ୍ତ ହେବ ଏବଂ ତାହାର ଫଳକଳ୍ପନା କରିବାକୁ ପଡ଼ିବ । ଯଦି କହ ଯେ-'ଆପୟିତା ହି' (ସେହି ଯଜମାନର କାମନାଗୁଡ଼ିକର ପ୍ରାପ୍ତକାରୀ ଫଳଶ୍ରୁତି ଅଟେ, ଏହାମଧ୍ୟ ଠିକ୍ ନୁହେଁ, କାରଣ- ତାହାର ଅନ୍ୟଫଳ ଅଟେ ଅର୍ଥାତ୍ ସେ ଅନ୍ୟର ଫଳ ଅଟେ । ଆପ୍ତି ପ୍ରଭୃତି ରୂପରେ ଓଁ କାରଣ ଦୃଷ୍ଟିଫଳ ଅଟେ, ଉଦ୍‌ଗୀଥର କିନ୍ତୁ ଅଧ୍ୟାସଫଳ ନୁହେଁ ।

(ଘ) ଅପବାଦର ମଧ୍ୟ ଫଳର ଅପବାଦଫଳ ସମାନ ଅଟେ । ଯଦି କହ ଯେ – ମିଥ୍ୟାଜ୍ଞାନର ନିବୃତ୍ତି ତାହାର ଫଳ ଅଟେ । ତାହା ଯୁକ୍ତିଯୁକ୍ତ ନୁହେଁ, କାରଣ- ତାହାର ପୁରୁଷାର୍ଥ ରୂପଫଳ ଉପଯୋଗ ଜ୍ଞାତ ନୁହେଁ ଏବଂ କର୍ମ ମଧ୍ୟ ଓଁକାରରୁ ଓଁକାର ବୁଦ୍ଧି ଓ ଉଦ୍‌ଗୀଥରୁ ଉଦ୍‌ଗୀଥ ବୁଦ୍ଧି ନିବୃତ୍ତି ହୁଏ ନାହିଁ । ଏହିବାକ୍ୟ 'ଓଁ ମିତ୍ୟେତଦକ୍ଷରମୁଦ୍-ଗୀଥମୁପାସୀତ' ବସ୍ତୁତତ୍ତ୍ୱ ପ୍ରତିପାଦନପରକ ନୁହେଁ, କାରଣ – ସେ ଉପାସନାବିଧିପରକ ଅଟେ ।

ମୂଳ- (କ) ନାପ୍ୟେକତ୍ୱପକ୍ଷଃ ସଂଗଚ୍ଛତେ, ନିଷ୍ପ୍ରୟୋଜନ ହି ତଦାଶ ଢଦ୍ଦ୍ୱୟୋ· ଚାରଣଂ ସ୍ୟାତ୍ । ଏକେନେବ ବିବିକ୍ଷିତାର୍ଥସମର୍ପଣାତ୍ । ନଚ ହୌତ୍ରବିଷୟ ଅଧ୍ୱର୍ଯ୍ୟବବିଷୟେ ବାଽକ୍ଷର ଓଁକାର ଶବ୍ଦ ବାଚ୍ୟ ଛଦ୍‌ଗୀଥଶବ୍ଦ ପ୍ରସିଦ୍ଧିରସ୍ତି । ନାପି ସକଳାୟାଂ ସାମ୍ନୋଦ୍ୱିତୀୟାୟାଂ ଭକ୍ତାବୁଦ୍‌ଗୀଥଶବ୍ଦବାଚ୍ୟାୟାମୋଂକାରଶବ୍ଦ ପ୍ରସିଦ୍ଧିର୍ଯେନା ନ ତିରିକ୍ତର୍ଥତା ସ୍ୟାତ୍ ।

(ଖ) ପରିଶେଷାଦ୍ ବିଶେଷପକ୍ଷଃ ପରିଗୃହ୍ୟତେ । ବ୍ୟାପ୍ତେଃ ସର୍ବବେଦ ସାଧାରଣ୍ୟାତ୍ । ସର୍ବବ୍ୟାପ୍ୟକ୍ଷରମିହ ମା ପ୍ରସଞ୍ଜୀତ୍ୟତ ଉଦ୍‌ଗୀଥଶବ୍ଦୋନାକ୍ଷରଂ ବିଶେଷ୍ୟତେ । କଥଂ ନାମଁ ଉଦ୍‌ଗୀଥାବୟବଭୂତ ଓଁକାରୋ ଗୃହ୍ୟେତେତି, ନନ୍ୱସ୍ମିନ୍ନପି ପକ୍ଷେ ସମାନା ଲକ୍ଷଣା, ଉଦ୍‌ଗୀଥ ଶବ୍‌ଦସ୍ୟାବୟବଲକ୍ଷଣାର୍ଥତ୍ୱାପ୍ ।

(ଗ) ସତ୍ୟମେବମେତତ୍, ଲକ୍ଷଣାଂୟାମପି ତୁ ସନ୍ନିକର୍ଷା ବିପ୍ରକର୍ଷୌ ଭବତ ଏବ । ଅଧ୍ୟାସପକ୍ଷେ ହ୍ୟର୍ଥାନ୍ତରବୁଦ୍ଧିରର୍ଥାନ୍ତରେ ନିକ୍ଷିପ୍ୟର ଇତି ବିପ୍ରକୃଷ୍ଟା ଲକ୍ଷଣା ବିଶେଷଣପକ୍ଷେ ତ୍ୱବୟବିବଚନେନ ଶବ୍‌ଦେବାବୟବ ସବର୍ପ୍ୟତ ଇତି ସନ୍ନିକୃଷ୍ଟା, ସମୁଦାୟେଷୁ ହି ପ୍ରବୃତ୍ତାଃ ଶବ୍ଦା ଅବୟବେଷ୍ୱପି ପ୍ରବର୍ତ୍ତମାନାଃ ଦୃଷ୍ଟାଃ ପଟଗ୍ରାମାଦିଷୁ ।

ଅତଶ୍ଚ ବ୍ୟାପ୍ତେର୍ହେ ତୋରୋମିତ୍ୟେତଦକ୍ଷରମିତ୍ୟେତ ସ୍ୟୋଦ୍‌ଗୀଥମିତ୍ୟେତଦ୍‌ ବିଶେଷଣମିତି ସମଞ୍ଜସମେତତ୍‌ ନିରବଦ୍ୟାମିତ୍ୟର୍ଥଃ ।

**(୪) ଭାଷାଂତର-** (କ) ଏହିପରି ଏକତ୍ୱପକ୍ଷ ସଂଗତ ନୁହେଁ । କାରଣ- ସେହିପକ୍ଷରେ ଦୁଇଥର ଶବ୍ଦର ଉଚାରଣ ନିରର୍ଥକ ଅଟେ । ଏକବାର ଉଚାରଣଦ୍ୱାରା ବିବକ୍ଷିତାର୍ଥ ସମର୍ପିତ ହୁଏ । ହୋତ୍ରବିଷୟକ ଅଥବା ଅଧ୍ୱର୍ଯ୍ୟବିଷୟକ ଓଁକାର ଶବ୍ଦବାଚ୍ୟ ଅକ୍ଷରରେ ମଧ୍ଧ ଉଦ୍‌ଗୀଥ ଶବ୍ଦର ‍ପ୍ରସିଦ୍ଧି ନାହିଁ, ଏବଂ ସାମର ଉଦ୍‌ଗୀଥଶବ୍ଦବାଚ୍ୟ ସଂପୂର୍ଣ୍ଣ ଅନ୍ୟଭକ୍ତି ଭାଗରେ ଓଁକାର ଶବ୍ଦର ପ୍ରସିଦ୍ଧି ନାହିଁ, ଯାହାଦ୍ୱାରା ସେଥିରେ ଏକାର୍ଥତ୍ୱ ହେବ ।

(ଖ) ତେଣୁ ପରିଶେଷରେ ବିଶେଷପକ୍ଷ ପରିଗୃହୀତ ହୁଏ, କାରଣ - ଓଁକାର ବ୍ୟାପ୍ତି ସର୍ବବେଦ ସାଧାରଣ ସମାନ ଅଟେ । ସର୍ବବ୍ୟାପୀ ଓଁ ଅକ୍ଷର ଏଠାରେ ପ୍ରସକ୍ତ ନ ହେଉ, ତେଣୁ ଉଧଗୀଥ ଶବ୍ଦରୁ ଓଁ ଅକ୍ଷର ଏଠାରେ ବିଶେଷିତ କରାଯାଇଅଛି । କେଉଁ ପ୍ରକାରେ ଉଦ୍‌ଗୀଥର ଅବୟବଭୂତ ଓଁକାରର ପ୍ରକୃତରେ ଗ୍ରହଣ କରାଯାଏ । (ଏହି ଅଭିପ୍ରାୟର) ପରନ୍ତୁ ଏହି ପକ୍ଷରେ ମଧ୍ୟ ଲକ୍ଷଣାର ପ୍ରସଙ୍ଗ ସମାନ ଅଟେ । କାରଣ ଉଦ୍‌ଗୀଥଶବ୍ଦର ଅବୟବ ଅର୍ଥଲକ୍ଷଣାଦ୍ୱାରା ହୁଏ ।

(ଗ) ଏହା ଠିକ୍ କଥା । ପରନ୍ତୁ ଲକ୍ଷଣାରେ ମଧ୍ୟ ସନ୍ନିକର୍ଷ ଓ ବିପ୍ରକର୍ଷ ହୁଏ । ଅଧ୍ୟାସ ପକ୍ଷରେ ଅନ୍ୟଅର୍ଥ ବିଷୟକ ବୁଦ୍ଧି ଅନ୍ୟ ଅର୍ଥରେ ପ୍ରକ୍ଷିପ୍ତ ହୁଏ, ତେଣୁ ଏହା ବିପ୍ରକୃଷ୍ଟ ଲକ୍ଷଣା । ବିଶେଷଣ ପକ୍ଷରେ ଅବୟବୀବାଚକ ଶବ୍ଦରୁ ଅବୟବ ସମର୍ପିତ ହୁଏ । ତେଣୁ ଏହା ସନ୍ନିକୃଷ୍ଟ ଲକ୍ଷଣା । ସମୁଦାୟରେ ପ୍ରବୃତ୍ତ ଶବ୍ଦ ଅବୟବ ଗୁଡ଼ିକରେ ପ୍ରବୃତ୍ତ ହେବାର ଦେଖାଯାଏ ।:ଯେପରି ପଟ, ଗ୍ରାମ, ପ୍ରକୃତିରେ । ତେଣୁ ବ୍ୟାପ୍ତି ହେତୁରୁ ଓଁ ଏହି ପକ୍ଷର ‘ଉଦ୍‌ଗୀଥ’ ଏହା ବିଶେଷଣ ହୁଏ । ଏହିପରି ଏହା ସମଞ୍ଜସ ନିର୍ଦ୍ଦୋଷ ଅଟେ ବୋଲି ତର୍ଥ ହେବ ।

## ୫ सर्वभेदाधिकरणम् ॥ सू० १० ॥

## ସର୍ବାଭେଦାଧିକରଣ -୫

## सर्वाभेदादेन्यत्रेमे ॥ १० ॥

## (୧) ସର୍ବାଭେଦାଦନ୍ୟତ୍ରେତେ ॥ ୩-୩-୧୦ ॥

କୌଣସି ଶାଖାରେ ପଠାଯାଇଥିବା, ଇମେ = ବସିଷ୍ଠତ୍ୱାଦିଗୁଣ, ଅନ୍ୟତ୍ର = ଅନ୍ୟଶାଖାରେ ମଧ୍ୟ ଗୃହିତ ହୁଅନ୍ତି । ସର୍ବଭେଦାତ = କାରଣ- ସମସ୍ତଶାଖାରେ ପ୍ରାଣ ବିଜ୍ଞାନର ଅଭେଦ ଅଛି ।



ମୂଳ - (କ) ବାଜିନାଂ ଛାନ୍ଦୋଗାନାଂ ଚ ପ୍ରାଣସମ୍ବାଦେ ଶ୍ରୈଷ୍ଠ୍ୟଗୁଣାନ୍ୱିତସ୍ୟ ପ୍ରାଣସ୍ୟୋପାସ୍ୟତ୍ୱମୁକ୍ତମ୍ । ବାଗାଦୟୋଽପି ହିତତ୍ର ବସିଷ୍ଠତ୍ୱାଦିଗୁଣାନ୍ୱିତା ଉକ୍ତାଃ । ତେ ଚ ଗୁଣାଃ ପ୍ରାଣେ ପୁନଃ ପ୍ରତ୍ୟର୍ପିତାଃ, ଯଦ୍‌ବା ଅହଂ ବସିଷ୍ଠାଽସ୍ମି ତ୍ୱଂ ତଦ୍‌ବସିଷ୍ଠୋଽସି ବୃହ ୬।୧।୧୪ ଇତ୍ୟାଦିନା ।

(ଖ) ଅନ୍ୟେଷାମପି ତୁ ଶାଖିନାଂ କୌଷୀତକି ପ୍ରଭୃତୀନାଂ ପ୍ରାଣସମ୍ବାଦେଷୁ 'ଅଥାତୋ ନିଃଶ୍ରେୟସାଦାନମେତା ହବୈ ଦେବତା ଅହଂ ଶ୍ରେୟସେ ବିବଦମାନାଃ' (କୌ ୨।୧୪) ଇତ୍ୟେବଂଜାତୀୟକେଷୁ ପ୍ରାଣସ୍ୟ ଶ୍ରୈଷ୍ଠ୍ୟମୁକ୍ତମ ନତ୍ୱିମେ ବସିଷ୍ଠତ୍ୱା ଦୟୋଽପି ଗୁଣାଃ ଉକ୍ତାଃ ।

(ଗ) ତତ୍ର ସଂଶୟଃ କିମିମେ ବସିଷ୍ଠତ୍ୱାଦୟୋ ଗୁଣାଃ କ୍ୱଚିଦୁକ୍ତା ଅନ୍ୟତ୍ରାପ୍ୟସ୍ୟୋ ରନ୍ନୁତ । ତତ୍ର ପ୍ରାପ୍ତଂ ତାବନ୍ନାସ୍ୟୋରନ୍ନିତି । କୁତଃ ? ଏବଂ ଶବ୍ଦ ସଂଯୋଗାତ୍ 'ଅଥୋ ଯ ଏବଂ ବିଦ୍ୱାନ ପ୍ରାଣେ ନିଃଶ୍ରେୟସଂବିଦିତ୍ୱ ।' (କୌ ୨।୧୪) ଇତି ତତ୍ର ତତ୍ରୈବଂଶବ୍ଦେନ ବେଦ୍ୟଂ ବସ୍ତୁ ନିବେଦ୍ୟତେ । ଏବଂ ଶବ୍ଦଶ୍ଚ ସନ୍ନିହିତା ବଲମ୍ବନୋ ନ ଶାଖାନ୍ତର ପରିପଠିତମେବଂଜାତୀୟକଂ ଗୁଣଜାତଂ ଶକ୍ନୋତି ନିବେଦୟିତୁମ୍ । ତସ୍ମାତ୍ ସ୍ୱପ୍ରକରଣସ୍ଥୈ ରେବ ଗୁଣୈନିରକାଙ୍କ୍ଷତ୍ୱମିତ ।

(୨) ଭାଷାଂତର- (କ) ବାଜସନେୟୀ ଓ ଛାନ୍ଦୋଗର ପ୍ରାଣସମ୍ବାଦରେ ଶ୍ରେଷ୍ଠତ୍ୱ ଗୁଣଯୁକ୍ତପ୍ରାଣକୁ ଉପାସ୍ୟ ବୋଲି କୁହାଯାଇଛି । ସେଠାରେ ବାଗାଦି ମଧ୍ୟ ବସିଷ୍ଠତ୍ୱାଦିଗୁଣଯୁକ୍ତ ବୋଲି କୁହାଯାଏ । ସେହିଗୁଣ 'ଯଦ୍ ବା ଅହଂ' (ମୁଁ ଯାହା ପ୍ରତିଷ୍ଠା ଅଟେ ତୁମେ ସେହି ପ୍ରତିଷ୍ଠା ଦ୍ୱାରା ଯୁକ୍ତ ଅଟେ ବୋଲି ନେତ୍ର କହିଲା) । ଇତ୍ୟାଦି ଦ୍ୱାରା ପୁନଃ ପ୍ରାଣରେ ପ୍ରତ୍ୟର୍ପି କରାଯାଇଅଛି ।

(ଖ) କୌଷୀତକୀ ପ୍ରଭୃତି ଅନ୍ୟଶାଖା ଦ୍ୱାରା ମଧ୍ୟ 'ଅଥାତୋ ନିଃଶ୍ରେୟସାଦ୍' (ବର୍ତ୍ତମାନ ଶ୍ରେଷ୍ଠତାର ନିର୍ଦ୍ଧାରଣ ହେଉ; ସେହି ଦେବତାମାନେ ନିଜର ଶ୍ରେଷ୍ଠତା ପାଇଁ ବିବାଦ କରିଥିଲେ ଏହି ପ୍ରକାର ପ୍ରାଣ ସମ୍ବାଦରେ ପ୍ରାଣକୁ ଶ୍ରେଷ୍ଠ ବୋଲି କୁହାଯାଏ । ପରନ୍ତୁ ସେ ବସିଷ୍ଠତ୍ୱାଦୀଗୁଣ ବୋଲି କୁହାଯାଇନାହିଁ ।

(ଗ) ସେଠାରେ ସଂଶୟ ହୁଏ ଯେ କୌଣସି ଶାଖାରେ କୁହାଯାଇଥିବା ଏହି ବସିଷ୍ଠତ୍ୱାଦିଗୁଣ କଣ ଅନ୍ୟଶାଖାକୁ ନିଆଯାଇଛି । ଅଥବା ନିଆଯାଇନାହିଁ । ଯଦି ଅନ୍ୟତ୍ର ନିଆଯାଇନାହିଁ, ତାହେଲେ ସେଠାରେ ପ୍ରାପ୍ତ ହୁଏ । କିପରି ? ତେଣୁ 'ଏବଂ' ଶବ୍ଦର ସଂଯୋଗ ହୁଏ । 'ଅଥୋ' ଯ ଏବଂ ବିଦ୍ୱାନ' (ପ୍ରାଣଶ୍ରେଷ୍ଠ ଅଟେ ଏହିପ୍ରକାର ଜାଣିଥିବା ବିଦ୍ୱାନ ପ୍ରାଣରେ ନିଃଶ୍ରେୟସକୁ ଜାଣି ଶ୍ରେଷ୍ଠ ହୁଏ) ଏହି ପ୍ରକାର ସେହି ସେହି ସ୍ଥାନ ଗୁଡ଼ିକରେ 'ଏବଂ' ଶବ୍ଦଦ୍ୱାରା ବେଦ୍ୟବସ୍ତୁ ନିବେଦିତ ହୋଇଛି ଓ ସନ୍ନିହିତାବଲମ୍ବୀ 'ଏବଂ'

ଶବ୍ଦ ଅନ୍ୟଶାଖାରେ ପଠାଯାଇଥିବା ଗୁଣସମୂହର ନିବେଦନ କରେନାହିଁ । ତେଣୁ ନିଜ ପ୍ରକରଣରେ ସ୍ଥିତଗୁଣ ଗୁଡ଼ିକ ଦ୍ୱାରା ଏହା ନିରାକାଙ୍କ୍ଷତା ଅଟେ ।

ମୂଳ-(କ) ଏବଂ ପ୍ରାପ୍ତେ ପ୍ରତ୍ୟାହଅସ୍ୟେରନ୍ନିମେ ଗୁଣାଃ କ୍ୱଚିଦୁକ୍ତା ବସିଷ୍ଠତ୍ୱା ଦୟୋଽନ୍ୟତ୍ରାପି । କୁତଃ ? ସର୍ବଭେଦାତ୍ । ସର୍ବତ୍ରୈବ ହି ତଦେବୈକଂ ପ୍ରାଣବିଜ୍ଞାନ-ମଭିନ୍ନଂ ପ୍ରତ୍ୟଭିଜ୍ଞାୟତେ, ପ୍ରାଣସମ୍ବାଦଦିସାରୂପ୍ୟାତ୍ । ଅଭେଦେ ଚ ବିଜ୍ଞାନସ୍ୟ କଥମିମେ ଗୁଣାଃ କ୍ୱଚିଦୁକ୍ତା ଅନ୍ୟତ୍ର ନାସ୍ୟେରନ୍ ?

(ଖ) ନନ୍ୱେବଂ ଶବ୍ଦସ୍ତୁତ୍ର ତତ୍ରଭେଦେନୈବଂଜାତୀୟଙ୍କ ଗୁଣଜାତଂ ବେଦ୍ୟତ୍ୱାୟ ସମପ୍ରୟତୀତ୍ୟୁକ୍ତମ୍ । ଅତ୍ରୋଚ୍ୟତେ-ଯଦ୍ୟପି କୌଷୀତକିବ୍ରାହ୍ମଣ ଗତେନୈବଂଶବ୍ଦେନ ବାଜସନେୟିବ୍ରାହ୍ମଣଗତଂ ଗୁଣଜାତମସଂଶବ୍ଦି ତମସଂନିହିତତ୍ୱାତ୍ତଥାପି ତସ୍ମିନ୍ନେବ ବିଜ୍ଞାନେ ବାଜସନେୟିବ୍ରାହ୍ମଣଗତେନୈବଂଶବ୍ଦେନ ତତ୍ସଂଶବ୍ଦିତମିତି ନ ପରଶାଖାଗତମପ୍ୟଭିନ୍ନ-ବିଜ୍ଞାନାବବଦ୍ଧଂ ଗୁଣଜାତଂ ସ୍ୱଶାଖାଗତାନାବିଶିଷ୍ୟତେ ।

(ଗ) ନ ଚୈବଂ ସତି ଶ୍ରୁତିହାନିରଶ୍ରୁତକଳ୍ପନା ବା ଭବତି । ଏକସ୍ୟାମପି ହି ଶାଖାୟାଂ ଶ୍ରୁତା ଏବ ସର୍ବତ୍ର ଭବନ୍ତି, ଗୁଣବତୋ ଭେଦାଭାବାତ୍ । ନହି ଦେବଦତ୍ତଃ ଶୌର୍ଯାଦିଗୁଣତ୍ୱେନ ସ୍ୱଦେଶେ ପ୍ରସିଦ୍ଧୋ ଦେଶାନ୍ତରଂ ଗତସ୍ତଦ୍ଦେଶୈୟରବିଭାବିତଶୌର୍ଯାଦି-ଗୁଣୋଽପ୍ୟତଦ୍ ଗୁଣୋ ଭବତି ।

(ଘ) ଯଥା ଚ ତତ୍ର ପରିଚୟ ବଶେଷାଦ୍ଦେଶାନ୍ତରେଽପି ଦେବଦତ୍ତଗୁଣା ବିଭାବ୍ୟନ୍ତେ । ଏବମଭିଯୋଗବିଶେଷାଚ୍ଛାଖାନ୍ତରେଽପ୍ୟୁପାସ୍ୟା ଗୁଣାଃ ଶାଖାନ୍ତରେଽପ୍ୟସ୍ୟେରନ୍ । ତସ୍ମାଦେକପ୍ରଧାନସମ୍ବନ୍ଧା ଧର୍ମା ଏକତ୍ରାପ୍ୟୁଚ୍ୟମାନାଃ ସର୍ବତ୍ରୈବୋପସଂହର୍ତ୍ତବ୍ୟା ଇତି ।

**(୩) ଭାଷାଂତର-** (କ) ଏହାପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ - କେଉଁଠାରେ ଉକ୍ତ ବଶିଷ୍ଠାଦିଗୁଣ ଅନ୍ୟଶାଖାରେ ଗୃହୀତ ହୁଅନ୍ତି ? କିପରି ? କାରଣ- ଏହା ସର୍ବତ୍ର ଅଭେଦ ଅଟେ । ସବୁଶାଖାରେ ସେ ଏକ ଅଭିନ୍ନ ପ୍ରାଣବିଜ୍ଞାନ ପ୍ରତ୍ୟଭିଜ୍ଞାତ ହୁଏ । କାରଣ-ପ୍ରାଣସମ୍ବାଦାଦିର ସମାନତା ଅଛି । ବିଜ୍ଞାନର ଅଭେଦ ହେଲେ କୌଣସି ଶାଖାରେ କୁହାଯାଇଥିବା ଗୁଣଗୁଡ଼ିକ ଅନ୍ୟଶାଖାଗୁଡ଼ିକରେ କାହିଁକି ନିଆ ନ ଯିବ ?

(ଖ) ପରନ୍ତୁ 'ଏବଂ' ଶବ୍ଦ ସେହି ସେହି ସ୍ଥଳରେ ଏହିପ୍ରକାରର ଗୁଣସମୂହର ଭେଦ ରୂପରେ ବେଦ୍ୟତ୍ୱ ପାଇଁ ସମର୍ପଣ କରେ ବୋଲି ଯାହା କୁହାଯାଇଅଛି, ସେହି ବିଷୟରେ ଆମ୍ଭେ କହୁଁ- ଯଦ୍ୟପି କୌଷୀତକି ବ୍ରାହ୍ମଣଗତ ଏବଂ ଶବ୍ଦରୁ ବାଜସନେୟୀଗତ ଗୁଣ ସମୁଦାୟ ପ୍ରତିପାଦିତ ହୁଏ ନାହିଁ । କାରଣ-ସେହିଗୁଣଗୁଡ଼ିକ ଅସଂନିହିତ ଅଟନ୍ତି । ତଥାପି ସେହି ବିଜ୍ଞାନରେ ବାଜସନେୟୀ ବ୍ରାହ୍ମଣଗତ 'ଏବଂ' ଶବ୍ଦଦ୍ୱାରା ଗୁଣସମୂହ ପ୍ରତିପାଦିତ ହୁଏ । ତେଣୁ ଭିନ୍ନବିଜ୍ଞାନରୁ ଅବବଦ୍ଧ (ସମ୍ବନ୍ଧ) ଅନ୍ୟ ଶାଖାଗତ ଗୁଣସମୁଦାୟ ନିଜର ଶାଖାଗତଗୁଣ ସମୂହରୁ ଭିନ୍ନ ନୁହଁନ୍ତି ।



(ଗ) ଅତଏବ ଶ୍ରୁତିହାନି ଅଥବା ଅଶ୍ରୁତ କଳ୍ପନା ହୁଏ ନାହିଁ । ଗୋଟିଏ ଶାଖାରେ ଶ୍ରୁତକଳ୍ପନା ସର୍ବଦା ଶ୍ରୁତ ହୋଇ ରହେ କାରଣ- ଗୁଣବାନର ଭେଦାଭାବ ଅଛି । ନିଜ ଦେଶରେ ଶୌର୍ଯ୍ୟାଦିଗୁଣରୂପରେ ପ୍ରସିଦ୍ଧ ଦେବଦତ୍ତ ଅନ୍ୟଦେଶକୁ ଗଲା, ସେହି ଦେଶବାସୀଙ୍କ ଦ୍ୱାରା ତାହାର ଶୌର୍ଯ୍ୟାଦିଗୁଣ ଅଜ୍ଞାତ ହେଲେ ବି ସେ ସେହିଗୁଣ ରିହତ ହୁଏ ନାହିଁ ।

(ଘ) ଯେପରି ପରିଚୟବିଶେଷରୁ ସେହି ଅନ୍ୟ ଦେଶରେ ଦେବଦତ୍ତର ଗୁଣ ଅବଭାସିତ ହୁଏ, ସେହିପରି ସମ୍ବନ୍ଧବିଶେଷରୁ ଅନ୍ୟଶାଖାରେ ଉପାସ୍ୟ ଗୁଣ ମଧ୍ୟ ଅନ୍ୟଶାଖାରେ ନିଆଯାଏ । ତେଣୁ ଗୋଟାଏ ଶାଖାରେ କୁହାଯାଇଥିବା ଗୋଟିଏ ପ୍ରଧାନ ସହିତ ସମ୍ବନ୍ଧ ଧର୍ମର ସମସ୍ତ ଶାଖାରେ ଉପସଂହାର ହେବା ଉଚିତ ।

## ६ आनन्दाद्यधिकरणम् ॥ सू० ११-१३ ॥

## ଆନନ୍ଦାଦ୍ୟଧିକରଣ-୬

### आनन्दादयः प्रधानस्य ॥ ११ ॥

### (୧) ଆନନ୍ଦାଦୟଃ ପ୍ରଧାନସ୍ୟ ॥ ୩-୩-୧୧ ॥

ପ୍ରଧାନସ୍ୟ=ବ୍ରହ୍ମର, ଆନନ୍ଦାଦୟଃ= ଆନନ୍ଦାତ୍ୱାଦିଧର୍ମଗୁଡ଼ିକର ସବୁସ୍ଥଳରେ ଉପସଂହାର ହେବା ଉଚିତ । କାରଣ-ସମସ୍ତ ଶାଖାରେ ବେଦ୍ୟବ୍ରହ୍ମ ଏକ ଅଟେ ।

ମୂଳ-(କ) ବ୍ରହ୍ମସ୍ୱରୂପ ପ୍ରତିପାଦନପରାସୁ ଶ୍ରୁତିଷ୍ୱାନନ୍ଦରୂପତ୍ୱଂ ବିଜ୍ଞାନଘନତ୍ୱଂ ସର୍ବଗତତ୍ୱଂ ସର୍ବାତ୍ମତ୍ୱମି ତ୍ୟେବଂଜାତୀୟକା ବ୍ରହ୍ମଣୋ ଧର୍ମାଃ କ୍ୱଚିତ୍ କେନଚିଚ୍ଛୂୟନ୍ତେ । ତେଷୁ ସଂଶୟଃ କିମାନବାନ୍ଦୟୋ ବ୍ରହ୍ମଧର୍ମା ଯତ୍ର ଯାବନ୍ତଃ ଶ୍ରୂୟନ୍ତେ ତାବନ୍ତଃ ଏବ ତତ୍ର ପ୍ରତିପତ୍ତବ୍ୟାଃ, କିଂ ବା ସର୍ବେ ସର୍ବତ୍ରେତି ।

(ଖ) ତତ୍ର ଯଥାଶ୍ରୁତିବିଭାଗଂ ଧର୍ମପ୍ରତିପତ୍ତୌ ପ୍ରାପ୍ତାୟାମିଦମୁଚ୍ୟତେ ଆନନ୍ଦାଦୟଃ ପ୍ରଧାନସ୍ୟ ବ୍ରହ୍ମୋଣ ଧର୍ମାଃ ସର୍ବେ ସର୍ବତ୍ର ପ୍ରତିପତ୍ତବ୍ୟାଃ । କସ୍ମାତ ? ସର୍ବାଭେଦାଦେବ । ସର୍ବତ୍ର ହି ତଦେବୈକଂ ପ୍ରଧାନଂ ବିଶେଷ୍ୟଂ ବ୍ରହ୍ମ ନ ଭିଦ୍ୟତେ । ତସ୍ମାତ ସାର୍ବତ୍ରିକତ୍ୱଂ ବ୍ରହ୍ମଧର୍ମାଣାମ୍, ତେନୈବ ପୂର୍ବା କରଣୋଦିତେନ ଦେବଦତ୍ତଶୌର୍ଯ୍ୟାଦିନିଦର୍ଶନେନ ।

(୨) ଭାଷାଂତର- (କ) ବ୍ରହ୍ମସ୍ୱରୂପକୁ ପ୍ରତିପାଦନ କରୁଥିବା ଶ୍ରୁତିଗୁଡ଼ିକରେ ଆନନ୍ଦସ୍ୱରୂପକୁ, ବିଜ୍ଞାନଘନତ୍ୱ ସର୍ବଗତତ୍ୱ ଓ ସର୍ବାତ୍ମତ୍ୱ - ଏହିପ୍ରକାର ବ୍ରହ୍ମର ଧର୍ମ କେତେକ ସ୍ଥାନରେ କିଛି ଶୁଣାଯାଏ । ସଂଶୟ ହୁଏ ହେ ବ୍ରହ୍ମର ଆନନ୍ଦାଦିଧର୍ମ ଯେଉଁଠାରେ ଯେତିକି ଶୁଣାଯାଏ, ସେତିକି ହିଁ ସେଠାରେ ପ୍ରତିପତ୍ତବ୍ୟ ଅଟେ କି ସମସ୍ତଙ୍କର ସର୍ବତ୍ର ପ୍ରତିପତ୍ତି ହେବା ଉଚିତ୍ ?

(ଖ) ଶ୍ରୁତିବିଭାଗର ଅନୁସାରେ ଧର୍ମର ପ୍ରତିପତ୍ତି ପ୍ରାପ୍ତ ହେବାରୁ ଏଠାରେ କୁହାଯାଇଛି- ପ୍ରଧାନଭୂତ ବ୍ରହ୍ମର ଆନନ୍ଦାଦି ସବୁଧର୍ମ ସବୁସ୍ଥାନରେ ଜାଣିବା ଉଚିତ, । କିପରି ? ସମସ୍ତଙ୍କ ସହିତ ଅଭେଦ ହେବାରୁ । ଅର୍ଥାତ ସେ ହିଁ ଗୋଟିଏ ପ୍ରଧାନ ବିଶେଷ୍ୟ ବ୍ରହ୍ମ ସବୁସ୍ଥଳରେ ଭିନ୍ନ ନୁହେଁ । ତେଣୁ ପୂର୍ବାଧିକରଣରେ ଉକ୍ତ ଦେବଦତ୍ତର ଶୌର୍ଯ୍ୟାଦି ଦୃଷ୍ଟାନ୍ତ ଦ୍ୱାରା ବ୍ରହ୍ମର ଧର୍ମ ସାର୍ବତ୍ରିକ ହୁଏ ।

(୨) ମୂଳ-(କ) ନନ୍ୱେବଂ ସତି ପ୍ରିୟଶିରସ୍ତ୍ୱାଦିୟୋଽପି ଧର୍ମାଃ ସର୍ବେ ସର୍ବତ୍ର ସଙ୍କର୍ଯ୍ୟେରନ୍ । ତଥାହିତୈତ୍ତିରୀୟକ ଆନନ୍ଦମୟମାତ୍ମାନଂ ପ୍ରକମ୍ୟାମ୍ନାୟତେ='ତସ୍ୟପ୍ରିୟ ମେବ ଶିରଃ । ମୋଦୋ ଦକ୍ଷିଣଃ ପକ୍ଷଃ । ପ୍ରମୋଦଃ ଉତ୍ତରଃ ପକ୍ଷଃ । ଆନନ୍ଦ ଆତ୍ମା ବ୍ରହ୍ମ ପୁଚ୍ଛଂ ପ୍ରତିଷ୍ଠା' (ତୈ ୨-୫) ଇତି । ଅତ ଉତ୍ତରଂ ପଠତି-

**(୨) ଭାଷାଂତର** - (କ) ପରନ୍ତୁ ଏହିପରି ହେବାରୁ ପ୍ରିୟଶିରସ୍ତ୍ୱାଦି ସମସ୍ତ ଧର୍ମ ମଧ୍ୟ ସର୍ବତ୍ର ସଂଗୃହୀତ ହେବେ । କାରଣତୈତିରୀୟକରେ ଆନନ୍ଦମୟ ଆତ୍ମାର ଉପକ୍ରମ କରି 'ତସ୍ୟ ପ୍ରିୟମେବ' (ସେହି ଆନନ୍ଦମୟ ଆତ୍ମାର ପ୍ରିୟ ହିଁ ଶିର ଅଟେ । ମୋଦ ହେଉଛି ଦକ୍ଷିଣପକ୍ଷ । ପ୍ରମୋଦ ଉତ୍ତରପକ୍ଷ । ଆନନ୍ଦ ଆତ୍ମା ଓ ବ୍ରହ୍ମପୁଚ୍ଛଂ ପ୍ରତିଷ୍ଠା) ଏହି ଶ୍ରୁତି ଅଟେ । ଏହାର ଉତ୍ତରରେ କହନ୍ତି-

## प्रियशिरस्त्वाद्यप्राप्तिरुपचयापचयौ हि भेदे ॥ १२ ॥

## (୨) ପ୍ରିୟଶିରସ୍ତ୍ୱାଦ୍ୟପ୍ରାପ୍ତିରୂପଚୟାପଚୟୌ ହି ଭେଦେ ॥୩-୩-୧୨॥

ଗୋଟିଏ ଶାଖାରେ ଶ୍ରୁତି, ପ୍ରିୟଶିରସ୍ତ୍ୱାଦ୍ୟପ୍ରାପ୍ତିଃ=ପ୍ରିୟଶିରସ୍ତ୍ୱାଦିଧର୍ମର ସର୍ବତ୍ରପ୍ରାପ୍ତି ହୁଏ ନାହିଁ । ହି=କାରଣ-ପ୍ରିୟ, ମୋଦ, ପ୍ରମୋଦ ଓ ଆନନ୍ଦ-ଏମାନେ ପରସ୍ପରର ଓ ଅନ୍ୟଭୋକ୍ତାର ଅପେକ୍ଷାରେ ଉପଚୟୌ ବୃଦ୍ଧି ଓ ହ୍ରାସରୂପରେ ଉପଲବ୍ଧ ହୁଅନ୍ତି । ଭେଦେ = ଭେଦରେ ମଧ୍ୟ ଏହିପରି ହୋଇପାରେ । ବ୍ରହ୍ମ କିନ୍ତୁ ଏକା ତେଣୁ ତାହାର ଧର୍ମ ନିର୍ଗୁଣ ବ୍ରହ୍ମର ହୁଅନ୍ତି ନାହିଁ ।

(୩) ମୂଳ-(କ) ପ୍ରିୟଶିରସ୍ତ୍ୱାଦୀନାଂ ଧର୍ମାଣାଂ ତୈତ୍ତିରୀୟକ ଅମ୍ନାତାନଂ ନାସ୍ତ୍ୟନ୍ୟତ୍ର ପ୍ରାପ୍ତିଃ । ଯତ୍ କାରଣଂ ପ୍ରିୟଃ ମୋଦଃ ପ୍ରମୋଦ ଆନନ୍ଦ ଇତ୍ୟେତେ ପରସ୍ପରାପେକ୍ଷୟା ଭୋକ୍ତନ୍ତରାପେକ୍ଷୟା ଚୋପଚିତାପଚିତରୂପା ଉପଲଭ୍ୟନ୍ତେ । ଉପଚୟା ପଚୟୌ ଽସତି ଭେଦେ ସମ୍ଭବତଃ ନିଭେଦଂ ତୁ ବ୍ରହ୍ମ 'ଏକମେବାଦ୍ୱିତୀୟମ୍' (ଛା ୬।୨।୧) ଇତ୍ୟାଦି ଶ୍ରୁତିଭ୍ୟଃ ।

(ଖ) ନ ଚୈତେ ପ୍ରିୟଶିରସ୍ତ୍ୱାଦୟୋ ବ୍ରହ୍ମଧର୍ମାଃ କୋଶଧର୍ମାସ୍ତ୍ୱେତ ଇତ୍ୟୁପଦିଷ୍ଟ-ମସ୍ମାଭିଃ 'ଆନନ୍ଦମୟୋଽଭ୍ୟାସାତ୍' (ବ୍ର ସୂ ୨-୧-୧୨) ଇତ୍ୟତ୍ର । ଅପିଃ ପରସ୍ମିନ୍‌ବ୍ରହ୍ମଣି



ଚିତ୍ତାବତାରୋପାୟମାତ୍ର ତ୍ୱେନୈତେ ପରିକଳ୍ପ୍ୟନ୍ତେ, ନ ଦ୍ରବ୍ୟତ୍ୱେନ । ଏବମପି ସୁତରାମ-ନ୍ୟତ୍ରାପ୍ରାପ୍ତିଃ ପ୍ରିୟଶିରସ୍ତ୍ୱାଦୀନାମ୍ ।

(ଗ) ବ୍ରହ୍ମଧର୍ମାସ୍ତ୍ୱେତାନ୍ କୃତ୍ୱା ନ୍ୟାୟମାତ୍ରମିଦମାଚାର୍ଯ୍ୟେଣ ପ୍ରଦର୍ଶିତମ୍-ପ୍ରିୟଶିରସ୍ତ୍ୱା-ଦ୍ୟପ୍ରାପ୍ତିରିତି । ସ ଚ ନ୍ୟାୟୋଽନ୍ୟେଷୁ ନିଶ୍ଚିତେଷୁ ବ୍ରହ୍ମଧର୍ମେଷୂପାସନାୟୋ ପଦିଶ୍ୟମାନେଷୁ ନେତବ୍ୟଃ ସଂଯଦ୍ୱାମାଦିଷୁ ସତ୍ୟକାମାଦିଷୁ ଚ । ତେଷୁ ହି ସତ୍ୟପ୍ୟୁପାସ୍ୟସ୍ୟ ବ୍ରହ୍ମଣ ଏକତ୍ୱ, ପ୍ରକ୍ରମଭେଦାଦୁପାସନା ଭେଦେ ସତି, ନାନ୍ୟୋନ୍ୟଧର୍ମାଣା ମନ୍ୟୋନ୍ୟତ୍ର ପ୍ରାପ୍ତିଃ ।

(ଘ) ଯଥା ଚ ଦ୍ୱେନାର୍ଯ୍ୟାବେକଂ ନୃପତିମୁପା ସେତେ - ଛାତ୍ରେଣାନ୍ୟା ଚାମରେ-ଣାନ୍ୟା, ତତ୍ରୋପାସ୍ୟୈକତ୍ୱେଽପ୍ୟୁପାସନାଭେଦୋ ଧର୍ମବ୍ୟବସ୍ଥା ଚ ଭବତିଧର୍ମବ୍ୟବସ୍ଥା ଚ ଭବତି-ଏବମିହାପୀତି । ଉପଚିତାପଚିତଗୁଣତ୍ୱଂ ହି ସତି ଭେଦବ୍ୟବହାରେ ସଗୁଣେ ବ୍ରହ୍ମଣ୍ୟୁପପଦ୍ୟତେ, ନ ନିର୍ଗୁଣେ ପରସ୍ମିନ୍ ବ୍ରହ୍ମଣି । ଅତୋ ନ ସତ୍ୟକାମତ୍ୱାଦୀନାଂ ଧର୍ମାଣାଂ କ୍ୱଚିଚ୍ଛ୍ରୁତାନାଂ ସର୍ବତ୍ର ପ୍ରାପ୍ତିରି ତ୍ୟର୍ଥଃ ।

**(୩) ଭାଷାଂତର-** (କ) ତୈତିରୀୟକରେ ପଠିତ ପ୍ରିୟ, ଶିର ସ୍ତ୍ୱାଦି ଧର୍ମ ଗୁଡ଼ିକରେ ଅନ୍ୟତ୍ର ପ୍ରାପ୍ତି ହୁଏ ନାହିଁ; କାରଣ ପ୍ରିୟ, ମୋଦ, ପ୍ରମୋଦ ଓ ଆନନ୍ଦ-ଏମାନେ ପରସ୍ପରର ଓ ଅନ୍ୟଭୋକ୍ତାଙ୍କୁ ଅପେକ୍ଷା କରି ଉପଚିତ (ବୃଦ୍ଧି) ଓ ଅପଚିତ (ହ୍ରାସ) ରୂପରେ ଉପଲବ୍ଧ ହୁଅନ୍ତି ଏବଂ ଉପଚୟ ଓ ଅପଚୟ ଭେଦ ହେଲେ ଏହା ସମ୍ଭବ ହୁଏ । କିନ୍ତୁ ବ୍ରହ୍ମ 'ଏକମେବାଦ୍ୱିତୀୟମ୍' (ଏକ ହିଁ ଅଦ୍ୱିତୀୟ ଅଟେ) ଇତ୍ୟାଦି ଶ୍ରୁତିଦ୍ୱାରା ଭେଦରହିତ ରୂପରେ ଜଣାପଡ଼େ ।

(ଖ) କିନ୍ତୁ ଏହି ପ୍ରିୟଶିରସ୍ତ୍ୱାଦି ବ୍ରହ୍ମର ଧର୍ମ ନୁହଁନ୍ତି । ଏମାନେ କୋଶର ଧର୍ମ । ଏହା ଆମ୍ଭେ 'ଆନନ୍ଦମୟୋଽଭ୍ୟାସାତ୍' ସୂତ୍ରରେ କହିଅଛୁ । ପରବ୍ରହ୍ମରେ ଚିତ୍ତର ଅବସ୍ଥିତିର ସାଧନମାତ୍ରରୂପରେ ପରିକଳ୍ପିତ କରାଯାଇଅଛି । କିନ୍ତୁ ଦ୍ରଷ୍ଟବ୍ୟ ରୂପରେ ନୁହେଁ । ଏହିପରି ମଧ୍ୟ ପ୍ରିୟଶିରସ୍ତ୍ୱାଦିର ସୁତରାଂ ଅନ୍ୟଶାଖାରେ ଅପ୍ରାପ୍ତି ହୁଏ ।

(ଗ) ଏହି ପ୍ରିୟଶିରସ୍ତ୍ୱାଦିକୁ ବ୍ରହ୍ମର ଧର୍ମରୂପରେ ସ୍ୱୀକାର କରି ପ୍ରିୟଶିରସ୍ତ୍ୱାଦିର ଅପ୍ରାପ୍ତି ହୁଏ- ଏହି ନ୍ୟାୟ କେବଳ ଆଚାର୍ଯ୍ୟ ପ୍ରଦର୍ଶିତ କରିଛନ୍ତି । ଏହି ନ୍ୟାୟର ଉପାସନା ପାଇଁ ଉପଦିଶ୍ୟମାନ ସଂଯଦ୍ ବାମତ୍ୱ ପ୍ରଭୃତି ଏବଂ ସତ୍ୟକାମତ୍ୱାଦି ନିଶ୍ଚିତ-ବ୍ରହ୍ମର ଅନ୍ୟଧର୍ମରେ ନେବା ଉଚିତ, କାରଣ-ସେଠାରେ ଉପାସ୍ୟବ୍ରହ୍ମର ଏକ ହେଲାପରେ ଉପକ୍ରମ୍ ଭେଦରେ ଉପାସନାର ଭେଦ ହେଲାପରେ ଧର୍ମର ଅନ୍ୟୋନ୍ୟଶାଖାରେ ପ୍ରାପ୍ତିହୁଏ ନାହିଁ ।

(ଘ) ଯେପରି ଦୁଇଟି ସ୍ତ୍ରୀ ଗୋଟିଏ ରାଜାକୁ ଜଣେ ଛତ୍ରଦ୍ୱାରା ଓ ଅପରଟି ଚାମର ଦ୍ୱାରା ଉପାସନା କରିଛି, ସେପରି ଉପାସ୍ୟ ଏକ ହେଲେ ମଧ୍ୟ ଉପାସନାର ଭେଦ ଓ ଧର୍ମର ବ୍ୟବସ୍ଥା ହୁଏ, ସେପରି ଏଠାରେ ମଧ୍ୟ ହେବା ଉଚିତ । ଉପଚିତ ଓ ଅପଚିତ ଗୁଣତ୍ୱ ଭେଦ ବ୍ୟବହାର ହେଲା ପରେ ସଗୁଣ ବ୍ରହ୍ମରେ ହୁଏ ନିର୍ଗୁଣ ପରବ୍ରହ୍ମରେ ନୁହେଁ । ତେଣୁ କୌଣସି ଶ୍ରୁତିରେ ଥିବା ସତ୍ୟକାମତ୍ୱାଦିଧର୍ମଗୁଡ଼ିକର ସବୁଶାଖାରେ ପ୍ରାପ୍ତି ହୁଏ ବୋଲି ଅର୍ଥ ହୁଏ ।

## ईतरे त्वर्थसामान्यात् ॥ १३ ॥

## (୧) ଇତରେ ତ୍ୱର୍ଥସାମାନ୍ୟାତ୍ ॥୩-୩-୧୩॥

ଇତରେ ତୁ-ଆନନ୍ଦାଦିଧର୍ମର ସବୁସ୍ଥାନରେ ଉପସଂହାର ହେବା ଉଚିତ୍ । ଅର୍ଥସାମାନ୍ୟାତ୍- କାରଣ- ପ୍ରତିପାଦ୍ୟବ୍ରହ୍ମ ସର୍ବତ୍ର ଏକ ଅଟେ ।

(୨) ମୂଳ-(କ) ଇତରେ ତ୍ୱାନନ୍ଦାଦୟୋଧର୍ମା ବ୍ରହ୍ମସ୍ୱରୂପପ୍ରତିପାଦନାୟୈ-ବୋଚ୍ୟମାନା ଅର୍ଥସାମାନ୍ୟାତ୍ ପ୍ରତିପାଦଂସ୍ୟ ବ୍ରହ୍ମଣୋ ଧର୍ମିଣଃ ଏକତ୍ୱାତ୍ ସର୍ବେ ସର୍ବତ୍ର ପ୍ରତିୟେରନ୍ନିତି ବୈଷମ୍ୟମ୍, ପ୍ରତିପତ୍ତିମାତ୍ରପ୍ରୟୋଜନା ହି ତ ଇତି ।

(୨) ଭାଷାଂତର- (କ) ପରନ୍ତୁ ବ୍ରହ୍ମସ୍ୱରୂପର ପ୍ରତିପାଦନ ପାଇଁ କୁହାଯାଇଥିବା ଅନ୍ୟ ଆନନ୍ଦପ୍ରଭୃତି ଧର୍ମ ଅର୍ଥର ସମାନ ଦ୍ୱାରା ପ୍ରତିପାଦ୍ୟଧର୍ମୀ ଏକ ହେଲେ ସମସ୍ତେ ସବୁସ୍ଥାନରେ ପ୍ରତୀତି ହେବା ହିଁ ବୈଷମ୍ୟ; କାରଣ-ସେମାନେ ବ୍ରହ୍ମର ପ୍ରତିପତ୍ତି (ଜ୍ଞାନମାତ୍ର) ପ୍ରୟୋଜନଶାଳୀ ଅଟନ୍ତି ।

## ७ आध्यानाधिकरणम् ॥ सू० १४-१५ ॥

## ଆଧ୍ୟାନାଧିକରଣ-୭

## आध्यानाय प्रयोजनाभावात ॥ १४ ॥

## (୧) ଆଧ୍ୟାନାୟ ପ୍ରୟୋଜନା - ଭାବାତ ॥୩-୩-୧୪॥

ଇନ୍ଦ୍ରିୟେଭ୍ୟଃ ପରା ହ୍ୟର୍ଥାଃ, ଏହି ସୂତ୍ରରେ ଆଧାନାୟ-ଆଧାନପୂର୍ବକ ସମ୍ୟଗ୍ ଦର୍ଶନ ପାଇଁ ପୁରୁଷ ପରତ୍ୱଦ୍ୱାରା ପ୍ରତିପାଦିତ ହୁଏ, ପ୍ରୟୋଜନାଭାବାତ୍- କାରଣ- ଏହାର ପରତ୍ୱପ୍ରତି ପାଦନରେ କୌଣସି ପ୍ରୟୋଜନ ନାହିଁ ।

(୨) ମୂଳ - (କ) କାଠକେଷୁ ପଠ୍ୟତେ- 'ଇନ୍ଦ୍ରିୟେଭ୍ୟୋ ପରା ହ୍ୟର୍ଥାଃ, ଅର୍ଥେଭ୍ୟଶ୍ଚ ପରଂ ମନଃ, ମନସସ୍ତୁ ପରାବୁଦ୍ଧି' (କ ଠ ୩-୧୦) ଇତ୍ୟାରଭ୍ୟ 'ପୁରୁଷାନ୍ନ

ପରଂ କିଞ୍ଚିତ୍ସା କାଷ୍ଠା ସା ପରା ଗତିଃ' (କ ଠ ୩-୧୧) ଇତି । ତତ୍ର ସଂଶୟଃ-କିମିମେ ସର୍ବ ଏବାର୍ଥାଦୟସ୍ତତସ୍ତତଃ ପରତ୍ୱେନ ପ୍ରତିପାଦ୍ୟନ୍ତ ଉତ ପୁରୁଷ ଏବୈଭ୍ୟ ସର୍ବେଭ୍ୟଃ ପରଃ ପ୍ରତିପାଦ୍ୟତ ଇତି ।

(ଖ) ତତ୍ର ତାବତ୍ ସର୍ବେଷାମେବୈଷାଂ ପରତ୍ୱେନ ପ୍ରତିପାଦନମିତି ଭବତି ମତିଃ । ତଥାହି ଶ୍ରୂୟତେ- 'ଇଦମସ୍ମାତ୍ ପରମିଦମସ୍ମାତ୍ ପରମ୍' ଇତି । ନନୁ ବହୁଷ୍ୱର୍ଥେଷୁ ପରତ୍ୱେନ-ପ୍ରତିପାଦୟିଷିତେଷୁ ବାକ୍ୟଭେଦଃ ସ୍ୟାତ୍, ନୈଷ ଦୋଷଃ; ବାକ୍ୟବହୁତ୍ୱୋପପତ୍ତେଃ । ବହୂନ୍ୟେବ ହ୍ୟେତାନି ବାକ୍ୟାନି ପ୍ରଭବନ୍ତି ବହୂନର୍ଥାନ୍ ପରତ୍ୱୋପେତାନ୍ ପ୍ରତିପାଦୟିତୁମ୍ । ତସ୍ମାତ୍ ପ୍ରତ୍ୟେକମେଷାଂ ପରତ୍ୱ ପ୍ରତିପାଦନମିତି ।

(୨) ଭାଷାଂତର- (କ) କାଠକରେ 'ଇନ୍ଦ୍ରିୟେଭ୍ୟପରାଃ' (ଇନ୍ଦ୍ରିୟକୁ ଅପେକ୍ଷା କରି ସେମାନଙ୍କର ବିଷୟରେ (ସୂକ୍ଷ୍ମ) ଅଥବା ଶ୍ରେଷ୍ଠ ହୁଏ । ବିଷୟଦ୍ୱାରା ମନ ପର ହୁଏ ଓ ମନଦ୍ୱାରା ବୁଦ୍ଧି ପର ହୁଏ) ଏହା ଆରମ୍ଭ କରି 'ପୁରୁଷାନ୍ନ' (ପୁରୁଷଠାରୁ ପର କିଛି ନାହିଁ, ସେ ହିଁ ସୂକ୍ଷ୍ମର ପରାକାଷ୍ଠା ଅଟେ । ସେ ହିଁ ପରାଗତି (ଉତ୍କୃଷ୍ଟ ଗତି ଅଟେ) ଏହି ପ୍ରକାର କୁହାଯାଇଅଛି । ଏଠାରେ ସଂଶୟ ହୁଏ ଯେ- ଏହି ସମସ୍ତ କଣ ଅର୍ଥାଦି ତତ୍ ତତ୍ ଦ୍ୱାରା ପରରୂପରୁ ପ୍ରତିପାଦିତ ହୁଅନ୍ତି ଅଥବା ପୁରୁଷ ହିଁ ଏହି ସମସ୍ତ ପର ରୂପଦ୍ୱାରା ପ୍ରତିପାଦିତ ହୁଏ ?

(ଖ) ସେଥିରେ ସେହି ସମସ୍ତଙ୍କର ପରରୂପଦ୍ୱାରା ପ୍ରତିପାଦନ ହୁଏ ବୋଲି ଧାରଣା କରାଯାଏ, କାରଣ-ଏହି ଏହାଠାରୁ ପର, ଏହି ଏହାଠାରୁ ପର ବୋଲି ଶ୍ରୁତି କହେ । ପରନ୍ତୁ ବହୁତ ଅର୍ଥରେ ପରରୂପଦ୍ୱାରା ପ୍ରତିପାଦନ କରିବା ଯଦି ଅଭୀଷ୍ଟ ହୁଏ, ତେବେ ବାକ୍ୟଭେଦ ହେବ କି ? ହଁ, କିନ୍ତୁ ଏହା ଦୋଷ ନୁହେଁ, କାରଣ-ବାକ୍ୟର ବହୁତ୍ୱ ଉପପତ୍ତି ହୁଏ । ପରତ୍ୱ ଦ୍ୱାରା ଯୁକ୍ତ ହୋଇ ଅନେକ ବିଷୟର ପ୍ରତିପାଦନ ପାଇଁ ସେହି ଅନେକ ବାକ୍ୟ ସମର୍ଥ ହୁଅନ୍ତି । ତେଣୁ ଏଠାରେ ପ୍ରତ୍ୟେକ ପରରୂପ ଦ୍ୱାରା ପ୍ରତିପାଦନ ହୁଏ ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ ପୁରୁଷ ଏବ ହ୍ୟେଭ୍ୟଃ ସର୍ବେଭ୍ୟଃ ପରଃ ପ୍ରତିପାଦ୍ୟତ ଇତି ଯୁକ୍ତମ୍, ନ ପ୍ରତ୍ୟେକମେଷାଂ ପରତ୍ୱ ପ୍ରତିପାଦନମ୍ । କସ୍ମାତ୍ ? ପ୍ରୟୋଜନାଭାବାତ୍ । ନ ହ୍ୟୀତରେଷୁ ପରତ୍ୱେନ ପ୍ରତିପନ୍ନେଷ କିଞ୍ଚିତ୍ପ୍ରୟୋଜନଂ ଦୃଶ୍ୟତେ ଶ୍ରୂୟତେ ବା । ପୁରୁଷେ ତ୍ୱିନ୍ଦ୍ରିୟାଦିଭ୍ୟଃ ପରସ୍ମିନ୍ ସର୍ବାନର୍ଥବ୍ରାତାତୀତେ ପ୍ରତିପନ୍ନେ ଦୃଶ୍ୟତେ ପ୍ରୟୋଜନଂ ମୋକ୍ଷସିଦ୍ଧିଃ ।

(ଖ) ତଥା ଚ ଶ୍ରୁତିଃ- 'ନିଚାର୍ଯ୍ୟ ତନ୍ମୃତ୍ୟୁମୁଖାତ୍ ପ୍ରମୁଚ୍ୟତେ' (କ ୩-୧୫) ଇତି ଅପି ଚ ପରପ୍ରତିଷେଧେନ କାଷ୍ଠାଶବ୍ଦେନ ଚ ପୁରୁଷବିଷୟମାଦରଂ ଦର୍ଶୟନ୍ ପୁରୁଷ ପ୍ରତିପତ୍ତ୍ୟର୍ଥୈବ ପୂର୍ବାପରପ୍ରବାହୋକ୍ତିରିତି ଦର୍ଶୟତି- 'ଆଧ୍ୟାନାୟେତି' ଆଧ୍ୟାନପୂର୍ବକାୟ

ସମ୍ୟଗ୍ ଦର୍ଶନାୟେତ୍ୟର୍ଥଃ ସମ୍ୟଗ୍ ଦର୍ଶନାର୍ଥମେବ ହୀହାଧାନମୁପଦିଶ୍ୟତେ, ନ ତ୍ୱାଧାନମେବ ସ୍ୱପ୍ରଧାନମ୍ ।

**ଭାଷାଂତର-** (କ) ଏହିପରି ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ- ଏହି ସମସ୍ତଙ୍କ ଠାରୁ ପୁରୁଷ ପରରୂପ ଦ୍ୱାରା ପ୍ରତିପାଦିତ ହୁଏ, କିନ୍ତୁ ଏହିଠାରୁ ପ୍ରତ୍ୟେକ ଅର୍ଥାଦିରେ ପରତ୍ୱପ୍ରତିପାଦନ ଠିକ୍ ନୁହେଁ । କିପରି ? କାରଣ-ଏହାଦ୍ୱାରା ପ୍ରୟୋଜନରେ ଅଭାବ ହୁଏ । ଅନ୍ୟଟି ପରରୂପଦ୍ୱାରା ଜଣାପଡ଼ିଲେ କୌଣସି ଅନ୍ୟପ୍ରୟୋଜନ ଦେଖାଯାଏ ନାହିଁ କି ଶୁଣାଯାଏ ନାହିଁ । ଇନ୍ଦ୍ରିୟାଦିରୁ ସବୁ ଅନର୍ଥ ସମୁଦାୟ ରହିତ ପରପୁରୁଷର ଜ୍ଞାତ ହେଲା ପରେ ମୋକ୍ଷସିଦ୍ଧି ରୂପ ପ୍ରୟୋଜନ ଦେଖାଯାଏ ।

(ଖ) କାରଣ- 'ନିଚାଯ୍ୟ ତଂ' (ସେହି ଆତ୍ମ ତତ୍ତ୍ୱକୁ ଜାଣି ପୁରୁଷ ମୃତ୍ୟୁମୁଖରୁ ମୁକ୍ତ ହୁଏ) ଏହା ହିଁ ଶ୍ରୁତି କହେ । ପରର ପ୍ରତିଷେଧ ଦ୍ୱାରା ଓ କାଷ୍ଠ ଶବ୍ଦ ଦ୍ୱାରା ପୁରୁଷ ବିଷୟକ ଆଦର ଦେଖାଇ ପୁରୁଷର ପ୍ରତିପାଦନ ପାଇଁ ପୂର୍ବାପର ପ୍ରବାହର ଉକ୍ତି ହୁଏ ବୋଲି 'ଆଧାନାୟ' ଦ୍ୱାରା ଦେଖାଏ । ଆଧାନପୂର୍ବକ ତତ୍ତ୍ୱଜ୍ଞାନ ପାଇଁ ଏହି ଅର୍ଥ ହୁଏ । ସମ୍ୟଗ୍‌ଦର୍ଶନ ପାଇଁ ଏଠାରେ ଆଧାନର ଉପଦେଶ କରାଯାଇଚି, କିନ୍ତୁ ଅଧାନର ସ୍ୱପ୍ରଧାନ ରୂପରେ ଉପଦେଶ ଦିଆଯାଏ ନାହିଁ ।

## आत्मशब्दाच्च ॥ १५ ॥

## (୧) ଆତ୍ମଶବ୍ଦାଚ ॥ ୩-୩-୧୫ ॥

ଆତ୍ମଶବ୍ଦାତ୍ ଚ='ଏଷ ସର୍ବେଷୁ' ଇତ୍ୟାଦିଶ୍ରୁତି ଦ୍ୱାରା ପ୍ରକୃତ ପୁରୁଷଠାରେ ଆତ୍ମଶବ୍ଦର ଶ୍ରବଣ ହେଲେ ଏହି ବାକ୍ୟ ଆତ୍ମପରକ ହୁଏ, କାରଣ-ଶ୍ରୁତରୁ ଆତ୍ମାରେ ମାନାନ୍ତରାବେଦ୍ୟତ୍ୱ (ଅପୂର୍ବ)ର ପ୍ରତିପାଦନ ହେଉଛି ।

(୨) ମୂଳ-(କ) ଇତଶ୍ଚ ପୁରୁଷପ୍ରତିପତ୍ତ୍ୟର୍ଥୈବେୟମିନ୍ଦ୍ରିୟାଦିପ୍ରବାହୋକ୍ତିଃ । ଯତ୍‌କାରଣମ୍-'ଏଷ ସର୍ବେଷୁ ଭୂତେଷୁ ଗୂଢାତ୍ମା ନ ପ୍ରକାଶତେ' ଦୃଶ୍ୟତେ ତ୍ୱଗ୍ର୍ୟୟା ବୁଦ୍ଧ୍ୟା ସୂକ୍ଷ୍ମୟା ସୂକ୍ଷ୍ମଦର୍ଶିଭିଃ' (କଠ ୩-୧୨) ଇତି ପ୍ରକୃତଂ ପୁରୁଷମାତ୍ମେତ୍ୟାହ । ଅତଶ୍ଚା ନାତ୍ମତ୍ୱମିତରେଷାଂ ବିବକ୍ଷିତମିତି ଗମ୍ୟତେ । ଯସ୍ୟୈବ ଚ ଦୁର୍ବିଜ୍ଞାନତାଂ ସଂସ୍କୃତମତି-ଗମ୍ୟତାଂ ଚ ଦର୍ଶୟତି ।

(ଖ) ତଦ୍‌ବିଜ୍ଞାନାୟୈବ 'ଯଚ୍ଛେଦ୍‌ବାଙ୍‌ମନସୀ ପ୍ରାଜ୍ଞଃ' (କଠ ୩-୧୩) ଇତ୍ୟାଧାନଂ ବିଦଧାତି । ତଦ୍ ବ୍ୟାଖ୍ୟାତମ୍-'ଆନୁମାନିକମପ୍ୟେ' କେଷାମ୍ (ବ୍ରସୂ ୧-୪-୧) ଇତ୍ୟତ୍ର । ଏବମନେପ୍ରକାର ଆଶୟାତିଶୟଃ ଶ୍ରୁତେଃ ...ଷେ ଲକ୍ଷ୍ୟତେ, ନେତରେଷୁ



(ଗ) ଅପି ଚ 'ସୋଽଧ୍ୱନଃ ପାରମାପ୍ନୋତି ତଦ୍‌ବିଷ୍ଣୋଃ ପରମଂ ପଦମ୍' (କଠ ୩-୯ ଇତ୍ୟୁକ୍ତେ କିଂ ତଦଧ୍ୱନଃ ପାରଂ ବିଷ୍ଣୋଃ ପରମଂ ପଦମିତ୍ୟସ୍ୟାମାକାଙ୍‌କ୍ଷାୟାମିନ୍ଦ୍ରିୟାଦ୍ୟନୁକ୍ରମଣାତ ପରମପଦପ୍ରତିପତ୍ତ୍ୟର୍ଥ ଏବାୟମାମ୍ନାୟ ଇତ୍ୟବସୀୟତେ ।

**(୨) ଭାଷାଂତର-** (କ) ଏହିଠାରୁ ଇନ୍ଦ୍ରିୟ ପ୍ରଭୃତିର ପ୍ରବାହର ଉକ୍ତି କେବଳ ପୁରୁଷର ପ୍ରତିପତ୍ତି (ଜ୍ଞାନ) ପାଇଁ ଅଛି । କାରଣ- 'ଏଷ ସର୍ବେଷୁ ଭୂତେଷୁ' (ସମଗ୍ର ଭୂତରେ ଲୁଚିରହିଥିବା ଏହି ଆତ୍ମା ପ୍ରକାଶିତ ହୁଏ ନାହିଁ । ଏହା କିନ୍ତୁ ସୂକ୍ଷ୍ମଦର୍ଶୀ ପୁରୁଷ ଦ୍ୱାରା ନିଜର ତୀବ୍ର ଓ ସୂକ୍ଷ୍ମବୁଦ୍ଧିରୁ ହିଁ ଦେଖାଯାଏ) ଏହି ଶ୍ରୁତି ପ୍ରକୃତପୁରୁଷକୁ ଆତ୍ମାରୂପରେ ଦେଖେ । ତେଣୁ ଅନ୍ୟଠାରେ ଅନାତ୍ମତ୍ୱ ବିବକ୍ଷିତ ବୋଲି ଜଣାପଡ଼େ । ତାହାଠାରେ ଦୁର୍ବିଜ୍ଞେୟତା ଓ ସଂସ୍କୃତ ବୁଦ୍ଧିଗମ୍ୟତା ଦେଖାଯାଏ ।

(ଖ) ତାହାକୁ ଜାଣିବା ପାଇଁ 'ଯଚ୍ଛେଦ୍ ବାଙ୍ ମନସୀ' (ବିବେକୀ ପୁରୁଷ ବାଣୀର ମନରେ ଉପସଂହାର କରେ) ଏହିପ୍ରକାର ଆଧାନର ବିଧାନ ଶ୍ରୁତି କରେ । ତାହାର 'ଆନୁମାନିକମପ୍ୟେକେଷାମ୍' ଏହି ସୂତ୍ରରେ ବ୍ୟାଖ୍ୟାନ କରାଯାଇଅଛି । ଏହିପ୍ରକାର ଶ୍ରୁତିରେ ଅନେକପ୍ରକାରର ଆଶ୍ରୟାତିଶୟତାତ୍ପର୍ଯ୍ୟ ପୁରୁଷଠାରେ ଲକ୍ଷିତ ହୁଏ । କିନ୍ତୁ ଅନ୍ୟଠାରେ ନୁହେଁ ।

(ଗ) 'ସୋଽଧ୍ୱନଃ' (ଏହି ସଂସାର ମାର୍ଗରୁ ପାର ହୋଇ ସେହି ବିଷ୍ଣ ବ୍ୟାପକ ପରମାତ୍ମାରପରମପଦକୁ ପ୍ରାପ୍ତ ହୁଏ) ଏହା କହିଲା ପରେ ମାର୍ଗରୁ ପାର ହୋଇ ବିଷ୍ଣୁର ପରମପଦ କଣ ହୁଏ ? ଏହିପରି ଆକାଙ୍‌କ୍ଷା ହେଲାପରେ ଇନ୍ଦ୍ରିୟାଦିର ଅନୁକ୍ରମଣରୁ ପରମପଦର ପ୍ରତିପତ୍ତିନିମିତ୍ତ ଏହି ଶ୍ରୁତି ରହେ ବୋଲି ନିଶ୍ଚିତ କରାଯାଇଅଛି ।

## ८ आत्मगृहीत्यधिकरणम् ॥ सू० २६-२७ ॥

## ଆତ୍ମଗୃହୀତ୍ୟଧିକରଣ-୮

## आत्मगृहीतिरितरवदुत्तरात् ॥ १६ ॥

## (୧) ଆତ୍ମଗୃହୀତିରିତର ବଦୁତ୍ତରାତ୍ ॥ ୩-୩-୧୬ ॥

ଆତ୍ମଗୃହୀତଃ= 'ଆତ୍ମୈବେଦମ୍' ଏଠାରେ ଆତ୍ମଶବ୍ଦ ଦ୍ୱାରା ପରମାତ୍ମାର ଗ୍ରହଣ ହୋଇଛି । ଅନ୍ୟର ନୁହେଁ । କାରଣ-ଇତରବତ୍=ଅନ୍ୟପରି 'ଆତ୍ମନଃ ଆକାଶଃ' ଇତ୍ୟାଦି ଅନ୍ୟ ଶ୍ରୁତିରେ ମଧ୍ୟ ଆତ୍ମଶବ୍ଦରୁ ରମାତ୍ମାର ଗ୍ରହଣ ହୁଏ, ଉତ୍ତରାତ୍ = 'ସ ଈକ୍ଷତ ଏହିପ୍ରକାର ଉତ୍ତର ବିଶେଷଣ ବାକ୍ୟରୁ ଯେପରି ପରମାତ୍ମାର ଗ୍ରହଣ ହୁଏ, ସେହିପରି ଆତ୍ମଶବ୍ଦରୁ ପରମାତ୍ମାର ଗ୍ରହଣ ହେବା ଉଚିତ୍ ।

ମୂଳ- (କ) ଐତରେୟକେ ଶ୍ରୂୟତେ 'ଆତ୍ମା ବା ଇଦମେକ ଏ ବା ଗ୍ର ଆସୀନ୍ନାନ୍ୟତ୍ କିଂଚନ ମିଷତ୍ ସ ଈକ୍ଷତ ଲୋକାନ୍ନୁ ସୃଜା ଇତି' (ଐ ୧-୧), 'ସ ଇମାଂ ଲ୍ଲୋକାନ-ସୃଜନାମ୍ଭୋ ମରୀଚୀର୍ମରବାପଃ' (ଐ ୧-୨) ଇତ୍ୟାଦି । ତତ୍ର ସଂଶୟଃ-କିଂ ପର ଏବା-ତ୍ମେହାତ୍ମଶବ୍ଦେନାଭିଲପ୍ୟତ ଉତାନ୍ୟଃ କଶ୍ଚିଦିତି । କିଂ ତାବତ୍ ପ୍ରାପ୍ତମ୍ ?

(ଖ) ନନୁ ବାକ୍ୟାନ୍ୱୟଃ ସୁତରାଂ ପରମାତ୍ମବିଷୟୋ ଦୃଶ୍ୟତେ, ପ୍ରାଗୁତ୍ପତ୍ତେରାତ୍ମୈକ ତ୍ୱାବଧାରଣାତ୍, ଈକ୍ଷଣପୂର୍ବକସ୍ରଷ୍ଟୃତ୍ୱ ବଚନାଚ୍ଚ । ନେତ୍ୟୁଚ୍ୟତେ, ଲୋକସୃଷ୍ଟି ବଚନାତ୍ । ପରମାତ୍ମନି ହିଂସ୍ରଷ୍ଟରି ପରିଗୃହ୍ୟମାଣେ ମହାଭୂତସୃଷ୍ଟିରାଦୌ ବକ୍ତବ୍ୟା ଲୋକସୃଷ୍ଟିସ୍ତ୍ୱିହା ଦା ବୁଚ୍ୟତେ । ଲୋକାଶ୍ଚ ମହାଭୂତସନ୍ନିବେଶ ବିଶେଷାଃ ।

(ଗ) ତଥା ଽମ୍ଭଃପ୍ରଭୃତୀଂଲ୍ଲୋକତ୍ୱେନୈବ ନିର୍ବବ୍ରୀତି 'ଅଦୋଽମ୍ଭଃ ପରେଣ ଦିବମ୍ (ଐ ୧-୨) ଇତ୍ୟାଦିନା । ଲୋକସୃଷ୍ଟିଶ୍ଚ ପରମେଶ୍ୱରାଧିଷ୍ଠି ତେନାପରେଣ କେନଚିଦୀଶ୍ୱରେଣ କ୍ରିୟତ ଇତି ଶ୍ରୁତି ସ୍ମୃତ୍ୟୋରୂପଲଭ୍ୟତେ । ତଥା ହି ଶ୍ରୁତିର୍ଭବତି 'ଆତ୍ମୈବେଦମଗ୍ର ଆସୀତ୍ ପୁରୁଷବିଧଃ' (ବୃହ ୧-୪-୧) ଇତ୍ୟାଦ୍ୟା । ସ୍ମୃତିରପି 'ସ ବୈ ଶରୀରୋ ପ୍ରଥମଃ ସ ବୈ ପୁରୁଷ ଉଚ୍ୟତେ, ଆଦିକର୍ତ୍ତା ସ ଭୂତାନାଂ ବ୍ରହ୍ମାଗ୍ରେ ସମବର୍ତ୍ତତ' ଇତି ।

(ଘ) ଐତରେୟିଣୋଽପି 'ଅଥାତୋ ରେତସଃ ସୃଷ୍ଟିଃ ପ୍ରଜାୟତେ ରେତୋ ଦେବାଃ' ଇତ୍ୟତ୍ର ପୂର୍ବସ୍ମିନ୍ ପ୍ରକରଣେ ପ୍ରଜାପତି କର୍ତ୍ତୃକାଂ ବିଚିତ୍ରାଂ ସୃଷ୍ଟିମାମନନ୍ତି । ଆତ୍ମଶବ୍ଦୋଽପି ତସ୍ମିନ୍ ପ୍ରଯୁଜ୍ୟମାନୋ ଦୃଶ୍ୟତେ- 'ଆତ୍ମୈବେଦମଗ୍ର ଆସୀତ୍ ପୁରୁଷବିଧଃ (ବୃହ ୧-୪-୧) ଇତ୍ୟତ୍ର । ଏକତ୍ୱାବଧାରଣମପି ପ୍ରାଗୁତ୍ପତ୍ତେଃ ସ୍ୱବିକାରାପେକ୍ଷମୁପପଦ୍ୟତେ । ଈକ୍ଷଣମପି ତସ୍ୟ ଚେନତ୍ୱାଭ୍ୟୁପଗମାଦୁପପନ୍ନମ୍ ।

(ଙ) ଅପି ଚ 'ତାଭ୍ୟୋ ଗାମାନୟତ୍ତାଭ୍ୟୋଽଶ୍ୱମାନୟତ୍ତାଭ୍ୟଃ ପୁରୁଷମାନୟତ୍ତା ଅବ୍ରୁବନ' ଇତ୍ୟେବଂ ଜାତୀୟକୋ ଭୂୟାନ୍ ବ୍ୟାପାରବିଶେଷୋ ଲୌକିକେଷ୍ୱ ବିଶେଷବତ୍ ସ୍ୱାତ୍ମସୁ ପ୍ରସିଦ୍ଧ ଇହାନୁଗମ୍ୟତେ । ତସ୍ମାଦ୍ୱିଶେଷବାନେବ କଶ୍ଚିଦିହାତ୍ମା ସ୍ୟାଦିତି ।

**(୨) ଭାଷାନ୍ତର-** (କ) ଐତରେୟ କରେ 'ଆତ୍ମା ବା' (ସୃଷ୍ଟିର ପ୍ରଥମେ ଏହି ଜଗତ୍ ଏକମାତ୍ର ଆତ୍ମା ହିଁ ଥିଲା, ତାହା ବ୍ୟତିତ ଅନ୍ୟ କୌଣସି ସକ୍ରିୟ ବସ୍ତୁ ନ ଥିଲା । ମୁଁ ଏହି ସଂସାରକୁ ରଚନା କରିବି ବୋଲି ସେ ଈକ୍ଷଣ କଲା), ଏବଂ 'ସ ଇମାଁଲ୍ଲୋକାନ୍ (ସେ ଆମ୍ଭ (ସ୍ୱର୍ଗ), ମରୀଚି (ଅନ୍ତରୀକ୍ଷ) ମ୍ର (ମର୍ତ୍ତ୍ୟ) ଓ ଆପ (ପାତାଳ) ଏହି ଲୋକଗୁଡ଼ିକୁ ରଚନା କଲେ) ଇତ୍ୟାଦି ଶ୍ରୁତି ମଧ୍ୟ ଅଛି । ସେଠାରେ ସଂଶୟ ହଏ ଯେ- ଏଠାରେ ଆତ୍ମ ଶବ୍ଦ ଦ୍ୱାରା କଣ ପରମାତ୍ମା କୁହାଯାଇଛି କି ଅନ୍ୟ କଣ ? ତେବେ କଣ ହେବ ? ପୂର୍ବପକ୍ଷ-



(ଖ) ଏଠାରେ ଆତ୍ମଶବ୍ଦ ଦ୍ୱାରା ପରମାତ୍ମାର ଅଭିଧାନ ହୁଏ ନାହିଁ, କିପରି ? କାରଣ-ବାକ୍ୟର ଅନ୍ୱୟ ସେହିପରି ଦେଖାଯାଏ । ପରନ୍ତୁ ବାକ୍ୟାନ୍ୱୟ ପରମାତ୍ମା ବିଷୟକ ରୂପରେ ଦେଖାଯାଏ, କାରଣ-ଉତ୍ପତ୍ତିର ପୂର୍ବରୁ, ଆତ୍ମୈକତ୍ୱର ଅବଧାରଣ ହୁଏ ଓ ଈକ୍ଷଣ ପୂର୍ବକସୃଷ୍ଟତ୍ୱବଚନ ହୁଏ କି ? ନୁହେଁ, କାରଣ-ଏହା ଲୋକସୃଷ୍ଟିର ବଚନ ଅଟେ ପରମାତ୍ମା ସ୍ରଷ୍ଟାରୂପେ ପରିଗୃହୀତ ହେଲାପରେ ମହାଭୂତସୃଷ୍ଟି ପ୍ରଥମେ କହିବା ଉଚିତ ଥିଲା । କିନ୍ତୁ ଏଠାରେ ପ୍ରଥମେ ଲୋକସୃଷ୍ଟି କୁହାଯାଇଛି । ସଂସାର କିନ୍ତୁ ମହାଭୂତର ଆକାର ବିଶେଷ ଅଟେ ।

(ଗ) ସେହିପରି 'ଅଦୋଽମ୍ଭଃ' (ସେହି ଆମ୍ଭ ଦ୍ୟୁଲୋକଠାରୁ ପର ଅଟେ) ଇତ୍ୟାଦି ଦ୍ୱାରା ଶ୍ରୁତି ଆମ୍ଭ ଆଦିର ଲୋକରୂପରେ ନିର୍ବାଚନ କରେ । ଲୋକସୃଷ୍ଟି ପରମେଶ୍ୱର ଦ୍ୱାରା ଅଧିଷ୍ଠିତ କୌଣସି ଈଶ୍ୱରଠାରୁ କରାଯାଏ । ଏହିପରି ଶ୍ରୁତି ଓ ସ୍ମୃତି ମିଳେ । ଯଥା- 'ଆତ୍ମୈବେଦସ' (ସୃଷ୍ଟିର ପୂର୍ବରୁ ଏହି ସଂସାର ପୁରୁଷାକାର ଏକ ଆତ୍ମା ଥିଲା) ଇତ୍ୟାଦି ଶ୍ରୁତି । 'ସ ବୈ ଶାରୀରୀ' (ସେ ପ୍ରଥମେ ଶାରୀରୀ ଥିଲା, ସେ ହିଁ ପୁରୁଷ ବୋଲି କୁହାଯାଏ, ଚରାଚରଭୂତର ସେ କର୍ତ୍ତା, ସେ ବ୍ରହ୍ମ ସବୁଠାରୁ ପ୍ରଥମେ ଥିଲା ଏହା ହିଁ ସ୍ମୃତି କହେ ।

(ଘ) ଐତରେୟ ସଂପ୍ରଦାୟ ମଧ୍ୟ 'ଅଥାତୋ' (ଏହା ପରେ ଏହିଠାରୁ ରେତ (ସୃଷ୍ଟି କାର୍ଯ୍ୟ ଆରମ୍ଭ ହେଲା, ଦେବତା (ପ୍ରଜାପତି) ଏହାର ରେତକାର୍ଯ୍ୟ ଅଟନ୍ତି ।) ଏଠାରେ ପୂର୍ବ ପ୍ରକରଣରେ ବିଚିତ୍ର ସୃଷ୍ଟିକୁ ପ୍ରଜାପତି କର୍ତ୍ତୃକ କୁହାଯାଏ । ଏବଂ ଆତ୍ମୈବେଦମଗ୍ର ଆସୀତ୍ ପୁରୁଷବିଧଃ' ଏଠାରେ ଆତ୍ମଶବ୍ଦ ମଧ୍ୟ ପ୍ରଯୁକ୍ତ ହୋଇ ଦେଖାଯାଏ ଏବଂ ଏକତ୍ୱର ଅବଧାରଣ ଉତ୍ପତ୍ତିର ପୂର୍ବରୁ ନିଜର ବିକାରକୁ ଅପେକ୍ଷା କରି ଉପପନ୍ନ ହୁଏ । ପୁନଶ୍ଚ ଚେତନତ୍ୱ ସ୍ୱୀକାର ହେଲେ ସେଠାରେ ଈକ୍ଷଣ ଉପପନ୍ନ ହୁଏ ।

(ଙ) 'ତାଭ୍ୟୋ' (ସ୍ରଷ୍ଟା ସେହି ପ୍ରଜାମାନଙ୍କ ପାଇଁ ଗାଈ ଆଣିଛି, ସେମାନଙ୍କ ପାଇଁ ଅଶ୍ୱ ଆଣିଛି ପୁରୁଷାକାର (ମାନବାକୃତି) ଶରୀର ଆଣିଛି । ତାହାପରେର ପ୍ରଜାମାନେ ତାହା ହିଁ କହିଥିଲେ) ଏହିପରି ମହାନ୍ ବ୍ୟାପାରବିଶେଷ ବିଶେଷବାନ୍ ଲୌକିକ ଆତ୍ମାରେ ପ୍ରସିଦ୍ଧ ହୁଏ ବୋଲି ଅନୁଗମ ହୋଇଛି । ତେଣୁ ଏଠାରେ ବିଶେଷଯୁକ୍ତ କୌଣସି ସ୍ରଷ୍ଟା ଆତ୍ମା ହେବା ଉଚିତ୍ ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପର ଏବାତ୍ମେଶବ୍ଦେନ ଗୃହ୍ୟତ, ଇତରବତ୍ । ଯଥେତରେଷୁ ସୃଷ୍ଟିଶ୍ରବଣେଷୁ 'ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ' (ତୈ ୨-୧-୧) ଇତ୍ୟେବମାଦିଷୁ ପରସ୍ୟାତ୍ମନୋ ଗ୍ରହଣମ୍ । ଯଥା ଚେତରସ୍ମିଂଲ୍ଲୌକିକାତ୍ମଶବ୍ଦ ପ୍ରୟୋଗେ ପ୍ରତ୍ୟାଗାତ୍ମୈବ ମୁଖ୍ୟ ଆତ୍ମଶବ୍ଦେନ ଗୃହ୍ୟତେ, ତଥେହାପି ଭବିତୁମର୍ହତି ।

(ଖ) ଯତ୍ର ତୁ 'ଆତ୍ମୈବେଦମଗ୍ର ଅସୀତ୍' (ବୃହ ୧-୪-୧) ଇତ୍ୟେବମାଦୌ 'ପୁରୁଷବିଧଃ' (ବୃହ ୧-୪-୧) ଇତ୍ୟେବମାଦି ବିଶେଷଣାନ୍ତରଂ ଶ୍ରୂୟତେ, ଭବେତ୍ତତ୍ର ବିଶେଷବତ ଆତ୍ମନୋ ଗ୍ରହଣମ୍ । ଅତ୍ର ପୁନଃ ପରମାତ୍ମଗ୍ରହଣାନୁଗୁଣମେବ ବିଶେଷଣମପ୍ୟୁ-ତ୍ତରମୁପଲଭ୍ୟତେ- 'ସ ଈକ୍ଷତ ଲୋକାନ୍ନୁ ସୃଜା ଇତି' (ଐ ୧-୧) 'ସ ଇମାଁଲୋକାନ-ସୃଜତ' (ଐ ୧-୨) ଇତ୍ୟେ ବମାଦି । ତସ୍ମାତ୍ତସ୍ୟୈବ ଗ୍ରହଣମିତି ନ୍ୟାୟମ୍ ।

**(୩) ଭାଷାଂତର-** ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ-ଏଠାରେ ପରମାତ୍ମା ହିଁ ଆତ୍ମଶବ୍ଦ ଦ୍ୱାରା ଗୃହୀତ ହୁଏ ଇତରର ପରି । ଯେପରି 'ତସ୍ମାଦ ବା' (ସେହି ଆତ୍ମାଦ୍ୱାରା ଆକାଶ ଉତ୍ପନ୍ନ ହେଲା) ଇତ୍ୟାଦି ଅନ୍ୟସୃଷ୍ଟି ଶ୍ରୁତିରେ ଆତ୍ମଶବ୍ଦରୁ ପରମାତ୍ମାର ଗ୍ରହଣ ହୁଏ, ଯେପରି ଅନ୍ୟ ଲୌକିକ ଆତ୍ମଶବ୍ଦର ପ୍ରୟୋଗରେ ଆତ୍ମଶବ୍ଦ ଦ୍ୱାରା ମୁଖ୍ୟ ପ୍ରତ୍ୟଗାମା ହିଁ ଗୃହୀତ ହୁଏ, ସେପରି ଏଠାରେ ସ୍ୱୀକାର କରାଯାଏ ।

(ଖ) ଯେଉଁଠାରେ 'ଆତ୍ମୈବେଦମଗ୍ର ଅସୀତ୍ ଇତ୍ୟାଦିରେ 'ପୁରୁଷବିଧଃ' ଇତ୍ୟାଦି ବିଶେଷଣାନ୍ତର ଶୁଣାଯାଏ, ସେଠାରେ ବିଶେଷଯୁକ୍ତ ଆତ୍ମାର ଗ୍ରହଣ ହେବା ଉଚିତ । ପରନ୍ତୁ ଯେଉଁଠାରେ ପରମାତ୍ମାର ଗ୍ରହଣ ଅନୁକୂଳ, ସେଠାରେ 'ସ ଈକ୍ଷତ' (ମୁଁ ସଂସାରକୁ ସୃଷ୍ଟି କରିବି ବୋଲି ସେ ଦେଖିଲା), 'ସ ଇମାଂଲ୍ଲୋ (ସେ ସଂସାରକୁ ସୃଷ୍ଟି କଲା) ଇତ୍ୟାଦି ପ୍ରଥମେ ବିଶେଷଣର ଉପଲବ୍ଧି ହୁଏ । ତେଣୁ ଏଠାରେ ଆତ୍ମଶବ୍ଦରୁ ଏହି ପରମାତ୍ମା ଗ୍ରହଣ ହେବା ଉଚିତ୍ ।

## अन्वयादिति चेत्स्यादवधारणात् ॥ १७ ॥

## (୧) ଅନ୍ୱୟାଦିତି ଚେତ୍ ସ୍ୟାଦବଧାରଣାତ୍ ॥୩-୩-୧୭॥

ଇତି ଚେତ୍ = ଯଦା ଏହା ତୁମ୍ଭେ କହ, ତେବେ, ଅନ୍ୱୟାତ୍=ବାକ୍ୟାନ୍ୱୟର ଦେଖିବା ଦ୍ୱାରା ପରମାତ୍ମାର ଗ୍ରହଣ ହୁଏ ନାହିଁ, ତେବେ ଏଠାରେ, ସ୍ୟାତ୍-ପରମାତ୍ମାର ଗ୍ରହଣ ହୁଏ, ଅବଧାରଣାତ୍='ଆତ୍ମୈବେଦମ୍' ଇତ୍ୟାଦି ଶ୍ରୁତିରେ ଆତ୍ମୈକତ୍ୱର ଅବଧାରଣ ହୁଏ । ତେଣୁ ସେଠାରେ ପରମାତ୍ମା ଗ୍ରହଣ-ଯୋଗ୍ୟ ।

(୨) ମୂଳ-(କ) ବାକ୍ୟାନ୍ୱୟାଦର୍ଶନାନ୍ନ ପରମାତ୍ମଗ୍ରହଣମିତି ପୁନର୍ଯ'ଦୁକ୍ତଂ ତତ୍ପରିହର୍ତ୍ତବ୍ୟମିତି । ଅତ୍ରୋଚ୍ୟତେ-ସ୍ୟାଦବଧାରଣାଦିତି । ଭବେଦୁପପନ୍ନ ପରମାତ୍ମନୋ ଗ୍ରହଣମ୍ । କସ୍ମାତ୍ ? ଅବଧାରଣାତ୍ । ପରମାତ୍ମଗ୍ରହଣେ ହି ପ୍ରାଗୁତ୍ପତ୍ତେରାତ୍ମୈକତ୍ୱାବ ଧାରଣ ମାଂଜସମବକଳ୍ପତେ, ଅନ୍ୟଥା ହ୍ୟନାଞ୍ଜସଂ ତତ୍ ପରିକଳ୍ପେତ ।

(ଖ) ଲୋକସୃଷ୍ଟିବଚନଂ ତୁ ଶ୍ରୁତ୍ୟନ୍ତରପ୍ରସିଦ୍ଧମହାଭୂତସୃଷ୍ଟ୍ୟନନ୍ତରମିତି ଯୋଜୟି-ଷ୍ୟାମି । ଯଥା 'ତତ୍ତେଜୋଽସୃଜତ' (ଛା ୬-୨-୩) ଇତ୍ୟେତଚ୍ଛ୍ରୁତ୍ୟନ୍ତର ପ୍ରସିଦ୍ଧବିୟଦ୍-



ବାୟୁ ସୃଷ୍ଟ୍ୟନନ୍ତରମିତ୍ୟ ୟୁଯୁଜମେବମିହାପି ଶ୍ରୁତ୍ୟନ୍ତରପ୍ରସିଦ୍ଧୋ ହି ସମାନ ବିଷୟୋ ବିଶେଷଃ ଶ୍ରୁତ୍ୟନ୍ତରେଷ୍ୱୁପସଂହର୍ତ୍ତବ୍ୟୋ ଭବତି ।

(ଗ) ଯୋଽପ୍ୟୟଂ ବ୍ୟାପାରବିଶେଷାନୁଗମସ୍ତାଭ୍ୟୋ ଗାମନୟଦିତ୍ୟେବମାଦିଃ ସୋଽପି ବିବକ୍ଷିତାର୍ଥାବଧାରଣାନୁଗୁଣ୍ୟେନୈବ ଗ୍ରହୀତବ୍ୟଃ । ନ ହ୍ୟୟଂ ସକଳଃ କଥାପ୍ରବନ୍ଧୋ ବିବକ୍ଷିତ ଇତି ଶକ୍ୟତେ ବକ୍ତୁମ୍, ତତ୍ପ୍ରତିପତ୍ତୌ ପୁରୁଷାର୍ଥାଭାବାତ୍ । ବ୍ରହ୍ମାତ୍ମତ୍ୱଂ ତ୍ୱିହ ବିବକ୍ଷିତମ୍ ।

**(୨) ଭାଷାଂତର**- (କ) ଏଠାରେ ଯାହା କୁହାଗଲା ଯେ- ବାକ୍ୟାନ୍ୱୟକୁ ଦେଖିବା ଦ୍ୱାରା ପରମାତ୍ମାର ଗ୍ରହଣ ହୁଏ ନାହିଁ । ତେଣୁ ତାହାର ପରିହାର କରିବା ଉଚିତ । ଏହି ବିଷୟରେ କୁହାଯାଇଛି- 'ସ୍ୟାଦବଧାରଣାତ୍' । ପରମାତ୍ମାର ଗ୍ରହଣ ଉପପନ୍ନ ହେବ କିପରି ? ଅବଧାରଣା କାରଣରୁ । ପରମାତ୍ମାର ଗ୍ରହଣ ହେଲାପରେ ଉତ୍ପତ୍ତିର ପୂର୍ବ ଆତ୍ମୈକତ୍ୱ (ଏକ ହିଁ ଆତ୍ମାଥିଲା) ଅବଧାରଣା ସଂଗତ ହୁଏ । ନୋଚେତ୍ ସେ ଅସଂଗତ ହେବ ।

(ଖ) ଐତରେୟରେ ଲୋକସୃଷ୍ଟି ଶ୍ରୁତିବାକ୍ୟର ଅନ୍ୟଶ୍ରୁତି (ତୈତରୀୟ)ରେ ପ୍ରସିଦ୍ଧ ମହାଭୂତ ସୃଷ୍ଟିର ଅନନ୍ତର ଯୋଜନା ଆମ୍ଭେ କରୁଁ । ଯେପରି 'ତତ୍ତେଜୋଽସୃଜତ' (ସେ ତେଜ ଉତ୍ପନ୍ନ କଲା) ଏହି ଛାନ୍ଦୋଗ୍ୟବାକ୍ୟର ଅନ୍ୟତୈତ୍ତରୀୟଶ୍ରୁତିରେ ପ୍ରସିଦ୍ଧ ଆକାଶ ଓ ବାୟୁ ସୃଷ୍ଟିର ପରେ ତେଜର ସୃଷ୍ଟି ହେଲା ବୋଲି ଆମ୍ଭେ ଯୋଜନା କରୁଁ । ସେପରି ଏଠାରେ ମଧ୍ୟ ଯୋଜନା କରୁ; କାରଣ-ଗୋଟିଏ ଶ୍ରୁତିରେ ପ୍ରସିଦ୍ଧ ପରି ବିଷୟକ ବିଶେଷ ଅନ୍ୟ ଶ୍ରୁତିରେ ଉପସଂହାର ଯୋଗ୍ୟ ହୁଏ ।

(ଗ) ଏହି ସମଗ୍ର କଥାଗ୍ରନ୍ଥ ବିବକ୍ଷିତ ହେଲା ବୋଲି କୁହାଯାଇନପାରେ; କାରଣ- ତାହାର ପ୍ରତିପତ୍ତିରେ ପୁରୁଷାର୍ଥର ଅଭାବ ହୁଏ । ଏଠାରେ କିନ୍ତୁ ବ୍ରହ୍ମାସତ୍ୱ ବିବକ୍ଷିତ ହୁଏ ।

(୩) ମୂଳ-(କ) ତଥାହି ଆମ୍ଭଃପ୍ରଭୃତୀନାଂ ଲୋକାନାଂ ଲୋକପାଲାନାଂ ଚାଗ୍ନ୍ୟାଦୀନାଂ ସୃଷ୍ଟିଂ ଶିଷ୍ଟ୍ୱା କରଣାନି କରଣାୟତନଂ ଚ ଶରୀରମୁପଦିଶ୍ୟ ସ ଏବ ସ୍ରଷ୍ଟ୍ୱା 'କଥଂ ନ୍ୱିଦଂ ମଦୃତେ ସ୍ୟାତ୍' (ଐ ୧-୩-୨୧) ଇତି ବୀକ୍ଷ୍ୟେଦଂ ଶରୀରଂ ପ୍ରବିବେଶେତି ଦର୍ଶୟତି'- 'ସ ଏତମେବଂ ସୀମାନଂ ବିଦାର୍ୟୈତୟା ଦ୍ୱାରା ପ୍ରାପଦ୍ୟତ' (ଐ ୧-୩-୧୨) ଇତି ।

(ଖ) ପୁନଶ୍ଚ 'ଯଦିବାଚାଭିବ୍ୟାହୃତଂ ଯଦି ପ୍ରାଣେନାଭି ପ୍ରାଣିତମ୍' (ଐ ୧-୩-୨୧) ଇତ୍ୟେବମାଦିନା କରଣବ୍ୟାପାରବିବେଚନପୂର୍ବକମ୍, 'ଅଥ କୋଽହମ୍' (ଐ ୧-୩-୧୧) ଇତି ବୀର୍ଯ୍ୟ 'ସ ଏତମେବ ପୁରୁଷଂ ବ୍ରହ୍ମ ତତମମପଶ୍ୟତ' (ଐ ୩-୧୩) ଇତି ବ୍ରହ୍ମାତ୍ମତ୍ୱଦର୍ଶନମବଧାରୟତି ।

(ଗ) ତଥୋପରିଷ୍ଟାତ୍ 'ଏଷ ବ୍ରହ୍ମେଷ ଇନ୍ଦ୍ରଃ' (ଐତି ୫-୩) ଇତ୍ୟାଦିନା ସମସ୍ତଂ ଭେଦଜାତଂ ସହ ମହାଭୂତୈରନୁକ୍ରମ୍ୟ 'ସର୍ବଂ ତତ୍ପ୍ରଜ୍ଞାନେତ୍ରଂ ପ୍ରଜ୍ଞାନେ ପ୍ରତିଷ୍ଠିତଂ ପ୍ରଜ୍ଞାନେତ୍ରେ ଲୋକଃ ପ୍ରଜ୍ଞା ପ୍ରତିଷ୍ଠା ପ୍ରଜ୍ଞାନଂ ବ୍ରହ୍ମ (ଐ ୫-୩) ଇତି ବ୍ରହ୍ମାତ୍ମ୍ୱ ଦର୍ଶନମେ-ବାବଧାରୟିତା ତସ୍ମାଦିହାତ୍ମଗୃହୀତିରିତ୍ୟନପବାଦମ୍ ।

(୩) ଭାଷାଂତର- (କ) କାରଣ-ଆତ୍ମ ପ୍ରଭୃତି ଲୋକ ଓ ଅଗ୍ନି ପ୍ରଭୃତି ଲୋକପାଳର ସୃଷ୍ଟିକୁ ଉପଦେଶ ଦେଇ ଇନ୍ଦ୍ରିୟଗୁଡ଼ିକୁ ଓ ଇନ୍ଦ୍ରିୟର ଆୟତନ ଶରୀରର ଉପଦେଶ (ରଚନା) କରି ସେହି ସ୍ରଷ୍ଟା 'କଥଂନ୍ୱିଦଂ' (ମୋଦ୍ୟତିତ ଏହା କିପରି ହେବ ?) ଏହିପରି ବିଚାର କରି ଏହି ଶରୀରରେ ପ୍ରବେଶ କଲା । ଏହିପରି 'ସ ଏତମେବ' (ସେହି ପରମେଶ୍ୱର ଏହି ସୀମାକୁ ବିଦୀର୍ଣ୍ଣ କରି ବ୍ରହ୍ମାନ୍ଧ୍ର ଦ୍ୱାରରେ ପ୍ରବେଶ କଲା) ଏହା ମଧ୍ୟ ଶ୍ରୁତି ଦେଖାଏ ।

(ଖ) ପୁଣି 'ଯଦି ବାଚ' (ଯଦି ମୋ ବିନା କଥା କୁହାଯାଏ ଯଦି ପ୍ରାଣଦ୍ୱାରା ପ୍ରାଣର ବ୍ୟାପାର କରାଯାଏ ନାହିଁ) ଇତ୍ୟାଦି କରଣବ୍ୟାପାରର ବିବେଚନ ପୂର୍ବକ 'ଅଥ କୋଽହମ୍' (କିନ୍ତୁ ମୁଁ କିଏ) ଏହା ବିଚାର କରି 'ସଏତମେବ' (ଏହିପରି ସେ ଏହି ପୁରୁଷକୁ ପୂର୍ଣ୍ଣତମ ବ୍ରହ୍ମରୂପରେ ଦେଖେ) ଏହିପରି ଶ୍ରୁତି ବ୍ରହ୍ମାତ୍ମ୍ୱ ଦର୍ଶନର ଅବଧାରଣ କରେ ।

(ଗ) ସେହିପରି ଆଗରେ ମଧ୍ୟ 'ଏଷ ବ୍ରହ୍ମୈଷ୍ୟ ଇନ୍ଦ୍ରଃ' (ଏହା ବ୍ରହ୍ମ ଅଟେ, ଏହା ଇନ୍ଦ୍ର) ଇତ୍ୟାଦି ମହାଭୂତ ସହିତ ସମସ୍ତ ଭେଦସମୁଦାୟର ଉପକ୍ରମ କରି 'ସର୍ବଂ ତତ୍ ପ୍ରଜ୍ଞାନେତ୍ର' (ସେ ସମସ୍ତ ପ୍ରଜ୍ଞାନେତ୍ର ପ୍ରଜ୍ଞା ଯାହାର ନେତ୍ର ଅଟେ । ପ୍ରଜ୍ଞାରେ ଚିଦାତ୍ମାରେ ପ୍ରତିଷ୍ଠିତ ହୁଏ । ଲୋକପ୍ରଜ୍ଞାନେତ୍ରପ୍ରଜ୍ଞ ଚୈତନ୍ୟ ଯାହାର ନେତ୍ର ରୂପରେ ବ୍ୟବହୃତ ହୋଇ କାରଣ ହୁଏ । ପ୍ରଜ୍ଞା ହିଁ ତାହାର ଲୟସ୍ଥାନ । ତେଣୁ ପ୍ରଜ୍ଞା ହିଁ ବ୍ରହ୍ମ ଅଟେ) ଏହି ଶ୍ରୁତି ବ୍ରହ୍ମାତ୍ମ୍ୱଦର୍ଶନର ଅବଧାରଣା କରେ । ତେଣୁ ଏଠାରେ ପରମାତ୍ମା ହିଁ ଗୃହୀତ ହୁଏ । ଏହା ହିଁ ନିରପବାଦ (ଅବାଧ) କଥା ।

(୫) ମୂଳ-(କ) ଅପରା ଯୋଜନା- ଆତ୍ମଗୃହୀତରିତରବଦୁତ୍ତରାତ୍ । ବାଜସନେ-ୟକେ 'କତମ୍ ଆତ୍ମେତି ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ ହ୍ୟଦ୍ୟନ୍ତର୍ଜ୍ୟୋତିଃ ପୁରୁଷଃ' (ବୃହ ୪-୩-୭) ଇତ୍ୟାତ୍ମଶବ୍ଦେନୋପକ୍ରମ୍ୟ ତସ୍ୟୈବ ସର୍ବସଙ୍ଗବିନିର୍ମୁକ୍ତତ୍ୱପ୍ରତିପାଦନେନ ବ୍ରହ୍ମାସ୍ୱତାମବଧାରୟତି । ତଥା ହ୍ୟୁପସଂହରତି-ସବା ଏଷ ମହାଜନ ଆତ୍ମାଽଜରୋଽମୁ-ତୋଽଭୟୋ ବ୍ରହ୍ମ' (ବୃହ ୪-୪-୨୫) ଇତି ।

(ଖ) ଛାନ୍ଦୋଗ୍ୟେ ତୁ 'ସଦେବ ସୋମ୍ୟେଦମଗ୍ର ଅସୀଦେକମେବାଦ୍ୱିତୀୟମ' (ଛା ୬-୨-୧) ଇତ୍ୟନ୍ତରେଣୈବାତ୍ମଶବ୍ଦମୁପକ୍ରମୋଦର୍କେ 'ସ୍ୱ ଆତ୍ମା ତତ୍ତ୍ୱମସି' (ଛା ୬-୮-୬)



ଇତି ତାଦାତ୍ମ୍ୟମୁପଦିଶତି । ତତ୍ର ସଂଶୟଃ-ତୁଲ୍ୟାର୍ଥତ୍ୱଂ କିମନୟୋରାମ୍ନନୟୋ ସ୍ୟାଦତୁଲ୍ୟାର୍ଥତ୍ୱଂ ବେତି । ଅତୁଲ୍ୟାର୍ଥତ୍ୱମିତି ତାବତ୍ପ୍ରାପ୍ତମତୁଲ୍ୟତ୍ୱାଦାମ୍ନାନୟୋଃ । ନ ହ୍ୟାମ୍ନାନବୈଷମ୍ୟେ ସତ୍ୟର୍ଥସାମ୍ୟଂ ଯୁକ୍ତଂ ପ୍ରତିପତ୍ତୁମ୍, ଆମ୍ନାନତନ୍ତ୍ରତ୍ୱାଦର୍ଥ ପରିଗ୍ରହସ୍ୟ ।

(ଗ) ବାଜସନେୟକେ ଽତ୍ମଶବ୍ଦୋପକ୍ରମାଦାତ୍ମତତ୍ତ୍ୱୋପଦେଶ ଇତି ଗମ୍ୟତେ । ଛାନ୍ଦୋଗ୍ୟେ ଉପକ୍ରମ ବିପର୍ଯ୍ୟୟାଦୁପଦେଶ ବିପର୍ଯୟ । ନନୁ ଛାନ୍ଦୋଗାନାମପ୍ୟସ୍ତ୍ୟନ୍ତେ ତାଦାତ୍ମ୍ୟୋପଦେଶ ଇତ୍ୟୁକ୍ତମ୍ । ସତ୍ୟମୁକ୍ତମ୍, ଉପକ୍ରମମତନ୍ତ୍ରତ୍ୱାଦୁପସଂହାରସ୍ୟ, ତାଦାତ୍ମ୍ୟସଂପତ୍ତି ସେତି ମନ୍ୟତେ ।

(ଘ) ତଥା ପ୍ରାପ୍ତେ ଅଭିଧୀୟତେ-ଆତ୍ମଗୃହୀତିଃ । 'ସଦେବ ସୋମ୍ୟେ ଦମଗ୍ର ଆସୀତ୍' (ଛା ୬-୨-୧) ଇତ୍ୟତ୍ର ଛାନ୍ଦୋଗାନାମପି ଭବିତୁମର୍ହତି; ଇତରବତ୍ । ଯଥା 'କତମୋ ଆତ୍ମା' (ବୃହ ୪-୩-୭) ଇତ୍ୟତ୍ର ବାଜସେନୟିନାମାତ୍ମଗୃହୀତିସ୍ତଥୈବ । କସ୍ମାତ୍ ? ଉତ୍ତରାତ୍ତାଦାତ୍ମ୍ୟୋପଦେଶାତ୍ ।

**(୪) ଭାଷାଂତର-** (କ) ଏହି ଅନ୍ୟ ଏକ ଯୋଜନା ଯେ ପରମାତ୍ମାର ଗ୍ରହଣ ହୁଏ; ଅନ୍ୟ ସଦୃଶ ଉତ୍ତରଦ୍ୱାରା । ବାଜସନେୟକରେ 'କତମ ଆତ୍ମେତି' (ଆତ୍ମା କିଏ ? ଯାଜ୍ଞବଲ୍କ୍ୟ - ଏହା ଯେଉଁ ପ୍ରାଣରେ ବୁଦ୍ଧି ବୃତ୍ତିର ଭିତରେ ରହି ବିଜ୍ଞାନମୟ ଜ୍ୟୋତିଃ ସ୍ୱରୂପ ପୁରୁଷ ଅଟେ) ଏହିପ୍ରକାର ଶ୍ରୁତି ଆତ୍ମଶବ୍ଦରୁ ଉପକ୍ରମ କରି ତାହାକୁ ସର୍ବସଙ୍ଗ ବିନିର୍ମୁକ୍ତ ପ୍ରତିପାଦନ ଦ୍ୱାରା ବ୍ରହ୍ମାତ୍ମତ୍ୱ ଅବଧାରଣ କରେ । 'ସ ବା ଏଷ ମହାନଜ' (ଏହି ସେ ମହାନ୍ ଅଜ ଆତ୍ମା ଅଜର, ଅମର, ଅମୃତ ଏବଂ ଅଭୟ ବ୍ରହ୍ମ ଅଟେ) ଏହା ଉପକ୍ରମ କରେ ।

(ଖ) ଛାନ୍ଦୋଗ୍ୟରେ ସଦେବ ସୋମ୍ୟ ! (ଉତ୍ପତ୍ତିର ପୂର୍ବରୁ ଏହି ଜଗତ୍ ଏକ ଅଦ୍ୱିତୀୟ ସଦ୍ରୂପ ଥିଲା) ଏହାପରେ ତତ୍ମଶବ୍ଦରୁ ଉପକ୍ରମ କରି ଉପସଂହାରରେ 'ସ ଆତ୍ମା ତତ୍ତ୍ୱମସି' (ସେ ଆତ୍ମା ଅଟେ, ସେହି ତୁମେ) ଏହିଶ୍ରୁତି ତାଦାତ୍ମ୍ୟର ଉପଦେଶ କରେ । ତେଣୁ ଏଠାରେ ସଂଶୟ ହୁଏ ଯେ- ଏହି ଦୁଇଟି ଶ୍ରୁତିର କଣ ତୁଲ୍ୟାର୍ଥ ହୁଏ ଅଥବା ଅତୁଲ୍ୟାର୍ଥ ହୁଏ ? ପୂର୍ବପକ୍ଷ- ଅତୁଲ୍ୟାର୍ଥ ହୁଏ ବୋଲି ପ୍ରାପ୍ତ ହୁଏ । କାରଣ-ଦୁଇଟି ଶ୍ରୁତିର ଅତୁଲ୍ୟାର୍ଥ ହେଉଛି । ଶ୍ରୁତିରେ ପାର୍ଥକ୍ୟ ହେଲେ ଅର୍ଥର ସମାନତା ଜାଣିହୁଏ ନାହିଁ, କାରଣ-ଅର୍ଥର ପରିଗ୍ରହ (ସ୍ୱୀକାର) ଶ୍ରୁତିର ଅଧିକ ଅଟେ ।

(ଗ) ବାଜସନେୟକରେ ଆତ୍ମଶବ୍ଦର ଉପକ୍ରମରୁ ଆତ୍ମତତ୍ତ୍ୱର ଉପଦେଶ ଜଣାପଡ଼େ । ଛାନ୍ଦୋଗ୍ୟରେ କିନ୍ତୁ ଉପକ୍ରମର ବିପର୍ଯ୍ୟୟର ଉପଦେଶ ହିଁ ବିପର୍ଯ୍ୟୟ ହୁଏ ।

ପରନ୍ତୁ ଛାନ୍ଦୋଗ୍ୟର ଉପସଂହାରରେ ତାଦାତ୍ମ୍ୟର ଉପଦେଶ ହୁଏ ବୋଲି ଯାହା କୁହାଯାଇଛି, ତାହାହିଁ ଠିକ୍ । ଉପସଂହାର ଉପକ୍ରମର ଅଧୀନ ଅଟେ । ତେଣୁ ସେ ତାଦାତ୍ମ୍ୟସଂପତ୍ତି (ଉପାସନା) ବୋଲି ସ୍ୱୀକାର କରାଯାଏ ।

(ଘ) ସିଦ୍ଧାନ୍ତ-ଏହା ପ୍ରାପ୍ତ ହେଲାପରେ ଆମ୍ଭେ କହୁଁ ଯେ- 'ସଦେବ ସୋମ୍ୟଦମଗ୍ର ଆସିତ୍' ଏଠାରେ ଛାନ୍ଦୋଗ୍ୟକୁ ମଧ୍ୟ ପରମାତ୍ମାର ଗ୍ରହଣ ଅନ୍ୟପରି ହେବା ଉଚିତ୍ । ଯେପରି 'କତମ୍ ଆତ୍ମା' ଏଂରେ ବାଜସନେୟିକୁ ପରମାତ୍ମା ରୂପରେ ଗ୍ରହଣ କରାଯାଏ, ସେପରି ଛାନ୍ଦୋଗ୍ୟକୁ ମଧ୍ୟ ପରମାତ୍ମାର ରୂପେ ଗ୍ରହଣ କରିବା ଉଚିତ୍ । କିପରି ? ଉତ୍ତରାତ୍ ? (ଆଗରେ) ତାଦାତ୍ମ୍ୟର ଉପଦେଶ ଦିଆଯିବ ।

(୫) ମୂଳ - (କ) ଅନ୍ୱୟାଦିତି ଚେତ୍ ସ୍ୟାଦବଧାରଣାତ୍ । ଯଦୁକ୍ତମ୍-ଉପକ୍ରମାନ୍ୱୟାଦୁପକ୍ରମେ ଽତ୍ମଶବ୍ଦଶ୍ରବଣାଭାବାପନ୍ନାତ୍ମଗୃହୀତିରିତି ତସ୍ୟ କଃ ପରିହାର ଇତି ଚେତ୍ସୋଽଭିଧୀୟତେସ୍ୟାଦବ୍ଧାରଣାଦିତି । ଭବେଦୁପପନ୍ନେହାତ୍ମଗୃହୀତିଃ । ଅବଧାରଣାତ୍ । ତଥାହି-ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞତମ (ଛା ୬।୧।୧) ଇତ୍ୟେକ ବିଜ୍ଞାନେନ ସର୍ବବିଜ୍ଞାନମବଧାର୍ଯ୍ୟ ତତ୍ସଂପିପାଦୟିଷୟା 'ସଦେବ' ଇତ୍ୟାହ ।

(ଖ) ତଚ୍ଚାତ୍ମସଂଗୃହୀତୌ ସତ୍ୟାଂ ସଂପଦ୍ୟତେ । ଅନ୍ୟଥା ହି ଯୋଽୟଂ ମୁଖ୍ୟ ଆତ୍ମା ସନ ବିଜ୍ଞାତ ଇତି ନୈବ ସର୍ବବିଜ୍ଞାନଂ ସଂପଦ୍ୟେତେ । ତଥା ପ୍ରାଗୁତ୍ପତ୍ତେରେକତ୍ୱାବଧାରଣଂ ଜୀବସ୍ୟ ଽତ୍ମଶବ୍ଦେନ ପରାମର୍ଶ ସ୍ୱାପାବସ୍ଥାୟାଂ ଚ ତତ୍ ସ୍ୱଭାବସଂପତ୍ତିକଥନଂ ପରିଚ୍ଛେଦନାପୂର୍ବକଂ ଚ ପୁନଃ ପୁନଃ 'ତତ୍ତ୍ୱମସି' (ଛା ୬।୮।୭) ଇତ୍ୟବଧାରଣମ୍ ଇତି ଚ ସର୍ବମେତତ୍ତାଦାତ୍ମ୍ୟପ୍ରତିପାଦନାୟାମେବାବକଳ୍ପତେ, ନ ତଦାସ୍ୟସଂପାଦନାୟ୍ୟମ୍ ।

(ଗ) ନ ଽତ୍ରୋପକ୍ରମତନ୍ତ୍ରୋ ପନ୍ୟାସୋ ନ୍ୟାର୍ଯ୍ୟଃ । ନ ହ୍ୟୁପକ୍ରମଃ ଆତ୍ମତ୍ୱସଙ୍କୀର୍ତ୍ତନମନାତ୍ମତ୍ୱସଙ୍କୀର୍ତ୍ତନଂ ବାଽସ୍ତି । ସାମାନ୍ୟୋପକ୍ରମଶ୍ଚ ନ ବାକ୍ୟଶେଷଗତେନ ବିଶେଷେଣ ବିରୁଧ୍ୟତେ, ବିଶେଷାକାଙ୍କ୍ଷାତ୍ୱାତ ସାମାନ୍ୟସ୍ୟ । ସଚ୍ଛବ୍ଦାର୍ଥୋଽପି ଚ ପର୍ଯ୍ୟାଲୋଚ୍ୟମାନୋ ନ ମୁଖ୍ୟାଦାତ୍ମନୋଽନ୍ୟଃ ସମ୍ଭବତି । ଅତୋଽନ୍ୟସ୍ୟ ବସ୍ତୁଜାତସ୍ୟାରମ୍ଭଣଶବ୍ଦାଦିଭ୍ୟୋଽ ତନ୍ତ୍ରୋତ୍ୱୋପପତ୍ତେଃ ।

(ଘ) ଆମ୍ନାନବୈଷମ୍ୟମପି ନାବଶ୍ୟମର୍ଥବୈଷମ୍ୟମାବହତି । ଆହାରପାତ୍ରଂ ପାତ୍ରମାହରେତ୍ୟେବମାଦିଷ୍ୱର୍ଥସାମେଽପି ତଦ୍ଦର୍ଶନାତ୍ । ତସ୍ମାଦେବଂଜାତୀୟନେଷୁ ବାକ୍ୟେଷୁ ପ୍ରତିପାଦନ ପ୍ରକାରଭେଦେଽପି ପ୍ରତିପାଦ୍ୟାର୍ଥାଭେଦ ଇତିସିଦ୍ଧମ୍ ।

**(୫) ଭାଷାଂତର-** (କ) ଯଦି ତୁମେ କହଯେ- ଅନ୍ୱୟରୁ ପରମାତ୍ମାର ଗ୍ରହଣ ହୁଏ ନାହିଁ, ତଥାପି ଆମ୍ଭେ କହୁଁ ଯେ ପରମାତ୍ମାର ଅବଧାରଣ ହେତୁ ଏହା ଗୃହୀତ ହୁଏ । ଯଦି ପୁଣି କହ ଯେ- ଉପକ୍ରମର ଅନ୍ୱୟରୁ ଉପକ୍ରମରେ ଆତ୍ମଶବ୍ଦର ଗ୍ରହଣ ନହେଲେ



ପମାତ୍ମାର ଗ୍ରହଣ ହୁଏ ନାହିଁ; ତେବେ ଏହାର ଉପସଂହାର କାହିଁକି ହେବ ? ଅତଏବ କୁହାଯାଇଛି- ସ୍ୟାଦବଧାରଣାତ୍ । ଅବଧାରଣା ଦ୍ୱାରା ଏଠାରେ ପରମାତ୍ମାର ଗ୍ରହଣ ଉପପନ୍ନ ହୁଏ, କାରଣ- 'ଯେନାଶ୍ରୁତଂ' (ଯଦ୍ଦ୍ୱାରା ଅଶ୍ରୁତ ଶ୍ରୁତ ହୁଏ, ଅମତ ହିଁ ମତ ହୁଏ ଅବିଜ୍ଞାତ ମଧ୍ୟ ବିଜ୍ଞାତ ହୁଏ) ଏହି ପ୍ରକାରର ଏକ ବିଜ୍ଞାନରୁ ସମସ୍ତ ବିଜ୍ଞାନ ଅବଧାରଣ କରି ତାହାର ସଂପାଦନା କରିବାର ଇଚ୍ଛାରେ 'ସଦେବ' ବୋଲି କୁହାଯାଇଛି ।

(ଖ) ସେହି ପରମାତ୍ମାର ଗ୍ରହଣ ହେଲା ପରେ ହିଁ ସଂପନ୍ନ ହୁଏ । ନୋଚେତ୍ ଯାହା ଏହି ମୁଖ୍ୟ ଆତ୍ମା, ସେ ବିଜ୍ଞାତ ନୁହେଁ । ତେଣୁ ସବବିଜ୍ଞାସଂପନ୍ନ ହେବ ନାହିଁ । ସେହି ପ୍ରକାର ଉତ୍ପତ୍ତିର ପୂର୍ବରୁ ଏକତ୍ୱ ଅବଧାରଣ, ଜୀବର ଆତ୍ମଶବ୍ଦଦ୍ୱାରା ପରାମର୍ଶ, ସୁଷୁପ୍ତି ଅବସ୍ଥାରେ ଜୀବ ସତ୍‌ରୁ ହିଁ ସଂପନ୍ନ ହୁଏ- ଏହି କଥନ ପ୍ରଶ୍ନପୂର୍ବକ ପୁନଃ ପୁନଃ 'ତତ୍ତ୍ୱମସି' ଏହିପରି ଅବଧାରଣ, ଏମାନେ ସମସ୍ତେ ତାଦାତ୍ମ୍ୟପ୍ରତିପାଦନ ହେଲାପରେ ହିଁ ସଙ୍ଗତ ହୁଅନ୍ତି, କିନ୍ତୁ ତାଦାତ୍ମ୍ୟର ସଂପାଦନା (ଆରୋଗ) ରେ ନୁହେଁ ।

(ଗ) ଏଠାରେ ଉପକ୍ରମର ଅଧିନ ଉପନ୍ୟାସ କରିବା ଉଚିତ୍ ନୁହେଁ । କାରଣ- ଉପକ୍ରମରେ ଆତ୍ମତ୍ୱସଙ୍କୀର୍ତ୍ତନ ଅଥବାଅନାତ୍ମତ୍ୱସଙ୍କୀର୍ତ୍ତନ ହୁଏ ନାହିଁ, ଏବଂ ସାମାନ୍ୟ ଉପକ୍ରମ ବାକ୍ୟ ବିଶେଷଗତ ବିଶେଷ ଦ୍ୱାରା ବିରୁଦ୍ଧ ନୁହେଁ, କାରଣ-ସାମାନ୍ୟ ବିଶେଷର ଆକାଂକ୍ଷା କରେ ନାହିଁ । ଏହିପ୍ରକାର ପର୍ଯ୍ୟାଲୋଚନା କରି ମଧ୍ୟ ମୁଖ୍ୟ ଆତ୍ମାରୁ 'ସତ୍' ଶବ୍ଦର ଅର୍ଥ ଅନ୍ୟ କିଛି ହୁଏ ନାହିଁ । କାରଣ- ଏହିଠାରୁ ବସ୍ତୁ ସମୂହରେ ଆରମ୍ଭଣଶବ୍ଦାଦିରୁ ଅନ୍ତତତ୍ତ୍ୱ ଉପପନ୍ନ ହୁଏ ।

(ଘ) ଶ୍ରୁତିବଚନର ବିଷମତା ମଧ୍ୟ ଅର୍ଥର ବିଷମତାକୁ ଅବଶ୍ୟ ନିଏ ନାହିଁ । କାରଣ - 'ଆହାରପାତ୍ରମ୍' (ପାତ୍ରକୁ ଆଣ), 'ପାତ୍ର ମାହର' (ପାତ୍ରକୁ ଆଣ) ଇତ୍ୟାଦି ବାକ୍ୟରେ ଅର୍ଥର ସାମ୍ୟ ହେଲେ ମଧ୍ୟ ବାକ୍ୟର ବିଷମତା ଦେଖାଯାଏ, ତେଣୁ ଏହି ପ୍ରକାର ବାକ୍ୟରେ ପ୍ରତିପାଦଶୈଳୀର ଭେଦ ହେଲେ ମଧ୍ୟ ପ୍ରତିପାଦ୍ୟ ଅର୍ଥର ଅଭେଦ ହୁଏ ବୋଲି ଜଣାଯାଏ ।

## ६ कार्याख्यानाधिकरणम् ॥ सू० १८ ॥

## କାର୍ଯ୍ୟାଖ୍ୟାନାଧିକରଣ-୯

## कार्याख्यानादपूर्वम् ॥ १८ ॥

## (୧) କାର୍ଯ୍ୟାଖ୍ୟାନାଦପୂର୍ବମ୍ ॥୩-୩-୧୮॥

'ଶ୍ରୋତିୟା ଅଶିଷ୍ୟନ୍ତି ଆଚମନ୍ତି' ଇତ୍ୟାଦି ଶ୍ରୁତି ଅନଗ୍ନତା ସ୍ୱଚନର, ଅପୂର୍ବମ୍ = ପ୍ରାଣବିଦ୍ୟାର ଅଙ୍ଗରୂପରେ ଅପୂର୍ବର ବିଧାନ କରେ, କାର୍ଯ୍ୟାଖ୍ୟାନାତ୍= କାରଣ- ଦ୍ୱିଜୋ

ନିତ୍ୟମୁପସ୍ପର୍ଶେତ୍ ଇତ୍ୟାଦି ସ୍ମୃତି ବିଧିରୁ ସଂପୂର୍ଣ୍ଣ ଅନୁଷ୍ଠାନାଙ୍ଗରୂପରେ ଶୁଦ୍ଧି ପାଇଁ ଓ ବିଧିପ୍ରାପ୍ତ ଆଚମନର ପ୍ରାଣବିଦ୍ୟାରେ ମଧ୍ୟ ଅନଗ୍ନତା ବିଧାନ ପାଇଁ ଅନୁବାଦ ହୁଏ ।

(୨) ମୂଳ - (କ) ଛନ୍ଦୋଗା ବାଜସନେୟିନଶ୍ଚ ପ୍ରାଣସମ୍ବାଦେ ଶ୍ୱାଦିମର୍ଯ୍ୟାଦଂ ପ୍ରାଣ ସ୍ୟାନ୍ନାମ୍ନାୟଂ ତସ୍ୟୈବାପୋ ବାସ ଅମନନ୍ତି । ଅନନ୍ତରଂ ଚ ଛାନ୍ଦୋଗା ଅମନନ୍ତି- 'ତସ୍ମାଦବା ଏତଦଶିଷ୍ୟନ୍ତଃ ପୁରସ୍ତା ଚ୍ଚୋପରିଷ୍ଟାଚ୍ଚାଦ୍‌ଭିଃ ପରିଦଧତି' (ଛା ୫-୨-୨) । ବାଜସନେୟିନ ଶ୍ଚାମନନ୍ତି- 'ତଦ୍ ବିଦ୍ୱାଂସଃ ଶ୍ରୋତ୍ରିୟା ଅଶିଷ୍ୟନ୍ତ ଆଚମନ୍ତ୍ୟଶିତ୍ୱା ବାଚମନ୍ତ୍ୟେତମେବ ତଦନମନଗ୍ନଂ କୁର୍ବନ୍ତୋ ମନ୍ୟନ୍ତେ (ବୃହ ୬-୧-୧୪) 'ତସ୍ମାଦେବଂ ବିଦଶିଷ୍ୟନ୍ନାଚମେଦଶିତ୍ୱା ଚାଚମେଦେତମେବ ତଦନମନଗ୍ନଂ କୁରୁତେ' ଇତି । ତତ୍ର ତ୍ୱାଚମନମନଗ୍ନ ତାଚିନ୍ତନଂ ଚ ପ୍ରାଣସ୍ୟ ପ୍ରତୀୟତେ ।

(୫) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ନାଚମନସ୍ୟ ବିଧେୟତ୍ୱମୁପପଦ୍ୟତେ, କାର୍ଯ୍ୟାଖ୍ୟାନାତ୍ । ପ୍ରାପ୍ତମେବ ହୀଦଂ କାର୍ଯ୍ୟତ୍ୱେନାଚମନଂ ପ୍ରାୟତ୍ୟାର୍ଥଂ ସ୍ମୃତିପ୍ରସିଦ୍ଧମନ୍ୱାଖ୍ୟାୟତେ । ନନ୍ୱିୟଂଶ୍ରୁତିସ୍ତସ୍ୟାଃ ସ୍ମୃତେର୍ମୂଳଂସାତ୍, ନେତ୍ୟୁଚ୍ୟତେ, ବିଷୟନାନାତ୍ୱାତ୍ ସାମାନ୍ୟବିଷୟା ହି ସ୍ମୃତିଃ ପୁରୁଷମାତ୍ରସମ୍ବନ୍ଧଂ ପ୍ରାୟତ୍ୟାର୍ଥକାଚମନଂ ପ୍ରାପୟତି ।

(ଖ) ଶ୍ରୁତିସ୍ତୁ ପ୍ରାଣବିଦ୍ୟାପ୍ରକରଣ ପଠିତା ତଦବିଷୟମେବାଚମନଂ ବିଦଧତୀ ବିଦଧ୍ୟାତ୍ । ନ ଚ ଭିନ୍ନବିଷୟୟୋଃ ଶ୍ରୁତିସ୍ମୃତ୍ୟୋର୍ମୂଳମୂଳିଭାବୋଽବକଳ୍ପତେ । ନ ଚେୟଂ ଶ୍ରୁତିଃ ପ୍ରାଣବିଦ୍ୟାସଂଯୋଗ୍ୟପୂର୍ବମାଚମନଂ ବିଧାସ୍ୟତୀତି ଶକ୍ୟମାଶ୍ରୟତୁମ୍ । ପୂର୍ବସ୍ୟୈବ ପୁରୁଷମାତ୍ରସଂଯୋଗିନ ଆଚମନସ୍ୟେହ ପ୍ରତ୍ୟଭିଜ୍ଞାୟମାନତ୍ୱାତ୍ । ଅତଏବ ଚ ନୋଭୟବିଧାନମ୍ ।

(ଗ) ଉଭୟବିଧାନେ ଚ ବାକ୍ୟଂ ଭିଦ୍ୟେତ । ତସ୍ମାତ୍ପ୍ରାପ୍ତମେବାଶିଶିଷତାମଶିତବତାଂ ଚୋଭୟତଃ ଆଚମନନୂଦ୍ୟ 'ଏତମେବ ତଦନମନଗ୍ନଂ କୁର୍ବନ୍ତୋ ମନ୍ୟନ୍ତେ' (ବୃହ ୬-୧-୪) ଇତି ପ୍ରାଣସ୍ୟାନଗ୍ନତାକରଣ ସଂକଳ୍ପୋଽନେନ ବାକ୍ୟେନାଚମନୀୟାସ୍ୱପ୍ସୁ ପ୍ରାଣବିଦ୍ୟାସମ୍ବନ୍ଧିତ୍ୱେନାପୂର୍ବ ଉପଦିଶ୍ୟତେ ।

(ଘ) ନ ଚୟମନଗ୍ନତାବାଦ ଆଚମନସ୍ତୁତ୍ୟର୍ଥ ଇତି ନ୍ୟାୟମ୍, ଆଚମନସ୍ୟାବିଧେୟତ୍ୱାତ୍, ସ୍ୱୟଂ ଚାନଗ୍ନତା ସଂକଳ୍ପସ୍ୟ ବିଧେୟତ୍ୱପ୍ରତୀତେଃ । ନ ଚୈବଂ ସତ୍ୟେକ୍ୟସ୍ୟାଚମନସ୍ୟୋଭୟାର୍ଥତାଭ୍ୟୁପଗମତା ଭବତି, ପ୍ରାୟତ୍ୟାର୍ଥତା ପରିଧାନାର୍ଥତା ଚେତି, କ୍ରିୟାନ୍ତରତ୍ୱାଭ୍ୟୁପଗମତ୍ୱାତ୍ । କ୍ରିୟାନ୍ତରମେବ ହ୍ୟାଚମନଂ ନାମ ପ୍ରାୟତ୍ୟାର୍ଥଂ ପୁରୁଷସ୍ୟାଭ୍ୟୁପଗମ୍ୟତେ, ତଦୀୟାସୁ ତ୍ୱପ୍ସୁ ତ୍ୱପ୍ସୁ ବାସଃ ସଂକଳ୍ପମଂ ନାମ କ୍ରିୟାନ୍ତରମେବ ପରିଧାନାର୍ଥଂ ପ୍ରାଣସ୍ୟାଭ୍ୟୁପଗମ୍ୟତ ଇତ୍ୟନବଦ୍ୟମ୍ ।

**(୩) ଭାଷାଂତର**- ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ- ଆଚମନ ବିଧେୟ ହୁଏ ନାହିଁ । କାରଣ-କାର୍ଯ୍ୟରୂପରେ ତାହାର ଆଖ୍ୟାନ ଅଛି । କାର୍ଯ୍ୟରୂପରେ ସ୍ମୃତିରେ ପ୍ରସିଦ୍ଧ ଥିବା ଯାହା ଆଚମନଶୁଦ୍ଧି ପାଇଁ ପ୍ରାପ୍ତ ହୁଏ, ତାହାର ଅନ୍ୱାଖ୍ୟାନ (ଅନୁବାଦ) କରେ । ପରନ୍ତୁ ଏହି ଶ୍ରୁତି ସେହି ସ୍ମୃତିର ମୂଳ ହେବ କି ? ନୁହେଁ । ଏହା ନୁହେଁ କାରଣ- ବିଷୟ ହିଁ ନାନାପ୍ରକାର । ସାମାନ୍ୟ ବିଷୟକ ସ୍ମୃତି ଶୁଦ୍ଧି ପାଇଁ ପୁରୁଷମାତ୍ର ସମ୍ବନ୍ଧିତ ଆଚମନକୁ ପ୍ରାପ୍ତ କରାଏ ।

(ଖ) ଶ୍ରୁତି କିନ୍ତୁ ପ୍ରାଣବିଦ୍ୟାର ପ୍ରକରଣରେ ପଠିତ ହୁଏ । ତେଣୁ ତତ୍‌ବିଷୟକ ଆଚମନର ବିଧାନ କରି ହୋଇ ନିଜେ ବିଧାନ କରିବ । ଭିନ୍ନବିଷୟକ ଶ୍ରୁତି ଓ ସ୍ମୃତିରେ ମୂଳମୂଳିଭାବ ହୁଏ ନାହିଁ, କାରଣ-ପୁରୁଷମାତ୍ରସଂଯୋଗୀ ପୂର୍ବ ଆଚମନର ଏଠାରେ ପ୍ରତ୍ୟଭିଜ୍ଞାନ ହୁଏ । ତେଣୁ ଦୁହିଙ୍କର ବିଧାନ ହୁଏ ନାହିଁ ।

(ଗ) ଦୁଇଟିର ବିଧାନ ହେଲାପରେ ବାକ୍ୟଭେଦ ହେବ । ତେଣୁ ଯିଏ ଭୋଜନ କରିବାକୁ ଚାହେଁ ଓ ଯେଉଁମାନେ ଭୋଜନ କରିସାରିଛନ୍ତି - ସେହି ଦୁଇଟିକୁ ପ୍ରାପ୍ତ ହୋଇ ଆଚମନର ଅନୁବାଦ କରି 'ଏତମେବ' (ସେହି ପ୍ରାଣକୁ ଅନଗ୍ନ କରିବାକୁ ସ୍ୱୀକାର କରିଛନ୍ତି) ଏହି ବାକ୍ୟରୁ ପ୍ରାଣକୁ ଅନଗ୍ନ କରିବାର ସଙ୍କଳ୍ପ ଆଚମନୀୟ ଜଳରେ ପ୍ରାଣବିଦ୍ୟାର ସମ୍ବନ୍ଧ ରୂପରେ ଅପୂର୍ବ ଉପଦେଶ କରାଯାଇଅଛି ।

(ଘ) ଏହି ଅନଗ୍ନ ତାବାଦ ଆଚମନର ସ୍ମୃତି ପାଇଁ ଉଦ୍ଦିଷ୍ଟ ବୋଲି କହିବା ଠିକ୍ ନୁହେଁ । କାରଣ-ଆଚମନ ବିଧେୟ ନୁହେଁ ଏବଂ ଅନଗ୍ନତା ସଙ୍କଳ୍ପ ସ୍ୱୟଂ ବିଧେୟ ରୂପେ ପ୍ରତୀତ ହୁଏ । ପରନ୍ତୁ ଏହିପରି ହେଲେ ଏକ ଆଚମନର ଗୋଟିଏ ବୁଦ୍ଧି ପ୍ରୟୋଜନ ହୁଏ ଓ ଅନ୍ୟର ପରିଧାନ ମଧ୍ୟ ପ୍ରୟୋଜନ ହୁଏ- ଏହିପରି ଦୁଇଟି ପ୍ରୟୋଜନ ସ୍ୱୀକୃତ ନୁହେଁ । କାରଣ-ଏଠାରେ ଅନ୍ୟକ୍ରିୟାକୁ ସ୍ୱୀକାର କରାଯାଏ । ଆଚମନ ଅନ୍ୟକ୍ରିୟା ଅଟେ । ସେ କେବଳ ପୁରୁଷର ଶୁଦ୍ଧି ପାଇଁ ସ୍ୱୀକୃତ ଏବଂ ତାହାର (ଆଚମନ ଯୋଗ୍ୟ) ଜଳରେ ବସ୍ତ୍ର ସଙ୍କଳ୍ପ ଅନ୍ୟକ୍ରିୟା ନାହିଁ । ସେହି ପ୍ରାଣର ପରିଧାନ ପାଇଁ ସ୍ୱୀକାର କରାଯାଏ । ତେଣୁ ସେ ଦୋଷର ହିତ ଅଟେ ।

(୪) ମୂଳ-(କ) ଅପି ଚ 'ଯଦିଦଂ କିଂ ଚ ଶ୍ୱଭ୍ୟ ଅକୃମିଭ୍ୟଆ କୀଟପତଙ୍ଗଭ୍ୟ-ସ୍ତଦ୍ୱୋଽନ୍ନମ୍, (ବୃହ ୬-୧-୧୪) ଇତ୍ୟତ୍ର ତାବନ୍ନ ସର୍ବାନ୍ନାଭ୍ୟ ବ୍ୟବହାରଶ୍ଚୋଦ୍ୟତ ଇତି ଶକ୍ୟଂ ବକ୍ତୁମ୍, ଅଶବ୍ଦତ୍ୱ ଦଶବ୍ଦତ୍ୱାଚ, ସର୍ବଂ ତୁ ପ୍ରାଣସ୍ୟାନ୍ନମିତୀୟମନ୍ନଦୃଷ୍ଟି ଶ୍ଚୋଦ୍ୟତେ, ତତ୍‌ସାହଚର୍ଯ୍ୟାଚ୍ଚପୋ ବାସ ଇତ୍ୟତ୍ରାପି ନାପାଚମନଂ ଚ୍ଚୋଦ୍ୟତେ, ପ୍ରସିଦ୍ଧିସ୍ୱିବ ଦ୍ୱଚ୍ଚମନୀୟାସ୍ୱପସୁ ପବିଧାନ ଦୃଷ୍ଟିଶ୍ଚୋଦ୍ୟତ ଇତି ଯୁକ୍ତମ୍ ।

(ଖ) ନ ହ୍ୟର୍ଦ୍ଧବୈଶସଂ ସମ୍ଭବତି । ଅପି ଚଚ୍ଚମନ୍ତୀତି ବର୍ତ୍ତମାନାପଦେଶିତ୍ୱାନ୍ନାଂ ଶବ୍ଦୋ ବିଧିକ୍ଷମଃ । ନନୁ ମନ୍ୟନ୍ତ ଇତ୍ୟପି ସମାନଂ ବର୍ତ୍ତମାନାପଦେଶିତତ୍ୱମ୍ । ସତ୍ୟମେବ

ତତ୍, ଅବଶ୍ୟବିଧେୟେ ତ୍ୱନ୍ୟତରସ୍ମିନ୍ ବାସଃ କାର୍ଯ୍ୟାଖ୍ୟାନାଦପାଂ ବାସଃ ସଙ୍କଳ୍ପନମେ-ବାପୂର୍ବଂ ବିଧୀୟତେ, ନାଚମନମ୍, ପୂର୍ବବଦ୍ଧି ତତ୍ ଇତ୍ୟୁପପାଦିତମ୍ ।

(ଗ) ଯଦପ୍ୟୁକ୍ତମ୍-ବିସ୍ପଷ୍ଟା ଚଚମନେ ବିଧିବିଭକ୍ତିରିତି, ତଦପି ପୂର୍ବବତ୍ତ୍ୱେନୈବା ଚମନସ୍ୟ ପ୍ରତ୍ୟୁକ୍ତମ୍ । ଅତଏବାଚମନସ୍ୟାବିଧିସ୍ଥିତତ୍ୱାଦେତମେବ ତଦନମନଗ୍ନଂ କୁର୍ବନ୍ତୋ ମନ୍ୟନ୍ତ ଇତ୍ୟତ୍ରୈବ କାଣ୍ୱାଃ ପର୍ଯ୍ୟବସ୍ୟନ୍ତି, ନାମନନ୍ତି 'ତସ୍ମାଦେବଂବିତ୍' ଇତ୍ୟାଦି ।

(ଘ) ତସ୍ମାନ୍ ମାଧ୍ୟନ୍ଦିନାନାମପି ପାଠେ ଆଚମନାନୁବାଦେନୈବଂବିତ୍ତ୍ୱମେବ ପ୍ରକୃତପ୍ରାଣବାସୋବିତ୍ତ୍ୱଂ ବିଧୀୟତ ଇତି ପ୍ରତିପତ୍ତବ୍ୟମ୍ । ଯୋଽପାୟମଭ୍ୟୁପଗମଃ କ୍ୱଚିଦାଗମନଂ ବିଧୀୟତାମ୍, କ୍ୱଚିଦ୍ ବାସୋ ବିଜ୍ଞାନମିତ୍ରି ସୋଽପି ନ ସାଧୁଃ । ଆପୋ ବାସ ଇତ୍ୟାଦିକାୟା ବାକ୍ୟପ୍ରବୃତ୍ତେଃ ସର୍ବତ୍ରୈକରୂପ୍ୟାତ୍, ତସ୍ମାଦ୍‌ବାସୋ ବିଜ୍ଞାନମେବେହ ବିଧୀୟତେ, ନାଚମନମିତି ନ୍ୟାୟମ୍ ।

**(୪) ଭାଷାଂତର-** (କ) 'ଯଦିଦଂ କିଞ୍ଚ' (ଶ୍ୱାନ, କୃମି ଓ କୀଟ ପତଙ୍ଗାଦିଠାରୁ ଆରମ୍ଭ କରି ଏହା ଯାହା କିଛି ଅଛି, ସେ ସବୁ ତୋର ଅନ୍ନ ଅଟେ) ଏଠାରେ ସମସ୍ତ ଅନ୍ନର ଭକ୍ଷଣବିଧାନ କରାଯାଇଅଛି ବୋଲି କୁହାଯାଇ ନ ପାରେ, କାରଣ- ସେହି ଶ୍ରୁତି ପ୍ରତିପାଦିତ ନୁହେଁ ଏବଂ ଶକ୍ୟ ମଧ୍ୟ ନୁହେଁ । 'ସବୁ ପ୍ରାଣର ଅନ୍ନ ଅଟେ' ଏହା କେବଳ ଅନ୍ନଦୃଷ୍ଟିର ବିଧାନ କରାଯାଇଅଛି । ତେଣୁ ତାହାର ସାହଚର୍ଯ୍ୟରୁ 'ଜଳ ବସ୍ତ୍ର ଅଟେ' ଏଠାରେ ମଧ୍ୟ ଜଳର ଆଚମନବିଧାନ କରାଯାଇନାହିଁ । କିନ୍ତୁ ଆଚମନଯୋଗ୍ୟ ପ୍ରସିଦ୍ଧ ଜଳରେ ପ୍ରାଣର ପରିଧାନ ଦୃଷ୍ଟିର ବିଧାନ କରାଯାଏ-ଏହା ହିଁ ଯୁକ୍ତିଯୁକ୍ତ ।

(ଖ) କାରଣ-ଅର୍ଦ୍ଧବିନାଶର ସମ୍ଭବ ନୁହେଁ, ଆଉ ମଧ୍ୟ 'ଆଚମନ୍ତି' (ଆଚମନ ବା ସ୍ନାନ କରନ୍ତି) ଏହିପ୍ରକାର ବର୍ତ୍ତମାନର କଥନ ହେଲେ ଏହି ଶବ୍ଦ ବିଧିର ଯୋଗ୍ୟ ହୁଏ ନାହିଁ । ପରନ୍ତୁ 'ମନ୍ୟନ୍ତେ' ଏଠାରେ ସମାନଭାବେ ବର୍ତ୍ତମାନାପଦେଶ ହୁଏ କି ? ଯଦ୍ୟପି ଏହା ଠିକ୍, ତଥାପି ଦୁଇଟିରେ କୌଣସି ଗୋଟିକର ବିଧେୟ ହେଲାପରେ ବସ୍ତ୍ରର କାର୍ଯ୍ୟ ରୂପରେ କହିବା ଦ୍ୱାରା ଜଳର ବସ୍ତ୍ରରୂପରେ ଅପୂର୍ବ ସଂକଳ୍ପ ବିଧାନ କରାଯାଏ । କିନ୍ତୁ ଆଚମନ ବିଧେୟ ହୁଏ ନାହିଁ, କାରଣ-ସେ ପୂର୍ବପରି- ପ୍ରଥମେ ଏହା ସ୍ମୃତିରେ ପ୍ରାପ୍ତ ହୁଏ ବୋଲି ପ୍ରତିପାଦନ କରାଯାଇଅଛି ।

(ଗ) ଆଚମନରେ ବିଧି ବିଭକ୍ତି (ପ୍ରତ୍ୟୟ) ସ୍ପଷ୍ଟ ହୁଏ, ବୋଲି ଯାହା କୁହାଯାଇଅଛି, ସେ ମଧ୍ୟ ଆଚମନର ପୂର୍ବରୁ ପ୍ରାପ୍ତ ହେଲେ ନିରାକୃତ ହୁଏ, ଅତଏବ (ଅବିଧେୟ ହେଲେ) ଆଚମନର ବିଧି ଅଭୀଷ୍ଟ ନ ହେବାରୁ 'ଏତମେବ' ଅର୍ଥାତ୍ ଏହି ପ୍ରାଣକୁ ଅନଗ୍ନ କରି ସ୍ୱୀକାର କରିଛନ୍ତି । ଏହି ମତରେ କାଣ୍ୱ ପର୍ଯ୍ୟବସିତ ହୁଅନ୍ତି । 'ତସ୍ମାଦେବଂବତ୍' ଇତ୍ୟାଦି ସ୍ୱୀକାର କରନ୍ତି ନାହିଁ ।

(ଘ) ତେଣୁ ମାଧ୍ୟନ୍ଦିନ ସଂପ୍ରଦାୟର ପାଠରେ ଆଚମନର ଅନୁବାଦଯୋଗୁଁ 'ଏବଂ ବିଦ୍ୱମ୍ ଏହାକୁ ଜାଣିଥିବା ପୁରୁଷକୁ ପ୍ରକୃତ ପ୍ରାଣକୁ ବସ୍ତ୍ର ଜାଣି ବିଧାନ କରେ ବୋଲି ଜାଣିବା ଉଚିତ୍ । କେଉଁଠି ଆଚମନର ବିଧାନ ଓ କେଉଁଠି ବସ୍ତ୍ରବିଜ୍ଞାନର ସ୍ୱୀକାର କରିବା ଉଚିତ୍ ନୁହେଁ, କାରଣ - 'ଦଳ ହିଁ ବସ୍ତ୍ର ଅଟେ' ଇତ୍ୟାଦି ବାକ୍ୟର ପ୍ରବୃତ୍ତି ସର୍ବତ୍ର ଏକରୂପ ଅଟେ । ତେଣୁ ଏଠାରେ ବସ୍ତ୍ରବିଜ୍ଞାନର ଅଭିଧାନ କରାଯାଇଅଛି, କିନ୍ତୁ ଆଚମନ ନୁହେଁ । ଏହା ହିଁ ଠିକ୍ ।

## १० समानाधिकरणम् ॥ सू० १९ ॥

## ସମାନାଧିକରଣ - ୧୦

## समान एवं चाभेदात् ॥ १९ ॥

## (୧) ସମାନ ଏବଂ ଚାଭେଦାତ୍ ॥ ୩-୩-୧୯ ॥

ଯେପରି ଭିନ୍ନ ସଂପ୍ରଦାୟରେ ବିଧ୍ୟା ଏକ ଓ ଗୁଣ ଗୁଡ଼ିକର ଉପସଂହାର ହୁଏ ଏବଂ = ସେପରି ସମାନେ = ଗୋଟିଏ ଶାଖାରେ ଏହା ସମ୍ଭବ । ଅଭେଦାତ୍=କାରଣ-ଉପାସ୍ୟର ଭେଦ ନାହିଁ ।

ମୂଳ- (କ) ବାଜସନେୟିଶାଖାୟାମଗ୍ନିରହସ୍ୟେ ଶାଣ୍ଡିଲ୍ୟନାମାଙ୍କିତା ବିଦ୍ୟା ବିଜ୍ଞତା । ତତ୍ର ଚ ଗୁଣା ଶ୍ରୂୟନ୍ତେ - 'ସ ଆତ୍ମାନମୁପାସୀତ, ମନୋମୟଂ ପ୍ରାଣ ଶରୀରଂ ଭାରୁପମ୍' ଇତ୍ୟେବମାଦୟଃ । ତସ୍ୟାମେବ ଶାଖାୟାଂ ବୃହଦାରଣ୍ୟକେପୁନଃ ପଠ୍ୟତେ, 'ମନୋମୟୋଽୟଂ ପୁରୁଷଃ ଭାଃ ସତ୍ୟସ୍ତସ୍ମିନ୍ନନ୍ତହୃଦୟେ ଯଥା ବ୍ରାହିର୍ବା ଯଚୋ ବା ସ ଏଷ ସର୍ବସ୍ୟେଶାନଃ ସର୍ବସ୍ୟାଧିପତିଃ ସର୍ବମିଦଂ ପ୍ରଶାସ୍ତି ଯଦିଦଂ କିଞ୍ଚ' (ବୃହ ୫-୬-୧) ଇତି ।

(ଖ) ତତ୍ର ସଂଶୟଃ କିମିୟମେକା ବିଦ୍ୟାଽଗ୍ନିରହସ୍ୟବୃହଦାରଣ୍ୟକୟୋର୍ଗୁଣୋପସଂହାରଶ୍ଚ ଉଦଦ୍ୱେ ଇମେ ବିଦ୍ୟେ ଗୁଣାନୁପସଂହାରଶ୍ଚେତି । କିଂ ତାବତ୍ପ୍ରାପ୍ତମ୍ ? ବିଦ୍ୟାଭେଦୋ ଗୁଣବ୍ୟବସ୍ଥା ଚେତି । କୃତଃ ? ପୌନରୁକ୍ତ୍ୟପ୍ରସଙ୍ଗାତ୍ । ଭିନ୍ନାସୁ ହି ଶାଖାସ୍ୱଧେତୃବେଦିତୃଭେଦାତ୍ ପୌନରୁକ୍ତ୍ୟ ପରିହାମାଲୋଚ୍ୟ ବିଦ୍ୟୈକତ୍ୱମଧ୍ୟବସାୟୈକତ୍ରାତିରିକ୍ତ ଗୁଣା ଇତରତ୍ରୋପସଂହ୍ରିୟନ୍ତେ ପ୍ରାଣସମ୍ବାଦାଦିଷ୍ୱିତ୍ୟୁକ୍ତମ୍ ।

(ଗ) ଏକସ୍ୟାଂ ପୁନଃ ଶାଖାୟାମଧେତ୍ୱବେଦିତୃ ଭେଦାଭାବାଦଶକ୍ୟପରିହାରେ ପୌନରୁକ୍ତ୍ୟେଂ ନ ବିପ୍ରକୃଷ୍ଟଦେଶ ସ୍ଥୈକା ବିଦ୍ୟା ଭବିତୁମର୍ହତି । ନ ଚାତ୍ରୈକମାମ୍ନାନଂ ବିଦ୍ୟାବିଧାନାର୍ଥମପରଂ ଗୁଣବିଧାନାର୍ଥମିତି ବିଭାଗଃ ସମ୍ଭବତି, ତଦା ହ୍ୟତିରିକ୍ତା ଏବ ଗୁଣା ଇତରତ୍ରେତରତ୍ର ଚାମ୍ନାୟେରନ୍ନ ସମାନାଃ, ସମାନା ଅପି ତୁଭୟତ୍ରାମ୍ନାୟନ୍ତେ ମନୋମୟତ୍ୱାଦନ୍ତଃ । ତସ୍ମାନ୍ନାନ୍ୟୋନ୍ୟଂ ଗୁଣୋପସଂହାର ଇତି ।

(୨) ଭାଷାଂତର- (କ) ବାଜସନେୟୀଶାଖାର ଅଗ୍ନିରହସ୍ୟରେ ଶାଣ୍ଡିଲ୍ୟ ନାମକ ଅଙ୍କିତ ବିଦ୍ୟା ବିଜ୍ଞାତ ହୁଏ, ସେଥିରେ 'ଆତ୍ମାନମୁପାସୀତ' (ସେ ମନୋମୟ, ପ୍ରାଣ ଶରୀର ପ୍ରକାଶ ରୂପ ଆତ୍ମାକୁ ଉପାସନା କରିବା ଉଚିତ) ଇତ୍ୟାଦି ଗୁଣ ଶୁଣାଯାଏ । ସେହି ଶାଖାର ବୃହଦାରଣ କରେ ପୁଣି 'ମନୋମୟୋଽୟଂ ପୁରୁଷୋ' (ପ୍ରକାଶ ହିଁ ଯାହାର ସତ୍ୟସ୍ୱରୂପ ଅଟେ, ସେ ସେହି ଅନ୍ତର୍ହୃଦୟରେ ଯେପରି ଧାନ ଅଥବା ଯବ ହୁଏ ସେତିକି ପରିମାଣଯୁକ୍ତ ହୁଏ, ସମସ୍ତଙ୍କ ପ୍ରକର୍ଷ ରୂପେର ଶାସନ କରେ) ଏହିପ୍ରକାର ପଢାଯାଇଛି ।

(ଖ) ଏଠାରେ ସଂଶୟ ହୁଏ ଯେ - ଅଗ୍ନିରହସ୍ୟ ଓ ବୃହଦାରଣ୍ୟକ - ଏହି ଦୁଇଟିରେ କଣ ଗୁଣର ଉପସଂହାର ହୋଇଛି, ଅଥବା ଏହି ଦୁଇଟି ବିଧ୍ୟା ଓ ଗୁଣ ଗୁଡ଼ିକର ଉପସଂହାର କରେ ନାହିଁ ? ତେବେ ଏହା କଣ ହେବ ? ପୂର୍ବପକ୍ଷ - ବିଦ୍ୟାର ଭେଦ ଓ ଗୁଣର ବ୍ୟବସ୍ଥା ହୁଏ ବୋଲି ପ୍ରାପ୍ତ ହୁଏ । କିପରି ? କାରଣ- ପୁନରୁକ୍ତିର ପ୍ରସଙ୍ଗ ଅଛି ଭିନ୍ନ ଶାଖାରେ ଅଧ୍ୟେତା ଓ ବେଦିତାର ଭେଦରେ ପୁନରୁକ୍ତି ପରିହାରର ପର୍ଯ୍ୟାହେଲାଚନା କରି ବିଦ୍ୟାର ଏକତାକୁ ନିଶ୍ଚୟ କରି ଗୋଟିଏ ବିଦ୍ୟାରେ, ଭିନ୍ନ ବିଦ୍ୟାକୁ ଅନ୍ୟବିଦ୍ୟାରେ ଉପସଂହାର କରେ । ଏହି ସବୁ ପ୍ରାଣସମ୍ବାଦିରେ କୁହାଯାଇଅଛି ।

(୩) ମୂଳ- (କ) ଏବଂ ପ୍ରାପ୍ତେ ବ୍ରୂମହେ ଯଥା ଭିନ୍ନସୁଶାଖାସୁ ବିଦ୍ୟୈକତ୍ୱଂ ଗଣୋପସଂହାରଶ୍ଚ ଭବତ୍ୟେବମେକସ୍ୟାମପି ଶାଖାୟାଂ ଭବିତୁମର୍ହତି, ଉପାସ୍ୟାଭେଦାତ୍ । ତଦେବ ବ୍ରହ୍ମ ମନୋମୟତ୍ୱାଦିଗୁଣକମୁଭୟତ୍ରାପ୍ୟୁଂପାସ୍ୟମଭିନ୍ନଂ ପ୍ରତ୍ୟଭିଜାନୀମଃ । ଉପାସ୍ୟ ଚ ରୂପଂ ବିଦ୍ୟାୟାଃ । ନ ଚ ବିଦ୍ୟମାନେ ରୂପାଭେଦେ ବିଦ୍ୟାଭେଦମଧବସାତୁଂ ଶକ୍ନୁମଃ । ନାପି ବିଦ୍ୟାଽଭେଦେ ଗୁଣବ୍ୟବସ୍ଥାନମ୍ ।

(ଖ) ନନୁ ପୌନରୁକ୍ତ୍ୟପ୍ରସଙ୍ଗାଦ୍‌ବିଦ୍ୟାଭେଦୋଽଦ୍ୟବସିତଃ, ନେତ୍ୟୁଚ୍ୟତେ, ଅର୍ଥବିଭାଗୋପପତ୍ତେଃ । ଏକଂ ହ୍ୟମ୍ନାନଂ ବିଦ୍ୟାବିଧାନାର୍ଥମପରଂ ଗୁଣବିଦାନାର୍ଥମିତି ନ କିଞ୍ଚିନ୍ନୋପଦ୍ୟତେ । ନନ୍ୱେବଂ ସତି ଯଦପଠିତମଗ୍ନିରହସ୍ୟେ, ତଦେବ ବୃହଦାରଣ୍ୟକେ, ପଠିତବ୍ୟମ୍– 'ସ ଏଷ ସର୍ବସ୍ୟେଶାନଃ ଇତ୍ୟାଦି । ଯତ୍ତୁଂ ପଠିତମେବ ମନୋମୟ' ଇତ୍ୟାଦି, ତନ୍ନ ପଠିତବ୍ୟମ୍ । ନୈଷ ଦୋଷଃ । ତଦ୍‌ବଲେନୈବ ପ୍ରଦେଶାନ୍ତର ପଠିତବିଦ୍ୟାପ୍ରତ୍ୟଭିଜ୍ଞାନାତ୍ ।

(ଗ) ସମାନଗୁଣାମ୍ନା ନେନ ହି ବିପ୍ରକୃଷ୍ଟ ଦେଶାଂ ଶାଣ୍ଡିଲ୍ୟବିଦ୍ୟାଂ ପ୍ରତ୍ୟଭିଜ୍ଞାପ୍ୟ ତସ୍ୟମୀଷାନତ୍ୱାଦ୍ୟୁପଦିଶ୍ୟତେ । ଅନ୍ୟଥା ହି କଥଂ ତସ୍ୟାମୟଂ ଗୁଣବିଧିରଭିଧୀୟତେ ? ଅପି ଚାପ୍ରାପ୍ତାଂଶୋପଦେଶେନାର୍ଥବତି ବାକ୍ୟେ ସଂଜାତେ ପ୍ରାପ୍ତାଂଶ ପରାମର୍ଶସ୍ୟ ନିତ୍ୟାନୁ-ବାଦ୍ ତପ୍ରାଽୟପପଦ୍ୟମାନତ୍ୱାନ୍ନ ତଦ୍‌ବଲେନ ପ୍ରତ୍ୟଭିଜ୍ଞେପକ୍ଷିତୁଂ ଶକ୍ୟରେ । ତସ୍ମାଦତ୍ର ସମାନାୟାମପି ଶାଖାୟା ବିଦ୍ୟୈକତ୍ୱଂ ଗୁଣୋପସଂହାରଶ୍ଚେତୁପନ୍ନମ୍ ।

(୩) ଭାଷାଂତର - ସିଦ୍ଧାନ୍ତ - (କ) ଏହା ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ - ଯେପରି ଭିନ୍ନ ଭିନ୍ନ ଶାଖାରେ ବିଦ୍ୟାର ଅଭେଦ ଓ ଗୁଣ ଗୁନିକର ଉପସଂହାର ହୁଏ, ସେପରି ଏକଶାଖାରେ ମଧ୍ୟ ଏହା ଉପାସ୍ୟର ଅଭେଦ ହେତୁ ହେବା ଉଚିତ୍ । ମନୋମୟତ୍ୱ ପ୍ରଭୃତି ଗୁଣଯୁକ୍ତ ସେହି ଗୋଟିଏ ବ୍ରହ୍ମ ଦୁଇଟି ସ୍ଥଳରେ ଉପାସ୍ୟ ହୁଏ ବୋଲି ଆମ୍ଭେ ପ୍ରତ୍ୟଭିଜ୍ଞ କରୁଁ । ବିଦ୍ୟାରରୂପ ହିଁ ଉପାସ୍ୟ ରୂପାର ଅଭେଦରେ ଏହା ବିଦ୍ୟମାନ ହେଲେ ବିଧ୍ୟାଭେଦ ସ୍ଥିର କରିବା ପାଇଁ ଆମ୍ଭେ ସମର୍ଥ ନୋହୁଁ । ବିଦ୍ୟାର ଅଭେଦ ହେଲା ପରେ ଗୁଣର ପୃଥକ ବ୍ୟବସ୍ଥା ହୁଏ ନାହିଁ ।

(ଖ) ପରନ୍ତୁ ପୈନରୁକ୍ତିର ପ୍ରସଙ୍ଗରେ ବିଦ୍ୟାର ଭେଦ ନିଶ୍ଚିତ କରାଯାଇଅଛି କି ? ନୁହେଁ, କିନ୍ତୁ ଅର୍ଥର ବିଭାଗ ହୋଇପାରେ ବୋଲି କୁହାଯାଇଅଛି । ଗୋଟିଏ ଶ୍ରୁତିବିଦ୍ୟା ବିଧାନ ପାଇଁ ଏବଂ ଅପରଶ୍ରୁତି ଗୁଣବିଧାନ ପାଇଁ ରହେ । ଏହିପରି କେତେକ ମଧ୍ୟ ଅନୁପପନ୍ନ ହୁଏ ନାହିଁ । ସେମାନଙ୍କର ବୃହଦାରଣ୍ୟକରେ 'ସ ଏଷ' (ସେ ଏହି ସମସ୍ତଙ୍କର ସ୍ୱାମୀ) ଇତ୍ୟାଦି ସେମାନେ ଗୁଣ ପଢ଼ିବା ପାଇଁ ଚାହାଁନ୍ତି । ଏବଂ ଯାହା 'ମନୋମୟଃ' ଇତ୍ୟାଦି ପଠିତ ହୁଏ । ତାହାକୁ ପଢ଼ିବା ଉଚିତ ନୁହେଁ । ଏହା କିନ୍ତୁ ଦୋଷ ନୁହେଁ, କାରଣ - ତାହାର ବଳରେ ଅନ୍ୟ ପ୍ରଦେଶରେ ପଠିତ ବିଦ୍ୟାର ପ୍ରତ୍ୟଭିଜ୍ଞାନ ହୁଏ ।

(ଗ) ସମାନ ଗୁଣର ଶ୍ରୁତିରୁ ଦୂର ସ୍ଥାନରେ ରହିଥିବା ଶାଣ୍ଡିଲ୍ୟବିଦ୍ୟାର ପ୍ରତ୍ୟଭି-ଜ୍ଞାନ କରାଇ ସେଥିରେ ଈଶ୍ୱାନତ୍ୱ (ସ୍ୱାମୀତ୍ୱ) ପ୍ରଭୃତିର ଉପଦେଶ କରାଯାଏ ନୋଚେତ୍ ସେଥିରେ ଏହି ଗୁଣ ବିଧାନ କିପରି ହେବ ? ଅପ୍ରାପ୍ତ ଅଂଶର କଣ ଉପଦେଶ ଦ୍ୱାରା ବାକ୍ୟ ଅର୍ଥବାନ୍ ହେଲେ ପ୍ରାପ୍ତ ଅଂଶର ପରାମର୍ଶ ନିତ୍ୟ ଅନୁବାଦ ରୂପରେ ଉପପନ୍ନ ହୁଏ ? ତେଣୁ ତାହାର ବଳରେ ପ୍ରତ୍ୟଭିଜ୍ଞାକୁ ଅପେକ୍ଷା କରେ ନାହିଁ । ଅତଏବ ଏଠାରେ ଗୋଟିଏ ଶାଖାରେ ମଧ୍ୟ ବିଦ୍ୟାର ଏକତ୍ୱ ଓ ଗୁଣର ଉପସଂହାର କରିବା ଉପପନ୍ନ ଅଟେ ।

## ११ संबन्धाधिकरणम् ॥ सू० २०-२१ ॥

## ସମ୍ବନ୍ଧାଧିକରଣ -୧୧

## संबन्धादेवमन्यत्रापि ॥ २० ॥

## (୧) ସମ୍ବନ୍ଧାଦେବମନ୍ୟତ୍ରାପି ॥ ୩-୩-୨୦ ॥

ସମ୍ବନ୍ଧାତ୍ = ଗୋଟିଏ ଶାଖାରେ ବରାଗ ରୂପରେ ଅଧୀତ ଶାଣ୍ଡିଲ୍ୟ ବିଦ୍ୟାରେ ଗୋଟିଏ ବିଦ୍ୟାତ୍ୱ ସମ୍ବନ୍ଧରୁ ପରସ୍ପର ଗୁଣୋପସଂହାର ଯେପରି ପୂର୍ବରୁ କୁହାଯାଇଅଛି ।

ବଏସ = ସେପରି ଅନ୍ୟତ୍ରାପି = ଅନ୍ୟସ୍ଥାନରେ ସତ୍ୟବିଦ୍ୟାରେ ମଧ୍ୟ ଗୋଟିଏ ବିଦ୍ୟାତ୍ୱ ସମ୍ବନ୍ଧୀୟରୁ ପରସ୍ପର ଗୁଣୋପସଂହାର ହୁଏ ।

(୧) ମୂଳ (କ) ବୃହଦାରଣ୍ୟେତେ 'ସତ୍ୟଂ ବ୍ରହ୍ମ' (ବ୍ରହ୍ମ-୫-୫ ୧) ଇତ୍ୟୁପକ୍ରମ୍ୟ 'ତଦ୍ୟାତ୍ତସତ୍ୟମସୌସ ଅଦିତ୍ୟୋ ଯ ଏଷ ଏତସ୍ମିନ୍ ମଣ୍ଡଳେ ପୁରୁଷୋ ଯଶ୍ଚାୟଂ ଦକ୍ଷିଣେଽକ୍ଷନ୍ ପୁରୁଷଃ' (ବୃହ ୫-୫-୨) ଇତି ତସ୍ୟୈବ ସତ୍ୟସ୍ୟ ବ୍ରହ୍ମଣୋଽଧିଦୈବତ ମଧ୍ୟାତ୍ମଂ ଚାୟତନବିଶେଷମୁଦିଶ୍ୟ ବ୍ୟାହୃତଶରୀରତ୍ୱଂଚ ସଂପାଦ୍ୟ ଦ୍ୱେ ଉପନିଷଦାବୁ ପଦିଶ୍ୟେତେ । ତସ୍ୟୋପନିଷଦହରିତ୍ୟଧିଦୈବତମ୍ । ତସ୍ୟୋପନିଷଦହମିତ୍ୟଧ୍ୟାତ୍ମମ୍ ।

(ଖ) ତତ୍ର ସଂଶୟଃ - କିମବିଭାଗେନୈବୋଭେ ଅୟନିଷଦାବୁଭୟତ୍ରାସନ୍ଧାତବ୍ୟ, ଉତ ବିଭାଗେନୈକାଽଧିଦୈବତମେକାଽଧମ୍ମିତି । ତତ୍ରସୁତ୍ରେଣୈବୋପକ୍ରମତେ । ଯଥା ଶାଣ୍ଡିଲ୍ୟବିଦ୍ୟାୟାଂ ବିଭାଗେନାପ୍ୟଧୀତାୟାଂ ଗୁଣୋପସଂହାର ଉକ୍ତ ଏବ ମନ୍ୟତ୍ରାପ୍ୟେବଂଜାତୀୟକେ ବିଷୟେ ଭିତୁମର୍ହତି, ଏକବିଦ୍ୟାମଭିସମ୍ବନ୍ଧାତ୍ ।

(ଗ) ଏକା ହୀୟଂ ସତ୍ୟବିଦ୍ୟାଽଧିଦୈବ ମଧ୍ୟାତ୍ମଂଚାଧିତା, ଉପକ୍ରମାଭେଦାଦ୍ ବ୍ୟତିଷିକ୍ତପାଠାଚ୍ଚ । କଥଂ ତସ୍ୟାମୁଦିତୋ ଧର୍ମତସ୍ୟାମେବ ନ ସ୍ୟାତ୍ ? ଯୋ ହ୍ୟାଚାର୍ଯ୍ୟେ କଶ୍ଚିଦନୁଗମନାଦିରାଚାରଶ୍ଚୋଦିତଃ ସଃ ଗ୍ରାମଗତେଽରଣ୍ୟଗତେ ଚ ତୁଲ୍ୟବଦେବ ଭବତି । ତସ୍ମାଦୁଭୟୋରପ୍ୟୁପନି ଦୋରୁ ଭୟତ୍ର ପ୍ରାପ୍ତିରିତି ।

(୨) ଭାଷାଂତର- (କ) ବୃହଦାରଣ୍ୟକରେ 'ସତ୍ୟଂ ବ୍ରହ୍ମ' ଏହିପ୍ରକାର ଉପକ୍ରମ କରି 'ତଦ୍ୟତ୍ତତ୍ସତ୍ୟମସୌ' (ସେ ଯେଉଁ ସତ୍ୟ ଅଟେ, ସେ ହିଁ ଏଠାରେ ଆଦିତ୍ୟ । ଯାହା ଏହି ଆଦିତ୍ୟମଣ୍ଡଳରେ ପୁରୁଷ ଓ ଯାହା ଏହି ଦକ୍ଷିଣ ନେତ୍ରରେ ପୁରୁଷ ଅଟେ) ଏହିପ୍ରକାର ସେହି ସତ୍ୟବ୍ରହ୍ମର ଅଧିଦୈବତ ଓ ଅଧ୍ୟାତ୍ମ ସ୍ଥାନବିଶେଷର ଉପଦେଶ ଦେଇ ଵ୍ୟବହୃତଶରୀର ସଂପାଦନ କରି ଦୁଇ ଉପନିଷଦର (ରହସ୍ୟ ନାମକୁ) ଉପଦେଶ ଦିଆଯାଇଅଛି । 'ଅହଃ' ତାହାର ଅଧିଦୈବତ ଉପନିଷଦ୍ (ରହସ୍ୟ) ନାମ ଅହଂ ତାହାର ଆଧ୍ୟାତ୍ମଉପନିଷଦ୍ (ରହସ୍ୟ) ନାମ ଅଟେ ।

(ଖ) ଏଠାରେ ସଂଶୟ ହୁଏ ଯେ - କଣ ଅବିଭାଗଦ୍ୱାରା ଦୁଇଟି ଉପନିଷଦର ଦୁଇସ୍ଥଳରେ ଅନୁସନ୍ଧାନ କରିବା ଉଚିତ୍ ଅଥବା ବିଭାଗ ଦ୍ୱାରା ଏକ ଅଧିଦୈବକ ଓ ଏକ ଅଧ୍ୟାତ୍ମର ? ଏହି ସୂତ୍ରରେ ଉପକ୍ରମ କରନ୍ତି - ଯେପରି ବିଭାଗ ଦ୍ୱାରା ଅଧୀତ ହେଲାପରେ ମଧ୍ୟ ଶାଣ୍ଡିଲ୍ୟ ବିଦ୍ୟାରେ ଗୁଣଗୁଡ଼ିକର ଉପସଂହାର କରାଯାଇଅଛି । ସେପରି ଏହିପ୍ରକାର ବିଷୟରେ ଅନ୍ୟ ସ୍ଥଳରେ ମଧ୍ୟ ହେବା ଉଚିତ । କାରଣ - ଗୋଟିଏ ବିଦ୍ୟାର ସମ୍ବନ୍ଧ ହୁଏ ।

(ଗ) ଉପକ୍ରମର ଅଭେଦ ହେଲେ ଓ ପରସ୍ପର ସମ୍ବନ୍ଧ ପାଠ ହେଲେ ଅଧିଦୈବତ ଓ ଅଧ୍ୟାତ୍ମରୂପରେ ଅଧୀନ ଏହି ସତ୍ୟବିଦ୍ୟା ଏକ ହୁଏ । ସେହି ଏକବିଦ୍ୟାରେ କୁହାଯାଇଥିବା ଧର୍ମ ସେଥିରେ କାହିଁକି ନ ହେବ ? କାରଣ- ଯେଉଁ ଆଚାର୍ଯ୍ୟ ବିଷୟରେ କୌଣସି ଅନୁଗତାଦିବିଚାର ବିହିତ ହୁଏ, ସେ ଗ୍ରାମଗତ ଆଚାର୍ଯ୍ୟରେ ଅଥବା ଅରଣ୍ୟଗତ ଆଚାର୍ଯ୍ୟରେ ଏକ ହୋଇ ରହେ । ତେଣୁ ଦୁଇ ଉପନିଷଦର ଦୁଇଟି ସ୍ଥଳରେ ପ୍ରାପ୍ତି ହୁଏ ।

(୧) ଏହିପରି ହୁଅନ୍ତେ ତାର ସମାଧାନ-

## न वा विशेषात् ॥ २१ ॥

## ନ ବା ବିଶେଷାତ୍ ॥ ୩-୩-୨୧ ॥

ନାବ = ଦୁଇଟିଯାକ ଉପନିଷଦର ଦୁଇଟି ସ୍ଥଳରେ ପ୍ରାପ୍ତହୁଏ ନାହିଁ; ବିଶେଷାତ୍=କାରଣ-ତାର ବିଶେଷ ଅଛି, ଅର୍ଥାତ୍ ସ୍ଥାନବିଶେଷ ସହିତ ତାର ସମ୍ବନ୍ଧ ଅଛି ।

(୨) ମୂଳ-(କ) ନ ଚୋଭୟୋରୁଭୟତ୍ର ପ୍ରାପ୍ତିଃ । କସ୍ମାତ୍ ? ଉପାସନାସ୍ଥାନ-ବିଶେଷୋପନିବନ୍ଧାଦିତ୍ୟତର୍ଥଃ । କଥଂ ସ୍ଥାନବିଶେଷୋପନିବନ୍ଧ ଇତି ? ଉଚ୍ୟତେଯ'ଏଷ ଏତସ୍ମିନ୍ମଣ୍ଡଲେ ପୁରୁଷଃ (ବୃହ ୫-୫୩) ଇତି ହ୍ୟାଧିଦୈବିକଂ ପୁରୁଷ ପ୍ରକୃତ୍ୟ ତସ୍ୟୋପନିଷଦହରିତି ଶ୍ରାବୟତି । 'ଯୋଽୟଂ ଦକ୍ଷିଣେଽକ୍ଷନ୍ ପୁରୁଷଃ' (ବୃହ ୫-୫-୪) ଇତି ହ୍ୟାଧାତ୍ମିକଂ ପୁରୁଷଂ ପ୍ରକୃତ୍ୟ ତସ୍ୟୋପନିଷଦ୍ବହମିତି ।

(ଖ) ତସ୍ୟେତି ଚୈତତ୍ସନ୍ନିହିତାବଲମ୍ବନଂ ସର୍ବନାମ, ତସ୍ମାଦୟତନବିଶେଷ ବ୍ୟାପାଶ୍ରୟେ ଣୈବୈତେ ଉପନିଷଦାବୁପଦିଶ୍ୟେତେ । କୁତଃ ଉଭୟୋରୁଭସୂତ୍ର ପ୍ରାପ୍ତିଃ ? ନନ୍ୱେକ ଏ ବାୟୁମଧିଦୈବତ ମଧ୍ୟାତ୍ମଂ ଚ ପୁରୁଷଃ, ଏକସ୍ୟୈବ ସତ୍ୟସ୍ୟ ବ୍ରହ୍ମଣ ଆୟତନଦ୍ୱୟପ୍ରତିପାଦନାତ୍ । ସତ୍ୟମେବବେତଦ୍ ଏକସ୍ୟାପି ଦ୍ୱବସ୍ଥାବିଶେଷୋପାଦାନେ ନୈବୋପନିଷଦ୍ ବିଶେଷୋପଦେଶାଭଦ ବସ୍ଥସୈବ ସା ଭବିତୁମର୍ହତି ।

(ଗ) ଅସ୍ତିଚାୟଂ ଦୃଷ୍ଟାନ୍ତଃ - ସତ୍ୟପ୍ୟାଚାର୍ଯ୍ୟ ସ୍ୱରୂପାନପାୟେ, ସଦାଚାର୍ଯ୍ୟସ୍ୟାସୀ-ନସ୍ୟାନୁବର୍ତ୍ତନ ମୁକ୍ତଂ ନ ଉତିଷ୍ଠତୋ ଭବତି । ଯଚ ତିଷ୍ଠତ୍ ଉକ୍ତଂ ନ କଦାସୀନସ୍ୟେତି । ଗ୍ରାମାରଣ୍ୟୟୋସ୍ତ୍ୱାଚାର୍ଯ୍ୟସ୍ୱରୂପାନପାୟାତ୍ତ୍ ସ୍ୱରୂପାନୁବନ୍ଧସ୍ୟ ଚ ଧର୍ମସ୍ୟ ଗ୍ରାମାରଣ୍ୟକୃତବିଶେଷାଭାବାଦୂଭୟତ୍ର ତୁଲ୍ୟବଦଭାବ ଇତ୍ୟଦୃଷ୍ଟାନ୍ତଃ ସଃ । ତ୍ସ୍ମାଦ୍ ବ୍ୟବସ୍ଥାଽନୟୋରୂପନିଷଦୋଃ ।

(୨) ଭାଷାଂତର- (କ) ଅଥବା ଦୁହିଙ୍କର ଦୁଇଟି ସ୍ଥଳରେ ପ୍ରାପ୍ତି ହୁଏ ନାହିଁ । କିପରି ? ବିଶେଷ ଦ୍ୱାରା । ଉପାସନାର ସ୍ଥାନବିଶେଷ ସହିତ ସମ୍ବନ୍ଧ ହେତୁ । ସ୍ଥାନ

ବିଶେଷର ସହିତ ଉପନିବନ୍ଧ (ସମ୍ବନ୍ଧ) କିପରି ହୁଏ ? ଏହି ବିଷୟରେ କୁହାଯାଇଛି- 'ଯ ଏଷ ଏତସ୍ମିନ୍' (ଯାହା ଏହି ମଣ୍ଡଳରେ ପୁରୁଷ ଅଟେ) ଏହିପରି ଅଧିଦୈବିକ ପୁରୁଷକୁ ପ୍ରସ୍ତୁତ କରି 'ତସ୍ୟାପନିଷଦହଃ' ତାହାର ଉପନିଷଦ୍ (ରହସ୍ୟନାମ) ଅହଃ ଅଟେ ଏହାହିଁ ଶ୍ରୁତିଶ୍ରବଣ କରାଏ ଓ 'ଯୋଽୟ' (ଯିଏ ଏହି ଦକ୍ଷିଣ ଅକ୍ଷିରେ ପୁରୁଷ) ଏହିପ୍ରକାର ଅଧ୍ୟାତ୍ମ ପୁରୁଷର ଉପକ୍ରମ କରି ତାହାର ଉପନିଷଦ୍ (ରହସ୍ୟନାମ) ଅହମ୍ ବୋଲି ମଧ୍ୟ ଶ୍ରବଣ କରାଏ ।

(ଖ) 'ସତ୍ୟ' ଏହି ଶବ୍ଦ ସନ୍ନିହିତର ଆଲମ୍ବନ କରୁଥିବା ସର୍ବନାମ । ତେଣୁ ସ୍ଥାନ ବିଶେଷର ଅବଲମ୍ବନରୁ ଏହି ଦୁଇଟି ଉପନିଷଦ୍‌ରେ ରହସ୍ୟର ଉପଦେଶ କରାଯାଇଅଛି । ଅତଃ ଦୁଇଟିର ଦୁଇଟି ସ୍ଥଳରେ କିପରି ପ୍ରାପ୍ତି ହୁଏ ? ପରନ୍ତୁ ଅଧିଦୈବତ୍ ଓ ଅଧ୍ୟାତ୍ମ ରୂପରେ ଏହା ଗୋଟିଏ ପୁରୁଷ । କାରଣ - ଏକହିଁ ସତ୍ୟ ଦୁଇଟି ସ୍ଥାନରେ ବ୍ରହ୍ମର ପ୍ରତିପାଦନ କରାଏ । ହଁ, ଏହା ମଧ୍ୟ ଠିକ୍ । ଏହା ମଧ୍ୟ ଠିକ୍ । ପରନ୍ତୁ ଗୋଟିଏ ବ୍ରହ୍ମର ଅବସ୍ଥାରେ ଆସିଥିବା ହିଁ ଉପନିଷଦ୍ ।

(ଗ) ଏହି ଦୃଷ୍ଟାନ୍ତ ମଧ୍ୟ - ଅଚାର୍ଯ୍ୟରେ ସ୍ୱରୂପ ଅପାୟ (ବିନାଶ ନ ହେଲେ) ମଧ୍ୟ ବସିଥିବା ଆଚାର୍ଯ୍ୟର ଯାହା ଅନୁବର୍ତ୍ତନ, ତାହାହିଁ କୁହାଯାଇଅଛି, କିନ୍ତୁ ଦଣ୍ଡାୟମାନ ହୋଇଥିବା ଆଚାର୍ଯ୍ୟର ହୁଏ ନାହିଁ । ପରନ୍ତୁ ଗ୍ରାମ ଓ ଅରଣ୍ୟରେ ଅଚାର୍ଯ୍ୟର ସ୍ୱରୂପ ଅପାୟନ ହେଲେ ଓ ସ୍ୱରୂପ ସହିତ ଅନୁବଦ୍ଧ (ସମ୍ବନ୍ଧିତ) ଧର୍ମରେ ଗ୍ରାମ ଓ ଅରଣ୍ୟକୃତ ବିଶେଷ ନ ହେଲେ ଦୁଇଟି ସ୍ଥଳରେ ଗୋଟିଏ ଭାର୍ବ ହୁଏ, ତେଣୁ ସେ ଦୃଷ୍ଟାନ୍ତ ହୁଏ ନାହିଁ । ଅତଃ ଏହି ଦୁଇଟି ଉପନିଷଦର ବ୍ୟବସ୍ଥା ହୁଏ ।

**दर्शयति च ॥ २२॥**

**(୧) ଦର୍ଶୟତି ଚ ॥୩-୩-୨୨॥**

ଦର୍ଶୟତି ଚ = ତସ୍ୟୈତସ୍ୟ ତଦେବ ରୂପମ୍ ଇତ୍ୟାଦି ଶ୍ରୁତି ମଧ୍ୟ ସେହିପରି ଦେଖାଏ ।

(୨) ମୂଳ-(କ) ଅପି ଚୈବଂ ଜାତୀୟକାନଂ ଧର୍ମାଣାଂ ବ୍ୟବସ୍ଥେତି ଲିଙ୍ଗଦର୍ଶନଂ ଭବିତି-'ତସ୍ୟୈତସ୍ୟ ତଦେବ ରୂପଂ ଯଦମୁଷ୍ୟ ରୂପଂ ଯଦବ ମୁଷ୍ୟ ଚେଷ୍ଣୌ ଯନ୍ନାମ ତନ୍ନାମ' (ଛା ୧-୬-୫) ଇତି । କଥମସ୍ୟ ଲିଙ୍ଗତ୍ୱମିତି ?

(ଖ) ତଦୁଚ୍ୟତେଅକ୍ଷାଦିତ୍ୟସ୍ଥାନ ଭେଦଭିନ୍ନାନ୍ଧର୍ମାନନ୍ୟୋନ୍ୟସ୍ମିନ୍ନନୁପସଂହାର୍ଯ୍ୟାନ୍ ପଶ୍ୟନ୍ନିହାତି ଦଶେନାଦିତ୍ୟପୁରୁଷଗତାନ୍ ରୂପାଦୀନାକ୍ଷି ପୁରୁଷେ ଉପସଂହରତିତ-ସ୍ୟୈତସ୍ୟ ତଦେବ ରୂପମ (ଛା ୧୭-୫) ଇତ୍ୟଦିନା ତସ୍ମାତ୍ ବ୍ୟବସ୍ଥିତେ ଏବୈତେ ଉପନିଷଦାବିତି ନିର୍ଣ୍ଣୟଃ ।



(୨) ଭାଷାଂତର-(କ) ଏହିପ୍ରକାର ଧର୍ମବ୍ୟବସ୍ଥାଅଛି- ଏହି ବିଷୟରେ 'ତସ୍ୟୈସତ୍ୟ' (ସେ ଏହି ଚକ୍ଷୁସ୍ଥ ପୁରୁଷର ସେହି ରୂପ ଅଟେ, ଯାହାକି ତାହାର ନାମ ଅଟେ । ସେ ହିଁ ତାହାର ନାମ) ଏହାହିଁ ଲିଙ୍ଗଦର୍ଶନ । ଏହି ଲିଙ୍ଗ ଦର୍ଶନ କିପରି ହୁଏ ?

(ଖ) ତାହାକୁ କୁହାଯାଇଛି -ଅକ୍ଷି ଓ ଆଦିତ୍ୟ - ଏହିସ୍ଥାନ ଭେଦରୁ ଭିନ୍ନ ପରସ୍ପରରେ ଉପସଂହାର ପାଇଁ ଅଯୋଗ୍ୟ ଏହି ଧର୍ମକୁ ଦେଖି ଶ୍ରୁତି ଆଦିତ୍ୟ ପୁରୁଷଗତ ରୂପାଦିର ଅତିଦେଶ ହେତୁ ଏଠାରେ ଅକ୍ଷିପୁରୁଷରେ 'ତସ୍ୟୈତସ୍ୟ' ଇତ୍ୟାଦିରେ ଉପସଂହାର କରେ । ତେଣୁ ଏହି ଦୁଇଟି ଉପନିଷଦ୍ (ରହସ୍ୟ) ବ୍ୟବସ୍ଥିତ ଅଛି ବୋଲି ନିର୍ଣ୍ଣୟ ହୋଇଅଛି ।

## १२ संभृत्यधिकरणम् ॥ सू० २३ ॥

## ସଂଭୃତ୍ୟଧିକରଣମ୍ -୧୨

## संभृतिद्युव्याप्त्यपि चातः ॥ २३ ॥

## (୧) ସଂଭୃତିଦ୍ୟୁବ୍ୟାପ୍ତ୍ୟପି ଚାତଃ ॥ ୩-୩-୨୩ ॥

ସଂଭୃତିଦୁଃବବ୍ୟାପ୍ତି - ସଂଭୃତି, ଦ୍ୟୁବ୍ୟାପ୍ତି ପ୍ରଭୃତି ଗୁଡ଼ିକର ମଧ ଶାଣ୍ଡିଲ୍ୟବିଦ୍ୟା ଇତ୍ୟାଦିରେ ଉପସଂହାର କରିବା ଉଚିତ୍ ନୁହେଁ । ଅତଃଚ = କାରଣ -ତାହା ଆୟତନ ବିଶେଷ ଯୋଗ ଅଟେ ।

(୨) ମୂଳ-(କ) 'ବ୍ରହ୍ମଜ୍ୟେଷ୍ଠା ବୀର୍ଯ୍ୟା ସଂଭୃତାନି ବ୍ରହ୍ମାଗ୍ରେ ଜ୍ୟେଷ୍ଠଂ ଦେବମାତତାନ' ଇତ୍ୟବଂରାଣାନୀୟାନାଂ ଖିଲେଷୁ ବୀର୍ଯ୍ୟସଂଭୃତିଦ୍ୟୁନିବେଶ ପ୍ରଭୃତୟୋ ବ୍ରହ୍ମଣୋ ବିଭୂତୟାଃ ପଠ୍ୟନ୍ତେ । ତେଷାମେବ ଚୋପନିଷଦି ଶାଣ୍ଡିଲ୍ୟବିଦ୍ୟାପ୍ରଭୃତୟୋ ବ୍ରହ୍ମବିଦ୍ୟା ପଠନ୍ତେ । ତାସୁ ବ୍ରହ୍ମବିଦ୍ୟାସୁ ତା ବ୍ରହ୍ମବିଭୁତୟ ଉପସଂହ୍ରିୟେରନ୍ନ ବେତି ବିଚାରଣାୟାଂ ବ୍ରହ୍ମସମ୍ବନ୍ଧାଦୁପସଂହାରପ୍ରାପ୍ତାବେଦଂ ପଠତି । ସଂଭୃତିଦ୍ୟୁବ୍ୟାପ୍ତିପ୍ରଭୃତୟୋ ବିଭୁତୟଃ ଶାଣ୍ଡିଲ୍ୟବିଦାପ୍ରଭୃତିଷୁ ନୋପସଂହର୍ତ୍ତବ୍ୟାଃ । ଅତଏବ ଚାୟତନବିଶେଷଯୋଗାତ୍ ।

(ଖ) ତଥାହି ଶାଣ୍ଡିଲ୍ୟବିଦ୍ୟାୟାଂ ହୃଦୟାୟତନତ୍ୱଂ ବ୍ରହ୍ମଣ ଉକ୍ତମ୍ '-ଏଷ ମ ଆତ୍ମାଙ୍ଗନ୍ତର୍ହୃଦୟେ' (ଛା ୩-୧୪-୩) ଇତି । ତଦ୍ବଦେବ ଦହରବିଦ୍ୟାୟାମପି 'ଦହର' ପୁଣ୍ଡରୀକଂ ବେଶ୍ମ ଦହରୋଽସ୍ମିନ୍ନନ୍ତରାକାଶ' (ଛା ୬-୧-୧) ଇତି । ଉପକାସଲବିଦ୍ୟାୟାଂ ତ୍ୱକ୍ଷ୍ୟାୟତନତ୍ୱମ୍ 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ', (ଛା ୪-୧୫-୧) । ଏବଂ ତତ୍ରତତ୍ର ତତ୍ତଦାଧ୍ୟାତ୍ମିକମାୟତନମେତାସୁ ବିଦ୍ୟାସୁ ପ୍ରତୀୟତେ ।

(୨) ଭାଷାଂତର -(କ) 'ବ୍ରହ୍ମଜ୍ୟେଷ୍ଠ' (ବ୍ରହ୍ମହିଁ ଯାହାର କାରଣ, ସେହି ପରାକ୍ରମବିଶେଷ (ଆକାଶକୁ ଉତ୍ପନ୍ନ କରିବା) ନିର୍ବିଘ୍ନ ସମୃଦ୍ଧ ହୋଇ ସେ ଜ୍ୟେଷ୍ଠ ବ୍ରହ୍ମଦେବତାର ଉତ୍ପତ୍ତି ପୂର୍ବରୁ ସ୍ୱର୍ଗରେ ବ୍ୟାପ୍ତ ହେଲା) ଏହିପରି ରାଣାୟନୀୟସଂପ୍ରଦାୟର ଖିଳକାଣ୍ଡରେ ବୀର୍ଯ୍ୟସମୃଦ୍ଧି, ସ୍ୱର୍ଗବ୍ୟାପ୍ତି ପ୍ରଭୃତି ବ୍ରହ୍ମର ବିଭୂତିଗୁଡ଼ିକ କୁହାଯାଇଅଛି । ସେହି ଉପନିଷଦରେ ଶାଣ୍ଡିଲ୍ୟବିଦ୍ୟା ଇତ୍ୟାଦି ବ୍ରହ୍ମବିଦ୍ୟାଗୁଡ଼ିକ ପଢ଼ାଯାଆନ୍ତି । ସେହି ବ୍ରହ୍ମବିଦ୍ୟାରେ ସେହି ବ୍ରହ୍ମବିଭୂତିଗୁଡ଼ିକ ଉପସଂହାର ହେବା ଉଚିତ୍ କି ନୁହେଁ ? ଏହି ବିଚାର ଉପସ୍ଥିତ ହେଲାପରେ ବ୍ରହ୍ମସମ୍ବନ୍ଧରୁ ଉପସଂହାର ପ୍ରାପ୍ତ ହେଲା ପରେ ଏହା କୁହାଯାଇଅଛି - ସଂଭୃତି, ଦ୍ୟୁବ୍ୟାପ୍ତି ପ୍ରଭୃତି ବିଭୂତି ଗୁଡ଼ିକର ଶାଣ୍ଡଲ୍ୟବିଦ୍ୟାରେ ଉପସଂହାର ହେବା ଉଚିତ୍ ନୁହେଁ । ତେଣୁ ଆୟତନର ବିଶେଷରୁ ହେବା ଉଚିତ୍ ।

(ଖ) ଯେପରି ଶାଣ୍ଡିଲ୍ୟ ବିଦ୍ୟାରେ 'ଏଷମ ଆତ୍ମାନ୍ତର୍ହୃଦୟେ' (ଏହି ମୋର ଆତ୍ମାହୃଦୟର ଭିତରେ ଅଟେ୍ ଏହିପରି ବ୍ରହ୍ମର ହୃଦୟ ଆୟତନ କୁହାଯାଉଅଛି । ସେହିପରି ଦହରବିଦ୍ୟାରେ 'ଦହରଂ ପୁଣ୍ଡରୀକଂ' (ସେହି ବ୍ରହ୍ମପୁରର ଭିତରେ ଯାହା ସୂକ୍ଷ୍ମ କମଳାକାର ସ୍ଥାନ ଅଛି, ସେଠାରେ ଯାହା ସୂକ୍ଷ୍ମ ଆକାଶ ଅଟେ) ଏହିପରି ବ୍ରହ୍ମର ହୃଦୟସ୍ଥାନ କୁହାଯାଇଅଛି । ଉପକୋଶକ ବିଦ୍ୟାରେ 'ଯ ଏଷୋ' (ଯାହା ଏହି ଅକ୍ଷିରେ ପୁରୁଷ ଦେଖାଯାଏ) ଏହିପରି ବ୍ରହ୍ମର ନେତ୍ରସ୍ଥାନ କୁହାଯାଇଅଛି । ଏହିପରି ଏହି ସ୍ଥଳ ମାନଙ୍କରେ ସେହି ସେହି ଆଧାତ୍ମିକ ଆୟରନ ଏହି ବିଦ୍ୟାରେ ପ୍ରତୀତି ହୁଏ ।

(୨) ମୂଳ-(କ) ଆଧିଦୈବିକସ୍ତ୍ୱେତା ବିଭୂତୟଃ ସଭୃତିଦ୍ୟୁବ୍ୟାପ୍ତିପ୍ରଭୃତୟଃ ତାସାଂକୁତ ଏତାସୁ ପ୍ରାପ୍ତିଃ ? ନନ୍ୱେତାସ୍ୱପ୍ୟଧିବୈବିକ୍ୟୋ ବିଭୂତୟଃ ଶ୍ରୂୟନ୍ତେ- 'ଜ୍ୟାୟାନ୍ ଦିବୋ ଜ୍ୟାୟାନେଭ୍ୟୋଲୋକେଭ୍ୟଃ' (ଛା ୩-୧୪-୩), 'ଏଷ ଉଏବ ଭାମନୀରେଷ ହି ସର୍ବେଷୁ ଲୋକେଷୁ ଭାତି' (ଛା ୪-୧୫-୪) 'ଯାବାନ ବା ଅୟମାକାଶସ୍ତା ବା ନେଷୋଽନ୍ତର୍ହୃଦୟ ଆକାଶ ଉଭେ ଅସ୍ମିନ୍ ଦ୍ୟାବା ପୃଥିବୀ ଅନ୍ତରେବ ସମାହିତେ' (ଛା ୮-୧୩) ଇତ୍ୟେବମାଦ୍ୟାଃ ।

(ଖ) ସନ୍ତି ଚାନ୍ୟା ଆୟତନ ବିଶେଷହୀନା ଅପୀହ ବ୍ରହ୍ମବିଦ୍ୟାଃ ଷୋଡ଼ଶକଳାଦ୍ୟାଃ । ସତ୍ୟମ୍, ଏବମେତତ୍, ତଥାପ୍ୟତ୍ର ବିଦ୍ୟତେ ବିଶେଷଃସଂ-ଭୃତ୍ୟାଦ୍ୟନୁପସଂହାରହେତୁଃ । ସମାନଗୁଣାମ୍ନାନେନ ହି ପ୍ରତ୍ୟୁପସ୍ଥାପିତାସୁ ବିପ୍ରକୃଷ୍ଟଦେଶାସ୍ୱପି ବିଦ୍ୟାସୁ ବିପ୍ରକୃଷ୍ଟଦେଶା ଗୁଣା ଉପସଂହ୍ରିୟେରନ୍ନିତି ଯୁକ୍ତମ୍, ସଂଭୃତ୍ୟାଦୟସ୍ତୁ ଶାଣ୍ଡିଲ୍ୟାଦି ବାକ୍ୟଗୋଚରାଶ୍ଚ ମନୋମୟତ୍ୱାଦୟୋ ଗୁଣାଃ ପରସ୍ପରବ୍ୟାବୃତ୍ତସ୍ୱରୂପତ୍ୱାନ୍ନ ପ୍ରଦେଶାନ୍ତର ବର୍ତ୍ତିବିଦ୍ୟାପ୍ରତ୍ୟୁପସ୍ଥାନକ୍ଷମାଃ ।



(ଗ) ନଚ ବ୍ରହ୍ମସମ୍ବନ୍ଧମାତ୍ରେଣ ପ୍ରଦେଶାନ୍ତରବର୍ତ୍ତି ବିଦ୍ୟାପ୍ରତ୍ୟୁପସ୍ଥାପନମିତ୍ୟୁଚ୍ୟେତେ, ବିଦ୍ୟାଭେଦେଽପି ତଦୁପପତ୍ତେଃ । ଏକମପି ହି ବ୍ରହ୍ମ ବିଭୂତିଭେଦୈରନେକଧୋପାସ୍ୟତ ଇତି ସ୍ଥିତିଃ; ପରୋବରୀୟଦାଦିବଦ୍ ଭେଦଦର୍ଶନାତ୍ । ତସ୍ମାଦ୍‌ବୀର୍ଯ୍ୟସଂଭୃତ୍ୟାଦୀନାଂ ଶାଣ୍ଡିଲ୍ୟବିଦ୍ୟାଦିଷ୍ୱନୁପସଂହାର ଇତି ।

**(୩) ଭାଷାଂତର**-(କ) ପରନ୍ତୁ ସଂଭୃତି, ଦ୍ୟୁବ୍ୟାପ୍ତି ପ୍ରଭୃତି ଏହିଭୂତଗୁଡ଼ିକ ଆଧିଦୈବିକୀ । ସେହି ବିଭୂତିଗୁଡ଼ିକର ଏହି ବିଦ୍ୟାରେ ପ୍ରାପ୍ତି କିପରି ହେବ ? ଏହିବିଦ୍ୟାରେ ମଧ୍ୟ ଆଧିଦୈବିକୀ ବିଭୂତିଗୁଡ଼ିକର 'ଜ୍ୟାୟାନ୍ ଦିବୋ' (ଆତ୍ମା ଦ୍ୟୁଲୋଠାରୁ ବଡ଼, ଏହି ଲୋକଠାରୁ ବଡ଼), 'ଏଷ ଉ (ଏହି ଆତ୍ମା ଭାମନୀ ଅଟେ, କାରଣ -ସମଗ୍ର ସଂସାରରେ ଆଦିତ୍ୟ, ଚନ୍ଦ୍ର ଓ ଅଗ୍ନିପ୍ରଭୃତିର ରୂପରେ ଏହା ଦୀପ୍ତ ହୁଏ) 'ଯାବାନ୍ ବା' (ଯେତେବେଶୀ ଏହି ଭୌତିକ ଆକାଶ, ସେତିକି ବଡ଼ ଏହି ହୃଦୟାନ୍ତଗତ ଆକାଶ ଅଟେ) ଦ୍ୟୁଲୋ ଓ ପୃଥିବୀ- ଏହି ଦୁଇଲୋକ ସମ୍ୟଗ୍ ପ୍ରକାରରେ ତାହା ଭିତରେ ରହନ୍ତି ଇତ୍ୟାଦି ଶ୍ରୁତିଗୁଡ଼ିକ ଅଛି ।

(ଖ) ଏହି ପ୍ରକରଣରେ ସ୍ଥାନବିଶେଷରହିତ ହେଲେ ମଧ୍ୟ ଷୋଡ଼ଶକଳାପ୍ରଭୃତି ବ୍ରହ୍ମବିଦ୍ୟା ଅଟନ୍ତି । ଏହା ହିଁ ସତ୍ୟ ଅଟେ । ତଥାପି ଏଠାରେ ଗୋଟିଏ ବୈଶିଷ୍ଟ୍ୟ ଯେ-ସେହି ସଂଭୃତି ଆଦି ଅନୁପସଂହାରରେହେତୁ ଅଟେ । କାରଣ-ସମାନଗୁଣର ଶ୍ରୁତିଦ୍ୱାରା ଉପସ୍ଥାପିତ ହେଉଥିବ, ଦୂରସ୍ଥାନରେ ରହିଥିବା ବିଦ୍ୟାରେ ମଧ୍ୟ ଦୂରସ୍ଥାନସ୍ଥ ଗୁଣର ଉପସଂହାର ହେବା ଉଚିତ । ପରନ୍ତୁ ସଂଭୃତି ଆଦିଗୁଣ ଓ ଶାଣ୍ଡିଲ୍ୟା ଦିବାକ୍ୟବିଷୟକ ମନୋମୟତ୍ୱାଦିଗୁଣ ପରସ୍ପର ବ୍ୟାବୃତ୍ତି (ଭିନ୍ନ) ସ୍ୱରୂପ ଯୁକ୍ତ ହେବାରୁ ଅନ୍ୟସ୍ଥାନରେ ରହିଥିବା ବିଦ୍ୟାର ଉପସ୍ଥାପନ କରିବାରେ ଏହା ସମର୍ଥ ନୁହେଁ । ସେହିପରି କେବଳ ବ୍ରହ୍ମସମ୍ବନ୍ଧରୁ ଅନ୍ୟ ପ୍ରଦେଶବର୍ତ୍ତୀ ବିଦ୍ୟାର ଉପସ୍ଥାପନ ହୁଏ ବୋଲି କହିବା ଉଚିତ୍ ନୁହେଁ । କାରଣ - ବିଦ୍ୟାର ଭେଦ ହେଲାପରେ ବ୍ରହ୍ମର ସମ୍ବନ୍ଧ ଉପପନ୍ନ ହୁଏ । ଗୋଟିଏ ବ୍ରହ୍ମର ମଧ୍ୟ ଭିନ୍ନ ଭିନ୍ନ ବିଭୂତି ଦ୍ୱାରା ଅନେକ ପ୍ରକାରରେ ଉପାସନା ହୁଏ ବୋଲି ଆମ୍ଭର ମତ । କାରଣ - ପରୋବରୀୟସ୍ତ୍ୱଭଳି ଏଠାରେ ଭେଦ ଦେଖାଯାଏ । ତେଣୁ ବୀର୍ଯ୍ୟସଂଭୃତ ପ୍ରଭୃତି ଗୁଣରା ଶାଣ୍ଡିଲ୍ୟ ବିଦ୍ୟାରେ ଉପସଂହାର ହୁଏ ନାହିଁ ।

## १३ पुरूषाद्यधिकरणम् ॥ सू० २४ ॥

## ପୁରୁଷାଦ୍ୟଧିକରଣ -୧୩

## पुरुषविद्यायामिव चेतरेषामनाम्नात् ॥ २४ ॥

**(୧) ପୁରୁଷବିଦ୍ୟାୟାମିବ ଚେତରେଷାମନାମ୍ନାତ ॥ ୩-୩-୨୪ ॥**

ପୁରୁଷବିଦ୍ୟାୟାମିବ = ତାଣ୍ଡିପ୍ରଭୃତି ପୁରୁଷବିଦ୍ୟାରେ ଯେପରି ପୁରୁଷ ଯଜ୍ଞ ରୂପରେ କଳ୍ପନା ହୁଏ, ସେହିପରି ଇତରେଷାସ = ତୈତ୍ତେରୀୟର ପୁରୁଷ ବିଦ୍ୟାରେ,

ଅନାମ୍ନାତ = ପଠିତ ନ ହେଲେ ମଧ୍ୟ ପଣ୍ଡିପ୍ରଭୃତି ଗତ ଯଜ୍ଞାଧର୍ମ ତୈତ୍ତେରୀୟରେ ଉପସଂହାର କରିବା ଉଚିତ୍ ।

(୨) ମୂଳ- (କ) ଅସ୍ତି ତାଣ୍ଡିନାଂ ପୈଙ୍ଗିନାଞ୍ଚ ରହସ୍ୟବ୍ରାହ୍ମଣେ ପୁରୁଷବିଦ୍ୟା । ତତ୍ର ପୁରୁଷୋ ଯଜ୍ଞଃ କଳ୍ପିତଃ । ତଦୀୟମାୟୁସ୍ତ୍ରେଧା ବିଭାଜ୍ୟ ସବନତ୍ରୟଂ କଳ୍ପିତମ୍ । ଅଶିଶିଷାଦୀନି ଚ ଦୀକ୍ଷାଦିଭାବେନ କଳ୍ପିତାନି । ଅନ୍ୟେ ଚ ଧର୍ମାସ୍ତତ୍ରସମଧିଗତା ଅଶୀର୍ମନ୍ତ୍ର-ପ୍ରୟୋଗାଦୟଃ । ତୈତ୍ତେରୀୟକା ଅପି କଂଚିତ୍ ପୁରୁଷଯଜ୍ଞଂକଳ୍ପୟନ୍ତି- 'ତସ୍ୟୈବଂ ବିଦୁଷୋ ଯଜ୍ଞସ୍ୟାତ୍ମା ଯଜମାନଃ ଶ୍ରଦ୍ଧା ପତ୍ନୀ (ନରା-୮୦) ଇତ୍ୟେତେନାନୁବାକେନ ।

(ଖ) ତତ୍ର ସଂଶୟଃ-କିଂ ଯ ଇତରତ୍ରୋକ୍ତାଃ ପୁରୁଷଯଜ୍ଞସ୍ୟ ଧର୍ମାସ୍ତେ ତୈତ୍ତିରୀୟ-କେଷୁପସଂହର୍ତ୍ତବ୍ୟାଃ, କିଂ ବା ନୋପସଂହର୍ତ୍ତବ୍ୟାଂ ଇତି ? ପୁରୁଷଯଜ୍ଞତ୍ୱାବିଶେଷାଦୁପସ-ହାରପ୍ରାପ୍ତାବାଚକ୍ଷୁହେନୋପସଂହର୍ତ୍ତବ୍ୟା ଇତି । କସ୍ମାତ ? ତଦ୍ରୂପପ୍ରତ୍ୟଭିଜ୍ଞାନାଭାବାତ୍ ।

(ଗ) ତଦାହାଚାର୍ଯ୍ୟଃ - ପୁରୁଷବିଦ୍ୟାୟାମିବେତି । ଯଥୈକେଷାଂ ଶାଖିନାଂ ତାଣ୍ଡିନାଂ ପୈଙ୍ଗିନାଂ ଚ ପୁରୁଷବିଦ୍ୟାୟାମାମ୍ନାନଂ ନୈବମିତରେଷାଂ ତୈତ୍ତରୀୟଣାମାମ୍ନାନମସ୍ତି । ତେଷାଂ ହୀତରବିଲକ୍ଷଣମେବ ଯଜ୍ଞସଂପାଦନଂ ଦୃଶ୍ୟତେପତ୍ନୀଯଜମାନବେଦିବେଦବର୍ହିର୍ଯୁ-ପାଜ୍ୟପୁଷ୍ଟବତିଗାଦ୍ୟନୁକ୍ରମଣାତ୍ । ଯଦପି ସବନଂ ସଂପାଦନଂ ତଦପୀତରବିଲକ୍ଷମେବ 'ଯତପ୍ରାତମଦ୍ୟନ୍ଦିଗ୍ନଁସାୟଂ ଚ ତାନି' (ନାରା-୮୦)ଇତି ।

**(୨) ଭାଷାଂତର** -(କ) ତାଣ୍ଡି ଓ ପୈଙ୍ଗୀର ରହସ୍ୟବ୍ରାହ୍ମଣରେ ପୁରୁଷବିଦ୍ୟା ହୁଏ । ସେଠାରେ ପୁରୁଷ ଯଜ୍ଞ ରୂପରେ କଳ୍ପିତ ହୁଏ ତାହାର ଆୟୁ ତିନିପ୍ରକାରରେ ବିଭାଗ କରି ତିନୋଟି ସବନ କଳ୍ପିତ କରାଯାଇଅଛି । ଭୋଜନେଚ୍ଛା ପ୍ରଭୃତି ଦୀକ୍ଷା ଇତ୍ୟାଦି ଭାବଦ୍ୱାରା ମଧ୍ୟ ପରିକଳ୍ପିତ ହୋଇଛି । ଆଶୀର୍ବାଦ ପ୍ରୟୋଗ, ମନ୍ତ୍ରପ୍ରୟୋଗ ଆଦି ଅନ୍ୟଧର୍ମ ସେଠାରେ ସମଧିଗତ ହୋଇଛି । ତୈତ୍ତୀରୀୟକ ମଧ୍ୟ, ତସ୍ୟୈବ ବିଦୁଷୋ' (ତାହା ଏହା ଜାଣିଥିବା ଯଜ୍ଞର ଆତ୍ମା ଯଜମାନ ଅଟେ ଓ ଶ୍ରଦ୍ଧା ପତ୍ନୀ ଅଟେ) ଏହି ଅନୁବାକ୍ୟଦ୍ୱାରା କୌଣସି ପୁରୁଷ ଯଜ୍ଞର କଳ୍ପନା କରନ୍ତି ।

(ଖ) ଏଠାରେ ସଂଶୟ ହୁଏ ଯେ - ଯାହାପୁରୁଷର ଧର୍ମ, ତାହାସବୁ କଣ ଅନ୍ୟୋନ୍ୟ ଶାଖାରେ କୁହାଯାଇଅଛି ? ସେମାନେ ତୈତ୍ତୀରୀୟକରେ ଉପସଂହାର ହେବା ଉଚିତ୍ କି' ନୁହେଁ ? ପୁରୁଷଯଜ୍ଞତ୍ୱର ଅବିଶେଷ ହେବାରୁ ଉପସଂହାର ପ୍ରାପ୍ତ ହେବାରୁ ଆମ୍ଭେ କହୁ-ଉପସଂହାର ହେବା ଉଚିତ । କିପରି ? କାରଣ - ସେହି ରୂପର ପ୍ରତ୍ୟଭିଜ୍ଞାନ ନହେବାରୁ ।

(ଗ) ତେଣୁ ଆଚାର୍ଯ୍ୟ କହନ୍ତି ଯେ - ପୁରୁଷବିଦ୍ୟାୟାମିବ । ଯେପରି ଗୋଟିଏ ସଂପ୍ରଦାୟର ତାଣ୍ଡି ଓ ପୈଙ୍ଗିର ପୁରୁଷବିଦ୍ୟାରେ ଶୁଣାଯାଏ, ସେହିପରି ତୈତ୍ତୀରୀୟକରେ ଶୁଣାଯାଏ, ନାହିଁ । ତାହାର ଯଜ୍ଞ ସଂପାଦନ ଅନ୍ୟର ବିଲକ୍ଷଣ ରୂପରେ ଦେଖ ।



ଯାଏ । କାରଣ - ସେଠାରେ ପତ୍ନୀ, ଯଜମାନ, ବେଦ, ବେଦୀ, ବର୍ହି, ଯୂପ, ଆଦ୍ୟ ପ୍ରଶ୍ନ, ଋତ୍ୱିକ ପ୍ରଭୃତିର ଅନୁକ୍ରମ ହୁଏ । ଯେଉଁ ସବନ ସଂପାଦନ ହୁଏ, ସେ ମଧ୍ୟ 'ଯତ୍ପ୍ରାତଃ' (ଯାହାର ସବୁ ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳରେ ହୁଏ, ସେହି ସବୁ ସବନ ଅଟେ ଏହିପରି ଛାନ୍ଦୋଗ୍ୟଗତ ସବନ ସଂପାଦନରେ ବିଲକ୍ଷଣ ଦେଖାଯାଏ ।

(୩) ମୂଳ-(କ) ଯଦି କିଞ୍ଚିନ ମରଣାବଭୃଥତ୍ୱାଦିସାମ୍ୟଂ ତଦପ୍ୟଳ୍ପୀୟସ୍ତ୍ୱାଦ୍ଭୂୟସା ବୈଲକ୍ଷଣ୍ୟେଭିଭୂୟମାନଂ ନ ପ୍ରତ୍ୟଭିଜ୍ଞପନକ୍ଷମମ୍ । ନ ଚ ତୈତ୍ତିରୀୟକ ପୁରୁଷସ୍ୟ ଯଜ୍ଞତ୍ୱଂ ଶ୍ରୂୟତେ, ବିଦୁଷୋ ଯଜ୍ଞସ୍ୟେତି । ହିନ ଚୈତେ ସମାନାଧିକରଣେ ଷଷ୍ଠୌଯେ ବିଦ୍ୱାନେବ ଯଜ୍ଞସ୍ତସ୍ୟେତି । ନହି ପୁରୁଷସ୍ୟ ମୁଖ୍ୟଂ ଯଜ୍ଞତ୍ୱମସ୍ତି । ବ୍ୟଧିକରଣେ ତ୍ୱେତେ ଷଷ୍ଠୈବିଦୁଷୋ ଯୋ ଯଜ୍ଞସ୍ତସ୍ୟେତି । ଭବିତି ହି ପୁରୁଷସ୍ୟ ମୁଖ୍ୟୋ ଯଜ୍ଞସମ୍ବନ୍ଧଃ । ସତ୍ୟା ଚ ଗତୌ ମୁଖ୍ୟ ଏକାର୍ଥ ଆଶ୍ରୟିତବ୍ୟୋ ନ ଭାକ୍ତଃ ।

(ଖ) 'ଆତ୍ମା ବ ଯଜମାନତ୍ୱଂ ପୁରୁଷସ୍ୟ ନିବ୍ରୁନେ ବୈୟଧିକରଣ୍ୟନୈବାସ୍ୟ ଯଜମାନଃ' ଇତି ଚ ଯଜ୍ଞସମ୍ବନ୍ଧଂ ଦର୍ଶୟତି । ଅପି ଚ ତସୌବଂ ବିଦୁଷ ଇତି ସିଦ୍ଧବଦନୁ-ବଦଶ୍ରୁତୌ ସତ୍ୟାଂପୁରୁଷସ୍ୟ ଯଜ୍ଞଭାବମାତ୍ମାଦୀନାଞ୍ଚ ଯଜମାନାଦିଭାବଂ ପ୍ରତିପିତ୍ମମାନସ୍ୟ ବାକ୍ୟଭେଦଃ ସ୍ୟାତ୍ । ଅପି ଚ ସସଂନ୍ୟାସାମାତ୍ମବିଦ ପୁରସ୍ତାଦୁପଦଶ୍ୟାନନ୍ତରଂ ତସୌବଂବିଦୁଷଃ ଇତ୍ୟାଦ୍ୟନୁକ୍ରମଣଂ ପଶ୍ୟନ୍ତଃ ପୂର୍ବଶେଷ ଏବୈଷ ଅମ୍ନାୟୋ ନ ପୃତନ୍ତ୍ର ଇତି ପ୍ରତୀମଃ ।

(ଗ) ତଥା ଚୌକମେବ ଫଳମୁଭୟୋରପ୍ୟନୁବାକ୍ୟୋରୂପଲଭାମହେ - 'ବ୍ରାହ୍ମଣେ ମହିମାନମାପ୍ନୋତି' (ନାରା-୮୦) ଇତି । ଇତରେଷାଂ ତ୍ୱନନ୍ୟଶେଷା ପୁରୁଷବିଦ୍ୟାମ୍ନାୟଃ ଆୟୂରଭିବୃଦ୍ଧିଫଳେ ହ୍ୟସୌ 'ପ୍ରାହ ଷୋଷାଡ଼ଶଂ ବର୍ଷଶତଂ ଜୀବତି ଯ ଏବଂ ଦେବ' (ଛା ୩-୧୬-୭) ଇତି ସମଭିବ୍ୟାହାରାତ୍ । ତସ୍ମାଚ୍ଛାଖାନ୍ତରାଧୀତାନାଂ ପୁରୁଷବିଦ୍ୟାଧର୍ମାଣାମାଶୀମନ୍ତ୍ରାଦୀନାମପ୍ରାପ୍ତିସ୍ତୈତ୍ତିରୀୟକେ ।

**(୩) ଭାଷାଂତର** - (କ) ସେହି ଦୁଇଟି ବିଦ୍ୟାରେ ଯାହାକିଛି ମରଣାବଭୃଥତ୍ୱାଦି ସାମ୍ୟ ଅଛି, ସେ ସବୁ ବହୁତ ଅଳ୍ପହେବାଦ୍ୱାରା ଅଧିକ ବୈଲକ୍ଷଣ୍ୟରେ ଅଭିଭୂତ ପ୍ରତ୍ୟଭିଜ୍ଞାନ କରାଇବାରେ ଅସମର୍ଥ ହୁଏ । ତୈତ୍ତୀରୀୟଜଗତ ପୁରୁଷ ପାଖରେ ଯଜ୍ଞତ୍ୱ ଶ୍ରୁତ ହୁଏ ନାହିଁ । 'ବିଦୂଷୋ ଯଜ୍ଞସ୍ୟ'- ଏହି ଦୁଇଟି ସାମାନାଧିକରଣ୍ୟ ଷଷ୍ଠୀ ନୁହେଁ । ବିଦ୍ୱାନ ହିଁ ଯାହା ଯଜ୍ଞ ଅଟେ, ତାହାର ସେହିପରି । କାରଣ- ପୁରୁଷ ମୁଖ୍ୟଯଜ୍ଞ ନୁହେଁ । କିନ୍ତୁ ବିଦ୍ୱାନ ଯେଉଁ ଯଜ୍ଞ ଯାହାର, ସେହିପରି ଦୁଇଟି ଷଷ୍ଠୀ ବ୍ୟଧିକରଣରେ ହୁଏ । କାରଣ-ରୁଷଠାରେ ମୁଖ୍ୟଯଜ୍ଞ ସମ୍ବନ୍ଧ ହୁଏ ନାହିଁ । ଏହାର ବ୍ୟବସ୍ଥା ହେଲାପରେ ମୁଖ୍ୟାର୍ଥକୁ ଆଶ୍ରୟଣ କରିବା ଉଚିତ କିନ୍ତୁ ଗୌଣକୁ ନୁହେଁ ।

(ଖ) 'ଆତ୍ମା ଯଜମାନଃ' ଏହିଁ ବାକ୍ୟର ପୁରୁଷଠାରେ ଯଜମାନତ୍ୱ କହି ବୈୟଧିକରଣ୍ୟ ରୂପରେ ସେଠାରେ ଯଜ୍ଞତ୍ୱ ଦେଖାଏ ଏବଂ 'ତସୌବ ପୁରୁଷଃ' (ସେ ଏହାଜାଣିବା ଲୋକ) ଏହିପରି ସିଦ୍ଧ ହେଲାପରି ଅନୁବାଦରୂପଶ୍ରୁତି ହେଲାପରେ ପୁରୁଷଠାରେ ଯଜ୍ଞଭାବ ଓ ଆତ୍ମପ୍ରଭୃତିରେ ଯଜମାନ ପ୍ରଭୃତି ଭାବକୁ ପ୍ରତିପାଦନ କରୁଥିବା ମତରେ ବାକ୍ୟଭେଦ ହେବ । ସନ୍ନ୍ୟାସ ସହିତ ଆତ୍ମବିଦ୍ୟାର ପୂର୍ବରୁ ଉପଦେଶ କରି ପରେ 'ତସୌବଂ ବିଦୁଷଃ' ଇତ୍ୟାଦି ଅନୁକ୍ରମଣକୁ ଦେଖି ଏହିଶ୍ରୁତି ପୂର୍ବଶେଷ ହୁଏ, କିନ୍ତୁ ସ୍ୱତନ୍ତ୍ର ନୁହେଁ ବୋଲି ଆମ୍ଭେ ଜାଣୁ ।

(ଗ) 'ବ୍ରହ୍ମଣୋ ମହିମାନଂ' (ବ୍ରହ୍ମର ମହିମାକୁ ପ୍ରାପ୍ତ ହୁଏ) ଏହିପରି ଦୁଇଟି ଧନୁବାକ୍ୟର ଗୋଟିଏ ଫଳ ଆମ୍ଭେ ଉପଲବ୍ଧି କରୁଁ । ଅନ୍ୟପକ୍ଷେ-ପୈଙ୍ଗୀ ଓ ତାଣ୍ଡିର ପୁରୁଷବିଧ୍ୟା ଶ୍ରୁତି କିନ୍ତୁ କୌଣସି ଅନ୍ୟଶେଷ (ଅଙ୍ଗ) ହୁଏ ନାହିଁ । 'ଏଷ ହ' (ଯାହା ଏହାକୁ ଜାଣେ ସେ ଶହେ ଷୋହଳ ୧୧୬ ବର୍ଷ ବଞ୍ଚିରହେ) ଏହି ପ୍ରକାର ଶ୍ରୁତି ଆୟୁର ଅଭିବୃଦ୍ଧିଫଳ କରେ । କାରଣ- ଏତାଦୃଶ ସମଭିବ୍ୟାହାର ସହୋଚ୍ଚାରଣ ଅଟେ । ତେଣୁ ଅନ୍ୟଶାଖାରେ ଅଧିକ ଆଶୀର୍ବାଦ ମନ୍ତ୍ର ପ୍ରଭୃତି ରୁଷବିଦ୍ୟାର ଧର୍ମର ତୈତ୍ତୀରୀୟରେ ପ୍ରାପ୍ତି ହୁଏ ନାହିଁ ବୋଲି ସିଦ୍ଧ ହୁଏ ।

## १४ वेधाद्याधिकरणम् ॥ सू० २५ ॥

## ବେଧାଦ୍ୟାଧିକରଣ-୧୪

## वेधाद्यर्थभेदात् ॥ २५ ॥

## (୧) ବେଧାଦ୍ୟର୍ଥଭେଦାତ ॥ ୩-୩-୨୫ ॥

ବେଧାଦ୍ୟର୍ଥଭେଦାତ୍ = ଏହି ମନ୍ତ୍ର ଓ କର୍ମର ବିଦ୍ୟାରେ ଉପସଂହାର ହୁଏ ନାହିଁ, କାରଣ -ବେଧ ପ୍ରଭୃତି ଅର୍ଥର ଭେଦ ଅଛି ।

ମୂଳ-(କ) ଅସ୍ତ୍ୟାଥର୍ବଣିକାନାମୁପନିଷଦାରମ୍ଭେ ମନ୍ତ୍ର ସମାମ୍ନାୟ-'ସର୍ବ, ପ୍ରବିଧ୍ୟ ହୃଦୟଂ ପ୍ରବିଧ୍ୟ ଧମନୀ ପ୍ରବୃଜ୍ୟ ଶିରୋଽଭିପ୍ରବୃଜ୍ୟ ତ୍ରିଧା ବିପୃକ୍ତଃ' ଇତ୍ୟାଦି । ତାଣ୍ଡିନାମ ଦେବ ସର୍ବତଃ ପ୍ରସୁବ ଯଜ୍ଞମ୍' ଇତ୍ୟାଦିଃ । ଶାଟ୍ୟାୟନିନାମ୍ ଶ୍ୱେତାଶ୍ୱୋ ହରିତନୀଲୋଽସି ଇତ୍ୟାଦିଃ । କଠାନାଂ ତୈତ୍ତୀରୀୟାଣାଂ ଚ - 'ଶଂ ନୋ ମିତ୍ରଃ ଶଂ ବରୁଣଃ' (ତୈ -୧-୧-୧) ଇତ୍ୟାଦିଃ । ବାଜସନେୟିନାଂ ତୂପନିଷଦାରମ୍ଭେ ପ୍ରବର୍ଗ୍ୟବ୍ରାହ୍ମଣଂ ପଠ୍ୟତେ- 'ଦେବା ହ ବୈ ସତ୍ରଂ ନିଷେଦୁଃ' ଇତ୍ୟାଦିଃ ।

(ଖ) କୈଷୀତକିନାମପ୍ୟଗ୍ନିଷ୍ଟୋମବ୍ରାହ୍ମଣମ୍' ବ୍ରହ୍ମ ବା ଅଗ୍ନିଷ୍ଟୋମୋ ବ୍ରହ୍ମୈବ ତଦହବ୍ରହ୍ମଣୈବ ତେ ବ୍ରହ୍ମୋପୟନ୍ତି ତେଽମୃତତ୍ୱମାପ୍ନୁବନ୍ତି ଯ ଏତଦହରୁପୟନ୍ତି' ଇତି । କିମିମେ ସର୍ବେ ପ୍ରବିଧ୍ୟାଦୟୋ ମନ୍ତ୍ରାଃ ପ୍ରବର୍ଗ୍ୟାଦୀନି ଚ କର୍ମାଣି ବିଦ୍ୟାସୂପସଂହ୍ରିୟେରନ କିଂ ବାନୋପସଂହ୍ରିୟେରନ୍ନିତି ମୀମାଂସାମହେ । କିଂ ତାବନ୍ନ ପ୍ରତିଭାତି ।

(୨) ଭାଷାଂତର -(କ) ଆଥର୍ବଣିକର (ଅଥର୍ବ ବେଦୀର) ଉପନିଷଦ୍‌ଙ୍କର ଆରମ୍ଭରେ 'ସର୍ବଂ ପ୍ରବିଧ୍ୟ' (ହେ ଦେବ ମୋ ଶତ୍ରୁର ସମସ୍ତ ଅଙ୍ଗକୁ ଭିନ୍ନ ଭିନ୍ନ କରି ବିଶେଷତଃ ହୃଦୟକୁ ବିଦୀର୍ଣ୍ଣ କରି ମୁଣ୍ଡକୁ ଛିଣ୍ଡାଇ ମୁଣ୍ଡର ସମସ୍ତ ଶିରାପ୍ରଶିରାକୁ ନାଶ କରି ଏହି ପ୍ରକାର ମୋ ଶତ୍ରୁ ତିନିପ୍ରକାର ଭିନ୍ନ ହୁଏ) ଇତ୍ୟାଦି ମନ୍ତ୍ର-ଶ୍ରୁତି ଅଛି । ତାଣ୍ଡି ଉପନିଷଦର ଆରମ୍ଭରେ ମଧ୍ୟ 'ଦେବଃ ସେବିତଃ' (ହେ ବିଶ୍ୱପ୍ରକାଶକଃ ହେ ଉତ୍ପତ୍ତିର ହେତୁଭୂତ ସୂର୍ଯ୍ୟଦେବ, ତୁମ୍ଭେ ଯଜ୍ଞ ଓ ଯଜ୍ଞପତିଙ୍କୁ ଉତ୍ପନ୍ନ କର) ଇତ୍ୟାଦି ମନ୍ତ୍ରପାଠ ଅଛି । ସେପରି ଶାଟ୍ୟାୟନଉପନିଷଦର ଆରମ୍ଭରେ 'ଶ୍ୱେତାଶ୍ୱଃ' (ଧବଳ ଅଶ୍ୱଯୁକ୍ତ ହେ ଇନ୍ଦ୍ର ତୁମେ ହରିତମଣି ପରି ନୀଳ ହୁଅ) ଇତ୍ୟାଦି ଶ୍ରୁତି ଅଛି । କଠ ଓ ତୈତ୍ତିରୀୟ ଉପନିଷଦର ଆରମ୍ଭରେ ଶଂ ନୋ (ହେ ସୂର୍ଯ୍ୟ ଆମ୍ଭମାନଙ୍କର ପାଇଁ ସୁଖକର ହୁଅ ହେ ବରୁଣ ଆମ୍ଭମାନଙ୍କ ପାଇଁ ସୁଖକର ହୁଅ ଇତ୍ୟାଦି ମନ୍ତ୍ର ଅଛି । ବାଜସନେୟୀ ସମ୍ପ୍ରଦାୟର ଉପନିଷଦ ଆରମ୍ଭରେ 'ଦେବାହ ବୈ' (ପୂର୍ବକାଳରେ ଇନ୍ଦ୍ର ପ୍ରଭୃତି ଦେବତା ସୂତ୍ର ଯାଗ କରିବା ପାଇଁ ବସିଥିଲେ) ଇତ୍ୟାଦି ପ୍ରବର୍ଗ୍ୟ ବ୍ରାହ୍ମଣ ପଢ଼ାଯାଇଅଛି ।

(ଖ) କୌଷୀତକିରେ ମଧ୍ୟ 'ବ୍ରହ୍ମ ବା' (ଅଗ୍ନିଷ୍ଟୋମ ବ୍ରହ୍ମ ଅଟେ । ଯେଉଁ ଦିନରେ ସେ କରାଯାଇଅଛି, ସେଦିନ ସେ ବ୍ରହ୍ମ । ବ୍ରହ୍ମଠାରୁ ଏହି ବ୍ରହ୍ମ ପ୍ରାପ୍ତି ହୁଏ । ଯାହା ସେହି ଦିବସରେ କର୍ମ କରାଯାଇଅଛି, ସେସବୁ ଅମୃତତ୍ୱକୁ ପାଏ ଏହିପ୍ରକାର (ଅଗ୍ନିଷ୍ଟୋମ ବ୍ରାହ୍ମଣ ଅଟେ । ସେମାନେ କଣ ସବୁ ପ୍ରବିଧ୍ୟ ପ୍ରଭୃତି ମନ୍ତ୍ର ଓ ପ୍ରବର୍ଗ୍ୟ ପ୍ରଭୃତି କର୍ମବିଦ୍ୟାରେ ଉପସଂହାର କରିବାକୁ ଚାହାଁନ୍ତି କି ଉପସଂହାର ନ କରିବା ପାଇଁ । ଏହି ପ୍ରକାର ଆମ୍ଭେ ବିଚାର କରୁଁ । ତେବେ ଆମ୍ଭଙ୍କୁ କଣ ପ୍ରତୀତ ହୁଏ ।

(୩) ମୂଳ-(କ) ଉପସଂହାରଃ ଏବୈଷାଂ ବିଦ୍ୟାସ୍ୱିତି କୁତଃ ? ବିଦ୍ୟାପ୍ରଧାନାନାମୁପନିଷଦନ୍ନଗ୍ରନ୍ଥାନାଂ ସମୀପେ ପାଠାତ୍ । ନନ୍ୱେଷାଂ ବିଦ୍ୟାର୍ଥତୟା ବିଧାନଂ ନୋପଲଭାମହେ, ବାଢମ୍,- ଅନୁପଲଭମାନା ଅପିତ୍ୱନୁମାସ୍ୟାମହେ, ସନ୍ନିଧିସାମର୍ଥ୍ୟାତ୍ । ନହି ସନ୍ନିଧେରର୍ଥବତ୍ତ୍ୱେ ସମ୍ଭବତ୍ୟକସ୍ମାଦବସାନାଶ୍ରୟିତୁଂ ଯୁକ୍ତଃ ।

(ଖ) ନନୁ ନୈଷାଂ ମନ୍ତ୍ରାଣାଂ ବିଦ୍ୟାବିଷୟଂ କିଞ୍ଚିତ୍‌ସାମର୍ଥ୍ୟଂ ପଶ୍ୟାମାଃ କଥଞ୍ଚ ପ୍ରବର୍ଗ୍ୟାଦୀନି କର୍ମାଣୀ ନ୍ୟାର୍ଥତ୍ୱେନୈବ ବିନିଯୁକ୍ତାନି ସନ୍ତି ବିଦ୍ୟାର୍ଥତ୍ୱେନାପି ପ୍ରତିପଦ୍ୟେମହୀତି ? ନୈଷ ଦ୍ୱୋଷଃ । ସାମର୍ଥ୍ୟଂ ତାବନ୍‌ମନ୍ତ୍ରାଣାଂ ବିଦ୍ୟାବିଷୟମପି କିଞ୍ଚିଚ୍ଛକ୍ୟଂ କଳ୍ପୟିତୁମ୍, ହୃଦୟାଦିସଙ୍କୀର୍ତ୍ତନାତ୍ ।

(ଗ) ହୃଦୟାଦୀନି ହି ପ୍ରାୟେଣୋପାସନେଷ୍ୱାୟତନାଦିଭାବେନୋପଦିଷ୍ଟାନି ତଦ୍‌ଦ୍ୱାରେଣ ତ ହୃଦୟଂ ପ୍ରବଧ୍ୟେତ୍ୟେବଂଜାତୀୟକାନାଂ ମନ୍ତ୍ରାଣାମୁପପନ୍ନମୁପାସନାଙ୍ଗତ୍ୱମ୍ ଦୃଷ୍ଟଶ୍ଚୋପାସନେଷ୍ୱପି ମନ୍ତ୍ରବିନିଯୋଗଃ 'ଭୂଃ ପ୍ରପଦ୍ୟେଽମୁନାମୁନା' (ଛା ୩-୧୫-୩)

ଇତ୍ୟେବମାଦିଃ । ତଥା ପ୍ରବର୍ଗ୍ୟାଦୀନାଂ କର୍ମଣାମନ୍ୟତ୍ରାପି ବିନିଯୁକ୍ତାନାଂ ସତାମବିରୁଦ୍ଧୋ ବିଦ୍ୟାସୁ ବିନିଯୋଗୋ ବାଜପେୟ ଇବ ବୃହସ୍ପତିସବସ୍ୟେତି ।

(୩) ଭାଷାଂତର- ପୂର୍ବପକ୍ଷ- (କ) ସେହି ବିଦ୍ୟାରେ ଉପସଂହାର ହୁଏ । କିପରି ? ତାହାର ବିଦ୍ୟାର ପ୍ରଧାନ ଉପନିଷଦ ଗ୍ରନ୍ଥର ସମୀପରେ ପାଠ ହୁଏ । ପରନ୍ତୁ ଏହି ବିଦ୍ୟାର ପ୍ରୟୋଜନ ରୂପରେ ବିଧାନ କରିବା ଆମ୍ଭଙ୍କୁ ଉପଲବ୍ଧି ହୁଏ ନାହିଁ । ହଁ, ଏହା ଠିକ୍ ଅଟେ । ଯଦ୍ୟପି ତାହାର ବିଧାନ ଉପଲବ୍ଧି ନ ହେବ, ତଥାପି ଆମ୍ଭେ ସନ୍ନିଧିର ସାମର୍ଥ୍ୟକୁ ବିଧାନକୁ ଅନୁମାନ କରିବୁ । କାରଣ ସନ୍ନିଧିରେ ପ୍ରୟୋଜନବତ୍ୱ ସମ୍ଭବ ହେଲାପରେ ବିନା କାରଣରେ ତାହାର ଅବଲମ୍ବନ ନ କରିବା ଠିକ୍ ନୁହେଁ ।

(ଖ) ପରନ୍ତୁ ଏହି ମନ୍ତ୍ରରେ ବିଦ୍ୟାବିଷୟକ କୌଣସି ସାମର୍ଥ୍ୟ ଆମ୍ଭେ ଦେଖୁନାହୁଁ । ତେଣୁ ପ୍ରବର୍ଗ୍ୟାଦିକର୍ମ ଯାହା ଅନ୍ୟର ପ୍ରୟୋଜନ ପାଇଁ ଉଦ୍ଦିଷ୍ଟ, ସେଗୁଡ଼ିକ ବିଦ୍ୟା ରୂପ ପ୍ରୟୋଜନପାଇଁ ଅଛନ୍ତି ବୋଲି ଆମ୍ଭେ କିପରି ଜାଣିବୁ ? ଏହା କିନ୍ତୁ ଦୋଷ ନୁହେଁ । ସେହି ମନ୍ତ୍ରରେ ବିଧ୍ୟା ବିଷୟକ କିଛି ସାମର୍ଥ୍ୟର କଳ୍ପନା କରାଯାଏ, କାରଣ- ସେଠାରେ ହୃଦୟର ସଂକୀର୍ତ୍ତନ୍ ହୋଇଛି ।

(ଗ) ଉପାସନାରେ ପ୍ରାୟ ହୃଦୟର ସ୍ଥାନ ପ୍ରଭୃତି ଭାବରେ ଉପଦେଶ କରାଯାଏ ଏବଂ ତଦ୍ୱାରା 'ହୃଦୟଂ ପ୍ରବିଧ ଏହିପରି ମନ୍ତ୍ରର ଉପାସନା ଅଙ୍ଗତ୍ୱ ଉପପନ୍ନ ହୁଏ । ଉପାସନାରେ 'ଭୁ ପ୍ରପଦ୍ୟେ' (ସେହି ପୁତ୍ର ସହିତ ମୁଁ ଭୂଲୋକକୁ ପାଉଛି) ଇତ୍ୟାଦି ମନ୍ତ୍ରର ବିନିଯୋଗ ଦେଖାଯାଏ । ସର୍ବପରି ଅନ୍ୟଠାରେ ବିନିଯୁକ୍ତ ହୋଇ ପ୍ରବର୍ଗ୍ୟାଦିବିଦ୍ୟାରେ ବିନିଯୋଗ ବାଜପେୟରେ ବୃହସ୍ପତି ସର୍ବପରି ଅବିରୁଦ୍ଧ ହୁଏ ।

(୪) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ - ନୈଷମୁପସଂହାରୋ ବିଦ୍ୟାସ୍ୱିତି । କସ୍ମାତ୍ ? ବେଦାଦ୍ୟର୍ଥଭେଦାତ୍ । ହୃଦୟଂ ପ୍ରବିଧ୍ୟେତେବଂଜାତୀୟକାନାଂ ହି ମନ୍ତ୍ରଣାଂ ଯେଽର୍ଥା ହୃଦୟବେଧାଦୟୋ ଭିନ୍ନା ଅନଭିସମ୍ବନ୍ଧାସ୍ତ ଉପନିଷଦୁଦିତାଭିର୍ବିଦ୍ୟାଭିଃ, ନ ତେଷାଂ ତାଭିଃ ସଂପନ୍ତୁ ସାମର୍ଥ୍ୟମନ୍ତି । ନନୁ ହୃଦୟସ୍ୟୋପାସନେଷ୍ୱପ୍ୟୁପଯୋଗାଉଦ୍‌ଦ୍ୱାରକ୍ଷ ଉପାସକାସମ୍ବନ୍ଧ ଉପନ୍ୟସ୍ତଃ, ନେତ୍ୟୁଚ୍ୟତେ, ହୃଦୟମାତ୍ରସଙ୍କୀର୍ତ୍ତନସ୍ୟ ହ୍ୟେବମୁପଯୋଗଃ କଥଂଚିଦୁତ୍ପ୍ରେକ୍ଷ୍ୟତ, ନ ଚ ହୃଦୟମାତ୍ରମତ୍ର ମନ୍ତ୍ରାର୍ଥଃ ।

(ଖ) ହୃଦୟଂ ପ୍ରବିଧ ଧମନୀଃ ପ୍ରବୃଜ୍ୟେତ୍ୟେବଂଜୀତୀୟକୋ ହିନ ସକଲୋ ମନ୍ତ୍ରାର୍ଥୋ ବିଦ୍ୟାଭିରଭିସମ୍ବନ୍ଧ୍ୟତେ ଆଭିଚାରିକବିଷୟୋ ହ୍ୟେଷ୍ୟୋଽର୍ଥଃ । ତସ୍ମାଦାଭିଚାରିକେଣ କର୍ମଣା ସର୍ବଂ ପ୍ରବିଧ୍ୟେତ୍ୟେତସ୍ୟ ମନ୍ତ୍ରସ୍ୟାଭିସମ୍ବନ୍ଧଃ । ତଥା 'ଦେବ ସବିତଃ ପ୍ରସୂବ ଯଜ୍ଞମ୍' ଇତ୍ୟସ୍ୟ ଯଜ୍ଞ ପ୍ରସୁବଲିଙ୍ଗତ୍ୱାଦ୍ୟଞ୍ଜେନ । କର୍ମଣା ସମ୍ବନ୍ଧଃ, ତଦ୍‌ବିଶେଷସମ୍ବନ୍ଧସ୍ତ ପ୍ରମାଣାନ୍ତରାଦନୁସର୍ତ୍ତବ୍ୟଃ ।

(ଗ) ଏବମନ୍ୟେଷାମପି ମନ୍ତ୍ରାଣାଂ କେଷାଂଚିଲ୍ଲିଙ୍ଗେନ, କେଷାଞ୍ଚିଦ୍ ବଚନେନ କେଷାଞ୍ଚିତ୍ପ୍ରମାଣାନ୍ତରେଣେତ୍ୟେବମର୍ଥାନ୍ତରେଷୁ ବିନିଯୁକ୍ତାନାଂ ରହସ୍ୟପିଠିତାନାମପି ସତାଂ ନ ସନ୍ନିଧିମାତ୍ରେଣ ବିଦ୍ୟାଶେଷତ୍ୱୋପପତ୍ତିଃ । ଦୁର୍ବଲୋ ହି ସଂନିଧିଃ ଶ୍ରୁତ୍ୟାଦିଭ୍ୟଃ ଇତ୍ୟୁକ୍ତଂ ପ୍ରଥମେ ତନ୍ତ୍ରେ-ଶ୍ରୁତିଲିଙ୍ଗବାକ୍ୟପ୍ରକରଣସ୍ଥାନସମାଖ୍ୟାନାଂ ସମବାୟେ ପାରଦୌର୍ବଲ୍ୟ-ମର୍ଥବିପ୍ରକର୍ଷାତ (ଜୈ ସୂ ୩-୩-୧୩) ଇତ୍ୟତ୍ର ।

**(୪)** ଭାଷାଂତର-ସିଦ୍ଧାନ୍ତ (କ) ଏହା ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ ଏହିମନ୍ତ୍ର ଓ କର୍ମବିଦ୍ୟାରେ ଉପସଂହାର ହୁଏ ନାହିଁ । କିପରି ? ବେଧାଦି ଅର୍ଥର ଭେଦ ହେବାକୁ । 'ହୃଦୟ ପ୍ରବିଧ' ଏହିପ୍ରକାର ମନ୍ତ୍ରର ଯାହା ଅର୍ଥ ହୁଏ, ସେମାନେ ଉପନିଷଦରେ ସେହି ବିଦ୍ୟା ଭିନ୍ନ ସମ୍ବନ୍ଧ ରହିତ ହୁଅନ୍ତି । ତେଣୁ ସେହି ମନ୍ତ୍ରଗୁଡ଼ିକରେ ସେହି ବିଦ୍ୟା ସହିତ ସମ୍ବନ୍ଧ ହେବାକୁ ସାମର୍ଥ୍ୟ ନ ରହେ । ପରନ୍ତୁ ଏଠାରେ କେବଳ ହୃଦୟ ଆଥର୍ବଣମନ୍ତ୍ରର ଅର୍ଥ ନୁହେଁ । 'ହୃଦୟଂ ପ୍ରବିଧ୍ୟ ଧର୍ମନୀଃ ପ୍ରବୃଜ୍ୟ' ଏହିପରି ସମ୍ପୂର୍ଣ୍ଣ ମନ୍ତ୍ରାର୍ଥ ବିଦ୍ୟାର ସହିତ ଅଭିସମ୍ବନ୍ଧ ହୁଏ ନାହିଁ, କାରଣ- ଏହା ଅଭିଚାରବିଷୟକ ଅର୍ଥ ଅଟେ । ତେଣୁ 'ସର୍ବଂ ପ୍ରବିଧ' (ଶତ୍ରୁର ସବୁ ଅଙ୍ଗକୁ ବିଦୀର୍ଣ୍ଣ କରି) ଏହି ମନ୍ତ୍ରର ଆଭିଚାରିକ କର୍ମ ସହିତ ସମ୍ବନ୍ଧ ଅଛି । ତେଣୁ 'ଦେବଃ ସବିତଃ' ପ୍ରସୂବ ଯଜ୍ଞମ - ଏହି ମନ୍ତ୍ରର ଯଜ୍ଞପ୍ରସବଲିଙ୍ଗଦ୍ୱାରା ଯଜ୍ଞକର୍ମରେ ସହ ସମ୍ବନ୍ଧ ରହେ । ତାହାର ବିଶେଷ ସମ୍ବନ୍ଧ କିନ୍ତୁ ଅନ୍ୟ ପ୍ରମାଣ ଦ୍ୱାରା ଅନୁସନ୍ଧାନ କରିବା ଉଚିତ ।

(ଗ) ଏହିପରି ଅନ୍ୟ କେତେକ ମନ୍ତ୍ରର ଲିଙ୍ଗରୁ, କେତେକ ବଚନରୁ, କେତେକ ଅନ୍ୟପ୍ରମାଣ (ପ୍ରକରଣ)ରୁ ଏହିପରି ଅନ୍ୟ ଅର୍ଥରେ ବିନିଯୋଗ ହୁଏ ଏବଂ ରହସ୍ୟ (ଉପନିଷଦ) ରେ ପଢ଼ାଯାଉଥିବା ସନ୍ନିଧିମାତ୍ର ଦ୍ୱାରା ସେମାନଙ୍କର ବିଦ୍ୟାଶେଷତ୍ୱ ଉପପନ୍ନ ହୁଏନାହିଁ, କାରଣ-'ଶ୍ରୁତିଲିଙ୍ଗବାକ୍ୟଂ' (ଶ୍ରୁତି, ଲିଙ୍ଗ, ବାକ୍ୟ,ପ୍ରକରଣ, ସ୍ଥାନ, ସମାଖ୍ୟାର ସମବାୟ ଗୋଟିଏ ବିଷୟରେ ଯଥାସମ୍ଭବ ଏକରୁ ଅଧିକର ସମାବେଶ ପ୍ରାପ୍ତ ହେଲାପରେ ପୂର୍ବପୂର୍ବର ଅପେକ୍ଷା ଉପରେ ଦୁର୍ବଳ ହୁଏ, ଅର୍ଥାତ୍ ବାଧିତ ହୁଏ । କାରଣ ଅର୍ଥ, ଅଙ୍ଗାଙ୍ଗି ନିର୍ଣ୍ଣୟ ରୂପ ବିନିଯୋଗକୁ ବୋଧ କରାଇବାରେ ବ୍ୟବହିତ ହେବାରୁ ବିଳମ୍ବିତ ହୁଏ, ଏହି ସୂତ୍ରରେଶ୍ରୁତିପ୍ରଭୃତିରୁ ସନ୍ନିଧି ଦୁର୍ବଳ ହୁଏ । ଏହପରି ପୂର୍ବମୀମାଂସା ଗ୍ରନ୍ଥରେ କୁହାଯାଇଅଛି ।

(୩) ମୂଳ - (କ) ତଥା କର୍ମଣାମପି ପ୍ରବର୍ଗ୍ୟାଦୀନାମନ୍ୟତ୍ର ବିନିଯୁକ୍ତାନାଞ୍ଚ ବିଦ୍ୟାଶେଷତ୍ୱୋପପତ୍ତିଃ ନ ହ୍ୟେଷାଂ ବିଦ୍ୟାଭିଃ ସହୈକାର୍ଥ୍ୟଂ କିଞ୍ଚିଦସ୍ତି । ବାଜପେୟେ ତୁ ବୃହସ୍ପତିସବସ୍ୟ ସ୍ପଷ୍ଟଂ ବିନିଯୋଗାନ୍ତରମ୍ - ବାଜପେୟେନେଷ୍ଟ୍ୱା ବୃହସ୍ପତିସବେନ ଯଜେତ୍' ଇତି । ଅପି ଚୈକୋଽୟଂ ପ୍ରବର୍ଗ୍ୟଃ ସକୃଦୁତ୍ପନ୍ନୋ ବଳୀୟସା ପ୍ରମାଣେନାନ୍ୟତ୍ର ବିନିଯୁକ୍ତୋ ନ ଦୁର୍ବଳେନ ପ୍ରମାଣେନାନ୍ୟତ୍ରାପି ବିନିଯୋଗମର୍ହତି ।

(ଖ) ଅଗୃହମାଣବିଶେଷତ୍ୱେ ବି ପ୍ରମାଣୟୋରେତଦେବଂ ସ୍ୟାନ୍ନ ତୁ ବଳବଦ-ବଳବତୋଃ ପ୍ରମାଣୟୋରଗୃହ୍ୟମାଣ ବିଶେଷତା ସମ୍ଭବତି, ବଳବଦବଳବତ୍ୱବିଶେଷା-ଦେବ । ତସ୍ମାଦେବଂଜାତୀୟକାନାଂ ମନ୍ତ୍ରଣାଂ କର୍ମଣାଂ ବା ନ ସନ୍ନିଧିମାତ୍ରେଣ ବିଦ୍ୟା-ଶେଷତ୍ୱମାଶଙ୍କ୍ୟ ତବ୍ୟମ୍ । ଅରଣ୍ୟାନୁବଚନାଦି ଧର୍ମସାମାନ୍ୟାତ୍ତୁ ସନ୍ନିଧିପାଠ ଇତି ସନ୍ତୋଷ୍ଟବ୍ୟମ୍ ।

**(୫) ଭାଷାଂତର-**(କ) ଏହି ପ୍ରକାର ଅନ୍ୟତ୍ର ବିନିମୁକ୍ତପ୍ରବର୍ଗାଦି କର୍ମ ମଧ୍ୟ ବିଦ୍ୟାର ଶେଷ (ଅଙ୍ଗ) ହୁଏ ନାହିଁ । କାରଣ- ଏମାନଙ୍କର ବିଦ୍ୟା ସହିତ କିଛି ହେଲେ ଏକାର୍ଥତା ନାହିଁ ଏବଂ 'ବାଜପେୟେନ' (ବାଜେପେୟ ଯାଗକରି ବୃହସ୍ପତି ସବନାମକ ଯାଗକରେ) ଏହିପରି ବାଜପେୟରେ ବୃହସ୍ପତିସବର ଅନ୍ୟ ବିନିଯୋଗ ସ୍ପଷ୍ଟ ଅଟେ । ଏହା ଗୋଟିଏ ପ୍ରବର୍ଗ୍ୟ କର୍ମ ଥରେ ମାତ୍ର ଉତ୍ପନ୍ନ ହୋଇ ପ୍ରମାଣ ଦ୍ୱାରା ବିନିଯୁକ୍ତ ହେବ ଓ ପୁଣି ତାହାର ଦୁର୍ବଳ ପ୍ରମାଣ ଦ୍ୱାରା ଅନ୍ୟତ୍ର ବିନିଯୋଗ ହେବ ବୋଲି କହିବା ଠିକ୍ ନୁହେଁ କାରଣ-ଦୁଇଟି ପ୍ରମାଣରେ ବିଶେଷତା ଗୃହୀତ ନହେଲେ ଏହାହିଁ ହେବ ।

(ଖ) ପରନ୍ତୁ ବଳବାନ୍ ଓ ଦୁର୍ବଳ - ଏହି ଦୁଇଟି ପ୍ରମାଣରେ ଅଗୃହ୍ୟମାଣ ବିଶେଷତା ନାହିଁ କାରଣ-ବଳବତ୍ୱ ଓ ଦୁର୍ବଳବତ୍ୱ ହିଁ ବିଶେଷ ଅଟେ । ଏହିପ୍ରକାରେ ମନ୍ତ୍ରରେ ଅଥବା କର୍ମଗୁଡ଼ିକରେ ସନ୍ନିଧିପାଠମାତ୍ରଦ୍ୱାରା ବିଦ୍ୟାଶେଷତ୍ୱର ଆଶଙ୍କା କରିବା ଉଚିତ୍ । ଅରଣ୍ୟରେ ତାହାର ଅନୁବଚନାଦିପରି ଧର୍ମ ହେଲେ କେବଳ ତାହା ସନ୍ନିଧିରେ ପାଠ ହୁଏ- ଏହାହିଁ ସନ୍ତୋଷ କରିବା ଉଚିତ ।

## १५ हीन्यधिकरणम ॥ सू० २६ ॥

## ହୀନ୍ୟଧିକରଣ-୧୬

## हानौ तुपायनशब्दशेषत्वात्कुशाछन्दस्तुत्यु-
## पगानवत्तदुक्तम् ॥ २६ ॥

## (୧) ହାନୌ ତୂପାୟନଶ୍ୱଶେଷତ୍ୱାତକୁଶା-
## ଛନ୍ଦସ୍ତୁତ୍ୟୁପଗାନବତ୍ତଦୁକ୍ତମ ॥ ୩-୩୩-୨୬ ॥

ହାନୌ - ଯେଉଁ ଶ୍ରୁତିରେ ବ୍ରହ୍ମଜ୍ଞାନୀମାନଙ୍କର ଶେଷ ସମୟରେ ତୁ - କେବଳ ପାପର ହାନି ଶୁଣାଯାଏ, ସେଠାରେ ପୁତ୍ରାଦିଦ୍ୱାରା ଦାୟ ପ୍ରଭୃତି ଉପାୟନର ମଧ୍ୟ ଉପାଦାନ ବୋଲି କହିବା ଉଚିତ । ଉପାୟନ ଶବ୍ଦ ବିଶେଷାତ = କାରଣ - ଉପାୟନ ଶବ୍ଦ ହାନିଶବ୍ଦର ଅଙ୍ଗରୂପ ଠାରୁ କୁହାଯାଏ । କୁଶାଛନ୍ଦସ୍ତୁତ୍ୟୁପଗାନବତ୍ = ଏହି ପୂର୍ବ ମୀମାଂସାରେ ପ୍ରତିପାଦିତ କୁଶା, ଛନ୍ଦ ଓ ସ୍ତୁତି ଉପାଗାନ ପରି ଜାଣିବା ଉଚିତ୍ ।



ତଦୁକ୍ତମ୍ = କାରଣ-ଅପି ତୁ ବାକ୍ୟଶେଷତ୍ୱାତ୍ ଏହି ଜୈମିନୀ ସୂତ୍ରରେ ଏହା କୁହାଯାଇଅଛି ଅଥବା ହାନି ଶବ୍ଦ ବିଧୂନନ ଅର୍ଥରେ ଜାଣିବା ଉଚିତ । କାରଣ- ଉପାୟନ ଶବ୍ଦର ସମୀପ ଓ ପଠିତ ବିଧୂନନଶବ୍ଦ ଉପାୟନଶବ୍ଦର ଅଙ୍ଗ ଅଟେ । ତେଣୁ ଏହାର ପୂର୍ବପରି କଣାଦି ଦୃଷ୍ଟାନ୍ତ ଦିଆଯାଇଅଛି ।

(୨) ମୂଳ-(କ) ଅସ୍ତି ତାଣ୍ଡିନଂ ଶ୍ରୁତିଃ 'ଅଶ୍ୱ ଇବ ରୋମାଣି ବିଧୂୟ ପାଠଂ ଚନ୍ଦ୍ର ଇବ ରାହୋର୍ମୁଖାତ୍ ପ୍ରମୁଚ୍ୟ ଧୂତ୍ୱା ଶରୀରମକୃତଂ କୃତାତ୍ମା ବ୍ରହ୍ମଲୋକମଭିସମ୍ଭବାମି' (ଛା ୮-୧୩-୧) ଇତି । ତଥାଽଥର୍ବଣିକାନାମ୍ 'ବିଦ୍ୱାନ୍ନାମରୁପାଦ୍‌ବିମୁକ୍ତଃ ପରାତ୍‌ପରଂ ପୁରୁଷମୁପୈତି ଦିବ୍ୟମ୍' (ମୁଣ୍ଡ ୩-୨-୮) ଇତି । ତଥା ଶାଟ୍ୟାୟନିନଃ ପଠନ୍ତି 'ତସ୍ୟ ପୁତ୍ରା ଦାୟମୁପୟନ୍ତି, ସୁହୃଦଃ ସାଧୁକୃତ୍ୟାଂ ଦ୍ୱିଷନ୍ତଃ ପାପକୃତ୍ୟାସ' ଇତି । ତଥୈବ କୌଷୀତକିନଃ 'ତତ୍‌ସ୍ୱକୃତଦୃଷ୍କୃତୋ' ବିଧୂନୁତେ' ତସ୍ୟ ପ୍ରିୟାଜ୍ଞାତୟଃ ସୁକୃତମୁପର୍ଯ୍ୟନ୍ତ୍ୟ-ପ୍ରିୟା ଦୁଷ୍କୃତମ୍' (କୌ ୧-୪) ଇତି ।

(ଖ) ତଦିହ କ୍ୱଚିତ୍ ସୁକୃତଦୃଷ୍କୃତୟୋଃ ହାନଂ ଶ୍ରୂୟତେ, କ୍ୱଚିତ୍ତୟୋରେବ ବିଭାଗେନ 'ପ୍ରିୟୈରପ୍ରିୟୈଷ୍ୱୋପାୟନମ୍' କ୍ୱଚିତ୍ତୁଭୟମପି ହାନମୁପାୟନଞ୍ଚ । ତଦ୍ୟତ୍ରୋ-ଭୟଂ ଶ୍ରୂୟତେ, ତତ୍ର ତାବନ୍ନ କିଞ୍ଚିଦ୍‌ବକ୍ତବ୍ୟମସ୍ତି । ଯତ୍ରାପ୍ୟୁପାୟନମେବ ଶ୍ରୂୟତେ ନ ହାନଂ ତତ୍ରାପ୍ୟର୍ଥାଦେବ ପାନଂ ସଂନିପତତି । ଅନ୍ୟୈରାପ୍ତୀୟଯୋଃ ସୁକୃତଦୃଷ୍କୃତ ଯୋରୁପେୟମାନୟୋରାବଶ୍ୟକ ତ୍ୱଦ୍ଧନସ୍ୟ ।

(ଗ) ଯତ୍ର ତୁ ହାନମେବ ଶ୍ରୂୟତେ ନୋପାୟନଂ ତତ୍ରୋପାୟନଂ ସନ୍ନିପତେଦ ବା ନ ବେତ ବିଚିକିତ୍ସାୟାମଶ୍ରବଣାଦସନ୍ନିପାତଃ । ବିଦ୍ୟାନ୍ତରଗୋଚର ତ୍ୱାଚ ଶାଖାନ୍ତରୀୟସ୍ୟ ଶ୍ରବଣସ୍ୟ । ଅପିଃ ଚାତ୍ମକର୍ତ୍ତୃକଂ ସୁକୃତଦୃଷ୍କୃତୟୋର୍ହାନମ୍; ତୟୋରସତ୍ୟାବଶ୍ୟକଭାବେ କଥଂ ହାନେନୋପୟନମାକ୍ଷିପ୍ୟେତ ? ତସ୍ମାଦ୍‌ସନ୍ନିପାତୋ ହାନାବୁପାୟନସ୍ୟେତି ।

(୨) ଭାଷାଂତର - (କ) 'ଅଶ୍ୱ ଇବ ରୋମାଣି' (ଯେଉଁ ପ୍ରକାର ଅଶ୍ୱ ନିଜର ଲୋମକୁ ଝାଡ଼ି ଲୋମ କମ୍ପନ ଦ୍ୱାରା ଶ୍ରମ ଓ ଧୂଳି ପ୍ରଭୃତିକୁ ଦୂର କରି ନିର୍ମଳ ହୁଏ ସେହିପରି ହାର୍ଦ ବ୍ରହ୍ମର ଜ୍ଞାନରୁ ଧର୍ମାଧର୍ମ ରୂପକ ପାପକୁ ଛାଡ଼ି ତଥା ରାହୁର ମୁଖରୁ ବାହାରୁ ଥିବା ଚନ୍ଦ୍ରମା ପରି ଅନର୍ଥକ ଆଶ୍ରୟଭୂତ ଏହି ଶରୀରକୁ ପରିତ୍ୟାଗ କରି କୃତ୍ୟକୃତ୍ୟ ହୋଇ ବ୍ରହ୍ମଲୋକକୁ ପ୍ରାପ୍ତ ହେଉଛି ? ଏହିପରି ତାଣ୍ଡିର ଶ୍ରୁତି ଅଛି । ତଥା ବିଦ୍ୱାନ' (ସେହିପରି ବିଦ୍ୱାନ ରୂପରୁ ମୁକ୍ତ ହୋଇ ପରାତ୍‌ପର ଦିବ୍ୟ ପୁରୁଷକୁ ପ୍ରାପ୍ତ ହୁଏ ।) ପୁତ୍ର (ଶିଷ୍ୟ) ଧନକୁ ପାଆନ୍ତି । ସୁହୃଦ, ପୁଣ୍ୟକର୍ମ ଓ ଶତ୍ରୁ ପାପକର୍ମକୁ ପ୍ରାପ୍ତ ହୁଅନ୍ତି । ଏହିପରି ଶାଟ୍ୟୟନିଙ୍କର ଶ୍ରୁତି । 'ତତ୍ ସୁକୃତଦୁଷ୍କୃତେ' 'ଶରୀରର ପରିତ୍ୟାଗ ସମୟରେ ବିଦ୍ୱାନ

ସେହି ବିଦ୍ୟା ବଳରେ ସୁକୃତ ଓ ଦୁଷ୍କୃତକୁ ତ୍ୟାଗ କରେ । ତାହାର ପ୍ରିୟ ବନ୍ଧୁ ସୁକୃତକୁ ଓ ଦ୍ୱେଷୀ ଦୁଷ୍କୃତକୁ ପ୍ରାପ୍ତ ହୁଅନ୍ତି । ଏହିପରି କୌଷିତକିର ଶ୍ରୁତି ।

(ଖ) ଏହି ଉଦାହୃତବାକ୍ୟରେ କେଉଁଠାରେ ସୁକୃତ ଓ ଦୁଷ୍କୃତର ତ୍ୟାଗ ମଧ୍ୟ ଶୁଣାଯାଏ । କେଉଁଠାରେସେହି ଦୁଇଟିର ବିଭାଗରୁ ପ୍ରିୟ ଓ ଅପ୍ରିୟ ପୁରୁଷ ଦ୍ୱାରା ଗ୍ରହଣ ହେବା ଶୁଣାଯାଏ ଏବଂ କେଉଁଠାରେ ହାନ ଓ ଉପାୟନ ଦୁଇଟିର ଶ୍ରବଣ ହୁଏ । ଯେଉଁଠାରେ ଦୁଇଟିର ଶ୍ରୁତି, ସେଠାରେ ଆମ୍ଭର କିଛି କହିବାର ନାହିଁ । ପରନ୍ତୁ ଯେଉଁଠାରେ ଗ୍ରହଣର ଶ୍ରୁତି ଅଛି, କିନ୍ତୁ ତ୍ୟାଗ ନାହିଁ ସେଠାରେ କିନ୍ତୁ ଅର୍ଥଦ୍ୱାରା ତ୍ୟାଗପ୍ରାପ୍ତ ହୁଏ । କାରଣ - ଅନ୍ୟଦ୍ୱାରା ନିଜର ସୁକୃତ ଓ ଦୁଷ୍କୃତ ଗ୍ରହଣ କଲାପରେ , ତାହାର ତ୍ୟାଗ ଆବଶ୍ୟକ ହୁଏ ।

(ଗ) ପରନ୍ତୁ କେବଳ ତ୍ୟାଗ ହିଁ ଯେଉଁଠି ଶ୍ରବଣ ହୁଏ, ଉପାୟନର ଗ୍ରହଣ ନୁହେଁ । ସେଠାରେ ଗ୍ରହଣ ପ୍ରାପ୍ତ ହୁଏ କି ନାହିଁ ? ଏହା ସନ୍ଦେହ ହେବାରୁ ଗ୍ରହଣ ଶ୍ରବଣ ନ ହେଲେ ଗ୍ରହଣ ପ୍ରାପ୍ତ ହୁଏ ନାହିଁ । ଅନ୍ୟ ଶାଖାରେ ଗ୍ରହଣର ଶ୍ରବଣ ଅନ୍ୟ ବିଦ୍ୟାବିଷୟକ ଅଟେ । ସୁକୃତ ଓ ଦୃଷ୍କୃତର ତ୍ୟାଗ ଓ ଉପାୟନ ପରକୀର୍ତ୍ତୃକ । ଆତ୍ମକର୍ତ୍ତୃକ ଅଟେ ତେଣୁ ତ୍ୟାଗ ଓ ଗ୍ରହଣ ଏହି ଦୁଇଟି ଆବଶ୍ୟକ ଭାବ ନହେଲେ ଯେକୌଣସି ପ୍ରକାର ହାନରେ ଉପାନୟକୁ ଆକ୍ଷେପ କରାଯାଏ । ତେଣୁ ହାନରେ ଉପାୟନର ପ୍ରାନ୍ତି ହୁଏ ନାହିଁ ।

(୩) ମୂଳ-(କ) ଅସ୍ୟାଂ ପ୍ରାପ୍ତୌ ପଠତି-ହାନୌ ତ୍ୱିତି । ହାନୌ ତ୍ୱେତସ୍ୟାଂ କେବଳାୟାମପି ଶ୍ରୂୟମାଣାୟାମୁପାୟନଂ ସନ୍ନିପତିତୁମର୍ହତି । ତଚ୍ଛେଷତ୍ୱାତ୍ ହାନଶବ୍ଦଶେଷୋ ହ୍ୟୁପାୟନଶବ୍ଦଃ ସମଧିଗତଃ କୌଷୀତକିରହସ୍ୟେ । ତସ୍ମାଦନ୍ୟତ୍ର କେବଳାହାନଶବ୍ଦ ଶ୍ରବଣେଽପ୍ୟୁପାୟନାନୁବୃତ୍ତିଃ ।

(ଖ) ଯଦୁକ୍ତମଶ୍ରବଣାଦ୍ ବିଦ୍ୟାନ୍ତରଗୋଚରତ୍ୱାଦନାବଶ୍ୟକତାଚାସଂନିପାତ ଇତି, ତଦ୍ୟତ୍ୟେତ ଭବେଦେଷା ବ୍ୟାବସ୍ଥୋକ୍ତିର୍ଯ୍ୟଦ୍ୟନୁଷ୍ଠେୟଂ କିଞ୍ଚିଦନ୍ୟତ୍ରଶ୍ରୁତମନ୍ୟତ୍ର ନିନୀଷ୍ୟେତ ନ ତ୍ୱିହ ହାନମୁପାୟନଂ ବାନୁଷ୍ଠେୟତ୍ୱେନ ସଙ୍କୀର୍ତ୍ୟତେ ବିଦ୍ୟାସ୍ତୁତ୍ୟର୍ଥଂ ତ୍ୱନୟୋଃ ସଙ୍ଗୀର୍ତ୍ତନମ୍ - ଇତ୍ଥଂ ମହାଭଗା ବିଦ୍ୟା ଯତ୍ସାମର୍ଥ୍ୟାଦସୀ ବିଦୁଷଃ ସୁକୁତଦୃଷ୍କୃତେ ସଂସାରକାରଣଭୂତେ ବିଧୂୟେତେ ତେ ଚାସ୍ୟ ସୁହୃଦଦ୍ୱିଷସ୍ସୁ ନିବିଶେତେ ଇତି । ସ୍ତୁତାର୍ଥ୍ୟଂ ଚାସ୍ମିନ୍ ସଙ୍କୀର୍ତ୍ତନେ 'ହାନାନନ୍ତରଭାବିତ୍ୱେନୋପାୟନସ୍ୟ କ୍ୱଚିଚ୍ଛ୍ରୁତ୍ୱାଦନ୍ୟତ୍ରାପି ହାନଶ୍ରୁତାବୁପାୟନୁବୃତ୍ତିଃ ମନ୍ୟତେ ସ୍ତୁତିପ୍ରକର୍ଷଲାଭୟ ।

**(୩) ଭାଷାତର-** ସିଦ୍ଧାନ୍ତ - (କ) ଏହିପରି ଶଙ୍କା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ-'ହାନୌ ତିତ୍ୱ'ଏହି ଶ୍ରୁତିରେ କେବଳ ହାନର ଶ୍ରୂୟମାଣ ହେଲାପରେ ଉପାୟନର ସନ୍ନିପାତ



ହେବା ଉଚିତ୍ । କାରଣ -ଉପାୟନ ହାନର ଶେଷ (ଅଙ୍ଗ) ଅଟେ । କୌଷତକିରହସ୍ୟରେ ଉପାୟନଶବ୍ଦ ହାନଶବ୍ଦର ଶ୍ରୁତି ହେଲାପରେ ଉପାୟନର ଅନୁବୃତ୍ତି ହୁଏ ।

(ଖ) ଶ୍ରୁତି ନ ହେଲେ ବିଦ୍ୟାନ୍ତରର ବିଷୟ ହେଲେ, ଅନାବଶ୍ୟକ ହେଲେ ଉପାୟନର ସନ୍ନିପାତ (ପ୍ରାନ୍ତ) ହୁଏ ନାହିଁ ବୋଲି ଯାହା କୁହାଯାଇଛି, ସେହି ବିଷୟରେ ଆମ୍ଭେ କହୁଁ-ଯଦି ଗୋଟିଏ ସ୍ଥାନରେ ଶୁଣାଯାଉଥିବା ଅନୁଷ୍ଠେୟକୁ ଅନ୍ୟ ଶାଖାରେ ନିଆ ଯିବାକୁ ଇଚ୍ଛା ହୁଏ, ତଥାପି ଏହି ଉକ୍ତବ୍ୟବସ୍ଥା ହୋଇପାରେ । ପରନ୍ତୁ ଏଠାରେ ହାନ (ତ୍ୟାଗ) ଅଥବା ଉପାୟନ (ଗ୍ରହଣ) ଅନୁଷ୍ଠେୟରୂପର୍ କୁହାଯାଏ ନାହିଁ । କିନ୍ତୁ ଏହି ଦୁଇଟି ବିଦ୍ୟାର ସ୍ତୁତିପାଇଁ ସଂକୀର୍ତ୍ତନ ହୁଏ -ଏହିପରି ମହାଭାଗା ବିଦ୍ୟା ଅଛି, ଯାହା ର ସାମର୍ଥ୍ୟରୁ ଏହି ବିଦ୍ୱାନର ସଂସାର କାରଣଭୂତ ସୁକୃତ ଓ ଦୁଷ୍କୃତ ନିବୃତ୍ତ ହୁଅନ୍ତି । ସେମାନେ ଏହାର ସୁହୃଦ ଓ ଦ୍ୱେଷୀ ପାଖରେ ପ୍ରବେଶ କରନ୍ତି । ସ୍ତୁତ୍ୟର୍ଥକ ଏହି ସଂକୀର୍ତ୍ତନରେ ହେବାର ପରେ ଭାବିରୂପରୁ ଉପାୟନର କେଉଁଠି ହେଲେ ଶୁଣାଗଲେ ଅନ୍ୟଶାଖାରେ ହାନର ଶୁଣାହେଲା ପରେ ସ୍ତୁତିପ୍ରକର୍ଷର ଲାଭ ପାଇଁ ଉପାୟନର ଅନୁବୃତ୍ତି ସ୍ୱୀକାର କରାଯାଇଅଛି ।

(୪) ମୂଳ- (କ) ପ୍ରସିଦ୍ଧା ଚାର୍ଥବାଦାନ୍ତରାପେକ୍ଷାଽର୍ଥବାଦାନ୍ତରପ୍ରବୃତ୍ତିଃ -'ଏକଂ ବିଶୋ ବା ଇତୋଽସାବାଦିତ୍ୟଃ' (ଛା ୨-୧୦-୫) ଇତ୍ୟେବମାଦିଷୁ । କଥଂ ହ୍ୟଦୌକବିଂଶତାଦିତ୍ୟସ୍ୟାଭିଧୀୟେତାନପେକ୍ଷ୍ୟ ମାଣେଽର୍ଥବାଦାନ୍ତରେ 'ଦ୍ୱାଦଶଃ ମସାଃ ପଞ୍ଚର୍ତବସ୍ତ୍ରୟ ଇମେ ଲୋକା ଅସାବାଦିତ୍ୟ ଏକବିଂଶଃ' ଇତ୍ୟେତସ୍ମିନ (ତଥା 'ତ୍ରିଷ୍ଟୁଭୋ ଭବତଃ ସେନ୍ଦି ୟତ୍ୱାୟ' ଇତ୍ୟେବମାଦିବାଦେଷୁ 'ଇନ୍ଦ୍ରିୟଂ ବୈତ୍ରିଷ୍ଟୁପ୍' ଇତ୍ୟେମାଦ୍ୟର୍ଥବାଦାନ୍ତରାପେକ୍ଷା ଦୃଶ୍ୟତେ ।

(ଖ) ବିଦ୍ୟାସ୍ତୁତ୍ୟର୍ଥତ୍ୱାଚାସ୍ୟୋପାୟନବାଦସ୍ୟ କଥମନ୍ୟଦୀୟେ ସୁକୃତଦୃଷ୍କୃତେ ଅନ୍ୟୈରୂପେୟେତେ ଇତି ନାତୀବାଭିନିବେଷ୍ଟବ୍ୟମ୍ । ଉପାୟନଶବ୍ଦଶେଷତ୍ୱାଦିତି ତୁ ଶବ୍ଦଶବ୍ଦଂ ସମୁଚାୟନ ସ୍ତୁତ୍ୟର୍ଥାମେବ ହାନାବୁପାୟନାନୁବୃତ୍ତିଂ ବ୍ରୟାତ୍ । ତସ୍ମାଦଗୁଣୋପସଂହାରବିଚାରପ୍ରସଙ୍ଗେନ ସ୍ତୁତ୍ୟୁପସଂହାରପ୍ରଦର୍ଶନାର୍ଥମିଦଂ ସୂତ୍ରମ୍ ।

**(୪) ଭାଷାଂନ୍ତର-** (କ) ଗୋଟିଏ ଅର୍ଥବାଦ ଅପେକ୍ଷା ଅନ୍ୟ ଅର୍ଥବାଦର ପ୍ରବୃତ୍ତି 'ଏବ ବଂଶୋ' (ଏହି ଲୋକରେ ସେହି ଆଦିତ୍ୟ ନିଶ୍ଚିତ ଭାବେ ଏକବିଂଶତି ଅଟେ) ଇତ୍ୟାଦିରେ ପ୍ରସିଦ୍ଧ ଅଛି । କାରଣ -'ଦ୍ୱାଦଶମାସାଃ' (ଦ୍ୱାଦଶମାସ, ପାଞ୍ଚଋତୁ, ତିନିଲୋକ ଓ ଗୋଟିଏ ଆଦିତ୍ୟ ମିଶି ଏକବିଂଶତି) ଏହି ଅନ୍ୟ ଅର୍ଥବାଦକୁ ଅପେକ୍ଷା ନକରି ଏଠାରେ ଆଦିତ୍ୟର ଏକୋଇଶଟି ଦୌଣସି ପ୍ରକାରେ କୁହାଯାଇଛି । ଏହିପରି ସେନ୍ଦ୍ରିୟତ୍ୱି ପାଇଁ ଦୁଇଟି ତ୍ରିଷ୍ଟୁଭ ଅଛନ୍ତି । ଏହିସବୁ ବାଦିରେ ମଧ ସେନ୍ଦ୍ରିୟହିଁ ତ୍ରଷ୍ଟଭ୍ ଅଟନ୍ତି । ଇତ୍ୟାଦି ଅନ୍ୟ (ସ୍ଥାନାନ୍ତରିତ ସ୍ଥିତ) ଅର୍ଥବାଦର ଅପେକ୍ଷା ଦେଖାଯାଏ ।

(ଖ) ବିଦ୍ୟା ସ୍ତୁତ୍ୟର୍ଥକ ହେଲେ ଏହି ଉପାୟନ ବାଦରେ ଅନ୍ୟ କେତେକ ସୁକୃତ ଓ ଦୃଷ୍କୃତ ଅନ୍ୟଦ୍ୱାରା କିପରି ପ୍ରାପ୍ତ ହୁଅନ୍ତି ? ଏହିପ୍ରକାରି ଅତ୍ୟନ୍ତ ଅଭିନିବେଶ କରିବା ଉଚିତ୍, କାରଣ - ଉପାୟଶବ୍ଦଶେଷତ୍ୱାତ୍ (ଉପାୟନ ଶବ୍ଦ ହାନର ଅଙ୍ଗ ଅଟେ) ଏହି ସୂତ୍ରରେ 'ଶବ୍ଦ' ପଦର ଉଚ୍ଚାରଣ କରି ସୂତ୍ରକାର ସୂଚିତ କରନ୍ତି ଯେ - ହାନରେ ଉପାୟନର ଅନୁବୃତ୍ତି ସ୍ତୁତି ପାଇଁ ହୁଏ । ଯଦି ଗୁଣର ଉପସଂହାର ବିବକ୍ଷା ହୁଏ, ତେବେ ଉପାୟବ ଅର୍ଥର ହାନିରେ ଅନୁବୃତ୍ତି କୁହାଯାଏ । ତେଣୁ ଗୁଣୋପସଂହାର ବିଚାର ପ୍ରସଙ୍ଗରେ ସ୍ତୁତିପାଇଁ ଓ ଉପସଂହାରର ପ୍ରଦର୍ଶନ ପାଇଁ ଏହି ସୂତ୍ର ଅଛି ।

(୫) ମୂଳ - (କ) କୁଶାଚ୍ଛନ୍ଦସ୍ତୁତ୍ୟୁପଗାନବଦିତ୍ୟୁପମୋପାଦାନମ୍ । ତଦ୍ୟଥା ଭାଲ୍ଲବିନାମ୍ - 'କୁଶା ବାନସ୍ପତ୍ୟାଃ ସ୍ଥତାମାପାତ୍' ଇତ୍ୟେତସ୍ମିନ୍ନିଗମେ କୁଶାନାମ ବିଶେଷେଣ ବନସ୍ପତିଯୋନିତ୍ୱେନ ଶ୍ରବଣେ ଶାଟ୍ୟାୟନିନାମୌଦୁମ୍ବରାଃ କୁଶାଃ ଇତି ବିଶେଷବଚନାଦୌଦୁମ୍ବର୍ଯଃ କୁଶା ଆଶ୍ରୀୟନ୍ତେ ।

(ଖ) ଯଥା ଚ କ୍ୱଚିଦ୍ଦେବାସୁରଚ୍ଛନ୍ଦସାମବିଶେଷେଣ ପୌବାପର୍ଯ୍ୟପ୍ରସଙ୍ଗେ 'ଦେବଚ୍ଛନ୍ଦାଂସି ପୂର୍ବଣି' ଇତି ପୈଙ୍ଗ୍ୟାମ୍ନାନାତ୍ ପ୍ରତୀୟତେ । ଯଥା ଚ ଷୋଡ଼ଶିସ୍ତୋତ୍ରେ କେଶାଞ୍ଚିତ୍ କାଳାବିଶେଷପ୍ରୋପ୍ତୌ 'ସମାୟାଧ୍ୟୁଷିତେ ସୂର୍ଯ୍ୟେ' ଇତ୍ୟାର୍ଚ୍ଚଶ୍ରୁତେ ! କାଳବିଶେଷପ୍ରତିପତ୍ତିଃ । ଯର୍ଥୈବ ଚାବିଶେଷେଣୋପଗାନଂ କେଚିତ୍ ସମାମନନ୍ତି ବିଶେଷେଣ ଭାଲ୍ଲବିନଃ ।

(ଗ) ଯଥୈତେଷ୍ୱୁ କୁଶାଦିଷ୍ୱୁ ଶ୍ରୁତ୍ୟନ୍ତରଗତବିଶୋଷାନ୍ୱୟଃ, ଏବଂ ହନାବପ୍ୟୁ-ପାୟନାନ୍ୱୟ ଇତ୍ୟର୍ଥଃ । ଶ୍ରୁତ୍ୟନ୍ତରକୃତ ହି ବିଶେଷଂ ଶ୍ରୁତ୍ୟନ୍ତରେଽନଭ୍ୟୁପଗଚ୍ଛତଃ ସର୍ବତ୍ରୈବ ବିକଳ୍ପଃ ସ୍ୟାତ । ସ ଚାନ୍ୟାର୍ଯ୍ୟ ସତ୍ୟାଂ ଗତୌ । ତଦୁକ୍ତଂ ଦ୍ୱାଦଶ-ଲକ୍ଷଣ୍ୟାମ୍ - 'ଅପିତୁ ବାକ୍ୟଶେଷତ୍ୱାଦିତରପର୍ଯ୍ୟୁଦାସଃ ସ୍ୟାତ୍ ପ୍ରତିଷେଧେ ବିକଳ୍ପଃ ସ୍ୟାତ୍' ଇତି ।

**(୫) ଭାଷାଂତର** - (କ) 'କୁଶାଚ୍ଛନ୍ଦସ୍ତୁତ୍ୟୁପଗାନ୍‌ବତ୍' (କୁଶା, ଛନ୍ଦ, ସ୍ତୁତି, ଉପଗାନପରି - ଏହି ଉପମାର ଗ୍ରହଣ ହୁଏ) ଯେପରି 'କୁଶା ବନସ୍ପତ୍ୟାଃ' (ହେ କୁଶ । ତୁମେ ବନସ୍ପତିଦ୍ୱାରା ଉତ୍ପନ୍ନ ହୁଅ । ତୁମେ ଆମ୍ଭଙ୍କୁ ରକ୍ଷା କର) ଏହି ଭାଲ୍ଲବିର ଶ୍ରୁତିରେ କୁଶରେ ସମାନରୂପ ହେତୁ ବନସ୍ପତି ଦ୍ୱାରା ଉତ୍ପତ୍ତି ରୂପରେ ଶ୍ରବଣ ହେତୁ ଶାଟ୍ୟାୟନିର 'ଔଦମ୍ବରାଃ' (ଉଦମ୍ବରଠାରୁ ଉତ୍ପନ୍ନ ହୋଇଛି କୁଶା) ଏହିପରି ବିଶେଷ ବଚନର ଉତ୍ପନ୍ନ ହୋଇଥିବା କୁଶାର ଆଶ୍ରୟଣ୍ କରାଯାଏ ।



(ଖ) ଯେପରି ଦେବଛନ୍ଦ ଓ ଅସୁରଛନ୍ଦର ସମାନ ରୂପରେ ପୂର୍ବାପର ପ୍ରସଙ୍ଗ 'ଦେବଛନ୍ଦାଂସି (ଦେବଛନ୍ଦ ହେଉଛି ପୂର୍ବ) ଏହିପରି ପୈଙ୍ଗୀଶ୍ରୁତିରୁ ପ୍ରତୀତ ହୁଏ, ସେପରି ଷୋଡ଼ଶୀ ସୂତ୍ରରେ କେତେକଙ୍କୁ କାଳବିଶେଷ ପ୍ରାପ୍ତ ନହେଲେ ମଧ୍ୟ 'ସମୟାଧ୍ୟୁଷି' (ଅର୍ଦ୍ଧ ସୂର୍ଯ୍ୟର ଅସ୍ତହେବା ସମୟରେ ଷୋଡ଼ଶୀ ସ୍ତୋତ୍ର କରିବା ଉଚିତ) ଏହି ରଚାର ଅଧ୍ୟୟନ କରୁଥିବା ଶ୍ରୁତିରେ କାଳବିଶେଷର ପ୍ରତୀତ ହୁଏ । ଯେପରି କୌଣସି ଉପଗାନ ଅବିଶେଷ ରୂପଦ୍ୱାରା କହନ୍ତି ଏବଂ ଭାଲ୍ଲବୀ ବିଶେଷ ରୂପରୁ ଉପଭାନ କହନ୍ତି ।

(ଗ) ଯେପରି କୁଶାଦିରେ ଅନ୍ୟଶ୍ରୁତି ରହି ବିଶେଷର ଅନ୍ୱୟ କରେ, ସେପରି ମଧ୍ୟ ହାନରେ ଉପାୟନର ଅନ୍ୱୟ ହୁଏ ବୋଲି ଅର୍ଥ ହୁଏ । ଗୋଟିଏ ଶ୍ରୁତି କୃତ ବିଶେଷର ସ୍ୱୀକାର ଅନ୍ୟ ଶ୍ରୁତିରେ ନଥିବା ହେତୁ ଏହା ସବୁଠାରେ ବିକଳ୍ପ ହେବ । ଗତିବ୍ୟବସ୍ଥା ହେଲାପରେ ସେହି ବିକଳ୍ପ କରିବା ଉଚିତ୍ ନୁହେଁ । ଦ୍ୱାଦଶ ଅଧ୍ୟାୟ ଯୁକ୍ତ ପୂର୍ବମୀମାଂସା ଗ୍ରନ୍ଥରେ 'ଅପି ତୁ' (ବାକ୍ୟଶେଷ ହେତୁ ପର୍ଯ୍ୟୁଦାସ ହୁଏ ଓ ପ୍ରତିଷେଧ ହେତୁ ବିକଳ୍ପ ହୁଏ) ବୋଲି କୁହାଯାଇଛି ।

(୬) ମୂଳ- (କ) ଅଥବା - ଏତାସ୍ୱେବ ବିଧ୍ୱନନଶ୍ରୁତିଷେତେନ ସ୍ୱତ୍ରେଣୈତଚ୍ଚିନ୍ତୟିତବ୍ୟମ୍ - କିମନେନ ବିଧ୍ୱନନବଚନେନ ସୁକୃତଦୃଷ୍କୃତୟୋର୍ହାନ-ମଭିଦୀୟତେ, କିମ୍ବାଽର୍ଥାନ୍ତରମିତି ? ତତ୍ର ଚୈବଂ ପ୍ରାପୟିତବ୍ୟମ୍, ନ ହାନଂ ବିଧୂନନମଭିଧୀୟତେ- 'ଧୁଞ୍- କମ୍ପନେ' ଇତି ସ୍ମରଣାତ୍, ଦୋଧୁୟନ୍ତେ ଧ୍ୱଜାଗ୍ରଣୀ'ତ ଚ ବାୟୁନା ଚାଲ୍ୟମାନେଷ୍ଟୁ ଧ୍ୱଜାଗ୍ରେଷୁ ପ୍ରୟୋଗଦର୍ଶନାତ୍, ତସ୍ମାଚ୍ଚାଳନଂ ବିଧୂନନମଭିଧୀୟତେ ।

(ଖ) ଚାଳନନ୍ତୁ ସୁକୃତ ଓ ଦୁଷ୍କତୟୋଃ କିଞ୍ଚିତ୍‌କାଳଂ ଫଳପ୍ରତିବନ୍ଧନାଦିତ୍ୟେବଂ ପ୍ରାପୟ ପ୍ରତିବକ୍ତବ୍ୟମ୍ । ହାନାବେବୈଷ ବିଧୁନନନଶବ୍ଦେ ବର୍ତ୍ତିତୁମର୍ହତି, ଉପାୟନ-ଶବ୍ଦଶ୍ରେଷତ୍ୱାତ୍ । ନ ହି ପରପରିଗ୍ରହଭୂତୟୋଃସୁକୃତଦୃଷ୍କୃତୟୋରପ୍ରହୀଣୟୋଃ ପରୈରୁପାଯମଂ ସମ୍ଭବତି । ଯଦ୍ୟପୀଦଂ ପରକୀୟୟୋଃ ସୁକୃତଦୃଷ୍କୃତୟୋଃ ପରେଅରୂପାଯମ ନାଞ୍ଜସଂ ସମ୍ଭାବ୍ୟତେ, ତଥାପି ତତ୍‌ସଂକୀର୍ତ୍ତନାଭାବତ୍ତଦାନୁଗୁଣ୍ୟେନ ହାନମେବ ବିଧୁନନଂ ନାମେତି ନିର୍ଦ୍ଦେଷ୍ଟୁଂ ଶକ୍ୟତେ ।

(ଗ) କ୍ୱଚିଦପି ଚେଦଂ ବିଧୁନନସନ୍ନିଧାବୁପାୟନଂ ଶ୍ରୂୟମାଣଂ କୁଶାଚ୍ଛନ୍ଦସ୍ତୁତ୍ୟୁ-ପଗାନବଦ୍‌ବିଧୂନନଶ୍ରୁତ୍ୟା ସର୍ବତ୍ରାପେକ୍ଷମାଣଂ ସାର୍ବତ୍ରିକଂ ନିର୍ଣ୍ଣୟକାରଣଂ ସମ୍ପଦ୍ୟତେ । ନ ଚ ଚାଳନଂ ଧ୍ୱଜାଗ୍ରବତ୍ ସୁକୃତଦୃଷ୍କୃତୟୋମୁଖ୍ୟଂ ସମ୍ଭବତି, ଅଦ୍ରବ୍ୟତ୍ୱାତ୍ । ଅଶ୍ୱଷ୍ଟ-ରୋମାଣି ବିଧୂନ୍‌ବାନସ୍ତ୍ୟଜନ୍ ରଜଃ ସହୈବ ତେନ ରୋମାଣ୍ୟପି ଜୀର୍ଣ୍ଣାନି ଶାତୟତି ଅଶ୍ୱଇବ ରୋମାଣି ବିଧୂୟ ପାପମ୍' (ଛା ୮-୧୩-୧) ଇତିଚ ବ୍ରାହ୍ମଣମ୍ । ଅନେକାର୍ଥତା ଭ୍ୟୁପେଗମାତ ଧାତୁନାଂ ନ ସ୍ମରଣବିରୋଧଃ । ତଦୃକ୍ତମିତି ବ୍ୟାଖ୍ୟାତମ୍ ।

(୬) ଭାଷାଂତର - (କ) ଅଥବା ଏହି ବିଧୂନନ ଶ୍ରୁତିର ବିଷୟରେ ଏହି ସୂତ୍ରରେ ବିଚାର କରାଯିବା ଉଚିତ୍ ଯେ- କଣ ଏହି ବିଧୂନନବଚନଦ୍ୱାରା ସୁକୃତ ଓ ଦୃଷ୍କୃତର ହାନବିଧାନ କରାଯାଇ ଅଛି କି ଅନ୍ୟ ଅର୍ଥରେ ? ଏହିପରି ସଂଶୟ ହେବାରୁ ବିଧୂନନ ଶବ୍ଦ ହାନର ଅଭିଧାନ କରେ ନାହିଁ ବୋଲି ହେବା ଉଚିତ୍; କାରଣ -'ଧୂଞ୍ କମ୍ପନେ' (ଧୂଞ୍ଜ ଧାତୁର ଅର୍ଥ କମ୍ପନ) ଏହି ପାଣିନିର ସ୍ମୃତି ଏବଂ 'ଧୂଜୟନ୍ତେ ଧ୍ୱଜାଗ୍ରାଣି' (ଧ୍ୱଜାର ଅଗ୍ରଭାବ ବାରମ୍ବାର ହଲୁଛି) ଏହି ପଥ ବାୟୁଦ୍ୱାରା ଚଳାୟମାନ ଧ୍ୱଜାର ଅଗ୍ର ଭାଗରେ ବିଧୂନନନଶବ୍ଦର ପ୍ରୟୋଗ କୁହାଯାଇଛି ।

(ଖ) ସୁକୃତ ଓ ଦୃଷ୍କୃତର ଚାଳନ କେତେ ସମୟ ପର୍ଯ୍ୟନ୍ତ ଫଳର ପ୍ରତିବନ୍ଧ ଦ୍ୱାରା ଅଭିହିତ ହୁଏ । ଏହିପରି ପୂର୍ବପକ୍ଷ ପ୍ରାପ୍ତକରି ନିରାକରଣ କରିବା ଉଚିତ୍ । ଏହି ବିଧୂନନ ଶବ୍ଦ ହାରରେ ରହିବାକୁ ସକ୍ଷମ ହୁଏ । କାରଣ - ଉପାୟନ ଶବ୍ଦର ଶେଷ ଅଟେ । ଯେହେତୁ ଅନ୍ୟ ଦ୍ୱାରା ପରିଗୃହୀତ ହେଉଥିବା ଅତ୍ୟନ୍ତ (ପରିହାରହୀନ) ସୁକୃତ ଦୁଷ୍କୃତର ଅନ୍ୟଦ୍ୱାରା ଉପାୟନ ମୁଖ୍ୟ ରୂପରେ ସମ୍ଭବ ହୁଏ ନାହିଁ, ତଥାପି ତାହାର ସଙ୍କୀର୍ତ୍ତନ ଦ୍ୱାରା ତାହାର ଅନୁକୂଳ ହାନ ହିଁ ବିଧୂନନ ଅଟେ । ବୋଲି ନିର୍ଣ୍ଣୟ କରାଯାଇଛି ।

(ଗ) ବିଧୂନନର ସନ୍ନିଧିରେ କେଉଁଠି ଶ୍ରୁୟମାଣ ଉପାୟନ କୁଶା ଛନ୍ଦ, ସ୍ତୁତି ଓ ଉପାଗାନର ପରି ବିଧୂନ ଶ୍ରୁତିରୁ ସର୍ବତ୍ର ଅପେକ୍ଷମାଣ ହୋଇ ସବୁଠାରେ ନିର୍ଣ୍ଣୟର କାରଣ ସଂପନ୍ନ ହୁଏ । ସୁକୃତ ଦୃଷ୍କୃତର ଧ୍ୱଜାର ଅଗ୍ରଭାଗ ପରି ମୁଖ୍ୟ ଚାଳନ ହୁଏ ନାହିଁ । - କାରଣ ସେମାନେ ଅଦ୍ରବ୍ୟ ଅଟନ୍ତି । ରୋମର ବିଧୂନନ କରୁଥିବା ଅଶ୍ୱ ଦଉଡ଼ିକୁ ପରିତ୍ୟାଗ କରି ତାହା ସହିତ ଜୀର୍ଣ୍ଣଲୋମ ଗୁଡ଼ିକ ଝାଡ଼େ - ଏହି ବିଷୟରେ 'ଅଶ୍ୱଇବ' (ଯେପରି ଅଶ୍ୱ ଲୋମଗୁଡ଼ିକୁ ବିଧୂନନ କରେ, ସେହିପରି ବିଦ୍ୱାନ ପାପକୁ ବିଧୂନନ କରେ) ଏହା ବ୍ରାହ୍ମଣ ଅଟେ । ଧାତୁଗୁଡ଼ିକର ଅନେକ ଅର୍ଥ ସ୍ୱୀକାର କରିବାରେ ଉକ୍ତ ସ୍ମୃତି ସହ ବିରୋଧ ହୁଏ ନାହିଁ । 'ତଦୁକ୍ତମ୍' (ସେ କୁହାଗଲା) ଏହାର ବ୍ୟାଖ୍ୟାନ କରାଯାଇଅଛି ।

## १६ सांपरायाधिकरणम् । ॥ सू० २७-२८ ॥

## ସାଂପରାୟାଧିକରଣ - ୧୬

### संपराये तर्तव्याभावात्था ह्यन्ये ॥ २७ ॥

### ୧- ସଂପରାୟେ ତର୍ତବ୍ୟାଭାବାତଥା ହ୍ୟନ୍ୟେ ॥୩-୪-୨୭॥

ସାଂପରାୟେ- ଦେହତ୍ୟାଗ ସମୟରେ ବିଦ୍ୟାର ସାମର୍ଥ୍ୟରୁ ସୁକୃତ ତ ଦୁଷ୍କୃତର ହାନି ହୁଏ । ତର୍ତ୍ତବ୍ୟାଭାତ୍ - କାରଣ - ବିଦ୍ୟାନକୁ କେତେକ ମଧ୍ୟରେ ପ୍ରାପିବ୍ୟ ହୁଏ ନାହିଁ । ହି -କାରଣ - ଅନ୍ୟେ-ଅନସଂପ୍ରଦାୟ 'ଅଶ୍ୱଇବ ରୋମାଣି ବିଧୂୟ ପାପମ୍' । ତଥା - ଏହାହିଁ କହନ୍ତି ।



(୨) ମୂଳ- (କ) ଦେବଯାନେନ ପଥା ପର୍ଯ୍ୟଙ୍କସ୍ଥଂ ବ୍ରହ୍ମାଭିପ୍ରସ୍ଥିତସ୍ୟ ବ୍ୟଧ୍ୱନି ସୁକୃତଦୃଷ୍କୃତୟୋର୍ବିଯୋଗଂ କୌଷିତକିନଃ ପର୍ଯ୍ୟଙ୍କବିଦ୍ୟାୟାମାମନନ୍ତି 'ସ ଏତଂ ଦେବଯାନଂ ପନ୍ଥାନମାସାଦ୍ୟାଗ୍ନିଲୋକମାଗଚ୍ଛତି' (କୌ ୧-୩) ଇତ୍ୟୁପକ୍ରମ୍ୟ 'ସ ଆଗଚ୍ଛତି ବିରଜାଂ ନଦୀଂ ତାଂ ମନସୈବାତ୍ୟେତି ତତ୍ସୁକୃତ ଦୃଷ୍କୃତେ ବିଧୁନୁତେ' (କୌ ୧-୪) ଇତି ।

(ଖ) ତତକିଂ ଯଥାଶ୍ରୁତଂ ବ୍ୟଧ୍ୱନ୍ୟେବ ବିୟୋଗବଚନଂ ପ୍ରତିପତ୍ତବ୍ୟମାହୋସ୍ୱି-ଦାଦାବେବ ଦେହାଦପସର୍ପଣେ ଇତି ବିଚାରଣାୟାଂ ଶ୍ରୁତିପ୍ରାମାଣ୍ୟାଷଦ୍ୟଂ । ଥାଶ୍ରୁତି ପ୍ରତିପତ୍ତିପ୍ରସକ୍ତୌ ପଠତି - ସାଂପରାୟ ଇତି । ସାଂପରାୟେ ଗମନ ଏବ ଦେହାପସମର୍ପଣ ଇଦଂ ବିଦ୍ୟାସାମର୍ଥ୍ୟାତ୍ ସୁକୃତଦୃଷ୍କୃତହାନଂ ଭବତୀତି ପ୍ରତିଜାନୀତେ ।

(ଗ) ହେତୁଂ ଚାଚଷ୍ଟେ - ତର୍ତ୍ତବ୍ୟାଭାବାଦିତି । ନ ହି ବିଦୁଷଃ ସଂପରେତସ୍ୟ ବିଦ୍ୟୟା ବ୍ରହ୍ମ ସଂପ୍ରେପ୍ସତୋଽନ୍ତରାଳେ ସୁକୃତଦୁଷ୍କୃତାଭ୍ୟାଂ କିଞ୍ଚିତ୍ପ୍ରାପ୍ରବ୍ୟମସ୍ତି, ଯଦ୍ୟର୍ଥଂ କତିଚିତ୍କ୍ଷଣାନକ୍ଷୀଣେ ତେ କଲ୍ପ୍ୟେୟାତାମ୍ । ବିଦ୍ୟାବିରୁଦ୍ଧଫଳତ୍ୱାଚ୍ଚ ବିଦ୍ୟା ସାମର୍ଥ୍ୟେନ ତୟୋଃ କ୍ଷୟଃ, ସ ଚ ଯଦୈବ ବିଦ୍ୟ ଫଳାଭିମୁଖୀ ତଦେବ ଭବିତୁମର୍ହତି ।

(ଘ) ତସ୍ମାତ୍ ପ୍ରାଗେବ ସନ୍ନ୍ୟଂ ସୁକୃତଦୁଷ୍କୃତକ୍ଷୟଃ ପଶ୍ଚାତ୍ ପଠ୍ୟତେ । ତଥା ହ୍ୟନ୍ୟୋଽପି ଶାଖିନସ୍ତାଣ୍ଡିନଃ ଶାଟ୍ୟାୟନିଚଶ୍ଚ ପ୍ରାଗବସ୍ଥାୟାମେବ ସୁକୃତଦୁଷ୍କୃତହାନ-ମାମନନ୍ତି 'ଅଶ୍ୱଇବ ରୋମାଣି ବିଦୂୟ ପାପମ୍, (ଛା ୮-୧୩-୧) ଇତି, ତସ୍ୟ ପୁତ୍ରା ଦାୟମୁପୟନ୍ତି, ସୁହୃଦଃ ସାଦୁକୃତ୍ୟାଂ ଦ୍ୱିଷନ୍ତଃ ପାପକୃତ୍ୟାମିତି ଚ ।

(୨) ଭାଷାଂତର - (କ) ଦେବଯାନମାର୍ଗରେ ପର୍ଯ୍ୟାଙ୍କସ୍ଥ ବ୍ରହ୍ମ ଆଡ଼କୁ ପ୍ରସ୍ଥାନ କରୁଥିବା ପୁରୁଷର ସୁକୃତ ଦୁଷ୍କୃତ ଅର୍ଦ୍ଧମାର୍ଗରେ ବିଯୋଗ କୌଷୀତକୀ ସଂପ୍ରଦାୟମାନେ ପର୍ଯ୍ୟଙ୍କ ବିଦ୍ୟାରରେ କହନ୍ତି - 'ଏ ଏତଂ ଦେବଯାନଂ' (ସେ ଏହି ଦେବଯାନମାର୍ଗକୁ ପାଇ ଅଗ୍ନିଲୋକକୁ ପ୍ରାପ୍ତ ହୁଏ) 'ଏହା ଆରମ୍ଭ କରି, 'ସ ଆଗଚ୍ଛତି' (ସେ ବିରଜାନଦିକୁ ପ୍ରାପ୍ତ ହୁଏ ସେ ମନଦ୍ୱାରା ଲଙ୍ଘନ କରେ, ତଦ୍ୱାରା ସୁକୃତ, ଦୁଷ୍କୃତକୁ ତ୍ୟାଗ କରେ ।

(ଖ) ଏଠାରେ ଶ୍ରୁତିର ଅନୁସାରେ ଏହି ସୁକୃତ ଦୁଷ୍କୃତର ଅର୍ଦ୍ଧମାର୍ଗରେ ବିୟୋଗ ବଚନ ଜାଣିବା ଉଚିତ୍ ଅଥବା ଆରମ୍ଭରେ ଦେହଦ୍ୱାରା ପ୍ରୟାଣ କଲା ପରେ ଏହି ବିଚାରି ପାଇ ସାରିଲା ପରେ ଶ୍ରୁତି ପ୍ରମାଣ୍ୟ ଦ୍ୱାରା ଶ୍ରୁତି ଅନୁସାରେ ପ୍ରାପ୍ତି ପ୍ରସକ୍ତି ହେଲାପରେ ସୂତ୍ରକାର କହନ୍ତି - ସାଂପରାୟେ । ସାଂପରାୟ ସମୟରେ (ଗମନ କାଳରେ) ଦେହରୁ ବାହାରିଲା ପରେ ବିଦ୍ୟାର ସମାର୍ଥ୍ୟରୁ ଏହି ସୁକୃତ ଓ ଦୁଷ୍କୃତ ହାନ ହୁଏ - ଏହାହିଁ ପ୍ରତିଜ୍ଞା କରନ୍ତି ।

(ଗ) ତାହାର କାରଣ କହନ୍ତି - ତର୍ତ୍ତବ୍ୟାଭାବାତ୍ । ବିଦ୍ୟାରୁ ବାହ୍ୟସ ପ୍ରାପ୍ତକୁ ଇଚ୍ଛା କରୁଥିବା ମୃତ ବିଦ୍ୟାନ୍‌କୁ ପ୍ରଚ୍ଛନ୍ନ ଭାବେ ସୁକୃତ ଓ ଦୁଷ୍କୃତ କ୍ଷୀଣ ନ ହେବାର କଳ୍ପନା କରାଯାଏ । ପରନ୍ତୁ ସେହି ବିଦ୍ୟାଦ୍ୱାରା ବିରୁଦ୍ଧ ଫଳ ହୁଏ । ତେଣୁ ବିଦ୍ୟାର

ସାମର୍ଥ୍ୟରୁ ସେହି ଦୁଇଟିର କ୍ଷୟ ହୁଏ ଓ ସେହି ବିଦ୍ୟା ଯେତେବେଳେ ଫଳାଭିମୁଖୀ ହୁଏ, ସେତେବେଳେ ତାର କ୍ଷୟ ହେବାକଥା ।

(ଘ) ତେଣୁ ଦେହପାତ ହେଲେ ପ୍ରଥମେ ଏହି ସୁକୃତ ଦୁଷ୍କୃତର କ୍ଷୟ ଫଳରେ ପଢ଼ାଯାଏ । ଏନ୍ୟ ନାଡ଼ୀ ଓ ଶାଟ୍ୟାୟନୀ ସଂପ୍ରଦାୟ ମଧ 'ଅଶ୍ୱ ଉବ' (ଯେପରି ଅଶ୍ୱ ଝାଡ଼ିଦିଏ ସେହିପରି ବିଦ୍ୱାନ୍ ପାପମୁକ୍ତ ହୁଏ) ଏବଂ 'ତସ୍ୟଦାୟଂ' (ସେହି ମୃତଦ୍ୱାନ୍‌କୁ ପୁତ୍ର (ଶିଷ୍ୟ) ଧନ ଗ୍ରହଣ କରନ୍ତି । ସୁହୃଦ ପୂଣ୍ୟ କର୍ମ ଓ ଦେଷୀ ପାପକର୍ମ ଗ୍ରହଣ କରନ୍ତି) ଏହିପରି ପୂର୍ବାବସ୍ଥାରେ ସୁକୃତ ଦୁଷ୍କୃତର ହାନି କୁହାଯାଏ ।

## छन्दत उभयाविरोधात् ॥ २८ ॥

## (୧) ଛନ୍ଦତଃ ଉଭୟାବିରୋଧାତ୍ ॥୩-୩।୨୮॥

ଛନ୍ଦତଃ = ଜୀବିତ ପୂଷ ନିଜର ଇଚ୍ଛାରେ ବିଦ୍ୟାକୁ ଅନୁଷ୍ଠାନ କରିବାକୁ ସମର୍ଥ ହୁଏ । ତେଣୁ ତାହାର କର୍ମମୟ ମଧ ଜୀବନ କାଳରେ ହେବ । ଉଭୟାବିରୋଧାତ୍ = ଏହିପରି ଉପପତ୍ତି ଓ ନାଡ଼ି ଇତ୍ୟାଦି ଶ୍ରୁତି ଦୁଇଟି ସହ ବିରୋଧ ହୁଏ ନାହିଁ ।

(୨) ମୂଳ-(କ) ଯଦି ଚ ଦେହାଦପସପ୍ରସ୍ୟ ଦେବଯାନେନ ପଥା ପ୍ରସ୍ଥିତ-ସ୍ୟାର୍ଦ୍ଧପଥେ ସୁକୃତଦୁଷ୍କୃତକ୍ଷୟୋଽଭ୍ୟୁପଗମ୍ୟେତ, ତତଃ ପତିତେ ଦେହେ ଯମନିୟମ-ବିଦ୍ୟାଭ୍ୟାସାତ୍ମକସ୍ୟ ସୁକୃତଦୁଷ୍କୃତକ୍ଷୟହେତୋଃ ପୁରୁଷପ୍ରଯତ୍ନସ୍ୟେଚ୍ଛାତୋଽନୁଷ୍ଠାନାନୁ-ପପତ୍ତେରନୁପପତ୍ତିରେବ ତଦ୍ଧେତୁକସ୍ୟ ସୁକୃତଦୁଷ୍କୃତକ୍ଷୟସ୍ୟସ୍ୟାତ୍ ।

(ଖ) ତସ୍ମାତ୍ ପୂର୍ବମେବ ସାଧକାବସ୍ଥାୟାଂ ଛନ୍ଦତୋନୁଷ୍ଠାନଂ ତସ୍ୟ ସ୍ୟାତ୍ । ତତ୍‌ପୂର୍ବକଞ୍ଚ ସୁକୃତଦୁଷ୍କୃତହାନମିତି ଦ୍ରଷ୍ଟବ୍ୟମ୍ । ଏବଂ ନିମିତ୍ତ ନୈମିତ୍ତିକୟୋରୁ-ପପତ୍ତିସ୍ତାଣ୍ଡିଶାଟ୍ୟାୟନିଶ୍ରୁତ୍ୟୋଶ୍ଚ ସଂପତିରିତି ।

(୨) ଭାଷାଂତର -(କ) ଦେହରୁ ନିଷ୍କ୍ରମିତ ଦେବଯାନମାର୍ଗରେ ପ୍ରସ୍ଥାନ କରୁଥିବା ପୁରୁଷର ସୁକୃତଦୁଷ୍କୃତର କ୍ଷୟ ଆଦି ଅର୍ଦ୍ଧମାର୍ଗରେ ସ୍ୱୀକାର କରାଯାଏ, ତେବେ ଦେହପାତ ହେଲାପରେ ସୁକୃତ ଦୁଷ୍କୃତ କ୍ଷୟର ହେତୁ ଭୂତ-ଯମନିୟମ ସହିତ ବିଦ୍ୟାର ଅଭ୍ୟାସ ରୂପ ପୁରୁଷଯତ୍ନରେ ନିଜର ଇଚ୍ଛାଦ୍ୱାରା ଅନୁଷ୍ଠାନ ଉପପତ୍ତି ନ ହେବାରୁ ତଦ୍ଧାରା ହେବାକୁ ଥିବା ସୁକୃତ-ଦୁଷ୍କୃତର କ୍ଷୟର ଅନୁପପର୍ତ୍ତି ହେବ ।

(ଖ) ତେଣୁ ପୂର୍ବରେ (ସାଧକାବସ୍ଥାରେ) ନିଜର ଇଚ୍ଛାରୁ ତାର ଅନୁଷ୍ଠାନ ହେବା ଉଚିତ୍ ଏବଂ ଅନୁଷ୍ଠାନ୍‌ପୂର୍ବକ ସୁକୃତ ଓ ଦୁଷ୍କୃତର ହାନ ହୁଏ ବୋଲି ଜାଣିବା ଉଚିତ୍ । ଏହିପରି ନିମିତ୍ତ ନୈମିତ୍ତକର ଉପପତ୍ତି ତାଣ୍ଡି ଓ ଶାଟ୍ୟାୟାନୀ- ଏହି ଦୁଇଶ୍ରୁତିରେ ସଂଗତି ହୁଏ ।



## २७ गतेरर्थवत्त्वाधिकरणम् ॥ सू० २९-३० ॥

## ଗତେରର୍ଥବତ୍ତ୍ୱାଧିକରଣ-୧୭

## गतेरर्थवत्त्वमुभयथाऽन्यथा हि विरोधः ॥ २९ ॥

## (୧) ଗତେରର୍ଥବତ୍ତ୍ୱମୁଭୟଥାଽନ୍ୟଥା ହି ବିରୋଧଃ ॥୩-୩-୨୯॥

ଗତେ- ଦେବଯାନମାର୍ଗର, ଅର୍ଥବତ୍ତ୍ୱମ୍‌ଅର୍ଥବତ୍ତା, ଉଭୟଥା- ବିଭାଗରୁ ହିଁ ହୁଏ । ସଗୁଣ ବିଦ୍ୟାରେ ଦେବଯାନମାର୍ଗ ହୁଏ, ନିର୍ଗୁଣବିଦ୍ୟାରେ ନୁହେଁ । ଅନ୍ୟଥା - ଯଦି ଦେବଯାନମାର୍ଗର ସର୍ବତ୍ର ଉପସଂହାର କରିବା, ତେବେ ବିରୋଧଃ-ବିଦ୍ୱାନ ପୁଣ୍ୟ-ପାପେ ବିଧୂୟ ଇତ୍ୟାଦି ଶ୍ରୁତିଦ୍ୱାରା ବିରୋଧ ହେବ ।

(୨) ମୂଳ-(କ) କ୍ୱଚିତ୍ ପୁଣ୍ୟପାପହାନସନ୍ନିଧୌ ଦେବଯାନଃ ପନ୍ଥା ଶ୍ରୂୟତେ, କ୍ୱଚିନ୍ନ । ତତ୍ରସଂଶୟକିଂ ହାନାବଶେଷେଣୈବ ଦେବଯାନଃ ପନ୍ଥା ସନ୍ନିପତେଦୁତ-ବିଭାଗେନ କ୍ୱଚିତ୍ ସନ୍ନିପତେତ୍ କ୍ୱଚିନ୍ନେତି । ଯଥା ତାବଦ୍ ହାନାବଶେଷେଣୈବୋ-ପାୟନାନୁ ବୃତ୍ତିରୁକ୍ତୈବଂ ଦେବଯାନାନୁବୃତ୍ତିରପି ଭବିତୁମର୍ହତୀତ ।

(ଖ) ଅସ୍ୟାଂ ପ୍ରାପ୍ତାବାଚକ୍ଷ୍ମହେଗତେର୍ଦେବଯାନ ସ୍ୟ ପଥୋଽର୍ଥବତ୍ତ୍ୱମୁଭୟଥା ବିଭାଗେନ ଭବିତୁମହତି; କ୍ୱଚିଦର୍ଥବତୀ ଗତିଃ, କ୍ୱଚିନ୍ନେତି, ନାବିଶେଷେଣ । ଅନ୍ୟଥା ହ୍ୟବିଶେଷେଣୈବିତସ୍ୟାଂ ଗତାବଙ୍ଗୀକ୍ରିୟମାଣାୟାଂ ବିରୋଧଃ ସ୍ୟାତ୍ । 'ପୁଣ୍ୟପାପେ ବିଧୂୟନିରଂଜନଃ ପରମଃ ସାମ୍ୟମୁପୈତି' (ସୁ ୩-୧-୩) ଇତସ୍ୟାଂ ଶ୍ରୁତୌ ଦେଶାନ୍ତରପ୍ରାପଣୀ ଗତିର୍ବିରୁଧ୍ୟେତ । କଥଂ ହି ନିରଞ୍ଜନୋଽଗନ୍ତା ଦେଶାନ୍ତର ଗଚ୍ଛେତ୍ ? ଗନ୍ତବ୍ୟଂ ଚ ପରମଂ ସାମ୍ୟଂ ନ ଦେଶାନ୍ତରପ୍ରାପ୍ତ୍ୟୟତ୍ତମିତ୍ୟାନର୍ଥକ୍ୟମେବାତ୍ର ଗତେର୍ମନ୍ୟାମହେ ।

(୨) ଭାଷାଂତର-(କ) କେତେକ ସ୍ଥାନରେ ପୁଣ୍ୟ ପାପର ହାନିର ସନ୍ନିବରେ ଦେବଯାନମାର୍ଗର ଶ୍ରୁତି ହୁଏ ଏବଂ କେଉଁଠି ମଧ୍ୟ ଶୁଣାଯାଏ ନାହିଁ । ଏଠାରେ ସଂଶୟ ହୁଏ ଯେ - ହାନରେ ସମାନ ରୂପରେ କଣ ଯାନମାର୍ଗର ସନ୍ନିପାତହେଲେ ବିଭାଗରୁ କେଉଁସ୍ଥଳରେ ସନ୍ନିପାତ ହୁଏ ଅଥବା କେଉଁଠାରେ ହୁଏ ନାହିଁ ? ଯେପରି ହାନରେ ସମାନ ରୂପରେ ଉପାୟନର ଅନୁବୃତ୍ତି କୁହାଯାଏ, ସେପରି ଦେବଯାନର ଅନୁବୃତ୍ତି ହେବା ଉଚିତ୍ । ସିଦ୍ଧାନ୍ତ-

(ଖ) ଏହାର ପ୍ରାପ୍ତ ହେଲା ପରେ ଆମ୍ଭେ କହୁଁ- ଗତି (ଦେବଯାନମାର୍ଗ)ର ଅର୍ଥବତ୍ତ୍ୱ ଉଭୟଥା ବିଭାଗ ଦ୍ୱାରା ହେବା ଉଚିତ । କେଉଁଠି ଅର୍ଥବତି ଗତିହୁଏ, କେଉଁଠି ତ ହୁଏ ନାହିଁ । ଅବିଶେଷରେ ସର୍ବତ୍ର ଗତି ନାହିଁ । ନୋଚେତ୍ ଅବିଶେଷରୁ ଏହି ଗତିର ଅଙ୍ଗୀକାର କଲାପରେ ବିରୋଧ ହେବ । 'ପୁଣ୍ୟପାପେ' (ବିଦ୍ୱାନ୍ ପୁଣ୍ୟ-ପାପ ଏହି ଦୁଇଟିକୁ ପରିତ୍ୟାଗ କରି ନିର୍ମଳ ହୋଇ ପରମସାମ୍ୟ (ବ୍ରହ୍ମକୁ ପାଏ) ଏହି ଶ୍ରୁତିରେ ଅନ୍ୟଦେଶ, ପ୍ରାପକ ଗତି

ବିରୁଦ୍ଧ ହୁଏ, କାରଣ-ଗତି ଇତ୍ୟାଦି ରହିତ ବ୍ରହ୍ମସ୍ୱରୂପ ଦେଶାନ୍ତରରେ କିପରି ଯିବ ଏବଂ ପ୍ରାପଣୀୟ ପରମସାମ୍ୟ ଦେଶାନ୍ତର ପ୍ରାପ୍ତିର ଅଧୀନ ନୁହେଁ । ତେଣୁ ଆମ୍ଭେ ଏଠାରେ ନିର୍ଗୁଣ ବିଦ୍ୟାରେ ଗତି ନିଷ୍ପ୍ରୟୋଜନ ବୋଲି ସ୍ୱୀକାର କରୁଁ ।

## उपपन्नस्तल्लक्षणार्थोपलब्धेर्लोकवत् ॥ ३० ॥

## ୧- ଉପପନ୍ନସ୍ତଲ୍ଲକ୍ଷଣାର୍ଥୋପଲବ୍‌ଧେର୍ଲୋକବତ୍ ॥୩-୩-୩୦॥

ଉପପନ୍ନ- ଗତିର ବିଭାଗରୁ ବ୍ୟବସ୍ଥା ଠିକ୍ ନୁହେଁ, ତଲ୍ଲକ୍ଷଣାର୍ଥୋପଲବ୍‌ଧେଃ- କାରଣ- ଗତିକାରଣ ଭୂତ ଅର୍ଥ ସଗୁଣ ଉପାସନାରେ ଉପଲବ୍‌ଧ ହୁଏ । ଲୋକବତ୍- ଯେପରି ସଂସାରରେ ସେ ତୁ ଲୋକମାନଙ୍କର ଗ୍ରାମକୁ ଯିବାପାଇଁ ମାର୍ଗରୂପରେ କାମ କରେ । କିନ୍ତୁ ଆରୋଗ୍ୟପ୍ରାପ୍ତିରେ ତାକୁ ଅପେକ୍ଷା କରେ ନାହିଁ । ସେପରି ଏଠାରେ ମଧ ହୁଏ ।

(୨) ମୂଳ-(କ) ଉପପନ୍ନଶ୍ଚାୟମୁଭୟଥାଭାବଃକ୍ୱଚିଦର୍ଥବତୀ ଗତିଃ କ୍ୱଚିନ୍ନେତି, ତଲ୍ଲକ୍ଷଣାର୍ଥୋପଲବ୍‌ଧେଃ । ଗତିକାରଣଭୂତୋ ହ୍ୟର୍ଥଃ ପର୍ଯ୍ୟଙ୍କ ବିଦ୍ୟାଦିଶ ସଗୁଣେଷୂପା- ସନେଷୁପଲଭ୍ୟତେ । ଯତ୍ର ହି ପର୍ଯ୍ୟଙ୍କା ରୋହଣଂ ପର୍ଯ୍ୟଙ୍କସ୍ଥେନବ୍ରହ୍ମଣା ସମ୍ବଦନଂ ବିଶିଷ୍ଟ- ଗନ୍ଧାଦିପ୍ରାପ୍ତିଶ୍ଚେତ୍ୟେବମାଦି ବହୁ ଦେଶାନ୍ତରପ୍ରାପ୍ତ୍ୟାୟତ୍ତଂ ଫଳଂ ଶ୍ରୂୟତେ, ତତ୍ରାର୍ଥବତୀ ଗତିଃ । ନହି ସମ୍ୟଗ୍ ଦର୍ଶନେ ତଲ୍ଲକ୍ଷଣାର୍ଥୋପଲବ୍‌ଧିରସ୍ତି ।

(ଖ) ନ ହ୍ୟାତ୍ମୈକ୍ୱଦର୍ଶନାପ୍ତକାମନାମିହୈବ ଦଗାଧଶେଷକ୍ଳେଶବିଦାନାମା- ରବ୍‌ଧଭୋଗକର୍ମାଶୟକ୍ଷପଣବ୍ୟତିରେକେଣାପେକ୍ଷିତବ୍ୟଂ କିଞ୍ଚିଦସ୍ତି, ତତ୍ରାନର୍ଥିକା ଗତିଃ । ଲୋକବଚୈଷ ବିହାଗୋ ଦ୍ରଷ୍ଟବଃ - ଯଥା ଲୋକେ ଗ୍ରାମପ୍ରାପ୍ତୌ ଦେଶାନ୍ତରପ୍ରାପଣଃ ପନ୍ଥା ଅପେକ୍ଷ୍ୟତ୍ରେ ନାରୋଗ୍ୟ ପ୍ରାପ୍ତବେବମିହାପୀତି । ଭୂୟଶ୍ଚୈନଂ ବିଭାଗଂ ଚତୁର୍ଥାଧ୍ୟାତୟ ନିପୁଣତର ମୁପପାଦୟିଷ୍ୟାମଃ ।

**(୨) ଭାଷାଂତର** - (କ) କେତେକ ସ୍ଥାନରେ ଗତି ପ୍ରୟୋଜନବତୀ ହୁଏ ଓ କେଉଁଠାରେ ମଧ ହୁଏ ନାହିଁ - ଏହି ଦୁଇପ୍ରକାର ବିଭାବ ଯୁକ୍ତିଯୁକ୍ତ ଅଟେ । କାରଣ - ଗତି- କାରଣକ ପ୍ରୟୋଜନ ଏଠାରେ ଅନୁଭୂତ ହୁଏ । ସେଠାରେ ପର୍ଯ୍ୟଙ୍କ ଆରୋହଣ ପର୍ଯ୍ୟଙ୍କସ୍ଥ ବ୍ରହ୍ମର ସହିତ ସମ୍ବାଦ ଓ ବିଶିଷ୍ଟ ଗନ୍ଧ ପ୍ରଭୃତିର ପ୍ରାପ୍ତି ଇତ୍ୟାଦିଅନେକ ଭିନ୍ନ ଭିନ୍ନ ଦେଶପ୍ରାପ୍ତିର ଅଧୀନ ଫଳ ଶୁଣାଯାଏ । ଏଠାରେ ଗତି ହିଁ ପ୍ରୟୋଜନବତୀ । କିନ୍ତୁ ତତ୍ତ୍ୱଜ୍ଞାନରେ ଗତି କାରଣଭୂତ ଅର୍ଥର ଉପଲବ୍‌ଧି ନୁହେଁ ।

(ଖ) କାରଣ - ଆତ୍ମୈକତ୍ୱଦର୍ଶୀ, ଆପ୍ତକାମ, ଏଠାରେ ଦଗ୍‌ଧ ହୋଇଗଲେ ସର୍ବସ୍ତକ୍ଳେଶ ଓ ତାହାର କାରଣୀଭୂତ ବୀଜ ଅବିଦ୍ୟା, ଯାହାର, ତାହାକୁ ଏହିପରି ମହାନୁଭବକୁ ପାରବ୍‌ଧଭୋଗ କର୍ମ ଓ ଆଶୟକ୍ଷୟର ଅତିରିକ୍ତ କେଯେମ ମଧ ଫଳ



ଅପେକ୍ଷଣୀୟ ହୁଏ ନାହିଁ । ଏଠାରେ ଗତି ପ୍ରୟୋଜନରହିତ ଅଟେ । ଏହି ବିଭାଗ ଲୋକ ବ୍ୟବହାର ପରି ଜାଣିବା ଉଚିତ୍ । ଯେପରି ସଂସାରରେ ଗ୍ରାମକୁ ଯିବାକୁ ହେଲେ ଦେଶାନ୍ତରପ୍ରାପକ ମାର୍ଗକୁ ଅପେକ୍ଷା କରାଯାଏ କିନ୍ତୁ ଆରୋଗ୍ୟପ୍ରାପ୍ତିରେ ନୁହେଁ, ସେହିପରି ଏଠାରେ ପ୍ରକୃତରେ ମଧ୍ୟ ଜାଣିବା ଉଚିତ୍ । ପୁନଶ୍ଚ ଏହିବିଭାଗକୁ ଚତୁର୍ଥ ଅଧ୍ୟାୟରେ ଅଧିକ ନିପୁଣତାର ସହିତ ଉପାଦାନ କରିବୁ ।

## अनियमः सर्वासामविरोधः शब्दानुमानाभ्याम् ॥ ३१ ॥

## ୧- ଅନିୟମଃ ସର୍ବାସାମବିରୋଧଃ ଶବ୍ଦାନୁମାନାଭ୍ୟାମ୍ ॥୩-୩-୩୧॥

ସର୍ବାସାମ୍ - ସମସ୍ତ ସଗୁଣ ଉପାସନଗୁଡ଼ିକରେ, ଅନିୟମଃ-ଅବିଶେଷ ରୂପରେ ଦେବଜାନାମାର୍ଗ ହେବା ଉଚିତ୍ । ଅବିରୋଧଃ-ଏହି ପ୍ରକରଣରେ ବିରୋଧ ହୁଏ ନାହିଁ । ଶାବ୍ଦାନୁମାନାଭ୍ୟାମ୍-କାରଣ- 'ତଦ୍ୟ ଇତ୍ଥଂ ବିଦୁଃ' ଇତ୍ୟାଦି ଶ୍ରୁତି ଓ 'ଶୁକ୍ଳକୃଷ୍ଣେ ଗତୀ ହ୍ୟେତେ' ଇଥ୍ୟାଦି ସ୍ମୃତି ମଧ୍ୟ ଅଛି ।

(୩) ମୂଳ- (କ) ସଗୁଣାସୁ ବିଦ୍ୟାସୁ ଗତିରର୍ଥବତୀ, ନ ନିର୍ଗୁଣାୟାଂ ପରମାତ୍ମ ବିଦ୍ୟାୟାସିତ୍ୟୁକ୍ତମ୍ । ସଗୁଣାସ୍ୱପି ବିଦ୍ୟାସୁ କାସୁଚିଦ୍ ଗତି ଶ୍ରୂୟତେ - ଯଥା ପର୍ଯ୍ୟଙ୍କ ବିଦ୍ୟାୟାମୁକୋଶଲବିଦ୍ୟାୟାଂ ପଞ୍ଚାଗ୍ନିବିଦ୍ୟାୟାଂ ଦହରବିଦ୍ୟାୟାମିତି । ନାନ୍ୟାସୁ- ଯଥା ମଧୁବିଦ୍ୟାୟାଂ ଶାଣ୍ଡିଲ୍ୟବିଦ୍ୟାୟଂ ଷୋଡ଼ଶକଳ ବିଦ୍ୟାୟାଂ ବୈଶ୍ୱାନରବିଦ୍ୟାୟାମିତି ।

(ଖ) ତତ୍ରସଂଶୟଃକିଂ ଯାସ୍ୱେକୈଷା ଗତି ଶ୍ରୂୟତେ, ତାସ୍ୱେବ ନିୟମ୍ୟେତୋ- ତାନିୟମେନ ସର୍ବାଭିରେବଂଜାତୀୟକାଭିର୍ବିଦ୍ୟାଭିରଭିସମ୍ବନ୍ଧ୍ୟେତେତି । କିଂ ତାବତ୍ପ୍ରସ ? ନିୟମ ଇତି । ଯତୈବଶ୍ରୂୟତେ, ତତ୍ରୈବ ଭବିତୁମର୍ହତି । ପ୍ରକରଣସ୍ୟ ବିୟମକତ୍ୱାତ୍ ।

(ଗ) ଯଦ୍ୟନ୍ୟତ୍ରାଶୟମାଣାପି ଗତିବିଦ୍ୟାନ୍ତରଂ ଗଚ୍ଛେଚ୍ଛ୍ରୁତ୍ୟାଦୀନାଂ ପ୍ରାମାଣ୍ୟଂ ହୀୟେତ, ସର୍ବସ୍ୟ ସର୍ବାର୍ଥତ୍ୱପ୍ରସଙ୍ଗାତ୍ । ଅପି ଚାର୍ଚ୍ଚିରାଦିକେକୈବ ଗତିରୂପକୋସଲ- ବିଦ୍ୟାୟାଂ ପଞ୍ଚାଂଗ୍ନିବିଦ୍ୟାୟାଞ୍ଚ ତୁଲ୍ୟବତ୍ ପଠ୍ୟତେ, ତତ୍ସର୍ବାର୍ଥତ୍ୱେଽନର୍ଥକଂ ପୁନର୍ବଚନଂ ସ୍ୟାତ୍ । ତସ୍ମାନିୟମ ଇତି ।

(୨) ଭାଷାଂତର-(କ) ସଗୁଣ ବିଦ୍ୟାଗୁଡ଼ିକରେ ଗତି ପ୍ରୟୋଜବେତୀ ହୁଏ, କିନ୍ତୁ ନିର୍ଗୁଣପରମାତ୍ମାବିଦ୍ୟାରେ ନୁହେଁ । ଏହା ପୂର୍ବଅଧିକରଣରେ କୁହାଯାଇଅଛି । ସଗୁଣ ବିଦ୍ୟାରେ କେତେକ ବିଦ୍ୟାର ଗତି ଶୁଣାଯାଏ, ଯେପରି ପର୍ଯ୍ୟାଙ୍କବିଦ୍ୟା, କୋସଳବିଦ୍ୟା, ପଞ୍ଚାଗ୍ନିବିଦ୍ୟା ଓ ଦହରବିଦ୍ୟାରେ ଶୁଣାଯାଏ, ସେପରି ଅନ୍ୟବିଦ୍ୟାର ଗତି ଶୁଣାଯାଏ ନାହିଁ । ଯେପରି ମଧୁବିଦ୍ୟା, ଶାଣ୍ଡିଲ୍ୟବିଦ୍ୟା, ଷୋଡ଼ଶକଳା ବିଦ୍ୟା ଓ ବୈଶ୍ୱାନର ବିଦ୍ୟାରେ ।

(ଖ) ଏଠାରେ ସଂଶୟ ହୁଏ ଯେ - କଣ ଯେଉଁଠି ଏହିପରି ଗତି ଶୁଣାଯାଏ ? ସେଠାର ନିୟମିତ ହୁଏ କି ? ଅଥବା ଅନିୟମରେ ଏଥିପ୍ରକାର ସବୁ ବିଦ୍ୟାର ସହ ସମ୍ବନ୍ଧିତ ହୁଏ । ତେବେ କଣ ହୁଏ ? ପୂର୍ବଅକ୍ଷ ନିୟମ ପ୍ରାପ୍ତ ହୁଏ । ଯେଉଁ ବିଦ୍ୟାରେ ଗତି ଶୁଣାଯାଏ । ସେହି ବିଧ୍ୟାରେ ହିଁ ହେବା ଉଚିତ୍ । କାରଣ - ପ୍ରକରଣ ନିୟମକ ଅଟେ ।

(ଗ) ଅନ୍ୟ ବିଦ୍ୟାରେ ଶୁଣା ନ ଯାଇ ଗତି ଯଦି ଅନ୍ୟ ବିଦ୍ୟାରେ ପ୍ରାପ୍ତ ହୁଏ, ତାହେଲେ ଶ୍ରୁତି ପ୍ରଭୃତିରେ ପ୍ରାମାଣ୍ୟର ହାନି ହେବ । କାରଣ - ସବୁଠାରେ ସର୍ବାର୍ଥବତ୍ତ୍ୱ ପ୍ରସଙ୍ଗ ହେବ । ଅର୍ଚ୍ଚିରାଦି ଗୋଟିଏ ଗତି ଉପକୋମଳବିଦ୍ୟା ଓ ପଞ୍ଚାଗ୍ନିବିଦ୍ୟାରେ ସମାନ ରୂପରେ ଯେପରି ଶୁଣାଯାଏ ସେ ଯଦି ସବୁବିଦ୍ୟା ପାଇଁ ଉଦ୍ଦିଷ୍ଟ ହୁଏ, ତେବେ ପୁନର୍ବଚନ ଅନର୍ଥକ ହେବ, ତେଣୁ ଗତିର ନିୟମ ଅଛି ।

ମୂଳ- (କ) ଏବଂ ପ୍ରାପ୍ରେ ପଠତି-ଅନିୟମ ଇତି । ସର୍ବାସ୍ତାମେବାଭ୍ୟୁଦୟ-ପ୍ରାପ୍ତିଫଳାନାଂ ସଗୁଣାନାଂ ବିଦ୍ୟା ନାମ ବିଶେଷେଣୈଷା ଦେବଯାନାଖ୍ୟା ଗତିର୍ଭବିତୁ-ମର୍ହତି । ନନ୍ୱନିୟମାଭ୍ୟୁପଗମେ ପ୍ରକରଣ ବିରୋଧ ଉକ୍ତ । ନୈଷୋଽସ୍ତି ବିରୋଧଃ, ଶବ୍ଦାନୁମାନାଭ୍ୟା ଶ୍ରୁତିସ୍ମୃତିଭ୍ୟାମିତ୍ୟର୍ଥ । ତଥାହିଶ୍ରୁତିଃ - 'ତଦ୍ୟ ଇତ୍‌ଥ' ବିଦୁଃ' (ଛାଃ୫-୧୦-୧) ଇତି ପଞ୍ଚାଗ୍ନିବିଦ୍ୟାବତାଂ ଦେବଯାନଂ ପନ୍ଥାନତବତାରୟନ୍ତୀ 'ଯେ ଚେମେଽରଣ୍ୟେ ଶ୍ରଦ୍ଧା ତପ ଇତ୍ୟୁପାସତେ' (ଛା ୫-୧୦-୧) ଇତି ବିଦ୍ୟାନ୍ତରଣ-ଶୀଳିନାମପି ପଞ୍ଚାଗ୍ନିବିଦ୍ୟାବିଦ୍‌ଭି ସମାନମାର୍ଗତାଂ ଗମୟତି ।

(ଖ) କଥଂ ପୁନରବଗମ୍ୟତେ ବିଦ୍ୟାନ୍ତରଶୀଳିନାମିୟଂ ଗତିରିତି ? ନନୁଶ୍ରଦ୍ଧା ତପଃ ପରାୟଣାନାମେବ ସ୍ୟାତ୍, ତନ୍ମାପ୍ରଶ୍ରବଣାତ୍ । ନୈଷ ଦୋଷଃ, ନ ହି କେବଳାଭ୍ୟାଂ ଶ୍ରଦ୍ଧତପୋଭ୍ୟାମନ୍ତରେଣ ବିଦ୍ୟାବଝବେଷା ଗତିର୍ଲଭ୍ୟେତେ । 'ବିଦ୍ୟୟା ତଦାରୋହନ୍ତି ଯତ୍ରକାମାଃ ପରାଗତଃ । ନ ତ୍ର ଦକ୍ଷିଣା ଯନ୍ତି ନାବିଦ୍ୱାଂସପ୍ତପସ୍ୱିନଃ, ଇତିଶ୍ରୁତ୍ୟନ୍ତରାତ୍ । ତସ୍ମାଦିହ ଶ୍ରଦ୍ଧାତପୋଭ୍ୟାଂ ବିଦ୍ୟାନ୍ତରୋପଲକ୍ଷଣମ୍ ।

**(୩) ଭାଷାଂତନ-** (କ) ସିଦ୍ଧାନ୍ତ- (କ) ଏହି ବିଷୟତେ ଆମ୍ଭେକହୁଁ - ଏହା ନିୟମ ନୁହେଁ । ଏହି ଦେବଯାନ ନାମକ ଗତି, ଅଭ୍ୟୁଦୟପ୍ରାପ୍ତିର ଫଳବତୀ ସମସ୍ତ ସଗୁଣ ବିଦ୍ୟାରେ ସମାନ ରୂପରେ ହେବା ଉଚିତ୍ । ପରନ୍ତୁ ଅନିୟମ ସ୍ୱୀକାର କଲେ ପ୍ରକରଣର ବିରୋଧ କିପରି ହେବ ? ଏହା କିନ୍ତୁ ବିରୋଧ ନୁହେଁ, କାରଣ - ସେଠାରେ ଶବ୍ଦ ଓ ଅନୁମାନ (ଶ୍ରୁତି ଓ ସ୍ମୃତି) ବୋଲି ଅର୍ଥ କରାଯାଏ ? ଯେପରି 'ତଦ୍ୟ ଇତଥଂ' (ସେଠାରେ ଏହିଲୋକ ପ୍ରତି ଉତ୍‌ଥିତ ହୋଇ ଅଧିକାରୀ ଗୃହସ୍ଥରେ ସେହିପରି ପଞ୍ଚାଗ୍ନିକୁ ଜାଣେ) ଏହି ଶ୍ରୁତି ପଞ୍ଚାଗ୍ନି ବିଦ୍ୟାର ଉପାସକ ପାଇଁ ଦେବଯାନ ପଥରେ ଅବତରଣ କରି ଯେ ଚୋମେ' (ଯାହା ଅରଣ୍ୟ ଦ୍ୱାରା ସପଲକ୍ଷିତ, ବୈଖ୍ୟାନସ ଓ ପରିବ୍ରାଜକ ଶ୍ରଦ୍ଧା ଓ ତପରୁ ଉପଲକ୍ଷିତ ବ୍ରହ୍ମାକୁ ଧ୍ୟାନ କରନ୍ତି) ଅନ୍ୟବିଦ୍ୟାରେ ଅନୁଶୀଳନ କରାଉଥିବା ପଞ୍ଚାଗ୍ନିବିଦ୍ୟା ଜାଣିଥିବାକୁ ସମାନମାର୍ଗ ଜଣାଏ ।



(ଖ) ପରନ୍ତୁ ଅନ୍ୟବିଦ୍ୟାର ଅନୁଶୀଳନ କରୁଥବବାର ଏହି ଗତି ବୋଲି କିପରି ଜଣାପଡ଼େ । ପରନ୍ତୁ ଶ୍ରଦ୍ଧା ଓ ତପରେ ସଂଲଗ୍ନ ଅରଣ୍ୟବାସୀଙ୍କୁ ଏହି ଗତି ପ୍ରାପ୍ତି ହେବା ଉଚିତ୍ । କାରଣ-କେବଳ ଗତି ଶ୍ରବଣ ହୁଏ । ଏହା କିନ୍ତୁ ଦୋଷ ନୁହେଁ । କାରଣ - ବିଦ୍ୟାଢଳ ବିନା କେବଳ ଶ୍ରଦ୍ଧା ଓ ତପଦ୍ୱାରା ଏହି ଗତି ପ୍ରାପ୍ତ ହୁଏ ନାହିଁ । କାରଣ- 'ବିଦ୍ୟାୟା ତଦାରୋହନ୍ତି') (ଉପାସନା)ରୁ ସେହି ବ୍ରହ୍ମଲ୍କେକକୁ ପାଆନ୍ତି, ସେଠାରେ ଜାଣିଥିବା କାମନାଗୁଡ଼ିକ ଶାନ୍ତ ହୋଇଯା'ନ୍ତି, ସେଠାରେ ଦକ୍ଷିଣ ମାର୍ଗରେ ଉପଲକ୍ଷିତ କେବଳ କର୍ମୀ ହୁଏ ନାହିଁ ଏବଂ ଅବିଦ୍ୱାନ ଉପାସନାରହିତ ତପସ୍ୱୀ ହୁଏ ନାହିଁ) ଏହା ଏକ ଅନ୍ୟଶ୍ରୁତି ଅଟେ । ତେଣୁ ଏଠାରେ ଶ୍ରଦ୍ଧା ଓ ତପରୁ ଅନ୍ୟବିଦ୍ୟାର ଉପଲକ୍ଷଣ ହେବ ବୋଲି ଜଣାପଡ଼େ ।

(୪) ମୂଳ-(କ) ବାଜସନେୟିନସ୍ତୁ ପଞ୍ଚାଗ୍ନିବିଦ୍ୟାଧିକାରେଽଭିଧୀୟତେ- 'ଯ ଏବମେତଦ୍ ବିଦୁର୍ଯେଚାମୀ ଅରଣ୍ୟେ ଶ୍ରଦ୍ଧାଂ ସତ୍ୟମୁପାସତେ' (ବ୍ରହ୍ମ ୩-୧-୧୫) ଇତି । ତତ୍ର ଶ୍ରଦ୍ଧା ଲବେ ଯେ ସତ୍ୟଂ ବ୍ରହ୍ମୋପାସୀତ ଇତି ବ୍ୟାଖ୍ୟେୟମ. ସତ୍ୟଶବ୍ଦସ୍ୟ ବ୍ରହ୍ମଣ୍ୟସକୃତ ପ୍ରଯୁକ୍ତତ୍ୱାତ୍ । ପଞ୍ଚାଗ୍ନିମେବୈତଦୁପାଦାନଂ ନ୍ୟାୟମ୍ ।

(ଖ) 'ଅଥ ଯ ଏତୌ ପନ୍ଥାନୌ ନ ବିଦୁସ୍ତେ କୀଟାଃ ପତଙ୍ଗା ଯଦିଦଂ ଦନ୍ଦଶୁକମ୍' (ବୃହ ୩-୨-୧୬) ଇତି ଚ ମାର୍ଗଦ୍ୱୟ ଭ୍ରଷ୍ଟାନାଂ କଷ୍ଟାମଧୋଗତିଂ ଗମୟନ୍ତିଶ୍ରୁତିଦେବଯାନପିତୃଯାନପ୍ରତିପତ୍ତିଃ ।

(ଗ) ସ୍ମୃତିରପି, 'ଶୁକ୍ଳକୃଷ୍ଣେ ଗତି ହ୍ୟେତେ ଜଗତଃ ଶ୍ୱାଶତେ ମତେ । ଏକୟା ଯାତ୍ୟନ୍ତାବୃତ୍ତିମନ୍ୟୟାଽବର୍ତ୍ତତେ ପୁନଃ' (ଭ ଗୀ ୮-୨୬) ଇତି । ଯତ୍ ନୁନର୍ଦେବ ଯାନସ୍ୟ ପଥୋ ଦ୍ୱିରାମ୍ନାନମୁପକୋସଲବିଦ୍ୟାୟାଂ ପଞ୍ଚବିଦ୍ୟାୟାଂ ଚ ତଦୁଭୟତ୍ରାପ୍ୟୁନିଚକ୍ତନାର୍ଥମ । ତସ୍ମାଦ୍ନିୟମଃ ।

(୪) ଭାଷାଂତର - ବାଜସେନୟ ପଞ୍ଚାଗ୍ନି ବିଦ୍ୟାର ପ୍ରକରଣରେ 'ଯ ଏବମେତଦ୍' ସେମାନେ ଯେଉଁ ଗୃହସ୍ଥ ଏହିପ୍ରଭାର ପଞ୍ଚାଗ୍ନିବିଦ୍ୟାକୁ ଜାଣେ ତଥା ଯାଦା ସନ୍ନ୍ୟାସୀ ଅଥବା ବାନପ୍ରସ୍ଥ ଶ୍ରଦ୍ଧାଯୁକ୍ତ ହୋଇ ସତ୍ୟକୁ ଉପାସନା କରେ ଏହା କହନ୍ତି । ସେଠାର ଶ୍ରଦ୍ଧାକୁ ସତ୍ୟ ବ୍ରହ୍ମର ଉପାସନାବୋଲି ବ୍ୟାଖ୍ୟାନ କରିବା ଉ ଉଚିତ୍, କାରଣ- ସତ୍ୟ ଶବ୍ଦ ବ୍ରହ୍ମରେ ଅନେକବାର ପ୍ରଯୁକ୍ତ ହୋଇଅଛି । ପଞ୍ଚାଗ୍ନି ବିଦ୍ୟାବିଦ୍‌ମାନଙ୍କର 'ଯ ଇତଥଂ ବିଦୁଃ' ଏହି ବାକ୍ୟରେ ଇତ୍‌ଥ ବିଦ୍ୱଂ' (ଏହିପ୍ରକାର ଜାଣିଥିବା ଲୋକ) ରୂପରେ ଗ୍ରହଣ ହେବାରୁ ଅନ୍ୟ ବିଦ୍ୟାରେ ସଂଲଗ୍ନ ଉପାସକ ଏହା ଗ୍ରହଣ କରିବା ଉଚିତ୍ ।

(ଖ) 'ଅଥ ଯ ଏତୌ' (ଯାହା ଉତ୍ତରଓ ଦକ୍ଷିଣ ଏହି ଦୁଇଭାଗକୁ ଜାଣେ ନାହିଁ, ଅର୍ଥାତ୍ ଦେବାବାନ ଦକ୍ଷିଣ ମାର୍ଗର ସାଧନଭୂତ, ବ୍ରହ୍ମୋପାସନା ଅଥବା କର୍ମାନୁକରନ୍ତି

ନାହିଁ, ସେମାନେ କୀଟ, ପତଙ୍ଗ ଓ ସର୍ପ ପ୍ରଭୃତି ହୁଅନ୍ତି) ଏହି ଶ୍ରୁତି ଦୁଇଟି ମାର୍ଗଦ୍ୱାରା ଭ୍ରଷ୍ଟ ହୋଇ ଲୋକମାନଙ୍କୁ ଦୁଃଖଦାୟକ ଅଧୋଗତିର ବୋଧ କରାଇ ଦେବଯାନ ଓ ପିତୃଯାନରେ ସେହି ଉପାସକଗୁଡ଼ିକୁ ଅନ୍ତର୍ଭାବ କରେ । ସେଠାରେ ମଧ ଉପାସନା ବିଶେଷରୁ ଏହି ଉପାସକମାନଙ୍କୁ ଦେବଯାନ ପ୍ରାପ୍ତି ହୁଏ ।

(ଗ) ଶୁକ୍ଲପକ୍ଷେ' ଉପାସନା ଓ କର୍ମର ଅଧିକାରୀ ଲୋକଙ୍କ ପାଇଁ ଦେବଯାନ ଓ ପିତୃମାର୍ଗ ସନାତନ ଅଟନ୍ତି, ଏଠାରେ ଗୋଟିଏ ଦ୍ୱାରା ଯାଇଥିବା ପରମଗତିକୁ ପ୍ରାପ୍ତ ହୁଏ ଓ ଅନ୍ୟଦ୍ୱାରା ଯାଇ ଜନ୍ମ ଓ ମୃତ୍ୟୁକୁ ପ୍ରାପ୍ତ ହୁଏ - ଏହାହିଁ ସ୍ମୃତି ଅଛି । ଦ୍ୱେବଯାନମାର୍ଗର ଉପକୋସଲବିଦ୍ୟା ଓ ପଞ୍ଚାଗିବିଦ୍ୟାରେ ଯାହା ଦୁଇଥର କୁହାଯାଇଅଛି, ସେହି ଦୁଇବିଦ୍ୟାରେ ତାହା ଧାନପାଇଁ ଅଛି । ତେଣୁ ଗତି ଅନିୟମ ହୁଏ ।

## १९ यावदधिकाराधिकरणम् ॥ सू० ३२ ॥

## ଯାବଦଧୀକାରାଧିକରଣ -୧୯

## यावदधिकारमवस्थितिराधिकारिकाणाम् ॥ ३२ ॥

## (୧) ଯାବଦଧିକାରମବସ୍ଥିତିରାଧବକାରିକାଣାମ୍ ॥୩-୩-୩୨॥

ଆଧିକାରିକାଣାମ୍ = ଲୋକବ୍ୟବସ୍ଥାର ହେତୁଭୂତ ଅଧିକାରିରେ ବିନଯୁକ୍ତ ଯଥାର୍ଥ ଜ୍ଞାନରୁ କ୍ଷୀଣକର୍ମଯୁକ୍ତ ଲୋକ ଉପାନ୍ତରତମା ଆଦି ତତ୍ତ୍ୱଜ୍ଞାନୀର, ଯାବଦଧିକାରମ୍= ପ୍ରାରବ୍ଧକର୍ମ ପର୍ଯ୍ୟନ୍ତ, ଅବସ୍ଥିତିଃ = ଅବସ୍ଥିତି ରହେ ।

(୨) ମୂଳ-(କ) ବିଦୁଷୋ ବର୍ତ୍ତମାନଦେହପାତାନନ୍ତରଂ ଦେହାନ୍ତରମୁତ୍ପଦ୍ୟତେ, ନ ବେତି ଚିନ୍ତ୍ୟତେ । ନନୁ ବିଦ୍ୟାୟାଃ ସାଧନ ଭୂତାୟାଂ ସଂପତ୍ତୌ କୈବଲ୍ୟନିବୃତ୍ତିଃ ସ୍ୟାନ୍ନ ବେତି ନେୟ ଚିନ୍ତୋପପଦ୍ୟତେ, ନ ହି ପାପସାଧନ ସଂପତ୍ତାବୋଦନା ଭବେନ୍ନ ବେତି ଚିନ୍ତା ଭବତି, ନାପି ଭୁଞ୍ଜାନସ୍ତୃକ୍ଷ୍ୟେନ୍ନ ବେତିଚିନ୍ତ ତେ ଉପପନ୍ନାଦ୍ୱିୟଂ ଚିନ୍ତା, ବ୍ରହ୍ମବିଦାମପି କେଷାଂଚିତିହାସପୁରାଣୟୋର୍ଦେହାନ୍ତରୋପ୍ତତ୍ତିଦର୍ଶନାତ୍ ।

(ଖ) ତଥାହି ଅପାନ୍ତରତମା ନାମ ବେଦାଚାର୍ଯ୍ୟଃ ପୁରାଣର୍ଷିର୍ବିଷ୍ଣନିଯୋଗାତ୍ କଳିଦ୍ବ୍ୟାପାରୟୋଃସନ୍ଧୌ କୃଷ୍ଣଦ୍ୱୈପାୟନଃ ସମ୍ଭୁବେତି ସ୍ମରନ୍ତି । ବିଶିଷ୍ଟଶ୍ଚ ବ୍ରହ୍ମଣୋ ମାନସଃ ପୁତ୍ରଃ ସନ୍ନିମିଶାପାଦପଗତପୂର୍ବଦେହଃ ପୁନର୍ବ୍ରହ୍ମାଦେଶାନ୍ ମିତ୍ରବରୁଣାଭ୍ୟାଂ ସଂବଭୂବେତି । ଭୃଗ୍ୱାଦୀନାମପି ବ୍ରହ୍ମଣ ଏବ ମାନସପୁତ୍ରାଣାଂ ବାରୁଣେ ଯଜ୍ଞେ ପୁନରାପ୍ତତ୍ତିଃଶ୍ରୁୟତେ । ସନତ୍କୁମାରୋଽପି ବ୍ରହ୍ମଣ ଏବ ମାନସଃ ପୁତ୍ରଃ ସ୍ୱୟଂ ରୁଦ୍ରାୟ ବରପ୍ରଦାନାତ୍‌ସ୍କନ୍ଦତ୍ୱେନ ପ୍ରାଦୁର୍ବଭୁବ ।



(ଗ) ଏବମେବ ଦକ୍ଷନାରଦପ୍ରଭୃତୀନାଂ ଭୂୟସୀ ଦେହାନ୍ତରୋତ୍ପତ୍ତିଃ କଥ୍ୟତେ, ତେନ-ତେନ ନିମିତ୍ତେନ ସ୍ମୃତୌ । ଶ୍ରୁତାବପି ମନ୍ତ୍ରାର୍ଥବାଦୟୋଃ ପ୍ରାୟେଣୋପଲଭ୍ୟତେ । ତେ ଚ କେଚିତ୍ପତିତେ ପୂର୍ବଦେହେ ଦେହାନ୍ତରମାଦଦତେ, କେଚିତ୍ତୁ ସ୍ଥିତ ଏବ ତସ୍ମିନ ଯୋଗୈଶ୍ୱର୍ଯ୍ୟବଶାଦନେକଦେହାଦାନନ୍ୟାୟେନ । ସର୍ବେ ଚୈତେ ସମଧିଗତେ ସକଳବେଦାର୍ଥାଃ ସ୍ମର୍ଯ୍ୟନ୍ତେ । ତଦେତେଷାଂ ଦେହାନ୍ତରୋତ୍ପତ୍ତିଦର୍ଶନାତ୍ ପ୍ରାପ୍ତଂ ବ୍ରହ୍ମବିଦ୍ୟାୟାଂ ପାକ୍ଷିକଂ ମୋକ୍ଷହେତୁତ୍ୱମହେତୁତ୍ୱଂ ବେତି ।

**(୨) ଭାଷାନ୍ତର**-(କ) ବିଦ୍ୱାନର ବର୍ତ୍ତମାନ ଶରୀର ପାତ ହେଲେ ଅନ୍ୟ ଶରୀର ହୁଏ କି ନାହିଁ ? ଏହି ପ୍ରକାର ବିଚାର କରାଯାଇଅଛି । ପରନ୍ତୁ ସାଧନଭୂତବିଦ୍ୟା ପ୍ରାପ୍ତି ହେଲେ ମୋକ୍ଷ ନିଷ୍ପନ୍ନ ହୁଏ କି ନାହିଁ - ଏହି ବିଷୟରେ ବିଚାର କରାଯାଇ ନ ପାରେ ଓ ଭୋଜନ କରୁଥିବା ଲୋକ ତୃପ୍ତ ହୁଏ ନାହିଁ ଏହି ବିଷୟର କରାଯାଏନାହିଁ । କିନ୍ତୁ ବ୍ରହ୍ମ ବିଷୟରେ ବିଚାର କରିବା ଠିକ୍ । କାରଣ-କେତେକ ବ୍ରହ୍ମବେତ୍ତାମାନଙ୍କର ଅନ୍ୟ ଶରୀରର ଉତ୍ପତ୍ତି ବିଷୟ ଇତିହାସ ଓ ପୁରାଣରେ ଦେଖିବାକୁ ମିଳେ ।

(ଖ) ଯେପରି ଅପାନ୍ତରତମା ନାମକ ବେଦାଚାର୍ଯ୍ୟ ପୁରାଣଋଷି ବିଷ୍ଣୁର ଆଦେଶ ଦ୍ୱାରା କଳି ଓ ଦ୍ୱାପରର ମଧ୍ୟଭାଗରେ କୃଷ୍ଣ ଦ୍ୱୈପାୟନ ରୂପରେ ଉତ୍ପନ୍ନ ହୋଇଥିଲେ ବୋଲି ସ୍ମୃତି କହେ ଓ ବଶିଷ୍ଠ ବ୍ରହ୍ମାଙ୍କର ମାନସପୁତ୍ର ହୋଇ ନିମିଙ୍କର ଅଭିଶାପରୁ ପୂର୍ବଦେହକୁ ତ୍ୟାଗ କରି ବ୍ରହ୍ମାଙ୍କର ଆଜ୍ଞାରୁ ପୁନର୍ବାର ମିତ୍ର ଓ ବରୁଣ ହୋଇ ଉତ୍ପନ୍ନ ହେଲେ । ଏହିପରି ବ୍ରହ୍ମାର ମାନସପୁତ୍ର ସନତ୍କୁମାର ମଧ୍ୟ ନିଜେ ରୁଦ୍ରଙ୍କୁ ବରଦାନ କରିବାକୁ ସେ କାର୍ତ୍ତିକେୟ ରୂପରେ ଜନ୍ମଗ୍ରହଣ କଲେ ।

(ଗ) ସେହିପରି ଦକ୍ଷ, ନାରଦ ପ୍ରଭୃତିର ସେହି ସେହି ନିମିତ୍ତଦ୍ୱାରା ଅନେକ ଶରୀରରେ ଉତ୍ପତ୍ତି ସ୍ମୃତି ମଧ୍ୟ କହେ । ଶ୍ରୁତି (ବେଦ)ରେ ମଧ୍ୟ ମନ୍ତ୍ର ଓ ଅର୍ଥବାଦରେ ଏହା ଉପଲବ୍ଧ ହୁଏ । କୌଣସି ଗୋଟିଏ କିନ୍ତୁ ସେମାନେ ପୂର୍ବଦେହର ପାତହେଲେ ଅନ୍ୟଦେହ ଗ୍ରହଣ କରନ୍ତି । କୌଣସି ଗୋଟିଏ ମଧ୍ୟ ସେହି ଦେହରେ ବିଦ୍ୟମାନ ହେଲେ ଯୋଗ ଓ ଐଶ୍ୱର୍ଯ୍ୟ ବଳରେ ଅନେକ ଅନ୍ୟ ଶରୀର ଧାରଣ ନ୍ୟାୟରେ ଅନ୍ୟ ଶରୀରକୁ ଗ୍ରହଣ କରନ୍ତି ଏବଂ ସେମାନେ ସମସ୍ତ ସମାଧିଗତ ସମସ୍ତବେଦ ଅର୍ଥଯୁକ୍ତ ସମ୍ୟରାଜ୍ଞତା ସ୍ମରଣ କରନ୍ତି । ତେଣୁ ତାହାର ଦେହାନ୍ତରୋତ୍ପତ୍ତିର ଦର୍ଶନ ହେତୁ ବ୍ରହ୍ମବିଦ୍ୟା ମୋକ୍ଷର ପାକ୍ଷିକହେତୁ ହୁଏ ଅଥବା ଅହେତୁ ହୁଏ ।

(୩) ମୂଳ-(କ) ଅଥ ଉତ୍ତରମୁଚ୍ୟତେ - ନ, ତେଷାମପାନ୍ତରତମଃ ପ୍ରଭୃତୀନାଂ ବେଦପ୍ରବର୍ତ୍ତନନାଦିଷ୍ଣୁ ଲୋକସ୍ଥି ହେତୁଷ୍ୱଧିକାରେଷ୍ଣୁ ନିଯୁକ୍ତାନାମଧିକାରତନ୍ତ୍ରତ୍ୱାତ୍ସ୍ଥିତେଃ ଯଥାଽସୌ ଭଗବାନ୍ ସବିତା ସହସ୍ର ଯୁଗପର୍ଯ୍ୟନ୍ତଂ ଜଗତୋଽଧିକାରଂ ଚରିତ୍ୱା ତଦବସାନ୍ନ

ଉଦୟାସ୍ତମିତବର୍ଜିତଂ କୈବଲ୍ୟମନୁଭବତି – 'ଅଥ ତତ ଊର୍ଦ୍ଧ୍ୱଂଉଦେତ୍ୟ ନୈବୋଦେ-ତା ନାସ୍ତମେତୈକଳ ଏବ ମଧ୍ୟେ ସ୍ଥାତା' (ଛା ୩-୧୧-୧୧) ଇତି ଶ୍ରୁତେଃ । ଯଥା ଚ ବର୍ତ୍ତମାନା ବ୍ରହ୍ମବିଦ୍ୟା ଆରବ୍ଧଭୋଗକ୍ଷୟେ କୈବଲ୍ୟମନୁଭବନ୍ତି, ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷ୍ୟେଽଥସଂପତ୍ସ୍ୟେ' (ଛା ୬-୧୪-୨) ଇତି ଶ୍ରୁତେଃ ।

(ଖ) ଏବମପାନ୍ତରତମଃ ପ୍ରଭୃତୟୋଽପୀଶ୍ୱରେଣ ତେଷୁ ତେଶ୍ୱଧିକାରେଷୁ ନିଯୁକ୍ତାଃ ସନ୍ତଃ ସତ୍ୟପି ସମ୍ୟଗ୍‌ଦର୍ଶନେ କୈବଲ୍ୟହେତାବକ୍ଷୀଣକର୍ମଣୋ ଯାବଦଧିକାରମବତିଷ୍ଠନ୍ତେ, ତଦବସାନେ ଚାପବୃଜ୍ୟନ୍ତ ଇତ୍ୟବିରୁଦ୍ଧମ୍ । ସକୃତ ପ୍ରବୃତ୍ତମେବ ହି ତେ ଫଳଦାନାୟ କର୍ମାଶୟମତିବାହୟନ୍ତଃ ସ୍ୱାତନ୍ତ୍ର୍ୟେଣୈବ ଗୃହାଦିବ ଗୃହାନ୍ତରମନ ମନ୍ୟଂ ଦେହଂ ସଞ୍ଚରନ୍ତଃ ସ୍ୱାଧିକାରନିବର୍ତ୍ତନାୟାପରିମୂଷିତ ସ୍ମୃତୟଃ ଏବ ଦେହେନ୍ଦ୍ରିୟ ପ୍ରକୃତି ବଶିତ୍ୱାନ୍ନିର୍ମାୟ ଦେହାନ୍ୟୁଗପତ୍‌କ୍ରମେଣ ବାଧିତିଷ୍ଠନ୍ତି । ନ ଚୈତେ ଜାତିସ୍ମରା ଇତ୍ୟୁଚ୍ୟନ୍ତେ 'ତ ଏବୈତେ' ଇତି ସ୍ମୃତିପ୍ରସିଦ୍ଧିଃ ।

(ଗ) ଯଥା ହି ସୁଲଭା ନାମ ବ୍ରହ୍ମବାଦିନୀ ଜନକେନ ବିବଦିତୁକାମା ବ୍ୟୁଦସ୍ୟ ସ୍ୱଂ ଦେହଂ ଜାନକଂ ଦେହମାବିଶ୍ୟ, ବ୍ୟୁଦା ତେନ, ପଶ୍ଚାତ୍ ସ୍ୱୟମେବ ଦେହମାବିବେଶେତି ସୂର୍ଯ୍ୟତେ । ଯଦି ହ୍ୟୁପଯୁକ୍ତେ ସକୃତପ୍ରବୃତ୍ତେ କର୍ମଣି କର୍ମାନ୍ତରଂ ଦେହାନ୍ତରାରମ୍ଭକାରଣମା-ବିର୍ଭବେତ୍ତତୋଽନ୍ୟଦପ୍ୟଦରଘ ଧବୀଜଂ କର୍ମାନ୍ତରଂତଦ୍‌ବଦେବ ପ୍ରସଜେ ତେତି ବ୍ରହ୍ମବିଦ୍ୟାୟାଃ ପାକ୍ଷିକଂ ମୋକ୍ଷହେତୁତ୍ୱମହେତୁତ୍ୱଂ ବା ଶଙ୍କୋଚ, ନ ତ୍ୱିୟମାଶଙ୍କା ଯୁକ୍ତା ଜ୍ଞାନାତ କର୍ମବୀଜଦାହସ୍ୟ ଶ୍ରୁତିସ୍ମୃତିପ୍ରସିଦ୍ଧତ୍ୱାତ୍ ।

**(୩) ଭାଷାଂତର** -ସିଦ୍ଧାନ୍ତ-(କ) ତେଣୁ ଏହାର ଉତ୍ତରରେ କୁହାଯାଉଅଛି – ନୁହେଁ, ଲୋକ୍‌ସ୍ଥିତିର ହେତୁ ଭୂତ ଦେବ ପ୍ରବର୍ତ୍ତନ ପ୍ରଭୃତି ଅଧିକାରଗୁଡ଼ିକରେ ନିଯୁକ୍ତ ହୋଇଥିବା ଏହି ଅପାନ୍ତରତମା ପ୍ରଭୃତି ଅବସ୍ଥିତି ଅଧିକାରର ଅଧୀନ ଅଟେ । ଯେପରି ଏହି ଭଗବାନ ସୂର୍ଯ୍ୟ ସହସ୍ର ଯୁଗ ପର୍ଯ୍ୟନ୍ତ ଜଗତ ଅଧିକାରକୁ ଚଳାଇ ତାହାର ସମାପ୍ତି ହେଲାପରେ ଉଦୟ ଓ ଅସ୍ତହୀନ କୈବଲ୍ୟକୁ ଅନୁଭବ କରନ୍ତି, କାରଣ-ଅଥ ତତ୍ ଊର୍ଦ୍ଧ୍ୱଂ । (ପ୍ରାଣୀମାନଙ୍କର ପ୍ରାରବ୍ଧ କର୍ମ କ୍ଷୀଣ ହେଲା ପରେ କେବଳ ବ୍ରହ୍ମସ୍ୱରୂପ ଉଦୟ ହୁଏ ନାହିଁ ଅଥବା ଅସ୍ତ ହୁଏ ନାହିଁ । କିନ୍ତୁ ମଧ୍ୟ ଭାଗରେ ସ୍ଥିର ହୋଇ ରହେ । ଏହାହିଁ ଶ୍ରୁତି କହେ । ଯେପରି ବର୍ତ୍ତମାନ ବ୍ରହ୍ମବେତ୍ତା ପ୍ରାରବ୍ଧକର୍ମର ଭୋଗ କ୍ଷୟ ହେଲା ପରେ କୈବଲ୍ୟ ଅନୁଭବ କରନ୍ତି, କାରଣ – 'ତସ୍ୟ ତାବଦେବ' (ତାହାର ମୋକ୍ଷରେ ଏତେ ବିଳମ୍ବ ହୁଏ । ଯେଉଁ ସମୟ ପର୍ଯ୍ୟନ୍ତ ସେହି ଦେହ ବନ୍ଧନ ଶରୀର ଦ୍ୱାରା ମୁକ୍ତ ହୁଏ ନାହିଁ ତା'ପରେ ସେ ତତ୍‌ସଂପନ୍ନ ବ୍ରହ୍ମ ପାଏ) ଏହାହିଁ ଶ୍ରୁତିରେ ଅଛି ।

(ଖ) ସେପରି ଈଶ୍ୱର ଦ୍ୱାରା ସେହି ସେହି ଅଧିକାରଣଗୁଡ଼ିକରେ ନିଯୁକ୍ତ ହୋଇ ଅପାନ୍ତରତମା ପ୍ରଭୃତି ଈଶ୍ୱର କୈବଲ୍ୟର ହେତୁଭୂତ ତତ୍ତ୍ୱଜ୍ଞାନ ହେଲା ପରେ କର୍ମର କ୍ଷୀଣ ନ ହେଲା ପର୍ଯ୍ୟନ୍ତ ଅଧିକାରରେ ରହେ ଏବଂ କର୍ମ କ୍ଷୀଣ ହେଲା ପରେ ମୁକ୍ତ ହୁଏ-



ଏଠାରେ କୌଣସି ବିରୋଧ ନାହିଁ । କାରଣ-ଅଧିକାରର ଫଳ ଦେବା ପାଇଁ ଥରେ ମାତ୍ର ପ୍ରବୃତ୍ତି ହୋଇ କର୍ମାଶୟକୁ ସମାପ୍ତି କରି ଗୋଟିଏ ଘରୁ ଅନ୍ୟଘରକୁ ଗଲାପରି ସ୍ୱତନ୍ତ୍ର ଭାବରେ ଅନ୍ୟ ଅନ୍ୟ ଦେହକୁ ସଞ୍ଚାରଣ କରି ନିଜକୁ ଅଧିକାର ସଂପନ୍ନ କରିବାପାଇଁ ପୂର୍ବସ୍ମୃତିର ଲୋପ ନ ହୋଇ ଦେହ ଇନ୍ଦ୍ରିୟକୁ ପ୍ରକୃତି (ସ୍ୱଭାବ)କୁ ନିଜର ଅଧୀନ କରି ଯୁଗପତ୍ (କ୍ରମଶଃ) ଅନେକ ଦେହକୁ ନିର୍ମାଣ କରି ସେଥିରେ ଅଧିଷ୍ଠିତ ହୁଅନ୍ତି । ସେମାନେ କିନ୍ତୁ ଜାତିସ୍ମର ବୋଲି କୁହାଯା'ନ୍ତି ନାହିଁ, କାରଣ-'ତ ଏବୈତେ' (ଏମାନେ ହିଁ ସେମାନେ) ଏହା ସ୍ମୃତିରେ ଅଛି ।

(ଗ) ଯେପରି ସୁଲଭା ନାମକ ବ୍ରହ୍ମବାଦିନୀ ଜନକ ସହିତ ବିବାଦ କାମନା କରି ନିଜର ଶରୀରକୁ ପରିତ୍ୟାଗ କରି ଜନକର ଶରୀରରେ ପ୍ରବେଶ କରି ତାହା ସହିତ ବିବାଦ କରି ପଛରେ ଶରୀରରେ ପ୍ରବେଶ କରେ-ଏହାହିଁ ସ୍ମୃତିରେ ଅଛି । ଯଦି ଥରେ ମାତ୍ର ପ୍ରବୃତ୍ତ ହୋଇ ଉପଯୁକ୍ତ କର୍ମରେ ଦେହରେ ଉତ୍ପତ୍ତି କାରଣଭୂତ ଅନ୍ୟକର୍ମର ଆବିର୍ଭାବ ହୁଏ ତେବେ ଅନ୍ୟ ଯାହାର ବୀଜ ଦଗ୍ଧ ହୋଇନାହିଁ, ତାହାର କର୍ମାନ୍ତର ସେହିପରି ପ୍ରସକ୍ତ ହେବ । ତେଣୁ ବ୍ରହ୍ମବିଦ୍ୟା ପାକ୍ଷିକ ମୋକ୍ଷର ହେତୁ ହୁଏ କି ? ଅହେତୁ ହୁଏ - ଏହା ଆଶଙ୍କା ହେବ । ପରନ୍ତୁ ଏହି ଶଙ୍କା ଠିକ୍ ନୁହେଁ । କାରଣ-ଜ୍ଞାନରୁ କର୍ମବୀଜର ଦାହ୍ ଶ୍ରୁତି ଓ ସ୍ମୃତିରେ ପ୍ରସିଦ୍ଧ ଅଛି ।

(୪) ମୂଳ-(କ) ତଥା ହି ଶ୍ରୁତିଃ - 'ଭିଦ୍ୟତେ ହୃଦୟଗ୍ରନ୍ଥିଃଛିଦ୍ୟନ୍ତେ ସର୍ବ ସଂଶୟାଃ' କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ଦୃଷ୍ଟେ ପୁରାବରେ । (ମୁଣ୍ଡ ୨-୨-୮), 'ସ୍ମୃତିଲମ୍ଭେ ସର୍ବଗ୍ରନ୍ଥୀନାଂବିପ୍ରମୋକ୍ଷଃ' (ଛା ୨-୨୬-୨) ଇତି ଚୈବମାଦ୍ୟା । ସ୍ମୃତିରପି- 'ଯଥୈଧାଂସି ସମିଦ୍ଧୋଽଗ୍ନିର୍ଭସ୍ମସାତ୍ କୁରୁତେଽର୍ଜୁନ ! ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା' (ଭଗୀ ୪-୩୭) ।

(ଖ) ବୀଜାନ୍ୟଗ୍ନ୍ୟୁପଦଗ୍ଧାନି ନ ରୋହନ୍ତି ଯଥା ପୁନଃ । ଜ୍ଞାନଦଗ୍ଧୈସ୍ତଥା କ୍ଲେଶୈର୍ନାତ୍ମା ସଂପଦ୍ୟରେ ପୁନଃ ଇତି ଚୈବମାଦ୍ୟା । ନ ଚାବିଦ୍ୟାଦିକ୍ଲେଶଦାହେ ସତି କ୍ଲେଶବୀଜସ୍ୟ କର୍ମାଶୟସ୍ୟୈକଦେହଦାହ ଏକଦେଶପ୍ରରୋହଶ୍ଚେତ୍ୟୁପପଦ୍ୟତେ, ନ ହ୍ୟଗ୍ନିଦଗ୍ଧସ୍ୟ ଶାଲିବୀଜସ୍ୟୈକଦେଶପ୍ରରୋହୋ ଦୃଶ୍ୟତେ ।

(ଗ) ପ୍ରବୃତ୍ତଫଳସ୍ୟ ତୁ କର୍ମାଶୟସ୍ୟ ମୁକ୍ତେଷୋରିବ ବେଗକ୍ଷୟାନ୍ନିବୃତ୍ତିଃ, 'ତସ୍ୟ ତାବଦେବ ଚିରମ୍' (ଛା ୬-୧୪-୨) ଇତି ଶରୀରପାତାବଧିକ୍ଷେପକରଣାତ୍ । ତସ୍ମାଦୁପପନ୍ନା ଯାବଦଧିକାରମାଧିକାରଣାମବସ୍ଥିତିଃ । ନ ଚ ଜ୍ଞାନଫଳସ୍ୟ ନୈକାନ୍ତିକତା । ତଥା ଚ ଶ୍ରୁତେରବିଶେଷେଣୈବ ସର୍ବେଷାଂ ଜ୍ଞାନାନ୍ ମୋକ୍ଷଂ ଦର୍ଶୟତିତଦ୍ୟୋଯୋ ଦେବାନାଂ ପ୍ରତ୍ୟବୁଧ୍ୟତଂ ସ ଏବ ତଦଭବତ୍ତଥର୍ଷୀଣାଂ ତଥା ମନୁଷ୍ୟାଣାମ୍' (ବୃହ ୧-୪-୧୦) ଇତି ।

(ଘ) ଜ୍ଞାନାନ୍ତରେଷ୍ଟୁ ଚୈଶ୍ୱର୍ଯ୍ୟାଦିଫଳେଷ୍ଵାସକ୍ତାଃ ସ୍ୟୁର୍ମହର୍ଷୟଃ ତେ ପଶ୍ଚାଦୈଶ୍ୱର୍ଯ୍ୟକ୍ଷୟ ଦର୍ଶନେନ ନିର୍ବିଣ୍ଣାଃ ପରମାତ୍ମଜ୍ଞାନେ ପରିନିଷ୍ଠାଃ କୈବଲ୍ୟଂ ପ୍ରାପୁରିତ୍ୟୁପପଦ୍ୟତେ - ବ୍ରହ୍ମଣା ସହ ତେ ସର୍ବେ ସଂପ୍ରାପ୍ତେ ପ୍ରତିସଞ୍ଚରେ । ପରସ୍ୟାନ୍ତେ କୃତାତ୍ମନଃ ପ୍ରବିଶନ୍ତି ପରଂପଦମ୍' ଇତି ସ୍ମରଣାତ୍ ।

(ଙ) ପ୍ରତ୍ୟକ୍ଷଫଳତ୍ୱାଚ୍ଚ ଜ୍ଞାନସ୍ୟ ଫଳବିରହାଶଙ୍କାନୁପପତ୍ତିଃ । କର୍ମଫଳେ ହି ସ୍ୱର୍ଗାଦାବନୁଭବାନାରୂଢେ ସ୍ୟାଦାଶଙ୍କା ଭବେଦ୍ ବା ନ ବେତି । ଅନୁଭବାରୁଢଂ ତୁ ଜ୍ଞାନଫଳମ୍, 'ଯତ୍ ସାକ୍ଷାଦପରୋକ୍ଷାଦ୍ ବ୍ରହ୍ମ' (ବୃହ ୩-୪-୧) ଇତି ଶ୍ରୁତେଃ, 'ତତ୍ତ୍ୱମସି (ବୃ ୬-୮-୭) ଇତି ଚ ସିଦ୍ଧବଦୁପଦେଶାତ୍ ।

(ଚ) ନ ହି 'ତତ୍ତ୍ୱମମି' ଇତ୍ୟସ୍ୟ ବାକ୍ୟସ୍ୟାର୍ଥସ୍ତତ୍ତ୍ୱଂ ମୃତୋ ଭବିଷ୍ୟସୀତ୍ୟେବଂ ପରିଣେତୁଂ ଶକ୍ୟଃ । 'ତଦ୍ଧୈତତ୍ ପଶ୍ୟନ୍ନୃଷିର୍ବାମଦେବଃ ପ୍ରତିପେଦେଽହଂ ମନୁରଭବଂ ସୂର୍ଯ୍ୟଶ୍ଚ' (ବୃହ ୭-୪-୧୦) ଇତି ସମ୍ୟଗ୍ ଦର୍ଶନକାଳମେବ ତତ୍ଫଳମ୍ ସର୍ବାତ୍ମତ୍ୱଂ ଦର୍ଶୟତି । ତସ୍ମାଦୈବାନ୍ତିକୀ ବିଦୁଷଃ କୈବଲ୍ୟସିଦ୍ଧିଃ ।

(୪) ଭାଷାଂତର -(କ) 'ଭିଦ୍ୟନ୍ତେ ହୃଦୟଗ୍ରନ୍ଥିଃ' (କାର୍ଯ୍ୟକାରଣ ରୂପରେ ସେହି ପରଂବ୍ରହ୍ମର ସାକ୍ଷାତ୍କାର ହେଲାପରେ ଏହି ଜୀବକୁ ହୃଦୟଗ୍ରନ୍ଥି ଜନ ଚେତନ ଓ-ତାହାର ଧର୍ମର ତାଦାତ୍ମ୍ୟାଧାସରୂପ ସଂଶୟଛିନ୍ନ ହୁଅନ୍ତି, ଆତ୍ମବିଷୟକ ସେ ସବୁ ସଂଶୟ ନଷ୍ଟ ହୋଇ ଯାଏ ଓ ତାହାର ସମସ୍ତ କର୍ମ କ୍ଷୀଣ ହୋଇଯାଏ) । 'ସ୍ମୃତିଲମ୍ଭେ' (ସ୍ମୃତିରେ ମଧ ମୁଁ ବ୍ରହ୍ମ ଅଟେ) ଏହା ପ୍ରାପ୍ତି ହେଲାପରେ ସଂପୂର୍ଣ୍ଣ ଗ୍ରନ୍ଥିର ନିବୃତ୍ତି ହୁଏ) ଇତ୍ୟାଦି ଶ୍ରୁତି କହେ ।

(ଖ) 'ଯଥୈଧାଂସି' (ହେ ଅର୍ଜୁନ । ଯେପରି ପ୍ରଜ୍ୱଳିତ ଅଗ୍ନିଇନ୍ଧନକୁ ଭସ୍ମସାତ୍ କରେ ସେପରି ଜ୍ଞାନ ସଂପୂର୍ଣ୍ଣ କର୍ମକୁ ନିର୍ବୀଜ କରିଦିଏ) ଏବଂ ବୀଜାନ୍ୟଗ୍ନ୍ୟୁପଦଗ୍ଧାନି' (ଯେପରି ଅଗ୍ନିଦ୍ୱାରା ଭସ୍ମ ହୋଇ ବୀଜ ପୁନର୍ବାର ଅଙ୍କୁରୋଦ୍‌ଗମ ହୁଏ ନାହିଁ, ସେପରି ଜ୍ଞାନାଗ୍ନି ଦ୍ୱାରା ସମସ୍ତ କ୍ଳେଶ ଦଗ୍ଧ ହୋଇ ପୁନଶ୍ଚ ଶରୀର ଉତ୍ପନ୍ନ କରେ ନାହିଁ) ଇତ୍ୟାଦି ସ୍ମୃତି ମଧ ଅଛି । ଏହିପରି ଅବିଦ୍ୟା ପ୍ରଭୃତି କ୍ଳେଶର ଦାହ ହେଲାପରେ କ୍ଳେଶର ବୀଜ କର୍ମାଶ୍ରୟତ ଗୋଟିଏ ଦେଶର ଦାହ ହୁଏ ଓ ଅନ୍ୟ ଦେଶର ପ୍ରରୋହ ହୁଏ, ଏହା ଠିକ୍ ନୁହେଁ । ଅଗ୍ନିଦ୍ୱାରା ଦଗ୍ଧଶାଳୀ ବୃଜର ପ୍ରରୋହ ଦେଖାଯାଏ ନାହିଁ ।

(ଗ) ଯେପରି ନିକ୍ଷେପ କରିବା ପାଇଁ ଥିବା ବାଣର ନିବୃତ୍ତି ବେଗ କ୍ଷୟ ହେବାଦ୍ୱାରା ହୁଏ, ସେହିପରି ପ୍ରବୃତ୍ତି ଫଳଯୁକ୍ତ କର୍ମାଶୟର ନିବୃତ୍ତି ମଧ ବେଗକ୍ଷୟ (ଭୋଗକ୍ଷୟ) ହେଲା ପରେ ହୁଏ । କାରଣ- 'ତସ୍ୟ ତାବଦେବ ଚିରସ' (ତାହାର ସମସ୍ତ ଅବସ୍ଥିତି ବିଳମ୍ବ ହୁଏ) ଏହିପରି ଶରୀର ପାତ ପର୍ଯ୍ୟନ୍ତ ବିଳମ୍ବ ହୁଏ । ତେଣୁ ଅଧିକାର ପର୍ଯ୍ୟନ୍ତ



ଅଧିକାରୀଙ୍କର ଅବସ୍ଥିତି ଉପପନ୍ନ ହୁଏ । ଫଳରେ ଜ୍ଞାନର ବ୍ୟଭିଚାର ହୁଏ ନାହିଁ । କାରଣ-ତଦ୍ୟୋ ଯୋ ସେହି ଦେବତା ଠାରେ ଯିଏ ଯାହା ଜାଣେ, ସେ ତାହାହିଁ ହେଲା । ସେହିପରି ଋଷି ଓ ମନୁଷ୍ୟଙ୍କ ପାଖରେ ଯାହା ଯିଏ ଜଣେ, ସେ ତଦ୍ରୂପ (ବ୍ରହ୍ମରୂପ) ହେଲା ଏହି ଶ୍ରୁତି ସମାନ ରୂପରେ ସମସ୍ତଙ୍କ ଜ୍ଞାନଦ୍ୱାରା ମୋକ୍ଷ ଦେଖାଏ ।

(ଘ) ଐଶ୍ୱର୍ଯ୍ୟ ପ୍ରଭୃତି ଫଳକୁ ଦେଉଥିବା ଅନ୍ୟ ଉପାସନାଗୁଡ଼ିକରେ ମହର୍ଷିଲୋକ ଆସକ୍ତ ହୋଇ, ପରେ ସେମାନେ ଐଶ୍ୱର୍ଯ୍ୟର କ୍ଷୟଦର୍ଶନ ହେତୁ ବିରକ୍ତ ହୋଇ ପରମାତ୍ମାର ଜ୍ଞାନରେ ପୂର୍ବ ରୂପରେ ନିଷ୍ଠାବାନ୍ ହୋଇ କୈବଲ୍ୟକୁ ପ୍ରାପ୍ତ ହୁଅନ୍ତି - ଏହା ହିଁ ଉପପନ୍ନ ହୁଏ । ତେଣୁ 'ବ୍ରହ୍ମଣା ସହ ତେ' (ମହାପ୍ରଳୟ ପ୍ରାପ୍ତ ହେଲାପରେ ଓ ପର ହିରଣ୍ୟଗଭର ଅନ୍ତହେଲା ପରେ ନିର୍ମଳ ଅନ୍ତଃକରଣ ଥିବା ଜ୍ଞାନୀ ବ୍ରହ୍ମର ସହିତ ବ୍ରହ୍ମସ୍ୱରୂପକୁ ପାଆନ୍ତି । ଏହି ସ୍ମୃତି କୁର୍ମପୁରାଣରେ ଅଛି ।

(ଙ) ପ୍ରତ୍ୟକ୍ଷ ଫଳବାନ୍ ହେଲେ ଜ୍ଞାନରେ ଫଳର ଅଭାବ ଆଶଙ୍କା ହୁଏ ନାହିଁ । ପରନ୍ତୁ ଅନୁଭବରେ ନ ଆସୁଥିବା କର୍ମଫଳ ସ୍ୱର୍ଗ ପ୍ରଭୃତିରେ ହେବ କି ନାହିଁ, ଏହା ଆଶଙ୍କା ହୁଏ । ଜ୍ଞାନର ଫଳ କିନ୍ତୁ ଅନୁଭବରେ ଅରୂଢ ହୁଏ ଅର୍ଥାତ୍ ସିଦ୍ଧ ହୁଏ । କାରଣ - 'ଯତ୍ ସାକ୍ଷାଦ୍' (ଯାହା ସାକ୍ଷାତ୍ ଅପରୋକ୍ଷ ବ୍ରହ୍ମ) ଏହା ଶ୍ରୁତି ଅଟେ ଓ 'ତତ୍ତ୍ୱମସି' ଏହିପରି ସିଦ୍ଧବତ୍ ଉପଦେଶ ଅଛି । 'ତତ୍ତ୍ୱମସି ବାକ୍ୟର ଅର୍ଥ ସେ ହିଁ ତୁ, ମୃତ ହେବ'- ଏହିପ୍ରକାର ପରିଣତ ହୁଏ ନାହିଁ । 'ତଦ୍ଧୈତତ୍' (ତାହାକୁ ବାକ୍ୟରୂପରେ ଅନୁଭବ କରି ଋଷି ବାମଦେବ ଜଣାଇଲେ - ମୁଁ ମନୁ ହେଲି ଓ ସୂର୍ଯ୍ୟ ମଧ୍ୟ) ଏହି ଶ୍ରୁତି ତତ୍ତ୍ୱଜ୍ଞାନ କାଳରେ ସେହି ଫଚର ସର୍ବାତ୍ମତ୍ୱକୁ ଦେଖାଏ । ତେଣୁ ବିଦ୍ୱାନ୍‌ର କେବିଲ୍ୟସିଦ୍ଧି ଅବ୍ୟଭିଚରିତ ହୁଏ ।

## अक्षरध्याधिकरणम् ॥ सू० ३३ ॥

## ଅକ୍ଷରଧ୍ୟଧିକରଣମ୍ -୨

## अक्षरधियां त्वरोध: सामान्यतद्भावाभ्यामौपसदवत्तदुक्तम् ॥ ३३ ॥

## (୧) ଅକ୍ଷରଧିୟାଂତ୍ୱବରୋଧଃ ସାମାନ୍ୟତଦ୍‌ଭାବାଭ୍ୟାମୌ-ପସଦବତ୍ତଦୁକ୍ତମ୍ ॥ ୩-୩-୩୩ ॥

ଅକ୍ଷରଧିୟାମ୍=ବ୍ରହ୍ମବିଷୟକ ବିଶେଷ ପ୍ରତିଷେଧକ ସମସ୍ତ ବିଦ୍ୱାନମାନଙ୍କର ସର୍ବତ୍ର, ଅବିରୋଧଃ=ଉପସଂହାର ହେବା ଉଚିତ୍ । ସାମାନ୍ୟତଦ୍‌ଭାବାଭ୍ୟାମ = କାରଣ- 'ଦ୍ୱୈତ ନିରସନଦ୍ୱାରା ବ୍ରହ୍ମ ପ୍ରତିପାଦନ ପ୍ରକାର ସମାନ ଅଟେ ଏବଂ ସେହି ପ୍ରତିପାଦ୍ୟ ବ୍ରହ୍ମ ସର୍ବତ୍ର ଏକ ରୂପରେ ପ୍ରତ୍ୟଭିଜ୍ଞାନ ହୁଏ । ଔପସଦ୍ ବତ୍ ଯେପରି ଉପସଦ୍ ଜଷ୍ଟିମର ସର୍ବତ୍ର ସମାନ ଅଟେ । ତଦୁକ୍ତମ-ତେଣୁ ଏହା ଜୈମିନି ସତ୍ରରେ କୁହାଯାଇଅଛି ।

(୨) ମୂଳ-(କ) ବାଜସୟେନକେ ଶ୍ରୁୟତେଏତଦ୍ୱୈ ତଦକ୍ଷରଂ ଗାର୍ଗି ବ୍ରାହ୍ମଣା ଅଭିବଦନ୍ତ୍ୟସ୍ଥୂଳ ମନଣ୍ୱହ୍ରସ୍ୱମଦୀର୍ଘମଲୋହିତ ମସ୍ନେହମ୍' (ବୃହ ୩-୬-୮) ଇତ୍ୟାଦି । ତଥା ଅଥର୍ବଣେଶ୍ଚୟତେ- 'ଅଥା ପରାଯୟା ତଦକ୍ଷର ମଧିଗମ୍ୟତେ, ଯତ୍ତଦଦ୍ରେଶ୍ୟମ ଗ୍ରାହ୍ୟମଗୋତ୍ରମବର୍ଣ୍ଣମ' (ମୁ ୧-୧-୫) ଇତ୍ୟାଦି, ତଥୈବାନ୍ୟତ୍ରାପି ବିଶେଷନିରାକରଣ ଦ୍ୱାରେଣାକ୍ଷରଂ ପରଂବ୍ରହ୍ମ ଶ୍ରାବ୍ୟତେ । ତତ୍ର ଚ କ୍ୱଚିତ୍ କେନଚିଦିତିରିକ୍ତା ବିଶେଷାଃ ପ୍ରତିଷିଧନ୍ତେ ।

(ଖ) ତାସାଂ ବିଶେଷପ୍ରତିଷେଧବୁଦ୍ଧୀନାଂ କିଂ ସର୍ବାସାଂ ସର୍ବତ୍ର ପ୍ରାପ୍ତିରୁତ ବ୍ୟବସ୍ଥେତି ସଂଶୟେ, ଶ୍ରୁତିବିଭାଗାଦ ବ୍ୟବସ୍ଥାପ୍ରାପ୍ତସ୍ତୁବୁଚ୍ୟତେ- ଅକ୍ଷର ବିଷୟାସ୍ତା ବିଶେଷପ୍ରତିଷେଧବୁଦ୍ଧୟଃ ସର୍ବାଃ ସର୍ବତ୍ରାବରୋଦ୍ଧବ୍ୟାଃ ସାମାନ୍ୟତଦ୍‌ଭାବାଭ୍ୟାମ୍ ସମାନୋ ହି ସର୍ବତ୍ର ବିଶେଷନିରାକରଣ ରୂପୋ ବସ୍ତୁପ୍ରତିପାଦନ ପ୍ରକାରଃ । ତଦେବ ଚ ସର୍ବତ୍ର ପ୍ରତିପାଦ୍ୟଂ ବ୍ରହ୍ମାଭିନ୍ନଂ ପ୍ରତ୍ୟଭିଜ୍ଞାୟତେ ।

(ଗ) ତତ୍ର କିମିତ୍ୟନ୍ୟତ୍ର କୃତା ବୁଦ୍ଧୟୋଽନ୍ୟତ୍ର ନ ସ୍ୟୁଃ ? ତଥାଚ ଆନନ୍ଦାଦୟଃ ପ୍ରଧାନସ୍ୟ' (ବ୍ର.ସୂ. ୩-୩-୧୧) ଇତ୍ୟତ୍ର ବ୍ୟାଖ୍ୟାତମ୍ । ତତ୍ର ବିଧିରୁପାଣି ବିଶେଷଣାନି ଚିନ୍ତିତାନୀହ ପ୍ରତିଷେଧରୁପାଣୀତି ବିଶେଷଃ । ପ୍ରପଞ୍ଚାର୍ଥଶ୍ଚାୟଂ ଚିନ୍ତାଭେଦଃ ।

(ଘ) ଔପସଦବିଦିତି ନିଦର୍ଶନମ୍ । ଯଥା ଜାମଦଗ୍ନ୍ୟେଽହୀନେ ପୁରୋଡାଶିନୀ ଷ୍ୱୂପସତ୍ସୁ ଚୋଦିତାସୁ ପୁରୋଡ଼ାଶପ୍ରଦାନମନ୍ତ୍ରାଣାମ୍ ଅଗ୍ନେର୍ବେର୍ହୋତ୍ରଂ ବେରଧ୍ୱରମ ଇତ୍ୟେବମାଦୀନାମୁଦ୍‌ଗାତୃ ବେଦୋତ୍ପନ୍ନାମପ୍ୟଧ୍ୱର୍ଯ୍ୟୁଭିରସମ୍ବନ୍ଧୋ ଭବତି, ଅଧ୍ୱର୍ଯ୍ୟୁକର୍ତ୍ତୃକତ୍ୱାତ୍ ପୁରୋଡ଼ାଶପ୍ରଦାନସ୍ୟ ପ୍ରଧାନତନ୍ତ୍ରତ୍ୱାଚାଙ୍ଗାନାମ୍ । ଏବମିହାପ୍ୟକ୍ଷର ତନ୍ତ୍ରତ୍ୱାତ୍ତଦ୍ ବିଶେଷଣାନାଂ ଯତ୍ର କ୍ୱଚିଦପ୍ୟୁତ୍ପନ୍ନାନାମକ୍ଷରେଣ ସର୍ବତ୍ରାଭିସମ୍ବନ୍ଧ ଇତ୍ୟର୍ଥଃ । ତଦୁକ୍ତଂ ପ୍ରଥମକାଣ୍ଡେ 'ଗୁଣମୁଖ୍ୟେ ବେଦ ସଂଯୋଗଃ (ଦୈ-ମୂ ୩-୩-୮) ଇତ୍ୟତ୍ର ।

**(୨) ଭାଷାଂତର-** (କ) ବାଜସନେୟକରେ 'ଏତଦ୍‌ହ୍ୱୈତନ' (ଯାଜ୍ଞବଲକ୍ୟ-ହେ ଗାର୍ଗୀ ତୁମେ ମୋତେ ଯାହା ପଚାରିଲ ଯେ - ଆକାଶ କେଉଁଠାରେ ଓତପ୍ରୋତ ? ସେ ଏହା ଯେ - ବ୍ରହ୍ମବେତ୍ତା ସେହି ତତ୍ତ୍ୱକୁ ଅକ୍ଷର କହନ୍ତି, ସେ ସ୍ଥୂଳ, ଅନଣୁ, ଅହ୍ରସ୍ୱ, ଅଦୀର୍ଘ, ଅଲୋହିତ ଓ ଅସ୍ନେହ ଅଟେ । ଇତ୍ୟାଦି ଶ୍ରୁତି କହେ । ସେହିପରି ଅଥର୍ବଣିରେ 'ଅଥପରା' (ତଥା ଯଦ୍ୱାରା ଏହି ଅକ୍ଷର ପରମାତ୍ମା ରୂପରେ ଅଧିଗତ ହୁଏ, ସେ ପରା ବିଦ୍ୟା । ସେ ଯାହା ଅଦ୍ରେଶ୍ୟ (ସେ ସବୁ ବୁଦ୍ଧି ଓ ଇନ୍ଦ୍ରିୟଗୁଡ଼ିକର ଅବିଷୟ), ଅଗ୍ରାହ୍ୟ, (କର୍ମେନ୍ଦ୍ରିୟର ଅବିଷୟ), ଅଗୋତ୍ର, ଅଗୋତ୍ର, (ଅନନ୍ୱୟ ଓ ଅବର୍ଣ୍ଣ ଅଟେ) ଇତ୍ୟାଦି ଶ୍ରୁତି କହେ । ସେହିପରି ଅନ୍ୟ



ଶାଖାରରେ ମଧ୍ୟ ବିଶେଷ ନିରାକାଣ ଦ୍ୱାରା ଅକ୍ଷର ପରଂବ୍ରହ୍ମର ଶ୍ରବଣ କରେ । ସେଠାରେ କେତେକ ସ୍ଥଳରେ କେତେକ ଅଧିକ ବିଶେଷର ପ୍ରତିଷେଧ ହୁଏ ।

(ଖ) ସେହି ବିଶେଷ ପ୍ରତିଷେଧକ ବୁଦ୍ଧିର କଣ ସବୁଠାରେ ପ୍ରାପ୍ତି ହୁଏ, ଅଥବା ବ୍ୟବସ୍ଥା ହୁଏ - ଏହିପରି ସଂଶୟ ହେବାରୁ ଶ୍ରୁତିବିଭାଗ ଦ୍ୱାରା ବିଷେଧ ବୁଦ୍ଧିର ତତ୍‌ଶାଖାରେ ବ୍ୟବସ୍ଥା ପ୍ରାପ୍ତ ହେଲା ପରେ କୁହାଯାଇଅଛି - ଅକ୍ଷର ବିଷୟକ ସବୁବିଶେଷ ପ୍ରତିଷେଧକ ବୁଦ୍ଧିଗୁଡ଼ିକର ସବୁ ଜାଗାରେ ଉପସଂହାର ହେବା ଉଚିତ କାରଣ - ତାହାର ସାମାନ୍ୟ ଓ ତଦ୍‌ଭାବ ହୁଏ । ସେହି ପ୍ରତିପାଦ୍ୟ ବ୍ରହ୍ମ ସର୍ବତ୍ର ଅଭିନ୍ନ ରୂପରେ ପ୍ରତ୍ୟିଭିଜ୍ଞାତ ହୁଏ ।

(ଗ) ସେହି ଗୋଟିଏ ଶାଖାରେ ସ୍ୱୀକାର କରାଯାଇଥିବା ବୁଦ୍ଧି ଅନ୍ୟଶାଖାରେ କଣ ହେବା ଉଚିତ ନୁହେଁ କି ? ସେହି ପ୍ରକାର 'ଅସ୍ୟାନନ୍ଦାବୟଃ ପ୍ରଧାନା' ଏହି ସୂତ୍ରରେ ବ୍ୟାଖ୍ୟାନ କରାଯାଇଅଛି । ସେଠାରେ ବିଧିରୂପ ବିଶେଷଣର ବିଚାର କରାଯାଇଅଛି । ଏହିପରି ଦୁଇଟି ଅଧିକରଣରେ ବିଶେଷ ଭେଦ ଅଛି ଏବଂ ଏହା ପୁଣି କରାଯାଇଥିବା ବିଚାରେ- ବିଶେଷ ହିଁ ତାହାର ବିସ୍ତାର ପାଇଁ ଉଦ୍ଦିଷ୍ଟ ।

(ଘ) ଔପନିଷଦ୍ ପରି ଏଠାରେ ମଧ୍ୟ ଦୃଷ୍ଟାନ୍ତ ଅଛି । ଯେପରି ଜାମଦଗ୍ନିଦ୍ୱାରା କରାଯାଇଥିବା ଅହୀନସାମକ ସୋମଯାଗରେ ପୁରେଡ଼ାଶ ଯୁକ୍ତ ଉପଷଦ୍ ଇଷ୍ଟଗୁଡ଼ିକର ବିଧାନ ହେଲା ପରେ 'ଆଗ୍ନେର୍ଦ୍ଧେହେ' (ଦେବତାମାନଙ୍କର ହୋତ୍ର ଓ ଅଧବର କର୍ମ ଅଗ୍ନିରୁ ସଂପନ୍ନ ହୁଅନ୍ତି) ଇତ୍ୟାଦି ଉଦ୍‌ଗାତାର ବେଦରେ ଉତ୍ପନ୍ନ ହୋଇ ପୁରୋଡାଶ ପ୍ରଦାନ ମନ୍ତ୍ରର ଅଧ୍ୱର୍ଯ୍ୟୁ ସହ ସମ୍ବନ୍ଧ ହୁଏ । କାରଣ ପୁରୋଡାଶପ୍ରଦାନ ଅଧ୍ୱର୍ଯ୍ୟୁର ସହ ହୁଏ, କାରଣ-ପୁରୋଡ଼ାଶପ୍ରଦାନ ଅଧ୍ୱର୍ଯ୍ୟକର୍ତ୍ତୃକ ହୁଏ ଓ ଅଙ୍ଗ ପ୍ରଧାନର ଅଧୀନ ହୁଅନ୍ତି । ସେପରି ଏଠାରେ ମଧ୍ୟ ଅକ୍ଷରର ଅଧୀନ ହେଲେ ଯେଉଁ କେଉଁଠାରେ ଉତ୍ପନ୍ନ ତାହାର ବିଶେଷଣର ସର୍ବତ୍ର ଅକ୍ଷର ସହିତ ସମ୍ବନ୍ଧ ହୁଏ ବୋଲି ଅର୍ଥ ହୁଏ । ସେ ପ୍ରଥମ କାଣ୍ଡରେ 'ଗୁଣ ଓ ମୁଖ୍ୟର ବିରୋଧ ହେଲେ ମନ୍ତ୍ରାତ୍ମକ ବେଦର ମୁଖ୍ୟ ବଳବତ୍ତର ପାଇଁ ହୁଏ) ଏହି ବିଷୟରେ କୁହାଯାଇଅଛି ।

## २१ इयदधिकरणम् ॥ सू० ३४ ॥

## ଇୟଦଧିକରଣ-୨୧

## इयदामननात् ॥ ३४ ॥

## ଇୟଦାମନାନତ୍ ॥୩-୩-୩୪॥

ଇୟଦାମନନାତ୍ - ବିଦ୍ୟା ଏକ ଅଟେ, କାରଣ - 'ଦ୍ୱା ସୁପର୍ଣ୍ଣୌ ଓଁ ଋତଂ' ପିବନ୍ତୌ ଏହି ଦୁଇଟି ମନ୍ତ୍ରରେ ଉଭୟତାଦ୍ୱାରା ପରିଚ୍ଛେନ୍ନବେଦ୍ୟ ଏକ ଅଟେ ।

(୨) ମୂଳ-(କ) 'ଦ୍ୱା ଦ୍ୱା ସୁପର୍ଣ୍ଣା' ସୟୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ । ତୟୋରନ୍ୟଃ ପିପ୍‌ପଳଂ ସ୍ୱାଦବତ୍ୟନଶ୍ନୟନ୍ୟୋ ଅଭିଚାକଶୀତି' (ମୁଣ୍ଡ ୩-୧-୧) ଇତ୍ୟଧମ୍ୟାଧ୍ୱିକାରେ ମନ୍ତ୍ରମାଥର୍ବଣିକାଃ ଶ୍ୱେତାଶ୍ୱତରାଶ୍ଚ ପଠନ୍ତି । ତଥା କଠାଃ 'ଋତଂ ପିବନ୍ତୌ ସୁକୃତସ୍ୟ ଓଁଲାକେ, ଗୁହାଂ ପ୍ରବିଷ୍ଟୌ ପରମେ ପରାର୍ଦ୍ଧେ । ଛାୟାତପୌ ବ୍ରହ୍ମବିଦୋ ବଦନ୍ତି, ପଞ୍ଚାଗ୍ନୟୋ ଯେ ଚ ତ୍ରିଣାକୋତାଃ (କ ୩-୧) ଇତି ।

(ଖ) କିମତ୍ର ବିଦ୍ୟୈକତ୍ୱମୁତ ବିଦାନାଜାତ୍ୱମିତି ସଂଶୟଃ । କିଂ ତାବତ୍ ପ୍ରାପ୍ତମ୍ ? ବିଦ୍ୟାନାନାତ୍ୱମିତି । କୁତଃ ? ବିଶେଷଦର୍ଶନାତ୍ । ଦ୍ୱା ସୁପର୍ଣେତ୍ୟତ୍ର ହ୍ୟେକସ୍ୟ ଭୋକ୍ତୃତ୍ୱଂଦୃଶ୍ୟତେ, ଏକସ୍ୟ ଚାଭୋକ୍ତୃତ୍ୱଂ ଦୃଶ୍ୟତେ । 'ଋତଂ ପିବନ୍ତୌ ଇତ୍ୟତ୍ରୋଭୟୋରପି ଭୋକ୍ତୃତ୍ୱମେବ ଦୃଶ୍ୟତେ ତଦ୍‌ବେଦ ରୂପଂ ଭିଦ୍ୟମାନଂ ବିଦ୍ୟାଂ ଭିନ୍ଦ୍ୟାଦିତ୍ୟେବଂ ପ୍ରାପ୍ତେ ବ୍ରବୀତି - 'ବିଦ୍ୟୈକତ୍ୱମିତି । କୁତଃ ? ଯତ ଉଭୟୋରିୟତା-ପରିଛନ୍ନଂ ଦ୍ୱିତ୍ୱୋପେତଂ ବେଦ୍ୟରୂପଭିନ୍ନମାମନନ୍ତି ।

(ଗ)ନନୁ ଦର୍ଶିତୋ ରୂପଭେଦଃ - ନେତ୍ୟୁଚ୍ୟତେ ଉଭାବପ୍ୟେତୌ ମନ୍ତ୍ରୌ ଜୀବ ଦ୍ୱିତୀୟମୀଶ୍ୱରଂ ପ୍ରତିପାଦୟତଃ, ନାର୍ଥାନ୍ତରମ୍ । 'ଦ୍ୱା ସୁପର୍ଣ୍ଣା' ଇତ୍ୟତ୍ରଅ ତାବତ୍ 'ଅନଶ୍ନନ୍ୟୋ ଅଭିଚାକଶୀତି' ଇତ୍ୟଶନାୟାଦ୍ୟତୀତିଃ ପରମାତ୍ମା ପ୍ରତିପାଦ୍ୟତେ । ବାକ୍ୟଶେଷେଃପି ଚ ମ ଏବ ପତିପାଦ୍ୟମାନେ ଦୃଶ୍ୟତେ । ଜୁଷ୍ଟଂ ଯଦା ପଶ୍ୟତ୍ୟମୀଶମସ୍ୟ ମହିମାନମ୍' (ଶ୍ୱେ ୪-୭) ଇତି । 'ଋତଂପିବନ୍ତୌ ଇତ୍ୟତ୍ର ତୁ ଜୀବେ ପିବତ୍ୟଶୟନାୟାଦଂତୀତଃ ପରମାତ୍ମାପି ସାହଚର୍ଯ୍ୟାଚ୍ଛତ୍ରିନ୍ୟାୟେନ୍ ପିବତୀତ୍ୟୁପଚର୍ଯ୍ୟତେ, ପରମାତ୍ମାପ୍ରକରଣଂ ହ୍ୟେତତ୍ 'ଅନ୍ୟତ୍ର ଧର୍ମାଦନ୍ୟତ୍ରଧର୍ମତ୍' (କ ୨-୧୪) ଇତ୍ୟୁପକ୍ରମାତ୍ ।

(ଘ) ତଦବିଷୟ ଏବ ଚାତ୍ରାପି ବାକ୍ୟଶେଷ୍ୟେ ଭବତି - 'ଯଃ ସେତୁରୀଜାନାନା-ମକ୍ଷରଂ ବ୍ରହ୍ମଯତ୍ ପରମ୍' (କ ୩-୨) ଇତି । 'ଗୁହାଂ ପ୍ରମିଷ୍ଟାବାତ୍ମାନୌ ହି (ବ୍ର ସୂ ୧-୨-୧୧) ଇତ୍ୟତ୍ର ଚୈତତ୍‌ପ୍ରପଞ୍ଚିତମ୍ । ତସ୍ମାନ୍ନାସ୍ତି ବେଦ୍ୟଭେଦସ୍ତସ୍ମାଚ୍ଚ ବଦ୍ୟୈକତ୍ୱମ୍ । ଅପି ଚ ତ୍ରିଷ୍ୱପ୍ୟେତେଷୁ ବେଦାନ୍ତେଷୁ ପୌର୍ବାପର୍ଯ୍ୟଲୋଗେନି ପରମାତ୍ମବିଦ୍ୟୈବାବଗମତେ । ତାଦାତ୍ମ୍ୟଂବିବକ୍ଷୟୈବ ଜୀବପାଦାନଂ ନାର୍ଥାନ୍ତର ବିବକ୍ଷୟା । ନ ଚ ପରମାତ୍ମାବିଦ୍ୟାୟାଂ । ଭେଦାଭେଦବିଚାରାବତାରୋଽସ୍ତୀତ୍ୟୁକ୍ତମ୍ । ତସ୍ମାତ୍‌ପ୍ରପଞ୍ଚାର୍ଥ ଏବୈଷ ଯୋଗଃ ତସ୍ମାଚାଧିକ୍ୟଧର୍ମୋପସଂହାର ଇତି ।

**(୨) ଭାଷାନ୍ତର** -(କ) 'ଦ୍ୱା ସୁପର୍ଣ୍ଣା (ସୁନ୍ଦର, ପକ୍ଷୀଥିବା ନିୟମ୍ୟନିୟାମକ ଭାବ ଥିବା (ଜୀବାତ୍ମା) ଠାରେ ସମସ୍ତେ ସର୍ବଦା ରହନ୍ତି । ସଖା ସଦୃଶଥିବା ଆଖ୍ୟାନ ଯୁକ୍ତ ଦୁଇଟି ପକ୍ଷୀ ଶରୀର ନାମକ ସମାନ (ଏକ) ବୃକ୍ଷକୁ ଆଶ୍ରୟ କରି ରହନ୍ତି । ତଦ୍ୱାରା ଗୋଟିଏ କିନ୍ତୁ କ୍ଷେତ୍ରଜ୍ଞ ସ୍ୱାଦିଷ୍ଟା କର୍ମ ଫଳକୁ ଭୋଗ କରେ ଓ ଅନ୍ୟ



ଜଣେ ଭୋଗ ନକରି କେବଳ ସାକ୍ଷୀ ରୂପରେ ଦେଖେ) ସେହିପରି ଅଧ୍ୟାତ୍ମପ୍ରକରଣରେ ଆଥର୍ବଣିକ ଓ ଶ୍ୱେତାଶ୍ୱତର ମନ୍ତ୍ର ପଢ଼ାଯାଏ ଏବଂ 'ଋତଂ ପିବନ୍ତୌ' (ବ୍ରହ୍ମବେତ୍ତା କହନ୍ତି ଯେ-ଶରୀରରେ ବୁଦ୍ଧିରୂପ ଗୁହାର ଭିତରେ ପ୍ରକୃଷ୍ଟ ବ୍ରହ୍ମସ୍ଥାନରେ ପ୍ରବିଷ୍ଟ ହୋଇ ନିଜ କର୍ମଫଳକୁ ଭୋଗ କରୁଥିବା ଛାୟା ଓ ଆତପ ପରି ପରସ୍ପର ବିଲକ୍ଷଣହିଁ ଦୁଇଟି ତତ୍ତ୍ୱ ଏହି କଥା ଯିଏ ତିନିଥର ନଚିକେତାଗ୍ନିର ଚୟନ କଲେକ ସେ ଦାନେ ପଞ୍ଚାଗ୍ନିର ଉପାସନା କରନ୍ତି ବୋଲି କୁହାଯାଏ । ଏହି ପ୍ରକାର କଠଶାଖା ସଂପ୍ରଦାୟ କରନ୍ତି ।

(ଖ) ଏଠାରେ କଣ ବିଦ୍ୟା ଏକ ହୁଏ, କି ନାନାପ୍ରକାର ? ଏହା ସଂଶୟ ହେଲା, ତେବେ କଣ ପ୍ରାପ୍ତ ହୁଏ । ପୂର୍ବପକ୍ଷ - ବିଦ୍ୟା ନାନାପ୍ରକାର । କିପରି ? କାରଣ- ବିଶେଷର ଦର୍ଶନ ହୁଏ । ଦ୍ୱା ସୁପର୍ଣ୍ଣା' ଏଠାରେ ଗୋଟିକରେ ଭୋକ୍ତୃତ୍ୱ ଦେଖାଯାଏ ଓ ଅନ୍ୟଠାରେ ଅଭୋକ୍ତୃତ୍ୱ ଦେଖାଯାଏ । 'ଋତଂ ପିବନ୍ତୌ' ଏହି ଦୁଇଟିରେ ମଧ୍ୟ ଭୋକ୍ତୃତ୍ୱ ଦେଖାଯାଏ । ତେଣୁ ବେଦ୍ୟର ରୂପ ଭିନ୍ନ ହୋଇ ବିଦ୍ୟାକୁ ଭିନ୍ନ କରିବ । ସିଦ୍ଧାନ୍ତ - ଏହିପରି ପ୍ରାପ୍ତ ହେବାରୁ କୁହାଯାଇଅଛି- ବିଦ୍ୟା ଏକ ଅଟେ । କିପରି ? ଦୁଇଟି ଏହି ମନ୍ତ୍ରରେ ମଧ୍ୟ ଇୟଳିଦ୍ୱାରା ପରିଚ୍ଛିନ୍ନ, ଦ୍ୱିତ୍ୱଯୁକ୍ତ ବୈଦ୍ୟରୂପ ଅଭିନ୍ନ ବୋଲି କୁହାଯାଇଅଛି ।

(ଗ) ପରନ୍ତୁ ରୂପଭେଦ ଦେଖାଗଲା କି ? ନୁହେଁ, ଏହା କୁହାଯାଇଅଛି - ଏହି ଦୁଇଟି ମନ୍ତ୍ର ବୀଜ ଓ ଅଦ୍ୱିତୀୟ ଈଶ୍ୱରର ପ୍ରତିପାଦନ କରନ୍ତି । ଭିନ୍ନ ଅର୍ଥ ନୁହେଁ । 'ଦ୍ୱା ସୁପର୍ଣ୍ଣା' ଏହି ମନ୍ତ୍ରରେ କିନ୍ତୁ 'ଅନଶନ୍ନନ୍ୟୋ ଅଭିଚାକଶୀତି' ବୁଭୁକ୍ଷା ପ୍ରଭୃତି ଦ୍ୱାରା ଅତୀତ ପରମାତ୍ମାର ପ୍ରତିପାଦନ ହୁଏ ଏବଂ 'ଜୁଷ୍ଟଂ ଯଦା' (ଯେତେବେଳେ ଅନେକ ଯୋଗମାର୍ଗରୁ ସେବିତ ଓ ଦେହପ୍ରଭୃତିଠାରୁ ଭିନ୍ନ ଏହି ପରମାତ୍ମା ଓ ତାହାର ମହିମାକୁ ଦେଖେ, ସେହି ସମୟ ସେ ଶୋକରହିତ ହୋଇଯାଏ) ଏହି ବାକ୍ୟଶେଷରେ ମଧ୍ୟ ସେହି ପରମାତ୍ମା ପ୍ରତିପାଦ୍ୟମାନ ରୂପେ ଦେଖାଯାଏ । 'ଋତୁଂ ପିବନ୍ତୌ' ଏହି ମନ୍ତ୍ରରେ ମଧ୍ୟ ଜୀବ ପାନ କଲାପରେ କ୍ଷୁଧା ପ୍ରଭୃତିରୁ ଅତୀତ ପରମାତ୍ମାର ସାହାଯ୍ୟରୁ ଛତ୍ରିନ୍ୟାୟରେ ପାନକରେ, ଏହିପରି ଉପଚାର ହୁଏ କାରଣ - 'ଅନ୍ୟତ୍ର ଧର୍ମାତ୍' ଶାସ୍ତ୍ରୀୟ ଧର୍ମାନୁଷ୍ଠାନ ତଥା ତାହାର ଫଳ, କର୍ତ୍ତା, କରଣ ପ୍ରଭୃତିରୁ ପୃଥକ ଅଟେ । ଅଧର୍ମରୁ ପୃଥକ ଅଟେ) ଏହି ଉପକ୍ରମରୁ ଏହି ପରମାତ୍ମା ଗୃହୀତ ହୁଏ ।

(ଘ) ଆଥର୍ବଣିକ ପ୍ରଭୃତି ବାକ୍ୟପରି ଏଠାରେ ମଧ୍ୟ 'ଯଃ ସେତୁରୀଜାନାନାମର୍ଣରମ୍' (ସିଏ ଯଜନ କରିବା ପାଇଁ ସେତୁ ପରି ହୁଏ, ଯେଉଁ ଅକ୍ଷର ପରବ୍ରହ୍ମ ଅଟେ) ଏହି ବାକ୍ୟଶେଷ ପରମାତ୍ମା ବିଷୟକ ଅଟେ । 'ଗୁହାଂ ପ୍ରବିଷ୍ଟବାତ୍ମାନୌହି' ଏହି ସୂତ୍ରରେ ଏହି ବିଷୟର ବିସ୍ତାର ପୂର୍ବକ ବିଚାର କରାଯାଇଅଛି । ତେଣୁ ବେଦ୍ୟର ଭେଦ ନାହିଁ । ତେଣୁ ବିଦ୍ୟା ଏକ ଅଟେ । କଣ ପୂର୍ବାପରର ବିଚାର କଲାପରେ ଏହି ଦୁଇଟି ଆଥର୍ବଣିକ

ଶ୍ୱେତାଶ୍ୱେତର ଓ କାଠକ) ବେଦାନ୍ତରେ ପରମାତ୍ମାବିଦ୍ୟା ଅବଗତ ହୁଏ ଓ ଜୀବର ଗ୍ରହଣ କିନ୍ତୁ ତାହାତ୍ମ୍ୟବିକ୍ଷାରୁ ହୁଏ । ଅନ୍ୟ ଅର୍ଥର ବିବକ୍ଷାରୁ ନୁହେଁ । ତେଣୁ ପରମାତ୍ମା ବିଦ୍ୟାରେ ଭେଦ ଅଥବା ଅଭେଦର ବିଚାର କରିବାପାଇଁ ନୁହେଁ । ତେଣୁ ପରମାତ୍ମା-ବିଦ୍ୟାରେ ଭେଦ ଅଥବା ଅଭେଦର ବିଚାର କରିବାପାଇଁ ଅବତରଣ ନାହିଁ - ଏହିପରି କୁହାଯାଇଛି । ତେଣୁ ଏହି ସୂତ୍ରର ବିସ୍ତାର ପାଇଁ ଅଛି ଓ ଅଧିକ ଧର୍ମର ଉପସଂହାର ହୁଏ ।

## २२ अन्तराधिकरणम् ॥ सू० ३५-३६ ॥

## ଅନ୍ତରାଧିକରଣ -୨୨

### अन्तराभूतग्रामवत्यात्मन: ॥ ३५ ॥

### ୧- ଅନ୍ତରାଭୂତଗ୍ରାମବତ୍ସ୍ୱାତ୍ମନଃ ॥ ୩-୩-୩୫ ॥

'ଯତ୍ସାକ୍ଷାଦ୍ପରୋକ୍ଷାଦ୍ ବ୍ରହ୍ମ' 'ଯଥାତ୍ମା ସର୍ବାନ୍ତରଃ' ଏହି ଦୁଇଟି ଶ୍ରୁତିରେ, ସ୍ୱାତ୍ମନଃ-ସ୍ୱାତ୍ମାର, ଅନ୍ତରା - ସର୍ବାନ୍ତରତ୍ୱ କୁହାଯାଇଅଛି । ତେଣୁ ବିଦ୍ୟା ଏକ ଅଟେ । ଭୂତଗ୍ରାମବତ୍-ଯେପରି ଭୂତସଂମୁଦାୟରେ ଏକ ହିଁ ସର୍ବାନ୍ତର ଆତ୍ମା ପ୍ରତିପାଦିତ ହୋଇଅଛି ।

(୨) ମୂଳ- (କ) 'ଯତ୍ସାକ୍ଷାଦ୍ପରୋକ୍ଷାଦ୍ ବ୍ରହ୍ମ, 'ଯ ଆତ୍ମା ସର୍ବାନ୍ତରଃ', (ବୃହ ୩-୪-୧, ୩-୫-୧) ଇତ୍ୟେୱଂ ଦ୍ୱିରୁଷସ୍ତକହୋଳପ୍ରଶ୍ନୟୋର୍ନୈରନ୍ତର୍ଯ୍ୟେଣ ବାଜସନେୟିନଃ ସମାମନନ୍ତି । ତତ୍ର ସଂଶୟଃ - ବିଦ୍ୟୈକତ୍ୱଂ ବା ସ୍ୟାଦ୍ବିଦ୍ୟାନାନାତ୍ୱଂ ବେତି ? ବିଦ୍ୟାନାନାତ୍ୱମିତି ତାବତ୍ପ୍ରାପ୍ତମ୍ ଅଭ୍ୟାସମାମର୍ଥ୍ୟାତ୍ । ଅନ୍ୟଥା ହ୍ୟନ୍ୟୂନାନ-ତିରିକ୍ତାର୍ଥେ ଦ୍ୱିରାମ୍ନାନମନର୍ଥକମେବ ସ୍ୟାତ୍ । ତସ୍ମାଦ୍ୟଥାଽଭ୍ୟାସାତ୍ କର୍ମଭେଦ ଏବମ-ଭ୍ୟାସାଦ୍ ବିଦ୍ୟାଭେଦଃ ।

(ଖ) ଇତ୍ୟେବଂ ପ୍ରାପ୍ତେ ପ୍ରତ୍ୟାହ - ଅନ୍ତରାମ୍ନାନାବିଶେଷାତ୍ ସ୍ୱାତ୍ମନୋ ବିଦ୍ୟୈ-କତ୍ୱମିତି । ସର୍ବାନ୍ତରୋ ହି ସ୍ୱାତ୍ମୋଭୟତ୍ରାପ୍ୟବିଶିଷ୍ଟଃ ପୃଚ୍ଛ୍ୟତେ, ଚ ପ୍ରତ୍ୟୁଚ୍ୟତେ ଚ । ନହି ଦ୍ୱାବାତ୍ମାନାବେକସ୍ମିନ୍ଦେହେ ସର୍ବାନ୍ତରୌ ସମ୍ଭବତଃ । ତଦା ହ୍ୟେକସ୍ୟାଞ୍ଜସ ସର୍ବାନ୍ତରତ୍ୱମବକଳ୍ପ୍ୟେତ, ଏକସ୍ୟ ତୁ ଭୂତଗ୍ରାମବନ୍ନୈବ ସର୍ବାନ୍ତରତ୍ୱଂ ସ୍ୟାତ୍ । ଯଥା ବା ପଞ୍ଚଭୂତସମୂହେ ଦେହେ ପୃଥିବ୍ୟା ଅପୋଽନ୍ତରା ଅଦ୍ଭ ସ୍ତେଜୋଽନ୍ତରମିତି ସତ୍ୟପ୍ୟାପେକ୍ଷିକେଽନ୍ତରତ୍ୱେନୈବ ମୁଖ୍ୟଂ ସର୍ବାନ୍ତରତ୍ୱଂ ଭବତି ? ତଥେହାପୀତ୍ୟର୍ଥଃ ।

(ଗ) ଅଥବା-ଭୂତଗ୍ରାମବଦିତି ଶ୍ରୁତ୍ୟନ୍ତରଂ ନିଦର୍ଶୟତି । ଯଥା-ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ, ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା (ଶ୍ୱେ ୬-୧୧) ଇତ୍ୟସ୍ମିନ୍ ମନ୍ତ୍ରେ ସମସ୍ତେଷୁ ଭୂତଗ୍ରାମେଷ୍ୱକ ଏକ ସର୍ବାନ୍ତର ଆତ୍ମାମ୍ନାୟତେ । ଏବମନୟୋରପି ବ୍ରାହ୍ମଣୟୋରିତ୍ୟର୍ଥଃ । ତସ୍ମାଦ୍ ବିଦ୍ୟୈକ୍ୟାଦ୍ ବିଦ୍ୟୈକତ୍ୱମିତି ।



**(୨) ଭାଷାଂତର** -'ଯତ୍ ସାକ୍ଷାଦ୍' (ଯାହା ସାକ୍ଷାତ୍ ଅପରୋକ୍ଷ ବ୍ରହ୍ମଅଟେ) 'ଯଆତ୍ମା' (ଯେଉଁ ଆତ୍ମା ସର୍ବାନ୍ତର ଅଟେ) ଏହିପରି ଉଷସ୍ତ ଓ କହୋଳର ଦୁଇଥର ପ୍ରଶ୍ନରେ ନୈରନ୍ତର୍ଯ୍ୟ ଦ୍ୱାରା ବାଜସନେୟୀ କହନ୍ତି । ଏଠାରେ ସଂଶୟ କିନ୍ତୁ ହୁଏ ଯେ-ବିଦ୍ୟା ଏକ କି ନାନାତ୍ୱ ? ପୂର୍ବପକ୍ଷ - ବିଦ୍ୟାଗୁଡ଼ିକ ଅନେକ ବୋଲି ପ୍ରାପ୍ତ ହୁଏ ? କାରଣ - ତାର ଅଭ୍ୟାସର ସାମର୍ଥ୍ୟ ଅଛି । ଅନ୍ୟଥା ନ୍ୟୁନତା ଓ ଅଧିକତାରରହିତ ଅର୍ଥରେ ଦୁଇଥର କହିବା ନିରର୍ଥକ ହେବ । ତେଣୁ ଯେପରି 'ଯଜତ' ପଦର ଅଭ୍ୟାସରୁ କର୍ମର ଭେଦ ହୁଏ । ସେପରି ମଧ୍ୟ ଅଭ୍ୟାସରୁ ବିଦ୍ୟାର ଭେଦ ହୁଏ ।

(ଖ) ସିଦ୍ଧାନ୍ତ-ଏହିପରି ପ୍ରାପ୍ତ ହୁଅନ୍ତେ ତାର ନିରାକରଣ କରନ୍ତି-ସ୍ୱାତ୍ମାରେ ସର୍ବାନ୍ତରତ୍ୱ ଦୁଇଟି ଶ୍ରୁତିରେ ସମାନ ରୂପରେ କୁହାଯାଇଅଛି । ତେଣୁ ବିଦ୍ୟା ଏକ ଅଟେ । କାରଣ-ସମସ୍ତଙ୍କ ଅଭ୍ୟନ୍ତର ସ୍ୱାତ୍ମାର ବିଷୟରେ ଦୁଇଟି ସ୍ଥଳରେ ସମାନ ରୂପରେ ପ୍ରଶ୍ନ ଓ ପ୍ରତିବଚନ ହୁଏ । ଗୋଟିଏ ଦେହରେ ଦୁଇଟି ଆତ୍ମାର ସର୍ବାନ୍ତରତ୍ୱ ସମ୍ଭବ ନୁହେଁ । ଯଦି ଗୋଟିଏର ତୁମ୍ଭେ କହ, ତେବେ ସର୍ବାନ୍ତରତ୍ୱ ହେବ ନାହିଁ । ଯେପରି ପାଞ୍ଚୋଟି ଭୂତ ଗ୍ରାମର ସମୂହ ଦେହରେ ପୃଥିବୀଠାରୁ ଜଳ ଆଭ୍ୟନ୍ତର ହୁଏ ଓ ଜଳଠାରୁ ତେଜ ହିଁ ଆନ୍ତର ହୁଏ, ସେହପରି ଆପେକ୍ଷିକ ଆନ୍ତରତ୍ୱ ହେଲାପରେ ସେ ଗୁଡ଼ିକରେ- ମୁଖ୍ୟ ସର୍ବାନ୍ତରତ୍ୱ ହୁଏ ନାହିଁ ବୋଲି ଜାଣିବା ଉଚିତ୍ ।

(ଗ) ଅଥବା ଭୂତଗ୍ରାମପରି ଅନ୍ୟ ଶ୍ରୁତିର ଦୃଷ୍ଟାନ୍ତ କହନ୍ତି - ଯେପରି 'ଏକୋ ଦେବଃ' (ସମସ୍ତ ପ୍ରାଣୀ ମାନଙ୍କଠାରେ ଗୋଟିଏ ଦେବତା ରହିଛି, ସେ ସର୍ବବ୍ୟାପକ ଓ ସମସ୍ତ ଭୂତଗୁଡ଼ିକର ଅନ୍ତରାତ୍ମା ଅଟେ) ଏହି ମନ୍ତ୍ରେ ସମସ୍ତଭୂତ ସମୁଦାୟରେ ଗୋଟିଏ ହିଁ ସର୍ବାନ୍ତର ଆତ୍ମା କୁହାଯାଏ, ସେହିପରି ଏହି ଦୁଇଟି ବ୍ରାହ୍ମଣଠାରେ ଏକ ହିଁ ଆତ୍ମାର ସର୍ବାନ୍ତରତ୍ୱ ହୁଏ ବୋଲି ଅର୍ଥ ହୁଏ । ତେଣୁ ବେଦ୍ୟର ଏକ ହେଲେ ବିଦ୍ୟାମଧ୍ୟ ଏକ ହୁଏ ।

## अन्यथा भेदानुपपत्तिरिति चेन्नोपदेशान्तरवत् ॥ ३६ ॥

## ୧- ଅନ୍ୟଥା ଭେଦାନୁପପତିରିତି ଚେନ୍ନୋପଦେଶାନ୍ତରବତ୍ ॥୩-୩-୩୬॥

ଅନ୍ୟଥା = ଯଦି ବିଦ୍ୟାରେ ଭେଦ ସ୍ୱୀକାର କରା ନଯାଏ, ତେବେ ଭେଦାନୁପପତ୍ତିଃ ଶ୍ରୁତିଭେଦ ଅନୁପପନ୍ନ ହୁଏ, ଇତିଚେନ୍ନ = ଏହା ଯଦି କହ, ତାହା ମଧ୍ୟ ଠିକ୍‌ନୁହେଁ । କାରଣ-ଉପଦେଶାନ୍ତରବତ୍ = ଯେପରି ଛାନ୍ଦୋଗ୍ୟରେ 'ତତ୍ତ୍ୱମସି' ଏହାର 'ନ' ଥର ଅଭ୍ୟାସ (ପୁନରାବୃତ୍ତି) କଲାପରେ ମଧ୍ୟ ବିଦ୍ୟାଭେଦ ଓ ଅନୁପପତ୍ତି ହୁଏ ନାହିଁ, ସେହିପରି ପ୍ରକୃତରେ ଜାଣିବା ଉଚିତ ।

(୨)ମୂଳ-(କ) ଅଥ ଯଦୁକ୍ତମ୍-ଅନ୍ୟଭ୍ୟୁପଗମ୍ୟମାନେ ବିଦ୍ୟାଭେଦ ଆମ୍ନାନ ଭେଦାନୁପପତ୍ତିରିତି, ତତ୍ ପରିହର୍ତ୍ତବ୍ୟମ । ଅତ୍ରୋଚ୍ୟତେ – ନାୟଂ ଦୋଷଃ, ଉପଦେଶାନ୍ତରବଦୁପପତ୍ତେଃ । ତଥା ତାଣ୍ଡିନାମୁପନିଷଦି ଷଷ୍ଠେ ପ୍ରପାଠକେ 'ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ' (ଛା ୬-୮-୭) ଇତି ନବକୃତ୍ୱୋଽପ୍ୟୁପଦେଶେ ନ ବିଦ୍ୟାଭେଦୋ ଭବତ୍ୟେବମିହାପି ଭବିଷ୍ୟତି ।

(ଖ) କଥଂ ଚ ନବକୃତ୍ୱୋଽପ୍ୟୁପଦେଶେ ବିଦ୍ୟାଭେଦା ନ ଭବତି ? ଉପକ୍ରମୋପସଂହାରାଭ୍ୟାମେକାର୍ଥତାବଗମାତ । 'ଭୂୟ ଏବ ମା ଭଗବାନ୍ ବିଜ୍ଞାପୟିତୁ (ଛା ୬-୮-୭) ଇତି ଚୈକସ୍ୟୈବାର୍ଥସ୍ୟ ପୁନଃ ପୁନଃ ପ୍ରତିପିପାଦୟିଷିତବ୍ୟତ୍ୱେନୋପକ୍ଷେପାତ୍ ଆଶଙ୍କାନ୍ତରନିରାକରଣେନ ଚାସକୃଦୁପଦେଶୋପପତ୍ତେଃ ।

(ଗ) ଏବମିହାପି ପ୍ରଶ୍ନରୂପାଭେଦାତ୍, 'ଅଥତୋଽନ୍ୟଦାର୍ତ୍ତମ୍' (ବୃହ ୩-୪-୨; ୩-୫-୧) ଇତି ଚ ପରିସମାପ୍ତ୍ୟବିଶେଷାଦୁପକ୍ରମୋପସଂହାରୌ ତାବଦେକାର୍ଥବିଷୟୌ ଦୃଶ୍ୟେତେ । 'ଯଦେବ ସାକ୍ଷାଦପରୋକ୍ଷାଦ୍ ବ୍ରହ୍ମ' (ବୃହ ୩-୫-୧) ଇତି ଦ୍ୱିତୀୟେ ପ୍ରଶ୍ନ ଏବାକାରଂ ପ୍ରଯୁଂଜାନଃ ପୂର୍ବପ୍ରଶ୍ନଗତମେବାର୍ଥମୁତ୍ତରତ୍ରାନୁକୃଷ୍ୟମାଣଂ ଦର୍ଶୟତି ।

(ଘ) ପୂର୍ବସ୍ମିନ୍ ବ୍ରାହ୍ମଣେ କାର୍ଯ୍ୟ କରିଣ ବ୍ୟତିରିକ୍ତସ୍ୟାତ୍ମନଃ ସଦ୍‌ଭାବଃ କଥ୍ୟତେ, ଉତ୍ତରସ୍ମିଂସ୍ତୁ ତସ୍ୟୈବାଶନାୟାଦି ସଂସାରଧର୍ମାତୀତତ୍ୱଂ କଥ୍ୟତେ' ଇତ୍ୟେକାର୍ଥତୋପପତ୍ତିଃ ତସ୍ମାଦେକା ବିଦ୍ୟେତି ।

(୨) ଭାଷାଂତର- ବିଦ୍ୟାଭେଦ ସ୍ୱୀକାର ନ କଲେ ମନ୍ତ୍ରଭେଦରେ ଅନୁପପତ୍ତି ହୁଏ –ଏହା ହିଁ ପରିହାର କରିବା ଉଚିତ୍ ବୋଲି ଯାହା କୁହାଯାଇଅଛି, ସେହି ବିଷୟରେ କୁହାଯାଇଅଛି ଯେ-ଏହା କିନ୍ତୁ ଦୋଷ ନୁହେଁ । କାରଣ-ଅନ୍ୟର ଉପଦେଶ ପରି ଉପପତ୍ତି ହୁଏ । ଯେପରି ତାଣ୍ଡିଗୁଡ଼ିକର ଉପନିଷଦ୍‌ର ଷଷ୍ଠ ଅଧ୍ୟାୟରେ 'ସ ଆତ୍ମା ତତ୍ତ୍ୱମସି ଶ୍ୱେତକତୋ' ଏହିପରି ପିତା ଉଦ୍ଦାଳକ 'ନ' ଥର ଉପଦେଶ ଦେଲାପରେ ମଧ୍ୟ ବିଦ୍ୟାର ଭେଦ ହୁଏ ନାହିଁ, ସେହିପରି ଏଠାରେ ମଧ୍ୟ ହେବ ।

(ଖ) ପରନ୍ତୁ 'ନ' ଥର ଉପଦେଶ କଲାପରେ ମଧ୍ୟ ବିଦ୍ୟାର ଭେଦି ହୁଏ ନାହିଁ ? ଉପକ୍ରମ ଓ ଉପସଂହାରକୁ ଏହିପରି ଅର୍ଥ ବୁଝିବା ଠିକ୍ ନୁହେଁ । 'ଭୂୟ ଏବ' (ହେ ଭଗବାନ୍ ! ଆପଣ ମୋତେ ପୁଣି ବୁଝାନ୍ତି) ଏହିପରି ଗୋଟିଏ ଅର୍ଥରେ ପୁନଃ ପୁନଃ ପ୍ରତିପାଦନ ଇଚ୍ଛାର ବିଷୟ ହେଲେ ଏବଂ ଅନ୍ୟ ଆଶଙ୍କାର ନିରାକରଣ କରିବା ଦ୍ୱାରା ବାରମ୍ବାର ଉପଦେଶ ଉପପନ୍ନ ହୁଏ । ତେଣୁ ବିଦ୍ୟାର ଭେଦ ହୁଏ ନାହିଁ ।

(ଗ) ସେହିପରି ମଧ୍ୟ ପ୍ରଶ୍ନ ରୂପର ଅଭେଦ ହେଲେ ବିଦ୍ୟାର ଭେଦ ହୁଏ ନାହିଁ । 'ଅତୋଽନ୍ୟଦାର୍ତ୍ତମ୍' (ସେହି ଆତ୍ମାଭିନ୍ନ ହିଁ ଅବିନାସୀ ଅଟେ) ଏହିପରି ପରିସମାପ୍ତିର



ମଧ୍ୟ ଏକରୂପ ହେଲେ ଉପକ୍ରମ ଓ ଉପସଂହାର ଏକାର୍ଥ ବିଷୟକ ରୂପରେ ଦେଖାଯାଏ । 'ଯଦେବ ସାକ୍ଷାଦପରୋକ୍ଷାଦ୍ ବ୍ରହ୍ମ' ଏହିପରି ଦ୍ୱିତୀୟ ପ୍ରଶ୍ନରେ ମଧ୍ୟ 'ଏବ'ର ପ୍ରୟୋଗ କରୁଥିବା ଋଷି ପୂର୍ବ ପ୍ରଶ୍ନଗତ-ଅର୍ଥର ଉତ୍ତର ପ୍ରଶ୍ନରେ ଅନୁକର୍ଷଣ କରି ଦେଖାଏ ।

(ଘ) ପୂର୍ବବ୍ରାହ୍ମଣରେ କାର୍ଯ୍ୟ-କରଣଠାରୁ ଭିନ୍ନ ରୂପ ଆତ୍ମାର ଅସ୍ତିତ୍ୱ କୁହାଯାଏ ଏବଂ ଉତ୍ତର ବ୍ରହ୍ମାଣ୍ଡରେ ତାହାକୁ ହିଁ କ୍ଷୁଧା ଇତ୍ୟାଦି ସଂସାର ଧର୍ମଠାରୁ ଅତୀତ ବୋଲି କୁହାଯାଏ । ଏହିପରି ଏକାର୍ଥତା ଉପପନ୍ନ ହୁଏ । ତେଣୁ ବିଦ୍ୟାହିଁ ଗୋଟିଏ ।

## व्यतिहाराधिकरणम् ॥ सू० ३७ ॥

## ବ୍ୟତିହାରାଧିକରଣ-୨୩

## व्यतिहारो विशिंषन्ति हीतरवत् ॥ २० ॥

## (୧) ବ୍ୟତିହାରୋ ବଶିଂଷନ୍ତି ହୀତରବତ୍ ॥୩-୩-୩୭॥

ଇତରବତ = ସର୍ବାତ୍ମତ୍ୱ ପ୍ରଭୃତି ଗୁଣ ପରି, ବ୍ୟତିହାରଃ = ବ୍ୟତିହାର ଉପାସନା-ପାଇଁ କୁହାଯାଇଅଛି । ହି=କାରଣ-ଶ୍ରୁତିକୁ କହୁଥିବା 'ତ୍ୱଂ ବା ଅହମସ୍ମି' ଏହିପ୍ରକାର ଉଭୟର ନିର୍ଦ୍ଦେଶ କରି, ବିଶିଂଶନ୍ତି=ତାହାକୁ ବିଶିଷ୍ଟ କରନ୍ତି ।

ମୂଳ-(କ)ତଥା-ତଦ୍ୟୋଽହଂ ସୋଽସୌ ଯୋଽସୌ' ଇତ୍ୟାଦିତ୍ୟପୁରୁଷଂ ପ୍ରକୃତ୍ୟୈତରେୟିଣଃ ସମାମନନ୍ତି । ତଥା ଜାବାଲାଃ-'ତ୍ୱଂ ବା ଅହମସ୍ମି ଭଗବୋ ଦେବତେଽହଂ ବୈ ତ୍ୱମସି' କର୍ତ୍ତବ୍ୟୋତୈକରୂପୈବେତି ?

(ଖ) ଏକରୂପୈବେତି ତାବବାହ । ନ ହ୍ୟତ୍ରାତ୍ମନ ଈଶ୍ୱରେଣୈକତ୍ୱଂ ମୁକ୍ତ୍ୱାଽନ୍ୟତ୍ କିଞ୍ଚିଚ୍ଚିନ୍ତୟିତବ୍ୟମସ୍ତି । ଯଦି ଚୈବଂ ଚିନ୍ତୟିତବ୍ୟୋ ବିଶେଷ ପରିକଲ୍ପ୍ୟେତ, ସଂସାରିଣଶ୍ଚୈବଶ୍ୱରାତ୍ମତ୍ୱମୀଶ୍ୱରସ୍ୟ ସଂସାର୍ଯ୍ୟାତ୍ମତ୍ୱମିତି । ତତ୍ର ସଂସାରିଣସ୍ତାବଦୀଶ୍ୱରାଦାତ୍ମତ୍ୱେ ଉତ୍କର୍ଷୋ ଭବେତ୍, ଈଶ୍ୱରସ୍ୟତୁ ସଂସାର୍ଯ୍ୟାତ୍ମତ୍ୱେ ନିଷ୍କର୍ଷଃ କୃତଃ ସ୍ୟାତ୍, ତସ୍ମାଦୈକରୂପ୍ୟମେବ ମତେଃ । ବ୍ୟତିହାରାମ୍ନାୟସ୍ତ୍ୱେକତ୍ୱଦୃଢୀକାରାର୍ଥ ଇତି ।

**(୨) ଭାଷାଂତର** -(କ) ଯେପରି 'ତଦ୍ୟୋଽହଂ' (ଯିଏ ମୁଁ ଅଟେ, ସେ ହି ଆଦିତ୍ୟମଣ୍ଡଳସ୍ଥ-ପୁରୁଷ ଅଟେ ଏବଂ ଯାହା ଯେ ଅଟେ ସେ ହିଁ ମୁଁ ଅଟେ) ଏହି ପ୍ରକାର ଆଦିତ୍ୟ ପୁରୁଷକୁ ପ୍ରସ୍ତୁତ କରି ଐତରେୟ ସଂପ୍ରଦାୟମାନେ କହନ୍ତି ଏବଂ 'ତ୍ୱଂ ବା' (ହେ ଦେବତା ତୁମେ ହିଁ ମୁଁ ଅଟେ, ଏବଂ ମୁଁ ହିଁ ତୁମେ ଅଟ) ଏହିପରି ଜାବାଲ କହନ୍ତି । ଏଠାରେ କିନ୍ତୁ ସଂଶୟ ହୁଏ ଯେ - ଏଠାରେ କଣ ବ୍ୟତିହାର (ବିଶେଷଣ ବିଶେଷ୍ୟ ଭାବ)·ରୂପରେ ଉଭୟରୂପ ବିଚାର କରିବା ଉଚିତ୍ ଅଥବା ଏକରୂପ କି ?

(ଖ) ପୂର୍ବପକ୍ଷ-ଏକରୂପ ବିଚାର କରିବା ଉଚିତ୍ । କାରଣ-ଏହି ବ୍ୟତିହାରରେ ଆତ୍ମାର ଈଶ୍ୱର ସହିତ ଏକତ୍ୱର ବିନା ଅନ୍ୟ କିଛି ଚିନ୍ତା କରିବା ଠିକ୍ ନୁହେଁ । ଯଦି ଜୀବକୁ ଈଶ୍ୱରରୂପତା ଓ ଈଶ୍ୱରଠାରେ ଜୀବରୂପତା-ଏହିପରି ଚିନ୍ତା ଉପଯୁକ୍ତ ବିଶେଷର କଳ୍ପନା ହୁଏ, ତେବେ ସଂସାରୀ ଜୀବକୁ ଈଶ୍ୱରାତ୍ମତ୍ୱ ସ୍ୱୀକାର କଲାପରେ, ତାହାର ଅପକର୍ଷ ହେବ । ତେଣୁ ମତି ଏକରୂପ ଅଟେ । 'ତ୍ୱଂ ବା' ଏହି ବ୍ୟତିହାର ଶ୍ରୁତି ଏକତ୍ୱକୁ ଦୃଢ଼ କରିବା ପାଇଁ ଅଛି ।

(୨) ମୂଳ-(କ) ଏବଂ ପ୍ରାପ୍ତେ ପ୍ରତ୍ୟାହ ବ୍ୟତିହାରୋଽୟମାଧ୍ୟାନାୟମ୍ନାୟତେ, ଇତରବତ୍ । ଯଥେତରେ ଗୁଣାଃ ସର୍ବାତ୍ମତ୍ୱ ପ୍ରଭୃତୟ ଅଧ୍ୟାନାୟାୟନ୍ତେ, ତଦ୍‌ବତ୍ । ତଥାହି ବିଶିଂଷନ୍ତି ସମାମ୍ନାତାର ଉଭୟୋକାରଣେନ 'ତ୍ୱମହମସ୍ମ୍ୟହଂ ଚ ତ୍ୱମସି' ଇତି । ତଚ୍ଚୋଭୟରୂପାୟାଂ ମତୌ କର୍ତ୍ତବ୍ୟାୟାମର୍ଥବଦ୍ ଭବତି । ଅନ୍ୟତା ହୀଦଂ ବିଶେଷେଣୋ ଭୟାମ୍ନାନମନର୍ଥକଂ ସ୍ୟାତ୍ । ଏକେନୈବ କୃତତ୍ୱାତ୍ ।

(ଖ) ନନୁଭୟାମ୍ନାନସ୍ୟାର୍ଥବିଶେଷେ ପରିକଳ୍ପ୍ୟମାନେ ଦେବତାୟାଃ ସଂସାର୍ଯ୍ୟାତ୍ମତା-ପତ୍ତେର୍ନିଷ୍କର୍ଷଃପ୍ରସଜ୍ୟେତେତ୍ୟୁକ୍ତମ୍‌ନୈଷ ଦୋଷଃ, ଐକାତ୍ମ୍ୟସୈବାନେନ ପ୍ରକରଣାନୁ-ଚିନ୍ତ୍ୟମାନତ୍ୱାତ୍ । ନନ୍ୱେବଂ ସତି ସ ଏବୈକତ୍ୱଦୃଢୀକାର ଆପଦ୍ୟେତ । ନ ବୟମେକ-ତ୍ୱଦୃଢୀକାରଂ ବାରୟାମଃ ।

(ଗ) କିଂ ତର୍ହି ? ବ୍ୟତିହାରେଣହ ଦ୍ୱିରୂପା ମତିଃ କର୍ତ୍ତବ୍ୟା, ବଚନ ପ୍ରାମାଣ୍ୟାତ୍ ନୈକରୁପେତ୍ୟେତାବଦୁପପାଦୟାମଃ । ଫଳତସ୍ତ୍ୱେକତ୍ୱମପି ଦୃଢୀଭବତି । ଯଥାଽଧ୍ୟାନା-ର୍ଥେଽପି ସତ୍ୟକାମାଦିଗୁଣୋପଦେଶେ ତଦ୍‌ଗୁଣ ଈଶ୍ୱରଃ ପ୍ରତିଦ୍ୟେତି, ତଦ୍‌ବତ୍ । ତସ୍ମାଦୟ-ମାଧ୍ୟାତବ୍ୟୋ ବ୍ୟତିହାରଃ ସମାନେ ଚ ବିଷୟ ଉପସଂହର୍ତ୍ତବ୍ୟୋ ଭବତୀତି ।

**(୩) ଭାଷାଂତର** - ସିଦ୍ଧାନ୍ତ- (କ) ଏହିପରି ପ୍ରାପ୍ତ ହୁଅନ୍ତେ, ତାହାର ନିରାକରଣ କରାଯାଉଅଛି - ଏହି ବ୍ୟତିହାର ଉପାସନା ପାଇଁ ଅଛି । ଅନ୍ୟ କିଛି କୁହାଯାଇଅଛି ଯେ-ଯେପରି ସର୍ବାତ୍ମତ୍ୱାଦି ଅନ୍ୟଗୁଣ ଉପାସନା ପାଇଁ କୁହାଯାଇଅଛି, ସେପରି ମଧ୍ୟ ବ୍ୟତିହାର ମଧ୍ୟ କୁହାଯାଇଅଛି । କାରଣ - ଶ୍ରୁତିକୁ କହୁଥିବା 'ତ୍ୱମହମସ୍ମ୍ୟହଂ ଚ ତ୍ୱମସି ଏହିପ୍ରକାର ଦୁଇଟି ଉଚାରଣରୁ ସେଗୁଡ଼ିକ ସେହିପରି ବିଶିଷ୍ଟ କରାନ୍ତି । ସେହି ଉଭୟୋକାରଣ ଉଭୟ ରୂପଦ୍ୱାରା ଚିନ୍ତା କଲାପରେ ସାର୍ଥକ ହୁଏ । ନୋଚେତ୍ ଏହି ବିଶେଷଣରୁ ଉଭୟଶ୍ରୁତି ଅନର୍ଥକ ହେବ । କାରଣ - ଗୋଟିକର ଉଚ୍ଚାରଣରୁ ଗୋଟିଏ ରୂପର ବିଚାର ସିଦ୍ଧ ହୁଏ ।

(ଖ) ପରନ୍ତୁ ଉଭୟଶ୍ରୁତିରେ ଅର୍ଥବିଶେଷର କଳ୍ପନା କଲାପରେ ଦେବତାଠାରୁ ସଂସାରୀ ଜୀବାତ୍ମାତ୍ୱର ଆପତ୍ତି ହେଲେ ଅପକର୍ଷ ପ୍ରସକ୍ତ ହେବ କି ? ଏହା କିନ୍ତୁ ଦୋଷ



ନୁହେଁ । କାରଣ-ଗୋଟିଏ ସ୍ୱରୂପତାର ଏହିପ୍ରକାର ଅନୁଚିନ୍ତନ ହୁଏ । ପରନ୍ତୁ ଏହା ହେଲାପରେ ତାହାର ଏକତ୍ୱଦୃଢ଼ୀକରଣରେ ପ୍ରସକ୍ତ ହେବ । ଆମ୍ଭେମାନେ ଏକତ୍ୱର ଦୃଢ଼ୀକରଣକୁ ବାରଣ କରୁ ନାହୁଁ ।

(ଗ) କିନ୍ତୁ ଏଠାରେ ଶ୍ରୁତିବଚନ ପ୍ରାମାଣ୍ୟରୁ ବ୍ୟତିହାର ଦ୍ୱାରା ଦ୍ୱିରୂପମତି କରିବା ଉଚିତ୍ । ଏକରୂପ ନୁହେଁ ବୋଲି ଆମ୍ଭେ କେବଳ ପ୍ରତିପାଦନ କରୁଁ । ଫଳତଃ ଏକତ୍ୱ ମଧ୍ୟ ଦୃଢ଼ହୁଏ । ଯେପରି ସତ୍ୟକାମତ୍ୱାଦିଗୁଣଗୁଡ଼ିକର ଉପଦେଶ ଆଧାନପାଇଁ ହେଲେ ସେହି ଗୁଣଯୁକ୍ତ ଈଶ୍ୱର ପ୍ରସିଦ୍ଧ ହୁଏ । ସେହିପରି ଏଠାରେ ମଧ୍ୟ ବୁଝିବା ଉଚିତ୍ । ତେଣୁ ଏହିବ୍ୟତିହାର ଧ୍ୟାନ କରିବା ଯୋଗ୍ୟ ଓ ସମାନ ବିଷୟରେ ଉପସଂହାର କରିବା ଉଚିତ୍ ।

## २४ सत्याद्याधिकरणम् ॥ सू० ३८ ॥

## ସତ୍ୟାଦ୍ୟଧିକରଣ -୨୪

## सैव हि सत्यादय: ॥ ३८ ॥

## (୧) ସୈବ ହି ସତ୍ୟାଦୟଃ ॥୩-୩-୩୮॥

ସୈବ= ସତ୍ୟବିଦ୍ୟା ଏକ ଅଟେ । ହି = କାରଣ – 'ତଦ୍ୟତ୍ତତ୍ ସତ୍ୟମ୍' ଏଠାରେ ପ୍ରକୃତ ଉପାସ୍ୟ ହିରଣ୍ୟଗର୍ଭର ଆକର୍ଷଣ ହୁଏ । ତେଣୁ ବିଦ୍ୟାର ଭେଦ ନାହିଁ । ଅତଏବ ସମସ୍ତେ 'ସତ୍ୟାଦୟ = ସତ୍ୟ ପ୍ରଭୃତି ଗୁଣ ଅନ୍ୟସ୍ଥାନରେ ଉପସଂହାର ହେବା ଉଚିତ୍ ।

ମୂଳ-(କ) 'ସ ଯୋ ହୈତଂ ମହଦ୍ୟକ୍ଷଂ ପ୍ରଥମଜଂ ବେଦ ସତ୍ୟଂ ବ୍ରହ୍ମ' (ବୃହ ୫-୪-୧) ଇତ୍ୟାଦିନା ବାଜସେନୟକେ ସତ୍ୟବିଦ୍ୟାଂ ସନାମାକ୍ଷରୋପାସନାଂ ବିଧାୟନାନନ୍ତରମାମ୍ନାୟତେ 'ତଦ୍ୟତ୍ତତ୍‌ସତ୍ୟସୌ ସ ଆଦିତ୍ୟୋ ଯ ଏଷ ଏତସ୍ମିନ୍ ମଣ୍ଡଳେ ପୁରୁଷୋ ଯଶ୍ଚାୟଂ ଦକ୍ଷିଣେଽକ୍ଷନ୍‌ପୁରୁଷଃ' (ବୃହ ୫-୫-୨) ଇତ୍ୟାଦି ।

(ଖ) ତତ୍ର ସଂଶୟଃ – କିଂ ଦ୍ୱେ ଏତେ ସତ୍ୟବିଦ୍ୟେ କିବୈକୈବେତି ? ଦ୍ୱେ ଇତି ତାବତ୍‌ପ୍ରାପ୍ତମ୍ । ଭେଦେନ ହି ଫଳସଂଯୋଗୋ ଭବତି-'ଜୟତୀମାଁଲ୍ଲୋକାନ୍' (ବୃହ ୫-୪-୧) ଇତି ପୁରୁସାତ୍ । 'ହନ୍ତି ପାପ୍ମାନଂ ଜହାତି ଚ' (ବୃହ ୫-୫-୩-୪) ଇତ୍ୟୁପରିଷ୍ଟାତ୍ । ପ୍ରକୃତାକର୍ଷଣଂ ତୂପାସ୍ୟୈକତ୍ୱାଦିତି ।

(୨) ଭାଷାଂତର-(କ) 'ସ ଯୋ ହୈ ତଂ'(ଯାହା ଏହି ମହତ୍, ଯକ୍ଷପୂଜ୍ୟ ପ୍ରଥମେ ଉତ୍ପନ୍ନ ହୋଇ ଏହି ସତ୍ୟବ୍ରହ୍ମକୁ ଜାଣେ, ସେ ଏହି ଲୋକକୁ ଜୟ କରେ) ଇତ୍ୟାଦିଦ୍ୱାରା ବାଜସେନୟକରେ ନାମ ଅକ୍ଷରକୁ ଉପାସନାର ସହିତ ସତ୍ୟବିଦ୍ୟାକୁ ବିଧାନ କରି ପରେ 'ତଦ୍ୟତ୍ତତ୍' (ଯେ ଯାହା ସଥ୍ୟ ଅଟେ, ସେ ଏହା ଆଦିତ୍ୟ ଅଟେ । ଯାହା

ଏହି ଆଦିତ୍ୟ ମଣ୍ଡଳରେ ପୁରୁଷ ଅଟେ, ଯାହା ମଧ୍ୟ ଏହି ଦକ୍ଷିଣନେତ୍ରରେ ପୁରୁଷ ଅଟେ) ଇତ୍ୟାଦିଶ୍ରୁତି ଅଟେ ।

(ଖ) ଏହି ପ୍ରକାର ସଂଶୟ ହୁଏ ଯେ – ଏମାନେ ଦୁଇଟି ସତ୍ୟବିଦ୍ୟା ଅଟନ୍ତି କି ଏକ ବିଦ୍ୟା ଅଟେ । ପୂର୍ବପକ୍ଷ-ଦୁଇଟି ଅଟନ୍ତି ଏହା ପ୍ରାପ୍ତ ହୁଏ । କାରଣ – 'ଜୟତୀମାଁଲ୍ଲୋ-କାନ୍' (ସେ ଏହି ଲୋକକୁ ଜୟ କରେ ବା ପ୍ରାପ୍ତ କରେ) ଏହି ପରି ପୂର୍ବ ଉପାସନାରେ ଏବଂ 'ହନ୍ତି ପାପ୍ମାନଂ' (ଯିଏ ଏହା ଜାଣେ, ସେ ପାପକୁ ନାଶକରେ ଓ ତାହାକୁ ତ୍ୟାଗକରେ ଏହି ଅନ୍ତିମ ଉପାସନାରେ ଫଳର ସଂଯୋଗ ଭିନ୍ନ ରୂପରେ ରହେ । ପ୍ରକୃତର ଆକର୍ଷଣ କିନ୍ତୁ ଉପାସ୍ୟର ଏକ ରୂପରେ ଥାଏ ।

(୩) ମୂଳ-(କ) ଏବଂ ପ୍ରାପ୍ତେ ବ୍ରୁମଃ–ଏକୈବେୟଂ ସତ୍ୟବିଦ୍ୟେତି । କୁତଃ ? ତଦ୍ୟତ୍ତତ୍ ସତ୍ୟମ୍' (ବୃହ ୫-୫-୨) ଇତି ପ୍ରକୃତାକର୍ଷଣାତ୍ । ନନୁ ବିଦ୍ୟାଭେଦେଽପି ପ୍ରକୃତାକର୍ଷଣମୂପାସ୍ୟୈକତ୍ୱାଦୁପପଦ୍ୟେତ ଇତ୍ୟୁକ୍ତମ୍ । ନୈତଦେବମ୍ । ଯତ୍ର ତୁ ବିସ୍ପଷ୍ଟାତ୍ କରଣାନ୍ତରାଦ୍ ବିଦ୍ୟାଭେଦଃ ପ୍ରତୀୟତେ ତତ୍ରୈତଦେବଂ ସ୍ୟାତ୍ ।

(ଖ) ଏତ୍ର ତୃଭୟଥା ସମ୍ଭବେ ତଦ୍ୟତ୍ତତ୍ସତ୍ୟମିତି ପ୍ରକୃତାକର୍ଷଣାତ୍ ପୂର୍ବବିଦ୍ୟା ସମ୍ବନ୍ଧମେବ ସତ୍ୟମୁତ୍ତରତ୍ରାକୃଷ୍ୟତି ଇତ୍ୟେକ ବିଦ୍ୟାତ୍ୱନିଶ୍ଚୟଃ । ଯତ୍ ପୁନରୁକ୍ତଂ ଫଳାନ୍ତରଶ୍ରବଣାତ୍ ବିଧ୍ୟାନ୍ତରମିତି । ଅତ୍ରୋଚ୍ୟତେ ତସ୍ୟୋପନିଷଦହରମିତି ଚାଙ୍ଗାନ୍ତରୋ ପଦେଶସ୍ୟ ସ୍ତାବକମିଦଂ ଫଳାନ୍ତର ଶ୍ରବଣମିତ୍ୟ ଦୋଷଃ ।

(ଗ) ଅପି ଚ଼ର୍ଥବାଦାଦେବ ଫଳେ କଳ୍ପୟିତବ୍ୟେ ସତି ବିଦ୍ୟୈକତ୍ୱେ ଚ଼ବୟବେଷୁ ଶ୍ରୂୟମାଣାନି ବହୂନ୍ୟପି ଫଳାନ୍ୟବୟବିନ୍ୟାମେବ ବିଦ୍ୟାୟାମୁପସଂହର୍ତ୍ତବ୍ୟାନି ଭବନ୍ତି । ତସ୍ମାତ୍ସେବେୟମେକା ସତ୍ୟବିଦ୍ୟା ତେନ ତେନ ବିଶେଷେଣୋପେତାମ୍ନାତେତ୍ୟତଃ ସର୍ବ ଏବ ସତ୍ୟାଦୟୋ ଗୁଣା ଏକସ୍ମିନ୍ନେବ ପ୍ରୟୋଗେ ଉପସଂହର୍ତ୍ତବ୍ୟାଃ ।

(ଘ) କେଚିତ୍ ପୁନରସ୍ମିନ୍ ସୂତ୍ର ଇଦଞ୍ଚ ବାଜସନେୟକମକ୍ଷ୍ୟାଦୀତ୍ୟପୁରୁଷବିଷୟଂ ବାକ୍ୟମ୍, ଛାନ୍ଦୋଗ୍ୟେ ଚ – 'ଅଥ ଯ ଏଷୋଽନ୍ତରାଦିତ୍ୟେ ହିରଣ୍ମୟଃ ପୁରୁଷୋ ଦୃଶ୍ୟତେ' (ଛା ୧-୬-୬)' 'ଅଥ ଯ ଏଷୋଽକ୍ଷଣି ପୁରୁଷୋ ଦୃଶ୍ୟତେ' (ଛା ୪-୧୫-୧) ଇତ୍ୟୁଦାହୃତ୍ୟ ସୈବେୟମକ୍ଷ୍ୟାଦିତ୍ୟପୁରୁଷ ବିଷୟା ବିଦ୍ୟୋଭୟତ୍ରୈକୈବେତି କୃତ୍ୱା ସତ୍ୟାଦୀନ୍ ଗୁଣାନ୍ ବାଜସନେୟିଭ୍ୟଛାନ୍ଦୋଗାନାମୁପସଂହାର୍ଯ୍ୟାନ୍ ମନ୍ୟନ୍ତେ । ତନ୍ନ ସାଧୁ ଲକ୍ଷ୍ୟତେ, ଛାନ୍ଦୋଗ୍ୟେ ହି ଜ୍ୟୋତିଷ୍ଟୋମକର୍ମସମ୍ବନ୍ଧିନୀୟମୁଦ୍ଗୀଥବ୍ୟପାଶ୍ରୟା ବିଦ୍ୟା ବିଜ୍ଞାୟତେ ।

(ଙ) ତତ୍ର ହ୍ୟାଦିମଧ୍ୟାବସାନେଷୁ ହି କର୍ମସମ୍ବନ୍ଧିଚିହ୍ନାନି ବନ୍ତି 'ଇୟମେବର୍ଗଗ୍ନିଃ ସାମ' (ଛା ୧-୬-୮) ଇତ୍ୟୁପକ୍ରମେ 'ତସ୍ୟର୍କ୍ଚ ସାମ ଚ ଗେଷ୍ଣୌ ତସ୍ମାଦୁଦ୍ଗୀଥ' (ଛା ୧-୬-୮) ଇତି ମଧ୍ୟେ 'ଯ ଏବଂ ବିଦ୍ୱାନ୍ ସାମ ଗାୟତି' (ଛା ୧-୭-୯) ଇତ୍ୟୁପସଂହାରେ ।



ନୈବଂବାଜସନେୟକେ କିଞ୍ଚିତକର୍ମସମ୍ବନ୍ଧିଚିହ୍ନମସ୍ତି । ତତ୍ର ପ୍ରକ୍ରମଭେଦାଦ୍ ବିଦ୍ୟାଭେଦେ ସତି ଗୁଣବ୍ୟବସ୍ଥୈବ ଯୁକ୍ତେତି ।

**(୩) ଭାଷାନ୍ତର**-ସିଦ୍ଧାନ୍ତ-(କ) ଏହିପରି ପ୍ରାପ୍ତ ହୁଅନ୍ତେ ଆମ୍ଭେ କହୁଁ ଯେ- ଏହି ସତ୍ୟବିଦ୍ୟା ଏକ ଅଟେ । କିପରି ? କାରଣ-'ତଦ୍ୟଉଦ୍' ଏହିପରି ପ୍ରକୃତର ଆକର୍ଷଣ ହୁଏ । ପରନ୍ତୁ ଏଠାରେ ବିଦ୍ୟାର ଭେଦ ହେଲାପରେ ମଧ୍ୟ ପ୍ରକୃତର ଆକର୍ଷଣ ଉପାସ୍ୟର ଏକ ହେଲେ ଉପପନ୍ନ ହୁଏ ବୋଲି ଯାହା କୁହାଯାଇଅଛି , ତାହା ଠିକ୍ ନୁହେଁ ଯେଉଁଠାରେ ବିସ୍ପଷ୍ଟ ଅନ୍ୟକାରଣ (ପ୍ରକରଣ)ରୁ ବିଦ୍ୟା ଭେଦ ପ୍ରତୀତ ହୁଏ, ସେଠାରେ ପ୍ରକୃତର ଆକର୍ଷଣ ଉପାସ୍ୟର ଏକ ହେଲେ ଠିକ୍ ହେବ ।

(ଖ) ପରନ୍ତୁ ଯେଉଁଠାରେ ବିଦ୍ୟାର ଭେଦ ଓ ଅଭେଦ ଦୁଇଟି ପ୍ରକରଣରେ ସମ୍ଭବ ହୁଏ, ସେଠାରେ 'ତଦ୍ୟଉତ୍ ସତ୍ୟମ୍' (ଏହିପ୍ରକାରର ପ୍ରକୃତ ଆକର୍ଷଣ ହୋଇ ପୂର୍ବବିଦ୍ୟା ଦ୍ୱାରା ସଂବନ୍ଧ ସତ୍ୟର ଉତ୍ତର ବିଦ୍ୟାରେ ଆକର୍ଷଣ ହୁଏ । ତେଣୁ ଗୋଟିଏ ବିଦ୍ୟା ନିଶ୍ଚିତ ଅଟେ । ଅନ୍ୟ ଫଳର ଶ୍ରୁତି ହେଲେ ବିଦ୍ୟାର ଭେଦ ହୁଏ ବୋଲି ଯାହା କୁହାଯାଇଅଛି, ସେହି ବିଷୟରେ କୁହାଯାଏ- ତାହାର ରହସ୍ୟ ନାମକ 'ଅହଃ' ଓ 'ଅହମ୍' ଏହିପ୍ରକାର ଅନ୍ୟଅଙ୍ଗର ଉପଦେଶରେ ଏହି ଅନ୍ୟଫଳର ଶ୍ରବଣ କେବଳ ଶ୍ରୁତିମାତ୍ର ଅଟେ । ତେଣୁ ଏହା ଦୋଷ ନୁହେଁ ।

(ଗ) ଅର୍ଥବାଦରୁ ଫଳକଳ୍ପନା ହେଲେ କଣ ବିଦ୍ୟାର ଏକତ୍ୱରେ ଅବୟବଗୁଡ଼ିକରେ ଉପସଂହାର ହେବା ଉଚିତ୍ ? ତେଣୁ ସେହି ଏକ ସତ୍ୟବିଦ୍ୟା ସେହି ସେହି ବିଶେଷଣରେ ଯୁକ୍ତ ହୋଇ କୁହାଯାଇଅଛି । ଅତଏବ ସତ୍ୟ ପ୍ରଭୃତି ସମସ୍ତ ଗୁଣଗୁଡିକର ଗୋଟିଏ ପ୍ରୟୋଗରେ ଉପସଂହାର ହେବା ଉଚିତ୍ ।

(ଘ) ଅନ୍ୟ କୌଣସି ଟୀକକାର ଏହି ସୂତ୍ରରେ ବାଜସନେୟିର ବାକ୍ୟ ଅକ୍ଷିପୁରୁଷ ବିଷୟକ ଅଟେ ଏବଂ ଛାନ୍ଦୋଗ୍ୟରେ 'ଅଥ ଯ ଏଷୋ' (ତଥା ଏହି ଯାହା ଆଦିତ୍ୟମଣ୍ଡଳର ଅନ୍ତର୍ଗତ ସୁବର୍ଣ୍ଣମୟ ବା ପୁରୁଷ ଦେଖାଯାଏ) 'ଅଥ ଏଷୋ' (ଯାହା ଏହି ଅକ୍ଷର ପୁରୁଷ ଦେଖାଏ) ଏହି ଦୁଇଟି ବାକ୍ୟର ଉଦାହରଣ ଦେଇ ସେ ଏହି ଅକ୍ଷିପୁରୁଷ ଓ ଆଦିତ୍ୟପୁରୁଷ ବିଷୟକ ବିଦ୍ୟା ଦୁଇଟି ସ୍ଥଳରେ ଗୋଟିଏ ହୁଏ- ଏହିପରି ସ୍ୱୀକାର କରି ବାଜସନେୟିତର ଉପସଂହାର ଯୋଗ୍ୟ ସତ୍ୟ ପ୍ରଭୃତି ଗୁଣ ଗୁଡ଼ିକର ଛାନ୍ଦୋଗ୍ୟକୁ ଉପସଂହାର କରିବା ଉଚିତ୍ ବୋଲି ସ୍ୱୀକାର କରନ୍ତି । ପରନ୍ତୁ ଏହା ଠିକ୍ ରୂପରେ ଜଣାପଡ଼େ ନାହିଁ) କାରଣ- ଛାନ୍ଦୋଗ୍ୟରେ ଜ୍ୟୋତିଷ୍ଟୋମ କର୍ମସମ୍ବନ୍ଧୀ ଏହି ଉତ୍‌ଗୀର୍ଥାଶ୍ରିତ ବିଦ୍ୟା ଜଣାପଡ଼େ) କାରଣ-ସେଠାରେ ଆଦି, ମଧ୍ୟ ଓ ଅନ୍ତରେ କର୍ମସମ୍ବନ୍ଧୀ ଚିହ୍ନ ଅଛି । 'ଇୟମେବ' (ଏହି ପୃଥିବୀ ଋକ୍ ଓ ଅଗ୍ନି ହିଁ ସାମ ଅଟେ । ଏହି ଉପକ୍ରମରେ 'ତସ୍ୟକ୍ ଚ' (ଋକ୍ ଓ ସାମ ତାହାର ପର୍ବ ଅଟେ । ତାହାଦ୍ୱାରା ସେହି ଦେବ ଉଦ୍‌ଗୀଥରୂପ) ଏହା ମଧ୍ୟଭାଗରେ ଏବଂ ଯଂ ଏବଂ ବିଦ୍ୱାନ୍ )ଯେଉଁ ବ୍ୟକ୍ତି

ଏହା ଜାଣିଥାଏ, ସେ ସାମକୁ ଗାନକରେ), ଏହି ପ୍ରକାର ଶେଷ ଭାଗରେ କୁହାଯାଇଅଛି; କିନ୍ତୁ ବାଜିସନେୟକରେ ଏତାଦୃଶ କର୍ମସମ୍ବନ୍ଧ ସଙ୍କେତ ନାହିଁ । ତେଣୁ ଏଠାର ଉପକ୍ରମ ଭେଦ ଥାଇ ମଧ୍ୟ ଗୁଣଗୁଡ଼ିକର ବ୍ୟବସ୍ଥା ନ୍ୟାୟସଙ୍ଗତ ଅଟେ ।

## २५ कामाद्यदिकरणम् ॥ सू० ३९ ॥

## କାମାଦ୍ୟଧିକରଣମ୍ -୨୫

## २- कामादितरत्र तत्र चायतनादिभ्यः ॥ ३९ ॥

## ୧-କାମାଦୀତରତ୍ର ତତ୍ର ଚାୟତନାବିଭ୍ୟଃ ॥ ୩-୩-୩୯ ॥

କାମାଦି-ସତ୍ୟକାମତ୍ୱ ପ୍ରଭୃତି ଗୁଣ ସମୂହର, ଇତରତ୍ର = ବୃହଦାରଣ୍ୟକରେ ସର୍ବବଶିତ୍ୱାଦିଗୁଣ ସମୂହର ମଧ୍ୟ, ତତ୍ର=ଛାନ୍ଦୋଗ୍ୟ ଉପନିଷଦରେ ଉପସଂହାର ହେବା ଉଚିତ୍ । ଆୟତନାଦିଭ୍ୟଃ=କାରଣ - ସେହି ଅବସ୍ଥାରେ ଆୟତାନାଦି ସମାନ ହୁଏ.।

ମୂଳ-(କ) ଅଥ ଯଦି ଦମସ୍ମିନ୍ ବ୍ରହ୍ମପୁରେ ଦହରଂ ପୁଣ୍ଡରୀକଂ ବେଶ୍ମ ଦହରୋଽସ୍ମିନ୍ନନ୍ତରାକାଶେ' (ଛା ୮-୧-୧) ଇତି ପ୍ରସ୍ତୁତ୍ୟ ଛାନ୍ଦୋଗା ଅଧୀୟତେ-ଏଷ ଆତ୍ମାଽପହତପାପ୍ମା ବିଜରୋ ବିମୃତ୍ୟୁର୍ବିଶୋକୋ ବିଜିଘତ୍ସୋଽପାସଃ ସତ୍ୟକାମଃ ସତ୍ୟସଙ୍କଳ୍ପଃ' (ଛା-୮-୧-୫) ଇତ୍ୟାଦି । (ଖ) ତଥା ବାଜସନେୟିନଃ- 'ସ ବା ଏଷ ମହାଜନ୍ ଆତ୍ମା ଯୋଽୟଂ ବିଜ୍ଞାନମୟଃ ପ୍ରାଣେଷୁ ଯ୍ ଏଷୋଽନ୍ତର୍ହୃଦୟ ଆକାଶସ୍ତସ୍ମିମ୍ଛେତେ ସର୍ବସ୍ୟ ବଶୀ' )ବୃହ ୪-୪-୨୨) ଇତ୍ୟାଦି ।

ଭାଷଃ-(କ) ଅଥ ଯଦିଦଂ (ବର୍ତ୍ତମାନ ବ୍ରହ୍ମପୁର ମଧ୍ୟରେ ଯେଉଁ ସୂକ୍ଷ୍ମ କମଳାକାର ସ୍ଥାନ ରହିଛି, ତନ୍ମଧ୍ୟରେ ଏକ ସୂକ୍ଷ୍ମ ଆକାଶ ରହିଛି), ଏହି ପ୍ରକାର ଉପକ୍ରମ କରି ଛାନ୍ଦୋଗ୍ୟ 'ଏଷ ଆତ୍ମା' (ଏହି ଆତ୍ମା ଧର୍ମ ଓ ଅଧର୍ମ ବିହୀନ, ଜରାହୀନ, ମୃତ୍ୟୁରହିତ ଶୋକାତୀତ, ଭୋଜନେଚ୍ଛାରହିତ, ପିପାସା ରହିତ, ସତ୍ୟକାମ ଏବଂ ସତ୍ୟସଙ୍କଳ୍ପ ଅଟେ) ଏହି ପ୍ରକାର ପାଠ କରାଯାଏ । (ଖ) ଏହି ପ୍ରକାର ବାଜସନେୟୀ 'ସ ବା ଐଷ ମହାଜନ' (ସେ ଏହି ମହାନ୍ ଅଜନ୍ମା ଆତ୍ମା, ଯାହା ପ୍ରାଣ ମଧ୍ୟରେ ବିଜ୍ଞାନମୟ, ହୃଦୟରେ ଆକାଶ ଅଟେ । ସେଠାରେ ଶୟନ କରେ । ସେ ସମସ୍ତଙ୍କୁ ବଶୀଭୂତ କରେ), ଇତ୍ୟାଦି ଅଧ୍ୟୟନ କରାଯାଇଛି ।

ମୂଳ-(କ) ତତ୍ର ବିଦ୍ୟୈକତ୍ୱଂ ପରସ୍ପର ଗୁଣଯୋଗଶ୍ଚ, କିଂ ବା ନେତି ସଂଶୟେ ବିଦୈକତ୍ୱମିତି । (ଖ) ତତ୍ରେ ମୁଚ୍ୟତେ - କାମାଦୀତି ସତ୍ୟକାମାଦୀତ୍ୟର୍ଥଃ । ଯଥା ଦେବଦତ୍ତୋ ଦତ୍ତଃ, ସତ୍ୟଭାମା ଭାମେତି । (ଗ) ଯଦେତଚ୍ଛାନ୍ଦୋଗ୍ୟେ ହୃଦୟାକାଶସ୍ୟ



ସତ୍ୟକାମତ୍ୱାଦିଗୁଣଜାତମୁପଲଭ୍ୟତେ, ତଦିତରତ୍ର ବାଜସନେୟକେ 'ସ ବା ଏଷ ମହାଜନ ଆତ୍ମା' ଇତ୍ୟତ୍ର ସଂବଧ୍ୟତେ, ଯ ଚ୍ଚ ବାଜସନେୟକେ ବଶିତ୍ୱାଦ୍ୟୁପଲଭ୍ୟତେ ତରତ୍ର ଛାନ୍ଦୋଗ୍ୟେ 'ଏଷ ଆତ୍ମାଽପହତପାପ୍ମା' (ଛା ୮-୧-୫) ଇତ୍ୟତ୍ର ସମ୍ବଧ୍ୟତେ (ଘ) କୁତଃ ? ଆୟତାନାଦି ସାମାନ୍ୟାତ୍ । ସମାନଂ ହ୍ୟୁଭୟତ୍ରାପି ହୃଦୟମାୟତନ ସମାନଶ୍ଚ ବେଦ୍ୟ ଈଶ୍ୱରଃ ସମାନଞ୍ଚ ତସ୍ୟ ଲୋକାସଂଭେଦପ୍ରୟୋଜନମିତ୍ୟେବମାଦି ବହୁ ସାମାନ୍ୟଂ ଦୃଶ୍ୟତେ ।

ଭାଷା-(କ) ସେହି ସ୍ଥାନରେ ବିଦ୍ୟାର ଏକତ୍ୱ ଏବଂ ପରସ୍ପର ଗୁଣଗୁଡ଼ିକର ଯୋଗ (ଉପସଂହାର) ହୁଏ କି ହୁଏ ନାହିଁ ? ଏହି ସ୍ଥଳରେ ସଂଶୟ ବିଦ୍ୟା ଏକ ବୋଲି ସିଦ୍ଧାନ୍ତ କରାଯାଇଛି । (ଖ) କୁହାଯାଇଅଛି – କାମାଦି ସତ୍ୟକାମାଦି ରୂପରେ । ଯେପରି ଦେବଦତ୍ତଙ୍କୁ ଦତ୍ତ ଏବଂ ସତ୍ୟଭାମାକୁ ଭାମା ବୋଲି ଆଖ୍ୟାନ କରାଯାଏ, (ଗ) ସେହିପରି ଛାନ୍ଦୋଗ୍ୟରେ ହୃଦୟାକାଶର ଯେଉଁ ସତ୍ୟକାମତ୍ୱ ପ୍ରଭୃତି ଗୁଣଗୁଡ଼ିକ ଉପଲବ୍ଧ ହୁଏ, ତାହା ଅନ୍ୟ ସ୍ଥାନରେ 'ସ ବା ଏଷ ମହାନଜ ଆତ୍ମା' ଏହି ବାଜସନେୟ କରେ ସମ୍ବନ୍ଧ ହୁଏ ଏବଂ ବାଜସନେୟକରେ ଯେଉଁ ବଶିତ୍ୱାଦିଗୁଣ ଉପଲବ୍ଧ ହୁଏ, ତାହା ଛାନ୍ଦୋଗ୍ୟରେ 'ଯ ଆତ୍ମାଽପହତ ପାପ୍ମା' ବାକ୍ୟରେ ମଧ୍ୟ ସମ୍ବନ୍ଧିତ ହୁଏ । (ଘ) କିପରି ? ଏହାଦ୍ୱାରା ଦୁଇଟି ଆୟତନରେ ସମାନ ଅଟେ । ଦୁଇଟି ଶାଖାରେ ହୃଦୟ ସ୍ଥାନ ସମାନ ଅଟେ । ବେଦ୍ୟ ଈଶ୍ୱର ସମାନ ଅଟେ ଏବଂ ଲୋକ ମର୍ଯ୍ୟାଦାର ସମ୍ବନ୍ଧିତ ପ୍ରୟୋଜକର ସେତୁତ୍ୱ ସମାନ ଅଟେ । ଇତ୍ୟାଦି ବସ୍ତୁ ସାମାନ୍ୟ ଦେଖାଯାଏ ।

ମୂଳ-(କ) ନନୁ ବିଶେଷୋଽପି ଦୃଶ୍ୟତେ ଛାନ୍ଦୋଗ୍ୟେ ହୃଦୟାକାଶସ୍ୟ ଗୁଣ ଯୋଗୋ ବାଜସନେୟକେ ତ୍ୱାକାଶାଶ୍ରୟସ୍ୟ ବ୍ରହ୍ମଣ ଇତି । ନା 'ଦହର ଉତ୍ତରେଭ୍ୟ (ବ୍ର. ସୂ: ୧-୩-୧୪) ଇତ୍ୟତ୍ର ଛାନ୍ଦୋଗ୍ୟେଽପ୍ୟାକାଶଶବ୍ଦଂ ବ୍ରହ୍ମୈବେତି ପ୍ରତିଷ୍ଠାପିତ ତ୍ୱାତ୍ । 'ଅୟଂ ତ୍ୱତ୍ର ବିଦ୍ୟତେ ବିଶେଷଃ- ସଗୁଣାହି ବ୍ରହ୍ମବିଦ୍ୟା ଛାନ୍ଦୋଗ୍ୟ ଉପଦିଶ୍ୟତେ 'ଅଥ ଯ ଇହାତ୍ମାନମନୁବିଦ୍ୟ ବ୍ରଜନ୍ତ୍ୟେତାଂଶ୍ଚ ସତ୍ୟାନ୍ କାମାନ୍' (ଛା ୮-୧-୬) ଇତ୍ୟାତ୍ମବତ୍କାମାନାମପି ବେଦ୍ୟତ୍ୱଶ୍ରବଣାତ୍ । (ଖ) ବ୍ାଜସନେୟକେ ତୁ ନିର୍ଗୁଣ ମେବ ପରଂ ବ୍ରହ୍ମୋପଦିଶ୍ୟମାନଂ ଦୃଶ୍ୟତେ 'ଅତ ଊର୍ଦ୍ଧ୍ୱଂ ବିମୋକ୍ଷାୟ ବ୍ରୁହି (ବୃହ ୪-୩-୧୪) 'ଅସଙ୍ଗୋହ୍ୟୟଂପୁରୁଷଃ' (ବୃହ ୪-୩-୧୫) ଇତ୍ୟାଦି ପ୍ରଶ୍ନ ପ୍ରତିବଚନ ସମନ୍ୱୟାତ୍ । ବଶିତ୍ୱାଦି ତୁ ତତ୍ସ୍ତୁତ୍ୟର୍ଥମେ ବଣଜାଗୁତଂବାଜସନେୟକେ ସଙ୍କୀର୍ତ୍ତ୍ୟରେ । (ଗ) ତଥା ଚୋପରିଷ୍ଟାତ୍ 'ସ ଏଷ ନେତି ନେତ୍ୟାତ୍ମା' ବୃହ ୩-୯-୨୬) ଇତ୍ୟାଦିନା ନିର୍ଗୁଣମେବ ବ୍ରହ୍ମୋପସଂହରତି । ଗୁଣବସ୍ତୁ ବ୍ରହ୍ମଣ ଏକତ୍ୱାଦ୍ ବିଭୂତି ପ୍ରଦର୍ଶନାୟାୟଂ ସୂତ୍ରିତୋ ନୋପାସନାୟେତି ଦ୍ରଷ୍ଟବ୍ୟମ୍ ।

ଭାଷା-(କ) ପରନ୍ତୁ ଏହାର ବିଶେଷତ୍ୱ ଯେ -ଛାନ୍ଦୋଗ୍ୟାନୁସାରେ ହୃଦୟାକାଶରେ ଗୁଣଯୋଗ ଏବଂ ବାଜସନେୟକରେ ଆକାଶର ଆଶ୍ରୟ ବ୍ରହ୍ମରେ ଗୁଣଯୋଗ ଅଛି । ଏହା ନୁହେଁ । କାରଣ-'ଦହର ଉତ୍ତରେଭ୍ୟ' ସୂତ୍ରରେ ଛାନ୍ଦୋଗ୍ୟର ଆକାଶ ଶବ୍ଦ ବ୍ରହ୍ମବାଚକ ରୂପରେ ପ୍ରତିଷ୍ଠାପିତ କରାଯାଇଛି । ପରନ୍ତୁ ଏଠାରେ ଏକ ବିଶେଷତ୍ୱ ସେ-ଛାନ୍ଦୋଗ୍ୟରେ ସଗୁଣ ବ୍ରହ୍ମବିଦ୍ୟା ଉପଦିଷ୍ଟ ହୋଇଛି । 'ଅଥ ଯ' (ଯିଏ ଏହି ଆତ୍ମ ଓ ସତ୍ୟକାମକୁ ଜାଣି ପରଲୋକକୁ ଯାଏ) ଏହି ପ୍ରକାର ଆତ୍ମାତୁଲ୍ୟ ସତ୍ୟକାମରେ ବେଦ୍ୟତ୍ୱର ଶ୍ରବଣ ହୁଏ । (ଖ) ବାଜସନେୟକରେ କିନ୍ତୁ ଅତି ଉର୍ଦ୍ଧ୍ୱ' (ମୋତେ ପ୍ରଥମେ ମୋକ୍ଷ ପାଇଁ ଉପଦେଶ ଦିଅନ୍ତି) 'ଅସଙ୍ଗେ । ହ୍ୟଂ ପୁରୁଷଃ' ଇତ୍ୟାଦି ପ୍ରଶ୍ନ ଏବଂ ପ୍ରତିବଚନର ସମନ୍ୱୟ ଦ୍ୱାରା ନିର୍ଗୁଣ ପରଂବ୍ରହ୍ମ ହିଁ ଉପଦେଶ ଦିଆଯାଇଛି । ତେଣୁ ବଶିତ୍ୱାଦି ଗୁଣ ତାହାର ସ୍ତୁତିପାଇଁ ବାଜନେୟକରେ କୁହାଯାଇଛି । (ଘ) ସେହିପରି ପ୍ରଥମେ 'ସ ଏଷ' (ନେତି ନେତି କହି ଯାହା ନିରୂପଣ ହୋଇଛି, ତାହାହିଁ ଆତ୍ମା ଅଟେ) ଇତ୍ୟାଦି ଶ୍ରୁତି ନିର୍ଗୁଣ ବ୍ରହ୍ମର ଉପଦେଶ କରେ । ସଗୁଣ ବ୍ରହ୍ମ ଏକ ହେଲେ ତାହାର ବିଭୂତି ପ୍ରଦର୍ଶନ ପାଇଁ ଏହି ଗୁଣୋପସଂହାର ସୂତ୍ରିତ କରାଯାଇଛି ; କିନ୍ତୁ ଉପାସନା ପାଇଁ ନୁହେଁ ବୋଲି ଜାଣିବା ଉଚିତ୍ ।

## २६ आदराधिकरणम् सू. (४०-४२)

## ଆଦରାଧିକରଣମ୍ - ୨୬

### २-आदरादलोप: ॥ ३-३-४० ॥

### ୧- ଆଦରାଦଲୋପଃ ॥୩-୩-୪୦॥

ଅଲୋପଃ = ଭୋଜନ ସମାପ୍ତ ହେଲେ ମଧ୍ୟ ଅଗ୍ନିହୋତ୍ରର ଲୋପ ହୁଏନାହିଁ । ଆଦରାତ୍=କାରଣ ପୂର୍ବୋଽତିଥିଭ୍ୟୋଽଶ୍ନୀୟାତ୍' ଇତ୍ୟାଦି ଜାବାଲ ଶ୍ରୁତିରେ ପ୍ରାଣାଗ୍ନି ହୋତ୍ରକୁ ଆଦର କରାଯାଏ ॥

ମୂଳ-(କ) ଛାନ୍ଦୋଗ୍ୟ ବୈଶ୍ୱାନରବିଦ୍ୟାଂ ପ୍ରକୃତ୍ୟଶ୍ରୂୟତେ- 'ତଦ୍ୟଦ୍ଭକ୍ତଂ ପ୍ରଥମମାଗଚ୍ଛେତ୍ତଦ୍ହୋମୀୟଂ ସ ଯାଂ ପ୍ରଥମମାହୁତିଂ ଜୁହୁୟାତ୍ତାଂ ଜୁହୁୟାତ୍ ପ୍ରାଣାୟ ସ୍ୱାହା' (ଛା ୫-୧୯-୧) ଇତ୍ୟାଦି । (ଖ) ତତ୍ର ପଞ୍ଚ ପ୍ରାଣାହୁତୟେ ବିହିତାଃ, ତାସୁ ଚ ପରସ୍ତାଦଗ୍ନିହୋତ୍ର ଶବ୍ଦଃ ପ୍ରଯୁକ୍ତଃ - 'ଯ ଏତଦେବଂ ବିଦ୍ୱାନଗ୍ନିହୋତ୍ରଂ ଜୁହୋତି' (ଛା ୫-୨୪-୨) ଇତି, ଯଥେହ କ୍ଷୁଧବତା ବାଲା ମାତରଂ ପର୍ଯ୍ୟୁପାସତେ ଏବଂ ସର୍ବାଣି ଭୂତାନ୍ୟଗ୍ନିହୋତ୍ର ସୁପାସତେ' (ଛା ୫-୨୪-୫) ଇତି ଚ । (ଗ) ତତ୍ରେଦଂ ବିଚାର୍ଯ୍ୟତେ- କିଂ ଭୋଜନଲୋକେ ଲୋପଃ ପ୍ରାଣାଗ୍ନିହୋତ୍ରସ୍ୟୋତାଲୋପ ଇତି । ତଦ୍ୟଦ୍ଭକ୍ତମିତି ଭକ୍ତାଗମନସଂଯୋଗଶ୍ରବଣାତ୍ ଭକ୍ତାଗମନସ୍ୟ ଚ ଭୋଜନାର୍ଥତ୍ୱାଦ୍ ଭୋଜନଲୋପେ ଲୋପଃ ପ୍ରାଣାଗ୍ନିହୋତ୍ରସ୍ୟେତି ॥

ଭାଷା-(କ) ଛାନ୍ଦୋଗ୍ୟରେ ବୈଶ୍ୱାନର-ବିଦ୍ୟାକୁ ପ୍ରସ୍ତୁତ କରି 'ତଦ୍‌ଯଦ୍‌ଭକ୍ତଂ' (ତେଣୁ ଭୋଜନ ସମୟରେ ଯେଉଁ ପ୍ରଥମେ ଆସେ, ତାହାକୁ ରାନ୍ଧିବା ଆବଶ୍ୟକ । ଏହିପରି ଯେଉଁ ଭୋକ୍ତା ପ୍ରଥମ ଆହୁତି ଦିଏ ତାହାକୁ 'ପ୍ରାଣାୟ ସ୍ୱାହା' ଏହ କୁହାଯାଏ) ଇତ୍ୟାଦି ଶ୍ରୁତି ଅଟେ । (ଖ) ସେଠାରେ ପାଞ୍ଚୋଟି ପ୍ରାଣାହୁତି ଅଛି । ତନ୍ମଧ୍ୟରେ 'ଯ ଏତଦେବଂ' (ସେହି ବୈଶ୍ୱାନରକୁ ପୁରୁଷ ଜାଣି ଅଗ୍ନିହୋତ୍ର କରେ । ଏବଂ 'ଯଥେହ କ୍ଷୁଧିତା ବାଳା' (ଯେଉଁପରି ଏହି ସଂସାରରେ କ୍ଷୁଧିତ ବାଳକ ମାଆକୁ ସମ୍ବୋଧନ କରେ, ସେହିପରି ପ୍ରାଣୀ ଏହି ଜ୍ଞାନୀର ଜୋଜନରୂପ ଅଗ୍ନିହୋତ୍ରକୁ ଉପାସନା କରେ । ଏହିପରି ଅଗ୍ନିହୋତ୍ର ଶବ୍ଦ ପ୍ରୟୋଗ କରାଯାଇଛି । (ଗ) ଭୋଜନ ଲୋପ ହେଲେ ଅଗ୍ନିହୋତ୍ର ହୋମ ଲୋପ ହୁଏ କି ହୁଏ ନାହିଁ ବୋଲି ବିଚାର କରାଯାଇଛି । କିନ୍ତୁ 'ତଦ୍‌ଯଦ୍‌ଭକ୍ତମ୍' ଏହି ପ୍ରକାର ଅଗ୍ନିର ଉପସ୍ଥିତି ସମ୍ବନ୍ଧ ଶ୍ରବଣରେ ଏବଂ ଅନ୍ନ ଭୋଜନ ପାଇଁ ଉଦ୍ଦିଷ୍ଟ ହେଲେ ଏବଂ ଭୋଜନ ଲୋପ ହେଲେ ପ୍ରାଣାଗ୍ନିହୋତ୍ର ହେବା ଆବଶ୍ୟକ କି ?

ମୂଳ-(କ) ଏବଂ ପ୍ରାପ୍ତେ ନ ଲୁପ୍ୟେତେତି ତାବଦାହ । କସ୍ମାତ୍ ? ଆଦ୍ୱରାତ୍ ! ତଥାହି ବୈଶ୍ୱାନରବିଦ୍ୟାୟାମେବ ଜାବାଲାନାଂ ଶ୍ରୁତିଃ-ପୂର୍ବୋଽତିଥିଭ୍ୟୋଽଶ୍ନୀୟାତ୍ । ଯଥା ହ ବୈ ସ୍ୱୟମହୁତ୍ୟାଽଗ୍ନିହୋତ୍ରଂ ପରସ୍ୟ ଜୁହୁୟାଦେବଂ ତତ୍' ଇତ୍ୟତିଥି ଭୋଜନସ୍ୟ ପ୍ରାଥମ୍ୟଂ ନିନ୍ଦିତ୍ୱା ସ୍ୱାମୀଭୋଜନଂ ପ୍ରଥମଂ ପ୍ରାପୟନ୍ତୀ ପ୍ରାଣାଗ୍ନୀହୋତ୍ରେ ଆଦରଂ କରୋତି । ଯା ହି ନ ପ୍ରାଥମ୍ୟଲୋପଂ ସହତେ ନେତରାଂ ଯା ପ୍ରାଥମ୍ୟବତୋଽଗ୍ନିହୋତ୍ରସ୍ୟ ଲୋପଂ ସହତ୍ରେତି ମନ୍ୟତେ । (ଖ) ନନୁ ଭୋଜନାର୍ଥ୍ୟଉକ୍ତାଗମନସଂଯୋଗାଦ୍ ଭୋଜନଲୋପେ ଲୋପଃ ପ୍ରାପିତଃ ନ, ତସ୍ୟ ଦ୍ରବ ବିଶେଷବିଧାନାର୍ଥତ୍ୱାତ୍ । ପ୍ରାକୃତେ ହ୍ୟଗ୍ନିହୋତ୍ରେ ପୟଃପ୍ରଭୃତୀନାଂ ଦ୍ରବ୍ୟାଣାଂ ନିୟତତ୍ୱାଦିହାପ୍ୟଗ୍ନିହୋତ୍ରଶବ୍ଦାତ୍ କୌଣ୍ଡପାୟିନାମୟ ନବଉଦ୍ଧର୍ମପ୍ରାପ୍ତୌ ସତ୍ୟାଂ ଭକ୍ତଦ୍ରବ୍ୟୈକତା ଗୁଣବିଶେଷବିଧାନାର୍ଥମିଦଂ ବାକ୍ୟଂ ତଦ୍‌ଯତ୍‌ଭକ୍ତମିତି । (ଗ) ଅତୋ ଗୁଣଲୋପେ ନ ମୁଖ୍ୟସ୍ୟେତ୍ୟେବଂ ପ୍ରାପ୍ତମ୍, ଭୋଜନଲୋପେଽପ୍ୟଦ୍‌ଭିର୍ବାଽନ୍ୟେନ ବା ଦ୍ରବେଣା-ବିରୁଦ୍ଧେନ ପ୍ରତିନିଧାନନ୍ୟାୟେନ ପ୍ରାଣାଗ୍ନିହୋତ୍ରସ୍ୟାନୁଷ୍ଠାନମିତି ।

ଭାଷା-(କ) ଏହି ବିଷୟରେ ପୂର୍ବପକ୍ଷ କହନ୍ତି ଯେ – ପ୍ରାଣାଗ୍ନିହୋତ୍ର ଲୋପ ହୁଏ ନାହିଁ । କିପରି ? କାରଣ- ତାହାର ଶ୍ରୁତିରେ ଆଦର ନାହିଁ । ତେଣୁ ବୈଶ୍ୱାନର ବିଦ୍ୟାରେ ଜାବାଲିର 'ପୂର୍ବୋଽତିଥିଭ୍ୟୋ' (ଅତିଥିଙ୍କ ପୂର୍ବରୁ ଏହାକୁ ଭକ୍ଷଣ କରିବା ଉଚିତ୍; ଯେପରି ସେ ନିଜେ ଅଗ୍ନିହୋତ୍ର ହୋମ ନକରି ଅନ୍ୟ ଅଗ୍ନିହୋତ୍ର ହୋମ କରେ ।) ଏହି ଶ୍ରୁତି ଅତିଥି ଭୋଜନର ପ୍ରଥମତାକୁ ନିନ୍ଦା କରି ସ୍ୱାମୀ ଭୋଜନକୁ ପ୍ରାପ୍ତ ହୋଇ ପ୍ରାଣାଗ୍ନି ହୋତ୍ରହୋମରେ ଆଦର କରେ; କାରଣ ଯେଉଁ ଶ୍ରୁତି ପ୍ରଥମତାକୁ ଲୋପ କରିପାରେ ନାହିଁ, ସେହି ପ୍ରଥମ ଅଗ୍ନିହୋତ୍ରର ଲୋପ କଦାପି ହୁଏନା ବୋଲି ସ୍ୱୀକାର କରାଯାଇଛି ।

(ଖ) ପରନ୍ତୁ ଭୋଜନ ପାଇଁ ଅନ୍ନର ଆଗମନ ପ୍ରାଣାଗ୍ନିହୋତ୍ରର ସହ ସମ୍ବନ୍ଧ ହେଲେ ଭୋଜନ ଲୋପ ହେଲେ ମଧ୍ୟ ତାହା ଲୋପ ହୁଏ କି ? ନୁହେଁ । କାରଣ - ଏହା ଦ୍ରବ୍ୟବିଶେଷର ବିଧାନ ପାଇଁ ରହିଛି । ପ୍ରାକୃତ ଅଗ୍ନିହୋତ୍ରରେ ଦୁଗ୍ଧ ପ୍ରଭୃତି ନିୟତ ହେଲେ ଅଗ୍ନିହୋତ୍ର ଶଦ୍ଧ ଦ୍ୱାରା କୁଣ୍ଡପାୟିତ ଅୟନ ସଦୃଶ୍ୟ ତାହାକୁ ଧର୍ମପ୍ରାପ୍ତି ହେବାରୁ ଅନ୍ନରୂପ ଦ୍ରବ୍ୟର ଏକତା ରୂପଗୁଣ ବିଶେଷର ବିଧାନ ପାଇଁ 'ତଦ୍ୟଦ୍ଭକ୍ତମ୍' ଏହି ବାକ୍ୟ ହୁଏ । ତେଣୁ ଗୁଣର ଲୋପ ହେଲେ ମୁଖ୍ୟର ଲୋପ ହୁଏନାହିଁ । ଭୋଜର ଲୋପ ହେଲେ ବି ଜଳଦ୍ୱାରା ଅଥବା ବିରୁଦ୍ଧ ଅନ୍ୟ ଦ୍ରବ୍ୟ ଦ୍ୱାରା ପ୍ରତିନିଧି ନ୍ୟାୟାପରି ପ୍ରାଣାଗ୍ନିହୋତ୍ର ଅନୁଷ୍ଠାନ ହୁଏ ।

## (କ) ଅତ ଉତ୍ତରଂ ପଠତି- ଏହାର ଉତ୍ତରରେ କୁହାଯାଇଛି-

## २. उपस्थितेऽतस्तद्वचनात् ॥ ४१ ॥

## ୨. ଉପସ୍ଥିତେଽତସ୍ତଦ୍‌ବଚନାତ୍ ॥୩-୩-୪୧॥

ଉପସ୍ଥିତେ=ଭୋଜନଦ୍ରବ୍ୟ ଉପସ୍ଥିତ ହେଲେ, ଅତଃ=ଏହି ପ୍ରଥମପ୍ରାପ୍ତ ଭୋଜନ ଦ୍ରବ୍ୟରୁ ପ୍ରାଣାଗ୍ନିହୋତ୍ର କରିବା ଉଚିତ । ତଦ୍‌ବଚନାତ୍ = କାରଣ-ତଦ୍ୟଦ୍ଭକ୍ତମ୍ ଇତ୍ୟାଦି ବାକ୍ୟ ଦ୍ୱାରା ଆଦର ବଚନ କିନ୍ତୁ ଭୋଜନପ୍ରାପ୍ତି ଦଶାକୁ ନେଇଯାଏ ।

ମୂଳ-(କ) ଉପସ୍ଥିତେ ଭୋଜନେଽତସ୍ତସ୍ମାଦେବ ଭୋଜନଦ୍ରବ୍ୟାତ୍ ପ୍ରଥମୋ-ପନିପତିତାତ୍ ପ୍ରାଣାଗ୍ନିହୋତ୍ରଂ ନିବର୍ତ୍ତୟିତବ୍ୟମ୍ । କସ୍ମାତ୍ ? ତଦବଚନାତ୍ । ତଥାହି - 'ତଦ୍ୟତ୍‌ଭକ୍ତଂ ପ୍ରଥମାଗଚ୍ଛେତଦ୍‌ହୋମୀୟମ୍' (ଛା ୫-୧୯-୧) ଇତି । ସିଦ୍ଧବଦ୍‌ଭକ୍ତୋପନିପାତପରାମର୍ଶେ ନ ପରାର୍ଥଦ୍ରବ୍ୟସାଧତାଂ ପ୍ରାଣାହୁତୀନାଂ ବିଦଧାତି । ତା ଅପ୍ରୟୋଜକ ଲକ୍ଷଣାପନ୍ନାଃ ସତ୍ୟଃ କଥଂ ଭୋଜନଲୋପେ ଦ୍ରବ୍ୟାନ୍ତରଂ ପ୍ରତିନିଧାପୟେୟୁଃ । ନ ଚାତ୍ର ପ୍ରାକୃତାଗ୍ନିହୋତ୍ର ଧର୍ମପ୍ରାପ୍ତିରସ୍ତି । (ଖ) କୁଣ୍ଡପାୟିନାମୟନେ ହି 'ମାସମଗ୍ନି-ହୋତ୍ରଂଜୁହୋତି' ଇତି ବିଦ୍ଧ୍ୟୁଦ୍ଦେଶଗତୋଽଗ୍ନିଶବ୍ଦସ୍ତଦ୍‌ବଦ୍ଧଭାବଂ ବିଧାପୟେଦିତି ଯୁକ୍ତା ତଦ୍ଧର୍ମ-ପ୍ରାପ୍ତିଃ । ଇହ ପୁନରର୍ଥବାଦଗତୋଽଗ୍ନିହୋତ୍ରଶବ୍ଦୋ ନ ତଦ୍‌ବଦ୍‌ଭାବଂ ବିଧାପୟିତୁମର୍ହତି । ତଦ୍ଧର୍ମପ୍ରାପ୍ତୌ ଚାଭ୍ୟୁପଗମ୍ୟମାନାୟାମଗ୍ନ୍ୟୁଦ୍ଧରଣାଦୟୋଽପି ପ୍ରାପ୍ୟେରନ୍ ।

(ଗ) ନ ଚାସ୍ତି ସମ୍ଭବଃ ॥ ଅଗ୍ନ୍ୟୁଦ୍ଧରଣଂ ତାବଦ୍ଧୋମାଧିକରଣ ଭାବାୟ । ନ ଚାୟମଗ୍ନୌ ହୋମଃ, ଭୋଜନାର୍ଥତାବ୍ୟାଘାତ ପ୍ରସଙ୍ଗାତ୍ । ଭୋଜନୋପନୀତଦ୍ରବ୍ୟ ସମ୍ବନ୍ଧାଚ୍ଚାସ୍ୟ ଏବୈଷଃ ହୋମଃ । ତଥା ଚ ଜାବାଳଶ୍ରୁତିଃ 'ପୂର୍ବୋଽତିଥିଭ୍ୟୋଽଶ୍ନୀୟାତ୍' ଇତ୍ୟସ୍ୟାଧାରା ମେବୈଷା ହୋମନିବୃତ୍ତିଂ ଦର୍ଶୟତି ।



ଭାଷା-(କ) ଭୋଜନ ଉପସ୍ଥିତ ହେଲେ ସେହି ପ୍ରଥମପ୍ରାପ୍ତଭୋଜନଦ୍ରବ୍ୟ ଦ୍ୱାରା ଅଗ୍ନିହୋତ୍ରକୁ ସମାପନ କରିବା ଉଚିତ୍; କାରଣ-ତାହାର ଶ୍ରୁତି ପ୍ରମାଣ ଅଛି । ଯେପରିକି 'ତଦ୍‌ଯତ୍ ଭକ୍ତମ୍' (ତେଣୁ ଯେଉଁ ଭୋଜନ ପ୍ରଥମେ ମିଳିଥାଏ, ତାହାକୁ ବହନ କରିବା ଉଚିତ୍) ଏହି ଶ୍ରୁତି ସିଦ୍ଧପରି ପ୍ରକୃତପ୍ରାପ୍ତ ଭକ୍ତ ଭୋଜନର ଆଗମନ ପରାମର୍ଶ ଦ୍ୱାରା ଭୋଜନର ତୃପ୍ତି ପାଇଁ ଦ୍ରବ୍ୟ ସାଧ ପ୍ରାଣ ଆହୁତିର ବିଧାନ କରେ । ଏହି ଆହୁତିଗୁଡ଼ିକ ତୃପ୍ତିରୂପ ଅର୍ଥର ପ୍ରୟୋଜନ ଲକ୍ଷଣର ଅଭାବ ହେତୁ ଭୋଜନ ଲୋପ ହେଲା ପରେ କୌଣସି ପକାର ଅନ୍ୟ ଦ୍ରବ୍ୟର ପ୍ରତିନିଧାପନ ଅର୍ଥାତ ପ୍ରତିନିଧିନ୍ୟାୟକୁ ଆକ୍ଷେପ କରାହେବ ଏବଂ ଏଠାରେ ପ୍ରକୃତ ଅଗ୍ନିହୋତ୍ର ଧର୍ମର ପ୍ରାପ୍ତି ହୁଏ ନାହିଁ ।

(ଖ) କୁଣ୍ଡପାୟୀର ଅୟନରେ 'ମାସମଗ୍ନିର୍ହୋତ୍ରଂ ତୁହୋତି' ଏହି ବିଧିର ଉଦ୍ଦେଶ୍ୟରେ ଅଗ୍ନିହୋତ୍ର ଶବ୍ଦ ମିଳେ ଏବଂ ସେହି ତଦ୍‌ବଦ୍‌ଭାବ' ପ୍ରାକୃତ ଅଗ୍ନିହୋତ୍ର ପରି ଧର୍ମବିଧାନ ହୁଏ ଏବଂ ଧର୍ମର ପ୍ରାପ୍ତି ମଧ୍ୟ ହୁଏ । ପରନ୍ତୁ ପ୍ରାଣାଗ୍ନି ହୋତ୍ରରେ ଅର୍ଥବାଦଗତ ଅଗ୍ନିହୋତ୍ର ଶବ୍ଦ ପ୍ରକୃତ ଅଗ୍ନିହୋତ୍ର ଶବ୍ଦ ପରି ଧର୍ମନିଧାନ କରାଯାଏ ନାହିଁ । ଯଦି ପ୍ରକୃତ ଅଗ୍ନିହୋତ୍ରରେ ଧର୍ମପ୍ରାପ୍ତି ସ୍ୱୀକାର କରାଯାଏ, ତେବେ ଅଗ୍ନିର ଉଦ୍ଧରଣ ପ୍ରାପ୍ତି ହୁଏ ।

(ଗ) କିନ୍ତୁ ଏଠାରେ ସମ୍ଭବ ନୁହେଁ । କାରଣ ହୋମର ଅଧିକରଣ ପାଇଁ ଅଗ୍ନିର ଉଦ୍ଧରଣ ଅଛି । ଏହି ଦ୍ରବ୍ୟରୂପ ହୋମ ପ୍ରକୃତ ଅଗ୍ନିରେ ହୁଏ ନାହିଁ; କାରଣ- ତାହା ଭୋଜନ ପାଇଁ ଉଦ୍ଦିଷ୍ଟ ଏବଂ ତାହାର ବ୍ୟାଘାତ ପ୍ରସଙ୍ଗ ହେବ; ତେଣୁ ଭୋଜନ ପାଇଁ ଦ୍ରବ୍ୟ ସହ ସମ୍ବନ୍ଧ ହେବାରୁ ମୁଖରେ ହୋମ ହୁଏ । ତେଣୁ 'ପୂର୍ବୋଽତିଥିଭ୍ୟୋଽଶ୍ନୀୟତ୍' ଏହି ଜାବାଳ ଶ୍ରୁତିରେ ମୁଖରେ ହୋମନିଷ୍ପତ୍ତି ଦେଖାଏ ।

ମୂଳ-(କ) ଅତଏବ ଚୈହାପି ସାଂପାଦିକାନ୍ୟେବାଗ୍ନିହୋତ୍ରାଙ୍ଗାନି ଦର୍ଶୟତି- 'ଉର ଏବ ବେଦିର୍ଲୋମାନି ବର୍ହିର୍ହୃଦୟଂ ଗାର୍ହପତ୍ୟୋ ମନୋଽନ୍ୱାହାର୍ଯ୍ୟପଚନ ଆସ୍ୟମାବନୀୟଃ' (ଛା ୫-୧୮-୨) ଇତି । ବେଦିଶ୍ଚାତ୍ର ସ୍ଥଣ୍ଡିଳମାତ୍ରୋପଲକ୍ଷଣାର୍ଥା ଦ୍ରଷ୍ଟବ୍ୟା; ମୁଖ୍ୟାଗ୍ନିହୋତ୍ରେ ବେଦ୍ୟଭାବାତ୍, ତଦଙ୍ଗାନାଂ ଚୋହ ସଂପିପାଦୟିଷିତତ୍ୱାତ୍ । ଭୋଜନେନୈବ ଚ କୃତକାଳେନ ସଂଯୋଗାନ୍ନାଗ୍ନିହୋତ୍ର କାଳାବରୋଧସମ୍ଭବଃ ।

(ଖ)ଏବମନ୍ୟେଽପ୍ୟୁପସ୍ଥାନାଦୟୋ ଧର୍ମାଃ କେଚିଦ୍ କଥଞ୍ଚିତ୍ ବିରୁଧ୍ୟନ୍ତେ । ତସ୍ମାଦ୍-ଭୋଜନପକ୍ଷ ଏବୈତେ ମନ୍ତ୍ରଦ୍ରବ୍ୟ ଦେବତା ସଂଯୋଗତ୍ ପଞ୍ଚ ହୋମାନିବର୍ତ୍ତୟିତବ୍ୟାଃ । ଯତ୍ତ୍ୱାଦର ଦର୍ଶନ ବଚନଂ, ତଦ୍‌ଭୋଜନପକ୍ଷେ ପ୍ରାଥମ୍ୟବିଧାନାର୍ଥମ୍ । ନ ହ୍ୟସ୍ତି ବଚନସ୍ୟାତିଭାରଃ । ନ ତ୍ୱନେନାସ୍ୟ ନିତ୍ୟତା ଶକ୍ୟତେଂ ଦର୍ଶୟିତୁମ୍ । ତସ୍ମାଦ୍ ଭୋଜନ ଲୋପେ ଲୋପେ ଏବ ପ୍ରାଣାଗ୍ନିହୋତ୍ରସ୍ୟେତି ।

ଭାଷା-(କ) ସେହିପରି ଏଠାରେ ମଧ୍ୟ କଳ୍ପନା ଦ୍ୱାରା ସମ୍ପାଦନ କରାଯାଉଥିବା ଅଗ୍ନିହୋତ୍ରର ଅଙ୍ଗକୁ 'ଉର ଏବ' (ଏହି ବୈଶ୍ୱାନରର ଉପାସକର ବକ୍ଷସ୍ଥଳ ବେଦୀସ୍ୱରୂପ । ଲୋମ କୁଶସ୍ୱରୂପ, ହୃଦୟ ଗାର୍ହପତ୍ୟାଗ୍ନିରୂପ, ମନ ଅନ୍ୱାହାର୍ଯ୍ୟପଚନ ରୂପ ଏବଂ ମୁଖ ଆହବନୀୟ ଅଗ୍ନିରୂପ ଅଟେ) ଏହି ବାକ୍ୟକୁ ଶ୍ରୁତି ଦେଖାଏ । ଏହି ପ୍ରାଣାଗ୍ନିହୋତ୍ରରେ ବେଦୀର ଶ୍ରୁତି ସ୍ଥଣ୍ଡିଳ ମାତ୍ର ଉପଲକ୍ଷଣାର୍ଥକ ରୂପେ ମନେ କରିବା ଉଚିତ୍ । କାରଣ – ମୁଖ୍ୟ ଅଗ୍ନିହୋତ୍ରରେ ବେଦୀର ଅଭାବ ହୁଏ ଏବଂ ପ୍ରାଣାଗ୍ନିହୋତ୍ରରେ ତାହାର ଅଙ୍ଗଗୁଡ଼ିକୁ ସମ୍ପାଦନ କରିବା ପ୍ରଧାନ କାର୍ଯ୍ୟ । ଭୋଜନ ଦ୍ୱାରା ନିଶ୍ଚିତ ହେବାକୁ ଥିବା କାଳ ସହିତ ପ୍ରାଣାଗ୍ନିର ସମ୍ବନ୍ଧ ହେଲେ ମୁଖ୍ୟ ଅଗ୍ନିହୋତ୍ରର କାଳ ସହିତ ଅବରୋଧ ସମ୍ଭବ ହୁଏ ନାହିଁ ।

(ଖ) ଏହିପରି ଉପସ୍ଥାନ ପ୍ରଭୃତି ଅନ୍ୟ କୌଣସି ଧର୍ମ ବେଳେ ବେଳେ ବିରୁଦ୍ଧ ହୁଏ । ତେଣୁ ମନ୍ତ୍ର, ଦ୍ରବ୍ୟ ଓ ଦେବତା ସମ୍ବନ୍ଧ ଦ୍ୱାରା ଭୋଜନ ପକ୍ଷରେ ଏହି ପାଞ୍ଚୋଟି ହୋମ ସମାପ୍ତ ହେବା ଉଚିତ ଏବଂ ଯେଉଁ ଆଦର ଦର୍ଶନ କଥା କୁହାଯାଇଛି, ତାହା ଭୋଜନ ପକ୍ଷରେ ପ୍ରଥମତ୍ୱ ବିଧାନ ପାଇଁ ଉଦ୍ଦିଷ୍ଟ । ଏଠାରେ ବଚନର କୌଣସି ଗୁରୁତ୍ୱ ନାହିଁ, କାରଣ – ପ୍ରଥମତା ବଚନ ଦ୍ୱାରା ପ୍ରାଣାଗ୍ନିହୋତ୍ରର ନିତ୍ୟତା ଦେଖାଯାଏ ନାହିଁ । ତେଣୁ ଭୋଜନ ଲୋପ ହେବାପରେ ପ୍ରାଣାଗ୍ନିହୋତ୍ରର ଲୋପ ସମ୍ଭବପର ।

## २७-तन्निर्धारणाधिकरणम् -४२

## ତନ୍ନିର୍ଦ୍ଧାରଣାଧିକରଣମ୍ -ସୂ-୪୨

**तन्निर्धारणानियमस्तद्दृष्टेः पृथग्ध्यप्रतिबन्धः फलम् ॥३-३-४२॥**

**ତନ୍ନିର୍ଦ୍ଧାରଣାନିୟମସ୍ତଦ୍ଦୃଷ୍ଟେଃ ପୃଥଗ୍ଧ୍ୟପ୍ରତିବନ୍ଧଃ ଫଳମ୍ ॥୩-୩-୪୨॥**

ତନ୍ନିର୍ଦ୍ଧାରଣାନିୟମ-କର୍ମାଙ୍ଗକୁ ଆଶ୍ରୟ କରିଥିବା ଉପାସନାଗୁଡ଼ିକର ଅନୁଷ୍ଠାନ ନିତ୍ୟକର୍ମ ପରି ନୁହେଁ । କାରଣ-ଏହି ଅନିୟମ, ତଦ୍ଦୃଷ୍ଟେଃ='ତେନୋଭୌ କୁରୁତଃ' ଇତ୍ୟାଦି ଶ୍ରୁତିବାକ୍ୟରେ ପ୍ରତିପାଦିତ ହୁଏ । ପୃଥଗ୍ଧ୍ୟପ୍ରତିବନ୍ଧଃ ଫଳମ୍-ସେହି ଉପାସନାଗୁଡ଼ିକର କର୍ମଫଳରୁ ପୃଥକ୍ ଅପ୍ରତିବନ୍ଧ ଫଳବିଶେଷ ଉପଲବ୍ଧ ହୁଏ ।''

ମୂଳ-(କ) ସନ୍ତି କର୍ମାଙ୍ଗବ୍ୟାପାଶ୍ରୟାଣି ବିଜ୍ଞାନାନି-ଓମିତ୍ୟେତଦକ୍ଷରମୁଦ୍‌ଗୀଥ-ମୁପାସୀତ' (ଛା ୧-୧-୧) ଇତ୍ୟେବମାଦୀନି । କିଂ ତାନି ନିତ୍ୟାନ୍ୟେବ ସ୍ୟୁଃ କର୍ମସୁ; ପର୍ଣ୍ଣମୟୀତ୍ୱାଦିବଦୁତାନିତ୍ୟାନି; ଗୋଦୋହନାଦିବଦିତି ବିଚାରୟାମଃ । (ଖ) କିଂ ତାବତ୍ ପ୍ରାପ୍ତମ୍ ? ନିତ୍ୟାନୀତ । କୁତଃ ? ପ୍ରୟୋଗବଚନପରିଗ୍ରହାତ୍ । ଅନାରଭ୍ୟାଧୀତାନ୍ୟପି ହ୍ୟେତାନ୍ୟୁଦ୍‌ଗୀଥାଦିଦ୍ୱାରେଣ କ୍ରତୁ ସମ୍ବନ୍ଧାତ୍ କ୍ରତୁପ୍ରୟୋଗବଚନେନୈବାଙ୍ଗାନ୍ତର-



ବତ୍‌ସଂସ୍ପୃଶ୍ୟନ୍ତେ । (ଗ) ଯତ୍ତ୍ୱେଷାଂ ସ୍ୱବାକ୍ୟେଷୁ ଫଳଶ୍ରବଣମ୍-'ଆପୟିତା ହବୈ କାମାନାଂ ଭବତି' (ଛା ୧-୧-୭) ଇତ୍ୟାଦି, ତଦ୍‌ବର୍ତ୍ତମାନାପଦେଶରୂପତ୍ୱାଦର୍ଥବାଦମାତ୍ର-ମେବାପାପଶ୍ଳୋକଶ୍ରବଣାଦିବନ୍ନ ଫଳପ୍ରଧାନମ୍ । ତସ୍ମାଦ୍ୟଥା 'ଯସ୍ୟ ପର୍ଣ୍ଣମୟୀ ଜୁହୁର୍ଭବତି, ନ ସ ପାପଂ ଶ୍ଳୋକଂ ଶୃଣୋତି' ଇତ୍ୟେବମାଦୀନାମପ୍ରକରଣ ପଠିତାନାମପି ଜୁହ୍ୱାଦିଦ୍ୱାରେଣ କ୍ରତୁପ୍ରବେଶାତ୍ ପ୍ରକରଣପଠିତବନ୍ନିତ୍ୟତୈବମୁଦ୍‌ଗୀଥାଦ୍ୟୁପାସନାନାମପୀତି ॥

ଭାଷା-(କ) ଓମିତ୍ୟେତଦକ୍ଷରମ୍' (ଉଦ୍‌ଗୀଥର ଅବୟବ ଏହି ଓଁ ଅକ୍ଷରକୁ ଉପାସନା କରିବା ଉଚିତ୍) ଇତ୍ୟାଦି ଜ୍ୟୋତିଷ୍ଟୋମାଦି ଅଙ୍ଗର ଆଶ୍ରୀୟ ଉପାସନାଗୁଡ଼ିକ ଅଟେ । ଏହି ଉପାସନାଗୁଡ଼ିକ କର୍ମରେ ପର୍ଣ୍ଣମୟୀତ୍ୱାଦିପରି କ'ଣ ନିତ୍ୟ ଅଟେ । ଅଥବା ଗୋଦୋହନପରି ଅନିତ୍ୟ ? ଏହି ବିଷୟରେ ଆମ୍ଭେ ବିଚାର କରିବୁ । (ଖ) ଏହା କ'ଣ ? ପୂର୍ବପକ୍ଷ-ନିତ୍ୟ ଅଟେ । କିପରି ? କାରଣ-ପ୍ରୟୋଗ-ବଚନର ପରିଗ୍ରହ ଅଟେ । କ୍ରତୁ ପ୍ରକରଣରେ ପଠିତ ହୋଇନଥିବା ଏହି ଉପାସନାଗୁଡ଼ିକର ଉତ୍‌ଗୀଥାଦିଦ୍ୱାରା କ୍ରତୁର ସମ୍ବନ୍ଧ ହେବାରୁ ଓ କ୍ରତୁର ପ୍ରୟୋଗ ହେବାରୁ ଅଙ୍ଗପରି ଏମାନେ ସମ୍ବନ୍ଧୀ ଅଟନ୍ତି । (ଗ) ଯେଉଁ ବିଜ୍ଞାନର ଏହି ବାକ୍ୟରେ ଆପୟିତା ହ ବୈ' (ଯେଉଁ ବିଦ୍ୱାନ୍ ଏତାଦୃଶ ଉଦ୍‌ଗୀଥ ରୂପ ଅକ୍ଷରର ଉପାସନା କରେ, ସେହି ଯଜମାନର ଫଳଶ୍ରୁତି କରାଏ) ଇତ୍ୟାଦି ଫଳର ଶ୍ରବଣ ହୁଏ । ଏହିଫଳ ଶ୍ରବଣବାକ୍ୟରେ ବର୍ତ୍ତମାନ କାଳର ଉପଦେଶ ହେଲେ ଅର୍ଥବାଦ ହୁଏ; କିନ୍ତୁ ଅପାପଶ୍ଳୋକ ଶ୍ରବଣପରି ଫଳପ୍ରଧାନ ନୁହେଁ । ତେଣୁ ଯେପରି 'ଯସ୍ୟ ପର୍ଣ୍ଣମୟୀ (ଯେଉଁ ପର୍ଣ୍ଣମୟୀ ଜୁହୁ ହୁଏ, ସେ ସଂାରରେ ପାପଶ୍ଳୋକକୁ ଶ୍ରବଣ କରେନାହିଁ) ଇତ୍ୟାଦି କ୍ରତୁ ପ୍ରକରଣରେ ଅପଠିତ ଜୁହୁ ଦ୍ୱାରା କ୍ରତୁର ସମ୍ବନ୍ଧ ହେଲେ ପ୍ରକରଣରେ ପଠିତପରି ନିତ୍ୟତ୍ୱ ହୁଏ । ସେହିପରି ଉଦ୍‌ଗୀଥାଦି ଉପାସନାଗୁଡ଼ିକୁ ଜାଣିବା ଉଚିତ ॥

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ତନ୍ନିର୍ଧାରଣାନିୟମ ଇତି ॥ ଯାନ୍ୟେତାନ୍ୟୁଦ୍‌ଗୀଥା-ଦିକର୍ମଗୁଣଯାଥାତ୍ମ୍ୟ ନିର୍ଧାରଣାନି ରସତମ ଆପ୍ତିଃ ସମୃଦ୍ଧିର୍ମୁଖ୍ୟପ୍ରାଣ ଆଦିତ୍ୟ ଇତ୍ୟେବମାଦୀନି ନୈତାନି ନିତ୍ୟବତ୍‌କର୍ମସୁନିୟମ୍ୟେରନ୍ । (ଖ) କୁତଃ ? ତଦ୍‌ଦୃଷ୍ଟୋ ତଥାହ୍ୟନିୟତତ୍ୱମେବଂଜାତୀୟକାନାଂ ଦର୍ଶୟତି ଶ୍ରୁତିଃ- 'ତେନାଭୌ କୁରୁତୋ ଯଶ୍ଚୈତଦେବଂ ବେଦ ଯଶ୍ଚ ନ ବେଦ' (ଛା ୧-୧-୧୦) ଇତ୍ୟବିଦୁଷୋଽପି କ୍ରିୟାଭ୍ୟନୁ-ଜ୍ଞାନାତ୍ । ପ୍ରସ୍ତାବାଦିଦେବତାବିଜ୍ଞାନବିହୀନାନାମପି ପ୍ରସ୍ତୋତ୍ରାଦୀନାଂ, ଯାଜନାଧବସାନ ଦର୍ଶନାତ୍ 'ପ୍ରସ୍ତୋତର୍ଯା ଦେବତା ପ୍ରସ୍ତାବମନ୍ୱାୟତ୍ତାତାଂ ଚେଦ ବିଦ୍ୱାନ୍ ପ୍ରସ୍ତୋଷ୍ୟାସି' (ଛା୧-୧୦-୯) ତାଂ ଚେଦବିଦ୍ୱାନୁଦ୍‌ଗାସ୍ୟତି' (ଛା ୧-୧୦-୧୦) 'ତାଂ ଚେଦବିଦ୍ୱାନ୍ ପ୍ରତିହରିଷ୍ୟସି' (ଛା ୧-୧୦-୧୧) ଇତ ଚ । (ଗ) ଅପି ଚୈବଂଜାତୀୟକସ୍ୟ କର୍ମବ୍ୟାପାଶ୍ରୟସ୍ୟ ବିଜ୍ଞାନସ୍ୟ ପୃଥଗେବ କର୍ମଣଃ ଫଳମୁପଲଭ୍ୟତେ; କର୍ମଫଳସିଦ୍ଧ୍ୟଂ

ପ୍ରତିବନ୍ଧସ୍ତତ୍ ସମୃଦ୍ଧିରତଶୟବିଶେଷଃ କଶ୍ଚିତ୍ 'ତେନାଭୌ କୁରୁତେ ଯଶ୍ଚୈତଦେବଂ ବେଦ ଯଶ୍ଚ ନ ବେଦ । ନାନା ତୁ ବିଦ୍ୟା ଚାବିଦ୍ୟା ଚ ଯଦେବ ବିଦ୍ୟୟା କରୋତି ଶ୍ରଦ୍ଧୟୋପନିଷଦା ତଦେବ ବୀର୍ଯ୍ୟବତ୍ତରଂ ଭବତି' (ଛା ୧-୧-୧୦) ଇତି । (ଘ) ତତ୍ର 'ନାନା ତୁ' ଇତି ବିଦ୍ୱଦବିଦ୍ୱତ୍ ପ୍ରୟୋଗୟୋଃ ପୃଥକ୍କରଣାଦ୍‌ବୀର୍ଯ୍ୟବତ୍ତରମିତି ତରପ୍ ପ୍ରତ୍ୟୟ ପ୍ରୟୋଗାଦ୍ ବିଦ୍ୟାବିହୀନମପି କର୍ମ ବୀର୍ଯ୍ୟବଦିତି ଗମ୍ୟତେ । ତଚ୍ଚାନିତ୍ୟତ୍ୱେ ବିଦ୍ୟାୟା ଉପପଦ୍ୟତେ । ନିତ୍ୟତ୍ୱେ ତୁ କଥଂ ତଦ୍‌ବିହୀନଂ କର୍ମବୀର୍ଯ୍ୟବିଦିତ୍ୟନୁଜ୍ଞାୟେତ । ସର୍ବାଙ୍ଗୋପସଂହାରେ ହି ବୀର୍ଯ୍ୟବତ୍‌କର୍ମେତି ସ୍ଥିତିଃ ॥

ସିଦ୍ଧାନ୍ତ-ଭାଷା-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ ଉପାସନାର ନିର୍ଦ୍ଧାରଣ ଅନିୟମ ଅଟେ । ରସଶ୍ରେଷ୍ଠ, କାମନା ପ୍ରାପ୍ତି କରୁଥିବା, ସମୃଦ୍ଧି ଦାନ କରୁଥିବା, ମୁଖ୍ୟ ପ୍ରାଣ ଆଦିତ୍ୟ ଅଟେ, ଇତ୍ୟାଦି ଉଦ୍‌ଗୀଥାଦି କର୍ମାଙ୍ଗସହିତ ଯଥାବତ୍ ସ୍ୱରୂପ, ରସତମତ୍ୱାଦିର ନିର୍ଦ୍ଧାରକ ଉପାସନାଗୁଡ଼ିକ ଅଛି, (ଖ) ସେହିସବୁ ପର୍ଣ୍ଣମୟୀ ରୂପକ ନିତ୍ୟକର୍ମାଙ୍ଗ କର୍ମରେ ନିୟମିତ ହୁଏ ନାହିଁ, କାରଣ ଶ୍ରୁତିରେ ଏହା ଦୃଷ୍ଟ ଅଟେ; କାରଣ-ଏହିପ୍ରକାର ଶ୍ରୁତି ବାକ୍ୟଗୁଡ଼ିକ ଉପାସନାଗୁଡ଼ିକ ଅନିତ୍ୟ ବୋଲି ପ୍ରତିପାଦନ କରେ । 'ତେନାଭୌ କୁରୁତେ' (ଯେଉଁ ଉଦ୍‌ଗୀଥାବୟବ ଭୂତ, ଏହି ଓଁକାରକୁ ରସତମତ୍ୱାଦି ବିଶିଷ୍ଟ କର୍ମକୁ ଜାଣେ ଏବଂ ଯିଏ ଜାଣେ ନାହିଁ, ସେହି ଦୁଇଟି କର୍ମ କରନ୍ତି) ଏହିପରି ଅବିଦ୍ୱାନ୍ ପାଇଁ କର୍ମର ଅନୁଜ୍ଞା ହୁଏ । 'ପ୍ରସ୍ତୋତର୍ଯା' (ହେ ପ୍ରସ୍ତୋତା ଯେଉଁ ଦେବତା ପ୍ରସ୍ତାବ ଭକ୍ତିରେ ଅନୁଗତ ଅଟେ । ଯଦି ଏହାକୁ ନଜାଣି ତୁମେ ପ୍ରସ୍ତାବନ କରିବ, ତେବେ ତୁମ୍ଭର ଶିର କଟିଯିବ । 'ତାଂ ଚେଦ୍‌ବିଦ୍ୱାନ୍' (ହେ ଉଦ୍‌ଗାତା ! ଯଦି ତୁମ୍ଭେ ଏହାକୁ ନଜାଣି ଉଦ୍‌ଗାନ କରିବ) ଏବଂ 'ତାଂ ଚେଦ୍' ହେ ପ୍ରତିହର୍ତ୍ତା ! ଯଦି ତୁମେ ଏହାକୁ ନଜାଣି ପ୍ରତିହାରଭକ୍ତିକୁ ଗାନ କରିବ, ତେବେ ତୁମ୍ଭର ମସ୍ତକ ଛିଣ୍ଡିଯିବ) । (ଏହିପ୍ରକାର ପ୍ରସ୍ତାବ ପ୍ରଭୃତି ଦେବତା ବିଜ୍ଞାନ ରହିତ ହେଲେ ପ୍ରସ୍ତୋତା ପ୍ରଭୃତିରେ ଯାଜନ ସ୍ଥିର କରାଯାଏ) । (ଗ) ଏହି ପ୍ରକାରର କର୍ମରେ ଆଶ୍ରିତ ବିଜ୍ଞାନର କର୍ମଫଳଠାରୁ ପୃଥକ୍ ଫଳ ଉପଲବ୍ଧ ହୁଏ । କର୍ମଫଳ ସିଦ୍ଧି ପ୍ରତିବନ୍ଧ ରହିତ ହେଲେ ତା'ର କୌଣସି ସମୃଦ୍ଧି ରୂପ ଅତିଶୟ ବିଶେଷଫଳ ବିଜ୍ଞାନରେ ଉପଲବ୍ଧ ହୁଏ- 'ତେନାଭୌ କୁରୁତେ' (ଯେଉଁ ଉଦ୍‌ଗୀଥର ଅବୟବ ଭୂତ ଏହି ଓଁ କାର ଅକ୍ଷରକୁ ରସମତ୍ୱାଦି ବିଶିଷ୍ଟ ଜାଣେ, ଅଥବା ଜାଣେନାହିଁ, ସେହି ଦୁଇଟି ଏହାଦ୍ୱାରା କର୍ମ କରେ, କିନ୍ତୁ ବିଦ୍ୟା ଓ ଅବିଦ୍ୟା-ଏହି ଦୁଇଟି ଭିନ୍ନ ଅଟେ । ଯେଉଁ କର୍ମ ବିଦ୍ୟା-ଶ୍ରଦ୍ଧା ଏବଂ ଯୋଗଯୁକ୍ତ ହୋଇ କରାଯାଏ, ସେ ଅବିଦ୍ୱାନ୍ କର୍ମଦ୍ୱାରା ବୀର୍ଯ୍ୟବାନ୍ ହୁଏ) ଏହି ଶ୍ରୁତିରେ । (ଘ) 'ନାନା ତୁ' ଏ ଶବ୍ଦ ଦ୍ୱାରା ବିଦ୍ୱାନ୍ ଓ ମୂର୍ଖ କୃତକାର୍ଯ୍ୟରେ ପୃଥକକରଣ ହେବାରୁ 'ବୀର୍ଯ୍ୟବତ୍ତରଂ' ଏହି ଶବ୍ଦରେ ତରପ୍



ପ୍ରତ୍ୟୟର ପ୍ରୟୋଗ ଦ୍ୱାରା ଉପାସନାହୀନ କର୍ମ ବୀର୍ଯ୍ୟବତ୍ ଫଳବାନ୍ ହୁଏ ବୋଲି ଜଣାଯାଏ । ବିଦ୍ୟା ଅନିତ୍ୟ ହେଲେ ଉପପନ୍ନ ହୁଏ । ଯଦି ବିଦ୍ୟା ନିତ୍ୟ ହୁଏ, ତେବେ ନିତ୍ୟହୀନ କର୍ମ ବୀର୍ଯ୍ୟବତ୍ ହେବ, ବୋଲି ଅନୁଜ୍ଞା କିପରି ହୁଏ; କାରଣ- ସମସ୍ତ ଅଙ୍ଗର ଉପସଂହାର ହେଲେ କର୍ମ ବୀର୍ଯ୍ୟବତ୍ ହୁଏ ।

ମୂଳ-(କ) ତଥା ଲୋକସାମାଦିଷୁ ପ୍ରତିନିୟତାନି ପ୍ରତ୍ୟୁପାସନଂ ଫଳାନି ଶିଷ୍ୟନ୍ତେ- 'କଳ୍ପନ୍ତେ ହ୍ୟାସ୍ମୈ ଲୋକାଃ ଊର୍ଦ୍ଧ୍ୱାଶ୍ଚାବୃତ୍ତାଶ୍ଚ'' (ଛା ୧-୨-୩) ଇତ୍ୟେବମାଦୀନି; ନ ଚେଦଂ ଫଳଶ୍ରବଣମର୍ଥବାଦମାତ୍ରଂ ଯୁକ୍ତଂ ପ୍ରତିପତ୍ତୁମ୍ । (ଖ) ତଥା ହି ଗୁଣବାଦ ଆପଦ୍ୟେତ । ଫଳୋପଦେଶେ ତୁ ମୁଖ୍ୟବାଦୋପପତ୍ତିଃ । ପ୍ରୟାଜାଦିଷୁ, ତ୍ୱିତିକର୍ତ୍ତବ୍ୟତାକାଂକ୍ଷସ୍ୟ କ୍ରତୋଃ ପ୍ରକୃତତ୍ୱାଦର୍ଥ୍ୟୈ ସତି ଯୁକ୍ତଂ ଫଳଶ୍ରୁତେରର୍ଥବାଦତ୍ୱମ୍ । (ଗ) ତଥାନାରଭ୍ୟା ଧୀତେଷ୍ୱପି ପର୍ଣ୍ଣମୟୀତ୍ୱାଦିଷୁ । ନହି ପର୍ଣ୍ଣମୟୀତ୍ୱାଦୀନାମକ୍ରିୟାତ୍ମକାନାଶ୍ରୟମନ୍ତରେଣ ଫଳସମ୍ବନ୍ଧୋଽବକଳ୍ପତେ । ଗୋଦାହନାଦୀନାଂ ହି ପ୍ରକୃତାପ୍ ପ୍ରଣୟନାଦ୍ୟାଶ୍ରୟଲାଭାଦୁପପନ୍ନଃ ଫଳବିଧିଃ । (ଘ) ତଥା ବୈଲ୍ୱାଦୀନାମପି ପ୍ରକୃତୟୁପାଦ୍ୟାଶ୍ରୟନ୍ନଭାଦୁପପନ୍ନଃ ଫଳବିଧିଃ, ନତୁ ପର୍ଣ୍ଣମୟୀତ୍ୱାଦିଷ୍ୱେବଂବିଧଃ କଶ୍ଚିଦାଶ୍ରୟଃ ପ୍ରକୃତୋଽସ୍ତି । ବାକ୍ୟେନୈବ ତୁ ଜୁହ୍ୱଦ୍ୟାଶ୍ରୟତାଂ ବିବକ୍ଷିତ୍ୱା ଫଳେଽପି ବିଧିଂ ବିବକ୍ଷତୋ ବାକ୍ୟଭେଦଃ ସ୍ୟାତ୍ । (ଙ) ଉପାସନାନାଂ ତୁ କ୍ରିୟାତ୍ମକତ୍ୱାଦ୍ ବିଶିଷ୍ଟବିଧାନୋପପତ୍ତେଃ ରୁଦ୍‌ଗୀଥାଦ୍ୟାଶ୍ରୟାଣାଂ ଫଳେ ବିଧାନଂ ନ ବିରୁଧ୍ୟତେ ॥ ତସ୍ମାଦ୍ୟଥା କ୍ରତ୍ୱାଶ୍ରୟାଣ୍ୟପି ଗୋଦୋହନାଦୀନି ଫଳସଂଯୋଗାଜନିତ୍ୟାନ୍ୟେବମୁଦ୍ ଗୀଥାଦ୍ୟୁପାସନାନ୍ୟପୀତି ଦ୍ରଷ୍ଟବ୍ୟମ୍ । ଅତଏବ ଚ କଳ୍ପସୂତ୍ରକାରା ନୈବଂଜାତୀୟକାନ୍ୟୁପାସନାନି କ୍ରତୁଷୁ କଳ୍ପୟାଂ ଚକ୍ରୁଃ ॥

ଭାଷା-(କ) ତଥା ଲୌକିକ ଦୃଷ୍ଟିରୁ ସାମ ପ୍ରଭୃତି ପ୍ରତ୍ୟେକ ଉପାସନାରେ 'କଳ୍ପନ୍ତେ ହ୍ୟାସ୍ମୈ' (ତେଣୁ ଯିଏ ଏହିପ୍ରକାର ଜାଣିଥିବା ପୁରୁଷ ସଂସାରରେ ପଞ୍ଚବିଧସାମକୁ ଉପାସନା କରେ । ତାହାପାଇଁ ଊର୍ଦ୍ଧ୍ୱ ଏବଂ ଅଧୋମୁଖ ସଂସାର ଭୋଗ୍ୟରୂପରେ ରହେ) ଇତ୍ୟାଦି ପ୍ରତିନିୟତ ଫଳ ଉପଦିଷ୍ଟ ଅଟେ । (ଖ) ଏହି ଫଳଶ୍ରୁତିକୁ ଅର୍ଥବାଦ ବୋଲି ଭାବିବା ଠିକ୍ ନୁହେଁ) କାରଣ-ତାହାକୁ ଅର୍ଥବାଦ ବୋଲି ସ୍ୱୀକାର କଲେ ଗୁଣବାଦ ପ୍ରସକ୍ତ ହେବ । କିନ୍ତୁ ଫଳୋପଦେଶରେ ମୁଖ୍ୟବାଦ ଉପପନ୍ନ ହୁଏ । ପ୍ରୟାଜାଦିରେ କିନ୍ତୁ ଇତିକର୍ତ୍ତବ୍ୟତାର ଆକାଂକ୍ଷା କରୁଥିବା ପୁରୁଷ କ୍ରତୁର ପ୍ରକୃତ ହେଲେ ପ୍ରୟାଜାଦି କ୍ରତୁପାଇଁ ହେଲେ ସେଠାରେ ଫଳଶ୍ରୁତି ଅର୍ଥବାଦ ହେବା ଯୁକ୍ତିଯୁକ୍ତ । (ଗ) ସେହିପରି କର୍ମପ୍ରକରଣର ଆରମ୍ଭରେ ପଠିତ ନ ହେଲେ ବି ପର୍ଣ୍ଣମୟୀତ୍ୱାଦିରେ ଫଳଶ୍ରୁତି ଅର୍ଥବାଦ ଅଟେ । ଅକ୍ରିୟାତ୍ମକ ପର୍ଣ୍ଣମୟୀତ୍ୱ ଆଦିରେ ଆଶ୍ରୟ; ବିନା ଫଳସମ୍ବନ୍ଧ ହୁଏ ନାହିଁ । କିନ୍ତୁ ଗୋଦୋହନ ପ୍ରଭୃତିରେ ପ୍ରକୃତ ଜଳପ୍ରଣୟନାଦି ଆଶ୍ରୟ ଲାଭ ହେଲେ ଫଳାର୍ଥବିଧି ଉପପନ୍ନ ହୁଏ । (ଘ) ସେହିପରି

ବେଲୂ ପ୍ରଭୃତିରେ ମଧ୍ୟ ପ୍ରକୃତିଯୂପାଦି ଆଶ୍ରୟ ଲାଭହେଲେ ଫଳାର୍ଥବିଧି ଉପପନ୍ନ ହୁଏ । କିନ୍ତୁ ପର୍ଣ୍ଣମୟୀତ୍ୱାଦିରେ ଏହିପ୍ରକାର କୌଣସି ଆଶ୍ରୟ ପ୍ରକୃତ ନୁହେଁ । ବାକ୍ୟରୁ ଜୁହୁ ପ୍ରଭୃତିରେ ଆଶ୍ରୟ କରି ଫଳରେ ମଧ୍ୟ ବିଧିର ବିବକ୍ଷା କରୁଥିବା ପୁରୁଷଠାରେ ବାକ୍ୟଭେଦ ହେବ । (ଙ) କ୍ରିୟାତ୍ମକ ହେବାରୁ ଉପାସନାର ବିଶିଷ୍ଟ ବିଧାନ ହୁଏ । ତେଣୁ ଉଦ୍‌ଗୀଥାଦିର ଆଶ୍ରିତ ସେହି ଉପାସନାର ବିଧାନ କର୍ମଫଳରେ ବିରୁଦ୍ଧ ନୁହେଁ । ତେଣୁ ଯେପରି ଯଜ୍ଞାଶ୍ରିତ ଗୋଦୋହନାଦି ପୃଥକ୍ ଫଳ ସମ୍ବନ୍ଧରୁ ଅନିୟମିତ ଅଟେ, ସେପରି ଉଦ୍‌ଗୀଥାଦି ଉପାସନାଗୁଡ଼ିକ ଅନିୟମିତ ଅଟନ୍ତି ବୋଲି ସ୍ଥିର କରାଯାଇଛି । ଅତଏବ ଅନିତ୍ୟ ହେବାରୁ କଳ୍ପନାସୂତ୍ରକାର ଏହିପ୍ରକାର ଉପାସନାକୁ କ୍ରତୁରେ କଳ୍ପନା କରିନାହାନ୍ତି ।

## २८ प्रदानाधिकरणम् ॥ सू० ४३ ॥

## ୧୮ । ପ୍ରଦାନାଧିକରଣମ୍ ॥ ସୂ ୪୩ ॥

## प्रदानवदेव तदुक्तम् ॥ ३-३-४३ ॥

## ପ୍ରଦାନବଦେବ ତଦୁକ୍ତମ୍ ॥୩-୩-୪୩॥

ପ୍ରଦାନବତ୍=‘ଯଥେନ୍ଦ୍ରାୟ ରାଜ୍ଞେ’ ଏଠାରେ ଉକ୍ତ ଇନ୍ଦ୍ରଦେବତା ଏକ ହେଲେ ବି ରାଜା, ଅଧିରାଜ ପ୍ରଭୃତି ଗୁଣଭେଦରୁ ଦେବତାଭେଦ କରାଯାଏ; ସେହିପରି ଗୋଟିଏ ବିଦ୍ୟାରେ ବାୟୁ, ପ୍ରାଣର ସ୍ୱରୂପରେ ଅଭେଦ ହେଲେ ଆଧ୍ୟାତ୍ମିକାଦି ଅବସ୍ଥା ଭେଦରୁ ଗୁଣଭେଦ ହୁଏ । ତେଣୁ ପ୍ରୟୋଗ ଭେଦ ଅଟେ । ତଦୁକ୍ତମ୍=‘ନାନା ବା’ ଇତ୍ୟାଦି ସୂତ୍ରରେ ଜୈମିନିମୁନି ପୂର୍ବକାଣ୍ଡରେ ବର୍ଣ୍ଣନା କରିଛନ୍ତି ?

ମୂଳ-(କ) ବାଜସନେୟକେ- ‘ବଦିଷ୍ୟାମ୍ୟେବାହମିତି ବାଗ୍‌ଦଧ୍ରେ’ (ବୃହ (୧-୫-୨୧) ଇତ୍ୟତ୍ରାଧ୍ୟାତ୍ମଂ ବାଗାଦୀନାଂ ପ୍ରାଣଃ ଶ୍ରେଷ୍ଠଽବଧାରିତୋଽଧିଦୈବତମଗ୍ନ୍ୟାଦୀନାଂ ବାୟୁଃ । ତଥା ଛାନ୍ଦୋଗ୍ୟେ- ‘ବାୟୁର୍ବାବସଂବର୍ଗଃ’ (ଛା ୪-୩-୧) ଇତ୍ୟତ୍ରାଧିଦୈବତମଗ୍ନ୍ୟାଦୀନାଂ ବାୟୁଃ ସଂବର୍ଗୋଽବଧାରିତଃ ‘ପ୍ରାଣୋ ବାବ ସଂବର୍ଗଃ’ (ଛା ୪-୩-୨) ଇତ୍ୟତ୍ରାଧ୍ୟାତ୍ମଂ ବାଗାଦୀନାଂ ପ୍ରାଣଃ । (ଖ) ତତ୍ରସଂଶୟଃ-କିଂ ପୃଥଗେବେମୌ ବାୟୁପ୍ରାଣାବୁପଗନ୍ତବ୍ୟୌ ସ୍ୟାତାମପୃଥଗ୍‌ବେତି । ଅପୃଥଗ୍‌ବେତି ତାବତ୍‌ପ୍ରାପ୍ତମ୍, ତତ୍ତ୍ୱାଭେଦାତ୍ ନହ୍ୟଭିନ୍ନେ ତତ୍ତ୍ୱେ ପୃଥଗନୁଚିନ୍ତନଂ ନ୍ୟାୟମ୍ । ଦର୍ଶୟତି ଚ ଶ୍ରୁତିରଧ୍ୟାତ୍ମମଧିଦୈବତଂ ଚ ତତ୍ତ୍ୱାଭେଦମ୍-ଅଗ୍ନିର୍ବାଗ୍‌ଭୂତ୍ୱା ମୁଖଂ ପ୍ରାବିଶତ୍’ (ଐ ୨-୪) ଇତ୍ୟାରଭ୍ୟ ତଥା ‘ତ ଏତେ ସର୍ବ ଏବ ସମାଃ ସର୍ବେଽନନ୍ତାଃ’ (ବୃ ୧-୫-୧୩) ଇତ୍ୟଧ୍ୟାତ୍ମିକାନାଂ ପ୍ରାଣାନାମଧିଦୈବିକୀଂ ବିଭୂତିମାତ୍ମଭୂତାଂ ଦର୍ଶୟତି । (ଗ) ତଥାଽନ୍ୟତ୍ରାପି

ତତ୍ର ତତ୍ରାଧ୍ୟାତ୍ମମଧିଦୈବତଂ ଚ ବୃହଧା ତତ୍ତ୍ୱାଭେଦଦର୍ଶନଂ ଭବତି । କ୍ୱଚିଚ୍ଚ 'ଯଃ ପ୍ରାଣଃ ସଃ ବାୟୁଃ' ଇତି ସ୍ପଷ୍ଟମେବ ବାୟୁଂ ପ୍ରାଣଂ ଚୈକଂ କରୋତି । ତଥୋଦାହୃତେଽପି ବାଜସନେୟିବ୍ରାହ୍ମଣେ 'ଯତଶ୍ଚୋଦେତି ସୂର୍ଯ୍ୟଃ' (ବୃହ ୧-୫-୨୩) ଇତ୍ୟସ୍ମିନ୍ନୁପସଂହାର-ଶ୍ଳୋକେ 'ପ୍ରାଣାଦ୍ ବା ଏଷ ଉଷଦତି ପ୍ରାଣେଽସ୍ତମେତି' (ବୃହ ୧-୫-୨୩) ଇତି ପ୍ରାଣେନୈବୋପସଂହରନ୍ନେକତ୍ୱଂ ଦର୍ଶୟତି । (ଘ 'ତସ୍ମାଦେକମେବ ବ୍ରତଂ ଚରେତ୍ ପ୍ରାଣ୍ୟାଚ୍ଚୈବାପା ନ୍ୟାଚ୍ଚ' (ବୃହ ୧-୫-୨୩) ଇତି ଚ ପ୍ରାଣବ୍ରତେନୈକେ-ନୋପସଂହରନ୍ନେତଦେବ ଦ୍ରଢୟତି, ତଥା ଛାନ୍ଦୋଗ୍ୟେଽପି ପରସ୍ତାତ୍ 'ମହାତ୍ମନଶ୍ଚତୁରୋ ଦେବ ଏକଃ କଃ ସ ଜଗାର ଭୁବନସ୍ୟ ଗୋପା' (ଛା ୪-୩-୬) ଇତ୍ୟେକମେବ ସଂବର୍ଗ ଗମୟତି ନ ବ୍ରବୀତ୍ୟେକ ଏକେଷାଂ ଚତୁର୍ଣ୍ଣାଂ ସଂବର୍ଗୋଽପରୋଽପରେଷ ମିତି । ତସ୍ମାଦପୃଥକ୍ତ୍ୱମୁପଗମନସ୍ୟେତି ॥

ଭାଷା-(କ) ବାଜସନେୟକରେ 'ବଦିଷ୍ୟାମ୍ୟେବାହମିତି' (ମୁଁ କହିବି ବୋଲି ବାଣୀ ପ୍ରତିଜ୍ଞା କଲା) ଏଠାରେ ଅଧ୍ୟାତ୍ମବାଣୀ ପ୍ରଭୃତିରେ ପ୍ରାଣ ଶ୍ରେଷ୍ଠ ବୋଲି କୁହାଯାଇଛି ଏବଂ ଅଧିଦୈବତ ଅଗ୍ନି ପ୍ରଭୃତିରେ ବାୟୁ ଶ୍ରେଷ୍ଠ ବୋଲି ଜଣାଯାଏ । ସେହିପରି ଛାନ୍ଦୋଗ୍ୟରେ 'ପ୍ରାଣୋବାଚ ସଂବର୍ଗଃ' ବୋଲି ଅଧ୍ୟାତ୍ମ ବାଗ୍ ଇତ୍ୟାଦିରେ ପ୍ରାଣ ସଂବର୍ଗ ରୂପରେ ଅବଧାରିତ ହୁଏ ।

(ଖ) ଏଠାରେ ସଂଶୟ ହୁଏ କି- ଏହି ବାୟୁ କ'ଣ ଏବଂ ପ୍ରାଣ ପୃଥକ୍ ଭାବେ ସ୍ୱୀକାର କରିବା ଉଚିତ କି ? ଅଥବା ଏକଭାବରେ ? ପୂର୍ବପକ୍ଷ-ସ୍ୱରୂପର ଅଭେଦରେ ଅପୃଥକ୍ ହୁଏ । ଅଭିନ୍ନ ତତ୍ତ୍ୱରେ ପୃଥକ୍ ରୂପରେ ଅନୁଚିନ୍ତନ କରିବା ଠିକ୍ ନୁହେଁ, 'ଅଗ୍ନିର୍ବାଗ୍ ଭୂତ୍ୱା' (ଅଗ୍ନିଦ୍ୱାରା ବାଗିନ୍ଦ୍ରିୟ ହୋଇ ସୁଖରେ ପ୍ରବେଶ କଲେ) ଏହି ପ୍ରକାର ଆରମ୍ଭ କରି ଶ୍ରୁତି ଅଧ୍ୟାତ୍ମ ଏବଂ ଅଧିଦୈବତର ସ୍ୱରୂପାଭେଦ ଦେଖାଏ ।

(ଗ) ଏହିପରି ଅନ୍ୟସ୍ଥାନରେ ମଧ୍ୟ ତତ୍ତତ୍ ସ୍ଥଳରେ ଅଧ୍ୟାତ୍ମ ଓ ଅଧିଦୈବତର ବହୁଧା ତତ୍ତ୍ୱାଭେଦ ଦେଖାଯାଏ । କେଉଁଠାରେ 'ଯଃ ପ୍ରାଣଃ' (ଯିଏ ପ୍ରାଣ, ସେହି ବାୟୁ) ଏହି ଶ୍ରୁତିବାକ୍ୟ ସ୍ପଷ୍ଟ ରୂପରେ ପ୍ରାଣ ଓ ବାୟୁରେ ଏକତ୍ୱ ପ୍ରତିପାଦନ କରେ । ଏହି ପ୍ରକାର ଉଦାହୃତ ବାଜସନେୟୀ ବ୍ରାହ୍ମଣରେ 'ଯତଶ୍ଚୋଦେତି ସୂର୍ଯ୍ୟଃ' (ଯେଉଁ ବାୟୁରେ ସୂର୍ଯ୍ୟ ଉଦୟ ହୁଏ) ଉପସଂହାର ଶ୍ଳୋକରେ 'ପ୍ରାଣାଦ୍ ବା' (ଏହି ପ୍ରାଣରୁ ଉଦୟ ହୁଏ ଏବଂ ଏହି ପ୍ରାଣରେ ଅସ୍ତ ହୁଏ) ଏହି ପ୍ରକାର ପ୍ରାଣରୁ ଉପସଂହାର କରି ଏକତ୍ୱକୁ ଦେଖାଏ । 'ତସ୍ମାଦେକମେବ' (ତେଣୁ ଗୋଟିଏ ବ୍ରତକୁ ଆଚରଣ କରନ୍ତି, ପ୍ରାଣ ବ୍ୟାପାର କରନ୍ତି ଏବଂ ଅପାନ ବ୍ୟାପାର କରନ୍ତି) ଏହି ପ୍ରକାର ଏକପ୍ରାଣ ବ୍ରତରୁ ଉପସଂହାର କରି ତାହାକୁ

ଦୃଢ଼ କରେ । ଏହି ପ୍ରକାର ଛାନ୍ଦୋଗ୍ୟରେ ପ୍ରଥମେ 'ମହାତ୍ମନଶ୍ଚତୁରୋ' (ଭୁବନର ରକ୍ଷକ ସେହି ଏକ ପ୍ରଜାପତି ଚାରି) (ଅଗ୍ନି, ସୂର୍ଯ୍ୟ, ଦିକ୍ ଓ ଚନ୍ଦ୍ରମା ଅଥବା ବାକ୍, ଚକ୍ଷୁ, ଶ୍ରୋତ୍ର ଓ ମନ, ମହାତ୍ମାମାନଙ୍କୁ ଭକ୍ଷଣ କରେ) ଏହି ଶ୍ରୁତି ଗୋଟିଏ ସଂବର୍ଗକୁ ବୋଧ କରାଏ, ଗୋଟିଏ ଚାରୋଟିର ଏକ ସଂବର୍ଗ ଏବଂ ଅନ୍ୟ ଚାରୋଟିର ଅନ୍ୟ ଏକ ସଂବର୍ଗ କୁହାଯାଏ ନାହିଁ । ତେଣୁ ଉପଗମନ ବା ଅନୁଚିନ୍ତନ ପୃଥକ୍ ନୁହେଁ ॥

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପୃଥଗେବ ବାୟୁପ୍ରାଣାବୁପଗନ୍ତବ୍ୟାବିତି । କସ୍ମାତ୍ । ପୃଥଗୁପଦେଶାତ୍ । ଆଧ୍ୟାନାର୍ଥୋ ହ୍ୟୟ ମଧ୍ୟାତ୍ମାଧିଦୈବବିଭାଗୋପଦେଶଃ, ସୋଽସତ୍ୟାଧ୍ୟାନ ପୃଥକ୍ତ୍ୱେଽନର୍ଥକ ଏବ ସ୍ୟାତ୍ ।

(ଖ) ନନୂକ୍ତଂ ନ ପୃଥଗନୁଚିନ୍ତନଂ ତତ୍ତ୍ୱାଭେଦାଦିତି ନୈଷ ଦୋଷଃ, ତତ୍ତ୍ୱାଭେଦେଽପ୍ୟବସ୍ଥା ଭେଦାଦୁପଦେଶ ଭେଦବଶେନାନୁଚିନ୍ତନ ଭେଦୋପପତ୍ତେଃ । ଶ୍ଳୋକୋପନ୍ୟାସସ୍ୟ ଚ ତତ୍ତ୍ୱାଭେଦାଭିପ୍ରାୟେଣାପ୍ୟୁପପଦ୍ୟ ମାନସ୍ୟ ପୂର୍ବୋଦିତଧ୍ୟେୟ ଭେଦନିରାକରଣ ସାମର୍ଥ୍ୟାଭାବାତ୍ । 'ସ ଯଥୈଷାଂ ପ୍ରାଣାନାଂ ମଧ୍ୟମଃ ପ୍ରାଣ ଏବମେତାସାଂ ଦେବତାନାଂ ବାୟୁଃ' (ବୃହ ୧-୫-୨୨) ଇତି ଚୋପମାନୋପମେୟକରଣାତ୍ । ଏତେନ ବ୍ରତୋପଦେଶୋ ବ୍ୟାଖ୍ୟାତଃ ।

(ଗ) 'ଏକମେବ ବ୍ରତମ୍' (ବୃହ ୧-୫-୨୩) ଇତି ଚୈବକାରୋ ବାଗାଦିବ୍ରତ ନିବର୍ତ୍ତନେନ ପ୍ରାଣବ୍ରତପ୍ରତିପତ୍ତ୍ୟର୍ଥଃ । ଭଗ୍ନବ୍ରତାନି ହି ବାଗାଦୀନ୍ ଯୁକ୍ତାନି 'ତାନି ମୃତ୍ୟୁଃ ଶ୍ରମୋ ଭୂତ୍ୱୋପଯେମେ (ବୃହ-୧-୫-୨୧) ଇତିଶ୍ରୁତେଃ, ନ ବାୟୁବ୍ରତ ନିବୃତ୍ତ୍ୟର୍ଥଃ, 'ଅଥାତୋ ବ୍ରତମୀମାଂସା' (ବୃହ ୧-୫-୨୩) ଇତି ଚୋକ୍ତ୍ୱା 'ତେନୋ ଏତସ୍ୟୈ ଦେବତାୟୈ ସାୟୁଜ୍ୟଂ ସଲୋକତାଂ ଜୟତି' (ବୃହ ୧-୫-୨୩) ଇତି ବାୟୁପ୍ରାପ୍ତିଂ ଫଳଂ ବ୍ରୁବନ୍ ବାୟୁବ୍ରତ ମନିବର୍ତ୍ତିତଂ ଦର୍ଶୟତି ।

(ଘ) ଦେବତେ ତ୍ୟତ୍ର ବାୟୁଃ ସ୍ୟାତ୍, ଅପରିଚ୍ଛିନ୍ନାତ୍ମକତ୍ୱସ୍ୟ ପ୍ରେପ୍ସିତତ୍ୱାତ୍ । ପୁରସ୍ତାତ୍ ପ୍ରୟୋଗାଚ୍ଚ 'ସୈଷାଽନସ୍ତମିତା ଦେବତା ଯଦ୍‌ବାୟୁଃ' (ବୃହ ୧-୫-୨୨) ଇତି । ତଥା 'ଦ୍ୱୌ ବା ଏତୌ ଦ୍ୱୌ ସଂବର୍ଗୌ ବାୟୁରେବ ଦେବେଷୁ ପ୍ରାଣଃ, ପ୍ରାଣେଷୁ' (ଛା ୪-୩-୪) ଇତି ଭେଦେନ ବ୍ୟପଦିଶତି 'ତେ ବା ଏତେ ପଞ୍ଚାନ୍ୟେ ପଞ୍ଚାନ୍ୟେ ଦଶ ସନ୍ତସ୍ତତ୍‌କୃତମ୍' (ଛା ୪-୩-୮) ଇତି ଚ ଭେଦେନୈବୋପସଂହରତି ।



ଭାଷା-(କ) ଏହା ପ୍ରାପ୍ତହେଲା ପରେ ଆମ୍ଭେ କହୁଁ-ବାୟୁ ଓ ପ୍ରାଣର ପୃଥକ୍‌କୁ ଚିନ୍ତା କରିବା ଉଚିତ୍ । କିପରି ? ତାହାର ପୃଥକ୍ ଉପଦେଶ ହେବାରୁ । ଅଧ୍ୟାତ୍ମ ଓ ଅଧିଦୈବତ ବିଭାଗର ଉପଦେଶ ଧ୍ୟାନ ପାଇଁ କୁହାଯାଇଛି । କିନ୍ତୁ ଏହି ଧ୍ୟାନ ପୃଥକ୍ ନହେଲେ ନିରର୍ଥକ ହେବ ।

(ଖ) ପରନ୍ତୁ ସ୍ୱରୂପ ଅଭେଦ ହେଲେ ପୃଥକ୍ ଅନୁଚିନ୍ତନ ହୁଏ ନାହିଁ ବୋଲି ଯାହା କୁହାଯାଇଛି, ତାହା ଦୋଷ ନୁହେଁ, କାରଣ-ତତ୍ତ୍ୱର ଅଭେଦ ହେଲେ ଅବସ୍ଥାଭେଦ ଓ ଉପଦେଶ ଭେଦରେ ଅନୁଚିନ୍ତନ ଉତ୍ପନ୍ନ ହୁଏ । ତତ୍ତ୍ୱାଭେଦରୁ ଉପପଦ୍ୟମାନ ଶ୍ଳୋକ ଉପନ୍ୟାସରେ ପୂର୍ବକଥିତ ଧ୍ୟେୟ ଭେଦର ନିରାକରଣ ସାମର୍ଥ୍ୟ ନୁହେଁ; କାରଣ- 'ସ ଯଥୈଷା' (ଯେଉଁ ପ୍ରକାର ଏହି ବାଗାଦି ପ୍ରାଣରେ ପ୍ରାଣ ମଧ୍ୟମ ଅଟେ । ସେହିପରି ଦେବତାମାନଙ୍କଠାରେ ବାୟୁ ଅଟେ) ଏହିପରି ଉପମାନ ଓ ଉପମେୟ କରଣ ହୁଏ । ତେଣୁ ବ୍ରତୋପଦେଶର ବ୍ୟାଖ୍ୟାନ ହୋଇଛି ।

(ଗ) 'ଏକମେବ ବ୍ରତମ୍' ଏଠାରେ ଏବ ବାଗାଦିବ୍ରତ ନିବୃତ୍ତ କରି ପ୍ରାଣବ୍ରତର ପ୍ରତିପତ୍ତି ପାଇଁ ରହିଛି । କାରଣ- 'ତାନି ମୃତ୍ୟୁଃ' (ଯମ ଶ୍ରମ ରୂପ ହୋଇ ସେହି ଇନ୍ଦ୍ରିୟଗୁଡ଼ିକ ସଂଗ୍ରହ କରେ) ଏହି ଶ୍ରୁତିରେ ବାଗାଦି ଇନ୍ଦ୍ରିୟଗୁଡ଼ିକୁ ଭଗ୍ନବ୍ରତ କୁହାଯାଇଛି । ପରନ୍ତୁ ସେହି 'ଏବକାର' ବାୟୁବ୍ରତର ନିବୃତ୍ତି ପାଇଁ ନୁହେଁ । କାରଣ- 'ଅଥାତୋ ବ୍ରତମୀମାଂସା' (ଏହାପରେ ବ୍ରତ ବିଚାର କରାଯାଇଛି) ଏହିପରି ପ୍ରସ୍ତୁତ କରି ବାୟୁ ଓ ପ୍ରାଣର ସମାନ ରୂପରେ ଅଭଗ୍ନବ୍ରତତ୍ୱ ନିର୍ଦ୍ଧାରଣ କରାଯାଇଛି । 'ଏକମେବ ବ୍ରତଂ ଚରେତ୍' ଏହା କହି ତେତନା ଏତସ୍ୟୈ' (ସେହି ବ୍ରତଦ୍ୱାରା ଏହି ଦେବତାର ଏକ ରୂପତା ଓ ସମାନ ସ୍ଥାନତ୍ୱ ପ୍ରାପ୍ତ ହୁଏ) ଏହିପରି ଶ୍ରୁତି ବାୟୁପ୍ରାପ୍ତି ଫଳକୁ ସ୍ଥିର କରି ବାୟୁବ୍ରତକୁ ଅନିବର୍ତ୍ତି ଦେଖାଏ ।

(ଘ) ଏଠାରେ ଦେବତା ବାୟୁ ହେବା ଉଚିତ୍, କାରଣ-ଅପରିଛନ୍ନାତ୍ମତ୍ୱ ପ୍ରେପ୍‌ସିତ ଅଟେ । ଯଥା- 'ସୈଷାଽନସ୍ତମିତା' (ଯେଉଁ ବାୟୁ ଅଛି, ସେ ଅସ୍ତ ନ ହେଉଥିବା ଦେବତା ଅଟେ) ଏହା ପ୍ରଥମେ ପ୍ରୟୋଗ କରାଯାଇଛି ଏବଂ ତୌ ବା ଏତୌ (ସେମାନେ ଦୁଇଟି ସଂବର୍ଗ ଅଟନ୍ତି, ଅଗ୍ନି ପ୍ରଭୃତି ଦେବତାରେ ବାୟୁ ଓ ବାଗାଦି ଇନ୍ଦ୍ରିୟଗୁଡ଼ିକରେ ମୁଖ୍ୟ ପ୍ରାଣ ସଂବର୍ଗ ଅଟେ ।) ଏହିପରି ଭେଦ ବ୍ୟପଦେଶ କରେ । 'ତେ ବା ଏତେ' (ଯିଏ ଭକ୍ଷଣ କରେ, ସେହି ଅଗ୍ନି ପ୍ରଭୃତି ଚାରି ଏବଂ ତାହାର ଗ୍ରସନ କରୁଥିବା ବାୟୁ- ଏହି ପାଞ୍ଚ ବାଗାଦି ଭିନ୍ନ ଅନ୍ୟ ଅଟେ, ଏହାଦ୍ୱାରା ବାଗାଦି ଚାରି ଓ

ପ୍ରାଣ ପ୍ରଭୃତି ପାଞ୍ଚ ଅନ୍ୟ ଅଟେ । ଏହି ପ୍ରକାର ସବୁ ଦଶ ହୁଅନ୍ତି । ଏହି ଦଶକୃତ (କୃତ ନାମକ ପାଶଦ୍ୱାରା ଉପଲକ୍ଷିତ ଦ୍ୟୁତ ହୁଏ ।) ଏହି ପ୍ରକାର ଭେଦରେ ଉପସଂହାର କରେ । ତେଣୁ ବାୟୁ ଓ ପ୍ରାଣର ପୃଥକ୍ ଅନୁଚିନ୍ତନ ଅଟେ ।

ମୂଳ-(କ) ପ୍ରଦାନବତ୍ । ଯଥେନ୍ଦ୍ରାୟ ରାଜ୍ଞେ ପୁରୋଡ଼ାଶମେକାଦଶ କପାଳ ମିନ୍ଦ୍ରାୟାଧିରାଜାୟେନ୍ଦ୍ରାୟ ସ୍ୱରାଜ୍ଞେ ଇତ୍ୟସ୍ୟାଂ ତ୍ରିପୁରୋଧାଶିନ୍ୟାମିଷ୍ଟୌ ସର୍ବେଷାମଭିଗମୟନ୍ନ ବଦ୍ୟତ୍ୟଛଂବଟକାରମିତି । ଅତୋ ବଚନାଦିନ୍ଦ୍ରାଭେଦାଚ୍ଚ ସହପ୍ରଦାନାଶଙ୍କାୟାଂ ରାଜାଦି ଗୁଣଭେଦାଦ୍ୟାଜ୍ୟାନୁବାକ୍ୟାବ୍ୟତ୍ୟାସବିଧାନାଚ୍ଚ ଯଥାନ୍ୟାସମେବ ଦେବତାପୃଥକ୍ତ୍ୱାତ୍ ପ୍ରଦାନପୃଥକ୍ତ୍ୱଂ ଭବତି ।

(ଖ) 'ଏବଂ ତତ୍ତ୍ୱାଭେଦେଽପ୍ୟାଧେୟାଂଶ ପୃଥକ୍ତ୍ୱାଦଧାନ ପୃଥକ୍ତ୍ୱଂ ମିତ୍ୟର୍ଥଃ । ତଦୁକ୍ତଂ ସଂକର୍ଷେ ନାନା ବା ଦେବତା ପୃଥଗ୍ଜ୍ଞାନାତ୍' ଇତି । ତତ୍ରତୁ ଦ୍ରବ୍ୟ ଦେବତା-ଭେଦାଦ୍ୟାଗଭେଦୋ ବିଦ୍ୟତେ, ନୈବମିହ ବିଦ୍ୟାଭେଦୋଽସ୍ତି, ଉପକ୍ରମୋପସଂହାରାଭ୍ୟା ମଧ୍ୟାତ୍ମାଧିଦୈବୋପଦେଶେ ଷ୍ୱେକବିଦ୍ୟା ବିଧାନ ପ୍ରତୀତେଃ । ବିଦ୍ୟୈକ୍ୟେପିଽପି ତ୍ୱଧ୍ୟାତ୍ମାଧିଦୈବଭେଦାତ୍ ପ୍ରବୃତ୍ତିଭେଦୋ ଭବତି, ଅଗ୍ନିହୋତ୍ର ଇବ ସାୟଂ ପ୍ରାତଃକାଳ ଭେଦାତ୍ । ଇତ୍ୟେତାବଦଭିପ୍ରେତ୍ୟ ପ୍ରଦାନ ବଦିତ୍ୟୁକ୍ତମ୍ ॥

ଭାଷା-(କ) ପ୍ରଦାନ ପରି । ଯେପରି 'ଇନ୍ଦ୍ର ରାଜାଙ୍କ ପାଇଁ ଇନ୍ଦ୍ର ଅଧିରାଜଙ୍କ ପାଇଁ ଓ ଇନ୍ଦ୍ର ସ୍ୱରାଜ୍ୟ ପାଇଁ ଏକାଦଶଟି କପାଳଯୁକ୍ତ ପୁରୋଡ଼ାଶ-ଏହି ତିନୋଟି ପୁରୋଡ଼ାଶଯୁକ୍ତ ଇଷ୍ଟିବ୍ୟର୍ଥ ହୋଇ ନପାରେ, ଏହି ନିମିତ୍ତ ଦ୍ୱାରା ସବୁ ଦେବତାଗୁଡ଼ିକୁ ଘୃତପ୍ରାପ୍ତ କରାଇବା ପାଇଁ ଏକ ସମୟରେ ପୁରୋଡ଼ାଶ ଅବଦାନ କରେ । ଏହି କଥାରୁ ଓ ଇନ୍ଦ୍ର ଅଭେଦ ହେବାରୁ ସହିତ ପ୍ରଦାନର ଆଶଙ୍କା ହେଲେ ରାଜା ପ୍ରଭୃତି (ରାଜ, ଅଧିରାଜ ଓ ସ୍ୱରାଜ) ଗୁଣଭେଦରେ ଏବଂ ଯାଜ୍ୟା ଓ ଅନୁବାକ୍ୟାର ବିଧାନ ହେଲେ ଲେଖକ୍ରମ ଅନୁସାରେ ଦେବତା ପୃଥକ୍ ହୁଏ ।

(ଖ) ସେହିପରି ବାୟୁ ଓ ପ୍ରାଣର ସ୍ୱରୂପ ଅଭେଦ ନହେଲେ ମଧ୍ୟ ଉପାସ୍ୟ ଅଂଶ ପୃଥକ୍ ହେବା ଦ୍ୱାରା ଅନୁଚିନ୍ତନ ପୃଥକ୍ ହୁଏ- 'ଏହାହିଁ ଅର୍ଥ । ସେହି ସଙ୍କର୍ଷକାଣ୍ଡରେ କୁହାଯାଇଛି ଯେ- 'ନାନା ବା ଦେବତା' (ଦେବତା ଭିନ୍ନ ଭିନ୍ନ ଅଟନ୍ତି, କାରଣ ସେମାନଙ୍କର ପୃଥକ୍ ଜ୍ଞାନ ହୁଏ ।) ସେଠାର ଦ୍ରବ୍ୟ ଓ ଦେବତା ଭେଦରେ ଯାଗରେ ଭେଦ ହୁଏ ବୋଲି ବିଦ୍ୟାଭେଦ ନାହିଁ; କାରଣ-ଉପକ୍ରମ ଓ ଉପସଂହାର ଦ୍ୱାରା ଅଧ୍ୟାତ୍ମ ଓ ଅଧିଦୈବ ଉପଦେଶରେ ଗୋଟିଏ ବିଦ୍ୟାର ବିଧାନ ପ୍ରତୀତ ହୁଏ । ଯେପରି ସନ୍ଧ୍ୟା ଓ



ପ୍ରଭାତକାଳ ଭେଦରେ ଅଗ୍ନିହୋତ୍ରରେ ପ୍ରବୃତ୍ତିର ଭେଦ ହୁଏ, ସେପରି ବିଦ୍ୟାର ଏକତ୍ୱ ହେଲେ ବି ଅଧ୍ୟାତ୍ମ ଓ ଅଧିଦୈବ ଭେଦରେ ପ୍ରବୃତ୍ତିର ଭେଦ ହୁଏ । ଏହି ଅଭିପ୍ରାୟରୁ ପ୍ରଦାନବତ୍ କୁହାଯାଇଛି ।

## २१- लिङ्गभूयस्त्वाधिकरणम् ॥ सू० ४४-५२ ॥

## ୨୧-ଲିଙ୍ଗଭୂୟସ୍ତ୍ୱାଧିକରଣମ୍ ॥ ସୂ-୪୪-୫୨ ॥

## लिङ्गभूयस्त्वात्तद्धि बलीयस्तदपि ॥ ३-३-४४ ॥

## ଲିଙ୍ଗଭୂୟସ୍ତ୍ୱାତ୍ତଦ୍ଧି ବଳୀୟସ୍ତଦପି ॥ ୩-୩-୪୪॥

ବାଜସନେୟକ ଅଗ୍ନି ରହସ୍ୟରେ ଅଗ୍ନିବିଦ୍ୟା ସ୍ୱତନ୍ତ୍ର ରୂପରେ ପ୍ରତିପାଦିତ ହୁଏ, ଲିଙ୍ଗଭୂୟସ୍ତ୍ୱାତ୍=କାରଣ-ଏଠାରେ ଏହି 'ଯତକିଂଚଇମାନି ଭୂତାନି' ଇତ୍ୟାଦି ଅନେକ ଲିଙ୍ଗ ପ୍ରମାଣ ହୁଏ ଏବଂ ପ୍ରକରଣାଦିର ଅପେକ୍ଷା ଦ୍ୱାରା, ତଦ୍ଧି=ଲିଙ୍ଗ, ବଳୀୟଃ=ବଳବାନ୍ ଅଟେ । ତଦପି=ତାହାକୁ 'ଶ୍ରୁତିଲିଙ୍ଗ' ଏହି ସୂତ୍ରରେ ଜୈମିନିମୁନି କହିଛନ୍ତି ।

ମୂଳ-(କ) ବାଜସନେୟିନୋଽଗ୍ନିରହସ୍ୟେ-'ନୈବ ବା ଇଦମଗ୍ରେ ତଦାସୀତ୍' ଇତ୍ୟେତସ୍ମିନ ବ୍ରାହ୍ମଣେ ମନୋଽଧିକୃତ୍ୟାଧୀୟତେ- 'ତତ୍‌ଷଟ୍‌ତ୍ରିଂଶତ୍ ସହସ୍ରାଣ୍ୟ ପଶ୍ୟଦାତ୍ମ-ନୋଽଗ୍ନୀନର୍କାନ୍ନନୋମୟାନ୍ନନଶ୍ଚିତଃ' ଇତ୍ୟାଦି । ତଥୈବ 'ବାକ୍‌ଚିତଃ ପ୍ରାଣଚିତ ଶ୍ଚକ୍ଷୁଶ୍ଚିତଃ ଶ୍ରୋତ୍ରଚିତଃ କର୍ମଚିତୋଽଗ୍ନିଚିତଃ । ଇତି ପୃଥଗଗ୍ନୀ ନାମନନ୍ତି ସାଂପାଦିକାନ୍ ।

(ଖ) ତେଷୁ ସଂଶୟଃ କିମେତେ ମନଶ୍ଚିଦାଦୟଃ କ୍ରିୟାନୁପ୍ରବେଶିନାସ୍ତଚ୍ଛେଷଭୂତାଃ ଉତ ସ୍ୱତନ୍ତ୍ରାଃ କେବଳ ବିଦ୍ୟାତ୍ମିକା ଇତି । ତତ୍ର ପ୍ରକରଣାତ୍ କ୍ରିୟାନୁପ୍ରବେଶେ ପ୍ରାପ୍ତେ ସ୍ୱାତନ୍ତ୍ର୍ୟଂ ତାବତ୍ ପ୍ରତିଜାନୀତେ ।

(ଗ) ଲିଙ୍ଗ ଭୂୟସ୍ତ୍ୱାଦିତି । ଭୂୟାଂସି ହି ଲିଙ୍ଗାନ୍ୟସ୍ମିନ୍ ବ୍ରାହ୍ମଣେ କେବଳ ବିଦ୍ୟାତ୍ମକତ୍ୱ ମଷାମୁପୋଦ୍ ବଲୟନ୍ତି ଦୃଶ୍ୟନ୍ତେ- 'ତଦ୍ୟତ କିଂ ଚେମାନି ଭୂତାନି ମନସାଂ ସଙ୍କଳ୍ପୟନ୍ତି, ତେଷାମେବ ସାକୃତିଃ' ଇତି, 'ତାନ୍‌ହୈତାନେବଂବିଦେ ସର୍ବଦା ସର୍ବାଣି ଭୂତାନି ଚିନ୍ୱନ୍ତ୍ୟପି ସ୍ୱପତେ । ଇତି ଚୈବଂଜାତୀୟକାନି । ତଦ୍ଧି ଲିଙ୍ଗମ୍ ପ୍ରକରଣାଦ ବଳୀୟଃ ତଦପ୍ୟୁକ୍ତଂ ପୂର୍ବସ୍ମିନ୍ କାଣ୍ଡେ- 'ଶ୍ରୁତିଲିଙ୍ଗ ବାକ୍ୟ ପ୍ରକରଣ ସ୍ଥାନ ସମାଖ୍ୟାନାଂ ସମବାୟେ ପାରଦୌର୍ବଲ୍ୟମର୍ଥ ବିପ୍ରକର୍ଷାତ (ଜୈ. ସୂ. ୩-୩-୧୩) ଇତି ।

ଭାଷା-(କ) ବାଦସନେୟିର ଅଗ୍ନିରହସ୍ୟରେ- 'ନୈବ ବା ଇଦମଗ୍ର' (ଉତ୍ପତ୍ତିର ପୂର୍ବରୁ ଏହି ସତ୍ ନଥିଲା) ଏହି ବ୍ରାହ୍ମଣରେ ମନକୁ ପ୍ରସ୍ତୁତ କରି 'ଏହି ମନ ନିଜେ ଅର୍ଚନୀୟ ମନୋମୟ ମନଶ୍ଚିତ୍ ଛତିଶ ସହସ୍ର ଅଗ୍ନିକୁ ଦେଖିଲା' ଇତ୍ୟାଦି କହନ୍ତି; ଏବଂ ବାକ୍‌ରୁ ସଂପାଦିତ ନିଜନିଜର ବୃତ୍ତିରୂପ ଅଗ୍ନିକୁ ବାକ୍ ପ୍ରାଣ ଦର୍ଶନ କଲା' ଏହି ପ୍ରକାର ଭିନ୍ନ ଭିନ୍ନ ସାଂପାଦିକ ଅଗ୍ନିକୁ କହନ୍ତି ।

(ଖ) ସେଠାରେ ସଂଶୟ ହୁଏ କି ଏମାନେ କ'ଣ ମନଶ୍ଚିତ୍ ପ୍ରଭୃତି କ୍ରିୟାରେ ଅନୁପ୍ରବେଶ କରି ସେହି କର୍ମର ଅଙ୍ଗଭୂତ ହୁଏ ଅଥବା ସ୍ୱତନ୍ତ୍ର ବିଦ୍ୟାତ୍ମକ ଅଟେ କି ? ଏହିପରି ପ୍ରକରଣରୁ କ୍ରିୟାରେ ଅନୁପ୍ରବେଶ ହେବାପରେ, (ସିଦ୍ଧାନ୍ତ)

(ଗ) ସ୍ୱତନ୍ତ୍ରକୁ ପ୍ରତିଜ୍ଞା କରନ୍ତି । କାରଣ-ବହୁତ ଲିଙ୍ଗଦ୍ୱାରା । 'ତତ୍‌ଯତ୍ କିଂ ଚ' (ତାହାଠାରେ ଏହି ଭୂତ ପ୍ରାଣୀ ମନରେ ଯାହା ସଙ୍କଳ୍ପ କରେ, ସେ ସେହି ଅଗ୍ନିର କର୍ମ କରେ) ଏବଂ 'ତାନ୍ ହୈତାନ୍' (ଏହିପରି ଉପାସନା କରି ଯଦି ଶୟନ କରିବାକୁ ଚାହେଁ କିମ୍ୱା ଜାଗ୍ରତ ହେବାକୁ ଚାହେଁ, ତେବେ ତାହାପାଇଁ ସର୍ବଦା ସମସ୍ତ ଭୂତଗୁଡ଼ିସକ ସେହି ଅଗ୍ନିକୁ ସମ୍ପାଦନ କରେ) ଏହି ପ୍ରକାର ବହୁଶ୍ରୁତି ବାକ୍ୟଦ୍ୱାରା ଲିଙ୍ଗ ପ୍ରକରଣଦ୍ୱାରା ବଳବାନ୍ ହୁଏ । ସେ ମଧ୍ୟ 'ଶ୍ରୁତିଲିଙ୍ଗ' (ଶ୍ରୁତିଲିଙ୍ଗ, ବାକ୍ୟ, ପ୍ରକରଣ, ସ୍ଥାନ ଏବଂ ସମାଖ୍ୟା ଏହାର୍ ଏକ ବିଷୟରେ ପରସ୍ପର ବିରୋଧ ହେଲେ ଉତ୍ତରୋତ୍ତର ପୂର୍ବ ପୂର୍ବଠାରୁ ଦୁର୍ବଳ ହୁଅନ୍ତି, କାରଣ-ନିଜର ଅର୍ଥବୋଧ କରାଇବାରେ ଉତ୍ତର-ଉତ୍ତରକୁ ପୂର୍ବ-ପୂର୍ବଅପେକ୍ଷା ବିଳମ୍ବ ହୁଏ) ଏହିପ୍ରକାର ପୂର୍ବକାଣ୍ଡରେ କୁହାଯାଇଛି ।

**पूर्वविकल्प:प्रकरणात् स्यात्क्रिया मानसवत् ॥ ३-३-४५ ॥**

**ପୂର୍ବବିକଳ୍ପଃ ପ୍ରକରଣାତ୍ ସ୍ୟାତ୍କ୍ରିୟା ମାନସବତ୍ ॥୩-୩-୪୫॥**

ଯେଉଁ ମନଶ୍ଚିତ୍ ଅଗ୍ନିଗୁଡ଼ିକ ସ୍ୱତନ୍ତ୍ର କୁହନ୍ତି, କିନ୍ତୁ ପ୍ରକରଣାତ୍=ପ୍ରକରଣରୁ ପୂର୍ବବିକଳ୍ପଃ=ପୂର୍ବରେ ପ୍ରକୃତ କ୍ରିୟାମୟ ଅଗ୍ନିର ଏହା ସଙ୍କଳ୍ପାତ୍ମକ ଅଗ୍ନି, କ୍ରୟାସ୍ୟାତ୍=ଅଙ୍ଗ ଅଟେ । ମାନସବତ୍=ଯେପରି 'ମନୋଗ୍ରହଂ ଗୃହ୍ଣାତି' ଇତ୍ୟାଦି ଦ୍ୱାଦଶାହରେ ଶ୍ରୁତମାନ ସଂଗ୍ରହ ବାରଦିନର ମଧ୍ୟବର୍ତ୍ତୀ ଦଶମ ଗ୍ରହର ଅଙ୍ଗ ଅଟେ ।

ମୂଳ-(କ) ନୈତଦ୍ୟୁକ୍ତମ୍ ସ୍ୱତନ୍ତ୍ରା ଏତେଽଗ୍ନୟେଽନନ୍ୟଶେଷଭୂତା ଇତି । ପୂର୍ବସ୍ୟ କ୍ରିୟାମୟସ୍ୟାଗ୍ନେଃ ପ୍ରକରଣାଉଦ୍‌ବିଷୟ ଏବାୟଂ ବିକଳ୍ପବିଶେଷୋପଦେଶଃ ସ୍ୟାନ୍ନ ସ୍ୱତନ୍ତ୍ରଃ ।

(ଖ) ନନୁ ପ୍ରକରଣାଲ୍ଲିଙ୍ଗମ୍ ବଳୀୟଃ ସତ୍ୟମେବମେତତ୍, ଲିଙ୍ଗମପି ତ୍ୱେବଂ ଜାତୀୟକଂ ନ ପ୍ରକରଣାଦ୍ ବଲିୟୋ ଭବତି । ଅନ୍ୟାର୍ଥଦର୍ଶନଂ ହ୍ୟେତତ୍, ସାଂପାଦିକାଗ୍ନି



ପ୍ରଶଂସାରୂପତ୍ୱାତ୍ । ଅନ୍ୟାର୍ଥଦର୍ଶନଂ ଚସତ୍ୟାମନ୍ୟସ୍ୟାଂ ପ୍ରାପ୍ତୌ ଗୁଣବାଦେନାପ୍ୟୁପପଦ୍ୟମାନଂ ନ ପ୍ରକରଣଂ ବାଧିତୁମୁତ୍ସହତେ । ତସ୍ମାତ୍ ସାଂପାଦିକା ଅପ୍ୟେତେଽଗ୍ନୟଃ ପ୍ରକରଣାତ୍ କ୍ରିୟାନୁପ୍ରବେଶିନ ଏବ ସ୍ୟୁଃ ମାନସବତ୍ ।

(ଗ) ମାନସବତ୍ । ଯଥା ଦଶରାତ୍ରସ୍ୟ ଦଶମେଽହନ୍ୟ ବି ବାକ୍ୟେ ପୃଥିବ୍ୟା ପାତ୍ରେଣ ସମୁଦ୍ରସ୍ୟ ସୋମସ୍ୟ ପ୍ରଜାପତୟେ ଦେବତାୟୈ ଗୃହ୍ୟମାଣସ୍ୟ ଗ୍ରହଣାସାଦନହବ-ନାହରଣୋପହ୍ୱାନ ଭକ୍ଷଣାନି ମାନସାନ୍ୟେବାମ୍ନାୟନ୍ତେ । ସ ଚ ମାନସୋଽପି ଗ୍ରହକଳ୍ପଃ କ୍ରିୟାପ୍ରକରଣାତ୍ କ୍ରିୟାଶେଷ ଏବ ଭବତ୍ୟେବମୟପ୍ୟଗ୍ନିକଳ୍ପ ଇତ୍ୟର୍ଥଃ ।

ଭାଷା-(କ) ଅଗ୍ନି ଅନ୍ୟର ଅଙ୍ଗ ନ ହୋଇ ସ୍ୱତନ୍ତ୍ର ହୁଏ ବୋଲି କୁହାଯାଇଛି । ତାହା କିନ୍ତୁ ଠିକ୍ ନୁହେଁ । ପୂର୍ବକ୍ରିୟାମୟ ଅଗ୍ନିର ପ୍ରକରଣ ହେଲେ ତଦ୍‌ବିଷୟକ ଏହି ବିକଳ୍ପ ବିଶେଷ ଉପଦେଶ ହେବା ଉଚିତ୍, ସ୍ୱତନ୍ତ୍ର ନୁହେଁ ।

(ଖ) କିନ୍ତୁ ପ୍ରକରଣଠାରୁ ଲିଙ୍ଗ କ'ଣ ବଳବାନ କି ? ହଁ ଏହାସତ୍ୟ; କିନ୍ତୁ ଏହି ପ୍ରକରଣର ଲିଙ୍ଗ ପ୍ରକରଣରୁ ବଳବାନ୍ ହୁଏ ନାହିଁ । ଏହି ଲିଙ୍ଗ ଅନ୍ୟାର୍ଥଦର୍ଶନ ଅଟେ; କାରଣ-ସାମ୍ପାଦିକ ଅଗ୍ନିର ପ୍ରଶଂସାରୂପ ଅଟେ; କିନ୍ତୁ ଅନ୍ୟାର୍ଥଦର୍ଶନ ଅନ୍ୟପ୍ରାପ୍ତି ନ ହେଲେ ଗୁଣବାଦ ଦ୍ୱାରା ଉପପନ୍ନ ହୋଇ ପ୍ରକରଣକୁ ବାଧା ଦେବାରେ ଅସମର୍ଥ ନୁହେଁ । ତେଣୁ ସାମ୍ପାଦିକ ହୋଇ ମଧ୍ୟ ଅଗ୍ନିଗୁଡ଼ିକ ପ୍ରକରଣ ଦ୍ୱାରା କ୍ରିୟାରେ ଅନୁପ୍ରବେଶ କରିବା ଉଚିତ୍ ।

(ଗ) ମାନସସଦୃଶ । ଯେପରି ଦଶରାତ୍ର କ୍ରତୁର ଦଶମଦିବସରେ ଅବିବାକ୍ୟରେ ପୃଥିବୀ ରୂପମାତ୍ରରୁ ଗୃହ୍ୟମାଣ ସମୁଦ୍ର ରୂପ ସୋମର ପ୍ରଜାପତି ଦେବତା ପାଇଁ ଗ୍ରହଣ, ଆସାଦନ, ହବନ, ଆହରଣ, ଉପହ୍ୱାନ ଏବଂ ଭକ୍ଷଣ ଏହି ମାନସ ଶ୍ରୁତିରେ କୁହାଯାଇଛି । ଯେପରି ସେହି ମାନସ ଗ୍ରହକଳ୍ପ ମଧ୍ୟ କ୍ରିୟା ପ୍ରକରଣରୁ କ୍ରିୟାର ଅଙ୍ଗ ହୁଏ, ସେହିପରି ସେହି ଅଗ୍ନିକଳ୍ପ ଅଟେ ବୋଲି ଜଣାପଡ଼େ ।

## अतिदेशाच्च ॥ ३-३-४६ ॥

## ଅତିଦେଶାଚ୍ଚ ॥୩-୩-୪୬॥

ଅତିଦେଶାତ୍ ଚ='ଏକୈକ ଏବ ତାବାନ୍' ଏହିପ୍ରକାର ଅତିଦେଶରେ ଏହ ସାମ୍ପାଦିକ ଅଗ୍ନିଗୁଡ଼ିକ କ୍ରିୟାର ଅଙ୍ଗ ଅଟେ ।

ମୂଳ-(କ) ଅତିଦେଶାଚ୍ଚୈଷାମଗ୍ନୀନାଂ କ୍ରିୟାନୁପ୍ରବେଶ ମୁପୋଦ୍‌ବଳୟତି - 'ଷଟ୍‌ତ୍ରିଂଶତ୍ ସହସ୍ରାଣ୍ୟଗ୍ନିୟୋଽର୍କାସ୍ତେଷାମେକୈକ ଏବ ତାବାନ୍ ଯାବାନସୌ ପୂର୍ବଃ'

ଇତି । ସତି ହି ସାମାନ୍ୟେଽତିଦେଶଃ ପ୍ରବର୍ତ୍ତତେ । ତତଶ୍ଚ ପୂର୍ବେଣୈଷ୍ଟକାଚିତେନ କ୍ରିୟାନୁ-ପ୍ରବେଶନାଽଗ୍ନିନା ସାଂପାଦିକାନଗ୍ନୀନତିଦିଶାନ୍ କ୍ରିୟାନୁପ୍ରବେଶମେବୈଷାଂ ଦ୍ୟୋତୟତି ।

ଭାଷା (କ) 'ଷଟ୍ତ୍ରିଂଶତ୍' (ଛତିଶ ସହସ୍ର ପୂଜ୍ୟ ଅଗ୍ନି ଅଟନ୍ତି, ଏହାଦ୍ୱାରା ଗୋଟିଏ ଗୋଟିଏ ଏପରି ଅଛନ୍ତି ଯେ ସେହି ପୂର୍ବାଗ୍ନି ଅଟେ) ଏହି ପ୍ରକାର ଏହି ଅଗ୍ନିର ଅତିଦେଶ କ୍ରିୟାନୁପ୍ରବେଶକୁ ପୁଷ୍ଟି କରାଏ । ତେଣୁ ପୂର୍ବକାମନାଦ୍ୱାରା ଚିତ୍ କ୍ରିୟାନୁପ୍ରବେଶୀ ହୋଇ ଅଗ୍ନିରୁ ସାଂପାଦିକ ଅଗ୍ନିର ଅତିଦେଶ କରି ଶ୍ରୁତି ଏହାର କ୍ରିୟାନୁପ୍ରବେଶ ସୂଚିତ କରେ ।

## विद्यैव तु निर्द्धारणात् ॥ ३-३-४७ ॥

## ବିଦ୍ୟୈବ ତୁ ନିର୍ଦ୍ଧାରଣାତ୍ ॥୩-୩-୪୭॥

ତୁ=ପୂର୍ବପକ୍ଷ ନିବୃତ୍ତିନିମିତ୍ତ ଅଟେ । ବିଦ୍ୟା ଏବ=ବିଦ୍ୟାତ୍ମକ ମନଶ୍ଚିତ୍ ଆଦି ଅଗ୍ନିଗୁଡ଼ିକ ସ୍ୱତନ୍ତ୍ର ଅଟେ । ନିର୍ଦ୍ଧାରଣାତ୍=କାରଣ-ଶ୍ରୁତିରେ ଏହାହିଁ ନିର୍ଦ୍ଧାରଣ କରାଯାଇଅଛି ।

ମୂଳ-(କ) ତୁ ଶବ୍ଦଃ ପକ୍ଷଂ ବ୍ୟାବର୍ତ୍ତୟତି । ବିଦ୍ୟାତ୍ମିକା ଏବୈତେ ସ୍ୱତନ୍ତ୍ରା ମନଶ୍ଚି-ଦାଦୟୋଽଗ୍ନୟଃ ସ୍ୟୁର୍ନ କ୍ରିୟାଶେଷଭୂତାଃ । ତଥାହି ନିର୍ଦ୍ଧାରୟତି 'ତେ ହୈତେ ବିଦ୍ୟାଚିତ ଏବ' ଇତି, ବିଦ୍ୟାୟା ହେବୈତ ଏବଂବିଦଶ୍ଚିତା ଭବନ୍ତି । ଇତି ଚ ।

ଭାଷା-(କ) ତୁ ଶବ୍ଦ ପୂର୍ବପକ୍ଷ ବ୍ୟାବୃତ୍ତ କରେ । ବିଦ୍ୟାତ୍ମକ ସେମାନେ ମନଶ୍ଚିତ୍ ଆଦି ଅଗ୍ନିଗୁଡ଼ିକ ସ୍ୱତନ୍ତ୍ର ହେବା ଉଚିତ୍, କ୍ରିୟାର ଅଙ୍ଗଭୂତ ନୁହେଁ; କାରଣ- 'ତେ ହୈତେ' (ସେହି ଏହିଗୁଡ଼ିକ ବିଦ୍ୟାଭାବନାରୁ ସଂପାଦିତ ହୁଏ) ଏବଂ 'ବିଦ୍ୟୟା' । (ଏହା ଜାଣିଥିବା ଉପାସକକୁ ଏହି ଅଗ୍ନିଗୁଡ଼ିକ ବିଦ୍ୟାରୁ ସମ୍ପାଦିତ ହୁଏ) ଏହି ପ୍ରକାର ଶ୍ରୁତି ନିର୍ଦ୍ଧାରଣ କରେ ।

## दर्शनाच्च ॥ ३-३-४८ ॥

## ଦର୍ଶନାଚ୍ଚ ୩-୩-୪୮॥

ଦର୍ଶନାତ୍ ଚ=ଏହି ମନଶ୍ଚିତ୍ ପ୍ରଭୃତି ଅଗ୍ନିଗୁଡ଼ିକର ସ୍ୱତନ୍ତ୍ରରେ ଲିଙ୍ଗ ମଧ୍ୟ ଦେଖାଯାଏ ।

ମୂଳ-(କ) ଦୃଶ୍ୟତେ ଚୈଷାଂ ସ୍ୱାତନ୍ତ୍ର୍ୟେ ଲିଙ୍ଗମ୍ । ତତ୍ପୁରସ୍ତା ଦର୍ଶିତମ୍ ଲିଙ୍ଗଭୂୟସ୍ତ୍ୱାତ୍ (ବ୍ର.ସୂ. ୩-୩-୪୪) ଇତ୍ୟତ୍ର ॥

ଭାଷା-(କ) ଏହି ଅଗ୍ନିର ସ୍ୱାତନ୍ତ୍ର୍ୟରେ ଲିଙ୍ଗ ମଧ୍ୟ ଦେଖାଯାଏ । ସେ 'ଲିଙ୍ଗଭୂୟସ୍ତ୍ୱାତ୍'' ଏହି ସୂତ୍ରରେ ପ୍ରଥମେ ଦେଖାଯାଏ ॥୪୮॥



ମୂଳ-(କ) ନନୁ ଲିଙ୍ଗମପ୍ୟସତ୍ୟାମନ୍ୟସାଂ ପ୍ରାପ୍ତାବସାଧଙ୍କ କସ୍ୟଚିଦର୍ଥସ୍ୟେ-ତ୍ୟପାସ୍ୟ ତତ୍ପ୍ରକରଣସାମର୍ଥ୍ୟାତ୍ କ୍ରିୟାଶେଷତ୍ୱ ମଧ୍ୟବସିତମିତ୍ୟତ ଉତ୍ତରଂ ପଠତି-

ଭାଷା-(କ) ପରନ୍ତୁ ଅନ୍ୟପ୍ରାପ୍ତି ନହେବାରୁ ଲିଙ୍ଗ ମଧ୍ୟ କୌଣସି ଅର୍ଥର ସାଧକ ନୁହେଁ । ଏହିପରି ଲିଙ୍ଗକୁ ପରିତ୍ୟାଗ କରି ପ୍ରକରଣର ସାମର୍ଥ୍ୟରୁ ସେହି ଅଗ୍ନିକ୍ରିୟାର ଅଙ୍ଗରୂପରେ ନିଶ୍ଚିତ ହୋଇଥାଏ । ତେଣୁ ଉତ୍ତରରେ କୁହାଯାଇଛି ।

## श्रुत्यादिबलीयस्त्वाच्च न बाधः ॥ ३-३-४९ ॥

## ଶ୍ରୁତ୍ୟାଦିବଲୀୟସ୍ତ୍ୱାଚ୍ଚ ନ ବାଧଃ ॥୩-୩-୪୯॥

ଚ=ଏବଂ, ଶ୍ରୁତ୍ୟାଦିବଲୀୟସ୍ତ୍ୱାତ୍=ଶ୍ରୁତି ପ୍ରଭୃତି ବଳବାନ ହେବାରୁ ଦୁର୍ବଳକର୍ମ-ପ୍ରକରଣଦ୍ୱାରା ମନଶ୍ଚିତ୍ ପ୍ରଭୃତି ଅଗ୍ନିର ସ୍ୱାତନ୍ତ୍ର୍ୟ ନ ବାଧଃ=ବାଧା ହୁଏ ନାହିଁ ॥

ମୂଳ-(କ) ନୈବଂ ପ୍ରକରଣସାମର୍ଥ୍ୟାତ୍ କ୍ରିୟାଶେଷତ୍ୱ ମଧ୍ୟବସାୟ ସ୍ୱାତନ୍ତ୍ର୍ୟପକ୍ଷୋ ବାଧିତବ୍ୟଃ, ଶ୍ରୁତ୍ୟାଦେର୍ବଳୀୟସ୍ତ୍ୱାତ୍ । ବଳୀୟାଂସି ହି ପ୍ରକରଣାଚ୍ଛ୍ରୁତିଲିଙ୍ଗ ବାକ୍ୟାନୀତି ସ୍ଥିତଂ ଶ୍ରୁତିଲିଙ୍ଗ ସୂତ୍ରେ । ତାନି ଚେହ ସ୍ୱାତନ୍ତ୍ର୍ୟ ପକ୍ଷଂ ସାଧୟନ୍ତି ଦୃଶ୍ୟନ୍ତେ । କଥମ୍ ? ଶ୍ରୁତିସ୍ତାବତ୍-ତେ ହୈତେ ନିଦ୍ୟାଚିତ ଏବ ଇତି ।

(ଖ) ତଥା ଲିଙ୍ଗମ୍- 'ସର୍ବଦା ସର୍ବାଣି ଭୂତାନି ଚିନ୍ୱନ୍ତ୍ୟପି ସ୍ୱପତେ' ଇତି । ତଥା ବାକ୍ୟମପି 'ବିଦ୍ୟୟା ହୈବୈତ ଏବଂ ବିଦଶ୍ଚିତା ଭବନ୍ତି' ଇତି । 'ବିଦ୍ୟାଚିତ ଏବ' ଇତି ହି ସାଂବଧାରଣେୟଂ ଶ୍ରୁତିଃ କ୍ରିୟାନୁପ୍ରବେଶେଽମୀଷାମଭ୍ୟୁପଗମ୍ୟମାନେ ପୀଡ଼ିତା ସ୍ୟାତ୍ ।

(ଗ) ନନ୍ୱବାହ୍ୟ ସାଧନତ୍ୱାଭିପ୍ରାୟମିଦମବଧାରଣଂ ଭବିଷ୍ୟତି । ନେତ୍ୟୁଚ୍ୟତେ, ତଦଭିପ୍ରାୟତାୟାଂ ହି ବିଦ୍ୟାଚିତ ଇତୀୟତା ସ୍ୱରୂପ ସଂକୀର୍ତ୍ତନେନୈବ କୃତତ୍ୱାଦନର୍ଥକ-ମବଧାରଣଂ ଭବେତ୍ । ସ୍ୱରୂପମେବଂ ହ୍ୟେଷାମବାହ୍ୟ ସାଧନମିତି । ଅବାହ୍ୟ ସାଧନତ୍ୱେଽପି ତୁ ମାନସଗ୍ରହବତ୍କ୍ରିୟାନୁପ୍ରବେଶ ଶଙ୍କାୟାଂ ତନ୍ନିବୃତ୍ତିଫଳମବଧାରଣମର୍ଥବଦ୍ ଭବିଷ୍ୟତି ।

ଭାଷା-(କ) ଏହି ପ୍ରକାର ପ୍ରକରଣ ସାମର୍ଥ୍ୟରୁ ମନଶ୍ଚିତ ପ୍ରଭୃତି ଅଗ୍ନିଗୁଡ଼ିକରେ କ୍ରିୟାଙ୍ଗତ୍ୱ ସ୍ଥିର କରି ସ୍ୱାତନ୍ତ୍ର୍ୟପକ୍ଷକୁ ବାଧା ଦେବା ଉଚିତ୍ ନୁହେଁ । କାରଣ-ଶ୍ରୁତି ପ୍ରଭୃତି ବଳବାନ ଅଟେ । ଶ୍ରୁତି, ଲଙ୍ଗ, ବାକ୍ୟ-ଏଗୁଡ଼ିକ ପ୍ରକରଣ ଠାରୁ ବଳବାନ୍ ଅଟନ୍ତି । ଏହି 'ଶ୍ରୁତିଲିଙ୍ଗ' ସୂତ୍ରରେ ସିଦ୍ଧ କରାଯାଇଅଛି । ଏହି ଶ୍ରୁତି ପ୍ରଭୃତି ଏଠାରେ ସ୍ୱାତନ୍ତ୍ର ପକ୍ଷକୁ ସିଦ୍ଧ କରାହେବାର ଦେଖାଯାଏ । କିପରି ? 'ତେ ହୈ ତେ' (ସେମାନେ ଏହି ଅଗ୍ନିଗୁଡ଼ିକ ବିଦ୍ୟାରୁ ସଂପାଦିତ ହୁଅନ୍ତି) । ଏହି ଶ୍ରୁତି ବାକ୍ୟ ଅଟେ ।

(ଖ) ସେହିପରି ଲିଙ୍ଗବାକ୍ୟ ରହିଅଛି । 'ସର୍ବଦା (ସମସ୍ତ ପ୍ରାଣୀ ଜାଗ୍ରଦବସ୍ଥାରେ ବା ଗୁପ୍ତ ଅବସ୍ଥାରେ ତାହା ପାଇଁ ଅଗ୍ନିକୁ ଚୟନ କରେ) ଏହି ପ୍ରକାର ଲିଙ୍ଗ ଅଟେ । ଏବଂ 'ବିଦ୍ୟୟା' (ଏହାକୁ ଜାଣିବାକୁ ଥିବା ଉପାସକର ଅଗ୍ନିଗୁଡ଼ିକ ବିଦ୍ୟାଯୁକ୍ତ ସମ୍ପାଦିତ ହୁଏ) ଏହି ପ୍ରକାର ବାକ୍ୟ ଅଛି । 'ବିଦ୍ୟାଚିତ ଏବ' ଅବଧାରଣ ସହ ଏହି ଶ୍ରୁତି ଅଗ୍ନି କ୍ରିୟାରେ ପ୍ରବେଶ କରି ମଧ୍ୟ ବାଧିତ ହେବ ।

(ଗ) ପରନ୍ତୁ ଏହି ଅବଧାରଣ ବାହ୍ୟ ସାଧନାଭାବର ଅଭିପ୍ରାୟ ହେବକି ? ନୁହେଁ, ଏହା କୁହାଯାଇଛି ଯଦି ଏହାର ଅଭିପ୍ରାୟରେ ହୁଏ, ତେବେ 'ବିଦ୍ୟାଚିତ'ରେ ସ୍ୱରୂପ ସଂକୀର୍ତ୍ତନ ହେବାରୁ ଅବାହ୍ୟ ସାଧନତ୍ୱ ସିଦ୍ଧ ହେବ ଏବଂ ଏହି ଅବଧାରଣ ଅନର୍ଥକ ହେବ; କାରଣ-ଏହି ବାହ୍ୟ ସାଧନାଭାବ ଅଗ୍ନିସ୍ୱରୂପ ଅଟେ । ପରନ୍ତୁ ଏହି ଅଗ୍ନିର ବାହ୍ୟ ସାଧନତା ଅଭାବ ହେଲେବି ମାନସଗ୍ରହ ପରି କ୍ରିୟା ଅନୁପ୍ରବେଶ ଶଙ୍କା ହେବାଦ୍ୱାରା ତାହାର ନିବୃତ୍ତି ରୂପ ପ୍ରୟୋଜନ ଅବଧାରଣ ଯୁକ୍ତିଯୁକ୍ତ ହେବ ।

ମୂଳ - (କ) ତଥା 'ସ୍ୱପତେ ଜାଗ୍ରତେ ଚୈବଂବିଦେ ସର୍ବଦା ସର୍ବାଣି ଭୂତୋନ୍ୟେ-ର୍ତାନଗ୍ନୀଂଶ୍ଚିନ୍ୱନ୍ତି' ଇତି ସାତତ୍ୟଦର୍ଶନମେଷାଂ ସ୍ୱାତନ୍ତ୍ର୍ୟେବକଳ୍ପତେ । ଯଥା ସାଂପାଦିକେ ବାକ୍‌ପ୍ରାଣମୟେଽଗ୍ନିହୋତ୍ରେ 'ପ୍ରାଣଂ ତଦା ବାଚି ଜୁହୋତି ବାଚଂ ତଦା ପ୍ରାଣେ ଜୁହୋତି' (କୌ ୨-୫) ଇତି ରେଚ୍ଛୋଚ୍ୟତେ- 'ଏତେ ଅନନ୍ତେ ଅମୃତେ ଆହୁତୀ ସ୍ୱପଂଶ୍ଚ ସତତଂ ଜୁହୋତି' (କୌଷୀ ୨-୫) ଇତି ତଦ୍‌ବତ୍ ।

(ଖ) କ୍ରିୟାନୁପ୍ରବେଶେ ତୁ କ୍ରିୟା ପ୍ରୟୋଗସ୍ୟାଲ୍ପକାଲତ୍ୱେନ ନ ସାତତ୍ୟେ ନୈଷାଂ ପ୍ରୟୋଗଃ କଳ୍ପେତ । ନ ଚ୍ଛେଦମର୍ଥବାଦ ମାତ୍ରମିତି ନ୍ୟାୟମ୍ । ଯତ୍ ହି ବିସ୍ପଷ୍ଟୋ ବିଧାୟକୋ ଲିଙ୍ଗାଦିରୂପ ଲଭ୍ୟତେ, ଯୁକ୍ତଂ ତତ୍ର ସଂକୀର୍ତ୍ତନମତ୍ରସ୍ୟାର୍ଥ ବାଦତ୍ୱମ୍ । ଇହ ତୁ ବିସ୍ପଷ୍ଟବିଧ୍ୟନ୍ତ-ରାନୁପଲବ୍ଧେଃ ସଂକୀର୍ତ୍ତନାଦେବୈଷାଂ ବିଜ୍ଞାନ ବିବଧାନଂ କଳ୍ପନୀୟମ୍ ।

(ଗ) ତଚ୍ଚ ଯଥା ସଂକୀର୍ତ୍ତନମେବ କଳ୍ପୟିତୁଂ ଶକ୍ୟତ ଇତି, ସାତତ୍ୟ ଦର୍ଶନାତ୍ତଥାଭୂତମେବ କଳ୍ପତେ । ତତଶ୍ଚ ସାମର୍ଥ୍ୟାଦୋଷଂ ସ୍ୱାତନ୍ତ୍ର୍ୟସିଦ୍ଧିଃ । ଏତେନ 'ତଦ୍‌ଯତ୍‌କିଂଚେମାନି ଭୂତାନି ମନସାଂ ସଙ୍କଳ୍ପୟନ୍ତି ତେଷାମେବ ସାକୃତିଃ ଇତ୍ୟାଦି ବ୍ୟାଖ୍ୟାତମ । ତଥା ବାକ୍ୟମପି 'ଏବଂବିଦେ' ଇତି ପୁରୁଷବିଶେଷ ସମ୍ବନ୍ଧ ମେବୈଷା-ମାଚକ୍ଷାଣଂ ନ କ୍ରତୁସମ୍ବନ୍ଧଂ ମୁଷ୍ୟତେ । ତସ୍ମାତ୍ ସ୍ୱାତନ୍ତ୍ର୍ୟପକ୍ଷ ଏବ ଜ୍ୟାୟାନିତି ॥



ଭାଷା-(କ) ଏହିପରି 'ସ୍ୱପ୍ନତେ' (ସେ ଏହା ଜାଣି ଜାଗ୍ରତ ହେଉ ବା ସୁପ୍ତ ହେଉ; କିନ୍ତୁ ଉପାସକପାଇଁ ସର୍ବଦା ସବୁପ୍ରାଣୀ ଏହି ଅଗ୍ନିକୁ ସମ୍ପାଦନ କରନ୍ତି) ଏହି ସାତତ୍ୟ ଦର୍ଶନ ଏହି ଅଗ୍ନିର ସ୍ୱାତନ୍ତ୍ର୍ୟ ହେବାରୁ ସଙ୍ଗତ ହୁଏ । ଯେପରି ସାଂପାଦିକ ବାକ୍ ପ୍ରାଣମୟ ଅଗ୍ନି ହୋତ୍ରରେ 'ପ୍ରାଣଂତଦା ବାଚି' (ଧ୍ୟାନକାଳରେ ପ୍ରାଣ ବାଣୀରେ ହୋମ କରେ ଏବଂ ଧ୍ୟାନକାଳରେ ବାଣୀ ପ୍ରାଣରେ ହୋମ କରେ) ଏହା କହି 'ଏତେ ଅନନ୍ତେଽମୃତେ' (ଏହି ଅନନ୍ତ ଅମୃତ ଆହୁତି ଜାଗ୍ରତ ବା ସୁପ୍ତ ଅବସ୍ଥାରେ ହୋମ କରେ) ଏହା କହେ । ତାହାପରି ଏହି ଅଗ୍ନିର କ୍ରିୟାଙ୍ଗତ୍ୱ ନାହିଁ ।

(ଖ) କିନ୍ତୁ କ୍ରିୟାର ପ୍ରୟୋଗ ଅଳ୍ପକାଳତ୍ୱ ହେଲେ ଏହି ମନଶ୍ଚିତ୍ ଆଦି ଅଗ୍ନିର ନୈରନ୍ତର୍ଯ୍ୟ-ପ୍ରୟୋଗ ହୁଏ ନାହିଁ । ଏହା କେବଳ ଅର୍ଥବାଦ ମାତ୍ର ଅଟେ ବୋଲି କହିବା ନ୍ୟାୟ ସଙ୍ଗତ ନୁହେଁ; କାରଣ-ଯେଉଁଠାରେ ଲିଙ୍ଆଦି ବିଧାୟକ ବିସ୍ପଷ୍ଟ ରୂପରେ ଉପଲବ୍ଧ ହୁଅନ୍ତି, ସେଠାରେ ସଂକୀର୍ତ୍ତନ ମାତ୍ର ଅର୍ଥବାଦ ହେବା ଯୁକ୍ତିଯୁକ୍ତ । ପରନ୍ତୁ ଏଠାରେ ବିସ୍ପଷ୍ଟ ପ୍ରତ୍ୟକ୍ଷ ରୂପରେ ଅନ୍ୟବିଧିର ଉପଲବ୍ଧ ନହେଲେ ସଂକୀର୍ତ୍ତନ ଦ୍ୱାରା ଏହି ଅଗ୍ନିର ବିଜ୍ଞାନ ବିଧାନ କଳ୍ପନା କରିବା ଉଚିତ୍ ।

(ଗ) ତାହାର ସଂକୀର୍ତ୍ତନ ଅନୁସାରେ କଳ୍ପନା କରାଯାଏ; ତେଣୁ ସାତତ୍ୟ ଦର୍ଶନ ହେଲେ ସେପରି ମଧ୍ୟ ବିଜ୍ଞାନ ବିଧିର କଳ୍ପନା କରାଯାଏ । ସେହି ସାମର୍ଥ୍ୟରୁ ତାହାର ସ୍ୱାତନ୍ତ୍ର ସିଦ୍ଧି ହୁଏ । ଉକ୍ତ ନ୍ୟାୟରେ ତଦ୍‌ଯତ୍ କିଞ୍ଚେମାନି' (ଯେଉଁ ପ୍ରାଣୀ ମନରେ ଯାହା ସଙ୍କଳ୍ପ କରନ୍ତି, ସେ ସେହି ଅଗ୍ନିର ଆକୃତି ହୁଅନ୍ତି) ଇତ୍ୟାଦି ବ୍ୟାଖ୍ୟାନ ହୁଏ । ଏହି ପ୍ରକାର 'ଏବଂ ବିଦେ' ଏହି ବାକ୍ୟ ମଧ୍ୟ ସେହି ଅଗ୍ନିର ପୁରୁଷ ବିଶେଷ ସହିତ ସମ୍ବନ୍ଧ କହି ଯୋଗ ସହିତ ତାହାର ସମ୍ବନ୍ଧକୁ ଅନ୍ୱେଷଣ କରେ ନାହିଁ; ତେଣୁ ସ୍ୱତନ୍ତ୍ର ପକ୍ଷ ଅଧିକ ଶ୍ରେଷ୍ଠ ଅଟେ ॥୪୦॥

## अनुबन्धादिभ्यः प्रज्ञान्तरपृथक्त्ववद्दृष्टश्च तदुक्तम् ॥ ३-३-५० ॥

## ଅନୁବନ୍ଧାଦିଭ୍ୟଃ ପ୍ରଜ୍ଞାନ୍ତର ପୃଥକ୍ତ୍ୱବଦ୍‌ଦୃଷ୍ଟଶ୍ଚ ତଦୁକ୍ତମ୍ ॥୩-୩-୫୦॥

ଅନୁବନ୍ଧାଦିଭ୍ୟ=ଅନୁବନ୍ଧାଦି ହେତୁଦ୍ୱାରା ମନଶ୍ଚିତ ପ୍ରଭୃତି ଅଗ୍ନି ସ୍ୱତନ୍ତ୍ର ଅଟେ; ପ୍ରଜ୍ଞାନ୍ତର ପୃଥକ୍ତ୍ୱବତ୍=ଯେପରି ଶାଣ୍ଡିଲ୍ୟାଦି ଅନ୍ୟ ବିଦ୍ୟାଗୁଡ଼ିକ ସ୍ୱତନ୍ତ୍ର ଅଟେ; କାରଣ-ଦୃଷ୍ଟଶ୍ଚ=ରାଜସୂୟ ପ୍ରକରଣରେ ପଠିତ ହେବା ପରେ ଅବେଷ୍ଟି ଯାଗର ବର୍ଣ୍ଣତ୍ରୟ ଦ୍ୱାରା ସମ୍ବନ୍ଧିତ ହେବାରୁ ପ୍ରକରଣଠାରୁ ପୃଥକ୍ତ୍ୱ ଦେଖାଯାଏ । ତଦୁକ୍ତମ୍=ଏହି କଥାକୁ ପୂର୍ବମୀମାଂସାରେ 'କ୍ରତ୍ୱର୍ଥାୟାମିତି' ଏହି ସୂତ୍ରରେ କୁହାଯାଇଅଛି ।

ମୂଳ-(କ) ଇତଶ୍ଚ ପ୍ରକରଣ ମୁପମୃଦ୍ୟ ସ୍ୱାତନ୍ତ୍ର୍ୟଂ ମନଶ୍ଚିଦାଦୀନାଂ ପ୍ରତିପତ୍ତବ୍ୟମ୍ । ଯତ୍କ୍ରିୟା ବୟବାମ୍ନ ଆଦିତ୍ୟବ୍ୟାପାରେଷ୍ୱନୁବଧ୍ନାତି- 'ତେ ମନସୈବା ଚୀୟନ୍ତ ମନସୈବା ଗ୍ରହା ଅଗୃହ୍ୟନ୍ତ ମନସାଽସ୍ତୁବନ୍ ମନସାଽଶଂ ସନ୍ୟଂତ୍କିଞ୍ଚ ଯଜ୍ଞେ କର୍ମ କ୍ରିୟତେ, ଯତ୍କିଂଚ ଯଜ୍ଞିୟଂ କର୍ମ ମନସୈବ ତେଷ୍ଠୁ ତନ୍ମନୋମେୟେଷ୍ଠୁ ମନଶ୍ଚିତସୁ ମନୋମୟମେବ କ୍ରିୟତେ' ଇତ୍ୟାଦିନା ।

(ଖ) ସଂପତଫଲୋ ହ୍ୟୟମନୁବନ୍ଧଃ । ନ ଚ ପ୍ରତ୍ୟକ୍ଷାଃ କ୍ରିୟାବୟବାଃ ସନ୍ତଃସମ୍ପଦା ଲିପ୍ସିତବ୍ୟାଃ । ନ ଋତ୍ରୋଦ୍‌ଗୀଥାଦ୍ୟୁପାସନବତ୍ କ୍ରିୟାଙ୍ଗ ସମ୍ବନ୍ଧାତ୍ ତଦନୁପ୍ରବେଶିତ୍ୱମା-ଶଙ୍କିତବ୍ୟମ୍, ଶ୍ରୁତି ବୈରୂପ୍ୟାତ୍ । ନ ହ୍ୟତ୍ର କ୍ରିୟାଙ୍ଗମ୍ କିଂଚିଦାଦାୟ ତସ୍ମିନ୍ନଦୋ ନାମାଧ୍ୟବସିତବ୍ୟମିତି ବଦତି ।

(ଗ) ଷଟ୍‌ତ୍ରିଂଶତ୍ ସହସ୍ରାଣି ତୁ ମନୋବୃତ୍ତିଭେଦାନାଦାୟ ତେଷ୍ୱଗ୍ନିତ୍ୱଂ ଗ୍ରହାଦୀଂଷ୍ଚ କଳ୍ପୟତି, ପୁରୁଷଯଜ୍ଞାଦିବାତ୍ । ସଂଖ୍ୟା ଚୈୟଂ ପୁରୁଷାୟୁଷସ୍ୟାହଃସ୍ମ ଦୃଷ୍ଟା ସତୀ ତତ୍ସମ୍ବନ୍ଧିନୀଷ୍ଠୁ ମନୋବୃତ୍ତିଷ୍ୱାରୋପ୍ୟତ ଇତି ଦ୍ରଷ୍ଟବ୍ୟମ୍ । ଏବମନୁବନ୍ଧାତ୍ ସ୍ୱାତନ୍ତ୍ର୍ୟଂ ମନଶ୍ଚିଦାଦୀନାମ୍ ॥

ଭାଷା-(କ) ଏହି ସ୍ଥାନରୁ ପ୍ରକରଣର ଉପମର୍ଦ୍ଦନ କରି ମନଶ୍ଚିତ୍ ପ୍ରଭୃତି ଅଗ୍ନିର ସ୍ୱାତନ୍ତ୍ର୍ୟ ଜଣାପଡ଼େ । କାରଣ-ଶ୍ରୁତି କ୍ରିୟାର ଅବୟବଗୁଡ଼ିକୁ ମନ ପ୍ରଭୃତି ବ୍ୟାପାରରେ 'ତେ ମନସୈବାଧୀୟନ୍ତ' (ଏହି ଅଗ୍ନି ମନରେ ଆଧାନ କରେ, ମନରେ ଇଟାକୁ ଚୟନ କରେ, ମନରେ ଯଜ୍ଞପାତ୍ର ଗ୍ରହଣ କରେ, ମନରେ ଉଦ୍‌ଗୀତା ସ୍ତୁତି କରେ, ମନରେ ରହି ମଧ ସ୍ତୁତି କରେ । ଯାହା କିଛି ଯଜ୍ଞରେ କର୍ମ କରାଯାଏ ଏବଂ ଯଜ୍ଞସମ୍ବନ୍ଧୀ କର୍ମ କରାଯାଏ, ସେହିସବୁ ମନରେ ସେହି ମନଶ୍ଚିତ୍ ମନୋମୟ ଅଗ୍ନିରେ ମନୋମୟ କରାଯାଏ) ଏହିପରି ସମ୍ବନ୍ଧିତ ହୁଏ ।

(ଖ) କାରଣ-ଏହି ଅନୁବନ୍ଧ ସମ୍ପଦରୂପ ଫଳବାନ୍ ଅଟେ । ପ୍ରତ୍ୟକ୍ଷ ସିଦ୍ଧ କ୍ରିୟାର ଅବୟବକୁ ସମ୍ପତ୍ ସହିତ ସମ୍ବନ୍ଧିତ କରିବା ଉଚିତ୍ ନୁହେଁ । ଏଠାରେ ଉଦ୍‌ଗୀଥାଦି ଉପାସନା କରି କ୍ରିୟା ଅଙ୍ଗ ସହିତ ସମ୍ବନ୍ଧିତ ହେଲେ କ୍ରିୟା ଅନୁପ୍ରବେଶତ୍ୱକୁ ଆଶଙ୍କା କରେ ନାହିଁ; କାରଣ-ଶ୍ରୁତିଗୁଡ଼ିକ ଅସମାନ ଅଟନ୍ତି । ଏଠାରେ କୌଣସି କ୍ରିୟା ଅଙ୍ଗକୁ ନେଇ ତନ୍ମଧ୍ୟରେ ଅଧ୍ୟବସାୟ କରିବା ଉଚିତ୍ ବୋଲି ଶ୍ରୁତି କହେ ନାହିଁ ।

(ଗ) କିନ୍ତୁ ଛତିଶ ସହସ୍ର ମନୋବୃତ୍ତି ଭେଦକୁ ନେଇ ସେଠାରେ ଅଗ୍ନିତ୍ୱ ଓ ଗ୍ରହାଦିର ପୁରୁଷ ଯଜ୍ଞ ପ୍ରଭୃତି ସଦୃଶ କଳ୍ପନା କରେ ଏବଂ ଛବିଶ ସହସ୍ର ସଂଖ୍ୟା ପୁରୁଷର ଆୟୁଷ ଦିନଗୁଡ଼ିକରେ ପ୍ରତ୍ୟକ୍ଷ ଭାବରେ ଅନୁଭୂତ ହୋଇ ତତ୍ସମ୍ବନ୍ଧୀ ମନୋବୃତ୍ତିରେ ଆରୋପିତ କରାଯାଏ ବୋଲି ଜାଣିବା ବିଧେୟ । ଏହିପରି ଅନୁବନ୍ଧନରେ ମନଶ୍ଚିତ୍ ଆଦି ସ୍ୱତନ୍ତ୍ର ଅଟେ ।



ମୂଳ-(କ) ଆଦିଶବ୍ଦାଦତିଦେଶାଦପି ଯଥାସମ୍ଭବଂ ଯୋଜୟିତବ୍ୟମ୍ । ତଥାହି - 'ତେଷାମେକୈକ ଏବ ତାବାନ୍ ଯାବ୍ନ ନସୌ ପୂର୍ବ' ଇତି କ୍ରିୟାମୟସାଗ୍ନେ ର୍ମାହାତ୍ମ୍ୟଂ ଜ୍ଞାନମୟାନାମେକୈକସ୍ୟାତି ଦିଶନ୍ କ୍ରିୟାୟାମନାଦରଂ ଦର୍ଶୟତି । ନ ଚ ସତ୍ୟେବ କ୍ରିୟା ସମ୍ବନ୍ଧେ ବିକଳ୍ପଃ ପୂର୍ବୋତ୍ତରେଷାମିତି ଶକ୍ୟଂ ବକ୍ତୁମ୍ । ନହି ଯେନ ବ୍ୟାପାରେଣା ହବନୀୟ ଧାରଣାଦିନା ପୂର୍ବଃ କ୍ରିୟାୟା ମୁପକରୋତି । ତେନୋତ୍ତରେ ଉପକର୍ତ୍ତୁଂ ଶକ୍ନୁବନ୍ତି ।

(ଖ) ଯତ୍ତୁ ପୂର୍ବପକ୍ଷେଽପ୍ୟତିଦେଶେ ଉପୋଦ୍‌ବଲକ ଇତ୍ୟୁକ୍ତଂ-ସତି ହି ସାମାନ୍ୟେଽତିଦେଶଃ ପ୍ରବର୍ତ୍ତତ ଇତି, ତଦସ୍ମତ ପକ୍ଷେଽପ୍ୟଗ୍ନିତ୍ୱ ସାମାନ୍ୟେନାତିଦେଶସମ୍ଭବାତ୍ ପ୍ରତ୍ୟୁକ୍ତମ୍ । ଅସ୍ତି ହି ସାଂପାଦିକା ନାମପ୍ୟଗ୍ନୀନାମଗ୍ନିତ୍ୱମିତି । ଶ୍ରୁତ୍ୟାଦୀନି ଚ କାରଣାନି ଦର୍ଶିତାନି । ଏବମନୁ ବନ୍ଧାଦିଭ୍ୟଃ କାରଣେଭ୍ୟଃ ସ୍ୱାତନ୍ତ୍ର୍ୟଂ ମନଶ୍ଚିଦାଦୀନାମ୍, ପ୍ରଜ୍ଞାନ୍ତର ପୃଥକ୍ ତ୍ୱବତ୍ ।

(ଗ) ଯଥା ପ୍ରଜ୍ଞାନ୍ତରାଣି ଶାଣ୍ଡିଲ୍ୟ ବିଦ୍ୟା ପ୍ରଭୃତୀନି ସ୍ୱେନ ସ୍ୱେନାନୁବନ୍ଧେନାନୁବଧ୍ୟମାନାନି ପୃଥଗେବ କର୍ମଭ୍ୟଃ ପ୍ରଜ୍ଞାନ୍ତରେଭ୍ୟଶ୍ଚ ସ୍ୱତନ୍ତ୍ରାଣି ଭବନ୍ତ୍ୟେବମିତି । ଦୃଷ୍ଟଶ୍ଚାବେଷ୍ଟେଃ ରାଜସୂୟ ପ୍ରକରଣ ପଠିତାୟାଃ ପ୍ରକରଣାଦୁତ୍‌କର୍ଷୋ ବର୍ଣ୍ଣକ୍ରୟାନୁବନ୍ଧାଦ୍ ରାଜଯଜ୍ଞତ୍ୱାଚ୍ଚ ରାଜସୂୟସ୍ୟ । ତଦୁକ୍ତଂ ପ୍ରଥମେ କାଣ୍ଡେ କ୍ରତ୍ୱର୍ଥାୟାମିତି ଚେନ୍ନ ବର୍ଣ୍ଣତ୍ରୟ ସଂଯୋଗାତ୍ । (ଜୈ.ସୂ. ୧୧, ୪-୧୦) ଇତି ॥

ଭାଷା-(କ) ସୂତ୍ରସ୍ଥ ଆଦିଶବ୍ଦରୁ ଅତିଦେଶ ପ୍ରଭୃତିର ଯଥାସମ୍ଭବ ଯୋଜନା କରିବା ବିଧେୟ । ଯେପରିକି 'ତେଷାମେକୈକ' (ସେହି ସାଂପାଦିକ ଅଗ୍ନିରେ ଏପରି ଗୋଟିଏ ଗୋଟିଏ ଅଛି ଯେ, ଯାହାର ପୂର୍ବରୁ ସେ ଅଗ୍ନି ରହିଛି) । ଏହିପ୍ରକାର ଶ୍ରୁତି କ୍ରିୟାମୟ ଅଗ୍ନିର ମାହାତ୍ମ୍ୟକୁ ଜ୍ଞାନମୟ ଅଗ୍ନିରେ ଗୋଟିଏ ଗୋଟିଏରେ ଅତିଦେଶ କରି କ୍ରିୟାରେ ଅନାଦର ଦେଖାଏ ଏବଂ କ୍ରିୟା ସହିତ ସମ୍ବନ୍ଧିତ ହେଲେ ଉତ୍ତର ଅଗ୍ନିର ପୂର୍ବ ଅଗ୍ନି ସହ ବିକଳ୍ପ ହୁଏ ବୋଲି କହିବା ଠିକ୍ ନୁହେଁ; କାରଣ-ଯେଉଁ ଆହବନୀୟ ହବିଷର ଧାରଣାଦି ବ୍ୟାପାରର ପୂର୍ବରୁ ଅଗ୍ନି କ୍ରିୟାରେ ଉପକାରକ ହୁଏ, ସେହି ବ୍ୟାପାରରେ ଉତ୍ତର ଅଗ୍ନିର ଉପକାରକ ହୁଏ ନାହିଁ କି ?

(ଖ) ସାଦୃଶ୍ୟ ହେଲେ ଅତିଦେଶ ପ୍ରବୃତ୍ତ ହୁଏ, ଏହି ପ୍ରକାର ପୂର୍ବପକ୍ଷରେ ମଧ ଅତି ଦେଶ କ୍ରିୟାନୁପ୍ରବେଶର ପୋଷାକ ହୁଏ ବୋଲି ଯାହା କୁହାଯାଇଛି, ତାହା ଆମ୍ଭ ପକ୍ଷରେ ଅଗ୍ନିତ୍ୱ ସାଦୃଶ୍ୟରୁ ଅତିଦେଶର ସମ୍ଭବ ହେବାରୁ ନିରାକୃତ ହୋଇଛି; କାରଣ-ସାଂପାଦିକ ଅଗ୍ନିରେ ଅଗ୍ନିତ୍ୱ ରହିଛି; ତେଣୁ ଶ୍ରୁତି ପ୍ରଭୃତି କାରଣ ଦେଖାଇ ଦିଆଯାଇଅଛି । ଏହି ପ୍ରକାର ଅନୁବନ୍ଧାଦି କାରଣରୁ ମନଶ୍ଚିତ ଆଦି ଅଗ୍ନିଗୁଡ଼ିକ ସ୍ୱତନ୍ତ୍ର ଅଟନ୍ତି; ଯେପରିକି ଅନ୍ୟପ୍ରକାର ସ୍ୱତନ୍ତ୍ରତା ଅଛି ।

(ଗ) ଯେପରି ନିଜର ଅନୁବନ୍ଧନରୁ ସମ୍ବନ୍ଧିତ ହୋଇ 'ଶାଣ୍ଡିଲ୍ୟ ବିଦ୍ୟା ପ୍ରଭୃତି ଅନ୍ୟ ପ୍ରଜ୍ଞାଗୁଡ଼ିକ କର୍ମ ଓ ଅନ୍ୟ ପ୍ରଜ୍ଞା ଦ୍ୱାରା ସ୍ୱତନ୍ତ୍ର ହୁଏ, ସେହିପରି ଏଠାରେ ମଧ୍ୟ ଜାଣିବା ଉଚିତ୍ । ରାଜସୂୟ ପ୍ରକରଣରେ ପଠିତ ଆବେଷ୍ଟି ନାମକ ଇଷ୍ଟିର ପ୍ରକରଣରୁ ଉତ୍କର୍ଷ ଦୃଷ୍ଟ ହୁଏ; କାରଣ-ତିନୋଟି ବର୍ଣ୍ଣ ସହିତ ସମ୍ବନ୍ଧିତ ହେଲେ ରାଜସୂୟଂ କ୍ଷତ୍ରିୟ ଯଜ୍ଞ ହୁଏ । ଏହା କଥାକୁ 'କ୍ରତ୍ୱର୍ଥାୟାମିତି' (ଯଦି କହ ଯେ ଲିଙ୍ଗଦର୍ଶନ କ୍ରତ୍ୱର୍ଥର ଅବେଷ୍ଟି ହୁଏ, ତେବେ ତାହା ଅସମୀଚୀନ । କାରଣ-ଅବେଷ୍ଟିତ ବ୍ରାହ୍ମଣାଦି ବର୍ଣ୍ଣତ୍ରୟର ସମ୍ବନ୍ଧ ଅଟେ) । ଏହି ପ୍ରକାର ପୂର୍ବ ମୀମାଂସାରେ କୁହାଯାଇଅଛି ॥୫୧॥

**न सामान्यदप्युपलब्धे मृत्युवन्न हि लोकापत्तिः ॥ ३-३-५१ ॥**

**ସ ସାମାନ୍ୟାଦପ୍ୟୁପଲବ୍ଧେ ର୍ମୃତ୍ୟୁବନ୍ନ ହି ଲୋକାପତ୍ତିଃ**

**॥୩-୩-୫୧॥**

ସାମାନ୍ୟାଦପି=ମନଶ୍ଚିତ ପ୍ରଭୃତି ଅଗ୍ନିର ମାନସଗ୍ରହ ସହିତ, ମାନସତ୍ୱ ସାଦୃଶ୍ୟ ହେଲେ ମଧ୍ୟ ବି, ନ=ଏମାନେ କ୍ରିୟା ଅଙ୍ଗ ନୁହନ୍ତି । ଉପଲବ୍ଧେଃ=କାରଣ-ପୂର୍ବୋକ୍ତ ଶ୍ରୁତି ଆଦି କାରଣ ଦ୍ୱାରା ସ୍ୱତନ୍ତ୍ର ରୂପେ ଉପଲବ୍ଧ ହୁଏ । ମୃତ୍ୟୁବତ୍=ଯେପରି 'ସ ବା ଏଷ' ଅଗ୍ନିର୍ବୈ ମୃତ୍ୟୁଃ' ଇତ୍ୟାଦି ଦ୍ୱାରା ଆଦିତ୍ୟ ପୁରୁଷ ଏବଂ ଅଗ୍ନି-ଏହି ଦୁଇଟିରେ ମୃତ୍ୟୁ ଶବ୍ଦ ସମାନ ହେବାରୁ ସେମାନଙ୍କର ଅତ୍ୟନ୍ତ ସାମ୍ୟ ନାହିଁ । ଅଥବା, ନହି ଲୋକାପତ୍ତିଃ='ଅସୌ ବାବ ଲୋକଃ' ଇତ୍ୟାଦିରେ ସମିଧ ପ୍ରଭୃତିର ସାଦୃଶ୍ୟ ହେବା ଦ୍ୱାରା ଦ୍ୟୁଲୋକରେ ଅଗ୍ନିର ପ୍ରାପ୍ତି ହୁଏ ନାହିଁ ।

ମୂଳ-(କ) ଯଦୁକ୍ତଂ ମାନସବିତି, ତତ୍ ପ୍ରଯୁଜ୍ୟତେ । ନ ମାନସଗ୍ରହ ସାମାନ୍ୟାଦପି ମନଶ୍ଚିଦାଦୀନାଂ କ୍ରିୟା ଶେଷତ୍ୱଂ କଳ୍ପ୍ୟମ୍; ପୂର୍ବୋକ୍ତେଭ୍ୟଃ ଶ୍ରୁତ୍ୟାଦି ହେତୁଭ୍ୟଃ କେବଳ ପୁରୁଷାର୍ଥତ୍ୱୋପଲବ୍ଧେଃ । ନହି କିଂଚିତ କସ୍ୟଚିତ୍ କେନଚିତ୍ ସାମାନ୍ୟଂ ନ ସମ୍ଭବତି । ନ ଚ ତାବତା ଯଥା ସ୍ୱଂ ବୈଷମ୍ୟଂ ନିବର୍ତ୍ତତେ । ମୃତ୍ୟୁବତ୍ ।

(ଖ) ଯଥା ସ ବା ଏଷ ଏବ ମୃତ୍ୟୁର୍ଯ ଏଷ ଏତସ୍ମିନ୍ ମଣ୍ଡଳେ ପୁରୁଷଃ, ଇତି ଅଗ୍ନିର୍ବୈ ମୃତ୍ୟୁଃ' (ବୃହ ୩-୨-୧୦) ଇତି ଚାଗ୍ନ୍ୟାଦିତ୍ୟ ପୁରୁଷୟୋଃ ସମାନେଽପି ମୃତ୍ୟୁ ଶବ୍ଦ ପ୍ରୟୋଗୋ ନାତ୍ୟନ୍ତ ସାମ୍ୟାପତ୍ତିଃ । ଯଥା ଚ 'ଅସୌ ବାବ ଲୋକୋ ଗୌତମାଗ୍ନି ସ୍ତସ୍ୟାଦିତ୍ୟ ଏବ ସମିତ୍' (ଛା ୫-୪-୧) ଇତ୍ୟତ୍ର ନ ସମିଦାଦି ସାମାନ୍ୟା ଲ୍ଲୋକସ୍ୟାଗ୍ନି ଭାବାପତ୍ତିସ୍ତଦ୍ୱତ୍ ।

ଭାଷା-(କ) ମାନସପରି ବୋଲି ଯାହା କୁହାଯାଇଅଛି, ତାହାର ନିରାକରଣ କରାଯାଇଅଛି । ମାନସ ଗ୍ରହର ସହିତ ସାଦୃଶ୍ୟ ହେଲେ ମଧ୍ୟ ମନଶ୍ଚିତ୍ ଆଦି ଅଗ୍ନିରେ କ୍ରିୟାଙ୍ଗତ୍ୱର କଳ୍ପନା କରିବା ଉଚିତ ନୁହେଁ; କାରଣ-ପୂର୍ବୋକ୍ତ ଶ୍ରୁତି ପ୍ରଭୃତି ହେତୁଦ୍ୱାରା ସେଠାରେ କେବଳ ପୁରୁଷାର୍ଥତ୍ୱ ଉପଲବ୍ଧ ହୁଏ । କାହାର କାହା ସହିତ କୌଣସି ସାମାନ୍ୟ ନ ହେଉ-କହିବା ଅସମ୍ଭବ, ଏତେ ପରିମାଣରେ ପ୍ରତ୍ୟେକ ବସ୍ତୁରେ ନିଜର ସ୍ୱାଭାବିକ ବିଷମତା ନିବୃତ୍ତ ହେବ ନାହିଁ । ମୃତ୍ୟୁ ସଦୃଶ ।

(ଖ) ଯେପରି 'ସ ବା ଏଷଃ' (ସେ ଏହି ମୃତ୍ୟୁ ଅଟେ, ଯାହା ଏହି ମଣ୍ଡଳରେ ପୁରୁଷ ଅଟେ) ଏବଂ ଅଗ୍ନିର୍ବୈ ମୃତ୍ୟୁଃ (ଅଗ୍ନି ମୃତ୍ୟୁ ଅଟେ) ଏଠାରେ ଅଗ୍ନି ଓ ଆଦିତ୍ୟ ପୁରୁଷଠାରେ ମୃତ୍ୟୁ ଶବ୍ଦ ପ୍ରୟୋଗ ହେଲା ପରେ ମଧ୍ୟ ଦୁଇଟିରେ ଅତ୍ୟନ୍ତ ସାମ୍ୟ ପ୍ରାପ୍ତି ହୁଏ ନାହିଁ ଏବଂ ଯେପରି 'ଅସୌ ବାବ ଲୋକୋ' ହେ ଗୌତମ ! ଏହି ପ୍ରସିଦ୍ଧ ଦ୍ୟୁଲୋକ ଅଗ୍ନି ଅଟେ, ଯାହାର ଆଦିତ୍ୟ ସମିଧା ଅଟେ), ଏଠାରେ ସମିଧା ପ୍ରଭୃତିର ସାଦୃଶ୍ୟରେ ଦ୍ୟୁଲୋକରେ ଅଗ୍ନିଭାବର ପ୍ରାପ୍ତି ହୁଏ ନାହିଁ, ସେହିପରି ପ୍ରକରଣରେ ଜାଣିବା ଉଚିତ୍ ॥୫୧॥

## परेण च शब्दस्य ताद्विध्यं भूयस्त्वत्त्वनुबन्धः ॥ ३-३-४२ ॥

## ପରେଣ ଚ ଶବ୍ଦସ୍ୟ ତାଦ୍‌ବିଧ୍ୟଂ ଭୂୟସ୍ତ୍ୱାତ୍ତ୍ୱନୁବନ୍ଧଃ ॥୩-୩-୫୨॥

ପରେଣ='ଅୟଂ ବାବ ଲୋକ' ଏହି ଉତ୍ତର ବ୍ରାହ୍ମଣର ସହ ସମାନ ହେବାରୁ ଶବ୍ଦସ୍ୟ=ମଧ୍ୟ ବ୍ରାହ୍ମଣର, ତାଦ୍‌ବିଧମ୍=ବିଦ୍ୟା ବିଧିତ୍ୱ ପ୍ରୟୋଜନ ଲକ୍ଷିତ ହୁଏ; କାରଣ ଭୂୟସ୍ତ୍ୱତ୍ତ୍ୱନୁବନ୍ଧଃ=ମାନସ ଅଗ୍ନିରେ ବହୁତ ଦ୍ୱାରା ଅବୟବ ସମ୍ପାଦ୍ୟ ହେଲେ କ୍ରିୟା ଅଗ୍ନିର ସହିତ ତାହାକୁ ପାଠ କରାଯାଏ ।

ମୂଳ-(କ) ପରସ୍ତାଦପି 'ଅୟଂ ବାବ ଲୋକ ଏଷୋଽଗ୍ନିଶ୍ଚିତ' । ଏତସ୍ମିନ୍ନନନ୍ତରେ ବ୍ରାହ୍ମଣେ, ତାଦ୍‌ବିଧ୍ୟଂ କେବଳବିଦ୍ୟାବିଧିତ୍ୱଂ ଶବ୍ଦସ୍ୟ ପ୍ରୟୋଜନଂ ଲକ୍ଷ୍ୟତେ, ନ ଶୁଦ୍ଧକର୍ମାଙ୍ଗବିଧିତ୍ୱମ୍ । ତତ୍ରହି- 'ବିଦ୍ୟୟା ତଦାରୋହନ୍ତି ଯତ୍ର କାମାଃ ପରାଗତାଃ । ନ ତତ୍ର ଦକ୍ଷିଣା ଯାନ୍ତି ନାବିଦ୍ୱାଂସସ୍ତପସ୍ୱିନଃ' ଇତ୍ୟନେନ ଶ୍ଳୋକେନ କେବଳଂ କର୍ମ ନିନ୍ଦନ୍‌ବିଦ୍ୟାଂ ଚ ପ୍ରଶଂସନ୍ନିଦଂ ଗମୟତି ।

(ଖ) ତଥା ପୁରସ୍ତାଦପି 'ଯଦେତନ୍ମଣ୍ଡଳଂ ତପତି' ଇତ୍ୟସ୍ମିନ୍ ବ୍ରାହ୍ମଣେ ବିଦ୍ୟାପ୍ରାଧାନତ୍ୱମେବ ଲକ୍ଷ୍ୟତେ', 'ସୋଽମୃତୋ ଭବତି, ମୃତ୍ୟୁର୍ହ୍ୟସ୍ୟାତ୍ମା ଭବତି' ଇତି ବିଦ୍ୟାଫଳେନୈବୋପସଂହାରାନ୍ନ କର୍ମପ୍ରଧାନତା । ତସ୍ମାତ୍ ସାମାନ୍ୟାଦିହାପି ତଥାତ୍ୱମ୍ । ଭୂୟାଁସସ୍ତ୍ୱଗ୍ନ୍ୟବୟବାଃ ସଂପାଦୟିତବ୍ୟା ବିଦ୍ୟାୟାମିତ୍ୟେ ତସ୍ମାତ୍ କାରଣାଦଗ୍ନିନାଽନୁବଧ୍ୟତେ ବିଦ୍ୟା, ନ କର୍ମାଙ୍ଗତ୍ୱାତ୍ । ତସ୍ମାନ୍ମନଶ୍ଚିଦାଦୀନାଂ କେବଳ ବିଦ୍ୟାତ୍ମକତ୍ୱସିଦ୍ଧିଃ ॥

ଭାଷା-(କ) ପ୍ରଥମେ 'ଅୟଂ ବାବ ଲୋକ' (ଏହି ଲୋକ ଅଗ୍ନିଷ୍ଠିତ୍ ଅଟେ) ଏହାପରେ ବ୍ରାହ୍ମଣରେ ଶ୍ରୁତିର ପ୍ରୟୋଜନ ତାଦ୍‌ବିଧ କେବଳ ବିଦ୍ୟାବିଧିତ୍ୱ ଲକ୍ଷିତ ହୁଏ । ଶୁଦ୍ଧ କର୍ମାଙ୍ଗବିଧିତ୍ୱ ନୁହେଁ; କାରଣ-ସେଠାରେ 'ବିଦ୍ୟୟା ତଦାରୋହନ୍ତି' (ବିଦ୍ୟା ମାଧ୍ୟମରେ ଏହି ସ୍ଥାନକୁ ପ୍ରାପ୍ତ ହୁଏ, ଯେଉଁସ୍ଥାନରେ ମନୋରଥ ପ୍ରାପ୍ତ ହୁଅନ୍ତି, ସେଠାରେ କର୍ମ କୁଶଳ ନୁହେଁ, କି ଅବିଦ୍ୱାନ୍ ତପସ୍ୱୀ ହୋଇଯାଏ ନାହିଁ) ଏହି ଶ୍ଳୋକ ଦ୍ୱାରା କେବଳ କର୍ମର ନିନ୍ଦା କରି ବିଦ୍ୟାକୁ ପ୍ରଶଂସା କରି ଶ୍ରୁତି ବିଦ୍ୟାର ପ୍ରାଧାନ୍ୟକୁ ବୋଧିତ କରାଏ ।

(ଖ) ସେହିପରି ପୂର୍ବରେ 'ଯଦେତନ୍ମଣ୍ଡଳଂ ତପତି' (ଏହି ମଣ୍ଡଳ ତପ୍ତ ହୁଏ) ଏହି ବ୍ରାହ୍ମଣରେ ବିଦ୍ୟାର ପ୍ରଧାନତ୍ୱ ଲକ୍ଷିତ ହୋଇଥାଏ । 'ସୋଽମୃତୋ ଭବତି' (ସେ ଅମୃତ ହୁଏ, କାରଣ-ମୃତ୍ୟୁ ତାହାର ଆତ୍ମା ଅଟେ) ଏହି ପ୍ରକାର ବିଦ୍ୟାଫଳ ଦ୍ୱାରା ଉପସଂହାର ହୋଇ କର୍ମର ପ୍ରଧାନତା ନଥାଏ । ପୂର୍ବ ଓ ଉତ୍ତର ବ୍ରାହ୍ମଣତ୍ୱପରି ଏହି ମଧ୍ୟସ୍ଥ ବ୍ରାହ୍ମଣରେ ବିଦ୍ୟାର ପ୍ରଧାନତା ଥାଏ । ପରନ୍ତୁ ବିଦ୍ୟାରେ ଅଗ୍ନି ବହୁତ ହେଲେ ଅବୟବ ସଂପାଦନା ପାଇଁ ଯୋଗ୍ୟତା ଆସେ । ଏହି କାରଣରୁ ଅଗ୍ନିରେ ସମ୍ବନ୍ଧିତ ଥାଏ, କର୍ମର କିନ୍ତୁ ଅଙ୍ଗରୂପ ନୁହେଁ । ତେଣୁ ମନଶ୍ଚିତ୍ ଆଦି ଅଗ୍ନିଗୁଡ଼ିକ କେବଳ ବିଦ୍ୟାତ୍ମକ ଅଟନ୍ତି ବୋଲି ପ୍ରତିପାଦିତ ହୋଇଅଛି ।

## ३०-ऐकात्म्यधिकरणम् ॥ सू० ५३-५४ ॥

## ୩୦-ଐକାତ୍ମ୍ୟଧିକରଣମ୍ ସୂ ।୫୩-୫୪।

## एक आत्मनः शरीरे भावात् ॥ ३-३-५३ ॥

## ଏକ ଆତ୍ମନଃ ଶରୀରେ ଭାବାତ୍ ।।୩-୩-୫୩।।

ଏକେ=ଚର୍ବାକଲୋକ ଆତ୍ମନଃ=ଦେହାତିରିକ୍ତ ଆତ୍ମାର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ, ଶରୀରେ=କାରଣ-ଶରୀର ଥିଲେ ମଧ୍ୟବି ଭାବାତ୍=ଆତ୍ମା-ଧର୍ମର ଅସ୍ତିତ୍ୱ ଅଛି ।

ମୂଳ-(କ) ଇହ ଦେହବ୍ୟତିରିକ୍ତସ୍ୟାତ୍ମନଃ ସଦ୍‌ଭାବଃ ସମର୍ଥ୍ୟତେ ବନ୍ଧମୋକ୍ଷାଧି-କାରସିଦ୍ଧୟେ । ନ ହ୍ୟସତି ଦେହବ୍ୟତିରିକ୍ତେ ଆତ୍ମନି ପରଲୋକଫଳାଷ୍ଚୋଦନା ଉପପଦ୍ୟେରନ୍ କସ୍ୟ ବା ବାହ୍ୟାତ୍ମତ୍ୱମୁପଦିଶ୍ୟେତି ?

(ଖ) ନନୁ ଶାସ୍ତ୍ରପ୍ରମୁଖ ଏବ ପ୍ରଥମେ ପାଦେ ଶାସ୍ତ୍ରଫଳୋପଭୋଗଯୋଗ୍ୟସ୍ୟ ଦେହବ୍ୟତିରିକ୍ତସ୍ୟାତ୍ମନୋଽସ୍ତିତ୍ୱମୁକ୍ତମ୍ । ସତ୍ୟମୁକ୍ତଂ ଭାଷ୍ୟକୃତା, ନ ତୁ ତତ୍ରାତ୍ମାସ୍ତିତ୍ୱେ ସୂତ୍ରମସ୍ତି, ଇହ ତୁ ସ୍ୱୟମେବା ସୂତ୍ରକୃତା ତଦସ୍ତିତ୍ୱମାକ୍ଷେପୁରଃସରଂ ପ୍ରତିଷ୍ଠାପିତମ୍ । ଇତ ଏବ ଚାଽଽକୃଷ୍ୟାଽଽଚାର୍ଯ୍ୟେଣ ଶବରସ୍ୱାମିନା ପ୍ରମାଣଲକ୍ଷଣେ ବର୍ଣ୍ଣିତମ୍ ।



(ଗ) ଅତଏବ ଚ ଭଗବତୋପବର୍ଷେଣ ପ୍ରଥମେ ତନ୍ତ୍ରେ ଆତ୍ମାସ୍ତିତ୍ୱାଭିଧାନପ୍ରସକ୍ତୌ ଶାରୀରିକେ ବକ୍ଷ୍ୟାମଃ ଇତ୍ୟୁଦ୍ଧାରଃ କୃତଃ । ଇହ ଚୈଦଂ ଚୈଦନା ଲକ୍ଷଣେଷୂପାସନେଷ୍ଣୁ ବିଚାର୍ଯ୍ୟମାଣେଷ୍ୱାତ୍ମାସ୍ତିତ୍ୱଂ ବିଚାର୍ଯ୍ୟତେ କୃତ୍ସ୍ନଶାସ୍ତ୍ରଶେଷତ୍ୱ ପ୍ରଦର୍ଶନାୟ ॥

(ଘ) ଅପି ଚ ପୂର୍ବସ୍ମିନ୍ନଧିକରଣେ ପ୍ରକରଣୋତ୍କର୍ଷାଭ୍ୟୁପଗମନେ ମନଶ୍ଚିଦାଦୀନାଂ ପୁରୁଷାର୍ଥତ୍ୱଂ ବର୍ଣ୍ଣିତମ୍, କୋଽସୌପୁରୁଷଃ ? ଯଦର୍ଥା ଏତେ ମନଶ୍ଚିଦାଦୟ ଇତ୍ୟସ୍ୟାଂ ପ୍ରସକ୍ତାବିଦଂ ଦେହବିତିରିକ୍ତସ୍ୟାତ୍ମନୋଽସ୍ତିତ୍ୱମୁଚ୍ୟତେ । ତଦସ୍ତିତ୍ୱାକ୍ଷେପାର୍ଥଂ ଚେଦମାଦିମଂ ସୂତ୍ରମ୍ । ଆକ୍ଷେପପୂର୍ବିକାହି ପରିହାରୋକ୍ତିର୍ବିବକ୍ଷିତେଽର୍ଥେ ସ୍ଥୁଣାନିଖନନନ୍ୟାୟେନ ଦୃଢ଼ାଂ ବୁଦ୍ଧିମୁତ୍ପାଦୟେଦିତି ।

ଭାଷା-(କ) ଏହି ଅଧିକରଣରେ ବନ୍ଧ ଓ ମୋକ୍ଷର ଅଧିକାର ସିଦ୍ଧି କରିବା ପାଇଁ ଦେହବ୍ୟତିରିକ୍ତ ଆତ୍ମାର ଅସ୍ତିତ୍ୱ ସମର୍ଥନ କରାଯାଇଅଛି । ଦେହ ଅତିରିକ୍ତ ଆତ୍ମା ନ ହେଲାପରେ ପରଲୋକ ଫଳବାନ୍ ବିଧିବାକ୍ୟର ଉପପତ୍ତି ହେବ ନାହିଁ ଏବଂ ଶାସ୍ତ୍ର କାହାକୁ ବ୍ରହ୍ମାତ୍ମତ୍ୱକୁ ଉପଦେଶ କରିବ ?

(ଖ) ପରନ୍ତୁ ଶାସ୍ତ୍ରର ପ୍ରାରମ୍ଭରେ ପୂର୍ବମୀମାଂସାର ପ୍ରଥମ ପାଦରେ ଶାସ୍ତ୍ରୋକ୍ତ ଫଳର ଉପଭୋଗଯୋଗ୍ୟ, ଦେହବ୍ୟତିରିକ୍ତ ଆତ୍ମାର ଅସ୍ତିତ୍ୱ କୁହାଯାଇଅଛି । ସ୍ପଷ୍ଟଭାବରେ ଭଷ୍ୟକାର ଶବରସ୍ୱାମୀ ଏହା କହିଛନ୍ତି । ପରନ୍ତୁ ସେଠାରେ ଦେହବ୍ୟତିରିକ୍ତ ଆତ୍ମାର ସଦ୍‌ଭାବ ବିଷୟକ ସୂତ୍ର ନାହିଁ । ଏଠାରେ କିନ୍ତୁ ସ୍ୱୟଂ ସୂତ୍ରକାର ଆକ୍ଷେପ ପୂର୍ବକ ଦେହବ୍ୟତିରିକ୍ତ ଆତ୍ମାର ଅସ୍ତିତ୍ୱ ପ୍ରତିଷ୍ଠାପିତ କରାଯାଇଛି । ଆଚାର୍ଯ୍ୟ ଶବରସ୍ୱାମୀ ଏଠାରୁ ଆକର୍ଷଣ କରି ପ୍ରମାଣ ଲକ୍ଷଣ ପ୍ରଥମ ଅଧ୍ୟାୟରେ ଦେହଠାରୁ ପୃଥକ୍ ଆତ୍ମାର ବର୍ଣ୍ଣନା କରାଯାଇଛି ।

(ଗ) ଅତଏବ ଭଗବାନ୍ ଉପବର୍ଷ ପୂର୍ବମୀମାଂସାରେ ଆତ୍ମାର ଅସ୍ତିତ୍ୱ କଥନ ପ୍ରସଙ୍ଗ ହେଲେ ଆମ୍ଭେ ଶାରୀରିକ ପକ୍ଷରୁ କହୁଁ । ଏହା କହି ଉପରତ ହୋଇ ଅର୍ଥାତ୍ ପ୍ରକରଣ ସମାପ୍ତ କରାଯାଇଛି । ଏଠାରେ ଚୈଦନାଲକ୍ଷଣ ବିଧିଜ୍ଞାପିତ ବିଚାର୍ଯ୍ୟମାଣ ଉପାସନାରେ ସମସ୍ତ ଶାସ୍ତ୍ରର ଆତ୍ମାସ୍ତିତ୍ୱ ଅଙ୍ଗ ଅଛି, ଏହା ଦେଖାଇବା ପାଇଁ ଆତ୍ମା ଅସ୍ତିତ୍ୱ ବିଚାର କରାଯାଇଛି ।

(ଘ) ପୂର୍ବ ଅଧିକରଣରେ କ୍ରତୁର ପ୍ରକରଣଦ୍ୱାରା ଉତ୍କର୍ଷ ସ୍ୱୀକାର କରି ମନଶ୍ଚିତ୍ ଆଦି ଅଗ୍ନିରେ ପୁରୁଷାର୍ଥ ବର୍ଣ୍ଣନା କରାଯାଇଛି । ସେହି ପୁରୁଷ କିଏ, ଯାହାଙ୍କ ପାଇଁ ସେମାନେ ମନଶ୍ଚିତ୍ ଆଦି ଅଗ୍ନିଗୁଡ଼ିକ ଅଛି ? ଏହି ପ୍ରଶ୍ନ ଉପସ୍ଥିତ ହେବାପରେ ଦେହବ୍ୟତିରିକ୍ତ ଏହି ଆତ୍ମାର ଅସ୍ତିତ୍ୱ କୁହାଯାଇଛି । ତାହାର ଅସ୍ତିତ୍ୱକୁ ଆକ୍ଷେପ କରିବା ପାଇଁ ଏହି ପ୍ରଥମସୂତ୍ର ଅଛି । ଆକ୍ଷେପପୂର୍ବକ କୁହାଯାଇଥିବା ପରିହାର ସ୍ଥୁଣାନିଖନନନ୍ୟାୟ ଦ୍ୱାରା ବିବକ୍ଷିତ ଅର୍ଥରେ ଦୃଢବୁଦ୍ଧି ଉତ୍ପନ୍ନ ହେବ ॥

ମୂଳ-(କ) ଅତ୍ରୈକେ ଦେହମାତ୍ରାତ୍ମଦର୍ଶିନୋ ଲୋକାୟତିକା ଦେହବ୍ୟତିରିକ୍ତସ୍ୟାତ୍ମନୋଽଭାବଂ ମନ୍ୟମାନାଃ ସମସ୍ତବ୍ୟସ୍ତେଷୁ ବାହ୍ୟେଷୁ ପୃଥିବ୍ୟାଦିଷ୍ୱଦୃଷ୍ଟମପି ଚୈତନ୍ୟଂ ଶରୀରାକାର ପରିଣତେଷୁ ଭୂତେଷୁ ସ୍ୟାଦିତି ସମ୍ଭାବୟନ୍ତସ୍ତେଭ୍ୟ ଶ୍ଚୈତନ୍ୟଂ ମଦଶକ୍ତିବଦ୍-ବିଜ୍ଞାନଂ ଚୈତନ୍ୟ ବିଶିଷ୍ଟଃ କାୟାଃ ପୁରୁଷ ଇତି ଆହୁଃ ।

(ଖ) ସ୍ୱର୍ଗଗମନାୟାପବର୍ଗଗମନାୟା ବା ସମର୍ଥୋ ଦେହବ୍ୟତିରିକ୍ତ ଆତ୍ମାଽସ୍ତି ଯତ୍କୃତଂ ଚୈତନ୍ୟଂ ଦେହେ ସ୍ୟାତ୍ । ଦେହ ଏବ ତୁ ଚୈତନ୍ୟଶ୍ଚାତ୍ମା ଚେତି ପ୍ରତିଜାନତେ । ହେତୁଂ ଚଚକ୍ଷତେ-ଶରୀରେ ଭାବାଦିତି । ଯଦ୍ଧି ଯସ୍ମିନ୍ ସତି ଭବତ୍ୟସତି ନ ଭବତି, ତତ୍ତଦ୍‌ଧର୍ମତ୍ୱେନାଧ୍ୟବସୀୟତେ ଯଥାଽଗ୍ନିଧର୍ମାବୋଷ୍ଣପ୍ରକାଶୌ ।

(ଗ) ପ୍ରାଣଷ୍ଟୋଚୈତନ୍ୟସ୍ମୃତ୍ୟାଦୟଶ୍ଚାତ୍ମଧର୍ମତ୍ୱେନାଭିମତା ଆତ୍ମାବାଦିନାଂ ତେଽ-ପ୍ୟନ୍ତରେବ ଦେହ ଉପଲଭ୍ୟମାନା ବହିଶ୍ଚାନୁପଲଭ୍ୟମାନା ଅସିଦ୍ଧେ ଦେହବ୍ୟତିରିକ୍ତେ ଧର୍ମିଣି ଦେହଧର୍ମୀ ଏବ ଭବିତୁମର୍ହନ୍ତି, ତସ୍ମାଦର୍ବ୍ୟତିରେକୋ ଦେହାଦାତ୍ମନ ଇତି ॥

ଭାଷା-(କ) ଆତ୍ମବିଚାର ପ୍ରସଙ୍ଗରେ ଦେହମାତ୍ରକୁ ଆତ୍ମାରୂପେ ସ୍ୱୀକାର କରୁଥିବା କେତେକ ଲୌକିୟତିକ ଦେହବ୍ୟତିରିକ୍ତ ଆତ୍ମାର ଅଭାବ ସ୍ୱୀକାର କରି ସମସ୍ତ ଓ ବ୍ୟସ୍ତ ବାହ୍ୟ ପୃଥିବୀ ପ୍ରଭୃତିରେ ଅଦୃଷ୍ଟ ଚୈତନ୍ୟ ଶରୀର ଆକାରରେ ପରିଣତ ଭୂତରେ ହେବା ଉଚିତ୍ । ଏହି ପ୍ରକାର ସେହି ଭୂତଠାରୁ ଚୈତନ୍ୟକୁ ସମ୍ଭାବନା କରି ମଦଶକ୍ତି ପରି ବିଜ୍ଞାନ ଅଟେ ଓ ଚୈତନ୍ୟ ବିଶିଷ୍ଟକାୟ ପୁରୁଷ ଅଟେ ବୋଲି କହନ୍ତି ।

(ଖ) ସ୍ୱର୍ଗ ଜାଣିବା ପାଇଁ ଅଥବା ମୋକ୍ଷପ୍ରାପ୍ତି ପାଇଁ ଦେହବ୍ୟତିରିକ୍ତ ସମର୍ଥ ଆତ୍ମା ନୁହେଁ, ଯାହାର ପ୍ରଭାବରୁ ଦେହ ଚୈତନ୍ୟହେଉ, ଦେହହିଁ ଚେତନ ଓ ଆତ୍ମା ବୋଲି ପ୍ରତିଜ୍ଞା କରନ୍ତି । ଏହି ପ୍ରତିଜ୍ଞାତ ଅର୍ଥରେ ହୋତୁ କହନ୍ତି- 'ଶରୀରେ ଭାବାତ୍ ଶରୀର ହେଲାପରେ ଆତ୍ମା ଧର୍ମର ଅସ୍ତିତ୍ୱ ଅଛି । କାରଣ-ଯାହାକୁ ହେଲାପରେ ହୁଏ ଏବଂ ନ ହେଲାପରେ ହୁଏ ନାହିଁ । ସେ ତାହାର ଧର୍ମରୂପରେ ନିଶ୍ଚିତ କରାଯାଏ । ଯେପରି ଅଗ୍ନିର ଧର୍ମ ଔଷ୍ଣ ଓ ପ୍ରକାଶ ନିଶ୍ଚିତ କରାଯାଏ ।

(ଗ) ପ୍ରାଣ, ଚେଷ୍ଟା, ଚୈତନ୍ୟ ଓ ସ୍ମୃତି ପ୍ରଭୃତି ଯାହା ଆତ୍ମାବାଦୀର ଆତ୍ମଧର୍ମ ରୂପରେ ଅଭିମତ ରହିଛି, ସେମାନେ ଦେହ ମଧ୍ୟରେ ଉପଲବ୍ଧ ହୋଇ, ବାହାର ଉପଲବ୍ଧ ନ ହୋଇ ଦେହବ୍ୟତିରିକ୍ତ ଧର୍ମର ଅସିଦ୍ଧ ହୋଇ ଦେହର ଧର୍ମ ହେବା ଉଚିତ୍ । ତେଣୁ ଦେହରୂପ ଆତ୍ମା ବ୍ୟତିରିକ୍ତ ଆତ୍ମା ନୁହେଁ ॥୫୩॥ ଇଦଂ ପ୍ରାପ୍ତେବ୍ରୂମଃ ଏହାପରେ ଉତ୍ତରରେ କୁହାଯାଇଛି ।



## व्यतिरेकस्तद्भावाभावित्वान्न तूपलब्धिवत् ॥ ३-३-५४ ॥

## ବ୍ୟତିରେକସ୍ତଦ୍‌ଭାବାଭାବିତ୍ୱାନ୍ନ ତୂପଲବ୍‌ଧିବତ୍ ॥୩-୩-୫୪॥

ବ୍ୟତିରେକଃ=ଆତ୍ମା ଦେହବ୍ୟତିରିକ୍ତ ଅଟନ୍ତି । ତଦ୍‌ଭାବାଭିବିତ୍ୱାତ୍=କାରଣ-ମୃତାବସ୍ଥାରେ ଦେହରେ ହେଲାପରେ ଆତ୍ମାର ଚୈତନ୍ୟ ପ୍ରଭୃତି ଧର୍ମର ଅସ୍ତିତ୍ୱ ନାହିଁ । ନ ତୁ ଉପଲବ୍ଧିବତ୍=ଯେପରି ଭୂତଗୁଡ଼ିକର ଉପଲବ୍ଧି ଭୂତଗୁଡ଼ିକର ଧର୍ମ ନୁହେଁ । ସେପରି ଭୌତିକ ଦେହର ଉପଲବ୍ଧି ମଧ୍ୟ ଦେହର ଧର୍ମ ନୁହେଁ; କିନ୍ତୁ ତାହାଠାରୁ ଭିନ୍ନ ନୁହେଁ ।

ମୂଳ (କ) ନତ୍ୱେତଦସ୍ତି ଯଦୁକ୍ତମ୍ ଅବ୍ୟତିରେକୋ ଦେହାତ୍ମନଂ ଇତି, ବ୍ୟତିରେକ ଏବାସ୍ୟ ଦେହାଦ୍ ଭବିତୁମର୍ହତି; ତଦ୍‌ଭାବାଭାବିତ୍ୱାତ୍ । ଯଦି ଦେହଭାବେ ଭାବାଦେହଧର୍ମ-ତ୍ୱମାତ୍ମଧର୍ମାଣାଂ ମନ୍ୟେତ, ତତୋ ଦେହଭାବେଽପ୍ୟଭାବାଦତଦ୍‌ଧର୍ମତ୍ୱମେବୈଷାଂ କିଂ ନ ମନ୍ୟତେ ?

(ଖ) ଦେହଧର୍ମବୈଲକ୍ଷଣ୍ୟାତ୍ । ଯେ ହି ଦେହଧର୍ମା ରୂପାଦୟସ୍ତେ ଯାବଦ୍ଦେହଂ ଭବନ୍ତି । ପ୍ରାଣଚେଷ୍ଟାଦୟସ୍ତୁ ସତ୍ୟପି ଦେହେ ମୃତାବସ୍ଥାୟାଂ ନ ଭବନ୍ତି । ଦେହଧର୍ମଶ୍ଚ ରୂପାଦୟଃ ପରୈରପ୍ୟୁପଲଭ୍ୟନ୍ତେ, ନ ତ୍ୱାତ୍ମଧର୍ମାଶ୍ଚୈତନ୍ୟସ୍ମୃତ୍ୟାଦୟଃ ।

(ଗ) ଅପିଚ ସତି ହି ତାବଦ୍ଦେହେ ଜୀବଦବସ୍ଥାୟାମେଷାଂ ଭାବଃ ଶକ୍ୟତେ ନିଶ୍ଚେତୁମ୍, ନ ତ୍ୱସତ୍ୟ ଭାବାଃପତିତେଽପି କଦାଚିଦସ୍ମିନ୍‌ଦେହେ ଦେହାନ୍ତରସଞ୍ଚରେଣାତ୍ମଧର୍ମା ଅନୁବର୍ତ୍ତେରନ୍ । ସଂଶୟମାତ୍ରେଣାପି ପରପକ୍ଷଃ ପ୍ରତିଷିଧ୍ୟତେ ।

ଭାଷା-ଦେହରୂପ ଆତ୍ମାଠାରୁ ପୃଥକ୍ ଆତ୍ମା ନାହିଁ ବୋଲି ଯାହା କୁହାଯାଇଛି, ତାହା ଠିକ୍ ନୁହେଁ । ଆତ୍ମା-ଦେହବ୍ୟତିରିକ୍ତ ହେବା ଉଚିତ୍, କାରଣ-ଦେହର ହେଲେ ଆତ୍ମା ଧର୍ମାଭାବ ହୁଏ । ଯଦି ଦେହର ଅସ୍ତିତ୍ୱରେ ଆତ୍ମଧର୍ମଗୁଡ଼ିକ ସଦ୍‌ଭାବ ହେଲେ ଆତ୍ମାଧର୍ମକୁ ଦେହଧର୍ମ ବୋଲି ସ୍ୱୀକାର କରାଯାଏ, ତେବେ ଦେହର ଅସ୍ତିତ୍ୱରେ ଆତ୍ମାର ଚୈତନ୍ୟଧର୍ମ ନ ରହିଲେ ଏହି ଆତ୍ମାଧର୍ମଗୁଡ଼ିକ ଦେହଧର୍ମ ହେବେ ନାହିଁ ବୋଲି କାହିଁକି ସ୍ୱୀକାର କରାଯାଏ ନାହିଁ ।

(ଖ) କାରଣ ଏଗୁଡ଼ିକ ଦେହଧର୍ମଠାରୁ ପୃଥକ୍ ଅଟନ୍ତି । ଯେଉଁ ରୂପ ପ୍ରଭୃତି ଦେହର ଧର୍ମ ଅଟେ, ସେମାନେ ଦେହ ପର୍ଯ୍ୟନ୍ତ ରହନ୍ତି; କିନ୍ତୁ ପ୍ରାଣ, ଚେଷ୍ଟା ପ୍ରଭୃତି ମରଣାବସ୍ଥାରେ ଦେହହେଲେ ମଧ୍ୟ ହୁଅନ୍ତି ନାହିଁ, ରୂପପ୍ରଭୃତି ଦେହଧର୍ମ ଅନ୍ୟ ଦ୍ୱାରା ଉପଲବ୍ଧ ହୁଅନ୍ତି । ପରନ୍ତୁ ଚୈତନ୍ୟ ସ୍ମୃତିପ୍ରଭୃତି ଆତ୍ମଧର୍ମ ଅନ୍ୟଧର୍ମ ଦ୍ୱାରା ଉପଲବ୍ଧ ହୁଅନ୍ତି ନାହିଁ ।

(ଗ) ଏହିପରି ଜୀବିତାବସ୍ଥାରେ ଦେହ ବିଦ୍ୟମାନ ହେଲେ ଧର୍ମଗୁଡ଼ିକର ଅସ୍ତିତ୍ୱ ନିଶ୍ଚିତ କରାଯାଏ । ପରନ୍ତୁ ଦେହ ନ ହେଲେ ତାହାର ଅଭାବ ସ୍ଥିର କରାଯାଏ ନାହିଁ;

କାରଣ ଦେହ ବିନାଶ ହେଲେ ଆତ୍ମାଧର୍ମ ଅନ୍ୟଧର୍ମରେ ସଂଚାର ହେବାରୁ ଅନୁବୃତ୍ତ ହୁଅନ୍ତି । ଏହି ପ୍ରକାର ସଂଶୟ ଦ୍ୱାରା ପରପକ୍ଷର ପ୍ରତିଷେଧ କରାଯାଇଅଛି ।

ମୂଳ-(କ) କିମାତ୍ମକଂ ଚ ପୁନରିଦଂ ଚୈତନ୍ୟଂ ମନ୍ୟତେ, ଯସ୍ୟ ଭୂତେଭ୍ୟ ଉତ୍ପତ୍ତିମିଚ୍ଛତୀତି ପରଃ ପର୍ଯ୍ୟନୁଯୋକ୍ତବ୍ୟଃ । ନହି ଭୂତଚତୁଷ୍ଟୟବ୍ୟତିରେକେଣ ଲୋକାୟତିଃ କିଞ୍ଚିତ୍ତତ୍ତ୍ୱଂ ପ୍ରତ୍ୟେତି ।

(ଖ) ଯଦନୁଭବନଂ ଭୂତଭୌତିକାନାମ୍ ତଚ୍ଚୈତନ୍ୟମିତି ଚେତ୍-ତର୍ହି ବିଷୟତ୍ୱାତ୍ତେଷାଂ ନ ତଦ୍ଧର୍ମତ୍ୱମଶ୍ନୁବୀତ, ସ୍ୱାତ୍ମନି କ୍ରିୟାବିରୋଧାତ୍ । ନ ହ୍ୟଗ୍ନିରୁଷ୍ଣଃ ସନ୍ ସ୍ୱାତ୍ମାନଂ ଦହତି, ନ ହି ନଟଃ ଶିକ୍ଷିତଃ ସନ୍ ସ୍ୱସ୍କନ୍ଧମଧିରୋକ୍ଷ୍ୟତି । ନହି ଭୂତଭୌତିକ ଧର୍ମେଣ ସତା ଚୈତନ୍ୟେନ ଭୂତଭୌତିକାନି ବିଷୟୀକ୍ରିୟେରନ୍ ।

(ଗ) ନ ହି ରୂପାଦୟଃ ସ୍ୱରୂପଂ ପରରୂପଂ ବା ବିଷୟୀକ୍ରିୟତେ । ବିଷୟୀ କ୍ରିୟନ୍ତେ ଚ ବାହ୍ୟଧାତ୍ମିକାନି ଭୂତଭୌତିକାନି ଚୈତନ୍ୟେନ । ଅତଶ୍ଚ ଯଥୈବାସ୍ୟା ଭୂତଭୌତିକବିଷୟ୍ୟା ଉପଲବ୍ଧେର୍ଭାବୋଽଭ୍ୟୁପଗମ୍ୟତେ, ଏବଂ ବ୍ୟତିରେକୋଽପ୍ୟାସ୍ୟା-ସ୍ତେଭ୍ୟୋଽଭ୍ୟୁପଗନ୍ତବ୍ୟଃ ।

(ଘ) ଉପଲବ୍ଧିସ୍ୱରୂପ ଏବ ଚ ନ ଆତ୍ମେତ୍ୟାତ୍ମନୋ ଦେହବ୍ୟତିରିକ୍ତତ୍ୱମ୍, ନିତ୍ୟତ୍ୱଂ-ଚୋପଲବ୍ଧେରୈକରୂପ୍ୟାତ୍, ଅହମିଦମଦ୍ରାକ୍ଷମିତି ଚାବସ୍ଥାନ୍ତରଯୋଗେଽପ୍ୟୁପଲବ୍ଧୃତ୍ୱେନ ପ୍ରତ୍ୟଭି-ଜ୍ଞାନାତ୍; ସ୍ମୃତ୍ୟାଦ୍ୟୁପପତ୍ତେଶ୍ଚ ।

ଭାଷା-(କ) ଯେଉଁ ଚୈତନ୍ୟର ଭୂତଗୁଡ଼ିକରୁ ଉତ୍ପତ୍ତି ଇଚ୍ଛା କରନ୍ତି, ସେହି ସେହି ଚୈତନ୍ୟର ସ୍ୱରୂପ କାହିଁକି ସ୍ୱୀକାର କରିବା ? ଏହି ପ୍ରକାର ପଚାରିବା ଅନୁଚିତ; କାରଣ-ଲୋକାୟତିକ ଚାରିଟି ଭୂତବ୍ୟତିରିକ୍ତ କୌଣସି ପଦାର୍ଥକୁ ସ୍ୱୀକାର କରନ୍ତି ନାହିଁ ।

(ଖ) ଯଦି କହ ଯେ ଭୂତ ଓ ଭୌତିକର ଯେଉଁ ଅନୁଭବ ହୁଏ, ତାହା ଚୈତନ୍ୟ ଅଟେ; କିନ୍ତୁ ସେହି ଭୂତ ଏବଂ ଭୌତିକରେ ଚୈତନ୍ୟର ବିଷୟତ୍ୱ ହେଲେ ଚୈତନ୍ୟ ତାହାର ଧର୍ମ ହୁଏ ନାହିଁ, କାରଣ-ନିଜର କ୍ରିୟାକୁ ବିରୋଧ କରେ । ଯେପରି ଅଗ୍ନି ଉଷ୍ଣ ହୋଇ ନିଜକୁ ଜଳାଏ ନାହିଁ, ନଟ ଶିକ୍ଷିତ ହୋଇ ନିଜ କାନ୍ଧ ଉପରେ ଚଢ଼ିପାରେ ନାହିଁ, ସେହିପରି ଭୂତ ଓ ଭୌତିକର ଧର୍ମ ହୋଇ ମଧ ଚୈତନ୍ୟ ଦ୍ୱାରା ଭୂତଭୌତିକବିଷୟ କରାଯାଏ ନାହିଁ ।

(ଗ) ଯେପରି ରୂପ ପ୍ରଭୃତିରେ ଭୂତ-ଭୌତିକଧର୍ମରୁ ନିଜ-ରୂପ ବିଷୟ କରାଯାଏ ନାହିଁ, ପରନ୍ତୁ ବାହ୍ୟ ଓ ଆଧାତ୍ମିକ ଭୂତ-ଭୌତିକ ପଦାର୍ଥ ଚୈତନ୍ୟଦ୍ୱାରା ବିଷୟ କରାନ୍ତି ।



ତେଣୁ ଯେପରି ଭୂତ-ଭୌତିକ ବିଷୟକ ଏହି ଉପଲବ୍ଧିର ଅସ୍ତିତ୍ୱ ସ୍ୱୀକାର କରାଯାଏ, ସେହିପରି ସେଗୁଡ଼ିକ ଦ୍ୱାରା ଏହି ଉପଲବ୍ଧିର ବ୍ୟତିରେକ ସ୍ୱୀକାର କରିବା ଉଚିତ୍ ।

(ଘ) ଆମ୍ଭ ମତରେ ଆତ୍ମା ଉପଲବ୍ଧ ସ୍ୱରୂପ ଅଟେ । ଏହି ପ୍ରକାର ଆତ୍ମା ଦେହ ବ୍ୟତିରିକ୍ତ ଅଟନ୍ତି । ଏକ ରୂପ ହେଲେ ଉପଲବ୍ଧି ନିତ୍ୟ ହୁଏ । କାରଣ ମୁଁ ଏହା ଦେଖିଲି ଏହିପ୍ରକାର ଅନ୍ୟଅବସ୍ଥାର ସମ୍ବନ୍ଧ ହେଲେ ମଧ ଉପଲବ୍ଧି ରୂପରେ ପ୍ରତ୍ୟଭିଜ୍ଞାତ ହୁଏ । ଏବଂ ସ୍ମୃତି ପ୍ରଭୃତି ଉପପତ୍ତି ହୁଅନ୍ତି ।

ମୂଳ-(କ) ଯତ୍ତ୍ୱକ୍ତମ୍-ଶରୀରେ ଭାବାଚ୍ଛରୀରଧର୍ମ ଉପଲବ୍ଧରିତି, ତଦ୍‌ବର୍ଣ୍ଣିତେନ ପ୍ରକାରେଣ ପ୍ରତ୍ୟୁକ୍ତମ୍ । ଅପି ଚ ସତ୍ସୁ ପ୍ରଦୀପାଦିଷ୍ୱୁପକରଣେଷୁପଲବ୍ଧିର୍ଭବତ୍ୟସତ୍ସୁ ନ ଭବତି । ନ ଚୈତାବତା ପ୍ରଦୀପାଦିଧର୍ମ ଏବୋପଲବ୍ଧିର୍ଭବତି ।

(ଖ) ଏବଂ ସତି ଦେହ ଉପଲବ୍ଧିର୍ଭବତ୍ୟସତି ଚ ନ ଭବତୀତି ନ ଦେହଧର୍ମୋ ଭବିତୁମର୍ହତି ଉପକରଣତ୍ୱ ମାତ୍ରେଣାପି ପ୍ରଦୀପାଦିବଦ୍ଦେହୋପଯୋଗୋପପତ୍ତେଃ । ନ ଋତ୍ୟନ୍ତଂ ଦେହସ୍ୟୋପଲବ୍ଧାବୁପଯୋଗୋଽପି ଦୃଶ୍ୟତେ, ନିଶ୍ଚେଷ୍ଟେଽପ୍ୟସ୍ମିନ୍‌ଦେହେ ସ୍ୱପ୍ନେ ନାନାବିଧୋପଲବ୍ଧି ଦର୍ଶନାତ୍ । ତସ୍ମାଦନବଦ୍ୟଂ ଦେହବ୍ୟତିରିକ୍ତସ୍ୟାତ୍ମନୋଽସ୍ତିତ୍ୱମ୍ ।

ଭାଷା-(କ) ଶରୀରରେ ଅସ୍ତିତ୍ୱ ହେଲେ ଉପଲବ୍ଧି ଶରୀରର ଧର୍ମ ହୁଏ ବୋଲି ଯାହା କୁହାଯାଇଛି, ସେହି ବର୍ଣ୍ଣନାକୁ ନିରାକରଣ କରାଯାଇଛି । ପ୍ରଦୀପ ପ୍ରଭୃତି ଉପକରଣଗୁଡ଼ିକ ବିଦ୍ୟମାନ ହେଲେ କ'ଣ ଉପଲବ୍ଧି ହୁଏ; ସେଗୁଡ଼ିକ ବିଦ୍ୟମାନ ନ ହେଲେ ଉପଲବ୍ଧି ହୁଏ ନାହିଁ । ଏହିପ୍ରକାର ଉପଲବ୍ଧି ପ୍ରଦୀପର ଧର୍ମ ନୁହେଁ କି ?

(ଖ) ସେହିପରି ଦେହ ଉପଲବ୍ଧି ହୁଏ ଏବଂ ଦେହ ନ ହେଲେ ଉପଲବ୍ଧି ହୁଏ ନାହିଁ । ଏହିପରି ଦେହର ଧର୍ମ ହୁଏ ନାହିଁ; କାରଣ-ଉପଲବ୍ଧିର ଉପକରଣମାତ୍ରାରୁ ପ୍ରଦୀପ ପ୍ରଭୃତି ପରି ଦେହର ଉପଯୋଗ ହୋଇପାରେ; କିନ୍ତୁ ଉପଲବ୍ଧିରେ ଦେହର ଅତ୍ୟନ୍ତ ଉପଯୋଗ ଦେଖାଯାଏ ନାହିଁ, କାରଣ-ଏହିଦେହ ନିଶ୍ଚେଷ୍ଟ ହେଲେ ସ୍ୱପ୍ନରେ ଅନେକ ପ୍ରକାରର ଉପଲବ୍ଧି ଦେଖାଯାଏ । ତେଣୁ ଦେହ ବ୍ୟତିରିକ୍ତ ଆତ୍ମାର ଅସ୍ତିତ୍ୱ ଦୋଷରହିତ ଅଟେ ।୫୪।

## ३१-अङ्गावबद्धाधिकरणम् ॥ सू० ५५-५६ ॥

## ୩୧-ଅଙ୍ଗାବବଦ୍ଧାଧିକରଣମ୍ ସୂଂ ୫୫-୫୬

## अङ्गावबद्धास्तु न शाखासु हि प्रतिवेदम् ॥ ३-३-५५ ॥

## ଅଙ୍ଗାବବଦ୍ଧାସ୍ତୁ ନ ଶାଖାସୁ ହି ପ୍ରତିବେଦମ୍ ।।୩-୩-୫୫।।

ତୁ = ତୁ ଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି ପାଇଁ ରହିଛି । ଅଙ୍ଗାବବଦ୍ଧାଃ=ଅଙ୍ଗାଶ୍ରିତ ଉଦ୍‌ଗୀଥାଦି ଉପାସନାଗୁଡ଼ିକ, ପ୍ରତିବେଦମ୍=ପ୍ରତ୍ୟେକ ବେଦରେ, ଶାଖାସୁ= ସ୍ୱୀକିୟଶାଖାରେ, ନ=ଅବସ୍ଥିତ ହୁଅନ୍ତି ନାହିଁ । କିନ୍ତୁ ସମସ୍ତ ଶାଖାରେ ଅନୁବୃତ୍ତ ହେବା ଉଚିତ୍ । ହି=କାରଣ- 'ଉଦ୍‌ଗୀଥମୁପାସୀତ' ଏହିପ୍ରକାର ଉଦ୍‌ଗୀଥାଦିର ଅବିଶେଷ ଶ୍ରୁତି ଅଟେ ।

ମୂଳ-(କ) ସମାପ୍ତା ପ୍ରାସଙ୍ଗିକୀ କଥା, ସଂପ୍ରତି ତୁ ପ୍ରକୃତାମେବାନୁବର୍ତ୍ତା ମହେ- 'ଓମିତ୍ୟେତଦକ୍ଷର ମୁଦ୍‌ଗୀଥ ମୁପାସୀତ' (ଛା ୧-୧-୧), 'ଲୋକେଷୁ ପଞ୍ଚବିଧଂ ସୋମୋପାସୀତ' (ଛା ୨-୨-୧), 'ଉକ୍‌ଥମିତିର୍ହ୍ବୈ ପ୍ରଜା ବଦନ୍ତି ତଦିଦମେବୋକ୍‌ଥମ୍', 'ଇୟମେବ ପୃଥିବୀ', 'ଅୟଂ ବାବ ଲୋକଃ 'ଏଷୋଽଗ୍ନିଶ୍ଚିତଃ' 'ଇତ୍ୟେବମାଦ୍ୟା ଯ ଉଦ୍‌ଗୀଥାଦି କର୍ମାଙ୍ଗାବବଦ୍ଧାଃ ପ୍ରତ୍ୟୟାଃ ପ୍ରତିବେଦଂ ଶାଖାଭେଦେଷୁ ବିହିତାସ୍ତେ ତତ୍ତଚ୍ଛାଖା- ଗତେଷ୍ୱେବୋଦ୍‌ଗୀଥାଦିଷୁ ଭବେୟୁରଥବା ସର୍ବଶାଖାଗତେଷ୍ୱିତି ବିଷୟଃ । ପ୍ରତିଶାଖଞ୍ଚ, ସ୍ୱରାଦିଭେଦାଦୁଦ୍‌ଗୀଥାଦି ଭେଦାନୁପାଦାୟାୟମୁପନ୍ୟାସଃ ।

(ଖ) କିଂ ତାବତ୍‌ପ୍ରାପ୍ତମ୍ ? ସ୍ୱଶାଖାଗତେଷ୍ୱେବୋଦ୍‌ଗୀଥାଦିଷୁ ବିଧୀୟେରନ୍ନିତି । କୁତଃ ? ସନ୍ନିଧାନାତ୍ । 'ଉଦ୍‌ଗୀଥ ମୁପାସୀତ' (ଛା ୧-୧-୧) ଇତି ଚ ସାମାନ୍ୟ ବିହିତାନାଂ ବିଶେଷ୍ୟକାଂକ୍ଷାୟାଂ ସନ୍ନିକୃଷ୍ଟେନୈବ ସ୍ୱଶାଖାଗତେନ ବିଶେଷେଣା କାଂକ୍ଷାଦିନିବୃତ୍ତେଃ । ତଦତିଲଙ୍ଘନେନ ଶାଖାନ୍ତର ବିହିତ ବିଶେଷୋପାଦାନେ କାରଣଂ ନାସ୍ତି । ତସ୍ମାତ୍ ପ୍ରତିଶାଖଂ ବ୍ୟବସ୍ଥେତି ॥

ଭାଷା-(କ) ପ୍ରାସଙ୍ଗିକ କଥା ସମାପ୍ତ ହେଲା । ବର୍ତ୍ତମାନ ଆମ୍ଭେ ପ୍ରକୃତ କଥାକୁ ଅନୁବୃତ୍ତି କରୁଛୁ- 'ଓମିତ୍ୟେଦକ୍ଷର' ('ଓଁ' ଏହି ଅକ୍ଷର ଉଦ୍‌ଗୀଥକୁ ଉପାସନା କରିବା ଉଚିତ୍), 'ଲୋକେଷୁ' (ପୃଥିବୀ ପ୍ରଭୃତି ଲୋକରେ ପାଞ୍ଚ ପ୍ରକାରର ସାମକୁ ଉପାସନା କରିବା ଉଚିତ୍), 'ଉକ୍‌ଥ ମୁକ୍‌ଥମିତି' (ପ୍ରଜା ଉକ୍‌ଥ ଉକ୍‌ଥ ବୋଲି କହନ୍ତି; ସେହି ଉକ୍‌ଥ ଏଠାରେ ବକ୍ଷମାଣ ଅଟେ; ଯାହା ଉକ୍‌ଥ ଅଟେ, ତାହାହିଁ ପୃଥିବୀ ଅଟେ), 'ଅୟଂ ବାବ ଲୋକ' (ଏହି ଲୋକ ଅଟେ, ଏହା ଅଗ୍ନିଶ୍ଚିତ୍ ଅଟେ) ଇତ୍ୟାଦି କର୍ମାଙ୍ଗ ସମ୍ବନ୍ଧିତ ଉଦ୍‌ଗୀଥାଦି ଉପାସନାଗୁଡ଼ିକ ଯାହାକି ବେଦରେ ପୃଥକ୍ ଶାଖାରେ ବିହିତ ଅଛି, ସେମାନେ ସେହି ଶାଖାଗତ ଉଦ୍‌ଗୀଥାଦିରେ କ'ଣ ହେବା ଉଚିତ୍ ? ଅଥବା ସର୍ବଶାଖାଗତ ଉଦ୍‌ଗୀଥାଦିରେ ହେବା ଉଚିତ କି ? ଏହି ପ୍ରକାର ସଂଶୟ ହେବାରୁ ପ୍ରତ୍ୟେକ ଶାଖାର ସ୍ୱର ପ୍ରଭୃତି ଭେଦରେ ଉଦ୍‌ଗୀଥାଦି ଭେଦକୁ ନେଇ ଏହି ଉପନ୍ୟାସ ହୁଏ ।

(ଖ) ତେବେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷରେ କୁହାଯାଇଛି- ସ୍ୱକୀୟ ଶାଖାଗତ ଉଦ୍‌ଗୀଥାଦି ବିଦ୍ୟାଗୁଡ଼ିକର ବିଧାନ ହୋଇଅଛି । କିପରି ? ଏହାର ସନ୍ନିଧାନରୁ । 'ଉଦ୍‌ଗୀଥମୁପାସୀତ' (ଉଦ୍‌ଗୀଥକୁ ଉପାସନା କରିବା ଉଚିତ୍) ଏହି ପ୍ରକାର ସାମାନ୍ୟ

ଦ୍ୱାରା ବିହିତ ବିଦ୍ୟାଗୁଡ଼ିକର ବିଶେଷ ଆକାଂକ୍ଷା ହେବାପରେ ସନ୍ନିକୃଷ୍ଟ ସ୍ୱଶାଖାଗତବିଶେଷ ଦ୍ୱାରା ଆକାଂକ୍ଷାର ନିବୃତ୍ତି ହୁଏ । ତେଣୁ ତାହାକୁ ଅତିକ୍ରମଣ କରି ଅନ୍ୟ ଶାଖାରେ ବିହିତ ବିଶେଷର ଉପାଦାନରେ କାରଣ ନୁହେଁ; ତେଣୁ ପ୍ରତ୍ୟେକ ଶାଖାରେ ବ୍ୟବସ୍ଥା ରହିଛି ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରବୀତି-ଅଙ୍ଗାବବଦ୍ଧାସ୍ତିତି । ତୁ ଶବ୍ଦଃ ପକ୍ଷଂ ବ୍ୟାବର୍ତ୍ତୟତି । ନୈତେ ପ୍ରତିବେଦଂ ସ୍ୱାଶାଖାସ୍ୱେବ ବ୍ୟବତିଷ୍ଠେରେନ୍, ଅପିତୁ ସର୍ବଶାଖାସ୍ୱନୁବର୍ତ୍ତେରନ୍ । କୁତଃ ? ଉଦ୍‌ଗୀଥାଦିଶ୍ରୁତି ବିଶେଷାତ୍ । ସ୍ୱଶାଖାବ୍ୟସ୍ଥାୟାଂ ହ୍ୟୁଦ୍‌ଗୀଥାମୁପାସୀତେତି ସାମାନ୍ୟଶ୍ରୁତିର ବିଶେଷ ପ୍ରବୃତ୍ତୀ ସତୀ ସନ୍ନିଧାନବଶେନ ବିଶେଷେ ବ୍ୟବସ୍ଥାପ୍ୟମାନା ପୀଡ଼ିତା ସ୍ୟାତ୍ ।

(ଖ) ନ ଚୈତନ୍ନ୍ୟାୟମ୍, ସନ୍ନିଧାନାଦ୍ଧି ଶ୍ରୁତିର୍ବଳୀୟସୀ । ନ ଚ ସାମାନ୍ୟାଶ୍ରୟଃ ପ୍ରତ୍ୟୟୋ ନୋପପଦ୍ୟତେ । ତସ୍ମାତ୍ ସ୍ୱରାଦିଭେଦେ ସତ୍ୟପ୍ୟୁଦ୍‌ଗୀଥାଦ୍ୱାଦ୍ୟବିଶେଷାତ୍ ସର୍ବଶାଖାଗତେଷ୍ୱେବୋଦ୍‌ଗୀଥାଦିଷ୍ୱେବଂ ଜାତୀୟକାଃ ପ୍ରତ୍ୟୟାଃ ସ୍ୟୁଃ ।

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ କୁହାଯାଇଅଛି- 'ଅଙ୍ଗାବବଦ୍ଧାସ୍ତୁ', 'ତୁ' ଶବ୍ଦ ପୂର୍ବପକ୍ଷକୁ ବ୍ୟାବୃତ୍ତି କରେ । ଏହି ଉପାସନାଗୁଡ଼ିକ ପ୍ରତି- ବେଦରେ ନିଜ ଶାଖାରେ ବ୍ୟବସ୍ଥିତ ହେବା ଉଚିତ ନୁହେଁ; କିନ୍ତୁ ସମସ୍ତ ଶାଖାରେ ଅନୁବୃତ୍ତ ହେବା ଉଚିତ୍ । କିପରି ? ଉଦ୍‌ଗୀଥାଦି ଶ୍ରୁତିର ଅବିଶେଷ ଦ୍ୱାରା । ନିଜର ଶାଖାରେ ବ୍ୟବସ୍ଥା ହେଲାପରେ 'ଉଦ୍‌ଗୀଥ ମୁପାସୀତ' ଏହି ସାମାନ୍ୟ ଶ୍ରୁତି ଅବିଶେଷ ରୂପରେ ପ୍ରବୃତ୍ତ ହୋଇ ସନ୍ନିଧି ବଳରୁ ବିଶେଷରେ ବ୍ୟବସ୍ଥାପିତ ହୋଇ ବାଧିତ ହେଉ ।

(ଖ) ଏହା କିନ୍ତୁ ଠିକ୍ ନୁହେଁ । କାରଣ ଶ୍ରୁତି ସନ୍ନିଧିଠାରୁ ବଳବାନ୍ ଅଟେ । ସାମାନ୍ୟର ଆଶ୍ରୟରୁ ବିଦ୍ୟା ଉପପନ୍ନ ହୁଏ ନାହିଁ ବୋଲି କୁହାଯାଏ ନାହିଁ । ଏହାଦ୍ୱାରା ସ୍ୱରାଦିର ଭେଦ ହେବା ପରେ ମଧ୍ୟ ଉଦ୍‌ଗୀଥତ୍ୱାଦିର ଅବିଶେଷରୁ ସମସ୍ତ ଶାଖାଗତ ଉଦ୍‌ଗୀଥାଦିରେ ଏହି ପ୍ରକାର ଉପାସନା ହେବା ଉଚିତ୍ ॥

## मन्त्रादिवद्वाऽविरोधः ॥ ३-३-५६ ॥

## ମନ୍ତ୍ରାଦିବଦ୍ୱାଽବିରୋଧଃ ॥୩-୩-୫୬॥

ଅବିରୋଧଃ=ଗୋଟିଏ ଶାଖାରେ ବିହିତ ଉଦ୍‌ଗୀଥାଦିର ଅନ୍ୟ ଶାଖାଗତ ଉଦ୍‌ଗୀଥାନିରେ ପ୍ରାପ୍ତି ହେବା ପରେ ବିରୋଧ ହୁଏ ନାହିଁ । ମନ୍ତ୍ରାଦିବତ୍=ଯେପରି

ଏକ ଶାଖାଗତ ମନ୍ତ୍ର, କର୍ମ ଏବଂ ଗୁଣର ଅନ୍ୟ ଶାଖାରେ ଉପସଂଗ୍ରହ ଦେଖାଯାଏ ।

ମୂଳ-(କ) ଅଥବା ନୈବାତ୍ର ବିରୋଧଃ ଶଙ୍କିତବ୍ୟଃ-କଥମନ୍ୟ ଶାଖାଗତେଷୂଦ୍-ଗୀଥାଦିଷ୍ୱନ୍ୟଶାଖାବିହିତାଃ ପ୍ରତ୍ୟୟାଃ ଭବେୟୁରିତି, ମନ୍ତ୍ରାଦିବଦବିରୋଧୋପପତ୍ତେଃ । ତଥାହି-ମନ୍ତ୍ରାଣାଂ କର୍ମଣାଂ ଗୁଣାନାଂ ଚ ଶାଖାନ୍ତରୋତ୍ପନ୍ନାନାମପି ଶାଖାନ୍ତର ଉପସଂଗ୍ରହୋ ଦୃଶ୍ୟତେ ।

(ଖ) ଯେଷାମପି ଶାଖିନାଂ କୁଟରୁରସୀତ୍ୟଶ୍ମାଦାନମନ୍ତ୍ରୋ ନାମ୍ନାତସ୍ତେଷାମପ୍ୟସୌ ବିନିଯୋଗୋ ଦୃଶ୍ୟତେ-କୁକ୍‌କୁଟୋଽସୀତ୍ୟଶ୍ମାନମାଦତ୍ତେ କୁଟରୁରସୀତି ବା' ଇତି ॥ ଯେଷାମପି ସମିଦାଦୟଃ ପ୍ରୟାଜା ନାମ୍ନାତାସ୍ତେଷାମପି ତେଷୁ ଗୁଣବିଧିରାମ୍ନାୟତେ-ଋତବୋ ବୈ ପ୍ରୟାଜାଃ ସମାନତ୍ର ହୋତବ୍ୟାଃ ଇତି ।

(ଗ) ତଥା ଯେଷାମପି 'ଅଜୋଽଗ୍ନୀଷୋମୀୟଃ' ଇତି ଜାତିବିଶେଷୋପଦେଶୋ ନାସ୍ତି, ତେଷାମପି ତଦ୍‌ବିଷୟୋ ମନ୍ତ୍ରବର୍ଣ୍ଣ ଉପଲଭ୍ୟତେ- 'ଛାଗସ୍ୟ ବପାୟା ମେଦସୋଽ-ନୁବ୍ରୂହି' ଇତି । ତଥା ବେଦାନ୍ତରୋତ୍ପନ୍ନାନାମପି 'ଅଗ୍ନେର୍ବୈର୍ହୋତ୍ରଂ ବେରଧ୍ୱରମ୍' ଇତ୍ୟେବ-ମାଦିମନ୍ତ୍ରାଣାଂ ବେଦାନ୍ତରେ ପରିଗ୍ରହୋ ଦୃଷ୍ଟଃ ।

(ଘ) ତଥା ବହ୍‌ବୃଚ ପଠିତସ୍ୟ ସୂକ୍ତସ୍ୟ ଯୋ ଜାତ ଏବ ପ୍ରଥମୋ ମର୍ନସ୍ୱାନ (ଋ ସଂ ୨-୬-୭) ଇତ୍ୟସ୍ୟ 'ଅଧ୍ୱର୍ଯବେ ସଜନୀୟଂ ଶସ୍ୟମ୍' ଇତ୍ୟ ପରିଗ୍ରହୋ ଦୃଷ୍ଟଃ । ତସ୍ମାଦ୍ୟଥାଽଽଶ୍ରୟାଣାଂ କର୍ମାଙ୍ଗାଂନାଂ ସର୍ବତ୍ରାନୁବୃତ୍ତିରେବମାଶ୍ରିତାନାମପି ପ୍ରତ୍ୟୟାନାମିତ୍ୟ ବିରୋଧଃ ॥

ଭାଷା-(କ) ଅଥବା ଏଠାରେ ଅନ୍ୟ ଶାଖାରେ ବିହିତ ଉଦ୍‌ଗୀଥାଦି ଉପାସନାଗୁଡ଼ିକ ଅନ୍ୟଶାଖାଗତ ଉଦ୍‌ଗୀତାଦିରେ କୌଣସି ପ୍ରକାର ହେବ କି ବୋଲି ବିରୋଧଶଙ୍କା କରିବା ଉଚ୍ଛିତ୍; କାରଣ-ମନ୍ତ୍ର ପ୍ରଭୃତି ପରି ବିରୋଧ ଉପପନ୍ନ ହୁଏ । ଯେପରିକି ଗୋଟିଏ ଶାଖାରେ ବିହିତ ମନ୍ତ୍ର, କର୍ମ ଓ ଗୁଣଗୁଡ଼ିକ ଅନ୍ୟ ଶାଖାରେ ଉପସଂଗ୍ରହ ରୂପେ ଦେଖାଯାଏ ।

(ଖ) ଯେଉଁ କାଣ୍ୱଶାଖାର 'ତୁମେ କୁକୁଡ଼ା' ଏହିପରି ପ୍ରସ୍ତରଦାନ ମନ୍ତ୍ର ପଠିତ ହୁଏ ନାହିଁ । ତାହାର ମଧ୍ୟ 'କୁକ୍‌କୁଟୋଽସି' ଏହି ବାକ୍ୟ ଶୁକ୍ଳଯଜୁର୍ବେଦର ମାଧ୍ୟନ୍ଦିନ ଶାଖାରେ ମନ୍ତ୍ରର ଅଶ୍ମାଦାନରେ ବିନିଯୋଗ ହେବା ଦେଖାଯାଏ ଅଥବା 'କୁଟରୁରସି' ଏହି ମନ୍ତ୍ରକୁ ପାଠ କରି ଅଶ୍ମର ଗ୍ରହଣ କରାଯାଏ । ସେହିପରି ଯେଉଁ ଶାଖାରେ ସମିଧାଦି ପ୍ରାୟାଜ ପଠିତ ନୁହେଁ, ତାହାର ଶାଖାରେ ମଧ୍ୟ 'ଋତବୋ ବୈ (ଋତୁ ହିଁ ପ୍ରୟାଜ ହୁଏ, ଏକ ସ୍ଥାନରେ ତାହାର ହୋମ କରାଯାଏ) ଏହି ପ୍ରକାର ସେଠାରେ ଗୁଣବିଧି କୁହାଯାଇଅଛି ।

(ଗ) ଯେଉଁ ଶାଖାରେ ଅଜୋଽଗ୍ନୀଷୋମୀୟଃ (ଅଜ ଅଗ୍ନୀଷୋମୀୟ ଅଟେ) ଏହି ପ୍ରକାର ଜାତି ବିଶେଷର ଉପଦେଶ ନାହିଁ । ସେହି ଶାଖାରେ 'ଛାଗସ୍ୟ ବପାୟା' (ଛେଳିର ବପାର ମେଦର ହୋମାର୍ଥ ଅନୁବାକ୍ୟ କହ) ଏହି ତଦ୍‌ବିଷୟକ ମନ୍ତ୍ରବର୍ଣ୍ଣ ଉପଲବ୍ଧ ହୁଏ । ସେହିପରି ଅନ୍ୟ ବେଦରେ ଉତ୍ପନ୍ନ ହୋଇଥିବା ''ଅଗ୍ନେର୍ବୈଂଃ'' (ଦେବତାର ହୋତ୍ର ଏବଂ ଅଧ୍ୱର କର୍ମ ଅଗ୍ନିଠାରୁ ସମ୍ପନ୍ନ ହୁଅନ୍ତି) ଇତ୍ୟାଦି ମନ୍ତ୍ରର ଅନ୍ୟ ବେଦରେ ପରିଗ୍ରହ ଦେଖାଯାଏ ।

(ଘ) ସେହିପରି 'ଯୋଜାତ ଏବ' (ଯାହା ଉତ୍ପନ୍ନ ହୋଇ ବାଳକ ଗୁଣଦ୍ୱାରା ଶେଷ୍ଠ ଓ ମନସ୍ୱୀ ହୋଇ, ''ହେ ଜନ ! ସେ ଇନ୍ଦ୍ର ଅଟେ'' ବୋଲି କହେ) ଏହି ବହ୍‌ବୃଚ୍ଛେ (ହୋତା) ଦ୍ୱାରା ପଠିତ ସୂକ୍ତର ଅଧ୍ୱର୍ଯବେ ସଜନୀୟଂ (ଅଧ୍ୱର୍ଯ୍ୟୁଦ୍ୱାରା କରାଯାଇଥିବା ପ୍ରୟାଗରେ ସଜନୀୟ ଅର୍ଥାତ୍ ସଜନା ସ ଇନ୍ଦ୍ରଃ (ହେ ଜନ ! ସେ ଇନ୍ଦ୍ର ଅଟେ) ବୋଲି ସୂକ୍ତି ଦେଖାଯାଏ । ତେଣୁ ଯେପରି ଆଶ୍ରୟ କର୍ମାଙ୍ଗକୁ ସର୍ବତ୍ର ଅନୁବୃତ୍ତି ହୁଏ, ସେପରି ଆଶ୍ରିତ ଉପାସନାର ସର୍ବତ୍ର ଅନୁବୃତ୍ତି ହୁଏ । ତେଣୁ ଏଠାରେ କୌଣସି ବିରୋଧ ନାହିଁ ॥୫୬॥

## ३२- भूमज्यायस्त्वाधिकरणम् ॥ सू० ५७ ॥

## ୩୨। ଭୂମଜ୍ୟାୟସ୍ତ୍ୱାଧିକରଣମ୍ ॥ସୂଂ-୫୭॥

## भूम्नः क्रतुवज्ज्यायस्त्वं तथा हि दर्शयति ॥ ३-३-५७ ॥

## ଭୂମ୍ନଃ କ୍ରତୁବଜ୍ଜ୍ୟାୟସ୍ତ୍ୱଂ ତଥା ହି ଦର୍ଶୟତି ॥ ୩-୩-୫୭॥

ଭୂମ୍ନଃ='ପ୍ରାଚୀନଶାଳଃ ଔପମନ୍ୟବଃ' ଇତ୍ୟାଦିରେ ସମସ୍ତ ଉପାସନାର ଜ୍ୟାୟସ୍ତ୍ୱମ୍=ପ୍ରଧାନ ରୂପରେ ପ୍ରତିପାଦନ ହୁଏ । କ୍ରତୁବତ୍=ଯେପରି ଦର୍ଶ ପୂର୍ଣ୍ଣମାସ ଯାଗରେ ଏକହିଁ ସାଙ୍ଗପ୍ରଧାନର ପ୍ରୟୋଗ ହୁଏ, ହି=କାରଣ-ତସ୍ୟ ହ ବା ଏହି ଶ୍ରୁତି ମଧ୍ୟ ବ୍ୟସ୍ତ ଉପାସନାର ନିନ୍ଦା କରି, ତଥା-ସେହିପରି ସମସ୍ତ ଉପାସନାର ପ୍ରତିପତ୍ତି, ଦର୍ଶୟତି=ଦେଖାଏ ॥

ମୂଳ-(କ) 'ପ୍ରାଚୀନଶାଳଃ ଔପମନ୍ୟବଃ' (ଛା ୫-୧୧-୧) ଇତ୍ୟସ୍ୟାମାଖ୍ୟାୟିକାୟାଂ ବ୍ୟସ୍ତସ୍ୟ ସମସ୍ତସ୍ୟ ଚ ବୈଶ୍ୱାନରସ୍ୟୋପାସନଂ ଶ୍ରୂୟତେ । ବ୍ୟସ୍ତୋପାସନଂ ତାବତ୍-ଔପମନ୍ୱବ କଂ ତ୍ୱମାତ୍ମାନମୁପାସ୍ସ, ଇତି, ଦିବମେବ ଭଗବୋ ରାଜନ୍ନିତି ହୋବାଚୈଷ ବୈ ସୁତେଜା ଆତ୍ମା ବୈଶ୍ୱାନରୋ ଯଂ ତ୍ୱମାତ୍ମାନମୁପାସ୍ସ (ଛା ୫-୧୨-୨) ଇତ୍ୟାଦି, ତଥା ସମସ୍ତୋପାସନମପି 'ତସ୍ୟ ହ ବା ଏତସ୍ୟାତ୍ମନୋ ବୈଶ୍ୱାନରସ୍ୟ ମୂର୍ଦ୍ଧୈବ ସୁତେଜାଶ୍ଚକ୍ଷୁର୍ବିଶ୍ୱରୂପଃ ପ୍ରାଣଃ ପୃଥଗ୍‌ବର୍ତ୍ମାଽଽତ୍ମା ସଂଦେହୋ ବହୁଲୋ ବସ୍ତିରେବ ରୟିଃ ପୃଥିବ୍ୟେବ ପାଦୌ (ଛା ୫-୧୮-୨) ଇତ୍ୟାଦି ।

(ଖ) ତତ୍ର ସଂଶୟଃ-କିମିହୋଭୟଥାପ୍ୟୁପାସନଂ ସ୍ୟାଦ୍‌ବ୍ୟସ୍ତସ୍ୟ ସମସ୍ତସ୍ୟ ଚୈତ ସମସ୍ତସ୍ୟୈବେତି ? କିଂ ତାବତ୍‌ପ୍ରାପ୍ତମ୍ ? ପ୍ରତ୍ୟବୟବଂ ସୁତେଜଃ-ପ୍ରଭୃତି ଷୂପାସ୍‌ସ ଇତି କ୍ରିୟାପଦ ଶ୍ରବଣାତ୍, 'ତସ୍ମାତ୍ତବଂ ସୁତଂ ପ୍ରସୂତମାସୁତଂ କୁଳେ ଦୃଶ୍ୟତେ' (ଛା ୫-୧୨-୧) ଇତ୍ୟାଦି ଫଳଭେଦ ଶ୍ରବଣାଚ୍ଚ, ବ୍ୟସ୍ତାନ୍ୟପ୍ୟୁପାସନାନି ସ୍ୟୁରିତି ପ୍ରାପ୍ତମ୍ ॥

ଭାଷା-(କ) 'ପ୍ରାଚୀନଶାଲଃ ଔପମନ୍ୟବଃ' (ଉପମନ୍ୟୁଙ୍କର ପୁତ୍ର ପ୍ରାଚୀନଶାଳୀ) ଏହି ଆଖ୍ୟାୟିକାରେ ବ୍ୟସ୍ତ ଓ ସମସ୍ତ ରୂପରେ ବୈଶ୍ୱାନରର ଉପାସନା ଶୁଣାଯାଏ । ଔପମନ୍ୟବଃ କଃ (ହେ ଉପମନ୍ୟୁକୁମାର ! ତୁମେ କୌଣସି ଆତ୍ମାର ଉପାସନା କରିପାର । ଏହିପରି ରାଜା ଅଶ୍ୱପତିର ପ୍ରଶ୍ନ କରି ହେ ପୂଜ୍ୟ ରାଜନ୍ ! ମୁଁ ଦ୍ୟୁଲୋକର ଉପାସନା କରୁଛି । ଏହିପରି ସେ ଉତ୍ତର ଦେଲେ । ରାଜା-ତୁମେ ଯେଉଁ ଆତ୍ମାର ଉପାସନା କରୁଛ, ଏହା ନିଶ୍ଚିତ ଭାବରେ 'ସୁତେଜା' ନାମରେ ପ୍ରସିଦ୍ଧ ବୈଶ୍ୱାନର ଆତ୍ମା ଅଟେ ।) ଇତ୍ୟାଦି ବ୍ୟସ୍ତୋପାସନା ଅଛି । ଏହିପରି 'ତସ୍ୟ ହ ବା' (ଏହି ବୈଶ୍ୱାନ) ଆତ୍ମାର ମସ୍ତକ ସୂତେଜା (ଦ୍ୟୁଲୋକ) ଅଟେ । ଚକ୍ଷୁ ବିଶ୍ୱରୂପ ସୂର୍ଯ୍ୟ ଅଟେ । ପ୍ରାଣ ପୃଥଗ୍‌ବର୍ତ୍ମା ବାୟୁ ଅଟେ । ଦେହର ମଧ୍ୟଭାଗ ବହୁଳ ଆକାଶ ଅଟେ । ବସ୍ତି ଜଳ ଅଟେ, ପୃଥିବୀ ଦୁଇଟି ପାଦ ଅଟେ) ଏହିପରି ସମସ୍ତୋପାସନା କରାଯାଇଛି ॥

(ଖ) ବୈଶ୍ୱାନର ବାକ୍ୟରେ ବ୍ୟସ୍ତ ଓ ସମସ୍ତ - ଏହି ଦୁଇପ୍ରକାର ଉପାସନା ହେବା ଉଚିତ କି ବୋଲି ସଂଶୟ ହୁଏ । ତେବେ ଏହା କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ ସୁତେଜା ପ୍ରଭୃତି ପ୍ରତ୍ୟେକ ଅବୟବରେ 'ଉପାସ୍‌ସେ' କ୍ରିୟାପଦ ଶ୍ରବଣ ଦ୍ୱାରା ଓ 'ତସ୍ମାତ୍ତବ' (ତେଣୁ ତୁମ୍ଭ ବଂଶରେ ସୂତ (ଖଣ୍ଡିତ ସୋମଦ୍ରବ୍ୟ), ପ୍ରସ୍ତୁତ ଓ ଆସୁତ ଦେଖାଇ ଦିଅନ୍ତି) ଇତ୍ୟାଦି ଫଳଭେଦର ଶ୍ରବଣଦ୍ୱାରା ବ୍ୟସ୍ତଉପାସନାଗୁଡ଼ିକ ହେବା ବିଧେୟ, ଏହା ପ୍ରାପ୍ତ ହୁଏ ॥

ମୂଳ-(କ) ତତୋଽଭିଧୀୟତେ ଭୂମ୍ନଃ ପଦାର୍ଥୋପବୟାତ୍ମକସ୍ୟ ବୈଶ୍ୱାନରୋପାସନସ୍ୟ ଜ୍ୟାୟସ୍ତ୍ୱଂ ପ୍ରାଧାନ୍ୟମସ୍ମିନ୍‌ବାକ୍ୟେ ବିବକ୍ଷିତଂ ଭବିତୁମର୍ହତି, ନ ପ୍ରତ୍ୟେକମବୟବୋପାସନାନାମପି । କ୍ରତୁବତ୍ । ଯଥା କ୍ରତୁଷୁ ଦର୍ଶପୂର୍ଣ୍ଣମାସପ୍ରଭୃତିଷ୍ୱ ସାମସ୍ତ୍ୟେନ ସାଙ୍ଗପ୍ରଧାନସ୍ୟ ତଦ୍‌ବତ୍ ।

(ଖ) କୁତ ଏତଦ୍‌ଭୂମ୍ନୈବ ଜ୍ୟାୟାନିତି ? ତଥାହି ଶ୍ରୁତିର୍ଭୂମ୍ନୋ ଜ୍ୟାୟସ୍ତ୍ୱଂ ଦର୍ଶୟତି, ଏକବାକ୍ୟତାବଗମାତ୍ । ଏବଂ ହୀଦଂ ବାକ୍ୟଂ ବୈଶ୍ୱାନର ବିଦ୍ୟା ବିଷୟଂ ପୌର୍ବାପର୍ଯ୍ୟାଲୋଚନାତ୍ ପ୍ରତୀୟତେ ।



(ଗ) ତଥାହି-ପ୍ରାଚୀନଶାଲ ପ୍ରଭୃତୟ ଉଦ୍ଦାଲକାବସାନାଃ ଷଡ଼ୃଷୟୋ ବୈଶ୍ୱାନରବିଦ୍ୟାୟାଂ ପରିନିଷ୍ଠାମପ୍ରତିପଦ୍ୟମାନା ଅଶ୍ୱପତିଂ କୈକେୟଂ ରାଜାନମଭ୍ୟାଜଗ୍ମୁରିତ୍ୟୁପକ୍ରମ୍ୟୈକୈକସ୍ୟର୍ଷେରୁପାସ୍ୟଂ ଦ୍ୟୁପ୍ରଭୃତୀନାମେକୈକଂଶ୍ରାବୟିତ୍ୱା ମୂର୍ଦ୍ଧାତ୍ୱେଷଆତ୍ମନ ଇତି ହୋବାଚ' (ଛା ୫-୧୨-୧) ଇତ୍ୟାଦିନା ମୂର୍ଦ୍ଧାଦିଭାବଂ ତେଷାଂ ବିଦଧାତି । 'ମୂର୍ଦ୍ଧାତେ ବ୍ୟପତିଷ୍ୟଦ୍ୟନ୍ମାଂନାଗର୍ମିଷ୍ୟଃ (ଛା ୫-୧୨-୧) ଇତ୍ୟାଦିନା ଚ ବ୍ୟସ୍ତୋପାସନମପବଦତି ।

ଭାଷା-ସିଦ୍ଧାନ୍ତ-(କ) ଏଠାରେ କୁହାଯାଇଅଛି-ଭୂମାର ପଦାର୍ଥୋପଚୟାତ୍ମକ ସମସ୍ତ ବୈଶ୍ୱାନର ଉପାସନାର ଜ୍ୟାୟସ୍ତ୍ୱ ପ୍ରାଧାନ୍ୟରୁ ଏହି ବାକ୍ୟରେ ବିବକ୍ଷିତ ହୁଏ; କିନ୍ତୁ ପ୍ରତ୍ୟେକ ଅବୟବୋପାସନର ଜ୍ୟାୟସ୍ତ୍ୱ ବିବକ୍ଷିତ ନୁହେଁ । କ୍ରତୁ ପରି ଅର୍ଥାତ୍ ଯେପରି ଦର୍ଶପୂର୍ଣ୍ଣମାସ ପ୍ରଭୃତି କ୍ରତୁରେ ସମାନ ରୂପରେ ଅଙ୍ଗ ସହିତ ପ୍ରଧାନର ଏକ ପ୍ରୟୋଗ ବିବକ୍ଷିତ ହୁଏ । ବ୍ୟସ୍ତ ପ୍ରୟାଜାଦିର ପ୍ରୟୋଗ ବିବକ୍ଷିତ ନୁହେଁ ଏବଂ ଏକଦେଶ ରୂପ ଅଙ୍ଗ ସହିତ ପ୍ରଧାନର ମଧ୍ୟ ପ୍ରୟୋଗ ବିବକ୍ଷିତ ନୁହେଁ । ସେହିପରି ପ୍ରକୃତରେ ମଧ୍ୟ ହୁଏ ।

(ଖ) ପରନ୍ତୁ ଭୂମା ଜ୍ୟାୟାନ୍ ବୋଲି କିପରି ଜଣାଯାଏ ? କାରଣ-ଶ୍ରୁତି ଭୂମାର ଜ୍ୟାୟସ୍ତ୍ୱ ଦେଖାଏ; କାରଣ-ଏକବାକ୍ୟତା ଜଣାପଡ଼େ । ଏହି ବୈଶ୍ୱାନର ବିଦ୍ୟାବିଷୟକ ବାକ୍ୟ ପୌର୍ବାପର୍ଯ୍ୟାଲୋଚନାରୁ ପ୍ରତୀତ ହୁଏ ।

(ଗ) ଯେପରିକି ପ୍ରାଚୀନଶାଳଠାରୁ ଉଦ୍ଦାଳକ ପର୍ଯ୍ୟନ୍ତ ଛଅ ଋଷିଗଣ ବୈଶ୍ୱାନର ବିଦ୍ୟାରେ ପରିନିଷ୍ଠିତକୁ ପ୍ରାପ୍ତ ନ ହୋଇ ରାଜା ଅଶ୍ୱପତି କୈକେୟୀଙ୍କ ପାଖକୁ ଆସିଲେ । ଏହି ଉପକ୍ରମ କରି ସେହି ଗୋଟିଏ ଗୋଟିଏ ଋଷିକୁ ଏକ ଏକ ଉପାସ୍ୟ ଶ୍ରବଣ କରାଇ 'ମୂର୍ଦ୍ଧା ତ୍ୱେଷ' (ଏହି ବୈଶ୍ୱାନର ଆତ୍ମାର ମୁଁ ଶିର) ଇତ୍ୟାଦି ଶ୍ରୁତି ସେହି ସ୍ୱର୍ଗ ଆଦିର ମୂର୍ଦ୍ଧା ଆଦି ରୂପରେ ବିଧାନ କରେ । 'ମୂର୍ଦ୍ଧା ତେ' (ଯଦି ତୁମେ ମୋର ସମୀପକୁ ନ ଆସିଲେ ତୁମ୍ଭର ମସ୍ତକ ପଡ଼ିଯିବ) ଇତ୍ୟାଦି ଦ୍ୱାରା ବ୍ୟସ୍ତୋପାସନାର ଅପବାଦ କରେ ।

ମୂଳ-(କ) ପୁନଶ୍ଚ ବ୍ୟସ୍ତୋପାସନଂ ବ୍ୟାବର୍ତ୍ତ୍ୟ ସମସ୍ତୋପାସନମେବାନୁବର୍ତ୍ତ୍ୟ 'ସ ସର୍ବେଷୁ ଲୋକେଷୁ ଭୂତେଷୁ ସର୍ବେଷ୍ୱାତ୍ମନ୍ନମତ୍ତି (ଛା ୫-୧୮-୧) ଇତି ଭୂମାଶ୍ରୟମେବ ଫଳଂ ଦର୍ଶୟତି । ଯତ୍ତୁ ପ୍ରତ୍ୟେକଂ ସୁତେଜଃ ପ୍ରଭୃତିଷୁ ଫଳଭେଦଶ୍ରବଣଂ ପରାଭିପ୍ରାୟାନୁବାଦାର୍ଥଂ ନ ବ୍ୟସ୍ତୋପାସନବିଧାନାର୍ଥମ୍ । ତସ୍ମାତ୍ ସମସ୍ତୋପାସନପକ୍ଷ ଏବ ଶ୍ରେୟାନିତି ।

(ଖ) କେଚିତ୍ତ୍ୱତ୍ର ସମସ୍ତୋପାସନପକ୍ଷଂ ଜ୍ୟାୟାଂସଂ ପ୍ରତିଷ୍ଠାପ୍ୟ ଜ୍ୟାୟସ୍ତ୍ୱ ବଚନାଦେବ କିଲ ବ୍ୟସ୍ତୋପାସନପକ୍ଷମପି ସୂତ୍ରକାରୋଽନୁମନ୍ୟତ ଇତି କଳ୍ପୟନ୍ତି, ତଦଯୁକ୍ତମ୍, ଏକବାକ୍ୟତାବଗତୌ ସତ୍ୟାଂ ବାକ୍ୟଭେଦ କଳ୍ପନସ୍ୟାନ୍ୟାୟତ୍ୱାତ୍, 'ମୂର୍ଦ୍ଧା ତେ ବ୍ୟପତିଷ୍ୟତ୍' (ଛା ୫-୧୨-୨) ଇତି ଚୈବମାଦିନିନ୍ଦାବଚନବିରୋଧାତ୍, ସ୍ପଷ୍ଟେ

ପ୍ରେପସଂହାରସ୍ପେ ସମସ୍ତୋପାସନାବଗମେ ତଦଭାବସ୍ୟ ପୂର୍ବପକ୍ଷେ ବକ୍ତୁମଶକ୍ୟତ୍ୱାତ୍' ସୌତ୍ରସ୍ୟ ଜ୍ୟାୟସ୍ତ୍ୱବଚନସ୍ୟ ପ୍ରମାଣବତ୍ତ୍ୱାଭିପ୍ରାୟେଣାପ୍ୟୁପପଦ୍ୟମାନତ୍ୱାତ୍, 'ମୂର୍ଧା ତେ ବ୍ୟପତିଷ୍ୟତ୍' (ଛା ୫-୧୨-୨) ଇତି ବୈବମାଦିନିନ୍ଦାବଚନବିରୋଧାତ୍, ସ୍ପଷ୍ଟେ ପ୍ରେପ-ସଂହାରସ୍ପେ ସମସ୍ତୋପାସନାବଗମେ ତଦଭାବସ୍ୟ ପୂର୍ବପକ୍ଷେ ବକ୍ତୁମଶକ୍ୟତ୍ୱାତ୍' ସୌତ୍ରସ୍ୟ ଚ ଜ୍ୟାୟସ୍ତ୍ୱବଚନସ୍ୟ ପ୍ରମାଣବତ୍ତ୍ୱାଭିପ୍ରାୟେଣାପ୍ୟୁପପଦ୍ୟମାନତ୍ୱାତ୍ ।

(ଭାଷା)-(କ) ପୁନଶ୍ଚ ବ୍ୟସ୍ତୋପାସନର ବ୍ୟାବୃତ୍ତି ଓ ସମସ୍ତୋପାସନକୁ ଅନିବୃତ୍ତ କରି 'ସ ସର୍ବେଷୁ' (ସେହି ସମସ୍ତ ଲୋକରେ ସମସ୍ତ ପ୍ରାଣୀମାନଙ୍କଠାରେ ଏବଂ ସମସ୍ତ ଆତ୍ମାରେ ଅନ୍ନଭକ୍ଷଣ କରେ) ଏହିପ୍ରକାର ଭୂମାର ଆଶ୍ରିତଫଳକୁ ଦେଖାଏ । ଯେଉଁ ସୁତେଜା ପ୍ରଭୃତି ପ୍ରତ୍ୟେକ ଅଙ୍ଗରେ ଫଳଭେଦର ଶ୍ରବଣ ହୁଏ, ଏହା ହେଲାପରେ ମଧ୍ୟ ବି ସେହି ଅଙ୍ଗର ଫଳ ପ୍ରଧାନରେ ସ୍ୱୀକାର କରାଯାଏ । 'ଉପାସ୍ସେ' ଏହି ପ୍ରତ୍ୟେକ ଅବୟବରେ ଯେଉଁ କ୍ରିୟାପଦ ଶ୍ରବଣ ହୁଏ, ତାହା ଅନ୍ୟର ଅଭିପ୍ରାୟ ଅନୁବାଦ କରିବା ପାଇଁ ଅଛି । କିନ୍ତୁ ବ୍ୟସ୍ତୋପାସନାର ବିଧାନ ପାଇଁ ନୁହେଁ । ତେଣୁ ସମସ୍ତ ଉପାସନାପକ୍ଷ ଅଧିକ ଶ୍ରେଷ୍ଠ ଅଟେ ।

(ଖ) ବେଦାନ୍ତ ଏକଦେଶୀ ଲୋକ ଏହି ଅଧିକରଣରେ ସମସ୍ତ ଉପାସନା ଜ୍ୟାୟସ୍ତ୍ୱ ପକ୍ଷକୁ ସ୍ଥାପନ କରି ଜ୍ୟାୟସ୍ତ୍ୱ ବଚନ ଦ୍ୱାରା ବ୍ୟସ୍ତ ଉପାସନା ପକ୍ଷ ମଧ୍ୟ ସୂତ୍ରକାର ଅନୁମତ ଅଟେ ବୋଲି କଳ୍ପନା କରନ୍ତି । କିନ୍ତୁ ଏହା ଠିକ୍ ନୁହେଁ; କାରଣ-ଏକବାକ୍ୟତାର ଅବଗତି ହେଲେ ବାକ୍ୟଭେଦର କଳ୍ପନା ଉଚିତ୍ ହୁଏ ନାହିଁ, କାରଣ- 'ମୂର୍ଦ୍ଧା ତେ' (ତୁମ୍ଭର ଶିର ତଳେ ପଡ଼ିବ) ଇତ୍ୟାଦି ନିନ୍ଦା ବଚନର ବିରୋଧ ହୁଏ । ଉପସଂହାରରେ ସମସ୍ତ ଉପାସନାର ଅବଗମ ସ୍ପଷ୍ଟ ହେଲେ ମଧ୍ୟ ବି ପୂର୍ବପକ୍ଷରେ ତାହାର ଅଭାବ କୁହାଯିବ ନାହିଁ ଏବଂ ସୂତ୍ରରେ ଜ୍ୟାୟସ୍ତ୍ୱ ବଚନ ପ୍ରମାଣବତ୍ୱର ଅଭିପ୍ରାୟ ଦ୍ୱାରା ଉପପଦ୍ୟମାନ ହୁଏ ॥୫୭॥

## ३३-शब्दादिभेदाधिकरणम् ॥ सू० ५८ ॥

## ୩୩-ଶବ୍ଦାଦିଭେଦାଧିକରଣମ୍ ସୂଂ-୫୮

## नाना शब्दादिभेदात् ॥ ३-३-५८ ॥

## ନାନା ଶବ୍ଦାଦିଭେଦାତ୍ ॥୩-୩-୫୮॥

ନାନା=ବିଦ୍ୟା ଅନେକ ଅଟେ । ଶବ୍ଦାଦିଭେଦାତ୍=କାରଣ- 'ବେଦ' 'ଉପାସୀତ' ଇତ୍ୟାଦି ଶବ୍ଦାଦି ଭେଦ ଅଛି ॥

ମୂଳ- (କ) ପୂର୍ବସ୍ମିନ୍ନଧିକରଣେ ସତ୍ୟାମପି ସୁତେଜଃପ୍ରଭୃତୀନାଂ ଫଳଭେଦଶ୍ରୁତୌ ସମସ୍ତୋପାସନଂ ଜ୍ୟାୟ ଇତ୍ୟୁକ୍ତମ୍ । ଅତଃ ପ୍ରାପ୍ତା ବୁଦ୍ଧିରନ୍ୟାନ୍ୟପି ଭିନ୍ନଶ୍ରୁତୀନ୍ୟୁପାସନାନି



ସମସ୍ୟୋପାସିଷ୍ୟନ୍ତି ଇତି । ଅପି ଚ ନୈବ ବିଦ୍ୟାଭେଦେ ବିଦ୍ୟାଭେଦୋ ବିଜ୍ଞାତୁଂ ଶକ୍ୟତେ । ବେଦ୍ୟଂ ହି ରୂପଂ ବିଦ୍ୟାୟା ଦ୍ରବ୍ୟଦୈବତମିବ ଯାଗସ୍ୟ ।

(ଖ) ବେଦ୍ୟଶ୍ଚୈକ ଏବେଶ୍ୱରଃଶ୍ରୁତିନାନାତ୍ୱେଽପ୍ୟବଗମ୍ୟତେ 'ମନୋମୟଃ ପ୍ରାଣଶରୀରଃ' (ଛା ୩-୧୪-୨) 'କଂ ବ୍ରହ୍ମ ଖଂ ବ୍ରହ୍ମ' (ଛା ୪-୧୭-୫) 'ସତ୍ୟକାମଃ ସତ୍ୟସଙ୍କଳ୍ପଃ' (ଛା ୮-୧-୫) ଇତ୍ୟେବମାଦିଷୁ । ତଥା (ଏକ ଏବ ପ୍ରାଣଃ' 'ପ୍ରାଣୋ ବାବ ସଂବର୍ଗଃ' (ଛା ୪-୩-୩) ପ୍ରାଣୋ ବାବ ଜ୍ୟେଷ୍ଠଶ୍ଚ' (ଛା ୫-୧-୧) 'ପ୍ରାଣୋହ ପିତା, ପ୍ରାଣୋ ମାତା (ଛା ୭-୧୫-୧) ଇତ୍ୟେବମାଦିଷୁ ।

(ଗ) ବେଦ୍ୟୈକତ୍ୱାଚ୍ଚ ବିଦ୍ୟୈକତ୍ୱମ୍ । ଶ୍ରୁତିନାନାତ୍ୱମପ୍ୟସ୍ମିନ୍‌ପକ୍ଷେ ଗୁଣାନ୍ତରପରତ୍ୱାନ୍ନାନାର୍ଥକତ୍ୱମ୍ । ତସ୍ମାତ୍‌ସ୍ୱପରଶାଖାବିହିତମେକବେଦ୍ୟବ୍ୟପାଶ୍ରୟଂ ଗୁଣଜାତମୁପସଂହର୍ତ୍ତବ୍ୟଂ ବିଦ୍ୟାକାର୍ତ୍ସ୍ନ୍ୟାୟେତି ।

ଭାଷା-(କ) ପୂର୍ବାଧିକରଣରେ ସୁତେଜା ପ୍ରଭୃତିରେ ଫଳଭେଦର ଶ୍ରୁତି ବିଦ୍ୟମାନ ହେବାରୁ ସମସ୍ତ ଉପାସନା ଶ୍ରେଷ୍ଠ ବୋଲି କୁହାଯାଇଛି । ଏହା ଭିନ୍ନ ଶ୍ରୁତିଯୁକ୍ତ ଅନ୍ୟ ଉପାସନାଗୁଡ଼ିକ ସମସ୍ତ ରୂପରେ ଉପାସନା ହୁଅନ୍ତି-ଏହିପରି ବୁଦ୍ଧିପ୍ରାପ୍ତ ହୁଏ । ବେଦ୍ୟର ଅଭେଦ ହେଲେ ମଧ୍ୟ ବିଦ୍ୟାର ଭେଦ ଜଣାପଡ଼େ ନାହିଁ, କାରଣ-ଯେପରି ଦ୍ରବ୍ୟ ଓ ଦେବତା ଯାଗର ରୂପ ଅଟେ । ସେହିପରି ବେଦ୍ୟ ବିଦ୍ୟାର ରୂପ ଅଟେ ।

(ଖ) 'ମନୋମୟଃ' (ଏହି ବ୍ରହ୍ମ ମନୋମୟ ଏବଂ ପ୍ରାଣଶରୀର ଲିଙ୍ଗାତ୍ମା ଶରୀରଯୁକ୍ତ ଅଟେ) 'କଂ ବ୍ରହ୍ମ' (ସୁଖ ବ୍ରହ୍ମ ଅଟେ । ଆକାଶ ବ୍ରହ୍ମ ଅଟେ) 'ସତ୍ୟକାମଃ' (ଈଶ୍ୱର ସତ୍ୟକାମ ଓ ସତ୍ୟସଙ୍କଳ୍ପ ଅଟେ) ଇତ୍ୟାଦି । ସେହିପରି 'ଏକ ଏବ ପ୍ରାଣଃ' (ପ୍ରାଣ ଏକ ଅଟେ ।) ପ୍ରାଣହିଁ ସଂବର୍ଗ ଅଟେ । ପ୍ରାଣ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଅଟେ । ପ୍ରାଣ ପିତା ଓ ପ୍ରାଣ ମାତା । ଇତ୍ୟାଦି ସ୍ଥଳରେ ଶ୍ରୁତିର ଭେଦ ହେବାରୁ ବେଦ୍ୟ ଏକ ଈଶ୍ୱର ଅବଗତ ହୁଏ ।

(ଗ) ବେଦ୍ୟ ଏକ ହେବାରୁ ବିଦ୍ୟା ମଧ୍ୟ ଏକ ରୂପେ ଶୁଣାଯାଏ । ଶ୍ରୁତିଭେଦ ମଧ୍ୟ ଏହି ପକ୍ଷରେ ଅନ୍ୟଗୁଣପରକ ହେଲେ ନିରର୍ଥକ ହୁଏ ନାହିଁ । ତେଣୁ ନିଜର ଶାଖା ଓ ଅନ୍ୟ ଶାଖାଗୁଡ଼ିକରେ ବିହିତ ଏକ ବେଦ୍ୟର ଆଶ୍ରିତ ଗୁଣ ସମୂହ ବିଦ୍ୟା ପୂର୍ଣ୍ଣତା ପାଇଁ ଉପସଂହାର କରେ ।

ମୂଳ-(କ) ଏବଂ ପ୍ରାପ୍ତେ ପ୍ରତିପାଦ୍ୟତେ-ନାନେତି । ବେଦ୍ୟାଭେଦେଽପ୍ୟେବଂଜାତୀୟକା ବିଦ୍ୟା ଭିନ୍ନା ଭବିତୁମର୍ହତି, କୁତଃ ? ଶବ୍ଦାଦିଭେଦାତ୍ । ଭବତି ହିଁ ଶବ୍ଦଭେଦଃ-

'ବେଦ', 'ଉପାସୀତ', 'ସ କ୍ରତୁଂ କୁର୍ବୀତ' (ଛା ୩-୧୪-୧) ଇତ୍ୟେବମାଦିଃ । ଶବ୍ଦଭେଦଶ୍ଚ କର୍ମଭେଦହେତୁଃ ସମଧିଗତଃ ପୁରସ୍ତାତ୍ 'ଶବ୍ଦାନ୍ତରେ କର୍ମଭେଦଃ କୃତାନୁବନ୍ଧତ୍ୱାତ୍' (ଜୈ. ସୂ. ୨-୨-୧) ଇତି । ଆଦିଗ୍ରହଣାଦ୍ ଗୁଣାଦୟୋଽପି ଯଥାସମ୍ଭବଂ ଭେଦହେତବୋ ଯୋଜୟିତବ୍ୟାଃ । (ଖ) ନନୁ ବେଦେତ୍ୟାଦିଷ୍ୱ ଶବ୍ଦଭେଦ ଏବାବ-ଗମ୍ୟତେ, ନ ଯଜତୀତ୍ୟାଦିବଦର୍ଥଭେଦଃ ସର୍ବେଷାମେବୈଷାଂ ମନୋବୃତ୍ତ୍ୟର୍ଥତ୍ୱାଭେଦାତ୍, ଅର୍ଥାନ୍ତରାସମ୍ଭବାଚ୍ଚ । ତତ୍ କଥଂ ଶବ୍ଦଭେଦାଦ୍ ବିଦ୍ୟାଭେଦ ଇତି ? ନୈଷଃ ଦୋଷଃ, ମନୋବୃତ୍ତ୍ୟର୍ଥତ୍ୱାଭେଦେଽପ୍ୟନୁବନ୍ଧଭେଦାଦ୍ ବେଦ୍ୟଭେଦେ ସତି ବିଦ୍ୟାଭେଦୋପପତ୍ତେଃ । (ଗ) ଏକସ୍ୟାପୀଶ୍ୱରସ୍ୟୋପାସ୍ୟସ୍ୟ ପ୍ରତିପ୍ରକରଣଂ ବ୍ୟାବୃତ୍ତା ଗୁଣାଃ ଶିଷ୍ୟନ୍ତେ । ତଥୈକ-ସ୍ୟାପି ପ୍ରାଣସ୍ୟ ତତ୍ର ତତ୍ରୋପାସ୍ୟସ୍ୟାଭେଦେଽପ୍ୟନ୍ୟାଦୃଗ୍‌ଗୁଣୋଽନ୍ୟତ୍ରୋପାସିତବ୍ୟୋ-ଽନ୍ୟାଦୃଗ୍‌ଗୁଣଶ୍ଚାନ୍ୟତ୍ରେତ୍ୟେବମନୁବନ୍ଧଭେଦାଦ୍‌ବେଦ୍ୟଭେଦେ ସତି ବିଦ୍ୟାଭେଦୋ ବିଜ୍ଞାୟତେ ।

ଭାଷା-(ସିଦ୍ଧାନ୍ତ) (କ) - ଏହା ପ୍ରାପ୍ତ ହେବାରୁ 'ନାନା' ପଦ ପ୍ରତିପାଦନ କରାଯାଇଅଛି । ବେଦ ଅଭେଦ ହେଲେବି ଏହିପ୍ରକାର ବିଦ୍ୟାର ଭେଦ ହେବା ଠିକ୍ ଅଟେ । କିପରି ? ଆଦିଶବ୍ଦ ଭେଦରେ । 'ବେଦ ଉପାସୀତ' 'ସ କ୍ରତୁଂ କୁର୍ବୀତ' ଇତ୍ୟାଦି ଶବ୍ଦଭେଦ ଅଛି । ଶବ୍ଦଭେଦ କର୍ମଭେଦର କାରଣ ଅଟେ । ତେଣୁ ପୂର୍ବ ମୀମାଂସାରେ କୁହାଯାଇଛି-ଶବ୍ଦାନ୍ତର କର୍ମଭେଦଃ କୃତାନୁବନ୍ଧତ୍ୱାତ୍' (ଜୈ. ସୂ. ୨-୨-୧) ଅର୍ଥାତ୍ ଭିନ୍ନ ଭିନ୍ନ ଶବ୍ଦ ଅନୁସାରେ କର୍ମ ଭେଦ ହୁଏ; କାରଣ-ଭିନ୍ନ ରୂପରେ ତାହାର ବିଷୟ ସ୍ୱୀକାର କରାଯାଏ । ଧାତ୍ୱର୍ଥରେ ମଧ୍ୟ ଭେଦ ହୁଏ)- ଏହି ସୂତ୍ରରେ ଅଧିଗତ ହୁଏ । ଆଦିପଦର ଗ୍ରହଣ ହେବାଦ୍ୱାରା ଯଥାସମ୍ଭବ୍ ଭେଦର ହେତୁ ରୂପରେ ଯୋଜନା ହେବା ଉଚିତ ।

(ଖ) ପରନ୍ତୁ 'ବେଦ' ଇତ୍ୟାଦିରେ ଶବ୍ଦଭେଦ ପ୍ରତୀତ ହୁଏ କି ? 'ଯଜତି', 'ଦଦାତି' ଇତ୍ୟାଦିର ସମାନ ଅର୍ଥଭେଦ ଅବଗତ ହେଉନାହିଁ । କାରଣ- 'ବେଦ' 'ଉପାସୀତ' ଏହି ସବୁ ଶବ୍ଦର ମନୋବୃତ୍ତି ରୂପ ଏକ ଅର୍ଥ ଅଟେ ଏବଂ ଅନ୍ୟ ଜ୍ଞାନର ଅର୍ଥ ଅସମ୍ଭବ ହୁଏ । କିନ୍ତୁ ଶବ୍ଦଭେଦଦ୍ୱାରା ବିଦ୍ୟାର ଭେଦ କିପରି ହେବ ? ଏହା ଦୋଷ ନୁହେଁ, କାରଣ ମନୋବୃତ୍ତି ରୂପ ଅର୍ଥର ଅଭେଦ ହେବାପରେ ଅନୁବନ୍ଧର ଭେଦରୁ ବିଦ୍ୟାର ଭେଦ ହେବାରୁ ବିଦ୍ୟାଭେଦର ଉତ୍ପତ୍ତି ହୁଏ ।

(ଗ) ଉପାସ୍ୟ ଈଶ୍ୱର ଏକ ହେବାରୁ ତାହାର ଗୁଣ ପ୍ରତ୍ୟେକ ପ୍ରକରଣରେ ବ୍ୟାବୃତ୍ତ (ପୃଥକ ରୂପ) କୁହାଯାଏ । ସେହିପରି ଏକ ହିଁ ପ୍ରାଣ ସେହି ସେହି ସ୍ଥଳରେ ଉପାସ୍ୟ ରୂପରେ ଅଭିନ୍ନ ହେବାରୁ ଏକପ୍ରକାର ଗୁଣଯୁକ୍ତ ଏକ ସ୍ଥାପରେ ଉପାସନୀୟ ହୁଏ ଏବଂ ଅନ୍ୟପ୍ରକାର ଗୁଣଦ୍ୱାରା ଯୁକ୍ତ ହୋଇ ଉପାସନୀୟ ହୁଏ । ସେହିପରି ଅନୁବନ୍ଧ ଭେଦରେ ବିଦ୍ୟାର ଭେଦ ହେବାରୁ ବିଦ୍ୟାର ଭେଦ ଜଣାପଡ଼େ ।



ମୂଳ-(କ) ନ ଋତ୍ରୈକୋ ବିଦ୍ରାବିଧିରିତରେ ଗୁଣବିଧୟ ଇତି ଶକ୍ୟଂ ବକ୍ତୁମ୍, ବିନିଗମନାୟାଂ ହେତ୍ୱଭାବାତ୍, ଅନେକତ୍ୱାଚ ପ୍ରତିପ୍ରକରଣଂ ଗୁଣାନାଂ ପ୍ରାପ୍ତବିଦ୍ୟାନୁବାଦେନ ବିଧାନାନୁପପତ୍ତେଃ । ନ ଋସ୍ମିନ୍‌ପକ୍ଷେ ସମାନାଃ ସନ୍ତଃ ସତ୍ୟକାମାଦୟୋ ଗୁଣା ଅସକୃଚ୍ଛ୍ରା-ବୟିତବ୍ୟାଃ । ପ୍ରତିପ୍ରକରଣଂ ଋେଦଂକାମେନେଦମୁପାସିତବ୍ୟମିଦଂକାମେନ ଋେଦମିତି ନୈରାକାଂକ୍ଷ୍ୟାବଗମାନ୍ନୈକ ବାକ୍ୟତାପତ୍ତିଃ ।

(ଖ) ନ ଋତ୍ର ବୈଶ୍ୱାନର ବିଦ୍ୟାୟାମିବ ସମସ୍ତଋେଦନାପରାସ୍ତି ଯଦ୍‌ବଳେନ ପ୍ରତିପ୍ରକରଣବର୍ତ୍ତୀନ୍ୟବୟବୋପାସନାନି ଭୂତ୍ୱୈକ ବାକ୍ୟତାମିୟୁଃ । ବିଦ୍ୟୈକତ୍ୱ ନିମିତ୍ତୋଚ ବିଦ୍ୟୈକତ୍ୱେ ସର୍ବତ୍ର ନିରଙ୍କୁଶେ ପ୍ରତିଜ୍ଞାୟମାନେ ସମସ୍ତ ଗୁଣୋପସଂହାରୋଽଶକ୍ୟଃ ପ୍ରତିଜ୍ଞାୟତେ । ତସ୍ମାତ୍ ସୁଷ୍ଠୂଚ୍ୟତେ-ନାନା ଶବ୍ଦାଦିଭେଦାଦିତି । ସ୍ଥିତେ ଋେତସ୍ମିନ୍ନଧିକରଣେ ସର୍ବବେଦାନ୍ତ ପ୍ରତ୍ୟୟମିତ୍ୟାଦି ଦ୍ରଷ୍ଟବ୍ୟମ୍ ॥

ଭାଷା-(କ) ଏଠାରେ ଗୋଟିଏ ବିଦ୍ୟାବିଧି ଏବଂ ଅନ୍ୟସବୁ ଗୁଣବିଧି ଅଟନ୍ତି ବୋଲି କୁହାଯାଇ ନପାରେ, କାରଣ-ଏହି ପ୍ରକାର ବ୍ୟବସ୍ଥାରେ କୌଣସି କାରଣ ନାହିଁ । ପ୍ରତ୍ୟେକ ପ୍ରକରଣରେ ଗୁଣ ଅନେକ ହେବାରୁ ପ୍ରାପ୍ତବିଦ୍ୟାର ଅନୁବାଦରୁ ଗୁଣ ବିଧାନର ଉପପତ୍ତି ହୁଏ ନାହିଁ । ଏହିପକ୍ଷରେ ସମାନ ହେବାରୁ ସତ୍ୟକାମ ପ୍ରଭୃତି ଗୁଣର ଅନେକଥର ଶ୍ରବଣ ହେବା ବିଧେୟ ନୁହେଁ । ପ୍ରତ୍ୟେକ ପ୍ରକରଣରେ ଏହି ଫଳର କାମନା କରୁଥିବା ବ୍ୟକ୍ତିଠାରୁ ଏହି ଉପାସ୍ୟର ଉପାସନା କରିବା ଉଚିତ୍ ଏବଂ ଏହି ଫଳର କାମନା କରୁଥିବା ବ୍ୟକ୍ତିଠାରୁ ତାହାକୁ ମଧ୍ୟ ଉପାସନା କରିବା ଉଚିତ୍ । ସେହିପରି ଏକ ଉପାସନାଗୁଡ଼ିକରେ ନୈରାକାଂକ୍ଷ୍ୟ ଅବଗତ ହେବାରୁ ଏକବାକ୍ୟତା ହୁଏ ନାହିଁ ।

(ଖ) ଯେପରି ବୈଶ୍ୱାନର ବିଦ୍ୟାରେ ଅନ୍ୟ ସମସ୍ତ ଉପାସନା ବିଧି ହୁଏ, ସେହିପରି ଏଠାରେ ମଧ୍ୟ ପ୍ରକୃତ ଶାଣ୍ଡିଲ୍ୟାଦି ଉପାସନାଗୁଡ଼ିକରେ ଅନ୍ୟ ସମସ୍ତ ଉପାସନା ବିଧି ନୁହେଁ । ଯାହାର ବଳରେ ପ୍ରତ୍ୟେକ ପ୍ରକରଣବର୍ତ୍ତୀ ଅବୟବ ଉପାସନା ରୂପରେ ଏକବାକ୍ୟତା ପ୍ରାପ୍ତ କରନ୍ତି । ବେଦ୍ୟର ଏକତ୍ୱ ନିମିତ୍ତଦ୍ୱାରା ବିଦ୍ୟା ଏକ ହେଲେ ସର୍ବତ୍ର ସମସ୍ତ ବିଦ୍ୟାଠାରେ ଅଙ୍କୁଶବ୍ୟତୀତ ଯଦି ପ୍ରତିଜ୍ଞା କରାଯାଏ, ତେବେ ସମସ୍ତ ଗୁଣର ଉପସଂହାର ଯାହା ଅଶକ୍ୟ ଅଟେ, ତାହାର ପ୍ରତିଜ୍ଞା ହିଁ ହେବ; ତେଣୁ, ନାନା ଶବ୍ଦାଦିଭେଦାତ୍' ଏହି ପ୍ରକାର ସୂତ୍ରକାର ଠିକ୍ କହିଛନ୍ତି । ଏହି ଅଧିକରଣରେ ଅବସ୍ଥାନ କଲେ 'ସର୍ବ ବେଦାନ୍ତ ପ୍ରତ୍ୟୟ' ଇତ୍ୟାଦି ଅଧିକରଣରେ ଦେଖାଯିବ ॥୫୮॥

४- विकल्पाधिकरणम् ॥ सू. ५९ ॥

୩୪- ବିକଳ୍ପାଧିକରଣମ୍ ॥ସୂ.୫୯॥

विकल्पोऽविशिष्ट कल्पत्वात् ॥ ३-३-५९ ॥

ବିକଳ୍ପୋଽବିଶିଷ୍ଟ ଫଳତ୍ୱାତ୍ ॥୩-୩-୫୯॥

ବିକଳ୍ପ=ସଗୁଣ ବିଦ୍ୟାଗୁଡ଼ିକର ବିକଳ୍ପ ହେବା ବିଧେୟ । ଅବଶିଷ୍ଟ ଫଳତ୍ୱାତ୍=କାରଣ-ବେଦ୍ୟ ବସ୍ତୁର ସାକ୍ଷାତ୍କାର ରୂପ ସମାନଫଳ ଅଟେ ।

ମୂଳ-(କ) ସ୍ଥିତେ ବିଦ୍ୟାଭେଦେ ବିଚାର୍ଯ୍ୟତେ-କିମାସାମିଚ୍ଛୟା ସମୁଚ୍ଚୟୋ ବିକଳ୍ପୋ ବା ସ୍ୟାତ୍, ଅଥବା ବିକଳ୍ପ ଏବ ନିୟମେନେତି ? ତତ୍ର ସ୍ଥିତତ୍ୱାତ୍ତାବଦ୍ବିଦ୍ୟାଭେଦସ୍ୟ ନ ସମୁଚ୍ଚୟ ନିୟମେ କିଞ୍ଚିତ୍ କାରଣମସ୍ତି ।

(ଖ) ନନୁଭିନ୍ନା ନାମପ୍ୟଗ୍ନିହୋତ୍ର ଦର୍ଶ ପୂର୍ଣ୍ଣମାସାଦୀନାଂ ସମୁଚ୍ଚୟ ନିୟମୋ ଦୃଶ୍ୟତେ । ନୈଷଦୋଷଃ । ନିତ୍ୟତାଶ୍ରୁତିର୍ହି ତତ୍ର କାରଣଂ ନୈବ ବିଦ୍ୟାନାଂ କାଚିନ୍ନିତ୍ୟ-ତାଶ୍ରୁତିରସ୍ତି । ତସ୍ମାନ୍ନ ସମୁଚ୍ଚୟ ନିୟମଃ ।

(ଗ) ନାପି ବିକଳ୍ପ ନିୟମଃ । ବିଦ୍ୟାନ୍ତରାଧିକୃତସ୍ୟ ବିଦ୍ୟାନ୍ତରା ପ୍ରତିଷେଧାତ୍ । ପାରିଶେଷ୍ୟାଦ୍ୟାଥାକାମ୍ୟମାପଦ୍ୟତେ । ନନ୍ୱବଶିଷ୍ଟ ଫଳତ୍ୱାଦାସାଂ ବିକଳ୍ପୋ ନ୍ୟାଯ୍ୟଃ । ତଥାହି- 'ମନୋମୟଃ ପ୍ରାଣ ଶରୀରଃ' (ଛା ୩-୧୦-୨) 'କଂ' ବ୍ରହ୍ମ ଖଂ ବ୍ରହ୍ମ' (ଛା ୪-୧୦-୫), 'ସତ୍ୟକାମଃ ସତ୍ୟସଙ୍କଳ୍ପଃ' (ଛା ୮-୧-୫) ଇତ୍ୟେବମାଦ୍ୟାସ୍ତୁଲ୍ୟ ବଦୀଶ୍ୱର ପ୍ରାପ୍ତିଫଳା ଲକ୍ଷ୍ୟନ୍ତେ । ନୈଷ ଦୋଷଃ । ସମାନ ଫଳେଷ୍ୱପି ସ୍ୱର୍ଗାଦି ସାଧନେଷୁ କର୍ମସୁ ଯାଥାକାମ୍ୟଦର୍ଶନାତ୍ ॥

ଭାଷା-(କ) ଏହି ପ୍ରକାର ବିଦ୍ୟାଭେଦ ସିଦ୍ଧ ହେବା ପରେ ବିଚାର କରାଯାଇଅଛି ଯେ- ଏହି ବିଦ୍ୟାଗୁଡ଼ିକ ଉପାସକର ଇଚ୍ଛାଦ୍ୱାରା ସମୁଚ୍ଚୟ ହୁଏ, କି ବିକଳ୍ପ ହୁଏ, ଅଥବା ନିୟମଦ୍ୱାରା ବିକଳ୍ପ ହୁଏ ? ପୂର୍ବପକ୍ଷ-ସେଠାରେ ବିଦ୍ୟାଭେଦ ସିଦ୍ଧ ହେବାରୁ ସମୁଚ୍ଚୟ ନିୟମରେ କୌଣସି କାରଣ ନାହିଁ ।

(ଖ) ପରନ୍ତୁ ଅଗ୍ନିହୋତ୍ର, ଦର୍ଶପୂର୍ଣ୍ଣମାସାଂ ପ୍ରଭୃତି ଏହି ଭିନ୍ନଗୁଡ଼ିକର ସମୁଚ୍ଚୟ ନିୟମ ଦେଖାଯାଏ କି ? ଏହା ଦୋଷ ନୁହେଁ । କାରଣ-ଅଗ୍ନିହୋତ୍ର ପ୍ରଭୃତି ନିତ୍ୟତ୍ୱ ଶ୍ରୁତି ତାହାର ସମୁଚ୍ଚୟ ନିୟମରେ କାରଣ ଅଟେ । କିନ୍ତୁ ବିଦ୍ୟାରେ ଏପରି କୌଣସି ନିତ୍ୟତ୍ୱ ଶ୍ରୁତି ନାହିଁ । ତେଣୁ ସେଠାରେ ସମୁଚ୍ଚୟର ନିୟମ କିଛି ନାହିଁ ।



(ଗ) ସେହିପରି ବିକଳ୍ପର ମଧ୍ୟ ନିୟମ କିଛି ନାହିଁ; କାରଣ-ଗୋଟିଏ ବିଦ୍ୟାରେ ଅଧିକୃତ ହେଲେ ଅନ୍ୟ ବିଦ୍ୟାରେ ପ୍ରତିଷେଧ ହୁଏ ନାହିଁ । ପରିଶେଷରୁ ସ୍ୱେଚ୍ଛାପକ୍ଷ ପ୍ରାପ୍ତ ହୁଏ । ପରନ୍ତୁ ଏହି ବିଦ୍ୟାର ସମାନ ଫଳ ହେଲେ ବିକଳ୍ପ ଠିକ୍ ହୁଏ । କାରଣ 'ମନୋମୟଃ ପ୍ରାଣ ଶରୀରଃ', 'କଂ ବ୍ରହ୍ମ ଖଂ ବ୍ରହ୍ମ', ସତ୍ୟକାମଃ ସତ୍ୟ ସଙ୍କଳ୍ପଃ' ଇତ୍ୟାଦି ଶ୍ରୁତିବାକ୍ୟ ସମାନ ରୂପରେ ଈଶ୍ୱର ପ୍ରାପ୍ତି ରୂପ ଫଳବାନ୍‌କୁ ଦେଖାଏ । ଏହା ମଧ୍ୟ ଦୋଷଯୁକ୍ତ ନୁହେଁ, କାରଣ-ସମାନ ଫଳବାନ୍ ସ୍ୱର୍ଗ ପ୍ରଭୃତି ସାଧନଭୂତ କର୍ମରେ ଯଥାକାମ୍ୟ ଦେଖିବାରେ ଜଣାପଡ଼େ ।

ମୂଳ-(କ) ତସ୍ମାଦ୍ୟାଥାକାମ୍ୟପ୍ରାପ୍ତାବୁତ୍ୟତେ-ବିକଳ୍ପ ଏବାସାଂ ଭବିତୁମର୍ହତି, ନ ସମୁଚ୍ଚୟଃ । କସ୍ମାତ୍ ? ଅବଶିଷ୍ଟ ଫଳତ୍ୱାତ୍ । ଅବିଶିଷ୍ଟଂ ହ୍ୟାସାଂ ଫଳମୁପାସ୍ୟ ବିଷୟ ସାକ୍ଷାତ୍‌କରଣମ୍ । ଏକେନ ଚୋପାସନେନ ସାକ୍ଷାତ୍‌କୃତେ ଉପାସ୍ୟେ ବିଷୟ ଈଶ୍ୱରାଦୌ ଦ୍ୱିତୀୟ ମନର୍ଥକମ୍ । ଅପି ଚସମ୍ଭବ ଏବ ସାକ୍ଷାତ୍ କରଣସ୍ୟ ସମୁଚ୍ଚୟପକ୍ଷେ ଚିତ୍ତ ବିକ୍ଷେପ ହେତୁତ୍ୱାତ୍ ।

(ଖ) ସାକ୍ଷାତ୍‌କରଣଂସାଧ୍ୟଂ ଚ ବିଦ୍ୟାଫଳଂ ଦର୍ଶୟନ୍ତି ଶ୍ରୁତୟଃ- 'ଯସ୍ୟ ସ୍ୟାଦଦ୍ଧା ନ ବିଚିକିତ୍ସାସ୍ତି' (ଛା ୩-୧୪-୪), ଇତି, 'ଦେବୋ ଭୂତ୍ୱା ଦେବାନପ୍ୟେତି' (ବୃହ ୪-୧-୨), 'ସଦା ତଦ୍‌ଭାବଭାବିତଃ' (ଗୀ. ୮-୬) ଇତ୍ୟେବମାଦ୍ୟା । ତସ୍ମାଦ ବିଶିଷ୍ଟଫଳାନାଂ ବିଦ୍ୟାନାମନ୍ୟତମାମାଦାୟ ତତ୍‌ପରଃ ସ୍ୟାଦ୍ ଯାବଦୁପାସ୍ୟ ବିଷୟ ସାକ୍ଷାତ୍‌କରଣେନ ତତ୍‌ଫଳଂ ପ୍ରାପ୍ତମିତି ॥

ଭାଷା-ସିଦ୍ଧାନ୍ତ-(ଖ) ତେଣୁ ଯଥାକାମ୍ୟ ପକ୍ଷ ପ୍ରାପ୍ତ ହେବାରୁ କୁହାଯାଇଛି-ଏହି ଉପାସନାଗୁଡ଼ିକ ବିକଳ୍ପ ହେବା ଉଚିତ୍ । ସମୁଚ୍ଚୟ ନୁହେଁ, କିପରି ? କାରଣ-ଏହା ଅବଶିଷ୍ଟ ଫଳ ଅଟେ । ଏହି ଉପାସନାଗୁଡ଼ିକ ଉପାସ୍ୟ ବିଷୟକ ସାକ୍ଷାତ୍‌କାର କରିବା ସଦୃଶ । ଏକ ଉପାସନାରୁ ଉପାସ୍ୟ ଈଶ୍ୱରାଦି ବିଷୟକ ସାକ୍ଷାତ୍‌କାର ହେଲେ ଅନ୍ୟ ଉପାସନାଗୁଡ଼ିକ ପ୍ରୟୋଜନ ରହିତ ହୁଅନ୍ତି । ସମୁଚ୍ଚୟ ପକ୍ଷରେ ସାକ୍ଷାତ୍‌କାର ଅନ୍ୟ ଉପାସନାଗୁଡ଼ିକ ପ୍ରୟୋଜନ ରହିତ ହୁଅନ୍ତି । ସମୁଚ୍ଚୟ ପକ୍ଷରେ ସାକ୍ଷାତ୍‌କାର ଅସମ୍ଭବ ହୁଏ; କାରଣ-ସମୁଚ୍ଚୟ ଚିତ୍ତ ବିକ୍ଷେପର ହେତୁ ଅଟେ । 'ଯସ୍ୟସ୍ୟାଦଦ୍ଧା' (ମୁଁ ମରିଯାଇ ତାହାକୁ ପାଇବି । ଏହା ନିଶ୍ଚିତ । ଏହି ବିଷୟରେ କୌଣସି ସନ୍ଦେହ ନାହିଁ । ତାହାଦ୍ୱାରା ଈଶ୍ୱରଭାବ ପ୍ରାପ୍ତ ହୁଏ) ଏବଂ 'ଦେବୋ ଭୂତ୍ୱା' (ସେ ଏହି ଲୋକରେ ଦେବତା ହୋଇ ଶରୀରପାତ ହେବା ପରେ ଦେବକୁ ପ୍ରାପ୍ତ ହୁଏ) ଇତ୍ୟାଦି ସ୍ମୃତିଗୁଡ଼ିକ ସାକ୍ଷାତ୍‌କାରଦ୍ୱାରା ସାଧ୍ୟବିଦ୍ୟାର ଫଳକୁ ଦେଖାଏ । ସେହିପରି ସମାନ ଫଳଯୁକ୍ତ ବିଦ୍ୟାରେ ଏକକୁ ନେଇ ତତ୍‌ପର ହୋଇପାରେ । ଯେ ପର୍ଯ୍ୟନ୍ତ ଉପାସ୍ୟ ବିଷୟକ ସାକ୍ଷାତ୍‌କାରରୁ ତାହାର ଫଳ ମିଳେ ॥୫୯॥

## ३५- काम्याधिकरणम् ॥ सू .६० ॥

## ୩୫-କାମ୍ୟାଧିକରଣମ୍ ॥ସୂ.୬୦॥

**काम्यास्तु यथाकामं समुच्चीयेरन्न वा पूर्वहेत्वभावात् ॥ ३-३-६० ॥**

**କାମ୍ୟାସ୍ତୁ ଯଥାକାମଂ ସମୁଚ୍ଚୀୟେରନ୍ନ ବା ପୂର୍ବହେତ୍ୱଭାବାତ୍ ॥୩-୩-୬୦॥**

କାମ୍ୟାସ୍ତୁ=କାମ୍ୟ ବିଦ୍ୟାଗୁଡ଼ିକର କିନ୍ତୁ, ଯଥାକାମଂ=ବହୁଳ ଭାବରେ ସମୂଚ୍ଚୀୟେରନ୍ନ ବା=ସମୁଚ୍ଚୟ ହେଉ ବା ନହେଉ, ପୂର୍ବହେତ୍ୱାଭାବାତ୍=କାରଣ- ସମାନ ଫଳରୂପ ବିକଳ୍ପର ପ୍ରୟୋଜକ ଫଳରେ ଅଭାବ ଅଟେ ॥

ମୂଳ-(କ) 'ଅବଶିଷ୍ଟ ଫଳତ୍ୱାତ୍' ଇତ୍ୟସ୍ୟ ପ୍ରତ୍ୟୁଦାହରଣମ୍ । ଯାସୁ ପୁନଃ କାମ୍ୟାସୁ ବିଦ୍ୟାସୁ 'ସ ଯ ଏତମେବ ବାୟୁଂ ଦିଶାଂ ବତ୍ସଂ ବେଦ ନ ପୁତ୍ରରୋଦଂ ରୋଦିତି' (ଛା ୩-୧୫-୨), 'ସ ଯୋ ନାମ ବ୍ରହ୍ମେତ୍ୟୁପାସ୍ତେ ଯାବାନ୍ନାମ୍ନୋ ଗତଂ ତତ୍ରାସ୍ୟ ଯଥାକାମଚରୋ ଭବତି' (ଛା ୭-୧-୫) ଇତି ଚୈବମାଦ୍ୟସୁ କ୍ରିୟାବଦଦୃଷ୍ଟେନାତ୍ମନାତ୍ମୀୟଂ ଫଳଂ ସାଧୟନ୍ତୀଷୁ ସାକ୍ଷାତ୍କରଣାପେକ୍ଷା ନାସ୍ତି । ତା ଯଥାକାମଂ ସମୁଚ୍ଚୀୟେରନ୍ନ ବା ସମୁଚ୍ଚୀୟେରନ୍, ପୂର୍ବହେତ୍ୱଭାବାତ୍ । ପୂର୍ବସ୍ୟାବିଶିଷ୍ଟ ଫଳତ୍ୱାଦିତ୍ୟସ୍ୟ ବିକଳ୍ପହେତୋରଭାବାତ୍ ॥

ଭାଷା- '(କ) ସମାନ ଫଳ ହେବାରୁ' ଏହି ପୂର୍ବୋକ୍ତ ହେତୁର ଏହା ପ୍ରତ୍ୟୁଦାହରଣ ଅଟେ । ପରନ୍ତୁ 'ସ ଯ ଏତମେବ' (ସେ ଯେ କୌଣସି ପୁତ୍ରର ଦୀର୍ଘଜୀବନକୁ କାମନା କରି ଏହିପରି ବାୟୁକୁ ଗୋ-ରୂପରେ କଳ୍ପିତଦିଗକୁ ବତ୍ସାରୂପରେ ଜାଣେ । ପୁତ୍ର ନିମିତ୍ତରୁ ରୋଦନ କରେ ନାହିଁ । ପୁତ୍ର ମରଣଜନ୍ୟ ରୋଦନ କରେ ନାହିଁ ।) 'ସ ଯୋ ନାମ ବ୍ରହ୍ମ' (ସେ ଯେ କୌଣସି ନାମ ବ୍ରହ୍ମ ଅଟେ । - ଏହା ଉପାସନା କରେ । ତାହା ଯେପର୍ଯ୍ୟନ୍ତ ନାମର ଗତି ହୁଏ, ସେ ପର୍ଯ୍ୟନ୍ତ ଯଥେଚ୍ଛା ଗତି ହୁଏ) ଇତ୍ୟାଦି ଯେଉଁ କାମ୍ୟ ବିଦ୍ୟାରେ କ୍ରିୟା ପରି ଅଦୃଷ୍ଟ ରୂପରେ ନିଜେ ସେହି ସେହି ଫଳକୁ ସିଦ୍ଧ କରି ସାକ୍ଷାତ୍କାରକୁ ଅପେକ୍ଷା କରେ ନାହିଁ । ସେମାନେ ଯଥେଷ୍ଟଭାବେ ସମୁଚ୍ଚିତ ହେବା ଉଚିତ୍ ଅଥବା ସମୁଚ୍ଚିତ ଗତି ହେବା ଉଚିତ୍ ନୁହେଁ । କାରଣ-ଏଠାରେ ପୂର୍ବର ହେତୁର ଅଭାବ ହୁଏ । ଅବଶିଷ୍ଟ ଫଳ ହେଲେ ଏହି ପୂର୍ବବିକଳ୍ପ ହେତୁର ଅଭାବ ହୁଏ ॥୬୦॥

## ३६- यथाश्रयभावाधिकरणम् ॥ सू. ६१-६६ ॥

## ୩୬-ଯଥାଶ୍ରୟଭାବାଧିକରଣମ୍ ॥ସୂ ୬୧-୬୬॥

**अङ्गेषु यथाश्रयभावः ॥ ३-३-६१ ॥**

**ଅଙ୍ଗେଷୁ ଯଥାଶ୍ରୟଭାବଃ ॥୩-୩-୬୧॥**



ଅଙ୍ଗେଷୁ=କର୍ମଙ୍ଗୋଦ୍‌ଗୀଥାଦି ଆଶ୍ରିତ ଉପାସନାଗୁଡ଼ିକରେ ଯଥାଶ୍ରୟ ଭାବଃ=ସମୁଚ୍ଚୟ ଦ୍ୱାରା ଅନୁଷ୍ଠାନ ନିୟମ ହୁଏ । ଯେପରି କ୍ରତୁରେ ଆଶ୍ରିତ ଅଙ୍ଗର ଅନୁଷ୍ଠାନ ନିୟମ ହୁଏ ॥

ମୂଳ-(କ) କର୍ମାଙ୍ଗେଷୁଦ୍‌ଗୀଥାଦିଷୁ ଯେ ଆଶ୍ରିତାଃ ପ୍ରତ୍ୟୟାଃ ବେଦତ୍ରୟ ବିହିତାଃ, କିଂ ତେ ସମୁଚ୍ଚୀୟେରନ୍ କିଂ ବା ଯଥାକାମଂ ସ୍ୟୁରିତି ସଂଶୟେ ଯଥାଶ୍ରୟଭାବ ଇତ୍ୟାହ । ଯଥୈବୈଷାମାଶ୍ରୟାଃ ସ୍ତୋତ୍ରାଦୟଃ ସଂଭୂୟ ଭବନ୍ତ୍ୟେବଂ ପ୍ରତ୍ୟୟା ଅପି ଆଶ୍ରୟତନ୍ତ୍ରତ୍ୱାତ୍ ପ୍ରତ୍ୟୟାନାମ୍ ॥

ଭାଷା- କର୍ମର ଅଙ୍ଗୀଭୂତ ଉଦ୍‌ଗୀଥାଦିର ଆଶ୍ରିତ ବେଦତ୍ରୟରେ ବିହିତ ଯେଉଁ ଉପାସନାଗୁଡ଼ିକ ରହିଛି, ତାହାର କ'ଣ ସମୁଚ୍ଚୟ ହେବା ଉଚିତ୍ କି ଯଥେଷ୍ଟ ଅନୁଷ୍ଠାନ ହେବା ଉଚିତ ? ଏହିପରି ସଂଶୟ ହେବାରୁ 'ଯଥାଶ୍ରୟଭାବଃ' କୁହାଯାଇଛି । ଯେପରି ଏହି ଉପାସନାଗୁଡ଼ିକର ଆଶ୍ରୟଭୂତ ସ୍ତୋତ୍ର ପ୍ରଭୃତି ସମୁଚ୍ଚୟରୁ ଜାତ ହୁଅନ୍ତି, ସେହିପରି ଉପାସନାଗୁଡ଼ିକ ସମୁଚ୍ଚୟରୁ ଜନ୍ମ ହୁଅନ୍ତି । କାରଣ-ଉପାସନାଗୁଡ଼ିକ ଆଶ୍ରୟର ଅଧୀନ ଅଟେ ॥୬୧॥

## शिष्टेश्च ॥ ३-३-६१ ॥

## ଶିଷ୍ଟେଶ୍ଚ ॥୩-୩-୬୧॥

ଶିଷ୍ଟେଃ ଚ=ବିଧାନ ହେଲେ ଅଙ୍ଗପରି ସମୁଚ୍ଚୟ ହୁଏ ॥

ମୂଳ - (କ) ଯଥା ବାଶ୍ରୟାଃ ସ୍ତୋତ୍ରାଦୟସ୍ତ୍ରିଷୁ ଶିଷ୍ୟନ୍ତ ଏବମାଶ୍ରିତା ଅପି ପ୍ରତ୍ୟୟାଃ । ନୋପଦେଶକୃତୋଽପି କଶ୍ଚିଦ୍‌ବିଶେଷୋଽଙ୍ଗାନାଂ ତଦାଶ୍ରୟାଣାଂ ଚ ପ୍ରତ୍ୟୟାନାମିତ୍ୟର୍ଥଃ ॥

ଭାଷା - (କ) ଯେପରି ସ୍ତୋତ୍ର ପ୍ରଭୃତିର ଆଶ୍ରୟ ବେଦତ୍ରୟ ବୋଲି କୁହାଯାଇଅଛି, ସେହିପରି ଆଶ୍ରିତ ଉପାସନାଗୁଡ଼ିକ କୁହାଯାଇଅଛି । ଅଙ୍ଗ ଓ ତାହାର ଆଶ୍ରିତ ଉପାସନାଗୁଡ଼ିକରେ ଉପଦେଶକୃତ କୌଣସି ବିଶେଷ ନାହିଁ, ସେପରି ଅର୍ଥ କରିବା ବିଧେୟ ॥୬୨॥

## समाहारात् ॥ ३-३-६३ ॥

## ସମାହାରାତ୍ ॥୩-୩-୬୩॥

ସମାହାରାତ୍=ଅନ୍ୟ ବେଦୋକ୍ତ ପ୍ରଣବର ଅନ୍ୟତ୍ର ସମାହାର ହେଲେ ମଧ୍ୟ ଅଙ୍ଗାଶ୍ରିତ ଉପାସନାଗୁଡ଼ିକର ସମୁଚ୍ଚୟ ହୁଏ ॥

ମୂଳ (କ) 'ହୋତୃଷଦନାଦ୍ଧୈବାପି ଦୁରୁଦ୍‌ଗୀଥମନୁସମାହରତି' (ଛା ୧-୫-୫) ଇତି ଚ ପ୍ରଣବୋଦ୍‌ଗୀଥୈକତ୍ୱ ବିଜ୍ଞାନ ମାହାତ୍ମ୍ୟାଦୁଦ୍‌ଗାତା ସ୍ୱକର୍ମଣ୍ୟୁତ୍ପନ୍ନଂ କ୍ଷତଂ ହୌତ୍ରା-

ତ୍ରକର୍ମଣଃ ପ୍ରତିସମାଦଧତୀତି ବ୍ରୁବନ୍ ବେଦାନ୍ତରୋଦିତସ୍ୟ ପ୍ରତ୍ୟୟସ୍ୟ ବେଦାନ୍ତରୋଦିତ ପଦାର୍ଥ ସମ୍ବନ୍ଧ ସାମାନ୍ୟାତ୍ ସର୍ବବେଦୋଦିତ ପ୍ରତ୍ୟୟୋପସଂହାରଂ ସୂଚୟତୀତି ଲିଙ୍ଗଦର୍ଶନମ୍ ॥

ଭାଷା- 'ହୋତୃଷଦନାତ୍' (ସ୍ୱର ଓ ବ୍ୟଞ୍ଜନ ପ୍ରଭୃତିର ପ୍ରମାଦରୁ ଦୁଷ୍ଟ ଉଦ୍‌ଗୀଥାଦିକୁ ଉଦ୍‌ଗାତା ସମ୍ୟକ୍‌କୃତ, ହୋତାର ଶଂସନରୁ ନିର୍ଦୋଷ କରେ) ଏହି ଶ୍ରୁତିବାକ୍ୟ ପ୍ରଣବ ଓ ଉଦ୍‌ଗୀଥାର ଏକତ୍ୱ ବିଜ୍ଞାନ ମାହାତ୍ମ୍ୟରୁ ଉଦ୍‌ଗାତା ନିଜ କର୍ମରୁ ଉତ୍ପନ୍ନ ହୋଇ ଦୋଷହୋତ୍ରର କର୍ମରୁ ପ୍ରତି ସମାଧାନ ଅର୍ଥାତ୍ ନିର୍ଦୋଷ କରେ-ଏହା କୁହାଯାଇ ଅନ୍ୟବେଦରେ କଥିତ ଉପାସନା ଅନ୍ୟ ବେଦରେ ଉକ୍ତ ପଦାର୍ଥର ସହିତ ସମାନ ସମ୍ବନ୍ଧ ହେବାରୁ ସର୍ବବେଦୋକ୍ତ ଉପାସନାର ଉପସଂହାର ସୂଚିତ କରେ । ଏହା ହିଁ ଲିଙ୍ଗଦର୍ଶନ ଅଟେ ॥୬୩॥

## गुणसाधारण्यश्रुतेश्च ॥ ३-३-६४ ॥

## ଗୁଣ ସାଧାରଣ୍ୟଶ୍ରୁତେଶ୍ଚ ॥୩-୩-୬୪॥

ଗୁଣ ସାଧାରଣ୍ୟଶ୍ରୁତେଃ ଚ= 'ତେନେୟଂ ତ୍ରୟୀ ବିଦ୍ୟା ବର୍ତ୍ତତେ' ଇତ୍ୟାଦି ଉଦ୍‌ଗୀଥ ଉପାସନାରେ ଗୁଣଭୂତ ଓଁ କାର ତିନି ବେଦରେ ସାଧାରଣ ରୂପରେ ଶୁଣାଯାଏ ॥

ମୂଳ-(କ) ବିଦ୍ୟାଗୁଣଂ ଚ ବିଦ୍ୟାଶ୍ରୟଂ ସନ୍ତମୋକାରଂ ବେଦତ୍ରୟ ସାଧାରଣଂ ଶ୍ରାବୟତି-ତେନେୟଂ ତ୍ରୟୀ ବିଦ୍ୟା ବର୍ତ୍ତତେ ଓଁ ମିତ୍ୟାଶ୍ରାବୟତ୍ୟୋମିତି ଶଂସତ୍ୟୋମିତ୍ୟୁଦ୍‌-ଗାୟତି' (ଛା ୧-୧-୯) ଇତି ଚ । ତତଶ୍ଚାଶ୍ରୟସାଧାରଣ୍ୟାଦାଶ୍ରିତ ସାଧାରଣ୍ୟମିତି ଲିଙ୍ଗଦର୍ଶନମେବ ।

(ଖ) ଅଥବା-ଗୁଣସାଧାରଣ୍ୟଶ୍ରୁତେଶ୍ଚେତି । ଯଦୀମେ କର୍ମଗୁଣା ଉଦ୍‌ଗୀଥାଦୟଃ ସର୍ବେ ସର୍ବପ୍ରୟୋଗସାଧାରଣା ନ ସ୍ୟୁର୍ନ ସ୍ୟତ୍ତତସ୍ତଦାଶ୍ରୟାଣାଂ ପ୍ରତ୍ୟୟାନାଂ ସହଭାବଃ । ତେ ତୂଦ୍‌ଗୀଥାଦୟଃ ସର୍ବାଙ୍ଗଗ୍ରାହିଣା ପ୍ରୟୋଗବଚନେନ ସର୍ବେ ସର୍ବପ୍ରୟୋଗସାଧାରଣାଃ ଶ୍ରାବ୍ୟନ୍ତେ । ତତଶ୍ଚାଶ୍ରୟସହଭାବାତ୍ ପ୍ରତ୍ୟୟସହଭାବ ଇତି ॥

ଭାଷା - (କ) 'ତେନେୟଂ ତ୍ରୟୀ' (ସେହି ଅକ୍ଷରରୁ ଏହି ଋଗ୍‌ବେଦ ଆଦିରୂପ ତ୍ରୟୀବିଦ୍ୟା ପ୍ରବୃତ୍ତ ହୁଏ । ଓଁ କହି ଅଧ୍ୱର୍ଯ୍ୟୁଶ୍ରବଣ କରେ । ଓଁ କହି ହୋତା ଶଂସନ କରେ ଏବଂ ଓଁ କହି ଉଦ୍‌ଗାତା ଗାନ କରେ) । ଏହି ଶ୍ରୁତି ବିଦ୍ୟାର ଗୁଣ ବିଦ୍ୟାର ଆଶ୍ରୟଭୂତ ଓଁ କାରକୁ ବେଦତ୍ରୟରେ ସାଧାରଣ ସମାନ ରୂପରେ ଶ୍ରବଣ କରାଯାଏ । ତେଣୁ ଆଶ୍ରୟ ଓଁ କାର ସାଧାରଣ ହେଲେ ତାହାର ଆଶ୍ରିତ ଉପାସନାଗୁଡ଼ିକ ମଧ୍ୟ ସାଧାରଣ ହୁଅନ୍ତି । ଏହା ଲିଙ୍ଗ ଦର୍ଶନ ଅଟେ ।



(ଖ) ଅଥବା 'ଗୁଣ ସାଧାରଣ ଶ୍ରୁତେଃ' ଯଦି ଉଦ୍‌ଗୀଥାଦି ଏହି ସମସ୍ତ କର୍ମଗୁଣ ପ୍ରୟୋଗରେ ଗୁଣସାଧାରଣ ବା ସମାନ ନ ହୁଏ, ତେବେ ତାହାର ଏହି ଋଗ୍‌ବେଦ ଆଦିରୂପ ଆଶ୍ରିତ ଉପାସନାଗୁଡ଼ିକ ସର୍ବତ୍ର ସହଭାବ ହୁଏ ନାହିଁ । ପରନ୍ତୁ ସେମାନେ ସବୁ ଉଦ୍‌ଗୀଥାଦି ସର୍ବାଙ୍ଗଗ୍ରାହୀ ପ୍ରୟୋଗ ବଚନରୁ ସମସ୍ତ ପ୍ରୟୋଗରେ ସମାନ ରୂପରେ ଶ୍ରବଣ କରାଇଦିଏ । ତେଣୁ ତାହାର ଆଶ୍ରୟ ସଦ୍‌ଭାବରୁ ଆଶ୍ରିତ ଉପାସନାଗୁଡ଼ିକ ସହଭାବ ଅଟନ୍ତି ।।୬୪।।

## न वा तत्सहभावाश्रुतेः ।। ३-३-६५ ।।

## ନ ବା ତତ୍‌ସହଭାବାଶ୍ରୁତେଃ ।।୩-୩-୬୫।।

ନ ବା = ଅଙ୍ଗାଶ୍ରିତ ଉପାସନାଗୁଡ଼ିକର ସମୁଚ୍ଚୟ ନାହିଁ, ତତ୍‌ସହଭାବ ଶ୍ରୁତେଃ=କାରଣ- 'ଗ୍ରହଂ ଗୃହୀତ୍ୱା' ଏହିପ୍ରକାର ଯେପରି ଅଙ୍ଗର ସହଭାବ ଶୁଣାଯାଏ ସେହିପରି ଅଙ୍ଗାଶ୍ରିତ ଉପାସନାଗୁଡ଼ିକର ସହଭାବ ଶୁଣାଯାଏ ନାହିଁ ।

ମୂଳ-(କ) ନ ବେତି ପକ୍ଷବ୍ୟାବର୍ତ୍ତନମ୍ । ନ ଯଥାଶ୍ରୟଭାବ ଆଶ୍ରିତାନାମୁପାସନାନାଂ ଭବିତୁମର୍ହତି । କୁତଃ ? ତତ୍‌ସହଭାବାଶ୍ରୁତେଃ । ଯଥାହି ତ୍ରିବେଦବିହିତାନାମଙ୍ଗାନାଂ ସ୍ତୋତ୍ରାଦୀନାଂ ସହଭାବଃ ଶ୍ରୂୟତେ-ଗ୍ରହଂ ବା ଗୃହୀତ୍ୱା ଚମସଂ ବୋନ୍ନୀୟଂ ସ୍ତୋତ୍ରମୁ-ପାକରୋତି, ସ୍ତୋତ୍ରମନୁଶଂସତି, ପ୍ରସ୍ତୋତଃ ସାମ ଗାୟ ହୋତରେତଦ୍ୟଜ' ଇତ୍ୟାଦିନା । ନୈବୋପାସାନାନାଂ ସହଭାବଶ୍ରୁତିରସ୍ତି ।

(ଖ) ନନୁ ପ୍ରୟୋଗ ବଚନ ଏଷାଂ ସହଭାବଂ ପ୍ରାପୟେତ୍ । ନେତି ବ୍ରୂମଃ । ପୁରୁଷାର୍ଥତ୍ୱାଦ୍ ଉପାସନାନାମ୍ । ପ୍ରୟୋଗ ବଚନୋ ହି କ୍ରତ୍ୱର୍ଥାନା ମୁଦ୍‌ଗୀଥାଦୀନାଂ ସହଭାବଂ ପ୍ରାପୟେତ୍ । ଉଦ୍‌ଗୀଥାଦ୍ୟୁପାସନାନି କ୍ରତ୍ୱର୍ଥାଶ୍ରୟାଣ୍ୟପି ଗୋଦୋହନାଦିବତ୍ ପୁରୁଷାର୍ଥାନୀ-ତ୍ୟବୋଚମ 'ପୃଥଗ୍‌ଧ୍ୟ ପ୍ରତିବନ୍ଧ ଫଳମ୍ (ବ୍ର. ସୂ. ୩-୩-୪୨) ଇତ୍ୟତ୍ର ।

(ଗ) ଅୟମେବ ଚୋପଦେଶାଶ୍ରୟୋ ବିଶେଷୋଽଙ୍ଗାନାଂ ତଦାଲମ୍ବନାନାଂ ଚୋପା-ସନାନାଂ ଯଦେକେଷାଂ କ୍ରତ୍ୱର୍ଥତ୍ୱମେକେଷାଂ ପୁରୁଷାର୍ଥ ତ୍ୱମିତି । ପରଞ୍ଚ ଲିଙ୍ଗଦ୍ୱୟମ୍ କାରଣ-ମୁପାସନ ସହଭାବସ୍ୟ ଶ୍ରୁତିନ୍ୟାୟା ଭାବାତ୍ । ନଚ ପ୍ରତିପ୍ରୟୋଗମାଶ୍ରୟ କାର୍ତ୍ସ୍ନ୍ୟୋପସଂହାରା-ଦାଶ୍ରିତାନାମପି ତଥାତ୍ୱଂ ବିଜ୍ଞାତୁଂ ଶକ୍ୟମ୍ ।

(ଘ) ଅତତ୍ ପ୍ରଯୁକ୍ତତ୍ୱାଦୁପାସନାନାମ୍ । ଆଶ୍ରୟ ତନ୍ତ୍ରାଣ୍ୟପି ହ୍ୟୁପାସନାନି କାମମାଶ୍ରୟା ଭାବେ ମା ଭୂବନ୍ନତ୍ୱାଶ୍ରୟ ସହଭାବେନ ସହଭାବ ନିୟମ ମର୍ହନ୍ତି, ତତ୍‌ସହ-ଭାବା ଶ୍ରୁତେରେବ । ତସ୍ମାଦ୍ୟଥା କାମମେବୋ ପାସନାନ୍ୟନୁଷ୍ଠୀୟେରନ୍ ।

ଭାଷା-(କ) 'ନ ବା' ଏହି ଶବ୍ଦଗୁଡ଼ିକ ପୂର୍ବପକ୍ଷର ବ୍ୟାବୃତ୍ତି କରନ୍ତି । ଆଶ୍ରିତ ଉପାସନାଗୁଡ଼ିକର ଆଶ୍ରୟଭାବ ଅନୁସାରେ ସମୁଚ୍ଚୟ ହୁଏ ନାହିଁ, କିପରି ? ତାହାର ସହଭାବ ଶୁଣାଯାଏ ନାହିଁ । ଯେପରି ତିନୋଟି ବେଦରେ ବିହିତ ସ୍ତୋତ୍ର ପ୍ରଭୃତି ଅଙ୍ଗର ସହଭାବ 'ଗ୍ରହଂ ଗୃହୀତ୍ୱା' (ଗ୍ରହ ପାତ୍ରାକୁ ଗ୍ରହଣ କରି ଅଥବା ଚମସ ପାତ୍ରରେ ସୋମରସ ରଖି ସେହି ସ୍ତୋତ୍ରକୁ ଆରମ୍ଭ କରେ । ସ୍ତୋତ୍ରକୁ ଅନୁଶଂସନ କରେ, ହେ ପ୍ରସ୍ତୋତା ! ତୁମ୍ଭେ ସାମକୁ ଗାୟନ କର । ହେ ହୋତା ! ତୁମ୍ଭେ ଏହାକୁ ଯାଗ କର ଇତ୍ୟାଦି ଶ୍ରୁତି କହେ । ସେହିପରି ଉପାସନାଗୁଡ଼ିକ ସହଭାବର ଶ୍ରୁତି ନୁହେଁ ।

(ଖ) ପରନ୍ତୁ ପ୍ରୟୋଗ ବଚନ ବିଧି ତାହାର ସହଭାବ ପ୍ରାପ୍ତ କରାଇବ ନାହିଁ ବୋଲି ଆମ୍ଭେ କହୁଁ । କାରଣ-ଉପାସନାଗୁଡ଼ିକ ପୁରୁଷାର୍ଥ ଅଟନ୍ତି । ପ୍ରୟୋଗବିଧି କ୍ରତ୍ୱର୍ଥ ଉଦ୍‌ଗୀଥ ପ୍ରଭୃତିର ସହଭାବ ପ୍ରାପ୍ତ କରାଇବ । ପରନ୍ତୁ କ୍ରତ୍ୱର୍ଥ ଆଶ୍ରୟ ଉଦ୍‌ଗୀଥାଦି ଉପାସନାଗୁଡ଼ିକ ଗୋ-ଦୋହନର ପରି ପୁରୁଷାର୍ଥ ଅଟନ୍ତି । ଏହି 'ପୃଥଗ୍‌ଧ ପ୍ରତିବନ୍ଧଃ' 'ଫଳମ୍' ଏହି ସୂତ୍ରରେ ଆମ୍ଭେ କହିଅଛୁ ।

(ଗ) ଅଙ୍ଗ ଓ ତାହାର ଆଶ୍ରିତ ଉପାସନାଗୁଡ଼ିକରେ ଉପଦେଶର ଆଶ୍ରୟ ଉପରେ ଏହା ଏକ ବିଶେଷ ଯେ-ଏଠାରେ କ୍ରତ୍ୱର୍ଥ ଏକ ଅଟେ । ଅନ୍ୟଟି ପୁରୁଷାର୍ଥ ଅଟେ । ଅନ୍ୟ ଦୁଇଟି ଲିଙ୍ଗ ଉପାସନାଗୁଡ଼ିକର ସହଭାବରେ କାରଣ ନୁହେଁ; କାରଣ ସେଠାରେ ଶ୍ରୁତି ଓ ନ୍ୟାୟ ବାକ୍ୟର ଅଭାବ ଅଛି । ପ୍ରତ୍ୟେକ ପ୍ରୟୋଗରେ ସଂପୂର୍ଣ୍ଣ ଆଶ୍ରୟର ଉପସଂହାର ହେଲେ ଆଶ୍ରିତର ମଧ୍ୟ ସେହିପରି ଉପସଂହାର ହେଉ ବୋଲି ଜଣାଯାଏ ନାହିଁ ।

(ଘ) କାରଣ-ଉପାସନାଗୁଡ଼ିକ ତନ୍ମଧ୍ୟରେ ପ୍ରଯୁକ୍ତ ନୁହନ୍ତି । ଆଶ୍ରୟ ଅଧୀନ ହେଲେ ମଧ୍ୟ ଉପାସନାଗୁଡ଼ିକ ଆଶ୍ରୟର ଅଭାବରେ ଭଲ ନ ହେଉ; ପରନ୍ତୁ ଆଶ୍ରୟଗୁଡ଼ିକର ସହଭାବ ହେଲେ ବି ସହଭାବର ନିୟମ ହୁଏ ନାହିଁ । କାରଣ-ସେଗୁଡ଼ିକ ସହଭାବ ପାଇଁ ଶ୍ରୁତିବାକ୍ୟ ନାହିଁ; ତେଣୁ ନିଜେ ଇଚ୍ଛା ଅନୁସାରେ ଉପାସନାଗୁଡ଼ିକର ଅନୁଷ୍ଠାନ କରିବା ଉଚିତ୍ ॥୬୫॥

**दर्शनाच्च ॥ ३-३-६६ ॥**

**ଦର୍ଶନାଚ୍ଚ ॥୩-୩-୬୬॥**

ଦର୍ଶନାତ୍ ଚ='ଏବଂବିଦ୍ଧ ବୈ ବ୍ରହ୍ମା' ଇତ୍ୟାଦି ଶ୍ରୁତି ଅଙ୍ଗାଶ୍ରିତ ଉପାସନାଗୁଡ଼ିକର ସହଭାବ ପ୍ରଦର୍ଶନ କରାଏ ॥



ମୂଳ (କ) ଦର୍ଶୟତି ଚ ଶ୍ରୁତିର ସହଭାବଂ ପ୍ରତ୍ୟୟାନାମ୍-'ଏବଂବିଦ୍ଧ ବୈ ବ୍ରହ୍ମାଯଜ୍ଞ ଯଜମାନଂ ସର୍ବାଶ୍ଚର୍ଦ୍ୱିଜୋଽଭିରକ୍ଷତି' (ଛା ୪-୧୭-୧୦) ଇତି । ସର୍ବ ପ୍ରତ୍ୟୟୋପ-ସଂହାରେ ହି ସର୍ବେ ସର୍ବବିଦ ଇତି ନ ବିଜ୍ଞାନବତା ବ୍ରହ୍ମଣା ପରିପାଲ୍ୟତ୍ୱମିତରେଷାଂ ସଙ୍କୀର୍ତ୍ୟେତ । ତସ୍ମାଦ୍ୟଥାକାମମୁପାସନାନାଂ ସମୁଚ୍ଚୟୋ ବିକଳ୍ପୋ ବେତି ॥

ଭାଷା-(କ) 'ଏବଂବିଦ୍ଧ ବୈ ବ୍ରହ୍ମା' (ଏହାକୁ ଜାଣିଥିବା ବ୍ରହ୍ମା ଯଜ୍ଞ, ଯଜମାନ ଓ ଅନ୍ୟ ସମସ୍ତ ଋତ୍ୱିଜଗୁଡ଼ିକୁ ସବୁଦିଗରୁ ରକ୍ଷା କରନ୍ତି ।) ଏହି ଶ୍ରୁତି ଉପାସନାଗୁଡ଼ିକର ଅସହଭାବକୁ ଦେଖାଏ । କାରଣ ସବୁ ଉପାସନାଗୁଡ଼ିକର ଉପସଂହାର ହେବାପରେ ସବୁ ଋତ୍ୱିଜ୍ ସର୍ବଜ୍ଞ ହେବାର ବିଜ୍ଞାନଯୁକ୍ତ ବ୍ରହ୍ମାଠାରୁ ଅନ୍ୟ କିଏ ପରିପାଳୟ ଅଛି କି ବୋଲି କୁହାଯାଇନାହିଁ; ତେଣୁ ଉପାସକ ପାଇଁ ଉପାସନାଗୁଡ଼ିକର ଇଚ୍ଛାନୁସାରେ ଅଥବା ବିକଳ୍ପ ଅଛି ବୋଲି ସିଦ୍ଧ କରାଯାଇଛି ॥୬୬।

॥ ଇତି ତୃତୀୟ ଅଧ୍ୟାୟ ତୃତୀୟ ପାଦ ସମାପ୍ତ ॥



# तृतीय अध्याय - चतुर्थ पाद

# ତୃତୀୟ ଅଧ୍ୟାୟ - ଚତୁର୍ଥ ପାଦ

## १- पुरुषार्थाधिकरणम् ॥ २-१७ ॥

## ୧-ପୁରୁଷାର୍ଥାଧିକରଣମ୍ ॥ ସୂ. ୧-୧୭ ॥

**पुरुषार्थोऽतः शब्दादिति वादरायणः ॥ ३-४-१ ॥**

**ପୁରୁଷାର୍ଥୋଽତଃ ଶବ୍ଦାଦିତି ବାଦରାୟଣଃ ॥ ୩-୪-୧ ॥**

ବାଦରାୟଣଃ=ବାଦରାୟଣ ଆଚାର୍ଯ୍ୟଙ୍କ ମତ ଯେ, ଅତଃ=ଏହି ଔପନିଷଦ୍ ଆତ୍ମଜ୍ଞାନରୁ ପୁରୁଷାର୍ଥଃ=ମୋକ୍ଷରୂପ ପୁରୁଷାର୍ଥ ସିଦ୍ଧ ହୁଏ । ଶବ୍ଦାତ୍=କାରଣ-'ତରତି ଶୋକମାତ୍ମବିତ୍' ଏହି ପ୍ରକାରର ଶ୍ରୁତି ବାକ୍ୟ ଅଛି ।

ମୂଳ - (କ) ଅଥେଦାନୀମୌପନିଷଦମାତ୍ମଜ୍ଞାନଂ କିମଧିକାରିଦ୍ୱାରେଣ କର୍ମଣ୍ୟେବାନୁ ପ୍ରବିଶ୍ୟତ୍ୟାହୋସ୍ୱିତ୍ ସ୍ୱତନ୍ତ୍ରମେବ ପୁରୁଷାର୍ଥ ସାଧନଂ ଭବତୀତି ମୀମାଂସମାନଃ ସିଦ୍ଧାନ୍ତେନୈବ ତାବଦୁପକ୍ରମତେ ପୁରୁଷାର୍ଥୋଽତ ଇତି । ଅସ୍ମାଦ୍ ବେଦାନ୍ତ ବିହିତାଦାତ୍ମଜ୍ଞାନାତ୍ ସ୍ୱତନ୍ତ୍ରାତ୍ ପୁରୁଷାର୍ଥଃ ସିଦ୍ଧ୍ୟତୀତି ବାଦରାୟଣ ଆଚାର୍ଯ୍ୟୋ ମନ୍ୟତେ ।

(ଖ) କୁତ ଏତଦବଗମ୍ୟତେ ? ଶବ୍ଦାଦିତ୍ୟାହ-ତଥାହି 'ତରତି ଶୋକାମାତ୍ମବିତ୍' (ଛା ୭-୧-୩), 'ସ ଯୋ ହ ବୈ ତତ୍ପରମଂ ବ୍ରହ୍ମ ବେଦ ବ୍ରହ୍ମୈବ ଭବତି' (ମୁ ୩-୨-୯), 'ବ୍ରହ୍ମବିଦାମାପ୍ନୋତି ପରମ୍' (ତୈ ୨-୧-୧), 'ଆଚାର୍ଯ୍ୟବାନ୍ ପୁରୁଷୋ ବେଦ ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷେଽଥ ସଂପତ୍ସ୍ୟେ' (ଛା ୬-୧୪-୨) ଇତି । 'ଯ ଆତ୍ମାଽପହତପାପ୍ମା' (୮-୭-୧) ଇତ୍ୟୁପକ୍ରମ୍ୟ 'ସର୍ବାଂଶ୍ଚ ଲୋକାନାପ୍ନୋତିସର୍ବାଂଶ୍ଚ କାମାନ୍ୟସ୍ତମାତ୍ମାନ ମନୁବିଦ୍ୟ ବିଜାନାତି' (ଛା ୮-୭-୧) ଇତି, 'ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ', (ବୃହ ୪-୫-୬) ଇତ୍ୟୁପକ୍ରମ୍ୟ ଏତାବଦରେ ଖଲ୍ୱମୃତତ୍ୱମ୍' (ବୃହ ୪-୫-୧୫) ଇତ୍ୟେବଂଜାତୀୟକା ଶ୍ରୁତିଃ କେବଳାୟାଃ ବିଦ୍ୟାୟାଃ ପୁରୁଷାର୍ଥହେତୁତ୍ୱଂ ଶ୍ରାବୟତି ॥

ଭାଷା-(କ) ଏହାପରେ ଔପନିଷଦ୍ ଆତ୍ମଜ୍ଞାନ ଅଧିକାରୀ ପୁରୁଷ କର୍ମରେ କ'ଣ ଅନୁପ୍ରବେଶ କରେ ଅଥବା ସ୍ୱତନ୍ତ୍ର ହିଁ ପୁରୁଷାର୍ଥର ସାଧନ ଅଟେ କି ? ବର୍ତ୍ତମାନ ଏହିସବୁ



ବିଚାର କରି ସୂତ୍ରକାର ପ୍ରଥମ ସିଦ୍ଧାନ୍ତରେ 'ପୁରୁଷାର୍ଥୋଽତଃ' ଏହି ପ୍ରକାରରେ ଉପକ୍ରମ କରନ୍ତି । ବାଦରାୟଣ ଆଚାର୍ଯ୍ୟ ବେଦାନ୍ତ ବିହିତ ସ୍ୱତନ୍ତ୍ର ଆତ୍ମଜ୍ଞାନ ଦ୍ୱାରା ପୁରୁଷାର୍ଥ ସିଦ୍ଧ ହୁଏ ବୋଲି ସ୍ୱୀକାର କରନ୍ତି ।

(ଖ) ଏହା କିନ୍ତୁ କିପରି ଜଣାପଡ଼େ ? ଶ୍ରୁତିଦ୍ୱାରା ବୋଲି କୁହାଯାଇଅଛି । ଯେପରି 'ତରତି ଶୋକମ୍' (ଆତ୍ମବେତ୍ତା ଶୋକକୁ ଅତିକ୍ରମଣ କରେ), 'ସ ଯୋ ହ ବୈ' (ଯେ କୌଣସି ଏହି ପରଂବ୍ରହ୍ମକୁ ଜାଣିପାରେ; ସେ ବ୍ରହ୍ମ ହୋଇଯାଏ), 'ବ୍ରହ୍ମବିଦାପ୍ନୋତି' (ବ୍ରହ୍ମଜ୍ଞାନୀ ପରଂବ୍ରହ୍ମକୁ ପ୍ରାପ୍ତ ହୁଏ), 'ଆଚାର୍ଯ୍ୟବାନ୍' (ଆଚାର୍ଯ୍ୟବାନ୍ ପୁରୁଷ ସତ୍‌କୁ ଜାଣିଥାଏ, ତାହାପାଇଁ ମୋକ୍ଷ ହେଲେ ଏତେ ବିଳମ୍ବ ହୁଏ, ଯେ ପର୍ଯ୍ୟନ୍ତ ସେହି ଶରୀର ବନ୍ଧନରୁ ମୁକ୍ତ ହୁଏ ନାହିଁ । ଏହାପରେ କିନ୍ତୁ ସେହି ସତ୍‌ସଂପନ୍ନ ବ୍ରହ୍ମକୁ ପାଏ), 'ଯ ଆତ୍ମାପହତ ପାପ୍ମା (ଯେଉଁ ଆତ୍ମା ପାପ ଶୂନ୍ୟ ହୁଏ) ଏହା ଉପକ୍ରମ କରି 'ସ ସର୍ବାଂଶ୍ଚ (ଯିଏ ସେହି ଆତ୍ମାକୁ ଶାସ୍ତ୍ର ଓ ଗୁରୁଙ୍କ ଉପଦେଶ ଅନୁସାରେ ଅନ୍ୱେଷଣ କରି ଜାଣିପାରେ କି ଏହି ସଂପୂର୍ଣ୍ଣ ଲୋକକୁ ଓ ସମସ୍ତ କାମନାଗୁଡ଼ିକୁ ପ୍ରାପ୍ତ କରେ), 'ଆତ୍ମାବାଽରେ' (ହେ ମୈତ୍ରେୟୀ ! ଆତ୍ମାକୁ ଦର୍ଶନ କରିବା ଉଚିତ୍) ଏହିପରି ଆରମ୍ଭ କରି 'ଏତାବଦରେ' (ଆରେ ମୈତ୍ରେୟୀ । ଏତିକି ପରିମାଣର ଅମୃତତ୍ୱକୁ ଉପଦେଶ ଅଛି) ଏହିପ୍ରକାର ଶ୍ରୁତିଗୁଡ଼ିକ କେବଳ ବିଦ୍ୟା (ଆତ୍ମଜ୍ଞାନ) କୁ ପୁରୁଷାର୍ଥ ହେତୁତ୍ୱ ଶ୍ରବଣ କରାଏ ॥୧॥

ଅଥାତ୍ର ପ୍ରତ୍ୟବତିଷ୍ଠତେ-ଉକ୍ତ ସିଦ୍ଧାନ୍ତ ଉପରେ ପୂର୍ବପକ୍ଷ ଶଙ୍କା କରନ୍ତି-

## शेषत्वात् पुरुषार्थवादो यथाऽन्येष्विति जैमिनिः ॥ २० ॥

## ଶେଷତ୍ୱାତ୍ ପୁରୁଷାର୍ଥବାଦୋ ଯଥାଽନ୍ୟେଷ୍ୱିତି ଜୈମିନିଃ ॥୩-୪-୨॥

ଶେଷତ୍ୱାତ୍=କର୍ତ୍ତୃ ରୂପରେ ଆତ୍ମା କର୍ମର ଅଙ୍ଗ ହୁଏ । ତେଣୁ ତାହାର ଜ୍ଞାନ ମଧ୍ୟ ବ୍ରୀହି ପ୍ରୋକ୍ଷଣ ସଦୃଶ କର୍ମର ଅଙ୍ଗଭୂତ ଆତ୍ମାଦ୍ୱାରା କ୍ରତୁର ଅଙ୍ଗ ହୁଏ । ଯଥା=ଯେପରି, ଅନେଷ୍ଣୁ=ଅନ୍ୟ ଦ୍ରବ୍ୟ ସଂସ୍କାର କର୍ମରେ ଅପାପାଦି ଶ୍ରୁତି ଅର୍ଥବାଦ ଅଟେ । ସେପରି, ପୁରୁଷାର୍ଥବାଦଃ=ଜ୍ଞାନରୁ ପୁରୁଷାର୍ଥ ଶ୍ରୁତି ମଧ୍ୟ ଅର୍ଥବାଦ ଅଟେ । ଇତି ଜୈମିନିଃ=ବୋଲି ଆଚାର୍ଯ୍ୟ ଜୈମିନିଙ୍କର ମତ ଅଟେ ।

ମୂଳ-(କ) କର୍ତ୍ତୃତ୍ୱେନାତ୍ମନଃ କର୍ମଶେଷତ୍ୱାତ୍ତଦ୍ ବିଜ୍ଞାନମପି ବ୍ରୀହିପ୍ରୋକ୍ଷଣାଦିବଦ୍-ବିଷୟଦ୍ୱାରେଣ କର୍ମ ସମ୍ବନ୍ଧ୍ୟେବେତ୍ୟତସ୍ତସ୍ମିନ୍ନବଗତପ୍ରୟୋଜନେଽଽତ୍ମଜ୍ଞାନେ ଯା ଫଳଶ୍ରୁତିଃ, ସାଽର୍ଥବାଦଃ ଇତି ଜୈମିନିରାଚାର୍ଯ୍ୟୋ ମନ୍ୟତେ, ଯଥାଽନ୍ୟେଷ୍ୱ ଦ୍ରବ୍ୟସଂସ୍କାର କର୍ମସୁ 'ଯସ୍ୟ ପର୍ଣ୍ଣମୟୀ ଜୁହୂର୍ଭବତି, ନ ସ ପାପଁ ଶ୍ଲୋକଁ ଶୃଣୋତି । ଯଦଙ୍‌କ୍ତେ

ଚକ୍ଷୁରେଷ ଭ୍ରାତୃବ୍ୟସ୍ୟ ବୃଙ୍କ୍ତେ ଯତ୍ ପ୍ରାଯାଜାଽନୁଯାଜା ଇଜ୍ୟନ୍ତେ ବର୍ମ ବା ଏତଦ୍ୟଜ୍ଞସ୍ୟ କ୍ରିୟତେ ବର୍ମ ଯଜମାନସ୍ୟ ଭ୍ରାତୃବ୍ୟାଭିଭୂତ୍ୟୈ' ଇତ୍ୟେବଂ ଜାତୀୟକା ଫଳଶ୍ରୁତିରର୍ଥବାଦଃ ତଦ୍‌ବତ୍ ।

(ଖ) କଥଂ ପୁନରସ୍ୟାନାରଭ୍ୟାଧୀତସ୍ୟାତ୍ମଜ୍ଞାନସ୍ୟ ପ୍ରକରଣାଦୀନାମନ୍ୟତମେନାପି ହେତୁନା ବିନା କ୍ରତୁପ୍ରବେଶ ଆଶଙ୍କ୍ୟତେ ? କର୍ତ୍ତୃଦ୍ୱାରେଣ ବାକ୍ୟାତ୍ ତଦ୍‌ବିଜ୍ଞାନସ୍ୟ କ୍ରତୁସମ୍ବନ୍ଧ ଇତି ଚେତ୍-ନ, ବାକ୍ୟାଦ୍‌ବିନିଯୋଗାନୁପପତ୍ତେଃ ଅବ୍ୟଭିଚାରିଣା ହି କେନଚିଦ୍-ଦ୍ୱାରେଣାରଭ୍ୟାଧୀତାନାମପି ବାକ୍ୟନିମିତ୍ତଃ କ୍ରତୁସମ୍ବନ୍ଧୋଽବକଳ୍ପତେ । କର୍ତ୍ତା ତୁ ବ୍ୟଭିଚାରି ଦ୍ୱାରମ୍, ଲୌକିକ ବୈଦିକକର୍ମସାଧାରଣ୍ୟାତ୍ ।

(ଗ) ତସ୍ମାନ୍ନ ତଦ୍‌ଦ୍ୱାରେଣାତ୍ମଜ୍ଞାନସ୍ୟ କ୍ରତୁସମ୍ବନ୍ଧସିଦ୍ଧିରତି-ନ, ବ୍ୟତିରେକବିଜ୍ଞାନସ୍ୟ ବୈଦିକେଭ୍ୟଃ କର୍ମଭ୍ୟୋଽନ୍ୟତ୍ରାନୁପଯୋଗାତ୍ । ନ ହି ଦେହବ୍ୟତିରିକ୍ତାତ୍ମଜ୍ଞାନଂ ଲୌକିକେଷୁ କର୍ମସୂପଯୁଜ୍ୟତେ, ସର୍ବଥା ଦୃଷ୍ଟାର୍ଥପ୍ରବୃତ୍ତ୍ୟୁପପତ୍ତେଃ । ବୈଦିକେଷୁ ତୁ ଦେହପାତୋତ୍ତରକାଳଫଳେଷୁ ଦେହବ୍ୟତିରିକ୍ତାଜ୍ଞାନମନ୍ତରେଣ ପ୍ରବୃତ୍ତିଃ ନୋପପଦ୍ୟତ ଇତ୍ୟୁପଯୁଜ୍ୟତେ ବ୍ୟତିରେକ ବିଜ୍ଞାନମ୍ ।

ଭାଷା-(କ) କର୍ତ୍ତୃ ରୂପରେ ଆତ୍ମା କର୍ମର ଅଙ୍ଗ ହୁଏ । ତେଣୁ ତାହାର ଜ୍ଞାନ ମଧ୍ୟ ବ୍ରୀହିପ୍ରୋକ୍ଷଣାଦିକର୍ମ ପରି ବିଷୟ ଆତ୍ମାଦ୍ୱାରା କର୍ମସମ୍ବନ୍ଧୀ ହୁଏ । ତେଣୁ ସେହି କର୍ମର ପ୍ରୟୋଜନ ଅବଗତ ହେଲାପରେ ଆତ୍ମଜ୍ଞାନରେ ଯେଉଁ ଫଳଶ୍ରୁତି ରହେ, ତାହା ଅର୍ଥବାଦ ବୋଲି ଜୈମିନି ଆଚାର୍ଯ୍ୟ ସ୍ୱୀକାର କରିଛନ୍ତି । ଯେପିର ଅନ୍ୟ ଦ୍ରବ୍ୟ ସଂସ୍କାର କର୍ମରେ 'ଯସ୍ୟ ପର୍ଣ୍ଣମୟୀ' (ଯାହାର ପର୍ଣ୍ଣମସୀ ଜୁହୁ ହୁଏ) ସେ ପାପ ବଚନକୁ ଶ୍ରବଣ କରେ ନାହିଁ । ସେ ଯେଉଁ ନିଜ ଚକ୍ଷୁରେ ଅଞ୍ଜନ ଲଗାଏ, ତାହାଦ୍ୱାରା ଶତ୍ରୁର ଚକ୍ଷୁକୁ ବିନାଶ କରେ । ଯାହା ପ୍ରୟାଜ ଓ ଅନୁଯାଜ କରାଯାଇଅଛି, ସେସବୁ ଯଜ୍ଞର କବଚ କରାଯାଇଛି । ଶତ୍ରୁର ଅଭିଭବ ପାଇଁ ସେସବୁ ଯଜମାନ କବଚ ହୁଅନ୍ତି) ଏହି ପ୍ରକାର ଫଳଶ୍ରୁତି ଅର୍ଥବାଦ ଅଟେ, ସେହିପରି ଆତ୍ମଜ୍ଞାନରେ ଫଳଶ୍ରୁତି ଅର୍ଥବାଦ ରହିଛି ।

(ଖ) ପରନ୍ତୁ ଯଜ୍ଞପ୍ରକରଣରେ ଅନଧୀତ ଆତ୍ମଜ୍ଞାନ ପ୍ରକରଣ ପ୍ରଭୃତିର ଗୋଟିଏ କାରଣ ବ୍ୟତିତ କ୍ରତୁ ପ୍ରବେଶର ଆଶଙ୍କା କିପରି ହୋଇଛି ? ଯଦି କହ ଯେ- କର୍ତ୍ତାଦ୍ୱାରା ବାକ୍ୟରୁ ସେହି ବିଜ୍ଞାନର କ୍ରତୁ ସହିତ ସମ୍ବନ୍ଧ ଅଛି, ତାହା କିନ୍ତୁ ଠିକ୍ ନୁହେଁ; କାରଣ ବାକ୍ୟରୁ ବିନିଯୋଗ ହୁଏ ନାହିଁ । କୌଣସି ଗୋଟିଏ ଅବ୍ୟଭିଚାରି ନିତ୍ୟସମ୍ବନ୍ଧ କ୍ରତୁର ଦ୍ୱାରରୁ ଅପ୍ରକରଣରେ ପଠିତର ବାକ୍ୟନିମିତ୍ତକ କ୍ରତୁ ସମ୍ବନ୍ଧ ହୁଏ; କିନ୍ତୁ କର୍ତ୍ତା ଲୌକିକ ଓ ବୈଦିକ କର୍ମରେ ସାଧାରଣ ହେଲେ ବ୍ୟଭିଚାରି ଦ୍ୱାର ହୁଏ ।



(ଗ) ତେଣୁ ତାହାଦ୍ୱାରା ଆତ୍ମଜ୍ଞାନ କ୍ରତୁ ସହିତ ସମ୍ବନ୍ଧ ସିଦ୍ଧ ନୁହେଁ ବୋଲି କହିବା ସମୀଚୀନ ନୁହେଁ, କାରଣ ଦେହ ଅତିରିକ୍ତ ଆତ୍ମା ଅଟେ, ଏହାର ଜ୍ଞାନ ବୈଦିକ କର୍ମଠାରୁ ଅନ୍ୟତ୍ର ଉପଯୋଗ ହୁଏ ନାହିଁ । ଦେହ ଅତିରିକ୍ତ ଆତ୍ମଜ୍ଞାନର ଲୌକିକକର୍ମର ଉପଯୋଗ ହୁଏ ନାହିଁ, କାରଣ-ସର୍ବଦା ଦେହ ବ୍ୟତିରିକ୍ତ ହେଉ ବା ନ ହେଉ, କିନ୍ତୁ ପ୍ରତ୍ୟକ୍ଷ ପ୍ରୟୋଜନଶୀଳ କର୍ମରେ ପ୍ରବୃତ୍ତ ହୁଏ । ଏହାହିଁ ବ୍ୟତିରେକ ବିଜ୍ଞାନ ।

ମୂଳ (କ) - ନନ୍ୱପହତପାପ୍ମତ୍ୱାଦିବିଶେଷଣାଦସଂସାର୍ଯ୍ୟାତ୍ମବିଷୟମୌପନିଷଦଂ ଦର୍ଶନଂ ନ ପ୍ରବୃତ୍ତ୍ୟଙ୍ଗମ୍‌ସ୍ୟାତ୍ । ନ ପ୍ରିୟାଦିସଂସଚିତସ୍ୟ ସଂସାରିଣ ଏବାତ୍ମନୋ ଦ୍ରଷ୍ଟବ୍ୟ-ତ୍ୱେନୋପଦେଶାତ୍ । ଅପହତପାପ୍ମତ୍ୱାଦି ବିଶେଷଣଂ ତୁ ସ୍ତୁତ୍ୟର୍ଥଂ ଭବିଷ୍ୟତି ।

(ଖ) ନନୁ ତତ୍ର ତତ୍ର ପ୍ରସାଧିତମେତଦଧିକମ୍ ସଂସାରି ବ୍ରହ୍ମ ଜଗତ୍‌କାରଣଂ ତଦେବ ଚ ସଂସାରିଣ ଆତ୍ମନଃ ପାରମାର୍ଥିକଂ ସ୍ୱରୂପମୁପନିଷତ୍‌ସୂପଦିଶ୍ୟତ ଇତି । ସତ୍ୟଂ ପ୍ରସାଧିତ୍ୱମ୍, ତସ୍ୟୈବ ତୁ ସ୍ଥୁଣନିଖନନବତ୍‌ଫଳଦ୍ୱାରେଣାକ୍ଷେପସମାଧାନେ କ୍ରିୟେତେ ଦାର୍ଢ୍ୟାୟ ।

ଭାଷା-(କ) ପରନ୍ତୁ ଦେହପାତ ହେବାପରେ ଫଳଦାତା ବୈଦିକ କର୍ମରେ ଦେହବ୍ୟତିରିକ୍ତ ଆତ୍ମଜ୍ଞାନ ବ୍ୟତିତ ପ୍ରବୃତ୍ତି ଉପପନ୍ନ ହୁଏ ନାହିଁ । ତେଣୁ ମରଣ ପରେ ଫଳଦାତା ବୈଦିକ କର୍ମରେ ଦେହ ବ୍ୟତିରିକ୍ତ ଆତ୍ମା ଅଛି - ଏହି ଜ୍ଞାନର ଉପଯୋଗ ହୁଏ । ପରନ୍ତୁ ଅପହତପାପ୍ମତ୍ୱାଦି । ବିଶେଷଣରୁ ଅସଂସାରୀ ଆତ୍ମବିଷୟକ ଔପନିଷଦ୍‌ଜ୍ଞାନ ବୈଦିକ କର୍ମରେ ପ୍ରବୃତ୍ତିର ଅଙ୍ଗ ହେବ ନାହିଁ ବୋଲି ପ୍ରମାଣ କରିବା ଠିକ୍ ନୁହେଁ, କାରଣ- ପ୍ରିୟପ୍ରଭୃତି ଦ୍ୱାରା ସଂସୂଚିତ ସଂସାରୀ ଆତ୍ମା ଦ୍ରଷ୍ଟବ୍ୟ ରୂପରେ ଉପଦେଶ ଦିଆଯାଇଛି । ଅପହତପାପ୍ମତ୍ୱାଦି ବିଶେଷଣ କିନ୍ତୁ ସ୍ତୁତି ପାଇଁ ରହିବ ।

(ଖ) ପରନ୍ତୁ ଜୀବଭିନ୍ନ ଅସଂସାରୀ ବ୍ରହ୍ମ ଜଗତର କାରଣ ଏବଂ ସେହି ସଂସାରୀ ଆତ୍ମାର ପାରମାର୍ଥିକ ସ୍ୱରୂପ ଅଟେ-ଏହା ଉପନିଷଦରେ ଉପଦେଶ କରାଯାଇଛି । ସେହି ସେହି ସ୍ଥାନରେ ଉତ୍ତମ ଭାବେ ସନ୍ଦେହ ମୋଚନ କରାଯାଇଛି । କିନ୍ତୁ ସ୍ଥୁଣାନିଖନନ ପରି ଫଳଦ୍ୱାରା ତାହାର ଦୃଢ଼ତା ପାଇଁ ଆକ୍ଷେପ ଓ ସମାଧାନ କରାଯାଇଅଛି ।୨।

## आचारदर्शनात् ॥ ३-४-३ ॥

## ଆଚାରଦର୍ଶନାତ୍ ।।୩-୪-୪।।

ଆଚରଦର୍ଶନାତ୍=‘ଜନକୋ ହ ବୈଦେହୋ’ ଏହିପ୍ରକାର ଜନକ ପ୍ରଭୃତି ବ୍ରହ୍ମ ଜ୍ଞାନିମାନଙ୍କର ବିଦ୍ୟା ସହିତ କର୍ମର ଆଚରଣ କରନ୍ତି । ତେଣୁ ଆତ୍ମଜ୍ଞାନ କର୍ମର ଅଙ୍ଗ ଅଟନ୍ତି ।

ମୂଳ-(କ) 'ଜନକୋ ହ ବୈଦେହୋ ବହୁ ଦକ୍ଷିଣେନ ଯଜ୍ଞେନେହ' (ବୃ ୩-୧-୧), 'ଯକ୍ଷ୍ୟମାଣୋ ବୈ ଭଗବନ୍ତୋଽହମସ୍ମି' (ଛା ୫-୧୧-୫) ଇତ୍ୟେବମାଦୀନି ବ୍ରହ୍ମ-ବିଦାମପ୍ୟନ୍ୟପରେଷୁ ବାକ୍ୟେଷୁ କର୍ମସମ୍ବନ୍ଧଦର୍ଶନାନି ଭବନ୍ତି ।

(ଖ) ତଥୋଦ୍ଦାଳକାଦୀନାମପି ପୁତ୍ରାନୁଶାସନାଦିଦର୍ଶନାଦ୍ ଗାର୍ହସ୍ଥ୍ୟସଂବନ୍ଧୋଽ-ବଗମ୍ୟତେ । କେବଲାତ୍ତୋଜ୍ଜ୍ଞାନାତ୍ ପୁରୁଷାର୍ଥସିଦ୍ଧିଃ ସ୍ୟାତ୍ କିମର୍ଥମନେକାୟାସସମ ନ୍ୱି ତାନି କର୍ମାଣି ତେ କୁର୍ଯ୍ୟୁଃ ? ଅର୍କ୍କେଚେନ୍ମଧୁ ବିନ୍ଦେତ କିମର୍ଥଂପର୍ବତଂ ବ୍ରଜେତ୍' ଇତିନ୍ୟାୟାତ୍ ।

ଭାଷା-(କ) 'ଜନକୋ ହ' (ବିଦେହ ଦେଶର ରାଜା ଜନକ ବହୁ ଦକ୍ଷିଣା ଯୁକ୍ତ ଯଜ୍ଞ କରିଥିଲେ), 'ଯକ୍ଷ୍ୟମାଣୋ ବୈ' (ହେ ପୂଜ୍ୟ ଋଷି ବୃନ୍ଦ ! ମୁଁ ମଧ ଯଜ୍ଞ କରୁଛି) ଇତ୍ୟାଦି ବିଦ୍ୟା ବିଧିପରକବାକ୍ୟରେ ବ୍ରହ୍ମବେତ୍ତାର କର୍ମ-ସମ୍ବନ୍ଧ ଦେଖାଯାଏ ।

(ଖ) ସେହିପରି ଉଦ୍ଦାଳକ ପୁତ୍ରର ଉପଦେଶ ପ୍ରଭୃତି ଦର୍ଶନ ଦ୍ୱାରା ଗାର୍ହସ୍ଥ୍ୟ ସମ୍ବନ୍ଧ ଜଣାପଡ଼େ । ଯଦି କେବଳ ଜ୍ଞାନରୁ ପୁରୁଷାର୍ଥ ସିଦ୍ଧି ହେବ, ତେବେ ବିଦ୍ୱାନ ଅନେକପ୍ରକାର ବିଶ୍ରାମଯୁକ୍ତ କର୍ମ କାହିଁକି କରୁଛୁ ? କାରଣ-ଘରର କୋଣରେ ମହୁପ୍ରାପ୍ତ ହେଲେ ପର୍ବତକୁ କାହିଁକି ଯିବା ? ଏହି ନ୍ୟାୟ ପରି ॥୩॥

## तच्छ्रुतेः ॥ ३-४-४ ॥
## ତଚ୍ଛ୍ରୁତେଃ ॥୩-୪-୪॥

ତଚ୍ଛ୍ରୁତେଃ= 'ଯଦେବ ବିଦ୍ୟୟା କରୋତି' ଇତ୍ୟାଦି ତୃତୀୟା ଶ୍ରୁତିରୁ ବିଦ୍ୟାରେ କର୍ମାଙ୍ଗତ୍ୱ ଶ୍ରବଣ ହେଲେ ଜ୍ଞାନ କର୍ମାଙ୍ଗ ପ୍ରତୀତ ହୁଏ ।

ମୂଳ-(କ) ଯଦେବ ବିଦ୍ୟୟ କରୋତି ଶ୍ରଦ୍ଧୟୋପନିଷଦା ତଦେବ ବୀର୍ଯ୍ୟବତ୍ତରଂ ଭବତି' (ଛା ୧-୧-୧୦) ଇତି ଚ କର୍ମଶେଷତ୍ୱଶ୍ରବଣାତ୍ ବିଦ୍ୟାୟା ନ କେବଲାୟାଃ ପୁରୁଷାର୍ଥହେତୁତ୍ୱମ୍ ।

ଭାଷା-(କ) 'ଯଦେବ ବିଦ୍ୟୟା' (ଯେଉଁ କର୍ମ ବିଦ୍ୟା, ଶ୍ରଦ୍ଧା ଓ ଯୋଗଯୁକ୍ତ ହୋଇ କରାଯାଇଅଛି, ସେହି କର୍ମ ବୀର୍ଯ୍ୟବତ୍ତର ହୁଏ । ଅର୍ଥାତ୍ ଅବିଦ୍ୱାନ ଦ୍ୱାରା କରାଯାଇଥିବା କର୍ମରୁ ଅଧିକ ଫଳବାନ ହୁଏ) ଏହି ପ୍ରକାର କର୍ମର ଅଙ୍ଗ ରୂପରୁ ବିଦ୍ୟାର ଶ୍ରବଣ ହେବାରୁ କେବଳ କର୍ମରହିତ ବିଦ୍ୟା ମୋକ୍ଷର ହେତୁ ନୁହେଁ ॥

## समन्वारम्भणात् ॥ ३-४-५ ॥
## ସମନ୍ୱାରମ୍ଭଣାତ୍ ॥୩-୪-୫॥



– ସମନ୍ୱାରମ୍ଭଣାତ୍='ତଂ ବିଦ୍ୟାକର୍ମଣୀ' ଇତ୍ୟାଦି ଶ୍ରୁତିବାକ୍ୟରେ ବିଦ୍ୟା ଓ କର୍ମର ସଂଯୋଗ ଦେଖାଯାଏ, ତେଣୁ ବିଦ୍ୟା କର୍ମର ଅଙ୍ଗ ॥

ମୂଳ-(କ) 'ତଂ ବିଦ୍ୟାକର୍ମଣୀ ସମନ୍ୱାରଭେତେ' (ବୃହ ୪-୪-୨) ଇତି ଚ ବିଦ୍ୟାକର୍ମଣୋଃ ଫଳାରମ୍ଭେ ସହକାରିତ୍ୱ ଦର୍ଶନାନ୍ନ ସ୍ୱାତନ୍ତ୍ର୍ୟଂ ବିଦ୍ୟାୟାଃ ॥

ଭାଷା-(କ) 'ତଂ ବିଦ୍ୟାକର୍ମଣୀ' (ମରଣ ପରେ ପରଲୋକରେ ଜାଣୁଥିବା ପୁରୁଷ ପଛରେ ଫଳ ଉତ୍ପାଦନ ପାଇଁ ବିଦ୍ୟା ଓ କର୍ମବାନ୍ ହୁଏ) ଏହି ପ୍ରକାର ବିଦ୍ୟା ଓ କର୍ମରେ ଫଳର ଆରମ୍ଭରେ ସହକାରିତ୍ୱ ଦେଖାଇବା ଦ୍ୱାରା ବିଦ୍ୟା ସ୍ୱତନ୍ତ୍ର ନୁହେଁ ବୋଲି ପ୍ରତୀତି ହୁଏ ॥୫॥

## तद्वतो विधानात् ॥ ३-४-६ ॥

## ତଦ୍‌ବତୋ ବିଧାନାତ୍ ॥୩-୪-୬॥

ତଦ୍‌ବତଃ='ଆଚାର୍ଯ୍ୟକୁଳାଦ୍ ବେଦମଧୀତ୍ୟ' ଇତ୍ୟାଦି ଶ୍ରୁତିରୁ ସମସ୍ତ ବେଦାର୍ଥ ଜାଣିଥିବା ପୁରୁଷ ପାଇଁ, ବିଧାନାତ୍=କର୍ମ ବିଧାନ କରାଯାଇଛି । ତେଣୁ ବିଦ୍ୟା କର୍ମର ଅଙ୍ଗ ଅଟେ ।

ମୂଳ-(କ) 'ଆଚାର୍ଯ୍ୟକୁଳାଦ୍‌ବେଦମଧୀତ୍ୟ ଯଥାବିଧାନଂ ଗୁରୋଃ କର୍ମାତିଶେଷେ-ଣାଭିସମାବୃତ୍ୟ କୁଟୁମ୍ବେଶୁଚୌ ଦେଶେ ସ୍ୱାଧ୍ୟାୟମଧୀୟାନଃ' (ଛା ୮-୧୫-୧) ଇତି ଚୈବଂଜାତୀୟକା ଶ୍ରୁତିଃ ସମସ୍ତବେଦାର୍ଥବିଜ୍ଞାନବତଃ କର୍ମାଧିକାରଂ ଦର୍ଶୟତି । ତସ୍ମାଦପି ନ ବିଜ୍ଞାନସ୍ୟ ସ୍ୱାତନ୍ତ୍ର୍ୟେଣ ଫଳହେତୁତ୍ୱମ୍ ।

(ଖ) ନନ୍ୱାତ୍ରାଧୀତ୍ୟେତ୍ୟଧ୍ୟୟନମାତ୍ରଂ ବେଦସ୍ୟ ଶ୍ରୂୟତେ, ନାର୍ଥବିଜ୍ଞାନମ୍ । ନୈଷଃ ଦୋଷଃ ଦୃଷ୍ଟାର୍ଥତ୍ୱାଦ୍ ବେଦାଧ୍ୟୟନମର୍ଥାବବୋଧପର୍ଯ୍ୟନ୍ତମିତି ସ୍ଥିତମ୍ ॥

ଭାଷା-(କ) 'ଆଚାର୍ଯ୍ୟକୁଳାଦ୍ ବେଦମ୍' (ନିୟମାନୁସାରେ ଗୁରୁଙ୍କର କର୍ତ୍ତବ୍ୟକର୍ମକୁ ସମାପ୍ତ କରି ବେଦ ଅଧ୍ୟୟନ କରି ଆଚାର୍ଯ୍ୟକୁଳରୁ ସମାବର୍ତ୍ତନ ହୋଇ ପରିବାର ମଧ୍ୟରେ ରହି ପବିତ୍ର ସ୍ଥାନରେ ସ୍ୱାଧ୍ୟାୟ କରିବା ବିଧେୟ) ଏହିପ୍ରକାର ଶ୍ରୁତି ସମସ୍ତବେଦାର୍ଥ ଜାଣିଥିବା ପୁରୁଷର କର୍ମରେ ଅଧିକାର ଦେଖାଏ । ତଦ୍ୱାରା ଆତ୍ମଜ୍ଞାନ ସ୍ୱତନ୍ତ୍ର ରୂପରେ ଫଳର ହେତୁ ନୁହେଁ ।

(ଖ) ପରନ୍ତୁ ଏହି ଶ୍ରୁତିବାକ୍ୟରେ 'ଅଧୀତ୍ୟ' ଏହି ପ୍ରକାର ବେଦର ଅଧ୍ୟୟନ ମାତ୍ର ଶୁଣାଯାଏ । କିନ୍ତୁ ଅର୍ଥର ବିଧାନ ନୁହେଁ କି ? ନା, ଏହା ଦୋଷ ନୁହେଁ । ବେଦାଧ୍ୟୟନର ଦୃଷ୍ଟାର୍ଥ ହେଲେ ବେଦର ଅଧ୍ୟୟନ ଅର୍ଥଜ୍ଞାନ ପର୍ଯ୍ୟନ୍ତ ହୁଏ ବୋଲି ସ୍ଥିର କରାଯାଇଛି ।୬।

## नियमाच्च ॥ ३-४-७ ॥

## ନିୟମାଚ୍ଚ ॥୩-୪-୭॥

ନିୟମାତ୍ ଚ = 'କୁର୍ବନ୍ନେ ବେହ' ଇତ୍ୟାଦି ଶ୍ରୁତିବାକ୍ୟରୁ ଜୀବନପର୍ଯ୍ୟନ୍ତ କର୍ମାଚରଣର ନିୟମ ହେଲେ ମଧ୍ୟ ଜ୍ଞାନ କର୍ମର ଅଙ୍ଗ ଅଟେ ।

ମୂଳ-(କ) 'କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଁ ସମାଃ । ଏବଂ ତ୍ୱୟି ନାନ୍ୟ-ଥେତୋଽସ୍ତି ନ କର୍ମ ଲିପ୍ୟତେ ନରେ' (ଈଶା-୨) ଇତି ତଥା 'ଏତଦ୍‌ବୈ ଜରାମର୍ଯଂ ସତ୍ରଂ ଯଦଗ୍ନିହୋତ୍ରଂ ଜରୟା ବା ହ୍ୟେବାସ୍ମାନ୍ମୁଚ୍ୟତେ ମୃତ୍ୟୁନା ବା' ଇତ୍ୟେବଂଜାତୀୟକାତ୍ ନିୟମାଦପି କର୍ମଶେଷତ୍ୱମେବ ବିଦ୍ୟାୟାଃ । ଇତି ।

ଭାଷା-(କ) 'କୁର୍ବନ୍ନେବେହ' (ଏହି ସଂସାରରେ କର୍ମ କରି ଶହେବର୍ଷ ଜୀବିତ ରହିବାକୁ ଇଚ୍ଛା କରନ୍ତି । ଏହିପ୍ରକାର ମନୁଷ୍ୟତ୍ୱର ଅଭିମାନ ରଖି ତୁମ୍ଭପାଇଁ କୌଣସି ମାର୍ଗ ନାହିଁ ଯାହାଦ୍ୱାରା ତୁମ୍ଭେ ଅଶୁଭକର୍ମରେ ଲିପ୍ତ ନହେବ) ଏହିପ୍ରକାର 'ଏତଦ୍‌ବୈ' (ଯାହା ଅଗ୍ନିହୋତ୍ର ଅଟେ, ସେ ଜରା ଓ ମରଣ ପର୍ଯ୍ୟନ୍ତ ସତ୍ର ଅଟେ । ଏହି ଅଗ୍ନିହୋତ୍ରରେ ପୁରୁଷ ଜରା ଓ ମୃତ୍ୟୁଠାରୁ ମୁକ୍ତ ହୁଏ) ଏହିପ୍ରକାର ନିୟମ ଦ୍ୱାରା ବିଦ୍ୟା କର୍ମର ଅଙ୍ଗ ଅଟେ ।୭।

ଏବଂପ୍ରାପ୍ତେ ପ୍ରତିବିଧତ୍ତେ-ଏଠାରେ ପୂର୍ବପକ୍ଷର ନିରାକରଣ କରାଯାଇଛି ।

## अधिकोपदेशात्तु वादरायणस्यैव तद्दर्शनात् ॥ ३-४-८ ॥

## ଅଧିକୋପଦେଶାତ୍ତୁ ବାଦରାୟଣସ୍ୟୈବ ତଦ୍ଦର୍ଶନାତ୍ ॥୩-୪-୮॥

ତୁ = ସୂତସ୍ଥ ତୁ ଶବ୍ଦ ପୂର୍ବପକ୍ଷର ବ୍ୟାବୃତ୍ତି କରେ । ତତ୍ତ୍ୱଜ୍ଞାନ କର୍ମର ଅଙ୍ଗ ବୋଲି ଯାହା କୁହାଯାଇଛି, ତାହା ଠିକ୍ ନୁହେଁ । ଅଧିକୋପଦେଶାତ୍ = କାରଣ-ସଂସାରୀ ଜୀବଠାରୁ ପୃଥକ୍ ଚିନ୍ମାତ୍ର ଭୋକ୍ତୃତ୍ୱାଦିରହିତ ବ୍ରହ୍ମର ଉପଦେଶ ଦିଆଯାଇଛି । ତେଣୁ ତତ୍ତ୍ୱଜ୍ଞାନର ଫଳଶ୍ରୁତି ଅର୍ଥବାଦ ଅଟେ । ଏବମ୍ ଏହିପରି, ବାଦରାୟଣସ୍ୟ=ବାଦରାୟଣଙ୍କର ମତ ଅଟେ । ତଦ୍ଦର୍ଶନାତ୍=କାରଣ- 'ଯଃ ସର୍ବଜ୍ଞଃ ସର୍ବବିତ୍' ଇତ୍ୟାଦି ଶ୍ରୁତିରେ ସେହି ସଂସାରୀ ଜୀବାତ୍ମାଠାରୁ ଅନ୍ୟ ଈଶ୍ୱର ପରମାତ୍ମାର ଦର୍ଶନ ହେଉଛି ।

ମୂଳ-(କ) ତୁଶବ୍ଦାତ୍‌ପକ୍ଷୋ ବିପରିବର୍ତ୍ତତେ । ଯଦୁକ୍ତମ୍ 'ଶେଷତ୍ୱାତ୍‌ପୁରୁଷାର୍ଥବାଦଃ' (ବ୍ର. ସୂ. ୩-୪-୨) ଇତି, ତନ୍ନୋପପଦ୍ୟତେ, କସ୍ମାତ୍ ? ଅଧିକୋପଦେଶାତ୍ । ଯଦି ସଂସାର୍ଯ୍ୟେବାତ୍ମା ଶାରୀରଃ କର୍ତ୍ତା ଭୋକ୍ତା ଚ ଶରୀରମାତ୍ରବ୍ୟତିରେକେଣ ବେଦାନ୍ତେ-ସୂପଦିଷ୍ଟଃ, ସ୍ୟାତ୍ତତୋ ବର୍ଣ୍ଣିତେନ ପ୍ରକାରେଣ ଫଳଶ୍ରୁତେରର୍ଥବାଦତ୍ୱଂ ସ୍ୟାତ୍ ।



(ଖ) ଅଧିକସ୍ତାବଚ୍ଛରୀଦାତ୍ମନୋଽସଂସାରୀଶ୍ୱରଃ କର୍ତ୍ତୃତ୍ୱାସଂସାରଧର୍ମରହିତୋଽପହତ-ପାପ୍ମତ୍ୱାଦିବିଶେଷଣଃ ପରମାତ୍ମା ବେଦ୍ୟତ୍ୱେନୋପଦିଶ୍ୟତେ ବେଦାନ୍ତେଷୁ । ନ ଚ ତଦ୍‌ବିଜ୍ଞାନଂ କର୍ମଣାଂ ପ୍ରବର୍ତ୍ତକଂ ଭବତି, ପ୍ରତ୍ୟୁତ କର୍ମାଣ୍ୟୁଚ୍ଛିନତୀତି ବକ୍ଷ୍ୟତି, 'ଉପମର୍ଦ୍ଦଂ ଚ (ବ୍ର.ସୂ. ୩-୪-୧୬) ଇତ୍ୟତ୍ର ।

(ଗ) ତସ୍ମାତ୍ 'ପୁରୁଷାର୍ଥୋଽତଃ ଶବ୍ଦାତ୍' (ବ୍ର. ସୂ. ୩-୪-୧) ଇତି ଯନ୍ମତଂ ଭଗବତୋ ବାଦରାୟଣସ୍ୟ ତଥୈବ ତିଷ୍ଠତି, ନ ଶେଷତ୍ୱପ୍ରଭୃତିଭିର୍ହେତ୍ୱାଭାସୈଶ୍ଚାଲୟିତୁଂ ଶକ୍ୟତେ । ତଥାହି-ତମଧିକଂ ଶରୀରାଦୀଶ୍ୱରମାତ୍ମାନଂ ଦର୍ଶୟନ୍ତି ଶ୍ରୁତୟଃ- 'ଯଃ ସର୍ବଜ୍ଞଃ ସର୍ବବିତ୍' (ମୁଣ୍ଡ ୧-୧-୯), ଭୀଷାଽସ୍ମାଦ୍‌ବାତଃ ପର୍ବତେ' (ତୈତେ ୨-୮-୧), 'ମହଦ୍‌ଭୟଂ ବଜ୍ରମୁଦ୍ୟତମ୍' (କଂ ୬-୨) 'ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି (ବୃହ ୩-୮-୯), ତଦୈକ୍ଷତ ବହୁ ସ୍ୟାଂ ପ୍ରଜାୟେୟେତି ତତ୍ତେଜୋଽସୃଜତ' (ଛା ୬-୨-୩) ଇତ୍ୟେବମାଦ୍ୟାଃ ।

ଭାଷା-(କ) ତୁ ଶବ୍ଦ ପୂର୍ବପକ୍ଷକୁ ବ୍ୟାବୃତ୍ତି କରେ । 'ଶେଷତ୍ୱାତ୍ ପୁରୁଷାର୍ଥବାଦଃ' ବୋଲି ଯାହା କୁହାଯାଇଛି, ତାହା ସମୀଚୀନ ନୁହେଁ; କାରଣ-ଅଧିକର ଉପଦେଶ ହୁଏ । ଯଦି ସଂସାରୀ ଜୀବାତ୍ମା ମଧ୍ୟ ଶାରୀର କର୍ତ୍ତା ହୁଏ, ଭୋକ୍ତା ଶରୀରମାତ୍ରରୁ ଅତିରିକ୍ତ ବେଦାନ୍ତରେ ଉପଦିଷ୍ଟ ହେବ, ତେବେ ବର୍ଣ୍ଣିତପ୍ରକାରରୁ ଫଳଶ୍ରୁତି ଅର୍ଥବାଦ ହେବ ।

(ଖ) କିନ୍ତୁ ଶାରୀର ଅର୍ଥାତ୍ ଜୀବାତ୍ମାଠାରୁ ଅତିରିକ୍ତ ଅସଂସାରୀ; ଈଶ୍ୱର କର୍ତ୍ତୃତ୍ୱାଦି ଜୀବାତ୍ମା, ଧର୍ମରହିତ ଅପହତପାପ୍ମତ୍ୱାଦି ବିଶେଷଣଯୁକ୍ତ ପରମାତ୍ମା, ବେଦ୍ୟରୂପରେ ଉପନିଷଦ୍‌ରେ ଉପଦିଷ୍ଟ ହୁଏ । ତାହାର ଜ୍ଞାନ କର୍ମର ପ୍ରବର୍ତ୍ତକ ନୁହେଁ; କିନ୍ତୁ କର୍ମକୁ ଉଚ୍ଛେଦ କରେ । ଏହା 'ଉପମର୍ଦ୍ଦଂ ଚ' ସୂତ୍ରରେ କୁହାଯିବ ।

(ଗ) ତେଣୁ 'ପୁରୁଷାର୍ଥୋଽତଃ ଶବ୍ଦାତ୍' ସୂତ୍ରଟି ଯାହା ଭଗବାନ ବାଦରାୟଣଙ୍କର ମତ, ସେ ସେହିପରି ଅବସ୍ଥିତ ରହେ । ଶେଷତ୍ୱାଦି ହେତ୍ୱାଭାସରେ ତାହା ବିଚଳିତ ହୁଏ ନାହିଁ; କାରଣ- 'ଯଃ ସର୍ବଜ୍ଞଃ ସର୍ବବିତ୍' 'ଭୀଷାଽସ୍ମାଦ୍' (ଯାହାର ଭୟରେ ବାୟୁ ପ୍ରବାହିତ ହୁଏ । ତାହାର ଶକ୍ତିରେ ସୂର୍ଯ୍ୟ ଉଦୟ ହୁଏ) 'ମହଦ୍‌ଭୟମ୍' ସେହି ବ୍ରହ୍ମ ମହାନ୍ ଭୟରୂପ ହୋଇ ଉର୍ଦ୍ଧ୍ୱଗାମୀ ବଜ୍ରତୁଲ୍ୟ ଅଟେ) 'ଏତସ୍ୟ ବା' (ହେ ଗାର୍ଗି ! ଏହି ଅକ୍ଷରର ପ୍ରଶାସନରେ ସୂର୍ଯ୍ୟ ଓ ଚନ୍ଦ୍ରମା ଅବଧୃତ ହୋଇଉଠେ), 'ତଦୈକ୍ଷତ' (ସେ ସଦ୍‌ରୂପ ବ୍ରହ୍ମ ଈକ୍ଷଣ କରି କହିଲେ- ''ମୁଁ ଏକରୁ ଅନେକ ହେବି ଏବଂ ଅନେକ ପ୍ରକାରରେ ଉତ୍ପନ୍ନ ହେବି ।' ଏହି ପ୍ରକାର ଈକ୍ଷଣ କରି ସେ ତେଜକୁ ଉତ୍ପନ୍ନ କଲେ) ଇତ୍ୟାଦି ଶ୍ରୁତିଗୁଡ଼ିକ ସେହି ଈଶ୍ୱର ପରମାତ୍ମାକୁ ଜୀବାତ୍ମଭିନ୍ନ ରୂପେ ପ୍ରମାଣିତ କରେ ।

ମୂଳ-(କ) ଯତ୍ତୁ ପ୍ରିୟାଦିସଂସୂଚିତସ୍ୟ ସଂସାରିଣ ଏବାତ୍ମନୋ ବେଦ୍ୟତୟାଽନୁକର୍ଷଣମ୍- 'ଆତ୍ମନସ୍ତୁ କାମାୟ ସର୍ବଂ ପ୍ରିୟଂ ଭବତି । ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ' (ବୃହ ୨-୪-୫), 'ଯଃ ପ୍ରାଣେନ ପ୍ରାଣିତି ସତ ଆତ୍ମା ସର୍ବାନ୍ତରଃ' (ବୃହ ୩-୪-୧) 'ଯ ଏଷୋଽକ୍ଷିଣି ପୁରୁଷୋ ଦୃଶ୍ୟତେ' (ଛା ୮-୭-୪) ଇତ୍ୟୁପକ୍ରମ୍ୟ 'ଏତଂତ୍ୱେବ ତେ ଭୂୟୋଽନୁବ୍ୟାଖ୍ୟାସ୍ୟାମି (ଛା ୮-୯-୩) ଇତି ଚୈବମାଦି ।

(ଖ) ତଦପି 'ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତମେତଦ୍ୟଗ୍‌ବେଦଃ' (ବୃ ୨-୪-୧୦), 'ଯୋଽଶନାୟାପିପାସେ ଶୋକଂ ମୋହଂ ଜରାଂ ମୃତ୍ୟୁମତ୍ୟେତି' (ବୃହ ୩-୫-୧), 'ପରଂ ଜ୍ୟୋତିରୂପସଂପଦ୍ୟସ୍ୱେନ ରୂପେଣାଭିନିଷ୍ପଦ୍ୟତେ ସ ଉତ୍ତମଃ ପୁରୁଷଃ' (ଛା ୮-୧୨-୩) ଇତ୍ୟେବମାଦିଭିର୍ବାକ୍ୟଶେଷୈଃ ସତ୍ୟାମେବାଧିକୋପଦିଦିକ୍ଷାୟାମତ୍ୟନ୍ତାଭେଦାଭିପ୍ରାୟମିତ୍ୟବିରୋଧଃ ।

(ଗ) ପାରମେଶ୍ୱରମେବ ହି ଶାରୀରସ୍ୟ ପାରମାର୍ଥିକଂ ସ୍ୱରୂପମ୍, ଉପାଧିକୃତଂ ତୁ ଶାରୀରତ୍ୱମ୍, 'ତତ୍ତ୍ୱମସି (ଛା ୬-୮-୭), 'ନାନ୍ୟଦତୋଽସ୍ତି ଦ୍ରଷ୍ଟୃ' (ବୃ ୩-୮-୧୧) ଇତ୍ୟାଦି ଶ୍ରୁତିଭ୍ୟଃ । ସର୍ବଂ ଚୈତଦ୍‌ବିସ୍ତରେଣାସ୍ମାଭିଃ ପୁରସ୍ତାତ୍ତତ୍ର ତତ୍ର ବର୍ଣ୍ଣିତମ୍ ।

ଭାଷା-(କ) 'ଆତ୍ମନସ୍ତୁ କାମାୟ' (ଆତ୍ମାର ନିଜେ ପ୍ରୟୋଜନ ପାଇଁ ସବୁ ପ୍ରିୟ ହୁଏ, ହେ ମୈତ୍ରେୟୀ ! ଆତ୍ମାକୁ ଦର୍ଶନ କର), 'ଯଃ ପ୍ରାଣେନ' (ମୁଖନାସିକା ସଞ୍ଚାରି ପ୍ରାଣଦ୍ୱାରା ଯାହା କାର୍ଯ୍ୟ ହୁଏ, ତାହା ତାହାର ଆତ୍ମା ସର୍ବାନ୍ତର ଅଟେ । 'ଯ ଏଷୋଽକ୍ଷିଣି' (ଯେଉଁ ପୁରୁଷ ଏହାକୁ ସ୍ୱଚକ୍ଷୁରେ ଦେଖେ, ସେ ଆତ୍ମା) ଏହିପ୍ରକାର ଉପକ୍ରମ । 'ଏତଂ ତ୍ୱେବ' (ମୁଁ ତୁମ୍ଭଙ୍କୁ ଏହା ଆତ୍ମା ବିଷୟରେ କହିବି) ଇତ୍ୟାଦି ଶ୍ରୁତିରେ ପ୍ରିୟାଦିରୁ ସଂସୂଚିତ ସଂସାରୀ ଆତ୍ମାକୁ ବେଦ୍ୟରୂପରେ ଅନୁକର୍ଷଣ କରେ ।

(ଖ) ତାହା 'ଅସ୍ୟ ମହତୋ' (ହେ ମୈତ୍ରେୟଃ : ଏହା ଯାହା ଋଗ୍‌ବେଦ, ସେ ଏହି ମହଦ୍‌ଭୂତର ନିଃଶ୍ୱାସ ଅଟେ), 'ଯୋଽଶନାୟାପିପାସେ' (ଯାଜ୍ଞବଲକ୍ୟଯାହା ବୁଭୁକ୍ଷା, ପିପାସା, ଶୋକ, ମୋହ ଓ ମୃତ୍ୟୁଠାରୁ ଭିନ୍ନ ଅଟେ), 'ପରଂଜ୍ୟୋତିଃ (ଏହା ଶରୀରରୁ ସମୁତ୍‌ଥାନ କରି ପରଂଜ୍ୟୋତିକୁ ପ୍ରାପ୍ତ ହୁଏ ଓ ନିଜ ସ୍ୱରୂପରେ ରହେ । ସେ ହିଁ ଉତ୍ତମ ପୁରୁଷ ଅଟେ) ଇତ୍ୟାଦି ବାକ୍ୟଶେଷ ଦ୍ୱାରା ଅଧିକ ଉପଦେଶ ଇଚ୍ଛା ହେବାପରେ ଅତ୍ୟନ୍ତ ଅଭେଦର ଉପଦେଶରୁ ନିଷ୍ପନ୍ନ ହୁଏ, ତେଣୁ ଏହା ବିରୋଧ ନୁହେଁ ।

(ଗ) କାରଣ-ପରମେଶ୍ୱରର ସ୍ୱରୂପ ହିଁ ଜୀବାତ୍ମାର ପାରମାର୍ଥିକ ସ୍ୱରୂପ ଅଟେ । ଶାରୀରତ୍ୱ କିନ୍ତୁ ଉପାଧିକୃତ ଅଟେ । କାରଣ- 'ତତ୍ତ୍ୱମସି' ନାନ୍ୟଦତୋଽସ୍ତି ଦ୍ରଷ୍ଟୃ (ସେ ଅନ୍ୟର ଦ୍ରଷ୍ଟା ନୁହେଁ । ଇତ୍ୟାଦି ଶ୍ରୁତି ଅଛି) । ଏହିସବୁ ସେହି ସେହି ସ୍ଥଳରେ ବିସ୍ତାର ପୂର୍ବକ ବର୍ଣ୍ଣନା କରାଯାଇଅଛି ॥୮॥



## तुल्यं तु दर्शनम् ॥ ३-४-९ ॥

## ତୁଲ୍ୟଂ ତୁ ଦର୍ଶନମ୍ ॥୩-୪-୯॥

ତତ୍ତ୍ୱଜ୍ଞାନ କର୍ମର ଅଙ୍ଗ ନୁହେଁ । କାରଣ ସେଠାରେ 'ଏତଦ୍ ସ୍ମ ବୈ' ଇତ୍ୟାଦି ଶ୍ରୁତିରେ, ତୁଲ୍ୟଂ = ସମାନ ଦର୍ଶନମ୍-ଆଚାରର ଦର୍ଶନ ହୁଏ । ତୁ-ତୁ ଶବ୍ଦ କର୍ମାଙ୍ଗ ଲିଙ୍ଗ ଦର୍ଶନର ପ୍ରାବଲ୍ୟ ସୂଚିତ କରେ ॥

ମୂଳ-(କ) ଯତ୍ତୂକ୍ତମ୍ ଆଚାରଦର୍ଶନାତ୍ କର୍ମଶେଷୋ ବିଦ୍ୟେତି; ଅତ୍ର ବ୍ରୂମଃ ତୁଲ୍ୟମାଚାରଦର୍ଶନମକର୍ମଶେଷତ୍ୱେଽପି ବିଦ୍ୟାୟାଃ । ତଥାହି ଶ୍ରୁତିର୍ଭବତିଏତଦ୍ଧ ସ୍ମ ବୈ ତଦ୍‌ବିଦ୍ୱାଂସ ଆହୁର୍‌ଋଷୟଃ କାବଷେୟାଃ କିମର୍ଥା ବୟମଧ୍ୟେଷ୍ୟାମହେ କିମର୍ଥା ବୟଂ ଯକ୍ଷ୍ୟାମହେ । ଏତଦ୍ଧ ସ୍ମବୈ ତତ୍‌ପୂର୍ବେ ବିଦ୍ୱାଂସୋଽଗ୍ନିହୋତ୍ରଂ ନ ଜୁହୁବାଞ୍ଚକ୍ରିରେ', 'ଏତଂ ବୈ ତମାତ୍ମାନାଂ ବିଦିତ୍ୱା ବ୍ରାହ୍ମଣଃ ପୁତ୍ରୈଷଣାୟାଶ୍ଚ ବିତ୍ତୈଷଣାୟାଶ୍ଚ ଲୋକୈଷଣାୟାଶ୍ଚ ବ୍ୟୁତ୍‌ଥାୟାଥ ଭିକ୍ଷାଚର୍ଯ୍ୟଂ ଚରନ୍ତି' (ବୃହ ୩-୫-୧) ଇତ୍ୟେବଂ ଜାତୀୟକା ।

(ଖ) ଯାଜ୍ଞବଲକ୍ୟାଦିନମପି ବ୍ରହ୍ମବିଦାମ୍‌କର୍ମନିଷ୍ଠତ୍ୱଂ ଦୃଶ୍ୟତେ – 'ଏତାବଦରେ ଖଳ୍ୱମୃତତ୍ୱମିତି ହୋକ୍ତ୍ୱା ଯାଜ୍ଞବଲ୍‌କ୍ୟଃ ପ୍ରବବ୍ରାଜ' (ବୃ ୪-୫-୧୫) ଇତ୍ୟାଦିଶ୍ରୁତିଭ୍ୟଃ । ଅପି ଚ 'ଯକ୍ଷ୍ୟମାଣୋ ବୈ ଭଗବନ୍ତୋଽହମସ୍ମି'-(ଛା ୫-୧୧-୫) ଇତ୍ୟେତଲ୍ଲିଙ୍ଗଦର୍ଶନଂ ବୈଶ୍ୱାନର ବିଦ୍ୟାବିଷୟମ୍ । ସମ୍ଭବତି ଚ ସୋପାଧିକାୟାଂ ବ୍ରହ୍ମବିଦ୍ୟାୟାଂ କର୍ମସାହିତ୍ୟ-ଦର୍ଶନମ୍ । ନତ୍ୱତ୍ରାପି କର୍ମାଙ୍ଗତ୍ୱମସ୍ତି, ପ୍ରକରଣାଦ୍ୟଭାବାତ୍ ॥

ଭାଷା – (କ) 'ଆଚାରଦର୍ଶନାତ୍' ସୂତ୍ରରେ ଜଣାପଡ଼େ ଯେ ଆଚାରଦର୍ଶନରୁ ଜ୍ଞାନ କର୍ମର ଅଙ୍ଗ ଅଟେ ବୋଲି ଯାହା କୁହାଯାଇଅଛି, ତାହା ଉପରେ ଆମ୍ଭେ କହୁଁ ଯେ ବିଦ୍ୟାର ଅକର୍ମଶେଷତ୍ୱରେ ମଧ୍ୟ ଆଚାରଦର୍ଶନ ସମାନ ଅଟେ । କାରଣ- 'ଏତଦ୍ ସ୍ମ' (ଏହା ଜାଣି କବଷକର ପୁତ୍ର ଋଷିମାନେ କହିଲେ ଯେ ଆମ୍ଭେ କାହା ପାଇଁ ଅଧ୍ୟୟନ କରିବା, ଆମ୍ଭେ କାହାପାଇଁ ଯଜ୍ଞ କରିବା, ନିଃସନ୍ଦେହ ବାକ୍ ଓ ପ୍ରାଣର ପରସ୍ପର ହୋମାତ୍ମକ ଅଗ୍ନିହୋତ୍ରକୁ ଜାଣି ପ୍ରାଚୀନ ଉପାସକମାନେ ଅଗ୍ନିହୋତ୍ର ହୋମ କରିନାହାନ୍ତି), 'ଏତଂ ବୈ (ଏହି ଆତ୍ମାକୁ ମୁଁ ପରଂବ୍ରହ୍ମ ପରମାତ୍ମା ଅଟେ-ଏହା ଜାଣି ବ୍ରାହ୍ମଣ ପୁତ୍ରୈଷଣା, ବିତ୍ତୈଷଣା ଏବଂ ଲୋକୈଷଣାଠାରୁ ପୃଥକ୍ ହୋଇ (ଭିକ୍ଷାଚାର୍ଯ୍ୟା ଦ୍ୱାରା ବିଚରଣ କରନ୍ତି) ଏହିପ୍ରକାର ଶ୍ରୁତି କହେ ।

(ଖ) 'ଏତାବଦରେ' (ଅରେ ମୈତ୍ରେୟୀ ! – ନିଶ୍ଚିତ ଭାବରେ ଏହା ଅମୃତତ୍ୱ ବୋଲି ଜାଣ, ଏହା କହି ଯାଜ୍ଞବଲ୍‌କ୍ୟ ସନ୍ନ୍ୟାସବ୍ରତ ଆଚରଣ କଲେ) ଇତ୍ୟାଦି ଶ୍ରୁତିବାକ୍ୟରୁ ବ୍ରହ୍ମଜ୍ଞାନୀ ଯାଜ୍ଞବଲ୍‌କ୍ୟ ମଧ୍ୟ ଅକର୍ମନିଷ୍ଠରୂପେ ଦେଖାଯା'ନ୍ତି । 'ଯକ୍ଷ୍ୟମାଣୋ' (ହେ

ପୂଜ୍ୟ ଋଷିମାନେ ! ମୁଁ ଯଜ୍ଞ କରେ) ଏହି ଲିଙ୍ଗଦର୍ଶନ ବୈଶ୍ୱାନର ଵିଦ୍ୟା ବିଷୟକ ଅଟେ । ସୋପାଧିକ ସଗୁଣବ୍ରହ୍ମ ବିଦ୍ୟାରେ କର୍ମ ସାହିତ୍ୟଦର୍ଶନ ସମ୍ଭବ ହୁଏ । ପରନ୍ତୁ ଏହି ବିଦ୍ୟାରେ କର୍ମାଙ୍ଗତ୍ୱ ନଥାଏ, କାରଣ-ପ୍ରକରଣାଦିର ଅଭାବ ହୁଏ ॥୯॥

ଯତ୍ପୁନରୁକ୍ତମ୍- 'ତଚ୍ଛ୍ରୁତେଃ' (ବ୍ର ସୂ ୩-୪-୪) ଇତି, ଅତ୍ର ବ୍ରୂମଃ 'ତଚ୍ଛ୍ରୁତେଃ' ଏହି ସୂତ୍ରରେ ଯାହା ପୂର୍ବପକ୍ଷ କହନ୍ତି, ତାହା ଉପରେ ଆମ୍ଭେ କହୁ-

## असार्वत्रिकी ॥ ३-४-१० ॥
## ଅସାର୍ବତ୍ରିକୀ ॥୩-୪-୧୦॥

ଅସାର୍ବତ୍ରିକୀ='ଯଦେବ ବିଦ୍ୟୟା କରୋତି' - ଏହି ଶ୍ରୁତି ସର୍ବବିଦ୍ୟାବିଷୟକ ନୁହେଁ, କିନ୍ତୁ କେବଳ ଉଦ୍‌ଗୀଥବିଦ୍ୟା ବିଷୟକ ନୁହେଁ ।

ମୂଳ-(କ) 'ଯଦେବ ବିଦ୍ୟୟା କରୋତି' (ଛା ୧-୧-୧୦) ଇତ୍ୟେଷା ଶ୍ରୁତିର୍ନ ସର୍ବବିଦ୍ୟାବିଷୟା, ପ୍ରକୃତବିଦ୍ୟାଭିସମ୍ବନ୍ଧାତ୍ । ପ୍ରକୃତା ଚୋଦ୍‌ଗୀଥବିଦ୍ୟା 'ଓଁ ମିତ୍ୟେତଦକ୍ଷରମୁଦ୍‌ଗୀଥମୁପାସୀତ' (ଛା ୧-୧-୧) ଇତ୍ୟତ୍ର ।

ଭାଷା-(କ) 'ଯଦେବ ବିଦ୍ୟୟା କରୋତି' (ପୁରୁଷ ବିଦ୍ୟାଯୁକ୍ତ ହୋଇ ଯେଉଁ କର୍ମ କରେ) ଏହି ଶ୍ରୁତି ସର୍ବବିଦ୍ୟାବିଷୟକ ନୁହେଁ, କାରଣ-ତାହାର ପ୍ରକୃତ ବିଦ୍ୟାର ସହିତ ସମ୍ବନ୍ଧ ଅଛି, 'ଓଁ ମିତ୍ୟେଦକ୍ଷରମ୍ (ଓଁ ଏହି ଅକ୍ଷର ଉଦଗୀଥର ଉପାସନା କରିବା ଉଚିତ) ଏଠାରେ ଉଦ୍‌ଗୀଥବିଦ୍ୟା ପ୍ରକୃତ ଅଟେ ।୧୦।

## विभागः शतवत् ॥ ३-४-११ ॥
## ବିଭାଗଃ ଶତବତ୍ ॥୩-୪-୧୧॥

ବିଭାଗଃ='ତଂ ବିଦ୍ୟାକର୍ମଣୀ' ଏହି ଶ୍ରୁତିରେ ପ୍ରତିପାଦିତବିଦ୍ୟା ଅନ୍ୟ ପୁରୁଷର ଓ କର୍ମ ଅନ୍ୟପୁରୁଷକୁ ଅନୁଗମନ କରେ- ଏହାହିଁ ବିଭାଗ । ଶତବତ୍=ଯେପରି ଏହି ଦୁଇଟି ମନୁଷ୍ୟକୁ ଶହେ ଟଙ୍କା ଦିଆଯାଏ, ତେବେ ଜଣକୁ ପଚାଶ ପଚାଶ କରି ବଣ୍ଟାଯିବ ।

ମୂଳ-(କ) ଯଦପ୍ୟୁକ୍ତମ୍-ତଂ ବିଦ୍ୟା କର୍ମଣୀ ସମନ୍ୱାରଭେଦେ (ବୃହ ୪-୪-୨) ଇତ୍ୟେତତ୍ ସମନ୍ୱାରମ୍ଭବଚନମସ୍ୱାତନ୍ତ୍ର୍ୟେ ବିଦ୍ୟାୟା ଲିଙ୍ଗମିତି, ତତ୍ପ୍ରଯୁଜ୍ୟତେ । ବିଭାଗୋଽତ୍ର ଦ୍ରଷ୍ଟବ୍ୟୋ ବିଦ୍ୟାଽନ୍ୟଂ ପୁରୁଷମନ୍ୱାରଭତେ, କର୍ମାନ୍ୟମିତି । ଶତବତ୍ । ଯଥା ଶତମାଭ୍ୟାଂ ଦୀୟତାମିତ୍ୟୁକ୍ତେ ବିଭଜ୍ୟ ଦୀୟତେ ପଞ୍ଚାଶଦେକସ୍ମୈ ପଞ୍ଚାଦଶପରସ୍ମୈତଦ୍ୱତ୍ ।

(ଖ) ନ ଚେଦଂ ସମନ୍ୱାରମ୍ଭବଚନଂ ମୁମୁକ୍ଷୁବିଷୟମ୍, 'ଇତି ନୁ କାମୟମାନଃ' (ବୃହ ୪-୪-୬) ଇତି ସଂସାରିବିଷୟତ୍ୱୋପସଂହାରାତ୍, ଅଥାକାମୟମାନଃ' (ବୃହ ୪-୪-୬) ଇତି ଚ ମୁମୁକ୍ଷୋଃ ପୃଥଗୁପକ୍ରମାତ୍ ।

(ଗ) ତତ୍ର ସଂସାରବିଷୟେ ବିଦ୍ୟା ବିହିତା ପ୍ରତିଷିଦ୍ଧା ଚ ପରିଗୃହ୍ୟତେ ବିଶେଷାଭାବାତ୍ । କର୍ମାପି ବିହିତଂ ପ୍ରତିଷିଦ୍ଧଂ ଚ ଯଥାପ୍ରାପ୍ତାନୁବାଦିତ୍ୱାତ୍ ଏବଂ ସତ୍ୟବିଭାଗେନାପୀଦଂ ସମନ୍ୱାରୟ ବଚନମବକଳ୍ପତେ ।

ଭାଷା-(କ) 'ତଂ ବିଦ୍ୟାକର୍ମଣୀ (ବିଦ୍ୟା ଓ କର୍ମ ପରଲୋକରେ ଜାଣିଥିବା ପୁରୁଷକୁ ଅନୁଗମନ କରେ) ଏହି ସହାନୁଗମନ ବଚନ ବିଦ୍ୟାର ଅସ୍ୱତନ୍ତ୍ରତାରେ ଲିଙ୍ଗ ଅଟେ ବୋଲି ଯାହା କୁହାଯାଇଛି, ତାହାର ନିରାକରଣ କରାଯାଇଅଛି । ବିଦ୍ୟା ଅନ୍ୟ ପୁରଷକୁ ଅନୁଗମନ କରେ ଏବଂ କର୍ମ ମଧ୍ୟ ଅନ୍ୟପୁରୁଷକୁ-ଏହି ପ୍ରକାର ଏଠାରେ ବିଭାଗ ହୋଇଛି ଶହେ ଟଙ୍କା ପରି । ଯେପରି ଦୁଇଜଣକୁ ଶହେ ଟଙ୍କା ଦିଅ ବୋଲି କହିବା ଦ୍ୱାରା ତାହାକୁ ବିଭାଗ କରି ପଚାଶଟଙ୍କା ଜଣକୁ ଓ ଅନ୍ୟଜଣକୁ ପଚାଶ ଟଙ୍କା ଦିଆଯାଏ, ସେହିପରି ପ୍ରକୃତରେ ଜାଣିବା ବିଧେୟ ।

(ଖ) ଏହି ସହାନୁଗମନ ବଚନ ମୁମୁକ୍ଷୁବିଷୟକ ନୁହେଁ । କାରଣ- 'ଇତି ତୁ କାମୟମାନଃ (ଏହି ପ୍ରକାର କାମନାକରି ପୁରୁଷ ଏହାହିଁ କରେ, ଅର୍ଥାତ୍ ସଂସାରରେ କର୍ମ କରେ) । ଏହିପରି ସଂସାର ବିଷୟତ୍ୱର ଉପସଂହାର ହୁଏ ଏବଂ ଅଥାକାମୟମାନଃ' (ବର୍ତ୍ତମାନ ଯେଉଁପୁରୁଷ କାମନା କରେ ନାହିଁ, ସେ ବ୍ରହ୍ମକୁ ପ୍ରାପ୍ତ ହୁଏ) ଏହିପ୍ରକାର ମୁମୁକ୍ଷୁର ପୃଥକ୍ ଉପକ୍ରମ ହୁଏ ।

(ଗ) ଏହି ସଂସାରବିଷୟକ ବାକ୍ୟରେ ଉଦ୍‌ଗୀଥାଦି ବିଷୟକ ବିହିତ ବିଦ୍ୟା ଓ ନଗ୍ନସ୍ତ୍ରୀଦର୍ଶନରୂପ ପ୍ରତିଷିଦ୍ଧ ବିଦ୍ୟାର ଗ୍ରହଣ କରାଯାଏ । କାରଣ-ବିଦ୍ୟାବିଶେଷର ଅଭାବ ହୁଏ । ଏହି ପ୍ରକାର କର୍ମ ମଧ୍ୟ ବିହିତ ଓ ପ୍ରତିଷିଦ୍ଧ ହୁଏ) କାରଣ-ସେହିବାକ୍ୟ ଯଥାପ୍ରାପ୍ତର ଅନୁବାଦକ ଅଟେ-ଏହା ହେବାପରେ ଏହା ସହାନୁଗମନ ବଚନ ଉପପନ୍ନ ହୁଏ ।୧୧।

ଯଚ୍ଚୈତତ୍-'ତଦ୍‌ବତେ ବିଧାନାତ୍' (ବ୍ର. ସୂ. ୩-୪-୬) ଇତି, ଅତ ଉତ୍ତରଂପଠତି ତଦ୍‌ବତୋ ବିଧାନାତ୍' ଏହି ସୂତ୍ରରେ ପୂର୍ବପକ୍ଷ ଯାହା କହିଲେ, ତାହାର ଉତ୍ତର କୁହାଯାଇଅଛି ।

**अध्ययनमात्रवत: ॥ ३-४-१२० ॥**

**ଅଧ୍ୟୟନମାତ୍ରବତଃ ॥୩-୪-୧୨॥**

ଅଧ୍ୟୟନମାତ୍ରବତଃ-ଆଚାର୍ଯ୍ୟକୁଳାଦ୍ ବେଦମଧୀତ୍ୟ ଏହି ବାକ୍ୟରେ କେବଳ ବେଦ କରିବା ପୁରୁଷ ପାଇଁ ବିଧାନ କରାଯାଇଅଛି, ଔପନିଷଦ୍ ଆତ୍ମଜ୍ଞାନ ପାଇଁ ନୁହେଁ ।

ମୂଳ-(କ) 'ଆଚାର୍ଯ୍ୟକୁଳାଦ୍ ବେଦମଧୀତ୍ୟ' (ଛା-୮-୧୫-୧) ଇତ୍ୟତ୍ରାଧ୍ୟୟନ-ମାତ୍ରସ୍ୟ ଶ୍ରବଣାଦଧ୍ୟୟନମାତ୍ରବତ ଏବ କର୍ମବିଧିରିତ୍ୟଧ୍ୟବସ୍ୟାମଃ । ନନ୍ୱେବଂ ସତ୍ୟବିଦ୍ୟ-ତ୍ୱାଦନଧିକାରଃ କର୍ମସୁ ପ୍ରସଜ୍ୟେତ, ନୈଷ ଦୋଷଃ, ନ ବୟମଧ୍ୟୟନ ପ୍ରଭବଂ କର୍ମାବବୋ-ଧନମଧିକାରକାରଣଂ ବାରୟାମଃ, କିଂ ତର୍ହି ?

(ଖ) ଔପନିଷଦମାତ୍ମଜ୍ଞାନଂ ସ୍ୱାତନ୍ତ୍ର୍ୟେଣୈବ ପ୍ରୟୋଜନବତପ୍ରତୀୟମାନଂ ନ କର୍ମାଧିକାରକାରଣତାଂ ପ୍ରତିପଦ୍ୟତେ ଇତ୍ୟେତବାତ୍ ପ୍ରତିପାଦୟାମଃ । ଯଥା ଚ ନ କ୍ରତ୍ୱନ୍ତରଜ୍ଞାନଂ କ୍ରତ୍ୱନ୍ତରାଧିକାରେଣାପେକ୍ଷ୍ୟତ ଏବମେତଦପି ଦ୍ରଷ୍ଟବ୍ୟମିତି ।

ଭାଷା-(କ) 'ଆଚାର୍ଯ୍ୟକୁଳାଦ୍' (ଆଚାର୍ଯ୍ୟକୁଳରୁ ବେଦ ପଢି) ଏହି ସୂତ୍ରରେ ଅଧ୍ୟୟନମାତ୍ରର ଶ୍ରବଣ ହେଲେ କେବଳ ବେଦାଧ୍ୟୟନ ପାଇଁ କର୍ମ ବିଧି ହୁଏ ବୋଲି ଆମ୍ଭେ ସ୍ଥିରକରିଛୁ । ପରନ୍ତୁ ଏହା ହେଲେ ବିଦ୍ୟାହୀନ ହେବାରୁ ତାହାର କର୍ମରେ ଅନଧିକାର ପ୍ରସକ୍ତ ହେବ କି ? ନୁହେଁ । ଆମ୍ଭେ ବୋଦଧ୍ୟୟନରୁ ଉତ୍ପନ୍ନ ହେବାକୁ ଥିବା କର୍ମରେ ଅଧିକାରର କାରଣଭୂତ କର୍ମାବବୋଧର ବାରଣ କରାଯାଇନାହିଁ ।

(ଖ) କିନ୍ତୁ ଔପନିଷଦ୍ ଆତ୍ମଜ୍ଞାନ ସ୍ୱତନ୍ତ୍ରରୂପରେ ପ୍ରୟୋଜନରୂପେ ପ୍ରତୀତ ହୋଇ କର୍ମରେ ଅଧିକାରକାରଣତ୍ୱକୁ ପ୍ରାପ୍ତ ହୁଏ ନାହିଁ ବୋଲି ଆମ୍ଭେ ପ୍ରତିପାଦନ କରୁଁ । ଯେପରି ଗୋଟିଏ କ୍ରତୁର ଜ୍ଞାନ ଅନ୍ୟ କ୍ରତୁର ଅଧିକାରଦ୍ୱାର ଅପେକ୍ଷିତ ନୁହନ୍ତି ବୋଲି ଜାଣିବା ଉଚିତ୍ ।୧୨।

ଯଦପ୍ୟୁକ୍ତମ୍-ନିୟମାଚ୍ଚ (ବ୍ର. ସୂ. ୩-୪-୭) ଇତି ଅତ୍ରାଭିଧୀୟତେ ନିୟମାତ୍ ଚ ସୂତ୍ରରେ ଯାହା କୁହାଯାଇଛି, ତାହା ବିଷୟରେ ଆମ୍ଭେ କହୁଁ ।

## नाविशेषात् ॥ ३-४-१३ ॥

## ନାବିଶେଷାତ୍ ॥ ୩-୪-୧୩ ॥

ନ = 'କୁର୍ବନେବେହ କର୍ମାଣି' ଇତ୍ୟାଦିଶ୍ରୁତି ତତ୍ତ୍ୱଜ୍ଞାନୀ ବିଷୟକ ନୁହେଁ । ଅବିଶେଷାତ୍=କାରଣ- 'ବିଦ୍ୱାନ୍' ବିଶେଷର ଅଭାବ ଅଟେ ॥

ମୂଳ-(କ) କୁର୍ବନ୍ନେବେହ କର୍ମାଣି ଜିଜୀବିଷେତ୍ (ଈଶା-୨) ଇତ୍ୟେବମାଦିଷୁ ନିୟମଶ୍ରବଣେଷୁ ନ ବିଦୁଷ ଇତି ବିଶେଷୋଽସ୍ତି, ଅବିଶେଷେଣ ନିୟମବିଧାନାତ୍ ।

ଭାଷା-(କ) 'କୁର୍ବନ୍ନେବେହ' (ଏହି ସଂସାରରେ ଅଗ୍ନିହୋତ୍ରାଦି କର୍ମ କରି ଶହେବର୍ଷ ବଞ୍ଚିରହିବା ପାଇଁ ଇଚ୍ଛା କରିବା ଉଚିତ୍) ଇତ୍ୟାଦି ନିୟମଗୁଡ଼ିକର ଶ୍ରବଣରେ ବିଦ୍ୱାନ ପାଇଁ ରହିଛି-ଏହି ବିଶେଷ ନୁହେଁ, କାରଣ-ଅବିଶେଷ ରୂପରେ ନିୟମର ବିଧାନ ହୁଏ ।୧୩।



## स्तुतयेऽनुमतिर्वा ॥ ३-४-१४ ॥
## ସ୍ତୁତୟେଽନୁମତିର୍ବା ॥୩-୪-୧୪॥

ବା=ଅଥବା ଅନୁମତିଃ=ତତ୍ତ୍ୱଜ୍ଞାନ ପାଇଁ ଯେଉଁ କର୍ମାନୁଜ୍ଞା ହୁଏ, ସ୍ତୁତୟେ=ତାହା କେବଳ ସ୍ତୁତିପାଇଁ ରହିଛି ।

ମୂଳ=(କ) 'କୁର୍ବନ୍ନେବେହ କର୍ମାଣି' (ଈଶା-୨) ଇତ୍ୟତ୍ରାପରୋ ବିଶେଷ ଆଖ୍ୟାୟତେ । ଯଦ୍ୟପ୍ୟତ୍ର ପ୍ରକରଣସାମର୍ଥ୍ୟାଦ୍ ବିଦ୍ୱାନେବ କୁର୍ବନ୍ନିତି ସଂବଧ୍ୟେତ, ତଥାପି ବିଦ୍ୟାସ୍ତୁତୟେ କର୍ମାନୁଜ୍ଞାନମେତଦ୍ ଦ୍ରଷ୍ଟବ୍ୟମ୍ ।

(ଖ) 'ନ କର୍ମ ଲିପ୍ୟତେ ନରେ' (ଈଶା-୨) ଇତି ହି ବକ୍ଷ୍ୟତି । ଏତଦୁକ୍ତଂ ଭବତି ଯାବଜ୍ଜୀବଂ କର୍ମ କୁର୍ବତ୍ୟପି ବିଦୁଷି ପୁରୁଷେ ନ କର୍ମ ଲେପାୟ ଭବତି, ବିଦ୍ୟାସାମର୍ଥ୍ୟାଦିତି ତଦେବଂ ବିଦ୍ୟା ସ୍ତୂୟତେ ॥

ଭାଷା-(କ) 'କୁର୍ବନ୍ନେବେହ' ଏହି ଶ୍ରୁତିରେ ଅନ୍ୟବିଶେଷ କୁହାଯାଇଅଛି । ଯଦ୍ୟପି ଏଠାରେ ପ୍ରକରଣ ସାମର୍ଥ୍ୟରୁ ବିଦ୍ୱାନ 'କୁର୍ବନ ଏବ' ଅର୍ଥାତ୍ କର୍ମକରି ଏହିପ୍ରକାର ସମ୍ବନ୍ଧିତ ହେବ, ତେବେ ଏହା କର୍ମାନୁଜ୍ଞା ବିଦ୍ୟାସ୍ତୁତି ପାଇଁ ରହିବା ଉଚିତ୍ ।

(ଖ) କାରଣ-ନ କର୍ମ ଲିପ୍ୟତେ ନରେ ବୋଲି ଶ୍ରୁତି କହେ । ତାତ୍ପର୍ଯ୍ୟ ଏହା ଯେ- ଜୀବନ ପର୍ଯ୍ୟନ୍ତ କର୍ମ କରି ତତ୍ତ୍ୱବିତ୍ ପୁରୁଷଠାରେ ବିଦ୍ୟା ସାମର୍ଥ୍ୟରୁ ଫଳବନ୍ଧନ ନିମିତ୍ତ ରହେନାହିଁ । ତେଣୁ ଏହିପ୍ରକାର ବିଦ୍ୟାର ସ୍ତୁତି କରାଯାଇଅଛି ॥୧୪॥

## कामकारेण चैके ॥ ३-४-१५ ॥
## କାମକାରେଣ ଚୈକେ ॥୩-୪-୧୫॥

ଚ=ଏବଂ, ଏକେ='ଏତଦ୍ ବ ସ୍ମ ବୈ' ଇତ୍ୟାଦି ଶ୍ରୁତିଦ୍ୱାରା ଜଣାପଡ଼େ ଯେ- କୌଣସି ବିଦ୍ୱାନବ୍ୟକ୍ତି, କାମକାରେଣ=ସ୍ୱେଚ୍ଛାରେ କର୍ମର ସାଧନଭୂତ ପ୍ରଜା ପ୍ରଭୃତିକୁ ତ୍ୟାଗ କରିଛନ୍ତି ।

ମୂଳ-(କ) ଅପିଚୈକେ ବିଦ୍ୱାଂସଃ ପ୍ରତ୍ୟକ୍ଷୀକୃତବିଦ୍ୟାଫଳାଃ ସନ୍ତସ୍ତଦବଷ୍ଟମ୍ଭାତ୍ଫଳାନ୍ତରସାଧନେଷୁ ପ୍ରଜାଦିଷୁ ପ୍ରୟୋଜନାଭାବଂ ପରାମୃଶନ୍ତି । କାମକାରେଣେତି ଶ୍ରୁତିର୍ଭବତି ବାଜସନେୟିନାମ୍ ଏତଦ୍ ବ ସ୍ମ ବୈତତ୍ ପୂର୍ବେ ବିଦ୍ୱାଂସଃ ପ୍ରଜାଂ ନ କାମୟନ୍ତେ କିଂ ପ୍ରଜୟା କରିଷ୍ୟାମୋ ଯେଷାଂ ନୋଽୟମାତ୍ମାଽୟଂ ଲୋକଃ' (ବୃ ୪-୪-୨୨) ଇତି । ଅନୁଭବାରୁଢମେବ ଚ ବିଦ୍ୟାଫଳଂ ନ କ୍ରିୟାଫଳବତ୍ କାଳାନ୍ତରଭାବୀତ୍ୟସକୃଦବୋଚାମ୍ । ଅତୋଽପି ନ ବିଦ୍ୟାୟାଃ କର୍ମଶେଷତ୍ୱଂ ନାପି ତଦ୍ବିଷୟାୟାଃ ଫଳଶ୍ରୁତେରଯଥାର୍ଥତତ୍ତ୍ୱଂ ଶକ୍ୟମାଶ୍ରୟିତୁମ୍ ।

ଭାଷା-(କ) ବିଦ୍ୟାଫଳକୁ ଦର୍ଶନ କରୁଥିବା କେତେକ ବିଦ୍ୱାନମାନେ ବିଦ୍ୟାକୁ ଅବଲମ୍ବନ କରି ଅନ୍ୟଫଳର ସାଧନ ପ୍ରଜାପ୍ରଭୃତିରେ ପ୍ରୟୋଜନାଭାବକୁ ପରାମର୍ଶ କରନ୍ତି ଅର୍ଥାତ୍ ପ୍ରୟୋଜନାଭାବକୁ ଦେଖନ୍ତି । କାରଣ- 'ଏତଦ୍ ସ୍ମ ବୈ' (ପୂର୍ବବର୍ତ୍ତୀ ବିଦ୍ୱାନ ସନ୍ତାନ ତଥା କର୍ମାଦିର ଇଚ୍ଛା କରୁ ନଥିଲେ । ସେମାନେ ଅନୁଶୋଚନା କରୁଥିଲେ ଯେ- ଆମ୍ଭେ ଏହି ପ୍ରଜାଙ୍କଠାରୁ କ'ଣ ପାଇବା ? ଅର୍ଥାତ୍ ପ୍ରଜାଙ୍କଠାରେ ପ୍ରୟୋଜନ କ'ଣ ଅଛି ? ଯାହାଦ୍ୱାରାକି ଆମ୍ଭଙ୍କୁ ଏହି ଆତ୍ମଲୋକ ଅଭିଷ୍ଟ ହେବ) ଏହିପରି ସ୍ୱକୀୟ ଇଚ୍ଛାରେ ତ୍ୟାଗ କରିବାପାଇଁ ବାଜସନେୟୀ ଶାଖାର ଶ୍ରୁତିବାକ୍ୟ ଅଛି । କିନ୍ତୁ ବିଦ୍ୟାଫଳ ଅନୁଭବସିଦ୍ଧ ଅଟେ, କର୍ମଫଳ ପରି ଏହା ଜନ୍ମାନ୍ତରଭାବୀ ନୁହେଁ ବୋଲି ଆମ୍ଭେ ବହୁବାର କହିଛୁଁ । ତେଣୁ ବିଦ୍ୟା କର୍ମଶେଷ ନୁହେଁ ଏବଂ ବିଦ୍ୟାବିଷୟକ ଫଳଶ୍ରୁତି ଅଯଥାର୍ଥ ବୋଲି ଆଶ୍ରୟ ନେବା ସମୀଚୀନ ନୁହେଁ ॥୧୫॥

## उपमर्दं च ॥ ३-४-१६ ॥

## ଉପମର୍ଦ୍ଦଂ ଚ ॥୩-୪-୧୬॥

ଉପମର୍ଦ୍ଦଂ ଚ- 'ଯତ୍ରଂ ବା ଅସ୍ୟ' ଇତ୍ୟାଦିରୁ ଜଣାପଡ଼େ ଯେ ତତ୍ତ୍ୱଜ୍ଞାନ କର୍ମାନୁଷ୍ଠାନର ହେତୁଭୂତ ଅବିଦ୍ୟାକୃତ କ୍ରିୟା, କାରକ, ଫଳ ବିଭାଗର ଉପମଦ ନ କରେ ॥

ମୂଳ - (କ) ଅପି ଚ କର୍ମାଧିକାରହେତୋଃ କ୍ରିୟାକାରଫଳଲକ୍ଷଣସ୍ୟ ସମସ୍ତସ୍ୟ ପ୍ରପଞ୍ଚସ୍ୟା ବିଦ୍ୟାକୃତସ୍ୟ ବିଦ୍ୟାସାମର୍ଥ୍ୟାତ୍ ସ୍ୱରୂପୋପମର୍ଦ୍ଦମାମନନ୍ତି- 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତତ୍ତତ୍କେନ କଂ ପଶ୍ୟେତ୍ ତତ୍କେନ କଂ ଜିଘ୍ରେତ୍ (ବୃହ ୨-୪-୧୪) ଇତ୍ୟାଦିନା । ବେଦାନ୍ତୋଦିତାତ୍ମଜ୍ଞାନପୂର୍ବିକାଂ ତୁ କର୍ମାଧିକାରସିଦ୍ଧିଂ ପ୍ରତ୍ୟାଶାସାସନସ୍ୟ କର୍ମାଧିକାରୋ ଛିତ୍ତିରେବ ପ୍ରସଜ୍ୟେତ । ତସ୍ମାଦପି ସ୍ୱାତନ୍ତ୍ର୍ୟଂ ବିଦ୍ୟାୟାଃ ॥

ଭାଷା-(କ) କର୍ମାଧିକାରର ହେତୁ କ୍ରିୟା, କାରକ ଏବଂ ଫଳରୂପ ଅବିଦ୍ୟାକୃତ ସମସ୍ତ ପ୍ରପଞ୍ଚର ବିଦ୍ୟା ସାମର୍ଥ୍ୟରୁ ସ୍ୱରୂପ ନିବୃତ୍ତି 'ଯତ୍ର ତ୍ୱସ୍ୟ' (ଯେଉଁ ବିଦ୍ୟାବସ୍ଥାରେ ଏହି ବ୍ରହ୍ମବେତ୍ତା ପାଇଁ ସବୁ ଆତ୍ମା ହୋଇଗଲେ ସେହି ଅବସ୍ଥାରେ କୌଣସି କାରଣ ଦ୍ୱାରା କୌଣସି ବିଷୟ ଦେଖନ୍ତି ଏବଂ କୌଣସି ଇନ୍ଦ୍ରିୟଦ୍ୱାରା ବିଷୟକୁ ଘ୍ରାଣ କରନ୍ତି ଇତ୍ୟାଦି ଶ୍ରୁତି କହେ । ବେଦାନ୍ତ ଶାସ୍ତ୍ରଦ୍ୱାରା ପ୍ରତିପାଦିତ ଆତ୍ମଜ୍ଞାନରୁ ଯାହା ପୂର୍ବ, ତାହାକୁ କର୍ମାଧିକାର ସିଦ୍ଧିର ପ୍ରତ୍ୟାଶା କଲେ କର୍ମାଧିକାରର ଉଚ୍ଛେଦ ହେବ, ତେଣୁ ବିଦ୍ୟା ସ୍ୱତନ୍ତ୍ର ଅଟେ ।୧୬।



## उर्ध्वरेत: सु च शब्दे हि ॥ ३-४-१७ ॥

## ଉର୍ଦ୍ଧ୍ୱରେତଃସୁ ଚ ଶବ୍ଦେ ହି ॥୩-୪-୧୭॥

ଚ=ଏବଂ, ଉଦ୍ଧର୍ବରେତଃସୁ=ସଂନ୍ନ୍ୟାସାଶ୍ରମରେ ମଧ ବ୍ରହ୍ମବିଦ୍ୟାର ଶ୍ରବଣ ହୁଏ । ତେଣୁ ବିଦ୍ୟା କର୍ମାଙ୍ଗ ନୁହେଁ । ହି=କାରଣ-ଶବ୍ଦେ=ତ୍ରୟୋଧର୍ମସ୍କନ୍ଧାଃ' ଇତ୍ୟାଦି ଶ୍ରୁତିରେ ସନ୍ନ୍ୟାସଶ୍ରମ ପ୍ରତିପାଦିତ ହୁଏ ।

ମୂଳ-(କ) ଉର୍ଦ୍ଧ୍ୱରେତଃସୁ ଚାଶ୍ରମେଷୁ ବିଦ୍ୟାଶ୍ରୂୟତେ । ନ ଚ ତତ୍ର କର୍ମାଙ୍ଗତ୍ୱଂ ବିଦ୍ୟାୟା ଉପପଦ୍ୟତେ, କର୍ମାଭାବାତ୍ । ନ ହ୍ୟଗ୍ନିହୋତ୍ରାଦୀନି ବୈଦିକାନି କର୍ମାଣି ତେଷାଂ ସନ୍ତି । ସ୍ୟାଦେତତ୍-ଉର୍ଦ୍ଧ୍ୱରେତଃସ ଆଶ୍ରମା ନ ଶ୍ରୂୟନ୍ତେ ବେଦ ଇତି ତଦପି ନାସ୍ତି ।

(ଖ) ତେଽପି ହି ବୈଦିକେଷୁ ଶବ୍ଦେଷ୍ୱବଗମ୍ୟନ୍ତେ- 'ତ୍ରୟୋ ଧର୍ମସ୍କନ୍ଧାଃ' (ଛା ୨-୨୩-୧), 'ଯେ ଚେମେଽରଣ୍ୟେ ଶ୍ରଦ୍ଧା ତପ ଇତ୍ୟୁପାସତେ, (ଛା ୫-୧୦-୧), 'ତପଃଶ୍ରଦ୍ଧେ ଯେ ହ୍ୟୁପବସନ୍ତ୍ୟରଣ୍ୟେ '(ମୁଣ୍ଡ ୧-୧୨-୧୧), ଏତମେବ ପ୍ରବ୍ରାଜିନୋ ଲୋକମିଚ୍ଛନ୍ତଃ ପ୍ରବ୍ରଜନ୍ତି' (ବୃହ ୪-୪-୨୨), 'ବ୍ରହ୍ମଚର୍ଯ୍ୟାଦେବ ପ୍ରବ୍ରଜେତ୍' (ଜା-୪) ଇତ୍ୟେବମାଦିଷୁ । ପ୍ରତିପନ୍ନାପ୍ରତିପନ୍ନଗାର୍ହସ୍ଥାନାମପାକୃତାନପାକୃତର୍ଣ୍ଣତ୍ରୟାଣାଂ ଚୋର୍ଦ୍ଧ୍ୱରେତସ୍ତ୍ୱଂ ଶ୍ରୁତିସ୍ମୃତି ପ୍ରସିଦ୍ଧମ୍ । ତସ୍ମାଦପି ସ୍ୱାତନ୍ତ୍ର୍ୟଂ ବିଦ୍ୟାୟାଃ ।

ଭାଷା-(କ) ଉର୍ଦ୍ଧ୍ୱରେତଃ ସଂନ୍ନ୍ୟାସାଶ୍ରମରେ ବିଦ୍ୟାପଦ ଶୁଣାଯାଏ । ସେହି ବିଦ୍ୟାରେ କର୍ମାଙ୍ଗତ୍ୱ ଉପପନ୍ନ ହୁଏ ନାହିଁ, କାରଣ-ଉକ୍ତ ଆଶ୍ରମଗୁଡ଼ିକରେ କର୍ମାଭାବ ହୁଏ- ଅଗ୍ନିହୋତ୍ରାଦି ବୈଦିକ କର୍ମ ସେହି ଆଶ୍ରମରେ ନ ରହୁ । ପରନ୍ତୁ ଉର୍ଦ୍ଧ୍ୱରେତଃ ଆଶ୍ରମ ବେଦରେ ଶ୍ରବଣ ହୁଏ ନାହିଁ ବୋଲି କହିବା ଠିକ୍ ନୁହେଁ; କାରଣ- ସେସବୁ 'ତ୍ରୟୋ ଧର୍ମସ୍କନ୍ଧାଃ' (ଧର୍ମର ତିନୋଟି ସ୍କନ୍ଧ ପ୍ରବିଭାଗ ହୁଏ), 'ଯେ ଚେମେ' (ସେମାନେ ଜ୍ଞାନଯୁକ୍ତ ବାନପ୍ରସ୍ଥ ଓ ସଂନ୍ନ୍ୟାସୀ ଅରଣ୍ୟରେ ଶ୍ରଦ୍ଧା ଓ ତପକୁ ଉପାସନା କରନ୍ତି), 'ତପଃ ଶ୍ରଦ୍ଧେ' (ଯେଉଁ ବିଦ୍ୱାନ ଅରଣ୍ୟରେ ତପଃ ଓ ଶ୍ରଦ୍ଧାକୁ ସେବନ କରେ), ଏତମେବ' (ସେ ଆତ୍ମଲୋକକୁ ଚାହିଁ, ସଂନ୍ନ୍ୟାସୀ ସବୁ କର୍ମକୁ ସଂନ୍ନ୍ୟାସ କରନ୍ତି) 'ବ୍ରହ୍ମଚର୍ଯ୍ୟଦେବ' (ବ୍ରହ୍ମଚର୍ଯ୍ୟରୁ ସନ୍ନ୍ୟାସ ଗ୍ରହଣ କରିବା ଉଚିତ୍) ଇତ୍ୟାଦି ବୈଦିକଶବ୍ଦରେ ଅବଗତ ହୁଅନ୍ତି । ପ୍ରାପ୍ତଗାର୍ହସ୍ଥ୍ୟ, ଅପାକୃତ ତିନୋଟି ଋଣ ଏବଂ ଅନପାକୃତି ତିନୋଟି ଋଣଯୁକ୍ତ ଉର୍ଦ୍ଧ୍ୱ ରେତସ୍ତ୍ୱ ଶ୍ରୁତି ଓ ସ୍ମୃତିରେ ପ୍ରସିଦ୍ଧ ଅଟେ । ତେଣୁ ବିଦ୍ୟା ସ୍ୱତନ୍ତ୍ର ଅଟେ ॥୧୭॥

## २- परामर्शाधिकरणम् ॥ सू०-१८-२० ॥

## ୨ । ପରାମର୍ଶାଧିକରଣମ୍ ॥ସୂ. ୧୮-୨୦॥

## परामर्शं जैमिनिचोदना चापबदति हि ॥ ३-४-१८ ॥
## ପରାମର୍ଶଂ ଜୈମିନିରଚୋଦନା ଚାପବଦତି ହି ॥୩-୪-୧୮॥

'ବ୍ରହ୍ମସଂସ୍ଥୋଽମୃତତ୍ୱମେତି' ଇତ୍ୟାଦି ଶାସ୍ତ୍ର, ପରାମର୍ଶମ୍=ଅନ୍ଧପରଂପରା-ନ୍ୟାୟରେ ପ୍ରାପ୍ତ ସଂନ୍ନ୍ୟାସାଶ୍ରମର ଅନୁବାଦକ ଅଟେ, ଜୈମିନିଃ-ଏହା ଆଚାର୍ଯ୍ୟ ଜୈମିନିଙ୍କର ମତ । ହି=କାରଣ-ଅଚୋଦନା=ଏହି ବାକ୍ୟରେ ବିଧାୟକ ଲିଙ୍ଗ ପ୍ରଭୃତି ନାହିଁ, ଚ=ଏବଂ, ଅପବଦତି=ବୀରହା ଇତ୍ୟାଦି ଶାସ୍ତ୍ର ମଧ୍ୟ ସଂନ୍ନ୍ୟାସାଶ୍ରମର ପ୍ରତିଷେଧ କରେ ।

ମୂଳ-(କ) 'ତ୍ରୟୋ ଧର୍ମସ୍କନ୍ଧାଃ' (ଛା ୨-୨୪-୧) ଇତ୍ୟାଦୟୋ ଯେ ଶବ୍ଦା ଊର୍ଦ୍ଧ୍ୱରେତସାମାଶ୍ରମାଣାଂ ସଦ୍‌ଭାବାୟୋଦାହୃତାଃ ନ ତେ ତତ୍‌ପ୍ରତିପାଦନାୟ ପ୍ରଭବନ୍ତି । ଯତଃ ପରାମର୍ଶମେଷୁ ଶବ୍ଦେଷ୍ୱାଶ୍ରମାନ୍ତରାଣାଂ ଜୈମିନିରାଚାର୍ଯ୍ୟୋ ମନ୍ୟତେ, ନ ବିଧିମ୍ କୁତଃ ? ନ ହ୍ୟତ୍ର ଲିଙ୍ଗାଦୀନାମନ୍ୟତମଶ୍ଚୋଦନାଶବ୍ଦୋଽସ୍ତି ! ଅର୍ଥାନ୍ତର ପରତ୍ୱଂ, ଚୈଷୁ ପ୍ରତ୍ୟେକମୁପଲଭ୍ୟତେ ।

(ଖ) ତ୍ରୟୋଧର୍ମାସ୍କନ୍ଧାଃ ଇତ୍ୟତ୍ର ତାବଦ୍ୟଜ୍ଞୋଽଧ୍ୟୟନଂ ଦାନମିତି ପ୍ରଥମସ୍ତପ ଏବଂ ଦ୍ୱିତୀୟୋ ବ୍ରହ୍ମଚର୍ଯ୍ୟାଚାର୍ଯ୍ୟକୁଳବାସୀ ତୃତୀୟୋଽତ୍ୟନ୍ତମାତ୍ମାନମାଚାର୍ଯ୍ୟକୁଳେ-ଽବସାଦୟନ୍ ସର୍ବ ଏତେ ପୁଣ୍ୟଲୋକା ଭବନ୍ତୀତି ପରାମର୍ଶପୂର୍ବକମାଶ୍ରମାଣାମନାତ୍ୟ-ନ୍ତିକଫଳତ୍ୱଂ ସଙ୍କୀର୍ତ୍ତ୍ୟାତ୍ୟନ୍ତିକଫଳତୟା ବ୍ରହ୍ମସଂସ୍ଥତା ସ୍ତୂୟତେବ୍ରହ୍ମସଂସ୍ଥୋଽମୃତ ତ୍ୱମେତି'' (ଛା ୨-୨୩-୧) ଇତି ।

(ଗ) ନନୁ ପରାମର୍ଶେଽପ୍ୟାଶ୍ରମା ଶମ୍ୟନ୍ତ ଏବ । ସତ୍ୟଂ ଗମ୍ୟନ୍ତେ, ସ୍ମୃତ୍ୟାଚାରାଭ୍ୟାଂ ତୁ ତେଷାଂ ପ୍ରସିଦ୍ଧିର୍ନ ପ୍ରତ୍ୟକ୍ଷଶ୍ରୁତେଃ । ଅତଶ୍ଚ ପ୍ରତ୍ୟକ୍ଷଶ୍ରୁତିବିରୋଧେ ସତ୍ୟନାଦରଣୀୟାସ୍ତେ ଭବିଷ୍ୟନ୍ତି, ଅନଧିକୃତବିଷୟା ବା ।

ଭାଷା (କ) 'କ୍ରୟୋ ଧର୍ମସ୍କନ୍ଧାଃ' (ଧର୍ମ ତିନୋଟି ବିଭାଗ ଯୁକ୍ତ ଅଟେ) ଇତ୍ୟାଦି ଯେଉଁ ଶ୍ରୁତି ବାକ୍ୟଗୁଡ଼ିକ ସନ୍ନ୍ୟାସାଶ୍ରମର ସଦ୍‌ଭାବ ପାଇଁ ଉଦାହୃତ ହୋଇଛି; ସେଗୁଡ଼ିକ ତାହା ପ୍ରତିପାଦନ ପାଇଁ ସମର୍ଥ ନୁହନ୍ତି; କାରଣ ଜୈମିନି ଆଚାର୍ଯ୍ୟ ଏହି ଶ୍ରୁତି ବାକ୍ୟଗୁଡ଼ିକରେ ଅନ୍ୟ ଆଶ୍ରମର ପରାମର୍ଶ ସ୍ୱୀକାର କରନ୍ତି । କିନ୍ତୁ ବିଧିକୁ ନୁହେଁ, କିପରି ? ତାହାଦ୍ୱାରା ଲିଙ୍ ପ୍ରଭୃତିରୁ ଗୋଟିଏ ବିଧିଶବ୍ଦ ଏଠାରେ ନାହିଁ । ଏଠାରେ ପ୍ରତ୍ୟେକ ଅନ୍ୟ ଅର୍ଥପରକ ରୂପେ ଉପଲବ୍ଧ ହୁଏ ।

(ଖ) 'ତ୍ରୟୋ ଧର୍ମସ୍କନ୍ଧା' ଏଠାରେ କିନ୍ତୁ 'ଯଜ୍ଞୋଽଧ୍ୟୟନଂ ଦାମମିତି' (ଯଜ୍ଞ, ବେଦାଧ୍ୟୟନ ଓ ଦାନ- ଏହା ପ୍ରଥମ ସ୍କନ୍ଧ ଅଟନ୍ତି । ତପ ଦ୍ୱିତୀୟ ଧର୍ମସ୍କନ୍ଧ ଏବଂ ଆଚାର୍ଯ୍ୟ



ଗୃହରେ ବାସ କରି ଜୀବନ ପର୍ଯ୍ୟନ୍ତ ନିୟମ ପୂର୍ବକ ଆଚାର୍ଯ୍ୟ ଗୃହରେ ଶରୀରକୁ କ୍ଷୀଣ କରି ନୈଷ୍ଠିକ ବ୍ରହ୍ମଚାରୀ ହେବା ତୃତୀୟ ଧର୍ମସ୍କନ୍ଧ-ଏହିସବୁ ତିନୋଟି ଆଶ୍ରମୀ ଯଥୋକ୍ତ ଧର୍ମରେ ପୁଣ୍ୟଲୋକଯୋଗ୍ୟ ହୁଅନ୍ତି) ଏହିପ୍ରକାର ଆଶ୍ରମଗୁଡ଼ିକର ପରାମର୍ଶ ପୂର୍ବକ ବ୍ୟଭିଚରିତ ଫଳକୁ କହି 'ବ୍ରହ୍ମସଂସ୍ଥୋଽମୃତତ୍ୱମେତି' (ବ୍ରହ୍ମରେ ସମ୍ୟକ ପ୍ରକାରରେ ରହି ଚତୁର୍ଥାଶ୍ରମୀ ସଂନ୍ୟାସୀ ଅମୃତତ୍ୱକୁ ପ୍ରାପ୍ତ ହୁଏ) ଏହି ପ୍ରକାର ଅବ୍ୟଭିଚରିତଫଳତ୍ୱଦ୍ୱାରା ବ୍ରହ୍ମସଂସ୍ଥିତାର ସ୍ତୁତି ହୁଏ ।

(ଗ) ପରନ୍ତୁ ପରାମର୍ଶରେ ଆଶ୍ରମର ପରାମର୍ଶ ନିଶ୍ଚିତ ଭାବେ ହୁଏ ବୋଲି ସମ୍ୟଗଭାବେ ଜଣାପଡ଼େ । ପରନ୍ତୁ ତାହାର ସ୍ମୃତି ଓ ଆଚାରରୁ ପ୍ରସିଦ୍ଧ ହୁଏ, ପ୍ରତ୍ୟକ୍ଷ ଶ୍ରୁତିଦ୍ୱାରା ପ୍ରସିଦ୍ଧି ନୁହେଁ । ତେଣୁ ପ୍ରତ୍ୟକ୍ଷ ଶ୍ରୁତିର ବିରୋଧ ହେଲେ ସେମାନେ ଅନାଦରଣୀୟ ହେବେ ଅଥବା ଅନଧିକାର ବିଷୟକ ହେବେ ଅର୍ଥାତ୍ ଅଗ୍ନିହୋତ୍ରାଦି କର୍ମରେ ଅନଧିକାରୀବିଷୟ ହେବ ।

ମୂଳ-(କ) ନନୁ ଗାର୍ହସ୍ଥ୍ୟମପି ସହୈବୋଧ୍ୱରେତୋଭିଃ ପରାମୃଷ୍ଟଂ ଯଜ୍ଞୋଽଧ୍ୟୟନଂ ଦାନମିତି ପ୍ରଥମ ଇତି । ସତ୍ୟମେବମ୍, ତଥାପି ତୁ ଗାର୍ହସ୍ଥ୍ୟଂ ପ୍ରତ୍ୟେବାଗ୍ନିହୋତ୍ରାଦୀନାଂ କର୍ମଣାଂ ବିଧାନାଚ୍ଛ୍ରୁତିପ୍ରସିଦ୍ଧମେବ ହି ତଦସ୍ତିତ୍ୱମ୍ । ତସ୍ମାତ୍ ସ୍ତୁତ୍ୟର୍ଥଂ ଏବାୟଂ ପରାମର୍ଶୋ ନଚୋଦନାର୍ଥଃ ।

(ଖ) ଅପି ଚାପବଦତି ହି ପ୍ରତ୍ୟକ୍ଷା ଶ୍ରୁତିରାଶ୍ରମାନ୍ତରମ୍- 'ବୀରହା ବା ଏଷ ଦେବାନାଂ ଯୋଽଗ୍ନିମୁଦ୍ୱାସୟତେ', 'ଆଚାର୍ଯ୍ୟାୟ ପ୍ରିୟଂ ଧନମାହୃତ୍ୟ ପ୍ରଜାତନ୍ତୁଂ ମା ବ୍ୟବଚ୍ଛେସୀ', (ତୈ ୧-୧୧-୧), ନାପୁତ୍ରସ୍ୟ ଲୋକୋଽସ୍ତୀତି ତତ୍ସର୍ବେ ପଶବୋ ବିଦୁଃ' ଇତ୍ୟେବାମାଦ୍ୟା ।

(ଗ) ତଥା 'ଯେ ଚେମେଽରଣ୍ୟେ ଶ୍ରଦ୍ଧା ତପ ଇତ୍ୟୁପାସତେ' (ଛା ୫-୧୦-୧), 'ତପଃଶ୍ରଦ୍ଧେ ଯେ ହ୍ୟୁପବସନ୍ତ୍ୟରଣ୍ୟେ (ମୁଣ୍ଡ ୧-୨-୧୧) ଇତି ଚ ଦେବଯାନୋପଦେଶଃ । ସନ୍ଦିଗ୍ଧଂ ଚାଶ୍ରମାନ୍ତରାଭିଧାନମ୍- 'ତପ ଏବ ଦ୍ୱିତୀୟଃ (ଛା ୨-୨୩-୧) ଇତ୍ୟେବମାଦିଷୁ ।

(ଘ) ତଥା ଏତମେବ ପ୍ରବ୍ରାଜିନୋଽଲୋକମିଚ୍ଛନ୍ତଃ ପ୍ରବ୍ରଜନ୍ତି' (ବୃହ ୪-୪-୨୨) ଇତି ଲୋକସଂସ୍ତବୋଽୟଂ ନ ପାରିବ୍ରାଜ୍ୟବିଧିଃ । ନନୁ ବ୍ରହ୍ମଚର୍ଯ୍ୟାଦେବ ପ୍ରବ୍ରଜେଦିତି ବିସ୍ପଷ୍ଟମିଦଂ ପ୍ରତ୍ୟକ୍ଷଂ ପାରିବ୍ରାଜ୍ୟବିଧାନଂ ଜାବାଲ ନାମ୍ । ସତ୍ୟମେବତତ୍-ଅନପେକ୍ଷ୍ୟ ତ୍ୱେତାଂ ଶ୍ରୁତିମୟଂ ବିଚାର ଇତି ଦ୍ରଷ୍ଟବ୍ୟମ୍ ॥

ଭାଷା-(କ) କିନ୍ତୁ ଯଜ୍ଞୋଽଧ୍ୟୟନଂ ଦାନମିତି ପ୍ରଥମଃ ଏହିପ୍ରକାର ଗାର୍ହସ୍ଥ୍ୟର ମଧ୍ୟ ସନ୍ନ୍ୟାସୀମାନଙ୍କ ସହିତ ପରାମର୍ଶ କରାଯାଇଅଛି ବୋଲି କହିବା ଉଚିତ । କିନ୍ତୁ ଗୃହସ୍ଥାଶ୍ରମ

ପ୍ରତି ଅଗ୍ନିହୋତ୍ରାଦି କର୍ମ ବିଧାନ ହେଲେ ତାହାର ଅସ୍ତିତ୍ୱ ଶ୍ରୁତିପ୍ରସିଦ୍ଧ ହୁଏ । ତେଣୁ ଏହି ପରାମର୍ଶ ସ୍ତୁତ୍ୟର୍ଥକ ଅଟେ, କିନ୍ତୁ ବିଧ୍ୟର୍ଥକ ନୁହେଁ ।

(ଖ) 'ବୀରହା ବା ଏଷଃ' (ଯେଉଁ ଅଗ୍ନିର ଉଦ୍‌ବାସନ କରାଯାଏ, ସେହି ଦେବତାଙ୍କର ବୀରହା ଅର୍ଥାତ୍ ପୁତ୍ରଘାତୀ ହୁଏ), 'ଆଚାର୍ଯ୍ୟାୟ' (ଆଚାର୍ଯ୍ୟଙ୍କର ପ୍ରିୟ ଧନକୁ ଚୋରି କରି ଅଥବା ତାହାଙ୍କ ଆଜ୍ଞାରେ ସ୍ତ୍ରୀକୁ ପରିହରଣ କରି ସନ୍ତାନପରଂପରାକୁ ଉଚ୍ଛେଦ କରନାହିଁ), 'ନାପୁତ୍ରସ୍ୟ' (ଅପୁତ୍ରିକକୁ ପୁତ୍ରପ୍ରାପ୍ତି ହୁଏ-ଏହା ସମସ୍ତ ପ୍ରାଣୀ ଜାଣନ୍ତି) ଇତ୍ୟାଦି ପ୍ରତ୍ୟକ୍ଷଶ୍ରୁତି ଆଶ୍ରମାନ୍ତରର ପ୍ରତିଷେଧ କରେ ।

(ଗ) ସେହିପରି 'ଯେ ଚେମେଽରଣ୍ୟେ' (ଏମାନେ ଅରଣ୍ୟରେ ଶ୍ରଦ୍ଧା ଓ ତପକୁ ଉପାସନା କରନ୍ତି), 'ତପଃଶ୍ରଦ୍ଧେ' (ଯେଉଁଲୋକ ତପଃ ଓ ଶ୍ରଦ୍ଧା ରୂପକ ଅରଣ୍ୟରେ ରହି ସେବନ କରନ୍ତି) ଏହି ଦେବଯାନ ମାର୍ଗ ଉପଦେଶ ହୋଇଛି, ଆଶ୍ରମାନ୍ତରର ଉପଦେଶ କିନ୍ତୁ ନାହିଁ ଏବଂ 'ତପଃ ଏବ ଦ୍ୱିତୀୟଃ' (ତପ ହିଁ ଦ୍ୱିତୀୟ ଧର୍ମ ଅଟେ) ଇତ୍ୟାଦି ଶ୍ରୁତିରେ ଅନ୍ୟ ଆଶ୍ରମର କଥନ ସନ୍ଦିଗ୍ଧ ଅଟେ) ।

(ଘ) ତେଣୁ 'ଏତମେବ' (ସେହି ଆତ୍ମଲୋକର ଅଭିଳାଷୀ ପରିବ୍ରାଜକ ସମସ୍ତ କର୍ମର ତ୍ୟାଗ କରେ) ଏହି ଆତ୍ମଲୋକକୁ ସ୍ତୁତି କରନ୍ତି । କିନ୍ତୁ ପରିବ୍ରାଜ୍ୟ ବିଧି ନୁହେଁ । ପରନ୍ତୁ 'ବ୍ରହ୍ମଚର୍ଯ୍ୟାଦେବ' (ବ୍ରହ୍ମଚର୍ଯ୍ୟରୁ ସଂନ୍ୟାସ ଗ୍ରହଣ କରାଯାଏ) ଏହିପରି ଜାବାଲଠାରେ ଏହା ସ୍ପଷ୍ଟରୂପେ ପ୍ରତ୍ୟକ୍ଷ ପରିବ୍ରାଜର ବିଧାନ ହୋଇଛି । କିନ୍ତୁ ଏହା ଶ୍ରୁତିକୁ ଅପେକ୍ଷା ନ କରି ବିଚାର କରାଯାଇଛି ବୋଲି ଜାଣିବା ଉଚିତ୍ ॥୧୮॥

**अनुष्ठेयं वादरायण: साम्यश्रुते: ॥ ३-४-१९ ॥**

**ଅନୁଷ୍ଠେୟଂ ବାଦରାୟଣଃ ସାମ୍ୟଶ୍ରୁତେଃ ॥୩-୪-୧୯॥**

ଅନୁଷ୍ଠେୟମ୍=ସଂନ୍ୟାସାଶ୍ରମ ଅନୁଷ୍ଠେୟ ଅଟେ, ସାମ୍ୟଶ୍ରୁତେଃ=କାରଣ-'ତ୍ରୟୋ ଧର୍ମସ୍କନ୍ଧାଃ' ଏହିପ୍ରକାର ଗୃହସ୍ଥାଶ୍ରମର ସହିତ ସଂନ୍ୟାସାଶ୍ରମର ସମାନ ପରାମର୍ଶର ଶ୍ରୁତି ପ୍ରମାଣ ଅଛି, ବାଦରାୟଣଃ=ବୋଲି ଆଚାର୍ଯ୍ୟ ବାଦରାୟଣ ସ୍ୱୀକାର କରନ୍ତି ॥

ମୂଳ-(କ) ଅନୁଷ୍ଠେୟମାଶ୍ରମାନ୍ତରେଷୁ ବାଦରାୟଣ ଆଚାର୍ଯ୍ୟୋ ମନ୍ୟତେ, ବେଦେଶ୍ରବଣାତ୍ । ଅଗ୍ନିହୋତ୍ରାଦୀନାଂ ଚାବଶ୍ୟାନୁଷ୍ଠେୟତ୍ୱାତ୍ତଦ୍‌ବିରୋଧାଦନଧିକୃତାନୁଷ୍ଠେୟମାଶ୍ରମାନ୍ତରମିତି ହୀମାଂ ମତିଂ ନିରାକରୋତି, ଗାର୍ହସ୍ଥ୍ୟବଦେବାଶ୍ରମାନ୍ତରମପ୍ୟନିଚ୍ଛତା ପ୍ରତିପତ୍ତିବ୍ୟମିତି ମନ୍ୟମାନଃ ।

(ଖ) କୁତଃ ? ସାମ୍ୟଶ୍ରୁତେଃ । ସମା ହି ଗାର୍ହସ୍ଥ୍ୟେନାଶ୍ରମାନ୍ତରସ୍ୟ ପରାମର୍ଶଶ୍ରୁତେଃ ଦୃଶ୍ୟତେ- 'ତ୍ରୟୋ ଧର୍ମସ୍କନ୍ଧାଃ (ଛା ୨-୨୩-୧) ଇତ୍ୟାଦି । ଯଥେହ ଶ୍ରୁତ୍ୟନ୍ତର



ବିହିତମେବ ଗାର୍ହସ୍ଥ୍ୟଂ ପରାମୃଷ୍ଟମେବମାଶ୍ରମାନ୍ତରମପୀତି ପ୍ରତିପତ୍ତବ୍ୟମ୍ । ଯଥା ଚ ଶାସ୍ତ୍ରାନ୍ତରପ୍ରାପ୍ତୟୋରେବ ନିବୀତପ୍ରାଚୀନାବିତୟୋଃ ପରାମର୍ଶ ଉପବୀତବିଧିପରେବାକ୍ୟେ ।

(ଗ) ତସ୍ମାତ୍ତୁଲ୍ୟମନୁଷ୍ଠେୟତ୍ୱଂ ଗାର୍ହସ୍ଥ୍ୟେନାଶ୍ରମାନ୍ତରସ୍ୟ । ତଥା 'ଏତମେବ ପ୍ରବ୍ରାଜିନୋ ଲୋକମିଛନ୍ତଃ ପ୍ରବ୍ରଜନ୍ତି' (ବୃହ ୪-୪-୨୨) ଇତ୍ୟସ୍ୟ ବେଦାନୁବଚନାଦିଭିଃ ସମଭିବ୍ୟାହାରଃ । 'ଯେଚେମେଽରଣ୍ୟେ ଶ୍ରଦ୍ଧା ତପ ଇତ୍ୟୁପାସତେ' (ଛା ୫-୧୦-୧) ଇତ୍ୟସ୍ୟ ପଞ୍ଚାଗ୍ନିବିଦ୍ୟୟା ॥

ଭାଷା-ସିଦ୍ଧାନ୍ତ-(କ) ଅନ୍ୟ ଆଶ୍ରମ ଅନୁଷ୍ଠେୟ ବୋଲି ବାଦରାୟଣଙ୍କର ମତ, କାରଣ-ତାହାର ବେଦରେ ଶ୍ରବଣ ଅଛି । ଅଗ୍ନିହୋତ୍ରାଦି ଅବଶ୍ୟ ଅନୁଷ୍ଠେୟ ହେଲେ ତାହାର ବିରୋଧରେ ଅନ୍ୟ ଆଶ୍ରମକୁ ଇଛା ନକରୁଥିବା ଆଶ୍ରମକୁ ସ୍ୱୀକାର କରିବା ଉଚିତ୍ । ଏହିପରି ମତକୁ ସ୍ୱୀକାର କରୁଥିବା ସଂପ୍ରଦାୟକୁ ଆଚାର୍ଯ୍ୟ ନିରାକରଣ କରନ୍ତି ।

(ଖ) କିପରି ? କାରଣ-ସାମ୍ୟଶ୍ରୁତି ଦ୍ୱାରା । ଗାର୍ହସ୍ଥ୍ୟର ସହିତ ଅନ୍ୟ ଆଶ୍ରମର ମଧ୍ୟ 'ତ୍ରୟୋ ଧର୍ମସ୍କନ୍ଧାଃ' ଇତ୍ୟାଦି ପରି ପରାମର୍ଶ ଶ୍ରୁତି ଦେଖାଯାଏ । ଯେପରି ଏଠାରେ ଅନ୍ୟ ଶ୍ରୁତି ବିହିତ ଗାର୍ହସ୍ଥ୍ୟର ପରାମର୍ଶ କରାଯାଇଛି, ସେହିପରି ଅନ୍ୟ ଶ୍ରୁତିରେ ବିହିତ ଅନ୍ୟ ଆଶ୍ରମର ପରାମର୍ଶ କରାଯାଇଛି । ଯେପରି ଅନ୍ୟ ଶାସ୍ତ୍ରରେ ପ୍ରାପ୍ତ ନିବୀତ ଓ ପ୍ରାଚୀନାବୀତର ଉପବୀତ ବିଧିପରକ ବାକ୍ୟରେ ପରାମର୍ଶ ହୁଏ ।

(ଗ) ତେଣୁ ଅନ୍ୟ ଆଶ୍ରମର ଗାର୍ହସ୍ଥ୍ୟ ସହ ଅନୁଷ୍ଠେୟତ୍ୱ ସମାନ ଅଟେ । ସେହିପରି 'ଏତମେବ' (ସେହି ଆତ୍ମଲୋକକୁ ଇଛା କରି ସନ୍ନ୍ୟାସୀ ସବୁକିଛି ତ୍ୟାଗକରି ଚାଲିଯା'ନ୍ତି) ତାହାର ବେଦବଚନ ସହିତ ସହୋଚ୍ଚାରଣ ହୁଏ । 'ଯେ ଚେମେ' (ଯେଉଁମାନେ ବନରେ ଶ୍ରଦ୍ଧା ଓ ତପର ଉପାସନା କରନ୍ତି) ଏହି ପଞ୍ଚାଗ୍ନିବିଦ୍ୟା ସହିତ ସହୋଚ୍ଚାରଣ ହୁଏ ।

ମୂଳ-(କ) ଯତ୍ତୂକ୍ତମ୍- 'ତପ ଏବ ଦ୍ୱିତୀୟଃ' (ଛା ୨-୨୩-୧) ଇତ୍ୟାଦି ଷ୍ୱାଶ୍ରମାନ୍ତରାଭିଧାନଂ ସନ୍ଦିଗ୍ଧମିତି, ନୈଷଃ ଦୋଷଃ । ନିଶ୍ଚୟ କାରଣ ସଦ୍‌ଭାବାତ୍ । 'ତ୍ରୟୋ ଧର୍ମସ୍କନ୍ଧାଃ' (ଛା ୨-୨୩-୧) ଇତିହି ଧର୍ମସ୍କନ୍ଧତ୍ରିତ୍ୱଂ ପ୍ରତିଜ୍ଞାତମ୍ । ନ ଚ ଯଜ୍ଞାଦୟୋ ଭୂୟାଂସୋ ଧର୍ମା ଉତ୍ପତ୍ତିଭିନ୍ନାଃ ସନ୍ତୋଽନ୍ୟତ୍ରାଶ୍ରମ ସମ୍ବନ୍ଧାତ୍ ତ୍ରିତ୍ୱେଽନ୍ତର୍ଭାବୟିତୁଂ ଶକ୍ୟନ୍ତେ ।

(ଖ) ତତ୍ର ଯଜ୍ଞାଦିଲିଙ୍ଗୋ ଗୃହାଶ୍ରମ ଏକୋ ଧର୍ମସ୍କନ୍ଧୋ ନିର୍ଦ୍ଦିଷ୍ଟୋ ବ୍ରହ୍ମଚାରୀତି ଚ ସ୍ପଷ୍ଟ ଆଶ୍ରମ ନିର୍ଦ୍ଦେଶ ସ୍ତପ ଇତ୍ୟପି କୋଽନ୍ୟସ୍ତପଃ ପ୍ରଧାନାଦାଶ୍ରମାଦ୍ ଧର୍ମସ୍କନ୍ଧୋଽଭ୍ୟୂ-

ପଗମ୍ୟେତ ? 'ଯେ ଚେମେଽରଣ୍ୟେ' (ଛା ୫-୧୦-୨) ଇତି ଚରଣ୍ୟ ଲିଙ୍ଗାଚ୍ଛ୍ରଦ୍ଧାତ-ପୋଭ୍ୟାମା ଶ୍ରମଗୃହୀତିଃ ॥ ତସ୍ମାତ୍ ପରାମର୍ଶେଽପ୍ୟନୁଷ୍ଠେୟ ମାଶ୍ରମାନ୍ତରମ୍ ॥

ଭାଷା-(କ) 'ତପଃ ଏବ ଦ୍ୱିତୀୟଃ' ଇତ୍ୟାଦି ବାକ୍ୟରେ ଅନ୍ୟ ଆଶ୍ରମର ବିଧାନ ସଂଦିଗ୍ଧ ବୋଲି ଯାହା କୁହାଯାଇଛି, ସେଠାରେ କୌଣସି ଦୋଷ ନାହିଁ । କାରଣ-ନିଶ୍ଚୟ କାରଣର ସଦ୍‌ଭାବ ଅଛି । 'ତ୍ରୟୋ ଧର୍ମସ୍କନ୍ଧାଃ' ଏହି ପ୍ରକାର ଧର୍ମସ୍କନ୍ଧ ତିନୋଟି ରହିଛି- ଏହା ପ୍ରତିଜ୍ଞା କରାଯାଇଛି । ବହୁତ ଯଜ୍ଞ ପ୍ରଭୃତି ଧର୍ମ ଉତ୍ପତ୍ତି ବିଧି ଦ୍ୱାରା ଭିନ୍ନ ହୋଇ ଆଶ୍ରମ ସମ୍ବନ୍ଧରୁ ଅନ୍ୟତ୍ର ତ୍ରିତ୍ୱରେ ଅନ୍ତର୍ଭାବ କରାଯାଏ ନାହିଁ ।

(ଖ) ସେଠାରେ ଯଜ୍ଞାଦିଲିଙ୍ଗକ ଗୃହସ୍ଥାଶ୍ରମ ଏହା ଏକ ଧର୍ମସ୍କନ୍ଧ ନିର୍ଦ୍ଦିଷ୍ଟ ଅଟେ । 'ବ୍ରହ୍ମଚାରୀ' ଏହି ପ୍ରକାର ସ୍ପଷ୍ଟ ଆଶ୍ରମର ନିର୍ଦ୍ଦେଶ କରାଯାଇଛି । 'ତପଃ' ଏହା ମଧ୍ୟ ତପଃ ପ୍ରଧାନର ଆଶ୍ରମରୁ ଆଉ କେଉଁ ଅନ୍ୟ ଧର୍ମସ୍କନ୍ଧ ସ୍ୱୀକାର କରାଯିବ ? 'ଯେ ଚେମେଽରଣ୍ୟେ' ଏଠାରେ ଅରଣ୍ୟ ଲିଙ୍ଗ ଦ୍ୱାରା ଶ୍ରଦ୍ଧା ଓ ତପରୁ ଆଶ୍ରମର ଜ୍ଞାନ ହୁଏ; ତେଣୁ ପରାମର୍ଶରେ ଅନ୍ୟ ଆଶ୍ରମ ଅନୁଷ୍ଠେୟ ହୋଇଛି ।୧୯।

## विधिर्वा धारणवत् ॥ ३-४-२० ॥

## ବିଧିର୍ବା ଧାରଣବତ୍ ॥୩-୪-୨୦॥

ବା=ଅଥବା ବିଧିଃ=ଅନ୍ୟ ଆଶ୍ରମର ବିଧି ଜାଣିବା ଉଚିତ୍ । ଧାରଣବତ୍=ଯେପରି 'ଅଧସ୍ତାତ୍ ସମିଧମ୍' ଇତ୍ୟାଦି ଶ୍ରୁତିରେ ସମିଧ ଧାରଣର ବିଧି ଅଛି ॥

ମୂଳ-(କ) ବିଧିର୍ବାଽୟମାଶ୍ରମାଶ୍ରମାନ୍ତରସ୍ୟ, ନ ପରାମର୍ଶମାତ୍ରମ୍ । ନନୁ ବିଧିତ୍ୱାଭ୍ୟୁପଗମ ଏକବାକ୍ୟତାପ୍ରତୀତିରୂପରୁଧ୍ୟେତ, ପ୍ରତୀୟତେ ଚାତ୍ରୈକ ବାକ୍ୟତା-ପୁଣ୍ୟ-ଲୋକଫଳାସ୍ତ୍ରୟୋ ଧର୍ମସ୍କନ୍ଧା ବ୍ରହ୍ମସଂସ୍ଥତା ତ୍ୱମୃତତ୍ୱ ଫଳେତି । ସତ୍ୟମେତତ୍, ସତୀମପି ତ୍ୱେକ ବାକ୍ୟତା ପ୍ରତୀତିଂ ପରିତ୍ୟଜ୍ୟ ବିଧିରେବାଭ୍ୟୁପ ଗନ୍ତବ୍ୟଃ, ଅପୂର୍ବତ୍ୱାତ୍, ବିଧ୍ୟନ୍ତରସ୍ୟ ଦର୍ଶନାତ୍, ବିସ୍ପଷ୍ଟାଚାଶ୍ରମାନ୍ତରପ୍ରତ୍ୟୟାଦ୍ ଗୁଣବାଦ କଳ୍ପନୟୈବ ବାକ୍ୟତ୍ୱ ଯୋଜନାନୁପପତ୍ତେଃ ।

(ଖ) ଧାରଣବତ୍ । ଯଥା- 'ଅଧସ୍ତାତ୍ ସମିଧଂ ଧାରୟନ୍ନନୁଦ୍ରବେଦୁପରି ହି ଦେବେଭ୍ୟୋ ଧାରୟତି' ଇତ୍ୟତ୍ର ସତ୍ୟାମପ୍ୟଧୋଧାରଣେନୈକ ବାକ୍ୟତାପ୍ରତୀତୌ ବିଧୀୟତ ଏବୋପରି ଧାରଣମ୍, ଅପୂର୍ବତ୍ୱାତ୍ । ତଥା ଚୋକ୍ତଂ ଶେଷଲକ୍ଷଣେ - 'ବିଧିସ୍ତୁ ଧାରଣେଽପୂର୍ବତ୍ୱାତ୍' ଇତି । ତଦ୍‌ବଦିହାପ୍ୟାଶ୍ରମ ପରାମର୍ଶ ଶ୍ରୁତିଃବିଧିରେବେତି କଳ୍ପତେ ।

(ଗ) ଯଦାପି ପରାମର୍ଶ ଏବାୟମା ଶ୍ରମାନ୍ତରାଣାମ୍, ତଦାପି ବ୍ରହ୍ମସଂସ୍ଥତା ତାବତ୍‌ସଂସ୍ତବ ସାମର୍ଥ୍ୟାଦବଶ୍ୟଂ ବିଧେୟାଽଭ୍ୟୁପଗନ୍ତବ୍ୟା । ସା ଚ କିଂ ଚତୁର୍ଷ୍ୱାଶ୍ରମେଷୁ ଯସ୍ୟ କସ୍ୟଚିଦାହୋସ୍ୱିତ୍ ପରିବ୍ରାଜକସ୍ୟୈବେତି ବିବେକ୍ତବ୍ୟମ୍ ॥

ଭାଷା-(କ) ଅଥବା ଏହା ଅନ୍ୟ ଆଶ୍ରମର ବିଧି ଅଟେ, କେବଳ ଅନୁବାଦ ନୁହେଁ । ପରନ୍ତୁ ବିଧିତ୍ୱ ସ୍ୱୀକାର କଲାପରେ ଏକବାକ୍ୟତାର ପ୍ରତୀତି ବାଧ ହେବ ଏବଂ ଏଠାରେ ତିନୋଟି ଧର୍ମସ୍କନ୍ଧ ପୁଣ୍ୟଲୋକ ଫଳବାନ୍ ଅଟନ୍ତି ଏବଂ ବ୍ରହ୍ମସଂସ୍ଥତା ଅମୃତତ୍ୱ ଫଳବାନ୍ ଅଟେ=ଏହି ପ୍ରକାର ଏଠାରେ ଏକବାକ୍ୟତାର ପ୍ରତୀତି ହେଉଛି ଏହା ଠିକ୍ । ସିଦ୍ଧାନ୍ତ - ପରନ୍ତୁ ଏଠାରେ ଏକ ବାକ୍ୟତାର ପ୍ରତୀତି ହେଲାପରେ ତାହାକୁ ପରିତ୍ୟାଗ କରି ଅପୂର୍ବ ହେବାରୁ ବିଧିସ୍ୱୀକାର କରିବା ଉଚିତ୍ । କାରଣ-ତାହାର ଅନ୍ୟବିଧି ଦେଖାଯାଏ ନାହିଁ । କାରଣ-ଅନ୍ୟ ଆଶ୍ରମଗୁଡ଼ିକର ସ୍ୱଷ୍ଟଜ୍ଞାନ ହେବାରୁ ଗୁଣବାଦ କଳ୍ପନାରୁ ଏକ ବାକ୍ୟତାଯୋଜନା ହୁଏ ନାହିଁ ।

(ଖ) ଧାରଣାର ପରି । ଯେପରି ଅଧସ୍ତାତ୍‌ସମିଧମ୍' (ସ୍ରୁବାରେ ରଖାଯାଇଥିବା ହବିଷ୍ୟର ତଳେଥିବା ସମିଧାକୁ ଧାରଣକରି ଅନୁଦ୍ରବଣ କରିବା ଉଚିତ-ଆହବନୀୟାଗ୍ନିର ପାଖକୁ ଯାଏ । କାରଣ-ସେହି ଦେବତାମାନଙ୍କ ପାଇଁ ହବିପୂର୍ଣ୍ଣ ଜହୁ ଉପରେ ସମିଧାକୁ ଧାରଣ କରେ) ଏଠାରେ ନୀଚଧାରଣ ସହିତ ଏକବାକ୍ୟତା ପ୍ରତୀତି ହେବାପରେ ଅପୂର୍ବ ହେବାରୁ ଉପର ଧାରଣାକୁ ବିଧାନ କରାଯାଇଛି । ଅର୍ଥାତ୍ ଉପର ଧାରଣାର ବିଧି ସ୍ୱୀକାର କରାଯାଇଛି । ଯେପରି 'ବିଧିସ୍ତୁ ଧାରଣେଽପୂର୍ବତ୍ୱାତ୍' (ଦୈବିକ ହବିଷ୍ୟରେ ଜୁହୁ-ସ୍ରୁବାର ଉପରେ ସମିଧାର ଧାରଣା ଅପୂର୍ବ ହେଲେ ବିଧି ହୁଏ) ଏହିପ୍ରକାର ଶେଷଲକ୍ଷଣରେ କୁହାଯାଇଛି; ସେହିପରି ଏଠାରେ ଆଶ୍ରମର ପରାମର୍ଶ ଶ୍ରୁତିବିଧି ହୁଏ ବୋଲି କଳ୍ପନା ହୁଏ ।

(ଗ) ଯଦ୍ୟପି ଏହି ଅନ୍ୟ ଆଶ୍ରମଗୁଡ଼ିକର ପରାମର୍ଶ ହୁଏ, ତଥାପି ବ୍ରହ୍ମସଂସ୍ଥତା ସ୍ତୁତିର ସାମର୍ଥ୍ୟରୁ ବିଧିରୂପରେ ସ୍ୱୀକାର କରିବା ଉଚିତ୍ । ଏହି ସ୍ତୁତି କ'ଣ ଚାରୋଟି ଆଶ୍ରମରେ ରହୁ ବା ଯେ କୌଣସି ଆଶ୍ରମର ଅଥବା ପରିବ୍ରାଜକର ? ତାହାର ବିଚାର କରିବା ଉଚିତ୍ ।

ମୂଳ-(କ) ଯଦି ଚ ବ୍ରହ୍ମଚର୍ଯ୍ୟାନ୍ତେଷ୍ୱାଶ୍ରମେଷୁ ପରାମୃଶ୍ୟମାନେଷୁ ପରିବ୍ରାଜକୋଽପି ପରାମୃଷ୍ଟସ୍ତତଶ୍ଚତୁର୍ଣ୍ଣାମପ୍ୟାଶ୍ରମାଣାଂ ପରାମୃଷ୍ଟତ୍ୱା ବିଶେଷାଦନାଶ୍ରମି ତ୍ୱାନୁପପତ୍ତେଶ୍ଚ ଯଃ କଶ୍ଚିତ୍ ଚତୁଷ୍ୱାଶ୍ରମେଷୁ ବ୍ରହ୍ମସଂସ୍ଥୋ ଭବିଷ୍ୟତି । ଅଥ ନ ପରାମୃଷ୍ଟସ୍ତତଃ ପରିଶିଷ୍ୟମାଣଃ ପରିବ୍ରାଡେବ ବ୍ରହ୍ମସଂସ୍ଥ ଇତି ସେତ୍ସ୍ୟତି । ତତ୍ର ତପଃଶବ୍ଦେନ ବୈଖାନସ ଗ୍ରାହିଣା ପରାମୃଷ୍ଟଃ ପରିବ୍ରାଡ଼ପୀତି କେଚିତ୍ ।

(ଖ) ତଦଯୁକ୍ତମ୍ । ନହି ସତ୍ୟାଂ ଗତୌ ବାନପ୍ରସ୍ଥବିଶେଷଣେନ ପରିବ୍ରାଜକୋ ଗ୍ରହଣମର୍ହତି, ଯଥାଽତ୍ର ବ୍ରହ୍ମଚାରିଗୃହମେଧିନାବସାଧାରଣେନୈବ ସ୍ୱେନ ସ୍ୱେନ ବିଶେଷଣେନ ବିଶେଷିତାବେବଂ ଭିକ୍ଷୁବୈଖାନସାବପୀତି ଯୁକ୍ତମ୍ । ତପଶ୍ଚାସାଧାରଣୋ ଧର୍ମୋ ବାନପ୍ରସ୍ଥାନାମ୍, କାୟକ୍ଲେଶପ୍ରଧାନତ୍ୱାତ୍, ତପଃଶବ୍ଦସ୍ୟ ତତ୍ର ରୂଢେଃ । ଭିକ୍ଷୋସ୍ତୁ ଧର୍ମ ଇନ୍ଦ୍ରିୟସଂଯମାଦିଲକ୍ଷଣୋ ନୈବ ତପଃଶବ୍ଦେ ନାଭିଲିର୍ପ୍ୟତେ ।

(ଗ) ଚତୁଷ୍ଟ୍ୱେନ ଚ ପ୍ରସିଧା ଆଶ୍ରମାସ୍ତିତ୍ୱେନ ପରାମୃଶ୍ୟନ୍ତେ ଇତ୍ୟନ୍ୟାୟମ୍ । ଅପି ଚ ଭେଦବ୍ୟପଦେଶୋଽତ୍ର ଭବତି- 'ତ୍ରୟ ଏତେ ପୁଣ୍ୟଲୋକଭାଜ ଏକୋଽମୃତତ୍ୱଭାକ୍ 'ଇତି' ପ୍ରଥକ୍ତ୍ୱେ ଚୈଷ ଭେଦବ୍ୟଦେଶୋଽବକଳ୍ପତେ । ନ ହ୍ୟେବଂ ଭବତି ଦେବଦତ୍ତ ଯଜ୍ଞଦତ୍ତୌ ମନ୍ଦପ୍ରଜ୍ଞବାନ୍ୟତରସ୍ତ୍ୱନୟୋର୍ମହାପ୍ରଜ୍ଞା ଇତି । ଭବତି ତ୍ୱେବଂ ଦେବଦତ୍ତଯଜ୍ଞଦତ୍ତୌ ମନ୍ଦପ୍ରଜ୍ଞୌ, ବିଷ୍ଣୁମିତ୍ରସ୍ତୁ ମହାପ୍ରଜ୍ଞ ଇତି । ତସ୍ମାତ୍ପୂର୍ବେ ତ୍ରୟ ଆଶ୍ରମିଣଃ ପୁଣ୍ୟଲୋକଭାଜଃ, ପରିଶିଷ୍ୟମାଣଃ ପରିବ୍ରାଡ଼େବାମୃତତ୍ୱଭାକ୍ ।

ଭାଷା- (କ) ଯଦି ବ୍ରହ୍ମଚାରୀ ପର୍ଯ୍ୟନ୍ତ ଅନୁବାଦ କରାଯାଇଥିବା ଆଶ୍ରମରେ ପରିବ୍ରାଜକ ପରାମୃଷ୍ଟ ହେବ, ତେବେ ଚାରୋଟି ଆଶ୍ରମର ସମାନରୂପରେ ପରାମର୍ଶ ହୋଇ ଅନାଶ୍ରମିତ୍ୱର ଅନୁପପତ୍ତି ହେବାରୁ ଆଶ୍ରମରେ କୌଣସି ବ୍ରହ୍ମସଂସ୍ଥ ହେବ । ଯଦି ପରିବ୍ରାଜକର ପରାମର୍ଶ ନହୁଏ, ତେବେ ଅବଶିଷ୍ଟ ପରିବ୍ରାଜକ ବ୍ରହ୍ମସଂସ୍ଥ ବୋଲି ସିଦ୍ଧ ହେବ । ସେଠାରେ ବୈଖାନସଗ୍ରାହୀ ତପଃଶବ୍ଦଦ୍ୱାରା ପରିବ୍ରାଜକର ପରାମର୍ଶ ହୁଏ ବୋଲି କେତେକ ଲୋକ କହନ୍ତି ।

(ଖ) ତାହା କିନ୍ତୁ ଠିକ୍ ନୁହେଁ । କାରଣ-ଗତିର ହେଲେ ବାନପ୍ରସ୍ଥର ବିଶେଷଣରୁ ପରିବ୍ରାଜକର ଗ୍ରହଣ କରାଯାଏ ନାହିଁ । ଯେପରି ଏଠାରେ ବ୍ରହ୍ମଚାରୀ ଓ ଗୃହସ୍ଥ ନିଜର ଅସାଧାରଣ ବିଶେଷଣରୁ ବିଶେଷିତ ହୁଅନ୍ତି, ସେହିପରି ଭିକ୍ଷୁ ଓ ବାନପ୍ରସ୍ଥ ମଧ୍ୟ ବିଶେଷିତ ହେବା ହିଁ ଯୁକ୍ତିଯୁକ୍ତ । ତପଃ ବାନପ୍ରସ୍ଥ ର ଅସାଧାରଣ । ଧର୍ମ । କାରଣ-ସେଠାରେ କାୟକ୍ଲେଶ ପ୍ରଧାନ ଅଟେ । ତପଃଶବ୍ଦ କାୟକ୍ଲେଶାଦିରେ ରୂଢ । ପରନ୍ତୁ ପରିବ୍ରାଜକର ଇନ୍ଦ୍ରିୟସଂଯମାଦି ରୂପଧର୍ମ ତପଃଶବ୍ଦରୁ କୁହାଯାଏ ନାହିଁ ।

(ଗ) ଚାରିରୂପଦ୍ୱାରା ପ୍ରସିଦ୍ଧ ଆଶ୍ରମର ତିନୋଟି ରୂପରେ ଅନୁବାଦ କରିବା ଠିକ୍ ନୁହେଁ । 'ଯତ୍ର ଏତେ' (ଯେଉଁଠି ଏହି ତିନୋଟି ପୁଣ୍ୟଲୋକର ଭାଗୀ ହୁଏ ଏବଂ ଗୋଟିଏ ଅମୃତତ୍ୱର ଭାଗୀ ହୁଏ) ଏହିପରି ଏଠାରେ ଭେଦର ବ୍ୟପଦେଶ ଅଛି । ବାନପ୍ରସ୍ଥ ଓ ପରିବ୍ରାଜକ ପୃଥକ୍ ହେବାରୁ ଏହାର ଭେଦବ୍ୟପଦେଶ ଏକ ହୁଏ । ଦେବଦତ୍ତ ଓ ଯଜ୍ଞଦତ୍ତ ମନ୍ଦବୁଦ୍ଧି ଅଟନ୍ତି, କିନ୍ତୁ ଏହି ଦୁଇଟିରେ ଏକ ମହାପ୍ରଜ୍ଞ ଅଛି ବୋଲି କଦାପି ହୁଏ

ନାହିଁ । ବରଂ ଦେବଦତ୍ତ ଓ ଯଜ୍ଞଦତ୍ତ ମନ୍ଦବୁଦ୍ଧିଯୁକ୍ତ ଅଟନ୍ତି, କିନ୍ତୁ ବିଷ୍ଣମିତ୍ର ମହାପ୍ରଜ୍ଞ ହୋଇପାରେ ତେଣୁ ପୂର୍ବର ତିନୋଟି ଆଶ୍ରମୀ ପୁଣ୍ୟଲୋକରେ ଭାଗୀ ଅଟନ୍ତି, ଏବଂ ପରିଶିଷ୍ୟମାଣ ପରିବ୍ରାଜକ ଅମୃତତ୍ୱର ଭାଗୀ ହୁଅନ୍ତି ।

ମୂଳ-(କ) କଥଂ ପୁନଃ ବ୍ରହ୍ମସଂସ୍ଥଶବ୍ଦୋ ଯୋଗାତ୍ ପ୍ରବର୍ତ୍ତମାନଃ ସର୍ବତ୍ର ସମ୍ଭବନ୍ ପରିବ୍ରାଜକ ଏବାବତିଷ୍ଠେତ ? ରୂଢ୍ୟଭ୍ୟୁପଗମେ ଚାଶ୍ରମମାତ୍ରାଦମୃତତ୍ୱପ୍ରାପ୍ତେଃ ଜ୍ଞାନାନର୍ଥକ୍ୟପ୍ରସଙ୍ଗ ଇତି । ଅତ୍ରୋଚ୍ୟତେ ବ୍ରହ୍ମସଂସ୍ଥ ଇତି ବ୍ରହ୍ମଣି ପରିସମାପ୍ତିରନନ୍ୟ-ବ୍ୟାପାରତାରୂପଂ ତନ୍ନିଷ୍ଠତ୍ୱମଭିଧୀୟତେ ।

(ଖ) ତଚ୍ଚତ୍ରୟାଣାମାଶ୍ରମାଣାଂ ନ ସମ୍ଭବତି, ସ୍ୱାଶ୍ରମବିହିତକର୍ମାନନୁଷ୍ଠାନେ ପ୍ରତ୍ୟବା-ୟଶ୍ରବଣାତ୍ ପରିବ୍ରାଜକସ୍ୟ ତୁ ସର୍ବକର୍ମସଂନ୍ୟାସାତ୍ ପ୍ରତ୍ୟବାୟୋ ନ ସମ୍ଭବତ୍ୟନନୁଷ୍ଠାନନି-ମିତ୍ତଃ । ଶ୍ରମଦମାଦିସ୍ତୁ ତଦୀୟୋ ଧର୍ମୋ ବ୍ରହ୍ମସଂସ୍ଥତାୟା ଉପୋଦବଳକୋ ନ ବିରୋଧୀ । ବ୍ରହ୍ମନିଷ୍ଠତମେବ ହି ତସ୍ୟ ଶମଦମାଦ୍ୟୁ ପବୃଂହିତଂ ସ୍ୱାଶ୍ରୟବିହିତଂ କର୍ମ, ଯଜ୍ଞାଦୀନି ଚେତରେଷାଂ, ତଦ୍‌ବ୍ୟତିକ୍ରମେ ଚ ତସ୍ୟ ପ୍ରତ୍ୟବାୟଃ ।

(ଗ) ତଥା ଚ ନ୍ୟାସ ଇତି ବ୍ରହ୍ମା ବ୍ରହ୍ମା ହି ପରଃ ପରୋ ହି ବ୍ରହ୍ମା' ତାନି ବା ଏତାନ୍ୟବରାଣି ତପାଂସି ନ୍ୟାସ ଏବାତ୍ୟରେଚୟତ୍' (ନାରା), 'ବେଦାନ୍ତ ବିଜ୍ଞାନସୁନିଶ୍ଚିତାର୍ଥାଃ, ସଂନ୍ୟାସଯୋଗାଦ୍ୟତୟଃ ଶୁଦ୍ଧସତ୍ତ୍ୱାଃ' (ମୁଣ୍ଡ ୩-୨-୬), ନାରା-୧୨-୩, କୈବଲ୍ୟ-୩)' ଇତ୍ୟାଦ୍ୟାଃ ଶ୍ରୁତୟଃ । ସ୍ମୃତୟଶ୍ଚ-'ତଦ୍‌ବୁଦ୍ଧୟଃ ତଦାତ୍ମାନସ୍ତନ୍ନିଷ୍ଠାସ୍ତତ୍‌ପରାୟଣାଃ' (ଗୀ. ୫-୧୭) ଇତ୍ୟାଦ୍ୟା ବ୍ରହ୍ମସଂସ୍ଥସ୍ୟ କର୍ମଭାବଂ ଦର୍ଶୟନ୍ତି ॥

ଭାଷା-ପୂର୍ବପକ୍ଷ (କ) କିନ୍ତୁ ଯୋଗରୁ ପ୍ରବୃତ୍ତ ହୋଇ ବ୍ରହ୍ମସଂସ୍ଥଶବ୍ଦ ସମସ୍ତ ଆଶ୍ରମରେ ସମ୍ଭବ ହୋଇ ପୁନଶ୍ଚ ପରିବ୍ରାଜକରେ କାହିଁକି ଅବସ୍ଥିତ ହେବ ? ଏବଂ ରୂଢ଼ ସ୍ୱୀକାର କଲାପରେ କେବଳ ଆଶ୍ରମମାତ୍ରରୁ ଅମୃତତ୍ୱର ପ୍ରାପ୍ତି ହେବାରୁ ଜ୍ଞାନରେ ଅନର୍ଥକ ପ୍ରସଙ୍ଗ ହେବ କି ? ସିଦ୍ଧାନ୍ତ-ଏହି ବିଷୟରେ କୁହାଯାଇଛି- ବ୍ରହ୍ମସଂସ୍ଥ ଶବ୍ଦରୁ ବ୍ରହ୍ମରେ ପରିସମାପ୍ତି ଅନନ୍ୟବ୍ୟାପାରରୂପ ବ୍ରହ୍ମନିଷ୍ଠତ୍ୱ କୁହାଯାଏ ।

(ଖ) ସେ ତିନୋଟି ଆଶ୍ରମରେ ରହେ ନାହିଁ, କାରଣ-ନିଜର ଆଶ୍ରମବିହିତ କର୍ମାନୁଷ୍ଠାନ ନ ହେଲେ ପ୍ରତ୍ୟବାୟ ଶ୍ରବଣ ହୁଏ । ପରନ୍ତୁ ପରିବ୍ରାଜକରେ ସମସ୍ତ କର୍ମ ସଂନ୍ୟାସ ହେଲେ କର୍ମାନୁଷ୍ଠାନ ନିମିତ୍ତକ ପାପର ସମ୍ଭବ ହୁଏ ନାହିଁ । ଶମ, ଦମାଦି କିନ୍ତୁ ସେହି ପରିବ୍ରାଜକର ଧର୍ମ ଅଟେ । ସେ ବ୍ରହ୍ମସଂସ୍ଥାର ପୋଷାକ ଅଟେ, ବିରୋଧ ନୁହେଁ, କାରଣ-ଶମ, ଦମାଦି ଦ୍ୱାରା ଦୃଢ଼ ବ୍ରହ୍ମନିଷ୍ଠତ୍ୱ ତାହାର ସ୍ୱାଶ୍ରମ ବିହିତ କର୍ମ ଅଟେ ଏବଂ ଯଜ୍ଞ ପ୍ରଭୃତି ଅନ୍ୟ ଆଶ୍ରମର କର୍ମ ଅଟନ୍ତି । ସ୍ୱାଶ୍ରୟବିହିତ କର୍ମର ଉଲ୍ଲଙ୍ଘନ ହେଲେ ତାହାର ପ୍ରତ୍ୟବାୟ ହୁଏ ।

(ଗ) କାରଣ- 'ନ୍ୟାସ ଇତି' (ଏହି ସଂନ୍ନ୍ୟାସ ବ୍ରହ୍ମା ଅଟେ, କାରଣ-ବ୍ରହ୍ମା କେବଳ ଶ୍ରୁତି ସ୍ମୃତିରେ ପ୍ରଧାନ । ତେଣୁ ବ୍ରହ୍ମା ସଂନ୍ନ୍ୟାସ ମୁଖ । ଯାହା ତପ, ତାହାହି ଅଛ । ସଂନ୍ନ୍ୟାସ ସବୁଠାରୁ ଅଧିକଶ୍ରେଷ୍ଠ ଅଟେ ।) 'ବେଦାନ୍ତବିଜ୍ଞାନମ୍' (ଯାହାଠାରୁ ବେଦାନ୍ତଜନିତ ବିଜ୍ଞାନଦ୍ୱାରା ଜ୍ଞେୟ ଅର୍ଥର ଉତ୍ତମଭାବେ ସ୍ଥିର କରାଯାଏ, ସେସବୁ ସଂନ୍ନ୍ୟାସଯୋଗରୁ ଯତ୍ନ କରି ସମସ୍ତ ଶୁଦ୍ଧଚିତ୍ତ ପୁରୁଷ ବ୍ରହ୍ମଲୋକରେ ଦେହତ୍ୟାଗ କରିବା ସମୟରେ ପରମଅମରଭାବକୁ ପ୍ରାପ୍ତ ହୁଏ, ସବୁଦିଗରୁ ମୁକ୍ତ ହୋଇଯାଏ) ଇତ୍ୟାଦି ଶ୍ରୁତିବାକ୍ୟ । 'ତଦ୍‌ବୁଦ୍ଧୟଃ' (ତଦ୍‌ରୂପ ମୁଁ ବ୍ରହ୍ମ, ବୁଦ୍ଧିମାନ, ତଦାକାରମନସ୍ୱୀ ତଦାକାରକର୍ମନିଷ୍ଠ, ତତ୍‌ପରାୟଣ ପୁରୁଷ ପରମଗତିକୁ ପ୍ରାପ୍ତ ହୁଏ) ଇତ୍ୟାଦି ସ୍ମୃତିଗୁଡ଼ିକ ବ୍ରହ୍ମସଂସ୍ଥରେ କର୍ମର ଅଭାବ ଦେଖାଏ ।

ମୂଳ-(କ) ତସ୍ମାତ୍ ପରିବ୍ରାଜକ ସ୍ୟାଶ୍ରମମାତ୍ରାଦମୃତତ୍ୱପ୍ରାପ୍ତେଃ ଜ୍ଞାନାନର୍ଥକ୍ୟପ୍ରସଙ୍ଗ ଇତ୍ୟେଷୋଽପି ଦୋଷୋ ନାବତରତି । ତଦେବଂ ପରାମର୍ଶେଽପୀତରେଷାମାଶ୍ରମାଣାଂ ପାରିବ୍ରାଜ୍ୟଂ ତାବଦ୍‌ବ୍ରହ୍ମସଂସ୍ଥତାଲକ୍ଷଣଂ ଲଭ୍ୟେତୈବ । ଅନପେକ୍ଷ୍ୟୈବ ଜାବାଲଶ୍ରୁତିମାଶ୍ରୁ-ତିମାଶ୍ରାମାନ୍ତରବିଧାୟିନୀମୟାମାଚାର୍ଯ୍ୟେଣ ବିଚାରଃ ପ୍ରବର୍ତ୍ତିତଃ ।

(ଖ) ବିଦ୍ୟତ ଏବ ତ୍ୱାଶ୍ରମାନ୍ତରବିଧିଶ୍ରୁତିଃ ପ୍ରତ୍ୟକ୍ଷା- 'ବ୍ରହ୍ମଚର୍ଯ୍ୟଂ ପରିସମାପ୍ୟ ଗୃହୀ ଭବେଦ୍‌ଗୃହୀ ଭୂତ୍ୱା ବନୀ ଭବେଦ୍‌ବନିଭୂତ୍ୱା ପ୍ରବ୍ରଜେତ୍ । ଯଦି ବେତରଥା ବ୍ରହ୍ମଚର୍ଯ୍ୟାଦେବ ପ୍ରବ୍ରଜେଦଗୃହାଦ୍ ବା ବନାଦ୍ ବା' (ଜାବାଲ-୪ ଇତି ।

(ଗ) ନ ଚେୟଂ ଶ୍ରୁତି ରନଧିକୃତବିଷୟା ଶକ୍ୟାବକ୍ତୁମ୍, ଅବିଶେଷଶ୍ରବଣାତ୍ । ପୃଥଗ୍‌ବିଧାନାଚ୍ଚାନଧିକୃତାନାମ୍ 'ଅଥ ପୁନରେବ ବ୍ରତୀବାଽବ୍ରତୀ ବା ସ୍ନାତକୀ ବାଽସ୍ନାତକୀ ବୋତ୍ସନ୍ନାଗ୍ନିରନଗ୍ନିକୋ ବା' (ଜାବା-୪) ଇତ୍ୟାଦିନା ବ୍ରହ୍ମଜ୍ଞାନପରିପାକାଙ୍ଗତ୍ୱାଚ୍ଚ ପାରିବ୍ରାଜ୍ୟସ୍ୟ ନାନଧିକୃତବିଷୟତ୍ୱମ୍ । ତଚ୍ଚ ଦର୍ଶୟତି- 'ଅଥ ପରିବ୍ରାଜବିବର୍ଣ୍ଣବାସ' ମୁଣ୍ଡୋଽପରିଗ୍ରହଃ ଶୁଚିରଦ୍ରୋହୀ, ଭୈକ୍ଷାଣୋ ବ୍ରହ୍ମଭୂୟାୟ ଭବତି' (ଜାବା-୫) ଇତି ତସ୍ମାତ୍‌ସିଦ୍ଧା ଊର୍ଦ୍ଧ୍ୱେରେତସାମାଶ୍ରମାଃ । ସିଦ୍ଧଂ ଚୋର୍ଦ୍ଧ୍ୱରେତଃସୁ ବିଧାନାଦ୍‌ବିଦ୍ୟାୟାଃ ସ୍ୱାତନ୍ତ୍ର୍ୟମିତି ॥

ଭାଷା- (କ) ତେଣୁ ପରିବ୍ରାଜକକୁ ଆଶ୍ରମମାତ୍ରଦ୍ୱାରା ମୋକ୍ଷପ୍ରାପ୍ତି ହେଲେ ଜ୍ଞାନରେ ଅନର୍ଥପ୍ରସଙ୍ଗ ହୁଏ-ଏହି ଦୋଷ ମଧ୍ୟ ଅବିତରିତ ହୁଏ ନାହିଁ । କିନ୍ତୁ ଏହିପରି ଅନ୍ୟ ଆଶ୍ରମର ପରାମର୍ଶ ହେବାଦ୍ୱାରା ବ୍ରହ୍ମସଂସ୍ଥାରୂପ ପାରିବ୍ରାଜ୍ୟ ପ୍ରାପ୍ତ ହେବା ଉଚିତ୍ । ଅନ୍ୟ ଆଶ୍ରମକୁ ବିଧାନ କରୁଥିବା ଜାବାଲଶ୍ରୁତି ଅପେକ୍ଷା ନକରି ଆଚାର୍ଯ୍ୟ ଜୈମିନି ଏହା ବିଚାର କରିଛନ୍ତି ।



(ଖ) 'ବ୍ରହ୍ମଚର୍ଯ୍ୟଂ' (ବ୍ରହ୍ମଚର୍ଯ୍ୟକୁ ଭଲଭାବରେ ସମାପ୍ତ କରି ଗୃହସ୍ଥାଶ୍ରମୀ ହୁଅ, ଗୃହସ୍ଥ ହୋଇ ବାନପ୍ରସ୍ଥ ହୁଅ । ବାନପ୍ରସ୍ଥ ହୋଇ ପରିବ୍ରାଜକ ହୁଅ, ଅଥବା ତାହାର ବିପରୀତ ବ୍ରହ୍ମଚର୍ଯ୍ୟରୁ ଗୃହସ୍ଥରୁ ଅଥବା ବାନପ୍ରସ୍ଥରୁ ପରିବ୍ରାଜକ ହୁଅ) ଏହିପ୍ରକାର ଅନ୍ୟସଂନ୍ନ୍ୟାସ ଆଶ୍ରମର ପ୍ରତ୍ୟକ୍ଷବିଧି ଶ୍ରୁତି ରହିଛି ।

(ଗ) 'ଅଥ ପୁନରେବ' (ବ୍ରତୀ ଅଥବା ଅବ୍ରତୀ, ସ୍ନାତକ ଅଥବା ଅସ୍ନାତକ, ଅଗ୍ନି ଅର୍ଥାତ୍ କାମ ବିନାଶିତ ବିଧୁର ଅଥବା ଅଗ୍ନିରହିତ ପୁରୁଷ ସଂନ୍ୟାସ ଗ୍ରହଣ କରିବା ଉଚିତ) ଇତ୍ୟାଦି କର୍ମରେ ଅନଧିକାରର ପୃଥକ୍ ବିଧାନ ହୁଏ ଓ ପାରିବ୍ରାଜ୍ୟ ବ୍ରହ୍ମଜ୍ଞାନ ପରିପାକଦ୍ୱାରା ବ୍ରହ୍ମ ସାକ୍ଷାତ୍କାରୀର ଅଙ୍ଗ ହେଲେ ଅନଧିକୃତ ବିଷୟକ ହୁଏ ନାହିଁ । ତାହାଦ୍ୱାରା 'ଅଥ ପରିବ୍ରାଡ୍' (ବର୍ଣ୍ଣରହିତ ବସ୍ତ୍ରଯୁକ୍ତ ମୁଣ୍ଡୀ, ପରିଗ୍ରହରହିତ ପବିତ୍ର, ଦ୍ରୋହରହିତ ଭିକ୍ଷାର୍ଥୀ ପରିବ୍ରାଜକ ବ୍ରହ୍ମସାକ୍ଷାତ୍କାର ପାଇଁ ସମର୍ଥ ହୁଏ) ଏହା ଶ୍ରୁତି ଦେଖାଏ । ତେଣୁ ଊର୍ଦ୍ଧ୍ୱରେତଙ୍କର ଆଶ୍ରମ ସିଦ୍ଧି ହୁଏ, ଏବଂ ବିଦ୍ୟାର ଊର୍ଦ୍ଧ୍ୱରେ ତସ୍ ପାଇଁ ବିଧାନ ହେଲେ ବିଦ୍ୟାରେ ସ୍ୱାତନ୍ତ୍ର୍ୟ ସିଦ୍ଧି ହୁଏ ॥୨୦॥

## स्तुतिमात्राधिकरणम् ॥ सू-२१-२२ ॥

## ସ୍ତୁତିମାତ୍ରାଧିକରଣମ୍ ॥ ସୂ ୨୧-୨୨॥

## स्तुतिमात्रमुपादानादिति चेन्नापूर्वत्वात् ॥ ३-४-२१ ॥

## ସ୍ତୁତିମାତ୍ରମୁପାଦାନାଦିତି ଚେନ୍ନାପୂର୍ବତ୍ୱାତ୍ ॥୩-୪-୨୧॥

ଉଦ୍‌ଗୀଥାଦି ଉପାସନାଗୁଡ଼ିକରେ ଶ୍ରୂୟମାଣ 'ସ ଏଷ ରସାନାଂ ଇତ୍ୟାଦି ଶ୍ରୁତିଗୁଡ଼ିକ, ସ୍ତୁତିମାତ୍ରମ୍=କେବଳ ସ୍ତୁତିମାତ୍ର ଅଟେ । ଉପାଦାନାତ୍=କାରଣ-ଉଦ୍‌ଗୀଥାଦି କର୍ମାଙ୍ଗଗୁଡ଼ିକ ଗ୍ରହଣ କରେ । ଇତି ଚେନ୍ନ=ଏହା ଯଦି କୁହ, ତେବେ ମଧ୍ୟ ତାହା ଠିକ୍ ନୁହେଁ, ଅପୂର୍ବତ୍ୱାତ୍ କାରଣ-ସେ ସବୁ ଅପୂର୍ବ ଅଟନ୍ତି । ତେଣୁ ତାହାର ବିଧାନ ଅଛି ॥

ମୂଳ-(କ) ସ ଏଷ ରସାନାଂ ରସତମଃ ପରମ ପରାର୍ଦ୍ଧ୍ୟୋଽଷ୍ଟମୋ ଯଦୁଦ୍‌ଗୀଥଃ' (ଛା ୧-୧-୩), 'ଇୟମେବର୍ଗଗ୍ନିଃ ସାମଃ' (ଛା ୧-୬-୧), 'ଅୟଂ ବାବ ଲୋକ ଏଷୋଽଗ୍ନିଶ୍ଚିତଃ । ତଦିଦମେବୋକ୍‌ଥମିୟମେବ ପୃଥିବୀ' ଇତ୍ୟେବଂଜାତୀୟକାଃ ଶ୍ରୁତୟଃ କିମୁଦ୍‌ଗୀଥାଦେଃ ସ୍ତୁତ୍ୟାର୍ଥା ଆହୋସ୍ୱିଦୁପାସନାବିଧ୍ୟର୍ଥା ଇତ୍ୟସ୍ମିନ୍‌ସଂଶୟେ-ସ୍ତୁତ୍ୟଥା ଇତି ଯୁକ୍ତମ୍ । ଉଦ୍‌ଗୀଥାଦୀନି କର୍ମାଙ୍ଗାନ୍ୟୁପାଦାୟ ଶ୍ରବଣାତ୍ ।

(ଖ) ଯଥା ଇୟମେବ ଜୁହୁରାଦିତ୍ୟ କୂର୍ମଃ ସ୍ୱର୍ଗୋ ଲୋକ ଆହବନୀୟଃ' ଇତ୍ୟାଦ୍ୟା ଜୁହ୍ୱାଦିସ୍ତୁତ୍ୟର୍ଥାସ୍ତଦ୍‌ବଦିତି ଚେତ୍-ନେତ୍ୟାହ, ନହିସ୍ତୁତିମାତ୍ରାମାସାଂ ଶ୍ରୁତୀନାଂ ପ୍ରୟୋଜନଂ ଯକ୍ତୁମ୍, ଅପୂର୍ବତ୍ୱାତ୍ । ବିଧ୍ୟର୍ଥତାୟାଂ ହ୍ୟପୂର୍ବୋଽର୍ଥୋ ବିହିତୋ ଭବତି, ସ୍ତୁତ୍ୟର୍ଥତାୟାଂ ତ୍ୱାନର୍ଥକ, ମେବ ସ୍ୟାତ୍ । ବିଧାୟକସ୍ୟ ହି ଶବ୍ଦସ୍ୟ ବାକ୍ୟଶେଷଭାବଂ ପ୍ରତିପଦ୍ୟମାନା ସ୍ତୁତିରୁପଯୁଜ୍ୟତ ଇତ୍ୟୁକ୍ତମ୍- 'ବିଧିନା ତ୍ୱେକବାକ୍ୟତ୍ୱାତ୍ ସ୍ତୁତ୍ୟର୍ଥେନ ବିଧୀନାଂ ସ୍ୟୁଃ' ଇତ୍ୟତ୍ର ।

(ଗ) ପ୍ରଦେଶାନ୍ତରବିହିତାନାଂ ତ୍ୱଦ୍‌ଗୀଥାଦୀନାମିୟଂ ପ୍ରଦେଶାନ୍ତରପଠିତା ସ୍ତୁତିର୍ବାକ୍ୟ-ଶେଷଭାବମ୍‌ପ୍ରତିପ୍ୟମାନାଽନର୍ଥିକୈବ ସ୍ୟାତ୍ । ଇୟମେବ ଦୂହୁରିତ୍ୟାଦି ତୁ ବିଧିସଂନିଧାବେବାମ୍ନାତମିତି ବୈଷମ୍ୟମ୍ ତସ୍ମାଦ୍‌ବିଧ୍ୟର୍ଥାଃ ଏବୈଂଜାତୀୟକାଃ ଶ୍ରୁତୟଃ ।

ଭାଷା-(କ) 'ସ ଏଷ ରସାନାମ୍' (ଏହି ଯେଉଁ ଉଦ୍‌ଗୀଥ ସଂଜ୍ଞକ ଓଁ କାର ଅଟେ, ସେ ସଂପୂର୍ଣ୍ଣ ଭୂତାଦି ରସଗୁଡ଼ିକରେ ରସତମ, ଉତ୍କୃଷ୍ଟ, ପରମାତ୍ମାର ପ୍ରତୀକ ହେଲେ ପରମ ପରମାତ୍ମା ସଦୃଶ୍ୟ ଉପାସ୍ୟ ହେଲେ ପରମାତ୍ମାର ସ୍ଥାନଯୋଗ୍ୟ ଏହି ଉଦ୍‌ଗୀଥ ପୃଥିବୀ ପ୍ରଭୃତି ରସଗୁଡ଼ିକରେ ଆଠପ୍ରକାର ଅଟନ୍ତି), 'ଇୟମେବର୍ଗଗ୍ନି' (ଏହି ପୃଥିବୀର ଋକ୍ ଅଟେ ଏବଂ ସାମ ଅଗ୍ନି ଅଟେ । ଅର୍ଥାତ୍ ଋକ୍‌ରେ ପୃଥିବୀ ଦୃଷ୍ଟି ଓ ସାମରେ ଅଗ୍ନିଦୃଷ୍ଟି ହେବା ଉଚିତ୍ ।) 'ଅୟଂ ବାବ' (ଏହିଲୋକ ନିଶ୍ଚିତ ଭାବେ ଅଗ୍ନିଚିତ୍ ଅଟେ), 'ତଦିକଂ' (ସେ ଉକ୍‌ଥ ଏହି ଅଟେ, ଯାହା ଏହି ପୃଥିବୀ) ଏହିପରି ଶ୍ରୁତିଗୁଡ଼ିକ କ'ଣ ଉଦ୍‌ଗୀଥ ପ୍ରଭୃତିର ସ୍ତୁତିପାଇଁ ରହିଛି । ଅଥବା ଉପାସନାବିଧି ପାଇଁ ? ଏହିପରି ସଂଶୟ ହେବାରୁ ସ୍ତୁତିପାଇଁ ବୋଲି କହିବା ଠିକ୍ । କାରଣ-ଉଦ୍‌ଗୀଥାଦି କର୍ମାଙ୍ଗକୁ ନେଇ ତାହା ଶ୍ରବଣ କରାଯାଏ ।

(ଖ) ଯେପରି 'ଇୟମେବ' (ଏହି ପୃଥିବୀ ଜୁହୁ ଅଟେ, ଆଦିତ୍ୟ ଚୟନସ୍ଥ କୂର୍ମ ପୁରୋଡ଼ାଶ ଅଟେ ଏବଂ ସ୍ୱର୍ଗଲୋକ ଆହବନୀୟ ଅଗ୍ନି ଅଟେ ।) ଇତ୍ୟାଦି ଶ୍ରୁତି ଜୁହୁ ପ୍ରଭୃତିର ସ୍ତୁତି ପାଇ ରହିଛି, ସେହିପରି ପ୍ରକୃତିରେ ମଧ୍ୟ । ଯଦି କହ ଯେ- ଏହା ଠିକ୍ ନୁହେଁ, ତେବେ ମଧ୍ୟ ସୂତ୍ରକାର କହନ୍ତି । ଏହି ଶ୍ରୁତିଗୁଡ଼ିକ କେବଳ ସ୍ତୁତି ପାଇଁ ପ୍ରୟୋଜନ ସ୍ୱୀକାର ବିଧେୟ ନୁହେଁ, କାରଣ-ସେସବୁ ଅପୂର୍ବ ଅଟନ୍ତି । ଏହି ସ୍ତୁତିଗୁଡ଼ିକ ବିଧ୍ୟର୍ଥକ ହେଲେ ଅପୂର୍ବ ଅର୍ଥର ବିଧାନ ହୁଏ । ଏହିସବୁକୁ ସ୍ତୁତ୍ୟର୍ଥକ ବୋଲି ସ୍ୱୀକାର କଲେ ଅନର୍ଥକ ହେବ, କାରଣ-ବିଧ୍ୟର୍ଥକଶବ୍ଦର ବାକ୍ୟଶେଷତ୍ୱ ପ୍ରାପ୍ତ ହେବାକୁ ଥିବା ସ୍ତୁତି ଉପଯୁକ୍ତ ହୁଏ । 'ବିଧିନା ତ୍ୱେକବାକ୍ୟ' (ବିଧିର ସ୍ତାବକ ରୂପରେ ବିଧିବାକ୍ୟ ସହିତ ଏକବାକ୍ୟତା ହେଲେ ଅର୍ଥବାଦବାକ୍ୟର ସାର୍ଥକତା ହୁଏ)' ଏ ସୂତ୍ରରେ କୁହାଯାଇଅଛି ।

(ଗ) ପରନ୍ତୁ ଅନ୍ୟ ସ୍ଥଳରେ ବିହିତ ଉଦ୍‌ଗୀଥାଦିର ଅନ୍ୟପ୍ରଦେଶରେ ପଠିତ ଏହି ସ୍ତୁତି ବାକ୍ୟଶେଷତ୍ୱକୁ ପ୍ରାପ୍ତ ନହୋଇ ଅନର୍ଥକ ହିଁ ହେବ । 'ଇୟମେବ' ଜୁହୁ' ଇତ୍ୟାଦି କିନ୍ତୁ ବିଧିର ସନ୍ନିଧିରେ କୁହାଯାଇଅଛି) ଏହା ଏକ ବୈଲକ୍ଷଣ୍ୟ ଅଟେ । ତେଣୁ ଏହିପ୍ରକାର ଶ୍ରୁତିବାକ୍ୟଗୁଡ଼ିକ ବିଧିପାଇଁ ରହିଛି ।୨୧।

## भाव शब्दाच्च ॥ ३-४-२२ ॥

## ଭାବଶବ୍ଦାଚ୍ଚ ॥୩-୪-୨୨॥

ଭାବଶବ୍ଦାତ୍ ଚ= 'ଉଦ୍‌ଗୀଥମୁପାସୀତ' ଇତ୍ୟାଦି ବିଧିବାକ୍ୟହେଲେ ସ ଏଷ ଇତ୍ୟାଦି ଶ୍ରୁତିବାକ୍ୟ ବିଧିପରକ ହେବେ ।

ମୂଳ-(କ) 'ଉଦ୍‌ଗୀଥ ମୁପାସୀତ' (ଛା ୧-୧-୧), 'ସାମୋପାସୀତ' (ଛା ୨-୨-୧), 'ଅହମୁକ୍‌ଥମସ୍ମୀତି ବିଦ୍ୟାତ୍' ଇତ୍ୟାଦୟଶ୍ଚ ବିଧିଶବ୍ଦାଃ ଶ୍ରୂୟନ୍ତେ । ତେ ଚ ସ୍ତୁତିମାତ୍ର ପ୍ରୟୋଜନତାୟାଂ ବ୍ୟାହନ୍ୟେରନ୍ । ତଥା ଚ ନ୍ୟାୟବିଦାଂ ସ୍ମରଣମ୍-'କୁର୍ଯ୍ୟାତ୍ କ୍ରିୟେତ୍ କର୍ତ୍ତବ୍ୟଂ ଭବେତ୍ ସ୍ୟାଦିତି ପଞ୍ଚମମ୍ । ଏତତ୍ ସ୍ୟାତ୍ ସର୍ବବେଦେଷୁ ନିୟତଂ ବିଧି ଲକ୍ଷଣମ୍' ଇତି ଲିଙ୍ଆଦ୍ୟର୍ଥୋ ବିଧିରିତି ମନ୍ୟମାନାସ୍ତ ଏବଂ ସ୍ମରନ୍ତି ।

(ଖ) ପ୍ରତିପ୍ରକରଣଂ ଚ ଫଳାନି ଶ୍ରାବ୍ୟନ୍ତେ- 'ଆପୟିତା ହବୈ କାମାନାଂ ଭବତି' (ଛା ୧-୧-୭), ଏଷ ହେବେ କାମାଗାନା ସ୍ୟେଷ୍ଟେ (ଜି ୧-୬-୧) 'କଳ୍ପନ୍ତେ ହାସ୍ମୈଲୋକା ଉର୍ଦ୍ଧ୍ୱାଶ୍ଚାବୃତାଶ୍ଚ (ଛା ୨-୨-୩) ଇତ୍ୟାଦୀନି । ତସ୍ମାଦପ୍ୟୁପାସନ ବିଧାନାର୍ଥା ଉଦ ଗୀଥାଦି ଶ୍ରୁତୟଃ ॥

ଭାଷା- (କ) 'ଉଦ୍‌ଗୀଥ ମୁପାସୀତ' (ଉଦ୍‌ଗୀଥକୁ ଉପାସନା କରିବା ଉଚିତ), 'ସାମୋପାସୀତ' (ସାମକୁ ଉପାସନା କରିବା ଉଚିତ୍ ।) ଅହମୁକ୍‌ଥମ୍ ସ୍ମୀତି' (ମୁଁ ଉକ୍‌ଥ ଅଟେ-ଏହିପରି ଧ୍ୟାନ କର) ଇତ୍ୟାଦି ସ୍ପଷ୍ଟ ରୂପରେ ବିଧିଶ୍ରୁତିଗୁଡ଼ିକ ଶୁଣାଯାଏ । ସେ ସବୁ କେବଳ ସ୍ତୁତି ପ୍ରୟୋଜନବାନ୍ ସ୍ୱୀକାର କଲେ ବାଧିତ ହେବ । କୁର୍ଯ୍ୟାତ୍ (କରିବା ଉଚିତ୍), କ୍ରିୟତେ (କରାଯାଇ ପାରେ) କର୍ତ୍ତବ୍ୟମ୍ (ବିଧେୟ), ଭବେତ୍ (ହୋଇପାରେ) ଓ ସ୍ୟାତ୍ (ହେଉ) - ଏହି ପାଞ୍ଚୋଟି ସବୁ ବେଦରେ ନିଶ୍ଚିତ ବିଧି ଲକ୍ଷଣ ଅଟନ୍ତି । ଏହିପରି ସେ ନ୍ୟାୟବେତ୍ତାର ସ୍ମୃତି ଅଟନ୍ତି । ଲିଙ୍ଆଦିର ଅର୍ଥ ବିଧି ଅଟେ । ଏହା ସ୍ୱୀକାର କଲେ ସେଗୁଡ଼ିକ ସ୍ମରଣ କରନ୍ତି ।

(ଖ) ପ୍ରତ୍ୟେକ ପ୍ରକରଣରେ 'ଆପୟିତା ହ ବୈ' (ଯେଉଁ ବିଦ୍ୱାନ୍ ଆପ୍ତିଗୁଣ ବିଶିଷ୍ଟ ଏହି ଉଦ୍‌ଗୀଥ ଅକ୍ଷରକୁ ଉପାସନା କରନ୍ତି ସେହି ଯଜମାନର ସଂପୂର୍ଣ୍ଣ କାମନାକୁ ପ୍ରାପ୍ତି କରାଏ, 'ଏଷ ହ୍ୟେବ' (କାରଣ-ଏହି ଉଦ୍‌ଗାତା କାମନା ସମ୍ବନ୍ଧୀ ଆଗାନର ଉଦ୍‌ଗାନ ଦ୍ୱାରା ଏହି କାମନାକୁ ସଂପନ୍ନ କରିବାରେ ସମର୍ଥ ହୁଏ), 'କଙ୍କନ୍ତେ ହାସ୍ମୈ, (ସେହି ଉପାସକ ପ୍ରତି ଉର୍ଦ୍ଧ୍ୱ ଓ ଅଧୋମୁଖ ଲୋକ ଭୋଗ୍ୟ ରୂପରେ ଉପସ୍ଥିତ ହୁଅନ୍ତି) ଇତ୍ୟାଦି ଫଳର ଶ୍ରବଣ କରାଯାଇଛି । ତଦ୍ଦ୍ୱାରା ଉଦ୍‌ଗୀଥାଦି ଶ୍ରୁତିଗୁଡ଼ିକ ଉପାସନାର ବିଧାନ କରିବା ପାଇଁ ଅଛନ୍ତି ॥୮୮॥

## ४-पारिप्लवाधिकरणम् ॥ सू० २३-२२ ॥

## ୪ । ପାରିପ୍ଲବାଧିକରଣମ୍ ॥ ସୂ. ୨୩-୨୨॥

## परिप्लवार्था इति चेन्न विशेषितत्वात् ॥ ३-४-२३ ॥

## ପାରିପ୍ଲବାର୍ଥା ଇତି ଚେନ୍ନ ବିଶେଷିତତ୍ୱାତ୍ ॥୩-୪-୨୩॥

ପରିପ୍ଲବାର୍ଥାଃ='ଅଥହ ଯାଜ୍ଞବଲ୍‌କ୍ୟସ୍ୟ' ଇତ୍ୟାଦି ଆଖ୍ୟାୟିକାରେ ପାରିପ୍ଲବ ନାମକ କର୍ମର ଅଙ୍ଗ ହୁଏ, ଇତି ଚେନ୍ନ=ଏହା କିନ୍ତୁ ଠିକ୍ ନୁହେଁ । ବିଶେଷିତ୍ୱାତ୍=କାରଣ- 'ପାରିପ୍ଲବମାଚକ୍ଷୀତ' ଏହି ଶ୍ରୁତିରେ ବିଶେଷିତ କରାଯାଇଅଛି ॥

ମୂଳ-(କ) 'ଅଥହ ଯାଜ୍ଞବଲ୍‌କ୍ୟସ୍ୟ ଦ୍ୱେଭାର୍ଯ୍ୟେ ବଭୂତୁଃ ମୈତ୍ରେୟୀ ଚ କାତ୍ୟାୟନୀଚ' (ବୃହ ୪-୫-୧), ପ୍ରତର୍ଦ୍ଦନୋ ହବୈଦୈବୋଦାସିରିନ୍ଦ୍ରସ୍ୟ ପ୍ରିୟଂ ଧାମୋପଜଗାମ' (କୈଷୀ ୩-୧) 'ଜାନଶ୍ରୁତିର୍ହି ପୌତ୍ରାୟଣଃ ଶ୍ରଦ୍ଧାଦେୟୋ ବହୁଦାୟୀ ବହୁପାକ୍ୟ ଆସ' (ଛା ୪-୧-୧) ଇତ୍ୟେବମାଦିଷୁ ବେଦାନ୍ତପଠିତେଷୁ ସଂଶୟଃ-

(ଖ) କିମିମାନି ପାରିପ୍ଲବପ୍ରୟୋଗାର୍ଥାନ୍ୟାହୋସ୍ୱିତ ସଂନିହିତବିଦ୍ୟାପ୍ରତିତଷ- ତ୍ୟର୍ଥାନୀତି । ପାରିପ୍ଲବାର୍ଥା ଇମା ଆଖ୍ୟାନଶ୍ରୁତୟଃ, ଆଖ୍ୟାନସାମାନ୍ୟାତ୍, ଆଖ୍ୟାନ- ପ୍ରୟୋଗସ୍ୟ ଚ ପାରିପ୍ଲବେ ଚୋଦିତତ୍ୱାତ୍ । ତତଶ୍ଚ ବିଦ୍ୟାପ୍ରଧାନତ୍ୱଂ ବେଦାନ୍ତାନାଂ ନ ସ୍ୟାତ୍ ମନ୍ତ୍ରବତ୍‌ପ୍ରୟୋଗଶେଷତ୍ୱାଦିତି ଚେତ୍ ।

(ଗ) ତନ୍ନ, କସ୍ମାତ୍ । ବିଶେଷିତ୍ୱାତ୍ । 'ପାରିପ୍ଲବମାଚଷୀତ' ଇତି ହି ପ୍ରକୃତ୍ୟ 'ମନୁର୍ବୈବସ୍ୱତୋ ରାଜା' ଇତ୍ୟେବମାଦୀନି କାନିଚିଦେବାଖ୍ୟାନାନି ତତ୍ର ବିଶେଷ୍ୟନ୍ତେ । ଆଖ୍ୟାନସାମାନ୍ୟାଚ୍ଚେତ୍ ସର୍ବଗୃହୀତିଃ ସ୍ୟାଦନର୍ଥକମେବେଦଂ ବିଶେଷଣଂ ଭବେତ୍ । ତସ୍ମାନ୍ନ ପାରିପ୍ଲବାର୍ଥା ଏତା ଆଖ୍ୟାନଶ୍ରୁତୟଃ ॥



ଭାଷା- (କ) 'ଅଥହ' (ଯାଜ୍ଞବଲ୍କ୍ୟର ମୈତ୍ରେୟୀ ଓ କାତ୍ୟାୟନୀ ନାମକ ଦୁଇଟି ସ୍ତ୍ରୀ ଥିଲେ ବୋଲି ପ୍ରସିଦ୍ଧ ଅଛି) 'ପ୍ରତର୍ଦନୋ ହ' (ଦିବୋଦାସର ପୁତ୍ର ପ୍ରତର୍ଦନ ଇନ୍ଦ୍ରର ପ୍ରିୟ ସ୍ଥାନ ସ୍ୱର୍ଗକୁ ଗଲେ) 'ଜାନଶ୍ରୁତିଃ' (ଜନଶ୍ରୁତିର ସନ୍ତାନ ପରମ୍ପରାରେ ଉତ୍ପନ୍ନ ଏବଂ ତାହାର ପୁତ୍ରର ପୌତ୍ର ଶ୍ରଦ୍ଧାପୂର୍ବକ ଦାନୀ ଓ ବହୁତଦାନୀ ଥିଲେ ଏବଂ ତାହାର ଭୋଜନାର୍ଥୀ ପାଇଁ ବହୁତ ଅନନ୍ନ ପାକ କରାଯାଇଥିଲା) ଇତ୍ୟାଦି ବେଦାନ୍ତ ପଠିତ କଥାରେ ସଂଶୟ ହୁଏ ଯେ-

(ଖ) ଏହିସବୁ ଆଖ୍ୟାନ କ'ଣ ପାରିପ୍ଳବର ପ୍ରୟୋଗ ପାଇଁ ଅଥବା ସନ୍ନିହିତ ବିଦ୍ୟାର ପ୍ରତିପତ୍ତି ପାଇଁ । ଆଖ୍ୟାନଶ୍ରୁତି ପାରିପ୍ଳବାର୍ଥକ ଅଟେ, କାରଣ-ଏଠାରେ ଆଖ୍ୟାନତ୍ୱ ପରି ହୁଏ ଏବଂ ଆଖ୍ୟାନର ପ୍ରୟୋଗ ପାରିପ୍ଳବରେ ବିହିତ ଅଛି । ତେଣୁ ବେଦାନ୍ତବାକ୍ୟରେ ମନ୍ତ୍ର (ବେଦସ୍ୟତ୍ୱୋ ସବିତୁଃ) ପରିପ୍ରୟୋଗର ଶେଷ ହେବାରୁ ବିଦ୍ୟା ପ୍ରଧାନତ୍ୱ ନୁହେଁ ।

(ଗ) ଯଦି ଏହା କହ, ତେବେ ମଧ୍ୟ ଏହା ଠିକ୍ ନୁହେଁ । କିପରି ? ବିଶେଷଷିତ ହେବାରୁ; କାରଣ ପାରିପ୍ଳବମାଚକ୍ଷୀତ (ପାରିପ୍ଳବ କହେ) ଏହି ଉପକ୍ରମ କରି ମନୁର୍ବୈବସ୍ୱତୋ ରାଜା (ବିବସ୍ୱାନର ପୁତ୍ର ରାଜା ମନୁ) ଇତ୍ୟାଦି କେତେକ ଉପାଖ୍ୟାନ ଶ୍ରୁତିରେ ବିଶେଷିତ କରାଯାଇଛି । ଯଦି ଆଖ୍ୟାନତ୍ୱ ପରି ଧର୍ମର ସବୁ ଆଖ୍ୟାନଗୁଡ଼ିକ ଜ୍ଞାନ ହେବ, ତେବେ ପାରିପ୍ଳବ ବିଶେଷଣ ନିଷ୍ଫଳ ହେବ । ତେଣୁ ଏହି ଆଖ୍ୟାନଶ୍ରୁତିଗୁଡ଼ିକ ପାରିପ୍ଳବାର୍ଥକ ନୁହେଁ ॥୨୩॥

## तथा चैकवाक्यतोपबन्धात् ॥ ३-४-२४ ॥

## ତଥା ଚୈକବାକ୍ୟତୋପବନ୍ଧାତ୍ ॥୩-୪-୨୪॥

ଚ=ଏବଂ, ତଥା=ସେହିପରି ଏହି ଆଖ୍ୟାୟିକା ଗୁଡ଼ିକ ବିଦ୍ୟା ନିମିତ୍ତ ରହିଛି । ଏକବାକ୍ୟତୋପବନ୍ଧାତ୍= କାରଣ-ସନ୍ନିହିତ ସେହି ବିଦ୍ୟାର ସହ ଏକବାକ୍ୟତା ଉପବନ୍ଧ (ଉପପତ୍ତି) ହୁଏ ।

ମୂଳ-(କ) ଅସତି ଚ ପାରିପ୍ଳବାର୍ଥତ୍ୱେଽଽଖ୍ୟାନାନାଂ ସଂନ୍ନିହିତବିଦ୍ୟାପ୍ରତିପାଦନୋପଯୋଗିତୈବ ନ୍ୟାଯ୍ୟା, ଏକବାକ୍ୟତୋପବନ୍ଧାତ୍ । ତଥାହି-ତତ୍ର ତତ୍ର ସଂନ୍ନିହିତାଭିର୍ବିଦ୍ୟାଭିରେକବାକ୍ୟତା ଦୃଶ୍ୟତେ, ପ୍ରରୋଚନୋପଯୋଗାତ୍ ପ୍ରତିପତ୍ତିସୌକର୍ଯ୍ୟୋପଯୋଗାଚ୍ଚ । ମୈତ୍ରେୟୀବ୍ରାହ୍ମଣେ ତାବତ୍- 'ଆତ୍ମାବାଽରେ ଦ୍ରଷ୍ଟବ୍ୟଃ' (ବୃହ ୪-୫-୬) ଇତ୍ୟାଦ୍ୟୟା ବିଦ୍ୟୈକବାକ୍ୟତା ଦୃଶ୍ୟତେ ।

(ଖ) ପ୍ରାତର୍ଦନେଽପି 'ପ୍ରାଣୋଽସ୍ମି ପ୍ରଜ୍ଞାତ୍ମା' ଇତ୍ୟାଦ୍ୟୟା ଜାନଶ୍ରୁତିରିତ୍ୟତ୍ରାପି 'ବାୟୁର୍ବାବ ସଂବର୍ଗଃ' (ଛା ୪-୩-୧) ଇତ୍ୟାଦ୍ୟୟା । ଯଥା 'ସ ଆତ୍ମନୋବବପାମୁ-

ଦ୍ୱଖିଦତ୍' ଇତ୍ୟେବମାଦୀନାଂ କର୍ମଶ୍ରୁତିଗତାନାମାଖ୍ୟାନାନାଂ ସଂନ୍ନିହିତବିଧିସ୍ତୁତ୍ୟର୍ଥତା, ତଦ୍‌ବତ୍ । ତସ୍ମାନ୍ନ ପାରିପ୍ଳବାର୍ଥତ୍ୱମ୍ ।

ଭାଷା-(କ) ଆଖ୍ୟାନଗୁଡ଼ିକର ପାରିପ୍ଳବାର୍ଥକ ନ ହେବାରୁ ତାହାର ସନ୍ନିହିତବିଦ୍ୟା-ପ୍ରତିପାଦନର ଉପଯୋଗିତା ହୁଏ; କାରଣ-ଏକବାକ୍ୟତାର ଉପପତ୍ତି ହୁଏ । କାରଣ-ସେହିପରି ସେହି ସେହି ପ୍ରଦେଶରେ ସଂନ୍ନିହିତ ସହିତ ସେହି ସେହି ଆଖ୍ୟାନଗୁଡ଼ିକର ପ୍ରୀତି ଉତ୍ପନ୍ନ କରିବାର ଉପଯୋଗରୁ ଏବଂ ଜ୍ଞାନ ସୌକାର୍ଯ୍ୟର ଉପଯୋଗରୁ ମଧ୍ୟ ଏକବାକ୍ୟତା ଦେଖାଯାଏ । ମୈତ୍ରେୟୀ ବ୍ରାହ୍ମଣରେ 'ଆତ୍ମା ବାଽରେ ଦ୍ରଷ୍ଟବ୍ୟଃ' ଇତ୍ୟାଦି ବିଦ୍ୟାର ସହିତ ଆଖ୍ୟାନରେ ଏକବାକ୍ୟତା ଦେଖାଯାଏ ।

(ଖ) ପ୍ରାତଦିନ ବ୍ରାହ୍ମଣରେ 'ପ୍ରାଣୋଽସ୍ମି ପ୍ରଜ୍ଞାତ୍ମା' । (ମୁଁ ପ୍ରଜ୍ଞାତ୍ମା ପ୍ରାଣ ଅଟେ) ଇତ୍ୟାଦି ବିଦ୍ୟାର ସହିତ ଏକବାକ୍ୟତା ଦେଖାଯାଏ । 'ଜାନଶ୍ରୁତିଃ' ଏଠାରେ ମଧ୍ୟ 'ବାୟୁର୍ବାବ ସଂବର୍ଗଃ' ଇତ୍ୟାଦି ବିଦ୍ୟାର ସହିତ ଏକବାକ୍ୟତା ଦେଖାଯାଏ । ଯେପରି 'ସ ଆତ୍ମନୋ' (ସେହି ପ୍ରଜାପତି ହୋମପାଇଁ ହୃଦୟ ଭିତରେ ବିଭାଗ ଉଦ୍ଧରଣ କଲେ) ଇତ୍ୟାଦି କର୍ମଶ୍ରୁତିରେ ରହିଥିବା ଆଖ୍ୟାନ ସଂନ୍ନିହିତ ବିଧିର ସ୍ତୁତିପାଇଁ ରହିଛି । ସେହିରପି ଏହି ପ୍ରକରଣରେ ଜାଣିବା ଉଚିତ୍; ତେଣୁ ଏହି ଆଖ୍ୟାନ ପାରିପ୍ଳବାର୍ଥକ ନୁହେଁ ।୨୪।

## -अग्नीन्धनाद्यधिकरणम् ॥ सू० २५ ॥

## ୫- ଅଗ୍ନୀନ୍ଧନାଦ୍ୟଧିକରଣମ୍ ସୂ. ୨୫

## अतएव चाग्नीन्धनाद्यनपेक्षा ॥ ३-४-२५ ॥

## ଅତଏବ ଚାଗ୍ନୀନ୍ଧନାଦ୍ୟନପେକ୍ଷା ॥୩-୪-୨୫॥

ଅତଏବ=ଅତଏବ ବିଦ୍ୟା ପୁରୁଷାର୍ଥର ହେତୁହେଲେ, ଅଗ୍ନୀନ୍ଧନାଦି=ଅଗ୍ନୀନ୍ଧନ ପ୍ରଭୃତି ଆଶ୍ରମ କର୍ମକୁ, ଅନପେକ୍ଷା=ଅପେକ୍ଷା କରେ ନାହିଁ ।

ମୂଳ-(କ) 'ପୁରୁଷାର୍ଥୋଽତଃ ଶବ୍ଦାତ୍' (ବ୍ର. ସୂ. ୩-୪-୧) ଇତ୍ୟେତଦ୍‌ବ୍ୟବହିତମପି ସମ୍ଭବାଦତ ଇତି ପରାମୃଶ୍ୟ ତ । ଅତଏବ ଚ ବିଦ୍ୟାୟାଃ ପୁରୁଷାର୍ଥହେତୁତ୍ୱାଦଗ୍ନୀନ୍ଧନାଦୀନ୍ୟାଶ୍ରମକର୍ମାଣି ବିଦ୍ୟୟା ସ୍ୱାର୍ଥସିଦ୍ଧୌ ନାପେକ୍ଷିତବ୍ୟାନୀତ୍ୟାଦ୍ୟସୈବାଧିକରଣସ୍ୟ ଫଳମୁପସଂହରତ୍ୟଧିକବିବକ୍ଷୟା ।

ଭାଷା-(କ) 'ପୁରୁଷାର୍ଥୋଽତଃ' (ଏହି ଔପନିଷଦ୍ ଆତ୍ମଜ୍ଞାନରୁ ମୋକ୍ଷ ହୁଏ) ଯଦ୍ୟପି ଏହି ପୁରୁଷାର୍ଥ ଅଧିକରଣ ଦୂରସ୍ଥ ହୁଏ, ତଥାପି ସମ୍ଭବ ହେଲେ ସୂତ୍ରସ୍ଥ 'ଅତଃ' ଶବ୍ଦରୁ ତାହାର ପରାମର୍ଶ କରାଯାଏ । ଅତଏବ ବିଦ୍ୟାକୁ ମୋକ୍ଷକୁ ହେତୁ ଦେଲେ ଅଗ୍ନି, ଇନ୍ଧନ ପ୍ରଭୃତି ଆଶ୍ରମକର୍ମ-ବିଦ୍ୟାଦ୍ୱାରା ନିଜର ଫଳସିଦ୍ଧିରେ ଅପେକ୍ଷିତବ୍ୟ ହୁଏ ନାହିଁ । ତେଣୁ ଆଦ୍ୟ ଅଧିକରଣ ଫଳର ଅଧିକ କହିବାର ଇଚ୍ଛାରେ ଉପସଂହାର କରନ୍ତି ॥୨୫॥



## ६-सर्वापेक्षाधिकरणम् - ॥ सू० २६-२७ ॥

## ୬-ସର୍ବାପେକ୍ଷାଧିକରଣମ୍ .ସୂ. ୨୬-୨୭ ॥

### सर्वापेक्षा च यज्ञादिश्रुतेरश्ववत् ॥ ३-४-२६ ॥

### ସର୍ବାପେକ୍ଷା ଚ ଯଜ୍ଞାଦିଶ୍ରୁତେରଶ୍ୱବତ୍ ॥୩-୪-୨୬॥

ବିଦ୍ୟା ନିଜର ଉତ୍ପତ୍ତିରେ, ସର୍ବାପେକ୍ଷା=ସବୁ ଆଶ୍ରମ କର୍ମକୁ ଅପେକ୍ଷା କରେ । ଯଜ୍ଞାଦିଶ୍ରୁତେଃ=କାରଣ- 'ବିବିଦିଷନ୍ତି ଯଜ୍ଞେନ ଇତ୍ୟାଦି ଶ୍ରୁତି ଦ୍ୱାରା ଯଜ୍ଞ ପ୍ରଭୃତିରେ ଜ୍ଞାନୋତ୍ପତ୍ତି ହେତୁତା ପ୍ରତିପାଦିତ ହୋଇଛି । ଅଶ୍ୱବତ୍=ଯେପରି ଅଶ୍ୱ ଯୋଗ୍ୟତାବଶ ରଥରେ ଯୋଗ କରାଯାଏ, ସେହିପରି କର୍ମ ମଧ ଯୋଗ୍ୟତା ଜ୍ଞାନୋତ୍ପତ୍ତିରେ ଅପେକ୍ଷିତ ହୁଏ, ମୋକ୍ଷରେ ନୁହେଁ ।

ମୂଳ-(କ) ଇଦମିଦାନୀଂ ଚିନ୍ତ୍ୟତେ-କିଂ ବିଦ୍ୟୟା ଅତ୍ୟନ୍ତ ମେବାନପେକ୍ଷାଽଽଶ୍ରମ-କର୍ମଣାମୁତାସ୍ତି କାଚିଦଂପକ୍ଷେତେ । ତତ୍ରାତ ଏବାଗ୍ନୀନ୍ଧନାଦୀନ୍ୟାଶ୍ରମକର୍ମାଣି ବିଦ୍ୟୟା ସ୍ୱାର୍ଥସିଦ୍ଧୌ ନାପେକ୍ଷ୍ୟନ୍ତେ । ଏବମତ୍ୟନ୍ତମେବାନପେକ୍ଷାୟାଂ ପ୍ରାପ୍ତାୟାମିଦମୁଚ୍ୟତେ-ସର୍ବାପେକ୍ଷା ଚେତି । ଅପେକ୍ଷତେ ଚ ବିଦ୍ୟା ସର୍ବାଣ୍ୟାଶ୍ରମକର୍ମାଣି ନାତ୍ୟନ୍ତ ମନପେକ୍ଷୈବ ।

(ଖ) ନନୁ ବିରୁଦ୍ଧମିଦଂ ବଚନମଂପେକ୍ଷତେ ଋଶ୍ରମକର୍ମାଣି ବିଦ୍ୟା ନାପେକ୍ଷତେଋେତି । ନେତି ବ୍ରୂମଃ-ଉତ୍ପନ୍ନାହି ବିଦ୍ୟା ଫଳସିଦ୍ଧିଂ ପ୍ରତି ନ କିଂଚଦନ୍ୟପେକ୍ଷତେ, ଉତ୍ପତ୍ତିଂ ପ୍ରତି ତ୍ୱପେକ୍ଷତେ । କୁତଃ ? ଯଜ୍ଞାଦିଶ୍ରୁତେଃ ତଥାହି ଶ୍ରୁତିଃ- 'ତମେତଂ ବେଦାନୁବଚନେନ ବ୍ରହ୍ମଣା ବିବିଦିଷନ୍ତି ଯଜ୍ଞେନ ଦାନେନ ତପସାଽନାଶକେନ' (ବୃହ ୪-୪-୨୨) ଇତି ଯଜ୍ଞାଦୀନାଂ ବିଦ୍ୟାସାଧନଭାବଂ ଦର୍ଶୟତି ।

(ଗ) ବିବିଦିଷାସଂଯୋଗଚ୍ଚୈଷାମୁତ୍ପତ୍ତିସାଧନଭାବୋଽବସୀୟତେ । 'ଅଥଯଦ୍ୟଜ୍ଞ ଇତ୍ୟାଚକ୍ଷତେ ବ୍ରହ୍ମଚର୍ଯ୍ୟମେବତତ୍' (ଛା ୮-୫-୧ ଇତ୍ୟତ୍ର ଚ ବିଦ୍ୟାସାଧନଭୂତସ୍ୟ ବ୍ରହ୍ମଚର୍ଯ୍ୟସ୍ୟ ଯଜ୍ଞାଦିଭିଃ ସଂସ୍ତବାଦ୍ୟଜ୍ଞାଦୀନାମପି ହି ସାଧନଭାବଃ ସୂଚ୍ୟତେ । 'ସର୍ବେ ବେଦାଃ ଯତ୍ପଦମାମନନ୍ତି ସର୍ବାଣି ଚ ଯଦ୍ବଦନ୍ତି । ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟାଂ ଚରନ୍ତି ତତ୍ତେ ପଦଂ ସଂଗ୍ରହେଣ ବ୍ରବୀମି' (କଂ ୨-୧୫) ଇତ୍ୟେବମାଦ୍ୟା ଚ ଶ୍ରୁତିରାଶ୍ରମକର୍ମଣାଂ ବିଦ୍ୟାସାଧନଭାବଂ ସୂଚୟତି ।

(ଘ) ସ୍ମୃତିରପି-କଷାୟପଂକ୍ତିଃ କର୍ମାଣି ଜ୍ଞାନଂ ତୁ ପରମା ଗତିଃ । କଷାୟେ କର୍ମଭିଃ ପକ୍ୱେ ତତୋ ଜ୍ଞାନଂ ପ୍ରବର୍ତ୍ତତେ । ଇତ୍ୟେବମାଦ୍ୟା । ଅଶ୍ୱବଦିତି ଯୋଗ୍ୟତାନିଦର୍ଶନମ୍ । ଯଥା ଚ ଯୋଗ୍ୟତାବଶେନାଶ୍ୱୋ ନ ଲାଙ୍ଗଳାକର୍ଷଣେ ଯୁଜ୍ୟତେ, ରଥଚର୍ଯ୍ୟାୟାଂ ତୁ ଯୁଜ୍ୟତେ । ଏବାଶ୍ରମକର୍ମାଣି ବିଦ୍ୟୟା ଫଳସିଦ୍ଧୌ ନାପେକ୍ଷ୍ୟନ୍ତେ, ଉତ୍ପତ୍ତୌ ଋକ୍ଷପକ୍ଷ୍ୟନ୍ତ ଇତି ।

ଭାଷା-(କ) ଏଠାରେ ବିଚାର କରାଯାଇଛି ଯେ- ବିଦ୍ୟା କ'ଣ ଆଶ୍ରମ ବିହିତ କର୍ମକୁ ଅପେକ୍ଷା କରେ ନାହିଁ, ଅଥବା କେତେକ ଅପେକ୍ଷା ହୁଏ କି ? ସେଠାରେ ଅଗ୍ନୀନ୍ଧନ ଯଜ୍ଞାଦି ଆଶ୍ରମକର୍ମର ବିଦ୍ୟାକୁ ନିଜର ଫଳସିଦ୍ଧିରେ ଅପେକ୍ଷା ନୁହେଁ । ଏହିପ୍ରକାର ଅତ୍ୟନ୍ତ ଅନପେକ୍ଷା ପ୍ରାପ୍ତ ହେବାରୁ ସେମାନେ କହନ୍ତି ଯେ- 'ସର୍ବାପେକ୍ଷା ଚ' ବିଦ୍ୟା ସମସ୍ତ ଆଶ୍ରମକର୍ମକୁ ଅପେକ୍ଷା କରନ୍ତି, ତାହାକୁ ଅନପେକ୍ଷା ହୁଏ ନାହିଁ ଅଥବା ଅତ୍ୟନ୍ତ ଅନପେକ୍ଷା ନୁହେଁ ।

(ଖ) ପରନ୍ତୁ ଏଠାରେ ଏକ ବିରୁଦ୍ଧ କଥା ଯେ- ବିଦ୍ୟା ଆଶ୍ରମକର୍ମକୁ ଅପେକ୍ଷା କରେ କି ଅପେକ୍ଷା କରେନାହିଁ ? ବିରୁଦ୍ଧ ନୁହେଁ ବୋଲି ଆମ୍ଭେ କହୁଁ । କାରଣ-ଉତ୍ପନ୍ନ ହୋଇଥିବା ବିଦ୍ୟା ଫଳସିଦ୍ଧି ନିମିତ୍ତ ଅନ୍ୟ କାହାକୁ ଅପେକ୍ଷା କରେ ନାହିଁ । କିନ୍ତୁ ନିଜର ଉତ୍ପତ୍ତି ପାଇଁ ଅପେକ୍ଷା କରେ । କିପରି ? କାରଣ-ଏଠାରେ ଯଜ୍ଞାଦି ଶ୍ରୁତି ଅଟେ । ଯେପରି 'ତମେତଂ' ବେଦାନୁବଚନେନ' (ଏହି ଆତ୍ମାକୁ ବ୍ରାହ୍ମଣ ଯଜ୍ଞ, ଦାନ ଓ ତପଦ୍ୱାରା ଜାଣିବାକୁ ଇଚ୍ଛାକରେ) ଏହି ଶ୍ରୁତି ଯଜ୍ଞ ପ୍ରଭୃତିକୁ ବିଦ୍ୟାର ସାଧନ ରୂପରେ ଦେଖାଏ ।

(ଗ) ବିବିଦିଷାର ସମ୍ବନ୍ଧରୁ ଏହି ଯଜ୍ଞାଦିରେ ବିଦ୍ୟାର ଉତ୍ପତ୍ତିର ପ୍ରତି ସାଧନତ୍ୱ ନିଶ୍ଚିତ କରାଯାଇଛି । 'ଅଥଂ ଯଦ୍ୟଜ୍ଞଃ' (ଏହି ଲୋକରେ ଯେଉଁ ଯଜ୍ଞ ପରମପୁରୁଷାର୍ଥର ସାଧନ କହନ୍ତି, ସେ ହିଁ ବ୍ରହ୍ମଚର୍ଯ୍ୟ) । ଏଠାରେ ବିଦ୍ୟାର ସାଧନଭୂତ ବ୍ରହ୍ମଚର୍ଯ୍ୟର ଯଜ୍ଞାଦ୍ୱାରା ସ୍ତୁତି ହେବାରୁ ଯଜ୍ଞାଦି ପ୍ରଭୃତି ବିଦ୍ୟାପାଇଁ ସାଧନ ହୁଏ ବୋଲି ସୂଚିତ ହୋଇଛି । 'ସର୍ବେ ବେଦାଃ' (ସବୁବେଦ ଯେଉଁ ପଦକୁ ବର୍ଣ୍ଣନା କରନ୍ତି, ସମସ୍ତ ତପକୁ ଯାହାର ପ୍ରାପ୍ତି ପାଇଁ କୁହନ୍ତି, ଯାହାର ଇଚ୍ଛାଦ୍ୱାରା ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ସେହିପଦକୁ ମୁଁ ସଂକ୍ଷେପରେ ତୁମ୍ଭଙ୍କୁ କହୁଅଛି) ଇତ୍ୟାଦି ଶ୍ରୁତି ଆଶ୍ରମକର୍ମରେ ବିଦ୍ୟା ପ୍ରତି ସାଧନଭାବ ସୂଚିତ କରେ ।

(ଘ) 'କଷାୟପଂକ୍ତି' (କାମ, ରାଗ, ଦ୍ୱେଷାଦି ପାପକୁ ନିବୃତ୍ତ କରନ୍ତି । ଜ୍ଞାନ କିନ୍ତୁ ପରମଗତି ମୋକ୍ଷସାଧନ କରନ୍ତି । କର୍ମରୁ ପାପ ବିନାଶ ହେଲେ ଜ୍ଞାନ ପ୍ରବୃତ୍ତ ହୁଏ) ଇତ୍ୟାଦି ସ୍ମୃତି ମଧ୍ୟ ଅଛି । 'ଅଶ୍ୱର ପର' ଏହା ଯୋଗ୍ୟତା ବିଷୟକ ଦୃଷ୍ଟାନ୍ତ ଅଟେ । ଯେପରି ଯୋଗ୍ୟତାବଶ ଅଶ୍ୱ ହଳ ହଳ କରିବାରେ ଯୋଗ୍ୟ ନୁହଁନ୍ତି; କିନ୍ତୁ ରଥ ଭିଡ଼ିବାରେ ନିଯୁକ୍ତ କରାଯା'ନ୍ତି । ସେହିପରି ଆଶ୍ରମ କର୍ମ ବିଦ୍ୟାରେ ଫଳସିଦ୍ଧିରେ ଅପେକ୍ଷିତ ନୁହେଁ; କିନ୍ତୁ ତାହାର ଉତ୍ପତ୍ତିରେ ଅପେକ୍ଷିତ ଅଟେ ।୨୬।

**शमदमाद्युपेत: स्यात्तथापि तु तद्विधेस्तदङ्गतया तेषाम**

**वश्यानुष्टेयत्वात् ॥ ३-४-२७ ॥**

**ଶମଦମାହ୍ୟୁପେତଃ ସ୍ୟାତ୍ତଥାପି ତୁ ତଦ୍‌ବିଧେସ୍ତଦଙ୍ଗତୟା**

**ତେଷାମବଶ୍ୟାନୁଷ୍ଠେୟତ୍ୱାତ୍ ।।୩-୪-୨୭।।**



ଯଦ୍ୟପି 'ବିବିଦିଷନ୍ତି' ଇତ୍ୟାଦିରେ ବର୍ତ୍ତମାନ କାଳର ପ୍ରୟୋଗ ହେବାରୁ ବିଧି ନୁହେଁ, ତଥାପି=ତଥାପି ବ୍ରହ୍ମବିଦ୍ୟାର ଅଭିଳାଷକୁ 'ଶମଦମାଦ୍ୟୁପେତଃ ସ୍ୟାତ୍ = ଶମ ଦମାଦିଦ୍ୱାରା ଯୁକ୍ତ ହେବା ଉଚିତ୍; କାରଣ-ତଦଙ୍ଗତୟା = ବିଦ୍ୟାର ଅଙ୍ଗ ରୂପରେ ତଦ୍‌ବିଧେଃ=ତସ୍ମାଦେବଂବିତ୍, 'ଇତ୍ୟାଦି ଶ୍ରୁତିଦ୍ୱାରା', ତେଷାମ୍ = ଶମାଦିର ବିଧାନ ହୁଏ ଏବଂ ବିହିତ ହେବାରୁ 'ଅବଶ୍ୟାନୁଷ୍ଠେୟତ୍ୱାତ୍=ସେମାନେ ଅବଶ୍ୟ ଅନୁଷ୍ଠେୟ ଅଟନ୍ତି ।

ମୂଳ-(କ) ଯଦି କଶ୍ଚିନ୍ ମନ୍ୟେତ-ଯଜ୍ଞାଦୀନାଂ ବିଦ୍ୟା ସାଧନ ଭାବୋ ନ ନ୍ୟାୟଃ, ବିଧ୍ୟଭାବାତ୍ । 'ଯଜ୍ଞେନ ବିବିଦିଷନ୍ତି' ଇତ୍ୟେବଂ ଜାତୀୟକାହି ଶ୍ରୁତିରନୁବାଦ ସ୍ୱରୂପା ବିଦ୍ୟାଭିଷ୍ଟବପରା, ନ ଯଜ୍ଞାଦବିଧିପରା - ଇତ୍ଥଂ ମହାଭାଗା ବିଦ୍ୟା ଯଦ୍ୟଜ୍ଞାଦିଭିରେତାମବାପ୍ତୁ ମିଚ୍ଛନ୍ତିତି । ତଥାପି ତୁ ଶମଦମାଦ୍ୟୁପେତଃ ସ୍ୟାଦ୍‌ବିଦ୍ୟାର୍ଥୀ ତସ୍ମାଦେବଂବିଚ୍ଛାନ୍ତୋ ଦାନ୍ତ ଉପରତସ୍ତିତିକ୍ଷୁ ସମାହିତୋ ଭୂତ୍ୱାତ୍ମନ୍ୟେ ବାତ୍ମାନଂ ପଶ୍ୟତି' (ବୃହ ୪-୪-୨୩) ଇତି ବିଦ୍ୟା ସାଧନତ୍ୱେନ ଶମଦମାଦୀନାଂ ବିଧାନାଦ୍ ବିହିତାନାଂ ଚାବଶ୍ୟାନୁଷ୍ଠେୟତ୍ୱାତ୍ ।

(ଖ) ନନ୍ୱତ୍ରାପି ଶମାଦ୍ୟୁପେତୋ ଭୂତ୍ୱା ପଶ୍ୟାମୀତି ବର୍ତ୍ତମାନାପଦେଶ ଉପଲଭ୍ୟତେ ନ ବିଧିଃ, ନେତି ବ୍ରୂମଃ, ତସ୍ମାଦିତି ପ୍ରକୃତ ପ୍ରଶଂସା ପରିଗ୍ରହାଦ୍ ବିଧିତ୍ୱ ପ୍ରତୀତେଃ । ପଶ୍ୟେଦିତି ଚ ମାଧ୍ୟନ୍ଦିନାଃ ବିସ୍ପଷ୍ଟମେବ ବିଧିମଧୀୟତେ । ତସ୍ମାଦ୍ୟଜ୍ଞଦ୍ୟନ-ପେକ୍ଷାୟାମପି ଶମାଦୀନ୍ୟପେକ୍ଷିତବ୍ୟାନି । ଯଜ୍ଞାଦୀନ୍ୟପି ତ୍ୱପେକ୍ଷିତବ୍ୟାନୀତି ଯଜ୍ଞାଦିଶ୍ରୁତେରେବ ।

ଭାଷା-(କ) ଯଦି କୌଣସି ଲୋକ କହେ ଯେ- ଯଜ୍ଞ ପ୍ରଭୃତିରେ ବିଦ୍ୟାକୁ ସାଧନଭାବ ଉଚିତ୍ ନୁହେଁ, କାରଣ-ବିଧିର ଅଭାବ ଅଟେ । 'ଯଜ୍ଞେନ ବିବିଦିଷନ୍ତି' (ଯଜ୍ଞ ଦ୍ୱାରା ଜାଣିବାକୁ ଇଚ୍ଛା କରେ) ଏହି ପ୍ରକାର ଶ୍ରୁତି ଅନୁବାଦ ସ୍ୱରୂପ ଅଟେ । ତେଣୁ ସେହି ବିଦ୍ୟା ସ୍ତୁତିପରକ; କିନ୍ତୁ ଯଜ୍ଞାଦି ବିଧିପରକ ନୁହେଁ । ଏହି ମହାଭାଗା ବିଦ୍ୟା ଅଟେ, ବୋଲି ମୁମୁକ୍ଷୁ ଲୋକ ସେହି ଯଜ୍ଞାଦିରେ କିଛି ପ୍ରାପ୍ତ ହୁଅନ୍ତି । ଯଦି ଏହା ହୁଏ, ତଥାପି ବିଦ୍ୟାର୍ଥୀମାନଙ୍କୁ ଶମ, ଦମାଦି ଦ୍ୱାରା ଯୁକ୍ତ ହେବା ଉଚିତ୍; କାରଣ- 'ତସ୍ମାଦେବଂ ବିଚ୍ଛାନ୍ତୋ' (ତେଣୁ ଏହି ପ୍ରକାର ଜାଣିଥିବା ପୁରୁଷ ଶାନ୍ତ, ଦାନ୍ତ ଉପରତ, ତିତିକ୍ଷୁ ଏବଂ ସମାହିତ ହୋଇ ଆତ୍ମାଠାରେ କାର୍ଯ୍ୟକରଣ ସଂଘାତ ରୂପରେ ଆତ୍ମାକୁ ଦେଖେ) ଏହି ପ୍ରକାର ଶମ, ଦମାଦିର ବିଦ୍ୟାପ୍ରତି ସାଧନ ରୂପରେ ବିଧାନ ହୁଏ ଏବଂ ବିହିତ ହେଲେ ଶମ, ଦମାଦି ଅନୁଷ୍ଠେୟ ହୁଅନ୍ତି ।

(ଖ) ପରନ୍ତୁ ଏଠାରେ ଶମ, ଦମାଦି ଯୁକ୍ତ ହୋଇ ଅନୁଭବ କରେ, 'ପଶ୍ୟତି' ଏହି ବର୍ତ୍ତମାନ କାଳର ପ୍ରୟୋଗ ଉପଲବ୍ଧ ହୁଏ; କିନ୍ତୁ ବିଧି ଉପଲବ୍ଧ-ହୁଏ ନାହିଁ କି ? ଆମ୍ଭେ କହୁଁ-ଏଠାରେ ଉପଲବ୍ଧ ହୁଏ ନାହିଁ, କାରଣ-'ତସ୍ମାତ୍' ଏହି ଶ୍ରୁତିର ପଦରୁ ପ୍ରକୃତ ବ୍ରହ୍ମବିଦ୍ୟାର ପ୍ରଶଂସା କରାଯିବା ଦ୍ୱାରା ଏହି ବିଧି ପ୍ରତୀତ ହୁଏ ।

ମାଧ୍ୟନ୍ଦିନଶାଖା 'ପଶ୍ୟେତ୍' ଏହି ପ୍ରକାର ସ୍ପଷ୍ଟ ରୂପରେ ବିଧିର ଅଧ୍ୟୟନ କରନ୍ତି । ତେଣୁ ଯଜ୍ଞକୁ ଅପେକ୍ଷା ନ କରି ଶମ ପ୍ରଭୃତିକୁ ଅପେକ୍ଷା କରିବା ଉଚିତ୍ । କିନ୍ତୁ ଯଜ୍ଞ ପ୍ରଭୃତିକୁ ଅପେକ୍ଷା କରିବା ଉଚିତ୍, କାରଣ-ଯଜ୍ଞ ପ୍ରଭୃତି ଶ୍ରୁତି ଅଟେ ।

ମୂଳ-(କ) ନନୂକ୍ତଂ-ଯଜ୍ଞାଦିଭିର୍ବିବିଦିଷନ୍ତୀତ୍ୟତ୍ର ନ ବିଧିରୂପଲଭ୍ୟତ ଇତି-ସତ୍ୟମୁକ୍ତମ, ତଥାପି ତ୍ୱପୂର୍ବତ୍ୱାତ୍ ସଂଯୋଗସ୍ୟ ବିଧିଃ ପରିକଳ୍ପ୍ୟତେ । ନ ହ୍ୟୟଂ ଯଜ୍ଞାଦୀନାଂ ବିବିଦିଷା ସଂଯୋଗଃ ପୂର୍ବଂ ପ୍ରାପ୍ତୋ ଯେନାନୂଦ୍ୟେତ । 'ତସ୍ମାତ୍ ପୂଷା ପ୍ରପିଷ୍ଟ ଭାଗୋଽଦନ୍ତକୋ ହି' 'ଇତ୍ୟେବମାଦିଷୁ ଘଶ୍ରୁତବିଧିକେଷ୍ୱପି ବାକ୍ୟେଷୁ ପୂର୍ବତ୍ୱାତ୍ ବିଧିଂ ପରିକଳ୍ପ୍ୟ, ପୌଷଣଂ ପେଷଣଂ ବିକୃତୌ ପ୍ରତ୍ୟୟେତେତ୍ୟାଦି ବିଚାରଃ ପ୍ରଥମେ ତନ୍ତ୍ରେ ପ୍ରବର୍ତ୍ତିତଃ । ତଥା ଚୋକ୍ତମ୍ ବିଧିର୍ବା ଧାରଣବତ୍' (ବ୍ର. ସୂ. ୩-୪-୨୦) ଇତି ।

(ଖ) ସ୍ମୃତିଷ୍ୱପି ଭଗବଦ୍ ଗୀତାଦ୍ୟାସ୍ୱବଭିସଂଧାୟ ଫଳମନୁଷ୍ଠିତାନି ଯଜ୍ଞାଦୀନି ମୁମୁକ୍ଷୋର୍ଜ୍ଞାନ ସାଧନାଦି ଭବନ୍ତୀତି ପ୍ରପଞ୍ଚିତମ୍' ତସ୍ମାଦ୍ୟଜ୍ଞାଦୀନି ଶମଦମାଦୀନି ଚ ଯଥାଶ୍ରମଂ ସର୍ବାଣ୍ୟେବା ଶ୍ରମକର୍ମାଣି ବିଦ୍ୟୋତ୍ପତ୍ତାବପେକ୍ଷିତବ୍ୟାନି । ତତ୍ରାପ୍ୟେବଂ ବିଦିତ ବିଦ୍ୟା ସଂଯୋଗାତ୍ ପ୍ରତ୍ୟାସନ୍ନାନି ବିଦ୍ୟାସାଧନାନି ଶମାଦୀନି, ବିବିଦିଷ ସଂଯୋଗାତ୍ତୁ ବାହ୍ୟତରାଣି ଯଜ୍ଞାଦୀନୀତି ବିବେକ୍ତବ୍ୟମ୍ ।

ଭାଷା-(କ) ପରନ୍ତୁ ଏଠାରେ କୁହାଯାଇଛି- 'ଯଜ୍ଞାଦିଦ୍ୱାରା ଜାଣିବାକୁ ଇଚ୍ଛା କରନ୍ତି'- ଏଠାରେ ବିଧି ଉପଲବ୍ଧ ହୁଏ ନାହିଁ । ଏହା ଠିକ୍ ! ତଥାପି ସଂଯୋଗ ସମ୍ବନ୍ଧରୁ ଅପୂର୍ବଦ୍ୱାରା ବିଧିର କଳ୍ପନା କରାଯାଏ । କାରଣ-ଯଜ୍ଞ ପ୍ରଭୃତିର ବିବିଦିଷା ସହ ଏହି ସମ୍ବନ୍ଧ ପ୍ରଥମେ କୌଣସି ଅନ୍ୟ ପ୍ରମାଣ ଦ୍ୱାରା ପ୍ରାପ୍ତ ହୁଏ ନାହିଁ, ଯେପରିକି ଏହାର ଅନୁବାଦ ସ୍ୱୀକାର କରାଯାଇଛି । 'ତସ୍ମାତ୍ ପୁଷା' (ଏହି ପୁଷା ଦେବତାର ଉଦ୍ଦେଶ୍ୟରୁ ଭଲଭାବରେ ପିଷ୍ଟକୁ ଭାଗ କରିବା ଉଚିତ୍ । କାରଣ-ସେ ଦନ୍ତବିହୀନ ଅଟେ) ଇତ୍ୟାଦି ଅଶ୍ରୁତି ବେଦ ବାକ୍ୟରେ ଅପୂର୍ବ ହେବାରୁ ବିଧିର କଳ୍ପନା କରି ପୁଷା ସମ୍ବନ୍ଧୀ ପେଷଣ-ପିଷ୍ଟଭାଗ ବିକୃତି ଯାଗରେ ଜାଣିବା ଉଚିତ୍) ଇତ୍ୟାଦି ବିଚାର କରି ପୂର୍ବମୀମାଂସା ଶାସ୍ତ୍ରରେ ପ୍ରବୃତ୍ତ କରାଯାଇଛି । ସେହିପରି 'ବିଧିର୍ବା ଧାରଣବତ୍' ଏହି ସୂତ୍ରରେ ସୂତ୍ରକାର କହିଛନ୍ତି ।

(ଖ) ଭଗବତ୍ ଗୀତା ପ୍ରଭୃତି ସ୍ମୃତିରେ ଫଳର ଅନୁସନ୍ଧାନ ବିନା ଅନୁଷ୍ଠିତ ଯଜ୍ଞାଦିକର୍ମ ମୁମୁକ୍ଷୁ ପାଇଁ ଜ୍ଞାନସାଧନ ହୁଅନ୍ତି ବୋଲି ବିସ୍ତାର ରୂପରେ କୁହାଯାଇଛି; ତେଣୁ ଆଶ୍ରମର ଅନୁସାରେ ଯଜ୍ଞାଦି ଏବଂ ଶମଦମାଦି ସମସ୍ତ ଆଶାକର୍ମ ବିଦ୍ୟାର ଉତ୍ପତ୍ତିରେ ଅପେକ୍ଷିତବ୍ୟ ହୁଅନ୍ତି । ସେଠାରେ ମଧ୍ୟ 'ଏବଂବିତ୍' ଏହି ପ୍ରକାର ବିଦ୍ୟାସହ ସମ୍ବନ୍ଧ ହେବାରୁ ଶମ ପ୍ରଭୃତି ବିଦ୍ୟାର ଅନ୍ତରଙ୍ଗ ସାଧନ ହୁଏ ଏବଂ ବିବିଦିଷା ସମ୍ବନ୍ଧରୁ ଯଜ୍ଞ ପ୍ରଭୃତି କର୍ମ ଓ ବହିରଙ୍ଗ ସାଧନ ଅଟନ୍ତି ବୋଲି ଭେଦ ଜାଣିବା ଉଚିତ୍ ॥୨୭॥



## ७-सर्वान्नानुमत्याधिकरणम् ॥ सू. २८-३१ ॥

## ୭-ସର୍ବାନ୍ନାନୁମତ୍ୟାଧିକରଣମ୍ ॥ସ. ୨୮-୩୧॥

### सर्वान्नानुमितिश्च प्राणात्यये तद्दर्शनात् ॥ ३-४-२८ ॥

### ସର୍ବାନ୍ନାନୁମିତିଶ୍ଚ ପ୍ରାଣାତ୍ୟୟେ ତଦ୍ଦର୍ଶନାତ୍ ॥୩-୪-୨୮॥

ପ୍ରାଣାତ୍ୟୟେ= 'ନ ହ ବାଽସ୍ୟ' ଇତ୍ୟାଦିରୁ ପ୍ରାଣ ନିର୍ଗମନ କାଳରେ ସର୍ବାନ୍ନାନୁମତିଃ=ସର୍ବାନ୍ନଭକ୍ଷଣର ଅନୁଜ୍ଞା ହୁଏ । ତଦ୍ଦର୍ଶନାତ୍=କାରଣ-ତାହାକୁ 'ମଟଚୀ ହତେଷ୍ଟୁ କୁରୁଷ' ଇତ୍ୟାଦି ଶ୍ରୁତି ଦେଖାଯାଏ ॥

ମୂଳ-(କ) ପ୍ରାଣ ସମ୍ବାଦେ ଶ୍ରୂୟତେ ଛନ୍ଦୋଗାନାମ୍ ନ ହ ବା ଏବଂବିଦି କିଞ୍ଚିବାନ୍ନଂ ଭବତି' (ଛା ୫-୨-୧) ଇତି । ତଥା ବାଜସନେୟିନାମ୍-ନ ହ ବା ଅସ୍ୟାନନ୍ନଂ ଦଗ୍ଧଂ ଭବତି ନାନନ୍ନଂ ପ୍ରତିଗହୀତମ୍' (ବୃହ ୬-୧-୧୪) ଇତି । ସର୍ବମସ୍ୟାଦନୀୟମେବ ଭବତୀତ୍ୟର୍ଥଃ । କିମିଦଂ ସର୍ବାନ୍ନାନୁଜ୍ଞାନଂ ଶମାଦିବଦ୍ ବିଦ୍ୟାଙ୍ଗମ୍ ବିଧୀୟତେ । ଉତ ସ୍ତୁତ୍ୟର୍ଥଂ ସଙ୍କୀର୍ତ୍ତ୍ୟତ ଇତି ସଂଶୟେ-ବିଧିରିତି ତାବତ୍ ପ୍ରାପ୍ତମ୍ ।

(ଖ) ତଥାହି ପ୍ରବୃତ୍ତି ବିଶେଷକର ଉପଦେଶୋ ଭବତି, ଅତଃ ପ୍ରାଣବିଦ୍ୟାସଂନିଧାନାତ୍ତଦଙ୍ଗତ୍ୱେନେୟଂ ନିୟମ ନିବୃତ୍ତି ରୂପଦିଶ୍ୟତେ । ନନ୍ୱେବଂ ସତି ଭକ୍ଷ୍ୟା ଭକ୍ଷ୍ୟ ବିଭାଗ ଶାସ୍ତ୍ର ବିଘାତଃ ସ୍ୟାତ୍-ନୈଷ ଦୋଷଃ, ସାମାନ୍ୟବିଶେଷ ଭାବାଦ୍ ବୋଧୋ ପପତ୍ତେଃ । ଯଥା ପ୍ରାଣିହିଂସା ପ୍ରତିଷେଧସ୍ୟ ପଶୁ ସଂଜ୍ଞପନବିଧିନାଂ ବାଧଃ ।

(ଗ) ଯଥା ଚ 'ନ କାଂଚନ ସ୍ତ୍ରିୟଂ ପରିହରେତ୍ତଦ୍ବ୍ରତମ୍' (ଛା ୨-୧୩-୨) ଇତ୍ୟନେନ ବାମଦେବ୍ୟ ବିଦ୍ୟା ବିଷୟେଣ ସର୍ବସ୍ତ୍ରୀ ପରିହାରବଚନେନ ତତ୍ ସାମାନ୍ୟ ବିଷୟଂ ଗମ୍ୟାଗମ୍ୟ ବିଭାଗ ଶାସ୍ତ୍ରଂ ବାଧତେ । ଏବମନେନାପି ପ୍ରାଣବିଦ୍ୟା ବିଷୟେଣ ସର୍ବାନ୍ନ ଭକ୍ଷଣ ବଚନେନ ଭକ୍ଷ୍ୟାଭକ୍ଷ୍ୟ ବିଭାଗ ଶାସ୍ତ୍ରଂ ବାଧେତେତି ॥

ଭାଷା-(କ) ଛାନ୍ଦୋଗ୍ୟର ପ୍ରାଣ ସମ୍ବାଦରେ 'ନ ହ ବା' (ଯଥୋକ୍ତ ପ୍ରାଣକୁ ଜାଣିଥିବା ପୁରୁଷକୁ ଯିଏ ଜାଣେ, ଯେ-ମୁଁ ସମସ୍ତ ଭୂତରେ ରହି ସବୁ ଅନ୍ନର ଭୋକ୍ତା ଅଟେ । କିନ୍ତୁ ଅଭକ୍ଷ୍ୟ ନୁହେଁ) ଏହା ଶ୍ରୁତି ଅଟେ । ସେହିପରି ବାଜସନେୟିର ପ୍ରାଣ ସମ୍ବାଦରେ 'ନ ହ ବାସ୍ୟ' (ଯିଏ ସେହି ପ୍ରାଣର ଅନ୍ନକୁ ଜାଣେ, ତାହାଦ୍ୱାରା ଅଭକ୍ଷ୍ୟ ଭକ୍ଷଣ ହୁଏ ନାହିଁ ଏବଂ ଅଭକ୍ଷ୍ୟ ସଂଗ୍ରହ କରେ ନାହିଁ) ଏହି ଶ୍ରୁତି ଅଟେ । ତାହାର ସବୁ ଅଭକ୍ଷଣୀୟ ହୁଏ ବୋଲି ଅର୍ଥ କରାଯାଏ । ଏହା ସର୍ବାନ୍ନ ଭକ୍ଷଣର ଅନୁଜ୍ଞା ଶମ ପରି ବିଦ୍ୟାର ଅଙ୍ଗ ରୂପରେ ବିଧାନ ହୁଏ କି ବିଦ୍ୟାର ସ୍ତୁତି ପାଇଁ ସଙ୍କୀର୍ତ୍ତନ କରାଯାଏ ? ଏହି ପ୍ରକାର ସଂଶୟ ହେବାରୁ ବିଧି ହୁଏ ବୋଲି ପୂର୍ବପକ୍ଷ କହନ୍ତି ।

(ଖ) କାରଣ-ବିଶେଷ ପ୍ରବୃତ୍ତିକାରୀ ଉପଦେଶ ହୁଏ । ତେଣୁ ପ୍ରାଣବିଦ୍ୟାର ସନ୍ନିଧାନରୁ ବିଦ୍ୟାର ଅଙ୍ଗ ରୂପରେ ଏହି ନିୟମ ନିବୃତ୍ତି ଉପଦେଶ କରାଯାଏ । କିନ୍ତୁ

ଏହା ହେଲେ ଭକ୍ଷ୍ୟ ଓ ଅଭକ୍ଷ୍ୟକୁ ବିଭାଗ କରୁଥିବା ଶାସ୍ତ୍ରର ବ୍ୟାଘାତ ହେବ କି ? ନୁହେଁ । କାରଣ-ସାମାନ୍ୟ ଓ ବିଶେଷ ଭାବରେ ବାଧ ଉପପନ୍ନ ହେବ । ଯେପରି ଯେ ପର୍ଯ୍ୟନ୍ତ ପ୍ରାଣହିଂସା ପ୍ରତିଷେଧକ ଶାସ୍ତ୍ରର ପଶୁହିଂସା ବୋଧକ ବିଧିରେ ବାଧ ହୁଏ ।

(ଗ) 'ନ କାଞ୍ଚନ' (କୌଣସି ସ୍ତ୍ରୀକୁ ପରିତ୍ୟାଗ କରିବା ଉଚିତ୍ ନୁହେଁ-ଏହା ହିଁ ବ୍ରତ ଅଟେ) ଏହି ବାମ ଦେବବିଦ୍ୟା ବିଷୟକ ସର୍ବସ୍ତ୍ରୀ ଅପରିତ୍ୟାଗ ବଚନରୁ ସେହି ସାମାନ୍ୟ ବିଷୟକ ଗମ୍ୟ ଓ ଅଗମ୍ୟ ବିଭାଗ ଶାସ୍ତ୍ରର ବାଧ ହୁଏ । ସେହିପରି ଏହି ପ୍ରାଣବିଦ୍ୟା ବିଷୟକ ସର୍ବାନ୍ନ ଭକ୍ଷଣ ବଚନରୁ ଭକ୍ଷ୍ୟ ଓ ଅଭକ୍ଷ୍ୟ ବିଭାଗଶାସ୍ତ୍ର ବାଧିତ ହେବା ଉଚିତ୍ ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ ଏନଦଂ ସର୍ବାନ୍ନାନୁଜ୍ଞାନଂ ବିଧୀୟତ ଇତି । ନ ହ୍ୟତ୍ର ବିଧାୟକଃ ଶବ୍ଦ ଉପଲଭ୍ୟତେ, 'ନ ହ ବା ଏବଂବିଦ କିଂଚନାନନ୍ନଂ, ଭବତି' (ଛା ୫-୨-୧) ଇତି ବର୍ତ୍ତମାନାପଦେଶାତ୍ । ନ ଚାସତ୍ୟାମପି ବିଧିପ୍ରତୀତେ ପ୍ରବୃତ୍ତି ବିଶେଷ କରତ୍ୱ ଲୋଭେନୈବ ବିଧିରଭ୍ୟୁପଗନ୍ତୁ ଶକ୍ୟତେ । ଅପି ଚ ଶ୍ୱାଦିମର୍ଯ୍ୟାଦଂ ପ୍ରାଣସ୍ୟାନ୍ନମିତ୍ୟୁ-କ୍ତ୍ୱେଦମୁଚ୍ୟତେ 'ନୈବଂ ବିଦଃ କିଞ୍ଚିଦନନ୍ନଂ ଭବତି' ଇତି ।

(ଖ) ନ ଚ ଶ୍ୱାଦିମର୍ଯ୍ୟାଦମନ୍ନଂ ମାନୁଷେଣ ଦେହେନୋପଭୋକ୍ତୁଂ ଶକ୍ୟତେ । ଶକ୍ୟତେ ତୁ ପ୍ରାଣସ୍ୟାନ୍ନମିଦଂ ସର୍ବମିତି ବିଚିନ୍ତୟିତୁମ୍ । ତସ୍ମାତ୍ ପ୍ରାଣାନ୍ନ ବିଜ୍ଞାନ ପ୍ରଶଂସା-ର୍ଥୋଽୟମର୍ଥବାଦୋ ନ ସର୍ବାନ୍ନାନୁଜ୍ଞାନ ବିଧିଃ । ତଦ୍ଦର୍ଶୟତି ସର୍ବାନ୍ନାନୁ ମତିଷ୍ଟ ପ୍ରାଣାତାୟେ ଇତି ।

(ଗ) ଏତଦୁକ୍ତଂ ଭବତି-ପ୍ରାଣାତ୍ୟୟ ଏବ ହି ପରସ୍ୟାମାପଦି ସର୍ବମନ୍ନ ମଦନୀୟ-ତ୍ୱେନାଭ୍ୟନୁଜ୍ଞାୟତେ ତଦ୍ଦର୍ଶନାତ୍ । ତଥାହି-ଶ୍ରୁତିଶ୍ଚାକ୍ରାୟଣସ୍ୟର୍ଷେଃ କାଷ୍ଟାୟାମବସ୍ଥାୟାମଭକ୍ଷ୍ୟ ଭକ୍ଷଣେ ପ୍ରବୃତ୍ତିଂ ଦର୍ଶୟତି-'ମଟଚୀହତେଷ୍ୱ କୁରୁଷ୍ୱ' (ଛା ୧-୧୦-୧) ଇତ୍ୟସ୍ମିନ୍ ବ୍ରାହ୍ମଣେ ।

(ଘ) ଚାକ୍ରାୟଣଃ କିଲର୍ଷିରାପଦ୍‌ଗତ ଇଭ୍ୟେନ ସାମିଖାଦିତାନ୍ କୁଲ୍ମାଷାଂଶ୍ଚ ଖାଦ । ଅନୁପାନଂ ତୁ ତଦୀୟ ମୁଚ୍ଛିଷ୍ଟ ଦୋଷାତ୍ ପ୍ରତ୍ୟାଚଚକ୍ଷେ । କାରଣଂ ଚାତ୍ରୋବାଚ 'ନ ବା ଅଜୀବିଷ୍ୟମିମାନ ଖାଦନ୍' (ଛା ୧-୧୦-୪) ଇତି, 'କାମୋ ମ ଉଦପାନମ୍' (ଛା ୧-୧୦-୪) ଇତି ଚ । ପୁନଶ୍ଚୋତ୍ତରେଦ୍ୟୁସ୍ତାନେବ ସ୍ୱପରୋଚ୍ଛିଷ୍ଟାନ୍ କୁଲ୍ମାଷାନ୍ ଭକ୍ଷୟାଂବଭୂବେତି ।

(ଙ) ତଦେତଦୁଚ୍ଛିଷ୍ଟୋ ଚ୍ଛିଷ୍ଟପର୍ଯ୍ୟୁଷିତ ଭକ୍ଷଣଂ ଦର୍ଶୟନ୍ତ୍ୟାଃ ଶ୍ରୁତେରାଶୟାତିଶୟୋ ଲକ୍ଷ୍ୟତେ-ପ୍ରାଣାତ ୟ ପ୍ରସଙ୍ଗେ ପ୍ରାଣସଂଧାରଣାୟା ଭକ୍ଷ୍ୟମପିଭକ୍ଷୟିତବ୍ୟମିତି । ଶ୍ୱସ୍ଥାବସ୍ଥାୟାଂ ତୁ ତନ୍ନ କର୍ତ୍ତବ୍ୟଂ ବିଦାବତା ପୀତାନୁପାନ ପ୍ରତାଖ୍ୟାନାଦ୍ ଗମ୍ୟତେ । ତସ୍ମାଦର୍ଥବାଦୋ 'ନ ହ ବା ଏବଂ ବିଦି' (ଛା ୫-୨-୧) ଇତ୍ୟେବମାଦିଃ ॥



ଭାଷା-ସିଦ୍ଧାନ୍ତ- (କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ-ଏହି ସର୍ବାନ୍ନ ଅନୁଜ୍ଞାନର ବିଧି ହୁଏ ନାହିଁ । କାରଣ-ଏଠାରେ ବିଧାୟକ ଶବ୍ଦ ଉପଲବ୍‌ଧ ହୁଏ ନାହିଁ । 'ନ ହ ବା' (ପ୍ରାଣୋପାସକ ପାଇଁ କିଛି ଅଭକ୍ଷ୍ୟ ନାହିଁ) ଏହିପରି ବର୍ତ୍ତମାନ ଉପଦେଶ ହୁଏ । ଏଠାରେ ବିଧି ପ୍ରତୀତ ନ ହେଲେ ମଧ୍ୟ ପ୍ରବୃତ୍ତି ବିଶେଷକତ୍ୱର ଲୋଭରେ ବିଧି ସ୍ୱୀକାର କରାଯାଏ ନାହିଁ । ଶ୍ୱାନାଦି ପର୍ଯ୍ୟନ୍ତ ପ୍ରାଣ ଅନ୍ନ ଅଟେ, ଏହା କହି 'ନୈବଂବିଦଃ' (ଏହାକୁ ଜାଣିଥିବା ପ୍ରାଣୋପସକର କିଛି ଅଭକ୍ଷ୍ୟ ନାହିଁ) ଏହି ପ୍ରକାର କୁହାଯାଇଅଛି ।

(ଖ) ଶ୍ୱାନାଦି ପର୍ଯ୍ୟନ୍ତ ଅନ୍ନର ମନୁଷ୍ୟ ଦେହରେ ଉପଭୋଗ କରାଯାଏ ନାହିଁ; ପରନ୍ତୁ ଏହିସବୁ ପ୍ରାଣର ଅନ୍ନ ଅଟେ । ଏହି ଚିନ୍ତନ ବା ଧ୍ୟାନ କରାଯାଏ । ତେଣୁ ପ୍ରାଣାନ୍ନ ବିଜ୍ଞାନର ପ୍ରଶଂସା ପାଇଁ ଏହାହିଁ ଅର୍ଥବାଦ । କିନ୍ତୁ ସର୍ବାନ୍ନ ଭକ୍ଷଣର ଅନୁଜ୍ଞା ବିଧି ନୁହେଁ । ତାହାକୁ 'ସର୍ବନ୍ନାନୁମତିଶ୍ଚ ପ୍ରାଣାତ୍ୟୟେ' ଏହି ସୂତ୍ରରେ ଦେଖାଇ ଦିଆଯାଇଛି ।

(ଗ) କିନ୍ତୁ ତାତ୍ପର୍ଯ୍ୟ ଏହିକି ଯେ- ପ୍ରାଣ ବିନାଶ ହେଲା ପରେ ମହତୀ ଆପତ୍ତିରେ ସର୍ବାନ୍ନ ଭକ୍ଷଣ ରୂପରେ ଅନୁଜ୍ଞା ଦିଆଯାଇଛି । କାରଣ-ତାହା ଶ୍ରୁତିରେ ଦେଖାଯାଏ । ଯେପରିକି 'ମଟଚୀହତେଷ୍ଟୁ କୁରୁଷ୍ଟୁ' (ଶଲଭ କୁରୁଦେଶ କ୍ଷେତ୍ରସ୍ଥ ଅନ୍ନକୁ ବିନାଶ କରି) ଏହି ବ୍ରାହ୍ମଣରେ ଶ୍ରୁତି ଋକ୍ରାୟଣ ଋଷିଙ୍କର କଷ୍ଟାବସ୍ଥାରେ ଅଭକ୍ଷ୍ୟ ଭକ୍ଷଣରେ ପ୍ରବୃତ୍ତି ଦେଖାଯାଏ । ଏଠାରେ ବୃତ୍ତି ହୁଏ ଯେ- ଆପଦଗ୍ରସ୍ତ ଋକ୍ରାୟଣ ଋଷି ହସ୍ତୀପାଳକର ଅର୍ଦ୍ଧଭୁକ୍ତ କୋଳଥ ଭକ୍ଷଣ କଲେ, ତା'ପରେ ଜଳପାନର ଉଚ୍ଛିଷ୍ଟ ଦୋଷରୁ ନିଷେଧ କଲେ ଏବଂ ସେଠାରେ ତାହାର କାରଣ କହିଲେ- 'ନ ବା' (ଏହି କୋଳଥକୁ ନଖାଇ ମୁଁ ଜୀବିତ ରହିପାରି ନଥା'ନ୍ତି ।) ଏବଂ 'କାମୋନ' (ଜଳପାନ ମୋତେ ଯଥେଷ୍ଟ ପରିମାଣରେ ମିଳିଲା) । ପୁନଶ୍ଚ ଅନ୍ୟ ଦିନରେ ସେ ନିଜର ଓ ଅନ୍ୟର ଉଚ୍ଛିଷ୍ଟ ଓ ବାସି କୋଳଥ ଖାଇଲା ।

(ଘ) ସେହି ପରୋଚ୍ଛିଷ୍ଟ ଓ ସ୍ୱୋଚ୍ଛିଷ୍ଟ (ବାସି) ଖାଦ୍ୟକୁ ଦେଖାଇ ଶ୍ରୁତିର ଆଶ୍ରୟାତିଶୟ ଲକ୍ଷିତ ହୁଏ କି ପ୍ରାଣନାଶର ପ୍ରସଙ୍ଗ ହେବା ପରେ ପ୍ରାଣ ସନ୍ଧାରଣ ପାଇଁ ଅଭକ୍ଷ୍ୟ ମଧ୍ୟ ଭକ୍ଷଣଯୋଗ୍ୟ ହୁଏ । ସୁସ୍ଥ ଅବସ୍ଥାରେ କିନ୍ତୁ ବିଦ୍ୱାନ୍ ତାହା କରେନାହିଁ । କାରଣ-ଏହି ଜଳପାନର ପ୍ରତିଷେଧରୁ ଅବଗତ ହୁଏ; ତେଣୁ 'ନ ହ ବା ଏବଂବିଦି' ଇତ୍ୟାଦି ଅର୍ଥବାଦ ଅଟନ୍ତି ॥୨୮॥

**अबाधा च्च ॥ ३-४-२९ ॥**

**ଅବାଧା ଚ ॥୩-୪-୨୯॥**

ଅବାଧାତ୍ ଚ = ଭକ୍ଷ୍ୟ ଓ ଅଭକ୍ଷ୍ୟ ବିଭାଗ ଶାସ୍ତ୍ରର ଅବାଧ ହେବାରୁ 'ନ ହ ବା ଏବଂବିଦି ଇତ୍ୟାଦି ଶାସ୍ତ୍ର ଅର୍ଥବାଦ ହୁଏ ॥

ମୂଳ-(କ) ଏବଂ ଚ ସତ୍ୟାହାର ଶୁଦ୍ଧୌ ସତ୍ତ୍ୱଶୁଦ୍ଧିରିତ୍ୟେବମାଦି ଭକ୍ଷ୍ୟାଭକ୍ଷ୍ୟ ବିଭାଗଶାସ୍ତ୍ରମବାଧିତଂ ଭବିଷ୍ୟତି ॥

ଭାଷା- (କ) ସୁସ୍ଥ ଅବସ୍ଥାରେ ଭକ୍ଷ୍ୟ ଓ ଅଭକ୍ଷ୍ୟର ଭେଦ ହେବାରୁ 'ଆହାର ଶୁଦ୍ଧି ହେଲେ ଅନ୍ତଃକରଣ ଶୁଦ୍ଧି ହୁଏ' ଇତ୍ୟାଦି ଭକ୍ଷ୍ୟ, ଅଭକ୍ଷ୍ୟ ବିଭାଗଶାସ୍ତ୍ର ଅବାଧିତ ହେବ ॥୨୯॥

## अपि च स्मर्यते ॥ ३-४-३० ॥

## ଅପି ଚ ସ୍ମର୍ଯତେ ॥୩-୪-୩୦॥

ଅପି ଚ ସ୍ମର୍ଯତେ = 'ଜୀବିତାତ୍ୟୟ ମାପନ୍ନୋ' ଇତି ସ୍ମୃତି ମଧ୍ୟ ଆପତ୍ତି ସମୟରେ ବିଦ୍ୱାନ୍ ଓ ଅବିଦ୍ୱାନ ପାଇଁ ସର୍ବାନ୍ନ ଭକ୍ଷଣକୁ ପ୍ରତିପାଦନ କରେ ॥

ମୂଳ-(କ) ଅପି ଚ୍ଚପଦି ସର୍ବାନ୍ନ ଭକ୍ଷଣମପି ସ୍ମର୍ଯତେ ବିଦୁଷୋଽବିଦୁଷଶ୍ଚାବିଶେଷେ-ଣ- 'ଜୀବିତାତ୍ୟୟମାପନ୍ନୋ ଯୋଽନ୍ନମତ୍ତି ଯତସ୍ତତଃ । ଲିପ୍ୟତେ ନ ସ ପାପେନ ପଦ୍ମପତ୍ର ମିବାମ୍ଭସା' ଇତି । ତଥା ମଦ୍ୟଂ ନିତ୍ୟଂ ବ୍ରାହ୍ମଣଃ' 'ସୁରାପସ୍ୟ ବ୍ରାହ୍ମଣସୋଂଷ୍ଣା ମାସିଂଚେୟୁଃ ।' 'ସୁରାପାଃ କୃମୟୋ ଭବନ୍ତ୍ୟ ଭକ୍ଷ୍ୟ ଭକ୍ଷଣାତ୍' ଇତି ଚ ସ୍ମର୍ଯତେ ବର୍ଜନମନ୍ନସ୍ୟ ।

ଭାଷା-(କ) ବିପଦ କାଳରେ ବିଦ୍ୱାନ୍ ଓ ଅବିଦ୍ୱାନ୍‌ମାନଙ୍କ ପାଇଁ ସମାନ ଭାବରେ ସର୍ବାନ୍ନ ଭକ୍ଷଣର ସ୍ମୃତି ରହିଛି । ଯଥା- 'ଜୀବିତାତ୍ୟୟମାପନ୍ନୋ (ଜୀବନ ବିନାଶକୁ ପାଇ ପୁରୁଷ ଯେକୌଣସି ସ୍ଥାନରେ ଯେଉଁ ଅନ୍ନ ଭକ୍ଷଣ କରେ, ତାହା ଅଭକ୍ଷ୍ୟ ଭକ୍ଷଣ ଦ୍ୱାରା ଉତ୍ପନ୍ନ ପାପରେ ଲିପ୍ତ ହୁଏ ନାହିଁ, କାରଣ-ଜଳ ପଦ୍ମ ପତ୍ରରେ ସଂଲଗ୍ନ ହେଲେ ବି ସଂପୂର୍ଣ୍ଣ ଭାବରେ ମିଶାଯାଏ ନାହିଁ) । ସେହିପରି 'ମଦ୍ୟଂ ନିତ୍ୟଂ' (ବ୍ରାହ୍ମଣ ସର୍ବଦା ମଦପାନକୁ ପରିତ୍ୟାଗ କରିବା ଉଚିତ୍) ଏବଂ 'ସୁରାପସା' (ମଦ୍ୟପୀ ବ୍ରାହ୍ମଣର କଣ୍ଠରେ ଅତିତପ୍ତ ସୁରା ଢାଳିବା ଉଚିତ୍), 'ସୁରାପା' (ଅଭକ୍ଷ୍ୟକୁ ଭକ୍ଷଣ କରିବା ଦ୍ୱାରା ମଦ୍ୟପୀ କୃମି ହୋଇଯାଏ) ଏହି ପ୍ରକାର ଅଭକ୍ଷ ଅନ୍ନର ସ୍ମୃତିରେ ପ୍ରତିଷେଧ କରାଯାଇଛି ॥୩୦॥

## शब्दश्चातोऽकामकारे ॥ ३-४-३१ ॥

## ଶବ୍ଦଶ୍ଚାତୋଽକାମକାରେ ॥୩-୪-୩୧॥

ଅକାମକାରେ=ସ୍ୱେଚ୍ଛାପ୍ରାପ୍ତ ପ୍ରବୃତ୍ତିର ନିରାକରଣରେ ମଧ୍ୟ, ଶବ୍ଦଃ=ତସ୍ମାଦ୍ ବ୍ରାହ୍ମଣଃ' ଇତ୍ୟାଦି ଶ୍ରୁତି ଅଛି । ଅତଃ=ଅତଏବ ପ୍ରାଣବିଦ୍ ପାଇଁ ସର୍ବାନ୍ନ ଭକ୍ଷଣର ଅନୁଜ୍ଞା ଅର୍ଥବାଦମାତ୍ର ଅଟେ ॥

ମୂଳ-(କ) ଶବ୍ଦଶ୍ଚାନନ୍ନସ୍ୟ ପ୍ରତିଷେଧକଃ କାମକାରନିବୃତ୍ତି ପ୍ରୟୋଜନଃ କାଠକାନାଂ ସଂହିତାୟାଂ ଶ୍ରୂୟତେ 'ତସ୍ମାଦ୍ ବ୍ରାହ୍ମଣଃ ସୁରାଂ ନ ପିବେତ୍' ଇତି ସୋଽପି 'ନ ହ ବା ଏବଂବିଦି' (ଛା ୫-୨-୧) ଇତ୍ୟସ୍ୟାର୍ଥବାଦ ତ୍ୱାଦୁପପନ୍ନତରୋ ଭବତି । ତସ୍ମାଦେବଂ ଜାତୀୟକ ଅର୍ଥବାଦା ନ ବିଧେୟ ଇତି ॥



ଭାଷା-(କ) ଯଥେଚ୍ଛ ପ୍ରବୃତ୍ତିର ନିବୃତ୍ତି ପ୍ରୟୋଜନ ଯୁକ୍ତ ଅଭକ୍ଷ୍ୟ ପ୍ରତିଷେଧକ 'ତସ୍ମାଦ୍‌ବ୍ରାହ୍ମଣଃ' (ତେଣୁ ବ୍ରାହ୍ମଣ ସୁରାପାନ କରିବା ବିଧେୟ ନୁହେଁ) ଇତ୍ୟାଦି ଶ୍ରୁତି କାଠକ ସଂହିତାରେ ଦେଖାଯାଏ । 'ନହ ବା' (ତେଣୁ ଅର୍ଥବାଦ ହେଲେ ଉପପନ୍ନତର ହେବ) ତେଣୁ ଏହି ପ୍ରକାର ଶ୍ରୁତି-ବାକ୍ୟ ଅର୍ଥବାଦ ଅଟେ, ବିଧି ନୁହେଁ ॥୩୧॥

## ८- आश्रमकर्माधिकरणम् ॥ सू ३२-३५ ॥

## ୮-ଆଶ୍ରମ କର୍ମାଧିକରଣମ୍. ସୂ. ୩୨-୩୫ ॥

### विहितत्वाच्चाश्रम कर्मापि ॥ ३-४-३२ ॥

### ବିହିତତ୍ୱାଚ୍ଚାଶ୍ରମ କର୍ମାପି ॥୩-୪-୩୨॥

ଅପି = ଆଶ୍ରମମାତ୍ର ନିଷ୍ଠ ଅମୁମୁକ୍ଷୁଙ୍କୁ ମଧ୍ୟ, ଆଶ୍ରମକର୍ମ ନିତ୍ୟ କର୍ମ କରିବା ଉଚିତ୍ । ବିହିତତ୍ୱାତ୍ ଚ = କାରଣ-'ଯାବଜ୍ଜୀବମ୍' ଇତ୍ୟାଦି ଶାସ୍ତ୍ରରେ ବିହିତ ଅଛି ।

ମୂଳ-(କ) 'ସର୍ବାପେକ୍ଷା ଚ' (ବ୍ର. ସୂ. ୩-୪-୨୬) ଇତ୍ୟତ୍ରାଶ୍ରମ କର୍ମଣାଂ ବିଧିସାଧନତ୍ୱମବଧାରିତମ୍, ଇଦାନୀଂ ତୁ କିମମୁମୁକ୍ଷୋରପ୍ୟାଶ୍ରମ ମାତ୍ର ନିଷ୍ଠସ୍ୟ ବିଦ୍ୟାମକାମୟମାନସ୍ୟ ତାନ୍ୟନୁଷ୍ଠେୟାନ୍ୟୁତାହୋ ନେତି ଚିନ୍ତ୍ୟତେ । ତତ୍ର 'ତମେତଂ ବେଦାନୁବଚନେନ ବ୍ରାହ୍ମଣା ବିବିଦିଷନ୍ତି' (ବୃ. ୪-୪-୨୨) ଇତ୍ୟାଦିନା ଆଶ୍ରମ କର୍ମଣା ବିଦ୍ୟାସାଧନତ୍ୱେନ ବିହିତତ୍ୱାତ୍ ବିଦ୍ୟାମନିଚ୍ଛତଃ ଫଳାନ୍ତରଂ କାମୟମାନସ୍ୟ ନିତ୍ୟାନ୍ୟନନୁଷ୍ଠେୟାନି ।

(ଖ) ଅଥ ତସ୍ୟାପ୍ୟନୁଷ୍ଠେୟାନି ନ ତହ୍ୟେଷାଂ ବିଦ୍ୟା ସାଧନତ୍ୱଂ ନିତ୍ୟାନିତ୍ୟ ସଂଯୋଗ ବିରୋଧାଦିତି । ଅସ୍ୟାଂ ପ୍ରାପ୍ତୌ ପଠତି-ଆଶ୍ରମମାତ୍ର ନିଷ୍ଠସ୍ୟାପ୍ୟମୁମୁକ୍ଷୋଃ କର୍ତ୍ତବ୍ୟାନ୍ୟେବ ନିତ୍ୟାନି କର୍ମାଣି, 'ଯାବଜ୍ଜୀବନ ମଗ୍ନିହୋତ୍ରଂ ଜୁହୋତି' ଇତ୍ୟାଦିନା ବିହିତତ୍ୱାତ୍ । ନହି ବଚନସ୍ୟାତିଭାରୋ ନାମ କଶ୍ଚିଦସ୍ତି ॥

ଭାଷା-(କ) 'ସର୍ବାପେକ୍ଷା ଚ' ଏହି ସୂତ୍ରରେ ଆଶ୍ରମକର୍ମ ସାଧନ ରୂପରେ ନିଶ୍ଚିତ କରାଯାଇଛି । ବର୍ତ୍ତମାନ ଆଶ୍ରମମାତ୍ର ନିଷ୍ଠ ବିଦ୍ୟାକୁ କାମନା ନକରି ଅମୁମୁକ୍ଷୁଙ୍କୁ ସେମାନେ ଆଶ୍ରମକର୍ମ ଅନୁଷ୍ଠେୟ ହୁଅନ୍ତି; ଅଥବା ନୁହେଁ କି ବୋଲି ଚିନ୍ତା କରାଯାଇଛି । ପୂର୍ବପକ୍ଷ-ଏହା ସନ୍ଦେହ ହେବାରୁ 'ତମେତଂ ବେଦାନୁ ବଚନେନ' (ଏହି ଉପନିଷଦ୍ ଗମ୍ୟ ପୁରୁଷଙ୍କୁ ବ୍ରାହ୍ମଣ ବେଦର ନିତ୍ୟ ସ୍ୱାଧ୍ୟାୟଦ୍ୱାରା ଜାଣିବାକୁ ଇଚ୍ଛା କରେ) ଇତ୍ୟାଦି ଶ୍ରୁତିରେ ଆଶ୍ରମକର୍ମ ବିଦ୍ୟାର ସାଧନ ରୂପରେ ବିହିତ ହୁଅନ୍ତି, ଅତଃ ବିଦ୍ୟାକୁ ଇଚ୍ଛା ନକରି ଅନ୍ୟ ଫଳକୁ କାମନା କରୁଥିବା ପୁରୁଷଙ୍କୁ ନିତ୍ୟକର୍ମ ଅନୁଷ୍ଠେୟ ନୁହେଁ ।

(ଗ) ଯଦି ତାହାର ନିତ୍ୟକର୍ମ ଅନୁଷ୍ଠେୟ ହୁଏ; ତେବେ ସେଗୁଡ଼ିକ ବିଦ୍ୟାର ସାଧନ ହୁଅନ୍ତି ନାହିଁ । କାରଣ-ନିତ୍ୟ ଓ ଅନିତ୍ୟର ସଂଯୋଗ ବିରୋଧ ହୁଏ । ଏହା ପ୍ରାପ୍ତ ହେବାରୁ ସିଦ୍ଧାନ୍ତି ପକ୍ଷ କହନ୍ତି- ଆଶ୍ରମମାତ୍ର ନିଷ୍ଠ ଅମୁମୁକ୍ଷୁର ନିତ୍ୟକର୍ମ କର୍ତ୍ତବ୍ୟ

ନୁହେଁ, କାରଣ- 'ଯାବଜ୍ଜୀବନମ୍' (ଜୀବନ ଥିବା ପର୍ଯ୍ୟନ୍ତ ଅଗ୍ନିହୋତ୍ର କରିବା ଉଚିତ) ଇତ୍ୟାଦିରେ ବିହିତ ଅଛି । କାରଣ-ଏହି କଥା ଉପରେ କୌଣସି ଅତିଭାର ନାହିଁ ॥୩୨॥

ମୂଳ-(କ) ଅଥ ଯଦୁକ୍ତମ୍-ନୈବଂ ସତି ବିଦ୍ୟା ସାଧନତ୍ୱମେଷାଂ ସ୍ୟାଦିତି ଅତ ଉତ୍ତରଂ ପଠତି-

ଭାଷା-(କ) ଯାହା କୁହାଯାଇଛି ଯେ- ଯଦି ଆଶ୍ରମକର୍ମ ଅମୁମୁକ୍ଷୁକୁ ନିତ୍ୟାନୁଷ୍ଠେୟ ହୁଅନ୍ତି; ତେବେ ଯଜ୍ଞାଦି ବିଦ୍ୟାର ସାଧନ ହେବେ ନାହିଁ । ତାହାର ଉତ୍ତରରେ କୁହାଯାଇଅଛି-

## सहकारित्वेन च ॥ ३-४-३३ ॥

## ସହକାରିତ୍ୱେନ ଚ ॥୩-୪-୩୩॥

ସହକାରୀତ୍ୱେନ ଚ=ବିଦ୍ୟାର ଉତ୍ପତ୍ତିରେ ସହକାରୀ ରୂପରେ ଯଜ୍ଞ ପ୍ରଭୃତି କର୍ମ ଅନୁଷ୍ଠେୟ ହୁଅନ୍ତି, କାରଣ-'ତମେତଂ ବେଦାନୁବଚନେନ' ଇତ୍ୟାଦି ଶ୍ରୁତିରେ ବିହିତ ଅଛି ॥

ମୂଳ-(କ) ବିଦ୍ୟା ସହକାରିଣୀ ଚୈତାନି ସ୍ୟୁର୍ବିହିତତ୍ୱାଦେବ 'ତମେତ୍ୟ ବେଦାନୁ ବଚନୈନ ବିବିଦିଷନ୍ତି' (ବୃ ୪-୪-୨୨) ଇତ୍ୟାଦିନା । ତଦୁକ୍ତମ୍- 'ସର୍ବାପେକ୍ଷା ଚ ଯଜ୍ଞାଦି ଶ୍ରୁତେରଶ୍ୱବତ୍' (ବ୍ର. ସୂ. ୩-୪-୨୬) ଇତି । ନ ଚ୍ଛେଦଂ ବିଦ୍ୟାସହକାରିତ୍ୱ ବଚନମାଶ୍ରମ କର୍ମଣାଂ ପ୍ରୟାଜାଦିବଦ୍ ବିଦ୍ୟାଫଳଂ ବିଷୟଂ ମନ୍ତବ୍ୟମ୍, ଅବିଧି ଲକ୍ଷଣତ୍ୱାତ୍ ବିଦ୍ୟାୟାଃ, ଅସାଧତ୍ୱାଚ୍ଚ ବିଦ୍ୟା ଫଳସ୍ୟ ।

(ଖ) ବିଧିଲକ୍ଷଣଂ ହି ସାଧନଂ ଦର୍ଶପୂର୍ଣ୍ଣ ମାସାଦି ସ୍ୱର୍ଗଫଳସିଷାଧୟିଷୟା ସହକାରି ସାଧନାନ୍ତରମପେକ୍ଷତେ, ନୈବଂ ବିଦ୍ୟା । ତଥା ଚୋକ୍ତମ୍ 'ଅତଏବ ଚାଗ୍ନୀନ୍ଧନାଦ୍ୟନପେକ୍ଷା' (ବ୍ର. ସୂ. ୩-୪-୨୫) ଇତି । ତସ୍ମାଦୁତ୍ପତ୍ତି ସାଧନତ୍ୱଂ ଏବୈଷାଂ ସହକାରିତ୍ୱବାଚୋ ଯୁକ୍ତିଃ । ନ ଚାତ୍ର ନିତ୍ୟାନିତ୍ୟ ସଂଯୋଗ ବିରୋଧ ଆଶଙ୍କା, କର୍ମାଭେଦେଽପି ସଂଯୋଗଭେଦାତ୍ ।

(ଗ) ନିତ୍ୟୋ ହ୍ୟେକଃ ସଂଯୋଗୋ ଯାବଜ୍ଜୀବାଦି ବାକ୍ୟ କଳ୍ପିତୋ ନ ତସ୍ୟ ବିଦ୍ୟା ଫଳତ୍ୱମ୍ । ଅନିତ୍ୟ ସ୍ତୁପରଃ ସଂଯୋଗଃ, 'ତମେତଂ ବେଦାନୁବଚନେନ' (ବୃହ. ୪-୪-୨୨) ଇତ୍ୟାଦି ବାକ୍ୟ କଳ୍ପିତସ୍ତସ୍ୟ ବିଦ୍ୟା ଫଳତ୍ୱମ୍ । ଯଥୈକସ୍ୟାପି ଖାଦିରତ୍ୱସ୍ୟ ନିତ୍ୟେନ ସଂଯୋଗେନ କ୍ରତ୍ୱର୍ଥ ତ୍ୱମନିତ୍ୟେନ ସଂଯୋଗେନ ପୁରୁଷାର୍ଥତ୍ୱଂ ତଦ୍ୱତ୍ ॥

ଭାଷା-ସିଦ୍ଧାନ୍ତ- (କ) ଏହି କର୍ମଗୁଡ଼ିକ ବିଦ୍ୟାର ସହକାରୀ ହେବା ଉଚିତ୍; କାରଣ- 'ତମେତଂ ବେଦାନୁବଚନେନ' ଇତ୍ୟାଦି-ଶ୍ରୁତିରେ ବିହିତ ଅଛି । ଏହି 'ସର୍ବାପେକ୍ଷା ଚ ଯଜ୍ଞାଦି ଶ୍ରୁତେରଶ୍ୱବତ୍' ସୂତ୍ରରେ କୁହାଯାଇଅଛି ଏବଂ ଆଶ୍ରମ କର୍ମ ବିଦ୍ୟାର ସହକାରୀ



ଅଟନ୍ତି । ଏହି କଥା ପ୍ରୟାଜାଦି ପରି ବିଦ୍ୟାର ଫଳ ବିଷୟକ ହୁଏ ବୋଲି ସ୍ୱୀକାର କରାଯାଏ ନାହିଁ, କାରଣ-ବିଦ୍ୟା ବିଧିରୂପ ନୁହେଁ ଏବଂ ବିଦ୍ୟାର ଫଳ ଅସାଧ୍ୟ ଅଟେ ।

(ଖ) ଯେପରି ବିଧିରୂପ ଦର୍ଶପୂର୍ଣ୍ଣ ମାସାଦି ସାଧନ ସ୍ୱର୍ଗରୂପ ଫଳସିଦ୍ଧ କରିବାକୁ ଇଚ୍ଛା କରି ଅନ୍ୟ ସହକାରୀ ସାଧନାକୁ ଅପେକ୍ଷା କରିଥାଏ, ସେପରି ବିଦ୍ୟା ଅପେକ୍ଷା କରେ ନାହିଁ । ସେହିପରି 'ଅତଏବ ଚାଗ୍ନୀପିନାଦ୍ୟନପେକ୍ଷା' ସୂତ୍ରରେ କୁହାଯାଇଛି । ତେଣୁ ବିଦ୍ୟାର ଉତ୍ପତ୍ତି ସାଧନତ୍ୱରେ ଏହି କର୍ମଗୁଡ଼ିକର ସହକାରୀତ୍ୱବଚନ ଉପପତ୍ତି ହୁଏ ।

(ଗ) ଏଠାରେ ନିତ୍ୟାନିତ୍ୟ ସଂଯୋଗର ବିରୋଧ ଆଶଙ୍କା କରିବା ଉଚିତ୍; କାରଣ-କର୍ମର ଏକତ୍ୱ ହେଲେବି ସଂଯୋଗ ଭେଦ ହୁଏ । ଯାବଜ୍ଜୀବାଦି ବାକ୍ୟରୁ କଳ୍ପିତ ଅନ୍ୟ ସଂଯୋଗବିଧି ନିତ୍ୟ ଅଟେ । ତାହାର ଫଳ ମଧ୍ୟ ବିଦ୍ୟା ନୁହେଁ । ଏବଂ 'ତମେତ ବେଦାନୁବଚନେନ । ଇତ୍ୟାଦି ବାକ୍ୟରେ କଳ୍ପିତ ଅନ୍ୟ ସଂଯୋଗବିଧି ଅନିତ୍ୟ ଅଟେ, ତାହା ବିଦ୍ୟା ଅଟେ । ଯେପରି ଗୋଟିଏ ଖାଦିରରେ ନିତ୍ୟ ସଂଯୋଗ ଦ୍ୱାରା କ୍ରତ୍ୱର୍ଥତ୍ୱ ଓ ଅନିତ୍ୟ ସଂଯୋଗରୁ ପୁରୁଷାର୍ଥତ୍ୱ ହୁଏ, ସେହିପରି ଏଠାରେ ମଧ୍ୟ ଜାଣିବା ବିଧେୟ ॥୩୩॥

## सर्वथापि त एवोभयलिङ्गात् ॥ ३-४-३४ ॥
## ସର୍ବଥାପି ତ ଏବୋଭୟଲିଙ୍ଗାତ୍ ॥ ୩-୪-୩୪ ॥

ତେ ଏବ-ଯଜ୍ଞାଦି କର୍ମ, ସର୍ବଥାପି-ଆଶ୍ରମତ୍ୱ ପକ୍ଷରେ ଏବଂ ବିଦ୍ୟା ସହକାରିତ୍ୱ ପକ୍ଷରେ ଦୁଇ ପ୍ରକାରରେ ଅନୁଷ୍ଠେୟ ହୁଅନ୍ତି, ଉଭୟ ଲିଙ୍ଗାତ୍=କାରଣ - 'ଯଜ୍ଞେନ ବିବିଦିଷନ୍ତି' ଏବଂ 'ଅନାଶ୍ରିତଃ କର୍ମଫଳମ୍' ଇତ୍ୟାଦି ଶ୍ରୁତି ଓ ସ୍ମୃତି ଉଭୟେ ଲିଙ୍ଗ ଅଟନ୍ତି ॥

ମୂଳ-(କ) ସର୍ବଥାପ୍ୟାଶ୍ରମ କର୍ମତ୍ୱପକ୍ଷେ ବିଦ୍ୟା ସହକାରିତ୍ୱପେକ୍ଷ ଚ ତ ଏବାଗ୍ନିହୋତ୍ରାଦୟୋ ଧର୍ମା ଅନୁଷ୍ଠେୟାଃ । ତ ଏବେତ୍ୟବଧାରୟନ୍ନାଚାର୍ଯ୍ୟାଃ କିଂ ନିବର୍ତ୍ତୟତି ? କର୍ମଭେଦ ଶଙ୍କାମିତି ବ୍ରୂମଃ । ଯଥା କୁଣ୍ଡପାୟିନାମୟନେ 'ମାସମଗ୍ନିହୋତ୍ରଂ ଜୁହୋତି' ଇତ୍ୟତ୍ର ନିତ୍ୟାଦଗ୍ନିହୋତ୍ରାତ୍ କର୍ମାନ୍ତରମୁପଦିଶ୍ୟତେ, ନୈବମିହ କର୍ମଭେଦୋଽସ୍ତୀତ୍ୟର୍ଥଃ ।

(ଖ) କୁତଃ ? ଉଭୟଲିଙ୍ଗାତ୍, ଶ୍ରୁତିଲିଙ୍ଗାତ୍ ସ୍ମୃତିଲିଙ୍ଗାଚ୍ଚ । ଶ୍ରୁତିଲିଙ୍ଗମ୍ ଯାବତ୍- 'ତମେତଂ ବେଦାନୁ ବଚନେନ ବ୍ରାହ୍ମଣା ବିବିଦିଷନ୍ତି' (ବୃହ. ୪-୪-୨୨) ଇତି ସିଦ୍ଧ ବହୁତ୍ପନ୍ନ ରୂପାଣ୍ୟେବ ଯଜ୍ଞାଦୀନି ବିବିଦିଷାୟାଂ ବିନିୟୁଙ୍କ୍ତେ, ନତୁ ଜୁହ୍ୱତୀତ୍ୟାଦି ବଦପୂର୍ବମେଷାଂ ରୂପମୁତ୍ପାଦୟତୀତି । ସ୍ମୃତିଲିଙ୍ଗମପି- 'ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟାଂ କର୍ମ କରୋତିଯଃ', (ଗୀ-୬-୧) ଇତି ।

(ଗ) ବିଜ୍ଞାନ କର୍ତ୍ତବ୍ୟତାକମେବ କର୍ମ ବିଦ୍ୟୋତ୍ପତ୍ତ୍ୟର୍ଥଂ ଦର୍ଶୟତି । ଯସ୍ୟୈତେଽଷ୍ଟାଚତ୍ୱାରିଂ ଶତ୍‌ସଂସ୍କାରାଃ ଇତ୍ୟାଦ୍ୟା ଚ ସଂସ୍କାରତ୍ୱ ପ୍ରସିଦ୍ଧି ର୍ବୈଦିକେଷ୍ଟୁ କର୍ମସୁ ତତ୍‌ସଂସ୍କୃତସ୍ୟ ବିଦ୍ୟୋତ୍ପତ୍ତିମଭିପ୍ରେତ୍ୟ ସ୍ମୃତୌ ଭବତି । ତସ୍ମାତ୍ ସାଧ୍ୱିଦମଭେଦାବଧାରଣମ୍ ॥

ଭାଷା-(କ) ସର୍ବସ୍ଥଳରେ ଆଶ୍ରମ କର୍ମତ୍ୱ ପକ୍ଷରେ ଓ ବିଦ୍ୟାସହକାରିତ୍ୱ ପକ୍ଷରେ ଏହି ଅଗ୍ନିହୋତ୍ରାଦି କର୍ମ ଅନୁଷ୍ଠେୟ ଅଟନ୍ତି । 'ତେ ଏବ' ଏହି ପ୍ରକାର ଅବଧାରଣା କରି ଆଚାର୍ଯ୍ୟ କାହାକୁ ନିବୃତ୍ତ କରନ୍ତି ? ଏହି ଶଙ୍କା ବାରଣ ପାଇଁ ଆମ୍ଭେ କହୁଁ ଯେ- ଯେପରି କୁଣ୍ଡପାୟିର ଅୟନରେ 'ମାସମଗ୍ନିହୋତ୍ରଂ ଜୁହୋତି' ବାକ୍ୟରେ ନିତ୍ୟ ଅଗ୍ନିହୋତ୍ରରୁ ଅନ୍ୟ କର୍ମ ଉପଦେଶ କରାଯାଏ, ସେହିପରି ଏଠାରେ କର୍ମଭେଦ ହୁଏ ନାହିଁ ।

(ଖ) କିପରି ? ଉଭୟ ଲିଙ୍ଗରୁ ଅର୍ଥାତ୍ ଶ୍ରୁତିଲିଙ୍ଗ ଓ ସ୍ମୃତିଲିଙ୍ଗ ମଧ୍ୟରୁ 'ତମେତଂ ବେଦାନୁବଚନେନ ବ୍ରାହ୍ମଣା ବିବିଦିଷନ୍ତି' ଏହି ଶ୍ରୁତିଲିଙ୍ଗ ସିଦ୍ଧ ହେବାପରି ଉପପନ୍ନ ରୂପଯୁକ୍ତ ଯଜ୍ଞାଦିର ବିବିଦିଷାରେ ବିନିଯୋଗ କରେ ଏବଂ 'ଜୁହୋତି' ଇତ୍ୟାଦି ପରି ଏହି ଯଜ୍ଞାଦିର ଅପୂର୍ବରୂପ ଉତ୍ପାଦନ କରେ ନାହିଁ ।

(ଗ) ସେହିପରି, 'ଅନାଶ୍ରିତଃ କର୍ମଫଳଂ' (ଯେଉଁ ପୁରୁଷ କର୍ମରେ ଫଳକୁ କାମନା ନ କରି ଉପଯୁକ୍ତ କର୍ମ କରେ)-ଏହି ସ୍ମୃତିଲିଙ୍ଗ ମଧ୍ୟ ବିଜ୍ଞାତ କର୍ତ୍ତବ୍ୟଯୁକ୍ତ କର୍ମକୁ ବିଦ୍ୟାର ଉତ୍ପତ୍ତି ପାଇଁ ପ୍ରଦର୍ଶନ କରାଏ । ଯେପରି ୪୮ ସଂସ୍କାର ରହିଛି-ଏହି ବୈଦିକ କର୍ମରେ ସଂସ୍କାରତ୍ୱ ପ୍ରସିଦ୍ଧି ସେହି ସଂସ୍କୃତ ପୁରୁଷ ବିଦ୍ୟାର ଉତ୍ପତ୍ତିକୁ ସ୍ମୃତିରେ ଅଭିପ୍ରେତ କରେ; ତେଣୁ ଏହି ଅଭେଦର ଅବଧାରଣ ଉଚିତ ଅଟେ ॥୩୪॥

## अनभिभवं च दर्शयति ॥ ३-४-३५ ॥
## ଅନଭିଭବଂ ଚ ଦର୍ଶୟତି ॥୩-୪-୩୫॥

ଚ=ଏବଂ, ଅନଭିଭବମ୍=ବ୍ରହ୍ମଚର୍ଯ୍ୟାଦି, ସାଧନସଂପନ୍ନ ପୁରୁଷର ରାଗ, ଦ୍ୱେଷ ପ୍ରଭୃତି କ୍ଲେଶଗୁଡ଼ିକ ଦ୍ୱାରା ଅଭିଭବ ହୁଅନ୍ତି ନାହିଁ । ଦର୍ଶୟତି='ଏଷଃ ହ୍ୟାତ୍ମା' ଇତ୍ୟାଦି ଶ୍ରୁତି ଦେଖାଏ ॥

ମୂଳ-(କ) ସହକାରୀତ୍ୱସ୍ୟୈବୈତଦୁପୋଦ୍‌ବଲକଂ ଲିଙ୍ଗଦର୍ଶନମନଭିନବଂ ଚ ଦର୍ଶୟତି ଶ୍ରୁତି ବ୍ରହ୍ମଚର୍ଯ୍ୟାଦି ସାଧନ ସଂପନ୍ନସ୍ୟ ରାଗାଦିଭିଃ କ୍ଲେଶୈଃ ''ଏଷ ହ୍ୟାତ୍ମା ନ ନଶ୍ୟତି ଯଂ ବ୍ରହ୍ମଚର୍ଯ୍ୟେଣାନୁବିଦତେ' (ଛା ୮-୫-୩) ଇତ୍ୟାଦିନା । ତସ୍ମାଦ୍ୟଜ୍ଞାଦୀନ୍ୟାଶ୍ରମ କର୍ମାଣି ଚ ଭବନ୍ତି ବିଦ୍ୟା ସହକାରିଣୀ ଚେତି ନିଶ୍ଚିତମ୍ ॥

ଭାଷା-(କ) ଆଶ୍ରମକର୍ମ ବିଦ୍ୟାର ସହକାରୀ ହୁଏ । ତାହାର ସମର୍ଥକ ଏହି ଲିଙ୍ଗଦର୍ଶନ ଅଟେ । 'ଏଷ ହ୍ୟାତ୍ମା' (ଯେଉଁ ସାଧକ ବ୍ରହ୍ମଚର୍ଯ୍ୟକୁ ପ୍ରାପ୍ତ ହୁଏ, ସେ ଏହି



ଆତ୍ମା ନଷ୍ଟ ହୁଏ ନାହିଁ) ଇତ୍ୟାଦି ଶ୍ରୁତି ବ୍ରହ୍ମଚର୍ଯ୍ୟାଦିସାଧନ ସଂପନ୍ନ ପୁରୁଷର ରାଗାଦି କ୍ଳେଶଦ୍ୱାରା ଅନଭିଭବ ପ୍ରଦର୍ଶନ କରାଏ; ତେଣୁ ଯଜ୍ଞ ପ୍ରଭୃତି ଆଶ୍ରମ କର୍ମ ଅଟନ୍ତି ଏବଂ ବିଦ୍ୟାର ମଧ୍ୟ ସହକାରୀ ଅଟନ୍ତି ବୋଲି ନିଶ୍ଚିତ କରାଯାଇଅଛି ॥୩୫॥

## ९ विधुराधिकरणम् ॥ सू. ३६-३९ ॥
## ୯ ବିଧୁରାଧିକରଣମ୍ ॥ ସୂ ୩୬-୩୯॥
## अन्तरो चापितु तद्दृष्टेः ॥ ३-४-३६ ॥
## ଅନ୍ତରୋ ଚପିତୁ ତଦ୍‌ଦୃଷ୍ଟେଃ ॥୩-୪-୩୬॥

ତୁ=ପୂର୍ବପକ୍ଷର ବ୍ୟାବୃତ୍ତି ପାଇଁ ରହିଛି । ଅନ୍ତରା=ଆଶ୍ରମରହିତପୁରୁଷାର୍ଥମାନଙ୍କର, ଅପି=ମଧ୍ୟ ବ୍ରହ୍ମବିଦ୍ୟାରେ ଅଧିକାର ଅଛି, ତଦ୍‌ଦୃଷ୍ଟେଃ=କାରଣ-ରୈକ୍ୱ ପ୍ରଭୃତିର ଶ୍ରୁତି ଉପଲବ୍ଧ ହୁଏ ।

ମୂଳ-(କ) ବିଧୁରାଦୀନାଂ ଦ୍ରବ୍ୟାଦିସଂପଦରହିତାନାଂ ଚାନ୍ୟତମାଶ୍ରମପ୍ରତିପତ୍ତି ହୀନାନାମନ୍ତରାଳବର୍ତ୍ତିନାଂ କିଂ ବିଦ୍ୟାୟାମଧିକାରୋଽସ୍ତି କିଂ ବା ନାସ୍ତୀତି ସଂଶୟେ ନାସ୍ତୀତି ତାବତ୍‌ପ୍ରାପ୍ତମ୍, ଆଶ୍ରମ କର୍ମଣାଂ ବିଦ୍ୟା ହେତୁତ୍ୱାବଧାରଣାଦାଶ୍ରମ କର୍ମା ସମ୍ଭବାଚ୍ଚୈତେଷାମିତି ।

(ଖ) ଏବଂ ପ୍ରାପ୍ତ ଇଦମାହ-ଅନ୍ତରାଚପି ତୁ ଅନାଶ୍ରମିତ୍ୱେନ ବର୍ତ୍ତମାନୋଽପି ବିଦ୍ୟାୟା ମଧିକ୍ରିୟତେ । କୁତଃ ? ତଦ୍‌ଦୃଷ୍ଟେଃ । ରୈକ୍‌କବାଚକ୍ନବୀପ୍ରଭୃତୀନାମେବଂ ଭୂତାନାମପି ବ୍ରହ୍ମବିତ୍ତ୍ୱଶ୍ରୁତ୍ୟୁପଲବ୍‌ଧେଃ ॥

ଭାଷା-(କ) ବିଧୁରାଦି ଦ୍ରବ୍ୟାଦି ସଂପତ୍ ରହିତ, କୌଣସି ଏକ ଆଶ୍ରମର ପ୍ରାପ୍ତି ରହିତ, ପୁରୁଷଗୁଡ଼ିକର କ'ଣ ବିଦ୍ୟାରେ ଅଧିକାର ଅଛି, କି ନାହିଁ ? ଏହା ସଂଶୟ ହେବାରୁ ପୂର୍ବପକ୍ଷ କହନ୍ତି-ସେହି ବିଦ୍ୟାରେ ଅଧିକାର ନାହିଁ; କାରଣ ଆଶ୍ରମକର୍ମ ବିଦ୍ୟାର ହେତୁରୂପରେ ନିଶ୍ଚିତ ହୁଏ ଏବଂ ସେହି ପୁରୁଷଠାରେ ଆଶ୍ରମକର୍ମର ସମ୍ଭବ ହୁଏ ନାହିଁ ।

(ଖ) ସିଦ୍ଧାନ୍ତ-ଏହା ପ୍ରାପ୍ତ ହେବାର କୁହାଯାଇଛି- 'ଅନ୍ତରା ଚପି ତୁ' ଅନାଶ୍ରମୀ ରୂପ୍‌ରେ ବର୍ତ୍ତମାନ ପୁରୁଷର ମଧ୍ୟ ବିଦ୍ୟାରେ ଅଧିକାର ଅଛି । କିପରି ? ଏହା ଶ୍ରୁତିରେ ଦେଖାଯାଏ, ରୈକ୍ୱ ବାଚକ୍ନବୀ ପ୍ରଭୃତି ଏହି ପ୍ରକାରର ପ୍ରାଣୀମାନଙ୍କଠାରେ ବ୍ରହ୍ମବିତ୍ତ୍ୱଶ୍ରୁତି ଉପଲବ୍ଧ ହୁଏ ॥୩୬॥

## अपि च स्मर्यते ॥ ३-४-३७ ॥
## ଅପି ଚ ସ୍ମର୍ଯତେ ॥୩-୪-୩୭॥

ଅପି ଚ ସ୍ମର୍ଯତେ=ଅନାଶ୍ରମୀ ସଂବର୍ତ୍ତାଦି ମହାଯୋଗୀ ରୂପରେ ଇତିହାସରେ ସ୍ମରଣ କରାଯାଉଛି ॥

ମୂଳ-(କ) ସଂବର୍ତ୍ତ ପ୍ରଭୃତୀନାଂ ଚ ନଗ୍ନାଚର୍ଯ୍ୟାଦିଯୋଗାଦନପେକ୍ଷିତାଶ୍ରମ କର୍ମଣାମପି ମହାଯୋଗିତ୍ୱଂ ସ୍ମର୍ଯତେ ॥

ଭାଷା-(କ) ନଗ୍ନଚର୍ଯ୍ୟାଦି ଯୋଗରୁ ଆଶ୍ରମ କର୍ମକୁ ଅପେକ୍ଷା ନକରି ସଂବର୍ତ୍ତ ପ୍ରଭୃତି ମଧ୍ୟ ମହାଯୋଗୀ ରୂପରେ ଇତିହାସରେ ସ୍ମରଣ କରାଯାଏ ॥୩୬॥

ମୂଳ-(କ) ନନୁ ଲିଙ୍ଗମିଦଂ ଶ୍ରୁତିସ୍ମୃତି ଦର୍ଶନ ମୁପନ୍ୟସ୍ତଂ କା ନୁ ଖଲୁ ପ୍ରାପ୍ତିରିତି, ସାଽଭିଧୀୟତେ ॥

ଭାଷା-(କ) ପରନ୍ତୁ ଏଠାରେ ଏହି ଲିଙ୍ଗ ରୂପ ଶ୍ରୁତି ଓ ସ୍ମୃତି ଦର୍ଶନ ଉପନ୍ୟସ୍ତ କରାଯାଇଅଛି । ତାହାର ବିଧିବାକ୍ୟ କିଏ ? ଏହାର ଉତ୍ତରରେ କୁହାଯାଇଅଛି ।

## विशेषानुग्रहश्च ॥ ३-४-३८ ॥

## ବିଶେଷାନୁଗ୍ରହଶ୍ଚ ॥୩-୪-୩୮॥

ବିଶେଷାନୁଗ୍ରହଃ ଚ=ରୈକ୍ୱ ପ୍ରଭୃତି ଅନାଶ୍ରମିମାନଙ୍କର ଜପ ପ୍ରଭୃତି ଜ୍ଞାନର ହେତୁଭୂତ କର୍ମ ବିଶେଷରୁ ବିଦ୍ୟାରେ ଅଧିକାର ଶୁଣାଯାଏ ॥

ମୂଳ-(କ) ତେଷାମପି ବିଧୁରାଦୀନାମବିରୁଦ୍ଧୈଃ ପୁରୁଷମାତ୍ର ସଂବନ୍ଧିଭିର୍ଜ୍ଜପୋପବାସ ଦେବତାରାଧନାଦିଭିର୍ଧର୍ମ ବିଶେଷୈରନୁଗ୍ରହୋ ବିଦ୍ୟାୟାଃ ସମ୍ଭବତି । ତଥା ଚ ସ୍ମୃତିଃ- ଜପ୍ୟେନୈବ ତୁ ସଂସିଧ୍ୟେଦ୍ ବ୍ରାହ୍ମଣୋ ଯତ୍ର ସଂଶୟଃ । କୁର୍ଯ୍ୟାଦନ୍ୟନ୍ନ ବା କୁର୍ଯ୍ୟାନ୍‌ମୈତ୍ରୋ ବ୍ରାହ୍ମଣ ଉଚ୍ୟତେ’’ ଇତ୍ୟସମ୍ଭବାଦାଶ୍ରମକର୍ମଣୋଽପି ଜପ୍ୟେଽଧିକାରଂ ଦର୍ଶୟତି । ଜନ୍ମାନ୍ତା- ରାନୁଷ୍ଠିତୈରପି ଽଶ୍ରମକର୍ମଭିଃ ସମ୍ଭବତ୍ୟେବ ବିଦ୍ୟାୟା ଅନୁଗ୍ରହଃ ।

(ଖ) ତଥା ଚ ସ୍ମୃତିଃ-ଅନେକ ଜନ୍ମସଂସିଦ୍ଧସ୍ତତୋ ଯାତି ପରାଂ ଗତିମ୍’ (ଗୀ. ୬- ୪୫) ଇତି ଜନ୍ମାନ୍ତରସଞ୍ଚିତାନପି ସଂସ୍କାର ବିଶେଷାନନୁଗ୍ରହାତ୍ୱନ୍ ବିଦ୍ୟାୟାଂ ଦର୍ଶୟତି । ଦୃଷ୍ଟାର୍ଥା ଚ ବିଦ୍ୟା ପ୍ରତିଷେଧାଭାବମାତ୍ରେଣାପ୍ୟର୍ଥିନ ମଧିକରୋତି ଶ୍ରବଣାଦିଷୁ । ତସ୍ମାଦ୍ ବିଧୁରାଦୀନାମପ୍ୟଧିକାରୋ ନ ବିରୁଧ୍ୟତେ ॥

ଭାଷା-(କ) ସେହି ବିଧୁରାଦିର ଅନାଶ୍ରମିର ଅବିରୁଦ୍ଧ ପୁରୁଷମାତ୍ର ସଂବନ୍ଧୀ ଜପ, ଉପବାସ, ଦେବାରାଧନ ପ୍ରଭୃତି ଧର୍ମବିଶେଷରୁ ବିଦ୍ୟାରେ ଅଧିକାର ସମ୍ଭବ ହୁଏ । ସେହିପରି ‘ଜପ୍ୟେନୈବତୁ’ (ବ୍ରାହ୍ମଣ ଜପଦ୍ୱାରା ସଂସିଦ୍ଧ ହୁଏ, ଏହି ସ୍ଥାନରେ ସନ୍ଦେହ ନାହିଁ । ସେ ଅନ୍ୟ କର୍ମ କରୁ ବା ନକରୁ, ତାହାକୁ ଦୟାବାନ୍ ବ୍ରାହ୍ମଣ କୁହାଯାଏ । ଯେଉଁଠାରେ ଆଶ୍ରମ କର୍ମର ସମ୍ଭବ ହୁଏ ନାହିଁ, ତାହାର ଜପରେ ଅଧିକାରକୁ ଏହି ସ୍ମୃତି ଦେଖାଏ । ଜନ୍ମାନ୍ତରରେ ଅନୁଷ୍ଠିତ ଆଶ୍ରମ କର୍ମଦ୍ୱାରା ବିଦ୍ୟାରେ ଅଧିକାର ସମ୍ଭବ ହୁଏ ।



(ଖ) ସେହିପରି 'ଅନେକ ଜନ୍ମ' (ଅନେକ ଜନ୍ମର ସଂସ୍କାର ଉପଚୟ ହୋଇ ଶୁଦ୍ଧ ଅନ୍ତଃକରଣଯୁକ୍ତ ପୁରୁଷ ସମ୍ୟଗ୍ ଦର୍ଶନରେ ମୋକ୍ଷକୁ ପ୍ରାପ୍ତ ହୁଏ) ଏହି ସ୍ମୃତିବଚନ ଜନ୍ମାନ୍ତରରେ ସଞ୍ଚିତ ଓ ଅନୁଗ୍ରହ କରୁଥିବା ସଂସ୍କାର ବିଶେଷକୁ ବିଦ୍ୟାରେ ଦେଖାଏ । ଦୃଷ୍ଟଫଳଯୁକ୍ତ ବିଦ୍ୟା ପ୍ରତିଷେଧର ଅଭାବ ମାତ୍ରରୁ ବିଦ୍ୟାର୍ଥୀର ଶ୍ରବଣ ପ୍ରଭୃତିରେ ଅଧିକୃତ କରେ; ତେଣୁ ବିଧୁରାଦିର ବିଦ୍ୟାରେ ଅଧିକାର ବିରୁଦ୍ଧ ନୁହେଁ ।।୩୮।।

## अतस्त्वितरज्यायो लिङ्गाच्च ॥ ३-४-३९ ॥

## ଅତସ୍ତ୍ୱିତରଜ୍ୟାୟୋ ଲିଙ୍ଗାଚ୍ଚ ।।୩-୪-୩୯।।

ଅତସ୍ତୁ = ଅନାଶ୍ରମିତ୍ୱକୁ ଅପେକ୍ଷା କଲେ କିନ୍ତୁ, ଇତରତ୍=ଆଶ୍ରମିତ୍ୱ ଜ୍ୟାୟଃ=ଶ୍ରେଷ୍ଠ ବିଦ୍ୟାର ସାଧନ ହୁଏ । ଲିଙ୍ଗାଚ୍ଚ= କାରଣ-'ତେନୈତିବ୍ରହ୍ମବିତ୍' ଏହି ପ୍ରକାର ଶ୍ରୁତି ଓ ସ୍ମୃତିରୂପ ଲିଙ୍ଗ ଅଟେ ।।

ମୂଳ-(କ) ଅତସ୍ତ୍ୱନ୍ତରାଳ ବର୍ତ୍ତିତ୍ୱାଦିତରଦାଶ୍ରମ ବର୍ତ୍ତିତ୍ୱଂ ଜ୍ୟାୟୋ ବିଦ୍ୟା ସାଧନମ୍, ଶ୍ରୁତିସ୍ମୃତି ସଂଦୃଷ୍ଟତ୍ୱାତ୍, ଶ୍ରୁତିଲିଙ୍ଗାଚ- 'ତେନୈତି ବ୍ରହ୍ମବିତ୍ ପୁଣ୍ୟକୃତ୍ତୈଜସଶ୍ଚ' (ବୃ. ୪-୪-୯) ଇତି । 'ଅନାଶ୍ରମୀ ନ ତିଷ୍ଠେତ ଦିନମେକମପି ଦ୍ୱିଜଃ । ସଂବତ୍ସରମନାଶ୍ରମୀ ସ୍ଥିତ୍ୱା କୃଚ୍ଛ୍ରମେକଂ ଚରେତ୍' ଇତି ସ୍ମୃତିଲିଙ୍ଗାତ୍ ।।

ଭାଷା-(କ) ପରନ୍ତୁ ତଦ୍ଦ୍ୱାରା ଅନ୍ତରାଳବର୍ତ୍ତିତ୍ୱ ଅନାଶ୍ରମିତ୍ୱରୁ ଅନ୍ୟାଶ୍ରମବର୍ତ୍ତିତ୍ୱ ଶ୍ରେଷ୍ଠ ବିଦ୍ୟାର ସାଧନ ହୁଏ, କାରଣ-ଶ୍ରୁତି ଓ ସ୍ମୃତିରେ ଏହା ଦେଖାଯାଏ । କାରଣ- 'ତେନୈତି ବ୍ରହ୍ମବିତ୍' (ପୁଣ୍ୟକୃତ୍ ଶୁଦ୍ଧସତ୍ତ୍ୱ ତେଜଃସ୍ୱରୂପ ବ୍ରହ୍ମବେତ୍ତା ସେହି ଜ୍ଞାନ ମାର୍ଗରୁ ଯାଏ ଓ ବ୍ରହ୍ମକୁ ପ୍ରାପ୍ତ ହୁଏ) ଏହା ହିଁ ଶ୍ରୁତିଲିଙ୍ଗ ଅଟେ ଏବଂ 'ଅନାଶ୍ରମୀ ନ' (ଦ୍ୱିଜ ଗୋଟିଏ ଦିନ ଅନାଶ୍ରମୀ ରହିବା ଉଚିତ୍ ନୁହେଁ । ଏକବର୍ଷ ପର୍ଯ୍ୟନ୍ତ ଅନାଶ୍ରମୀ ହୋଇ କୃଚ୍ଛ୍ର କରିବା ଉଚିତ) ଏହାହିଁ ସ୍ମୃତିଲିଙ୍ଗ ଅଟେ ।।୩୯।।

## २० । तद्भूताधिकरणम् सू० ॥ ४० ॥

## ୧୦।। ତଦ୍‌ଭୂତାଧିକରଣମ୍. ସୂ. ୪୦ ।।

## तद्भूतस्य तु नातद्भावो जैमिनेरपि नियमातद्रूपाभावेभ्य: ॥ ३-४-४०॥

## ତଦ୍‌ଭୂତସ୍ୟ ତୁ ନାତଦ୍‌ଭାବୋ ଜୈମିନେରପି ନିୟମାତଦ୍ରୂପା ଭାବେଭ୍ୟଃ ।।୩-୪-୪୦।।

ତଦ୍‌ଭୂତସ୍ୟ=ଉତ୍ତମାଶ୍ରମକୁ ପ୍ରାପ୍ତ ହୋଇ ପୁରୁଷର, ଅତଦ୍‌ଭାବଃ ଉତ୍ତମାଶ୍ରମରୁ ବିଚ୍ୟୁତ, ନ=ହୁଏ ନାହିଁ । ଜୈମିନେରପି=ଏହା ଆଚାର୍ଯ୍ୟ ଜୈମିନିଙ୍କର ମତ ଅଟେ । ନିୟମାତଦ୍ରୂପାଭାବେଭ୍ୟଃ=କାରଣ-ନିୟମ, ଅତଦ୍ରୂପ ଓ ଅଭାବ ଏଗୁଡ଼ିକ କାରଣ ଅଟନ୍ତି ।

ମୂଳ-(କ) ସନ୍ତ୍ୟୂର୍ଦ୍ଧ୍ୱରେତସ ଆଶ୍ରମା ଇତି ସ୍ଥାପିତମ୍ । ତାଂସ୍ତୁ ପ୍ରାପ୍ତସ୍ୟ କଥଂଚିଉତଃ ପ୍ରଚ୍ୟୁତିରସ୍ତି ନାସ୍ତିବେତି ସଂଶୟଃ । ପୂର୍ବକର୍ମସ୍ୱନୁଷ୍ଠାନଚିକୀର୍ଷୟା ବା ରାଗାଦିବଶେନ ବା ପ୍ରଚ୍ୟୁତୋଽପି ସ୍ୟାଦ୍‌ବିଶେଷା ଭାବାଦିତି ॥

(ଖ) ଏବଂ ପ୍ରାପ୍ତ ଉଚ୍ୟତେ-ତଦ୍‌ଭୂତସ୍ୟ ତୁ ପ୍ରତିପନ୍ନୋର୍ଦ୍ଧ୍ୱରେତୋ ଭାବସ୍ୟ ନ କଥଂଚିଦପ୍ୟତଦଭାବୋ ନ ତତଃ ପ୍ରଚ୍ୟୁତିଃ ସ୍ୟାତ୍ । କୁତଃ ? ନିୟମାତଦ୍ରୂପା ଭାବେଭ୍ୟଃ । ତଥାହି- 'ଅତ୍ୟନ୍ତମାତ୍ମାନମାଚାର୍ଯ୍ୟକୁଲେଽବସାଦୟନ୍' (ଛା ୨-୨୩-୨) ଇତି, ଅରଣ୍ୟ ମିୟାଦିତି ପଦଂ ତତୋ ନ ପୁନରେୟାଦିତ୍ୟୁପନିଷଦ୍' ଇତି, ଆଚାର୍ଯ୍ୟେଣାଭ୍ୟନୁଜ୍ଞାନ୍ତଶ୍ଚତୁର୍ଣାମେକମାଶ୍ରମମ୍ । ଆ ବିମୋକ୍ଷାଚ୍ଛରୀରସ୍ୟ ସୋଽନୁତିଷ୍ଠେଦ୍ୟଥା ବିଧି । ଇତି ଚୈବଂ ଜାତୀୟକୋ ନିୟମଃ ପ୍ରଚ୍ୟୁତ୍ୟଭାବଂ ଦର୍ଶୟତି । ଯଥା ଚ 'ବ୍ରହ୍ମଚର୍ଯ୍ୟଂ ସମାପ୍ୟ ଗୃହୀ ଭବେତ' (ଜା-୪), 'ବ୍ରହ୍ମଚର୍ଯ୍ୟାଦେବ ପ୍ରବ୍ରଜେତ୍' (ଜା-୪) ଇତି ଚୈବମାଦୀନ୍ୟା ରୋହଣରୂପାଣି ବଚଂସୁ ପଲଭ୍ୟନ୍ତେ, ନୈବଂ ପ୍ରତ୍ୟବରୋହ ରୂପାଣି । ନ ଚୈବମାଚରାଃ ଶିଷ୍ଟ ବିଦ୍ୟନ୍ତେ ।

(ଗ) ଯତ୍ତୁ-ପୂର୍ବକର୍ମ ସ୍ୱନୁଷ୍ଠାନ ଚିକୀର୍ଷୟା ପ୍ରତ୍ୟବରୋହଣମିତି, ତଦସତ୍' 'ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍' (ଗୀ ୩-୩୫) ଇତି ସ୍ମରଣାତ୍, ନ୍ୟାୟାଚ୍ଚ । ଯୋହି ଯଂ ପ୍ରତି ବିଧୀୟତେ ସ ତସ୍ୟ ଧର୍ମୋ ନ ତୁ ଯୋ ଯେନ ସ୍ୱନୁଷ୍ଠାତୁଂ ଶକ୍ୟତେ, ଚୋଦନା ଲକ୍ଷଣତ୍ୱାଦ ଧର୍ମସ୍ୟ । ନ ଚ ରାଗାଦିବଶାତ୍ ପ୍ରଚ୍ୟୁତିଃ, ନିୟମ ଶାସ୍ତ୍ରସ୍ୟ ବଲୀୟସ୍ତ୍ୱାତ୍ । ଜୈମିନେରପୀତ୍ୟପିଶବ୍ଦେନ ଜୈମିନିବାଦରାୟଣୟୋରତ୍ର ସଂପ୍ରତିପତ୍ତିଂ ଶାସ୍ତି ପ୍ରତିପତ୍ତିଦାର୍ଢ୍ୟାୟ ॥

ଭାଷା-(କ) ଉର୍ଦ୍ଧ୍ୱରେତା ଆଶ୍ରମ ଅଟେ ବୋଲି ପୂର୍ବରୁ ପ୍ରମାଣିତ କରାଯାଇଅଛି । ପରନ୍ତୁ ସେହି ଆଶ୍ରମକୁ ପ୍ରାପ୍ତ ହୋଇ ପୁରୁଷ କୌଣସି କାରଣରୁ ସେହି ଆଶ୍ରମରୁ ବିଚ୍ୟୁତ ହୁଏ । ଏଠାରେ ସଂଶୟ ହୁଏ । ପୂର୍ବପକ୍ଷ-ପୂର୍ବ ଆଶ୍ରମ ବିହିତ କର୍ମର ଅନୁଷ୍ଠାନ କରିବାକୁ ଇଚ୍ଛା କରିବା ଦ୍ୱାରା ଅଥବା ରାଗ ପ୍ରଭୃତିର ବଶତାରୁ ସେ ଉର୍ଦ୍ଧ୍ୱରେତ ପ୍ରଚ୍ୟୁତ ହେବ, କାରଣ-ବିଶେଷର ଏଠାରେ ଅଭାବ ହୁଏ ।

(ଖ) ସିଦ୍ଧାନ୍ତ-ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ-ତଦ୍‌ଭୂତ ଉର୍ଦ୍ଧ୍ୱରେତ ଭାବକୁ ପ୍ରାପ୍ତ ହୋଇ ପୁରୁଷର କୌଣସି ପ୍ରକାର ଅତଦ୍‌ଭାବ ଅର୍ଥାତ୍ ସେହି ଆଶ୍ରମରୁ ପ୍ରଚ୍ୟୁତି ହୁଏ ନାହିଁ । କିପରି ? କାରଣ-ତାହା ପାଇଁ ନିୟମ, ଅତଦ୍‌ରୂପ ଓ ଅଭାବ ରହିଛି । ଯେପରି 'ଅତ୍ୟନ୍ତ ମାତ୍ମାନମ୍' (ଆଚାର୍ଯ୍ୟ କୁଳରେ ବାସ କରି ବ୍ରହ୍ମଚାରୀ ଯେଉଁ ଆଚାର୍ଯ୍ୟ ଗୃହରେ ଶରୀରକୁ ଅତ୍ୟନ୍ତ କ୍ଷୀଣ କରେ), 'ଅରଣ୍ୟ ମିୟାଦିତି', (ଅରଣ୍ୟ ପାରିବ୍ରାଜ୍ୟ ପ୍ରାପ୍ତ କରୁ, ଏହି ପଦ ଶାସ୍ତ୍ରମାର୍ଗ ଅଟେ, ସେହି ପାରିବ୍ରାଜ୍ୟରୁ ପ୍ରଚ୍ୟୁତ ନହେଉ-ଏହାହିଁ ଉପନିଷଦ୍‌ର ରହସ୍ୟ), 'ଆଚାର୍ଯ୍ୟେଣାଭ୍ୟନୁଜ୍ଞାତଃ' (ଆଚାର୍ଯ୍ୟଠାରୁ ଅନୁଜ୍ଞା ପାଇ ଶରୀର ବିମୋକ୍ଷ ପର୍ଯ୍ୟନ୍ତ ଚାରି ଆଶ୍ରମରେ ଏକହ ସେହି ଯଥାବିଧି ଆଚରଣ କର) ଏହି ପ୍ରକାରର ନିୟମ



ପ୍ରଚ୍ୟୁତିର ଅଭାବ ଦେଖାଏ ଏବଂ ଯେପରି 'ବ୍ରହ୍ମଚର୍ଯ୍ୟଂ ସମାପ୍ୟ' (ବ୍ରହ୍ମଚର୍ଯ୍ୟ ସମାପ୍ତ କରି ଗୃହସ୍ଥାଶ୍ରମୀ ହୁଅ), 'ବ୍ରହ୍ମଚର୍ଯ୍ୟାଦେବ' (ବ୍ରହ୍ମଚାରୀରୁ ସନ୍ନ୍ୟାସ ଗ୍ରହଣ କର) ଏହି ପ୍ରକାର ଆରୋହ ରୂପବଚନ ଉପଲବ୍ଧ ହୁଏ; ସେହିପରି ପ୍ରତ୍ୟବରୋହରୂପ ନୁହେଁ । ଏତାଦୃଶ ଆଚରଣଂ କିନ୍ତୁ ଶିଷ୍ଟ ନୁହେଁ ।

(ଗ) ଯାହା ପୂର୍ବ ଆଶ୍ରମକର୍ମର ଅନୁଷ୍ଠାନ କରିବା ଇଚ୍ଛାରେ ପ୍ରତ୍ୟବରୋହଣ କୁହାଯାଇଛି, ତାହା ଠିକ୍ ନୁହେଁ । କାରଣ- 'ଶ୍ରେୟାନ୍ ସ୍ୱଧର୍ମୋ' (ନିଜର ଧର୍ମ ଉତ୍ତମ; କିନ୍ତୁ ପରଧର୍ମ ଉତ୍ତମ ହେଲେ ବି ତାହା ନିଜପାଇଁ ହେୟ ।) ଏହା ସ୍ମୃତି ଅଟେ ଓ ନ୍ୟାୟ ମଧ୍ୟ ଅଟେ । ଯିଏ ଯାହାପାଇଁ ବିଧାନ କରାଯାଇଅଛି, ସେ ତାହାର ଧର୍ମ । ଯାହାଠାରୁ ଯେଉଁ ଧର୍ମ ଅନୁଷ୍ଠାନ କରାଯାଇଅଛି, ସେ ତାହାର ଧର୍ମ ନୁହେଁ, କାରଣ-ଧର୍ମ କିନ୍ତୁ ଚୋଦନାରୂପ ଅର୍ଥାତ୍ ବିଧିରୂପ ଅଟେ । ରାଗ ପ୍ରଭୃତି ଦଶ ମଧ୍ୟ ପ୍ରଚ୍ୟୁତି ନୁହେଁ । କାରଣ-ନିୟମଶାସ୍ତ୍ର ଅତ୍ୟନ୍ତ ବଳବାନ୍ । 'ଜୈମିନେରପି' ଏହି ଅପିଶବ୍ଦ ଦ୍ୱାରା ଏହି ବିଷୟରେ ପ୍ରତିପତ୍ତି ଦୃଢ଼ କରିବା ପାଇଁ ଜୈମିନି ଓ ବାଦରାୟଣଙ୍କର ସଂପ୍ରତିପତ୍ତି ଉପଦେଶ କରନ୍ତି ।୪୦।

## ११ अधिकाराधिकरणम् ॥ सू. ४१-४२ ॥

## ୧୧ ଅଧିକାରାଧିକରଣମ୍ ସୂ. ୪୧-୪୨

**न चाधिकारिकमपि तपनानुमानात्तदयोगात् ॥ ३-४-४१ ॥**

**ନ ଚାଧିକାରିକମପି ପତନାନୁମାନାତ୍ତଦ ଯୋଗାତ୍ ॥୩-୪-୪୧॥**

ଅଧିକାରିକମପି=ଅଧିକାରଂ ଶାସ୍ତ୍ର ଦ୍ୱାରା ପ୍ରାପ୍ତ ଅଧିକାରିକ ପ୍ରାୟଶ୍ଚିତ୍ତ ନୈଷ୍ଠିକ ବ୍ରହ୍ମଚାରିପାଇଁ, ନ=ନୁହେଁ । ପତନାନୁମାନାତ୍ = କାରଣ-'ଆରୂଢ଼ୋ ନୈଷ୍ଠିକଂ ଧର୍ମମ୍', ଇତ୍ୟାଦିରୁ ପାତିତ୍ୟ ଶ୍ରୁତି ଅନୁମାପକସ୍ମୃତି ଅଟେ । ତଦ ଯୋଗାତ୍ = କାରଣ-ସେହି ପ୍ରାୟଶ୍ଚିତ୍ତ ଅଯୋଗ ଅର୍ଥାତ୍ ଅସମ୍ଭବ ଅଟେ ।

ମୂଳ-(କ) ଯଦି ନୈଷ୍ଠିକୋ ବ୍ରହ୍ମଚାରୀ ପ୍ରମାଦାଦବକୀର୍ଯ୍ୟେତ, କିଂ ତସ୍ୟ 'ବ୍ରହ୍ମଚର୍ଯ୍ୟବକୀର୍ଣ୍ଣ୍ୟ ନୈର୍ଋତଂ ଗର୍ଦ୍ଦଭମାଲଭେତ' ଇତ୍ୟେତତପ୍ରାୟଶ୍ଚିତ୍ତଂ ସ୍ୟାଦୁତ ନେତି ? ନେତ୍ୟୁଚ୍ୟତେ', ଯଦପ୍ୟଧିକାରଲକ୍ଷଣେ ନିର୍ଣ୍ଣିତଂ-ପ୍ରାୟଶ୍ଚିତ୍ତମ୍ ଅବକୀର୍ଣ୍ଣିପଶୁଶ୍ଚ ତଦ୍‌ବିଦା-ଧାନସ୍ୟାପ୍ରାପ୍ତକାଳତ୍ୱାତ୍' (ଜୈ. ସୂ. ୬-୮-୨୧) ଇତି ତଦପି ନ ନୈଷ୍ଠିକସ୍ୟ ଭବିତୁମର୍ହତି ।

(ଖ) କିଂ କାରଣମ୍ ? 'ଆରୂଢ଼ୋ ନୈଷ୍ଠିକଂ ଧର୍ମ ଯସ୍ତୁ ପ୍ରଚ୍ୟବତେ ପୁନଃ । ପ୍ରାୟଶ୍ଚିତ୍ତଂ ନ ପଶ୍ୟାମି ଯେନ ଶୁଦ୍ଧ୍ୟେତ୍ ସ ଆତ୍ମହା' ଇତ୍ୟ ପ୍ରତିସମାଧେୟପତନସ୍ମରଣା-ଚ୍ଛିନ୍ନଶିରସ ଇବ ପ୍ରତିକ୍ରିୟାନୁପପତ୍ତେଃ ଉପକୁର୍ବାଣସ୍ୟ ତୁ ତାଦୃକ୍‌ପତନସ୍ମରଣାଭାବାଦୁପ-ପଦ୍ୟତେ ତତ୍‌ପ୍ରାୟଶ୍ଚିତ୍ତମ୍ ।

ଭାଷା-(କ) ଯଦି ନୈଷ୍ଠିକ ବ୍ରହ୍ମଚାରୀ ପ୍ରମାଦବଶତଃ ବ୍ରହ୍ମଚାରୀବ୍ରତରୁ ପ୍ରଚ୍ୟୁତ ହୁଏ, ତେବେ ତାହାର 'ବ୍ରହ୍ମଚାର୍ଯ୍ୟବକୀର୍ଣ୍ଣୀ (ବ୍ରହ୍ମଚର୍ଯ୍ୟରୁ ଭ୍ରଷ୍ଟ ହେଲେ ବ୍ରହ୍ମଚାରୀ ନୈଋତ ଗର୍ଦଭକୁ ପ୍ରାପ୍ତ ହେବା ଉଚିତ) ଏହି ପ୍ରାୟଶ୍ଚିତ ହେବ କି ନୁହେଁ ? ନୁହେଁ; କାରଣ କୁହାଯାଇଛି ଯେ- ଅଧିକାର ଲକ୍ଷଣରେ 'ଅବକୀର୍ଣ୍ଣିପଶୁଶ୍ଚ' (ଯେପରି ଉପନୟନ କାଳରେ ଲୌକିକ ଅଗ୍ନିରେ ହୋମ କରାଯାଏ, ସେପରି ଅବକୀର୍ଣ୍ଣ ପଶୁର ଲୌକିକ ଅଗ୍ନିରେ ହୋମ କରାଯାଏ । କାରଣ-ଆଧାନ ଏଠାରେ ଅପ୍ରାପ୍ତକାଳ ଅଟେ) ଏଠାରେ ଯେଉଁ ପ୍ରାୟଶ୍ଚିତ ନିର୍ଣ୍ଣୟ କରାଯାଇଛି, ସେସବୁ ନୈଷ୍ଠିକ ବ୍ରହ୍ମଚାରୀର ନୁହେଁ ।

(ଖ) କାରଣ କ'ଣ ? 'ଆରୁଢ଼ୋ ନୈଷ୍ଠିକଂ' (ନୈଷ୍ଠିକ ଧର୍ମରେ ଆରୂଢ ହୋଇ ଯିଏ ପୁନଶ୍ଚ ପ୍ରଚ୍ୟୁତ ହୁଏ, ସେ ଆତ୍ମଘାତୀ । ଯାହାଦ୍ୱାରା ଶୁଦ୍ଧ ହେଲେ ମଧ ତାହାର ପ୍ରାୟଶ୍ଚିତ ହୁଏ ନାହିଁ) ଏହିପ୍ରକାର ସ୍ମୃତିରେ ଅପ୍ରତିକାର୍ଯ୍ୟ ପତନ କୁହାଯାଇଛି । ତେଣୁ ଯେପରି ଖଣ୍ଡିତ ମସ୍ତକର ପୁନର୍ବାର ପ୍ରତିସନ୍ଧାନ ହୁଏ ନାହିଁ, ସେପରି ଏହି ପତନର ମଧ ପ୍ରତିକାର କିଛି ନାହିଁ । ଉପକୁର୍ବାଣର ଏହିପରି ପତନର ସ୍ମୃତି ନ ହେବାରୁ ତାହାର ପ୍ରାୟଶ୍ଚିତ ସମ୍ଭବପର ॥୪୧॥

## उपपूर्वमपि त्वेके भावमशनवत्तदुक्तम् ॥ ३-४-४२ ॥
## ଉପପୂର୍ବମପି ତ୍ୱେକେ ଭାବମଶନବତ୍ତଦୁକ୍ତମ୍ ॥୩-୪-୪୨॥

ଅପି ତୁ ଏକେ=କେତେକ ଆଚାର୍ଯ୍ୟ, ଉପପୂର୍ବମ୍-'ଉପ' ଉପସର୍ଗ ପୂର୍ବକ ଉପପାତକ ସ୍ୱୀକାର କରନ୍ତି । ଅଶନବତ୍=ଯେପରି ଉପକୁର୍ବାଣ ବ୍ରହ୍ମଚାରୀ ଯଦି ମଦ୍ୟ ମାଂସ ଖାଏ, ତେବେ ବ୍ରତଲୋପ ଓ ପୁନଃସଂସ୍କାର ହୁଏ । ସେପରି ପ୍ରଚ୍ୟୁତ ନୈଷ୍ଠିକ ବ୍ରହ୍ମଚାରୀ ପାଇଁ ପ୍ରାୟଶ୍ଚିତ୍ତର ଭାବମ୍=ବିଧାନ ହୋଇଛି । ତଦୁକ୍ତମ୍=ଏହାର ବିଚାର ପୂର୍ବମୀମାଂସାର 'ସମା ବିପ୍ରତିପତ୍ତିଃ ସ୍ୟାତ୍' ଇତ୍ୟାଦି ସୂତ୍ରରେ କରାଯାଇଛି ॥

ମୂଳ-(କ) ଅପି ତ୍ୱେକ ଆଚାର୍ଯ୍ୟା ଉପପାତକ ମେବୈତଦିତି ମନ୍ୟନ୍ତେ, ଯନ୍ନୈଷ୍ଠିକସ୍ୟ ଗୁରୁଦାରାଦିଭ୍ୟୋନ୍ୟତ୍ର ବ୍ରହ୍ମଚର୍ଯ୍ୟଂ ବିଶୀର୍ଯ୍ୟେତ୍ ନ ତନ୍ମହାପାତକଂ ଭବତି, ଗୁରୁ ତଳ୍ପାଦିଷୁ ମହାପାତକେଷ୍ୱ ପରିଗଣନାତ୍ । ତସ୍ମାଦୁପକୁର୍ବାଣବନ୍ନୈଷ୍ଠିକସ୍ୟାପି ପ୍ରାୟଶ୍ଚିତସ୍ୟ ଭାବମିଚ୍ଛନ୍ତି, ବ୍ରହ୍ମଚାରିତ୍ୱାବିଶେଷାଦବକୀର୍ଣ୍ଣତ୍ୱା ବିଶେଷାଦ୍ଧ ।

(ଖ) ଅଶନବତ୍ । ଯଥା ବ୍ରହ୍ମଚାରିଣୋ ମଧୁମାଂସାଶନେ ବ୍ରତଲୋପଃ ପୁନଃ ସଂସ୍କାରଶ୍ଚୈବମିତି । ଯେହି ପ୍ରାୟଶ୍ଚିତସ୍ୟାଭାବମିଚ୍ଛନ୍ତି ତେଷାଂ ନ ମୂଳମୁପଲଭ୍ୟତେ, ଯେ ତୁ ଭାବମିଚ୍ଛନ୍ତି ତେଷାଂ ବ୍ରହ୍ମଚର୍ଯ୍ୟ ବକୀର୍ଣ୍ଣୀତ୍ୟେତଦବିଶେଷଣ ଶ୍ରବଣଂ ମୂଳମ୍ । ତସ୍ମାଦ୍ଭାବୋ ଯୁକ୍ତତରଃ ।

(ଗ) ତଦୁକ୍ତଂ ପ୍ରମାଣ ଲକ୍ଷଣେ- 'ସମା ବିପ୍ରତିପତ୍ତିଃ ସ୍ୟାତ୍' (ଜୈ. ସୂ. ୧-୩-୮), ଶାସ୍ତ୍ରସ୍ଥା ବା ତନ୍ନିମିତ୍ତତ୍ୱାତ୍ (ଜୈ. ସୂ. ୧-୩-୯) ଇତି । ପ୍ରାୟଶ୍ଚିତ୍ତାଭାବ ସ୍ମରଣଂ

ତ୍ୱେବଂ ସତି ଯତ୍ନଗୌରବୋପ୍ରାଦନାର୍ଥମିତି ବ୍ୟାଖ୍ୟାତବ୍ୟମ୍ । ଏବଂ ଭିକ୍ଷୁବୈଖାନସୟୋରପି 'ବାନପ୍ରସ୍ଥୋ ଦୀକ୍ଷାଭେଦେ କୃଚ୍ଛ୍ରଂ ଦ୍ୱାଦଶ ରାତ୍ରଂ ଚରିତ୍ୱା ମହାକକ୍ଷଂ ବର୍ଧୟେତ', 'ଭିକ୍ଷୁର୍ବାନ ପ୍ରସ୍ଥବତ୍ ସୋମବଲ୍ଲିବର୍ଜଂ ସ୍ୱଶାସ୍ତ୍ରସଂସ୍କାରଶ୍ଚ', ଇତ୍ୟେବମାଦି ପ୍ରାୟଶ୍ଚିତ୍ତ ସ୍ମରଣମନୁସ୍ମର୍ତ୍ତବ୍ୟମ୍ ॥

ଭାଷା- (କ) ଅନ୍ୟ ଆଚାର୍ଯ୍ୟ ସ୍ୱୀକାର କରନ୍ତି ଯେ- ଯେଉଁ ନୈଷ୍ଠିକ ବ୍ରହ୍ମଚାରୀର ଗୁରୁପତ୍ନୀ ପ୍ରଭୃତିଙ୍କଠାରୁ ଅନ୍ୟତ୍ର ବ୍ରହ୍ମଚର୍ଯ୍ୟ ବିଶୀର୍ଣ୍ଣ ହୁଏ, ତେବେ ସେ ଉତପାତକ ହୁଏ; ମହାପାତକ ନୁହେଁ । କାରଣ-ତାହାର ଗୁରୁତତ୍ତ୍ୱାଦି ମହାପାତକରେ ପରିଗଣିତ ହୁଏ ନାହିଁ । ତେଣୁ ଉପକୁର୍ବାଣ ପରି ନୈଷ୍ଠିକ ମଧ୍ୟ ପ୍ରାୟଶ୍ଚିତର ଅସ୍ତିତ୍ୱ ଇଚ୍ଛା କରେ । କାରଣ-ବ୍ରହ୍ମଚାରିତ୍ୱ ଅବିଶେଷ ଅଟେ ଏବଂ ଅବକୀର୍ଣ୍ଣିତ୍ୱ ଅବିଶେଷ ହୁଏ । ଅର୍ଥାତ୍ ଦୁଇଟିର ସମାନ ଭାବରେ ବ୍ରହ୍ମଚାରୀ ଓ ଅବକୀର୍ଣ୍ଣ ହୁଏ ।

(ଖ) ଅଶନ ସମାନ । ଯେପରି ମଧୁ, ମଦ୍ୟ ଓ ମାଂସ ଭକ୍ଷଣ କଲେ ବ୍ରହ୍ମଚାରୀର ବ୍ରତଲୋପ ଓ ସଂସ୍କାର ହୁଏ, ସେହିପରି ଏଠାରେ ଜାଣିବା ଉଚିତ୍ । ଯାହା ପ୍ରାୟଶ୍ଚିତର ଅଭାବ ଚାହାନ୍ତି, ତାହାର ମତ ମୂଳ ପ୍ରମାଣ ରୂପେ ଉପଲବ୍ଧ ହୁଏ ନାହିଁ । ଯେଉଁମାନେ ପ୍ରାୟଶ୍ଚିତ୍ତର ଭାବକୁ ଚାହାଁନ୍ତି, ସେମାନଙ୍କ ମତରେ ବ୍ରହ୍ମଚାରୀ ଅବକୀର୍ଣ୍ଣ । ଏହି ଅବିଶେଷ ଶ୍ରୁତିମୂଳ ଅଟେ । ତେଣୁ ପ୍ରାୟଶ୍ଚିତର ଅସ୍ତିତ୍ୱ ଯୁକ୍ତିଯୁକ୍ତ ।

(ଗ) 'ସମାଃ ବିପ୍ରତିପତ୍ତିଃ ସ୍ୟାତ୍' ଅର୍ଥାତ୍ ବୃଦ୍ଧମାନଙ୍କ ବଚନ ଦୁଇଟି ଅର୍ଥରେ ସମାନ ହେଲେ ବିକଳ୍ପ ସମାନ ପ୍ରତିପତ୍ତି ହେବ । 'ଶାସ୍ତ୍ରସ୍ଥା ବା ତନ୍ନିମିତ୍ତତ୍ୱାତ୍' ଅର୍ଥାତ୍ ଶାସ୍ତ୍ରୀୟ ପ୍ରତିପତ୍ତି ଅଧିକ ବଳବତୀ ହୁଏ, କାରଣ-ଧର୍ମବିଜ୍ଞାନ ଶାସ୍ତ୍ରନିମିତ୍ତକ ଅଟେ । ସେହିପରି ପ୍ରାୟଶ୍ଚିତ୍ତାଭାବ ପ୍ରତିପାଦକ ସ୍ମୃତି କିନ୍ତୁ ଯତ୍ନଗୌରବ କରିବା ପାଇଁ ରହିଛି ବୋଲି ବ୍ୟାଖ୍ୟାନ କରାଯାଏ । ସେହିପରି ଭିକ୍ଷୁବୈଖାନସମାନଙ୍କର ମଧ୍ୟ 'ବାନପ୍ରସ୍ଥୋ ଦୀକ୍ଷାଭେଦେ' (ବାନପ୍ରସ୍ଥବ୍ରତ ଲୋପ ହେବା ପରେ ଦ୍ୱାଦଶ ରାତ୍ରି ପର୍ଯ୍ୟନ୍ତ ପ୍ରଜାପତ୍ୟ କରି ବହୁତ ତୃଣ ଓ ବୃକ୍ଷ ଥିବା ସ୍ଥାନରେ ଜଳଦାନ କରି ବୃଦ୍ଧି କର), 'ଭିକ୍ଷୁର୍ବାନପ୍ରସ୍ଥଂ' ଭିକ୍ଷୁ ବାନପ୍ରସ୍ଥ ପରି ସୋମଲତାକୁ ପରିତ୍ୟାଗ କରି ସ୍ୱଶାସ୍ତ୍ରବିହିତ ସଂସ୍କାର, ଧ୍ୟାନ, ପ୍ରାଣାୟାମ କର) ଇତ୍ୟାଦି ପ୍ରାୟଶ୍ଚିତ ସ୍ମୃତିର ଭିକ୍ଷୁ ଓ ବାନପ୍ରସ୍ଥରେ ଅନୁସ୍ମରଣ କରିବା ଉଚିତ ॥୪୨॥

**१२ । बहिरधिकरणम् ॥ सू० ४३ ॥**

**୧୨ । ବହିରଧିକରଣମ୍ ॥ସୂଂ-୪୩॥**

**बहिस्तूभयथापि स्मृतेराचाराच्च ॥ ३-४-४३ ॥**

**ବହିସ୍ତୁଭୟଥାପି ସ୍ମୃତେରାଚାରାଚ୍ଚ ॥୩-୪-୪୩॥**

ଉଭୟଥାପି = ଉର୍ଦ୍ଧ୍ବରେତା ନିଜ ଆଶ୍ରମରୁ ବାହାରି ଉପପାତକ ହେଉ, ଅଥବା ମହାପାତକ ହେଉ, ଏହି ଦୁଇପ୍ରକାରରେ ତାହାର ଶିଷ୍ଟ ଦ୍ୱାରା, ବହିସ୍ତୁ = ବହିଷ୍କାର କରବା ଉଚିତ । ସ୍ମୃତେରାଚାରାଚ୍ଚ = କାରଣ - ପ୍ରାୟଶ୍ଚିତ୍ତଂ ନ ପଶ୍ୟାମି । ଇତ୍ୟାଦି ନିନ୍ଦା ସ୍ମୃତି ଓ ଶିଷ୍ଟାଚାର ବାକ୍ୟ ଦେଖାଯାଏ ।

ମୂଳ-(କ) ଯଦ୍ୟୂର୍ଦ୍ଧ୍ବରେତାସାଂ ସ୍ୱାଶ୍ରମେଭ୍ୟଃ ପ୍ରଚ୍ୟବନଂ ମହାପାତକଂ ଯଦି ବୋପାତକମୁଭୟଥାପି ଶିଷ୍ଟୈସ୍ତେଃ ବହିଷ୍କର୍ତ୍ତବ୍ୟାଃ ଆରୂଢ଼ୋ ନୈଷ୍ଠିକଂ ଧର୍ମଂ ଯସ୍ତୁ ପ୍ରଚ୍ୟବତେ ପୁନଃ । ପ୍ରାୟଶ୍ଚିତ୍ତଂ ନ ପଶ୍ୟମି ଯେନ ଶୁଦ୍ଧ୍ୟେତ୍ସ ଆତ୍ମହା', ଇତି । 'ଆରୂଢ଼ପତିତଂ ବିପ୍ରଂ ମଣ୍ଡଳାଚ୍ଚ ବିନିଃସୃତମ୍ । ଉଦ୍‌ବଦ୍ଧଂ କୃମିଦଷ୍ଟଂ ଚ ସ୍ପୃଷ୍ଟ୍ବା ଚାନ୍ଦ୍ରାୟଣଂ ଚରେତ୍' ଇତି ଚୈବମାଦିନିନ୍ଦାତିଶୟସ୍ମୃତିଭ୍ୟଃ ଶିଷ୍ଟା ଚାରାଚ୍ଚ । ନହିଯଜ୍ଞାଧ୍ୟୟନବିବାହାଦିତି ତୈଃ ସହାଚରନ୍ତି ଶିଷ୍ଟାଃ ॥

ଭାଷା-(କ) ଯଦି ଉର୍ଦ୍ଧ୍ବରେତର ନିଜ ଆଶ୍ରମରୁ ପ୍ରଚ୍ୟୁତ ହୋଇ ମହାପାତକ ହୁଏ, ଅଥବା ଉପପାତକ ହୁଏ-ଏହି ଦୁଇପ୍ରକାରରେ ସେହି ଶିଷ୍ଟପୁରୁଷ ଦ୍ୱାରା ବହିଷ୍କୃତ ହେବା ଉଚିତ । କାରଣ- 'ଆରୂଢ଼ୋ ନୈଷ୍ଠିକଂ' (ଯେଉଁ ନୈଷ୍ଠିକ ଧର୍ମରେ ଆରୂଢ଼ ହୋଇ ପୁଣି ପ୍ରଚ୍ୟୁତ ହୁଏ, ସେହି ଆତ୍ମଘାତୀ' ଶୁଦ୍ଧ ହେଲେ ତା'ର ପ୍ରାୟଶ୍ଚିତ ହୁଏ ନାହିଁ) ଏବଂ 'ଆରୂଢ଼ପତିତଂ' (ଆଶ୍ରମରେ ଆରୂଢ଼ ହୋଇ ପତିତବିପ୍ରକୁ, ମଣ୍ଡଳ ଦ୍ୱାରା ବହିଷ୍କୃତକୁ ଫାଶିଦ୍ୱାରା ସ୍ୱୟଂ ମୃତ ବ୍ରାହ୍ମଣକୁ, କୃମିଦ୍ୱାରା ଦୁଷ୍ଟ ବ୍ରାହ୍ମଣକୁ ସ୍ପର୍ଶକରି ଚାନ୍ଦ୍ରାୟଣ କର) ଇତ୍ୟାଦି ଅତିଶୟ ନିନ୍ଦା କରୁଥିବା ସ୍ମୃତି ଓ ଶିଷ୍ଟାଚାର ଦେଖାଯାଏ । ତେଣୁ ଶିଷ୍ଟପୁରୁଷ ତାହା ସହିତ ଯଜ୍ଞ, ଅଧ୍ୟୟନ, ବିବାହାଦି ବ୍ୟବହାର କରନ୍ତି ନାହିଁ ॥୪୩॥

## १३ । स्वाम्यधिकरणम् ॥ सू. ४४-४६ ॥

## ୧୩। ସ୍ୱାମ୍ୟଧିକରଣମ୍ ॥ ସୂ ୪୪-୪୬॥

## स्वामिनः फलश्रुतेरित्यात्रेयः ॥ ३-४-४४ ॥

## ସ୍ୱାମିନଃ ଫଳଶ୍ରୁତେରିତ୍ୟାତ୍ରେୟଃ ॥୩-୪-୪୪॥

ସ୍ୱାମିନଃ = ଯଜମାନ ସାଙ୍ଗପ୍ରଧାନ ଉପାସନାଗୁଡ଼ିକର କର୍ତ୍ତା ଅଟେ । ଇତି ଆତ୍ରେୟଃ=ଏହା ଆତ୍ରେୟ ଆଚାର୍ଯ୍ୟଙ୍କ ମତ ଅଟେ । ଫଳଶ୍ରୁତେ= କାରଣ-'ବର୍ଷତି ହାସ୍ମୈ' ଇତ୍ୟାଦି ଫଳଶ୍ରୁତି ଅଟେ ॥

ମୂଳ-(କ) ଅଙ୍ଗେଷୂପାସନେଷ୍ଟୁ ସଂଶୟଃ - କିଂ ତାନି ଯଜମାନକର୍ମାଣ୍ୟାହୋସ୍ୱିତ୍ ଋତ୍ୱିକ୍‌କର୍ମାଣୀତି । କିଂ ତାବତପ୍ରାପ୍ତମ୍ ? ଯଜମାନକର୍ମାଣୀତି । କୁତଃ ? ଫଳଶ୍ରୁତେଃ । ଫଳ ହି ଶ୍ରୂୟତେ- 'ବର୍ଷତି ହାସ୍ମୈ ବର୍ଷୟତି ହ ଯ ଏତଦେବଂ ବିଦ୍ୱାନବୃଷ୍ଟୌ ପଞ୍ଚବିଧଂ

ସାମୋପାସ୍ତେ' (ଛା ୨-୩-୨) ଇତ୍ୟାଦି । ତଚ୍ଚ ସ୍ୱାମିଗାମି ନ୍ୟାଯ୍ୟମ୍, ତସ୍ୟ ସାଙ୍ଗେ ପ୍ରୟୋଗେଽଧିକୃତତ୍ୱାତ୍, ଅଧିକୃତାଧିକାରତ୍ୱାଚ୍ଚୈବଂଜାତୀୟକସ୍ୟ ।

(ଖ) ଫଳଞ୍ଚ କର୍ତ୍ତୃଗ୍ୟୁପାସନାନାଂ ଶ୍ରୂୟତେ- 'ବର୍ଷତ୍ୟସ୍ମୈ ଯ ଉପାସ୍ତେ' ଇତ୍ୟାଦି । ନନ୍ୱୃତ୍ୱିଜୋଽପି ଫଳଂ ଦୃଷ୍ଟମ୍ 'ଆତ୍ମନେ ବା ଯଜମାନାୟ ବା ଯଂ କାମଂ କାମୟତେ ତମାଗାୟତି' (ବୃ. ୧-୩-୧୮) ଇତି । ନ ତସ୍ୟ ବାଚନିକତ୍ୱାତ୍ । ତସ୍ମାତ୍ସ୍ୱାମିନ ଏବ ଫଳବତ୍ସୁପାସନେଷୁ କର୍ତ୍ତୃତ୍ୱଂମିତ୍ୟାତ୍ରେୟ ଆଚାର୍ଯ୍ୟୋ ମନ୍ୟତେ ॥

ଭାଷା-(କ) ଅଙ୍ଗସମ୍ବନ୍ଧ ଉପାସନାରେ ସଂଶୟ ହୁଏ କି ସେହି ଉପାସନାଗୁଡ଼ିକ ଯଜମାନର କର୍ମ ଅଟନ୍ତି କି ଋତ୍ୱିକର କର୍ମ ? ତେବେ କ'ଣ ପ୍ରାପ୍ତ ହୁଏ । ପୂର୍ବପକ୍ଷ ସେହିଗୁଡ଼ିକ ଯଜମାନର କର୍ମ ଅଟନ୍ତି, କାରଣ ଏହାର ଫଳଶ୍ରୁତି ଅଛି । 'ବର୍ଷତି ହାସ୍ମୈ' (ଏହିପ୍ରକାର ଜାଣିଥିବା ପୁରୁଷ ବୃଷ୍ଟିରେ ପାଞ୍ଚର ସାମର ଉପାସନା କରେ । ତାହା ପାଇଁ ବର୍ଷା ହୁଏ । ସେ ନିଜେ ମଧ୍ୟ ମେଘଦ୍ୱାରା ବର୍ଷା କରେ) ଇତ୍ୟାଦି ଫଳଶ୍ରୁତି ଅଛି । ସେହି ଫଳ ଯଜମାନଙ୍କୁ ମିଳେ, କାରଣ ସେ ସାଙ୍ଗପ୍ରୟୋଗରେ ଅଧିକୃତ ଅଟେ । ଏହି ପ୍ରକାରର ଉପାସନାରେ ସେ ଅଧିକୃତ ଅଧିକାର ଅଟେ ।

(ଖ) 'ବର୍ଷତ୍ୟସ୍ମୈ' (ଯାହା ଉପାସନା କରେ, ତାହା ପାଇଁ ମେଘ ଯଥେଷ୍ଟ ବୃଷ୍ଟି କରେ) ଇତ୍ୟାଦି ଫଳ ଉପାସନାଗୁଡ଼ିକର କର୍ତ୍ତାରେ ଶ୍ରବଣ କରାଯାଏ । ପରନ୍ତୁ 'ଆତ୍ମନେ ବା' (ନିଜପାଇଁ ଅଥବା ଯଜମାନ ପାଇଁ ଯେଉଁ ମନୋରଥର ସେହି ଉଦ୍‌ଗାତା କାମନା କରେ, ତାହାକୁ ସାମର ଉଦ୍‌ଗାନ ଦ୍ୱାରା ସିଦ୍ଧ କରାଯାଏ) ଏହପ୍ରକାର ଋତ୍ୱିକକୁ ଫଳପ୍ରାପ୍ତି ହେବାର ଦେଖାଯାଏ କି ? ନୁହେଁ; କାରଣ-ସେ ବାଚନିକ ଅଟେ । ତେଣୁ ଯଜମାନ ଫଳଯୁକ୍ତ ଉପାସନାର କର୍ତ୍ତା ଅଟେ । ଏହି ଆଚାର୍ଯ୍ୟ ଆତ୍ରେୟ ସ୍ୱୀକାର କରନ୍ତି ॥୪୪॥

## आर्त्विज्यमित्यौडुलोमिस्तस्मै हि परिक्रीयते ॥ ३-४-४५ ॥

## ଆର୍ତ୍ୱିଜ୍ୟମିତ୍ୟୌଡୁଲୋମିସ୍ତସ୍ମୈ ହି ପରିକୀର୍ତ୍ୟତେ ॥୩-୪-୪୫॥

ଆତ୍ୱିଜମ୍=ଏହି ଉପାସନାର କର୍ତ୍ତା ଋତ୍ୱିକ ଅଟେ । ଇତି ଔଡୁଲୋମିଃ=ଏହା ଔକୁଲୋମି ସ୍ୱୀକାର କରନ୍ତି । ହି=କାରଣ; ତସ୍ମୈ=ସେହି ସାଙ୍ଗ କର୍ମପାଇଁ ପରିକୀର୍ତ୍ୟତେ=ଦକ୍ଷିଣା ଦେଇ ଋତ୍ୱିକ୍‌କୁ କ୍ରୟ କରାଯାଏ ।

ମୂଳ-(କ) ନୈତଦସ୍ତି-ସ୍ୱାମିକର୍ମାଣ୍ୟୁପାସନାନୀତି, ଋତ୍ୱିକ୍ କର୍ମାଣ୍ୟେତାନି ସ୍ୟୁରିତ୍ୟୌଡୁଲୋମିରାଚାର୍ଯ୍ୟୋ ମନ୍ୟତେ । କିଂ କାରଣମ୍ ? ତସ୍ମୈ ହି ସାଙ୍ଗାୟ କର୍ମଣେ ଯଜମାନେନର୍ତ୍ୱିକ୍‌ପରିକ୍ରୀୟତେ; ତତ୍‌ପ୍ରୟୋଗାନ୍ତଃପାତୀନି ଚୋଦ୍‌ଗୀଥାଦ୍ୟୁପାସନାନ୍ୟଧିକୃତାଧିକାରତ୍ୱାତ୍ । ତସ୍ମାଦ୍ ଗୋଦୋହନାଦିନିୟମବଦେବର୍ତ୍ୱିଗ୍‌ଭିଃ ନିର୍ବର୍ତ୍ତ୍ୟେରନ୍ ।

(ଖ) ତଥାଚ 'ତଂ ହ ବକୋ ଦାଲୋଭ ବିଦାଞ୍ଚକାର ସହ ନୈମିଶୀୟାନାମୁଦ୍‌ଗାତା ବଭୂବ' (ଛା ୧-୨-୧୩) ଇତ୍ୟୁଦ୍‌ଗାତୃକର୍ତ୍ତୃକତାଂ ବିଜ୍ଞାନସ୍ୟ ଦର୍ଶୟତି । ଯତ୍ତୂକ୍ତମ୍-କର୍ତ୍ତାଶ୍ରୟଂ ଫଳଂ ଶ୍ରୂୟତ ଇତି ନୈଷଦୋଷଃ, ପରାର୍ଥତ୍ୱାଦୃତ୍ୱିଜୋଽନ୍ୟତ୍ର ବଚନାତ୍‌ଫଳ-ସମ୍ବନ୍ଧାନୁପପତ୍ତେଃ ॥

ଭାଷା-ସିଦ୍ଧାନ୍ତ-(କ) ଉପାସନାଗୁଡ଼ିକ ସ୍ୱାମିକର୍ମ ନୁହେଁ । ସେଗୁଡ଼ିକ ଋତ୍ୱିକର କର୍ମ ହେବା ଉଚିତ୍-ଏହା ଆଚାର୍ଯ୍ୟ ଔଡୁଲୋମି ମାନନ୍ତି । କାରଣ-ସେହି ସାଙ୍ଗକର୍ମ ନିମିତ୍ତ ଯଜମାନ ଋତ୍ୱିକକୁ ପରିତ୍ରୟଣ କରେ । ଉଦ୍‌ଗୀଥାଦି ଉପାସନାଗୁଡ଼ିକ ସେହି ପ୍ରୟୋଗର ଅନ୍ତର୍ଭୁକ୍ତ ଅଟନ୍ତି, କାରଣ-ଅଧିକୃତର ଅଧିକାର ଅଛି । ତେଣୁ ଗୋଦୋହନ କାର୍ଯ୍ୟ ପରି ସେହି ସାଙ୍ଗ ଉପାସନାଗୁଡ଼ିକ ଋତ୍ୱିକ ଦ୍ୱାରା ସମ୍ପାଦନା କରିବା ଉଚିତ୍ ।

(ଖ) ସେହିପରି 'ତହ ବକୋ' (ଅତଃ ଦାଲ୍‌ଭ୍ୟର ପୁତ୍ର ବକ ଜାଣିଲେ ଯେ-ପୂର୍ବୋକ୍ତ ପ୍ରକାରରେ ପ୍ରାଣ ଦୃଷ୍ଟିରେ ଉଦ୍‌ଗୀଥର ଉପାସନା ଏହି ନୈମିଷ୍ୟାରଣ୍ୟରେ ଯଜ୍ଞ କରି ଉଦ୍‌ଗାତା ହେଲେ) ଏହି ଶ୍ରୁତି ବିଜ୍ଞାନର ଉଦ୍‌ଗାତା କର୍ତ୍ତୃକ ଦେଖାଏ । ପୂର୍ବରୁ ଯାହା କୁହାଯାଇଛି ଯେ- କର୍ତ୍ତାର ଆଶ୍ରୟ ଫଳଶ୍ରୁତି ଅଟେ । ଏହା ଦୋଷ ନୁହେଁ । କାରଣ-ଋତ୍ୱିକ୍ ଯଜମାନ ପାଇଁ ଉଦିଷ୍ଟ । ତଦ୍ୱାରା ଅନ୍ୟ ଋତ୍ୱିକର ଫଳସମ୍ବନ୍ଧ ଅନୁପାପନ୍ନ ହୁଏ ॥୪୫॥

## श्रुतेश्च ॥ ३-४-४६ ॥

## ଶ୍ରୁତେଶ୍ଚ ॥୩-୪-୪୬॥

ଶ୍ରୁତେଃ ଚ=କାରଣ- 'ଯାଂ ବୈ କାଞ୍ଚନ' ଇତ୍ୟାଦି ଶ୍ରୁତି ଋତ୍ୱିକ କର୍ତ୍ତୃକ ଉପାସନାର ଫଳ ଯଜମାନ ପାଇଁ ପ୍ରଦର୍ଶନ କରେ ।

ମୂଳ-(କ) 'ଯାଂ ବୈ କାଞ୍ଚନ ଯଜ୍ଞେ ଋତ୍ୱିକ୍ ଆଶିଷମାଶାସତ ଇତି ଯଜମାନାୟୈବ ତାମାଶାସତ ଇତି ହୋବାଚ' ଇତି । 'ତସ୍ମାଦୁ ହୈବଂବିଦୁଦ୍‌ଗାତାବ୍ରୂୟାତ୍‌କଂ ତେ କାମମାଗାୟାନି । (ଛା ୧-୭-୮/୯) ଇତି ତଚ୍ଚର୍ତ୍ୱିକ୍କର୍ତ୍ତୃକସ୍ୟ ବିଜ୍ଞାନସ୍ୟ ଯଜମାନଗାମିଫଳଂ ଦର୍ଶୟତି । ତସ୍ମାଦଙ୍ଗୋପାସନାମୃତ୍ୱିକ୍‌କର୍ମତ୍ୱଂସିଦ୍ଧିଃ ॥

ଭାଷା-(କ) 'ଯାଂ ବୈ' (ଋତ୍ୱିକ ଯଜ୍ଞରେ ଯେ କୌଣସି କାର୍ଯ୍ୟକୁ ପ୍ରାର୍ଥନା କରନ୍ତି, ଯଜମାନ ପାଇଁ ତାହାକୁ ପ୍ରାର୍ଥନା କରନ୍ତି ବୋଲି ସେ କହନ୍ତି), 'ତସ୍ମାଦୁ' (ତେଣୁ ତାହାକୁ ଜାଣିଥିବା ଉଦ୍‌ଗାତା ଯଜମାନ ଦ୍ୱାରା ତାହା କହନ୍ତି ଯେ- ମୁଁ ତୁମ୍ଭ ପାଇଁ କେତେକ କାମନାକୁ ଗାନ କରିବ) ଏହିପ୍ରକାର ଶ୍ରୁତିଗୁଡ଼ିକ ଋତ୍ୱିକ୍ କର୍ତ୍ତୃକ ଉପାସନାର ଫଳ ଯଜମାନଗାମୀ ଦେଖାଏ । ତେଣୁ ଅଙ୍ଗୋପାସନାଗୁଡ଼ିକରେ ଋତ୍ୱିକ୍ କର୍ମତ୍ୱସିଦ୍ଧି ହୁଏ ॥୪୬॥



## १४ । सहकार्यन्तरविध्यधिकरणम् ॥ सू० ४७-४९ ॥

## ୧୪-ସହକାର୍ଯ୍ୟନ୍ତରବିଧ୍ୟଧିକରଣମ୍ ॥୪୭-୪୯॥

**सहकार्यन्तरविधि: पक्षेण तृतीयं तद्वतो बिध्यादिवत् ॥ ३-४-४७॥**

**ସହକାର୍ଯ୍ୟନ୍ତରବିଧିଃ ପକ୍ଷେଣ ତୃତୀୟଂ ତଦ୍‌ବତୋ ବିଧ୍ୟାଦିବତ୍ ॥୩-୪-୪୭॥**

ସହାକାର୍ଯ୍ୟନ୍ତରବିଧିଃ= 'ବାଲ୍ୟଂ ଚ ପାଣ୍ଡିତ୍ୟସ୍' ଏହି ଶ୍ରୁତିରେ ବିଦ୍ୟାର ସହକାରୀମୌନ ଅପୂର୍ବ ହେବାରୁ ତାହାକୁ ବିଧି ବୋଲି ଜାଣିବା ଉଚିତ୍ । ତୃତୀୟମ୍ = ଶ୍ରବଣାଦି ସାଧନରେ ତୃତୀୟ ସାଧନ ନିଦିଧ୍ୟାସନ ମୌନଶବ୍ଦରୁ ବିହିତ ହୁଏ । ତଦ୍‌ବତଃ= ପରୋକ୍ଷ ଜ୍ଞାନଯୁକ୍ତ ସନ୍ନ୍ୟାସୀମାନଙ୍କ ପାଇଁ ସାକ୍ଷାତକାର ନିମିତ୍ତ ଏ ବିଧି ଅଟେ । ପ୍ରକ୍ଷେଣ=ଯେଉଁ ପକ୍ଷରେ ଭେଦଦର୍ଶନ ପ୍ରାପ୍ତି ହୁଏ, ସେହି ପକ୍ଷରେ ସାକ୍ଷାତ୍‌କାରର ପ୍ରାପ୍ତି ନ ହେଲେ ଏହି ବିଧି ସାର୍ଥକ ହୁଏ । ବିଧାଦିବତ୍=ଯେପରି ଦର୍ଶପୂର୍ଣ୍ଣମାସ ପ୍ରଧାନ ବିଧିରେ ଅନ୍ୱାଧାନ ଅଙ୍ଗର ବିଧି ହୁଏ, ସେହିପରି ଏଠାରେ ମୌନର ବିଧି ହୁଏ ।

ମୂଳ-(କ) ତସ୍ମାଦ୍‌ବ୍ରାହ୍ମଣଃ ପାଣ୍ଡିତ୍ୟଂ ନିର୍ବିଦ୍ୟ ବାଲ୍ୟେନ ତିଷ୍ଠାସେଦ୍ ବାଲ୍ୟଂ ଚ ପାଣ୍ଡିତ୍ୟଂ ଚ ନିର୍ବିଦ୍ୟାଥ ମୁନିରମୌନଂ ଚ ମୌନଂ ଚ ନିର୍ବିଦ୍ୟାଥ ବ୍ରାହ୍ମଣଃ (ବୃହ ୩-୫-୧) ଇତି ବୃହଦାରଣ୍ୟକେ ଶ୍ରୂୟତେ ।

(ଖ) ତତ୍ରସଂଶୟଃ-ମୌନଂ ବିଧୀୟତେ ନ ବେତି । ନ ବିଧୀୟତ ଇତି ତାବତ୍‌ପ୍ରାପ୍ତମ୍, ବାଲ୍ୟେନ ତିଷ୍ଠାସେଦିତ୍ୟତ୍ରୈବ ବିଧେରବସିତତ୍ୱାତ୍ । ନ ହ୍ୟଥ ମ୍ୟୁନିରିତ୍ୟତ୍ର ବିଧାୟିକା ବିଭକ୍ତିରୂପ ଲଭ୍ୟତେ, ତସ୍ମାଦୟମନୁବାଦୋ ଯୁକ୍ତଃ ।

(ଗ) କୁତଃ ପ୍ରାପ୍ତିରିତି ଚେତ୍-ମୁନିପଣ୍ଡିତଶବ୍ଦୟୋଃ ଜ୍ଞାନାର୍ଥତ୍ୱାତ୍ ପାଣ୍ଡିତ୍ୟଂ ନିର୍ବିଦ୍ୟେତ୍ୟେବଂ ପ୍ରାପ୍ତଂ ମୌନମ୍ । ଅପି ଚ-ଅମୌନଂ ଚ ମୌନଂ ନ ନିର୍ବିଦ୍ୟାଥ ବ୍ରାହ୍ମଣଃ' ଇତ୍ୟତ୍ର ତାବନ୍ନ ବ୍ରାହ୍ମଣତ୍ୱଂ ବିଧୀୟତେ, ପ୍ରାଗେବ ପ୍ରାପ୍ତତ୍ୱାତ୍ । ତସ୍ମାତ୍ 'ଅଥବ୍ରାହ୍ମଣଃ' ଇତି ପ୍ରଶଂସାବାଦସ୍ତଥୈବାଥ ମୁନିରିତ୍ୟପି ଭବିତୁମର୍ହତି, ସମାନନିର୍ଦ୍ଦେଶତ୍ୱାଦିତି ।

ଭାଷା-(କ) 'ତସ୍ମାଦ୍ ବ୍ରାହ୍ମଣଃ' (ଅତଃ ବ୍ରାହ୍ମଣ ଆତ୍ମଜ୍ଞାନର ପୂର୍ଣ୍ଣତୟା ସମ୍ପାଦନ କରି ଆତ୍ମଜ୍ଞାନ ସ୍ୱରୂପ ବଳରେ ରହିବାକୁ ଇଚ୍ଛା କରେ । ପୁନଶ୍ଚ ବାଲ୍ୟ ଏବଂ ପାଣ୍ଡିତ୍ୟକୁ ପୂର୍ଣ୍ଣତୟା ପ୍ରାପ୍ତ କରି ସେ ମୁନି ହୁଏ । ତଥା ଅମୌନ ଓ ମୌନର ପୂର୍ଣ୍ଣତୟା ସମ୍ପାଦନ କରି ବ୍ରାହ୍ମଣ କୃତକୃତ୍ୟ ହୁଏ) ଏହା ବୃହଦାରଣ୍ୟକରେ ଶ୍ରୁତି ଅଛି ।

(ଖ) ଏଠାରେ ସନ୍ଦେହ ହୁଏ ଯେ- ମୌନର ବିଧାନ ହୁଏ କି ନୁହେଁ । ପୂର୍ବପକ୍ଷ- ମୌନର ବିଧାନ କରାଯାଏ ନାହିଁ ବୋଲି ପ୍ରାପ୍ତ ହୁଏ । କାରଣ- 'ବାଲ୍ୟେନ ତିଷ୍ଠାସେତ୍'

ବାକ୍ୟରେ ବିଧି ସମାପ୍ତ ହୁଏ । କାରଣ – 'ଅଥ ମୁନିଃ' ବାକ୍ୟରେ ବିଧାୟକ ବିଧି-ପ୍ରତିପାଦକ ବିଭକ୍ତି ଉପଲବ୍ଧ ହୁଏ ନାହିଁ, ତଣ୍ଣେ ଏହି ଅନୁବାଦ ଯୁକ୍ତିଯୁକ୍ତ ।

(ଗ) ଯଦି କହ ଯେ- ମୌନର ପ୍ରାପ୍ତି କେଉଁଠାରେ ହୋଇଛି, ତେବେ ମୁନି ଓ ପଣ୍ଡିତଶବ୍ଦ ଜ୍ଞାନାର୍ଥକ ହେବାରୁ 'ପାଣ୍ଡିତ୍ୟଂ ନିର୍ବିଦ୍ୟ' ଏଠାରେ ମୌନ ପ୍ରାପ୍ତ ହୁଏ ଏବଂ ଅମୌନଂ ଚ ମୌନଂ ଚ' (ଅମୌନ ଓ ମୌନର ପୂର୍ଣ୍ଣତୟା ସମ୍ପାଦନ କରି ବ୍ରାହ୍ମଣ କୃତ୍ୟକୃତ୍ୟ ହୁଏ) ଏଠାରେ ବ୍ରାହ୍ମଣତ୍ୱର ବିଧାନ କରାଯାଇନାହିଁ; କାରଣ-ସେହି 'ବିବିଦିଷନ୍ତି ବ୍ରାହ୍ମଣାଃ' ପୂର୍ବରୁ ପ୍ରାପ୍ତ ହୋଇଛି । ତେଣୁ 'ଅଥ ବ୍ରାହ୍ମଣଃ' ଏହି ପ୍ରଶଂସାବାଦ ଅଟେ । ତେଣୁ 'ଅଥ ମୁନିଃ' ଏଠାରେ ପ୍ରଶଂସାବାଦ ହୁଏ । କାରଣ-ଦୁଇଟିରେ ଏହା ସମାନ ରୂପରେ ନିର୍ଦ୍ଦେଶ ହୋଇଛି ॥

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ସହକାର୍ଯ୍ୟନ୍ତରବିଧିରିତି । ବିଦ୍ୟା ସହକାରିଣୋ ମୌନସ୍ୟ ବାଲ୍ୟାପାଣ୍ଡିତ୍ୟବଦ୍‌ବିଧିରେବାଶ୍ରୟିତବ୍ୟଃ, ଅପୂର୍ବତ୍ୱାତ୍ । ନନୁ ପାଣ୍ଡିତ୍ୟଶବ୍ଦେନୈବ ମୌନସ୍ୟାବଗତତ୍ୱମୁକ୍ତମ୍ । ନୈଷ ଦୋଷଃ । ମୁନିଶବ୍ଦସ୍ୟ ଜ୍ଞାନାତିଶୟାର୍ଥତ୍ୱାତ୍, ମନନାନ୍‌ମୁନିରିତ ଚ ବ୍ୟୁତ୍ପତ୍ତିସମ୍ଭବାତ୍, 'ମୁନୀନାମପ୍ୟହଂବ୍ୟାସଃ' (ଗୀ ୧୦-୩୭) ଇତି ଚ ପ୍ରୟୋଗଦର୍ଶନାତ୍ ।

(ଖ) ନନୁ ମୁନିଶବ୍ଦ ଉତ୍ତମାଶ୍ରମବଚନୋଽପି ଶ୍ରୁୟତେ- 'ଗାର୍ହସ୍ଥ୍ୟମାଚାର୍ଯ୍ୟକୁଳଂ ମୌନଂ ବାନପ୍ରସ୍ଥମ୍' ଇତ୍ୟତ୍ର, ନ, 'ବାଲ୍ମିକିର୍ମୁନିପୁଙ୍ଗବଃ' ଇତ୍ୟାଦିଷୁ ବ୍ୟଭିଚାରଦର୍ଶନାତ୍ । ଇତରାଶ୍ରମସଂନିଧାନାତ୍ତୁ ପାରିଶେଷ୍ୟାଉତ୍ତ୍ରୋତ୍ତମାଶ୍ରମୋପାଦାନଂ ଜ୍ଞାନପ୍ରଧାନତ୍ୱାଦୁତ୍ତମାଶ୍ରମସ୍ୟ । ତସ୍ମାଦ୍ ବାଲ୍ୟପାଣିତ୍ୟାପେକ୍ଷୟା ତୃତୀୟମିଦଂ ମୌନଂ ଜ୍ଞାନାତିଶୟରୂପଂ ବିଧୀୟତେ ।

(ଗ) ଯତ୍ତୁ ବାଲ୍ୟ ଏବ ବିଧେଃ ପର୍ଯ୍ୟବସାନମିତି, ତଥାପ୍ୟପୂର୍ବନ୍‌ମୁନିତ୍ୱସ୍ୟ ବିଧେୟତ୍ୱ-ମାଶ୍ରୀୟତେ-ମୁନିଃ ସ୍ୟାଦିତି । ନିର୍ବେଦନୀୟତ୍ୱନିର୍ଦ୍ଦେଶାଦପି ମୌନସ୍ୟ ବାଲ୍ୟପାଣ୍ଡିତ୍ୟବଦ୍‌ବିଧେୟତ୍ୱାଶ୍ରୟତାମ୍ । ତଦ୍‌ବ୍ତୋ ବିଦ୍ୟାବତଃ ସଂନ୍ୟାସିନଃ କଥଂ ବିଦ୍ୟାବତଃ ସଂନ୍ନ୍ୟାସିନ ଇତ୍ୟବଗମ୍ୟତେ ? ତଦଧିକାରାତ୍ । 'ଆତ୍ମାନଂ ବିଦିତ୍ୱା ପୁତ୍ରାଦ୍ୟେ-ଷଣାଭ୍ୟୋ ବ୍ୟୁତ୍ଥାୟାଥ ଭିକ୍ଷାଚର୍ଯ୍ୟଂ ଚରନ୍ତି' ଇତି ।

(ଘ) ନନୁ ସତି ବିଦ୍ୟାବତ୍ତ୍ୱେ ପ୍ରାପ୍ନୋତ୍ୟେବ ତତ୍ରାତିଶୟଃ କିଂ ମୌନବିଧିନେତ୍ୟତ ଆହପକ୍ଷେଣେତି । ଏତଦୁକ୍ତ ଭବତି-ଯସ୍ମିନ୍‌ପକ୍ଷେ ଭେଦଦର୍ଶନପ୍ରାବଲ୍ୟାନ୍ନ ପ୍ରାପ୍ନୋତି, ତସ୍ମିନ୍ନେବ ବିଧିରିତି । ବିଧାଦିବତ୍ । ଯଥା- 'ଦର୍ଶପୂର୍ଣ୍ଣମାସାଭ୍ୟାଂ ସ୍ୱର୍ଗକାମୋ ଯଜେତ' ଇତ୍ୟେବଂ ଜାତୀୟକେ ବିଧାଦୌ ସହକାରିତ୍ୱେନାଗ୍ନ୍ୟନ୍ୱାଧାନାଦିକମଙ୍ଗଜାତଂ ବିଧୀୟତେ । ଏବମବିଧିପ୍ରଧାନେଽପ୍ୟସ୍ମିନ୍ ବିଦ୍ୟାବାକ୍ୟେ ମୌନବିଧିରତ୍ୟର୍ଥଃ ॥



ମୂଳ-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ 'ସହକାର୍ଯ୍ୟନ୍ତରବିଧିଃ' ଅର୍ଥାତ୍ ବିଦ୍ୟାର ସହକାରୀ ମୌନର ବାଲ୍ୟ ଓ ପାଣ୍ଡିତ୍ୟ ପରି ବିଧି ଆଶ୍ରୟତା କରିବା ଉଚିତ୍, କାରଣ-ସେ ଅପୂର୍ବ ଅଟେ । ପରନ୍ତୁ ଏଠାରେ କୁହାଯାଇଛି-ପାଣ୍ଡିତ୍ୟ ଶବ୍ଦ ଦ୍ୱାରା ମୌନ ଅବଗତ ହୁଏ କି ? ହଁ, ଏହା ଦୋଷ ନୁହେଁ, କାରଣ-ମୁନିଶବ୍ଦ ଜ୍ଞାନାତିଶୟାର୍ଥକ ଅଟେ ଏବଂ ମନନରୁ ମୁନିଶବ୍ଦର ବ୍ୟୁତ୍ପତ୍ତି ସମ୍ଭବ ହୁଏ ଏବଂ ମୁନିମାନଙ୍କ ମଧ୍ୟରେ ମୁଁ ବ୍ୟାସ ଅଟେ' ବୋଲି ପ୍ରୟୋଗ ମଧ୍ୟ ଦେଖାଯାଏ ।

(ଖ) ପରନ୍ତୁ ଗାରସ୍ଥ୍ୟ ('ଗାର୍ହସ୍ଥ୍ୟ, ଆଚାର୍ଯ୍ୟକୁଳ, ମୌନ ଓ ବାନପ୍ରସ୍ଥ') ଏହି ଶ୍ରୁତିରେ ମୁନିଶବ୍ଦ ଉତ୍ତମାଶ୍ରମର ବାଚକ କି ? ନୁହେଁ । କାରଣ- 'ବାଲ୍ମୀକିଃ ମୁନିପୁଙ୍ଗବଃ' ଇତ୍ୟାଦିରେ ବ୍ୟଭିଚାର ଦେଖାଯାଏ । ପରନ୍ତୁ ଅନ୍ୟ ଆଶ୍ରମଗୁଡ଼ିକର ସଂନ୍ନିଧାନରୁ ଓ ପରିଶେଷରୁ ଏହି ବଚନରେ ଉତ୍ତମ ଆଶ୍ରମ ଗ୍ରହଣ କରାଯାଏ) କାରଣ-ଉତ୍ତମ ଆଶ୍ରମ ଜ୍ଞାନପ୍ରଧାନ ଅଟେ ।

(ଗ) ତେଣୁ ବାଲ୍ୟରେ ବିଧିର ପର୍ଯ୍ୟବସାନ କରାଯାଇଛି । ତଥାପି ମୁନିତ୍ୱର ଅପୂର୍ବ ହେଲେ 'ମୁନିଃ ସ୍ୟାତ୍' ଏହିପ୍ରକାର ବିଧେୟତ୍ୱ ଆଶ୍ରୟଣ କରାଯାଏ । ମୌନର ନିର୍ବେଦନୀୟ ରୂପରେ ନିର୍ଦ୍ଦେଶ ହେଲେ ବାଲ୍ୟ ଓ ପାଣ୍ଡିତ୍ୟ ପରି ବିଧେୟତ୍ୱ ଆଶ୍ରୟଣ ହୁଏ । 'ତଦ୍‌ବତୋ' ଅର୍ଥାତ୍ ବିଦ୍ୟାବାନ ସଂନ୍ନ୍ୟାସୀର । ବିଦ୍ୟାବାନ୍ ସଂନ୍ନ୍ୟାସୀର ବୋଲି କିପରି ଅବଗତ ହୁଏ ? କାରଣ-'ଆତ୍ମାନଂ ବିଦିତ୍ୱା' (ଆତ୍ମାକୁ ଜାଣି ପୁତ୍ରାଦି ଏଷଣାକୁ ତ୍ୟାଗ କରି ପରେ ଭିକ୍ଷାଚାର୍ଯ୍ୟ କରନ୍ତି) ଏହିପ୍ରକାର ସଂନ୍ନ୍ୟାସୀର ଅଧିକାର ରହିଛି ।

(ଘ) ପରନ୍ତୁ ବିଦ୍ୟାବତ୍ୱ ହେଲେ ସେଠାରେ ଅତିଶୟ ପ୍ରାପ୍ତ ହୁଏ; କିନ୍ତୁ ମୌନବିଧିର କି ପ୍ରୟୋଜନ ରହିଛି ? ଏହି ସ୍ଥଳରେ କୁହନ୍ତି- 'ପକ୍ଷେଣ' ଅଭିପ୍ରାୟ ଅଛି । ଯେଉଁ ପକ୍ଷରେ ଭେଦଦର୍ଶନର ପ୍ରଧାନତାକୁ ଜ୍ଞାନାତିଶୟ ପ୍ରାପ୍ତ ହୁଏ ନାହିଁ, ସେହି ପକ୍ଷରେ ଏହି ବିଧି ଅଛି । ବିଧିପ୍ରଭୃତି ସମାନ । ଯେପରି ଦର୍ଶପୂର୍ଣ୍ଣମାସାଭ୍ୟାଂ ସ୍ୱର୍ଗକାମୋ ଯଜେତ' ଏହି ବିଧିରେ ସହକାରି ରୂପରେ ଅଗ୍ନିର ଅନ୍ୱାଧାନାଦି ଅଙ୍ଗ ସମୂହର ବିଧାନ କରାଯାଇଛି । ସେହିପରି ଅବିଧି-ପ୍ରଧାନ-ବିଦ୍ୟାବାକ୍ୟରେ ମୌନବିଧି ଅଟେ-ଏହାହିଁ ଅର୍ଥ ॥୪୭॥

ମୂଳ-(କ) ଏବଂ ବାଲ୍ୟାଦିବିଶିଷ୍ଟେ କୈବଲ୍ୟାଶ୍ରମେ ଶ୍ରୁତିମତି ବିଦ୍ୟମାନେ କସ୍ମାଚ୍ଛାନ୍ଦୋଗ୍ୟ ଗୃହିଣୋପସଂହାରଃ 'ଅଭିସମାବୃତ୍ୟ କୁଟୁମ୍ବେ' (ଛା ୬-୧୫-୧) ଇତ୍ୟତ୍ର ? ତେନ ହ୍ୟୁପସଂହରଂସ୍ତଦ୍‌ବିଷୟମାଦରଂ ଦର୍ଶୟତୀତି । ଅତ ଉତ୍ତରଂ ପଠତି-

ଭାଷା-(କ) ଏହିପ୍ରକାର ବାଲ୍ୟାଦି ବିଶିଷ୍ଟ ଶ୍ରୁତି ପ୍ରତିପାଦିତ କୈବଲ୍ୟାଶ୍ରମରେ ବିଦ୍ୟମାନ ହେଲେ ଛାନ୍ଦୋଗ୍ୟ ଉପନିଷଦ୍‌ରେ 'ଅଭିସମାବୃତ୍ୟ' (ଆଚାର୍ଯ୍ୟ ଗୃହରେ

ସମାବର୍ତ୍ତନ ହୋଇ ଗୃହସ୍ଥାଶ୍ରମରେ ରହ, ପବିତ୍ର ସ୍ଥାନରେ ସ୍ୱାଧ୍ୟାୟ ସମାପନ କରି) ଏହି ବାକ୍ୟରେ ଗୃହରେ କିପରି ଉପସଂହାର ହୋଇଛି ? ତେଣୁ ଉପସଂହାର କରି ଶ୍ରୁତିବାକ୍ୟ ଗୃହସ୍ଥାଶ୍ରମ ବିଷୟକ ଆଦର ପ୍ରଦର୍ଶନ କରାଏ; ତେଣୁ ତାହାର ଉତ୍ତରରେ କୁହାଯାଇଛି-

**कृत्स्नभावात्तु गृहिणोपसंहारः ॥ ३-४-४८ ॥**

**କୃତ୍ସ୍ନଭାବାତ୍ତୁ ଗୃହିଣୋପସଂହାରଃ ॥୩-୪-୪୮॥**

କୃତ୍ସ୍ନଭାବାତ୍=ଗୃହସ୍ଥାଶ୍ରମରେ ବିଶେଷ ରୂପରେ ବିଦ୍ୟମାନ ହୁଏ । ଅତଃ ଯଜ୍ଞାଦି ଓ ଆଶ୍ରମାନ୍ତର ବିହିତ ଶମାଦିର, ଗୃହିଣା=ଗୃହସ୍ଥାଶ୍ରମଦ୍ୱାରା, ଉପସଂହାରଃ=ଉପସଂହାର ହୋଇଛି । ତୁ=ତୁ ଶବ୍ଦ ବିଶେଷଣାର୍ଥକ ଅଟେ ।

ମୂଳ-(କ) ତୁ ଶବ୍ଦୋ ବିଶେଷଣାର୍ଥଃ । କୃତ୍ସ୍ନଭାବୋଽସ୍ୟ ବିଶେଷ୍ୟତେ । ବହୁଳାୟାସାନି ହି ବହୂନ୍ୟାଶ୍ରମ କର୍ମାଣି ଯଜ୍ଞାଦୀନି ତଂ ପ୍ରତି କର୍ତ୍ତବ୍ୟତୟୋପଦିଷ୍ଟାନି, ଆଶ୍ରମାନ୍ତର କର୍ମାଣି ଚ ଯଥାସମ୍ଭବ ଯହିଂସେନ୍ଦ୍ରିୟ ସଂଯମାଦୀନି ତସ୍ୟ ବିଦ୍ୟନ୍ତେ । ତସ୍ମାଦ୍ ଗୃହମେଧିନୋପସଂହାରୋ ନ ବିରୁଧତେ ॥

ଭାଷା-(କ) ତୁ ଶବ୍ଦ ବିଶେଷଣାର୍ଥକ ଅଟେ । ତେଣୁ ଗୃହସ୍ଥାଶ୍ରମର ପୂର୍ଣ୍ଣତା ବିଶେଷଣ ବିଶିଷ୍ଟ ହୁଏ । କାରଣ-ବହୁତ ଆୟାସବାନ୍ ବହୁତରୁ ଯଜ୍ଞାଦି ଆଶ୍ରମକର୍ମ ଗୃହସ୍ଥାଶ୍ରମ ପାଇଁ କର୍ତ୍ତବ୍ୟ ରୂପରେ ଉପଦିଷ୍ଟ ହୁଏ । ଏବଂ ଅହିଂସା, ଇନ୍ଦ୍ରିୟ ସଂଯମାଦି ଅନ୍ୟ ଆଶ୍ରମର କର୍ମ ମଧ୍ୟ ଯଥାସମ୍ଭବ ସେଠାରେ ରହେ । ଅତଃ ଗୃହସ୍ଥାଶ୍ରମରେ ଉପସଂହାର ବିରୁଦ୍ଧ ନୁହେଁ ॥୪୮॥

**मौनवदितरेषामप्युपदेशात् ॥ ३-४-३९ ॥**

**ମୌନବଦିତରେଷାମପ୍ୟୁପଦେଶାତ୍ ॥୩-୪-୪୯॥**

ମୌନବତ୍ = ଯେପରି ମୌନ ଓ ଗୃହସ୍ଥାଶ୍ରମ ଶ୍ରୁତି ସମ୍ମତ, ସେପରି, ଇତରେଷାମପି=ବାନପ୍ରସ୍ଥ ଓ ବ୍ରହ୍ମଚର୍ଯ୍ୟାଶ୍ରମ ମଧ୍ୟ ଶ୍ରୁତିସମ୍ମତ । ଉପଦେଶାତ୍=କାରଣ- ଏହି ଚାରୋଟି ଆଶ୍ରମର ଶ୍ରୁତିରେ ଉପଦେଶ ହୋଇଛି ॥

ମୂଳ-(କ) ଯଥା ମୌନଂ ଗାର୍ହସ୍ଥ୍ୟଂ ଚୈତାବାଶ୍ରମୌ ଶ୍ରୁତିମନ୍ତାବେବମିତରାବପି ବାନପ୍ରସ୍ଥ ଗୁରୁକୁଳାବାସୌ । ଦର୍ଶିତାହି ପୁରସ୍ତାଚ୍ଛ୍ରୁତିଃତପ ଏବ ଦ୍ୱିତୀୟୋ ବ୍ରହ୍ମଚର୍ଯ୍ୟା- ଚାର୍ଯ୍ୟକୁଳବାସୀ ତୃତୀୟଃ (ଛା ୨-୨୩-୧) ଇତ୍ୟାଦ୍ୟା ।

(ଖ) ତସ୍ମାଚ୍ଚତୁର୍ଣ୍ଣାମପ୍ୟାଶ୍ରମାଣାମୁପଦେଶାବିଶେଷାତ୍ତୁଲ୍ୟବଦ୍ ବିକଳ୍ପ ସମୁଚ୍ଚୟାଭ୍ୟାଂ ପ୍ରତିପତ୍ତିଃ । ଇତରେଷାମିତି ଦ୍ୱୟୋରା ଶ୍ରମୟୋର୍ବହୁବଚନଂ ବୃତ୍ତିଭେଦାପେକ୍ଷୟାଽନୁଷ୍ଠାତୃ- ଭେଦାପେକ୍ଷୟା ବେତି ଦ୍ରଷ୍ଟବ୍ୟମ୍ ॥



ଭାଷା-(କ) ଯେପରି ମୌନ ସଂନ୍ନ୍ୟାସାଶ୍ରମ ଓ ଗୃହସ୍ଥାଶ୍ରମ-ଏହି ଦୁଇଟି ଆଶ୍ରମ ଶ୍ରୁତିସମ୍ମତ ଅଟେ; ସେହିପରି ବାନପ୍ରସ୍ଥ ଓ ଗୁରୁକୁଳବାସ ବ୍ରହ୍ମଚର୍ଯ୍ୟାଶ୍ରମ-ଏହି ଦୁଇଟି ଆଶ୍ରମ ଶ୍ରୁତିସମ୍ମତ । କାରଣ-'ତପ ଏବ ଦ୍ୱିତୀୟୋ' ତପ ହିଁ ଦ୍ୱିତୀୟ ଧର୍ମସ୍କନ୍ଧ ଅଟେ; ଏବଂ ବ୍ରହ୍ମଚାରୀ ଆଚାର୍ଯ୍ୟ କୁଳବାସୀ-ଏହା ତୃତୀୟ ଧର୍ମସ୍କନ୍ଧ ଅଟେ । ଇତ୍ୟାଦି ଶ୍ରୁତି ପୂର୍ବରୁ ପ୍ରଦର୍ଶନ କରାଯାଇଛି ।

(ଖ) ତେଣୁ ଚାରୋଟି ଆଶ୍ରମର ଅବିଶେଷ ଉପଦେଶ ହେଲେ ତାହାର ସମାନ ରୂପରେ ବିକଳ୍ପ ଏବଂ ସମୁଚ୍ଚୟ ରୂପରେ ପ୍ରତୀତି ହୁଏ । 'ଇତରେଷାମ୍' ଅର୍ଥାତ୍' 'ଅନ୍ୟମାନଙ୍କରେ' ଏହିପ୍ରକାର ଦୁଇଟି ଆଶ୍ରମ ନିମିତ୍ତ ବହୁବଚନ ବୃତ୍ତି ଭେଦରେ ଅଥବା ଅନୁଷ୍ଠାତାର ଭେଦରେ ହୁଏ-ଏହା ଜାଣିବା ଉଚିତ୍ ॥୪୯॥

## १५ । अनाविस्काराधिकरणम् ॥ सू. ५० ॥

## ୧୫ ଅନାବିଷ୍କାରାଧିକରଣମ୍ ॥ ସୂ. ୫୦॥

## अनाविष्कुर्वन्नन्वयात् ॥ ३-४-५० ॥

## ଅନାବିଷ୍କୁର୍ବନ୍ନନ୍ୱୟାତ୍ ॥୩-୪-୫୦॥

ଅନାବିଷ୍କୁର୍ବନ୍=ଶିଶୁପରି ନିଜର ଜ୍ଞାନ ପ୍ରଭୃତିକୁ ଲୋକମାନଙ୍କ ପାଖରେ ପ୍ରକଟ ନ କରି 'କେବଳ ଶୁଦ୍ଧ ଭାବ ହେଉ' ଏହି ପ୍ରକାର ଅବ୍ୟକ୍ତଲିଙ୍ଗ ଇତ୍ୟାଦି ଶ୍ରୁତିରେ ବିହିତ ରହିଛି । ଅନ୍ୱୟାତ୍=କାରଣ-ତାବନ୍ମାତ୍ର ହିଁ ଜ୍ଞାନର ଅଭ୍ୟାସରେ ଅନୁଗତ ହୁଏ ।

ମୂଳ-(କ) 'ତସ୍ମାଦ୍ ବ୍ରାହ୍ମଣଃ ପାଣ୍ଡିତ୍ୟଂ ନିର୍ବିଦ୍ୟ ବାଲ୍ୟେନ ତିଷ୍ଠାସେତ୍' (ବୃହ ୩-୫-୧) ଇତି ବାଲ୍ୟମନୁଷ୍ଠେୟତୟା ଶ୍ରୂୟତେ । ତତ୍ର କାଲସ୍ୟ ଭାବଃ କର୍ମ ବା ବାଲ୍ୟମିତି ତିଦ୍ଧିତେ ସତି ବାଲଭାବସ୍ୟ ବୟୋ ବିଶେଷସ୍ୱେଚ୍ଛୟା ସଂପାଦୟିତୁମଶକ୍ୟତ୍ୱାଦ୍ୟଥୋପପାଦମୂତ୍ର ପୁରୀଷତ୍ୱାଦି ବାଲଚରିତମନ୍ତର୍ଗତା ବା ଭାବ ବିଶୁଦ୍ଧିରପ୍ରୂଢେନ୍ଦ୍ରିୟତ୍ୱଂ ଦମ୍ଭଦର୍ପାଦିରହିତତ୍ୱଂ ବା ବାଲ୍ୟଂ ସ୍ୟାଦିତି ସଂଶୟଃ ।

(ଖ) କିଂ ତାବତ୍ପ୍ରାପ୍ତମ୍ ? କାମଚରବାଦ ଭକ୍ଷଣତା ଯଥୋପପାଦମୂତ୍ରପୁରୀଷତ୍ୱଂ ଚ ପ୍ରସିଦ୍ଧତରଂ ଲୋକେ ବାଲ୍ୟମିତି ତଦ୍‌ଗ୍ରହଣଂ ଯୁକ୍ତମ୍ । ନନୁ ପ୍ରତିତତ୍ୱାଦି ଦୋଷ ପ୍ରାପ୍ତେର୍ନ ଯୁକ୍ତଂ କାମଚରତାଦ୍ୟାଶ୍ରୟଣମ୍, ନ, ବିଦ୍ୟାବତଃ ସଂନ୍ନ୍ୟାସିନୋ ବଚନ ସାମର୍ଥ୍ୟାଦି ଦୋଷନିବୃତ୍ତିଃ, ପଶୁହିଂସାଦିଷ୍ୱିବେତି ।

(ଗ)' ଏବଂ ପ୍ରାପ୍ତେଽଭିଧୀୟତେ-ନ, ବଚନସ୍ୟ ଗତ୍ୟନ୍ତର ସମ୍ଭବାତ୍ । ଅବିରୁଦ୍ଧେ ହ୍ୟନ୍ୟସ୍ମିନ୍ ବାଲ୍ୟଶବ୍ଦାଭିଲପ୍ୟେ ଲଭ୍ୟମାନେ ନ ବିଧନ୍ତର ବ୍ୟାଘାତ କଳ୍ପନା ଯୁକ୍ତା ।

ପ୍ରଧାନୋପକାରାୟ ଋଙ୍ଗମ୍ ବିଧୀୟତେ । ଜ୍ଞାନାଭ୍ୟାସଶ୍ଚ ପ୍ରଧାନମିହ ଯତୀନାମନୁଷ୍ଠେୟମ୍ । ନଃ ସକଳାୟାଂ ବାଳଚର୍ଯ୍ୟାୟାମଙ୍ଗୀକ୍ରିୟମାଣାୟାଂ ଜ୍ଞାନାଭ୍ୟାସଃ ସମ୍ଭାବ୍ୟତେ । ତସ୍ମାଦାନ୍ତରୋ ଭାବିଶେଷୋ ବାଲସ୍ୟା ପ୍ରରୁତେନ୍ଦ୍ରିୟତ୍ୱାଦିରିହ ବାଲ୍ୟମାଶ୍ରୀୟତେ ।

(ଘ) ତଦାହ-ଅନାବିଷ୍କୁର୍ବନ୍ନିତି । ଜ୍ଞାନାଧୟନଧାର୍ମିକତ୍ୱାଦିଭିରାତ୍ମାନମ ବିଖ୍ୟାପୟନ୍ ଦମ୍ଭଦର୍ପାଦି ରହିତୋ ଭବେତ୍ । ଯଥା ବାଲୋଽପ୍ରରୁତେନ୍ଦ୍ରିୟତୟା ନ ପରେଷାମାତ୍ମାନ-ମାବିଷ୍କର୍ତୁମୀହତେ; ତଦ୍‌ବତ୍ । ଏବଂ ହ୍ୟସ୍ୟ ବାକ୍ୟସ୍ୟ ପ୍ରଧାନୋପକାର୍ଯ୍ୟର୍ଥାନୁଗମ ଉପପଦ୍ୟତେ ।

(ଙ) ତଥା ଚୋକ୍ତଂ ସ୍ମୃତିକାରୈଃ-ଯଂ ନ ସନ୍ତଂ ନ ଋସନ୍ତଂ ନାଶ୍ରୁତଂ ନ ବହୁଶ୍ରୁତମ୍, ନ ସୁବୃତ୍ତଂ ବେଦ କଶ୍ଚିତ୍ ସ ବ୍ରାହ୍ମଣଃ । ଗୂଢ଼ଧର୍ମାଶ୍ରିତୋ ବିଦ୍ୱାନଜ୍ଞାତ ଚରିତଂ ଚରେତ୍ । ଅନ୍ଧବଜ୍ଜଡ଼ବଚ୍ଚାପି ମୂକବଚ୍ଚ ମହୀଂ ଚରେତ୍ । ଅବ୍ୟକ୍ତ ଲିଙ୍ଗୋଽବ୍ୟକ୍ତାଋରଃ । ଇତି ଚୈବମାଦି ॥

ଭାଷା-(କ) 'ତସ୍ମାଦ୍ ବ୍ରାହ୍ମଣଃ' (ତେଣୁ ବ୍ରାହ୍ମଣକୁ ଆତ୍ମଜ୍ଞାନର ପୂର୍ଣ୍ଣତୟା ସଂପାଦନା କରି ବାଲ୍ୟଜ୍ଞାନ ବଳ ଭାବ ଦ୍ୱାରା ରହିବା ଉଚିତ୍) ଏହିପରି ବାଲ୍ୟର ଅନୁଷ୍ଠାନ ରୂପରେ ଶ୍ରୁତି ରହିଛି । ଏଠାରେ ବାଳର ଭାବ ବା କର୍ମକୁ ବାଲ୍ୟ କୁହାଯାଏ । ଏହିପରି ତଦ୍ଧିତ ପ୍ରତ୍ୟୟ ହେଲେ ବାଳଭାବ ବୟୋବିଶେଷର ଇଚ୍ଛା ସଂପାଦନ କରାଯାଏ ନାହିଁ । ଅତଃ ଯଥାସମ୍ଭବ ମୂତ୍ର, ପୁରୀଷଦ୍ୱର ତ୍ୟାଗ ପ୍ରଭୃତି ବାଳଚରିତ ବାଲ୍ୟ ଅଟେ ଅଥବା ଅନ୍ତର୍ଗତ ଭାବବିଶୁଦ୍ଧି ଅଥବା ଦର୍ପ, ଦମ୍ଭ ଏବଂ ଇନ୍ଦ୍ରିୟ ପ୍ରରୂଡ଼ାଦି ରହିତ ବାଲ୍ୟ ହେବା ଉଚିତ୍ ।

(ଖ) ତେବେ ଏଠାରେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ-ଇଚ୍ଛାନୁସାରେ ବଦନ, ଭକ୍ଷଣ, ଯଥେଚ୍ଛ ମୂତ୍ର, ପୁରୁଷର ତ୍ୟାଗ ପ୍ରଭୃତି ସଂସାରରେ ବାଳଭାବ ଅତି ପ୍ରସିଦ୍ଧ ଅଟେ । ତାହାର ଗ୍ରହଣ ଠିକ୍ ଅଟେ । ପରନ୍ତୁ ପତିତତ୍ୱାଦି ଦୋଷାପ୍ରାପ୍ତି ହେଲେ କାମଋରତା ଆଦିର ଆଶ୍ରୟଣ ଯୁକ୍ତ ହୁଏ ନାହିଁ ବୋଲି ସ୍ଥିର କରିବା ଠିକ୍ ନୁହେଁ । କାରଣ-ବିଦ୍ୟାବାନ୍ ସନ୍ନ୍ୟାସୀର ବଚନରୁ ସାମର୍ଥ୍ୟରୁ ଦୋଷ ନିବୃତ୍ତ ହୁଏ । ଯେପରିକି ବିଧିପ୍ରାପ୍ତ ପଶୁ ହିଂସାଦିରେ ଦୋଷ ହୁଏ ନାହିଁ ।

ସିଦ୍ଧାନ୍ତ-(ଗ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ-ତାହା ନୁହେଁ, କାରଣ-'ବାଲ୍ୟେନ ତିଷ୍ଠାସେତ୍' ଏହି ବଚନର ଅନ୍ୟଗତି ଅଛି । ବାଲ୍ୟ ଶବ୍ଦ ବାଚ୍ୟ ଅନ୍ୟ ଅବିରୁଦ୍ଧ ଅର୍ଥର ଉପଲବ୍ଧ ହେଲେ ଅନ୍ୟ ବିଧିର ବ୍ୟାଘାତ କଳ୍ପନା ଠିକ୍ ହୁଏ ନାହିଁ । ପ୍ରଧାନର ଉପକାରକ ପାଇଁ ଅଙ୍ଗର ବିଧାନ କରାଯାଏ । ଏଠାରେ ଜ୍ଞାନାଭ୍ୟାସ ଯତିମାନଙ୍କ ନିମିତ୍ତ ପ୍ରଧାନ ଅନୁଷ୍ଠେୟ ଅଟେ । ପରନ୍ତୁ ସଂପୂର୍ଣ୍ଣ ବାଳଚର୍ଯ୍ୟା ଅଙ୍ଗୀକାର କରାଗଲା ପରେ ଜ୍ଞାନାଭ୍ୟାସର ସମ୍ଭାବନା ହେବ ନାହିଁ; ତେଣୁ ବାଳର ଅନ୍ତର ଭାବିଷେଷ ଅପ୍ରରୂଢ଼ ଇନ୍ଦ୍ରିୟାଦି ବାଲ୍ୟ ଏଠାରେ ଆଶ୍ରୟଣ କରାଯାଇଅଛି ।



(ଘ) ସେମାନଙ୍କ ପ୍ରତି କୁହାଯାଇଅଛି- 'ଅନାବିଷ୍କୁର୍ବନ୍, ଜ୍ଞାନ, ଅଧ୍ୟୟନ, ଧାର୍ମିକତ୍ୱ ପ୍ରଭୃତି ଦ୍ୱାରା ନିଜର ଖ୍ୟାତି ନକରି ଦମ୍ଭ, ଦର୍ପାଦି ରହିତ ହେଉ । ଯେପରି ବାଳକ ଇନ୍ଦ୍ରିୟମାନଙ୍କ ଦ୍ୱାରା ପ୍ରରୂଢ଼ ନହେଲେ ମଧ୍ୟ ନିଜକୁ ଅନ୍ୟ ସମ୍ମୁଖରେ ପ୍ରକଟ କରିବାକୁ ଚେଷ୍ଟା କରେ ନାହିଁ, ସେହିପରି ବିଦ୍ୱାନର ବିଷୟରେ ଜାଣିବା ଉଚିତ୍ । ସେହିପରି 'ବାଲ୍ୟେନ ତିଷ୍ଠାସେତ୍' ଏହି ବାକ୍ୟର ପ୍ରଧାନୋପକାରୀ ଜ୍ଞାନାଭ୍ୟାସୋପକାରୀ ଅର୍ଥାନୁଗମ ଉପପନ୍ନ ହୁଏ ।

(ଙ) ସେହିପରି 'ଯଂ ନ ସନ୍ତମ୍' (ଯାହାକୁ କିଏ ନ ସତ୍, ନ ଅସତ୍, ନ ଅଶ୍ରୁତ, ନ ବହୁଶ୍ରୁତି, ନ ସଂବୃତ୍ତ ଓ ନ ଦୁର୍ବୃତ୍ତ ଜାଣେ, ସେହି ବ୍ରାହ୍ମଣ ଅଟେ) ଗୂଢ଼ ଧର୍ମର ଆଶ୍ରୟ କରି ବିଦ୍ୱାନ୍ ଅନ୍ୟ ଜଣକଠାରୁ ଅଜ୍ଞାତ ଚରିତ ହୋଇ ବିଚରଣ କରେ । ଅନ୍ଧପରି, ଜଡ଼ପରି ଏବଂ ମୂକପରି ପୃଥିବୀରେ ବିଚରଣ କରେ) (ଅବ୍ୟକ୍ତ ଲିଙ୍ଗ ଓ ଅବ୍ୟକ୍ତ ଆଚରଣ କରେ) ଇତ୍ୟାଦି ସ୍ମୃତିକାର କହନ୍ତି ।

## १६ । ऐहिकाधिकरणम् ॥ सू. ५१ ॥

## ୧୬ ଐହିକାଧିକରଣମ୍ ॥ ସୂ. ୫୧॥

## ऐहिकमप्यस्तुतप्रतिबन्धे तद्दर्शनात् ॥ ३-४-५१ ॥

## ଐହିକମପ୍ୟପ୍ରସ୍ତୁତପ୍ରତିବନ୍ଧେ ତଦ୍ଦର୍ଶନାତ୍ ॥୩-୪-୫୧॥

ଅପ୍ରସ୍ତୁତ ପ୍ରତିବନ୍ଧେ=ପ୍ରସ୍ତୁତ ପ୍ରତିବନ୍ଧ ନ ହେଲେ, ଐହିକମପି=ଏହି ଜନ୍ମରେ ବିଦ୍ୟାର ଉତ୍ପତ୍ତି ହୁଏ । ତଦ୍ଦର୍ଶନାତ୍=କାରଣ- 'ଗର୍ଭେ ଏବୈତଚ୍ଛାୟାନୋ ବାମଦେବଃ' ଇତ୍ୟାଦି ଶ୍ରୁତିରେ ତାହାକୁ ଦେଖାଯାଏ ॥

ମୂଳ-(କ) ସର୍ବପୋ ଚ ଯଜ୍ଞାଦିଶ୍ରୁତେରଶ୍ୱବତ୍ (ବ୍ର. ସୂ ୩-୪-୨୬) ଇତ୍ୟତ ଆରଭ୍ୟୋଚ୍ଚାବଚଂ ବିଦ୍ୟା ସାଧନମବଧାରିତମ୍, ତତ୍ଫଳଂ ବିଦ୍ୟା ସିଧ୍ୟନ୍ତୀ କିମିହୈବ ଜନ୍ମନି ସିଧ୍ୟତ୍ୟୁତ କଦାଚିଦ ମୂତ୍ରାପୀତି ଚିନ୍ତ୍ୟତେ ।

(ଖ) କିଂ ତାବତ୍ ପ୍ରାପ୍ତମ୍ ? ଇହେବୈତି । କିଂ କାରଣମ୍ ? ଶ୍ରବଣାଦିପୂର୍ବିକା ହି ବିଦ୍ୟା । ନ ଚ କଶ୍ଚିଦମୁତ୍ର ମେ ବିଦ୍ୟା ଜାୟତାମିତ୍ୟଭିସଂଧାୟ ଶ୍ରବଣାଦିଷୁ ପ୍ରବର୍ତ୍ତତେ । ସମାନ ଏବ ତୁ ଜନ୍ମନି ବିଦ୍ୟାଜନ୍ମାଭିସଂଘାୟୈତେଷୁ ପ୍ରବର୍ତ୍ତମାନୋଦୃଶ୍ୟତେ । ଯଜ୍ଞାଦୀନ୍ୟପି ଶ୍ରବଣାଦିଦ୍ୱାରେଣୈବ ବିଦ୍ୟାଂ ଜନୟନ୍ତି, ପ୍ରମାଣଜନ୍ୟତ୍ୱାଦ୍ ବିଦ୍ୟାୟାଃ । ତସ୍ମାଦୈହିକମେବ ବିଦ୍ୟାଜନ୍ମେତି ॥

ଭାଷା-(କ) 'ସର୍ବାପେକ୍ଷା ଚ' ଏହି ସୂତ୍ରରେ ଆରମ୍ଭ କରି ବହୁ ପ୍ରକାରରେ ବିଦ୍ୟା ସାଧନକୁ ନିଶ୍ଚିତ କରାଯାଇଅଛି । ସେହି ସାଧନର ଫଳ ରୂପରେ ସିଦ୍ଧ ହୋଇ ବିଦ୍ୟା ଏହି ଜନ୍ମରେ ସିଦ୍ଧ ହୁଏ । ଅଧବା କଦାଚିତ୍ ଅନ୍ୟ ଜନ୍ମରେ ହୁଏ କି ? ଏହି ବିଷୟରେ ବିଚାର କରାଯାଇଅଛି ।

(ଖ) ତେବେ ଏଠାରେ କ'ଣ ପ୍ରାପ୍ତ ହୋଇଛି ? ପୂର୍ବପକ୍ଷ-ଏହି ଜନ୍ମରେ ବିଦ୍ୟାସିଦ୍ଧ ହୁଏ; କାରଣ-ବିଦ୍ୟା ଶ୍ରବଣାଦି ପୂର୍ବିକା ଅଟେ । ମୋର ପରଜନ୍ମରେ ବିଦ୍ୟା ଉତ୍ପନ୍ନ ହେଉ-ଏହା ସଙ୍କଳ୍ପ କରି କୌଣସି ଶ୍ରବଣ ପ୍ରଭୃତିରେ ପ୍ରବୃତ୍ତ ହୁଏ ନାହିଁ । କିନ୍ତୁ ଏହି ଜନ୍ମରେ ବିଦ୍ୟା ଜନ୍ମର ସଙ୍କଳ୍ପ କରି ଏହି ସାଧନରେ ପ୍ରବୃତ୍ତ ହେବାର ଦେଖାଯାଏ । ଯଜ୍ଞାଦି ଶ୍ରବଣଦ୍ୱାରା ବିଦ୍ୟାକୁ ଉତ୍ପନ୍ନ କରନ୍ତି । କାରଣ-ବିଦ୍ୟା ପ୍ରମାଣଜନ୍ୟ ଅଟେ । ତେଣୁ ବିଦ୍ୟାର ଜନ୍ମ ଏହି ଜନ୍ମରେ ହୁଏ ।

ମୂଳ—(କ) ଏବଂ ପ୍ରାପ୍ତେ ବଦାମଃ - ଐହିକଂ ବିଦ୍ୟୋଜନ୍ମ ଭବତ୍ୟସତି ଅପ୍ରସ୍ତୁତ ପ୍ରତିବନ୍ଧ ଇତି । ଏତଦୁକ୍ତ ଭବତି - ଯଦି ପ୍ରକ୍ରାନ୍ତସ୍ୟ ବିଦ୍ୟା ସାଧନସ୍ୟ କଶ୍ଚିତ୍ ପ୍ରତିବନ୍ଧୋ ନ କ୍ରିୟତ, ଉପସ୍ଥିତ ବିପାକେନ କର୍ମାନ୍ତରେଣ, ତଦେହୈବ ବିଦ୍ୟୋତ୍ପଦ୍ୟତେ, ଯଦା ତୁ ଖଲୁ ତତ୍ପ୍ରତିବନ୍ଧଃ କ୍ରିୟତେ, ତଦାମୁତ୍ରେତି । ଉପସ୍ଥିତ ବିପାକତ୍ୱଂ ଚ କର୍ମଣୋ ଦେଶକାଳ ନିମିତ୍ତୋପନିପାତାଦ୍ ଭବତି ।

(ଖ) ଯାନି ଚୈକସ୍ୟ କର୍ମଣୋ ବିପାଚକାନି ଦେଶକାଳ ନିମିତ୍ତାନି, ତାନ୍ୟୋବାନ୍ୟସ୍ୟାପୀତି ନ ନିୟନ୍ତୁଂ ଶକ୍ୟତେ । ଯତୋ ବିରୁଦ୍ଧ ଫଳାନ୍ୟପି କର୍ମାଣି ଭବନ୍ତି । ଶାସ୍ତ୍ରମପ୍ୟସ୍ୟ କର୍ମଣଃ ଇଦଂ ଫଳଂ ଭବତୀତ୍ୟେତାବତି କର୍ଯ୍ୟବସିତ୍, ନ ଦେଶକାଳ ନିମିତ୍ତ ବିଶେଷମପି ସଙ୍କୀର୍ତ୍ତୟତି ।

(ଗ) ସାଧନବୀର୍ଯ୍ୟ ବିଶେଷାତ୍ତ୍ୱତୀନ୍ଦ୍ରିୟା କସ୍ୟଚିଚ୍ଛକ୍ତିରାବିର୍ଭବତି, ତତ୍ପ୍ରତିବନ୍ଧା ପରସ୍ୟ ତିଷ୍ଠତି ନ ଚାବିଶେଷେଣ ବିଦ୍ୟାୟା ମଭିସନ୍ଧିର୍ନୋତ୍ପଦ୍ୟତେ, ଇହାମୁତ୍ର ବା ମେ ବିଦ୍ୟା ଜାୟତାମଭ୍ୟଭି ସଂଧେର୍ନିରଙ୍କୁଶତ୍ୱାତ୍ । ଶ୍ରବଣାଦିଦ୍ୱାରଣାପି ବିଦ୍ୟୋତ୍ପଦ୍ୟମାନା ପ୍ରତିବନ୍ଧକ୍ଷୟାପେକ୍ଷ ଯୈବୋତ୍ପଦ୍ୟତେ ।

ଭାଷା-ସିଦ୍ଧାନ୍ତ (କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ - ପ୍ରସ୍ତୁତ ପ୍ରତିବନ୍ଧର ନ ହେଲେ ଏହି ଜନ୍ମରେ ବିଦ୍ୟା ଉତ୍ପନ୍ନ ହୁଏ । ଅଭିପ୍ରାୟ ଏହା ଯେ - ଯେତେବେଳେ ପ୍ରକ୍ରାନ୍ତ ଅର୍ଥାତ୍ ପୂର୍ବ ବର୍ଣ୍ଣିତ, ବିଦ୍ୟା ସାଧନର ଉପସ୍ଥିତି, ବିପାକଯୁକ୍ତ ଅନ୍ୟ କର୍ମଦ୍ୱାରା କୌଣସି ପ୍ରତିବନ୍ଧ କରାଯାଏ ନାହିଁ, ସେତେବେଳେ ସେହି ଜନ୍ମରେ ବିଦ୍ୟା ଉତ୍ପନ୍ନ ହୁଏ । କର୍ମରେ ଉପସ୍ଥିତ ବିପାକତ୍ୱ ଦେଶ, କାଳ ଓ ନିମିତ୍ତ ପ୍ରାପ୍ତ ହେଲେ ହିଁ ହୁଏ ।

(ଖ) ଯେଉଁ ଦେଶ, କାଳ ଓ ନିମିତ୍ତ ଗୋଟିଏ କର୍ମର ବିପାକେ ହୁଏ, ସେମାନେ ଅନ୍ୟ କର୍ମର ମଧ୍ୟ ହୁଅନ୍ତି ବୋଲି ନିୟମ କରାଯାଇ ନାହିଁ, କାରଣ-ବିରୁଦ୍ଧ ଫଳବାନ୍ କର୍ମ ନୁହଁନ୍ତି। ଏହି କର୍ମର ଏହି ଫଳ ହୁଏ ବୋଲି ଶାସ୍ତ୍ର ମଧ୍ୟ ସେହି ପରିମାଣରେ ପର୍ଯ୍ୟବସିତ ହୁଏ । ଦେଶ, କାଳ ଓ ନିମିତ୍ତ ବିଶେଷର ସଙ୍କୀର୍ତ୍ତନ କରାଯାଏ ନାହିଁ ।



(ଗ) ସାଧନ ସାମର୍ଥ୍ୟ ବିଶେଷରୁ କାହାର ଅତୀନ୍ଦ୍ରିୟ ଶକ୍ତି ଆବିର୍ଭୁତ ହୁଏ ଏବଂ ଅନ୍ୟର ତାହା ଦ୍ୱାରା ପ୍ରତିବନ୍ଧ ହୋଇ ରହେ । ଅବିଶେଷ ରୂପରେ ବିଦ୍ୟାରେ ଅଭିସନ୍ଧି ଉତ୍ପନ୍ନ ହୁଏ ନାହିଁ ବୋଲି କହିବା ଠିକ୍ ନୁହେଁ, କାରଣ - ଏହି ଜନ୍ମରେ ଅଥବା ଅନ୍ୟ ଜନ୍ମରେ ମୋତେ ବିଦ୍ୟା ଉତ୍ପନ୍ନ ହେଉ - ଏହି ଅଭିସନ୍ଧି ନିରଙ୍କୁଶ ଅଟେ । ଶ୍ରବଣାଦି ଦ୍ୱାରା ଉତ୍ପନ୍ନ ବିଦ୍ୟା ପ୍ରତିବନ୍ଧ କ୍ଷୟକୁ ଅପେକ୍ଷା କରି ଉତ୍ପନ୍ନ ହୁଅନ୍ତି ।

ମୂଳ–(କ) ତଥାଚ ଶ୍ରୁତିର୍ଦୁର୍ବୋଧତ୍ୱ ମାତ୍ମନୋ ଦର୍ଶୟତି–'ଶ୍ରବଣୟାପି ବହୁଭିର୍ଯୋ ନ ଲଭ୍ୟଃ ଶୃଣ୍ୱନ୍ତୋଽପି ବହବୋ ଯଂ ନ ବିଦ୍ୟୁଃ । ଆଶ୍ଚର୍ଯୋଽସ୍ୟ ବକ୍ତା କୁଶଲୋଽସ୍ୟ ଲବ୍ଧାଶ୍ଚର୍ଯୋ ଜ୍ଞାତା କୁଶଲାନୁଶିଷ୍ଟଃ' (କଠ ୨-୭) ଇତି । ଗର୍ଭସ୍ଥସ୍ୟ ଏବ ଚ ବାମଦେବଃ ପ୍ରତିପଦେ ବ୍ରହ୍ମଭାବମିତି ବଦନ୍ତୀ ଜନ୍ମାନ୍ତର ସଞ୍ଚିତ୍ ସାଧନଂ ସମ୍ଭାବ୍ୟତେ ।

(ଖ) ସ୍ମୃତାବପି - 'ଅପ୍ରାପ୍ୟ ଯୋଗସଂସିଦ୍ଧିଂ କାଂ ଗତିଂ କୃଷ୍ଣ ଗଚ୍ଛତିଂ (ଗୀ. ୬-୩୭) ଇତ୍ୟର୍ଜୁନେନ ପୃଷ୍ଟୋ ଭଗବାନ୍ ବାସୁଦେବଃ 'ନହି କଲ୍ୟାଣକୃତ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି' (ଗୀ ୬-୪୦) ଇତ୍ୟୁକ୍ତ୍ୱା ପୁନସ୍ତସ୍ୟ ପୁଣ୍ୟଲୋପ୍ରାପ୍ତିଂ ସାଧୁକୁଲେ ସଂଭୂତିଂ ଭାଭିଧାୟାନନ୍ତରମ୍–'ତତ୍ର ତଂ ବୁଦ୍ଧି ସଂଯୋଗଂ ଲଭତେ ପୌର୍ବଦେହିକମ୍' (ଗୀ ୬-୪୩) ଇତ୍ୟାଦିନା, 'ଅନେକ ଜନ୍ମ ସଂସିଦ୍ଧସ୍ତତୋ ଯାତି ପରାଂ ଗତିମ୍' (ଗୀ ୬-୪୫) ଇତ୍ୟନ୍ତେ ନୈତ୍‌ଦେବ ଦର୍ଶୟତି । ତସ୍ମାଦୈହିକମାମୁଷ୍ମିକଂ ବା ବିଦ୍ୟାଜନ୍ମ ପ୍ରତିବନ୍ଧକ୍ଷୟାପେକ୍ଷୟେତି ସ୍ଥିତମ୍ ।

ଭାଷା- (କ) ସେହିପରି ଶ୍ରୁତି ଆତ୍ମା ଦୁର୍ବୋଧତ୍ୱକୁ ଦେଖାଏ– 'ଶ୍ରବଣାୟାପି' (ଯାହା ବହୁତକୁ ଶ୍ରବଣ କରିବା ନିମିତ୍ତ ପାଇବାକୁ ଯୋଗ୍ୟ ନୁହେଁ, ଯିଏ ବହୁତ ଶ୍ରବଣ କରି ମଧ୍ୟ ଜାଣିପାରେ ନାହିଁ, ସେହି ଆତ୍ମତତ୍ତ୍ୱକୁ ନିରୂପଣ କରିବାହିଁ ଆଶ୍ଚର୍ଯ୍ୟ ରୂପ ଅଟେ । ତାହାକୁ ପ୍ରାପ୍ତ ହେଲେ ନିପୁଣ ପୁରୁଷ ହୁଏ । ତଥା କୁଶଳ ଆଚାର୍ଯ୍ୟଦ୍ୱାରା ଉପଦେଶ ହେଉଥିବା ଜ୍ଞାତା ମଧ୍ୟ ଆଶ୍ଚର୍ଯ୍ୟ ରୂପ ଅଟେ) । ଗର୍ଭସ୍ଥିତ ବାମଦେବ ବ୍ରହ୍ମଭାବକୁ ପ୍ରାପ୍ତ ହେଲେ - ଏହା କହି ଶ୍ରୁତି ଜନ୍ମାନ୍ତର ସଂଚିତ ସାଧନରୁ ଜନ୍ମାନ୍ତରରେ ବିଦ୍ୟାର ଉତ୍ପତ୍ତି ଦେଖାଏ । ଗର୍ଭସ୍ଥିତରେ କୌଣସି ଐହିକ ସାଧନର ସମ୍ଭାବନା କରାଯାଏ ନାହିଁ ।

(ଖ) ସ୍ମୃତିରେ ମଧ୍ୟ 'ଅପ୍ରାପ୍ୟ ଯୋଗ ସଂସିଦ୍ଧି' (ହେ କୃଷ୍ଣ ! ଯୋଗଫଳ ସମ୍ୟଗ୍ ଦର୍ଶନକୁ ନ ପାଇ କୌଣସି ଗତିକୁ ପ୍ରାପ୍ତ ହୁଏ) ଏହିପରି ଅର୍ଜୁନ ପଚାରିବାରୁ ଭଗବାନ୍ ବାସୁଦେବ 'ନହି କଲ୍ୟାଣକୃତ୍' (ହେ ତାତ ! କୌଣସି କଲ୍ୟାଣକୃତ୍ କୁତ୍ସିତ ଗତିକୁ ପ୍ରାପ୍ତ ହୁଏ ନାହିଁ ) ଏହା କହି ପୁନଃ ତାହାର ପୁଣ୍ୟଗତି ପ୍ରାପ୍ତି ଏବଂ ସାଧୁକୁଳରେ

ଉତ୍ପତ୍ତି କହି ପରେ 'ତତ୍ର ତଂ' (ସେହି ଯୋଗୀକୁଳରେ ପୂର୍ବ ଦେହରେ ରହି ବୁଦ୍ଧି ସଂଯୋଗକୁ ପ୍ରାପ୍ତ କରେ ) ଇତ୍ୟାଦି ନେଇ 'ଅନେକ ଜନ୍ମ ସଂସିଦ୍ଧଃ' (ଅନେକ ଜନ୍ମରେ ଉପନୀତ ହୋଇ ସଂସ୍କାରକଦ୍ୱାରା ସମ୍ୟଗ୍ଜ୍ଞାନ ହୋଇ ଶ୍ରେଷ୍ଠ ଗତିକୁ ପ୍ରାପ୍ତ ହୁଏ) । ଏହି ସ୍ଥାନ ପର୍ଯ୍ୟନ୍ତ ବଚନ ଦେଖାଯାଏ; ତେଣୁ ଏହି ଜନ୍ମରେ ଅଥବା ଅନ୍ୟ ଜନ୍ମରେ ପ୍ରତିବନ୍ଧ କ୍ଷୟକୁ ଅପେକ୍ଷା କରି ବିଦ୍ୟା ଜନ୍ମ ହୁଏ- ଏହାହିଁ ସିଦ୍ଧ ହୋଇଛି ।

## १७ । मुक्तिफलाधिकरणम् ॥ सु. ५२ ॥

## ୧୭- ମୁକ୍ତିଫଳାଧିକରଣମ୍ ॥ ସୂ ୫୨ ॥

**एवं मुक्तिफलानियमस्तदवस्थावधृतेस्तदवस्थावधृते ॥ ३-४-५२ ॥**

**ଏବଂ ମୁକ୍ତିଫଳାନିୟମସ୍ତଦବସ୍ଥାବଧୃତେ ସ୍ତଦବସ୍ଥାବଧୃତେ ॥ ୩-୪-୫୨॥**

ଏବମ୍ = ବ୍ରହ୍ମ ସାକ୍ଷାତ୍କାର ସଦୃଶ, ମୁକ୍ତିଫଳାନିୟମଃ = ମୁକ୍ତି ଫଳରେ ବିଶେଷ ନିୟମ ନାହିଁ । ତଦବସ୍ଥାଧୃତେଃ = କାରଣ - ସେହି ମୁକ୍ତ୍ୟବସ୍ଥାରେ ସବୁ ବେଦାନ୍ତଶାସ୍ତ୍ରରେ ଏକରୂପ ଅବଧାରଣ କରାଯାଇଛି । ତଦବସ୍ଥାଧୃତେଃ = ଏହି ପଦର ଦୁଇଥର ଉଚ୍ଚାରଣ ଅଧ୍ୟାୟର ପରିସମାପ୍ତିସୂଚକ ଅଟେ ।।

ମୂଳ-(କ) ଯଥା ମୁମୁକ୍ଷୋର୍ବିଦ୍ୟାସାଧନାବଲମ୍ବିନଃ ସାଧନବୀର୍ଯ୍ୟବିଶେଷାଦ୍ ବିଦ୍ୟାଲକ୍ଷଣେ ଫଳ ଐହିକାମୁଷ୍ମିକଫଳତ୍ୱକୃତୋ ବିଶେଷ ପ୍ରତି ନିୟମୋ ଦୃଷ୍ଟଃ ଏବଂ ମୁକ୍ତିଲକ୍ଷଣେଽପ୍ୟୁକର୍ଷାପକର୍ଷକୃତଃ କଶ୍ଚିଦ୍ବିଶେଷପ୍ରତିନିୟମଃ । ସ୍ୟାଦିତ୍ୟାଶଙ୍କ୍ୟାହ - ଏବଂ ମୁକ୍ତିଫଳାନିୟମ ଇତି ।

(ଖ) ନ ଖଲୁ ମୁକ୍ତିଫଳେ କଶ୍ଚିଦେର୍ବଭୂତେ ବିଶେଷ ପ୍ରତିନିୟମ ଆଶଙ୍କିତବ୍ୟଃ । କୁତଃ ? ତଦବସ୍ଥାଧୃତେଃ । ମୁକ୍ତ୍ୟବସ୍ଥା ହିଁ ସର୍ବବେଦାନ୍ତେଷ୍ୱେକରୂପୈବାବଦାର୍ଯ୍ୟତେ । ବ୍ରହ୍ମୈବ ହି ମୁକ୍ତ୍ୟବସ୍ଥା, ନ ଚ ବ୍ରାହ୍ମଣୋଽନେକାରକାରଯୋଗୋଽସ୍ତି, ଏକଲିଙ୍ଗତ୍ୱାବ-ଧାରଣାତ୍ ।

(ଗ) 'ଅସ୍ଥୂମନଣୁଃ' (ବୃହ ୩-୮-୮), 'ସ ଏଷ ନେତି ନେତ୍ୟାତ୍ମା' (ବୃହ ୩-୯-୨୬), 'ଯତ୍ର ନାନ୍ୟତ୍ପଶ୍ୟତି' (ଛା ୭-୨୪-୧), ବ୍ରହ୍ମୈବେଦମମୃତଂ ପୁରସ୍ତାତ୍' (ମୁଣ୍ଡ ୨-୨-୧୧), ଇଦଂ ସର୍ବଂ ଯଦୟମାତ୍ମ' (ବୃହ ୨-୪-୬), 'ସ ବା ଏଷ ମହାଜନ ଆତ୍ମାଽଜରୋଽମରୋଽମୃତୋଽଭୟୋବ୍ରହ୍ମ' (ବୃହ ୪-୪-୨୫), 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୁତ୍ ତତ୍ କେନ କଂ ପଶ୍ୟେତ୍ (ବୃ ୪-୫-୧୫) ଇତ୍ୟାଦି ଶ୍ରୁତିଭ୍ୟଃ ।



ଭାଷା-(କ) ଯେପରି ବିଦ୍ୟାର ସାଧନକୁ ଅବଲମ୍ବନ କରୁଥିବା ମୁମୁକ୍ଷୁର ସାଧନ ସାମର୍ଥ୍ୟ ବିଶେଷରୁ ବିଦ୍ୟାରୂପ ଫଳରେ ଐହିକ ଫଳତ୍ୱ ଏବଂ ଜନ୍ମାନ୍ତରୀୟଫଳତ୍ୱକୃତ, ବିଶେଷ ପ୍ରତି ନିୟମ ଦେଖାଦେଇଛି, ସେପରି ମୁକ୍ତିଲକ୍ଷଣରେ ଉତ୍କର୍ଷୀ ଓ ଅପକର୍ଷକୃତ କୌଣସି ବିଶେଷ ପ୍ରତିନିୟମ ହେବା ଆବଶ୍ୟକ - ଏହା ଆଶଙ୍କା କରି କହନ୍ତି - 'ଏବଂ ମୁକ୍ତିଫଳାନିୟମଃ' ।

(ଖ) ମୁକ୍ତି ଫଳରେ ଏହି ପ୍ରକାରର କୌଣସି ବିଶେଷ ପ୍ରତିନିୟମର ଆଶଙ୍କା କରିବ ଉଚିତ୍ ନୁହେଁ । କିପରି ? ସେହି ଅବସ୍ଥା ଅବଧାରଣ ହେବାରୁ । ମୁକ୍ତି ଅବସ୍ଥା ସବୁ ବେଦାନ୍ତରେ ଏକରୂପ ରୂପେ ନିଶ୍ଚିତ କରାଯାଇଛି । ବ୍ରହ୍ମ ମୁକ୍ତି ଅବସ୍ଥା ରହେ । କିନ୍ତୁ ବ୍ରହ୍ମରେ ଅନେକ ପ୍ରକାର ସମ୍ବନ୍ଧ ରହେନାହିଁ ।

(ଗ) କାରଣ - 'ଅସ୍ଥୂଳମ୍' (ନ ସ୍ଥୁଳ କି ନ ଅଣୁ ଅଟେ), 'ସ ଏଷ ଆତ୍ମା' (ଏହି ଆତ୍ମା ଏହିପରି ନୁହେଁ ବୋଲି ସ୍ଥିର କରାଯାଇଛି), 'ଯତ୍ର ନାନ୍ୟତ୍ ପଶ୍ୟତି' (ଯେଉଁଠି ଅନ୍ୟକିଛି ଦେଖେନାହିଁ), ବ୍ରହ୍ମୈବେଦମମୃତଂ' (ଏହି ଅମୃତବ୍ରହ୍ମ ସମ୍ମୁଖରେ ଅଛି) 'ଇଦଂ ସର୍ବଂ' (ଏହି ଯାହା କିଛି ଅଛି, ସେସବୁ ଆତ୍ମା ଅଟେ), 'ସ ବା ଏଷ' (ସେହି ଏହା ମହାନ୍ ଅଜ ଆତ୍ମା ଅଜର, ଅମୃତ, ଅମର ଏବଂ ଅଭୟବ୍ରହ୍ମ ଅଟେ), 'ଯତ୍ର ତ୍ୱସ୍ୟ' (ଯେଉଁଠି ତାହାର ସବୁ ଆତ୍ମା ହୋଇଯାଏ, ତା ପରେ କିଏ କାହାକୁ ଦେଖେ) ଇତ୍ୟାଦି ଶ୍ରୁତିଦ୍ୱାରା ବ୍ରହ୍ମର ଏକଲିଙ୍ଗତ୍ୱ ସ୍ଥିର କରାଯାଏ ।

ମୂଳ- (କ) ଅପି ଚ ବିଦ୍ୟାସାଧନଂ ସ୍ୱବୀର୍ଯ୍ୟବିଶେଷାତ୍ ସ୍ୱଫଳ ଏବ ବିଦ୍ୟାୟା କଞ୍ଚିଦତିଶୟମାସମଞ୍ଜୟେନ୍ନ ବିଦ୍ୟାଫଳେ ମୁକ୍ତୌ । ତଦ୍ଧ୍ୟସାଧ୍ୟଂ ନିତ୍ୟସିଦ୍ଧସ୍ୱଭାବମେବ ବିଦ୍ୟାୟାଧିଗମ୍ୟତ ଇତ୍ୟସକୃଦ୍ଦବାଦିଷ୍ମ । ନ ଚ ତସ୍ୟାମପ୍ୟୁତ୍କର୍ଷନିଷ୍କର୍ଷାତ୍ମକୋଽତିଶୟ ଉପପଦ୍ୟତେ, ନିକୃଷ୍ଟାୟା ବିଦ୍ୟତ୍ୱାଭାବାଦୁକ୍ରୃଷ୍ଟୈବ ହି ବିଦ୍ୟା ଭବତି । ତସ୍ମାତ୍ତସ୍ୟାଂ ଚିରାଚିରୋତ୍ପତ୍ତିରୂପୋଽତିଶୟୋ ଭବନ୍ଭବେତ୍ । ନ ତୁ ମୁକ୍ତୌ କଶ୍ଚିଦତିଶୟସମ୍ଭବୋଽସ୍ତି ।

(ଖ) ବିଦ୍ୟାଭେଦାଭାବାଦପି ତତ୍ଫଳଭେଦନିୟମାଭାବଃ, କର୍ମଫଳବତ୍ । ନହି ମୁକ୍ତିସାଧନଭୂତାୟାଃ ବିଦ୍ୟାୟା କର୍ମଣାମିବଭେଦୋଽସ୍ତୀତି । ସୁଗୁଣାସୁ ତୁ ବିଦ୍ୟାସୁ- 'ମନୋମୟଃ ପ୍ରାଣଶରୀରଃ' (ଛା ୩-୧୪-୨) ଇତ୍ୟାଦ୍ୟାସୁ ଗୁଣା ବାପୋଦ୍ବାପବଶାନ ଭେଦୋପପତ୍ତୌ ସତ୍ୟାମୁପଦ୍ୟତେ, ଯଥାସ୍ୱଂ ଫଳଭେଦନିୟମଃ, କର୍ମଫଳବତ୍ ।

(ଗ) ତଥା ଚ ଲିଙ୍ଗଦର୍ଶନମ୍ - 'ତଂ ଯଥା ଯଥୋପାସତେ ତଦେଦ୍ଧ ଭବତି' ଇତି । ନୈବଂ ନିର୍ଗୁଣାୟାଂ ବିଦ୍ୟାୟାମ୍, ଗୁଣାଭାବାତ୍ । ତଥା ଚ ସ୍ମୃତିଃ - ନହି ଗତିରଧିକାସ୍ତି କସ୍ୟଚିତ୍ ସତି ହି ଗୁଣେ ପ୍ରବଦନ୍ତ୍ୟ ତୁଲ୍ୟତାମ୍' ଇତି । ତଦବସ୍ତାବଧୃତେ ପ୍ତଦବସ୍ଥାବଧୃତେ ରିତି ପଦାଭ୍ୟାସୋଽଧ୍ୟାୟ ପରିସମାପ୍ତିଂ ଦ୍ୟୋତୟତି ॥

ଭାଷା-(କ) ବିଦ୍ୟାର ସାଧନ ସ୍ୱକୀୟ ସାମର୍ଥ୍ୟ ବିଶେଷରୁ ସୁଫଳ ବିଦ୍ୟାରେ କୌଣସି ଏକ ଅତିଶୟର ଅଧାନ କରିବ; କିନ୍ତୁ ବିଦ୍ୟାର ଫଳ ମୁକ୍ତି ନାହିଁ, କାରଣ- ସେ ଅସାଧ ଅଟେ ଏବଂ ନିତ୍ୟସିଦ୍ଧ ସ୍ୱଭାବ ବିଦ୍ୟାଦ୍ୱାରା ଅଧିଗତ ହୁଏ । ଏହି କଥା ଆମ୍ଭେ ଅନେକ ଥର ପୂର୍ବରୁ କହିଛୁ । ସେହି ବିଦ୍ୟାରେ ଉତ୍କର୍ଷାତ୍ମକ ଓ ନିକୃଷ୍ଟାତ୍ମକ ଅତିଶୟ ଉପପନ୍ନ ହେବ ନାହିଁ, କାରଣ ନିକୃଷ୍ଟରେ ବିଦ୍ୟାତ୍ୱ ନାହିଁ । କିନ୍ତୁ ଉତ୍କୃଷ୍ଟ ହିଁ ବିଦ୍ୟା । ତେଣୁ ସେହି ବିଦ୍ୟାରେ ବିଳମ୍ବ ଓ ଅବିଲମ୍ବତ୍ୱ ରୂପ ଅତିଶୟ ହେଲେ ଭଲ ହେବ; କିନ୍ତୁ ମୁକ୍ତିରେ କୌଣସି ଅତିଶୟ ସମ୍ଭବ ହୁଏ ନାହିଁ ।

(ଖ) ବିଦ୍ୟାଭେଦର ଅଭାବ ହେଲେ ତାହାର ଫଳଭେଦ ନିୟମର ଅଭାବ ହୁଏ । ଯେପରି କର୍ମର ଫଳ । ମୁକ୍ତିର ସାଧନଭୂତ ବିଦ୍ୟାରେ କର୍ମପରି ଭେଦ ନାହିଁ । ପରନ୍ତୁ 'ମନୋମୟଃ ପ୍ରାଣ ଶରୀରଃ' ଇତ୍ୟାଦି ସଗୁଣ ବିଦ୍ୟାରେ ଗୁଣଗୁଡ଼ିକର ଆବାପ ଓ ଉଦ୍ବାପ ବଶରୁ ଭେଦର ଉପପତ୍ତି ହେଲେ ତାହା ଅନୁସାରେ କର୍ମର ଫଳପରି ଫଳଭେଦର ନିୟମ ଉପପନ୍ନ ହୁଏ ।

(ଗ) ସେହିପରି 'ତଂ ଯଥା' ତାହାର ଯେଉଁ ପ୍ରକାର ଉପାସନା କରାଯାଇଅଛି ସେ ତାହାହିଁ ହୋଇଛି । ଏହା ଲିଙ୍ଗଦର୍ଶନ ଅଟେ । ପରନ୍ତୁ ଏହିପରି ନିର୍ଗୁଣ ବିଦ୍ୟାରେ ଫଳଭେଦର ନିୟମ ନାହିଁ । କାରଣ - ସେଠାରେ ଗୁଣର ଅଭାବ ଅଛି । 'ନ ହି ଗତିରଧିକା' (କୌଣସି ନିର୍ଗୁଣ ବେତ୍ତାର ଅଧିକ ଗତି ନାହିଁ । କାରଣ-ଗୁଣର ହେଲେ ଅତୁ୍ୟଲତା କୁହାଯିବ) ଏହିପ୍ରକାର ସ୍ମୃତି ମଧ୍ୟ ଦେଖାଯାଏ । 'ତଦବସ୍ଥା ବଧୃତେଃ' ଏହି ପଦର ଦୁଇଥର କଥନ ଅଧ୍ୟାୟର ପରିସମାପ୍ତିକୁ ପରିପ୍ରକାଶ କରେ ॥

ଇତି ତୃତୀୟ ଅଧ୍ୟାୟ ଚତୁର୍ଥପାଦ ସମାପ୍ତ ॥





# चतुर्थ अध्याये - प्रथम: पाद

# ଚତୁର୍ଥ ଅଧ୍ୟାୟ - ପ୍ରଥମପାଦ

## १ आवृत्त्यधिकरणम् ॥ सू० १-२ ॥

## ୧-ଆବୃତ୍ତ୍ୟଧିକରଣମ୍ ॥ ସୂ ୧-୨ ॥

### आवृत्तिरसकृदुपदेशात् ॥ ४-१-१ ॥

### ଆବୃତ୍ତି ରସକୃଦୁପଦେଶାତ୍ ॥୪-୧-୧॥

ଆବୃତ୍ତିଃ=ପ୍ରତ୍ୟୟର ଆବୃତ୍ତି କରିବା ଉଚିତ୍, ଅସକୃଦୁପଦେଶାତ୍=କାରଣ- 'ଶ୍ରୋତବ୍ୟଃ ମନ୍ତବ୍ୟଃ' ଏହି ଶ୍ରୁତିରେ ଏହି ପ୍ରକାର ବହୁବାର ଉପଦେଶ କରାଯାଇଛି ॥

ମୂଳ-(କ) ତୃତୀୟେଽଧ୍ୟାୟେ ପରାପରାସୁ ବିଦ୍ୟାସୁ ସାଧନାଶ୍ରୟୋ ବିଚାରଃ ପ୍ରାୟେଣାତ୍ୟଗାତ୍ । ଅଥେହ ଚତୁର୍ଥେ ଫଳାଶ୍ରୟ ଆଗମିଷ୍ୟତି । ପ୍ରସଙ୍ଗାଗତଂ ଚାନ୍ୟଦପି କିଂଚିଚ୍ଚିନ୍ତୟିଷ୍ୟତେ । ପ୍ରଥମ ତାବତ୍ କତିଭିଶ୍ଚିଦଧିକରଣୈଃ ସାଧନାଶ୍ରୟ ବିଚାର ଶେଷମେ-ବାନୁସରାମଃ ।

(ଖ) 'ଆତ୍ମା ବାଽରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ' (ବୃହ ୪-୫-୬), 'ତମେବ ଧୀରୋ ବିଜ୍ଞାୟ ପ୍ରଜ୍ଞାଂ କୁର୍ବୀତ' (ବୃହ ୪-୪-୨୧), 'ସୋଽନ୍ୱେଷ୍ଟବ୍ୟଃ', ସ ବିଜିଜ୍ଞାସିତବ୍ୟଃ' (ଛା ୬-୭-୧) ଇତି ଚୈବମାଦିଶ୍ରବଣେଷୁ ସଂଶୟଃ-କିଂ ସକୃତ୍ପ୍ରତ୍ୟୟଃ କର୍ତ୍ତବ୍ୟଃ, ଆହୋସ୍ୱିଦା ବୃତ୍ତ୍ୟେତି । କିଂ ତାବତ୍ପ୍ରାପ୍ତମ୍ ? ସକୃତପ୍ରତ୍ୟୟଃ ସ୍ୟାତ୍ ପ୍ରୟାଜାଦିବତ୍, ତାବତା ଶାସ୍ତ୍ରସ୍ୟ କୃତାର୍ଥତ୍ୱାତ୍ । ଅଶ୍ରୂୟମାଣାୟାଂ ହ୍ୟାବୃତ୍ତୌ କ୍ରିୟମାଣାୟାମଶାସ୍ତ୍ରାର୍ଥଃ କୃତୋ ଭବେତ୍ ।

(ଗ) ନନ୍ୱସକୃଦୁପଦେଶା ଉଦାହୃତାଃ- 'ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ' ଇତ୍ୟେବମାଦୟଃ । ଏବମପି ଯାବଚ୍ଛବ୍ଦମାବର୍ତ୍ତୟେତ୍ ସକୃଚ୍ଛ୍ରବଣଂ ସକୃନ୍ମନନଂ ସକୃନ୍ନିଦିଧ୍ୟାସନଂ ଚେତି, ନାତିରିକ୍ତମ୍ । ସକୃଦୁପଦେଶେଷୁ ତୁ ବେଦୋପାସୀତେତ୍ୟେବମା-ଦିଷ୍ୱନାବୃତ୍ତିରିତି ॥

ଭାଷା - (କ) ତୃତୀୟ ଅଧ୍ୟାୟରେ ପର ଓ ଅପର ବିଦ୍ୟାର ସାଧନାଶ୍ରୟ ବିଚାର ପ୍ରାୟତଃ କରାଯାଇଛି । ବର୍ତ୍ତମାନ ଏହି ଚତୁର୍ଥ ଅଧ୍ୟାୟରେ ଫଳାଶ୍ରୟ ବିଚାର ହେବ । ପ୍ରସଙ୍ଗତଃ କେତେକ ଅନ୍ୟ ବିଷୟକ ବିଚାର ମଧ୍ୟ ହେବ । ପ୍ରଥମେ କିନ୍ତୁ କେତେକ ଅଧିକରଣ ଦ୍ୱାରା ସାଧନାଶ୍ରୟ ଅବଶିଷ୍ଟ ବିଚାର ଆମ୍ଭେ ଅନୁସରଣ କରିବୁ ।

(ଖ) 'ଆତ୍ମା ବାଽରେ' (ଅରେ ମୈତ୍ରେୟୀ ! ଆତ୍ମାକୁ ଦର୍ଶନ କରିବା ଉଚିତ୍, ଶ୍ରବଣ କରିବା ଉଚିତ୍, ମନନ କରିବା ଉଚିତ୍ ଏବଂ ନିଦିଧ୍ୟାସନ କରିବା ଉଚିତ) ''ତମେବ ଧୀରୋ'' (ବୁଦ୍ଧିମାନ୍ ବ୍ରାହ୍ମଣ ଉପଦେଶ ଓ ଶାସ୍ତ୍ରଦ୍ୱାରା ସେହି ଆତ୍ମାର ପରୋକ୍ଷଜ୍ଞାନ ପ୍ରାପ୍ତ କରି ପ୍ରଜ୍ଞା ଅର୍ଥାତ୍ ସାକ୍ଷାତ୍କାର ନିମିତ୍ତ ଶମ, ଦମ ପ୍ରଭୃତି ସାଧନ କରିବା ଉଚିତ), ସୋଽନ୍ୱେଷ୍ଟବ୍ୟଃ (ତାହାର ଅନ୍ୱେଷଣ କରିବା ଉଚିତ୍ । ତାହାର ବିଶେଷଜିଜ୍ଞାସା କରିବା ଉଚିତ) ଇତ୍ୟାଦି ଶ୍ରବଣରେ ସଂଶୟ ହୁଏ ଯେ-ଥରେ ମାତ୍ର ପ୍ରତ୍ୟୟ କରିବା ଉଚିତ କି ଆବୃତ୍ତି ଦ୍ୱାରା ଏହି ଶ୍ରବଣାଦି ସାଧନଗୁଡ଼ିକର ଥରେ ମାତ୍ର ଅନୁଷ୍ଠାନ କରିବା ଉଚିତ ? କ'ଣ ଏଠାରେ ପ୍ରାପ୍ତ ହୁଏ ? ପୂର୍ବପକ୍ଷ ପ୍ରୟାଜାଦିର ସମାନ ଥରେ ମାତ୍ର ପ୍ରତ୍ୟୟ କରିବା ଉଚିତ୍ । କାରଣ-ଏଠାରେ ଶାସ୍ତ୍ର କୃତାର୍ଥ ହୁଏ, ଆବୃତ୍ତିର ଅଶ୍ରୂୟମାଣ ହେବାପରେ ତାହାର ଆବୃତ୍ତି କରିବା ପରେ କିନ୍ତୁ ଶାସ୍ତ୍ରାର୍ଥ ଦ୍ୱାରା ବିରୁଦ୍ଧ କରାଯିବ ।

(ଗ) ପରନ୍ତୁ ଶ୍ରୋତବ୍ୟଃ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ ଇତ୍ୟାଦି ବହୁବାର ଉପଦେଶ ଉଦାହୃତ କି ? ଏହା ହେବା ପରେ ଯାହାର ଶବ୍ଦ ଅଛି, ତାହାର ଆବୃତ୍ତି କରିବା ଉଚିତ୍- ଥରେ ମାତ୍ର ଶ୍ରବଣ, ଥରେ ମନନ ଓ ଥରେ ନିଦିଧ୍ୟାସନ-ଏହାଠାରୁ ଅଧିକ ନୁହେଁ । 'ବେଦ ଉପାସୀତ' ଇତ୍ୟାଦି ସକୃତ୍ ଉପଦେଶରେ ଆବୃତ୍ତି ନାହିଁ ।।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ପ୍ରତ୍ୟୟାବୃତ୍ତିଃ କର୍ତ୍ତବ୍ୟା । କୁତଃ ? ଅସକୃଦୁପଦେଶାତ୍ । 'ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ' ଇତ୍ୟେବଂଜାତୀୟକୋ ହ୍ୟସକୃଦୁପଦେଶଃ ପ୍ରତ୍ୟୟାବୃତ୍ତିଂ ସୂଚୟତି ।

(ଖ) ନନୂକ୍ତଂଯାବଚ୍ଛବ୍ଦମେବାବର୍ତ୍ତୟେନ୍ନାଧିକମିତି-ନ, ଦର୍ଶନ ପର୍ଯ୍ୟବସିତତ୍ୱା- ଦେଷାମ୍ । ଦର୍ଶନ ପର୍ଯ୍ୟବସାନାନି ହି ଶ୍ରବଣାଦୀନ୍ୟାବର୍ତ୍ତ୍ୟମାନାନି ଦୃଷ୍ଟାର୍ଥାନି ଭବନ୍ତି । ଯଥାଽବଘାତାଦୀନି ତଣ୍ଡୁଳାଦିନିଷ୍ପତ୍ତି ପର୍ଯ୍ୟବସାନାନି ହି ତଦ୍‌ବତ୍ । ଅପି ଚୋପାସନଂ ନିଦିଧ୍ୟାସନଂ ଚେତ୍ୟନ୍ତର୍ଣୀତାବୃତ୍ତିଗୁଣୈବ କ୍ରିୟାଭିଧୀୟତେ । ତଥାହି-ଲୋକେ ଗୁରୁମୁପାସ୍ତେ ରାଜାନମୁପାସ୍ତ ଇତି ଚ ଯସ୍ତାତ୍ପର୍ଯ୍ୟେଣ ଗୁର୍ବାଦୀନନୁବର୍ତ୍ତତେ ସ ଏବମୁଚ୍ୟତେ ।

(ଗ) ତଥା ଧ୍ୟାୟତି ପ୍ରୋଷିତନାଥା ପତିମିତି ଯା ନିରନ୍ତରସ୍ମରଣା ପ୍ରତିଂ ପ୍ରତି ସୋତ୍କଣ୍ଠା, ସୈବମଭିଧୀୟତେ । ବିଦ୍ୟୁପାସ୍ତ୍ୟୋଶ୍ଚ ବେଦାନ୍ତେଷ୍ଟ ବ୍ୟତିରେକେଣ ପ୍ରୟୋଗୋ ଦୃଶ୍ୟତେ । କ୍ୱଚିଦ୍ ବିଦିନୋପକ୍ରମ୍ୟୋପାସିନୋପସଂହରତି, ଯଥା- 'ଯସ୍ତ- ଦ୍‌ବେଦ ଯତ୍ସ ବେଦ ସ ମୟୈତଦୁକ୍ତଃ' (ଛା ୪-୧-୪) ଇତ୍ୟତ୍ର 'ଅନୁ ମ ଏତାଂ ଭଗବୋ ଦେବତାଂ ଶାଧି ଯାଂ ଦେବତାମୁପାସ୍ସେ' (ଛା ୪-୨-୨) ଇତି ।

(ଘ) କ୍ୱଚିଚ୍ଛୋପାସିନୋପକ୍ରମ୍ୟ ବିଦିନୋପ ସଂହରତି, ଯଥା- 'ମନୋ ବ୍ରହ୍ମେତ୍ୟୁପାସୀତ (ଛା ୩-୧୮-୧) ଇତ୍ୟତ୍ର 'ଭାତି ଚ ତପତି ଚ କୀର୍ତ୍ତ୍ୟା ଯଶସା ବ୍ରହ୍ମବର୍ଚସେନ ଯ ଏବଂ ବେଦ' (ଛା ୩-୧୮-୩) ଇତି । ତସ୍ମାତ୍ ସୁକୃଦୁପଦେଶେଷ୍ୱ-ପ୍ୟାବୃତ୍ତିସିଦ୍ଧିଃ । ଅସକୃଦୁପଦେଶସ୍ତ୍ୱାବୃତ୍ତେଚ ସୂଚକଃ ॥

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- ପ୍ରତ୍ୟୟର ଆବୃତ୍ତି କରିବା ଉଚିତ୍ । କିପରି ? ଅସକୃଦ ଉପଦେଶ କାରଣରୁ । 'ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତଃବ୍ୟଃ' ଏହି ପ୍ରକାରର ଅନେକବାର ଉପଦେଶ ପ୍ରତ୍ୟୟ ଆବୃତ୍ତିକୁ ସୂଚିତ କରେ ।

(ଖ) ପରନ୍ତୁ ଶ୍ରୁତିର ଅନୁସାରେ କୁହାଯାଇଛି ଯେ- ଆବୃତ୍ତି କରିବା ଉଚିତ୍ । କିନ୍ତୁ ଅନ୍ୟ କିଛି ଅଧିକ ନୁହେଁ । ଏହା କିନ୍ତୁ ଠିକ୍ ନୁହେଁ; କାରଣ-ସେହିଗୁଡ଼ିକ ଦର୍ଶନ ପର୍ଯ୍ୟବସାୟୀ ଅଟନ୍ତି । ସାକ୍ଷାତ୍କାର ପର୍ଯ୍ୟବସାୟୀ ବହୁବାର ଆବୃତ୍ତି କରାଇଲେ ଶ୍ରବଣାଦି ସାଧନ ଦୃଷ୍ଟ ଫଳଯୁକ୍ତ ହୁଅନ୍ତି । ଯେପରି ଅବଘାତାଦି ତଣ୍ଡୁଳାଦି ନିଷ୍ପତ୍ତି ପର୍ଯ୍ୟବସାୟୀ ହୁଅନ୍ତି ସେହିପରି ପ୍ରକରଣରେ ଜାଣିବା ଉଚିତ୍ । ଉପାସନା ଏବଂ ନିଦିଧ୍ୟାସନ ଆବୃତ୍ତିଗୁଣ ଗର୍ଭିତକ୍ରିୟାର ଅଭିଧାନ କରନ୍ତି । ଯେପରି ସଂସାରରେ 'ଗୁରୁମୁପାସ୍ତେ' (ଗୁରୁଙ୍କୁ ଉପାସନା କରିବା ଉଚିତ୍, ରାଜାଙ୍କୁ ଉପାସନା କରେ) ଯେଉଁ ତତ୍ପରତାରୁ ଗୁରୁ ପ୍ରଭୃତିର ଅନୁବର୍ତ୍ତନ ହୁଏ, ସେ ଏହାହିଁ କୁହାଯାଇଛି । ସେପରି 'ଧ୍ୟାୟତି' ଯାହାର ପତି ପରଦେଶ ଯାଇଛି, ତାହାର ସ୍ତ୍ରୀ ପତିକୁ ସ୍ମରଣ କରେ । ଯିଏ ସର୍ବଦା ସ୍ମରଣ କରି ସ୍ୱାମୀ ପ୍ରତି ସୋତ୍କଣ୍ଠା ହୁଏ, ତାହା ହିଁ କୁହାଯାଇଛି । ବିଦ୍ ଓ 'ଉପ' ପୂର୍ବକ 'ଅସ୍' ଧାତୁର ଉପନିଷଦ୍‌ରେ ସମାନ ଅର୍ଥରେ ପ୍ରୟୋଗ ଦେଖାଯାଏ । କେତେକ ସ୍ଥାନରେ 'ବିଦ୍'ଠାରୁ ଆରମ୍ଭ କରି ଉପାସ୍ତି ଦ୍ୱାରା ଉପସଂହାର କରନ୍ତି । ଯେପରି କି 'ଯସ୍ତଦ୍‌ବେଦ' (ଯାହା ଦ୍ୱାରା ରୈକ୍ୱ ଜାଣେ, ତାହାକୁ ଯିଏ ଜାଣେ, ସେ ମୋତେ ସେପରି କହିଛନ୍ତି, ଏବଂ ସେହିପରି ରୈକ୍ୱ ସଦୃଶ ହୁଏ ।) ଏଠାରେ 'ବିଦି'ଠାରୁ ଉପକ୍ରମ ହୁଏ ଏବଂ 'ଅନୁ ମେ ଏତାମ୍' (ହେ ଭଗବାନ୍ ! ଆପଣ ମୋତେ ସେହି ଦେବତା ବିଷୟରେ ଉପାସନା ଦିଅନ୍ତୁ, ଯେପରି କି ଆପଣ ଉପାସନା କରୁଛନ୍ତି) ଏହି ପ୍ରକାର ଉପାସ୍ତି ଦ୍ୱାରା ଉପସଂହାର ହୁଏ ।

(ଘ) କେତେ ସ୍ଥାନରେ ଉପାସ୍ତି ଦ୍ୱାରା ଉପକ୍ରମ କରି 'ବିଦି' ଧାତୁ ଦ୍ୱାରା ଉପସଂହାର କରନ୍ତି- ଯେପରି 'ମନୋ ବ୍ରହ୍ମ' (ମନ ବ୍ରହ୍ମ ଅଟେ, ତାହାକୁ ଉପାସନା କରିବା ଉଚିତ) ଏଠାରେ ଉପାସ୍ତି ଦ୍ୱାରା ଉପକ୍ରମ ହୁଏ, ଏବଂ 'ଭାତି ଚ' (ଯେ ଏହି କଥା ଜାଣେ, ସେ କୀର୍ତ୍ତି ଏବଂ ବ୍ରହ୍ମତେଜର କାରଣ ଦେଦୀପ୍ୟମାନ ହୁଏ ଓ ତପ୍ତ ହୁଏ) ଏହିପରି ବିଦି ଦ୍ୱାରା ଉପସଂହାର ହୁଏ । ତେଣୁ ଥରେ ଉପଦେଶରେ ଆବୃତ୍ତି ସିଦ୍ଧ ହୁଏ ଓ ବହୁବାର ଉପଦେଶ ଆବୃତ୍ତିର ସୂଚକ ଅଟେ ।

## ଲିଙ୍ଗାଚ୍ଚ ॥ ୪-୧-୨ ॥

## ଲିଙ୍ଗାଚ୍ଚ ॥୪-୧-୨)

ଲିଙ୍ଗାଚ୍ଚ= 'ରଶ୍ମୀଂସ୍ତ୍ୱଂ ପର୍ଯ୍ୟାବର୍ତ୍ତୟାତ୍' ଏହି ଲିଙ୍ଗ ପ୍ରମାଣ ମଧ୍ୟ ବହୁ କିରଣର ବିଧାନ କରି ପ୍ରତ୍ୟୟଗୁଡ଼ିକର ଆବୃତ୍ତି କରିବା ଉଚିତ ।

ମୂଳ-(କ) ଲିଙ୍ଗମପି ପ୍ରତ୍ୟୟାବୃତ୍ତିଂ ପ୍ରତ୍ୟାୟୟତି । ତଥା ହ୍ୟୁଦ୍‌ଗୀଥବିଜ୍ଞାନଂ ପ୍ରସ୍ତୁତ୍ୟ 'ଆଦିତ୍ୟ ଉଦ୍‌ଗୀଥଃ' (ଛା ୧-୫-୧) ଇତ୍ୟେତଦେକପୁତ୍ରତାଦୋଷେଣାପୋଦ୍ୟ 'ରଶ୍ମୀଂସ୍ତ୍ୱଂ ପର୍ଯ୍ୟାବର୍ତ୍ତୟାତ୍' (ଛା ୧-୫-୨) ଇତି ରଶ୍ମି ବହୁତ୍ୱବିଜ୍ଞାନଂ ବହୁପୁତ୍ରତାୟୈ ବିଦଧତ୍ ସିଦ୍ଧବତ୍ ପ୍ରତ୍ୟୟାବୃତ୍ତିଂ ଦର୍ଶୟତି । ତସ୍ମାତ୍ ତତ୍‌ସାମାନ୍ୟାତ୍ ସର୍ବପ୍ରତ୍ୟୟେଷ୍ୱାବୃତ୍ତିସିଦ୍ଧିଃ ।

(ଖ) ଅତ୍ରାହ-ଭବତୁ ନାମ ସାଧ୍ୟଫଳେଷୁ ପ୍ରତ୍ୟୟେଷ୍ୱାବୃତ୍ତିଃ, ତେଷ୍ୱାବୃତ୍ତିସାଧ୍ୟସ୍ୟାତିଶୟସ୍ୟ ସମ୍ଭବାତ୍ । ଯସ୍ତୁ ପରବ୍ରହ୍ମବିଷୟଃ ପ୍ରତ୍ୟୟୋ ନିତ୍ୟଶୁଦ୍ଧ ବୁଦ୍ଧମୁକ୍ତସ୍ୱଭାବମେବାତ୍ମଭୂତଂ ପରଂବ୍ରହ୍ମ ସମର୍ପୟତି, ତତ୍ର କିମର୍ଥାବୃତ୍ତିରିତି ? ସକୃଚ୍ଛ୍ରୁତୌ ଚ ବ୍ରହ୍ମାତ୍ମତ୍ୱ ପ୍ରତୀତ୍ୟନୁପପତ୍ତେରାବୃତ୍ତ୍ୟଭ୍ୟୁପଗମ ଇତି ଚେତ୍-ନ, ଆବୃତ୍ତାବପି ତଦନୁପପତ୍ତେଃ ।

(ଗ) ଯଦି ଅହି 'ତତ୍ତ୍ୱମସି' (ଛା ୬-୮-୭) ଇତ୍ୟେବଂଜାତୀୟକଂ ବାକ୍ୟଂ ସକୃଚ୍ଛ୍ରୂୟମାଣଂ ବ୍ରହ୍ମାତ୍ମତ୍ୱପ୍ରତୀତିଂ ନୋତ୍ପାଦୟେତ୍, ତତସ୍ତଦେବାବର୍ତ୍ତ୍ୟମାନମୁତ୍ପାଦୟିଷ୍ୟତୀତି କା ପ୍ରତ୍ୟାଶା ସ୍ୟାତ୍ ?

ଭାଷା- (କ) ଲିଙ୍ଗ ମଧ୍ୟ ପ୍ରତ୍ୟୟଗୁଡ଼ିକର ଆବୃତ୍ତି ଜ୍ଞାନ କରାଏ; କାରଣ- 'ଆଦିତ୍ୟ ଉଦ୍‌ଗୀଥଃ' ଏହି ପ୍ରକାର ଉଦ୍‌ଗୀଥ ବିଜ୍ଞାନକୁ ପ୍ରସ୍ତୁତ କରି ଏବଂ ଗୋଟିଏ ପୁତ୍ର ତାର ଦୋଷ ଦ୍ୱାରା ତାହାକୁ ପ୍ରତିଷେଧ କରି 'ରଶ୍ମୀଂସ୍ତ୍ୱଂ' (ହେ ପୁତ୍ର ! ତେଣୁ ତୁମ୍ଭେ ସୂର୍ଯ୍ୟ ରଶ୍ମୀକୁ ଆଦିତ୍ୟ ଓ ଭେଦରୂପଦ୍ୱାରା ଚିନ୍ତନ କର) ଏହି ପ୍ରକାର ବହୁତ ପୁତ୍ର ତା'ର ପ୍ରାପ୍ତି ପାଇଁ ବହୁ ରଶ୍ମୀ ବିଜ୍ଞାନର ବିଧାନ କରି ଲିଙ୍ଗ ସିଦ୍ଧବତ୍ ପ୍ରତ୍ୟୟର ଆବୃତ୍ତି ଦେଖାଏ । ପ୍ରକୃତ ଉଦ୍‌ଗୀଥ ପ୍ରତ୍ୟୟର ସହ ସବୁ ପ୍ରତ୍ୟୟଗୁଡ଼ିକର ସାକ୍ଷାତ୍‌କାର ହେତୁ ରୂପ ଦ୍ୱାରା ଏବଂ ଧ୍ୟାନରୂପ ଦ୍ୱାରା ସମାନତା ହେବାରୁ ଅହଂଗ୍ରହୋପାସନା ଏବଂ ଶ୍ରବଣ ପ୍ରଭୃତି ସମସ୍ତ ପ୍ରତ୍ୟୟଗୁଡ଼ିକରେ ଆବୃତ୍ତି ସିଦ୍ଧ ହୁଏ ।

(ଖ) ପୂର୍ବପକ୍ଷ-ଏଠାରେ କୁହାଯାଇଛି ଯେ- ସାଧ୍ୟ ଫଳଯୁକ୍ତ ପ୍ରତ୍ୟୟ ଗୁଡ଼ିକରେ ଆବୃତ୍ତି ହେଉ; କାରଣ ସେଠାରେ ଆବୃତ୍ତି ଦ୍ୱାରା ସାଧ୍ୟ ଅତିଶୟର ସମ୍ଭବ ହୁଏ । ପରନ୍ତୁ ଯାହା ପରଂବ୍ରହ୍ମ ବିଷୟକ ପ୍ରତ୍ୟୟ, ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ ସ୍ୱଭାବ, ଆତ୍ମଭୂତ ପରଂବ୍ରହ୍ମର



ବୋଧ କରାଏ, ସେଠାରେ ଆବୃତ୍ତିର କ'ଣ ପ୍ରୟୋଜନ ଅଛି ? ଯଦି କହ ଯେ- କେବଳ ଥରେମାତ୍ର ଶ୍ରବଣ ହେବା ପରେ ବ୍ରହ୍ମାତ୍ମତ୍ୱ ପ୍ରତୀତିର ଅନୁପପତ୍ତି ହେବାରୁ ଆବୃତ୍ତିର ସ୍ୱୀକାର ହୁଏ, ତାହା କିନ୍ତୁ ଠିକ୍ ନୁହେଁ । କାରଣ-ଆବୃତ୍ତି ହେବାପରେ ମଧ୍ୟ ତାହା ଉପପତ୍ତି ହୁଏ ନାହିଁ ।

(ଗ) ଯଦି 'ତତ୍ତ୍ୱମସି' ଏହିପ୍ରକାର ଥରେମାତ୍ର ଶ୍ରୂୟମାଣ ବାକ୍ୟ ବ୍ରହ୍ମାତ୍ମତ୍ୱର ପ୍ରତୀତିକୁ ଉତ୍ପନ୍ନ କରିପାରେ ନାହିଁ, ତଥାପି ସେ ଆବୃତ୍ତ୍ୟମାନ ହୋଇ ପ୍ରତୀତିକୁ ଉତ୍ପନ୍ନ କରେ ବୋଲି କ'ଣ ଆଶା ଉତ୍ପନ୍ନ ହୁଏ ?

ମୂଳ-(କ) ଅଥୋଚ୍ୟେତ-ନ କେବଳଂ ବାକ୍ୟଂ କିଞ୍ଚିଦର୍ଥଂ ସାକ୍ଷାତ୍କର୍ତ୍ତୁଂ ଶକ୍ନୋତ୍ୟତୋ ଯୁକ୍ତ୍ୟପେକ୍ଷଂ ବାକ୍ୟମନୁଭାବୟିଷ୍ୟତି ବ୍ରହ୍ମାତ୍ମତ୍ୱମିତି, ତଥାପ୍ୟାବୃତ୍ତ୍ୟାନର୍ଥକ୍ୟ-ମେବ । ସାଽପି ହି ଯୁକ୍ତିଃ ସକୃତ୍ପ୍ରବୃତ୍ତୈବ ସ୍ୱମର୍ଥମନୁଭାବୟିଷ୍ୟତି । ଅଥାପି ସ୍ୟାଦ୍ୟୁକ୍ତ୍ୟା ବାକ୍ୟେନ ଚ ସାମାନ୍ୟବିଷୟମେବ ବିଜ୍ଞାନଂ କ୍ରିୟତେ, ନ ବିଶେଷବିଷୟମ୍ ।

(ଖ) ଯଥାସ୍ତି ମେ ହୃଦୟେ ଶୂଳମିତ୍ୟେତୋ ବାକ୍ୟାଦ୍ଗାତ୍ରକମ୍ପାଦିଲିଙ୍ଗାଚ୍ଚ ଶୂଳସଦ୍-ଭାବସାମାନ୍ୟମେବ ପରଃ ପ୍ରତିପଦ୍ୟତେ, ନ ବିଶେଷମନୁଭବତି, ଯଥା ସ ଏ ଶୂଳୀ । ବିଶେଷାନୁଭବଶ୍ଚାବିଦ୍ୟାୟା ନିବର୍ତ୍ତକସ୍ତତସ୍ତଦର୍ଥା ବୃତ୍ତିରିତି ଚେତ୍-ନ, ଅସକୃଦପି ତାବନ୍ମାତ୍ରେ କ୍ରିୟମାଣେ ବିଶେଷବିଜ୍ଞାନୋତ୍ପତ୍ତ୍ୟସମ୍ଭବାତ୍ ।

(ଗ) ନହି ସକୃତପ୍ରଯୁକ୍ତାଭ୍ୟାଂ ଶାସ୍ତ୍ରଯୁକ୍ତିଭ୍ୟାମନବଗତୋ ବିଶେଷଃ ଶତକୃତ୍ୱୋଽପି ପ୍ରଯୁଜ୍ୟମାନାଭ୍ୟାମବଗନ୍ତୁଂ ଶକ୍ୟତେ ।

(ଗ) ତସ୍ମାଦ୍ୟଦି ଶାସ୍ତ୍ରଯୁକ୍ତିଭ୍ୟାଂ ବିଶେଷଃ ପ୍ରତିପାଦ୍ୟେତ, ଯଦି ବା ସାମାନ୍ୟମେବ ଉଭୟଥାପି ସକୃତପ୍ରବୃତ୍ତେ ଏବତେ ସ୍ୱକାର୍ଯ୍ୟଂ କୁରୂତ ଇତ୍ୟାବୃତ୍ତ୍ୟନୁପଯୋଗଃ । ନ ଚ ସକୃତ୍ପ୍ରଯୁକ୍ତେ ଶାସ୍ତ୍ରଯୁକ୍ତି କସ୍ୟଚିଦପ୍ୟନୁଭବଂ ନୋତ୍ପାଦୟତ ଇତି ଶକ୍ୟତେ ନିୟନ୍ତୁମ୍, ବିଚିତ୍ରପ୍ରଜ୍ଞତ୍ୱାତ୍ପ୍ରତିପ୍ରତ୍ତୃଣାମ୍ ।

(ଘ) ଅପିଚାନେକାଂଶୋପେତେ ଲୌକିକେ ପଦାର୍ଥେ ସାମାନ୍ୟବିଶେଷବତ୍ୟେ-କେନାବଧାନେନୈକମଂଶମବଧାରୟତ୍ୟ ପରେଣାପରମିତି ସ୍ୟାଦପ୍ୟଭ୍ୟାସୋପଯୋଗୋ ଯଥା ଦୀର୍ଘପ୍ରପାଠକ ଗ୍ରହଣାଦିଷ୍ଟୁ, ନତୁ ନିର୍ବିଶେଷ ବ୍ରହ୍ମଣି ସାମାନ୍ୟବିଶେଷରହିତେ ଚୈତନ୍ୟମାତ୍ରାତ୍ମକେ ପ୍ରମୋତ୍ପତ୍ତାବଭ୍ୟାସାପେକ୍ଷା ଯୁକ୍ତେତି ॥

ଭାଷା-(କ) ଯଦି କହ ଯେ- କେବଳ ବାକ୍ୟ କୌଣସି ଅର୍ଥର ସାକ୍ଷାତ୍କାର କରିବା ନିମିତ୍ତ ସମର୍ଥ ନୁହେଁ, ତେଣୁ ଯୁକ୍ତିକୁ ଅପେକ୍ଷା କରି ବାକ୍ୟ ବ୍ରହ୍ମାତ୍ମତ୍ୱର ଅନୁଭବ କରାଇବ । ତଥାପି ଏହା ସ୍ୱୀକାର କଲାପରେ ମଧ୍ୟ ଶ୍ରବଣ ପ୍ରଭୃତି ପ୍ରତ୍ୟୟଗୁଡ଼ିକର ଆବୃତ୍ତି

ନିରର୍ଥକ ଅଟେ । କାରଣ-ସେହି ଯୁକ୍ତି ମଧ୍ୟ ଥରେମାତ୍ର ପ୍ରବୃତ୍ତ ହୋଇ ନିଜର ଅର୍ଥକୁ ବୋଧ କରାଇବ । ଯଦି ଏହି ଶଙ୍କା କର ଯେ- ଯୁକ୍ତି ଓ ବାକ୍ୟରୁ ସାମାନ୍ୟ ବିଷୟକ ଜ୍ଞାନ କରାଯାଏ, କିନ୍ତୁ ବିଶେଷବିଷୟକ ନୁହେଁ ।

(ଖ) ଯେପରି ମୋର ହୃଦୟରେ ଶୂଳ ଅଛି, - ଏହି ବାକ୍ୟରୁ ଓ ଗାତ୍ରକଂପନାଦି ଲିଙ୍ଗରୁ ଶୂଳର ଅସ୍ତିତ୍ୱ ସାମାନ୍ୟ ଜ୍ଞାନ ଅନ୍ୟକୁ ହୁଏ, କିନ୍ତୁ ବିଶେଷର ଅନୁଭବ ହୁଏ ନାହିଁ । ଯଥା ସେହି ଶୂଳବାନ୍ ବିଶେଷଶୂଳର ସ୍ୱୟଂ ଅନୁଭବ କରେ । ଯଦି କହ ଯେ- ବିଶେଷ ଅନୁଭବ ଅବିଦ୍ୟାର ନିବର୍ତ୍ତକ ଅଟେ, ତେଣୁ ତାହା ପାଇଁ ଆବୃତ୍ତି ହୁଏ, ତେବେ ମଧ୍ୟ ଏହା ଠିକ୍ ନୁହେଁ । କାରଣ-ଯଦ୍ୟପି ବହୁବାର ଶ୍ରବଣ ପ୍ରଭୃତି କରାଯାଏ, ତେବେ ମଧ୍ୟ ବିଶେଷ ବିଜ୍ଞାନର ଉତ୍ପତ୍ତି ସମ୍ଭବ ହୁଏ ନାହିଁ । କାରଣ-ଥରେ ପ୍ରୟୋଗ ହୋଇଥିବା ଶାସ୍ତ୍ର ଓ ଯୁକ୍ତି ଦ୍ୱାରା ଅନବଗତ ବିଶେଷ ଶହେ ଥର ପ୍ରଯୁକ୍ତ ହୋଇଥିବା ଶାସ୍ତ୍ର ଏବଂ ଯୁକ୍ତି ଦ୍ୱାରା ବିଶେଷ ଅନବଗତ କରାଯାଏ ନାହିଁ ।

(ଗ) ତେଣୁ ଯଦି କହ ଯେ- ଶାସ୍ତ୍ର ଓ ଯୁକ୍ତିଦ୍ୱାରା ବିଶେଷର ପ୍ରତିପାଦନ ହୁଏ, ଅଥବା ଯଦି କହ ଯେ- ସେ ସମସ୍ତ ଯୋଗରେ ସାମାନ୍ୟର ପ୍ରତିପାଦନ କରାଯାଏ, ତେବେ ମଧ୍ୟ ଦୁଇ ପ୍ରକାରରେ ଥରେ ମାତ୍ର ପ୍ରବୃତ୍ତ ହେବା ପରେ ସେମାନେ ନିଜର କାର୍ଯ୍ୟ କରନ୍ତି । ତେଣୁ ବୃତ୍ତିର ଉପଯୋଗ ହୁଏ ନାହିଁ । ଥରେ ମାତ୍ର ପ୍ରଯୁକ୍ତ ଶାସ୍ତ୍ର ଓ ଯୁକ୍ତି କାହାର ଅନୁଭବକୁ ଉତ୍ପନ୍ନ କରେ ନାହିଁ = ଏହି ପ୍ରକାର ନିୟମନ କରାଯାଇନାହିଁ । କାରଣ-ଅନୁଭବିତାମାନଙ୍କର ବୁଦ୍ଧି ବିଚିତ୍ର ଅଟେ ।

(ଗ) ସେହିପରି ଅନେକାଂଶ ଯୁକ୍ତ ସାମାନ୍ୟ ଏବଂ ବିଶେଷଯୁକ୍ତ ଲୌକିକ ପଦାର୍ଥରେ ଏକ ଅବଧାନ ଦ୍ୱାରା ଏକ ଅଂଶର ଓ ଅନ୍ୟ ଅବଧାନ ଦ୍ୱାରା ଅନ୍ୟ ଅଂଶର ନିଶ୍ଚିତ କରୁଥିବା ପୁରୁଷଠାରେ ଆବୃତ୍ତିର ଉପଯୋଗ ହେଉ । ଯେପରି ଦୀର୍ଘ ପ୍ରପାଠକର ଗ୍ରହଣାଦିରେ ଆବୃତ୍ତିର ଉପଯୋଗ ହୁଏ, ପରନ୍ତୁ ସାମାନ୍ୟ ବିଶେଷରହିତ ଚୈତନ୍ୟ ମାତ୍ରରୂପ ନିର୍ବିଶେଷ ବ୍ରହ୍ମରେ ପ୍ରମାର ଉତ୍ପତ୍ତି ନିମିତ୍ତ ଆବୃତ୍ତିର ଅପେକ୍ଷା ସମୀଚୀନ ହୁଏନାହିଁ ।

ମୂଳ-(କ) ଅତ୍ରୋଚ୍ୟତେ-ଭବେଦାବୃତ୍ୟାନର୍ଥକ୍ୟଂ ତଂ ପ୍ରତି ଯସ୍ତତ୍ତ୍ୱମସୀତି ସକୃଦୁକ୍ତମେବ ବ୍ରହ୍ମାତ୍ମତ୍ୱମନୁଭବିତୁଂ ଶକ୍ନୁୟାତ୍ । ଯସ୍ତୁ ନ ଶକ୍ନୋତି ତଂ ପ୍ରତ୍ୟୁପଯୁଜ୍ୟେତ ଏବାବୃତ୍ତିଃ । ତଥାହି ଛାନ୍ଦୋଗ୍ୟେ 'ତତ୍ତ୍ୱମସି ଶ୍ୱେତକେତୋ' (ଛା ୬-୮-୭) ଇତ୍ୟୁପଦିଶ୍ୟ 'ଭୂୟ ଏବ ମା ଭଗବାନ୍ ବିଜ୍ଞାପୟତୁ' (ଛା ୬-୮-୭) ଇତି ପୁନଃ ପୁନଃ ପରିଚ୍ଛେଦ୍ୟ-ମାନସ୍ତତ୍ତଦାଶଙ୍କାକାରଣଂ ନିରାକୃତ୍ୟ ତତ୍ତ୍ୱମସୀତ୍ୟେବାସକୃଦୁପଦିଶତି ।

(ଖ) ତଥା ଚ 'ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ' (ବୃ ୪-୫-୬) ଇତ୍ୟାଦି ଦର୍ଶିତମ୍ । ନନୂକ୍ତଂ ସକୃଚ୍ଛ୍ରୁତଂ ଚେତ୍ତତ୍ତ୍ୱମସିବାକ୍ୟଂ ସ୍ୱମର୍ଥମନୁଭାବୟିତୁଂ ନ ଶକ୍ନୋତି, ତତ ଆବର୍ତ୍ତ୍ୟମାନମପି ନୈବ ଶକ୍ଷ୍ୟତୀତି ନୈଷ ଦୋଷଃ । ନହିଦୃଷ୍ଟେଽନୁପପନ୍ନଂ ନାମ ।



ଦୃଶ୍ୟନ୍ତେ ହି ସକୃଚ୍ଛ୍ରୁତାଦ୍‌ବାକ୍ୟାନ୍‌ମନପ୍ରତୀତଂ ବାକ୍ୟାର୍ଥମାବର୍ତ୍ତୟନ୍ତସ୍ତଉଦାଭାସବ୍ୟୁଦାସେନ ସମ୍ୟକ୍ ପ୍ରତିପଦ୍ୟମାନାଃ ।

(ଗ) ଅପି ଚ 'ତତ୍ତ୍ୱମସି' ଇତ୍ୟେତଦ୍‌ବାକ୍ୟଂ ତ୍ୱଂପଦାର୍ଥସ୍ୟ ତତ୍‌ପଦାର୍ଥ ଭାବମାଚଷ୍ଟେ । ତତ୍‌ପଦେନ ଚ ପ୍ରକୃତଂ ସଦ୍‌ବ୍ରହ୍ମେକ୍ଷିତୃ ଜଗତୋ ଜନ୍ମାଦିକାରଣମଭିଧୀୟତେ- 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' (ତୈ ୨-୧-୧), 'ବିଜ୍ଞାନମାନନ୍ଦଂ ବ୍ରହ୍ମ' (ବୃ ୩-୯-୨୮), 'ଅଦୃଷ୍ଟଂ ଦ୍ରଷ୍ଟୃମ୍ (ବୃ ୩-୮-୧୧), 'ଅବିଜ୍ଞାତଂ ବିଜ୍ଞାତୃ' (ବୃ ୩-୮-୧୧), 'ଅଜମଜରମମରମ୍', 'ଅସ୍ଥୁଳମନଣ୍ୱହ୍ରସ୍ୱମଦୀର୍ଘମ୍' (ବୃ ୩-୮-୮) ଇତ୍ୟାଦିଶାସ୍ତ୍ରପ୍ରସିଦ୍ଧମ୍ ॥

ଭାଷା-ସିଦ୍ଧାନ୍ତ-(କ) ଏହି ବିଷୟରେ କହନ୍ତି ଯେ ଯେଉଁ ପୁରୁଷ 'ତତ୍ତ୍ୱମସି' ଏହି ପ୍ରକାର ଥରେମାତ୍ର ଉକ୍ତ ବ୍ରହ୍ମାତ୍ମତ୍ୱ ଅନୁଭବ କରିବାରେ ସମର୍ଥ ହେଉ, ତାହା ପ୍ରତି ଆବୃତ୍ତି ନିରର୍ଥକ ହେଉ । ପରନ୍ତୁ ଯେଉଁଠି ଏହିପରି ସମର୍ଥ ହୋଇପାରେ ନାହିଁ, ତାହାପ୍ରତି ଆବୃତ୍ତି ଉପଯୁକ୍ତ ହୁଏ । ଯେପରିକି ଛାନ୍ଦୋଗ୍ୟରେ 'ତତ୍ତ୍ୱମସିଂ ଶ୍ୱେତକେତୋ' ଏହିପରି ଉପଦେଶ ଦେଇ 'ଭୂୟ ଏବ' (ଶ୍ୱେତକେତୁ-ହେ ଭଗବାନ୍ ! ପୁନର୍ବାର ମୋତେ ବୁଝାଇ ଦିଅନ୍ତୁ) ଏହିପରି ପୁନଃ ପୁନଃ ପ୍ରେରିତ ହୋଇ ସେହି ସେହି ଆଶଙ୍କା କାରଣର ନିରାକରଣ କରି 'ତତ୍ତ୍ୱମସି' ଏହିପରି ଅନେକବାର ଉପଦେଶ କରନ୍ତି ।

(ଖ) ସେହିପରି 'ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ, ଇତ୍ୟାଦି ଦେଖାଇ ଦିଆଯାଇଛି' । ପରନ୍ତୁ ଏଠାରେ କୁହାଯାଇଛି ଯେ- ଯଦି ଥରେ ମାତ୍ର ଶ୍ରୁତ 'ତତ୍ତ୍ୱମସି' ବାକ୍ୟ ନିଜର ଅର୍ଥ ଅନୁଭବ କରିବାରେ ସମର୍ଥ ହୁଏ ନାହିଁ, ତଥାପି ଆବର୍ତ୍ତ୍ୟମାନ ହେଲେ ବି ସମର୍ଥ ହେବ ନାହିଁ କି ? ଏହା କିନ୍ତୁ ଦୋଷ ନୁହେଁ; କାରଣ-ଦୃଷ୍ଟ ଅନୁଭବ କରିବାରେ କେତେକ ମଧ୍ୟ ଅନୁପପନ୍ନ ହୁଅନ୍ତି ନାହିଁ । ଥରେମାତ୍ର ଶ୍ରୁତବାକ୍ୟ ଦ୍ୱାରା ମନ୍ଦପ୍ରତୀତ-ସାମାନ୍ୟଜ୍ଞାତ ବାକ୍ୟାର୍ଥର ଆବୃତ୍ତି କରି ସେହି ଆଭାସଗୁଡ଼ିକୁ ନିରାକରଣ କରି ସମ୍ୟକଜ୍ଞାନ କରିବାର ଦେଖାଯାଏ ।

(ଗ) ପୁନଶ୍ଚ 'ତତ୍ତ୍ୱମସି' ଏହି ବାକ୍ୟ 'ତ୍ୱମ୍' ପଦାର୍ଥର 'ତତ୍' ପଦାର୍ଥ ଭାବ କହେ ଏବଂ ତତ୍ ପଦରୁ ପ୍ରକୃତ ଈକ୍ଷିତ୍ୱ ସଦ୍‌ବ୍ରହ୍ମ ଜଗତ୍‌ର ଜନ୍ମାଦି କାରଣ କୁହାଯାଉଛି । ଯାହା 'ସତ୍ୟଂ' ଜ୍ଞାନଂ ଅନନ୍ତଂ ବ୍ରହ୍ମ' 'ବିଜ୍ଞାନଂ ଆନନ୍ଦଂ ବ୍ରହ୍ମ', 'ଅଦୃଷ୍ଟଂ ଦ୍ରଷ୍ଟୃ' ଓ 'ଅବିଜ୍ଞାତମ୍' (ଯାହା ଅକ୍ଷର ବ୍ରହ୍ମ ସ୍ୱୟଂ ଦୃଷ୍ଟିର ବିଷୟକ ନୁହେଁ, କିନ୍ତୁ ସ୍ୱୟଂ ଦ୍ରଷ୍ଟା ଅଟେ । ସ୍ୱୟଂ ଅବିଜ୍ଞାତ ରହି ଅନ୍ୟର ବିଜ୍ଞାତା ହୁଏ), 'ଅଜମଜରମ୍' (ବ୍ରହ୍ମ ଅଜ, ଅଜର ଏବଂ ଅମର ଅଟେ) 'ଅସ୍ଥୁଳମ୍' (ସେ ସ୍ଥୁଳ ନୁହେଁ, ଅଣୁ ନୁହେଁ, ହ୍ରସ୍ୱ ନୁହେଁ କି ଦୀର୍ଘ ନୁହେଁ) ଇତ୍ୟାଦି ଶାସ୍ତ୍ର ଦ୍ୱାରା ପ୍ରସିଦ୍ଧ ଅଟେ ॥

ମୂଳ- (କ) ତତ୍ରାଜାଦିଶବ୍ଦୈର୍ଜନ୍ମାଦୟୋ ଭାବବିକାରା ନିବର୍ତ୍ତିତାଃ । ଅସ୍ଥୂଳାଦିଶବ୍ଦୈଶ୍ଚ ସ୍ଥୌଲ୍ୟାଦୟୋ ଦ୍ରବ୍ୟଧର୍ମାଃ । ବିଜ୍ଞାନାଦିଶବ୍ଦୈଶ୍ଚ ଚୈତନ୍ୟ ପ୍ରକାଶାତ୍ମକତ୍ୱମୁକ୍ତମ୍ । ଏଷ ବ୍ୟାବୃତ୍ତସର୍ବସଂସାରଧର୍ମକୋଽନୁଭବାତ୍ମକୋ ବ୍ରହ୍ମସଂଜ୍ଞସ୍ତତ୍ପଦାର୍ଥୋ ବେଦାନ୍ତାଭିଯୁକ୍ତାନାଂ ପ୍ରସିଦ୍ଧଃ । ତଥା ତ୍ୱଂପଦାର୍ଥୋଽପି ପ୍ରତ୍ୟଗାତ୍ମା ଶ୍ରୋତା ଦେହାଦାରଭ୍ୟ ପ୍ରତ୍ୟଗାତ୍ମତୟା ସମ୍ଭାବ୍ୟମାନଶ୍ଚୈତନ୍ୟପର୍ଯ୍ୟନ୍ତତ୍ୱେନାବଧାରିତଃ ।

(ଖ) ତତ୍ର ଯେଷାମେତୌ ପଦାର୍ଥାବିଜ୍ଞାନ ସଂଶୟବିପର୍ଯୟପ୍ରତିବଦ୍ଧୌ ତେଷାଂ 'ତତ୍ତ୍ୱମସୀ' ତ୍ୟେତଦ୍‌ବାକ୍ୟଂ ସ୍ୱାର୍ଥେ ପ୍ରମାଂ ନୋତ୍ପାଦୟିତୁଂ ଶକ୍ନୋତି, ପଦାର୍ଥଜ୍ଞାନ ପୂର୍ବକତ୍ୱାଦ୍‌ବାକ୍ୟାର୍ଥ ସ୍ୟେତ୍ୟତସ୍ତାନ୍ପ୍ରତ୍ୟେଷ୍ଟବ୍ୟଃ ପଦାର୍ଥବିବେକପ୍ରୟୋଜନଃ ଶାସ୍ତ୍ରଯୁକ୍ତ୍ୟଭ୍ୟାସଃ ।

(ଗ) ଯଦ୍ୟପି ଚ ପ୍ରତିପତ୍ତବ୍ୟ ଆତ୍ମା ନିରଂଶସ୍ତଥାପ୍ୟଧ୍ୟାରୋପିତଂ ତସ୍ମିନ୍‌ବହ୍ୱଂଶତ୍ୱଂ ଦେହେନ୍ଦ୍ରିୟମନୋବୁଦ୍ଧିବିଷୟବେଦନାଦିଲକ୍ଷଣମ୍ । ତତ୍ରୈକେନାବଧାନେନୈକମଂଶମପୋହତ୍ୟାପରେଣାପରମିତି, ଯୁଜ୍ୟତେ ତତ୍ର କ୍ରମବତୀ ପ୍ରତିପତ୍ତିଃ । ତତ୍ତୁ ପୂର୍ବରୂପମେବାତ୍ମ-ପ୍ରତିପତ୍ତେଃ ।

ଭାଷା-(କ) ସେହି ବ୍ରହ୍ମରେ ଅଜାଦିଶବ୍ଦରୁ ଜନ୍ମ ପ୍ରଭୃତି ଭାବ ବିକାର ନିବୃତ୍ତ କରାଯାଇଛି । ଅସ୍ଥୂଳ ପ୍ରଭୃତି ଶବ୍ଦରୁ ସ୍ଥୌଲ୍ୟାଦି ଦ୍ରବ୍ୟଧର୍ମ ମଧ୍ୟ ନିବୃତ୍ତ କରାଯାଇଛି । ବିଜ୍ଞାନାଦି ଶବ୍ଦରୁ ବ୍ରହ୍ମ ଚୈତନ୍ୟ ପ୍ରକାଶାତ୍ମକ ବୋଲି କୁହାଯାଇଛି । ସମସ୍ତ ସଂସାରର ଧର୍ମରହିତ ଜ୍ଞାନାତ୍ମକ 'ତତ୍' ପଦ ବାଚ୍ୟ ଏହି ବ୍ରହ୍ମ ବେଦାନ୍ତରେ ପ୍ରସିଦ୍ଧ ଅଟେ । ସେହିପରି 'ତ୍ୱଂ' ପଦାର୍ଥ ମଧ୍ୟ ପ୍ରତ୍ୟଗାତ୍ମା ଶ୍ରୋତାର ଦେହରୁ ଆରମ୍ଭ କରି ପ୍ରତ୍ୟଗାତ୍ମା ରୂପରେ ସମ୍ଭାବ୍ୟମାନ ଚୈତନ୍ୟାବିଧିତ୍ୱ ଦ୍ୱାରା ସ୍ଥିର କରାଯାଇଛି ।

(ଖ) ସେହିପରି ଯାହାର ଏହି ଦୁଇଟି ପଦାର୍ଥ ଅଜ୍ଞାନ, ସଂଶୟ ଏବଂ ବିପର୍ଯ୍ୟୟରୁ ପ୍ରତିବଦ୍ଧ ହୁଅନ୍ତି, ସେସବୁ ପାଇଁ 'ତତ୍ତ୍ୱମସି' ଏହି ବାକ୍ୟ ସ୍ୱାର୍ଥରେ ପ୍ରମା ଉତ୍ପନ୍ନ କରିବାରେ ସମର୍ଥ ନୁହଁନ୍ତି, କାରଣ-ବାକ୍ୟାର୍ଥଜ୍ଞାନ ପଦାର୍ଥଜ୍ଞାନ ପୂର୍ବକ ହୁଏ । ତେଣୁ ସେଗୁଡ଼ିକ ପ୍ରତି ପଦାର୍ଥଗୁଡ଼ିକର ବିବେକ ପ୍ରୟୋଜନବାନ୍ ଶାସ୍ତ୍ର ଏବଂ ଯୁକ୍ତିର ଅଭ୍ୟାସ ହେବା ଉଚିତ ।

(ଗ) ଯଦ୍ୟପି ପ୍ରତିପତ୍ତିର ଯୋଗ୍ୟ ଆତ୍ମା ନିରଂଶ ଅଟନ୍ତି, ତଥାପି ଦେହ, ଇନ୍ଦ୍ରିୟ, ମନ, ବୁଦ୍ଧି, ବିଷୟ, ବେଦନା ପ୍ରଭୃତି ରୂପ ବହୁ ଅଂଶ ସେଠାରେ ଅଧ୍ୟାରୋପିତ ହୁଅନ୍ତି । ସେଠାରେ ଏକ ଅବଧାନରୁ ଗୋଟିଏ ଅଂଶର ଓ ଅନ୍ୟଦ୍ୱାରା ଅନ୍ୟ ଅଂଶର ନିଷେଧ କରି କ୍ରମିକ ପ୍ରତିପତ୍ତି ଯୁକ୍ତ ହୁଏ । ଏହି ଆବୃତ୍ତି ଆତ୍ମପ୍ରତିପତ୍ତିର ପୂର୍ବରୂପ ଅଟେ ଅର୍ଥାତ୍ ଆତ୍ମଜ୍ଞାନର କାରଣ ଅଟେ ।



ମୂଳ-(କ) ଯେଷାଂ ପୁନର୍ନିପୁଣମତୀନାଂ ନାଜ୍ଞାନସଂଶୟବିପର୍ଯ୍ୟୟଲକ୍ଷଣଃ ପଦାର୍ଥବିଷୟଃ ପ୍ରତିବନ୍ଧୋଽସ୍ତି, ତେ ଶକ୍ନୁବନ୍ତି ସକୃଦୁକ୍ତମେବ ତତ୍ତ୍ୱମସିବାକ୍ୟାର୍ଥମନୁଭବିତୁ-ମିତି, ତାନ୍ ପ୍ରତ୍ୟାବୃତ୍ତ୍ୟାନର୍ଥକ୍ୟମିଷ୍ଟମେବ । ସକୃଦୁତ୍ପନ୍ନୈବ ହ୍ୟାତ୍ମପ୍ରତିପତ୍ତିରବିଦ୍ୟାଂ ନିବର୍ତ୍ତୟତୀତି, ନାତ୍ର କଶ୍ଚିଦପି କ୍ରମୋଽଭ୍ୟୁପଗମ୍ୟତେ ।

(ଖ) ସତ୍ୟମେବ-ଯୁଜ୍ୟେତ-ଯଦି କସ୍ୟଚିଦେବଂ ପ୍ରତିପତ୍ତିର୍ଭବେତ୍ । ବଳବତୀ ହ୍ୟାତ୍ମନୋ ଦୁଃଖିତ୍ୱାଦି ପ୍ରତିପତ୍ତିଃ । ଅତୋ ନ ଦୁଃଖିତ୍ୱାଦ୍ୟଭାବଂ କଶ୍ଚିତ୍ ପ୍ରତିପଦ୍ୟତେ ଇତି ଚେତ୍-ନ, ଦେହାଦ୍ୟଭିମାନବଦ୍ଦୁଃଖିତ୍ୱାଦ୍ୟଭିମାନସ୍ୟ ମିଥ୍ୟାଭିମାନ ତ୍ୱୋପପତ୍ତେଃ । ପ୍ରତ୍ୟକ୍ଷଂହି ଦେହେ ଛିଦ୍ୟମାନେ ଦହ୍ୟମାନେ ବାଽହଂ ଛିଦ୍ୟେ ଦହ୍ୟେ ଇତି ଚ ମିଥ୍ୟାଭିମାନିନୋ ଦୃଷ୍ଟଃ । ତଥା ବାହ୍ୟତରେଷ୍ୱପି ପୁତ୍ରମିତ୍ରାଦିଷୁ ସଂତପ୍ୟମାନେଷ୍ୱହମେବ ସନ୍ତପ୍ୟ ଇତ୍ୟଧ୍ୟାରୋପୋ ଦୃଷ୍ଟଃ ॥

(ଗ) ତଥା ଦୁଃଖିତ୍ୱାଦ୍ୟଭିମାନୋଽପି ସ୍ୟାତ୍ । ଦେହାଦିବଦେବ ଚୈତନ୍ୟାଦ୍ ବହିରୁ-ପଲଭ୍ୟାମନତ୍ୱାଦ୍ଦୁଃଖିତ୍ୱାଦୀନାମ୍, ସୁଷୁପ୍ତାଦିଷୁ ଚାନନୁବୃତ୍ତେଃ । ଚୈତନ୍ୟସ୍ୟ ତୁ ସୁଷୁପ୍ତେଽ-ପ୍ୟନୁବୃତ୍ତିମାମନନ୍ତି='ଯଦ୍‌ବୈ ତନ୍ନ ପଶ୍ୟନ୍‌ବୈ ତନ୍ନ ପଶ୍ୟତି' (ବୃ ୪ ୩ ୨୩) ତସ୍ମାତ୍ ସର୍ବଦୁଃଖବିନିର୍ମୁକ୍ତୈକଚୈତନ୍ୟାତ୍ମକୋଽହମିତ୍ୟେଷ ଆତ୍ମାନୁଭବଃ ॥

ଭାଷା-(କ) ପରନ୍ତୁ ଯେଉଁ ନିପୁଣମତିମାନ୍‌ର ଅଜ୍ଞାନ, ସଂଶୟ ଓ ବିପର୍ଯ୍ୟୟ, 'ତତ୍' 'ତ୍ୱଂ' ପଦାର୍ଥ ବିଷୟକ ପ୍ରତିବନ୍ଧ ନାହିଁ, ସେମାନେ ଥରେମାତ୍ର ଉକ୍ତ 'ତତ୍ତ୍ୱମସି' ବାକ୍ୟାର୍ଥଜ୍ଞାନ କରିବାରେ ସମର୍ଥ ହୁଅନ୍ତ । ସେମାନଙ୍କ ପ୍ରତି ଆବୃତ୍ତିର ଅନର୍ଥକତା ଇଷ୍ଟ ହୁଏ) । କାରଣ- ଥରେ ମାତ୍ର ଉତ୍ପନ୍ନ ହୋଇ ଜ୍ଞାନ ଅବିଦ୍ୟାର ନିବୃତ୍ତ କରେ । ଏହା ଦ୍ୱାରା ଏଠାରେ କୌଣସି କ୍ରମ ସ୍ୱୀକାର କରାଯାଇନାହିଁ ।

(ଖ) ଏହା ଠିକ୍ ଅଟେ । ଯଦି କାହାକୁ ଏହି ପ୍ରକାର ଆତ୍ମଜ୍ଞାନ ହୁଏ, ତେବେ ଆବୃତ୍ତିର ନିରର୍ଥକତା ସମୀଚୀନ ହୁଏ । ଯଦି କହ ଯେ- ଆତ୍ମାରେ ଦୁଃଖିତ୍ୱାଦିର ଜ୍ଞାନ ବଳବାନ୍ ହୁଏ; ତେଣୁ କୌଣସି ଦୁଃଖିତ୍ୱାଦି ଅଭାବ ପ୍ରାପ୍ତ ହୁଏ ନାହିଁ, ତାହା ମଧ୍ୟ ଠିକ୍ ନୁହେଁ । କାରଣ-ଆତ୍ମାରେ ଭେଦ ପ୍ରଭୃତି ଅଭିମାନର ସମାନ ଦୁଃଖିତ୍ୱ ମଧ୍ୟ ଅଭିମାନରେ ଉପପନ୍ନ ହୁଏ । ଶରୀରକୁ ଛେଦନ କଲାପରେ ଅଥବା ଦହନ କଲେ ମୁଁ କଟା ହୋଇଛି ବା ଜଳା ହୋଇଛି- ଏହି ପ୍ରକାର ପ୍ରତ୍ୟକ୍ଷ ମିଥ୍ୟାଭିମାନ ଦେଖାଯାଏ । ସେହିପରି ଦେହ ବ୍ୟତିରିକ୍ତ ବାହ୍ୟ ପୁତ୍ର ମିତ୍ରାଦି ସଂତପ୍ତ ହେବାପରେ ମୁଁ ସନ୍ତପ୍ତ ଅଟେ ବୋଲି ଅଧ୍ୟାରୋପ ଦେଖାଯାଏ ।

(ଗ) ସେହିପରି ଦୁଃଖିତ୍ୱାଦି ଅଭିମାନ ହେବା ଉଚିତ । କାରଣ-ଦେହ ପ୍ରଭୃତି ପରି ଦୁଃଖିତ୍ୱାଦି ଚୈତନ୍ୟ ରୂପରେ ପୃଥକଭାବେ ଉପଲବ୍ଧ ହୋଇ ସୁଷୁପ୍ତ୍ୟଶଦିରେ

ଅନୁବୃତ୍ତ ହୁଅନ୍ତି ନାହିଁ । ପରନ୍ତୁ 'ଯଦ୍‌ବୈ' (ସେ ଯେଉଁ ସୁଷୁପ୍ତିରେ ଦେଖାଯାଏ ନାହିଁ, ସେ ସ୍ଥିର ଭାବେ ଦେଖି ଦେଖେ ନାହିଁ) ଇତ୍ୟାଦି ଶ୍ରୁତିରୁ ଚୈତନ୍ୟର ଅନୁବୃତ୍ତି ସୁଷୁପ୍ତିରେ କହନ୍ତି । ତେଣୁ ସମସ୍ତେ ଦୁଃଖରୁ ବିନିର୍ମୁକ୍ତ ଏକ ଚୈତନ୍ୟ ସ୍ୱରୂପ ମୁଁ ଅଟେ । ଏହି ଆତ୍ମାନୁଭବ ରହିଛି ।

ମୂଳ-(କ) ନ ଚୈବମାତ୍ମାନମନୁଭବତଃ କିଞ୍ଚିଦନ୍ୟତ୍‌କୃତ୍ୟମବଶିଷ୍ୟତେ । ତଥାଚ ଶ୍ରୁତିଃ- 'କି ପ୍ରଜୟା କରିଷ୍ୟାମୋ ଯେଷାଂ ନୋଽୟମାତ୍ମାଽୟଂ ଲୋକଃ' (ବୃ ୪-୪-୨୨) ଇତ୍ୟାତ୍ମବିଦଃ କର୍ତ୍ତବ୍ୟାଭାବଂ ଦର୍ଶୟତି । ସ୍ମୃତିରପି='ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ । ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ' (ଗୀ ୩-୧୭) ଇତି ।

(ଖ) ଯସ୍ୟ ତୁ ନୈଷୋଽନୁଭବୋ ଦ୍ରାଗିବ ଜାୟତେ ତଂ ପ୍ରତ୍ୟନୁଭବାର୍ଥଂ ଏବାନୁବୃତ୍ତ୍ୟଭ୍ୟୁପଗମଃ । ତତ୍ରାପି ନ ତତ୍ତ୍ୱମସିବାକ୍ୟାର୍ଥାତ୍ ପ୍ରଚ୍ୟାବ୍ୟାବୃତ୍ତୌ ପ୍ରବର୍ତ୍ତୟେତ୍ । ନହି ବରଘାତାୟ କନ୍ୟାମୁଦ୍‌ବାହୟନ୍ତି । ନିଯୁକ୍ତସ୍ୟ ଚାସ୍ମିନ୍ନଧିକୃତୋଽହଂ କର୍ତ୍ତା ମୟେଦଂ କର୍ତ୍ତବ୍ୟମିତ୍ୟବଶ୍ୟଂ ବ୍ରହ୍ମପ୍ରତ୍ୟୟାଦ୍‌ବିପରୀତ ପ୍ରତ୍ୟୟ ଉତ୍ପଦ୍ୟତେ ।

(ଗ) ଯସ୍ତୁ ସ୍ୱୟମେବ ମନମତରପ୍ରତିଭାନାତ୍ତଂ ବାକ୍ୟାର୍ଥଂ ଜିହାସେତ୍ତ ସୌତସ୍ମି ନ୍ନେବ ବାକ୍ୟାର୍ଥେ ସ୍ଥିରୀକାର ଆବୃତ୍ତ୍ୟାଦିବାଚ୍ୟେଯୁକ୍ତ୍ୟାଽଭ୍ୟୁପେୟତୋ । ତସ୍ମାତ୍ ପରବ୍ରହ୍ମ ବିଷୟେଽପି ପ୍ରତ୍ୟୟେ ତଦୁପାୟୋପଦେଶେଷ୍ୱାବୃତ୍ତିଂସିଦ୍ଧିଃ ।

ଭାଷା- (କ) ସେହିପରି ଆତ୍ମାକୁ ଅନୁଭବ କରୁଥିବା ପୁରୁଷ ପାଇଁ କେତେକ ଅନ୍ୟ କୃତ୍ୟ ଅବପିଷ୍ଟ ରହେ । ଯେପରି 'କିଂ ପ୍ରଜୟା' (ପରମାର୍ଥଦର୍ଶୀ ଯେଉଁ ଆମ୍ଭମାନଙ୍କର ଏହା ଆତ୍ମା ଅଟେ, ସେମାନେ ଆମ୍ଭେ ଏହି ପ୍ରଜାଠାରୁ କ'ଣ କରିବୁ ?) ଏହି ଶ୍ରୁତି ଆତ୍ମବେତ୍ତା ନିମିତ୍ତ କର୍ତ୍ତବ୍ୟାଭାବ ଦେଖାଏ ଏବଂ 'ଯସ୍ତାତ୍ମରତିରେବ' (ପରନ୍ତୁ ଯେଉଁ ମନୁଷ୍ୟ ଆତ୍ମାଠାରେ ପ୍ରୀତି କରେ, ବିଷୟରେ ନୁହେଁ । ସେ ଆତ୍ମାରେ ତୃପ୍ତ ହୁଅନ୍ତି । କିନ୍ତୁ ଅନ୍ନ ରସାଦିରେ ନୁହେଁ, ଆତ୍ମାରେ ସନ୍ତୁଷ୍ଟ ହୁଅନ୍ତି, କିନ୍ତୁ ବାହ୍ୟାର୍ଥଲାଭ ଦ୍ୱାରା ନୁହେଁ, ତେଣୁ ତାହା ପାଇଁ କୌଣସି କର୍ତ୍ତବ୍ୟ ନାହିଁ । ଏହା ସ୍ମୃତି କହେ ।

(ଖ) ପରନ୍ତୁ ଯାହାକୁ ଏହି ଅନୁଭବ ଶୀଘ୍ର ହୁଏ, ତାହାର ଅନୁଭବ ପାଇଁ ଆବୃତ୍ତି ସ୍ୱୀକାର କରାଯାଇଛି । ସେଠାରେ ତାହାକୁ 'ତତ୍ତ୍ୱମସି' ବାକ୍ୟାର୍ଥ ଦ୍ୱାରା ପ୍ରଚ୍ୟୁତ କରି ଆବୃତ୍ତିରେ ପ୍ରବୃତ୍ତ କରିବା ଉଚିତ ନୁହେଁ, କାରଣ ବରର ବିନାଶ ପାଇଁ କନ୍ୟାର ବିଭାହ କରାଯାଏ ନାହିଁ । ଏଠାରେ ଅଧିକୃତ ହୋଇ 'ମୁଁ କର୍ତ୍ତା ଅଟେ, ଏହା ମୋର କର୍ତ୍ତବ୍ୟ ଅଟେ' ଏହିପରି ନିଯୁକ୍ତି ପୁରୁଷକୁ ବ୍ରହ୍ମଜ୍ଞାନର ବିପରୀତ ଜ୍ଞାନ ପ୍ରତୀତ ହୁଏ ।

(ଗ) କିନ୍ତୁ ଯାହା ସ୍ୱୟଂ ମନ୍ଦମତି ବାକ୍ୟାର୍ଥର ପ୍ରତିଭାବ ନ ହେବାରୁ ତାହାକୁ ପରିତ୍ୟାଗ କରିବାର ଇଚ୍ଛା କରୁ; କିନ୍ତୁ ତାହାକୁ ଏହି ବାକ୍ୟାର୍ଥରେ ଆବୃତ୍ତି ପ୍ରଭୃତି ବଚନ



ଓ ଯୁକ୍ତି ଦ୍ୱାରା ସ୍ଥିର କରିବା ଉଚିତ । ତେଣୁ ପରଂବ୍ରହ୍ମ ବିଷୟକ ଜ୍ଞାନରେ ତାହାର ସାଧନଭୂତ ଉପନଦେଶଗୁଡ଼ିକରେ ଆବୃତ୍ତି ସିଦ୍ଧି ହୁଏ ॥୨॥

## २- आत्मत्वोपासनाधिकरणम् ॥ सू० ३ ॥

## ୨-ଆତ୍ମତ୍ୱୋପାସନାଧିକରଣମ୍ ॥ସୂ-୩॥

## आत्मेति तुपगच्छन्ति ग्राहयन्ति च ॥ ४-१-३ ॥

## ଆତ୍ମେତି ତୂପଗଚ୍ଛନ୍ତି ଗ୍ରାହୟନ୍ତି ଚ ॥ ୪-୧-୩ ॥

ଆତ୍ମେତି = 'ଆତ୍ମରୂପରେ ପରମେଶ୍ୱରଙ୍କୁ ଗ୍ରହଣ କରିବା ଉଚିତ' ତୁ=କାରଣ, ଉପଗଚ୍ଛନ୍ତି=ଜାବାଳ 'ତ୍ୱଂ ବା ଅହମସ୍ମି' ଏହିପ୍ରକାର ସ୍ୱୀକାର କରନ୍ତି । ଚ=ଏବଂ, ଗ୍ରାହୟନ୍ତି-'ଏଷ ତ ଆତ୍ମ ସର୍ବାନ୍ତରଃ' ଇତ୍ୟାଦି ଶ୍ରୁତି ଆତ୍ମରୂପରେ ଗ୍ରହଣ କରନ୍ତି ।

ମୂଳ-(କ) ଯଃ ଶାସ୍ତ୍ରୋକ୍ତବିଶେଷଣଃ ପରମାତ୍ମା ସ କମିହମିତି ଗ୍ରହୀତବ୍ୟଃ, କିଂ ବା ମଦନ୍ୟଃ ଇତ୍ୟେତଦ୍‌ବିଚିରୟତି । କଥଂ ପୁନରାତ୍ମଶବ୍ଦେ ପ୍ରତ୍ୟଗାତ୍ମବିଷୟେ ଶ୍ରୂୟମାଣେ ସଂଶୟ ଇତି ? ଉଚ୍ୟତେ ଆୟମାତ୍ମଶବ୍ଦୋ ମୁଖ୍ୟଃ ଶକ୍ୟତେଽଭ୍ୟୁପଗନ୍ତୁଂ ସତି ଜୀବେଶ୍ୱରୟୋରଭେଦସମ୍ଭବ ଇତରଥା ତୁ ଗୌଣୋଽୟମଭ୍ୟୁପଗନ୍ତବ୍ୟ ଇତି ମନ୍ୟତେ ।

(ଖ) କିଂ ତାବତ୍ ପ୍ରାପ୍ତମ୍ - ନାହମିତି ଗ୍ରାହ୍ୟଃ । ନହ୍ୟପହତପାପ୍ମତ୍ୱାଦିଗୁଣୋ ବିପରୀତଗୁଣତ୍ୱେନ ଶକ୍ୟତେ ଗ୍ରହୀତୁମ୍, ବିପରୀତଗୁଣୋ ବାଽପହତପାପ୍ମତ୍ୱାଦିଗୁଣତ୍ୱେନ । ଅପହତପାପ୍ମାଦିଗୁଣଶ୍ଚ ପରମେଶ୍ୱରଃ, ତଦ୍‌ବିପରୀତଗୁଣସ୍ତୁ ଶାରୀରଃ । ଈଶ୍ୱରସ୍ୟ ଚ ସଂସାର୍ଯ୍ୟାତ୍ମତ୍ୱେ ଈଶ୍ୱରାଭାବାପ୍ରସଙ୍ଗଃ, ତତଃ ଶାସ୍ତ୍ରାନର୍ଥକ୍ୟମ୍ ।

(ଗ) ସଂସାରିଣୋଽପୀଶ୍ୱରାତ୍ମତ୍ୱେଽଧିକାର୍ଯ୍ୟଭାବାଚ୍ଛାସ୍ତ୍ରାନର୍ଥକ୍ୟମେବ, ପ୍ରତ୍ୟକ୍ଷାଦି-ବିରୋଧଶ୍ଚ । ଅନନ୍ୟତ୍ୱେଽପି ତାଦାତ୍ମ୍ୟ ଦର୍ଶନଂ ଶାସ୍ତ୍ରାତ୍ କର୍ତ୍ତବ୍ୟଂ' ପ୍ରତିମାଦିଷ୍ୱିବ ବିଷ୍ଣ୍ୱାଦି-ଦର୍ଶନମିତି ଚେତ୍, କାମମେବଂ' ଭବତୁ । ନତୁ ସଂସାତ୍ମଣୋ ମୁଖ୍ୟ ଆତ୍ମେଶ୍ୱର ଇତ୍ୟେତନ୍ନଃ ପାପୟିତବ୍ୟମ୍ ।

ଭାଷା-(କ) ଯାହା ଶାସ୍ତ୍ରୋକ୍ତ ବିଶେଷଣବିଶିଷ୍ଟ ପରମାତ୍ମା ଅଟେ, ସେ କ'ଣ 'ମୁଁ ଅଟେ' ଏହି ପ୍ରକାର ଗ୍ରହଣ କରିବା ଉଚିତ । ଅଥବା କ'ଣ ସେ 'ମୋ ଠାରୁ ଅନ୍ୟ ଅଟେ । ଏହା ଗ୍ରହଣ କରିବା ଉଚିତ-ଏହା ବିଚାର କରନ୍ତୁ । ପରନ୍ତୁ ପ୍ରତ୍ୟଗାତ୍ମ ବିଷୟକ ଆତ୍ମଶବ୍ଦ ଶ୍ରୂୟମାଣ ହେବା ପରେ ପୁନର୍ବାର ସଂଶୟ କିପରି ହୁଏ ?

(ଖ) କୁହାଯାଇଛି ଜୀବ ଓ ଈଶ୍ୱରର ଅଭେଦ ସମ୍ଭବ ହେବାପରେ ଏହି ଆତ୍ମଶବ୍ଦ ମୁଖ୍ୟ ରୂପରେ ସ୍ୱୀକାର କରାଯାଇଛି । ଅନ୍ୟଥା ଏହି ଆତ୍ମଶବ୍ଦ ଗୌଣ ସ୍ୱୀକାର କରିବା ଉଚିତ, କାରଣ- 'ଅପହତପାପ୍ମତ୍ୱାଦି' ଗୁଣବାନ୍ ବିପରୀତ ଗୁଣରୂପରେ ଗ୍ରହଣ କରାଯାଏ

ନାହିଁ ଅଥବା ବିପରୀତ ଗୁଣ ପାପାଦି ବିଶିଷ୍ଟ, ଅପହତପାପ୍ମତ୍ୱାଦି 'ଗୁଣ ରୂପରେ ମଧ୍ୟ ଗ୍ରହଣ କରାଯାଏ ନାହିଁ; 'ଅପହତପାପ୍ମତ୍ୱ' ଆଦି ଗୁଣବିଶିଷ୍ଟ ପରମେଶ୍ୱର ଅଟେ ଏବଂ ତାହାଦ୍ୱାରା ବିପରୀତ ଗୁଣ ବିଶିଷ୍ଟ ଜୀବାତ୍ମା ଅଟେ । ଈଶ୍ୱରଠାରେ ସଂସାର୍ଯ୍ୟାତ୍ମତ୍ୱ ସ୍ୱୀକାର ହେବା ପରେ ଈଶ୍ୱରର ଅଭାବ ପ୍ରସଙ୍ଗ ହେବ, ତାହାଦ୍ୱାରା ଶାସ୍ତ୍ର ଅନର୍ଥକ ହେବ ।

(ଗ) ସଂସାରୀଠାରେ ମଧ୍ୟ ଈଶ୍ୱରାତ୍ମତ୍ୱ ସ୍ୱୀକାର ହେବା ପରେ ଓ ଅଧିକାରୀର ନ ହେବାରୁ ଶାସ୍ତ୍ର ଅନର୍ଥକ ହେବ ଏବଂ ଦୁଇଟି ଅଭେଦପକ୍ଷରେ ପ୍ରତ୍ୟକ୍ଷାଦିର ବିରୋଧ ହୁଏ । ଯଦି କହ ଯେ- ଦୁଇଟିରେ ଭେଦ ହେବାପରେ ମଧ୍ୟ ପ୍ରତିମାଦିରେ ବିଷ୍ଣୁ ଆଦି ଦର୍ଶନ ପରି ଶାସ୍ତ୍ରପ୍ରାମାଣ୍ୟଦ୍ୱାରା ତାଦାତ୍ମ୍ୟଦର୍ଶନ ହେବା ଉଚିତ୍ । ତଦ୍ଦ୍ୱାରା ଏହା ସମୀଚୀନ । ପରନ୍ତୁ ସଂସାରୀ ଜୀବ ମୁଖ୍ୟ ରୂପରେ ପରମାତ୍ମା ଈଶ୍ୱର ଅଟେ- ଏହା ଆମ୍ଭଙ୍କୁ ଜଣାଇବା ଉଚିତ୍ ନୁହେଁ ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ଆତ୍ମେତ୍ୟେବ ପରମେଶ୍ୱରଃ ପ୍ରତିପତ୍ତବ୍ୟଃ । ତଥାହି-ପରମେଶ୍ୱର ପ୍ରକ୍ରିୟାୟାଂ ଜାବାଲା ଆତ୍ମତ୍ୱେନୈବୈତମୁପଗଚ୍ଛନ୍ତି-'ତ୍ୱଂ ବା ଅହମସ୍ମି ଭଗବୋ ଦେବତେଽହଂ ବୈ ତ୍ୱମସି ଭଗବୋ ଦେବତେ' ଇତି । ତଥାଽନ୍ୟେଽପି 'ଅହଂ ବ୍ରହ୍ମାସ୍ମି' ଇତ୍ୟେବମାଦୟ ଆତ୍ମତ୍ୱୋପଗମା ଦ୍ରଷ୍ଟବ୍ୟାଃ । ଗ୍ରାହୟନ୍ତିଚାତ୍ମତ୍ୱେନୈବେଶ୍ୱରଂ ବେଦାନ୍ତବାକ୍ୟାନି- 'ଏଷ ତ ଆତ୍ମା ସର୍ବାନ୍ତରଃ' (ବୃ ୩-୪-୧), 'ଏଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତ' (ମୃ ୩-୭-୩), 'ତତ୍ସତ୍ୟଂ ଆତ୍ମା ତତ୍ତ୍ୱମସି' (ଛା ୬-୮-୭) ଇତ୍ୟେବମାଦୀନି ।

(ଖ) ଯତ୍ତୁକ୍ତମ୍-ପ୍ରତୀକଦର୍ଶନମିଦଂ ବିଷ୍ଣୁପ୍ରତିମାନ୍ୟାୟେନ ଭବିଷ୍ୟତୀତି, ତଦଯୁକ୍ତମ୍, ଗୌଣତ୍ୱପ୍ରସଙ୍ଗାତ୍, ବାକ୍ୟବୈରୂପ୍ୟାଚ୍ଚ । ଯତ୍ର ହି ପ୍ରତୀକଦୃଷ୍ଟିରଭିପ୍ରେୟତେ' ସକୃଦେବ ତତ୍ର ବଚନଂ ଭବତି । ଯଥା- 'ମନୋବ୍ରହ୍ମ' (ଛା ୩-୧୮-୧), 'ଆଦିତ୍ୟୋ ବ୍ରହ୍ମ' (ଛା ୩-୧୯-୧) ଇତ୍ୟାଦି, ଇହ ପୁନସ୍ତ୍ୱମହମସ୍ମ୍ୟହଂ ଚ ତ୍ୱମସୀତ୍ୟାହ, ଅତଃ ପ୍ରତୀକଶ୍ରୁତି-ବୈରୂପ୍ୟାଦଭେଦପ୍ରତିପତ୍ତିଃ ଭେଦଦୃଷ୍ଟ୍ୟପବାଦାଚ୍ଚ ।

(ଗ) ତଥାହି-'ଅଥ ଯୋଽନ୍ୟ' ଦେବତାମୁପାସ୍ତେଽନ୍ୟୋଽସାବନ୍ୟୋଽହମସ୍ମୀତି ନ ସ ବେଦ' (ବୃ ୧-୪-୧୦) 'ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି' (ବୃ ୪-୪-୧୯, କଂ ୪-୧୦), 'ସର୍ବଂ ତଂ ପରାଦାଦ୍ୟୋଽନ୍ୟତ୍ରାତ୍ମନଃ ସର୍ବଂ ବେଦ' (ବୃ ୪-୫-୭) ଇତ୍ୟେବମାଦ୍ୟା ଭୂୟସୀ ଶ୍ରୁତିର୍ଭେଦଦର୍ଶନମପବଦୀତି ।

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ- ଏହି ଆତ୍ମା ହିଁ ପରମେଶ୍ୱର ବୋଲି ଜାଣିବା ଉଚିତ୍; କାରଣ-ପରମେଶ୍ୱର-ପ୍ରକରଣରେ 'ତ୍ୱଂ ବା' (ହେ ଭଗବାନ୍ ଦେବତା ! ତୁମେ ହିଁ ମୁଁ ଅଟେ । ହେ ଭଗବନ୍ ଦେବତା ! ମୁଁ ହିଁ ତୁମ୍ଭେ ଅଟ) ଏହିପରି ଜାବାଳ ଆତ୍ମ ରୂପରେ ସ୍ୱୀକାର କରନ୍ତି । ସେହିପରି 'ଅହଂ ବ୍ରହ୍ମାସ୍ମି' ଇତ୍ୟାଦି ଅନ୍ୟମଧ୍ୟ



ଆତ୍ମତ୍ୱ ସ୍ୱୀକାର କରିବା ଉଚିତ୍ । 'ଏଷ ତ ଆତ୍ମା' ଏହି ତୁମ୍ଭର ଆତ୍ମା ସର୍ବାନ୍ତର ଅଟେ) 'ଏଷ ତ ଆତ୍ମା' (ଏହି ତୁମ୍ଭର ଆତ୍ମା ଅନ୍ତର୍ଯ୍ୟାମୀ ଓ ଅମୃତ ଅଟେ) 'ତତ୍ ସତ୍ୟମ୍' (ସେହି ସତ୍ୟ ଅଟେ, ସେ ଆତ୍ମା ଅଟେ । ହେ ଶ୍ୱେତକେତୁ ! ସେ ତୁମ୍ଭେ ଅଟ) ଇତ୍ୟାଦି ବେଦାନ୍ତ ବାକ୍ୟ ଈଶ୍ୱରଙ୍କୁ ଆତ୍ମରୂପରେ ଗ୍ରହଣ କରାଏ ।

(ଖ) ଯାହା କୁହାଯାଇଛି- ବିଷ୍ଣୁ ପ୍ରତିମାନ୍ୟାୟଦ୍ୱାରା ଏହ ପ୍ରତୀକ ଠିକ୍ ହେବ କି ବୋଲି କହିବା ଠିକ୍ ନୁହେଁ; କାରଣ-ଏହା ସ୍ୱୀକାର କଲେ ଗୌଣତ୍ୱପ୍ରସଙ୍ଗ ଓ ବାକ୍ୟବିରୁଦ୍ଧତ୍ୱ ହେବ । ଏଠାରେ ପ୍ରତୀକ ଦୃଷ୍ଟି ଅଭିପ୍ରେତ ହୁଏ; କିନ୍ତୁ ସେଠାରେ ଥରେ ମାତ୍ର ବଚନ ହୁଏ । ଯେପରି କି 'ମନୋବ୍ରହ୍ମ', 'ଆଦିତ୍ୟୋ ବ୍ରହ୍ମ' ଇତ୍ୟାଦି । ପରନ୍ତୁ ଏଠାରେ 'ତୁମ୍ଭେ ହିଁ ମୁଁ ଅଟେ' ଏବଂ ମୁଁ ତୁମ୍ଭେ ଅଟ'- ଏହା କୁହନ୍ତି । ତେଣୁ ପ୍ରତୀକ ଶ୍ରୁତିର ବିରୋଧ ହେଲେ ଅଭେଦ ପ୍ରତିପତ୍ତି ହୁଏ; କାରଣ-ଭେଦ ଦୃଷ୍ଟିର ଅପବାଦ ହୁଏ ।

(ଗ) ଯେପରି କି 'ଅଥ ଯୋଽନ୍ୟାମ୍' (ଯାହା ଅନ୍ୟ ଦେବତାର 'ଏହା ଅନ୍ୟ ଅଟେ' ଏବଂ 'ମୁଁ ଅନ୍ୟ ଅଟେ' ଏହିପ୍ରକାର ଉପାସନା କରେ ଏବଂ ସେ ମୃତ୍ୟୁ ଦ୍ୱାରା ମୃତ୍ୟୁକୁ ପ୍ରାପ୍ତ ହୁଏ) । 'ସର୍ବ ତଂ' (ଯାହା ସମସ୍ତଙ୍କୁ ଆତ୍ମାଠାରୁ ଭିନ୍ନ ରୂପେ ଜାଣେ ସେ ସମସ୍ତଙ୍କୁ ପରାସ୍ତ କରେ-କୈବଲ୍ୟଯୋଗରୁ ରହିତ କରେ) ଇତ୍ୟାଦି ବହୁତ ଶ୍ରୁତିଭେଦ ଦର୍ଶନର ନିଷେଧ କରେ ।

ମୂଳ-(କ) ଯତ୍ତୁକ୍ତମ୍ - ନ ବିରୁଦ୍ଧଗୁଣୟୋରନ୍ୟୋନ୍ୟାତ୍ମତ୍ୱସମ୍ଭବ ଇତି, ନାୟଂ ଦୋଷଃ, ବିରୁଦ୍ଧଗୁଣତାୟା ମିଥ୍ୟାତ୍ୱୋପପତ୍ତେଃ ।

(ଖ) ଯତ୍ପୁନରୁକ୍ତମ୍-ଈଶ୍ୱରଭାବପ୍ରସଙ୍ଗ ଇତି, ତଦସତ୍, ଶାସ୍ତ୍ରପ୍ରାମାଣ୍ୟାଦନଭ୍ୟୁପଗମାଚ୍ଚ । ନହୀଶ୍ୱରସ୍ୟ ସଂସାର୍ଯ୍ୟାତ୍ମତ୍ୱଂ ପ୍ରତିପାଦ୍ୟତ ଇତ୍ୟଭ୍ୟୁପଗଚ୍ଛାମଃ କିଂ ତର୍ହି ? ସଂସାରିଣଃ ସଂସାରିତ୍ୱାପୋହେନେଶ୍ୱରାତ୍ମତ୍ୱଂ ପ୍ରତିପିପାଦୟିଷିତମିତି; ଏବଂ ଚ ସତ୍ୟଦ୍ୱୈତେଶ୍ୱରସ୍ୟାପହତପାପ୍ମତ୍ୱାଦିଗୁଣତା ବିପରୀତଗୁଣତା ତ୍ୱି ତରସ୍ୟ ମିଥ୍ୟେତି ବ୍ୟବତିଷ୍ଠତେ ।

(ଗ) ଯଦପ୍ୟୁକ୍ତମ୍-ଅଧିକାର୍ଯ୍ୟଭାବଃ ପ୍ରତ୍ୟକ୍ଷାଦିରୋଧଶ୍ଚେତି, ତଦପ୍ୟସତ୍, ପ୍ରାକ୍ପ୍ରବୋଧାତ୍ ସଂସାରିତ୍ୱାଭ୍ୟୁପଗମାତ୍, ତଦ୍ୱିଷୟତ୍ୱାଚ୍ଚ ପ୍ରତ୍ୟକ୍ଷାଦିବ୍ୟବହାରସ୍ୟ । 'ଯତ୍ରତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍କେନ କଂ ପଶ୍ୟେତ୍' (ବୃ ୨-୪-୧୪) ଇତ୍ୟାଦିନା ହି ପ୍ରବୋଧେ ପ୍ରତ୍ୟକ୍ଷାଦ୍ୟଭାବଂ ଦର୍ଶୟତି । ପ୍ରତ୍ୟକ୍ଷାଦ୍ୟଭାବେ ଶ୍ରୁତେରପ୍ୟଭାବପ୍ରସଙ୍ଗ ଇତି ଚେତ୍-ନ, ଇଷ୍ଟତ୍ୱାତ୍ । 'ଅତ୍ର ପିତାଽପିତା ଭବତି' (ବୃ ୪-୩-୨୨) ଇତ୍ୟୁପକ୍ରମ୍ୟ, 'ବେଦାଃ ଅବେଦାଃ' (ବୃ ୪-୩-୨୨) ଇତି ବଚନାଦିଷ୍ୟତି ଏବମସ୍ମାଭିଃ ଶ୍ରୁତେରପ୍ୟଭାବଃ ପ୍ରବୋଧେ ।

(ଘ) କସ୍ୟ ପୁନରାୟମପ୍ରବୋଧ ଇତି ଚେତ୍‌ଯତ୍ତ୍ୱଂ ପୃଚ୍ଛସି ତସ୍ୟ ତ ଇତି ବଦାମଃ । ନନ୍ୱହମୀଶ୍ୱରଃ ଏବୋକ୍ତଃ ଶ୍ରୁତ୍ୟା, ଯଦେବଂ ପ୍ରତିବୃଦ୍ଧୋଽସି, ନାସ୍ତି କସ୍ୟଚିଦ୍‌ପ୍ରବୋଧଃ । ଯୋଽପି ଦୋଷଶ୍ଚୋଦ୍ୟତେ, କୈଶ୍ଚିତ-ଅବିଦ୍ୟୟା କିଲାତ୍ମନଃ ସ୍ୱଦିତୀୟତ୍ୱାଦଦ୍ୱୈତାନୁ-ପପତ୍ତିରିତି, ସୋଽଦ୍ୟେତେନ ପ୍ରତ୍ୟୁକ୍ତଃ । ତସ୍ମାଦାତ୍ମେତ୍ୟେବେଶ୍ୱରେ ମନୋ ଦଧୀତ ॥

ଭାଷା-(କ) ଯାହା କୁହାଯାଇଛି ଯେ- ବିରୁଦ୍ଧ ଗୁଣବାନ ଜୀବ ଓ ଈଶ୍ୱର ମଧ୍ୟରେ ଐକସମ୍ଭବ ନୁହେଁ । ଏହା ସମୀଚୀନ ନୁହେଁ; କାରଣ ବିରୁଦ୍ଧ ଗୁଣତାରେ ମିଥ୍ୟାତ୍ୱ ଉପପନ୍ନ ହୁଏ ।

(ଖ) ଯାହା କୁହାଯାଇଛି ଯେ- ଈଶ୍ୱରର ଅଭାବପ୍ରସଙ୍ଗ ହେବ, ଏହା କିନ୍ତୁ ଠିକ୍ ନୁହେଁ । କାରଣ-ଶାସ୍ତ୍ରପ୍ରମାଣ ଅଟେ ଏବଂ ତାହାକୁ ଆମ୍ଭେ ସ୍ୱୀକାର କରୁନାହୁଁ । ଈଶ୍ୱରଠାରେ ସଂସାରୀ ଆତ୍ମତ୍ୱର ପ୍ରତିପାଦନ କରାଯାଇଛି । ଏହା ମଧ୍ୟ ଆମ୍ଭେ ସ୍ୱୀକାର କରୁନାହୁଁ । କିନ୍ତୁ ସଂସାରୀ ଜୀବର ସଂସାରିତ୍ୱ ନିରାଶ କରି ଈଶ୍ୱରର ଭାବ ପ୍ରତିପାଦନ କରିବା ଅଭୀଷ୍ଟ ଅଟେ । ଏହା ହେବାପରେ ଅଦ୍ୱୈତ ଈଶ୍ୱରର ଅପହତପାପ୍ମତ୍ୱ ଆଦି ଗୁଣତ୍ୱ ଏବଂ ଅନ୍ୟଜୀବର ବିପରୀତଗୁଣତ୍ୱ ମିଥ୍ୟା ଅଟେ-ଏହା ବ୍ୟବସ୍ଥିତ ହୁଏ ।

(ଗ) ଯାହା ଏଠାରେ କୁହାଯାଇଛି ଯେ- ଅଧିକାରୀର ଅଭାବ ଓ ପ୍ରତ୍ୟକ୍ଷାଦିର ବିରୁଦ୍ଧ ହୁଏ । ତାହା ମଧ୍ୟ ଅଯୁକ୍ତ ଅଟେ । କାରଣ-ତତ୍ତ୍ୱଜ୍ଞାନର ପୂର୍ବରୁ ଜୀବର ସଂସାରୀ ଆତ୍ମତ୍ୱ ସ୍ୱୀକାର ହୁଏ ଏବଂ ପ୍ରତ୍ୟକ୍ଷାଦିବ୍ୟବହାର ତଦ୍‌ବିଷୟକ । 'ଯତ୍ର ତ୍ୱସ୍ୟ' (ଯେଉଁଠି ଏହାସବୁ ଆତ୍ମା ହୋଇଗଲା, ସେଠାରେ କିଏ କାହାକୁ ଦେଖେ ?) ଇତ୍ୟାଦି ଶ୍ରୁତି ତତ୍ତ୍ୱଜ୍ଞାନ ହେବାପରେ ପ୍ରତ୍ୟକ୍ଷାଦିର ଅଭାବ ଦେଖାଯାଏ, ଯଦି କହ ଯେ- ପ୍ରତ୍ୟକ୍ଷାଦିର ଅଭାବ ହେଲେ ଶ୍ରୁତିର ଅଭାବ ପ୍ରସଙ୍ଗ ହେବ । କିନ୍ତୁ ଏହା ଠିକ୍ ନୁହେଁ, କାରଣ- ଏହା ଆମ୍ଭେ ଚାହୁଁ । 'ଅତ୍ର ପିତା' (ଏହି ଅବସ୍ଥାରେ ପିତା ଅପିତା ହୁଏ) ଏହା ଆରମ୍ଭ କରି 'ବେଦାଃ' (ବେଦ ଅବେଦ ହୁଏ) ଏହି ବାକ୍ୟରୁ ପ୍ରବୋଧରେ ଶ୍ରୁତିର ଅଭାବ ଆମ୍ଭେ ଚାହୁଁ ।

(ଘ) ଯଦି କହ ଯେ- ଏହି ଅଜ୍ଞାନ କାହାର ଅଟେ ? ତେବେ ଆମ୍ଭେ କହିବୁ ସେ ତୁମ୍ଭର ଅଟେ ବୋଲି ତୁମ୍ଭେ ପଚାରୁଛ କି ? ପରନ୍ତୁ 'ମୁଁ ଈଶ୍ୱର ଅଟେ ଏହି ଶ୍ରୁତିରେ କୁହାଯାଇଛି । ଯଦି ଏହିପରି ପ୍ରତିବୁଦ୍ଧ ହୁଏ, ତେବେ କାହାର ଅଜ୍ଞାନ ନୁହେଁ । କିନ୍ତୁ କେତେକ ଲୋକ ଦୋଷ ଦିଅନ୍ତି ଯେ- ଅବିଦ୍ୟାରୁ ଆତ୍ମାରେ ସଦ୍ୱିତୀୟତ୍ୱ ହେବାରୁ ଅଦ୍ୱୈତର ଅନୁପପତ୍ତି ହୁଏ । ତାହା ମଧ୍ୟ ଏହାଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଛି । ତେଣୁ ଆତ୍ମା ମଧ୍ୟ ଈଶ୍ୱର ଅଟେ । ସେହି ଈଶ୍ୱରଠାରେ ମନ ଧ୍ୟାନ ଦେବା ଉଚିତ୍ ॥୩॥



## ३ । प्रतिकाधिकरणम् ॥ सू० ४ ॥

## ୩-ପ୍ରତୀକାଧିକରଣମ୍ ॥ ସୂ-୪ ॥

## न प्रतीके न हि सः ॥ ४-१-४ ॥

## ନ ପ୍ରତୀକେ ନ ହି ସଃ ॥୪-୧-୪॥

ପ୍ରତୀକେ=ପ୍ରତୀକରେ, ନ ଆତ୍ମବୁଦ୍ଧି ହେବା ଉଚିତ୍ ନୁହେଁ, ହି=କାରଣ-, ସଃ=ଉପାସକକୁ ବ୍ୟସ୍ତ ପ୍ରତୀକରୁ ଆତ୍ମରୂପରେ ଅକଳନ, ନ=କରିବା ଉଚିତ୍ ନୁହେଁ ॥

ମୂଳ-(କ) 'ମନୋ ବ୍ରହ୍ମେତ୍ୟୁପାସୀତେତ୍ୟଧ୍ୟାତ୍ମମଥାଧିଦୈବତମାକାଶୋ ବ୍ରହ୍ମେତି, (ଛା ୩-୧୮-୧) ତଥା 'ଆଦିତ୍ୟୋ ବ୍ରହ୍ମେତ୍ୟାଦେଶଃ' (ଛା ୩-୧୯-୧) 'ସ ଯୋ ନାମ ବ୍ରହ୍ମେତ୍ୟୁ ପାସ୍ତେ' (ଛା ୭-୧-୫) ଇତ୍ୟେବମାଦିଷୁ ପ୍ରତୀକୋପାସନେଷୁ ସଂଶୟଃ- କିଂ ତେଷ୍ୱପ୍ୟାତ୍ମଗ୍ରହଃ କର୍ତ୍ତବ୍ୟୋ ନ ବେତି । କିଂ ତାବତ୍ପ୍ରାପ୍ତମ୍ ? ତେଷ୍ୱାପ୍ୟାତ୍ମଗ୍ରହଃ ଏବ ଯୁକ୍ତଃ କର୍ତ୍ତୁମ୍ । କସ୍ମାତ୍ ? ବ୍ରହ୍ମଣଃ ଶ୍ରୁତିଷ୍ୱାତ୍ମ ତ୍ୱେନ ପ୍ରସିଦ୍ଧତ୍ୱାତ୍ ପ୍ରତୀକାନାମପି ବ୍ରହ୍ମବିକାରତ୍ୱାଦ୍ ବ୍ରହ୍ମତ୍ୱେ ସତ୍ୟାତ୍ମତ୍ୱୋପପତ୍ତେରିତି ।

(ଖ) ଏବଂ ପ୍ରାପ୍ତେ ବ୍ରୂମଃ ନ ପ୍ରତୀକେଷ୍ୱାତ୍ମମତିଂ ବଧ୍ନୀୟାତ୍ । ନ ହି ସ ଉପାସକଃ ପ୍ରତିକାନି ବ୍ୟସ୍ତାନ୍ୟାତ୍ମତ୍ୱେନାକଳୟେତ୍ । ଯତ୍ପୁନଃ-ବ୍ରହ୍ମବିକାରତ୍ୱାତ୍ପ୍ରତୀକାନାଂ ବ୍ରହ୍ମତ୍ୱଂ ତତଶ୍ଚାତ୍ମତ୍ୱମିତିତଦସତ୍, ପ୍ରତୀକାଭାବପ୍ରସଙ୍ଗାତ୍ । ବିକାରସ୍ୱରୂପୋପମର୍ଦ୍ଦେନ ହି ନାମାଦିଜାତସ୍ୟ ବ୍ରହ୍ମତ୍ୱମେବାଶ୍ରିତଂ ଭବତି । ସ୍ୱରୂପୋପମର୍ଦ୍ଦେ ଚ ନାମାଦୀନାଂ କୁତଃ ପ୍ରତୀକତ୍ୱମାତ୍ମଗ୍ରହୋ ବା ?

(ଗ) ନ ଜ ବ୍ରହ୍ମଣଃ ଆତ୍ମତ୍ୱାଦ୍ବ୍ରହ୍ମଦୃଷ୍ଟ୍ୟୁପଦେଶେଷ୍ୱାତ୍ମଦୃଷ୍ଟିଃ କଳ୍ପ୍ୟା, କର୍ତ୍ତୃତ୍ୱାଦ୍ୟନିରାକରଣାତ୍ । କର୍ତ୍ତୃତ୍ୱାଦିସର୍ବସଂସାର ଧର୍ମନିରାକରଣେ ହି ବ୍ରହ୍ମଣଃ ଆତ୍ମତ୍ୱୋପଦେଶଃ । ତଦନିରାକରଣେନ ଚୋପାସନବିଧାନମ୍ । ଅତଶ୍ଚୋପାସକସ୍ୟ ପ୍ରତୀକୈଃ ସମତ୍ୱାଦାତ୍ମଗ୍ରହୋ ନୋପପଦ୍ୟତେ । ନହି ରୁଚକସ୍ୱସ୍ତିକୟୋରିତରେତରାତ୍ମତ୍ୱମସ୍ତି, ସୁବର୍ଣ୍ଣାତ୍ମତ୍ୱେନେବ ତୁ ବ୍ରହ୍ମାତ୍ମତ୍ୱେନୈକତ୍ୱେ ପ୍ରତୀକାଭାବପ୍ରସଙ୍ଗମବୋଚମ । ଅତୋ ନ ପ୍ରତୀକେଷ୍ୱାତ୍ମଦୃଷ୍ଟିଃ କ୍ରିୟତେ ॥

ଭାଷା-(କ) 'ମନୋ ବ୍ରହ୍ମ' (ମନ ବ୍ରହ୍ମ ଅଟେ-ଏହାକୁ ଉପାସନା କରିବା ଉଚିତ୍ । ଏହା ଆତ୍ମଦୃଷ୍ଟି ଅଟେ । ଆକାଶ ବ୍ରହ୍ମ ଅଟେ - ଏହାକୁ ଉପାସନା କରିବା ଉଚିତ୍ । ଏହା ଅଧିଦୈବତ ଅଟେ । ଏହିପରି 'ଆଦିତ୍ୟୋ' (ଆଦିତ୍ୟ ବ୍ରହ୍ମ ଅଟେ-ଏହା ହିଁ ଉପଦେଶ), 'ସ ଯୋ' (ସେ ଯାହାକି ନାମ ବ୍ରହ୍ମ ଅଟେ-ତାହାକୁ ଉପାସନା କରାଯାଏ) ଇତ୍ୟାଦି ପ୍ରତୀକୋପାସନାଗୁଡ଼ିକରେ ସଂଶୟ ହୁଏ ଯେ-ସେଗୁଡ଼ିକରେ କ'ଣ ଆତ୍ମଗ୍ରହ କରିବା ଉଚିତ୍ ଅଥବା ନୁହେଁ ? ଏଠାରେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ- ସେଠାରେ ଆତ୍ମଗ୍ରହ

ପ୍ରଯୁଜ୍ୟ । କିପରି ? କାରଣ-ବ୍ରହ୍ମ ଆତ୍ମରୂପରେ ଶ୍ରୁତିରେ ପ୍ରସିଦ୍ଧ । ପ୍ରତୀକ ମଧ୍ୟ ବ୍ରହ୍ମର ବିକାର ଅଟେ, ତେଣୁ ସେଠାରେ ବ୍ରହ୍ମତ୍ୱ ହେବାପରେ ଆତ୍ମତ୍ୱର ଉପପତ୍ତି ସମ୍ଭବ ହୁଏ ।

ସିଦ୍ଧାନ୍ତ-(ଖ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ- ପ୍ରତୀକରେ ଆତ୍ମବୁଦ୍ଧି କରାଯାଏ ନାହିଁ; କାରଣ-ଉପାସକଙ୍କୁ ବ୍ୟସ୍ତ ପ୍ରତୀକର ଆତ୍ମରୂପରେ ଗ୍ରହଣ କରିବା ଉଚିତ୍ ନୁହେଁ ଏବଂ ଯାହା କୁହାଯାଇଛି ଯେ- ବ୍ରହ୍ମର ବିକାର ହେଲେ ପ୍ରତୀକ ବ୍ରହ୍ମ ହୁଏ, ତାହାଠାରୁ ଆତ୍ମା ହୁଏ, ସେସବୁ ଠିକ୍ ନୁହେଁ । କାରଣ-ଏହା ହେବା ପରେ ପ୍ରତୀକର ଅଭାବ ପ୍ରସଙ୍ଗ ହେବ । କାରଣ-ବିକାରର ସ୍ୱରୂପ ନାଶ ହେବାପରେ ନାମାଦି ସମୁଦାୟ ବ୍ରହ୍ମ ସ୍ୱରୂପ ହୋଇଯାଏ । ନାମାଦିର ସ୍ୱରୂପନାଶ ହେବାପରେ ସେଠାରେ ପ୍ରତୀକତ୍ୱ ଏବଂ ଆତ୍ମଗ୍ରହ କିପରି ହେବ ?

(ଗ) ବ୍ରହ୍ମର ଆତ୍ମତ୍ୱ ହେଲେ ବ୍ରହ୍ମଦୃଷ୍ଟି ଉପଦେଶରେ ଆତ୍ମଦୃଷ୍ଟିର କଳ୍ପନା କରିବା ଉଚିତ୍ ନୁହେଁ, କାରଣ-କର୍ତ୍ତୃତ୍ୱାଦିର ନିରାକରଣ କରାଯାଇ ନାହିଁ । କର୍ତ୍ତୃତ୍ୱାଦି ସମସ୍ତ ସଂସାର ଧର୍ମର ନିରାକରଣ ଦ୍ୱାରା ବ୍ରହ୍ମରେ ଆତ୍ମତ୍ୱ ଉପଦେଶ ହୁଏ ଏବଂ ତାହାର ଅନିରାକରଣରୁ ଉପାସନାର ବିଧାନ ହୁଏ । ତେଣୁ ଉପାସନାର ପ୍ରତୀକ ସହ ସମାନତା ହେଲେ ପ୍ରତୀକରେ ଆତ୍ମଗ୍ରହ ଉପପନ୍ନ ହୁଏ ନାହିଁ । ରୂପକ ଏବଂ ସ୍ୱସ୍ତିକରେ ଅନ୍ୟୋନ୍ୟ-ତ୍ମକତ୍ୱ ନାହିଁ । ଯେପରିକି ଦୁଇଟି ପଦାର୍ଥ ସୁବର୍ଣ୍ଣ ରୂପରେ ଏକ ଅଟେ । ସେହିପରି ପ୍ରତୀକ ଓ ଉପାସନା ଦୁଇଟି ବ୍ରହ୍ମରୂପରେ ଏକ ହେବାଦ୍ୱାରା ପ୍ରତୀକର ଅଭାବ ପ୍ରସଙ୍ଗ ହେବ- ଏହା ଆମ୍ଭେ କହୁଁ । ତେଣୁ ପ୍ରତୀକରେ ଆତ୍ମଦୃଷ୍ଟି କରାଯାଇନାହିଁ ।

## ४। ब्रह्मदृष्ट्यधिकरणम् ॥ सू० ५ ॥

## ୪-ବ୍ରହ୍ମଦୃଷ୍ଟ୍ୟଧିକରଣମ୍ ॥ ସୂ ୫ ॥

## ब्रह्मदृष्टिरुत्कर्षात् ॥ ४-१-५ ॥

## ବ୍ରହ୍ମଦୃଷ୍ଟିରୁତକର୍ଷାତ୍ ॥୪-୧-୫॥

ବ୍ରହ୍ମଦୃଷ୍ଟିଃ=ଆଦିତ୍ୟ ପ୍ରଭୃତି ପ୍ରତୀକରେ ବ୍ରହ୍ମଦୃଷ୍ଟି କରିବା ଉଚିତ ଉତ୍କର୍ଷାତ୍=କାରଣ-ବ୍ରହ୍ମଦୃଷ୍ଟି ଉତ୍କର୍ଷ ଅଟେ ॥

ମୂଳ-(କ) ତେଷ୍ୱାଦାହରଣେଷ୍ୱନ୍ୟଃ ସଂଶୟ-କିମାଦିତ୍ୟାଦିଦୃଷ୍ଟୟୋ ବ୍ରହ୍ମଣାଧ୍ୟସିତବ୍ୟାଃ, କିଂ ବା ବ୍ରହ୍ମଦୃଷ୍ଟିରାଦିତ୍ୟାଦିଷ୍ୱିତ । କୁତଃ ସଂଶୟ ? ସମାନାଧିକରଣ୍ୟେ କାରଣାନବଧାରଣାତ୍ । ଅତ୍ର ହି ବ୍ରହ୍ମଶବ୍ଦସ୍ୟାଦିତ୍ୟାଦିଶବ୍ଦୈଃ ସମାନାଧିକରଣ୍ୟମୁପଲଭ୍ୟତେ; ଆଦିତ୍ୟୋ ବ୍ରହ୍ମ ପ୍ରାଣୋ ବ୍ରହ୍ମ ବିଦ୍ୟୁଦ୍‌ବ୍ରହ୍ମେତ୍ୟାଦିସମାନବିଭକ୍ତିନିର୍ଦ୍ଦେଶାତ୍ । ନଚାତ୍ରାଞ୍ଜସଂ ସାମାନାଧିକରଣ୍ୟମବକଳ୍ପତେ, ଅର୍ଥାନ୍ତର ବଚନତ୍ୱାଦ୍ ବ୍ରହ୍ମାଦିତ୍ୟାଦିଶବ୍ଦାନାମ୍ । ନହି ଭବତି ଗୌରଶ୍ୱ ଇତି ସାମାନାଧିକରଣ୍ୟମ୍ ।

(ଖ) ନନୁ ପ୍ରକୃତିବିକାରଭାବାଦ୍‌ବ୍ରହ୍ମାଦିତ୍ୟାଦୀନାଂ ମୃଚ୍ଛରାବାଦିବତ୍‌ସାମାନାଧିକରଣ୍ୟଂ ସ୍ୟାତ୍- ନେତ୍ୟୁଚ୍ୟତେ, ବିକାରପ୍ରବିଲୟୋ ହ୍ୟେବଂ ପ୍ରକୃତିସାମାନାଧିକରଣ୍ୟାତ୍ ସ୍ୟାତ୍ । ତତଶ୍ଚ ପ୍ରତୀକାଭାବପ୍ରସଙ୍ଗମବୋଚମ । ପରମାତ୍ମବାକ୍ୟଂ ଚେଦଂ ତଦାନୀଂ ସ୍ୟାତ୍, ତତଶ୍ଚୋପାସନାଧିକାରୋ ବାଧ୍ୟେତ । ପରିମିତବିକାରୋପାଦାନଂ ଚ ବ୍ୟର୍ଥମ୍ ।

(ଗ) ତସ୍ମାଦ୍ 'ବ୍ରହ୍ମଣୋଽଗ୍ନିର୍ବୈଶ୍ୱାସନରଃ' ଇତ୍ୟାଦିବଦନ୍ୟତରତ୍ରାନ୍ୟଦୃଷ୍ଟ୍ୟଧ୍ୟାସେ ସତି କ୍ବିକିଂ ଦୃଷ୍ଟିରଧ୍ୟସ୍ତାମିତି ସଂଶୟଃ । ତତ୍ରାନିୟମଃ, ନିୟମକାରିଣଃ ଶାସ୍ତ୍ରସ୍ୟାଭାବାଦିବେତ୍ୟବଂ ପ୍ରାପ୍ତମ୍ । ଅଥବାଽଽଦିତ୍ୟାଦିଦୃଷ୍ଟୟ ଏବ ବ୍ରହ୍ମଣି କର୍ତ୍ତବ୍ୟା ଇତ୍ୟେବଂ ପ୍ରାପ୍ତମ୍ । ଏବଂ ହ୍ୟାଦିତ୍ୟାଦିଦୃଷ୍ଟିଭିର୍ବ୍ରହ୍ମୋପାସିତଂ ଭବତି ବ୍ରହ୍ମୋପାସନଂ ଚ ଫଳବଦିତିଶାସ୍ତ୍ରମର୍ଯ୍ୟାଦା । ତସ୍ମାନ୍ନ ବ୍ରହ୍ମବୃଷ୍ଟି ରାଦିତ୍ୟାଦିଷ୍ୱିତି ॥

ଭାଷା-(କ) ସେହି ଉଦାହରଣଗୁଡ଼ିକରେ କିଛି ସଂଶୟ ହୁଏ- ଆଦିତ୍ୟାଦି ଦୃଷ୍ଟିର କ'ଣ ବ୍ରହ୍ମରେ ଅଧ୍ୟାସ ହେବା ଉଚିତ କି ବ୍ରହ୍ମଦୃଷ୍ଟିର ଆଦିତ୍ୟାଦିରେ ଅଧ୍ୟାସ ହେବା ଉଚିତ୍ ? କାହାଦ୍ୱାରା ସଂଶୟ ହୁଏ ? କାରଣ-ସାମାନାଧିକରଣ୍ୟରେ କାରଣର ସ୍ଥିର ହୁଏ ନାହିଁ । ଏଠାରେ ବ୍ରହ୍ମଶବ୍ଦର ଆଦିତ୍ୟାଶବ୍ଦର ସହ ସାମାନାଧିକରଣ୍ୟ ଉପଲବ୍ଧ ହୁଏ, କାରଣ-ଆଦିତୋ ବ୍ରହ୍ମ' (ଆଦିତ୍ୟ ବ୍ରହ୍ମ ଅଟେ, ପ୍ରାଣ ବ୍ରହ୍ମ ଅଟେ, ବିଦ୍ୟୁତ୍ ମଧ୍ୟ ବ୍ରହ୍ମ) ଇତ୍ୟାଦି ସମାନ ବିଭକ୍ତିର ନିର୍ଦ୍ଦେଶ ହୁଏ । ଏଠାରେ ମୁଖ୍ୟ ସାମାନାଧିକରଣ୍ୟ ହୁଏ ନାହିଁ, କାରଣ-ବ୍ରହ୍ମ ଓ ଆଦିତ୍ୟଶବ୍ଦ ଭିନ୍ନ ଭିନ୍ନ ଅର୍ଥର ବାଚକ ଅଟନ୍ତି । ଗୌଅଶ୍ୱ ଏହିପ୍ରକାର ସାମାନାଧିକରଣ୍ୟ ହୁଏ ନାହିଁ ।

(ଖ) ପରନ୍ତୁ ମୃତ୍ତିକା ଓ ଶରାବ ପରି ବ୍ରହ୍ମ ଓ ଆଦିତ୍ୟର ପ୍ରକୃତି ବିକାରଭାବ ହେବାରୁ ସାମାନାଧିକରଣ୍ୟ ହେବା ଉଚିତ କି ନୁହେଁ, ଏହା କୁହାଯାଇଅଛି-କାରଣ-ଏହି ପ୍ରକାର ପ୍ରକୃତିର ସହ ସାମାନାଧିକରଣ ହେବାରୁ ବିକାରର ପ୍ରବିଲୟ ହେବ, ତଦ୍ୱାରା ପ୍ରତୀକର ଅଭାବ ପ୍ରସଙ୍ଗ ଆସିବ ବୋଲି ଆମ୍ଭେ କହୁଁ । ଏହା ସ୍ୱୀକାର କଲାପରେ 'ଆଦିତ୍ୟ ବ୍ରହ୍ମ' ବାକ୍ୟରେ ପରମାତ୍ମବାକ୍ୟ ହେବ; ତେଣୁ ଉପାସନା ଅଧିକାରର ବାଧ ହେବ । ସୀମିତ ବିକାରର ଗ୍ରହଣ ମଧ୍ୟ ବ୍ୟର୍ଥ ହୁଏ ।

(ଗ) ତେଣୁ 'ବ୍ରାହ୍ମଣୋ' (ବ୍ରାହ୍ମଣ ବୈଶ୍ୱାନର ଅଗ୍ନି ଅଟେ) ଇତ୍ୟାଦି ପରି ଅନ୍ୟୋନ୍ୟରେ ଅନ୍ୟ ଦୃଷ୍ଟିର ଅଧ୍ୟାସ ହେବା ପରେ କେଉଁଠି କୌଣସି ଦୃଷ୍ଟିର ଅଧ୍ୟାସ ହେବା ଉଚିତ ବୋଲି ସଂଶୟ ହୁଏ । ପୂର୍ବପକ୍ଷ-ଏହି ବିଷୟରେ କୌଣସି ନିୟମ ନାହିଁ ବୋଲି କୁହାଯାଇଛି । କାରଣ-ନିୟମ କରୁଥିବା ଶାସ୍ତ୍ରର ଅଭାବ ହୁଏ । ଅଥବା ଆଦିତ୍ୟଦୃଷ୍ଟି ବ୍ରହ୍ମରେ କରିବା ଉଚିତ ବୋଲି ପ୍ରାପ୍ତ ହୁଏ । କାରଣ-ଏହିପରି ଆଦିତ୍ୟାଦି ଦୃଷ୍ଟିରେ ବ୍ରହ୍ମ ଉପାସିତ ହୁଏ ଏବଂ ବ୍ରହ୍ମୋପାସନା ସପ୍ରୟୋଜନ ହୁଏ, - ଏହା ମର୍ଯ୍ୟାଦା ଅଟେ ॥ ତେଣୁ ବ୍ରହ୍ମଦୃଷ୍ଟି ଆଦିତ୍ୟାଦିରେ ନାହିଁ ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ବ୍ରହ୍ମ ଦୃଷ୍ଟିରେବାଦିତ୍ୟାଦୃଷ୍ଟିଦିଷୁ ସ୍ୟାଦିତି । କସ୍ମାତ୍ ? ଉତ୍କର୍ଷାତ । ଏବମୁକର୍ଷେଣାଦିତ୍ୟାଦୟୋ ଦୃଷ୍ଟା ଭବନ୍ତି, ଉତ୍କୃଷ୍ଟ ଦୃଷ୍ଟେସ୍ତେଷ୍ୱଧ୍ୟାସାତ୍ । ତଥାଚ ଲୌକିକୋନ୍ୟାୟୋଽନୁଗତୋ ଭବତି, ଉତ୍କୃଷ୍ଟ ଦୃଷ୍ଟିର୍ହିନିକୃଷ୍ଟେଽଧ୍ୟସିତବ୍ୟେତି ଲୌକିକୋ ନ୍ୟାୟଃ । ଯଥା ରାଜଦୃଷ୍ଟିଃ କ୍ଷତ୍ତରି ସ ଋନୁସର୍ତ୍ତବ୍ୟଃ, ବିପର୍ଯ୍ୟୟେ ପ୍ରତ୍ୟବାୟ ପ୍ରସଙ୍ଗାତ୍ । ସହି କ୍ଷତ୍ତୃ ଦୃଷ୍ଟି ପରିଗୃହୀତୋ ରାଜା ନିଷ୍କର୍ଷଂନୀୟମାନଃ ଶ୍ରେୟସେ ସ୍ୟାତ୍ ।

(ଖ) ନନୁ ଶାସ୍ତ୍ର ପ୍ରାମାଣ୍ୟ ଦନାଶଙ୍କନୀୟୋଽତ୍ର ପ୍ରତ୍ୟବାୟ ପ୍ରସଙ୍ଗଃ, ନ ଚ ଲୌକିକେନ ନ୍ୟାୟେନ ଶାସ୍ତ୍ରୀୟା ଦୃଷ୍ଟିର୍ନିୟନ୍ତୁଂ ଯୁକ୍ତେତି । ଅତ୍ରୋଚ୍ୟତେ-ନିର୍ଧାରିତେ ଶାସ୍ତ୍ରାର୍ଥେ ଏତଦେବଂ ସ୍ୟାତ୍, ସନ୍ଦିଗ୍ଧେ ତୁ ତସ୍ମିଂସ୍ତନ୍ନିର୍ଣ୍ଣୟଂ ପ୍ରତି ଲୌକିକୋଽପି ନ୍ୟାୟ ଆଶ୍ରୀୟମାଣୋ ନ ବିରୁଦ୍ଧତେ । ତେନ ଚୈତ୍କୃଷ୍ଟଦୃଷ୍ଟ୍ୟଧ୍ୟାସେ ଶାସ୍ତ୍ରାର୍ଥେଽବଧାର୍ଯ୍ୟମାଣେ ନିକୃଷ୍ଟଦୃଷ୍ଟିମଧ୍ୟସ୍ୟନ୍ ପ୍ରତ୍ୟବେୟାଦିତି ଶ୍ଳିଷ୍ୟତେ ।

(ଗ) ପ୍ରାଥମ୍ୟାଚ୍ଚାଦିତ୍ୟାଦିଶବ୍ଦାନାଂ ମୁଖ୍ୟାର୍ଥତ୍ୱମବିରୋଧାନ୍ ଗ୍ରହୀତବ୍ୟମ୍ । ତୈଃ ସ୍ୱାର୍ଥବୃତ୍ତିଭିରବରୁଦ୍ଧାୟାଂ ବୁଦ୍ଧୌ, ପଶ୍ଚାଦବତରଣୋ ବ୍ରହ୍ମଶବ୍ଦସ୍ୟ ମୁଖ୍ୟୟା ବୃତ୍ତ୍ୟା ସାମାନାଧିକରଣ୍ୟା ସମ୍ଭବାଦ୍ ବ୍ରହ୍ମଦୃଷ୍ଟି-ବିଧାନାର୍ଥତୈବାବତିଷ୍ଠତେ । ଇତି ପରତ୍ୱାଦପି ବ୍ରହ୍ମ ଶବ୍ଦସ୍ୟୈଷ ଏବାର୍ଥୋ ନ୍ୟାୟଃ ।

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ-ବ୍ରହ୍ମଦୃଷ୍ଟି ଆଦିତ୍ୟ ପ୍ରଭୃତିରେ ହେବା ଉଚିତ୍, କିପରି ? ଉତ୍କର୍ଷଠାରୁ । ଏହିପରି ଉତ୍କର୍ଷଦ୍ୱାରା ଆଦିତ୍ୟ ପ୍ରଭୃତି ଦୃଷ୍ଟି ହୁଅନ୍ତି । କାରଣ-ଉତ୍କର୍ଷ ଦୃଷ୍ଟିର ସେଠାରେ ଅଧ୍ୟାସ ହୋଇଛି । ସେହିପରି ଲୌକିକ ନ୍ୟାୟ ଅନୁଗତ ହୁଏ, ଉତ୍କୃଷ୍ଟ ଦୃଷ୍ଟିର ନିକୃଷ୍ଟରେ ଅଧ୍ୟାସ କରିବା ଉଚିତ୍ । ଏହା ଲୌକିକ ନ୍ୟାୟ ଅଟେ ଯେପରି ସାରଥିରେ ରାଜଦୃଷ୍ଟି ଏହି ଲୌକିକ ନ୍ୟାୟର ଏଠାରେ ଅନୁସରଣ କରିବା ଉଚିତ୍ । କାରଣ-ବିପର୍ଯ୍ୟୟ ହେଲେ ପ୍ରତ୍ୟବାୟର ପ୍ରସଙ୍ଗ ହୁଏ । ସାରଥି ଦୃଷ୍ଟିରେ ପରିଗୃହୀତ ହେବାରୁ ନିକୃଷ୍ଟତାକୁ ପ୍ରାପ୍ତ ହୋଇ ରାଜା ଶ୍ରେୟ ପାଇଁ ରହେ ନାହିଁ ।

(ଖ) ପରନ୍ତୁ ଶାସ୍ତ୍ର ପ୍ରାମାଣ୍ୟରୁ ଏଠାରେ ପ୍ରତ୍ୟବାୟ ପ୍ରସଙ୍ଗର ଶଙ୍କା ହେବା ଉଚିତ ନୁହେଁ ଏବଂ ଲୌକିକନ୍ୟାୟ ମଧ୍ୟ ବିରୁଦ୍ଧ ନୁହେଁ କି ? ଏହି ବିଷୟରେ ଆମ୍ଭେ କହୁଁ- ଶାସ୍ତ୍ରାର୍ଥର ନିର୍ଦ୍ଧାରିତ ହେବା ପରେ ଏହା ହୋଇପାରେ । ପରନ୍ତୁ ତାହାର ସନ୍ଦିଗ୍ଧ ହେବାପରେ ତାହାର ନିର୍ଣ୍ଣୟ ପ୍ରତି ଆଶ୍ରୀୟମାଣ ଲୌକିକନ୍ୟାୟ ମଧ୍ୟ ବିରୁଦ୍ଧ ନୁହେଁ; ତେଣୁ ଉତ୍କୃଷ୍ଟ ଦୃଷ୍ଟିର ଅଧ୍ୟାସରୂପ ଶାସ୍ତ୍ରାର୍ଥର ନିଶ୍ଚୟ ହେବାପରେ ନିକୃଷ୍ଟ ଦୃଷ୍ଟିର ଅଧ୍ୟାସ କରି ପ୍ରତ୍ୟବାୟକୁ ପ୍ରାପ୍ତ ହେବ-ଏହାହିଁ ଠିକ୍ ଅଟେ ।



(ଗ) ଆଦିତ୍ୟ ପ୍ରଭୃତି ଶବ୍ଦର ପ୍ରଥମ ନିର୍ଦ୍ଦିଷ୍ଟ ହେବାରୁ ସେମାନେ ମଖାର୍ଥକ ଅଟନ୍ତି- ଏହି ପ୍ରକାର ଅବିରୋଧ ଦ୍ୱାରା ଗ୍ରହଣ କରିବା ଉଚିତ୍ । ନିଜର ଅର୍ଥରେ ବୃତ୍ତିଯୁକ୍ତ ସେହି ଶବ୍ଦରୁ ବୁଦ୍ଧିର ଅବିରୁଦ୍ଧ ହେବାପରେ ପଛରେ ବୁଦ୍ଧିରେ ପାଦ ଦେଇ ବ୍ରହ୍ମ ଶବ୍ଦର ମୁଖ୍ୟ ବୃତ୍ତି ଦ୍ୱାରା ସାମାନଧିକରଣ୍ୟ ସମ୍ଭବ ନ ହେବାରୁ ବ୍ରହ୍ମଦୃଷ୍ଟି ବିଧାନାର୍ଥତା ଅବସ୍ଥିତ ହୁଏ । 'ଇତି' ଶବ୍ଦ ପରହେବାରୁ ବ୍ରହ୍ମ ଶବ୍ଦର ଏହି ଅର୍ଥ ଉଚିତ୍ ହୁଏ ॥

ମୂଳ-(କ) ତଥାହି-'ବ୍ରହ୍ମେତ୍ୟାଦେଶଃ', 'ବ୍ରହ୍ମେତ୍ୟୁପାସୀତ' ବ୍ରହ୍ମେତ୍ୟୁପାସ୍ତେ' ଇତି ଚ ସର୍ବତ୍ରେତିପରଂ ବ୍ରହ୍ମ ଶବ୍ଦ ମୁଚ୍ଚାରୟତି, ଶୁଦ୍ଧାଂସ୍ତ୍ୱାଦିତ୍ୟାଦି ଶବ୍ଦାନ୍ । ତତଶ୍ଚ ଯଥା ଶୁକ୍ତିକାଂ ରଜତମିତି ପ୍ରତ୍ୟେତୀତ୍ୟତ୍ର, ଶୁକ୍ତି ବଚନ ଏବଂ ଶୁକ୍ତିକାଶବ୍ଦୋ ରଜତ ଶବ୍ଦସ୍ତୁ ରଜତ ପ୍ରତୀତି ଲକ୍ଷଣାର୍ଥଃ । ପ୍ରତ୍ୟେତ୍ୟେବ ହି କେବଲଂ ରଜତମିତି ନ ତୁ ତତ୍ର ରଜତମସ୍ତି ଏବମତ୍ରାପ୍ୟାଦିତ୍ୟାଦୀନ୍ ବ୍ରହ୍ମେତି ପ୍ରତୀୟାଦିତି ଗମ୍ୟତେ ।

(ଖ) ବାକ୍ୟଶେଷୋଽପି ଚ ଦ୍ୱିତୀୟା ନିର୍ଦ୍ଦେଶେନାଦିତ୍ୟାଦିନେବୋପାସ୍ତି କ୍ରିୟୟା ବ୍ୟାପ୍ୟମାନାନ୍ ଦର୍ଶୟତି- 'ସ ଯ ଏତମେବ ବିଦ୍ୱାନାଦିତ୍ୟଂ ବ୍ରହ୍ମେତ୍ୟୁପାସ୍ତେ' (ଛା ୩-୧୯-୪), 'ଯୋ ବାଚଂ ବ୍ରହ୍ମେତ୍ୟୁପାସ୍ତେ' (ଛା ୭-୨-୨) ଯାଃ ସଙ୍କଳ୍ପଂ ବ୍ରହ୍ମେତ୍ୟୁପାସ୍ତେ (ଛା ୭-୪-୫) ଇତି ଚ ।

(ଗ) ଯତ୍ତୁକ୍ତମ୍-ବ୍ରହ୍ମୋପାସନମେବାତ୍ରାଦରଣୀୟଂ ଫଳବତ୍ତ୍ୱାୟେତିତଦଯୁକ୍ତମ୍, ଉକ୍ତେନ ନ୍ୟାୟେନାଦିତ୍ୟାଦୀନା ମେବୋପାସ୍ୟତ୍ୱାବଗମ୍ୟାତ୍ । ଫଳଂ ତ୍ୱିତିଥ୍ୟାଦ୍ୟୁପାସନା ଇବ ଆଦିତ୍ୟାଦ୍ୟୁପାସନେଽପି ବ୍ରହ୍ମୈବ ଦାସ୍ୟତି; ସର୍ବାଧ୍ୟକ୍ଷତ୍ୱାତ୍ । ବର୍ଣ୍ଣିତଂ ଚୈତତ୍- 'ଫଳମତ ଉପପତ୍ତେଃ' (ବ୍ର. ସୂ. ୩-୨-୩୮) ଇତ୍ୟତ୍ର । ଇଦୃଶଂ ଚାତ୍ରବ୍ରହ୍ମଣ ଉପାସ୍ୟତ୍ୱଂ, ଯତ୍ପ୍ରତୀକେଷୁ ତଦ୍ଦୃଷ୍ଟ୍ୟଧ୍ୟାରୋପଣଂ' ପ୍ରତିମାଦିଷ୍ୱିବ ବିଷ୍ଣ୍ୱାଦୀନାମ୍ ॥

ଭାଷା- (କ) ଯେପରି 'ବ୍ରହ୍ମ ବୋଲି ଉପଦେଶ ଦେବା ଉଚିତ୍', 'ବ୍ରହ୍ମ ବୋଲି ଉପାସନା କରିବା ବିଧେୟ', 'ବ୍ରହ୍ମ ବୋଲି ଉପାସନା କରନ୍ତି' ଏହିପରି ସର୍ବତ୍ର 'ଇତି' ପରକ ବ୍ରହ୍ମ ଶବ୍ଦର ଉଚ୍ଚାରଣ କରନ୍ତି ଏବଂ ଆଦିତ୍ୟ ପ୍ରଭୃତି ଶୁଦ୍ଧ ଶବ୍ଦଗୁଡ଼ିକୁ ଉଚ୍ଚାରଣ କରନ୍ତି । ତାହାଦ୍ୱାରା ଯେପରି ଶୁକ୍ତିକାକୁ ରଜତ ରୂପରେ ଜ୍ଞାନ କରାଯାଏ । ଏଠାରେ ଶୁକ୍ତିକାର ଶବ୍ଦ ଶୁକ୍ତି ଅଟେ ଓ ରଜତଶବ୍ଦ କିନ୍ତୁ ରଜତପ୍ରତୀତି ଲକ୍ଷଣାର୍ଥକ ଅଟେ । କାରଣ- 'ରଜତ ଅଟେ'- ଏହା କେବଳ ପ୍ରତୀତି କରାଯାଏ; କିନ୍ତୁ ସେଠାରେ ରଜତ ନଥାଏ । ସେହିରପି ଉଦାହରଣରେ ମଧ ଆଦିତ୍ୟ ପ୍ରଭୃତିକୁ 'ଏହା ବ୍ରହ୍ମ ଅଟେ- ଏହାକୁ ଜାଣ' ବୋଲି ଜ୍ଞାନ ହୁଏ ।

(ଖ) 'ସ ଯ' (ସେ ଯେଉଁ ଏହି ପ୍ରକାର ଜ୍ଞାନୀ ହୋଇ ଆଦିତ୍ୟଙ୍କୁ ସେ ବ୍ରହ୍ମ ରୂପେ ଉପାସନା କରେ), 'ସ ଯୋ, (ସେ ଯାହା ବାଣୀର ବ୍ରହ୍ମ ରୂପରେ ଉପାସନା କରେ)' 'ଯଃ ସଙ୍କଳ୍ପଂ' (ଯାହା ସଙ୍କଳ୍ପର ବ୍ରହ୍ମ ବୁଦ୍ଧିଦ୍ୱାରା ଉପାସନା କରେ) ଏହି ପ୍ରକାର ବାକ୍ୟଶେଷ ମଧ୍ୟ ଦ୍ୱିତୀୟା ବିଭକ୍ତିର ନିର୍ଦ୍ଦେଶରୁ ଆଦିତ୍ୟ ପ୍ରଭୃତିକୁ ଉପାସନା କ୍ରିୟା ଦ୍ୱାରା ବ୍ୟାପ୍ୟ ବିଷୟ କରିବାର ଦେଖାଯାଏ ।

(ଗ) ଯାହା କୁହାଯାଇଛି ଯେ- ଫଳବତ୍ତ୍ୱ ପାଇଁ ଏଠାରେ ବ୍ରହ୍ମୋପାସନା ଆଦରଣୀୟ ଅଟେ- ଏହା କିନ୍ତୁ ଭ୍ରମ ଧାରଣା; କାରଣ-ଉକ୍ତ ନ୍ୟାୟ ଦ୍ୱାରା ଆଦିତ୍ୟ ପ୍ରଭୃତି ଉପାସ୍ୟ ଅବଗତ ହୁଅନ୍ତି । ଫଳ କିନ୍ତୁ ଅତିଥି ପ୍ରଭୃତିରେ ଉପାସନା ପରି ଆଦିତ୍ୟ ଇତ୍ୟାଦି ଉପାସନାରେ ବ୍ରହ୍ମକୁ ଦେବ, କାରଣ-ସେ ସର୍ବାଧ୍ୟକ୍ଷ ଅଟେ । ତାହାର 'ଫଳମତ ଉପପତ୍ତେଃ' ଏହି ସୂତ୍ରରେ ବର୍ଣ୍ଣନା କରାଯାଇଅଛି । ଏଠାରେ ବ୍ରହ୍ମର ଏହି ପ୍ରକାର ଉପାସ୍ୟତ୍ୱ ଅଛି, ଯାହାକି ପ୍ରତିମା ପ୍ରଭୃତିରେ ବିଷ୍ଣୁ ପ୍ରଭୃତିର ଅଧ୍ୟାରୋପ ପରି ପ୍ରତୀକରେ ବ୍ରହ୍ମଦୃଷ୍ଟିର ଅଧ୍ୟାରୋପ ହୁଏ ॥୫॥

**५-आदित्यादिमत्यधिकरणम् ॥ सू०. ६ ॥**

**୫-ଆଦିତ୍ୟାଦି ମତ୍ୟଧିକରଣମ୍ ॥ ସୂ. ॥ ୬ ॥**

**आदित्यादिमतयश्चाङ्ग उपपत्तेः ॥ ४-१-६ ॥**

**ଆଦିତ୍ୟାଦି ମତୟଶ୍ଚାଙ୍ଗ ଉପପତ୍ତେଃ ॥୪-୧-୬॥**

ଅଙ୍ଗେ = ଉଦ୍‌ଗୀଥାଦି କର୍ମାଙ୍ଗରେ, ଆଦିତ୍ୟାଦି ମତୟଃ=ଆଦିତ୍ୟ ପ୍ରଭୃତି ବୁଦ୍ଧି କହିବା ଉଚିତ୍ । ଉପପତ୍ତେଶ୍ଚ= କାରଣ-ଏହା ହେଲେ କର୍ମ ସମୃଦ୍ଧି ରୂପ ଫଳର ଉପପତ୍ତି ହୁଏ ।

ମୂଳ-(କ) ଯ ଏବାସୌ ତପତି ତମୁଦ୍‌ଗୀଥ ମୁପାସୀତ' (ଛା ୧-୩-୧), ଲୋକେଷୁ ପଞ୍ଚବିଧଂ ସାମୋପାସୀତ' (ଛା ୨-୨-୧), 'ବାଚି ସପ୍ତବିଧ' ସାମୋପାସୀତ' (ଛା ୨-୮-୧), 'ଇୟମେବର୍ଗଗ୍ନିଃ ସାମ' (ଛା୧-୬-୧) ଇତ୍ୟେବମାଦିଷ୍ୱଙ୍ଗା ବବାଦ୍ଧେଷୂପାସନେଷୁ ସଂଶୟଃ-

(ଖ) କିମାଦିତ୍ୟାଦିଷୁଦ୍‌ଗୀଥାଦି ଦୃଷ୍ଟୟୋ ବିଧୀୟନ୍ତେ, କିଂ ବୋଦ୍‌ଗୀଥାଦିଷ୍ୱେବା-ଦିତ୍ୟାଦି ଦୃଷ୍ଟୟ ଇତି । ତତ୍ର ନିୟମଃ, ନିୟମ କାରଣା ଭାବାଦିତି ପ୍ରାପ୍ତାମ୍ ନହ୍ୟତ୍ର ବ୍ରହ୍ମଣ ଇବକସ୍ୟ ଚିଦ୍ୟୁତ୍କର୍ଷ ବିଶେଷୋଽବଧାର୍ଯ୍ୟତେ । ବ୍ରହ୍ମକୁ ସମସ୍ତ ଜଗତ୍ କାରଣତ୍ୱାଦ୍ ପହତପାପ୍ମତ୍ୱାଦିଗୁଣ ଯୋଗାଚ୍ଚାଦିତ୍ୟାଦିଭ୍ୟ ଉତ୍କୃଷ୍ଟମିତି ଶକ୍ୟମବଧାରୟିତୁମ୍, ନ ତ୍ୱାଦିତ୍ୟୋଦ୍ ଗୀଥାଦିନାଂ ବିକାରତ୍ୱା ବିଶେଷାତ୍ କିଞ୍ଚିଦୁତ୍କର୍ଷ ବିଶେଷାବଧାରଣେ କାରଣମସ୍ତି ।



ଭାଷା—(କ) 'ଯ ଏବାସୌ' (ଯାହାକି ଏହି ଆଦିତ୍ୟ ତପ୍ତ କରେ । ତାହାର ରୂପରେ ଉଦ୍‌ଗଥୀର ଉପାସନା କରିବା ଉଚିତ୍ ଅର୍ଥାତ୍ ଆଦିତ୍ୟ ଦୃଷ୍ଟିରେ ଉଦ୍‌ଗୀଥର ଉପାସନା କରିବା ଉଚିତ୍), 'ଲୋକେଷୁ' (ପୃଥିବୀ ପ୍ରଭୃତି ଲୋକରେ ପାଞ୍ଚ ପ୍ରକାର ସାମକୁ ଉପାସନା କରିବା ଉଚିତ୍) 'ବାଚି ସପ୍ତବିଧମ୍' (ବାଣୀ ଦୃଷ୍ଟିରେ ସାତ ପ୍ରକାରର ସାମକୁ ଉପାସନା କରିବା ଉଚିତ୍) 'ଇୟମେବ' (ଏହି ପୃଥିବୀ ଋକ୍ ଅଟେ ଏବଂ ଅଗ୍ନି ସାମ ଅଟେ) ଇତ୍ୟାଦି ଅଙ୍ଗ ସମ୍ବନ୍ଧିତ ଉପାସନାଗୁଡ଼ିକରେ ସଂଶୟ ହୁଏ ।

(ଖ) ଆଦିତ୍ୟ ପ୍ରଭୃତିରେ କ'ଣ ଉଦ୍‌ଗୀଥାଦି ଦୃଷ୍ଟିର ବିଧାନ କରାଯାଇଛି, ଅଥବା ଉଦ୍‌ଗୀଥାଦି ଦୃଷ୍ଟିରେ କ'ଣ ଆଦିତ୍ୟ ପ୍ରଭୃତିରେ ବିଧାନ କରାଯାଇଛି କି ? ପୂର୍ବପକ୍ଷ-ସେଠାରେ ନିୟମର କାରଣ ନହେବାରୁ ଅନିୟମ ଅଟେ ବୋଲି ପ୍ରାପ୍ତ ହୁଏ । ଏଠାରେ ବ୍ରହ୍ମ ପରି କାହାର ଉତ୍କର୍ଷ ବିଶେଷ ନିଶ୍ଚିତ କରାଯାଉନାହିଁ । ବ୍ରହ୍ମ ସମସ୍ତ ଜଗତ୍‌ର କାରଣ ଏବଂ ଅପହତପାପ୍ମତାଦି ଗୁଣଯୋଗରୁ ଆଦିତ୍ୟାଦିରୁ ଉତ୍କୃଷ୍ଟ ଅଟେ ବୋଲି ଅବଧାରଣ କରାଯାଇଛି । ପରନ୍ତୁ ଆଦିତ୍ୟ ଓ ଉଦ୍‌ଗୀଥାଦିରେ ବିକାରତ୍ୱ ସମାନ ହେବାରୁ ଉତ୍କର୍ଷ ବିଶେଷ ଅବଧାରଣରେ କୌଣସି କାରଣ ନଥାଏ ।

ମୂଳ-(କ) ଅଥବା-ନିୟମୋନୋଦ୍‌ଗୀଥାଦିତମୟଆଦିତ୍ୟାଷ୍ୱଧସ୍ୟେରନ୍ । କସ୍ମାତ୍ ? କର୍ମାତ୍ମକତ୍ୱାଦୁଦ୍‌ଗୀଥାଦୀନାଂ କର୍ମଣଶ୍ଚ ଫଳପ୍ରାପ୍ତିପ୍ରସିଦ୍ଧେଃ । ଉଦ୍‌ଗୀଥାଦିମତିଭିରୁ-ପାସ୍ୟମାନା ଆଦିତ୍ୟାଦୟଃ କର୍ମାତ୍ମକାଃ ସନ୍ତଃ ଫଳହେତବୋ ଭବିଷ୍ୟନ୍ତି ।

(ଖ) ତଥାଚ 'ଇୟମେବର୍ଗଗ୍ନିଃ ସାମଃ' (ଛା ୧-୬-୧) ଇତ୍ୟତ୍ର 'ତଦେତଦେ-ତସ୍ୟାମୃଚ୍ୟଧ୍ୟୂଢଂ ସାମ' (ଛା ୧-୬-୧) ଇତ୍ୟୃକ୍‌ଶବ୍ଦେନ ପୃଥିବୀ ନିର୍ଦ୍ଦିଶତି ସାମଶବ୍ଦେ-ନାଗ୍ନିମ୍, ତଚ୍ଚ ପୃଥିବ୍ୟାଗ୍ନ୍ୟୋର୍ଋକ୍‌ସାମଦୃଷ୍ଟିଚିକୀର୍ଷାୟାମବକଳ୍ପତେ, ନ ଋକ୍‌ସାମୟୋଃ ପୃଥିବ୍ୟାଗ୍ନିଦୃଷ୍ଟିଚିକୀର୍ଷାୟାମ୍ । କ୍ଷତରି ହି ରାଜଦୃଷ୍ଟିକରଣାଦ୍ରାଜଶବ୍ଦ ଉପଚର୍ଯ୍ୟତେ, ନ ରାଜନି କ୍ଷତ୍ତୃଶବ୍ଦଃ ।

(ଗ) ଅପି ଚ 'ଲୋକେଷୁ ପଞ୍ଚବିଧଂସାମୋପାସୀତ' (ଛା ୨-୨-୧) ଇତ୍ୟଧି-କରଣନିର୍ଦ୍ଦେଶାଲ୍ଲୋକେଷୁ ସାମାଧ୍ୟସିତବ୍ୟମିତି ପ୍ରତୀୟତେ । 'ଏତଦ୍ ଗାୟତ୍ରଂ ପ୍ରାଣେଷୁପ୍ରୋତମ୍' (ଛା ୨-୧୧-୧) ଇତି ଚୈତଦେବଂ ଦର୍ଶୟତି । ପ୍ରଥମନିର୍ଦ୍ଦିଷ୍ଟେଷ୍ୱା-ଦିତ୍ୟାଦିଷୁ ଚରମନିର୍ଦ୍ଦିଷ୍ଟଂ ବ୍ରହ୍ମାଧ୍ୟସ୍ତମ୍- 'ଆଦିତ୍ୟୋ ବ୍ରହ୍ମେତ୍ୟାଦେଶଃ' (ଛା ୩-୧୯-୧) ଇତ୍ୟାଦିଷୁ । ପ୍ରଥମନିର୍ଦ୍ଦିଷ୍ଟାଚ୍ଚ ପୃଥିବ୍ୟାଦୟଶ୍ଚରମନିର୍ଦ୍ଦିଷ୍ଟା ହିଂକାରାଦୟଃ 'ପୃଥିବୀ ହିଂକାରଃ' (ଛା ୨-୨-୧) ଇତ୍ୟାଦିଶ୍ରୁତିଷୁ । ଅତୋଽନଙ୍ଗେଷ୍ୱାଦିତ୍ୟାଦିଷ୍ୱଙ୍ଗମତିନିକ୍ଷେପ ଇତି ।

ଭାଷା- ଅଥବା ଉଦ୍‌ଗୀଥ ପ୍ରଭୃତି ବୁଦ୍ଧିର ନିୟମରୁ ଆଦିତ୍ୟା ପ୍ରଭୃତିରେ ଆଧାରୋପ ହେବା ଉଚିତ୍ । କିପରି ? କାରଣ-ଉଦ୍‌ଗୀଥାଦି କର୍ମାତ୍ମକ ଅଟେ ଏବଂ କର୍ମରୁ ଫଳପ୍ରାପ୍ତି ପ୍ରସିଦ୍ଧ ହୁଏ । ଉଦ୍‌ଗୀଥ୍ୟାଦି ବୁଦ୍ଧିରୁ ଉପାସ୍ୟମାନ ଆଦିତ୍ୟାପ୍ରଭୃତି କର୍ମାତ୍ମକେ ହୋଇ ଫଳର ହେତୁ ହେବେ ।

(ଖ) ସେହିପରି 'ଇୟମେବ' (ଏହି ପୃଥିବୀ ଋକ୍ ଅଟେ ଏବଂ ଅଗ୍ନି ସାମ ଅଟେ) ଏଠାରେ 'ତଦେତଦେତସ୍ୟାମ୍' (ସେ ଏହି ଅଗ୍ନିସଂଜ୍ଞକ ସାମ ଏହି ପୃଥିବୀ ରୂପ ଋକ୍‌ରେ ଉପରି ଭାବରେ ରହେ) ଏହିପରି ଶ୍ରୁତି ଋକ୍‌ଶବ୍ଦରୁ ପୃଥିବୀର ଏବଂ ସାମଶବ୍ଦରୁ ଅଗ୍ନିର ନିର୍ଦ୍ଦେଶ କରେ । ସେହି ନିର୍ଦ୍ଦେଶ କ୍ରମଶଃ ପୃଥିବୀ ଓ ଅଗ୍ନିରେ ଋକ୍ ଦୃଷ୍ଟି ଓ ସାମଦୃଷ୍ଟି ଇଚ୍ଛା କରି ଉପପନ୍ନ ହୁଏ; କିନ୍ତୁ ଋକ୍ ଓ ସାମରେ ପୃଥିବୀ ଦୃଷ୍ଟି ଓ ଅଗ୍ନିଦୃଷ୍ଟି କରିବାର ଇଚ୍ଛା ପରେ ଉପପନ୍ନ ହୁଏ ନାହିଁ । ସାରଥିରେ ରାଜଦୃଷ୍ଟି କରିବାରେ ସାରଥିରେ ରାଜଶବ୍ଦ ଗୌଣୀବୃତ୍ତି ଦ୍ୱାରା ଉପଚରିତ ହୁଏ ।

(ଗ) 'ଲୋକେଷୁ' (ସଂସାରରେ ପାଞ୍ଚପ୍ରକାରର ସାମ ଉପାସନା କରିବା ଉଚିତ୍) ଏହିପ୍ରକାର ଅଧିକରଣରେ ନିର୍ଦ୍ଦେଶରୁ ସଂସାରରେ ସାମର ଅଧ୍ୟାସ କରିବା ଉଚିତ୍-ଏହା ପ୍ରତୀତ ହୁଏ । 'ଏତଦ୍‌ଗାୟତ୍ରଂ' (ଏହି ଗାୟତ୍ରସଂଜ୍ଞକ ସାମ ପ୍ରାଣରେ ପ୍ରତିଷ୍ଠିତ ହୁଏ) ଏହି ଶ୍ରୁତିରେ ମଧ୍ୟ ଏହିପରି ଦେଖାଯାଏ । 'ଆଦିତ୍ୟୋ ବ୍ରହ୍ମ' (ଆଦିତ୍ୟ ବ୍ରହ୍ମ ଅଟେ-ଏହି ଉପଦେଶ ଦିଆଯାଇଛି) ଇତ୍ୟାଦି ପ୍ରଥମନିର୍ଦ୍ଦିଷ୍ଟ ଆଦିତ୍ୟ ପ୍ରଭୃତିରେ ଅନ୍ତିମନିର୍ଦ୍ଦିଷ୍ଟ ବ୍ରହ୍ମ ଅଧ୍ୟସ୍ତ ହୁଏ ଏବଂ 'ପୃଥିବୀ ହିକାରଃ' (ପୃଥିବୀ ହିଂକାର ଅଟେ) ଇତ୍ୟାଦି ଶ୍ରୁତିରେ ପୃଥିବୀ ପ୍ରଭୃତି ପ୍ରଥମ ନିର୍ଦ୍ଦିଷ୍ଟ ହୁଏ ଏବଂ ହିଂକାର ଆଦି ଅନ୍ତିମ ନିର୍ଦ୍ଦିଷ୍ଟ ହୁଏ । ତେଣୁ ଅନିଙ୍ଗ ଆଦିତ୍ୟ ଇତ୍ୟାଦିରେ ଅଙ୍ଗମତିର ନିକ୍ଷେପ ହୁଏ ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ- ଆଦିତ୍ୟାଦିମତୟ ଏବାଙ୍ଗେଷୂଦ୍ ଗୀଥାଦିଷୁ କ୍ଷିପ୍ୟେରନ୍ । କୁତଃ ? ଉପପତ୍ତେଃ । ଉପପଦ୍ୟତେ ହ୍ୟେବମପୂର୍ବସଂ ନିକର୍ଷାଦିତ୍ୟାଦି ମତିଭିଃ ସଂସ୍କ୍ରିୟମାଣେଷୂଦ୍ ଗୀଥାଦିଷୁ କର୍ମ ସମୃଦ୍ଧିଃ । 'ଯଦେବ ବିଦ୍ୟୟା କରୋତି ଶ୍ରଦ୍ଧୟୋପନିଷଦା ତଦେବ ବୀର୍ଯ୍ୟବତ୍ତରଂ ଭବତି' (ଛା ୧-୧-୧୦) ଇତି ଚ ବିଦ୍ୟାୟାଃ କର୍ମସମୃଦ୍ଧ ହେତୁତ୍ୱଂ ଦର୍ଶୟତି ।

(ଖ) ଭବତୁ କର୍ମା ସମୃଦ୍ଧ ଫଳେଷ୍ୱେବଂ, ସ୍ୱତନ୍ତ୍ର ଫଳେଷୁ ତୁ କଥମ୍, ଯ ଏତଦେବଂ ବିଦ୍ୱଲ୍ଲୋକେଷୁ ପଞ୍ଚବିଧଂ ସାମୋପାସ୍ତେ' (ଛା ୨-୨-୩) ଇତ୍ୟାଦିଷୁ ? ତେଷ୍ୱପ୍ୟଧି କୃତାଧିକାରାତ୍ ପ୍ରକୃତଂପୂର୍ବସଂ ନିକର୍ଷେଣୈବ ଫଳକଳ୍ପନା ଯୁକ୍ତା । ଗୋଦୋହନାଦିନିୟମବତ୍ । ଫଳାତ୍ମକତ୍ୱାଚ୍ଚାଦିତ୍ୟାଦୀନାମୁଦ୍‌ଗୀଥାଦିଭ୍ୟଃ କର୍ମାତ୍ମକେଭ୍ୟଃ ଉତ୍କର୍ଷୋପପତ୍ତେଃ । ଆଦିତ୍ୟାଦିପ୍ରାପ୍ତି ଲକ୍ଷଣଂ ହି କର୍ମଫଳଂ ଶିଷ୍ୟତେ ଶ୍ରୁତିଷୁ ।

(ଗ) ଅପି ଚ ଓ 'ମିତ୍ୟେତଦକ୍ଷର ମୁଦ୍‌ଗୀଥ ମୁପାସୀତ' (ଛା ୧-୧-୧), ଖଲ୍ୱେ-ତସ୍ୟୈବାକ୍ଷର ସ୍ୟୋପବ୍ୟାଖ୍ୟାନଂ ଭବତି' (ଛା ୧-୧-୧୦) ଇତି ଚୋଦ୍‌ଗୀଥମେବୋ-ପାସ୍ୟତ୍ୱେନୋପକ୍ରମ୍ୟା ଦିତ୍ୟାଦିମତୀ ର୍ବିଦଧାତି ।।

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ- ଆଦିତ୍ୟାଦି ବୁଦ୍ଧି ଉଦ୍‌ଗୀଥାଦି ଅଙ୍ଗଗୁଡ଼ିକରେ କରିବା ଉଚିତ୍ । କିପରି ? କାରଣ-ଏହା ଉପପତ୍ତି ହୁଏ । ଏହିପରି ଅପୂର୍ବ ସଂନିକର୍ଷରୁ ଆଦିତ୍ୟାଦି ବୁଦ୍ଧି ଦ୍ୱାରା ସଂସ୍କ୍ରିୟମାଣ ଉଦ୍‌ଗୀଥାଦିରେ କର୍ମ ସମୃଦ୍ଧି ଉପପନ୍ନ ହୁଏ । 'ଯଦେବ ବିଦ୍ୟୟା' (ଯେଉଁ କର୍ମ ବିଦ୍ୟା, ଶ୍ରଦ୍ଧା ଏବଂ ଯୋଗଯୁକ୍ତ ହୋଇ କରେ ସେ ବଳବତ୍ତର ହୁଏ) ଏହିପ୍ରକାର ଶ୍ରୁତି ବିଦ୍ୟାକୁ କର୍ମ ସମୃଦ୍ଧିର ହେତୁ ରୂପେ ଦେଖାଏ ।

(ଖ) କର୍ମ ସମୃଦ୍ଧି ଫଳଯୁକ୍ତ ଉପାସନାଗୁଡ଼ିକରେ ହେଉ, ଅର୍ଥାତ୍ ଅଙ୍ଗରେ ଅନଙ୍ଗବୃଦ୍ଧିର ଅଧ୍ୟାସ ହେଉ । ପରନ୍ତୁ 'ଯ ଏତଦେବଂ' (ଯାହା ଏହିପ୍ରକାର ଜାଣିଥିବା ପୁରୁଷ ଲୋକରେ ପଞ୍ଚବିଧ ସାମର ଉପାସନା କରେ, ତାହାପାଇଁ ଊର୍ଦ୍ଧ୍ୱ ଓ ଅଧୋମୁଖ ଲୋକ ଭୋଗ୍ୟ ଉପରେ ଉପସ୍ଥିତ ହୁଅନ୍ତି) ଇତ୍ୟାଦି ସ୍ୱତନ୍ତ୍ର ଫଳଯୁକ୍ତ ଉପାସନାଗୁଡ଼ିକରେ ଅଙ୍ଗରେ ଅନଙ୍ଗ ଆଦିତ୍ୟାଦିର ଅଧ୍ୟାସ କିପରି ହୁଏ ? ସେହି ଉପାସନାଗୁଡ଼ିକରେ ମଧ୍ୟ ଅଧିକୃତର ଅଧିକାର ହେବାରୁ ପ୍ରକୃତ ଅପୂର୍ବ ସଂନିକର୍ଷଦ୍ୱାରା ଗୋଦୋହନ ପ୍ରଭୃତି ନିୟମର ପରି ଫଳର କଳ୍ପନା ଠିକ୍ ହୁଏ । ଆଦିତ୍ୟାଦି ଫଳାତ୍ମକ ହେଲେ କର୍ମାତ୍ମକ ଉଦ୍‌ଗୀଥାଦି ଦ୍ୱାରା ସେଠାରେ ଉତ୍କର୍ଷତ୍ୱ ଉପପନ୍ନ ହୁଏ । କାରଣ ଆଦିତ୍ୟାଦି ପ୍ରାପ୍ତିରୂପ କର୍ମଫଳ ଶ୍ରୁତିରେ ଉପଦିଷ୍ଟ ହୋଇଛି ।

(ଗ) 'ଓଁ ମିତ୍ୟେତଦକ୍ଷରମ୍' (ଓଁ ଏହି ଅକ୍ଷର ଉଦ୍‌ଗୀଥ ଅଟେ- ତାହାକୁ ଉପାସନା କରିବା ଉଚିତ), 'ଖଲ୍ୱେତସ୍ୟୈ' (ନିଶ୍ଚିତ ଭାବରେ ଏହି ସବୁ ଅକ୍ଷରର ଉପବ୍ୟାଖ୍ୟାନ ହୁଏ) ଏହପ୍ରକାର ଶ୍ରୁତି ଉଦ୍‌ଗୀଥର ଉପାସ୍ୟ ରୂପରେ ଉପକ୍ରମ କରି ଆଦିତ୍ୟାଦି ବୁଦ୍ଧିର ବିଧାନ କରେ ।

ମୂଳ-(କ) ଯତ୍ତୁକ୍ତମ୍-ଉଦ୍‌ଗୀଥାଦିମତି ଭିରୂପାସ୍ୟମାନା ଆଦିତ୍ୟାଦୟଃ କର୍ମଭୂୟଂ ଭୂତ୍ୱା ଫଳଂ କରିଷ୍ୟନ୍ତୀତି । ତଦୟୁକ୍ତାମ୍, ସ୍ୱୟମେବୋପାସନସ୍ୟ କର୍ମାତ୍ୱାତ୍ ଫଳବତ୍ତ୍ୱୋପପତ୍ତେଃ, ଆଦିତ୍ୟାଦିଭାବେନାପି ଚ ଦୃଶ୍ୟମାନାନାମୁଦ୍‌ଗୀଥାଦୀନାଂ କର୍ମାତ୍ମକତ୍ୱାନ ପାୟାତ୍ । 'ତଦେତଦେତସ୍ୟାମୁଚ୍ୟଧ୍ୟୁତଂ ସାମ' (ଛା ୧-୬-୧) ଇତି ତୁ ଲକ୍ଷଣିକ ଏବ ପୃଥିବ୍ୟଗ୍ନ୍ୟୋର୍ଋକ୍ ସାମ ଶବ୍ଦପ୍ରୟୋଗଃ । ଲକ୍ଷଣା ଚ ଯଥା ସମ୍ଭବଂ ସଂନିକୃଷ୍ଟେନ ବିପ୍ରକୃଷ୍ଟେନ ବା ସ୍ୱାର୍ଥ ସମ୍ବନ୍ଧେନ ପ୍ରବର୍ତ୍ତତେ ।

(ଖ) ତତ୍ର ଯଦ୍ୟପ୍ୟୃକ୍‌ସାମୟୋଃ ପୃଥିବ୍ୟଗ୍ନି ଦୃଷ୍ଟି ଚିକୀର୍ଷା, ତଥାପି ପ୍ରସିଦ୍ଧୟୋର୍ଋକ୍ ସାମ୍‌ୟୋର୍ଭେଦେନାନୁ କୀର୍ତ୍ତନାତ୍ ପୃଥିବ୍ୟଗ୍ନୋଶ୍ଚ ସଂନିଧାନାତ୍ତୟୋରେବୈଷ ଋକ୍‌ସାମ ଶବ୍ଦ ପ୍ରୟୋଗ ଋକ୍ ସାମ ସଂବନ୍ଧାଦିତି ନିଶ୍ଚିୟତେ । କ୍ଷତ୍ତୁଶବ୍ଦୋପି ହି କୁତଶ୍ଚିତ୍ କାରଣାଦ୍ରାଜାନମୁପସର୍ପନ୍ନ ନିବାରୟିତୁଂ ପାର୍ଯତେ 'ଇୟମେବର୍କ୍ (ଛା ୧-୬-୧) ଇତି ଚ ଯଥାକ୍ଷରନ୍ୟାସମୃଚ ଏବ ପୃଥିବୀତ୍ୱମବଧାରୟତି ।

(ଗ) ପୃଥିବ୍ୟା ଋକ୍ତ୍ୱେଽବଧାର୍ଯ୍ୟମାଣ ଇୟମୃଗେବେତ୍ୟକ୍ଷର ନ୍ୟାସଃ ସ୍ୟାତ୍ । 'ଯ ଏବଂ ବିଦ୍ୱାନ୍ ସାମ ଗାୟତି' (ଛା ୧-୭-୭) ଇତି ଋଙ୍ଗାଶ୍ରୟମେବ ବିଜ୍ଞାନମୁପ ସଂହରତି, ନ ପୃଥିବ୍ୟାଦ୍ୟାଶ୍ରୟମ୍ ତଥା 'ଲୋକେଷୁ ପଞ୍ଚବିଧଂ ସାମୋପାସୀତ' (ଛା ୨-୨-୧) ଇତି ଯଦ୍ୟପି ସପ୍ତମୀନିର୍ଦ୍ଦିଷ୍ଟା ଲୋକାଃ' ତଥାପି ସାମ୍ନେ୍ୟବ ତେଽଧସ୍ୟେରନ୍ ଦ୍ୱିତୀୟା ନିର୍ଦ୍ଦେଶେନ ସାମ୍ନ ଉପାସ୍ୟତ୍ୱାବଗମାତ୍ ।

(ଘ) ସମାନି ହି ଲୋକେଷ୍ୱଧସ୍ୟ ମାନେଷୁ ସାମ ଲୋକାତ୍ମନୋପାସିଂତ ଭବତି, ଅନ୍ୟଥା ପୁନର୍ଲୋକାଃ ସାମାତ୍ମନୋପାସିତାଃ ସ୍ୟୁଃ । ଏତେନ 'ଏତଦ୍ ଗାୟତ୍ର ପ୍ରାଣେଷୁ ପ୍ରୋତମ୍' (ଛା ୨-୧୧-୧) ଇତ୍ୟାଦି ବ୍ୟାଖ୍ୟାତମ୍ ॥

ଭାଷା-(କ) ଯାହା କୁହାଯାଇଛି ଯେ- ଉଦ୍‌ଗୀଥାଦି ବୁଦ୍ଧିରୁ ଉପାସ୍ୟମାନ ଆଦିତ୍ୟାଦି କର୍ମାତ୍ମକତ୍ୱ ପ୍ରାପ୍ତ ହୋଇ ଫଳ କରିବେ । ଏହା ଅସମୀଚୀନ ଅଟେ । କାରଣ-ଉପାସନା କର୍ମ ହେଲେ ସ୍ୱୟଂ ଫଳବାନ୍ ହୁଅନ୍ତି । ସେହିପରି ଆଦିତ୍ୟାଦି ଭାବରୁ ଦୃଶ୍ୟମାନ ଉଦ୍‌ଗୀଥାଦିର କର୍ମାତ୍ମକତ୍ୱ ନଷ୍ଟ ହୁଏ ନାହିଁ । 'ତଦେତଦେତସ୍ୟା' ଏହି ଅଗ୍ନି ନାମକ ସାମ ପୃଥିବୀରୂପ ଋକ ଉପରେ ରହିଥାଏ) । କିନ୍ତୁ ପୃଥିବୀ ଓ ଅଗ୍ନିରେ ଋକ୍ ଓ ସାମ ଶବ୍ଦର ପ୍ରୟୋଗ ଲକ୍ଷଣିକ ଅଟେ । ଲକ୍ଷଣ ଯଥାସମ୍ଭବ ସନିକୃଷ୍ଟ ଓ ବିପ୍ରକୃଷ୍ଟ ସ୍ୱାର୍ଥର ସହିତ ସମ୍ବନ୍ଧ ହେବାରୁ ପ୍ରବୃତ୍ତ ହୋଇଛି ।

(ଖ) ସେଠାରେ ଯଦ୍ୟପି ଋକ୍ ଓ ସାମରେ ପୃଥିବୀ ଓ ଅଗ୍ନିକୁ ଦୃଷ୍ଟି କରିବାକୁ ଇଚ୍ଛା କରେ, ତଥାପି ପ୍ରସିଦ୍ଧ ଋକ୍ ଓ ସାମର ଭେଦରେ ଅନୁକୀର୍ତ୍ତନ ହେବାରୁ ଏବଂ ପୃଥିବୀ ଓ ଅଗ୍ନିର ସଂନିଧାନରୁ ଋକ୍ ଓ ସାମ ଶବ୍ଦର ପ୍ରୟୋଗ ସେଠାରେ ହୋଇଛି । ଋକ୍ ଓ ସାମ ଶବ୍ଦର ପ୍ରୟୋଗରୁ ଏହା ନିଶ୍ଚିତ ହୋଇଛି । କାରଣ-ସାରଥି ଶବ୍ଦ ମଧ୍ୟ କୌଣସି କାରଣରୁ ରାଜାନୁଗାମୀ ହେଲେ, ତାହା ନିବାରଣ କରାଯାଏ ନାହିଁ । 'ଇୟମେବ' (ଏହା ଋକ୍ ଅଟେ) ଏହି ଶ୍ରୁତି ଅକ୍ଷରର ନ୍ୟାସ ଅନୁସାରେ ଋକ୍‌ରେ ପୃଥିବୀତ୍ୱକୁ ଅବଧାରଣ କରେ ।

(ଗ) ଯଦି ପୃଥିବୀ ଋକ୍‌ତ୍ୱ ହୁଏ, ତଥାପି ଏହା ଋକ୍ ଅଟେ, ଏହିପରି ଅକ୍ଷର ଗୁଡ଼ିକର ନ୍ୟାସ ହେବ । 'ଯ ଏବଂ ବିଦ୍ୱାନ୍' (ଯେଉଁ ବିଦ୍ୱାନ ଏହିପରି ଜାଣି ସାମକୁ ଗାନ କରେ) ଏହି ଶ୍ରୁତି ଅଙ୍ଗାଶ୍ରୟ ବିଜ୍ଞାନର ଉପସଂହାର କରେ; କିନ୍ତୁ ପୃଥିବ୍ୟାଦି ଆଶ୍ରୟର ବିଜ୍ଞାନର ନୁହେଁ । ସେହିପରି 'ଲୋକେଷୁ' (ସଂସାରରେ ପଞ୍ଚବିଧ ସାମକୁ ଉପାସନା କର) ଏଠାରେ ଯଦ୍ୟପି ସପ୍ତମୀ ବିଭକ୍ତି ଦ୍ୱାରା ଲୋକ ନିର୍ଦ୍ଦିଷ୍ଟ ହୁଏ, ତଥାପି ତାହାର ସାମରେ ଅଧ୍ୟାସ ହେବା ଉଚିତ୍ । କାରଣ ଦ୍ୱିତୀୟା ବିଭକ୍ତି ନିର୍ଦ୍ଦେଶରେ ସାମ ଉପାସ୍ୟ ଅବଗତ ହୁଏ ।



(ଘ) ସାମରେ ଲୋକର ଅଧ୍ୟାସମାନ ହେଲେ ସାମ ଲୋକ ରୂପରେ ଉପାସିତ ହୁଏ । ନୋଚେତ୍ ଲୋକ ସାମ ରୂପରେ ଉପାସିତ ହେବ । ତେଣୁ-ଲୋକ ରୂପରେ ସାମର ଉପାସନା 'ଏତଦ୍ ଗାୟତ୍ର' (ଏହି ଗାୟତ୍ର ନାମ ପ୍ରାଣରେ ପ୍ରତିଷ୍ଠିତ ହୁଏ) ଇତ୍ୟାଦିର ବ୍ୟାଖ୍ୟାନ ହୋଇଛି ॥

ମୂଳ-(କ) ଯତ୍ରାପି ତୁଲ୍ୟୋ ଦ୍ୱିତୀୟା ନିର୍ଦ୍ଦେଶଃ- 'ଅଥ ଖଲ୍ୱମୁମାଦିତ୍ୟଂ ପଞ୍ଚବିଧଂ ସାମୋପାସୀତ' (ଛା ୨-୯-୧) ଇତି, ତତ୍ରାପି 'ସମସ୍ତସ୍ୟ ଖଲୁ ସାମ୍ନ ଉପାସନଂ ସାଧୁ' (ଛା ୨-୧-୧)' 'ଇତି ତୁ ପଞ୍ଚବିଧସ୍ୟ' (ଛା ୨-୭-୨), 'ଅଥ ସପ୍ତବିଧସ୍ୟ' (ଛା ୨-୮-୧) ଇତି ଚ ସାମ୍ନ ଏବୋପାସ୍ୟେ ତ୍ୱୋପକ୍ରମାଉସ୍ମିନ୍ନେବାଦିତ୍ୟାଦ୍ୟଧ୍ୟାସଃ ।

(ଖ) ଏତସ୍ମାଦେବ ଚ ସାମ୍ନ ଉପାସ୍ୟତ୍ୱାବଗମାତ୍, 'ପୃଥିବୀ ହିଁକାରଃ' (ଛା ୨-୨-୧) ଇତ୍ୟାଦି ନିର୍ଦ୍ଦେଶ ପବିପର୍ଯ୍ୟୟେଽପି ହିଂକାରାଦିଷ୍ୱେବ ପୃଥିବ୍ୟାଦିଦୃଷ୍ଟିଃ । ତସ୍ମାଦନଙ୍ଗାଶ୍ରୟା ଆଦିତ୍ୟାଦି ମତୟୋଽଙ୍ଗେଷୁଦ୍‌ଗୀଥାଦିଷ୍ଣୁ କ୍ଷିପ୍ୟେରନ୍ନିତି ସିଦ୍ଧମ୍ ॥

ଭାଷା-(କ) ଏଠାରେ 'ଅଥ ଖଲ୍ୱମୁମ୍' (ବର୍ତ୍ତମାନ ସେହି ଆଦିତ୍ୟ ରୂପରେ ସପ୍ତବିଧ ସାମକୁ ଉପାସନା କର) ଏହିପରି ଦ୍ୱିତୀୟା ନିର୍ଦ୍ଦେଶ ସମାନ ଅଟେ, ସେଠାରେ ମଧ୍ୟ 'ସମସ୍ତସ୍ୟ' ସମସ୍ତ ସାମର ଉପାସନା ଶ୍ରେଷ୍ଠ ଅଟେ) ଇତି ତୁ (ଏଠାରେ ପାଞ୍ଚ ପ୍ରକାରର ସାମୋପାସନା ନିରୂପଣ ହୋଇଛି) 'ଅଥ ସପ୍ତବିଧସ୍ୟ' (ବର୍ତ୍ତମାନ ସାତପ୍ରକାରର ସାମର) ଏହିପ୍ରକାର ସାମର ଉପାସ୍ୟ ରୂପରେ ଉପକ୍ରମ ହେବାରୁ ସେଠାରେ ଆଦିତ୍ୟ ଅଧ୍ୟାସ ହୋଇଛି ।

(ଖ) କାରଣ-ତାହାଦ୍ୱାରା ସାମ ଉପାସ୍ୟ ରୂପେ ଅବଗତ ହୁଏ । 'ପୃଥିବୀ ହିଁଂକାରଃ' ଇତ୍ୟାଦି ନିର୍ଦ୍ଦେଶର ବିପର୍ଯ୍ୟୟ ହେବାପରେ ହିଂକାର ଆଦିରେ ପୃଥିବୀ ପ୍ରଭୃତି ଦୃଷ୍ଟି ହୁଏ; ତେଣୁ ଏଠାରେ ସିଦ୍ଧ ହୁଏ ଯେ- ଅନଙ୍ଗାଶ୍ରୟ ଆଦିତ୍ୟାଦି ବୁଦ୍ଧି ଉଦ୍‌ଗୀଥାଦି ଅଙ୍ଗରେ ହେବା ଉଚିତ୍ ॥୬॥

## ६ । आसीनाधिकरणम् ॥ सू०. ७-२० ॥

## ୬-ଆସୀନାଧିକରଣମ୍ ॥ସୂ ୭-୧୦॥

## आसीन: सम्भवात् ॥ ४-१-७ ॥

## ଆସୀନଃ ସମ୍ଭବାତ୍ ॥୪-୧-୭॥

ଆସୀନଃ=ବସି ଉପାସନା କରିବା ଉଚିତ୍ । ସମ୍ଭବାତ୍=କାରଣ-ଏହିପରି ତାହାର ସମ୍ଭବ ହୁଏ ।

ମୂଳ-(କ) କର୍ମାଙ୍ଗ ସମ୍ବନ୍ଧେଷୁ ତାବଦୁପାସନେଷୁ କର୍ମତନ୍ତ୍ରତ୍ୱାନ୍ନାସନାଦିଚିନ୍ତା, ନାପି ସମ୍ୟଗ୍‌ଦର୍ଶନେ, ବସ୍ତୁତନ୍ତ୍ରତ୍ୱାଦ୍ ବିଜ୍ଞାନସ୍ୟ । ଇତରେଷୁ ତ୍ୱପାସନେଷୁ କିଙ୍କ ନିୟମେନ ତିଷ୍ଠନ୍ନାସୀନଃ ଶୟାନୋ ବା ପ୍ରବର୍ତ୍ତେଣେତ ନିୟମେନାସୀନ ଏବେତି ଚିନ୍ତୟତି । ତତ୍ର ମାନସତ୍ୱା ଦୁପାସନସ୍ୟା ନିୟମଃ ଶରୀର ସ୍ଥିତେରିତି ।

(ଖ) ଏବଂ ପ୍ରାପ୍ତେ ବ୍ରବୀତି-ଆସୀନ ଏବୋପାସୀତେତି । କୁତଃ ? ସମ୍ଭବାତ୍ । ଉପାସ୍ୱନଂ ନାମ ସମାନ ପ୍ରତ୍ୟୟ ପ୍ରବାହ କରଣମ୍, ନ ଚ ତଦ୍‌ଗଚ୍ଛତୋ ଧାବତୋ ବା ସମ୍ଭବତି, ଗତ୍ୟାଦୀନାଂ ଚିତ୍ତ ବିକ୍ଷେପକତ୍ୱାତ୍ । ତିଷ୍ଠତୋଽପି ଦେହ ଧାରଣେ ବ୍ୟାପୃତଂ ମନୋ ନ ସୂକ୍ଷ୍ମବସ୍ତୁ ନିରୀକ୍ଷଣ କ୍ଷମଂ ଭବତି । ଶୟାନସ୍ୟାପ୍ୟକସ୍ମାଦେବ ନିଦ୍ରୟାଭିଭୂୟେତ । ଆସୀନସ୍ୟ ତ୍ୱେବଂ ଜାତୀୟକୋ ଭୂୟାନଦୋଷଃ ସୁପରିହାର ଇତି ସମ୍ଭବତ ତସ୍ୟୋପାସନମ୍ ॥

ଭାଷା-(କ) କର୍ମାଙ୍ଗ ସହିତ ସମ୍ବନ୍ଧିତ ଉପାସନାଗୁଡ଼ିକ କର୍ମର ଅଧୀନ ଅଟନ୍ତି, ଅତଃ ସେଠାରେ ଆସନାଦିର ବିଚାର ନାହିଁ । ସେହିପରି ସମ୍ୟଗ୍ ଦର୍ଶନରେ ଏହି ବିଚାର ନାହିଁ, କାରଣ-ଜ୍ଞାନ ବସ୍ତୁର ଅଧୀନ ଅଟେ । ପରନ୍ତୁ ଅନ୍ୟ ଉପାସନାଗୁଡ଼ିକରେ କ'ଣ ଅନିୟମରେ ଦଣ୍ଡାୟମାନ, ଉପବେଶନା ଅଥବା ଶୟନ କରି ପ୍ରବୃତ୍ତ ହୁଏ । ଅଥବା ଅନିୟମରୁ ଦଣ୍ଡାୟମାନ, ଉପବେଶନ ଅଥବା ଶୟନ କରି ପ୍ରବୃତ୍ତ ହୁଏ । ଅଥବା ଅନିୟମରୁ ବସି କରି ବୋଲି ବିଚାର କରନ୍ତି । ପରନ୍ତୁ ସେଠାରେ ଉପାସନାର ମାନସିକ ହେଲେ ଶରୀର ସ୍ଥିତିର ଅନିୟମ ହୁଏ ।

(ଖ) ସିଦ୍ଧାନ୍ତ-ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ- ବସି କରି ଉପାସନା କରିବା ଉଚିତ୍ । କିପରି ? କାରଣ-ଏହିପରି ସମ୍ଭବ ହୁଏ । ଏକ ପ୍ରକାରର ବୃତ୍ତିର ପ୍ରବାହକୁ ଉପାସନା କହନ୍ତି । ଉପାସନା ଚାଲୁଥିବା ଅଥବା ଦଉଡୁଥିବା ପୁରୁଷ ପକ୍ଷରେ ସମ୍ଭବପର ନୁହେଁ । କାରଣ-ଗତି ପ୍ରଭୃତି ଚିତ୍ତକୁ ବିକ୍ଷେପ କରନ୍ତି । ଦଣ୍ଡାୟମାନ ପୁରୁଷ ଦେହ ଧାରଣରେ ବ୍ୟାପୃତ ହେଲେ ମନ ସୂକ୍ଷ୍ମବସ୍ତୁର ନିରୀକ୍ଷଣ କରିବାରେ ସମର୍ଥ ହୁଏ ନାହିଁ । ଶୟନ କରୁଥିବା ପୁରୁଷର ମନ ଅକସ୍ମାତ୍ ନିଦ୍ରାରେ ଅଭିଭୂତ ହୁଏ । କିନ୍ତୁ ବସିଥିବା ପୁରୁଷର ଏହିପରି ବହୁତ ଦୋଷ ସୁପରିହାର ହୁଏ; ତେଣୁ ଉପବେଶନର ଉପାସନା ସମ୍ଭବ ଅଟେ ॥୭॥

**ଧ୍ୟାନାଚ୍ଚ ॥ ୪-୧-୮ ॥**

**ଧ୍ୟାନାଚ୍ଚ ॥୪-୧-୮॥**

ଧ୍ୟାନାତ୍ ଚ = ଉପାସନା ଧ୍ୟାନରୂପେ ହେଲେ ବସିକରି ଉପାସନା କରିବା ଉଚିତ୍ ॥



ମୂଳ-(କ) ଅପି ଚ ଧ୍ୟାୟତ୍ୟର୍ଥ ଏଷଃ, ଯତ୍‌ସମାନ ପ୍ରତ୍ୟୟ ପ୍ରବାହରକଣମ୍ । ଧ୍ୟାୟତିଷ୍ଟ ପ୍ରଶିଥିଳାଙ୍ଗ ଚେଷ୍ଟେଷୁ ପ୍ରତିଷ୍ଠିତ ଦୃଷ୍ଟିଷ୍ୱେକ ବିଷୟାକ୍ଷିପ୍ତ ଚିତ୍ତେଷୁପଚର୍ଯ୍ୟାମାଣୋ ଦୃଶ୍ୟତେ ଧ୍ୟାୟତି ବକୋ ଧ୍ୟାୟତି ପ୍ରୋଷିତ ବଂଧୁରିତି ଆସୀନଶ୍ଚାନାୟାସୋ ଭବତି । ତସ୍ମାଦ୍‌ପ୍ୟାସାନ କର୍ମୋପାସନମ୍ ॥

ଭାଷା-(କ) ଯାହା ଏକ ସମାନ ବୃତ୍ତିର ପ୍ରବାହକ, ସେହି ହିଁ ଧ୍ୟାୟତି ଅର୍ଥାତ୍ ଧ୍ୟାନ । ଧ୍ୟାୟତି ଶବ୍ଦ ପ୍ରଶିଥିଳ ଅଙ୍ଗଯୁକ୍ତ ପ୍ରତିଷ୍ଠିତ ଯୁକ୍ତିଶାଳୀ ଏବଂ ଏକ ବିଷୟରେ ଆକ୍ଷିପ୍ତ ଚିତ୍ତକୁ ଉପରତ କରି ଦେଖାଯାଏ । ଯେପରି ବକ ଧ୍ୟାନ କରେ, ପରଦେଶକୁ ଯାଇଥିବା ପୁରୁଷ ମିତ୍ରକୁ ସ୍ମରଣ କରନ୍ତି । ବସିଥିବା ପୁରୁଷ ବିଶ୍ରାମଶୂନ୍ୟ ଭାବେ ରହେ; ତେଣୁ ଉପାସନା ବସିକରି ପୁରୁଷ କରେ ॥୮॥

## अचलत्वं चापेक्ष्य ॥ ४-१-९ ॥

## ଅଚଳତ୍ୱଂ ଚାପେକ୍ଷ୍ୟ ॥୪ ୧-୯॥

ଅଚଳତ୍ୱ, ଚ='ଧ୍ୟାୟତୀବ ପୃଥିବୀ' ଇତ୍ୟାଦିରେ ପୃଥିବୀ ପ୍ରଭୃତିର ଅଚଳତାକୁ ଅପେକ୍ଷ୍ୟ=ଅପେକ୍ଷା କରି ଧ୍ୟାନଶବ୍ଦ ଉପଚରିତ ହୁଏ ॥

ଅପି ଚ 'ଧ୍ୟାୟତୀବ ପୃଥିବୀ' (ଛା ୭-୬-୧) ଇତ୍ୟତ୍ର ପୃଥିବ୍ୟାଦିଷ୍ୱଚଳତ୍ୱମେବା-ପେକ୍ଷ୍ୟ ଧ୍ୟାୟତିବାଦୋ ଭବତି । ତଚ୍ଚ ଲିଙ୍ଗ ମୁପାସନସ୍ୟାସୀନ କର୍ମତ୍ୱେ ॥

ଭାଷା-(କ) 'ଧ୍ୟାୟତୀବ' (ମନେକର ପୃଥିବୀ ଧ୍ୟାନ କରେ) ଏଠାରେ ପୃଥିବୀ ଆଦିରେ ଅଚଳତାକୁ ଅପେକ୍ଷା କରି 'ଧ୍ୟାୟତି' ଶବ୍ଦର ପ୍ରୟୋଗ ହୁଏ । ସେହି ଉପାସନା ବସିକରି କର୍ମ ହୁଏ । ଏଠାରେ ଏହାହିଁ ଲିଙ୍ଗ ଅଟେ ॥୯॥

## स्मरन्ति च ॥ ४-१-१० ॥

## ସ୍ମରନ୍ତି ଚ ॥ ୪-୧-୧୦॥

ସ୍ମରନ୍ତି ଚ= 'ଶୁଚୌଦେଶେ ପ୍ରତିଷ୍ଠାପ୍ୟ' ଏହିପ୍ରକାର ଶିଷ୍ଟପୁରୁଷ ଆସନର ଉପାସନା ପାଇଁ ସ୍ମୃତିରେ ପ୍ରତିପାଦନ କରନ୍ତି ।

ମୂଳ-(କ) ସ୍ମରନ୍ତ୍ୟପି ଚ ଶିଷ୍ଟା ଉପାସନାଙ୍ଗତ୍ୱେନାସନମ୍-'ଶୁଚୌଦେଶେ ପ୍ରତିଷ୍ଠାପ୍ୟ ସ୍ଥିର ମାସନାମାତ୍ମନଃ' (ଗୀ ୬-୧୧) ଇତ୍ୟାଦିନା । ଅତଏବ ପଦ୍ମକାଦୀନାମାସନ ବିଶେଷ୍ୟଣା ମୁପଦେଶୋ ଯୋଗଶାସ୍ତ୍ରେ ॥

ଭାଷା-(କ) 'ଶୁଚୌ ଦେଶେ' (ପବିତ୍ର ଦେଶରେ ନିଜେ ସ୍ଥିର ଆସନ ସ୍ଥାପନ କରି) ଇତ୍ୟାଦି ସ୍ମୃତି ବଚନରୁ ଶିଷ୍ଟପୁରୁଷ ଉପାସନାର ଅଙ୍ଗ ରୂପରେ ଆସନକୁ ପ୍ରତିପାଦନ କରନ୍ତି । ଅତଏବ ପଦ୍ମ ପ୍ରଭୃତି ଆସନ ବିଶେଷର ଉପଦେଶ ଯୋଗଶାସ୍ତ୍ରରେ ରହିଛି ॥୧୦॥

## ७ । एकाग्रताधिकरणम् ॥ सू. ११ ॥

## ୭ - ଏକାଗ୍ରତାଧିକରଣମ୍ ॥ ସୂ ୧୧ ॥

**यत्रैकाग्रता तत्राविशेषात् ॥ ४-१-११ ॥**

**ଯତ୍ରୈକାଗ୍ରତା ତତ୍ରା ବିଶେଷାତ୍ ॥୪-୧-୧୧॥**

ଯତ୍ର = ଯେଉଁ ଦେଶ ଓ କାଳରେ ଏକାଗ୍ରତା = ମନର ସ୍ଥିରତା ହୁଏ, ତତ୍ର-ସେହି ଦେଶାଦିରେ ଉପାସନା କରିବା ଉଚିତ୍ । ଅବିଶେଷାତ୍=କାରଣ-ଶ୍ରୁତିରେ ଦେଶବିଶେଷ ଶୁଣାଯାଏ ନାହିଁ ।

ମୂଳ-(କ) ଦିଗ୍‌ଦେଶ କାଳେଷୁ ସଂଶୟଃ-କିମସ୍ତି କଶ୍ଚନ୍ନିୟମୋ ନାସ୍ତି ବେତି । ପ୍ରାୟେଣ ବୈଦିକେଷ୍ୱାରମ୍ଭେଷୁ ଦିଗାଦି ନିୟମ ଦର୍ଶନାତ୍ ସ୍ୟାଦିହାପି କଶ୍ଚି ନିୟମ ଇତି ମତିସ୍ତଂ ପ୍ରତ୍ୟାହ ଦିଗ୍‌ଦେଶ କାଳେଷ୍ୱର୍ଥ ଲକ୍ଷଣ ଏବ ନିୟମଃ । ଯତ୍ରୈବାସ୍ୟ ଦିଶି ଦେଶେ କାଳେ ବା ମନସଃ ସୌକର୍ଯ୍ୟେଣୈକାଗ୍ରତା ଭବତି ତତ୍ରୈବୋପାସୀତ, ପ୍ରାଚୀଦିକ୍‌ପୂର୍ବାହଣ ପ୍ରାଚୀନ ପ୍ରବଣାଦିବବ୍ ବିଶେଷାଶ୍ରବଣାତ୍, ଏକାଗ୍ରତାୟା ଇଷ୍ଟାୟାଃ ସର୍ବତ୍ରା ବିଶେଷାତ୍ ।

(ଖ) ନନୁ ବିଶେଷମପି କେଚିଦାମନନ୍ତି- 'ସମେ ଶୁଚୌ ଶର୍କରା ବହ୍ନି ବାଲୁକା ବିବର୍ଜିତେ ଶବ୍ଦ ଜଳାଶ୍ରୟାଦିଭିଃ । ମନୋନୁକୂଳେ ନତୁ ଚକ୍ଷୁପୀଡ଼ନେ ଗୁହାନିବାତା ଶ୍ରୟଣେ ପ୍ରୟୋଜୟେତ୍' (ଶ୍ୱେ ୨-୧) ଇତି ଯଥେତ । ଉଚ୍ୟତେ-ସତ୍ୟମସ୍ୟେବଂ ଜାତୀୟକୋ ନିୟମଃ । ସତି ତ୍ୱେତସି ମସ୍ଥଦ୍‌ଗତେଷୁ ବିଶେଷେଷ୍ୱଷ୍ଟ ନିୟମ ଇତି ସୁ ହୃଦ୍‌ଭୂତ୍ୱାଽଽଚର୍ଯ୍ୟ ଆଚଷ୍ଟେ । 'ମନୋନୁକୂଳେ' ଇତି ଚୈଷା ଶ୍ରୁତିର୍ଯତ୍ରୈକାଗ୍ରତା ତତ୍ରୈବେତ୍ୟେତଦେବ ଦର୍ଶୟତି ॥

ଭାଷା-(କ) ଦିଶା, ଦେଶ ଓ କାଳ- ଏହି ବିଷୟରେ କ'ଣ କୌଣସି ନିୟମ ଅଛି କି ନାହିଁ-ଏହା ସଂଶୟ ହୁଏ । ବୈଦିକ ଆରମ୍ଭରେ ପ୍ରାୟଃ ଦିଗାଦିର ନିୟମ ଦେଖାଯାଏ । ତେଣୁ ଏଠାରେ କୌଣସି ନିୟମ ଅଛି-ଏହି କ୍ଷେତ୍ରରେ ଯାହାର ବିଚାର ହେଉଚି, ତାହା ପ୍ରତି କୁହାଯାଇଛି- ଦିଶା, ଦେଶ ଓ କାଳରେ ଅର୍ଥଲକ୍ଷଣ ପ୍ରୟୋଜନାତ୍ମକ ନିୟମ ରହିଛି । ଯେଉଁ ଦିଗ, ଦେଶ ଅଥବା କାଳରେ ଏହି ଉପାସକର ମନରେ ସହଜରେ ଏକାଗ୍ରତା ହୁଏ, ତାହା ଉପରେ ଉପାସନା କରିବା ଉଚିତ୍, କାରଣ- ପୂର୍ବଦିଗ, ପୂର୍ବାହଣ, ପୂର୍ବଦିଶାରେ ନିମ୍ନସ୍ଥାନର ପରି ଏଠାରେ ବିଶେଷର ଶ୍ରବଣ ନାହିଁ । କାରଣ- ଇଷ୍ଟ ଏକାଗ୍ରତା ସବୁସ୍ଥାନର ସମାନ ଅଟେ ।



(ଖ) ପରନ୍ତୁ 'ସମେ ଶୁଚୌ' (ସମତଳ, ପବିତ୍ର, ସୂକ୍ଷ୍ମପାଷାଣ' ଅଗ୍ନି ଏବଂ ବାଲୁକାରହିତ, ଏ ତଥା ଶବ୍ଦ, ଜଳ ଓ ଜନସାଧାରଣର ନିବାସସ୍ଥଳରହିତ ମନୋଽନୁକୂଳ ଏବଂ ନେତ୍ରର ପୀଡ଼ାପ୍ରଦାୟକ, ମଶାବିବର୍ଜିତ, ଗୁହାରେ ବସି ମନକୁ ପରମାତ୍ମାରେ ନିଯୁକ୍ତ କରିବା ଉଚିତ୍) ଏହିପରି କେତେକ ଲୋକ କହନ୍ତି । ଯେପରି ଏହି ଦେଶ ବିଶେଷର ନିୟମ ରହିଛି ସେହିପରି କାଳବିଶେଷର ରହିଛି । ଏହି ବିଷୟରେ କହନ୍ତି- ହଁ, ଏହିପ୍ରକାରର ନିୟମ ଅଛି । ପରନ୍ତୁ ଏତାଦୃଶ ନିୟମ ହେବାପରେ ତଦ୍‌ଗତ ବିଶେଷରେ ନିୟମ ନାହିଁ । ସେହିପରି ସୁହୃଦ୍ ହୋଇ ଆଚାର୍ଯ୍ୟ କହନ୍ତି । 'ମନୋଽନୁକୂଳେ' ଏହିଶ୍ରୁତି ଯେଉଁଠି ଏକାଗ୍ରତା ରହିଛି, ସେହିସ୍ଥାନକୁ ପ୍ରଦର୍ଶନ କରେ ॥୧୧॥

## ८ । आ प्रायणाधिकरणम् ॥ सू. १२ ॥

## ୮-ଆ ପ୍ରାୟଣାଧିକରଣମ୍ ॥ସୂ-୧୨॥

## आ प्रायणात्तत्रापि हि दृष्टम् ॥ ४-१-१२ ॥

## ଆ ପ୍ରାୟଣାତ୍ତତ୍ରାପି ହି ଦୃଷ୍ଟମ୍ ॥୪-୧-୧୨॥

ଆପ୍ରାୟଣାତ୍-ମରଣପର୍ଯ୍ୟନ୍ତ ପ୍ରତ୍ୟୟ ଉପାସନର ଆବୃତ୍ତି କରିବା ଉଚିତ୍ । ହି=କାରଣ - ତତ୍ରାପି=ମରଣ କାଳରେ ମଧ୍ୟ 'ସ ଯାବତ୍କ୍ରତୁ' ଇତ୍ୟାଦି ଶ୍ରୁତିରେ ମଧ୍ୟ, ଦୃଷ୍ଟମ୍-=ଏହା ଦେଖାଯାଏ ।

ମୂଳ-(କ) ଆବୃତ୍ତିଃ ସର୍ବୋପାସନେଷ୍ୱାଦର୍ତବ୍ୟେତିସ୍ଥିତିମାଦ୍ୟେଽଧିକରଣେ । ତତ୍ର ଯାନି ତାବତ୍ ସମ୍ୟଗ୍‌ଦର୍ଶନାର୍ଥାନ୍ୟୁପାସନାନି ତାନ୍ୟବଘାତାଦିବତ୍ କାର୍ଯ୍ୟପର୍ଯ୍ୟବସନାନୀତି ଜ୍ଞାତମବୈଷାମାବୃତ୍ତିପରିମାଣମ୍ । ନହି ସମ୍ୟଗ୍‌ଦର୍ଶନେ କାର୍ଯ୍ୟେ ନିଷ୍ପନେ ଯତ୍ନାନ୍ତର କିଂଚିତ୍ ଶାସିତୁଂ ଶକ୍ୟମ୍, ଅନିଯୋଜ୍ୟବ୍ରହ୍ମାନିତ୍ୱପ୍ରତିପତ୍ତେଃ ଶାସ୍ତ୍ରସ୍ୟାବିଷୟତ୍ୱାତ୍ ।

(ଖ) ଯାନି ପୁନରଭ୍ୟୁଦୟଫଳାନି ତେଷ୍ୱେଷା ଚିନ୍ତା-କିଂ କିୟନ୍ତଂଚିତ୍କାଳଂ ପ୍ରତ୍ୟୟମାବର୍ତ୍ୟୋପରିମେଦୁତ ଯାବଜୀବମାବର୍ତ୍ତୟେଦିତି । କିଂ ତାବତ୍ପ୍ରାପ୍ତମ୍ ? କିୟନ୍ତିଂଚିତ୍‌କାଳଂ ପ୍ରତ୍ୟୟମଭ୍ୟସୋତ୍ସୃଜେବାବୃତ୍ତିବିଶିଷ୍ଟସ୍ୟୋପାସନାଶବ୍ଦାର୍ଥସ୍ୟ କୃତତ୍ୱାଦିତି ॥

ଭାଷା-(କ) ସବୁ ଉପାସନାରେ ଆବୃତ୍ତି ଆଦରଣୀୟ ଅଟେ-ଏହା ପ୍ରଥମ ଅଧିକରଣରେ କୁହାଯାଇଛି । ସେଠାରେ ଯେଉଁ ତତ୍ତ୍ୱଜ୍ଞାନ ପାଇଁ ଉପାସନା ରହିଛି, ସେଗୁଡ଼ିକ ଅବଘାତାଦି ପରି କାର୍ଯ୍ୟନିଷ୍ପତ୍ତି ପର୍ଯ୍ୟନ୍ତ ରହେ । ଏହି ଉପାସନାର ଆବୃତ୍ତି ପରିମାଣ ଜ୍ଞାତ ଅଟେ । ସମ୍ୟଗ୍ ଦର୍ଶନରୂପ କାର୍ଯ୍ୟର ନିଷ୍ପନ୍ନ ହେବାପରେ କୌଣସି ଅନ୍ୟଯତ୍ନର ଉପଦେଶ କରାଯାଏ ନାହିଁ, କାରଣ-ଅନିଯୋଜ୍ୟବ୍ରହ୍ମତ୍ୱ ପ୍ରତିପତ୍ତିଶାସ୍ତ୍ରର ବିଷୟ ନୁହେଁ ।

(ଖ) ପରନ୍ତୁ ଯେଉଁ ଅଭ୍ୟୁଦୟ ଫଳବାନ୍ ଅଟେ, ସେଠାରେ କେତେ ସମୟ ପର୍ଯ୍ୟନ୍ତ ପ୍ରତ୍ୟୟର ଆବୃତ୍ତି କରି ଉପରାମ ହେବା ଉଚିତ୍ କି ଜୀବନପର୍ଯ୍ୟନ୍ତ ଆବୃତ୍ତି ହେବା ଉଚିତ୍ ବୋଲି ଏଠାରେ ବିଚାର ହୁଏ । ତେବେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ- କିଛି ସମୟ ପର୍ଯ୍ୟନ୍ତ ପ୍ରତ୍ୟୟକୁ ଆବୃତ୍ତି କରି ତ୍ୟାଗ କରିବା ଉଚିତ୍, କାରଣ-ଆବୃତ୍ତି ବିଶିଷ୍ଟ ଉପାସନା-ଶବ୍ଦର ଅର୍ଥ ଗତାର୍ଥକ ଅଟେ ।

ମୂଳ-(କ) ଏବଂ ପ୍ରାପ୍ତେବ୍ରୂମଃ-ଆ ପ୍ରାୟଣାଦେବାବର୍ତ୍ତୟେତ୍, ପ୍ରତ୍ୟୟମ୍ ଅନ୍ତ୍ୟ- ପ୍ରତ୍ୟୟବଶାଦଦୃଷ୍ଟଫଳପ୍ରାପ୍ତେଃ । କର୍ମାଣ୍ୟପି ହି ଜନ୍ମାନ୍ତରୋପଭୋଗ୍ୟଂ ଫଳମାରମ୍ଭମାଣାନି ତଦନୁରୂପଂ ଭାବନାବିଜ୍ଞାନଂ ପ୍ରାୟଣକାଳେ ଆକ୍ଷିପନ୍ତି', 'ସବିଜ୍ଞାନୋ ଭବତି ସବିଜ୍ଞାନମେ- ବାନ୍ୱବକ୍ରାମତି', 'ଯଚ୍ଚିତ୍ତସ୍ତେନୈବ ପ୍ରାଣମାୟାତି', 'ପ୍ରାଣସ୍ତେଜସା ଯୁକ୍ତଃ ସହାତ୍ମନା ଯଥାସଙ୍କଳ୍ପିତଂ ଲୋକଂ ନିୟତି' ଇତି ଶୈବମାଦିଶ୍ରୁତିଭ୍ୟଃ, ତୃଣଜଳୁକାନିର୍ଦ୍ଦେଶାଚ୍ଚ ।

(ଖ) ପ୍ରତ୍ୟୟାସ୍ତ୍ୱେତେ ସ୍ୱରୂପାନୁବୃତ୍ତିଂ ମୁକ୍ତ୍ୱା କିମନ୍ୟତ୍ପ୍ରାୟଣକାଳଭାବି ଭାବନା- ବିଜ୍ଞାନମପେକ୍ଷେରନ୍ । ତସ୍ମାଦ୍ୟେ ପ୍ରତିପତ୍ତବ୍ୟଫଳଭାବାନାତ୍ମକାଃ ପ୍ରତ୍ୟୟାସ୍ତେଷ୍ୱାପ୍ରାୟଣା- ଦାବୃତ୍ତିଃ । ତଥାଚ ଶ୍ରୁତିଃ- 'ସ ଯାବତ୍ କ୍ରତୁରୟମସ୍ମାଲ୍ଲୋକାତ୍ପ୍ରୈତି' ଇତି ପ୍ରାୟଣକାଳେଽପି ପ୍ରତ୍ୟୟାନୁବୃତ୍ତିଂ ଦର୍ଶୟତି ।

(ଗ) ସ୍ମୃତିରପି-'ଯଂ ଯଂ ବାଽପି ସ୍ମରନ୍‌ଭାବଂ ତ୍ୟଜ୍ୟତ୍ୟନ୍ତେ କଳେବରମ୍ । ତଂ ତମେବୈତି କୌନ୍ତେୟ ସଦା ତଦ୍‌ଭାବଭାବିତଃ' (ଗୀ ୮-୬) ଇତି, ପ୍ରୟାଣକାଳେ ମନସାଽଚଳେନ' (ଗୀ ୮-୧୦) ଇତି ଚ । 'ସୋଽନ୍ତବେଳାୟାମେତତ୍‌କ୍ରୟଂ ପ୍ରତିପଦ୍ୟେତ' ଇତି ଚ ମରଣବେଳାୟାମପି କର୍ତ୍ତବ୍ୟଶେଷଂ ଶ୍ରାବୟତି ॥

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତହେବାରୁ ଆମ୍ଭେ କହୁଁ ଯେ- ମରଣ ପର୍ଯ୍ୟନ୍ତ ପ୍ରତ୍ୟୟର ଆବୃତ୍ତି ହେବା ଉଚିତ; କାରଣ-ଅନ୍ତିମପ୍ରତ୍ୟୟ ବଳରେ ଅଦୃଷ୍ଟଫଳ ପ୍ରାପ୍ତି ହୁଏ । କାରଣ-'ସବିଜ୍ଞାନୋ ଭବତି' (ଭାବନାମୟ ବିଜ୍ଞାନଦ୍ୱାରା ଯୁକ୍ତ ହୁଏ, ସେହି ବିଜ୍ଞାନ ସହିତ ଫଳ ଅନୁଗମନ କରେ), 'ଯତ୍‌ଚିତ୍ତଃ (ମରଣ କାଳରେ ଯେପରି ଚିତ୍ତଯୁକ୍ତ ହୁଏ, ସେହି ସଂକଳ୍ପରୁ ଇନ୍ଦ୍ରିୟ ସହିତ ମୁଖ୍ୟପ୍ରାଣବୃତ୍ତି ମିଳେ । ସେହି ଉପାଦାନ ଗୃହୀତ ହୋଇ ଜୀବାତ୍ମାର ସହିତ ସଂକଳ୍ପ କରିବା ଅନୁସାରେ ସେହି ଲୋକକୁ ନେଇଯାଏ) ଇତ୍ୟାଦି ଶ୍ରୁତିଦ୍ୱାରା ଏବଂ ତୃଣଜଳୁକାଦୃଷ୍ଟାନ୍ତଦ୍ୱାରା ।

(ଖ) ଏହା ଜଣାଯାଏ ଯେ- ଅନ୍ୟ ଜନ୍ମରେ ଉପଭୋଗଯୋଗ୍ୟ ଫଳକୁ ଉତ୍ପନ୍ନ କରୁଥିବା କର୍ମ ତାହାର ଅନୁରୂପ ଭାବନା ବିଜ୍ଞାନର ମରଣ କାଳରେ ଆକ୍ଷେପ କରନ୍ତି । ଏହି ପ୍ରତ୍ୟୟଗୁଡ଼ିକ କିନ୍ତୁ ସ୍ୱରୂପାନୁବୃତ୍ତିକୁ ଛାଡ଼ି ମରଣ ସମୟରେ କୌଣସି ଅନ୍ୟ ଭାବଭାବନା ବିଜ୍ଞାନକୁ ଅପେକ୍ଷା କରେ କି ? ତେଣୁ ପ୍ରାପ୍ତ କରିବା ଯୋଗ୍ୟଫଳର



ଅନୁରୂପ ଭାବନାତ୍ମକ ଯେଉଁ ପ୍ରତ୍ୟୟ ଅଛି, ତାହାର ମରଣ ପର୍ଯ୍ୟନ୍ତ ଆବୃତ୍ତି ହୁଏ । ସେହିପରି 'ସ ଯାବତ୍କ୍ରତୁଃ' (ସେ ଯେପରି ସଂକଳ୍ପ ବିଶେଷଯୁକ୍ତ ଏହି ଶରୀର ରୂପୀ ଲୋକରୁ ପ୍ରୟାଣ କରେ) ଏହି ଶ୍ରୁତି ପ୍ରୟାଣ ସମୟରେ ପ୍ରତ୍ୟୟର ଅନୁବୃତ୍ତି ଦେଖାଏ ।

(ଗ) 'ଯଂ ଯଂ ବାଽପି' (ହେ କୁନ୍ତି ପୁତ୍ର ଅର୍ଜ୍ଜୁନ ! ଏହି ମନୁଷ୍ୟ ଅନ୍ତଃକାଳରେ ଯେଉଁ ଭାବକୁ ସ୍ମରଣ କରି ଶରୀରକୁ ତ୍ୟାଗ କରେ, ସର୍ବଦା ସେହି ଭାବଦ୍ୱାରା ଭାବିତ ହୋଇ ସେହି ସେହି ଭାବକୁ ପ୍ରାପ୍ତ ହୁଏ), 'ପ୍ରୟାଣ କାଳେ' (ମରଣ ସମୟରେ ଅଚଳ ମନଦ୍ୱାରା) ଏହି ସ୍ମୃତି ରହିଛି । 'ସୋଽନ୍ତବେଳାୟାମ୍' (ସେହି ଉପାସକ ଅନ୍ତ ସମୟରେ 'ଅକ୍ଷିତମସି', 'ଅଚ୍ୟୁତମସି', 'ପ୍ରାଣସଂଶିତମସି' ଏହି ତିନୋଟି ମନ୍ତ୍ରକୁ ସ୍ମରଣ କରେ) ଏହିପରି ଶ୍ରୁତି ମରଣ କାଳରେ କର୍ତ୍ତବ୍ୟ ଶେଷକୁ ସ୍ମରଣ କରେ ॥୧ ୨॥

## ९ । तदधिगमाधिकरणम् ॥ सू. १ ३ ॥

## ୯-ତଦଧିଗମାଧିକରଣମ୍ ॥ ସୂ ୧୩ ॥

## तदधिगम उत्तरपूर्वाघयोरश्लेषविनाशौ तद्व्यपदेशात् ॥४-१-१ ३॥

## ତଦଧିଗମ ଉତ୍ତର ପୂର୍ବାଘୟୋରଶ୍ଳେଷବିନାଶୌ ତଦ୍‌ବ୍ୟପଦେଶାତ୍ ॥ ୪-୧ ୧୩ ॥

ତଦଧିଗମେ=ବ୍ରହ୍ମଜ୍ଞାନ ହେବାପରେ, ଉତ୍ତର ପୂର୍ବାଘୟୋଃ=ଉତ୍ତର ଓ ପୂର୍ବ ପାପଗୁଡ଼ିକର, ଅଶ୍ଳେଷବିନାଶୌ=ଅଶ୍ଳେଷ ଓ ବିନାଶ ହୁଏ । ତଦ୍‌ବ୍ୟପଦେଶାତ୍=କାରଣ- 'ଯଥା ପୁଷ୍କରପଳାଶ' ଇତ୍ୟାଦି ଶ୍ରୁତିରେ ତାହାର ବ୍ୟପଦେଶ ହୁଏ ।

ମୂଳ-(କ) ଗତସ୍ତୃତୀୟଶେଷଃ । ଅଥେଦାନୀଂ ବ୍ରହ୍ମ ବିଦ୍ୟାଫଳଂ ପ୍ରତି ଚିନ୍ତା ପ୍ରତାୟତେ । ବ୍ରହ୍ମାଧିଗମେ ସତି ତଦ୍‌ବିପରୀତ ଫଳଂ ଦୁରିତଂ କ୍ଷୀୟତେ ବେତି ସଂଶୟଃ । କିଂ ତାବତ୍ପ୍ରାପ୍ତମ୍ ? ଫଳାର୍ଥାତ୍ୱାତ୍ କର୍ମଣଃ ଫଳମଦତ୍ତ୍ୱା ନ ସମ୍ଭାବ୍ୟତେ କ୍ଷୟଃ । ଫଳଦାୟିନୀ ହାସ୍ୟ ଶକ୍ତିଃ ଶ୍ରୁତ୍ୟା ସମଧିଗତା । ଯଦି ତଦନ୍ତରେଣୈବ ଫଳୋପଭୋଗ-ମପବୃଜ୍ୟେତ, ଶ୍ରୁତିଃ କଦର୍ଥିତା ସ୍ୟାତ୍ । ସ୍ମରନ୍ତି 'ନହି କର୍ମ କ୍ଷୀୟତେ' ଇତି ।

(ଖ) ନନ୍ୱେବଂ ସତି ପ୍ରାୟଶ୍ଚିତ୍ତୋପଦେଶୋଽନର୍ଥକଃ ପ୍ରାପ୍ନୋତି, ନୈଷଃ ଦୋଷଃ, ପ୍ରାୟଶ୍ଚିତ୍ତାନାଂ ନୈମିତ୍ତିକତ୍ୱୋପପତ୍ତେଃ ଗୃହଦାହେଷ୍ଟ୍ୟାଦିବତ୍ । ଅପି ଚ ପ୍ରାୟଶ୍ଚ ତ୍ତାନାଂ ଦୋଷ ସଂଯୋଗେନ ବିଧାନାଦଭବେଦପି ଦୋଷକ୍ଷପଣାର୍ଥତା, ନନ୍ୱେବଂ ବ୍ରହ୍ମବିଦ୍ୟାୟାଂ ବିଧାନମସ୍ତି । ନନ୍ୱନଭ୍ୟୁପଗମ୍ୟମାନେ ବ୍ରହ୍ମବିଦଃ କର୍ମକ୍ଷୟେ ତତ୍ଫଳସ୍ୟାବଶ ଭୋକ୍ତବ୍ୟତ୍ୱାଦ

ନିର୍ମୋକ୍ଷଃ ସ୍ୟାତ୍ । ନେତ୍ୟୁଚ୍ୟତେ । ଦେଶକାଳ ନିମିତ୍ତାପେକ୍ଷୋ ମୋକ୍ଷଃ କର୍ମଫଳବଦ୍ ଭବିଷ୍ୟତି । ତସ୍ମାନ୍ନ ବ୍ରହ୍ମାଧିଗମେ ଦୁରିତନିବୃତ୍ତିରିତି ।

ଭାଷା - (କ) ତୃତୀୟ ଅଧ୍ୟାୟର ଶେଷ ସମାପ୍ତରେ ବର୍ତ୍ତମାନ ବ୍ରହ୍ମବିଦ୍ୟାର ଫଳ ବିଚାର କରାଯାଇଛି । ବ୍ରହ୍ମଜ୍ଞାନ ହେବାପରେ ତାହାର ବିପରୀତ ବଂଧ ଫଳଯୁକ୍ତ ପାପ କ୍ଷୟ ହୁଏ ଅଥବା କ୍ଷୟ ନୁହେଁ - ଏହାହିଁ ସଂଶୟ ହୁଏ । ତେବେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ କର୍ମ ଫଳାର୍ଥକ ହେବାରୁ ଫଳ ନଦେଇ ତାହାର କ୍ଷୟ ହୁଏ ନାହିଁ । କାରଣ ଫଳ ଦେଉଥିବା ତାହାର ଶକ୍ତି ଶ୍ରୁତିଦ୍ୱାରା ଜଣାପଡ଼େ । ଯଦି କର୍ମ ଫଳୋପଭୋଗ ବିନା କ୍ଷୟ ହୁଏ, ତେବେ ଫଳବୋଧକ ଶ୍ରୁତି ବାଧିତ ହେବ 'ନ ହି (କର୍ମ କ୍ଷୟ ହୁଏ ନାହିଁ) ଏହିପ୍ରକାର ସ୍ମୃତିକାର କହିଛନ୍ତି ।

(ଖ) ପରନ୍ତୁ ଏହା ହେବାପରେ ପ୍ରାୟଶ୍ଚିତର ଉପଦେଶ ଅନର୍ଥକ ହେବ କି ? ଏହା ଦୋଷ ନୁହେଁ । କାରଣ ପ୍ରାୟଶ୍ଚିତକୁ ଗୃହଦାହେଷ୍ଟ ପ୍ରଭୃତି ପର ନୈମିତ୍ତକତ୍ୱ ଉପପନ୍ନ ହୁଏ ଏବଂ ଦୋଷର ସଂଯୋଗରୁ ପ୍ରାୟଶ୍ଚିତ୍ତର ବିଧାନ ଯୋଗୁଁ ଦୋଷନାଶ ପ୍ରୟୋଜନବତ୍ତା ସେଠାରେ ହେଉ । ପରନ୍ତୁ ଏହିପ୍ରକାର ବ୍ରହ୍ମବିଦ୍ୟାରେ ବିଧାନ ନାହିଁ । ପରନ୍ତୁ ବ୍ରହ୍ମବିଦ୍ୟାର କର୍ମକ୍ଷୟ ସ୍ୱୀକାର କଲାପରେ ତାହାର ଫଳଅବଶ୍ୟ ଭୋକ୍ତବ୍ୟ ହେବାରୁ ମୋକ୍ଷ ହୁଏ ନାହିଁ କି ? ନୁହେଁ, ଏହା କହନ୍ତି ଯେ - ଦେଶ, କାଳ ଏବଂ ନିମିତ୍ତକୁ ଅପେକ୍ଷା କରି ମୋକ୍ଷ କର୍ମଫଳର ସଦୃଶ ହେବ କି ।

ମୂଳ (କ) ଏବଂ ପ୍ରାପ୍ତେ କ୍ରମଃ-ତଦ୍‌ଗମେ ବ୍ରହ୍ମାଧିଗମେ ସତ୍ୟୁତ୍ତର ପୂର୍ବଯୋର-ଘୟୋରଶ୍ଳେଷ ବିନାଶୌ ଭବତଃ, ଉତ୍ତରସ୍ୟାଶ୍ଳେଷଃ ପୂର୍ବସ୍ୟ ବିନାଶଃ । କସ୍ମାତ୍ ? ତଦ୍‌ବ୍ୟପଦେଶାତ୍ । ତଥାହି ବ୍ରହ୍ମବିଦ୍ୟା ପ୍ରକ୍ରିୟାୟା ସମ୍ଭାବ୍ୟମାନ ସମ୍ବନ୍ଧସ୍ୟାଗାମିନୋ ଦୁରିତସ୍ୟା ନଭି ସମ୍ବନ୍ଧଂ ବିଦୁଷୋ ବ୍ୟାପଦିଶତି 'ଯଥା ପୁଷ୍କରପଲାଶ ଆପୋ ନଶ୍ଲିଷ୍ୟନ୍ତ ଏବ ମେବଂ ବିଦିତ ପାପଂ କର୍ମ ନ 'ଶ୍ଲିଷ୍ୟତେ' (ଛା ୪-୧୪-୩) ଇତି ।

(ଖ) ତଥା ଚ ବିନାଶମପି ପୂର୍ବୋପଚିତସ୍ୟ ଦୁରିତସ୍ୟ ବ୍ୟପଦିଶତି 'ତଦ୍ୟଥୋଷ କାତୂଳମଗ୍ନୌ ପ୍ରୋତଂ ପ୍ରଦୂୟେଅୟମପରଃ କର୍ମକ୍ଷୟ ବ୍ୟପଦେଶୋ ଭବତି 'ଭିଦ୍ୟତେ' ହୃଦୟଗ୍ରନ୍ଥିଛିଦ୍ୟନ୍ତେ ସର୍ବସଂଶୟାଃ । କ୍ଷୀୟନ୍ତେ ଚସ୍ୟ କର୍ମାଣି ତସ୍ମିନ୍‌ଦୃଷ୍ଟୋ ପରାବରେ' (ମୂ ୨-୨-୮) ।

(ଗ) ଯଦୁକ୍ତମ୍-ଅନୁପଭୁକ୍ତ ଫଳସ୍ୟ କର୍ମଣଃ କ୍ଷୟ କଳ୍ପନାୟାଂ ଶାସ୍ତ୍ରଂ କଦର୍ଥିତଂ ସ୍ୟାଦିତି-ନୈଷଃ ଦୋଷଃ, ନହି ବୟଂ କର୍ମଣଃ ଫଳଦାୟିନୀଂ ଶକ୍ତିମବଜାନୀମହେ, ବିଦ୍ୟତ ଏବ ସା, ସା ତୁ ବିଦ୍ୟାଦିନା କାରଣାନ୍ତରେଣ ପ୍ରତିବଧ୍ୟତ ଇତି ବଦାମଃ-। ଶକ୍ତି ସଦ୍‌ଭାବମାତ୍ରେ ଚ ଶାସ୍ତ୍ରଂ ବ୍ୟାପ୍ରିୟତେ, ନ ପ୍ରତିବଂଧା ପ୍ରତିବ୍ରନ୍ଧୟୋରପି ।



ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ- ତଦଧିଗମେ' ବ୍ରହ୍ମଜ୍ଞାନ ହେବାପରେ ଉତ୍ତର ଓ ପୂର୍ବ ପାପର ଅଶ୍ଳେଷ ଓ ବିନାଶ ହୁଏ । ଉତ୍ତର- ଦେହ ଧାରଣ କରିବାକୁ ଜାଣି ପାପର ଅଶ୍ଳେଷ ଓ ପୂର୍ବ ପାପର ବିନାଶ ହୁଏ, କିପରି ? ତାହାର ବ୍ୟପଦେଶ ହୁଏ । ଯେପରି କି 'ଯଥା ପୁଷ୍କରପଲାଶ' (ଯେପରି କମଳପତ୍ର ଜଳ ସହିତ ସମ୍ବନ୍ଧିତ ହୁଏ ନାହିଁ, ସେହିପରି 'ଏବଂବିତ୍' ମୁଁ ବ୍ରହ୍ମ ଅଟେ'- ଏହା ଜାଣିଥିବା ବିଦ୍ୱାନଙ୍କୁ ପାପ ସମ୍ବନ୍ଧିତ କରେ ନାହିଁ) ଏହି ଶ୍ରୁତି ବ୍ରହ୍ମବିଦ୍ୟାର ପ୍ରକରଣରେ ସମ୍ଭାବ୍ୟମାନ ସମ୍ବନ୍ଧବାନ ଭବିଷ୍ୟତ ପାପର ସମ୍ବନ୍ଧାଭାବ ବିଦ୍ୱାନ ପାଇଁ କହେ ।

(ଖ) ସେହିପରି 'ତଦ୍ୟଥେଷୀକା' (ଯେଉଁ ପ୍ରକାର ଲଙ୍ଗଳ ଇଷର ଅଗ୍ରଭାଗ ଅଗ୍ନିରେ ପ୍ରକ୍ଷିପ୍ତ କଲେ ତତ୍କାଳ ଜଳ ହୁଏ, ସେହିପରି ଏହି ବିଦ୍ୱାନର ସବୁ ପାପ ଦଗ୍ଧ ହୋଇଯାଏ) ଏହି ଶ୍ରୁତି ପୂର୍ବୋପଚିତ ପାପର ବିନାଶ କହେ । 'ଭିଦ୍ୟତେ' (ସେହି ପରାବର ବ୍ରହ୍ମର ସାକ୍ଷାତ୍କାର ହେବାପରେ ସେହି ଜୀବର ହୃଦୟଗ୍ରନ୍ଥ ନଷ୍ଟ ହୁଏ । ସଂପୂର୍ଣ୍ଣ ଭାବେ ନଷ୍ଟ ହୁଏ । ତାହାର କର୍ମ କ୍ଷୀଣ ହୁଏ) ଏହି ଦ୍ୱିତୀୟ ବାକ୍ୟ କର୍ମକ୍ଷୟର ବ୍ୟପଦେଶ ହୁଏ ।

(ଗ) ଅଭୁକ୍ତ ଫଳଯୁକ୍ତ କର୍ମର କ୍ଷୟର କଳ୍ପନା ହେବାପରେ ଫଳବୋଧକ ଶାସ୍ତ୍ର ବାଧିତ ହେବ ବୋଲି ଯାହା କୁହାଯାଇଛି । ଏହା ଦୋଷ ନୁହେଁ; କାରଣ ଆମ୍ଭେ କର୍ମର ଫଳ ଦେଉଥିବା ଶକ୍ତିର ଅବହେଳା କରୁନାହୁଁ, ସେ ବିଦ୍ୟମାନ ରହୁ । ପରନ୍ତୁ ଏହି ଶାସ୍ତ୍ରବିଦ୍ୟା ପ୍ରଭୃତି ଅନ୍ୟ କାରଣରୁ ପ୍ରତିବନ୍ଧ ହୁଏ, ବୋଲି ଆମ୍ଭେ କହୁଁ । କର୍ମର ଫଳଦାୟକ ଶକ୍ତିର ସଦ୍ଭାବ ମାତ୍ରାରେ ଶାସ୍ତ୍ରର ବ୍ୟାପାର ହୁଏ; କିନ୍ତୁ ଶକ୍ତିର ପ୍ରତିବନ୍ଧ ଓ ଅପ୍ରତିବନ୍ଧରେ ନୁହେଁ ।

ମୂଳ (କ) 'ନ ହି କର୍ମ କ୍ଷୀୟତେ' ଇତ୍ୟେତଦପି ସ୍ମରଣ-ମୌତ୍ସର୍ଗିକଂ ନ ଭୋଗାଦୃତେ କର୍ମ କ୍ଷୀୟତେ ତଦର୍ଥତ୍ୱାଦିତି । ଇଷ୍ୟତ ଏବ ତୁ ପ୍ରାୟଶ୍ଚିତ୍ତାଦିନା ତସ୍ୟ କ୍ଷୟଃ-'ସର୍ବଂ ପାପ୍ମାନଂ ତରତି', 'ତରତି ବ୍ରହ୍ମହତ୍ୟା' ଯୋଽଶ୍ୱମେଧେନ ଯଜତେ 'ଯ ଉ ଚୈନମେବ ବେଦ' ଇତ୍ୟାଦିଶ୍ରୁତି ସ୍ମୃତିଭ୍ୟଃ ।

(ଖ) ଯତ୍ତୂକ୍ତମ୍-ନୈମିତ୍ତିକାନି ପ୍ରାୟଶ୍ଚିତ୍ତାନି ଭବିଷ୍ୟନ୍ତୀତି-ତଦସତ୍, ଦୋଷ ସଂଯୋଗେନ ଚୋଦ୍ୟମାନାନାମେଷାଂ ଦୋଷ ନିଘାତ ଫଳସମ୍ଭବେ ଫଳାନ୍ତର କଳ୍ପନାନୁପପତ୍ତେଃ । ଯତ୍ ପୁନରେତ ଦୁକ୍ତମ୍-ନ ସଗୁଣାସୁ ତାବଦ୍ ବିଦ୍ୟାସୁ ବିଦ୍ୟତ ଏବ ବିଧାନମ୍ ।

(ଗ) ତାସୁ ଚ ବାକ୍ୟଶେଷ ଐଶ୍ୱର୍ଯ୍ୟପ୍ରାପ୍ତ ପାପ ନିବୃତ୍ତିଶ୍ଚ ବିଦ୍ୟାବତ ଉଚ୍ୟତେ । ତୟୋ-ଶ୍ଚାବିବକ୍ଷା କାରଣଂ ନାସ୍ତୀତ୍ୟତଃ ପାପ୍ମପ୍ରହାଣ ପୂର୍ବକୈଶ୍ୱର୍ଯ୍ୟପ୍ରାପ୍ତିସ୍ତାସାଂ ଫଳମିତି

ନିଶ୍ଚୟତେ । ନିର୍ଗୁଣାୟାଂ ତୁ ବିଦ୍ୟାୟାଂ ଯଦ୍ୟପି ବିଧାନଂ ନାସ୍ତି, ତଥାପ୍ୟ କର୍ତ୍ତୃତ୍ମତ୍ୱ ବୋଧାତ୍ କର୍ମ ପ୍ରବାହସିଦ୍ଧିଃ । ଅଶ୍ଳେଷ ଇତିରଗାମିଷ କର୍ମସୁ କର୍ତ୍ତୃତ୍ୱମେବ ନ ପ୍ରତିପଦ୍ୟତେ ବ୍ରହ୍ମବଦିତି ଦର୍ଶୟତି ॥

ଭାଷା-(କ) 'ନ ହି କର୍ମ' (କର୍ମ କ୍ଷୟ ହୁଏ ନାହିଁ) ଏହି ସ୍ମୃତି ମଧ୍ୟ ସାମାନ୍ୟ ନିୟମ ରୂପ ଅଟେ; କିନ୍ତୁ କର୍ମଭୋଗ ପାଇଁ ନୁହେଁ; ତେଣୁ ଭୋଗ ବିନା କର୍ମ କ୍ଷୟ ହୁଏ ନାହିଁ; କାରଣ 'ସର୍ବଂ ପାପ୍ମାନମ୍' (ସଂପୂର୍ଣ୍ଣ ପାପକୁ ତରିଯାଏ, ଯିଏ ଅଶ୍ୱମେଧ ଯଜ୍ଞ କରେ, ଯିଏ ଯେଉଁ ପରି ଜାଣେ, ସେ ବ୍ରହ୍ମହତ୍ୟାରୁ ମୁକ୍ତ ହୋଇଯାଏ) ଇତ୍ୟାଦି ଶ୍ରୁତି ଏବଂ ସ୍ମୃତିର ପ୍ରାୟଶ୍ଚିତ ଦ୍ୱାରା ଦୁରିତକ୍ଷୟ ଇଷ୍ଟ ହୁଏ ।

(ଖ) ପ୍ରାୟଶ୍ଚିତ ନିମିତ୍ତକ ହେବେ ବୋଲି ଯାହା କୁହାଯାଇଛି, ତାହା ଠିକ୍ ନୁହେଁ । କାରଣ ଦୋଷ ସମ୍ବନ୍ଧରୁ ଶାସ୍ତ୍ର ବିହିତ ଏହି ପ୍ରାୟଶ୍ଚିତର ଦୋଷ ନାଶରୂପ ଫଳର ସମ୍ଭବ ପରେ ଅନ୍ୟ ଫଳର କଳ୍ପନା ଅନୁପପନ୍ନ ହୁଏ । ପ୍ରାୟଶ୍ଚିତ୍ତ ପରି ଦୋଷକ୍ଷୟର ଉଦ୍ଦେଶ୍ୟରୁ ବିଦ୍ୟାର ବିଧାନ ନୁହେଁ ବୋଲି ଯାହା କୁହାଯାଇଛି, ସେହି ବିଷୟରେ ଆମ୍ଭେ କହୁଁ- ସଗୁଣ ବିଦ୍ୟାରେ କିନ୍ତୁ ବିଧାନ ବିଦ୍ୟମାନ ହୁଏ; କାରଣ-ସେହି ସଗୁଣ ବିଦ୍ୟାଗୁଡ଼ିକର ବାକ୍ୟ ଶେଷରେ ବିଦ୍ୟାବାନ୍‌ର ଐଶ୍ୱର୍ଯ୍ୟପ୍ରାପ୍ତି ଓ ପାପନିବୃତ୍ତି କୁହାଯାଇଛି ।

(ଗ) ସେହି ଦୁଇଟି ଅବିବକ୍ଷାର କାରଣ ନୁହେଁ; ତେଣୁ ପାପକ୍ଷୟପୂର୍ବକ ଐଶ୍ୱର୍ଯ୍ୟପ୍ରାପ୍ତି ତାହାର ଫଳ ହୁଏ ବୋଲି ସ୍ଥିର କରାଯାଇଛି । ନିର୍ଗୁଣ ବିଦ୍ୟାରେ ଯଦ୍ୟପି ବିଧାନ ନୁହେଁ, ତଥାପି ଅକର୍ତ୍ତା ଆତ୍ମତ୍ୱଜ୍ଞାନରୁ କର୍ମପ୍ରବାହ ସିଦ୍ଧ ହୁଏ । 'ଅଶ୍ଳେଷ' ଏହି ଶବ୍ଦ ଭବିଷ୍ୟ କର୍ମରେ ବ୍ରହ୍ମବିତ୍ କର୍ତ୍ତୃତ୍ୱକୁ ପ୍ରାପ୍ତ ହୁଏ ନାହିଁ ବୋଲି ଦେଖାଯାଏ ।

ମୂଳ-(କ) ଅତିକ୍ରାନ୍ତେଷୁ ତୁ ଯଦ୍ୟପି ମିଥ୍ୟା ଜ୍ଞାନାତ୍ କର୍ତ୍ତୃତ୍ୱଂ ପ୍ରତିପେଦ ଇବ; ତଥାପି ବିଦ୍ୟା ସାମର୍ଥ୍ୟାନ୍ ମିଥ୍ୟାଜ୍ଞାନ ନିବୃତ୍ତୋସ୍ତାନ୍ୟପି ପ୍ରବିଲୀୟନ୍ତ ଇତ୍ୟାହବିନାଶ ଇତି । ପୂର୍ବସିଦ୍ଧ କର୍ତ୍ତୃତ୍ୱ ଭୋକ୍ତୃତ୍ୱ ବିପରୀତଂ ହି ତ୍ରିଷ୍ୱପି କାଳେଷ୍ୱ କର୍ତ୍ତୃତ୍ୱା ଭୋକ୍ତୃତ୍ୱ ସ୍ୱରୂପଂ ବ୍ରହ୍ମାହମସ୍ମି ନେତଃ ପୂର୍ବମପି କର୍ତ୍ତା ଭୋକ୍ତା ବାଂହମାସଂ ନେଦାନୀଂ ନାପି ଭବିଷ୍ୟତ୍‌କାଳ ଇତି ବ୍ରହ୍ମବିଦ୍-ବଗଚ୍ଛତି । ଏବନେବ ଚ ମୋକ୍ଷ ଉପପଦ୍ୟତେ ।

(ଖ) ଅନ୍ୟଥା ହ୍ୟନାଦି-କାଳ ପ୍ରବୃତ୍ତାନାଂ କର୍ମଣାଂ କ୍ଷୟାଭାବେ ମୋକ୍ଷାଭାବଃ ସ୍ୟାତ୍ । ନ ଚ ଦେଶ-କାଳ ନିମିତ୍ତାପେକ୍ଷା ମୋକ୍ଷଃ କର୍ମ ଫଳବଦ୍ ଭବିତୁ ମର୍ହତି, ଅନିତ୍ୟ-ତ୍ୱ ପ୍ରସଙ୍ଗାତ୍ । ପରୋକ୍ଷତ୍ୱାନୁପପତ୍ତେଶ୍ଚ ଜ୍ଞାନଫଳସ୍ୟ । ତସ୍ମାଦ୍ ବ୍ରହ୍ମାଦିଗମେ ଦୁରିତକ୍ଷୟ ଇତି ସ୍ଥିତମ୍ ॥



ଭାଷା-(କ) ଅତୀତ କର୍ମରେ ଯଦ୍ୟପି ମିଥ୍ୟାଜ୍ଞାନରୁ କର୍ତ୍ତୃତ୍ୱକୁ ପ୍ରତିପାଦନ କରାଯାଏ, ତଥାପି ଜ୍ଞାନର ସାମର୍ଥ୍ୟରୁ ମିଥ୍ୟା ଜ୍ଞାନର ନିବୃତ୍ତି ହେବାରୁ ସେମାନେ ଅତୀତ କର୍ମ ମଧ୍ୟ ପ୍ରବିଲୀନ ଜାତ ହୁଅନ୍ତି । ଏହି ସୂତ୍ରସ୍ଥ ବିନାଶ ଶବ୍ଦ ଦ୍ୱାରା କହନ୍ତି । ପୂର୍ବସିଦ୍ଧ କର୍ତ୍ତୃତ୍ୱ, ଭୋକ୍ତୃତ୍ୱର ବିପରୀତ, କାଳତ୍ରୟରେ ଆକର୍ତ୍ତୃତ୍ୱ ଅଭୋକ୍ତୃତ୍ୱ ସ୍ୱରୂପ ବ୍ରହ୍ମ ମୁଁ ଅଟେ । ଏହାର ପୂର୍ବରୁ କର୍ତ୍ତା ବା ଭୋକ୍ତା ମୁଁ ନଥିଲି । ବର୍ତ୍ତମାନ ମଧ୍ୟ ମୁଁ ନୁହେଁ । ଏହିପ୍ରକାର ଭବିଷ୍ୟତ୍ କାଳରେ ମୁଁ ରହିବି ନାହିଁ । ଏହିପରି ବ୍ରହ୍ମବିତ୍ ଜାଣେ ଏବଂ ଏହି ପ୍ରକାର ମୋକ୍ଷ ଉପପନ୍ନ ହୁଏ ।

(ଖ) ନୋଚେତ୍ ବ୍ରହ୍ମଜ୍ଞାନ ଦ୍ୱାରା କର୍ମକ୍ଷୟ ସ୍ୱୀକାର କଲେ, ଅନାଦି କାଳରୁ ପ୍ରବୃତ୍ତ ହେଉଥିବା କର୍ମକ୍ଷୟର ଅଭାବ ମଧ୍ୟ ହେବ । କର୍ମଫଳର ପରି ମୋକ୍ଷ ଦେଶ, କାଳ-ନିମିତ୍ତକୁ ଅପେକ୍ଷା କରେ ନାହିଁ, କାରଣ-ଏହା ସ୍ୱୀକାର କଲେ କର୍ମର ଫଳପରି ମୋକ୍ଷରେ ଅନିତ୍ୟ ପ୍ରସଙ୍ଗ ଆସିବ । ଜ୍ଞାନର ପରୋକ୍ଷତ୍ୱ ଅନୁପପନ୍ନ ହୁଏ; ତେଣୁ ବ୍ରହ୍ମଜ୍ଞାନ ହେବା ପରେ ପାପ କ୍ଷୟ ହୁଏ ବୋଲି ସିଦ୍ଧ ହୋଇଛି ॥୧୩॥

## १० । इतरासंश्लेषाधिकरणम् ॥ सू. १४ ॥

## ୧୦-ଇତରାସଂଶ୍ଳେଷାଧିକରଣମ୍ ॥ସୂ-୧୪॥

## इतरस्याप्येवमसंश्लेषः पाते तु ॥ ४-१-१४ ॥

## ଇତରସ୍ୟାପ୍ୟେବମସଂଶ୍ଳେଷଃ ପାତେ ତୁ ॥୪-୧--୧୪॥

ଇତରସ୍ୟାପି=ଜ୍ଞାନବାନର ପୁଣ୍ୟ, ଏବମ୍=ପାପ ସଦୃଶ ଅସଂଶ୍ଳେଷଃ=ଅସଂଶ୍ଳେଷ ଓ ବିନାଶ ହୁଏ । ପାତେ ତୁ=ଏହିପରି ବ୍ରହ୍ମଜ୍ଞାନରୁ ବନ୍ଧର ହେତୁଭୂତ ପୁଣ୍ୟ ଓ ପାପର ଅସମ୍ବନ୍ଧ ଏବଂ ବିନାଶ ସିଦ୍ଧ ହେବାରୁ ବ୍ରହ୍ମବେତ୍ତାର ଶରୀରପାତ ହେବାପରେ ମୋକ୍ଷ ହୁଏ ।

ମୂଳ-(କ) ପୂର୍ବସ୍ମିନ୍ନଧିକରଣେ ବନ୍ଧହତୋରୋଘସ୍ୟ ସ୍ୱାଭାବିକସ୍ୟାଶ୍ଳେଷ ବିନାଶୌ ଜ୍ଞାନନିମିତ୍ତୌ ଶାସ୍ତ୍ରବ୍ୟପଦେଶାନ୍ନି ରୂପିତୌ । ଧର୍ମସ୍ୟ ପୁନଃ ଶାସ୍ତ୍ରୀୟତ୍ୱା ଚ୍ଛାସ୍ତ୍ରୀୟେଣ ଜ୍ଞାନେ-ନାବିରୋଧ ଇତ୍ୟାଶଙ୍କ୍ୟା ତନ୍ନିରାକରଣାୟ ପୂର୍ବାଧି କରଣନ୍ୟାୟାତିଦେଶଃ କ୍ରିୟତେ । ଇତରସ୍ୟାପି ପୁଣ୍ୟସ୍ୟ କର୍ମଣ ଏବମଘବଦସଂଶ୍ଳେଷୋ ବିନାଶଶ୍ଚ ଜ୍ଞାନବତୋ ଭବତଃ ।

(ଖ) କୁତଃ ? ତସ୍ୟାପି ସ୍ୱଫଳହେତୁତ୍ୱେନ ଜ୍ଞାନଫଳ ପ୍ରତିବନ୍ଧତ୍ୱ ପ୍ରସଙ୍ଗାତ୍, 'ଉଭେ ହ୍ୟେବୈଷ ଏତେ ତରତି' (ବୃ ୪-୪-୨୨) ଇତ୍ୟାଦି ଶ୍ରୁତିଷୁ ଚ ଦୁଷ୍କୃତବତ୍ ସୁକୃତସ୍ୟାପି ପ୍ରଣାଶବ୍ୟ-ପଦେଶାତ୍ । ଅକର୍ତ୍ତାତ୍ମତ୍ୱବୋଧ ନିମିତ୍ତସ୍ୟ ଚ କର୍ମକ୍ଷୟସ୍ୟ ସୁକୃତ ଦୁଷ୍କୃତୟୋ-ସ୍ତୁଲ୍ୟତ୍ୱାତ୍, 'କ୍ଷୀୟନ୍ତେ ଚାସ୍ୟ କର୍ମାଣି' (ମୁ ୨-୨-୮) ଇତି ଚାବିଶେଷ ଶ୍ରୁତେଃ ।

(ଗ) ଯଦ୍ୟପି କେବଳ ଏକ ପାପ୍ମଶବ୍ଦୋ ଦୃଶ୍ୟତେ, ତତ୍ରାପି ତେନୈବ ପୁଣ୍ୟମ୍‌ପ୍ୟାକଳିତମିତି ଦ୍ରଷ୍ଟବ୍ୟମ୍, ଜ୍ଞାନଫଳାପେକ୍ଷା ନିକୃଷ୍ଟ ଫଳତ୍ୱାତ୍ । ଅସ୍ତି ଚ ଶ୍ରୁତୌ ପୁଣ୍ୟେଽପି ପାପ୍ମଶବ୍ଦଃ 'ନୈତଂ ସେତୁମହୋରାତ୍ରେ ତରତଃ' (ଛା ୮-୪-୧) ଇତ୍ୟତ୍ର ସହ ଦୁଷ୍କୃତେନ ସୁକୃତମପ୍ୟନୁକ୍ରମ 'ସର୍ବେ ପାପ୍ମାନୋଽତୋ ନିବର୍ତ୍ତନ୍ତେ । ଇତ୍ୟ ବିଶେଷେଣୈବ ପ୍ରକୃତେ ପୁଣ୍ୟେ ପାପ୍ମଶବ୍ଦ ପ୍ରୟୋଗାତ୍ ।

(ଘ) ପାତେ ତ୍ୱିତି ତୁଶବ୍ଦୋଽବଧାରଣାର୍ଥଃ ଏବଂ ଧର୍ମାଧର୍ମୟୋର୍ବନ୍ଧହେତ୍ୱୋର୍ବିଦ୍ୟା ସାମର୍ଥ୍ୟାଦଶ୍ଳେଷ ବିନାଶ ସିଦ୍ଧେର ବଶ୍ୟଂ ଭାବିନୀ ବିଦୁଷଃ ଶରୀରପାତେ ମୁକ୍ତିରିତ୍ୟ ବଧାରୟତି ॥

ଭାଷା-(କ) ପୂର୍ବ ଅଧିକରଣରେ ସ୍ୱାଭାବିକ ବନ୍ଧର ହେତୁଭୂତ-ପାପର ଜ୍ଞାନ ନିମିତ୍ତକ ଅସମ୍ବନ୍ଧ ଓ ବିନାଶ ଶାସ୍ତ୍ରବ୍ୟପଦେଶରୁ ନିରୂପିତ କରାଯାଇଛି । କିନ୍ତୁ ଧର୍ମ ଶାସ୍ତ୍ରୀୟ ଅଟେ; ତେଣୁ ତାହାର ଶାସ୍ତ୍ରୀୟ ଜ୍ଞାନଦ୍ୱାରା ଅବିରୋଧ ହୁଏ । ଏହିପରି ଆଶଙ୍କା କରି ତାହାର ନିରାକରଣ ପାଇଁ ପୂର୍ବ ଅଧିକରଣର ନ୍ୟାୟ ଅତିଦେଶ ହୋଇଛି । ଜ୍ଞାନବାନ୍‌ର ପୁଣ୍ୟକର୍ମର ଏହିପରି ପାପପରି ଅସଂଶ୍ଳେଷ ଓ ବିନାଶ ହୁଏ ।

(ଖ) କିପରି ? ତାହାକୁ ମଧ୍ୟ ନିଜ ଫଳର ହେତୁ ରୂପରେ ଜ୍ଞାନଫଳରେ ପ୍ରତିବନ୍ଧତ୍ୱ ପ୍ରସଙ୍ଗ ହେବ । 'ଉଭେ ଉ' (ଏହି ବ୍ରହ୍ମବେତ୍ତା ପୁଣ୍ୟ ଓ ପାପରୂପ ଦୁଇଟି କର୍ମକୁ ପାର ହୋଇଯାଏ) ଇତ୍ୟାଦି ଶ୍ରୁତିଗୁଡ଼ିକରେ ପାପ ପରି ପୁଣ୍ୟର ପ୍ରଣାଶ ବ୍ୟପଦେଶ ହୁଏ । ଆତ୍ମା ଅକର୍ତ୍ତା ଅଟେ- ଏହି ବୋଧ-ନିମିତ୍ତକ କର୍ମକ୍ଷୟ ସୁକୃତ ଓ ଦୁଷ୍କୃତରେ ସମାନ ଅଟେ, କାରଣ 'କ୍ଷୀୟନ୍ତେ ଚାସ୍ୟ' (ତାହାର କର୍ମ କ୍ଷୀଣ ହୁଏ) ଏହା ଅବିଶେଷ ଶ୍ରୁତି ଅଟେ ।

(ଗ) ଯେଉଁଠି କେବଳ ପାପଶବ୍ଦ ଦେଖାଇ ଦିଆଯାଇଛି, ସେଠାରେ ମଧ୍ୟ ପୁଣ୍ୟଶବ୍ଦ ଗ୍ରହଣ ହୁଏ ବୋଲି ଜାଣ । କାରଣ-ଜ୍ଞାନଫଳ ଅପେକ୍ଷା ପୁଣ୍ୟ ନିକୃଷ୍ଟ ଫଳବାନ୍ ଅଟନ୍ତି । ଶ୍ରୁତିରେ ପାପଶବ୍ଦର ପ୍ରୟୋଗ ପୁଣ୍ୟରେ ଅଛି, 'ନୈତଂ ସେତୁମ୍' (ଏହି ସେତୁରୂପ ଆତ୍ମାର ଦିନ (ପୁଣ୍ୟ) ଓ ରାତ୍ରି (ପାପ) ଅତିକ୍ରମଣ କରନ୍ତି ନାହିଁ) ଏଠାରେ ଦୁଷ୍କୃତ ସହିତ ସୁକୃତର ମଧ୍ୟ ଉପକ୍ରମ କରି 'ସର୍ବେ ପାପ୍ମାନୋ' (ଏହି ଆତ୍ମାରୂପ ସେତୁରୁ ସମସ୍ତ ପାପ ନିବୃତ୍ତ ହୁଅନ୍ତି) ଏହିପରି ଅବଶେଷରୁ ପ୍ରକୃତ ପୁଣ୍ୟରେ ପାପ ଶବ୍ଦର ପ୍ରୟୋଗ ହୁଏ ।

(ଘ) 'ପାପେ ତୁ' 'ତୁ' ଶବ୍ଦ ଅବଧାରଣାର୍ଥକ ଅଟେ । ଏହିପରି ବନ୍ଧର ହେତୁଭୂତ ଧର୍ମ ଓ ଅଧର୍ମର ବିଦ୍ୟା ସାମର୍ଥ୍ୟରୁ ଅସଂଶ୍ଳେଷ ଓ ବିନାଶ ସିଦ୍ଧ ହେବାରୁ ବିଦ୍ୱାନ୍‌ର ଶରୀର ପାତ ହେବାପରେ ମୁକ୍ତି ଅବଶ୍ୟମ୍ଭାବୀ ହୁଏ ବୋଲି ନିଶ୍ଚିତ କରାଯାଇଛି ॥୧୪॥



## ११ । अनारब्धाधिकरणम् ॥ सु. १६ ॥

## ୧୧-ଅନାରବ୍‌ଧାଧିକରଣମ୍ ସୂ.୧୫

## अनारब्धकार्ये एव तु पूर्वे तदवधेः ॥ ४-२-१५ ॥

## ଅନାରବ୍‌ଧ କାର୍ଯ୍ୟେ ଏବ ତୁ ପୂର୍ବେ ତଦବଧେଃ ॥୩-୧-୧୫॥

ଅନାରବ୍‌ଧକାର୍ଯ୍ୟେ ଏବ=ଅନାରବ୍‌ଧ ଫଳବାନ୍ ମଧ୍ୟ, ପୂର୍ବେ-ପୂର୍ବସଂଚିତ ପୁଣ୍ୟପାପର ଜ୍ଞାନର କ୍ଷୟ ହୁଏ । ତଦବଧେଃ ତୁ=କାରଣ 'ତସ୍ୟ ତାବଦେବ ଚିରମ୍' ଇତ୍ୟାଦି ଶ୍ରୁତିରେ ଦେହପାତରୂପ ଅବଧି ଶ୍ରୁତ ଅଟେ ॥

ମୂଳ-(କ) ପୂର୍ବୟୋରଧିକରଣୟୋର୍ଜ୍ଞା ନନିମିତ୍ତଃ ସୁକୃତଦୁଷ୍କୃତୟୋର୍ବିନାଶୋଽବ-ଧାରିତଃ । ସ କିମବିଶେଷେଣାରବ୍‌ଧକାର୍ଯ୍ୟୟୋରନାରବ୍‌ଧକାର୍ଯ୍ୟୟୋଶ୍ଚ ଭବତ୍ୟୁତ ବିଶେ-ଷେଣାନାରବ୍‌ଧକାର୍ଯ୍ୟୟୋରେବେତି ବିଚାର୍ଯ୍ୟତେ । ତତ୍ର 'ଉଭେଉ ହୈବୈଷ ଏତେ ତରତି' (ବୃହ ୪-୪-୨୨) ଇତ୍ୟେବମାଦିଶ୍ରୁତିଷ୍ୱବିଶେଷଶ୍ରବଣାଦବିଶେଷେଣୈବ କ୍ଷୟ ଇତି ।

(ଖ) ଏବଂ ପ୍ରାପ୍ତେ ପ୍ରତ୍ୟାହ-ଅନାରବ୍‌ଧକାର୍ଯ୍ୟେ ଏବ ତ୍ୱିତି । ଅପ୍ରବୃତ୍ତକାଳେ ଏବ ପୂର୍ବେ ଜନ୍ମାନ୍ତରସଂଚିତେ, ଅନ୍ୟସ୍ମିନ୍ନପି ଚ ଜନ୍ମନି ପ୍ରାଗ୍‌ଜ୍ଞାନୋତ୍ପତ୍ତେଃ ସଞ୍ଚିତେ, ସୁକୃତ-ଦୁଷ୍କୃତେ ଜ୍ଞାନାଧିଗମାତ୍ କ୍ଷୀୟେତେ, ନ ତ୍ୱାରବ୍‌ଧକାର୍ଯ୍ୟେ ସାମିଭୁକ୍ତଫଳେ, ଯାଭ୍ୟା ମେତଦବ୍ରହ୍ମଜ୍ଞାନାୟତନଂ ଜନ୍ମ ନିମିତ୍ତମ୍ ।

(ଗ) କୁତଃ ଏତତ୍ ? 'ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷେଽଥ ସଂପତ୍ସ୍ୟେ' (ଛା ୬-୧୪-୨) ଇତି ଶରୀରପାତାବଧିକରଣାତ୍ କ୍ଷେମପ୍ରାପ୍ତେଃ । ଇତରଥାହି ଜ୍ଞାନାଦ-ଶେଷକର୍ମକ୍ଷୟେ ସତି ସ୍ଥିତିହେତ୍ୱଭାବାଜ୍‌ଜ୍ଞାନାଂପ୍ରାପ୍ତ୍ୟନନ୍ତରମେବ କ୍ଷେମମଶ୍ରୁବୀତ । ତତ୍ର ଶରୀରପାତପ୍ରତୀକ୍ଷାଂ ନାଚକ୍ଷୀତ ॥

ଭାଷା-(କ) ପୂର୍ବ ଦୁଇଟି ଅଧିକରଣରେ ଜ୍ଞାନରୁ ସୁକୃତ ଓ ଦୁଷ୍କୃତର ବିନାଶ ନିଶ୍ଚିତ କରାଯାଉଛି । ସେ ଆରବ୍‌ଧ କାର୍ଯ୍ୟଯୁକ୍ତ କି ଅନାରବ୍‌ଧ କାର୍ଯ୍ୟବାନ୍‌ର ଏହି ଦୁଇଟିର ଅବିଶେଷ ରୂପରେ ହୁଏ-ଏହି ବିଷୟରେ ବିଚାର କରାଯାଇଛି । ପୂର୍ବପକ୍ଷ ସେଠାରେ 'ଉଭେଉ' (ଏହି ବ୍ରହ୍ମବେତ୍ତା ପାପ ଓ ପୁଣ୍ୟ କର୍ମରୁ ଅତିକ୍ରମଣ କରେ) ଇତ୍ୟାଦି ଶ୍ରୁତିରେ ଅବିଶେଷରୂପରେ ଶ୍ରବଣ ହେଲେ କ୍ଷୟ ହୁଏ ।

(ଖ) ସିଦ୍ଧାନ୍ତ-ଏହା ପ୍ରାପ୍ତ ହେବାରୁ ନିରାକରଣ କରନ୍ତି- 'ଅନାରବ୍‌ଧକାର୍ଯ୍ୟେ ଏବ ତୁ' ପୂର୍ବଜନ୍ମରେ ସଞ୍ଚିତ ଏବଂ ଜ୍ଞାନୋତ୍ପତ୍ତିର ପୂର୍ବ ପର୍ଯ୍ୟନ୍ତ ଏହି ଜନ୍ମରେ ସଂଚିତ ଆପ୍ରବୃତ୍ତ ଫଳଯୁକ୍ତ ସୁକୃତ ଓ ଦୁଷ୍କୃତ ଜ୍ଞାନରପ୍ରାପ୍ତିରୁ କ୍ଷୟ ହୁଅନ୍ତି; କିନ୍ତୁ ଅନାରବ୍‌ଧ କାର୍ଯ୍ୟ ଅର୍ଦ୍ଧମୁକ୍ତ ଫଳଯୁକ୍ତ ଯେଉଁ ପୁଣ୍ୟ ପାପରୁ ଏହି ବ୍ରହ୍ମଜ୍ଞାନର ପ୍ରାପ୍ତି ସ୍ଥାନ - ଏହାହିଁ ଜନ୍ମନିର୍ମିତ ହୋଇଛି) ସେମାନେ କ୍ଷୟ ନୁହଁନ୍ତି ।

(ଗ) କିପରି ? 'ତସ୍ୟ ତାବଦେବ ଚିରମ୍' (ସେହି ବିଦ୍ୱାନ୍‌ର ମୋକ୍ଷରେ ବହୁ ବିଳମ୍ବ ହୁଏ, ଯେ ପର୍ଯ୍ୟନ୍ତ କି ସେହି ଦେହ ବନ୍ଧନରୁ ମୁକ୍ତ ହୁଏ ନାହିଁ । ତା'ପରେ କିନ୍ତୁ ସେ ସତ୍‌ସଂପନ୍ନ ହୁଏ) ଏହିପରି ଦେହପାତ ମୋକ୍ଷପ୍ରାପ୍ତି ଅବଧି କରାଯାଇଛି । ନୋଚେତ୍ ଜ୍ଞାନରୁ ସମସ୍ତ କର୍ମ କ୍ଷୟ ହେବାପରେ ଶରୀର ସ୍ଥିତି ନହେବାରୁ ଜ୍ଞାନ ପ୍ରାପ୍ତି ପରେ ବିଦ୍ୱାନ୍‌ର ମୋକ୍ଷପ୍ରାପ୍ତି ହେବ । କିନ୍ତୁ ଶରୀରପାତକୁ ପ୍ରତୀକ୍ଷା କରେ ନାହିଁ ।

ମୂଳ- (କ) ବସ୍ତୁବଳେନ ବାୟମକର୍ତ୍ତାତ୍ମାବବୋଧଃ କର୍ମାଣି କ୍ଷପୟନ୍ କଥଂ କାନିଚିତ୍ କ୍ଷପୟେନ୍ କାନିଚିଦୁପେକ୍ଷେତ ? ନହି ସମାନେଽଗ୍ନୀବୀଜସଂପର୍କେ କେଷାଞ୍ଚିଦ୍- ବୀଜଶକ୍ତିଃ କ୍ଷୀୟତେ, କେଷାଞ୍ଚିନ୍ନ କ୍ଷୀୟତ ଇତି ଶକ୍ୟମଙ୍ଗୀକର୍ତ୍ତୁମିତି ।

(ଖ) ଉଚ୍ୟତେନତାବଦନାଶ୍ରିତ୍ୟାରବ୍ଧକାର୍ଯ୍ୟେ କର୍ମାଶୟଂ ଜ୍ଞାନୋତ୍ପତ୍ତିରୁପପଦ୍ୟତେ । ଆଶ୍ରିତେ ଚ ତସ୍ମିନ୍ କୁଲାଳଚକ୍ରବତ୍ ପ୍ରବୃତ୍ତବେଗସ୍ୟାନ୍ତରାଳେ ପ୍ରତିବନ୍ଧା ସମ୍ଭବାଦ୍ ଭବତି ବେଗକ୍ଷୟପ୍ରତିପାଳନମ୍ । ଅକାର୍ତ୍ତାତ୍ମବୋଧୋଽପି ହି ମିଥ୍ୟାଜ୍ଞାନବାଧନେନ କର୍ମାଣ୍ୟୁଚ୍ଛିନତ୍ତି । ବାଧିତମପି ତୁ ମିଥ୍ୟାଜ୍ଞାନଂ ଦ୍ୱିଚନ୍ଦ୍ରଜ୍ଞାନବତ୍‌ସଂସ୍କାରବଶାତ୍ କଞ୍ଚିତ୍‌କାଳମନୁବର୍ତ୍ତତ ଏବ ।

(ଗ) ଅପି ଚ ନୈବାତ୍ର ବିବଦିତବ୍ୟମ୍ ବ୍ରହ୍ମବିଦା କଞ୍ଚିତ୍‌କାଳଂ ଶରୀରଂ ଧ୍ରିୟତେ ନ ବାଧ୍ରିୟତ ଇତି । କଥଂ ହ୍ୟେକସ୍ୟ ସ୍ୱହୃଦୟପ୍ରତ୍ୟୟଂ ବ୍ରହ୍ମବେଦନଂ ଦେହଧାରଣଂ ଚାପରେଣ ପ୍ରତିକ୍ଷେପ୍ତୁଂ ଶକ୍ୟେତ ? ଶ୍ରୁତିସ୍ମୃତିଷୁ ଚ ସ୍ଥିତପ୍ରଜ୍ଞଲକ୍ଷଣଂନିର୍ଦ୍ଦେଶେନୈତଦେବ ନିରୁଚ୍ୟତେ । ତସ୍ମାଦନାରବ୍ଧକାର୍ଯ୍ୟୟୋରେବ ସୁକୃତଦୁଷ୍କୃତୟୋଃ ବିଦ୍ୟା ସାମର୍ଥ୍ୟାତ୍ କ୍ଷୟ ଇତି ନିର୍ଣ୍ଣୟଃ ।

ଭାଷା - (କ) ପରନ୍ତୁ ଆତ୍ମା ଅକର୍ତ୍ତା ଅଟେ । ଏହି ବୋଧ ବସ୍ତୁସାମର୍ଥ୍ୟରୁ କର୍ମର କ୍ଷୟ କରି କେତେକ କର୍ମକୁ କରେ ଏବଂ କେତେକ କର୍ମକୁ ଉପେକ୍ଷା କରେ- ଏହା କିପରି ହେବ ? ଅଗ୍ନି ଓ ବୀଜର ସଂପର୍କ ହେଲେ କେତେକ ବୀଜଶକ୍ତି କ୍ଷୟ ହୁଏ ଏବଂ କେତେକ ବୀଜ-ଶକ୍ତି କ୍ଷୟ ହୁଏ ନାହିଁ ଏହି ପ୍ରକାର ସ୍ୱୀକାର କରାଯାଏ ନାହିଁ କି ?

(ଖ) କୁହାଯାଇଛି ଆରବ୍ଧ କାର୍ଯ୍ୟଯୁକ୍ତ କର୍ମାଶୟର ଆଶ୍ରୟ ନକରି ଜ୍ଞାନର ଉତ୍ପତ୍ତି ଉପପନ୍ନ ହୁଏ ନାହିଁ । ତାହାର ଆଶ୍ରିତ ହେବାପରେ କୁମ୍ଭାରଚକ୍ରେ ପରି ପ୍ରବୃତ୍ତ ବେଶବନ୍‌ର ମଝିରେ ପ୍ରତିବନ୍ଧକ ନ ହେଲେ ବେଗ କ୍ଷୟର ପ୍ରତୀକ୍ଷା ହୁଏ । ଅକର୍ତ୍ତୁ ଆତ୍ମବୋଧ ମଧ୍ୟ ମିଥ୍ୟାଜ୍ଞାନର ବାଧରୁ କର୍ମକୁ ଉଚ୍ଛେଦ କରେ । ବାଧିତ ହୋଇ ମଧ୍ୟ ଦ୍ୱିଚନ୍ଦ୍ର ଜ୍ଞାନ ପରି ସଂସ୍କାର ବଳରେ କେତେ ସମୟ ପର୍ଯ୍ୟନ୍ତ ଅନୁବର୍ତ୍ତିତ ହୁଏ ।

(ଗ) ଏହି ବିଷୟରେ ବାଦ ପ୍ରତିବାଦ କରିବା ଉଚିତ୍ ନୁହେଁ ଯେ ବ୍ରହ୍ମଜ୍ଞାନୀ କେତେ ସମୟ ପର୍ଯ୍ୟନ୍ତ ଶରୀର ଧାରଣ କରେ ଅଥବା ଧାରଣ କରେ ନାହିଁ । ଗୋଟିଏ ପୁରୁଷର ସୁହୃଦୟ ସ୍ୱସଂବେଦ୍ୟ ବ୍ରହ୍ମଜ୍ଞାନ ଏବଂ ଦେହ ଧାରଣ ସେଠାରେ ଅନ୍ୟ ପୁରୁଷଦ୍ୱାରା



ଆକ୍ଷେପ କିପରି କରାଯାଇଛି । ଅର୍ଥାତ୍ ଆକ୍ଷେପ କରାଯାଇନାହିଁ । ଶ୍ରୁତି ଓ ସ୍ମୃତିରେ ସ୍ଥିତପ୍ରଜ୍ଞର ଲକ୍ଷଣ ଉପଦେଶ ଦ୍ୱାରା କୁହାଯାଇଛି । ତେଣୁ ଅନାରବ୍ଧ କାର୍ଯ୍ୟଯୁକ୍ତ ସୁକୃତ ଓ ଦୁଷ୍କୃତର ବିଦ୍ୟାସାମର୍ଥ୍ୟରୁ କ୍ଷୟ ହୁଏ ବୋଲି ନିର୍ଣ୍ଣୟ ହୋଇଛି ।୧୫।

## १२ । अग्निहोत्राद्यधिकरणम् ॥ १६-१७ ॥

## ୧୨ ଅଗ୍ନିହୋତ୍ରାଦ୍ୟଧିକରଣମ୍ ॥ ସୂ ୧୬-୧୭ ॥

## अग्निहोत्रादि तु तद्कार्योयैव तद्दर्शनात् ॥ ४-१-१६ ॥

## ଅଗ୍ନିହୋତ୍ରାଦି ତୁ ତଦକାର୍ଯ୍ୟୋୟୈବ ତଦ୍ଦର୍ଶନାତ୍ ॥୪-୧-୧୬॥

ଅଗ୍ନିହୋତ୍ରାଦି=ଅଗ୍ନିହୋତ୍ର ପ୍ରଭୃତି ନିତ୍ୟନୈମିତ୍ତିକ କର୍ମ ସମୁଦାୟ କିନ୍ତୁ; ତତ୍କାର୍ଯ୍ୟାୟୈବ = ତତ୍ତ୍ୱଜ୍ଞାନ ସାଧ୍ୟ ମୋକ୍ଷରୂପ କାର୍ଯ୍ୟ ପାଇଁ ଅଛି । ତଦ୍ ଦର୍ଶନାତ୍=କାରଣ- 'ତମେତଂ' ବେଦାନୁବଚନେନ' ଇତ୍ୟାଦି ଶ୍ରୁତିରେ କର୍ମାଦି ପ୍ରଭୃତିରେ ଜ୍ଞାନହେତୁତା ଦେଖାଯାଏ । ତୁ=ତୁ ଶବ୍ଦ ଶଙ୍କାକୁ ନିବୃତ୍ତି ପାଇଁ କୁହାଯାଇଛି ॥

ମୂଳ-(କ) ପୁଣ୍ୟସ୍ୟାପ୍ୟଶ୍ଳେଷ ବିନାଶୟୋରଘନ୍ୟାୟୋଽତିଦିଷ୍ଟଃ, ସୋଽତିଦେଶଃ ସର୍ବପୁଣ୍ୟ ବିଷୟ ଇତ୍ୟାଶଙ୍କ୍ୟ ପ୍ରତିବକ୍ତି ଅଗ୍ନିହୋତ୍ରାଦି ତ୍ୱିତି । ତୁ ଶବ୍ଦ ଆଶଙ୍କାମପନୁଦତି, ଯନ୍ନିତ୍ୟଂ କର୍ମ ବୈଦିକମଗ୍ନିହୋତ୍ରାଦି, ତତ୍ତତ୍ କାର୍ଯ୍ୟାୟୈବ ଭବତି, ଜ୍ଞାନସ୍ୟ ଯତ୍କାର୍ଯ୍ୟଂ ତଦେବାସ୍ୟାପି କାର୍ଯ୍ୟମିତ୍ୟର୍ଥଃ ।

(ଖ) କୁତଃ ? 'ତମେତଂ ବେଦାନୁବଚନେନ ବ୍ରାହ୍ମଣା ବିବିଦିଷନ୍ତି ଯଜ୍ଞେନ ଦାନେନ' (ବୃ ୪-୪-୨୨) ଇତ୍ୟାଦି ଦର୍ଶନାତ୍ । ନନୁ ଜ୍ଞାନ କର୍ମଣୋଃ ବିଲକ୍ଷଣ କାର୍ଯ୍ୟତ୍ୱାତ୍ କାର୍ଯ୍ୟୈକତ୍ୱାନୁପପତ୍ତିଃ, ନୈଷ ଦୋଷଃ ଜ୍ୱରମରଣ କାର୍ଯ୍ୟୟୋରପି ଦଧିବିଷ- ୟୋର୍ଗୁଡ଼ ମନ୍ତ୍ର ସଂଯୁକ୍ତୟୋସ୍ତୃପ୍ତିପୁଷ୍ଟି କାର୍ଯ୍ୟଦର୍ଶନାତ୍, ତଦ୍‌ବତ୍ କର୍ମଣୋଽପି ଜ୍ଞାନ ସଂଯୁକ୍ତସ୍ୟ ମୋକ୍ଷକାର୍ଯ୍ୟୋ-ପପତ୍ତେଃ ।

(ଗ) ନନ୍ୱନାରଭ୍ୟୋ ମୋକ୍ଷଃ କଥମସ୍ୟ କର୍ମକାର୍ଯ୍ୟତ୍ୱମୁଚ୍ୟତେ ? ନୈଷ ଦୋଷଃ, ଆରାଦୁପକାରତ୍ୱାତ୍ କର୍ମଣଃ । ଜ୍ଞାନସ୍ୟୈବ ହି ପ୍ରାପକଂ ସତ୍କର୍ମ ପ୍ରଣାଡ଼୍ୟା ମୋକ୍ଷ କାରଣମି- ତ୍ୟୁପଚର୍ଯ୍ୟତେ । ଅତଏବ ଅତିକ୍ରାନ୍ତ-ବିଷୟମେତତ୍ କାର୍ଯ୍ୟୈକ ତ୍ୱାଭିଧାନମ୍ । ନହି ବ୍ରହ୍ମବିଦ ଆଗାମ୍ୟଗ୍ନିହୋତ୍ରାଦି ସମ୍ଭବତି, ଅନିୟୋଜ୍ୟ ବ୍ରହ୍ମାତ୍ମତ୍ୱ ପ୍ରତିପତ୍ତେଃ ଶାସ୍ତ୍ରସ୍ୟା ବିଷୟତ୍ୱାତ୍ ।

(ଘ) ସଗୁଣାସୁ ତୁ ବିଦ୍ୟାସୁ କର୍ତ୍ତୃତ୍ୱାନତିବୃତ୍ତେଃ ସମ୍ଭବତ୍ୟା ଗାମ୍ୟପ୍ୟଗ୍ନିହୋତ୍ରାଦି । ତସ୍ୟାପି ନିରଭିସନ୍ଧିନଃ କାର୍ଯ୍ୟାନ୍ତରାଭାବାଦ୍ ବିଦ୍ୟାସଂଗତ୍ୟୁପପତ୍ତିଃ ॥

ଭାଷା- (କ) ପୁଣ୍ୟର ମଧ୍ୟ ଅଶ୍ଳେଷ ଓ ବିନାଶରେ ପାପନ୍ୟାୟ ଅତିଦେଶ କରାଯାଇଛି । ସେହି ଅତିଦେଶ କ'ଣ ସମସ୍ତ ପୁଣ୍ୟ ବିଷୟକ ଅଟେ ? ଏହିପରି ଆଶଙ୍କା

କରି ତାହାର ନିରାକରଣ କହନ୍ତି ଅଗ୍ନିହୋତ୍ରାଦି 'ତୁ' ଶବ୍ଦ ଆଶଙ୍କାକୁ ପରିହାର କରେ । ଯେଉଁ ବୈଦିକ ଅଗ୍ନିହୋତ୍ରାଦି ନିତ୍ୟକର୍ମ ଅଟେ, ସେସବୁ ସେହି ସେହି କାର୍ଯ୍ୟ ପାଇଁ ରହନ୍ତି । ଯାହା ଜ୍ଞାନର କାର୍ଯ୍ୟ ଅଟେ, ସେହି ତାହା କାର୍ଯ୍ୟ ଅଟେ ବୋଲି ଅର୍ଥ ହୁଏ ।

(ଖ) କିପରି ? କାରଣ 'ତମେତଂ ବେଦାନୁ ବଚନେନ' (ବ୍ରାହ୍ମଣ ଏହି ଆତ୍ମାକୁ ବେଦାଧ୍ୟୟନଦ୍ୱାରା ଯଜ୍ଞ ଓ ଦାନଦ୍ୱାରା ଜାଣିବାକୁ ଇଚ୍ଛା କରେ ।) ଇତ୍ୟାଦି ଦେଖାଯାଏ । ପରନ୍ତୁ ଜ୍ଞାନ ଓ କର୍ମ ବିଲକ୍ଷଣ କାର୍ଯ୍ୟଯୁକ୍ତ ହେଲେ ସେଠାରେ କାର୍ଯ୍ୟୈକତ୍ୱ ଉପପତ୍ତି ହୁଏ ନାହିଁ କି ? ନୁହେଁ, ତାହା ଦୋଷ ନୁହେଁ, କାରଣ ଜ୍ୱର ଓ ଏବଂ ମୃତ୍ୟୁ କାର୍ଯ୍ୟଯୁକ୍ତ ଦଧି ଓ ବିଷରେ, ଗୁଡ଼ ଓ ମନ୍ତ୍ର ସଂଯୁକ୍ତ ହେବାପରେ ତୃପ୍ତି ଓ ପୁଷ୍ଟିରୂପ କାର୍ଯ୍ୟ ଦେଖାଯାଏ । ସେହିପରି ଜ୍ଞାନ ସଂଯୁକ୍ତ କର୍ମର ମଧ୍ୟ ମୋକ୍ଷ କାର୍ଯ୍ୟ ସମ୍ଭବ ହୁଏ ।

(ଗ) ପରନ୍ତୁ ମୋକ୍ଷ ଅନାରଭ୍ୟ ଅଟେ, ତାହାକୁ କର୍ମର କାର୍ଯ୍ୟ ବୋଲି କିପରି କୁହାଯିବ ? ଏହା କିନ୍ତୁ ଦୋଷ ନୁହେଁ, କାରଣ-କର୍ମ ଜ୍ଞାନର ଦୂରରେ ରହି ଉପକାର କରେ । ଜ୍ଞାନର ପ୍ରାପକ ହୋଇ କର୍ମ ଅନ୍ତଃକରଣ ଶୁଦ୍ଧି ଦ୍ୱାରା ମୋକ୍ଷର କାରଣ ହୁଏ । ଏହିପରି ଉପଚାର କରାଯାଇଛି । ଅତଏବ ଏହି କାର୍ଯ୍ୟୈକତ୍ୱର ଅଭିଧାନ ଅତିକ୍ରାନ୍ତ କର୍ମ ବିଷୟକ ଅଟେ । କାରଣ-ବ୍ରହ୍ମବିତ୍ ପାଇଁ ଭବିଷ୍ୟତ୍ ଅଗ୍ନିହୋତ୍ରାଦି ସମ୍ଭବ ନୁହେଁ । କାରଣ-ଅନିଯୋଜ୍ୟ ବ୍ରହ୍ମାତ୍ମତ୍ୱଜ୍ଞାନ୍ ଶାସ୍ତ୍ରର ବିଷୟ ନୁହେଁ ।

(ଘ) ସଗୁଣ ବିଦ୍ୟାଗୁଡ଼ିକରେ କିନ୍ତୁ କର୍ତ୍ତୃତ୍ୱର ଅନିବୃତ୍ତି ହେବାରୁ ଭବିଷ୍ୟତ ଅଗ୍ନିହୋତ୍ରାଦି କର୍ମ ସମ୍ଭବ ହୁଅନ୍ତି । ଫଳ କାମନାର ହିତ ଏହି କର୍ମକୁ ମଧ୍ୟ ଅନ୍ୟ କାର୍ଯ୍ୟ ନ ହେବାରୁ ବିଦ୍ୟାର ସମ୍ବନ୍ଧ ଉପପନ୍ନ ହୁଏ ॥୧୬॥

ମୂଳ-(କ) କିଂ ବିଷୟଂ ପୁନରିଦମଶ୍ଳେଷ ବିନାଶ ବଚନଂ, କିଂ ବିଷୟଂ ବାଽଦୋ ବିନିଯୋଗ ବଚନମୈକୈଷାଂ ଶାଖିନାମ୍-'ତସ୍ୟ ପୁତ୍ରା ଦାୟ ମୁପୟନ୍ତି ସୁହୃଦଃ ସାଧୁକୃତ୍ୟାଂ ଦ୍ୱିଷନ୍ତଃ ପାପକୃତ୍ୟାମ୍' ଇତି ? ଅତ ଉତ୍ତରଂ ପଠତି-

ଭାଷା-(କ) ପୁନଶ୍ଚ ଏହି ଅଶ୍ଳେଷ ଓ ବିନାଶବଚନ କେଉଁ ବିଷୟକ ଅଟେ ଏବଂ ଏହିପରି ଏହି ଶାଖାଯୁକ୍ତର 'ତସ୍ୟ ପୁତ୍ରାଃ' ତାହାର ପୁତ୍ର ଧନ ପ୍ରାପ୍ତ କରନ୍ତି । ମିତ୍ର ସାଧୁକର୍ମ ଓ ଶତ୍ରୁ ପାପକର୍ମ କରନ୍ତି) ଏହି ବିନିଯୋଗ ବଚନ କାହାପାଇଁ ରହିଛି ? ଏହାପାଇଁ ଉତ୍ତରରେ କୁହାଯାଇଛି-

**अतोऽन्यापि ह्येकेषामुभयो: ॥ ४-१-१७ ॥**

**ଅତୋଽନ୍ୟାପି ହ୍ୟେକେଷାମୁଭୟୋଃ ॥୪-୧-୧୭॥**



ଏକେଷାମ୍=କେତେକ ସଂପ୍ରଦାୟଙ୍କ ମତରେ, ଅତଃ=ଅଗ୍ନିହୋତ୍ରାଦି ନିତ୍ୟ କର୍ମରୁ, ଅନ୍ୟା = ସ୍ୱର୍ଗାଦିର ସାଧନୀଭୂତ କ୍ରିୟା ଅନ୍ୟ କିଛି ଅଟେ । ଉଭୟୋରପି=ସେହି କ୍ରିୟା ଜୈମିନି ଓ ବାଦରାୟଣ ସମ୍ମତ କରନ୍ତି ॥

ମୂଳ-(କ) ଅତୋଽଗ୍ନିହୋତ୍ରା ଦେର୍ନିତ୍ୟାତ୍ କର୍ମଣୋଽନ୍ୟସ୍ୟାପିହ୍ୟସ୍ତି ସାଧୁ କୃତ୍ୟା, ଯା ଫଳ ମଭିସନ୍ଧାୟ କ୍ରିୟତେ, ତସ୍ୟା ଏଷ ବିନିଯୋଗ ଉକ୍ତ ଏକେଷାମ୍ ସାଖିନାମ୍-'ସୁ ହୃଦଃ ସାଧୁକୃତ୍ୟା ମୁପୟନ୍ତି' ଇତି । ତସ୍ୟା ଏବ ଋେଦମଘବଦଶ୍ଳେଷ ବିନାଶ ନିରୂପଣ ମିତରସ୍ୟାପ୍ୟେବମଶ୍ଳେଷ ଇତି । ତଥା ଜାତୀୟକସ୍ୟ କାମ୍ୟସ୍ୟ କର୍ମଣୋ ବିଦ୍ୟାଂ ପ୍ରତ୍ୟନୁପକାରକତ୍ୱେ ସଂପ୍ରତିପତ୍ତିରୁ ଭୟୋରପି ଜୈମିନିବାଦରାୟଣୋରାଚାର୍ଯ୍ୟୟୋଃ ॥

ଭାଷା-(କ) ତେଣୁ ଅଗ୍ନିହୋତ୍ରାଦି ନିତ୍ୟକର୍ମରୁ ଅନ୍ୟ କିଛି ସାଧୁକୃତ୍ୟ ହୁଏ, ଯାହାକି ଫଳର ଉଦ୍ଦେଶ୍ୟରୁ କରାଯାଏ । ତାହାର କେତେକ ସଂପ୍ରଦାୟଙ୍କ ମତରେ 'ସୁ ହୃଦଃ ସାଧୁକୃତ୍ୟାମ୍' (ମିତ୍ର ତାହାର ସାଧୁକୃତ୍ୟକୁ ପ୍ରାପ୍ତ ହୁଅନ୍ତି) ଏହିପ୍ରକାର ବିନିଯୋଗ କୁହାଯାଇଛି । ପାପ ସଦୃଶ ତାହାର ଏହି ଅଶ୍ଳେଷ ଓ ବିନାଶ ଅଛି ଏହା 'ଇତରସ୍ୟା-ପ୍ୟେବମଶ୍ଳେଷ' ଏହି ସୂତ୍ରରେ ନିରୂପଣ କରାଯାଇଛି । ସେହିପରି କାମ୍ୟ କର୍ମର ବିଦ୍ୟା ପ୍ରତି ଅନୁପକାରକତ୍ୱ ହେବାରେ ଜୈମିନି ଓ ବାଦରାୟଣ-ଏହି ଦୁଇଜଣ ଆଚାର୍ଯ୍ୟଙ୍କର ସମ୍ମତି ଅଟେ ॥୧୭॥

## १३ । विद्या ज्ञान साधनाधिकरणम् ॥ सू० १८ ॥

## ୧୩। ବିଦ୍ୟାଜ୍ଞାନ ସାଧନାଧିକରଣମ୍ ॥ ସୂଂ ୧୮ ॥

## यदेव विद्ययेति हि ॥ ४-१-१८ ॥

## ଯଦେବ ବିଦ୍ୟୟେତି ହି ॥୪-୧-୧୮॥

ବିଦ୍ୟୟା=ବିଦ୍ୟାସଂଯୁକ୍ତ, ଯଦ୍ = ଅଗ୍ନିହୋତ୍ରାଦି ନିତ୍ୟକର୍ମ ଏବଂ କେବଳ ଅଗ୍ନିହୋତ୍ରାଦି ନିତ୍ୟକର୍ମ-ଏହି ଦୁଇଟି ଏହି ଜନ୍ମରେ ବ୍ରହ୍ମଜ୍ଞାନର ସାଧନ ହୁଅନ୍ତି । 'ଏବ ହୀ' = କାରଣ-'ଯଦେବ ବିଦ୍ୟୟା' ଏହା ଶ୍ରୁତି କହେ ॥

ମୂଳ-(କ) ସମଧିଗତ ମେତଦନନ୍ତରାଧିକରଣେ ନିତ୍ୟମଗ୍ନିହୋତ୍ରାଦିକଂ କର୍ମମୁମୁକ୍ଷୁଣା ମୋକ୍ଷ ପ୍ରୟୋଜନୋଦ୍ଦେଶେନ କୃତ ମୁପାତ୍ତ ଦୁରିତକ୍ଷୟ ହେତୁତ୍ୱ ଦ୍ୱାରେଣ ସତ୍ତ୍ୱଶୁଦ୍ଧି କାରଣତାଂ ପ୍ରତିପଦ୍ୟମାନଂ ମୋକ୍ଷ ପ୍ରୟୋଜନ ବ୍ରହ୍ମାଧିଗମ ନିମିତ୍ତତ୍ୱେନ ବ୍ରହ୍ମବିଦ୍ୟୟା ସହୈକକାର୍ଯ୍ୟଂ ଭବତୀତି । ତତ୍ରାଗ୍ନିହୋତ୍ରାଦି କର୍ମାଙ୍ଗ ବ୍ୟପାଶ୍ରୟ ବିଦ୍ୟା ସଂଯୁକ୍ତଂ କେବଳଂ ଚାସ୍ତି ।

(ଖ) 'ଯ ଏବଂ ବିଦ୍ୱାନ୍ ଯଜତି' 'ଯ ଏବଂ ବିଦ୍ୱାନ୍ ଜୁହୋତି' 'ଯ ଏବଂ ବିଦ୍ୱାନ୍ ଶଂସତି' 'ଯ ଏବଂ ବିଦ୍ୱାନ୍ ଗାୟତି' 'ତସ୍ମାଦେବଂ ବିଦମେବ ବ୍ରହ୍ମାଣଂ କୁର୍ବୀତ ନାନେବଂବିଦମ୍' (ଛା ୪-୧-୭-୧୦), 'ତେନାଭୌ କୁରୁତୋ ଯଶ୍ଚୈତଦେବଂ ବେଦ ଯଶ୍ଚ ନ ବେଦ' (ଛା ୧-୧-୧୦) ଇତ୍ୟାଦି ବଚନେଭ୍ୟୋ ବିଦ୍ୟା ସଂଯୁକ୍ତମସ୍ତି, କେବଲମପ୍ୟସ୍ତି ।

ଭାଷା-(କ) ମୁମୁକ୍ଷୁଦ୍ୱାରା ମୋକ୍ଷରୂପ ପ୍ରୟୋଜନର ଉଦ୍ଦେଶ୍ୟରୁ କରାଯାଇଥିବା ନିତ୍ୟ ଅଗ୍ନିହୋତ୍ରାଦି କର୍ମ ସଂଚିତ ପାପକ୍ଷୟ ହେତୁଦ୍ୱାରା ଅନ୍ତଃକରଣ ଶୁଦ୍ଧିର କାରଣ ତାକୁ ପ୍ରାପ୍ତ ହୋଇ ମୋକ୍ଷ ପ୍ରୟୋଜନବାନ୍ ବ୍ରହ୍ମଜ୍ଞାନର ନିମିତ୍ତ ରୂପରେ ବ୍ରହ୍ମବିଦ୍ୟା ସହିତ ଏକକାର୍ଯ୍ୟଯୁକ୍ତ ହୁଏ-ଏହା ପୂର୍ବ ଅଧିକରଣରେ ଭଲଭାବରେ କୁହାଯାଇଛି । ସେଠାରେ ଅଗ୍ନିହୋତ୍ରାଦି କର୍ମ ଅଙ୍ଗଦ୍ୱାରା ସମ୍ବନ୍ଧିତ ହୋଇ ଉପାସନା ସଂଯୁକ୍ତ ହୁଏ ଏବଂ କେବଳ ଉପାସନା ଅସଂଯୁକ୍ତ ମଧ୍ୟ ହୁଅନ୍ତି ।

(ଖ) 'ଯ' ଏବଂ' (ଯିଏ ଏହାକୁ ଜାଣି ଯଜ୍ଞ କରେ । ଏହାକୁ ଜାଣି ହୋମ କରେ । ଏହାକୁ ଜାଣି ଶଂସନ କରେ, ଏହାକୁ ଜାଣି ଉଦ୍‌ଗାନ କରେ, 'ତସ୍ମାଦେବଂ (ତେଣୁ ଏହିପ୍ରକାର ଜାଣୁଥିବା ପୁରୁଷକୁ ବ୍ରହ୍ମା ସୃଷ୍ଟି କରିପାରେ; କିନ୍ତୁ ନ ଜାଣିଥିବା ପୁରୁଷକୁ ନୁହେଁ), 'ତେନାଭୌ' (ଯେଉଁ ଏହି ଅକ୍ଷରକୁ ଏହିପରି ଜାଣେ, ଯିଏ ଏହା ଜାଣିପାରେ ନାହିଁ-ସେହି ଦୁହେଁ ତାହା ମାଧ୍ୟମରେ କର୍ମ କରନ୍ତି) ଇତ୍ୟାଦି ଶ୍ରୁତିବଚନରୁ ଅଗ୍ନିହୋତ୍ରାଦି କର୍ମବିଦ୍ୟା ସଂଯୁକ୍ତ ହୁଅନ୍ତି ଏବଂ କେବଳ (ଅନାସକ୍ତ) ହୋଇ ରହନ୍ତି ।

ମୂଳ-(କ) ତତ୍ରେଦଂ ବିଚାର୍ଯ୍ୟତେ-କିଂ ବିଦ୍ୟସଂଯୁକ୍ତମେବାଗ୍ନିହୋତ୍ରାଦିକଂ କର୍ମ ମୁମୁକ୍ଷୋର୍ବିଦ୍ୟାହେତୁତ୍ୱେନ ତୟା ସହୈକକାର୍ଯ୍ୟତ୍ୱଂ ପ୍ରତିପଦ୍ୟତେ, ନ କେବଲମୁତ ବିଦ୍ୟାସଂଯୁକ୍ତଂ କେବଲଂ ଚାବିଶେଷେଣେତି ।

(ଖ) କୁତଃ ସଂଶୟଃ ? 'ତମେତମାତ୍ମାନଂ ଯଜ୍ଞେନ ବିବିଦଷନ୍ତି' ଇତି ଯଜ୍ଞାଦୀ-ନାମବିଶେଷେଣାତ୍ମବେଦନାଙ୍ଗତ୍ୱେନ ଶ୍ରବଣାତ୍ । ବିଦ୍ୟାସଂଯୁକ୍ତସ୍ୟ ଚାଗ୍ନିହୋତ୍ରାଦେର୍ବଶିଷ୍ଟ-ତ୍ୱାବଗମାତ୍ ।

(ଗ) କିଂ ତାବତ୍ପ୍ରାପ୍ତମ୍-ବିଦ୍ୟାସଂଯୁକ୍ତସ୍ୟମେବ କର୍ମାଗ୍ନିହୋତ୍ରାଦ୍ୟାତ୍ମବିଦ୍ୟାଶେଷତ୍ୱଂ ପ୍ରତିପଦ୍ୟତେ, ନ ବିଦ୍ୟାହୀନମ୍, ବିଦ୍ୟୋପେତସ୍ୟ ବିଶିଷ୍ଟତ୍ୱାଦବଗମାଦ୍ ବିଦ୍ୟା ବିହୀନାତ୍, 'ଯଦହରେବ ଜୁହୋତି ତଦହଃ ପୁନର୍ମୃତ୍ୟୁମପଜୟତ୍ୟେବଂ ବିଦ୍ୱାନ୍' ଇତ୍ୟାଦିଶ୍ରୁତିଭ୍ୟଃ । ବୁଦ୍ଧ୍ୟାଯୁକ୍ତୋ ଯୟା ପାର୍ଥ କର୍ମବନ୍ଧଂ ପ୍ରହାସ୍ୟସି' (ଗୀ ୨-୩୯), 'ଦୂରେଣ ହ୍ୟବରଂ କର୍ମ ବୁଦ୍ଧି ଯୋଗାଦ୍ଧନଞ୍ଜୟ' (ଗୀ ୨-୪୯) ଇତ୍ୟାଦିସ୍ମୃତିଭ୍ୟଶ୍ଚେତି ॥



ଭାଷା-(କ) ବିଦ୍ୟା ସଂଯୁକ୍ତ କ'ଣ ଅଗ୍ନିହୋତ୍ରାଦି କର୍ମ ମୁମୁକ୍ଷୁର ବିଦ୍ୟା ହେତୁ ରୂପରେ ତାହା ସହିତ ଏକକାର୍ଯ୍ୟତ୍ୱକୁ ପ୍ରାପ୍ତ ହୁଅନ୍ତି, ଅଥବା ଅବିଶେଷରେ ବିଦ୍ୟାସଂଯୁକ୍ତ ଏବଂ କେବଳ କର୍ମ ଏକ କାର୍ଯ୍ୟତ୍ୱକୁ ପ୍ରାପ୍ତ ହୁଅନ୍ତି ବୋଲି ବିଚାର କରାଯାଉଛି କି ?

(ଖ) ଏହି ସଂଶୟ କିପରି ହୁଏ ? କାରଣ-'ତମେତମାତ୍ମାନମ୍' (ସେ ଏହି ଉପନିଷଦ୍‌ଗମ୍ୟ ଆତ୍ମାକୁ ଯଜ୍ଞଦ୍ୱାରା ଜାଣିବାକୁ ଇଚ୍ଛାକରେ) ଏହିପରି ଯଜ୍ଞ ପ୍ରଭୃତିର ଅବିଶେଷ ରୂପରେ ଆତ୍ମଜ୍ଞାନର ଅଙ୍ଗରୂପରେ ଶ୍ରବଣ ହୁଏ । ତେଣୁ ବିଦ୍ୟା ସଂଯୁକ୍ତ ଅଗ୍ନିହୋତ୍ରାଦିରେ ବିଶିଷ୍ଟତ୍ୱ ଅବଗତ ହୁଏ ।

(ଗ) ତେବେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ-ବିଦ୍ୟାସଂଯୁକ୍ତ ଅଗ୍ନିହୋତ୍ରାଦି କର୍ମ ଆତ୍ମବିଦ୍ୟା ଶେଷତ୍ୱକୁ ପ୍ରାପ୍ତ ହୁଅନ୍ତି । କିନ୍ତୁ ଉପାସନାହୀନ କର୍ମ ନୁହେଁ । କାରଣ-'ଯଦହରେବ' (ଯିଏ ଏହା ଜାଣେ, ଯେଉଁ ଦିନ ହୋମ କରେ, ସେହିଦିନ ମୃତ୍ୟୁକୁ ଜୟ କରେ) ଇତ୍ୟାଦି ଶ୍ରୁତିଦ୍ୱାରା ଏବଂ 'ବୁଦ୍ଧ୍ୟାକ୍ଷ ଯୁକ୍ତୋ' (ହେ ପାର୍ଥ ! ଯାହା ବୁଦ୍ଧି ଯୁକ୍ତ ହୋଇ ଯାହାଦ୍ୱାରା କର୍ମବନ୍ଧନକୁ ସଂପୂର୍ଣ୍ଣ ଭାବେ ବିନାଶ କରିବ), 'ଦୂରେଣ' (ଏହି ସମତ୍ୱରୂପ ବୁଦ୍ଧିଯୋଗରୁ ସକାମକର୍ମ ଅତ୍ୟନ୍ତ ନ୍ୟୂନ ଅଟେ) ଇତ୍ୟାଦି ସ୍ମୃତିଦ୍ୱାରା ବିଦ୍ୟାଯୁକ୍ତ କର୍ମ ବିଦ୍ୟାହୀନ କର୍ମ ଦ୍ୱାରା ବିଶିଷ୍ଟକୁ ଅବଗତ ହୁଅନ୍ତି ।

ମୂଳ-(କ) ଏବଂ ପ୍ରାପ୍ତେ ପ୍ରତିପାଦ୍ୟତେ-ଯଦେବ ବିଦ୍ୟାୟେତି ହି, ସତ୍ୟମେତତ୍; ବିଦ୍ୟାସଂଯୁକ୍ତଂ କର୍ମାଗ୍ନିହୋତ୍ରାଦିକଂ ବିଦ୍ୟାବିହୀନାତ୍ କର୍ମଣୋଽଗ୍ନିହୋତ୍ରାଦ୍ ବିଶିଷ୍ଟମ୍, ବିଦ୍ୱାନିବ ବ୍ରାହ୍ମଣୋ ବିଦ୍ୟାବିହୀନାଦ୍ ବ୍ରହ୍ମଣାତ୍, ତଥାପି ନାତ୍ୟନ୍ତମନପେକ୍ଷଂ ବିଦ୍ୟା ବିହୀନଂ କର୍ମାଗ୍ନିହୋତ୍ରାଦିକମ୍ । କସ୍ମାତ୍ ? 'ତମେତମାତ୍ମାନଂ ଯଜ୍ଞେନ ବିବିଦିଷନ୍ତି' ଇତ୍ୟବିଶେଷେ-ଣାଗ୍ନିହୋତ୍ରାଦେଃ ବିଦ୍ୟାହେତୁତ୍ୱେନ ଶ୍ରୁତତ୍ୱାତ୍ ।

(ଖ) ନନୁ ବିଦ୍ୟାସଂଯୁକ୍ତସ୍ୟାଗ୍ନିହୋତ୍ରାଦେର୍ବିଦ୍ୟାବିହୀନାଦ୍‌ବିଶିଷ୍ଟତ୍ୱାବଗମାଦ୍ ବିଦ୍ୟାବିହୀନମଗ୍ନିହୋତ୍ରାଦ୍ୟାତ୍ମବିଦ୍ୟାହେତୁତ୍ୱେନାନପେକ୍ଷମେବେତି ଯୁକ୍ତମ୍, ନୈତଦେବମ୍ । ବିଦ୍ୟାସହାୟସ୍ୟାଗ୍ନିହୋତ୍ରାଦେଃ ବିଦ୍ୟାନିମିତ୍ତେନ ସାମର୍ଥ୍ୟାତିଶୟେନ ଯୋଗାଦାତ୍ମଜ୍ଞାନଂ ପ୍ରତି କଶ୍ଚିତ୍‌କାରଣତ୍ୱାତିଶୟୋ ଭବିଷ୍ୟତି, ନ ତଥା ବିଦ୍ୟାବିହୀନସ୍ୟେତି ଯୁକ୍ତଂ କଳ୍ପୟିତ୍ୱମ୍, ନ ତୁ 'ଯଜ୍ଞେନ ବିବିଦିଷନ୍ତି' ଇତ୍ୟତ୍ରାବିଶେଷେଣାତ୍ମଜ୍ଞାନାଙ୍ଗତ୍ୱେନ ଶ୍ରୁତସ୍ୟାଗ୍ନିହୋତ୍ରାଦେରନଙ୍ଗତ୍ୱଂ ଶକ୍ୟମଭ୍ୟୁପଗନ୍ତୁମ୍ ।

(ଗ) ତଥାହି ଶ୍ରୁତିଂ- 'ଯଦେବ ବିଦ୍ୟାୟା କରୋତି ଶ୍ରଦ୍ଧୟୋପନିଷଦା ତଦେବ ବୀର୍ଯ୍ୟବତ୍ତରଂ ଭବତି' (ଛା ୧-୧-୧୦) ଇତି ବିଦ୍ୟାସଂଯୁକ୍ତସ୍ୟ କର୍ମଣୋଽଗ୍ନିହୋତ୍ରାଦେ୍ୟ ବୀର୍ଯ୍ୟବତ୍ତରିତ୍ୱାଭିଧାନେନ ସ୍ୱକାର୍ଯ୍ୟଂ ପ୍ରତି କଂଚିଦତିଶୟଂ ବ୍ରୁବାଣା ବିଦ୍ୟାବିହୀନସ୍ୟ ତସ୍ୟୈବ ତତପ୍ରୟୋଜନଂ ପ୍ରତି ବୀର୍ଯ୍ୟବତ୍ତ୍ୱଂ ଦର୍ଶୟତି । କର୍ମଣଶ୍ଚ ବୀର୍ଯ୍ୟବତ୍ତ୍ୱଂ ତତ୍, ଯତ୍‌ସ୍ୱପ୍ରୟୋଜନସାଧନପ୍ରସହତ୍ୱମ୍ ।

(ଘ) ତସ୍ମାଦ୍ ବିଦ୍ୟାସଂଯୁକ୍ତଂ ନିତ୍ୟମଗ୍ନିହୋତ୍ରାଦି ବିଦ୍ୟାବିହୀନଂ ଚୈଭୟମପି ମୁମୁକ୍ଷୁଣା ମୋକ୍ଷପ୍ରୟୋଜନୋଦ୍ଦେଶୋନେହ ଜନ୍ମନି ଜନ୍ମାନ୍ତରେ ଚ ପ୍ରାଗ୍ଜ୍ଞାନୋତ୍ପତ୍ତେଃ କୃତଂ ଯତ୍, ତଦ୍ୟଥାସାମର୍ଥ୍ୟଂ ବ୍ରହ୍ମାଧିଗମପ୍ରତିବନ୍ଧକାରଣୋପାତ୍ତଦୁରିତକ୍ଷୟହେତୁଦ୍ୱାରେଣ ବ୍ରହ୍ମାଧିଗମକାରଣତ୍ୱଂ ପ୍ରତିପଦ୍ୟମାନଂ ଶ୍ରବଣମନନ ଶ୍ରଦ୍ଧାତାତ୍ପର୍ଯ୍ୟାଦ୍ୟଂନ୍ତରଙ୍ଗକାରଣା ପେକ୍ଷଂ ବ୍ରହ୍ମବିଦ୍ୟୟା ସହୈକକାର୍ଯ୍ୟଂ ଭବତୀତି ସ୍ଥିତମ୍ ॥

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ପ୍ରତିପାଦନ କରାଯାଇଅଛି- 'ଯଦେବ ବିଦ୍ୟୟେତି ହି' ଏହି ବାକ୍ୟ ସମୀଚୀନ ଅଟେ । ବିଦ୍ୟାସଂଯୁକ୍ତ ଅଗ୍ନିହୋତ୍ରାଦି କର୍ମ ବିଦ୍ୟାହୀନ ଅଗ୍ନିହୋତ୍ରାଦିକର୍ମଠାରୁ ଉତ୍ତମ ଅଟେ; ଯେପରି ବିଦ୍ୱାନ୍ ବ୍ରାହ୍ମଣ ବିଦ୍ୟାହୀନ ବ୍ରାହ୍ମଣଠାରୁ ଶ୍ରେଷ୍ଠ ଅଟେ । ତଥାପି ମଧ ବିଦ୍ୟାବିହୀନ ଅଗ୍ନିହୋତ୍ରାଦି କର୍ମ ଅତ୍ୟନ୍ତ ଅନପକ୍ଷ ନୁହେଁ, କିପରି ? କାରଣ- 'ତମେତଣାତ୍ମାନଂ ଯଜ୍ଞେନ ବିବିଦିଷନ୍ତି' ଏହିପ୍ରକାର ଅବିଶେଷରୁ ଅଗ୍ନିହୋତ୍ରାଦି କର୍ମବିଦ୍ୟା ହେତୁ ରୂପରେ ଶ୍ରୁତ ଅଟନ୍ତି ।

(ଖ) ପୂର୍ବପକ୍ଷ-ପରନ୍ତୁ ବିଦ୍ୟାସଂଯୁକ୍ତ ଅଗ୍ନିହୋତ୍ରାଦିକର୍ମରେ ବିଦ୍ୟାବିହୀନ ଅଗ୍ନିହୋତ୍ରାଦିକର୍ମଠାରୁ ଉତ୍କୃଷ୍ଟ ଅବଗମହେବାରୁ ବିଦ୍ୟାବିହୀନ ଅଗ୍ନିହୋତ୍ରାଦିକର୍ମ ଆତ୍ମବିଦ୍ୟାର ହେତୁ ରୂପରେ ଅନପେକ୍ଷ ହୁଅନ୍ତି ବୋଲି କହିବା ଠିକ୍ । ସିଦ୍ଧାନ୍ତ-ଏହା କିନ୍ତୁ ଠିକ୍ ନୁହେଁ, କାରଣ ବିଦ୍ୟାର ସହାୟକ ଅଗ୍ନିହୋତ୍ରାଦିରେ ବିଦ୍ୟାନିମିତ୍ତ ସାମର୍ଥ୍ୟାତିଶୟର ଯୋଗରୁ ଆତ୍ମଜ୍ଞାନ ପ୍ରତି କୌଣସି କାରଣ ରୂପରେ ଅତିଶୟ ହେବ । 'ବିଦ୍ୟାବିହୀନ ଅଗ୍ନିହୋତ୍ରାଦିରେ କିନ୍ତୁ ଏହିପରି ଅତିଶୟ ହୁଏ ନାହିଁ ବୋଲି କଳ୍ପନା କରିବା ଉଚିତ । ପରନ୍ତୁ 'ଯଜ୍ଞେନ ବିବିଦିଷନ୍ତି' ଏଠାରେ ଅବଶେଷରେ ଆତ୍ମଜ୍ଞାନର ଅଙ୍ଗରୂପରେ ଶ୍ରୁତି ଅଗ୍ନିହୋତ୍ରାଦିରେ ଅନଙ୍ଗତ୍ୱ ସ୍ୱୀକାର କରାଯାଇନାହିଁ ।

(ଗ) କାରଣ- ''ଯଦେବ ବିଦ୍ୟୟା'' (ଯେଉଁ କର୍ମ ବିଦ୍ୟାଠାରୁ, ଶ୍ରଦ୍ଧା ଓ ଯୋଗଯୁକ୍ତ ହୋଇ କରେ, ସେ ବୀର୍ଯ୍ୟବତ୍ତର ହୁଏ) ଏହି ଶ୍ରୁତି ବିଦ୍ୟାସଂଯୁକ୍ତ ଅଗ୍ନିହୋତ୍ରାଦି କର୍ମ ଅଧିକ ବୀର୍ଯ୍ୟମାନ୍ ଅଟେ । ଏହି କଥନ ଦ୍ୱାରା ନିଜର କାର୍ଯ୍ୟପ୍ରତି କେତେକ ଅତିଶୟ କହି ବିଦ୍ୟାବିହୀନ ସେହି କର୍ମକୁ ତାହାର ପ୍ରୟୋଜନ ପ୍ରତି ବୀର୍ଯ୍ୟବତ୍ ଦେଖାଏ । ଏହାହିଁ କର୍ମର ବୀର୍ଯ୍ୟବତ୍ତ୍ୱଂ, ଯାହାକି ନିଜର ପ୍ରୟୋଜନ ସିଦ୍ଧି ପାଇଁ କ୍ଷମତା ଅଟେ ।

(ଘ) ତେଣୁ ବିଦ୍ୟାସଂଯୁକ୍ତ ନିତ୍ୟ ଅଗ୍ନିହୋତ୍ରାଦି କର୍ମ ଓ ବିଦ୍ୟାରହିତ କର୍ମ ଏହି ଦୁହେଁ ମୁମୁକ୍ଷୁଦ୍ୱାରା ମୋକ୍ଷପ୍ରୟୋଜନର ଉଦ୍ଦେଶ୍ୟରୁ ଏହି ଜନ୍ମରେ ଅଥବା ଜନ୍ମାନ୍ତରରେ ଜ୍ଞାନୋତ୍ପତ୍ତିର ପୂର୍ବରୁ ଯାହା କରନ୍ତି, ସେଗୁଡ଼ିକ ନିଜର ସାମର୍ଥ୍ୟାନୁସାରେ ବ୍ରହ୍ମଜ୍ଞାନରେ ପ୍ରତିବନ୍ଧ କାରଣ ରୂପରେ ପ୍ରାପ୍ତ ପାପକ୍ଷୟର ହେତୁରୂପ ଦ୍ୱାରରୁ ବ୍ରହ୍ମଜ୍ଞାନର କାରଣତ୍ୱକୁ ପାଇ ଶ୍ରବଣ, ମନନ, ଶ୍ରଦ୍ଧା, ତାତ୍ପର୍ଯ୍ୟାଦି ଅନ୍ତରଙ୍ଗ କାରଣକୁ ଅପେକ୍ଷା କରି ବ୍ରହ୍ମବିଦ୍ୟା ସହିତ ମୋକ୍ଷରୂପ ଏକକାର୍ଯ୍ୟବାନ୍ ହୁଅନ୍ତି । ଏହାହିଁ ସିଦ୍ଧ ହୋଇଛି ॥୧୮॥



## १४ । इतरक्षपणाधिकरणम् ॥ सू. १९ ॥

## ୧୪ । ଇତରକ୍ଷପଣାଧିକରଣମ୍ ॥ ସୂ ୧୯ ॥

## भोगेन त्वितरे क्षपयित्वा सम्पद्यते ॥ ४-१-१९ ॥

## ଭୋଗେନ ତ୍ୱିତରେ କ୍ଷପୟିତ୍ୱା ସଂପଦ୍ୟନେ ॥୪-୧-୧୯॥

ଇତରେତୁ=ଆରବ୍ଧ ପାପପୁଣ୍ୟଗୁଡ଼ିକର କିନ୍ତୁ ଭୋଗେନ-ଭୋଗଦ୍ୱାରା, କ୍ଷପୟିତ୍ୱା=ବିନାଶ କରି, ସଂପଦ୍ୟତେ=ବ୍ରହ୍ମକୁ ପ୍ରାପ୍ତ ହୁଏ ।

ମୂଳ-(କ) ଅନାରବ୍ଧକାର୍ଯ୍ୟୟୋଃ ପାପପୁଣ୍ୟୟୋବିଦ୍ୟାସାମର୍ଥ୍ୟାତ୍ କ୍ଷୟ ଉକ୍ତଃ ଇତରେ ତ୍ୱାରବ୍ଧକାର୍ଯ୍ୟେ ପୁଣ୍ୟପାପେ ଉପଭୋଗେନ କ୍ଷପୟିତ୍ୱା ବ୍ରହ୍ମ ସଂପଦ୍ୟତେ, 'ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷେଽଥ ସଂପତ୍ସ୍ୟେ' (ଛା ୬-୧୪-୨) ଇତି, 'ବ୍ରହ୍ମୈବ ସନ ବ୍ରହ୍ମାପ୍ୟେତି' ଇତି ଚୈବମାଦିଶ୍ରୁତିଭ୍ୟଃ ।

(ଖ) ନନୁ ସତ୍ୟପି ସମ୍ୟଗଦର୍ଶନେ ଯଥା ପ୍ରାଗଦେହପାତାଦ୍ ଭେଦଦର୍ଶନଂ ଦ୍ୱିଚନ୍ଦ୍ରଦର୍ଶନନ୍ୟାୟେନାନୁବୃତ୍ତମେବଂ ଶଶ୍ୱାଦପ୍ୟନୁବର୍ତ୍ତେତ ନ, ନିଧତ୍ତାଭାବାତ୍ । ଉପଭୋଗ ଶେଷକ୍ଷପଣଂ ହି ତତ୍ରାନୁବୃତ୍ତିନିମିତ୍ତମ୍, ନ ଚ ତାଦୃଶମତ୍ର କିଞ୍ଚିଦସ୍ତି ।

(ଗ) ନନ୍ୱପରଃ କର୍ମାଶୟୋଽଭିନବମୁପଭୋଗମାରପ୍ସ୍ୟତେ, ନ, ତସ୍ୟ ଦଗ୍ଧବିଜତ୍ୱାତ୍ । ମିଥ୍ୟାଜ୍ଞାମାବଷ୍ଟମ୍ଭଂ ହି କର୍ମାନ୍ତରଂ ଦେହପାତ ଉପଭୋଗାନ୍ତରମାରଭତେ, ତଚ୍ଚ ମିଥ୍ୟାଜ୍ଞାନଂ ସମ୍ୟଗଜ୍ଞାନେନ ଦଗ୍ଧମିତ୍ୟତଃ ସାଧ୍ୱେତହାରବ୍ଧକାର୍ଯ୍ୟକ୍ଷୟେ ବିଦୁଷଃ କୈବଲ୍ୟମବଶ୍ୟଂ ଭବତୀତି ॥

ଭାଷା-(କ) ଅନାରବ୍ଧ କାର୍ଯ୍ୟ ଯୁକ୍ତ ସଂପନ୍ନ ପାପ ଓ ପୁଣ୍ୟର ବିଦ୍ୟାସାମର୍ଥ୍ୟରୁ କ୍ଷୟ ହୁଏ ବୋଲି କୁହାଯାଇଛି । ଅନ୍ୟ କିନ୍ତୁ ଆରବ୍ଧ କାର୍ଯ୍ୟଶୀଳ ପାପପୁଣ୍ୟର ଉପଭୋଗକୁ ବିନାଶ କରି ବ୍ରହ୍ମକୁ ପ୍ରାପ୍ତ ହୁଏ । କାରଣ 'ତସ୍ୟ ତାବଦେବ ଚିରମ୍' ଯେପର୍ଯ୍ୟନ୍ତ ସେ ଦେହବନ୍ଧନରୁ ମୁକ୍ତ ହୁଏ ନାହିଁ, ସେପର୍ଯ୍ୟନ୍ତ ତାହାପାଇଁ ମୋକ୍ଷ ହେବାରେ ବିଳମ୍ବ ହୁଏ । ତାହାର ପରେ ସେ ସତ୍‌ସଂପନ୍ନ ହୋଇ ବ୍ରହ୍ମକୁ ପ୍ରାପ୍ତ ହୁଏ), 'ବ୍ରହ୍ମୈବ ସନ୍ (ବ୍ରହ୍ମହୋଇ ବ୍ରହ୍ମକୁ ପ୍ରାପ୍ତ ହୁଏ ଇତ୍ୟାଦି ଶ୍ରୁତିବାକ୍ୟ ଅଛି ।

(ଖ) ପୂର୍ବପକ୍ଷ- ପରନ୍ତୁ ଯେପରି ସମ୍ୟରାଦର୍ଶନ ହେବାପରେ ଦେହପାତର ପୂର୍ବରୁ ଦ୍ୱିଚନ୍ଦ୍ରଦର୍ଶନନ୍ୟାୟ ଦ୍ୱାରା ଅନୁବୃତ୍ତ ହୁଏ, ସେହିପରି ଦେହପାତର ପରେ ଭେଦଦର୍ଶନ ଅନୁବୃତ୍ତ ହେବା ଉଚିତ କି ? ସିଦ୍ଧାନ୍ତ-ନୁହେଁ, କାରଣ ତାହାର କାରଣ ଅଭାବ ଅଟେ । ଉପଭୋଗ ଶେଷର କ୍ଷପଣ ମଧ୍ୟ ବ୍ରହ୍ମଜ୍ଞାନୀର ଭେଦଦର୍ଶନ ଅନୁବୃତ୍ତିର କାରଣ ହୁଏ । କିନ୍ତୁ ଦେହପାତ ହେବାପରେ ଏପରି କୌଣସି ନିମିତ୍ତ ନାହିଁ ।

(ଗ) ପରନ୍ତୁ ଅନ୍ୟ କର୍ମାଶୟ ନବୀନ ଉପଭୋଗର ଆରମ୍ଭ କରିବ ? ସିଦ୍ଧାନ୍ତ- ନୁହେଁ । କାରଣ-ତାହାର ବୀଜ ଦଗ୍ଧ ହୁଏ । ମିଥ୍ୟାଜ୍ଞାନର ଅବଲମ୍ବନ କରୁଥିବା କର୍ମାନ୍ତର ଦେହପାତ ହେବାପରେ ଅନ୍ୟର ଉପଭୋଗକୁ ଆରମ୍ଭ କରେ । ସେହି ମିଥ୍ୟାଜ୍ଞାନ ସମ୍ୟଗ୍‌ଜ୍ଞାନ ଦ୍ୱାରା ଦଗ୍ଧ ହୁଏ । ତେଣୁ ଅନ୍ୟ ଆରବ୍ଧକାର୍ଯ୍ୟର କ୍ଷୟ ହେବାପରେ ବିଦ୍ୱାନ୍‌କୁ ଅବଶ୍ୟ କୈବଲ୍ୟପ୍ରାପ୍ତି ହୁଏ ॥୧୯॥

ଇତି ଚତୁର୍ଥ ଅଧ୍ୟାୟ ପ୍ରଥମପାଦ ସମାପ୍ତ





# ଚତୁର୍ଥ ଅଧ୍ୟାୟ - ଦ୍ୱିତୀୟପାଦ

## चतुर्थ अध्याय द्वितीयपाद

### १ । वागधिकरणम् ॥ सू० १-२ ॥

### ୧ । ବାଗଧିକରଣମ୍ ॥ ସୂ ୧-୨॥

### वाङ्मनसि दर्शनाच्छब्दाच्च ॥ ४-२-१ ॥

### ବାଙ୍‌ମନସି ଦର୍ଶନାଚ୍ଛବ୍ଦାଚ୍ଚ ॥୪-୨-୧॥

ବାକ୍=ବାଣୀର ବୃତ୍ତି, ମନସି=ମନରେ ଲୀନ ହୁଏ । ଦର୍ଶନାତ୍ = କାରଣ-ମନର ବୃତ୍ତି ବିଦ୍ୟମାନ ହେଲେ ମଧ୍ୟବି ବାଗ୍ ବୃତ୍ତିର ଲୟ ଦେଖାଯାଏ । ଚ=ମଧ୍ୟ, ଶବ୍ଦାତ୍=ବୃତ୍ତି ଓ ବୃତ୍ତିମାନର୍ ଅଭେଦ ବିବକ୍ଷାଦ୍ୱାରା ଏଠାରେ ଉପଚାରରୁ ବାକ୍‌ଶବ୍ଦର ପ୍ରୟୋଗ କରାଯାଇଛି । ବାକ୍ ମନରେ ଲୟ ହୁଏ ॥

ମୂଳ-(କ) ଅଥାପରାସୁ ବିଦ୍ୟାସୁ ଫଳପ୍ରାପ୍ତୟେ ଦେବଯାନଂ ପନ୍ଥାନମବ ତାରୟିଷ୍ୟନ୍ ପ୍ରଥମଂ ତାବଦ୍ୟଥା ଶାସ୍ତ୍ରମୁତ୍‌କ୍ରାନ୍ତି କ୍ରମମନ୍ୱାଚଷ୍ଟେ । ସମାନା ହି ବିଦ୍ୱଦ ବିଦୁଷୋରୁତ୍ କ୍ରାନ୍ତିରିତି ବକ୍ଷ୍ୟତି । ଅସ୍ତି ପ୍ରାୟଣ ବିଷୟା ଶ୍ରୁତିଃ-'ଅସ୍ୟ ସୋମ୍ୟ ପୁରୁଷସ୍ୟ ପ୍ରୟତୋ ବାଙ୍‌ମନସି ସଂପ୍ରଦ୍ୟତେ ମନଃ ପ୍ରାଣେ ପ୍ରାଣସ୍ତେଜସି ତେଜଃ ପରସ୍ୟାଂ ଦେବତାୟାମ୍' (ଛା ୬-୮-୮) ଇତି ।

(ଖ) କିମିହ ବାଚ ଏବ ବୃତ୍ତିମତ୍ୟା ମନସି ସଂପତ୍ତିରୁଚ୍ୟତେ, ଉତ ବାଗ୍ ବୃତ୍ତେରିତି ବିଶୟଃ । ତତ୍ର ବାଗେବ ତାବନ୍ମନସି ସଂପଦ୍ୟତ ଇତି ପ୍ରାପ୍ତମ୍ । ତଥାହି-ଶ୍ରୁତିରନୁ ଗୃହୀତା ଭବତି । ଇତରଥା ଲକ୍ଷଣା ସ୍ୟାତ୍ । ଶ୍ରୁତିଲକ୍ଷଣା ବିଷୟେ ଚ ଶ୍ରୁତିର୍ନ୍ୟାଯ୍ୟା ନ ଲକ୍ଷଣା । ତସ୍ମାଦ୍‌ବାଚ ଏବାୟଂ ମନସି ପ୍ରଳୟ ଇତି ॥

ଭାଷା-(କ) ନିର୍ଗୁଣ ବିଦ୍ୟାର ଫଳ କହିବା ପରେ ସଗୁଣବିଦ୍ୟାରେ ଫଳପ୍ରାପ୍ତି ନିମିତ୍ତ ଦେବଯାନ ମାର୍ଗକୁ ଅବତରଣ କରି ସୂତ୍ରକାର ପ୍ରଥମେ ଶାସ୍ତ୍ରାନୁସାରେ ଉତ୍‌କ୍ରାନ୍ତିର କ୍ରମ କହିଛନ୍ତି । ଉପାସକ ଓ ଅନୁପାସକର ଉତ୍‌କ୍ରାନ୍ତି ସମାନ ବୋଲି ଆମ୍ଭ ଆଗରେ କହନ୍ତି । 'ଅସ୍ୟ ସୋମ୍ୟ' (ହେ ସୋମ୍ୟ ! ଏହି ମ୍ରିୟମାଣ ପୁରୁଷର ବାକ୍ ମନରେ ଲୀନ ହୁଏ । ସେହିପରି ମନ ପ୍ରାଣରେ, ପ୍ରାଣ ତେଜରେ ଓ ତେଜ ପରଦେବତାଠାରେ ଲୀନ ହୁଏ) ଏହି ପ୍ରାୟଣ ବିଷୟକ ଶ୍ରୁତି ଅଟେ ।

(ଖ) ଏଠାରେ ବୃତ୍ତିଯୁକ୍ତ ବାଣୀର କ'ଣ ମନରେ ସଂପତ୍ତି ଅଥବା ବାଣୀର ବୃତ୍ତିକୁ କୁହାଯାଇଛି । ଏହା ହିଁ ସଂଶୟ । ପୂର୍ବପକ୍ଷ-ସେଠାରେ ବାଣୀ ମନରେ ଲୀନ ହୁଏ ବୋଲି ପ୍ରାପ୍ତ ହୋଇଛି । କାରଣ-ଏହା ସ୍ୱୀକାର କରିବା ପରେ ଶ୍ରୁତି ଅନୁଗୃହୀତ ହୁଏ । ନୋଚେତ୍ ଲକ୍ଷଣା ହେବ । ଶ୍ରୁତି ଓ ଲକ୍ଷଣାରେ ସନ୍ଦେହ ହେବାପରେ ଶ୍ରୁତି ନ୍ୟାୟ ହୁଏ କିନ୍ତୁ ଲକ୍ଷଣ ନୁହେଁ । ତେଣୁ ବାଣୀର ମନରେ ପ୍ରଳୟ ହୁଏ ।

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ବାଗ୍‌ବୃତ୍ତିର୍ମନସି ସଂପଦ୍ୟତ ଇତି । କଥଂ ବାଗ୍ ବୃତ୍ତିରିତି ବ୍ୟାଖ୍ୟାୟତେ ? ଯାବତା ବାଙ୍‌ମାନସୀତ୍ୟେବାର୍ଯ୍ୟଃ ପଠତି । ସତ୍ୟମେତତ୍ । ପଠିଷ୍ୟତି ତୁ ପରସ୍ତାତ୍ 'ଅବିଭାଗୋ ବଚନାତ୍, (ବ୍ର. ସୂ. ୪-୨-୧୬) ଇତି । ତସ୍ମାଦନ୍ୟତ୍ର ବୃତ୍ତ୍ୟୁପଶମମାତ୍ରଂ ବିବକ୍ଷିତମିତି ଗମ୍ୟତେ ।

(ଖ) ତତ୍ତ୍ୱପ୍ରଳୟ ବିବକ୍ଷାୟାଂ ତୁ ସର୍ବତ୍ରୈବା ବିଭାଗ ସାମ୍ୟାତ୍ କିଂ ପରତ୍ରୈବ ବିଶିଷ୍ୟାଦ ବିଭାଗ ଇତି । ତସ୍ମାଦତ୍ର ବୃତ୍ତ୍ୟୁପସଂହାର ବିବକ୍ଷା । ବାଗ୍‌ବୃତ୍ତିଃ ପୂର୍ବମୁପସଂହ୍ରିୟତେ ମନୋବୃତ୍ତାବ ବସ୍ଥିତାୟାମିତ୍ୟର୍ଥଃ । କସ୍ମାତ୍ ? ଦର୍ଶନାତ୍ । ଦୃଶ୍ୟତେ ହି ବାଗ୍‌ବୃତ୍ତେଃ ପୂର୍ବୋପସଂହାରୋ ମନୋବୃତ୍ତୌ ବିଦ୍ୟମାନାୟାମ୍, ନ ତୁ ବାଚ ଏବ ବୃତ୍ତିମତ୍ୟା ମନସ୍ୟୁପସଂହାରଃ କେନଚିଦପିଦ୍ରଷ୍ଟୁଂ ଶକ୍ୟତେ ।

(ଗ) ନନୁ ଶ୍ରୁତି ସାମର୍ଥ୍ୟାଦ୍‌ବାଚ ଏବାୟଂ ମନସ୍ୟପ୍ୟୟୋ ଯୁକ୍ତ ଇତ୍ୟୁକ୍ତମ୍‌ନେତ୍ୟାହ, ଅତତ୍ ପ୍ରକୃତିତ୍ୱାତ୍ । ଯସ୍ୟହି ଯତ ଉତ୍ପତ୍ତିସ୍ତସ୍ୟ ତତ୍ର ପ୍ରଳୟୋ ନ୍ୟାୟୋ ମୃଦୀବ ଶରାବସ୍ୟ । ନ ଚ ମନସୋ ବାଗୁତ୍ପଦ୍ୟତ ଇତି କିଂଚନ ପ୍ରମାଣମସ୍ତି । ବୃତ୍ତ୍ୟୁଦ୍‌ଭବାଭିଭବୌ ତ୍ୱପ୍ରକୃତି ସମାଶ୍ରୟାବପି ଦୃଶ୍ୟେତ । ପାର୍ଥିବେଭ୍ୟୋହୀନ୍ଧନେଭ୍ୟ ସ୍ତୈଜସସ୍ୟାଗ୍ନେଃ ବୃତ୍ତିରୁଦ୍ ଭବତ୍ୟପ୍‌ସୁ ଚୋପଶାମ୍ୟତି ।

(ଘ) କଥଂ ତର୍ହ୍ୟସ୍ମିନ୍‌ପକ୍ଷେ ଶବ୍ଦୋ 'ବାଙ୍‌ମନସି ସଂପଦ୍ୟତେ' ଇତି ? ଅତ ଆହ-ଶବ୍ଦାଚ୍ଚେତି ଶବ୍ଦୋଽପ୍ୟସ୍ମିନ୍‌ପକ୍ଷେଽବକଳ୍ପତେ, ବୃତ୍ତିବୃତ୍ତିମତୋରଭେଦୋପଚାରାଦିତ୍ୟର୍ଥଃ ॥

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- ବାଣୀର ବୃତ୍ତି ମନରେ ଲୟ ହୁଏ । ପରନ୍ତୁ ଯେତେବେଳେ ଆଚାର୍ଯ୍ୟ 'ବାଙ୍‌ମନସି' ଅର୍ଥାତ୍ ବାଣୀ ମନରେ ବୋଲି ପଢ଼ନ୍ତି, ସେତେବେଳେ 'ବାଣୀର ବୃତ୍ତି' ବୋଲି ବ୍ୟାଖ୍ୟାନ କିପରି କରାଯାଏ ? ଏହା ଠିକ୍ ଅଟେ । ପରନ୍ତୁ 'ଅବିଭାଗୋ ବଚନାତ୍' ଏହି ପ୍ରକାର ପ୍ରଥମେ କହିବୁ । ତେଣୁ ଏଠାରେ ବୃତ୍ତି ଉପଶମ ମାତ୍ର ବିବକ୍ଷିତ ଅଟେ ବୋଲି ଜଣାଯାଏ ।

(ଖ) ପରନ୍ତୁ ତତ୍ତ୍ୱର ପ୍ରଳୟ ବିବକ୍ଷା ହେବାପରେ ସର୍ବତ୍ର ଅବିଭାଗ ସାମ୍ୟ ହେବାରୁ ପରତ୍ର କେବଳ ପ୍ରଥମେ 'ଅବିଭାଗ'- ଏହି ବିଶ୍ଳେଷଣ କାହିଁକି ଦେଇଛନ୍ତି ? ତେଣୁ ଏଠାରେ ବୃତ୍ତି ଉପସଂହାରର ବିବକ୍ଷା ଅଟେ । ମନର ବୃତ୍ତି ଅବସ୍ଥିତ ହେବା ପୂର୍ବରୁ

ବାଗ୍‌ବୃତ୍ତିର ଉପସଂହାର ହୁଏ-ଏହାହିଁ ଅର୍ଥ । କିପରି ? କାରଣ-ସେହିପରି ଦେଖାଯାଏ । ମନୋବୃତ୍ତିର ବିଦ୍ୟମାନ ହେବାରୁ ପୂର୍ବ ବାଗ୍‌ବୃତ୍ତିର ଉପସଂହାର ଦେଖାଯାଏ । କିନ୍ତୁ ବୃତ୍ତିଯୁକ୍ତ ବାଣୀର ଉପସଂହାର କାହିଁକି ଦେଖାଯାଏ ନାହିଁ ?

(ଗ) କିନ୍ତୁ ଶ୍ରୁତିର ସାମର୍ଥ୍ୟରୁ ବାଣୀର ପ୍ରଳୟ ମନ ସହ ରହିଛି ବୋଲି ଯାହା କୁହାଯାଇଛି ତାହା କିନ୍ତୁ ଠିକ୍ ନୁହେଁ । କାରଣ-ଅତତ୍ ପ୍ରକୃତି ଅଟେ । ତାହା ବାଣୀର ପ୍ରକୃତି ନୁହେଁ । ଯାହା ଯାହାଦ୍ୱାରା ଉତ୍ପନ୍ନ ହୁଏ, ତାହାର ପ୍ରଳୟ ସେଠାରେ ହିଁ ହୁଏ । ଯଥା-ଶରା ଘଟ ପ୍ରଭୃତିର ମୃତ୍ତିକାରେ । ବାଣୀ ମନରେ ଉତ୍ପନ୍ନ ହୁଏ, ବୋଲି କୌଣସି ପ୍ରମାଣ ନାହିଁ । ବୃତ୍ତିର ଉଦ୍‌ଭବ ଓ ଅଭିଭବକିନ୍ତୁ ଅପ୍ରକୃତି ଅନୁପାଦନ ଆଶ୍ରୟ ରୂପେ ଦେଖାଯା'ନ୍ତି । ଯେପରି ପାର୍ଥିବ ଇନ୍ଧନଦ୍ୱାରା ତୈଜସ ଅଗ୍ନିର ବୃତ୍ତି ଉତ୍ପନ୍ନ ହୁଏ ଏବଂ ଜଳରେ ଉପଶାନ୍ତ ହୁଏ ।

(ଘ) ତା'ହେଲେ ଏହି ପକ୍ଷରେ 'ବାଙ୍ ମନସି ସଂପଦ୍ୟତେ' ଏହି ଶ୍ରୁତି କିପରି ସଙ୍ଗତ ହୁଏ ? ଏହି ବିଷୟରେ କୁହାଯାଇଛି- 'ଶବ୍ଦାଚ୍ଚ' ଅର୍ଥାତ୍ ଶବ୍ଦଶ୍ରୁତି ମଧ୍ୟ ଏହି ପକ୍ଷରେ ସମ୍ଭବ ହୁଏ ॥୧॥

## अतएव च सर्वाण्यनु ॥ ४-२-२ ॥
## ଅତଏବ ଚ ସର୍ବାଣ୍ୟନୁ ॥୪-୨-୨-॥

ଅତଏବ=ଉକ୍ତଦର୍ଶନାଦି କାରଣ ମଧ୍ୟରୁ ବାଣୀପରି ସର୍ବାଣ୍ୟନୁ=ସମସ୍ତ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟର ବୃତ୍ତି, ଚ=ମଧ୍ୟ ବୃତ୍ତିବିଶିଷ୍ଟ ମନରେ ଲୟ ହୁଏ ॥

ମୂଳ-(କ) 'ତସ୍ମାଦୁପଶାନ୍ତ ତେଜାଃ । ପୁନର୍ଭବମିନ୍ଦ୍ରିୟୈଃ ମନମି ସଂପଦ୍ୟମାନୈଃ (ପ୍ରଶ୍ନ ୩-୯) ଇତ୍ୟତ୍ରା ବିଶେଷେଣ ସର୍ବେଷା-ମେବେନ୍ଦ୍ରିୟାଣାଂ ମନସି ସଂପତ୍ତିଃ ଶ୍ରୂୟତେ । ତତ୍ରାପ୍ୟତ ଏବ ବାଚ ଇବ ଚକ୍ଷୁରାଦୀନାମପି ସବୃତ୍ତିକେ ମନସ୍ୟବସ୍ଥିତେ ବୃତ୍ତଲୋପଦର୍ଶନାତ୍ ତତ୍ତ୍ୱପ୍ରଳୟା ସମ୍ଭବାଚ୍ଛବ୍ଦୋପପତ୍ତେଶ୍ଚ ବୃତ୍ତିଦ୍ୱାରେଣୈବ ସର୍ବାଣୀନ୍ଦ୍ରିୟାଣି ମନୋଽନୁ ବର୍ତ୍ତନ୍ତେ । ସର୍ବେଷାଂ କରଣାନାଂ ମନସ୍ୟୁପସଂହାରାବିଶେଷେ ସତି ବାଚଃ ପୃଥଗ୍ ଗ୍ରହଣଂ ବାଙ୍‌ମନସି ସଂପଦ୍ୟତ ଇତ୍ୟୁଦାହରଣାନୁରୋଧେନ ॥

ଭାଷା-(କ) 'ତସ୍ମାଦୁପଶାନ୍ତ ତେଜାଃ' (ଅତଃ ଯେଉଁ ଶରୀରର ଉଷ୍ମ ଶାନ୍ତ ହୁଏ, ତାହା ମନରେ ଲୀନ ହୋଇ ଇନ୍ଦ୍ରିୟ ସହିତ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି) ଏଠାରେ ସମସ୍ତ ଇନ୍ଦ୍ରିୟର ସମାନ ରୂପରେ ଲୟ ହେବା ଶୁଣାଯାଏ । ସେଠାରେ ମଧ୍ୟ ବାଣୀ ପରି ଚକ୍ଷୁ ଆଦିର ମଧ୍ୟ ସବୃତ୍ତିକ ମନର ଅବସ୍ଥିତ ହେବା ପରେ ବୃତ୍ତିଲୟର ଦର୍ଶନ ହୁଏ । ତେଣୁ ସ୍ୱରୂପ ପ୍ରଳୟର ଅସମ୍ଭବ ହେବାରୁ ଏବଂ ଶବ୍ଦୋପପତ୍ତି ହେବାରୁ ସମସ୍ତ ଇନ୍ଦ୍ରିୟ ବୃତ୍ତିଦ୍ୱାରା

ମନକୁ ଅନୁବର୍ତ୍ତନ କରେ । ସମସ୍ତ ଇନ୍ଦ୍ରିୟର ସମାନ ରୂପରେ ମନରେ ଉପସଂହାର ହେବାପରେ । 'ବାଙ୍ମନସି ସଂପଦ୍ୟତେ' ଏହି ପ୍ରକାର ବାଣୀର ପୃଥକ୍ ଗ୍ରହଣ ଉଦାହରଣର ଅନୁରୋଧରୁ ହୁଏ ॥୨॥

**२ । मनोऽधिकरणम् ॥ सू०-३ ॥**

**୩। ମନୋଽଧିକରଣମ୍ ॥ ସୂ ୩ ॥**

**तन्मनः प्राण उत्तरात् ॥ ४-२-३ ॥**

**ତନ୍ମନଃ ପ୍ରାଣ ଉତ୍ତରାତ୍ ॥୪-୨-୩॥**

ତତ୍=ସଂପୂର୍ଣ୍ଣ ଇନ୍ଦ୍ରିୟଗୁଡ଼ିକର ବୃତ୍ତି-ଲୟର ଆଧାରଭୂତ ମନଃ=ଏହି ମନ ମଧ୍ୟ, ପ୍ରାଣେ=ବୃତ୍ତି ଦ୍ୱାରା ପ୍ରାଣରେ ଲୀନ ହୁଏ । ଉତ୍ତରାତ୍=କାରଣ- 'ମନଃ ପ୍ରାଣେ' ଏହା ଉତ୍ତରାବାକ୍ୟଦ୍ୱାରା ଅବଗତ ହୁଏ ।

ମୂଳ-(କ) ସମଧିଗତମେତତ୍-'ବାଙ୍ ମନସି ସଂପଦ୍ୟତେ' (ଛା ୬-୮-୬) ଇତ୍ୟତ୍ର ବୃତ୍ତିସଂପତ୍ତି ବିବକ୍ଷେତି । ଅଥ ଯଦୁତ୍ତରବାକ୍ୟମ୍-ମନଃ ପ୍ରାଣେ' (ଛା ୬-୮-୬) ଇତି, କିମତ୍ରାପି ବୃତ୍ତିସଂପତ୍ତିରେବ ବିବକ୍ଷ୍ୟତ ଉତ ବୃତ୍ତିମତ ସଂପତ୍ତିରିତି ବିଚିକିତ୍ସାୟାଂ ବୃତ୍ତିମତ୍ସଂପତ୍ତିରେବାକ୍ତେତି ପ୍ରାପ୍ତମ୍, ଶ୍ରୁତ୍ୟନୁଗ୍ରହାତ୍ତତ୍ପ୍ରକୃତିକତ୍ୱୋପପତ୍ତେଶ୍ଚ ।

(ଖ) ତଥାହି-ଅନ୍ନମୟଂ ହି ସୋମ୍ୟ ମନ ଆପୋମୟଃ ପ୍ରାଣଃ' (ଛା ୬-୫-୪) ଇତ୍ୟନ୍ନଯୋନି ମନ ଆମନନ୍ତ୍ୟବ୍‌ଯୋନିଂ ଚ ପ୍ରାଣମ୍ ।' ଆପଶ୍ଚାନ୍ନମସୃଜନ୍ତ' ଇତି ଶ୍ରୁତିଃ । ଅତଶ୍ଚ ଯନ୍ମନଃ ପ୍ରାଣେ ପ୍ରଲୀୟତେଽନ୍ନମେବ ତଦପ୍ସୁ ପ୍ରଲୀୟତେଽନଂ ଆପଶ୍ଚ, ପ୍ରାଣଃ ପ୍ରକୃତିବିକାରାଭେଦାଦିତି ॥

ଭାଷା-(କ) ବାଙ୍ମନସି ସଂପଦ୍ୟତେ' ଏହି ଶ୍ରୁତିରେ ବୃତ୍ତିଲୟର ବିବକ୍ଷା ହୁଏ ବୋଲି ସ୍ଥିର କରାଯାଇଛି । ବର୍ତ୍ତମାନ ଯେଉଁ ପରବାକ୍ୟ 'ମନଃ ପ୍ରାଣେ' ଅର୍ଥାତ୍ ମନ ପ୍ରାଣରେ ଲୟ ହୁଏ, ଅଛି, ତାହା କ'ଣ ଏଠାରେ ବୃତ୍ତିଲୟର ବିବକ୍ଷିତେ ଅଥବା ବୃତ୍ତିବାନ୍‌ର ଲୟ ବିବକ୍ଷିତ ହୁଏ । ଏହି ପ୍ରକାର ସଂଶୟହେବାରୁ ପୂର୍ବପକ୍ଷ ଏଠାରେ ବୃତ୍ତିମାନ୍ ମନର ଲୟ ହୁଏ ବୋଲି କହନ୍ତି । କାରଣ-ଶ୍ରୁତିର ଅନୁଗ୍ରହରୁ ପ୍ରାଣ ମନର ପ୍ରକୃତି ଉପପନ୍ନ ହୁଏ ।

(ଖ) ଯେପରି 'ଅନ୍ନମୟଂ ହି ସୋମ୍ୟ' (ହେ ସୋମ୍ୟ ! ମନ ଅନ୍ନମୟ ହୁଏ ଏବଂ ପ୍ରାଣ ଜଳମୟ ହୁଏ) ଏହିପ୍ରକାର ଅନ୍ନକାରଣକ ମନ ଓ ଜଳକାରଣକ ପ୍ରାଣ ବୋଲି ଶ୍ରୁତି କହେ । 'ଆପାଶ୍ଚାନ୍ନମ୍' (ଜଳରୁ ଅନ୍ନ ଉତ୍ପନ୍ନ ହୋଇଛି) ଏହି ଶ୍ରୁତି ଅଟେ । ତେଣୁ ମନର ବିଲୟ ଯେଉଁ ପ୍ରାଣରେ ହୁଏ । ସେ ଅନ୍ନର ଜଳରେ ଲୟ ହୁଏ । ମନହିଁ ଅନ୍ନ ଅଟେ । ଏବଂ ପ୍ରାଣ ମଧ୍ୟ ଜଳ ଅଟେ କାରଣ - ପ୍ରକୃତି ଓ ବିକାରର ଅଭେଦ ଅଛି ।



ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ-ତଦପ୍ୟାଗୃହୀତବାହ୍ୟେନ୍ଦ୍ରିୟବୃତ୍ତି ମନୋ ବୃତ୍ତିଦ୍ୱାରେଣୈବ ପ୍ରାଣେ ପ୍ରଲୀୟତେ ଇତ୍ୟୁତ୍ତରାଦ୍‌ବାକ୍ୟାଦବଗନ୍ତବ୍ୟମ୍ । ତଥାହିସୁଷୁପ୍ସୋଃ ମୁମୂର୍ଷୋଶ୍ଚ ପ୍ରାଣବୃତ୍ତୌ । ପରିସ୍ପନାତ୍ମିକାୟାମବସ୍ଥିତାୟାଂ ମନୋବୃତ୍ତୀନାମୁପଶମୋ ଦୃଶ୍ୟତେ । ନଚ ମନସଃ ସ୍ୱରୂପାପ୍ୟୟଃ ପ୍ରାଣେ ସମ୍ଭବତି, ଅତତ୍ ପ୍ରକୃତିତ୍ୱାତ୍ ।

(ଖ) ନନୁ ଦର୍ଶିତଂ ମନସଃ ପ୍ରାଣପ୍ରକୃତିତ୍ୱମ୍-ନୈତତ୍ସାରମ୍-ନ ହ୍ୟେନ ପ୍ରାଣାଡ଼ିକେନ ତତ୍ପ୍ରକୃତିତ୍ୱେନ ମନଃ ପ୍ରାଣେ ସଂପତ୍ତୁମର୍ହତି । ଏବମପି ହ୍ୟନ୍ନେ ମନଃ ସଂପଦ୍ୟେତାପ୍ସୁ ଚାନ୍ନମପ୍ସ୍ୱେବ ଚ ପ୍ରାଣଃ । ନ ହ୍ୟେତସ୍ମିନ୍ନପି ପକ୍ଷେ ପ୍ରାଣଭାବ ପରିଣତାଭ୍ୟୋଽଦ୍‌ଭ୍ୟୋ ମନୋଜାୟତ ଇତି କିଂଚନ ପ୍ରମାଣମସ୍ତି, ତସ୍ମାନ୍ନ ମନସଃ ପ୍ରାଣେ ସ୍ୱରୂପାପ୍ୟୟଃ । ବୃତ୍ୟ୍ୟପ୍ୟୟେଽପି ତୁ ଶବ୍ଦୋଽକଳ୍ପତେ ବୃତ୍ତିବୃତ୍ତିମତୋରଭେଦୋପଚାରାଦିତି ଦର୍ଶିତମ୍ ।

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- କିନ୍ତୁ ବାହ୍ୟ ଇନ୍ଦ୍ରିୟଗୁଡ଼ିକର ବୃତ୍ତିକୁ ଗ୍ରହଣ କରୁଥିବା ମନ ବୃତ୍ତିଦ୍ୱାରା ପ୍ରାଣରେ ଲୟ ହୁଏ । ଏହାର ପରବାକ୍ୟରୁ ଜାଣିବା ଉଚିତ । କାରଣ-ମୁକ୍ଷୁପ୍ସୂ ଓ ମୁମୂର୍ଷୁପୁରୁଷ ଚଳନାତ୍ମକ ପ୍ରାଣବୃତ୍ତିର ଅବସ୍ଥିତ ହେଲେ ମନର ବୃତ୍ତିଗୁଡ଼ିକ ଉପଶମ ହେବାର ଦେଖାଯାଏ । ତେଣୁ ମନରେ ପ୍ରାଣରେ ସ୍ୱରୂପ ହୁଏ ନାହିଁ । କାରଣ-ଅତତ୍ପ୍ରକୃତି ଅଟେ । -ପ୍ରାଣ ମନର ପ୍ରକୃତି ନୁହେଁ ।

(ଖ) ପରନ୍ତୁ ପ୍ରାଣ ମନର ପ୍ରକୃତି ଅଟେ କି ବୋଲି ଯାହା କୁହାଯାଇଛି ସେଠାରେ କୌଣସି ଯଥାର୍ଥ୍ୟ ନାହିଁ । କାରଣ-ଏହି ପ୍ରକାରର ପରଂପରାପ୍ରଣାଳୀ ଦ୍ୱାରା ପ୍ରାଣ ମନର ପ୍ରକୃତି ହେବାରୁ ମନ ପ୍ରାଣରେ ଲୟ ହେବା ବିଧେୟ । ପରନ୍ତୁ ଏହି ପରମ୍ପରା ପ୍ରଣାଳୀ ହେଲେ ମଧ ମନ ଅନ୍ନରେ ଲୟ ହେଉ ଏବଂ ଅନ୍ନ ଜଳରେ, ତଥା ପ୍ରାଣ ଜଳରେ ଲୟ ହେଉ । ଏହିପକ୍ଷରେ ପ୍ରାଣରୂପରେ ପରିଣତ ଜଳରୁ ମନ ଉତ୍ପନ୍ନ ହୁଏ ବୋଲି ସେଠାରେ କୌଣସି ପ୍ରମାଣ ନାହିଁ । ତେଣୁ ମନର ପ୍ରାଣରେ ସ୍ୱରୂପ ଲୟ ହୁଏ ନାହିଁ । ବୃତ୍ତିର ଲୟ ହେବାପରେ ମଧ ମନଃ ପ୍ରାଣେ-ଏହି ଶ୍ରୁତି ଉପପନ୍ନ ହୁଏ, କାରଣ-ବୃତ୍ତି ଓ ବୃତ୍ତିମାନର ଅଭେଦୋପଚାର ହୁଏ-ଏହା ପ୍ରମାଣିତ ହୋଇଛି ॥୩॥

## ३ । अध्यक्षाधिकरणम् ॥ सू० ४-६ ॥

## ୩। ଅଧ୍ୟକ୍ଷାଧିକରଣମ୍ ॥ ସୂ-୪-୬ ॥

**सोऽध्यक्षे तदुपगमादिभ्यः ॥ ४-२-४ ॥**

**ସୋଽଧ୍ୟକ୍ଷେ ତଦୁପଗମାଦିଭ୍ୟଃ ॥୪-୨-୪॥**

ସଃ=ସେହି ପ୍ରାଣ ବୃତ୍ତିରହିତ ହୋଇ, ଅଧ୍ୟକ୍ଷେ-ଜୀବାତ୍ମାରେ ଅବସ୍ଥିତ ରହେ । ତଦୁପଗମାଦିଭ୍ୟଃ=କାରଣ-ଜୀବରେ ପ୍ରାଣର ଉପଶମ, ଅନୁଗମ୍ ଓ ଅବସ୍ଥାନ ଶ୍ରୁତି ହୁଏ ॥

ମୂଳ-(କ) ସ୍ଥିତମେତତ୍-ଯସ୍ୟ ଯତୋନୋପ୍ୟତ୍ତିସ୍ତସ୍ୟ ତସ୍ମିନ୍ ବୃତ୍ତିପ୍ରଳୟୋ ନ ସ୍ୱରୂପପ୍ରଳୟ ଇତି । ଇଦମିଦାନୀଂ ପ୍ରାଣସ୍ତେଜସୀତ୍ୟତ୍ର ଚିନ୍ତ୍ୟତେ-କିଂ ଯଥାଶ୍ରୁତି ପ୍ରାଣସ୍ୟ ତେଜସ୍ୟେବ ବୃତ୍ତ୍ୟୁପସଂହାରଃ କିଂ ବା ଦେହେନ୍ଦ୍ରିୟପଞ୍ଜରାଧ୍ୟକ୍ଷେ ଜୀବେ ଇତି । ତତ୍ର ଶ୍ରୁତେରନତିଶଙ୍କ୍ୟତ୍ୱାତ୍ ପ୍ରାଣସ୍ୟ ତେଜସ୍ୟେବ ସଂପତ୍ତିଃ ସ୍ୟାତ୍ । ଅଶ୍ରୁତକଳ୍ପନାୟା ଅନାଯ୍ୟତ୍ୱାଦିତି ।

(ଖ) ଏବଂ ପ୍ରାପ୍ତେ ପ୍ରତିପଦ୍ୟତେ-ସୋଽଧ୍ୟକ୍ଷ ଇତି । ସ ପ୍ରକୃତଃ ପ୍ରାଣୋଽଧ୍ୟକ୍ଷେଽବିଦ୍ୟାକର୍ମପୂର୍ବପ୍ରଜ୍ଞୋପାଧିକେ ବିଜ୍ଞାନାତ୍ମନ୍ୟବତିଷ୍ଠତେ । ତତ୍ପ୍ରଧାନା ପ୍ରାଣବୃତ୍ତିର୍ଭବତୀତ୍ୟର୍ଥଃ । କୁତଃ ? ତଦୁପଗମାଦିଭ୍ୟଃ । 'ଏବମେବେଂମମାତ୍ମାନମନ୍ତକାଲେ ସର୍ବେ ପ୍ରାଣା ଅଭିସମାୟନ୍ତି ଯତ୍ରୈତଦୂର୍ଦ୍ଧୋଚ୍ଛ୍ୱାସୀ ଭବତି' ଇତି ହି ଶ୍ରୁତ୍ୟନ୍ତରମଧ୍ୟକ୍ଷୋପଗାମିନଃ ସର୍ବାନ୍ପ୍ରାଣାନବିଶେଷେଣ ଚ 'ତମୁତ୍କ୍ରାମନ୍ତଂ ପ୍ରାଣୋଽନୂତ୍କ୍ରାମତି' (ବୃହ ୪-୪-୨) ଇତି ପଞ୍ଚବୃତ୍ତେଃ 'ପ୍ରାଣସ୍ୟାଧ୍ୟକ୍ଷାନୁଗାମିତାଂ ଦର୍ଶୟତି' ତଦନୁବୃତ୍ତିତାଂ ଚେତରେଷାମ୍ 'ପ୍ରାଣମନୂତ୍କ୍ରାମନ୍ତଂ ସର୍ବେ ପ୍ରାଣା ଅନୂତ୍କ୍ରାମନ୍ତି' (ବୃହ ୪-୪-୨) ଇତି ।

(ଖ) 'ସବିଜ୍ଞାନୋ ଭବତି' ଇତି ଚାଧ୍ୟକ୍ଷସ୍ୟାନ୍ତର୍ବିଜ୍ଞାନବତ୍ତ୍ୱପ୍ରଦର୍ଶନେନ ତସ୍ମିନ୍ନପୀତକରଣଗ୍ରାମସ୍ୟ ପ୍ରାଣସ୍ୟାବସ୍ଥାନଂ ଗମୟତି । ନନୁ 'ପ୍ରାଣସ୍ତେଜସି' ଇତି ଶ୍ରୂୟତେ, କଥଂ ପ୍ରାଣୋଽଧ୍ୟକ୍ଷେ ଇତ୍ୟଧିକାବପ କ୍ରିୟତେ ? ନୈଷ ଦୋଷଃ ଅଧ୍ୟକ୍ଷପ୍ରଧାନତ୍ୱାଦୁତ୍କ୍ରମଣାଦିବ୍ୟବହାରସ୍ୟ, ଶ୍ରୁତ୍ୟନ୍ତରଗତସ୍ୟାପି ଚ ବିଶେଷସ୍ୟାପେକ୍ଷଣୀୟତ୍ୱାତ୍ ॥

ଭାଷା-(କ) ଯାହାଠାରୁ ଯେଉଁବସ୍ତୁ ଉତ୍ପନ୍ନ ହୁଏ ନାହିଁ, ତାହା ସେହି କାରଣରେ ବୃତ୍ତିଲୟ ହୁଏ; କିନ୍ତୁ ସ୍ୱରୂପ ନୁହେଁ ବୋଲି ସିଦ୍ଧ ହୋଇଛି । ବର୍ତ୍ତମାନ ପ୍ରାଣସ୍ତେଜସି' (ପ୍ରାଣ ତେଜରେ ଲୀନ ହୁଏ) ଏହି ଶ୍ରୁତି ବାକ୍ୟରେ ବିଚାର କରାଯାଇଛି ଯେ- ଶ୍ରୁତି ଅନୁସାରେ କ'ଣ ପ୍ରାଣର ତେଜରେ ବୃତ୍ତିଲୟ ହୁଏ କି ଦେହ, ଇନ୍ଦ୍ରିୟରୂପ ପଞ୍ଜରର ଅଧ୍ୟକ୍ଷଜୀବଠାରେ ବୃତ୍ତିଲୟ ହୁଏ ? ପୂର୍ବପକ୍ଷ-ସେଠାରେ ଶ୍ରୁତିର ବିଷୟରେ ଅତିଶଙ୍କା ନ ହେବାରୁ ପ୍ରାଣରେ ତେଜରେ ଲୟ ହେବା ଉଚିତ । କାରଣ ଅଶ୍ରୁତର କଳ୍ପନା ଅନ୍ୟାୟ ଅଟେ ।

ସିଦ୍ଧାନ୍ତ-(ଖ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁ ଯେ- 'ସୋଽଧ୍ୟକ୍ଷେ' ଏହି ପ୍ରକୃତି ପ୍ରାଣ ଅବିଦ୍ୟା, କର୍ମ ଓ ପୂର୍ବପ୍ରଜ୍ଞାରୂପ ଉପାଧିବାନ୍ ବିଜ୍ଞାନ୍‌ସ୍ୱରୂପ ଅଧ୍ୟକ୍ଷରେ ଅବସ୍ଥିତ ହୁଏ । ସେହି ଅଧ୍ୟକ୍ଷ ପ୍ରଧାନ ପ୍ରାଣବୃତ୍ତି ହୁଏ- ଏହାହିଁ ଅର୍ଥ ଅଟେ । କିପରି ? ତାହାଦ୍ୱାରା



ପ୍ରାଣର ଉପଗମାଦି ହୁଏ । 'ଏବମେବେମମ୍' (ସେହିପରି ଅନ୍ତଃକାଳରେ ଯେତେବେଳେ ସେ ଉର୍ଦ୍ଧ୍ୱୋଚ୍ଛ୍ୱାସୀ ହୁଏ, ସେତେବେଳେ ସବୁ ବାକ୍‌ପ୍ରଭୃତି ପ୍ରାଣ ଏହି ଆତ୍ମାର ଅଭିମୁଖ ହୁଅନ୍ତି) ଏହି ଦ୍ୱିତୀୟଶ୍ରୁତି ଅବିଶେଷରେ ସବୁପ୍ରାଣକୁ ଅଧ୍ୟକ୍ଷୋପଗାମୀ ଦେଖାନ୍ତି । 'ତମୁତକ୍ରାନ୍ତଂ ଚ' (ତାହାକୁ ଉତ୍‌କ୍ରମଣ କଲାପରେ ତାହାର ପଛରେ ପ୍ରାଣ ଉତକ୍ରମଣ କରେ) ଏହି ଅନ୍ୟପ୍ରାଣରେ ସେହି ପ୍ରାଣର ଅନୁବୃତ୍ତିତା ଦେଖାଯାଏ ।

(ଗ) 'ସବିଜ୍ଞାନୋ' (ସେତେବେଳେ ଏହି ବିଜ୍ଞାନବାନ୍ ହୁଏ) ଏହିପରି ଅଧ୍ୟକ୍ଷରେ ଅନ୍ତର୍ବିଜ୍ଞାନବତ୍ୱ ପ୍ରଦର୍ଶନରେ ସେଠାରେ ବିଲୟ କରଣ ସମୁଦାୟବାନ୍ ପ୍ରାଣର ଅବସ୍ଥାନ ବୋଧ କରେ । କିନ୍ତୁ 'ପ୍ରାଣସ୍ତେଜସି' ଏହି ଶ୍ରୁତି ସେତେବେଳେ ପ୍ରାଣ ଅଧ୍ୟକ୍ଷରେ ଲୀନ ହୁଏ-ଏହି ଅଧିକଗ୍ରହଣ କାହିଁକି କରାଯାଇଛି ? ଏହା କିନ୍ତୁ ଦୋଷ ନୁହେଁ । କାରଣ- ଉତ୍‌କ୍ରମଣାଦି ବ୍ୟବହାର ଅଧ୍ୟକ୍ଷ ପ୍ରଧାନ ଅଟେ ଏବଂ ଅନ୍ୟ ଶ୍ରୁତିଗତ ବିଶେଷକୁ ଅପେକ୍ଷା କରିବା ଉଚିତ ॥୪॥

ମୂଳ-(କ) କଥଂ ତର୍ହି 'ପ୍ରାଣସ୍ତେଜସି' ଇତି ଶ୍ରୁତିରିତ୍ୟତ ଆହ-

ଭାଷା (କ) କାହିଁକି ପ୍ରାଣସ୍ତେଜସି' ଏହି ଶ୍ରୁତି କୁହାଯାଇଛି ?

## भूतेषु तच्छ्रुतेः ॥ ४-२-५ ॥

## ଭୂତେଷୁ ତଚ୍ଛ୍ରୁତେଃ ॥୪-୨-୫॥

ଭୂତେଷୁ=ପ୍ରାଣସଂଯୁକ୍ତ ଏହି ଅଧ୍ୟକ୍ଷ ତେଜର ସହଚାରୀ ଦେହର ବୀଜଭୂତ ସୂକ୍ଷ୍ମ ଭୂତଗୁଡ଼ିକରେ ଅବସ୍ଥିତ ହୁଏ । ତଚ୍ଛ୍ରୁତେଃ=କାରଣ-'ପ୍ରାଣସ୍ତେଜସି' ଶ୍ରୁତିବାକ୍ୟ ରହିଛି ।

ମୂଳ-(କ) ସ ପ୍ରାଣସଂପୃକ୍ତୋଽଧ୍ୟକ୍ଷସ୍ତେଜଃସହଚରିତେଷୁ ଭୂତେଷୁ ଦେହବୀଜ-ଭୂତେଷୁ ସୂକ୍ଷ୍ମେଷ୍ୱବତିଷ୍ଠତ ଇତ୍ୟବଗନ୍ତବ୍ୟମ୍ । 'ପ୍ରାଣସ୍ତେଜସି' ଇତି ଶ୍ରୁତେଃ । ନନୁ ଚୈୟଂ ଶ୍ରୁତିଃ ପ୍ରାଣସ୍ୟ ତେଜସି ସ୍ଥିତିଂ ଦର୍ଶୟତି, ନ ପ୍ରାଣସଂପୃକ୍ତସ୍ୟାଧ୍ୟକ୍ଷସ୍ୟ- ନୈଷ ଦୋଷଃ । ସୋଽଧ୍ୟାକ୍ଷେ ଇତ୍ୟଧ୍ୟକ୍ଷସ୍ୟାପ୍ୟନ୍ତରାଳ ଉପସଂଖ୍ୟାତତ୍ୱାତ୍ ।

(ଖ) ଯୋଽପି ହି ସ୍ରୁଘ୍ନାନ୍ ମଥୁରାଂ ଗତ୍ୱା ମଥୁରାୟାଃ ପାଟଳିପୁତ୍ରଂ ବ୍ରଜତି, ସୋଽପି ସ୍ରୁଘ୍ନାତ୍‌ପାଟଳିପୁତ୍ରଂ ଯାତୀତି ଶକ୍ୟତେ ବଦିତୁମ୍ । ତସ୍ମାତ୍ 'ପ୍ରାଣସ୍ତେଜସୀ' ତି ପ୍ରାଣସଂପୃକ୍ତ-ସ୍ୟାଧ୍ୟକ୍ଷସ୍ୟୈବୈତତ୍ତେଜଃସହଚରିତେଷୁ ଭୂତେଷ୍ୱବସ୍ଥାନମ୍ ।

ଭାଷା-(କ) ପ୍ରାଣସଂପୃକ୍ତ ସେହି ଜୀବାତ୍ମା ତେଜସହଚରିତ ଦେହର ବୀଜଭୂତ ସୂକ୍ଷ୍ମଭୂତରେ ଅବସ୍ଥିତ ହୁଏ- ଏହାହିଁ ଜଣାପଡ଼େ । କାରଣ- 'ପ୍ରାଣସ୍ତେଜସି' (ପ୍ରାଣ ତେଜରେ ଲୀନ ହୁଏ) ଏହି ଶ୍ରୁତି ରହିଛି । ପରନ୍ତୁ ଏହି ଶ୍ରୁତି ପ୍ରାଣର ତେଜରେ ସ୍ଥିତି ପ୍ରଦର୍ଶନ କରାଏ । କିନ୍ତୁ ପ୍ରାଣସମ୍ବନ୍ଧ ଜୀବାତ୍ମାର ନୁହେଁ କି ? ଏହା ଦୋଷ ନୁହେଁ । କାରଣ- 'ସୋଽଧ୍ୟକ୍ଷେ' ଏହିପ୍ରକାର ଅଧ୍ୟକ୍ଷର ମଧ୍ୟ ମଝିରେ କଥନ ହୁଏ ।

(ଖ) ଯେଉଁବ୍ୟକ୍ତି ସୁଘ୍ନରୁ ମଥୁରା ଯାଇ ପୁନଶ୍ଚ ମଥୁରାରୁ ପାଟଳୀପୁତ୍ର ଯାଏ, ସେ ମଧ୍ୟ ସୁଘ୍ନରୁ ପାଟଳୀପୁତ୍ର ଯାଏ ବୋଲି କୁହାଯାଏ । ତେଣୁ, 'ପ୍ରାଣସ୍ତେଜସି' ଏହାଦ୍ୱାରା ପ୍ରାଣସମ୍ବନ୍ଧଜୀବର ତେଜସହଚରିତ ଭୂତଗୁଡ଼ିକରେ ଅବସ୍ଥାନ ହୁଏ ॥୫॥

ମୂଳ-(କ) କଥଂ ତେଜଃସହ ଚରିତେଷୁ ଭୂତେଷ୍ୱିତ୍ୟୁଚ୍ୟତେ ? ଯାବତୈକମେବ ତେଜଃ ଶ୍ରୂୟତେ 'ପ୍ରାଣସ୍ତେଜସୀ'ତି । ଅତ ଆହ-

ଭାଷା-(କ) ପରନ୍ତୁ ତେଜସହଚାରୀ ଭୂତଗୁଡ଼ିକରେ ଜୀବର ଅବସ୍ଥିତି ହୁଏ- ଏହା କିପରି କୁହାଯାଇଛି ? କାରଣ-ଯେ ପର୍ଯ୍ୟନ୍ତ 'ପ୍ରାଣସ୍ତେଜସି' ଏହିପ୍ରକାର ଏକ ତେଜର ଶ୍ରୁତି ଅଟେ । ଏହା ଉପରେ କୁହାଯାଇଛି-

**नैकस्मिन् दर्शयतो हि ॥ ४-२-६ ॥**

**ନୈକସ୍ମିନ୍ ଦର୍ଶୟତୋ ହି ॥୪-୨-୬॥**

ଏକସ୍ମିନ୍=ଜୀବର ଉତ୍କ୍ରମଣ କାଳରେ ଗୋଟିଏ ତେଜରେ ଅବସ୍ଥିତି, ନ=ନାହିଁ । କିନ୍ତୁ ଦେହର ପାଞ୍ଚଭୌତିକ ହେବାରୁ ତାହା ପାଞ୍ଚଭୌତିକରେ ରହିଛି । ହି=କାରଣ, ଦର୍ଶୟତଃ=ଶ୍ରୁତି ଓ ସ୍ମୃତି ଏହି ଅର୍ଥକୁ ଦେଖାନ୍ତି ॥

ମୂଳ-(କ) ନୈକସ୍ମିନ୍ନେବ ତେଜସି ଶରୀରାନ୍ତର ପ୍ରେପ୍ସାବେଳାୟାଂ ଜୀବୋଽବତିଷ୍ଠତେ, କାର୍ଯ୍ୟସ୍ୟ ଶରୀରସ୍ୟାନେକାତ୍ମକତ୍ୱଦର୍ଶନାତ୍ । ଦର୍ଶୟତଶ୍ଚୈତମର୍ଥଂ ପ୍ରଶ୍ନପ୍ରତିବଚନେ 'ଆପଃ ପୁରୁଷବଚସଃ' (ଛା ୫-୩-୩) ଇତି । ତଦ୍ବ୍ୟାଖ୍ୟାତମ୍- 'ତ୍ର୍ୟାତ୍ମକତ୍ୱାତ୍ତୁ ଭୂୟସ୍ତ୍ୱାତ୍' (ବ୍ର: ସୂ: ୨-୧-୨) ଇତ୍ୟତ୍ର ।

(ଖ) ଶ୍ରୁତିସ୍ମୃତି ଚୈତମର୍ଥଂ ଦର୍ଶୟତଃ । ଶ୍ରୁତିଃ-'ପୃଥିବୀମୟ ଆପୋମୟୋ ବାୟୁମୟ ଆକାଶମୟସ୍ତେଜୋମୟଃ' ଇତ୍ୟାଦ୍ୟା । ସ୍ମୃତିରପି-'ଅଣ୍ୱ୍ୟୋ ମାତ୍ରାଽବିନଶିନ୍ୟୋ ଦଶାର୍ଦ୍ଧାନାଂ ତୁ ଯାଃ ସ୍ମୃତାଃ । ତାଭିଃ ସାର୍ଦ୍ଧମିଦଂ ସର୍ବଂ ସମ୍ଭବତ୍ୟନୁପୂର୍ବଶଃ' ଇତ୍ୟାଦ୍ୟା । (ଗ) ନନୁ ଚୈସଂହୃତେଷୁ ବାଗାଦିଷୁ କରଣେଷୁ ଶରୀରାନ୍ତରପ୍ରେପ୍ସାବେଳାୟାଂ କାକ୍ୱଂ ତଦା ପୁରୁଷୋ ଭବତି' (ବୃ ହ ୩-୨-୧୩) ଇତ୍ୟୁପକ୍ରମ୍ୟ ଶ୍ରୁତ୍ୟନ୍ତରଂ କର୍ମାଶ୍ରୟତାଂ ନିରୂପୟତି- 'ତୌ ହ ଯଦୁଚତୁଃ କର୍ମ ହୈବ ତଦୁଚତୁରଥ ହ ଯତ୍ ପ୍ରଶଶଂସତୁଃ କର୍ମ ହୈବ ତତ୍ପ୍ରଶଶଂସତୁଃ' (ବୃ ହ ୩-୨-୧୩) ଇତି ।

(ଘ) ଅତ୍ରୋଚ୍ୟତେ-ତତ୍ର କର୍ମପ୍ରଯୁକ୍ତସ୍ୟ ଗ୍ରହାତିଗ୍ରହସଂଜ୍ଞକସ୍ୟେନ୍ଦ୍ରିୟବିଷୟାତ୍ମକସ୍ୟ ବନ୍ଧନସ୍ୟ ପ୍ରବୃତ୍ତିରିତି କର୍ମାଶ୍ରୟତୋକ୍ତା, ଇହ ପୁନର୍ଭୂତୋପାଦାନଦେହାନ୍ତରୋତ୍ପତ୍ତିରିତି ଭୂତାଶ୍ରୟତ୍ୱମୁକ୍ତମ୍ । ପ୍ରଶଂସାଶବ୍ଦାଦପି ତତ୍ର ପ୍ରାଧାନ୍ୟମାତ୍ରଂ କର୍ମଣଃ ପ୍ରଦର୍ଶିତମ୍, ନତ୍ୱାଶ୍ରୟାନ୍ତରଂ ନିବାରିତମ୍ ତସ୍ମାଦବିରୋଧଃ ।



ଭାଷା-(କ) ଅନ୍ୟଶରୀରକୁ ପ୍ରାପ୍ତକରିବାର ଇଚ୍ଛାକରି ଜୀବ ଏକତେଜରେ ଅବସ୍ଥିତ ହୁଏ, କାରଣ-କାର୍ଯ୍ୟଶରୀର ଅନେକାତ୍ମକରୂପରେ ଦେଖାଯାଏ । 'ଆପଃ ପୁରୁଷବଚସଃ' (ଆପ ଅର୍ଥାତ୍ ସୋମଘୃତ ପ୍ରଭୃତି ପୁରୁଷସଂଜ୍ଞାକୁ କିପରି ପ୍ରାପ୍ତ ହୁଏ) ଏହି ପ୍ରଶ୍ନ ଏବଂ ଉତ୍ତରର ଅର୍ଥକୁ ଦେଖାଏ । ତାହାର ତ୍ର୍ୟାତ୍ମକତ୍ୱାତ୍' ଏହି ସୂତ୍ରରେ ବ୍ୟାଖ୍ୟାନ କରାଯାଇଅଛି ।

(ଖ) ଶ୍ରୁତି ଓ ସ୍ମୃତି ମଧ୍ୟ ଏହି ଅର୍ଥକୁ ଦେଖାନ୍ତି । 'ପୃଥିବୀମୟଃ' (ପୃଥିବୀମୟ, ଆପୋମୟ, ବାୟୁମୟ, ଆକାଶମୟ ଓ ତେଜୋମୟ) ଇତ୍ୟାଦି ଶ୍ରୁତି ରହିଛି । ଅଣ୍ୱ୍ୟୋ' (ମୋକ୍ଷପର୍ଯ୍ୟନ୍ତ ପାଞ୍ଚଟି ଭୂତରେ ଯେଉଁ ସୂକ୍ଷ୍ମ ଅବିନାଶୀ ଭାଗ କୁହାଯାଏ । ସେମାନଙ୍କ ସହିତ ଏହିସବୁ କ୍ରମରେ ଉତ୍ପନ୍ନ ହୁଅନ୍ତି) ଇତ୍ୟାଦି ସ୍ମୃତି ମଧ୍ୟ ଅଛି ।

(ଗ) ପରନ୍ତୁ ଶରୀରାନ୍ତର-ପ୍ରାପ୍ତ କରିବାର ଇଚ୍ଛା ସମୟରେ ବାଗାଦି ଇନ୍ଦ୍ରିୟଗୁଡ଼ିକ ଆତ୍ମାରେ ଉପସଂହାର ହେବାପରେ 'କାକ୍ୟଂ ପୁରୁଷୋ' (ଆର୍ତ୍ତଭାଗ-ସେହି ସମୟ ଏହି ପୁରୁଷ କେଉଁଠି ରହେ ?) ଏହା ଆରମ୍ଭ କରି 'ତୋ ହ' (ସେତେବେଳେ ଯାଜ୍ଞବଲ୍କ୍ୟ ଓ ଆର୍ତ୍ତଭାଗ ଏହି ଦୁଇଟି ଦ୍ୱାରା ଉଠି ଏକାନ୍ତରେ ବିଚାର କଲେ । ତାହାଦ୍ୱାରା ଯାହା କୁହାଯାଇଛି, ସେସବୁ କର୍ମ ଏବଂ ଯାହାର ପ୍ରଶଂସା କରାଯାଇଛି, ସେସବୁ ପ୍ରଶଂସା କେବଳ କର୍ମର) ଏହିପରି ଅନ୍ୟଶ୍ରୁତି ଆତ୍ମାକୁ କର୍ମାଶ୍ରୟତା ନିରୂପଣ କରନ୍ତି ।

(ଘ) ଏହି ବିଷୟରେ କୁହାଯାଇଛି ସେଠାରେ କର୍ମ ପ୍ରଯୁକ୍ତ ଗ୍ରହ ଏବଂ ଅତିଗ୍ରହ ନାମକ ଇନ୍ଦ୍ରିୟ ଓ ବିଷୟାତ୍ମକ ବନ୍ଧନର ପ୍ରବୃତ୍ତି ହୁଏ । ଅତଃ କର୍ମ ଆଶ୍ରୟ ରୂପରେ କୁହାଯାଇଛି । ଏଠାରେ କିନ୍ତୁ ଭୂତୋପାଦାନଦ୍ୱାରା ଅନ୍ୟଗ୍ରହର ଉତ୍ପତ୍ତି ହୁଏ । ତେଣୁ ଭୂତାଶ୍ରୟତ୍ୱ କୁହାଯାଇଛି । ସେଠାରେ ପ୍ରଶଂସାଶବ୍ଦରୁ ମଧ୍ୟ ପ୍ରାଧାନ୍ୟମାତ୍ର କର୍ମ ଦେଖାଯାଏ ଏବଂ ଅନ୍ୟ ଆଶ୍ରୟର ନିବାରଣ କରାଯାଇନାହିଁ - ଏହି ବିଷୟରେ କୌଣସି ବିରୋଧ ନାହିଁ ॥୬॥

## ४ । आसृत्युपक्रमाधिकरणम् ॥ सू० ७ ॥

## ୪ । ଆସୃତ୍ୟୁପକ୍ରମାଧିକରଣମ୍ ॥ ସୂ:୭ ॥

**समानाचासृत्युपक्रमादमृतत्वं चानुपोष्य ॥ सु० ४-२-७ ॥**

**ସମାନାଋସୃତ୍ୟୁପକ୍ରମାଦମୃତତ୍ୱଂ ଋନୁପୋଷ୍ୟ ॥ ସୂ. ୪-୨-୭ ॥**

ଆସୃତ୍ୟୁପକ୍ରମାତ୍=ଦେବଯାନ ମାର୍ଗର ଉପକ୍ରମର ପୂର୍ବରୁ ବିଦ୍ୱାନ ଏବଂ ଅବିଦ୍ୱାନ୍‌ର ସମାନା=ଉତ୍କ୍ରାନ୍ତି ସମାନ ଅଟେ; କାରଣ- 'ବାଙ୍‌ମନସି; ଏହା ଏକ ଅବିଶେଷ ଶ୍ରୁତି ଅଟେ ଏବଂ ସଗୁଣବିଦ୍ୟାରେ, ଅମୃତତ୍ୱଂ ଋନୁପୋଷ=ଯାହା ଅମୃତତ୍ୱ ଅଟେ, ତାହା ଅପେକ୍ଷିତ ହୁଏ ।

ମୂଳ-(କ) ସେୟମୁତ୍କ୍ରାନ୍ତିଃ କିଂ ବିଦ୍ୱଦବିଦୁଷୋ ସମାନା, କିଂବା ବିଶେଷବତୀତି ଉତୀତି ବିଶୟନାନାଂ ବିଶେଷବତୀତି ପ୍ରାପ୍ତମ୍ । ଭୂତାଶ୍ରୟବିଶିଷ୍ଟା ହ୍ୟେଷା । ପୁନର୍ଭବାୟ ଚ ଭୂତାନ୍ୟାଶ୍ରୀୟନ୍ତେ । ନ ଚ ବିଦୁଷଃ ପୁନର୍ଭବଃ ସମ୍ଭବତି । 'ଅମୃତତ୍ୱଂ ହି ବିଦ୍ୱାନଶ୍ନୁତେ' ଇତି ସ୍ଥିତିଃ । ତସ୍ମାଦବିଦୁଷ ଏବୈଷୋତ୍କ୍ରାନ୍ତିଃ ।

(ଖ) ନନୁ ବିଦ୍ୟାପ୍ରକରଣେ ସମାମ୍ନାନାଦ୍‌ବିଦୁଷ ଏବୈଷା ଭବେତ୍ ନ, ସ୍ୱାପାଦିବ-ଦ୍ୟଥାପ୍ରାପ୍ତାନୁକୀର୍ତ୍ତନାତ୍ । ଯଥାହି ଯତ୍ରୈତତ୍ ପୁରୁଷଃ ସ୍ୱପିତି ନାମ', ଅଶିଶିଷତି ନାମ' ପିପାସତି ନାମ' (ଛା ୬-୮-୧,୩,୫) ଇତି ଚ ସର୍ବପ୍ରାଣିସାଧାରଣ । ଏବ ସ୍ୱାପାଦୟୋଽନୁକୀର୍ତ୍ତ୍ୟନ୍ତେ ବିଦ୍ୟାପ୍ରକରଣେଽପି ପ୍ରତିପିପାଦୟିଷିତବସ୍ତୁପ୍ରତିପାଦନାନୁଗୁଣ୍ୟେନ, ନ ତୁ ବିଦୁଷୋ ବିଶେଷବନ୍ତୋ ବିଧିତ୍ସ୍ୟନ୍ତେ ।

(ଗ) ଏବମିୟମପ୍ୟୁତ୍କ୍ରାନ୍ତିର୍ମହାଜନଗତୈବାନୁକୀର୍ତ୍ତତେ, ଯସ୍ୟାଂ ପରସ୍ୟାଂ ଦେବତାୟାଂ ପୁରୁଷସ୍ୟ ପ୍ରୟତସ୍ତେଜଃ ସଂପଦ୍ୟତେ ସ ଆତ୍ମା ତତ୍ତ୍ୱମସୀତ୍ୟେତତ୍ ପ୍ରତିପାଦୟିତୁମ୍ । ପ୍ରତିଷିଦ୍ଧା ଚୈଷା ବିଦୁଷଃ-'ନ ତସ୍ୟ ପ୍ରାଣା ଉତ୍କ୍ରାମନ୍ତି' (ବୃ. ୪-୪-୬) ଇତି । ତସ୍ମାଦବିଦୁଷ ଏବୈଷେତି ।

ଭାଷା-(କ) ଏହି ପୂର୍ବୋକ୍ତ ଉତ୍କ୍ରାନ୍ତି କ'ଣ ବିଦ୍ୱାନ୍ ଏବଂ ଅବିଦ୍ୱାନ ପରି ହୁଅନ୍ତି, କି ବିଶେଷ ଯୁକ୍ତ ଅଟନ୍ତି । ପୂର୍ବପକ୍ଷ-ଏହିପରି ସନ୍ଦେହ କରୁଥିବା ପୁରୁଷମତରେ ବିଶେଷ ସମୀଚୀନ ନୁହେଁ-ଏହା ହିଁ ପ୍ରାପ୍ତ ହୁଏ, କାରଣ-ଏହି ଉତ୍କ୍ରାନ୍ତି ଭୂତାଶ୍ରୟ ବିଶିଷ୍ଟ ଅଟେ । -ଏହାର ପୁନର୍ଜନ୍ମପାଇଁ ଆଶ୍ରୟ କରାଯାଇଛି ଏବଂ ବିଦ୍ୱାନ୍‌ର ପୁନର୍ଜନ୍ମ ସମ୍ଭବ ନୁହେଁ, କାରଣ ଅମୃତତ୍ୱହିଁ ବିଦ୍ୱାନ ଶ୍ନୁତେ ବିଦ୍ୱାନ ମୋକ୍ଷକୁ ପ୍ରାପ୍ତ ହୁଏ) ଏହି ଶ୍ରୁତି ଅଟେ । ତେଣୁ ଏହି ଉତ୍କ୍ରାନ୍ତି ଅବିଦ୍ୱାନ୍ ଅଟେ ।

(ଖ) ପରନ୍ତୁ ବିଦ୍ୟାର ପ୍ରକରଣରେ ତାହା ଶ୍ରବଣ ହେଲେ ଏହି ଉତ୍କ୍ରାନ୍ତି ବିଦ୍ୱାନ୍‌ର ହେବା ଉଚିତ୍ କି ? ନୁହେଁ । କାରଣ ସ୍ୱାପାଦିର ପରି ଏଠାରେ ଯଥା- ପ୍ରାପ୍ତର ଅନୁକୀର୍ତ୍ତନ ହୁଏ । ଯେପରି 'ଯତ୍ରୈତତ୍' (ଯେଉଁ ଅବସ୍ଥାରେ ଏହି ପୁରୁଷ 'ଶୟନ କରେ' ବୋଲି କୁହାଯାଇଛି, ସେହି ସମୟରେ ଏହା ଭୋଜନ କରିବା ଉଚିତ୍ ଓ ପାନ କରିବା ଉଚିତ୍) ଏହିପରି ବିଦ୍ୟା ପ୍ରକରଣରେ ମଧ୍ୟ ପ୍ରତିପାଦନର ଅଭୀପ୍ସିତ ବସ୍ତୁର ପ୍ରତିପାଦନର ଅନୁଗୁଣ ଦ୍ୱାରା ସମସ୍ତ ପ୍ରାଣୀ ସାଧାରଣ ହୋଇ ସ୍ୱାପାଦି ରୂପେ କୁହାଯା'ନ୍ତି । କିନ୍ତୁ ବିଦ୍ୱାନ ପାଇଁ ବିଶେଷରୂପରେ ବିଧାନ କରାଯାଏ ନାହିଁ ।

(ଗ) ଏହିପରି ଯାହା ଯେଉଁ ଦେବତାରେ ପ୍ରୟାଣ କରି ପୁରୁଷ ତେଜ ସଂପନ୍ନ ହୁଏ, 'ସେ ଆତ୍ମା ଅଟେ' 'ସେ ତୁମ୍ଭେ ଅଟେ' ଏହି ପ୍ରତିପାଦନ କରିବା ପାଇଁ ମହାଜନ ଜନସାଧାରଣଗତ ଏହି ଉତ୍କ୍ରାନ୍ତିର ଅନୁକୀର୍ତ୍ତନ ହୁଏ । 'ନ ତସ୍ୟ ପ୍ରାଣା' (ତାହାର ପ୍ରାଣ



ଉତ୍‌କ୍ରମଣ କରେ ନାହିଁ) ଏହିପ୍ରକାର ଉତ୍‌କ୍ରାନ୍ତି ବିଦ୍ୱାନ୍‌ଠାରେ ପ୍ରତିଷିଦ୍ଧ ହୁଏ । ତେଣୁ ଏହି ଉତ୍‌କ୍ରାନ୍ତି ଅବିଦ୍ୱାନ୍‌ର ଅଟେ ॥

ମୂଳ-(କ) ଏବଂ ପ୍ରାପ୍ତେ ବ୍ରୂମଃ ସମାନା ଚୈଷୋତ୍‌କ୍ରାନ୍ତିଃ ବାଙ୍‌ମନସି ଟ୍ୟାଦ୍ୟା ବିଦ୍ୱଦ ବିଦୁଷୋରାମୃତ୍ୟୁପକ୍ରମାହଭବିତୁମର୍ହତି, ଅବିଶେଷଶ୍ରବଣାତ୍ । ଅବିଦ୍ୱାନ୍ ଦେହବୀଜ ଭୂତାନି ଭୂତସୂକ୍ଷ୍ମାଣ୍ୟାଶ୍ରିତ୍ୟ କର୍ମପ୍ରଯୁକ୍ତୋ ଦେହଗ୍ରହଣମନୁ ଭବିତୁଂ ସଂସରତି; ବିଦ୍ୱାଂସ୍ତୁ ଜ୍ଞାନ ପ୍ରକାଶିତଂ ମୋକ୍ଷନାଡ଼ୀ ଦ୍ୱାରମାଶ୍ରୟତ୍ୱେ । ତଦେତତ୍‌ଆସୃତ୍ୟୁପକ୍ରମାଦିତ୍ୟୁକ୍ତମ୍ ।

(ଖ) ନନ୍ୱମୃତତ୍ୱଂହି ବିଦୂଷା ପ୍ରାପ୍ତବ୍ୟମ୍, ନ ଚ ତଦ୍ଦେଶାନ୍ତରାୟତ୍ତମ୍, ତତ୍ର କୁତୋ ଭୂତାଶ୍ରୟତ୍ୱଂ ସୃତ୍ୟୁପକ୍ରମୋ ବେତି ଅତ୍ରୋଚ୍ୟତେ-ଅନୁପୋଷ୍ୟ ଚେ୍‌ଦମ୍, ଅଦଗ୍‌ଧ୍ୱାଽତ୍ୟ-ନ୍ତମବିଦ୍ୟାଦୀନ୍ କ୍ଳେଶାନପରବିଦ୍ୟା ସାମର୍ଥ୍ୟା ଦାପେକ୍ଷିକମମୃତତ୍ୱଂ ପ୍ରେପ୍‌ସତେ, ସମ୍ଭବତି ତତ୍ର ସୃତ୍ୟୁପକ୍ରମୋ ଭୂତାଶ୍ରୟତ୍ୱଂ ଚ । ନହି ନିରାଶ୍ରୟାଣାଂ ପ୍ରାଣାନାଂ ଗତିରୂପ ପଦ୍ୟତେ । ତସ୍ମାଦଦୋଷଃ ॥

ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- 'ବାଙ୍‌ମନସୀ' (ବାଣୀ ମନରେ ଲୀନ ହୁଏ) ଇତ୍ୟାଦି ଏହି ଉତ୍‌କ୍ରାନ୍ତି ବିଦ୍ୱାନ୍ ଓ ଅବିଦ୍ୱାନ୍ ଦୁହିଁଙ୍କର ମାର୍ଗ ଆରମ୍ଭ ପର୍ଯ୍ୟନ୍ତ ସମାନ ହେବା ଉଚିତ୍ । କାରଣ-ତାହାର ସମାନ ରୂପରେ ଶ୍ରବଣ ହୁଏ । ଅବିଦ୍ୱାନ୍ ଦେହର ବୀଜରୂପ ଭୂତସୂକ୍ଷ୍ମକୁ ଆରମ୍ଭ କରି କ୍ରମଦ୍ୱାରା ପ୍ରଯୁକ୍ତ ହୋଇ ଶରୀର ଗ୍ରହଣ କରି ଅନୁଭବ କରିବା ପାଇଁ ସଂସାରକୁ ଆସେ । ବିଦ୍ୱାନ୍ କିନ୍ତୁ ସଗୁଣ ବ୍ରହ୍ମଜ୍ଞାନ ଦ୍ୱାରା ଆଲୋକିତ ହୋଇ ମୋକ୍ଷ ନାଡ଼ୀର ଦ୍ୱାରକୁ ଆଶ୍ରୟଣ କରେ ॥ ଏହି 'ଆସୃତ୍ୟୁପକ୍ରମାତ୍' ଏହି ସୂତ୍ରାବୟବରୁ କୁହାଯାଏ ।

(ଖ) ପରନ୍ତୁ ବିଦ୍ୱାନକୁ ଅମୃତତ୍ୱ ପ୍ରାପ୍ତ ହେବା ଉଚିତ । ସେ ଅନ୍ୟ ଦେଶର ଅଧୀନ ନୁହେଁ; କିନ୍ତୁ ପୁଣି ସେହି ବିଦ୍ୱାନ ପାଇଁ ଭୂତଗୁଡ଼ିକର ଆଶ୍ରୟ ଅଥବା ମାର୍ଗର ଉପକ୍ରମ କିପରି ହୁଏ ? ସିଦ୍ଧାନ୍ତ-ଏହି ବିଷୟରେ ଆମ୍ଭେ କହୁଁ ଯେ- ଏହି ଅମୃତତ୍ୱ ଆପେକ୍ଷିକ ଅଟେ । ଉପାସକ ଅବିଦ୍ୟାଦି କ୍ଳେଶକୁ ଅତ୍ୟନ୍ତ ଦଗ୍‌ଧ ନକରି ଅପରବିଦ୍ୟା ଅର୍ଥାତ୍ ସଗୁଣ ବ୍ରହ୍ମବିଦ୍ୟାର ସାମର୍ଥ୍ୟରୁ ଆପେକ୍ଷିକ ଅମୃତତ୍ୱ ପ୍ରାପ୍ତ କରିବା ଉଚିତ୍; ତେଣୁ ସେହି ଅବସ୍ଥାରେ ବିଦ୍ୱାନ୍ ପାଇଁ ମାର୍ଗର ଉପକ୍ରମ ଓ ଭୂତଗୁଡ଼ିକର ଆଶ୍ରୟ ସମ୍ଭବ ହୁଏ, କାରଣ-ନିରାଶ୍ରୟ ପ୍ରାଣୀର ଗତି ଉତ୍ପନ୍ନ ନୁହେଁ; ତେଣୁ ତାହା ଦୋଷ ନୁହେଁ ॥୭॥

## ५ । संसार व्यपदेशाधिकरणम् ॥ सू० ८-११ ॥

## ୫ । ସଂସାର ବ୍ୟପଦେଶାଧିକରଣମ୍ ॥ ସୂ. ୮-୧୧ ॥

## तदाऽऽपीतेः संसार व्यपदेशात् ॥ ४-२-८ ॥

## ତଦାଽଽପୀତେଃ ସଂସାର ବ୍ୟପଦେଶାତ୍ ॥ ୪-୨-୮ ॥

ତତ୍=ସେହି ତେଜାଦି ସୂକ୍ଷ୍ମଭୂତ, ଆପୀତେଃ=ମୋକ୍ଷ ପର୍ଯ୍ୟନ୍ତ ଅବସ୍ଥାନ କରେ । ସଂସାର ବ୍ୟପଦେଶାତ୍=କାରଣ-'ଯୋନିମନ୍ୟେ' ଇତ୍ୟାଦି ଦ୍ୱାରା ସଂସାର ବ୍ୟପଦେଶ ହୁଏ ।

ମୂଳ-(କ) 'ତେଜଃ ପରସ୍ୟାଂ ଦେବତାୟାମ୍' (ଛା ୬-୮-୬) ଇତ୍ୟତ୍ର ପ୍ରକରଣ ସାମର୍ଥ୍ୟାତ୍ତଦ୍ୟଥା ପ୍ରକୃତଂ ତେଜଃ ସାଧ୍ୟକ୍ଷଂ ସପ୍ରାଣଂ ସକରଣଗ୍ରାମଂ ଭୂତାନ୍ତର ସହିତଂ ପ୍ରୟତଃ ପୁଂସଃ ପରସ୍ୟାଂ ଦେବତାୟାଂ ସଂପଦ୍ୟତ ଇତ୍ୟେତଦୁକ୍ତଂ ଭବତି । କୀଦୃଶୀ ପୁନରିୟଂ ସାଦିତି ଚିନ୍ତ୍ୟତେ ।

(ଖ) ତତ୍ରାତ୍ୟନ୍ତିକ ଏବ ତାବତ୍ ସ୍ୱରୂପ ପ୍ରବିଲୟ ଇତି ପ୍ରାପ୍ତମ୍, ତତ୍ପ୍ରକୃତିତ୍ୱୋପପତ୍ତେଃ । ସର୍ବସ୍ୟ ହି ଜନିମତୋ ବସ୍ତୁଜାତସ୍ୟ ପ୍ରକୃତିଃ ପରା ଦେବତେତି ପ୍ରତିଷ୍ଠାପିତମ୍ । ତସ୍ମାଦାତ୍ୟନ୍ତିକୀୟମବିଭାଗାପତ୍ତିରିତି ।

(ଗ) ଏବଂ ପ୍ରାପ୍ତେ ବ୍ରୂମଃ-ତତ୍ତେଜ ଆଜି ଭୂତ ସୂକ୍ଷ୍ମଂ ଶ୍ରୋତାଦିକରଣାଶ୍ରୟ ଭୂତମାଽଽପୀତେରା ସଂସାର ମୋକ୍ଷାତ୍ ସମ୍ୟଗ୍‌ଜ୍ଞାନ ନିମିତ୍ତାଦବତିଷ୍ଠତେ । 'ଯୋନିମଧ୍ୟେ ପ୍ରପଦ୍ୟନ୍ତେ ଶରୀରତ୍ୱାୟ ଦେହିନଃ । ସ୍ଥାଣୁମନ୍ୟେଽନୁସଂୟନ୍ତି ଯଥାକର୍ମ ଯଥାଶ୍ରୁତମ୍' (କଠ ୫-୭) ଇତ୍ୟାଦି ସଂସାର ବ୍ୟପଦେଶାତ୍ ।

(ଘ) ଅନ୍ୟଥା ହି ସର୍ବଃ ପ୍ରୟାଣସମୟ ଏବୋପାଧିପ୍ରତ୍ୟସ୍ତମୟାଦତ୍ୟନ୍ତଂ ବ୍ରହ୍ମ ସଂପଦ୍ୟେତ । ତତ୍ର ବିଧିଶାସ୍ତ୍ରମନର୍ଥକଂ ସ୍ୟାଦ୍‌ବିଦ୍ୟା ଶାସ୍ତ୍ରଂ ଚ । ମିଥ୍ୟାଜ୍ଞାନ ନିମିତ୍ତଶ୍ଚ ବନ୍ଧୋ ନ ସମ୍ୟଗ୍ ଜ୍ଞାନଦୃତେ ବିସ୍ରଂସିତୁ ମର୍ହତି । ତସ୍ମାତ୍ତତ୍ ପ୍ରକୃତିତ୍ୱେଽପି ସୁଷୁପ୍ତି ପ୍ରଳୟବଦ୍‌ବୀଜଭାବାବଶେଷୈବୈଷା ସତ୍‌ସଂପତ୍ତିରିତି ॥

ଭାଷା-(କ) 'ତେଜ ପରସ୍ୟାମ୍' (ତେଜ ପରଦେବତାରେ ଲୀନ ହୁଏ) ଏହି ବାକ୍ୟରେ ପ୍ରକରଣର ସାମର୍ଥ୍ୟରୁ ପ୍ରୟାଣ କରୁଥିବା ପୁରୁଷର ଯାହା ପ୍ରକୃତ ତେଜ ରହିଛି, ତାହା ଅଧ୍ୟକ୍ଷ ସହିତ, ପ୍ରାଣ ସହିତ, କରଣ ଗ୍ରାମ ସହିତ, ଭୂତାନ୍ତର ସହିତ ପରଦେବତାରେ ଲୀନ ହୁଏ ବୋଲି କୁହାଯାଇଛି । ପରନ୍ତୁ ଏହି ସଂପତ୍ତି କେଉଁପ୍ରକାରର ହେବା ଉଚିତ୍ ?

(ଖ) ତାହାର ବିଚାର କରାଯାଇଛି । ପୂର୍ବପକ୍ଷ-ଏହି ଶଙ୍କା ହେବାପରେ ଆତ୍ୟନ୍ତିକ ସ୍ୱରୂପ ବିଲୟ ହୁଏ ଏହା ପ୍ରାପ୍ତ ହୁଏ; କାରଣ ସେହି ପରଦେବତା ତେଜର ପ୍ରକୃତି ହୁଏ ଏବଂ ସମସ୍ତ ଉତ୍ପନ୍ନ ହେବାକୁ ଥିବା ବସ୍ତୁ ସମୁଦାୟର ପରଦେବତା ପ୍ରକୃତି ଅଟେ-ଏହାହିଁ ପ୍ରତିଷ୍ଠାପିତ କରାଯାଇଛି; ତେଣୁ ଏହି ଅବିଭାଗାପତ୍ତି ଆତ୍ୟନ୍ତିକୀ ଅଟେ ।

ସିଦ୍ଧାନ୍ତ-(ଗ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- ସେହି ତେଜ ପ୍ରଭୃତି ସୂକ୍ଷ୍ମଭୂତ ଶ୍ରୋତ୍ରାଦି କରଣଗୁଡ଼ିକର ଆଶ୍ରୟରୂପ ସମ୍ୟଗ୍‌ଜ୍ଞାନ ନିମିତ୍ତକ ସଂସାର ମୋକ୍ଷ ପର୍ଯ୍ୟନ୍ତ ଅବସ୍ଥିତ ରହନ୍ତି । କାରଣ- 'ଯୋନିମନ୍ୟେ' (କେତେକ ଅବିଦ୍ୟାବାନ୍ ମୃତଜୀବ ନିଜର କର୍ମ ଓ ଜ୍ଞାନର ଅନୁସାରେ ଶରୀର ଧାରଣ କରିବା ପାଇଁ ବୀର୍ଯ୍ୟରୂପ ବୀର୍ଯ୍ୟଦ୍ୱାରା ସଂଯୁକ୍ତ ହୋଇ ଯୋନିଦ୍ୱାରକୁ ପ୍ରାପ୍ତ ହୁଅନ୍ତି । କୌଣସି ଯୋନିରେ ପ୍ରବେଶ କରେ ଏବଂ କେତେକ ଅଧମ ଜୀବ ମୃତ ହୋଇ ସ୍ଥାବର ଭାବକୁ ପ୍ରାପ୍ତ ହୁଅନ୍ତି) ଇତ୍ୟାଦି ସଂସାରର ବ୍ୟପଦେଶ ହୁଏ ।

(ଘ) ନୋଚେତ୍ ଯଦି ସ୍ୱରୂପତଃ ଭୂତଗୁଡ଼ିକର ଲୟ ସ୍ୱୀକାର କରାଯାଏ, ତେବେ ପ୍ରୟାଣ ସମୟରେ ଉପାଧିର ଅସ୍ତମୟରୁ ସବୁ ବ୍ରହ୍ମ ସହ ଅତ୍ୟନ୍ତ ସଂପନ୍ନ ହେବ । ଏହା ହେବା ପରେ ବିଧିଶାସ୍ତ୍ର ଓ ବିଦ୍ୟାଶାସ୍ତ୍ର ଉଭୟେ ଅନର୍ଥକ ହେବେ । ମିଥ୍ୟାଜ୍ଞାନ ନିମିତ୍ତକ ବନ୍ଧ ସମ୍ୟଗ୍‌ଜ୍ଞାନ ବ୍ୟତିତ ବିଚ୍ଛିନ୍ନ ହୁଏ ନାହିଁ; ତେଣୁ ପରଦେବତା ତେଜର ପ୍ରକୃତି ହେବାପରେ ସୁଷୁପ୍ତି ଏବଂ ପ୍ରଳୟ ପରି ବୀଜଭାବ ଅବଶେଷ ହିଁ ସତ୍‌ସଂପତ୍ତି ହୁଏ ।।୮।।

**सूक्ष्मं प्रमाणतश्च तथोपल्वधेः ॥ ४-२-६ ॥**

**ସୂକ୍ଷ୍ମ ପ୍ରମାଣତଶ୍ଚ ତଥୋପଲବ୍ଧେଃ ।।୪-୨-୬।।**

ଅନ୍ୟ ଭୂତଗୁଡ଼ିକ ସହି ଏହି ତେଜ, ପ୍ରମାଣତଃ=ପ୍ରମାଣରୁ, ଚ=ଏବଂ, ସ୍ୱରୂପତଃ=ସ୍ୱରୂପରୁ, ସୂକ୍ଷ୍ମମ୍=ସୂକ୍ଷ୍ମ ଅଟେ, ତଥୋପଲବ୍ଧେଃ=କାରଣ-ଏହିପ୍ରକାର ଉପଲବ୍ଧ ହୁଏ ।

ମୂଳ- (କ) ତଚ୍ଚେତରଭୂତ ସହିତଂ ତେଜୋ ଜୀବସ୍ୟା ସ୍ୱାଚ୍ଛରୀରାତ୍ ପ୍ରବସତ ଆଶ୍ରୟଭୂତଂ ସ୍ୱରୂପତଃ ପରିମାଣତଶ୍ଚ ସୂକ୍ଷ୍ମଂ ଭବିତୁ ମର୍ହତି । ତଥା ହି ନାଡ଼ୀ ନିଷ୍କ୍ରମଣ ଶ୍ରବଣାଦିଭ୍ୟୋଽସ୍ୟ ସୌକ୍ଷ୍ମ୍ୟ ମୁପଲଭ୍ୟତେ । ତତ୍ର ତନୁତ୍ୱାତ୍ ସଞ୍ଚାରୋପପତ୍ତିଃ, ସ୍ୱଚ୍ଛତ୍ୱାଚ୍ଚା-ପ୍ରତୀଘାତୋପପତ୍ତିଃ । ଅତଏବ ଚ ଦେହାନ୍ନିର୍ଗଚ୍ଛନ୍ ପାର୍ଶ୍ୱସ୍ଥୈର୍ନୋପଲଭ୍ୟତେ ।।

ଭାଷା- (କ) ଏହି ଦେହରୁ ପ୍ରୟାଣ କରୁଥିବା ଜୀବର ଅନ୍ୟଭୂତ ସହିତ ଆଶ୍ରୟଭୂତ ସେହି ତେଜ ସ୍ୱରୂପରୁ ଓ ପରିମାଣରୁ ସୂକ୍ଷ୍ମ ହେବା ଯୋଗ୍ୟ ଅଟେ । କାରଣ ନାଡ଼ୀ ମାର୍ଗରୁ ନିଷ୍କ୍ରମଣ ପ୍ରତିପାଦକ ଶ୍ରୁତି ପ୍ରଭୃତି ଦ୍ୱାରା ତାହାର ସୂକ୍ଷ୍ମତା ଉପଲବ୍ଧ ହୁଏ । ଏହା ହେବାପରେ ସୂକ୍ଷ୍ମ ହେବା ଦ୍ୱାରା ତାହାର ସଞ୍ଚାରୋପପତ୍ତି ଏବଂ ସ୍ୱଚ୍ଛ ହେବାରୁ ଅପ୍ରତିଘାତୋପପତ୍ତି ହୁଏ । ତେଣୁ ଦେହକୁ ନିରାକରଣ କରି ସେହି ମୁମୂର୍ଷୁ ପାର୍ଶ୍ୱସ୍ଥ ଲୋକଦ୍ୱାରା ଉପଲବ୍ଧ ହୁଏ ନାହିଁ ।।୯।।

नोपमर्देनात: ॥ सू० ४-२-१० ॥

ନୋପମର୍ଦ୍ଦେନାତଃ ॥ ସୂ. ୪-୨-୧୦ ॥

ଅତଃ = ସୂକ୍ଷ୍ମ ଶରୀର ଅତି ସୂକ୍ଷ୍ମ ହେବାରୁ, ଉପମର୍ଦ୍ଦେନ=ସ୍ଥୁଳ ଶରୀରର ଉପମର୍ଦ୍ଦନ ଦ୍ୱାରା ମଧ୍ୟ, ନ=ଉପମର୍ଦ୍ଦିତ ହୁଏ ନାହିଁ ।

ମୂଳ-(କ) ଅତଏବ ସୂକ୍ଷ୍ମତ୍ୱାନ୍ନାସ୍ୟ ସ୍ଥୁଳସ୍ୟ ଶରୀରସ୍ୟୋପମର୍ଦ୍ଦେନ ଦାହାଦି ନିମିତ୍ତେ ନେତରତ୍ ସୂକ୍ଷ୍ମଂ ଶରୀର ମୁପମୃଦ୍ୟତେ ॥

ଭାଷା - (କ) ତେଣୁ ସେହି ଲିଙ୍ଗାତ୍ମକ ଶରୀର ସୂକ୍ଷ୍ମ ହେବାରୁ ଏହି ସ୍ଥୁଳ ଶରୀରର ଦାହାଦି ନିମିତ୍ତରୁ ଉପମର୍ଦ୍ଦନ ହେବାରୁ ଅନ୍ୟ ସୂକ୍ଷ୍ମ ଶରୀର ଉପମର୍ଦ୍ଦିତ ହୁଅନ୍ତି ନାହିଁ ॥

अस्यैव चोपपत्तेरेष ऊष्मा ॥ सू. ४-२-११ ॥

ଅସ୍ୟୈବଚୋପପତ୍ତେରେଷ ଉଷ୍ମା ॥ ସୂ. ୪-୨-୧୧ ॥

ଅସ୍ୟୈବ=ଏହି ସୂକ୍ଷ୍ମ ଶରୀରର, ଏଷ ଉଷ୍ମା'=ଏହି ଉଷ୍ମା ଅଟେ । ଉପପତ୍ତେଃ=କାରଣ-ତାହାର ସ୍ଥୁଳ ଶରୀର ସ୍ପର୍ଶ ହେବାରୁ ଉପପତ୍ତି ହୁଏ ।

ମୂଳ-(କ) ଅସ୍ୟୈବ ଚ ସୂକ୍ଷ୍ମସ୍ୟ ଶରୀରସ୍ୟୈବ ଉଷ୍ମା, ଯମେତସ୍ମିଞ୍ଚ ଶରୀରେ ସଂସ୍ପର୍ଶେନୋଷ୍ମାଣଂ ବିଜାନନ୍ତି । ତଥାହି ମୃତାବସ୍ଥାୟାମବସ୍ଥିତେଽପି ଦେହେ ବିଦ୍ୟମାନେଷ୍ୱପି ଚ ରୂପାଦିଷୁ ଦେହଗୁଣେଷୁ ନୋଷ୍ମୋପଲଭ୍ୟତେ, ଜୀବଦ୍‌ବସ୍ଥାୟାମେବ ତୂପଲଭ୍ୟତଇତ୍ୟତ ଉପପଦ୍ୟତେ ପ୍ରସିଦ୍ଧ ଶରୀର ବ୍ୟତିରିକ୍ତ ବ୍ୟାପାଶ୍ରୟ ଏବୈଷ ଉଷ୍ମେତି । ତଥା ଶ୍ରୁତିଃ 'ଉଷ୍ମ ଏବ ଜୀବିଷ୍ୟଞ୍ଚ ଶୀତୋ ମରିଷ୍ୟନ୍ ଇତି ॥

ଭାଷା-(କ) ଏହି ସୂକ୍ଷ୍ମା ଶରୀରର'ଏହା ଉଷ୍ମ ଅଟେ । ଯେଉଁ ଉଷ୍ମାକୁ ଏହି ଶରୀରରେ ସଂସ୍ପର୍ଶ ଦ୍ୱାରା ଜାଣନ୍ତି, କାରଣ-ମୃତାବସ୍ଥାରେ ଦେହ ଅବସ୍ଥିତ ହେବାପରେ ଏବଂ ଦେହର ରୂପାଦି ଗୁଣ ବିଦ୍ୟାମନ ହେଲେ ମଧ୍ୟ ଉଷ୍ମା ଉପଲବ୍ଧ ହୁଏ ନାହିଁ; କିନ୍ତୁ ଜୀବିତାବସ୍ଥାରେ ଉପଲବ୍ଧ ହୁଅନ୍ତି । ଏହି ଅନ୍ୱୟ ବ୍ୟତିରେକରୁ ଏହି ଉଷ୍ମା ପ୍ରସିଦ୍ଧ ସ୍ଥୁଳ ଶରୀରଠାରୁ ଭିନ୍ନ ଶରୀରାଶ୍ରୟ ବୋଲି ଉପପନ୍ନ ହୁଏ । ସେହିପରି 'ଉଷ୍ମ ଏବ' (ଜୀବିତ ହୋଇ ଏହି ଶରୀର ଉଷ୍ମ ହୁଏ ଏବଂ ମୃତ ହେଲେ ଶୀତଳ ହୋଇଯାଏ)- ଏହା ହିଁ ଶ୍ରୁତି ॥୧୧॥

६ । प्रतिषेधाधिकरणम् ॥ सू० १२-१४ ॥

୬। ପ୍ରବିଷେଧାଧିକରଣମ୍ ॥ ସୂ ୧୨-୧୪ ॥



## प्रतिषेधादिति चेन्न शीररात् ॥ सू० ४-२-१२ ॥

## ପ୍ରତିଷେଧାଦିତି ଚେନ୍ନ ଶାରୀରତ୍ ॥ ସୂ. ୪-୨-୧୨ ॥

ପ୍ରତିଷେଧାତ୍='ନ ତସ୍ୟ ପ୍ରାଣା ଉତ୍କ୍ରାମନ୍ତି' ଇତ୍ୟାଦି ଶ୍ରୁତିରୁ ନିର୍ଗୁଣ ବ୍ରହ୍ମବିତ୍‌ର ଶରୀରରୁ ଉତ୍କ୍ରମଣର ପ୍ରତିଷେଧ ହେବାରୁ ତାହାର ଉତ୍କ୍ରାନ୍ତି ପ୍ରତିଷେଧ ହୁଏ । ଇତି ଚେନ୍ନ-ଯଦି ଏହା କହ, ତେବେ ମଧ୍ୟ ଏହା ଠିକ୍ ନୁହେଁ । ଶାରୀରାତ୍=କାରଣ ଏହି ଉତ୍କ୍ରମଣ ନିଷେଧ ଜୀବରୁ ହୁଏ । ଶରୀରଦ୍ୱାରା ନୁହେଁ । ତେଣୁ ପ୍ରାଣାଦିଯୁକ୍ତ ଜୀବ ଏବଂ ବ୍ରହ୍ମବିତ୍‌ର ଉତ୍କ୍ରାନ୍ତି ହୁଏ ॥

ମୂଳ-(କ) 'ଅମୃତତ୍ୱଂ ଚାନୁପୋଷ୍ୟ' ଇତ୍ୟତୋ ବିଶେଷଣାଦାତ୍ୟନ୍ତିକେଽମୃତତ୍ୱେ ଗତ୍ୟୁତ୍କ୍ରାନ୍ତ୍ୟୋରଭାବୋଽଭ୍ୟୁଗତଃ । ତତ୍ରାପିକେନଚିତ୍ କାରଣେନୋତ୍ କ୍ରାନ୍ତିମାଶଙ୍କ୍ୟ ପ୍ରତିଷେଧତି- 'ଅଥାକାମୟମାନୋ ଯୋଽକାମୋ ନିଷ୍କାମ ଆପ୍ତକାମ ଆପ୍ତକାମୋ ଭବତି, ନ ତସ୍ୟ ପ୍ରାଣା ଉତ୍କ୍ରାମନ୍ତି ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି' (ବୃହ ୪-୪-୬) ଇତ୍ୟତଃ ପରବିଦ୍ୟାବିଷୟାତ୍ ପ୍ରତିଷେଧାନ୍ନ ପରବ୍ରହ୍ମବିଦୋ ଦେହାତ୍‌ପ୍ରାଣାନାମୁତ୍କ୍ରାନ୍ତିରସ୍ତୀତି ଚେତ୍, ନେତ୍ୟୁଚ୍ୟତେ, ଯତଃ ଶାରୀରାଦାତ୍ମନ ଏଷ ଉତ୍କ୍ରାନ୍ତିପ୍ରତିଷେଧଃ ପ୍ରାଣାନାଂ ନ ଶରୀରାତ୍ ।

(ଖ) କଥମବଗମ୍ୟତେ ? 'ନ ତସ୍ମାତ୍‌ପ୍ରାଣା ଉତ୍କ୍ରାମନ୍ତି' ଇତି ଶାଖାନ୍ତରେ ପଞ୍ଚମ ପ୍ରୟୋଗାତ୍ । ସମ୍ବନ୍ଧସାମାନ୍ୟ-ବିଷୟା ହି ଷଷ୍ଠୀ ଶାଖାନ୍ତରଗତୟା ପଞ୍ଚମ୍ୟା ସଂବନ୍ଧବିଶେଷେ ବ୍ୟବସ୍ଥାପ୍ୟତେ । ତସ୍ମାଦିତି ଚ ପ୍ରାଧାନ୍ୟାଦଭ୍ୟୁଦୟନିଃଶ୍ରେୟସାଧିକୃତୋ ଦେହୀ ସଂବଧ୍ୟତେ ନ ଦେହଃ । ନ ତସ୍ମାଦୁଚ୍ଚିକ୍ରମିଷୋର୍ଜୀବାତ୍‌ପ୍ରାଣା ଅପକ୍ରାମନ୍ତି, ସହୈବ ତେନ ଭବନ୍ତୀତ୍ୟର୍ଥଃ ॥

ଭାଷା-(କ) 'ଅମୃତତ୍ୱଂ ଚାନୁପ୍ରୋଷ୍ୟ' (ଅବିଦ୍ୟାଦି କ୍ଳେଶ ସମୁଦାୟର ଅତ୍ୟନ୍ତ ଦାହ ନ କରି ଅମୃତତ୍ୱ ଆପେକ୍ଷିକ ହୁଏ) ଏହି ବିଶେଷଣ ଦ୍ୱାରା ଆତ୍ୟନ୍ତିକ ଅମୃତତ୍ୱରେ ଗତି ଏବଂ ଉତ୍କ୍ରାନ୍ତି ଅଭାବ ସ୍ୱୀକାର କରାଯାଇଛି । ସେଠାରେ ମଧ୍ୟ କାରଣରୁ ଉତ୍କ୍ରାନ୍ତି ବିଷୟକ ଆଶଙ୍କା କରି ପ୍ରତିଷେଧ କରନ୍ତି 'ଅଥାକାମୟମାନୋ' (ସକାମର ସଂସାରୋକ୍ତି ପରେ ଯେଉଁ କାମନକାରୀ ନାହିଁ, ଅକାମ, ନିଷ୍କାମ, ଆପ୍ତକାମ ଏବଂ ଆତ୍ମକାମ ହୁଏ, ତାହାର ପ୍ରାଣ ଉତ୍କ୍ରମଣ ହୁଏ ନାହିଁ । ସେ ବ୍ରହ୍ମହୋଇ ବ୍ରହ୍ମକୁ ପ୍ରାପ୍ତ ହୁଏ) । ତେଣୁ ପରବିଦ୍ୟା ବିଷୟକ ପ୍ରତିଷେଧ ହେଲେ ବ୍ରହ୍ମଜ୍ଞାନୀର ଶରୀରରୁ ପ୍ରାଣ ଉତ୍କାନ୍ତି ହୁଏ ନାହିଁ । ଏହା କିନ୍ତୁ ସମୀଚୀନ ନୁହେଁ, ତେଣୁ କୁହାଯାଇଛି- କାରଣ ପ୍ରାଣଗୁଡ଼ିକର ଏହି ଉତ୍କ୍ରାନ୍ତି ପ୍ରତିଷେଧ ଜୀବାତ୍ମାଦ୍ୱାରା ହୁଏ, ଶରୀରରୁ ନୁହେଁ ।

(ଖ) ଏହା କିପରି ଅବଗତ ହୁଏ ? କାରଣ- 'ନ ତସ୍ମାତ୍' (ତେଣୁ ପ୍ରାଣ ଉତ୍କ୍ରମଣ କରେ ନାହିଁ) ଏହିପ୍ରକାର ଅନ୍ୟଶାଖାରେ ପଞ୍ଚମୀର ପ୍ରୟୋଗ ହୋଇଛି । ସମ୍ବନ୍ଧ ସାମାନ୍ୟ ବିଷୟକ ଷଷ୍ଠୀ ମଧ୍ୟ ଶାଖାନ୍ତରଗତ ପଞ୍ଚମୀର ସମ୍ବନ୍ଧ ବିଶେଷରେ ବ୍ୟବସ୍ଥାପିତ ହୁଏ ।

'ତସ୍ମାତ୍' ସହିତ ପ୍ରାଧାନ୍ୟରୁ ଅଭ୍ୟୁଦୟ ଓ ନିଃଶ୍ରେୟସରେ ଅଧିକୃତ ଦେହୀ ସମ୍ବନ୍ଧିତ ହୁଏ । କିନ୍ତୁ ଦେହ ନୁହେଁ । ସେହି ଉତ୍କ୍ରମଣକୁ ଇଚ୍ଛା କରୁଥିବା ଜୀବରୁ ପ୍ରାଣ ଛାଡ଼ି ଯାଏ ନାହିଁ । କିନ୍ତୁ ସେହି ଜୀବର ସହିତ ରହେ-ଏହା ହିଁ ଅର୍ଥ ॥୧୨॥

ମୂଳ-(କ) ସପ୍ରାଣସ୍ୟ ଚ ପ୍ରବସତୋ ଭବତ୍ୟୁତ୍କ୍ରାନ୍ତିଃ ଦେହାଦିତ୍ୟେବଂ ପ୍ରାପ୍ତେ ପ୍ରତ୍ୟୁଚ୍ୟତେ-

ଭାଷା-(କ) ପ୍ରୟାଣ କରିଥିବା ପୁରୁଷର ଓ ପ୍ରାଣର ଏହି ଉତ୍କ୍ରାନ୍ତି ଶରୀରରୁ ହୁଏ-ଏହା ପ୍ରାପ୍ତ ହେବାରୁ ତାହାର ନିରାକରଣ କରାଯାଇଛି ।

## स्पष्टो ह्येकेषाम् ॥ ४-२-१३ ॥

## ସ୍ପଷ୍ଟୋ ହ୍ୟେକେଷାମ୍ ॥ ୪-୨-୧୩ ॥

ଏକେଷାମ୍=କାଣ୍ୱସଂପ୍ରଦାୟ ମତରେ ପରବ୍ରହ୍ମବିତ୍‌ର ପ୍ରାଣ ଶରୀରଠାରୁ ଉତ୍କ୍ରମଣ ପ୍ରତିଷେଧ, ସ୍ପଷ୍ଟଃ=ସ୍ପଷ୍ଟଭାବରେ ଉପଲବ୍ଧ ହୁଏ । ହି=କାରଣ-ବ୍ରହ୍ମବେତ୍ତାର ପ୍ରାଣ ଶରୀରକୁ ଉତ୍କ୍ରମଣ କରେ ନାହିଁ ॥

ମୂଳ-(କ) ନୈତଦସ୍ତି ଯଦୁକ୍ତମ୍-ପରବ୍ରହ୍ମବିଦୋଽପି ଦେହାଦସ୍ତ୍ୟୁତ୍କ୍ରାନ୍ତିରୁତ୍କ୍ରାନ୍ତି ପ୍ରତିଷେଧସ୍ୟ ଦେହ୍ୟାପାଦାନତ୍ୱାଦିତି ଯତୋ ଦେହାପାଦାନ ଏବୋତ୍କ୍ରାନ୍ତିପ୍ରତିଷେଧ ଏକେଷାଂ ସମାମ୍ନାତୃଣାଂ ସ୍ପଷ୍ଟ ଉପଲଭ୍ୟତେ ।

(ଖ) ତଥାହି ଆର୍ତ୍ତଭାଗପ୍ରଶ୍ନେ 'ଯତ୍ରାୟଂ ପୁରୁଷୋ ମ୍ରିୟତେ ଉଦସ୍ମାତ୍‌ପ୍ରାଣାଃ କାମନ୍ତ୍ୟାହୋ ନେତି ।' (ବୃହ ୩-୨-୧୧) ଇତ୍ୟତ୍ର 'ନେତି ହୋବାଚ ଯାଜ୍ଞବଲ୍କ୍ୟଃ' (ବୃହ ୩-୨-୧୧) ଇତ୍ୟନୁତ୍କ୍ରାନ୍ତିପକ୍ଷଂ ପରିଗୃହ୍ୟ ନ ତର୍ହ୍ୟୟମନୁତ୍କ୍ରାନ୍ତେଷୁ 'ପ୍ରାଣେଷୁ ମ୍ରିୟତ ଇତ୍ୟସ୍ୟାମାଶଙ୍କାୟାମ୍ 'ଅତ୍ରୈବ ସମବନୀୟନ୍ତେ' ଇତି ପ୍ରବିଲୟଂ ପ୍ରାଣାନାଂ ପ୍ରତିଜ୍ଞାୟ ତତ୍ସିଦ୍ଧୟେ 'ସ ଉଚ୍ଛ୍ୱୟତ୍ୟାଧ୍ମାୟତ୍ୟାଧ୍ମାତୋ ମୃତଃ ଶେତେ' (ବୃହ ୩-୨-୧୧) ଇତି ସଶବ୍ଦପରାମୃଷ୍ଟସ୍ୟ ପ୍ରକୃତସ୍ୟୋତ୍କ୍ରାନ୍ତ୍ୟବଧେରୁଚ୍ଛ୍ୱୟନାଦୀନି ସମାନାନନ୍ତି ।

(ଗ) ଦେହସ୍ୟ ଚୈତାଦି ସ୍ୟୁର୍ନ ଦେହିନଃ, ତତ୍ସାମାନ୍ୟାତ୍; (ନ ତସ୍ମାତ୍ ପ୍ରାଣା ଉତ୍କାମନ୍ତ୍ୟତ୍ରୈବ ସମବନୀୟନ୍ତେ' ଇତାତ୍ରାପ୍ୟଭେଦୋପଚାରେଣ ଦେହାପାଦାନସ୍ୟୈ-ବୋତ୍କ୍ରମଣସ୍ୟ ପ୍ରତିଷେଧଃ ।

(ଘ) ଯଦ୍ୟପି ପ୍ରାଧାନ୍ୟଂ ଦେହିନ ଇତି ବ୍ୟାଖ୍ୟେୟଂ ଯେଷାଂ ପଞ୍ଚମୀପାଠଃ । ଯେଷାଂ ତୁ ଷଷ୍ଠୀପାଠସ୍ତେଷାଂ ବିଦ୍ୱତ୍ ସଂବନ୍ଧିନ୍ୟୁତ୍କ୍ରାନ୍ତିଃ ପ୍ରତିଷିଧ୍ୟତ ଇତି ପ୍ରାପ୍ତୋତ୍କ୍ରାନ୍ତି-ପ୍ରତିଷୋର୍ଥତ୍ୱାଦସ୍ୟ ବାକ୍ୟସ୍ୟ ଦେହାପାଦାନୈବ ସା ପ୍ରତିଷିଦ୍ଧା ଭବତି, ଦେହାଦୁତ୍କ୍ରାନ୍ତିଃ ପ୍ରାପ୍ତା ନ ଦେହିନଃ ।



ଭାଷା-ସିଦ୍ଧାନ୍ତ - (କ) ବ୍ରହ୍ମବେତ୍ତାର ଉତ୍କ୍ରାନ୍ତି ଶରୀରଠାରୁ ହୁଏ । କାରଣ ଉତ୍କ୍ରାନ୍ତି-ପ୍ରତିଷେଧରେ ଜୀବ ଅପାଦାନ ହୁଏ ବୋଲି ଯାହା କୁହାଯାଇଅଛି, ତାହା କିନ୍ତୁ ଠିକ୍ ନୁହେଁ । କେତେକ ସଂପ୍ରଦାୟଙ୍କ ମତରେ ଦେହ ଅପାଦାନ ଅର୍ଥାତ୍ ଦେହଠାରୁ ଉତ୍କ୍ରାନ୍ତିର ପ୍ରତିଷେଧ ସ୍ପଷ୍ଟରୂପରେ ଉପଲବ୍ଧ ହୁଏ ।

(ଖ) ଯେପରି 'ଯତ୍ରାୟଂ ପୁରୁଷୋ' (ହେ ଯାଜ୍ଞବଲକ୍ୟ ! ଯେତେବେଳେ ଏହି ବ୍ରହ୍ମବିତ୍ ପୁରୁଷ ମରେ, ସେତେବେଳେ ସେହି ପ୍ରାଣର ଉତ୍କ୍ରମଣ ହୁଏ କି ନାହିଁ ?) ଏଠାରେ ଏତାଦୃଶ ଆର୍ତ୍ତଭାଗର ପ୍ରଶ୍ନ ହେବାପରେ 'ନେତି ହୋବାଚ' (ଯାଜ୍ଞବଲକ୍ୟ କହିଲେ,'' ପ୍ରାଣ ଉତ୍କ୍ରମଣ କରେ ନାହିଁ) ଏହିପରି ଅନୁତ୍କାନ୍ତି ପକ୍ଷ ପରିହାର ହୋଇ କ'ଣ ଏହି ପ୍ରାଣର ଅନୁତ୍କ୍ରାନ୍ତ ହେବାପରେ ମରେନାହିଁ ? ଏହିପରି ଆଶଙ୍କା ହେବାପରେ 'ଅତ୍ରୈବ' (ସେମାନେ ଏଠାର ଲୀନ ହୋଇଯାଆନ୍ତି) ଏହିପରି ପ୍ରାଣର ପ୍ରବିଲୟକୁ ପ୍ରତିଜ୍ଞା କରି ତାହାର ସିଦ୍ଧି ପାଇଁ 'ସ ଉଚ୍ଛ୍ୱୟତ୍ୟା' (ସେ ଫୁଲିଯାଏ ଅର୍ଥାତ୍ ବାହ୍ୟବାୟୁକୁ ଶରୀର ମଧ୍ୟରେ ଭର୍ତ୍ତି କରେ ଏବଂ ବାୟୁଦ୍ୱାରା ପୂର୍ଣ୍ଣ ହୋଇ ମୃତହୋଇ ନିଶ୍ଚେଷ୍ଟ ହୁଏ) ଏହି 'ସଃ' ଶବ୍ଦରୁ ପରାମୃଷ୍ଟ ପ୍ରକୃତ ଉତ୍କ୍ରାନ୍ତିର ଅବଧିର ଉଚ୍ଛ୍ୱୟନ (ଫୁଲିବା) ଶ୍ରୁତି କହେ ।

(ଗ) ସେଗୁଡ଼ିକ ଦେହର ହେବା ଆବଶ୍ୟକ; କିନ୍ତୁ ଦେହୀର ନୁହେଁ । ତତ୍ସାମାନ୍ୟାତ୍‌ବିଦ୍ୟା ପ୍ରକରଣରୂପ ସାଧର୍ମ୍ୟ ହେଲେ ଉକ୍ତଶ୍ରୁତି ସହ ଏକାର୍ଥକ ହେବାରୁ 'ତସ୍ମାତ୍‌ପ୍ରାଣା' (ତାହାଦ୍ୱାରା ପ୍ରାଣ ଉତ୍କ୍ରମଣ କରେ ନାହିଁ; କିନ୍ତୁ ପରମାତ୍ମାଠାରେ ପୂର୍ଣ୍ଣ ରୂପରେ ବିଲୀନ ହୁଏ) ଏଠାରେ ମଧ୍ୟ ଅଭେଦୋପଚାରଦ୍ୱାରା ଦେହ ଅପାଦାନକ ଉତ୍କ୍ରମଣ ପ୍ରତିଷେଧ ହୁଏ ।

(ଘ) ଯାହାର ପଞ୍ଚମୀ ବିଭକ୍ତି ହୁଏ, ତାହାର ଯଦ୍ୟପି ଦେହୀର ପ୍ରାଧାନ୍ୟ ହୁଏ, ତଥାପି ତାହାକୁ ବ୍ୟାଖ୍ୟା କରିବା ଉଚିତ । ଯାହା ମତରେ ଷଷ୍ଠୀପାଠ ହୁଏ, ସେମାନଙ୍କର ମତରେ ବିଦ୍ୱତସଂବନ୍ଧୀ ଉତ୍କ୍ରାନ୍ତିର ପ୍ରତିଷେଧ ହୁଏ । ତେଣୁ 'ତସ୍ୟ' ଏହି ବାକ୍ୟକୁ ପ୍ରାପ୍ତ ଉତ୍କ୍ରାନ୍ତିର ପ୍ରତିଷେଧାର୍ଥକ ହେଲେ ଦେହାପାଦାନକ ପ୍ରତିଷିଦ୍ଧ ହୁଏ, କାରଣ-ଦେହରୁ ଉତ୍କ୍ରାନ୍ତି ପ୍ରାପ୍ତ ହୁଏ, କିନ୍ତୁ ଦେହୀର ନୁହେଁ ॥

ମୂଳ-(କ) ଅପି ଚ 'ଚକ୍ଷୁଷ୍ଟୋ ବା ମୂର୍ଦ୍ଧ୍ନୋ ବାଽନ୍ୟେଭ୍ୟୋ ବା ଶରୀରଦେଶେଭ୍ୟସ୍ତମୁତ୍କ୍ରାମନ୍ତଂ ପ୍ରାଣୋଽନୁତ୍କ୍ରାମତି ପ୍ରାଣମନୁତ୍କ୍ରାମନ୍ତଂ ସର୍ବେ ପ୍ରାଣା ଅନୁତ୍କ୍ରାମନ୍ତି' (ବୃହ ୪-୪-୨) ଇତ୍ୟେବମବିଦ୍ୱଦ୍‌ବିଷୟେ ସପ୍ରପଞ୍ଚମୁତ୍କ୍ରମଣଂ ସଂସାରଗମନଂ ଚ ଦର୍ଶୟିତ୍ୱା 'ଇତି ନୁ କାମୟମାନଃ (ବୃହ ୪-୪-୬) ଇତ୍ୟୁପସଂହୃତ୍ୟାବିଦ୍ୱତ୍‌କଥାମ୍ 'ଅଥାକାମୟମାନଃ' (ବୃହ ୪-୪-୬) ଇତି ବ୍ୟପଦିଶ୍ୟ ବିଦ୍ୱାଂସଂ ଯଦି ତଦ୍‌ବିଷୟେଽପ୍ୟୁତ୍କ୍ରାନ୍ତିମେବ ପ୍ରାପୟେଦସମଞ୍ଜସ ଏବ ବ୍ୟପଦେଶଃ ସ୍ୟାତ୍ ।

(ଖ) ତସ୍ମାଦବିଦ୍ୱଦ୍‌ବିଷୟେ ପ୍ରାପ୍ତୟୋର୍ଗତ୍ୟୁତ୍‌କ୍ରାନ୍ତ୍ୟୋର୍ବିଦ୍ୱଦ୍‌ବିଷୟେ ପ୍ରତିଷେଧ ଇତ୍ୟେବମେବ ବ୍ୟାଖ୍ୟେୟମ୍, ବ୍ୟପଦେଶାର୍ଥବତ୍ତ୍ୱାୟ । ନ ଚ ବ୍ରହ୍ମବିଦଃ ସର୍ବଗତବ୍ରହ୍ମାତ୍ମ-ଭୂତସ୍ୟ ପ୍ରକ୍ଷୀଣକାମକର୍ମଣ ଉତ୍‌କ୍ରାନ୍ତିର୍ଗତିର୍ବୋପପଦ୍ୟତେ, ନିମିତ୍ତାଭାବାତ୍ । 'ଅତ୍ର ବ୍ରହ୍ମ ସମଶ୍ନୁତେ' ଇତି ଚୈବଂଜାତୀୟକାଃ ଶ୍ରୁତୟେ ଗତ୍ୟୁତ୍‌କ୍ରାନ୍ତ୍ୟୋରଭାବଂ ସୂଚୟନ୍ତି ॥

ଭାଷା-(କ) 'ଚକ୍ଷୁଷ୍ଟୋ ବା' (ଏହି ଆତ୍ମା ନେତ୍ର, ମସ୍ତକ କିମ୍ବା ଶରୀରର କୌଣସି ଅଂଶଦ୍ୱାରା ବାହାରକୁ ଯାଏ । ସେ ଉତ୍‌କ୍ରମଣ ହେବା ପରେ ତାହା ସହିତ ପ୍ରାଣ ମଧ୍ୟ ଉତ୍‌କ୍ରମଣ କରେ । ପଛରେ ଉତ୍‌କ୍ରମଣ କରି ସେହିପ୍ରାଣର ପଛରେ ସମସ୍ତବାଗାଦି ପ୍ରାଣ ଉତ୍‌କ୍ରମଣ କରନ୍ତି) ଏହିପରି ଅବିଦ୍ୱାନବିଷୟକ ବିସ୍ତାର ସହିତ ଉତ୍‌କ୍ରମଣ ଓ ସଂସାରଗମନ ଦେଖାଇ 'ଇତି ତୁ କାମୟମାନଃ' (ଏହିପ୍ରକାର କାମନା କରି ସଂସାରକୁ, ପ୍ରାପ୍ତ ହୁଏ) ଏହିପରି ଅବିଦ୍ୱାନର କଥାକୁ ଉପସଂହାର କରି ଅଥାକାମୟମାନଃ' (ବର୍ତ୍ତମାନ ସେ କାମନା କରେନାହିଁ) ଏହି ରୀତିରେ ବିଦ୍ୱାନ୍‌ର ଉପଦେଶ କରି ଯଦି ତାହାର ବିଷୟରେ ଉତ୍‌କ୍ରାନ୍ତି ପ୍ରାପ୍ତ କରାଏ, ତେବେ ଏହି ବ୍ୟପଦେଶ ଅଯୁକ୍ତ ହେବ ।

(ଖ) ତେଣୁ ଅବିଦ୍ୱାନର ବିଷୟରେ ପ୍ରାପ୍ତ ହୋଇଥିବା ଗତି ଓ ଉତ୍‌କ୍ରାନ୍ତିର ବିଦ୍ୱାନ ବିଷୟରେ ପ୍ରତିଷେଧ ହୁଏ । ତେଣୁ ବ୍ୟପଦେଶର ସାର୍ଥକତା ପାଇଁ ଏହି ବ୍ୟାଖ୍ୟାନ କରିବା ଉଚିତ । ସର୍ବଗତ ବ୍ରହ୍ମାତ୍ମଭୂତ ପ୍ରକ୍ଷୀଣ କାମ କର୍ମ କରୁଥିବା ବ୍ରହ୍ମବିତ୍‌ର ଉତ୍‌କ୍ରାନ୍ତି ଅଥବା ଗତି, ଉପପନ୍ନ ହୁଏ ନାହିଁ, କାରଣ-ତାହାର ନିମିତ୍ତ ଅଭାବ ହୁଏ, 'ଅତ୍ର ବ୍ରହ୍ମ ସମଶ୍ନୁତେ' (ଏଠାରେ ବ୍ରହ୍ମ ପ୍ରାପ୍ତ କରେ) ଏହି ପ୍ରକାରର ଶ୍ରୁତିବାକ୍ୟ ଗତି ଓ ଉତ୍‌କ୍ରାନ୍ତିର ଅଭାବ ସଚିତ କରେ ॥

## स्मर्यते च ॥ ४-२-१४ ॥

## ସ୍ମର୍ଯ୍ୟତେ ଚ ॥୪-୨-୧୪॥

'ଦେବାଃ ଅପି ମାର୍ଗଂ ମୁହ୍ୟନ୍ତି'- ଏହି ସ୍ମୃତି ମଧ୍ୟ ବ୍ରହ୍ମଜ୍ଞାନର ଗତି ଓ ଉତ୍‌କ୍ରାନ୍ତିର ଅଭାବ ଦେଖାଏ ।

ମୂଳ-(କ) ସ୍ମର୍ଯ୍ୟତେ ଚ ମହାଭାରତେ ଗତ୍ୟୁତକ୍ରାନ୍ତ୍ୟୋରଭାବଃସର୍ବଭୂତାତ୍ମଭୂତସ୍ୟ ସମ୍ୟଗ୍‌ଭୂତାନି ପଶ୍ୟତଃ । ଦେବା ଅପି ମାର୍ଗେ ମୁହ୍ୟନ୍ତ୍ୟପଦସ୍ୟ ପଦୈଷିଣଃ' ଇତି ।

(ଖ) ନନୁ ଗତିରପି ବ୍ରହ୍ମବିଦଃ ସର୍ବଗତବ୍ରହ୍ମାତ୍ମଭୂତସ୍ୟ ସ୍ମର୍ଯ୍ୟତେ- 'ଶୁକଃ କିଲ ବୈୟାସକିର୍ମୁମୁକ୍ଷୁରାଦିତ୍ୟମଣ୍ଡଳମଭିପ୍ରତସ୍ଥେ ପିତ୍ରା ଋନୁଗତ୍ୟାହୂତୋ ଭୋ ଇତି ପ୍ରତିଶୁଶ୍ରାବ' ଇତି । ନ, ସଶରୀରସ୍ୟୈବାୟଂ ଯୋଗବଳେନ ବିଶିଷ୍ଟଦେଶପ୍ରାପ୍ତି ପୂର୍ବକଃ

ଶରୀରୋତ୍ସର୍ଗଃ ଇତି ଦ୍ରଷ୍ଟବ୍ୟମ୍ । ସର୍ବଭୂତଦୃଶ୍ୟତ୍ୱାଦ୍ୟୁପନ୍ୟାସାତ୍ । ନହ୍ୟଶରୀରଂ ଗଚ୍ଛନ୍ତଂ ସର୍ବଭୂତାନି ଦ୍ରଷ୍ଟୁଂ ଶକ୍ନୁୟୁଃ ।

(ଗ) ତଥାଚ ତତ୍ରୈବୋପସଂହୃତମ୍-'ଶୁକସ୍ତୁ ମାରୁତାଚ୍ଛୀଘ୍ରାଂ ଗତିଂ କୃତ୍ୱାଽନ୍ତରୀକ୍ଷଗଃ । ଦର୍ଶୟିତ୍ୱା ସ୍ୱଂ ସର୍ବଭୂତଗତୋଽଭବତ୍' ଇତି । ତସ୍ମାଦଭାବଃ ପରବ୍ରହ୍ମବିଦୋ ଗତ୍ୟୁତ୍କ୍ରାନ୍ତ୍ୟୋଃ । ଗତିଶ୍ରୁତୀନାଂ ତୁ ବିଭାୟମୁପରିଷ୍ଟାଦ୍ ବ୍ୟାଖ୍ୟାସ୍ୟାମଃ ।

ଭାଷା-(କ) ମହାଭାରତରେ 'ସର୍ବଭୂତାତ୍ମଭୂତସ୍ୟ' (ସମସ୍ତ ଭୂତଗୁଡ଼ିକର ଯାହା ଆତ୍ମରୂପ ରହିଛି ଏବଂ ଯାହାକୁ ଭୂତଗୁଡ଼ିକର ସମ୍ୟକ୍ ଅର୍ଥାତ୍ ଆତ୍ମଭାବଦ୍ୱାରା ଜ୍ଞାନ ହୁଏ, ତାହା ପାଇଁ ପ୍ରାପ୍ୟସ୍ଥାନ ନାହିଁ । ଏହିପରି ପ୍ରାପ୍ୟ ପଦରହିତ ବ୍ରହ୍ମବେତ୍ତାର ପଦକୁ ଇଚ୍ଛା କରୁଥିବା ଦେବଗଣ ମଧ୍ୟ ସେହି ମାର୍ଗରେ ବିମୋହିତ ହୁଅନ୍ତି, ଅର୍ଥାତ୍ ଏହି ମାର୍ଗ ଅଭାବ ହେତୁ ଦେବତାମାନେ ଜାଣିପାରନ୍ତି ନାହିଁ) ଏହିପ୍ରକାର ଗତି ଓ ଉତ୍କ୍ରାନ୍ତିର ଦୃଷ୍ଟାନ୍ତ ସ୍ମୃତିରେ ନାହିଁ ।

(ଖ) ପରନ୍ତୁ 'ଶୁକ କିଲଃ' (ମହର୍ଷି ବେଦବ୍ୟାସର ପୁତ୍ର ମୁମୁକ୍ଷୁ ଶୁକଦେବ ଆଦିତ୍ୟ ପାଖକୁ ଗଲେ, ତାହାର ପଛକୁ ଯାଇ ବ୍ୟାସଦେବ କହିଲେ, ତାହା ଶ୍ରବଣ କରି 'ଭୋ' ଅର୍ଥାତ୍ 'ହେ' ବୋଲି ଉତ୍ତର ଦେଲେ ଏବଂ ଶ୍ରବଣ କଲେ) ଏହିପ୍ରକାର ସର୍ବଗତ ବ୍ରହ୍ମାତ୍ମଭୂତ ବ୍ରହ୍ମବେତ୍ତାର ଗତି ସ୍ମୃତିରେ ଦେଖାଯାଏ କି ? ନୁହେଁ, ଯୋଗବଳରେ ଅର୍ଥାତ୍ ଅପରବିଦ୍ୟା ବଳରେ ଶରୀର ସହିତ ବିଶିଷ୍ଟଦେଶପ୍ରାପ୍ତିପୂର୍ବକ ଏହି ଶରୀରର ତ୍ୟାଗ ଅଛି ବୋଲି ଜାଣିବାକୁ ପଡ଼ିବ; କାରଣ-ସବୁପ୍ରାଣରୁ ଦୃଶ୍ୟତ୍ୱାଦିର ଉପନ୍ୟାସ ହୁଏ । ଅଶରୀର ଗତିକୁ ପ୍ରାପ୍ତ ହେଉଥିବା ସବୁପ୍ରାଣୀ ଦେଖାଯାନ୍ତି ନାହିଁ ।

(ଗ) 'ଶୁକସ୍ତୁ' (ଶୁକଦେବ କିନ୍ତୁ ଅନ୍ତରିକ୍ଷକୁ ଯାଇ ପବନଠାରୁ ଶୀଘ୍ରଗତି ହୋଇ ଏବଂ ନିଜର ପ୍ରଭାବ ଦେଖାଇ ସର୍ବଭୂତକୁ ପ୍ରାପ୍ତ ହେଲେ) ଏହିପ୍ରକାର ସେଠାରେ ମଧ୍ୟ ଉପସଂହୃତ ହୋଇଛି । ତେଣୁ ପରବ୍ରହ୍ମବେତ୍ତାର ଗତି ଓ ଉତ୍କ୍ରାନ୍ତିର ଅଭାବ ହୁଏ । ଗତି ଓ ଶ୍ରୁତିଗୁଡ଼ିକର ବିଷୟରେ ଆମ୍ଭେ ପରେ କହିବୁ ॥୧୪॥

## ७ वागादिलयाधिकरणम् ॥ सू०-१५ ॥

## ୭ । ବାଗାଦିଲୟାଧିକରଣମ୍ ॥ସୂ-୧୫॥

**तानि परे तथा ह्याह ॥ ४-२-१५ ॥**

**ତାନି ପରେ ତଥା ହ୍ୟାହ ॥୪-୨-୧୫॥**

ତାନି=ସେହି ପ୍ରାଣାତ୍ମକ ଇନ୍ଦ୍ରିୟଗୁଡ଼ିକ ଓ ଭୂତ, ପରେ=ପରମାତ୍ମାରେ ଲୟ ହୁଅନ୍ତି । ହି-କାରଣ, ତଥା ଆହ=ସେହିପରି 'ଏବମେବାସ୍ୟ' ଇତ୍ୟାଦି ଶ୍ରୁତି କହେ ॥

ମୂଳ-(କ) ତାନି ପୁନଃ ପ୍ରାଣଶବ୍ଦୋଦିତାନୀନ୍ଦ୍ରିୟାଣି ଭୂତାନି ଚ ପରବ୍ରହ୍ମ ବିଦସ୍ତସ୍ମି ନ୍ନେବ ପରସ୍ମିନ୍ନାତ୍ମନି ପ୍ରଲୀୟନ୍ତେ, କସ୍ମାତ୍ ? ତଥା ହ୍ୟାହ ଶ୍ରୁତିଃ 'ଏବମେବାସ୍ୟ ପରିଦ୍ରଷ୍ଟୁ-ରିମାଃ ଷୋଡ଼ଶ କଳାଃ ପୁରୁଷାୟଣାଃ ପୁରୁଷଂ ପ୍ରାପ୍ୟାସ୍ତଂ ଗଚ୍ଛନ୍ତି', (ପ୍ରଶ୍ନ ୬-୫) ଇତି ।

(ଖ) ନନୁ 'ଗତାଃ କଳାଃ ପଞ୍ଚଦଶ ପ୍ରତିଷ୍ଠା' (ମୁ ୩-୨-୭) ଇତି ବିଦ୍ୱଦ୍‌ବିଷୟୈ-ବାପରା ଶ୍ରୁତିଃ ପରସ୍ମାଦାତ୍ମନୋଽନ୍ୟତ୍ରାପି କଳାନାଂ ପ୍ରଳୟମାହ ସ୍ମ, ନ, ସା ଖଲୁ ବ୍ୟବହାରପେକ୍ଷା, ପାର୍ଥିବାଦ୍ୟାଃ କଳାଃ ପୃଥିବ୍ୟାଦୀରେବ ସ୍ୱପ୍ରକୃତି ରପି ଯନ୍ତୀତି, ଇତରା ତୁ ବିଦ୍‌ତ୍ ପ୍ରତିପତ୍ତ୍ୟପେକ୍ଷା, କୃତ୍ସ୍ନଂ କଳାଜାତଂ ପରବ୍ରହ୍ମବିଦୋ ବ୍ରହ୍ମୈବ ସଂପଦ୍ୟତ ଇତି । ତସ୍ମାଦଦୋଷଃ ॥

ଭାଷା-(କ) ପରବ୍ରହ୍ମବେତ୍ତାର ପ୍ରାଣ ଶବ୍ଦରୁ କଥିତ ସେହି ଇନ୍ଦ୍ରିୟଗୁଡ଼ିକ ଏବଂ ଭୂତ ସେହି ପରମାତ୍ମାରେ ବିଲୀନ ହୁଅନ୍ତି କାରଣ- 'ଏବମେବାସ୍ୟ' (ଯେଉଁ ପ୍ରକାର ନଦୀଗୁଡ଼ିକ ସମୁଦ୍ରରେ ପହଞ୍ଚି ବିଲୀନ ହୁଅନ୍ତି, ସେହିପରି ଦ୍ରଷ୍ଟାର ସମସ୍ତ ଷୋଡ଼ଶ କଳାଗୁଡ଼ିକ, ଯାହାର ଅଧିଷ୍ଠାନ ପୁରୁଷ ଅଟେ, ସେହି ପୁରୁଷକୁ ପ୍ରାପ୍ତ ହୋଇ ଲୀନ ହୋଇଯା'ନ୍ତି) ଏହାହିଁ ଶ୍ରୁତି ଅଟେ ।

(ଖ) ପରନ୍ତୁ 'ଗତାଃ କଳାଃ' (ମୋକ୍ଷ କାଳରେ ଦେହାରମ୍ଭକ ପ୍ରାଣାଦି ପଞ୍ଚଦଶ କଳା ନିଜ ନିଜ ଆଶ୍ରୟରେ ରହନ୍ତି) ଏହିପ୍ରକାର ପାର୍ଥିବାଦି କଳାଗୁଡ଼ିକ ନିଜର ପ୍ରକୃତି ପୃଥିବୀ ଆଦିରେ ବିଲୀନ ହୁଅନ୍ତି ଏବଂ ଏହି ଶ୍ରୁତି ବ୍ୟବହାରକୁ ଅପେକ୍ଷା କରନ୍ତି । ପରବ୍ରହ୍ମବେତ୍ତାର ସଂପୂର୍ଣ୍ଣ କଳାସମୂହ ବ୍ରହ୍ମରେ ବିଲୀନ ହୁଅନ୍ତି । ଏହିପ୍ରକାର ଅନ୍ୟ ଶ୍ରୁତି କିନ୍ତୁ ବିଦ୍ୱତ୍ ପ୍ରତିପତ୍ତିକୁ ଅପେକ୍ଷା କରେ । ତେଣୁ ଏହା ଦୋଷ ନୁହେଁ ॥୧୫॥

## ८ । अविभागाधिकरणम् ॥ ४-२-१६ ॥

## ୮ । ଅବିଭାଗାଧିକରଣମ୍ ॥୪-୨-୧୬॥

## ଅବିଭାଗୋ ବଚନାତ୍ ॥୪-୨-୧୬॥

## अविभागो वचनात् ॥ ४-२-१६ ॥

ଅବିଭାଗୋ-ବିଦ୍ୱାନ୍‌ର କଳାଗୁଡ଼ିକ ବ୍ରହ୍ମ ସହିତ ଅତ୍ୟନ୍ତ ଅବିଭାଗ ହୁଏ । ସେଠାରେ, ବଚନାତ୍=କାରଣ- 'ଭିଦ୍ୟେତେ' ତାସାଂ ନାମରୂପେ ଇତ୍ୟାଦି ଶ୍ରୁତିବଚନ ରହିଛି ॥

ମୂଳ-(କ) ସ ପୁନର୍ବିଦୁଷଃ କଳାପ୍ରଳୟଃ କିମେତରରେଷାମିବ ସାବଶେଷୋ ଭବତ୍ୟା ହୋସ୍ୱିନ୍ନିର ବିଶେଷ ଇତି ? ତତ୍ର ପ୍ରଳୟ ସାମାନ୍ୟାଚ୍ଛକ୍ତ୍ୟ ବଶେଷତା ପ୍ରସକ୍ତୌ ବ୍ରବୀତି- 'ଅବିଭାଗାପତ୍ତିରେବେତି । କୁତଃ ? ବଚନାତ୍ ।



(ଖ) ତଥାହି-କଳାପ୍ରଳୟ ମୁକ୍ତ୍ୱା ବକ୍ତି 'ଭିଦ୍ୟେତେ ତାସାଂ ନାମରୂପେ ପୁରୁଷ ଇତ୍ୟେବଂ ପ୍ରୋଚ୍ୟେତେ ସ ଏଷୋଽକଳୋଽମୃତୋ ଭବତି' (ପ୍ର ୬-୫) ଇତି । ଅବିଦ୍ୟା ନିମିତ୍ତାନାଂ ଚ କଳାନାଂ ନ ବିଦ୍ୟା ନିମିତ୍ତେ ପ୍ରଳୟେ ସାବଶେଷତ୍ୱୋପପତ୍ତିଃ । ତସ୍ମାଦବିଭାଗ ଏବେତି ॥

ଭାଷା-(କ) ବିଦ୍ୱାନ୍‌ର ଏହି କଳା ପ୍ରଳୟଃ କ'ଣ ଅନ୍ୟ ବିଦ୍ୱାନ୍‌ର କଳା ପ୍ରଳୟ ପରି ସାବଶେଷ ହୁଏ, କି ନିରବଶେଷ ହୁଏ ? ଏହିପ୍ରକାର ସଂଶୟ ହେବାରୁ ପ୍ରଳୟ ସାଦୃଶ୍ୟରୁ ଶକ୍ତି ଅବଶେଷ ହୁଏ । ଏହିପ୍ରକାର ପ୍ରସକ୍ତ ହେବାପରେ ସିଦ୍ଧାନ୍ତୀମାନେ କହନ୍ତି ଯେ- 'ଏହା ଅବିଭାଗଦ୍ୱାରା ପ୍ରାପ୍ତ ହୁଏ' କିପରି ? ଶ୍ରୁତିବଚନଦ୍ୱାରା ।

(ଖ) ଯେପରି କଳାପ୍ରଳୟ କହି 'ଭିଦ୍ୟେତେ ତାସାଂ' (ସେହି କଳାଗୁଡ଼ିକର ନାମରୂପ ନଷ୍ଟ ହୋଇଯାଏ ଏବଂ ଅନିଷ୍ଟ ତତ୍ତ୍ୱକୁ ବ୍ରହ୍ମବେତ୍ତା ପୁରୁଷ ବୋଲି କହନ୍ତି । ସେହି କଳାହୀନ ଓ ଅମୃତ ହୁଏ) ଏହା ଶ୍ରୁତି କହେ । ଅବିଦ୍ୟା ନିମିତ୍ତକ କଳାଗୁଡ଼ିକର ବିଦ୍ୟା ନିମିତ୍ତକ ପ୍ରଳୟ ହେଲେ ତାହାର ସାବଶେଷତ୍ୱ ଉପପତ୍ତି ହୁଏ ନାହିଁ; ତେଣୁ ତାହା ଅବିଭାଗ ଅଟେ ॥୧୬॥

## ९ । तदोकोऽधिकरणम् ॥ सू० १७ ॥

## ୯ । ତଦୋକୋଽଧିକରଣମ୍ ॥୧୭॥

**तदोकोऽग्रज्जलनं तत्प्रकाशितद्वारो विद्यासामर्थ्यात्तच्छेषगत्यनुस्मृतियोगाच्च हार्दानुगृहीतः शताधिकया ॥ ४-२-१७ ॥**

**ତଦୋକୋଽଗ୍ରଜ୍ଜ୍ୱଳନଂ ତତ୍‌ପ୍ରକାଶିତଦ୍ୱାରୋ ବିଦ୍ୟାସାମର୍ଥ୍ୟା-ତ୍ତଚ୍ଛେଷଗତ୍ୟନୁସ୍ମୃତିଯୋଗାଚ୍ଚ ହାର୍ଦାନୁଗୃହୀତଃ ଶତାଧିକୟା ॥୪-୨-୧୭॥**

ତଦୋକୋଽଗ୍ରଜ୍ଜ୍ୱଳନମ୍=ଏହି ଶରୀରରୁ ଉତ୍‌କ୍ରମଣ କରୁଥିବା ବିଦ୍ୱାନ୍‌ର ଆୟତନ ରୂପ ହୃଦୟ ଭାଗରେ ପ୍ରକାଶିତ ହୁଏ । ତତ୍ ପ୍ରକାଶିତ ଦ୍ୱାରଃ=ଏହି ପ୍ରକାଶ ଦ୍ୱାରା ପ୍ରକାଶିତ ଦ୍ୱାରୀ ସେହି ବିଦ୍ୱାନ୍, ବିଦ୍ୟା ସାମର୍ଥ୍ୟାତ୍=ସଗୁଣ ବ୍ରହ୍ମବିଦ୍ୟାର ସାମର୍ଥ୍ୟରୁ, ତଚ୍ଛେଷଗତ୍ୟନୁ-ସ୍ମୃତିଯୋଗାଚ୍ଚ=ବିଦ୍ୟାର ଅଙ୍ଗଭୂତ ବ୍ରହ୍ମଲୋକ ଗମନ ବିଷୟକ ସ୍ମରଣ କରି, ହାର୍ଦାନୁଗୃହୀତଃ=ହୃଦୟସ୍ଥ ପରମେଶ୍ୱରଦ୍ୱାରା ଗୃହୀତ ହୋଇ, 'ଶତାଧିକୟା' ଏକଶତ ଏକ ମୂର୍ଦ୍ଧନ୍ୟ ନାଡ଼ୀଦ୍ୱାରା ନିଷ୍କ୍ରମଣ କରେ ॥

ମୂଳ-(କ) ସମାପ୍ତା ପ୍ରାସଙ୍ଗିକୋ ପରବିଦ୍ୟାଗତା ଚିନ୍ତା । ସଂପ୍ରତି ତ୍ୱପରବିଦ୍ୟା ବିଷୟାମେବ ଚିନ୍ତାମନୁବର୍ତ୍ତୟତି । ସମାନା ଚାସୃତ୍ୟୁପକ୍ରମାଦ୍‌ବିଦ୍ୱଦ ବିଦୁଷୋରୁତ୍-

କ୍ରାନ୍ତିରିତ୍ୟୁକ୍ତମ୍, ତମିଦାନୀଂ ସୃତ୍ୟୁପକ୍ରମଂ ଦର୍ଶୟତି, ତସ୍ୟୋପସଂହୃତ ବାର୍ଗାଦି କଳାପସ୍ୟୋ-ଛିକ୍ରମିଷତୋ ବିଜ୍ଞାନାତ୍ମନଃ, ଓକ ଆୟତନଂ ହୃଦୟମ୍ । 'ସ ଏତାସ୍ତେଜୋମାତ୍ରାଃ ସମଭ୍ୟାଦଦାନୋ ହୃଦୟମେବାନ୍ୱବକ୍ରାମତି' ଇତିଶ୍ରୁତେଃ ।

(ଖ) ତଦଗ୍ରପ୍ରଜ୍ୱଳନପୂର୍ବିକା ଚକ୍ଷୁରାଦିସ୍ଥାନାପାଦାନା ଚୈତ୍କ୍ରାନ୍ତିଃ ଶ୍ରୂୟତେ ତସ୍ୟ ହୈ୍ୟତସ୍ୟ ହୃଦୟସ୍ୟାଗ୍ରଂ ପ୍ରଦ୍ୟୋତତେ ତେନ ପ୍ରଦ୍ୟୋତେନୈଷ ଆତ୍ମା ନିଷ୍କ୍ରାମତି ଚକ୍ଷୁଷ୍ଟୋ ବା ମୂର୍ଦ୍ଧ୍ନୋ ବାନ୍ୟେଭ୍ୟୋ ବା ଶରୀର ଦେଶେଭ୍ୟଃ' (ବୃହ ୪-୪-୨) ଇତି ।

(ଗ) ସା କିମନିୟ ମେନୈବ ବିଦ୍ୱଦବିଦୁଷୋର୍ଭବତି, ଅଥାସ୍ତି କଶ୍ଚିଦ୍ ବିଦୁଷୋ ବିଶେଷ ନିୟମ ଇତି ଚିକିତ୍ସାୟାଂ ଶ୍ରୁତ୍ୟବିଶେଷାଦ ନିୟମପ୍ରାପ୍ତାବାଚଷ୍ଟେ ସମାନେଽପି ହି ବିଦ୍ୱଦ ବିଦୁଷୋଃ ହୃଦୟାଗ୍ର ପ୍ରଦ୍ୟୋତନେ ତତ୍ ପ୍ରକାଶିତ ଦ୍ୱାରତ୍ୱେ ଚ ମୂର୍ଦ୍ଧ ସ୍ଥାନାଦେବ ବିଦ୍ୱାନ୍ନିଷ୍କ୍ରାମତି ସ୍ଥାନାନ୍ତରେଭ୍ୟସ୍ତିତରେ ॥

ଭାଷା- (କ) ପ୍ରସଙ୍ଗପ୍ରାପ୍ତ ପରବିଦ୍ୟାଗତ ବିଚାର ସମାପ୍ତ ହେଲା । ବର୍ତ୍ତମାନ କିନ୍ତୁ ସୂତ୍ରକାର ଅପର ବିଦ୍ୟା ବିଷୟକ ବିଚାର ଅନୁବୃତ୍ତି କରନ୍ତି । ଏଠାରେ ଅର୍ଚ୍ଚିରାଦି ମାର୍ଗର ଉପକ୍ରମ ଉପାସକ ଓ ଅନୁପାସକର ଉତ୍କ୍ରାନ୍ତି ସମାନ ହୁଏ ବୋଲି କୁହାଯାଇଛି । ବର୍ତ୍ତମାନ ମାର୍ଗ ଉପକ୍ରମକୁ ଦେଖାଏ । ଉପସଂହୃତ ବାଗାଦି ସମୂହଯୁକ୍ତ ଉତ୍କ୍ରମଣ କରିବାର ଇଚ୍ଛୁକ ଏହି ଜୀବାତ୍ମାର ଆୟତନ ହୃଦୟ ଅଟେ; କାରଣ 'ସ ଏତାସ୍ତେଜୋ' (ସେହି ଜୀବାତ୍ମା ଏହି ତେଜର ଅବୟବ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟଗୁଡ଼ିକୁ ଉପସଂହାର କରି ହୃଦୟରେ ପ୍ରାପ୍ତ ହୁଏ) ଏହାହିଁ ଶ୍ରୁତି ଅଛି ।

(ଖ) ସେହି ହୃଦୟର ଅଗ୍ରଭାଗ ପ୍ରକାଶିତ ହୁଏ । ଏହି ହୃଦୟାଗ୍ରଭାଗ ପ୍ରଜ୍ଜ୍ୱଳନ ପୂର୍ବକା ଚକ୍ଷୁ ଆଦିସ୍ଥାନରୁ ତାହାର ଉତ୍କ୍ରାନ୍ତି ହୁଏ; କାରଣ- 'ତସ୍ୟ ହୈତସ୍ୟ' (ସେ ଏହି ହୃଦୟର ଅଗ୍ରଭାଗକୁ ପ୍ରକାଶିତ କରେ, ସେହି ପ୍ରକାଶ ଦ୍ୱାରା ଆତ୍ମା ନେତ୍ର ଦ୍ୱାରା, ଶିର ଦ୍ୱାରା ଅଥବା ଶରୀରର ଯେକୌଣସି ଅନ୍ୟଭାଗ ଦ୍ୱାରା ବାହାରକୁ ବାହାରି ଯାଏ) ଏହାହିଁ ଶ୍ରୁତି ।

(ଗ) ସେହି ଉତ୍କ୍ରାନ୍ତି ଅନିୟମ ଦ୍ୱାରା ବିଦ୍ୱାନ ଓ ଅବିଦ୍ୱାନ୍‌ର କ'ଣ ହୁଏ ଅଥବା ବିଦ୍ୱାନ ପାଇଁ କୌଣସି ବିଶେଷ ନିୟମ ନାହିଁ କି ? - ଏହିପ୍ରକାର ସଂଶୟ ହେବାରୁ ଶ୍ରୁତିର ଅବିଶେଷ ଦ୍ୱାରା ଅନିୟମ ପ୍ରାପ୍ତ ହେବାରୁ ସିଦ୍ଧାନ୍ତୀ କହନ୍ତି ଯେ ବିଦ୍ୱାନ୍ ଓ ଅବିଦ୍ୱାନ୍‌ର ହୃଦୟ ନାଡ଼ୀ ମୁଖର ପ୍ରଦ୍ୟୋତନ ଏବଂ ତାହାଦ୍ୱାରା ପ୍ରକାଶିତ ହୋଇଥିବା ଦ୍ୱାରା ପରି ହେଲେ ବି ବିଦ୍ୱାନ୍ ମୂର୍ଦ୍ଧାସ୍ଥାନରୁ ଉତ୍କ୍ରମଣ କରେ ଏବଂ ଅନ୍ୟ ଅନୁଶାସକ ଅନ୍ୟସ୍ଥାନରୁ ନିଷ୍କ୍ରମଣ କରନ୍ତି ।

ମୂଳ- (କ) କୁତଃ ? ବିଦ୍ୟାସାମର୍ଥ୍ୟାତ୍ । ଯଦି ବିଦ୍ୱାନପୀତରବଦ୍ୟତଃ କୁତଶ୍ଚିଦ୍ଦେହ ଦେଶାଦୁତ୍କ୍ରାମେନ୍ନୈବୋତ୍କୃଷ୍ଟଂ ଲୋକଂ ଲଭେତ । ତତ୍ରାନର୍ଥିକୈବ ବିଦ୍ୟା ସ୍ୟାତ୍ ।

 

ତଚ୍ଛେଷ ଗତ୍ୟନୁ ସ୍ମୃତି ଯୋଗାଚ୍ଚ । ବିଦ୍ୟାଶେଷଭୂତା ଚ ମୂର୍ଧନ୍ୟନାଡ଼ୀ ସଂବନ୍ଧା ଗତିରନୁଶୀଲୟିତବ୍ୟା ବିଦ୍ୟାବିଶେଷେଷୁ ବିହିତା, ତାମଭ୍ୟସ୍ୟଂସ୍ତୟୈବ ପ୍ରତିଷ୍ଠିତ ଇତି ଯୁକ୍ତମ୍ ।

(ଖ) ତସ୍ମାଦ୍ ହୃଦୟାଲୟେନ ବ୍ରହ୍ମଣା ସୁପାସିତେନାନୁଗୃହୀତ ସ୍ତଦ୍‌ଭାବଂ ସମାପନ୍ନୋ ବିଦ୍ୱାନ୍ ମୂର୍ଧନ୍ୟୟୈବ ଶତାଧିକୟା ଶତାଦତିରିକ୍ତୟୈକ ଶତତମ୍ୟା ନାଡ଼୍ୟା ନିଷ୍କ୍ରାମତୀତରାଭିରିତରେ । ତଥାହି – ହାର୍ଦବିଦ୍ୟାଂ ପ୍ରକୃତ୍ୟ ସମାମନନ୍ତି- 'ଶତଂ ଚୈକା ଚ ହୃଦୟସ୍ୟ ନାଡ଼୍ୟସ୍ତାସାଂ ମୂର୍ଧାନମଭିଃସ୍ତିତୈକା । ତୟୋର୍ଧ୍ୱମାୟନ୍ନ ମୃତତ୍ୱମେତି ବିଷ୍ୱଙ୍ଙନ୍ୟ ଉତ୍‌କ୍ରମେଣେ ଭବନ୍ତି (ଛା ୮-୬-୬) ଇତି ॥

ଭାଷା (କ) କିପରି ? ବିଦ୍ୟାର ସାମର୍ଥ୍ୟରୁ । ଯଦି ବିଦ୍ୱାନ୍ ମଧ ଅନ୍ୟପରି ଯେକୌଣସି ଦେହଭାଗରୁ ଉତ୍‌କ୍ରମଣ କଲେ ମଧ ଉତ୍‌କୃଷ୍ଟ ଲୋକକୁ ପ୍ରାପ୍ତ ହୁଏ ନାହିଁ; କିନ୍ତୁ ଏହି ପରିସ୍ଥିତିରେ ବିଦ୍ୟା ଅନର୍ଥକ ହେବ, କାରଣ-ସଗୁଣ ବିଦ୍ୟାର ଶେଷଭୂତ ଗତିର ଅନୁସ୍ମୃତି ସମ୍ବନ୍ଧ ରହେ । ବିଦ୍ୟାର ଶେଷଭୂତ ଏବଂ ମୂର୍ଦ୍ଧନ୍ୟନାଡ଼ୀ ଦ୍ୱାରା ସମ୍ବନ୍ଧ ବିଦ୍ୟାବିଶେଷରେ ବିହିତ ଗତିର ଧ୍ୟାନ କରିବା ଉଚିତ୍ । ସେହି ଗତିର ଚିନ୍ତନ କରି ତାହାଠାରୁ ପ୍ରସ୍ଥାନ କରେ ଏହାହିଁ ସମୀଚୀନ; ତେଣୁ ହୃଦୟସ୍ଥାନ ସ୍ଥିତ ଏବଂ ସମ୍ୟକ୍ ରୂପରେ ଉପାସିତ ବ୍ରହ୍ମ ଦ୍ୱାରା ଅନୁଗୃହୀତ ହୋଇ ତାହାର ଭାବକୁ ପ୍ରାପ୍ତ ହୋଇ ବିଦ୍ୱାନ୍ ଶହେରୁ ଭିନ୍ନ ଓ ଅଧିକ ହୋଇ ଏକଶତ ଏକ ମୂର୍ଧନ୍ୟ ନାଡ଼ୀଦ୍ୱାରା ନିଷ୍କ୍ରମଣ କରେ । ଅନ୍ୟ ଉପାସକ ଅନ୍ୟ ନାଡ଼ୀଦ୍ୱାରା ନିଷ୍କ୍ରମଣ କରନ୍ତି; କାରଣ-ହାର୍ଦବିଦ୍ୟାକୁ ପ୍ରସ୍ତୁତ କରି 'ଶତଂ ଚୈକା' (ହୃଦୟର ଏକଶହ ଏକ ମୁଖ୍ୟ ନାଡ଼ୀ ଅଛି । ସେଗୁଡ଼ିକରେ ଏକ ମୂର୍ଧାରଦିଗ ବାହାରିଛି । ତାହାଦ୍ୱାରା ଉପରକୁ ଜାଣିଥିବା ଜୀବ ଅମୃତତ୍ୱକୁ ପ୍ରାପ୍ତ ହୁଏ । ଶେଷ ନାଡ଼ିଗୁଡ଼ିକ ନାନାପ୍ରକାର ଗତିକୁ ଦାନ କରି କେବଳ ନିଷ୍କ୍ରମଣର କାରଣ ହୁଏ, ଏହା କୁହାଯାଇଛି ॥୧୭॥

## १० । रश्म्यधिकरणम् ॥ सू. १८-१९ ॥

## ୧୦ । ରଶ୍ମ୍ୟଧିକରଣମ୍ ॥ସୂ ୧୮-୧୯॥

### रश्म्यनुसारी ॥ ४-२-१८ ॥

### ରଶ୍ମ୍ୟନୁସାରୀ ॥୪-୨-୧୮॥

ରଶ୍ମ୍ୟନୁସାରୀ=ସୁଷୁମ୍ନାନାଡ଼ୀ ଦ୍ୱାରା ଶରୀରରୁ ଉତ୍‌କ୍ରମଣ କରାଇ ଉପାସକ ନାଡ଼ୀ ସମ୍ବନ୍ଧ ସୂର୍ଯ୍ୟ କିରଣର ଅନୁସାରୀ ହୋଇ ବ୍ରହ୍ମଲୋକକୁ ପ୍ରାପ୍ତ ହୁଏ ॥

ମୂଳ-(କ) ଅସ୍ତି ହାର୍ଦବିଦ୍ୟା-'ଅଥ ଯଦିଦମସ୍ମିନ୍ ବ୍ରହ୍ମପୁରେ ଦହରଂ ପୁଣ୍ଡରୀକଂ ବେଶ୍ମ' (ଛା ୮-୧-୧) ଇତ୍ୟୁପକ୍ରମ୍ୟ ବିହିତା । ତତ୍ ପ୍ରକ୍ରିୟାୟାମ୍ 'ଅଥ ଯା ଏତା

ହୃଦୟସ୍ୟ ନାଡ୍ୟଃ' (ଛା ୮-୬-୧) ଇତ୍ୟୁପକ୍ରମ୍ୟ ସପ୍ରପଞ୍ଚଂ ନାଡ଼ାରଶ୍ମି ସମ୍ବନ୍ଧ ମୁକ୍ତୋକମ୍-'ଅଥ ଯତ୍ରୈତଦସ୍ମାଚ୍ଛରୀରାଦୁତ୍କ୍ରାମତ୍ୟଥୈତୈରେବ ରଶ୍ମି ଭିରୁର୍ଦ୍ଧ୍ୱମା କ୍ରମତେ' (ଛା ୮-୬-୫) ଇତି ।

(ଖ) ପୁନଶ୍ଚୋକ୍ତମ୍-'ତୟୋର୍ଦ୍ଧ୍ୱମାୟନ୍ନମୃତତ୍ୱମେତି' (ଛା ୮-୮-୬) ଇତି । ତସ୍ମାଚ୍ଛତାଧିକତୟା ନାଡ୍ୟା ନିଷ୍କ୍ରାମନ୍ ରଶ୍ମ୍ୟନୁସାରୀ ନିଷ୍କ୍ରାମତୀତି ଗମ୍ୟତେ । ତତ୍କିମ ବିଶେଷେଣୈବାହନି ରାତ୍ରୌ ବା ମ୍ରିୟମାଣସ୍ୟ ରଶ୍ମ୍ୟନୁସାରିତ୍ୱ ମାହୋସ୍ୱିଦନ୍ୟେବେତି ସଂଶୟେ ସତ୍ୟବିଶେଷ ଶ୍ରବଣାଦ ବିଶେଷେଣୈବ ତାବଦ୍ରଶ୍ମ୍ୟନୁସାରୀତି ପ୍ରତିଜ୍ଞାୟତେ ॥

ଭାଷା-(କ) 'ଅଥ ଯଦିଦମସ୍ମିନ୍' (ବର୍ତ୍ତମାନ ଏହି ବ୍ରହ୍ମପୁରର ମଧ୍ୟରେ ଯାହା ଏହି ସୂକ୍ଷ୍ମ କମଳାକାର ସ୍ଥାନ ରହିଛି) ଏହିପରି ଉପକ୍ରମ କରି ହାର୍ଦ୍ଦବିଦ୍ୟା ବିହିତ ହୁଏ । ସେହି ପ୍ରକରଣରେ 'ଅଥ ଯା ଏତା' (ବର୍ତ୍ତମାନ ବ୍ରହ୍ମୋପାସନାର ସ୍ଥାନ କମଳାକାର ହୃଦୟର ଯେଉଁ ବକ୍ଷ୍ୟମାଣ ନାଡ଼ୀଗୁଡ଼ିକ ଅଟନ୍ତି) ଏହିପରି ଆରମ୍ଭ କରି ସବିସ୍ତାର ନାଡ଼ୀ ଓ ରଶ୍ମି ସମ୍ବନ୍ଧକୁ କହି 'ଅଥ ଯତ୍ରୈତଦ' (ପୁଣି ଯେଉଁ ସମୟରେ ଏହି ଉପାସକ ଏହି ଶରୀରରୁ ଉତ୍କ୍ରମଣ କରେ, ସେହି ସମୟରେ ଏହି କିରଣରୁ ଊର୍ଦ୍ଧ୍ୱକୁ ଯାଏ) ଏହା କୁହାଯାଇଛି ।

(ଖ) ପୁନଶ୍ଚ 'ତୟୋର୍ଦ୍ଧ୍ୱମାୟ' (ତାହାଦ୍ୱାରା ଉପର ଦିଗକୁ ଯାଉଥିବା ଜୀବ ଅମୃତକୁ ପ୍ରାପ୍ତ ହୁଏ) ଏହା କୁହାଯାଇଛି । ତେଣୁ ଏକଶହ ଏକ ନାଡ଼ୀରୁ ବାହାରି ରଶ୍ମି ଅନୁସାରେ ନିଷ୍କ୍ରମଣ ହୁଏ ଏହା ଜଣାଯାଏ । ତେବେ କ'ଣ ଅବିଶେଷରୁ ଦିନ ବା ରାତ୍ରିରେ ସେ ମ୍ରିୟମାଣ ରଶ୍ମି ଅନୁସାରୀ ହୁଏ, ଅଥବା ଦିନରେ ? ଏହା ସଂଶୟ ହେବାରୁ ଅବିଶେଷ ଶ୍ରୁତିରୁ ରଶ୍ମିର ଅନୁସାରୀ ହୁଏ- ଏହାହିଁ ପ୍ରତିଜ୍ଞା କରାଯାଇଛି ॥୧୮॥

**निशि नेति चेन्न सम्बन्धस्य यावद्देहभावित्वाद्दर्शयति च ॥ ४-२-१९ ॥**

**ନିଶିନେତି ଚେନ୍ନ ସନ୍ଧସ୍ୟ ଯାବଦ୍ଦେହଭାବିତ୍ୱାଦ୍ଦର୍ଶୟତି ଚ ॥୪-୨-୧୯॥**

ଦିନରେ ନାଡ଼ୀ ରଶ୍ମି ସମ୍ବନ୍ଧ ହେବାରୁ ଦିନରେ ଉତ୍କ୍ରାନ୍ତି ଉପାସକ ରଶ୍ମି ଅନୁସାରେ ହୁଏ । ନିଶି=ରାତ୍ରିରେ ନାଡ଼ୀ ରଶ୍ମି ସମ୍ବନ୍ଧ ନ ହେଲେ ଉତ୍କ୍ରାନ୍ତ ଉପାସକ, ନ=ରଶ୍ମି ଅନୁସାରୀ ହୁଏ ନାହିଁ । ଇତି ଚେନ୍ନ=ଯଦି ଏହା କହ, ତେବେ ମଧ୍ୟ ଏହା ଠିକ୍ ନୁହେଁ । ସମ୍ବନ୍ଧସ୍ୟ ଯାବଦ୍ଦେହ ଭାବିତ୍ୱାତ୍=କାରଣ ନାଡ଼ୀ ରଶ୍ମି ସମ୍ବନ୍ଧ ଯାବଦ୍ଦେହଭାବୀ ହୁଏ, ଦର୍ଶୟତି='ଅମୁଷ୍ମାଦାଦିତ୍ୟାତ୍' - ଏହି ଶ୍ରୁତି ଦେଖାଏ ॥



ମୂଳ - (କ) ଅସ୍ତ୍ୟହନି ନାଡ଼ୀରଶ୍ମି ସମ୍ବନ୍ଧ ଇତ୍ୟହନି ମୃତସ୍ୟ ସ୍ୟାଦ୍ରଶ୍ମ୍ୟନୁସାରିତ୍ୱମ୍, ରାତ୍ରୌ ତୁ ପ୍ରେତସ୍ୟ ନ ସ୍ୟାତ୍, ନାଡ଼ୀରଶ୍ମି ସମ୍ବନ୍ଧ ବିଚ୍ଛେଦାଦିତି ଚେନ୍ନ, ନାଡ଼ୀରଶ୍ମି ସଂବନ୍ଧସ୍ୟ ଯାବଦ୍ଦେହ ଭାବିତ୍ୱାତ୍ । ଯାବଦ୍ଦେହଭାବୀ ହି ଶିରାକିରଣ ସଂପର୍କଃ । ଦର୍ଶୟତି ଚୈତମର୍ଥଂ ଶ୍ରୁତିଃ ଅମୁଷ୍ମାଦାଦିତ୍ୟାତ୍ ପ୍ରତାୟନ୍ତେ ତା ଆସୁ ନାଡ଼ୀଷୁ ସୃପ୍ତା ଆଭ୍ୟୋ ନାଡ଼ୀଭ୍ୟଃ ପ୍ରତାୟନ୍ତେ ତେଽମୁଷ୍ମିନ୍ନାଦିତ୍ୟେ ସୃପ୍ତାଃ, (ଛା ୮-୬-୨) ଇତି ।

(ଖ) ନିଦାଘସମୟେ ଚ ନିଶାସ୍ୱପି କିରଣାନୁବୃତ୍ତିରୂପ ଲଭ୍ୟତେ ପ୍ରତାପାଦି କାର୍ଯ୍ୟଦର୍ଶନାତ୍ । ସ୍ତୋକାନୁ ବୃତ୍ତେସ୍ତୁ ଦୁର୍ଲକ୍ଷ୍ୟତ୍ୱମୃତ୍ୱନ୍ତର ରଜନୀଷୁ, ଶୈଶିରେଷ୍ୱିବ ଦୁର୍ଦ୍ଦିନେଷୁ। 'ଅହରେବୈ ତଦରାଂତ୍ରୌ ଦଧାତି' ଇତି ଚୈତଦେବ ଦର୍ଶୟତି । ଯଦି ଚ ରାତ୍ରୌ ପ୍ରେତୋ ବିନୈବ ରଶ୍ମ୍ୟନୁସାରେଣୌର୍ଦ୍ଧ୍ୱ ମାକ୍ରମେତ ରଶ୍ମ୍ୟନୁସାରାନର୍ଥକ୍ୟଂ ଭବେତ୍, ନ ହ୍ୟେତଦ୍‌ବିଶିଷ୍ୟା ଭିଧୀୟତେଯୋ ଦିବା ପ୍ରୈତି ସ ରଶ୍ମୀନପେକ୍ଷ୍ୟୋର୍ଦ୍ଧ୍ୱମା କ୍ରମତେ, ଯସ୍ତୁରାତ୍ରୌ ସୋଽନପେକ୍ଷ୍ୟୈବେତି ।

(ଗ) ଅଥ ତୁ ବିଦ୍ୱାନପି ରାତ୍ରି ପ୍ରାୟଣାପରାଧମାତ୍ରେଣ ନୋର୍ଦ୍ଧ୍ୱମାକ୍ରମେତ ପାକ୍ଷିକଫଳା ବିଦ୍ୟେତ୍ୟ ପ୍ରବୃତ୍ତିରେବ ତସ୍ୟାଂ ସ୍ୟାତ୍, ମୃତ୍ୟୁକାଳା ନିୟମାତ୍ । ଅଥାପି ରାତ୍ରା ବୁପରତୋଽ-ହରାଗମମୁଦୀକ୍ଷେତ । ଅହରାଗମେଽପ୍ୟସ୍ୟ କଦାଚିଦ ରଶ୍ମି ସଂବଂଧାର୍ହଂ ଶାରୀରଂ ସ୍ୟାତ୍, ପାବକାଦି ସଂପର୍କାତ୍ 'ସ ଯାବତ୍‌କ୍ଷିପ୍ୟେନ୍ ମନସ୍ତା ବଦାଦିତ୍ୟଂ ଗଚ୍ଛତି' (ଛା ୮-୬-୫) ଇତି ଚ ଶ୍ରୁତିରନୁଦୀକ୍ଷାଂ ଦର୍ଶୟତି । ତସ୍ମାଉଦ ବିଶେଷେଣୈବେଦଂ ରାତ୍ରିଂଦିବଂ ରଶ୍ମ୍ୟନୁ ସାରିତ୍ୱମ୍ ॥

ଭାଷା-(କ) ଦିନରେ ନାଡ଼ୀ ଓ ରଶ୍ମିର ସଂବନ୍ଧ ଅଛି । ଅତଏବ ଦିନରେ ମୃତ ବିଦ୍ୱାନ୍ ରଶ୍ମି ଅନୁସାରେ ହେଉ, କିନ୍ତୁ ରାତ୍ରିରେ ମୃତକ ରଶ୍ମି ଅନୁସାରେ ନ ହେଉ, କାରଣ ରାତ୍ରିରେ ନାଡ଼ୀ ଓ ରଶ୍ମିର ସଂବନ୍ଧ ବିଚ୍ଛିନ୍ନ ହୁଏ । ସିଦ୍ଧାନ୍ତ ଯଦି ଏହା କହ, ତା'ହେଲେ ଏହା ସମୀଚୀନ ନୁହେଁ, କାରଣ ନାଡ଼ୀ ଓ ରଶ୍ମି ସଂବନ୍ଧ ଯାବଦ୍ ଦେହଭାବୀ ହୁଏ । ଯେପର୍ଯ୍ୟନ୍ତ ଦେହ ବିଦ୍ୟମାନ ଅଛି, ସେ ପର୍ଯ୍ୟନ୍ତ ନାଡ଼ୀ ଓ ରଶ୍ମିର ସଂବନ୍ଧ ଅଛି । ଏହି ଅର୍ଥକୁ 'ଅମୁଷ୍ମାଦାଦିତ୍ୟାତ୍' (ସେହିସବୁ ରଶ୍ମିଗୁଡ଼ିକ ସଦାବେଳେ ସେହି ଆଦିତ୍ୟମଣ୍ଡଳରୁ ପଡ଼େ ଏବଂ ଏହି ସବୁ ନାଡ଼ୀରେ ପ୍ରବେଶ କରେ । ଏହା ଶ୍ରୁତି ଦେଖାଏ ।

(ଖ) ଗ୍ରୀଷ୍ମକାଳରେ ରାତ୍ରିରେ କିରଣର ଅନୁବୃତ୍ତି ଉପଲବ୍ଧ ହୁଏ । କାରଣ- ତା ପ୍ରଭୃତି କାର୍ଯ୍ୟ ଦେଖାଯାଏ । ଶିଶିର ଋତୁରେ ମେଘାଚ୍ଛନ୍ନ ଦିନପରି ଅନ୍ୟ ଋତୁର ରାତ୍ରିରେ କିରଣର ଅଳ୍ପ ଅନୁବୃତ୍ତି ହେବାରୁ ସେଗୁଡ଼ିକ ଦୁର୍ଲକ୍ଷ୍ୟ ଅଟନ୍ତି । 'ଅହରେବୈତତ୍' (ସୂର୍ଯ୍ୟ

କେବଳ ଏହି ତାପ ରାତ୍ରିରେ ଧାରଣ କରନ୍ତି । ଏହା ମଧ୍ୟ ଶ୍ରୁତି ଦେଖାଏ । ଯଦି ରାତ୍ରିରେ ମୃତକରଶ୍ମି ରଶ୍ମି ଅନୁସାରକୁ ଛାଡ଼ି ଊର୍ଦ୍ଧ୍ୱ ଆକ୍ରମଣ କରେ, ତେବେ ରଶ୍ମିର ଅନୁସାରେ ଅନର୍ଥକ ହେବ । ଶ୍ରୁତି ଏହିପରି ଏଠାରେ ବିଶେଷକରି ଯାହା ଦିନରେ ମୃତ ହୁଏ, ସେ ରଶ୍ମିକୁ ଅପେକ୍ଷା ନ କରି ଊର୍ଦ୍ଧ୍ୱ ଆକ୍ରମଣ କରେ । ଯିଏ ରାତ୍ରିରେ ମୃତ ହୁଏ, ସେ ରଶ୍ମିକୁ ଅପେକ୍ଷା ନକରି ଊର୍ଦ୍ଧ୍ୱ ଆକ୍ରମଣ କରେ ବୋଲି କହେ ନାହିଁ ।

(ଗ) ଯଦି ବିଦ୍ୱାନ୍ ରାତ୍ରି ପ୍ରାୟଣର ଅପରାଧମାତ୍ରରୁ ଊର୍ଦ୍ଧ୍ୱଗମନ କରେ ନାହିଁ, ତେବେ ବିଦ୍ୟାପାକ୍ଷିକ ଫଳଯୁକ୍ତ ହୁଏ । ତେଣୁ ସେଠାରେ ପ୍ରବୃତ୍ତି ହୁଏ ନାହିଁ । କାରଣ ତାହା ମୃତ୍ୟୁ ସମୟର ଅନିୟମ ଅଟେ । ଯଦି ରାତ୍ରିରେ ମୃତଦିନ ଆଗମନକୁ ପ୍ରତୀକ୍ଷା କରିବ, ତେବେ ଦିନର ଆଗମନ ହେଲେ ମଧ୍ୟ ବେଳେବେଳେ ତାହାର ଶରୀର ଅଗ୍ନି ପ୍ରଭୃତିର ସଂପର୍କରୁ ରଶି ସଂବନ୍ଧର ଅଯୋଗ୍ୟ ହେବ । 'ସ ଯାବତ୍' (ସେ ଯେଉଁ ସମୟରେ ମନକୁ ପ୍ରେରଣା କରେ, ସେହି ସମୟରେ ଆଦିତ୍ୟରେ ପହଞ୍ଚେ) ଏହିପରି ଏହି ଶ୍ରୁତି ଅପ୍ରତୀକ୍ଷା ଦେଖାଏ । ତେଣୁ ଅବିଶେଷରୁ ଏହି ରାତ୍ରି ଓ ଦିନରେ ରଶ୍ମିକୁ ଅନୁସରଣ କରେ ॥୧୯॥

## १२ । दक्षिणायनाधिकरणम् ॥ सू. २०-२१ ॥

## ୧୨ । ଦକ୍ଷିଣାୟନାଧିକରଣମ୍ ॥ ସୂ ୨୦-୨୧ ॥

## अतश्चायनेऽपि दक्षिणे ॥ २० ॥

## ଅତଶ୍ଚାୟନେଽପି ଦକ୍ଷିଣେ ॥ ୪-୨-୨୦ ॥

ଅତଶ୍ଚ = ପ୍ରତୀକ୍ଷାର ଉପପତ୍ତି ନ ହେଲେ, ଦକ୍ଷିଣେ ଅୟନେଽପି=ଦକ୍ଷିଣାୟନରେ ମଧ୍ୟ ମୃତ ଉପାସକକୁ ବିଦ୍ୟାଫଳ ପ୍ରାପ୍ତ ହୁଏ ।

ମୂଳ - (କ) ଅତଏବ ଚେଦୀକ୍ଷାନୁପପତ୍ତେଃ, ଅପାକ୍ଷିକଫଳତ୍ୱାଚ୍ଚ ବିଦ୍ୟାୟାଃ, ଅନିୟତକାଳତ୍ୱାଚ୍ଚ ମୃତ୍ୟୋର୍ଦକ୍ଷିଣାୟନେଽପି ମ୍ରିୟମାଣୋ, ବିଦ୍ୱାନ୍ ପ୍ରାପ୍ନୋତ୍ୟେବ ବିଦ୍ୟାଫଳମ୍ । ଉତ୍ତରାୟଣମରଣପ୍ରାଶସ୍ତ୍ୟପ୍ରସିଦ୍ଧେର୍ଭୀଷ୍ମସ୍ୟ ଚ ପ୍ରତୀକ୍ଷାଦର୍ଶନାତ୍, ଆପୂର୍ଯ୍ୟମାଣପକ୍ଷାଦ୍ୟାନ୍ ଷଡୁଦଙ୍ଙେତି ମାସାଂସ୍ତାନ୍' (ଛା ୪-୧୫-୫) ଇତି ଚ ଶ୍ରୁତେଃ, ଅପେକ୍ଷିତବ୍ୟମୁତ୍ତରାୟଣମିତୀମାମାଶଙ୍କାମନେନ ସୂତ୍ରେଣାପନୁଦତି । ପ୍ରାଶସ୍ତ୍ୟପ୍ରସିଦ୍ଧିରବିଦ୍ୱଦ୍‌ବିଷୟା । ଭୀଷ୍ମସ୍ୟ ପ୍ରତିପାଳନମାଚାରପ୍ରତିପାଳନାର୍ଥଂ ପିତୃପ୍ରସାଦଲବ୍ଧସ୍ୱଚ୍ଛନ୍ଦମୃତ୍ୟୁତାଖ୍ୟାପନାର୍ଥଂ ଚ । ଶ୍ରୁତେସ୍ତ୍ୱର୍ଥଂ ବକ୍ଷ୍ୟତି 'ଆତିବାହିକାସ୍ତଲ୍ଲିଙ୍ଗାତ୍' (ବ୍ର. ସୂ. ୪-୩-୪) ଇତି ॥



ଭାଷା (କ) ଅତଏବ ପ୍ରତିକ୍ଷାର ଅନୁପପତ୍ତି ବିଦ୍ୟାଫଳର ଆପେକ୍ଷିକ ଓ ମୃତ୍ୟୁର ଅନିୟମିତକାଳ ହେଲେ ଦକ୍ଷିଣାୟନରେ ମ୍ରିୟମାଣ ବିଦ୍ୱାନ ବିଦ୍ୟାଫଳକୁ ପ୍ରାପ୍ତ ହୁଏ । ଉତ୍ତରାୟଣରେ ମରଣର ପ୍ରଶସ୍ତା ପ୍ରସିଦ୍ଧ ହେଲେ ଓ ଭୀଷ୍ମର ପ୍ରତୀକ୍ଷାଦର୍ଶନ ଦ୍ୱାରା ଏବଂ 'ଆପୂର୍ଯ୍ୟମାଣପକ୍ଷା; 'ଶୁକ୍ଲପକ୍ଷାଭିମାନୀ ଦେବତାଠାରୁ ଉତ୍ତରାୟଣର ଛଅମାସକୁ ପ୍ରାପ୍ତ ହୁଏ) ଏହି ଶ୍ରୁତି ଦ୍ୱାରା ଉତ୍ତରାୟଣକୁ ଅପେକ୍ଷା କରାଯାଏ- ଏହି ଶଙ୍କାକୁ ଏଠାରେ ନିବାରଣ କରାଯାଇଛି । ପ୍ରାଶସ୍ତ୍ୟପ୍ରସିଦ୍ଧି ଅବିଦ୍ୱଦ୍‌ବିଷୟକ ଅଟନ୍ତି । ଭୀଷ୍ମର ଉତ୍ତରାୟଣ ପ୍ରତୀକ୍ଷା କିନ୍ତୁ ଆଚରର ପ୍ରତିପାଳନ ପାଇଁ ଓ ପିତା ଶାନ୍ତନୁର ପ୍ରସାଦଦ୍ୱାରା ପ୍ରାପ୍ତ ସ୍ୱେଚ୍ଛାଦ୍ୱାରା ମୃତ୍ୟୁ ଦେଖାଯିବା ପାଇଁ ଅଛି । ଶ୍ରୁତିର ଅର୍ଥ କିନ୍ତୁ 'ଆତିବାହିକାସ୍ତଲ୍ଲିଙ୍ଗାତ୍' ଏହି ସୂତ୍ରରେ କହିବୁ ॥୨୦॥

ମୂଳ-(କ) ନନୁ ଚ 'ଯତ୍ର, କାଳେ ତ୍ୱନାବୃତ୍ତିମାବୃତ୍ତିଂ ଚୈବ ଯୋଗିନଃ, ପ୍ରୟାତା ଯାନ୍ତି ତଂ କାଳଂ ବକ୍ଷ୍ୟାମି ଭରତର୍ଷଭ' (ଗୀ ୮-୨୩) ଇତି କାଳପ୍ରାଧାନ୍ୟେନୋପକ୍ରମ୍ୟାଽ-ହରାଦିକାଳବିଶେଷଃ ସ୍ମୃତାବନାବୃତ୍ତୟେ ନିୟମିତଃ, କଥଂ ରାତ୍ରୌ ଦକ୍ଷିଣାୟେନ ବା ପ୍ରୟାତୋଽନାବୃତ୍ତିଂ ଯାୟାଦିତି ? ଅତ୍ରୋଚ୍ୟତେ-

ଭାଷା-(କ) ପରନ୍ତୁ 'ଯତ୍ର କାଳେ' (ହେ ଅର୍ଜୁନ ! ଯେଉଁ ସମୟରେ ଶରୀର ପରିତ୍ୟାଗ କରି ଯୋଗୀଜନ ଅନାବୃତ୍ତି ଗତି ଓ ଆବୃତ୍ତି ଗତିକୁ ମଧ୍ୟ ପ୍ରାପ୍ତ ହୁଅନ୍ତି- ସେ ସମୟରେ ମାର୍ଗକୁ ମୁଁ କହିବି । ଏହିପରି କାଳର ପ୍ରାଧାନ୍ୟରୁ ଉପକ୍ରମ କରି ଦିନ ପ୍ରଭୃତି କାଳବିଶେଷ ଅପୁନରାବୃତ୍ତି ପାଇଁ, ସ୍ମୃତିରେ ନିୟମିତ କରାଯାଇଛି; କିନ୍ତୁ ରାତ୍ରିରେ ଅଥବା ଦକ୍ଷିଣାୟନରେ ପ୍ରୟାଣ କରୁଥିବା ଅନାବୃତ୍ତିକୁ କିପରି ପ୍ରାପ୍ତ ହେବ ? ଏହାର ଉତ୍ତରରେ କୁହାଯାଇଛି-

## योगिन: प्रति च स्मर्यते स्मार्ते चैते ॥ ४-२-२१ ॥

## ଯୋଗିନଃ ପ୍ରତି ଚ ସ୍ମର୍ଯତେ ସ୍ମାର୍ତ୍ତେ ଚୈତେ ॥୪-୨-୨୧॥

ଯୋଗିନଃ ପ୍ରତି=ଯୋଗି ପ୍ରତି ଅହ ଆଦିକାଳର ବିନିଯୋଗ ଅନାବୃତ୍ତି ପାଇଁ ସ୍ମର୍ଯତେ=ସ୍ମରଣ କରାଯାଏ । ସ୍ମାର୍ତ୍ତେଚୈତେ=ଏହି ଦୁଇଟି ଗତି ସାଂଖ୍ୟ ଓ ଯୋଗରେ ପ୍ରତିପାଦିତ ହୋଇଛି ॥

ମୂଳ-(କ) ଯୋଗିନଃ ପ୍ରତି ଚୟମହରାଦିକାଳବିନିଯୋଗେଽନାବୃତ୍ତୟେ ସ୍ମର୍ଯତେ । ସ୍ମାର୍ତ୍ତେଚୈତେ ଯୋଗସାଂଖ୍ୟେ ନ ଶ୍ରୌତେ । ଅତୋ ବିଷୟଭେଦାତ୍ ପ୍ରମାଣବିଶେଷାଚ୍ଚ ନାସ୍ୟ ସ୍ମାର୍ତ୍ତସ୍ୟ କାଳବିନିଯୋଗସ୍ୟ ଶ୍ରୌତେଷ୍ୱ ବିଜ୍ଞାନେଷ୍ୱବତାରଃ ।

(ଖ) ନନୁ 'ଅଗ୍ନିର୍ଜ୍ୟୋତିରହଃ ଶୁକ୍ଳଃ, ଷଣ୍ମାସା ଉତ୍ତରାୟଣମ୍ । 'ଧୂମୋ ରାତ୍ରିସ୍ତଥା କୃଷ୍ଣଃ ଷଣ୍ମାସା ଦକ୍ଷିଣାୟନମ୍ (ଗୀ ୮-୨୫) ଇତି ଚ ଶ୍ରୌତାବେତୌ ଦେବଯାନ-ପିତୃଯାଣୌ ପ୍ରତ୍ୟଭିଜ୍ଞାୟେତେ ସ୍ମୃତାବପୀତି ।

(ଗ) ଉଚ୍ୟତେ- 'ତଂ କାଳଂ ବକ୍ଷ୍ୟାମି' (ଗୀ ୮-୨୩) ଇତି ସ୍ମୃତୌ କାଳପ୍ରତି-ଜ୍ଞାନାଦ୍‌ବିରୋଧମାଶଙ୍କ୍ୟ ଅୟଂ ପରିହାର ଉକ୍ତଃ । ଯଦା ପୁନଃସ୍ମୃତାବପ୍ୟଗ୍ନ୍ୟାଦ୍ୟା ଦେବତା ଏବାତିବାହିକ୍ୟୋ ଗୃହ୍ୟନ୍ତେ, ତଦା ନ କଶ୍ଚିଦ୍‌ବିରୋଧ ଇତି ॥

ଭାଷା-(କ) ଯୋଗୀମାନଙ୍କ ପ୍ରତି ଏହି ଅହ ଆଦିକାଳର ବିନିଯୋଗ ଅନାବୃତ୍ତି ନିମିତ୍ତ ରହିଛି-ଏହା ହିଁ ସ୍ମୃତି ଏବଂ ଏହି ଦୁଇଟି ଯୋଗ ଓ ସାଂଖ୍ୟ ସ୍ମୃତି ବଚନ ଅଟେ; କିନ୍ତୁ ଶ୍ରୁତି ବଚନ ନୁହେଁ । ତେଣୁ ବିଷୟ ଭେଦରେ ଓ ପ୍ରମାଣବଶେଷରୁ ଏହି ସ୍ମାର୍ତ୍ତକାଳ ବିନିଯୋଗର ଶ୍ରୌତ ଉପାସନାରେ ଅବତରଣ ନୁହେଁ ।

(ଖ) ପରନ୍ତୁ 'ଅଗ୍ନିର୍ଜ୍ୟୋତିଃ' (ଅଗ୍ନିର୍ଜ୍ୟୋତି, ଅହଃ, ଶୁକ୍ଳପକ୍ଷ, ଷଡ୍‌ମାସ, ଉତ୍ତରାୟଣ, ଧୂମ, ରାତ୍ରି କୃଷ୍ଣପକ୍ଷ ଓ ଷଡ୍‌ମାସ ଓ ଦକ୍ଷିଣାୟନ) ଏହିପ୍ରକାର ସବୁ ଶ୍ରୌତ ଦେବଯାନ ଓ ପିତୃଯାନ ସ୍ମୃତିରେ ମଧ୍ୟ ପ୍ରତ୍ୟଭିଜ୍ଞାନ ହୁଅନ୍ତି ।

(ଗ) ତେଣୁ କୁହାଯାଇଛି- ତଂ କାଳଂ ବକ୍ଷ୍ୟାମି' (ସେ କାଳକୁ ମୁଁ କହିବି) ଏହିପ୍ରକାର ସ୍ମୃତିରେ କାଳର ପ୍ରତିଜ୍ଞାତ ହେବାରୁ ବିରୋଧର ଆଶଙ୍କା ପରିହାର କରାଯାଇଛି । ପରନ୍ତୁ ଯେତେବେଳେ ସ୍ମୃତିରେ ଅଗ୍ନିପ୍ରଭୃତି ଦେବତାମାନଙ୍କର ଆତିବାହିକ ରୂପରେ ଗ୍ରହଣ କରାଯାଏ, ସେତେବେଳେ କୌଣସି ବିରୋଧ ହୁଏ ନାହିଁ ॥୨୧॥

ଇତି ଚତୁର୍ଥ ଅଧ୍ୟାୟ ଦ୍ୱିତୀୟପାଦ ସମାପ୍ତ ।





# ଚତୁର୍ଥ ଅଧ୍ୟାୟ - ତୃତୀୟ ପାଦ

## चतुर्थ अध्याय तृतीयपाद

### १ । अर्चिराद्यधिकरणम् ॥ सू० १ ॥

### ୧ । ଅର୍ଚିରାଦ୍ୟଧିକରଣମ୍ ॥ ସୂ ୧॥

### अर्चिरादिना तत्प्रथितेः ॥ ४-३-१ ॥

### ଅର୍ଚିରାଦିନା ତତ୍ପ୍ରଥିତେଃ ॥୪-୩-୧॥

ଅର୍ଚିରାଦିନା=ବ୍ରହ୍ମଲୋକପ୍ରାପ୍ତିର ଅଭିଳାଷୀ ସବୁ ଉପାସକ ଅର୍ଚିରାଦିମାର୍ଗରେ ଗମନ କରନ୍ତି । ତତ୍ପ୍ରଥିତେଃ=କାରଣ-ସବୁ ବିଦ୍ୱାନମାନଙ୍କର ସେହି ମାର୍ଗ ଅନୁମୋଦିତ ଅଟେ ।

ମୂଳ-(କ) ଆସୃତ୍ୟୁପକ୍ରମାତ୍ ସମାନୋତ୍କ୍ରାନ୍ତିରିତ୍ୟୁ କ୍ତମ୍, ସୃତିସ୍ତୁ ଶ୍ରୁତ୍ୟନ୍ତରେଷ୍ୱନେକଧା ଶ୍ରୂୟତେ । ନାଡ଼ୀରଶ୍ମିସଂବନ୍ଧେନୈକା 'ଅଥୈତୈରେବ ରଶ୍ମିଭିରୁର୍ଦ୍ଧ୍ୱମାକ୍ରମତେ' (ଛା ୮-୬-୫) ଇତି । ଅର୍ଚିରାଦିକୈକା 'ତେଽର୍ଚିଷମଭିସଂ ଭବ ନ୍ତର୍ଚିଷୋଽହଂ (ବୃହ ୬-୨-୧୫) ଇତି । 'ସ ଏତଂ ଦେବଯାନଂ ପନ୍ଥାନମାସାଦ୍ୟାଗ୍ନିଲୋକମାଗଚ୍ଛତି' (କୌଷୀ ୧-୩) ଇତ୍ୟନ୍ୟା । 'ଯଦା ବୈ ପୁରୁଷୋଽସ୍ମାଲ୍ଲୋକାତ୍ପ୍ରୈତି ସ ବାୟୁମାଗଚ୍ଛତି' (ବୃହ ୫-୧୦-୧) ଇତ୍ୟପରା । ସୂର୍ଯ୍ୟଦ୍ୱାରେଣ ତେ ବିରଜାଃ ପ୍ରୟାନ୍ତି' (ମୁଣ୍ଡ ୧-୨-୧୧) ଇତି ଚାପରା ।

(ଖ) ତତ୍ର ସଂଶୟଃ-କିଂ ପରସ୍ପରଂ ଭିନ୍ନା ଏତାଃ ସୃତୟଃ କି ବୈକୈନାନେକବିଶେଷଣୈତି ? ତତ୍ର ପ୍ରାପ୍ତଂ ତାବତ୍ ଭିନାଃ ଏତାଃ ସୃତୟ ଇତି; 'ଭିନ୍ନପ୍ରକରଣତ୍ୱାତ୍; ଭିନ୍ନୋପାସନଶେଷତ୍ୱାଚ୍ଚ । ଅପି ଚ 'ଅଥୈତୈରେବ ରଶ୍ମିଭିଃ' (ଛା ୮-୬-୫) ଇତ୍ୟବଧାରଣମର୍ଚିରାଦ୍ୟପେକ୍ଷାୟାମୁପରୁଧ୍ୟେତ । ତ୍ୱରାବଚନଂ ଚ ପୀଡ୍ୟେତ 'ସ ଯାବତ୍ କ୍ଷିପ୍ୟେନ୍ ମନସ୍ତାବଦାଦିତ୍ୟଂ ଗଚ୍ଛତି' (ଛା ୮-୬-୫) ଇତି । ତସ୍ମାଦ୍ନ୍ୟୋନ୍ୟଭିନ୍ନା ଏବେତେ ପନ୍ଥାନ ଇତି ।

ଭାଷା-(କ) ମାର୍ଗର ଉପକ୍ରମ ପର୍ଯ୍ୟନ୍ତ ଉତ୍କ୍ରାନ୍ତି ସମାନ ଅଛି ବୋଲି ଯାହା କୁହାଯାଇଅଛି, ସେହି ମାର୍ଗ କିନ୍ତୁ ଅନ୍ୟଶ୍ରୁତିରେ ଅନେକ ପ୍ରକାରରେ ଶ୍ରବଣ କରାଯାଏ । ଅଥୈତୈରେବ' (ମରଣାନନ୍ତର ଏହି ରଶ୍ମି ଉର୍ଦ୍ଧ୍ୱକୁ ଆରୋହଣ କରେ) ଏହିପ୍ରକାର ନାଡ଼ୀ

ଓ ରଶ୍ମି ସମ୍ବନ୍ଧରେ ଗୋଟିଏ ମାର୍ଗ ରହିଛି । 'ତେଽର୍ଚିଷାମ୍' (ଯେଉଁ ଜ୍ୟୋତିର ଅଭିମାନୀ ଦେବତାକୁ ପ୍ରାପ୍ତ ହୁଅନ୍ତି ଜ୍ୟୋତି ଅଭିମାନୀ ଦେବତାଠାରୁ ଏହି ଅଭିମାନୀ ଦେବତା ପ୍ରାପ୍ତ ହୁଅନ୍ତି) ଏହିପରି ଏହା ଏକ ଅନ୍ୟ ଅର୍ଚିରାଦିମାର୍ଗ । 'ଯଦା ବୈ (ଯେଉଁ ସମୟରେ ଏହି ଉପାସକ ପୁରୁଷ ଲୋକରୁ ପ୍ରାୟଣ କରିଯାଏ, ସେହି ସମୟରେ ସେ ବାୟୁକୁ ପ୍ରାପ୍ତ ହୁଏ) ଏହା ମଧ ଅନ୍ୟମାର୍ଗ ଅଟେ । 'ସୂର୍ଯ୍ୟଦ୍ୱାରେଣ' (ସେମାନେ ପାପରହିତ ହୋଇ ସୂର୍ଯ୍ୟଦ୍ୱାରା ଉତ୍ତରାୟଣମାର୍ଗରୁ ସେଠାକୁ ଗମନ କରେ) ଏହା ମଧ ଏକ ଅନ୍ୟମାର୍ଗ ଅଟେ ।

(ଖ) ଏଠାରେ ସଂଶୟ ହୁଏ ଯେ- ଏହି ମାର୍ଗ ଗୁଡ଼ିକ କ'ଣ ପରସ୍ପର ଭିନ୍ନ ଭିନ୍ନ, କି ଅନେକ ବିଶେଷ ବିଶିଷ୍ଟ ଏକ ମାର୍ଗବିଶିଷ୍ଟ ? ପୂର୍ବପକ୍ଷ-ଏହି ସଂଶୟରେ ଏହା ପ୍ରାପ୍ତ ହୁଏ ଯେ-ଏହି ମାର୍ଗଗୁଡ଼ିକ ଭିନ୍ନ ଭିନ୍ନ ଅଟନ୍ତି । କାରଣ-ଏହା ଏକ ଭିନ୍ନ ପ୍ରକରଣ ଏବଂ ଭିନ୍ନ ଉପାସନାର ଅଙ୍ଗ ମଧ । 'ଅଥୈତୈରେବ' (ଏହାପରେ ଏହି ରଶ୍ମିଠାରୁ) ଏହି ଅବଧାରଣ ଅର୍ଚିରାଦିକୁ ଅପେକ୍ଷା କରି ବାଧ ହେବ । 'ସ ଯାବତ୍କ୍ଷିପ୍ୟେତ୍' (ସେ ଯେଉଁ ସମୟରେ ମନକୁ ପ୍ରେରିତ କରେ, ସେହି ସମୟରେ ସେ ଆଦିତ୍ୟକୁ ପ୍ରାପ୍ତ ହୁଏ) ଏହି ତ୍ୱରାବଚନ ବାଧିତ ହେବ । ତେଣୁ ଏହି ମାର୍ଗଗୁଡ଼ିକ ପରସ୍ପର ଭିନ୍ନ ଅଟନ୍ତି ॥

ମୂଳ - (କ) ଏବଂ ପ୍ରାପ୍ତେଽଭିଦଧ୍ମହେ-ଅର୍ଚିରାଦିନେତି । ସର୍ବୋ ବ୍ରହ୍ମପ୍ରେପ୍ସୁରାର୍ଚିରାଦି ନୈବାଧ୍ୱନା ରଂହତୀତି ପ୍ରତିଜାନୀମହେ କୁତଃ ? ତତ୍ପ୍ରଥିତେଃ । ପ୍ରଥିତୋ ହ୍ୟେଷମାର୍ଗ ସର୍ବେଷାଂ ବିଦୁଷାମ୍ । ତଥାହି ପଞ୍ଚାଗ୍ନିବିଦ୍ୟାପ୍ରକରଣେ 'ଯେ ଚ୍ଚମୀ ଅରଣ୍ୟେ ଶ୍ରଦ୍ଧାଂ ସତ୍ୟମୁପାସତେ (ବୃହ ୬-୨-୧୫) ଇତି ବିଦ୍ୟାନ୍ତରଶାଳିନାମପ୍ୟର୍ଚିରାଦିକା ସୃତି ଶ୍ରାବ୍ୟତେ ।

(ଖ) ସ୍ୟାଦେତତ୍ୟାସୁ ବିଦ୍ୟାସୁ ନ କାଚିଦ୍ଗତିରୁଚ୍ୟତେ, ତାସ୍ୱିୟମର୍ଚିରାଦିକୋପତିଷ୍ଠତାମ୍, ଯାସୁ ତ୍ୱନ୍ୟା ଶ୍ରାବ୍ୟତେ ତାସୁ କିମନ୍ୟର୍ଚିରାଦ୍ୟାଶ୍ରୟଣମତି ? ଅତ୍ରୋଚ୍ୟତେଭବେଦେତଦେବମ୍-ଯଦ୍ୟପ୍ୟତ୍ୟନ୍ତିଭିନ୍ନା ଏବୈତାଃ ସୃତୟଃ ସ୍ୟୁ । ଏକୈବ ତ୍ୱେଷା ସୃତିରନେକବିଶେଷଣା ବ୍ରହ୍ମଲୋକପ୍ରପଦନୀ କ୍ୱଚିତ୍କେନଚିଦ୍ବିଶେଷଣେନୋପଲକ୍ଷିତେତି ବଦାମଃ । ସର୍ବତ୍ରୈକଦେଶପ୍ରତ୍ୟଭିଜ୍ଞାନାଦିତରେତରବିଶେଷଣାବିଶେଷ୍ୟଭାବୋପପତ୍ତେଃ ।

(ଗ) ପ୍ରକରଣଭେଦେଽପି ହି ବିଦ୍ୟୈକତ୍ୱେ ଭବତୀତରେତରବିଶେଷଣୋପସଂହାରବଦ୍ ଗତିବିଶେଷଣାନାମପ୍ୟୁପସଂହାରଃ । ବିଦ୍ୟାଭେଦେଽପି ତୁ ଗତ୍ୟେକଦେଶ ପ୍ରତ୍ୟଭିଜ୍ଞାନାଦ୍ଗନ୍ତବ୍ୟାଭେଦାଚ୍ଚଗତ୍ୟଭେଦ ଏବ । ତଥାହି- 'ତେ ତେଷୁ ବ୍ରହ୍ମଲୋକେଷୁ ପରାଃ ପରାବତୋ ବସନ୍ତି' (ବୃହ ୬-୨-୧୫), 'ତସ୍ମିନ୍ ବସନ୍ତି ଶାଶ୍ୱତୀଃ ସମାଃ' (ବୃହ ୫-୧୦-୧), ସା ଯା ବ୍ରହ୍ମଣୋଜିତିର୍ଯା ବ୍ୟୁଷ୍ଟିସ୍ତାଂ ଜିତିଂ ଜୟତି ତାଂ ବ୍ୟୁଷ୍ଟିଂ ବ୍ୟଶ୍ନୁତେ' (କୌଷୀ ୧-୪), ତଦା ଏବୈତଂ ବ୍ରହ୍ମଲୋକଂ ବ୍ରହ୍ମଚର୍ଯ୍ୟେଣାନୁବିନ୍ଦତି' (ଛା ୮-୪-୩) ଇତି ଚ ତତ୍ର ତତ୍ର ତଦେବୈକଂ ଫଳଂ ବ୍ରହ୍ମଲୋକପ୍ରାପ୍ତି ଲକ୍ଷଣଂ ପ୍ରଦର୍ଶ୍ୟତେ ।



ଭାଷା-ସିଦ୍ଧାନ୍ତ-(କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ- 'ଅର୍ଚିରାଦିନା' । ଏଠାରେ ଆମ୍ଭେ ପ୍ରତିଜ୍ଞା କରୁଛି ଯେ- ବ୍ରହ୍ମଲୋକକୁ ପାଇବାକୁ ଇଚ୍ଛା କରୁଥିବା ସମସ୍ତ ଉପାସକ ଅର୍ଚିରାଦିମାର୍ଗରେ ଗମନ କରନ୍ତି । କିପରି ? କାରଣ-ତାହାର ପ୍ରସିଦ୍ଧ ଅଛି । ଏହି ମାର୍ଗ ସମସ୍ତ ବିଦ୍ୱାନ୍‌ଙ୍କ ପାଖରେ ପ୍ରସିଦ୍ଧ ଅଟେ । ଯେପରି ପଞ୍ଚାଗ୍ନିବିଦ୍ୟାର ପ୍ରକରଣରେ 'ଯେ ଚାମୀ ଅରଣ୍ୟେ' (ସେହିପରି ଯେଉଁ ସନ୍ନ୍ୟାସୀ ଅଥବା ବାନପ୍ରସ୍ଥ ଅରଣ୍ୟରେ ଶ୍ରଦ୍ଧାଯୁକ୍ତ ହୋଇ ସତ୍ୟହିରଣ୍ୟଗର୍ଭଙ୍କୁ ଉପାସନା କରନ୍ତି) ଏହିପରି ଅନ୍ୟବିଦ୍ୟାର ପରିଶୀଳନ କରିବା ପାଇଁ ଅର୍ଚିରାଦିମାର୍ଗ ଶ୍ରବଣ ହୁଏ ।

(ଖ) ଏହା ହୋଇପାରେ, ପରନ୍ତୁ ଯେଉଁ ବିଦ୍ୟାରେ କୌଣସି ଗତି କୁହାଯାଇ ନାହିଁ, ସେଠାରେ ଅଚିରାଦିଗତ ସ୍ଥାପନ ହେଉ । ଯେଉଁ ସ୍ଥାନରେ ଅନ୍ୟର ଗତି ଶ୍ରବଣ ହୁଏ, ସେଠାରେ ଅର୍ଚିରାଦି ଗତିର ଆଶ୍ରୟଣ କାହିଁକି ନ ହେବ ? ଏହି ବିଷୟରେ କୁହାଯାଇଛି ଯେ- ଯଦି ଏହି ମାର୍ଗଗୁଡ଼ିକ ଅତ୍ୟନ୍ତ ଭିନ୍ନ ହୁଏ, ତେବେ ତାହା ସମ୍ଭବପର । ପରନ୍ତୁ ଏଠାରେ ବ୍ରହ୍ମଲୋକ ପାଇବାକୁ ପୁରୁଷ ଅନେକ ବିଶେଷଣଯୁକ୍ତ ଏକମାର୍ଗ ହୁଏ ଏବଂ ସେ କୌଣସି ସ୍ଥାନରେ କୌଣସି ଏକ ବିଶେଷଣଦ୍ୱାରା ଉପଲକ୍ଷିତ ହୁଏ ବୋଲି ଆମ୍ଭେ କହୁ, କାରଣ-ପ୍ରତ୍ୟେକ ସ୍ଥାନରେ ଏକଦେଶର ପ୍ରତ୍ୟଭିଜ୍ଞାନ ହେବାରୁ ଅନ୍ୟାନ୍ୟ ବିଶେଷଣବିଶେଷ୍ୟଭାବ ଉପପନ୍ନ ହୁଏ ।

(ଗ) ପ୍ରକରଣ ଭେଦ ହେବାରୁ ବିଦ୍ୟା ଏକହୋଇ ଅନ୍ୟୋନ୍ୟ ବିଶେଷଣର ଉପସଂହାର ପରି ବିଶେଷଣର ଉପସଂହାର ହୁଏ । ବିଦ୍ୟା ଭିନ୍ନ ହେଲେ ବି ଗତିର ଏକଦେଶ ପ୍ରତ୍ୟଭିଜ୍ଞାନଦ୍ୱାରା ଓ ଗନ୍ତବ୍ୟର ଅଭେଦ ଦ୍ୱାରା ଗତିର ଅଭେଦ ହୁଏ; କାରଣ- 'ତେ ତେଷୁ' (ସେମାନେ ସେହି ବ୍ରହ୍ମଲୋକରେ ଦୀର୍ଘାୟୁ ହିରଣ୍ୟଗର୍ଭର ଅନନ୍ତ ସଂବତ୍ସର ପର୍ଯ୍ୟନ୍ତ ରହନ୍ତି), 'ତସ୍ମିନ୍ ବସନ୍ତି' (ସେଠାରେ ବ୍ରହ୍ମାର ଅନେକ କଳ୍ପପର୍ଯ୍ୟନ୍ତ ବାସ କରନ୍ତି), 'ସା ଯା' (ସେ ଯେଉଁ ହିରଣ୍ୟଗର୍ଭର ସର୍ବଲୋକ ଜୟ ହୁଏ ଏବଂ ଯାହା ବ୍ୟାପ୍ତି ଅଟେ, ତାହା ଜୟ ଓ ବ୍ୟାପ୍ତିକୁ ପ୍ରାପ୍ତ ହୁଏ), 'ତଦା ଏବୈତ' (ସେଠାରେ ଏହା ହେବାରୁ ଯାହା ଏହି ବ୍ରହ୍ମଲୋକକୁ ବ୍ରହ୍ମଚର୍ଯ୍ୟଦ୍ୱାରା ଶାସ୍ତ୍ର ଓ ଆଚାର୍ଯ୍ୟଙ୍କ ଉପଦେଶ ଅନୁସାରେ ପ୍ରାପ୍ତ ହୋଇଛି) ଏହିପରି ସେହି ଶ୍ରୁତିରେ ସେହି ବ୍ରହ୍ମଲୋକ ପ୍ରାପ୍ତି ରୂପ ଏକଫଳ ଦେଖାଏ ॥

ମୂଳ-(କ) ଯତ୍ତ୍ୱେତୈରେବେତ୍ୟବଧାରଣମର୍ଚିରାଦ୍ୟାଶ୍ରୟଣେ ନ ସ୍ୟାଦିତିନୈଷ ଦୋଷଃ, ରଶ୍ମି ପ୍ରାପ୍ତିପରତ୍ୱାଦସ୍ୟ । ନହ୍ୟେକ ଏବ ଶବ୍ଦୋ ରଶ୍ମୀଂଶ୍ଚ ପ୍ରାପୟିତୁମର୍ହତ୍ୟର୍ଚିରାଦୀଂଶ୍ଚ ବ୍ୟାବର୍ତ୍ତୟିତୁମ୍ । ତସ୍ମାଦ୍ରଶ୍ମିସଂବନ୍ଧ ଏବାୟମବଧାର୍ଯ୍ୟତ ଇତି ଦ୍ରଷ୍ଟବ୍ୟମ୍, ତ୍ୱରାବଚନଂ ତ୍ୱର୍ଚିରାଦ୍ୟପେକ୍ଷାୟାମପି ଗନ୍ତବ୍ୟାନ୍ତରାପେକ୍ଷୟା କ୍ଷୈପ୍ର୍ୟାର୍ଥତ୍ୱାନ୍ନୋପରୁଧ୍ୟତେ ଯଥା ନିମିଷମାତ୍ରେଣାତ୍ରାଗମ୍ୟତ ଇତି ।

(ଖ) ଅପି ଚ 'ଅଥୈତୟୋଃ ପଥୋର୍ନ କତରେଣଚନ' (ଛା ୫-୧୦-୮) ଇତି ମାର୍ଗଦ୍ୱୟଭ୍ରଷ୍ଟାନାଂ କଷ୍ଟଂ ତୃତୀୟଂ ସ୍ଥାନମାଚକ୍ଷାଣା ପିତୃଯାଣବ୍ୟତିରିକ୍ତମେକମେବ ଦେବଯାନମର୍ଚିରାଦିପର୍ବାଣଂ ପନ୍ଥାନଂ ପ୍ରଥୟତି । ଭୂୟାଂସ୍ୟର୍ଚିରାଦିସ୍ମୃତୌ ମାର୍ଗପର୍ବାଣ୍ୟ-ଳ୍ପୀୟାଂସି ତ୍ୱନ୍ୟତ୍ର । ଭୂୟସାଂ ଚାନୁଗୁଣ୍ୟେନାଳ୍ପୀୟସାଂ ନୟନଂ ନ୍ୟାୟମିତି, ଅତୋଽପ୍ୟ-ର୍ଚିରାଦିନା ତତ୍‌ପ୍ରଥିତେରିତ୍ୟୁକ୍ତମ୍ ॥

ଭାଷା-(କ) ଅର୍ଚିରାଦିର ଆଶ୍ରୟଣ ହେବାପରେ 'ଏତୈରେବ' (ଏହି ରଶ୍ମି ଦ୍ୱାରା) ଏହି ଅବଧାରଣ ହେବ ନାହିଁ । ଏହା ମଧ୍ୟ ଦୋଷ ନୁହେଁ; କାରଣ-ଏହି ରଶ୍ମି ପ୍ରାପ୍ତି ପରକ ଅଟେ । ଏକ 'ଏବ' ଶବ୍ଦ ରଶ୍ମି ପ୍ରାପ୍ତି ପାଇଁ ଓ ଅର୍ଚିରାଦିର ବ୍ୟାବୃତ୍ତି ପାଇଁ ଏହା ଠିକ୍ ନୁହେଁ । ତେଣୁ ଏହି ରଶ୍ମି ସମ୍ବନ୍ଧ ବୋଲି ଅବଧାରିତ ହୁଏ । ତ୍ୱରାବଚନ କିନ୍ତୁ ଅର୍ଚିରାଦିକୁ ଅପେକ୍ଷା ଗନ୍ତବ୍ୟାଦିକୁ ଅପେକ୍ଷା କରି ଶୀଘ୍ରତା ଅର୍ଥପାଇଁ ବାଧିତ ହେବ । 'ଯେପରି ନିମିଷମାତ୍ରରୁ ଏହାହିଁ ଆସେ ।

(ଖ) ଅଥୈତୟୋଃ ପାର୍ଥୋର୍ନ', (ଯେତେବେଳେ ଉପାସନା ଓ ଇଷ୍ଟାଦି କର୍ମ ଏହି ଦୁଇଟି ଏକକୁ ସେବନ କରେ ନାହିଁ, ସେତେବେଳେ ଅର୍ଚିରାଦିମାର୍ଗ ଓ ଧୂମମାର୍ଗ ଏହି ଦୁଇଟି ମାର୍ଗ ମଧ୍ୟରୁ କୌଣସି ମାର୍ଗକୁ ଯାଏ ନାହିଁ) ଏହି ଦୁଇମାର୍ଗରୁ ଭ୍ରଷ୍ଟ ହେବାପାଇଁ କଷ୍ଟପ୍ରଦ ତୃତୀୟସ୍ଥାନକୁ କହି ଶ୍ରୁତି ପିତୃଯାନ ଭିନ୍ନ ଅର୍ଚିରାଦି ପର୍ବବାନ୍ ଗୋଟିଏ ଦେବଯାନମାର୍ଗକୁ ପ୍ରସିଦ୍ଧ କରେ । ଅର୍ଚିରାଦିଗତିରେ ବହୁଳଭାବେ ମାର୍ଗ ପର୍ବ ଅଟେ, ଏବଂ ଅନ୍ୟସ୍ଥାନରେ କମ୍ ପରିମାଣରେ ପର୍ବ ହୁଏ । ବହୁତ ଅନୁରୂପରେ ଅଳ୍ପର ଗ୍ରହଣ ନ୍ୟାୟସଙ୍ଗତ । ତେଣୁ 'ଅର୍ଚିରାଦିନା ତତ୍‌ପ୍ରଥିତେଃ ଏହା କୁହାଯାଇଛି ॥୧॥

## २ । वाय्यधिकरणम् ॥ सू. २ ॥

## ବାୟ୍ୟଧିକରଣମ୍ ॥ସୂ-୨॥

## वायुमब्दादविशेषविशेषाभ्याम् ॥ ४-३-२ ॥

## ବାୟୁମବ୍ଦାଦବିଶେଷବିଶେଷାଭ୍ୟାମ୍ ॥୪-୩-୨॥

ଅବ୍ଦାତ୍=ସଂବତ୍ସରର ପରେ ଆଦିତ୍ୟର ପୂର୍ବରୁ, ବାୟୁମ୍=ବାୟୁଲୋକକୁ ପ୍ରାପ୍ତ ହୁଏ । ଅବିଶେଷବିଶେଷାଭ୍ୟାମ୍=କାରଣ- 'ସ ବାୟୁଲୋକମ୍' ସାମାନ୍ୟ ଓ 'ଯଦା ବୈ ପୁରୁଷୋ' ଏହା ବିଶେଷ ଶ୍ରୁତି ଅଟେ ॥

ମୂଳ-(କ) କେନ ପୁନଃ ସଂନିବେଶବିଷେଷେଣ ଗତିବିଶେଷଣାନ୍ୟମିତରେତରେବି-ଶେଷବିଶେଷ୍ୟଭାବ ଇତି ? ତଦେତତ୍ ସହୃଦଭୂତ୍ୱାଽଽଚାର୍ଯ୍ୟୋ ପ୍ରଥୟତି । 'ସ ଏତଂ ଦେବଯାନଂ ପନ୍ଥାନମାପଦ୍ୟାଗ୍ନିଲୋକମାଗଚ୍ଛତି ସ ବାୟୁଲୋକଂ ସ ଇନ୍ଦ୍ରଲୋକଂ ସ ପ୍ରଜାପତିଲୋକଂ ସ ବ୍ରହ୍ମଲୋକମ୍' (କୌ ୧-୩) ଇତି କୌଷୀତକିନାଂ ଦେବଯାନଃ ପନ୍ଥା ପଠ୍ୟତେ ।



(ଖ) ତତ୍ରାର୍ଚିରଗ୍ନିଲୋକଶବ୍ଦୋ ତାବଦେକାର୍ଥୌ ଜ୍ୱଲନବଚନତ୍ୱାଦିତି ନାତ୍ର ସନିବେଶକ୍ରମଃ କ୍ୱଚିଦନ୍ୱେଷ୍ୟଃ । ବାୟୁସ୍ତ୍ୱର୍ଚିରାଦୌବର୍ତ୍ମନି ନ ଶ୍ରୁତଃ କତମସ୍ମିନ୍ ସ୍ଥାନେ ନିବେଶୟିତବ୍ୟ ଇତି । ଉଚ୍ୟତେ- 'ତେଽର୍ଚିଚମେବାଭିସଂ ଭବନ୍ତ୍ୟର୍ଚିଷୋଽହରହ୍ନ ଆପୂର୍ଯ୍ୟ-ମାଣପକ୍ଷମାପୂର୍ଯ୍ୟମାଣପକ୍ଷାଦ୍ୟାନ୍ ଷଡୁଦଙ୍ଙେତି ମାସାଂସ୍ତାନ୍ ମାସେଭ୍ୟଃ ସଂବତ୍ସରଂ ସଂବତ୍ସରାଦାଦିତ୍ୟମ୍' (ଛା ୫-୫-୧୦-୧, ୨) ଇତ୍ୟତ୍ର ସଂବତ୍ସରାତ୍ ପରାଞ୍ଚମାଦିତ୍ୟା-ଦର୍ବାଞ୍ଚଂ ବାୟୁମଭିସମ୍ଭବନ୍ତି ।

(ଗ) କସ୍ମାତ୍ ? ଅବିଶେଷବିଶେଷାଭ୍ୟାମ୍ । ତଥାହି-'ସ ବାୟୁଲୋକମ୍' (କୈ ୧-୩) ଇତ୍ୟତ୍ରାବିଶେଷୋପଦିଷ୍ଟସ୍ୟବାୟୋ ଶ୍ରୁତ୍ୟନ୍ତରେଣ ବିଶେଷାପଦେଶୋ ଦୃଶ୍ୟତେ । 'ଯଦା ବୈ ପୁରୁଷୋଽସ୍ମାଲ୍ଲୋକାତ୍ ପ୍ରୈତି ସ ବାୟୁମାଗଚ୍ଛତି ତସ୍ମୈ ସ ତତ୍ର ବିଜିହୀତେ ଯଥା ରଥଚକ୍ରସ୍ୟ ଖଂ ତେନ ସ ଊର୍ଦ୍ଧ୍ୱ ମାକ୍ରମତେ ସ ଆଦିତ୍ୟମାଗଚ୍ଛତି' (ବୃହ ୫-୧୦-୧) ଇତି । ଏତସ୍ମାଦାଦିତ୍ୟାଦ୍‌ବାୟୋଃ ପୂର୍ବତ୍ୱଦର୍ଶନାଦ୍ ବିଶେଷାଦଗ୍ନ୍ୟାଦିତ୍ୟୋ-ରନ୍ତରାଳେ ବାୟୁଃ ନିବେଶୟିତବ୍ୟଃ ॥

ଭାଷା- (କ) ପୁନଶ୍ଚ କୌଣସି ସମ୍ବନ୍ଧ ବିଶେଷରୁ ଗତିବିଶେଷର ଅନ୍ୟୋନ୍ୟ ବିଶେଷଣ ବିଶେଷ ଭାବ ରହିଛି କି ? ଆଚାର୍ଯ୍ୟ ବଂଧୁ ହୋଇ ତାହାକୁ ପ୍ରତିପାଦନ କରନ୍ତି । 'ସ ଏବଂ ଦେବଯାନଂ' (ସେ ଏହି ଦେବଯାନ ମାର୍ଗରୁ ପ୍ରାପ୍ତ ହୋଇ ଅଗ୍ନିଲୋକ ଯାଏ । ତା'ପରେ ସେ ବାୟୁଲୋକରେ, ପରେ ବରୁଣଲୋକରେ, ପରେ ଇନ୍ଦ୍ରଲୋକରେ, ପ୍ରଜାପତିଲୋକରେ ଓ ବ୍ରହ୍ମଲୋକରେ ପହଞ୍ଚେ) ଏହିପରି କୌଷୀତକୀ ଶାଖାର ଉପନିଷଦ୍‌ରେ ଦେବଯାନମାର୍ଗ ପଠିତ ହୁଏ ।

(ଖ) ସେଠାରେ ଅର୍ଚି ଓ ଅଗ୍ନିଲୋକଶବ୍ଦ ଏକାର୍ଥକ ଅଟେ । କାରଣ- ସେମାନେ ଅଗ୍ନିବାଚକ ଅଟନ୍ତି । ତେଣୁ ଏଠାରେ କଦାଚିତ୍ ସଂନିବେଶକ୍ରମ ଅନ୍ୱେଷଣୀୟ ନୁହେଁ । ପରନ୍ତୁ ବାୟୁ ଅର୍ଚିରାଦି ମାର୍ଗରେ ଶ୍ରୁତ ନୁହେଁ । ତେଣୁ ତାହାର କୌଣସି ସ୍ଥାନରେ ନିବେଶ ହେବା ଉଚିତ୍ କି ? କୁହାଯାଇଛି 'ତେଽର୍ଚିଷମ୍' (ସେମାନେ ପ୍ରାୟଣର ପରେ ପରେ ଅର୍ଚିଅଭିମାନୀ ଦେବତାକୁ ପ୍ରାପ୍ତ ହୁଅନ୍ତି । ଅର୍ଚିଠାରୁ ଦିବସକୁ ଦିବସରୁ ଶୁକ୍ଳପକ୍ଷରୁ ଯେଉଁ ଛଅ ମାସରେ ସୂର୍ଯ୍ୟ ଉତ୍ତରାୟଣକୁ ଗତି କରନ୍ତି ସେହି ଛଅ ମାସକୁ ସେହି ମାସରୁ ସଂବତ୍ସରକୁ, ସଂବତ୍ସରକୁ ଆଦିତ୍ୟକୁ ପ୍ରାପ୍ତ ହୁଅନ୍ତି) ଏଠାରେ ସଂବତ୍ସର ପରେ ଓ ଆଦିତ୍ୟର ପୂର୍ବରୁ ବାୟୁକୁ ପ୍ରାପ୍ତ ହୁଅନ୍ତି ।

(ଗ) କିପରି ? ସାମାନ୍ୟ ଓ ବିଶେଷ ଶ୍ରୁତି କାରଣରୁ । ଯେପରି 'ସ ବାୟୁଲୋକମ' (ସେ ବାୟୁଲୋକକୁ ପ୍ରାପ୍ତ ହୁଏ) ଏହି ଶ୍ରୁତିରେ ଅବିଶେଷ ରୂପରେ ଉପଦିଷ୍ଟ ବାୟୁର 'ଯଦା ବୈ' (ଯେଉଁ ସମୟରେ ଏହି ଉପାସକ ଏହି ଶରୀରରୂପୀ ଲୋକରେ ପ୍ରାୟଣ

କରନ୍ତି, ସେହି ସମୟରେ ସେ ବାୟୁକୁ ପ୍ରାପ୍ତ ହୁଅନ୍ତି । ସେଠାରେ ବାୟୁ ତାହାପାଇଁ ଛିଦ୍ରଯୁକ୍ତ ହୁଏ, ମାର୍ଗ ମଧ୍ୟ ଦିଏ । ଯେପରିକି ରଥର ପହିଗୁଡ଼ିକ ଛିଦ୍ରଯୁକ୍ତ ଅଟନ୍ତି; କିନ୍ତୁ ତାହାଦ୍ୱାରା ସେ ଊର୍ଦ୍ଧ୍ୱ ହୋଇ ଚଢ଼େ । ସେ ସୂର୍ଯ୍ୟଲୋକରେ ପହଞ୍ଚେ) ଏହିପରି ଅନ୍ୟ ଶ୍ରୁତିଦ୍ୱାରା ବିଶେଷ ରୂପରେ ଉପଦେଶ ଦେଖାଯାଏ, ଏହି ଆଦିତ୍ୟଦ୍ୱାରା ବାୟୁର ପୂର୍ବଦର୍ଶନ ହୁଏ ଏବଂ ଏହି ବିଶେଷରୁ ସଂବସ୍ତର ଓ ଆଦିତ୍ୟ ମଧ୍ୟରେ ବାୟୁର ନିର୍ଦ୍ଦେଶ ହୁଏ ॥

ମୂଳ-(କ) କସ୍ମାତ୍ ପୁନରଗ୍ନେଃ ପରତ୍ୱଦର୍ଶନାଦ୍ ବିଶେଷାଦର୍ନିଷୋଽନନ୍ତରଂ ବାୟୁର୍ନ ନିବେଶ୍ୟତେ ? ନୈଷୋଽସ୍ତି ବିଶେଷ ଇତି ବଦାମଃ । ନନୂଦାହୃତା ଶ୍ରୁତିଃ 'ସ ଏତଂ ଦେବଯାନଂ ପନ୍ଥାନମାପଦ୍ୟାଗ୍ନିଲୋକମାଗଚ୍ଛତି ସ ବାୟୁଲୋକଂ ସ ବରୁଣଲୋକମ୍' (କୌଷୀ ୧-୩) ଇତି, ଉଚ୍ୟତେ-କେବଲୋଽତ୍ର ପାଠଃ ପୌର୍ବାପର୍ଯ୍ୟେଣାବସ୍ଥିତୋ ନାତ୍ର କ୍ରମବଚନଃ କଶ୍ଚିଦ୍ଦୁଚ୍ଛେଦୋଽସ୍ତି ।

(ଖ) ପଦାର୍ଥୋପଦର୍ଶନମାତ୍ରଂ ହ୍ୟତ୍ର କ୍ରିୟତେ-ଏତମେତଂ ଝଗଚ୍ଛତୀତି । ଇତରତ୍ର ପୁନର୍ବାୟୁପ୍ରତ୍ତେନ ରଥଚକ୍ର ମାତ୍ରେଣ ଛିଦ୍ରେଣୋର୍ଧ୍ୱକ୍ରମାଦିତ୍ୟ ମାଗଚ୍ଛତୀତ୍ୟ ବଗମ୍ୟତେ କ୍ରମଃ । ତସ୍ମାତ୍ସୁକ୍ତମ୍ ଅବିଶେଷ ବିଶେଷାଭ୍ୟାସିତି । ବାଜସନେୟିନସ୍ତୁ 'ମାସେଭ୍ୟୋ ଦେବଲୋକଂ ଦେବଲୋକାଦାଦିତ୍ୟମ୍' (ବୃ ୬-୨-୫) ଇତି ସମାମନନ୍ତି ।

(ଗ) ତତ୍ରାଦିତ୍ୟୋନନ୍ତର୍ଯ୍ୟାୟ ଦେବଲୋକାଦ୍ ବାୟୁମଭି ସମ୍ଭବେୟୁଃ । ବାୟୁମବ୍ଦାତ୍ । ଇତି ତୁ ଛାନ୍ଦୋଗଶ୍ରୁତ୍ୟ ପେକ୍ଷୟୋକ୍ତମ୍ । ଛାନ୍ଦୋଗ୍ୟବାଜସନେୟକଯୋ-ସ୍ତ୍ୱେକତ୍ର ଦେବଲୋକୋ ନ ବିଦ୍ୟତେ, ପରତ୍ର ସଂବସ୍ତରଃ । ତତ୍ର ଶ୍ରୁତିଦ୍ୱୟପ୍ରତ୍ୟୟାଦୁଭା-ବପ୍ୟୁ ଭୟତ୍ର ଗ୍ରଥୟିତବ୍ୟୈଂଃ । ତତ୍ରାପି ମାସ ସଂବନ୍ଧାତ୍ ସମ୍ବସ୍ତରଃ ପୂର୍ବ ପଶ୍ଚିମୋ ଦେବଲୋକ ଇତି ବିବେକ୍ତବ୍ୟମ୍ ॥

ଭାଷା-(କ) ପରନ୍ତୁ ଅଗ୍ନି ପରେ ବାୟୁର ଦର୍ଶନ ହୁଏ, ଏହି ବିଶେଷରୁ ଅର୍ଚିର ପରେ ବାୟୁର ନିବେଶ କାହିଁକି କରାଯାଇନାହିଁ । ଏହା କିନ୍ତୁ ବିଶେଷ ନୁହେଁ ବୋଲି ଆମ୍ଭେ କହୁଁ । ପରନ୍ତୁ 'ସ ଏତଂ' (ଏହି ଦେବଯାନମାର୍ଗକୁ ପାଇ ସେ ଅଗ୍ନିଲୋକକୁ ପ୍ରାପ୍ତ ହୁଏ । ସେ ବାୟୁଲୋକ ଓ ବରୁଣଲୋକକୁ ପାଏ) ଏହି ଶ୍ରୁତି ଉଦାହୃତ କି ? କୁହାଯାଇଛି-ଏଠାରେ ପୋର୍ବା ପୌର୍ଯ୍ୟଦ୍ୱାରା କେବଳ ପାଠ ଅବସ୍ଥିତ ରହେ; କିନ୍ତୁ ଏଠାରେ କ୍ରମବାଚୀ କୌଣସି ଶବ୍ଦ ନାହିଁ ।

(ଖ) 'ସେ ଏହି ସ୍ଥାନକୁ ଯାଏ' ଏଠାରେ କେବଳ ପଦାର୍ଥର ଉପଦର୍ଶନମାତ୍ର କରାଯାଇଛି । ଅନ୍ୟ ଶ୍ରୁତିରେ ବାୟୁକୁ ଦେଇଥିବା ରଥଚକ୍ର ଯେପରି ଛିଦ୍ରଦ୍ୱାରା ଊର୍ଦ୍ଧ୍ୱକୁ ଯାଇ ଆଦିତ୍ୟରେ ପହଞ୍ଚେ, ସେପରି କ୍ରମ ଅବଗତ ହୁଏ । ତେଣୁ 'ଅବିଶେଷ ଓ ବିଶେଷରୁ' ବୋଲି ସମୀଚୀନ କୁହାଯାଇଛି । ବାଜସେନୟୀ କିନ୍ତୁ 'ମାସେଭ୍ୟୋ' (ମାସରୁ ଦେବଲୋକ ଓ ଦେବଲୋକରୁ ଆଦିତ୍ୟଲୋକା ଯାଏ) ଏହା କୁହାଯାଇଛି ।



(ଗ) ସେଠାରେ ଆଦିତ୍ୟର ଆନନ୍ତର୍ଯ୍ୟ ପାଇଁ ଦେବଲୋକରେ ବାୟୁକୁ ପାଇବା ଉଚିତ୍ । 'ବାୟୁମବ୍ଦାତ୍' (ସମ୍ବତ୍ସରରୁ ବାୟୁ ପ୍ରାପ୍ତ ହୁଏ) ଏହି ସୂତ୍ରପାଠ ଛାନ୍ଦୋଗ୍ୟ ଶ୍ରୁତିକୁ ଅପେକ୍ଷା କରେ । ଛାନ୍ଦୋଗ୍ୟ ଓ ବାଜସନେୟକରେ ଗୋଟିକରେ ଦେବଲୋକ ନାହିଁ ଓ ଅନ୍ୟଟିରେ ସଂବତ୍ସର ନାହିଁ । ସେହି ଦୁଇ ଶ୍ରୁତିର ପ୍ରତ୍ୟୟ ହେଲେ ଦୁଇଟିର ଦୁଇଟି ସ୍ଥଳରେ ସଂନିବେଶ ହେବା ଉଚିତ୍ । ସେଠାରେ ମାସରଂ ସହ ସମ୍ବନ୍ଧ ହେଲେ ସଂବତ୍ସରର ପୂର୍ବରୁ ଓ ଦେବଲୋକର ପରେ ସଂନିବେଶ ହୁଏ- ଏହା ହିଁ ବିଚାର କରିବା ଉଚିତ୍ ॥୨॥

## ३ । तडिदधिकरणम् ॥ सू. ३ ॥

## ୩। ତଡ଼ିଦଧିକରଣମ୍ ॥ସୂ ୩॥

### तडितोऽपि बरुण: सम्बन्धात् ॥ ४-४-३ ॥

### ତଡ଼ିତୋଽପି ବରୁଣଃ ସମ୍ବନ୍ଧାତ୍ ॥୪-୪-୩॥

ତଡ଼ିତେଃ=ବିଦ୍ୟୁତ୍‌ଲୋକରୁ ଅଧି=ଉପରେ ବରୁଣଃ=ବରୁଣଲୋକ ଅଛି । ସମ୍ବନ୍ଧାତ୍=କାରଣ-ବରୁଣର ବିଦ୍ୟୁତ୍‌ସହ ସମ୍ବନ୍ଧ ରହିଛି ।

ମୂଳ-(କ) 'ଆଦିତ୍ୟାତ୍ ଚନ୍ଦ୍ରମସଂ ଚନ୍ଦ୍ରମସୋ ବିଦ୍ୟୁତମ୍' (ଛା ୪-୧୫-୫) ଇତ୍ୟାସ୍ୟା ବିଦ୍ୟୁତ୍ ଉପରିଷ୍ଟାତ୍ ସ ବରୁଣଲୋକ ମିତ୍ୟୟଂ ବରୁଣଃ ସଂବଧ୍ୟତେ । ଅସ୍ତି ହି ସଂବନ୍ଧୋ ବିଦ୍ୟୁତ୍ ବରୁଣୟୋଃ । 'ଯଦା ହି ବିଶାଳା ବିଦ୍ୟୁତସ୍ତୀବ୍ରସ୍ତନିତ ନିର୍ଘୋଷା ଜୀମୁତୋଦରେଷୁ ପ୍ରନୃତ୍ୟନ୍ତ୍ୟଥାପଃ ପ୍ରପତନ୍ତି । 'ବିଦ୍ୟୋତତେ ସ୍ତନୟତି ବର୍ଷିଷ୍ୟତି ବା' (ଛା ୭-୧୧-୧) ଇତି ଚ ବ୍ରାହ୍ମଣମ୍ ।

(ଖ) ଅପାଂ ଧ୍ୟଧିପତିର୍ବରୁଣ ଇତି ଶ୍ରୁତିସ୍ମୃତି ପ୍ରସିଦ୍ଧିଃ । ବରୁଣାଦଧୀନ୍ଦ୍ର ପ୍ରଜାପତୀ, ସ୍ଥାନାନ୍ତରାଭାବାତ୍ ପାଠ ସାମର୍ଥ୍ୟାଚ୍ଚ । ଆଗନ୍ତୁକତ୍ୱାଦପି ବରୁଣାଦୀନାମନ୍ତ ଏବ ନିବେଶଃ, ବୈଶେଷିକ ସ୍ଥାନ ଭାବାଦ୍ ବିଦ୍ୟୁଚ୍ଚାନ୍ତ୍ୟାର୍ଚିରାଦୌ ବର୍ତ୍ମନି ॥

ଭାଷା-(କ) 'ଆଦିତ୍ୟାତ୍ ଚନ୍ଦ୍ରମସମ୍' (ଆଦିତ୍ୟଠାରୁ ଚନ୍ଦ୍ରଲୋକକୁ ଓ ଚନ୍ଦ୍ରମାଠାରୁ ବିଦ୍ୟୁତ୍‌କୁ ପ୍ରାପ୍ତ ହୁଏ) ଏହିପରି ବିଦ୍ୟୁତ୍‌ଠାରୁ ଉପରେ ସେ ବରୁଣଲୋକକୁ ଯାଏ-ଏହା ବରୁଣର ସମ୍ବନ୍ଧ ଅଟେ । ବିଦ୍ୟୁତ୍ ଓ ବରୁଣର ସମ୍ବନ୍ଧ ଅଟେ । ଯେତେବେଳେ ନିର୍ଘୋଷ ଜୋରରେ ଗର୍ଜନ କଲାପରି ବିଶାଳ ବିଦ୍ୟୁତ୍ ମେଘର ଗର୍ଭରେ ନୃତ୍ୟ କରେ, ସେତେବେଳେ ଜଳ ବର୍ଷଣ ହୁଏ । ବିଦ୍ୟୁତ୍ ଚମକେ, ମେଘ ଗର୍ଜେ, ବର୍ଷା ହେବ ବୋଲି ଲୋକମାନେ କହନ୍ତି) ଏହା ବ୍ରାହ୍ମଣ ଶ୍ରୁତି ଅଟେ ।

(ଖ) ଶ୍ରୁତି ଓ ସ୍ମୃତି ପ୍ରସିଦ୍ଧ ଅଛି ଯେ=ଜଳର ଅଧିପତି ବରୁଣ । ବରୁଣଲୋକ ଉପରେ ଇନ୍ଦ୍ର ଓ ପ୍ରଜାପତି ଲୋକ ଅଛି; କାରଣ-ତାହା ପାଇଁ ଅନ୍ୟ ସ୍ଥାନ ନାହିଁ ଏବଂ

ପାଠର ସାମର୍ଥ୍ୟ ଅଛି । ବରୁଣାଦିର ଆଗନ୍ତୁକ ହେଲେ ଶେଷରେ ନିବେଶ ହୁଏ । କାରଣ-ବିଶେଷ ସ୍ଥାନର ହେଲେ ଅର୍ଚିରାଦି ମାର୍ଗରେ ବିଦ୍ୟୁତ୍ ଅନ୍ତିମ ସ୍ଥାନ ହୁଏ ॥୩॥

## ४ । आतिवाहिकाधिकरणम् ॥ सु. ४-६ ॥

## ୪ । ଆତିବାହିକାଧିକରଣମ୍ ॥୪-୬॥

## आतिवाहिकास्तल्लिंगात् ॥ ४-३-४ ॥

## ଆତିବାହିକାସ୍ତଲ୍ଲିଙ୍ଗାତ୍ ॥୪-୩-୪॥

ଆତିବାହିକାଃ=ସେମାନେ ଅର୍ଚିରାଦି ବ୍ରହ୍ମଲୋକରେ ନେବା ପାଇଁ ଆତିବାହିକ ହୁଏ । ତଲ୍ଲିଙ୍ଗାତ୍-କାରଣ- 'ଅମାନବଃ ସ ଏତାନ୍ ବ୍ରହ୍ମ ଗମୟତି, ଏହିପରି ତାହାର ଲିଙ୍ଗ ଅଛି ॥

ମୂଳ-(କ) ତେଷ୍ୱେବାର୍ଚିରାଦିଷୁ ସଂଶୟଃ-କିମେତାନି ମାର୍ଗଚିହ୍ନାନ୍ୟୁତ ଭୋଗଭୂମ-ୟୋଽଥବା ନେତାରୋ ଗନ୍ତୃଣାମିତି ? ତତ୍ର ମାର୍ଗ ଲକ୍ଷଣଭୂତା ଅର୍ଚିରାଦୟ ଇତି ତାବତ୍ପ୍ରାପ୍ତମ୍, ତତ୍ସ୍ୱରୂପତ୍ୱାଦୁପଦେଶସ୍ୟ । ଯଥାହି ଲୋକେ କଶ୍ଚିଦ୍ଗ୍ରାମଂ ନଗରଂ ବା ପ୍ରତିଷ୍ଠା ସମାନୋଽନୁ ଶିଷ୍ୟତେ-ଗଚ୍ଛେତସ୍ମମମୁଂଗିରିଂ ତତୋ ନ୍ୟଗ୍ରୋଧଂ ତତୋ ନଦୀଂ ତତୋ ଗ୍ରାମଂ ତତୋ ନଗରଂ କା ପ୍ରାପ୍ସ୍ୟସୀତ୍ୟେବମିହାପ୍ୟର୍ଚିଷୋଽଦରହ୍ନ ଆପୂର୍ଯ୍ୟମାଣପକ୍ଷମିତ୍ୟାଦ୍ୟାହ ।

(ଖ) ଅଥବା-ଭୋଗଭୂମୟ ଇତି ପ୍ରାପ୍ତମ୍ । ତଥାହି-ଲୋକଶବ୍ଦେନାଗ୍ନ୍ୟାଦୀନାନୁ-ବଧ୍ନାତି 'ଅଗ୍ନିଲୋକମାଗଚ୍ଛତି' (କୌଷୀ ୧-୩) ଇତ୍ୟାଦି । ଲୋକଶବ୍ଦଶ୍ଚ ପ୍ରାଣିନାଂ ଭୋଗାୟତନେଷୁ ଭାଷ୍ୟତେ- 'ମନୁଷ୍ୟଲୋକଃ ପିତୃଲୋକୋ ଦେବଲୋକଃ' (ବୃହ ୧-୫-୧୬) ଇତି ଚ ।

(ଗ) ତଥା ଚ ବ୍ରାହ୍ମଣମ୍-ଅହୋରାତ୍ରେଷୁ ତେ ଲୋକେଷୁ ସଜ୍ଜନ୍ତେ ଇତ୍ୟାଦି । ତସ୍ମାନ୍ନାତିବାହିକା ଅର୍ଚିରାଦୟଃ । ଅଚେତନତ୍ୱାଦପ୍ୟେ ତେଷାମାତି ବାହିକତ୍ୱାନୁପପତ୍ତିଃ । ଚେତନା ହି ରାଜନିଯୁକ୍ତାଃ ପୁରୁଷାଃ ଦୁର୍ଗେଷୁ ମାର୍ଗେଷ୍ୱତି ବାହ୍ୟାନତିବାହୟନ୍ତୀତି ।

(ଘ) ଏବଂ ପ୍ରାପ୍ତେ ବ୍ରୂମଃ-ଆତିବାହିକା ଏବୈତେ ଭବିତୁମର୍ହନ୍ତି । କୁତଃ ? ତଲ୍ଲିଙ୍ଗାତ୍ । ତଥାହି 'ଚନ୍ଦ୍ରମସୋ ବିଦ୍ୟୁତଂ ତତ୍ପୁରୁଷୋଽମାନବଃ ସ ଏତାନ୍ ବ୍ରହ୍ମ ଗମୟତି' (ଛା ୪-୧୫-୫) ଇତି ସିଦ୍ଧବଦ୍ ଗମୟିତୃତ୍ୱଂ ଦର୍ଶୟତି । ତଦ୍ବଚନଂ ତଦ୍ବିଷୟମେବୋ-ପକ୍ଷୀଣମିତିଚେତ୍- ନ ପ୍ରାପ୍ତମାନବତ୍ୱ ନିବୃତ୍ତି ପରତ୍ୱାଦ୍ ବିଶେଷଣସ୍ୟ । ଯଦ୍ୟର୍ଚିରାଦିଷୁ ପୁରୁଷା ଗମୟିତାରଃ ପ୍ରାପ୍ତାସ୍ତେ ଚ ମାନବାସ୍ତତୋ ଯୁକ୍ତଂ ତନ୍ନିବୃତ୍ତ୍ୟର୍ଥଂ ପୁରୁଷବିଶେଷଣମାନବ ଇତି ॥



ଭାଷା-(କ) ଏହି ଅଚରାଦିରେ ସଂଶୟ ହୁଏ ଯେ-ଏଗୁଡ଼ିକ କ'ଣ ମାର୍ଗଚିହ୍ନକି ଭୋଗସ୍ଥାନ ଅଥବା ବ୍ରହ୍ମଲୋକକୁ ଯିବା ପାଇଁ ନେତା (ଯେ ନେଇପାରେ) ? ପୂର୍ବପକ୍ଷ-ଏହା ସଂଶୟ ହେବାରୁ ଏହି ଅର୍ଚିରାଦ ମାର୍ଗର ଚିହ୍ନରୂପ ଅଟେ ବୋଲି ପ୍ରାପ୍ତ ହୁଏ, କାରଣ-ସେହି ମାର୍ଗର ସ୍ୱରୂପକୁ କହି ଉପଦେଶ ଦିଆଯାଇଛି । ଯେଉଁ ଲୋକରେ ଗ୍ରାମ ଅଥବା ନଗରକୁ ପ୍ରସ୍ଥାନ ଇଚ୍ଛାକରି କାହାକୁ ଉପଦେଶ ଦିଆଯାଏ ଯେ ତୁମ୍ଭେ ଏଠାରୁ ସେହି ପର୍ବତକୁ ଯାଅ, ସେଠାରୁ ବୃକ୍ଷ ଆଡ଼କୁ, ତା'ପରେ ନଦୀକୁ ତା'ପରେ ଗ୍ରାମକୁ, ଅଥବା ନଗରକୁ ପ୍ରାପ୍ତ ହୁଅ । ସେହିପରି ଏଠାରେ ଅର୍ଚିରୁ ଅହକୁ, ଅହରୁ ଆପୂର୍ଯ୍ୟମାଣ ପକ୍ଷକୁ ପ୍ରାପ୍ତ ହୁଅନ୍ତି-ଇତ୍ୟାଦି ଶ୍ରୁତି କହେ ।

(ଖ) ଅଥବା ଏଗୁଡ଼ିକ ଅର୍ଚିରାଦି ଭୋଗସ୍ଥାନ ଅଟନ୍ତି-ଏହା ପ୍ରାପ୍ତ ହୁଏ, କାରଣ-'ଅଗ୍ନିଲୋକମ୍' (ଅଗ୍ନିଲୋକକୁ ଯାଏ) ଇତ୍ୟାଦି ଶ୍ରୁତି ଲୋକଶବ୍ଦ ସହିତ ଅଗ୍ନି ପ୍ରଭୃତିର ସମ୍ବନ୍ଧ କରେ । ମନୁଷ୍ୟଲୋକ, ପିତୃଲୋକ, ଦେବଲୋକ ଏହିପରି ପ୍ରାଣୀମାନଙ୍କର ମାର୍ଗସ୍ଥାନରେ କୁହାଯାଇଛି ।

(ଗ) ସେହିପରି 'ଅହୋରାତ୍ରେଷୁ' (ସେହି ଅହ ଓ ରାତ୍ରିଲୋକରେ ସେମାନେ କର୍ମୀ ଓ ଉପାସକ ଭୋଗକୁ ଅନୁଭବ କରନ୍ତି ।) ଇତ୍ୟାଦି ବ୍ରାହ୍ମଣବଚନ ଅଟେ । ତେଣୁ ଅର୍ଚିରାଦି ଅତିବାହିକ ନୁହେଁ । ଅଚେତ ନ ହେଲେ ମଧ୍ୟ ଏଗୁଡ଼ିକ ଅତିବାହିକ ହଅନ୍ତି ନାହିଁ; କାରଣ-ସଂସାରରେ ରାଜାଦ୍ୱାରା ନିଯୁକ୍ତ ଚେତନ ମଧ୍ୟ ଦୁର୍ଗମାର୍ଗକୁ ଜାଣିଥିବା ଲୋକକୁ ନେଇଯା'ନ୍ତି ।

(ଘ) ସିଦ୍ଧାନ୍ତ-ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ-ଏହି ଅର୍ଚିରାଦି ଆତିବାହିକ ହୋଇପାରନ୍ତି । କିପରି ? କାରଣ-ତାହାର ଲିଙ୍ଗ ଅଛି । ଯେପରି କି 'ଚନ୍ଦ୍ରମସୋ ବିଦ୍ୟୁତ୍' (ସେହି ଉପାସକମାନେ ଚନ୍ଦ୍ରଲୋକରୁ ବିଦ୍ୟୁତ୍‌କୁ ପ୍ରାପ୍ତ ହୁଅନ୍ତି, ସେଠାରୁ ସେ ଅମାନବ ପୁରୁଷ ତାହାକୁ ସତ୍ୟଲୋକସ୍ଥ ବ୍ରହ୍ମକୁ ପ୍ରାପ୍ତ କରାଏ । ଏହି ଶ୍ରୁତି ସିଦ୍ଧବତ୍ ଗମୟିତ୍ୱତ୍ୱ ଦେଖାଏ । ଯଦି କହ ଯେ-ସେହି ବଚନ ତାହାର ବିଷୟରେ ଉପକ୍ଷୀଣ ହୁଏ, ଏହା କିନ୍ତୁ ଠିକ୍ ନୁହେଁ । କାରଣ- 'ଅମାନବ'-ଏହି ବିଶେଷଣ ପ୍ରାପ୍ତ ହୋଇ ମାନବତ୍ୱର ନିବୃତ୍ତି ପାଇଁ ରହେ । ଅର୍ଚିରାଦିରେ ଯାହା ନେବାପୁରୁଷ ପ୍ରାପ୍ତ ହୁଏ, ଯଦି ସେମାନେ ମାନବ ଅଟନ୍ତି, ତଥାପି ସେମାନଙ୍କୁ ତାହାର ନିବୃତ୍ତି ପାଇଁ ଅମାନବ ପୁରୁଷ ବୋଲି ବିଶେଷଣ କୁହାଯାଇଛି ॥୪॥

ମୂଳ-(କ) ନନୁ ତଲ୍ଲିଙ୍ଗମାତ୍ର ଗମକମ୍, ନ୍ୟାୟାଭାବାତ୍ 'ନୈଷ ଦୋଷଃ' ।

ଭାଷା-(କ) ପରନ୍ତୁ ସେ ଲିଙ୍ଗମାତ୍ର ଉକ୍ତାର୍ଥର ବୋଧକ ନୁହେଁ, କାରଣ-ସେଠାରେ ନ୍ୟାୟ ନାହିଁ । ଏହା ଦୋଷ କିନ୍ତୁ ନୁହେଁ ॥

**उभयव्यामोहात्तत्सिद्धेः ॥ ४-३-५ ॥**

**ଉଭୟବ୍ୟାମୋହାଉତ୍‌ସିଦ୍ଧେଃ ॥୪-୩-୫॥**

ଉଭୟବ୍ୟାମୋହାତ୍=ମାର୍ଗ ଓ ଗନ୍ତା, ଜଡ଼ ତଥା ଅସ୍ୱତନ୍ତ୍ର ହେଲେ ଊର୍ଦ୍ଧ୍ୱଗତି ହୁଏ ନାହିଁ, ତେଣୁ 'ସ୍ୱୟଂ ପ୍ରଯତ୍ନଶୂନ୍ୟ ଅନ୍ୟ ଚେତନରୁ ନେଇଯାଏ-ଏହି ନ୍ୟାୟ ବଳରେ ଅନୁଗୃହୀତ ଲିଙ୍ଗରୁ, ତତ୍‌ସିଦ୍ଧେଃ=ନେତୃତ୍ୱର ସିଦ୍ଧ ହୁଏ ॥

ମୂଳ-(କ) ଯେ ତାବଦର୍ଚିରାଦି ମାର୍ଗଗାସ୍ତେ ଦେହବିଯୋଗାତ୍ ସଂପିଣ୍ଡିତକରଣ ଗ୍ରାମା ଇତ୍ୟସ୍ୱତନ୍ତ୍ରା ଅର୍ଚିରାଦୀନାମପ୍ୟ ଚେତନତ୍ୱାଦସ୍ୱାତନ୍ତ୍ର୍ୟ ମିତ୍ୟତୋଽର୍ଚିରାଦ୍ୟଭି ମାନିନିଶ୍ଚେତନା ଦେବତା ବିଶେଷା ଆତିଯାତ୍ରାୟାଂ ନିଯୁକ୍ତା ଇତି ଗମ୍ୟତେ । ଲୋକେଽପି ହି ମତ୍ତମୂର୍ଚ୍ଛିତାଦୟଃ ସଂପିଣ୍ଡି ତକରଣାଃ ପରପ୍ରଯୁକ୍ତ ବର୍ତ୍ମାନୋ ଭବନ୍ତି । ଅନବସ୍ଥିତତ୍ୱାଦପ୍ୟ-ର୍ଚିରାଦୀନାଂ ନ ମାର୍ଗ ଲକ୍ଷଣତ୍ୱୋପପତ୍ତିଃ, ନହିରାତ୍ରୌ ପ୍ରତସ୍ୟାହଃ ସ୍ୱରୂପାଭି ସମ୍ଭବ ଉପପଦ୍ୟତେ ।

(ଖ) ନ ଚ ପ୍ରତିପ୍ରାଳନ ମସ୍ତୀତ୍ୟୁକ୍ତଂ ପୁରସ୍ତାତ୍ । ଧ୍ରୁବତ୍ୱାତ୍ତୁ ଦେବତାତ୍ମନାଂ ନାୟଂ ଦୋଷୋ ଭବତି । ଅର୍ଚିରାଦି ଶବ୍ଦତା ଚୈଷାମର୍ଚିରାଦ୍ୟଭିମାନାଦୁପପଦ୍ୟତେ । 'ଅର୍ଚିଷୋଽହଃ' (ଛା ୪-୧୫-୫, ୫-୧୦-୧) ଇତ୍ୟାଦିନିର୍ଦ୍ଦେଶସ୍ତ୍ୱାତି ବାହିକତ୍ୱେଽପି ନ ବିରୁଧ୍ୟତେ-ଅର୍ଚିଷା ହେତୁନାଽହରଭିସମ୍ଭବତି । ଅହ୍ନା ହେତୁନା ଆପୂର୍ଯ୍ୟମାଣ ପକ୍ଷମିତି । ତଥା ଚ ଲୋକେ ପ୍ରସିଦ୍ଧେଷ୍ୱପ୍ୟାତି ବାହକେଷ୍ୱେବଂ ଜାତୀୟକ ଉପଦେଶୋ ଦୃଶ୍ୟତେ । ଗଚ୍ଛତ୍ୱମିତୋ ବଳବର୍ମାଣଂ ତତୋ ଜୟସିଂହଂ ତତଃ କୃଷ୍ଣଗୁପ୍ତମିତି ।

ଭାଷା-(କ) ଯେଉଁମାନେ ଅର୍ଚିରାଦିମାର୍ଗରେ ଗମନ କରନ୍ତି, ସେମାନେ ଶରୀର ବିଯୋଗରୁ ଏକୀଭୂତକରଣ ସମୁଦାୟ ଓ ସ୍ୱତନ୍ତ୍ର ହୁଅନ୍ତି । ତେଣୁ ଅର୍ଚିରାଦି ଅଭିମାନୀ ଚେତନ ଦେବତାବିଶେଷ ଅତିମାତ୍ରାରେ ନିଯୁକ୍ତ ହୁଅନ୍ତି ବୋଲି ଜଣାପଡ଼େ । ସଂସାରରେ ଏକୀଭୂତ ଇନ୍ଦ୍ରିୟ ସମୁଦାୟ ମତ୍ତ ଓ ମୂର୍ଚ୍ଛିତାଦି ଅନ୍ୟଦ୍ୱାରା ପ୍ରଯୁକ୍ତ ହୋଇ ମାର୍ଗଗାମୀ ହୁଅନ୍ତି । ତାହା ଅନବସ୍ଥିତ ହେଲେ ଅର୍ଚିରାଦିରେ ମାର୍ଗ ଚିହ୍ନତ୍ୱ ଉପପନ୍ନ ହୁଏ ନାହିଁ, କାରଣ-ରାତ୍ରିର ମୃତକରେ ଦିନ ସ୍ୱରୂପର ସମ୍ଭବ ଉପପନ୍ନ ହୁଏ ନାହିଁ ।

(ଖ) ସେହିପରି ରାତ୍ରିର ମୃତକରେ ଦିନର ପ୍ରତୀକ୍ଷା ହୁଏ ନାହିଁ- ଏହା ଆମ୍ଭେ ପ୍ରଥମେ କହିଅଛୁ । ଦେବତାମାନେ ଧ୍ରୁବ ହେଲେ ଏହା ଦୋଷ ହୁଏ ନାହିଁ । ଅର୍ଚିରାଦିର ଅଭିମାନରୁ ଏହି ଦେବତାମାନଙ୍କଠାରେ ଅର୍ଚିରାଦିଶବ୍ଦ ଉପପନ୍ନ ହୁଏ । 'ଅର୍ଚିଷୋଽହଃ' (ଅର୍ଚିଦ୍ୱାରା ଅହ ପ୍ରାପ୍ତ ହୁଏ) ଇତ୍ୟାଦିନିର୍ଦ୍ଦେଶ କିନ୍ତୁ ଅର୍ନିରାଦିର ଅତିବାହିକ ହେବାରୁ ବିରୁଦ୍ଧ ହୁଏ ନାହିଁ । ଅର୍ଚିରୂପ ହେତୁଦ୍ୱାରା ଅହକୁ ପ୍ରାପ୍ତ ହୁଅନ୍ତି । ଅହ ହେତୁଦ୍ୱାରା ଶୁକ୍ଳପକ୍ଷକୁ



ପ୍ରାପ୍ତ ହୁଅନ୍ତି । ସେହିପରି ସଂସାରର ପ୍ରସିଦ୍ଧ ଅତିବାହିକରେ ମଧ୍ୟ (ତୁମ୍ଭେ ଏହି ବଳବର୍ମାର ପାଖକୁ ଯାଅ । ସେଠାରୁ ଜୟସିଂହ ପାଖକୁ ଯାଅ । ସେଠାରୁ କୃଷ୍ଣଗୁପ୍ତର ସମୀପକୁ ଯାଅ । ଏହିପରି ଉପଦେଶ ଦିଆଯାଇଛି ।

ମୂଳ-(କ) ଅପି ଚୋପକ୍ରମେ 'ତେଽର୍ଚିରଭିସମ୍ଭବନ୍ତି' (ବୃହ ୬-୨-୧୫) ଇତି ସଂବନ୍ଧମାତ୍ରମୁକ୍ତମ୍; ନ ସଂବନ୍ଧବିଶେଷଃ କଶ୍ଚିତ୍ । ଉପସଂହାରେ ତୁ 'ସ ଏତାନ୍ ବ୍ରହ୍ମ ଗମୟତି' (ଛା ୪-୧୫-୬) ଇତି ସଂବନ୍ଧବିଶେଷୋଽତିବାହ୍ୟାତିବାହକତ୍ୱଲକ୍ଷଣଃ ଉକ୍ତଃ । ତେନ ସ ଏବୋପକ୍ରମେଽପୀତି ନିର୍ଧାର୍ଯତେ ।

(ଖ) ସଂପିଣ୍ଡିତ କରଣତ୍ୱାଦେବ ଚ ଗନ୍ତୃଣାଂ ନ ତତ୍ରୋପଭୋଗସମ୍ଭବଃ । ଲୋକଶବ୍ଦସ୍ତ୍ୱନୁପଭୁଞ୍ଜାନେଷ୍ୱପି ଗନ୍ତୃଷୁ ଗମୟିତୁଂ ଶକ୍ୟତେ; ଅନ୍ୟେଷାଂ ତଲ୍ଲୋକବାସିନାଂ ଭୋଗଭୂମିତ୍ୱାତ୍ । ଅତୋଽଗ୍ନିଗ୍ଧାମିକଂ ଲୋକଂ ପ୍ରାପ୍ତୋଽଗ୍ନିନାଽତିବାହ୍ୟତେ ବାୟସ୍ୱାମିକଂ ପ୍ରାପ୍ତୋ ବାୟୁନେତି ଯୋଜୟିତବ୍ୟମ୍ ॥

ଭାଷା-(କ) 'ତେଽର୍ଚିରମଭିସମ୍ଭବନ୍ତି' (ସେମାନେ ଜ୍ୟୋତିର ଅଭିମାନୀ ଦେବତାକୁ ପ୍ରାପ୍ତ ହୁଅନ୍ତି) ଏହି ଉପକ୍ରମରେ ସମ୍ବନ୍ଧମାତ୍ର କୁହାଯାଇଛି । କିନ୍ତୁ ଅନ୍ୟ କୌଣସି ସମ୍ବନ୍ଧବିଶେଷ କୁହାଯାଇନାହିଁ । 'ସ ଏତାନ୍ ବ୍ରହ୍ମ ଗମୟତି' ଏହି ଉପସଂହାରରେ କିନ୍ତୁ ଅତିବାହ୍ୟ ଓ ଆତିବାହିକତ୍ୱରୂପ ସମ୍ବନ୍ଧବିଶେଷ କୁହାଯାଇଅଛି । ତେଣୁ ଉପକ୍ରମରେ ସେହି ସମ୍ବନ୍ଧବିଶେଷ ନିର୍ଦ୍ଧାରିତ କରାଯାଇଛି ।

(ଖ) ଏକୀଭୂତ ହୋଇ ଇନ୍ଦ୍ରିୟଙ୍କର ଜାଣିଥିବା ଉପାସକଗୁଡ଼ିକର ଏଠାରେ ଉପଭୋଗ ସମ୍ଭବ ହୁଏ ନାହିଁ । ଶବ୍ଦଲୋକ କିନ୍ତୁ ଉପଭୋଗ ନ ହେଲେ ଗମନକାରୀଠାରେ ଗମନତ୍ୱସମ୍ଭବ ହୁଏ । କାରଣ-ଅନ୍ୟ ସେହି ଲୋକବାସୀଙ୍କର ସେହି ଭୋଗଭୂମି ଅଟେ । ତେଣୁ ଅଗ୍ନିସ୍ୱାମୀଯୁକ୍ତ ସଂସାରରେ ପ୍ରାପ୍ତ ହୋଇ ଅଗ୍ନିକୁ ନେଇଯା'ନ୍ତି । ସେହି ପ୍ରକାର ବାୟୁସ୍ୱାମୀ ସଂସାରରେ ପ୍ରାପ୍ତ ହୋଇ ବାୟୁକୁ ନେଇଯାଏ ଏହାହିଁ ଯୋଜନା ॥୫॥

ମୂଳ-(କ) କଥଂ ପୁନରାତିବାହିକତ୍ୱପକ୍ଷେ ବରୁଣାଦିଷୁ ତତ୍ସମ୍ଭବଃ ? ବିଦ୍ୟୁତୋହ୍ୟଧି ବରୁଣାଦୟ ଉପକ୍ଷିପ୍ତାଃ, ବିଦ୍ୟୁତସ୍ତ୍ୱନନ୍ତରମାବ୍ରହ୍ମପ୍ରାପ୍ତେରମାନବସୈବ ପୁରୁଷସ୍ୟ ଗମୟିତୃତ୍ୱଂ ଶ୍ରୁତମିତି । ଅତି ଉତ୍ତରଂ ପଠତି-

ଭାଷା-(କ) ପରନ୍ତୁ ଆତିବାହିକତ୍ୱ ପକ୍ଷରେ ବରୁଣାଦିରେ ଆତିବାହିକତ୍ୱ କିପରି ସମ୍ଭବ ହେବ ? କାରଣ-ବିଦ୍ୟୁତ୍‌ଲୋକର ଉପରେ ବରୁଣାଦି କୁହାଯାଏ ଏବଂ ବିଦ୍ୟୁତ୍‌ର ପରେ ବ୍ରହ୍ମଲୋକପ୍ରାପ୍ତି ପର୍ଯ୍ୟନ୍ତ ଅମାନବ ଗମୟିତା ଶୁଣାଯାଏ କି ? ଏହାର ଉତ୍ତରରେ କୁହାଯାଇଛି-

**वैद्युतेनैव ततस्तच्छ्रुतेः ॥ ४-३-६ ॥**

**ବୈଦ୍ୟୁତେନୈବ ତତସ୍ତଚ୍ଛ୍ରୁତେଃ ॥୪-୩-୬॥**

ବୈଦ୍ୟୁତେନ ଏବ=ବିଦ୍ୟୁତଲୋକରେ ରହି ଅମାନବ ପୁରୁଷଦ୍ୱାରା, ତତଃ=ବିଦ୍ୟୁତପ୍ରାପ୍ତିର ଉପରେ ନେଉଥିବା ଉପାସକ କାର୍ଯ୍ୟବ୍ରହ୍ମକୁ ପ୍ରାପ୍ତ କରନ୍ତି । ତତ୍ଶ୍ରୁତେଃ=କାରଣ-ତାହାର ବିଷୟରେ 'ଅମାନବଃ ସ ଏତ୍ୟ ବ୍ରହ୍ମଲୋକଂ ଗମୟତି'- ଏହି ଶ୍ରୁତି ଅଟେ ॥

ମୂଳ-(କ) ତତୋ ବିଦ୍ୟୁଦଭିସମ୍ଭବନାଦୂର୍ଦ୍ଧ୍ୱଂ ବିଦ୍ୟୁଦନନ୍ତରବର୍ତ୍ତିନୈବା ମାନବେନ ପୁରୁଷେଣ ବରୁଣଲୋକାଦିଷ୍ୱତି ବାହ୍ୟମାନା ବ୍ରହ୍ମଲୋକଂ ଗଚ୍ଛନ୍ତୀତ୍ୟବଗନ୍ତବ୍ୟମ୍ । 'ତାନ୍‌ବୈଦ୍ୟୁତାତ୍ ପୁରୁଷୋଽମାନବଃ ସ ଏତ୍ୟ ବ୍ରହ୍ମଲୋକଂ ଗମୟତି' । ଇତି ତସ୍ୟୈବ ଗମୟିତୃତ୍ୱଶ୍ରୁତେଃ ।

(ଖ) ବରୁଣାଦୟସ୍ତୁ ତସ୍ୟୈବା ପ୍ରତିବନ୍ଧ କରଣେନ ସାହାଯ୍ୟାନୁଷ୍ଠେନ ବା କେନଚିଦନୁ ଗ୍ରାହକା ଇତ୍ୟବ ଗନ୍ତବ୍ୟମ୍ । ତସ୍ମାତ୍ ସାଧୁକ୍ତମ୍-ଆତିବାହିକା ଦେବତାତ୍ମା-ନୋଽର୍ଚିରାଦୟ ଇତି ।

ଭାଷା-(କ) ସେଠାରୁ ବ୍ରହ୍ମଲୋକରେ ପ୍ରାପ୍ତ ହେବାପରେ ବିଦ୍ୟୁତ୍‌ର ଅନନ୍ତରବର୍ତ୍ତୀ ଅମାନବ ପୁରୁଷ ଦ୍ୱାରା ବରଣୁଲୋକ ପ୍ରଭୃତି ଅତି ବାହ୍ୟମାନ ବ୍ରହ୍ମଲୋକକୁ ପ୍ରାପ୍ତ ହୁଅନ୍ତି ବୋଲି ଜାଣିବା ଉଚିତ୍ । କାରଣ- 'ତାନ୍ ବୈଦ୍ୟୁତାତ୍' (ବିଦ୍ୟୁତ୍‌ଲୋକରେ ପହଞ୍ଚି ସେହି ଉପାସକଲୋକକୁ ସେ ଅମାନବ ପୁରୁଷ ଆସି ବିଦ୍ୟୁତ୍‌ଲୋକରୁ ବ୍ରହ୍ମଲୋକକୁ ନେଇଯାଏ) ଏହା ସେହି ଅମାନବ ପୁରୁଷର ଗମୟିତୃତ୍ୱ ଶ୍ରୁତି ଅଟେ ।

(ଖ) କିନ୍ତୁ ବରୁଣାଦି ତାହାର ଅପ୍ରତିବନ୍ଧକରଣ ଦ୍ୱାରା ଅଥବା କୌଣସି ସହାୟତାର ଅନୁଷ୍ଠାନରୁ ଅନୁଗ୍ରାହକ ହୁଅନ୍ତି ବୋଲି ଜାଣ । ତେଣୁ ଏହା ଠିକ୍ କୁହାଯାଇଛି ଯେ-ଅର୍ଚିରାଦି ଅତିବାହିକ ଦେବତାତ୍ମା ଅଟନ୍ତି ॥୬॥

**५ । कार्याधिकरणम् ॥ सू. ७-१४ ॥**

**୫ । କାର୍ଯ୍ୟାଧିକରଣମ୍ ॥ ସୂ୭-୧୪ ॥**

**कार्यं बादरिरस्य गत्युपपत्तेः ॥ ४-३-७ ॥**

**କାର୍ଯ୍ୟଂ ବାଦରିରସ୍ୟ ଗତ୍ୟୁପପତ୍ତେଃ ॥୪-୩-୭॥**

କାର୍ଯ୍ୟଂ=କାର୍ଯ୍ୟ ବ୍ରହ୍ମର ମଧ 'ସ ଏତାନ୍ ବ୍ରହ୍ମ ଗମୟତି' ଏହି ଶ୍ରୁତିରେ ଗନ୍ତବ୍ୟ ରୂପରେ ଗ୍ରହଣ ହୋଇଛି, କାରଣ-ଅସ୍ୟ=କାର୍ଯ୍ୟବ୍ରହ୍ମରେ, ଗତ୍ୟୁପପତ୍ତେଃ=ଗତି ଉପପନ୍ନ ହୁଏ । ବାଦରିଃ=ଏହା ବାଦରି ଆଚାର୍ଯ୍ୟ ସ୍ୱୀକାର କରନ୍ତି ॥



ମୂଳ- (କ) 'ସ ଏତାନ୍ ବ୍ରହ୍ମ ଗମୟତି' (ଛା ୪-୧୫-୫) ଇତ୍ୟତ୍ର ବିଚିକିତ୍ସ୍ୟତେ କିଂ କାର୍ଯ୍ୟଂପରଂ ବ୍ରହ୍ମ ଗମୟତ୍ୟାହୋସ୍ୱିତ୍ ପରମେବା ବିକ୍ଷୃତଂ ମୁଖ୍ୟଂ ବ୍ରହ୍ମେତି । କୁତଃ ସଂଶୟଃ ? ବ୍ରହ୍ମଶବ୍ଦ ପ୍ରୟୋଗାଦ୍ ଗତିଶ୍ରୁତେଶ୍ଚ । ତତ୍ର କାର୍ଯ୍ୟମେବ ସଗୁଣମପରଂ ବ୍ରହ୍ମୈନାନ୍ ଗମୟତ୍ୟାମାନବଃ ପୁରୁଷ ଇତି ବାଦରିରାଚାର୍ଯ୍ୟୋ ମନ୍ୟତେ ।

(ଖ) କୁତଃ ? ଅସ୍ୟ ଗତ୍ୟୁପପତ୍ତେଃ ଅସ୍ୟହି କାର୍ଯ୍ୟବ୍ରହ୍ମଣୋ ଗନ୍ତବ୍ୟତ୍ୱ ମୁପପଦ୍ୟତେ, ପ୍ରଦେଶବତ୍ତ୍ୱାତ୍ । ନତୁ ପରସ୍ମିନ୍ ବ୍ରହ୍ମଣି ଗନ୍ତୃତ୍ୱଂ ଗନ୍ତବ୍ୟତ୍ୱଂ ଗତିର୍ବାଽବକଳ୍ପତେ । ସର୍ବଗତ-ତ୍ୱାତ୍ ପ୍ରତ୍ୟଗାତ୍ମତ୍ୱାଚ୍ଚ ଗନ୍ତୃଣାମ୍ ॥

ଭାଷା- (କ) 'ସ ଏତାନ୍ ବ୍ରହ୍ମ ଗମୟତି' (ସେହି ଅମାନବ ପୁରୁଷ ଏହି ଉପାସକଙ୍କୁ ବ୍ରହ୍ମ ସମୀପକୁ ନେଇଯାଏ) ଏଠାରେ ସନ୍ଦେହ ହୁଏ ଯେ କାର୍ଯ୍ୟ ଅପରବ୍ରହ୍ମ ପାଖକୁ କ'ଣ ପହଞ୍ଚେ କି ଅବିକୃତ ମୁଖ୍ୟ ପରଂବ୍ରହ୍ମ ପାଖକୁ ନେଇଯାଏ ? ସଂଶୟ କିପରି ହୁଏ ? ତେଣୁ ବ୍ରହ୍ମଶବ୍ଦର ପ୍ରୟୋଗ ଓ ଗତି ଶ୍ରୁତି ଅଟେ । ସଂଶୟ ହେବାପରେ ଅମାନବ ପୁରୁଷ ଏହି ଉପାସକମାନଙ୍କୁ କାର୍ଯ୍ୟ ସଗୁଣ ଅପରବ୍ରହ୍ମ ପ୍ରତି ନେଇଯାଏ ଏହା ବାଦରି ଆଚାର୍ଯ୍ୟ ସ୍ୱୀକାର କରନ୍ତି ।

(ଖ) କିପରି ? କାରଣ-ସେଠାରେ ଗତି ଉପପନ୍ନ ହୁଏ । ଏହି କାର୍ଯ୍ୟ ବ୍ରହ୍ମରେ ଗନ୍ତବ୍ୟତ୍ୱ ଉପପନ୍ନ ହୁଏ, କାରଣ-ଏହା ଅପରିଚ୍ଛିନ୍ନ ଅଟେ । ପରନ୍ତୁ ପରବ୍ରହ୍ମରେ ଗନ୍ତୃତ୍ୱ, ଗନ୍ତବ୍ୟ ଅଥବା ଗତି ନାହିଁ । କାରଣ-ସେ ସର୍ବଗତ ଓ ଗତିଗୁଡ଼ିକର ପ୍ରତ୍ୟକ୍ ଆତ୍ମା ଅଟେ ॥୭॥

## विशेषितत्वाच्च ॥ ४-३-८ ॥

## ବିଶେଷିତତ୍ୱାଚ୍ଚ ॥୪-୩-୮॥

ବିଶେଷିତତ୍ୱାତ୍ ଚ= 'ବ୍ରହ୍ମଲୋକାନ୍ ଗମୟତି' ଅନ୍ୟଶ୍ରୁତିରେ ବିଶେଷିତ ହେଲେ କାର୍ଯ୍ୟ ବ୍ରହ୍ମବିଷୟକଗତି ରୂପେ ଅବଗତ ହୁଏ ॥

ମୂଳ - (କ) 'ବ୍ରହ୍ମଲୋକାନ୍ ଗମୟତି ତେ ତେଷୁ ବ୍ରହ୍ମଲୋକେଷୁ ପରାଃ ପରାବତୋ ବସନ୍ତି' (ବୃହ ୬-୨-୧୫) ଇତି ଚ ଶ୍ରୁତ୍ୟନ୍ତରେ ବିଶେଷିତତ୍ୱାତ୍ କାର୍ଯ୍ୟବ୍ରହ୍ମ ବିଷୟୈବ ଗତିରିତି ଗମ୍ୟତେ । ନହି ବହୁବଚନେନ ବିଶେଷଣଂ ପରସ୍ମିନ୍ ବ୍ରହ୍ମଣ୍ୟବ କଳ୍ପତେ । କାର୍ଯ୍ୟଂ ତ୍ୱବସ୍ଥାଭେଦୋପପତ୍ତେଃ ସମ୍ଭବତି ବହୁବଚନମ୍ ।

(ଖ) ଲୋକଶ୍ରୁତିରପି ବିକାରଗୋଚରାୟାମେବ ସଂନ୍ନିବେଶ ବିଶିଷ୍ଟାୟାଂ ଭୋଗ-ଭୂମାବାଞ୍ଜସୀଗୌଣୀ ତ୍ୱନ୍ୟତ୍ର 'ବ୍ରହ୍ମୈବ ଲୋକ ଏଷ ସମ୍ରାଟ୍' ଇତ୍ୟାଦିଷୁ । ଅଧିକରଣାଧି କର୍ତ୍ତବ୍ୟ ନିର୍ଦ୍ଦେଶୋଽପି ପରସ୍ମିନ୍ ବ୍ରହ୍ମଣ୍ୟନାଞ୍ଜସଃ ସ୍ୟାତ୍ । ତସ୍ମାତ୍ କାର୍ଯ୍ୟ ବିଷୟମେବେଦଂ ନୟନମ୍ ॥

ଭାଷା-(କ) 'ବ୍ରହ୍ମଲୋକାନ୍' (ଜଣେ ଅମାନବ ପୁରୁଷ ଆସି ତାହାଙ୍କୁ ବ୍ରହ୍ମଲୋକକୁ ନେଇଯାଏ । ସେମାନେ ସେହି ବ୍ରହ୍ମଲୋକରେ ହିରଣ୍ୟମୟଗର୍ଭର ପରମାୟୁ ପର୍ଯ୍ୟନ୍ତ ଅନନ୍ତ ସଂବତ୍ସର ପର୍ଯ୍ୟନ୍ତ ବାସ କରନ୍ତି) ଏହି ଅନ୍ୟ ଶ୍ରୁତିରେ ବିଶେଷିତ ହେବାରୁ କାର୍ଯ୍ୟ ବ୍ରହ୍ମବିଷୟକ ଗତି ହୁଏ ବୋଲି ଜଣାଯାଏ; କାରଣ ପରବ୍ରହ୍ମରେ ଅବସ୍ଥାଭେଦର ଉପପତ୍ତି ହେବାରୁ ବହୁବଚନ ସମ୍ଭବ ହୁଏ ।

(ଖ) ଲୋକଶ୍ରୁତି ମଧ୍ୟ ବିକାର ବିଷୟକ ସମ୍ବନ୍ଧ ବିଶିଷ୍ଟ ଭୋଗଭୂମିରେ ମୁଖ୍ୟ ଅଟେ ଏବଂ ଅନ୍ୟତ୍ର 'ବ୍ରହ୍ମୈବ ଲୋକ ଏଷ ସମ୍ରାଟ୍' (ହେ ସମ୍ରାଟ । ଏହାହିଁ ବ୍ରହ୍ମଲୋକ ଅଟେ) ଇତ୍ୟାଦିରେ ଗୌଣୀ ଅଟେ । ଅଧିକରଣ ଓ ଅଧିକର୍ତ୍ତବ୍ୟ ନିର୍ଦ୍ଦେଶ ମଧ୍ୟ ପରବ୍ରହ୍ମରେ ମୁଖ୍ୟ ନୁହେଁ । ତେଣୁ ଏହା ଉପାସକର ନୟନ କାର୍ଯ୍ୟବ୍ରହ୍ମବିଷୟକ ଅଟେ ।୮।

ମୂଳ - (କ) ନନୁ କାର୍ଯ୍ୟବିଷୟେଽପି ବ୍ରହ୍ମଶବ୍ଦୋ ନୋପପଦ୍ୟତେ, ସମନ୍ୱୟେ ହି ସମସ୍ତସ୍ୟ ଜଗତୋ ଜନ୍ମାଦିକାରଣଂ ବ୍ରହ୍ମେତି ସ୍ଥାପିତମିତି । ଅତ୍ରୋଚ୍ୟତେ-

ଭାଷା-(କ) ପରନ୍ତୁ କାର୍ଯ୍ୟବ୍ରହ୍ମବିଷୟକ ମଧ୍ୟ ବ୍ରହ୍ମଶବ୍ଦ ଉପପନ୍ନ ହୁଏ ନାହିଁ, କାରଣ-ସମନ୍ୱୟ ଅଧିକରଣରେ ସମସ୍ତ ଜଗତ୍‌ର ଜନ୍ମ ପ୍ରଭୃତିର କାରଣ ବ୍ରହ୍ମ ଅଟେ- ଏହା କ'ଣ ପ୍ରତିପାଦିତ ହୋଇଛି ? ଏହାର ଉତ୍ତରରେ କୁହାଯାଇଛି ଯେ-

**समीप्यात्तु तदव्यपदेशः ॥ ४-३-९ ॥**

**ସାମୀପ୍ୟାତ୍ତୁ ତଦ୍‌ବ୍ୟପଦେଶଃ ।।୪-୩-୯।।**

ସାମୀପ୍ୟାତ୍=କାର୍ଯ୍ୟବ୍ରହ୍ମ କାରଣବ୍ରହ୍ମରସନ୍ନିଧିରେ ରହେ । ଅତଃ, ତଦ୍‌ବ୍ୟପଦେଶଃ=କାର୍ଯ୍ୟବ୍ରହ୍ମରେ ମଧ୍ୟ କାରଣବ୍ରହ୍ମର ଶବ୍ଦ ପ୍ରୟୋଗ ହୋଇଛି । ତୁ=ତୁଶବ୍ଦ ଶଙ୍କା ନିବାରଣ ପାଇଁ ଅଛି ।

ମୂଳ-(କ) ତୁଶବ୍ଦ ଆଶଙ୍କା ବ୍ୟାବୃତ୍ତ୍ୟର୍ଥଃ । ପରବ୍ରହ୍ମସାମୀପ୍ୟାଦପରସ୍ୟ ବ୍ରହ୍ମଣସ୍ତସ୍ମିନ୍ନପି ବ୍ରହ୍ମଶବ୍ଦପ୍ରୟୋଗୋ ନ ବିରୁଧ୍ୟତେ । ପରମେବ ହି ବ୍ରହ୍ମ ବିଶୁଦ୍ଧୋପାଧିସମ୍ବନ୍ଧଂ କ୍ୱଚିତ୍ କୈଶ୍ଚିଦ୍‌ବିକାରଧର୍ମୈର୍ମନୋମୟତ୍ୱାଦିଭିରୁପାସନାୟୋ ପଦିଶ୍ୟମାନମପରମିତି ସ୍ଥିତିଃ ।।

ଭାଷା-(କ) ତୁ ଶବ୍ଦ ଶଙ୍କାର ବ୍ୟାବୃତ୍ତି ପାଇଁ ଅଛି । ଅପରବ୍ରହ୍ମକୁ ପରବ୍ରହ୍ମସମୀପ ହେବାରୁ ସେଠାରେ ବ୍ରହ୍ମଶବ୍ଦର ପ୍ରୟୋଗ ବିରୁଦ୍ଧ ନୁହେଁ । କାରଣ=ବିଶୁଦ୍ଧ ଉପାଧି ବିଶିଷ୍ଟ ପରବ୍ରହ୍ମ କେଉଁଠି କୌଣସି ମନୋମୟତ୍ୱାଦିବିକାର ଧର୍ମ ଦ୍ୱାରା ଉପାସନା ପାଇଁ ଉପଦିଷ୍ଟ ହୋଇ ଅପରବ୍ରହ୍ମ ହୁଏ=ଏହାହିଁ ସ୍ଥିତି ଅଟେ ।।୯।।



ମୂଳ-(କ) ନନୁ କାର୍ଯ୍ୟପ୍ରାପ୍ତାବନାବୃତ୍ତିଶ୍ରବଣଂ ନ ଘଟତେ । ନହି ପରସ୍ମାଦ୍‌ବ୍ରହ୍ମଣୋଽନ୍ୟତ୍ର କ୍ୱଚିନ୍ନିତ୍ୟତାଂ ସମ୍ଭାବୟନ୍ତି । ଦର୍ଶୟତି ଚ ଦେବଯାନେନ ପଥା ପ୍ରସ୍ଥିତାନାମନାବୃତ୍ତିମ୍ 'ଏତେନ ପ୍ରତିପଦ୍ୟମାନା ଇମଂ ମାନବମାବର୍ତ୍ତନାବର୍ତ୍ତନ୍ତେ' (ଛା ୪-୧୫-୫), ଇତି, ତେଷାମିହ ନ ପୁନରାବୃତ୍ତିରସ୍ତି 'ତୟୋର୍ଦ୍ଧ୍ୱମାୟନ୍ନମୃତତ୍ୱମେତି' (ଛା ୮-୬-୬) କଂ ୬-୧୬) ଇତି ଚେତ୍ । ଅତ୍ର ବ୍ରୂମଃ-

ଭାଷା - (କ) ଉପାସକକୁ କାର୍ଯ୍ୟବ୍ରହ୍ମ ପ୍ରାପ୍ତି ହେବା ପରେ କିନ୍ତୁ ଅନାବୃତ୍ତି ଶ୍ରୁତି ଘଟେ ନାହିଁ, କାରଣ-ପରବ୍ରହ୍ମଠାରୁ ଅନ୍ୟତ୍ର କେଉଁଠି ନିତ୍ୟତା ସମ୍ଭବନା ହୁଏ ନାହିଁ । 'ଏତେନ ପ୍ରତୀପଦ୍ୟମାନା' (ଏହି ଦେବପଥକୁ ଜାଣି ଏହି ମାନବ ଆବର୍ତ୍ତରେ ଫେରେ ନାହିଁ) ଏହି ଶ୍ରୁତି ଦେବଯାନମାର୍ଗ ଦ୍ୱାରା ପ୍ରସ୍ଥାନ କରିବା ପାଇଁ ଅନାବୃତ୍ତି ଦେଖାଯାଏ । ତାହାରି ଏହି ସଂସାରରେ ପୁନରାବୃତ୍ତି ହୁଏ ନାହିଁ, କାରଣ- 'ତୟୋର୍ଦ୍ଧ୍ୱମାବନ୍ନମୃତତ୍ୱମେତି' ଏହି ଶ୍ରୁତି ଅଛି । ଏହା ଯଦି କହ, ତେବେ ଆମ୍ଭେ କହୁଁ ଯେ-

**कार्यात्यये तदध्यक्षेण सहात: परमभिधानात् ॥ ४-३-१० ॥**

**କାର୍ଯ୍ୟାତ୍ୟୟେ ତଦଧ୍ୟକ୍ଷେଣ ସହାତଃ ପରମଭିଧ୍ୟାନ ତ୍ ॥**

**॥୪-୩-୧୦॥**

କାର୍ଯ୍ୟାତ୍ୟୟେ=କାର୍ଯ୍ୟ ପରବ୍ରହ୍ମର ବିନାଶ ହେବା ପରେ ସେହି ଲୋକରେ ଉତ୍ପନ୍ନ ଆତ୍ମସାକ୍ଷାତ୍‌କାରୀ ତତ୍ତ୍ୱଜ୍ଞାନୀ, ତଦଧକ୍ଷେଣ ସହ=ସେହି ଲୋକର ହିରଣ୍ୟଗର୍ଭ ସହିତ, ଅତଃ=କାର୍ଯ୍ୟବ୍ରହ୍ମରେ, ପରମ୍-ପରବ୍ରହ୍ମକୁ ପ୍ରାପ୍ତ ହୁଅନ୍ତି । ଅଭିଧାନାତ୍=କାରଣ ଏହା ଶ୍ରୁତିରେ କୁହାଯାଇଛି ।

ମୂଳ- (କ) କାର୍ଯ୍ୟବ୍ରହ୍ମଲୋକପ୍ରଳୟପ୍ରତ୍ୟୁପସ୍ଥାନେ ସତି ତତ୍ରୈବୋତ୍ପନ୍ନସମ୍ୟଗ୍‌ଦର୍ଶନାଃ ସନ୍ତସ୍ତଦଧକ୍ଷେଣ ହିରଣ୍ୟଗର୍ଭେଣ ସହାତଃ ପରଂ ପରିଶୁଦ୍ଧଂ ବିଷ୍ଣୋଃ ପରମଂ ପଦଂ ପ୍ରତିପଦ୍ୟନ୍ତ ଇତି । ଇତ୍ଥଂକ୍ରମମୁକ୍ତିରନାବୃତ୍ତ୍ୟାଦିଶ୍ରୁତ୍ୟଭିଧାନେଭ୍ୟୋଽଭ୍ୟୁପଗନ୍ତବ୍ୟା । ନ ହ୍ୟଞ୍ଜସୈବ ଗତିପୂର୍ବିକା ପରପ୍ରାପ୍ତିଃ ସମ୍ଭବତୀତ୍ୟୁପପାଦିତମ୍ ।

ଭାଷା-(କ) କାର୍ଯ୍ୟବ୍ରହ୍ମଲୋକର ପ୍ରଳୟ ଉପସ୍ଥିତ ହେଲାପରେ ଏଠାରେ ଯାହାକୁ ସମ୍ୟଗ୍‌ଦର୍ଶନ ହୁଏ, ତାହାକୁ ଉତ୍ପନ୍ନ ହୋଇ ତତ୍ତ୍ୱଦର୍ଶୀଲୋକ ସେହି ଲୋକର ଅଧକ୍ଷ ହିରଣ୍ୟଗର୍ଭ ସହ ପରିଶୁଦ୍ଧ ବିଷ୍ଣୁର ପରମପଦକୁ ପ୍ରାପ୍ତ ହୁଅନ୍ତି । ସେହିପରି କ୍ରମମୁକ୍ତି ଅନାବୃତ୍ତି ଇତ୍ୟାଦି ଶ୍ରୁତି ଅଭିଧାନଦ୍ୱାରା ସ୍ୱୀକାର କରିବା ଉଚିତ୍; କାରଣ ପରବ୍ରହ୍ମର ପ୍ରାପ୍ତି ଗତିପୂର୍ବକ ମୁଖ୍ୟ ନୁହେଁ-ଏହାକୁ ଆମ୍ଭେ 'ଉପପତ୍ତି' ପଦରେ ପ୍ରତିପାଦନ କରିଅଛୁ ॥୧୦॥

## स्मृतेश्च ॥ ४-३-११ ॥

## ସ୍ମୃତେଶ୍ଚ ॥୪-୩-୧୧॥

ସ୍ମୃତେଶ୍ଚ='ବ୍ରହ୍ମଣା ସହ' ଏହି ସ୍ମୃତିରେ କାର୍ଯ୍ୟବ୍ରହ୍ମ ବିଷୟକ ଗତି ଶ୍ରବଣ ହୁଏ ।

ମୂଳ (କ) ସ୍ମୃତିରପ୍ୟେତମର୍ଥମନୁଜାନାତି-'ବ୍ରହ୍ମଣା ସହ ତେ ସର୍ବେ ସଂପ୍ରାପ୍ତେ ପ୍ରତିସଞ୍ଚରେ । ପରସ୍ୟାନ୍ତେ କୃତାତ୍ମାନଃ ପ୍ରବିଶନ୍ତି ପରଂ ପଦମ୍' ଇତି । ତସ୍ମାତ୍ କାର୍ଯ୍ୟବ୍ରହ୍ମବିଷୟା ଗତିଃ ଶ୍ରୂୟତ ଇତି ସିଦ୍ଧାନ୍ତଃ ।

ଭାଷା (କ) 'ବ୍ରହ୍ମଣା ସହ' (ମହା ପ୍ରଳୟ ପ୍ରାପ୍ତ ହେବାରୁ ହିରଣ୍ୟଗର୍ଭ ଅର୍ଥାତ୍ ସମଷ୍ଟି ଲିଙ୍ଗ ଶରୀରରୂପ ବିକାରର ସମାପ୍ତ ହେବାରୁ ବ୍ରହ୍ମଲୋକବାସୀ ସେହି ସବୁ ତତ୍ତ୍ୱଦର୍ଶୀ ବ୍ରହ୍ମାଙ୍କ ସହ ପରବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି) ଏହି ସ୍ମୃତି ତାହାର ଅର୍ଥକୁ ଅନୁମୋଦନ କରେ । ତେଣୁ କାର୍ଯ୍ୟ ବ୍ରହ୍ମବିଷୟକ ଗତିଶ୍ରୁତି ଅଟେ ଏହାହିଁ ସିଦ୍ଧାନ୍ତ ॥୧୧॥

ମୂଳ (କ) କିଂ ପୁନଃ ପୂର୍ବପକ୍ଷ ମାଶଙ୍କ୍ୟାୟଂ ସିଦ୍ଧାନ୍ତଃ ପ୍ରତିଷ୍ଠାପିତଃ ? 'କାର୍ଯ୍ୟଂ ବାଦରିଃ' (ବ୍ର. ସୂ ୪-୩-୭) ଇତ୍ୟାଦିନେତି । ଇଦାନୀଂ ସୂତ୍ରୈରେବୋପ ଦର୍ଶ୍ୟତେ

ଭାଷା-(କ) ପରନ୍ତୁ ପୁନଃ କୌଣସି ପୂର୍ବପକ୍ଷକୁ ଶଙ୍କା କରି 'କାର୍ଯ୍ୟ ବାଦରିଃ' ଇତ୍ୟାଦିରେ ଏହି ସିଦ୍ଧାନ୍ତ ପ୍ରତିଷ୍ଠାପିତ ହୋଇଛି କି ? ବର୍ତ୍ତମାନ ସେ ସୂତ୍ରଗୁଡ଼ିକ ଦ୍ୱାରା ଦେଖାଯାଏ-

## परं जैमिनिर्मुख्यत्वात् ॥ ४-३-१२ ॥

## ପରଂ ଜୈମିନି ର୍ମୁଖ୍ୟତ୍ୱାତ୍ ॥୪-୩-୧୨॥

ଜୈମିନିଃ=ଜୈମିନି ଆଚାର୍ଯ୍ୟଙ୍କର ମତରେ, ପରମ୍=ଗତିର ବିଶେଷ ପରବ୍ରହ୍ମ ଅଟେ, ମୁଖ୍ୟତ୍ୱାତ୍=କାରଣ ପରବ୍ରହ୍ମ କେବଳ ବ୍ରହ୍ମଶବ୍ଦର ମୁଖ୍ୟ ଆଲମ୍ବନ ଅଟେ ॥

ମୂଳ-(କ) ଜୈମିନିସ୍ତ୍ୱାଚାର୍ଯ୍ୟଃ 'ସ ଏତାନ୍ ବ୍ରହ୍ମ ଗମୟତି' (ଛା ୪-୧୫-୫) ଇତ୍ୟତ୍ର ପରମେବ ବ୍ରହ୍ମ ପ୍ରାପୟତୀତି ମନ୍ୟତେ । କୁତଃ ? ମୁଖ୍ୟତ୍ୱାତ୍ । ପରଂ ହି ବ୍ରହ୍ମଶବ୍ଦସ୍ୟ ମୁଖ୍ୟମାଲମ୍ବନଂ ଗୌଣମପରମ୍, ମୁଖ୍ୟ ଗୌଣୟୋଶ୍ଚମୁଖ୍ୟେ ସଂପ୍ରତ୍ୟୟୋ ଭବତି ॥



ଭାଷା-(କ) ଜୈମିନି ଆଚାର୍ଯ୍ୟ କିନ୍ତୁ 'ସ ଏତାନ୍ ବ୍ରହ୍ମ ଗମୟତି' ଏଠାରେ ପରଂବ୍ରହ୍ମକୁ ପ୍ରାପ୍ତ କରାଏ ବୋଲି ସ୍ୱୀକାର କରନ୍ତି । ପରବ୍ରହ୍ମ କେବଳ ବ୍ରହ୍ମଶବ୍ଦର ମୁଖ୍ୟ ଆଲମ୍ବନ ଅଟେ ଏବଂ ଅପର ଗୌଣ ଅଟେ । ମୁଖ୍ୟ ଓ ଗୌଣର ମୁଖ୍ୟରେ ସଂପ୍ରତ୍ୟୟ ହୁଏ ।

## दर्शनाच्च ॥ ४-३-१३ ॥
## ଦର୍ଶନାଚ୍ଚ ॥୪-୩-୧୩॥

ଦର୍ଶନାତ୍ ଚ='ତୟୋର୍ଦ୍ଧ୍ୱ ମାୟନ୍ନମୃତତ୍ୱମେତି' ଇତ୍ୟାଦିଶ୍ରୁତ ମଧ୍ୟ ଗତିପୂର୍ବକ ଅମୃତତ୍ୱ ପ୍ରଦର୍ଶନ କରାଏ ॥

ମୂଳ-(କ) 'ତୟୋର୍ଦ୍ଧ୍ୱମାୟନ୍ନମୃତତ୍ୱମେତି' (ଛା ୮-୬-୬, କଂ ୬-୧୬) ଇତି ଚ ଗତିପୂର୍ବକମ୍ ମୃତତ୍ୱଂ ଦର୍ଶୟତି । ଅମୃତତ୍ୱଂ ଚ ପରସ୍ମିନ୍ ବ୍ରହ୍ମଣ୍ୟୁ ପପଦ୍ୟତେ ନ କାର୍ଯ୍ୟେ, ବିନାଶିତ୍ୱାତ୍ କାର୍ଯ୍ୟସ୍ୟ । 'ଅଥ ଯତ୍ରାନ୍ୟତ୍ ପଶ୍ୟତି, ତଦଲ୍ପଂ ତନ୍ମର୍ତ୍ତ୍ୟମ୍' (ଛା ୭-୨୪-୨) ଇତି ପ୍ରବଚନାତ୍ ପର ବିଷୟୈବ ଚୈଷା ଗତିଃ କଠବଲ୍ଲୀଷୁ ପଠ୍ୟତେ । ନହି ତତ୍ର ବିଦ୍ୟାନ୍ତର ପ୍ରକ୍ରମୋଽସ୍ତି, 'ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାତ୍' (କଂ ୨-୧୪) ଇତି ପରସ୍ୟୈବ ବ୍ରହ୍ମଣଃ ପ୍ରକ୍ରାନ୍ତତ୍ୱାତ୍ ॥

ଭାଷା - (କ) 'ତୟୋର୍ଦ୍ଧ୍ୱମାୟନ୍ନମୃତତ୍ୱମେତି' (ହୃଦୟ ଦେଶରୁ ବାହାରି ସେହି ମୁଖ୍ୟ ସୁଷୁମ୍ନା ନାଡ଼ୀରୁ ଉର୍ଦ୍ଧ୍ୱକୁ ଗମନ କରି ଅମୃତ ଭାବକୁ ପ୍ରାପ୍ତ ହୁଏ) ଏହି ଶ୍ରୁତି ଗତି ପୂର୍ବକ ଅମୃତତ୍ୱକୁ ଦେଖାଏ ଏବଂ ଅମୃତତ୍ୱ ପରବ୍ରହ୍ମରେ ଉପପନ୍ନ ହୁଏ; କିନ୍ତୁ କାର୍ଯ୍ୟବ୍ରହ୍ମରେ ନୁହେଁ । କାରଣ-କାର୍ଯ୍ୟବ୍ରହ୍ମ ବିନାଶୀ ଅଟେ । 'ଅଥ ଯତ୍ରାନ୍ୟତ୍' (ବର୍ତ୍ତମାନ ଯେଉଁ ଅବିଦ୍ୟା ଅବସ୍ଥାରେ ଅନ୍ୟକୁ ଦେଖେ, ସେ ଅଳ୍ପ ଓ ମର୍ତ୍ତ୍ୟ ଅଟେ) ଏହି ପ୍ରବଚନରୁ ପର ବିଷୟକ ଏହି ଗତି କଠବଲ୍ଲୀରେ ପଠିତ ହୋଇଛି । ସେଠାରେ ଅପର ବିଦ୍ୟାର ପ୍ରକରଣ ନାହିଁ, କାରଣ 'ଅନ୍ୟତ୍ ଧର୍ମାତ୍' (ଧର୍ମଭିନ୍ନ ଓ ଅଧର୍ମରୁ ଭିନ୍ନ ଅଟେ) ଏହିପରି ପରବ୍ରହ୍ମର ଉପକ୍ରମ କରାଯାଇଛି ॥୧୩॥

## न च कार्ये प्रतिपत्त्यभिसंधिः ॥ ४-३-१४ ॥
## ନ ଚ କାର୍ଯ୍ୟେ ପ୍ରତିପତ୍ତ୍ୟଭିସନ୍ଧିଃ ॥୪-୩-୧୪॥

ପ୍ରତିପତ୍ତ୍ୟଭିସନ୍ଧିଃ='ପ୍ରଜାପତେଃ ସଭାଂ ବେଶ୍ମ ପ୍ରପଦ୍ୟେ' ଏହି ଗୃହ ପ୍ରତିରୂପ ସଂକଳ୍ପ, ଚ=ମଧ୍ୟ, ନ କାର୍ଯ୍ୟେ=କାର୍ଯ୍ୟ ବ୍ରହ୍ମ ବିଷୟକ ନୁହେଁ । କାରଣ-ବାକ୍ୟ ଓ ଶ୍ରୁତି ପ୍ରମାଣଦ୍ୱାରା ଦୁର୍ବଳ ପ୍ରକରଣ ବାଧିତ ହୁଏ । ଅତଃ ଗୃହ ପ୍ରାପ୍ତିରୂପ ସଂକଳ୍ପ କାର୍ଯ୍ୟବ୍ରହ୍ମ ବିଷୟକ ଅଟେ; ତେଣୁ କାର୍ଯ୍ୟବ୍ରହ୍ମ ଗନ୍ତବ୍ୟ ଅଟେ ।

ମୂଳ (କ) ଅପି ଚ 'ପ୍ରଜାପତେଃ ସଭାଂ ବେଶ୍ମ ପ୍ରପଦ୍ୟେ' (ଛା ୮-୧୪-୧), ଇତି ନାୟଂ କାର୍ଯ୍ୟ ବିଷୟଃ ପ୍ରତିପତ୍ତ୍ୟଭିସଂଧିଃ 'ନାମ ରୂପୟୋର୍ନିବହିତା ତେ ଯଦନ୍ତରା ତଦ୍‌ବ୍ରହ୍ମ' (ଛା ୮-୧୪-୧) ଇତି କାର୍ଯ୍ୟବିଲକ୍ଷଣସ୍ୟ ପରସ୍ୟୈବ ବ୍ରହ୍ମଣଃ ପ୍ରକୃତତ୍ୱାତ୍, 'ଯଶୋଽହଂ ଭବାମି ବ୍ରାହ୍ମଣାନାମ୍' (ଛା ୮-୧୪-୧) ଇତି ଚ ସର୍ବାତ୍ମତ୍ୱେନୋପକ୍ରମଣାତ୍, 'ନ ତସ୍ୟ ପ୍ରତିମା ଅସ୍ତି ଯସ୍ୟ ନାମ ମହଦ୍ୟଶଃ' (ଶ୍ୱେତା ୪-୧୯) ଇତି ଚ ପରସ୍ୟୈବ ବ୍ରହ୍ମଣୋ ଯଶୋ ନାମତ୍ୱ ପ୍ରସିଦ୍ଧେଃ ।

(ଖ) ସା ଚେୟଂ ବେଶ୍ମ ପ୍ରତିପତ୍ତିର୍ଗତି ପୂର୍ବିକା ହାର୍ଦବିଦ୍ୟାୟାମୁଦିତା- 'ତଦପରାଜିତା ପୂର୍ବ୍ରହ୍ମଣ ପ୍ରଭୁବିମିତଂ ହିରଣ୍ମୟମ୍' (ଛା ୮-୫-୩) ଇତ୍ୟତ୍ରା ପଦରେପି ଚ ଗତ୍ୟର୍ଥତ୍ୱାନ୍ ମାର୍ଗାପେକ୍ଷାଽବସୀୟତେ । ତସ୍ମାତ୍ ପରବ୍ରହ୍ମ ବିଷୟା ଗତିଶ୍ରୁତୟ ଇତି ପକ୍ଷାନ୍ତରମ୍ । ତାବେତୌ ଦ୍ୱୌ ପକ୍ଷାବାଚାର୍ଯ୍ୟେଣ ସୂତ୍ରିତୌ ଗତ୍ୟୁପପତ୍ତ୍ୟାଦି ଭିରପରଃ । ତତ୍ର ଗତ୍ୟୁପପତ୍ତ୍ୟାଦୟଃ ପ୍ରଭବନ୍ତି ମୁଖ୍ୟ ତ୍ୱାଦୀନାମାଭାସୟିତୁଂ, ନ ତୁ ମୁଖ୍ୟତ୍ୱାଦୟୋ ଗତ୍ୟୁପପତ୍ତ୍ୟାଦିନିତ୍ୟାଦ୍ୟ ଏବ ସିଦ୍ଧାନ୍ତୋ ବ୍ୟାଖ୍ୟାତୋ ଦ୍ୱିତୀୟସ୍ତୁ ପୂର୍ବପକ୍ଷଃ ।

(ଗ) ନ ହ୍ୟ ସତ୍ୟପି ସମ୍ଭବେ ମୁଖ୍ୟସ୍ୟୈବାର୍ଥସ୍ୟ ଗ୍ରହଣମିତି କଶ୍ଚଦାଜ୍ଞାପୟିତା ବିଦ୍ୟତେ । ପରବିଦ୍ୟା ପ୍ରକରଣେଽପି ଚ ସ୍ତୁତ୍ୟର୍ଥଂ ବିଦ୍ୟାନ୍ତରାଶ୍ରୟଗତ୍ୟନୁକୀର୍ତ୍ତନ ମୁପପଦ୍ୟତେ 'ବିଷ୍ୱଙ୍ଙନ୍ୟା ଉତ୍କ୍ରମଣେ ଭବନ୍ତି' (ଛା ୮-୬-୬) ଇତିବତ୍ । 'ପ୍ରଜାପତେଃ ସଭାଂ ବେଶ୍ମ ପ୍ରପଦ୍ୟେ' (ଛା ୮-୧୪-୧) ଇତି ତୁ ପୂର୍ବବାକ୍ୟ ବିଚ୍ଛେଦେନ କାର୍ଯ୍ୟେଽପି ପ୍ରତିପତ୍ତ୍ୟାଭି ସଂଧିର୍ନବିରୁଧ୍ୟତେ । ସଗୁଣେଽପି ଚ ବ୍ରହ୍ମଣି 'ସର୍ବାତ୍ମତ୍ୱ ସଂକୀର୍ତ୍ତନଂ' 'ସର୍ବକର୍ମା ସର୍ବକାମଃ' ଇତ୍ୟାଦି ବଦବକଳ୍ପତେ । ତସ୍ମାଦ ପରବିଷୟା ଏବ ଗତିଶ୍ରୁତୟଃ ॥

ଭାଷା-(କ) 'ପ୍ରଜାପତେଃ ସଭାମ୍' (ମୁଁ ପ୍ରଜାପତିଙ୍କର ସଭାଗୃହକୁ ପ୍ରବେଶ କରିବି) ଏହି ପ୍ରାପ୍ତିର ସଂକଳ୍ପ କାର୍ଯ୍ୟବ୍ରହ୍ମ ବିଷୟକ ନୁହେଁ, କାରଣ- 'ନାମରୂପୟୋଃ' (ସେହି ଆକାଶ ନାମରେ ପ୍ରସିଦ୍ଧ ଆତ୍ମା ନିଜ ପାଖରେ ରହି ଜଗତ୍ ବୀଜଭୂତ ନାମ ଓ ରୂପକୁ ଅବିଭକ୍ତ କରେ, ସେମାନେ ଯାହାର ମଧ୍ୟରେ ଅଛନ୍ତି, ସେ ହିଁ ବ୍ରହ୍ମ) ଏହିପ୍ରକାର କାର୍ଯ୍ୟବ୍ରହ୍ମରୁ ବିଲକ୍ଷଣ ପରବ୍ରହ୍ମ ପ୍ରକୃତ ଅଟେ । 'ଯଶୋଽହଂ' (ମୁଁ ବ୍ରହ୍ମାଣଙ୍କର ଯଶ ଆତ୍ମା ଅଟେ) ଏହା ସର୍ବାତ୍ମ ରୂପରେ ଉପକ୍ରମ ଅଟେ । କାରଣ- 'ନ ତସ୍ୟ' (ଯେଉଁ ଈଶ୍ୱରର ନାମ ମହଦ୍ ଯଶପୂର୍ଣ୍ଣ ଅଟେ' ସେହି ବ୍ରହ୍ମର କୌଣସି ଉପମା ନାହିଁ) ଏହିପରି ପରବ୍ରହ୍ମ ଯଶ ନାମରେ ପ୍ରସିଦ୍ଧ ।

(ଖ) ଏହା ବେଶ୍ମ ପ୍ରାପ୍ତି ଗତିପୂର୍ବକ ଅଟେ । ସେ ତଦପରାଜିତା (ସେଠାରେ ଅପରାଜିତ ନାମକ ବ୍ରହ୍ମପୁରୀ ଅଛି, ତାହା ପ୍ରଭୁ ହିରଣ୍ୟଗର୍ଭର ବିଶେଷ ରୂପରେ ନିର୍ମିତ ଓ ସୁବର୍ଣ୍ଣମୟ ଅଟେ) ଏଠାରେ ହାର୍ଦବିଦ୍ୟାରେ କୁହାଯାଇଛି । ପଦ୍‌ଧାତୁ ମଧ୍ୟ ଗତ୍ୟର୍ଥକ



ହେବାରୁ ସେହି ମାର୍ଗକୁ ଅପେକ୍ଷା ନିଶ୍ଚିତ ହେବ । ତେଣୁ ଗତିବୋଧକ ଶ୍ରୁତିଗୁଡ଼ିକ ପରବ୍ରହ୍ମ ବିଷୟକ ଅଟନ୍ତି-ଏହା ପକ୍ଷାନ୍ତର ଅଟେ । ଏହି ଦୁଇଟି ପକ୍ଷ ଆଚାର୍ଯ୍ୟ ସୂତ୍ରରେ ଦେଖାଇଛନ୍ତି । ଗୋଟିଏ ଗତିର ଉପପତ୍ତି ହେଲେ ଏବଂ ଦ୍ୱିତୀୟ ମୁଖ୍ୟତ୍ୱ ଆଦିଦ୍ୱାରା । ସେଠାରେ ଗତିର ଉପପତ୍ତି ପ୍ରଭୃତି ମୁଖ୍ୟତ୍ୱାଦିର ଆଭାସ ରୂପରେ ପ୍ରତିପାଦିତ କରିବାରେ ସମର୍ଥ ନୁହଁ, ପରନ୍ତୁ ମୁଖ୍ୟତ୍ୱାଦି ଗତିର ଉପପତ୍ତି ପ୍ରଭୃତିର ଆଭାସ ରୂପରେ ପ୍ରତିପାଦିତ କରିବାରେ ସମର୍ଥ ନୁହେଁ; ତେଣୁ ପ୍ରଥମ ସିଦ୍ଧାନ୍ତ କୁହାଯାଇଅଛି ଏବଂ ଦ୍ୱିତୀୟ ପୂର୍ବପକ୍ଷ ଅଟେ ।

(ଗ) କାରଣ ତାହା ସମ୍ଭବ ନ ହେଲେ ବି ମୁଖ୍ୟ ଅର୍ଥ ଗ୍ରହଣ ହେବା ପାଇଁ କୌଣସି ନିର୍ଦ୍ଦେଶ ବିଦ୍ୟମାନ ନୁହେଁ । ପରବିଦ୍ୟାର ପ୍ରକରଣରେ ମଧ୍ୟ ଅପରବିଦ୍ୟାର ଆଶ୍ରୟ ଗତିର ଅନୁକୀର୍ତ୍ତନ ପରବିଦ୍ୟାର ସ୍ତୁତିପାଇଁ 'ବିଶ୍ୱଙ୍ଙନ୍ୟା ଉତ୍କ୍ରମଣେ ଭବନ୍ତି' (ଭିନ୍ନ ଭିନ୍ନ ଗତିଶୀଳ ନାଡ଼ିଗୁଡ଼ିକ କେବଳ ଉତ୍କ୍ରାନ୍ତି ପାଇଁ ରହିଛି) ତାହା ସଦୃଶ ଉପପନ୍ନ ଅଟେ । 'ପ୍ରଜାପତେଃ ସଭାଂ ବେଶ୍ମ ପ୍ରପଦ୍ୟେ । ଏଠାରେ କିନ୍ତୁ ପୂର୍ବବାକ୍ୟରୁ ବିଚ୍ଛେଦ କରି କାର୍ଯ୍ୟବ୍ରହ୍ମରେ ପ୍ରାପ୍ତିର ସଂକଳ୍ପ ବିରୁଦ୍ଧ ହୁଏ ନାହିଁ । ସଗୁଣବ୍ରହ୍ମରେ ସର୍ବାତ୍ମତ୍ୱ ସଂକୀର୍ତ୍ତନ 'ସର୍ବକର୍ମା ସର୍ବକାମଃ' ଇତ୍ୟାଦି ପରି ହୋଇପାରେ; ତେଣୁ ଗତିବୋଧକ ଶ୍ରୁତିଗୁଡ଼ିକ ଅପରବ୍ରହ୍ମ ବିଷୟକ ଅଟନ୍ତି ।

ମୂଳ-(କ) କେଚିତ୍ ପୁନଃ-ପୂର୍ବାଣି ପୂର୍ବରକ୍ଷ ସୂତ୍ରାଣି ଭବନ୍ତ୍ୟୁତ୍ତରାଣି ସିଦ୍ଧାନ୍ତ ସୂତ୍ରାଣୀତ୍ୟେତାଂ ବ୍ୟବସ୍ଥାମନୁରୁଧମାନାଃ ପରବିଷୟା ଏବ ଗତିଶ୍ରୁତିଃ ପ୍ରତିଷ୍ଠାପୟନ୍ତି, ତଦନୁପପନ୍ନମ୍, ଗନ୍ତବ୍ୟତ୍ୱାନୁପପତ୍ତେର୍ବ୍ରହ୍ମଣଃ ଯତ୍ ସର୍ବଗତଂ ସର୍ବାନ୍ତରଂ ସର୍ବାତ୍ମକଞ୍ଚ ପରଂବ୍ରହ୍ମ', ଆକାଶବତ୍ ସର୍ବଗତଶ୍ଚ, ନିତ୍ୟଃ', ଯତ୍ ସାକ୍ଷାଦପରୋକ୍ଷାଦ୍ ବ୍ରହ୍ମ' (ବୃହ ୩-୪-୧), 'ଯ ଆତ୍ମା ସର୍ବାନ୍ତରଃ (ବୃହ ୩-୪-୧), ଆତ୍ମୈବେଦଂ ସର୍ବମ୍' (ଛା ୭-୨୫-୨), ବ୍ରହ୍ମୈବେଦଂ ବିଶ୍ୱମିଦଂ ବରିଷ୍ଠମ୍' (ମୁ ୨-୨-୧୧) ଇତ୍ୟାଦି ଶ୍ରୁତି ନିର୍ଦ୍ଧାରିତ ବିଶେଷମ୍, ତସ୍ୟ ଗନ୍ତବ୍ୟତା ନ କଦାଚିତପ୍ୟୁପପଦ୍ୟତେ । ନହି ଗତମେବ ଗମ୍ୟତେ । ଅନ୍ୟୋ ହ୍ୟନ୍ୟଦ୍‌ଗଚ୍ଛତୀତି ପ୍ରସିଦ୍ଧ ଲୋକେ ।

(ଖ) ନନୁ ଲୋକେ ଗତସ୍ୟାପି ଗନ୍ତବ୍ୟତା ଦେଶାନ୍ତର ବଶିଷ୍ଟସ୍ୟ ଦୃଷ୍ଟା । ଯଥା ପୃଥିବୀସ୍ଥ ଏବ ପୃଥିବୀଂ ଦେଶାନ୍ତର ଦ୍ୱାରେଣ ଗଚ୍ଛତୀତି । ଯଥାଽନିତ୍ୟତ୍ୱେଽପି ବାଳସ୍ୟ କାଳାନ୍ତରବିଶିଷ୍ଟଂ ବାର୍ଦ୍ଧକଂ ସ୍ୱାତ୍ମଭୂତମେବ ଗନ୍ତବ୍ୟଂ ଦୃଷ୍ଟମ୍, ତଦ୍‌ବଦ୍ ବ୍ରହ୍ମଣୋଽପି ସର୍ବଶକ୍ତ୍ୟୁପେତତ୍ୱାତ୍ କଥଂଚିଦ୍ ଗନ୍ତବ୍ୟତା ସ୍ୟାଦିତି ନ, ପ୍ରତିସିଦ୍ଧସର୍ବ ବିଶେଷତ୍ୱାଦ୍ ବ୍ରହ୍ମଣଃ । 'ନିଷ୍କଳଂ, ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍' (ଶ୍ୱେତା ୬-୨୯), 'ଅସ୍ଥୂଳ ମନଣ୍ୱହ୍ରସ୍ୱକାଦୀର୍ଘମ୍' (ବୃହ ୩-୮-୮), 'ସ ବାହ୍ୟଭ୍ୟନ୍ତରୋ ହ୍ୟଜଃ' (ମୁ ୬-୧-୨), 'ସ ବା ଏଷ ମହାନଜ ଆତ୍ମାଽଜରୋଽମୃତୋଽଭୟୋ (ବ୍ରହ୍ମ ୪-୪-୨୫), ସ

ଏଷ ନେତି ନେତ୍ୟାତ୍ମା' (ବୃ ୩-୯-୨୬) ଇତ୍ୟାଦି ଶ୍ରୁତିସ୍ମୃତି ନ୍ୟାୟେଭ୍ୟୋ ନ ଦେଶକାଳାଦି ବିଶେଷ ଯୋଗଃ ପରମାତ୍ମନି କଳ୍ପୟିତୁଂ ଶକ୍ୟତେ ।

(ଗ) ଯେନ ଭୂପ୍ରଦେଶବୟୋବସ୍ଥାନ୍ୟାୟେନାସ୍ୟ ଗନ୍ତବ୍ୟତା ସ୍ୟାତ୍ । ଭୂବୟସୋସ୍ତୁ ପ୍ରଦେଶାବସ୍ଥାଦି ବିଶେଷ ଯୋଗାଦୁପପଦ୍ୟତେ ଦେଶକାଳ ବିଶିଷ୍ଟା ଗନ୍ତବ୍ୟତା । ଭୂବୟସୋସ୍ତୁ ପ୍ରଦେଶାବସ୍ଥାଦି ବିଶେଷ ଯୋଗାଦୁପପଦ୍ୟତେ ଦେଶକାଳ ବିଶିଷ୍ଟ ଗନ୍ତବ୍ୟତା ।

(ଘ) ଜଗଦୁତ୍ପତ୍ତିସ୍ଥିତି ପ୍ରଳୟ ହେତୁତ୍ୱ ଶ୍ରୁତେରନେକ ଦେଶଶକ୍ତିତ୍ୱଂ ବ୍ରହ୍ମଣ ଇତି ଚେତ୍ ନ ବିଶେଷ ନିରାକରଣ ଶ୍ରୁତୀନାମନ୍ୟାର୍ଥତ୍ୱାତ୍ । ଉତ୍ପତ୍ତ୍ୟାଦି ଶ୍ରୁତୀନାମପି ସମାନମନନ୍ୟାର୍ଥତ୍ୱମିତି ଚେତ୍-ନ ତାସାମେକତ୍ୱ ପ୍ରତିପାଦନ ପରତ୍ୱାତ୍ । ମୃଦାଦିଦୃଷ୍ଟାନ୍ତୈର୍ହି ସତୋ ବ୍ରହ୍ମଣ ଏକସ୍ୟ ସତ୍ୟତ୍ୱଂ ବିକାରସ୍ୟ ଚାନୃତତ୍ୱଂ ପ୍ରତିପାଦୟଚ୍ଛାସ୍ତ୍ରଂ ନୋତ୍ପତ୍ତ୍ୟାଦିପରଂ ଭବିତୁମର୍ହତି ।

ଭାଷା (କ) କେତେକ କହନ୍ତି ଯେ ପୂର୍ବପକ୍ଷ ରୂପେ ପୂର୍ବସୂତ୍ର ବ୍ୟବହାର କରାଯାଇଛି ଏବଂ ଉତ୍ତରସୂତ୍ରଟି ସିଦ୍ଧାନ୍ତପକ୍ଷ ଅଟେ । ଏହି ବ୍ୟବସ୍ଥା ଜାଣିପାରି ଗତିବୋଧକ ଶ୍ରୁତି ପରବ୍ରହ୍ମ ବିଷୟକ ରୂପେ ପ୍ରତିଷ୍ଠାପିତ କରନ୍ତି । ପରନ୍ତୁ ଏହା ଠିକ୍ ନୁହେଁ, କାରଣ ବ୍ରହ୍ମରେ ଗନ୍ତବ୍ୟତ୍ୱର ଉପପତ୍ତି ହୁଏ ନାହିଁ । 'ଯତ୍ ସର୍ବଗତଂ' (ଯାହା ସର୍ବଗତ, ସର୍ବାନ୍ତର ଓ ପରବ୍ରହ୍ମ ଅଟେ), 'ଆକାଶବତ୍ ସର୍ବଗତଶ୍ଚ (ଆତ୍ମା ଆକାଶ ପରି ସର୍ବଗତ ଓ ନିତ୍ୟ ଅଟେ), 'ଯତ୍ସାକ୍ଷାତ୍' (ଯାହା ସାକ୍ଷାତ୍ ଅପରୋକ୍ଷ ବ୍ରହ୍ମ ଅଟେ), ଯେଉଁ ଆତ୍ମା ସମସ୍ତଙ୍କର ଅନ୍ତର ଅଟେ) 'ଆତ୍ମୈବେଦଂ' (ଏହି ସଂପୂର୍ଣ୍ଣ ଜଗତ୍ ସର୍ବଶ୍ରେଷ୍ଠ ବ୍ରହ୍ମ ଅଟେ) ଇତ୍ୟାଦି ଶ୍ରୁତିଦ୍ୱାରା ସର୍ବଗତ, ସର୍ବାନ୍ତର, ସର୍ବାତ୍ମକ, ପରବ୍ରହ୍ମ ଯାହା ବିଶେଷ ରୂପରେ ନିର୍ଧାରିତ କରାଯାଇଅଛି । ସେଠାରେ ଗନ୍ତବ୍ୟତା କଦାଚିତ୍ ଉପପନ୍ନ ହୁଏ ନାହିଁ; କାରଣ-ପ୍ରାପ୍ତହିଁ ପ୍ରାପ୍ୟ ହୁଏ ନାହିଁ । ଅନ୍ୟଟି ଅନ୍ୟପ୍ରତି ଯାଏ ବୋଲି ଲୋକରେ ପ୍ରସିଦ୍ଧ ଅଟେ ।

(ଖ) ପରନ୍ତୁ ଲୋକରେ ପ୍ରାପ୍ତର ଦେଶାନ୍ତର ବିଶିଷ୍ଟ ରୂପରେ ଗନ୍ତବ୍ୟତା ଦେଖାଯାଏ । ଯେପରି ପୃଥିବୀ ଉପରେ ରହି ଅନ୍ୟ ଦେଶଦ୍ୱାରା ପୃଥିବୀକୁ ଯାଏ । ଯେପରିକି ବାଳକର ଅନନ୍ୟ ହେଲେବି ଅନ୍ୟକାଳରେ ବିଶିଷ୍ଟ ଆତ୍ମଭୂତ ବାର୍ଦ୍ଧକ୍ୟ ଗନ୍ତବ୍ୟ ରୂପରେ ଦେଖାଯାଏ । ସେହିପରି ମଧ୍ୟ ସଂପୂର୍ଣ୍ଣ ଶକ୍ତିଯୁକ୍ତ ହେବାରୁ ବ୍ରହ୍ମରେ କୌଣସି ପ୍ରକାର ଗନ୍ତବ୍ୟତା ହୁଏ କି ? ନା, କାରଣ ସର୍ବବିଶେଷପର ବ୍ରହ୍ମ ପ୍ରତିଷେଧ ହୁଏ । 'ନିଷ୍କଳଂ (ବ୍ରହ୍ମ ଅବୟବରହିତ, ନିଷ୍କ୍ରିୟ, ଶାନ୍ତି, ଅର୍ନିଦ୍ୟ, ନିର୍ଲେପ ହୁଏ), 'ଅସ୍ଥୂଳମ୍' ସେ ସ୍ଥୂଳ ନୁହେଁ, ଅଣୁ ନୁହେଁ କି ଦୀର୍ଘ ନୁହେଁ)' 'ସ ବାହ୍ୟମ୍' (ସେ ବାହ୍ୟ ଓ ଅନ୍ତରେ ବିଦ୍ୟମାନ ଅଟେ ଓ ଅଜ ଅଟେ), 'ସ ବା



ଏଷ' (ସେ ଏହି ଆତ୍ମା ମହାନ୍ ଅଜ୍, ଅଜର, ଅମର, ଅମୃତ, ଅଭୟ ବ୍ରହ୍ମ ଅଟେ), 'ସ ଏଷ' (ଯାହାର ମଧୁକାଣ୍ଡରେ ଏହା ନୁହେଁ ଏହା ନୁହଁ କହି ନିରୂପଣ କରାଯାଇଅଛି, ସେ ହିଁ ଆତ୍ମା ଅଟେ) ଇତ୍ୟାଦି ଶ୍ରୁତି, ସ୍ମୃତି ଏବଂ ଅନୁକୂଳ ତର୍କରେ ଦେଶ, କାଳ ପ୍ରଭୃତି ବିଶେଷ ଯୋଗର ପରମାତ୍ମାରେ କଳ୍ପନା କରାଯାଏ ନାହିଁ ।

(ଗ) ଯେପରିକି ଭୂପ୍ରଦେଶ, ବୟଃ ଅବସ୍ଥା ନ୍ୟାୟରେ ଏହି ବ୍ରହ୍ମଠାରେ ଗନ୍ତବ୍ୟତା ହେଉ, ପୃଥିବୀ ଓ ବୟରେ କିନ୍ତୁ ପ୍ରଦେଶ ଓ ଅବସ୍ଥାଦି ବିଶେଷ ଯୋଗରୁ ଦେଶ, କାଳ ବିଶିଷ୍ଟ ଗନ୍ତବ୍ୟତା ଉପପନ୍ନ ହୁଏ । ଯଦି କହ ଯେ ଜଗତ୍‌ର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ କାରଣତ୍ୱବୋଧକ ଶ୍ରୁତିଦ୍ୱାରା ବ୍ରହ୍ମରେ ଅନେକ ଶ୍ରୁତିତ୍ୱ ହୁଏ କି ? ନା, କାରଣ-ବିଶେଷ ନିରାକରଣକ ଶ୍ରୁତିଗୁଡ଼ିକ ଅନନ୍ୟାର୍ଥକ ହୁଏ । ଯଦି କହ ଯେ- ଉତ୍ପତ୍ତ୍ୟାଦି ଶ୍ରୁତିରେ ଅନନ୍ୟାର୍ଥକ ସମାନ ଅଟେ, ତେବେ ମଧ ଏହା ହୁଏ ନାହିଁ, କାରଣ-ସେମାନେ ଏକତ୍ୱ ପ୍ରତିପାଦନ ପରକ ଅଟନ୍ତି । ମୃତ୍ତିକାଦି ଦୃଷ୍ଟାନ୍ତରୁ ସତ୍ ଅଦ୍ୱିତୀୟ ବ୍ରହ୍ମରେ ସତ୍ୟତ୍ୱର ଓ ବିକାରରେ ଅନ୍ତତ୍ୱର ପ୍ରତିପାଦନ କରି ଶାସ୍ତ୍ର ଉତ୍ପତ୍ତ୍ୟାଦିପରକ ହୋଇପାରେ ନାହିଁ ॥

ମୂଳ-(କ) କସ୍ମାତ୍ ପୁନରୁତ୍ପତ୍ତ୍ୟାଦି ଶ୍ରୁତୀନାଂ ବିଶେଷ ନିରାକରଣଶ୍ରୁତିଶେଷତ୍ୱଂ ନ ପୁନରିତର ଶେଷ ତ୍ୱମିତରା ସାମିତି ? ଉଚ୍ୟତେ ବିଶେଷ ନିରାକରଣ ଶ୍ରୁତୀନାଂ ନିରାକାଙ୍-କ୍ଷ୍ୟାର୍ଥତ୍ୱାତ୍ । ନ ହ୍ୟାତ୍ମନ ଏକତ୍ୱନିତ୍ୟତ୍ୱ ଶୁଦ୍ଧତ୍ୱାଦ୍ୟ ବଗତୌ ସତ୍ୟାଂ ଭୂୟଃ କାଚିଦାକାଂ-କ୍ଷ୍ୟୋପ ଜାୟତେ, ପୁରୁଷାର୍ଥ ସମାପ୍ତି ବୁଦ୍ଧ୍ୟୁପପତ୍ତେଃ, 'ତତ୍ରକୋ ମୋହଃ, କଃ ଶୋକ ଏକତ୍ୱ ମନୁପଶ୍ୟତଃ' (ଈଶା-୭) 'ଅଭୟଂ ବୈଜନକ ପ୍ରାପ୍ତୋଽସି' (ବୃହ ୪-୨-୪) 'ବିଦ୍ୱାନ୍ନ ବିଭେତି କୁତଶ୍ଚନ । ଏତଂ ହ ବାବ ନ ତପତି, କିମହଂ ସାଧୁ ନକରବଂ କିମହଂ ପାପମ କରବମ୍' (ତୈତ୍ତି ୨-୯-୧) ଇତ୍ୟାଦି ଶ୍ରୁତିଭ୍ୟଃ ।

(ଖ) ତଥୈବ ଚ ବିଦୁଷାଂ ତୁଷ୍ଟ୍ୟନୁଭବାଦିଦର୍ଶନାତ୍ । ବିକାରାନୃତାଭି ସଂଧପବାଦଦାଚ, 'ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି' ଇତି । ଅତୋ ନ ବିଶେଷ ନିରାକରଣ ଶ୍ରୁତି ନାମନ୍ୟଶେଷତ୍ୱମବଗନ୍ତୁଂ ଶକ୍ୟମ୍ । ନୈବ ମୁତ୍ପତ୍ତ୍ୟା-ଦିଶ୍ରୁତିନାଂ ନିରାକାଂକ୍ଷ୍ୟର୍ଥ ପ୍ରତିପାଦନ ସାମର୍ଥ୍ୟମସ୍ତି । ପ୍ରତ୍ୟକ୍ଷଂ ତୁ ତାସାମନ୍ୟାର୍ଥତ୍ୱଂ ସମନୁଗମ୍ୟତେ ।

ଭାଷା - (କ) ପରନ୍ତୁ ଉତ୍ପତ୍ତ୍ୟାଦି ପ୍ରତିପାଦକ ଶ୍ରୁତିଗୁଡ଼ିକ ବିଶେଷ ନିରାକରଣ କରୁଥିବା ଶ୍ରୁତିଗୁଡ଼ିକ ଅଙ୍ଗଭୂତ ଅଟନ୍ତି ଏବଂ ବିଶେଷ ପ୍ରତିଷେଧକ ଶ୍ରୁତିଗୁଡ଼ିକ ଉତ୍ପତ୍ତ୍ୟାଦି ପ୍ରତିପାଦକ ଶ୍ରୁତିଗୁଡ଼ିକର ଅଙ୍ଗଭୂତ ନୁହଁନ୍ତି କି ? ଏହା କିପରି ଜଣାପଡ଼େ । କୁହାଯାଇଛି

ବିଶେଷ ନିରାକରଣ ଶ୍ରୁତିଗୁଡ଼ିକ ନିରାକାଂକ୍ଷାର୍ଥକ ଅଟନ୍ତି, କାରଣ- ଆତ୍ମାର ଏକତ୍ୱ, ନିତ୍ୟତ୍ୱ, ଶୁଦ୍ଧତ୍ୱାଦି ଜ୍ଞାନ ହେବାରୁ ପୁଣି କୌଣସି ଆକାଂକ୍ଷା ଉତ୍ପନ୍ନ ହୁଏ ନାହିଁ । କାରଣ- 'ତତ୍ର କୋ ମୋହ' (ସେହି ସମୟରେ ଏକତ୍ୱଦର୍ଶୀ ଅନ୍ୟ ବିଦ୍ୱାନ୍‌ଠାରେ ମୋହ ଓ ଶୋକ ଦେଖିପାରେ କି ?) 'ଅଭୟଂ ବୈ' (ହେ ଜନକ ! ତୁମ୍ଭେ ନିଶ୍ଚିତ ଭାବେ ଅଭୟକୁ ପ୍ରାପ୍ତ ହୁଅନ୍ତି), 'ବିଦ୍ୱାନ୍ନ', (ସେହି ବ୍ରହ୍ମର ଆନନ୍ଦକୁ ଜାଣି ବିଦ୍ୱାନ୍ କାହାକୁ ଭୟଭୀତ କରେ ନାହିଁ । ସେହି ବିଦ୍ୱାନ୍‌କୁ ମୁଁ କାହିଁକି ଶୁଭକର୍ମ ନ କଲି ? ପାପକର୍ମ କାହିଁକି କଲା ? ଏହିପରି ଚିନ୍ତାସନ୍ତପ କରେ ନାହିଁ) ଇତ୍ୟାଦି ଶ୍ରୁତିଦ୍ୱାରା ପୁରୁଷାର୍ଥର ଅଭିଷ୍ଟବସ୍ତୁର ସମାପ୍ତି ବିଷୟକ ବୁଦ୍ଧି ଉପପନ୍ନ ହୁଏ ।

(ଖ) ସେହିପରି ତତ୍ତ୍ୱବିତ୍ ବିଦ୍ୱାନ୍‌ଠାରେ ସନ୍ତୁଷ୍ଟି ଅନୁଭବାଦି ଦେଖାଯାଏ । ବିକାର ଓ ଅନୃତରେ ଅଗ୍ରାହ୍ୟର ଅପବାଦ ହୁଏ, କାରଣ- 'ମୃତ୍ୟୋଃ ସଃ' (ଯାହା ଅଦ୍ୱିତୀୟ ବ୍ରହ୍ମରେ ନାନା ରୂପରେ ଦେଖାଯାଏ, ସେ ମୃତ୍ୟୁଦ୍ୱାରା ମୃତ୍ୟୁକୁ ପ୍ରାପ୍ତ ହୁଏ) ଏହା ଶ୍ରୁତି କହେ । ତେଣୁ ବିଶେଷ ନିରାକରଣ କରୁଥିବା ଶ୍ରୁତିରେ ଅନ୍ୟ ଶେଷତ୍ୱ କରାଯାଇ ନାହିଁ । ସେହିପରି ଉତ୍ପତ୍ତ୍ୟାଦି ପ୍ରତିପାଦକ ଶ୍ରୁତିରେ ନିରାକାଂକ୍ଷ ଅର୍ଥ ପ୍ରତିପାଦନ କରିବା ପାଇଁ ସାମର୍ଥ୍ୟ ନାହିଁ । କାରଣ- ତାହାର ଅନ୍ୟାର୍ଥତ୍ୱ ପ୍ରତ୍ୟକ୍ଷ ସମାନୁଗତ ହୁଏ ॥

ମୂଳ-(କ) ତଥାହି-'ତତ୍ରୈତଚ୍ଛୁଙ୍ଗମୁତ୍ପତିତଂ ସୋମ୍ୟ ବିଜାନୀହ ନେଦମମୂଳଂ ଭବିଷ୍ୟତି' (ଛା ୬-୮-୩) ଇତ୍ୟୁଦ୍ୟ ସ୍ୟାଦର୍କେ ସତ ଏବୈକସ୍ୟ ଜଗନ୍ମୂଳସ୍ୟ ବିଜ୍ଞେୟତ୍ୱଂ ଦର୍ଶୟତି । 'ଯତୋ ବା ଇମାନି ଭୂତାନି ଜାୟନ୍ତେ । ଯେନେ ଜାତାନି ଜୀବନ୍ତି । ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି । ତଦ୍‌ବିଜିଜ୍ଞାସସ୍ୱ, ତଦ୍‌ବ୍ରହ୍ମେତି' (ତୈ ୩-୧-୧) ଇତି ଚ ।

(ଖ) ଏବମୁତ୍ପତ୍ତ୍ୟାଦିଶ୍ରୁତୀନାମୈକାତ୍ମ୍ୟା ବଗମେ ପରତ୍ୱାନ୍ନାନେକଷକ୍ତିଯୋଗୋ ବ୍ରହ୍ମଣଃ । ଅତଶ୍ଚ ଗନ୍ତବ୍ୟତ୍ୱାନୁପପତ୍ତିଃ । 'ନ ତସ୍ୟ ପ୍ରାଣା ଉତ୍କ୍ରାମନ୍ତି ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି' (ବୃହ ୪-୪-୬) ଇତି ଚ ପରସ୍ମିନ୍ ବ୍ରହ୍ମଣି ଗତିଂ ନିବାରୟତି । ତଦ୍‌ବ୍ୟାଖ୍ୟାତମ୍ 'ସ୍ପଷ୍ଟୋ ହ୍ୟେକେଷାମ୍' (ବ୍ର ୪-୨-୧୩) ଇତ୍ୟତ୍ର ।

ଭାଷା-(କ) ଯେପରିକି 'ତତ୍ରୈତତ୍' (ହେ ସୋମ୍ୟ ! ସେହି ଜଳରୁ ତୁମେ ଏହି ଶରୀରରୂପ ଅଙ୍କୁର କାର୍ଯ୍ୟକୁ ଉତ୍ପନ୍ନ କରି ଜାଣ ଯେ- ଏହା ନିର୍ମୂଳ ଅର୍ଥାତ୍ କାରଣ ରହିତ ହୁଏ ନାହିଁ) ଏହିପ୍ରକାର ଉପକ୍ରମ କରି ଶେଷରେ ଜଗତ୍‌ର ମୂଳଭୂତ ଏକ ସତ୍‌କୁ ବିଜ୍ଞେୟ ରୂପରେ ଦେଖାଏ ।



(ଖ) ସେହିପରି ଉତ୍ପତ୍ତ୍ୟାଦି ପ୍ରତିପାଦକ ଶ୍ରୁତିଗୁଡ଼ିକ ଏକାତ୍ମ୍ୟ ଅବଗମପରକ ହେଲେ ବ୍ରହ୍ମରେ ଅନେକ ଶକ୍ତିର ଯୋଗ ହୁଏ ନାହିଁ । ତେଣୁ ବ୍ରହ୍ମରେ ଗନ୍ତବ୍ୟତ୍ୱ ଅନୁପପତ୍ତି ହୁଏ । 'ନ ତସ୍ୟ ପ୍ରାଣା' (ସେହି ବ୍ରହ୍ମବେତ୍ତାର ପ୍ରାଣ ଶରୀରରୁ ଉତ୍କ୍ରମଣ କରେ ନାହିଁ । ବ୍ରହ୍ମ ହୋଇ ବ୍ରହ୍ମକୁ ପ୍ରାପ୍ତ ହୁଏ ।) ଏହିପ୍ରକାର ଶ୍ରୁତି ପରବ୍ରହ୍ମରେ ଗତିକୁ ନିବାରଣ କରେ । ତାହାର 'ସ୍ପଷ୍ଟୋ ହ୍ୟେକେଷାମ୍' ଏହି ସୂତ୍ରରେ ବ୍ୟାଖ୍ୟାନ କରାଯାଇଛି ।

ମୂଳ-(କ) ଗତିକଳ୍ପନାୟାଂ ଚ ଗନ୍ତା ଜୀବୋ ଗନ୍ତବ୍ୟସ୍ୟ ବ୍ରହ୍ମଣୋଽବୟବୋ ବିକାରୋ ବାଽନ୍ୟୋ ବା ତତଃ ସ୍ୟାତ୍ । ଅତ୍ୟନ୍ତତାଦାତ୍ମ୍ୟେ ଗମନାନୁପପତ୍ତେଃ । ଯଦ୍ୟେବଂ ତତଃ କିଂ ସ୍ୟାତ୍-ଉଚ୍ୟତେ ? ଯଦ୍ୟେକ ଦେଶସ୍ତେ ନୈକଦେଶିନୋ ନିତ୍ୟ ପ୍ରାପ୍ତତ୍ୱାନ୍ନ ପୁନର୍ବ୍ରହ୍ମ ଗମନମୁପପଦ୍ୟତେ, ଏକଦେଶୈକ ଦେଶିତ୍ୱ କଳ୍ପନା ଚ ବ୍ରହ୍ମଣ୍ୟନୁପପନ୍ନା ନିରବୟବତ୍ୱପ୍ରସିଦ୍ଧେଃ ।

(ଖ) ବିକାରପକ୍ଷେଽପ୍ୟେ ତତ୍ତୁଲ୍ୟମ୍, ବିକାରେଣାପି ବିକାରିଣୋ ନିତ୍ୟ ପ୍ରାପ୍ତତ୍ୱାତ୍ । ନହି ଘଟେ । ମୃଦାତ୍ମତାଂ ପରିତ୍ୟଜ୍ୟାବତିଷ୍ଠତେ, ପରିତ୍ୟାଗେ ବାଽଭାବପ୍ରାପ୍ତେଃ । ବିକାର ବୟକ ପକ୍ଷୟୋଶ୍ଚ ତଦ୍‌ବତଃ ସ୍ଥିରତ୍ୱାଦ୍ ବ୍ରହ୍ମଣଃ ସଂସାର ଗମନମପ୍ୟନବକ୍ଳୃପ୍ତମ୍ ।

(ଗ) ଅଥାନ୍ୟ ଏବ ଜୀବୋ ବ୍ରହ୍ମଣଃ । ସୋଽଣୁର୍ବ୍ୟାପୀ ମଧ୍ୟମ ପରିମାଣୋ ବା ଭବତୁ ମୃର୍ହତି । ବ୍ୟାପିତ୍ୱେ ଗମନାନୁପପତ୍ତିଃ, ମଧ୍ୟ ପରିମାଣତ୍ୱେ ଚାନିତ୍ୟତ୍ୱ ପ୍ରସଙ୍ଗଃ । ଅଣୁତ୍ୱେ କୃତ୍ସ୍ନଶରୀ ବେଦନାନୁପପତ୍ତିଃ । ପ୍ରତିଷିଦ୍ଧେ ଚାଣୁତ୍ୱ ମଧ୍ୟମ ପରିମାଣତ୍ୱେ ବିସ୍ତରେଣ ପୁରସ୍ତାତ୍ । ପରସ୍ମାଚ୍ଚାନ୍ୟତ୍ୱେ ଜୀବସ୍ୟ 'ତତ୍ତ୍ୱମସି' (ଛା ୬-୧-୭) ଇତ୍ୟାଦିବାଧ ପ୍ରସଙ୍ଗଃ । ବିକାରାବୟବ ପକ୍ଷୟୋରପି ସାମାନ୍ୟୋଽୟଂ ଦୋଷଃ' ।

(ଘ) ବିକାରା ବୟବୟୋସ୍ତଦ୍‌ବତୋଽନନ୍ୟତ୍ୱାଦଦୋଷ ଇତି ଚେତ୍-ନ, ମୁଖ୍ୟୈକତ୍ୱାନୁପପତ୍ତେଃ । ସର୍ବେଷ୍ୱେତେଷୁ ପକ୍ଷେଷ୍ୱନି ର୍ମୋକ୍ଷ ପ୍ରସଙ୍ଗଃ । ସଂସାର୍ଯ୍ୟାତ୍ମତ୍ୱାନି ବୃତ୍ତେଃ । ନିବୃତ୍ତୌ ବା ସ୍ୱରୂପନାଶ ପ୍ରସଙ୍ଗଃ, ବ୍ରହ୍ମାତ୍ମତ୍ୱାନଭ୍ୟୁପଗମାଚ୍ଚ ॥

ଭାଷା-(କ) ଗତି କଳ୍ପନା କଲେ ସେହି ଗନ୍ତା ଜୀବ ଗନ୍ତବ୍ୟବ୍ରହ୍ମର ଅବୟବ ବା ବିକାର ଅଥବା ତାହାଦ୍ୱାରା ଅନ୍ୟ କିଛି ହେବା ଉଚିତ୍ କି ? କାରଣ- ଅତ୍ୟନ୍ତତାଦାତ୍ମ୍ୟରେ ଗମନ ଅନୁପପନ୍ନ ହୁଏ । ଯଦି କହ ଯେ- ଏହାଦ୍ୱାରା କ'ଣ ହେବ ? ତାହାର ଉତ୍ତରରେ କୁହାଯାଇଛି ଯେ- ଯଦି ଜୀବ ବ୍ରହ୍ମର ଏକଦେଶ ଅର୍ଥାତ୍ ଭାଗ ଅବୟବ ହୁଏ, ତେବେ ସେହି ଏକଦେଶୀ ବ୍ରହ୍ମ ନିତ୍ୟ ପ୍ରାପ୍ତ ହେବାରୁ ପୁନଃ ବ୍ରହ୍ମଗମନ ଉପପନ୍ନ ହୁଏ ନାହିଁ । ଏକଦେଶ ଓ ଏକଦେଶିତ୍ୱ କଳ୍ପନା ବ୍ରହ୍ମରେ ଅନୁପପନ୍ନ ହୁଏ, କାରଣ-ସେ ନିରବୟବ ରୂପରେ ପ୍ରସିଦ୍ଧ ଅଟେ ।

(ଖ) ବିକାରପକ୍ଷରେ ମଧ୍ୟ ଏହା ଅନୁପପତ୍ତି ପରି ହୁଏ, କାରଣ ବିକାରଦ୍ୱାରା ବିକାରୀ ନିତ୍ୟପ୍ରାପ୍ତି ହୁଏ । ଘଟମୃଦାମୃତାକୁ ପରିତ୍ୟାଗ କରି କଦାପି ରହେନାହିଁ, କାରଣ- ତାହା ପରିତ୍ୟାଗ କଲାପରେ ତାହାର ଅଭାବ ପ୍ରାପ୍ତ ହୁଏ । ବିକାରପକ୍ଷ ଓ ବିକାରୀପକ୍ଷରେ ବିକାରୀ ଓ ଅବୟବୀ ବ୍ରହ୍ମର ସ୍ଥିର ହେବାରୁ ସଂସାରଗମନ ମଧ୍ୟ ଅନିଶ୍ଚିତ ହୁଏ ।

(ଗ) ଯଦି ଜୀବ ବ୍ରହ୍ମଠାରୁ ଅନ୍ୟ ଅଟେ, ତଥାପି ସେ ଅଣୁ, ବ୍ୟାପୀ, ଅଥବା ମଧ୍ୟମ ପରିମାଣବାନ୍ ହୁଏ । ବ୍ୟାପୀ ଅର୍ଥାତ୍ ବ୍ୟାପକ ହେବାପରେ ଗମନର ଅନୁପପତ୍ତି ହୁଏ । ମଧ୍ୟମ ପରିମାଣବାନ ହେଲେ ଅନିତ୍ୟର ପ୍ରସଙ୍ଗ ହେବ । ଅଣୁତ୍ୱ ହେଲେ ସମସ୍ତ ଶରୀରଗତ ବେଦନା ରହିବ ନାହିଁ । ତେଣୁ ଅଣୁତ୍ୱ ଓ ମଧ୍ୟମ ପରିମାଣତ୍ୱର ପ୍ରତିଷେଧ ବିସ୍ତାରଭାବେ ପୂର୍ବରୁ କରାଯାଇଅଛି । ଏହି ଦୋଷ ବିକାର ଓ ଅବୟବ ପକ୍ଷରେ ସମାନ ଅଟେ ।

(ଘ) ଯଦି କହ ଯେ- ବିକାର ଓ ଅବୟବ କିନ୍ତୁ ବିକାରୀ ଓ ଅବୟବ, ବିକାରୀ ଓ ଅବୟବୀଠାରୁ ପୃଥକ୍ ନୁହେଁ, ଏହା କିନ୍ତୁ ଦୋଷ ନୁହେଁ, କାରଣ- ମୁଖ୍ୟ ଏକତ୍ୱର ଅନୁପପତ୍ତି ହୁଏ ଏବଂ ଏହା ସମସ୍ତ ପକ୍ଷରେ ଅନିର୍ମୋକ୍ଷପ୍ରସଙ୍ଗ ହେବ, କାରଣ-ସଂସାର୍ଯ୍ୟାମ୍ନତ୍ୱର ନିବୃତ୍ତି ହେବନାହିଁ । ଅଥବା ନିବୃତ୍ତି ହେଲେ ତାହାର ସ୍ୱରୂପନାଶ ପ୍ରସଙ୍ଗ ହେବ; କାରଣ- ତାହାଠାରେ ବ୍ରହ୍ମାତ୍ମତ୍ୱର ସ୍ୱୀକାର କରାଯାଇନାହିଁ ॥

ମୂଳ-(କ) ଯତ୍ତୁ କୈଶ୍ଚିଜ୍ଜଲ୍ପ୍ୟତେ-ନିତ୍ୟାନିନୈମିତ୍ତିକାନି କର୍ମାଣ୍ୟନୁଷ୍ଠୀୟନ୍ତେ ପ୍ରତ୍ୟ- ବାୟାନୁତ୍ପତ୍ତୟେ, କାମ୍ୟାନି ପ୍ରତିଷିଦ୍ଧାନି ଚ ପରିହ୍ରୀୟନ୍ତେ ସ୍ୱର୍ଗନରକାନବାପ୍ତୟେ, ସାଂପ୍ରତ- ଦେହୋପଭୋଗ୍ୟାନି ଚ କର୍ମାଣ୍ୟୁପଭୋଗେନୈବ କ୍ଷିପ୍ୟନ୍ତ ଇତ୍ୟତୋ ବର୍ତ୍ତମାନଦେହପାତାଦୂର୍ଦ୍ଧ୍ବଂ ଦେହାନ୍ତରପ୍ରତିସନ୍ଧାନାକାରଣାଭାବାତ୍ ସ୍ୱରୂପାବସ୍ଥାନଲକ୍ଷଣଂ କୈବଲ୍ୟଂ ବିନାପି ବ୍ରହ୍ମାତ୍ମତୟୈବଂବୃତ୍ତୟସା ସେତ୍ସ୍ୟତୀତି-

(ଖ) ତଦସତ୍ ପ୍ରମାଣାଭାବାତ୍ । ନ ହ୍ୟେତଚ୍ଛାସ୍ତ୍ରେଣ କେନଚିତ୍ପ୍ରତିପାଦିତଂ ମୋକ୍ଷାର୍ଥୀତ୍ଥଂ ସମାଚରେଦିତି । ସ୍ୱମନୀଷୟା ତ୍ୱେତତ୍ତର୍କିତଂ ଯସ୍ମାତ୍ କର୍ମନିମିତ୍ତଃ ସଂସାର- ସ୍ତସ୍ମାନ୍ନିମିତ୍ତାଭାବାନ୍ନ ଭବିଷ୍ୟତୀତି । ନ ଚୈତତ୍ତର୍କୟିତୁମପି ଶକ୍ୟତେ, ନିମିତ୍ତାଭାବସ୍ୟ ଦୁର୍ଜ୍ଞାନତ୍ୱାତ୍ । ବହୂନି ହି କର୍ମାଣି ଜାତ୍ୟନ୍ତରସଞ୍ଚିତାନିଷ୍ଟାନିଷ୍ଟବିପାକାନ୍ୟେକୈକସ୍ୟ ଜନ୍ତୋଃ ସମ୍ଭାବ୍ୟନ୍ତେ । ତେଷାଂ ବିରୁଦ୍ଧଫଳାନା ଯୁଗପଦୁପଭୋଗାସମ୍ଭବାତ କାନଚିଲ୍ଲବ୍ଧାବସ- ରାଣୀଦଂ ଜନ୍ମ ନିର୍ମମିତେ ।

(ଗ) କାନଚିତ୍ତୁ ଦେଶକାଳ ନିମିତ୍ତପ୍ରତୀକ୍ଷାଣ୍ୟାସତ ଇତ୍ୟତସ୍ତେଷାମବଶିଷ୍ଟାନାଂ ସାଂପେତେନୋପଭୋଗେନ କ୍ଷପଣାସମ୍ଭବାନ୍ନ ଯଥାବର୍ଣ୍ଣିତଚରିତସ୍ୟାପି ବର୍ତ୍ତମାନଦେହ- ପାତେ ଦେହାନ୍ତରନିମିତ୍ତାଭାବଃ ଶକ୍ୟତେ ନିଶ୍ଚେତୁମ୍ । କର୍ମଶେଷସଦ୍ଭାବସିଦ୍ଧିଶ୍ଚ 'ତଦ୍ୟ ଇହ ରମଣୀୟଚରଣାଃ; ତତଃଶେଷେଣ' ଇତ୍ୟାଦିଶ୍ରୁତିସ୍ମୃତିଭ୍ୟଃ ॥



ଭାଷା (କ) କେତେକ ଲୋକ ଏହା କହନ୍ତି ଯେ- ନିତ୍ୟ ଓ ନୈମିତ୍ତକକର୍ମର ଅନୁଷ୍ଠାନ ପ୍ରତ୍ୟବାୟର ଅନୁତ୍ପତ୍ତି ନିମିତ୍ତ କରାଯାଇଛି । କାମ୍ୟ ଓ ପ୍ରତିଷିଦ୍ଧ କର୍ମର ସ୍ୱର୍ଗ ଓ ନରକର ଅପ୍ରାପ୍ତି ପାଇଁ ପରିହାର କରାଯାଇଛି । ବର୍ତ୍ତମାନ ଦେହର ଉପଭୋଗ ଯୋଗ୍ୟ କର୍ମ ଉପଭୋଗ ଦ୍ୱାରା କ୍ଷୟ ହୁଏ । ତେଣୁ ବର୍ତ୍ତମାନ ଦେହର ପରେ ଅନ୍ୟ ଦେହର ପ୍ରତିସନ୍ଧାନ; କାରଣ ଅଭାବ ହେବାରୁ ସ୍ୱରୂପାବସ୍ଥାନରୂପ କୈବଲ୍ୟ ବ୍ରହ୍ମମୃତା ବ୍ୟତୀତ ଏବଂ ଭୂତପୁରୁଷକୁ ସିଦ୍ଧ ହେବ ।

(ଖ) ଏହା କିନ୍ତୁ ଠିକ୍ ନୁହେଁ । କାରଣ-ଏଠାରେ କୌଣସି ପ୍ରମାଣ ନାହିଁ । ଏହା ନିଜ ବୁଦ୍ଧି ବଳରେ ତର୍କ କରାଯାଏ । କାରଣ-କର୍ମନିମିତ୍ତକ ସଂସାର ଅଟେ । ତେଣୁ, ନିମିତ୍ତର ଅଭାବ ହେଲେ ସଂସାର ହୁଏ ନାହିଁ । ପରନ୍ତୁ ଏହିପରି ତର୍କ କରାଯାଏ ନାହିଁ, କାରଣ-ନିମିତ୍ତର ଅଭାବ ଦୁଜ୍ଞେୟ ଅଟେ । ଗୋଟିଏ ଗୋଟିଏ ପ୍ରାଣ ପୃଥକ୍ ପୃଥକ୍ ଜନ୍ମରେ ସଞ୍ଚିତ ଇଷ୍ଟ, ଅନିଷ୍ଟଫଳଯୁକ୍ତ କର୍ମରେ ସମ୍ଭାବିତ ହୁଅନ୍ତି । ଅତ୍ୟନ୍ତ ବିରୁଦ୍ଧ ଫଳଯୁକ୍ତ ଏହି କର୍ମର ଯୁଗପତ୍ ସମ୍ଭବ ନ ହେବାରୁ ତାହାଦ୍ୱାରା ଫଳଦାନର ଅବସରପ୍ରାପ୍ତ କରାଯାଇ କେତେକ କର୍ମ ଏହି ଜନ୍ମକୁ ନିର୍ମାଣ କରନ୍ତି ।

(ଗ) କେତେକ ଦେଶ, କାଳ ଓ ନିମିତ୍ତକୁ ପ୍ରତୀକ୍ଷା କରି କର୍ମ କରନ୍ତି । ତେଣୁ ସେହି ଅବଶିଷ୍ଟ କର୍ମର ସଂପ୍ରାପ୍ତ ଉପଭୋଗ ଦ୍ୱାରା କ୍ଷପଣ ଅସମ୍ଭବ ହେବାରୁ ଯଥା ବର୍ଣ୍ଣିତ ଚରିତର ବର୍ତ୍ତମାନ ଶରୀରର ପାତ ହେବାପରେ ଅନ୍ୟଦେହର ନିମିତ୍ତ ଅଭାବ ସ୍ଥିର କରାଯାଏ ନାହିଁ । 'ତଦ୍ୟ ଇହ୍ୟ' (ତେଣୁ ଏଠାରେ ରମଣୀୟ ଚରଣଯୁକ୍ତ ଅଟନ୍ତି ।) 'ତତଃ ଶେଷେଣ' ଇତ୍ୟାଦି ଶ୍ରୁତି ଓ ସ୍ମୃତିଦ୍ୱାରା କର୍ମଶେଷର ସଦ୍‌ଭାବ ସିଦ୍ଧ ହୁଏ ।

ମୂଳ-(କ) ସ୍ୟାଦେତତ୍-ନିତ୍ୟନୈମିତ୍ତିକାନି ତେଷାଂ କ୍ଷେପକାଣି ଭବିଷ୍ୟନ୍ତୀତି, ତନ୍ନ, ବିରୋଧାଭାବାତ୍ । ସତି ହି ବିରୋଧେ କ୍ଷେପ୍ୟକ୍ଷେପକଭାବୋ ଭବତି । ନ ଚ ଜନ୍ମାନ୍ତର-ସଂଚିତାନାଂ ସୁକୃତାନାଂ ନିତ୍ୟନୈମିତ୍ତିକୈରସ୍ତି ବିରୋଧଃ; ଶୁଦ୍ଧରୂପତ୍ୱାବିଶେଷାତ୍ ।

(ଖ) ଦୁରିତାନିତ୍ୱଶୁଦ୍ଧିରୂପତ୍ୱାତ୍‌ସତି ବିରୋଧେ ଭବତୁ କ୍ଷପଣଂ ନ ତୁ ତାବତା ଦେହାନ୍ତରନିମିତ୍ତାଭାବସିଦ୍ଧିଃ, ସୁକୃତନିମିତ୍ତତ୍ୱୋପପତ୍ତେଃ; ଦୁରିତସ୍ୟାପ୍ୟଶେଷକ୍ଷପଣାନ-ବଗମାତ୍ । ନ ଚ ନିତ୍ୟନୈମିତ୍ତିକାନୁଷ୍ଠାନାତ୍ ପ୍ରତ୍ୟବାୟାନୁତ୍ପତ୍ତିମାତ୍ରମ୍, ନ ପୁନଃ ଫଳାନ୍ତରୋତ୍ପତ୍ତିରିତ ପ୍ରମାଣମସ୍ତି, ଫଳାନ୍ତରସ୍ୟାପ୍ୟନୁନିଷ୍ପାଦିନଃ ସମ୍ଭବାତ୍ । ସ୍ମରତି ଆପସ୍ତମ୍ଭଃ-'ତଦ୍ୟଥାମ୍ରେ ଫଳାର୍ଥେ ନିମିତ୍ତେଚ୍ଛାୟାଗନ୍ଧାବନ୍ନୂତ୍ପଦ୍ୟେତେ ଏବଂ ଧର୍ମଂ ଚର୍ଯ୍ୟମାଣ ମର୍ଥା ଅନୁତ୍ପଦ୍ୟନ୍ତେ । ଇତି ।

(ଗ) ନ ଚସତି ସମ୍ୟଗ୍‌ଦର୍ଶନେ ସର୍ବାତ୍ମନା କାମ୍ୟପ୍ରତିଷିଦ୍ଧବର୍ଜନଂ ଜନ୍ମପ୍ରାୟଣାନ୍ତ-ରାଳେ କେନଚିତ୍ ପ୍ରତିଜ୍ଞାତୁଂ ଶକ୍ୟମ୍ । ସୁନିପୁଣାନାମପି ସୂକ୍ଷ୍ମାପରାଧଦର୍ଶନାତ୍ ।

ସଂଶୟିତବ୍ୟଂ ତୁ ଭବତି, ତଥାପି ନିମିତ୍ତାଭାବସ୍ୟ ଦୁର୍ଜ୍ଞାନମେବ । ନଚ୍ଚନଭ୍ୟୁପଗମ୍ୟମାନେ ଜ୍ଞାନଗମ୍ୟେ ବ୍ରହ୍ମାତ୍ମତ୍ୱେ କର୍ତ୍ତୃତ୍ୱଭୋକ୍ତୃତ୍ୱସ୍ୱଭାବସ୍ୟାତ୍ମନ କୈବଲ୍ୟମାକାଙ୍କ୍ଷିତୁଂ ଶକ୍ୟମ୍ । ଅଗ୍ନୌଷ୍ଣ୍ୟବତ୍‌ସ୍ୱଭାବସ୍ୟାପରିହାର୍ଯ୍ୟତ୍ୱାତ୍ ॥

ଭାଷା-(କ) ପରନ୍ତୁ ଏଠାରେ ଶଙ୍କା ହୁଏ ଯେ- ନିତ୍ୟ ଓ ନୈମିତ୍ତିକକର୍ମ ଅବଶିଷ୍ଟକର୍ମର ବିନାଶକ ହେବେ କି ? ନୁହେଁ, କାରଣ ସେଗୁଡ଼ିକରେ ବିରୋଧର ଅଭାବ ହୁଏ । ବିରୋଧ ହେବାପରେ ନାଶ୍ୟ-ନାଶକଭାବ ହୁଏ । ଜନ୍ମାନ୍ତରରେ ସଞ୍ଚିତସୁକୃତ କର୍ମର ବର୍ତ୍ତମାନ ନିତ୍ୟନୈମିତ୍ତିକ ସହିତ ବିରୋଧ ନାହିଁ, କାରଣ-ଏହି ଦୁଇଟିରେ ଶୁଦ୍ଧରୂପତ୍ୱ ସମାନ ଅଟେ ।

(ଖ) ଦୂରିତଗୁଡ଼ିକ ଅଶୁଦ୍ଧରୂପ ହେବାରୁ ବିରୋଧ ହେବାପରେ ବିନାଶ ହେଉ, ପରନ୍ତୁ ତାହାଦ୍ୱାରା ଦେହାନ୍ତରନିମିତ୍ତର ଅଭାବସିଦ୍ଧି ହୁଏ ନାହିଁ, କାରଣ-ସୁକୃତରେ ନିମିତତ୍ତ୍ୱ ଉପପନ୍ନ ହୁଏ ଏବଂ ଦୂରିତର ମଧ୍ୟ ଅଶେଷ ବିନାଶ ଅବଗତ ହୁଏନାହିଁ । ସେହିପରି ନିତ୍ୟନୈମିତ୍ତିକ ଅନୁଷ୍ଠାନରୁ ପ୍ରତ୍ୟବାୟର ଅନୁତ୍ପତ୍ତିମାତ୍ର ହୁଏ ଏବଂ ଅନ୍ୟଫଳର ଉତ୍ପତ୍ତି ହୁଏନାହିଁ-ଏଠାରେ କୌଣସି ପ୍ରମାଣ ନାହିଁ; କାରଣ ଅନ୍ୟଫଳର ମଧ୍ୟ ତାହା ସହିତ ଉତ୍ପନ୍ନ ହେବା ସମ୍ଭବ ଅଟେ । 'ତଦ୍ୟଥାମ୍ରେ' (ଯେପରି ଫଳ ପାଇଁ ନିମିତ୍ତ ଆମ୍ରବୃକ୍ଷ୍‌ର ପଛରେ ଛାୟା ଓ ଗନ୍ଧ ଉତ୍ପନ୍ନ ହୁଏ, ସେପରି ଧର୍ମାନୁଷ୍ଠାନର ପରେ ଅର୍ଥ ଉତ୍ପନ୍ନ ହୁଅନ୍ତି) ଏହା ଆପସ୍ତମ୍ଭ ସ୍ମୃତିରେ କୁହାଯାଇଛି ।

(ଗ) ସମ୍ୟଗ୍‌ଦର୍ଶନ ନ ହେବା ପର୍ଯ୍ୟନ୍ତ ଜନ୍ମମରଣ ମଧ୍ୟରେ ସର୍ବାତ୍ମନା କାମ୍ୟ ଓ ପ୍ରତିଷିଦ୍ଧର ପରିତ୍ୟାଗ କାହାଦ୍ୱାରା ପ୍ରତିଜ୍ଞା ହୁଏ ନାହିଁ, କାରଣ-କର୍ମକୁଶଳ ପୁରୁଷଠାରେ ସୂକ୍ଷ୍ମାପରାଧ ଦେଖାଯାଏ । ସଂଶୟର ବିଷୟ ନିଶ୍ଚିତ ଭାବେ ହୁଏ । କିନ୍ତୁ ନିମିତ୍ତର ଅଭାବ ଦୁର୍ବିଜ୍ଞେୟ ହୁଏ । ଜ୍ଞାନଗମ୍ୟ ବ୍ରହ୍ମାତ୍ମତ୍ୱ ସ୍ୱୀକାର ନ କଲେ ମଧ୍ୟ କର୍ତ୍ତୃତ୍ୱ ଭୋକ୍ତୃତ୍ୱ ସ୍ୱଭାବଯୁକ୍ତ ଆତ୍ମାର କୈବଲ୍ୟ ଆକାଂକ୍ଷା କରାଯାଏ ନାହିଁ । କାରଣ-ଅଗ୍ନିର ଉଷ୍ଣତା ପରି ସ୍ୱଭାବ ଅପରିହାର୍ଯ୍ୟ ଅଟେ ।

ମୂଳ-(କ) ସ୍ୟାଦେତତ୍ କର୍ତ୍ତୃତ୍ୱଭୋକ୍ତୃତ୍ୱକାର୍ଯ୍ୟମନର୍ଥୋ ନ ତଚ୍ଛକ୍ତିସ୍ତେନ ଶକ୍ତ୍ୟବସ୍ଥାନେଽପି କାର୍ଯ୍ୟପରିହାରାଦୁପପନ୍ନୋ ମୋକ୍ଷ ଇତି-ତଚ୍ଚ ନ, ଶକ୍ତିସଦ୍‌ଭାବେ କାର୍ଯ୍ୟପ୍ରବସ୍ୟ ଦୁର୍ନିବାରତ୍ୱାତ୍ । ଅଥାପି ସ୍ୟାନ୍ନ କେବଳା ଶକ୍ତିଃ କାର୍ଯ୍ୟମାରଭତେଽନପେକ୍ଷ୍ୟା-ନ୍ୟାନି ନିମିତ୍ତାନି, ଅତ ଏକାକିନୀ ସା ସ୍ଥିତାପି ନାପରାଧ୍ୟତୀତି ତଚ୍ଚ ନ, ନିମିତ୍ତାନାମପି ଶକ୍ତିଲକ୍ଷଣେନ ସମ୍ବନ୍ଧେନ ନିତ୍ୟସମ୍ବନ୍ଧତ୍ୱାତ୍ । ତସ୍ମାତ୍‌କର୍ତ୍ତୃତ୍ୱଭୋକ୍ତୃତ୍ୱସ୍ୱଭାବେ ସତ୍ୟାତ୍ମନ୍ୟ-ସତ୍ୟାଂ ବିଦ୍ୟାଗମ୍ୟାୟାଂ ନ କଥଂଚନ ମୋକ୍ଷଂ ପ୍ରତ୍ୟାଶାସ୍ତି । ଶ୍ରୁତିଃଷ୍ଟ 'ନାନ୍ୟଃପନ୍ଥା ବିଦ୍ୟତେଽୟନାୟ' (ଶ୍ୱେତା ୩-୮) ଇତି ଜ୍ଞାନାଦନ୍ୟଂ ମୋକ୍ଷମାର୍ଗଂ ବାରୟତି ।



(ଖ) ପରସ୍ମାଦନନ୍ୟତ୍ୱେଽପି ଜୀବସ୍ୟ ସର୍ବବ୍ୟବହାରଲୋପପ୍ରସଙ୍ଗଃ, ପ୍ରତ୍ୟକ୍ଷାଦି-ପ୍ରମାଣପ୍ରବୃତ୍ତେରିତିଚେତ୍-ନ, ପ୍ରାକ୍‌ପ୍ରବୋଧାତ୍ ସ୍ୱପ୍ନବ୍ୟବହାରବଉଦୁପପତ୍ତେଃ ଶାସ୍ତ୍ରଂ ଚ 'ଯତ୍ର ହି ଦ୍ୱୈତମିବ ଭବତି, ତଦିତର ଇତିରଂପଶ୍ୟତି' (ବୃହ ୨-୪-୧୪, ୪-୫-୧୫) ଇତ୍ୟାଦିନାଽପ୍ରବୃଦ୍ଧବିଷୟେ ପ୍ରତ୍ୟାକ୍ଷାଦି ବ୍ୟବହାରମୁକ୍ତ୍ୱା ପୁନଃ ପ୍ରବୃଦ୍ଧବିଷୟେ 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍ତତ୍କେନ କଂ ପଶ୍ୟେତ୍' (ବୃହ ୨-୪-୧୪, ୪-୫-୧୫) ଇତ୍ୟାଦିନା ତଦଭାବଂ ଦର୍ଶୟତି । ତଦେବଂ ପରବ୍ରହ୍ମୋବିଦୋ ଗନ୍ତବ୍ୟାଦିବିଜ୍ଞାନସ୍ୟ ବାଧିତତ୍ୱାନ୍ନ କଥଂଚନ ଗତିରୂପପାଦୟିତୁଂ ଶକ୍ୟା ।

(ଗ) କିଂ ବିଷୟାଃ ପୁନର୍ଗତି ଶ୍ରୁତୟ ଇତି ? ଉଚ୍ୟତେ-ସଗୁଣ ବିଦ୍ୟା ବିଷୟା ଭବିଷ୍ୟନ୍ତି । ତଥାହି-କ୍ୱଚିତ୍ ପଞ୍ଚାଗ୍ନିବିଦ୍ୟାଂ ପ୍ରକୃତ୍ୟ ଗତିରୁଚ୍ୟତେ କ୍ୱଚିତ୍ ପର୍ଯ୍ୟଙ୍କ ବିଦ୍ୟାଂ କ୍ୱଚିଦ୍‌ବୈଶ୍ୱାନରବିଦ୍ୟାମ୍ । ଯତ୍ରାପି ବ୍ରହ୍ମପ୍ରକୃତ୍ୟ ଗତିରୁଚ୍ୟତେ- 'ଯଥା ପ୍ରାଣୋ ବ୍ରହ୍ମ କଂ ବ୍ରହ୍ମ ଖଂ ବ୍ରହ୍ମ' (ଛା ୪-୧୦-୫) ଇତି, 'ଅଥ ଯଦିଦମସ୍ମିନ୍ ବ୍ରହ୍ମପୁରେ ଦହରଂ ପୁଣ୍ଡରୀକଂ ବେଶ୍ମ' (ଛା ୭-୧-୧) ଇତି ଚ, ତତ୍ରାପି ବାମନୀତ୍ୱାଦିଭିଃ ସତ୍ୟକାମାଦିଭିଶ୍ଚ ଗୁଣୈଃ ସଗୁଣସ୍ୟୈବୋପାସ୍ୟତ୍ୱାତ୍ ସମ୍ଭବତି ଗତିଃ ॥

ଭାଷା (କ) ଏହା ହେଉ, ପରନ୍ତୁ କର୍ତ୍ତୃତ୍ୱ, ଭୋକ୍ତୃତ୍ୱରୂପ କାର୍ଯ୍ୟ ଅନର୍ଥକ ଅଟେ, ତାହାର ଶକ୍ତି ନାହିଁ; ତାହାଦ୍ୱାରା ଶକ୍ତି ଅବସ୍ଥିତ ହେଲେବି କାର୍ଯ୍ୟର ପରିହାରରୁ ମୋକ୍ଷ ଉପପନ୍ନ ହୁଏ କି ? ଏହା କିନ୍ତୁ ଠିକ୍ ନୁହେଁ, କାରଣ-ଶକ୍ତିର ସହଭାବରେ କାର୍ଯ୍ୟର ଜନ୍ମ ଦୁନିର୍ବାର ହୁଏ । ଏଠାରେ ଶଙ୍କା ହୁଏ ଯେ- କେବଳ ଶକ୍ତି ଅନ୍ୟ ଦେଶ, କାଳାଦି ନିମିତ୍ତକୁ ଅପେକ୍ଷା ନକରି କାର୍ଯ୍ୟକୁ ଆରମ୍ଭ କରେ ନାହିଁ; ତେଣୁ ସେ ଏକାକୀ ରହି ଅପରାଧ କରେ ନାହିଁ କି ? ଏହା ଠିକ୍ ନୁହେଁ, କାରଣ-ନିମିତ୍ତର ମଧ୍ୟ ଶକ୍ତିରୂପ ସମ୍ବନ୍ଧରୁ ନିତ୍ୟ ସମ୍ବନ୍ଧ ହୁଏ । ତେଣୁ କର୍ତ୍ତୃତ୍ୱ ଭୋକ୍ତୃତ୍ୱ ସ୍ୱଭାବ ବିଦ୍ୟମାନ ହେଲାପରେ ଏବଂ ଆତ୍ମାରେ ବିଦ୍ୟାଗମ୍ୟ ବ୍ରହ୍ମାତ୍ମତ୍ୱ ନହେଲେ କୌଣସି ପ୍ରକାରରେ ମୋକ୍ଷର ଆଶା କରାଯାଏ ନାହିଁ । 'ନାନ୍ୟଃ ପନ୍ଥା' (ଜ୍ଞାନ ବିନା ମୋକ୍ଷପାଇଁ ଅନ୍ୟ ସାଧନ ନାହିଁ) ଏହି ଶ୍ରୁତି ଜ୍ଞାନଦ୍ୱାରା ଅନ୍ୟ ମୋକ୍ଷ ମାର୍ଗକୁ ବାରଣ କରେ ।

(ଖ) ଜୀବ ପରମାତ୍ମାଠାରୁ ଅନନ୍ୟ ହେବାରୁ ସମସ୍ତ ବ୍ୟବହାରର ଲୋପପ୍ରସଙ୍ଗ ହେବ, କାରଣ-ଏହି ପକ୍ଷରେ ପ୍ରତ୍ୟକ୍ଷାଦି ପ୍ରମାଣର ପ୍ରବୃତ୍ତି ନାହିଁ-ଏହା ଯଦି ତୁମ୍ଭେ କୁହ, ତେବେ ମଧ୍ୟ ଠିକ୍ ନୁହେଁ, କାରଣ-ତତ୍ତ୍ୱଜ୍ଞାନର ପୂର୍ବରୁ ସ୍ୱପ୍ନ ବ୍ୟବହାର ସଦୃଶ, ତାହାର ଉପପତ୍ତି ହୁଏ । 'ତତ୍ର ହିଁ' (ଯେଉଁଠି ଦ୍ୱୈତ ହୁଏ, ସେଠାରେ ଅନ୍ୟକୁ ଦେଖେ) ଇତ୍ୟାଦି ଦ୍ୱାରା ଶାସ୍ତ୍ର ଅପ୍ରବୃଦ୍ଧି ବିଷୟରେ ପ୍ରତ୍ୟକ୍ଷାଦି ବ୍ୟବହାର କରି ପୁନଃ ପ୍ରବୃଦ୍ଧ ବିଷୟରେ 'ଯତ୍ର ତସ୍ୟ' (ଯେତେବେଳେ ଏହି ବିଦ୍ୱାନ୍ ପାଇଁ ସବୁ ଆତ୍ମା ହୋଇଗଲେ,

ସେତେବେଳେ କିଏ କାହାକୁ ଦେଖିବ ?) ଇତ୍ୟାଦି ଶାସ୍ତ୍ରଦ୍ୱାରା ତାହାର ଅଭାବ ଦେଖାଯାଏ । ତେଣୁ ପରବ୍ରହ୍ମଜ୍ଞାନୀର ଗନ୍ତବ୍ୟାଦି ବିଜ୍ଞାନର ବାଧ ହେଲେ କୌଣସି ପ୍ରକାରରେ ଗତିର ପ୍ରତିପାଦନ କରାଯାଏନାହିଁ ।

(ଗ) ସେତେବେଳେ ଗତି ପ୍ରତିପାଦକ ଶ୍ରୁତିଗୁଡ଼ିକ କାହାକୁ ବିଷୟ କରେ ? କୁହାଯାଇଅଛି ସଗୁଣ ବିଦ୍ୟା ବିଷୟକ ହେବ । ଯେପରି କେଉଁଠି ପଞ୍ଚାଗ୍ନି ବିଦ୍ୟାକୁ ପ୍ରସ୍ତୁତ କରି ଗତିରୂପେ କୁହାଯାଇଛି । କେଉଁଠି ପର୍ଯ୍ୟଙ୍କ ବିଦ୍ୟା ଅଥବା କେଉଁଠି ବୈଶ୍ୱାନରବିଦ୍ୟାର ଉପକ୍ରମ କରି କୁହାଯାଇଅଛି । କେଉଁଠି ବ୍ରହ୍ମକୁ ପ୍ରସ୍ତୁତ କରି ଗତିକୁ କୁହାଯାଇଛି । ଯେପରି 'ପ୍ରାଣୋ ବ୍ରହ୍ମ' (ପ୍ରାଣ ବ୍ରହ୍ମ ଅଟେ, ସୁଖବ୍ରହ୍ମ, ଆକାଶବ୍ରହ୍ମ ଅଟେ) ଏବଂ 'ଅଥ ଯଦିଦଂ' (ବର୍ତ୍ତମାନ ଏହି ଶରୀରରୂପୀ ବ୍ରହ୍ମପୁରର ମଧ୍ୟରେ ଯାହା ସୂକ୍ଷ୍ମ କମଳାକାର ଗୃହ ଅଟେ) ଏହା ଶ୍ରୁତି କହେ । ସେଠାରେ ବାମନୀତ୍ୱାଦି ଓ ସତ୍ୟକାମତ୍ୱାଦି ଗୁଣଦ୍ୱାରା ସଗୁଣ ବ୍ରହ୍ମର ଉପାସ୍ୟ ହେବାରୁ ଗତି ସମ୍ଭବ ହୁଏ ॥

ମୂଳ-(କ) ନ କ୍ୱଚିତ୍ ପରବ୍ରହ୍ମ ବିଷୟା ଗତିଃ ଶ୍ରାବ୍ୟତେ, ଯଥା ଗତି ପ୍ରତିଷେଧାଃ ଶ୍ରାବିତଃ- 'ନ ତସ୍ୟ ପ୍ରାଣା ଉତ୍କ୍ରାମନ୍ତି' (ବୃହ ୪-୪-୬) ଇତି । ବ୍ରହ୍ମ ବିଦାପ୍ନୋତି ପରମ୍' (ତୈ ୨-୧-୧) ଇତ୍ୟାଦିଷୁ ତୁ ସତ୍ୟପ୍ୟାପ୍ନୋତେର୍ଗତ୍ୟର୍ଥତ୍ୱେ ବର୍ଣ୍ଣିତେନ ନ୍ୟାୟେନ ଦେଶାନ୍ତର ପ୍ରାପ୍ତ୍ୟ ସମ୍ଭବାତ୍ ସ୍ୱରୂପ ପ୍ରତିପତ୍ତିରେବେୟମ ବିଦ୍ୟାଧାରୋପିତ ନାମରୂପ ପ୍ରତିଲ-ୟୋପେକ୍ଷୟାଽଭିଧୀୟତେ- 'ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି' (ବୃହ ୪-୪-୭) ଇତ୍ୟାଦି ବଦିତି ଦ୍ରଷ୍ଟବ୍ୟମ୍ ।

(ଖ) ଅପି ଚ ପରବିଷୟା ଗତିର୍ବ୍ୟାଖ୍ୟାୟମାନା ପ୍ରରୋଚନାୟ ବା ସ୍ୟାଦନୁ ଚିନ୍ତନାୟ ବା ? ତତ୍ର ପ୍ରରୋଚନଂ ତାବଦ୍ ବ୍ରହ୍ମବିଦୋ ନ ଗତ୍ୟୁକ୍ତ୍ୟା କ୍ରିୟତେ, ସ୍ୱସଂ ବେଦ୍ୟେନୈବାବ୍ୟବହିତେନ ବିଦ୍ୟାସମର୍ପିତେନ ସ୍ୱାସ୍ଥେନ ତତ୍ସିଦ୍ଧେଃ । ନ ଚ ନିତ୍ୟସିଦ୍ଧନିଃ ଶ୍ରେୟସ ନିବେଦନସ୍ୟା ସାଧ୍ୟଫଳସ୍ୟ ବିଜ୍ଞାନସ୍ୟ ଗତ୍ୟନୁ ଚିନ୍ତନେ କାଚିଦପେ-କ୍ଷୋପପଦ୍ୟତେ । ତସ୍ମାଦ ପରବ୍ରହ୍ମ ବିଷୟା ଗତିଃ । ତତ୍ର ପରାପରବ୍ରହ୍ମ ବିବେକାନବ ଧାରଣେନ ପରସ୍ମିନ୍ ବ୍ରହ୍ମଣି ବର୍ତ୍ତମାନା ଗତିଶ୍ରୁତୟଃ ପରସ୍ମିନ୍ନଧ୍ୟା ରୋପ୍ୟନ୍ତେ ॥

ଭାଷା-(କ) ଯେପରି 'ନ ତସ୍ୟ' (ସେହି ବ୍ରହ୍ମବିତ୍ତର ଶରୀରରୁ ପ୍ରାଣ ଉତ୍କ୍ରମଣ କରେ ନାହିଁ) ଏହିପରି ଗତିର ପ୍ରତିଷେଧ ଶ୍ରବଣ କରାଯାଏ, ସେହିପରି କେଉଁଠି ପରବ୍ରହ୍ମ ବିଷୟକ ଗତି କିନ୍ତୁ ଶୁଣାଯାଏ ନାହିଁ । 'ବ୍ରହ୍ମବିଦାପ୍ନୋତି ପରମ୍' ଇତ୍ୟାଦି ଶ୍ରୁତିରେ ଅପ୍‌ଧାତୁ ଗତ୍ୟର୍ଥକ ହେଲେ ବର୍ଣ୍ଣିତ ନ୍ୟାୟ ଅର୍ଥାତ୍ ବ୍ରହ୍ମ ସର୍ବଗତ, ସର୍ବାନ୍ତର ଏବଂ



ସର୍ବାତ୍ମା ଅଟେ-ଏହାଦ୍ୱାରା ଦେଶାନ୍ତର ପ୍ରାପ୍ତିର ଅସମ୍ଭବ ହେବାରୁ ଅବିଦ୍ୟା ଦ୍ୱାରା ଅଧ୍ୟାରେପିତ ନାମ, ରୂପର ବିଷୟ ଅପେକ୍ଷା-'ବ୍ରହ୍ମ ସନ୍ ବ୍ରହ୍ମାପ୍ୟେତି' ଇତ୍ୟାଦି ପରି ଏହା ସ୍ୱରୂପ ପ୍ରାପ୍ତିକୁ ଅଭିହିତ କରେ ବୋଲି ଜାଣିବା ଉଚିତ୍ ।

(ଖ) ପରବ୍ରହ୍ମ ବିଷୟକ ବ୍ୟାଖ୍ୟାନ କରି ଗତି ପ୍ରରୋଚନା ପାଇଁ ଅଥବା ଅନୁଚିନ୍ତକ ପାଇଁ ହେବ କି ? ସେଠାରେ ବ୍ରହ୍ମତତ୍ତ୍ୱବିତ୍ ପୁରୁଷଠାରେ ଗତିର ଉକ୍ତିଦ୍ୱାରା ପ୍ରରୋଚନା କରାଯାଏ ନାହିଁ । କାରଣ 'ସେ କିନ୍ତୁ ସ୍ୱସଂବେଦ୍ୟ ବିଦ୍ୟାଦ୍ୱାରା ସମର୍ପିତ ଅବ୍ୟବହିତ ସ୍ୱାସ୍ଥ୍ୟଦ୍ୱାରା ସିଦ୍ଧ ହୁଏ । ନିତ୍ୟସିଦ୍ଧ ନିଃଶ୍ରେୟସ ନିବେଦନ ବିଶିଷ୍ଟ ଅସାଧ ଫଳଯୁକ୍ତ ବିଜ୍ଞାନର ଗତି ଅନୁଚିନ୍ତନରେ କୌଣସି ଅପେକ୍ଷା ଉପପନ୍ନ ହୁଏ ନାହିଁ । ତେଣୁ ଅପରବ୍ରହ୍ମ ବିଷୟକ ଗତି ହୁଏ । ସେଠାରେ ପର ଓ ଅପରବ୍ରହ୍ମର ବିବେକ ନିଶ୍ଚୟ ନ ହେବାରୁ ଅପରବ୍ରହ୍ମରେ ବର୍ତ୍ତମାନ ଗତିବୋଧକ ଶ୍ରୁତିଗୁଡ଼ିକ ପରବ୍ରହ୍ମରେ ଅଧ୍ୟାରୋପିତ କରାଯାଆନ୍ତି ।

ମୂଳ-(କ) କିଂ ଦ୍ୱେ ବ୍ରହ୍ମଣୀ ପରମପରଂ ଚେତି ? ବାଢଂ ଦ୍ୱେ- 'ଏତଦ୍ବୈ ସତ୍ୟକାମ ପରଂ ଚାପରଂ ଚ ବ୍ରହ୍ମ ଯଦୋଂକାରଃ' (ପ୍ର ୫-୨) ଇତ୍ୟାଦି ଦର୍ଶନାତ୍ । କିଂ ପୁନଃ ବ୍ରହ୍ମ କିମପରମିତି ? ଉଚ୍ୟତେ ଉଚ୍ୟତେ ଯତ୍ରା ବିଦ୍ୟାକୃତ ନାମରୂପାଦି ବିଶେଷ ପ୍ରତିଷେଧାଦସ୍ଥୂଳାଦିଶବ୍ଦୈଃ ବ୍ରହ୍ମୋପଦିଶ୍ୟତେ, ତତ୍ପରମ୍ । ତଦେବ ଯତ୍ର ନାମରୂପାଦି ବିଶେଷେଣ କେନଚିଦ୍ ବିଶିଷ୍ଟମୁପାସନାୟୋପଦିଶ୍ୟତେ- 'ମନୋମୟଃ ପ୍ରାଣଶରୀରୋ ଭାରୂପଃ' (ଛା ୩-୧୪-୨) ଇତ୍ୟାଦି ଶବ୍ଦୈସ୍ତଦପରମ୍ ।

(ଖ) ନନ୍ୱେବମଦ୍ୱିତୀୟଶ୍ରୁତିରୂପ ରୁଧ୍ୟେତ, ନ, ଅବିଦ୍ୟାକୃତ ନାମରୂପୋପାଧିକତୟା ପରିହୃତତ୍ୱାତ୍ । ତସ୍ୟ ଚାପର ବ୍ରହ୍ମୋପାସନସ୍ୟ ସଂନିଧୌ ଶ୍ରୂୟମାଣମ୍ 'ସ ଯଦି ପିତୃଲୋକକାମୋ ଭବତି' (ଛା ୮-୨-୧) ଇତ୍ୟାଦି ଜଗଦୈଶ୍ୱର୍ଯ୍ୟ ଲକ୍ଷଣଂ ସଂସାର ଗୋଚରମେବ ଫଳଂ ଭବତି । ଅନିବର୍ତ୍ତିତତ୍ୱାଦ ବିଦ୍ୟାୟାଃ । ତସ୍ୟ ଚ ଦେଶ ବିଶେଷା-ବବଦ୍ଧତ୍ୱାଉତ୍ ପ୍ରାପ୍ତ୍ୟର୍ଥଂ ଗମନ ବିରୁଦ୍ଧମ୍ ।

(ଗ) ସର୍ବଗତତ୍ୱେଽପି ଚାତ୍ମନ ଆକାଶସ୍ୟେବ ଘଟାଦିଗମନେ, ବୁଦ୍ଧ୍ୟାଦ୍ୟୁପାଧି ଗମନେ ଗମନ ପ୍ରସିଦ୍ଧିରିତ୍ୟବାଦିଷ୍ମ 'ତଦଗୁଣ ସାରତ୍ୱାତ୍' (ବ୍ର. ସୂ ୨-୩୪-୨୯) ଇତ୍ୟତ୍ର । ତସ୍ମାତ୍ 'କାର୍ଯ୍ୟଂ ବାଦରିଃ' (ବ୍ର. ସୂ ୪-୩-୭) ଇତ୍ୟେଷ ଏବ ସ୍ଥିତଃ ପକ୍ଷଃ । 'ପରଂ ଜୈମିନିଃ' (ବ୍ର.ସୂ ୪-୩-୧୨) ଇତି ତୁ ପକ୍ଷାନ୍ତରପ୍ରିଭାନମାତ୍ର ଦର୍ଶନଂ ପ୍ରଜ୍ଞାବିକା-ସନାୟେତି ଦ୍ରଷ୍ଟବ୍ୟମ୍ ॥

ଭାଷା-(କ) ପର ଓ ଅପର ବ୍ରହ୍ମରୂପେ କ'ଣ ଦୁଇଟି ଅଟନ୍ତି ? ହଁ, ଦୁଇଟିବ୍ରହ୍ମ ଅଟନ୍ତି । କାରଣ 'ଏତଦ୍ବୈ ସତ୍ୟକାମ' (ପିପ୍‌ପଲାଦ କହିଲେ ହେ ସତ୍ୟକାମ ! ଏହା ଯେଉଁ ଓଁ କାର ଅଟେ, ସେ ନିଶ୍ଚିତ ଭାବେ ପର ଓ ଅପରବ୍ରହ୍ମ ଅଟେ) ଇତ୍ୟାଦି ଦେଖାଯାଏ । କିନ୍ତୁ ପରଂବ୍ରହ୍ମ କ'ଣ ଓ ଅପରବ୍ରହ୍ମ କ'ଣ ଅଟେ ? କୁହାଯାଇଛି- ଯେଉଁଠି

ଅବିଦ୍ୟାକୃତ ନାମରୂପ ପ୍ରଭୃତି ବିଶେଷର ପ୍ରତିଷେଧଦ୍ୱାରା ଅସ୍ଥୂଳାଦି ଶବ୍ଦରୁ ବ୍ରହ୍ମ ଉପଦିଷ୍ଟ ଅଟେ, ସେ ପରବ୍ରହ୍ମ ଅଟେ । ସେ ଯେତେବେଳେ ନାମ-ରୂପ ପ୍ରଭୃତି କୌଣସି ବିଶେଷଣଦ୍ୱାରା ବିଶିଷ୍ଟ ହୋଇ ଉପାସନା ପାଇଁ 'ମନୋମୟଃ' (ମନୋମୟ ପ୍ରାଣଶରୀର ଭାରୂପ ବ୍ରହ୍ମ ଅଟେ) ଇତ୍ୟାଦି ଶବ୍ଦଦ୍ୱାରା ଉପଦିଷ୍ଟ ହୁଏ, ସେ ଅପରବ୍ରହ୍ମ ଅଟେ ।

(ଖ) ପରନ୍ତୁ ଏହାହେଲେ ଅଦ୍ୱୈତ ପ୍ରତିପାଦକଶ୍ରୁତି ବାଧିତ ହେବ କି ? ନୁହେଁ, କାରଣ ଅବିଦ୍ୟାକୃତ ନାମରୂପ ଉପାଧିଯୁକ୍ତ ହେବାକୁ ସେ ପରିହୃତ ହୁଏ ? ଅପରବ୍ରହ୍ମର ଉପାସନା ତାହାର ନିକଟରେ 'ସ ଯଦି' (ଯଦି ସେ 'ପିତୃଲୋକକୁ କାମନା କରେ) ଇତ୍ୟାଦି ଜଗଦ୍ ଐଶ୍ୱର୍ଯ୍ୟରୂପ ସଂସାର ବିଷୟକ ମଧ୍ୟ ଶ୍ରୂୟମାଣ ଫଳ ହୁଏ । କାରଣ-ବର୍ତ୍ତମାନ ତାହାର ଅବିଦ୍ୟା ନିବୃତ୍ତ ହୋଇନାହିଁ । ସେ ଦେଶବିଦେଶରେ ଅବବଦ୍ଧ ହୁଏ । ତେଣୁ ସେହି ଦେଶର ପ୍ରାପ୍ତି ପାଇଁ ଗମନ ବିରୁଦ୍ଧ ନୁହେଁ ।

(ଷ) ଆତ୍ମା ସର୍ବବ୍ୟାପକ ହେଲେବି ଆତ୍ମାରେ ଗମନ ପ୍ରସିଦ୍ଧ ଅଟେ, ଏହା 'ତଦ୍‌ଗୁଣ ସାରତ୍ୱାତ୍' ଏହି ସୂତ୍ରରେ ଆମ୍ଭେ କହିଛୁ । ତେଣୁ କାର୍ଯ୍ୟଂ ବାଦରି 'ଏହି ସୂତ୍ର ସିଦ୍ଧାନ୍ତ ପକ୍ଷ ଅଟେ ।' 'ପରଂ ଜୈମିନିଃ' ଏହା ଅନ୍ୟପକ୍ଷର ପ୍ରତିଭାନମାତ୍ର ପ୍ରଦର୍ଶନ କେବଳ ବୁଦ୍ଧିର ବିଶଦତା ପାଇଁ ଅଛି-ଏହା ଜାଣିବା ଉଚିତ୍ ॥୧୪॥

## ६ । अप्रतीकालम्बनादिकरणम् ॥ सु. १५-१६ ॥

## ୬। ଅପ୍ରତୀକାଲମ୍ୱନାଧିକରଣମ୍ ॥ସୂ ୧୫-୧୬॥

**अप्रतीकालम्बनान्नयतीति वादरायण उभयथाऽदोषात्तत्क्रतुश्च ॥ ४-३-१५ ॥**

**ଅପ୍ରତୀକାଲମ୍ୱନାନ୍ନୟତୀତି ବାଦରାୟଣ ଉଭୟଥାଽଦୋଷାତ୍ତକ୍ରତୁଷ୍ଟ ॥୪-୩-୧୫॥**

ଅପ୍ରତୀକାଲମ୍ୱନାତ୍=ଅମାବନ ପୁରୁଷ ଅପ୍ରତୀକୋପାସକଗୁଡ଼ିକର ନୟତି= ବ୍ରହ୍ମଲୋକକୁ ନେଇଯାଏ । ବାଦରାୟଣଃ ଏହା ଆଚାର୍ଯ୍ୟ ବାଦରାୟଣ ସ୍ୱୀକାର କରନ୍ତି । ଉଭୟଥାଽଦୋଷାତ୍=କାରଣ-କେତେକ ଉପାସକଙ୍କୁ ନେଇଯା'ନ୍ତି ଏବଂ କେତେକଙ୍କୁ ନିଅନ୍ତି ନାହିଁ ଏହା ଦୋଷ ନୁହେଁ, କାରଣ-ତତ୍କ୍ରତୁଷ୍ଟ=ବ୍ରହ୍ମକ୍ରତୁ ବ୍ରହ୍ମଲୋକକୁ ନେଇଯାଏ ॥

ମୂଳ-(କ) ସ୍ଥିତମେତତ୍ କାର୍ଯ୍ୟ ବିଷୟା ଗତିର୍ନ ପରବିଷୟେତି । ଇଦମିଦାନୀଂ ସନ୍ଦିହ୍ୟତେ-କିଂ ସର୍ବାନ୍ ବିକାରାଲମ୍ୱନାନ ବିଶେଷେଣୈବା ମାନବଃ ପୁରୁଷଃ ପ୍ରାପୟତି ବ୍ରହ୍ମଲୋକମୁତ କାଂଶ୍ଚିଦେବେତି । କିଂ ତାବତ୍ପ୍ରାପ୍ତମ୍ ? ସର୍ବେଷା ମେବୈଷାଂ



ବିଦୁଷାମନ୍ୟତ୍ର ପରସ୍ମାଦ୍ ବ୍ରହ୍ମଣୋ ଗତିଃ ସ୍ୟାତ୍ । ତଥାହି 'ଅନିୟମଃ ସର୍ବାସାମ୍' (ବ୍ର ସୂ ୩-୩-୩୧) ଇତ୍ୟତ୍ରା ବିଶେଷେଣୈବୈଷା ବିଦ୍ୟାନ୍ତରେଷ୍ୱବତାରିତେତି ।

(ଖ) ଏବଂ ପ୍ରାପ୍ତେ ପ୍ରତ୍ୟାହ-ଅପ୍ରତୀକାଲମ୍ବନାନିତି । ପ୍ରତିକାଲମ୍ବନାନ୍ ବର୍ଜୟିତ୍ୱା ସର୍ବାନନ୍ୟାନ୍ ବିକାରାଲମ୍ବନାନ୍ନୟତି ବ୍ରହ୍ମଲୋକମିତି ବାଦରାୟଣ ଆଚାର୍ଯ୍ୟୋ ମନ୍ୟତେ । ନ ହ୍ୟେବ ମୁଭୟଥାଭାବାଭ୍ୟୁପଗମେ କଶ୍ଚିଦ୍ଦୋଷୋଽସ୍ତି, ଅନିୟମନ୍ୟାୟସ୍ୟ ପ୍ରତୀକ ବ୍ୟତିରିକ୍ତେଷ୍ୱପ୍ୟୁପାସନେଷୂପପତ୍ତେଃ ।

(ଗ) ତତ୍‌କ୍ରତୁଶ୍ଚାସ୍ୟୋଭୟଥା ଭାବସ୍ୟ ସମର୍ଥକୋ ହେତୁର୍ଦ୍ରଷ୍ଟବ୍ୟଃ । ଯୋହି ବ୍ରହ୍ମକ୍ରତୁଃ ସ ବ୍ରାହ୍ମମୈଶ୍ୱର୍ଯ୍ୟମାସୀ ଦେଦିତି ଶ୍ଳିଷ୍ୟତେ । 'ତଂ ଯଥା ଯଥୋପାସତେ ତଦେବ ଭବତି' ଇତି ଶ୍ରୁତେଃ, ନତୁ ପ୍ରତୀକେଷୁ ବ୍ରହ୍ମକ୍ରତୁତ୍ୱମସ୍ତି, ପ୍ରତୀକ ପ୍ରଧାନତ୍ୱାଦୁପାସନସ୍ୟ ।

(ଘ) ନନ୍ୱବ୍ରହ୍ମକ୍ରତୁରପି ବ୍ରହ୍ମ ଗଚ୍ଛତୀତି, ଶ୍ରୂୟତେ ଯଥା ପଞ୍ଚାଗ୍ନି ବିଦ୍ୟାୟାମ୍- 'ସ ଏତାନ୍ ବ୍ରହ୍ମ ଗମୟତି' (ଛା ୪-୧୫-୪) ଇତି ଭବତୁ । ଯତ୍ରୈବମାହତ୍ୟବାଦ ଉପଲଭ୍ୟତେ, ତଦଭାବେ ତ୍ୱୌତ୍ସର୍ଗିକୋଣ ତତ୍‌କ୍ରତୁନ୍ୟାୟେନ ବ୍ରହ୍ମକ୍ରତ୍ୱନାମେବ ତତ୍ପ୍ରାପ୍ତି ର୍ନେତରେଷାମିତି ଗମ୍ୟତେ ॥

ଭାଷା (କ) କାର୍ଯ୍ୟବ୍ରହ୍ମବିଷୟକ ଗତି ଅଟେ ଏବଂ ପରବ୍ରହ୍ମ କିନ୍ତୁ ବିଷୟକ ଗତି ନୁହେଁ ବୋଲି ପ୍ରମାଣିତ ହୋଇଛି । ବର୍ତ୍ତମାନ ଏଠାରେ ସନ୍ଦେହ ହୁଏ ଯେ- ବିକାରର ଆଲମ୍ବନ କରୁଥିବା ଉପାସଗୁଡ଼ିକୁ କ'ଣ ଅମାନବ ପୁରୁଷ ସମାନ ରୂପରେ ବ୍ରହ୍ମଲୋକ ପ୍ରାପ୍ତ କରାନ୍ତି କି କାହାକୁ କରନ୍ତି ? ତେବେ କ'ଣ ପ୍ରାପ୍ତି ହୁଏ ? ପୂର୍ବପକ୍ଷ-ଏହି ସମସ୍ତ ଉପାସକଗୁଡ଼ିକ ପରବ୍ରହ୍ମ ଭିନ୍ନ କାର୍ଯ୍ୟବ୍ରହ୍ମରେ ଗତି ହୁଏ କି ? କାରଣ – 'ଅନିୟମଃ ସର୍ବାସାମ୍' ଏହି ସୂତ୍ରରେ ଗତିର ଅନ୍ୟ ଉପାସକଗୁଡ଼ିକଠାରେ ଅବତରଣ କରାଯାଇଛି ।

(ଖ) ସିଦ୍ଧାନ୍ତ ଏହା ପ୍ରାପ୍ତ ହେବାରୁ ନିରାକରଣ କରାଯାଇଛି- 'ଅପ୍ରତୀକାଲମ୍ବନାତ୍' ପ୍ରତୀକର ଆଲମ୍ବନ କରିଥିବା ପୁରୁଷକୁ ଛାଡ଼ି ଅନ୍ୟ ବିକାରାଲମ୍ବୀ ସମସ୍ତ ଉପାସକକୁ ଅମାନବ ପୁରୁଷ ବ୍ରହ୍ମଲୋକକୁ ନେଇଯାଆନ୍ତି-ଏହା ବାଦରାୟଣ ସ୍ୱୀକାର କରନ୍ତି । ଏହିପରି ଉଭୟଥାଭାବ ଅର୍ଥାତ୍ ପ୍ରତୀକାଲମ୍ବମାନଙ୍କୁ ନିଅନ୍ତି ନାହିଁ ଓ ବିକାରାଲମ୍ବୀମାନଙ୍କୁ ନେଇଯାଆନ୍ତି ଏହା ସ୍ୱୀକାର କଲାପରେ ମଧ୍ୟ କିଛି ଦୋଷ ହୁଏ ନାହିଁ । କାରଣ- ଅନିୟମନ୍ୟାୟ ପ୍ରତୀକ ବ୍ୟତିରିକ୍ତ ଉପାସନାରେ ଉପପନ୍ନ ହୁଅନ୍ତି ।

(ଗ) 'ତତ୍‌କ୍ରତୁଶ୍ଚ' (କାର୍ଯ୍ୟବ୍ରହ୍ମକୁ ଉପାସନା କରିବା ଉଚିତ୍) ଏହାକୁ ଉଭୟଥାଭାବର ସମର୍ଥକ ହେତୁ ବୋଲି ଜାଣିବା ଉଚିତ୍ । ଯାହା ବ୍ରହ୍ମକେତୁ ଅଟେ, ସେ ବ୍ରହ୍ମର ଐଶ୍ୱର୍ଯ୍ୟ ପାଏ-ଏହାହିଁ ହୁଏ, କାରଣ- 'ତଂ ତଥା' (ଯିଏ, ତାହାକୁ ଯେଉଁ ପ୍ରକାରରେ ଉପାସନା କରେ, ସେ ତାଦୃଶ ହୁଏ) ଏହାହିଁ ଶ୍ରୁତି ଅଟେ । ପ୍ରତୀକରେ ବ୍ରହ୍ମକ୍ରତୁତ୍ୱ ହୁଏ ନାହିଁ, କାରଣ-ଉପାସନା ପ୍ରତୀକ ପ୍ରଧାନ ଅଟେ ।

(ଘ) ପରନ୍ତୁ ଅବ୍ରହ୍ମକ୍ରତୁ ମଧ୍ଯ ବ୍ରହ୍ମଲୋକକୁ ପ୍ରାପ୍ତ ହୁଏ- ଏହାହିଁ ଶ୍ରୁତି । ଯେପରି 'ସ ଏତାନ୍ ବ୍ରହ୍ମ' (ସେହି ଅମାନବ ଏହି ଉପାସକକୁ ବ୍ରହ୍ମଲୋକକୁ ପଠାଇଦିଏ) ଏହିପରି ପଞ୍ଚାଗ୍ନି ବିଦ୍ୟା ଅଟେ । ପରନ୍ତୁ ଯେଉଁଠି ଏହିପ୍ରକାର ସାକ୍ଷାତ୍ ଉପଲବ୍ଧ ହୁଏ, ସେଠାରେ ତାହା ହୋଇପାରେ, କିନ୍ତୁ ତାହାର ଅଭାବରେ ଔତ୍ସର୍ଗିକ ତତ୍କ୍ରତୁନ୍ୟାୟରେ ବ୍ରହ୍ମକ୍ରତୁକୁ ବ୍ରହ୍ମଲୋକକୁ ପଠାଇଦିଏ କିନ୍ତୁ ଅନ୍ୟକୁ ନୁହେଁ-ଏହାହିଁ ଜଣାପଡ଼େ ॥୧୫॥

## विसेषं च दर्शयति ॥ ३-४-१६ ॥

## ବିଶେଷଂ ଚ ଦର୍ଶୟତି ॥୩-୪-୧୬॥

ବିଶେଷଂ ଚ=ନାମାଦି ପ୍ରତୀକୋପାସନରେ ପୂର୍ବ-ପୂର୍ବରୁ ଉତ୍ତରୋତ୍ତର ଉପାସନାଗୁଡ଼ିକରେ ଏବଂ ଆଧିକଫଳ, ଦର୍ଶୟତି=ଶ୍ରୁତି ଦେଖାଏ । ଅତଃ ପ୍ରତୀକୋପାସକ ବ୍ରହ୍ମଲୋକକୁ ଯାଏ ନାହିଁ ॥

ମୂଳ (କ) ନାମାଦିଷ୍ଣୁ ପ୍ରତୀକୋପାସନେଷ୍ଣୁ ପୂର୍ବସ୍ମାତ୍ ପୂର୍ବସ୍ମାତ ଫଳବିଶେଷ ମୁତ୍ତରସ୍ମିନ୍ନୁତ୍ତରସ୍ମିନ୍ନୁପାସନେ ଦର୍ଶୟତି- 'ଯାବନ୍ନାମ୍ନୋ ଗତିଂ ତତ୍ରାସ୍ୟ ଯଥାକାମଚ୍ଚରୋ ଭବତି' (ଛା ୭-୧-୫), 'ବାଗ୍‌ବାବ ନାମ୍ନୋ ଭୂୟସୀ (୭-୨-୧), 'ଯାବଦ୍‌ବାଚେ ଗତଂ ତତ୍ରାସ୍ୟ ଯଥାକାମଚ୍ଚରୋ ଭବତି' (ଛା ୭-୨-୨), 'ମନୋ ବାବ ବାଚେ ଭୂୟୋ' (ଛା ୭-୩-୧) ଇତ୍ୟାଦିନା ।

(ଖ) ସଚ୍ଚୟଂ ଫଳବିଶେଷଃ ପ୍ରତୀକତନ୍ତ୍ରତ୍ୱାଦୁପାସନାନାମୁପପଦ୍ୟତେ, ବ୍ରହ୍ମତନ୍ତ୍ରେ ତୁ ବ୍ରହ୍ମଣୋଽବିଶିଷ୍ଟତ୍ୱାତ୍ କଥଂ ଫଳବିଶେଷଃ ସ୍ୟାତ୍ ? ତସ୍ମାନ୍ ପ୍ରତୀକାଲମ୍ବନାନାମିତରୈ-ସ୍ତୁଲ୍ୟ ଫଳତ୍ୱମିତି ॥

ଭାଷା-(କ) ନାମ ପ୍ରଭୃତି ପ୍ରତୀକ ଉପାସନାରେ ପୂର୍ବପୂର୍ବ ଅପେକ୍ଷା ଉତ୍ତରୋତ୍ତର ଉପାସନାରେ 'ଯାବନାମ୍ନୋ' (ଯାହାର ନାମ ସେ ବ୍ରହ୍ମ, ତାହାକୁ ଉପାସନା କରିବା ଉଚିତ୍ । ଯେଉଁ ପର୍ଯ୍ୟନ୍ତ ନାମର ଗତି ହୁଏ, ସେ ପର୍ଯ୍ୟନ୍ତ ତାହାର ଯଥେଷ୍ଟ ଗତି ହୁଏ), 'ବାଗ୍‌ବାବ' (ବାକ୍ ନାମଠାରୁ ବୃଦ୍ଧି ପାଏ), ଯଦ୍‌ବାଚେ ଗତମ୍' (ଯାହା ବାଣୀର ଏହି ବ୍ରହ୍ମ ତାହାକୁ ଉପାସନା କରେ । ଯେ ପର୍ଯ୍ୟନ୍ତ ବାଣୀର ଗତି ହୁଏ, ସେପର୍ଯ୍ୟନ୍ତ ତାହାର ସ୍ୱଚ୍ଛ ଗତି ହୁଏ), 'ମନୋବାବ' (ମନ ବାଣୀରୁ ଉତ୍କୃଷ୍ଟ ଅଟେ) ଇତ୍ୟାଦିଶ୍ରୁତି ଫଳବିଶେଷକୁ ଦେଖାଏ ।

(ଖ) ଏହି ଫଳବିଶେଷ ପ୍ରତୀକର ଅଧୀନ ହେବାରୁ ଉପାସନାରେ ଉପପନ୍ନ ହୁଏ । ଉପାସନାଗୁଡ଼ିକ ବ୍ରହ୍ମର ଅଧୀନ ହେଲେ ଫଳବିଶେଷ କିପରି ହେବ ? କାରଣ-ବ୍ରହ୍ମ ଅବଶିଷ୍ଟ ଅଟେ । ତେଣୁ ପ୍ରତୀକାଲମ୍ବୀଗୁଡ଼ିକ ଅନ୍ୟପରି ଫଳ ନୁହେଁ ॥୧୬॥

ଇତି ଚତୁର୍ଥ ଅଧ୍ୟାୟ ତୃତୀୟପାଦ ସମାପ୍ତ



# चतुर्थ अध्याय - चतुर्थ पाद
# ଚତୁର୍ଥ ଅଧ୍ୟାୟ - ଚତୁର୍ଥ ପାଦ

## १ संपद्याविर्भावाधिकरणम् ॥ सु. २-३ ॥
## ୧ । ସଂପଦ୍ୟାବିର୍ଭା ବାଧିକରଣମ୍ ॥ ସୂ ୧-୩ ॥

### संपद्याविर्भावः स्वेनशब्दात् ॥ ४-१-१ ॥
### ସଂପଦ୍ୟାବିର୍ଭାବଃ ସ୍ୱେନଶବ୍ଦାତ୍ ॥୪-୪-୧॥

ସଂପଦ୍ୟ=ପ୍ରକାଶରୂପ ଆତ୍ମାର ସାକ୍ଷାତ୍‌କାର କରି ସେହି ଆତ୍ମରୂପରେ ଆବିର୍ଭାବଃ=ବିଦ୍ୱାନ ଆବିର୍ଭୂତ ହୁଏ । ସ୍ୱେନଶବ୍ଦାତ୍=କାରଣ- 'ସ୍ୱେନରୂପେଣ' ଏହି ଶ୍ରୁତିରେ 'ସ୍ୱ' ଶବ୍ଦ ବିଦ୍ୟମାନ ।

ମୂଳ-(କ) ଏବମେବୈଷ ସଂପ୍ରାସାଦୋଽସ୍ମାଚ୍ଛରୀରାତ୍ ସମୁତ୍‌ଥାୟ ପରଂ ଜ୍ୟୋତିରୂପ ସଂପଦ୍ୟ ସ୍ୱେନ ରୂପେଣାଭି ନିଷ୍ପଦ୍ୟତ ଇତି ଶ୍ରୂୟତେ । ତତ୍ର ସଂଶୟଃ-କିଂ ଦେବଲୋକାଦ୍ୟୁପଭୋଗ ସ୍ଥାନେଷ୍ୱିବା ଗନ୍ତୁକେନ କେନଚିଦ୍‌ବିଶେଷେଣାଭି ନିଷ୍ପଦ୍ୟତେ, ଆହୋସ୍ୱିଦାତ୍ମ ମାତ୍ରେଣେତି ।

(ଖ) କିଂ ତାବତ୍‌ପ୍ରାପ୍ତମ୍ ? ସ୍ଥାନାନ୍ତରେଷ୍ୱିବା ଗନ୍ତୁକେନ କେନଚିଦ୍ରୂପେଣାଭି ନିଷ୍ପତ୍ତିଃ ସ୍ୟାତ୍, ମୋକ୍ଷସ୍ୟାପି ଫଳତ୍ୱ ପ୍ରସିଦ୍ଧେଃ । ଅଭି ନିଷ୍ପଦ୍ୟତ ଇତି ଚୋତ୍ପତ୍ତି ପର୍ଯ୍ୟାୟତ୍ୱାତ୍ ସ୍ୱରୂପମାତ୍ରେଣ ଚେଦଭି ନିଷ୍ପତ୍ତିଃ ପୂର୍ବାସ୍ୱପ୍ୟବସ୍ଥାସୁ ସ୍ୱରୂପାନପାୟାଦ୍ ବିଭାବ୍ୟେତ । ତସ୍ମାଦ୍ ବିଶେଷେଣ କେନଚିଦ୍‌ଭିନିଷ୍ପଦ୍ୟତ ଇତି ।

(ଗ) ଏବଂ ପ୍ରାପ୍ତେ ବ୍ରୂମଃ କେବଳେନୈବାତ୍ମନାଽଽବିର୍ଭବତି, ନ ଧର୍ମାନ୍ତରେଣେତି । କୁତଃ ? ସ୍ୱେନ ରୂପେଣାଭି ନିଷ୍ପଦ୍ୟତ ଇତି ସ୍ୱଶବ୍ଦାତ୍ । ଅନ୍ୟଥା ହି ସ୍ୱଶବ୍ଦେନୈତି ବିଶେଷଣମନକ୍ଳୃପ୍ତଂସ୍ୟାତ୍ ।

(ଘ) ନନ୍ୱାତ୍ମୀୟାଭିପ୍ରାୟଃ ସ୍ୱଶବ୍ଦୋ ଭବିଷ୍ୟତି । ନ, ତସ୍ୟାନିର୍ବଚନୀୟତ୍ୱାତ୍ । ଯେନୈବ ହି କେନଚିଦ୍ରୂପେଣାଭି ନିଷ୍ପଦ୍ୟତେ ତସ୍ୟୈବାତ୍ମୀୟତ୍ୱୋପପତ୍ତେଃ ସ୍ୱେନେତି ବିଶେଷଣ ମନର୍ଥକଂ ସ୍ୟାତ୍ । ଆତ୍ମବଚନତାୟାଂ ତ୍ୱର୍ଥବତ୍‌କେବଳେନୈବାତ୍ମ ରୂପେଣାଭି ନିଷ୍ପଦ୍ୟତେ; ନାଗନ୍ତୁକେନାପର ରୂପେଣାପୀତି ॥

ଭାଷା-(କ) 'ଏବମେବୈଷ' (ଏହିପ୍ରକାର ଜୀବ ଏହି ଶରୀରରୁ ସମୁତ୍‌ଥାନ କରି (ଦେହାତ୍ମଭାବ ତ୍ୟାଗ କରି) ଜ୍ୟୋତିଃ ସ୍ୱରୂପ ପରବ୍ରହ୍ମର ସାକ୍ଷାତ୍‌କାର କରି ଆତ୍ମସ୍ୱରୂପରେ ଆବିର୍ଭୂତ ହୁଏ) ଏହା ଶ୍ରୁତି ଅଟେ । ସେଠାରେ ସଂଶୟ ହୁଏ ଯେ- ଦେବଲୋକ କ'ଣ ଉପଭୋଗସ୍ଥାନ ସଦୃଶ କୌଣସି ଏକ ଆଗନ୍ତୁକ ସ୍ୱରୂପ ବିଶେଷରୁ ଅଭିନିଷ୍ପନ୍ନ ହୁଏ ଅଥବା ଆତ୍ମମାତ୍ରରେ ?

(ଖ) ତେବେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ-ଅନ୍ୟସ୍ଥାନ ପରି କୌଣସି ଏକ ଆଗନ୍ତୁକରୂପରେ ଅଭିନିଷ୍ପନ୍ନ ହେବା ଉଚିତ୍, କାରଣ ମୋକ୍ଷ ମଧ୍ୟ ଫଳରୂପରେ ପ୍ରସିଦ୍ଧ ହୁଏ । 'ଅଭିନିଷ୍ପଦ୍ୟତେ' ଏହା ଉତ୍ପତ୍ତିର ପର୍ଯ୍ୟାୟବାଚୀ ଶବ୍ଦ । ଯଦି ସ୍ୱରୂପମାତ୍ରରୁ ଅଭିନିଷ୍ପତ୍ତି ହେବେ ତେବେ ପୂର୍ବ ଅବସ୍ଥାରେ ମଧ୍ୟ ସ୍ୱରୂପର ଅବିନାଶ ହେବାରୁ ଜ୍ଞାତ ହେବା ଉଚିତ୍ । ତେଣୁ କୌଣସି ଏକ ବିଶେଷ ରୂପରେ ଅଭିନିଷ୍ପନ୍ନ ହୁଏ । ସିଦ୍ଧାନ୍ତ-

(ଗ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ କେବଳ ଆତ୍ମରୂପରେ ଆବିର୍ଭୂତ ହୁଏ । ଅନ୍ୟ ଧର୍ମରେ ନୁହେଁ । କାହିଁକି ? କାରଣ 'ସ୍ୱେନ ରୂପେଣ' (ନିଜ ରୂପରେ ଅଭିନିଷ୍ପନ୍ନ ହୁଏ) ଏଠାରେ ସ୍ୱଶବ୍ଦ ଅଟେ । ନୋଚେତ୍ ବିଶେଷଣୀଭୂତ 'ସ୍ୱେନ' ସ୍ୱଶବ୍ଦ ଅନୁପପନ୍ନ ହେବ ।

(ଘ) ପରନ୍ତୁ ଆତ୍ମୀୟ ଅଭିପ୍ରାୟଯୁକ୍ତ 'ସ୍ୱ' ଶବ୍ଦ ହେବ କି ? ନୁହେଁ; କାରଣ- ଏହି ସ୍ୱକୀୟ କହିବା ଯୋଗ୍ୟ ନୁହେଁ । ଯେକୌଣସି ରୂପରେ ତାହା ଅଭିନିଷ୍ପନ୍ନ ହେବ । ସେଠାରେ ଆତ୍ମୀୟତ୍ୱର ଉପପତ୍ତି ହେଲେ 'ସ୍ୱେନ' ଏହି ବିଶେଷଣ ଅନର୍ଥକ ହେବ ଏବଂ ଆତ୍ମବାଚୀ ହେଲେ କିନ୍ତୁ ତାହା ସାର୍ଥକ ହୁଏ । ତେଣୁ କେବଳ ଆତ୍ମରୂପରେ ହିଁ ଆବିର୍ଭୂତ ହୁଏ, କିନ୍ତୁ କୌଣସି ଅନ୍ୟ ଆଗନ୍ତୁକ ରୂପରେ ନୁହେଁ ॥୧॥

ମୂଳ- (କ) ପୁନର୍ବିଶେଷଃ ପୂର୍ବାସ୍ୱବସ୍ଥାସ୍ୱିହ ଚ ସ୍ୱରୂପାନପାୟସାମ୍ୟେ ସତୀତ୍ୟତ ଆହ-

ଭାଷା (କ) ପରନ୍ତୁ ସ୍ୱରୂପର ଅବିନାଶ ହେବାପରେ ପୂର୍ବାବସ୍ଥାଗୁଡ଼ିକ ଓ ସେହି ଅବସ୍ଥାରେ କ'ଣ ବିଶେଷ ଅଛି । ଏହି ବିଷୟରେ କୁହାଯାଇଛି ।

**मुक्तः प्रतीज्ञानात् ॥ ४-४-२ ॥**

**ମୁକ୍ତଃ ପ୍ରତିଜ୍ଞାନାତ୍ ॥୪-୪-୨॥**

ମୁକ୍ତଃ=ମୁକ୍ତପୁରୁଷ ପୂର୍ଣ୍ଣ ଆନନ୍ଦ ରୂପରେ ଅବସ୍ଥିତ ହୁଏ । ପ୍ରତିଜ୍ଞାନାତ୍=କାରଣ- 'ଏତଂତ୍ୱେବ ତେ' ଇତ୍ୟାଦି ଶ୍ରୁତିରେ ସଂପୂର୍ଣ୍ଣ ଅନ୍ୟାର୍ଥ ହେବାରୁ ମୁକ୍ତ ଆନନ୍ଦସ୍ୱରୂପ ଆତ୍ମାର ବ୍ୟାଖ୍ୟେୟ ରୂପରେ ପ୍ରତିଜ୍ଞା ହୋଇଛି ॥



ମୂଳ-(କ) ଯୋଽତ୍ରାଭିନିଷ୍ପଦ୍ୟତ ଇତ୍ୟୁକ୍ତଃ, ସ ସର୍ବବନ୍ଧ ବିନିର୍ମୁକ୍ତଃ ଶୁଦ୍ଧେନୈବାତ୍ମନାଽବ ତିଷ୍ଠତେ । ପୂର୍ବତ୍ର ତ୍ୱନ୍ଧୋ ଭବତ୍ୟପି ରୋଦତୀବ ବିନାଶ ମେବାପୀତୋ ଭବତୀତି-ତ୍ର୍ୟବସ୍ଥାତ୍ରୟ କଲୁଷି ତେନାତ୍ମନେତ୍ୟୟଂ ବିଶେଷଃ । କଥଂ ପୁନରବଗମ୍ୟତେ ମୁକ୍ତୋଽୟମିଦାନୀଂ ଭବତୀତି ? ପ୍ରତିଜ୍ଞାନାଦିତ୍ୟାହ ।

(ଖ) ତଥା ହି-'ଏତ ତ୍ୱେବଂତେ ଭୂୟୋଽନୁବ୍ୟାଖ୍ୟାସ୍ୟାମି' (ଛା ୮-୯-୩, ୮-୧୦-୪, ୮-୧୧-୩) ଇତ୍ୟବସ୍ଥାତ୍ରୟ ଦୋଷବିହୀନମାତ୍ମାନଂ ବ୍ୟାଖ୍ୟେୟତ୍ୱେନ ପ୍ରତିଜ୍ଞାୟ, 'ଅଶରୀରଂ ବାବସନ୍ତଂ ନ ପ୍ରିୟାପ୍ରିୟେ ସ୍ପୃଶତଃ' (ଛା ୮-୧୨-୧) ଇତି ଚୋପନସ୍ୟ 'ସ୍ୱେନ ରୂପେଣାଭି ନିଷ୍ପଦ୍ୟତେ ସ ଉତ୍ତମଃ ପୁରୁଷଃ' (ଛା ୮-୧୨-୩) ଇତି ଚୋପସଂହରନ୍ତି ।

(ଗ) ତଥାଽଽଖ୍ୟାୟିକୋପକ୍ରମେଽପି 'ଯ ଆତ୍ମାଽପହତପାପ୍ମା' (ଛା ୮-୭-୧) ଇତ୍ୟାଦି ମୁକ୍ତାତ୍ମ ବିଷୟମେବ ପ୍ରତିଜ୍ଞାନମ୍ । ଫଳତ୍ୱ ପ୍ରସିଦ୍ଧିରପି ମୋକ୍ଷସ୍ୟ ବନ୍ଧନିବୃତ୍ତି ମାତ୍ରାପେକ୍ଷା ନାପୂର୍ବୋପଜନନାପେକ୍ଷା । ଯଦ୍ୟପ୍ୟଭିନିଷ୍ପଦ୍ୟତ ଇତ୍ୟୁତ୍ପତ୍ତି ପର୍ଯ୍ୟାୟତ୍ୱଂ ତଦପି ପୂର୍ବାବସ୍ଥାପେକ୍ଷମ୍-ଯଥା ରାଗନିବୃତାବ୍ ରୋଗୋଽଭିନିଷ୍ପଦ୍ୟତ ଇତି ତଦ୍‌ବତ୍ । ତସ୍ମାଦ ଦୋଷଃ ॥

ମୂଳ (ଖ) ଏଠାରେ 'ଅଭିନିଷ୍ପଦ୍ୟତେ' ଶବ୍ଦଦ୍ୱାରା କୁହାଯାଇଛି-ସେ ସଂପୂର୍ଣ୍ଣ ବନ୍ଧରୁ ମୁକ୍ତହୋଇ ଶୁଦ୍ଧ ଆତ୍ମରୂପରେ ଅବସ୍ଥିତ ହୁଏ । ପୂର୍ବ ଅବସ୍ଥାରେ 'ଅନ୍ଧୋ ଭବତି' (ଜାଗ୍ରଦବସ୍ଥାରେ ଅନ୍ଧ ହୁଏ), 'ଅପି ରୋଦତୀବ' (ସ୍ୱପ୍ନାବସ୍ଥାରେ ଆହତ ହୋଇ ଅଥବା ପ୍ରିୟବସ୍ତୁର ବିନାଶରୁ କ୍ରନ୍ଦନ କରେ), 'ବିନାଶମେପାପୀତୋ' (ସୁଷୁପ୍ତିରେ ବିଶେଷଜ୍ଞାନ ନହେଲେ ବିନାଶକୁ ପ୍ରାପ୍ତ ହୁଏ), ଏହିପରି ତିନୋଟି ଅବସ୍ଥାରେ କଳୁଷିତ ଆତ୍ମରୂପରେ ରହିଥାଏ । ଏହା ବିଶେଷ ଅଟେ । ପରନ୍ତୁ ବର୍ତ୍ତମାନ ମୁକ୍ତହୁଏ ବୋଲି କିପରି ଜଣାପଡ଼େ ? ପ୍ରତିଜ୍ଞା ଦ୍ୱାରା ବୋଲି କୁହାଯାଇଛି ।

(ଖ) କାରଣ- 'ଏତଂ ତ୍ୱେବ' (ମୁଁ ତୁମ୍ଭଙ୍କୁ ଏହି ଆତ୍ମା ବିଷୟରେ ପୁନଃ ବ୍ୟାଖ୍ୟାନ କରିବି), ଏହିପରି ଅବସ୍ଥାତ୍ରୟର ଦୋଷରହିତ ଆତ୍ମାର ବ୍ୟାଖ୍ୟେୟରୂପରେ ପ୍ରତିଜ୍ଞା କରି 'ଅଶଂରୀରଂ ଦାବ ସନ୍ତଂ' (ଏହି ଅଶରୀର ଭୂତ ଆତ୍ମାକୁ ପ୍ରିୟ ଓ ଅପ୍ରିୟ ସ୍ପର୍ଶ କରେ ନାହିଁ) ଏହିପରି ଆରମ୍ଭ କରି 'ସ୍ୱେନ ରୂପେଣ' (ସ୍ୱରୂପରେ ଯିଏ ଅଭିନିଷ୍ପନ ହୁଏ, ସେ ଉତ୍ତମ ପୁରୁଷ ଅଟେ) ଏହା ଉପସଂହାର କରନ୍ତି ।

(ଗ) ସେହିପରି ଆଖ୍ୟାୟିକାର ଉପକ୍ରମରେ 'ଯ ଆତ୍ମା' (ଏହି ଆତ୍ମା ପାପରହିତ ଅଟେ) ଇତ୍ୟାଦି ମୁକ୍ତ ଆତ୍ମବିଷୟକ ପ୍ରତିଜ୍ଞାନ ଅଛି ଏବଂ ମୋକ୍ଷରେ ଫଳତ୍ୱସିଦ୍ଧି ମଧ୍ୟ ବନ୍ଧ ନିବୃତ୍ତିମାତ୍ରର ଅପେକ୍ଷାରେ ରହେ । ଅପୂର୍ବ ଉତ୍ପତ୍ତିକୁ ଅପେକ୍ଷା କରେ ନାହିଁ । ଯଦ୍ୟପି 'ଅଭିନିଷ୍ପଦ୍ୟତେ' ଏହା ଉତ୍ପତ୍ତିର ପର୍ଯ୍ୟାୟ ଅଟେ । ତଥାପି ମଧ୍ୟ ସେ ପୂର୍ବାବସ୍ଥାକୁ

ଅପେକ୍ଷା କରେ । ଯେପରି ରାଗ ନିବୃତ୍ତି ହେଲେ ଅରୋଗ ଅଭିନିଷ୍ପନ୍ନ ହୁଏ, ସେହିପରି ଏଠାରେ କୌଣସି ଦୋଷ ନାହିଁ ବୋଲି ଅବଗତ ହେବାକୁ ପଡ଼ିବ ॥୨॥

**आत्मा प्रकरणात्  ॥ ४-४-३ ॥**

**ଆତ୍ମା ପ୍ରକରଣାତ୍  ॥ ୪-୪-୩ ॥**

ଆତ୍ମା=ଏଠାରେ ଆତ୍ମାର ଜ୍ୟୋତିଃଶବ୍ଦରୁ ପ୍ରତିପାଦିତ ହୁଏ । ପ୍ରକରଣାତ୍=କାରଣ 'ଯ ଆତ୍ମା' ଏହିପ୍ରକାର ତାହାର ପ୍ରକରଣ ଅଛି ॥

ମୂଳ-(କ) କଥଂ ପୁନର୍ମୁକ୍ତ ଇତ୍ୟୁଚ୍ୟତେ ? ଯାବତା 'ପରଂ ଜ୍ୟୋତିରୂପସଂପଦ୍ୟ' (ଛା ୮-୧୨-୩) ଇତି କାର୍ଯ୍ୟଗୋଚରମେବୈନଂ ଶ୍ରାବୟତି, ଜ୍ୟୋତିଃଶବ୍ଦସ୍ୟ ଭୌତିକେ ଜ୍ୟୋତିଷି ଭୂତତ୍ୱାତ୍ । ନ ନାନତିବୃତୋ ବିକାରବିଷୟାତ୍ କଶ୍ଚିନ୍ମୁକ୍ତୋ ଭବିତୁମର୍ହତି, ବିକାରସାର୍ତ୍ତତ୍ୱପ୍ରସିଦ୍ଧେରିତି ।

(ଖ) ନୈଷ ଦୋଷଃ; ଯତ ଆତ୍ମୈରାତ୍ର ଜ୍ୟୋତିଃଶବ୍ଦେନାବେଦ୍ୟତେ, ପ୍ରକରଣାତ୍, 'ଯ ଆତ୍ମାଽପହତପାପ୍ମା ବିଜରୋ ବିମୃତ୍ୟୁଃ' (ଛା ୮-୭-୧) ଇତି ହି ପ୍ରକୃତେ ପରସ୍ମିନ୍ନାତ୍ମନି ନାକସ୍ମାଦ୍ ଭୌତିକଂ ଜ୍ୟୋତିଃ ଶକ୍ୟଂ ଗ୍ରହୀତୁମ୍, ପ୍ରକୃତହାନାପ୍ରକୃତପ୍ରକ୍ରିୟାପ୍ରସଙ୍ଗାତ୍ । ଜ୍ୟୋତିଃଶବ୍ଦସ୍ତାତ୍ମନ୍ୟପି ଦୃଶ୍ୟତେ - 'ତଦ୍ଦେବା ଜ୍ୟୋତିଷାଂ ଜ୍ୟୋତିଃ (ବୃହ ୪-୪-୧୬) ଇତି । ପ୍ରପଞ୍ଚିତଂ ଚୈତତ୍-'ଜ୍ୟୋତିଃଦର୍ଶନାତ୍' (ବ୍ର. ସୂ. ୧-୩-୪୦) ଇତ୍ୟତ୍ର ॥

ଭାଷା-(କ) ପରନ୍ତୁ ପରଂ ଜ୍ୟୋତିରୂପସଂପଦ୍ୟ (ପରଜ୍ୟୋତିକୁ ପ୍ରାପ୍ତ ହୋଇ ସ୍ୱାତ୍ମରୂପରେ ଅବସ୍ଥିତ ରହେ) ଏହି ଶ୍ରୁତି ଏହି କାର୍ଯ୍ୟବିଷୟକ ଶ୍ରବଣ କରେ । କିନ୍ତୁ ମୁକ୍ତ ହୁଏ ବୋଲି କାହିଁକି କୁହାଯାଇଛି ? କାରଣ ଜ୍ୟୋତିଃଶବ୍ଦ ଭୌତିକ ଜ୍ୟୋତିରେ ରୂଢ ହୁଏ । କାର୍ଯ୍ୟବିଷୟର ଅନତିକ୍ରମଣ କରି କିଏ ମୁକ୍ତ ହୁଏ ନାହିଁ । କାରଣ-ବିକାର ଦୁଃଖ ରୂପରେ ପ୍ରତିଭାତ ହେଉଛି ।

(ଖ) ଏହା ମଧ୍ୟ ଦୋଷ ନୁହେଁ । କାରଣ-ଏଠାରେ ଆତ୍ମା ଜ୍ୟୋତିଃଶବ୍ଦ ଦ୍ୱାରା କୁହାଯାଇଛି । କାରଣ ତାହାର ପ୍ରକରଣ ରହିଛି । 'ଯ ଆତ୍ମା' (ଯେଉଁ ଆତ୍ମା ପାପ ରହିତ ଜରାରହିତ ଏବଂ ମୃତ୍ୟୁରହିତ) ଏହି ପ୍ରକୃତ ପରମାତ୍ମାରେ ଅକସ୍ମାତ୍ ଭୌତିକ ଜ୍ୟୋତିରେ ଗ୍ରହଣ କରାଯାଏ ନାହିଁ, କାରଣ-ଏହା ସ୍ୱୀକାର କଲେ ପ୍ରକୃତିହାନି ଓ ଅପ୍ରକୃତ କ୍ରିୟାର ପ୍ରସଙ୍ଗ ହେବ । ଜ୍ୟୋତିଃଶବ୍ଦ କିନ୍ତୁ 'ତଦ୍ଦେବା' (ତାହାକୁ ଦେବତାଲୋକ ଜ୍ୟୋତିର ଉପାସନା ଜ୍ୟୋତିରୂପରେ କରନ୍ତି) ଏହିପରି ଆତ୍ମାରେ ଦେଖାଯାଏ । ତାହାର 'ଜ୍ୟୋତିଦର୍ଶନାତ୍' ଏହି ସୂତ୍ରରେ ବିସ୍ତୃତଭାବେ ବିଚାର କରାଯାଇଅଛି ॥୩॥



## २। अविभागेन दृष्टत्वाधिकरणम् ॥ सू० ४ ॥

## ୨ । ଅଭିଭାଗେନ ଦୃଷ୍ଟତ୍ୱାଧିକରଣମ୍ ॥ସୂ-୪॥

## अविभागेन दृष्टत्वात् ॥ ४-४-४ ॥

## ଅଭିଭାଗେନ ଦୃଷ୍ଟତ୍ୱାତ୍ ॥୪-୪-୪॥

ଅବିଭାଗେନ=ମୁକ୍ତପୁରୁଷ ପରବ୍ରହ୍ମରେ ଅବିଭକ୍ତ ହୋଇ ଅବସ୍ଥିତ ରହେ । ଦୃଷ୍ଟତ୍ୱାତ-କାରଣ - 'ବ୍ରହ୍ମୈବ ସନ୍ ବ୍ରହ୍ମପ୍ୟେତି' ଇତ୍ୟାଦି ଶ୍ରୁତିରେ ଅଭେଦ ଦେଖାଯାଏ ॥

ମୂଳ-(କ) ପରଂ ଜ୍ୟୋତିରୂପସଂପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତେ ଯଃ ସକିଂ ପରସ୍ମାଦାତ୍ମନଃ ପୃଥଗେବ ଭବତ୍ୟୁତାବିଭାଗେନୈବାତିଷ୍ଠତ ଇତି ବୀକ୍ଷାୟାମ୍ 'ସ ତତ୍ର ପର୍ଯ୍ୟେତି' (ଛା ୮-୧୨-୩), ଇତ୍ୟଧିକରଣାଧିକର୍ତ୍ତବ୍ୟନିର୍ଦ୍ଦେଶାତ୍ ଜ୍ୟୋତିରୂପସଂପଦ୍ୟ' (ଛା ୮-୧୨-୩) ଇତି କର୍ତ୍ତୃକର୍ମନିର୍ଦ୍ଦେଶାଦ୍‌ଭେଦେନୈବାବସ୍ଥାନମିତି ଯସ୍ୟ ମତିସ୍ତଂ ବ୍ୟୁତ୍ପାଦୟତ୍ୟବିଭକ୍ତ ଏବ ପରେଣାତ୍ମନା ମୁକ୍ତୋଽବତିଷ୍ଠତେ ।

(ଖ) କୁତଃ ? ଦୃଷ୍ଟତ୍ୱାତ୍ । ତଥାହି 'ତତ୍ତ୍ୱମସି (ଛା ୬-୮-୭), 'ଅହଂ ବ୍ରହ୍ମାସ୍ମି' (ବୃ ୧-୪-୧୦), 'ଯତ୍ର ନାନ୍ୟତ୍ ପଶ୍ୟତି' (ଛା ୭-୨୪-୧), 'ନ ତୁ ତଦ୍‌ଦ୍ୱିତୀୟମସ୍ତି ତତୋଽନ୍ୟଦ୍‌ବିଭକ୍ତଂ ଯତ୍ ପଶ୍ୟେତ୍' (ଛା ୪-୩-୩୩) ଇଷତ୍ୟବମାଦୀନି ବାକ୍ୟାନ୍ୟ-ବିଭାଗନୈବ ପରମାତ୍ମାନଂ ଦର୍ଶୟନ୍ତି । ଯଥାଦର୍ଶନମେବ ଚ ଫଳଂ ଯୁକ୍ତମ୍, ତତ୍‌କ୍ରତୁନ୍ୟାୟାତ୍ ।

(ଗ) ଯଥୋଦକଂ ଶୁଦ୍ଧେ ଶୁଦ୍ଧମାସିକ୍ତଂ ତାଦୃଗେବ ଭବତ । ଏବଂ ମୁନେର୍ବିଜାନତ ଆତ୍ମା ଭବତି ଗୌତମ' (କ-୧୫) ଇତ ଚୈବମାଦୀନି ମୁକ୍ତସ୍ୱରୂପନିରୂପଣରାଣି ବାକ୍ୟାନ୍ୟବିଭାଗମେବ ଦର୍ଶୟନ୍ତି । ନଦୀସମୁଦ୍ରାବିନିଦର୍ଶନାନି ଚ । ଭେଦନିର୍ଦ୍ଦେଶସ୍ତୁ ଭେଦେଽପ୍ୟୁପଚର୍ଯ୍ୟତେ । ସ ଭଗବଃ କସ୍ମିନ୍ ପ୍ରତିଷ୍ଠିତଃ ଇତି ସ୍ୱେ ମହିମ୍ନି (ଛା୭-୨୪-୧) ଇତି, 'ଆତ୍ମରତିରାତ୍ମକ୍ରୀଡ଼' (ଛା ୭-୨୫-୨) ଇତି ଚୈବମାଦିଦର୍ଶନାତ୍ ॥

ଭାଷା-(କ) ପରଜ୍ୟୋତିକୁ ପ୍ରାପ୍ତ ହୋଇ ଆତ୍ମରୂପରେ ଅଭିନିଷ୍ପନ୍ନ ହୁଏ । ସେ କ'ଣ ପରମାତ୍ମାରୁ ପୃଥକ୍ ଅଥବା ଅଭେଦ ହୋଇ ରହେ । ଏହିପ୍ରକାର ବିଚାର ହେବାରୁ 'ସ ତତ୍ର ପର୍ଯ୍ୟେତି' (ସେ ନିଜ ଆତ୍ମାରେ ରହି ସବୁଦିଗକୁ ସଞ୍ଚାର କରେ) ଏଠାରେ ଅଧିକରଣ ଓ ଅଧିକର୍ତ୍ତବ୍ୟ ନିର୍ଦ୍ଦେଶ ହେବାରୁ ଏବଂ 'ଜ୍ୟୋତିରୂପସଂଦ୍ୟ' ଏଠାରେ କର୍ତ୍ତା ଓ କର୍ମର ନିର୍ଦ୍ଦେଶ ହେବାରୁ ମୁକ୍ତପୁରୁଷ ପରମାତ୍ମାଠାରୁ ଭିନ୍ନ ହୋଇ ରହେ । ଏହିପରି ବୁଦ୍ଧି ଯାହାକୁ ହେଉ, ତାହାକୁ ଆମ୍ଭେ କହୁଁ-ମୁକ୍ତ ପୁରୁଷ ପରମାତ୍ମାଠାରୁ ଅବିଭକ୍ତ ହୋଇ ରହିଥାଏ ।

(ଖ କିପରି ? ଦେଖାଯିବାରୁ । ଯେପରି 'ତତ୍ତ୍ୱମସି' 'ଅହଂ ବ୍ରହ୍ମାସ୍ମି', 'ଯତ୍ର ନାନ୍ୟତ୍ ପଶ୍ୟତି, ନ ତୁ ତଦ୍' (ସେ ସେହି ସମୟରେ ଅନ୍ୟ କିଛି ବସ୍ତୁ ଦେଖିପାରେ ନାହିଁ) ଇତ୍ୟାଦିବାକ୍ୟ ଅବିଭାଗଦ୍ୱାରା ପରମାତ୍ମାକୁ ଦେଖାଏ ଏବଂ ଦର୍ଶନ ଅନୁସାରେ ତତ୍କ୍ରତୁନ୍ୟାୟରେ ଫଳଯୁକ୍ତ ହୁଏ ।

(ଗ) 'ଯଥୋଦକଂ' (ଯେପରି ଶୁଦ୍ଧ ଜଳରେ ଶୁଦ୍ଧ ଜଳ ଢଳାଗଲେ, ତାହା ସେହିପରି ରହେ, ସେପରି ହେ ଗୌତମ ! ବିଜ୍ଞାନୀ ମଧ୍ୟ ମୁନିର ଆତ୍ମା ହୋଇଯାଏ) ଇତ୍ୟାଦି ମୁକ୍ତିସ୍ୱରୂପ ନିରୂପଣ ପରକ ବାକ୍ୟ ଓ ନଦୀ, ସମୁଦ୍ରାଦି ଦୃଷ୍ଟାନ୍ତ ଅବିଭାଗ ଦେଖାଏ । ଭେଦନିର୍ଦ୍ଦେଶ କିନ୍ତୁ ସ ଭଗବୋ' (ନାରଦ-ହେ ଭଗବାନ୍ ! ସେହି ଭୂମା କୌଣସିଠାରେ ପ୍ରତିଷ୍ଠିତ କି ? ସନତ୍ କୁମାର-ନିଜର ମହିମାରେ), ଏବଂ 'ଆତ୍ମରତଃ' (ସେହି ଜାଣି ଆତ୍ମରତି ଓ ଆତ୍ମକ୍ରୀଡ଼ ହୁଏ) ଇତ୍ୟୋଦି ଦର୍ଶନରେ ଅଭେଦରେ ଉପଚରିତ ହୁଏ ॥୪॥

## ३ । ब्राह्याधिकरणम् ॥ सू. ५-७ ॥

## ୩। ବ୍ରାହ୍ୟାଧିକରଣମ୍ ॥ ସୂ ୫-୭ ॥

## ब्राह्मेण जैमिनिरूपन्यापादिभ्य: ॥ ४-४-५ ॥

## ବ୍ରାହ୍ମେଣ ଜୈମିନିରୂପନ୍ୟାସାଦିଭ୍ୟଃ ॥୪-୪-୫॥

ବ୍ରାହ୍ମେଣ=ମୁକ୍ତପୁରୁଷ ସର୍ବଜ୍ଞତ୍ୱ, ସର୍ବେଶ୍ୱରତ୍ୱ ସ୍ୱରୂପରେ ରହେ । ଜୈମିନିଃ ଏହା ଜୈମିନି ସ୍ୱୀକାର କରନ୍ତି । ଉପନ୍ୟାସାଦିଭ୍ୟଃ-କାରଣ-ଉପନ୍ୟାସାଦି ହେତୁରୁ ଏହା ଅବଗତ ହୁଏ ॥

ମୂଳ (କ) ସ୍ଥିତମେତତ୍-ସ୍ୱେନ ରୂପେଣ' (ଛା ୮-୩-୪) ଇତ୍ୟତ୍ରାତ୍ମମାତ୍ରରୂପେଣ ଭିନିଷ୍ପଦ୍ୟତେ, ନାଗନ୍ତୁକେନାପରରୂପେଣେତି । ଅଧୁନା ତୁ ତଦ୍ବିଶେଷବୁଭୁତ୍ସାୟା-ମଭିଧୀୟତେ- ସ୍ୱମସ୍ୟ ରୂପଂ ବ୍ରାହ୍ମମପହତ ପାପ୍ମତ୍ୱାଦିସତ୍ୟସଙ୍କଳ୍ପତ୍ୱାବସାନଂ ତଥା ସର୍ବଜ୍ଞତ୍ୱଂ ଚ ତେନ ସ୍ୱରୂପେଣାଭିନିଷ୍ପଦ୍ୟତ ଇତି ଜୈମିନିରାଚାର୍ଯ୍ୟୋ ମନ୍ୟତେ । କୁତଃ ? ଉପନ୍ୟାସାଦିଭ୍ୟସ୍ତଥାତ୍ୱାବଗମାତ୍ ।

(ଖ) ତଥାହି 'ଯ ଆତ୍ମାଽପହତପାପ୍ମା' (ଛା ୮-୭-୧) ଇତ୍ୟାଦିନା 'ସତ୍ୟକାମଃ ସତ୍ୟ ସଙ୍କଳ୍ପଃ (ଛା ୮-୭-୧) ଇତ୍ୟେବମନ୍ତେନୋପନ୍ୟାସେନୈବମାତ୍ମକତାମାତ୍ମନୋ ବୋଧୟତି । ତଥା 'ସ ତତ୍ର ପର୍ଯ୍ୟେତି ଜକ୍ଷନ୍ କ୍ରୀଡ଼ନ୍ ରମମାଣଃ' (ଛା ୮-୧୨-୩) ଇତ୍ୟୈଶ୍ୱର୍ଯ୍ୟରୂପମାବେଦୟତି । 'ତସ୍ୟ ସର୍ବେଷୁ ଲୋକେଷୁ କାମଚାରୋ ଭବତି (ଛା ୭-୨୫-୨) ଇତି ଚ । 'ସର୍ବଜ୍ଞଃ ସର୍ବେଶ୍ୱରଃ' ଇତ୍ୟାଦିବ୍ୟପଦେଶାଶ୍ଚୈବମୁପପନ୍ନା ଭବିଷ୍ୟନ୍ତୀତି ॥



ଭାଷା-(କ) 'ସ୍ୱେନ ରୂପେଣ' (ଆତ୍ମରୂପରେ ଅଭିନିଷ୍ପ ହୁଏ) ଏହି ଶ୍ରୁତିରେ କେବଳ ଆତ୍ମରୂପରେ ଅଭିନିଷ୍ପନ୍ନ ହୁଏ । କିନ୍ତୁ କୌଣସି ଅନ୍ୟଥା ଗନ୍ତୁକ ରୂପରେ ନୁହେଁ । ବର୍ତ୍ତମାନ କିନ୍ତୁ ସେହି ବିଷୟରେ ଜାଣିବାକୁ ଇଚ୍ଛା କରି କହନ୍ତି ଯେ- ତାହାର ନିଜର ବ୍ରାହ୍ମରୂପ ଅପହତପାପ୍ମତ୍ୱାଦିଠାରୁ ସତ୍ୟସଙ୍କଳ୍ପ ପର୍ଯ୍ୟନ୍ତ ତଥା ସର୍ବଜ୍ଞତ୍ୱ, ସର୍ବେଶ୍ୱରତ ଅଟନ୍ତି । ସେହି ସ୍ୱରୂପରେ ଅଭିନିଷ୍ପନ୍ନ ହୁଅନ୍ତି ବୋଲି ଆଚାର୍ଯ୍ୟ ଜୈମିନି ସ୍ୱୀକାର କରନ୍ତି । କିପରି ? ଉପନ୍ୟାସାଦି କାରଣରୁ ସେହିପରି ଅବଗତ ହୁଅନ୍ତି ।

(ଖ) କାରଣ ଯ ଆତ୍ମାଽପହତପାପ୍ମା ଇତ୍ୟାଦିଠାରୁ ସତ୍ୟକାମଃ ସତ୍ୟସଙ୍କଳ୍ପଂ ପର୍ଯ୍ୟନ୍ତ ଉପନ୍ୟାସ କରି ଆତ୍ମାର ସ୍ୱରୂପତ୍ୱକୁ ବୋଧ କରାନ୍ତି । ସେହିପରି 'ସତତ୍ର ପର୍ଯ୍ୟେତି' (ସେ ସଂପ୍ରସାଦ ଜୀବ ନିଜର ଆତ୍ମସ୍ୱରୂପରେ ରହେ, ସେହି ଅବସ୍ଥାରେ କାହାକୁ ଭକ୍ଷଣ, ରମଣ କରି ଓ ହସି ବିଚରଣ କରେ) ଏହିପ୍ରକାର ଐଶ୍ୱର୍ଯ୍ୟ ରୂପର ଆବେଦନ କରନ୍ତି । 'ତସ୍ୟ ସର୍ବେଷ୍ଣୁ (ସବୁଲୋକରେ ତାହାର ଯଥେଚ୍ଛ ଗତି ଅଛି) ଏହି ଶ୍ରୁତି ରହିଛି । 'ସର୍ବଜ୍ଞ ସର୍ବେଶ୍ୱରଃ' ଇତ୍ୟାଦି ବ୍ୟପଦେଶ ମଧ୍ୟ ସେହିପରି ସ୍ୱୀକାର କଲେ ଉପପନ୍ନ ହେବ ॥୫॥

## चिन्तितमात्रेण तदात्मकत्वादित्यौडुलोमिः ॥ ४-४-६ ॥

## ଚିନ୍ତିତମାତ୍ରେଣ ତଦାତ୍ମକତ୍ୱାଦିତ୍ୟୌଡୁଲୋମିଃ ॥୪-୪-୬॥

ତଦାତ୍ମକତ୍ୱାତ୍=ଜୀବର ଚୈତନ୍ୟରୂପ ହେଲେ, ଚିନ୍ତିତମାତ୍ରେଣ=ମୁକ୍ତପୁରୁଷ କେବଳ ଚୈତନ୍ୟରୂପରେର ରହେ । ଇତି ଔଡୁଲୋମିଃ=ଏହା ଆଚାର୍ଯ୍ୟ ଓ ଔଡୁଲୋମି ସ୍ୱୀକାର କରନ୍ତି ॥

ମୂଳ-(କ) ଯଦ୍ୟପ୍ୟପହତପାପ୍ମତ୍ୱାଦୟେ ଭେଦେନୈବ ଧର୍ମା ନିର୍ଦ୍ଦିଶ୍ୟନ୍ତେ, ତଥାପି ଶବ୍ଦ ବିକଳ୍ପନା ଏବୈତେ । ପାପ୍ମାଦିନିବୃତ୍ତିମାତ୍ରଂ ହି ତତ୍ର ଗମ୍ୟନ୍ତେ । ଚୈତନ୍ୟମେବ ତ୍ୱସ୍ୟାତ୍ମନଃ ସ୍ୱରୂପମିତି ତନ୍ମାତ୍ରେଣ ସ୍ୱରୂପେଣାଭିନିଷ୍ପତ୍ତିର୍ଯୁକ୍ତା । ତଥା ଚ ଶ୍ରୁତିଃ-ଏବଂ ବା ଅରେଽୟମାତ୍ମାନନ୍ତରୋଽବାହ୍ୟଃ କୃତ୍ସ୍ନଃ ପ୍ରଜ୍ଞାନଘନ ଏବ' (ବୃହ ୪-୫-୧୩ ଇତ୍ୟେବଂ-ଜାତୀୟକାନୁଗୃହୀତା ଭବିଷ୍ୟତି ।

(ଖ) ସତ୍ୟକାମତ୍ୱାଦୟସ୍ତୁ ଯଦ୍ୟପି ବସ୍ତୁସ୍ୱରୂପେଣୈବ ଧର୍ମା ଉଚ୍ୟନ୍ତେ ସତ୍ୟାଃ କାମା ଅସ୍ୟେତି, ତଥାପ୍ୟୁପାଧିସମ୍ବନ୍ଧାଧୀନତ୍ୱାତ୍ତେଷାଂ ନ ଚୈତନ୍ୟବତ୍ ସ୍ୱରୂପତ୍ୱସମ୍ଭବଃ, ଅନେକାକାରତ୍ୱପ୍ରତିଷେଧାତ୍ । ପ୍ରତିଷିଦ୍ଧଂ ହି ବ୍ରହ୍ମଣୋଽନେକାକାରତ୍ୱମ୍- 'ନ ସ୍ଥାନତୋଽପି ପରସ୍ୟୋଭୟଲିଙ୍ଗମ୍ (ବ୍ର. ସୂ: ୩-୨-୧୧) ଇତ୍ୟତ୍ର ।

(ଗ) ଅତଏବଚ ଜକ୍ଷଣାଦି ସଂକୀର୍ତ୍ତନମପି ଦୁଃଖାଭାବମାତ୍ରାଭିପ୍ରାୟଂ ସ୍ତୁତ୍ୟର୍ଥମାତ୍ମ-ରତିରିତ୍ୟାଦିବତ୍ । ନହି ମୁଖ୍ୟାନ୍ୟେବ ରତିକ୍ରୀଡ଼ାମିଥୁନାନ୍ୟାତ୍ମନି ଶକ୍ୟନ୍ତେ ବର୍ଣ୍ଣୟିତୁଂ ଦ୍ୱିତୀୟବିଷୟତ୍ୱାତ୍ତେଷାମ୍ ତସ୍ମିନ୍ନିରସ୍ତାଶେଷପ୍ରପଞ୍ଚେନ ପ୍ରସନ୍ନେନାବ୍ୟପଦେଶେନ ବୋଧାତ୍ମନାଽଭିନିଷ୍ପଦ୍ୟତ ଇତ୍ୟୌଡୁମିରାଚାର୍ଯ୍ୟୋ ମନ୍ୟତେ ॥

ଭାଷା-(କ) ଯଦ୍ୟପି ଅପହତପାପ୍ମତ୍ୱାଦି ଧର୍ମଭେଦରୁ ନିର୍ଦ୍ଦିଷ୍ଟ ହୁଏ, ତଥାପି ସେହି ଧର୍ମ ଶବ୍ଦବିକଳ୍ପରୁ ଉତ୍ପନ୍ନ ହୁଅନ୍ତି, କାରଣ ସେଠାରେ କେବଳ ପାପାଦିର ନିବୃତ୍ତି ଜ୍ଞାନ ହୁଏ । ପରନ୍ତୁ ଚୈତନ୍ୟ ହିଁ ଆତ୍ମାର ସ୍ୱରୂପ । ତେଣୁ କେବଳ ସେହି ଚୈତନ୍ୟରେ ଅଭିନିଷ୍ପନ୍ନ ହୁଏ । ତେଣୁ 'ଏବଂ ବା ଅରେ' (ଯାଜ୍ଞବଲ୍କ୍ୟ ହେ ମୈତ୍ରେୟି । ସେହିପରି ଏହି ଆତ୍ମା ବାହ୍ୟଭେଦରେ ଶୂନ୍ୟ ସଂପୂର୍ଣ୍ଣ ପ୍ରଜ୍ଞାନଘନ ଅଟେ) ଏହିପରି ଶ୍ରୁତି ଅନୁଗୃହୀତ ହେବ ।

(ଖ) ପରନ୍ତୁ ସତ୍ୟକାମ ହିଁ ଏହାର ସେହି ସତ୍ୟକାମ ଅଟେ-ଏହି ବ୍ୟୁତ୍ପତ୍ତିରୁ ଯଦ୍ୟପି ସତ୍ୟକାମତ୍ୱାଦି ଧର୍ମ ବସ୍ତୁ ରୂପରେ କୁହାଯାଇଛି । କିନ୍ତୁ ଉପାଧିସମ୍ବନ୍ଧର ଅଧୀନ ହେଲେ ମଧ୍ୟ ସେଠାରେ ଚୈତନ୍ୟପରି ସ୍ୱରୂପ ସମ୍ଭବ ହୁଏ ନାହିଁ; କାରଣ-ଆତ୍ମାରେ ଅନେକାକାରତ୍ୱର ପ୍ରତିଷେଧ ହୁଏ । 'ନ ସ୍ଥାନତୋଽପି' । 'ପରସ୍ୟୋଭୟଲିଙ୍ଗମ୍ ଏହି ସୂତ୍ରରେ ବ୍ରହ୍ମରେ ଅନେକାକାରତ୍ୱର ପ୍ରତିଷେଧ କରାଯାଇଅଛି ।

(ଗ) ଅତଏବ ଭକ୍ଷଣାଦି ସଂକୀର୍ତ୍ତନ ମଧ୍ୟ ଦୁଃଖ ଅଭାବମାତ୍ରର ଅଭିପ୍ରାୟ ଦ୍ୱାରା ରହିଛି ଏବଂ ସେହି ଆତ୍ମର ପ୍ରଭୃତି ପରି ସ୍ତୁତ୍ୟର୍ଥକ ଅଟେ । କାରଣ-ରତି, କ୍ରୀଡ଼ା, ମୈଥୁନ ଆତ୍ମାରେ ମୁଖ୍ୟ ରୂପରେ ବର୍ଣ୍ଣନ କରାଯାଏ ନାହିଁ; କାରଣ- ସେମାନେ ଅନ୍ୟବିଷୟକ ଅଟନ୍ତି । ତେଣୁ ସମସ୍ତ ପଞ୍ଚରହିତ ପ୍ରସନ୍ନ ଅବ୍ୟପଦେଶ୍ୟ ବୋଧରୂପଦ୍ୱାରା ଅଭିନିଷ୍ପନ୍ନ ହୁଏ-ଏହା ଔଡୁଲୋମି ଆଚାର୍ଯ୍ୟ ସ୍ୱୀକାର କରନ୍ତି ॥୬॥

**एवमप्युपन्यासात्पूर्वभावादविरोधं वादरायण: ॥ ४-४-७ ॥**

**ଏବମ୍ପ୍ୟୁପନ୍ୟାସାତ୍ପୂର୍ବଭାବାଦବିରୋଧଂ ବାଦରାୟଣଃ ॥୪-୪-୭॥**

ଏବମପି=ଏହା ହେବାପରେ, ଉପନ୍ୟାସାତ୍=ପୂର୍ବୋକ୍ତ ଉପନ୍ୟାସାଦି-ହେତୁଦ୍ୱାରା, ପୂର୍ବଭାବାତ୍=ପ୍ରଥମ ବ୍ରହ୍ମର ସର୍ବଜ୍ଞତ୍ୱାଦି ବ୍ୟବହାରିକ ହେବାରୁ ମୁକ୍ତ ଆତ୍ମାରେ, ଅବିରୋଧଃ=ବିରୋଧ ହୁଏ ନାହିଁ । ବାଦରାୟଣଃ=ଏହା ବାଦରାୟଣ ଆଚାର୍ଯ୍ୟଙ୍କର ମତ ଅଟେ ॥

ମୂଳ-(କ) ଏବମପି ପାରମାର୍ଥିକଚୈତନ୍ୟମାତ୍ରସ୍ୱରୂପାଭ୍ୟୁପଗମେଽପି ବ୍ୟବହାରା-ପେକ୍ଷୟା ପୂର୍ବସ୍ୟାପ୍ୟୁପନ୍ୟାସାଦିଭ୍ୟୋଽବଗତସ୍ୟ ବ୍ରାହ୍ମସ୍ୟୈଶ୍ୱର୍ଯ୍ୟରୂପସ୍ୟାପ୍ରତ୍ୟାଖ୍ୟାନାଦ-ବିରୋଧଂ ବାଦରାୟଣ ଆଚାର୍ଯ୍ୟୋ ମନ୍ୟତେ ॥

ଭାଷା-(କ) ଏହା ପ୍ରମାଣିତ ହେବାରୁ ପରମାର୍ଥିକ ଚୈତନ୍ୟମାତ୍ର ସ୍ୱରୂପ ରୂପେ ସ୍ୱୀକାର କଲେ ବ୍ୟବହାରର ଅପେକ୍ଷାରୁ ଉପନ୍ୟାସାଦିର ପୂର୍ବରୁ ଅବଗତ ବ୍ରହ୍ମର ଐଶ୍ୱର୍ଯ୍ୟରୂପର ପ୍ରତ୍ୟାଖ୍ୟାନ ନ ହେବାରୁ ଏହା ଅବିରୋଧ ବୋଲି ବାଦରାୟଣ ଆଚାର୍ଯ୍ୟ ସ୍ୱୀକାର କରନ୍ତି ॥



## ४ । सङ्कल्पाधिकरणम् ॥ सू. ८-९ ॥

## ସଙ୍କଳ୍ପାଧିକରଣମ୍ ॥ ସୂ ୮-୯॥

## संकल्पादेव तु तच्छ्रुतेः ॥ ४-४-८ ॥

## ସଙ୍କଳ୍ପାଦେବ ତୁ ତଚ୍ଛ୍ରୁତେଃ ॥୪-୪-୮॥

ସଙ୍କଳ୍ପାଦେବ=ଏହି ବିଦ୍ୱାନର କେବଳ ସଙ୍କଳ୍ପରୂପରେ ପିତର ପ୍ରଭୃତି ଉପସ୍ଥିତ ହୁଅନ୍ତି । ତଚ୍ଛ୍ରୁତେଃ=କାରଣ- 'ସଙ୍କଳ୍ପାଦେବାସ୍ୟା ଏହି ଶ୍ରୁତିବାକ୍ୟ ଅଛି ॥

ମୂଳ-(କ) ହାର୍ଦ୍ଦବିଦ୍ୟାୟାଂ ଶ୍ରୂୟତେ- 'ସ ଯଦି ପିତୃଲୋକକାମୋ ଭବତି ସଙ୍କଳ୍ପା-ଦେବାସ୍ୟ ପିତରଃ ସମୁତ୍ତିଷ୍ଠନ୍ତି' (ଛୁ ୮-୨-୧) ଇତ୍ୟାଦି । ତତ୍ର ସଂଶୟଃ-କିଂ ସଙ୍କଳ୍ପ ଏବ କେବଳ ପିତ୍ରାଦି ସମୁତ୍ଥାନେ ହେତୁରୁତ ନିମିତ୍ତାନ୍ତରସହିତ ଇତି । ତତ୍ର ସତ୍ୟପି ସଙ୍କଳ୍ପାଦେବେତି ଶ୍ରବଣେ ଲୋକବନ୍ନିମିତ୍ତାନ୍ତରାପେକ୍ଷଣ ଯୁକ୍ତା । ଯଥା ଲୋକେଽସ୍ମଦାଦୀନାଂ ସଙ୍କଳ୍ପାଦ୍ ଗମନାଦିଭ୍ୟଶ୍ଚ ହେତୁଭ୍ୟଃ ପିତ୍ରାଦିସଂପତ୍ତିର୍ଭବେତ୍ୟେବଂ ମୁକ୍ତସ୍ୟାପି ସ୍ୟାତ୍ ।

(ଖ) ଏବଂ ଦୃଷ୍ଟ ବିପରୀତଂ ନ କଳ୍ପିତଂ ଭବିଷ୍ୟତି । ସଂଙ୍କଳ୍ପାଦେବେତି ତୁ ରାଜ୍ଞ ଇବ ସଂକଳ୍ପିତାର୍ଥ ସିଦ୍ଧିକାରୀଂ ସାଧନାନ୍ତରସାମଗ୍ରୀଂ ସୁଲଭମାପେକ୍ଷୋଚ୍ୟତେ । ନ ଚ ସଂକଳ୍ପମାତ୍ର ସମୁତ୍ଥାନାଃ ପିତ୍ରାଦୟୋ ମନୋରଥା ବିଜୃମ୍ଭିତବଚ୍ଚଞ୍ଚଳତ୍ୱାତ୍ପୁଷ୍କଳଂ ଭୋଗ ସମର୍ପୟିତୁଂ ପର୍ଯ୍ୟାପ୍ତାସ୍ୟୁରିତି ॥

ଭାଷା-(କ) ହାର୍ଦ୍ଦବିଦ୍ୟାରେ 'ସ ଯଦି' (ସେ ଯଦି ପିତୃଲୋକ କାମନା କରେ, ତେବେ ତାହାର ସଙ୍କଳ୍ପରୁ ପିତୃଗଣ ସେଠାରେ ଉପସ୍ଥିତ ରହନ୍ତି) ଇତ୍ୟାଦି ଶ୍ରୁତି ଅଛି । ସେଠାରେ ସଂଶୟ ହୁଏ ଯେ କେବଳ ସଙ୍କଳ୍ପ କ'ଣ ପିତୃଲୋକର ସମୁତ୍ଥାନରେ ହେତୁ ଅଥବା ଅନ୍ୟନିମିତ୍ତ ସହିତ ସଙ୍କଳ୍ପର ହେତୁ ଅଟେ ? ପୂର୍ବପକ୍ଷ- ସେହି ଶ୍ରୁତିରେ 'ସଂକଳ୍ପାଦେବ' ଏହିପ୍ରକାର ଶ୍ରବଣମାତ୍ରରୁ ଲୋକପରି ଅନ୍ୟ ନିମିତ୍ତକୁ ଅପେକ୍ଷା କରେ । ଯେପରି ସଂସାରରେ ଅସ୍ମଦାଦିର ସଂକଳ୍ପ ଦ୍ୱାରା ଏବଂ ଗମନାଦି ହେତୁଦ୍ୱାରା ପିତୃଲୋକ ପ୍ରାପ୍ତି ହୁଏ, ସେହିପରି ମୁକ୍ତପାଇଁ ହେବା ଉଚିତ୍ ।

(ଖ) ଏହା ପ୍ରମାଣ ହେଲେ ବିପରୀତ କଳ୍ପିତ ହେବନାହିଁ । 'ସଂକଳ୍ପାଦେବ'- ଏହା ରାଜାଙ୍କ ପରି ସଂକଳ୍ପିତ ଅର୍ଥକୁ ସିଦ୍ଧ କରି ଅନ୍ୟ ସାଧନ ସାମଗ୍ରୀର ସୁଲଭତାକୁ ଅପେକ୍ଷା କରିବା କୁହାଯାଇଛି । ସଂକଳ୍ପମାତ୍ରରୁ ସମୁତ୍ଥାନ ହୋଇଥିବା ପିତରାଦି ମନୋରଥ ଦ୍ୱାରା କଳ୍ପିତ ପରି ଚଞ୍ଚଳ ହେଲେ ପୁଷ୍କଳଭୋଗ ସମର୍ପଣ କରିବାରେ ସମର୍ଥ ହୁଏ ନାହିଁ ।

ମୂଳ-(କ) ଏବଂ ପ୍ରାପ୍ତେ ବୂମଃ-ସଂକଳ୍ପାଦେବ ତୁ କେବଲାତ୍ ପିତ୍ରାଦି ସମୁତ୍‌ଥାନମିତି । କୁତଃ ? ତଚ୍ଛ୍ରୁତେ । 'ସଙ୍କଳ୍ପାଦେବାସ୍ୟ ପିତରଃ ସମୁତ୍ତିଷ୍ଠନ୍ତି' (ଛା ୮-୨-୩) ଇତ୍ୟାଦିକା ହି ଶ୍ରୁତି ନିମିତ୍ତାନ୍ତରାପେକ୍ଷାୟାଂ ପୀଡ୍ୟେତ । ନିମିତ୍ତାନ୍ତରମପି ତୁ ଯଦି ସଂକଳ୍ପାନୁବିଧାୟ୍ୟେବ ସ୍ୟାଦ୍‌ଭବତୁ ନ ତୁ ପ୍ରଯତ୍ନାନ୍ତରସଂପାଦ୍ୟଂ ନିମିତ୍ତାନ୍ତରମିତୀଷ୍ୟତେ ।

(ଖ) ପ୍ରାକ୍ ସଂପତ୍ତେର୍ବନ୍ଧ୍ୟ ସଂକଳ୍ପତ୍ୱ ପ୍ରସଙ୍ଗାତ୍ । ନ ଚ ଶ୍ରୁତ୍ୟବଗମ୍ୟେଽର୍ଥେ ଲୋକବଦିତି ସାମାନ୍ୟତୋ ଦୃଷ୍ଟଂ କ୍ରମତେ । ସଂକଳ୍ପବଲାଦେବ ଚୈଷାଂ ଯାବତ୍ ପ୍ରୟୋଜନଂ ସ୍ଥୈର୍ଯ୍ୟୋପପତ୍ତିଃ । ପ୍ରାକୃତ ସଙ୍କଳ୍ପ ବିଲକ୍ଷଣତ୍ୱାନ୍ମୁକ୍ତ ସଙ୍କଳ୍ପସ୍ୟା ॥

ଭାଷା - ସିଦ୍ଧାନ୍ତ (କ) ଏହା ପ୍ରାପ୍ତ ହେବାରୁ ଆମ୍ଭେ କହୁଁ ଯେ- କେବଳ ସଂକଳ୍ପରୁ ପିତୃପ୍ରଭୃତି ସମୁତ୍‌ଥାନ ହୁଏ । କିପରି ? କାରଣ-ତାହାର ଶ୍ରୁତି ଅଛି । 'ସଂକଳ୍ପାଦେବ' (ସେହି ବିଦ୍ୱାନ୍‌ର ସଂକଳ୍ପଦ୍ୱାରା ପିତୃଗଣ ସମୁତ୍‌ଥିତ ହୁଅନ୍ତି) ଇତ୍ୟାଦି ଶ୍ରୁତି ଅନ୍ୟ ନିମିତ୍ତକୁ ଅପେକ୍ଷା କରି ମଧ୍ୟ ବାଧିତ ହୁଅନ୍ତି । ଅନ୍ୟନିମିତ୍ତ ମଧ୍ୟ ଯଦି ସଂକଳ୍ପର ଅନୁବିଧାୟୀ ହୁଏ, ତଥାପି ଅନ୍ୟ ପ୍ରଯତ୍ନ ସାଧ ଅନ୍ୟନିମିତ୍ତ ବୋଲି ଆମ୍ଭେ ଚାହୁଁନାହୁଁ ।

(ଖ) କାରଣ ଅନ୍ୟନିମିତ୍ତର ପ୍ରାପ୍ତିର ପୂର୍ବ ସଂକଳ୍ପରୁ ବନ୍ଧତ୍ୱ ପ୍ରସଙ୍ଗ ହେବ ଏବଂ ଶ୍ରୁତ୍ୟର୍ଥରେ 'ଲୋକବଦ୍' ଏହି ସାମାନ୍ୟତୋଦୃଷ୍ଟ ଅନୁମାନ ପ୍ରବୃତ୍ତ ହୁଏ ନାହିଁ । ସଂକଳ୍ପ ବଳରେ ସେହି ବିଦ୍ୱାନ୍‌ର ଯାବତ୍ ପ୍ରୟୋଜନ ସ୍ଥିରତାକୁ ଉପପନ୍ନ ହୁଏ; କାରଣ-ମୁକ୍ତ ପୁରୁଷର ସଂକଳ୍ପ ପ୍ରାକୃତ ପୁରୁଷର ସଂକଳ୍ପଠାରୁ ବିଲକ୍ଷଣ ଅଟେ ॥୮॥

## अतएव चानन्याधिपतिः ॥ ४-४-९ ॥

## ଅତଏବ ଚାନନ୍ୟାଧିପତିଃ ॥୪-୪-୯॥

ଅତଏବ=ଅବନ୍ଧ୍ୟ ସଂକଳ୍ପରୁ ବିଦ୍ୱାନ୍, ଅନନ୍ୟାଧିପତିଃ=ଅନନ୍ୟାପତି ହୁଏ ।

ମୂଳ-(କ) ଅତଏବ ଚାବନ୍ଧ୍ୟ ସଂକଳ୍ପାତ୍ୱାଦନନ୍ୟାଧିପତି ର୍ବିଦ୍ୱାନ୍ ଭବତିନାସ୍ୟା-ନ୍ୟୋଽଧିପତିର୍ଭବତୀତ୍ୟର୍ଥଃ । ନହି ପ୍ରାକୃତୋଽପି ସଂକଳ୍ପୟନ୍ନନ୍ୟସ୍ୱାମିକତ୍ୱମାତ୍ମନଃ ସତ୍ୟାଂ ଗତୌ ସଂକଳ୍ପୟତି । ଶ୍ରୁତିଃ ଚୈତଦ୍ ଦର୍ଶୟତି 'ଅଥ ଯ ଇହାତ୍ମାନମନୁବିଦ୍ୟ ବ୍ରଜନ୍ତ୍ୟେତାଂଶ୍ଚ ସତ୍ୟାନ୍ କାମାଂସ୍ତେଷାଂ ସର୍ବେଷୁ ଲୋକେଷୁ କାମଚାରୋ ଭବତି' (ଛା ୮-୧-୬) ଇତି ।

ଭାଷା- (କ) ତେଣୁ ଅବନ୍ଧ୍ୟ ସଂକଳ୍ପଦ୍ୱାରା ବିଦ୍ୱାନ୍ ଅନନ୍ୟାଧିପତି ହୁଏ, ତାହାର ଅନ୍ୟ ଅଧିପତି ନୁହେଁ-ଏହାହିଁ ଅର୍ଥ । ସଂକଳ୍ପ କରି ପ୍ରକୃତ ପୁରୁଷ ମଧ୍ୟ ଗତି ହେବାପରେ ନିଜ ଉପରେ ଅନ୍ୟଜଣକୁ ସ୍ୱାମୀ କରିବା ସଂକଳ୍ପ କରେ ନାହିଁ । 'ଅଥ ଯ' (ଯାହା ଏହି



ସଂସାରରେ ଆତ୍ମାକୁ ତଥା ସତ୍ୟକାମନାକୁ ଜାଣି ପରଲୋକକୁ ଯାଏ, ତାହାର ସମସ୍ତ ଲୋକରେ ଯଥେଚ୍ଛ ଗତି ହୁଏ) ଏହି ଶ୍ରୁତି ମଧ୍ୟ ତାହାକୁ ଦେଖାଏ ॥୯॥

## ५ । अभावाधिकरणम् ॥ सू. १०-१४ ॥

## ୪ । ଅଭାବାଧିକରଣମ୍ ॥ସୂ ୧୦-୧୪॥

## अभावं वादरिराह ह्येवम् ॥ ४-४-१० ॥

## ଅଭାବଂ ବାଦରିରାହ ହ୍ୟେବମ୍ ॥୪-୪-୧୦॥

ବାଦରିଃ=ବାଦରି ଆଚାର୍ଯ୍ୟ ସ୍ୱୀକାର କରନ୍ତି-, ଅଭାବମ୍'=ବିଦ୍ୱାନର ଶରୀର ସେଠାରେ ଅଭାବ ହୁଏ, ହି=କାରଣ-'ମନସୈତାନ୍' ଏହି ଶ୍ରୁତି କହେ ॥

ମୂଳ=(କ) 'ସଂକଳ୍ପାଦେବାସ୍ୟ ପିତରଃ ସମୁତ୍ତିଷ୍ଠନ୍ତି' (ଛା ୮-୨-୧) ଇତ୍ୟାଦି ଶ୍ରୁତେର୍ମନସ୍ତାବତ୍ ସଂକଳ୍ପ ସାଧନଂ ସିଦ୍ଧମ୍ । ଶରୀରେନ୍ଦ୍ରିୟାଣି ପୁନଃ ପ୍ରାପ୍ତୈଶ୍ୱର୍ଯ୍ୟସ୍ୟ ବିଦୁଷଃ ସନ୍ତି, ନ ବା ସନ୍ତୀତି ସମୀକ୍ଷ୍ୟତେ । ତତ୍ର ବାଦରିସ୍ତାବଦାଚାର୍ଯ୍ୟ ଶରୀରସେନ୍ଦ୍ରିୟାଣାଂ ଝଭାବଂ ମହୀୟମାନସ୍ୟ ବିଦୁଷ୍ୟୋ ମନ୍ୟତେ ।

(ଖ) କସ୍ମାତ୍ ? ଏବଂ ହ୍ୟାହାମ୍ନାୟଃ 'ମନସୈତାନ୍ କାମାନ୍ ପଶ୍ୟନ୍ ରମତେ' (ଛା ୮-୧୨-୫), 'ଯ ଏତେ ବ୍ରହ୍ମଲୋକେ' (ଛା ୮-୧୩-୧) ଇତି । ଯଦି ମନସା ଶରୀରେନ୍ଦ୍ରିୟୈଶ୍ଚ ବିହରେନ୍ ମନସେତି ବିଶେଷଣଂ ନ ସ୍ୟାତ୍ । ତସ୍ମାଦଭାବଃ ଶରୀରେନ୍ଦ୍ରିୟାଣାଂ ମୋକ୍ଷେ ॥

ଭାଷା=(କ) 'ସଂକଳ୍ପାଦେବ' (ତାହାର ସଂକଳ୍ପରୁ ପିତୃଗଣ ସମୁପସ୍ଥିତ ହୁଅନ୍ତି) ଇତ୍ୟାଦି ଶ୍ରୁତିରେ ମନ ସଂକଳ୍ପର ସାଧନରୂପେ ସିଦ୍ଧ ହୋଇଛି । ପ୍ରାପ୍ତ ଐଶ୍ୱର୍ଯ୍ୟଶାଳୀ ବିଦ୍ୱାନ୍‌ର ଶରୀର ଓ ଇନ୍ଦ୍ରିୟଗୁଡ଼ିକ ଅଛି କି ନାହିଁ ? ଏହି ବିଷୟ ବିଚାର କରାଯାଇଅଛି । ଏହି ପରିସ୍ଥିତିରେ ବାଦରି ଆଚାର୍ଯ୍ୟ ଐଶ୍ୱର୍ଯ୍ୟାଦି ମହିମାକୁ ପ୍ରାପ୍ତ ହୋଇ ବିଦ୍ୱାନ୍‌ର ଶରୀର, ଇନ୍ଦ୍ରିୟକୁ ସ୍ୱୀକାର କରନ୍ତି ।

(ଖ) ତେଣୁ 'ମନସୈତାନ୍' (ଏହି ଆତ୍ମା ବ୍ରହ୍ମଲୋକରେ ମନରେ ଭୋଗ ଦେଖି ରମଣ କରେ), 'ଯ ଏତେ' (ଏମାନେ ବ୍ରହ୍ମଲୋକରେ ସଂକଳ୍ପଲଭ୍ୟ ଭୋଗ ଅଟେ) ହା ଶ୍ରୁତି କହେ । ଯଦି ମନ, ଶରୀର ଓ ଇନ୍ଦ୍ରିୟ ଦ୍ୱାରା ବିହାର ହେବ, ତେବେ 'ମନସା' ବିଶେଷଣ ହେବ ନାହିଁ, ତେଣୁ ମୋକ୍ଷରେ ଶରୀର ଓ ମନର ଅଭାବ ହୁଏ ॥୧୦॥

## भावं जैमिनिर्विकल्पामननात्  ॥ ४-४-११ ॥

## ଭାବଂ ଜୈମିନିର୍ବିକଳ୍ପାମନନାତ୍ ॥୪-୪-୧୧॥

ଭାବମ୍=ମନ ସହ ଶରୀର ଓ ଇନ୍ଦ୍ରିୟର ମୋକ୍ଷରେ ଭାବ, ଜୈମିନିଃ=ଜୈମିନି ଆଚାର୍ଯ୍ୟ ସ୍ୱୀକାର କରନ୍ତି । ବିକଳ୍ପାମନନାତ୍=କାରଣ- 'ସ ଏକଧା ଭବତି' ଇତ୍ୟାଦି ଶ୍ରୁତି ଅନେକଧାଭାବର ବିକଳ୍ପ କହେ ॥

ମୂଳ=(କ) ଜୈମିନିସ୍ତ୍ୱାଚାର୍ଯ୍ୟୋ ମନୋବଚ୍ଛରୀସ୍ୟାପି ସେନ୍ଦ୍ରିୟସ୍ୟ ଭାବଂ ମୁକ୍ତଂ ପ୍ରତି ମନ୍ୟତେ । ଯତଃ 'ସ ଏକଧା ଭବତି ତ୍ରିଧା ଭବତି' (ଛା ୭-୨୬-୨) ଇତ୍ୟାଦିନା-ଽନେକଧାଭାବ ବିକଳ୍ପମାମନନ୍ତି । ନ ହ୍ୟନେକବିଧତା ବିନା ଶରୀରଭେଦେନାଞ୍ଜସୀ ସ୍ୟାତ୍ ।

(ଖ) ଯଦ୍ୟପି ନିର୍ଗୁଣାୟାଂ ଭୂମବିଦ୍ୟାୟାମୟ ମନେକଧାଭାବ ବିକଳ୍ପଃ ପଠ୍ୟତେ, ତଥାପି ବିଦ୍ୟମାନମେବେଦଂ ସଗୁଣାବସ୍ଥାୟାମୈଶ୍ୱର୍ଯ୍ୟଂ ଭୂମବିଦ୍ୟା ସ୍ତୁତୟେ ସଂକୀର୍ତ୍ୟତଂ ଇତ୍ୟତଃ ସଗୁଣବିଦ୍ୟା ଫଳଭାବେନୋପତିଷ୍ଠତ ଇତି ॥

ଭାଷା-(କ) ଜୈମିନି ଆଚାର୍ଯ୍ୟ କିନ୍ତୁ ମନର ଇନ୍ଦ୍ରିୟ ସହିତ ଶରୀରର ଭାବ ମୁକ୍ତ ପୁରୁଷ ପ୍ରତି ସ୍ୱୀକାର କରନ୍ତି, କାରଣ 'ସ ଏକଧା' (ସେ ଏକପ୍ରକାରର ହୁଏ, ତିନିପ୍ରକାରର ହୁଏ) ଇତ୍ୟାଦି ଶ୍ରୁତି ଅନେକଧା ଭାବର ବିକଳ୍ପ କହେ । ଶରୀର ଭେଦବିନା ଅନେକ ବିଧତା ମୁଖ୍ୟ ସଂଗତ ନୁହେଁ ।

(ଖ) ଯଦ୍ୟପି ନିର୍ଗୁଣ ଭୂମବିଦ୍ୟାରେ ଏହି ଅନେକଧା ଭାବ ବିକଳ୍ପ ଅଟେ, କିନ୍ତୁ ସଗୁଣ ଅବସ୍ଥାରେ ଏହି ବିଦ୍ୟାମାନ ଐଶ୍ୱର୍ଯ୍ୟର ଭୂମିବିଦ୍ୟା ସ୍ତୁତି ପାଇଁ ଭୂମବିଦ୍ୟାରେ ସଂକୀର୍ତ୍ତନ କରାଯାଏ, ତେଣୁ ସଗୁଣ ବିଦ୍ୟାର ଫଳରୂପରେ ଉପସ୍ଥିତ ହୁଏ ॥୧୧।

ଉଚ୍ୟତେ କୁହାଯାଇଛି-

## द्वादशाहवदुभयविधं वादरायणोऽतः  ॥ ४-४-१२ ॥

## ଦ୍ୱାଦଶାହବଦୁଭୟବିଧଂ ବାଦରାୟଣୋଽତଃ ॥୪-୪-୧୨॥

ବାଦରାୟଣଃ=ବାଦରାୟଣଙ୍କ ମତରେ, ଅତଃ=ଉଭୟଲିଙ୍ଗକଶ୍ରୁତି ଦେଖିବାରେ, ଉଭୟବିଧମ୍=ଉଭୟବିଧତ୍ୱ ହୁଏ, ଦ୍ୱାଦଶାହବତ୍=ଯେପରି ଦ୍ୱାଦଶାହ ଉଭୟବିଧ ଅଟେ ॥

ମୂଳ (କ) ବାଦରାୟଣଃ ପୁନରାଚାର୍ଯ୍ୟୋଽତଃ ଏବୋଭୟଲିଙ୍ଗଶ୍ରୁତି ଦର୍ଶନାଦୁଭୟ ବିଧତ୍ୱଂ ସାଧୁମନ୍ୟତେ, ଯଦା ସଶରୀରତାଂ ସଂକଳ୍ପୟତି, ତଦା ସଶରୀରୋ ଭବତି, ଯଦା



ଦ୍ୱଶରୀରତାଂ ତଦାଽଶରୀର ଇତି ସତ୍ୟସଂକଳ୍ପତ୍ୱାତ୍, ସଂକଳ୍ପ ବୈଚିତ୍ର୍ୟାଚ୍ଚ । ଦ୍ୱାଦଶାହବତ୍ । ଯଥା ଦ୍ୱାଦଶାହଃ ସତ୍ରମହୀନଷ୍ଚ ଭବତି, ଉଭୟ ଲିଙ୍ଗଶ୍ରୁତିଦର୍ଶନାଦେବମିଦମପୀତି ॥

ଭାଷା-(କ) ବାଦରାୟଣ ଆଚାର୍ଯ୍ୟ ଉଭୟ ଲିଙ୍ଗର ଶ୍ରୁତି ଦେଖିବାରେ ପ୍ରମାଣିକତା ସ୍ୱୀକାର କରନ୍ତି । ଯେତେବେଳେ ଉପାସକ ସଶରୀରତାର ସଂକଳ୍ପ କରେ, ସେତେବେଳେ ଅଶରୀର ହୁଏ, କାରଣ-ତାହା ସତ୍ୟସଂକଳ୍ପ ଅଟେ ଓ ସଂକଳ୍ପ ବିଚିତ୍ର ଅଟେ । ଦ୍ୱାଦଶାହବତ୍ ॥ ଯେପରି ଦ୍ୱାଦଶାହ ସତ୍ର ଓ ଅହୀନ ହୁଏ, କାରଣ-ଉଭୟ ଲିଙ୍ଗକ ଶ୍ରୁତି ଦେଖାଯାଏ । ତେଣୁ ଏହା ଉଭୟବିଧ ଅଟେ ॥୧୨॥

## तन्वभावे संध्यवदुपपत्ते: ॥ ४-४-१३ ॥

## ତନ୍ୱଭାବେ ସଂଧ୍ୟବଦୂପପତ୍ତେଃ ॥୪-୪-୧୩॥

ତନ୍ୱଭାବେ=ବ୍ରହ୍ମଲୋକରେ ଇନ୍ଦ୍ରିୟଯୁକ୍ତ ଶରୀରର ଅଭାବ ହେଲେ ମଧ୍ୟ, ସଂଧବତ୍=ସ୍ୱପ୍ନ ମାନସିକ ବିଷୟ ଉପଲବ୍ଧ ହୁଏ, ଉପପତ୍ତେଃ=କାରଣ ଏହା ସମୀଚୀନ ଅଟେ ।

ମୂଳ (କ) ଯଦା ତନୋଃ ସେନ୍ଦ୍ରିୟସ୍ୟ-ଶରୀରସ୍ୟା-ଭାବସ୍ତଦା, ଯଥା ସଂଧ୍ୟେ ସ୍ଥାନେ ଶରୀରେନ୍ଦ୍ରିୟ ବିଷୟେଷ ବିଦ୍ୟମାନେଷ୍ୱପ୍ୟଲବ୍ଧମାତ୍ରା ଏବ ପିତ୍ରାଦିକାମା ଭବନ୍ତ୍ୟେଙ୍କ ମୋକ୍ଷେଽପିସ୍ୟୁରେବଂ ହ୍ୟେତଦୁପପଦ୍ୟତେ ॥

ଭାଷା-ଯେତେବେଳେ ଇନ୍ଦ୍ରିୟ ସହ ଶରୀରର ଅଭାବ ହୁଏ, ସେତେବେଳେ ଯେପରି ସ୍ୱପ୍ନାବସ୍ଥାରେ ଶରୀର, ଇନ୍ଦ୍ରିୟ ଓ ବିଷୟର ଅବିଦ୍ୟମାନ ହେଲେ ପିତୃ ଆଦି ପଦାର୍ଥ ଉପଲବ୍ଧ ମାତ୍ର ହୁଏ, ସେତେବେଳେ ମୋକ୍ଷ ବ୍ରହ୍ମଲୋକରେ ଉପଲବ୍ଧମାତ୍ର ହେବ-ଏହା ନ୍ୟାୟସଂଗତ ଅଟେ ॥୧୩॥

## भावे जाग्रद्बत् ॥ ४-४-२४ ॥

## ଭାବେ ଜାଗ୍ରଦ୍ୱତ୍ ॥୪-୪-୧୪॥

ଭାବେ=ବ୍ରହ୍ମଲୋକରେ ଇନ୍ଦ୍ରିୟ ସହିତ ଶରୀରର ସଦ୍‌ଭାବଯୋଗରୁ, ଜାଗ୍ରଦ୍‌ବତ୍=ଜାଗ୍ରତ୍ ପରି ପିତର ପ୍ରଭୃତି ଉପଲବ୍ଧ ହୁଅନ୍ତି ॥

ମୂଳ-(କ) ଭାବେ ପୁନସ୍ତନୋର୍ଯଥା ଜାଗରିତେ ବିଦ୍ୟମାନା ଏବ ପିତ୍ରାଦିକାମା ଭବନ୍ତ୍ୟେବ ମୁକ୍ତସ୍ୟାପ୍ୟୁପପଦ୍ୟତେ ॥

ଭାଷା- (କ) ପରନ୍ତୁ ଶରୀର ହେଲାପରେ ଯେପରି ଜାଗ୍ରଦବସ୍ଥାରେ ରହି ପିତରାଦି ପଦାର୍ଥ ହୁଅନ୍ତି, ସେପରି ମୁକ୍ତକୁ ମଧ୍ୟ ଉପପନ୍ନ ହୁଅନ୍ତି ॥୧୪॥

## ६ । प्रतीपाधिकरणम् ॥ १५-१६ ॥

## ୬ । ପ୍ରତୀପାଧିକରଣମ୍ ॥ ସୂ ୧୫-୧୬ ॥

### प्रदीपबदचेशस्तथा हि दर्शयति ॥ ४-४-१५ ॥

### ପ୍ରଦୀପବଦାଚେଶସ୍ତଥା ହି ଦର୍ଶୟତି ॥ ୪-୪-୧୫॥

ବିଦ୍ୱାନ୍‌ଦ୍ୱାରା ନିର୍ମିତ ଅନେକ ଶରୀରରେ ବିଦ୍ୱାନ୍, ପ୍ରଦୀପବତ୍=ପ୍ରଦୀପପରି, ଆବେଶଃ=ପ୍ରବିଷ୍ଟ ହୁଏ ।, ହି=କାରଣ-, ତଥା=ସେହିପରି ଦର୍ଶୟତି= 'ସ ଏକଧା ଭବତି' ଇତ୍ୟାଦି ଶ୍ରୁତିବାକ୍ୟ ଦେଖାଯାଏ ॥

ମୂଳ-(କ) 'ଭାବଂ ଜୈମିନିର୍ବିକଳ୍ପା ମନନାତ' (ବ୍ର. ସୂ. ୪-୪-୧୧) ଇତ୍ୟତ୍ର ସଶରୀରତ୍ୱଂ ମୁକ୍ତସ୍ୟୋକ୍ତମ୍ । ତତ୍ର ତିଧା ଭାବାଦିଷ୍ୱନେକଶରୀରସର୍ଗେ କିଂ ନିରାତ୍ମକାନି ଶରୀରାଣି ଦାରୁଯନ୍ତ୍ରାଣୀବ ସୃଜନ୍ତେ, କିଂ ବା ସାତ୍ମକାନ୍ୟସ୍ମଦାଦି ଶରୀରବଦିତି ଭବତି ଦୀକ୍ଷା । ତତ୍ର ଯତ୍ମନ ସୋର୍ଭେଦାନୁପପତ୍ତେରେକେନ ଶରୀରେଣ ଯାଗାଦିତରାଣି ଶରୀରାଣି ନିରାତ୍ମକାନୀତି ॥

(ଖ) ଏବଂ ପ୍ରାପ୍ତେ ପ୍ରତିପାଦ୍ୟତେ-ପ୍ରଦୀପ ବଦାବେଶ ଇତି । ଯଥା ପ୍ରଦୀପ ଏକୋଽନେକ ପ୍ରଦୀପ ଭାବମାପଦ୍ୟତେ, ବିକାରଶକ୍ତି ଯୋଗାତ୍ । ଏବମେକୋଽପି ସନ୍ ବିଦ୍ୱାନୈଶ୍ୱର୍ଯ୍ୟ ଯୋଗାଦନେକ ଭାବମାପଦ୍ୟ ସର୍ବାଣି ଶରୀରାଣ୍ୟା ବିଶତି ।

(ଗ) କୁତଃ ? ତଥାହି ଦର୍ଶୟତି ଶାସ୍ତ୍ରମେକ ସ୍ୟାନେକଭାବମ୍- 'ସ ଏକଧା ଭବତି କ୍ରିଧା ଭବତି, ପଞ୍ଚଧା ଭବତି ସପ୍ତଧା ନବଧା' (ଛା ୭-୨୬-୨) ଇତ୍ୟାଦି । ନୈତଦ୍ଦାରୁଯନ୍ତ୍ରୋପମାଭ୍ୟୁପଗମେଽବକଳ୍ପତେ, ନାପି ଜୀବାନ୍ତରାବେଶେ । ନ ଚ ନିରାତ୍ମକାନାଂ ଶରୀରାଣାଂ ପ୍ରବୃତ୍ତିଃ ସମ୍ଭବତି ।

(ଘ) ଯତ୍ତ୍ୱାତ୍ମମନସୋର୍ଭେଦାଦୁ ପପତ୍ତେରନେକ ଶରୀରଯୋଗା ସମ୍ଭବ ଇତିନୈଷଃ ଦୋଷଃ, ଏବମନୋନୁବୃର୍ତ୍ତୀନି ସମନସ୍କାନ୍ୟେବାପରାଣି ଶରୀରାଣି ସତ୍ୟ ସଙ୍କଳ୍ପତ୍ୱାତ୍ ସ୍ରକ୍ଷ୍ୟତି । ସୃଷ୍ଟେଷ୍ୱ ଚ ତେଷ୍ୱୁପାଧି ଭେଦାଦାତ୍ମନୋଽପି ଭେଦେନାଧିଷ୍ଠିତତ୍ୱଂ ଯୋକ୍ଷ୍ୟତେ । ଏଷୈବ ଚ ଯୋଗଶାସ୍ତ୍ରେଷ୍ୱ ଯୋଗିନାମନେକ ଶରୀର ଯୋଗ ପ୍ରକ୍ରିୟା ॥

ଭାଷା (କ) 'ଭାବଂ ଜୈମିନିର୍ବିକଳ୍ପା ମନନାତ୍' ଏହି ସୂତ୍ରରେ ମୁକ୍ତପୁରୁଷକୁ ସଶରୀର କୁହାଯାଇଛି । ସେଠାରେ କ୍ରିଧା ଭାବାଦିରେ ଅନେକ ଶରୀରକୁ ସୃଷ୍ଟିରେ ଦାରୁଯନ୍ତ୍ର ପରି କ'ଣ ନିରାତ୍ମକ ଶରୀର ଉତ୍ପନ୍ନ କରାଯାଇଛି ଅଥବା କ'ଣ ଅସ୍ମଦାଦି ଶରୀର ପରି



ସାତ୍ମକ ଉତ୍ପନ୍ନ କରାଯାଇଛି କି ? ଏହା ଉପରେ ବିଚାର କରାଯାଇଛି ଯେ- ପୂର୍ବପକ୍ଷ- ସେଠାରେ ଆତ୍ମା ଏବଂ ମନର ଭେଦ ଅନୁପପତ୍ତି ଦ୍ୱାରା ଏକ ଶରୀରର ସହ ଯୋଗ ହୁଏ । ତେଣୁ ଅନ୍ୟ ଶରୀର ନିରାତ୍ମକ ହୁଏ । ସିଦ୍ଧାନ୍ତ-

(ଖ) ଏହା ପ୍ରାପ୍ତ ହେବାରୁ ପ୍ରତିପାଦନ କରାଯାଇଅଛି ଯେ- 'ପ୍ରଦୀପବଦାବେଶଃ' ଯେପରି ଗୋଟିଏ ପ୍ରଦୀପ ବିକାର ଶକ୍ତି ଯୋଗରୁ ଅନେକ ପ୍ରଦୀପଭାବକୁ ପ୍ରାପ୍ତ ହୋଇ ସେହିପରି ବିଦ୍ୱାନ୍ ଏକ ହୋଇ ଐଶ୍ୱର୍ଯ୍ୟ ଯୋଗରୁ ଅନେକ ଭାବକୁ ପ୍ରାପ୍ତ ହୋଇ ସବୁ ଶରୀରରେ ପ୍ରବେଶ କରେ ।

(ଗ) କାରଣ ସେହିପରି 'ସ ଏକଧା' (ସେ ଗୋଟିଏ ରୂପ, ତିନିରୂପ, ପଞ୍ଚରୂପ, ସପ୍ତରୂପ ଓ ନବରୂପ ଧାରଣ କରେ) ଇତ୍ୟାଦିଶାସ୍ତ୍ର ଏକର ଅନେକଭାବ ଦେଖାଏ । ଏହି ଦାରୁଯନ୍ତ୍ରର ଉପମା ସ୍ୱୀକାର କରିବା ସମ୍ଭବପର ନୁହେଁ କିମ୍ବା ଅନ୍ୟ ଜୀବର ପ୍ରବେଶ କରିବା ଅସମ୍ଭବ । ନିରାତ୍ମକଶରୀର ପ୍ରବୃତ୍ତି ଦେଖାଯାଏ ନାହିଁ।

(ଘ) ଆତ୍ମା ଓ ମନର ଭେଦ ଅନୁପପତ୍ତି ହେଲେ ଅନେକ ଶରୀରର ସହ ସମ୍ବନ୍ଧ ଅସମ୍ଭବ ହୁଏ । ଏହା କିନ୍ତୁ ଦୋଷ ନୁହେଁ । କାରଣ ସେ ସତ୍ୟ ସଙ୍କଳ୍ପରୁ ଏକ ମନର ଅନୁବର୍ତ୍ତୀ ମନର ସହ ଅନ୍ୟ ଶରୀର ସୃଷ୍ଟି ହେବ, ତାହାର ସୃଷ୍ଟି ହେଲାପରେ ଉପାଧି ଭେଦରେ ଆତ୍ମାର ଭେଦ ହୋଇ ଅଧିଷ୍ଠାତତ୍ୱ ଯୁକ୍ତ ହେବ । ତେଣୁ ଯୋଗିମାନଙ୍କର ଯୋଗଶାସ୍ତ୍ରରେ ଅନେକ ଶରୀରସହ ସମ୍ବନ୍ଧର ପ୍ରକ୍ରିୟା ରହିଛି ॥୧୫॥

ମୂଳ (କ) କଥଂ ପୁନର୍ମୁକ୍ତସ୍ୟନେକଶରୀରାବେଶାଦିଲକ୍ଷଣମୈଶ୍ୱର୍ଯ୍ୟମଭ୍ୟୁପଗମ୍ୟତେ ? ଯାବତା 'ତତ୍କେନ କଂ ବିଜାନୀୟାତ୍' (ବୃହ ୪-୫-୧୫), 'ନ ତୁ ତଦ୍ଦ୍ୱିତୀୟମସ୍ତି ତତୋଽନ୍ୟଦ୍ ବିଭକ୍ତଂ ଯଦ୍ ବିଜାନୀୟାତ୍ (ବୃହ ୪-୩-୩୦), 'ସଲିଲ ଏକୋ ଦ୍ରଷ୍ଟାଽଦ୍ୱୈତୋ ଭବତି' (ବୃ. ସୂ. ୪-୩-୩୨) ଇତି ଚୈବଂଜାତୀୟକା ଶ୍ରୁତିର୍ବିଶେଷ ବିଜ୍ଞାନଂ ବାରୟତୀତ୍ୟତ ଉତ୍ତର ପଠତି-

ଭାଷା-(କ) ପରନ୍ତୁ ମୁକ୍ତର ଅନେକ ଶରୀରରେ ଆବେଶାଦିରୂପ, ଐଶ୍ୱର୍ଯ୍ୟ କିପରି ସ୍ୱୀକାର କରାଯାଇଛି । ଯେତେବେଳେ 'ତତ୍କେନ' (ମୁକ୍ତାବସ୍ଥାରେ ଜ୍ଞାନୀ କୌଣସି କାରଣଦ୍ୱାରା ବିଷୟକୁ ଜାଣେ), 'ନ ତୁ ତଦ୍ ଦ୍ୱିତୀୟମସ୍ତି' ଏହି ଅବସ୍ଥାରେ ତାହାଭିନ୍ନ କୌଣସି ଅନ୍ୟ ପଦାର୍ଥ ନାହିଁ, ଯାହାକୁ ତୁମ୍ଭେ ବିଶେଷ ରୂପରେ ଜାଣିବ)' 'ସଲିଲ ଏକଃ' (ଜଳଠାରୁ ଶୁଦ୍ଧ ଏକଦ୍ରଷ୍ଟା ଅଦ୍ୱୈତ ଅଟେ) ଏହି ପ୍ରକାରର ଶ୍ରୁତିଗୁଡ଼ିକ ବିଶେଷ ବିଜ୍ଞାନକୁ ବାରଣ କରେ କି ? ତାହାର ଉତ୍ତରରେ କୁହାଯାଇଛି-

स्वाप्यार्यसंपत्त्योरन्यतरापेक्षमाविष्कृतं हि ॥ ४-४-१६ ॥

ସ୍ୱାପ୍ୟାୟ ସଂପତ୍ତ୍ୟୋରନ୍ୟତରାପେକ୍ଷମା

ବିଷ୍କୃତଂ ହି ॥୪-୪-୧୬॥

ସ୍ୱାପ୍ୟୟ ସଂପତ୍ତ୍ୟୋଃ=ସୁଷୁପ୍ତି ଓ ମୁକ୍ତିରେ, ଅନ୍ୟତରାପେକ୍ଷମ୍=ଏକକୁ ଅପେକ୍ଷା କରିବା ଦ୍ୱାରା ବିଶେଷଜ୍ଞାନର ଅଭାବ ସ୍ୱୀକାର କରାଯାଇଛି ହି=କାରଣ-, ଆବିଷ୍କୃତମ୍-ସଗୁଣ ବିଦ୍ୟାରେ ଶରୀରାଦିର ସ୍ୱୀକାର କରିବାରେ କୌଣସି ବିରୋଧ ନାହିଁ ॥

ମୂଳ (କ) ସ୍ୱାପ୍ୟୟଃ ସୁଷୁପ୍ତମ୍, 'ସ୍ୱମପୀତୌ ଭବତି ତସ୍ମାଦେନଂ ସ୍ୱପୀତୀତ୍ୟାଚକ୍ଷତେ' (ଛା ୬-୮-୧) ଇତି ଶ୍ରୁତେଃ । ସଂ ତ୍ତିଃ କୈବଲ୍ୟମ୍', 'ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି' (ବୃହ ୪-୪-୬) ଇତି ଶ୍ରୁତେଃ । ତୟୋରନ୍ୟତରାମବସ୍ଥା ମପେକ୍ଷୈତଦ୍ ବିଶେଷ ସଂଜ୍ଞାଭାବ ବଚନମ୍ । କ୍ୱଚିତ୍ ସୁଷୁପ୍ତାବସ୍ଥ ମପେକ୍ଷ୍ୟୋ ଚ୍ୟତେ, କ୍ୱଚିତ୍ କୈବଲ୍ୟାବସ୍ଥାୟମ୍ ।

(ଖ) କଥମବ ଗମ୍ୟତେ ? ମତସ୍ତତ୍ରୈ ବୈତଦଧିକାର ବଶାଦା ବିଷ୍କୃତମ୍ 'ଏତେଭ୍ୟୋ ଭୂତେଭ୍ୟଃ ସମୁତ୍‌ଥାୟ ତାନ୍ୟେବାନୁର୍ମାନଶ୍ୟତି ନ ପ୍ରେତ୍ୟ ସଂଜ୍ଞାଽସ୍ତୀତି (ବୃହ ୨-୪-୧୨), 'ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍' (ବୃହ ୨-୪-୧୪) 'ଯତ୍ର ସୁପ୍ତୋ ନ କଂଚନ କାମଂ କାମୟେତ ନ କଂଚନ ସ୍ୱପ୍ନଂ ପଶ୍ୟତି' (ବୃହ ୪-୩-୧୯) ଇତ୍ୟାଦି ଶ୍ରୁତିଭ୍ୟଃ । ସଗୁଣ ବିଦ୍ୟା ବିପାକସ୍ଥାନଂ ତ୍ୱେତତ୍ ସ୍ୱର୍ଗାଦିବଦବସ୍ଥାନ୍ତରମ୍ । ଯତ୍ରୈତଦୈଶ୍ୱର୍ଯ୍ୟମୁପ ବର୍ଣ୍ଣ୍ୟତେ, ତସ୍ମାଦଦୋଷଃ ॥

ଭାଷା-(କ) ସ୍ୱାପ୍ୟୟଃ ଅର୍ଥାତ୍ ସୁଷୁପ୍ତି, କାରଣ-ସ୍ୱମପୀତୋ ଭବତି' (ଏହି ନିଜେ ସ୍ୱରୂପକୁ ପ୍ରାପ୍ତ ହୁଏ, ତେଣୁ ଏହି ମାନବ ଶୟନ କରେ=ଏହା କୁହାଯାଇଛି) ଏହାହିଁ ଶ୍ରୁତିବାକ୍ୟ । ସଂପତ୍ତି ଅର୍ଥ କୈବଲ୍ୟ; କାରଣ- 'ବ୍ରହ୍ମୈବ ସନ୍' (ବ୍ରହ୍ମ ହୋଇ ବ୍ରହ୍ମକୁ ପ୍ରାପ୍ତ ହୁଏ) ଏହାହିଁ ଶ୍ରୁତି । ଏହି ଦୁଇଟିରେ ଗୋଟିଏ ଅବସ୍ଥାକୁ ଅପେକ୍ଷା କରି ସେହି ବିଶେଷ ଜ୍ଞାନର ଅଭାବବୋଧକ ବଚନ ରହିଛି । ଶ୍ରୁତି କେଉଁଠି ସୁଷୁପ୍ତି ଅବସ୍ଥା ଅଥବା କୈବଲ୍ୟ ଅବସ୍ଥାକୁ ଅପେକ୍ଷା କରି କହେ ?

(ଖ) ଏହା କିପରି ଅବଗତ ହୁଏ ? କାରଣ 'ଏତେଭ୍ୟୋ ଭୂତେଭ୍ୟଃ (ଏହି ସତ୍ୟ ଶବ୍ଦବାଚ୍ୟ ଭୂତରୁ ପ୍ରକଟ ହୋଇ ତନ୍ମଧ୍ୟରେ ବିନାଶପ୍ରାପ୍ତ ହୁଏ । ଦେହେନ୍ଦ୍ରିୟ ଭାବଦ୍ୱାରା ଯୁକ୍ତ ହୋଇ ଏହି ଆତ୍ମା ରୂପ ହେଲା) ଯତ୍ର ସୁପ୍ତୋ' (ଯେଉଁଠି ଶୟନ କରି ଏହା କୌଣସି ବସ୍ତୁକୁ କାମନା କରେ ନାହିଁ, ଅଥବା ସ୍ୱପ୍ନ ଦେଖେ ନାହିଁ) ଇତ୍ୟାଦି ଶ୍ରୁତି ବାକ୍ୟଦ୍ୱାରା ସେହି ପ୍ରକରଣ ବଳରେ ସ୍ପଷ୍ଟ କରାଯାଇଛି । ଯେଉଁଠି ଏହି ଐଶ୍ୱର୍ଯ୍ୟର



ବର୍ଣ୍ଣନା କରାଯାଇଛି, ତାହା ସଗୁଣବିଦ୍ୟାର ବିପାକସ୍ଥାନ ଓ ସ୍ୱର୍ଗପରି ଅନ୍ୟସ୍ଥାନ ଅଟେ-ଏହା ଦୋଷ ନୁହେଁ ॥୧୬॥

## ७ । जगद्व्यापाराधिकरणम् ॥ सू० १७-२२ ॥

## ୭ । ଜଗଦ ବ୍ୟାପାରାଧିକରଣମ୍ ॥ ସୂ ୧୭-୨୨ ॥

### जगद्व्यापारवर्जं प्रकरणादसंन्निहितत्वाच्च ॥ ४-४-१७ ॥

### ଜଗଦ ବ୍ୟାପାରବର୍ଜ୍ଜଂ ପ୍ରକରଣାଦସଂନ୍ନିହତତ୍ୱଚ୍ଚ ॥୪-୪-୧୭॥

ଜଗଦ୍‌ବ୍ୟାପାରବର୍ଜମ୍=ଜଗତ୍‌ର ଉତ୍ପତ୍ତି ପ୍ରଭୃତି ବ୍ୟାପାରକୁ ଛାଡ଼ି ଅନ୍ୟ ଅଣିମାଦି ଐଶ୍ୱର୍ଯ୍ୟ ବିଦ୍ୱାନ ପାଏ । ପ୍ରକରଣାତ୍=କାରଣ ଜଗତ୍ ସୃଷ୍ଟିରେ ଈଶ୍ୱର ପ୍ରକୃତ ଅଟେ । ଅସଂନିହିତତ୍ୱାତ୍ ଚ=ଏବଂ ଅନ୍ୟ ଅସଂନିହିତ ଅଟେ ॥

ମୂଳ-(କ) ଯେ ସଗୁଣ ବ୍ରହ୍ମୋପାସନାତ୍ ସହୈବ ମନସେଶ୍ୱରସାଯୁଜ୍ୟଂ ବ୍ରଜନ୍ତି, କିଂ ତେଷାଂ ନିରବଗ୍ରହମୈଶ୍ୱର୍ଯ୍ୟଂ ଭବତ୍ୟାହୋସ୍ୱିତ୍ ସାବଗ୍ରହମିତି ସଂଶୟଃ । କିଂ ତାବତ୍‌ପ୍ରାପ୍ତମ୍ ? ନିରଙ୍କୁଶ ମେବୈଷାମୈଶ୍ୱର୍ଯ୍ୟଂ ଭବିତୁମର୍ହତି, 'ଆପ୍ନୋତି ସ୍ୱାରାଜ୍ୟମ୍' (ତୈ ୧-୬-୨), 'ସର୍ବସ୍ମୈଦେବା ବଳିମାବହନ୍ତି' (ତୈ ୧-୫-୬), 'ତେଷାଂ ସର୍ବେଷ ଲୋକେଷୁ କାମଚାରୋ ଭବତି' (ଛା ୭-୨୫-୨, ୮-୧-୬) ଇତ୍ୟାଦି ଶ୍ରୁତିଭ୍ୟ ଇତି ।

(ଖ) ଏବଂ ପ୍ରାପ୍ତେ ପଠତି-ଜଗଦ୍ ବ୍ୟାପାର ବର୍ଜମିତି । ଜଗଦୁତ୍ପତ୍ତ୍ୟାଦି ବ୍ୟାପାରଂ ବର୍ଜୟିତ୍ୱାଽନ୍ୟଦଣି ମାଦ୍ୟାତ୍ମକ ମୈଶ୍ୱର୍ଯ୍ୟଂ ମୁକ୍ତାନାଂ ଭବିତୁମର୍ହତି । ଜଗଦ୍ ବ୍ୟାପାରସ୍ତୁ ନିତ୍ୟସିଦ୍ଧସ୍ୟୈବେଶ୍ୱରସ୍ୟ ॥

(ଗ) କୁତଃ ? ତସ୍ୟ ତତ୍ର ପ୍ରକୃତତ୍ୱାଦସଂନିହିତତ୍ୱାଚ୍ଚେତରେଷାମ୍ । ପର ଏବ ହୀଶ୍ୱରୋ ଜଗଦ୍ ବ୍ୟାପରୋଽଧିକୃତଃ, ତମେବ ପ୍ରକୃତ୍ୟୋତ୍ପତ୍ତ୍ୟାଦ୍ୟୁପଦେଶାତ୍, ନିତ୍ୟଶବ୍ଦନିବନ୍ଧନାତ୍ୱାଚ୍ଚ । ତଦନ୍ୱେଷଣବିଜିଜ୍ଞାସନ ପୂର୍ବକଂ ତ୍ୱିତରେଷାମଣିମାଦ୍ୟୈଶ୍ୱର୍ଯ୍ୟଂ ଶ୍ରୂୟତେ ।

(ଘ) ତେନାସଂନିହିତାସ୍ତେ ଜଗଦ୍ ବ୍ୟାପାରେ । ସମନ ସ୍କତ୍ୱାଦେବ ଚୈତେଷା ମନୈକମତ୍ୟେକସ୍ୟଚିତ୍ ସ୍ଥିତ୍ୟଭିପ୍ରାୟଃ କସ୍ୟଚିଦ୍ ସଂହାରାଭିପ୍ରାୟଃ ଇତ୍ୟେବଂ ବିରୋଧୋଽପି କଦାଚିତ୍‌ସ୍ୟାତ୍ । ଅଥ କସ୍ୟଚିତ୍ ସଂକଳ୍ପ ମନ୍ୱନ୍ୟସ୍ୟ ସଂକଳ୍ପ ଛତ୍ୟ ବିରୋଧଃ ସମର୍ଥ୍ୟେତ, ତତଃ ପରମେଶ୍ୱରାକୂତତନ୍ତ୍ରତ୍ୱମେବେତରେଷାମିତି କ୍ୟପତିଷ୍ଠତେ ॥

ଭାଷା-(କ) ଯାହା ସଗୁଣ ବ୍ରହ୍ମରେ ଉପାସନାଦ୍ୱାରା ମନ ସହ ଈଶ୍ୱର ସାଯୁଜ୍ୟ ପ୍ରାପ୍ତ ହୁଏ, ତାହାର ଐଶ୍ୱର୍ଯ୍ୟ କ'ଣ ନିରଙ୍କୁଶ ଅଥବା ସାଙ୍କୁଶ ଅଟେ ? ଏହିପ୍ରକାର ସଂଶୟ ହୁଏ । ତେବେ କ'ଣ ପ୍ରାପ୍ତ ହୁଏ ? ପୂର୍ବପକ୍ଷ-ତାହାର ଐଶ୍ୱର୍ଯ୍ୟ ନିରଙ୍କୁଶ ହେବା

ଉଚିତ୍, କାରଣ- 'ଆପ୍ନୋତି ସ୍ୱାରାଜ୍ୟମ୍' (ସେ ସ୍ୱରାଜ୍ୟକୁ ପ୍ରାପ୍ତ ହୁଏ), 'ସର୍ବେଽସ୍ମୈ' (ସମସ୍ତ ଦେବଗଣ ତାହାକୁ ଉପହାର ସମର୍ପଣ କରନ୍ତି) 'ତେଷାଂ ସର୍ବେଷୁ' (ତାହାକୁ ସଂପୂର୍ଣ୍ଣଲୋକରେ ଯଥେଚ୍ଛ ଗତି ହୁଏ) ଇତ୍ୟାଦି ଶ୍ରୁତି ଅଛି । ସିଦ୍ଧାନ୍ତ-

(ଖ) ଏହା ପ୍ରାପ୍ତ ହେବାରୁ କୁହାଯାଇଛି- 'ଜଗଦ୍ ବ୍ୟାପାରବର୍ଜମ୍' ଜଗତ୍‌ର ଉତ୍ପତ୍ତ୍ୟାଦିବ୍ୟାପାରକୁ ପରିତ୍ୟାଗ କରି ମୁକ୍ତପୁରୁଷ ଅନ୍ୟ ଅଣିମାଦି ରୂପ ଐଶ୍ୱର୍ଯ୍ୟକୁ ପାଏ । ଜଗତ୍‌ର ଉତ୍ପତ୍ତ୍ୟାଦି ବ୍ୟାପାର କିନ୍ତୁ ନିତ୍ୟ ସିଦ୍ଧ ଈଶ୍ୱରର ଅଟେ ।

(ଗ) କିପରି ? ସେ ସୃଷ୍ଟିରେ ପ୍ରକୃତ ହୁଏ ଏବଂ ଅନ୍ୟଜୀବ ଅସଂନ୍ନିହିତ ଅଟେ । ପରମେଶ୍ୱର କେବଳ ଜଗତ୍‌ର ଉତ୍ପତ୍ତ୍ୟାଦି ବ୍ୟାପାରରେ ଅଧିକୃତ ହୋଇଛି । କାରଣ ତାହାକୁ ପ୍ରସ୍ତୁତ କରି ଉତ୍ପତ୍ତ୍ୟାଦିର ଉପଦେଶ ହୁଏ ଏବଂ ନିତ୍ୟଶବ୍ଦ ଦ୍ୱାରା ସମ୍ବନ୍ଧିତ ହୁଏ । ତାହାର ଅନ୍ୱେଷଣ ବିଶେଷ ଜିଜ୍ଞାସାପୂର୍ବକ ଅନ୍ୟର ଅଣିମାଦି ଐଶ୍ୱର୍ଯ୍ୟ ଶ୍ରବଣ ହୁଏ ।

(ଘ) ତେଣୁ ମନସ୍ୱୀ ହେବାରୁ ଓ ଐକମତ୍ୟର ସମ୍ଭବ ନହେବାରୁ କାହାର ସଂସାରର ସ୍ଥିତିରେ ଅଭିପ୍ରାୟ ଓ କାହାର ତାହାର ସଂହାରରେ ଅଭିପ୍ରାୟ ହେବ ? ଏହିପ୍ରକାର କଦାଚିତ୍ ବିରୋଧ ହେବ । ଯଦି କୌଣସି ଜଣକର ସଂକଳ୍ପାନୁସାରେ ଅନ୍ୟର ସଂକଳ୍ପ ହେଉ- ଏହିପ୍ରକାର ଅବିରେଧର ସମର୍ଥନ ହେଲେ, ପରମେଶ୍ୱରର ଅଭିପ୍ରାୟର ଅଧୀନ ଅନ୍ୟଜୀବ ହୁଏ ଏହା ବ୍ୟବସ୍ଥା ହୁଏ ॥୧୭॥

**प्रत्यक्षोपदेशादिति चेन्नाधिकारिकमण्डलस्थोक्तेः ॥ ४-४-१८ ॥**

**ପ୍ରତ୍ୟକ୍ଷୋପ ଦେଶାଦିତି ଚେନ୍ନାଧିକାରିକମଣ୍ଡଳ ସ୍ଥୋକ୍ତେଃ ॥୪-୪-୧୮॥**

ପ୍ରତ୍ୟକ୍ଷୋପଦେଶାତ୍='ଆପ୍ନୋତି ସ୍ୱରାଜ୍ୟମ୍' ଇତ୍ୟାଦି ପ୍ରତ୍ୟକ୍ଷଶ୍ରୁତିରେ ବିଦ୍ୱାନ୍‌ର ଐଶ୍ୱର୍ଯ୍ୟ ନିରଙ୍କୁଶ ବୋଲି ପ୍ରତିପାଦିତ ହୋଇଛି । ଇତି ଚେନ୍ନ=ଏହି ଠିକ୍ ନୁହେଁ । କାରଣ-ଆଧିକାରିକ ମଣ୍ଡଳସ୍ଥୋକ୍ତେଃ - ଆଦିତ୍ୟମଣ୍ଡଳ ସ୍ଥିତ ଆଧିକାରିକ ପରମେଶ୍ୱରର ଅଧୀନ ସ୍ୱରାଜ୍ୟପ୍ରାପ୍ତି ବିଷୟକ ଏହା ବଚନ ଅଟେ ॥

ମୂଳ=(କ) ଅଥ ଯଦୁକ୍ତମ୍='ଆପ୍ନୋତି ସ୍ୱରାଜ୍ୟମ୍' (ତୈ ୧-୬-୨) ଇତ୍ୟାଦି ପ୍ରତ୍ୟକ୍ଷୋପ ଦେଶାନ୍ନିରବଗ୍ରହମୈଶ୍ୱର୍ଯ୍ୟଂ ବିଦୁଷାଂ ନ୍ୟାୟାମିତି ତତ୍ପରି ହର୍ତ୍ତବ୍ୟମ୍ ।

(ଖ) ଅତ୍ରୋଚ୍ୟତେ- ନାୟଂ ଦୋଷଃ-ଆଧିକାରିକ ମଣ୍ଡଳସ୍ଥୋକ୍ତେଃ । ଆଧିବାରିକୋ ଯଃ ସବିତୃ ମଣ୍ଡଳାଦିଷୁ ବିଶେଷାୟତନେ ଷ୍ୱବସ୍ଥିତଃ ପରି ଈଶ୍ୱରସ୍ତଦାୟ ତ୍ତୈବେୟଂ ସ୍ୱରାଜ୍ୟ ପ୍ରାପ୍ତି ରୁଚ୍ୟତେ । ଯତ୍କାରଣମନନ୍ତରମ୍ 'ଆପ୍ନୋତି ମନସ୍ପତିମ୍' (ତୈ ୧-୬-୨) ଇତ୍ୟାହ ॥

(ଗ) ଯୋହି ସର୍ବମନସାଂପତିଃପୂର୍ବସିଦ୍ଧ ଈଶ୍ୱରସ୍ତଂ ପ୍ରାପୋତୀତ୍ୟେତଦୁକ୍ତଂ ଭବତି । ତଦନୁସାରେଣୈବ ଋନନ୍ତରମ୍'ବାକ୍ପତିଶ୍ଚକ୍ଷୁଷ୍ପତିଃ । ଶ୍ରୋତ୍ରପତିଃ, ବିଜ୍ଞାନପତିଃ' (ତୈ ୧-୬-୨) ଚ ଭବତି ଇତ୍ୟାହ । ଏବମନ୍ୟତ୍ରାପି ଯଥାସମ୍ଭବଂ ନିତ୍ୟସିଦ୍ଧେଶ୍ୱରାୟମେତ-ବତରେଷା ମୈଶ୍ୱର୍ଯ୍ୟଂ ଯୋଜୟିତବ୍ୟମ୍ ॥

ଭାଷା (କ) 'ଆପ୍ନୋତି ସ୍ୱରାଜ୍ୟମ୍' (ସେ ସ୍ୱରାଜ୍ୟକୁ ପାଏ) ଇତ୍ୟାଦି ପ୍ରତ୍ୟକ୍ଷ ଶ୍ରୁତିରେ ଉପାସକଗୁଡ଼ିକର ଐଶ୍ୱର୍ଯ୍ୟ ନିରଙ୍କୁଶ ସମୀଚୀନ ବୋଲି ଯାହା କୁହାଯାଇଛି, ତାହାର ପରିହାର କରିବା ଉଚିତ୍ ।

(ଖ) ଏହି ବିଷୟରେ ଆମ୍ଭେ କହୁଁ ଏହା ଦୋଷ ନୁହେଁ, କାରଣ-ଆଧିକାରିକ ମଣ୍ଡଳ ସ୍ଥିତିପାଇଁ ଏହା ଉକ୍ତି ଅଟେ । ଆଦିତ୍ୟ ମଣ୍ଡଳାଦି ବିଶେଷ ସ୍ଥାନଗୁଡ଼ିକରେ ଅବସ୍ଥିତ ଯେଉଁ ଆଧିକାରିକ ପରମେଶ୍ୱର ରହିଛି, ତାହାର ଅଧୀନ ଏହି ସ୍ୱରାଜପ୍ରାପ୍ତି ବୋଲି କୁହାଯାଏ, କାରଣ-ଅନନ୍ତରଂ 'ଆପ୍ନୋତି ମନସ୍ପିତମ୍' (ସେ ମନର ପତି ବ୍ରହ୍ମକୁ ପ୍ରାପ୍ତ ହୁଏ) ଏହା ଶ୍ରୁତି କହେ ।

(ଗ) ଯାହା ସବୁ ମନର ପତି ପୂର୍ବସିଦ୍ଧ ଈଶ୍ୱର, ତାହାକୁ ହିଁ ଏହା ପ୍ରାପ୍ତ ହୁଏ ବୋଲି ଏହା କୁହାଯାଇଛି । ପରେ ତାହା ଅନୁସାରେ ବାକ୍ପତିଃ ଚକ୍ଷୁଷ୍ପତିଃ । (ତାହା ବାଣୀର ପତି, ଚକ୍ଷୁର ପତି, ଶ୍ରୋତର ପତି ଏବଂ ବିଜ୍ଞାନର ପତି ଅଟ୍ଟୁ) ଏହିପ୍ରକାର ଶ୍ରୁତି କହେ । ସେହିପରି ଅନ୍ୟତ୍ର ମଧ୍ୟ ଅନ୍ୟ ଉପାସକର ଐଶ୍ୱର୍ଯ୍ୟ ନିତ୍ୟସିଦ୍ଧ ଈଶ୍ୱରର ଅଧୀନ ଅଟେ-ଏହା ଯଥାସମ୍ଭବ ଯୋଜନା କରିବା ଉଚିତ୍ ॥୧୮।

## विकारावर्त्ति च तथा हि स्थितिमाह ॥ ४-४-१९ ॥

## ବିକାରାବର୍ତ୍ତି ଚ ତଥା ହି ସ୍ଥିତିମାହ ॥୪-୪-୧୯॥

ବିକାରବର୍ତ୍ତି ଚ=ବିକାରରେ ନ ରହିଲେ ବ୍ରହ୍ମର ସ୍ୱରୂପ ହୁଏ । ହି=କାରଣ, ତଥା=ସେହିପରି, ସ୍ଥିତିମ୍=ପରମେଶ୍ୱରର ଦୁଇରୂପସ୍ଥିତି, ଆହ='ତାବାନସ୍ୟ ମହିମା' ଇତ୍ୟାଦି ଶ୍ରୁତି କହେ ॥

ମୂଳ=(କ) ବିକାରବର୍ତ୍ତ୍ୟପି ଚ ନିତ୍ୟମୁକ୍ତଂ ପାରମେଶ୍ୱରଂ ରୂପଂ ନ କେବଳଂ ବିକାରମାତ୍ର ଗୋଚରଂ ସବିତୃ ମଣ୍ଡଳାଦ୍ୟଧିଷ୍ଠାନମ୍ । ତଥାହ୍ୟସ୍ୟ ଦ୍ୱିରୂପାଂ ସ୍ଥିତିମାହାମ୍ନାୟଃ-

'ତାବନସ୍ୟ ମହିମା, ତତୋ ଜ୍ୟାୟାଂଶ୍ଚ ପୁରୁଷଃ । ପାଦୋଽସ୍ୟ ସର୍ବାଭୂତାନି, ତ୍ରିପାଦସ୍ୟାମୃତଂ ଦିବି' (ଛା ୩-୧୨-୬) ଇତ୍ୟେବମାଦିଃ'

(ଖ) ନ ଚ ତନ୍ନିର୍ବିକାରଂ ରୂପମିତରା ଲମ୍ବନାଃ ପ୍ରାପ୍ନୁବନ୍ତୀତି ଶକ୍ୟଂ ବକ୍ତୁମ୍, ଅତତ୍କ୍ରତୁ ତ୍ୱାତ୍ତେଷାମ୍ । ଅତଶ୍ଚ ଯଥୈବ ଦ୍ୱିରୂପେ ପରମେଶ୍ୱରେ ନିର୍ଗୁଣଂ ରୂପ ମନବାପ୍ୟ ସଗୁଣ ଏବାବତିଷ୍ଠନ୍ତେ ଏବଂ ସଗୁଣେଽପି ନିରବଗ୍ରହମୈଶ୍ୱର୍ଯ୍ୟାମନବାପି ସାବଗ୍ରହ ଏବାବତିଷ୍ଠନ୍ତ ଇତି ଦ୍ରଷ୍ଟବ୍ୟମ୍ ॥

ଭାଷା-(କ) ବିକାରରେ ନରହିଥିବାରୁ ପରମେଶ୍ୱରଙ୍କୁ ନିତ୍ୟରୂପ କୁହାଯାଇଛି, କେବଳ ବିକାରମାତ୍ର ବିଷୟକ ସବିତୃମଣ୍ଡଳାଦି ଅଧିଷ୍ଠାନରୂପ ନୁହେଁ, କାରଣ- 'ତ ବନସ୍ୟ ମହିମା' (ଏହି ଗାୟତ୍ର୍ୟାଖ୍ୟ ବ୍ରହ୍ମର ଏତେ ମହିମା ଯେ, ସେ ନିର୍ବିକାର ପୁରୁଷ ତାହାଠାରୁ ଉତ୍କୃଷ୍ଟ, ତେଜ, ଜଳ ଓ ଅନ୍ନାଦି ସଂପୂର୍ଣ୍ଣ ଚରାଚର ପ୍ରାଣୀ ତାହାର ଗୋଟିଏ ପାଦ ଓ ତାହାର ପୁରୁଷ ନାମକ ତ୍ରିପାଦ ଅମୃତ ପ୍ରକାଶମୟ ସ୍ୱାତ୍ମାରେ ରହିଛି ।) ଇତ୍ୟାଦି ଶ୍ରୁତି ତାହାର ଦୁଇଟି ରୂପର ସ୍ଥିତି କହେ ।

## दर्शयतश्चैवं प्रत्यक्षानुमाने ॥ ४-४-२० ॥

## ଦର୍ଶୟତଶ୍ଚୈବଂ ପ୍ରତ୍ୟକ୍ଷାନୁମାନେ ॥୪-୪-୨୦॥

ଏବଂ=ଏହିପରି, ପ୍ରତ୍ୟକ୍ଷାନୁମାନେ ଚ=ଶ୍ରୁତି ଓ ସ୍ମୃତିରେ ମଧ୍ୟ ଦର୍ଶୟତଃ=ପରମେଶ୍ୱରର ନିର୍ବିକାରରୂପ ଦେଖାଏ ॥

ମୂଳ-(କ) ଦର୍ଶୟତଶ୍ଚ ବିକାରାବର୍ତ୍ତିତ୍ୱଂ ପରସ୍ୟ ଜ୍ୟୋତିଷଃ ଶ୍ରୁତିସ୍ମୃତି । 'ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେ ମା ବିଦ୍ୟୁତୋଭାନ୍ତି କୁତୋଽୟମଗ୍ନିଃ' (କଂ ୫-୧୫, ଶ୍ୱେତା ୬-୨୪, ମୁଣ୍ଡ ୧-୨-୧୦) ଇତି, 'ନ ତଦ୍ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ (ଗୀ ୧୫-୬) ଇତି ଚ । ତଦେବଂ ବିକାରବର୍ତ୍ତିତ୍ୱଂ ପରସ୍ୟ ଜ୍ୟୋତିଷଃ ପ୍ରସିଦ୍ଧମିତ୍ୟଭିପ୍ରାୟଃ ॥

ଭାଷା-(କ) 'ନ ତତ୍ର ସୂର୍ଯ୍ୟୋ ଭାତି' (ସେହି ଜ୍ୟୋତିଷସ୍ୱରୂପ ପରଂବ୍ରହ୍ମରେ ଲୋକାବଭାସକ ସୂର୍ଯ୍ୟ ପ୍ରକାଶିତ ହୁଏ ନାହିଁ, ଚନ୍ଦ୍ର ଓ ତାରା ପ୍ରକାଶିତ ହୁଅନ୍ତି ନାହିଁ, ବିଦ୍ୟୁତ୍ ଚମକେ ନାହିଁ ପୁନଶ୍ଚ ଅସ୍ମଦାଦି ଗୋଚର ଏହି ଭୌତିକ ଅଗ୍ନି କେଉଁଠି ପ୍ରକାଶିତ ହୁଏ କି ? ଏବଂ 'ନ ତଦ୍ ଭାସୟତେ' (ସେ ସ୍ୱୟଂ ପ୍ରକାଶମୟ ପରଂବ୍ରହ୍ମକୁ ଚନ୍ଦ୍ର, ସୂର୍ଯ୍ୟ ଓ ଚନ୍ଦ୍ରମା ପ୍ରକାଶିତ କରନ୍ତି ନାହିଁ) ଏହିପରି ଶ୍ରୁତି ଓ ସ୍ମୃତି ମଧ୍ୟ ଜ୍ୟୋତିଃସ୍ୱରୂପ ବିକାରାବର୍ତ୍ତିତ୍ୱ ଦେଖାଏ । ଏହିପରି ପର ଜ୍ୟୋତିରେ ବିକାରାବର୍ତ୍ତିତ୍ୱ ପ୍ରସିଦ୍ଧ ଅଟେ ବୋଲି ଅଭିପ୍ରାୟ ଟେ ॥୨୦॥



## भोगमात्रसाम्यलिङ्गाच्च ॥ ४-४-२१ ॥

## ଭୋଗମାତ୍ରସାମ୍ୟଲିଙ୍ଗାଚ୍ଚ ॥ ୪-୪-୨୧॥

ଭୋଗମାତ୍ର ସାମ୍ୟଲିଙ୍ଗାତ୍ ଚ = ଉପାସକଗୁଡ଼ିକୁ ଈଶ୍ୱର ସହ ଭାଗମାତ୍ରର ସାମ୍ୟ ଶ୍ରୁତି ହେବାରୁ ସେଗୁଡ଼ିକର ନିରଙ୍କୁଶ ଐଶ୍ୱର୍ଯ୍ୟ ନୁହେଁ ॥

ମୂଳ-(କ) ଇତଶ୍ଚ ନ ନିରଙ୍କୁଶଂ ବିକାରାଲଏମ୍ବନାନାମୈଶ୍ୱର୍ଯ୍ୟ ଯସ୍ମାଦ୍ ଭେଗାମାତ୍ରମେ ବୈଷାମନାଦି ସିଦ୍ଧେନେଶ୍ୱରେଣ ସମାନମିତି ଶ୍ରୂୟତେ 'ତମାହାପୋ ବୈଖଲୁ ମୀୟନ୍ତେ ଲୋକୋଽସୌ' ଇତି, 'ସ ଯଥୈତଂ ଦେବତାଂ ସର୍ବାଣୀ ଭୂତାନ୍ୟ ବନ୍ତ୍ୟେବଂ ହ୍ୟେବଂବିଦଂ ସର୍ବାଣି ଭୂତାନ୍ୟବନ୍ତି', 'ତେନୋ ଏତସୌ ଦେବତାୟୈ ସାଯୁଜ୍ୟଂ ସଲୋକତାଂ ଜୟତି' (ବୃହ ୧-୫-୨୩) ଇତ୍ୟାଦି ଭେଦ ବ୍ୟପଦେଶ ଲିଙ୍ଗେଭ୍ୟଃ ॥

ଭାଷା - (କ) ଏହି ବକ୍ଷ୍ୟମାଣ ହେତୁଦ୍ୱାରା ମଧ୍ୟ ବିକାରକୁ ଉପାସନା କରୁଥିବା ଉପାସକଗୁଡ଼ିକର ଐଶ୍ୱର୍ଯ୍ୟ ନିରଙ୍କୁଶ ନୁହେଁ । କାରଣ – ସେଗୁଡ଼ିକର ଭୋଗମାତ୍ର ଅନାଦିସିଦ୍ଧ ଈଶ୍ୱର ସହିତ ସମାନ ଅଟେ । 'ତମାହାପୋ' (ସେହି ଉପାସକରୁ ହିରଣ୍ୟଗର୍ଭ ସାନ୍ତ୍ୱନା ପୂର୍ବକ କହନ୍ତି - ମୋଠାରୁ ସେମାନେ ଅମୃତମୟ ଜଳକୁ ଭୋଗ କରନ୍ତି । ତୁମ୍ଭେ ଏହି ଅମୃତମୟ ଲୋକର ଭୋଗ୍ୟ ଅଟ । ତୁମ୍ଭେ କାହାକୁ ଠିକ୍ ଭାବେ ଭାଗ କର) ଏହା ଶ୍ରୁତି ଅଟେ .। 'ସ ଯଥୈତାଂ )ଯେପରି ଏହି ହିରଣ୍ୟଗର୍ଭ ଦେବତାଙ୍କୁ ସମସ୍ତେ ଭୋଗ କରନ୍ତି, ସେହିପରି ସବୁ ଜାଣିଥିବା ଭୂତଗୁଡ଼ିକୁ ପୂଜା କରନ୍ତି), 'ତେନୋ ଏତସ୍ୟୈ', (ସେହି ପ୍ରାଣାତ୍ମ ପ୍ରତିରୂପ ବ୍ରତର ଯାଗରେ, ଉପାସକ ସେହି ପ୍ରାଣ ଦେବତାର ଏକାତ୍ମତା ଓ ସମାନଲୋକତା ଅର୍ଥାତ୍ ଏକସ୍ଥାନତ୍ୱ ପ୍ରାପ୍ତ କରେ । (ଇତ୍ୟାଦି ଭେଦ ବ୍ୟପଦେଶ ଲିଙ୍ଗଗୁଡ଼ିକଦ୍ୱାରା ଉପାସକତ୍ୱର ଉପାସ୍ୟ ଈଶ୍ୱର ସହ ଭୋଗ ସାମ୍ୟ ରୂପେ ପ୍ରତୀତ ହୁଏ ॥୨୧॥

ମୂଳ-(କ) ନନ୍ୱେବଂ ସତି ସାତିଶୟ ତ୍ୱାଦନ୍ତବତ୍ତ୍ୱମୈଶ୍ୱର୍ଯ୍ୟସ୍ୟ ସ୍ୟାତ୍, ତତଶ୍ଚୈଷାମାବୃତ୍ତିଃ ପ୍ରସଜ୍ୟେତେତ୍ୟେତ ଉତ୍ତରଂ ଭଗବାନ୍ ବାଦରାୟଣ ଆଚାର୍ଯ୍ୟ ପଠତି -

ଭାଷା-(କ) ପରନ୍ତୁ ଉପାସକର ଐଶ୍ୱର୍ଯ୍ୟ ସାଙ୍କୁଶ ହେବା ପରେ ସାତିଶୟ ହେବାରୁ ତାହାର ଐଶ୍ୱର୍ଯ୍ୟ ବିନାଶୀ ହେବ; ତେଣୁ ତାହା ଆବୃତ୍ତି ଅର୍ଥାତ୍ ସଂସାରାଗମନ ପ୍ରଶସ୍ତ ହେବ କି ? ତେଣୁ ଭଗବାନ୍ ବାଦରାୟଣ ଆଚାର୍ଯ୍ୟ ଉତ୍ତରରେ କହନ୍ତି -

अनावृत्तिः शब्दादनावृत्तिः शब्दात् ॥ ४-४-२२ ॥

ଅନାବୃତ୍ତିଃ ଶବ୍ଦାଦନାବୃତ୍ତିଃ ଶବ୍ଦାତ୍ ॥ ୪-୪-୨୨॥

ଅନାବୃତ୍ତିଃ= ଅର୍ଚିରାଦିପର୍ବଯୁକ୍ତ ଦେବଯାନ ମାର୍ଗରୁ ଯେଉଁ ଉପାସକ ବ୍ରହ୍ମଲୋକକୁ ପ୍ରାପ୍ତ ହୁଏ, ତାହାର ପୁନରାବୃତ୍ତି ହୁଏ ନାହିଁ । ଶବ୍ଦାତ୍-କାରଣ- 'ନ ନ ପୁନରାବର୍ତ୍ତତେ' ଇତ୍ୟାଦି ଶ୍ରୁତି ରହିଛି । ସୂତ୍ରର ଆବୃତ୍ତି ଶାସ୍ତ୍ର ପରିସମାପ୍ତିଦ୍ୟୋତକ ଅଟେ ॥

ମୂଳ-(କ) ନାଡ଼ୀ ରଶ୍ମି ସମନ୍ୱିତେନାର୍ଚିରାଦି ପର୍ବଣା ଦେବଯାନେନ ପଥା ଯେ ବ୍ରହ୍ମଲୋକଂ ଶାସ୍ତ୍ରୋକ୍ତ ବିଶେଷଣଂ ଗଚ୍ଛନ୍ତି, 'ଯସ୍ମିନ୍ନରଶ୍ଚ ହବୈ୍ୟଣଶ୍ଚାର୍ଣବୌ ବ୍ରହ୍ମଲୋକେ ତୃତୀୟସ୍ୟାମିତୋଦିବି, ଯସ୍ମିନ୍ନୈରଂ ମଦୀୟଂ ସରୋ ଯସ୍ମିନ୍ନଶ୍ୱତ୍ଥଃ ସୋମସବନୋ ଯସ୍ମିନ୍ ପରାଜିତା ପୂର୍ବ୍ରହ୍ମଣୋଯସ୍ମିଂଶ୍ଚ ପ୍ରଭୁବିମିତଂ ହିରଣ୍ମୟଂ ବେଶ୍ମ ଯଶ୍ଚାନେକଧା ମନ୍ତ୍ରାର୍ଥବାଦାଦିପ୍ରଦେଶେଷୁ ପ୍ରପଞ୍ଚ୍ୟତେ-ତେ ତଂ ପ୍ରାପ୍ୟ ନ ଚନ୍ଦ୍ରଲୋକାଦିବ ଭୁକ୍ତଭୋଗା ଆବର୍ତ୍ତନ୍ତେ । କୁତଃ ? ତୟୋର୍ଦ୍ଧ୍ୱମାୟନ୍ନମୃତ ତ୍ୱମେତି' (ଛା ୮-୬-୬, କଂ ୬-୧୬), 'ତେଷାଂ ନ ପୁନରାବୃତ୍ତିଃ (ବୃହ ୬-୨-୧୫), 'ଏତେନ ପ୍ରତିପଦ୍ୟମାନା ଇମଂ ମାନବମାବର୍ତ୍ତ ନାବର୍ତ୍ତନ୍ତେ' (ଛା ୪-୧୫-୫), 'ବ୍ରହ୍ମଲୋକମଭି ସଂପଦ୍ୟତେ' (ଛା ୮-୧୫-୧), 'ନଚ ପୁନରାବର୍ତ୍ତତେ' (ଛା ୮-୧୫-୧) ଇତ୍ୟାଦି ଶବ୍ଦେଭ୍ୟଃ ।

(ଖ) ଅନ୍ତବତ୍ତ୍ୱେଽପି ତ୍ୱୈଶ୍ୱର୍ଯ୍ୟସ୍ୟ ଯଥାଽନୋ ବୃତ୍ତିସ୍ତଥା ବର୍ଣ୍ଣିତମ୍ 'କାର୍ଯ୍ୟାତ୍ୟୟେ ତଦଧ୍ୟକ୍ଷେଣ ସହାତଃ ପରମ୍' (ବ୍ର ସୂ ୪-୩-୧୦) ଇତ୍ୟତ୍ର । ସମ୍ୟଗ୍ ଦର୍ଶନ ବିଧ୍ୱସ୍ତ ତମସାଂ ତୁ ନିତ୍ୟସିଦ୍ଧ ନିର୍ବାଣ ପରାୟଣାନଂ ସିଦ୍ଧୈବାନାବୃତ୍ତିଃ ତଦାଶ୍ରୟଣେନୈବ ହି ସଗୁଣଶରଣାନାମପା ନାବୃତ୍ତି ସିଦ୍ଧିରିତି । ଅନାବୃତ୍ତିଃ ଶବ୍ଦାଦନାବୃତ୍ତିଃ ଶବ୍ଦାଦିତି ସୂତ୍ରାଭ୍ୟାସଃ ଶାସ୍ତ୍ର ପରିସମାପ୍ତିଂ ଦ୍ୟୋତୟତି ॥

ଭାଷା (କ) ଯେଉଁ ଉପାସକ ନାଡ଼ିରଶ୍ମି ସମନ୍ୱିତ ଅର୍ଚ୍ଚିରାଦି ପର୍ବଯୁକ୍ତ ଦେବଯାନ ମାର୍ଗରୁ ଶାସ୍ତ୍ରୋକ୍ତ ବିଶେଷଣ ବିଶିଷ୍ଟ ବ୍ରହ୍ମଲୋକକୁ ପ୍ରାପ୍ତ ହୁଅନ୍ତି - ଏହି ପୃଥିବୀ ନାମକ ଲୋକରୁ ତୃତୀୟଦ୍ୟୁଲୋକର ଯେଉଁ ବ୍ରହ୍ମଲୋକ ରହିଛି, ସେହି ବ୍ରହ୍ମଲୋକରେ 'ଅର' ଓ 'ଣ୍ୟ' ନାମକ ଦୁଇଟି ସମୁଦ୍ରପରି ପୁଷ୍କରିଣୀ ରହିଛି । ସେହି-ଅନ୍ନମୟ ମଣ୍ଡରୁ ପୂର୍ଣ୍ଣ ମନର ହର୍ଷୋତ୍ପାଦକ ସର ଅଛି । ସେହି ଅମୃତତ୍ୱର ସ୍ରୋତ ପ୍ରବାହିତ ହେଉଥିବା ଅଶ୍ୱତ୍ଥ ବୃକ୍ଷ ଅଛି । ତାହା ଉପରେ ବ୍ରହ୍ମାର ଅପରାଜିତପୁରୀ ରହିଛି, ସେହି ବ୍ରହ୍ମାଦ୍ୱାରା ନିର୍ମିତ ସୁବର୍ଣ୍ଣମୟ ଗୃହ ରହିଛି, ଯାହାର କି ଅନେକ ପ୍ରକାର ମନ୍ତ୍ର, ଅର୍ଥବାଦାଦି ପ୍ରଦେଶରେ ବିସ୍ତାର ରୂପରେ ବର୍ଣ୍ଣନ କରାଯାଇଛି । ତାହାକୁ ପାଇ ଯେପରି କର୍ମଠ ଲୋକ ଭୁକ୍ତଭୋଗ ହୋଇ ଚନ୍ଦ୍ରଲୋକଠାରୁ ପ୍ରତ୍ୟାବର୍ତ୍ତନ କରେ, ସେହିପରି ସେ ଫେରେ ନାହିଁ । କିପରି କାରଣ 'ତୟୋଧମାମନ୍ନ' (ସେହି ମୂର୍ଦ୍ଧନ୍ୟନାଡ଼ିରୁ ଊର୍ଦ୍ଧ୍ୱକୁ ଜାଣିଥିବା ଅମୃତତ୍ୱକୁ ପ୍ରାପ୍ତ ହୁଏ,)



'ତେଷାଂ ନ ପୁନରାବୃତ୍ତି' (ତାହାର ପୁନରାବୃତ୍ତି ହୁଏ ନାହିଁ) 'ଏତେନ ପ୍ରତିପଦ ମାନା' ଏହି ଦେବମାର୍ଗକୁ ଜାଣି ମନୁଷ୍ୟ ମାନବ ମଣ୍ଡଳରୁ ଫେରେ ନାହିଁ 'ନ ଚ ' ( ସେ ପୁଣି ଫେରେ ନାହିଁ) ଇତ୍ୟାଦି ଶ୍ରୁତିବାକ୍ୟ ରହିଛି ।

(ଖ) ଐଶ୍ୱର୍ଯ୍ୟର ବିନାଶୀ ହେବା ପରେ ଯେପରି ଅନାବୃତ୍ତି ହୁଏ, ସେପରି 'କାର୍ଯ୍ୟାତ୍ୟୟେ ତଦଧ୍ୟକ୍ଷେଣ ସହାତଃ ପରମ୍' ଏହି ସୂତ୍ରରେ ବର୍ଣ୍ଣିତ ହୋଇଛି । ସମ୍ୟଗ୍‌ଦର୍ଶନରୁ ବିଧ୍ୱସ୍ତ ଅଜ୍ଞାନଯୁକ୍ତ ନିତ୍ୟସିଦ୍ଧ ନିର୍ବାଣ ପରାୟଣ୍ ମୁକ୍ତ ପୁରୁଷର ଅନାବୃତ୍ତି ସିଦ୍ଧ ହୁଏ । ସଗୁଣ ଶରଣାର୍ଥୀ ସେହି ଜ୍ଞାନର ଆଶ୍ରୟ କରିବା ଦ୍ୱାରା ଅନାବୃତ୍ତି ସିଦ୍ଧ ହୁଏ । 'ଅନାବୃତ୍ତି ଶବ୍ଦରୁ' ଏହି ପ୍ରକାର ସୂତ୍ରର ପୁନରୁକ୍ତି ଶାସ୍ତ୍ରର ପରିସମାପ୍ତି ସୂଚିତ କରେ ॥୨୨॥

ଇତି ଚତୁର୍ଥ ଅଧ୍ୟାୟ ଚତୁର୍ଥପାଦ ସମାପ୍ତ ।



## ଧର୍ମଗ୍ରନ୍ଥ ଷ୍ଟୋରରର ପ୍ରକାଶିତ ଉପାଦେୟ ପୁସ୍ତକ


| | |
|---|---|
| ସାମର୍ବେଦ ଏକଖଣ୍ଡ | ମନୁସଂହିତା |
| ଯର୍ଦୁବେଦ ଦୁଇଖଣ୍ଡ | ପରାଶର ସଂହିତା |
| ଅର୍ବ୍ୟର୍ଥ ଚାରିଖଣ୍ଡ | ଯାଜ୍ଞବଲ୍‌କଲ ସଂହିତା |
| ଋକ୍‌ବେଦ ଆଠଖଣ୍ଡ | ଶୂନ୍ୟସହିତା |
| ୧୦୮ ଉପନିଷେଧ | ଆଦି ସଂହିତା |
| ନିମ୍ବାର୍କ ଦର୍ଶନ | ଅନାଦି ସଂହିତା |
| ପାତଞ୍ଜଳି ଯୋଗ ଦର୍ଶନ | ପରମ ସଂହିତା |
| ସାଂଖ୍ୟ ଦର୍ଶନ | ଜୀବ ପରମ ସଂହିତା |
| ନ୍ୟାୟ ଦର୍ଶନ | ଅକଳି ସଂହିତା |
| ବେଦାନ୍ତ ଦର୍ଶନ | କାଣ୍ୱ ସଂହିତା |
| ମୀମାଂସା ଦର୍ଶନ | |
| ବୈଶେଷିକ ଦର୍ଶନ | ଭୃଗୁ ସଂହିତା |




ମୁଦ୍ରଣ - ସୁକାନ୍ତି ପ୍ରିଣ୍ଟର୍ସ, ମାନସିଂହ ପାଟଣା, କଟକ -୮